ମହାପୁରୁଷ ଜଗନ୍ନାଥ ଦାସ

# ଶ୍ରୀମଦ୍ଭାଗବତ

## ପ୍ରଥମ ପ୍ରାମାଣିକ ସଂସ୍କରଣ



ସଂପାଦନା

ପ୍ରଫେସର କୃଷ୍ଣଚରଣ ସାହୁ

ଷୋଡଶ ଶତାବ୍ଦୀରେ ରଚିତ ହୋଇଥିବା ଜଗନ୍ନାଥ ଦାସଙ୍କର ଶ୍ରୀମଦ୍ଭାଗବତ ଓଡ଼ିଶାର ସର୍ବାଧିକ ଲୋକପ୍ରିୟ ଓ ନାମ ମାହାତ୍ମ୍ୟ ପ୍ରଚାରର ସର୍ବୋତ୍ତମ ମୁଖ୍ୟ ଧର୍ମଗ୍ରନ୍ଥ । ଭାଗବତ ହିଁ ସଂପୂର୍ଣ୍ଣ ଶିକ୍ଷା । ଶ୍ରୀମଦ୍ଭାଗବତ ଏହି ଶିକ୍ଷାର ଆଧାର ଓ ଓଡ଼ିଆ ଜାତିର ଶକ୍ତି, ସାମର୍ଥ୍ୟ, ଚରିତ୍ର ଓ ମହାନତାର ପ୍ରତୀକ । ବିଶ୍ୱାସ, ପ୍ରଫେସର ସାହୁଙ୍କର କଠିନ ପରିଶ୍ରମର ଫଳଶ୍ରୁତି, ଜଗନ୍ନାଥ ଦାସଙ୍କର ଶ୍ରୀମଦ୍ଭାଗବତ ର ପ୍ରଥମ ପ୍ରାମାଣିକ ସଂସ୍କରଣ ଜାତିର ଏକ ମହାନ ଐତିହ୍ୟ ସଂପର୍କରେ ପାଠକ ପାଠିକାମାନଙ୍କୁ ସଚେତ କରିବା ସାଙ୍ଗେ ସାଙ୍ଗେ, ସେମାନଙ୍କର ମନରେ ଗଭୀର ଆନନ୍ଦ ଓ ଶାନ୍ତି ଆଣିଦେବ ।

ମହାପୁରୁଷ ଜଗନ୍ନାଥ ଦାସ

# ଶ୍ରୀମଦ୍ଭାଗବତ

ସଂପାଦନା :
ଡକ୍ଟର କୃଷ୍ଣ ଚରଣ ସାହୁ

ପ୍ରକାଶକ :
ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ, ଭୁବନେଶ୍ୱର

ମହାପୁରୁଷ ଜଗନ୍ନାଥ ଦାସ

# ଶ୍ରୀମଦ୍ଭାଗବତ

ସଂପାଦନା : ଡକ୍ଟର କୃଷ୍ଣଚରଣ ସାହୁ

ପ୍ରକାଶକ : ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ, ଭୁବନେଶ୍ୱର

ଅକ୍ଷର : ଶାରଳା ଗ୍ରାଫିକ୍ସ,
ନିକୋପାର୍କ ରୋଡ, ଭୁବନେଶ୍ୱର-୧୨

ପ୍ରଚ୍ଛଦ : ବିଭୁ ପ୍ରସାଦ ପ୍ରଧାନ

ମୁଦ୍ରଣ : ପ୍ରିଣ୍ଟଟେକ୍ ଅଫସେଟ୍, ଭୁବନେଶ୍ୱର-୨୪

ବଂଧେଇ : ସ୍ୱାଧୀନ ବାଇଣ୍ଡରସ୍, ତୁଳସୀପୁର , କଟକ

ସଂସ୍କରଣ : ୧ମ ସଂସ୍କରଣ :୨୦୦୮ (ଜାନୁୟାରୀ)

ବିତରକ : ବିଦ୍ୟା
୧୫୭୩, ମଧୁବନ ସରଣୀ, ଭକ୍ତମଧୁ ନଗର,
ଭୁବନେଶ୍ୱର -୭୫୧୦୩୦
ଫୋନ୍ : (୦୬୭୪) ୨୩୫୦୨୮୯/୨୩୫୦୫୧୧

ମୂଲ୍ୟ : ୩୪୦ ଟଙ୍କା

**Mahapurus Jagannath Das**
**SRIMAD BHAGABAT**

Edited by :
**Dr. Krushna Charan Sahoo**

Publisher :
**Professor Krushna Charan Sahoo Smruti Parishad,**
Bhubaneswar

D.T.P : **Sarala Graphics**,
Nicco Park Road, Bhubaneswar-12

Cover **Bibhu Prasad Pradhan**

Printed at : **Print-Tech Offset,**
Chandaka Industrial Area
Bhubaneswar-24

1st Edition-**2008** (January)

Price **Rs 340.00**



Distributor : **Vidya**
1573, Madhuban Sarani, Bhaktamadhu Nagar,
Bhubaneswar-751030, Ph.(0674)2350289 / 2350511
I.S.B.N.No.81-903438-7-4

# ମୁଖବନ୍ଧ

ପ୍ରଫେସର ସାହୁଙ୍କର 'ଶ୍ରୀମଭାଗବତ'ର ସଂପାଦନା କାର୍ଯ୍ୟ ଗତ ଶତାବ୍ଦୀର ଅଶୀ ଦଶକର ମଝାମଝି ସମୟରେ ଶେଷ ହୋଇଥିଲା । ସେ ପ୍ରାୟ ସେହି ସମୟରେ ବଳରାମ ଦାସଙ୍କର ମହାକାବ୍ୟ 'ଜଗମୋହନ ରାମାୟଣ'ର ସଂପାଦନା କାର୍ଯ୍ୟ ମଧ୍ୟ ଶେଷ କରିଥିଲେ । ସେ ୧୯୭୧ରେ ରୀଡ଼ର ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ଯୋଗ ଦେଇଥିଲେ, ଓ ପରେ ପରେ 'ଶ୍ରୀମଭାଗବତ'ର ସଂପାଦନା କାର୍ଯ୍ୟ ଆରମ୍ଭ କରିଥିଲେ । ସେଥିପାଇଁ ସେ ତାଙ୍କର ଗବେଷକ ଛାତ୍ରମାନଙ୍କୁ ନେଇ ଗୋଟିଏ କର୍ମଦଳ ତିଆରୀ କରିଥିଲେ, ଓ ସେମାନଙ୍କର ସହାୟତାରେ ଓଡ଼ିଶାର ବିଭିନ୍ନ ଅଂଚଳରୁ ଶହ ଶହ ଭାଗବତ ପୋଥି ସଂଗ୍ରହ କରିଥିଲେ । ସେସବୁ ପୋଥିର ଗୋଷ୍ଠୀ କରିବା, ପାଠୋଦ୍ଧାର କରିବା ଓ ସଟୀକ ସଂପାଦନ କରିବା କାର୍ଯ୍ୟରେ ତାଙ୍କୁ ପ୍ରାୟ ୮,୧୦ ବର୍ଷ ଲାଗିଯାଇଥିଲା । ପରିଶେଷରେ ସେ 'ଶ୍ରୀମଭାଗବତ'ର ଯେଉଁ ସଂଶୋଧିତ ପାଠ ପ୍ରତିଷ୍ଠା କଲେ ତାହାହିଁ ଜଗନ୍ନାଥ ଦାସଙ୍କ 'ଭାଗବତ'ର ପ୍ରାମାଣିକ ପାଠ, ଅର୍ଥାତ୍ ଜଗନ୍ନାଥ ଦାସଙ୍କର ମୂଳ 'ଭାଗବତ'ର ସବୁଠାରୁ ଅଧିକ ନିକଟବର୍ତ୍ତୀ ପାଠ । ଭବିଷ୍ୟତରେ ହୁଏତ ଅଧିକତର ଗବେଷଣା ଫଳରେ ଜଗନ୍ନାଥ ଦାସଙ୍କର 'ଭାଗବତ'ର ଅଧିକତର ପ୍ରାମାଣିକ ପାଠ ପ୍ରସ୍ତୁତ କରାଯାଇ ପାରିବ । କିନ୍ତୁ ଅନ୍ତତଃ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରଫେସର ସାହୁଙ୍କର ସଂପାଦିତ 'ଶ୍ରୀମଭାଗବତ' ଜଗନ୍ନାଥଙ୍କ 'ଭାଗବତ'ର ଏକମାତ୍ର ପ୍ରାମାଣିକ ସଂସ୍କରଣ, ଓ ସେହି ଦୃଷ୍ଟିରୁ ଅଦ୍ୱିତୀୟ ଓ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ଅକ୍ଳାନ୍ତ ଓ ଅତ୍ୟନ୍ତ କଷ୍ଟସାଧ୍ୟ ପରିଶ୍ରମ କରି ପ୍ରଫେସର ସାହୁ 'ଶ୍ରୀମଭାଗବତ'ର ସଂପାଦନା କାର୍ଯ୍ୟ ଶେଷ କରି ପାରିଲେ, କିନ୍ତୁ ପରବର୍ତ୍ତୀ ଛପାଛପି କାର୍ଯ୍ୟ ବେଶ୍ କଷ୍ଟକର ହେଲା । ପ୍ରକାଶକମାନେ ଏପରି ଗୋଟିଏ ବଡ଼ ବହିକୁ ଛପାଇବା ପାଇଁ ବିଶେଷ ରାଜି ହେଲେ ନାହିଁ, କାରଣ ଅନେକ 'ପ୍ରାମାଣିକ ସଂସ୍କରଣ'ର ଠିକ୍ ଅର୍ଥ ବୁଝି ପାରିଲେ ନାହିଁ, ଓ ଆଶଂକା କଲେ ବଜାରରେ ଅନ୍ୟ ଭାଗବତ ଥିବା ସମୟରେ ଏ ଭାଗବତ ବିକ୍ରି ନ ହୋଇପାରେ । ପରିଶେଷରେ କେନ୍ଦ୍ର ସାହିତ୍ୟ ଅକାଡ଼େମୀକୁ ଛପାଇବା ପାଇଁ ଅନୁରୋଧ କରାଗଲା ଓ ସେମାନେ ବିଚାର ଆଲୋଚନା କରି 'ଶ୍ରୀମଭାଗବତ' ପ୍ରକାଶ କରିବା ପାଇଁ ସ୍ଥିର କଲେ । ସେଥିପାଇଁ ଲକ୍ଷେ ଟଙ୍କା ମଂଜୁରି ହେଲା, ଓ ଭୁବନେଶ୍ୱରର ଇସ୍ଵନ ପ୍ରେସ୍‌କୁ ଛପାଇବା ପାଇଁ ଦାୟିତ୍ୱ ଦିଆଯାଇ ଅକାଡ଼େମୀର କଲିକତା ଅଫିସରୁ ପ୍ରେସ୍‌କୁ 'ଶ୍ରୀମଭାଗବତ'ର ପାଣ୍ଡୁଲିପି ଓ ୬୦ ରିମ୍ କାଗଜ ପଠେଇ ଦିଆଗଲା । ଏ ୧୯୯୨ର କଥା । କିନ୍ତୁ ତା'ପରେ ଯାହା ଘଟିଲା ତାହା ଯେତିକି ଦୁଃଖର ସେତିକି ଲଜ୍ୟାର କଥା । କେନ୍ଦ୍ର ଅକାଡ଼େମୀର ସାଧାରଣ ପରିଷଦ ଓ ଓଡ଼ିଆ ଭାଷା ସମେତ ସବୁ ଭାରତୀୟ ଭାଷାର ଭାଷା ଉପଦେଷ୍ଟା ମଣ୍ଡଳୀ ୧୯୯୩ରୁ ପୁନର୍ଗଠିତ ହେଲା । 'ଶ୍ରୀମଭାଗବତ'ର ଛପାକାର୍ଯ୍ୟ ଆରମ୍ଭ ହୋଇଯାଇ ଥିଲା । ସେହି ସମୟରେ କିଛି ବିଶିଷ୍ଟ ଓଡ଼ିଆ ଲେଖକଙ୍କର ପ୍ରବଳ ପ୍ରତିରୋଧ ଯୋଗୁଁ ନୂତନ ଭାବରେ ସଂଗଠିତ ହୋଇଥିବା ଓଡ଼ିଆ ଭାଷା ଉପଦେଷ୍ଟା ମଣ୍ଡଳୀର ସୁପାରିଶ୍‌ରେ 'ଶ୍ରୀମଭାଗବତ'କୁ ଅକାଡ଼େମୀ ଛପାଇବା ନିଷ୍ପତ୍ତିର ପରିବର୍ତ୍ତନ ହେଲା । ଛପାକାମ ଅଧାରୁ ବନ୍ଦ ହେଲା । ପାଣ୍ଡୁଲିପି ଓ ୬୦ ରିମ୍ କାଗଜ କଲିକତା ଅଫିସ୍‌କୁ ଫେରିଗଲା, ଓ ମଂଜୁରି ହୋଇଥିବା ଟଙ୍କା ଅନ୍ୟ ଭାବରେ ଅନ୍ୟ ଭାଷା ପାଇଁ ଖର୍ଚ୍ଚ ହେଲା । ଏ ଘଟଣା ପ୍ରଫେସର ସାହୁଙ୍କୁ ମାନସିକ ସ୍ତରରେ ଖୁବ୍ ଆଘାତ ଦେଇଥିଲା । ସେ 'ଶ୍ରୀମଭାଗବତ' ଛପାଇବା କାମରେ ଆଉ ଆଗ୍ରହୀ ହେଲେ ନାହିଁ । ଏହାପରେ ୧୯୯୭ ଅପ୍ରେଲ୍ ମାସରେ ତାଙ୍କର ଦେହାନ୍ତ ହୋଇଗଲା ।

ପ୍ରଫେସର ସାହୁଙ୍କର ଦେହାନ୍ତ ପରେ ତାଙ୍କ ପାଇଁ ବାର୍ଷିକ ସ୍ମୃତିଚାରଣ କରିବା ପାଇଁ ଓ ତାଙ୍କର ଲେଖାଲେଖିକୁ ସଂଗଠିତ୍ ଭାବରେ ପ୍ରକାଶ କରିବା ପାଇଁ ବନ୍ଧୁ, ଛାତ୍ରଛାତ୍ରୀ ଓ ଶୁଭେଚ୍ଛୁ ମାନଙ୍କ ଦ୍ୱାରା 'ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ' ଗଠିତ ହେଲା । ପରିଷଦ ଦ୍ୱାରା ତାଙ୍କର ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧ ସବୁ ଏକାଠି ହୋଇ ଏପର୍ଯ୍ୟନ୍ତ ୭ଖଣ୍ଡ ପ୍ରକାଶ ପାଇଛି । ପରିଷଦର ସଭ୍ୟମାନେ 'ଶ୍ରୀମଭାଗବତ'କୁ ପ୍ରକାଶ କରିବା ପାଇଁ ଅନେକ ଥର ଚିନ୍ତା କରିଛନ୍ତି । କିନ୍ତୁ ଆର୍ଥିକ ଅସ୍ୱଚ୍ଛଳତା ଯୋଗୁଁ ତାହା ସମ୍ଭବ ହୋଇନାହିଁ ।

ଆଜି, ଅକାଡ଼େମୀ ଘଟଣାର ପ୍ରାୟ ୧୫ ବର୍ଷ ପରେ, ଓ 'ଶ୍ରୀମଭାଗବତ'ର ସଂପାଦନାର ପ୍ରାୟ ୨୦,୨୨ ବର୍ଷ ପରେ, ଏହି ଅମୂଲ୍ୟ ଗ୍ରନ୍ଥକୁ ପ୍ରକାଶ କରିବା ଯେ ସମ୍ଭବ ହୋଇଛି, ସେଥିପାଇଁ ଆମେ, 'ପ୍ରଫେସର କୃଷ୍ଣ ଚରଣ ସାହୁ ସ୍ମୃତି ପରିଷଦ' ପକ୍ଷରୁ, ପ୍ରଫେସର ସାହୁଙ୍କର ଜ୍ୟେଷ୍ଠ ଜାମାତା ଓ କନ୍ୟା ବିଜୟ ଓ ପ୍ରିୟଦର୍ଶିନୀ ନିକଟରେ ଅଶେଷ କୃତଜ୍ଞ, କାରଣ ସେମାନଙ୍କର ଆର୍ଥିକ ସାହାଯ୍ୟ ବ୍ୟତୀତ ଏ ବ୍ୟୟବହୁଳ ପ୍ରକାଶନ କାର୍ଯ୍ୟ ସମ୍ଭବ ହୋଇ ନଥାନ୍ତା । ସେହିପରି ପ୍ରଫେସର ସାହୁଙ୍କର ଅନ୍ୟତମ ପ୍ରଶଂସକ ଓ ଶୁଭେଚ୍ଛୁ, ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ ମୁଖ୍ୟ ଗ୍ରନ୍ଥାଗାରିକ ଓ ଲେଖକ, ଡକ୍ଟର ବିଷ୍ଣୁପ୍ରସାଦ ମହାପାତ୍ରଙ୍କର ଆଗ୍ରହକୁ ଆମେ କୃତଜ୍ଞତାର ସହିତ ସ୍ମରଣ କରୁଛୁ । ସେ 'ଶ୍ରୀମଭାଗବତ'ର ପ୍ରକାଶନ୍ ପାଇଁ ଆର୍ଥିକ ସାହାଯ୍ୟ ଦେଇଛନ୍ତି, ଅତ୍ୟନ୍ତ କ୍ଲାନ୍ତିକର ପ୍ରୁଫ୍‌ରିଡିଂ କାର୍ଯ୍ୟ ଅକୁଣ୍ଠିତ ଚିତ୍ତରେ କରିଛନ୍ତି, ଓ 'ଶ୍ରୀମଭାଗବତ' ପ୍ରକାଶ ପାଇବାରେ ତାଙ୍କର ଆଗ୍ରହ, ଉତ୍ସାହ ଓ ଗଭୀର ଆନନ୍ଦ ଭୁଲିବାର ନୁହେଁ । 'ଶ୍ରୀମଭାଗବତ' ସହିତ ଆମେ 'ଭୂମିକା-୧' ଓ 'ଭୂମିକା-୨' ଭାବରେ ଦୁଇଟି ଆଲୋଚନା ସଂଯୁକ୍ତ କରିଛୁ । ଗୋଟିଏ ପ୍ରଫେସର ସାହୁ ୧୯୭୭ରେ ଲେଖିଥିଲେ, ଓ ପ୍ରବଂଧଟି ସେହି ସମୟରେ 'ପ୍ରଜ୍ଞା' (ବାର୍ଷିକ ସଂକଳନ, ଦୋଳ ୧୯୭୭)ରେ ପ୍ରକାଶ ପାଇଥିଲା । ପ୍ରବଂଧଟିର ପ୍ରାସଙ୍ଗିକତା ଦୃଷ୍ଟିରୁ ଏଠାରେ ତାହା ପୁନର୍ମୁଦ୍ରିତ ହେଲା । ପଣ୍ଡିତ ଦୁଃଖିଶ୍ୟାମ ପଟ୍ଟନାୟକ ଆମର ଅନୁରୋଧରେ ଏହି ଗ୍ରନ୍ଥ ପାଇଁ ଆଗ୍ରହରେ ଭୂମିକା ଲେଖିଦେଇଛନ୍ତି । ସେଥିପାଇଁ ତାଙ୍କ ନିକଟରେ ଆମେ କୃତଜ୍ଞ । ପରିଶେଷରେ ମୁଁ ସେହି ସମସ୍ତଙ୍କୁ ଧନ୍ୟବାଦ ଜଣାଉଛି ଯେଉଁମାନଙ୍କର ସମ୍ମିଳିତ ଶୁଭେଚ୍ଛାରେ ବିଳମ୍ବରେ ହେଲେ ମଧ ପ୍ରଫେସର ସାହୁଙ୍କର ସଂପାଦିତ 'ଶ୍ରୀମଭାଗବତ' ପ୍ରକାଶ ପାଇ ପାରିଛି । କୁହାଯାଏ ଭାଗବତ ହିଁ ସଂପୂର୍ଣ୍ଣ ଶିକ୍ଷା, ଓ ଜଗନ୍ନାଥ ଦାସଙ୍କ 'ଶ୍ରୀମଭାଗବତ' ଏହି ଶିକ୍ଷାର ଆଧାର, ଓ ଓଡ଼ିଆ ଜାତିର ଶକ୍ତି, ସାମର୍ଥ୍ୟ, ଚରିତ୍ର ଓ ମହାନତାର ପ୍ରତୀକ । ବିଶ୍ୱାସ, ପ୍ରଫେସର ସାହୁଙ୍କର କଠିନ ପରିଶ୍ରମର ଫଳଶ୍ରୁତି, ଜଗନ୍ନାଥ ଦାସଙ୍କର 'ଶ୍ରୀମଭାଗବତ'ର ପ୍ରଥମ ପ୍ରମାଣିକ ସଂସ୍କରଣ, ଜାତିର ଏକ ମହାନ୍ ଐତିହ୍ୟ ସଂପର୍କରେ ପାଠକ ପାଠିକାମାନଙ୍କୁ ସଚେତ କରିବା ସାଙ୍ଗେ ସାଙ୍ଗେ, ସେମାନଙ୍କର ମନରେ ଗଭୀର ଆନନ୍ଦ ଓ ଶାନ୍ତି ଆଣିଦେବ ।

**ଯତୀନ୍ଦ୍ର ମୋହନ ମହାନ୍ତି**

ଅଧକ୍ଷ,

ପ୍ରଫେସର କୃଷ୍ଣଚରଣ ସାହୁ ସ୍ମୃତି ପରିଷଦ,

୧୪.୧.୧୯୦୮

# ସୂଚୀ

# ପରିଚିତି

**ଜଗନ୍ନାଥ ଦାସ** : ଆନୁମାନିକ ସମୟ ୧୪୯୯ରୁ ୧୫୫୯, ୧୫ଶ-୧୬ଶ ଶତାବ୍ଦୀ, ଜନ୍ମ ପୁରୀ ଜିଲ୍ଲା କପିଳେଶ୍ୱରପୁର ଶାସନରେ । ପିତା ଭଗବାନ ଦାସ ଓ ମାତା ପଦ୍ମାବତୀ । ଶ୍ରୀ ଚୈତନ୍ୟଙ୍କର ସମସାମୟିକ ଓ ବଂଧୁ, ଓ ଶ୍ରୀଚୈତନ୍ୟଙ୍କ ଆଦେଶରେ କବି ବଳରାମ ଦାସଙ୍କ ଦ୍ୱାରା ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିଲେ । ସେ ସଂସ୍କୃତ 'ଭାଗବତ'କୁ ନବାକ୍ଷରୀ ବୃତ୍ତରେ ଓଡ଼ିଆରେ ଅନୁବାଦ କରିଥିଲେ, ଯାହାକି ଓଡ଼ିଶାର ସର୍ବୋତ୍ତମ ଲୋକପ୍ରିୟ ଗ୍ରନ୍ଥ ଭାବରେ ଆଜି ପର୍ଯ୍ୟନ୍ତ ବିବେଚିତ ହୋଇଆସୁଛି । 'ଶ୍ରୀମଦ୍ଭାଗବତ' ବ୍ୟତୀତ ତାଙ୍କର ଅନ୍ୟାନ୍ୟ ଅନେକ ରଚନା ଥିବାର କୁହାଯାଏ । ସେସବୁ ଅଧିକାଂଶ ଏପର୍ଯ୍ୟନ୍ତ ସଂପାଦିତ ହୋଇନାହିଁ, ଓ ଅନେକ ପ୍ରକାଶ ପାଇନାହିଁ । କେତେତ ବିଶିଷ୍ଟ ରଚନା ହେଲା – ବ୍ରହ୍ମଜ୍ଞାନ ସଂପର୍କରେ ଗଦ୍ୟ ଓ ପଦ୍ୟରେ 'ବ୍ରହ୍ମଗୀତା'; ଦେହ ବିଷୟରେ ଓ ଭକ୍ତିଭାବାପନ୍ନ 'ଗୁପ୍ତଗୀତା'; ପୁରୁଷୋତ୍ତମ କ୍ଷେତ୍ର, ପିଣ୍ଡ ବ୍ରହ୍ମାଣ୍ଡ ବାଦ ଓ କ୍ଷିତି, ଅପ୍, ତେଜ ଇତ୍ୟାଦି ପଞ୍ଚଭୂତ ସଂପର୍କରେ 'ପଞ୍ଚଭୂତ ଗୀତା'; ଗଦ୍ୟରେ ଯୋଗର ବିଭିନ୍ନ ବିଭାଗ ସଂପର୍କରେ 'ତୁଳାଭିଣା'; ନବାକ୍ଷରୀ ବୃତ୍ତରେ ନିତ୍ୟରାସ ସଂପର୍କରେ 'ଅନାମୟ କୁଣ୍ଡଳୀ'; ନବାକ୍ଷରୀ ବୃତ୍ତରେ ଯନ୍ତ୍ର, ମନ୍ତ୍ର, ଷଡଚକ୍ର ଓ ଭଗବାନଙ୍କ ନାମର ମାହାତ୍ମ୍ୟ ସଂପର୍କରେ 'ଶ୍ରୀ ଚନ୍ଦ୍ରିକା'; ଶ୍ରୀକୃଷ୍ଣଙ୍କର ମହାପ୍ରୟାଣ ପରର ଅବସ୍ଥା ଓ ନୀଳାଚଳରେ ଶ୍ରୀଜଗନ୍ନାଥଙ୍କର ପୂଜାର୍ଚ୍ଚନା ଓ ପ୍ରତିଷ୍ଠାର ବିବରଣୀ 'ଦାରୁବ୍ରହ୍ମ ଗୀତା', ପ୍ରଭୃତି । ଜଗନ୍ନାଥ ଦାସ ଅତିବଡ଼ୀ ସଂପ୍ରଦାୟର ପ୍ରତିଷ୍ଠାତା ଓ ମୁଖ୍ୟ ଥିଲେ ।

**କୃଷ୍ଣ ଚରଣ ସାହୁ** : ୧୯୨୯ ରୁ ୧୯୯୭ । ଜନ୍ମ କଟକ ଜିଲ୍ଲା (ବର୍ତ୍ତମାନ ଜଗତସିଂହପୁ)ର ଗୋବିନ୍ଦପୁର ଥାନା ଅନ୍ତର୍ଗତ ନାଚି ଗ୍ରାମରେ । ପିତା ନଟବର ସାହୁ ଓ ମାତା ଅଳ୍ୟଳ କୁମାରୀ ଦେବୀ । ତିର୍ତ୍ତୋଲ ମୂଳଗାଁର ବରଜୁ ପ୍ରଧାନଙ୍କ କନ୍ୟା ସରଳା ଦେବୀଙ୍କୁ ୧୯୪୬ରେ ବିବାହ କରିଥିଲେ । ପାଞ୍ଚଟି କନ୍ୟା ଓ ଗୋଟିଏ ପୁତ୍ର । ଅଧ୍ୟାପନା ରାଞ୍ଚି ବିଶ୍ୱବିଦ୍ୟାଳୟ, ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ, ଓ ଉତ୍କଳ ବିଶ୍ୱବିଦ୍ୟାଳୟ । ଅବସର ଉତ୍କଳ ବିଶ୍ୱବିଦ୍ୟାଳୟ, ୧୯୮୯, ପ୍ରଫେସର ଭାବରେ । ବିଶିଷ୍ଟ ରଚନା Literature and Social Life in Mediavel Orissa (୧୯୭୧), 'ରସକଲ୍ଲୋଳ' ସଂପର୍କରେ ବିଶ୍ଳେଷଣାତ୍ମକ ଆଲୋଚନା ଗ୍ରନ୍ଥ 'କହେ କୃଷ୍ଣ ଦାସ କବି' (୧୯୭୬), 'ପ୍ରାଚୀନ ସାହିତ୍ୟ' (୧୯୮୨) ଓ 'ମଧ୍ୟକାଳୀନ ସାହିତ୍ୟ' (୧୯୮୩)- ପ୍ରାଚୀନ ଓ ମଧ୍ୟକାଳୀନ ଓଡ଼ିଆ ସାହିତ୍ୟ ସଂପର୍କରେ ଅତ୍ୟନ୍ତ ବୁଦ୍ଧିଦୀପ୍ତ ପ୍ରବଂଧ-ସଂକଳନ ଓ କବି ବଳରାମ ଦାସ' (୧୯୮୯) ଇତ୍ୟାଦି । ସଂପାଦନା କରିଥିବା ବିଶିଷ୍ଟ ପ୍ରାଚୀନ ଗ୍ରନ୍ଥ- 'ଉଦ୍ଧବ ଗୀତା' (୧୯୮୧), 'ଧର୍ମ ଗୀତା' (୧୯୮୧), 'ରାସ ପଞ୍ଚାଧ୍ୟାୟୀ', (୧୯୮୨), 'ଚାରିଖାନି' (୧୯୮୨), 'ପ୍ରାଚୀନ କାବ୍ୟଧାରା' (୧୯୮୨), 'ପରିମଳା' (୧୯୮୩), 'ରୁଦ୍ର ସୁଧାନିଧି' (୧୯୮୩), 'ଚଣ୍ଡୀପୁରାଣ' (୧୯୮୪), 'ବ୍ରହ୍ମାଣ୍ଡ ଭୂଗୋଳ' (୧୯୮୬), 'ଚଉପଦି ଭୂଷଣ ଓ ଅନ୍ୟାନ୍ୟ କବିତା' (୧୯୯୪) ଓ 'ଗୋବିନ୍ଦ ଚନ୍ଦ୍ର' (୧୯୯୭) । ବିରାଟ କାୟ, ଅଦ୍ୱିତୀୟ ସଂପାଦିତ ଗ୍ରନ୍ଥ – ବଳରାମ ଦାସଙ୍କର 'ଜଗମୋହନ ରାମାୟଣ', ଜଗନ୍ନାଥ ଦାସଙ୍କର 'ଶ୍ରୀମଦ୍ଭାଗବତ' ଅଚ୍ୟୁତାନନ୍ଦଙ୍କର 'ହରିବଂଶ' ଓ ପୀତାମ୍ବର ଦାସଙ୍କର 'ନୃସିଂହ ପୁରାଣ'; ଏହା ବ୍ୟତୀତ ସାରଳା ଦାସଙ୍କର 'ଆଦିପର୍ବ' ଓ 'ସ୍ୱର୍ଗାରୋହଣ ପର୍ବ' । ବିଶିଷ୍ଟ ଶିକ୍ଷକ, ଗବେଷକ ଓ ପ୍ରାଚୀନ ସାହିତ୍ୟର ଅଦ୍ୱିତୀୟ ସଂପାଦକ ଭାବରେ ପ୍ରତିଷ୍ଠିତ ।

# ଭୂମିକା-୧

## ଭାଗବତ ପରିଚର୍ଚ୍ଚା

**କୃଷ୍ଣ ଚରଣ ସାହୁ**

ଜଗନ୍ନାଥ ଦାସଙ୍କ **ଭାଗବତ**ର ଲୋକପ୍ରିୟତାର କାରଣ ଅନୁସନ୍ଧାନ କରି ସମାଲୋଚକମାନେ ଏଥିରେ ବ୍ୟବହୃତ ହୋଇଥିବା ମୃଦୁ ମଧୁର ଭାଷା, ମହନୀୟ ଭକ୍ତିଭାବ, ନବାକ୍ଷରୀ ଛନ୍ଦ, ସାଂଗୀତିକତା, ତତ୍ସମ ଶବ୍ଦାବଳୀର ବହୁଳତା ଏବଂ ଅନୁବାଦ କୌଶଳ ପ୍ରଭୃତିର ଉଲ୍ଲେଖ କରିଛନ୍ତି । ଲୋକପ୍ରିୟତା ପାଇଁ ଏ ସବୁ ନିଶ୍ଚିତ ଭାବେ ଗୋଟିଏ ଗୋଟିଏ ଉପାଦାନ ହେଲେ ହେଁ ବୈଜ୍ଞାନିକ ପଦ୍ଧତିରେ ଏ ସବୁର ଅନୁଶୀଳନ ତଥା ଆଲୋଚନା ଏ ପର୍ଯ୍ୟନ୍ତ ସମ୍ଭବ ହୋଇ ପାରିନାହିଁ । ଏ ସବୁ ଉପାଦାନ ମଧ୍ୟରେ ମୁଖ୍ୟ ହେଉଛି ଅନୁବାଦ କୌଶଳ, କାରଣ ଅନୁବାଦକୁ ସଫଳ କରିବା ପାଇଁ ଲେଖକ ଭାଷା, ଭାବ, ଛନ୍ଦ ଓ ସାଙ୍ଗୀତିକତାର ସାହାଯ୍ୟ ଗ୍ରହଣ କରିଥାଏ । ତେଣୁ ଅନୁବାଦ କୌଶଳକୁ ଅନୁଶୀଳନ କଲେ ତାଙ୍କ ଭାଗବତକୁ ଲୋକପ୍ରିୟ କରୁଥିବା ଅନ୍ୟାନ୍ୟ ଗୌଣ କୌଶଳ ସବୁ ସହଜରେ ଜଣାପଡ଼ିବ । ସେଥିପାଇଁ ଅନୁବାଦ କୌଶଳକୁ ମୁଖ୍ୟ ଭାବରେ ରଖି ଏହି ଆଲୋଚନା ଆରମ୍ଭ କରାଯାଇଛି ।

ଜଗନ୍ନାଥ ଦାସଙ୍କ ଅନୁବାଦକୁ ପରୀକ୍ଷା କରି ସମାଲୋଚକମାନେ ଏଥିରେ ତିନୋଟି ବିଶେଷ ଲକ୍ଷଣର ସନ୍ଧାନ କରିଛନ୍ତି । ୧- ସଂସ୍କୃତର ମୂଳ ଶ୍ଳୋକର ଆକ୍ଷରିକ ଅନୁବାଦ, ୨- ଭାବାନୁବାଦ, ୩- ମୂଳ ବିଷୟବସ୍ତୁର ପରିତ୍ୟାଗ । ଜଗନ୍ନାଥ ଦାସଙ୍କ ଅନୁବାଦ କୌଶଳକୁ ଏହିପରି ଭାବେ ବିଭାଜନ କରିଦେବା ଦ୍ୱାରା ତାଙ୍କ ଅନୁଭୂତି, ତାଙ୍କ ପାଣ୍ଡିତ୍ୟ, ତାଙ୍କ ଦାର୍ଶନିକ ଚିନ୍ତାଧାରା ଏବଂ ତାଙ୍କ ନିଜସ୍ୱ କହିବା ଭଙ୍ଗୀ ପାଇଁ ଆଦୌ ସ୍ଥାନ ରହେ ନାହିଁ । ଅଥଚ ଜଗନ୍ନାଥ ଦାସଙ୍କ ଭାଗବତର ଯେ କୌଣସି ଅଧ୍ୟାୟକୁ ପରୀକ୍ଷା କଲେ ସେଥିରେ ମୂଳ ସଂସ୍କୃତ ଗ୍ରନ୍ଥ ଅପେକ୍ଷା ବହୁ ନୂତନ ଭାବନାର ଅନୁପ୍ରବେଶ ହୋଇଥିବା ସ୍ପଷ୍ଟ ଭାବରେ ଜଣାଯାଏ । ଏ ବିଷୟରେ କୌଣସି ମନ୍ତବ୍ୟ ଦେବା ପୂର୍ବରୁ ସଂସ୍କୃତ ଭାଗବତର ଦଶମ ସ୍କନ୍ଧର ୧ମ ଅଧ୍ୟାୟକୁ ତୁଳନାତ୍ମକ ଭାବେ ପରୀକ୍ଷା କରାଯାଇଛି । ସଂସ୍କୃତ ଭାଗବତରେ ଏହି ଅଧ୍ୟାୟର ପଦ ସଂଖ୍ୟା ହେଉଛି ୬୯ । ଜଗନ୍ନାଥ ଦାସ ଏହି ଅଧ୍ୟାୟକୁ ଅନୁବାଦ କଲାବେଳେ ଏହାକୁ ଦୁଇଟି ଅଧ୍ୟାୟରେ ପରିଣତ କରିଛନ୍ତି । ଏ ପ୍ରକାର ବ୍ୟତିକ୍ରମ ତାଙ୍କର ଅନ୍ୟାନ୍ୟ ସ୍କନ୍ଧ ମାନଙ୍କରେ ମଧ୍ୟ ଦେଖିବାକୁ ମିଳେ । ଜଗନ୍ନାଥ ଦାସଙ୍କ ଭାଗବତର ବିଶିଷ୍ଟ ଆଲୋଚକ ପଣ୍ଡିତ ଗୋପୀନାଥ ନନ୍ଦ ଶର୍ମା ଏସବୁ ବ୍ୟତିକ୍ରମର ଯେଉଁ ହିସାବ ଦେଇଛନ୍ତି ସେଥିରୁ ଜଣାଯାଏ ଯେ ଜଗନ୍ନାଥ ଦାସ ଅଷ୍ଟମ ସ୍କନ୍ଧରେ ଏକ ଅଧ୍ୟାୟ, ଦଶମ ସ୍କନ୍ଧରେ ଛଅ ଅଧ୍ୟାୟ ଏବଂ ଏକାଦଶ ସ୍କନ୍ଧରେ ଏକ ଅଧ୍ୟାୟର ସଂଯୋଜନା କରିଛନ୍ତି । ଏହାହିଁ ତାଙ୍କ ଅନୁବାଦର ପ୍ରଥମ ବ୍ୟତିକ୍ରମ । ଏହି ବ୍ୟତିକ୍ରମର କାରଣ ରୂପେ ପଣ୍ଡିତ ନନ୍ଦ ଶ୍ରୀଧରୀୟ ଟୀକା, ବିଜୟଧ୍ୱଜୀୟ ଟୀକା ଏବଂ ବୀର ରାଘବୀୟ ଟୀକା ପ୍ରଭୃତି ସହିତ ତୁଳନା କରି କୁହନ୍ତି ଯେ ସେସବୁ ସହ ଜଗନ୍ନାଥ ଦାସଙ୍କ ବିଭାଜନ ସମାନ ହୋଇ ପାରିନାହିଁ । ଜଗନ୍ନାଥ ଦାସ ଶ୍ରୀଧରୀୟ ଟୀକାକୁ ଅନୁଶୀଳନ କରିଥିବା ପରମ୍ପରାସମ୍ମତ ହେଲେ ହେଁ ଶ୍ରୀଧରୀୟ ଟୀକା ଅଧ୍ୟାୟ ସଂଖ୍ୟା ୩୩୫ । ଜଗନ୍ନାଥ ଦାସଙ୍କ ଭାଗବତରେ ଏହାଠାରୁ ୬ଟି ଅଧିକ ଅଧ୍ୟାୟ ଦେଖିବାକୁ ମିଳେ । ତେଣୁ ଜଣାଯାଉଛି ଜଗନ୍ନାଥ ଦାସଙ୍କ ବିଭାଜନ କାହାରି ଅନୁସରଣ ନୁହେଁ । ଅଧ୍ୟାୟ

ସଂଖ୍ୟା ପରି ବିଷୟବସ୍ତୁ ଦୃଷ୍ଟିରୁ ମଧ୍ୟ ଅନେକ ବ୍ୟତିକ୍ରମ ଦେଖିବାକୁ ମିଳେ । ଦଶମ ସ୍କନ୍ଧରେ ଥିବା କେତୋଟି ବିଶିଷ୍ଟ ବ୍ୟତିକ୍ରମ ନିମ୍ନରେ ପ୍ରଦତ୍ତ ହେଲା । ୧- ମୂଳ ଭାଗବତରେ ବସୁଦେବ ଶ୍ରୀକୃଷ୍ଣଙ୍କ ଜନ୍ମ ପରେ ନିଜ ଅନୁପ୍ରେରଣା ଦ୍ୱାରା ଚାଳିତ ହୋଇ ଶ୍ରୀକୃଷ୍ଣଙ୍କୁ ଗୋପପୁରକୁ ନେବା ପାଇଁ ନିଶ୍ଚିତ କରୁଥିବା ବେଳେ ଜଗନ୍ନାଥ ଦାସଙ୍କ ଭାଗବତରେ ଏହା ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶ ଦ୍ୱାରା ସମାହିତ ହୋଇଛି । ୨- ଜଗନ୍ନାଥ ଦାସଙ୍କ ଭାଗବତ ଅନୁଯାୟୀ ଗୋପ ଗମନ କାଳରେ ଉଗ୍ରସେନ ପଥ ମଧ୍ୟରେ ଶଙ୍ଖଚକ୍ରଧାରୀ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିଛି । ଏହା ଜଗନ୍ନାଥ ଦାସଙ୍କ ନିଜସ୍ୱ, ୩- କାଳୀୟ ଦଳନ ପ୍ରସଙ୍ଗରେ କାଳୀୟ ଶ୍ରୀକୃଷ୍ଣଙ୍କୁ ମର୍ମ ସ୍ଥଳରେ ଦଂଶନ କରିବା କଥା ସଂସ୍କୃତରେ ବର୍ଣ୍ଣିତ ହୋଇଥିଲେ ହେଁ ଜଗନ୍ନାଥ ଦାସ ମର୍ମସ୍ଥଳକୁ କୋମଳ ଚରଣରେ ପରିଣତ କରିଛନ୍ତି । ୪- ବତ୍ସାହରଣ ପ୍ରସଙ୍ଗରେ ବ୍ରହ୍ମାଙ୍କ ଗର୍ବ ଗଞ୍ଜନ ଏବଂ ଗୋପପୁରର ଗାଈ ସବୁ ଚତୁର୍ଭୁଜ କୃଷ୍ଣ ମୂର୍ତ୍ତି ରୂପରେ ବଳରାମଙ୍କୁ ପ୍ରତୀୟମାନ ହେବା ଜଗନ୍ନାଥ ଦାସଙ୍କ ନୂତନତା । ୫- ବସ୍ତ୍ରହରଣ ପ୍ରସଙ୍ଗରେ ଗୋପୀମାନଙ୍କ ବସ୍ତ୍ର ହରଣ କରିବା ପାଇଁ ଶ୍ରୀକୃଷ୍ଣ ପବନକୁ ଆଜ୍ଞା ଦେଇଛନ୍ତି ଏବଂ ଗୋପାଳମାନେ ସେ ସବୁକୁ ଡାଳରେ ବାନ୍ଧି ସାରିବା ପରେ ଶ୍ରୀକୃଷ୍ଣ ବଂଶୀବାଦନ କରିଛନ୍ତି । ଅଥଚ ସଂସ୍କୃତରେ ଶ୍ରୀକୃଷ୍ଣ ନିଜେ ବସ୍ତ୍ରହରଣ କରିଛନ୍ତି ଏବଂ ପରିହାସ ଛଳରେ କଥା କହିବା ଫଳରେ ଗୋପୀମାନଙ୍କର ଦୃଷ୍ଟି ତାଙ୍କ ପ୍ରତି ଆକୃଷ୍ଟ ହୋଇଛି । ଏହି ପ୍ରସଙ୍ଗରେ ଗୋପୀମାନେ ଗୋଟିଏ ହାତରେ ପ୍ରଣାମ କରିବା କଥା ମଧ୍ୟ ସଂସ୍କୃତ ଭାଗବତରେ ନାହିଁ । ୬- ଗୋବର୍ଦ୍ଧନ ପ୍ରସଙ୍ଗରେ ଇନ୍ଦ୍ରଙ୍କର କୋପ ସଂସ୍କୃତରେ ନନ୍ଦଙ୍କ ଉପରେ ପ୍ରକାଶ ପାଇଥିବା ବେଳେ ଜଗନ୍ନାଥ ଦାସଙ୍କ ଭାଗବତରେ ଶ୍ରୀକୃଷ୍ଣଙ୍କ ଉପରେ ପ୍ରକାଶ ପାଇଛି । ୭- ରାସଲୀଳା ପ୍ରସଙ୍ଗରେ ସଂସ୍କୃତର ଜନୈକା ଗୋପୀ ଓଡ଼ିଆ ଭାଗବତରେ ବୃନ୍ଦାବତୀରେ ପରିଣତ ହୋଇଛି । ସତଚାଳିଶ ଅଧ୍ୟାୟରେ ମଧ୍ୟ ଗୋପୀଙ୍କୁ କାନ୍ଧରେ ବସାଇବା ପାଇଁ କେବଳ ଚେଷ୍ଟା କରାଯାଇଥିବା ସ୍ଥଳେ ଓଡ଼ିଆରେ କାନ୍ଧରେ ବସାଇ ଦେଇଛନ୍ତି । ୮- ଶଙ୍ଖଚୂଡ଼ ମୋକ୍ଷ ପ୍ରାପ୍ତି ପ୍ରସଙ୍ଗରେ ସଂସ୍କୃତ ଅନୁଯାୟୀ ଶଙ୍ଖଚୂଡ଼ ହେଉଛି କୁବେରର ଅନୁଚର ଏବଂ ସେ ଗୋପୀମାନଙ୍କୁ ନେଇ ପଳାଇବା ପାଇଁ ଉଦ୍ୟମ କରିଛି । ଓଡ଼ିଆରେ ସେ ଗୋଟିଏ ସର୍ପ । ପୂର୍ବ ଜନ୍ମରେ କୁବେରର ପୁତ୍ର ଥିଲା ଏବଂ ଫୁ ଫୁ ଶବ୍ଦ କରି ଗୋପୀମାନଙ୍କୁ ଭୟ ପ୍ରଦର୍ଶନ କରିଛି । ୯- ମଥୁରାଗମନ କାଳରେ ଯଶୋଦା ଶ୍ରୀକୃଷ୍ଣଙ୍କ ସହ ମଥୁରା ଗମନ କରିଥିବାର ସୂଚନା ଓଡ଼ିଆ ଭାଗବତରେ ସୂଚିତ ହୋଇଥିବା ବେଳେ ସଂସ୍କୃତ ଭାଗବତରେ ଏହା ମିଳେ ନାହିଁ । ୧୦- ଶ୍ରୀକୃଷ୍ଣଙ୍କୁ ନେବାପାଇଁ ଅକ୍ରୂର ଆସିବାବେଳେ କଂସଠାରୁ ଚିଠି ଆଣିବା ଏବଂ ଗୋପପୁରରେ ସବୁ ଗୋପାଳମାନଙ୍କୁ କୃଷ୍ଣ ରୂପରେ ଦେଖିବା ପ୍ରସଙ୍ଗ ଓଡ଼ିଆ ଭାଗବତର ନିଜସ୍ୱ । ଏହି ପ୍ରସଙ୍ଗରେ ଅକ୍ରୂର ଗୋପପୁରରେ ତିନିଥର ନନ୍ଦ ଉପରେ କ୍ରୋଧ ପ୍ରକାଶ କରିଛି । ପ୍ରଥମେ ଗୋପୀ ବିଳାପ କାଳରେ, ଦ୍ୱିତୀୟଥର ରୋହିଣୀ ଏବଂ ଯଶୋଦାଙ୍କର କ୍ରନ୍ଦନରେ ଓ ଶେଷରେ କୃଷ୍ଣଙ୍କ ନ ଯିବା ପ୍ରସ୍ତାବ ଶ୍ରବଣ କରି । ଏ ସବୁର ବର୍ଣ୍ଣନା ସଂସ୍କୃତ ଭାଗବତରେ ଦେଖିବାକୁ ମିଳେନାହିଁ । ୧୧- ଓଡ଼ିଆ ଭାଗବତକାରଙ୍କ ଅନୁଯାୟୀ ଶ୍ରୀକୃଷ୍ଣ ୪ଦିନରେ ଫେରି ଆସିବା ପାଇଁ ଗୋପୀମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ । ଜଗନ୍ନାଥ ଦାସ ବାରମ୍ବାର ଏହାର ଉଲ୍ଲେଖ କରିଛନ୍ତି, ଅଥଚ ସଂସ୍କୃତ ଭାଗବତରେ ଏ ପ୍ରସଙ୍ଗର ଉଲ୍ଲେଖ ଦେଖିବାକୁ ମିଳେ ନାହିଁ । ୧୨- କଂସବଧ ପ୍ରସଙ୍ଗରେ ମଧ୍ୟ ଜଗନ୍ନାଥ ଦାସ ବହୁ ପାର୍ଥକ୍ୟ ସୃଷ୍ଟି କରିଛନ୍ତି । ମୂଳ ଭାଗବତ ଅନୁଯାୟୀ ସିଂହାସନ ଉପରୁ କଂସ ତଳେ ପଡ଼ିଯିବା କ୍ଷଣି ଶ୍ରୀକୃଷ୍ଣ ତା' ଉପରେ ଲମ୍ଫ ପ୍ରଦାନ କରିଥିଲେ, ଅଥଚ ଓଡ଼ିଆ ଭାଗବତରେ ଏହାର ଦୁଇଟି ରୂପ ଅଛି । କଂସ ଶ୍ରୀକୃଷ୍ଣଙ୍କ କେଶ ଧାରଣ କରିବା ଫଳରେ ଶ୍ରୀକୃଷ୍ଣ ଏକ ଦୃଷ୍ଟିରେ କଂସ ଆଡ଼କୁ ଚାହିଁଛନ୍ତି ଏବଂ ଫଳରେ କଂସର ଚକ୍ଷୁବାଟେ ପ୍ରାଣ ବାହାରି ଯାଇଛି । ସେ କୃଷ୍ଣ ଶରୀରରେ ଲୀନ ହୋଇଛି । କଂସର ମୃତ୍ୟୁ ଦେଖି ଅନ୍ୟ ଅସୁରମାନେ ପଳାୟନ କରିଛନ୍ତି । ରାଣୀଙ୍କୁ ପ୍ରବୋଧନ ଦେଲାବେଳେ କଂସ ମୃତ୍ୟୁର ଅନ୍ୟ ଗୋଟିଏ ରୂପ ବର୍ଣ୍ଣନା କରାଯାଇଛି । ୧୩- ଉଦ୍ଧବ ଗୋପୀମାନଙ୍କୁ ଆଲିଙ୍ଗନ କରିଛି ଏବଂ ଗୋପାଳମାନଙ୍କ ପାଦତଳେ ପ୍ରଣାମ କରିଛି । ସଂସ୍କୃତ ଭାଗବତରେ ଏ ସବୁର ବର୍ଣ୍ଣନା ଦେଖିବାକୁ ମିଳେନାହିଁ । ଉଦ୍ଧବ, ଗୋପୀ ଓ ଗୋପାଳଗଣଙ୍କ ଠାରୁ ଆଜ୍ଞା ମାଗି ବିଦାୟ ନେଇ ମଥୁରାକୁ ଫେରି ଯାଇଛି । ୧୪- ଶ୍ରୀକୃଷ୍ଣଙ୍କ ଗୁରୁଙ୍କ

ଷଟ୍ ପୁତ୍ର ସମ୍ବନ୍ଧରେ ସଂସ୍କୃତ ଭାଗବତ ଓ ଓଡ଼ିଆ ଭାଗବତରେ ସମ୍ପୂର୍ଣ୍ଣ ପୃଥକ କଥା ବର୍ଣ୍ଣିତ ହୋଇଛି । ସଂସ୍କୃତ ଅନୁଯାୟୀ ଏହାର କଥା ହେଉଛି, ପ୍ରଥମ ମନ୍ୱନ୍ତରରେ ପ୍ରଜାପତି ମରିଚୀ ଓ ତାଙ୍କ ସ୍ତ୍ରୀ ଉର୍ଣ୍ଣାଙ୍କ ଗର୍ଭରୁ ଛଅଗୋଟି ପୁତ୍ର ଜାତ ହେଲେ । ବ୍ରହ୍ମା ନିଜ କନ୍ୟା ସୁକନ୍ୟାଙ୍କ ସହ ରମଣ କରିବା ପାଇଁ ଉଦ୍ୟତ ହେଲାବେଳେ ସେମାନେ ହସିବାରୁ ଅଭିଶପ୍ତ ହୋଇ ଶ୍ରୀକୃଷ୍ଣଙ୍କ ଗୁରୁଙ୍କ ଷଡ଼ପୁତ୍ର ରୂପେ ଜନ୍ମଲାଭ କରିଥିଲେ । ଓଡ଼ିଆ ଭାଗବତରେ ସେମାନେ ଦେବଳ ନାମକ ବ୍ରହ୍ମଋଷିଙ୍କ ତପୋବନରେ ପ୍ରବେଶ କରି ତାଙ୍କ ରୂପ ଦେଖି ଉପହାସ କରିବାରୁ ଏବଂ ତାଙ୍କ କନ୍ୟାଙ୍କୁ ରମଣ କରିବା ପାଇଁ ଚାହିଁ ଥିବାରୁ ଅଭିଶପ୍ତ ହେଲେ । ୧୫- ଭସ୍ମାସୁର ପ୍ରସଙ୍ଗରେ ଭସ୍ମାସୁରଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଶିବ ଓ ପାର୍ବତୀ ଉଭୟେ ଆସିଛନ୍ତି ଏବଂ ଭସ୍ମାସୁର ପାର୍ବତୀଙ୍କୁ ଦେଖିବା କ୍ଷଣି ତାଙ୍କୁ ପାଇବା ପାଇଁ ବର ମାଗିଛି । ଅଥଚ ସଂସ୍କୃତ ଭାଗବତରେ ପାର୍ବତୀଙ୍କୁ ପାଇବା ପାଇଁ ବର ମାଗିଥିଲେ ହେଁ ପାର୍ବତୀ ସମ୍ମୁଖରେ ନାହାନ୍ତି । ୧୬- ଏହିପରି ଏକାଦଶ ସ୍କନ୍ଧରେ ମଧ କଥା ଦୃଷ୍ଟିରୁ ବହୁ ସୂକ୍ଷ୍ମ ପାର୍ଥକ୍ୟ ଦେଖିବାକୁ ମିଳେ । ସଂସ୍କୃତ ଭାଗବତରେ ଶ୍ରୀକୃଷ୍ଣ ଦ୍ୱାରକାବାସୀଙ୍କୁ ଦୁଇଟି କ୍ଷେତ୍ରକୁ ପ୍ରେରଣ କରିଛନ୍ତି । ସ୍ତ୍ରୀ, ପିଲା ଓ ବୁଢ଼ାମାନେ ଶଙ୍ଖୋଧାର କ୍ଷେତ୍ରକୁ ଯାଉଥିବା ବେଳେ ଯୁବକ ଓ ପ୍ରୌଢ଼ମାନେ ପ୍ରଭାସ କ୍ଷେତ୍ରକୁ ଯାଇଛନ୍ତି । ଅଥଚ ଜଗନ୍ନାଥ ଦାସଙ୍କ ଭାଗବତରେ ସ୍ତ୍ରୀ, ପିଲା ଓ ବୁଢ଼ା ସବୁ ଟିକିଏ ଆଗରୁ ଯାଇଥିବା ବେଳେ ଯୁବକ ଓ ପ୍ରୌଢ଼ମାନେ ଟିକିଏ ପରେ ଯାତ୍ରା ଆରମ୍ଭ କରିଛନ୍ତି ଏବଂ ସମସ୍ତେ ପ୍ରଭାସ କ୍ଷେତ୍ରକୁ ଯାଇଛନ୍ତି । ୧୭- ପ୍ରଦ୍ୟୁମ୍ନ ବଧ ପ୍ରସଙ୍ଗରେ ସଂସ୍କୃତ ଅନୁଯାୟୀ ଶ୍ରୀକୃଷ୍ଣ ନିଜ ଚକ୍ରରେ ପ୍ରଦ୍ୟୁମ୍ନକୁ ବଧ କରିବା ଜଣାଯାଏ ନାହିଁ; ଅଥଚ ଜଗନ୍ନାଥ ଦାସଙ୍କ ଭାଗବତରେ ପ୍ରଦ୍ୟୁମ୍ନକୁ ବଧ କରିବା ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ ଚକ୍ରକୁ ଆଦେଶ ଦେଇଛନ୍ତି । ଚକ୍ର ଯିବା ପରେ ଆଉ ଫେରିନାହିଁ । ୧୮- ଜରାସନ୍ଧ ବଧ ପ୍ରସଙ୍ଗରେ ସଂସ୍କୃତ ଭାଗବତ ଅନୁଯାୟୀ ଭୀମ ଜରାସନ୍ଧକୁ ଦୁଇ ଫାଳ କରି ଚିରି ଦେଇଛି । ଜଗନ୍ନାଥ ଦାସ ଏହାକୁ ଟିକେ ପରିବର୍ଦ୍ଧିତ କରି ଲେଖିଛନ୍ତି । ଭୀମ ଚିରି ସାରିବା ପରେ ଗୋଟିଏ ଗୋଡ଼ ଅନ୍ତରୀକ୍ଷକୁ ଓ ଅନ୍ୟ ଗୋଡ଼କୁ ବଡ଼ବାନଳ ମଧକୁ ନିକ୍ଷେପ କରିଥିଲେ ।

ସଂସ୍କୃତ ଭାଗବତ ଓ ଓଡ଼ିଆ ଭାଗବତର ତୁଳନାରୁ ଏକଥା ସ୍ପଷ୍ଟ ଯେ ଜଗନ୍ନାଥ ଦାସ ପ୍ରାୟ ପ୍ରତ୍ୟେକ ପ୍ରସଙ୍ଗରେ କିଛି ନା କିଛି ବ୍ୟତିକ୍ରମ ଆଣିଛନ୍ତି । ଏସବୁ ବ୍ୟତିକ୍ରମକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ୧- ସାମାନ୍ୟ ବ୍ୟତିକ୍ରମ ଓ ୨- ବିଶେଷ ବ୍ୟତିକ୍ରମ । ଉଗ୍ରସେନ, ବଳରାମ ଓ ଅକ୍ରୂରଙ୍କର ଶ୍ରୀକୃଷ୍ଣଙ୍କ ଚତୁର୍ଭୁଜ ରୂପ ଦର୍ଶନ, ବୃନ୍ଦାବତୀ ପ୍ରସଙ୍ଗ, ଗୁରୁଙ୍କ ଷଟ୍‌ପୁତ୍ର ବିବରଣ ପ୍ରଭୃତି ବିଶେଷ ବ୍ୟତିକ୍ରମ ଅନ୍ତର୍ଗତ । ଶ୍ରୀକୃଷ୍ଣଙ୍କ ମହିମା ପ୍ରଖ୍ୟାପନ କରିବା ପାଇଁ ଜଗନ୍ନାଥ ଦାସ ଶ୍ରୀକୃଷ୍ଣଙ୍କ ଚତୁର୍ଭୁଜ ରୂପ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରକୃତ ଭକ୍ତମାନେ ଶ୍ରୀକୃଷ୍ଣଙ୍କ ଚତୁର୍ଭୁଜ ରୂପ ଦର୍ଶନରେ ସୌଭାଗ୍ୟ ପ୍ରାପ୍ତ ହୁଅନ୍ତି । ଉଗ୍ରସେନ ଓ ଅକ୍ରୂରଙ୍କୁ ଭକ୍ତଶ୍ରେଷ୍ଠ ରୂପେ ବର୍ଣ୍ଣନା କରିବା ପାଇଁ ଜଗନ୍ନାଥ ଦାସ ଏ ପ୍ରକାର ବ୍ୟତିକ୍ରମର ଉପସ୍ଥାପନା କରିଛନ୍ତି । ଦ୍ୱିତୀୟ ହେଉଛି ମାୟା ରୂପରେ ଶ୍ରୀକୃଷ୍ଣଙ୍କର ବର୍ଣ୍ଣନା । ବ୍ରହ୍ମା ଏପରିକି ବଳରାମ ପର୍ଯ୍ୟନ୍ତ ଶ୍ରୀକୃଷ୍ଣଙ୍କ ମାୟାଗ୍ରସ୍ତ । ଏ ସବୁ ପ୍ରସଙ୍ଗରୁ ଏହାହିଁ ଜଣାଯାଏ ।

ଜନୈକା ଗୋପୀଙ୍କୁ ରାଧା ନ କହି ବୃନ୍ଦାବତୀ କହିବା ଅନ୍ୟ ପ୍ରକାର ବ୍ୟତିକ୍ରମ । ଶ୍ରୀମତୀ କେତକୀ ନାୟକ ବୃନ୍ଦବତୀଙ୍କୁ ରାଧା ରୂପରେ ପ୍ରତିପାଦିତ କରିବା ପାଇଁ ଚେଷ୍ଟା କରିଛନ୍ତି । ତାଙ୍କ ମତରେ ରାଧାଙ୍କର ଷୋଳ ନାମ ମଧ୍ୟରୁ ବୃନ୍ଦାବତୀ ନାମ ଅନ୍ୟତମ । ତେଣୁ ଜଗନ୍ନାଥ ଦାସ ରାଧା ନ କହି ବୃନ୍ଦାବତୀ କହିଥିଲେ ହେଁ ସେ ବୃନ୍ଦାବତୀ ଅର୍ଥରେ ରାଧାକୁ ହିଁ ବୁଝିଛନ୍ତି । ଯୁକ୍ତିର ଅର୍ଥ ହେଉଛି ଜଗନ୍ନାଥ ଦାସ ଜାଣିଶୁଣି ରାଧା ନାମ ପରିବର୍ତ୍ତେ ବୃନ୍ଦାବତୀ ନାମର ପ୍ରୟୋଗ କରିଛନ୍ତି । ବୃନ୍ଦାବତୀ ଏକ ନୂତନ ଆବିଷ୍କାର । ଏହା ପୂର୍ବରୁ ରାଧାପ୍ରେମ ଜୟଦେବଙ୍କ ଦ୍ୱାରା ଗୃହୀତ ହୋଇ ରାଧା ରାସଲୀଳାର ସର୍ବଶ୍ରେଷ୍ଠ ନାୟିକା ଭାବେ ପ୍ରତିପାଦିତ ହୋଇ ସାରିଛନ୍ତି । ଏପରି ସ୍ଥଳେ ଜଗନ୍ନାଥ ଦାସ ରାଧା ନାମ ଗ୍ରହଣ କରିବାରେ କୁଣ୍ଠିତ ହୁଅନ୍ତେ କାହିଁକି ? ଯେତେଦୂର ମନେହୁଏ ବୃନ୍ଦାବତୀଙ୍କୁ ସ୍କନ୍ଧ ଦେଶରେ ବସାଇବା ଘଟଣା ଜଗନ୍ନାଥ ଦାସଙ୍କୁ ପୁରାଣର ବୃନ୍ଦାବତୀ ଉପାଖ୍ୟାନ ସ୍ମରଣ କରାଇଛି । ଜଳନ୍ଧରର ସ୍ତ୍ରୀ ବୃନ୍ଦାବତୀଙ୍କୁ ହରଣ କରିବା ପରେ ଶ୍ରୀକୃଷ୍ଣ ତାଙ୍କୁ

ମସ୍ତକରେ ଧାରଣ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିଲେ । ଏ ଘଟଣାରେ ତାହାହିଁ ହୋଇଛି । ସେଥିପାଇଁ ଜଗନ୍ନାଥ ଦାସ ରାଧା ଶବ୍ଦ ବ୍ୟବହାର ନ କରି ଆଧ୍ୟାତ୍ମିକ ମହତ୍ତ୍ୱ ଦେବାପାଇଁ ବୃନ୍ଦାବତୀ ନାମର ଉଲ୍ଲେଖ କରିଛନ୍ତି । କେହି କେହି କହିପାରନ୍ତି ସ୍କନ୍ଧ ଦେଶରେ ବସିବା ପରେ ଗୋପୀର ଗର୍ବଭାବ ଶ୍ରୀ ରାଧାଙ୍କ ଚରିତ୍ର ଅନୁକୂଳ ହୋଇ ନ ଥିବାରୁ ଜଗନ୍ନାଥ ଦାସ ଶ୍ରୀ ରାଧାଙ୍କର ମହିମାକୁ କ୍ଷୁଣ୍ଣ ନ କରିବା ପାଇଁ ରାଧାଙ୍କ ସ୍ଥାନରେ ବୃନ୍ଦାବତୀ ନାମ ପ୍ରୟୋଗ କରିଥିଲେ । ଏ ମତ ମଧ୍ୟ ଗ୍ରହଣୀୟ ନୁହେଁ । କାରଣ କେବଳ ନାମ ପରିବର୍ତ୍ତନ କରିଦେଲେ ଚରିତ୍ରରେ ପରିବର୍ତ୍ତନ ହୁଏ ନାହିଁ । ରାଧା ଯଦି ବୃନ୍ଦାବତୀ ତାହେଲେ ବୃନ୍ଦାବତୀଙ୍କର ଗର୍ବ ହେଉଛି ରାଧାଙ୍କର ଗର୍ବ । ତେଣୁ ଏହି ପ୍ରସଙ୍ଗରେ ଜଳନ୍ଧରର ପତ୍ନୀ ବୃନ୍ଦାବତୀ ଉପାଖ୍ୟାନ ଜଗନ୍ନାଥ ଦାସଙ୍କୁ ପ୍ରଭାବିତ କରିଥିବା ମନେହୁଏ ଓ ସେଥିପାଇଁ ସେ ଜଣୈକା ଗୋପୀ ସ୍ଥାନରେ ବୃନ୍ଦାବତୀ ନାମ ଗ୍ରହଣ କରିଛନ୍ତି । ଷଟ୍‌ପୁତ୍ର ପ୍ରସଙ୍ଗରେ ବ୍ରହ୍ମାଙ୍କର ନିଜ କନ୍ୟା ପ୍ରତି ଆସକ୍ତି ଅସଙ୍ଗତ ମନେ କରି ଜଗନ୍ନାଥ ଦାସ ବୋଧହୁଏ ଅନ୍ୟ କୌଣସି ପୁରାଣକୁ ଅନୁସରଣ କରି ଏ ପ୍ରକାର ପରିବର୍ତ୍ତନ ସଂଘଟିତ କରିଛନ୍ତି ।

ଅଧ୍ୟାୟ ସଂଖ୍ୟା ଅପେକ୍ଷା ବିଷୟବସ୍ତୁର ପରିବର୍ତ୍ତନରୁ ଅନୁବାଦ ପଦ୍ଧତି ସମ୍ବନ୍ଧରେ କେତେକ ସୂଚନା ମିଳୁଥିଲେ ହେଁ ଏହା ଜଗନ୍ନାଥ ଦାସଙ୍କ ଅନୁବାଦ-ପ୍ରକ୍ରିୟା ବିଷୟରେ ସମ୍ପୂର୍ଣ୍ଣ ପ୍ରମାଣ ଦେବାପାଇଁ ଅସମର୍ଥ । ସେଥିପାଇଁ ଦଶମ ସ୍କନ୍ଧର ପ୍ରଥମ ଅଧ୍ୟାୟ (ଓଡ଼ିଆରେ ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟ)ରୁ କେତେକ ପଦକୁ ପରୀକ୍ଷା କରାଯାଇଛି । ଦଶମ ସ୍କନ୍ଧର ପ୍ରଥମ ପଦର ଅନୁବାଦକୁ ପରୀକ୍ଷା କଲାବେଳେ ଦେଖାଯାଏ ଯେ ଜଗନ୍ନାଥ ଦାସ ଏଥିରୁ ପ୍ରଥମ ଓ ଦ୍ୱିତୀୟ ପଦ ପରିତ୍ୟାଗ କରିଛନ୍ତି । ସଂସ୍କୃତରେ ନ ଥିବା ଗଣେଶ ଓ ବିଷ୍ଣୁଙ୍କ ବନ୍ଦନା ପରେ ସେ ସଂସ୍କୃତ ଭାଗବତର ଚତୁର୍ଥ ପଦ ଅନୁବାଦରୁ ଦଶମ ସ୍କନ୍ଧ ଆରମ୍ଭ କରିଛନ୍ତି । ଚତୁର୍ଥ ଠାରୁ ଅଷ୍ଟମ ପଦ ଭିତରେ କ୍ରମ ରକ୍ଷିତ ହୋଇନାହିଁ । ପ୍ରଥମେ ଷଷ୍ଠ, ଷଷ୍ଠ ପରେ ପଞ୍ଚମ, ପଞ୍ଚମ ପରେ ଚତୁର୍ଥ ଓ ଚତୁର୍ଥ ପରେ ଅଷ୍ଟମ ରଖାଯାଇଛି । ସଂସ୍କୃତରେ ଚତୁର୍ଥ ପଦର ଅର୍ଥ ହେଉଛି ଯେଉଁମାନଙ୍କର ତୃଷ୍ଣା ସବୁଦିନ ପାଇଁ ଲୋପ ପାଇଛି ସେମାନେ ତାଙ୍କ କଥା ଗାନ କରିଥାନ୍ତି । ମୁମୁକ୍ଷୁମାନଙ୍କ ପାଇଁ ଏହା ହେଉଛି ଭବ ବା ସଂସାରରୁ ତ୍ରାଣ ପାଇବାର ଔଷଧ ତଥା ବିଷୟୀ ଲୋକମାନଙ୍କ ପାଇଁ ମଧ୍ୟ ତାଙ୍କ କର୍ଣ୍ଣ ଓ ମନକୁ ପରମ ଆନନ୍ଦ ଦାନକାରୀ । ଏପରି ଉତ୍ତମ ଶ୍ଳୋକ ଭଗବାନଙ୍କ ଗୁଣାନୁବାଦ, କେବଳ ପଶୁଘାତୀଙ୍କ ବିନା ଏପରି କେହି ନାହାନ୍ତି ଯେ କି ଏଥିରେ ପ୍ରୀତି କରେ ନାହିଁ । ଏହାର ଅନୁବାଦ କରି ଜଗନ୍ନାଥ ଦାସ ଲେଖିଛନ୍ତି –

ଯାହାର ଚରିତ ଗହନ । ଧ୍ୟାନେ ଭାବନ୍ତି ମୁନିଜନ ।।
ମୁକ୍ତ ମୁମୁକ୍ଷୁ ଯେ ବିଷୟୀ । ସର୍ବେ ତରନ୍ତି ପଦଧ୍ୟାୟୀ ।।
ଉତ୍ତମ ଶ୍ଳୋକ ଭଗବାନ । ଗୁଣ କୀର୍ତ୍ତନେ ମୁକ୍ତ ଜନ ।।
ଭବ ସାଗର ପରମାଦ । ବିଷୟା ବିଷକୁ ଏ ଗଦ ।।
ମୁମୁକ୍ଷୁ ଜୀବ ଏହା ପାଇ । ଆନନ୍ଦେ ଦିନକୁ ବଞ୍ଚଇ ।।
ବିଷୟୀ ଶୁଣି ସେ ବାରତା । ପାସୋରେ ବିଷୟର କଥା ।।
ଚଣ୍ଡାଳୁ ବ୍ରହ୍ମଯାଏ ଲୋକ । କେ ଶୁଣି ହୋଇବ ବିମୁଖ ।।

ଏହି ଅନୁବାଦରେ 'ଉତ୍ତମ ଶ୍ଳୋକ ଗୁଣାନୁବାଦାତ'ର ଅନୁବାଦ 'ଉତ୍ତମ ଶ୍ଳୋକ ଭଗବାନ, ଗୁଣ କୀର୍ତ୍ତନେ ମୁକ୍ତ ଜନ' ହୋଇଛି । 'ଭବୌଷଧା' 'ବିଷୟା ବିଷକୁ ଏ ଗଦ'ରେ ଅନୂଦିତ ହୋଇଛି । ଏଥିରେ ଔଷଧକୁ ରୋଗନିବାରଣାର୍ଥେ ଗ୍ରହଣ ନ କରି ଜଗନ୍ନାଥ ଦାସ ଔଷଧ ପାଇଁ 'ଗଦ' ଶବ୍ଦ ଗ୍ରହଣ କରି 'ଗଦ' ପାଇଁ 'ବିଷ' ଶବ୍ଦକୁ ଗ୍ରହଣ କରିଛନ୍ତି । ମୂଳ ଶବ୍ଦ ପରିବର୍ତ୍ତିତ ହୋଇଥିଲେ ହେଁ ଭାବ ଗ୍ରହଣରେ କୌଣସି ଅସୁବିଧା ହୁଏ ନାହିଁ । ସଂସ୍କୃତରେ ମୁକ୍ତ, ମୁମୁକ୍ଷୁ ଓ ବିଷୟୀ ଲୋକଙ୍କ କଥା ଅଲଗା ଅଲଗା କୁହାଯାଇଛି । ଜଗନ୍ନାଥ ଦାସ ପ୍ରଥମେ ସଂସ୍କୃତରେ ନ ଥିବା 'ଯାହାର ଚରିତ ଗହନ ଧ୍ୟାନେ ଭାବନ୍ତି ମୁନିଜନ'କୁ ମୁଖବନ୍ଧ ରୂପେ ଯୋଗକରି ମୁକ୍ତ, ମୁମୁକ୍ଷୁ, ବିଷୟୀମାନଙ୍କ କଥା ପ୍ରଥମରୁ ଥରେ କହି ଦେଇ

ତା'ପରେ ସେମାନଙ୍କୁ ଅଲଗା ଅଲଗା କରି ବର୍ଣ୍ଣନା କରିଛନ୍ତି । 'ବିନାପଶୁଘ୍ନାତ୍' ଶବ୍ଦକୁ ବୋଧହୁଏ ଜଗନ୍ନାଥ ଦାସ 'ଚାଣ୍ଡାଳୁ ବ୍ରହ୍ମଯାଏ ଲୋକ'ରେ ଅନୁବାଦ କରିଛନ୍ତି । ଚାଣ୍ଡାଳ ମାନଙ୍କୁ ପଶୁଘାତୀ ଅର୍ଥରେ ଗ୍ରହଣ କରାଯାଇଛି । ମୂଳ ଗ୍ରନ୍ଥର ପଞ୍ଚମ ପଦ ଯେଉଁଥିରେ ଦେବତାମାନଙ୍କୁ ଜୟକରି ପାରୁଥିବା ଭୀଷ୍ମଙ୍କ ପରି ବୀର ସମେତ କୌରବ ସେନାକୁ ସାଗର ସହିତ ତୁଳନା କରାଯାଇଛି ଯେଉଁ ସାଗରରେ ଭୀଷ୍ମଙ୍କ ପରି ବୀର ବଡ଼ ବଡ଼ ମାଛମାନଙ୍କୁ ଗିଳି ପାରୁଥିବା ତିମିଙ୍ଗଳ ପରି ଭୟ ସୃଷ୍ଟି କରୁଥିଲେ । ଏହିପରି ଯୁଦ୍ଧରେ ପରୀକ୍ଷିତଙ୍କ ପିତାମହ ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କ ଚରଣ କମଳ ରୂପୀ ନୌକାର ଆଶ୍ରୟ ନେଇ ମନୁଷ୍ୟ ବାଛୁରି ଖୁରା ଦ୍ୱାରା ସୃଷ୍ଟି ହୋଇଥିବା ଖାଲକୁ ପାରିହେବା ପରି ସମର ସାଗରକୁ ଅକ୍ଳେଶରେ ଅତିକ୍ରମ କଲେ । ଜଗନ୍ନାଥ ଦାସ ଏହାର ଅନୁବାଦକୁ କେବଳ ଦୁଇଟି ପଦରେ ସମାପ୍ତ କରିଛନ୍ତି ।

ପାଣ୍ଡବେ ଯାହାର ବିଶ୍ୱାସୁ । ତରିଲେ କୁରୁବଳ ତ୍ରାସୁଁ ॥
ବତ୍ସା ଚରଣ ଜଳ ତୁଲେ । ହେଳେ ତରିଲେ କୁରୁବଳେ॥

'ତରିଲେ କୁରୁବଳ ତ୍ରାସୁଁ'ର ଅନ୍ୟରୂପ ହେଉଛି 'ହେଳେ ତରିଲେ କୁରୁବଳେ' । ଏହି ଅନୁବାଦରେ ଜଗନ୍ନାଥ ଦାସ ସାଗର ଓ ତିମିଙ୍ଗଳ ଉପମାକୁ ପରିତ୍ୟାଗ କରିଛନ୍ତି । ସେହିପରି ମୂଳ ଭାଗବତର ଷଷ୍ଠ ପଦରେ ଯେଉଁଠି ପରୀକ୍ଷିତ ନିଜକୁ କୌରବ ଓ ପାଣ୍ଡବ ଉଭୟ ବଂଶର ଏକମାତ୍ର ସନ୍ତାନ ବୀଜ ରୂପେ ବର୍ଣ୍ଣନା କରିଛନ୍ତି, ସେତେବେଳେ ଜଗନ୍ନାଥ ଦାସ କେବଳ ପାଣ୍ଡବ କୁଳ କଥା କହନ୍ତି ଏବଂ ଏହି ଅନୁବାଦ ଶେଷରେ -

ତେଣୁ କୃଷ୍ଣର ମୋ ଶରୀର । କିଣିଲା ସେବକ ମୁଁ ତାର ॥
ତାର ଚରିତ କର୍ଣ୍ଣେ ଶୁଣି । ତରିବି ଭବ ତରଙ୍ଗିଣୀ ॥
ଶ୍ରୀକୃଷ୍ଣ ଲୀଳାର ଚରିତ । ମୁଖ ପଦ୍ମରୁ ତୋର ଚ୍ୟୁତ ॥
ଶ୍ରୁତି ଯୁଗଳେ ପାନକରି । ହେଳେ ତରିବି ଭବ ବାରି ॥

ପ୍ରଭୃତି ପଂକ୍ତିର ଯୋଗ କରିଛନ୍ତି । ଏ ସବୁ କବିଙ୍କ ପ୍ରେମଭକ୍ତିର ପରିଚୟ ପ୍ରଦାନ କରୁଥିଲେ ହେଁ ଏବଂ ଭକ୍ତିତଦ୍‌ଗତ ପ୍ରାଣ ଶ୍ରୋତାମାନଙ୍କୁ ଅନାୟାସରେ ମୁଗ୍‌ଧ କରୁଥିଲେ ହେଁ ମୂଳ ଭାଗବତରେ ଏ ସବୁର ସଙ୍କେତ ମଧ ନାହିଁ । ମୂଳ ଗ୍ରନ୍ଥର 'ବୀର୍ଯ୍ୟାଣି.....ବିଦ୍ୱନ' ପଦରେ କୁହାଯାଇଛି ଯେ ଭଗବାନ୍ ସମସ୍ତ ଶରୀରଧାରୀଙ୍କ ମଧରେ ଆତ୍ମା ରୂପରେ ରହି ଅମୃତତ୍ୱ ଦାନ କରନ୍ତି ଏବଂ ବାହାରେ କାଳ ରୂପରେ ରହି ବିନାଶ କରିଥାନ୍ତି । ମନୁଷ୍ୟ ରୂପରେ ପ୍ରତୀତ ହେବା ତାଙ୍କର ଏକ ଲୀଳା । ଆପଣ ତାଙ୍କର ଲୀଳା ବର୍ଣ୍ଣନା କରନ୍ତୁ । ଏହାର ଅନୁବାଦ କରି ଜଗନ୍ନାଥ ଦାସ ଲେଖିଛନ୍ତି -

ଅଶେଷ ଜନ୍ତୁ ଦେହ ବହି । ଯେ କାଳ ରୂପେ ଅଛି ରହି ॥
ମାୟା ମନୁଷ୍ୟ ରୂପେ ଜାତ । ଯେ ହରି ଦିଏ ମୃତା ମୃତ ॥

ଏହି ଅନୁବାଦରେ 'ଅନ୍ତର୍ବହି'ର କୌଣସି ଅନୁବାଦ ନାହିଁ ଏବଂ ଜଗନ୍ନାଥ ଦାସ ଯେଉଁ ଅନୁବାଦ ଦେଇଛନ୍ତି, ସେଥିରେ ସଂସ୍କୃତର କ୍ରମ ନାହିଁ । ତେଣୁ ଅସ୍ପଷ୍ଟ ହୋଇଯାଇଛି । ଏହାକୁ ଟିକେ ପରିବର୍ତ୍ତନ କରି ଦେଲେ ସଂସ୍କୃତର କ୍ରମ ରକ୍ଷିତ ହୁଏ ଏବଂ ଅନୁବାଦ ମଧ ସ୍ପଷ୍ଟ ହୁଏ ।

ଅଶେଷ ଜନ୍ତୁ ଦେହ ବହି । ଯେ କାଳ ରୂପେ ଅଛି ରହି ॥
ଯେ ହରି ଦିଏ ମୃତା ମୃତ । ମାୟା ମନୁଷ୍ୟ ରୂପେ ଜାତ ॥

ସେହିପରି ଅଷ୍ଟମ ପଦରେ ଅନୁବାଦ ପୂର୍ବରୁ :

ନବମ ସ୍କନ୍ଧେ ଅଛି ଶୁଣି । ସେ କଥା ମନେ ମନେ ଗୁଣି।
ବିଚାର କଲି ଭ୍ରମ ଚିତ୍ତ । ଭୋ ମୁନି କହିବା ତଦନ୍ତ ॥
ଧାର୍ମିକ କୁଳେ ଯଦୁ ବଂଶେ ।ଜନ୍ମ ହୋଇଲେ ନିଜ ଅଂଶେ ॥

ନୀଳ ଧବଳ ରୂପ ଦୁଇ   ।  ଦେବକୀ ଗର୍ଭେ ଜାତ ହୋଇ।।

ପ୍ରଭୃତି ପଦକୁ ଯୋଗ କରିଛନ୍ତି । ସଂସ୍କୃତ ଭାଗବତରେ ଏହାର ସୂଚନା କେବଳ ଅନୁମାନ ଉପରେ ନିର୍ଭର କରିପାରେ । ମୂଳରେ ଅଷ୍ଟମ ପଦର ଅର୍ଥ ହେଉଛି - ଆପଣ ବଳରାମଙ୍କୁ ରୋହିଣୀଙ୍କ ପୁତ୍ର ରୂପେ ବର୍ଣ୍ଣନା କରିଥିଲେ, ପୁଣି ଦେବକୀଙ୍କ ପୁତ୍ର ଭାବରେ ତାଙ୍କର ଗଣନା କଲେ । ଅନ୍ୟ ଶରୀର ଧାରଣ ନ କରି ଦୁଇ ମାତାଙ୍କର ପୁତ୍ର ହେବା କିପରି ସମ୍ଭବ ? ଜଗନ୍ନାଥ ଦାସ ଏହାର ଯେଉଁ ଅନୁବାଦ କଲେ ତାହାକୁ ଖୁବ୍ ବେଶୀରେ ଭାବାନୁବାଦ କୁହାଯାଇପାରେ :

ନୀଳ ଧବଳ ରୂପ ଦୁଇ   ।  ଦେବକୀ ଗର୍ଭେ ଜାତ ହୋଇ।।
କେମନ୍ତେ ରୋହିଣୀର ସୁତ।  ରାମଙ୍କୁ ବୋଲନ୍ତି ଜଗତ   ।।
ବେନି ଉଦରୁ ଏକ ଦେହ ।  ଭୋ ମୁନି ଫେଡ଼ିବା ସନ୍ଦେହ।।

ଏହି ଅନୁବାଦରେ ନୀଳ ରୂପ ଶ୍ରୀକୃଷ୍ଣ ଓ ଧବଳ ରୂପ ବଳରାମଙ୍କୁ ବୁଝାଉଛି । ଅଥଚ ସଂସ୍କୃତରେ କେବଳ ବଳରାମଙ୍କ ଜନ୍ମ କଥାହିଁ କୁହାଯାଇଛି । ପୁଣି 'ଦେହାନ୍ତର ବିନା'ର କୌଣସି ଅନୁବାଦ ଜଗନ୍ନାଥ ଦାସ ଦେଇ ନାହାନ୍ତି । ସଂସ୍କୃତରେ ନବମ ପଦର ଅର୍ଥ ହେଉଛି ଶ୍ରୀକୃଷ୍ଣ ପିତାଙ୍କ ଘର ତ୍ୟାଗକରି କାହିଁକି ଚାଲିଗଲେ ? ଏବଂ ସେଠାରେ ଭକ୍ତ ବତ୍ସଳ ପ୍ରଭୁ ଜ୍ଞାତିମାନଙ୍କ ସହ (ନନ୍ଦ ଆଦି ଗୋପବନ୍ଧୁ) କେଉଁ କେଉଁ ସ୍ଥାନରେ ବାସ କଲେ ? ଜଗନ୍ନାଥ ଦାସଙ୍କ ଅନୁବାଦ ହେଉଛି -

କେବଣ ହେତୁ ଭଗବାନ  ।  ଗୁପତେ ଗଲେ ବୃନ୍ଦାବନ   ।।
ଭକ୍ତଙ୍କୁ ତରିବାର ଆଶେ   ।  ରମିଲେ ବାଳକ ବିଶ୍ୱାସେ  ।।

ଏହି ପଦର ଅନୁବାଦ କଲାବେଳେ ଜଗନ୍ନାଥ ଦାସ ମୂଳରୁ କେବଳ ପ୍ରଥମ ପଦଟି ଗ୍ରହଣ କରି ଦ୍ୱିତୀୟ ପଦକୁ ପ୍ରାୟ ପରିତ୍ୟାଗ କରିଛନ୍ତି । ମୂଳରେ ଷୋଡ଼ଶ ପଦର ଅର୍ଥ ହେଉଛି ଶ୍ରୀକୃଷ୍ଣଙ୍କ କଥା ସମ୍ବନ୍ଧରେ ପ୍ରଶ୍ନ କଲେ ବକ୍ତା, ପ୍ରଶ୍ନକର୍ତ୍ତା ଓ ଶ୍ରୋତା ତିନିହେଁ ପବିତ୍ର ହୋଇଥାନ୍ତି  ଯେପରିକି ଭଗବାନଙ୍କ ପାଦ ସଲିଳ ସମସ୍ତଙ୍କୁ ପବିତ୍ର କରିଥାଏ । ଏହି ଅନୁବାଦରେ ଜଗନ୍ନାଥ ଦାସ 'ବାସୁଦେବ କଥା ପ୍ରଶ୍ନଃ'କୁ 'ଗୋବିନ୍ଦ କଥା ପରଶନ' କରିଛନ୍ତି । 'ପ୍ରଶ୍ନ' ଶବ୍ଦ ଏଠି ଛନ୍ଦ ଅନୁରୋଧରେ 'ପରଶନ'ରେ ପରିଣତ ହୋଇଛି । 'ପାଦ ସଲିଳ'କୁ ଜଗନ୍ନାଥ ଦାସ 'ତା ପାଦ ଗଙ୍ଗା ଜଳ ଯେହ୍ନେ'ରେ ପରିଣତ କରିଛନ୍ତି । କିନ୍ତୁ,

ତରଇ ପିଣ୍ଡ ସ୍ନାନଦାନେ ।
ନାମ ମାତ୍ରକେ ପାପ ନାଶେ ।।
ତାରଇ ସେ ତିନି ପୁରୁଷେ ।

ପ୍ରଭୃତି ପଂକ୍ତି ଜଗନ୍ନାଥ ଦାସଙ୍କ ସମ୍ପୂର୍ଣ୍ଣ ନୂତନ ସଂଯୋଜନା । ସପ୍ତଦଶ ପଦରେ ମୂଳରେ ଥିବା ପଦର ଅର୍ଥ ହେଉଛି, "ପରୀକ୍ଷିତ । ସେ ସମୟରେ ଲକ୍ଷ ଲକ୍ଷ ଦୈତ୍ୟ ଏବଂ ଦୃପ୍ତ ନୃପତିମାନଙ୍କ ଦୁର୍ବହ ଭାର ଦ୍ୱାରା ପୃଥିବୀ ଆକ୍ରାନ୍ତ ହୋଇ ତ୍ରାଣ ପାଇବା ପାଇଁ ବ୍ରହ୍ମାଙ୍କର ଶରଣ ପଶିଲେ ।" ଏହି ଅନୁବାଦରେ ଜଗନ୍ନାଥ ଦାସ 'ଶତାୟୁତୈ' ସଂଖ୍ୟାକୁ ଲୋପକରି କେବଳ ସାମୂହିକ ଭାବରେ ଅସୁର ବଳ କରିଛନ୍ତି । ନୃପତି ଶବ୍ଦର କୌଣସି ଅନୁବାଦ ନାହିଁ । ଏହା ପରେ :

ଅଧରୁ ରୁଧିର ନିକିଳି  ଦିନେକ ବିଚାରଇ ବସି ।
କେ ମୋର ଶରୀର ଆଶ୍ୱାସ । ଛାଡ଼ିବି ସଂସାରର ଭାର ।

ପ୍ରଭୃତି ପଂକ୍ତି ଜଗନ୍ନାଥ ଦାସଙ୍କର ସ୍ୱକଳ୍ପନା ପ୍ରସୂତ । ଧରଣୀକୁ ନାରୀ ରୂପରେ କଳ୍ପନା କରି ସେ ଏ ସବୁ ପଂକ୍ତି ସଂଯୋଜନା କରିଛନ୍ତି । ବିଂଶ ପଦର ଅନୁବାଦ କଲାବେଳେ 'ପୁରୁଷ ସୂକ୍ତରେ ସ୍ତୁତି କରୁ କରୁ ବ୍ରହ୍ମା ସମାଧିସ୍ଥ ହୋଇଗଲେ ।' ଏହି ଉକ୍ତିକୁ ପରିବର୍ତ୍ତିତ କରି ଜଗନ୍ନାଥ ଦାସ ଲେଖିଛନ୍ତି :

ହରି ସଂଦେଶ ନ ପାଇଲେ।  ଅନେକ ମତେ ଚିନ୍ତି ଧ୍ୟାନେ।।

ମନେ ପାଇଲା ଗୁରୁ ଚିନ୍ତା । ଅନନ୍ତ ନ ଦେଖି ବିଧାତା ।।

ମୂଳ ଭାଗବତର ଏକବିଂଶ ପଦର ଅର୍ଥ ହେଉଛି ବ୍ରହ୍ମା ସମାଧି ଅବସ୍ଥାରେ ଆକାଶବାଣୀ ଶୁଣିଲେ । ଏହାପରେ ଜଗତର ନିର୍ମାଣକର୍ତ୍ତା ବ୍ରହ୍ମା ଦେବତା ମାନଙ୍କୁ ସମ୍ବୋଧନ କରି କହିଲେ, "ଦେବତାମାନେ । ମୁଁ ଭଗବାନଙ୍କ ବାଣୀ ଶୁଣିଛି । ତୁମେ ମୋ ଠାରୁ ଏହାକୁ ଶୁଣିନିଅ ଏବଂ ସେହିପରି କର । ଏହାକୁ ପାଳନ କରିବାରେ ବିଳମ୍ବ କରନାହିଁ ।" ସଂସ୍କୃତ ଭାଗବତରେ ବିଷ୍ଣୁ ବ୍ରହ୍ମାଙ୍କୁ ଯାହା କହିଥିଲେ ତାର କୌଣସି ବର୍ଣ୍ଣନା ନାହିଁ ଅଥଚ ଓଡ଼ିଆ ଭାଗବତରେ ପ୍ରଥମେ ବିଷ୍ଣୁ ବ୍ରହ୍ମାଙ୍କୁ ନିଜ ଅବତାରର ସୂଚନା ଦେଇଛନ୍ତି ଏବଂ ବ୍ରହ୍ମା ସ୍ୱପ୍ନାବସ୍ଥା ତ୍ୟାଗ କଲାପରେ ଦେବତାମାନେ ବ୍ରହ୍ମାଙ୍କୁ ପଚାରିବାରେ ସେ ଦେବତାମାନଙ୍କୁ ଭଗବାନଙ୍କ ଅବତାର କଥା ବର୍ଣ୍ଣନା କରିଛନ୍ତି । ବିଷୟ ବସ୍ତୁର ବର୍ଣ୍ଣନା ଦୃଷ୍ଟିରୁ କୌଣସି ପରିବର୍ତ୍ତନ ନ ଥିଲେ ହେଁ ବିଷ୍ଣୁଙ୍କର ବ୍ରହ୍ମାଙ୍କୁ ଅବତାର କଥା କହିବା, ଦେବତାମାନେ ଅବତାର କଥାର ସୂଚନା ଦେଇ ବ୍ରହ୍ମାଙ୍କୁ ପଚାରିବା ପୁଣି ବ୍ରହ୍ମା ଦେବତାମାନଙ୍କୁ ଅବତାର କଥା ବର୍ଣ୍ଣନା କରିବା ଗୋଟିଏ କଥାର ବାରମ୍ବାର ଉଲ୍ଲେଖ । ଏଥିରେ ମଧ୍ୟ,

ଷୋଳ ସହସ୍ର ଗୋପ ନାରୀ । ରମିବି ବୃନ୍ଦାବନେ ହେରି ।।
ଅନେକ ନାଶିବି ଅସୁର । ଖଣ୍ଡିବି ଅବନୀର ଭାର ।।
ଭକତ ଜନଙ୍କୁ ତାରିବି । ପୁଣି ସ୍ୱଧାମେ ବାହୁଡ଼ିବି ।।

ପ୍ରଭୃତି ପଂକ୍ତି ମୂଳ ଭାଗବତରେ ଦେଖିବାକୁ ମିଳେ ନାହିଁ । ଏହିପରି ଦଶମ ସ୍କନ୍ଧର ଦ୍ୱିତୀୟ ଅଧ୍ୟାୟରେ ବହୁ ନୂତନ ପଂକ୍ତି ସଂଯୋଜିତ । ଏପରିକି,

(୧) ମୂଳୁ ମାଇଲେ ଯିବ ସରି । ଦେବଙ୍କ ସଙ୍ଗେ କିମ୍ପା କଳି ।।
କଂସକୁ ବସୁଦେବ ଚାହିଁ । ଭୟେ ଚିନ୍ତଇ ଭାବଗ୍ରାହୀ ।।
(୨) ଦେଖି ବସୁଦେବ ବିଚାରି । କାନ୍ଦିଣ ସୁମରେ ମୁରାରି ।।
(୩) କେ ସହୁ ଏହାର ବିକଳ । ଲାଭ ଦେଇ ରଖିବି ମୂଳ ।।
(୪) ଅଥବା ନୋହିବଟି ପୋଏ। ଜାଣନ୍ତି ପ୍ରଭୁ ଦେବରାଏ ।।
(୫) ତୁ ଅଟୁ ପୁରୁଷ ମହତ । ଏ ମୋର ତିନିବାର ସତ୍ୟ ।।
(୬) ଶୁଣନ୍ତୁ ଦଶ ଦିଗ ଲୋକେ । ଏଠାରେ ଅଛନ୍ତି ଯେ ଥୋକେ ।।
(୭) ଏ କଥା ମୋହର ପ୍ରମାଣ । ଏହାକୁ ସାକ୍ଷୀ ନାରାୟଣ ।।
(୮) ସୁତକୁ ଦେଖି ବସୁଦେବ । ବିକଳେ ଚିନ୍ତଇ ମାଧବ ।।
(୯) ଦେବକୀ ମୁଖକୁ ଚାହିଁଲା । ହା କୃଷ୍ଣ ବୋଲି ଡାକ ହେଲା।।
(୧୦) ହରି ଭିଆଣ କଲା ଯାହା । ଅବଶ୍ୟ ଭୁଞ୍ଜିବଇ ତାହା ।।
ଏମନ୍ତେ ଦୁଃଖ ସୁଖେ ଯାଇ। ଦେବକୀ ନିକଟେ ମିଳଇ ।।
ସୁତକୁ ଦେଲା ତାର କୋଳେ ।କାନ୍ଦଇ ମାୟା ମୋହ ଭୋଳେ ।।
ସୁତକୁ ଦେଖିଣ ଦେବକୀ । ଆନନ୍ଦ କେ ପାରିବ ଲେଖି ।।

ପ୍ରଭୃତି ବହୁ ପଂକ୍ତି ମୂଳ ଭାଗବତରେ ଦେଖିବାକୁ ମିଳେନାହିଁ । ଭକ୍ତି ପଥର ପଥିକ ଜଗନ୍ନାଥ ଦାସ ଭଗବାନଙ୍କ ମହିମା ପ୍ରଖ୍ୟାପନ ଉଦ୍ଦେଶ୍ୟରେ ବସୁଦେବ ଚରିତ୍ରରେ ହରିସ୍ମରଣ କରିବା ବାରମ୍ବାର ଉଲ୍ଲେଖ କରିଛନ୍ତି ।

ଉପମା ସବୁର ସଂଯୋଜନ ତଥା ତ୍ୟାଗ କ୍ଷେତ୍ରରେ ଜଗନ୍ନାଥ ଦାସଙ୍କ ସ୍ୱଚ୍ଛନ୍ଦତା ଅନୁବାଦ କୌଶଳର ଅନ୍ୟ ଗୋଟିଏ ବିଶିଷ୍ଟ ବିଭାବ । ଉପମା ତ୍ୟାଗର ଉଦାହରଣ ସ୍ୱରୂପ ଛୟାଳିଶରୁ ତେପନ ପଦ ମଧ୍ୟରେ ଥିବା ଶୁକଦେବଙ୍କ ଉକ୍ତିକୁ

ଗ୍ରହଣ କରାଯାଇପାରେ । ଏଥିରେ ଏକାବନ ପଦରେ ମୂଳ ଭାଗବତକାର ଯେଉଁ ଦୃଷ୍ଟାନ୍ତ ଦେଇଛନ୍ତି, ତାହାର ଅର୍ଥ ହେଉଛି: "ବଣରେ ନିଆଁ ଲାଗିବା ବେଳେ ଅନେକ କାଠ ଜଳିଯାଏ ଓ ଅନେକ କାଠ ଜଳେ ନାହିଁ । ଦୂରର କାଠ ଜଳି ପାଉଁଶ ହୋଇ ଯାଉଥିବା ବେଳେ ନିଆଁ ପାଖରେ ଥିବା କାଠ ଅକ୍ଷତ ଅବସ୍ଥାରେ ରହିଯାଏ । ଏସବୁକୁ ଅଦୃଷ୍ଟର ଫଳ କୁହାଯାଏ । ସେହିପରି କେଉଁ ପ୍ରାଣୀର କେଉଁ ଶରୀର ରହିବ, କେଉଁ ଶରୀର ନଷ୍ଟ ହୋଇଯିବ, ଏହା ଜାଣିବା ଅତି କଷ୍ଟକର ।" ଜଗନ୍ନାଥ ଦାସଙ୍କ ଅନୁବାଦରେ ଏହି ଉପମା ନାହିଁ, ଅଦୃଷ୍ଟ କଥାର କୌଣସି ସୂଚନା ମଧ୍ଯ ସେ ଦେଇ ନାହାନ୍ତି । ସେହିପରି କାଳୀୟଦଳନ କାଳରେ ଶ୍ରୀକୃଷ୍ଣଙ୍କ ପାଦ ଉପରେ ଥିବା ରକ୍ତ ଚିହ୍ନ ସବୁ ରକ୍ତ ପୁଷ୍ପ ପରି ଶୋଭା ପାଉଥିଲା । ଜଗନ୍ନାଥ ଦାସ ଏପରି ଉପମାକୁ ମଧ୍ଯ ସହଜରେ ପରିତ୍ୟାଗ କରି ନିଜ ସ୍ୱଚ୍ଛତାର ପରିଚୟ ଦେଇଛନ୍ତି । ଜଗନ୍ନାଥ ଦାସ ମୂଳ ସଂସ୍କୃତ ଗ୍ରନ୍ଥରୁ ଉପମା ସବୁକୁ ଯେପରି ପରିହାର କରୁଥିଲେ ସେହିପରି ଅନେକ ସମୟରେ ମୂଳ ଗ୍ରନ୍ଥରେ ନ ଥିବା ସତ୍ତ୍ୱେ କେତେକ ଉପମାର ସଂଯୋଜନ ମଧ୍ଯ କରୁଥିଲେ । ନିମ୍ନରେ କେତେଗୁଡ଼ିଏ ଉଦାହରଣ ଦିଆଯାଇଛି । ଭଗବାନ ହିଁ ଶରୀର ଭିତରେ ଓ ବାହାରେ ଥାଆନ୍ତି । ଏହାକୁ ବୁଝାଇବାକୁ ଯାଇ ଜଗନ୍ନାଥ ଦାସ କହନ୍ତି -

ଘଟକୁ ଥୋଇ ଯେହ୍ନେ ନୀରେ । ପୂରଇ ଭିତରେ ବାହାରେ ।। (ଦଶମ ସ୍କନ୍ଧ ୯୩ ଅଧ୍ୟାୟ ୨୦ ପଦ)

ଏ ଉପମା ମୂଳ ସଂସ୍କୃତରେ ଦେଖିବାକୁ ମିଳେନାହିଁ । ସେହିପରି ନାମର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ଜଗନ୍ନାଥ ଦାସ ନାମ ସୁଧାକୁ ଜଳ ସହିତ ତୁଳନା କରିଛନ୍ତି । ସିନ୍ଧୁ ଜଳରେ ହଂସ ବୁଡ଼ି ଉଠିବା ପରି ଜ୍ଞାନୀମାନେ ନାମ ସୁଧାରେ ନିମଜ୍ଜିତ ହୋଇଥାନ୍ତି (୧୦ମ ସ୍କନ୍ଧ ୨୧ ଅଧ୍ୟାୟ) । ଯେଉଁମାନେ ଆନନ୍ଦରେ ବିହ୍ୱଳ ହୋଇ ଭଗବାନଙ୍କୁ ଭଜନା କରନ୍ତି ନାହିଁ ସେମାନେ ମାତା କୋଳରେ ଥିବା ଅଜ୍ଞାନ ବାଳକ ପରି (୧୦ମ ସ୍କନ୍ଧ ୨୨ପଦ) । ଅସତ୍ୟ ସତ୍ୟ ପରି ଜଣାଯାଏ ଯେପରି କି ଦର୍ପଣରେ କୌଣସି ମୂର୍ତ୍ତିର ପ୍ରତିବିମ୍ବ । ଏହି ଉପମାକୁ ସେ ପ୍ରାୟ ବାରମ୍ବାର ବ୍ୟବହାର କରିଛନ୍ତି । ସେହି ଅଧ୍ୟାୟରେ ଏହି ଉପମାକୁ ପୁଣି ଦୁଇଥର ଦେଖିବାକୁ ମିଳେ ।

ଦର୍ପଣ ଘେନି ଯେହ୍ନେ ହସ୍ତ। ଚାହିଁଲେ ଛାୟା ହୋଏ ଜାତ।।

ପୁଣି,

ସେ କର୍ମଫଳେ ନୋହୁ ସଂଗ ।ଦର୍ପଣେ ଯେହ୍ନେ ଛାୟା ଅଂଗ ।।

ଭଗବାନ ମାୟାକୁ ସୃଷ୍ଟି କରି ମାୟା ଦ୍ୱାରା ଆବଦ୍ଧ ହୁଅନ୍ତି ନାହିଁ ଯେପରିକି ଆକାଶରେ ଆଦିତ୍ୟ । ସେ ଜଗତର ସାକ୍ଷୀ ରୂପରେ ବିରାଜମାନ, ଯେପରିକି ମନ୍ଦିରର ପ୍ରଦୀପ । ଯେଉଁମାନେ ଭଗବାନଙ୍କ ପାଖରେ ସବୁ ସୁଖକୁ ସମର୍ପଣ କରିଦିଅନ୍ତି ସେମାନଙ୍କ ନିକଟରେ ମାୟା ତୁଚ୍ଛ ରୂପେ ପ୍ରତୀୟମାନ ହୁଏ । ଏହା ଯେପରି ପର୍ବତ ଶିଖରସ୍ଥିତ ଭୂମି । ମାୟା ବାଦରେ ଶାମୁକା ମୁକ୍ତାର ଭ୍ରମ ଜନ୍ମାଇଥାଏ, ପୁଣି ତାହା ରୂପା ପରି ଜଣାଯାଏ, ଅଥଚ ଯାହା ସତ୍ୟ ତାହା ମାୟା ଦ୍ୱାରା ଆବୃତ ହୁଏନାହିଁ । ଏ ସବୁ ଉପମା ପାଇଁ ଜଗନ୍ନାଥ ଦାସ ମୁକ୍ତାସିତା ଓ ରଜତର ତୁଳନା କରିଛନ୍ତି । ଏ ସବୁ ସଂସ୍କୃତ ଭାଗବତରେ ନାହିଁ । ନ୍ୟାୟ ଶାସ୍ତ୍ରରୁ ଏ ସବୁ ଉଦାହରଣକୁ ଗ୍ରହଣ କରି ଜଗନ୍ନାଥ ଦାସ ନିଜର ବକ୍ତବ୍ୟକୁ ସ୍ପଷ୍ଟ କରିଛନ୍ତି । ଆଉ ଗୋଟିଏ ଉଦାହରଣ ଗ୍ରହଣ କରାଯାଇ ପାରେ । ଭଗବାନଙ୍କ ବଚନ ହେଉଛି ପୁଷ୍ପ ପରି । ଯେପରି ପୁଷ୍ପରେ ସବୁ ଗନ୍ଧ ଥାଏ ଏବଂ ଭ୍ରମର ସେସବୁ ଗନ୍ଧକୁ ପରିତ୍ୟାଗ କରି କେବଳ ମକରନ୍ଦର ସନ୍ଧାନ କରେ ସେହିପରି ବେଦ ବଚନ ଶୁଣିଥିବା ବ୍ୟକ୍ତି ସମସ୍ତେ ବେଦ ବଚନକୁ ପ୍ରଶଂସା କରୁଥିଲେ ହେଁ ଏଥିରୁ ପୁଷ୍ପ ମଧୁକୁ କେହି ଗ୍ରହଣ କରିପାରନ୍ତି ନାହିଁ । ଅନ୍ଧକୁ ଅନ୍ଧ ବାଟ ଦେଖାଇଲା ପରି ବେଦ ସମସ୍ତ ପ୍ରାଣୀଙ୍କୁ କର୍ମଦୀକ୍ଷା ଦେଉଥିଲେ ହେଁ ବେଦର ପ୍ରକୃତ ରହସ୍ୟ ସମସ୍ତଙ୍କ ନିକଟରେ ଅବୋଧ ରହିଯାଏ । ଏ ସବୁ ଜଗନ୍ନାଥ ଦାସଙ୍କର ନିଜସ୍ୱ କଳ୍ପନା ।

ଜଗନ୍ନାଥ ଦାସଙ୍କ ଭାଗବତର ଅନୁବାଦର ପରୀକ୍ଷା କଲାବେଳେ ବାରମ୍ବାର ପୁନରୁକ୍ତି ଦୋଷ ଦେଖିବାକୁ ମିଳେ । ଯେପରିକି,

ନିଦ୍ରାର ବଳେ ମନ ହରି । ସ୍ୱପନେ କହିଲେ ମୁରାରି ।।

ପୁଣି

ବ୍ରହ୍ମାଙ୍କୁ ଦିଶିଲା ସ୍ୱପନ । କହନ୍ତି ପ୍ରଭୁ ଭଗବାନ ।।

ଦ୍ୱିତୀୟ ପଦ, ପ୍ରଥମ ପଦର ପୁନରୁକ୍ତି । ସେହିପରି,

ସ୍ୱପନ ଚେତି ବେଦବର । କହିଲେ ଦେବଙ୍କ ଆଗର ।।
ଶୁଣି ସାନନ୍ଦ ଦେବଗଣ । ନମନ୍ତି ଧାତାର ଚରଣ ।।

ଦେବତାମାନେ ଶୁଣି ସାନନ୍ଦ ହୋଇ ଧାତାଙ୍କ ଚରଣରେ ବନ୍ଦନା କଲା ପରେ ପୁଣି ଥରେ ବିଷ୍ଣୁଙ୍କ ବାକ୍ୟ ଶୁଣିବା ପାଇଁ ବ୍ରହ୍ମାଙ୍କୁ ପଚାରନ୍ତି । ବ୍ରହ୍ମା ପୁଣିଥରେ ତାଙ୍କୁ କହିବାକୁ ଆରମ୍ଭ କରନ୍ତି । କେବଳ ଗୋଟିଏ କଥାକୁ ସମ୍ପର୍କହୀନ ଭାବରେ ବାରମ୍ବାର କହିବାର ଏହା ଆଉ ଗୋଟିଏ ଉଦାହରଣ । ସେହିପରି କଂସ ପ୍ରତି ନାରଦଙ୍କ ଉକ୍ତିରେ ଗୋଟିଏ କଥାକୁ ଦୁଇଥର କୁହାଯାଇଛି ।

ଶୁଣ ଅସୁର ଚୂଡ଼ାମଣି । ତୋର ମରଣ ମୁହିଁ ଶୁଣି ।।

ଗୋଟିଏ ପଦ ପରେ ପୁଣି କୁହାଯାଇଛି -

ଶୁଣ ଦାନବ ଶିରୋମଣି । ତୋର ମରଣ ତଥ୍ୟ ଜାଣି ।।

ଜଗନ୍ନାଥ ଦାସଙ୍କ ଭାଗବତରେ ଏ ପ୍ରକାର ପୁନରୁକ୍ତି ଦୋଷ ବାରମ୍ବାର ଦେଖିବାକୁ ମିଳେ । ସେହି ଅଧ୍ୟାୟରୁ ଆଉ ଗୋଟିଏ ଉଦାହରଣ ଦିଆଯାଇପାରେ -

ଗୋବିନ୍ଦ କଥା ପରଶନ । ହେଳେ ତାରଇ ତିନିଜଣ ।।
ଶ୍ରୋତା ବକତା ଯେ ପଚାରି । ଏ ତିନି ଜଣ ଯାନ୍ତି ତରି ।।

ଏଠାରେ 'ହେଳେ ତାରଇ ତିନିଜଣ' ପୁଣିଥରେ 'ଏ ତିନିଜଣ ଯାନ୍ତି ତରି'ରେ ପ୍ରକାଶ ପାଇଛି । ଏ ସବୁ ପୁନରୁକ୍ତି ପରି ଏପରି କେତେକ ପ୍ରସଙ୍ଗ ଅଛି ଯାହାକୁ ଜଗନ୍ନାଥ ଦାସ ବାରମ୍ବାର କହିବାକୁ ଭଲ ପାଇଛନ୍ତି । ଉଦାହରଣ ପାଇଁ ଦଶମ ସ୍କନ୍ଧର ପ୍ରଥମ ଅଧ୍ୟାୟର ୨୩ପଦର ପ୍ରଥମାଂଶ ଓ ତ୍ରିଂଶ ଅଧ୍ୟାୟର ପ୍ରଥମ ପଦକୁ ତୁଳନା କରାଯାଇପାରେ -

ଷୋଳ ସହସ୍ର ଗୋପନାରୀ । ରମିବି ବୃନ୍ଦାବନେ ହେରି ।।
ଅନେକ ନାଶିବି ଅସୁର । ଖଣ୍ଡିବି ଅବନୀର ଭାର ।।
ଭକତ ଜନଙ୍କୁ ତାରିବି । ପୁଣି ସ୍ୱଧାମେ ବାହୁଡ଼ିବି ।।

ଏହି କଥାକୁ ସେ ପୁଣି ତ୍ରିଂଶ ଅଧ୍ୟାୟରେ କହୁଛନ୍ତି -

ଗୋବିନ୍ଦ ବିଚାରନ୍ତି ମନେ । ଆଜ ରମିବା ବୃନ୍ଦାବନେ ।।
ଷୋଳ ସହସ୍ର ଗୋପନାରୀ । ମୋତେ ବରିଲେ ତପକରି ।।
ମୁଁ ତାଙ୍କ ପୂରାଇବି ଆଶ । ସେ ମୋର ଭକତ ବିଶ୍ୱାସ ।।
xx xx xx
ରମିଣ ଦେବି ନିଜ ପୁର । ଆଜି ମୁଁ କରିବି ନିସ୍ତାର ।।

ଏହିପରି କୃଷ୍ଣଙ୍କୁ ସ୍ମରଣ କରିବା କଥା ମୂଳ ଭାଗବତରେ ନ ଥିଲେ ହେଁ ଜଗନ୍ନାଥ ଦାସ ତାଙ୍କ ଭାଗବତରେ ବାରମ୍ବାର ଉଲ୍ଲେଖ କରିଛନ୍ତି ।

ଜଗନ୍ନାଥ ଦାସ ଅନୁବାଦ କଲାବେଳେ ସାଧାରଣତଃ ସଂସ୍କୃତର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାକୁ ପ୍ରାୟ ପରିତ୍ୟାଗ କରିଛନ୍ତି । ମୂଳ ଭାଗବତରେ ଦଶମ ସ୍କନ୍ଧର ପ୍ରଥମ ଅଧ୍ୟାୟ ତେତିଶ ପଦରେ ଯେଉଁଠି ଶଙ୍ଖ, ତୂରୀ, ମୃଦଙ୍ଗ ଓ ଦୁନ୍ଦୁଭି ବାଜିବାର କଥା

କୁହାଯାଇଛି ସେଠି ଜଗନ୍ନାଥ ଦାସ କେବଳ 'ବାଜଇ ବୀର ତୂରନାଦ' କହି ଅନ୍ୟ ବାଦ୍ୟ ଗୁଡ଼ିକୁ ପରିତ୍ୟାଗ କରିଛନ୍ତି । ସେହିପରି ସେହି ଅଧ୍ୟାୟର ଶତଷଠୀ ପଦରେ ଯେଉଁଠି ଉଗ୍ରସେନକୁ ଯଦୁ, ଭୋଜ, ଅନ୍ଧକ ବଂଶର ନରପତି ରୂପେ ବର୍ଣ୍ଣନା କରାଯାଇଛି ସେ ସ୍ଥଳରେ ଜଗନ୍ନାଥ ଦାସ କେବଳ ଯାଦବକୁଳ କଥା କହୁଛନ୍ତି । ଦଶମ ସ୍କନ୍ଧର ଅଠର ପଦକୁ ଅନୁବାଦ କଲାବେଳେ ସଂସ୍କୃତ ଭାଗବତକାର ଚତୁର୍ବିଧ ବ୍ୟଞ୍ଜନର ବର୍ଣ୍ଣନା କଲାବେଳେ ଜଗନ୍ନାଥ ଦାସ ତାକୁ 'ଅନ୍ନ ବ୍ୟଞ୍ଜନ ଷଡ଼ରସ'ରେ ପରିଣତ କରିଛନ୍ତି । ଚତୁର୍ବିଂଶ ଅଧ୍ୟାୟର ୩୧ ପଦ ଅନୁବାଦ କଲାବେଳେ ଯେଉଁଠି ସଂସ୍କୃତ ଭାଗବତକାର ପିତା, ଭ୍ରାତା, ସ୍ୱାମୀ ଓ ସୁତ ଗୋପୀମାନଙ୍କୁ ଅନୁସରଣ କରିବା କଥା କହିଛନ୍ତି, ସେଠାରେ ଓଡ଼ିଆ ଭାଗବତକାର କେବଳ ସ୍ୱାମୀର ଉଲ୍ଲେଖ କରିଛନ୍ତି :

ତୁମ୍ଭକୁ ଦେଖି ସ୍ୱାମୀଗଣେ । ଖଟିବେ ତୁମ୍ଭର ଚରଣେ ।

ସେହିପରି ଦଶମସ୍କନ୍ଧର ସତାବନ ପଦ ଅନୁବାଦ କଲାବେଳେ ସଂସ୍କୃତ ଭାଗବତରେ ଦେବକୀର ପ୍ରଥମ ସନ୍ତାନର ନାମ କୀର୍ତ୍ତିମାନ କୁହାଯାଇଛି । ଜଗନ୍ନାଥ ଦାସ ଏହି ନାମକୁ ପରିତ୍ୟାଗ କରି ଏହାର ଅନୁବାଦ କରିଛନ୍ତି -

ପ୍ରଥମେ ହୋଇଲା ତନୟେ । ରୂପେ ଶୋଭିତ କାମ ପ୍ରାୟେ ॥

ଓଡ଼ିଆ ଭାଗବତରେ ଅଣସ୍ତରି ପଦରେ -

ଅନେକ ବାର ମୋତେ ମାରି । ମୋକ୍ଷ ନ ଦେଲେ ନରହରି ॥

ବର୍ଣ୍ଣନା କଲାବେଳେ ଲେଖକ କଂସର ପୂର୍ବଜନ୍ମ କାଳନେମୀର ଉଲ୍ଲେଖ କରିନାହାନ୍ତି । ଜଗନ୍ନାଥ ଦାସ ସଂସ୍କୃତର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାକୁ ସହଜ କରିବା ପାଇଁ କେତେ ଆବଶ୍ୟକୀୟ ବର୍ଣ୍ଣନାକୁ ଯେ ପରିତ୍ୟାଗ କରୁଥିଲେ ତାହା ନୁହେଁ, ସଂସ୍କୃତ ଭାଗବତରେ ଯେଉଁଠି ଦର୍ଶନ, ବ୍ରହ୍ମତତ୍ତ୍ୱ ପ୍ରଭୃତିର ବର୍ଣ୍ଣନା ଅଛି, ଜଗନ୍ନାଥ ଦାସ ସେ ସବୁକୁ ମଧ୍ୟ ପ୍ରାୟ ପରିତ୍ୟାଗ କରିବାକୁ ଚାହିଁଛନ୍ତି । ଦଶମ ସ୍କନ୍ଧର ପ୍ରଥମ ଅଧ୍ୟାୟରୁ ଏହାର ଉଦାହାରଣ ରୂପେ ୪୩ ପଦର ଅନୁବାଦକୁ ଗ୍ରହଣ କରାଯାଇପାରେ । ମୂଳ ଭାଗବତର ୪୩ ପଦର ଅର୍ଥ ହେଉଛି ଯେପରି ସୂର୍ଯ୍ୟ, ଚନ୍ଦ୍ର ଆଦି ଉଜ୍ଜ୍ୱଳ ବସ୍ତୁ ଜଳପୂର୍ଣ୍ଣ ଘଟରେ ପ୍ରତିବିମ୍ବିତ ହୁଅନ୍ତି ଏବଂ ବାତ୍ୟା ଆନ୍ଦୋଳିତ ଜଳରେ ସେମାନେ ମଧ୍ୟ ଚଞ୍ଚଳ ହୋଇଯାନ୍ତି, ସେହିପରି ଜୀବ ଅଜ୍ଞାନ ଦ୍ୱାରା ନିର୍ମିତ ଶରୀରକୁ ସ୍ନେହ କରି ତାକୁ ନିଜର ବୋଲି ଗ୍ରହଣ କରେ ଏବଂ ମୋହବଶରେ ତାର ଯିବା ଆସିବାକୁ ନିଜର ଯିବା ଆସିବା ବୋଲି ଭାବେ । ଏହାର ଅନୁବାଦ କଲାବେଳେ ଜଗନ୍ନାଥ ଦାସ ଜ୍ୟୋତି ଅର୍ଥାତ୍ ଚନ୍ଦ୍ର, ସୂର୍ଯ୍ୟକୁ ଆକାଶ ରୂପେ ଅନୁବାଦ କରିଛନ୍ତି, ଏବଂ ମୂଳ ଗ୍ରନ୍ଥର ଭାବ ଏଥିରେ ଦେଖିବାକୁ ମିଳେନାହିଁ । କାରଣ 'ସମୀର ବେଗାନୁଗର୍ତ୍ତ'ର ଅନୁବାଦ ଜଗନ୍ନାଥ ଦାସଙ୍କ ଭାଗବତରେ ନାହିଁ । ସେ କୁହନ୍ତି -

ଏକଇ ପୁରୁଷ ମୁରାରି । ସକଳ ଘଟେ ଛନ୍ତି ପୂରି ॥
ଶତେକ ଜଳ ଘଟ ଥୋଇ । ଚାହିଁଲେ ଆକାଶ ଦିଶଇ ॥
ପୁଣ ତା କଲେ ଏକ ଗୋଟି । ତହିଁ ଚାହିଁଲେ ଥାଇ ଘୋଟି ॥
ଆକାଶ ନୁହଇ ନା ଭିନ୍ନ । ବିନାଶ ହୋଏ ଘଟ ମାନ ॥
ଏମନ୍ତ ଆତ୍ମାର ବିବେକ । ଏହା ଜାଣନ୍ତି ଜ୍ଞାନୀ ଲୋକ॥

ଆତ୍ମାର ସ୍ୱରୂପ ବର୍ଣ୍ଣନା କରିବା ପାଇ ଜଗନ୍ନାଥ ଦାସ ଜଳଘଟ ଓ ଏଥିରେ ପ୍ରତିବିମ୍ବିତ ହେଉଥିବା ଆକାଶର କଥା କହିଥିଲେ ହେଁ ମୂଳ ସଂସ୍କୃତ ଗ୍ରନ୍ଥର ଭାବରାଜି ଏଥିରେ ରକ୍ଷିତ ହୋଇନାହିଁ । ସେହିପରି ମୂଳ ସଂସ୍କୃତ ଭାଗବତରେ ୪୪ ପଦରେ କୁହାଯାଇଛି, ଯେ ନିଜର କଲ୍ୟାଣ ଚାହେଁ ତାକୁ କାହାରି ପ୍ରତି ଦ୍ରୋହ କରିବା ଅନୁଚିତ । ଜୀବ କର୍ମର ଅଧୀନ । ଯେ ଅନ୍ୟକୁ ଦ୍ରୋହ କରିବ ସେ ଇହଲୋକରେ ଶତ୍ରୁମାନଙ୍କ ଦ୍ୱାରା ଓ ଜୀବନ ଏବଂ ମୃତ୍ୟୁ ପରେ ପରଲୋକ ଦ୍ୱାରା ଭୟଭୀତ ହେବାକୁ ପଡ଼ିବ । ଏହାର ଅନୁବାଦ କରି ଜଗନ୍ନାଥ ଦାସ ଲେଖିଛନ୍ତି -

ତୁ ଅଟୁ ମହତ ପୁରୁଷ । କିମ୍ପା ବହେଣି କରୁ ନାଶ ।।
ଜୀବ ମାରନ୍ତି ଆତ୍ମା ସୁଖେ । ଅନ୍ତେ ସେ ପଡ଼ନ୍ତି ନରକେ ।।

ଅନ୍ୟ ପ୍ରତି ଦ୍ରୋହ ଆଚରଣ କରିବାକୁ ସେ ଜୀବ ମାରିବାରେ ପରିଣତ କରିଛନ୍ତି ।

ଏକାଦଶ ସ୍କନ୍ଧ ଅନୁବାଦ କଲାବେଳେ ଏ ପ୍ରକାର ବିଚ୍ୟୁତି ବାରମ୍ବାର ଦେଖିବାକୁ ମିଳିଥାଏ । ଚତୁର୍ଥ ଅଧ୍ୟାୟର ୧୩ରୁ ୧୫ପଦରେ ମୂଳ ଭାଗବତର ସାରକଥା ହେଉଛି ଯେତେବେଳେ ବାୟୁ ପୃଥ୍ୱୀର ଗନ୍ଧକୁ ଆକର୍ଷଣ କରିନିଏ ସେତେବେଳେ ସେ ଜଳ ହୋଇଯାଏ ଓ ଯେତେବେଳେ ବାୟୁ ଜଳର ରସକୁ ଆକର୍ଷଣ କରେ ସେତେବେଳେ ଜଳ ଅଗ୍ନିରେ ପରିଣତ ହୁଏ । ଏହା ହେଉଛି ଭଗବାନଙ୍କ ମାୟା । ଯେତେବେଳେ ଅନ୍ଧକାର ଅଗ୍ନିର ରୂପକୁ ଆକର୍ଷଣ କରିନିଏ ସେତେବେଳେ ଅଗ୍ନି ବାୟୁରେ ଲୀନ ହୋଇଯାଏ ଏବଂ ଯେତେବେଳେ ଆକାଶ ବାୟୁର ସ୍ପର୍ଶ ଶକ୍ତିକୁ ଆକର୍ଷଣ କରିନିଏ ସେତେବେଳେ ସେ ଆକାଶରେ ଲୀନ ହୋଇଯାଏ । ଏହା ମଧ୍ୟ ଭଗବାନଙ୍କର ମାୟା । ହେ ରାଜନ ! ତାହାପରେ କାଳରୂପୀ ଈଶ୍ୱର ଆକାଶର ଶବ୍ଦ ଗୁଣକୁ ହରଣ କରିନିଏ ଯାହାଦ୍ୱାରା ଏହା ତାମସ ଅହଂକାରରେ ଲୀନ ହୋଇଯାଏ । ଇନ୍ଦ୍ରିୟ ଓ ବୁଦ୍ଧି ରାଜସ ଅହଂକାରରେ ଲୀନ ହୁଏ । ମନ ସାତ୍ତ୍ୱିକ ଅହଂକାରରୁ ଉତ୍ପନ୍ନ ଦେବତା ମାନଙ୍କ ସହ ସାତ୍ତ୍ୱିକ ଅହଂକାରରେ ପ୍ରବେଶ କରେ । ଏବଂ ନିଜର ତିନି ପ୍ରକାର କାର୍ଯ୍ୟ ସହିତ ଅହଂକାର ମହତତ୍ତ୍ୱରେ ଲୀନ ହୋଇଯାଏ । ମହତତ୍ତ୍ୱ ପ୍ରକୃତିରେ ଓ ପ୍ରକୃତି ବ୍ରହ୍ମରେ ଲୀନ ହୁଏ । ପୁଣି ଏହାର ବିପରୀତ କ୍ରମରେ ସୃଷ୍ଟି ସମ୍ଭବ ହୁଏ । ଏହା ଭଗବାନଙ୍କ ମାୟା । ଏସବୁ ଜଗନ୍ନାଥ ଦାସ ଯେଉଁ ଭାବରେ ଅନୁବାଦ କରିଛନ୍ତି ସେଥିରୁ ମୂଳ ଭାଗବତର ତତ୍ତ୍ୱରାଜି ଆଦୌ ସ୍ପଷ୍ଟ ହୁଏନାହିଁ । ତୁଳନା ପାଇଁ ଜଗନ୍ନାଥ ଦାସଙ୍କ ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା -

ଭୂତ ବିକାର ପଞ୍ଚଗୁଣ । ତ୍ରିଗୁଣ ଅହଂକାର ପୁଣ ।।
ମହତ ଅଙ୍ଗେ ବିଶ୍ରାମଇ । ପ୍ରଳୟ ନ ପାରଇ ସହି ।।
ସେ ପୁଣି ମାୟା ଅବସାନେ। ପ୍ରକୃତି ତହିଁ ହୋଏ ଲୀନେ ।।
ପ୍ରକୃତି ପ୍ରଳୟର ତ୍ରାସେ । ମିଳେ ପରମ ଆତ୍ମା ପାଶେ ।।

ଜଗନ୍ନାଥ ଦାସ ୧୩ ରୁ ୧୫ ପଦ ମଧ୍ୟରେ ଥିବା ସମସ୍ତ ବିଷୟବସ୍ତୁକୁ ଏକ ବୋଲି ଗ୍ରହଣ କରି ବର୍ଣ୍ଣନାର କ୍ରମ ଅନୁସାରେ ଏହାକୁ ଅନୁବାଦ ନ କରି ଏହି ପଦର ଯେଉଁ ସାରମର୍ମ ବର୍ଣ୍ଣନା କରିଛନ୍ତି ତାହା ଅସ୍ପଷ୍ଟ ହୋଇଯାଇଛି । ଦର୍ଶନ ତତ୍ତ୍ୱର ବର୍ଣ୍ଣନାରେ ଜଗନ୍ନାଥ ଦାସ ପ୍ରାୟ ସବୁବେଳେ ଏହି ପଦ୍ଧତି ଗ୍ରହଣ କରିଛନ୍ତି । ତତ୍ତ୍ୱର ଗଭୀରତା ମଧ୍ୟରେ ପ୍ରବେଶ ନ କରି ବା ମୂଳ ଭଗବତରେ ଥିବା ଭାବରାଜିକୁ ପ୍ରାଞ୍ଜଳଭାବରେ ନ ନେଇ ସେ ଏକ କାମଚଳା ଅନୁବାଦ କରିଛନ୍ତି । ବୋଧହୁଏ ଓଡ଼ିଆ ପାଠକମାନଙ୍କର ଗହନ ତତ୍ତ୍ୱରାଜିରେ ପ୍ରବେଶ କରିବାର ଅକ୍ଷମତା ବିଷୟରେ ସେ ବିଶେଷ ସଚେତନ ଥିଲେ । ତତ୍ତ୍ୱରାଜି ବର୍ଣ୍ଣନା କଲେ ତାଙ୍କ ଗ୍ରନ୍ଥ କାଳେ ଲୋକପ୍ରିୟ ହୋଇ ନ ପାରିବ ସେଥିପାଇଁ ବୋଧହୁଏ ସେ ସବୁବେଳେ ତତ୍ତ୍ୱର ବର୍ଣ୍ଣନାକୁ ପରିତ୍ୟାଗ କରିବାକୁ ଇଚ୍ଛା କରିଛନ୍ତି । ଏହି ପ୍ରସଙ୍ଗରେ ଦଶମ ସ୍କନ୍ଧର ଚତୁର୍ଦ୍ଦଶ ଅଧ୍ୟାୟସ୍ଥିତ ଚତୁର୍ଥ ଶ୍ଳୋକକୁ ଗ୍ରହଣ କରାଯାଇପାରେ । ଦିବାକର ଦାସଙ୍କ ବିବରଣୀ ଅନୁଯାୟୀ ଶ୍ରୀ ଚୈତନ୍ୟ ଓ ଜଗନ୍ନାଥ ଦାସଙ୍କ ସାକ୍ଷାତ କାଳରେ ଜଗନ୍ନାଥ ଦାସ ଏହି ଶ୍ଳୋକର ଅନୁବାଦ କରୁଥିଲେ, ଏବଂ ଏହି ଶ୍ଳୋକର ଚମତ୍କାର ବ୍ୟାଖ୍ୟା ଶୁଣି ଶ୍ରୀ ଚୈତନ୍ୟ ଭାବ ଗଦ୍ ଗଦ୍ ଚିତ୍ତରେ ଜଗନ୍ନାଥ ଦାସଙ୍କୁ ଆଲିଙ୍ଗନ କଲେ । ମୂଳ ସଂସ୍କୃତ ଶ୍ଳୋକର ଅନୁବାଦ ହେଉଛି, "ହେ ଭଗବାନ ! ଆପଣଙ୍କ ଭକ୍ତି ସବୁ ପ୍ରକାରେ କଲ୍ୟାଣର ମୂଳସ୍ରୋତ ବା ଉଦ୍‌ଗମ । ଯେଉଁମାନେ ଏହାକୁ ପରିତ୍ୟାଗ କରି କେବଳ ଜ୍ଞାନ ପାଇବା ପାଇଁ ଶ୍ରମ କରନ୍ତି ସେମାନେ କେବଳ କ୍ଳେଶ ହିଁ ପାଇଥାନ୍ତି । ଯେପରି କି ତଣ୍ଡୁଳ ଆଶାରେ ତଷ୍ଣ କୁଟିଲେ କେବଳ କଷ୍ଟ ହିଁ ମିଳିଥାଏ ।" ଏହାର ଅନୁବାଦ କରି ଜଗନ୍ନାଥ ଦାସ ଲେଖୁଛନ୍ତି -

ତୋର ଚରଣେ ଭାବ ଛାଡ଼ି ଯେ ଯାନ୍ତି ଗୋପ ପଥ ମାଡ଼ି।।

ମନ ବଚନ ହୃଦେ ଛନ୍ଦି । ତପେ ଇନ୍ଦ୍ରିୟ ବଳ ଶୁଦ୍ଧି ॥
ଯେତେ କରନ୍ତି ଦେହେ ଶ୍ରମ ।ତୋର ମାୟାରେ ହୋନ୍ତି ଭ୍ରମ ॥
ତଣ୍ଡୁଳ ଆଶେ ତଷୁ କୁଟି । ଝଡ଼ି ଯେସନେ ପ୍ରାଣୀ ଫୁଟି ॥
ନିରାଶ ହୋନ୍ତି ବେନି ପଥ। ପଶୁ ଯୋନିରେ ହୋନ୍ତି ଜାତ॥
ତୋତେ ନ ପାଇ ନରହରି। ଭ୍ରମନ୍ତି ତୋ ମାୟା ଆବୋରି॥

ଏହି ଅନୁବାଦରେ ଜଗନ୍ନାଥ ଦାସ 'କେବଳ ବୋଧ ଲବ୍ଧୟେ'କୁ 'ଯୋଗପଥ'ରେ ଅନୁବାଦ କରିଛନ୍ତି ଏବଂ ଯୋଗର ବ୍ୟାଖ୍ୟା ଦେଇଛନ୍ତି । ପୁଣି 'ପଶୁ ଯୋନିରେ ହୋନ୍ତି ଜାତ', 'ତୋର ମାୟାରେ ହୋନ୍ତି ଭ୍ରମ' ଏବଂ 'ଭ୍ରମନ୍ତି ତୋ ମାୟା ଆବୋରି' ପ୍ରଭୃତି ପଂକ୍ତି ଜଗନ୍ନାଥ ଦାସଙ୍କ ସ୍ୱ ସଂଯୋଜନା । କେବଳ ବ୍ୟାଖ୍ୟା ମୂଳକ ପ୍ରବୃତ୍ତିରୁ ମୂଳ ଭାଗବତର ଭାବ ସହିତ ଏ ସବୁ ସଂଯୋଜିତ ହୋଇଛି ।

ଜଗନ୍ନାଥ ଦାସଙ୍କ ଅନୁବାଦକୁ କେହି କେହି ଦୀନବନ୍ଧୁ ଖାଡ଼ଙ୍ଗାଙ୍କ ଅନୁବାଦ ସହ ତୁଳନା କରି ଜଗନ୍ନାଥ ଦାସଙ୍କ ଅନୁବାଦର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ସେମାନଙ୍କ ମତରେ ଖାଡ଼ଙ୍ଗାଙ୍କ ଅନୁବାଦ ସଂସ୍କୃତର ଆକ୍ଷରିକ ଅନୁବାଦ ହୋଇଥିବାରୁ ଅସ୍ପଷ୍ଟ । ନିମ୍ନରେ ଜଗନ୍ନାଥ ଦାସଙ୍କ ଭାଗବତ ଓ ଖାଡ଼ଙ୍ଗା ଭାଗବତର କିଛି ଅଂଶ ତୁଳନାତ୍ମକ ଭାବେ ବିଚାର କରାଯାଇଛି । ଉଦାହରଣ ପାଇଁ ଏକାଦଶ ସ୍କନ୍ଧର ଦ୍ୱିତୀୟ ଅଧ୍ୟାର ୩୯ ପଦକୁ ତୁଳନା ପାଇଁ ଗ୍ରହଣ କରାଯାଇଛି । ସଂସ୍କୃତରେ ଏହି ପଦର ଅର୍ଥ ହେଉଛି, ସଂସାରରେ ଭଗବାନଙ୍କ ଜନ୍ମ ଓ କର୍ମର ବହୁ କଥା ପ୍ରଚଳିତ । ସେ ସବୁକୁ ଶ୍ରବଣ କରିବା ଉଚିତ । ସେହି ଗୁଣ ଓ ଲୀଳାକୁ ସ୍ମରଣ କରିବା ପାଇଁ ଭଗବାନଙ୍କର ବହୁ ନାମ ପ୍ରସିଦ୍ଧ । ଲଜ୍ୟା ତ୍ୟାଗ କରି ସେ ସବୁକୁ ଗାନ କରିବା ଉଚିତ୍ । ଏହିପରି କୌଣସି ବସ୍ତୁ ବା ବ୍ୟକ୍ତି ପ୍ରତି ଆସକ୍ତି ନ ରଖି ବିଚରଣ କରିବା ଆବଶ୍ୟକ । ଜଗନ୍ନାଥ ଦାସ ଏହାର ଅନୁବାଦ କରି ଲେଖିଛନ୍ତି -

ଦୁର୍ଗମ ପଥ ଏ ଭଜନ । ଭୟେ ଭାଜିଲେ ଯୋଗୀଜନ॥
ଏବେ କହିବା ଶୁଣ ରାୟେ। ସୁଗମ ଭଜନ ଉପାୟେ ॥
କୃଷ୍ଣର ଜନ୍ମ କର୍ମ ଯେତେ । ନାନା ଚରିତ ଏ ଜଗତେ ॥
ଶ୍ରବଣ ସ୍ମରଣ କୀର୍ତ୍ତନ । ତାରଇ ଅଶେଷ ଭୁବନ ॥
ସେ ନାମ ଭାବେ ଚିତ୍ତ ଜଡ଼ି । ହୃଦରୁ ଲାଜ ଭୟ ଏଡ଼ି ॥
କାମାଦି ସଙ୍ଗ ଦୂର କରି । ଏ ଘୋର ସାଗର ବିହରି ॥

ଏହି ପଦର ଅନୁବାଦ କରି ଖାଡ଼ଙ୍ଗା ଲେଖିଛନ୍ତି -

ସେ ଚକ୍ରପାଣି ଭଗବାନ । ତା ଶୁଭ ଜନ୍ମ କର୍ମମାନ ॥
ଶ୍ରବଣ କରି ଏ ସଂସାରେ । ସେ କୃଷ୍ଣ ଜନ୍ମ କର୍ମ କରେ ॥
ଯେ ସିଦ୍ଧ ନାମ ମାନେ ଛନ୍ତି । ଗାୟନ କରନ୍ତେ ତା ନିତି ॥
ଲଜ୍ୟାକୁ ଛାଡ଼ିକରି ପୁଣ । ଭ୍ରମନ୍ତି ନିସ୍ପୃହ ହୋଇଣ ॥

ଜଗନ୍ନାଥ ଦାସଙ୍କ ଅନୁବାଦରେ ପ୍ରଥମ ଓ ଦ୍ୱିତୀୟ ପଦର ୨ୟ ପାଦ ସଂସ୍କୃତରେ ନାହିଁ । ପୁଣି ଶ୍ରବଣ ସ୍ଥାନରେ ସେ ସ୍ମରଣ ଓ କୀର୍ତ୍ତନକୁ ଏକତ୍ର କରି କହିଛନ୍ତି । ଲଜ୍ୟା ସହ ଭୟ ଯୋଗ କରିଛନ୍ତି, ଯାହାକି ନାମ କୀର୍ତ୍ତନ ହେବା କଥା । ଖାଡ଼ଙ୍ଗାଙ୍କ ଅନୁବାଦରେ ସଂସ୍କୃତର କ୍ରମ ରକ୍ଷିତ ହୋଇଥିଲେ ମଧ୍ୟ 'ତା ଶୁଭ ଜନ୍ମ କର୍ମ ମାନ' ପଂକ୍ତିକୁ ସେ ପୁଣି ଥରେ 'ସେ କୃଷ୍ଣ ଜନ୍ମ କରେ' ରେ ପୁନରାବୃତ୍ତି କରିଛନ୍ତି ।

ତୁଳନାରୁ ଜଣାଯାଏ ଖାଡ଼ଙ୍ଗା ମହାଶୟ ମୂଳ ଭାବରାଜିରେ କୌଣସି ଟୀକା ଟିପ୍ପଣୀ ଯୋଗ କରିନାହାନ୍ତି । ଭାବକୁ

ସ୍ପଷ୍ଟ କରିବା ପାଇଁ ତାଙ୍କର କୌଣସି ମୁଖବନ୍ଧର ଆବଶ୍ୟକତା ହୋଇନାହିଁ । କେବଳ ଗୋଟିଏ ପାଦର ପୁନରାବୃତ୍ତି ବ୍ୟତୀତ ସେ ସଂସ୍କୃତର ମୂଳ ଭାବରାଜିକୁ ଅକ୍ଷୁର୍ଣ୍ଣ ରଖିଛନ୍ତି । ତେଣୁ ଜଗନ୍ନାଥ ଦାସଙ୍କ ଅନୁବାଦ ଯେ ବ୍ୟାଖ୍ୟାମୂଳକ ଏହାହିଁ ପ୍ରତିପାଦିତ ହୋଇଥାଏ । ଅନୁବାଦ ଦୃଷ୍ଟିରୁ ଏହା ଖାଡ଼ଙ୍ଗା ପରି ବିଶ୍ୱସ୍ତ ନ ହେଲେ ବି ଏଥିରେ ଥିବା ମୁଖବନ୍ଧ ଓ ଅନ୍ୟାନ୍ୟ ସୂଚନା ଏଥିରେ ନିହିତ ଭାବରାଜିକୁ ସହଜ କରିଦିଏ ।

ଜଗନ୍ନାଥ ଦାସଙ୍କ ହୃଦୟଗ୍ରାହୀ ଅନୁବାଦର ଉଦାହରଣ ରୂପେ ଶ୍ରୀମତୀ କେତକୀ ନାୟକ ଯେଉଁ ଉଦାହରଣ ଦେଇଛନ୍ତି, ତାକୁ ତୁଳନାତ୍ମକ ଭାବେ ବିଚାର କଲେ, ଜଗନ୍ନାଥ ଦାସଙ୍କ ସ୍ୱରୂପ ଆହୁରି ସ୍ପଷ୍ଟ ହେବ ବୋଲି ଆଶା । ଜଗନ୍ନାଥ ଦାସଙ୍କ ଅନୁବାଦ -

ହେ ମହାପୁରୁଷ ମୁକୁନ୍ଦ । ବନ୍ଦେ ତୋ ଚରଣାର-ବିନ୍ଦ ।।
ମୁନି କରନ୍ତି ଯା'ର ଧ୍ୟାନ । ହରଇ ପରାଭବମାନ ।।
ଅଭୀଷ୍ଟ ଫଳ କାମଧେନୁ । ତୀର୍ଥ-ନିବାସ ଯା' ଚରଣୁ ।।
ଭବ-ବିରଞ୍ଚି ଯା'କୁ ଚିନ୍ତେ । ସ୍ତୁତି କରନ୍ତି ଅବିରତେ ।।
ଶରଣ ଜନର ରକ୍ଷଣ । ଭୃତ୍ୟ ଆରତ ନିବାରଣ ।।
ପ୍ରଣତ ଜନ ଯେ ପାଳଇ । ଏ ଭବଜଳେ ନାବ ହୋଇ ।।
ଯେ ରାଜଲକ୍ଷ୍ମୀ ଦେବଗଣେ । ଧ୍ୟାନେ ଚିନ୍ତନ୍ତି ଅନୁକ୍ଷଣେ ।।
ମନୁଷ୍ୟ ଦେହ ମର୍ତ୍ତେ ଧରି । କେ ଅବା ପାରେ ଦୂର କରି ।।
ପିତୃ ବଚନ ଶିରେ ଧରି । ଯେ ରାଜ୍ୟ ଦୂର ପରିହରି ।।
ଧର୍ମିଷ୍ଟ ଗୁଣେ ପଶି ବନେ । ଯନ୍ତ୍ରିତ ପ୍ରିୟାର ବଚନେ ।।
ଧାଇଁଲେ ମାୟା-ମୃଗ ଅର୍ଥେ । ବନ ଗହନ ଘୋର ପଥେ ।।
ସେ ପାଦେ ମୋର ନମସ୍କାର । ଧ୍ୟାନେ ଖଣ୍ଡଇ ତମ ଘୋର ।।

(ରାଧାରମଣ ପୁସ୍ତକାଳୟ ସଙ୍କଳିତ)

ଶ୍ରୀ ଦୀନବନ୍ଧୁ ଖାଡ଼ଙ୍ଗାକୃତ ଅନୁବାଦ -

ସର୍ବଦା କରି ଯାକୁ ଧ୍ୟାନ । ଯେ ପରାଭବ-ବିନାଶନ ।।
ଅଭୀଷ୍ଟ କରଇ ପ୍ରଦାନ । ସେ ସର୍ବ ତୀର୍ଥଙ୍କର ସ୍ଥାନ ।।
ଶିବ-ବିରଞ୍ଚି ସ୍ତୁତି ଭଣି । ଶରଣ ରକ୍ଷଣ ଯେ ପୁଣି ।।
ଯେ ଭୃତ୍ୟ ଆର୍ତ୍ତି କରେ ହତ । ଯେ ଭବ-ସିନ୍ଧୁକୁ ବୋଇତ ।।
ଆହେ ପ୍ରଣତ ଜନପାଳ । ସେ ମହାପୁରୁଷ କେବଳ ।।
ସେ ତୁମ ଚରଣ ନଳିନ । ନିତ୍ୟେ ମୁଁ କରୁଛି ବନ୍ଦନ ।।
ଦେବତାମାନେ ଯା' ବାଞ୍ଛନ୍ତି । ଦୁସ୍ତ୍ୟଜ ସେ ରାଜ-ସମ୍ପତ୍ତି ।।
ଛାଡ଼ି ଯେ ପିତା ବଚନରେ । ପ୍ରୟାଣ କଲେ ଅରଣ୍ୟରେ ।।
ସୀତା ଯେ କରନ୍ତେ ପ୍ରାର୍ଥିତ । ମହାମୃଗକୁ ଅନୁଗତ ।।
ଆହେ ଶ୍ରୀରାମ ଧର୍ମବନ୍ତ । ହେ ମହାପୁରୁଷ ସନ୍ତତ ।।
ସେ ତୁମ୍ଭ ଚରଣ ନଳିନ । ନିତ୍ୟେ ମୁଁ କରୁଛି ବନ୍ଦନ ।।

ଉଭୟ ଅନୁବାଦରେ ପ୍ରାୟ ସମାନ ସଂଖ୍ୟକ ଶବ୍ଦ ବ୍ୟବହୃତ । ସେଥିରୁ ହେ, ମହାପୁରୁଷ, ବନ୍ଦେ, ଚରଣ, ଯା'ର ପରାଭବ,

ଅଭୀଷ୍ଟ ତୀର୍ଥ, ଧ୍ୟାନ, ଶିବ, ବିରଞ୍ଚି, ସ୍ତୁତି, ଶରଣ, ରକ୍ଷଣ, ଭୃତ୍ୟ, ପ୍ରଣତ ଜନ, ପାଳଇ, ଭବ, ବଚନ, ମାୟାମୃଗ, ପ୍ରଭୃତି ଶବ୍ଦ ଉଭୟ ଅନୁବାଦରେ ଅଛି । ଏହା ବ୍ୟତୀତ ଆରତ ଓ ଆର୍ତ୍ତି, ରାଜଲକ୍ଷ୍ମୀ ଓ ରାଜ-ସମ୍ପତ୍ତି ପିତୃ ଓ ପିତା, ଧର୍ମିଷ୍ଠ ଓ ଧର୍ମବନ୍ତ, ପ୍ରଭୃତି ଏକ ଶବ୍ଦର ରୂପାନ୍ତର ମାତ୍ର । ସେହିପରି ଅରବିନ୍ଦ ପାଇଁ ନଳିନ, ହରଇ ପାଇଁ ବିନାଶନ, ନିବାରଣ ପାଇଁ ହତ, ନାବ ପାଇଁ ବୋଇତ, ଭବଜଳ ପାଇଁ ଭବସିନ୍ଧୁ, ଦେବଗଣ ପାଇଁ ଦେବତାମାନେ, ଚିନ୍ତନ୍ତି ପାଇଁ ବାଞ୍ଛନ୍ତି, ପରିହରି ପାଇଁ ଛାଡ଼ି, ବନ ପାଇଁ ଅରଣ୍ୟ, ନମସ୍କାର ବା ଧ୍ୟାନ ପାଇଁ ବନ୍ଦନ ଶବ୍ଦ ପ୍ରୟୋଗ କଲେ ଭାଷାର ଲାଳିତ୍ୟ ଦୃଷ୍ଟିରୁ ବିଶେଷ କିଛି ପରିବର୍ତ୍ତନ ହେଉଥିବା ମନେହୁଏ ନାହିଁ । ମୂଳ ଗ୍ରନ୍ଥରୁ ପାର୍ଥକ୍ୟ ଦୃଷ୍ଟିରୁ ଜଗନ୍ନାଥ ଦାସ 'ବନ୍ଦେ ମହାପୁରୁଷ ତେ ଚରଣାରବିନ୍ଦମ୍'କୁ ଅନୁବାଦ କଲାବେଳେ ସ୍ଥାନ ପରିବର୍ତ୍ତନ କରି ତେତିଶି ପଦର ପ୍ରାରମ୍ଭରେ ଓ ଚଉତ୍ରିଶ ପଦର ଶେଷରେ ରଖିଛନ୍ତି ଅଥଚ ଖାଡ଼ଙ୍ଗା ମହାଶୟ ସଂସ୍କୃତର କ୍ରମ ଅନୁସରଣ କରିଛନ୍ତି । ବ୍ୟାଖ୍ୟା କରିବା ଜଗନ୍ନାଥ ଦାସଙ୍କ ଅନୁବାଦର ଏକ ବିଶିଷ୍ଟ ପ୍ରକ୍ରିୟା ହୋଇଥିବାରୁ ସେ 'ଧ୍ୟାନ' ଶବ୍ଦ ସାଙ୍ଗକୁ 'ମୁନି' ଶବ୍ଦ ସଂଯୋଗ କରି, 'ସୁଦୁସ୍ତ୍ୟଜ'କୁ 'ମନୁଷ୍ୟ ଦେହ ମର୍ତ୍ତ୍ୟେ ଧରି । କେ ଅବା ପାରେ ଦୂରକରି' ପୁଣି 'ଯେ ରାଜ୍ୟ ଦୂରେ ପରହିରି'ରେ ପରିଣତ କରିଛନ୍ତି । କେବଳ 'ସୁସ୍ତ୍ୟଜ' ଶବ୍ଦ ପ୍ରୟୋଗ କରିବା ଯୋଗୁଁ ଖାଡ଼ଙ୍ଗାଙ୍କ ଅନୁବାଦ ଶ୍ରୀହୀନ ହୋଇ, 'ଅଧିକତର ପ୍ରିୟ' ନ ହୋଇ ପାରିବା ପ୍ରଭୃତି ମନ୍ତବ୍ୟ ଖାଡ଼ଙ୍ଗାଙ୍କ ଅନୁବାଦ ପ୍ରତି ଠିକ୍ ବିଚାର ନୁହେଁ ।

ଆଲୋଚନାର ନିଷ୍କର୍ଷ ହେଉଛି, ଜଗନ୍ନାଥ ଦାସ ବେଳେବେଳେ ଆକ୍ଷରିକ ଅନୁବାଦ ଏପରିକି ସଂସ୍କୃତରେ ଥିବା ମୂଳ ଶବ୍ଦ ସବୁକୁ ଅକୁଣ୍ଠ ଭାବେ ଗ୍ରହଣ କରୁଥିଲେ ହେଁ, ଭାବାନୁବାଦ କରିବା, ସ୍ୱଚ୍ଛନ୍ଦ ଭାବେ ନିଜ ଭାବ-ରାଜିକୁ ସଂଯୋଗ କରିବା, ଏବଂ ସମୟ ସମୟରେ ସଂସ୍କୃତର ବ୍ୟାଖ୍ୟା କରିବା ତାଙ୍କ ଅନୁବାଦର ପ୍ରଧାନ ଲକ୍ଷ୍ୟ ଥିଲା । ସାଧାରଣତଃ ପଦର କ୍ରମ ରକ୍ଷିତ ହେଉଥିଲେହେଁ ଭାବନାର କ୍ରମ ରକ୍ଷା କରିବା ତାଙ୍କ ଅନୁବାଦର ଧର୍ମ ନୁହେଁ । ଏ ସବୁ ସତ୍ତ୍ୱେ ତାଙ୍କ ଅନୁବାଦରେ ଅସ୍ପଷ୍ଟତା, ପୁନରୁକ୍ତିତା, ବିଷୟବସ୍ତୁ ତ୍ୟାଗ ତଥା ପରିବର୍ତ୍ତନର ବହୁ ଉଦାହରଣ ଦେଖିବାକୁ ମିଳେ । ତେଣୁ ଦେଖାଯାଉଛି, ଅନୁବାଦ-କୌଶଳ, ସାଙ୍ଗୀତିକତା, ନବାକ୍ଷରୀ ଛାନ୍ଦ ପ୍ରୟୋଗ, ତତ୍ସମ ବହୁଳ ଭାଷାର ବ୍ୟବହାର ତାଙ୍କ ଜନପ୍ରିୟତାର କାରଣ ନୁହେଁ । ତାଙ୍କ ଜନପ୍ରିୟତାର କାରଣ ହେଉଛି, ସେତେବେଳେ ଭକ୍ତିଧର୍ମର ପ୍ରବଳ ପ୍ରଚାର ଯୋଗୁଁ ଓଡ଼ିଆ ସମାଜ ଚାହୁଁଥିଲା 'ପରମ ଶାସ୍ତ୍ର ଭାଗବତ'ର ଅଧ୍ୟୟନ । ଜଗନ୍ନାଥ ଦାସ ଜାତିର ସେହି ମହାନ୍ ଆକାଙ୍‌କ୍ଷାକୁ ପୂରଣ କରି କହିଲେ-

ପରମ ଶାସ୍ତ୍ର ଭାଗବତ । ଅଭ୍ୟାସ କରୁଥିବ ନିତ୍ୟ ।।

କେବଳ ଅନୁବାଦ ନୁହେଁ ଅଭ୍ୟାସର ପରମ୍ପରା ଏହାକୁ ଲୋକପ୍ରିୟ କଲା । ଭାଗବତ ଗାଦି ପ୍ରତିଷ୍ଠା, ହରିହାଟ, ସପ୍ତା ଭାଗବତ, ଭାଗବତ ମେଳଣ, ବହୁମୁଖୀ ଭାଗବତ ପାଠ ପ୍ରଭୃତି ସାମାଜିକ ଅନୁଷ୍ଠାନ କେବଳ ଭାଗବତକୁ ଲୋକପ୍ରିୟ କରିବା ପାଇଁ ଉଦ୍ଦିଷ୍ଟ । ଜଗନ୍ନାଥ ଦାସଙ୍କ ଭାଗବତ ଓଡ଼ିଆ ଭାଷାରେ ପ୍ରଥମ ଅନୁବାଦ ହୋଇଥିବାରୁ ଲୋକେ ଏହାକୁ ଧର୍ମଗ୍ରନ୍ଥର ଯେଉଁ ସମ୍ମାନ ଦେବାକୁ ଆରମ୍ଭ କଲେ, ତାହା ଭାଗବତର ଅନ୍ୟାନ୍ୟ ଅନୁବାଦ ଦ୍ୱାରା ଦୂର ହୋଇପାରିଲା ନାହିଁ । ଏହା ବ୍ୟତୀତ ଶ୍ରୀଚୈତନ୍ୟଙ୍କର ସହଚର ରୂପେ, ଅତିବଡ଼ୀ ସମ୍ପ୍ରଦାୟର ପ୍ରତିଷ୍ଠାତା ଭାବେ ଜଗନ୍ନାଥ ଦାସଙ୍କର ଯେଉଁ ସମ୍ମାନ ଥିଲା, ସମାଜରେ ଯେଉଁ ପ୍ରତିଷ୍ଠା ଥିଲା, ତାହା ଅନ୍ୟାନ୍ୟ ଲେଖକଙ୍କର ନ ଥିଲା । ସେ ଥିଲେ ମହାପୁରୁଷ, ଜଗନ୍ନାଥଙ୍କର ଅନନ୍ୟ ଭକ୍ତ । ମହାପୁରୁଷଙ୍କ ବାଣୀକୁ ଅସ୍ୱୀକାର କରିବା ଅଧର୍ମ । ଏ ଦୃଷ୍ଟିରୁ ମଧ୍ୟ ଜଗନ୍ନାଥ ଦାସଙ୍କ ଭାଗବତକୁ ସାହିତ୍ୟ ଭାବେ ବିଚାର କରିବାର ପରମ୍ପରା ଏ ଦେଶରେ ନଥିଲା । ତେଣୁ ଅନୁବାଦ-କୌଶଳ ଯୋଗୁଁ ନୁହେଁ, ଧର୍ମ-ଗ୍ରନ୍ଥର ସମ୍ମାନ ହେତୁ ଜଗନ୍ନାଥ ଦାସଙ୍କ ଭାଗବତ ହେଲା, ଏ ଦେଶରେ ଗୀତା, ଉପନିଷଦ, ବେଦ ଓ ପୁରାଣ । ସେଥିପାଇଁ ମୃତ୍ୟୁ କାଳରେ ଓଡ଼ିଆ ଏକାଦଶ ସ୍କନ୍ଧର କେତେକ ପଦ ଶୁଣି ଆଖି ବୁଜେ ।

ବୈଷ୍ଣବ ଧର୍ମର ପ୍ରଚାର ଜଗନ୍ନାଥ ଦାସଙ୍କ ଭାଗବତର ଲୋକପ୍ରିୟତାର ମୁଖ୍ୟ କାରଣ ହେଲେହେଁ, କେତେକ

ଗୌଣ କାରଣର ଅନୁସନ୍ଧାନ କରାଯାଇପାରେ । ସେଥି ମଧ୍ୟରୁ ପ୍ରଥମ କାରଣ ହେଉଛି, ସଂସ୍କୃତ ପରିବେଶର ପରିବର୍ତ୍ତନ । ସଂସ୍କୃତ ଭାଗବତରେ ଥିବା ଓଡ଼ିଆ ପାଠକମାନଙ୍କ ନିକଟରେ ଅପରିଚିତ ବର୍ଣ୍ଣ୍ୟବସ୍ତୁକୁ ସେ ଓଡ଼ିଆ ସମାଜ ଉପଯୋଗୀ କରି ବର୍ଣ୍ଣନା କରିଛନ୍ତି । ଭାଗବତରୁ ଏହାର ବହୁ ଦୃଷ୍ଟାନ୍ତ ମିଳୁଥିଲେହେଁ ନିମ୍ନରେ କେବଳ କେତୋଟିର ଉଲ୍ଲେଖ କରାଯାଇଛି ।

ସଂସ୍କୃତ ଭାଗବତର ଦଶମ ସ୍କନ୍ଧର ଏକାଦଶ ଅଧ୍ୟାୟର ୧୦ମ ପଦକୁ ଗ୍ରହଣ କରାଯାଇପାରେ । ଏହାର ଅର୍ଥ ହେଉଛି, "ଦିନେ କୌଣସି ଫଳ ବିକାଳି ଆସି କହିଲା- ଫଳ ନିଅ ଫଳ । ଏହା ଶୁଣିବା କ୍ଷଣି ସର୍ବ ଫଳ ପ୍ରଦାନ କରି ପାରୁଥିବା ଭଗବାନ ଫଳ କିଣିବା ପାଇଁ ଆଞ୍ଜୁଳିରେ ଧାନ ଧରି ଦୌଡ଼ିଲେ ।" ଓଡ଼ିଶାରେ ଫଳ ବିକିବା ସାଧାରଣ ଦୃଶ୍ୟ ନୁହେଁ । ସେଥିପାଇଁ ଜଗନ୍ନାଥ ଦାସ ଏହାକୁ ଅନୁବାଦ କଲାବେଳେ ଫଳ ବିକାକୁ କୋଳି ବିକାରେ ପରିଣତ କରିଛନ୍ତି ।

ଗୋପେ ଅଇଲା କୋଳିବିକା ।।
ଡାକଇ କୋଳି କୋଳି ବାଣୀ । କୃଷ୍ଣ ଧାଇଁଲେ ତାହା ଶୁଣି ।।

ଜଗନ୍ନାଥ ଦାସ ନିଜ କଳ୍ପନାରୁ ଯୋଗକଲେ-

ବସନ ନାହିଁ କଟୀ ଭାଗେ । ମିଳିଲେ ଧାନ ରାଶି ଲାଗେ ।।
ଧାନ ଆଞ୍ଜୁଳି ପେଟେ ନେଇ ।ବେଗେ ଧାଇଁଲେ ଭାବଗ୍ରାହୀ ।।

ଏଠାରେ ସଂସ୍କୃତର 'ସର୍ବଫଳପ୍ରଦ' ଉକ୍ତିର ଅନୁବାଦ ଜଗନ୍ନାଥ ଦାସ ତ୍ୟାଗ କରିଛନ୍ତି । ଫଳକୁ କୋଳି କରିବା ଫଳରେ ଓଡ଼ିଆ ଗାଁ ଗହଳର ଏକ ସୁନ୍ଦର ଦୃଶ୍ୟ ଉପସ୍ଥାପିତ କରି ସେ ନିଜ ଅନୁବାଦ କୌଶଳର ପରିଚୟ ଦେଇଛନ୍ତି । ସେହି ଅଧ୍ୟାୟରୁ ଅନ୍ୟ ଗୋଟିଏ ଉଦାହରଣ ନିଆଯାଇପାରେ । ଓଡ଼ିଆ ସମାଜର ସ୍ୱାଭାବିକତା ଆଣିବା ପାଇଁ ଜଗନ୍ନାଥ ଦାସ ଓଡ଼ିଆ ସମାଜରେ ପାଣ୍ଢୋଇ, କଠାଉ, ମଶୁଣି, ଦୁଧର ଦୁହୁଁଣୀ ପ୍ରଭୃତିର ଉଲ୍ଲେଖ କରିଛନ୍ତି । ସଂସ୍କୃତରେ ଏହା ସ୍ଥଳରେ କେବଳ ମାନ୍ ଓ ପାଦୁକର ଉଲ୍ଲେଖ ଅଛି । ପାଦୁକା ପାଣ୍ଢୋଇ ଓ କଠାଉରେ ପରିଣତ ହୋଇଛି । 'ମାନ' ଓଡ଼ିଆରେ ମାଣ ହୋଇଛି । ମଶୁଣି ଓ ଦୁଧର ଦୁହୁଁଣୀକୁ ନିଜ କଳ୍ପନାରୁ ଯୋଗ କରିଥିବା ବେଳେ ସଂସ୍କୃତ 'ବାହୁକ୍ଷେପର' କୌଣସି ଅନୁବାଦ ନାହିଁ । ତେଣୁ ଯୋଗ ଓ ବିଯୋଗ କଲାବେଳେ ଜଗନ୍ନାଥ ଦାସ ଓଡ଼ିଆ ସମାଜର ଚଳଣୀକୁ ଲକ୍ଷ୍ୟ କରୁଥିବା ଅନୁମାନ କରାଯାଇପାରେ । ପରିଶେଷରେ କୁହାଯାଇପାରେ ଜଗନ୍ନାଥ ଦାସ ସଂସ୍କୃତ ଭାଗବତକୁ ଅପେକ୍ଷାକୃତ ସହଜ ଓ ସରଳ ଭାବରେ ରୂପାନ୍ତରିତ କରିବାକୁ ଇଚ୍ଛା କରି ସଂସ୍କୃତରେ ଥିବା ଦର୍ଶନର ଗାମ୍ଭୀର୍ଯ୍ୟପୂର୍ଣ୍ଣ ଆଲୋଚନାକୁ ପ୍ରାୟ ପରିତ୍ୟାଗ କରିଛନ୍ତି । ଯେଉଁଠି କରିଛନ୍ତି ସେଠି ଅତି ସଂକ୍ଷେପରେ କରିଛନ୍ତି । ସଂସ୍କୃତରେ ଭଗବାନଙ୍କୁ ବିଭିନ୍ନ ଭାବରେ ଗୁଣଯୁକ୍ତ କରି ସମ୍ବୋଧନ କରାଯାଇଥିବା ବେଳେ ଜଗନ୍ନାଥ ଦାସ କୃଷ୍ଣ, ମୁରାରି, ଜଗନ୍ନାଥ ପ୍ରଭୃତି ଶବ୍ଦ ମାଧ୍ୟମରେ ସେହି କଥାକୁ ପ୍ରକାଶ କରିବାକୁ ଚାହିଁଛନ୍ତି । ସଂସ୍କୃତ ଭାଗବତରେ ନଥିବା ପ୍ରସଙ୍ଗ ମଧ୍ୟରେ ଜଗନ୍ନାଥ ଦାସଙ୍କ ନାମ ମହିମା ପ୍ରଖ୍ୟାପନ ଅନ୍ୟତମ । ଜଗନ୍ନାଥ ଦାସଙ୍କ ଭାଗବତର ପ୍ରତ୍ୟେକ ଚରିତ୍ର ପ୍ରତ୍ୟେକ କାର୍ଯ୍ୟ କଲାବେଳେ ଭଗବାନଙ୍କ ନାମ ସ୍ମରଣ କରିଛନ୍ତି । ସଂସ୍କୃତ ଭାଗବତଠାରୁ ଏହା ଯୁଗୋପଯୋଗୀ ପରିବର୍ତ୍ତନ । ୧୬ଶ ଶତାବ୍ଦୀରେ ନାମ ସଂକୀର୍ତ୍ତନର ପ୍ରାଧାନ୍ୟ ପ୍ରଚାରିତ ହେବା ସଙ୍ଗେ ସଙ୍ଗେ ଜଗନ୍ନାଥ ଦାସ ତାର ମହତ୍ତ୍ୱ ଉପଲବ୍ଧି କରି ନିଜ ଭାଗବତରେ ତାକୁ ପ୍ରମୁଖ ସ୍ଥାନ ଦେଇଛନ୍ତି । ଉଦାହରଣ ପାଇଁ ଦଶମ ସ୍କନ୍ଧରୁ କେତୋଟି ପଦ ଉଲ୍ଲେଖ କରାଯାଇପାରେ ।

୧) 'କଂସକୁ ବସୁଦେବ ଚାହିଁ । ଭୟେ ଚିନ୍ତଇ ଭାବଗ୍ରାହୀ ।।'
୨) 'ଦେଖି ବସୁଦେବ ବିଚାରି । କାନ୍ଦିଣ ସୁମରେ ମୁରାରି ।।
୩) 'ଅଥବା ନୋହିବଟି ପୋଏ । ଜାଣନ୍ତି ପ୍ରଭୁ ଦେବରାଏ ।।'
୪) 'ଏ କଥା ମୋହର ପ୍ରମାଣ । ଏଥକୁ ସାକ୍ଷୀ ନାରାୟଣ ।।'
୫) 'ସୁତକୁ ଦେଖି ବସୁଦେବ । ବିକଳେ ଚିନ୍ତଇ ମାଧବ ।।'

୬)  'ଦେବକୀ ମୁଖକୁ ଚାହିଁଲା ।  ହା କୃଷ୍ଣ ବୋଲି ଡାକଦେଲା॥'

୭)  'ହରି ଭିଆଣ କଲା ଯାହା ।  ଅବଶ୍ୟ ଭୁଞ୍ଜିବିନା ତାହା ॥'

ନାମ ମହିମା ବର୍ଣ୍ଣନା କରିବା ଜଗନ୍ନାଥଙ୍କ ଭାଗବତର ଅନ୍ୟତମ ପ୍ରଧାନ ଉଦ୍ଦେଶ୍ୟ ଥିଲା । ସେଥିପାଇଁ ପ୍ରାୟ ପ୍ରତ୍ୟେକ ପ୍ରସଙ୍ଗ ବର୍ଣ୍ଣନା କଲାବେଳେ ସେ ଭଗବାନଙ୍କ ନାମର ମହାତ୍ମ୍ୟ ବର୍ଣ୍ଣନା କରିବାକୁ ଭୁଲି ନାହାନ୍ତି ।

୧)  "ମୋହର ପାଦେ ଚିତ୍ତ ଥାଉ  । ମୋ ନାମ ଧରି ଦିନ ଯାଉ  ॥" (୨୪ ଅଧ୍ୟାୟ ୩୩ ପଦ)

୨)  "କୃଷ୍ଣର ପାଦେ ମନ ଦେଲା  ।  ତୁଣ୍ଡରେ ନାମ ଉଚ୍ଚାରିଲା  ॥" (୨୪ ଅଧ୍ୟାୟ ୩୫ ପଦ)

ମୃତ୍ୟୁ ସମୟରେ ଶ୍ରୀକୃଷ୍ଣଙ୍କ ନାମ ଉଚ୍ଚାରଣ କଲେ ମନୁଷ୍ୟ ଭଗବାନଙ୍କ ଠାରେ ଲୀନ ହୁଏ- ସଂସ୍କୃତରେ ଏ ପ୍ରକାର ଭାବନା ଦେଖିବାକୁ ମିଳୁ ନ ଥିଲେ ହେଁ ଓଡ଼ିଆ ଭାଗବତରେ ଏହା ପ୍ରତ୍ୟେକ ଚରିତ୍ରରେ ପ୍ରକାଶ ପାଇଛି । ଶ୍ରୀକୃଷ୍ଣଙ୍କ ରାସକ୍ରୀଡ଼ାରେ ଯୋଗଦେଇ ପାରି ନ ଥିବା ବ୍ରାହ୍ମଣୀର ମୃତ୍ୟୁ ବର୍ଣ୍ଣନା କରି ଜଗନ୍ନାଥ ଦାସ ଲେଖିଛନ୍ତି -

ମୁଣ୍ଡ ମାରିଲା ସ୍ତମ୍ଭେ ନେଇ।  ପ୍ରାଣ ଛାଡ଼ିଲା ନିଜ ଦେହୀ ॥
କୃଷ୍ଣର ପାଦେ ମନ ଦେଲା।  ତୁଣ୍ଡରେ ନାମ ଉଚ୍ଚାରିଲା ॥
ତକ୍ଷଣେ ଦିବ୍ୟ ରୂପ ହୋଇ।  ପଶିଲା କୃଷ୍ଣ ଦେହେ ଯାଇ ॥

ସଂସ୍କୃତ ଭାଗବତରେ ଏହାର ସୂଚନା ନ ଥିବାରୁ ଏହା ଯେ ଜଗନ୍ନାଥ ଦାସଙ୍କ ସାଧନା ମାର୍ଗର ଏକ ପ୍ରମୁଖ ଅଂଶ ଏହାହିଁ ପ୍ରତିପାଦିତ ହୋଇଥାଏ । ଭାଗବତର ବିଭିନ୍ନ ବିଷୟବସ୍ତୁ ବର୍ଣ୍ଣନା କଲାବେଳେ ଏବଂ ପ୍ରାୟ ପ୍ରତ୍ୟେକ ଅଧ୍ୟାୟର ଶେଷରେ ନିଜ କଥା କହିଲା ବେଳେ, ଭଗବାନଙ୍କ ନବଧା ଭକ୍ତି ବର୍ଣ୍ଣନା କଲାବେଳେ ସେ ଶ୍ରବଣ, ସ୍ମରଣ, ଓ କୀର୍ତ୍ତନକୁ ପ୍ରାଧାନ୍ୟ ଦେଇଛନ୍ତି ଓ ସେଥିରେ କୀର୍ତ୍ତନ ହିଁ ମୁଖ୍ୟ ସ୍ଥାନ ଲାଭ କରିଛି । ଓଡ଼ିଆ ଭାଗବତର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଭଗବାନଙ୍କ ନାମ କୀର୍ତ୍ତନ ।

ପରିଶେଷରେ କୁହାଯାଇପାରେ, ଜଗନ୍ନାଥ ଦାସଙ୍କ ଭାଗବତର ଲୋକପ୍ରିୟତା ଏଥିରେ ବ୍ୟବହୃତ ମୃଦୁ ମଧୁର ଭାଷା ପାଇଁ ନୁହେଁ, ନବାକ୍ଷରୀ ଛନ୍ଦ ପାଇଁ ନୁହେଁ, ତତ୍ସମ ବହୁଳ ଶବ୍ଦରାଜିର ପ୍ରୟୋଗ ପାଇଁ ନୁହେଁ, ସାଂଗୀତିକତା ପାଇଁ ନୁହେଁ, ବିଷୟବସ୍ତୁର ବ୍ୟତିକ୍ରମ ପାଇଁ ନୁହେଁ, ଏହାର ଲୋକପ୍ରିୟତାର ମୁଖ୍ୟ କାରଣ ହେଉଛି ନାମ ମାହାତ୍ମ୍ୟ ପ୍ରଚାରର ମୁଖ୍ୟ ଧର୍ମଗ୍ରନ୍ଥ ଭାବେ ଭାଗବତକୁ ପ୍ରଦତ୍ତ ହୋଇଥିବା ସମ୍ମାନ ଏବଂ ପ୍ରତିଦିନ ଅଭ୍ୟାସ କରିବାର ପରମ୍ପରା । ଅନ୍ୟ କାରଣ ସବୁ ଗୌଣ, ସହାୟକ ।

# ଭୂମିକା-୨

## ଶ୍ରୀମଭାଗବତ

## ପଣ୍ଡିତ ଦୁଃଖିଶ୍ୟାମ ପଟ୍ଟନାୟକ

ବେଦବେଦାନ୍ତସାରଂ ହି ବ୍ୟାସଶୋକନିବର୍ତ୍ତକମ୍ । ମହାପୁରାଣମୂର୍ଦ୍ଧନ୍ୟଂ ଶ୍ରୀମଭାଗବତଂ ସ୍ତୁମଃ ।

ମହର୍ଷି ବେଦବ୍ୟାସ ଚତୁର୍ବେଦ ସଂକଳନ କଲା ପରେ ବେଦାନ୍ତଦର୍ଶନ ପ୍ରଣୟନ କରି ଅଷ୍ଟାଦଶ ମହାପୁରାଣ ରଚନା କଲା ପରେ ମଧ୍ୟ ଯେତେବେଳେ ଆନନ୍ଦ ନ ପାଇ ଅନ୍ତରରେ ଏକ ଅଭାବ ଓ ଶୂନ୍ୟତା ଅନୁଭବ କଲେ, ସେ ବିଷଣ୍ଣ ମନରେ ହିମାଳୟର ସରସ୍ୱତୀ ନଦୀ ପଶ୍ଚିମ ତଟବର୍ତ୍ତୀ ଶମ୍ୟାପ୍ରାସ ନାମକ ସ୍ଥାନରେ ବସିଥିବା ବେଳେ ମହାଭକ୍ତ ଦେବର୍ଷି ନାରଦଙ୍କ କୃପାବଶତଃ ଉପଦେଶ ପ୍ରାପ୍ତ ହୋଇ ପ୍ରେମଭକ୍ତିର ଅଥଳ ଅକୂପାର ଶ୍ରୀମଭାଗବତ ତତ୍ତ୍ୱକୁ ପାଇ ପରମ ତୃପ୍ତି ଲାଭ କଲେ ଏବଂ ସେହି ତତ୍ତ୍ୱରାଜିକୁ ଉପଯୁକ୍ତ ପାତ୍ର ହାତରେ ଦେବା ପାଇଁ ତପସ୍ୟା କରି ଶୁକଦେବଙ୍କୁ ପୁତ୍ର ରୂପେ ପାଇଲେ । ଭାଗବତରସ ପିଆଇବା ପାଇଁ ବ୍ୟାକୁଳ ପିତା ବ୍ୟାସଦେବଙ୍କ ବତ୍ସଳ ପ୍ରାଣର ସକଳ ଆଶାକୁ ନିରାଶ କରି ଆଜନ୍ମବିରାଗୀ ଶୁକଦେବ ଜନ୍ମ ହେବା ସଙ୍ଗେ ସଙ୍ଗେ ସମସ୍ତ ମାୟାମମତାର ବନ୍ଧନ ଛିନ୍ନ କରି ସଂସାର ଛାଡ଼ି ଯେତେବେଳେ ଚାଲିଯିବାକୁ ବସିଲେ ସେତେବେଳେ ବ୍ୟାସଦେବଙ୍କ 'ପୁଅ' 'ପୁଅ' ବୋଲି କରୁଣ କାତର ଆହ୍ୱାନ ଅରଣ୍ୟର ବୃକ୍ଷଲତାମୁଖରେ କିପରି ଅନୁରଣିତ ହୋଇଥିଲା ତାହାର ପ୍ରତିଧ୍ୱନି ଶୁଣିବାକୁ ମିଳେ ଶ୍ରୀମଭାଗବତର ନିମ୍ନ ଶ୍ଳୋକରେ-

ଯଂ ପ୍ରବ୍ରଜନ୍ତମନୁପେତମପେତକୃତ୍ୟଂ ଦ୍ୱୈପାୟନୋ ବିରହକାତର ଆଜୁହାବ ।
ପୁତ୍ରେତି ତନ୍ମୟତୟା ତରବୋଽଭିନେଦୁସ୍ତଂ ସର୍ବଭୂତହୃଦୟଂ ମୁନିମାନତୋଽସ୍ମି ॥

ଶ୍ରୀମଭାଗବତ କଥାମୃତ ଆସ୍ୱାଦନ ଓ ପରିବେଷଣରେ ଶୁଣିବା ଲୋକ ଓ କହିବା ଲୋକ, ଉଭୟଙ୍କର ଯୋଗ୍ୟତା ଥିବା ଆବଶ୍ୟକ । କହିବା ଲୋକ ଶୁଣିବା ଲୋକକୁ ଯୋଗ୍ୟ ମନେ କଲେ ମଧ୍ୟ ଶୁଣିବା ଲୋକ କହିବା ଲୋକ ଠାରୁ ଶୁଣିବାକୁ ଇଚ୍ଛା ପ୍ରକାଶ ନ କଲେ 'ବ୍ୟାସ-ଶୁକ-ଅବସ୍ଥା' ଉପସ୍ଥିତ ହୋଇପାରେ । ଉଭୟଙ୍କର ଇଚ୍ଛା ଓ ଉତ୍ସୁକତା ଥିଲେ 'ଶୁକ-ପରୀକ୍ଷିତ-ଅବସ୍ଥା'ରେ ଭାଗବତ ପରିବେଷିତ ହୁଏ ଏବଂ-'ତବ କଥାମୃତଂ ତପ୍ତଜୀବନଂ କବିଭିରୀଡ଼ିତଂ କଲ୍ମଷାପହମ୍ । ଶ୍ରବଣମଙ୍ଗଳଂ ଶ୍ରୀମଦାତତଂ ଭୁବି ଗୃଣନ୍ତି ତେ ଭୂରିଦା ଜନାଃ ।।'-ହୁଏ ।

**ଶ୍ରୀମଭାଗବତ**-ଆନନ୍ଦରସଘନ ନନ୍ଦନନ୍ଦନ ଲୀଳା ପୁରୁଷୋତ୍ତମ ଭଗବାନ୍ ଶ୍ରୀକୃଷ୍ଣଙ୍କର ପରମ ପ୍ରେମପୂର୍ଣ୍ଣ ମାଧୁର୍ଯ୍ୟଲୀଳାର ଚରମପ୍ରକାଶକ ଗ୍ରନ୍ଥରତ୍ନ । ଏଥିରେ ଅନନ୍ତ ବେଦାନ୍ତତତ୍ତ୍ୱ ଏକୀଭୂତ ହୋଇ, ବିଶାଳ ଯଦୁବଂଶର ଭାଗ୍ୟ ମୂର୍ତ୍ତିମନ୍ତ ହୋଇ, ଗୋପାଙ୍ଗନାମାନଙ୍କର ପ୍ରେମ ପୁଞ୍ଜୀଭୂତ ହୋଇ, ଅଖଣ୍ଡ ନିର୍ଗୁଣ ବ୍ରହ୍ମ ଶ୍ୟାମୀଭୂତ ବା ସଗୁଣ ସାକ୍ଷାତ୍ ମନ୍ମଥ-ମନ୍ମଥ ଶ୍ୟାମସୁନ୍ଦର ଶ୍ରୀକୃଷ୍ଣ ହୋଇ ସତେ ଯେପରି ବାଙ୍ମୟୀ ମୂର୍ତ୍ତି ଭାବରେ ପ୍ରକାଶ ପାଇଛନ୍ତି । ତେଣୁ କୁହାଯାଏ - 'ପୁଞ୍ଜୀଭୂତଂ ପ୍ରେମ ଗୋପାଙ୍ଗନାନାଂ ମୂର୍ତ୍ତୀଭୂତଂ ଭାଗଧେୟଂ ଯଦୂନାମ୍ । ଏକୀଭୂତଂ ଗୁପ୍ତତତ୍ତ୍ୱଂ ଶ୍ରୁତୀନାଂ ଶ୍ୟାମୀଭୂତଂ ବ୍ରହ୍ମ ମେ ସନ୍ନିଧତ୍ତାମ୍ ॥'

ଭଗବାନ୍ ପ୍ରେମରସସାଗର ନଟନାଗର ଶ୍ରୀକୃଷ୍ଣଙ୍କର ବାଙ୍ମୟମୂର୍ତ୍ତି ଏହି ଭାଗବତର ନିତ୍ୟ ସାଦର ମନୋଯୋଗପୂର୍ବକ ପାଠ ଓ ଶ୍ରବଣ ତଥା ସତତ ମନନ କଳି କଳ୍ମଷ ହରଣ ପୂର୍ବକ ସକଳ ଦୁଃଖ ଦୂର କରିବାରେ ସମର୍ଥ । ଧର୍ମ-ଅର୍ଥ-କାମ-ମୋକ୍ଷପ୍ରଦ, ବେଦରୂପକ କଳ୍ପତରୁର ସୁପକ୍ୱ ଫଳ, ଶୁକମୁଖ ଲାଗି ଆହୁରି ଅମୃତମୟ ବୋଲି ପ୍ରମାଣିତ ଏହି ଦିବ୍ୟଭାଗବତ ରସକୁ ଓଡ଼ିଆ ଜାତିକୁ ପାନ କରାଇବା ପାଇଁ ବ୍ୟାସଙ୍କ ବ୍ୟାକୁଳତା ନେଇ 'ଅତିବଡ଼' ଜଗନ୍ନାଥ ଦାସ ଓଡ଼ିଆ ନବାକ୍ଷର ବୃତ୍ତରେ ଅତି ସରଳରେ ଭାଗବତ ରଚନା କରି ଓଡ଼ିଆଙ୍କୁ ଏକତାସୂତ୍ରରେ ବାନ୍ଧି ଏକ 'ଅତିବଡ଼' ଅନନ୍ୟସାଧାରଣ କାମ କରିଯାଇଛନ୍ତି ।

ସଂସ୍କୃତରେ ତିନିଗୋଟି ଭାଗବତ ପ୍ରସିଦ୍ଧ - (୧) ଶ୍ରୀମଦ୍‌ଦେବୀଭାଗବତ, (୨) ଶ୍ରୀମଦ୍(ବିଷ୍ଣୁ)ଭାଗବତ ଓ (୩) ଶ୍ରୀମହାଭାଗବତ । 'ଭାଗବତ' ଶବ୍ଦଟି 'ଭଗବାନ୍ ଭଗବତୀ ବା ଅସ୍ୟ ଦେବତା ଇତି' ଅଣ୍ ପ୍ରତ୍ୟୟ ଦ୍ୱାରା ସୃଷ୍ଟ । 'ଭାଗବତ'ଶବ୍ଦ ଉପର୍ଯ୍ୟୁକ୍ତ ତିନୋଟି ଯାକ ଭାଗବତ ପ୍ରତି ପ୍ରଯୁଜ୍ୟ । କିନ୍ତୁ ଏଥିରୁ ବିଷ୍ଣୁଭକ୍ତଙ୍କ ପାଇଁ ଉଦ୍ଦିଷ୍ଟ ଶ୍ରୀମଦ୍(ବିଷ୍ଣୁ)ଭାଗବତ ତା'ର ପାଣ୍ଡିତ୍ୟପୂର୍ଣ୍ଣ ପ୍ରକାଶଶୈଳୀ ମଧ୍ୟରେ ଭକ୍ତିରସ ପରିବେଷଣ ପାଇଁ ପ୍ରସିଦ୍ଧ । ବଡ଼ ବଡ଼ ବିଦ୍ୱାନ୍‌ମାନଙ୍କର ପରୀକ୍ଷା ହୁଏ ଭାଗବତରେ । ତେଣୁ କୁହାଯାଏ 'ବିଦ୍ୟାବତାଂ ଭାଗବତେ ପରୀକ୍ଷା' । ଏହା ଅଧ୍ୟୟନଶୀଳ ବିଦ୍ୱାନ୍‌ମାନଙ୍କ ଅନ୍ତିମ ପର୍ଯ୍ୟାୟ ଗ୍ରନ୍ଥ ହୋଇଥିବାରୁ କୁହାଯାଇଛି - 'ବିଦ୍ୟାବତ୍ତା ଭାଗବତାବଧିଃ'- ବିଦ୍ୟାବତ୍ତାର ଶେଷ ନିକଷୋପଳ ହେଉଛି ଭାଗବତ । ଏପରି ଏକ ପାଣ୍ଡିତ୍ୟପୂର୍ଣ୍ଣ ମହାନ୍ ଗ୍ରନ୍ଥକୁ ସରଳ ଅଥଚ ମାନକ ଓଡ଼ିଆ ଭାଷାରେ ପ୍ରକାଶ କରି ଓଡ଼ିଆ ଜାତିକୁ ଭାଷା ଓ ଆଧାତ୍ମିକତା ମାଧ୍ୟମରେ ଏକ କରି ରଖିବାର ପ୍ରୟାସ କରାଯାଇଛି । ଆଜିର ଟେଲିଭିଜନ୍ ସମଗ୍ର ବିଶ୍ୱକୁ ଘରେ ଘରେ ପହଞ୍ଚାଇଲା ସତ, କିନ୍ତୁ ହିନ୍ଦୀ ଭାଷାର ପ୍ରବଳ ପ୍ରସାରକୁ ବଙ୍ଗଳା, ତେଲୁଗୁ, ତାମିଲମାନେ ଯେପରି ପ୍ରତିହତ କରି ନିଜର ଭାଷା ଓ ସାହିତ୍ୟକୁ ସୁରକ୍ଷିତ ଓ ସମୁନ୍ନତ କରିବାରେ ସମର୍ଥ ହୋଇଛନ୍ତି, ଆମେ ଓଡ଼ିଆ ଆମର ରାମାୟଣ, ଭାଗବତ, ମହାଭାରତ ଛାଡ଼ି ଶ୍ରୀରାମଚରିତମାନସ ଓ ହନୁମାନ୍‌ଚାଳିଶାରେ ଏପରି ମାତିଛୁ ଯେ ସତେ ଯେପରି ଅବଧୀଭାଷାରେ ନ କହିଲେ ରାମ ବା ହନୁମାନ୍ ବୁଝିପାରିବେ ନାହିଁ ବୋଲି ଆମ ହୃଦୟର କଥାକୁ ଆମରି ମାତୃଭାଷାରେ ପ୍ରକାଶ କରିବାକୁ ଭୁଲି ଯାଉଛୁ । ଜଗନ୍ନାଥ ଦାସଙ୍କ ଭାଗବତ ସଂସ୍କୃତ ଭାଗବତର ଆକ୍ଷରିକ ଅନୁବାଦ ନୁହେଁ କିନ୍ତୁ ମୂଳ କ୍ଲିଷ୍ଟ ଭାଗବତର ଏକ ସରସ ସରଳ ହୃଦୟଗ୍ରାହୀ ଅନୁବାଦ । ସଂସ୍କୃତ ଶ୍ରୀମଭାଗବତ ଦ୍ୱାଦଶ ସ୍କନ୍ଧବିଶିଷ୍ଟ ଏକ ମହାପୁରାଣ । ଜଗନ୍ନାଥ ଦାସ ଏହାର ମୂଳ ଭାବକୁ ଅକ୍ଷୁଣ୍ଣ ରଖି ସର୍ବସାଧାରଣଙ୍କ ବୋଧଗମ୍ୟ ଭାଷାରେ ସୁଖପାଠ୍ୟ ନବାକ୍ଷରୀବୃତ୍ତରେ ଓଡ଼ିଆଭାଗବତ ରଚନା କରିଛନ୍ତି । ଏଥିରେ ବର୍ଣ୍ଣିତ ବିଷୟ ସଂକ୍ଷେପରେ ନିମ୍ନରେ ପ୍ରଦତ୍ତ ହେଲା ।

**ପ୍ରଥମ ସ୍କନ୍ଧ :**

ସଂସ୍କୃତ ଭାଗବତ ପରି ଓଡ଼ିଆ ଭାଗବତର ପ୍ରଥମ ସ୍କନ୍ଧ ୧୯ ଅଧ୍ୟାୟ ବିଶିଷ୍ଟ । ସଂସ୍କୃତଭାଗବତର କେବଳ ପ୍ରଥମ ଶ୍ଳୋକଟିର ଶହେଟି ଅର୍ଥ ଥାଇ ଖଣ୍ଡିଏ ବହି ସଂସ୍କୃତରେ ପ୍ରକାଶ ପାଇଛି । ତା'ପରେ ମଧ୍ୟ ଅନେକ ଅର୍ଥ ହୋଇଛି । ଜଗନ୍ନାଥ ଦାସ ଏହି ଶ୍ଳୋକରେ ଥିବା 'ସତ୍ୟଂ ପରଂ ଧୀମହି' ନିତ୍ୟ ସତ୍ୟ ପରମାତ୍ମାଙ୍କ ସ୍ୱରୂପକୁ 'ସତ୍ୟ ପରମାନନ୍ଦ ହରି, ଯା ଭାବେ ଭବ ସତ୍ୟ କରି । ସେ କୃଷ୍ଣପାଦ ହୃଦେ ଧରି, ପ୍ରବନ୍ଧେ ଗୀତ ନାଦ କରି' ଅଶେଷ ଜନଙ୍କର ହିତେ ହରିଚରିତ ଭାଗବତ କହି 'ଅଶେଷ ଜନମନ ମୋହିବାରେ ସମର୍ଥ ହୋଇଛନ୍ତି ।'(୧।୧) କଳିର ଆଗମନ ଦେଖି ଶୌନକାଦି ମୁନିଗଣ ନୈମିଷାରଣ୍ୟରେ ଏକତ୍ର ହୋଇ ସୂତଙ୍କ ଠାରୁ ଭାଗବତ-ଶ୍ରବଣରେ ଅଭିଳାଷୀ ହୋଇ 'ଷଟ୍-ପ୍ରଶ୍ନ' ପଚାରିଛନ୍ତି । ତା'ପରେ ଭଗବାନଙ୍କ ଅବତାରର ବର୍ଣ୍ଣନା(୩); ବ୍ୟାସଙ୍କ ଅସନ୍ତୋଷ ଓ ନାରଦଙ୍କ ଆଗମନ ସଂବାଦ(୫), ମହାଭାରତର ଅନ୍ତିମ ଘଟଣାବଳୀ(୭), କୁନ୍ତୀକୃତ ଶ୍ରୀକୃଷ୍ଣସ୍ତୁତି(୮), ପରୀକ୍ଷିତଙ୍କ ଜନ୍ମ(୧୨) ଓ ପାଣ୍ଡବଙ୍କ ମହାପ୍ରସ୍ଥାନ(୧୫), କଳିର ଆଗମନ(୧୬), କଳିନିଗ୍ରହ(୧୭) ପରେ ପରୀକ୍ଷିତଙ୍କୁ ଶ।ପ (୧୮),

ଗଙ୍ଗାତଟରେ ପରୀକ୍ଷିତଙ୍କ ପ୍ରାୟୋପବେଶନ ବେଳେ ଶୁକଙ୍କ ଆଗମନ ବର୍ଣ୍ଣିତ ହୋଇଛି ।

**ଦ୍ୱିତୀୟ ସ୍କନ୍ଧ :**

ପ୍ରଥମ ତିନି ଅଧ୍ୟାୟରେ ଭାଗବତର ସାର ତତ୍ତ୍ୱଜ୍ଞାନୋପଦେଶ(୧-୩), ଶୁକଙ୍କ ମଙ୍ଗଳାଚରଣପୂର୍ବକ କଥାରମ୍ଭ(୪), ବିରାଟ୍-ସ୍ୱରୂପ -ବର୍ଣ୍ଣନା, ସଂସ୍କୃତ ଭାଗବତର ବରାହାବତାର ଠାରୁ ଶ୍ରୀକୃଷ୍ଣାବତାର ପର୍ଯ୍ୟନ୍ତ ସଂକ୍ଷେପରେ ବର୍ଣ୍ଣନା ସହ କଳ୍କୀ ଅବତାର କଥା ମିଶିଛି(୭),

ବ୍ରହ୍ମାଙ୍କୁ ଭଗବାନ୍‌ଙ୍କ 'ଚତୁଃଶ୍ଳୋକଭାଗବତ'-ଉପଦେଶ(୯) ଓ ପୁରାଣ-ଲକ୍ଷଣ(୧୦) ଆଲୋଚିତ ହୋଇଛି ।

**ତୃତୀୟ ସ୍କନ୍ଧ :**

ଏଥିରେ ବିଦୁର-ଉଦ୍ଧବ-ସଂବାଦ(୧), ମୈତ୍ରେୟମୁନିଙ୍କ ବିଦୁରଙ୍କୁ ଉପଦେଶ(୫), ସୃଷ୍ଟି-ପ୍ରକରଣ, ପଦ୍ମଜ ବ୍ରହ୍ମାଙ୍କ ସ୍ତବ(୯), ବରାହାବତାର ଓ ପୃଥିବୀର ଉଦ୍ଧାର(୧୩), ଭଗବାନ୍‌ଙ୍କ ପାର୍ଷଦଙ୍କୁ ଶାପ, ଦିତିଙ୍କ ଗର୍ଭାଧାନ(୧୪), ବୈକୁଣ୍ଠ-ବର୍ଣ୍ଣନା, ଜୟ-ବିଜୟ-ଉପାଖ୍ୟାନ(୧୫-୧୬), ହିରଣ୍ୟାକ୍ଷବଧ(୧୯), ମାତା ଦେବହୂତିଙ୍କୁ ଭଗବାନ୍ କପିଳଙ୍କ ସାଙ୍ଖ୍ୟତତ୍ତ୍ୱ-ଉପଦେଶ(୨୫-୨୭), କପିଳଗୀତା(୩୩) ଅଛି ।

**ଚତୁର୍ଥ ସ୍କନ୍ଧ :**

ଏହି ସ୍କନ୍ଧରେ ସତୀଙ୍କ ଦେହତ୍ୟାଗ(୪) ଓ ଦକ୍ଷଯଜ୍ଞ-ଧ୍ୱଂସ(୫), ଧ୍ରୁବଚରିତ(୮-୧୨), ମହାରାଜ ଅଙ୍ଗଦ(୧୩), ବେନଚରିତ(୧୪),

ମହାରାଜ ପୃଥୁଙ୍କ କଥା(୧୪-୨୨), ପୁରଞ୍ଜନ-ଉପାଖ୍ୟାନ(୨୫-୨୮) ଏବଂ ଶେଷରେ ପ୍ରାଚୀନବର୍ହିସଂବାଦ(୨୯) ଓ ପ୍ରାଚେତସଚରିତ ଅଛି ।

**ପଞ୍ଚମ ସ୍କନ୍ଧ :**

ଏହି ସ୍କନ୍ଧଟି ପ୍ରାୟ ଗଦ୍ୟାତ୍ମକ । ଏଥିରେ ପ୍ରିୟବ୍ରତକଥା(୧), ଋଷଭଦେବ-ଉପାଖ୍ୟାନ(୩-୬), ଜଡ଼ଭରତକଥା(୭-୧୫), ଭୂଗୋଳ,

ଖଗୋଳ ଓ ନରକ ଇତ୍ୟାଦିର ବିସ୍ତୃତ ବିବରଣ(୧୬-୨୬) ଦିଆଯାଇଛି । ଏଥିରେ ୨୫ଶ ଅଧ୍ୟାୟରେ ମୂଳଭାଗବତରେ ସଂକର୍ଷଣ ସ୍ତବ ଥିବା

ସ୍ଥଳେ ଜଗନ୍ନାଥ ଦାସ ସେହି ସ୍ଥାନରେ ପ୍ରହ୍ଲାଦ ସ୍ତୁତି ଓ ସାଂସାରିକ ଜୀବନଯାତ୍ରା ପ୍ରଣାଳୀ ବର୍ଣ୍ଣନା କରିଛନ୍ତି ।

**ଷଷ୍ଠ ସ୍କନ୍ଧ :**

ଏଥିରେ ଅଜାମିଳ-ଉପାଖ୍ୟାନ(୧-୨), ହଂସଗୁହ୍ୟସ୍ତୋତ୍ର(୪), ପ୍ରଜାପତି ଦକ୍ଷଙ୍କ ନାରଦଙ୍କୁ ଶାପ(୫), ଦକ୍ଷଙ୍କ ଷାଠିଏ କନ୍ୟାଙ୍କ ବଂଶବିସ୍ତାର(୬),

ବିଶ୍ୱରୂପ-ଉପାଖ୍ୟାନ(୭-୯), ବୃତ୍ରବଧ(୯-୧୨), ଚିତ୍ରକେତୁ-ଉପାଖ୍ୟାନ(୧୪-୧୭) ଓ ମରୁତ୍‌ଗଣଙ୍କ ଜନ୍ମବୃତ୍ତାନ୍ତ(୧୮), ପୁଂସବନବ୍ରତବିଧି(୧୯) ଅଛି ।

**ସପ୍ତମ ସ୍କନ୍ଧ :**

ପ୍ରଥମ ଦଶ ଅଧ୍ୟାୟରେ ପ୍ରହ୍ଲାଦ-ଚରିତ, ନୃସିଂହାବତାର ଓ ପ୍ରହ୍ଲାଦକୃତ ଭଗବତ୍‌ସ୍ତୁତି(୯); ତା'ପରେ ନାରଦକର୍ତ୍ତୃକ ଯୁଧିଷ୍ଠିରଙ୍କୁ ତ୍ରିଂଶତ୍‌ଲକ୍ଷଣାତ୍ମକ ଧର୍ମ ଶିକ୍ଷା(୧୧), ଆଶ୍ରମଧର୍ମ(୧୧-୧୪) ଓ ଶେଷରେ ମୋକ୍ଷଧର୍ମ(୧୫) ନିରୂପିତ ହୋଇଛି ।

**ଅଷ୍ଟମ ସ୍କନ୍ଧ :**

ମୂଳରୁ ଗଜେନ୍ଦ୍ରମୋକ୍ଷ(୨-୪), ସମୁଦ୍ରମନ୍ଥନ(୮-୧୩), ଦେବାସୁରସଂଗ୍ରାମ ଓ ବଳିବନ୍ଧନ(୧୪-୨୩) ପରେ

ଶେଷ ଅଧ୍ୟାୟରେ ମତ୍ସ୍ୟାବତାର କଥା କୁହାଯାଇଛି ।

**ନବମ ସ୍କନ୍ଧ :**

ଏଥିରେ ବିଭିନ୍ନ ବଂଶ ଓ ବଂଶାବତାର କଥା ଦେଖିବାକୁ ମିଳେ । ସେଥିରେ ଈଳା(୧), ଅମ୍ବରୀଷ(୪-୫), ସୌଭରି(୬), ହରିଶ୍ଚନ୍ଦ୍ର(୭),

ସଗର(୮) ଓ ତାଙ୍କ ପୁତ୍ରଙ୍କ କଥା ସହ ଭଗୀରଥ କର୍ତ୍ତୃକ ଗଙ୍ଗାବତରଣ(୯), ରାମଚନ୍ଦ୍ର(୧୦), ଐଳ ପରଶୁରାମ ପ୍ରଭୃତିଙ୍କ ପବିତ୍ର ଜୀବନଗାଥା ତଥା ପୁରୁବଂଶ(୨୦), ଭରତବଂଶ(ଦୁଷ୍ୟନ୍ତ-ଶକୁନ୍ତଳା), ଶାନ୍ତନୁବଂଶ ଓ ଯଦୁବଂଶର ବିଚିତ୍ର କାହାଣୀ ରହିଛି ।

**ଦଶମ ସ୍କନ୍ଧ :**

ଭାଗବତର ଦଶମସ୍କନ୍ଧ ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ଅଟେ । ସଂସ୍କୃତ ଶ୍ରୀମଭାଗବତର ଦଶମସ୍କନ୍ଧ ପୂର୍ବାର୍ଦ୍ଧରେ ମୋଟ ୪୯ ଅଧ୍ୟାୟ ଅଛି । ଜଗନ୍ନାଥ ଦାସ ଏହି ସ୍କନ୍ଧର ପ୍ରଥମ ଅଧ୍ୟାୟଟିକୁ ଦୁଇଟି ଅଧ୍ୟାୟରେ ଅନୁବାଦ କରିଛନ୍ତି । ଫଳରେ ସଂସ୍କୃତ ଅଧ୍ୟାୟ ସଂଖ୍ୟାରେ ଏକ ଯୋଗ କଲେ ଓଡ଼ିଆ ଅଧ୍ୟାୟ ସଂଖ୍ୟା ଆସିବ। ପୂର୍ବାର୍ଦ୍ଧ ଗୋପଲୀଳାରେ ଦେବକାର୍ଯ୍ୟ-ସମ୍ପାଦନାର୍ଥେ ଅବତାର ରୂପେ ଶ୍ରୀକୃଷ୍ଣଙ୍କ ଜନ୍ମ-ଗ୍ରହଣ(୪) ଠାରୁ ବାଳଲୀଳା(୬-୮)ରେ କଂସକାରାଗୃହରେ ଜନ୍ମ ଗ୍ରହଣ କରି ନନ୍ଦ-ଯଶୋଦାଙ୍କ ଗୋପ-ନିଳୟରେ ପାଳିତ ହୋଇ ପୂତନା-ବଧ(୭), ଶକଟାସୁର-ତୃଣାବର୍ତ୍ତ ପ୍ରଭୃତିଙ୍କ ବଧ(୮), ମୃତ୍ତିକା-ଭକ୍ଷଣ କରି ଯଶୋଦାଙ୍କୁ ବିଶ୍ୱରୂପ ପ୍ରଦର୍ଶନ(୮),ଯାମଳାର୍ଜ୍ଜୁନ-ଭଞ୍ଜନ(୧୧), ବତ୍ସାସୁର-ବକାସୁର-ଅଘାସୁର-ଧେନୁକାସୁରବଧ(୧୨-୧୬), କାଳିୟଦଳନ(୧୭), ପ୍ରଳମ୍ବାସୁରବଧ(୧୯), ଦାବାନଳଭକ୍ଷଣ(୨୦) ଇତ୍ୟାଦି ଲୀଳା କରିଗଲା ପରେ ଶରତ୍‌କାଳରେ 'ବେଣୁଗୀତ'(୨୨)ଦ୍ୱାରା ଆକୃଷ୍ଟ ଗୋପୀ ମାନଙ୍କ ବସ୍ତ୍ର-ହରଣ (୨୩) ଓ ସେମାନଙ୍କ ସହ ରାସୋଲ୍ଲାସ ବର୍ଣ୍ଣନା କରାଯାଇଛି । ସଂସ୍କୃତରେ ୨୯ ରୁ ୩୩ତମ ଅଧ୍ୟାୟରେ ବର୍ଣ୍ଣିତ ଏହି 'ରାସଲୀଳା' ଓଡ଼ିଆ ଭାଗବତ(୩୦-୩୪)ଅଧ୍ୟାୟରେ ଓ ତହିଁରୁ 'ଗୋପୀଗୀତ'(୩୨) କେବଳ ଦଶମସ୍କନ୍ଧ କାହିଁକି ସମଗ୍ର ଶ୍ରୀମଭାଗବତର ମଧ୍ୟମଣି ପରି ସମୁଜ୍ଜ୍ୱଳ ରତ୍ନ ଓ ସର୍ବଶ୍ରେଷ୍ଠ ରହସ୍ୟମୟ ତତ୍ତ୍ୱ ଅଟେ । ସଂସ୍କୃତ ଭାଗବତରେ 'ରାଧା'-ନାମ ନାହିଁ । ଜଗନ୍ନାଥ ଦାସ ରାଧାଙ୍କୁ ବୃନ୍ଦାବତୀ କରି ଦେଇଛନ୍ତି । ପୁଣି ସଂସ୍କୃତର ୩୪ତମ ଅଧ୍ୟାୟଟି ଓଡ଼ିଆରେ ସୁଦର୍ଶନମୋକ୍ଷଣ(୩୫) ଓ ଶଙ୍ଖଚୂଡ଼ବଧ(୩୬)କୁ ନେଇ ଦୁଇ ଅଧ୍ୟାୟ ହୋଇଛି । ଏଣୁ ଏହାପରେ ସଂସ୍କୃତ ଅଧ୍ୟାୟସଂଖ୍ୟାରେ ୨ ଯୋଗ କଲେ ଓଡ଼ିଆ ଅଧ୍ୟାୟସଂଖ୍ୟା ଆସିବ ।ଏଣୁ ଏହାପରେ ଯୁଗ୍ମଗୀତ(୩୭) ଅଛି। ଏହା ପରବର୍ତ୍ତୀ ସଂସ୍କୃତର ୩୬ତମ ଅଧ୍ୟାୟଟି ପୁଣି ଓଡ଼ିଆରେ ଷଣ୍ଢାସୁରବଧ(୩୮) ଏବଂ ହତ୍ୟା ପାଇଁ ରାମକୃଷ୍ଣଙ୍କୁ ଆଣିବା ଲାଗି ଅକ୍ରୂରଙ୍କୁ ପ୍ରେରଣ(୩୯) କରିବା ଫଳରେ ସଂସ୍କୃତ ଅଧ୍ୟାୟସଂଖ୍ୟାରେ ୩ ଯୋଗ କଲେ ଏଣିକି ଓଡ଼ିଆ ଅଧ୍ୟାୟସଂଖ୍ୟା ଆସିବ । କେଶୀ ଓ ବ୍ୟୋମାସୁରବଧ ତଥା ଶ୍ରୀକୃଷ୍ଣସ୍ତୁତି(୪୦), ଅକ୍ରୂରଙ୍କ ବ୍ରଜ-ଗମନ(୪୧), କୃଷ୍ଣବଳରାମଙ୍କ ମଥୁରାଗମନ, ଗୋପୀବିଳାପ ଓ କାଳିନ୍ଦୀଜଳରେ ଭଗବଦ୍ଧାମଦର୍ଶନ(୪୨)ରେ ବୃନ୍ଦାବନଲୀଳା ସମାପ୍ତ ହୋଇଛି । ଏହାପରେ ଅକ୍ରୂରକୃତ ଶ୍ରୀକୃଷ୍ଣସ୍ତୁତି(୪୩), ଶ୍ରୀକୃଷ୍ଣଙ୍କ ମଥୁରାପ୍ରବେଶ, ରଜକବଧଓ ସୁଦାମାମାଳୀକୁ ବରଦାନ(୪୪), କୁବ୍ଜା ପ୍ରତି ଅନୁଗ୍ର.ହ, ଧନୁଭଙ୍ଗ(୪୫), କୁବଳୟାଗଜବଧ ଓ ରଙ୍ଗସଭାରେ ପ୍ରବେଶ(୪୬), ଚାଣୂର-ମୁଷ୍ଟିକ ସହ ମଲ୍ଲଯୁଦ୍ଧ ଓ କଂସବଧ(୪୭) ପରେ ଉଗ୍ରସେନଙ୍କ ରାଜ୍ୟାଭିଷେକ(୪୮)ରେ ଦଶମ ସ୍କନ୍ଧର ପୂର୍ବାର୍ଦ୍ଧ ଶେଷ ହୋଇଛି । ଦଶମ ସ୍କନ୍ଧ ସଂସ୍କୃତ ପୂର୍ବାର୍ଦ୍ଧର (୪୬ ରୁ ୪୯)ଚାରି ଅଧ୍ୟାୟ ଓଡ଼ିଆ ଭାଗବତର ଉତ୍ତରାର୍ଦ୍ଧକୁ ଚାଲିଯାଇଛି । ସଂସ୍କୃତ-ପୂର୍ବାର୍ଦ୍ଧରେ ଥିବା ୪୫ତମ ଅଧ୍ୟାୟଟି ଓଡ଼ିଆରେ ୪୮ତମ ଓ ୪୯ ତମ ଦୁଇଟି ଅଧ୍ୟାୟ ହୋଇଛି ଏବଂ ସେଥିରୁ ଉଗ୍ରସେନଙ୍କ ରାଜ୍ୟାଭିଷେକ(୪୮) ପୂର୍ବାର୍ଦ୍ଧରେ ଅଛି ତ ଶ୍ରୀକୃଷ୍ଣ-ବଳରାମଙ୍କ ବିଦ୍ୟାଧ୍ୟୟନ ପାଇଁ ଗୁରୁଗୃହ-ଗମନ(୪୯)ରୁ ଓଡ଼ିଆ ଭାଗବତର ଉତ୍ତରାର୍ଦ୍ଧ ଆରମ୍ଭ ହୋଇଛି । ଅତଏବ ଏହାପରେ ସଂସ୍କୃତ ଅଧ୍ୟାୟସଂଖ୍ୟାରେ

୪ ଯୋଗ କଲେ ଓଡ଼ିଆ ଅଧ୍ୟାୟସଂଖ୍ୟା ଆସିବ । ଏଣୁ ଉଦ୍ଧବଙ୍କ ବ୍ରଜଯାତ୍ରା(୫୦); ଉଦ୍ଧବ-ଗୋପୀ-ସଂବାଦ, ଭ୍ରମରଗୀତ ଓ ଉଦ୍ଧବଙ୍କ ମଥୁରାଗମନ(୫୧); କୁବ୍ଜାର ମନୋରଥପୂର୍ତ୍ତି, ଅକ୍ରୂର ଗୃହରେ ଶ୍ରୀକୃଷ୍ଣଙ୍କ ପଦାର୍ପଣ ଓ ଅକ୍ରୂରଙ୍କୁ ହସ୍ତିନାପୁର-ପ୍ରେରଣ(୫୨), ହସ୍ତିନାପୁର ସଂବାଦ ଘେନି ଅକ୍ରୂରଙ୍କ ମଥୁରା-ପ୍ରତ୍ୟାବର୍ତ୍ତନ(୫୩) ଇତ୍ୟାଦି ସଂସ୍କୃତପୂର୍ବାର୍ଦ୍ଧରୁ ଆସି ଓଡ଼ିଆ ଉତ୍ତରାର୍ଦ୍ଧରେ ପଶିଛି । ତା'ପରେ ଜରାସନ୍ଧର ମଥୁରାକ୍ରମଣ(୫୪), ମୁଚୁକୁନ୍ଦ ଦ୍ୱାରା କାଳଯବନବିନାଶ(୫୫), ଶ୍ରୀକୃଷ୍ଣ କର୍ତ୍ତୃକ ରୁକ୍ମିଣୀ-ହରଣ(୫୭), ସ୍ୟମନ୍ତକମଣିହରଣ ଓ ଜାମ୍ବବତୀ,ସତ୍ୟଭାମାଙ୍କ ପାଣିଗ୍ରହଣ(୬୦) ପରେ ସଂସ୍କୃତଭାଗବତର ୫୮ତମ ଅଧ୍ୟାୟଟି ଓଡ଼ିଆରେ ଦୁଇଟି ଅଧ୍ୟାୟ(୬୨ ଓ ୬୩)ହୋଇଥିବାରୁ ଏହାପରେ ସଂସ୍କୃତ ଅଧ୍ୟାୟସଂଖ୍ୟାରେ ୫ ଯୋଗ କଲେ ଓଡ଼ିଆ ଅଧ୍ୟାୟସଂଖ୍ୟା ଆସିବ । ଅନନ୍ତର ଜରାସନ୍ଧବଧ(୭୭), ଶିଶୁପାଳବଧ(୭୯), ଶାଲ୍ୱବଧ(୮୨)ପରେ ସଂସ୍କୃତଭାଗବତର ୭୮ତମ ଅଧ୍ୟାୟଟିକୁ ଓଡ଼ିଆରେ ଦୁଇଟି ଅଧ୍ୟାୟ(୮୩ ଓ ୮୪) ଯଥା - ଦନ୍ତବକ୍ତ୍ର ଓ ବିଦୂରବଧ(୮୩), ବଳରାମଙ୍କ ସୂତମୁନିହତ୍ୟା ଓ ତୀର୍ଥଯାତ୍ରା(୮୪) ହେବା ଫଳରେ ଏଣିକି ସଂସ୍କୃତ ଅଧ୍ୟାୟସଂଖ୍ୟାରେ ୬ ଯୋଗ କଲେ ଓଡ଼ିଆ ଅଧ୍ୟାୟସଂଖ୍ୟା ଆସିବ । ତା'ପରେ ସୁଦାମାଦାରିଦ୍ର୍ୟମୋଚନ(୮୭),ବେଦସ୍ତୁତି(୯୩), ଭଗବାନ୍ ଶଙ୍କରଙ୍କ ଉପରେ ସଙ୍କଟ(୯୪) ଓ ଭଗବାନ୍ ବିଷ୍ଣୁଙ୍କ ଶ୍ରେଷ୍ଠତା(୯୫) ବିଷୟ ବର୍ଣିତ ହୋଇଛି ।

**ଏକାଦଶ ସ୍କନ୍ଧ :**

ଶ୍ରୀମଦ୍‌ଭାଗବତର ଆତ୍ମା-ସଦୃଶ ଦଶମସ୍କନ୍ଧ କୃଷ୍ଣ-ଜନ୍ମାଷ୍ଟମୀରେ ପାଠ କରାଗଲାବେଳେ ସବୁଦିନେ ଏକାଦଶ ସ୍କନ୍ଧ ଭକ୍ତିର ସହିତ ଘରେ ଘରେ ନିତ୍ୟ ପାଠ ହୋଇଥାଏ । କାରଣ ଭଗବାନ୍‌ଙ୍କ ଲୀଳା ଦଶମ ସ୍କନ୍ଧରେ ଶେଷ ହେବା ପରେ ମାନବ ସମାଜର ଉଦ୍ଧାର ପାଇଁ ଶିକ୍ଷଣୀୟ ତାଙ୍କର ଶାଶ୍ୱତ ବାଣୀ ଏକ ଆଦେଶ ଭଳି ଏକାଦଶ-ସ୍କନ୍ଧରେ ହିଁ ଆମକୁ ଉପଲବ୍ଧ ହୋଇଥାଏ । ଏକାଦଶ-ସ୍କନ୍ଧର ମୋଟ ଏକତିରିଶ ଅଧ୍ୟାୟରୁ ପ୍ରଥମ ପାଞ୍ଚ ଅଧ୍ୟାୟରେ ମୁକ୍ତିର ପଞ୍ଚ-ସାଧନ ବିଷୟ କୁହାଯାଇଛି । ଅବିଦ୍ୟାର ପାଞ୍ଚଟି ଗ୍ରନ୍ଥି(ଅଭିନିବେଶ, ଦ୍ୱେଷ, ରାଗ, ଅସ୍ମିତା ଓ ଅବୋଧତା)ରୁ ମୁକ୍ତ ହେବା ସକାଶେ ଏହି ପଞ୍ଚ-ସାଧନ ପ୍ରୟୋଜନ । ଏହାପରେ ଚବିଶି ଗୋଟି ଅଧ୍ୟାୟରେ ପ୍ରକୃତିଗତ ଚବିଶି ବନ୍ଧନରୁ ମୁକ୍ତି ସକାଶେ ଧର୍ମ ଓ ଭକ୍ତିର ବର୍ଣନା ହୋଇଛି । ଏଥି ମଧ୍ୟରେ ଅବଧୂତ ଦତ୍ତାତ୍ରେୟଙ୍କ ଚବିଶିଗୁରୁ(୭), ପିଙ୍ଗଳାଗୀତ(୮), ଭକ୍ତିର ମହତ୍ତ୍ୱ ଓ ଧ୍ୟାନଯୋଗବର୍ଣନ(୧୪), ଅଷ୍ଟାଦଶସିଦ୍ଧି(୧୫), ବର୍ଣାଶ୍ରମଧର୍ମ- ନିରୂପଣ(୧୭-୧୮), ତିତିକ୍ଷୁଦ୍ୱିଜ-ଉପାଖ୍ୟାନରେ ଭିକ୍ଷୁଗୀତ(୨୩), ଐଳଗୀତ(୨୬), ପରମାର୍ଥ-ନିରୂପଣ(୨୮), ଭାଗବତଧର୍ମ-ନିରୂପଣ(୨୯) ପରେ ଶେଷ ଦୁଇ ଅଧ୍ୟାୟରେ ଯଦୁକୁଳସଂହାର(୩୦) ଓ ଭଗବାନ୍‌ଙ୍କ ପରମଧାମଗମନ(୩୧) ନାଟ୍ୟାଭିନୟ ପରିତ୍ୟାଗ ରୂପକ ମୁକ୍ତି ରହିଛି । ଭଗବାନ୍ ଶ୍ରୀକୃଷ୍ଣ ଯଦୁବଂଶରେ ଅବତୀର୍ଣ ହୋଇ ଯେଉଁ ନାଟକ ବା ଲୀଳା ରଚନା କରିଗଲେ, ତାକୁ ବି କିପରି ତ୍ୟାଗ କରି ପାରିଥିଲେ - ତାହା ହେଉଛି ମୁକ୍ତି ବା ସଂସାରବନ୍ଧନୋଚ୍ଛେଦର ଜ୍ୱଳନ୍ତ ଉଦାହରଣ । ମୁକ୍ତିର ନିରୂପଣ ହୋଇଥିବାରୁ ଏହି ସ୍କନ୍ଧଟି 'ମୁକ୍ତିସ୍କନ୍ଧ'ଭାବରେ ପରିଚିତ । ସଂସ୍କୃତ ଭାଗବତର ୨ୟ ଅଧ୍ୟାୟଟି ଓଡ଼ିଆ ଭାଗବତରେ ଦୁଇଟି ଅଧ୍ୟାୟ(୨ୟ ଓ ୩ୟ) ହେବା ଫଳରେ ସଂସ୍କୃତଭାଗବତର ୩୧ ଅଧ୍ୟାୟ ଓଡ଼ିଆଭାଗବତରେ ୩୨ ଅଧ୍ୟାୟ ହୋଇଛି ।

**ଦ୍ୱାଦଶ ସ୍କନ୍ଧ :**

କୃଷ୍ଣଙ୍କ ସ୍ୱଧାମଗମନ ପରେ 'କହଇ ଦାସ ଜଗନ୍ନାଥ, ଏବେ ମୁଁ ହୋଇଲି ଅନାଥ' କହି 'କୃଷ୍ଣ ସଙ୍ଗତେ ଜଗନ୍ନାଥ, ଚଳିଲେ ଗୋଲୋକ ଯେ ପଥ' ହୋଇଛନ୍ତି ଏବଂ ପରିଣାମରେ ଜଗନ୍ନାଥ ଦାସ ଦ୍ୱାଦଶ ସ୍କନ୍ଧ ଲେଖି ପାରିଲେ ନାହିଁ ବୋଲି ମହାଦେବ ଦାସ ତ୍ରୟୋଦଶ ସ୍କନ୍ଧ ଲେଖିଥିବା ପ୍ରକାଶ କରିଛନ୍ତି । ଏଥିରେ କ୍ରମଶଃ ରାଜବଂଶ(୧), କଳିଧର୍ମ(୨), ଯୁଗଧର୍ମନିରୂପଣ ଓ କଳିଯୁଗରେ ହରିନାମକୀର୍ତ୍ତନମାହାତ୍ମ୍ୟ(୩),ପରମାର୍ଥୋପଦେଶ ଦ୍ୱାରା ପରୀକ୍ଷିତଙ୍କ

ଭୟ-ନିବାରଣ(୫) ଓ ପରୀକ୍ଷିତଙ୍କ ଦେହତ୍ୟାଗ(୬), ନାରାୟଣସ୍ତବ(୮), ମାୟାଦର୍ଶନ(୯) ଓ ସୂର୍ଯ୍ୟ-ବ୍ୟୂହବର୍ଣନା ରହିଛି। ଭାଗବତର କଥାପୂର୍ତ୍ତି ଲାଗି ପ୍ରଚଳିତ ମହାଦେବ ଦାସଙ୍କ ସାର୍ବଜନୀନ ଅନୁବାଦକୁ ଗ୍ରହଣ କରାଯାଇଛି । କିନ୍ତୁ ଦ୍ୱାଦଶ ସ୍କନ୍ଧ ପରେ ଦ୍ୱାରକା ଦାସଙ୍କ ତ୍ରୟୋଦଶ ସ୍କନ୍ଧ ଅତିରିକ୍ତ, ଅସଂପୃକ୍ତ ଓ ଅନାବଶ୍ୟକ ବୋଲି ଏଥିରେ ଗୃହୀତ ହୋଇନାହିଁ ।

**ଭାଗବତ ସଂସ୍କରଣ :**

ଓଡ଼ିଆରେ ଜଗନ୍ନାଥ ଦାସଙ୍କ ଭାଗବତ ନିଜର ପ୍ରାମାଣିକତା ଓ ବିଷୟପରିବେଷଣର ପରିପାଟୀକୁ ନେଇ ଘରେ ଘରେ ଆଦର ଓ ଓଡ଼ିଶା ବାହାରେ ମଧ୍ୟ ପ୍ରସିଦ୍ଧି ଲାଭ କରିଛି । ଓଡ଼ିଆରେ ଭାଗବତ ରଚନା ହେବାର ୨୦୦ ବର୍ଷ ପରେ (୧୨୭୩ ସାଲ=୧୮୬୪ ଖ୍ରୀଷ୍ଟାବ୍ଦରେ)ବଙ୍ଗଳାଭାଷାରେ ଭାଗବତର ପ୍ରଥମ ଅନୁବାଦ କରିଥିଲେ ବିପ୍ର ସନାତନ । ସେ ଦଶମ ସ୍କନ୍ଧର ଶେଷ ଛ ଅଧ୍ୟାୟକୁ ଅନୁବାଦ ନ କରି 'ଜଗନ୍ନାଥ ଦାସ କୃତ ଅପୂର୍ବ ବର୍ଣନ' ଓଡ଼ିଆ ଅନୁବାଦକୁ ହିଁ ବଙ୍ଗଳା ଅକ୍ଷରରେ ଛାପିଥିଲେ । ଏଥିରୁ ହିଁ ଜଣାଯାଏ ଜଗନ୍ନାଥ ଦାସଙ୍କ ଅନୁବାଦରେ ଭାବପ୍ରକାଶଶୈଳୀର ଶ୍ରେଷ୍ଠତା ଓ ଅନତିକ୍ରମଣୀୟତା । ଜଗନ୍ନାଥ ଦାସ ତାଙ୍କ ଧର୍ମପ୍ରାଣ ଓଡ଼ିଆ ମା-ଭଉଣୀଙ୍କୁ ଆଧ୍ୟାତ୍ମିକ ଭାଗବତ ଭାବରେ ଅନୁପ୍ରାଣିତ କରିବା ପାଇଁ ତଥା ପ୍ରତି ଓଡ଼ିଆଙ୍କ ହୃଦୟରେ ଶୁଦ୍ଧ ଭାଗବତ ଭାବ ସଞ୍ଚାର ଲାଗି ଓ ମୁହଁରେ ଶୁଦ୍ଧ ଓଡ଼ିଆ ଭାଷା ଫୁଟାଇବା ସକାଶେ ଭାଗବତ ରଚନା କରିଥିଲେ । ସେ ଭାଗବତ ଅନୁବାଦ ବେଳେ ଆବଶ୍ୟକତା ଅନୁସାରେ ପୁରୀ ଶଙ୍କରାନନ୍ଦ ମଠର ଉତ୍କଳୀୟ ଆଚାର୍ଯ୍ୟ ଶ୍ରୀଧରସ୍ୱାମୀ(୧୪ଶ ଶତାବ୍ଦୀ)ଙ୍କ ପ୍ରସିଦ୍ଧ ଭାଗବତ-'ଭାବାର୍ଥଦୀପିକା'ଟୀକାକୁ ଅନୁସରଣ କରିଛନ୍ତି । ଏହି ଭାବାର୍ଥଦୀପିକାକୁ ପୂରା ନବାକ୍ଷରବୃତ୍ତରେ ଅନୁବାଦ କରି ଜଗନ୍ନାଥ ଦାସଙ୍କୁ ବଳିଯିବା ପାଇଁ ଖଣ୍ଡପଡ଼ାର ଦୀନବନ୍ଧୁ ଖାଡ଼ଙ୍ଗା ୧୮ଶ ଶତାବ୍ଦୀର ମଧ୍ୟଭାଗରେ ଚେଷ୍ଟା କରିଥିଲେ । ତାହା 'ଖାଡ଼ଙ୍ଗା ଭାଗବତ' ନାମରେ ପରିଚିତ । ଏହା ସୁପଣ୍ଡିତ ଅଧ୍ୟାପକ ଗଙ୍ଗାଧର ଷଡ଼ଙ୍ଗୀଙ୍କ ଦ୍ୱାରା ସୁସମ୍ପାଦିତ ହୋଇ ହରିଗୋପାଳ ଦାସଙ୍କ 'ଗୋସ୍ୱାମୀପ୍ରେସ୍' ଦ୍ୱାରା ପ୍ରକାଶିତ ହୋଇଛି । ପ୍ରାମାଣିକତା ସତ୍ତ୍ୱେ ଏଥିରେ କିନ୍ତୁ ଜଗନ୍ନାଥ ଦାସଙ୍କ ସାବଲୀଳତା ନ ଥିବାରୁ ଏହା ସର୍ବସାଧାରଣରେ ଗୃହୀତ ହୋଇପାରିଲା ନାହିଁ। ଏପରିକି କୃଷ୍ଣଚରଣ ପଟ୍ଟନାୟକଙ୍କ ଭାଗବତ ମଧ୍ୟ ଆଦୃତ ହୋଇପାରିଲା ନାହିଁ।

ଜଗନ୍ନାଥ ଦାସଙ୍କ ଭାଗବତର ବହୁ ପ୍ରତିଲିପି ହୋଇ ଓଡ଼ିଶାର ଘରେ ଘରେ ପାଠ ହେଲା ଓ ଭାଗବତ ପୋଥି ଆକାରରେ ପୂଜା ପାଇଲା ସତ କିନ୍ତୁ ଅନୁଲିଖନକାରଙ୍କ ଦ୍ୱାରା ପାଠରେ ବିବିଧତା ଦେଖାଦେଲା । ଏପରି କି ଶିକ୍ଷିତ ସାହିତ୍ୟିକ ମାନେ ମଧ୍ୟ ଜଗନ୍ନାଥ ଦାସଙ୍କ ଭାଗବତକୁ ମୂଳ ସଂସ୍କୃତ ସହିତ ମିଳାଇ ସଂଯୋଜନ ବିଯୋଜନ ସହ ମୂଳ ଭାଗବତ ଅନୁଯାୟୀ ଅନୁବାଦକୁ, ଜଗନ୍ନାଥ ଦାସଙ୍କ ନାମରେ ଚଳାଇଲେ । ସେମାନଙ୍କ ମଧ୍ୟରେ ପ୍ରଥମେ ଚିନ୍ତାମଣି ଆଚାର୍ଯ୍ୟ ମୂଳସଂସ୍କୃତ ସହ ଓଡ଼ିଆ ଗଦ୍ୟାନୁବାଦ, ଜଗନ୍ନାଥ ଦାସଙ୍କ ପଦ୍ୟାନୁବାଦ ଦେଇ ଦଶମସ୍କନ୍ଧର ପୂର୍ବାର୍ଦ୍ଧ ପର୍ଯ୍ୟନ୍ତ ପ୍ରକାଶ କରିଥିଲେ । ତାଙ୍କ ପରେ ରାଜକିଶୋର ଦାସ ସଂସ୍କୃତ ମୂଳ ଅନୁସାରେ ଜଗନ୍ନାଥ ଦାସଙ୍କ ପାଠ ବୋଲି ଯାହା ଦେଲେ, ତାହା ହିଁ ଜଗନ୍ନାଥକମ୍ପାନୀ ପ୍ରଭୃତିଙ୍କ ଦ୍ୱାରା ପ୍ରକାଶିତ ହୋଇ ବହୁଳ ଭାବରେ ପ୍ରଚାରିତ । ରାଧାରମଣ ପୁସ୍ତକାଳୟ ପୋଥିରୁ ସଂଗ୍ରହ କରି ଗୋଟିଏ ସଂସ୍କରଣ ଛାପିଛନ୍ତି । ଅନୁରୂପ ଭାବରେ ବ୍ରହ୍ମପୁର ଓ ଅନ୍ୟାନ୍ୟ ଅଞ୍ଚଳରୁ ମଧ୍ୟ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରକାଶ ପାଇଛି । ଏ ସବୁର ବିଭିନ୍ନତାକୁ ଦେଖି ବଡ଼ ଓଡ଼ିଆମଠ ପକ୍ଷରୁ ପୋଥିରୁ ଜଗନ୍ନାଥ ଦାସଙ୍କ ମୂଳପାଠ ସଂଗ୍ରହର ଉଦ୍ୟମ ହୋଇଥିଲା ଓ ଷଷ୍ଠ ସ୍କନ୍ଧ ପର୍ଯ୍ୟନ୍ତ ପ୍ରକାଶ ପାଇଥିଲା । ପୂର୍ଣ ହୋଇପାରି ନଥିଲା । ସାରଳା ମହାଭାରତ ସମ୍ପାଦନା ପରେ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ ଏ ଦିଗରେ କାମ କରିବା ଆରମ୍ଭ କରିଥିଲେ କିନ୍ତୁ ହୋଇପାରିଲା ନାହିଁ । ଓଡ଼ିଶାରେ ବୈଜ୍ଞାନିକ ପ୍ରଣାଳୀରେ ସମ୍ପାଦନ କରିବା ବିଜ୍ଞ ଲୋକର ଅଭାବ ଦେଖି ପ୍ରଫେସର୍ ପ୍ରହ୍ଲାଦ ପ୍ରଧାନଙ୍କ ସହ ମୁଁ ସଂସ୍କୃତିବିଭାଗ ପକ୍ଷରୁ 'ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା' (ସଂସ୍କୃତ ଓ ଓଡ଼ିଆ)'

ଆରମ୍ଭ କରି କିଛି କାମ କରିଥିଲୁ ଓ ସାରଳା ମହାଭାରତର ପୁନଃ ସମ୍ପାଦନା ସହ ଭାଗବତ ସମ୍ପାଦନା ମଧ୍ୟ ଆମର ଅନ୍ୟତମ ଲକ୍ଷ୍ୟ ଥିଲା। କିନ୍ତୁ ବିଭିନ୍ନ କାରଣ ଯୋଗୁଁ ତାହା ସମ୍ଭବ ହେଲାନାହିଁ । ଫଳରେ ଜଗନ୍ନାଥ ଦାସଙ୍କ ମୂଳ ପାଠ କ'ଣ - ଏହି ଚିନ୍ତା ଆମର ସ୍ୱର୍ଗତ ବନ୍ଧୁ ଡକ୍ଟର୍ କୃଷ୍ଣଚରଣ ସାହୁଙ୍କୁ ଘାରିଲା । ସେ ନିଜ ଉଦ୍ୟମରେ ତାଙ୍କର ଛାତ୍ରମାନଙ୍କୁ ଲଗାଇ ବିଭିନ୍ନ ଅଞ୍ଚଳରୁ ପୋଥି ସଂଗ୍ରହ କରି ଯେଉଁ ଉଦ୍ୟମ କଲେ, ତାକୁ ପ୍ରକାଶ କରିବା ପାଇଁ କେନ୍ଦ୍ରସାହିତ୍ୟ ଏକାଡେମୀ ପର୍ଯ୍ୟନ୍ତ ଉଦ୍ୟମ କରିଥିଲେ । ବାବାଜୀ ଚୈତନ୍ୟ ଚରଣ ଦାସ ମଧ୍ୟ ଏକ ଉଦ୍ୟମ କରିଥିଲେ । କିନ୍ତୁ ରାଜକିଶୋର ଦାସଙ୍କ ସମ୍ପାଦିତ ଭାଗବତ ଓ ବାବା ଚୈତନ୍ୟ ଚରଣ ଦାସଙ୍କ 'ପରିମାର୍ଜିତ ନୂତନ ସଂସ୍କରଣ' ପାଠ ମଧ୍ୟରେ କୌଣସି ପାର୍ଥକ୍ୟ ପ୍ରାୟ ଦେଖାଯାଏ ନାହିଁ । ପରେ ପଣ୍ଡିତ ନୀଳମଣି ମିଶ୍ର ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ଯେଉଁ ସମ୍ପାଦନା ଦାୟିତ୍ୱ ନେଲେ ଓ ଯାହାକୁ ଜନୈକ ମଧୁସୂଦନ ମିଶ୍ର ନିଜର ବୋଲି ଦାବୀ କଲେ ତାହା ମଧ୍ୟ ରାଜକିଶୋର ଦାସଙ୍କ ଅନୁକୃତି ହେଲା ସିନା ଯଥାରୀତି ସମ୍ପାଦିତ ହୋଇ ପାରିଲା ନାହିଁ । ଋଙ୍ଗାଧର ବାବୁଙ୍କୁ ଛାଡ଼ିଦେଲେ ଭାଗବତରେ ହାତ ଦେଇଥିବା ଉପର୍ଯ୍ୟୁକ୍ତ କାହାରି ହେଲେ ବୈଜ୍ଞାନିକ ସମ୍ପାଦନା ପଦ୍ଧତି ସହ ପରିଚୟ ନଥିଲା । ଏବେ ବି ଓଡ଼ିଶାରେ ବୈଜ୍ଞାନିକ ସମ୍ପାଦନ ପଦ୍ଧତି ଅବହେଳିତ ।

ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁ ତାଳପତ୍ର ପୋଥି ସଂଗ୍ରହ କରି ଜଗନ୍ନାଥ ଦାସଙ୍କ ମୂଳଲେଖାର ଯଥାସମ୍ଭବ ନିକଟତମ ପାଠ ସଂଗ୍ରହ କରି ଏହାକୁ ଏକ ପ୍ରାମାଣିକ ସଂସ୍କରଣ ଭାବରେ ପାଠକମାନଙ୍କୁ ଦେବାକୁ ଚେଷ୍ଟା କରିଛନ୍ତି । ଆଶା କରେ ଏହା ଭାଗବତ ପ୍ରେମୀ ଜନତାଙ୍କ ସାଦର ସ୍ୱୀକୃତି ଲାଭ କରି ସମ୍ପାଦକ ସ୍ୱର୍ଗତ ଡକ୍ଟର୍ ସାହୁଙ୍କ ଶ୍ରମ ସାର୍ଥକ କରିବାରେ ସମର୍ଥ ହେବ ।

ଭକ୍ତକବି ୰ ଜଗନ୍ନାଥ ଦାସଙ୍କ କୃତ ଶ୍ରୀମଦ୍ଭାଗବତ

# ପ୍ରଥମ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଯାହାର ଆଦି ମଧ ଅନ୍ତେ । ବିଚାର ନ ଘଟେ ଜଗତେ ॥
ଇନ୍ଦ୍ରିୟ ଅର୍ଥ ଯେ ଜାଣଇ । ସ୍ୱତେଜେ ନିତ୍ୟେ ପ୍ରକାଶଇ ॥
ଆନନ୍ଦ ମନେ ବେଦ ସାର । ବ୍ରହ୍ମାଣ୍ଡ ଯେ କଲା ବିସ୍ତାର ॥
ଯାହାର ରୂପ ହୃଦେ ଚିନ୍ତି । ବେଦ ପୁରୁଷେ ନ ଜାଣନ୍ତି ॥
ଏ ସାଂଖ୍ୟ ଯୋଗୀଙ୍କର ମତ । ମୃତ୍ତିକା ବିଚାର ଯେମନ୍ତ ॥
ଆତ୍ମା ପ୍ରକାଶେ ଛନ୍ନ ହୋଇ । ନିରସ୍ତ କୁହୁକ ବୋଲାଇ ॥
ଜଳେ ପାଷାଣ ବୃଦ୍ଧି ହୋଇ । ତେଜରୁ ମୃଗତୃଷ୍ଣା ହୋଇ ॥
କାଚରେ ଜଳ ପ୍ରକାଶଇ । ଏମନ୍ତେ ମିଥ୍ୟା ତିନି ହୋଇ ॥
ସତ୍ୟ ପରମାନନ୍ଦ ହରି । ଯାହାର ଭାବେ ଭବୁତରି ॥
ଯାର ଚରଣେ ନିତ୍ୟେ ଧ୍ୟାନ । କରି ତରନ୍ତି ସାଧୁଜନ ॥
ସେ ହରି ପାଦ ହୃଦେ ଧରି । ପ୍ରବନ୍ଧେ ଗୀତ ନାଦ କରି ॥
ଅଶେଷ ଭଗତର ହିତେ । କହଇ ଦାସ ଜଗନ୍ନାଥେ ॥
ନିର୍ମଳ ମୁନିଙ୍କର ମତେ । ହରି ଚରିତ ଭାଗବତେ ॥
କହିବି ଅଛି ଯେତେ ଗୁଣ । ସୁଜନେ ସାବଧାନେ ଶୁଣ ॥
କପଟ ଧର୍ମ ଯାର ନାହିଁ । ସ୍ୱଭାବେ ସନ୍ଥ ସେ ବୋଲାଇ ॥
ସେ ସାଧୁ ଜନଙ୍କର ଧର୍ମ । ମାୟା ବର୍ଜିତ ଶୁଦ୍ଧ କର୍ମ ॥
ସେ ଧର୍ମ ଯେହୁ ଅନୁମାନି । ଯେଣୁ ସଂସାରୁ ତରେ ଜ୍ଞାନୀ ॥
ତାଙ୍କ ବିଚାରେ ବସ୍ତୁ ଯେତେ । କହିବା ଶୁଣ ଶୁଦ୍ଧଚିତ୍ତେ ॥
ଲକ୍ଷ୍ୟ ଅଲକ୍ଷ୍ୟ ଯେତେ ଜାଣି । ବେଦ ବିଚାରେ ପରିମାଣି ॥
ସେ ବସ୍ତୁ ଅଛି ଯହୁଁ ପୂରି । ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ॥
ଶ୍ରବଣ ମାତ୍ରେ ମୋକ୍ଷ ହୋଇ । ତୃତୀୟ ତାପ କ୍ଷୟେ ଯାଇ ॥
ହୃଦରେ ବସଇ ତକ୍ଷଣ । ଅନାଦି ପ୍ରଭୁ ନାରାୟଣ ॥
ଏଣୁ ଅଧିକ ଅନ୍ୟ ଗ୍ରନ୍ଥେ । କି ପ୍ରୟୋଜନ ଏ ଜଗତେ ॥
ଏ ଭାଗବତର ମହିମା । କେ ଜାଣି ପାରେ ଗୁଣ ସୀମା ॥
ସକଳ ବେଦ ହୋଇ ବୃକ୍ଷେ । ଫଳ ଫଳିଲେ ଅନ୍ତରୀକ୍ଷେ ॥
କେତେହେଁ ଦିନେ ପାଚି ତଳେ । ବୃନ୍ତୁ ପଡ଼ିଲେ ବାୟୁବଳେ ॥
ଶୁକ ଧାଇଁଲେ ତାହା ଦେଖି । ପକ୍ଷୀଙ୍କ ସଙ୍ଗତ ଉପେକ୍ଷି ॥
ଚୋଷେ ଅଧର କ୍ଷତ କଲା । ଭିତରେ ସୁରଙ୍ଗ ଦିଶିଲା ॥
ତହୁଁ ଗଳିଲା ରସସାର । କି ଅବା ଦେବା ପଟାନ୍ତର ॥
ଅମୃତ ନିନ୍ଦେ ସ୍ୱାଦୁପଣେ । ସୁଜନେ ପିବ ଅନୁକ୍ଷଣେ ॥
ଆନନ୍ଦେ କର ସୁଧା ପାନ । ତେଣୁ ହୋଇବ ଦିବ୍ୟଜ୍ଞାନ ॥
ଏ ଚାରି ବୀଜଙ୍କର ମୂଳ । ନିଗମ ବନ ବୃକ୍ଷ-ଫଳ ॥
ପିବ ଜୀବନ ଅନ୍ତଯାଏ । ତେବେ ବଞ୍ଚିବ ମାୟା ମୋହେ ॥
ଯେବେ ହୋ ଶୁଣ ସାଧୁଜନେ । ହରି ଚରିତ ଶୁଦ୍ଧ ମନେ ॥
ସର୍ବ ଦେବଙ୍କ ରମ୍ୟସ୍ଥାନ । ନାମ ଯେ ନୈମିଷ୍ୟା ଅରଣ୍ୟ ॥
କଳି ଯୁଗ ଆଗମ ଦେଖି । ମୁନିଯେ ସ୍ୱସ୍ଥାନ ଉପେକ୍ଷି ॥
ଶୌନକ ଆଦି ମୁନିଗଣେ । ମିଳିଲେ ନୈମିଷ୍ୟା ଅରଣ୍ୟେ ॥
କଳି କଲୁଷେ ଭୟ କରି । ମୁନିଯେ ଏକାନ୍ତେ ବିଚାରି ॥
ସଙ୍କଳ୍ପ କରି ଯେକ ତୁଲେ । ସହସ୍ର ଯଜ୍ଞ ଆରମ୍ଭିଲେ ॥
ଶୁଭେ ଜାଣନ୍ତି ସର୍ବ ଦୀକ୍ଷା । ସ୍ୱର୍ଗାପବର୍ଗେ କଲେ ଇଚ୍ଛା ॥
ସମସ୍ତେ ମିଳି ପ୍ରାତଃକାଳେ । କର୍ମ ସମ୍ପାଦିଲେ ଅନଳେ ॥
ସୂତ ମୁନିଙ୍କି ପୂଜା କରି । ସକଳେ ବସିଲେ ଆବୋରି ॥
ସକଳ ମୁନି ଶୁଦ୍ଧ ମନେ । କହନ୍ତି ଅମୃତ ବଚନେ ॥

### ଋଷଗଣ ଉବାଚ

ଭୋ ସୂତ ଶୁଣ ସାବଧାନେ । ତୋର ମହିମା ଅନୁମାନେ ॥
ସର୍ବ ପୁରାଣ ଇତିହାସେ । ଶୁଣିଲୁ ତୁମ୍ଭର ସମ୍ପାଶେ ॥
ସଂସାରେ ଧର୍ମ ଶାସ୍ତ୍ର ଯେତେ । ସର୍ବ ଗୋଚର ତୁମ୍ଭମତେ ॥
ବ୍ୟାସ ମୁନିଙ୍କ ଶିଷ୍ୟ ତୁମ୍ଭେ । ଯେ କଥା ଭଲେ ଜାଣୁ ଆମ୍ଭେ ॥
ପୂର୍ବେ ଯେ ଥିଲେ ବ୍ରହ୍ମମୁନି । ତାଙ୍କ ବଚନ ଆମ୍ଭେ ଘେନି ॥
ସକଳ ଶାସ୍ତ୍ର ତୁମ୍ଭ ଠହିଁ । ବେଦ ପୁରାଣ ଯେତେ କହି ॥
ବ୍ୟାସଙ୍କ ଅନୁଗ୍ରହ ଘେନି । ସକଳ ଶାସ୍ତ୍ରେ ତୁମ୍ଭେ ଜ୍ଞାନୀ ॥
ଦଇବେ ଅଛଇ ଯେମନ୍ତ । ଯେ ଶିଷ୍ୟ ଗୁରୁଙ୍କ ଭଗତ ॥
ଶିଷ୍ୟେ ଭଗତେ ଦୟା ବହେ । ସକଳ ଯଜ୍ଞ ତତ୍ତ୍ୱ କହେ ॥
ଯେଣୁ ବ୍ୟାସଙ୍କ ଶିକ୍ଷା ଯେତେ । ପ୍ରକାଶ ଆମ୍ଭର ଅଗ୍ରତେ ॥
ନିଷ୍ଠେ ଯେକାନ୍ତ ଶ୍ରେୟଯେତେ । ଯେ ଜୀବ ତରିବ ଯେମନ୍ତେ ॥
ଯେଣୁ ତୁଟଇ ବିଷ୍ଣୁ ମାୟା । କହ ଆମ୍ଭକୁ ଯେବେ ଦୟା ॥

ଯେ କଳି ଯୁଗେ ଯେତେ ପ୍ରାଣୀ । ଅଳ୍ପ ଆୟୁଷ ପରିମାଣି ॥
ସ୍ୱଭାବେ ମନ୍ଦବୁଦ୍ଧି ହୋନ୍ତି । ପ୍ରାଣୀଙ୍କ ଉପଦର୍ପ ଚିନ୍ତି ॥
ଯୁଗ ବେଭାର ପରିମାଣି । ସକଳ ଧର୍ମ ଆପେ ଜାଣି ॥
ଯେ ପ୍ରଶ୍ନ ଶୁଭ ଆମ୍ଭ ମତେ । ସାର ଉଦ୍ଧରି ଦୃଢ଼ଚିତ୍ତେ ॥
କହ ସଂସାରୁ ପ୍ରାଣୀଙ୍କର । କେମନ୍ତେ ମାୟାରୁ ନିସ୍ତାର ॥
ଯେଣେ ପ୍ରସନ୍ନ ହୋନ୍ତି ହରି । ଯେ ଜୀବ ଆତ୍ମାକୁ ଉଦ୍ଧରି ॥
ତୁମ୍ଭ ପ୍ରକାଶ ଯୋଗବଳେ । ପ୍ରକାଶ କର ମହୀତଳେ ॥
କି ପ୍ରୟୋଜନେ ଜଗନ୍ନାଥ । ଦେବକୀ ଉଦରେ ସମ୍ଭୂତ ॥
ଯେ ହେତୁ କହ ଶୁଦ୍ଧଚିତ୍ତେ । ଆମ୍ଭେ ପଚାରୁ ଜନହିତେ ॥
ଘୋର ସଂସାରେ ପ୍ରାଣୀ ପଡ଼ି । ଆତ୍ମା ନିସ୍ତାର ପଥହୁଡ଼ି ॥
ଯାହାର ନାମ ଉଚ୍ଚାରିଲେ । ସଂକଟୁ ତରିଯାନ୍ତି ଭଲେ ॥
ଯେ ଭୟ ଜୀବ ତେଜ ହରେ । ସେ ହରିନାମ ଶୁଣି ଡରେ ॥
ଯାହା ଚରଣେ ଆଶ୍ରେ କରି । ପବିତ୍ର ହୋନ୍ତି ବ୍ରହ୍ମଚାରୀ ॥
ଶୁଦ୍ଧ କରନ୍ତି ସର୍ବଜନେ । ଗଙ୍ଗା ଯେସନେ ସ୍ନାନପାନେ ॥
ଯାହାର ଯଶ ପୁଣ୍ୟ ଶ୍ଳୋକେ । ପୁଣ୍ୟେ ଭଣନ୍ତି ଯେକେଯେକେ ॥
କଳି କଲୁଷ ନ ଲାଗଇ । କେବା ନ ତରେ ଏହା ଗାଇ ॥
ଯେ ଯଶ ଗାଇ ମୁନିଗଣେ । ସୁଖେ ତରନ୍ତି ଭବ ବନେ ॥
ସେ ହରି ବ୍ରହ୍ମାଣ୍ଡ ଭିତରେ । ଲୀଳା ଶରୀରେ ଅବତରେ ॥
କଳି ଆଗମ ଆମ୍ଭେ ଦେଖି । ସକଳ ସମ୍ପଦ ଉପେକ୍ଷି ॥
ଯେ ପୁଣ୍ୟ କ୍ଷେତ୍ରେ ଶୁଭକ୍ଷଣେ । କୃଷ୍ଣର କଥା ଅନୁକ୍ଷଣେ ॥
କହି ତରିବୁ ବିଷ୍ଣୁ ମାୟା । ଭୋ ମୁନି କର ତୁମ୍ଭେ ଦୟା ॥
ଆମ୍ଭର ପୂର୍ବ ପୁଣ୍ୟଫଳେ । ସଙ୍ଗ ହୋଇଲୁ ତୁମ୍ଭ ମେଳେ ॥
ଯେ ଭୟଙ୍କର କଳିକାଳେ । ଆମ୍ଭେ ଯେ ଅଛୁ ଭବଜଳେ ॥
ଯେ ଜଳୁ ତୁମ୍ଭେ କର ପାର । ବୋହିତେ ଯେହ୍ନେ କର୍ଣ୍ଣଧାର ॥
ସେ ହରି ଭକତ ବତ୍ସଳ । ସର୍ବ ଦେବଙ୍କ ଆଦିମୂଳ ॥
ଧର୍ମ ଅଧର୍ମ ଯାର ସଙ୍ଗେ । ସୁଖେ ବିହରେ ନାନା ରଙ୍ଗେ ॥
କଳି ଆଗମେ ଭଗବାନ । ପଶିଲେ ଆପଣା ଭୁବନ ॥
ଯେ ଧର୍ମ ସଂସାର ରଖିବ । ସେ କାହିଁ ଶରଣ ପଶିବ ॥
ଯେ କଥା କହ ମୁନିବର । ଆମ୍ଭ ସଂଶୟ ଯାଉ ଦୂର ॥
ଆତ୍ମାର ମାୟା ଯୋଗବଳେ । ବିହରେ ଅବନୀ ମଣ୍ଡଳେ ॥
ତା'ର ମହିମା ଅବିରତେ । ତୋଷ ନ ଲଭେ ଆମ୍ଭଚିତ୍ତେ ॥
ଜିହ୍ୱା ଯେସନେ ସୁଧାରସ । ପିବନ୍ତେ ନୁହଇ ସନ୍ତୋଷ ॥
ଅନନ୍ତ ସଙ୍ଗେ ଥାଇ ହରି । ଜଗତେ ଯେତେ କର୍ମକରି ॥
କପଟେ ନର ରୂପ ଧରେ । ଅତି ମାନୁଷ କର୍ମ କରେ ॥
ଯେମନ୍ତେ ନୈମିଷ୍ୟା ବନସ୍ତେ । ସର୍ବ ମୁନିଙ୍କର ଅଗ୍ରତେ ॥
ଶଉନକ ଆଦି ମୁନିଗଣେ । ଯେ ପ୍ରଶ୍ନ କଲେ ଜଣେ ଜଣେ ॥
ନିର୍ମଳ ବିଷ୍ଣୁର ଚରିତ । କୃଷ୍ଣ ବିଷୟେ ଭାଗବତ ॥
ସୁଜନ ଜନଙ୍କର ହିତେ । କହିଲା ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ନୈମିଷ୍ୟା ଅରଣ୍ୟେ ଶୌନକାଦି ମୁନି ପ୍ରଶନେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

ମୁନି ପ୍ରଶନ ବାକ୍ୟ ଶୁଣି । ହରଷେ ମନେ ମନେ ଗୁଣି ॥
ଜୀବର ହିତେ କୃତ କୃତ । ହସି କହନ୍ତି ମୁନି ସୂତ ॥

### ଶ୍ରୀ ସୂତ ଉବାଚ

ଶୁଣ ସକଳ ମୁନି ଜନ । ସାଧୁଯେ ତୁମ୍ଭର ବଚନ ॥
ଗୁରୁ ଦେବଙ୍କୁ ନମସ୍କାର । ଆଜନ୍ମ ଶୁକ ଦିଗାମ୍ବର ॥
ଗୃହରୁ ହୋଇଲା ବାହାର । ବ୍ୟାସହିଁ ସଙ୍ଗତେ ତାଙ୍କର ॥
ଆତୁରେ ବୋଲେ ହେ କୁମର । ବୃକ୍ଷମାନେ ଦ୍ୟନ୍ତି ଉତ୍ତର ॥
ସମସ୍ତ ପ୍ରାଣୀଙ୍କ ହୃଦର । ସେ ଶୁକେ ମୋର ନମସ୍କାର ॥
ଯେମନ୍ତେ ଶୁକରେ ଶରଣ । ମୁନି ଜନଙ୍କ ଗୁରୁଜନ ॥
ସଂସାର ପ୍ରାଣୀଙ୍କ ନିସ୍ତାର । କହିଲେ ଭାଗବତ ସାର ॥
ନାରାୟଣଙ୍କୁ ନମସ୍କାର । ନର ଲୋକେ ଉତ୍ତମପୁର ॥
ସରସ୍ୱତୀ ବ୍ୟାସଙ୍କ ପାଦେ । ପ୍ରଣାମ ହେଉ ଅପ୍ରମାଦେ ॥
ପରମ ମଙ୍ଗଳ ଯେ ବାଣୀ । ଜୀବ ନିସ୍ତରେ ଯାହା ଶୁଣି ॥
ପରମ ଧର୍ମ ଯେ ଜଗତେ । କୃଷ୍ଣ ଭଗତି ହେଉ ଚିତ୍ତେ ॥
ଭଗତି କରି ଜ୍ଞାନ ହୋଏ । ଜୀବ ନ ପଡ଼େ ମାୟା ମୋହେ ॥
କୃଷ୍ଣ ଚରିତ ଶୁଣି ଯେବେ । ଭକ୍ତି ନ ଜନ୍ମେ ମୂଢ଼ଭାବେ ॥
କେବଳ ଶ୍ରମ ତାହାଙ୍କର । କାହୁଁ ତରିବେ ତମଘୋର ॥
ଅର୍ଥ ସଞ୍ଚନ୍ତି ଯେତେ ନର । କେବଳ ଦୁଃଖ ତାହାଙ୍କର ॥
ଅର୍ଥେ ନ ପାଇ ଧର୍ମ ମୋକ୍ଷ । ସେ କର୍ମ ଲୋଭଟି ପ୍ରତ୍ୟକ୍ଷ ॥
ଇନ୍ଦ୍ରିୟ ଅର୍ଥ ପ୍ରିୟ ଯେତେ । ଲୋଭେ ଭ୍ରମଇ କାମ ଅର୍ଥେ ॥
ଯାବତ ଜୀବନ ଧରଇ । କାମ ଲୋଭରେ ସୁଖ ପାଇ ॥
ଜୀବର ତତ୍ତ୍ୱ ଜାଣିବାରେ । କେ କାମୀ ଅଛି ଯେ ସଂସାରେ ॥
ତତ୍ତ୍ୱ ବିଚାରେ ଜ୍ଞାନୀ ଯେତେ । ଜ୍ଞାନ କହନ୍ତି ଯେ ଜଗତେ ॥
କେହୁ କହନ୍ତି ବ୍ରହ୍ମତତ୍ତ୍ୱ । କେ ଅବା ବୋଲେ ପରମାର୍ଥ ॥
କେହୁ ବୋଲନ୍ତି ଭଗବାନ । ନିର୍ମଳ ପରମ ଯେ ଜ୍ଞାନ ॥

ସେ ବୋଲେ ପ୍ରିୟ ଯେ କରନ୍ତି । ଜ୍ଞାନ ବୈରାଗ୍ୟ ଆଚରନ୍ତି ॥
କରନ୍ତି ବିଷ୍ଣୁରେ ଭଗତି । ଆତ୍ମାରେ ଆତ୍ମାକୁ ଦେଖନ୍ତି ॥
ହରି ସ୍ମରଣେ ଭକ୍ତି ଜାତ । ଅଜ୍ଞାନେ ନ ଜାଣେ ଜଗତ ॥
ଯେଣୁ ଅଖିଳ ଯେ ଜଗତେ । ଅଛନ୍ତି ବନ ଶ୍ରମୀ ଯେତେ ॥
ସ୍ୱଭାବ ଧର୍ମ ଆଚରଣେ । ଭକ୍ତି ଉପୁଜେ ନାରାୟଣେ ॥
ତେଣେ ସନ୍ତୋଷ ବିଷ୍ଣୁ ହୋଇ । ପ୍ରାଣୀଙ୍କୁ ଚଉବର୍ଗ ଦେଇ ॥
ଏ ଘେନି ହୋଇ ଏକ ମନ । ଭାବେ ତୋଷିବ ଭଗବାନ ॥
ବିଷ୍ଣୁର ଗୁଣ କର୍ମ ଯେତେ । ନିତ୍ୟେ ଶୁଣିବ କର୍ଣ୍ଣପଥେ ॥
ନିର୍ମଳ କରି ଦୃଢ଼ ମନ । ନିରତେ କରିବ କୀର୍ତ୍ତନ ॥
ଧ୍ୟାନେ ଚିନ୍ତିବ ବିଷ୍ଣୁ ରୂପେ । ପୂଜା କରିବ ମୋକ୍ଷ କଳ୍ପେ ॥
ଏ ଭାବେ ଭକ୍ତିଯୋଗ ବଢ଼େ । କର୍ମ ବନ୍ଧନ ଗ୍ରନ୍ଥି ଛିଡ଼େ ॥
ଯେଣୁ ଜଗତେ ଜ୍ଞାନୀ ଯେତେ । ହରି ନ ଭଜିବେ କେମନ୍ତେ ॥
ହରି ଶ୍ରବଣେ ଯାର ଶ୍ରଦ୍ଧା । ତାକୁ ନ ଲାଗେ ଭବବାଧା ॥
କୃଷ୍ଣ ଶ୍ରବଣେ ଭକ୍ତି ଯାର । ସେ ପ୍ରାଣୀ ଭବ ମଧ୍ୟେ ବର ॥
ଯେ ପୁଣ ସାଧୁ ସଙ୍ଗେ ଥିଲେ । ପୁଣ୍ୟ ତୀର୍ଥକୁ ଆଗମିଲେ ॥
ତେବେ ସେ ହରି ରସେ ରସେ । ଭଗତ ସଙ୍ଗେ ଯେବେ ମିଶେ ॥
କୃଷ୍ଣର କଥା ଯେ ଶୁଣନ୍ତି । ବଦନେ ମହିମା ଗାବନ୍ତି ॥
ତାହାଙ୍କ ହୃଦେ ହରି ପଶେ । ସର୍ବ ଅଶୁଭ ଫଳ ଧ୍ୱଂସେ ॥
ସେ ଗୁଣ ଶ୍ରବଣ କୀର୍ତ୍ତନ । ବେଦେ କହନ୍ତି ମୁନିଗଣ ॥
ସାଧୁଜନଙ୍କ ମିତ୍ର ହରି । ଏଣୁ ଭଗତଙ୍କୁ ଆବୋରି ॥
ହେଳେ ତାରଇ ଭବସିନ୍ଧୁ । ଯେଣୁ ଭଗତ ଜନ ବନ୍ଧୁ ॥
ଭଗତ ଜନ ସେବା ଫଳେ । ଦହନ ହୋନ୍ତି ଅମଙ୍ଗଳେ ॥
ତେବେ ସେ ଗୋବିନ୍ଦ ବିଷୟେ । ଭକ୍ତି ଉପୁଜେ ନର ଦେହେ ॥
ସ୍ୱଭାବେ ରଜ ତମ ଦୁଇ । କାମାଦି ଯେତେ ରିପୁଥାଇ ॥
ଚିତ୍ତୁ ବାହାର ହୋଇଯାନ୍ତି । ସାତ୍ତ୍ୱିକ ଗୁଣ ଆବୋରନ୍ତି ॥
ଯେତେ ପ୍ରକାରେ ଯେବେ ମନ । ନିର୍ମଳ ହୋଇବ ପ୍ରସନ୍ନ ॥
ତେବେ ସେ ଭକ୍ତି ଯୋଗବଳେ । ବିଷ୍ଣୁ ଭଗତ ସଙ୍ଗ ମେଳେ ॥
ନିର୍ମଳ ଜ୍ଞାନ ପ୍ରକାଶଇ । ଜନ୍ମ ମରଣ ଆର କାହିଁ ॥
ଅଶେଷ କର୍ମ ଗ୍ରନ୍ଥି ବନ୍ଧ । ଏଣେ ଛିଡ଼ଇ ଭବବନ୍ଧ ॥
ସର୍ବ ସଂଶୟ ତୁଟେ କର୍ମ । ଛିଡ଼େ ବିଷୟ ମାୟାଭ୍ରମ ॥
ଆତ୍ମାରେ ଆତ୍ମାକୁ ଦେଖନ୍ତି । ଜନ୍ମ ମରଣେ ନାହିଁ ଭ୍ରାନ୍ତି ॥
ଏଣୁ ପଣ୍ଡିତ ଜନ ଯେତେ । ଆନନ୍ଦେ ଭକ୍ତି ଯୋଗମତେ ॥
ହରି ବିଷୟେ ଦୃଢ଼ ଚିତ୍ତେ । ନିତ୍ୟେ ଭଜନ୍ତି ଆତ୍ମାହିତେ ॥
ବିଷ୍ଣୁର ମାୟାରୁ ସମ୍ଭୂତ । ଆଦି ପ୍ରକୃତି ଜନମାତ ॥
ସେ ସତ୍ତ୍ୱ ରଜ ତମ ଗୁଣ । ସୃଷ୍ଟି ପାଳନ ସଂହାରଣ ॥
ଅନାଦି ପରମ ପୁରୁଷ । ଯେ ତିନି ଗୁଣେ ସେ ପ୍ରବେଶ ॥
ସୃଷ୍ଟି ଉଦୟେ ବ୍ରହ୍ମା ହୋଇ । ପାଳନେ ଈଶ୍ୱର ବୋଲାଇ ॥
ସଂହାର କାଳେ ରୁଦ୍ର ରୂପେ । ସୁଖେ ବିହରେ ମୋହକଳ୍ପେ ॥
ସେ ଶୁଦ୍ଧ ସତ୍ତ୍ୱ ବିଷ୍ଣୁ ଦେହେ । ଜନ୍ତୁଙ୍କ ଶ୍ରେୟ ଗୁଣବହେ ॥
କାଷ୍ଠ ସଂଯୋଗେ ଧୂମ ଜାତ । ଧୂମରୁ ଅନଳ ସମ୍ଭୂତ ॥
ତୃତୀୟେ ଅଙ୍ଗାର ପ୍ରମାଣ । ତାମସ ରଜ ସତ୍ତ୍ୱଗୁଣ ॥
ଯେ ରୂପେ ବ୍ରହ୍ମ ପରିମାଣି । ଭବ ସଂସାରୁ ତରେ ପ୍ରାଣୀ ॥
ନିର୍ମଳ ଚିତ୍ତ ମୁନି ଯେତେ । ବିଚାର କରି ଆତ୍ମାହିତେ ॥
ବିଷ୍ଣୁଙ୍କୁ ସତ୍ତ୍ୱ ଗୁଣେ ଜାଣି । ଭଜିଲେ ମୋକ୍ଷ ପରିମାଣି ॥
ତାମସ ରଜ ଗୁଣ ଯେତେ । ଯେ ଭୂତପତି ଯେ ଜଗତେ ॥
ସ୍ୱଭାବେ ଘୋର ଭୟଙ୍କର । ଯେସନେ ଭାବ ତାହାଙ୍କର ॥
ଅହିଂସା ଶାନ୍ତି ଗୁଣେ ଥାନ୍ତି । ହରି ଚରଣେ ନିତ୍ୟେ ଚିନ୍ତି ॥
ଧନ ସମ୍ପଦେ ଯାର ଇଚ୍ଛା । ସେ କରେ ଭୂତ ପ୍ରେତ ଦୀକ୍ଷା ॥
ସଂସାରେ ବେଦ ଯଜ୍ଞ ଯେତେ । ଯୋଗ ସାଧନ କ୍ରିୟା ମତେ ॥
ପରମଜ୍ଞାନ ତପ ଆଦି । କଠୋରେ ଯେତେ ଧର୍ମ ସାଧି ॥
ଯେ ସର୍ବଗତି ନାରାୟଣ । ଯେବେ ହୋ ମୁନିଗଣେ ଶୁଣ ॥
ଯେମନ୍ତେ ବିଶ୍ୱ ରୂପଧରେ । ମାୟା ସଂସାରେ ସେ ବିହରେ ॥
ସ୍ୱଭାବେ ନିର୍ଗୁଣ ମୁରାରି । ଖେଳଇ ତ୍ରିଗୁଣ ଆବୋରି ॥
ସକଳ ଜୀବ ମଧ୍ୟେ ଯେହି । ଅଜ୍ଞାନେ ଜୀବ ନ ଜାଣଇ ॥
ଅଶେଷ ମହିମା ଯେ ଧରେ । କିବା ଉପମା ଦେବା ତାରେ ॥
ଯେ ତିନିଗୁଣେ ନାରାୟଣ । ସୃଷ୍ଟି ପାଳନ ସଂହାରଣ ॥
ଅଗ୍ନି ଯେସନେ କାଷ୍ଠେଥାଇ । ସେ ରୂପେ ବିଶ୍ୱ ଆତ୍ମା ମହୀ ॥
ସେ ହରି ଚରଣ ପଙ୍କଜେ । ସୁଜନ ଜନ ନିତ୍ୟେ ଭଜେ ॥
କହଇ ଦାସ ଜଗନ୍ନାଥ । ଗୀତ ପ୍ରବନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ଭଗବାନ ମହିମା ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ*

## ତୃତୀୟ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ କହନ୍ତି ଶୁଦ୍ଧ-ଚିତ୍ତେ । ହରଷେ ମୁନିଙ୍କ ଅଗ୍ରତେ ॥
ଶୁଣ ସକଳ ମୁନିଜନେ । ହରି ଚରିତ ସାବଧାନେ ॥
ସୃଷ୍ଟିର କାଳେ ସେ ମୁରାରି । ମହାପୁରୁଷ ରୂପଧରି ॥

ମହତ ଆଦି ଅଙ୍ଗେ ପଶି । ବିରାଜ ରୂପେ ବ୍ରହ୍ମରାଶି ॥
କଳା ସେ ବହଇ ଷୋଡଶ । ଅନାଦି ପରମ ପୁରୁଷ ॥
ବୁଦ୍ଧି ଚେତନା ଅହଙ୍କାର । ମନ ଅନ୍ତରୀକ୍ଷ ସମୀର ॥
ଅନଳ ଜଳ ବସୁମତୀ । ବୁଦ୍ଧି ଇନ୍ଦ୍ରିୟ ଯାହା ଚିନ୍ତି ॥
ଜୀବ ପରମ ଯେ ଷୋଡଶ । ଯେ ଆଦି ସୃଷ୍ଟି ଉପଦେଶ ॥
ସେ ସୃଷ୍ଟି ସଙ୍ଗେ ଇଚ୍ଛାକରି । ଜଳେ ଯୋଗନିଦ୍ରା ବିସ୍ତାରି ॥
ତା ନାଭିକମଳୁ କମଳ । ପ୍ରକାଶି ଆଚ୍ଛାଦିଲା ଜଳ ।
ବ୍ରହ୍ମା ହୋଇଲେ ତହୁଁ ଜାତ । ସେ ପ୍ରଜାପତିଙ୍କର ନାଥ ॥
ତାର ଶରୀରୁ ସୃଷ୍ଟିଲୋକ । ବିସ୍ତାରି ହୋଇଲା ଅନେକ ॥
ସେ ଶୁଦ୍ଧତତ୍ତ୍ୱ ବିଷ୍ଣୁ ରୂପ । ଯାହା ଭିଆଣେ ମୋହକଳ୍ପ ॥
ଅନେକ ଚକ୍ଷୁ ଦ୍ୱାରେ ଭରି । ଯେ ବିଷ୍ଣୁରୂପ ବ୍ରହ୍ମଚାରୀ ॥
ସହସ୍ର ପାଦ ଉରଭୁଜ । ଶିର ବଦନ ନାସା ତେଜ ॥
ସହସ୍ର ଲୋଚନ ଶ୍ରବଣ । ବସନ କୁଣ୍ଡଳ ଭୂଷଣ ॥
ମଣି କଙ୍କଣ ଝଟକନ୍ତି । ଦିଶଇ ଅତି ରୂପକାନ୍ତି ॥
ଯେ ସୃଷ୍ଟି ମଧ୍ୟେ ମାୟାଧର । କରଇ ଯେତେ ଅବତାର ॥
ତାଙ୍କରି ମୂଳ ବୀଜ ଯେହି । ସଂସାରେ ବ୍ରହ୍ମ ସେ ବୋଲାଇ ॥
ଯାହାର ଅଂଶ ସେ ସକଳ । ଗଗନ ପୃଥିବୀ ପାତାଳ ॥
ଦେବ ମନୁଷ୍ୟ ପଶୁ ଆଦି । ନିଗମ ଗୋଚରେ ସମ୍ପାଦି ॥
ପ୍ରଥମେ କୁମାର ବୟସେ । ସୃଷ୍ଟି ଉଦୟ ଉପଦେଶେ ॥
ଦୁସ୍ତର ବ୍ରହ୍ମଚର୍ଯ୍ୟବ୍ରତେ । ତପ ସାଧିଲା ଦୃଢ଼ଚିତ୍ତେ ॥
ଦ୍ୱିତୀୟେ ସୃଷ୍ଟିର ଆଗମେ । ସାଧିଲା ଯଜ୍ଞେଶ୍ୱର ନାମେ ॥
ପୂର୍ବେ ପ୍ରଳୟ କାଳ ବେଳେ । ମହୀ ଯେ ଥିଲା ରାସାତଳେ ॥
ତାହା ଉଦ୍ଧାରେ ନରହରି । ତକ୍ଷଣେ କୂର୍ମ ରୂପ ଧରି ॥
ଉଦ୍ଧରି ଜଳେ ଭସାଇଲା । ସେ ପଦ୍ମ କଳ୍ପ ବୋଲାଇଲା ॥
ତୃତୀୟେ ଋଷି ରୂପେ ହରି । ନାରଦ ମୁନି ରୂପ ଧରି ॥
ବିଷ୍ଣୁ ଭଗତ ଜନ ହିତେ । ନିଷ୍କାମ ଭାବ ଉପଗତେ ॥
ଚତୁର୍ଥେ ଜନ୍ମବେଦ ବାଦେ । ଧର୍ମେ ଉଦେଶ କର୍ମକାଣ୍ଡେ ॥
ସେ ରୂପେ ନର ନାରାୟଣ । ସର୍ଜିଲା ଧର୍ମ ଆଚରଣ ॥
ତପ ସାଧିଲା ଦୃଢ଼ଚିତ୍ତେ । ସୃଷ୍ଟି କଳ୍ପନେ ଅବିରତେ ॥
ପଞ୍ଚମେ ସିଦ୍ଧ ଅବତାରେ । ଜନ୍ମିଲେ କର୍ଦ୍ଦମର ଘରେ ॥
ତା ନାମ କପିଳ ବୋଲାଇ । ପିତା ମାତାଙ୍କୁ ଜ୍ଞାନ କହି ॥
ଷଷ୍ଠ ସର୍ଗରେ ନରହରି । ଅତ୍ରିର ବଂଶେ ଅବତରି ॥
ଅଶେଷ ଜ୍ଞାନ ଶାସ୍ତ୍ର କଲା । ସେ ଦତ୍ତାତ୍ରୟ ବୋଲାଇଲା ॥
ସପ୍ତମେ ଆକୁତି ଗର୍ଭରେ । ସେ ଜନ୍ମେ ମରୀଚି ଉଦରେ ॥
ଯଜ୍ଞ ପୁରୁଷ ରୂପେ ହରି । ଅର୍ଯ୍ୟମା ଆଦି ଗଲେ ତାରି ॥
ଅଷ୍ଟମେ ନାଭିଗୃହେ ଯାତ । ଋଷଭ ମେରୁ ଦେବୀ ସୁତ ॥
ଘୋର କଠୋର ତପ କଲା । ଜ୍ଞାନୀଙ୍କୁ ପଥ ଦେଖାଇଲା ॥
ନବମେ ପୃଥୁ ରୂପ ଧରି । ବଳେ ଦୁହିଁଲା ବସୁନ୍ଧରୀ ॥
କ୍ଷୀରେ ଧରଣୀ କଲା ସମ । ନାମ ବହିଲା ପୂର୍ଣ୍ଣତମ ॥
ଦଶମେ ମତ୍ସ୍ୟରୂପ ହୋଇ । ନାବେ ଓଷଧି ବୀର୍ଯ୍ୟ ବହି ॥
ପ୍ରଳୟ ଜଳେ ବିହରିଲା । ରବି କୁମରେ ନିସ୍ତରିଲା ॥
ଏକାଦଶମେ ଚକ୍ରଧର । ଯେ ରୂପେ ଜନ ଉପକାର ॥
ଇନ୍ଦ୍ରର ଅର୍ଥେ ଦେବାସୁରେ । କ୍ଷୀର ସମୁଦ୍ର ମନ୍ଥିବାରେ ॥
କପଟେ କୂର୍ମରୂପ ହୋଇ । ମନ୍ଦର ଗିରି ପୃଷ୍ଠେ ବହି ॥
ଦ୍ୱାଦଶ ସର୍ଗେ ବିଶ୍ୱକର୍ମେ । ଜନ୍ମିଲା ଧନ୍ୱନ୍ତରୀ ରୂପେ ॥
ମୋହିନୀ ରୂପେ ତ୍ରୟୋଦଶେ । ଶଙ୍କର ମୋହେ କାମବଶେ ॥
ଚତୁର୍ଦ୍ଦଶେ ନୃସିଂହ ବପୁ । ବିଦାରି ହିରଣ୍ୟକଶିପୁ ॥
ବାମନ ରୂପେ ପଞ୍ଚଦଶେ । ବଳିକି ଛଳିଲେ ବିଶ୍ୱାସେ ॥
ଷୋଡଶ ଅବତାରେ ହରି । ପରଶୁରାମ ରୂପ ଧରି ॥
ପିତାର ବଧ ଅହଂକାରେ । ଧରଣୀ ଯେକବିଂଶ ବାରେ ॥
ଭ୍ରମିଲା ମହାକୋପାନଳେ । ରାଜାଙ୍କୁ ଧରି ବାହୁବଳେ ॥
ଦୁଷ୍ଟ କ୍ଷତ୍ରିୟ କାଟି ମୁଣ୍ଡ । ରୁଧିରେ ପୂର୍ଣ୍ଣକଲା କୁଣ୍ଡ ॥
ତର୍ପଣ କଲା ପିତୃଗଣେ । ତପେ ରହିଲା ଘୋରବନେ ॥
ସପତଦଶେ ଦେବାକାର୍ଯ୍ୟେ । ଜନ୍ମିଲା ପରାଶର ବୀର୍ଯ୍ୟେ ॥
ନିଗମ ବୃକ୍ଷ ଥିଲା ଯେକା । ବିଚାରି କଲା ଶତେ ଶାଖା ॥
ପ୍ରାଣୀଙ୍କ ଦେଖି ଅଳ୍ପବୁଦ୍ଧି । ଯେ ଧର୍ମ ସଂସାରେ ପ୍ରସିଦ୍ଧି ॥
ସେ ପୁଣି ଦିବାକର ବଂଶେ । ଶ୍ରୀରାମଚନ୍ଦ୍ର ଅଷ୍ଟାଦଶେ ॥
ଜଳଧି ବାନ୍ଧି ସୀତା ଛଳେ । ଲଙ୍କା ଧ୍ୱଂସିଲେ ଭୁଜବଳେ ॥
ରାବଣ ମାରି ଦେବକାର୍ଯ୍ୟେ । ଭଲେ ସମ୍ପାଦି ଦେବରାଜେ ॥
ଊନବିଂଶତି ରୂପେ ହରି । ଯାଦବ ବଂଶେ ଅବତରି ॥
କୃଷ୍ଣ ଶରୀରେ ରାମ ତୁଲେ । ଅବନୀ ଭାରା ନିବାରିଲେ ॥
କଳି ଆଗମେ ଭାବଗ୍ରାହୀ । ପାଷାଣ୍ଡ ଜନ ମନ ମୋହି ॥
ବଉଦ ରୂପେ ନିଜ ଘରେ । ଜନ୍ମିଲେ କୀଟକ ନଗରେ ॥
ଜ୍ଞାନ ଉଦେଶେ ଭଗବାନ । ମୋହିଲେ ଅସୁରଙ୍କ ମନ ॥
ଯେମନ୍ତେ ଜନ୍ମ ଯେକବିଂଶ । ସୁଜନ ହିତେ ହୃଷୀକେଶ ॥
ସେ ପୁଣ କଳିଯୁଗ ଅନ୍ତେ । ରାଜାଙ୍କୁ ଦେଖି ଯେ ଜଗତେ ॥
ନିର୍ଦ୍ଦୟ ହୃଦେ ପ୍ରଜା ମାରି । ଧନ ଜୀବନ ନ୍ୟନ୍ତି ହରି ॥
ସେ କଳ୍କେ ବିଷ୍ଣୁ ଦାସ ଘରେ । ଜନ୍ମି କଳ୍କି ଅବତାରେ ॥

ମନହୁଁ ଯିବେ ବେଗବନ୍ତ । ଅଶ୍ୱ ଆରୋହି ଜଗନ୍ନାଥ ॥
ସୁନନ୍ଦ ଖଡ୍‌ଗ କରେ ଧରି । ଦୁଷ୍ଟ ରାଜାଙ୍କୁ ବେଗେ ମାରି ॥
ଅଳପ ପ୍ରଜାଜନ ଶେଷ । ଦୟାରେ କରି ସେ ଆଶ୍ୱାସ ॥
ସେ ସତ୍ୟନିଧି ମାୟାଧର । ଅସଂଖ୍ୟ କରେ ଅବତାର ॥
ଯଥା ଜୀମୂତ ବୃଷ୍ଟିଜଳେ । ସହସ୍ର ନଦୀ ମହୀ ସ୍ଥଳେ ॥
ଋଷି ଦେବତା ମନୁରାଜା । ଯେମନ୍ତ ରୂପେ ମହାତେଜା ॥
ଯେ ଘେନି ଯେତେ ପ୍ରଜାପତି । ବିଷ୍ଣୁର ଅଂଶେ ଜନ୍ମହୋନ୍ତି ॥
ସକଳ ଅବତାର ସାର । କି ଅବା ଦେବା ପଟାନ୍ତର ॥
ନିଜ ମୂରତି ଚକ୍ରଧର । ସ୍ୱୟଂ ଶ୍ରୀକୃଷ୍ଣ ଅବତାର ॥
ଯେମନ୍ତେ ନାନା ରୂପ ଧରେ । ସେ ହରି ସଂସାରେ ବିହରେ ॥
ଦୁଷ୍ଟଜନଙ୍କ ତେଜ ହରି । ସଂସାରେ ଖେଳେ ଦଇତାରି ॥
ବିଷ୍ଣୁର ଜନ୍ମକର୍ମ ବାଣୀ । ଯେ ନିତ୍ୟେ ଶ୍ରଦ୍ଧା ଚିତ୍ତେ ଶୁଣି ॥
ରାତ୍ର ଦିବସ ମଧ୍ୟେ ଯେବେ । କାଳ ବଞ୍ଚଇ ବିଷ୍ଣୁ ଭାବେ ॥
ସେ ଦୁଃଖ ସଙ୍କଟୁ ତରନ୍ତି । ଜନ୍ମ ମରଣେ ନାହିଁ ଭ୍ରାନ୍ତି ॥
ଯେମନ୍ତେ ନାନା ରୂପ ଯେତେ । ବିଷ୍ଣୁ ଜନ୍ମଇ ଜନହିତେ ॥
ସ୍ୱଭାବେ ରୂପ ଯାର ନାହିଁ । ନିର୍ଲେପ ନିରଞ୍ଜନ ସେହି ॥
ମାୟାର ଗୁଣ ବିରଚିତ । ମହତ ଆଦିରୁ ସମ୍ଭୂତ ॥
ଯେସନେ ମେଘେ ଶୂନ୍ୟେଥାନ୍ତି । ପବନେ ଧୂଳିଯେ ଉଡ଼ାନ୍ତି ॥
ତାହାକୁ ଦୃଷ୍ଟି ଭେଦେ ଦେଖି । ଯେ ସତ୍ୟ ପ୍ରାୟେ ଉପଲେଖି ॥
ତାହାକୁ ବୋଲି ଜ୍ଞାନହୀନ । ଯେବେ ହୋ ମୁନିଗଣେ ଶୁଣ ॥
ସ୍ୱଭାବେ ଦୃଶ୍ୟ ବସ୍ତୁ ନୁହେ । ଗୁଣ ଆବୋରି ଦେହ ବହେ ॥
ଯେଣୁ ସେ ଜୀବ ରୂପ ବହି । ଜନ୍ମ ମରଣ ପଥ ପାଇ ॥
ସ୍ୱଭାବେ ବିଷ୍ଣୁ ମାୟାଗ୍ରନ୍ଥେ । ଆତ୍ମାରେ କଞ୍ଚକରେ ଅନ୍ତେ ॥
ଯେ ତତ୍ତ୍ୱ ବ୍ରହ୍ମର ବିଚାର । ବ୍ରହ୍ମା ଶଙ୍କରେ ଅଗୋଚର ॥
ମାୟା ମିଶ୍ରିତ ମତି ଯେବେ । ନିରସ୍ତ ହୋୟେ ଜ୍ଞାନ ଭାବେ ॥
ତେବେ ଆତ୍ମାରେ ଆତ୍ମା ଦେଖି । ନିଷ୍କଳ ମହିମା ନିରେଖି ॥
ଯେମନ୍ତେ ଜନ୍ମ କର୍ମ ଯେତେ । ବିଚାର କରି ବେଦ ପଥେ ॥
ବୋଲନ୍ତି ଯେତେ ଋଷିଜନେ । ଯେ ନ ଘଟଇ ଅନୁମାନେ ॥
ସ୍ୱଭାବେ ଜନ୍ମ ଯାର ନାହିଁ । ବିଚାର ସେ କରିବ କାହିଁ ॥
ଅମୋହ ଲୀଳା ନରହରି । ଆତ୍ମାରେ ବିଶ୍ୱ ମାୟାକରି ॥
ବ୍ରହ୍ମାଣ୍ଡ ସୃଜଇ ପାଳଇ । ଅନ୍ତେ ଆନନ୍ଦେ ତା ଭକ୍ଷଇ ॥
ପ୍ରାଣୀଙ୍କ ମଧ୍ୟେ ଆତ୍ମାଯନ୍ତ୍ରେ । ବସି ଭୁଞ୍ଜଇ ଗୁଣ ତନ୍ତ୍ରେ ॥
ଏଣୁ ଈଶ୍ୱର ସେ ବୋଲାଇ । କିବା ଉପମା ଦେବି ମୁହିଁ ॥
ଈଶ୍ୱର ଲୀଳା କର୍ମ ଯେତେ । କେ ଜାଣିପାରେ ତର୍କମତେ ॥
ଯେହାର ଅଛି ଯେତେ ନାମ । କେ ସଂଖ୍ୟା କରିବ ପ୍ରମାଣ ॥
ନଟ ଯେସନେ ମାୟା କରି । ମୋହଇ କୁହୁକ ବିସ୍ତାରି ॥
ଅଜ୍ଞାନେ କେ ଜାଣିବ ତାହା । ଦୁରାଧିଗମ୍ୟ ବିଷ୍ଣୁମାୟା ॥
ଯେ କାଳ ଚକ୍ର ଯାର ହସ୍ତ । କେ ଜାଣିପାରେ ତାହା ଗ୍ରସ୍ତ ॥
ସେ ହରି ପାଦପଦ୍ମ ଗନ୍ଧ । ଯେ ନିତ୍ୟେ ପିବେ ମକରନ୍ଦ ॥
ଧନ୍ୟ ଜୀବନ ତାହାଙ୍କର । ଯେ ହରି ଚରଣେ କିଙ୍କର ॥
ସର୍ବ ଆତ୍ମାକୁ ଆତ୍ମା ଭାବେ । ଭଜନ୍ତି ନିତ୍ୟ ନିଜ ଲାଭେ ॥
ଏ ଭାବେ ଯେ ପ୍ରାଣୀ ଭଜଇ । ଯେ ଜୀବ ତାକୁ ନ ଲାଗଇ ॥
ଯେ ଯେ ପୁରାଣ ଭାଗବତ । ନିର୍ବାଣ ପଦ ବ୍ରହ୍ମତତ୍ତ୍ୱ ॥
ବିଷ୍ଣୁ ଚରିତ ପରଶଂସି । ପ୍ରକାଶ କଲେ ବ୍ରହ୍ମଋଷି ॥
ଧନ୍ୟ ମଙ୍ଗଳ ଯେ ଜଗତେ । ଜୀବର ମୋକ୍ଷ ଫଳ ଅର୍ଥେ ॥
ସର୍ବ ନିଗମ ଇତିହାସେ । ସାର ଉଧରି ମନ ତୋଷେ ॥
ଆତ୍ମଜ୍ଞାନୀର ମଧ୍ୟେ ବର । ସେ ଶୁକ ରୂପେ ଅବତାର ॥
ତାହାଙ୍କୁ ଭାଗବତ ଦୀକ୍ଷା । ଦେଇ କହିଲେ ଆତ୍ମଶିକ୍ଷା ॥
ସେ ପୁଣି ପରୀକ୍ଷିତ ଆଗେ । କହିଲେ ଆତ୍ମା ଅନୁରାଗେ ॥
ବ୍ରାହ୍ମଣ ଶାପ୍ୟେ ସେ ବିକଳେ । ନିବାସ କଲା ଗଙ୍ଗାଜଳେ ॥
ପରମଋଷି ମେଳେ ଥାଇ । କୃଷ୍ଣ ଚରଣେ ମନ ଦେଇ ॥
ଯେ ଭାଗବତ ରସ ଶୁଣି । ତରିଲା ଭବ ତରଙ୍ଗିଣୀ ॥
ସେ କୃଷ୍ଣ ନିଜ କାର୍ଯ୍ୟ ଲାଭେ । ନିଜ ଭୁବନେ ପୁଣି ବିଜେ ॥
ସଙ୍ଗତେ ଘେନି ଧର୍ମଜ୍ଞାନ । ନିଜ ସ୍ୱରୂପେ ହେବେ ଲୀନ ॥
ଯେ କଳିଯୁଗେ ଯେତେ ନରେ । ପଡ଼ିବେ ମାୟା ଅନ୍ଧକାରେ ॥
ତାହାଙ୍କୁ ତପନ ଉଦିତ । ହୋଇବ ଗ୍ରନ୍ଥ ଭାଗବତ ॥
ରାଜା ସମୀପେ ଗଙ୍ଗା ତଟେ । ଅନେକ ଋଷିଙ୍କ ନିକଟେ ॥
ଯେ ଭାଗବତ ତତ୍ତ୍ୱ ବାଣୀ । ଶୁକ ମୁନିଙ୍କ ମୁଖୁ ଶୁଣି ॥
ଜାଣିଲି ଶୁକ ଅନୁରାଗେ । ଯେବେ କହିବା ତୁମ୍ଭ ଆଗେ ॥
ବୋଲଇ ଦାସ ଜଗନ୍ନାଥ । ସୁଜନ ହିତେ ଭାଗବତ ॥
ଯେ ଭାବେ ଚିନ୍ତି ନରହରି । ଘୋର ସଂସାରୁ ଯିବ ତରି ॥

*ଇତିଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମ ସ୍କନ୍ଧେ ଋଷିପ୍ରଶ୍ନେ*
*ଅବତାର ଲକ୍ଷଣ କଥନେ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଯେମନ୍ତେ ଭାଗବତ ବାଣୀ । ସୂତ ମୁନିଙ୍କ ମୁଖୁ ଶୁଣି ॥
ମୁନିଙ୍କ ମଧ୍ୟେ କର୍ମ ସିଦ୍ଧ । ଶୌନକ ନାମେ କୁଳବୃଦ୍ଧ ॥
ସର୍ବ ମୁନିଙ୍କ ଅବଧାନେ । ପୁଚ୍ଛନ୍ତି ମଧୁର ବଚନେ ॥

## ଶୌନକ ଉବାଚ

ଭୋ ମୁନି ତୁମ୍ଭେ ମହା ଧୀର । ଭଗତଜନ ମଧ୍ୟେ ବର ॥
ଜାହ୍ନବୀ ତୀରେ ରାଜା ଆଗେ । ଶୁକ କହିଲେ ବ୍ରହ୍ମ ଭାଗେ ॥
ଯେ ଭାଗବତ ଶାସ୍ତ୍ର କେବେ । ବ୍ୟାସ ରଚିଲେ କେଉଁ ଯୁଗେ ॥
କାହାର ବୋଲେ କାହିଁ ବସି । କି ଭାବେ କି ହେତୁ ଉଦ୍ଦେଶୀ ॥
ଶୁକ ଯେ ତାହାଙ୍କ କୁମର । ସମଦରଶୀ ସତ୍ୟ ସାର ॥
ଯେକାନ୍ତ ମତି ରାତ୍ର ଦିନେ । କୃଷ୍ଣ ମହିମା ଯାର ମନେ ॥
ତାହାର ଆଗମନ କାଳେ । ଦେବକନ୍ୟାଯେ ପଶି ଜଳେ ॥
ସ୍ୱଭାବେଲଗ୍ନ ତାଙ୍କୁ ଦେଖି । ଧାଇଲେ ସ୍ନାହାନ ଉପେକ୍ଷି ॥
ଦେଖିବା ଅର୍ଥେ ଜଳ ତଟେ । ମିଳିଲେ ମୁନିଙ୍କ ନିକଟେ ॥
ବ୍ୟାସଙ୍କୁ ତାଙ୍କ ପଛେ ଚାହିଁ । ଜଳେ ପଶିଲେ ବେଗେ ଯାଇ ॥
ସ୍ୱଭାବେ ସିଦ୍ଧ ସେ ଯୁବତୀ । ଜାଣନ୍ତି ସର୍ବ ପ୍ରାଣୀ ଗତି ॥
ଦେଖି କନ୍ୟାଙ୍କ ମୂଢ଼ମତି । ଚଞ୍ଚଳ ବ୍ୟାସଙ୍କର ଗତି ॥
ପୁଣି କ୍ଷଣକେ ପାଇ ଶାନ୍ତି । କନ୍ୟାଙ୍କୁ ଚାହିଁଣ ବୋଲନ୍ତି ॥
ଅଇଲ ମୋର ପୁତ୍ର ଚାହିଁ । ଜଳେ ପଶିଲ ବେଗେ ଯାଇ ॥
ଯେ କିସ ତୁମ୍ଭର ବେଭାର । ଯେ ଶୁକ ମୋହର କୁମର ॥
ତରୁଣ ବୟସ ଯେହାର । ଯେ ବୃଦ୍ଧ ଶରୀର ମୋହର ॥
ବ୍ୟାସ ବଚନେ ନାରୀଗଣେ । ତକ୍ଷଣେ ନମିଲେ ଚରଣେ ॥
ବୋଲନ୍ତି ବ୍ୟାସ ମୁଖ ଚାହିଁ । ସଂସାର ତାଙ୍କ ଦେହେ ନାହିଁ ॥
ତୁମ୍ଭେ ଯେ ବୋଲ ଆମ୍ଭେ ବୃଦ୍ଧ । ବିଷୟ ରସେ ଅଛି ସଧ ॥
ଯେ ଘେନି ହୋଇଲୁ ଅନ୍ତର । ଆମ୍ଭର ଦୋଷ କ୍ଷମା କର ॥
ଯେମନ୍ତେ ଗଲେ ନାରୀଗଣେ । ଶୁକ ରହିଲେ ସେହୁ ବନେ ॥

## ଶୌନକ ଉବାଚ

ସେ ଶୁକ ମୁନି କେଉଁ କାର୍ଯ୍ୟେ । ପ୍ରବେଶ କଲେ କୁରୁରାଜ୍ୟେ ॥
ଜଡ଼ ଉନ୍ମତ ପ୍ରାୟେ ଦେହୀ । ତାହାଙ୍କୁ ନ ଜାଣନ୍ତି କେହି ॥
ଏମନ୍ତେ ପରୀକ୍ଷିତ ତୁଲେ । ଜାହ୍ନବୀ ତଟେ ସେ ମିଳିଲେ ॥
ତହିଁ ଅନେକ ମୁନି ମେଳେ । ଯେ ଭାଗବତ ସଂପାଦିଲେ ॥
ରାଜାଙ୍କ ଦ୍ୱାରେ ସାୟଂ କାଳେ । ଯେ ନିଜ ଭିକ୍ଷାଅର୍ଥେ ମିଳେ ॥
ଗୋ ଦୁହଁ ମାତ୍ରେ ଦ୍ୱାରେ ରହି । ଗୃହୀଙ୍କି ତୀର୍ଥ ଫଳ ଦେଇ ॥
ସେ ମୁନି ପରୀକ୍ଷିତ ମେଳେ । ମିଳିଲେ ପୂର୍ବ ପୁଣ୍ୟ ଫଳେ ॥
ସେ ଭାଗ୍ୟବନ୍ତ ପରୀକ୍ଷିତ । ସ୍ୱଭାବେ ଅଭିମନ୍ୟୁ ସୁତ ॥
ତାହାର ଜନ୍ମ କର୍ମ ଯେତେ । କହିବା ଆମ୍ଭର ଅଗ୍ରତେ ॥
ଅଦ୍ଭୁତ ପ୍ରାୟେ ଅଛୁ ମଣି । ଯେବେ ତରିବୁ ତାହା ଶୁଣି ॥
ସେ ସର୍ବ ରାଜା ମଧ୍ୟେ ସାର । ପାଣ୍ଡବ ବଂଶେ କୀର୍ତ୍ତିକର ॥
ଯେତେ ସମ୍ପଦ କରି ଦୂରେ । କିମ୍ପା ରହିଲେ ଗଙ୍ଗାତୀରେ ॥
ସର୍ବ ରାଜାଯେ ତାର ପାଦେ । ନମନ୍ତି ଜୀବନ ସମ୍ପଦେ ॥
ଯୁବା ବୟସେ ନରପତି । ତେଜିଣ ଅଚଳ ବିଭୂତି ॥
ତାର ଶରୀରେ ଯେ ସଂସାରେ । ବହଇ ପର ଉପକାରେ ॥
ହରି ଚରଣ ଚିନ୍ତେ ଚିରେ । ସେ ରାଜା ପର ହିତେ ନିତ୍ୟେ ॥
ସେ କିମ୍ପା ଛାଡ଼ିଲା ଜୀବନ । ଉପେକ୍ଷି ଗୃହ ଧନ ଜନ ॥
କହ କାରଣ କିବା ଅର୍ଥେ । ସଂଶୟ ଛାଡ଼ିବ ଯେମନ୍ତେ ॥
ତୁମ୍ଭେ ସକଳ ବିଦ୍ୟାପର । କହ ସଂଶୟ ହେଉ ଦୂର ॥
ସେ ସୂତ ଶୌନକ ବଚନେ । ସମସ୍ତ ମୁନି ଅବଧାନେ ॥

## ଶ୍ରୀ ସୂତ ଉବାଚ

କହନ୍ତି ସୂତ ବ୍ରହ୍ମରାଶି । ମୁନିଙ୍କ ପ୍ରଶନ୍ନେ ପ୍ରଶଂସି ॥
ଶୁଣ ସକଳ ମୁନିଗଣେ । ହରି ଚରିତ ସାବଧାନେ ॥
ତ୍ରେତୟା ଯୁଗ ଭୋଗ ଅନ୍ତେ । ଦ୍ୱାପର ଯୁଗ ଉପଗତେ ॥
ବିଷ୍ଣୁର ଅଂଶେ ବ୍ୟାସ ମୁନି । ଜନ୍ମିଲେ ନର ଦେହ ଘେନି ॥
ପରାଶରଙ୍କ ବୀର୍ଯ୍ୟେ ଜାତ । ଯୋଜନଗନ୍ଧା ଗର୍ଭଗତ ॥
ସେ ଯେକ ଦିନେ ପ୍ରାତଃକାଳେ । ସ୍ନାନ କରନ୍ତି ଗଙ୍ଗାଜଳେ ॥
ପର ଅପର ଜ୍ଞାନ ଜାଣେ । ସକଳ ଶାସ୍ତ୍ର ପରିମାଣେ ॥
ସେ କାଳ ପୁରୁଷର ବଳେ । ଯୁଗେ ଉଡ଼ନ୍ତି ଅନ୍ତରାଳେ ॥
ତାହାକୁ ନ ଦେଖନ୍ତି କେହି । ବ୍ରହ୍ମାଣ୍ଡ ମଧ୍ୟେ ଦେହ ବହି ॥
ସେ ପ୍ରାଣୀ ଆୟୁବଳ ହରେ । ଯୁଗ ସ୍ୱଭାବ ଅନୁସାରେ ॥
କଳି ଆଗମେ ପ୍ରାଣୀଙ୍କର । ଯେମନ୍ତ ହୋଇବ ବେଭାର ॥
ଶ୍ରଦ୍ଧା ଛାଡ଼ିବେ ଅତିଦୂର । ନିର୍ବଳ ହୋଇବ ଶରୀର ॥
ବୁଦ୍ଧି ହୋଇବ ଲୋଭେ ଗ୍ରାସ । ସ୍ୱଭାବେ ଅଳପ ଆୟୁଷ ॥
ଦୁର୍ଭାଗା ହୋଇବେ ସକଳେ । ଯେହା ଜାଣନ୍ତି ଯୋଗବଳେ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ । କଳି ବଞ୍ଚିବେ ଯେଉଁ ଧର୍ମେ ॥
ବେଦ ଉଦିତ ସିଦ୍ଧକର୍ମ । ଆଶ୍ରମେ ଭିନ୍ନ ଭିନ୍ନ ଧର୍ମ ॥
ଜୀବନ ଶୁଦ୍ଧ ଅର୍ଥେ କରି । ଯେମନ୍ତେ ବିଷ୍ଣୁ ମାୟାତରି ॥
କର୍ମ ସାଧିବ ଯଜ୍ଞ ମତେ । ଯେମନ୍ତେ ଭାଳି ମୁନି ଚିତ୍ତେ ॥
ଯେକ ବେଦକୁ ଚାରିଖଣ୍ଡେ । ଯଜ୍ଞ ଭିଆଇ କର୍ମକାଣ୍ଡେ ॥
ପଞ୍ଚମ ବେଦ ଇତିହାସ । ଯହୁଁ ପୁରାଣ ଅଷ୍ଟାଦଶ ॥
ପୌଲସ୍ତ୍ୟ ମୁନିଙ୍କି ଆଣିଲେ । ପ୍ରଥମ ବେଦ ପଢ଼ାଇଲେ ॥
ଜଇମିନିଙ୍କି ଦେଲେ ସାମ । ଯଜୁ ଦେଲେ ବୈଶମ୍ପାୟନ ॥
ଅଙ୍ଗିରା ମୁନି ଅଥର୍ବଣେ । ମୋ ପିତା ଲୋମ ହରଷଣେ ॥
ପୁରାଣ ଅଷ୍ଟାଦେଶ ଦେଲେ । ଯେମନ୍ତେ କର୍ମ ସମ୍ପାଦିଲେ ॥

ସେ ଶିଷ୍ୟେ ବିଚାରି ନିଷ୍ଠଳେ । ବେଦ ବୃକ୍ଷକୁ ଯୋଗବଳେ ॥
ଅନେକ ଶାଖା ଭିଆଇଲେ । ଶିଷ୍ୟେ ପ୍ରଶିଷ୍ୟେ ଶିଖାଇଲେ ॥
ଅଳ୍ପ ବୁଦ୍ଧିରେ ନର ଯେତେ । ବେଦ ଧରିବେ ଦୃଢ଼ଚିତ୍ତେ ॥
ସ୍ତ୍ରୀ ଶୂଦ୍ରଜନ ଯେ ଜଗତେ । ଯୋଗ୍ୟ ନୁହଁନ୍ତି ବେଦ ପଥେ ॥
ତାହାଙ୍କ ନିସ୍ତାରଣ ଅର୍ଥେ । ଉପାୟେ ଚିନ୍ତି ଦୃଢ଼ଚିତ୍ତେ ॥
ବୁଦ୍ଧି ମନ୍ଥନେ ବେଦ ମନ୍ଥି । ଅର୍ଥବନ୍ଧ ଯେ ବନ୍ଧେ ପୋଥି ॥
ବେଦୁ ଉଦ୍ଧରି ସାର ଅର୍ଥ । ପୁରାଣେ ସର୍ଜିଲେ ଭାରତ ॥
ପ୍ରାଣୀଙ୍କ ନିସ୍ତାର ଯେମନ୍ତେ । କାନନେ ମିଳିଲେ ନିଶ୍ଚିନ୍ତେ ॥
ଆଶ୍ରିତ ସରସ୍ୱତୀ କୂଳେ । ମନ ନ ରହଇ ନିଷ୍ଠଳେ ॥
ଯୋଗେ ନ ପାରି ଚିତ୍ତଧରି । ଚଞ୍ଚଳେ ଯେମନ୍ତ ବିଚାରି ॥
ଅତି କଠୋରେ ବେଦଧରି । ଗୁରୁ ଅନଳେ ଚିତ୍ତ ମାରି ॥
ଯେବା ଭାରତ କଲେ ସାର । ସ୍ତ୍ରୀ ଶୂଦ୍ର ମିଳି ତା ନିସ୍ତାର ॥
ତେବେ ନିର୍ମଳ ନୋହେ ମନ । ଚିନ୍ତା ଅନଳେ ଛନ ଛନ ॥
ଯେ ମନ ଧରିବି କେମନ୍ତେ । ନିଷ୍ଠଳ କରି ଜ୍ଞାନ ପଥେ ॥
ଯେତେ ଚିନ୍ତିଲେ ବେଦଧର୍ମ । ବିଚାରେ ଯେ ସେ ମାୟାଭ୍ରମ ॥
ଏ ମାୟା ତୁଟଇ କେମନ୍ତେ । ହରି ଭଗତ ସଙ୍ଗ ଯୁତେ ॥
କହିବି ଭାଗବତ ଧର୍ମ । ଯେଣେ ନ ଲାଗେ ମାୟା ଭ୍ରମ ॥
ଯେମନ୍ତ ହୃଦରେ ବିଚାରି । ମନକୁ ନ ପାରନ୍ତି ଧରି ॥
ଯେମନ୍ତ ସମୟେ ନାରଦ । ଆସନ୍ତେ ଶୁଭେ ବୀଣା ବାଦ୍ୟ ॥
ତକ୍ଷଣେ ସରସ୍ୱତୀ ତଟେ । ମିଳିଲେ ବ୍ୟାସଙ୍କ ନିକଟେ ॥
ନାରଦ ଆଗମନ ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
କେତେହେଁ ଦୂରେ ଆଗସରି । ନାରଦ କରେ କର ଧରି ॥
ବସାଇ ଉତ୍ତମ ଆସନେ । ପୂଜିଲେ ଅତିଥି ବିଧାନେ ॥
ସେ ବ୍ୟାସ ନାରଦଙ୍କ ପାଦେ । ସୁଜନେ ପ୍ରଣାମ ଆନନ୍ଦେ ॥
ଯାହା ଚିନ୍ତିଲେ ପାପ ନାଶେ । ନମଇଁ ଜଗନ୍ନାଥ ଦାସେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମ ସ୍କନ୍ଧେ*
*ବ୍ୟାସ ନାରଦ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ କହନ୍ତି ଅନୁରାଗେ । ହରଷେ ମୁନିଙ୍କର ଆଗେ ॥
ଶୁଣ ସକଳ ମୁନି ଜନେ । ହରି ଚରିତ ସାବଧାନେ ॥
ଗଙ୍ଗା ସମୀପେ ଦେବଋଷି । ଦୃଢ଼ ଆସନେ ସୁଖେ ବସି ॥
ବ୍ୟାସେ ପୁଚ୍ଛିଲେ ମନତୋଷେ । ଯେ ଜାତ ଗୋବିନ୍ଦର ଅଂଶେ ॥
ହରଷେ ବୀଣା ହସ୍ତେ ଲାଇ ॥ କହନ୍ତି ବ୍ୟାସ ମୁଖ ଚାହିଁ ॥

### ନାରଦ ଉବାଚ

ହେ ବ୍ୟାସ ପରାଶର ସୁତ । ତୁମ୍ଭେ ସ୍ୱଭାବେ ଭାଗ୍ୟବନ୍ତ ॥
ଚଞ୍ଚଳ ତୁମ୍ଭର ବଦନ । ଦେଖି ଜାଣିଲି ତୁମ୍ଭ ମନ ॥
ସକଳ ବେଦ ଶିଷ୍ୟେ ଦେଇ । ପୁରାଣ ଭାରତ ଭିଆଇ ॥
ବେଦ ବିଚାରି ବ୍ରହ୍ମ ଚିନ୍ତି । ଚିତ୍ତ ନୋହିଲା ତୁମ୍ଭ ଶାନ୍ତି ॥
ଭଲେ ଜାଣିଲି ମୁହିଁ ଯେହା । ତୁମ୍ଭେ ସ୍ୱଭାବେ ପୁଣ୍ୟ ଦେହା ॥
ନାରଦ ବାଣୀ ଶୁଣି କର୍ଣ୍ଣେ । ବ୍ୟାସ କହନ୍ତି ଅବଧାନେ ॥

### ବ୍ୟାସ ଉବାଚ

ତୁମ୍ଭେ କହିଲ ମୁନି ଯେତେ । ମୋର ଅଭ୍ୟାସ ବହୁ ମତେ ॥
ବେଦ ପୁରାଣ ଅର୍ଥ ଯେତେ । ସର୍ବ ମୁଁ ସମ୍ପାଦିଲି ଚିତ୍ତେ ॥
ତଥାପି ଆତ୍ମା ତୋଷ ନୋହେ । ମନ ନ ରହେ ସ୍ଥିର ଦେହେ ॥
ତୁମ୍ଭେ ଯେ ବ୍ରହ୍ମାର ନନ୍ଦନ । ଭଲେ ଜାଣିଲ ମୋର ମନ ॥
ଯେ ମନ ସ୍ଥିର କରିବାରେ । ବିଷ୍ଣୁ ହୁଁ ଆନ କେବା ପାରେ ॥
ସକଳ ଶାସ୍ତ୍ର ତହୁଁ ସାର । ଯାହା ମହିମା ଅଗୋଚର ॥
ତାର ଭଗତି ଯେଣୁ ନାହିଁ । ଯେଣୁ ମୋ ଚିତ୍ତ ସ୍ଥିର ନୋହି ॥
ତୁମ୍ଭେ ସକଳ ଧର୍ମ ଜାଣ । ବିଷ୍ଣୁର ମାୟା ପରିମାଣ ॥
ସେ ସର୍ବ ଜୀବଙ୍କ ଈଶ୍ୱର । ଯାହାର ମାୟା ଯେ ସଂସାର ॥
ସର୍ଜଇ ପାଳଇ ସଂହରେ । ତ୍ରିଗୁଣ ମଧ୍ୟେ ସେ ବିହରେ ॥
ସେ ମାୟା ତାକୁ ନ ଲାଗଇ । ନିତ୍ୟ ସେ ନିଜ ସୁଖେ ଥାଇ ॥
ଯେ ତିନିଲୋକ ତାର ଦେହେ । ନିରତେ ଭ୍ରମେ ରବି ପ୍ରାୟେ ॥
ପ୍ରାଣୀଙ୍କ ବାହ୍ୟ ଅଭ୍ୟନ୍ତରେ । ଯେମନ୍ତେ ସଞ୍ଚରେ ସମୀରେ ॥
ଆତ୍ମା ଯେ ଗୁଣେ ସାକ୍ଷୀରୂପେ । ନିତ୍ୟ ବିହରେ ଆତ୍ମା ସୁଖେ ॥
ସେ ପରାଶର ବ୍ରହ୍ମ ଜଳେ । ତୁମ୍ଭର ସ୍ନାହାନ ନିଷ୍ଠଳେ ॥
ଯେ ଜଳ ଶୀତ ତପ୍ତ ଭାବ । ନିତ୍ୟେ ତୁମ୍ଭର ଅନୁଭବ ॥
ତାର ମହିମା ପରିମାଣେ । ତୁମ୍ଭହୁଁ ଆନ କେବା ଜାଣେ ॥
କହ ଆନନ୍ଦେ ମୁନିବର । ଯେମନ୍ତେ ମନ ହୋଇଯେ ଥିର ॥

### ନାରଦ ଉବାଚ

ଭୋ ବ୍ୟାସ ଶୁଣ ମୋ ବଚନ । ଯେଣୁ ସନ୍ତୋଷ ନୋହେ ମନ ॥
ଧନ ସମ୍ପଦ କାମ ଅର୍ଥେ । ଯେତେ କହିଲ ବେଦଶାସ୍ତ୍ରେ ॥
ଯେବେ ଗୋବିନ୍ଦ ଗୁଣ ଗ୍ରାମେ । ଅଭ୍ୟାସୁଥାନ୍ତ କିଛି ଶ୍ରମେ ॥
ତେବେକି ମନ ତୋ ସନ୍ତୋଷ । କହିବି ଶୁଣ ଉପଦେଶ ॥
ଯେବେ ଯେ ଜିହ୍ୱାବାକ୍ୟ ଶ୍ରମେ । ନିରତେ କୃଷ୍ଣ ଗୁଣ ଗ୍ରାମେ ॥

ଯେ ବାଣୀ ଜଗତ ତାରେଣୀ । ତା ଛାଡ଼ି ଅନ୍ୟ ଯେବେ ଭଣି॥
ତାହାକୁ ବୋଲି କାକ ବାଣୀ । ଯେ ବାକ୍ୟେ ଗୋବିନ୍ଦ ନ ଶୁଣି॥
ନିଶ୍ଚୟେ କାକ ତୀର୍ଥ ସେହି । ସେ ଜଳେ ଯେବେ ଅବଗାହୀ ॥
ପରମହଂସ ମୁନି ମେଳେ । ସେ ଥାନ୍ତି ପୁଣ୍ୟ ତୀର୍ଥ ଜଳେ॥
ଯେ ବାକ୍ୟେ କୃଷ୍ଣ ଗୁଣ ଗାଇ । ନିଶ୍ଚୟେ ପୁଣ୍ୟତୀର୍ଥ ସେହି ॥
ସେ ବାକ୍ୟେ ଜନ ତାପ ନାଶେ । ତୀର୍ଥ ଯେସନେ ପାପ ଧ୍ୱଂସେ ॥
କୃଷ୍ଣର ଗୁଣ ଗାଥା ଯେବେ । ପ୍ରବନ୍ଧେ ଉଚ୍ଚାରେ ସ୍ୱଭାବେ ॥
ପଦେ କୁଣ୍ଠିତ ଯେବେ ହୋଏ । ସେ ବାଣୀ ସର୍ବପାପ ଦହେ ॥
ଅନନ୍ତ ଯଶ ନାମ ଗୁଣେ । ସାଧୁଙ୍କ ବାକ୍ୟ ନିତ୍ୟେ ଭଣେ ॥
ସେ ହରି ଭାବ ଯେବେ ଛାଡ଼ି । ଯେ ଯାନ୍ତି କର୍ମପଥେ ମାଡ଼ି ॥
ନିଷ୍କାମ ଚିତ୍ତେ ସର୍ବ ନାଶି । ତପ କରନ୍ତି ବନେ ପଶି ॥
ହରି ମହିମା ଛାଡ଼ି ଯେବେ । ଅତି ନିର୍ମଳ ଜ୍ଞାନ ଭାବେ ॥
ସେ କାହିଁ ଅଶୁଭ ନାଶିବ । ତପ ସାଧିଲା ଫଳ ଦେବ ॥
ଯେ ପୁଣ୍ୟେ ତପ ମାର୍ଗେ କରେ । ବିଫଳ ଫଳ ଚିତ୍ତେ ଧରେ ॥
ହରିଙ୍କି ନ କରେ ଅର୍ପଣ । ସେ ସର୍ବଫଳ ଅକାରଣ ॥
ତୁମ୍ଭେ ସ୍ୱଭାବେ ଭାଗ୍ୟବନ୍ତ । ମହତ ଭାବ ଶୁଚିବନ୍ତ ॥
ସତ୍ୟବଚନ ଦୃଢ଼ବତୀ । ଯେଣୁ ଅମୋହ ତୁମ୍ଭ ମତି ॥
ସମାଧି କରି କୃଷ୍ଣପାଦେ । ତାର ଚରିତ ଅନୁବାଦେ ॥
ପ୍ରବନ୍ଧ ଭାଗବତ କର । ଅଖିଳ ଜନଙ୍କୁ ଉଦ୍ଧର ॥
ଯେ ପ୍ରାଣୀ ଅନ୍ୟମାର୍ଗେ ଭଜେ । ହରି ଭଗତି ଦୂରେ ତେଜେ ॥
ବିଷ୍ଣୁ ଭଗତି ଭାବ ଛାଡ଼ି । ତୃତୀୟ ବର୍ଗେ ଲୋଭ ବଢ଼ି ॥
ତାହାଙ୍କ ସୁଖଲେଶ ନାହିଁ । ସମୁଦ୍ରେ ଯେହ୍ନେ ନାବ ଥାଇ॥
ଜଳ ପବନ ମେଘ ତେଜେ । କୂଳେ ନ ଲାଗି ଯେହ୍ନେ ଭାଜେ॥
ତାହାଙ୍କ ଗତି ସେହି ମତ । ଶୁଣ ହୋ ପରାଶର ସୁତ ॥
ନିନ୍ଦିତ କର୍ମ ଚିତ୍ତେ ଚିନ୍ତି । ଯେ ଅନ୍ୟ ଜନେ ଶିକ୍ଷା ଦ୍ୟନ୍ତି ॥
ସ୍ୱଭାବେ ନାଶ ବେନି ଜନ । ତାହାର ବ୍ୟର୍ଥ ଗତି କ୍ରମ ॥
ତାର ବଚନେ ମତି ଭ୍ରମେ । ଯେ ପ୍ରାଣୀ ବିଚାରେ ଅଧର୍ମେ॥
ସାଧୁ ନିରୂପ ନ ବୁଝନ୍ତି । ଜଗତେ ନାହିଁ ତାଙ୍କ ସ୍ଥିତି ॥
ପାପ ଆଚରି ନର ଲୋକେ । ଅନ୍ତେ ସେ ପଡ଼ନ୍ତି ନରକେ ॥
ତୁମ୍ଭେ ସ୍ୱଭାବେ ବିଚକ୍ଷଣ । ଭାବ ଅଭାବ ଭଲେ ଜାଣ ॥
ଅନ୍ତ ନ ପାଇ ବିଷ୍ଣୁ କଥା । ବର୍ଣ୍ଣନେ ତୁମ୍ଭେ ସାମରଥା ॥
ନିବୃତ୍ତି ପ୍ରବୃତ୍ତି ଯେ ମାର୍ଗେ । ଯେମନ୍ତେ ପ୍ରାଣୀ ନିସ୍ତରିବେ ॥
ହରି ଚରିତ ଦୀପ କରି । ପ୍ରାଣୀଙ୍କି ଅନ୍ଧାରୁ ଉଦ୍ଧରି ॥

ଯେ ପ୍ରାଣୀ ନିଜ ଧର୍ମ ତେଜେ । ହରି ଚରଣେ ଦୃଢ଼େ ଭଜେ ॥
ଭକ୍ତ ମରଇ ଯେବେ ଦୁଃଖେ । କେବେହେଁ ନ ପଡ଼େ ନରକେ ॥
ସ୍ୱଧର୍ମ ତେଜନ୍ତି ଯେ ପ୍ରାଣୀ । ହରି ମହିମା ନ ପ୍ରମାଣି ॥
ଅନ୍ତେ ତାହାଙ୍କ ଗତି ଯେତେ । କେ ଅନୁମାନି ପାରେ ଚିତ୍ତେ ॥
ଯେବେ ହୋ ଶୁଣ ମୁନିବର । ପଣ୍ଡିତ ଜନଙ୍କ ବେଭାର ॥
ଯେ ଭାବ କେହି ନ ଜାଣନ୍ତି । ସେ ଭାବ ଯାର ଚିତ୍ତେ ଚିନ୍ତି ॥
ଆଚରି ଅଧୋ ଉର୍ଦ୍ଧ୍ୱ ପଥେ । ପ୍ରାଣୀ ସୁମରନ୍ତି ନିରତେ ॥
ତାହାଙ୍କ ମଧ୍ୟେ ଯେକ ଜଣେ । ନୋହିଲେ ସେ ଫଳ ଧାରଣେ ॥
ସେ ଅର୍ଥେ ଯତ୍ନ ଯେ କରନ୍ତି । ସଂସାରେ ପଣ୍ଡିତ ବୋଲାନ୍ତି ॥
ସେ ଫଳ ପାଇ ସୁଖେ ଖାଇ । ଭ୍ରମଣେ ଶ୍ରମ ନ ଲାଗଇ ॥
ଭ୍ରମନ୍ତା ପ୍ରାଣୀ ଯେବେ ପାଇ । ପୁଣି ଭ୍ରମଇ ତାହା ଗାଇ ॥
କାଳର ବଳେ ପୁଣ ପୁଣ । ଯେ ଭବ ମଧ୍ୟେ ତା ଭ୍ରମଣ ॥
ଯେଣୁ ମୁକୁନ୍ଦ ପାଦଗତେ । ଯେ ପ୍ରାଣୀ ଭଜନ୍ତି ନିରତେ ॥
ମୁକୁନ୍ଦ ପାଦେ ତାର ଗତି । ଅନ୍ୟର ପ୍ରାୟେ ନ ପଡ଼ନ୍ତି ॥
କୃଷ୍ଣର ପଦ୍ମପାଦ ରସ । ନିରତେ କରନ୍ତି ଯେ ଗ୍ରାସ ॥
ସେ ରସ ଛାଡ଼ିବେ ଯେ କେହ୍ନେ । ରସେ ରସିକ ପ୍ରାଣୀ ଯେହ୍ନେ ॥
ତୁମ୍ଭେ ଯେ ଆତ୍ମାରାମେ ଭ୍ରମି । ଅନ୍ତର ଦୃଷ୍ଟି ଅନ୍ତର୍ଯ୍ୟାମୀ ॥
ପରମ ପୁରୁଷଙ୍କ କଳା । ସୁମରି ଗୋବିନ୍ଦର ଲୀଳା ॥
ସଂସାର ନିସ୍ତାରଣ ଅର୍ଥେ । ଶ୍ରୀ ଭାଗବତ କର ଗ୍ରନ୍ଥେ ॥
ସ୍ୱଭାବେ ଜନ୍ମ ଯାର ନାହିଁ । ମାୟା ସଂସାରେ ଦେହ ବହି ॥
ତାହାରେ ଚିନ୍ତା କରି ଚିତ୍ତେ । ପ୍ରକାଶ କରି ଜନହିତେ ॥
ଯେ ସେ ପୁରୁଷଙ୍କର ସାର । ଯଜ୍ଞ ତର୍ପଣ ନିର୍ବିକାର ॥
ଇଷ୍ଟ ପୂଜନ ଜପ ଦାନ । ତେବେ ଭାବଇ କୃଷ୍ଣ ନାମ ॥
ପୂର୍ବେ ନିର୍ମଳ ମୁନିଜନେ । ତପ ଆଚରି ଘୋର ବନେ ॥
ସଂସାରେ ସାର କୃଷ୍ଣ ଗାଥା । ନିରତେ ଗାଇ ଗୁଣ ଗାଥା ॥
ଯେ ଭାବ ପାଇବ ଯେମନ୍ତେ । କହିବା ତୁମ୍ଭର ଅଗ୍ରତେ ॥
ପୂର୍ବେ ମୁଁ ଦକ୍ଷ ଶାପ୍ୟ ପାଇ । ଜନ୍ମିଲି ଦାସୀପୁତ୍ର ହୋଇ ॥
ବ୍ରାହ୍ମଣ ଗୃହେ ଯେକା ଯେକି । ମୋହର ଜନନୀ ସେବକୀ ॥
ବ୍ୟାପାର କରେ ରାତ୍ର ଦିନେ । ଯେମନ୍ତେ ବିଧିର ବିଧାନେ ॥
ସେ ବିପ୍ର ଗୃହେ ସାୟଂ କାଳେ । ଅତିଥି ବ୍ରାହ୍ମଣ ମିଳିଲେ ॥
ତାହାଙ୍କୁ ଅନ୍ନ ଜଳ ଦେଇ । ବ୍ରାହ୍ମଣେ କହେ ଭାବ ବହି ॥
ହେ ବିପ୍ର ଶୁଣ ମୋ ବଚନ । ଆଜ ଜୀବନ ମୋର ଧନ୍ୟ ॥
ତୁମ୍ଭର ଦୟା ଯେବେ ମୋତେ । ମୋ ଗୃହେ ରହ ଦିନାକେତେ ॥

ଦୁର୍ଗମ ବରଷା ଯେ ଚାରି । ଯେ ଋତୁ ମୋର ଗୃହେ ସାରି ॥
ହେଉ ବୋଇଲେ ବିପ୍ରଜନେ । ବ୍ରାହ୍ମଣ ଗୃହେ ଶୁଦ୍ଧ ମନେ ॥
ରହିଲେ ପରମ ହରଷେ । ମୁଁ ସେବାକଲି ତାଙ୍କ ପାଶେ ॥
ବାଳକ ଚପଳ ମୋ ଚିତ୍ତ । ସେବା କରଇ ଅବିରତ ॥
ସେ ବିପ୍ରଗଣ ମୋତେ ଚାହିଁ । ଆଶ୍ୱାସ କଲେ ଦୟା ବହି ॥
ତାହାଙ୍କ ଭୋଜନର ଅନ୍ତେ । ପତ୍ରେ ଉଚ୍ଛିଷ୍ଟ ଥାଇ ଯେତେ ॥
ତାହା ଭୁଞ୍ଜଇ ନିତ୍ୟେ ମୁହିଁ । ଅନ୍ୟ ଭୋଜନ ନ ଜାଣଇ ॥
ଉଚ୍ଛିଷ୍ଟ ଭୋଜନ ପ୍ରସାଦେ । ମୋହର ଚିତ୍ତ ଅପ୍ରମାଦେ ॥
ବିପ୍ରଙ୍କ ମୁଖୁ ହରିବାଣୀ । ବଞ୍ଚଇ ନିରନ୍ତରେ ଶୁଣି ॥
ସେ ବାଣୀ ମୋର ମନେ ସ୍ମରେ । ପଦକୁ ପଦ ଗୀତ ସ୍ୱରେ ॥
ନିରତେ ଶୁଣି ପଦେ ପଦେ । ମନ ବୁଡ଼ିଲା କୃଷ୍ଣ ପାଦେ ॥
କୃଷ୍ଣହୁଁ ଆନ ନ ଜାଣଇ । ବିଷୟ ରସ ଆର କାହିଁ ॥
ଯେ ଯେତେ ବିଷୟ ସ୍ୱରୂପ । ପ୍ରାଣୀ ଦେଖନ୍ତି ମୋହ କୂପ ॥
ମୁହିଁ ଦେଖଇ ବାହ୍ୟାନ୍ତରେ । ହରିହୁଁ ଆନ କେ ସଂସାରେ ॥
ଯେମନ୍ତେ ବରଷା ସରିଲା । ଶରଦ ଋତୁ ପ୍ରକାଶିଲା ॥
ନିରତେ ସଙ୍ଗେ ହରି ବାଣୀ । ବିପ୍ର ଜନଙ୍କ ମୁଖୁ ଶୁଣି ॥
ସାତ୍ତ୍ୱିକ ଭକ୍ତି ମୋର ମନେ । ପ୍ରକାଶ ହେଲା ଅନୁଦିନେ ॥
ମୋହର ସେବା ଦିନୁଦିନେ । ଦେଖି ସନ୍ତୋଷ ବିପ୍ରଜନେ ॥
ଯିବାର ବେଳେ ମୋତେ ରାଇ । କୃଷ୍ଣ ମହିମା ଶିକ୍ଷା ଦେଇ ॥
ଯେ ଭାବ ଭାବି ଅପ୍ରମାଦେ । ପ୍ରାଣୀ ପଶନ୍ତି ମୋକ୍ଷ ପଦେ ॥
ଆତ୍ମାର ଜ୍ଞାନ ପ୍ରକାଶଇ । ତୃତୀୟ ତାପ କ୍ଷୟ ଯାଇ ॥
ବ୍ୟାଧି ଉପୁଜେ ଯାର ଭୋଗେ । ସେ ଦ୍ରବ୍ୟେ ଚିକିତ୍ସା ନ ଲାଗେ ॥
ଯେଣୁ ଗୋବିନ୍ଦ ରସ ତେଜି । ଯେବେ ବିଷୟ ରସେ ମଜି ॥
ସେ କାହିଁ ତରିବ ସଂସାର । ପଡ଼ଇ ଘୋର ଅନ୍ଧକାର ॥
ଯେ ଭବ ମଧ୍ୟେ ଦେହ ଧରେ । ବିଷ୍ଣୁ ତୋଷଣ କର୍ମ କରେ ॥
ବିଷ୍ଣୁର ଯେତେ ଗୁଣ ଗ୍ରାମ । ଜଗତେ ଅଛି ଯେତେ ନାମ ॥
ମନ୍ତ୍ର ଉଚ୍ଚାରି ସ୍ତୁତି କରି । ପୂଜା କରନ୍ତି ହୃଦେ ଧରି ॥
ସେ ନ ପଡ଼ନ୍ତି ମାୟା ମୋହେ । ଅନ୍ତେ ପଶନ୍ତି କୃଷ୍ଣ ଦେହେ ॥
ଯେମନ୍ତେ ସାଧୁସଙ୍ଗ ଫଳେ । କୃଷ୍ଣ ଭଗତି ଯୋଗବଳେ ॥
ଅଶେଷ ଦୁଃଖ ନାଶ ଗଲା । ସେ ହରି ମୋତେ ଦୟାକଲା ॥
ଯେବେ ହୋ ଶୁଣ ମୁନିବର । ହରି ଚରଣେ ଚିତ୍ତ ଧର ॥
କୃଷ୍ଣର ନାମ ଗୁଣ ଯେତେ । ପ୍ରାଣୀଙ୍କୁ କହ ଭାଗବତେ ॥
ବିଷୟା ବିଷେ ପ୍ରାଣୀ ମରେ । ଆତ୍ମାର ଗତି ନ ବିଚାରେ ॥
ସେ ଯେବେ ଭାଗବତ ଶୁଣି । ତରିବେ ଭବ ତରଙ୍ଗିଣୀ ॥
ଯେମନ୍ତେ ବ୍ୟାସ ଆଗେ କହି । ବୀଣାରେ କୃଷ୍ଣ ନାମ ଗାଇ ॥
ସେ ମୁନିବର ପାଦ ଯୁଗେ । ସୁଜନେ ନମ ଅନୁରାଗେ ॥
ହୋଇବ ଭବ ବନ୍ଧନାଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ବ୍ୟାସ ନାରଦ ସମ୍ବାଦେ ନାମ ପଞ୍ଚମୋଧ୍ୟାୟ ।*

## ଷଷ୍ଠ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଯେମନ୍ତେ ନାରଦଙ୍କ ବାଣୀ । ସତ୍ୟବତୀ ନନ୍ଦନ ଶୁଣି ॥
ନାରଦ ଜନ୍ମ କର୍ମ ଯେତେ । ହରିଙ୍କି ଭଜିଲେ ଯେମନ୍ତେ ॥
ଯେ ସର୍ବ କଥା ଜାଣି ମାରେ । ପୁଣି ପୁଚ୍ଛିଲେ ଆର ବାରେ ॥

### ବ୍ୟାସ ଉବାଚ

ଥିଲେ ସନ୍ନ୍ୟାସୀ ଯେତେ ଦିନ । ତୁମ୍ଭଙ୍କୁ ମନ୍ତ୍ର କରି ଦାନ ॥
ସନ୍ତୋଷେ ଦେଲେ ବିଷ୍ଣୁ ଦୀକ୍ଷା । ଗମିଲେ ଯେଣେ ତାଙ୍କ ଇଚ୍ଛା ॥
ତହୁଁ ଅନ୍ତରେ କଲ କିସ । ତୁମ୍ଭେ ଯେ ପ୍ରଥମ ବୟେସ ॥
ଜନ୍ମ ସଞ୍ଚିଲେ ପ୍ରଜାପତି । ବାଳକ କାଳୁ ଯେତେ ଗତି ॥
କରି ବଞ୍ଚନ୍ତି ପ୍ରାଣୀ ଭବେ । ତୁମ୍ଭେ ବଞ୍ଚିଲ କେଉଁଭାବେ ॥
କାହିଁ ଛାଡ଼ିଲ କଳେବର । ଯେଣୁ ହୋଇଲ ଜାତି ସ୍ମର ॥
ତୁମ୍ଭର ଦେହୁ ଜ୍ଞାନ ଅନ୍ତେ । କାଳ ନ ହରିଲା କେମନ୍ତେ ॥
ଯେମନ୍ତେ ବ୍ୟାସ ମୁଖୁଁ ଶୁଣି । ବ୍ରହ୍ମା ନନ୍ଦନ ବାକ୍ୟ ଭଣି ॥

### ନାରଦ ଉବାଚ

ଶୁଣ ହୋ ମୁନି ଶୁଦ୍ଧ ଚେତା । ମୋ ଜନ୍ମ କର୍ମର ବାରତା ॥
ମୋତେ ପରମ ଜ୍ଞାନ ଦେଇ । ବିପ୍ର ଯେ ଗଲେ ପଥ ବାହି ॥
ମୁଁ ପୁଣି ପ୍ରଥମ ବୟସେ । ମୁନି ଜନଙ୍କ ଉପଦେଶେ ॥
ଦିନ ବଞ୍ଚଇ ମାତା କୋଳେ । ମନ ମୋ ଥାଇ କୃଷ୍ଣମେଳେ ॥
ମୋର ଜନନୀ ବିପ୍ର ଘରେ । ସେବକୀ ପଣେ ଦିନ ହରେ ॥
ଯେକଇ ପୁତ୍ର ତାର ମୁହିଁ । ସେ ମୋତେ ଦଣ୍ଡେ ନ ଛାଡ଼ଇ ॥
ସେ ମୋତେ ସ୍ନେହେ ପାଳେନିତି । ମୋ ବିନୁ ନାହିଁ ଅନ୍ୟଗତି ॥
ସେବକୀ ପରଘରେ ନିତ୍ୟେ । ନ ଥାଇ ଆତ୍ମାର ଆୟତେ ॥
ମୋର ନିମିତ୍ତେ ଭିକ୍ଷା ଅନ୍ନ । ବହୁତ କଷ୍ଟେ ତାର ମନ ॥
ସେବା ପାଇବ ଅନ୍ନ କାହିଁ । ବ୍ରାହ୍ମଣ ଘରେ ଯେ ମିଳଇ ॥

ମୋର ଭୁଞ୍ଜିଲା ଅବଶେଷ । ମୋର ଜନନୀ କରେ ଗ୍ରାସ ॥
ସଂସାର ଈଶ୍ୱର ଆୟତ୍ତେ । ଯେମନ୍ତେ ଗଲା ଦିନାକେତେ ॥
ସେ ବିପ୍ର ଘରେ ଥାଇ ମୁହିଁ । ସନ୍ଧ୍ୟା ସଂକଳ୍ପ ନ ଜାଣଇ ॥
ବାଳକ ପଞ୍ଚମ ବରଷେ । ବଞ୍ଚଇ ଜନନୀର ପାଶେ ॥
ମୋର ଜନନୀ ଯେକ ଦିନେ । ବ୍ରାହ୍ମଣ ଘରେ ଗୋଦୋହନେ ॥
ଧେନୁ ଦୁହଁଇ ପଥେ ବସି । ସର୍ପେ ମିଳିଲା ବେଗେ ଆସି ॥
ଦଇବ ବଳେ ସେ ଦଂଶିଲା । ତକ୍ଷଣେ ଜନନୀ ମୋ ମଲା ॥
ମୁଁ ଯେ ମାତାକୁ ଅଗ୍ନିଦେଇ । ଭାଳଇ ଚଉଦିଗେ ଚାହିଁ ॥
ବିପ୍ରଙ୍କ ତହିଁ ମୋର ମନ । ପଡ଼ି ଭାଳଇ ଛନ ଛନ ॥
ତାହାଙ୍କୁ ଭେଟିବାର ଅର୍ଥେ । ଗଲି ଉତ୍ତର ଦିଗପଥେ ॥
ଅନେକ ଦୂର ଗ୍ରାମେ ଗ୍ରାମେ । ଭ୍ରମିଲି ବହୁ ଦୁଃଖ ଶ୍ରମେ ॥
ଖେଟ ଖବିଟ ବାଟ ବନେ । ଦୁର୍ଗମ ପର୍ବତ କାନନେ ॥
ପବିତ୍ର ଜଳ ପୁଣ୍ୟତୀର୍ଥେ । ଦେବେ ସେବନ୍ତି ନିତ୍ୟେନିତ୍ୟେ ॥
ଉତ୍ତମ ସରୋବର ବନେ । ହଂସ ସାରସ ଭୃଙ୍ଗ ସ୍ୱନେ ॥
ପୁଣି ଗମିଲି ଘୋର ଦେଶେ । ପୂରିତ ନଳ କାଂଶ କୁଶେ ॥
ବିଷମ ଲତା ଗୁଳ୍ମ ସାର । ଦିଶଇ ଘୋର ଅନ୍ଧକାର ॥
ସର୍ପ ଭଲ୍ଲୁକ ଶିବା ଗୃହେ । ବନେ ଭ୍ରମଇ ଯେକା ଦେହେ ॥
ବନେ ଭମିଲି ଘୋର ପଥେ । ଶ୍ରମେ ପିପାସା ବୁଭୁକ୍ଷିତେ ॥
ଯେମନ୍ତେ ଯାଉ ପଦେ ପଦେ । ଶ୍ରମେ ବସିଲି ନଦୀତଟେ ॥
ଶୀତଳ ଜଳ କରି ପାନ । କରି ପାଇଲି ଦିବ୍ୟଜ୍ଞାନ ॥
ସେ ନଦୀଜଳେ ପ୍ରାଣ ତୋଷି । ଅଶ୍ୱତ୍ଥ ତରୁ ମୂଳେ ବସି ॥
ବିପ୍ର ଜନକଙ୍କର ବଚନେ । ଆତ୍ମାର ଆତ୍ମା ଅବଧାନେ ॥
ଶ୍ରୀକୃଷ୍ଣ ପାଦପଦ୍ମ ଯୁଗେ । ଧ୍ୟାନ ନିଶ୍ଚଳ ଦୃଢ଼ ମାର୍ଗେ ॥
କଣ୍ଠ କୁଣ୍ଠିତେ ରୋମପନ୍ତି । ଅଶ୍ରୁ ଉଦକେ ତନୁ ତିନ୍ତି ॥
ଆନନ୍ଦ ସାଗରେ ବୁଡ଼ିଲି । ଉଭୟ ଲୋକ ନ ଜାଣିଲି ॥
ତକ୍ଷଣେ ପରମ ଆନନ୍ଦେ । ହରି ବିଜୟ ମୋର ହୃଦେ ॥
ରୂପେ କି ଦେବା ପଟାନ୍ତର । ମନ ବଚନେ ଅଗୋଚର ॥
ଦେଖି ମୁଁ ଉଠିଲି ତକ୍ଷଣେ । ବିକଳେ ଚିତ୍ତ କରଷଣେ ॥
ପୁଣି ରହିଲି ଦୃଢ଼ ଚିତ୍ତେ । ସେ ରୂପ ଦେଖିବା ନିମନ୍ତେ ॥
ସେ ହରି ହୋଇଲେ ଅନ୍ତର । ଦିଶଇ ଘୋର ଅନ୍ଧକାର ॥
ବାହୁଡ଼ି ଚାହିଁଲି ବାହାରେ । ଦିଗ ଆକାଶ ଅଭ୍ୟନ୍ତରେ ॥
ଭିତରେ ବାହାରେ ନ ପାଇ । ଆକୁଳେ କମ୍ପେ ମୋର ଦେହୀ ॥
ଯେମନ୍ତେ ଅନ୍ତରୀକ୍ଷ ବାଣୀ । କିବା ଅମୃତ ତରଙ୍ଗିଣୀ ॥
ମନ ବଚନେ ଅଗୋଚର । ସ୍ୱଭାବେ ଗଭୀର ସୁସ୍ୱର ॥

ପ୍ରସନ୍ନ କରି ମୋର ମନ । ଶୁଣିଲି ଆକାଶ ବଚନ ॥
ଯେ ଜନ୍ମେ ତୁ ଦେଖିବୁ କାହିଁ । ମୋହର ଆଦି ଅନ୍ତ ନାହିଁ ॥
କୁ ଯୋଗୀ ଜନଙ୍କର ଚିତ୍ତ । କର୍ମ ବସନାରେ ଜଡ଼ିତ ॥
ଯାବତ ଶୁଭାଶୁଭ କର୍ମ । ଚିତ୍ତେ ଆକ୍ରୋଶି ମତିଭ୍ରମ ॥
ସେ ମୋତେ ପାଇବେ କେମନ୍ତେ । କର୍ମ ଆଦରି ନାନାମତେ ॥
ମୋର ସେବକ ସେବାଫଳେ । ତୁ ଯେ ବଞ୍ଚିଲୁ ସଙ୍ଗମେଳେ ॥
ତେଣୁ ଦେଖିଲୁ ମୋତେବେଳେ । ପ୍ରକାଶ ହୃଦୟ କମଳେ ॥
ମୁଁ ଯାର ଚିତ୍ତେ ନିତ୍ୟେ ଥାଇ । ତା ଦେହେ ଅମଙ୍ଗଳ ନାହିଁ ॥
ଯେବେ ସାଧୁଙ୍କୁ ସେବାକରି । ଦୀର୍ଘ ଜୀବନ ଦେହ ଧରି ॥
ଦୃଢ଼ ଭଗତି ମୋର ପାଦେ । ଚିତ୍ତେ ପ୍ରସରି ଅପ୍ରମାଦେ ॥
ଯେ ଦେହ ଛାଡ଼ି ମୋର ଧ୍ୟାନେ । ଅନ୍ତେ ମିଳିବୁ ମୋ ଭୁବନେ ॥
ମୋର ବିଷୟେ ତୋର ମତି । କେବେହେଁ ନ ଲଭ କୁଗତି ॥
ସୃଷ୍ଟି ପ୍ରଳୟ ବାଧା ଯେତେ । କେବେହେଁ ନ ଲାଗିବ ତୋତେ ॥
ମୋ ଅନୁଗ୍ରହେ ହେଉ ଜ୍ଞାନ । ଯେମନ୍ତେ ଆକାଶ ବଚନ ॥
ସ୍ୱଭାବେ ଶୁଭେ ଅନ୍ତରୀକ୍ଷେ । କେ ତାହା ଦେଖିବ ପ୍ରତ୍ୟକ୍ଷେ ॥
ସ୍ୱଭାବେ ରୂପ ନାହିଁ ଯାର । ମହା ମହିମା ନିର୍ବିକାର ॥
ସେ ବାଣୀ ଶୁଣି ମନ ସ୍ଥିରେ । ପ୍ରଣମ୍ୟ କଲି ତା ପୟରେ ॥
ମୋର ଜୀବନ କୃତ କୃତ୍ୟ । ଶୁଣ ହୋ ସତ୍ୟବତୀ ସୁତ ॥
ସେ ବିନୁ ନ ଜାଣଇ ଆନ । ସେ ସର୍ବ ଗତି ଭଗବାନ ॥
ଯେ ଲାଜ ସର୍ବ ପରିହରି । ଉଚ୍ଚେ ଗୋବିନ୍ଦ ନାମ ଧରି ॥
ଅନନ୍ତ ଗୁଣ ତାର ଯେତେ । ଚିତ୍ତେ ସୁମରି ଅବିରତେ ॥
ଭୂମି କରଇ ପର୍ଯ୍ୟଟନ । ବିଗତ ରାଗ ତୁଷ୍ଟ ମନ ॥
ଯେମନ୍ତେ ଭ୍ରମୁ ଅନୁଦିନେ । ନିର୍ମଳ ହେଲା ମୋର ମନେ ॥
ଯେମନ୍ତେ ମରଣ ନିୟତ । କାଳ ହୋଇଲା ଉପଗତ ॥
ସଂଶୟ ସ୍ଫୁରେ ମୋର ମନେ । ବିଜୁଳି ନୀଳ ମେଘେ ଯେହ୍ନେ ॥
ଦିବ୍ୟ ଶରୀର ମୁହିଁ ଦେଖି । ତକ୍ଷଣେ ଶରୀର ଉପେକ୍ଷି ॥
ଆନନ୍ଦେ କୃଷ୍ଣ ଅନୁଗ୍ରହେ । ଶୂନ୍ୟେ ଗମିଲି ଦିବ୍ୟ ଦେହେ ॥
କ୍ଷୀର ଜଳଧି ମଧ୍ୟେ ସ୍ଥିତ । ଅନନ୍ତ ଶୟନେ ଅନନ୍ତ ॥
ପଶିଲି ତାର ଅଭ୍ୟନ୍ତରେ । ନିର୍ମଳ ନିର୍ଲେପ ଶରୀରେ ॥
ଯେବେ ସହସ୍ର ଯୁଗ ଗଲା । ଶୟନୁ ଅନନ୍ତ ଉଠିଲା ॥
ତକ୍ଷଣେ ବ୍ରହ୍ମ ରୂପ ଧରି । ଭୂମି ଭିଆଇ ସୃଷ୍ଟିକରି ॥
ମରୀଚି ଆଦି ସପ୍ତ ସୁତ । ବ୍ରହ୍ମା ମାନସୁ ହୋଇ ଜାତ ॥
ମୁଁ ଯେ ହୋଇଲି ତାଙ୍କ ସଙ୍ଗେ । ସମ୍ଭୂତ ବିଧାତାର ଅଙ୍ଗେ ॥
ନିଶ୍ଚଳ ଚିତ୍ତେ ଦୃଢ଼ ବ୍ରତେ । ଯେ ତିନିଲୋକ ଭ୍ରମୁନିତ୍ୟେ ॥

ବିଷ୍ଣୁର ଭାବେ ଭ୍ରମୁ ନିତି । ମୋହର ଅବିଧାତ ଗତି ॥
ବିଷ୍ଣୁ ଭଗତି ଭାବ ଭୋଳେ । ମୁହିଁ ପଶିଲି ଅନ୍ତରାଳେ ॥
ଦେବଙ୍କ ମଧ୍ୟେ ମୁହିଁ ଥାଇ । ନୃତ୍ୟ କରଇ ନାମ ଗାଇ ॥
ଶୁଣି ସନ୍ତୋଷ ମୋର ବାଣୀ । ବୀଣା ଗୋଟିଏ ଦେଲେ ଆଣି ॥
ଗାନ୍ଧାର ରାଗେ ବିଭୂଷଣା । ସୁସ୍ୱର ନାଦ ତିନି ଗୁଣା ॥
ତାର ମୂର୍ଚ୍ଛିତ ନାଦ ବାଇ । ଆନନ୍ଦେ କୃଷ୍ଣନାମ ଗାଇ ॥
ନିରତେ ଭ୍ରମୁଛି ଜଗତେ । ଶୁଣ କହିବା ଆର ଯେତେ ॥
ହରିର ଅଭୟ ଚରଣ । ଅଶେଷ ତୀର୍ଥର କାରଣ ॥
ସେ ପାଦ କଲି ସୁମରଣ । ଶୀଘ୍ର ମୋ ଚିତ୍ତେ ନାରାୟଣ ॥
ଆଦିତ୍ୟ ତେଜ ପ୍ରାୟେ ଦିଶେ । ଅଜ୍ଞାନ ତମ ବେଗେ ନାଶେ ॥
ସେ ହରି ଚରିତର ଗୁଣ । ଭୋ ମୁନି ସାବଧାନେ ଶୁଣ ॥
ଭବ ସାଗରେ ଯେତେ ନରେ । ଆକୁଳ ଚିତ୍ତ ଅଭ୍ୟନ୍ତରେ ॥
ବିଷୟ ରସେ ସୁଜଡ଼ିତ । କେବେହେଁ ଶୁଦ୍ଧ ନୋହେ ଚିତ୍ତ ॥
ଅଛନ୍ତି ଭବ ସିନ୍ଧୁ ଗର୍ଭେ । ସେ ନରେ କେମନ୍ତେ ତରିବେ ॥
କୃଷ୍ଣର ଗୁଣ ଗାଥା ଘୋଷି । ଆନନ୍ଦେ ସୁଖ ନାବେ ବସି ॥
ହେଲେ ତରିବେ ହରି ଗାଇ । ଅନ୍ୟଥା ସୁଖ ଲେଶ ନାହିଁ ॥
ଯମ ନିୟମ ବେନି ପଥେ । ଯେ ନର ସାଧେ ଅବିରତେ ॥
ଯେମାନ ପାଇବ ସେ କାହିଁ । ଯେବେ ଗୋବିନ୍ଦେ ଚିତ୍ତ ନାହିଁ ॥
ଶୁଣ ହେ ସତ୍ୟବତୀ ସୁତ । ଯେ ପୂର୍ବେ ମୋହର ଚରିତ ॥
ଜନ୍ମ କର୍ମର ସିଦ୍ଧି ଯେତେ । କହିଲି ତୁମ୍ଭର ଅଗ୍ରତେ ॥
ବୋଲଇ ନାଥ ଜଗନ୍ନାଥ । ପ୍ରଥମ ସ୍କନ୍ଧ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ନାରଦଜନ୍ମ କଥନେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ କହନ୍ତି ଅନୁରାଗେ । ଯଜ୍ଞେ ସକଳ ମୁନି ଆଗେ ॥
ନାରଦ ଜନ୍ମ କର୍ମ କଥା । ବିଷ୍ଣୁ ଭଗତିର ବେବସ୍ଥା ॥
ବ୍ୟାସଙ୍କ ଆଗେ ସର୍ବ କହି । ଅନନ୍ଦେ ବୀଣା ବାଦ୍ୟବାଇ ॥
ଆକାଶମାର୍ଗେ ଗଲେ ଯେବେ । ବିଜୁଳି ଯେହ୍ନେ ବଳାହକେ ॥
ଧନ୍ୟ ମହିମା ଦେବଋଷି । ନିରତେ କୃଷ୍ଣ ନାମ ଘୋଷି ॥
ହରି ଗାୟନେ ଭୋଳ ହେଇ । ବିବିଧ ଛନ୍ଦେ ବୀଣା ବାଇ ॥
ନିରତେ ଭ୍ରମେ ତିନିପୁରେ । ଜଗତ ସଙ୍କଟୁ ଉଦ୍ଧରେ ॥

### ଶୌନକ ଉବାଚ

ବ୍ୟାସଙ୍କୁ ଛାଡ଼ି ଗଙ୍ଗା କୂଳେ । ନାରଦ ଗଲେ ଯେତେବେଳେ ॥
ଚିତ୍ତେ ସଂଶୟ ଯେତେ ଥିଲା । ନାରଦ ବାକ୍ୟେ ଦୂର ଗଲା ॥
ସେ ସର୍ବଗୁଣେ ଅଧିକାରୀ । ନାରଦ ବାକ୍ୟ ଚିତ୍ତେ ଧରି ॥
ପୁଣି କି କଲେ ପୁଣ୍ୟଦେହା । କହ ଆମ୍ଭକୁ ଯେବେ ଦୟା ॥
ଯେମନ୍ତେ ମୁନିଙ୍କ ପ୍ରଶନେ । କୃଷ୍ଣ ମହିମା ଗୁଣି ମନେ ॥

### ଶ୍ରୀ ସୂତ ଉବାଚ

ଶୁଣ ଶୌନକ ମୁନି ଜନେ । ସେ ବ୍ୟାସ ମୁନି ହରି ଧ୍ୟାନେ ॥
ସେ ବ୍ରହ୍ମନଦୀର ପଶ୍ଚିମେ । ଆଶ୍ରମ ଶମ୍ୟାଶ୍ରମ ନାମେ ॥
ଯହିଁ ଅଶେଷ ମୁନିଜନେ । ଯେଣୁ ଅନେକ ଯଜ୍ଞ ସ୍ଥାନେ ॥
ମଧ୍ୟେ ବଦରି ନାମ ବନ । ବ୍ୟାସଙ୍କ ନିଅତ ଆଶ୍ରମ ॥
ସେ ବନେ ସରସ୍ୱତୀ ଜଳେ । ସ୍ନାନ ସାରିଲେ ପ୍ରାତଃକାଳେ ॥
ବିଷ୍ଣୁ ଭଗତି ଚିନ୍ତି ମନେ । ମୁନି ବସିଲେ ଯୋଗଧ୍ୟାନେ ॥
ନିର୍ମଳ ମନେ ଧ୍ୟାନକରି । ତକ୍ଷଣେ ପ୍ରଭୁ ନରହରି ॥
ମାୟା ସ୍ୱରୂପେ ହେଲେ ଦୃଶ୍ୟ । ଯେ ସର୍ବ ପୁରାଣ ପୁରୁଷ ॥
ଯେ ମାୟା ତ୍ରିଗୁଣେ ଜଡ଼ିତ । ଅଜ୍ଞାନ ପଥେ ମୋହଗ୍ରସ୍ତ ॥
ଅସତ୍ୟ ସତ୍ୟ ପ୍ରାୟେ ମଣେ । ଆତ୍ମାର ଗତି ନ ପ୍ରମାଣେ ॥
ତାହାକୁ ଉଦ୍ଧାରିବା ଅର୍ଥେ । ହରି ଭଗତି ଯୋଗପଥେ ॥
ରଚିଲେ ଭାଗବତ ବାଣୀ । ଯେ ଜୀବ ତରେ ଯାହା ଶୁଣି ॥
ଭଗତି ଲଭେ କୃଷ୍ଣ ପାଦେ । ନ ପଡ଼େ ଶୋକ ମୋହପାଦେ ॥
ସଂହିତା କରି ହରି ବାଣୀ । ଶୁକ ମୁନିଙ୍କି ଗୃହେ ଆଣି ॥
ସ୍ୱଭାବେ ତାଙ୍କ ନିଜ ସୁତ । ହରଷେ ଦେଲେ ଭାଗବତ ॥
ବିଶେଷେ ଗୋବିନ୍ଦ ପ୍ରସ୍ଥାନେ । ମାୟା ନ ଲାଗେ ଯାର ମନେ ॥
ଯେମନ୍ତ ସୂତ ବାକ୍ୟ ଶୁଣି । ସକଳ ମୁନି ମନେ ଗୁଣି ॥
ମନେ ସଂଶୟ ଖେଦ ବହି । କହନ୍ତି ସୂତ ମୁଖ ଚାହିଁ ॥

### ଶୌନିକ ଉବାଚ

ମାୟା ନ ଲାଗେ ଯାର ଚିତ୍ତେ । କି ପ୍ରୟୋଜନ ତାଙ୍କ ଗ୍ରନ୍ଥେ ॥
ସ୍ୱଭାବେ ଶୁକ ଆତ୍ମାରାମ । ତାହାଙ୍କ ଗ୍ରନ୍ଥେ କିବା ଶ୍ରମ ॥
କାହାର ଅର୍ଥେ ବ୍ୟାସ ସୁତ । ଅଭ୍ୟାସ କଲେ ଭାଗବତ ॥
ନିର୍ଲେପ ଯୋଗୀଙ୍କର ମତେ । ସଂଶୟ ଲାଗେ ଆମ୍ଭ ଚିତ୍ତେ ॥
ଶୁଣି ସଂଶୟ ମୁନି କଥା । କହନ୍ତି ସୂତ ବ୍ରହ୍ମବେତ୍ତା ॥

### ଶ୍ରୀ ସୂତ ଉବାଚ

ସ୍ୱଭାବେ ମୁନିଙ୍କର ଚିତ୍ତ । ଗ୍ରନ୍ଥନେ ନୁହଇ ଗ୍ରନ୍ଥିତ ॥

ତଥାପି ଅକିଞ୍ଚନ ପଣେ । ଭଜନ୍ତି ଗୋବିନ୍ଦ ଚରଣେ ॥
ଯେଣୁ ସକଳ ଭୂତେ ହରି । ପରମ ଆତ୍ମା ରୂପେ ପୂରି ॥
ତେଣୁ ଭଗତି ଅତିରେକେ । କହନ୍ତି ଯେକକୁ ଆରକେ ॥
ସେ ଶୁକ ମୁନି ଶୁଦ୍ଧ ଚେତା । ନିତ୍ୟେ ଅଭ୍ୟାସେ ହରିକଥା ॥
ଯେବେ ହୋ ଶୁଣ ବିପ୍ରଜନେ । ହରି ଚରିତ ଅବଧାନେ ॥
ଭଗତ ଜନଙ୍କର ଅର୍ଥେ । ଯାହାର ଜନ୍ମ ଯେ ଜଗତେ ॥
ଭଗତ ପରୀକ୍ଷିତ କଥା । ପଣ୍ଡୁ ନନ୍ଦନଙ୍କ ବେବସ୍ଥା ॥
କୁରୁ ପାଣ୍ଡବ ଯୁଦ୍ଧ ଅର୍ଥେ । ବୀରେ ମିଳିଲେ ବୀର ପଥେ॥
ଭୀମର ଗଦାଘାତ ବାଜି । ଦୁର୍ଯ୍ୟୋଧନର ଜାନୁ ଭାଜି ॥
ପଳାଇ ଗଲା ପ୍ରାଣ ଡରେ । ଲୁଚିଲା ବ୍ୟାସ ସରୋବରେ ॥
ଯେମନ୍ତେ ହୋଇଲା ରଜନୀ । ଜଳେ ଭାସଇ ଭୟ ଘେନି ॥
କାନ୍ଦଇ ଜୀବନ ବିକଳେ । ଦ୍ରୋଣ ନନ୍ଦନ ଦେଖି କୂଳେ ॥
ବୋଲଇ ରଜା ମୁଖ ଚାହିଁ । ମତେ ନ ବରିଲୁ କିପାଇଁ ॥
ଯୁଦ୍ଧେ ସକଳ ବୀର ମାରି । ଯେ ଭୂମି ଅପାଣ୍ଡବ କରି ॥
ତୋତେ ବସାନ୍ତି ରାଜକୁଳେ । ଅଖଣ୍ଡ ଅବନୀ ମଣ୍ଡଳେ ॥
ଶୁଣି ବୋଲଇ ନୃପବର । ଯେବେ ହୋ ଅପାଣ୍ଡବ କର॥
ଯେବେ ବରିଲି ସେନାପତି । ଫେଡ଼ ତୁ ମୋହର ଦୁର୍ଗତି ॥
ଯେମନ୍ତ କହି ଅନ୍ଧବଳା । ତାହାର ହସ୍ତେ ଜଳ ଦେଲା ॥
ଦ୍ରୋଣ କୁମର ବେଗେ ଉଠି । ଧନୁ ଧଇଲା ଦୃଢ଼ମୁଷ୍ଟି ॥
ମନ୍ତ୍ରିଣ ନାରାଚ ପେଶିଲା । ପାଣ୍ଡବ ଗୃହେ ସେ ପଡ଼ିଲା ॥
ଦ୍ରୌପଦୀ ପଞ୍ଚାଳ କୁମରେ । ଶୋଇ ଯେ ଥିଲେ ଅନ୍ତଃପୁରେ ॥
ପଡ଼ି କାଟିଲା ତାଙ୍କ ଶିର । ଶବଦ କଲା ମହାଘୋର ॥
ଶୁଣି କମ୍ପିଲେ ଦିଗପାଳେ । ପୂରିଲା ଭୂମି ଅନ୍ତରାଳେ ॥
ଅତି ନିନ୍ଦିତ କର୍ମ କଲା । ଦଇବ ବଳେ ଦ୍ରୋଣ ବଳା ॥
ଦ୍ରୌପଦୀ ଶୟନ ଉପେକ୍ଷି । ପୁତ୍ର ମରଣ ଦୁଃଖେ ଦୁଃଖୀ ॥
ବିକଳେ କରଇ ରୋଦନ । ତକ୍ଷଣେ ମିଳିଲା ଅର୍ଜୁନ ॥
ଅନେକ ଶାନ୍ତି ବାକ୍ୟ କହି । ବୋଲେ ଦ୍ରୌପଦୀ ମୁଖ ଚାହିଁ ॥
ଦ୍ରୋଣ କୁମର ଶିର ବାଣେ । କାଟି ସ୍ଥାପିବି ତୋ ଚରଣେ ॥
ତେବେ ହରିବି ତୋର ଶୋକ । ତୁ ଯେବେ ସ୍ଥିର ରୂପେ ଦେଖ ॥
ଯେମନ୍ତେ ପ୍ରବୋଧ ବଚନେ । ଶାନ୍ତି କରାଇ ତାର ମନେ ॥
ଯାହା ସାରଥି ଭଗବାନ । କେ ତାର କରେ ଅପମାନ ॥
ଗାଣ୍ଡିବ ଧନୁ ଧରି ହସ୍ତେ । ବସିଲା କପିଧ୍ୱଜ ରଥେ ॥
ବେଗେ ଧାଇଁଲା ସଜ ହୋଇ । ଦେବେ ଗଗନେ ଛନ୍ତି ଚାହିଁ ॥
ଅର୍ଜୁନ ଦେଖି ଦ୍ରୋଣବଳା । କାତରେ ଶରୀର କମ୍ପିଲା ॥
ବେଗେ ପଳାଇ ଭୂମିଗତେ । ପଶିଲା ଗହନ ବନସ୍ତେ ॥
ଭୟେ ପଳାୟେ ଘୋର ବନେ । ରୁଦ୍ର ଡରେ ଅନ୍ଧକ ଯେହ୍ନେ ॥
କାତର ଚଉଦିଗ ଚାହିଁ । ତାର ରକ୍ଷଣେ କେହି ନାହିଁ ॥
ତକ୍ଷଣେ ଜଳେ ସ୍ନାନ ସାରି । ବ୍ରହ୍ମ ଶସ୍ତ୍ରକୁ ସେ ସୁମରି ॥
ସଂହାର ନ ଜାଣି ତାହାରେ । ପେଶିଲା ଅର୍ଜୁନ ଉପରେ ॥
ସ୍ୱଭାବେ ବ୍ରହ୍ମଶର ନାମ । ବିରାଜେ ତେଜେ ରବିସମ ॥
ତାର ପ୍ରଚଣ୍ଡ ତେଜ ଚାହିଁ । କମ୍ପଇ ଅର୍ଜୁନର ଦେହୀ ॥
ଶସ୍ତ୍ରର ତେଜେ ଭୟ କଲା । ଗୋବିନ୍ଦ ମୁଖକୁ ଚାହିଁଲା ॥
ପଡ଼ି ଅଭୟ ପାଦ ତଳେ । ବୋଲଇ ଜୀବନ ବିକଳେ ॥
ହେ କୃଷ୍ଣ କୃଷ୍ଣ ଯୋଗେଶ୍ୱର । ଶରଣ ଜନଙ୍କ ସୋଦର ॥
ସଂସାର ଅନଳ ଦହନ । ଡରେ ସ୍ମରନ୍ତି ତୋତେ ଜନ ॥
ତାହାଙ୍କୁ ଦେଉ ମୋକ୍ଷ ଗତି । ଅଭୟ ବ୍ରହ୍ମେ ସେ ମିଶନ୍ତି ॥
ଆଦି ପୁରୁଷ ନିଜ ଧାମ । ପ୍ରକୃତି ପରେ ତୋ ବିଶ୍ରାମ ॥
ଯେ ଜୀବ ଲୋକେ ଘୋରମାୟା । ତୁଟଇ ଯାରେ କରୁ ଦୟା ॥
ଯେ ଯେ ତୋହର ଅବତାର । ଖଣ୍ଡିବ ଅବନୀର ଭାର ॥
ତୋରେ ଯେ ଶରଣ ପଶଇ । ସଂସାର ତାପ ନ ଲାଗଇ ॥
ଯେଣୁ ମୋହର ଗତି ତୁହି । ତୋ ମାୟା ବଳେ ନ ଜାଣଇ ॥
ଯେ ଯେ ଆସଇ ବ୍ରହ୍ମ ଶର । ତେଜେ ଆଚ୍ଛାଦେ ତିନିପୁର ॥
ସ୍ୱଭାବେ ପ୍ରଚଣ୍ଡ ଦାରୁଣ । ଦେଖି କମ୍ପଇ ମୋର ପ୍ରାଣ ॥
ଅର୍ଜୁନ ବାକ୍ୟ ଶୁଣି ହସି । କହନ୍ତି ପ୍ରଭୁ ବ୍ରହ୍ମରାଶି ॥

### ଶ୍ରୀ ଭଗବାନ ଉବାଚ

ଜୀବନ ଡରେ ଦ୍ରୋଣ ବଳା । ଅତିମାନୁଷ କର୍ମ କଲା ॥
ମନ୍ତ୍ର ନ ଜାଣଇ ସଂହାରେ । ବେଗେ ଗମିଲା ପ୍ରାଣ ଡରେ ॥
ଯେହା ନିବାରେ ଶସ୍ତ୍ର ନାହିଁ । କେହି ନ ଜାଣେ ଦେହବହି ॥
ତୁ ତ ସକଳ ଶାସ୍ତ୍ର ଜାଣୁ । ଚଞ୍ଚଳ ଚିତ୍ତେ ନ ପ୍ରମାଣୁ ॥

### ଶ୍ରୀ ସୂତ ଉବାଚ

ଶୁଣି ଗୋବିନ୍ଦ ମୁଖୁ ବାଣୀ । ଅର୍ଜୁନ ମନେ ମନେ ଗୁଣି ॥
ତକ୍ଷଣେ ଆଚମନ ସାରି । ମନେ ସୁମରି ନରହରି ॥
ଦ୍ରୋଣଙ୍କଠାରୁ ଅଛି ଜାଣି । ଭାବେ କହିଲେ ଚକ୍ରପାଣି ॥
ବ୍ରହ୍ମଶରକୁ ବ୍ରହ୍ମଶର । ମନ୍ତ୍ରେ ପେଶିଲେ ପଣ୍ଡୁବୀର ॥
ଗଗନ ମଧ୍ୟେ ବେନି ଶରେ । ଭୂମି ଆକାଶ ଅଭ୍ୟନ୍ତରେ ॥
ଅର୍କ ଅନଳ ପ୍ରାୟେ ଦିଶି । ଘୋଟିଲେ ଦଶ ଦିଗ ଗ୍ରାସି ॥
ସେ ବେନି ଶସ୍ତ୍ର ତେଜରାଶି । ପ୍ରଳୟାନଳ ପ୍ରାୟେ ଦିଶି ॥

ଦହିବା ପ୍ରାୟେ ତ୍ରିଭୁବନ । ଦେଖି ତ୍ରାସିଲେ ସର୍ବଜନ ॥
କୃଷ୍ଣ ବୋଇଲେ ଶୁଣ ବୀର । ଯେ ବେନି ଶସ୍ତ୍ରକୁ ସଂହର ॥
ହେଉ ବୋଇଲେ ଚକ୍ରପାଣି । ତକ୍ଷଣେ ସଂହରିଲା ଆଣି ॥
ରଥୁ ଓହ୍ଲାଇ ମହା ରୋଷେ । ଧଇଲା ଅଶ୍ୱତ୍ଥମା କେଶେ ॥
ପ୍ରଚଣ୍ଡ ରୋଷେ ଶିର ଝୁଣି । ଆକ୍ରୋଶି ପଡ଼ିଲା ଧରଣୀ ॥
କର ଚରଣ ତନୁ ଛନ୍ଦେ । ବେଗେ ବାନ୍ଧିଲା ମାଲବନ୍ଧେ ॥
ବରୁଣ ପାଶକୁ ସୁମରି । ପଶୁଙ୍କ ପ୍ରାୟେ ବନ୍ଦୀକରି ॥
ରଥ ଦଣ୍ଡେ ବାନ୍ଧିଲା ଆଣି । ବୋଲନ୍ତି ପ୍ରଭୁ ଚକ୍ରପାଣି ॥
ଯେ ବ୍ରହ୍ମ ବଧ ବହ ଦ୍ରୋହୀ । ଯେହାକୁ ଦଣ୍ଡେହେଁ ନ ଥୋଇ ॥
ତୁ ମନେ ସଂଶୟ ନ କର । ଯେବେ ଯେହାର ପ୍ରାଣ ହର ॥
ନିର୍ଦ୍ଦୋଷୀ ବାଳକ ଶୟନେ । ଥିଲେ ଯେ ନିଦ୍ରିତ ଲୋଚନେ ॥
ଯେ ନାଶକଲା ତାଙ୍କ ପ୍ରାଣ । ଯେବେ କହିବା ପାର୍ଥ ଶୁଣ ॥
ମତ୍ତ ପ୍ରମତ୍ତ ଉନମତ । ବାଳ ବନିତା ନିଦ୍ରାଗତ ॥
ଶରଣାଗତ ରଥ ହୀନ । ସଙ୍କଟେ ଦେଖି ରିପୁ ଜନ ॥
ଯେହାଙ୍କୁ ବଧ ଯେ କରନ୍ତି । ଜୀବନ ଥାଉ ସେ ମରନ୍ତି ॥
ପର ଜୀବନ ମାରିଆଣି । ଆତ୍ମାକୁ ପୋଷନ୍ତି ଯେ ପ୍ରାଣୀ ॥
ତାଙ୍କୁ ମାରଣେ ବଡ଼ ପୁଣ୍ୟ । ବେଦେ କହନ୍ତି ବିଦୁଜ୍ଜନ ॥
ତୁ ଯେ ଦ୍ରୌପଦୀ ଆଗେ କହି । ପ୍ରତିଜ୍ଞା କଲୁ କୋପ ବହି ॥
କହିଲୁ ନ କାନ୍ଦ ସୁନ୍ଦରୀ । ତୋର ରିପୁକୁ ମୁହିଁ ଧରି ॥
ତାହାର ଶିର କାଟି ବେଗେ । ସ୍ଥାପିବି ତୋର ପାଦଯୁଗେ ॥
ମୁହିଁ ଯେ ଶୁଣୁଥିଲି ରହି । ଯେବେ ରଖିଲୁ କାହଁ ପାଇଁ ॥
ବେଗେ ଯେହାର ପ୍ରାଣ ହର । ନିମିଷେ ବିଳମ୍ବ ନ କର ॥
ଯେ ପାପୀ ଆତତାୟୀ ନର । ବାଳକ ହତ୍ୟା ଯେ ତୁମ୍ଭର ॥
ଯାହାର ଆଶ୍ରେ ଭୋଗ କଲା । ତାହାର ବିଗ୍ରହ ଚିନ୍ତିଲା ॥
ଯେଣୁ ଯେ କୁଳ ପାଂଶୁ ପଣେ । ନିତ୍ୟେ ବଞ୍ଚଇ ଘୋର ବନେ ॥
ଯେମନ୍ତେ ଧର୍ମ ପଣ୍ଡୁ ସୁତେ । କୃଷ୍ଣ କହିଲେ ନାନା ମତେ ॥
ଅର୍ଜ୍ଜୁନ ନ ଶୁଣିଲା ତାହା । ଗୁରୁ ପୁତ୍ରଙ୍କୁ କରି ଦୟା ॥
ତକ୍ଷଣେ ଉଠି ବୀର ପାର୍ଥ । ବନ୍ଧନ କରି ଗୁରୁପୁତ୍ର ॥
ଦ୍ରୌପଦୀ ଆଗେ ନେଇ ଦେଲା । ତୋ ରିପୁ ସମ୍ଭାଳ ବୋଇଲା ॥
ଦ୍ରୌପଦୀ ତାର ମୁଖ ଚାହିଁ । ତକ୍ଷଣେ ଚିତ୍ତେ ଦୟା ବହି ॥
ପୁତ୍ରଙ୍କ ରିପୁ ଯେ ନିୟତ । ସ୍ୱଭାବେ ଦ୍ରୋଣ ଗୁରୁ ସୁତ ॥
ଅନ୍ତରେ ନମସ୍କାର କଲା । ଅର୍ଜ୍ଜୁନ ମୁଖକୁ ଚାହିଁଲା ॥
ବୋଲଇ ବେନିକର ଯୋଡ଼ି । ବନ୍ଧନ ଦିଅ ବେଗେ ଫେଡ଼ି ॥
ସ୍ୱଭାବେ ବିପ୍ର ଗୁରୁଜନ । ବିଶେଷ ଦ୍ରୋଣଙ୍କ ନନ୍ଦନ ॥
ରହସ୍ୟ ଧନୁର୍ବେଦ ନାମ । ବିସର୍ଗ ସଂହାର ସଂଯମ ॥
ସକଳ ଅସ୍ତ୍ର ଶସ୍ତ୍ର କଳା । ଯେ ଗୁରୁ ପଣେ ଶିକ୍ଷା ଦେଲା ॥
ସେ ଗୁରୁ ପୁତ୍ର ରୂପେ ଜାତ । ଆତ୍ମାରୁ ଆପଣେ ସମ୍ଭୂତ ॥
ସ୍ୱାମୀର ତହୁଁ ଅର୍ଦ୍ଧେ ଘେନି । ଯୁଗତେ ଯେହାର ଜନନୀ ॥
ଯେ ତୁମ୍ଭ ଧର୍ମ ଗୁରୁକୁଳ । ଯେହାକୁ ଭଲେ ପ୍ରତିପାଳ ॥
ଏହାର ଗଉତମୀ ମାତା । ସୁପୁତ୍ରବତୀ ପତିବ୍ରତା ॥
ରୋଦନ ନ କରୁ ସେ ଶୋକେ । ମୋହର ପ୍ରାୟେ ମନ ଦୁଃଖେ ॥
କ୍ଷତ୍ରୀୟ ଯେବେ ମୂଢ଼ଭାବେ । ଅପ୍ରାଧ କରେ ବିପ୍ର ଠାବେ ॥
ସେ ପାପେ ନିଜକୁଳ ଦହେ । ଯେଣୁ ସେ ବିପ୍ର କୋପ ବହେ ॥
ଦ୍ରୌପଦୀ ଧର୍ମ ନ୍ୟାୟ ବାଣୀ । ହରଷ ଯୁଧିଷ୍ଠିର ଶୁଣି ॥
ମଉନେ କିଛି ନ ବୋଇଲେ । ସେ ଧର୍ମ ଅନ୍ତରେ ଜାଣିଲେ ॥
ଶୁଣି ନକୁଳ ସହଦେବ । ସାତ୍ତ୍ୱକି ଅର୍ଜ୍ଜୁନ ମାଧବ ॥
ଯୁଧିଷ୍ଠିରାଜି ମୁଖ୍ୟ କରି । କୁନ୍ତୀ ସଙ୍ଗତେ ଯେତେ ନାରୀ ॥
ଯେହାଙ୍କ ମଧ୍ୟେ ଭୀମସେନ । କଟାକ୍ଷ ଅଧର ନୟନ ॥
କୋପେ ଚାହିଁଲା କୃଷ୍ଣ ମୁଖ । ବୋଲଇ ଅତି ମନ ଦୁଃଖ ॥
ତୀକ୍ଷ୍ଣ ଖଡ଼୍ଗରେ କାଟିଶିର । ଯେହାକୁ ନରକୁ ଉଦ୍ଧାର ॥
କି ପ୍ରୟୋଜନ କିବା ଅର୍ଥେ । ଯେ ପାପୁ ତରିବ କେମନ୍ତେ ॥
ଶୟନେ ଶିଶୁ ବଧ କଲା । ସ୍ୱଭାବେ ଜିଉଁ ଜିଉଁ ମଲା ॥
ଦ୍ରୌପଦୀ ତୁଲେ ଚକ୍ରପାଣି । ଯେ ଧର୍ମ ଭୀମ ମୁଖୁ ଶୁଣି ॥
ଅଳପେ ହାସ୍ୟେ ଭାବଗ୍ରାହୀ । ବୋଲନ୍ତି ଅର୍ଜ୍ଜୁନକୁ ଚାହିଁ ॥

## ଶ୍ରୀ ଭଗବାନ ଉବାଚ

ମରଣ ଉଚିତ ଯେହାର । ଯେହାର ବେଗେ ପ୍ରାଣହର ॥
ଯେ ଆତତାୟୀ କର୍ମ କରେ । ଅଧର୍ମ ମାର୍ଗେ ଶସ୍ତ୍ରଧରେ ॥
ଜୀବନ ଥାଉଁ ସେ ମରନ୍ତି । ଅନ୍ତେ ନରକେ ପଥ ଚିନ୍ତି ॥
ଯେବେ ତୁ ମୋର ବାକ୍ୟ କର । ଯେ ଧର୍ମ ଉଚିତ ବେଭାର ॥
ଦ୍ରୌପଦୀ ପୁତ୍ରଶୋକ କାଳେ । ତୁଯେ ବୋଇଲୁ ଅବହେଳେ ॥
ତୋହରି ପୁତ୍ର ଶତ୍ରୁ ମାରି । ଶିର ଚରଣେ ପୂଜା କରି ॥
ଖଣ୍ଡିବ ପୁତ୍ରଶୋକ ତେବେ । ମୋର ବଚନ ଶୁଣ ଯେବେ ॥
ଶସ୍ତ୍ରେ ଯେହାର ତେଜ ହର । ଜୀବନ ମୃତ୍ୟୁ ପ୍ରାୟେ କର ॥
ଶାସ୍ତି ଲାଞ୍ଛନେ ଯେ ବିହରି । ଯେ ବିପ୍ର କେବେହେଁ ନ ମରି ॥
ଶୋକ ନ ପାଉ କିମ୍ବା ଚିତ୍ତେ । ଯେ କଥା କର ଭୀମ ହସ୍ତେ ॥
ଯେ କଥା ମୋର ସନମତ । ଶୁଣି ଅର୍ଜ୍ଜୁନ କୃତ କୃତ ॥
ତକ୍ଷଣେ ଉଠି କୋପ ଭରେ । ତୀକ୍ଷ୍ଣ ଖଡ଼୍ଗ ଧରି କରେ ॥
କେଶ ଧଇଲା ବାମ ହସ୍ତେ । ମଣି ଯେ ଥିଲା ତାର ମାଥେ ॥

ଖଡ଼ଗ ଧରି ଦୃଢ଼ ମୁଷ୍ଟି । ମଣି ସହିତେ ଶିଖା କାଟି ॥
ଆଣି ସ୍ଥାପିଲା ବାହୁବଳେ । ଦ୍ରୌପଦୀ ଦେବୀ ପାଦତଳେ ॥
ବନ୍ଧନ ତକ୍ଷଣେ ଫେଡ଼ାଇ । ଦ୍ରୌପଦୀ ତାର ମୁଖ ଚାହିଁ ॥
ବାଳକ ହତ୍ୟା ଦୋଷେ ହୀନ । ମଳିନ ଦିଶେ ତା ବଦନ ॥
ମଣି ହରଣେ ତେଜ ଗଲା । ତକ୍ଷଣେ ନଗ୍ର ପଳାଇଲା ॥
କେଶ ବସନ ଧନ ହରି । ତାହାକୁ ରାଜ୍ୟୁ ପରିହରି ॥
ବ୍ରାହ୍ମଣ ଜନ୍ମ ଯେହି ମତେ । ମରଣ ଲଭଇ ଯାବତେ ॥
ଦ୍ରୋଣ କୁମରେ ଶାସ୍ତି ଦେଇ । ଜ୍ଞାତି ବାନ୍ଧବ ଗୁଣ୍ଠ ହୋଇ ॥
ସର୍ବେ ଆତୁର ପୁତ୍ର ଶୋକେ । ବାଳକ ଘେନି ଯେକେ ଯେକେ ॥
ଦହନ କଲେ ଦୁଃଖ ମନେ । ଯେବେ ହୋ ଶୁଣ ମୁନିଜନେ ॥
ସୁଜନ ହିତେ ଭାଗବତ । ଭିଆଇ ରସମୟେ ଗୀତ ॥
ପ୍ରଥମ ସ୍କନ୍ଧେ ହରିବାଣୀ । ଶୁଣି ସଂସାରୁ ତରେ ପ୍ରାଣୀ ॥
ଅମୃତ ବିଷ୍ଣୁର ଚରିତ । କହିଲା ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ପାଞ୍ଚାଳୀକୁମର ବଧ ଅଶ୍ୱତ୍‌ଥମା ଶାସ୍ତି ଲାଞ୍ଛନେ ନାମ ସପ୍ତମୋଽଧ୍ୟାୟ ।*

## ଅଷ୍ଟମ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସକଳେ ମିଳି ଦୁଃଖ ଶୋକେ । ପଶିଲେ ଗଙ୍ଗାର ଉଦକେ ॥
ମୃତ୍ୟୁ ଉଦକ ଦାନ ଅର୍ଥେ । ଦ୍ରୌପଦୀ କୁନ୍ତୀର ସହିତେ ॥
ଅପରେ ଯେତେ ନାରୀଗଣେ । ସଙ୍ଗତେ ଶୋକ ନିବାରଣେ ॥
ଗଙ୍ଗାର ତୀରେ ଦୁଃଖ ମନେ । ମିଳିଲେ ସର୍ବ ବନ୍ଧୁଜନେ ॥
ଧର୍ମ ନନ୍ଦନ ଭୀମ ସେନ । ଅମ୍ବିକା ପୁତ୍ର ଯେ ଅର୍ଜ୍ଜୁନ ॥
ଗାନ୍ଧାରୀ ପୁତ୍ର ଶୋକେ କାନ୍ଦି । ଧରଣୀ ଲୋଟନ୍ତି ଦ୍ରୌପଦୀ ॥
କୁନ୍ତୀ ରୋଦଇ ଅଶ୍ରୁ ମୁଖେ । ଯେମନ୍ତେ ସର୍ବେ ଦୁଃଖେସୁଖୋ॥
ବିକଳେ କରନ୍ତି ରୋଦନ । ପୁତ୍ର ମରଣେ ଶୋକେ ଛନ୍ନ ॥
ବ୍ୟାସ ସହିତେ ସର୍ବମୁନି । କୃଷ୍ଣ ବସିଲେ ସର୍ବଘେନି ॥
ଧର୍ମ ପୁରାଣ ଇତିହାସ । ମୁନିୟେ କରନ୍ତି ପ୍ରକାଶ ॥
ମିଥ୍ୟା ସଂସାରେ ବିଷ୍ଣୁମାୟା । କେ ସତ୍ୟ କରିପାରେ ଯେହା ॥
କାଳର କ୍ରୀଡ଼ା ଯେ ଜଗତ । କାଳକୁ କେ ଅବା ସାମର୍ଥ ॥
ସୃଜି ପାଳଇ ପୁଣି ହରେ । କାଳର କ୍ରୀଡ଼ା ଯେ ସଂସାରେ॥
ତାହାଙ୍କୁ ପ୍ରତିକ୍ରିୟା ନାହିଁ । ଯେମନ୍ତେ ତାଙ୍କୁ ବୋଧ ଦେଇ ॥
ଶୋକ ହରିଲେ ନାରାୟଣ । ଯେବେ ହୋ ମୁନିଗଣେ ଶୁଣ ॥

ଦୁଷ୍ଟ ରାଜାଙ୍କ ସଙ୍ଗମେଳେ । କୁଟର୍କେ ମହୀ ହରି ବଳେ ॥
ତାହାଙ୍କୁ ପ୍ରଭୁ ମାୟା କରି । ଅର୍ଜ୍ଜୁନ ଗାଣ୍ଡୀବେ ସଂହରି ॥
ଯୁଧିଷ୍ଠିରଙ୍କୁ ରାଜ୍ୟ ଦେଲେ । ଅବନୀ ଭାରା ନିବାରିଲେ ॥
ଉତ୍ତମ କଲ୍ପେ ଅଶ୍ୱମେଧ । କରାଇ ସକଳ ପ୍ରସିଦ୍ଧ ॥
ରାଜାର ଯଶ ମହୀସ୍ଥଳେ । ଇନ୍ଦ୍ରର ପ୍ରାୟେ ସମ୍ପାଦିଲେ ॥
ପଣ୍ଡୁ ପୁତ୍ରଙ୍କୁ କରି ଭାବ । ସଙ୍ଗତେ ସାତ୍ୟକି ଉଦ୍ଧବ ॥
ବ୍ୟାସ ସହିତେ ସର୍ବ ମୁନି । କୃଷ୍ଣ ପୂଜିଲେ ଅର୍ଘ୍ୟଘେନି ॥
ସନ୍ତୋଷେ ସର୍ବ ମୁନିଗଣେ । ପୂଜିଲେ ଶ୍ରୀକୃଷ୍ଣ ଚରଣେ ॥
ତାହାଙ୍କୁ ମାଗି ଅନୁମାନ । ରଥ ଆରୋହି ଭଗବାନ ॥
ଦ୍ୱାରକା ଯିବେ ନରହରି । ବାଜଇ ମଙ୍ଗଳ ମହୁରୀ ॥
ତଦନ୍ତେ ଶୁଣ ମୁନିଜନେ । ଉତ୍ତରା ରାଜାର ଭୁବନେ ॥
ଥିଲା ଯେ ଅଭିମନ୍ୟୁ ଅନ୍ତେ । ଅନଳେ ନ ଗଲା ସଙ୍ଗତେ ॥
ବିଧବା ରୂପେ ଗର୍ଭବାସେ । କୁନ୍ତୀ ଦ୍ରୌପଦୀର ଆଶ୍ୱାସେ ॥
ତାର ଗର୍ଭକୁ କୋପ କଲା । କାନନେ ଦ୍ରୋଣ ଗୁରୁବଳା ॥
ଅର୍ଜ୍ଜୁନ ହସ୍ତେ ଦଣ୍ଡପାଇ । ଲୁଚିଲା ଘୋର ବନେ ଯାଇ ॥
ସହି ନ ପାରି ଅପମାନ । କୋପ ବସିଲା ତାର ମନ ॥
ସଙ୍କଳ୍ପ କରି ଗଙ୍ଗା ଜଳେ । ଧନୁ ଧଇଲା କୋପାନଳେ ॥
ମନ୍ତ୍ରେ ସୁମରି ବ୍ରହ୍ମଶର । ବୋଲଇ ଦ୍ରୋଣଙ୍କ କୁମର ॥
ତୁ ଯେ କଠୋର ସାଧ ମୋର । ଅବନୀ ଅପାଣ୍ଡବ କର ॥
ଯେମନ୍ତେ ବିନ୍ଧିଲା ନାରାଜ । ଗଗନେ ଯେହ୍ନେ ରବି ତେଜ ॥
ଦିଶ ଆକାଶ ଆବୋରିଲା । ତା ତେଜେ ଭୁବନ କମ୍ପିଲା ॥
ଗଗନେ ଆସୁଅଛି କ୍ଷେପି । ଉତ୍ତରା ଦେଖି ଭୟେ କମ୍ପି ॥
ଧାମଇ ପ୍ରାଣର ବିକଳେ । କେଶ ବସନ ଅସମ୍ଭାଳେ ॥
ବିକଳେ ବେନି କର ତୋଳି । ଡାକଇ ରଖ ବନମାଳୀ ॥
ହେ ଦେବ ଦେବ ଜଗନ୍ନାଥ । ଭାରାନିବାରେ ତୋର ଜାତ ॥
ଅନାଥ ନାଥ ଭାବଗ୍ରାହୀ । ଘୋର ସଙ୍କଟୁ କର ତ୍ରାହି ॥
ତୋ ତହୁଁ ନ ଜାଣଇ ଆନ । ତୁ ପ୍ରଭୁ ସଙ୍କଟ ଭଞ୍ଜନ ॥
ଯେ ଯେ ଗଗନମାର୍ଗେ ଶର । ଆସଇ ଯେହ୍ନେ ଦିବାକର ॥
ପାଣ୍ଡବ କୁଳ ସଂହାରଣ । ଯେହାକୁ କେବା ନିବାରଣ ॥
ତୋରେ ଶରଣ ଗଲି ମୁହିଁ । ମୋ ଗର୍ଭ ରଖ ଭାବଗ୍ରାହୀ ॥
ଯେ ଗର୍ଭ ରବି ତଳେ ଥାଉ । ମୋହ ଜୀବନ ବାଣ ଦହୁ ॥
ଉତ୍ତରା ବାକ୍ୟ କର୍ଣ୍ଣେ ଶୁଣି । ମନେ ଚିନ୍ତିଲେ ଚକ୍ରପାଣି ॥
ଦ୍ରୋଣ କୁମର ଅପମାନେ । ପଶି ଯେ ଥିଲା ଘୋରବନେ ॥
ମନ୍ତ୍ରି ନାରାଚ ବ୍ରହ୍ମଶର । ପ୍ରହାର କରି କୋପଭର ॥

ମେଦିନୀ ଅପାଣ୍ଡବ ଶର । ମୁହିଁ କରିବି ପ୍ରତିକାର ॥
ଯେ କଥା କୃଷ୍ଣ ମୁଖୁ ଶୁଣି । ପାଣ୍ଡବେ ନିଜ ଧନୁ ଆଣି ॥
ସୂର୍ଯ୍ୟର ପ୍ରାୟେ ଯେକେ ଯେକେ । ପଞ୍ଚ ନାରାଚ ଅଭିମୁଖେ ॥
ଯୋଡ଼ି ଚାହିଁଲା କୃଷ୍ଣ ମୁଖ । ଅନ୍ତେ ବୋଲନ୍ତି ରଖ ରଖ ॥
ତାହା ଜାଣିଲେ ନରହରି । ତକ୍ଷଣେ ଚକ୍ରକୁ ସୁମରି ॥
ବୋଇଲେ ଶୁଣ ସୁଦର୍ଶନ । ରଖ ତୁ ପାଣ୍ଡବ ଜୀବନ ॥
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ । ଯହିଁ ପାଣ୍ଡବ ପାଞ୍ଚଭାଇ ॥
ମେଘର ପ୍ରାୟେ ଆଚ୍ଛାଦିଲା । ଗୋବିନ୍ଦ କରେ ବିଜେ କଲା॥
ତକ୍ଷଣେ ଚକ୍ର କୃଷ୍ଣ ଧରି । ଉତ୍ତରା ଗର୍ଭକୁ ଆବୋରି ॥
ସେ ମାୟାଧର ଚକ୍ରପାଣି । କେ ଅବା ପାରେ ପରିମାଣି ॥
ସ୍ୱଭାବେ ଶସ୍ତ୍ର ବ୍ରହ୍ମଶର । ତାହାକୁ ନାହିଁ ପ୍ରତିକାର ॥
ବିଷ୍ଣୁର ତେଜେ ତା ସଂହରି । ଗର୍ଭକୁ ରଖିଲେ ମୁରାରି ॥
ଯାହାର ମାୟା ଯେ ସଂସାରେ । ସର୍ଜଇ ପାଳଇ ସଂହରେ ॥
ସେ ବ୍ରହ୍ମ ଶସ୍ତ୍ର ଯହୁଁ ଗଲା । ପଣ୍ଡୁଙ୍କୁ ଗୋବିନ୍ଦ ରଖିଲା ॥
ତକ୍ଷଣେ ପାଣ୍ଡବ ଜନନୀ । ଭୟେ ଉତ୍ତରା ସଙ୍ଗେ ଘେନି ॥
ପଞ୍ଚ ପୁତ୍ରଙ୍କୁ ଘେନି ସଙ୍ଗେ । ନମିଲା କୃଷ୍ଣ ପାଦ ଯୁଗେ ॥
କାତରେ ଯୋଡ଼ି ବେନି ପାଣି । କଣ୍ଠ କୁଣ୍ଠିତେ କହେ ବାଣୀ ॥

## କୁନ୍ତୀ ଉବାଚ

ବୋଲଇ କୃଷ୍ଣ ମୁଖ ଚାହିଁ । ଭୋ ନାଥ କର ମତେ ତ୍ରାହି ॥
ଭୋ ନାଥ ନମୁଁ ତୋ ପୟର । ଆଦି ପୁରୁଷ ତୁ ଈଶ୍ୱର ॥
ପ୍ରକୃତି ପରେ ତୋ ପ୍ରକାଶ । ଯେଣୁ ପ୍ରାଣୀଙ୍କ ଅପ୍ରକାଶ ॥
ଜନ୍ତୁଙ୍କ ଅନ୍ତର ବାହାରେ । ତୋ ବିନୁ ଅନ୍ୟ ନାହିଁ ପରେ॥
ଆଚ୍ଛାଦି ମାୟା ଯବନିକା । ନିର୍ଲେପ ରୂପେ ଥାଉ ଯେକା ॥
ଇନ୍ଦ୍ରିୟ ଗଣେ ତୁଲ୍ୟ କରି । ଅବୟ ଆତ୍ମା ରୂପେ ପୂରି ॥
ତୋହର ମାୟା ଯାର ଚିତ୍ତେ । ସେ ତୋତେ ଜାଣିମେ କେମନ୍ତେ॥
ନଟଙ୍କ ମଧ୍ୟେ ଯେ ନାୟକ । ସେଯେହ୍ନେ ନାଟେ ମୋହେ ଲୋକ॥
ନାନା କାଛେଣି ସେ ଭିଆଇ । ନୃତ୍ୟକାରକୁ ସେ ନ ଚାହିଁ ॥
ଦେଖନ୍ତା ପ୍ରାଣୀ ମନ ମୋହେ । ନିଷ୍ଠେ ବିଚାରେ କିଛି ନୁହେଁ॥
ପରମ ହଂସ ଦୀକ୍ଷା ପଣେ । ନିର୍ମଳ ଚେତା ମୁନିଗଣେ ॥
ତୋ ପାଦେ ଧ୍ୟାନ ଅବିରତେ । ଦୃଢ଼ ଭଗତି ଯୋଗ ମତେ ॥
ତୋ ଭକ୍ତି ଯୁଗର ବିଧାନ । ସେ କାହିଁ ଦେଖିବେ ତୋଜନ୍ମ ॥
ତୁ ନାଥ କୃଷ୍ଣ ଅବତାରେ । ଜନ୍ମିଲୁ ବସୁଦେବ ଘରେ ॥
ଦେବକୀ ଗର୍ଭରୁ ସମ୍ଭବ । ତେଣୁ ତୋ ନାମ ବାସୁଦେବ॥
ସକଳ ଜନ୍ତୁ ହୃଦଗତେ । ତୋର ବିଜୟ ଆତ୍ମା ମତେ ॥

କୁମାର ରୂପେ ନନ୍ଦ ଘରେ । ତୋର ବେହାର ଗୋପପୁରେ॥
ଇନ୍ଦ୍ର ବିବାଦେ ବନମାଳୀ । ପର୍ବତ ବାମ କରେ ତୋଳି ॥
ରଖିଲୁ ଗୋପପୁର ଶିରୀ । ଯେଣୁ ତୋ ନାମ ଗିରିଧାରୀ ॥
ପ୍ରଳୟ ଜଳେ ତୋର ବାସ । ନାଭିରୁ ପଙ୍କଜ ପ୍ରକାଶ ॥
ପଙ୍କଜ ମାଳ ତୋର ଗଳେ । ବିହରୁ ଭୁବନ ମଣ୍ଡଳେ ॥
ପଙ୍କଜ ଲୋଚନ ସୁନ୍ଦର । ନମଇ ପଙ୍କଜ ପୟର ॥
ଦେବକୀ ଦେବୀ କଂସ ଘରେ । ବନ୍ଦୀରେ ଥିଲା ଶୋକଭରେ ॥
ଦେବକୀ ପ୍ରାୟ ମତେ କରି । ଅଶେଷ ସଙ୍କଟୁ ଉଦ୍ଧରି ॥
ମୁଁ ପଞ୍ଚ ପୁତ୍ର ଘେନି ଯେବେ । ବନେ ବଞ୍ଚଇ ଦୁଃଖ ଭାବେ ॥
ଭୀମକୁ ବିଷ ଲଡ଼ୁ ଦେଲେ । ତହୁଁ ରଖିଲୁ ତେତେବେଳେ ॥
ଜତୁର ଘରେ ଅଗ୍ନି ଜଳୁ । ରଖିଲୁ ପରମ ଦୟାଳୁ ॥
ଜଳେ କୁମ୍ଭୀର ଆଦି ଯେତେ । ରାକ୍ଷସ ମିଳିଲେ ବନସ୍ତେ ॥
ପଶା ଖେଳରେ ରାଜ୍ୟ ହାରି । ନେଲେ ଦ୍ରୌପଦୀ କେଶ ଧରି ॥
ବିବସ୍ତ୍ର କଲେ ସଭାତଳେ । ତହୁଁ ରଖିଲୁ ତେତେବେଳେ ॥
ପୁଣି ଅଜ୍ଞାତ ବନବାସେ । ବନେ ବଞ୍ଚିଲୁ ନାନା କ୍ଳେଶେ ॥
ଯୁଦ୍ଧେ ଦୁର୍ଜୟ ରିପୁ ନାଶୁ । ତୁ ନାଥ ମୋ ପୁତ୍ରେ ଆଶ୍ୱାସୁ ॥
ଦ୍ରୋଣ କୁମର ବ୍ରହ୍ମଶର । ତହୁଁ ରଖିଲୁ ବଂଶ ମୋର ॥
ଯେଣୁ ବିପଦେ ନ ଡରଇ । ତୋ ଅନୁଗ୍ରହେ ଭାବଗ୍ରାହୀ ॥
ତୋହର ଦରଶନ ଫଳେ । ଯେ ଜୀବ ରହଇ ନିଶ୍ଚଳେ ॥
ପରମ ମୋକ୍ଷ ଲଭେ ବାସ । ତୁ ନାଥ ଭଗତ ବିଶ୍ୱାସ ॥
ଉତ୍ତମ କୁଳେ ଜନ୍ମ ପାଇ । ବିଦ୍ୟା ସମ୍ପଦ ଯେବେ ଥାଇଁ ॥
ବୁଡ଼ଇ ମଉଗର୍ବ ଚିତ୍ତେ । ସେ ତୋତେ ପାଇବେ କେମନ୍ତେ॥
ତୁ ନାଥ ଜଗତ ଜୀବନ । ଅକିଞ୍ଚନ ଜନଙ୍କ ଧନ ॥
ଭକ୍ତ ଜନଙ୍କ ଅର୍ଥେ ତୁହି । ପ୍ରକୃତି ତୋତେ ନ ଜାଣଇ ॥
ତୁ ନାଥ ଆତ୍ମା ରାମ ଶାନ୍ତା । ନମଇ କଇବଲ୍ୟ ଦାତା ॥
ତୁ ନାଥ କାଳ ରୂପ ହେଉ । ଅନାଦି ନିଧନ ବୋଲାଉ ॥
ସମେ ତୁ ବସୁ ସର୍ବ ଦେହେ । ପ୍ରାଣୀଯେ ତୋର ମାୟା ମୋହେ॥
ଭଜନ୍ତି ଅନ୍ୟେ ଅନ୍ୟ ଭାବେ । କଳି ଯେସନେ କଳି ଯୁଗେ ॥
ତୋର ମହିମା କେ ଜାଣିବ । ଶରୀର ବହି ବ୍ରହ୍ମା ଶିବ ॥
ତୋର ଚରିତ ଭଗବାନ । ଯେ ନର ଲୋକେ ବିଡ଼ମ୍ବନ ॥
ଯେଣୁ ତୋ ରିପୁ ମିତ୍ର ନାହିଁ । ପ୍ରାଣୀ ଜାଣିବେ ତୋତେ କାହିଁ॥
ତୁ ବିଶ୍ୱ ଆତ୍ମା ନରହରି । ଲୀଳା ବିହାରେ ଦେହ ଧରି ॥
ପଶୁଙ୍କ ମଧ୍ୟେ ହେଉ ଜାତ । ଋଷିଙ୍କ ଘରେ ଋଷିପୁତ୍ର ॥
ଯେ କଥା ତୋତେ ବିଡ଼ମ୍ବନ । ଆଧ୍ୟାତ୍ମ୍ୟା ଆତ୍ମା ନିରଞ୍ଜନ ॥

ଦଧି ମନ୍ଥନ ବେଳେ ଧରି । ରୋଳେ ବାନ୍ଧିଲା ନନ୍ଦନାରୀ ॥
ପଛେ ଲୁଚାଇ ଛାଟ ଗୋଟି । ତା' ଦେଖି ଭୂମିରେ ତୁ ଲୋଟି ॥
ଚକ୍ଷୁ ଲୁଚାଇ ବେନି କରେ । କାନ୍ଦି ପଡ଼ିଲୁ ତା ପୟରେ ॥
ବଦନ ହସ୍ତକେ ଲୁଚାଇ । ଭୟେ କମ୍ପଇ ତୋର ଦେହୀ ॥
ଯେ ଯଶା ତୋତେ ସମ୍ପାଦିଲା । ମୋତେ ତ ସନ୍ଦେହ ଲାଗିଲା ॥
ଭୟ ଯାହାର ନାମ ହରେ । ସେ କିମ୍ପା ଯଶୋଦାକୁ ଡରେ ॥
ତୁ ନାଥ ଯୋଗମାୟା ଅଂଶେ । ଜନ୍ମିଲୁ ଯଦୁରାଜା ବଂଶେ ॥
ସ୍ୱଭାବେ ଜନ୍ମ ନାହିଁ ତୋର । ଯେଣୁ ଖଣ୍ଡିବୁ ଭୂମି ଭାର ॥
ଯେଣୁ କହନ୍ତି ସାଧୁଜନେ । ମଳୟ ଯେସନେ ଚନ୍ଦନେ ॥
ଅପରେ ଯେତେ ସାଧୁଜନେ । ତୋ ଜନ୍ମ କରି ଅନୁମାନେ ॥
ଯେ ଘେନି ବସୁଦେବ ଘରେ । ଜନ୍ମିଲୁ ଭୂମିଭରା ହରେ ॥
ପୂର୍ବେ କଠୋର ତପ କରି । ବର ମାଗିଲା ପୁତ୍ରବରି ॥
ଯେଣୁ ଦେବକୀ ଗର୍ଭେ ଜାତ । ତୁ ଯେଣୁ ଅନାଥର ନାଥ ॥
ଅସୁରଙ୍କର ଭାରେ ମହୀ । ବ୍ରହ୍ମା ସମୀପେ ଦୁଃଖ କହି ॥
ତାହାର ଅର୍ଥେ ପଦ୍ମାସନ । ଗଲେ ତୋହର ସନ୍ନିଧାନ ॥
ସର୍ବଦେବଙ୍କୁ ଘେନିଗଲେ । ତୋର ଚରଣେ ସ୍ତୁତି କଲେ ॥
କହିଲା ତୋ ଚରଣ ତଳେ । ନାବ ବୁଡ଼ଇ ଯେହ୍ନେ ଜଳେ ॥
ତେମନ୍ତେ ବୁଡ଼ଇ ଧରଣୀ । ଯେହାକୁ ରଖ ଚକ୍ରପାଣି ॥
ତେଣୁ ତୁ ନର ରୂପ ଧରି । ଭୂମି ମଣ୍ଡଳେ ଅବତରି ॥
ଅବିଦ୍ୟା କାମ କର୍ମ ବଳେ । ପ୍ରାଣୀଏ ଜାତ ଭବଜଳେ ॥
ଅଟିହିଁ କ୍ଳେଶ ତାଙ୍କ ଦେହୀ । ତାହାଙ୍କୁ ଉଦ୍ଧାରିବା ପାଇଁ ॥
ଧ୍ୟାନ ଶ୍ରବଣ ମନ୍ତ୍ର ଗୁରୁ । ତେଣୁ ମହିମା କଳ୍ପତରୁ ॥
ତୋର ଚରିତ କର୍ଣ୍ଣେ ଶୁଣି । ତୋହର ନାମ ମୁଖେ ଭଣି ॥
ମନ ବଚନ ତୋତେ ଧ୍ୟାନ୍ତି । ଆନନ୍ଦେ ଦେହେ ରୋମପନ୍ତି ॥
ଯେଣୁ ପଶନ୍ତି ତୋ ଚରଣେ । ନିଶ୍ଚିନ୍ତେ ଧ୍ୟାନ ସୁମରଣେ ॥
ତୋର ଚରଣ ତାଙ୍କୁ ରଖେ । ଭବ ପ୍ରମାଦୁ ତରେ ସୁଖେ ॥
ସେ ପାଦେ ପଶିଲି ଶରଣ । ମତେ ନ ଛାଡ଼ ନାରାୟଣ ॥
ତୋହର ହିତେ ମୋର ପୁତ୍ରେ । ଜନ୍ମିଲେ ଯେ ଘୋର ଜଗତେ ॥
ତୋର ସୁହୃଦ ପଣେ ହରି । ତୋର ଚରଣେ ଆଶ୍ରେ କରି ॥
ନିତ୍ୟେ କରନ୍ତି ତୋତେ ଧ୍ୟାନ । ତୋ ତହୁଁ ନ ଜାଣନ୍ତି ଆନ ॥
ଅପ୍ରାଧ କରି ରାଜ୍ୟକୁଳେ । ପଶନ୍ତି ତୋର ବାହୁବଳେ ॥
କେବଳ ନାମ ରୂପ ତୋର । ମୋର ପୁତ୍ରଙ୍କ ସୁଖ ଘର ॥
ଯଦୁଙ୍କୁ ସଙ୍ଗେ ତାହା ଚିନ୍ତି । ଏ ଭବ ଭୟେ ନ ପଡ଼ନ୍ତି ॥
ତୋ ରୂପ ନ ଦେଖୁ ନୟନେ । ଇନ୍ଦ୍ରିୟ ଗଣେ ଆତ୍ମା ଯେହ୍ନେ ॥
ଯେ ମହୀ ତୋର ପାଦ ଲାଗି । ନିରତେ ଦିଶେ ସଉଭାଗୀ ॥
ତୋ ଅବତାର ଯେବେ ଯିବ । ବିଧବା ପ୍ରାୟେ ଯେ ଦିଶିବ ॥
ଏହା ଉପରେ ଯେତେ ଜନ । ଗ୍ରାମ ଔଷଧି ଗିରିବନ ॥
ସମୁଦ୍ର ଆଦି ଜନ ସ୍ଥାନେ । ବଞ୍ଚନ୍ତି ତୋ ଚରଣ ଧ୍ୟାନେ ॥
ହେ ବିଶ୍ୱଆତ୍ମା ବିଶ୍ୱେଶ୍ୱର । ମୁଁ ତୋର ଚରଣେ କିଙ୍କର ॥
ପାଣ୍ଡବ କୁଳେ ବୃଷ୍ଣି ବଂଶେ । ମୁଁ ଯେ ବନ୍ଧନ ଦୃଢ଼ ଫାଶେ ॥
ତୁମ୍ଭେ ଯେ ଶରଣ ସୋଦର । ଯେ ସ୍ନେହଫାଶୁ ଦୂରକର ॥
ହେ ନାଥ ଶ୍ରୀମଧୁସୂଦନ । ତୋର ଚରଣେ ମୋର ମନ ॥
ସର୍ବ ବିଷୟ ଦୂରେ ଚିନ୍ତି । ତୋର ଚରଣେ ହେଉ ମତି ॥
ଗଙ୍ଗାର ସ୍ରୋତ ଯେ ଯେ ବହେ । ଯେସନେ ସିନ୍ଧୁଜଳେ ରହେ ॥
ହେ କୃଷ୍ଣ କୃଷ୍ଣ ସଖା ତୁହି । ଦୁଷ୍ଟ ନାଶନେ ତୋର ଦେହୀ ॥
ଅବନୀଧର ଆଦିମୂଳ । ଦୁଷ୍ଟ କ୍ଷତ୍ରୀୟ କୁଳାନଳ ॥
ତୋହର ତେଜେ ଯେ ମରନ୍ତି । ନିଶ୍ଚିନ୍ତେ ତୋ ଦେହେ ପଶନ୍ତି ॥
ଗୋବିନ୍ଦ ଶରଣ ସୋଦର । ଦେବ ବିପ୍ରଙ୍କ ଦୁଃଖ ହର ॥
ତୋ ଅବତାର ଯେ ଜଗତେ । ଗୁରୁ ବ୍ରାହ୍ମଣ ଦେବ ହିତେ ॥
ଅଖିଳ ଗୁରୁ ଯୋଗେଶ୍ୱର । ଭୋ ନାଥ ଶରଣ ତୋହର ॥

## ଶ୍ରୀ ସୂତ ଉବାଚ

ସୂତ କହନ୍ତି ମଞ୍ଜୁବାଣୀ । କୁନ୍ତୀ ବଚନ କୃଷ୍ଣ ଶୁଣି ॥
ଅଳପ ହସି ଦାମୋଦର । କୋମଳ ବଚନ ଗଭୀର ॥
କରିବି ସତ୍ୟ ଯେ ବଚନ । କହି ଉଠିଲେ ଭଗବାନ ॥
ହସ୍ତିନା ପୁରେ ଯାଇ ପଶି । ଅନ୍ଧ ଗାନ୍ଧାରୀଙ୍କି ଆଶ୍ୱାସି ॥
ବ୍ୟାସ ସହିତେ ମୁନିଗଣ । ସଙ୍ଗତେ ଘେନି ନାରାୟଣ ॥
ନିକଟେ ବସି ଯେକେ ଯେକେ । ବୋଧିଲେ ଇତିହାସ ବାକ୍ୟେ ॥
କୃଷ୍ଣ ମାୟାରେ ମନ ଛନ୍ନ । ନ ବୁଝେ କୃଷ୍ଣର ବଚନ ॥
ପୁଣି କ୍ଷଣକେ ଜ୍ଞାନ ପାଇ । କୃଷ୍ଣର ମୁଖକୁ ଅନାଇ ॥
କପାଳେ ଦେଇ ବେନି କର । ବୋଲଇ ରାଜା ଯୁଧିଷ୍ଠିର ॥

## ଯୁଧିଷ୍ଠିର ଉବାଚ

ଶୁଣହେ ପ୍ରଭୁ ଦାମୋଦର । ମୁଁ ରାଜା ଧର୍ମର କୁମର ॥
ମୋହର ପୂର୍ବ କର୍ମ ଦୋଷେ । ପଡ଼ିଲି ମୋହ ସ୍ନେହ ଫାଶେ ॥
ଦେଖ ଅଜ୍ଞାନ ବୁଦ୍ଧି ମୋର । ମୁଁ ମୂଢ଼ ଦୁଷ୍ଟ ଦୁରାଚାର ॥
ଯେ ଦେହ ମାୟାମୟ କରି । ଅନେକ ଅକ୍ଷୌହିଣୀ ମାରି ॥
ବାଳକ ଦ୍ୱିଜ ବନ୍ଧୁ ମିତ୍ର । ପିତୃ ଭ୍ରାତର ଗୁରୁ ସୁତ ॥
ଯେ କର୍ମ କଲି ଅବିବେକେ । ନିଶ୍ଚୟେ ପଡ଼ିବି ନରକେ ॥
ବରଷ ଅୟୁତ ଅୟୁତେ । କେବେହେଁ ମୋକ୍ଷ ନାହିଁ ମୋତେ ॥
ଯେମନ୍ତ ଶାସ୍ତ୍ରର ବଚନେ । ଯେ ଧର୍ମ କରେ ମୁନିଜନେ ॥
ରାଜ୍ୟେ ବିଶେଷ ଧର୍ମ ଯୁଦ୍ଧେ । ଦୋଷ ନ ଲାଗେ ଶତ୍ରୁବଧେ ॥

ଯେ କଥା ମତେ ବୋଧ ନୁହେ । ସକଳ ଦେହେ ହରି ରହେ ॥
ଆତ୍ମାର ବଧେ କାହିଁ ଧର୍ମ । ଯେଟି ଅବିଦ୍ୟା ମୋହଭ୍ରମ ॥
ବନ୍ଧୁ ବାନ୍ଧବ ନ ପ୍ରମାଣି । ସଂଗ୍ରାମେ ମଲେ ଯେତେ ପ୍ରାଣୀ ॥
ତାଙ୍କ ରମଣୀ ଜନ ଗୃହେ । ଦିନ ବଞ୍ଚନ୍ତି ମାୟା ମୋହେ ॥
ତହୁଁ ଯେ ତପତ ଉପୁଜି । କେହେତୁ କେବା ତହୁଁ ବଞ୍ଚି ॥
ଦେହେ ଲାଗିଲା ପଙ୍କ ଯେହ୍ନେ । ନ ଛାଡ଼େ ପଙ୍କ ପ୍ରକ୍ଷାଳନେ ॥
ମଦକୁ ଦେହେ ଆଣି ବୋଳି । ମଦେ ଯେସନେ ତା ପଖାଳି ॥
ପ୍ରାଣୀର ବଧ ପ୍ରାଣୀ ହିତେ । କାହୁଁ ତରିବେ ଯଜ୍ଞ ପଥେ ॥

### ଶ୍ରୀ ସୂତ ଉବାଚ

ଯେମନ୍ତେ କୃଷ୍ଣର ଅଗ୍ରତେ । ରାଜା କହିଲେ ଦୁଃଖ ଚିତ୍ତେ ॥
ତକ୍ଷଣେ ପ୍ରଭୁ ନରହରି । ମାୟାରେ ତାର ମନ ହରି ॥
ପଞ୍ଚପାଣ୍ଡବ ସଙ୍ଗେ ଘେଡ଼ି । କିଛି ନ କହି ହେଲେ ତୁନି ॥
ସେ ମାୟାଧର ପାଦଗତେ । ନମଇ ବିପ୍ର ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ଯୁଧିଷ୍ଠିର ଅନୁତାପ କଥନେ ନାମ ଅଷ୍ଟମୋଽଧ୍ୟାୟଃ ।*

## ନବମ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଏମନ୍ତେ ପ୍ରାଣୀ ବଧେ ଖିନ୍ନ । ହୋଇଣ ଧର୍ମର ନନ୍ଦନ ॥
ସକଳ ଧର୍ମଜ୍ଞାନ ଅର୍ଥେ । ବିଜୟ କଲେ ନିଜ ରଥେ ॥
ଯୁଦ୍ଧ ଭୂମିକି ହୋଇ ସଜ । ସଙ୍ଗତେ ଘେନି ଦେବରାଜ ॥
ମିଳିଲେ କୁରୁକ୍ଷେତ୍ରେ ଯାଇ । ଭୀଷ୍ମେ ଅଛନ୍ତି ଯହିଁ ଶୋଇ ॥
ରାଜା ସଙ୍ଗତେ ଚାରି ଭ୍ରାଥେ । ସଜ ହୋଇଲେ ଯେଝା ରଥେ ॥
ଉତ୍ତମ ଅଶ୍ୱ ନାନା ବାଣ । ସ୍ୱଭାବେ ରତ୍ନ ବିଭୂଷଣ ॥
ତାହାଙ୍କ ପଛେ ବିପ୍ରଜନେ । ସଙ୍ଗେ ମିଳିଲେ ତୋଷମନେ ॥
ଗୋବିନ୍ଦ ନନ୍ଦିଘୋଷ ରଥେ । ବସିଲେ ଅର୍ଜୁନ ସଙ୍ଗତେ ॥
ପାଣ୍ଡବ ମଧ୍ୟେ ଚକ୍ରଧର । କି ଅବା ଦେବା ପଟାନ୍ତର ॥
ଗୁହ୍ୟକ ଗଣ ମଧ୍ୟଗତେ । କୁବେର ପ୍ରକାଶ ଯେମନ୍ତେ ॥
ଯେମନ୍ତେ କୁରୁକ୍ଷେତ୍ରେ ଗଲେ । ପାଣ୍ଡବେ ଗୋବିନ୍ଦଙ୍କ ତୁଲେ ॥
ଶର ଶୟନେ ଗଙ୍ଗାସୁତ । ଦେଖିବା ଅର୍ଥେ ଉପଗତ ॥
ପାଣ୍ଡବେ ଗୋବିନ୍ଦର ତୁଲେ । ଭୀଷ୍ମ ଚରଣେ ପ୍ରଣମିଲେ ॥
ଅବନୀ ପୃଷ୍ଠେ ମୋହଗତ । କିବା ଅମର ଭୂମିଗତ ॥
ବ୍ରାହ୍ମଣ ମିଳିଲେ ତକ୍ଷଣେ । ବ୍ୟାସ ସହିତେ ମୁନିଗଣେ ॥

ଅପରେ ଯେତେ ରାଜଋଷି । ମିଳିଲେ କୁରୁକ୍ଷେତ୍ରେ ଆସି ॥
ପର୍ବତ ନାମେ ମହାଋଷି । ଧୌମ୍ୟ ନାରଦ ତୁଲେ ମିଶି ॥
ବଦରାୟଣ ବୃହଦଶ୍ୱ । ଭରଦ୍ୱାଜଙ୍କ ସଙ୍ଗେ ଶିଷ୍ୟ ॥
ପରମକ୍ଷତ୍ରୀ ପର୍ଶୁରାମ । ବଶିଷ୍ଠ ଇନ୍ଦ୍ର କରଦମ ॥
ଅଶ୍ରିତ ତ୍ରିତ ଗୃତ୍ସମଦ । କଶ୍ୟପ ଗୌତମ ପ୍ରସିଦ୍ଧ ॥
ଅତ୍ରି କୌଶିକ ସୁଦର୍ଶନ । କୌତ୍ସ ଅଙ୍ଗିରା ନନ୍ଦନ ॥
ନିର୍ମଳ ଚିତ୍ତ ବ୍ରହ୍ମଚାରୀ । ମିଳିଲେ ସୂତ ମଧ୍ୟକରି ॥
ଯେମନ୍ତ ସର୍ବ ଋଷିଜନେ । ମିଳିଲେ ଭୀଷ୍ମ ସନ୍ନିଧାନେ ॥
ମୁନିଙ୍କୁ ଦେଖି ଉତ୍ତମତମ । ଶୟନେ କଲେ ସେ ପ୍ରଣାମ ॥
ଧର୍ମଜ୍ଞ ଗଙ୍ଗାର କୁମର । ଯେ ଦେଶ କାଳ ଉପଚାର ॥
ତୋଷେ ପୂଜିଲେ ଯେକେଯେକେ । ମୁନିଙ୍କୁ ଦୃଢ଼ ମାନସିକେ ॥
କୃଷ୍ଣଙ୍କୁ ହୃଦରେ ବସାଇ । ପୂଜିଲେ ଦୃଢ଼ ଚିତ୍ତେ ଧ୍ୟାୟୀ ॥
ଯେ ହରି ଜଗତ ଈଶ୍ୱର । ଅନାଦି ଧର୍ମ ନିରାକାର ॥
ପଣ୍ଡୁ ପୁତ୍ରଙ୍କୁ ଦୟା ଚିତ୍ତେ । ଭାବେ ବୋଲନ୍ତି ଜନ ହିତେ ॥
ଯେ ବଡ଼କର୍ମ କଷ୍ଟ ନିତ୍ୟେ । ଯେ ପଞ୍ଚଭାଇ କୁନ୍ତୀ ସୁତେ ॥
ବନେ ଭ୍ରମିଲେ କଷ୍ଟେ ଶ୍ରମେ । ଜୀବନ ପୋଷି ବିପ୍ର ଧର୍ମେ ॥
ଯେଣୁ ଗୋବିନ୍ଦ ଆଶ୍ରେ ଥିଲେ । ଅଶେଷ ସଙ୍କଟୁ ତରିଲେ ॥
ସ୍ୱାମୀ ମରଣେ କୁନ୍ତୀ ସାଧୁ । ସ୍ୱଭାବେ ବାଳ ପ୍ରଜାବଧୂ ॥
ପୁତ୍ରଙ୍କ ସଙ୍ଗେ ବହୁ କ୍ଳେଶେ । ଦୁଃଖେ ବଞ୍ଚିଲେ ବନଦେଶେ ॥
କାଳର ବଳେ ଯେ ଜଗତ । ପ୍ରାଣୀୟେ କର୍ମର ଆୟତ ॥
ସଂସାର ଇତସ୍ତତ ବେଳେ । ଗଗନେ ଯେହ୍ନେ ମେଘମାଳେ ॥
ଯେ କୁଳେ ରାଜା ଧର୍ମସୁତ । ରକ୍ଷକ ଭୀମ ଗଦାହସ୍ତ ॥
ଅର୍ଜୁନ ଯହିଁ ଧନୁଧରେ । ଯହିଁ ଗୋବିନ୍ଦ ରକ୍ଷାକରେ ॥
ସେ କୁଳେ ପଡ଼ଇ ବିପତ୍ତି । ଯେମନ୍ତେ ବିଧାତାର ଗତି ॥
କେ ପ୍ରାଣୀ ପାରେ ଯେହା ଚିନ୍ତି । ଯହିଁ ପଣ୍ଡିତେ ଭ୍ରମ ହୋନ୍ତି ॥
ସଂସାର କର୍ମର ଆୟତ । ଯେହାକୁ ଜାଣ କୁନ୍ତୀ ସୁତ ॥
ମନେ ନ ଚିନ୍ତି କିଛି ଭାଳ । ଅନାଥ ପ୍ରଜା ଯେବେ ପାଳ ॥
ଦେଖ ଯେ ଆଦି ନାରାୟଣ । ଜଗତ ପରମ କାରଣ ॥
ମାୟାରେ ଲୋକମନ ହରି । ଯାଦବ ବଂଶେ ଅବତରି ॥
ଯେହାର ଅନୁଭବ ଗତି । ଅଥବା ଜାଣେ ପଶୁପତି ॥
ନାରଦ ଜାଣେ ଭାବ ଘେନି । କିବା କପିଳ ମହାମୁନି ॥
ତୁ କୃଷ୍ଣ ମହିମା ନ ଜାଣି । ମାତୁଳ ସୁତ ପ୍ରାୟ ମଣି ॥
ଯେହାଙ୍କୁ ଦୂତ ପ୍ରାୟେ ଭାବି । ପେଶିଲୁ ପଞ୍ଚଗ୍ରାମ ମାଗି ॥
ବାନ୍ଧବ ଭାବେ ସ୍ନେହକରି । ରଥେ ସାରଥି ପଣେ ବରି ॥

ଯହୁଁ ଯେ ପ୍ରଭୁ ଭାବଗ୍ରାହୀ । ସ୍ୱଭାବେ ପରାପର ନାହିଁ ॥
ଯେ ଥାଇ ଭଗତଙ୍କ ହିତେ । ଦେଖ ମୋ ଭାଗ୍ୟର ଆୟତେ ॥
ଜୀବନ ଛାଡ଼ିବାର କାଳେ । ମିଳିଲେ ଶରଶଯ୍ୟା ତଳେ ॥
ଯାହା ଚରଣ ଭଜି ବଳେ । ନିଶ୍ଚଳ ମନ ଅନ୍ତଃକାଳେ ॥
ତା ନାମ ତୁଣ୍ଡେ ଉଚ୍ଚାରନ୍ତି । ପରମ ପଦେ ସେ ମିଶନ୍ତି ॥
କର୍ମ ବାସନା ଯାଏ ଦୂର । ଏମନ୍ତ ମହିମା ଏହାର ॥
ସେ ଦେବ ଦେବ ଭଗବାନ । ଭାବେ ଜାଣିଲା ମୋର ମନ ॥
ଚିତ୍ତେ ପ୍ରସନ ହେଉ ମୋର । ମୁହିଁ ଛାଡ଼ିବି କଳେବର ॥
ପ୍ରଫୁଲ୍ଲ କମଳ ଲୋଚନ । ସୁନ୍ଦର ପ୍ରସନ୍ନ ବଦନ ॥
ଚକ୍ର ସହିତେ ଚାରିବାହୁ । ସେ ମୋର ଧ୍ୟାନ ପଥେ ରହୁ ॥
ଭୀଷ୍ମ ବଚନ କର୍ଣ୍ଣେ ଶୁଣି । ଧର୍ମ ନନ୍ଦନ ମନେ ଗୁଣି ॥
ଭୀଷ୍ମଙ୍କୁ ଶର ତଳେ ଚାହିଁ । କର ଯୁଗଳ ମୁଣ୍ଡେ ଦେଇ ॥
ବିବିଧ ଧର୍ମ ପଚାରିଲେ । ଅନେକ ମୁନିଗଣ ତୁଳେ ॥
ସ୍ୱଭାବେ ଧର୍ମ ଯେ ଜଗତେ । ଚତୁର ବର୍ଣ୍ଣ ଯେଝା ମତେ ॥
ରାଗ ବୈରାଗ୍ୟ ଯାହା କରି । ଯେ ମାର୍ଗେ ସଂସାରୁ ନିସ୍ତରି ॥
ଯେ ରାଜ ବିଧି ରାଜ ଧର୍ମ । ମୋକ୍ଷ ସାଧନେ ଯେତେ କର୍ମ ॥
ଯଥା ବିଭାବେ ଯେତେ କରି । ଗୃହୀ ବାନସ୍ତ ବ୍ରହ୍ମଚାରୀ ॥
ସ୍ତିରୀ ଜନ୍ମର ଯେବା ଧର୍ମ । ଯେ ବିଷ୍ଣୁ ଭଗତଙ୍କ କର୍ମ ॥
ଧର୍ମାର୍ଥ କାମ ମୋକ୍ଷ ଆଦି । ଯେତେ ପ୍ରକାରେ ଯାହା ସାଧି ॥
ସକଳ କହିଲେ ହରଷେ । ସେ ପୁଣ୍ୟ ଗ୍ରନ୍ଥ ଇତିହାସେ ॥
ତକ୍ଷଣେ ବିଷ୍ଣୁ ଭାବ ଘେନି । ଗଙ୍ଗା ନନ୍ଦନ ହେଲେ ତୁନି ॥
ସିଦ୍ଧ ପୁରୁଷ ଯୋଗ ବଳେ । ଯାହା ଚିନ୍ତନ୍ତି ଅନ୍ତଃକାଳେ ॥
ସେ କାଳ ଅତି ପୁଣ୍ୟଧାମ । ଉତ୍ତରାୟଣ ତାର ନାମ ॥
ସେ କାଳ ଆଗମନ ଦେଖି । ସଙ୍କୋଚ କଲେ ବେନି ଆଖି ॥
ସହସ୍ର ସହସ୍ର ବଚନ । ଶୁଣାଇ ହୋଇଲେ ମଉନ ॥
ସବୁ ସଂହରି ହୃଷ୍ଟ ମନ । କୃଷ୍ଣ ଚରଣ ଅବଧାନ ॥
ସେ ହରି ନିତ୍ୟ ବ୍ରହ୍ମରାଶି । ଚତୁରଭୁଜ ପରକାଶି ॥
ପୀତ ବସନ କଟି ଭାଗେ । ବିଜୁଳି ଯେହ୍ନେ ନୀଳ ମେଘେ ॥
ଯେମନ୍ତେ କୃଷ୍ଣ ରୂପ ହେଜି । ବଚନ ଶ୍ରମେ ଚକ୍ଷୁ ବୁଜି ॥
ଧାରଣା ଯୋଗେ ଧ୍ୟାନ କରି । ସଂଶୟ ଦୂରେ ପରିହରି ॥
ଯୁଦ୍ଧର ଯେତେ ଶ୍ରମ ଥିଲା । ତକ୍ଷଣେ ଶରୀରୁ ଛାଡ଼ିଲା ॥
ଅନ୍ତରେ ବେନି କର ଯୋଡ଼ି । ବୋଲେ ଗୋବିନ୍ଦ ପାଦେ ପଡ଼ି ॥

### ଭୀଷ୍ମ ଉବାଚ

ଇନ୍ଦ୍ରୀୟ ଅର୍ଥେ ଯେତେ କର୍ମ । ଚିତ୍ତୁ ଛାଡ଼ିଲା ମାୟା ଭ୍ରମ ॥
ଯେତେ ପ୍ରକାରେ ମନ ମୋର । ତୃଷ୍ଣା ବର୍ଜିତ ନିର୍ବିକାର ॥
କୃଷ୍ଣ ଶରୀରେ ହେଉ ଲୀନ । ଯେ ହରି ଭଗତ ପ୍ରଧାନ ॥
ଯାର ମହିମା ଯୋଗୀ ଜନେ । ଚିନ୍ତି ନ ପାରି ଯୋଗଧ୍ୟାନେ ॥
ସେ ସୁଖେ ଥାଇ ଅବିରତେ । ପ୍ରକୃତି ଭଜେ କିସ ଅର୍ଥେ ॥
ପ୍ରକୃତି ତହୁଁ ଯେ ଜଗତ । ପ୍ରବାହ ରୂପେ ଆତଯାତ ॥
ତମାଳ ପତ୍ର ପ୍ରାୟେ ବର୍ଣ୍ଣ । ଯେ ରୂପେ ମୋହେ ତ୍ରିଭୁବନ ॥
ପୀତ ବସନ କଟି ଶୋହେ । ପ୍ରକାଶେ ରବି ତେଜ ପ୍ରାୟେ ॥
ଅଳକା ଆବୃତ କପୋଳ । ବିରାଜେ ବଦନ କମଳ ॥
ଅର୍ଜ୍ଜୁନ ସଖା ପାଦ ତଳେ । ମୋ ଚିତ୍ତ ରହୁ ସୁନିଶ୍ଚଳେ ॥
ସଂଗ୍ରାମେ ଅଶ୍ୱ ଧୂଳି ପ୍ରାୟେ । ଶିର ବଦନ ଧୂମ୍ର ପ୍ରାୟେ ॥
ବିରାଜେ ସ୍ୱେଦକଣା ଅଙ୍ଗେ । ବିବିଧ ଅଳଙ୍କାର ଭଙ୍ଗେ ॥
ମୋହର ତୀକ୍ଷ୍ଣ ବାଣ ପନ୍ତି । ଯାର କପୋଳେ ଝଟକନ୍ତି ॥
ସେ ରୂପେ ପଶୁ ମୋର ପ୍ରାଣ । ଯେ ଭବ ଜଳେ ପରିତ୍ରାଣ ॥
ଯେ ହରି ଅର୍ଜ୍ଜୁନ ବଚନେ । ରଥ ନିବେଶି ମଧ୍ୟ ଶୂନ୍ୟେ ॥
ଅନାଇ କଟାକ୍ଷ ଲୋଚନେ । ଆୟୁଷ ହରେ ପରସନେ ॥
ତାର ଚରଣ ମନେ ଚିନ୍ତି । ନିରତେ ଥାଇ ମୋର ମତି ॥
ଯୁଦ୍ଧର ଅର୍ଥେ କୋପ ଭରି । ସକଳ ବୀରେ ଶସ୍ତ୍ର ଧରି ॥
ସମରେ ଦେଖି ବନ୍ଧୁଜନ । ଦୟାରେ ନ ଯୁଝେ ଅର୍ଜ୍ଜୁନ ॥
ମାୟାରେ ତାର ମନ ମୋହି । ଅନେକ ଆତ୍ମ ଜ୍ଞାନ କହି ॥
ତାହାର କୁମତି ହରିଲା । ଛଳେ ସମସ୍ତ ସଂହାରିଲା ॥
ତାର ଚରଣେ ମୋର ଗତି । ନିଶ୍ଚଳେ ହେଉ ଆତ୍ମାରତି ॥
ମୋହର ତୁଳେ ସତ୍ୟ କଲା । ଶସ୍ତ୍ର ନ ଧରିବି ବୋଇଲା ॥
ମୋହର ତୀକ୍ଷ୍ଣ ବାଣେ କୋପୀ । ମୋର ବଚନେ ସତ୍ୟ ସ୍ଥାପି ॥
ତକ୍ଷଣେ ଅସ୍ତ୍ର ଧରି ହସ୍ତେ । ରଥୁ ଧାଇଁଲା ଭୂମିଗତେ ॥
ଧାମନ୍ତେ ଅବନୀ କମ୍ପିଲା । ଉତ୍ତରୀ କନ୍ଧୁ ଉଡ଼ିଗଲା ॥
ତୀକ୍ଷ୍ଣ ଉଞ୍ଚାଇ ମହାକୋପେ । ମିଳିଲା ମୋହର ସମୀପେ ॥
ସ୍ୱଧର୍ମ ସମର ଉପେକ୍ଷି । ସିଂହ ଯେସନେ ଗଜ ଦେଖି ॥
ମୁଁ ଆତତାୟୀ ପଣେ ରୁନ୍ଧି । ଅନେକ ବାଣ ରୋଷେ ବିନ୍ଧି ॥
ବିଚ୍ଛିନ୍ନ କରି ସେନା ସଙ୍ଗେ । ଦେଖି ଧାଇଁଲା ଅତି ବେଗେ ॥
ରୁଧିର ଭୂଷଣ ଶରୀରେ । ଭୂମି କମ୍ପିତ ପାଦ ଭରେ ॥
ହରିବା ପାଇଁ ମୋର ପ୍ରାଣ । ମୁଁ ଯେବେ ପଶିଲି ଶରଣ ॥
ବିଜୟ ରଥେ ଯେ ସାରଥି । ରଥ ଆରୋହି ଶୁଭ ଚିନ୍ତି ॥
ସଂଗ୍ରାମ କରି ଯେତେ ମଲେ । ତା ଦେଖି ତାର ଭାବେ ଗଲେ ॥
ଯେବେ ସଂଗ୍ରାମ ଅନ୍ତକାଳେ । ମୋ ଚିତ୍ତ ରସୁ ତାର ମେଳେ ॥
ଗୋପ ନଗରେ ବୃନ୍ଦାବନେ । ରାସ ଉତ୍ସବ ଗୋପୀଜନେ ॥
ଲଳିତ ଗତି ସୁବିଳାସ । ମନୋଜ୍ଞହୃଷ୍ଟ ମନ୍ଦ ହାସ ॥

ତାହାର ସଙ୍ଗେ ଭାବ କରି । ଭବ ସଂସାରୁ ଗଲେ ତରି ॥
ଧର୍ମ ନନ୍ଦନ ଯଜ୍ଞ କାଳେ । ଋଷି ବ୍ରାହ୍ମଣ ରାଜା ମେଳେ ॥
ଯାହାର ପାଦେ ଅର୍ଘ୍ୟ ଦେଇ । ସୁଖେ ସୁନ୍ଦର ମୁଖ ଚାହିଁ ॥
ସକଳ ଗଲେ ମୋକ୍ଷ ମାର୍ଗେ । ସେ ଯେବେ ଦିଶୁ ମୋର ଆଗେ ॥
ନିର୍ମଳ ଆତ୍ମା ରୂପ ହୋଇ । ଜ୍ଞାନୀଙ୍କ ହୃଦେ ସେ ପଶଇ ॥
ସକଳ ଚକ୍ଷୁ ଦ୍ୱାରେ ଭାବି । ଯେହ୍ନେ ପ୍ରକାଶ ହୁଏ ରବି ॥
ସେ ହରି ପାଦଯୁଗେ ଭଜି । ପଶିଲା ଭାବ ମୋହ ତେଜି ॥

## ଶ୍ରୀ ସୂତ ଉବାଚ

ଯେମନ୍ତେ ଗୋବିନ୍ଦ ବିଷୟେ । ମନ ବଚନ ଦୃଷ୍ଟି ଦେହେ ॥
ଆତ୍ମାରେ ଆତ୍ମା ସ୍ଥିର କରି । ପବନେ ପବନ ସଞ୍ଚରି ॥
ଦେଖନ୍ତି ସୁରନର ମୁନି । ଗଙ୍ଗା ନନ୍ଦନ ହେଲେ ତୁନି ॥
ଶରୀର ତେଜି ଭାବ ମୋହେ । ପଶିଲା ଗୋବିନ୍ଦର ଦେହେ ॥
ଭୀଷ୍ମ ମରଣ ଦେଖି ଭଲେ । ଯେ ଅବା ଥିଲେ କୃଷ୍ଣ ତୁଲେ ॥
ମଉନେ ବସିଲେ ସମସ୍ତେ । ପକ୍ଷୀଏ ଯେହ୍ନେ ଦିନ ଅନ୍ତେ ॥
ତକ୍ଷଣେ ଦୁନ୍ଦୁଭି ଶବଦ । ଦେବ ଦାନବେ କଲେ ବାଦ୍ୟ ॥
ସାଧୁ ଶବଦ ଶୂନ୍ୟ ପୂରେ । ପୁଷ୍ପ ବରଷେ ନିରନ୍ତରେ ॥
ତକ୍ଷଣେ ଯୁଧିଷ୍ଠିର ଯାଇ । ଅନଳେ ଭୀଷ୍ମ ଦେହ ଦହି ॥
ମୁହୂର୍ତ୍ତେ ବସି ଦୁଃଖ ମନେ । ଉଠି ସକଳ ମୁନି ଜନେ ॥
ଯେ ଯାହା ମତେ ସ୍ତୁତି କଲେ । ନମିଲେ କୃଷ୍ଣ ପାଦତଳେ ॥
ସକଳେ ଦୁଃଖ ସୁଖ ଚିତ୍ତେ । ଗୃହେ ଚଳିଲେ ନିଜ ପଥେ ॥
ପାଣ୍ଡବେ କୃଷ୍ଣର ସଙ୍ଗତେ । ହସ୍ତିନା ମିଳିଲେ ତୁରିତେ ॥
ତକ୍ଷଣେ ଅନ୍ତପୁରେ ଯାଇ । ଅନ୍ଧ ଗାନ୍ଧାରୀଙ୍କି ବସାଇ ॥
ଗୋବିନ୍ଦ ଧୃତରାଷ୍ଟ୍ର ବୋଲେ । ଯୁଧିଷ୍ଠିରଙ୍କୁ ରାଜା କଲେ ॥
ସେ ରାଜା ସୁଖେ ରାଜ୍ୟ କଲା । ଯେ ପିତୃ ପିତାମହେ ଥିଲା ॥
ଯେମନ୍ତେ କରି ରାଜପଣ । ସଙ୍ଗତେ ଘେନି ନାରାୟଣ ॥
ସେ ନାରାୟଣ ପାଦଗତେ । ଶରଣ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ଭୀଷ୍ମ ସ୍ୱର୍ଗାରୋହଣେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

## ଶୌନକ ଉବାଚ

ଭୋ ସୂତ କହ କୃଷ୍ଣବାଣୀ । ସଂସାରୁ ତରେ ଯାହାଶୁଣି ॥
ପଞ୍ଚୁ ରାଜାର ଅନ୍ତଃକାଳେ । ଦୁଷ୍ଟେ ଯେ ରାଜା ନେଲେ ବଳେ ॥
ଗୋବିନ୍ଦ ପାଦେ ଆଶ୍ରେ କରି । ସେ ଆତତାୟୀ ଜନେ ମାରି ॥
ସେ ପଞ୍ଚ ଭ୍ରାଥ ଯେକ ମେଳେ । ପ୍ରଜାଙ୍କୁ ପାଳି ରାଜ୍ୟ କଲେ ॥
ତେବେ କି କଲେ ପଣ୍ଡୁସୁତେ । ସ୍ୱଭାବେ କୃଷ୍ଣର ସଙ୍ଗତେ ॥

## ଶ୍ରୀ ସୂତ ଉବାଚ

ପାଣ୍ଡବ ବଂଶ ରକ୍ଷା କରି । କୁରୁ ବଂଶକୁ ନରହରି ॥
କ୍ରୋଧ ଅନଳେ ଭସ୍ମ କଲେ । ଦାବାଗ୍ନି ଯେହ୍ନେ ବନସ୍ତରେ ॥
ବସାଇ ନିଜ ରାଜ୍ୟ ମଧ୍ୟେ । କୃଷ୍ଣ ସ୍ଥାପିଲେ ରାଜ ପଦେ ॥
ଆନନ୍ଦ ମନେ ଧର୍ମ ବଳା । ପ୍ରଜା ପାଳନେ ରାଜ୍ୟ କଲା ॥
ଭୀଷ୍ମଙ୍କ ଠାରୁ ଧର୍ମ ବାଣୀ । ଯେବା କହିଲେ ଚକ୍ରପାଣି ॥
ଯେ ବାକ୍ୟ ଶୋକ ମୋହ ଛାଡ଼ି । ପ୍ରଜା ପାଳନେ ଚିତ୍ତ ବଢ଼ି ॥
ସଂସାରେ ଯେତେ ନୃପଗଣେ । ସେବନ୍ତି ଯୁଧିଷ୍ଠି ଚରଣେ ॥
ସମୁଦ୍ର ଅନ୍ତ ଯାଏ ମହୀ । ଧର୍ମ ନନ୍ଦନ ଆଜ୍ଞା ବହି ॥
ରାଜା ବଚନେ ମେଘ ମାଳ । ଭୂମିରେ ବରଷନ୍ତି ଜଳ ॥
କାମଧେନୁର ପ୍ରାୟେ ମହୀ । ପ୍ରଜା କଳ୍ପିତେ ଶସ୍ୟ ଦେଇ ॥
ଗୋପାଳ ଗୋଷ୍ଠ ମଧ୍ୟେ ଥାଇ । ଅନେକ କ୍ଷୀର ଦ୍ୟନ୍ତି ଗାଈ ॥
ନଦୀ ବହନ୍ତି ପୂରି ଜଳେ । ସମୁଦ୍ର ରହିଲା ନିଶ୍ଚଳେ ॥
ପର୍ବତ ନିଜ ସ୍ଥାନେ ସ୍ଥିର । ଆବୃତ ଲତା ବନ ଘୋର ॥
ସର୍ବ ଔଷଧ ଫଳ ଯେତେ । ଫଳନ୍ତି ପ୍ରଜାଙ୍କ ନିମନ୍ତେ ॥
ପ୍ରଜାଙ୍କୁ ଆଧି ବ୍ୟାଧି କ୍ଳେଶ । ନ ଲାଗେ ତାପ ତ୍ରୟ ଲେଶ ॥
ଧର୍ମ ନନ୍ଦନ ରାଜ୍ୟ ଯେତେ । ପ୍ରାଜାଯେ ବଞ୍ଚନ୍ତି ନିଶ୍ଚିନ୍ତେ ॥
ହସ୍ତିନା ପୁରେ ହୃଷୀକେଶ । ଭାବେ ବଞ୍ଚିଲେ କେତେ ମାସ ॥
ବନ୍ଧୁଙ୍କ ଶୋକ ଶାନ୍ତି କରି । କୁନ୍ତୀର ପ୍ରିୟ ମନ ହରି ॥
କ୍ଷଣ କ୍ଷଣକେ କରି କୋଳ । ସୁହୃଦ ପ୍ରେମ ବାକ୍ୟେ ଭୋଳ ॥
ରଥେ ବସିଲେ ବନମାଳୀ । ତଳେ ସକଳ ବନ୍ଧୁ ମିଳି ॥
କୃଷ୍ଣା ସୁଭଦ୍ରା କୁନ୍ତୀ ସୁତେ । ରାଜାଯେ ଆସିଥିଲେ ଯେତେ ॥
ଗାନ୍ଧାରୀ ଧୃତରାଷ୍ଟ୍ର ତୁଲେ । କୃଷ୍ଣର ଚରଣେ ନମିଲେ ॥
ଧର୍ମ ସଙ୍ଗତେ ଭୀମ ଗଲା । ଉତ୍ତରା ନାରୀ ମଧ୍ୟେ ଥିଲା ॥
ହରିଙ୍କୁ ନମିଲା ଅନ୍ତରେ । ପ୍ରବେଶ ହେଲେ ଅନ୍ତପୁରେ ॥
କୃଷ୍ଣ ବିଚ୍ଛେଦେ ମନଛନ । ଗଲେ ସେ ଯେ ଯାହା ଭୁବନ ॥
କୃଷ୍ଣର ଭାବେ ଭାବ ବଢ଼ି । ସୁସଙ୍ଗ କେ ପାରିବ ଛାଡ଼ି ॥
ଯାହାର ଯଶଗୁଣ କର୍ଣ୍ଣେ । ନିରତେ ଭାବୁଥାନ୍ତି ମନେ ॥
ନ ଦେଖି ତାର ପଦ୍ମମୁଖ । କାହୁଁ ଲଭିବେ ଆତ୍ମା ସୁଖ ॥
ନିତ୍ୟେ କରନ୍ତି ଦରଶନ । ସ୍ନେହରେ କରି ଆଲିଙ୍ଗନ ।
କୃଷ୍ଣଙ୍କୁ କହନ୍ତି ବଚନ । ଆବର ଶୟନ ଭୋଜନ ॥

ଚକ୍ଷୁ ବୁଜିଲେ ଭାବ ଭରେ । ରୋମାଞ୍ଚ ତନୁ ଅଶ୍ରୁଧାରେ ॥
କଣ୍ଠ କୁଣ୍ଠିତ ବାକ୍ୟ କହି । ବୋଲନ୍ତି ଏକୁ ଆରେ ଚାହିଁ ॥
ଦ୍ୱାରକା ଗଲେ ଭାବଗ୍ରାହୀ । ଆମ୍ଭର ସୁଖ ଲେଶ ନାହିଁ ॥
ମୃଦଙ୍ଗ ସଙ୍ଗେ ଭେରୀ ବୀଣା । ଘଣ୍ଟି ଦୁନ୍ଦୁଭି ନିର୍ଘୋଷଣା ॥
ସେ କୁରୁରାଜ୍ୟେ ଯେତେନାରୀ । କୃଷ୍ଣ ବିଚ୍ଛେଦେ ତନୁଘାରି ॥
ଥିଲେ ଯେ ଜଗତି ଆରୋହୀ । ପୁଷ୍ପ ସିଞ୍ଚନ୍ତି କୃଷ୍ଣ ଚାହିଁ ॥
କୃଷ୍ଣର ପାଟଛତ୍ର ଶ୍ୱେତ । ରତ୍ନ କାଞ୍ଚନେ ସୁଘଟିତ ॥
ଆନନ୍ଦେ ଘେନି ମହାତୋଷେ । ଅର୍ଜ୍ଜୁନ ଗୋବିନ୍ଦର ପାଶେ ।
ବାମ ଦକ୍ଷିଣ ପାଶେ ଟେକି । ଅକ୍ରୂର ଉଦ୍ଧବ ସାତ୍ୟକି ॥
ଚାମର ଧରି ପୁଣି ବିଞ୍ଚ । କୃଷ୍ଣେ କର୍ପୂର ଧୂଳି ସିଞ୍ଚ ॥
ଦେବେ କୁସୁମ ବରଷନ୍ତି । ମାର୍ଗେ ଶୋଭିତ ଯଦୁପତି ॥
ବ୍ରାହ୍ମଣ ମିଳି କୃଷ୍ଣ ଆଗେ । ସୁସ୍ୱରେ ଶାମ ବେଦ ରଙ୍ଗେ ॥
ଆଶିଷ୍ୟ ପଢ଼ି ବେଦବାଣୀ । ହୃଦେ ନମନ୍ତି ଚକ୍ରପାଣି ॥
ନିର୍ଗୁଣ ଗୁଣ ଯାର ଦେହୀ । ବ୍ରାହ୍ମଣ ବିଦ୍ୟା ଯାର ତହିଁ ॥
ବିପ୍ର ସମୂହ ଅନ୍ୟୋ ଅନ୍ୟେ । ଆଶିଷ୍ୟ ଦେଲେ ତୋଷମନେ ॥
କୌରବ ପୁର ନାରୀଙ୍କର । ସେ ସର୍ବ ସୁଖ ମନୋହର ॥
ଯେ ହରି ପୁରୁଷ ପୁରାଣ । ଆତ୍ମାକୁ ଆତ୍ମାରେ ନିର୍ମାଣ ॥
ହରି ସକଳ ଦେହେ ବସେ । ଅଶେଷ ଦେହ ଯେକ ଶେଷେ ॥
ଗୁଣ କି ଅର୍ଜ୍ଜି ଯେ ଜଗତ । ମାୟାରେ କରେ ଆତଯାତ ॥
ଆତ୍ମାରେ ଆତ୍ମା ରୂପେ ରହେ । ନିର୍ଲେପ ନିରାକାର ଶୋହେ ॥
ଦିବସ ଅନ୍ତେ ପ୍ରାଣୀ ଦେହେ । ନିଦ୍ରା ଯେସନେ ସର୍ବ ମୋହେ ॥
ପୁଣି ଉଠନ୍ତି ରାତ୍ରି ଅନ୍ତେ । ବିଷୟ ଧ୍ୟାନ ଅବିରତେ ॥
ଯାହାର ନିଜ ବୀର୍ଯ୍ୟବଳେ । ପ୍ରକୃତି ସର୍ଜଇ ଶୟଳେ ॥
ଜୀବର ସଙ୍ଗେ ସଙ୍ଗକରି । ବିହରେ ନାନା ରୂପ ଧରି ॥
ଯେମନ୍ତେ ସଞ୍ଚରେ ଜଗତ । ଶାସ୍ତେ କରଇ ଆତଯାତ ॥
ଯାହାର ପାଦେ ଆଶ୍ରେ କରି । ଜିତେ ଇନ୍ଦ୍ରିୟ ବ୍ରହ୍ମଚାରୀ ॥
ନିର୍ମଳ ଆତ୍ମା ସୁନିଶ୍ଚଳେ । ଦେଖନ୍ତି ଭକ୍ତି ଯୋଗବଳେ ॥
ତାହାଙ୍କ ଅନ୍ତେ ପ୍ରକାଶଇ । ସକଳ କଲୁଷ ନାଶଇ ॥
ଯାର ମହିମା ମୁନିଗଣେ । ଆଗମ ନିଗମ ପ୍ରମାଣେ ॥
ଏକ ଆରେକେ କଥା କହି । ବଞ୍ଚନ୍ତି ଯାର ପାଦଧ୍ୟାୟୀ ॥
ସେ ଯେକ ଅଂଶେ ଲୀଳା କରି । ପ୍ରକୃତି ସଙ୍ଗତେ ବିହରି ॥
ସୃଷ୍ଟି କରଇ ସତ୍ୟେ ପାଳେ । ଈଶ୍ୱର ରୂପେ ନାଶେ ହେଳେ ॥
ସେ ଦୋଷ ନ ଲାଗଇ ତାରେ । ନଳିନୀ ପତ୍ରେ ଯେହ୍ନେ ନୀରେ ॥
ଦୁଷ୍ଟ କ୍ଷତ୍ରୀୟ ଯେତେବେଳେ । ଅଧର୍ମେ ଗମନ୍ତି ଶୟଳେ ॥
ସେ ହରି ସତ୍ୟଗୁଣ ଧରି । ନାନା ଶରୀରେ ଅବତରି ॥
ଯଶ ବିସ୍ତାରି ଦୟା ସଙ୍ଗେ । ସୁଖେ ବିହରେ ଯୁଗେ ଯୁଗେ ॥
ବିଷ୍ଣୁର ଅଂଶେ ଅବତାର । ଯାଦବ କୁଳରେ ଏଥର ॥
ରଜନୀ ଅନ୍ତେ ନରଲୋକେ । ନାମ ଧରନ୍ତି ପୁଣ୍ୟ ଶ୍ଳୋକେ ॥
ଯାହା ନିବାସ ମଧୁବନ । ସ୍ୱଭାବେ ନାମ ପୁଣ୍ୟୋତ୍ତମ ॥
ଏ ଯେ ଦ୍ୱାରକା ଧର୍ମପୁରୀ । ବିସ୍ତାର ପୁଣ୍ୟ ଯଶ କରି ॥
ଯହିଁ ସକଳ ପ୍ରଜାଜନେ । କୃଷ୍ଣର ହୃଷିତ ବଚନେ ॥
ନିଗମ ମତେ ଯାହା ଘୋଷି । ଦେଖନ୍ତି ନିଜ ଦ୍ୱାରେ ବସି ॥
ସାତ୍ତ୍ୱିକ ଗୁଣେ ବିପ୍ରଗଣେ । ଯାର ଚରଣେ ଅନୁକ୍ଷଣେ ॥
ଯମ ନିୟମ ବ୍ରତ ସ୍ନାନ । ଯଜ୍ଞ ତପସ୍ୟା ମହାଦାନ ॥
ସଙ୍କଳ୍ପ କରି ଦୃଢ଼ହସ୍ତେ । ଅର୍ପଣ କରିଥାନ୍ତି ନିତ୍ୟେ ॥
ଯାହା ଅଧରେ ମଧୁରସେ । ଗୋକୁଳେ ଗୋପୀୟେ ହରଷେ ॥
ନିତ୍ୟେ ପିବନ୍ତି ଚକ୍ଷୁଦ୍ୱାରେ । ଅତନୁଶରେ ତନୁ ଘାରେ ॥
ଧର୍ମନନ୍ଦନ ଯଜ୍ଞ କାଳେ । ସଭାର ମଧ୍ୟେ ନୃପ ମେଳେ ॥
କୃଷ୍ଣ ବିଷୟେ ଯେତେ ବାଦୀ । କ୍ଷତ୍ରୀୟ ଶିଶୁପାଳ ଆଦି ॥
ତାହାଙ୍କ ଦର୍ପ ନାଶ କରି । ନାରକା ପୁର କନ୍ୟା ହରି ॥
ସେ କନ୍ୟାଗଣ ଯାର ସଙ୍ଗେ । ଖଟନ୍ତି ନିଜ ଭାବ ରଙ୍ଗେ ॥
ତାଙ୍କ କଟାକ୍ଷେ ବଶ ହୋଇ । ନିଶ୍ଚଳ ଚିତ୍ତେ ରୂପ ଧ୍ୟାୟୀ ॥
ନିରତେ କୃଷ୍ଣ ଘେନି ଘରେ । ପ୍ରେମେ ସେବନ୍ତି ତା ପୟରେ ॥
କୁରୁ ଭୁବନେ ବଧୂ ଜନେ । ଯେମନ୍ତେ ଭାଳୁ ଭାଳୁ ମନେ॥
ରଥେ ଚଳିଲେ ଚକ୍ରପାଣି । ପାଞ୍ଚାଳ ସୁରସେନ ଜିଣି ॥
ଯମୁନା ଦେଶ ବ୍ରହ୍ମାବର୍ତ୍ତ । ମତ୍ସ୍ୟ ନଗର ସାରସ୍ୱତ ॥
ସେ ଦେଶେ ଯେତେ ପ୍ରଜାଜନେ । ସମ୍ଭ୍ରମେ କୃଷ୍ଣ ଦରଶନେ ॥
ଅନେକ ଉପାୟନ ହସ୍ତେ । ମିଳିଲେ ଦିନକର ଅନ୍ତେ ॥
ସେ ହରି ଚରଣ ପଙ୍କଜେ । କିଙ୍କର ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ଶ୍ରୀକୃଷ୍ଣ ଦ୍ୱାରିକାଗମନେ ନାମ ଦଶୋମୋଽଧ୍ୟାୟ ।*

## ଏକାଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଯେମନ୍ତେ ନିଜ ରାଜ୍ୟେ ହରି । ମିଳିଲେ ଶଙ୍ଖ ନାଦ କରି ॥
ସେ ପାଞ୍ଚଜନ୍ୟର ଶବଦ । ହରିଲା ପ୍ରଜାଙ୍କ ବିଷାଦ ॥
ସେ ନାଦ ସ୍ବରେ ଯେତେଦୂରେ । ଜନ୍ମ ମରଣ ଭୟ ହରେ ॥

ସେ ନାଦ ସ୍ବରେ ଘନ ଘନ । ଶୁଣି ସାନନ୍ଦ ପ୍ରଜାଜନ ॥
ଧାମନ୍ତି ପରମ ହରଷେ । କୃଷ୍ଣର ଦର୍ଶନ ଲାଳସେ ॥
ବିବିଧ ଉପହାର ହସ୍ତେ । ମିଳିଲେ ଗୋବିନ୍ଦ ଅଗ୍ରତେ ॥
ରବି ସମୀପେ ଦୀପପନ୍ତି । ଦିବସେ ଯେମନ୍ତେ ଦିଶନ୍ତି ॥
ଯେ ହରି ନିଜ ପୂର୍ଣ୍ଣକାମ । ଆତ୍ମା ପ୍ରକାଶେ ଆତ୍ମା ରାମ ॥
ତାର ନିକଟେ ଗୁଣ୍ଡହୋଇ । ସକଳେ ଶିରେ କର ଦେଇ ॥
ବାଳକ ପିତା ସନ୍ନିଧାନେ । ଯେମନ୍ତେ ମାନ ଅପମାନେ ॥
ଆନନ୍ଦେ କୃଷ୍ଣ ମୁଖ ଚାହିଁ । ବୋଲନ୍ତି ଶିରେ କର ଦେଇ ॥
ଭୋ ନାଥ ପରମ କାରଣ । ତୋହର ଅଭୟ ଚରଣ ॥
ଶିବ ବିରଞ୍ଚି ଆଦି ଦେବେ । ନିତ୍ୟେ ସେବନ୍ତି ଆତ୍ମା ଲାଭେ ॥
ସେ ନିତ୍ୟେ ଆତ୍ମାର କଲ୍ୟାଣ । ତୋ ପାଦ ତାଙ୍କ ପରାୟଣ ॥
ଯେ କାଳ ଜଗତ ସଂହରେ । ତୋର ସେବକେ ସେ ନ ପାରେ ॥
ତୁ ଆମ୍ଭ ପିତା ମାତା ପତି । ସର୍ବ ସମ୍ପଦ କ୍ଷେମ ଗତି ॥
ପରମ ଗୁରୁ ଦଇବତ । ସୁହୃଦ ବନ୍ଧୁ ପ୍ରିୟ ମିତ ॥
ତୋ ବିନୁ ଆମ୍ଭେ ନୋହୁଁ କିଛି । ତୁ ନାଥ ସର୍ବ ଆତ୍ମା ସାକ୍ଷୀ ॥
ଅନାଥ ନାଥ ତୁ ଆମ୍ଭର । ଦେବ ଦାନବେ ଅଗୋଚର ॥
ତୋର ବଦନ ନାରାୟଣ । ପ୍ରେମ ତୃଷିତ ନିରୀକ୍ଷଣ ॥
ସେ ସୁଖ ଘେନି ଯେତେବେଳେ । କୁରୁ ନଗରେ ବନ୍ଧୁ ମେଳେ ॥
ଇଚ୍ଛାରେ କଲୁ ତୁ ଗମନ । ତୋତେ ନ ଦେଖି ଆମ୍ଭ ମନ ॥
କ୍ଷଣକ କୋଟି ଯୁଗ ମଣୁ । ଦିବସ ରଜନୀ ନ ଜାଣୁ ॥
କୋଟି ନୟନ ଜନ୍ତୁ ବହି । କି କରେ ରବି ଯେହ୍ନେ ନାହିଁ ॥
ତୋହର ପ୍ରସନ୍ନ ବଦନ । ଅଖିଳ ତାପ ବିମୋଚନ ॥
ଚିର ପ୍ରବାସେ ତା ନ ଦେଖି । ଆମ୍ଭ ଜୀବନ ବଡ଼ ଦୁଃଖୀ ॥
ଯେମନ୍ତେ ଜନ ମୁଖୁ ଶୁଣି । ଆନନ୍ଦ ମନେ ଚକ୍ରପାଣି ॥
ଅମୃତ ନୟନେ ଅନାଇ । ପୁରେ ପ୍ରବେଶ ଭାବଗ୍ରାହୀ ॥
ଯାଦବ ସାତବଂଶ ମିଳି । ଶବଦେ ପୂରେ ମହୀ ସ୍ଥଳି ॥
ମତ୍ତ ମାତଙ୍ଗ ଅଶ୍ୱ ଖର । ରଥେ ମଣ୍ଡଣି ଅଳଙ୍କାର ॥
ପଦାତି ବଳ ଅପ୍ରମିତ । ଧାମନ୍ତି ବୀର ଯୂଥ ଯୂଥ ॥
ଚଳନ୍ତି ମୁଖେ ରାବ ଗୋଳ । ପାତାଳେ କମ୍ପେ ନାଗ କୁଳ ॥
ସକଳ ବୃକ୍ଷେ ପୁଷ୍ପ ଫଳ । ଆଶ୍ରମ ଲତା ଦ୍ରୁମ ମେଳ ॥
ଆଶ୍ରମ ଉଦ୍ୟାନ ଶୋଭନ । ଜଳେ ଜଳାଦି ବିହଙ୍ଗମ ॥
ତୋରଣ ପୁର ଦ୍ୱାର ମାର୍ଗେ । ଉଚ୍ଚେ ବନ୍ଧନ ନବରଙ୍ଗେ ॥
ଧ୍ୱଜ ପତାକା ଛତ୍ର ଶୋହେ । ସୁନ୍ଦର ପଣେ ମନ ମୋହେ ॥
ମାର୍ଜନା କରି ଯେଝା ପୁରୀ । ଲକ୍ଷେ କୁସୁମେ ଗନ୍ଧ ବାରି ॥
ପୂର୍ଣ୍ଣ କଳସ ଧୂପଦୀପ । ଜୟ ଶବଦ ନାନା ରୂପ ॥
କୃଷ୍ଣର ଆଗମନ ବାଣୀ । ପ୍ରବେଶ ବସୁଦେବ ଶୁଣି ॥
ରାମ ଅକ୍ରୂର ଉଗ୍ରସେନ । କୃଷ୍ଣର ଯେତେକ ନନ୍ଦନ ॥
ହରଷେ ଉଛୁଳିଲା ମନ । ଉପେକ୍ଷି ଶୟନ ଭୋଜନ ॥
ଉତ୍ତମ ହସ୍ତୀ ସଜକରି । ମାଗଧେ ମଙ୍ଗଳ ଉଚ୍ଚାରି ॥
ମଙ୍ଗଳ ବେଦ ନାଦ ସ୍ୱରେ । ଅଗ୍ରେ ଚଳିଲେ ବିପ୍ରବରେ ॥
ଶଙ୍ଖ ମହୁରୀ ଭେରୀ ତୁରୀ । ଯେ ବାଦ୍ୟ ମଙ୍ଗଳ ଉଚ୍ଚାରି ॥
ଯେମନ୍ତେ ପୁର ଜନପଥେ । ଆନନ୍ଦେ ଗମିଲେ ସମସ୍ତେ ॥
ଶତ ସହସ୍ର ବାରାଙ୍ଗନା । ଯେ ରୂପ ଜଗତ ମୋହନା ॥
କୁଣ୍ଡଳ ଦୋଳିତ ଶ୍ରବଣେ । ଲୋଚନ ପୂରିତ ଅଞ୍ଜନେ ॥
ଅଲେଖ ତିଳେକ କୁସୁମ । ଦେବ ମାନବେ ମନୋରମ ॥
ନଟନୃତ୍ୟଙ୍କ ବଧୂ ସୁତେ । ଅଗ୍ରେ ଚଳିଲେ ଯୂଥେ ଯୂଥେ ॥
କୃଷ୍ଣର ଅଦ୍ଭୁତ ଚରିତ । ଗମନ କରି ନାଦ ଗୀତ ॥
ମିଳିଲେ ଗୋବିନ୍ଦର ପାଶେ । ସକଳେ ପରମ ହରଷେ ॥
ଗୋବିନ୍ଦ ଦେଖି ପୁରଜନ । ତକ୍ଷଣେ ଉପେକ୍ଷି ସଦନ ॥
ଯେ ହରି ସର୍ବ ଗୁଣନିଧି । ବନ୍ଧୁ ପୂଜିଲେ ଯଥାବିଧି ॥
ତାହାଙ୍କୁ କରି ନମସ୍କାର । ଆନନ୍ଦେ ଧରି କରେ କର ॥
କାହାକୁ କଲେ ଆଲିଙ୍ଗନ । କାହାକୁ ଦିଅନ୍ତି ଚୁମ୍ବନ ॥
କାହାକୁ ମନ୍ଦହାସେ ଚାହିଁ । ଭାବେ ତୋଷିଲେ ଭାବଗ୍ରାହୀ ॥
ଆଶ୍ୱାସ କରି ପୁରଜନେ । ତୋଷିଲେ ସର୍ବେ ବାକ୍ୟଧନେ ॥
ଚଣ୍ଡାଳୁ ବ୍ରହ୍ମ ଯାଏ ପୂଜା । କରି ତୋଷିଲେ ଦେବରାଜା ॥
କୁଳ ପୂଜିତ ଜ୍ଞାତି ବୃଦ୍ଧ । କୃଷ୍ଣଙ୍କୁ କଲେ ଆଶୀର୍ବାଦ ॥
ପୁରେ ପଶନ୍ତେ ଜନାର୍ଦ୍ଦନ । ଦ୍ୱାରିକାପୁର ବଧୂଜନ ॥
ତକ୍ଷଣେ ଲଜ୍ଜା ଦୂର କରି । ଆରୋହୀ ଅଟାଳୀ ପାଚେରି ॥
ଯଦ୍ୟପି ନିତ୍ୟେ ନିତ୍ୟେ ପୁରେ । କୃଷ୍ଣ ବଦନ ନିରନ୍ତରେ ॥
ଦେଖି ସନ୍ତୋଷ ନୋହେ ମନେ । ଅମରେ ଯହ୍ନେ ସୁଧାପାନେ ॥
ଲକ୍ଷ୍ମୀ ନିବାସ ଯାର ଅଙ୍ଗେ । ଅଦ୍ଭୁତ ବିବିଧ ବିଭଙ୍ଗେ ॥
ଶୁଦ୍ଧ ସୁବର୍ଣ୍ଣ ଯାର ଗାତ୍ର । ପ୍ରାଣୀ ଲୋଚନେ ପାନପାତ୍ର ॥
ଯାହାର ଚାରି ଭୁଜ ତଳେ । ବାସବ ଆଦି ଦିଗପାଳେ ॥
ଯାହାର ଅଭୟ ଚରଣ । ଭଗତ ଜନଙ୍କ ଶରଣ ॥
ଧବଳ ଛତ୍ର କେବା ଧରେ । କେବା ଚାମର ବିଞ୍ଚେ କରେ ॥
ଜୟ ଶବଦ କେ କରନ୍ତି । କେବା କୁସୁମ ବରଷନ୍ତି ॥
ପଥେ ଗୋବିନ୍ଦ ତନୁ ଶୋଭା । କିବା ଉପମା ଆମ୍ଭେ ଦେବା ॥
ହୃଦେ ଶ୍ରୀବତ୍ସ ବନମାଳ । ଶ୍ରବଣେ ମକର କୁଣ୍ଡଳ ॥
ପୀତ ବସନ ମଧ ଭାଗେ । ବିଜୁଳି ଯେହ୍ନେ ନୀଳ ମେଘେ ॥

ଅର୍କ ଶଶାଙ୍କ ଶକ୍ର ଚାପ । ସ୍ୱଭାବେ ନୀଳ ଘନ ରୂପ ॥
ପୁରେ ପଶନ୍ତେ ବ୍ରହ୍ମରାଶି । ତକ୍ଷଣେ ମାତୃଗଣେ ଆସି ॥
ଆନନ୍ଦେ କରି ଆଲିଙ୍ଗନ । କୃଷ୍ଣଙ୍କୁ କରନ୍ତି କଲ୍ୟାଣ ॥
ଦେବକୀ ଆଦି ପିତୃନାରୀ । ଚରଣେ ନମିଲେ ମୁରାରି ॥
ସକଳ ମାତୃଗଣେ ମିଳି । କୋଳେ ବସାଇ ବନମାଳୀ ॥
ଅତ୍ୟନ୍ତ ପୁତ୍ର ସ୍ନେହଭରେ । କ୍ଷୀର ସ୍ରାବନ୍ତି ପୟୋଧରେ ॥
ଅତି ଆନନ୍ଦେ ଅଶ୍ରୁ ନେତ୍ରେ । ପୁଲକେ ରୋମପନ୍ତି ଗାତ୍ରେ ॥
ମାତୃଗଣଙ୍କ ସଙ୍ଗେ ହରି । ନିଜ ଭୁବନେ ବିଜେ କରି ॥
ଷୋଳ ସହସ୍ର ପତ୍ନୀଙ୍କର । ବିରାଜେ ରତ୍ନମୟ ପୁର ॥
ସକଳ କାମ ପୁରତମ । ଯହିଁ ବିଜୟେ ପୂର୍ଣ୍ଣକାମ ॥
ମାୟାର ବଳେ ବନମାଳୀ । ପତ୍ନୀ ଭୁବନ ଯାଇ ମିଳି ॥
ଅଷ୍ଟ ଅଧିକ ଶତେ ରାଣୀ । ଷୋଳ ସହସ୍ର ପରିମାଣି ॥
ପଶିଲେ ଯେତେ ରୂପ ହୋଇ । ହାସ୍ୟ କଟାକ୍ଷେ ମନ ମୋହି ॥
ଭୁବନେ ଦେଖି ନିଜ ପତି । ସଂଭ୍ରମେ ସକଳ ଯୁବତୀ ॥
ଦୂରୁ ଗୋବିନ୍ଦ ମୁଖ ଦେଖି । ଉଠିଲେ ଆସନ ଉପେକ୍ଷି ॥
କି ଅବା ଦେବା ପଟାନ୍ତର । ଚକୋରେ ଯେହ୍ନେ ନିଶାକର ॥
ତକ୍ଷଣେ ହରିରୂପ ଦେଖି । ନିର୍ମଳ କଲେ ବେନି ଆଖି ॥
ଅନ୍ତରେ ସ୍ୱାମୀରୂପ ଧରି । ନିର୍ଭୟେ ଆଲିଙ୍ଗନ କରି ॥
ସ୍ୱଭାବେ ଲଜ୍ଜିତ ବଦନ । ଲୋତକ ପୂରିତ ନୟନ ॥
ଯଦ୍ୟପି ପାଇଲେ ଯେକାନ୍ତେ । ତଥାପି କୃଷ୍ଣ ପାଦଗତେ ॥
ଅତି ପୀରତି ନବ ନବ । ସ୍ୱାମୀ ଚରଣେ କଲେ ଭାବ ॥
ପାଦ ପଦ୍ମକେ ସେବା କଲେ । କେ ତାହା ଛାଡ଼ିପାରେ ଭଲେ ॥
ଲକ୍ଷ୍ମୀ ଯେ ସ୍ୱଭାବେ ଚଞ୍ଚଳା । ସେହି ନ ଛାଡ଼େ ରତି ବେଳା ॥
ସେହି ପ୍ରକାରେ ନରହରି । କ୍ଷଣ କ୍ଷଣକେ ମନ ହରି ॥
ଦଶ ଅୟୁତ ରାଜାଗଣେ । ଉଭାରି ସଂହାରିଲା ରଣେ ॥
କଳି ଭିଆଇ ନାରାୟଣ । ଅନଳେ ଯେହ୍ନେ ସମୀରଣ ॥
ନାଶିଲେ ଅହଙ୍କାର ବାଦେ । ବିମନେ ବସି ନିରାୟୁଧେ ॥
ସ୍ୱ ମାୟାବଳେ ନରହରି । ମନୁଷ୍ୟ ଦେହେ ଅବତରି ॥
ଅଜ୍ଞାନୀ ଯେହ୍ନେ ଗୃହେ ରହି । ବଞ୍ଚେ ଭାରିଜା ବଶ ହୋଇ ॥
ପତ୍ନୀର କାମ ପ୍ରେମ ରଙ୍ଗେ । ଯନ୍ତ୍ରିତ ମୋହନ ଅନଙ୍ଗେ ॥
କୃଷ୍ଣର ଯେତେ ନାରୀଗଣ । ସୁନ୍ଦରେ ମୋହନ୍ତି ମଦନ ॥
ସ୍ୱଭାବେ ପ୍ରେମଛନ୍ଦ ରସେ । ନିତ୍ୟେ ସେବନ୍ତି କୃଷ୍ଣପାଶେ ॥
ବିବିଧ ଆଲିଙ୍ଗନ ଦେଇ । ଯା ମନ ନ ପାରିଲେ ମୋହି ॥
ଯେ ଜୀବଲୋକ କାହୁଁ ଜାଣେ । ଆପଣା ତୁଲ୍ୟ ପ୍ରାୟ ମଣେ ॥
କାହୁଁ ପାରିବେ ବଶ କରି । ନିର୍ଲେପ ପ୍ରଭୁ ନରହରି ॥
ସେ ହରି ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନ ବଳେ ॥
କହିଲା ବିପ୍ର ଜଗନ୍ନାଥ । ପ୍ରଥମସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ଶ୍ରୀକୃଷ୍ଣ ଦ୍ୱାରକାବିଜୟେ ନାମ ଏକାଦଶୋଽଧ୍ୟାୟ ।*

## ଦ୍ୱାଦଶ ଅଧ୍ୟାୟ

### ଶୌନକ ଉବାଚ

ଏମନ୍ତ ସୂତ ମୁଖୁ ଶୁଣି । ଶୌନକ କହେ ମଞ୍ଜୁବାଣୀ ॥
କୋପେ ଯେ ଦ୍ରୋଣଙ୍କ କୁମର । ମନ୍ତ୍ରି ପେଶିଲା ବ୍ରହ୍ମଶର ॥
ତାର ପ୍ରଚଣ୍ଡ ତେଜ ଜାଳେ । ଭୟେ କମ୍ପିଲେ ଦିଗପାଳେ ॥
ଉତ୍ତରା ଗର୍ଭେ ସେ ପଡ଼ିଲା । ତକ୍ଷଣେ ଗୋବିନ୍ଦ ରଖିଲା ॥
ସେ ପୁଣି ଗର୍ଭୁ ଜନ୍ମ ହୋଇ । ପାଳିଲା ରାଜପଣେ ମହୀ ॥
ଜଗତେ ଯେତେ କର୍ମ କଲା । ପ୍ରଜାଙ୍କୁ ଯେମନ୍ତେ ପାଳିଲା ॥
କେବଣ ହେତୁ ସେ ରାଜନ । କାହିଁ ଛାଡ଼ିଲା ନିଜ ପ୍ରାଣ ॥
ଅଳପ ବୟସେ ନୃପତି । ଅନ୍ତେ ଲଭିଲା କେଉଁ ଗତି ॥
ତାର ସକଳ କର୍ମ ଦୀକ୍ଷା । ଶ୍ରବଣେ କଲୁ ଆମ୍ଭେ ଇଚ୍ଛା ॥
ଆମ୍ଭକୁ ଯେବେ ଦୟାବହ । ସଂଶୟ ଯାଉ ମୁନି କହ ॥
ଆନନ୍ଦେ ବ୍ୟାସଙ୍କର ସୁତ । ତାଙ୍କୁ କହିଲେ ଜ୍ଞାନତତ୍ତ୍ୱ ॥

### ଶ୍ରୀ ସୂତ ଉବାଚ

କୁରୁ ନଗରେ ଧର୍ମରାଜା । ପୁତ୍ରହୁଁ ସ୍ନେହେ ପାଳେ ପ୍ରଜା ॥
କୃଷ୍ଣ ହୁଁ ନ ଜାଣଇ ଆନ । ବିଷୟା ରସେ ନାହିଁ ମନ ॥
ଧର୍ମ ସମ୍ପଦ ସୁରକ୍ଷଣେ । ଯେସନେ ପ୍ରିୟ ଭାତୃଗଣେ ॥
ପ୍ରଜା ପାଳନେ ଏହିମତେ । ଧର୍ମ ହୁଁ ଆନ ନାହିଁ ଚିତ୍ତେ ॥
ଏ ଜମ୍ବୁଦୀପେ ଯେତେ ରାଜା । ସର୍ବେ କରନ୍ତି ପାଦପୂଜା ॥
ଯାର ମହିମା ତିନି ଲୋକେ । ଘୋଷନ୍ତି ଯେକକୁ ଆରେକେ ॥
ଗୋବିନ୍ଦ ଯାର ହୃଦେ ବସେ । ସେ କି ବିଷୟ ରସେ ରସେ ॥
ଯେବେହୋ ଶୁଣ ବିପ୍ରଜନ । କହିବା ପରୀକ୍ଷିତ ଜନ୍ମ ॥
ମାତାର ଗର୍ଭେ ଯେବେ ଥିଲା । ନୟନ ପଥେ ସେ ଦେଖିଲା ॥
ଯେସନେ ତେଜ ଦିନକର । ଗର୍ଭେ ପଡ଼ିଲା ବ୍ରହ୍ମଶର ॥
ଉତ୍ତରା ଡାକେ ତ୍ରାହି ତ୍ରାହି । ତକ୍ଷଣେ ପ୍ରଭୁ ଭାବଗ୍ରାହୀ ॥
ଅଙ୍ଗୁଷ୍ଠି ପ୍ରମାଣେ ଶରୀରେ । ସୁଦରଶନ ଧରି କରେ ॥
କିରୀଟ କୁଣ୍ଡଳ ବିରାଜେ । ପ୍ରଭା ସବିତା ତେଜ ଗଞ୍ଜେ ॥
ଅପୂର୍ବ ରୂପ ଘନଶ୍ୟାମ । ବିଜୁଳି ନିନ୍ଦେ କୋଟି କାମ ॥
ଆଜାନୁ ଲମ୍ବ ଭୁଜ ଚାରି । ଶଙ୍ଖ କମଳ ଗଦା ଧରି ॥
କୋପେ ଲୋହିତ ବେନି ଦୃଷ୍ଟି । ଗଦା ଧାରଣେ ଦୃଢ଼ମୁଷ୍ଟି ॥

ଗଦାର ତେଜେ ରବି ତ୍ରାସେ । ମଣ୍ଡଳ ପୁରେ ଦଶଦିଶେ ॥
ହରିଲେ ବ୍ରହ୍ମଶର ତେଜ । ନିଶାରେ ଯେହ୍ନେ ଗ୍ରହରାଜ ॥
ତକ୍ଷଣେ ଗର୍ଭ ରକ୍ଷା କରି । ଅନ୍ତର ହୋଇଲେ ମୁରାରି ॥
ବାଳକ ଦେଖେ ତା ନୟନେ । ଗୋବିନ୍ଦ ଗଲେ ଅନ୍ତର୍ଦ୍ଧାନେ ॥
ତକ୍ଷଣେ ସର୍ବ ଶୁଭ ଫଳେ । ଗର୍ଭ ସଙ୍କୁଳ ଅନୁକୂଳେ ॥
ବାଳକ ହୋଇଲା ବାହାର । ଗୁଣେ ପାଣ୍ଡବ ବଂଶଧର ॥
ଅତି ସୁନ୍ଦର ବିରାଜିଲା । ପୁଣି କି ପଣ୍ଡୁ ପ୍ରକାଶିଲା ॥
ଦେଖି ସନ୍ତୋଷ ଧର୍ମ ସୁତ । ସଙ୍ଗତେ ଘେନି ପୁରୋହିତ ॥
ଆନନ୍ଦେ ମିଳି ମହାଜନେ । ସ୍ୱସ୍ତିକେ ମଙ୍ଗଳ ବଚନେ ॥
ଶୁଭଇ ଶଙ୍ଖ ନାଦ ଭେରୀ । ଶୁଭେ ଜାତକ କର୍ମ କରି ॥
ସୁବର୍ଣ୍ଣ ଧେନୁ ମହୀ ତୁଳେ । ଅନେକ ଗ୍ରାମ ଦାନ ଦେଲେ ॥
ସୁତ ମାଗଧ ଆଦି ଲୋକେ । ଆସି ମିଳିଲେ ସେ ଜାତକେ ॥
ଧର୍ମ ନନ୍ଦନ ତୋଷ ଚିତ୍ତେ । ଦକ୍ଷିଣା ଦେଲେ ବିପ୍ର ହସ୍ତେ ॥
ସନ୍ତୋଷେ ବସି ବିପ୍ରଗଣ । ବିଚାରି ଜାତକ ଲକ୍ଷଣ ॥
ଗ୍ରହ ନକ୍ଷତ୍ର ଚିନ୍ତି ଚିତ୍ତେ । କହନ୍ତି ରାଜାଙ୍କ ଅଗ୍ରତେ ॥

### ବ୍ରାହ୍ମଣୀ ଉଚୁଃ

ଯେ ଅଭିମନ୍ୟୁର କୁମର । ପାଣ୍ଡବ ବଂଶେ କୀର୍ତ୍ତି କର ॥
ଗର୍ଭ ସଙ୍କଟୁ ଯେ ତରିଲା । ଯେହାକୁ ଗୋବିନ୍ଦ ରଖିଲା ॥
ସର୍ବ ଲକ୍ଷଣେ ଯେ ସମ୍ଭୂତ । ଯେହାର ନାମ ବିଷ୍ଣୁରାତ ॥
କୁରୁ ପାଣ୍ଡବ ବଂଶଧର । ଯେ ଭାଗବତ ମଧ୍ୟେ ବର ॥

### ଯୁଧିଷ୍ଠିର ଉବାଚ

ଭୋ ବିପ୍ରବର ତୁମ୍ଭ ବାଣୀ । ଶ୍ରବଣେ ସୁଧା ପ୍ରାୟ ମଣି ॥
ନିଗମ ଆଗମ ଯେ ସାର । ତୁମ୍ଭଙ୍କୁ ନୋହେ ଅଗୋଚର ॥
ଗ୍ରହ ନକ୍ଷତ୍ର ଯୋଗ ମତେ । ଯାହା କହିଲ ଶାସ୍ତ୍ର ତତ୍ତ୍ୱେ ॥
ଏ ବଂଶଧର ସାଧୁ ବାଦେ । ପ୍ରଜା ପାଳିବ ରାଜ ପଦେ ॥
ରାଜା ବଚନେ ବିପ୍ରଗଣ । କହନ୍ତି ଜାତକ ଲକ୍ଷଣ ॥

### ବ୍ରାହ୍ମଣୀ ଉଚୁଃ

ଶୁଣ ହୋ ଧର୍ମର ନନ୍ଦନ । ଆମ୍ଭର ଆଶିଷ ବଚନ ॥
ପ୍ରଜା ପାଳନେ ଯେ ନିୟତ । ଯେହ୍ନେ ଇକ୍ଷ୍ୱାକୁ ମନୁ ସୁତ ॥
ବ୍ରାହ୍ମଣ ସତ୍ୟ ଗୁଣନିଧି । ଯେ ସର୍ବ ଗୁଣେ ଶିକ୍ଷା ସିଦ୍ଧି ॥
ଯେହାର ଯଶ ସର୍ବ ଦେଶେ । ଯେହ୍ନେ ଶ୍ରୀରାମ ରଘୁବଂଶେ ॥
ଦାତାଙ୍କ ମଧ୍ୟେ ଯେ କୁମର । ଶିବି ଯେସନେ ଦାନୀବର ॥
ଭରତ ପରି ଯଜ୍ଞ କରି । ଅର୍ଜ୍ଜୁନ ସମ ଧନୁର୍ଦ୍ଧାରୀ ॥
ହୁତାଶ ପ୍ରାୟେ ତେଜମୟେ । ଦୁସ୍ତର ସମୁଦ୍ର ପରାୟେ ॥
ମୃଗେନ୍ଦ୍ର ପ୍ରାୟେ ତେଜକାରୀ । ସ୍ଥବିର ପ୍ରାୟେ ହେମଗିରି ॥

ପୃଥିବୀ ସମ ଧୀର ଚେତା । ସହିଷ୍ଣୁ ଯେହ୍ନେ ପିତାମାତା ॥
ସମ ପାଳନେ କି ବିଧାତା । ଈଶ୍ୱର ପ୍ରାୟେ ବର ଦାତା ॥
ଆଶ୍ରୟ ସର୍ବ ପ୍ରାଣୀଙ୍କର । ଯେହ୍ନେ ସଂସାରେ ରମାବର ॥
ସର୍ବ ଲକ୍ଷଣେ ପୂର୍ଣ୍ଣ କାମ । ସୁଦୃଢ଼ବ୍ରତେ ସତ୍ୟ ଧାମ ॥
ସୁନ୍ଦର କାମ ଦେବ ଯେହ୍ନେ । ଯଯାତି ପ୍ରାୟେ ଧର୍ମମାନେ ॥
ବନ୍ଦୀର ପ୍ରାୟେ ଧୀର ପାଦ । ବୈଷ୍ଣବ ଯେହ୍ନେ ପ୍ରହଲାଦ ॥
ସଂସ୍କାର ମନ୍ତ୍ର ହବିର୍ଭାଗେ । ଦେବଙ୍କୁ ଅଶ୍ୱମେଧ ଯଜ୍ଞେ ॥
ପୂଜାରେ କରାଇ ସନ୍ତୋଷ । ବୃଦ୍ଧ ସେବାରେ ସୁବିଶ୍ୱାସ ॥
ରାଜ ଋଷିଙ୍କୁ ଜନ୍ମ କରି । ଦୁଷ୍ଟଜନଙ୍କ ଦର୍ପ ହରି ॥
ଅବନୀ ଧର୍ମ ରକ୍ଷା ଅର୍ଥେ । କଳିକି ବାନ୍ଧିବ ଆୟତେ ॥
ବ୍ରାହ୍ମଣ ଶାପ୍ୟେ ମହାରୋଷେ । ଲଭିବ ଅଳପ ବୟସେ ॥
ବ୍ରାହ୍ମଣ ବାକ୍ୟେ ହୋଇ କ୍ଷୀଣ । ତକ୍ଷକ ହସ୍ତେ ଦେବ ପ୍ରାଣ ॥
ବ୍ରାହ୍ମଣ ଅଭିଶାପ ପାଇ । ତକ୍ଷଣେ ସାଧୁସଙ୍ଗ ହୋଇ ॥
ଜାହ୍ନବୀ ତଟେ ଅନ୍ତର୍ଜଳେ । ହରି ଭଗତ ଜନ ମେଳେ ॥
କୃଷ୍ଣ ମହିମା ଶୁକ ମୁଖେ । ଶୁଣି ଛାଡ଼ିବ ପ୍ରାଣ ସୁଖେ ॥
ଗୋବିନ୍ଦ ଅଭୟ ଚରଣ । ନିଶ୍ଚିନ୍ତେ ପଶିବେ ଶରଣ ॥
ଶୁଣ ହେ ଶଉନକ ଆଦି । ଯେତେକ ଅଛ ବେଦବାଦୀ ॥
ଯେମନ୍ତେ ଜାତ କର୍ମ କଲେ । ବନ୍ଧୁ ବାନ୍ଧବ ବିପ୍ର ମେଳେ ॥
ରାଜାଙ୍କୁ ମାଗି ଅନୁଦାନ । ବିପ୍ରେ ଚଳିଲେ ଯେଝା ସ୍ଥାନ ॥
ଯେମନ୍ତେ ପରୀକ୍ଷିତ ଜାତ । ଲୋକରେ ବୋଇଲା ବିଖ୍ୟାତ ॥
ଗର୍ଭ ଆରାଧି ପୂର୍ବ ବାଣୀ । ଯାହା କହିଲେ ବିପ୍ରେ ଜାଣି ॥
ଦିନକୁ ଦିନ ତେଜରାଶି । ଶୁକଳ ପକ୍ଷେ ଯେହ୍ନେ ଶଶୀ ॥
ଦିନକୁ ଦିନ ପିତୃଗଣେ । ସ୍ନେହେ ପାଳନ୍ତି ଅନୁକ୍ଷଣେ ॥
ବାଳକ ଦେହେ ପରୀକ୍ଷିତ । ସ୍ୱଭାବେ ବିଷ୍ଣୁର ଭଗତ ॥
ସକଳ ଲୋକେ ପ୍ରୀତିଦାତା । ଶ୍ୟାମ ସୁନ୍ଦର ଶୁଦ୍ଧ ଚେତା ॥
ଯେବେ ହୋ ଶୁଣ ବିପ୍ରଜନେ । ଧର୍ମ ନନ୍ଦନ ତୋଷମନେ ॥
ଜ୍ଞାତି ମରଣ ଦ୍ରୋହ ଚିତ୍ତେ । ସର୍ବ କଲୁଷ ନାଶ ଅର୍ଥେ ॥
ପ୍ରଜାଙ୍କ ଠହୁଁ ଯଶଧନ । ନ କରି ଦଣ୍ଡ କରଷଣ ॥
ରାଜାଙ୍କ ଠହୁଁ ଯେତେ ଆଣି । ସଙ୍ଗତେ ଘେନି ଚକ୍ରପାଣି ॥
ପଞ୍ଚଭ୍ରାତାର ପାଶେ ମିଳି । ବିପ୍ରଙ୍କୁ ଘେନି ବନମାଳୀ ॥
ଆଗମ ନିଗମ ଯେ ବିଧି । କରାଇ ତିନି ଅଶ୍ୱମେଧି ॥
କେତେହେଁ ଦିନ କୃଷ୍ଣ ରହି । ଜ୍ଞାତି ସୁହୃଦ ଭାବ ବହି ॥
ଦ୍ରୌପଦୀ କୁନ୍ତୀ ଅନୁମତେ । ବିଚାର କରି ପଞ୍ଚଭ୍ରାତେ ॥
ରଥେ ଅର୍ଜ୍ଜୁନ ସଙ୍ଗ କରି । ନିଜ ଭୁବନେ ଗଲେ ହରି ॥

ସେ ହରି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତିଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ପରୀକ୍ଷିତ ଜନ୍ମ ନାମ ଦ୍ୱାଦଶୋଽଧ୍ୟାୟ ।*

## ତ୍ରୟୋଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ବିଦୁର ତୀର୍ଥ ଯାତ୍ରା ଭ୍ରମେ । ମିଳିଲା ମୈତ୍ରେୟ ଆଶ୍ରମେ ॥
କେତେ ହେଁ ଦିନ ତହିଁ ଥାଇ । ଆତ୍ମାର ତତ୍ତ୍ୱ ଜ୍ଞାନ ପାଇ ॥
ହସ୍ତିନା ନଗରେ ବିଶ୍ୱାସେ । ମିଳିଲା ଧୃତରାଷ୍ଟ୍ର ପାଶେ ॥
ଜାଣିବା ପାଇଁ ତାର ଗତି । ସ୍ୱଭାବେ ସାଧୁ ଧୀର ମତି ॥
ବିଦୁର ଦେଖି ଧର୍ମ ସୁତ । ବନ୍ଧୁ ଆଗମେ କୃତ କୃତ୍ୟ ॥
ସଙ୍ଗତେ ଘେନି ଚାରି ଭାଇ । ପୂଜିଲେ ଆସନେ ବସାଇ ॥
ଯୁଯୁତ୍ସୁ ଧୃତରାଷ୍ଟ୍ର ସୁତ । ସଙ୍ଗତେ ଘେନି ପୁରୋହିତ ॥
ଗାନ୍ଧାରୀ ଦ୍ରୌପଦୀ ସହିତେ । ସୁଭଦ୍ରା ଉତ୍ତରା ସମେତେ ॥
ଅଗ୍ରେ ଗମନ୍ତି ପୁତ୍ର କୁନ୍ତୀ । ଅନ୍ୟ ସୁହୃଦ ବନ୍ଧୁ ଜ୍ଞାତି ॥
କୁରୁ ପାଣ୍ଡବ ବନ୍ଧୁଜନେ । ମିଳିଲେ ହରଷ ବଦନେ ॥
ପ୍ରାଣକୁ ପାଇ ପିଣ୍ଡ ଯେହ୍ନେ । ପୁଣି ଉଠଇ ଦିବ୍ୟ ଜ୍ଞାନେ ॥
ସକଳେ ମିଳି ତାର ପାଶେ । ବନ୍ଦିଲେ ଯେ ଯାହା ବିଶ୍ୱାସେ ॥
ଅନାଇ ବିଦୁର ବଦନ । ଆନନ୍ଦେ ଅଶ୍ରୁଜଳ ପୂର୍ଣ୍ଣ ॥
ସକଳେ ପୂଜା ବିଧି କରି । ରାଜନ କର କରେ ଧରି ॥
ବିଦୁର ବସାଇ ଆସନେ । ସୁଖେ ସୁହୃଦ ବନ୍ଧୁଜନେ ॥
ତାର ବଦନ ରାଜା ଚାହିଁ । ଆନନ୍ଦେ ଘେନି ଚାରି ଭାଇ ॥
ଉଚ୍ଚେ ପଚାରି ପ୍ରଶ୍ନବାଣୀ । ଯେମନ୍ତେ ସର୍ବ ଲୋକ ଶୁଣି ॥

### ଯୁଧିଷ୍ଠିର ଉବାଚ

ହୋ ତାତ କହୁ ତୋ ଅଗ୍ରତେ । ଆମ୍ଭ କୁଶଳ ତୋର ଚିତ୍ତେ ॥
ସ୍ମରଣ କରି ତୀର୍ଥ ଭ୍ରମେ । ବନ ଗହନେ ବହୁ ଶ୍ରମେ ॥
ତୁମ୍ଭର ଛାୟା ଆଶ୍ରେ କରି । ସକଳ କଷ୍ଟ ହିଁ ପାସୋରି ॥
ବିପଦ ଦୁଃଖ ଯେତେ ସହି । ବନେ ବୁଲିଲୁ ପାଞ୍ଚଭାଇ ॥
ମାତା ସହିତେ ଜତୁ ଘରେ । ଅଗ୍ନି ଦହନ ମହାଘୋରେ ॥
ବିଷ ଭକ୍ଷଣ ଆଦି ଯେତେ । ତୋ ଆଗେ କହିବି ମୁଁ କେତେ ॥
ଅନେକ ପାପ ପରମାଦୁ । ବଞ୍ଚିଲୁ ତୁମ୍ଭ ପରସାଦୁ ॥
ତୁ ଆମ୍ଭ ସ୍ନେହ ଦୂର କରି । ଭ୍ରମଣ କଲୁ ବସୁନ୍ଧରୀ ॥
ଉଦାସୀ ପଥିକ ଲକ୍ଷଣ । ଯେକାନ୍ତେ ବୁଲୁ ବନେ ବନ ॥
କି କରି ପ୍ରାଣ ରକ୍ଷା କରି । ଯେ ପଥ ଶ୍ରମ କେଣେ ହରି ॥
ଭ୍ରମିଲୁ ଅବନୀ ମଣ୍ଡଳେ । ତୀର୍ଥ ଆଶ୍ରମ ପୁଣ୍ୟଫଳେ ॥
ତୋହର ପ୍ରାୟେ ସାଧୁ ଯେତେ । ପବିତ୍ର ଦେହ ସର୍ବ ତୀର୍ଥେ ॥
ଭ୍ରମଣ ସୁଖେ ନିରନ୍ତର । ଯାହାର ଚିତ୍ତେ ଚକ୍ରଧର ॥
ତୁ ଯେ ସ୍ୱଭାବେ ପୁଣ୍ୟ ଦେହ । ପ୍ରସନ୍ନ ଚିତ୍ତେ ତାତ କହ ।
ଯାଦବ ବଂଶେ ବନମାଳୀ । ସୁଖେ ଅଛନ୍ତି କୁଶସ୍ଥଳୀ ॥
ତାହାର ଭଲେ ଭଲ ମୋର । ସେ ହରି ଶରଣ ସୋଦର ॥
ସୁଖେ ଅଛନ୍ତି କି ଯାଦବେ । ଭୋ ତାତ ପଚାରୁ ପ୍ରସ୍ତାବେ ॥
ଯେମନ୍ତ ରାଜା ମୁଖୁ ଶୁଣି । ବିଦୁର ମନେ ମନେ ଗୁଣି ॥
ସୁହୃଦ ଭାବେ ଭୟ କଲା । ଯାଦବ କ୍ଷୟ ନ କହିଲା ॥
ବିଚାରେ କହିବି ମୁଁ ଯେବେ । ଜୀବନ ଛାଡ଼ିବେ ପାଣ୍ଡବେ ॥
କେମନ୍ତେ ଦେଖିବି ମୁଁ ଯେହା । ଯେତେ ବିଚାରି କଲା ମାୟା ॥
ନ କହେ ଯଦୁବଂଶ ନାଶ । ନିର୍ଘାତେ ଛାଡ଼ିଲା ନିଶ୍ୱାସ ॥
ଉର୍ଦ୍ଧ୍ୱ ବଦନେ ସେ ବିଦୁର । କପଟେ କହଇ ମଧୁର ॥
ସର୍ବ କୁଶଳ ତୋ ପ୍ରସାଦେ । କୃଷ୍ଣ ଅଛନ୍ତି ଅପ୍ରମାଦେ ॥
ଯେମନ୍ତେ ରାଜା ଆଗେ କହି । କେତେ ହେଁ ଦିନ ତହିଁ ରହି ॥
ନିତ୍ୟେ ଆନନ୍ଦେ ଧର୍ମରାଜା । ବିଦୁର ସ୍ନେହେ କଲା ପୂଜା ॥
ରାତ୍ର ଦିବସ ତାର ସଙ୍ଗେ । ଧର୍ମ ନନ୍ଦନ ମନ ରଙ୍ଗେ ॥
ଅଶେଷ ତୀର୍ଥଙ୍କ ମହିମା । କେ କହିପାରେ ଗୁଣସୀମା ॥
ସର୍ବ କହିଲା ସୁଖମନେ । ଯେବେହୋ ଶୁଣ ବିପ୍ରଜନେ ॥
ଅର୍ଯ୍ୟମା ତହୁଁ ଶାପ୍ୟ ପାଇ । ଜନ୍ମ ବିଦୁର ଦେହବହି ॥
ଶତେ ବରଷ ଶୂଦ୍ର ଦେହେ । ବଞ୍ଚିଲା ବିଷ୍ଣୁ ମାୟା ମୋହେ ॥
ଯେ ଯେ ପାଣ୍ଡବ ପାଞ୍ଚଭାଇ । ରିପୁ ସଂହାରି ରାଜ୍ୟ ପାଇ ॥
ପୁତ୍ର ପଉତ୍ର ଜନ ଦେଖି । ନିଶ୍ଚିନ୍ତେ ଦୁର୍ମନ ଉପେକ୍ଷି ॥
ଗୃହ କରଣେ ଚିତ୍ତ ଜଡ଼ି । ବିଷ୍ଣୁର ମାୟା ମୋହେ ପଡ଼ି ॥
ରାଜ୍ୟ ବରଣେ ଧର୍ମସୁତ । ମିଳିଲା କାଳ ବିପରୀତ ॥
କେହି ନ ଜାଣେ ଗତି ତାର । ସ୍ୱଭାବେ ଅବ୍ୟକ୍ତ ଈଶ୍ୱର ॥
ଧୂମ୍ର ପୂରିଲା ଦଶଦିଶେ । ବିଦୁର ଦେଖି ମହା ତ୍ରାସେ ॥
ବସିଲା ଧୃତରାଷ୍ଟ୍ର ତୁଲେ । ବିଶ୍ୱାସି କହେ କର୍ଣ୍ଣମୂଳେ ॥
ହେ ଭ୍ରାତ ଶୁଣ ମୋ ଉତ୍ତର । କାଳ ମିଳିଲା ଭୟଙ୍କର ॥
ଯେହାକୁ ପ୍ରତିକାର ନାହିଁ । ଅବ୍ୟକ୍ତ ରୂପ ଯାର ଦେହୀ ॥
ଦ୍ୱାପର ଯୁଗ ନାଶ ଗଲା । ଯେ କଳିକାଳ ପ୍ରକାଶିଲା ॥
ଆମ୍ଭର ପ୍ରାଣ ଯେ ହରିବ । ଯେହାକୁ କେବା ନିବାରିବ ॥
ଜନ ସମ୍ପଦ ମହୀସ୍ଥଳେ । ସଂହାର କରିବ ଯେ ବଳେ ॥

ଦେବ ଦାନବ ମହାବଳ । ବୃଦ୍ଧ ପ୍ରତାପୀ ଯୁବା ବାଳ ॥
ଯାହାର ଦରଶନ ମାତ୍ରେ । କଦଳୀବୃକ୍ଷ ଯେହ୍ନେ ବାତେ ॥
ଭୟେ କମ୍ପନ୍ତି ଥରହର । କାତରେ ନେତ୍ରୁ ବହେ ନୀର ॥
ଅନିତ୍ୟ ମନୁଷ୍ୟ ଯେ ଦେହୀ । ସାର ଯେହାର କିଛି ନାହିଁ ॥
ଯେ ଦେହେ ଯେ ମୁକ୍ତ ବନ୍ଧନ । ତାହାକୁ ବୋଲି ମହାଜନ ॥
ଦେଖ ତୋହର କର୍ମ ଫଳ । ନାଶ ପୁତ୍ର ଭ୍ରାତା ସକଳ ॥
ଭୟ ତୋହର ଦୂରଗଲା । ମରଣ ନିକଟ ହୋଇଲା ॥
ଅତି ଦୁଃଖିତ ବୃଦ୍ଧ ଦେହେ । ତୋର ନିବାସ ପର ଗୃହେ ॥
ବିଶୀର୍ଣ୍ଣ ଦନ୍ତ ତୋ ଅଧର । କର୍ଣ୍ଣେ ନ ଶୁଭଇ ବଧୀର ॥
ଅନ୍ତରେ ଅଗ୍ନି ମନ୍ଦ ହୋଇ । ଅନ୍ନ ଭୋଜନ ନ ରୁଚଇ ॥
ପ୍ରାଣୀ ଜୀବିତେ ଆଶ ଯେତେ । କେ ତାକୁ ରଖିବ ଆୟତେ ॥
ଯେଉଁ ଭୀମର ଗଦା ଘାତେ । ସମରେ ମଲେ ତୋର ସୁତେ ॥
ତାର ଅର୍ଜିତ ପିଣ୍ଡ ଆଶା । ଶ୍ୱାନର ପ୍ରାୟେ ତୋ ଭରସା ॥
କୁମତି ଜନ ସଙ୍ଗେ ଭାଳି । ତୋର କୁମରେ କଲେ କଳି ॥
ପଣ୍ଡୁର ପଞ୍ଚ ପୁତ୍ର ମାରି । ସୁଖେ ଭୁଞ୍ଜିବା ରାଜ୍ୟ ଶିରୀ ॥
ଦୁଷ୍ଟଙ୍କ ସଙ୍ଗେ ବିଚାରିଲେ । ଭୀମକୁ ବିଷ ଲଡୁ ଦେଲେ ॥
ସେ ଭୀମ କେବେହେଁ ନମଲା । ତାହାକୁ ଗୋବିନ୍ଦ ରଖିଲା ।
ଜତୁର ଘରେ ଅଗ୍ନି ଦେଲେ । ସେ ବେଳେ ପାଣ୍ଡବେ ରଖିଲେ ॥
ପୁଣି କପଟ ପାଶା କରି । ଧନ ସମ୍ପଦ ରାଜ୍ୟ ହରି ॥
ଦ୍ରୌପଦୀ କେଶ ଧରି ବଳେ । ବିବସ୍ତ୍ର କଲେ ସଭାତଳେ ॥
ଯେ ଆଦି ଯେତେ କର୍ମ କଲେ । ତୁ ତାହା ଜାଣିଅଛୁ ଭଲେ ॥
ସେ କିମ୍ବା ତାଙ୍କ ମନୁ ଯିବ । ମନୁଷ୍ୟ ଜନ୍ମର ସ୍ୱଭାବ ।
ତାହାଙ୍କ ଦତ୍ତ ପିଣ୍ଡ ଖାଇ । ସେବକ ପ୍ରାୟେ ଗୃହେ ଥାଇ ॥
ତୋର ବୟସ ଆଉ କାହିଁ । ଅତି ପୀଡ଼ିତ ବୃଦ୍ଧ ଦେହୀ ॥
ଦିନକୁ ଦିନ ତନୁ କ୍ଷୀଣ । ଯେସନେ ପୁରୁଣା ବସନ ॥
ଯେ ଦେହ ବିରକ୍ତି ଯେ ଜନ । ସେ ପ୍ରାଣୀ ବିମୁକ୍ତ ବନ୍ଧନ ॥
ଅନିତ୍ୟ ଯେହି କଳେବର । ଭିତରେ କିଛି ନାହିଁ ସାର ॥
ଯେହା ବିଚାରି ଯୋଗବଳେ । ହରି ଭଗତ ସଙ୍ଗ ମେଳେ ॥
ନିର୍ମଳ ହୋଇ ଚଳେ ବନ । ସେ ପ୍ରାଣୀ ପୁରୁଷ ଉତ୍ତମ ॥
ତୁ ବୁଧଜନଙ୍କ ଉତ୍ତମ । ଯେବେ ତୁ ଛାଡ଼ ମତିଭ୍ରମ ॥
ଉତ୍ତମ ପଥେ ଚଳ ଯେବେ । ପତ୍ନୀ ସମେତ ଘେନି ସଙ୍ଗେ ॥
ମୁହିଁ ଉଦାସୀ ରୂପେ ବନେ । ତୋତେ ସେବିବି ଅନୁକ୍ଷଣେ ॥
ଦେଖ ଯେ କାଳ ଭୟଙ୍କର । ଶିରୀ ହରିଲା ପ୍ରାଣୀଙ୍କର ॥
ଯେମନ୍ତେ ବିଦୁରର ବାଣୀ । ଗାନ୍ଧାରୀ ସଙ୍ଗେ ରାଜା ଶୁଣି ॥
ତକ୍ଷଣେ ମୋହ ଜଡ଼ ଛାଡ଼ି । ବନ ଗମନେ ଚିତ୍ତ ବଢ଼ି ॥
ବିଷ୍ଣୁର ମାୟା କରି ଦୂର । ନଗରୁ ହୋଇଲା ବାହାର ॥
ପତିଙ୍କ ବନ ବାସ କଥା । ଶୁଣି ସାନନ୍ଦ ପତିବ୍ରତା ॥
ବିଦୁର କରେ ଦେଇ କର । ନଗରୁ ହୋଇଲା ବାହାର ॥
ମନ ଆନନ୍ଦେ ତିନିଜଣ । ଗମିଲେ ହିମାଚଳ ବନ ॥
ଯେବେ ହୋ ଶୁଣ ବିପ୍ରବର । ଧର୍ମ ନନ୍ଦନ ନିଜପୁର ॥
ସ୍ୱଭାବେ ନିଜ କର୍ମ ସାରି । ଅଗ୍ନି ପୂଜନ ଦାନ କରି ॥
ଗୁରୁ ଚରଣେ ପୂଜା ଅର୍ଥେ । ଗୃହେ ମିଳିଲେ କୃତେ କୃତ୍ୟେ ॥
ଗୁରୁ ଭୁବନେ ଯାଇ ମିଳି । ହସ୍ତରେ ଘେନି ଅର୍ଘ୍ୟସ୍ଥାଳି ॥
ତକ୍ଷଣେ ଦେଖି ଶୂନ୍ୟ ଘର । କାତର ମନେ ନୃପବର ॥
ପୁଚ୍ଛନ୍ତି ଜଣେ ଜଣେ ରାଇ । ମୋ ଗୁରୁଜନେ ଗଲେ କାହିଁ ॥
କେହି ନ ଶୁଣନ୍ତି ବଚନ । ଭୟେ ଚାହାନ୍ତି ଛନ୍ନ ଛନ୍ନ ॥
ପୁଣି ବୋଲନ୍ତି ଜନେ ଚାହିଁ । ତାତ ଜନନୀ ଗଲେ କାହିଁ ॥
ବିଦୁର ନାହିଁ ମୋର ପାଶେ । ମୋ ତାତ ଜନନୀ ନ ଦିଶେ ॥
ଲୋଚନେ ନ ଦେଖଇ ପଥ । କି ଯେ ଦଇବ ବିପରୀତ ॥
ପୁତ୍ରଙ୍କ ମରଣେ ଦୁଃଖିତ । କେବଣ ଦୋଷ କିବା ଅର୍ଥ ॥
ନ ପୁଣ ପୁତ୍ର ଶୋକ ଛଳେ । ପ୍ରାଣ ଛାଡ଼ିବେ ଗଙ୍ଗାଜଳେ ॥
ମୋହ ଜନନୀ ତାତ ତ୍ରାସେ । ବନ୍ଧୁ ସହୃଦ ଦୁଃଖ ନାଶେ ॥
ଦୁଃଖ ସାଗରେ ନିମଜ୍ଜିଲେ । ମୋର ଦୁଷ୍କୃତ କର୍ମଫଳେ ॥
ଧର୍ମ ନନ୍ଦନ ବାକ୍ୟ ଶୁଣି । ସାରଥି ବୋଲେ ଯୋଡ଼ି ପାଣି ॥
ଶୁଣ ହେ ନୃପ ଚୂଡ଼ାମଣି । ତୋହର ପିଅର ଜନନୀ ॥
ରଜନୀ କାଳେ ଗଲେ କାହିଁ । ସର୍ବଥା ନ ଜାଣଇ ମୁହିଁ ॥
ମୋର ଜୀବନ ଦୁଃଖଭରେ । ବୁଡ଼ିଲା ଦୁର୍ଗମ ସାଗରେ ॥
ଯେମନ୍ତେ କହି ମନ ଖେଦ । ଗଗନ ମାର୍ଗେ ବୀଣା ବାଦ୍ୟ ॥
ଶୁଣି ଚାହିଁଲେ ଅନ୍ତରୀକ୍ଷେ । ନାରଦ ମିଳିଲେ ପ୍ରତ୍ୟକ୍ଷେ ॥
ତୁମ୍ବୁରୁ ଅଛି ତାଙ୍କ ସଙ୍ଗେ । ବୀଣା ବିନୋଦ ବାଦ୍ୟରଙ୍ଗେ ॥
ନାଦେ ଗୋବିନ୍ଦ ଗୁଣ ଗାଇ । ପୁଲକ ରୋମପନ୍ତି ଦେହୀ ॥
ଆନନ୍ଦେ ଅଶ୍ରୁଜଳ ସ୍ରୁରେ । ମିଳିଲେ ରାଜାର ନଗରେ ॥
ଦେଖି ସାନନ୍ଦ ନୃପମଣି । ଆସନ ସଙ୍ଗେ ଜଳ ଆଣି ॥
ମୁନିଙ୍କୁ ଆସନେ ବସାଇ । ବେନି ଚରଣ କରେ ଧୋଇ ॥
ଚରଣ ପୂଜି ବିଧିମତେ । କହନ୍ତି ନାରଦ ଅଗ୍ରତେ ॥

## ଯୁଧିଷ୍ଠିର ଉବାଚ

ଭୋ ବ୍ରହ୍ମସୁତ ଶୁଣ ତୁମ୍ଭେ । ଯାହା ପୁଚ୍ଛଇ କୁହ ଏବେ ॥
ସେ ପ୍ରଶ୍ନ କହ ତୁମ୍ଭେ ଭଲେ । ମୋ ତାତ ମାତ କେଣେ ଗଲେ ॥

ମୋର ବିପାକ କର୍ମଗୁଣ । ଭୋ ମୁନି ତୁମ୍ଭେ ଭଲେ ଜାଣ ॥
ଗଭୀର ଜଳେ ନାବ ଥୋଇ । ନାବିକ ଯେସନେ ପଳାଇ ॥
ତେମନ୍ତ କରି ଗଲେ ମୋତେ । ଅଧିକ କହିବି ମୁଁ କେତେ ॥
ଚକ୍ଷୁ ବିହୁନେ ଘୋର ବନେ । ଜୀବନ ଧରିବି କେସନେ ॥
ଯୁଧିଷ୍ଠିରଙ୍କ ଏ ବଚନେ । ମୁନି କହନ୍ତି ଅବଧାନେ ॥

## ନାରଦ ଉବାଚ

ଭୋ ନୃପ ଶୋକ ତୁ ନ କର । ଈଶ୍ୱର ମାୟା ଏ ସଂସାର ॥
ପ୍ରାଣୀ ଭିଆଇ ମାୟା ଯୋଗେ । ଖେଳଇ ସଂଯୋଗ ବିଯୋଗେ ॥
ଗୋରୁ ନାସିକା ଯେହ୍ନେ ବିନ୍ଧି । ଆକର୍ଷି ଚର୍ମ ରଜ୍ଜୁ ବାନ୍ଧି ॥
ସେ ଯେହ୍ନେ ପ୍ରାଣୀ ଭାରା ସହେ । ଅନ୍ତରେ ବହୁ କ୍ଳେଶ ସହେ ॥
ଯେହ୍ନେ କନ୍ଦୁକ କ୍ରୀଡ଼ାରଙ୍ଗେ । ଭଜଇ ସଂଯୋଗ ବିଯୋଗେ ॥
ଯେ ଜନ ପକାଇ ଯେମନ୍ତେ । କନ୍ଦୁକ ପଡ଼େ ସେହିମତେ ॥
ସଂସାର ଈଶ୍ୱରର ଇଚ୍ଛା । ଯେ ଭାବ ପଥ ଗୁରୁଦୀକ୍ଷା ॥
ତୁ ରାଜା ତୋତେହେଁ ନ ଜାଣୁ । ସଂସାର ସତ୍ୟ ପ୍ରାୟେ ମଣୁ ॥
ସତ୍ୟକି ମିଥ୍ୟା ବେନି ପଥେ । ନିଶ୍ଚେ ନ କରି ପାରୁ ଚିତ୍ତେ ॥
ଅଜ୍ଞାନ ମୋହ ଜାଲ କୁତେ । ଦାନ ଶଉଚ ଦୃଢ଼ ଚିତ୍ତେ ॥
ତୁ ଯେ ପଚାରୁ ସ୍ନେହ ଭାବେ । ଅରଣ୍ୟେ କେମନ୍ତେ ବଞ୍ଚିବେ ॥
ଯେ ଦେହ ପଞ୍ଚଭୂତେ ଜଡ଼ି । ଅବିଦ୍ୟା କାମ କର୍ମେ ପଡ଼ି ॥
ଆତ୍ମାର ଦୁଃଖେ ନିତ୍ୟେ ଦୁଃଖୀ । ସେ କାହିଁ ପର ଆତ୍ମା ରଖି ॥
ଉରଗ ଗିଳୁଛି ଯାହାକୁ । ସେ କାହିଁ ରଖିବ ଆନକୁ ॥
ଦେଖ ପ୍ରତ୍ୟକ୍ଷ ନୃପବର । ବିଷ୍ଣୁର ମାୟା ଖେଳ ଘର ॥
ସ୍ୱଭାବେ ନାହିଁ ଯାର ହସ୍ତ । ହସ୍ତ ଥିଲାକୁ ସେ ଆୟତ୍ତ ॥
ଦ୍ୱିପଦ ଚତୁଷ୍ପଦ ଯେତେ । ବିପଦେ ତାହାଙ୍କୁ ଆୟତ୍ତେ ॥
ବଡ଼ଙ୍କ ଭକ୍ଷ ହୋନ୍ତି ସାନେ । ସେମାନେ ଯାନ୍ତି ଅନ୍ୟେ ଅନ୍ୟେ ॥
ଯେ ଜୀବ ଜୀବଙ୍କ ଆଧାର । କେବଳ ନିର୍ମଳ ଆଚାର ॥
ଯେକଇ ଆତ୍ମା ନରହରି । ଭାବେ ଅଶେଷ ଦେହେ ପୂରି ॥
ସେ ମାୟ କରିପାରେ ଦୂର । କେ କରି ପାରିବ ଗୋଚର ॥
ଯେ ହରି ନିଜ ବିଶ୍ୱରୂପେ । ନର ଶରୀରେ ମୋହ କଳ୍ପେ ॥
ଭାରା ନିବାରେ ତନୁ ଧରି । ଦୁର୍ଜ୍ଜନ ସମୂହ ସଂହରି ॥
ନିଜ ଜନଙ୍କୁ ରକ୍ଷା କରେ । ଯେମନ୍ତେ ସଂସାରେ ବିହରେ ॥
ଦେବଙ୍କ ହିତେ କରି ତୋଷ । ଯେବେ ବଞ୍ଚଇ ଅବଶେଷ ॥
ଯାବତ ଥିବ ଚକ୍ରଧର । ତାବତ ତୁମ୍ଭ ଅଧିକାର ॥
ଯେବେ ହୋ ଶୁଣ ମହାରଥୀ । ତୋ ତାତ ଜନନୀ ବ୍ୟବସ୍ଥା ॥
ବିଦୁର ଧୃତରାଷ୍ଟ୍ର ବେନି । ସଙ୍ଗତେ ପତିବ୍ରତା ଘେନି ॥
ଯେ ହେମବନ୍ତର ଦକ୍ଷିଣେ । ଋଷି ଆଶ୍ରମେ ଘୋର ବନେ ॥
ସପତ ଭେଦେ ସୁରନଦୀ । ଭରତ ଖଣ୍ଡେ ଯେ ପ୍ରସିଦ୍ଧି ॥
ସେ ଜଳେ ନିତ୍ୟେ କରି ସ୍ନାନ । ଅନେକ କରି ହୋମ ଦାନ ॥
କେବଳ ମାତ୍ର ଜଳ ଭକ୍ଷି । ଶରୀରେ ଜୀବ ଆତ୍ମା ରଖି ॥
କଠୋର ତପ ଆଚରଣେ । ପବନ ନିଶ୍ୱାସ ଧାରଣେ ॥
ସର୍ବ ବିଷୟ ରସ ତେଜି । ହରି ଚରଣେ ଭାବେ ଭଜି ॥
ଦୃଢ଼ ଆସନେ ବସି ଧୀରେ । ଷଡ଼ ଇନ୍ଦ୍ରିୟ ପ୍ରତ୍ୟାହାରେ ॥
ମନ ଛାଡ଼ଇ ତିନିଗୁଣେ । ସମାଦି ଗୋବିନ୍ଦ ଚରଣେ ॥
ବିଜ୍ଞାନ ଆତ୍ମା ଜ୍ଞାନେ ଭରି । ଜୀବ ପରମ ଏକ କରି ॥
ପ୍ରବେଶ ଅନାହତ ପୁରେ । ବିହାୟ ଯେହ୍ନେ ଘଟାମ୍ବରେ ॥
ଗଗନେ ଗଗନ ପ୍ରବେଶ । ଯେ ଅବା ରହେ ଅବଶେଷ ॥
ତ୍ରିଗୁଣ ମାୟା ନାଶ କରି । ହେଳେ ତରଇ ଭବବାରି ॥
ସର୍ବ ସଂଶୟ ଯୋଗ ବଳେ । ବିଚାରି ଆସନ ନିଶ୍ଚଳେ ॥
ନିଶ୍ଚଳେ ସ୍ତମ୍ଭ ପ୍ରାୟେ ଲକ୍ଷି । କେ ଅବା ତାରେ ବିଘ୍ନ ଅଛି ॥
ଆଜହୁଁ ପାଞ୍ଚଦିନ ଅନ୍ତେ । ପ୍ରାଣ ଛାଡ଼ିବେ ଯୋଗପଥେ ॥
ରଜନୀ କାଳେ ବୃକ୍ଷ ମୂଳେ । ପବନ ଯୋଗୁଁ ଦାବାନଳେ ॥
ଦହନ ହୋଇବ ଶରୀର । ପତ୍ନୀ ଯେ ଥିବ ଅଭ୍ୟନ୍ତର ॥
ତକ୍ଷଣେ ସ୍ୱାମୀ ଧରି କୋଳେ । ଦହନ ହୋଇବ ଅନଳେ ॥
ତା ଦେଖି ବିଦୁର ଶରୀର । ଭୟେ କମ୍ପିବ ଥରହର ॥
ହୃଦେ ସୁମରି ହରି ହରି । ବେଗେ ସେ ବନୁ ଅପସରି ॥
ତୀର୍ଥ ସେବନେ ଆଗମନ । କରିବୁ ଶୁଣ ହେ ରାଜନ ॥
ଯେମନ୍ତେ ରାଜା ଆଗେ କହି । ତୁମ୍ବୁ ରୁ ତୁଲେ ବୀଣାବାଇ ॥
ଆକାଶ ମାର୍ଗେ ଗଲେ ମୁନି । ଧର୍ମ ନନ୍ଦନ ତାହା ଶୁଣି ॥
ତତ୍ତ୍ୱ ବଚନ ହୃଦେ ଧରି । ସର୍ବ ବିଷୟ ଦୂର କରି ॥
ରାଜ୍ୟ ପାଳନେ ଦୃଢ଼ଚିତ୍ତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେମହାପୁରାଣେ ପ୍ରଥମ ସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟ ।*

## ଚତୁର୍ଦ୍ଦଶ ଅଧ୍ୟାୟ

ଅର୍ଜ୍ଜୁନ ରାଜାର ବଚନେ । ଗଲେ ଯେ ଦ୍ୱାରକା ଭୁବନେ ॥
ବନ୍ଧୁ ବାନ୍ଧବ ପ୍ରିୟ ଆଶେ । ସ୍ନେହ ଜଡ଼ିତ ମୋହ ପାଶେ ॥
ମାୟା ମନୁଷ୍ୟ ରୂପେ ହରି । ଛଦ୍ମେ ଗୃହ ବାସ କରି ॥
ସଂସାର ଖେଳଘର ଯାର । ବ୍ରହ୍ମା ଶଙ୍କରେ ଅଗୋଚର ॥
ଯେମନ୍ତେ ବିଚାରି ଅନ୍ତରେ । ମିଳିଲେ ଦ୍ୱାରକା ନଗରେ ॥

କେତେ ହେଁ ମାସ ତହିଁ ରହି । କୃଷ୍ଣ ଚରଣେ ମନ ଦେଇ ॥
ଯେମନ୍ତେ ଗଲା ଦିନା କେତେ । ଚଞ୍ଚଳ ଯୁଧିଷ୍ଠିର ଚିତ୍ତେ ॥
ଅର୍ଜ୍ଜୁନ ନ ମିଳିଲା ପାଶେ । ଘୋର ଅଦ୍ଭୁତ ଦେଖି ତ୍ରାସେ ॥
କାଳର ଗତି ବିପରୀତ । ବିଭ୍ରମ ପ୍ରାଣୀଙ୍କର ଚିତ୍ତ ॥
ପାପ ଆଚାର କଲେ ଦମ୍ଭେ । ଯନ୍ତ୍ରିତ କାମ କ୍ରୋଧ ଲୋଭେ ॥
ମିତ୍ର ସୁହୃଦ ସଙ୍ଗ ମତି । ଭ୍ରାତ ମାତୃ ଯେ ପିତୃ ଜ୍ଞାତି ॥
ସ୍ୱାମୀ ଭାରିଜା ପୁତ୍ର ମେଳେ । ଅହର୍ନିଶି ଶୁଭେ କନ୍ଦଳେ ॥
ଅରିଷ୍ଟ ନିତ୍ୟେ ସେ ସୂଚେକ । ପ୍ରକାଶ ହୋଇଲା ଅନେକ ॥
ପାପ ପ୍ରକୃତି ପ୍ରାଣୀଙ୍କର । ଦେଖି ଚକିତ ନୃପଙ୍କର ॥
ଭୀମସେନଙ୍କୁ ରାଜ ପାଶେ । କହନ୍ତି ଆତ୍ମାର ବିଶ୍ୱାସେ ॥

## ଯୁଧିଷ୍ଠିର ଉବାଚ

ଅର୍ଜ୍ଜୁନ ଦ୍ୱାରିକା ଭୁବନେ । ଗଲା ବାନ୍ଧବ ଦରଶନେ ॥
କୃଷ୍ଣ ମହିମା କୃଷ୍ଣ ସଙ୍ଗେ । ଜାଣିବା ପାଇଁ ନର ଅଙ୍ଗେ ॥
ଯବେ ସପତ ମାସ ଗଲା । ତେବେହେଁ ଅର୍ଜ୍ଜୁନ ନଇଲା ॥
ଯେକି କେବଣ ବିପରୀତ । ତେଣୁ ଚଞ୍ଚଳ ମୋର ଚିତ୍ତ ॥
କି ହେତୁ ମୋର ପାଶ ଛାଡ଼ି । ଅର୍ଜ୍ଜୁନ ରହେ ଲୋଭ ବଢ଼ି ॥
ଯେହାତ ଜାଣି ନ ପାରଇ ।ଭୟେ ବ୍ୟାକୁଳ ମୋର ଦେହୀ ॥
କାଳ ପ୍ରଳୟ ଶୂନ୍ୟପଥେ । ନାରଦ କହିଗଲେ ମୋତେ ॥
ଦିଶଇ ସଂସାର ଉଚ୍ଛନ୍ନ । କିବା କହିଲେ ଭଗବାନ ॥
ସେ ହରି ସ୍ନେହେ ଅପ୍ରମାଦେ । ମୁହିଁ ବସିଲି ରାଜପଦେ ॥
ଧନ ସମ୍ପଦ ଆଦି ମୋର । ସର୍ବ ମଙ୍ଗଳ ଦାମୋଦର ॥
ସକଳ ରାଜା ମୋର ପାଦେ । ଖଟନ୍ତି ଯାହାର ପ୍ରସାଦେ ॥
ତାହାର ଭଲେ ଭଲ ମୋର । ସେ ନାଥ ଶରଣ ସୋଦର ॥
ଦେଖ ସ୍ୱଭାବେ ବୃକୋଦର । ଦିଶେ ଆକାଶ ଅନ୍ଧକାର ॥
ତ୍ରିବିଧ ଉତ୍ପାତ ଗଗନେ । ଯେଣୁ ସଂଶୟ ମୋର ମନେ ॥
ଭୂମି ଆକାଶ ପ୍ରାଣୀ ମନ । ଭୟେ କମ୍ପନ୍ତି ଛନ୍ନ ଛନ୍ନ ॥
ମୋହର ମନ ବୁଦ୍ଧି ଚିତ୍ତେ । କମ୍ପେ କଦଳୀ ଯେହ୍ନେ ବାତେ ॥
କର ଚରଣ ମୋ ଲୋଚନ । ବାମାଙ୍ଗ ସ୍ଫୁରେ ଘନ ଘନ ॥
ଭୟେ କମ୍ପଇ ମୋ ଶରୀର । ଦେଖ ପ୍ରତ୍ୟକ୍ଷେ ବୃକୋଦର ॥
ଅରିଷ୍ଟ ସୂଚକ ସ୍ୱଭାବ । ଯେସେ ନିକଟେ ଦୁଃଖ ଦେବ ॥
ରବି ଉଦୟ କାଳେ ଆସି । ଶୃଗାଳ ଯୂଥେ ଯୂଥେ ବସି ॥
ପୂର୍ବ ଦିଗକୁ ମୁଖ କରି । ବଦନୁ ଅନଳ ଉଦ୍‌ଗାରି ॥
କରନ୍ତି ଭୟଙ୍କର ନାଦ । ଯେ ସେ ସୂଚକ ପରମାଦ ॥
ମୋ ମୁଖ ଚାହିଁ ଶ୍ୱାନ ପନ୍ତି । ନିର୍ଭୟେ ରୋଦନ କରନ୍ତି ॥
ଶୃଗାଳ ମୋର ବାମ ଭାଗେ । ବୋଗ ପକାନ୍ତି ଦକ୍ଷ ମାର୍ଗେ ॥
ଆବର ଶୁଭ ପ୍ରଶ୍ନ ଯେତେ । ମୋତେ ଭ୍ରମାନ୍ତି ବିପରୀତେ ॥
ଯେ ମୋର ଗଜ ଅଶ୍ୱ ଯେତେ । ମୋତେ ଚାହାନ୍ତି ଅଶ୍ରୁନେତ୍ରେ॥
ଯମର ଦୂତ ପ୍ରାୟେ ଆସି । ଭଲ୍ଲୁକ ମୋର ଆଗେ ବସି ॥
ଶବଦେ କମ୍ପାନ୍ତି ମେଦିନୀ । ମୋର ଚାହାନ୍ତେ କୋହେ ତୁନି॥
ପ୍ରତି ଭଲ୍ଲୁକ କୁହୁ ରାବେ । ରୋଦଇ ଭୟଙ୍କର ଭାବେ ॥
ଯେ ଶଢେ ନିଷ୍ଟେ ଶୂନ୍ୟ ମହୀ । ପ୍ରଜାୟେ ନ ରହିବେ କେହି ॥
ଦେଖ ତୁ ଧୂମ ଦଶ ଦିଶେ । ଅନ୍ଧାର ପ୍ରାୟେ ମହୀ ଦିଶେ ॥
ଗିରି ସମୂହେ ବସୁନ୍ଧରୀ । କମ୍ପଇ ଘୋର ନାଦ କରି ॥
ନିର୍ମେଘେ ନିର୍ଘାତ ଶୁଭଇ । ବିଜୁଳି ତେଜ ପ୍ରକାଶଇ ॥
ବାୟୁ ପ୍ରକାଶେ ଖରତର । ଯେହ୍ନେ ପ୍ରକାଶ ଦିନକର ॥
ଧୂଳିରେ ଦିନ ଅନ୍ଧକାର । ଶବଦ ଶୁଭେ ମହାଘୋର ॥
ରୁଧିର ବରଷନ୍ତି ମେଘେ । ଆମିଷ ଗନ୍ଧ ସର୍ବଦିଗେ ॥
ସୂର୍ଯ୍ୟର ଦେହେ ନାହିଁ ତେଜ । ଗ୍ରହ ସହିତେ ଗ୍ରହରାଜ ॥
ଦିଗେ ଦିଶନ୍ତି ଭୂତଗଣେ । ଯେହ୍ନେ ପୂରିତ ଅଗ୍ନିବାଣେ ॥
ଉଛୁଳି ଉଠେ ନଦୀ ନଦ । କରନ୍ତି ସିନ୍ଧୁ ପ୍ରାୟେ ନାଦ ॥
ଜନ୍ତୁଙ୍କ ମନ ଛନ୍ନ ଛନ୍ନ । ଅଦ୍ଭୁତ ଶୁଭେ ଘୋର ସ୍ୱନ ॥
ଅନଳ ଲିଭେ ଘୃତ ଧାରେ । ଧୂମେ ଦୂଷିତ ବେଦସ୍ୱରେ ॥
ବତ୍ସା ନ କରେ ସ୍ତନପାନ । ଗାବେ ନ ଦ୍ୟନ୍ତି କ୍ଷୀରଦାନ ॥
ତୃଣ ନ ଚରି ଅଶ୍ରୁମୁଖେ । ବୃଷଭ ଗର୍ଜେ ମନ ଦୁଃଖେ ॥
ହରଷେ ନ କରନ୍ତି ନାଦ । ଦେଖ ଅଦ୍ଭୁତ ପରମାଦ ॥
ଦେବତା ପ୍ରତିମା ଚଞ୍ଚଳେ । ରୋଦନ୍ତି ତନୁ ଘୃମ ଜଳେ ॥
ଯେ ଜନ ପଦେ ଯେତେ ଗ୍ରାମ । ନଗର ଅକାଶ ଉଦ୍ଧାମ ॥
ଆଶ୍ରମ ଆଦି ଯେତେ ବନେ । ମୁଁ ତାହା ଦେଖଇ ନୟନେ ॥
ସର୍ବେ ଦିଶନ୍ତି ହତ ଶିରୀ । ଚଳ ଅଚଳ ବନ ଗିରି ॥
ବାହ୍ୟ ଅନ୍ତରେ ସର୍ବ ଚାହିଁ । ମୁହିଁ ଏ ମନ୍ତ୍ର ବିଚାରଇ ॥
ଶ୍ରୀକୃଷ୍ଣ ପାଦ ଲାଗି ମହୀ । ଅତି ସୁନ୍ଦର ବିରାଜଇ ॥
ସେ ପାଦ କିବା ଶୂନ୍ୟେ ଗଲା । ଅବନୀ ଯେମନ୍ତ ଦିଶିଲା ॥
ଯେମନ୍ତ କହୁ ଭୀମ ଆଗେ । ଧର୍ମ ନନ୍ଦନ ଉଦବେଗେ ॥
ଭୟେ କମ୍ପନ୍ତି ଛନ୍ନ ଛନ୍ନ । ତକ୍ଷଣେ ମିଳିଲା ଅର୍ଜ୍ଜୁନ ॥
ରାଜା ଚରଣ ତଳେ ପଡ଼ି । ଅଞ୍ଜଳେ ନମସ୍କାର ଯୁଡ଼ି ॥
ଲୋଚନୁ ବହେ ଅଶ୍ରୁଜଳ । ଦେହେ ବ୍ୟାପିତ ଶ୍ରମ ଝାଳ ॥
ଅର୍ଜ୍ଜୁନ ଦେଖି ଧର୍ମସୁତ । ତକ୍ଷଣେ ଛାଡ଼ି ଭୀମ ହସ୍ତ ॥
ବନ୍ଧୁ ସୁହୃଦ ମଧ୍ୟେ ଥାଇ । ପୁଛନ୍ତି ଅର୍ଜ୍ଜୁନଙ୍କୁ ଚାହିଁ ॥

ନାରଦ ବଚନ ସୁମରି । ଅନ୍ତେ ସୁମରେ ନରହରି ॥
ଅର୍ଜୁନ ମୁଖ ଚାହିଁ ଭଣି । ଛନ ବଚନେ ନୃପମଣି ॥

## ଯୁଧିଷ୍ଠିର ଉବାଚ

ଶୁଣ ଅର୍ଜୁନ ସାବଧାନେ । ଦ୍ୱାରକାପୁର ବନ୍ଧୁ ଜନେ ॥
ସୁଖେ ଅଛନ୍ତି ନା ସମସ୍ତେ । ଯାଦବ ବଂଶ ଆଦି ଯେତେ ॥
ଶୁଭେ ମୋହର ମାତାମହ । ସେ ଭଲେ ଅଛନ୍ତି ନା କହ ॥
ମାତୁଳ ଅକ୍ରୂରର ତୁଲେ । ସ୍ୱ ଗୃହେ ଅଛନ୍ତି ନା ଭଲେ ॥
ଦେବକୀ ଆଦି ନାରୀଯେତେ । ଭଲେ ଅଛନ୍ତି ନା ସମସ୍ତେ ॥
ଦେବକ ଉଗ୍ରସେନ ଦୁଇ । ଭଲେ କି ଛନ୍ତି ଦୁଇଭାଇ ॥
ଗଦ ସାରଣ ଜୟନ୍ତନ । ଯେ ଆଦି ମାତୁଳ ନନ୍ଦନ ॥
ଶାମ୍ବ ସାତ୍ୟକି ହଳଧର । କହ କୁଶଳ ଯେହାଙ୍କର ॥
ଯାଦବ ବଂଶେ ମହାରଥ । ପ୍ରଦ୍ୟୁମ୍ନ ରୁକ୍ମଣୀର ସୁତ ॥
ତାର କୁମର ଅନିରୁଦ୍ଧ । ଅତି ଗଭୀର ମହାଯୋଧ ॥
ସୁଷେଣ ଶାମ୍ବ ଆଦି ଯେତେ । ଭଲେ କି ଛନ୍ତି କୃଷ୍ଣ ସୁତେ ॥
ଋଷଭ ଆଦି ମହାବୀରେ । ସୁଖେ ଅଛନ୍ତି ନା ନଗରେ ॥
ଉଦ୍ଧବ ଆଦି ମନ୍ତ୍ରୀ ଯେତେ । ସୁଖେ ଅଛନ୍ତି ନା ସମସ୍ତେ ॥
ସୁନନ୍ଦ ନନ୍ଦ ଆଦିଯେତେ । ରାମ ଗୋବିନ୍ଦ ଭୁଜାଶ୍ରିତେ ॥
ନିଶ୍ଚିନ୍ତେ ଭୁବନେ ଅଛନ୍ତି । ଆତ୍ମ କୁଶଳ ପଚାରନ୍ତି ॥
ଗୋବିନ୍ଦ ଅଛନ୍ତି ନା ଭଲେ । ସୁଖେ ଭ୍ରାତାର ରାମ ତୁଲେ ॥
କରୁଣା ସିନ୍ଧୁ ନନ୍ଦ ବାଳ । ବ୍ରାହ୍ମଣ୍ୟ ଭଗତ ବତ୍ସଳ ॥
ବନ୍ଧୁ ବାନ୍ଧବ ତୁଲେ ବସି । ସୁଧର୍ମା ମଧ୍ୟେ ବ୍ରହ୍ମ ରାଶି ॥
ଲୋକ ମଙ୍ଗଳ କ୍ଷେମ ଅର୍ଥେ । ଯାହାର ଜନ୍ମ ଏ ଜଗତେ ॥
ସେ ହରି ଅଛନ୍ତି ନା ଭଲେ । ରୋହିଣୀସୁତ ରାମ ତୁଲେ ॥
ଯାହାର ଭୁଜ ଆଶ୍ରେ କରି । ଯାଦବେ ବିଷ୍ଣୁ ତେଜ ଧରି ॥
ମହାପୁରୁଷ ଯୋଗବନ୍ଧେ । କ୍ରୀଡ଼ନ୍ତି ପରମ ଆନନ୍ଦେ ॥
ଯାହା ଚରଣେ ସେବାକରି । ଷୋଳ ସହସ୍ର ଗୋପ ନାରୀ ॥
ସତ୍ୟାର ତୁଲେ ଇନ୍ଦ୍ର ଜିଣି । ନନ୍ଦନ ବନୁ ଚକ୍ରପାଣି ॥
ଲୀଳାୟେ ଜିଣି ଶଚୀକାନ୍ତ । ବଳେ ଉପାଡ଼ି ପାରିଜାତ ॥
ଯାହା ବିଳାସେ ଇନ୍ଦ୍ର ନାରୀ । ସେ ପୁଷ୍ପ ବିଷ୍ଣୁ ତେଜେ ହରି ॥
ସହସ୍ରେ ଶାଖା ପରିମାଣି । ନାରୀଙ୍କି ଦେଲେ ଚକ୍ରପାଣି ॥
ଯାହାର ଭୁଜଦଣ୍ଡ ବଳେ । ଯହୁଁ ଅଜେୟ ମହୀତଳେ ॥
ନିର୍ଭୟେ ଜଗତେ ଭ୍ରମନ୍ତି । ପାଦେ ସୁଧର୍ମା ଆକର୍ଷନ୍ତି ॥
ହେ ଭ୍ରାତ ଶୁଣ ମହାଭୁଜ । ତୁ ମତେ ଦିଶୁ ହତତେଜ ॥
ଲଭିଲା ବସ୍ତୁ କେଣେ ଗଲା । ତୋତେ ଅବଜ୍ଞା କେବା କଲା ॥
ଚିର ପ୍ରବାସେ ଦୁଃଖ ଚିନ୍ତା । ତେଣୁ ବା ଦିଶୁ ମଳିନତା ॥
କେବା ଭର୍ତ୍ସନା ଅମଙ୍ଗଳେ । ତୋତେ ସମ୍ଭିଲା ବାକ୍ୟବଳେ ॥
ଅର୍ଥୀପ୍ରାଣୀଙ୍କୁ ଦେବାକଲୁ । ମାଗନ୍ତେ କି ଅବା ନ ଦେଲୁ ॥
ବୃଦ୍ଧ କୃପଣ ନିରିମାକ୍ଷି । ସ୍ତିରୀ ବାଳକ ଗୋରୁ ଦେଖି ॥
ରୋଗ ପୀଡ଼ନ୍ତେ ଯେ ରୋଦନ୍ତି । ଯେ ଅବା ଶରଣ ପଶନ୍ତି ॥
ଯେହାଙ୍କୁ ଦୟା ବା ନକଲୁ । ତେଣୁ ଅଶୁଭ ତୁ ଦିଶିଲୁ ॥
ଅଗମ୍ୟେ କଲୁ ବା ଗମନ । କିବା ହରିଲୁ ସ୍ତିରୀଧନ ॥
ମାର୍ଗେ ଆସନ୍ତେ ତୁ ନିଷ୍ଫଳେ । କେବା ଜିଣିଲା ତେତେବେଳେ ॥
ବାଳ ବୃଦ୍ଧଙ୍କୁ ନ ଭୁଞ୍ଜାଇ । ଅଗ୍ରେ ଭୁଞ୍ଜିଲୁ ଅବା ତୁହି ॥
ଅତିଥି ଭୃତ୍ୟ ଗର୍ଭନାରୀ । କନ୍ୟା ବା ଅଭୋଜନ କରି ॥
କିବା ନିନ୍ଦିତ କର୍ମ କଲୁ । ଯେଣୁ ତୁ ଯେମନ୍ତ ଦିଶିଲୁ ॥
କିବା ମୋ ଜୀବନ ଠାକୁର । ଗୋବିନ୍ଦ ହୋଇଲେ ଅନ୍ତର ॥
ତାହାର ଶୂନ୍ୟେ ଶୂନ୍ୟ ମହୀ । ଯେମନ୍ତ ପ୍ରାୟ ମୁଁ ମଣଇ ॥
କହଇ ବିପ୍ର ଜଗନ୍ନାଥ । ପ୍ରଥମ ସ୍କନ୍ଧେ ଭାଗବତ ॥
ହରି ଚରିତ ସୁଧାବାଣୀ । ଶୁଣି ସଙ୍କଟୁ ତରେ ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମ ସ୍କନ୍ଧେ ଯୁଧିଷ୍ଠିର ଅର୍ଜୁନ ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।*

## ପଞ୍ଚଦଶ ଅଧ୍ୟାୟ

## ଶ୍ରୀ ସୂତ ଉବାଚ

ଯେମନ୍ତେ ରାଜାର ବଚନେ । ଅର୍ଜୁନ ଶୁଣି ଶୋକମନେ ॥
ଯେତେ କହିଲେ ଧର୍ମ ସୁତ । ନାନା ଶଙ୍କନ୍ୟ ଦେଖି ଚିତ୍ତ ॥
କୃଷ୍ଣ ବିଚ୍ଛେଦେ ଖେଦମନ । ସ୍ୱଭାବେ ଦୁଃଖିତ ବଦନ ॥
ତେଜ ପ୍ରଭାବ ଦୂର ଗଲା । ଜୀବନ ଥାଉଁ ଥାଉଁ ମଲା ॥
ଶୋକେ କମ୍ପିତ କଳେବର । ବଦନୁ ନ ସ୍ଫୁରେ ଉତ୍ତର ॥
ଲୋଚନେ ଦେଇ ବେନିକର । ଶୋକ ସଂହରି ନୃପବର ॥
ଶୋକେ କୁଣ୍ଠିତ କଣ୍ଠଦ୍ୱାରେ । ବାକ୍ୟ ନ ସ୍ଫୁରଇ ବିହ୍ୱଳେ ॥
ସଖା ସୁହୃଦ ନନ୍ଦବଳା । ସାରଥି ପଣେ ରଥେ ଥିଲା ॥
ଯେ ଆଦି ଯେତେ କୃଷ୍ଣ ଗୁଣ । ସୁମରି କାନ୍ଦେ ପୁଣ ପୁଣ ॥
ରାଜାଙ୍କୁ ଚାହିଁ ମନ ଖେଦେ । ବୋଲଇ ଶୋକ ଗଦଗଦେ ॥

## ଅର୍ଜୁନ ଉବାଚ

ସନ୍ଦେଶ ଶୁଣ ନରନାଥ । କୃଷ୍ଣେ ମୁଁ ହୋଇଲି ବଞ୍ଚିତ ॥
ମୋର ଜୀବନ ବନ୍ଧୁ ହରି । ତାର ବିୟୋଗେ ହତ ଶିରୀ ॥

ବିଫଳ ଶରୀର ମୋହର । ଦେଖ ପ୍ରତ୍ୟକ୍ଷେ ନୃପବର ॥
ଯେ ତେଜ ପ୍ରତାପ ମୋହର । ଦେବ ଦାନବେ ଅଗୋଚର ॥
ସେ ତେଜ କୃଷ୍ଣ ସଙ୍ଗେ ଗଲା । ଜୀବନ ଥାଉଁ ଥାଉଁ ମଲା ॥
ତାର ବିଯୋଗେ କ୍ଷଣମାତ୍ରେ । ଶୋକ ପୂରିତ ନିଜ ଗାତ୍ରେ ॥
ଯେତେ ଅପ୍ରିୟ ଦରଶନ । ଦେଖି କୁଣ୍ଠିତ ମୋର ମନ ॥
ମରଣ କାଳେ ପ୍ରାଣୀ ଯେହ୍ନେ । ସମ୍ଭ୍ରମେ କୁଣ୍ଠିତ ବଚନେ ॥
ଯାହାର ପାଦେ ଆଶ୍ରେ କରି । ନିଜ ଗାଣ୍ଡିମ କରେ ଧରି ॥
ଦ୍ରୁପଦ ଗୃହେ ରାଜା ମେଳେ । ଦ୍ରୌପଦୀ ସ୍ୱୟମ୍ବର କାଳେ ॥
ଯେତେ ମିଳିଲେ ରାଜ ପୁତ୍ରେ । କନ୍ୟା ଲଭନ ଫଳେ ଅର୍ଥେ ॥
କନ୍ୟା ଲଭନ କାଳେ ଗୋଳ । ଯେସନେ ଜଳଧି ଉଲ୍ଲୋଳ ॥
ହେଳେ ତାହାଙ୍କ ତେଜ ହରି । ଲାଖ ବିନ୍ଧି ଲଭିଲି ନାରୀ ॥
ପଶୁ ମାରଣେ ଯାର ସଙ୍ଗେ । ଖାଣ୍ଡବ ବନେ କ୍ରୀଡ଼ା ରଙ୍ଗେ ॥
ସେ ବନ ଅଗ୍ନି ମୁଖେ ଦେଇ । ମାୟା ସଭା ଲଭିଲି ମୁହିଁ ॥
ଅମରଗଣ ତୁଲେ ପୁଣି । କିଞ୍ଚିତେ ଇନ୍ଦ୍ର ତେଜ ଜିଣି ॥
ମୟନିର୍ମିତ ସଭା ଆଣି । ଯହିଁ ସକଳ ନୃପମଣି ॥
ତୋହର ଯଜ୍ଞକାଳେ ମିଳି ।ତୋ ପାଦେ ଦେଲେ ନିଉଛଳି ॥
ଯାହାର ତୁଲେ ବେନି ଭାଇ । ଛଦ୍ମେ ବିପ୍ର ରୂପ ହୋଇ ॥
ଜରାକୁ ବାହୁ ଯୁଦ୍ଧେ ଜିଣି । ରାଜାଙ୍କୁ ବନ୍ଦୀ ଘରୁ ଆଣି ॥
ତୋହର ଯଜ୍ଞ ନିମନ୍ତେଣ । ଆସି ଖଟିଲେ ନୃପଗଣ ॥
ତୋହର ଯଜ୍ଞ ସ୍ନାନକାଳେ । ଦ୍ରୌପଦୀ ଦେଖି ତୋର କୋଳେ ॥
ସ୍ୱଭାବେ ନାରୀ ଶିରୋମଣି । କବେରୀ ବେଶେ ଜନ ଜିଣି ॥
କପଟପାଶା କରି ବାଦେ । କୌରବେ ତୋତେ ସଭାମଧେ ॥
ଜିଣି ପାଞ୍ଚାଳି କେଶ ଧରି । ବିବସ୍ତ୍ର ସଭା ମଧ୍ୟେ କରି ॥
ଭୟେ ପାଞ୍ଚାଳି ସୁମରିଲା । ସେ ବେଳେ ଯେ ହରି ରଖିଲା ॥
ପୁଣି ଅଜ୍ଞାତ ବନବାସେ । ଦୁର୍ବାସା ଦୁଷ୍ଟଙ୍କ ବିଶ୍ୱାସେ ॥
ଭୋଜନ ଅନ୍ତେ ଭିକ୍ଷା ଅର୍ଥେ । ଅୟୁତେ ବିପ୍ର ଘେନିସାଥେ ॥
ଭୁଞ୍ଜିବା ପାଇଁ ସ୍ନାନ ସାରି । ତା ଜାଣି ପ୍ରଭୁ ନରହରି ॥
ଅତିଥି ରୂପେ ବିଜେ କଲା । ଶେଷେ ଯେ ଶାକଅନ୍ନ ଥିଲା ॥
କର ପ୍ରସାରି ତାହା ଖାଇ । ମୁନିଙ୍କ ମଧ୍ୟେ ବିରାଜଇ ॥
ସନ୍ତୋଷ କଲା ଜଳ ମଧ୍ୟେ । ତକ୍ଷଣେ ବ୍ରାହ୍ମଣ ଆନନ୍ଦେ ॥
ସନ୍ତୋଷେ ନିଜ ସ୍ଥାନ ଗଲେ । ସେ ଦୁଃଖୁ ଯେ ହରି ରଖିଲେ ॥
ଯାହାର ତେଜେ ଧନୁଟାଣି । ବଳେ ଜିଣିଲି ଶୂଳପାଣି ॥
ସନ୍ତୋଷେ ମୋତେ ଉମାକାନ୍ତ । ବୋଇଲେ ବର ମାଗ ପାର୍ଥ ।
ପାର୍ବତୀ ବିଶ୍ୱାସେ ମୋହିତ । ବର ପାଇଲି ପାଶୁପତ ॥
ହର ବିଶ୍ୱାସେ ମୋତେ ପୁଣ । ପାର୍ବତୀ ଦେଲେ ଅକ୍ଷତ୍ରୋଣ ॥
ସେ ବେନି ଶସ୍ତ୍ର ପାଇ ବନେ । ମିଳିଲି ଇନ୍ଦ୍ରର ଭୁବନେ ॥
ନର ଶରୀରେ ସୁର ଦେଶେ । ମିଳିଲି ଯେ ହରି ବିଶ୍ୱାସେ ॥
ବିଷ୍ଣୁର ତେଜ ଦେଖି ମୋତେ । ସର୍ବ ଦେବତା ପୁରୁହୁତେ ॥
ବିଚାରି ସର୍ବ ଅନୁମାନେ । ବସାଇ ଇନ୍ଦ୍ରର ଆସନେ ॥
ମୋତେ ପୂଜିଲେ ପୁରସରେ । ମୁଁ ପୁଣି ରହି ସ୍ୱର୍ଗ ପୁରେ ॥
ସର୍ବ ଦେବତାଙ୍କ ବିଶ୍ୱାସ । ଅସୁର ବଳ କଲି ନାଶ ॥
ଇନ୍ଦ୍ର ସହିତ ଶୁଦ୍ଧ ଭାବେ । ମୋତେ ପୂଜିଲେ ଗଉରବେ ॥
ଯେ ହରି ତେଜେ ପୁରସର । ସେ ହରି ମୋତେ କଲେ ଦୂର ॥
ଯେଉଁ ଗୋବିନ୍ଦ ବନ୍ଧୁପଣେ । କୁରୁ ସାଗର ଘୋର ରଣେ ॥
ତରିଲେ ଦୁସ୍ତର ସାଗର । ଦେବ ଦାନବେ ଅଗୋଚର ॥
ସଂଗ୍ରାମେ ରିପୁବଳ ଜିଣି । ଅନେକ ଧନରତ୍ନ ଆଣି ॥
ରତ୍ନ ମୁକୁଟ ମଣିପୁରେ । ଥିଲା ଯେ ରାଜାଙ୍କର ଶିରେ ॥
ତାହା ହରିଲି ବାହୁବଳେ । ନିର୍ଭୟେ ଅବନୀ ମଣ୍ଡଳେ ॥
ଯେ ହରି ମୋର ରଥେ ବସି । ଅଗାଧ କୁରୁବଳ ନାଶି ॥
ଭୀଷ୍ମ ସହିତ ଦ୍ରୋଣ କୃପ । ଶଲ୍ୟ ସହିତେ ଯେତେ ନୃପ ॥
ତାହାଙ୍କ ଅଗ୍ରେ ରଥ କରି । ଅରିର ସୈନ୍ୟ କରେ ମାରି ॥
ରିପୁ ଆୟୁଷ ସଙ୍ଗେ ମନ । ହରିଲେ ନନ୍ଦର ନନ୍ଦନ ॥
ବିରାଟ ଗୋଧନ ହରଣେ । ମହାଦୁସ୍ତର ଘୋରରଣେ ॥
ସେ କୁରୁ ଦୁସ୍ତର ସାଗରେ । ଭୀଷ୍ମାଦି ଥିଲେ ଯେତେ ବୀରେ ॥
ଅମୋଘ ଶସ୍ତ୍ର ବରଷନ୍ତି । ଦେବେ ଦାନବେ ନାହିଁ ଭୀତି ॥
ଯାର ଚରଣେ ଆଶ୍ରେ କରି । ତାହାଙ୍କ ବଳ ଦର୍ପହରି ॥
ଗୋଧନ ନେଲି ନିଜ ପୁର । ସେ ହରି ମତେ କଲେ ଦୂର ॥
ସ୍ୱଭାବେ ସେ ଯେ ସତ୍ୟବ୍ରତ । ସଂଗ୍ରାମେ ଥିଲା ଭୂମିଗତ ॥
ଯାହାର ପାଦପଦ୍ମ ଚିରେ । ଜ୍ଞାନୀ ଯେ ଭାବୁଥାନ୍ତି ନିତ୍ୟେ ॥
ମହାରଥୀଙ୍କ ଚିତ୍ତେ ଯାଇ । ପ୍ରବେଶ କଲେ ଭାବଗ୍ରାହୀ ॥
ନୟନେ ମୋ ରୂପ ଦେଖନ୍ତି । ସଭୟେ ମାରି ନ ପାରନ୍ତି ॥
ସେ କୃଷ୍ଣ ବସି ମୋର ପାଶେ । ଶୋଭନ ସ୍ମିତ ମନ୍ଦ ହାସେ ॥
ଆନନ୍ଦେ କରେ କର ଧରି । ଆଶ୍ୱାସି କହେ ଦଇତ୍ୟାରି ॥
ହେ ପାର୍ଥ ଅର୍ଜୁନ ହେ ସଖେ । କୁରୁ ନନ୍ଦନ ମନଦୁଃଖେ ॥
ତାହାର ଗୁଣ କର୍ମ ଯେତେ । କହନ୍ତି ମୋହର ଅଗ୍ରତେ ॥
ଶୟନେ ଆସନେ ଭୋଜନେ । ମୁହିଁ ଯେ ତୋର ଅପମାନେ ॥
ସଙ୍ଗେ ବିହରେ ସଖା ଗଣେ । ତା କରେ କର ପ୍ରହାରଣେ ॥
ସଖୀର ସଖା ଯେହ୍ନେ ସହେ । ପିତା ମାତାଙ୍କୁ ଯେହ୍ନେ ପୋଏ ॥

ନୃପେନ୍ଦ୍ର ଶୁଣ ମୋର ବାଣୀ । ମତେ ଛାଡ଼ିଲେ ଚକ୍ରପାଣି ॥
ମୋହର ପ୍ରିୟ ସଖା ହରି । ହୃଦୟ ଗଲେ ଶୂନ୍ୟ କରି ॥
ଦେଖ ମୋହର ବୀରପଣ । ମାର୍ଗେ ଗୋବିନ୍ଦ ପତ୍ନୀଗଣ ॥
ଆବୋରି ନ ପାରିଲି ବଳେ । ତକ୍ଷଣେ ଉଠିଲେ ଗୋପାଳେ ॥
ସେହି ଗାଣ୍ଡିବ ଧନୁ ମୋର । ସେହି ଅକ୍ଷୟ ତ୍ରୋଣ ଭାର ॥
ସେହି ବିମାନ ଅଶ୍ୱଦେଖ । କ୍ଷଣକେ ହୋଇଲି ନିରେଖ ॥
ଯାହାର ତେଜେ ନୃପଗଣେ । ନମନ୍ତି ମୋହର ଚରଣେ ॥
ତାର ବିୟୋଗେ ତନୁ କ୍ଷୀଣ । ଦିଗେ ଦିଶନ୍ତି ମୋତେ ଶୂନ୍ୟ ॥
ମୋ ପ୍ରାଣ ବାନ୍ଧବ ବିୟୋଗେ । ଭସ୍ମ ଯେସନେ ହବିର୍ଭାଗେ ॥
କୁହୁକ ବସ୍ତୁ ସୃଷ୍ଟ ଗତେ । ପ୍ରତ୍ୟକ୍ଷ ନୁହେ ଦୃଷ୍ଟିପାତେ ॥
ଶୁଣ ହେ ନୃପ ଶୁଦ୍ଧ ଚେତା । ବନ୍ଧୁ ବାନ୍ଧବଙ୍କ ବାରତା ॥
ଅପରେ ଯେତେ ଯଦୁକୁଳେ । ନିଶ୍ଚିନ୍ତେ ଥିଲେ କୁଶସ୍ଥଳେ ॥
ବ୍ରାହ୍ମଣ ଶାପ୍ୟ ଅବସାନେ । ମିଳିଲେ ଏରକାର ବନେ ॥
ବାରୁଣୀ ମଦ୍ୟ କଲେ ପାନ । ଭୋଳେ ହୋଇଲେ ହତଜ୍ଞାନ ॥
ଏରକା ମୁଷ୍ଟି କରେ ଧରି । ଯେକ ଆରକେ ମରାମରି ॥
ଆତ୍ମାକୁ ନ ଜାଣନ୍ତି ଭଲେ । ନାଶିଲେ ବ୍ରହ୍ମଶାପ୍ୟ ଫଳେ ॥
ଯେଣୁ ଯାଦବ ବଳ ନାଶ । ରହିଲେ ସାତ ପାଞ୍ଚ ଶେଷ ॥
ଈଶ୍ୱର କ୍ରୀଡ଼ା ଯେ ଜଗତେ । ପ୍ରାଣୀୟେ ଈଶ୍ୱର ଆୟତ୍ତେ ॥
ମାରନ୍ତି ଯେକୁ ଆର ବଳେ । ଜଳ ଜନ୍ତୁଏ ଯେହ୍ନେ ଜଳେ ॥
ଅଳପ ଜନ୍ତୁଙ୍କୁ ଗିଳନ୍ତି । ନିଜ ମରଣ ନ ଜାଣନ୍ତି ॥
ଦୁର୍ବଳ ପ୍ରାଣୀଙ୍କି ସୁବଳେ । ଦର୍ପ ହରନ୍ତି ଅବହେଳେ ॥
ଯେକୁ ଆରକେ ଯଦୁ ବଳେ । କଳି ଭିଆଇ ମଦ୍ୟ ଭୋଳେ ॥
ଯଦୁଙ୍କ ବଳେ ଯଦୁ ମାରି । ଭୂମିର ଭାରା ଅପହରି ॥
ଗୋବିନ୍ଦ କଲା କର୍ମ ଯେତେ । ଲୀଳା ବିହାରେ ଯେ ଜଗତେ ॥
ସେ ଦେଶ କାଳ ଅର୍ଥ ଯୁତେ । ତାପ ହରନ୍ତି ଜୀବ ହିତେ ॥
ସେ ଲୀଳା ପଶି ମୋର ଚିତ୍ତେ । ପ୍ରାଣ ହରନ୍ତି ଅନ୍ତର୍ଗତେ ॥
ଯେମନ୍ତେ ପାଣ୍ଡବ ଅର୍ଜୁନ । କୃଷ୍ଣ ଚରଣେ ଦେଇ ମନ ॥
ସୁହୃଦ ଭାବେ ଦୃଢ଼େ ଚିନ୍ତି । ଲଭିଲା ସୁବିମଳ ଭକ୍ତି ॥
କୃଷ୍ଣ ଚରଣ ଅନୁଧ୍ୟାନେ । ଚିତ୍ତ ନିର୍ମଳ ଶାନ୍ତି ଜ୍ଞାନେ ॥
ଥିଲା ଯେ ଅଶେଷ କଲ୍ମଷ । ଭକ୍ତି ମହୁନେ ଗଲା ନାଶ ॥
ନିର୍ମଳ ବୁଦ୍ଧି ପ୍ରକାଶିଲା । ଗୋବିନ୍ଦ ବାକ୍ୟ ସୁମରିଲା ॥
ସଂଗ୍ରାମ ମଧ୍ୟେ ରଥେ ଥାଇ । ଯେ ଥାନ୍ତି ବିଷ୍ଣୁ ପଦ ଧ୍ୟାୟୀ ॥
ତାହା ସୁମରି ଶୁଦ୍ଧମନେ । ଶୋକ ଛାଡ଼ିଲା ବିଷ୍ଣୁ ଧ୍ୟାନେ ॥
ପ୍ରକୃତି ଲୀନେ ଗୁଣ ଲିଙ୍ଗ । ଅସଙ୍ଗେ ହେତୁ ସଙ୍ଗ ଭଙ୍ଗ ॥
ଆତ୍ମା ରମଣ ଅଂଶେ ହରି । ସେ କୃଷ୍ଣ ଗଲେ ନିଜ ପୁରୀ ॥

ଅର୍ଜୁନ ମୁଖୁ ଏହା ଶୁଣି । ମୂର୍ଚ୍ଛିତେ ନୃପ ଚୂଡ଼ାମଣି ॥
କୁନ୍ତୀ ଯେ ନିଜ ପୁରେ ଥିଲେ । ଗୋବିନ୍ଦ ବିୟୋଗ ଶୁଣିଲେ ॥
ତକ୍ଷଣେ ପାଇ ଦିବ୍ୟ ଜ୍ଞାନ । ଗୋବିନ୍ଦ ଭାବେ ହୋଇ ଲୀନ ॥
ଆତ୍ମା ନିବୃତ୍ତ ଜ୍ଞାନ ଯୋଗେ । ନିଶ୍ଚୟେ କରି ସ୍ୱର୍ଗ ମାର୍ଗେ ॥
ଯେବେ ମୁକୁନ୍ଦ ମହୀ ତେଜି । ସ୍ୱଭାବେ ନିଜ ଧାମ ଭଜି ॥
ଯାର ମହିମା ନରଲୋକେ । ସାଧୁୟେ ଏକକୁ ଆରକେ ॥
କହି ତରିବେ ଭବବନ୍ଧୁ । କଳି ଆଗମ ସେହି ଦିନୁ ॥
ସକଳ ଦୋଷ ହେତୁ ଯହିଁ । ବେଦ ପୁରାଣ ମାର୍ଗେ କହି ॥
ମିଳିଲା ନରଲୋକେ ଆସି । ତକ୍ଷଣେ ଗ୍ରାମେ ଗ୍ରାମେ ପଶି ॥
ସକଳ ପୁରେ ପ୍ରାଣୀ ଚିତ୍ତେ । ଲୋଭ କପଟ ଦମ୍ଭମତେ ॥
ସକଳ ପୁନ୍ୟ ଧର୍ମ ନାଶେ । ପ୍ରାଣୀୟେ କଳିର ବିଶ୍ୱାସେ ॥
ନିଷ୍ଠୁର ଚିତ୍ତ ସର୍ବଜନ । ତା ଦେଖି ଧର୍ମର ନନ୍ଦନ ॥
ସ୍ୱର୍ଗ ଗମନ ମନେ ଗୁଣି । ତକ୍ଷଣେ ପରୀକ୍ଷିତ ଆଣି ॥
ଉତ୍ତମ ରାଜଚିହ୍ନ ଦେଖି । ସକଳ ଗୁଣ ଉପଲକ୍ଷି ॥
ଆତ୍ମାର ତୁଲ୍ୟ ପ୍ରାୟେ ମଣି । ଅନେକ ତୀର୍ଥଜଳ ଆଣି ॥
ହସ୍ତିନା ପୁର ନରଲୋକେ । ସ୍ଥାପିଲେ ନୃପ ଅଭିଷେକେ ॥
ଯାଦବ ବଂଶ ଶେଷ ଥିଲା । ବ୍ରଜ ଯେ ଅନିରୁଦ୍ଧ ବଳା ॥
ମଥୁରାପୁରେ ଧର୍ମ ବାଟେ । ସ୍ଥାପିଲେ ସୁରସେନ ପାଟେ ॥
ସକଳ ଭୋଗ ଦୂରକରି । ସ୍ନେହାନୁବନ୍ଧେ ପରିହରି ॥
ଆତ୍ମାରେ ଆତ୍ମା ଅଗ୍ନିଜାଳି । ସର୍ବ ବିଷୟ ଘୃତ ଢାଳି ॥
ଜ୍ଞାନ ଗୋଚରେ ଅଗ୍ନିଜ୍ଞାନ । ତକ୍ଷଣେ ଧର୍ମର ନନ୍ଦନ ॥
ସର୍ବ ବିଷୟ କରି ଦୂର । ନିର୍ମଳ ରାଗ ଅହଙ୍କାର ॥
ଅଶେଷ କର୍ମ ପାଶ ଛେଦି । ଯୋଗେ ଶରୀର ରନ୍ଧ୍ରେ ରୁନ୍ଧି ॥
ବଚନ ମନେ ଲୀନ କରି । ବାୟୁ ଧାରଣେ ପ୍ରାଣଧରି ॥
ଅଜ୍ଞାନ ଉତ୍ସର୍ଗ ସହିତେ । ନିଶ୍ଚିତ ମାର୍ଗ ଅନ୍ତର୍ଗତେ ॥
ପୁଣି ପଞ୍ଚକେ ପଞ୍ଚପ୍ରାଣ । ଜୀବର ଯେଣେ ଉଦ୍ଧାରଣ ॥
ସକଳ ଗୁଣେ ଗୁଣ ଧରି । ଆତ୍ମାରେ ଆତ୍ମା ହୋମକରି ॥
ବ୍ରହ୍ମ ନିର୍ବାଣେ ଦେଇ ଚିତ୍ତ । ଉତ୍ତମ ପଥେ ଉପଗତ ॥
ଚିରାବସନ ନିରାକାର । ମଉନ ମୁକ୍ତକେଶ ଶିର ॥
ଜଡ଼ ଉନ୍ମତ ଭୂତ ପ୍ରାୟେ । ଲୋକ ଦେଖାଇ ନିଜକାୟେ ॥
ଲୋକ ବଦନକୁ ନ ଚାହିଁ । ଅନ୍ଧ ବଧିର ପ୍ରାୟେ ହୋଇ ॥
ହୃଦେ ନିବେଶି ବେନିପାଣି । ଉତ୍ତର ଦିଗେ ନୃପମଣି ॥
ପୂର୍ବେ ଅଶେଷ ମୁନି ସନ୍ଥେ । ମୋକ୍ଷ ହୋଇଲେ ଯେଉଁ ପଥେ ॥
ପରମ ବ୍ରହ୍ମ ଚିନ୍ତି ଚିତ୍ତେ । ପ୍ରସ୍ଥାନ କଲେ ସ୍ୱର୍ଗପଥେ ॥
ପଛେ ଗମନ୍ତି ଚାରିଭାଇ । ରାଜାର ଅନୁରାଗ ବହି ॥

ପ୍ରଜାଙ୍କୁ କରି ଆଲିଙ୍ଗନ । ହରଷେ ହରି ତାଙ୍କ ମନ ॥
ସେ ସାଧୁକୃତ୍ୟ ସତ୍ୟଗୁଣି । ଆତ୍ମାର ଅନ୍ତର୍ଗତେ ଜାଣି ॥
ମନ ନିବେଶି କୃଷ୍ଣ ପାଦେ । ବିଷ୍ଣୁ ଭଗତି ଅପ୍ରମାଦେ ॥
ନିର୍ମଳ ଚିତ୍ତ ତାହାଙ୍କର । ଗୋବିନ୍ଦ ପାଦେ କରି ସାର ॥
ଗୋବିନ୍ଦ ପାଦେ ଚିତ୍ତ ଦେଲେ । ପରମ ଗତି ସେ ଲଭିଲେ ॥
ବିଦୁର ଥିଲା ବନବାସେ । ପ୍ରଭାସ ତୀର୍ଥେ ମୋକ୍ଷ ଆଶେ ॥
ଗୋବିନ୍ଦ ଚରଣ କମଳେ । ପ୍ରାଣ ଛାଡ଼ିଲା ଯୋଗବଳେ ॥
ପିତୃଗଣଙ୍କ ସଙ୍ଗେ ମିଶି । ନକ୍ଷତ୍ର ମଧ୍ୟେ ଯେହ୍ନେ ଶଶୀ ॥
ନିଜ ଭୁବନେ ବିଜେକଲା । ବ୍ରାହ୍ମଣ ଶାପୁଁ ନିସ୍ତରିଲା ॥
ତକ୍ଷଣେ ଦ୍ରୌପଦ କୁମାରୀ । ଭର୍ତ୍ତାଙ୍କ ପଥ ଅନୁସରି ॥
ଗୋବିନ୍ଦେ ଦେଇ ପଞ୍ଚପ୍ରାଣ । ପଥରେ ଛାଡ଼ିଲା ଜୀବନ ॥
ଯେବେ ହୋ ଶୁଣ ବିପ୍ରଜନେ । କୃଷ୍ଣ ମହିମା ଶୁଦ୍ଧମନେ ॥
ଗୋବିନ୍ଦ ଚରଣ କମଳେ । ପଞ୍ଚୁ କୁମର ଭାବ ଭୋଳେ ॥
ସଂସାର ମାୟାଦୂର କଲେ । ଜଗତ ଜନ ନିସ୍ତାରିଲେ ॥
ପରମ ମଙ୍ଗଳ ଯେ ବାଣୀ । ଯେ ପ୍ରାଣୀ ଶୁଦ୍ଧଚିତ୍ତେ ଶୁଣି ॥
ଭଗତି ଲଭେ ଅପ୍ରମାଦେ । ଅନ୍ତେ ପଶଇ କୃଷ୍ଣ ପାଦେ ॥
କୃଷ୍ଣ ମହିମା ସୁଧାରସ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେମହାପୁରାଣେ ପ୍ରଥମସ୍କନ୍ଧେ ପାଣ୍ଡବ ସ୍ୱର୍ଗାରୋହଣେ ନାମ ପଞ୍ଚଦଶୋଽଧ୍ୟାୟ ।*

## ଷୋଡ଼ଶ ଅଧ୍ୟାୟ

ଆନନ୍ଦେ ମୁନିବର ଆଗେ । ସୂତ କହନ୍ତି ଅନୁରାଗେ ॥
ସ୍ୱଭାବେ ଅଭିମନ୍ୟୁ ସୁତ । ତେଜ ବିକ୍ରମେ ପରୀକ୍ଷିତ ॥
ସେ ବ୍ରହ୍ମବାକ୍ୟ ଜନ୍ମକାଳେ । ସମ୍ଭବି ହସ୍ତିନା ମଣ୍ଡଳେ ॥
ରାଜ୍ୟ ଆବୋରି ରାଜା ଯେତେ । ସର୍ବେ ଖଟିବେ ପାଦଗତେ ॥
ବିରାଟ ସୁତ ସୁତା ଥିଲା । ସ୍ନେହେ ତା ପରୀକ୍ଷିତେ ଦେଲା ॥
ଅତି ସୁନ୍ଦର ରୂପ କାନ୍ତି । ନାମ ତାହାର ଇରାବତୀ ॥
ତାହାର ଗର୍ଭୁ ଚାରିପୁତ୍ର । ଧର୍ମେ ସମ୍ପାଦି ପରୀକ୍ଷିତ ॥
କୁମାର ଜନ୍ମେଜୟ ଆଦି । ସକଳ ଗୁଣେ ସେ ପ୍ରସିଦ୍ଧି ॥
ଆନନ୍ଦେ ରାଜା ପରୀକ୍ଷିତ । ଯଜ୍ଞେ ବରିଲା ପୁରୋହିତ ॥
ଗଙ୍ଗାର ତୀରେ ବେଦ ବିଧି । ସାଧିଲା ତିନି ଅଶ୍ୱମେଧି ॥
ଦକ୍ଷିଣା ଦେଲା ମନ ଭରି । ଦିଗ ବିଜୟେ ବିଜେ କରି ॥
କଳିଯୁଗକୁ ଯେକ ଦିନେ । ଦେଖିଲା ବେଳ ଅବସାନେ ॥
ସେ ଶୂଦ୍ରଜାତି ନୃପସଙ୍ଗେ । ଲୌହ ମୂଷଳ ଘେନିଭୁଜେ ॥
ଅଗ୍ରେ ଗୋ ମିଥୁନକୁ ଥୋଇ । ହୁଙ୍କାରେ ପାଦ ପ୍ରହାରଇ ॥
ତାହାକୁ ଦେଖି ନୃପମଣି । ତକ୍ଷଣେ ଭୁଜେ ଧରିଆଣି ॥
ବନ୍ଧନ କଲା ବାହୁବଳେ । ସେ ବୀର ଅବନୀ ମଣ୍ଡଳେ ॥
ଶୁଣି ଶୌନକ ମୁନିଜନେ । ସୂତଙ୍କୁ ଚାହିଁ ତୋଷମନେ ॥
ଆନନ୍ଦେ ହୋଇ କୃତ କୃତ୍ୟ । ବୋଲନ୍ତି ଶୁଣ ମୁନିସୁତ ॥
କେବଣ ହେତୁ ପରୀକ୍ଷିତ । ଦିଗ ବିଜୟେ ଉପଗତ ॥
କଳିକୁ ଧରି ବାହୁବଳେ । ବନ୍ଧନ କଲା କିବାଛଳେ ॥
ସ୍ୱଭାବେ ଶୂଦ୍ରରୂପ ଧରି । କପଟେ ନୃପ ଲିଙ୍ଗକାରୀ ॥
ପାଦ ପ୍ରହାରିଲା କାହାକୁ । ଭୋ ସୂତ କହିବା ଆମ୍ଭକୁ ॥
ଯେ ବିଷ୍ଣୁକଥା ଯଶବାଣୀ । ଜୀବ ନିସ୍ତରେ ଯାହା ଶୁଣି ॥
ଶରୀର ବହି ମୋହବନ୍ଧେ । କି ଭାବ ଅସତ୍ୟ ଆଲାପେ ॥
ଆୟୁଷ ତୁଟେ ଦିନୁଦିନେ । ଛିଦ୍ର ଘଟେ ଜଳ ଯେସନେ ॥
କ୍ଷୀଣ ଆୟୁଷ ପ୍ରାଣୀଙ୍କର । ଅମୃତ ଦାତା ଚକ୍ରଧର ॥
ଯେଣୁ ପ୍ରାଣୀଙ୍କ ନାଶ ଅର୍ଥେ । ମୃତ୍ୟୁ ପୁରୁଷ ଯେ ଜଗତେ ॥
ସେ ନୁହେଁ କାହାର ଆୟତ୍ତ । କରଇ କ୍ଷଣେ କ୍ଷଣେ ଗ୍ରସ୍ତ ॥
ସେ ମୃତ୍ୟୁ ମୁଖୁ ନିସ୍ତରଣେ । ହରି ଭଗତ ମୁନିଗଣେ ॥
ହରି ଭଗତି ସୁଧାପନେ । ଅମୃତ ବିହିତ ବଚନେ ॥
ଦିନ ବଞ୍ଚନ୍ତି ଦୁଃଖ ସୁଖେ । ତାହାଙ୍କୁ ନାରାୟଣ ରଖେ ॥
ସ୍ୱଭାବେ ମନ୍ଦବୁଦ୍ଧି ପ୍ରାଣୀ । ନିଜ ଆୟୁଷ ପରିମାଣି ॥
ନିରତେ ମନ୍ଦ କର୍ମ କରେ । ତାର ଆୟୁଷ ଏ ସଂସାରେ ॥
ଅର୍ଦ୍ଧେ ହରଇ ନିଦ୍ରାନିଶି । ଦିବସେ ବ୍ୟର୍ଥ କର୍ମେ ଗ୍ରାସି ॥

## ଶ୍ରୀସୂତ ଉବାଚ

ସେ ରାଜ ଋଷି ଯେତେବେଳେ । ବସିଲା ହସ୍ତିନା ମଣ୍ଡଳେ ॥
ବିଶେଷେ ଅର୍ଜ୍ଜୁନର ନାତି । ରାଜାଙ୍କ ମଧ୍ୟେ ଚକ୍ରବର୍ତ୍ତୀ ॥
କଳି ପ୍ରବେଶ କଥା ଶୁଣି । ସମରେ ସଜ ନୃପମଣି ॥
ତାର ସମାନ ନୃପବରେ । ସମର୍ଥ ନୋହନ୍ତି ସମରେ ॥
ଉତ୍ତମ ରଥ ସଜ କରି । ରଥେ ଯୋଚିଲା ଆଶ୍ୱଚାରି ॥
ଶ୍ୟାମ ତୁରଙ୍ଗ ମନୋଯବ । କେ କହୁ ଅଶ୍ୱଙ୍କର ଭାବ ॥
ଅଙ୍ଗେ ଭୂଷିତ ଅଳଙ୍କାର । ଯେହ୍ନେ ଉଦିତ ଦିନକର ॥
ରଥ ଉପରେ ସିଂହ ଧ୍ୱଜ । ପୁରୁ ବାହାର ମହାରାଜ ॥
ଆବୃତ ଚତୁରଙ୍ଗ ବଳେ । କେ ତାକୁ ସମ ମହୀତଳେ ॥
ଦିଗବିଜୟେ ବିଜେ କଲା । ଚାଲନ୍ତେ ଅବନୀ କମ୍ପିଲା ॥
ମିଳେ ଉତ୍ତର କୁରୁ ଦେଶେ । ସର୍ବ ନୃପତି ତାର ପାଶେ ॥
ଭଦ୍ରାଶ୍ୱ କେତୁମାଳ ଜିଣି । ଆଗେ ଭାରତ ମଧ୍ୟେ ଆଣି ॥
ବରଷ କିଂପୁରୁଷ ଆଦି । ଜିଣିଲା ସକଳ ସମ୍ପାଦି ॥

ସର୍ବ ନୃପତି ତା ଚରଣେ । ଭୟେ ଖଟନ୍ତି ଦାସ ପଣେ ॥
କେତେ ହେଁ ନୃପତି ତା ସଙ୍ଗେ । କୃଷ୍ଣ ଚରିତ ବୀଣାରଙ୍ଗେ ॥
ପୂର୍ବ ପୁରୁଷଙ୍କର ବାଣୀ । ତୋଷେ ତାହାଙ୍କ ମୁଖୁ ଶୁଣି ॥
ଆତ୍ମାକୁ ରଖିଲେ ଯେମନ୍ତେ । ଦ୍ରୋଣ କୁମର ଶସ୍ତ୍ରାଘାତେ ॥
କୃଷ୍ଣ ପାଣ୍ଡବ ବନ୍ଧୁପଣେ । ଭଗତି କୃଷ୍ଣର ଚରଣେ ॥
ଶୁଣି ସନ୍ତୋଷ ନୃପମଣି । ଉତ୍ତମ ଧନ ବସ୍ତ୍ର ଆଣି ॥
ତାହାଙ୍କୁ ଦେଲେ ପୁରସ୍କାର । ରତ୍ନକଙ୍କଣ ମଣିହାର ॥
ଅଶ୍ରୁ ଲୋଚନେ ଚକ୍ଷୁ ବୁଜି । ପୁଲକ କଲା ରୋମରାଜି ॥
ପାଣ୍ଡବ ସଙ୍ଗେ ଯେତେ ଭାବ । ସଂସାରେ ସାଧିଲେ ମାଧବ ॥
ରଣେ ସାରଥି ପଣେ ରଥେ । ଯେ ବନବାସେ ଘୋର ପଥେ ॥
ଦୁଃଖୁ ଉଦ୍ଧରେ ସଖାଗଣେ । ହସ୍ତିନା ଗଲେ ଦୂତପଣେ ॥
ଆସନ ଶୟନ ଭୋଜନେ । ସ୍ନେହ ବନ୍ଧନ ବନ୍ଧୁଜନେ ॥
ଯେ ଆଦି ଯେତେ କର୍ମ କରି । ପାଣ୍ଡବ ସଙ୍ଗତେ ବିହରି ॥
ସେ ଭାବ ଘେନି ଦୃଢ଼ଚିତ୍ତେ । ଭଜିଲା କୃଷ୍ଣ ପାଦଗତେ ॥
ସେ ପୂର୍ବ ପୁରୁଷଙ୍କ ଧର୍ମ । ସାଧିଲା ଅନୁଦିନେ କର୍ମ ॥
ସେ ପୁଣି ନିଜ କର୍ମ ବଶେ । ଲଭିଲା ଅଳପ ବୟସେ ॥
ତାର ଆଶ୍ଚର୍ଯ୍ୟ କଥା ଯେତେ । ଶୁଣ ଶୌନକ ଯେକ ଚିତ୍ତେ ॥
ଧର୍ମେ ଯେ ଯେକ ପାଦ ବହି । ତକ୍ଷଣେ ବୃଷ ରୂପ ହୋଇ ॥
ଭୂମିକୁ ଦେଖି ଧେନୁ ରୂପେ । ବିଶ୍ୱାସେ ମିଳିଲା ସମୀପେ ॥
ସେ ଧେନୁ ଅତି ଦୁଃଖେ ଦୁଃଖୀ । ଅଧୋବଦନେ ଅଶ୍ରୁମୁଖୀ ॥
ତାର ବଦନ ଚାହିଁ ଧୀରେ । ଧର୍ମ ପୁଚ୍ଛନ୍ତି ପ୍ରିୟଭରେ ॥

## ଧର୍ମ ଉବାଚ

ଭୋ ବସୁନ୍ଧରୀ ସତ୍ୟ କହ । ତୋର ବିଷୟେ ମୋ ସନ୍ଦେହ ॥
କିବା ତନୟ ତୋର ମଲା । ସ୍ୱାମୀ ବା ଦୂରେ ପ୍ରବେଶିଲା ॥
ତୋର ଶରୀରେ କିବା ବ୍ୟାଧି । ସ୍ରବଇ ଅନ୍ତର ଆଚ୍ଛାଦି ॥
ବିସ୍ମୟ ବଦନ ତୋହର । ଯେ ମୁଖ ସ୍ୱଭାବେ ସୁନ୍ଦର ॥
କିବା ତୋହର ମନୋବ୍ୟଥା । କି ନଷ୍ଟ ଧନେ ତୋର ଚିନ୍ତା ॥
ଯେକଇ ପାଦେ ଦେଖି ତୋତେ । ଦୟା ବସିଲା ମୋର ଚିତ୍ତେ ॥
କେବା ତୋହର ପ୍ରାଣ ନାଶେ । ଶୂଦ୍ରେ ବଞ୍ଚିବେ ମାଂସ ଗ୍ରାସେ ॥
କିବା ଦେବଙ୍କ ପ୍ରୀତି ଛଳେ । ଯଜ୍ଞ ନୋହିବ ଭୂମିତଳେ ॥
ତେଣୁ ନ ବରଷିବେ ଦେବେ । ଯେଣୁ ଯେ ପ୍ରଜା ନାଶ ଯିବେ ॥
କିବା ପୁରୁଷ ନିଜ ନାରୀ । ଉପେକ୍ଷି ପର ଦାରା ହରି ॥
କିବା ବାଳକ ପିତାମାତା । ଛାଡ଼ିବେ ଯେଣେ ତାଙ୍କ ଚିନ୍ତା ॥
କିବା ବ୍ରାହ୍ମଣ ବେଦବାଣୀ । ସାଧିବେ ହୀନକୁଳେ ଆଣି ॥
ଅନ୍ୟାୟେ କରିନେବେ ରଜା । ଦୁଃଖେ ପୀଡ଼ିତ ଜନପ୍ରଜା ॥
ନିଜ ଭୁବନ ଛାଡ଼ି ଅନ୍ୟେ । ପଶିବେ ଦୁର୍ଗମ କାନନେ ॥
ପ୍ରାଣୀଯେ ଅନ୍ୟ ଅନ୍ୟ ସ୍ଥାନେ । ଆସନ ଶୟନ ଭୋଜନେ ॥
କରିବେ ପରପାକେ ମତି । ପର ଯୋଷିତେ ଘେନି ରତି ॥
କିବା ତୋହର ଗୁରୁଭାର । ଖଣ୍ଡିଲା ଅବନୀର ଭାର ॥
ତାର ଚରଣ ତୋ ଉପର । ଯେହ୍ନେ ଭୂଷିତ ଅଳଙ୍କାର ॥
ତାର ଚରିତ ଗୁଣ ଲୀଳା । କିବା ତୋ ମନ ସୁମରିଲା ॥
ତାର ବିଯୋଗ ତୋର ଚିତ୍ତ । ଦୁଃଖ ସାଗରେ ମୋହଗତ ॥
ଯେ ଆଦି ଯେତେ ଦୁଃଖ ତୋର । କହ ତୋ ବିମନ ବେଭାର ॥
ଦେବେ ପୂଜନ୍ତି ତୋତେ ଭଲେ । ଯେବେ ଅବଜ୍ଞା କିବା କଲେ ॥
କାଳ ବା ତୋର ଶୁଭହରି । ତେଣୁ ଦିଶିଲୁ ହତଶିରୀ ॥
ଧର୍ମ ବୃଷଭ ବାକ୍ୟ ଶୁଣି । ଧରଣୀ କହେ ମଞ୍ଜୁବାଣୀ ॥

## ଧରଣୀ ଉବାଚ

ଭୋ ବୃଷ ଯେତେ ପ୍ରଶ୍ନ ତୋର । କହିବି ଶୁଣ ମନ ସ୍ଥିର ।
ତୋହର ଯେ ଚାରି ଚରଣ । ପ୍ରାଣୀଙ୍କି ସୁଖ ଯେ କାରଣ ॥
ସତ୍ୟ ଶଉଚ ଦୟା କ୍ଷାନ୍ତି । ତ୍ୟାଗ ସନ୍ତୋଷ ଆର୍ଯ୍ୟବୃତ୍ତି ॥
ତପ ସମାଦି ସମଦମ । ତିତିକ୍ଷା ଇନ୍ଦ୍ରିୟ ସଂଯମ ॥
ବିରକ୍ତି ଜ୍ଞାନ ଯେ ଐଶ୍ୱର୍ଯ୍ୟ । ସ୍ୱାତନ୍ତ୍ର ସ୍ମୃତି ଧୃତି ତେଜ ॥
କୌଶଳ କାନ୍ତି ସଉଭାଗ । ମାର୍ଦ୍ଦବ ସମାଦି ପ୍ରଗ୍ଲର୍ଭ ॥
ପ୍ରଶସ୍ତ ଶାଳ ମହାଶାଳ । ସ୍ଥିର ଗଭୀର ଧର୍ମକୁଳ ॥
ସୁକୃତି ମାନ ଅହଙ୍କାର । ଯେ ସର୍ବ ତୋହର ଶରୀର ॥
ଯେ ଆଦି ଅନ୍ୟ ଧର୍ମ ଯେତେ । କର୍ମ ସାଧନ ଯେ ଜଗତେ ॥
ମହନ୍ତ ଜନ ଆଚରଣ । ଆତ୍ମାର ପରମ କାରଣ ॥
ଯେ ସର୍ବ ଗୁଣ ସଉଭାଗେ । ମିଳିଲେ ଗୋବିନ୍ଦର ସଙ୍ଗେ ॥
ଯେ ସର୍ବ ଗୁଣେ ଲୋକ ଯେତେ । ପଡ଼ିଲେ କଳି ଦୃଷ୍ଟି ପାତେ ॥
ମୁଁ ଯେବେ ଆତ୍ମାକୁ ସୁମରି । ଯେ ସର୍ବ ଗୁଣ ମନେ ଧରି ॥
ତୋର ଚରଣ ଭଙ୍ଗ ଦେଖି । କାନ୍ଦଇ ଅନ୍ଧ ଦୁଃଖେ ଦୁଃଖୀ ॥
ଦେବତା ଋଷି ପିତୃଗଣେ । ଯେ ବନାଶ୍ରମ ଆଚରଣେ ॥
ଯେ ସର୍ବ ଧର୍ମ ଗଲା ଦୂର । ମୋତେ ଛାଡ଼ିଲେ ଚକ୍ରଧର ॥
ବ୍ରହ୍ମାଦି ଦେବଦେବା ଯେତେ । ନିଷ୍ଫଳେ ମୋହର ସଙ୍ଗତେ ॥
ଯାର ଅପାଙ୍ଗ ମୋକ୍ଷ ଶିରୀ । ଲଭିବି ବୋଲି ଆଶାକରି ॥
କଠୋର ତପ ସାଧି ବନେ । ପ୍ରସନ୍ନ ଯାହାର ଚରଣେ ॥
ସେ ଲକ୍ଷ୍ମୀ ତେଜି ପଦ୍ମ ବନ । ଯାର ହୃଦୟେ ଲଭିସ୍ଥାନ ॥
କରି ବଞ୍ଚଇ ସର୍ବ ବେଳା । ସେ ହରି ନିଜ ପୁରେ ଗଲା ॥

ତାର ଚରଣେ ଚିହ୍ନ ଯେତେ । ଧ୍ୱଜ ଅଙ୍କୁଶ ଚିହ୍ନ ଗାତ୍ରେ ॥
ସେ ବେଶେ ଅଳଙ୍କୃତ ଦେହୀ । ଶୁଦ୍ଧ ସୁନ୍ଦର ବିରାଜଇ ॥
ଯେଣୁ ଛାଡ଼ିଲା ମୋତେ ହରି । ତେଣୁ ଦିଶିଲା ହତଶିରୀ ॥
ଅସୁର ଅକ୍ଷୌହିଣୀ ଭାର । ଉଶ୍ୱାସ କଲା ଯେ ମୋହର ॥
ତୋତେ ସ୍ଥାପିଲା ଯେ ସଂସାରେ । ଅଶେଷ ଜନ ଉପକାରେ ॥
ଯାଦବ ବଂଶ ହିତକାର । ଅଶେଷ ଅନଙ୍ଗ ସୁନ୍ଦର ॥
ଯେ ତିନି ଲୋକ ମନ ମୋହେ । ଶ୍ୟାମ ସୁନ୍ଦର ନିଜ ଦେହେ ॥
ସେ ରୂପ ହୋଇଲା ଅନ୍ତର । ତେଣୁ ବିବର୍ଣ୍ଣ ରୂପ ମୋର ॥
ତାର ବିଯୋଗ କେବା କହି । ଯେ ଜୀବ ଲୋକେ ଦେହ ବହି ॥
ପ୍ରେମାବଲୋକ ବହୁମତେ । ମନକୁ ମୋହେ ଅନ୍ତର୍ଗତେ ॥
ମଥୁରା ପୁର ନାରୀଙ୍କର । ଚଞ୍ଚଳ ଚିତ୍ତ ମନୋହର ॥
ତାର ଚରଣ ଯୁଗ ଲାଗି । ପୁଲକ ରୋମ ସଉଭାଗୀ ॥
ଯେମନ୍ତ କହୁ କହୁ ବାଣୀ । ଧର୍ମର ସଙ୍ଗତେ ଧରଣୀ ॥
ସେ ପରୀକ୍ଷିତ ଦଣ୍ଡଧାରୀ । ଦିଗ ବିଜୟ କର୍ମ ସାରି ॥
ଧର୍ମ ଧରଣୀ ସଙ୍ଗମେଳେ । ମିଳିଲା ସରସ୍ୱତୀ କୂଳେ ॥
ବୋଲଇ ଦାସ ଜଗନ୍ନାଥ । ପ୍ରଥମ ସ୍କନ୍ଧ ଭାଗବତ ॥
ଭବ ସିନ୍ଧୁ ତରଣେ ଭେଳା । ଗୀତ ପ୍ରବନ୍ଧେ ପ୍ରକାଶିଲା ॥

*ଇତିଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ଧର୍ମ ଧରଣୀ ସମ୍ବାଦେ ଷୋଡ଼ଶୋଽଧ୍ୟାୟଃ ।*

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଯେବେ ହୋ ଶୁଣ ମୁନିଜନେ । ହରି ଚରିତ ଶୁଦ୍ଧ ମନେ ॥
ସେ ରାଜା ସରସ୍ୱତୀ କୂଳେ । ପ୍ରବେଶ ଚତୁରଙ୍ଗ ବଳେ ॥
ସେ ରାଜଋଷି ପରୀକ୍ଷିତ । ତେଜେ କି ବିରାଜେ ଆଦିତ୍ୟ ॥
ତକ୍ଷଣେ ସରସ୍ୱତୀ କୂଳେ । ମିଳିଲା ଗୋ ମିଥୁନ ବେଳେ ॥
ଦେଖିଲା ରାଜ ରୂପେ ହରି । ଲୌହର ଯଷ୍ଟି କରେ ଧରି ॥
ସ୍ୱଭାବେ ତାର ଶୂଦ୍ର ଦେହୀ । ନଟର ପ୍ରାୟେ ବେଶ ହୋଇ ॥
ସର୍ପର ପ୍ରାୟେ ଘୋର ନାଦେ । ଦଣ୍ଡ ପ୍ରହାରେ ବୃଷ ପାଦେ ॥
ସ୍ୱଭାବେ ଯେକଇ ଚରଣ । ପ୍ରହାର କରେ ପୁଣ ପୁଣ ॥
ତାର ପ୍ରହାରେ ସେ ବିକଳ । ନୟନୁ ବହେ ଅଶ୍ରୁଜଳ ॥
କମ୍ପଇ ମହାଭୟେ ଦେହୀ । ମୂତ୍ର ପୁରୀଷ ଉତ୍ସର୍ଗଇ ॥
ତାର ପ୍ରହାରେ ଧେନୁ କନ୍ଦେ । ସ୍ଥିର ନ ରହେ ଚାରିପାଦେ ॥
ପାଦେ ପ୍ରହାରେ ପୁଣ ପୁଣ । ଲୁଟଇ ଚତୁର ଚରଣ ॥
ବତ୍ସା ବିହୁନେ ଯେହ୍ନେ ଗାଈ । ଜଳ ଆହାର ନ ଛୁଅଁଇ ॥
ତାର ନିକଟେ ରଥେ ଥାଇ । ସୁବର୍ଣ୍ଣ ଅଳଙ୍କୃତ ଦେହୀ ॥
ଅନାଇ ବୃଷଭ ବଦନ । କୋମଳ ଗଭୀର ବଚନ ॥
ବାଣ ଆରୋପି ଧନୁର୍ଗୁଣେ । ପୁଚ୍ଛଇ ପ୍ରହାର କାରଣେ ॥

### ରାଜୋବାଚ

କାହୁଁ ଅଇଲୁ ତୁ ପୁରୁଷ । କହ ତୋହର ନାମ କିସ ॥
ମୋର ଶରଣ ନରଲୋକ । ଯେହାକୁ କରୁ ତୁ ନିରେଖ ॥
ଅବଳ ପ୍ରାଣୀଙ୍କୁ ତୁ ବଳେ । ପ୍ରହାର କରୁ ବଳୀୟାରେ ॥
ବେଶେ ତୁ ରାଜା ରୂପ ବହୁ । ନଟର ପ୍ରାୟେ ଜନ ମୋହୁ ॥
କହୟେ କେବଣ କାରଣ । ଦେଖ ମୋ କରେ ଧନୁର୍ବାଣ ॥
ଦେଖ ଅର୍ଜୁନ ସଙ୍ଗକରି । ନିଜ ଭୁବନେ ଗଲେ ହରି ॥
ତୁ ତ ସ୍ୱଭାବେ ଅରକ୍ଷିତ । ପ୍ରାଣୀଙ୍କି କିମ୍ପା କରୁ ହତ ॥
ପ୍ରାଣୀ ସଂହରୁ ଅବହେଳା । ନିଶ୍ଚୟେ ତୋ କାଳ ପୂରିଲା ॥
ପୁଣି ବୃଷଭ ମୁଖଚାହିଁ । ସଭ୍ରମ ଚିତ୍ତେ ପଚାରଇ ॥
ତୁ ବୃଷ ମୃଣାଳ ଧବଳ । ଯେକଇ ପାଦ ତୋ ଅଚଳ ॥
ତିନି ଚରଣ ତୋର ଥିଲା । କହ କି ହେତୁ କେଣେ ଗଲା ॥
କେଉଁ ଦେବତା କହ ତୁହିଁ । ମାୟାରେ ବୃଷ ରୂପ ହୋଇ ॥
ଏ କଥା ମୋତେ ବଡ଼ ଗରୁ । ମୋହର ମନ ଖେଦ କରୁ ॥
ଦେଖ କୌରବ ବଂଶଭୁଜ । ପର ରକ୍ଷିତ ମୋର କାର୍ଯ୍ୟ ॥
ପ୍ରାଣୀ ଲୋଚନୁ ଅଶ୍ରୁଜଳ । ତୋ ବିନୁ ନ ପଡ଼ଇ ତଳ ॥
ପୁଣି ସୁରଭି ମୁଖ ଚାହିଁ । ଆଶ୍ୱାସେ ବାକ୍ୟେ ପଚାରଇ ॥
ତୁ ଧେନୁ କାନ୍ଦୁ କାହିଁପାଇଁ । ବୃଷଭ ଭୟ ତୋତେ ନାହିଁ ॥
ଭୋମାତ ରୋଦନ ନକର । ମୁହିଁ ଖଳଙ୍କ ଦୁଃଖହର ॥
ମୁହିଁ ପାଳକ ଅଛି ଯହିଁ । ମୋର ପ୍ରଜାଙ୍କୁ ଦୁଃଖ ନାହିଁ ॥
ଯାହାର ରାଜ୍ୟେ ପ୍ରଜାବଳେ । ହିଂସା କରନ୍ତି ଦୁଷ୍ଟ ଖଳେ ॥
ତା ଯେବେ ରାଜା ନ ଶୁଣଇ । ତାର ରାଜତ୍ୱେ ଯଶ କାହିଁ ॥
ରାଜାଙ୍କ ଧର୍ମବଳ ଯେହି । ନିଶ୍ଚିନ୍ତେ ପ୍ରଜାଙ୍କୁ ପାଳଇ ॥
ଯେଣୁ ଯେହାକୁ ବଧ କରି । ଧର୍ମ ଅଧର୍ମ ନ ବିଚାରି ॥
ପ୍ରଜା ରକ୍ଷଣେ ଯେ କାରଣ । ଯେବେ ତୁ ଯେକ ମନେ ଶୁଣ ॥
ତୋହର ଚାରିପାଦ ଥିଲା । ତିନି ଚରଣ କେଣେ ଗଲା ॥
ସୁରଭି ମୁଖ ଚାହିଁ ପୁଣି । ବୋଲଇ ନୃପ ଚୂଡ଼ାମଣି ॥
ଭୋ ମାତ ଶୁଣ ମୋର ବାଣୀ । ତୋ ଦୁଃଖ କହ ପରିମାଣି ॥
କୃଷ୍ଣାନୁବର୍ତ୍ତୀ ରାଜା ଯେତେ । ତାହାଙ୍କ ରିପୁ ଯେ ଜଗତେ ॥

ଧର୍ମ ନ ସହେ ମହୀତଳେ । ଯେ ସାଧୁ ହିଂସେ ଅବହେଳେ ॥
ତୋହର ବିରୂପ ଶରୀର । ପାଣ୍ଡବ ବଂଶେ ଯେ ଦୁଷ୍କର ॥
ନିର୍ଦ୍ଦୋଷୀ ପ୍ରାଣୀଙ୍କି ଯେ ହିଂସେ । ସେ ଅପରାଧେ ଆତ୍ମନାଶେ ॥
ମୁହିଁ ତାହାର ଭୁଜ ଦୁଇ । ଦେବତା ହେଲେ ଛେଦିବଇଁ ॥
ରାଜା ପରମ ଧର୍ମ ଯେହି । ସ୍ୱଧର୍ମେ କ୍ଷିତି କି ପାଳଇ ॥
ଯେ ଚାରି ବର୍ଣ୍ଣ ଯେ ଜଗତେ । ସ୍ୱଧର୍ମ ଛାଡ଼ି ଅନ୍ୟପଥେ ॥
ତାହାଙ୍କ ଗର୍ବ ଯେବେ ହରେ । ସେ ରାଜାଧର୍ମେ ରାଜ୍ୟକରେ ।
ରାଜାର ବାକ୍ୟ ଶୁଣି ତୋଷେ । କହନ୍ତି ଧର୍ମ ପ୍ରେମ ହାସ୍ୟେ ॥

## ଧର୍ମ ଉବାଚ

ପାଣ୍ଡବ ବଂଶେ ଯେ ବେଭାର । ଆରତ ପ୍ରାଣୀ ଭୟ ହର ॥
ଯାହାର ଗୁଣେ ଗୁଣ ହରି । ସାରଥି ଦୂତପଣ କରି ॥
ଶୁଣ ହେ ପୁରୁଷ ଉତ୍ତମ । ଯାହାର ଯେବା ନିଜଧର୍ମ ॥
ପ୍ରାଣୀଙ୍କ କ୍ଳେଶ ବୀର୍ଯ୍ୟ ଯେତେ । ପ୍ରକାଶ ହୋଯେ ଯାର ଚିତ୍ତେ॥
ଯେ ବାକ୍ୟ ଭେଦ ବିମୋଚନ । ତାହାକୁ ବୋଲି ସାଧୁଜନ ॥
ଯେ ଆତ୍ମାଜ୍ଞାନେ ଆତ୍ମାଧରେ । ଆତ୍ମାର ବିକଳ୍ପ ବିଚାରେ ॥
କେ ବୋଲେ ଦେବମାୟାବଳ । କେ ବୋଲେ କର୍ମର ଯେ ଫଳ॥
କେ ବୋଲେ ସ୍ୱଭାବ ଯେହାର । ବ୍ରହ୍ମା ଶଙ୍କରେ ଆଗୋଚର ॥
ତର୍କ ନ ପାରି ଯାହା ମନେ । କେ ତାହା କରିବ ବଚନେ ॥
ଯେ ଆଦି ଯେ ବୁଦ୍ଧି ବୃତ୍ତାନ୍ତ । ତୁ ରାଜା ମନେ ଯେହା ଚିନ୍ତ ॥
ଯେମନ୍ତେ ଧର୍ମ ମୁଖବାଣୀ । ସେ ରାଜା ସାବଧାନେ ଶୁଣି ॥
ମନରୁ ଖେଦ ଦୂରଗଲା । ସ୍ୱରୂପେ ଧର୍ମକୁ ଦେଖିଲା ॥
କପୋଳେ ଦେଇ ବେନିକର । ଧର୍ମକୁ ବୋଲେ ନୃପବର ॥

## ରାଜା ଉବାଚ

ତୁ ଧର୍ମ ଧର୍ମକଥା କହୁ । ଧର୍ମେ ବୃଷଭ ରୂପ ବହୁ ॥
ଅଧର୍ମ କର୍ମ ଯେବା କରେ । ସେ ପ୍ରାଣୀ ଜୀବ ଥାଉ ମରେ॥
ଦେବ ମାୟାର ବେଗ ଗତି । କେ ଜାଣିପାରେ ଚିତ୍ତେଚିନ୍ତି ॥
ମନ ବଚନେ ଆଗୋଚର । ନିଶ୍ଚୟେ ବିଚାର ମନର ॥
ତୋହର ଚତୁର ଚରଣ । ପ୍ରଥମ ଯୁଗ ଆଚରଣ ॥
ତପ ଶଉଚ ଦୟା ସତ୍ୟ । ଯେ ଯୁଗ ଅନୁରୂପେ କୃତ୍ୟ ॥
ସତ୍ୟର ସଙ୍ଗେ ତପ କଲା । ଶଉଚ ତ୍ରେତାରେ ରହିଲା ॥
ଦ୍ୱାପର ଗଲା ଦୟାସଙ୍ଗେ । ମିଥ୍ୟା ରହିଲା କଳି ଯୁଗେ ॥
ତପକୁ ଗର୍ବନାଶ କଲା । ଶଉଚ ସଙ୍ଗେ ସଂହାରିଲା ॥
ମଦ ରହିଲା ଦୟା ବଳେ । ଚରଣେ ରହିଲା ନିଶ୍ଚଳେ ॥
ଯେବେ ଯେ ଅଛି ଯେକପାଦ । ଯେ କଳି ଏହାକୁ ପ୍ରମାଦ ॥
କଠୋର ସତ୍ୟ ଯେ ପାଳିବ । ସେ ପ୍ରାଣୀ କୃଷ୍ଣଙ୍କୁ ପାଇବ ॥
ଯେ ସତ୍ୟ ଭାବୁ ସତ୍ୟଯୁଗ । ଯେ କଳି ଅନ୍ତେ ପ୍ରକାଶିବ ॥
ଯେ ଭୂମି ଭରାଭର ହରି । ଶ୍ରୀକୃଷ୍ଣ ଗଲେ ଅପସରି ॥
କୃଷ୍ଣର ପାଦ ଚିହ୍ନରେଖ । ତେଣୁ ଯେ କୃତ କଉତୁକ ॥
ପବିତ୍ର ସୁନ୍ଦର ଶରୀର । ଦେଖି ସାନନ୍ଦ ସୁରନର ॥
ସେ ହରି ଗଲା ଛାଡ଼ି ଯେବେ । ଦେଖ ଯେହାର ଦୁଃଖ ଯେବେ ॥
ଦୁର୍ଭାଗା ପ୍ରାୟେ ଅଶ୍ରୁମୁଖୀ । କାନ୍ଦଇ ଅତି ଦୁଃଖେ ଦୁଃଖୀ ॥
ପାପିଷ୍ଟ ଶୂଦ୍ରରାଜା ଯେତେ । ସର୍ବେ ଭୁଞ୍ଜିବେ ମିଳି ମୋତେ ॥
ଯେମନ୍ତେ ଧର୍ମ ବସୁନ୍ଧରୀ । ବାକ୍ୟ ବୋଧନେ ଶାନ୍ତିକରି ॥
ତୀକ୍ଷ୍ଣ ଖଡ଼ଗ ଘେନିହସ୍ତେ । ମିଳିଲା କଳିର ଅଗ୍ରତେ ॥
ଅଧର୍ମ ହେତୁ ବଳେ ମାରି । ମୁହିଁ ପାଳିବି ବସୁନ୍ଧରୀ ॥
ଯେମନ୍ତେ ଦେଖି ତା ବଦନ । ପଡ଼ିଲା ନୃପତି ଚରଣ ॥
ପ୍ରାଣ କାତରେ ଉଦବେଗେ । ପଡ଼ିଲା ରାଜପାଦ ଯୁଗେ ॥
ସେ କଳି ପ୍ରାଣର ବିକଳେ । ପାଦେ ପଡ଼ିଲା ଯେତେବେଳେ ॥
ଦେଖିଣ କଳିର ବିକଳ । ସ୍ୱଭାବେ ମେଦିନୀ ବତ୍ସଳ ॥
ତାର ବିକଳ ମୁଖ ଦେଖି । ଖଡ଼ଗ ଭୁଜେ ଉର୍ଦ୍ଧ୍ୱେ ରଖି ॥
ଛେଦନ କରିବି ତୋ ଶିର । ହସି ବୋଲନ୍ତି ନୃପବର ॥

## ରାଜା ଉବାଚ

ତୁ ଯେ ଅଞ୍ଜଳି ଶିରେ ଦେଇ । ପାଦେ ପଡ଼ିଲୁ ଭୟ ପାଇ ॥
ଅର୍ଜ୍ଜୁନ ବଂଶେ ଜାତ ଯେତେ । ତାହାଙ୍କୁ ଭୟ ନାହିଁ ଚିତ୍ତେ ॥
ଅଧର୍ମ ବନ୍ଧୁ ତୁ ସ୍ୱଭାବେ । ମୋର ବଚନ ଶୁଣ ଯେବେ ॥
ମୋହର କ୍ଷେତ୍ରେ ନ ପଶିବୁ । ଯେବେ ତୁ ଜୀବନେ ବର୍ତ୍ତିବୁ॥
ନଥିବୁ ମୋର ରାଜ୍ଯରେ । ଅଧର୍ମ ଯୂଥ ତୋ ସଙ୍ଗରେ ॥
ଲୋଭ ଅନୃତ ଚୌର୍ଯ୍ୟକର୍ମ । ଯେ ଆଦି ଅଶେଷ ଅଧର୍ମ ॥
ଦୁର୍ଜ୍ଜନ ଆଚରଣ ଅଘ । ମାୟା କପଟ ମୋହ ଦମ୍ଭ ॥
ତୋହର ସଙ୍ଗେ ଥାନ୍ତି ଯେତେ । ମୋ ଦେଶେ ପଶିବୁ କେମନ୍ତେ ॥
ଯେ ପ୍ରାଣୀ ଥିବେ ସତ୍ୟଧର୍ମେ । ତହିଁ ନ ପଶିବୁ ତୁ ଭ୍ରମେ ॥
ଯେ ବ୍ରହ୍ମାବର୍ତ୍ତେ ଯେତେ ଜନ । ବ୍ରାହ୍ମଣ ଆଦି ଚାରି ବର୍ଣ୍ଣ ॥
ଆଗମ ନିଗମ ପ୍ରମାଣେ । ଯଜ୍ଞ ସମ୍ପାଦି ଯେ ବ୍ରାହ୍ମଣେ ॥
ହରି ଚରଣେ ପୂଜା କରି । ଯେଣେ ସନ୍ତୋଷ ନରହରି ॥
ସ୍ଥାବର ଆଦି ଚାରିଦେହେ । ବାହ୍ୟ ଅନ୍ତରେ ବ୍ୟାପିରହେ ॥
ସେ ହରି ପୂଜା କରି ଯହିଁ । ତହିଁ ପ୍ରବେଶ ତୋର ନାହିଁ ॥
ଯେ ଧର୍ମ ମୋହର ପ୍ରମାଣ । ଯେଥକୁ ସାକ୍ଷ୍ୟ ନାରାୟଣ ॥
ଶୁଣି ସେ ରାଜାର ଉତ୍ତର । କଳି କମ୍ପଇ ଥରହର ॥

ଉର୍ଦ୍ଧ୍ୱେ ଉଞ୍ଚାଇ ଅସିବର । ତେଢ଼େ କମ୍ପିତ ଦଣ୍ଡଧର ॥
କଳି ଯେ ରାଜା ମୁଖ ଚାହିଁ । ବୋଲଇ ଶିରେ କର ଦେଇ ॥

### କଳିରୁବାଚ

ଭୋ ରାଜା ତୋହର ଚରଣେ । ଥିବି ତୋ ଆଜ୍ଞା ପରମାଣେ ॥
ତୋତେ ଦେଖଇ ମୋର ପଛେ । ଖଡ଼ଗହସ୍ତ ତୁ ପ୍ରତ୍ୟକ୍ଷେ ।
ତୁ ଧର୍ମ ପ୍ରାଣୀଙ୍କର ସାର । ବିଚାରି ମୋତେ ସ୍ଥାନକର ॥
ଯହିଁ ନିଶ୍ଚିନ୍ତେ ଥିବି ମୁହିଁ । ତୋହର ଆଜ୍ଞା ଶିରେ ବହି ॥

### ଶ୍ରୀ ସୂତ ଉବାଚ

କଳି ବଚନ ଶୁଣି ହସି । ସନ୍ତୋଷ ଚିତ୍ତେ ରାଜଋଷି ॥
ଚାରିପ୍ରକାରେ ସ୍ଥାନ ଦେଲା । ନିତ୍ୟେ ଅଧର୍ମ ଯହିଁ ମେଳା ॥
ଦ୍ୟୁତ କାମିନୀ ମଦ୍ୟପାନେ । କହିଲା ପ୍ରାଣୀ ବଧ ସ୍ଥାନେ ॥
ଶୁଣି ବୋଲଇ କଳିଯୁଗ । ମୋର ଯେ ସ୍ଥାନ ଚାରିଭାଗ ॥
ମୁଁ ଯହିଁ ଥିବି ନିରନ୍ତରେ । ପଞ୍ଚମ ଭାଗ ଦିଅ ମୋରେ ॥
କଳିର ବାକ୍ୟ ଶୁଣି ଚିତ୍ତେ । ସୁବର୍ଣ୍ଣ ଦେଲା ତାର ହସ୍ତେ ॥
ଯେ ପଞ୍ଚ ସ୍ଥାନ ପଞ୍ଚଗୁଣ । ବ୍ରାହ୍ମଣେ ସାବଧାନେ ଶୁଣ ॥
ମିଥ୍ୟା ବସଇ ଦ୍ୟୁତ ମଧ୍ୟେ । କାମେ କାମିନୀ ମଦ ମଦ୍ୟେ ॥
ପ୍ରାଣୀ ମରଣେ ରଜୋଗୁଣ । ସୁବର୍ଣ୍ଣ ମଧ୍ୟେ ରିପୁଗଣ ॥
ଯେ ପଞ୍ଚ ସ୍ଥାନ ତାରେ ଦେଲା । ଯହିଁ ଅଧର୍ମ ସଙ୍ଗମେଳା ।
ତକ୍ଷଣେ ରାଜାର ବଚନେ । କଳି ବସିଲା ପଞ୍ଚ ସ୍ଥାନେ ॥
ପ୍ରମାଣି ଅଭିମନ୍ୟୁ ବଳା । କଳିଯୁଗକୁ ସ୍ଥାନ ଦେଲା ॥
ସେ ଧର୍ମଶୀଳ ଯେହ୍ନେ ମେରୁ । ସ୍ୱଭାବେ ଲୋକପତି ଗୁରୁ ॥
ତପ ଶଉଚ ଦୟା ତିନି । ବୃଷଭ ପାଦ ଯେଣେ ମାନି ॥
ନିଜ ବିଷୟର ପାଳନେ । ବର୍ତ୍ତିଲା ଯେ ଚାରି ଚରଣେ ॥
ସ୍ୱଭାବେ ସ୍ୱଧର୍ମ ପାଳନେ । ରାଜା ଉଚିତ ନିଜ ସ୍ଥାନେ ॥
ଧର୍ମ ନନ୍ଦନ ଧରି କୋଳେ । ତପେ ଅରଣ୍ୟେ ଯିବାବେଳେ ।
ଯେମନ୍ତେ ଶିକ୍ଷା ତାକୁ ଦେଇ । ସ୍ୱର୍ଗେ ଚଳିଲେ ପାଞ୍ଚଭାଇ ॥
ସେହି ପ୍ରକାରେ ମନେଗୁଣି । ଧୀରେ କୌରବ ଶିରୋମଣି ॥
ହସ୍ତିନାପୁରେ ରାଜନୀତି । ପ୍ରଜା ପାଳନେ ଚକ୍ରବର୍ତ୍ତୀ ॥
ଯେମନ୍ତେ ଅଭିମନ୍ୟୁ ସୁତ । ପ୍ରଜା ପାଳରେ ସୁବିଦିତ ॥
ତାହାର ରାଜ୍ୟେ ତୁମ୍ଭେ ଥାଇ । ହରି ଭଜନ ଯଜ୍ଞ ଦାହୀ ॥
ସେ ହରି ଚରଣେ ବିଶ୍ୱାସ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ କଳିନିଗ୍ରହେ ନାମ ସପ୍ତଦଶୋଽଧ୍ୟାୟଃ ।*

## ଅଷ୍ଟାଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଦ୍ରୋଣ କୁମର ଶସ୍ତ୍ରଘାତେ । ପ୍ରାଣ ବଞ୍ଚିଲା ଗର୍ଭଗତେ ॥
କୃଷ୍ଣର ଅନୁଗ୍ରହ ଭାବେ । ନମିଲା ଜନନୀର ଗର୍ଭେ ॥
ବ୍ରାହ୍ମଣ କୋପେ ଶାପ୍ୟ ଦେଲା । ତକ୍ଷକେ ମର ତୁ ବୋଇଲା ॥
ତେଣୁ ତକ୍ଷକ ତାକୁ ବଳେ । ଦେହେ ଦଂଶିଲା ଗଙ୍ଗାଜଳେ ॥
ମରଣ ଜାଣି ମହୀପତି । ହୃଦେ ଚିନ୍ତିଲା ଶିରୀପତି ॥
ହରି ମହିମା ପରିମାଣି । ବ୍ୟାସ ନନ୍ଦନ ମୁଖୁ ଶୁଣି ॥
ଗଙ୍ଗାରେ ଛାଡ଼ି ନିଜ ପ୍ରାଣ । ଗୋବିନ୍ଦେ ପଶିଲା ଶରଣ ॥
କୃଷ୍ଣର ଗୁଣ ଗାଥାପନ୍ତି । ଯେ ନିତ୍ୟେ ହୃଦୟେ ଚିନ୍ତନ୍ତି ॥
କୃଷ୍ଣର କଥାମୃତ ତୁଣ୍ଡେ । କହି ରୋମାଞ୍ଚ ନିଜ ପିଣ୍ଡେ ॥
ସଦାକାଳେ ଯେ ତାହା ଚିନ୍ତି । ମରଣେ କିବା ତାଙ୍କ ଭ୍ରାନ୍ତି ॥
ସେ ରାଜା ଯେତେ ଦିନ ଥିଲା । ସଂସାରେ କଳି ନ ପଶିଲା ॥
ନନ୍ଦନନ୍ଦନ ଯେତେବେଳେ । ପ୍ରାଣ ତେଜିଲା ମହୀତଳେ ॥
ତକ୍ଷଣେ ଅଧର୍ମ ପୁରୁଷ । କଳି ଯେ ସଂସାରେ ପ୍ରବେଶ ॥
ସେ ରାଜା ତାକୁ ସ୍ଥାନ ଦେଇ । ସାରଙ୍ଗ ପ୍ରାୟେ ସାର ଖାଇ ॥
କୁଶଳ କର୍ମ ଯେ କରନ୍ତି । ସେ ଫଳ ଯେ ଦେହେ ଭୁଞ୍ଜନ୍ତି ॥
ଇତର କର୍ମ ନ ଲାଗଇ । ଯେ ଶୁଭ କର୍ମେ ନିତ୍ୟେ ଥାଇ ॥
ଯେ କଳିଯୁଗ ଭୟଙ୍କର । ସ୍ୱଭାବେ ସୁଧୀର ଗଭୀର ॥
ନିରତେ ଅପ୍ରମିତ ଦେହୀ । ସିଂହର ପ୍ରାୟେ ସେ ଭ୍ରମଇ ॥
ପ୍ରମତ୍ତ ପ୍ରାୟେ ବାଳ ମଧ୍ୟେ । ସେ କଳି ବିହରେ ଅନଳେ ॥
ସେ ପରୀକ୍ଷିତ ଗୁଣଗାଥା । କହ ନିରତେ କୃଷ୍ଣ କଥା ॥
ଭାବେ କହିଲି ତୁମ୍ଭ ଆଗେ । ଯେଣୁ ପୁଚ୍ଛିଲ ପ୍ରିୟ ଭାବେ ॥
କୃଷ୍ଣର ଯେତେ ଗୁଣଗାଥା । ଯେ ସାଧୁ ସଭା ମଧ୍ୟେ ଗୀତା ॥
ଯାର ମହିମା ଶୁଦ୍ଧ ଚିତ୍ତେ । କହି ବଞ୍ଚନ୍ତି ସାଧୁ ଯୂତେ ॥
ନିତ୍ୟେ ଯେ ତାର ପାଦ ଚିନ୍ତି । ନିଷ୍ଠେ ଗୋବିନ୍ଦେ ସେ ପଶନ୍ତି ॥
ସୂତ ବଚନ ଶୁଣି କର୍ଣ୍ଣେ । ମନ ଆନନ୍ଦେ ବିପ୍ରଜନେ ॥
କର ପ୍ରସାରି ଜଣେ ଜଣେ । ସୂତଙ୍କୁ କରନ୍ତି କଲ୍ୟାଣେ ॥

### ଶୌନକ ଉବାଚ

ନିର୍ମଳ ଯଶୋଗୁଣ ଦେହୀ । ଚିରଜୀବିତ ହୁଅ ତୁହି ॥
ଆମ୍ଭେ ଯେ ନର ଦେହ ବହି । ତୋର ନିକଟେ ସୁଖେ ଥାଇ ॥
କୃଷ୍ଣ ଅମୃତ କଥାମାନ । ତୋର ବଦନୁ କର୍ଣ୍ଣେପାନ ॥
କରି ବଞ୍ଚିଲୁ ଦିନାକେତେ । ସୁ ସାଧୁଜନଙ୍କ ଆୟତେ ॥
ଯେ ଯଜ୍ଞ କର୍ମ ଆମ୍ଭ ଚିତ୍ତ । ବେଦ ବଚନେ ମୋହଗତ ॥

ଯଜ୍ଞର ଧୂମେ ଧୂମାକୁଳ । ଆମ୍ଭର ଆତ୍ମା ହୀନବଳ ॥
ଫୁଟିଲୁ ଯଜ୍ଞ ବାଟେ ଭ୍ରମି । ପଥୁକି ଯେହ୍ନେ ପଥଶ୍ରମୀ ॥
ତୁ ଯେ ଆମ୍ଭର ଶ୍ରମ ଜାଣି । କୃଷ୍ଣର କଥାମୃତ ବାଣୀ ॥
ପାନ କରାଇ ଶ୍ରୁତି ମାର୍ଗେ । ଆମ୍ଭ ଜୀବନ ରଖ ଯେବେ ॥
ହରି ଭଗତ ସଙ୍ଗ ସଙ୍ଗେ । ଯେ ନର ବଞ୍ଚେ ନାନାରଙ୍ଗେ ॥
ସେ ସାଧୁ ସଙ୍ଗେ ସ୍ୱର୍ଗ ମୋକ୍ଷ । କେ ତୁଲ୍ୟ କରିବ ପ୍ରତ୍ୟକ୍ଷ ॥
ଯେଣୁ ଯେ କରେ ସାଧୁସଙ୍ଗ । ତରଇ ଯେ ଭବ ତରଙ୍ଗ ॥
ପ୍ରାଣୀ ବାଞ୍ଛିତ ଆଶା ଯେତେ । ଅଧିକ କିବା ଯେ ଜଗତେ ॥
କୃଷ୍ଣ କଥାରେ ରସ ଯେତେ । ତାହା ଆସ୍ୱାଦି ଶୁଦ୍ଧ ଚିତ୍ତେ ॥
କେ ରସ ଜ୍ଞାତା ତାହା ତେଜେ । ଯେ କର୍ଣ୍ଣ ଜିହ୍ୱା ସ୍ୱାଦୁ ବୁଝେ ॥
ଯାହାର ଗୁଣେ ଅନ୍ତ ନାହିଁ । ସ୍ୱଭାବେ ନିର୍ଗୁଣ ବୋଲାଇ ॥
ଭବ ବିରଞ୍ଚି ଯାର ଅନ୍ତ । ପ୍ରମାଣି ନ ପାରେ ଜଗତ ॥
ଯେଣୁ ଭଗତ ପ୍ରାଣୀଙ୍କର । ଭାବଙ୍କ ମଧ୍ୟେ ତୁମ୍ଭେ କର ॥
ମହତ ପ୍ରାଣୀଙ୍କ ଶରଣ । ଯାହାର ଅଭୟ ଚରଣ ॥
ସେ କୃଷ୍ଣ ଉଦାର ଚରିତ । ବିଶୁଦ୍ଧ ରସେ ଆମ୍ଭଚିତ୍ତ ॥
ଲଭିଲା ମଧୁକର ପ୍ରାୟେ । ଭୋ ମୁନି କର ତୁ ସଦୟେ ॥
କହ ଗୋବିନ୍ଦ ରସ କଥା । ଯେଣେ ଖଣ୍ଡିବ ଭବବ୍ୟଥା ॥
ସେ ମହାଭାଗ ପରୀକ୍ଷିତ । ଭଗତ ମଧ୍ୟେ ବୁଦ୍ଧିମନ୍ତ ॥
ବ୍ୟାସ ନନ୍ଦନ ମୁଖୁବାଣୀ । ସାନନ୍ଦ ଗଙ୍ଗାତୀରେ ଶୁଣି ॥
ଗରୁଡ଼ ଧ୍ୱଜ ପାଦମୂଳେ । ପ୍ରାଣ ନିବେଶି ଗଙ୍ଗାଜଳେ ॥
ପଶିଲା ସର୍ବ ଦୁଃଖ ତେଜି । ହରି ଚରଣ ଭାବେ ଭଜି ॥
ତାର ଚରିତ ଯୋଗସାର । ଯେଣୁ ଭଗତ ମଧ୍ୟେ ବର ॥
ଅନନ୍ତ ଚରିତ ସଂଯୁକ୍ତ । ଯେ କର୍ମ କୃତ ପରୀକ୍ଷିତ ॥
ଶୁଣି କହନ୍ତି ସୂତ ମୁନି । ବିପ୍ରଙ୍କ ଭାବେ ଭାବ ଘେନି ॥

### ଶ୍ରୀ ସୂତ ଉବାଚ

ବୋଲନ୍ତି ଯେ ଭାଗ୍ୟ ମୋହର । ବୃଦ୍ଧଙ୍କ ମଧ୍ୟେ ପୁରସ୍କାର ॥
ବିଲୋମେ ଜନ୍ମ ମୋର ଦେହୀ । ଦୁଷ୍କୁଳ କୁଳ ମଧ୍ୟେ ରହି ॥
ମହାନ୍ତ ଜନ ଯାକୁ ପାଇ । ତାର ଦୁଷ୍କୃତ ଦୋଷ କାହିଁ ॥
କୃଷ୍ଣର ନାମ ଯେ ଗୁଣନ୍ତି । ଯେ ଅବା ଶ୍ରବଣେ ଶୁଣନ୍ତି ॥
ସେ ହରି ସର୍ବ ଘଟେ ଥାଇ । ଶରଣ ରକ୍ଷଣ ବୋଲାଇ ॥
ଅନନ୍ତ ଶକ୍ତି ସେ ଅନନ୍ତ । ଯାର ନିରୋଧେ ବେଦ ପଥ ॥
ଯୋଗ ସମାଦି ତପ ଚିନ୍ତି । ଯେ ଲକ୍ଷ୍ମୀ କଟାକ୍ଷ ଇଛନ୍ତି ॥
ସେ ଲକ୍ଷ୍ମୀ ସର୍ବଗୁଣ ଛାଡ଼ି । ଯାର ଚରଣେ ଚିତ୍ତ ବଡ଼ି ॥
ନିତ୍ୟେ ବସଇ ବକ୍ଷ ସ୍ଥଳେ । ଧ୍ୟାନ ନିବେଶି ପାଦ ମୂଳେ ॥
କୃଷ୍ଣର ପାଦ ପଦ୍ମ ଗନ୍ଧେ । ଭୃଙ୍ଗେ ଯେସନେ ମକରନ୍ଦେ ॥
ଯାହାର ପାଦ ନଖ ଲାଗି । ସ୍ୱଭାବେ ଗଙ୍ଗା ସଉଭାଗୀ ॥
ସେ ଗଙ୍ଗା ଜଳ ଯେ ଜଗତେ । ପୂଜନ୍ତି ବିରଞ୍ଚି ସହିତେ ॥
ସେ ଗଙ୍ଗାନାମ ଉଚାରଣେ । ପ୍ରାଣୀ ତରନ୍ତି ଭବବନେ ॥
ଯାହା ଚରଣେ ସିଦ୍ଧଗଣେ । ସମାଦି ଯୋଗ ଆଚରଣେ ॥
ଯାହା ବିଷୟ ମୁନିଗଣେ । ଧ୍ୟାନେ ନିବନ୍ଧେ ଅନୁକ୍ଷଣେ ॥
ଭକ୍ତି ସମ୍ପାଦି ମୁନିମାନେ । ତରିଲେ ଶରୀର ବନ୍ଧନେ ॥
ଅର୍ଯ୍ୟମା ଆଦି ମୁନିଯେତେ । ପୂର୍ବେ ପଚାରିଛନ୍ତି ମୋତେ ॥
କହ ଶ୍ରୀକୃଷ୍ଣର ମହିମା । କି ଅବା ତାର ଗୁଣ ସୀମା ॥
କହିଲି ତାଙ୍କ ମୁଖ ଚାହିଁ । ଯେହ୍ନେ ଗଗନେ ଅନ୍ତ ନାହିଁ ॥
ବିଷ୍ଣୁ ମହିମା ଅଗୋଚର । ଯେ ପକ୍ଷୀ ଉଡ଼େ ଯେତେଦୂର ॥
ତାର ବାରତା ସେ ଜାଣନ୍ତି । ଅଧିକ ନ ପାରନ୍ତି ଚିହ୍ନି ॥
ଯେଣୁ ପଣ୍ଡିତ ଜନ ଯେତେ । ଜ୍ଞାନ ବିଚାରି ଯେ ଜଗତେ ॥
ବିଷ୍ଣୁର ମହିମା ବିଚାରେ । ସହସ୍ର ଜନ୍ମେ କେବା ପାରେ ॥
ଯେବେ ହୋ ଶୁଣ ବିପ୍ରଜନେ । ହରି ଚରିତ ସାବଧାନେ ॥
ସେ ପରୀକ୍ଷିତ ଯେକ ଦିନେ । ମୃଗୟା ଅର୍ଥେ ଗଲା ବନେ ॥
ମୃଗ ନ ପାଇ ଘୋର ବନେ । କ୍ଷୁଧିତ ତୃଷିତ ବଦନେ ॥
ଜଳ ନ ପାଇ ପଥଶ୍ରମେ । ମିଳିଲା ମୁନିଙ୍କ ଆଶ୍ରମେ ॥
ଦେଖିଲା ଯେକ ବୃକ୍ଷ ତଳେ । ବ୍ରାହ୍ମଣ ଆସନ ନିଶ୍ଚଳେ ॥
ଆନନ୍ଦେ ମୁଦ୍ରିତ ଲୋଚନେ । ଆତ୍ମା ନିବେଶି ଯୋଗଧ୍ୟାନେ ॥
ଅନ୍ତେ ନିଶ୍ଚଳ ମନ ବୁଦ୍ଧି । ପବନ ନବ ରନ୍ଧ୍ରେ ରୁନ୍ଧି ॥
ଇନ୍ଦ୍ରିୟଗଣ ପରିହାରେ । ଧ୍ୟାନେ ପ୍ରବେଶ ଶୂନ୍ୟ ପୁରେ ॥
ଆଧାର ନାଭି ଅର୍ଦ୍ଧ ଉର୍ଦ୍ଧ୍ୱେ । ମନ ପବନ ବ୍ରହ୍ମ ରନ୍ଧ୍ରେ ॥
ସର୍ବ ବିକାରୁ ସେ ଅତୀତ । ଧ୍ୟାନେ ନିଶ୍ଚଳ ବ୍ରହ୍ମସୁତ ॥
କପିଳ ଜଟା ଭାର ଶିରେ । ହରିଣ ଚର୍ମର ଉପରେ ॥
ଯେମନ୍ତେ ବିପ୍ରଙ୍କୁ ଅନାଇ । ତୃଷିତ କଣ୍ଠ ତାଳୁ ହୋଇ ॥
ଜଳ ମାଗିଲା ମହାରାଜା । ଇଛଇ ଆପଣାର ପୂଜା ॥
ଉଦକ ତୃଣ ଭୂମି ଆଦି । ଅତିଥି ପୂଜା ଯେ ପ୍ରସିଦ୍ଧି ॥
ଅର୍ଘ୍ୟ ସୁକୃତ ସାଧୁବାଣୀ । ନ ଲଭି କୋପେ ନୃପମଣି ॥
ମନେ ବିଚାରେ ନୃପରାଜ । ଅବଜ୍ଞା କଲା ମୋତେ ଦ୍ୱିଜ ॥
କ୍ଷୁଧା ତୃଷାରେ କ୍ଷୋଭମନ । କ୍ଷଣ କ୍ଷଣକେ ଅଚେତନ ॥
ପ୍ରଚଣ୍ଡ କ୍ରୋଧ କୋପାନଳେ । ମୃତ୍ୟୁ ଉରଗ ଧନୁ ହୁଳେ ॥
ବ୍ରାହ୍ମଣ ଗଳେ ସର୍ପ ଦେଲା । ତକ୍ଷଣେ ନିଜ ପୁରେ ଗଲା ॥
ପଥେ ଚଳଇ ନୃପମଣି । ବ୍ରାହ୍ମଣ କଥା ମନେ ଗୁଣି ॥

ବୋଲଇ କପଟ ଯେହାର । ନିଷ୍କଳ ସମାଦି ଗୋଚର ॥
ଯେତେ ଅବସ୍ଥା ନର ଦେହେ । କ୍ଷତ୍ରିୟ ଜନ୍ମ କେବା ସହେ ॥
ଯେମନ୍ତେ ଗଲା ନରନାଥ । ଋକ୍ଷଣେ ବ୍ରାହ୍ମଣର ସୁତ ॥
ବାଳକ ସଙ୍ଗେ କ୍ରୀଡ଼ା କରେ । ତେଜେ ଅନଳ ରୂପ ଧରେ ॥
ରାଜାର ଆଗମନ କଥା । ପିତାର ଯେମନ୍ତ ବ୍ୟବସ୍ଥା ॥
ବାଳକ ମୁଖୁ ଶୁଣି କୋପେ । ମିଳିଲା ପିତାର ସମୀପେ ॥
ପିତାର ସ୍କନ୍ଧେ ସର୍ପ ଦେଖି । କୋପେ ଚଞ୍ଚଳ କଲା ଆଖି ॥
ସଂସାର ଧର୍ମ ଯେ ପାଳକ । ଦେଖି ତାହାର ଅବିବେକ ॥
ଶ୍ୱାନର ପ୍ରାୟେ ଚେଷ୍ଟା କଲା । ଦାସତ୍ୱେ ସ୍ୱାମୀଙ୍କି ଲଙ୍ଘିଲା ॥
ବ୍ରାହ୍ମଣେ କ୍ଷତ୍ରିୟଙ୍କୁ ବରି । ଯଜ୍ଞରେ ଦ୍ୱାରପାଳ କରି ॥
ଶ୍ୱାନର ପ୍ରାୟେ ଦ୍ୱାରେ ଥାନ୍ତି । ସେ ଭାଣ୍ଡ ଭୋଜନ କରନ୍ତି ॥
ଉତ୍ପାତ ପାପୀଦଣ୍ଡ ଅର୍ଥେ । ସେ ବିଷ୍ଣୁ ଜନ୍ମ ଯେ ଜଗତେ॥
ସେ ଯେଣୁ ନିଜପୁରେ ଗଲା । ତେଣୁ ଯେ ଅନ୍ୟାୟେ ଚିନ୍ତିଲା॥
ଯେ ପ୍ରାଣୀ ସଂସାରେ ରହିଲେ । ଧର୍ମ ନ ଥିବ ଯେଥି ଭଲେ ॥
ଦେଖୁ ସେ ମୋର ବିପ୍ର ପଣ । କରିବି ଏଥିର କାରଣ ॥
ଯେମନ୍ତେ ବାଳକ ଯେ କହି । ରଙ୍ଗ ନୟନେ ରୋଷବହି ॥
କୌଶିକ ଜଳେ ହସ୍ତଭରି । ମାର୍ଜ୍ଜନା ଆଚମନ ସାରି ॥
ରାଜା ଉଦ୍ଦେଶ କରି ମନେ । ବଜ୍ର ପ୍ରହାରଣ ବଚନେ ॥
ଅଧର୍ମ ସମାଦି ବିଚାର । ଅଧର୍ମ କଲା ଯେ ପାମର ॥
ଆଜହୁଁ ସପ୍ତଦିନ ଶେଷେ । ତକ୍ଷକ ଆସି ମହାରୋଷେ ॥
ତାର ଶରୀର ବେଗେ ଖାଉ । ଏ ପାପୀ ଜଗତେ ନ ଥାଉ ॥
ମୋର ପିତାକୁ ଦ୍ରୋହ କରି । ଯେ କିମ୍ପା ଥିବ ଦେହ ଧରି ॥
ଯେମନ୍ତ ଶାପ୍ୟ ତାକୁଦେଲ । ମିଳିଲା ପିତା ପାଶେ ଯାଇ ॥
ପିତାର ଗଳେ ସର୍ପ ଦେଖି । କାନ୍ଦଇ ଅତି ଦୁଃଖେ ଦୁଃଖୀ ॥
ପୁତ୍ର ରୋଦନ କର୍ଣ୍ଣେ ଶୁଣି । ଧ୍ୟାନ ଭାଜିଲା ବିପ୍ରମଣି ॥
ସେ ଅଙ୍ଗିରସ ନିଜାସନେ । ଚାହିଁଲେ ଉନ୍ମୀଳ ନୟନେ ॥
ଆପଣା ଗଳେ ସର୍ପ ଦେଖି । ଉଠିଲେ ଆସନ ଉପେକ୍ଷି ॥
ଗଳାରୁ ସର୍ପକୁ ପକାଇ । ପୁଚ୍ଛଇ ପୁତ୍ର ମୁଖ ଚାହିଁ ॥
ହେ ପୁତ୍ର କାନ୍ଦୁ କିସ ଅର୍ଥେ । କେପ୍ରାଣୀ ଶୋକ ଦେଲା ତୋତେ ॥
ପିତା ବଚନ ଶୁଣି ବଳା । ସଂକ୍ଷେପି ସମସ୍ତ କହିଲା ॥
ପୁତ୍ର ବଚନ ଶୁଣି କର୍ଣ୍ଣେ । କୋପ ବସିଲା ପିତାମନେ ॥
ପୁତ୍ରକୁ ଚାହିଁ କୋପଭରେ । ବୋଲଇ ନିଷ୍ଠୁର ଉତ୍ତରେ ॥
ଅଳପ ଅପରାଧେ ତୁହିଁ । ଯେ କର୍ମ କଲୁ କିସ ପାଇଁ ॥
ସେ ଭାଗ୍ୟବନ୍ତ ପୁଣ୍ୟଦେହୀ । ଯେ ଶାପ୍ୟ ତାକୁ ନ ଲାଗଇ ॥
ଅହୋ ଆଶ୍ଚର୍ଯ୍ୟ ଦେଖକଥା । ଶୁଣି ମୋ ମନେ ଗୁରୁ ବ୍ୟଥା ॥

ଅଳପ ଅପରାଧେ ଦେଖ । ଦୁର୍ବୁଦ୍ଧି ବିହିଲୁ ବାଳକ ॥
ଯାହାର ଭୁଜ ଆଶ୍ରେ କରି । ଧର୍ମ ସମାଦି ସୁଖ ଶିରୀ ॥
ପ୍ରଜାଯେ ସୁଖେ ଯେ ଭୁଞ୍ଜନ୍ତି । ସେ କି ତାହାକୁ ଦ୍ରୋହଚିନ୍ତି ॥
ବିଷ୍ଣୁର ଅଂଶେ ନରପତି । କେ ଅଛି ତାରେ ଦ୍ରୋହଚିନ୍ତି ॥
ଯେବେ ରାଜାର ଅନ୍ତେ ମହୀ । ଚଉର୍ଯ୍ୟ ବଳ ପ୍ରାୟେ ହୋଇ ॥
ଧନ ହରିବେ ଅନ୍ୟୋ ଅନ୍ୟେ । ପ୍ରଜା ପଶିବେ ଘୋରବନେ ॥
ଧର୍ମ ଛାଡ଼ିବ ଚାରିପାଦେ । ଯେବା ବିହିତ ଅଛି ବେଦେ ॥
ସ୍ୱଧର୍ମ ତେଜି ଦୂରାନ୍ତରେ । ପଶିବେ ଅଧର୍ମ ବେଭାରେ ॥
କେହୁ ବଞ୍ଚିବେ ଅର୍ଥକାମେ । ବଞ୍ଚିବେ ଶ୍ୱାନ କପି ଧର୍ମେ ॥
ଯେ ଧର୍ମଶୀଳ ନରପତି । ସୁକୃତ ବନ୍ତ ଚକ୍ରବର୍ତ୍ତୀ ॥
କଲା ଯେ ତିନି ଅଶ୍ୱମେଧ । ଆଗମ ନିଗମ ପ୍ରସିଦ୍ଧ ॥
କ୍ଷୁଧା ତୃଷାରେ ବୁଲିବନେ । ମିଳିଲା ମୋହର ଆଶ୍ରମେ ॥
ତାହାକୁ ଶୁଶ୍ରୁଷା ନ କଲୁ । ବିଶେଷେ ଘୋର ଶାପ୍ୟ ଦେଲୁ॥
ସେ ଆମ୍ଭ ଶାପ୍ୟଯୋଗ୍ୟ ନୁହେଁ । ଅଶେଷ ଧର୍ମେ ଦେହ ବହେ ।
ନିଷ୍ପାପୀ ଭୃତ୍ୟଙ୍କୁ ଯେ ବଳେ । ଦ୍ରୋହ ଚିନ୍ତିଲୁ ମତି ଭୋଳେ॥
ଅଳପ ବୁଦ୍ଧି ତୁ ବାଳକ । ମୋହର ମନେ ଦେଲୁ ଦୁଃଖ॥
ଯେମନ୍ତ ମନେ ବିଷ୍ଣୁ ଧ୍ୟାୟୀ । ବ୍ରାହ୍ମଣ ବୋଲେ ତ୍ରାହି ତ୍ରାହି ॥
ଭୋ ନାଥ କରୁଣା ସାଗର । ବାଳକ ଦୋଷ କ୍ଷମାକର ॥
ତୋର ଭଗତ ଯେତେ ଜନେ । କୋପ ନ ବସେ ତାଙ୍କ ମନେ॥
ପ୍ରାଣୀଙ୍କ ଅପରାଧ ସହେ । ତୋହର ଭାବ ଚିତ୍ତେ ବହେ॥
ଅତି ଅନ୍ୟାୟ କର୍ମ ମୋର । ମୋ କର୍ମ ହୀନ ଦୁରାଚାର ॥
ନିରପରାଧେ ଦ୍ରୋହଚିନ୍ତି । ଯେ ମୋର ଚିତ୍ତେ ଗୁରୁଭ୍ରାନ୍ତି ॥
ଦେବ ହେଳଣ କର୍ମମୋର । ନିଶ୍ଚଳେ ଲଭି ଦାମୋଦର ॥
ଦୁର୍ଗତି ଲଭିବି ନିକଟେ । ଯେ ଘୋର ସମୁଦ୍ର ସଙ୍କଟେ ।
ଯେମନ୍ତେ ପୁତ୍ର ଅପରାଧେ । ମହତ ଶାସ୍ତ୍ର ଅପବାଦେ ॥
ଅନୁତାପିତ ବିପ୍ରବର । ବୋଲେ ଗୋବିନ୍ଦ ରକ୍ଷାକର ॥
ରାଜା ଯେ ଅପରାଧ କଲା । ସେ କଥା ଚିତ୍ତେ ନ ଘେନିଲା॥
ଯେ ନରଲୋକେ ସାଧୁ ଯେତେ । କ୍ରୋଧ ନ ବସେ ତାଙ୍କ ଚିତ୍ତେ॥
ପ୍ରାଣୀଙ୍କ ଦୋଷ ନ ଘେନନ୍ତି । ସମଦୃଷ୍ଟିରେ ଆତ୍ମଚିନ୍ତି ॥
ସୁସାଧୁଜନଙ୍କର କଥା । କେବେହେଁ ନୁହଇ ଅନ୍ୟଥା ॥
ବୋଲଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ସୁଜନ ଜନଙ୍କର ହିତେ । ଯେବା ପ୍ରକାଶେ ମୋର ଚିତ୍ତେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ପରୀକ୍ଷିତ ବ୍ରହ୍ମଶାପ୍ୟ ଇଭନେ ନାମ ଅଷ୍ଟାଦଶୋଽଧ୍ୟାୟ ।*

## ଊନବିଂଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସେ ମହୀପତି ପରୀକ୍ଷିତ । ଚିନ୍ତା ନିମଗ୍ନେ ଦୃଢ଼ଚିତ୍ତ ॥
ଯେକାଳେ ବସି ବିଚାରଇ । ନିନ୍ଦିତ କର୍ମ କଲି ମୁହିଁ ॥
ଅର୍ଜିତ କର୍ମ ବଶ ହୋଇ । ଗୁରୁ ଯେସନେ ଦୀକ୍ଷା ଦେଇ ॥
ଅନାର୍ଯ୍ୟ ପ୍ରାଣୀଙ୍କ ବେଭାରେ । କୁକର୍ମ କଲି ଯେ ସଂସାରେ ॥
ନିର୍ଦ୍ଦୋଷୀ ବ୍ରାହ୍ମଣର ଗଳେ । ସର୍ପ ଆରୋପି ଧନୁହୁଳେ ॥
ନିଷ୍କଳ ଯୋଗ ତାର ଧ୍ୟାନ । ନ ଜାଣି ହୋଇ ହତଜ୍ଞାନ ॥
ଦ୍ୱିଜେ ଅବଜ୍ଞା ମନେ କଲି । ନିକଟେ ସଙ୍କଟ ଲଭିଲି ॥
ଯେ ପାପ ବିନାଶନ ହେତୁ । ବେଗେ ବିଧାତା ମୋତେ ଚିନ୍ତୁ ॥
ଯେ କଥା ଶୁଣି ମୁଁ ଯେମନ୍ତେ । କେବେହେଁ ନ ରଖିବି ଚିତ୍ତେ ॥
ବ୍ରାହ୍ମଣ ଶାପ୍ୟ କୋପାନଳ । ଯେ ମୋର ରାଜ୍ୟ ଧନ ବଳ ॥
ଆତ୍ମାର ସଙ୍ଗେ ଦହୁମୋତେ । ଯେ କର୍ମ ନ କରି ଯେମନ୍ତେ ॥
ଗୋ ବିପ୍ରଜନଙ୍କ ହିଂସନେ । ଦୁର୍ବୁଦ୍ଧି ନ ସ୍ଫୁରୁ ମୋ ମନେ ॥
ଯେମନ୍ତ ବିଚାରି ବିଷାଦେ । ବୃତ୍ତାନ୍ତ ଶୁଭେ ଜନପଦେ ॥
ମୃତ୍ୟୁ ଉରଗ ବିପ୍ରଗଳେ । ରାଜା ଯେ ଦେଲା ଧନୁହୁଳେ ॥
ତାର ବାଳକ ଶାପ୍ୟ ଦେଲା । ତକ୍ଷକ ଦଂଶିବ ବୋଇଲା ॥
ସପତ ଦିନେ କୋପାନଳେ । ରାଜାକୁ ଭକ୍ଷିବ ସେ ବଳେ ॥
ଯେମନ୍ତେ ଜନମୁଖୁ ଶୁଣି । ମନେ ସାନନ୍ଦ ନୃପମଣି ॥
ବୋଲଇ ମୋତେ ସର୍ପ ଖାଉ । ଯେ ମୋର କୁଳେ ପାପ ନୋହୁ ॥
ଯେମନ୍ତେ ଇହ ପର ଲୋକେ । ମରଣେ ନ ପଡ଼ଇ ଦୁଃଖେ ॥
ଯେମନ୍ତେ ନିଶ୍ଚୟେ ବିଚାରି । ମନେ ଚିନ୍ତିଲା ନରହରି ॥
କୃଷ୍ଣର ପାଦ ପଦ୍ମ ତଳେ । ଚିତ୍ତ ନିବେଶି ଗଙ୍ଗାଜଳେ ॥
କୃଷ୍ଣର ଚରଣ ତୁଳସୀ । ପାଦ ଉଦକ ରଙ୍ଗେ ମିଶି ॥
ଅତି ପବିତ୍ର ବହେ ବାରି । ଉଭୟ ଲୋକ ପାପ ହରି ॥
ପ୍ରାଣୀର ପ୍ରାଣ ନାଶ କାଳେ । କେବା ନ ବସେ ତାର କୂଳେ ॥
ସେ ପଣ୍ଡୁବଂଶେ କୀର୍ତ୍ତି କର । ସକଳ ରାଜା ମଧ୍ୟେ ବର ॥
ସେ ବୀର ନଦୀତୀରେ ଯାଇ । ଚିତ୍ତେ ଗୋବିନ୍ଦ ପଦଧ୍ୟାୟୀ ॥
ବିଷୟ ସଙ୍ଗ ଦୂର କରି । ଅନ୍ନ ଉଦକ ପରିହରି ॥
ମଉନ ବ୍ରତେ ସେ ନିଷ୍କଳେ । ପାଦ ନିବେଶି ଗଙ୍ଗାଜଳେ ॥
ସେ କଥା ଶୁଣି ମୁନି ଜନେ । ଯେ ଅବା ଥିଲେ ଗିରିବନେ ॥
ନିଜ ନିବାସ ଉପେକ୍ଷିଲେ । ହସ୍ତିନା ନଗରେ ମିଳିଲେ ॥
ଯେ ଅବା ଥିଲେ ଯେଉଁ ଦେଶେ । ରାଜାଙ୍କୁ ଦେଖିବାର ଆଶେ ॥
ସଙ୍ଗତେ ଘେନି ଶିଷ୍ୟଗଣ । ଅପରେ ଅଶେଷ ବ୍ରାହ୍ମଣ ॥
ତାଙ୍କ ମହିମା କେବା କହେ । ତୀର୍ଥ ପବିତ୍ର ତାଙ୍କ ଦେହେ ॥
ଅତ୍ରି ବଶିଷ୍ଠ ରିଷନେମି । ଚ୍ୟବନ ଭୃଗୁ ସଙ୍ଗେ ଘେନି ॥
ଅଙ୍ଗିରା ପରାଶର ଆଦି । ସରହ ବାମ ଯେ ପ୍ରସିଦ୍ଧି ॥
ଇନ୍ଦ୍ର ପ୍ରମଦ ମେଧା ତିଥି । ଦେବଳ ଆଷ୍ଟିଷେଣ ସିଦ୍ଧି ॥
ଗୌତମ ଭାରଦ୍ୱାଜ ବଳ । ମୈତ୍ରେୟ ଅଗସ୍ତି ପିପପଳ ॥
ନାରଦ ମୁନି ମୁଖ୍ୟ କରି । ସର୍ବେ ମିଳିଲେ ରାଜପୁରୀ ॥
ସକଳ ଋଷି ଏକମେଳେ । ମିଳିଲେ ଜାହ୍ନବୀର କୂଳେ ॥
ତାହାଙ୍କୁ ଦେଖି ପରୀକ୍ଷିତ । କପୋଳେ ଦେଇ ବେନି ହସ୍ତ ॥
ବନ୍ଦିଲେ ମୁନିଗଣ ପାଦେ । ଆନନ୍ଦେ ଅଶ୍ରୁ ଗଦ ଗଦେ ॥
କର ଅଞ୍ଜଳି ଶିରେ ଦେଇ । କହଇ କୃତ୍ୟ କୃତ୍ୟ ହୋଇ ॥

### ରାଜା ଉବାଚ

ରାଜାଙ୍କ ମଧ୍ୟେ ମୋ ଜୀବନ । ଜାଣିଲି ନିଶ୍ଚେ ଧନ୍ୟ ଧନ୍ୟ ॥
ମୋହର ପ୍ରାଣ ତ୍ୟାଗ କାଳେ । ମହାନ୍ତ ଜନ ବିଜେ କଲେ ॥
ବ୍ରାହ୍ମଣ ପାଦ ଯହିଁ ଧୋଇ । ସେ ସ୍ଥାନେ କଳୁଷ ନ ଥାଇ ॥
କ୍ଷତ୍ରିୟ ସ୍ୱଭାବ ଯେମନ୍ତ । ଆଗମ ନିଗମ ଉକତ ॥
ଯେହା ଯେ ଲଙ୍ଘେ ଦୁଷ୍ଟପଣେ । ହତ ହୋଇବେ ତତକ୍ଷଣେ ॥
ସେ ବିପ୍ର ଆସି ଯାର ପାଶେ । ବସନ୍ତି ମନର ସନ୍ତୋଷେ ॥
ତାହାର ଭାଗ୍ୟ କି କହିବା । ଯାହା ନ ପାନ୍ତି ସୁରଦେବା ॥
ଅପ୍ରାଧ କରି ବିପ୍ରକୁଳେ । ଦେଖ ମୋହର ଅନ୍ତକାଳେ ॥
ସର୍ବ ବିଷୟ ସଙ୍ଗ ତେଜି । କୃଷ୍ଣ ଚରଣେ ଚିତ୍ତ ଭଜି ॥
ତୁମ୍ଭେ ଅଶେଷ ବ୍ରହ୍ମ ଋଷି । ମିଳିଲ ମୋର ପାଶେ ଆସି ॥
ବ୍ରାହ୍ମଣ ଶାପ୍ୟ କୋପାନଳ । ଯେ ମୋର ନିଜ କର୍ମଫଳ ॥
ଯେ କର୍ମ କଲେ ଏ ସଂସାରେ । ପଡ଼ଇ ତମ ମହାଘୋରେ ॥
ତୁମ୍ଭର ଅନୁଗ୍ରହେ ସେବି । ପ୍ରସନ୍ନ ହେଉ ଗଙ୍ଗା ଦେବୀ ॥
କୃଷ୍ଣ ଚରଣେ ଗତି ହେଉ । ବେଗେ ତକ୍ଷକ ମୋତେ ଖାଉ ॥
ତେଣେ ସଂଶୟ ନାହିଁ ମୋର । ସକଳେ କୃଷ୍ଣ କଥା କର ॥
କୃଷ୍ଣ ବିଷୟେ ହେଉ ମତି । ତାର ସେବକ ସଙ୍ଗ ଗତି ॥
ମୋହର କର୍ମ ଫଳ ନେଇ । ଜନ୍ମ ହୋଇବି ଯହିଁ ତହିଁ ॥
ତହିଁ କୃଷ୍ଣର ଦାସ ପଣେ । ଖଟିବି ଅଭୟ ଚରଣେ ॥
ଯେମନ୍ତେ ଦିଅ ମୋତେ ବର । ମୁଁ ତୁମ୍ଭ ଚରଣେ କିଙ୍କର ॥
ଯେମନ୍ତେ ମୁନିଙ୍କୁ ଜଣାଇ । କୃଷ୍ଣ ଚରଣେ ମନ ଦେଇ ॥
ତକ୍ଷଣେ କରି କୁଶ ଶଯ୍ୟା । ଶୟନ ଅର୍ଥେ କଲା ରାଜା ॥
ପୂର୍ବ ଦିଗକୁ ଶିର କରି । ଉତ୍ତର ମୁଖେ ଦଣ୍ଡଧାରୀ ॥
ଗଙ୍ଗା ଦକ୍ଷିଣ କୂଳେ ଶୋଇ । କାରୁଣ୍ୟ ଜଳେ ଦୃଷ୍ଟି ଦେଇ ॥

ଅଶେଷ ଋଷିଗଣ ମଧ୍ୟେ । ମନ ନିବେଶି କୃଷ୍ଣପାଦେ ॥
ଆକାଶେ ଦେଖି ଦେବଗଣେ । ଆନନ୍ଦେ ପୁଷ୍ପ ବରଷଣେ ॥
ସାଧୁ ଶବଦେ ସ୍ତୁତି କଲେ । ଦୁନ୍ଦୁଭି ବାଦ୍ୟ ନାଦ ମେଳେ ॥
ସେ ମୁନିଗଣେ ଗଙ୍ଗାକୂଳେ । ଥିଲେ ଯେ ପରୀକ୍ଷିତ ମେଳେ ॥
ଗଗନେ ସାଧୁ ସାଧୁ ବାଣୀ । ଆନନ୍ଦେ ମୁନିଗଣେ ଶୁଣି ॥
ସାଧୁ ଶବଦ ଗୁରୁତରେ । ଦିଗ ପୂରିଲା ଗଙ୍ଗାତୀରେ ॥
ପ୍ରଜାଯେ ଅନୁଗ୍ରହ ମୁଖେ । କହନ୍ତି ଯେକକୁ ଆରକେ ॥
ଯେ ସାଧୁ ରାଜା ବିଚକ୍ଷଣ । ଅଜ୍ଞାନେ ଲଭିଲା ମରଣ ॥
ଦେଖ ତାହାର ଭାଗ୍ୟଫଳେ । ମୁନିଙ୍କ ମଧ୍ୟେ ଅନ୍ତକାଳେ ॥
ଯାର ଆସନେ ଦେବରାଜା । ଶିରେ ନିବେଶି କରେ ପୂଜା ॥
ସେ କଳେବର ହରିଭାବେ । ପଶିବ ଜନ୍ମର ସ୍ୱଭାବେ ॥
ଆମ୍ଭେ ସକଳ ଯେହି ସ୍ଥାନେ । ବଞ୍ଚିବା ଗଙ୍ଗା ଜଳ ପାନେ ॥
ଯେ ନରପତି ଯେତେ ଦିନେ । ପ୍ରାଣ ଛାଡ଼ିବ ବିଷ୍ଣୁ ଧ୍ୟାନେ ॥
ସୁଖେ ଲଭିବ ହରିଲୋକ । ଯେ ସ୍ଥାନେ ବିମୋହିବ ଶୋକ ॥
ଯେ ଭାଗବତର ଉତ୍ତମ । ନିଶ୍ଚେ ଲଭିବ ପୂର୍ଣ୍ଣଧାମ ॥
ଯେମନ୍ତେ ପ୍ରଜା ମୁଖୁ ଶୁଣି । ମୁନି ସନ୍ତୋଷେ ସାଧୁବାଣୀ ॥
ରାଜା ମଣିଲା ସତ୍ୟପ୍ରାୟେ । ଚିତ୍ତେ ନ ଘେନିଲା ସଂଶୟେ ॥
ବିଷ୍ଣୁ ଚରିତ ସେବା ଫଳେ । ଅଶେଷ ପ୍ରାଣୀ ମହୀତଳେ ॥
ପୂର୍ବେ ଲଭିଲେ ହରିଭାବ । ଯେ ବ୍ରହ୍ମା ଶଙ୍କରେ ଦୁର୍ଲ୍ଲଭ ॥
ଦେଖ ମୋହର ଭାଗ୍ୟବର୍ଶୁଁ । ସର୍ବେ ମିଳିଲେ ସର୍ବ ଦେଶୁ ॥
ଦେବ ଯେସନେ ଦେହ ଅନ୍ତେ । ସ୍ୱର୍ଗେ ବିବୁଧଙ୍କ ସଙ୍ଗତେ ॥
ବସି କହନ୍ତି ନାନା ଧର୍ମ । ଯେ ବର୍ଣ୍ଣେ ଯେବା ନିତ୍ୟ କର୍ମ ॥
ଯେ ଫଳେ ଇହ ପର ଲୋକେ । ପ୍ରାଣୀ ଲଭନ୍ତି ଦୁଃଖ ସୁଖେ ॥
ତେମନ୍ତେ ଅନୁଗ୍ରହ ଚିତ୍ତେ । ସର୍ବେ ମିଳିଲେ ଆସି ମୋତେ ॥
ଯେହାକୁ ପଚାରିବି ମୁହିଁ । ମରଣେ ଜନ୍ମାନ୍ତରେ ଥାଇ ॥
ଯେବେ କି କୃତ୍ୟ ଅଛି ମୋତେ । କହ ସକଳ ଶୁଦ୍ଧ ଚିତ୍ତେ ॥
ଯେ ଘୋର ସଂସାର ସାଗରେ । ମରଣେ କିବା କରି ତରେ ॥
ଯେମନ୍ତେ ବୋଲୁ ରାଜଋଷି । ଶୁକ ମିଳିଲେ ବେଗେ ଆସି ॥
ମହୀ ଭ୍ରମଇ ଇଚ୍ଛା ସୁଖେ । କୃଷ୍ଣର ନାମ ଗାଇ ମୁଖେ ॥
ରଖି ନ ପାରି ଯାର ଅଙ୍ଗ । କ୍ଷଣ କ୍ଷଣକେ ନାନାରଙ୍ଗ ॥
ନିରତେ ନିଜ ଲାଭେ ତୋଷ । ସ୍ୱଭାବେ ଅବଧୂତ ବେଶ ॥
ବେଷ୍ଟିତ ବାଳକ ସମୂହେ । କିବା ଉପମା ଦେବା ଦେହେ ॥
ସ୍ୱଭାବେ ଷୋଡ଼ଶ ଅବଦ । ସୁନ୍ଦର ସୁକୁମାର ପାଦ ॥
କରଯୁଗଳ ବାହୁ ଉଞ୍ଚ । ଉନ୍ନତ ଶରୀର ସୁସଞ୍ଚ ॥
ନିବିଡ଼ ଜାନୁଯୁଗ ସାଜେ । ସୁନ୍ଦର କପୋଳ ବିରାଜେ ॥
ଅରୁଣାମ୍ବୁଜ ଚକ୍ଷୁ ବର୍ଣ୍ଣ । ସୁଗ୍ରୀବ କଣ୍ଠ ସୁଶୋଭନ ॥
ନିତମ୍ବ କୃତ ବେନି ସାଜେ । ତୁଙ୍ଗ ବକ୍ଷସ୍ଥଳ ବିରାଜେ ॥
ତ୍ରିବଳୀ କୁକ୍ଷି ମନୋହର । ଆବୃତ ନାଭି ସୁଗଭୀର ॥
ବିବର୍ଣ୍ଣ କେଶ ଦିଗାମ୍ବର । ବିଭୂତି ଲେପନ ଶରୀର ॥
ପ୍ରଲମ୍ବ ବାହୁ ଜାନୁ ଯାଏ । ଦିଶେ ଅମର ବର ପ୍ରାୟେ ॥
ଶରୀର ରୂପ ଚାରୁ ଶ୍ୟାମ । ରୂପେ ତୁଳିତ ନୋହେ କାମ ॥
କି ଅବା ଦେବା ପଟାନ୍ତର । କାମିନୀକୁଳ ମନୋହର ॥
ଯେମନ୍ତେ ରୂପେ ତାଙ୍କୁ ଦେଖି । ମୁନିଏ ଆସନ ଉପେକ୍ଷି ॥
ଜାଣନ୍ତି ତାହାଙ୍କ ଲକ୍ଷଣ । ପରମଯୋଗୀ ବିଷ୍ଣୁଗଣ ॥
ଶୁକ ଆଗମ ଶୁଣି ରାଜା । ତକ୍ଷଣେ ଘେନି ଅର୍ଘ୍ୟ ପୂଜା ॥
ବିନୟ ଭାବେ ଦଣ୍ଡଧାରୀ । ଚରଣେ ନମସ୍କାର କରି ॥
ସ୍ତିରୀ ବାଳକ ଯେତେ ଥିଲେ । ତା ଦେଖି ଭୟେ ବାହୁଡ଼ିଲେ ॥
ରାଜା ପୂଜିଲା ମନତୋଷେ । ଶୁକ ବସିଲେ ରାଜାପାଶେ ॥
ବେଷ୍ଟିତ ଋଷିଗଣ ମଧ୍ୟେ । ସକଳ ପରମ ଆନନ୍ଦେ ॥
ଶଶାଙ୍କ ଯେହ୍ନେ ତାରା ମେଳେ । ବିରାଜେ ଗଗନ ମଣ୍ଡଳେ ॥
ପ୍ରଶାନ୍ତ ଚିତ୍ତ ମୁନିବର । ଅକୁଣ୍ଠ ଧୀଷଣା ଯାହାର ॥
ସେ ମୁନି ପାଦେ ନମସ୍କାର । କରି ଯୋଡ଼ିଲା ବେନିକର ॥
ନମ୍ରତା ବାକ୍ୟ ସୁଧା ଧାର । ମୁନିଙ୍କୁ ଚାହିଁ ନୃପବର ॥
ପୁଚ୍ଛଇ ବେନି କର ଯୋଡ଼ି । ଚରଣେ ପୁଣ ପୁଣ ପଡ଼ି ॥

## ରାଜା ଉବାଚ

ଆଜ ମୋହର ଜନ୍ମ ଧନ୍ୟ । କ୍ଷତ୍ରିୟ ବଂଶେ ବିଦ୍ୟମାନ ॥
ତୁମ୍ଭେ ଅତିଥି ରୂପେ ଆସି । ନିର୍ମଳ ଚିତ୍ତେ ବ୍ରହ୍ମଋଷି ॥
ଦେଖ ମୋ ଆତ୍ମା କୃତକୃତ୍ୟ । ଦେହକୁ କଲି ତୀର୍ଥଭୂତ ॥
ତୁମ୍ଭର ଚରଣେ ବିଶ୍ୱାସ । ପବିତ୍ର କଲି ଗୃହବାସ ॥
ଯାହାର ଦରଶନ ମାତ୍ରେ । ଦୁରିତ ନ ରହଇ ଗାତ୍ରେ ॥
ସ୍ପରଶ ପାଦକଞ୍ଜ ଯହିଁ । ସକଳତୀର୍ଥ ଫଳ ତହିଁ ॥
ଆଜ ଜୀବନ ମୋର ଧନ୍ୟ । ଦେଖିଲି ତୁମ୍ଭର ବଦନ ॥
ଯେତେ ଦୁରିତ ଦେହେ ଥିଲା । ତୁମ୍ଭ ଦର୍ଶନେ ଦୂର ଗଲା ॥
ବିଷ୍ଣୁର ତେଜ ମହାଘୋରେ । ଯେସନେ ନାଶନ୍ତି ଅସୁରେ ॥

ଆଜ ଜାଣିଲି ମୋତେ ହରି । ପାଣ୍ଡବ ବଂଶେ ପ୍ରୀତି କରି ॥
ବାନ୍ଧବ ପ୍ରିୟ ବ୍ରହ୍ମରାଶି । ଯେହ୍ନେ ପାଣ୍ଡବ ଗୃହେ ଆସି ॥
ଅବ୍ୟକ୍ତ ଗତି ଯେ ଦୁସ୍ତର । କେ ତାହା କରିବ ଗୋଚର ॥
ମରଣ ଯାର ସାଧୁସଙ୍ଗ । ସେ ତରେ ଯେ ଭବ ତରଙ୍ଗ ॥
ଯୋଗୀଙ୍କ ମଧ୍ୟେ ତୁମ୍ଭେ ଗୁରୁ । ଯେହ୍ନେ ଅଚଳ ମହାମେରୁ ॥
ଦେଖ ଜୀବନ ଯିବା କାଳେ । କିବା ସାଧିବି ମହୀତଳେ ॥
କିବା ଶୁଣିବି କର୍ଣ୍ଣପଥେ । ସ୍ମରଣ କିବା ମୋହ ଚିତ୍ତେ ॥
କିବା ବଚନ ଉଚ୍ଚାରଣ । ଭଜିବି କାହାର ଚରଣ ॥
ତୁମ୍ଭେ ଯେ ପ୍ରାଣୀଙ୍କର ଘରେ । ଦଣ୍ଡେ ନ ରହ ମୁନିବରେ ॥
ଗୋଦୋହ ମାତ୍ରେ ତୁମ୍ଭ ଗତି । ଯେଣୁ ମୋହର ମନେ ଭ୍ରାନ୍ତି ॥
ଯେମନ୍ତେ ପରୀକ୍ଷିତ ବାଣୀ । ଆନନ୍ଦେ ଶୁକମୁନି ଶୁଣି ॥
ହରଷେ ମୁଦ୍ରିତ ଲୋଚନ । ଚିତ୍ତେ ଚିନ୍ତିଲେ ଭଗବାନ ॥
ସେ ମୁନି ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନ ବଳେ ॥
ପ୍ରଥମ ସ୍କନ୍ଧେ ଭାଗବତ । କହିଲା ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ*
*ଶୁକପରୀକ୍ଷିତ ସମ୍ବାଦେ ନାମ ଉନବିଂଶୋଽଧ୍ୟାୟଃ ।*

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ।
ସମାପ୍ତ

# ଦ୍ୱିତୀୟ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ।
ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତାଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋ ରସିକା ଭୁବି ଭାବୁକାଃ ।

## ପ୍ରଥମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ହରି ଚରଣ ଚିନ୍ତି ଧ୍ୟାନେ । କୋମଳ ଗଭୀର ବଚନେ ॥
ରୋମ ପୁଲକ ନିଜ ଦେହୀ । କହନ୍ତି ରାଜା ମୁଖ ଚାହିଁ ॥
ହେ ପରୀକ୍ଷିତ ନୃପବର । ଗରିଷ୍ଠ ପ୍ରଶ୍ନ ତୋହର ॥
ପଟାରୁ ଜୀବଲୋକ ହିତେ । ଯେ ପ୍ରଶ୍ନ କଲୁ ତୋର ଚିତ୍ତେ ॥
ତୁ ଆତ୍ମଜ୍ଞାନୀଙ୍କର ସାର । ସଂସାର ଜନେ ଉପକାର ॥
ଶ୍ରୋତବ୍ୟ ପ୍ରଶ୍ନ ଅଛି ଯେତେ । ଆଗମ ନିଗମଙ୍କ ମତେ ॥
ସହସ୍ର ସହସ୍ର ପ୍ରକାରେ । ଯେ ପ୍ରଶ୍ନ ଅଛି ଏ ସଂସାରେ ॥
ସଂସାରୁ ତରିବାର ଆଶେ । ଯେତେ ଅଛନ୍ତି ଗୃହବାସେ ॥
ଇନ୍ଦ୍ରିୟ ବଶେ ଗୃହେ ଥାଇ । ଆତ୍ମାର ହିତେ ଜ୍ଞାନ ନାହିଁ ॥
ଆୟୁଷ କ୍ଷୟ ନ ଜାଣନ୍ତି । ବିଷୟ ଅର୍ଥେ ନିତ୍ୟେ ଚିନ୍ତି ॥
ନିଦ୍ରା ହରଇ ଅର୍ଦ୍ଧ ବେଳେ । ଧାମଇ ବଧୂସଙ୍ଗ ମେଳେ ॥
ଦିବସେ ଅର୍ଥ ଚିନ୍ତାକୁଳ । କୁଟୁମ୍ବ ତାରଣେ ବିକଳ ॥
ପୁତ୍ର କଳତ୍ର ଧନ ପାଇ । ଆନନ୍ଦେ ତାଙ୍କ ମଧ୍ୟେ ଥାଇ ॥
ବିଷ୍ଣୁର ମାୟା ନିତ୍ୟେ ଚିନ୍ତି । ନିକଟେ ମୃତ୍ୟୁ ନ ଦେଖନ୍ତି ॥
ମରଣ ଦେଖୁଥାଇ ତୋଳେ । ଅଜ୍ଞାନେ ଭ୍ରମେ ସୁଖଭୋଳେ ॥
ଏଣୁ ସଂସାର ପ୍ରାଣୀଙ୍କର । ଆତ୍ମାର ଗତି ଅଗୋଚର ॥
ଏଣୁ ସଂସାର ଭାବତେଜି । ଆତ୍ମାର ଗତି ଚିତ୍ତେ ଭଜି ॥
ଯେ ହରି ସର୍ବଘଟେ ପୂରେ । ନିର୍ଲେପ ବାହ୍ୟ ଅଭ୍ୟନ୍ତରେ ॥
ତାର ମହିମା ଶୁଣି କର୍ଣ୍ଣେ । ନାମ ଉଚ୍ଚାରିବ ବଦନେ ॥
ଏ କଥା ସାଂଖ୍ୟଯୋଗେ ଜାଣି । ସ୍ୱଧର୍ମ ନିଷ୍ଠା ପରିମାଣି ॥
ଜନ୍ମର ଲାଭ ଏ ପ୍ରମାଣ । ଅନ୍ତେ ସ୍ମରଣ ନାରାୟଣ ॥
ପୂର୍ବେ ନିର୍ମଳ ମୁନି ଯେତେ । ତତ୍ତ୍ୱ ବିଚାରି ବେଦମତେ ॥
ବିଧି ନିଷେଧ ଦୂର କରି । କୃଷ୍ଣର ଭାବ ହୃଦେ ଧରି ॥
କୃଷ୍ଣର ଗୁଣ ଅନୁକ୍ଷଣେ । ବୋଲନ୍ତି ଶୁଣନ୍ତି ଶ୍ରବଣେ ॥
ଏ ଭାଗବତ ଧର୍ମବାଣୀ । ବ୍ରହ୍ମ ସମାନେ ପରିମାଣି ॥
ଦ୍ୱାପର ଯୁଗ ଆଦ୍ୟକାଳେ । ମୁହିଁ ଅନେକ ଶିଷ୍ୟ ମେଳେ ॥
ମୋର ଜନକ ବ୍ୟାସ ମୁନି । ତାହାଙ୍କ ଶିକ୍ଷା ମୁହିଁ ଘେନି ॥
ନିର୍ଗୁଣ ମାର୍ଗେ ଦୃଢ଼ଚିତ୍ତ । ସ୍ୱଭାବେ ବିଷ୍ଣୁ ଅଂଶେ ଜାତ ॥
ନିଶ୍ଚଳ ଯୋଗେ ମନ ଥୋଇ । ଯେବା ଅଭ୍ୟାସ କଲି ମୁହିଁ ॥
କହିବି ତୋର ଆଗେ ତାହା । ରାଜନ ଶୁଣ ପୁଣ୍ୟଦେହା ॥
ଯେ ଭାଗବତ ବାଣୀ କର୍ଣ୍ଣେ । ଶୁଣନ୍ତି ଶ୍ରଦ୍ଧା ଅବଧାନେ ॥
ମୁକୁନ୍ଦ ପାଦେ ଦେଇ ମନ । ନିଶ୍ଚଳେ କରେ ଅନୁଧ୍ୟାନ ॥
ନିର୍ଭୟ ପଥେ ଚିତ୍ତ ରହେ । ତାକୁ ନ ଲାଗେ ଯମ ଭୟେ ॥
ଯୋଗ ଅଭ୍ୟାସେ ଯୋଗୀଜନେ । ଦୀର୍ଘେ ଜୀବନ୍ତି ଯୋଗଧ୍ୟାନେ ॥
ମୁହୂର୍ତ୍ତ ମାତ୍ର କୃଷ୍ଣବାଣୀ । ଯେ ଶୁଣେ ଯେବା ମୁଖେ ଭଣି ॥
ସେ ପ୍ରାଣୀ ଆତ୍ମାକୁ ଉଦ୍ଧରେ । କିବା ଭାବକୁ ସମୁଦ୍ଧରେ ॥
ଖଟ୍ୱାଙ୍ଗ ନାମେ ନୃପ ଥିଲା । ସ୍ୱର୍ଗେ ଦେବଙ୍କୁ ହିତକଲା ॥
ରିପୁ ସଂହାରି ଗୁରୁପାଶେ । ପୁଛିଲା ଭକତି ବିଶ୍ୱାସେ ॥
ଆୟୁଷ ଅଛି ମୋର କେତେ । ଗୁରୁ କହିଲେ ଶାସ୍ତ୍ର ମତେ ॥
ମୁହୂର୍ତ୍ତେ ଅଛି ତୋ ଜୀବନ । ଶୁଣି ସନ୍ତୋଷ ରାଜା ମନ ॥
ତକ୍ଷଣେ ଆସି ମହୀତଳେ । ଭାବିଲା ଅକିଞ୍ଚନ ମେଳେ ॥
ମୁହୂର୍ତ୍ତେ ନାମ ଉଚ୍ଚାରିଲା । ଅନ୍ତେ ସେ ଗୋବିନ୍ଦେ ପଶିଲା ॥
ଏବେ ସପତ ଦିନଯାଏ । ଜୀବନ ଅଛି ତୋର ଦେହେ ॥
ଏବେ ହରିଙ୍କି ଆଶ୍ରେ କର । ଶ୍ରବଣ ବଦନ ଉଚ୍ଚାର ॥
ଯେ ଅନ୍ତଃକାଳେ କୃଷ୍ଣବାଣୀ । ମୁଖେ ଉଚ୍ଚାରେ କର୍ଣ୍ଣେ ଶୁଣି ॥
ଯେତେ ବିଷୟ ଆତ୍ମା ଭେଦି । ସୁସଙ୍ଗ ଆଶ୍ରେ ତାହା ଛେଦି ॥
ବେଗେ ସେ ପଶେ କୃଷ୍ଣଭାବେ । ଶୁଣ କହିବା ତୋତେ ଏବେ ॥
ଯେ ପ୍ରାଣୀ ଅନ୍ତକାଳ ଜାଣି । ଆତ୍ମାର ହିତ ପରିମାଣି ॥
ଘରୁ ବାହାର ହୋଇ ବନେ । ତପ ଆଚରେ ଅନୁକ୍ଷଣେ ॥
ସ୍ନାହାନ ସାରି ଶୀତ ଜଳେ । ଆସନେ ବସି ବୃକ୍ଷତଳେ ॥
ଅଭ୍ୟାସ କରି ଶୁଦ୍ଧମନେ । ତ୍ରିବୃତ୍ତ ବ୍ରହ୍ମ ଉଚ୍ଚାରଣେ ॥
ପବନ ପ୍ରାଣ ଯୋଗେ ରୁନ୍ଧି । ସକଳ ଇନ୍ଦ୍ରିୟ ନିରୋଧି ॥
ବୁଦ୍ଧି ସାରଥି ଆଶ୍ରେ କରି । ବିଷୟ ସମୂହ ସଂହରି ॥
କର୍ମେ ଚଞ୍ଚଳ ମନ ଚଳେ । ନିରୋପି କୃଷ୍ଣପାଦ ତଳେ ॥
ଏକା ଶରୀରେ ଚିନ୍ତି ନିତ୍ୟେ । ବଞ୍ଚିବ ଅକିଞ୍ଚନ ମତେ ॥

ମନକୁ ନିର୍ବିଷୟ କରି । ସକଳ ଚିନ୍ତା ନ ସୁମରି ॥
ମନ ପ୍ରସନ୍ନ ଯେତେବେଳେ । ଜ୍ଞାନ ପ୍ରସରଇ ନିଶ୍ଚଳେ ॥
ସ୍ୱଭାବେ ମନ ହୃଷ୍ଟପଣେ । ଆବୃତ ରଜ ତମ ଗୁଣେ ॥
ଏଣୁ ଧାରଣା ଆଶ୍ରେ କରି । ମନର ମଳ ଅପହରି ॥
ଏମନ୍ତେ ଯୋଗର ଧାରଣ । ଯୋଗୀଙ୍କ ଭକ୍ତି ଏ ଲକ୍ଷଣ ॥

## ରଜୋବାଚ

ଧାରଣା ଯୋଗଚିତ୍ତେ ଧରି । ଯେମନ୍ତେ ତରେ ବ୍ରହ୍ମଚାରୀ ॥
ଜଗତେ ଧାରଣା ନିଶ୍ଚଳ । ବେଗେ ହରଇ ମନୁ ମଳ ॥
ଯୋଗୀଙ୍କ ଧାରଣା ଯେମନ୍ତ । ଶାସ୍ତ୍ର ଯେ ଭାବ ଅନୁମତ ॥
ଗୁରୁ ବଚନେ କିବା ଜାଣି । ଯୋଗ ଧାରଣା ପରିମାଣି ॥
ଏଣୁ ଅଭ୍ୟାସ ପ୍ରାଣୀ କରେ । ଯେମନ୍ତେ ମନୁ ମଳ ହରେ ॥

## ଶ୍ରୀ ଶୁକ ଉବାଚ

ଜିତ ଆସନ ଜିତ ପ୍ରାଣ । ବିଷୟ ସଙ୍ଗୁ ଇନ୍ଦ୍ରିଗଣ ॥
ସଙ୍ଗ ନ କରି ବୁଦ୍ଧି ବଳେ । ମନକୁ ସ୍ଥାପିବ ନିଶ୍ଚଳେ ॥
ବିଶେଷେ ଗୋବିନ୍ଦ ଶରୀର । ସ୍ଥୂଳଙ୍କ ମଧ୍ୟେ ସ୍ଥୂଳତର ॥
ଯହିଁ ସଂସାର ପରିମାଣ । ଭୂତ ଭବିଷ୍ୟ ବର୍ତ୍ତମାନ ॥
ଏ ଅଣ୍ଡକୋଷେ ଯାର ଦେହୀ । ସପ୍ତାବରଣେ ଯୁକ୍ତ ହୋଇ ॥
ବିରାଜ ପୁରୁଷ ଏ ମଧ୍ୟେ । ବସେ ଧାରଣା ଅନୁବାଦେ ॥
ବ୍ରହ୍ମାଣ୍ଡ ଚତୁର୍ଦ୍ଦଶ ପୁର । ପ୍ରମାଣ ଶରୀର ଯାହାର ॥
ଶୁଣ କହିବା ଅଧଊର୍ଦ୍ଧ୍ୱେ । ବିରାଟ ରୂପ ଥାଇ ମଧ୍ୟେ ॥
ପାତାଳ ବୋଲି ପାଦ ମୂଳ । ପାଷ୍ଣୀ ପାଦାଗ୍ର ରସାତଳ ॥
ଚରଣ ଗୁଲ୍‌ଫ ମହୀତଳ । ଜଙ୍ଘ ଯୁଗଳ ତଳାତଳ ॥
ସୁତଳ ବୋଲି ଜାନୁଯୁଗେ । ବିତଳ ତଳ ଉରୁଭାଗେ ॥
ଜଘନ ଦେଶେ ମହୀତଳ । ନାଭି ବିମ୍ବରେ ନଭସ୍ଥଳ ॥
ଯେ ଊର୍ଦ୍ଧ୍ୱେ ଗଗନ ମଣ୍ଡଳ । ଗ୍ରୀବା ଆଶ୍ରିତ ମହର୍ଲ୍ଲୋକ ॥
ଲଲାଟେ ତପଲୋକ ବସେ । ସତ୍ୟକଳ୍ପିତ ଶିର ଦେଶେ ॥
ବାସବ ଆଦି ଦିଗପାଳେ । ବସନ୍ତି ତାର ଭୁଜମୂଳେ ॥
କର୍ଣ୍ଣ ଯାହାର ଅଷ୍ଟାଦଶା । ଅଶ୍ୱି କୁମାରେ ବେନି ନାସା ॥
ଜଳନ୍ତା ଅଗ୍ନି ଯା ବଦନ । ମସ୍ତକେ କଷାଧି ଆସନ ॥
ଗଗନ ଚକ୍ଷୁ ଯାର ବେନି । ଉଦୟ ଅସ୍ତ ଯା ଅହନି ॥
ଯାର ଭ୍ରୂକୁଟି ବେନି ଆଭା । ସଲିଳ ତାଳୁ ରସ ଜିହ୍ୱା ॥
ଏ ତିନି ବେଦ ବ୍ରହ୍ମ ରନ୍ଧ୍ରେ । ବିକଟ ଦନ୍ତ ନାମ ପଦେ ॥
ଯାହାର ତୁଣ୍ଡେ ସ୍ନେହ କଳା । ଅଧଃ ଊର୍ଦ୍ଧ୍ୱରେ ଦନ୍ତମାଳା ॥
ଜନ୍ମ ଉନ୍ମାଦ ଯାର ହାସ । ଯେ ବିଷ୍ଣୁ ମାୟାରେ ପ୍ରକାଶ ॥
ଯାର କଟାକ୍ଷେ ସ୍ୱର୍ଗ ମୋକ୍ଷ । ଏ ଜୀବ ଲଭେ ତା ପ୍ରତ୍ୟକ୍ଷ ॥

ଉପର ଓଷ୍ଠେ ଲଜ୍ଜା ବସେ । ଲୋଭ ବସଇ ଅଧୋ ଦେଶେ ॥
ଧର୍ମ ବସଇ ସ୍ତନ ଯୁଗେ । ଅଧର୍ମ ପଥ ପୃଷ୍ଠଭାଗେ ॥
ଅଣ୍ଡେ ବସଇ ପ୍ରଜାପତି । ମୃତ୍ୟୁ ଯେ ମଳଦ୍ୱାରେ ସ୍ଥିତି ॥
ଉଦଧି ଯାହାର ଉଦର । ଅସ୍ଥି ସମୂହ ମହୀଧର ॥
ସକଳ ନଦୀ ନାଡ଼ୀଗଣ । ବୃକ୍ଷ ଔଷଧି ତନୁ ରୋମ ॥
ଅନନ୍ତ ଯାର ବୀର୍ଯ୍ୟ ଦେଶେ । ଶ୍ୱାସ ପବନ ଅଣଚାଶେ ॥
ଯାହାର ଗତି କାଳଚକ୍ର । ପ୍ରବାହ ଗୁଣ କର୍ମ ବକ୍ର ॥
ଜୀମୂତ ଗଣ ଯାର କେଶ । ସନ୍ଧ୍ୟା ଯାହାର ନିଜ ବାସ ॥
ପ୍ରକୃତି ହୃଦୟ ଯାହାର । ଯାହାର ମନ ନିରାକାର ॥
ବିଜ୍ଞାନ ଶକ୍ତି ଯା ମହିମା । ଅନ୍ତ ସ୍ମରଣ ରୁଦ୍ରସୀମା ॥
କରଭ ଅଶ୍ୱ ଅଶ୍ୱତର । ନଖ ସମୂହ କରିବର ॥
ଯେ ପଶୁ ମୃଗାଦି ବିଶେଷେ । ସର୍ବେ କଳ୍ପିତ ଶ୍ରୋଣୀ ଦେଶେ ॥
ଯାର ବଚନ ବ୍ୟାକରଣ । ବୁଦ୍ଧି ବିଷୟେ ମନୁ ପଣ ॥
ଯାର ନିବାର ନରଦେହ । ନାହିଁ କଳ୍ପିତ ମାୟା ମୋହ ॥
ଗନ୍ଧର୍ବ ବିଦ୍ୟାଧର ଆଦି । ଚାରଣ ଗଣିକା ପ୍ରସିଦ୍ଧି ॥
କିନ୍ନର ଅସୁର ସମେତେ । କଳ୍ପିତ ଯାଇ ନିଜ ଭୂତେ ।
ବ୍ରହ୍ମା ଯାହାର ମୁଖ ରାଶି । କ୍ଷତ୍ରିୟ ଭୁଜରୁ ପ୍ରକାଶି ॥
ଉରୁରୁ ବୈଶ୍ୟ ଉତପତି । ପାଦରୁ ଜାତ ଶୂଦ୍ର ଜାତି ॥
ଧରଣୀ ଯାହାର ଚରଣ । ଶରୀର ଶୀତ କୃଷ୍ଣ ବର୍ଣ୍ଣ ॥
ନାନା ପ୍ରକାରେ ନାମ ବହି । ଅଭିଷ୍ଟ ଦେବେ ଯାର ଦେହୀ ॥
ନିଗମ କର୍ମକାଣ୍ଡ ଯେତେ । ଯାହାର ଅଂଶେ ଯୋଗଯେତେ ॥
ଏମନ୍ତେ ଈଶ୍ୱରର ଦେହେ । ବସେ ଅସତ୍ୟ ସତ୍ୟ ପ୍ରାୟେ ॥
ଏମନ୍ତ ସ୍ଥୂଳ ଏ ଶରୀର । ଧାରଣା ଯୋଗେ ନିର୍ବିକାର ॥
ମନ ନିରୋଧି ଯୋଗବଳେ । କୃଷ୍ଣର ଚରଣ କମଳେ ॥
ସର୍ବ ସ୍ୱରୂପ ଭଗବାନ । ତା ତହୁଁ କେବା ଅଛି ଭିନ୍ନ ॥
ସେ ସର୍ବ ବୁଦ୍ଧି ଅନୁଭବ । ଜୀବ ପରମ ପଦ୍ମନାଭ ॥
ସ୍ୱପ୍ନ ଜାଗ୍ରତ ଯାର ଅନ୍ତ । କେ ଜାଣି ପାରେ ତା ବୃତ୍ତାନ୍ତ ॥
ସତ୍ୟ ପରମାନନ୍ଦ ନିଧି । ଯାର ଭଜନେ ସର୍ବ ସିଦ୍ଧି ॥
ଜନ୍ମ ମରଣ ଯାର ତହୁଁ । କେବା ଗୋଚରେ ତାହା କହୁଁ ॥
ଏମନ୍ତ କହି ଶୁକ ମୁନି । ହରଷେ ହରି ଭାବ ଘେନି ॥
ଆନନ୍ଦେ ପରୀକ୍ଷିତ ମେଳେ । ଯାହା କହିଲେ ଗଙ୍ଗା କୂଳେ ॥
ଦ୍ୱିତୀୟ ସ୍କନ୍ଧେ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା*
*ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶୁକ ପରୀକ୍ଷିତ*
*ସମ୍ବାଦେ ମହାପୁରୁଷ ସଂସ୍ଥା ବର୍ଣ୍ଣନେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏ ଯେତେ କହିଲି ମୁଁ ତୋତେ । ଈଶ୍ୱର ଶରୀର ସମେତେ ॥
ଏ ସ୍ଥୂଳ ଦେହେ ମନ ଧରି । ସୁବୁଦ୍ଧି ବଳେ ଯତ୍ନ କରି ॥
ସେ ହରି ଅନ୍ତର ବାହାରେ । ଅନ୍ୟ କେ ଅଛି ଏ ସଂସାରେ ॥
ସେ ସର୍ବ ବୁଦ୍ଧି ଅନୁଭୂତ । ସ୍ୱପ୍ନ ଜାଗ୍ରତ ମଧ୍ୟେ ସ୍ଥିତ ॥
ସତ୍ୟ ଆନନ୍ଦ ଜ୍ଞାନ ନିଧି । ଭକ୍ତ ଜନଙ୍କ ସର୍ବସିଦ୍ଧି ॥
ତାହାର ତହୁଁ ଏ ଜଗତ । ଆତ୍ମାର ସଙ୍ଗେ ଉଦେ ଅସ୍ତ ॥
ଏହି ପ୍ରକାରେ ପୂର୍ବକାଳେ । ସେ ଆତ୍ମ ଯୋନି ଏ ଶୟଳେ ॥
ଆତ୍ମା ସ୍ମରଣ ତୃଷ୍ଣାବଳେ । ସର୍ଜିଲା ଏ ବିଶ୍ୱ ମଣ୍ଡଳେ ॥
ଆତ୍ମାକୁ ପାଳି ପୁଣି ହରେ । ବାଣିଜ୍ୟେ ଯେହ୍ନେ ବଣିକାରେ ॥
ଶବ୍ଦ ବ୍ରହ୍ମମୟେ ପଥ । ଯେ ମାର୍ଗେ ଜୀବ ଆତଯାତ ॥
ପଡ଼ି ଭ୍ରମଇ ଅଧ ଊର୍ଦ୍ଧ୍ୱେ । କିଛି ନ ଲଭେ ଲାଭ ପଦେ ॥
ବାସନା ମାୟାମୟ ଜ୍ଞାନେ । ନ ବୁଝି ନିରତେ ଭ୍ରମଣେ ॥
ତାହାଙ୍କ ମଧ୍ୟେ ଯେ ସୁବୁଦ୍ଧି । ଜାଣେ ବ୍ୟାପାର ସଦ୍‌ବୁଦ୍ଧି ॥
ବିଚାର କରେ ମାୟ ପଥେ । ମୁଁ ଭ୍ରମଇ କିସ ଅର୍ଥେ ॥
ଶ୍ରମେ ଲଭଇ ଆତଯାତେ । ଲାଭ ନ ମିଳେ ମୋର ହସ୍ତେ ॥
ଏଣୁ ଏ ପଥଶ୍ରମ ତେଜି । ଯେ ପ୍ରାଣୀ ଆତ୍ମା ଲାଭ ଖୋଜି ॥
ପ୍ରୟାସ ଦୂରେ ପରିହରି । ଆତ୍ମାରେ ଆତ୍ମା ବୋଧ କରି ॥
ଅଳପ ସୁଖେ ଆତ୍ମା ତୋଷେ । ବର୍ତ୍ତଇ ଦିନ ଉପଦେଶେ ॥
ଯେ ଶୁଏ ବସୁନ୍ଧରୀ ଅଙ୍ଗେ । କି ସୁଖ ସୁବର୍ଣ୍ଣ ପଲଙ୍କେ ॥
ସାମର୍ଥ ଭୁଜ ଥାଉଁ ବାମେ । କି ପ୍ରୟୋଜନ ସୀମ ସ୍ଥାନେ ॥
ଅଞ୍ଜଳି ଅଛି ଯେବେ ହସ୍ତେ । କି ପ୍ରୟୋଜନ ଅନ୍ୟ ପାତ୍ରେ ॥
ଦିଗ ବଲ୍କଳ ଯାର ବାସ । ବସନେ କିବା ପ୍ରତି ଆଶ ॥
ଚିରାଣି ବସ୍ତ୍ର ପଥେ ଦେଖି । ତାର ଗ୍ରହଣେ ହୋନ୍ତି ସୁଖି ॥
ଫଳ ସମ୍ଭୂତ ବୃକ୍ଷ ବନେ । କି ପ୍ରୟୋଜନ ଭିକ୍ଷା ଅନ୍ନେ ॥
ନିର୍ଝର ନଦୀ କୂପ ଜଳେ । କି ପ୍ରୟୋଜନ କମଣ୍ଡଳେ ॥
ପର୍ବତ ଗୁହା ତୃଣ ବେଢ଼ି । ସେ ଥାଉଁ କିମ୍ପା ଗୃହେ ପଡ଼ି ॥
ଏମନ୍ତ ଭାବେ କୃଷ୍ଣ ପାଦେ । ଯେ ପ୍ରାଣୀ ଭଜନ୍ତି ଆନନ୍ଦେ ॥
ସେ କିମ୍ପା ଧନ ଗର୍ବ ଲୋକେ । କ୍ଷଣେ ଭଜିବ ଆତ୍ମା ସୁଖେ ॥
ଏହି ପ୍ରକାରେ ଆତ୍ମା ଚିତ୍ତେ । ସୁସିଦ୍ଧି ରଚି ଅନୁଭୂତେ ॥
ସେ ପ୍ରାଣୀ ହୋଇ କୃତ୍ୟ କୃତ୍ୟ । ତାହାକୁ ପ୍ରସନ୍ନ ଅନନ୍ତ ॥
ଏଣୁ ନିୟତ ଆତ୍ମାଯୋଗେ । ଭଜିବ ବିଷ୍ଣୁ ପାଦ ଯୁଗେ ॥
ମୁଁ ତୋତେ କହିଲି ବିଶ୍ୱାସେ । ଏଣୁ ସଂସାର ହେତୁ ନାଶେ ॥
ଏ ଭାବେ ଅନାଦର କରି । ସଂସାର ଚିନ୍ତା ଚିତ୍ତେ ଭରି ॥
ପଶୁ ଜନଙ୍କର ଏ ଗତି । ମାୟା ସଂସାରେ ସେ ଭ୍ରମନ୍ତି ॥
ଦେଖ ସଂସାରେ ପ୍ରାଣୀ ଯେତେ । ଯନ୍ତ୍ରିତ ଯମର ଆୟତ୍ତେ ॥
ବଇତରଣୀ ନାମେ ନଦୀ । ଯାତନା ମଧ୍ୟେ ସେ ପ୍ରସିଦ୍ଧି ॥
ତହିଁ ପଡ଼ନ୍ତି ଦେଖୁ ଦେଖୁ । ତାଙ୍କ ଜୀବନ କେବା ରଖୁ ॥
ଅର୍ଜିଲା କର୍ମ ଫଳ ସେବି । ଅଶେଷ ଦେହେ ତାହା ଭାବି ॥
ଏବେ ହୋ ଶୁଣ ନୃପମଣି । ଯେଣେ ସଂସାରୁ ତରେ ପ୍ରାଣୀ ॥
ଏ ଭାବେ ନର ଏ ଶରୀରେ । ଧାରଣା ଯୋଗ ନିର୍ବିକାରେ ॥
ସ୍ୱଦେହେ ହୃଦୟ ପ୍ରକାଶେ । ସେ ହରି ଘୋରତମ ନାଶେ ॥
ପ୍ରାଦେଶ ମାତ୍ର ରୂପ ଧରି । ବିଜୟେ ପ୍ରଭୁ ନରହରି ॥
ସୂକ୍ଷ୍ମ ସ୍ୱରୂପ ରୂପ ତାର । ଶୁଣ ସାନନ୍ଦେ କୁରୁବୀର ॥
ଶ୍ୟାମ ସୁନ୍ଦର ଭୁଜ ଚାରି । ଶଙ୍ଖ କମଳ ଚକ୍ରଧାରୀ ॥
ଧାରଣା ଯୋଗେ ଏହାଚିନ୍ତି । ନିଶ୍ଚଳେ ନୟନେ ଦେଖନ୍ତି ॥
ପ୍ରସନ୍ନ ଶ୍ରୀମୁଖ ମଣ୍ଡଳ । ଲୋଚନ ପୁଣ୍ଡରୀକ ଦଳ ॥
କଦମ୍ବ କିଞ୍ଜଳ ସୁରଙ୍ଗେ । ପୀତ ବସନ ଶୋଭେ ଅଙ୍ଗେ ॥
ଅମୂଲ୍ୟ ହାର ବକ୍ଷସ୍ଥଳେ । ରତ୍ନ କେୟୂର ବାହୁମୂଳେ ॥
ସୁବର୍ଣ୍ଣ କିରୀଟ କୁଣ୍ଡଳ । ସୁରଙ୍ଗ ଅଳକ କପୋଳ ॥
ହୃଦୟ ପଦ୍ମ ମଧ୍ୟେ ସ୍ମରି । ଏ ରୂପ ଚିନ୍ତେ ବ୍ରହ୍ମଚାରୀ ॥
ଶ୍ରୀ ବତ୍ସ କଉସ୍ତୁଭ ମଣି । ସୁବର୍ଣ୍ଣ ସୂତ୍ରେ ସୁଖଞ୍ଜଣି ॥
ଆଜାନୁ ଲମ୍ବେ ବନମାଳେ । କନ୍ଧୁ ବେଷ୍ଟିତ ପାଦତଳେ ॥
ରତ୍ନ ମେଖଳା କଟି ମାଝେ । ଅଙ୍ଗୁଳେ ମୁଦ୍ରିକା ବିରାଜେ ॥
ଅଙ୍ଗଦ ନୂପୁର କଙ୍କଣ । ବିବିଧ ଅଙ୍ଗେ ଆଭରଣ ॥
ଅମଳ ପୁଷ୍ପ ଶିରେ ଶୋହେ । ନୀଳ କୁନ୍ତଳ ଜନ ମୋହେ ॥
ସୁରଙ୍ଗ ହର୍ଷିତ ବଦନ । ଅଞ୍ଜନ ବିରାଜେ ଲୋଚନ ॥
ଭ୍ରୂଭଙ୍ଗ ଅନୁଗ୍ରହ ମୁଖ । ଭ୍ରୂକୁଟି କୁଟିଳ ସୁରେଖ ॥
ଏମନ୍ତେ ଈଶ୍ୱରର ଦେହେ । ଚିତ୍ତେ ଚିନ୍ତିବ ଚିନ୍ତାମୟେ ॥
ଯାବତ ଧାରଣାର ବଳେ । ନ ନ ରହଇ ନିଶ୍ଚଳେ ॥
ଏମନ୍ତ ଏକ ଏକ ଅଙ୍ଗେ । ନିତ୍ୟେ ଭାବିବ ବିଧିଯୋଗେ ॥
ହାସ୍ୟ ବଦନୁ ପାଦ ଯାଏ । ଭାବିବ ବିଷ୍ଣୁ ସ୍ଥୂଳ ଦେହେ ॥
ସ୍ଥାନକୁ ସ୍ଥାନ ଧ୍ୟାନ କରି । ଅପରେ ପଶିବ ପ୍ରସାରି ॥
ଯାବତ ସୁବୁଦ୍ଧି ଶରୀରେ । ପରମ ସୁଖ ନ ବିଚାରେ ॥
ଯାବତ ବିଷ୍ଣୁ ତେଜ ଦେହେ । ନ ଦେଖି ତତ୍ତ୍ୱର ଉଦୟେ ॥
ତାବତ ସ୍ଥୂଳ ରୂପେ ଚିନ୍ତି । ଚିତ୍ତେ ଚିନ୍ତିବ ନିତି ନିତି ॥
ସୁଖେ ବସିବ ସ୍ଥିରାସନେ । ସ୍ଥୂଳ ଶରୀର ଯୋଗଧ୍ୟାନେ ॥

ଏମନ୍ତ କରିବ ଧାରଣ । ଯାବତ ନୋହଇ ମରଣ ॥
ପବିତ୍ର ପୁଣ୍ୟତୀର୍ଥ ଜଳେ । ମନ ନ କରିବ ଚଞ୍ଚଳେ ।
ଯୋଗ ସାଧନେ ପଞ୍ଚପ୍ରାଣ । ସାଧିବ ସୁଦୃଢ଼ ଧାରଣ ॥
ଆସନ ପ୍ରତ୍ୟାହାର ବଳେ । ମନକୁ ସ୍ଥାପିବ ନିଶ୍ଚଳେ ॥
ମନ ସମେତ ଇନ୍ଦ୍ରିଗଣ । କ୍ଷେତ୍ରଜ୍ଞେ କରିବ ପ୍ରମାଣ ॥
ଆତ୍ମାରେ ଆତ୍ମାକୁ ନିରୋଧି । ଯେମନ୍ତେ ଯେ ଜନ ସୁବୁଦ୍ଧି ॥
ଆତ୍ମାର ଲାଭ ଲଭେ ହେଳେ । କଷ୍ଟ ଛାଡ଼ିବ ତେତେବେଳେ ॥
ଏ ଭାବେ ଜୀବର ନିସ୍ତାର । କାଳର ନାହିଁ ଅଧିକାର ॥
ଦେବେ ନୁହନ୍ତି ଯହିଁ ହିଂସ୍ର । ତ୍ରିଗୁଣେ ନୁହନ୍ତି ପ୍ରବେଶ ॥
ଇନ୍ଦ୍ରିୟଗଣେ ଅଗୋଚର । ଯହିଁ ମହତ ତତ୍ତ୍ୱବର ॥
ଏ ଘେନି ବଇଷ୍ଣବ ଧାମ । ପରମ ପଦ ଯାର ନାମ ॥
ଦେବେ ନ ପାନ୍ତି ଯାହା ଚିନ୍ତି । ନ ଜାଣୁ ଆଗମେ ବୋଲନ୍ତି ॥
ଦୁରାତ୍ମା ଭାବ ପରିହରି । ସୁହୃଦ ଭାବ ଚିତ୍ତେ ଧରି ॥
ପରମ ପଦେ କରି ସ୍ଥାନ । ତେବେ ସାଧିବ ଦୃଢ଼ାସନ ॥
ବାମ ଚରଣ ପଛଭର । ତେଣେ ନିରୋଧି ମୂଳଦ୍ୱାର ॥
ମୂଳପବନ ଊର୍ଦ୍ଧ୍ୱେ ତୋଳି । ନାଭିପବନ ସଙ୍ଗେ ମିଳି ॥
ବେନି ପବନ ପୁଣି ବଳେ । ସ୍ଥାପିବ ହୃଦୟ କମଳେ ॥
ତହୁଁ ତୋଳିବ ତିନିପ୍ରାଣ । କଣ୍ଠେ ଯେ ବସଇ ଉଦାନ ॥
ବ୍ୟାନ ପବନ ତାର ତୁଳେ । ଧରି ସ୍ଥାପିବ ତାକୁ ମୂଳେ ॥
ତହୁଁ କୁମ୍ଭେକ ସାଧକରି । ପ୍ରାଣକୁ କମଣ୍ଡଳେ ଧରି ॥
ନିରୋଧ କରି ପଞ୍ଚ ଦ୍ୱାର । ସ୍ମରଣ କରିବ ଓଁକାର ॥
ମୁହୂର୍ତ୍ତ ଅର୍ଦ୍ଧ ରହି ବନ୍ଧେ । ତେବେ ସ୍ଥାପିବ ବ୍ରହ୍ମରନ୍ଧ୍ରେ ॥
ନିଷ୍କଳ ଯୋଗେ ହୃଦେ ସାଧି । ତକ୍ଷଣେ ବ୍ରହ୍ମରନ୍ଧ୍ରେ ଭେଦି ॥
ପରମ ପଦେ ତାର ଗତି । ବ୍ରହ୍ମ ଯେ ବ୍ରହ୍ମଲୋକେ ସ୍ଥିତି ॥
ଗୁଣ ସମୂହ ଅଷ୍ଟନିଧି । ଯେଣୁ ବୋଲଇ ନାନାବିଧି ॥
ମନ ଇନ୍ଦ୍ରିୟ ଗଣ ମେଳେ । ତକ୍ଷଣେ ବ୍ରହ୍ମଲୋକେ ମିଳେ ॥
ଯୋଗେଶ୍ୱରଙ୍କର ଏ ଗତି । ପରମ ପୁରୁଷ ବୋଲାନ୍ତି ॥
ଏମନ୍ତେ ତିନିଲୋକ ଜିଣି । ଗୁଣ କହିବା ପରିମାଣି ॥
ଯେ କର୍ମ ସାଧେ କର୍ମକାଣ୍ଡେ । ସେ କାହିଁ ଯିବ ଊର୍ଦ୍ଧ୍ୱ ଦାଣ୍ଡେ ॥
କେବଳ ଭାବେ ଧର୍ମ ଭାଗେ । ସାଧିବ ବିଦ୍ୟା ତପ ଯୋଗେ ॥
ସୁଷୁମ୍ନା ରନ୍ଧ୍ରେ ବ୍ରହ୍ମପଥେ । ଜ୍ୟୋତି ପ୍ରକାଶେ ଊର୍ଦ୍ଧ୍ୱଗତେ ॥
ବିଧୂତ କଳ୍ମଷ ଶରୀର । ସେ ଚକ୍ରେ ସ୍ଥିତି ଶିଶୁମାର ॥
ଏ ବିଷ୍ଣୁ ଲୋକର ଭୂତଳେ । ଯେ ଚକ୍ର ତଳେ ଧ୍ରୁବପୁରେ ॥
ବିଶ୍ୱର ନାଭି ସେ ବୋଲାଇ । ଆତ୍ମା ସ୍ୱରୂପେ ତହୁଁ ଯାଇ ॥
ପ୍ରବେଶ ପରମ ସ୍ୱରୂପେ । ବ୍ରହ୍ମନିର୍ବାଣ କଳ୍ପେ କଳ୍ପେ ॥
କଳ୍ପ ଆୟୁଷ ଦେବଗଣେ । ଯହିଁ ଭ୍ରମନ୍ତି ଅନୁକ୍ଷଣେ ॥
ସେ ପୁଣି କଳ୍ପ କ୍ଷୟ କାଳେ । ଅନନ୍ତ ନିଶ୍ୱାସ ଅନଳେ ॥

ଦହନ ଦେଖି ଅନ୍ତରୀକ୍ଷେ । ଅନନ୍ତ ଶୟନ ପ୍ରତ୍ୟକ୍ଷେ ॥
ସିଦ୍ଧେଶ୍ୱରଙ୍କ ସ୍ଥାନେ ପଶେ । ଦେବ ଯା ବ୍ରହ୍ମଲୋକେ ଘୋଷେ ॥
ବେନି ପରାର୍ଦ୍ଧ ଯହିଁ ଗଣି । ସେ ବ୍ରହ୍ମଲୋକ ପରିମାଣି ॥
ସେ ପୁରେ ନାହିଁ ଦୁଃଖଶୋକ । ଜରା ମରଣ ଉଦବେଗ ॥
ଚିନ୍ତିଲା ଅର୍ଥ ଯହିଁ ପାଇ । ଜନ୍ମ ମରଣ ଭୟ ନାହିଁ ॥
କେତେହେଁ କାଳ ସେ ଭୁବନେ । ଥାଇ ଚିନ୍ତଇ ଅବଧାନେ ॥
ଅନଳ ସମ ତେଜକାନ୍ତି । ଜ୍ୟୋତି ସ୍ୱରୂପେ ପ୍ରାଣ ଚିନ୍ତି ॥
ସେ ବାୟୁ ନଭ ସ୍ଥଳେ ପୁରେ । ସେ ନଭେ ଲିଙ୍ଗ ରୂପ ଧରେ ॥
ଗନ୍ଧ କଳ୍ପର ଘ୍ରାଣ ମାତ୍ରେ । ସ୍ୱାଦକୁ ରସନା ସମେତେ ॥
ଦୃଷ୍ଟିରେ ରୂପକୁ ସଂହରେ । ପବନ ବସେ ଚର୍ମ ପାରେ ॥
ଆକାଶ ଗୁଣ କର୍ଣ୍ଣେ ଭରି । ପ୍ରାଣ ନାସିକା ଗନ୍ଧ ଧରି ॥
ବୁଦ୍ଧି ଇନ୍ଦ୍ରିୟ ଭାବି ଏଣେ । ଏ ପଞ୍ଚମାତ୍ରା ପରିମାଣେ ॥
ଏଣେ ଅନାଦି ଭଗବାନ । ବୁଦ୍ଧି ଇନ୍ଦ୍ରିୟ ଦିବ୍ୟଜ୍ଞାନ ॥
ଏ ପଞ୍ଚ ଦେବତା ସମେତେ । ସୂକ୍ଷ୍ମ ସ୍ୱରୂପ ବିଷ୍ଣୁ ପଥେ ॥
ପଞ୍ଚ ବିକାରେ ପଞ୍ଚଦେବା । ମନୁଷ୍ୟ ମତେ କରି ସେବା ॥
ବିଜ୍ଞାନ ହତ ପଦେ ପଦେ । ଯେ ନିତ୍ୟଗୁଣ ସନିରୋଧେ ॥
ଆତ୍ମା ନିରୋଧେ ଆତ୍ମାଜ୍ଞାନ । ପ୍ରବେଶ କରେ ଦିବ୍ୟଜ୍ଞାନ ॥
ଆନନ୍ଦ ଜ୍ଞାନ ରସ ଭୋଳେ । ଶାନ୍ତି ଭଜଇ ସେ ନିଷ୍କଳେ ॥
ଏମନ୍ତେ ଧାରଣାନୁଭାବେ । ନିଶ୍ଚେ ପଶଇ ବାସୁଦେବେ ॥
ଅନ୍ତେ ଲଭଇ ଗତି ଏତେ । ତାହାକୁ ବୋଲି ଭାଗବତେ ॥
ନାହିଁ ପଶିଲେ ଆତ୍ମାମନ । ନ ଲଭେ ପୁନରପି ଜନ୍ମ ॥
ଶୁଣ ହେ ନୃପ ପରୀକ୍ଷିତ । ଯେଣୁ ଭଜନେ ଭାଗ୍ୟବନ୍ତ ॥
ତେଣୁ କହିଲି ଶ୍ରୁତି ଯୋଗେ । ତୋର ସମୀପେ ପ୍ରିୟ ଭାବେ ॥
ଦଇବ କାଳ ଅବସାନେ । ଏଣୁ କହିଲି ଦିବ୍ୟଜ୍ଞାନେ ॥
ବ୍ରହ୍ମାର ତପେ ହୋଇ ତୋଷ । ବିଷ୍ଣୁ ଯେ ଦେଲେ ଉପଦେଶ ॥
ସେ ପଦ କହିବି ମୁଁ ତୋତେ । ଏବେ ତୁ ଶୁଣ ଏକଚିତ୍ତେ ॥
ସେ କାହିଁ ଯିବ ଶିବ ପଥେ । ସଂସାରେ ସଞ୍ଚରନ୍ତି ଯେତେ ॥
ଏ କଥା ଶୁଣି ପ୍ରିୟ ଭାବେ । ଭଗତି ଲଭେ ବାସୁଦେବେ ॥
ବ୍ରହ୍ମାର ତପ କଷ୍ଟେ ହରି । ଯାହା କହିଲେ ଦୟା କରି ॥
ସେ ସର୍ବ ଜୀବଙ୍କୁ ସଙ୍ଗତ । ଏ ଭାବେ ହୁଏ ଆତଯାତ ॥
ସେ ହରି ସର୍ବଭୂତ ମଧ୍ୟେ । ନିତ୍ୟେ ବିହରେ ଆତ୍ମା ପଦେ ॥
ବୁଦ୍ଧି ଲକ୍ଷଣ ଅନୁମାନେ । ନିଷ୍କଳ ଯୋଗେ ଯୋଗଧ୍ୟାନେ ॥
କେ ଅବା କରିବ ଗୋଚର । ଜଗତ ବାହ୍ୟ ଅଭ୍ୟନ୍ତର ॥
ଏ ଘେନି ସର୍ବ ଆତ୍ମା ଭାବେ । ସର୍ବଦା ସର୍ବ ଭାବ ଲଭେ ॥
ହରିଙ୍କି ଶ୍ରୁତି ପଥେ ଶୁଣେ । ମୁଖେ ଯେ ଅହର୍ନିଶି ଗୁଣେ ॥
ସେ ହରି କଥା ମୃତ ରସ । ଯେ କରେ ଶ୍ରୁତି ପଥେ ଗ୍ରାସ ॥
ବିଷୟ ବିଭୂଷିତ ଚିତ୍ତେ । ପବିତ୍ର କରେ ଅନ୍ତର୍ଗତେ ॥
ଗୋବିନ୍ଦ ଚରଣ କମଳେ । ପଶଇ ଭକ୍ତି ଯୋଗବଳେ ॥

ଏ ଭାଗବତ ରସ ଚିତ୍ତେ । ସୁଜନେ ଶୁଣ ଅବିରତେ ॥
ବିଷୟ ରସେ ଥାଇ ରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ଯୋଗ ସୃଷ୍ଟି ଦୃଢ଼ ବର୍ଣ୍ଣନେ ନାମ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଶୁଦ୍ଧ ଚିତ୍ତେ । ପ୍ରସନ୍ନେ ନୃପତି ଅଗ୍ରତେ ॥
ଶୁଣ ନୃପତି ପୁଣ୍ୟଦେହା । ତୁ ମୋତେ ପଚାରିଲୁ ଯାହା ॥
ମନୁଷ୍ୟ ମଧ୍ୟେ ସାଧୁ ପ୍ରାଣୀ । ଆତ୍ମା ପରମଜ୍ଞାନ ଜାଣି ॥
ଏବେ କହିବା ଜ୍ଞାନ ସାର । ଭଗତ ଜନଙ୍କ ବେଭାର ॥
ବ୍ରହ୍ମ ତେଜକୁ ଯାର ଇଚ୍ଛା । ବ୍ରହ୍ମ ଭଜନେ ତାର ଦୀକ୍ଷା ॥
ଇନ୍ଦ୍ରିୟ ସୁଖେ ଯାର ଭାବ । ସେ ନର ଇନ୍ଦ୍ରଙ୍କୁ ପୂଜିବ ॥
ପୁତ୍ର ଲାଭରେ ଯାର ମତି । ସେ ନର ପୂଜେ ପ୍ରଜାପତି ॥
ଶ୍ରୀ କାମେ ଦୁର୍ଗାଦେବୀ ପୂଜେ । ତେଜସ୍ୱୀ ପୂଜେ ଗ୍ରହରାଜେ ॥
ବସୁଙ୍କୁ ପୂଜେ ବସୁକାମୀ । ରୁଦ୍ରଙ୍କୁ ପୂଜେ ବୀର୍ଯ୍ୟକାମୀ ॥
ଅଦିତି ସେବେ ଦେବମାତା । ଅର୍ଥ ଅର୍ଜନେ ଯାର ଚିନ୍ତା ॥
ଦେବଙ୍କୁ ପୂଜେ ସର୍ବକାମୀ । ବିଶ୍ୱଦେବଙ୍କୁ ରାଜକାମୀ ॥
ସିଦ୍ଧ କରଣେ ସିଦ୍ଧଗଣେ । ଅଶ୍ୱିକୁମାରେ ଆୟୁକାମେ ॥
ଯେ ପ୍ରାଣୀ ଅନ୍ନ ପୁଷ୍ଟେକାମୀ । ସର୍ବ ଲକ୍ଷଣେ ପୂଜେ ଭୂମି ॥
ପ୍ରତିଷ୍ଠା କାମେ ଯେବେ ଇଚ୍ଛେ । ସେ ପୂଜେ ଭୂମି ଅନ୍ତରୀକ୍ଷେ ॥
ସୁନ୍ଦର ରୂପ ଯାର ଭାବ । ସେ ନର ଗନ୍ଧର୍ବ ପୂଜିବ ॥
ଯେ ନର ଇଚ୍ଛେ ଦିବ୍ୟ ନାରୀ । ଭାବେ ଉର୍ବଶୀ ପୂଜା କରି ॥
ସକଳ ଅଧିପତି ଚିନ୍ତା । ଯେ କରେ ପୂଜେ ସେ ବିଧାତା ॥
ଯେ ନର ଇଚ୍ଛେ ଯଶକାମ । ଯଜ୍ଞେ ପୂଜନ୍ତି ଯଶସ୍ୱାମ ॥
ଧନ ଭଣ୍ଡାର ସେ ଇଚ୍ଛନ୍ତି । ବରୁଣ ଚରଣେ ପୂଜନ୍ତି ॥
ଈଶ୍ୱର ପୂଜେ ବିଦ୍ୟା ଅର୍ଥୀ । ଦାମ୍ପତ୍ୟ ଅର୍ଥେ ଉମାସତୀ ॥
ଧର୍ମାର୍ଥୀ ପୂଜେ ନାରାୟଣ । ସନ୍ତାନ ଅର୍ଥେ ପିତୃଗଣ ॥
ରାକ୍ଷସ ଗଣେ ରକ୍ଷା କାମ । ବଳାର୍ଥୀ ପୂଜେ ପ୍ରଭଞ୍ଜନ ॥
ସକଳ ରାଜ୍ୟେ ରାଜପଣେ । ସେ ଆଶେ ପୂଜେ ମନୁଗଣେ ॥
ଜନ୍ମ ମରଣେ ଇଚ୍ଛା ଯେବେ । ପୂଜନ୍ତି ଅଭିଚାର ଯୋଗେ ॥
ସୋମଙ୍କୁ ପୂଜେ କାମକାମୀ । ଅକାମୀ ଆତ୍ମାରାମେ ରମି ॥
ଅକାମେ ଅବା ସର୍ବ କାମେ । ଯେ ଅବା ଭଜେ ମୋକ୍ଷ ଧର୍ମେ ॥
ପରମ ପୁରୁଷ ଚରଣେ । ଯେ ବା ଭଜଇ ଦାସ ପଣେ ॥
ଏ ଭାବେ ତାହାଙ୍କ ଜୀବନ । ଜନ୍ମ ମରଣେ ଧନ୍ୟ ଧନ୍ୟ ॥
ପରମ ପଦ ସେ ଲଭନ୍ତି । ବିଷ୍ଣୁ ଚରଣେ ନିତ୍ୟେ ଚିନ୍ତି ॥
ହରି ଭଗତ ଜନ ସଙ୍ଗେ । ତରଇ ଏ ଭବ ତରଙ୍ଗେ ॥
ଜ୍ଞାନ ପ୍ରସରେ ବୁଦ୍ଧିବଳେ । ତ୍ରିଗୁଣ ହରଇ ନିଷ୍ଫଳେ ॥
ଆତ୍ମା ପ୍ରକାଶେ ତିନିଲୋକେ । ଗୁଣ ଅଶେଷ ସୁବିବେକେ ॥
କୈବଲ୍ୟ ଲଭିବାର ପଥ । ଏ ଭକ୍ତି ଯୋଗୀଙ୍କର ମତ ॥
କେବା ନିବୃତ ହରି ଭାବେ । ଆତ୍ମାର କଇବଲ୍ୟ ଲାଭେ ॥

### ଶୌନକ ଉବାଚ

ଏମନ୍ତେ ଶୁକ ମୁଖୁ ଶୁଣି । ସେ କୁରୁବୀର ଚୂଡ଼ାମଣି ॥
ମରଣେ ଅଭିମନ୍ୟୁ ବଳା । ଅନ୍ୟ କି ପ୍ରଶ୍ନ ପଚାରିଲା ॥
ସେ କଥା ଆମ୍ଭେ ଭଲେ ଶୁଣି । ତରିବୁ ଭବ ତରଙ୍ଗିଣୀ ॥
ତୁମ୍ଭର ଅଛି ଯେବେ ସ୍ନେହ । ସଦୟ ଚିତ୍ତେ ମୁନି କହ ॥
ଯେ ହରିକଥା ସଭା ମଧ୍ୟେ । ଭଗତେ କହନ୍ତି ଆନନ୍ଦେ ॥
ଯେ ପଣ୍ଡୁବଂଶେ ମହାରଥ । ସ୍ୱଭାବେ କୃଷ୍ଣ ଅଂଶେ ଜାତ ॥
ବାଳକ କ୍ରୀଡ଼ା ରସ ଖେଳେ । ଗୋବିନ୍ଦ ଚରଣ କମଳେ ॥
ପରମାନନ୍ଦ ଗୁଣ ଗାଆ । ସତ ସଙ୍ଗମେ ସେ ବକତା ॥
ଜୀବନ ବହି ଏ ଜଗତେ । ସେ ହରିକଥା ନିତ୍ୟେ ନିତ୍ୟେ ॥
ନ କରେ ଜୀବନ ନିଷ୍ଫଳ । ହୀନ ତାହାର ଆୟୁବଳ ॥
ଏ ରବି ଉଦେ ଅସ୍ତକାଳେ । ଜନ୍ତୁ ଜୀବନ ଘେନି ଚଳେ ॥
ସେ ହରି ଭାବେ ଥାନ୍ତି ପଡ଼ି । ତାଙ୍କ ଜୀବନ ଦୂରେ ଏଡି ॥
ଏ ତରୁଗଣ ଏ ସଂସାରେ । ଜୀବନ୍ତି ଅଜ୍ଞାନ ପ୍ରକାରେ ॥
ଲୌହ କାରକ ଘରେ ଭାତି । ଶ୍ୱାସ ଛାଡ଼ନ୍ତେ ନ ଜୀବନ୍ତି ॥
ଗ୍ରାମ କାନନେ ପଶୁଗଣ । କି ନ ଭକ୍ଷନ୍ତି ଜଳ ତୃଣ ॥
ମୂତ୍ର ପୁରୀଷ ଉତ୍ସର୍ଗନ୍ତି । ଅଜ୍ଞାନ ସୁଖେ ସେ ଜୀବନ୍ତି ॥
ଶୁକର ଶ୍ୱାନ ଓଟ ଖର । ଏହାଙ୍କ ସମାନେ ସେ ନର ॥
କୃଷ୍ଣର ନାମ ଉଚ୍ଚାରଣେ । ନ ପଶେ ଯାହାର ଶ୍ରବଣେ ॥
ତାହାର କର୍ଣ୍ଣ ଯୁଗ ପଥ । ବିବରେ ଦିଶନ୍ତି ଯେମନ୍ତ ॥
ତୁଣ୍ଡର ମଧ୍ୟେ ଜିହ୍ୱା ବହି । ଯେ ହରି ନାମ ନ ଭଜଇ ॥
ଦର୍ଦ୍ଦୁର ବାଣୀ ବୋଲି ତାରେ । ଯେ ହରି ନାମ ନ ଉଚ୍ଚାରେ ॥
ଯାର ଉତ୍ତମ ଅଙ୍ଗ ସାଜେ । ସୁବର୍ଣ୍ଣ ମୁକୁଟ ବିରାଜେ ॥
ପାଟ ବସନେ ବାନ୍ଧି ଚୂଳ । ଶ୍ରବଣେ ବିରାଜେ କୁଣ୍ଡଳ ॥
ସେ ଯେବେ ହରିଙ୍କି ନ ନମେ । ସେ ମୁଣ୍ଡେ ଭାରବହେ ଶ୍ରମେ ॥
ଯେବା ସୁନ୍ଦର ବେନି ଭୁଜେ । କାଞ୍ଚନ କଙ୍କଣ ବିରାଜେ ॥
ବିଷ୍ଣୁର କାର୍ଯ୍ୟେ ଯେବେ ନୋହେ । ଶ୍ମଶାନ ଅସ୍ଥି ପ୍ରାୟେ ବହେ ॥
ଲୋଚନ ବେନି ଥାଉ ମୁଖେ । ଯେ ହରି ଭଗତ ନ ଦେଖେ ॥

ମୟୂର ପୁଚ୍ଛ ବୋଲି ତାରେ । ସେ ଅନ୍ଧ ସଂସାର ସାଗରେ ॥
ଚରଣ ଯୁଗ ବହି ନରେ । ଯେବେ ନ ଯାନ୍ତି ବିଷ୍ଣୁ ଘରେ ॥
ତାହାଙ୍କୁ ବୋଲି ବୃକ୍ଷ ଦୁଇ । ସେ ଯେହ୍ନେ ପାଦେ ନ ଚଳଇ ॥
କୃଷ୍ଣ ଭଗତଙ୍କ ଚରଣୁ । ଦେହେ ନ ଲାଗେ ଯାର ରେଣୁ ॥
ତାହାର କାହିଁ ସୁଖଲେଶ । ଅନ୍ୟାୟେ ହୁଅନ୍ତି ପ୍ରବେଶ ॥
ତୁଳସୀ ଜଳ କୃଷ୍ଣ ଦେହେ । ଶୁଦ୍ଧ ସୌରଭ ଗନ୍ଧ ବହେ ॥
ସେ ଗନ୍ଧ ଯାର ନାସାଦ୍ୱାରେ । ନ ଲଭେ ସର୍ବଦା ଶରୀରେ ॥
ଗୋବିନ୍ଦ ନାମ ଯାର ହୃଦେ । ନ ପଶେ ପୁଲକ ଆନନ୍ଦେ ॥
ତାର ହୃଦୟ ଅସଂସ୍କାର । ବହଇ ଲୌହମୟ ଭାର ॥
ଏବେ ହୋ ଶୁଣ ମୁନିଗଣ । ଯାହା କହିଲେ ନାରାୟଣ ॥
ହରଷେ ବ୍ୟାସଙ୍କ କୁମର । ଆତ୍ମା ଜ୍ଞାନୀଙ୍କ ମଧ୍ୟେ ସାର ॥
ଆନନ୍ଦେ ମୁନିଗଣ ମେଳେ । ଯାହା କହିଲେ ଗଙ୍ଗାକୂଳେ ॥
ସୁଭଦ୍ରା ସୁତ ତାହା ଶୁଣି । ହରି ଭଗତ ଚୂଡ଼ାମଣି ॥
ସେ ହରି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ଭକ୍ତିଯୋଗ ପ୍ରାଧାନ୍ୟ ବର୍ଣନେ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଏମନ୍ତେ ଶୁକ ବାକ୍ୟ ଶୁଣି । ଆତ୍ମାର ତତ୍ତ୍ୱ ମନେ ଗୁଣି ॥
କୃଷ୍ଣ ବିଷୟେ ଦୃଢ଼ ମନ । କଳ୍ପିଲା ଉତ୍ତରା ନନ୍ଦନ ॥
ଆତ୍ମା କଳତ୍ର ସୁତ ଗୃହେ । ପଶୁ ଦ୍ରବିଣ ବନ୍ଧୁ ସ୍ନେହେ ॥
ରାଜ ସମ୍ପଦ ଯେତେ ଆଶ । ହୃଦୁ ଛାଡ଼ିଲେ ସ୍ନେହପାଶ ॥
ତୁମ୍ଭେ ଯେ ପଚାରିଲ ମୋତେ । ଏ କଥା ରାଜା ଦୃଢ଼ ଚିତ୍ତେ ॥
କୃଷ୍ଣାନୁଭାବ ଜାଣିମାରେ । ଶ୍ରଦ୍ଧା ବଳିଲା ନିର୍ବିକାରେ ॥
ଆତ୍ମା ନିଧନ ମନେ ସ୍ମରି । ବେଦ ବଚନ ଦୃଢ଼େ ଧରି ॥
କୃଷ୍ଣ ବିଷୟେ ଦୃଢ଼ ଚିତ୍ତ । ନିଶ୍ଚୟ କରି ପରୀକ୍ଷିତ ॥

### ରାଜା ଉବାଚ

ଶୁଣ ହେ ବ୍ୟାସଙ୍କ ନନ୍ଦନ । ନିର୍ଗୁଣ ତୁମ୍ଭର ବଚନ ॥
ଯାହା ଶ୍ରବଣେ ପାପ ହରେ । ପବିତ୍ର ବାହ୍ୟ ଅଭ୍ୟନ୍ତରେ ॥
ପୁଣି ପଚାରେ ତୋଷ ଚିତ୍ତେ । ଭୋ ମୁନି କହିବ ନିଶ୍ଚିନ୍ତେ ॥
ସେ ହରି ଆତ୍ମା ମାୟାବଳେ । ସୃଷ୍ଟି ସର୍ଜିଲେ ଏ ଶୟଳେ ॥
ବିଷ୍ଣୁର ସର୍ଜିଲା ସଂସାର । ଅନ୍ୟ ଦେବଙ୍କୁ ଅଗୋଚର ॥
ଯେମନ୍ତ ପାଳି ପୁଣି ହରେ । ଯେ କାଳେ ଯେବା ଶକ୍ତିଧରେ ॥
ଆତ୍ମାକୁ ଆତ୍ମା କରି ଖେଳା । କୁହୁକ ମତ ବିଷ୍ଣୁଲୀଳା ॥
ସୃଜଇ ପାଳଇ ସଂହାରେ । ମାୟା ତ୍ରିଗୁଣ ରୂପଧରେ ॥
ଅଦ୍ଭୁତ କର୍ମ ଏ ତାହାର । କେ କରି ପାରିବ ଗୋଚର ॥
ଯେମନ୍ତେ ପ୍ରକୃତିର ଗୁଣ । ସୃଜି ସଂହରେ ଘୁଣ ପୁଣ ॥
ସର୍ବ ବିସର୍ଜେ ଏକବାରେ । କେ ଅବା ପୃଥକ ବେଭାରେ ॥
ଏକୁ ଅନେକ ରୂପଧରେ । ଅଶେଷ ଜନ୍ମ କର୍ମ କରେ ॥
ଏଣୁ ଶ୍ରବଣେ ଇଚ୍ଛା ମୋର । କହ ହେ ବ୍ୟାସଙ୍କ କୁମର ॥
ଶବଦ ବ୍ରହ୍ମ ତତ୍ତ୍ୱ ସାଧି । ତୁମ୍ଭର ପରମ ସମାଧି ॥
ଶୁଣି ସାନନ୍ଦେ ବ୍ୟାସ ସୁତ । ହରି ଚରଣେ ଦେଇ ଚିତ୍ତ ॥
ଧ୍ୟାନେ ସେ ଚିନ୍ତି ନାରାୟଣ । ବୋଲନ୍ତି ପରୀକ୍ଷିତ ଶୁଣ ॥

### ଶ୍ରୀ ଶୁକ ଉବାଚ

ନମସ୍ତେ ପରମ ପୁରୁଷ । ଅଶେଷ ଘଟେ ପରକାଶ ॥
ଲୀଳା ବିହାରେ ସୃଷ୍ଟିକରେ । ପାଳଇ ପୁଣି ସେ ସଂହରେ ॥
ଜନ୍ତୁ ଖେଳଣେ ଶକ୍ତି ଧରେ । ଏ ଭାବେ ଅନ୍ତରେ ବିହରେ ॥
ନମସ୍ତେ ଜଗତ ଜୀବନ । ସାଧୁଙ୍କ ବୃଜିନ ଦହନ ॥
ଅଖିଳ ଜନ୍ତୁ ରୂପ ତୋର । ସମ୍ଭବା ସମ୍ଭବ ବେଭାର ॥
ପରମହଂସଙ୍କ ଆଶ୍ରମେ । ସ୍ଥିତି ନ ଲଭେ ବହୁଶ୍ରମେ ॥
ନମୋ ସାତ୍ତ୍ୱିକ ଗୁଣବର । ତୁ ଯୋଗୀଜନେ ଅଗୋଚର ॥
ସର୍ବ ପ୍ରକାରେ ସର୍ବ ପୁରେ । ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତରେ ॥
ନମସ୍ତେ ପରମ କାରଣ । ଯେ ନିତ୍ୟେ ସୁଧା ସୁମରଣ ॥
ଯା ନାମ ଶ୍ରବଣ କୀର୍ତ୍ତନେ । ଯା ରୂପ ଦେଖନ୍ତି ନୟନେ ॥
ନମିଲେ ଯାହାର ଚରଣେ । ସୁକର୍ମ ଫଳ ସମର୍ପଣେ ॥
ଜନ୍ତୁଙ୍କ କଳୁଷ ନାଶଇ । ଶ୍ରବଣ ମଙ୍ଗଳ ବୋଲାଇ ॥
ପଣ୍ଡିତ ଜନେ ଯାର ପାଦେ । ସେବା ସମ୍ପାଦି ଅପ୍ରମାଦେ ॥
ଆତ୍ମାର କଳୁଷ ନାଶନ୍ତି । ଜନ୍ମମରଣ ନ ଡରନ୍ତି ॥
ଆତ୍ମାର ଶ୍ରମ କରି ଶାନ୍ତି । ଅନ୍ତେ ଲଭନ୍ତି ବ୍ରହ୍ମଗତି ॥
ଯେ ପ୍ରାଣୀ ତପଦାନ କରେ । ଯଜ୍ଞ ସମ୍ପାଦି ଏ ସଂସାରେ ॥
ସୁବୁଦ୍ଧି ପଣେ ମନ୍ତ୍ର ସାଧି । ମଙ୍ଗଳ କର୍ମକୁ ଆରାଧି ॥
ଏଣେ ଅର୍ଜନ୍ତି ଯେତେ ଫଳ । ତୋତେ ନ ସମର୍ପେ ନିଷ୍ଫଳ ॥
କିରାତ ଆଦି ଜନ୍ମ ଯେତେ । ପୁଳିନ୍ଦ ଚଣ୍ଡାଳ ସମେତେ ॥
ଆଭୀର କଙ୍କ ଯେ ଯବନ । ଏ ଆଦି ଯେତେ ଅନ୍ତ୍ୟଜନ ॥
ଦୁଷ୍କର କର୍ମ ଯେ କରନ୍ତି । ତୋ ପାଦ ଆଶ୍ରିତେ ତରନ୍ତି ॥

ଯେ ହରି ଜଗତ ଜୀବନ । ଆତ୍ମାଜ୍ଞାନୀର ଆତ୍ମଜ୍ଞାନ ॥
ଏ ତିନି ବେଦ ଯାର ଦେହେ । ଯେ ଧର୍ମମୟ ତପୋମୟେ ॥
ନିର୍ମଳ ଚିତ୍ତେ ଯୋଗୀଜନେ । ବ୍ରହ୍ମା ଶଙ୍କର ଅନୁମାନେ ॥
ନାନା ପ୍ରକାରେ ଧ୍ୟାନେ ଚିନ୍ତି । ଯା ରୂପ କେହି ନ ଦେଖନ୍ତି ॥
ଯେ ଲକ୍ଷ୍ମୀପତି ଯଜ୍ଞପତି । ଯାଦବ ବଂଶ ପତି ଗତି ॥
ଯାହାର ଅନ୍ତ ମଧ୍ୟେ ସ୍ଥିତି । ସାଧବ ଗଣେ ଯାହା ଚିନ୍ତି ॥
ଯାର ଚରଣ ଧ୍ୟାନବଳେ । ନିଷ୍କଳ ସମାଧିର ଜଳେ ॥
ବୁଦ୍ଧି କି ପ୍ରକ୍ଷାଳନ କରି । ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ॥
ସତ୍ୟ ବଚନେ ମୁନି ଯେତେ । ସେବନ୍ତି ଯାର ପାଦଗତେ ॥
ଯାହାର ଆଜ୍ଞା ପରମାଣେ । ଭାରତୀ ଆସି ତତକ୍ଷଣେ ॥
ଅସତ୍ୟ ବୁଦ୍ଧି ନାଶ ଗଲା । ପରମ ଜ୍ଞାନ ସଂପାଦିଲା ॥
ପୃଥିବୀ ଆଦି ମହାଭୂତେ । ଜନ୍ତୁ ଭିଆଇ ଏ ଜଗତେ ॥
ଜନ୍ତୁଙ୍କ ହୃଦୟ କମଳେ । ଯାର ଶୟନ ସୁଖ ଭୋଳେ ॥
ଗୁଣ ସମୂହ ସୁଖେ ଭଜେ । ଷୋଡଶ ଆତ୍ମା ରୂପେ ରାଜେ ॥
ସେ ହରି ବସୁ ମୋର ହୃଦେ । ବାକ୍ୟ ଆବୋରି ପଦେ ପଦେ
ଯା ପାଦପଦ୍ମ ଜ୍ଞାନ ରସେ । ମୁନିଏ ପିବନ୍ତି ହରଷେ ॥
ଯେ ହରି କଥା ପୂର୍ବକାଳେ । ନାରଦ ଋଷି ମୁନିମେଳେ ॥
ବ୍ରହ୍ମାଙ୍କୁ ପଚାରିଲେ ଯେତେ । ପ୍ରସଙ୍ଗେ କହିବି ମୁଁ ତୋତେ ॥
କହଇ ଦାସ ଜଗନ୍ନାଥ । ଦ୍ୱିତୀୟ ସ୍କନ୍ଧେ ଭାଗବତ ॥
ଏ ବାଣୀ ଶୁଣି କର୍ଣ୍ଣମୂଳେ । ପ୍ରାଣୀ ନିସ୍ତରେ ଭବଜଳେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶୁକ ପରୀକ୍ଷିତ*
*ସମ୍ବାଦେ ଭକ୍ତିଯୋଗ ପ୍ରାଧାନ୍ୟ ବର୍ଣ୍ଣନେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

ଆନନ୍ଦ ଚିତ୍ତେ ସେ ନାରଦେ । ପୁଚ୍ଛନ୍ତି ବ୍ରହ୍ମାଙ୍କର ପାଦେ ॥
ହେ ଦେବ ଦେବ ନମୋଽସ୍ତୁତେ । ଭୂତ ଭାବନ ଏ ଜଗତେ ॥
ସୃଷ୍ଟିର ଅଗ୍ରେ ତୋର ଦେହୀ । ତୋ ଭାବ ନ ଜାଣନ୍ତି କେହି ॥
ଆତ୍ମାର ତତ୍ତ୍ୱ ତୁମ୍ଭେ ଜାଣ । ସେ ବେଦ ପୁରାଣେ ପ୍ରମାଣ ॥
ଯେ ରୂପେ ଯହିଁ ତୋର ବାସ । ଯହୁଁ ଏ ଜଗତ ପ୍ରକାଶ ॥
ଯାହାର ଆଶ୍ରୟେ ବର୍ତ୍ତଇ । ପ୍ରକାଶି ଯହିଁ ଲୀନ ହୋଇ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ତୁମ୍ଭ ଗୋଚରେ ଦିବ୍ୟଜ୍ଞାନେ ॥
ହସ୍ତେ ଅଇଁଳା ଫଳପ୍ରାୟେ । ତୁମ୍ଭ ଗୋଚରେ ଜ୍ଞାନ ରହେ ॥
ଯେଣୁ ଏହାର ଜ୍ଞାନ ସ୍ଫୁରେ । ଯେବା ଏହାଙ୍କୁ ହୃଦେ ଧରେ ॥
ଯାହାର ବଶ ଏ ବୋଲାଇ । ବର୍ତ୍ତଇ ଯାର ଆତ୍ମା ବହି ॥
ଭୂତ ସଞ୍ଚରି ଭୂତ କରେ । ଯାର ମାୟାରେ ସେ ବିହରେ ॥
ଏ ଭୂତଗଣଙ୍କୁ ଯେ ଭାବେ । ଅପରାପର ଆତ୍ମାଲାଭେ ॥
ଆତ୍ମାର ଶକ୍ତିବଳେ ଭାବି । ଅଚିନେ ଯେହ୍ନେ ଊର୍ଣ୍ଣନାଭି ॥
ଏଣୁ ଏ ସୃଷ୍ଟି ଅଗୋଚର । ମୂଢ଼ ନ ଜାଣେ ପରାପର ॥
କି ନାମ ରୂପ ଗୁଣ ତାର । ଅନ୍ୟ ବା କି ଅଛି ବେଭାର ॥
ତୁମ୍ଭେ ଯେ ଘୋର ତପ କରି । ଆତ୍ମା ସମାଧି ଅନୁସରି ॥
ଏ ମାୟା ସୃଜିଲା କେମନ୍ତେ । ଏଣୁ ସଂଶୟ ମୋର ଚିତ୍ତେ ॥
ତୁମ୍ଭେ ସର୍ବଜ୍ଞ ସର୍ବେଶ୍ୱର । ମୋର ସଂଶୟ ଦୂରକର ॥
ଭଗତି ଭାବେ ପଚାରଇ । ସ୍ୱଭାବେ ପୁତ୍ର ମୁଁ ଅଟଇ ॥
ଯେମନ୍ତେ ମୋର ଚିତ୍ତ ସ୍ଫୁରେ । ଏ ବିଶ୍ୱ ସମାଧି ଗୋଚରେ ॥
ଏଣୁ ନାରଦ ବାକ୍ୟ ଘେନି । ହରଷେ କହେ ପଦ୍ମଯୋନି ॥
ଧନ୍ୟ ନାରଦ ମୁନିବର । ସାଧୁ ପ୍ରସ୍ତାବ ଏ ତୋହର ॥
ତୁ ଯେ ପଚାରୁ ଜନହିତେ । ନିଜ ଭଗତି ଭାଗବତେ ॥
ପୂର୍ବେ ମୁଁ ବିଷ୍ଣୁର ବଚନେ । ତାର ମହିମା ଦରଶନେ ॥
ତୁ ଯାହା ପଚାରିଲୁ ମୋତେ । ମିଥ୍ୟା ନୁହଇ ଏ ଉଚିତେ ॥
ବିଷ୍ଣୁର ଆଜ୍ଞା ଘେନି ମାଥେ । ବ୍ରହ୍ମାଣ୍ଡ ସର୍ଜିଲା ଯେମନ୍ତେ ॥
ଯେମନ୍ତେ ଅର୍କ ଅଗ୍ନି ଶଶୀ । ଗ୍ରହ ନକ୍ଷତ୍ର ତାରା ରାଶି ॥
ତାହା କହିବା ତୋ ସମୀପେ । ବିଷ୍ଣୁର ଆଜ୍ଞା ବଳଦର୍ପେ ॥
ଯେ ହରି ଜଗତ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥
ଯାର ମହିମା ମହାମେରୁ । ମୁଁ ଯେ ବୋଲାଇ ଜଗଦ୍‌ଗୁରୁ ॥
ଯାହାର ଇଚ୍ଛାମାର୍ଗେ ସ୍ଥିତି । ଲାଜେ ଶଙ୍କିତ ଭଗବତୀ ॥
ଏ ମାୟା ବଶେ ଏ ଜଗତେ । ଅଜ୍ଞାନ ମଦେ ବିମୋହିତେ ॥
ମୁ ଇଁ ମୋହର ଏ ଶରୀର । ଦାରା ସମ୍ପଦ ବନ୍ଧୁ ମୋର ॥
ଅଜ୍ଞାନ ଜନଙ୍କ ଏ ଭାବ । ସର୍ବ ସମ୍ପଦ ପଦ୍ମନାଭ ॥
ଏ ଦ୍ରବ୍ୟକାଳ କର୍ମଜୀବ । ଜୀବର ଯେ ଅବା ସ୍ୱଭାବ ॥
ଯେତେ ଦେଖଇ ଭିନ୍ନେ ଭିନ୍ନେ । ଏକଇ ଆତ୍ମା ସର୍ବଜନେ ॥
କାର୍ଯ୍ୟ କାରଣ କର୍ତ୍ତା ଅର୍ଥେ । ଦ୍ରବ୍ୟଜ୍ଞାନ କ୍ରିୟା ସମେତେ ॥
ଗୁଣେ ରହନ୍ତି ଆଶ୍ରେକରି । ନିର୍ଗୁଣ ପୁରୁଷ ଆବୋରି ॥
ଏ ତିନି ଗୁଣ ଲିଙ୍ଗ ଯେତେ । ମଧ୍ୟେ ଯେ ବର୍ତ୍ତଇ ଲକ୍ଷିତେ ॥
ମାୟା ଈଶ୍ୱର ମାୟାବଳେ । ସୃଜେ ସ୍ୱଭାବ କର୍ମକାଳେ ॥
ସେ କାଳ ଗୁଣ ବ୍ୟତୀତରେ । ସୃଜି ପାଳଇ ସର୍ବହରେ ॥
ତାର ସ୍ୱଭାବ କର୍ମଯୋଗେ । ମହତ ଉପୁଜିଲା ବେଗେ ॥

ମହତ ବିକାରୁ ତକ୍ଷଣ । ତ୍ରିଲିଙ୍ଗ ଗୁଣ ଆବୋରିଣ ॥
ତମ ପ୍ରଧାନ ଅତିରେକ । ଯେ ଦ୍ରବ୍ୟଜ୍ଞାନ କ୍ରିୟାତ୍ମକ ॥
ସ୍ୱଭାବେ ଗତି ମହାଘୋର । ତମ ତାମସ ଅହଂକାର ॥
ଗୁଣ ପ୍ରକାଶେ ତିନିପୁର । ତମ ତେଜ ଘେନି ବିକାର ॥
ଯେ ଶକ୍ତି ଦ୍ରବ୍ୟ କ୍ରିୟାଜ୍ଞାନ । ଏଭାବେ ଭେଦ ଭିନ୍ନ ଭିନ୍ନ ॥
ସେ ଅହଂକାର ଭୂତ ଆଦି । ତ୍ରିଗୁଣ ଶକ୍ତି ତହିଁ ଭେଦି ॥
ଶବଦ ଆଦି ମାତ୍ରା ପଞ୍ଚେ । ନଭ ପ୍ରକାଶେ ଅନ୍ତରୀକ୍ଷେ ॥
ଶବଦ ଗୁଣେ ସେ ପ୍ରଧାନ । ଦୃଷ୍ଟି ଦୃଶ୍ୟଙ୍କ ନିଜସ୍ଥାନ ॥
ଶବଦ ଗୁଣ ନଭୁଁ ହୋଇ । ଚତୁର ମାତ୍ରା ସଙ୍ଗେ ଲଇ ॥
ନଭ ବିକାରୁ ବାୟୁ ଜାତ । ସ୍ପର୍ଶ ଗୁଣ ମଧ୍ୟେ ସ୍ଥିତ ॥
ସରସ ଗୁଣେ ସେ ଚଞ୍ଚଳ । ସେ ପ୍ରାଣୀ ସହେ ତେଜବଳ ॥
ପବନ ବିକାରୁ ତକ୍ଷଣ । ସ୍ୱଭାବେ କାଳକର୍ମ ଗୁଣ ॥
ସ୍ପର୍ଶ ଗୁଣ ତହିଁ ଥୋଇ । ତୃତୀୟ ମାତ୍ରା ଭାବ ବହି ॥
ଶବ୍ଦ ସ୍ପରଶ ରୂପ ତାର । ପ୍ରଚଣ୍ଡ ତେଜ ମହାଘୋର ॥
ପବନ ବିକାରୁ ଉଦକ । ତାର ସ୍ୱଭାବ ରସାତ୍ମକ ॥
ଶବ୍ଦ ସ୍ପରଶ ରୂପ ତିନି । ଏ ତିନି ରସ ସଙ୍ଗେ ଘେନି ॥
ଆପ ବିକାରୁ ମହୀଜାତ । ସେ ପଞ୍ଚମାତ୍ରା ଗୁଣେ ଯୁତ ॥
ବିକାର ଶକ୍ତି ତହୁଁ ମନ । ଯେ ରୂପେ ପ୍ରକାଶେ ଗଗନ ॥
ମନର ସଙ୍ଗେ ଦେବ ବଳ । ବସେ ଇନ୍ଦ୍ରିୟ ଅକ୍ଷପାଳ ॥
ଦିଗ ବାତକୁ ଜଳପତି । ମହେନ୍ଦ୍ର ମିତ୍ର ପ୍ରଜାପତି ॥
ତେଜସ୍ୱୀ ବିକାରୁ ତକ୍ଷଣେ । ଜନ୍ମିଲେ ଦଶ ଇନ୍ଦ୍ରିଗଣେ ॥
ସେ ଜ୍ଞାନ କ୍ରିୟା ବୁଦ୍ଧିପ୍ରାଣ । ତେଜ ଶକ୍ତି ଏ ପରିମାଣ ॥
ଶ୍ରୁତି ଯୁଗଳ ଚର୍ମଘ୍ରାଣ । ନୟନ ଜିହ୍ୱା ମେଦସ୍ଥାନ ॥
ବଚନ ଅଂଘ୍ରି ମୂଳଦ୍ୱାର । ଦଶ ଦେବଙ୍କ ଅଧିକାର ॥
ଭୂତ ଇନ୍ଦ୍ରିୟ ଗୁଣମାନ । ଏ ଯେଣୁ ନ ଲଭିଲେ ସ୍ଥାନ ॥
ବ୍ରହ୍ମାଣ୍ଡ ହେତୁ ଏ ପ୍ରତ୍ୟକ୍ଷେ । ସୂକ୍ଷ୍ମେ ରହିଲେ ଅନ୍ତରୀକ୍ଷେ ॥
ସ୍ଥାନ ନ ପାଇ ଅନ୍ୟୋ ଅନ୍ୟେ । ସ୍ଥକିତେ ରହିଲେ ଗଗନେ ॥
କେତେହେଁ କାଳ ଶୂନ୍ୟେରହି । ଶବଦ ବିଷ୍ଣୁ ଆଜ୍ଞା ପାଇ ॥
ସେ ମହାଭୂତେ ଆଦି ଭୂତେ । ଘଟିତ ଅନ୍ୟ ଅନ୍ୟ ଯୁତେ ॥
ସେ ହରି ଆଜ୍ଞା ଭକ୍ତିବଳେ । ସେ ସର୍ବେ ହୋଇ ଏକମେଳେ ॥
ସୁବର୍ଣ୍ଣ ଅଣ୍ଡ ଉପୁଜିଲା । ତକ୍ଷଣେ ଉଦକେ ପଡ଼ିଲା ॥
ଅନେକ ସହସ୍ର ବରଷେ । ସେ ଅଣ୍ଡ ମହାଜଳେ ଭାସେ ॥
ସେ ଅଣ୍ଡ ମଧ୍ୟେ ଜୀବ ଜାତ । କାଳ ସ୍ୱଭାବେ କର୍ମ ଯୁକ୍ତ ॥
ସେ ସର୍ବ ଗୁଣେ ସର୍ବ ସିଦ୍ଧି । କେତେହେଁ କାଳେ ଅଣ୍ଡ ଭେଦି ॥
ପୁରୁଷେ ହୋଇଲା ବାହାର । ଏବେ ହୋ ଶୁଣ ନୃପବର ॥
ସହସ୍ର ଊରୁ ଅଂଘ୍ରି ବକ୍ଷ । ସହସ୍ର ନୟନ ପ୍ରତ୍ୟକ୍ଷ ॥
ସହସ୍ର ଶିର ସସ୍ର ଭୁଜ । ଆନନ୍ଦ ଅପ୍ରମିତ ତେଜ ॥
ତାହାର ଦେହ ଶୂନ୍ୟେ ଦେଖି । ଲୋକର ସ୍ଥିତି ଉପଲକ୍ଷି ॥
ଦ୍ୱି ସପ୍ତ ପୁର ଲୋକ ଅଙ୍ଗେ । କଳ୍ପିତ ଅଧଊର୍ଦ୍ଧ୍ୱ ଭାଗେ ॥
ମୁଖୁଁ କଳ୍ପିତ ବ୍ରହ୍ମ କୁଳେ । କ୍ଷତ୍ରିୟ ତେଜ ଭୁଜବଳେ ॥
ଊରୁ ଯୁଗଳୁଁ ବୈଶ୍ୟଗଣେ । ଶୂଦ୍ର ଉପଜିଲା ଚରଣେ ॥
ଭୂ-ଲୋକ କଟୀଭାଗେ ସ୍ଥିତ । ନାଭିରୁ ଭୁବଲୋକ ଜାତ ॥
ହୃଦରୁ ସ୍ୱର୍ଗଲୋକ ମିଳେ । ମହତ ଲୋକ ଉରୁ ସ୍ଥଳେ ॥
ଏ ଜନ ଲୋକ ଗ୍ରୀବାତଟେ । ତପସ୍ୱୀ ଲୋକ ସେ ଲଲାଟେ ॥
ମୂର୍ଦ୍ଧନି ମଧ୍ୟେ ଧ୍ରୁବ ଲୋକ । ଯେ ଊର୍ଦ୍ଧ୍ୱେ ବସେ ବ୍ରହ୍ମଲୋକ ॥
ସପ୍ତ ପାତାଳ ଅଧୋଭାଗେ । ଶୁଣ କହିବା ପ୍ରିୟ ଭାବେ ॥
ଅତଳ ବସେ ଜଂଘ ଦେଶେ । ଊରୁରେ ବିତଳ ପ୍ରକାଶେ ॥
ସୁତଳ ବସେ ଜାନୁତଳ । ଜଘନ ମୂଳେ ତଳାତଳ ॥
ଯେ ମହାତଳ ଗୁଳ୍ଫ ଦେଶେ । ପାଦାଗ୍ରେ ରସାତଳ ବସେ ॥
ପାତାଳ ପାଦତଳେ ରହେ । ଏଣୁ ଭୁବନ ବିଶ୍ୱ ଦେହେ ॥
ଏ ଭୂମି ଲୋକ ପାଦେ ବସେ । ନାଭିରେ ଭୂଲୋକ ପ୍ରକାଶେ ॥
ସ୍ୱର୍ଲୋକେ କଳ୍ପିତ ମୂର୍ଦ୍ଧନି । ବିଶ୍ୱ ଦେବାର ବିଶ୍ୱମାନି ॥
ନାରଦ ଆଗେ ବେଦବର । ଯାହା କହିଲେ ବେଦସାର ॥
ସୁଜନ ଜନଙ୍କ ଶ୍ରବଣେ । ବ୍ରାହ୍ମଣ ଜଗନ୍ନାଥ ଭଣେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ସୃଷ୍ଟ୍ୟାଦି ବିଭୂତି ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

## ବ୍ରହ୍ମୋବାଚ

ଶୁଣ ନାରଦ ମହାଋଷି । ବିରାଟ ରୂପେ ବ୍ରହ୍ମରାଶି ॥
ବ୍ରହ୍ମାଣ୍ଡ ରୂପେ ପ୍ରକାଶିଲା । ଯେ ଅଙ୍ଗେ ଯେବା ପ୍ରବେଶିଲା ॥
ତାହା କହିବା ତୋତେ ଭଲେ । ଇନ୍ଦ୍ରିୟ ଅର୍ଥେ ଇନ୍ଦ୍ରିଚୁଲେ ॥
ବଚନ ବହ୍ନି ମୁଖେ ବସେ । ରସନା ଷଡ଼ରସେ ରସେ ॥
ସପତ ଛନ୍ଦ ଧାତୁ ଦେଶେ । ଦେହେ ଶୋଷିତ ଆଦିପ୍ରାସେ ॥
ପ୍ରାଣ ସହିତେ ଦଶପ୍ରାଣ । ସୁଗନ୍ଧ ଦୁର୍ଗନ୍ଧ ଆଘ୍ରାଣ ॥
ନାସା ବିୟରେ ଆଶ୍ୱୀକଳେ । ଅଶ୍ୱିନୀ କୁମାରଙ୍କ ତୁଲେ ॥

ଚକ୍ଷୁ ଇନ୍ଦ୍ରିୟ ରୂପ ଅର୍ଥେ । ସୂର୍ଯ୍ୟ ପ୍ରକାଶେ ଦୃଷ୍ଟି ଯୁତେ ॥
ଶବଦ ଅର୍ଥେ କର୍ଣ୍ଣ ବେନି । ଦିଗ ବସଇ ତୀର୍ଥ ଘେନି ॥
ସେ ଜୀବ ଦେହେ ଚର୍ମଦେଶେ । ସ୍ପରଶ ପବନ ପ୍ରକାଶେ ॥
ଚର୍ମ ଉପରେ ଲୋମ ଜଡ଼ି । କେଶ ପ୍ରକାଶେ ମୁଣ୍ଡ ବେଢ଼ି ॥
ସେ ତିନି ମଧ୍ୟେ ତିନି ଦେବା ।ପାଷାଣ ଲୌହ ମେଘ ପ୍ରଭା ॥
ମଘବା ଆଦି ଦିଗପାଳେ । ବସନ୍ତି ତାର ଭୁଜ ମୂଳେ ॥
ଚାର ବିକ୍ରମ ଲୋକ ତିନି । ଭୂ ଲୋକ ଭୂବସ୍ୱର୍ଗ ଘେନି ॥
ତିନି ଇନ୍ଦ୍ରିୟ କାମ ରସେ । ଜଘନେ ପ୍ରଜାପତି ବସେ ॥
ମନର ଉପ ମଳ ଦ୍ୱାର । ମୃତ୍ୟୁ ବସଇ ଅଧିକାର ॥
ଅନ୍ତର ମଧେ ନଦୀନଦ । ନାଡ଼ୀ ସମୁଦ୍ରେ ଅଛି ଭେଦ ॥
ସପତ ସିନ୍ଧୁ ଗର୍ଭେ ରହେ । ଲୋଚନେ ଦୃଷ୍ଟି ପୃଷ୍ଟି ବହେ ॥
ସେ ଜୀବ ଦେହେ ପୃଷ୍ଠ ଦେଶେ ।ଅଧର୍ମ ସଙ୍ଗେ ତମ ବସେ ॥
ଉଦୟ ହୃଦୟର ଦେଶେ । ସର୍ବ ବ୍ୟାପକ ମନ ବସେ ॥
ଆତ୍ମା ପୁରୁଷ ଦେହ ମଧେ । ବସଇ ସକଳ ସମ୍ପଦେ ॥
ଧର୍ମ ସଙ୍ଗତେ ପଦ୍ମଯୋନି । ତା ସଙ୍ଗେ କୁମାରଙ୍କୁ ଘେନି ॥
ବିଜ୍ଞାନ ଶତରୁଦ୍ର ସଙ୍ଗେ । ସର୍ବେ ଆଶ୍ରିତ ଆତ୍ମାରଙ୍ଗେ ॥
ବ୍ରହ୍ମା ନାରଦ ଭବ ଆଦି । ମୁନିଏ ପୂର୍ବ ବେଦବାଦୀ ॥
ଅସୁର ସୁର ନର ନାଗ । ଜଗରଗ ଖଗ ପଶୁ ମୃଗ ॥
ଗନ୍ଧର୍ବ ଅପସରା ଯକ୍ଷ । ଭୂତ ବେତାଳଗଣ ରକ୍ଷ ॥
ପିତର ସିଦ୍ଧ ବିଦ୍ୟାଧର । ଚାରଣ ସୁଗୁଣ କିନ୍ନର ॥
ବୃକ୍ଷ ଔଷଧି ଲତା ଯେତେ । ବିବିଧ ଜୀବ ଅନ୍ୟମତେ ॥
ଯେ ଜଳ ସ୍ଥଳ ଅନ୍ତରୀକ୍ଷେ । ଗ୍ରହ ଆଦିତ୍ୟ କେତୁ ଋକ୍ଷେ ॥
ତାରା ସମୂହେ ତେଜ ଝଳି । ଜୀମୂତ ପ୍ରକାଶେ ବିଜୁଳି ॥
ଯେ ସର୍ବ ହେତୁ ତାର ସ୍ଥାନେ । ଭୂତ ଭବିଷ୍ୟ ବର୍ତ୍ତମାନେ ॥
ଯେ ରୂପେ ଏ ବିଶ୍ୱ ସଂସାର । ପ୍ରକାଶେ ଯାହାର ଶରୀର ॥
ବିତ୍ରସ୍ତ ମାତ୍ର ଦେହେ ରହେ । ଏକେ ଅନେକ ଜନ୍ତୁ ଦେହେ ॥
ଭିତରେ ରହେ ପ୍ରାଣ ତେଜେ । ପ୍ରକାଶେ ଅନ୍ତର ବାହିଯେ ॥
ଅଭୟ ଅମୃତ ଈଶ୍ୱର । ଅନ୍ନ ସ୍ୱରୂପ ରସପୁର ॥
ତାହାର ଏମନ୍ତ ମହିମା । ଏଣୁ ସେ ଦୁରାତ୍ମୀୟ ସୀମା ॥
ପାଦେ ଅଶେଷ ଭୂତ ବସେ । ଅମୃତାଭୟ କ୍ଷେମକେସେ ॥
ତ୍ରି ପାଦେ ବହେ ସ୍ଥାନ ସ୍ଥିତି । ପ୍ରଜା ଆଶ୍ରମେ ଧର୍ମ ଚିହ୍ନି ॥
ସ୍ୱଭାବେ ନାମ ଗୃହପତି । ବିଦ୍ୟା ଅବିଦ୍ୟା ଯହିଁ ସ୍ଥିତି ॥
ଭୂତ ଇନ୍ଦ୍ରିୟ ଗୁଣାଶ୍ରୟ । ଯାହାର ଅଂଶେ ମାୟାମୟ ॥
ବିରାଜ ରୂପେ ଜାତ ହୁଏ । କିରଣ ଯେହ୍ନେ ସୂର୍ଯ୍ୟ ଦେହେ ॥

ଯାହାର ନାଭି ପଦ୍ମ ଜାତ । ମୁହିଁ ସେ ବ୍ରହ୍ମାଣ୍ଡର ନାଥ ॥
ଯଜ୍ଞ ସମ୍ଭାର ନ ଜାଣଇ । ଯାବତ ତାର ଦେହେ ନାହିଁ ॥
ତାର ଶରୀରେ ଯଜ୍ଞ ବିଧି । ଆଗମ ନିଗମେ ପ୍ରସିଦ୍ଧି ॥
ପଶୁ ଇନ୍ଧନ କୁଶ ଆଦି । ଯେମନ୍ତେ ଯେ ଅବା ସମ୍ପାଦି ॥
ଯେ ଜନ ଦେବ ପିତୃ ତୋଷେ । ଯେ କାଳ ଯେବାପୁଣ୍ୟ ଦେଶେ
ଯେତେ ପ୍ରକାରେ ଯଜ୍ଞକରି । ମନ୍ତ୍ର ଔଷଧି ଆଦି କରି ॥
ସ୍ନେହ ହବିଷ୍ୟ ଲୌହ ଆଦି । ମୃତ୍ତିକା ଜଳ ଫଳ ବିଧି ॥
ଋକ୍ ସାମ ଯେ ଯଜୁ ତିନି । ଚତୁର ହୋତ୍ର ଅଗ୍ନି ଘେନି ॥
ଯେ ନାମ ଧରି ଯେବା ମନ୍ତ୍ରେ । ଯେବା ଦକ୍ଷିଣା ଯେବା ବ୍ରତେ ॥
ଦେବତା ଅନୁକ୍ରମ କଳ୍ପ । ଯେଭାବେ ଯେ ଅବା ସଂକଳ୍ପ ॥
ଯେ ଗତି ଯଜ୍ଞେ ଯେବା ମତି । ଯେବା ଅର୍ପଣେ ଯେବାସ୍ଥିତି ॥
ଯଜ୍ଞ ସମ୍ଭାରେ ତା ଶରୀର । ଲଭିଲି ଜନ ଉପକାର ॥
ତାର ବିଭୂତି ତାର ଅଙ୍ଗେ । ଯଜ୍ଞ ଆରମ୍ଭି ହବିର୍ଭାଗେ ॥
ସକଳ ଯଜ୍ଞ ଭାଗେ ଚିହ୍ନି । ମୋ ସଙ୍ଗେ ନବ ପ୍ରଜାପତି ॥
ଯଜ୍ଞ ପୁରୁଷ ସ୍ଥାପି କୁଣ୍ଡେ । ଯେମନ୍ତ ବିଧି କର୍ମ କାଣ୍ଡେ ॥
ପୂଜିଲୁ ତାହାର ଚରଣେ । ଯେ ବିଧି ମନ୍ତ୍ର ଉଚ୍ଚାରଣେ ॥
ଏହି ପ୍ରକାରେ ସର୍ବ ଋଷି । ପିତୃ ଦେବତା ସ୍ଥାନେ ବସି ॥
ଦାନବ ମାନବ ସହିତେ । ଯଜ୍ଞେ ପୂଜିଲେ ଦେବ ମତେ ॥
ସେ ହରି ଅଙ୍ଗେ ଏ ଜଗତ । ଯଜ୍ଞେ ପୂଜନେ ସମାହିତ ॥
ଯଜ୍ଞେ ତାହାଙ୍କୁ ପୂଜା କରି । ମୁଁ ଏ ସଂସାରେ ଅଧିକାରୀ ॥
ତାହାର ଆଜ୍ଞା ଶିରେ ବହି । ମୁଁ ଏ ସଂସାରକୁ ସର୍ଜଇ ॥
ପାଳଇ ପ୍ରଭୁ ଚକ୍ରଧର । ଅନ୍ତେ ସଂହରଇ ଶଙ୍କର ॥
ସୃଷ୍ଟି ପାଳଣ ସଂହାରଣ । ଏ ଆଦି କାରଣ ତ୍ରିଗୁଣ ॥
ତୁ ଯେ ପଚାରିଲୁ ପ୍ରସ୍ତାବେ । ସଂକ୍ଷେପେ କହିଲି ମୁଁ ଏବେ ॥
ସଦ ଅସଦ ରୂପ ଯେତେ । ମାୟା କଳ୍ପିତ ଏ ଜଗତେ ॥
ଏ ସର୍ବ ରୂପ ନାରାୟଣ । ଅନାଦି ପରମ କାରଣ ॥
ମୋର ବଚନ ହେ ନାରଦ । କେବେ ନୁହଇ ଅସମ୍ପଦ ॥
ମୋହର ମନ ସତ୍ୟ ସ୍ଥିତି । କେବେହେଁ ନୁହେଁ ମିଥ୍ୟାଗତି ॥
ଏ ମୋର ଇନ୍ଦ୍ରିଗଣ ଦେବେ । ନ ଯାନ୍ତି ଅସତ୍ୟ ଅମାର୍ଗେ ॥
ଯେଣୁ ମୋ ଚିତ୍ତେ ନାରାୟଣ । ଉତ୍କଣ୍ଠା ଭାବେ ସୁମରଣ ॥
ତପ ସମାଧି ମୋର ସ୍ଥିତି । ତେଣୁ ବୋଲାଇ ପ୍ରଜାପତି ॥
ତ୍ରିଗୁଣ ଯୋଗେ ସମାହିତ । ତେଣୁ ମୁଁ ଆତ୍ମା ତନ୍ତେଘାତ ॥
ତାର ଚରଣେ ନମସ୍କାର । ଏ ଭାବେ ତୁଟଇ ସଂସାର ॥
ଶୁଭ ମଙ୍ଗଳ ସୁଖୟନ । ଆନନ୍ଦ ମୂଳମୟ ଧାମ ॥

ଆତ୍ମାରେ ଆତ୍ମା ମାୟା କରେ । ଲୀଳାୟେ ବିହରେ ସଂସାରେ ॥
ବ୍ରହ୍ମାଦି ଦେବେ ଅଗୋଚର । ଅସଂଖ୍ୟ ମହିମା ଯାହାର ॥
ଦୃଶ୍ୟ ଅଦୃଶ୍ୟ ସର୍ବବ୍ୟାପି । ସପନେ ଯେହ୍ନେ ବିଶ୍ୱରୂପୀ ॥
ମୁଁ ଯାର ଗତି ନ ଜାଣଇ । ତାହାକି ପ୍ରକାଶିବୁ ତୁହି ॥
ଭବ ନ ପାରେ ଯାକୁ ଚିହ୍ନି । ଦେବେ ଜାଣିମେ କାହିଁ ଗତି ॥
ଯାର ମାୟାରେ ମୋହ ହୋଇ । ତା ରୂପ ତାକୁ ନ ଜାଣଇ ॥
ଆତ୍ମାର ସମ ଆମ୍ଭେ ଜାଣୁ । କେ ତାର ରୂପ ପରିମାଣୁ ॥
ସେ ଆଦି ପୁରୁଷ ମୁରାରି । କଳ୍ପ କଳ୍ପକେ ସୃଷ୍ଟିକରି ॥
ଆତ୍ମାରେ ଆତ୍ମା ରୂପେ ମିଳି । ଆତ୍ମାକୁ ଆତ୍ମା ପ୍ରତିପାଳି ॥
କେବଳ ଶୁଦ୍ଧି ଜ୍ଞାନ ମୟେ । ସତ୍ୟ ସ୍ୱରୂପ ସର୍ବ ଦେହେ ॥
ଆଦ୍ୟାବତାରେ ତନୁଧରି । ଲୀଳାୟେ ଜଗତେ ବିହରି ॥
କାଳ ସ୍ୱଭାବେ ସଙ୍ଗମନ । ଯେ ନିତ୍ୟେ ଶୁଦ୍ଧ ଚଇତନ ॥
ଦ୍ରବ୍ୟ ବିକାରେ ତିନିଗୁଣ । ଦେବ ସମେତେ ଇନ୍ଦ୍ରିଗଣ ॥
ବିରାଜ ରୂପ ମହୀ ମାଝେ । ସ୍ଥାବର ଆଦି ବ୍ରହ୍ମ ବୀର୍ଯ୍ୟେ ॥
ବ୍ରହ୍ମା ଶଙ୍କର ଯଜ୍ଞପତି । ଯକ୍ଷାଦି ଯେତେ ପ୍ରଜାପତି ॥
ତୁ ଆଦି ସକଳ ସହିତେ । ସ୍ୱର୍ଗେ ଦେବତା ଛନ୍ତି ଯେତେ ॥
ଗରୁଡ଼ ଆଦି ଦିଗପାଳେ । ଭୂଲୋକ ସପତ ପାତାଳେ ॥
ଗନ୍ଧର୍ବ ବିଦ୍ୟାଧର ଗଣ । ଯେ ଯକ୍ଷ କିନ୍ନର ଚାରଣ ॥
ରାକ୍ଷସ ସୁର ସ୍ୱର୍ଗ ଭାଗେ । ବାସୁକୀ ଆଦି ମହାନାଗେ ॥
ଋଷିଙ୍କ ମଧ୍ୟେ ଶ୍ରେଷ୍ଠ ଯେତେ । ଏ ପିତୃଗଣଙ୍କ ସମେତେ ॥
ଦୈତ୍ୟ ଦାନବ ସିଦ୍ଧକୁଳ । ପ୍ରେତ ପିଶାଚ ଭୂତବଳ ॥
କୁଷ୍ମାଣ୍ଡ ଜଳ ଜୀବ ଗଣେ । ଯେ ନାନାବିଧ ପଶୁମାନେ ॥
ଯେ ଅନ୍ୟ ନାହିଁ ମହୀଗତେ । ତେଜ ବିକ୍ରମ ବଳଯୁତେ ॥
ଅଣିମା ଆଦି ଅଷ୍ଟନିଧି । ଯେ ଗୁଣେ ଯେ ଅବା ପ୍ରସିଦ୍ଧି ॥
ପ୍ରଧାନ ଗୁଣେ ଯେତେ ଭୂତେ । ଜଗତ ମଧ୍ୟେ ଛନ୍ତି ଯେତେ ॥
ଏ ସର୍ବ ତାହାର ଶରୀର । ଯେ ବିଷ୍ଣୁ ଲୀଳା ଅବତାର ॥
ଏ ସର୍ବ କଥା ଗୀତ ସ୍ୱରେ । ପଶନ୍ତି ଯାର କର୍ଣ୍ଣ ଦ୍ୱାରେ ॥
ସର୍ବ ଦୁରିତ ତମ ନାଶେ । ଯେବା ବଦନେ ନିତ୍ୟଘୋଷେ ॥
ତାହାଙ୍କ ଚରଣେ ବିଶ୍ୱାସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ସୃଷ୍ଟ୍ୟାଦି ବିଭୂତି ବର୍ଣ୍ଣନେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ବ୍ରହ୍ମୋବାଚ

ଶୁଣ ନାରଦ ମୁନିବର । ଭବିଷ୍ୟ ଲୀଳା ଅବତାର ॥
ଅଶେଷ ଜନଙ୍କର ହିତେ । ଶୁଣ କହିବା ତୋ ଅଗ୍ରତେ ॥
ପଦ୍ମ କଳ୍ପର ଅନ୍ତେ ହରି । ଶୂକର ରୂପେ ଅବତରି ॥
ସେ ସର୍ବ ଯଜ୍ଞମୟ ପାତ୍ରେ । ଧରଣୀ ଉଦ୍ଧାରିବା ଅର୍ଥେ ॥
ଆଦି ଅସୁର ଅବତାର । ପ୍ରଚଣ୍ଡ ହିରଣ୍ୟାକ୍ଷ ବୀର ॥
ତାହାକୁ ମହାର୍ଣ୍ଣବ ଜଳେ । ଦନ୍ତେ ବିଦାରିଲେ ପାତାଳେ ॥
ବ୍ରଜେ ଯେସନେ ମହୀଧର । ହେଳେ ବିଦାରି ମହାସୁର ॥
ସେ ପୁଣି ରୁଚି ଋଷି ଘରେ । ଜନ୍ମିଲେ ଆକୂତି ଉଦରେ ॥
ସେ ଯଜ୍ଞ ରୂପୀ ନରହରି । ଦକ୍ଷିଣା ଗର୍ଭେ ବୀର୍ଯ୍ୟ ଭରି ॥
ସର୍ବ ଦେବଙ୍କୁ ଜାତ କଲେ । ତ୍ରିଲୋକ ଭୟ ନିବାରିଲେ ॥
ମନୁ ଯେ ବ୍ରହ୍ମାର ନନ୍ଦନ । ହରଷେ ଦେଲେ ହରିନାମ ॥
କର୍ଦ୍ଦମ ଋଷି ଘରେ ପୂର୍ବେ । ଜନ୍ମିଲେ ଦେବହୂତି ଗର୍ଭେ ॥
ଜନମେ ଜନନୀର ଦୁଃଖ । ଦେଖି ସାନନ୍ଦ ପଦ୍ମମୁଖ ॥
ତା'ର ସଙ୍ଗତେ ନର ନାରୀ । ଜନ୍ମିଲେ ଦିବ୍ୟ ରୂପ ଧରି ॥
ଆତ୍ମାର ଗତି ମାତା ଆଗେ । କହିଲେ ତତ୍ତ୍ୱ ଅନୁରାଗେ ॥
ତାହାକୁ ମାୟାରୁ ଉଦ୍ଧରି । କପିଳ ରୂପେ ଚହିଁ ହରି ॥
ଅତ୍ରିର ତପ ଦେଖି ତୋଷେ । ତକ୍ଷଣେ ମିଳି ତାର ପାଶେ ॥
ବୋଇଲେ ଦେଲି ତୋତେ ବର । ହୋଇବା ତୁମ୍ଭର କୁମର ॥
ତତ୍ତ୍ୱ ବଚନେ ଦତ୍ତ ନାମ । ସୁନ୍ଦରେ ସମ ନୋହେ କାମ ॥
ଧରଣୀ ପର୍ଯ୍ୟଟନ କଲେ । ଅନେକ ତପ ଆଚରିଲେ ॥
ନହୁଷ ଯଦୁ ଆଦି ରାଜା । ତାର ଚରଣେ କଲେ ପୂଜା ॥
ଯୋଗ ସମାଧି ସମ୍ପାଦିଲେ । ଜନ୍ମ ମରଣୁ ନିସ୍ତରିଲେ ॥
ସୃଷ୍ଟି ସର୍ଜନେ ମନକରି । ଲୋକଙ୍କ ହିତେ ଅବତରି ॥
ତପର ବଳେ ଭଗବାନ । ହୋଇଲେ ଚତୁଃ ସନାତନ ॥
ଯେ ଯୋଗ ପୂର୍ବକାଳେ ଥିଲା । କଳ୍ପ ସଂକଳ୍ପେ ନାଶ ଗଲା ॥
ତାହା ଉଦ୍ଧରି ଯୋଗବଳେ । ସଂସାର ଭିଆଇଲେ ଛଳେ ॥
ଦକ୍ଷ କୁମାରୀ ଗର୍ଭେ ହରି । ଧର୍ମର ବୀର୍ଯ୍ୟେ ଅବତରି ॥
ସେ ଦକ୍ଷ କନ୍ୟାମୂର୍ତ୍ତି ନାମ । ସର୍ବ ସୁନ୍ଦର ଗୁଣଧାମ ॥
ତାର ଉଦରେ ପୂର୍ବ କଳ୍ପେ । ଜନ୍ମିଲେ ନାରାୟଣ ରୂପେ ॥
ନର ଶରୀରେ ନର ନାମ । ସର୍ବ ସମ୍ପଦ ପୁଣ୍ୟଧାମ ॥
ନିଶ୍ଚଳ ତପ ଯୋଗଧ୍ୟାନେ । ବସିଲେ ବଦରିକା ଶ୍ରମେ ॥
ଅତି ଦୁଃସହ ତପ ଘୋରେ । ଇନ୍ଦ୍ର କମ୍ପିଲା ସ୍ୱର୍ଗପୁରେ ॥

ତକ୍ଷଣେ ଅପସରା ଗଣେ । ମିଳିଲେ ବଦରିକା ଶ୍ରମେ ॥
ଦିବ୍ୟ ସୁବେଶ ନାନାରଙ୍ଗେ । ଆସି ମିଳିଲେ ତପୋଭଙ୍ଗେ ॥
କୋଳେ ଉର୍ବଶୀ ରୂପ ଦେଖି । ଲାଜେ ହୋଇଲେ ଅଧୋମୁଖୀ ॥
କାହୁଁ କରିବେ ତପ ନାଶ । ବାହୁଡ଼ି ହୋଇଲେ ନିରାଶ ॥
କୋପ ନୟନେ ମୁନିଜନ । କାମକୁ କରନ୍ତି ଦହନ ॥
କୋପକୁ ନ ପାରନ୍ତି ସହି । କ୍ରୋଧ ପ୍ରବେଶ ନାହିଁ ନାହିଁ ॥
ଉତ୍ତାନ ପାଦ ରାଜା କୋଳେ । ଧ୍ରୁବ ବାଳକ ରସ ଭୋଳେ ॥
ବସିବ ବୋଲି ବିଚାରିଲା । ମାତା ସପତ୍ନୀ ଗାଳି ଦେଲା ॥
ସେ ନିଜ ଜନନୀ ବଚନେ । ଅରଣ୍ୟେ ଗଲା ଦୁଃଖମନେ ॥
ଅତି କଠୋର ତପ କଲା । ତାହାକୁ ଧ୍ରୁବ ପଦ ଦେଲା ॥
ମୁନିଏ ତାର ତଳେ ଥାଇ । ଧ୍ରୁବ ତପସ୍ୟା ଫଳ ଚାହିଁ ॥
ସ୍ତୁତି କରନ୍ତି ତାର ତପେ । ଜନନୀ ଦେଖ ତା ସମୀପେ ॥
ବେଣୁ ଯେ ସତ୍ୟ ଯୁଗେ ରାଜା । ସୁଖେ ନ ପାଳି ଜନ ପ୍ରଜା ॥
ହରିଙ୍କି ନ ଥାପଇ ଭଲେ । ବ୍ରାହ୍ମଣେ କୋପେ ତା ମାଇଲେ ॥
ରାଜା ମରଣେ ଅରାଜକେ । ପ୍ରଜା ଦୁଃଖିତ ଅତିରେକେ ॥
ତା ଦେଖି ଦେବେ ସ୍ତୁତି କରି । ତକ୍ଷଣେ ପୃଥୁ ରୂପ ଧରି ॥
ହରି ଜନ୍ମିଲେ ରାଜା କୁଳେ । ଭୂମିକି ଦୁହିଁ ବାହୁବଳେ ॥
ପ୍ରଜାଙ୍କୁ ଶସ୍ୟ ବୀଜ ଦେଲେ । ଅନ୍ନ ସଙ୍କଟୁ ଉଦ୍ଧରିଲେ ॥
ନାଭିରୁ ବୀର୍ଯ୍ୟେ ସେ ଅନନ୍ତ । ସୁଦେବୀ ଉଦରୁ ସମ୍ଭୂତ ॥
କପଟେ ଜଡ଼ ରୂପ ଧରି । ସକଳ ଯୋଗ ସାଧକରି ॥
ପରମହଂସ ମୁନିଗଣେ । ନମନ୍ତି ଯାହାର ଚରଣେ ॥
ଶାନ୍ତ ଅଶାନ୍ତ ଅନ୍ତର୍ଗତେ । ଅଶେଷ ସଙ୍ଗ କରି ମୁକ୍ତେ ॥
ପୁଣି ମୋହର ଯଜ୍ଞ କାଳେ । ମନ୍ତ ଉପୁଜିଲା ଅନଳେ ॥
ନର ଶରୀରେ ଅଶ୍ୱଶିର । ସୁବର୍ଣ୍ଣ ବର୍ଣ୍ଣ ଜଟାଭାର ॥
ସକଳ ଦେବ ଯଜ୍ଞମୟ । ଅଖିଳ ଆତ୍ମା ନିଜ ଦେହ ॥
ତାର ନିଶ୍ୱାସୁଁ ଦେବ ତିନି । ଜନ୍ମିଲେ କର୍ମକାଣ୍ଡ ଘେନି ॥
ଯୁଗାନ୍ତ କାଳେ ମହାଜଳେ । ରାଜାର ତର୍ପଣର କାଳେ ॥
ରାଜା ତାରଣେ ଦଇତାରି । ମିଳିଲେ ମତ୍ସ୍ୟ ରୂପ ଧରି ॥
ଯୋଗ ବିପ୍ଳବେ ଦେବରାଶି । ଥିଲା ଯେ ମହାଜଳେ ପଶି ॥
ସେ ଦେବ ସଲିଳୁଁ ଉଦ୍ଧରି । ମନୁକୁ ଦେଲେ ନରହରି ॥
ବାସବ ସମ୍ପଦ ଉଦ୍ଧାରେ । କ୍ଷୀର ସମୁଦ୍ର ମନ୍ଥିବାରେ ॥
ମିଳି ସକଳ ଦେବା ସୁର । ସମୁଦ୍ରେ ସ୍ଥାପିଲେ ମନ୍ଦର ॥
ଅଗାଧ ଜଳ ମଧ୍ୟେ ହରି । ମିଳିଲେ କୂର୍ମ ରୂପ ଧରି ॥
ପୃଷ୍ଠେ ଧଇଲେ ଗିରିବର । ମନ୍ଥନ କଲେ ଦେବାସୁର ॥

ଗିରି ଘର୍ଷଣେ କଣ୍ଡୁ ସୁଖେ । ନିଦ୍ରା ନୟନେ ଊର୍ଦ୍ଧ୍ୱ ମୁଖେ ॥
ହିରଣ୍ୟ କଶିପୁ ବିଦାରି । ସେ ନରସିଂହ ରୂପଧରି ॥
ଭ୍ରମଇ ଭ୍ରୂକୁଟି କୁଟିଳ । ଦିଶେ ଶ୍ରୀମୁଖ ବିକଟାଳ ॥
ଗଦା ବୁଲାଇ ଅତି ବେଗେ । ଦୈତ୍ୟ ମିଳିଲା ସିଂହଆଗେ ॥
ତକ୍ଷଣେ ଉରୁ ମଧ୍ୟେ ଧରି । ନଖାଗ୍ରେ ହିରଣ୍ୟ ବିଦାରି ॥
ମହା ଦଇତ ନାଶ କଲେ । ସଂସାର ସଙ୍କଟୁ ରଖିଲେ ॥
ଅଗାଧ ସରୋବର ମଧ୍ୟେ । କୁମ୍ଭୀର ଗଜଇନ୍ଦ୍ର ପାଦେ ॥
ଧଇଲା ଅତି ଦୃଢ଼ ବଳେ । ହସ୍ତୀର ଚରଣ କମଳେ ॥
ଚଳି ନ ପାରି ଯୂଥପତି । ଆରତେ ସୁମରେ ଶ୍ରୀପତି ॥
ହସ୍ତେ କମଳ ଊର୍ଦ୍ଧ୍ୱେ ତୋଳି । ନୟନୁ ଅଶ୍ରୁଜଳ ଗଳି ॥
ଆଦି ପୁରୁଷ ଲୋକନାଥ । ତୀର୍ଥ ଶ୍ରବଣ ତୋ ଚରିତ ॥
ଶ୍ରବଣେ ମଙ୍ଗଳ ତୋ ନାମ । ପୁଣ୍ୟ ପୁରୁଷ ଗୁଣଧାମ ॥
ସେ ହରି ସ୍ତୁତି ଅନୁସ୍ୱନେ । ଗଜ ବିକଳ ଯୋଗଧ୍ୟାନେ ॥
ମରଣ କାଳେ ସୁମରିଲା । ବିଷ୍ଣୁର ସମାଧି ଭାଜିଲା ॥
ତାର ମହିମା ଅପ୍ରମେୟ । ନିମିତ୍ତେ ବହେ ନାନା ଦେହ ॥
ଦକ୍ଷିଣଭୁଜେ ଚକ୍ରଧରି । ଗରୁଡ଼ କନ୍ଧେ ବିଜେ କରି ॥
ଚକ୍ର ପ୍ରହାରେ ଗ୍ରାହମାରି । ହସ୍ତୀର କର କରେ ଧରି ॥
ଜଳୁଁ ଉଦ୍ଧରି ନାରାୟଣ । ଅନ୍ତରେ ଗଲେ ତତକ୍ଷଣ ॥
ଅଦିତି ପୁତ୍ରଙ୍କର ସାନ । ନିର୍ଗୁଣ ଶରୀର ବାମନ ॥
ତ୍ରିପାଦେ ତିନିଲୋକ ଜିଣି । ଯେ ଅଧିଯଜ୍ଞ ନାମ ଭଣି ॥
ସେ ବଳି ଦୃଢ଼ ସତ୍ୟମନେ । କୃଷ୍ଣ ଚରଣ ଆରାଧନେ ॥
ମନ୍ତ୍ରୀର ବୋଲ ନ ଶୁଣିଲା । ତ୍ରିପାଦ ଭୂମି ଦାନ ଦେଲା ॥
ବିଷ୍ଣୁର ପାଦ ରଜେ ଇଚ୍ଛା । ଇନ୍ଦ୍ରାଦି ପଦେ ନାହିଁ ବାଞ୍ଛା ॥
ସର୍ବ ସମ୍ପଦ ଆତ୍ମା ତୁଲେ । ଅର୍ପିଲା ବିଷ୍ଣୁପାଦ ତଳେ ॥
ତୁ ଯେ ନାରଦ ତାର ଅଂଶେ । ଶରୀର ବହି ମୋର ବଂଶେ ॥
ତପେ ଲଭିଲୁ ଦିବ୍ୟ ଜ୍ଞାନ । ଯେ ଯୋଗିଗଣେ ବିଦ୍ୟମାନ ॥
ମନୁଙ୍କ ମଧ୍ୟେ ମନୁବଂଶ । ସ୍ୱଭାବେ ଚକ୍ରବର୍ତ୍ତୀ ଅଂଶ ॥
ଦୁଷ୍ଟ ରାଜାଙ୍କୁ ଦଶ ଦିଗେ । ଜିଣି ସ୍ଥାପିଲା ମହୀଭାଗେ ॥
ସେ ଧନ୍ୱନ୍ତରୀ ରୂପଧରି । ବ୍ରହ୍ମାଣ୍ଡ ମଧ୍ୟେ ଅବତରି ॥
ହରିଲା ପ୍ରାଣୀଙ୍କର ବ୍ୟାଧି । ଭିଆଇ ମନ୍ତ୍ର ମଉଷଧି ॥
ଯଜ୍ଞ ସମ୍ଭାର ଭୋଗକଲା । ପ୍ରାଣୀଙ୍କି ଆଶୀର୍ବାଦ ଦେଲା ॥
ବ୍ରାହ୍ମଣ ବଧ ଦେଖି କୋପେ । କ୍ଷେତ୍ରୀଙ୍କୁ ପର୍ଶୁରାମ ରୂପେ ॥
ପରଶୁ ଦକ୍ଷ ଭୁଜେ ଧରି । ଅବନୀ ପର୍ଯ୍ୟଟନ କରି ॥
କ୍ଷତ୍ରିୟ ରୁଧିର ତର୍ପଣେ । ତୋଷିଲା ନିଜ ପିତୃଗଣେ ॥

ମୋର ବଚନେ ଦଣ୍ଡଧାରି । ଇକ୍ଷ୍ୱାକୁ ବଂଶେ ଅବତରି ॥

ପିତାର ବୋଲେ ଗଲେ ବନେ । ସ୍ୱପତ୍ନୀ ସୁମିତ୍ରା ନନ୍ଦନେ ॥

ସୀତା ରାବଣ ନେଲା ହରି । ସେ କୋପେ ତାର ବଂଶ ମାରି ॥

ବିଭୀଷଣଙ୍କୁ ଲଙ୍କା ଦେଲେ । ଦେବଙ୍କ ଭୟ ନିବାରିଲେ ॥

ଜଳଧି ରାଜା ଭୟେ ଡରି । ମିଳିଲା ନିଜ ରୂପଧରି ॥

ଚରଣେ ଶରଣ ପଶିଲା । ଲଙ୍କାଗମନେ ମାର୍ଗ ଦେଲା ॥

ଦିଗ ବିଜୟେ ଲଙ୍କପତି । ଅଇରାବତ ନାମେ ହସ୍ତୀ ॥

ତାହାର ସଙ୍ଗେ ବାଦକରି । ବାହୁ ପ୍ରହାରେ ଗିରି ଚୂରି ॥

ଦେଖି ଭାବିଲା ଗଜଶ୍ରେଷ୍ଠ । ରାବଣ ସଙ୍ଗେ କାହିଁ ହଟ ॥

ସେହି ରାବଣ ଦର୍ପରଣେ । ସେ ରାମ ସଂହାରି ତକ୍ଷଣେ ॥

ଭୂମିର ଭାରା ନିବାରଣେ । କ୍ଷୀର ସମୁଦ୍ରେ ଦେବଗଣେ ॥

ଈଶ୍ୱର ସଙ୍ଗେ ଦେବ ବନେ । ନମିଲେ ଚରଣ କମଳେ ॥

ଅନେକ ମତେ ସ୍ତୁତି ଭଣି । ବିଷ୍ଣୁ ସନ୍ତୋଷ ତାହା ଶୁଣି ॥

ସନ୍ତୋଷେ ଶୁକ୍ଳ କୃଷ୍ଣ କେଶ । ଜଘୁ ଉପାଡ଼ି ହୃଷୀକେଶ ॥

ସେ ବେନି ରୋମ ମହୀତଳେ । ଅସୁର ବଳ ସଂହାରିଲେ ॥

ହରିଲେ ଅବନୀର ଭାର । ମହାମହିମା ଚକ୍ରଧର ॥

ତିନି ଦିବସେ ନାରାୟଣ । ଶୋଷିଲେ ପୂତନା ପରାଣ ॥

ମାସକେ ନନ୍ଦ ଘରେ ହରି । ପାଦେ ଶକଟାସୁର ମାରି ॥

ଦଧି ମନ୍ଥନ କାଳେ ଧରି । ରୋଳେ ବାନ୍ଧିଲା ନନ୍ଦନାରୀ ॥

ସେ ରୋଳ ସଙ୍ଗେ ନନ୍ଦବାଳା । ବେନି ଅର୍ଜୁନ ମଧ୍ୟେ ଗଲା ॥

ଅତି ଉଚ୍ଚର୍ଗ ବେନି ବୃକ୍ଷେ । ଉପୁଡ଼ି ପଡ଼ିଲେ ପ୍ରତ୍ୟକ୍ଷେ ॥

ସେ ପୁଣି ଗୋବତ୍ସ ରକ୍ଷଣେ । କାଳିନ୍ଦୀ ତଟ କୁଞ୍ଜବନେ ॥

ବତ୍ସ ବାଳକ ବିଷ ଜଳେ । ପଶିଲେ ତୃଷାର ବିକଳେ ॥

ସକଳେ କଲେ ଜଳ ପାନ । ତକ୍ଷଣେ ହାରିଲେ ଜୀବନ ॥

ଅଦ୍ଭୁତ ଦେଖି ଭାବଗ୍ରାହୀ । ଅମୃତ ନୟନେ ଅନାଇଁ ॥

ତାହାଙ୍କୁ ଜୀବଦାନ ଦେଲେ । ସେ ଜଳେ ସର୍ପକୁ ଦେଖିଲେ ॥

ଦ୍ୱାରେ ନିବେଶି ନାଗବଳ । ଅମୃତ କଲେ ବିଷ ଜଳ ॥

ଜନ୍ତୁଙ୍କୁ କରାଇଲେ ପାନ । ଅଦ୍ଭୁତ ଗତି ଭଗବାନ ॥

ଅମ୍ବିକା ବନେ ଗୋପୀଜନେ । ଶୟନେ ନିଶି ଅର୍ଦ୍ଧମାନେ ॥

ଅଗ୍ନି ବେଢ଼ିଲା ବନେ ଆସି । ପ୍ରଳୟାନଳ ପ୍ରାୟେ ଦିଶି ॥

ଅନଳ ଦେଖି ନନ୍ଦବଳା । ବଦନ ଲୁଚାଅ ବୋଇଲା ॥

ଡରେ ଲୁଚାଇଲେ ବଦନ । ଗୋବିନ୍ଦ କଲେ ଅଗ୍ନିପାନ ॥

ମାତାର କୋଳେ ବସିଥିଲା । ଚୁମ୍ବନେ ମୁଖ ବିସ୍ତାରିଲା ॥

ଗୋପୀ ଚାହିଁଲେ ତା ବଦନ । ଉଦରେ ଅଶେଷ ଭୁବନ ॥

ବରୁଣ ପୁରୁ ଦଣ୍ଡଧାରି । ନନ୍ଦର ବନ୍ଦୀ ମୋକ୍ଷକରି ॥

ସେ ପୁଣି ବଳରାମ ସଙ୍ଗେ । ବନେ ଖେଳନ୍ତି ନାନାରଙ୍ଗେ ॥

ବ୍ୟୋମା ଅସୁର ମାୟା କଲା । ଗୋପାଳ ପୁଅଙ୍କୁ ହରିଲା ॥

ଗିରି କ୍ରୋଟରେ ନେଇ ଥୋଇ । ଦ୍ୱାର ରୁନ୍ଧିଲା ଶିଳା ଦେଇ ॥

ତାହା ଜାଣିଲେ ଚକ୍ରପାଣି । ବନ୍ଦୀରୁ ଗୋପ ସୁତ ଆଣି ॥

ଅସୁର ଜୀବନ ହାରିଲେ । ପୁଣି ଅଦ୍ଭୁତ କର୍ମ କଲେ ॥

ବରୁଣ ପୁରୁ ଯେତେବେଳେ । ନନ୍ଦକୁ ଆଣିଲେ ଗୋକୁଳେ ॥

ଗୋପାଳେ ବରୁଣ ଭୁବନ । ଦେଖିବେ ବୋଲି କଲେ ମନ ॥

ତାହାଙ୍କୁ ନିଦ୍ରାକାଳେ ନେଇ । ବରୁଣ ଭୁବନ ଦେଖାଇ ॥

ପୁଣି ଦୟାରେ ଭଗବାନ । ଦେଖାଇ ଆପଣା ଭୁବନ ॥

ଗୋପାଳେ ନନ୍ଦଗୋପ ମେଳେ । ଇନ୍ଦ୍ର ଉଚ୍ଛବ ଯଜ୍ଞ କାଳେ ॥

ଗୋବିନ୍ଦ ବୋଲେ ଯଜ୍ଞ ଭାଜି । ପର୍ବତ ଗୋବର୍ଦ୍ଧନ ପୂଜି ॥

ଇନ୍ଦ୍ର କୋପିଲା ଯଜ୍ଞ ଭଙ୍ଗେ । ମେଘ ପବନ ଘେନି ସଙ୍ଗେ ॥

ଇନ୍ଦ୍ର ବରଷେ କୋପ କରି । ପ୍ରଳୟ କାଳେ ଯେହ୍ନେ ବାରି ॥

ତା ଦେଖି କୃଷ୍ଣ ଦୟାଚିତ୍ତେ । ଗୋରୁ ମନୁଷ୍ୟ ରକ୍ଷା ଅର୍ଥେ ॥

ସପତ ବରଷ କୁମର । ହସ୍ତେ ଉପାଡ଼ି ଗିରିବର ॥

ଛତ୍ର ପ୍ରାୟକେ ବାମକରେ । ଟେକିଲା ଅଙ୍ଗୁଳି ଉପରେ ॥

ସପତ ଦିନ ବରଷିଲା । କୃଷ୍ଣର କରେ ଗିରି ଥିଲା ॥

ରାତ୍ରେ ଶଶାଙ୍କ ରଶ୍ମିକାଳେ । ରାସ ଉଚ୍ଛବ ଗୋପୀମେଳେ ॥

ମଧୁର ବେଣୁନାଦ ଗୀତେ । ମନ ମୋହିଲେ ପ୍ରେମାଙ୍କିତେ ॥

ଅନଙ୍ଗ ମୋହେ ବ୍ରଜନାରୀ । ଗୋବିନ୍ଦ ସଙ୍ଗେ କ୍ରୀଡ଼ାକରି ॥

ଶୁଣି ଗୋବିନ୍ଦ ବେଣୁ ସ୍ୱନ । ମିଳିଲା କୁବେର ନନ୍ଦନ ॥

ଗୋପୀଙ୍କୁ ହରିବାର ଆଶେ । ଲୁଚି ବସିଲା ବନଦେଶେ ॥

ତାହାଙ୍କୁ ଦେଖି ବେଣୁଧର । କର ପ୍ରହାରେ ଛେଦି ଶିର ॥

ମଣି ହରିଲେ ତାର ଶିରୁ । ଅଶେଷ ଜନ ପିତା ଗୁରୁ ॥

ପ୍ରଳମ୍ବା ଖର ବକାସୁର । କେଶୀ ଧେନୁକା ଷଣ୍ଢାବୀର ॥

ମୁଷ୍ଟିକ ମାଲ କୁବଳୟା । କଂସ ଯବନ ଘୋରମାୟା ॥

ନାରକା ପୁଣ୍ଡ୍ର ଶାଲୁକପି । ଆବର ଦନ୍ତବକ୍ତ୍ର ଶପି ॥

ସପତ ଷଣ୍ଢ ବିଦୂରଥ । ଶମ୍ବର ରୁକ୍ମିଣୀର ଭ୍ରାତ ॥

କାମ୍ବୋଜ ମହ କୁରୁବୀରେ । ସଞ୍ଜୟ ତୁଲେ ଯେ ଅପାରେ ॥

ଏହାଙ୍କୁ ସଂଗ୍ରାମେ ନିବାରି । ଭୀମ ଅର୍ଜୁନ ସଙ୍ଗେ କରି ॥

ପରମ ପଦେ ଦେଲେ ସ୍ଥାନ । ମାୟା ମନୁଷ୍ୟ ଭଗବାନ ॥

କଳି ଭ୍ରମର କାଳବଳେ । ପ୍ରାଣୀଏ ଚେତନା ଚଞ୍ଚଳେ ॥

ଭାରତୀ ନ ପାରନ୍ତି ଧରି । ଚଞ୍ଚଳ ଚିତ୍ତ ଦେଖି ହରି ॥

ଜନ୍ମିଲେ ବ୍ୟାସ ରୂପଧରି । ଅଶେଷ ଶ୍ରୁତି ସ୍ମୃତି କରି ॥
ବେଦ ବୃକ୍ଷକୁ ଶାଖା କଲେ । ଏକୁ ଅନେକ ବୁଦ୍ଧି ବଳେ ॥
ଅସୁରେ ରହି ବେଦ ମାର୍ଗେ । ମାୟା ବିମାନେ କଳିଯୁଗେ ॥
ମୟ ଦଇତର ନିମନ୍ତେ । ଦୃଶ୍ୟ ଅଦୃଶ୍ୟ ଶୂନ୍ୟପଥେ ॥
ସେ କଥା ଶୁଣି ଜଗନ୍ନାଥେ । କରିବେ ବହୁ ଜନହିତେ ॥
କପଟ ମାୟା ମୋହ ବଶେ । ପାଷାଣ୍ଡ ମାର୍ଗ ଉପଦେଶେ ॥
ଅନେକ ଦୁର୍ଗତି ହରିବେ । ସୁଜନ ଜନଙ୍କୁ ରଖିବେ ॥
ସାଧୁ ଜନଙ୍କ ହୃଦ କଥା । ବିଷ୍ଣୁ ସ୍ମରଣ ଗୁଣଗାଥା ॥
ଦ୍ୱିଜେ ପାଷାଣ୍ଡ ଆଚରିବେ । ସୁସଞ୍ଚ ଯଜ୍ଞ ନ କରିବେ ॥
ରାଜା ହୋଇବେ ଶୂଦ୍ର ଜନେ । ପ୍ରଜା ପୀଡ଼ିବେ କରଧନେ ॥
ସେ ସ୍ୱାହା ସ୍ୱଧା ବଷଟ୍‌କାର । ଛାଡ଼ି କରିବେ ଦୁରାଚାର ॥
ଏ କର୍ମ ଦେଖି କଳ୍‌କୀ ରୂପେ । ଅଶ୍ୱ ଆରୋହୀ ମହାକୋପେ ॥
ଖଡ଼୍‌ଗେ ସଂହାରି ବେନିହସ୍ତେ । ଶେଷେ ସ୍ଥାପିବେ ଧର୍ମପଥେ ॥
ଯେ ସ୍ୱର୍ଗ ତପ ବ୍ରହ୍ମଗତି । ନବ ଋଷୟଃ ପ୍ରଜାପତି ॥
ଯେ ଅବା ଧର୍ମ ଅର୍ଥ କାମ । ଯଜ୍ଞ ସମ୍ଭାର ମୁନିଗଣ ॥
ଅମର ଗଣ ବିଚକ୍ଷଣ । କଳ୍ପାନ୍ତେ ଅଧର୍ମ କଷଣ ॥
ହରି ହରଇ ତିନିପୁର । ଏ ସର୍ବେ ବିଷ୍ଣୁର ଶରୀର ॥
ଏଣୁ ସେ ମାୟାରୂପ ଧରେ । କଳ୍ପ କଳ୍ପାନ୍ତେ ସୃଷ୍ଟିକରେ ॥
ସେ ବିଷ୍ଣୁ ମହିମା ସଂସାରେ । କେବଣ ସଙ୍ଖ୍ୟା କରିପାରେ ॥
ଯେ କବି ଭୂମିରେଣୁ ଗଣି । ସେହୁ ନ ପାରିବ ପ୍ରମାଣି ॥
ସେ ବିଷ୍ଣୁ ନାଭି ପଦାଗ୍ରତେ । ସ୍ୱର୍ଗ ପର୍ଯ୍ୟନ୍ତେ ଭୂମିଗତେ ॥
ନିଜ ଶରୀରେ ତା ରଖିଲା । ସେ ଘୋଷେ ପ୍ରକୃତି କମ୍ପିଲା ॥
ତୋର ଅଗ୍ରଜ ମୁନି ଶାନ୍ତ । ସେ କାହିଁ ପାଇବେ ତା ଅନ୍ତ ॥
ବ୍ରହ୍ମା ଶଙ୍କର ନ ପ୍ରମାଣେ । ଅପରେ କେବା ତାହା ଜାଣେ
ବାସୁକୀ ଅୟୁତ ବଦନେ । ସମର୍ଥ ନୋହେ ଗୁଣ ଗାନେ ॥
ଯାହାରେ ହରି ଦୟାକରେ । ସେ ଯେବେ ନିଷପଟ ଧରେ ॥
ଦୁସ୍ତର ମାୟା ସେ ତରନ୍ତି । ଦୁଃଖ ସଂକଟେ ନ ପଡ଼ନ୍ତି ॥
ଶ୍ୱାନ ଶୃଗାଳ ଭକ୍ଷ ଦେହେ । ଏ ମୋର ବୋଲି ଜ୍ଞାନ ମୋହେ ॥
ଏବେ ନାରଦ ଶୁଣ ଧୀରେ । ଯେବା ତରିଲେ ମାୟାଘୋରେ ॥
ତା ମାୟା ଜାଣି ଚିତ୍ତେ ଭଲେ । ଯେଣୁ ସଂସାରୁ ତରିଗଲେ ॥
ମୁହିଁ ଜାଣଇ ମାୟା ତାର । ତୁ ଜାଣୁ ଜାଣଇ ଶଙ୍କର ॥
ପ୍ରହ୍ଲାଦ ଜାଣେ ଅନ୍ତର୍ଗତେ । ମନୁ ଯେ କୁଟୁମ୍ବ ସହିତେ ॥
ପ୍ରାଚୀନ ବର୍ହିଭୂତି ଅଙ୍ଗ । ଧ୍ରୁବ ଇକ୍ଷାକୁ ମୁଚୁକୁନ୍ଦ ॥
ବିଦେହ ସୋମପୁତ୍ର ଗାଧି । ରଘୁ ଅମ୍ବରୀଷ ସୁବୁଦ୍ଧି ॥
ଗୟା ନହୁଷ ଆଦି ଯେତେ । ଶୁଣ ନାରଦ କହୁଁ ତୋତେ ॥
ମାନ୍ଧାତା ଆଦି ଶତଧନୁ । ସେବନ୍ତି ଗଙ୍ଗାଦେବୀ ସୂନୁ ॥
ବିଳାସ ବଳି ନୃପ ନାହା । ସୌଭର୍ଯ୍ୟତଙ୍କ ପୁଣ୍ୟ ଦେହା ॥
ଶିବ ଦେବଳ ପିପଳାବ । ସାରସ୍ୱତ ସଙ୍ଗେ ଉଦ୍ଧବ ॥
ଯେ ପରାଶର ଭୂରିଷେଣ । ରାବଣ ଭ୍ରାତା ବିଭୀଷଣ ॥
ବାମନ ବିପ୍ର ଦେବଦତ୍ତ । ବିଦୁର ଆଶିଷେଣ ପାର୍ଥ ॥
ବ୍ରାହ୍ମଣ ଶୂଦ୍ର ଦେବତୁଲେ । ବିଷ୍ଣୁ ମାୟାରୁ ତରିଗଲେ ॥
ବ୍ରହ୍ମା ଯବନ ଶୂଦ୍ର ସ୍ତିରୀ । ଶବର ସଙ୍ଗେ ଗଲେ ତରି ॥
ଅଦ୍ଭୁତ କର୍ମ ଏ ତାହାର । ଏ ଭାବେ ନାହିଁ ପରାପର ॥
ନିତ୍ୟ ପ୍ରଶାନ୍ତ ସେ ନିର୍ଭୟେ । ପ୍ରବୋଧ ମାତ୍ର ତାର ଦେହେ ॥
ସେ ସୂକ୍ଷ୍ମ ସର୍ବ ଘଟେ ସମ । ରୂପ ଅରୂପ ସର୍ବ ଧାମ ॥
ଶିବ ନ ପାରେ ଯାହା କହି । ଅନ୍ୟୋନ୍ୟ କ୍ରିୟାଯୋଗ କାହିଁ ॥
ଯାର ସମ୍ମୁଖେ ଭଗବତୀ । ଲାଜେ ପଳାଇ ଶିର ପୋତି ॥
ନିଜ ସ୍ୱରୂପ ତାର ଚିନ୍ତି । ପରମ ପୁରୁଷ ବୋଲାନ୍ତି ॥
ଅଜସ୍ର ସୁଖ ସେ ବିଶୋକ । ନାହିଁ ତାହାର ରୂପରେଖ ॥
ଯାହାର ପାଦ ଦୃଢ଼ଚିତ୍ତେ । ଯୋଗ ଧାରଣା ଅନ୍ତର୍ଗତେ ॥
ଭାବି ଛାଡ଼ନ୍ତି ସର୍ବଦୁଃଖ । ସମୁଦ୍ର ତଟେ ଯେହ୍ନେ କୂପ ॥
ସେ ହରି କଇବଲ୍ୟ ନାଥ । ଭାବ ସ୍ୱଭାବ ଏ ଜଗତ ॥
କରଇ ସର୍ବଦେହେ ବସେ । ସଂସିଦ୍ଧି ସ୍ୱଭାବେ ପ୍ରକାଶେ ॥
ଦେହେ ବିଯୋଗ କାଳେ ଦେହୀ । ଗଗନ ପ୍ରାୟେ ଶୂନ୍ୟେ ରହି ॥
ହେ ପୁତ୍ର କହିଲି ମୁଁ ତୋତେ । ହରି ମହିମା ଭାଗବତେ ॥
ସଦ ଅସଦ ରୂପ ସେହି । ମାୟା ଅଶେଷ ଦେହବହି ॥
କରଇ ଆତ୍ମା ଖେଡ଼ଲୀଳା । ତାର ଚରିତ ଭବଭେଳା ॥
ଏ ଭାଗବତ ଧର୍ମ ଯେତେ । ଗୋବିନ୍ଦ କହିଲେ ଯେମନ୍ତେ ॥
ସର୍ବ ସମ୍ପଦର ଏ ମୂଳ । ଅଶେଷ ଯଜ୍ଞ ଧର୍ମ ଫଳ ॥
ଏହା ବିସ୍ତାରି କହ ମୁଖେ । ସୁଜନ ଜନଙ୍କ ସମ୍ମୁଖେ ॥
ଏମନ୍ତେ ପ୍ରାଣୀଙ୍କର ହିତେ । ବିଷ୍ଣୁ ବିଷୟ ଅବିରତେ ॥
ଯେମନ୍ତେ ନାଶେ ଶୋକ ମୋହ । ଇତି ସଂକଳ୍ପ ତାତ କହ ॥
ମାୟା ନ ଲାଗେ ତାର ଚିତ୍ତେ । ସେ ସୁଖେ ଗୁଣେ ଅବିରତେ ॥
ବର୍ଣ୍ଣିଲି ଈଶ୍ୱରର ମାୟା । ଯେଣୁ ସଂସାରେ ତାର ଦୟା ॥
ଏମନ୍ତେ ଭାଗବତ ବାଣୀ । ନାରଦ ବ୍ରହ୍ମା ମୁଖୁଁ ଶୁଣି ॥
ମନ ଆନନ୍ଦେ କୃତ କୃତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ବ୍ରହ୍ମାନାରଦ ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ରାଜା ଉବାଚ

ଶୁକ ଚରଣେ ଦେଇ ହସ୍ତ । ଆନନ୍ଦେ ବୋଲେ ପରୀକ୍ଷିତ ॥
ନାରଦ ଆଗେ ବ୍ରହ୍ମା ଯେତେ । ବିଷ୍ଣୁ ମହିମା ଭାଗବତେ ॥
କହିଲେ ଜନ ଉପକାରେ । ଯେ କଥା ଶୁଣି ପ୍ରାଣୀ ତରେ ॥
ଯେ ଅବା ସ୍ଥାନେ ଯାହା ଆଗେ । ମୁନି କହିଲେ ବ୍ରହ୍ମଭାଗେ ॥
ତାହା ଶ୍ରବଣେ ଇଚ୍ଛା ମୋର । ତୁମ୍ଭେ ମୁନିଙ୍କ ମଧ୍ୟେ ବର ॥
ହରି ମହିମା ଅଗୋଚର । ଶ୍ରବଣେ ମଙ୍ଗଳ ଉଚ୍ଚାର ॥
ସେ କଥା କହ ମୁନି ମୋତେ । ସେ ହରି ଚରିତ ଏକାନ୍ତେ ॥
ନିଶ୍ଚଳ ମନ କରି ସ୍ଥିର । ଯେମନ୍ତେ ଛାଡ଼ଇ ଶରୀର ॥
ଶ୍ରଦ୍ଧା ଗୃହୀତେ ଯେବା ଶୁଣେ । ଯେ ହରି କଥା ମନେ ଗୁଣେ ॥
ମଙ୍ଗଳ ନାମ ଉଚ୍ଚାରଣେ । ତାର ହୃଦୟ ତତକ୍ଷଣେ ॥
ଶ୍ରବଣ ମାର୍ଗେ ହରି ପଶେ । ହୃଦୟ ପଦ୍ମେ ସ୍ଥିରେ ବସେ ॥
ସର୍ବ ଦୁରିତ ହେଲେ ନାଶେ । ଶରଦ ଯେହ୍ନେ ବୃଷ୍ଟି ଶେଷେ ॥
ଜଳୁ ହରଇ ମଳରାଶି । ଯେ ଦେହ୍ନେ ନିର୍ମଳ ପ୍ରକାଶି ॥
ନିର୍ମଳ ଆତ୍ମା ଯାର ହୋଇ । ସେ କୃଷ୍ଣ ପାଦ ମୂଳେ ରହି ॥
କେବେହେଁ ନୋହେ ସେବାହାର । ମାୟା ଭ୍ରମଣ ହୋଏ ଦୂର ॥
ପଥିକ ପଥଶ୍ରମ ପାଇ । ଯେ ଯେହ୍ନେ ନିଜ ଗୃହେ ଯାଇ ॥
ଶ୍ରମ ପାସୋରି ସୁଖେ ରହେ । ଗୃହ ସମ୍ପଦ ଭୋଗ ଦେହେ ॥
ଅଧାତୁ ମତ ବସ୍ତୁ ଯେହ୍ନେ । ଧାତୁ ଘଟଣ ବିଦ୍ୟମାନେ ॥
ସ୍ୱତେଜେ ପ୍ରକାଶେ ଯେମନ୍ତେ । ତୁମେ ତ ଜାଣ ଏହା ଚିତ୍ତେ ॥
ଯାର ନାଭିରୁ ବ୍ରହ୍ମା ହୋଇ । ଲୋକଙ୍କ ସ୍ଥାନ ପ୍ରକାଶଇ ॥
ଯେବା ପୁରୁଷ ବେଦମତେ । ନାନା ପ୍ରକାରେ ସଂଜ୍ଞା ଯେତେ ॥
ପ୍ରକାଶେ ଅବତାର ଦେହୀ । ଯା ରୂପ ନ ଜାଣନ୍ତି କେହି ॥
ସ୍ୱଭାବେ ଜନ୍ମ ତାର ନାହିଁ । ଆତ୍ମାରୁ ପ୍ରାଣୀଙ୍କି ସର୍ଜଇ ॥
ସେ ଭୂତ ଆତ୍ମା ଆତ୍ମା ଦେହେ । ଯାହାକୁ ତାର ଅନୁଗ୍ରହେ ॥
ଏମନ୍ତେ ଦେଖି ରୂପ ବର୍ଣ୍ଣେ । ନାଭି କମଳୁ ହୋଏ ଜନ୍ମ ॥
କାଳର ବଳେ ସେ ପୁରୁଷ । ଏ ବିଶ୍ୱ ସୃଷ୍ଟି ସ୍ଥିତି ଶେଷ ॥
କଳ୍ପ କରଇ ତାର ଅଗ୍ରେ । ସର୍ବ କଳ୍ପିତ ନାନା ରଙ୍ଗେ ॥
ଏ ଭାବେ ଶୁଣିଲି ଯେ ମୁହିଁ । ଏବେ ତୁମ୍ଭଙ୍କୁ ପଚାରଇ ॥
କଳ୍ପ ବିକଳ୍ପ ଯଥା କାଳେ । ସେ ବ୍ରହ୍ମ କରେ ଅବହେଳେ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ସୃଷ୍ଟି ପାଳନ ଅବସାନେ ॥
କାଳର ଯେତେ ଅନୁଗତି । କହି ବହୁଳ ସତ୍ୟ ସ୍ଥିତି ॥
କର୍ମର ଗତି ଅବା ଯେତେ । ଯେହେତୁ ପ୍ରକାଶେ ଜଗତେ ॥
କର୍ମ ସଞ୍ଚାର ନାହିଁ ତହିଁ । ସେ ଭାବେ ଜୀବ ତା ଭୁଞ୍ଜଇ ॥
ଗୁଣ ଗୁଣୀଙ୍କ ପରିଣାମ । ଭୂମି ପାତାଳ ଦେଶ ବ୍ୟୋମ ॥
ଗ୍ରହ ନକ୍ଷତ୍ର ମହୀଧର । ନଦୀ ସମୁଦ୍ର ଦ୍ୱୀପବର ॥
ଏଥେ ଆଶ୍ରିତ ଜନ୍ତୁ ଯେତେ । ବ୍ରହ୍ମାଣ୍ଡ ପ୍ରମାଣ ବା କେତେ ॥
ଏ ବାହ୍ୟାନ୍ତରେ ବସ୍ତୁ ଯେତେ । ସଂକ୍ଷେପେ କହ ମୋ ଅଗ୍ରତେ ॥
ମହତ ଜନ ଆଚରଣ । ଯେ ବର୍ଣ୍ଣ ବିଭାଗ ଆଶ୍ରମ ॥
ଏ ଅଣ୍ଡକୋଷ ମଧ୍ୟଗତେ । ବିଷ୍ଣୁର ଅବତାର ଯେତେ ॥
ଯୁଗାନୁଯୁଗେ ଯୁଗମାନ । ଯେ ଯୁଗେ ଯେବା ଧର୍ମଜ୍ଞାନ ॥
ମନୁଷ୍ୟ ସାଧାରଣ ଧର୍ମ । ଯେବା ବିଶେଷ ଯଥା କର୍ମ ॥
ବ୍ରହ୍ମ ଋଷିଙ୍କ ଧର୍ମ ଆଦି । ଯେ ରାଜ ଋଷି ଏ ସମ୍ପାଦି ॥
ଯୋଗେଶ୍ୱରଙ୍କ ଜ୍ଞାନ ଯେତେ । ଲିଙ୍ଗ ଭଙ୍ଗନେ ମୋକ୍ଷ ଅର୍ଥେ ॥
ଯେ ଧର୍ମ ବେଦ ଉପବେଦେ । ପୁରାଣ ଇତିହାସ ବାଦେ ॥
ସର୍ବ ଭୂତଙ୍କ ଯେ ସମ୍ଭବ । ବିକ୍ରମ ସ୍ୱକର୍ମ ପ୍ରସ୍ତାବ ॥
ଯେ ବିଧି ଯଜ୍ଞ ଜଳ ଦାନେ । ଯେ କର୍ମ ତ୍ରିବର୍ଗ ସାଧନେ ॥
ଜୀବ ସମ୍ଭବ ଯେବା ମତେ । ଯେ ଅବା ପାଷାଣ୍ଡ ସହିତେ ॥
ଆତ୍ମାର ବନ୍ଧ ମୋକ୍ଷ ଦୁଇ । ଯେବେ ସ୍ୱରୂପେ ଯେବା ରହି ॥
ସେ ଆତ୍ମା ତତ୍ତ୍ୱ ଭାବଗ୍ରାହୀ । ଆତ୍ମାର ମାୟାରେ କ୍ରୀଡ଼ଇ ॥
ମାୟା ବିସର୍ଜି ଯେବା ମତେ । ମଧ୍ୟେ ସେ ରହେ ସାକ୍ଷୀମତେ ॥
ଏବେ ମୁଁ ପଚାରିଲି ଯେତେ । ସଂକ୍ଷେପି କହିବାକ ମୋତେ ॥
ବ୍ରହ୍ମାର ଆତ୍ମା ନାରାୟଣ । ଯେ ବିଶ୍ୱ ସଂସାରେ ପ୍ରମାଣ ॥
ପୁଣ୍ୟ ପୁରୁଷେ ଯାହା ଚିନ୍ତି । ଅପରେ ତାହା ଆଚରନ୍ତି ॥
ତୁମ୍ଭ ବଦନୁ ହରି ରସ । ପିବନ୍ତେ ନୋହେ ମନ ତୋଷ ॥

### ଶ୍ରୀ ସୂତ ଉବାଚ

ଏମନ୍ତେ ପରୀକ୍ଷିତ ବାଣୀ । ହରଷେ ଶୁକ ମୁନି ଶୁଣି ॥
ମୁନି ଜନଙ୍କ ସଭା ମଧ୍ୟେ । ଯେ ଅବା କହିଲେ ଆନନ୍ଦେ ॥
ଏ ଭାଗବତ ହରିଗୁଣ । ବ୍ରହ୍ମ ସମ୍ମତ ଏ ପୁରାଣ ॥
ଏ କଥା ବ୍ରହ୍ମାର ଅଗ୍ରତେ । ସେ ବ୍ରହ୍ମ କଳ୍ପ ଉପଗତେ ॥
ଏକାନ୍ତେ କହିଲେ ମୁରାରି । ବିଶ୍ୱ ସଂସାରେ ଦୟାକରି ॥
ଏ କଥା ଆଦି ମଧ୍ୟ ଅନ୍ତ । ଶୁଣ କହିବା ତୋ ଅଗ୍ରତ ॥
ବୋଲଇ ଦାସ ଜଗନ୍ନାଥ । ଦ୍ୱିତୀୟସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ବ୍ରହ୍ମା ନାରଦ ପରୀକ୍ଷିତ ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟଃ ।*

## ନବମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ରାଜା ଆଗେ । ତାର ପ୍ରଶନ ଅନୁରାଗେ ॥
ଶୁଣ ନୃପତି ପୁଣ୍ୟ ଦେହା । ତୁ ମୋତେ ପଚାରିଲୁ ଯାହା ॥
ବିଷ୍ଣୁର କ୍ରୀଡ଼ା ଆତ୍ମା ଗୁଣ । ସୃଷ୍ଟି ପାଳନ ସଂହାରଣ ॥
ଆତ୍ମା ମାୟାରେ ସୃଷ୍ଟିକରେ । ସେ ମାୟା ବିନୁ କେବାତରେ ॥
କରଇ ସକଳ ସମ୍ଭବ । ସ୍ୱପ୍ନେ ଯେସନେ ଅନୁଭବ ॥
ଏ କଥା ଈଶ୍ୱର ବଚନେ । ନ ଘଟେ ଶାସ୍ତ୍ର ଅନୁମାନେ ॥
ଯେବେ ସେ ମାୟାରେ ମିଶଇ । ଏକୁ ଅନେକ ପ୍ରକାଶଇ ॥
ସ୍ୱଭାବେ ଆତ୍ମା ବହୁରୂପୀ । ରୂପ ପ୍ରକାଶେ ସର୍ବବ୍ୟାପୀ ॥
ଯେ ରୂପେ ଥାଇଁ ଯେବାଗୁଣେ । ମୁହିଁ ମୋହର ପ୍ରାୟ ମଣେ ॥
ସତ୍ୟ ପ୍ରକାଶେ ସର୍ବ ଦେହେ । ନିଶ୍ଚିନ୍ତେ ଆତ୍ମା ରୂପେ ରହେ ॥
ପର ଅପର ନ ଜାଣଇ । କାଳ ମାୟାରେ ଭେଦ କାହିଁ ॥
ମାୟାକୁ ରସେ ସତ୍ୟ ପ୍ରାୟେ । ସତ୍ୟ ଅସତ୍ୟ ଭେଦ ନୋହେ ॥
ଆତ୍ମାର ତତ୍ତ୍ୱ ଶୁଦ୍ଧ ଅର୍ଥେ । କହିଲେ ବ୍ରହ୍ମାର ଅଗ୍ରତେ ॥
ସେ ଯେଣୁ ଘୋର ତପ କରି । ଅନେକ କଷ୍ଟେ ପ୍ରାଣ ଧରି ॥
ତପେ ତୋଷିଲା ଭଗବାନ । ତେଣୁ ପାଇଲା ଦରଶନ ॥
ନିର୍ମଳ ନିଷ୍କପଟ ଚିତ୍ତେ । ଯେଣୁ ଚିନ୍ତିଲା ହୃଦଗତେ ॥
ଶୁଣ କହିବା ତୋ ଅଗ୍ରତେ । ବ୍ରହ୍ମାଙ୍କୁ ଦିଶିଲା ଯେମନ୍ତେ ॥
ସେ ଆଦି ଦେବଗଣ ଗୁରୁ । ନିର୍ଗୁଣ ଜନ କଳ୍ପତରୁ ॥
ନିଜ ଭୁବନେ ସୁଖେ ଥିଲା । ଖେଳିବ ବୋଲି ଇଚ୍ଛାକଲା ॥
ଆତ୍ମାରେ ଆତ୍ମା ଯେ ପ୍ରଶସ୍ତେ । ପ୍ରପଞ୍ଚ ନିର୍ମାଣ ଯେମନ୍ତେ ॥
ନାଭିରୁ ପଦ୍ମ କଲା ଜାତ । ତହୁଁ ଜନ୍ମିଲା ଚଉମାଥ ॥
ସେ ପୁଣି ଚିନ୍ତା ଭରେ ରହି । ପର ଅପର ନ ଜାଣଇ ॥
ଚିନ୍ତା ବିକଳ ଭାବ ମନେ । ଶବଦ ଶୁଭିଲା ଗଗନେ ॥
ଜଳେ କମଳ ମଧ୍ୟେ ଥିଲା । ବେନି ଅକ୍ଷର ସେ ଶୁଣିଲା ॥
ଓଁକାର ଆଦି ସେ ଷୋଡ଼ଶେ । ପଞ୍ଚ ମିଶ୍ରିତ ଏକବିଂଶେ ॥
ଶବଦେ ତପ ଉଚ୍ଚାରଣ । ନିଷ୍କିଞ୍ଚନଙ୍କ ନିଜଧନ ॥
ସେ ବାଣୀ ଶୁଣି ବ୍ରହ୍ମା କର୍ଣ୍ଣେ । ନିରୋଳି ଚାହିଁଲା ଗଗନେ ॥
ଦିଗ ସହିତେ ସେ ଚାହିଁଲା । କାହିଁ ସେ କିଛି ନ ଦେଖିଲା ॥
ସେ ପୁଣି ରହି ନିଜ ସ୍ଥାନେ । ଆତ୍ମାର ହିତ ଚିନ୍ତି ମନେ ॥
ଜାଣିଲା ଏ ପରମ ତତ୍ତ୍ୱେ । ତପ ସାଧନେ କଲା ଚିତ୍ତ ॥
ଏ ମୋର ହିତ ବୋଲି ଜାଣି । ନିଶ୍ଚଳ ମନେ କୁଶପାଣି ॥
ଅମୋହ ଦୃଷ୍ଟି ସେ ବିଧାତା । ତପେ ବଢ଼ିଲା ମନେ ଚିନ୍ତା ॥
ଦେବ ବରଷେ ଦଶଶତ । ତପେ ବସିଲା ଦୃଢ଼ଚିତ୍ତ ॥
ମନ ପବନ କଲା ବନ୍ଦୀ । ଦଶ ଇନ୍ଦ୍ରିୟ ଗଣ ରୁନ୍ଧି ॥
ଯେ ତପେ ସର୍ବ ଲୋକ ତାପେ । ତପ ସୃଜନ ଅତିରେକେ ॥
ତପ ପ୍ରତାପେ ନରହରି । ମିଳିଲେ ନିଜ ରୂପ ଧରି ॥
ଯେ ରୂପ ନଜାଣନ୍ତି କେହି । ମାୟା ସଂସାରେ ଦେହବହି ॥
ବିଷ୍ଣୁ ପ୍ରସନ୍ନେ ପ୍ରଜାପତି । ଛାଡ଼ିଲା ମନ ଦୁଃଖ ଭ୍ରାନ୍ତି ॥
ଶୂନ୍ୟେ ବିଜୟ ଶଙ୍ଖଧାରୀ । ମିଳିଲେ ଦେବେ ସ୍ତୁତି କରି ॥
ଯାର ଶରୀର ରଜତମେ । ପଶି ନ ପାରନ୍ତି ସମ୍ଭ୍ରମେ ॥
ଯେହ୍ନେ ତପସ୍ୱୀକାଳ ଭ୍ରମ । ସେବା ହୋଇବ କାହିଁ କ୍ଷମ ॥
ମାୟା ନ ପାରେ ପଶି ଯହିଁ । ଦେବେ ଜାଣିବେ ତାହା କାହିଁ ॥
ବିମାନ ମଧ୍ୟେ ନାରାୟଣ । ବେଷ୍ଟିତ ପାରିଷଦଗଣ ॥
ସର୍ବେ ଦିଶନ୍ତି ବିଷ୍ଣୁତେଜ । ସ୍ୱଭାବେ ଚାରି ଚାରି ଭୁଜ ॥
ଶ୍ୟାମସୁନ୍ଦର ତନୁ ବର୍ଣ୍ଣ । ଅରୁଣ ପଙ୍କଜ ଲୋଚନ ॥
ପୀତ ବସନ ପରିଧାନ । ସୁରୁଚି ସୁନ୍ଦର ବଦନ ॥
ମଣି ଲମ୍ବଇ କଣ୍ଠଦେଶେ । କାମ ଗଞ୍ଜନ ମନ ତୋଷେ ॥
ପ୍ରବାଳ ବଇଦୂର୍ଯ୍ୟ କାନ୍ତି । ମୃଣାଳ ଭୁଜେ ଝଟକନ୍ତି ॥
କିରୀଟ ଗଞ୍ଜନ କପୋଳେ । ଶ୍ରବଣେ ମକର କୁଣ୍ଡଳେ ॥
ତେଜେ ବିରାଜେ ନଭସ୍ଥଳୀ । ବିମାନ ପଥେ ସର୍ବେ ମିଳି ॥
ଦେବ କାମିନୀ ଗଣ ସଙ୍ଗେ । ବିଜୁଳି ଯେହ୍ନେ କଳା ମେଘେ ॥
ଅଷ୍ଟ ବିଭୂତି ସଙ୍ଗ ମେଳେ । କମଳା ଖଟେ ପାଦ ତଳେ ॥
ଦିବ୍ୟ ଦୋଳିକା ମଧ୍ୟେ ନାରୀ । ପୁଷ୍ପ ବରଷି ସ୍ତୁତି କରି ॥
ଏମନ୍ତେ ବିଷ୍ଣୁ ନଭ ସ୍ଥଳେ । ବ୍ରହ୍ମା ଦେଖିଲେ ବେନିଡ଼ୋଳେ ॥
ଯାର ମହିମା ଦାଶରଥି । ଭକ୍ତଜନଙ୍କ ଅଧିପତି ॥
ଜଗତ ପତି ସର୍ବ ଗତି । ଯା ମାୟା କେହି ନ ଜାଣନ୍ତି ॥
ସୁନନ୍ଦ ନନ୍ଦ ଆଦି ଯେତେ । ପୂଜା ରଚିତ ବଳି ହସ୍ତେ ॥
ପୂଜନ୍ତି କିଙ୍କର ସ୍ୱଭାବେ । ମିଳି ସଂଭ୍ରମେ ସର୍ବ ଦେବେ ॥
ଭୃତ୍ୟଙ୍କୁ ପ୍ରସନ୍ନ ବଦନ । ଅରୁଣ ପଙ୍କଜ ଲୋଚନ ॥
କିରୀଟ କୁଣ୍ଡଳ ବିରାଜେ । ପୀତ ବସନ କଟି ମାଝେ ॥
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ । ରୂପେ ଅଶେଷ ଜନ ମୋହେ ॥
ଅମୂଲ୍ୟ ସିଂହାସନେ ସ୍ଥିତି । ବେଷ୍ଟିତ ସକଳ ଯୁବତୀ ॥
ଏମନ୍ତ ରୂପ ବ୍ରହ୍ମା ଦେଖି । ଉଠିଲା ଆସନ ଉପେକ୍ଷି ॥
କୃଷ୍ଣ ଦର୍ଶନେ ଆହାଲାଦ । ଅନ୍ତରେ ହୋଇ ଗଦ ଗଦ ॥
ରୋମ ହରଷେ ତନୁ ପୂର୍ଣ୍ଣ । ପ୍ରେମଭରେ ଅଶ୍ରୁ ଲୋଚନ ॥
କୃଷ୍ଣର ପାଦପଦ୍ମ ଚାହିଁ । ନମିଲା ଶିରେ କର ଦେଇ ॥
ଆନନ୍ଦ ସାଗରେ ବୁଡ଼ିଲା । ଅଧିକେ ଆତ୍ମା ପାସୋରିଲା ॥
ଅତି ଆନନ୍ଦେ ପ୍ରେମସୁଖେ । ସେ ବ୍ରହ୍ମା ବିଷ୍ଣୁର ସମ୍ମୁଖେ ॥

ପ୍ରଜା ବିସର୍ଜେ ତାର ମନ । ଜାଣିଲେ ପ୍ରଭୁ ଭଗବାନ ॥
ବ୍ରହ୍ମା ବଦନ ହରି ଚାହିଁ । ହସିଣ ପ୍ରଭୁ ଭାବଗ୍ରାହୀ ॥
ଆତ୍ମାର ପ୍ରିୟ ପ୍ରାୟେ କରି । ବ୍ରହ୍ମାର କର କରେ ଧରି ॥
କର ଅଞ୍ଜଳି ବ୍ରହ୍ମା କରେ । ସ୍ୱଭାବେ ବିନୟ ଭାବରେ ॥

## ଶ୍ରୀ ଭଗବାନୁବାଚ

ହେ ଦେବ ଗର୍ଭ ସୃଷ୍ଟି ଅର୍ଥେ । ତୁମ୍ଭେ ଯେ ତପେ ତୋଷି ମୋତେ ॥
ଅତି ଦୁସ୍ତର ଘୋର ତପେ । ତେଣୁ ମୁଁ ତୋହର ସମୀପେ ॥
ସ୍ୱଭାବେ ଯୋଗୀଙ୍କି ଦୁର୍ଲଭ । ମୁ ତୋତେ ହୋଇଲି ସୁଲଭ ॥
ମଙ୍ଗଳ ଶୁଭ ହେଉ ତୋତେ । ବର ତୁ ମାଗ ଦୃଢ଼ଚିତ୍ତେ ॥
ମୋହର ଦରଶନ ଯେବେ । ପ୍ରାଣୀ ଲଭଇ ପୁଣ୍ୟ ଭାବେ ॥
ତାହାର ଗତି କ୍ଷମ ଧାମ । ଅନ୍ତରେ ହୋଇ ଆତ୍ମାରାମ ॥
ଗଗନେ ଶୁଣି ମୋ ବଚନ । ତୁ ଯେ ତପସ୍ୟେ କଲୁ ମନ ॥
କର୍ମ ବିଭ୍ରମ ଦେଖି ତୋତେ । ମୁଁ ଯେ ଡାକିଲି ଶୂନ୍ୟ ପଥେ ॥
ବୋଇଲି ଦୃଢ଼େ ତପ କର । ମୁଁ ତୋତେ କରିବି ନିସ୍ତାର ॥
ମୋର ହୃଦୟ ତପ ଜାଣ । ତପେ ଧରଇ ଦୃଢ଼ ପ୍ରାଣ ॥
ତପେ ମୁଁ ସୃଷ୍ଟି କରି ହେଳେ । ପୁଣି ସଂହାରି ତପବଳେ ॥
ତପର ବଳେ ଏ ଜଗତ । ମୁଇଁ ଧରଇ ଅବିରତ ॥

## ବ୍ରହ୍ମୋବାଚ

ତୁ ନାରାୟଣ ଭୂତେଶ୍ୱର । ପ୍ରାଣୀ ହୃଦରେ ତୋର ଘର ॥
ହୃଦୟ ପଦ୍ମ ମଧ୍ୟେ ଥାଉ । ପ୍ରାଣୀଙ୍କି ଉପଦେଶ ଦେଉ ॥
ଏଣୁ ମୋହର ମନ ଜାଣି । ଯେ ଜ୍ଞାନ ଦେଲୁ ଚକ୍ରପାଣି ॥
ଅନାଥ ନାଥ ତୋ ମହିମା । କେ ଜାଣି ପାରେ ଗୁଣସୀମା ॥
ମୁଁ ତୋର ଚରଣେ କିଙ୍କର । ଏମନ୍ତ ଆଜ୍ଞା ମୋତେ କର ॥
ରୂପ ଅରୂପ ତୋର ଯେତେ । ଏ ସୃଷ୍ଟି କରୁ ତୁ ଯେମନ୍ତେ ॥
ତୁ ମାୟା ଯୋଗେ ସୃଷ୍ଟି କରୁ । ତୋର ଇଚ୍ଛାରେ ତୁ ବିହରୁ ॥
ଏ ସୃଷ୍ଟି ସ୍ଥିତି ସଂହାରଣ । ତୁ ନାଥ ପରମ କାରଣ ॥
ସୃଷ୍ଟି କରଣେ ଇଚ୍ଛା ମୋର । କେହ ତୁ ସୃଷ୍ଟିର ବିଚାର ॥
ସ୍ୱତନ୍ତ୍ର ସୂତ୍ରେ ଉର୍ଣ୍ଣନାଭି । କ୍ରୀଡ଼ଇ ଯେହ୍ନେ ମନେ ଭାବି ॥
ତେମନ୍ତ ବୁଦ୍ଧି ଦିଅ ମୋତେ । ଏ ସୃଷ୍ଟି କରିବି ଯେମନ୍ତେ ॥
ତୁମ୍ଭର ଶିକ୍ଷା ଘେନି ଚିତ୍ତେ । ନିତ୍ୟେ କରିବି ଅବିରତେ ॥
ସୃଷ୍ଟି କରଣେ ଭଗବାନ । କବେ ହେଁ ନାହିଁ ମୋର ଜ୍ଞାନ ॥
ତୋ ଅନୁଗ୍ରହ ଯେବେ ମୋତେ । ତୁ ନାଥ ବସ ମୋର ଚିତ୍ତେ ॥

## ଶ୍ରୀ ଭଗବାନୁବାଚ

ଶୁଣ ବିଧାତା ମୋ ବଚନ । ଯେଣେ ଲଭିବ ସୃଷ୍ଟି ଜ୍ଞାନ ॥
ସୃଷ୍ଟି ସର୍ଜନେ ଅଙ୍ଗ ଯେତେ । ହରଷେ କହୁଁ ତୋ ଅଗ୍ରତେ ॥
ଯେ ରୂପେ କର୍ମ ଗୁଣ ଲଇ । ସେ ତତ୍ତ୍ୱଜ୍ଞାନ ତୋର ଦେହୀ ॥
ପ୍ରସରି ମୋର ଅନୁଗ୍ରହେ । ଜ୍ଞାନ ବସଇ ସର୍ବ କାୟେ ॥
ସୃଷ୍ଟିର ଅଗ୍ରେ ମୁହିଁ ଏକ । ମୋ ତହୁଁ ପ୍ରକାଶେ ଅନେକ ॥
ସଦ ଅସଦ ପରେ ମୁହିଁ । ଯେ ଅବଶେଷେ ଶେଷ ହୋଇ
ଅର୍ଥକୁ ଛାଡ଼ି ଯେବେ ଚିତ୍ତେ । ପ୍ରତୀତ ନୋହେ ଆତ୍ମାହତେ ॥
ମାୟା ପ୍ରକାଶ ସେ କାରଣ । ଗଗନେ ଯେହ୍ନେ ଜ୍ୟୋତିର୍ଗଣ ॥
ଏ ଜୀବ ସ୍ଥୂଳ ସୂକ୍ଷ୍ମ ଯେତେ । ପ୍ରକାଶ ହୋନ୍ତି ପଞ୍ଚଭୂତେ ॥
ଛାଡ଼ି ପଶନ୍ତି ପୁଣ ପୁଣ । ମୋ ମାୟା ସୃଷ୍ଟିର ପ୍ରମାଣ ॥
ତୋର ପ୍ରସ୍ତାବେ ପ୍ରଜାପତି । କହିଲି ସୃଷ୍ଟି ଯଥାଗତି ॥
ଯେଝା ବିଚାରେ ଅନୁମାନେ । ସେ ସର୍ବ କାଳେ ବିଦ୍ୟମାନେ ॥
ଏ ମୋର ତତ୍ତ୍ୱଜ୍ଞାନ ବଳେ । ଧରତୁ ସମାଧି ନିଶ୍ଚଳେ ॥
କଳ୍ପ ବିକଳ୍ପେ ତୋର ଚିତ୍ତ । କେବେହେଁ ନୋହିବ ମୋହିତ ॥

## ଶ୍ରୀ ଶୁକ ଉବାଚ

ସେ ନିରାକାର ଭାବଗ୍ରାହୀ । ବ୍ରହ୍ମାଙ୍କୁ ସୃଷ୍ଟି ତତ୍ତ୍ୱ କହି ॥
ତକ୍ଷଣେ ବ୍ରହ୍ମାର ଅଗ୍ରତେ । ଗୋବିନ୍ଦ ଗଲେ ଶୂନ୍ୟ ପଥେ ॥
କୃଷ୍ଣ ନ ଦେଖି ପ୍ରଜାପତି । ପଢେ ଅନେକ କଳାସ୍ତୁତି ॥
କର ଅଞ୍ଜଳି ଶିରେ ଦେଇ । ଅନେକ ଭାବେ ଭାବ ବହି ॥
ବିଶ୍ୱ ସର୍ଜିଲା ବିଷ୍ଣୁ ତେବେ । ପୂର୍ବର ପ୍ରାୟ ନାନା ବାର୍ଯ୍ୟେ ॥
ସେ ଧର୍ମପତି ପ୍ରଜାପତି । ନିୟତ ଧର୍ମ ତତ୍ତ୍ୱ ମତି ॥
ପ୍ରଜା କଳ୍ପନା ଚିନ୍ତା କରି । ଆତ୍ମାର ହିତ ମନେ ଧରି ॥
ନାରଦ ବାକ୍ୟେ ବେଦବର । ହରି ମହିମା ଅଗୋଚର ॥
ଯେତେ କହିଲେ ସୃଷ୍ଟି ଅର୍ଥେ । ଆତ୍ମାର ମହିମା ଯେମନ୍ତେ ॥
ଜାଣିମା ଅର୍ଥେ ମହାମୁନି । କହି ବିଧାତା ହୋଏ ତୁନି ॥
ବ୍ରହ୍ମା ନାରଦ ପ୍ରଶ୍ନ ଯେତେ । କହିଲି ତୋହର ଅଗ୍ରତେ ॥
ରାଜନ ସାବଧାନେ ଶୁଣ । ଏ ଭାଗବତ ପରିମାଣ ॥
ଦଶ ଲକ୍ଷଣେ ଏହା ଜାଣି । ଯେ ବାକ୍ୟ କହିଲି ପ୍ରମାଣି ॥
ଏ କଥା ସରସ୍ୱତୀ ତଟେ । କହିଲେ ବ୍ୟାସଙ୍କ ନିକଟେ ॥
ଏବେ ମୁଁ ତୋହର ଅଗ୍ରତେ । କହିବି ପଚାରିଲୁ ଯେତେ ॥
ଏମନ୍ତେ ପରୀକ୍ଷିତ ମେଳେ । ଶୁକ କହିଲେ ଗଙ୍ଗା ଜଳେ ॥
ଦଶ ଲକ୍ଷଣେ ଭାଗବତ । କହିଲା ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟସ୍କନ୍ଧେ ଶ୍ରୀମଦ୍ଭାଗବତେ ପ୍ରବୃତ୍ତି ବର୍ଣ୍ଣନେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ
### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ରାୟେ ଶୁଣ । ଏ ଭାଗବତର ଲକ୍ଷଣ ॥
ଦଶ ପ୍ରକାରେ ଭାବ ଚିହ୍ନି । ପୁରାଣ ପୁରୁଷ ବୋଲାନ୍ତି ॥
ତାହା କହିବା ଏକେ ଏକେ । ପ୍ରସ୍ତାବେ ତୋହର ସମ୍ମୁଖେ ॥
ସର୍ଗ ବସର୍ଗ ସୃଷ୍ଟି ସ୍ଥାନ । ପୋଷଣ ଉତି ବିଦ୍ୟମାନ ॥
ମନ୍ୱନ୍ତର ଈଶାନୁକଥା । ନିରୋଧ ମୁକ୍ତିର ବ୍ୟବସ୍ଥା ॥
ଦଶ ବିଶୁଦ୍ଧ ଅର୍ଥେ ରହେ । ନବ ଲକ୍ଷଣେ ଯେବା ହୋଏ ॥
ବେଦ ବିଚାରେ ମହାଜନେ । ତତ୍ତ୍ୱ କହନ୍ତି ଅନୁମାନେ ॥
ପଞ୍ଚ ଇନ୍ଦ୍ରିୟ ପଞ୍ଚ ମତ । ମହତ ତୁଲେ ପଞ୍ଚଭୂତ ॥
ଏହାଙ୍କ ଜନ୍ମ ସର୍ଗ କହି । ବିସର୍ଗ ଶୁଣ ଚିତ୍ତ ଦେଇ ॥
ବ୍ରହ୍ମାର ଗୁଣ ବିପରୀତେ । ବିସର୍ଗ ପଞ୍ଚ ସମ ଚିତ୍ତେ ॥
ବିଷ୍ଣୁ ବିଜୟେ ସ୍ଥିତି କହି । ପୋଷଣ ଅନୁଗ୍ରହ ଯହିଁ ॥
ମନୁ ପୁରୁଷଙ୍କ ସ୍ୱଧର୍ମ । କର୍ମ ବାସନା ଉତି ନାମ ॥
ବିଷ୍ଣୁ ଅବତାର ଚରିତ । ତଦନୁ ବର୍ଣ୍ଣ ଯଥାକୃତ ॥
ଈଶ୍ୱର କଥା ଅନୁବାଦେ । ଉତ୍ତମ ପୁରୁଷଙ୍କ ମଧ୍ୟେ ॥
ସଂହରି ଆତ୍ମାର ଶକତି । ଜଳେ ଶୟନ ଜଳପତି ॥
ନିରୋଧ ବୋଲି ତାର ନାମ । ନିଜ ଶରୀର ପୂର୍ଣ୍ଣକାମ ॥
ମୁକ୍ତି ଲକ୍ଷଣ ବ୍ୟବସ୍ଥିତି । ଯହିଁ ନ ଘଟେ ପୂର୍ଣ୍ଣଗତି ॥
ପ୍ରକାଶ ନିରୋଧ ଏ ଦୁଇ । ଆଶ୍ରୟ ନାମ ସେ ବୋଲାଇ ॥
ସେ ପରମାତ୍ମା ନରହରି । ଅଶେଷ ଘଟେ ଅଛି ପୂରି ॥
ତାର ସକାଶୁ ଜୀବ ଏକ । ତେଣୁ ବୋଲାଇ ଆଧାତ୍ମିକ ॥
ସେ ଅଧିଦେବତା ବୋଲାଇ । ଅଧିଭୂତଙ୍କ ଆତ୍ମା ସେହି ॥
ଏ ଭାବେ ଏକ ଏକତର । ଯହିଁ ନ ଲକ୍ଷି ପରାପର ॥
ସର୍ବ ଆଶ୍ରୟ ତାର ନାମ । ପୁରୁହୂତ ପୁରୁଷ ନାମ ॥
ସେ ଯେତେ କାଳେ ଅଣ୍ଡ ଭେଦି । ବାହାର ହୋଇ ଗୁଣନିଧି ॥
ଆତ୍ମାର ସ୍ଥାନ ଇଚ୍ଛା କରି । ସ୍ୱଭାବେ ଜଳ ରୂପ ଧରି ॥
ସେ ଜଳ ମଧ୍ୟେ ମାୟାଧର । ବଞ୍ଚିଲା ସହସ୍ର ବତ୍ସର ॥
ଦୃଶ୍ୟ ଅଦୃଶ୍ୟର କାରଣ । ତେଣୁ ସେ ନାମ ନାରାୟଣ ॥
ଯେ ନବଦ୍ରବ୍ୟ କର୍ମକାଳ । ସ୍ୱଭାବେ ଜୀବ ଏକମେଳ ॥
ତା ଅନୁଗ୍ରହେ ଉପୁଜନ୍ତି । ନିରାନୁଗ୍ରହେ ଲୀନ ଯାନ୍ତି ।
ସେ ଯୋଗମାୟା ଜଳେ ଉଠି । ଆତ୍ମା କଳ୍ପଇ ନାନା ସୃଷ୍ଟି ॥
ସୁବର୍ଣ୍ଣମୟ ତା ଶରୀର । ଭ୍ରମଇ ତ୍ରିଧା ଅହଙ୍କାର ॥
ଅଧି ଦୈବତ ଆଧାତ୍ମିକ । ଅଧିଭୂତଙ୍କ ଅଧିରେକ ॥
ଗୁଣ ପୌରୁଷ ବୀର୍ଯ୍ୟବଳେ । ତ୍ରିବିଧ ବିଧି ବହେ ହେଳେ ॥
ଅନ୍ତେ ଶରୀର ଶୂନ୍ୟ ଭଜେ । ଆକାଶ ଗୁଣମୟ ସୃଜେ ॥
ସ୍ୱଭାବେ ଅଜଶୟ ବଳ । ତେଜ ସ୍ୱରୂପେ ଅନର୍ଗଳ ॥
ଏ ଚାରି ଭାବୁଁ ପ୍ରାଣ ଜାତ । ଦଶ ପ୍ରାଣଙ୍କ ମୂଳ ନାଥ ॥
ପ୍ରାଣ ବୀର୍ଯ୍ୟର ଅନୁପଥେ । ଅଶେଷ ଜନ୍ତୁ ଅନ୍ତର୍ଗତେ ॥
ରାଜାକୁ ଯେହ୍ନେ ଆଶ୍ରେକରି । ସେବକ ପଥ ଅନୁସରି ॥
ମୂଳ କମଳୁ ସେହିମତେ । ପ୍ରାଣୀଙ୍କ ବ୍ରହ୍ମରନ୍ଧ୍ର ପଥେ ॥
ପ୍ରାଣୀଙ୍କି ଆତଯାତ ଶ୍ରମେ । କ୍ଷୁଧା ଉପୁଜେ ତୃଷା ଭ୍ରମେ ॥
କ୍ଷୁଧା ତୃଷାର ମାର୍ଗ ମୁଖ । ଅଗ୍ରେ ସର୍ଜିଲା ଶିର ମୁଖ ॥
ମୁଖର ମୂଳେ ତାଳୁ ଜାତ । ସେ ଯୋଗେ ରସନା ସମ୍ଭୂତ ।
ତାର ସଂଯୋଗ ନାନାରସେ । ବସନ୍ତି ଆତ୍ମାର ବିଶ୍ୱାସେ ॥
ଶବଦ ଅର୍ଥେ ପୁଣିକରେ । ଅଗ୍ନି ରକ୍ଷଣେ ବାକ୍ୟ ଧରେ ॥
ଶରୀର କାଳ ଥାଇ ଜଳେ । ନାସା ବିମ୍ବରେ ବାୟୁବଳେ ॥
ଆଘ୍ରାଣ ଅର୍ଥେ ଉପୁଜିଲେ । ତକ୍ଷଣେ ଗନ୍ଧବାହ ତୁଲେ ॥
ଆତ୍ମାର ଦେଖି ଅନ୍ଧକାର । ବ୍ରହ୍ମା ସର୍ଜିଲା ଚକ୍ଷୁଦ୍ୱାର ॥
ଜ୍ୟୋତି ସର୍ଜିଲା ରକ୍ଷଗଣେ । ଦୃଷ୍ଟି ପ୍ରକାଶେ ଦୃଶ୍ୟ ପଣେ ॥
ଦେବ ପୁରୁଷଙ୍କ ବଚନେ । ବିଧାତା ବେଦ ଅନୁମାନେ ॥
ଶୁଣିମା ଅର୍ଥେ ନାନା ସ୍ୱନ । ନିର୍ମଳେ ପ୍ରକାଶିଲା କର୍ଣ୍ଣ ॥
ଦିଗ ଦେବତାଙ୍କ ରକ୍ଷଣେ । ପ୍ରକାଶେ ଏ ବାମ ଦକ୍ଷିଣେ ॥
ବସ୍ତୁ କୋମଳ ନିଷ୍ଠା ଗୁଣେ । ଯେମନ୍ତେ ପ୍ରାଣୀ ତତ୍କ୍ଷଣେ ॥
ଶୀତଳ ଉଷ୍ଣ ଯେହ୍ନେ ଜାଣି । ପବନ ଯୋଗେ ପରିମାଣି ॥
ସେ ଚର୍ମ ଇନ୍ଦ୍ରିଗଣେ ଭଜି । ଉପରେ ବହେ ରୋମରାଜି ॥
ଅଶେଷ କର୍ମ କରିବାରେ । ପ୍ରକାଶେ ହୃଦୟ ଉପରେ ॥
ବାମେ ଦକ୍ଷିଣେ ବେନିକର । ନାହିଁ ରକ୍ଷକ ସୁନାସୀର ॥
ଗମନ ଚିହ୍ନି ଗତି ପୁଣ । ବିଧାତା ସୃଜିଲା ଚରଣ ॥
ବାମ ଦକ୍ଷିଣ ସମସୀର । ଯହିଁ ରକ୍ଷକ ଦାମୋଦର ॥
ସଂସାରେ ହବ୍ୟ କବ୍ୟ ବିଧି । ଚରଣ ଯୁଗ ବଳେ ସାଧି ॥
ପ୍ରକାଶେ ଏ ବାମ ଦକ୍ଷିଣେ । ବସ୍ତୁ କମଳ ନିଷ୍ଠାଗୁଣେ ॥
ବେନି ଚରଣ ମୂଳଦେଶେ । ଆନନ୍ଦେ ଶିଶ୍ନୋ ପରକାଶେ ॥
ସନ୍ତାନ ଉତ୍ପତ୍ତି କାରଣେ । ପ୍ରଜାଙ୍କ ରକ୍ଷପତି ଗୁଣେ ॥
ଉଭୟ ଆନନ୍ଦର ଦ୍ୱାର । ଅନଙ୍ଗ ତୁଲେ ନିଶାକର ॥
ଅନ୍ନ ଭୋଜନ ପାନ ମଧ୍ୟେ । ନାଡି ସର୍ଜିଲା କୁକ୍ଷି ମଧ୍ୟେ ॥

ନଦୀର ପ୍ରାୟେ ବେନି ପାଶେ । ପ୍ରାନ୍ତେ ସମୁଦ୍ର ରହେ ଗ୍ରାସେ ॥
ଉଭୟ ନାଡି ନାମ ତୁଷ୍ଟି । ସମୁଦ୍ର ନାମ ବହେ ପୁଷ୍ଟି ॥
ଆତ୍ମା ମାୟାକୁ ଇଚ୍ଛାକରି । ସ୍ୱୟଂ ହୃଦୟ ରୂପଧରି ॥
କାମ ସଂକଳ୍ପ ଚନ୍ଦ୍ର ମନ । ହୃଦୟେ ଏହାଙ୍କର ସ୍ଥାନ ॥
ହୃଦୟ ଆବୋରିବା ଆଶେ । ଅସ୍ଥି ସର୍ଜିଲା ପୃଷ୍ଠ ଦେଶେ ॥
ଅସ୍ଥି ଭିତରେ ମଜ୍ଜା କଲା । ଉପରେ ମେଦ ଭିଆଇଲା ॥
ତାର ଉପରେ ମାଂସ ଧରି । ରୁଧିର ଆବରଣ କରି ॥
ତାର ଉପରେ ଚର୍ମ ରୋମ । ମଜ୍ଜାର ମଧ୍ୟେ ରହେ ସମ ॥
ଏମନ୍ତ କରି ସପ୍ତ ଧାତୁ । ପ୍ରାଣୀ ଜୀବନ ମୂଳ ହେତୁ ॥
ବାସ୍ତରି ସସ୍ର କଲା ନାଡ଼ି । ହୃଦ କମଳ ମଧ୍ୟେ ବେଢ଼ି ॥
ପ୍ରାଣ ରହଇ ତାଙ୍କ ମଧ୍ୟେ । ଅନ୍ତର ରସ ମୂଳ ଭେଦେ ॥
ତ୍ରିଗୁଣାତ୍ମକ ଇନ୍ଦ୍ରିଗଣ । ସର୍ବ ବିକାର ଆତ୍ମା ମନ ॥
ବୁଦ୍ଧି ବିଜ୍ଞାନ ସ୍ୱରୂପିଣୀ । ଯେଣୁ ସଂସାରେ ମାୟା ଜିଣି ॥
ଅବନୀ ଉଦକ ଅନଳ । ପବନ ଆକାଶ ମଣ୍ଡଳ ॥
ଏ ପଞ୍ଚଭୂତ କଳେବର । ବିଷ୍ଣୁର ଭୋଜନ ମନ୍ଦିର ॥
ଏମନ୍ତେ କହିଲି ମୁଁ ଯେତେ । ବିଷ୍ଣୁର ସ୍ଥୁଳ ରୂପ ତୋତେ ॥
ଏ ଜୀବ ବ୍ରହ୍ମାଣ୍ଡ ଧାରଣେ । ବେଷ୍ଟିତ ଅଷ୍ଟ ଆବରଣେ ॥
ପୃଥିବୀ ଆଦି ପଞ୍ଚଭୂତ । ମନ ଅହଂକାର ମହତ ॥
ଏ ଅଷ୍ଟଗୁଣେ ଆବରଣ । ଏମନ୍ତେ ବ୍ରହ୍ମାଣ୍ଡ ଘଟଣ ॥
ଏ ସ୍ଥୁଳ ରୂପ ଯେ ଏହାର । ଏହାର ପରେ ସୂକ୍ଷ୍ମତର ॥
ସେ ନିର୍ବିକାର ନିରଞ୍ଜନ । ଅନାଦି ମଧ୍ୟେ ସେ ନିଧନ ॥
ସେ ପୂର୍ଣ୍ଣ ବ୍ରହ୍ମ ନିରାକାର । ମନ ବଚନେ ଅଗୋଚର ॥
ଏ ସ୍ଥୁଳ ସୂକ୍ଷ୍ମ ରୂପ ଧରି । ସେ ଖେଳେ ଆତ୍ମାମାୟା କରି
ପଣ୍ଡିତେ ନ ମାନନ୍ତି ଏହା । ସୃଷ୍ଟି ସଂକଳ୍ପ ବିଷ୍ଣୁ ମାୟା ॥
ପଶୁ ବାଳକ ରୂପେ ହରି । ସେ ବ୍ରହ୍ମରୂପେ ଅବତରି ॥
ଏମନ୍ତେ ନାମ କ୍ରିୟା ଧାତୁ । ସ୍ୱକର୍ମ ଅକର୍ମଙ୍କ ହେତୁ ॥
ସର୍ବ ସଂକଳ୍ପ କ୍ରିୟା ଅର୍ଥେ । ଶୁଣ କହିବା ଆଉ ଯେତେ ॥
ଅଂଶକୁ ଭିନ୍ନ ଭିନ୍ନ କରି । ସେ ପ୍ରଜାପତି ରୂପଧରି ॥
ମନକୁ ସର୍ଜିଲା ସେ ହେଳେ । ଋଷି ଦେବତା ପିତୃମେଳେ ॥
ସିଦ୍ଧ ଚାରଣ ବିଦ୍ୟାଧର । ଗନ୍ଧର୍ବ ଅସୁର କିନ୍ନର ॥
ଗୁହ୍ୟକ ଅପସରା ଗଣ । ନାଗ କିଂପୁରୁଷ ପ୍ରମାଣ ॥
ଖଗ ଉରଗ ମାତୃଗଣ । ରକ୍ଷ ପିଶାଚ ପ୍ରେତଗଣ ॥
ଭୂତ କୁଷ୍ମାଣ୍ଡ ବିନାୟକ । ଉନ୍ମାଦ ବେତାଳ ଅନେକ ॥
ଗ୍ରହ ଡାକିନୀ ମୃଗ ଖର । ବୃକ୍ଷ ପର୍ବତ ବନଘୋର ॥

ଦ୍ୱିବିଧ ଚତୁର୍ବିଧ ଅନ୍ୟେ । ଜଳ ସ୍ଥଳ ଆଶ୍ରିତ ଜନେ ॥
ଗଗନ ଅନ୍ତରୀକ୍ଷ ଚର । କୁଶଳ ଅକୁଶଳ ପୁର ॥
ଏତେ ପ୍ରକାରେ ନାନା ଗତି । ଆତ୍ମାର ବଳେ ପ୍ରଜାପତି ॥
ଗୁଣ ପ୍ରଭେଦ ତିନିଲୋକ । ଦେବତା ମନୁଷ୍ୟ ନାରକ ॥
ସତ୍ୟ ପୁରୁଷ ରୂପେ ହୋଇ । ମନୁଷ୍ୟ ରଜଗୁଣ ବହି ॥
ତମ ଗୁଣରୁ ଅଧୋଗତି । ପାପିଷ୍ଟେ ଯହିଁ ବିଶ୍ରାମନ୍ତି ॥
ଏ ତିନି ଲୋକେ ତିନି ଗତି । ଭାବେ ସର୍ଜିଲା ପ୍ରଜାପତି ॥
ସେ ପୁଣି ଚିତ୍ର ପ୍ରାୟେ ହୋଇ । ସ୍ୱଭାବେ ଭିନ୍ନ ଭିନ୍ନ ଦେହୀ ॥
ଏକ ଆରେକ ନ ଗଣିଲେ । ନିଶ୍ଚୟ ରହି ଅବହେଳେ ॥
ତା ଦେଖି ପ୍ରଭୁ ନରହରି । ତକ୍ଷଣେ ଧର୍ମରୂପ ଧରି ॥
ବିଶ୍ୱକୁ ପାଳିବାର ଅର୍ଥେ । ଦେବ ମନୁଷ୍ୟ ପଶୁ ଯେତେ ॥
ଏ ତିନିଭାବ ଭଗବାନ । ରକ୍ଷା ପୋଷଣେ କରି ସ୍ଥାନ ॥
ସୁଖ ସମ୍ଭୋଗେ ଦୃଷ୍ଟି ହରେ । ସେ ବିଧି ସଂସାର ବେଭାରେ
ସୃଷ୍ଟିର ଭୋଗ ଅନ୍ତେ ହରି । କାଳାଗ୍ନି ରୁଦ୍ରରୂପ ଧରି ॥
ଆତ୍ମାର କ୍ରୀଡ଼ା ନାଶ କରେ । ବାଳକ ଯେସନେ ବିହରେ ॥
ସର୍ବ ହରଇ ଅବସାନେ । ଜୀମୂତେ ଯେସନେ ଗଗନେ ॥
ଏ ଭାବେ ହରିଗୁଣ ଯେତେ । ଦେବେ ଚିନ୍ତିବେ କାହିଁ ଚିତ୍ତେ
ସୃଷ୍ଟିର ଆଦ୍ୟ ଜନ୍ମ କାଳେ । ଯେ କର୍ମସାଧେ ଯୋଗବଳେ
ସ୍ୱଭାବେ କର୍ମ ଯାର ନାହିଁ । ବିଷ୍ଣୁର ମାୟା ପ୍ରକାଶଇ ॥
ଯେ ବ୍ରହ୍ମ କଳ୍ପିତ ସଂସାର । ବିକଳ୍ପ ନାମଟି ଏହାର ॥
ଏ ନିତ୍ୟ ସାଧାରଣ ବିଧି । ଯେ ପୂର୍ବ କାଳହୁଁ ପ୍ରସିଦ୍ଧି ॥
ଏ କଳ୍ପ ଲକ୍ଷଣର ନାମ । ଯେବା କାରଣ ପରିମାଣ ॥
ଭାବେ କହିବି କଳ୍ପ ଗୁଣ । ରାଜନ ସାବଧାନେ ଶୁଣ ॥

## ଶୌନକ ଉବାଚ

ହେ ସୂତ କହ ବିଷ୍ଣୁ କଥା । ଯେଣେ ଛାଡ଼ିବ ଭବ ବ୍ୟଥା ॥
ପଦ୍ମ କଳ୍ପର କଥା କହ । ଯେଣେ ନ ଲାଗେ ଭବମୋହ
ଦୁର୍ଯ୍ୟୋଧନର ଦୁଷ୍ଟବାଣୀ । ବିଦୁର ସଭା ମଧ୍ୟେ ଶୁଣି ॥
କୁଟୁମ୍ବ ଆଶା ଦୂରକରି । ବନେ ପଶିଲା ଦେହ ଧରି ॥
ପୃଥିବୀ କଲା ପର୍ଯ୍ୟଟନ । ବୁଲି ପର୍ବତ ଘୋରବନ ॥
କୈବଲ୍ୟ ଭାବେ ଇଚ୍ଛାକଲା । ଅନେକ ତୀର୍ଥେ ସେ ଭ୍ରମିଲା
ମୈତ୍ରେୟ ମୁନି ସଙ୍ଗେ ତାର । କାହିଁ ହୋଇଲା ଏକ ସ୍ୱର ॥
ବ୍ରହ୍ମା ସମ୍ବାଦ ବେନିଜନେ । କରି ବସିଲେ କେଉଁସ୍ଥାନେ ॥
ବିଦୁର ପଚାରିଲା ଯେତେ । ମୈତ୍ରେୟ ବୋଧିଲେ ଯେମନ୍ତେ
ଶୁଣିଣ ବନ୍ଧୁ ତ୍ୟାଗ ଶୋକେ । ମିଳିଲା ହସ୍ତିନା କଟକେ ॥

| | | |
|---|---|---|
| ପରୀକ୍ଷିତ ବଚନ ଶୁଣି | । ଯାହା କହିଲେ ଶୁକମୁନି | ॥ |
| ସେ ପ୍ରଶ୍ନ ଅନୁରାଗ ଯେତେ | । ଶୁଣ କହିବା ଭାଗବତେ | ॥ |
| ଶୁକ ଶୌନକଙ୍କ ସମ୍ବାଦ | । ଶୁଣନ୍ତେ ନ ଲାଗେ ପ୍ରମାଦ | ॥ |
| ଦ୍ୱିତୀୟ ସ୍କନ୍ଧେ ଭାଗବତ | । ଅମୃତ ରସମୟ ଗୀତ | ॥ |
| ସୁଜନ ଜନଙ୍କର ହିତେ | । କହିଲା ଦାସ ଜଗନ୍ନାଥେ | ॥ |

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଦ୍ୱିତୀୟ ସ୍କନ୍ଧେ ଦଶଲକ୍ଷଣ*
*କଥନେ ନାମ ଦଶମୋଽଧ୍ୟାୟଃ ।*

*ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।*
*ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷ ନ ବିଦ୍ୟତେ ॥*

ଧର୍ମଃ ପ୍ରୋଜ୍ଝିତ କୈତବୋଽତ୍ର ପରମୋନିର୍ମତ୍ସରାଣାଂ ସତାଂ
ବେଦ୍ୟଂ ବସ୍ତବମତ୍ର ବସ୍ତୁ ଶିବଦଂ ତାପତ୍ରୟୋନ୍ମୂଳନମ୍ ।
ଶ୍ରୀମଦ୍ଭାଗବତେ ମହାମୁନିକୃତେ କିଂ ବା ପରୈରୀଶ୍ୱରୈଃ
ସଦ୍ୟୋ ହୃଦ୍ୟବରୁଧ୍ୟତେଽତ୍ର କୃତିଭିଃ ଶୁଶ୍ରୂଷୁ ଭିସ୍ତତ୍କ୍ଷଣାତ୍

ଭାଃ ୧/୧/୨

ନାରାୟଣ ମୁଖେ ଭାଗବତ ଉପାଦାନ ।
ସ୍ଥାପିଲା ବ୍ରହ୍ମାର ମୁଖେ ପ୍ରଭୁ ଭଗବାନ ॥
କହିଲା ପରମଧର୍ମ୍ମ ଶ୍ରୀମଦ୍ଭାଗବତ ।
ମୁକ୍ତି ପର୍ଯ୍ୟନ୍ତ କାପଟ୍ୟ ଯହିଁ ସେ ନାହିଁତ ॥

-ଶ୍ରୀକୃଷ୍ଣ ପ୍ରେମ ତରଙ୍ଗିଣୀ-

# ତୃତୀୟସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ।
ନିଗମ କଳ୍ପତରୋର୍ଗଳିତ ଫଳଂ ଶୁକମୁଖାଦମୃତଦ୍ରବସଂଯୁତଂ
ପିବତ ଭାଗବତଂ ରସମାଳୟଂ ମୁହୁରହୋ ରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

### ଶୌନକ ଉବାଚ

ଶୌନକ ଆଦି ମୁନିଜନେ । ଆନନ୍ଦେ ସୂତ ସନ୍ନିଧାନେ ॥
ବିଦୁର କଥା ମନେ ଚିନ୍ତି । ବିଶ୍ୱାସ ଭାବେ ପଚ୍ଚାରନ୍ତି ॥
ହେ ସୂତ ତୁମ୍ଭର ବଚନ । ଶୁଣି ସନ୍ତୋଷ ଆମ୍ଭ ମନ ॥
ମହାତ୍ମା ବିଦୁରର ବାଣୀ । ଆମ୍ଭେ ଯେ ତୁମ୍ଭ ମୁଖୁ ଶୁଣି ॥
ଛାଡ଼ିବୁ ଭବବନ୍ଧ ବ୍ୟଥା । ବିସ୍ତାରି କହ ତାର କଥା ॥
ସର୍ବ ସମ୍ପଦ ଛାଡ଼ି ବନେ । କିମ୍ପା ପଶିଲା ଦୁଃଖ ମନେ ॥
ଅନେକ ତୀର୍ଥେ ଦେଇ ମନ । ଧରଣୀ କଲା ପର୍ଯ୍ୟଟନ ॥
ମୈତ୍ରେୟ ମୁନିଙ୍କ ସଙ୍ଗର । ଏକାନ୍ତେ ଅଧ୍ୟାତ୍ମ ବିଚ୍ଚାର ॥
କାହିଁ ବା ନଦୀତୀରେ ବନ । ସାନନ୍ଦେ ବସି ସର୍ବଜନ ॥
ସନ୍ତୋଷେ ବିଦୁରର ଆଗେ । ମୈତ୍ରେୟ ମୁନି ଅନୁସଙ୍ଗେ ॥
କହିଲେ ବଦରିକା ଶ୍ରମେ । ମୈତ୍ରେୟ ମୁନି ଅନୁମାନେ ॥
କହିଲେ ତତ୍ତ୍ୱସାରବାଣୀ । ଯେଣୁ ସଂସାରୁ ତରେ ପ୍ରାଣୀ ॥
ସେ କଥା କହ ମୁନିବର । ବିଦୁର ବିଚେଷ୍ଟିତ ସାର ॥
ସେ ପୁଣି ବନ୍ଧୁ ତ୍ୟାଗ ଅର୍ଥେ । ପୁଣି ମିଳିଲେ ଇନ୍ଦ୍ରପ୍ରସ୍ଥେ ॥
ଏମନ୍ତେ ମୁନିଙ୍କର ବାଣୀ । ସୂତ ସନ୍ତୋଷ ମନେ ଶୁଣି ॥
କହନ୍ତି ସନକର ଆଗେ । କୃଷ୍ଣର ଭାବ ଅନୁରାଗେ ॥
ଶୁଣ ହେ ମୁନିଗଣ ତୋଷେ । ଏ କଥା ଶୁକ ମୁନିପାଶେ ॥
ଆନନ୍ଦେ ଅଭିମନ୍ୟୁସୁତ । ପୁଚ୍ଛିଲା ମୁନିଙ୍କ ଅଗ୍ରତ ॥
ସେ ଶୁକ କହିଲେ ଯେମନ୍ତେ । ସେ କଥା ଶୁଣ ଏକଚିତ୍ତେ ॥

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଭାବ ଭରି । ଶୁଣ ପରୀକ୍ଷ ଦଣ୍ଡଧାରୀ ॥
ସେ ଧୃତରାଷ୍ଟ୍ର ଯେତେବେଳେ । ନିଷ୍ଠୁର ହୀନବୁଦ୍ଧି ହେଲେ ॥
ଅଧର୍ମେ ଧନ ସେ ସଞ୍ଚଇ । ନିଜ ପୁତ୍ରକୁ ରାଜ୍ୟ ଦେଇ ॥
ପଣ୍ଡୁ ସୁତଙ୍କୁ ଦେଖି ଭିନ୍ନେ । ନିନ୍ଦଇ ନିଷ୍ଠୁର ବଚନେ ॥
ବାଳକେ ପିତୃହୀନ ହୋଇ । ମାତାର କୋଳେ ଦୁଃଖ ସହି ॥
ହସ୍ତିନାପୁରେ ତାଙ୍କ ଘରେ । ବଞ୍ଚନ୍ତି ଅତି ଅବେଭାରେ ॥
ତାହାଙ୍କ ମରଣ ଇଚ୍ଛଇ । ଭୀମକୁ ବିଷଲଡୁ ଦେଇ ॥
ଜତୁର ଘରେ ଅଗ୍ନି ଦେଲା । ସେ ବେଳେ ଗୋବିନ୍ଦ ରଖିଲା ॥
ପୁଣି ସଭାର ତଳେ ଆଣି । ପଞ୍ଚୁ ପାଣ୍ଡବଙ୍କ ଘରଣୀ ॥
କେଶ ଆକର୍ଷି ବାହୁବଳେ । ବିବସ୍ତ୍ର କଲେ ସଭାତଳେ ॥
କୁଚ କୁଙ୍କୁମ ଲୁହ ଭରେ । ଅଧୋବଦନ ଅନୁସାରେ ॥
ବଧୂର ଦୁଃଖ ସେ ଶୁଣିଲା । ପୁତ୍ରକୁ ବାରି ନ ପାରିଲା ॥
ମାୟା କପଟେ ସଭା କରି । ଦ୍ୟୁତ ଖେଳାଇ ଧନ ହରି ॥
ବଳେ ହରିଲେ ତାଙ୍କ ଦେଶ । କାନନେ ଦ୍ୱାଦଶ ବରଷ ॥
ଅଜ୍ଞାତେ ଅଧିକ ବରଷେ । ବିରାଟ ଦେଶେ ମତ୍ସ୍ୟଦେଶେ ॥
ତହିଁ ବଞ୍ଚିଲେ ଦୁଃଖ ସୁଖେ । ବନେ କଷଣ ଅତିରେକେ ॥
ପୁଣି ମିଳିଲେ ରାଜ୍ୟେ ଆସି । ବିଶ୍ୱାସେ ରଜା ପାଶେ ବସି ॥
ଜୀବନ ଅର୍ଥେ କିଛି ଧନ । ମାଗିଲେ ନ ଦେଲା ରାଜନ ॥
ପୁଣି କୃଷ୍ଣଙ୍କୁ କରି ଦୂତ । ଗ୍ରାମ ମାଗିଲେ ପଞ୍ଚଭ୍ରାଥ ॥
କୃଷ୍ଣର ବୋଲ ସେ ନ କଲା । ସୂଚି ଅଗ୍ରତେ ହେ ନ ଦେଲା ॥
କୃଷ୍ଣଙ୍କୁ କଲା ଅପମାନ । ଲୋଭେ ହୋଇଲା ହତଜ୍ଞାନ ॥
ବିଦୁରେ ଆଣି ଏକ ଶରେ । ବିଚାର କଲା ଅନ୍ତଃପୁରେ ॥
ପାଣ୍ଡବେ ମାରି ନାନବ୍ୟାଜେ । ରାଜା ହୋଇବି ସର୍ବରାଜ୍ୟେ ॥
ଶୁଣି ବିଦୁର କରଯୋଡ଼ି । ବୋଲଇ ରାଜା ପାଦେ ପଡ଼ି ॥
ତୁ ତାଙ୍କୁ ଅର୍ଦ୍ଧରାଜ୍ୟ ଦେଇ । ପୁତ୍ରଙ୍କ ତୁଳେ ଭୁଞ୍ଜ ମହୀ ॥
ନୋହିଲେ ସୁଖ ନାହିଁ ତୋର । ସେ ବିଷ୍ଣୁ ତେଜେ ବଳୀୟାର ॥
ସେ ହରି ତାଙ୍କୁ ସଙ୍ଗେ ଘେନି । ଉଶ୍ୱାସ କରିବେ ମେଦିନୀ ॥
ସେ ହରି ଥାଇ ସର୍ବ ପୁରେ । ପାଣ୍ଡବ ବଂଶ ପକ୍ଷ ଧରେ ॥
ସେ କୃଷ୍ଣ ଆସି ତୋର ଘରେ । ମିଳିଲା ବାନ୍ଧବ ବେଭାରେ ॥
ତାଙ୍କୁ ଇତର ପ୍ରାୟେ ମଣି । ଜ୍ଞାନ ହାରିଲା ନୃପମଣି ॥
ତାଙ୍କର ମହିମା ନ ଜାଣୁ । ମନୁଷ୍ୟ ପ୍ରାୟେ ପରିମାଣୁ ॥
ଏମନ୍ତ ବିଦୁରର ବାଣୀ । ସଭ୍ରମେ ଦୁର୍ଯ୍ୟୋଧନ ଶୁଣି ॥
ସଙ୍ଗେ ଅଛନ୍ତି ତିନିଜଣ । କର୍ଣ୍ଣ ଶକୁନି ଦୁଃଶାସନ ॥
ବୋଲଇ କୁପିତ ଅଧରେ । ଆକର୍ଷି ଦୁଃଶାସନ କରେ ॥
ଏ ଦାସୀ ପୁତ୍ର ମୋର ଘରେ । ବସଇ ବାନ୍ଧବ ବେଭାରେ ॥

ଏ ମୋର ନିତ୍ୟେ ଅନ୍ନ ଖାଇ । ପଞ୍ଚୁ ପୁତ୍ରଙ୍କ ହିତେ ଥାଇ ॥
କୃଷ୍ଣଙ୍କୁ ଘେନି ଭାଳେ ନିତ୍ୟେ । ମୋର ବିନାଶ ଚିତ୍ତେ ଚିନ୍ତେ ॥
ଏମନ୍ତ ବୋଲି ବିଚାରିଲା । କୋପେ ଅନେକ ଗାଳିଦେଲା ॥
ଦଶନେ କାମୋଡ଼ି ଅଧର । ବୋଲେ ଭଣ୍ଡାରୁ ଦୂରକର ।
ଏହାକୁ ଦଣ୍ଡେ ହେଁ ନ ଥୁଅ । ରାଜ୍ୟୁ ବାହାର କରିଦିଅ ॥
ଏମନ୍ତେ ତାର ବାକ୍ୟ ଶୁଣି । ବଜ୍ର ପଡ଼ିଲା ପ୍ରାୟେ ମଣି ॥
ମରିମ ଉତ୍ପାତ ବଚନ । ଶୁଣି ହୋଇଲା ହତଜ୍ଞାନ ॥
ଜ୍ୟେଷ୍ଠ ଭ୍ରାତାର ତୁଲେ ଥିଲା । ରାଜା ହିଁ ଆଶ୍ୱାସ ନ କଲା ॥
ତକ୍ଷଣେ ଉଠି ସେ ବିଦୁର । ଚିତ୍ତେ ଚିନ୍ତଇ ଚକ୍ରଧର ॥
ବିଷ୍ଣୁର ମାୟା ବିଚାରିଲା । ତକ୍ଷଣେ ବନସ୍ତେ ପଶିଲା ॥
ସମ୍ପଦ ତୁଚ୍ଛ ପ୍ରାୟ ମଣି । ମନେ ଚିନ୍ତଇ ଚକ୍ରପାଣି ॥
ହସ୍ତିନା ନଗରୁ ବାହାର । ତୀର୍ଥ ଭ୍ରମଣେ ସେ ବିଦୁର ॥
ମିଳିଲା ଯାଇ ଘୋରବନେ । ଭ୍ରମଇ ଋଷି ବିପ୍ରସ୍ଥାନେ ॥
ମନେ ଚିନ୍ତଇ ତୀର୍ଥ ଗତି । ହରି ଭଗତେ ଯହିଁ ଥିତି ॥
ନିରାଶ କରି ଆତ୍ମମନ । ଗ୍ରାମ ପାଟଣା ଉପବନ ॥
ସୁବର୍ଣ୍ଣ ଗିରି କୁଞ୍ଜଦେଶେ । ଭ୍ରମଇ ତୀର୍ଥ ଫଳ ଆଶେ ॥
ପୁଣ୍ୟ ସରିତ ପୁଣ୍ୟ ସର । ନିରତେ ଭ୍ରମଇ ବିଦୁର ॥
ଅନେକ ସିଦ୍ଧ ଲିଙ୍ଗ ଯହିଁ । ଶୁଦ୍ଧ ପବିତ୍ର ପୁଣ୍ୟମୟୀ ॥
ଏମନ୍ତେ ଅରକ୍ଷିତ ବେଶ । ଅଧର୍ମ ନାହିଁ ପୁଣ୍ୟଦେଶ ॥
ହରି ତୋଷଣେ ଯେତେ ବ୍ରତ । ତପେ ତୋଷଇ ଅବିରତ ॥
ଏମନ୍ତେ ଭାରତ ବରଷେ । କାଳେ ମିଳିଲା ସେ ପ୍ରଭାସେ ॥
ତହିଁ ଶୁଣିଲା ସାଧୁବାଣୀ । ଅଶେଷ କୁରୁବଳ ଜିଣି ॥
କୃଷ୍ଣ ସାରଥି ପଣେ ଆଣି । ଅନେକ ଅକ୍ଷୌହିଣୀ ଜିଣି ॥
ଗୋବିନ୍ଦ ଘେନି ତୀର୍ଥଜଳେ । ମଙ୍ଗଳ ଶୁଭ ଅନୁକୂଳେ ॥
କରାଇ ଅଭିଷେକ ପୂଜା । କଲେ ଏକାନ୍ତ ଚକ୍ରେ ରାଜା ॥
ସର୍ବେ ନାଶିଲେ କୁରୁବଳେ । ଯେସନେ ବେଣୁ ଦାବାନଳେ ॥
ଦଗ୍ଧ ବନ୍ଧୁଙ୍କୁ ଶୋକ କରି । ସୁଜନ ବନ୍ଧୁଙ୍କୁ ସୁମରି ॥
ମଉନ ହୋଇ ଅଶ୍ରୁ କଣ୍ଠେ । ମିଳିଲା ସରସ୍ୱତୀ ତଟେ ॥
ଯାହାର ତୀରେ ଏକାଦଶେ । ତୀର୍ଥେ ବସନ୍ତି ପୁଣ୍ୟଦେଶେ ॥
ତ୍ରିତ ଉଶନା ମନୁନାମ । ପୃଥୁ ଅନଳ ଯେ ପବନ ॥
ସୁଦାସ ଗାବଗୃହ ଯମ । ଅସିତ ଏକାଦଶ ନାମ ॥
କ୍ଷେତ୍ରେ ମନ୍ଦିର ବିଷ୍ଣୁ ଅର୍ଥେ । ତୀରେ ସଞ୍ଚିଲେ ଯେଝାମତେ ॥
ଏ ଆଦି ବ୍ରହ୍ମ କ୍ଷତ୍ରୀ ଯେତେ । ତୀର୍ଥେ ସଞ୍ଚିତ ଦୃଢ଼ଚିତ୍ତେ ॥
ପ୍ରାଚୀ ମୁଖରେ ଯେଝା ଘର । ଦିଶନ୍ତି ଅତି ମନୋହର ॥
ଯେ ପୁର ଦରଶନ ମାତ୍ରେ । ବିଷ୍ଣୁ ସ୍ମରଣ ପଶେ ଗାତ୍ରେ ॥

ଏମନ୍ତେ ସରସ୍ୱତୀ ତୀର୍ଥ । ଦେଖି ବିଦୁର କୃତ କୃତ୍ୟ ॥
ତହୁଁ ଚଳିଲା ତୋଷମନେ । ସୌରାଷ୍ଟ୍ର ସୌବୀର ଭୁବନେ ॥
କୁରୁଜାଙ୍ଗଳ ମସ୍ତଦେଶ । ଜିଣି ଯମୁନାରେ ପ୍ରବେଶ ॥
କାଳିନ୍ଦୀ ତଟେ ବୃନ୍ଦାବନ । ଯହିଁ ବିଜୟ ଗୋବର୍ଦ୍ଧନ ॥
ସେ ବନେ ବୁଲି ଏକେ ଏକେ । ନିକଟେ ଉଦ୍ଧବକୁ ଦେଖେ ॥
ହରି ଭଗତପୁରଃ ସର । ତପ ଆରାଧି ମହାଘୋର ॥
ଆସନ ନିଷ୍ଠଳେ ସମାଧି । କୃଷ୍ଣର ଚରଣେ ଆରାଧି ॥
ଏକାନ୍ତେ ଅଛି ବୃକ୍ଷମୂଳେ । ବିଦୁର ଦେଖି ବେନିଡ଼ୋଳେ ॥
ସେ ବାସୁଦେବ ଅନୁଚର । କି ଅବା ଦେବା ପଟାନ୍ତର ॥
ଦେବଗୁରୁଙ୍କ ପୁତ୍ର ପ୍ରାୟେ । ସ୍ୱଭାବେ ଶାନ୍ତ ବୁଦ୍ଧି ବହେ ॥
ଏମନ୍ତେ ମିଳି ବେନି ଜନ । ନିବିଡ଼େ କଲେ ଆଲିଙ୍ଗନ ॥
ବିଦୁର ଉଦ୍ଧବକୁ ଚାହିଁ । ବନ୍ଧୁ ବାନ୍ଧବେ ସ୍ନେହ ବହି ॥
ଲୋମ ହରଷେ ଶୁଦ୍ଧଚେତା । ପୁଚ୍ଛନ୍ତି ଗୋବିନ୍ଦ ବାରତା ॥
କୃଷ୍ଣ ପୁତ୍ରକୁ ଆଦିକରି । ଏକୁ ଅନେକ ନାମ ଧରି ॥
ଶୁଣ ଉଦ୍ଧବ ମୋ ବଚନ । ମୁଁ ଯେ ପୁଚ୍ଛଇ ବିଦ୍ୱଜନ ॥
ସେ ହରି ପୁରୁଷ ପୁରାଣ । ଅନାଦି ପରମ କାରଣ ॥
ଧରଣୀ ଭାରା ନାଶ ଅର୍ଥେ । ମନୁଷ୍ୟ ଦେହ ଏ ଜଗତେ ॥
ରାମ ଗୋବିନ୍ଦ ରୂପଧରି । ଯାଦବ ବଂଶେ ଅବତରି ॥
ଅଛନ୍ତି ବସୁଦେବ ଘରେ । ଆନନ୍ଦେ ବେନି ସହୋଦରେ ॥
ଆତ୍ମବଂଶର ଅଧିଦେବ । ଦେବକୀ ତୁଲେ ବସୁଦେବ ॥
ସୁଖେ କି ଅଛି ନିଜଘରେ । ବନ୍ଧୁ ସୁହୃଦ ଭାବଭରେ ॥
ପ୍ରଦ୍ୟୁମ୍ନ ଅଛଇ ନା ଭଲେ । ଆନନ୍ଦେ ଜନନୀର ତୁଲେ ।
ରୁକ୍ମିଣୀ ପୂର୍ବ ତପଫଳେ । ପୁତ୍ର ପ୍ରଦ୍ୟୁମ୍ନ କଲା କୋଳେ ॥
ଭୋଜାଦି ସାତବଂଶେ ରାଜା । ଗୋବିନ୍ଦ ତାଙ୍କୁ କଲେ ପୂଜା ॥
ଛାଡ଼ି ଆପଣା ନୃପାସନ । ରାଜ୍ୟେ ସ୍ଥାପିଲେ ଉଗ୍ରସେନ ॥
ଭଲେ କି ଜାମ୍ବବତୀ ସୁତ । ଯେ ରଥେ ରଥୀ ମହାରଥ ॥
କ୍ଷେମେ କି ଛନ୍ତି ଯୁଯୁଧାନ । ଯାହାକୁ ସନ୍ତୋଷ ଅର୍ଜୁନ ॥
ହରଷେ ଧନୁର୍ବିଦ୍ୟା ଦେଲା । ଯେଣୁ କୃଷ୍ଣଙ୍କୁ ଆରାଧିଲା ॥
ସଫଳା ସୁତ ଯଶସ୍କର । ଶୁଭେ କି ଅଛଇ ଅକ୍ରୂର ॥
କଂସ ଆଦେଶେ ଗୋପପୁରେ । ଲଭିଲା କୃଷ୍ଣ ରେଣୁ ଶିରେ ॥
ଅଶେଷ ମନୋରଥ ବୋଧ । ଭଲେ କି ଅଛି ଅନିରୁଦ୍ଧ ॥
ଯାର ମହିମା ଶବ୍ଦଯୋନି । ତୁରୀୟ ତତ୍ତ୍ୱ ସଙ୍ଗେ ଘେନି ॥
ସତ୍ୟଭାମାର ପୁତ୍ର ଯେତେ । ଭଲେ କି ଅଛନ୍ତି ସମସ୍ତେ ॥
ଗଦର କହ ଭଲ କଥା । ଯେ ଅନ୍ୟେ ଯାଦବ ବାରତା ॥
ଏକାନ୍ତେ କୃଷ୍ଣର ପୟରେ । ସେବନ୍ତି ସବୁ ପରକାରେ ॥

ଧର୍ମେ କି ଅଛି ଯୁଧିଷ୍ଠିର । ଯେ ଧର୍ମେ ରଖିଲା ସଂସାର ॥
ଯାହାର ବାହୁ ପ୍ରାୟ ହୋଇ । କୃଷ୍ଣ ଅର୍ଜୁନ ବେନି ଥାଇ ॥
ଭୀମର କହ ଭଲକଥା । ଯେ ଭୀମ ଅତି ବଳବନ୍ତା ॥
ଯାର ଚରଣଘାତ କୋପେ । ପଶେ ଶରଣ ଭୂମିତାପେ ॥
ଅର୍ଜୁନ ଅଛିଟି କି ଭଲେ । ନିରତେ ଗୋବିନ୍ଦର ତୁଲେ ॥
ଗାଣ୍ଡୀବ ଧନୁ ଗୁଣେ ଧରି । ରଣେ ତୋଷିଲା ଶୂଳଧାରୀ ॥
ନକୁଳ ସହଦେବ ବେନି । କୁଶଳ କହ ପରିମାଣି ॥
ଅଶ୍ୱିନୀ ନାସିକା ବିମ୍ୱରେ । ଜନ୍ମ ହୋଇଲା ଏକ ଶିରେ ॥
କେ କହେ ତାଙ୍କ ଗୁଣଗ୍ରାମ । ଦେବଙ୍କ ବ୍ୟାଧି ହରେ ନାମ ॥
ତାହାଙ୍କ ବୀର୍ଯେ ଜାତ ହୋଇ । ସୁନ୍ଦର ରୂପେ ମନ ମୋହି ॥
ପାଣ୍ଡବ ଚକ୍ଷୁ ସେ ବୋଲାନ୍ତି । କହ କୁଶଳେ କି ଅଛନ୍ତି ॥
ଦେଖ ଏ କୁନ୍ତୀ ଗର୍ଭ ପାର୍ଥେ । ସ୍ୱାମୀଙ୍କୁ ଚିନ୍ତେ ଅବିରତେ ॥
ସେ ସ୍ୱାମୀ ବିନୁ ସୁତଲୋଭେ । ଯା ନାମ ଚଉଦିଗେ ଭାବେ ॥
ତାହାକୁ ଛାଡ଼ି ଭୋଗବିନେ । ରହିଲା ପୁତ୍ର ସ୍ନେହ ମନେ ॥
ଯେ କୃଷ୍ଣ ପରମ ମଙ୍ଗଳ । ଆନନ୍ଦମାନଙ୍କର ମୂଳ ॥
ସେ ହରି ମନୁଷ୍ୟ ଶରୀରେ । ସ୍ୱୟଂ ଯେ ସଂସାରେ ବିହରେ ॥
ତାର ଚରଣେ ସେବା କରି । ମୁଁ ଏବେ କାନନେ ବିହରି ॥
ଦେଖ ଉଦ୍ଧବ ତା ମହିମା । କେ କହିପାରେ ଗୁଣସୀମା ॥
ଏ ଯେତେ ଥିଲେ ମହୀତଳେ । ଅନେକ ଅକ୍ଷୌହିଣୀମେଳେ ॥
ତାହାକୁ ମାୟାରେ ସଂହାରି । ହେଲେ ତ୍ରିଭୁବନ ଉଦ୍ଧାରି ॥
ସେ ହରି ଶୁଭକଥା ମୋତେ । କହ ଉଦ୍ଧବ ଶୁଦ୍ଧଚିତ୍ତେ ॥
ଏମନ୍ତେ ବିଦୁରର ବାଣୀ । ଉଦ୍ଧବ ମନେ ପରିମାଣି ॥
ଚିତ୍ତେ ଚିନ୍ତିଲା ନାରାୟଣ । ସୁଜନେ ଏକମନେ ଶୁଣେ ॥
ହରି ଚରିତ ସୁଧାରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ଉଦ୍ଧବ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏମନ୍ତେ ବିଦୁର ବଚନ । ଶୁଣି ଉଦ୍ଧବ ତତ୍ତ୍ୱଜ୍ଞାନ ॥
କୃଷ୍ଣ ଚରଣେ ଚିତ୍ତ ଦେଇ । ଉତ୍କଣ୍ଠେ ନ ପାରଇ କହି ॥
ପାଞ୍ଚ ବରଷେ ଯା'ର ମାତା । ପ୍ରାତେ ଯେ ଜନେ କରେ ଚିନ୍ତା ॥
କୃଷ୍ଣ ସେବାରେ ଦେଇ ମନ । ଉଦ୍ଧବ ନ କରେ ଭୋଜନ ॥
କୃଷ୍ଣ ସେବାରେ ଦିନ ଗଲା । ସ୍ୱଭାବେ ବୟସ ସରିଲା ॥
ସଙ୍ଗତେ ପାଇ ନରହରି । ଦେଖନ୍ତି ଅନାଦର କରି ॥
ବିଷ୍ଣୁର ମାୟା ବଳ ଗ୍ରନ୍ଥି । ମନୁଷ୍ୟ ପ୍ରାୟେ ସେ ମଣନ୍ତି ॥
ଯାର ମାୟାରେ ଯୋଗୀଜନେ । ଆତ୍ମାକୁ ଦେଖୁଥାଇ ଭିନ୍ନେ ॥
ପ୍ରାଣୀଙ୍କ ତପବଳେ ଚାହିଁ । ନୟନେ ଶରୀର ଦେଖଇ ॥
ପୁଣି ହରିଲେ ଚକ୍ଷୁସଙ୍ଗେ । ପ୍ରାଣୀଙ୍କ ଚକ୍ଷୁ ନିଜ ଅଙ୍ଗେ ॥
ମାୟା ମନୁଷ୍ୟ ରୂପେହରି । ଅନନ୍ତ ଲୀଳାଏ ବିହରି ॥
ସର୍ବ ସମ୍ପଦ ଅଙ୍ଗ ତୁଲେ । ନିଜ ଭୁବନେ ବିଜେ କଲେ ॥
ବିଦୁର ବାଣୀ ଶୁଣି କର୍ଣ୍ଣେ । ବଚନ ନ ସ୍ଫୁରେ ବଦନେ ॥
କୃଷ୍ଣ ଚରଣ ଚିନ୍ତି ମନେ । ମୁହୂର୍ତ୍ତେ ରହିଲା ମଉନେ ॥
ତକ୍ଷଣେ ଦେହ ଭାବ ହୁଡ଼ି । କୃଷ୍ଣ ଭଗତି ଜଳେ ବୁଡ଼ି ॥
କୃଷ୍ଣ ଚରଣେ ଶୁଦ୍ଧ ମନ । କରି ପାଇଲା ପୁଣି ଜ୍ଞାନ ॥
ପୁଲକ କଲା ରୋମରାଜି । ଅଶ୍ରୁ ପୂରିଣ ଚକ୍ଷୁ ବୁଜି ॥
ଧ୍ୟାନେ ହୋଇଲା ପୂର୍ଣ୍ଣକାମ । ସ୍ନେହ ସ୍ୱଳୀଳେ କଲା ସ୍ନାନ ॥
ଧୀରେ ତନୁଯେ ବିଷ୍ଣୁ ପାଦେ । ପୁଣି ମିଳିଲା ଦେହ ମଧେ ॥
ବେନି ଲୋଚନ ଘଷି କରେ । ନିଃଶ୍ୱାସ ଛାଡ଼ି ଉଚ୍ଚ ସ୍ୱରେ ॥
ବିଦୁର ଚାହିଁ ମନ ଦୁଃଖେ । ଉଦ୍ଧବ କହେ ଅଶ୍ରୁମୁଖେ ॥
ଯାଦବ ମଧେ କୃଷ୍ଣ ଥାଇ । ସୂର୍ଯ୍ୟର ପ୍ରାୟେ ପ୍ରକାଶଇ ॥
ସେ ସୂର୍ଯ୍ୟ ଅସ୍ତଗିରି ଗଲା । ନିବିଡ଼ ତମ ପ୍ରକାଶିଲା ॥
ମୁଁ ଏବେ ଅତି ଦୁଃଖ ଶୋକେ । ପଡ଼ିଛି ଅଜଗର ମୁଖେ ॥
ଆମ୍ଭ କୁଶଳ କାହିଁ ଆର । କହିବା ଶୁଣ ହେ ବିଦୁର ॥
ଦେଖ ଅଭାଗ୍ୟ ଯଦୁବଂଶ । ବାଳକ ପ୍ରାୟ ବୁଦ୍ଧି ଭ୍ରଂଶ ॥
ବସନ୍ତି କୃଷ୍ଣ ଅଙ୍ଗସଙ୍ଗେ । ରାତ୍ର ଦିବସେ ଅନୁରାଗେ ॥
ତାହା ନ ଜାଣିଲେ ସକଳେ । ଇନ୍ଦୁ କୁମୁଦ ଯେହ୍ନେ ଜଳେ ॥
ଯାଦବ କୃଷ୍ଣ ସଙ୍ଗ ମେଳେ । ଦିନ ହରନ୍ତି କୁତୂହଳେ ॥
ତାର ବିଭୂତି ଦେବଗଣ । ଏବେ ତୁ ବିଦୁର ହୋ ଶୁଣ ॥
ଧର୍ମ କୁମର ଯଜ୍ଞଶାଳେ । ଦେବ ମନୁଷ୍ୟ ରଷିମେଳେ ॥
ଯେ ରୂପ ଦେଖି ତୋଷମନେ । କୈବଲ୍ୟ ଲଭିଲେ ଲୋଚନେ ॥
ସେ କୃଷ୍ଣ ଅନୁରାଗ ମୁଖ । ସୁମନ୍ଦ ହାସ୍ୟେ ରଙ୍ଗ ରେଖ ॥
ବେଣୁ ମୋହିତ ଚିତ୍ତ ଧରି । ମୋକ୍ଷ ଲଭିଲେ ବ୍ରଜନାରୀ ॥
ଯେ ସର୍ବ ରୂପେ ଏକରୂପୀ । ବସଇ ସର୍ବଭୂତେ ବ୍ୟାପୀ ।
ତାର ବିଭୂତି ଦେବଗଣ । ପୂଜନ୍ତି ତାହାଙ୍କ ଚରଣ ॥
ଦେବଙ୍କ ଅର୍ଥେ ସେ ମୁରାରି । ଜନ୍ମିଲେ ନାନା ରୂପ ଧରି ॥

ସ୍ୱଭାବେ ଜନ୍ମ ତାର ନାହିଁ । ନିମିତ୍ତ ଅର୍ଥେକଷ୍ଟ ଦେହୀ ॥
ଅଗ୍ନି ଯେସନେ ନାନାମତେ । ଜନମି ଜଳଇ ଜଗତେ ॥
ଏକଥା ମୋତେ ଖେଦ କରେ । ସେ ଜନ୍ମ ବସୁଦେବ ଘରେ ॥
କଂସର ଡରେ ଗୋପମେଳେ । ଲୁଚି ଯେ ଥିଲେ ବାଳକାଳେ ॥
ତହୁଁ ମଥୁରା ପୁରେ ଆସି । ଗଜ ଚାଣୁର କଂସ ନାଶି ॥
ମାତା ପିତାଙ୍କର ବିଶ୍ୱାସ । ବୋଲଇ କ୍ଷମାକର ଦୋଷ ॥
ତୁମ୍ଭଙ୍କୁ ନିଶ୍ଚିନ୍ତ ନ କରି । ବ୍ୟର୍ଥେ ବଞ୍ଚିଲୁ ଦେହ ଧରି ॥
ଏ କଥା ବିଡ଼ମ୍ବଣ ମୋତେ । ହୃଦୟ ଦହେ ଅବିରତେ ॥
ତୁମ୍ଭେ ତ ଦେଖିଅଛ ଡୋଳେ । ଧର୍ମନନ୍ଦନ ଯଜ୍ଞକାଳେ ॥
ତାର ଚରଣ ରେଣୁ ଗନ୍ଧେ । ଆଘ୍ରାଣ କରି ନାସାରନ୍ଧ୍ରେ ॥
କେ ତା ପସୋରେ ଅବା ଚିତ୍ତେ । ମୁକତି ଯୋଗ ସାଧ ନିତ୍ୟେ ॥
ଭୂମିର ଭାରା ନାଶ ଅର୍ଥେ । ଯାହାର ଜନ୍ମ ଏ ଜଗତେ ॥
ଯାହାକୁ ଶିଶୁପାଳ ନିନ୍ଦି । ତକ୍ଷଣେ ତାର ଦେହ ଭେଦି ॥
ଲୁଚିଲା ଅଭୟ ଚରଣେ । ରହିଲା ଅଜରାମରଣେ ॥
ଯେ ଗତି ଯୋଗୀଜନେ ଚିନ୍ତି । ଜନ୍ମ ମରଣୁ ନିସ୍ତରନ୍ତି ॥
ତାର ବିଯୋଗ କେବା ସହେ । ଯେ ଏ ଜଗତେ ଦେହବହେ ॥
ଦେଖ ଭାରତ ମଧ୍ୟେ ଯେତେ । ରଥୀ ପାଦାନ୍ତି ଅପ୍ରମିତେ ॥
ଭୂଲୋକେ ଯେତେବୀର ଥିଲେ । ମରଣେ ତା ମୁଖ ଦେଖିଲେ ॥
ଅର୍ଜୁନ ବାଣେ କ୍ଷୀଣ ହୋଇ । ପଶିଲେ ତାର ଦେହେ ଯାଇ ॥
ତ୍ରୈଲୋକ୍ୟ ନାଥ ସେ ଅନନ୍ତ । ସ୍ୱଭାବେ କମଳାର କାନ୍ତ ॥
ତ୍ରିଦଶ ଦେବତା ଚରଣେ । ପୂଜା କରନ୍ତି ଅନୁକ୍ଷଣେ ॥
ସେ ପୁଣି ସ୍ଥାପି ରାଜପଦେ । ପଡ଼ିଲା ଉଗ୍ରସେନ ପାଦେ ॥
ଦେଖ ପୂତନା ଧାତ୍ରୀରୂପେ । ସ୍ତନ ନିବେଶି ଯାର ମୁଖେ ॥
କ୍ଷୀର ଗରଳ ସଙ୍ଗେ ଦେଇ । ପଶିଲା ତାର ଦେହେ ଯାଇ ॥
ସେ ଦୟାନିଧିର ଚରଣ । କେ ଅବା ନପଶେ ଶରଣ ॥
ଯେତେ ଅସୁର ଏ ଜଗତେ । ନାଶିଲେ ଗୋବିନ୍ଦର ହସ୍ତେ ॥
ଗରୁଡ଼ ପୃଷ୍ଠେ ତାଙ୍କୁ ଚାହିଁ । ପଶିଲେ ତାର ଦେହେ ଯାଇ ॥
ସେ ଭାଗବତ ମଧ୍ୟେ ସାର । କି ଅବା ଦେବା ପଟାନ୍ତର ॥
କଂସରାଜାର ବନ୍ଦିଘରେ । ଜନ୍ମିଲେ ଦେବକୀ ଉଦରେ ॥
ବ୍ରହ୍ମାର ବୋଲେ ହୃଷୀକେଶ । ଧରଣୀ ଭାରା କଲେ ନାଶ ॥
ସେ ବସୁଦେବ କଂସ ଡରେ । ନେଇ ଥୋଇଲା ନନ୍ଦଘରେ ॥
ଗୁପତେ ସଙ୍ଗେ ହଳଧର । ବଞ୍ଚିଲେ ଏଗାର ବତ୍ସର ॥
ଗୋପ ବାଳକେ ସଙ୍ଗେ ଥାଇ । ବନେ ଚରାନ୍ତି ନିତ୍ୟ ଗାଈ ॥
ବେଣୁ ଶବଦେ ଶିଙ୍ଗାନାଦ । ବନେ ବୁଲନ୍ତି ପ୍ରମାନନ୍ଦ ॥
ଯମୁନା କୂଳେ ଥାଇ ନିତ୍ୟ । ଭୃଙ୍ଗ କୋକିଳର ସଙ୍ଗତେ ॥
ଯେ ଗୋପ ନାରୀଙ୍କ ଲୋଚନ । କୁମାର ଲୀଳା ଅନୁଦିନ ॥
ରୋଦନ ହର୍ଷଣ ଖେଳନେ । ନିରତେ ବସେ ତାଙ୍କ ମନେ ॥
ଗୋଧନ ଘେନି ଗୋପ ସଙ୍ଗେ । ବେଣୁ ବଜାଇ ନାନାରଙ୍ଗେ ॥
କଂସର ଆଦେଶେ ଅସୁରେ । ଯେତେ ମିଳିଲେ ଗୋପପୁରେ ॥
ପୂତନା ଆଦି ମାୟାରୂପୀ । ମିଳିଲେ ବନ ଗିରି ବ୍ୟାପୀ ॥
ତାହାଙ୍କୁ କରି ବାଳଖେଳା । ସବୁ ମାଇଲେ ନନ୍ଦବଳା ॥
ଯମୁନା ବିଷଜଳ ଖାଇ । ମରୁ ଯେ ଥିଲେ ଗୋପଗାଈ ॥
ତାଙ୍କୁ ଜୀଆଇଁ ନନ୍ଦବାଳ । ଅମୃତ କଲେ ବିଷଜଳ ॥
ଇନ୍ଦ୍ର ଉତ୍ସବ ଭଙ୍ଗ କରି । ଗୋପରେ ପୂଜା କଲେ ଗିରି ॥
ଯଜ୍ଞ ବିଭଙ୍ଗେ କୋପ କରି । ଇନ୍ଦ୍ର ବରଷେ ଘୋର ବାରି ॥
ଗୋରୁ ଗୋପାଳଙ୍କ ବିକଳ । ତକ୍ଷଣେ ଦେଖି ନନ୍ଦବାଳ ॥
ଛତ୍ର ଆକାରେ ଗିରି ଧରି । ରଖିଲେ ଗୋପପୁର ଶିରୀ ॥
ଶରଦ ଚନ୍ଦ୍ର ରାତ୍ର ଚାହିଁ । କାନନେ ବେଣୁ ନାଦ ବାଇ ॥
ଗୋପୀମଣ୍ଡଳ ଗୋପୀମେଳେ । ରାସ ଉତ୍ସବ କୁତୂହଳେ ॥
ଷୋଳସହସ୍ର ଗୋପ ବାଳୀ । ରମିଲେ ତୁଲ୍ୟ ରୂପ ଧରି ॥
ତାର ମହିମା କେ କହିବ । ଯାହା ନ ଜାଣେ ବ୍ରହ୍ମା ଶିବ ॥
ସେ ହରି ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନବଳେ ॥
ବିଦୁର ଉଦ୍ଧବ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଏଣେ ଗୋବିନ୍ଦ ପାଦେ ରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ଉଦ୍ଧବ*
*ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ଉଦ୍ଧବ ଉବାଚ

ଶୁଣ ବିଦୁର ମୋ ବଚନ । ଧରି ନ ପାରି ଖେଦମନ ॥
ସେ ରାମ କୃଷ୍ଣ ଏକ ରଥେ । ମିଳିଲେ ଅକ୍ରୂର ସଙ୍ଗତେ ॥
ମାତା ପିତାଙ୍କର କୁଶଳ । ପୁଚ୍ଛନ୍ତି ରାମ ଆଦିମୂଳ ॥
କଂସକୁ ଦୃଷ୍ଟିରେ ସଂହାରି । ଉଚ୍ଚ ମଞ୍ଚାରୁ କେଶ ଧରି ॥
ତଳେ ପକାଇ ରୋଷ ଭରେ । ମୃତ ପିଣ୍ଡକୁ ଆକ୍ରୋଷିଲେ ॥
ଶ୍ୟାନ୍ତିପନିର ଘରେ ଯାଇ । ସକଳ ବିଦ୍ୟା ଶିକ୍ଷାପାଇ ॥
ଗୁରୁ ଦକ୍ଷିଣା ଅର୍ଥେ ପୁଣି । ଯମର ଘରୁ ପୁତ୍ର ଆଣି ॥

ଗୁରୁ କାମିନୀ ତୋଷକରି । ପୁଣି ମିଳିଲେ ନିଜ ପୁରୀ ॥
ଭୀଷ୍ମ ନନ୍ଦିନୀ ବୋଲ କରି । କୁଣ୍ଡି ନଗ୍ରରେ ବିଜେକରି ॥
ଗନ୍ଧର୍ବ ବୃତ୍ତି ଆଚରିଲେ । ବଳେ ସେ କନ୍ୟାକୁ ହରିଲେ ॥
ଶୃଗାଳ ମଧ୍ୟୁ ସିଂହ ଯେହ୍ନେ । ସ୍ୱଭାଗ ହରଇ ତେସନେ ॥
କୋଶଳ ପୁରେ ନରହରି । ସପତ ଷଣ୍ଢ ବନ୍ଦି କରି ॥
କନ୍ୟା ଲଭିଲେ ଆଦିମୂଳ । ଜିଣି ସକଳ ଶତ୍ରୁବଳ ॥
ସତ୍ୟଭାମାର ବୋଲେ ପୁଣି । ନନ୍ଦନ ବନୁ ଚକ୍ରପାଣି ॥
ବଳେ ହରିଲେ ପାରିଜାତ । ଲୀଳାଏ ଜିଣି ଶଚୀନାଥ ॥
ପୁରେ ସ୍ଥାପିଲେ ବୃକ୍ଷ ନେଇ । ପତ୍ନୀକି ପ୍ରିୟଭାବ ବହି ॥
ଗରୁଡ଼େ ବସି ଭାବଗ୍ରାହୀ । ନାରକାସୁର ପୁରେ ଯାଇ ॥
ଦେଖିଲେ ତାହାର ଭୁବନ । ତେଜେ କି ପିଉଁଛି ଗଗନ ॥
ଚକ୍ରେ ତାହାର ଶିର ହାଣି । ତେଜେ ପ୍ରମାଣିଲା ଧରଣୀ ॥
ବୋଇଲା କଲୁ ପୁତ୍ର ନାଶ । ତା ଶୁଣି ଧରଣୀ ବିଶ୍ୱାସ ॥
ନାରକା ପୁତ୍ରକୁ ମୁରାରି । ତା ରାଜ୍ୟେ ଅଭିଷେକ କରି ॥
ନାରକା ଅନ୍ତଃପୁରେ ହରି । କୋଟି କନ୍ଦର୍ପ ରୂପ ଧରି ॥
କନ୍ୟାଏ ଦେଖି କାମଭୋଳେ । ଚାହାଁନ୍ତି ନୟନ ନିଷ୍ଠଳେ ॥
ଷୋଳ ସହସ୍ର ଶତାଧିକେ । ପୁଷ୍ପ ବରଷି ଏକେ ଏକେ ॥
ହରିଙ୍କୁ ବରିଲେ ସକଳେ । ମଙ୍ଗଳ ଶୁଭଲଗ୍ନ ବେଳେ ॥
ତାହାଙ୍କୁ ନିଜପୁରେ ଆଣି । ଏକା ମୁହୂର୍ତ୍ତେ ଚକ୍ରପାଣି ॥
ବିବାହ କଲେ ବେଦମତେ । ଶୁଣ ତାହାଙ୍କ ପୁତ୍ର ଯେତେ ॥
ଦଶ କୁମର କନ୍ୟା ଏକ । ଦିଶନ୍ତି ସୁନ୍ଦର ସୁରେଖ ॥
କାଳଦମନ ଜରାସନ୍ଧେ । ଶାଲ୍ୱ ସହିତେ ପୁର ରୁନ୍ଧେ ॥
ତାହାଙ୍କ ନିଜ ତେଜ ନାଶି । ସୁଜନ ବାନ୍ଧବ ଆଶ୍ୱାସି ॥
ସମ୍ୱଲ ଦ୍ୱିବିନ୍ଦ ବାନର । ମୁର ବଲ୍ୱଳ ବାଣାସୁର ॥
ସେ ଦନ୍ତବକ୍ର ଆଦିକରି । ତାହାଙ୍କୁ ସଂଗ୍ରାମେ ସଂହାରି ॥
ଏବେ ତୋ ଜ୍ୟେଷ୍ଠଭ୍ରାତା ସୁତେ । ଅନେକ ନୃପତି ସମେତେ ॥
ସଙ୍ଗତେ ନିଜବଳ ଘେନି । ଚରଣେ କମ୍ପଇ ମେଦିନୀ ॥
ମିଳିଲେ କୁରୁକ୍ଷେତ୍ର ମଧ୍ୟେ । ଜିଣି ଭୁଞ୍ଜିବେ ମହୀ ଯୁଦ୍ଧେ ॥
କର୍ଣ୍ଣ ଶକୁନି ଦୁଃଶାସନ । ସ୍ୱଭାବେ ଦୁଷ୍ଟ ତିନିଜନ ॥
ଏହାଙ୍କୁ ହୋଇଲା ବିଶ୍ୱାସ । ଏଣେ ହୋଇଲେ ଅଳ୍ପାୟୁଷ ॥
ଦେଖ ପଡ଼ିଲେ ରଣ ମଧ୍ୟେ । ମୂଢ଼ ଅଧର୍ମ ଦୋଷବାଦେ ॥
ଶୁଣ ବିଦୁର କହୁଁ ତୋତେ । ପୁଣି ଭାଳିଲା ଆତ୍ମାଗତେ ॥
ଏ ଭୀଷ୍ମ ଦ୍ରୋଣ ଭୀମାର୍ଜୁନ । ସମରେ ଅନେକ ରାଜନ ॥
ଭାରା ନିବାର ଅର୍ଥେ ମହୀ । ସଂହାରେ ଅଳପ ମଣଇଁ ॥

ଏ ଯେ ମୋହର ଯଦୁବଂଶ । ଏ ମଲେ ଭାର ଅବଶେଷ ॥
ମଦ୍ୟେ ଅରୁଣ ଚକ୍ଷୁ କୋପେ । ସର୍ବେ ମରିବେ ବ୍ରହ୍ମଶାପେ ॥
ଏଣେ ନ ମଲେ ନ ମରନ୍ତି । ଏମନ୍ତ ଯୋଗମାୟା ଚିନ୍ତି ॥
ଏମନ୍ତ ମନେ ଚିନ୍ତାକରି । ଧର୍ମ ସୁତଙ୍କୁ ନରହରି ॥
ବନ୍ଧୁ ସୁହୃଦଙ୍କର ମଧ୍ୟେ । କୃଷ୍ଣ ସ୍ଥାପିଲେ ରାଜପଦେ ॥
ଉତ୍ତରା ଗର୍ଭୁ କୁରୁବଂଶ । କୃଷ୍ଣ ରଖିଲେ ଅବଶେଷ ॥
ପରୀକ୍ଷିତଙ୍କୁ କରି ରକ୍ଷା । ଧର୍ମ ନନ୍ଦନ ଦେଲେ ଦୀକ୍ଷା ॥
ଜ୍ଞାତି ମରଣ ଦୋଷ ନାଶେ । ଧର୍ମନନ୍ଦନଙ୍କ ବିଶ୍ୱାସେ ॥
ସର୍ବ ସମ୍ପଦ ସୁସମ୍ପାଦି । କରାଇ ତିନି ଅଶ୍ୱମେଧ ॥
ଆପଣେ ନଜପୁରେ ଯାଇ । ନାରୀଗଣଙ୍କ ମଧ୍ୟେ ଥାଇ ॥
ଗୃହସ୍ଥଧର୍ମ ବେଦମତେ । କୃଷ୍ଣ ଆଚରିଲେ ଜଗତେ ॥
ନାରୀଙ୍କ ମନ କୃଷ୍ଣ ମୋହି । ଗୃହ ଚରିତେ ଗୃହେ ଥାଇ ॥
ଯେ ଧର୍ମ ଇହ ପରଲୋକେ । କୃଷ୍ଣ ସ୍ଥାପିଲେ ଅତିରେକେ ॥
ଏମନ୍ତେ ବହୁତ ବରଷେ । କ୍ରୀଡ଼ିଲେ ଗୃହାଶ୍ରମ ଆଶେ ॥
କର୍ମ ଅଧୀନେ କାମେ ପଡ଼ି । ଦେବ ମାୟାରେ ସୁଖ ଲୋଡ଼ି ॥
ପୁରୁଷ କର୍ମର ଅଧୀନ । ଯୋଗେଶ୍ୱରଙ୍କ ଯେ ଗହନ ॥
ସେ ହରି ବିଷ୍ଣୁ ମାୟା କରି । ନିଜ ସୁତଙ୍କ ମନ ହରି ॥
ସେ ପୁତ୍ରେ କ୍ରୀଡ଼ାରସେ ବନେ । କୋପେ ଚିନ୍ତିଲେ ବିପ୍ରଜନେ ॥
ସେ ବ୍ରହ୍ମଶାପ ପାଇ ପୁରୀ । ଅଦ୍ଭୁତେ ଦେଖିଲେ ବିସ୍ତାରି ॥
କୃଷ୍ଣ ବଚନ ଶାନ୍ତି ଅର୍ଥେ । ପ୍ରଭାସେ ମିଳିଲେ ସମସ୍ତେ ॥
ସେ ଜଳେ ସାରିଲେ ସ୍ୱାହାନ । ପିତୃ ତର୍ପଣ ପିଣ୍ଡ ଦାନ ॥
ପୂଜିଲେ ଦେବରଷି ଗଣ । ଦାନେ ସନ୍ତୋଷିଲେ ବ୍ରାହ୍ମଣ ॥
ତିଳ ରଜତ ଯେ ସୁବର୍ଣ୍ଣ । ବସନ କମଳ ଅଜୀନ ॥
ରଥ କୁଞ୍ଜର ଅଶ୍ୱ ଧନ । ଧରଣୀ ତୁଳେ କନ୍ୟାମାନ ॥
ଅନ୍ନ ସହିତେ ନାନାରସେ । ବିପ୍ରଙ୍କୁ ଭୁଞ୍ଜାଇ ହରଷେ ॥
ଏମନ୍ତେ ଯଦୁ ଭୋଜଗଣ । ଗୋ ବିପ୍ରେ ସେବା ତାଙ୍କ ମନ ॥
ବିପ୍ରଙ୍କ ପାଦେ ପ୍ରଣମିତେ । ଦିବସେ ବଞ୍ଚିଲେ ଏମନ୍ତେ ॥
ସ୍ୱଭାବେ କରି ଉପବାସ । ରାତ୍ରେକ ବଞ୍ଚିଲେ ନିଆଶ ॥
ସେ ଯଦୁ ବଂଶର ଚରଣେ । ବ୍ରାହ୍ମଣ ଜଗନ୍ନାଥ ଭଣେ ॥
ହୋଇବ କୃଷ୍ଣରେ ବିଶ୍ୱାସ । ସୁଜନ ଜନେ ଏଣେ ରସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ଉଦ୍ଧବ ସମ୍ୱାଦେ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ଉଦ୍ଧବ ଉବାଚ

ଏବେ ବିଦୁର ଶୁଣ ସୁଖେ । ସେ ଯଦୁ ରାଜ ରାତ୍ରିମୁଖେ ॥
ବାରୁଣୀ ମଦ୍ୟ କଲେ ପାନ । ତେଣେ ହୋଇଲେ ହତଜ୍ଞାନ ॥
ମନ ହରିଲା ମଦ୍ୟଦୋଷେ । ଭୋଳ ହୋଇଲେ ବୁଦ୍ଧି ଭ୍ରଂଶେ ॥
ମର୍ମଭେଦନ ଦୁଷ୍ଟବାକ୍ୟେ । କନ୍ଦଳ କଲେ ଏକେ ଏକେ ॥
ରଜନୀ ଅର୍ଦ୍ଧେ ଯଦୁବଳେ । କନ୍ଦଳ ଯୁଦ୍ଧେ ନାଶଗଲେ ॥
ତତ୍‌କ୍ଷଣେ ଆତ୍ମା ମାୟାଗତି । ବିଚାରି ପ୍ରଭୁ ଦାଶରଥି ॥
ମିଳିଲେ ସରସ୍ୱତୀ କୂଳେ । ବନେ ଅଶ୍ୱତ୍ଥ ତରୁମୂଳେ ॥
ନିଜ କୁଳର ବଧ ପାଇ । ଆଜ୍ଞା ସେ ଦେଲେ ଭାବଗ୍ରାହୀ ॥
ମୋତେ ବୋଇଲେ ସୁଖଭ୍ରମେ । ଚଳ ତୁ ବଦରିକାଶ୍ରମେ ॥
ତକ୍ଷଣେ ତାର ଆଜ୍ଞାଶୁଣି । ତା ଅଭିପ୍ରାୟ ମୁହିଁ ଜାଣି ॥
ପଦ କମଳେ ଥୋଇ ମନ । ନ କରି ତୀର୍ଥକୁ ଗମନ ॥
ତାର ଗମନ ପଛେ ମୁହିଁ । ଗଲି ତାହାର ଭାବ ବହି ॥
ସେ ପ୍ରିୟ ପତି ନରହରି । ଖୋଜନ୍ତେ ତାକୁ ଅନୁସରି ॥
ଦେଖିଲି ସରସ୍ୱତୀ ତୀରେ । ଏକାନ୍ତ ଆସନ ସଧୀରେ ॥
ଶ୍ୟାମସୁନ୍ଦର କୃଷ୍ଣ ବର୍ଣ୍ଣ । ପ୍ରଶାନ୍ତ ଅରୁଣ ଲୋଚନ ॥
ଚତୁରଭୁଜେ ଶଙ୍ଖ ଶୋହେ । ପୀତବସନ ମନମୋହେ ॥
ଦକ୍ଷିଣ ପାଦ ବାମଜଙ୍ଘେ । ଦୃଷ୍ଟି ଆସନେ ମନ ରଙ୍ଗେ ॥
ଏବେ ହୋ କୁରୁବୀର ଶୁଣ । ମୈତ୍ରେୟ ମିଳିଲେ ତକ୍ଷଣ ॥
ବ୍ୟାସମୁନିଙ୍କ ସଖା ହୋନ୍ତି । ଆନନ୍ଦେ ଭୁବନେ ଭ୍ରମନ୍ତି ॥
ତକ୍ଷଣେ କୃଷ୍ଣପାଶେ ଯାଇ । ପାଦେ ନମିଲେ ଶିର ଦେଇ ॥
ମୁହିଁ ଶୁଣଇ ଅନୁରାଗେ । ଯେବା ବୋଇଲେ କୃଷ୍ଣଭାବେ ॥
ଉଦ୍ଧବ ଶୁଣ ମୋ ବଚନ । ମୁହିଁ ଜାଣିଲି ତୋର ମନ ॥
ଦୁର୍ଲ୍ଲଭ ଜ୍ଞାନ ଦେବି ତୋତେ । ସଂସାରୁ ତରିବୁ ଯେମନ୍ତେ ॥
ପୂର୍ବେ ବ୍ରହ୍ମାର ଯଜ୍ଞକାଳେ । ସକଳେ ବସୁ ଏକମେଳେ ॥
ଲଭିଲେ ଯୋଗ ଅଷ୍ଟସିଦ୍ଧି । ମୋର ଚରଣେ ଧ୍ୟାନେ ବନ୍ଦି ॥
ଏ ଯୋଗ ସର୍ବ ପୂର୍ବେ ସିଦ୍ଧି । ଯଜ୍ଞ ପ୍ରକାରେ ଦେବା ବିଧି ॥
ତହିଁ ବୈରାଗ୍ୟ ଦୃଢ଼େ ଚିନ୍ତି । ଶୁକ ସନକ ଜ୍ଞାନ ଚିନ୍ତି ॥
ଯେ ପ୍ରାଣୀ ସ୍ୱଧର୍ମ ଛାଡ଼ନ୍ତି । ବିଷୟ ରସେ ଭୋଗ ଚିନ୍ତି ॥
ଭକ୍ତି ବୈରାଗ୍ୟ ତାର ନାହିଁ । ସେବା ଲଭିବେ ଅବା କାହିଁ ॥
ଏ ଜ୍ଞାନ ବ୍ରହ୍ମାର ସମୀପେ । ମୁହିଁ କହିଲି ପଦ୍ମକଳ୍ପେ ॥
ତା ବ୍ରହ୍ମଜ୍ଞାନର ମହିମା । କରନ୍ତି ଯାରେ ଆନ ସୀମା ॥
ଏଣୁ ପଣ୍ଡିତ ମୁନିଙ୍କନେ । ଦୃଢ଼େ ବିଚାରି ଅନୁମାନେ ॥

ଏ ଭାଗବତ ଧର୍ମ ଚିନ୍ତି । ଏ ଭବଜଳୁ ତରିଯାନ୍ତି ॥
ଏ ଆଦି ପୁରୁଷ ବଚନ । ଅମୃତ ଶୁଣିଣ ମୋ ମନ ॥
ତା ଅନୁଗ୍ରହ ପ୍ରତିକ୍ଷଣେ । କହିଲା ତାହାର ସ୍ମରଣେ ॥
କୃଷ୍ଣର ସ୍ନେହେ ମୋର ଦେହୀ । ରୋମ ପୁଲକେ ଅଶ୍ରୁ ବହି ॥
କରଯୁଗଳ ଦେଇ ମୁଣ୍ଡେ । କହିଲେ ଶୋକାକୁଳ ତୁଣ୍ଡେ ॥
ଭୋ ନାଥ ତୋର ପଦ୍ମପାଦେ । ଯେ ପ୍ରାଣୀ ଭଜିଲେ ଆନନ୍ଦେ ॥
ତାଙ୍କୁ ଏ ଅଶେଷ ଜଗତେ । ଧର୍ମାର୍ଥ କାମ ମୋକ୍ଷଅର୍ଥେ ॥
ଦୁର୍ଲ୍ଲଭ ନୋହେ ଲଭିବାରେ । ଏ ନିଶ୍ଚେ ମୋହର ବିଚାରେ ॥
ମୋହର ଏଣେ ଆଶା ନାହିଁ । ତଥାପି ତୋ ପାଦେ ଭଜଇ ॥
ନିଷ୍ପ୍ରୟ ହୋଇ କର୍ମ କରୁ । ଅଜ ହୋଇଣ ଦେହ ଧରୁ ॥
ସ୍ୱଭାବେ ଜନ୍ମ ତାର ନାହିଁ । କର୍ମ ଚେଷ୍ଟିତ ଆର କାହିଁ ॥
ଶୁଣ ବିଦୁର ଶୁଦ୍ଧଚେତା । ତାହାର ବିଚାରିତ କଥା ॥
ସେ ପୁଣି ଶତ୍ରୁ ଭୟେ ଯାଇ । ସମୁଦ୍ରେ ଦୁର୍ଗମ ଭିଆଇ ॥
ଅନେକ ନାରୀଗଣ ମଧ୍ୟେ । ପଳାଇ ରହିଲା ଆନନ୍ଦେ ॥
ସ୍ୱଭାବେ କାଳରୂପ ତାର । ଜ୍ଞାନ ବିଜ୍ଞାନେ ଆଗୋଚର ॥
ଯାର ମହିମା ଆତ୍ମା ରତି । ଯୋଗୀଏ ନ ପାରନ୍ତି ଚିନ୍ତି ॥
ମନ୍ତ୍ରଣା ଅର୍ଥେ ମୋତେ ରାଇ । ଆଗରେ ସମୀପେ ବସାଇ ॥
ସ୍ୱଭାବେ ଅକୁଣ୍ଠିତ ବୁଦ୍ଧି । ଅଖଣ୍ଡ ଜ୍ଞାନ ଆତ୍ମା ସିଦ୍ଧି ॥
ସର୍ବଜ୍ଞ ବାଦ ଯାର ତହିଁ । ସେ କିମ୍ପା ମୋତେ ପଚାରଇ ॥
ଏଣୁ ମୋ ମନେ ଖେଦ ପାଇ । ତୋ ମାୟା ଗହନେ ଭ୍ରମଇ ॥
ବିଦୁର ଶୁଣ ସାବଧାନେ । ମୈତ୍ରେୟ ମୋର ବିଦ୍ୟମାନେ ॥
କୃଷ୍ଣଚରଣ ଯୁଗ ଚାହିଁ । ପୁଣି ବିଶ୍ୱାସେ ପଚାରଇ ॥
ପୂର୍ବେ ଏ ଜ୍ଞାନ ଦୃଢ଼ବ୍ରତେ । କହିଛି ତାହାର ଅଗ୍ରତେ ।
ଯେ ଆତ୍ମାଜ୍ଞାନ ତୁ ଏକାନ୍ତେ । କହିଲୁ ବ୍ରହ୍ମାର ଅଗ୍ରତେ ॥
ମୁଁ ଯେବେ ଶୁଣିବାକୁ କ୍ଷମ । କହ ହେ ପୁରୁଷ ଉତ୍ତମ ॥
ଯେ ଜ୍ଞାନମାର୍ଗେ ତୋତେ ଚିନ୍ତି । ଏ ମାୟା ସଂସାରୁ ତରନ୍ତି ॥
ଏମନ୍ତେ ପଚାରନ୍ତେ ମୁହିଁ । ସେ କୃଷ୍ଣ ମୋତେ ଦୟାବହି ॥
ଆତ୍ମାର ତହିଁ ନିଜଜ୍ଞାନ । କହିଲେ କମଳ ଲୋଚନ ॥
ସେ ତୀର୍ଥପାଦ ଜଗନ୍ନାଥ । ମୋହର ଭାବେ ଆରାଧିତ ॥
ସେ ହରି ମୁଖୁ ଜ୍ଞାନ ପାଇ । ତୋ ପାଦପଦ୍ମେ ଶିର ଦେଇ ॥
ତାର ବିରହେ ଆତ୍ମା ମୋର । କ୍ଷଣେ ହୃଦୟ ନୋହେ ସ୍ଥିର ॥
ତାର ବିଯୋଗ ଅଭିଯୁତେ । ତା ପାଦ ଦେଖିବାର ଅର୍ଥେ ॥
ବଦ୍ରିକା ଆଶ୍ରମ ମଣ୍ଡଳେ । ନର ନାରାୟଣଙ୍କ ମୂଳେ ॥
ଏ ନରଲୋକ ସୁଖ ଅର୍ଥେ । ତପ ଆରାଧି ଦୃଢ଼ଚିତ୍ତେ ॥

ଅଛନ୍ତି ନର ନାରାୟଣ । ଶୁକ ବୋଲନ୍ତି ରାୟେ ଶୁଣ ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ବନ୍ଧୁ ବଧ ବାଣୀ । ଉଦ୍ଧବ ମୁଖୁଁ ତାହା ଶୁଣି ॥
ଦୁଃସହ ଦୁଃଖ ମନ ଥିର । ଜ୍ଞାନେ ସଂହାରିଲେ ବିଦୁର ॥
କହିଣ ଉଦ୍ଧବ ଚଳନ୍ତେ । ବିଦୁର ପଡ଼େ ପାଦଗତେ ॥
ପୁଣି ବିଶ୍ୱାସେ ତାଙ୍କୁ କରି । ବୋଲେ ଚରଣ ଶିରେ ଧରି ॥

## ବିଦୁର ଉବାଚ

ଉଦ୍ଧବ ଶୁଣ ମୋ ବଚନ । ତୋର ଠାକୁର ଭଗବାନ ॥
ସେ ଜ୍ଞାନ କହିଛନ୍ତି ତୋତେ । ଉଦ୍ଧବ କହ ମୋ ଅଗ୍ରତେ ॥
ଯେ ଜ୍ଞାନ ଧ୍ୟାନ ସୁଖ ଭୋଳେ । ପଶନ୍ତି ତା ପାଦ କମଳେ ॥

## ଉଦ୍ଧବ ଉବାଚ

ଏମନ୍ତେ ତାର ପ୍ରଶ୍ନ ଶୁଣି । ଉଦ୍ଧବ କହେ ମଞ୍ଜୁବାଣୀ ॥
ଶୁଣ ବିଦୁର ମୋ ବଚନ । ସେ ଯୋଗେଶ୍ୱର ତତ୍ତ୍ୱଜ୍ଞାନ ॥
ଜୀବନ ଛାଡ଼ିବାର କାଳେ । ମୈତ୍ରେୟ ମୁନିଙ୍କ ନିକଟେ ॥
ସମ୍ପୂର୍ଣ୍ଣ ଜ୍ଞାନ ତାଙ୍କୁ ଦେଲେ । ନିଜ ଭୁବନେ ବିଜେ କଲେ ॥
ତୁ ଏବେ ଚଳ ତାଙ୍କ ପାଶେ । ନିର୍ମଳ ଭକ୍ତି ଉପଦେଶେ ॥
ସେ ତୋତେ ଦେବେ ଦିବ୍ୟଜ୍ଞାନ । ଏମନ୍ତେ କହି ବେନି ଜନ ॥
ପୁଳିନେ ବଞ୍ଚିଲେ ରଜନୀ । ନିକଟେ ହରିଭାବ ଘେନି ॥
ବନ୍ଧୁ ବିଯୋଗ ପାସୋରିଲେ । କୃଷ୍ଣ ଚରଣେ ଧ୍ୟାନ କଲେ ॥
ଏମନ୍ତେ ପାହିଲା ରଜନୀ । କୃଷ୍ଣ ଭକତି ଭାବ ଘେନି ॥
ଉଦ୍ଧବ ଗଲା ତୋଷମନେ । ମିଳିଲା ବଦରିକାଶ୍ରମେ ॥
ପରୀକ୍ଷ କହେ ମୁଖ ଚାହିଁ । ଭାବେ ଚରଣେ ଶିର ଦେଇ ॥
ଭୋ ମୁନି ଅସମ୍ଭବ ବାଣୀ । ମୁହିଁ ଯେ ତୁମ୍ଭ ମୁଖୁଁ ଶୁଣି ॥
ସଂଶୟ ଲାଗିଲା ମୋ ମନେ । ପୁଚ୍ଛଇ ତୁମ୍ଭ ସନ୍ନିଧାନେ ॥
ବ୍ରାହ୍ମଣ ଶାପେ ଯଦୁବଳେ । ନାଶିଲେ ରଣେ ମଦଭୋଳେ ॥
ରଥୀ ଯେ ଅତି ମହାରଥୀ । କେବେହେଁ ରଣେ ନ ହାରନ୍ତି ॥
ଉଦ୍ଧବ ଚଳିଲେ କେମନ୍ତେ । ଏ ବଡ଼ ସଂଶୟ ମୋ ଚିତ୍ତେ ॥
ଯହିଁ ଗୋବିନ୍ଦ ଦେହ ଗଲା । କେମନ୍ତେ ଉଦ୍ଧବ ରହିଲା ॥

## ଶ୍ରୀ ଶୁକ ଉବାଚ

ଶୁଣି କହନ୍ତି ଶୁକମୁନି । ଆନନ୍ଦେ କୃଷ୍ଣ ଭାବ ଘେନି ॥
ବ୍ରାହ୍ମଣ ଶାପ୍ୟ ଉପଦେଶେ । ନିଷ୍ଟେ ଦହିବ ଯଦୁବଂଶେ ॥
ଏମନ୍ତ ଜାଣି ଭାବଗ୍ରାହୀ । ନିକଟେ ଉଦ୍ଧବ ବସାଇ ॥
ଆତ୍ମାର ମରଣ ପ୍ରମାଣି । ମନେ ଚିନ୍ତିଲେ ଚକ୍ରପାଣି ॥
ଏ ମୋର ତତ୍ତ୍ୱଜ୍ଞାନ ଫଳେ । ମୋ ସଙ୍ଗେ ଯିବ ମୁହିଁ ଗଲେ ॥
ଏ ଜ୍ଞାନ ଦେଲେ ମୁଁ ଉଦ୍ଧବେ । ପ୍ରାଣୀ ତରିବେ ଏହିଭାବେ ॥
ଏମନ୍ତେ ମନେ ବିଚାରିଲେ । ଉଦ୍ଧବେ ତତ୍ତ୍ୱଜ୍ଞାନ ଦେଲେ ॥
ବୋଇଲେ ସାଧୁ ତତ୍ତ୍ୱଜ୍ଞାନ । ଏଣେ ଉଦ୍ଧବ ମୋର ସମ ॥
ଏ ଜ୍ଞାନ ପ୍ରାଣୀଙ୍କୁ ବୁଝାଇ । ଏଣୁ ତୁ ନରଲୋକେ ରହି ॥
ଉଦ୍ଧବ କହିବ ଯେମନ୍ତେ । ପ୍ରାଣୀଏ ଯିବେ ସେହିମତେ ॥
ଏଣୁ ତ୍ରୈଲୋକ୍ୟ ଗୁରୁ ହରି । ଜ୍ଞାନେ ଉଦ୍ଧବଙ୍କୁ ଉଦ୍ଧାରି ॥
ଏଣୁ ଗୋବିନ୍ଦ ବୋଲେ ଗଲା । ବଦ୍ରିକା ଆଶ୍ରମେ ମିଳିଲା ॥
ସମାଧି କରି ଘୋରବନେ । ପଶିଲା ଗୋବିନ୍ଦ ଚରଣେ ॥
ଏମନ୍ତେ ଉଦ୍ଧବର ବାଣୀ । ବିଦୁର ସାବଧାନେ ଶୁଣି ॥
କୃଷ୍ଣର ଲୀଳା ଅବତାର । ଯେ ଗୁଣ ଗାଥା ସୂକ୍ଷ୍ମ ସାର ॥
ଶରୀର ଛାଡ଼ିଲା ଯେମନ୍ତେ । ଏ ସର୍ବ କଥା ସ୍ମରି ଚିତ୍ତେ ॥
କୃଷ୍ଣର ସ୍ନେହ ବନ୍ଧ କ୍ଷୀଣ । ଚଳନ୍ତେ କରଇ ରୋଦନ ॥
କେତେହେଁ ଦିନ ବନେ ଗଲା । କାଳିନ୍ଦୀ ନିକଟେ ମିଳିଲା ॥
ତହୁଁ ଚଳିଲା ଗଙ୍ଗାତୀରେ । ମୈତ୍ରେୟ ମୁନି ଅନୁସାରେ ॥
କହଇ ବିପ୍ର ଜଗନ୍ନାଥ । ତୃତୀୟସ୍କନ୍ଧେ ଭାଗବତ ॥
ବିଦୁର ଉଦ୍ଧବ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ସୁଜନେ ଏଣେ ଦିନ ବଞ୍ଚ । କୃଷ୍ଣ ଭକତି ହୃଦେ ସଞ୍ଚ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ଉଦ୍ଧବ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।*

# ପଞ୍ଚମ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁଣ ହେ କୁରୁ ନୃପବର । ଗଙ୍ଗାର ତୀରେ ସେ ବିଦୁର ॥
ସେ ଗଙ୍ଗାତୀରେ ଉପବନେ । ଦୃଢ଼ ନିଷ୍ଠଳେ ଯୋଗାସନେ ॥
ଅଗାଦ ବୋଧ ବ୍ରହ୍ମ ଋଷି । ବୃକ୍ଷର ତଳେ ଛନ୍ତି ବସି ॥
ମୈତ୍ରେୟ ନାମ ତାହାଙ୍କର । ତେଜ କି ଉଦିତ ଭାସ୍କର ॥
ତାଙ୍କ ସମୀପେ ବେଗେ ଯାଇ । କପୋଳେ ବେନି କର ଦେଇ ॥

## ବିଦୁର ଉବାଚ

ଗୋବିନ୍ଦ ଭାବ ଘେନି ହୃଦେ । ବିଦୁର ପୁଚ୍ଛିଲା ଆନନ୍ଦେ ॥
ଗୋବିନ୍ଦ ପାଦେ ଦେଇ ମନ । କହନ୍ତି ବ୍ୟାସଙ୍କ ନନ୍ଦନ ॥
ଏ ଜୀବ ଲୋକ ସୁଖ ଅର୍ଥେ । କର୍ମ ସମ୍ପାଦୁ ଥାଇ ନିତ୍ୟେ ॥
କେବେ ହେଁ ଦୁଃଖ ନ ଚିନ୍ତଇ । ନିଷ୍କାମ ମାର୍ଗେ ନ ଇଚ୍ଛଇ ॥

ସୁଖର ଅନ୍ତେ ଦୁଃଖ ଲଭେ । କହ ଏ କେବଣ ପ୍ରସ୍ତାବେ ॥
କୃଷ୍ଣ ବିମୁଖ ଯେଉଁ ନର । କର୍ମ ସ୍ୱଭାବ ତାହାଙ୍କର ॥
କାହିଁ ପାଇବି ସୁଖ ବାଞ୍ଛା । କୁଣ୍ଠିତ କର୍ମ ଗୁରୁଦୀକ୍ଷା ॥
କୃଷ୍ଣର ଅନୁଗ୍ରହୀ ଜନେ । ଭୂତ ଭବିଷ୍ୟ ବର୍ତ୍ତମାନେ ॥
କୁଶଳ କର୍ମ ଆଚରନ୍ତି । କ୍ଷମ କୁଶଳେ ସେ ଭୁଞ୍ଜନ୍ତି ॥
ତୁ ସାଧୁ ଜନଙ୍କର ସାର । କହ ସାଧୁ ମାର୍ଗ ବିଚାର ॥
କେମନ୍ତେ କୃଷ୍ଣକୁ ଆରାଧି । ପ୍ରାଣୀ ଲଭନ୍ତି ସର୍ବ ସିଦ୍ଧି ॥
ସେ ହରି ଭଜି ହୃଦଗତେ । ଭଗତ ଜନ ଅନୁମତେ ॥
ନିର୍ମଳ ଚିତ୍ତେ ଜ୍ଞାନ ଜହେ । ଜନ୍ମ ମରଣ ପାପ ଦହେ ॥
ସେ ହରି ନାନା ଅବତାରେ । ସଂସାରେ ଯେତେ କର୍ମ କରେ ॥
ସ୍ୱଭାବେ ତ୍ରୈଲୋକ୍ୟ ଈଶ୍ୱର । ବ୍ରହ୍ମା ଶଙ୍କରେ ଆଗୋଚର ॥
ସ୍ୱଭାବେ ଚେଷ୍ଟାଯାର ନାହିଁ । ସେ କିମ୍ପା ସଂସାର ସର୍ଜ୍ଜଇ ॥
ବ୍ରହ୍ମାଣ୍ଡେ କରି ନାନା ମୂର୍ତ୍ତି । ଯେ ଜୀବ ଯେମନ୍ତେ ଜୀଅନ୍ତି ॥
ଜୀବଙ୍କ ହୃଦ ମଧ୍ୟେ ରହେ । କେବଳ ଆତ୍ମା ମାୟା ମୋହେ ॥
ଯୋଗେଶ୍ୱରଙ୍କ ହୃଦଦେଶେ । ସ୍ୱଭାବେ ରହେ ଏକ ଅଂଶେ ॥
ବହୁ ପ୍ରକାରେ ପ୍ରକାଶଇ । ରବି ଯେସନେ ଶୂନ୍ୟେ ଥାଇ ॥
କ୍ରୀଡ଼ା ବିହରେ ଏ ଜଗତେ । ରୂପ ପ୍ରକାଶେ ବହୁମତେ ॥
କର୍ମ କରଇ ଏ ଜଗତେ । ଗୋବିନ୍ଦ ପ୍ରସନ୍ନର ଅର୍ଥେ ॥
ସେ ହରି ଚରିତ ଅମୃତ । ଶୁଣି ସନ୍ତୋଷ ନୁହେଁ ଚିତ୍ତ ॥
ସେ ଆଦି ଲୋକନାଥ ହରି । ଯେ ଅବା ତତ୍ତ୍ୱେ ଆଶ୍ରେକରି ॥
ଲୋକ ଅଲୋକ ଲୋକପାଳ । ଅନେକ ଭୁବନ ମଣ୍ଡଳ ॥
ନାନା ପ୍ରକାରେ ଭେଦ କରି । ପ୍ରାଣୀଙ୍କି କର୍ମ ସୂତ୍ରେ ଧରି ॥
ସେ ନାରାୟଣ ଆତ୍ମଯୋନି । ବିଶ୍ୱ ସର୍ଜ୍ଜଇ ତାହା ଘେନି ॥
ଏ କଥା କହ ମୁନି ମୋତେ । ସଂସାରୁ ତରିବେ ଯେମନ୍ତେ ॥
ପର ଅପର କଥା ଯେତେ । ଗୋବିନ୍ଦ ଚରିତ ଯେମନ୍ତେ ॥
ବ୍ୟାସଙ୍କ ମୁଖୁଁ ଅନୁକ୍ଷଣେ । ଶୁଣିଛି ତୃଷିତ ଶ୍ରବଣେ ॥
ଅଳପ ସୁଖ ଯା ଲକ୍ଷେଣ । ସେ କାହିଁ ହରିବ ମୋ ମନ ॥
କୃଷ୍ଣ ଚରିତ ତୀର୍ଥପଦ । ହରଇ ବିଷୟା ବିଷାଦ ॥
ସକଳ ପୁଚ୍ଛେ ମୁନି ଗଣେ । ଯାର ଚରିତ ଅନୁକ୍ଷଣେ ॥
ସ୍ତୁତି କରନ୍ତି ଆତ୍ମଭାବେ । କେବଳ ଆତ୍ମଜ୍ଞାନ ଲାଭେ ॥
ଯେ କଥା ପଶି କର୍ଣ୍ଣଦ୍ୱାରେ । ସୁତୀକ୍ଷ୍ଣ ଚକ୍ର ଘେନି କରେ ॥
ଯେ କର୍ମ ଗୃହବନ୍ଧେ ଥାଇ । ତ୍ରିଗୁଣ ରଜ୍ଜୁ ଗଳେ ଦେଇ ॥
ଜନ୍ମ ମରଣ ମାର୍ଗେ ଟାଣେ । ସେ କର୍ମ ଛିଡ଼େ ତତ୍କ୍ଷଣେ ॥
ଏମନ୍ତେ କୃଷ୍ଣ ଗୁଣ ଯେତେ । ଗୋବିନ୍ଦ ଚରିତ୍ର ଯେମନ୍ତେ ॥
କହିଲେ ମୈତ୍ରେୟ ଅଗ୍ରତେ । ବିଦୁର ଯୋଡ଼ି କରପତ୍ରେ ॥
ଯାହା ଶୁଣନ୍ତେ ଜ୍ଞାନ ମୁଖେ । ମତି ନ ରହେ ଅଜ୍ଞା ଦୁଃଖେ ॥
ଯାହା ଶୁଣନ୍ତେ ନିତି ନିତି । ନିବିଡ଼େ ବଢ଼ଇ ପୀରତି ॥
ସେ ହରି ଶ୍ରବଣ କଥନେ । ଯେ ପ୍ରାଣୀ ବଞ୍ଚେ ଅନୁକ୍ଷଣେ ॥
ସକଳ ଦୁଃଖ ତାର ହରେ । ରବି ଯେସନେ ଅନ୍ଧକାରେ ॥
ଯେ ହରି କଥନେ ବିମୁଖ । ତାର ଜୀବନ ସଦା ଦୁଃଖ ॥
କାଳର ବଳେ ନାଶ ଯାନ୍ତି । ତାର ଆୟୁଷ ବ୍ୟର୍ଥ ଗତି ॥
ଏଣୁ ଗୋବିନ୍ଦ କଥା ଯେତେ । ଆଗମ ନିଗମ ଉକତେ ॥
ସକଳ କଥା ମଧ୍ୟେ ସାର । ସର୍ବ କଳ୍ପନା ସୁଖଘର ॥
ଉଦ୍ଧରି କହ ବିପ୍ର ମୋତେ । ଏ ଜୀବ ଆତ୍ମା ମୋକ୍ଷ ଅର୍ଥେ ॥
ପୁଷ୍ପର ସାର ମଧୁଁ ଯେହ୍ନେ । ଉଦ୍ଧାରି ମଧୁ କର ଘେନେ ॥
ଚିର ସନ୍ତୋଷେ ପାନ କରେ । ନିର୍ମଳ ଭାବେ ଦିନ ହରେ ॥
ସୃଷ୍ଟି ପାଳନ ସଂହାରଣେ । ଯେ ହରି ମାୟା ଆତ୍ମା ଗୁଣେ ॥
ନାନା ପ୍ରକାରେ ଶକ୍ତିଧରେ । ଅଶେଷ ଶରୀରେ ବିହରେ ॥
ଅତି ପୁରୁଷ କର୍ମ କରେ । ଆନନ୍ଦେ ସଂସାରେ ବିହରେ ॥
ତାହାର ଗୁଣ କର୍ମ ଯେତେ । ଭୋ ମୁନି କହ ମୋ ଅଗ୍ରତେ ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ବିଦୁରର ବାଣୀ । ଆନନ୍ଦେ ମଇତ୍ରେୟ ଶୁଣି ॥
ଏ ଜୀବ ନିସ୍ତରେ ଯେମନ୍ତେ । କହନ୍ତି ବିଦୁର ଅଗ୍ରତେ ॥
ବିଦୁର ସାଧୁ ତୋ ବଚନ । ଯେଣେ ତରିବେ ଦୁଃଖୀଜନ ॥
ଏ କଥା ହରିପରାୟଣ । ବିସ୍ତାରି ପୁଚ୍ଛ ତୁ କାରଣ ॥
ବ୍ୟାସର ବୀର୍ଯ୍ୟେ ତୁ ସ୍ୱଭାବେ । ଜନ୍ମ ଲଭିଲୁ ହରି ଭାବେ ॥
ତୁ ଯମ ଶୂଦ୍ରରୂପ ବହି । ମାଣ୍ଡବେ ତହୁଁ ଶାପ ପାଇ ॥
ଶୂଦ୍ରର ଗର୍ଭେ ତୋର ଜାତ । ଏଣୁ ତୁ ବ୍ୟାସଙ୍କର ସୁତ ॥
ସେ ବିପ୍ରଶାପ ମୋକ୍ଷ ଅର୍ଥେ । ହରି ଭଜିଲୁ ଅବିରତେ ॥
ସେ ହରି ପ୍ରାଣତ୍ୟାଗ କାଳେ । ବନେ ପିପ୍ପଳ ବୃକ୍ଷମୂଳେ ॥
ତୋହର ଅର୍ଥେ ମୋତେ ଜ୍ଞାନ । କହିଲେ ଦେବକୀ ନନ୍ଦନ ॥
ସେ ଜ୍ଞାନ ତୋତେ ମୁଁ କହିବି । ଶୁଣନ୍ତା ପ୍ରାଣୀ ନିସ୍ତାରିବି ॥
ସେ ହରି ଯୋଗ ମାୟା ବଳେ । ଲୀଳା ବିହରେ ଏ ଶୟଳେ ॥
ବିଶ୍ୱ ସିର୍ଜ୍ଜଇ ପାଳି ହରେ । ଯେ ରୂପେ ଯେବା କର୍ମ କରେ ॥
ବ୍ୟାସଙ୍କ ଜ୍ୟେଷ୍ଠ ଭ୍ରାତ ଯେତେ । ଯୋଜନଗନ୍ଧା ଅନୁମତେ ॥
ନାନା ପ୍ରକାରେ ଲୀଳା କରି । ଇଚ୍ଛାଏ ସଂସାରେ ବିହରି ॥
ସୃଷ୍ଟିର କାଳେ ଭଗବାନ । ଆତ୍ମାକୁ ଆତ୍ମାରୂପେ ଧ୍ୟାନ ॥
କରି ନ ଦେଖେ ଏକ ଜ୍ୟୋତି । ସେ ପୁଣି ଆତ୍ମାଜ୍ଞାନେ ସ୍ଥିତି ॥

ଅଶେଷ ଭକ୍ତି ଯାର ଦେହେ । ନିହିତ ପ୍ରାୟେ ସୁଖେ ରହେ ॥
ସେ ଶକ୍ତି ଜ୍ଞାନ ବଳ ସ୍ମରି । ତକ୍ଷଣେ ମାୟାରୂପ ଧରି ॥
ସତ ଅସତ ଆତ୍ମା ଯାର । ଯେ ଭାବେ ସ୍ଥିତି ଏ ସଂସାର ॥
ସେ ମାୟା ବଳେ ବିଧିରୂପେ । ତ୍ରିଗୁଣ ମାୟାଗୁଣ ସୁଖେ ॥
ପୁରୁଷ ରୂପେ ବୀର୍ଯ୍ୟେଥୋଇ । ସେ ବୀର୍ଯ୍ୟ ସୁଖେ ପ୍ରକାଶଇ ॥
ଅବ୍ୟକ୍ତ ମଧ୍ୟୁ କାଳବଳେ । ମହତ ହୃଦୟ ନିଷ୍ଠଳେ ॥
ସେ ଦ୍ରବ୍ୟ ଗୁଣ କାଳ ଅଂଶ । ଅନ୍ଧାରେ ଯେହ୍ନେ ରବିଦୃଶ୍ୟ ॥
ଆତ୍ମାରେ ଆତ୍ମା ଗୁଣ ବଳେ । ଲହରୀ ଯେହ୍ନେ ସିନ୍ଧୁଜଳେ ॥
ସେ ପୁଣି ଈଶ୍ୱରର ଇଚ୍ଛା । ଯହୁଁ ଉପୁଜେ ସୃଷ୍ଟି ଦୀକ୍ଷା ॥
ତାର ବିକାରୁ ଆହଙ୍କାର । ତକ୍ଷଣେ ହୋଇଲା ବାହାର ॥
କାର୍ଯ୍ୟ କାରଣେ ତାର ଦେହ । ଭୂତ ଇନ୍ଦ୍ରିୟ ମନୋମୟ ॥
ବିକାର ରାଜସ ତାମସ । ଏ ତିନିରୂପେ ତା ପ୍ରକାଶ ॥
ସେ ପୁଣି ବିଷ୍ଣୁ ମାୟାବଳେ । ଜଳ ବୁବ୍ବୁଦ ଯେହ୍ନେ ଜଳେ ॥
ମନୁ ଉପଜିଲା ତକ୍ଷଣ । ଇନ୍ଦ୍ରିୟ ଦେବଙ୍କ କାରଣ ॥
ତେଣୁ ପ୍ରକାଶ ଇନ୍ଦ୍ରିଗଣ । ସେ ଜ୍ଞାନ ପରମ କାରଣ ॥
ମନୁ ଉପୁଜିଲା ଶବଦ । ରସ ସ୍ୱରଶ ରୂପ ଗନ୍ଧ ॥
ଏ ପଞ୍ଚ ସୂକ୍ଷ୍ମ ଗୁଣ ମିଶି । ତକ୍ଷଣେ ଗଗନେ ପ୍ରକାଶି ॥
ସେ କାଳ ମାୟାଯୋଗ ଅଂଶେ । ବିଷ୍ଣୁ ସ୍ୱରୂପେ ଦୃଶ୍ୟାଦୃଶ୍ୟେ ॥
ତହି ଶବଦ ଗୁଣ ଥାଇ । ଶୂନ୍ୟେ ପବନେ ପ୍ରକାଶଇ ॥
ଯାହାର ତହୁଁ ବେନିଗୁଣ । ଶବଦ ସ୍ୱରଶ ଲକ୍ଷଣ ॥
ସେ ଶୂନ୍ୟବଳେ ବିପରୀତ । ଜ୍ୟୋତି ତାହାର ତହୁଁଜାତ ॥
ସେ ଜ୍ୟୋତି ରୂପମଧ୍ୟେ ଥୋଇ । ଶବ୍ୟ ସ୍ୱରଶ ମଧ୍ୟେ ଥାଇ ॥
ବାୟୁ ବିକାରେ ଯେହ୍ନେ ଜଳ । ସର୍ବ ଶରୀର ରସ ମୂଳ ॥
ଏ ତିନି ଗୁଣ ଜଳେ ଥୋଇ । ଭୂମି ଉପୁଜେ ଜଳେ ଥାଇଁ ॥
ଏମନ୍ତେ ସୃଷ୍ଟି ପରିବାର । ଭୂତ ଇନ୍ଦ୍ରିୟଙ୍କ ଈଶ୍ୱର ॥
ତାହାଙ୍କୁ ଲକ୍ଷ୍ୟ ଦେବଗଣେ । ଭୂତ ଇନ୍ଦ୍ରିୟଙ୍କ କାରଣେ ॥
ଅଧିଦେବତା ଅଧିକାରେ । ପ୍ରାଣୀଙ୍କ ବିଷୟ ଗୋଚରେ ॥

## ଦେବ ଉବାଚ

ଏମନ୍ତେ ମୈତ୍ରେୟ ମୁନି । ସଙ୍ଗତେ ଉଦ୍ଧବଙ୍କୁ ଘେନି ॥
ସକଳ ଦେବେ ମନଛନ୍ଦେ । କହିଲେ କୃଷ୍ଣ ସନ୍ନିଧାନେ ॥
କର ଅଞ୍ଜଳି ଶିରେ ଦେଇ । ଭାବେ ବୋଲନ୍ତି କୃଷ୍ଣ ଧ୍ୟାୟୀ ॥
ଭୋ ଦେବ ନମୁଁ ତୋ ପୟରେ । ପ୍ରସନ୍ନ ଜନ ଦୁଃଖ ହରେ ॥
ସେ ପଦ୍ମପାଦ ଆଶ୍ରେକରି । ସଂସାରୁ ତରନ୍ତି ସଂସାରୀ ॥
ହେ ଧାତା ତୋର ମାୟାବଳେ । ଅଶେଷ ଜନ୍ତୁ ଏ ଶୟଳେ ॥
ତରନ୍ତି ତାପ ତ୍ରୟ ଭ୍ରମ । କେବେ ହେଁ ନ ଲଭନ୍ତି ଶ୍ରମ ॥
ତୋ ପାଦପଦ୍ମ ଛାୟାତଳେ । ଯେ ପ୍ରାଣୀ ରହନ୍ତି ନିଷ୍ଠଳେ ॥
ଶେଷେ ସଂସାରୁ ତରି ଯାନ୍ତି । କେବେହେଁ ଭ୍ରମେ ନ ପଡ଼ନ୍ତି ॥
ଏଣୁ ତୋ ପାଦସେବା ଅର୍ଥେ । ଆମ୍ଭେ ରହିଲୁ ଏ ଜଗତେ ॥
ତୋ ମୁଖ ପଦ ଛାୟା ପ୍ରାୟେ । ଯେମନ୍ତେ ପକ୍ଷୀଙ୍କ ଆଶ୍ରୟେ ॥
ନିଶ୍ଚିନ୍ତ ପ୍ରାୟେ ଘୋର ବନେ । ଆଶ୍ରେ କରନ୍ତି ମୁନିଜନେ ॥
ସେ ମୁନିମାନଙ୍କ ଚରଣେ । ସମ୍ପୂର୍ଣ୍ଣ ଅଧମ ରକ୍ଷଣେ ॥
ସେ ପାଦ ଧୋଇ ତୀର୍ଥ ଜଳେ । ସ୍ୱଭାବେ ପିଅନ୍ତି ନିଷ୍ଠଳେ ॥
ଏ ଯେଣୁ ତୋହର ଚରଣେ । ହୃଦେ ଭାବନ୍ତି ଅନୁକ୍ଷଣେ ॥
ଜ୍ଞାନ ବୈରାଗ୍ୟ ମନେ ଚିନ୍ତି । ସେ ପାଦ ପଦ୍ମେ ଆଚରନ୍ତି ॥
ସେ ପାଦେ ପଶିବୁ ଶରଣ । ପ୍ରସନ୍ନ ହୁଅ ନାରାୟଣ ॥
ସୃଷ୍ଟି ସଂହାର ସ୍ଥିତି ଅର୍ଥେ । ତୋ ଅବତାର ଏ ଜଗତେ ॥
ସେ ରୂପ ଗୁଣ ଯେ ଚିନ୍ତନ୍ତି । ଏ ଘୋର ସଂସାରୁ ତରନ୍ତି ॥
ଭୋ ନାଥ ଗୃହ ଅନ୍ଧକୂପେ । ପ୍ରାଣୀ ପଡ଼ନ୍ତି ମାୟା ଦୁଃଖେ ॥
ମୁହିଁ ମୋହର ବୋଲି ଗ୍ରାସି । ଦୃଢ଼େ ବାନ୍ଧନ୍ତି ମୋହଫାଶି ॥
ସେ ଦୃଢ଼ ବନ୍ଧର ବିଶ୍ୱାସ । ହେଲେ ଖଣ୍ଡଇ ମୋହ ପାଶ ॥
ଅଶାନ୍ତ ଇନ୍ଦ୍ରିଗଣ ବଳେ । ହୃଦୟ ନୟନ ନିଷ୍ଠଳେ ॥
ଆତ୍ମାର ପଥ ନ ଦେଖନ୍ତି । ଯେ କଷ୍ଟେ ସମ୍ପରି ବିଭୂତି ॥
ତା କଥା ସୁଧାରସ ପାନ । ପ୍ରବୋଧ ଭଜି ଦିବ୍ୟଜ୍ଞାନ ॥
ବୈରାଗ୍ୟ ଶାନ୍ତି ସେ ଲଭନ୍ତି । ନିର୍ଭୟେ ବିଷ୍ଣୁ ଏକେ ଥାନ୍ତି ॥
ଅପରେ ଯେତେ ମୁନି କୁଳେ । ଆତ୍ମା ବିଯୋଗେ ଆଦି ମୂଳେ ॥
ତୋର ପ୍ରକୃତି ମୁଖୁଁ ତରି । ତୋ ପାଦ କମଳ ଆବୋରି ॥
ତୋର ସେବାରେ ଶ୍ରମ ତୁଟେ । ଅଶେଷ ମାୟାବନ୍ଧ ଫିଟେ ॥
ଲୋକ ସର୍ଜିବା ଅର୍ଥେ ତୁହି । ଆତ୍ମାକୁ ଆପଣେ ଭିଆଇ ॥
ତ୍ରିଗୁଣ ଆତ୍ମାବନ୍ଧ ଦେଇ । ଆତ୍ମାକୁ ସର୍ଜୁ ନାଥ ତୁହିଁ ॥
ଆମେ ବିଭକ୍ତି ଭାବେ ଥାନ୍ତେ । ତୋ ପାଦ ଛାଡ଼ିବୁ କେମନ୍ତେ ॥
ଯେମନ୍ତେ ଯଥାକାଳେ ବଳି । ତୋ ପାଦେ ଦେଇ ବନମାଳି ॥
ଥୋକାଏ ପାଇ ତୋର ଚିତ୍ତେ । ତୋ ପାଦ ସେବୁ ଅବିରତେ ॥
ତୁ କୂଟ ସ୍ଥିତି ଆଦି ହରି । ମାୟା ପୁରୁଷ ରୂପଧରି ॥
ତୋ ଶକ୍ତି ଗୁଣ କଞ୍ଜବଳେ । ଅବିଦ୍ୟାଗୃହେ ତୁ ନିଷ୍ଠଳେ ॥
ଅସୁହ କାମେ ବୀର୍ଯ୍ୟ ରଜୁ । ଯାର ଚରଣେ ସୃଷ୍ଟି ସିର୍ଜୁ ॥
ଅମୋଘ ବୀର୍ଯ୍ୟେ ନାଥ ଥୋଇ । ସୃଷ୍ଟି ସର୍ଜନା କରୁ ତୁହି ॥
ତୋହର ତହୁଁ ଆମ୍ଭେ ଜାତ । ଶତ ଶ୍ରୀମୁଖ ଜଗନ୍ନାଥ ॥
ତୋ ଆଜ୍ଞା ଘେନି ଶିରେ ଭାବେ । କହ କି କରିବଇଁ ଏବେ ॥

ଆମ୍ଭଙ୍କୁ ଦିବ୍ୟଚକ୍ଷୁ ଦେଇ । ତୋର ବ୍ୟାପାରେ ରଖ ନେଇ ॥
ଏମନ୍ତ ଦେବଙ୍କ ବଚନ । ଶୁଣି ସନ୍ତୋଷ ଭଗବାନ ॥
ସେ ହରି ଚରଣେ ବିଶ୍ୱାସ । ଭଣଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ମୈତ୍ରେୟ ସମ୍ବାଦେ ଏକାନ୍ତ ଭାବନୋ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟଃ

### ବିବୁଧ ଉବାଚ

ଏମନ୍ତେ ବିବୁଧ ବଚନ । ଶୁଣି ସନ୍ତୋଷ ଭଗବାନ ॥
ନିବୃତ୍ତି ପ୍ରାୟେ ଲୋକହିତ । ଈଶ୍ୱର ଇଚ୍ଛା ଏ ଆୟତ ॥
ସେ କାଳ ଶକ୍ତି ରୂପ ଧରି । ତ୍ରୟୋବିଂଶତି ତତ୍ତ୍ୱେ ପୂରି ॥
ଚେଷ୍ଟା ସ୍ୱରୂପେ ତାଙ୍କ ମଧେ । ନିବୃତ୍ତ କର୍ମର ପ୍ରବୋଧେ ॥
ସଂଯୋଗ କର ଭିନ୍ନା ଭିନ୍ନ । ଯାହାର ଯହିଁ ପ୍ରୟୋଜନ ॥
ଯେ ଯାହା ମାତ୍ରାବଳ ନେଇ । ଅଧିପୁରୁଷ ରୂପ ବହି ॥
ଏମନ୍ତ ପରମ ପୁରୁଷ । ମାତ୍ରାଙ୍କ ମଧ୍ୟେ ପରକାଶ ॥
ଏକ ଆରେକ କ୍ଷୋଭ ପାଇ । ଚର ଅଚର ଲୋକ ତହିଁ ॥
ସୁବର୍ଣ୍ଣମୟ ସେ ପୁରୁଷ । ରହିଲା ସହସ୍ର ବରଷ ॥
ସେ ଜଳରୂପୀ ନାରାୟଣ । ଅନାଦି ପରମ କାରଣ ॥
ସକଳ ଜୀବେ ଆତ୍ମା ସେହି । ସର୍ବ ଶରୀରେ ସଞ୍ଚରଇ ॥
ସଂସାରେ ଯେତେ ପ୍ରଜାପତି । ବିଶ୍ୱସଂସାରକୁ ସ୍ରିଜନ୍ତି ॥
ସେ ଦେବ କର୍ମ ଶକ୍ତିମୟ । ବିଭାଗ କରି ଆତ୍ମା ଦେହ ॥
ସର୍ଜ୍ଜିଲା ଏକାଦଶ ତିନି । ଇନ୍ଦ୍ରି ବ୍ୟାପାରେ କର୍ମ ଘେନି ॥
ଅଶେଷ ପ୍ରାଣୀ ଆତ୍ମା ହରି । ନିଜ ଖେଳନ୍ତେ ଶକ୍ତି ଧରି ॥
ଆଦି ଅବତାର ସର୍ଜ୍ଜନେ । ଏ ଭୂତ ଗ୍ରାମ ଭିନ୍ନେ ଭିନ୍ନେ ॥
ଅଧ୍ୟତ୍ମ ଅଧିଭୂତ ଭାବ । ପୁଣି କଳ୍ପିଲା ଅଧିଦେବ ॥
ବିରାଟ ରୂପେ ଦଶ ପ୍ରାଣ । ଏକା ସେ ହୃଦୟ କାରଣ ॥
ବିଶ୍ୱ ସର୍ଜନେ ତା ସଂହାରି । ବିଜ୍ଞାନେ ତାହାକୁ ସୁମରି ॥
ପ୍ରଜାପତିଙ୍କ ଜନ୍ମ ଜାଣି । ବିରାଜେ ଦେବ ଚକ୍ରପାଣି ॥
ତକ୍ଷଣେ ପଶି ନିଜ ତେଜେ । ଯେବା ଯେ ପ୍ରୟେ ଜନକାର୍ଯ୍ୟେ ॥
ସ୍ଥାନ ଭିଆଇ ଦଶମତେ । ଶୁଣ ତୁ ସ୍ଥାପିଲୁ ଯେମନ୍ତେ ॥
ବିରାଜ ମୁଣ୍ଡ ତୁଣ୍ଡ କରି । ବଚନ ଅର୍ଥେ ଅଧିକାରୀ ॥
ଅଗ୍ନି ସ୍ଥାପିଲା ବାହ୍ୟଅର୍ଥେ । ଏବେ ହୋ ଶୁଣ ଏକ ଚିତ୍ତେ ॥
ସମ୍ମୁଖ ମଧେ ତାଳୁ ଭେଦି । ବରୁଣ ରସନା ସମ୍ପାଦି ॥
ତାହା ଆବୋରି ଷଡ଼ ରସେ । ଲିଙ୍ଗ ରହିଲେ ଦୃଢ଼ ଦେଶେ ॥
ତୁଣ୍ଡ ଉପରେ ନାସାଦ୍ୱାରେ । ବସିଲେ ଅଶ୍ୱିନୀ କୁମାରେ ॥
ଘ୍ରାଣ ଆବୋରି ଗନ୍ଧ ଅର୍ଥେ । ସୁଗନ୍ଧ ଦୁର୍ଗନ୍ଧ ଆୟତେ ॥
ସେ ନାସାମୂଳେ ଦିବାକର । ସମେ ଭିଆଇ ଚକ୍ଷୁଦ୍ୱାର ॥
ଜ୍ୟୋତି ସ୍ୱରୂପେ ସେ ଲୋଚନେ । ବସିଲା ରୂପ ସନ୍ନିଧ୍ୟାନେ ॥
ପବନ ବହେ ପାଏ ପଶି । ଚର୍ମ ଲୋମଶ ମୂଳେ ବସି ॥
ଶୀତ ତପତ ଜାଣିମାରେ । ହୃଦେ ବସିଲା ଅଧିକାରେ ॥
ସେ ବେନି ଚକ୍ଷୁର ଉପରେ । ବାମ ଦକ୍ଷିଣ କର୍ଣ୍ଣଦ୍ୱାରେ ॥
ଶବଦ ଅର୍ଥେ ଦିଗ ବସେ । ଯେବା ଶବଦ ଯେଣେ ଭାଷେ ॥
ଦକ୍ଷ ଉପରେ ବେନି ଭୁଜେ । ଇନ୍ଦ୍ର ବସିଲା ନିଜ ତେଜେ ॥
ବୃତ୍ତି ବ୍ୟାପାରେ କର୍ମ ଅର୍ଥେ । ଜୀବର ଜୀବନ ଯେମନ୍ତେ ॥
କଟି ସନ୍ଧାନ ପାଦ କରି । ତହିଁ ବସିଲେ ନରହରି ॥
ଏ ପିଣ୍ଡ ଚଳିବ ଯେମନ୍ତେ । ଗତ ଗମନ ଦୃଢ଼ ଅର୍ଥେ ॥
ବିଶ୍ୱ ଆଶ୍ରିତ ଲିଙ୍ଗ ବୃତ୍ତି । ତହିଁ ବସିଲା ପ୍ରଜାପତି ॥
ମୂତ୍ର ରେତସ ଅନୁବନ୍ଧେ । ମିଥୁନ ସ୍ପରଶ ଆନନ୍ଦେ ॥
ସନ୍ତତି ଉପୁଜିବା ଅର୍ଥେ । କରି ରହିଲେ ଦୃଢ଼ ଚିତ୍ତେ ॥
ତା ଅର୍ଦ୍ଧ ଊର୍ଦ୍ଧ୍ୱ ଅଙ୍ଗୁଳିରେ । ଯେ ମଳଦ୍ୱାର ପାୟମୂଳେ ॥
ମିତ୍ର ବସିଲା ତା ଆବୋରି । ମୃତ୍ୟୁ ଦେବତା ସଙ୍ଗେ କରି ॥
ମଳ ଉତ୍ସର୍ଗ ଦୃଢ଼ବନ୍ଧେ । ବ୍ୟାପାର ଆବୋରି ଆନନ୍ଦେ ॥
ବାନ୍ଧି ଶବଦେ ବୁଦ୍ଧ ଭେଦେ । ସୁବୁଦ୍ଧି ପ୍ରବୋଧେ ଆନନ୍ଦେ ॥
ହୃଦୟ ଭେଦ ନାସିକାରେ । ଯେ ସର୍ବାସନ ଏ ଗୋଚରେ ॥
ଚନ୍ଦ୍ରମା ରହି ଦୃଢ଼ମତେ । ଆନନ୍ଦେ ରହିଲା ନିଶ୍ଚିନ୍ତେ ॥
ଆତ୍ମାକୁ ଭେଟି ମନ୍ତ୍ରିମନ । ଯେଣୁ କତୃତ୍ୱ କହେ ଜ୍ଞାନ ॥
ତତ୍ତ୍ୱକୁ ଭେଦି କୃଷ୍ଣ ବସେ । ବିଜ୍ଞାନ ପ୍ରକାଶ ଉଦ୍ଦେଶ୍ୟେ ॥
ମୂର୍ଦ୍ଧନି ଦେଶେ ସ୍ୱର୍ଗ ରହେ । ପାଦ ଯୁଗଳେ ମହୀ ରହେ ॥
ଗୁଣଙ୍କ ବୃତ୍ତି ଘେନି ଶୂନ୍ୟ । ନାଭିରୁ ପ୍ରକାଶେ ପବନ ॥
ଏମନ୍ତେ ଥାନ୍ତି ଏକ ସ୍ଥାନେ । ଦେବେ ଆବୋରି ସନ୍ନିଧାନେ ॥
ସୃଷ୍ଟି ସଂଯୋଗେ ଯେଣେ ଜନ । ଦେହେ କହିଲେ ଭଗବାନ ॥
ବ୍ରାହ୍ମଣ ଜନ୍ମିଲା ମୁଖରୁ । ଯେ ଚାରି ବର୍ଣ୍ଣ ମଧେ ଗୁରୁ ॥
ବିରାଜ ତେଜେ ଗୁଣ ହରି । ଭୁଜୁଁ କ୍ଷତ୍ରୀୟ ଜନ୍ମକରି ॥
ବୈଶ୍ୟ ଜନ୍ମିଲା ଜଙ୍ଘଯୁଗେ । କୃଷିକା ଜୀବିକା ସ୍ୱଭାବେ ॥
ଏ ତିନି ବର୍ଣ୍ଣ ସେବା ଅର୍ଥେ । ଶୂଦ୍ର ଜନ୍ମିଲା ପାଦଗତେ ॥
ଯାହାର ସେବା ବୃତ୍ତି ଫଳେ । ହରି ସନ୍ତୋଷ ଏ ଶୟଳେ ॥

ଏ ଚାରିବର୍ଣ୍ଣ ଏ ଜଗତେ । ସ୍ୱଭାବେ ଧର୍ମ ଅନୁମତେ ॥
ଜଗତ ହରି ଗୁରୁ ପାଦେ । ଭଜିବେ ଯୁଗ ଅନୁବାଦେ ॥
ସୁଧା ସ୍ୱକୃତି ଘେନି ସୁଖେ । ବିଷ୍ଣୁ ପୂଜିବେ ଯଜ୍ଞ ମୁଖେ ॥
ଏମନ୍ତେ ଶୁଣହେ ବିଦୁର । ଯାହା କହିଲେ ଗଦାଧର ॥
ତୋତେ କହିଲି ମୁଁ ଭାବେ । ତୁ ଯେ ପଚାରିଲୁ ପ୍ରସ୍ତାବେ ॥
ସେ ହରି ଯୋଗ ମାୟା ଅର୍ଥ । କେ ମୁଖେ କହିତେ ସାମର୍ଥ ॥
ତଥାପି ଜ୍ଞାନ ମୋର ଯେତେ । କହିବି ତୋହର ଅଗ୍ରତେ ॥
ଯାର ମହିମା ଅବଧାନେ । ଜ୍ଞାନ ଅମୃତ ରସ ପାନେ ॥
ଜନ୍ମ ମରଣ ପ୍ରାଣୀତରେ । ନ ବୁଡ଼େ ସଂସାର ସାଗରେ ॥
ତାର ମହିମା ଏ ସଂସାରେ । କେ କହୁ ଶତ ସମ୍ବତ୍ସରେ ॥
ଯାର ମହିମା ଯୋଗୀ ଚିନ୍ତି । ବ୍ରହ୍ମା ଶଙ୍କରେ ମୋହ ଯାନ୍ତି ॥
ଅପରେ କେବା ତାହା ଜାଣେ । କେ ଅବା ସୂକ୍ଷ୍ମ ରେଣୁ ଗଣେ ॥
ଯାର ଚରଣ ଖୋଜିଗଲେ । ମନ ବଚନ ନ ପାଇଲେ ॥
ସେ ହରିପାଦେ କରି ଆଶ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା*
*ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ମୈତ୍ରେୟ ଉଦ୍ଧବ*
*ସମ୍ବାଦେ ନାମ ଷଷ୍ଠୋଽଧ୍ୟାୟ ।*

## ସପ୍ତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏମନ୍ତେ ମଇତ୍ରେୟ ବାଣୀ । ବିଦୁର ଦୃଢ଼ଚିତ୍ତେ ଶୁଣି ॥
ଆନନ୍ଦମନେ ବ୍ୟାସସୁତ । କପୋଳେ ଦେଇ ବେନିହସ୍ତ ॥
ରୋମ ପୁଲକ ତାର ଦେହୀ । ପୁଚ୍ଛେ ମୈତ୍ରେୟ ମୁଖ ଚାହିଁ ॥
ଭୋ ବିପ୍ର ଏ ତ ବିପରୀତ । ଭ୍ରମେ ଭ୍ରମଇ ମୋର ଚିତ୍ତ ॥
ସେ ହରି ସ୍ୱଭାବେ ନିର୍ଗୁଣ । ନିଶ୍ଚିନ୍ତେ ପରମ କାରଣ ॥
ଲୀଳା ବିହାର ଗୁଣ କ୍ରିୟା । ଯେଣେ ସିର୍ଜଇ ତାର ମାୟା ॥
ବାଳେକ କ୍ରୀଡ଼ାଭାବେ ଯେହ୍ନେ । ସେତ ନ ଘଟେ ଅନୁମାନେ ॥
ଇଚ୍ଛା ସ୍ୱଭାବେ ଖେଳ ତାର । ସେ ନୋହେ ସଂଶୟ ଗୋଚର ॥
ଯେ ନିଦ୍ରାଗତ ନିଜ ସୁଖେ । ସେ କିମ୍ପାମିଶେ ଏତେ ଦୁଃଖେ ॥
ସେ ନୀଳା ଗୁଣ ମାୟାବଳେ । ବିଶ୍ୱ ସିର୍ଜଇ ଅବହେଳେ ॥
ପୁଣି ପାଳିଣ କରେ ଅନ୍ତ । ବ୍ୟାପାର ପୁରୁଷ ଯେମନ୍ତ ॥
କର୍ମ କରନ୍ତି ନାନାମତେ । ଯେବେ ସକଳ ପାତ୍ର ଅର୍ଥେ ॥
ଏମନ୍ତେ ସୃଷ୍ଟି ସେ କରଇ । ସେ କର୍ମ ତାକୁ ନ ଲାଗଇଁ ॥
ମାୟା ସଂଯୋଗେ ନିପାତଇ । ଅନ୍ୟ ପୁରୁଷ ପ୍ରାୟେ ହୋଇ ॥
ସେ ଏକ ଆତ୍ମା ଦିବ୍ୟ ପତି । ସକଳ ତେଜେ ତାର ଗତି ॥
କର୍ମରୁ ସୁଖ କ୍ଳେଶ ପୂରେ । ସେ କିମ୍ପା ଏ କର୍ମ ବିହରେ ॥
ଅଜ୍ଞାନ ସଂକଟେ ମୋ ମନ । ପଡ଼ି ଭାଳଇ ଛନ ଛନ ॥
ଏଣୁ ମୋ ମନେ ଯେତେ ଖେଦ । ଜ୍ଞାନ ଖଡ଼ଗେ ମୁନି ଛେଦ ॥

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନିବର । ଶୁଣ ପରୀକ୍ଷ ଦଣ୍ଡଧର ॥
ଏମନ୍ତେ ବିଦୁରର ବାଣୀ । ସାନନ୍ଦେ ମଇତ୍ରେୟ ଶୁଣି ॥

### ମୈତ୍ରେୟ ଉବାଚ

ବିଷ୍ଣୁକୁ ଚିନ୍ତି ଅନୁରାଗେ । ହସି କହନ୍ତି ତାର ଆଗେ ॥
ସେ ବିଷ୍ଣୁ ମାୟାମୟ ଦେହୀ । ଏମନ୍ତ ମନକୁ ମୋହଇ ॥
ଈଶ୍ୱର ସ୍ୱଭାବେ ବିମୁକ୍ତ । ସେ ଭାବେ ପ୍ରୟୋଜନ ଯୁକ୍ତ
ଆତ୍ମାର ବିପରୀତ ଭାବେ । ଈଶ୍ୱର ମହିମା ସ୍ୱଭାବେ ॥
ସୃଷ୍ଟିର ଭେଦେ ଇଚ୍ଛାକରେ । ଯେସନେ ଦର୍ପଣ ଭିତରେ ॥
ଦେଖନ୍ତା ପୁରୁଷକୁ ମୋହେ । ତାର ବିକାରୁ ଦେହ ବହେ ॥
କର୍ମ କରନ୍ତେ ସେ କରଇ । ସେ ଯେହ୍ନେ ତାକୁ ନ ଲାଗଇ ॥
ଏମନ୍ତେ ବିଷ୍ଣୁ ମାୟାବଳେ । ଚନ୍ଦ୍ରର ଛାୟା ଯେହ୍ନେ ଜଳେ ।
ଜଳ କମ୍ପନେ ସେ କମ୍ପଇ । ଯେହ୍ନେ ଚନ୍ଦ୍ରକୁ ନ ଲାଗଇ ॥
ଏମନ୍ତେ ବିଷ୍ଣୁ ମାୟାବଳେ । ଆତ୍ମାରେ ନ ରହେ ନିଷ୍ଫଳେ ॥
ଯୋଗୀଏ ଯୋଗଧ୍ୟାନବଳେ । ଆତ୍ମାରେ ରହନ୍ତି ନିଷ୍ଫଳେ ॥
ଇନ୍ଦ୍ରିୟ ତାଙ୍କୁ ନ ଲାଗନ୍ତି । ଅନ୍ତରେ ନିଷ୍ଫଳେ ରହନ୍ତି ॥
ବିଷ୍ଣୁର ପାଦେ ସେହିମତେ । ଯେବା ଚିନ୍ତନ୍ତି ଅବିରତେ ॥
ତାହାଙ୍କ ଦେହେ କ୍ଳେଶ ଯେତେ । ଦହିଯ୍ୟ ହୁଅନ୍ତି ସମସ୍ତେ ॥
ଏଣୁ କୃଷ୍ଣର ଗୁଣଗାଥା । ଯେ ଶୁଣେ ଯେ ଅବା ବକତା ॥
ଅଶେଷ କ୍ଳେଶ ତାଙ୍କ ଦେହେ । ଦହନ ହୋନ୍ତି ତୃଣ ପ୍ରାୟେ ॥
ସେ ହରି ପାଦପଦ୍ମ ଗନ୍ଧେ । ଚିତ୍ତ ଲୋଭିତ ମକରନ୍ଦେ ॥
ନିତ୍ୟେ ସେବନ୍ତି ଭୃଙ୍ଗ ପ୍ରାୟେ । ତାଙ୍କୁ ନ ଲାଗେ ଯମଭୟେ ॥

### ବିଦୁର ଉବାଚ

ଭୋ ମୁନି ତୁମ୍ଭ ବାକ୍ୟ ଅସି । ମୋ ମନ ସଂଶୟ ବିନାଶି ॥
କ୍ଷୀଣ ସଂଶୟ ହୋଇ ଯେହ୍ନେ । ବିସ୍ତାରି ବଞ୍ଚିତ କାରଣେ ॥
ଏ ସୃଷ୍ଟି ବିସ୍ତାର କାରଣେ । ଯେମନ୍ତେ ପ୍ରଜାପତି ଗଣେ ॥
ସର୍ଗ ସମେତେ ପ୍ରତି ସର୍ଗ । ମନୁ ମନୁ ଅନ୍ତରେ ଭୋଗ ॥
ଏହାଙ୍କ ତହୁଁ ବଂଶ ଯେତେ । ଜନ୍ମିଲେ ବଂଶାନୁଚରିତେ ॥
ବିରାଜ ରୂପେ ଦେହ ମଧ୍ୟେ । ଯେବା ବସନ୍ତି ଅର୍ଦ୍ଧ ଉର୍ଦ୍ଧେ ॥

ଚତୁର ଦଶଶ୍ଳୋକ ସ୍ଥିତି । କେ କେତେ ଅନ୍ତରେ ବସନ୍ତି ॥
ଦେବ ମନୁଷ୍ୟ ପଶୁଗଣେ । ପକ୍ଷୀ ପତଙ୍ଗ ଗମି ଯେଣେ ॥
ସ୍ୱେଦ ଅଣ୍ଡଜ ଜରାୟୁଜ । ଉଦ୍ଭିଦ ଆଦି ବୃକ୍ଷରାଜ ॥
ଯେ ଗୁଣେ ଯେବା ଅବତାର । ସୃଷ୍ଟି ପାଳନର ଅନ୍ତର ।
ଯେସନେ ସର୍ଗେ ଶ୍ରୀନିବାସ । ଯାର ମହିମା ଅପ୍ରକାଶ ॥
ଯେ ବର୍ଣ୍ଣାଶ୍ରମଙ୍କ ବିଭାଗ । ସୁଶୀଳ ପୁରୁଷ ସ୍ୱଭାବ ॥
ଋଷିଙ୍କ ଜନ୍ମ କର୍ମ ଯେତେ । ଦେବ ବୃକ୍ଷର ଶାଖା ଯେତେ ॥
ଯଜ୍ଞ ବିଧାନ ବେଦ ବିଦ୍ଧି । ଯୋଗ ସାଧନେ ଯେତେ ସିଦ୍ଧି ॥
ନିଷ୍କାମ ସାଂଖ୍ୟବିଦ୍ୟା ସାର । ଯେମନ୍ତ ତତ୍ତ୍ୱର ବିଚାର ॥
ପାଷାଣ୍ଡ ପଥ ବନ ସମ । ଯେ ପ୍ରତିଲୋମ ଅନୁଲୋମ ॥
ଜୀବର ଗତି ଯେତେ ମାର୍ଗେ । ସେ ରୂପ ଗୁଣ କର୍ମଯୋଗେ ॥
ଧର୍ମାର୍ଥ କାମ ମୋକ୍ଷ ଆଦି । ଯେ ମାର୍ଗେ ଯେମନ୍ତ ସମ୍ପାଦି ॥
ଯେ ବିଧି ବେଦ ଅନୁମାନି । ଏ ସର୍ବ କହ ମୋତେ ମୁନି ॥
ଶ୍ରାଧରେ ଯେ ନିତି ବିଧି । ପିତୃଗଣଙ୍କ ସ୍ଥାନ ସିଦ୍ଧି ॥
ଗ୍ରହ ନକ୍ଷତ୍ର ତାରାଗଣେ । ଯେ କାଳରୂପୀର ପ୍ରମାଣେ ॥
ଦାନ ତପସ୍ୟା ଫଳ ଯେତେ । ଯେ ଅବା ଲଭେ ଇଷ୍ଟଯୁତେ ॥
ପ୍ରବାସ ସତ୍ୟ ଯେବା ଧର୍ମ । ଆପଦ କାଳେ ଯେବା କର୍ମ ॥
ଯେଣେ ଗୋବିନ୍ଦ ତୋଷ ହୋଇ । ଯେ ଧର୍ମ ଜନନୀ ବୋଲାଇ ॥
ଯେ ହରି ପ୍ରସନ୍ନେ ଯେମନ୍ତେ । ଭୋ ମୁନି କହ ଦୟା ଚିତ୍ତେ ॥
ଯେ ଭାବେ ଗୁରୁ ଶିଷ୍ୟଗଣେ । ଜ୍ଞାନ କହନ୍ତି ସାଧୁଗଣେ ॥
ଯେ ପୁତ୍ରେ ପିତା ତୋଷ ହୋଇ । ସୁଧର୍ମ ମତେ ଶିକ୍ଷାଦେଇ ॥
ଆତ୍ମାର ତତ୍ତ୍ୱ ଅବା କେତେ । ସୃଷ୍ଟିରେ ସଞ୍ଚରନ୍ତି ଯେତେ ॥
ବିରାଜ ରୂପେ ଦେହେ ଥାନ୍ତି । ପୁଣି କେମନ୍ତେ ଲୀଳା ହୋନ୍ତି ॥
ଆତ୍ମାର ସ୍ଥିତ ଅବା କାହିଁ । କିବା ସ୍ୱରୂପେ କି ପ୍ରକାଶଇ ॥
ଯେ ଗୁରୁ ଶିଷ୍ୟଙ୍କ ସମ୍ବାଦେ । ଜ୍ଞାନ ସାଧନ୍ତି ମୋକ୍ଷ ସାଧେ ॥
ଏ ଆଦି ପ୍ରଶ୍ନ ଯେତେ ମୋର । ପଣ୍ଡିତ ଜନେ ଯେ ଗୋଚର ॥
କେମନ୍ତେ ପୁରୁଷଙ୍କ ଦେହେ । ଭକ୍ତି ବୈରାଗ୍ୟ ଜାତ ହୁଏ ॥
ଏ ଯେତେ ପୁରୁଷ ମୁରାରି । ହରି ମହିମା ଇଚ୍ଛା କରି ॥
ଜଗତେ ଦେଖ ଯଜ୍ଞ ଯେତେ । ତପ ସମାଧି ଦାନ ତୀର୍ଥେ ॥
ଜୀବଙ୍କୁ ଯେବା ଦୟାବହେ । ହରିଙ୍କୁ ଦେଖେ ସର୍ବଦେହେ ॥
ସେ ପୁଣ୍ୟ କଳା ଯେତେ ସମ । ଯେ ହୋନ୍ତି ତେଜି ନିଜ ଧର୍ମ ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ପୁରାଣ ସଂକଳ୍ପେ । ବିଦୁର ମୈତ୍ରେୟ ସମ୍ବାଦେ ॥
ଆନନ୍ଦେ ଯେତେ ପଚାରିଲା । ସୃଷ୍ଟି ସମ୍ବାଦେ ବିଷ୍ଣୁ ଲୀଳା ॥
ଶୁଣି ହରଷେ ମୁନିବର । ବୋଲନ୍ତି ଶୁଣ ହେ ବିଦୁର ॥
ଏ ଭାଗବତ ପ୍ରଶ୍ନବାଣୀ । କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ ॥
ଯେ ଅବା ବଦନେ ଉଚ୍ଚାରି । ବିଷ୍ଣୁ ମାୟାରୁ ଯାନ୍ତି ତରି ॥
ତୃତୀୟ ସ୍କନ୍ଧେ ଭାଗବତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ମୈତ୍ରେୟ ବିଦୁର ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

ବିଦୁର ପ୍ରଶ୍ନ କର୍ଣ୍ଣେ ଶୁଣି । ଆନନ୍ଦେ ମଇତ୍ରେୟ ଭଣି ॥
ବିଷ୍ଣୁ ଚରଣେ ଚିତ୍ତ ଥାୟି । କହନ୍ତି ବିଦୁରଙ୍କୁ ଚାହିଁ ॥

## ମୈତ୍ରେୟ ଉବାଚ

ଶୁଣ ବିଦୁର ଶୁଦ୍ଧଚେତା । ସୁପୁଣ୍ୟ ପରୀକ୍ଷିତ କଥା ॥
ଯାହାର ଜନ୍ମ ସୋମବଂଶେ । ଯେ ବଂଶ ମହଦ୍ ପ୍ରଶଂସେ ॥
ତାର ମହିମା ଶୁଣି କର୍ଣ୍ଣେ । ସେବା କରନ୍ତି ଭକ୍ତଜନେ ॥
ଲୋକପାଳନେ ଦୟାବୁଦ୍ଧି । ସର୍ବ ସମ୍ପଦ ଗୁଣ ନିଧି ॥
ଭଗତ ଜନ ଶିରୋମଣି । ଯାର ମହିମା ଯଶ ଶୁଣି ॥
ଇହ ସଂସାରେ କୃଷ୍ଣ ଲୀଳା । ବିଶ୍ୱ ମଙ୍ଗଳ କୀର୍ତ୍ତିମାଳା ॥
ନିରତେ ଶୁକ ମୁଖୁଁ ଶୁଣି । ତୋଷ ନ ଲଭେ ପ୍ରତିକ୍ଷଣି ॥
ତାର ମହିମା ତୋ ସମୀପେ । କହିବି ଭକ୍ତଜନ ମୁଖେ ॥
ଦୁଃଖ ସମୁଦ୍ରେ ସୁଖ ପ୍ରାୟେ । ନିରତେ ମନ ଯାର ଧାୟେ ॥
ତାହାଙ୍କ ନିସ୍ତାରଣ ଅର୍ଥେ । ଶୁଣ କହିବା ତୋ ଅଗ୍ରତେ ॥
ଯେ ଭାଗବତ ରସ ସାର । ଋଷିଙ୍କୁ ଦେଲେ ଚକ୍ରଧର ॥
ଶୁଣ ବିଦୁର ସାବଧାନେ । ବ୍ରହ୍ମାର ପୁତ୍ର ଏକଦିନେ ॥
ସନକ ଆଦି ସାତର୍ଭ୍ରାତେ । ମିଳିଲେ ଅନନ୍ତ ଅଗ୍ରତେ ॥
ରତ୍ନ ଆସନେ ଭୂମିଗତେ । ବସେ ଆନନ୍ଦ ଶୁଦ୍ଧଚିତ୍ତେ ॥
ଆଦି ଅନନ୍ତ ରୂପ ସାର । ଅକୁଣ୍ଠ ମହିମା ଯାହାର ॥
ତାଙ୍କ ସମୀପେ ସପ୍ତଭ୍ରାତେ । ମିଳିଲେ ଜ୍ଞାନ ପ୍ରଶ୍ନ ଅର୍ଥେ ॥
ପରମତତ୍ତ୍ୱ କରି ଦୀକ୍ଷା । ଏକେ ଆରକେ କଲେ ଶିକ୍ଷା ॥
ସ୍ୱଭାବେ ସ୍ଥିତି ଯା ଶରୀର । ଦେବ ମାନବେ ଅଗୋଚର ॥
ସର୍ବେ କରନ୍ତି ବହୁମାନ୍ୟ । ଶ୍ରୀ ବାସୁଦେବ ଯାର ନାମ ॥
ମୃଣାଳ କୋଷ ଯାର ଦେହୀ । ନୀଳ କମଳ ଚକ୍ଷୁ ଦୁଇ ॥
ବିବୁଧ ଗଣଙ୍କ ଆନନ୍ଦେ । ସୁଖେ ନିଷ୍କଳ ଯୋଗ ପଦେ ॥
ନିର୍ମଳ ଭୋଗବତୀ ନୀରେ । ଧୌତ କବରୀ ଭାର ଶିରେ ॥

ବସନ୍ତି ସୁନ୍ଦର କାମିନୀ । ବିବିଧ ଉପହାର ଘେନି ॥
ସେବନ୍ତି ଯାର ପାଦ ଗତେ । ଉତ୍ତମ ବର ପ୍ରୀତି ଅର୍ଥେ ॥
ସୁସ୍ୱର ଗୀତ ନାଦ ଧ୍ୱନି । ସ୍ୱଭାବେ ଅନୁରାଗ ଘେନି ॥
ଶରଣ ପଦେ ଦୃଢ଼ଚିତ୍ତେ । ସେବା କରନ୍ତି ପାଦଗତେ ॥
ଜାଣନ୍ତି ଯୋଗ ତତ୍ତ୍ୱଜ୍ଞାନ । ନିଶ୍ଚଳ ମନେ ନିତ୍ୟେ ଧ୍ୟାନ ॥
ସେ ଦେବେ ସହସ୍ର ଶିରସ । କିରୀଟୀ ମଣିମୟ ତ୍ରାସ ॥
ଫଣୀ ସହସ୍ରେ ଶୋଭାକର । ଆଦିତ୍ୟ ଯେସନେ ଅମ୍ବର ॥
ତାର ଚରଣ ନିଜ ଶିରେ । ସନକ ଧରି ନିଜ କରେ ॥
ପୁଚ୍ଛିଲେ ସାରସ୍ୱତ ଜ୍ଞାନେ । ଯା ଶୁଣି ନିସ୍ତରିବେ ଜନେ ॥
ନିବୃତ୍ତି ମାର୍ଗ ଦେଖି ଚିତ୍ତ । ଆନନ୍ଦେ କହିଲେ ଅନନ୍ତ ॥
ସନକ ଚିତ୍ତ ଅନୁରାଗେ । କହିଲେ ସାଂଖ୍ୟ ଯୋଗ ମାର୍ଗେ ॥
ସେ ସାଂଖ୍ୟ ଅନୁଯୋଗଧାୟେ । ପରମହଂସ ଦୀକ୍ଷା ବହେ ॥
ସେ ପୁଣି ଦୟା ଶୁଦ୍ଧ ଚିତ୍ତେ । ସଂସାର ନିସ୍ତାରଣ ଅର୍ଥେ ॥
କୃଷ୍ଣ ମହିମା ପରିମାଣି । ନିର୍ମଳ ଭାଗବତ ବାଣୀ ॥
ବିଷ୍ଣୁର ଗତି ଅନୁରାଗେ । କହିଲେ ମୋରଗୁରୁ ଆଗେ ॥
ସେ ପରାଶର ବ୍ରହ୍ମ ମୁନି । ଆନନ୍ଦେ ହରି ଭାବ ଘେନି ॥
କହିଲେ ବୃହସ୍ପତି ଆଗେ । ଦେବ ସମୂହ ପ୍ରିୟଭାବେ ॥
ସେ ବୃହସ୍ପତି ଜ୍ଞାନବାଣୀ । ପୌଲସ୍ତ ମୁନି ଆଗେ ଭଣି ॥
ବ୍ରହ୍ମ ନିଗୂଢ଼ ବାଣୀ ଏବେ । ଶୁଣ କହିବି ତୋତେ ଭାବେ ॥
ତୁ ଶ୍ରଧାଚିତ୍ତେ ବତ୍ସ ଶୁଣ । ଏ ଆଦି ପରମ କାରଣ ॥
ଯେ ବିଶ୍ୱ ସୃଷ୍ଟିପୂର୍ବେ ଥିଲା । ପ୍ରଳୟ ଜଳେ ଲୀନ ହେଲା ॥
ପରମ ସୁଖେ ଭଗବାନ । ନିଦ୍ରାତେ ମୁଦ୍ରିତ ଲୋଚନ ॥
ପ୍ରଳୟ କାଳ ଜଳ ମଧ୍ୟେ । ଅନନ୍ତ ଶୟନ ଆନନ୍ଦେ ॥
ଶୋଇଲେ ଏକରୂପ ହୋଇ । ସଙ୍ଗେ ସଙ୍ଗିତ ନାହିଁ କେହି ॥
ନିଶ୍ଚଳ ଆତ୍ମା ସୁଖେ ରତ । ଭୁଜେ ନିବେଶି ପଞ୍ଚଭୂତ ॥
ଆତ୍ମା ପ୍ରାପତ ସୂକ୍ଷ୍ମ ଅର୍ଥେ । କାଳାତ୍ମା ଶକ୍ତିର ଆୟତ୍ତେ ॥
ସ୍ୱ ନିତ୍ୟ ପଦ୍ମ ଜଳ ବାସ । ଯେହ୍ନେ ଇନ୍ଧନେ ଅଗ୍ନିହ୍ରାସ ॥
ବିଷ୍ଣୁ ରଜନୀ ପ୍ରକାଶିଲା । ଚାରି ସହସ୍ର ଯୁଗ ଗଲା ॥
ଜଳେ ଶୟନ ଭଗବାନ । ଯେ ଆତ୍ମା ଶକ୍ତିର ନିଧାନ ॥
ତାର ଆୟତେ କାଳବଳେ । ଯେ କାଳ ଶକ୍ତିର ନିଷ୍ଫଳେ ॥
ସେ ପୁଣି କର୍ମ ତନ୍ତ ହୋଇ । ପ୍ରବକ୍ଷିବାକୁ ଦେହେ ଚାହିଁ ॥
ତାହାଙ୍କ ଅବତାର ଅର୍ଥେ । ସୂକ୍ଷ୍ମ ଇନ୍ଦ୍ରିୟ ଦୃଷ୍ଟଗାତ୍ରେ ॥
ଭବିଷ୍ୟ ସୃଷ୍ଟିର କାରଣେ । ସ୍ୱଂୟ ପ୍ରବେଶ ରଜୋଗୁଣେ ॥
ସେ କାଳବଳର ବିଶ୍ୱାସେ । ମିଳିଲେ ବିଷ୍ଣୁ ନାଭିଦେଶେ ॥

ସେ ନାଭିମଧ୍ୟେ ପଦ୍ମକୋଷ । ତକ୍ଷଣେ ହୋଇଲା ପ୍ରକାଶ ॥
କର୍ମ ବଧିତ କାଳବଳେ । ରୂପ ପ୍ରକାଶେ ମହାଜଳେ ॥
ଉଦିତ ରବି ପ୍ରାୟେ ମାନି । ଜଳେ ପ୍ରକାଶ ଆତ୍ମାଯୋନି ॥
ସେ ଯୋନି ପଦ୍ମେ ନାରାୟଣ । ସ୍ୱୟଂ ପ୍ରବେଶ ରଜୋଗୁଣ ॥
ସକଳ ଗୁଣେ ସେ ପ୍ରକାଶ । ସହସ୍ର ରବି ଜିଣି ତ୍ରାସ ॥
ସେ ପଦ୍ମ କର୍ଣ୍ଣିକାର ମଧ୍ୟେ । ବେଦେ ପକାଶେ ବ୍ରହ୍ମ ପଦେ ॥
ବିଧାତା ନାମ ସେ ବୋଲାଇ । ଯାର ଶରୀର କର୍ମମୟୀ ॥
ସ୍ୱୟମ୍ଭୁ ନାମ ତା ସ୍ୱଭାବେ । ଉଦୟ ନିଜ କର୍ମ ଲାଭେ ॥
ସେ ପଦ୍ମ ମଧ୍ୟେ ବ୍ରହ୍ମାରହେ । ବସି ସକଳ ଦିଗ ଚାହେଁ ॥
ନିଖିଳ ଜୀବଙ୍କ ଉଦ୍ଦେଶ୍ୟ । ତକ୍ଷଣେ ଚାହିଁଲା ଆକାଶ ॥
ତକ୍ଷଣେ ଲଭେ ଚାରି ମୁଖ । କେବେହେଁ ନ ଲଭଇ ସୁଖ ॥
ପୁଣି ଦେଖଇ ଜଳରାଶି । ଉତ୍କଟ ଉଲ୍ଲୋଳ ପ୍ରକାଶି ॥
ଆତ୍ମା ନ ଜାଣେ ତାହା ଚାହିଁ । ଏମନ୍ତେ ପଦ୍ମ ମଧ୍ୟେ ରହି ॥
କାହୁଁ ଅଇଲି କେଉଁ ଦେଶ । ନ ଜାଣେ ଆତ୍ମାର ବିଶେଷ ॥
ଏ ପଦ୍ମ କାହୁଁ ଉପୁଜିଲା । କିବା ଏ ଜଳମଧ୍ୟେ ଥିଲା ॥
ଥଳ ନ ଥିଲେ ଜଳ କାହିଁ । ପୁଣ ସଂଭ୍ରମେ ବିଚାରଇ ॥
ଏ କିମ୍ବା ପଦ୍ମ ମୂଳେ ଅଛି । ଏମନ୍ତ ମନେ ମନେ ଲକ୍ଷି ॥
କେବେହେଁ କିଛି ନ ଜାଣଲା । ଏମନ୍ତେ କେତେ କାଳ ଗଲା ॥
ପୁଣି ଚାହିଁଲା ଆତ୍ମା ଦୁଃଖେ । ନିଜ ଆସନେ ଅଧୋମୁଖେ ॥
ତଳେ ଦେଖିଲା ପଦ୍ମ ନାଳ । ତା ମଧ୍ୟେ ଅନ୍ଧକାର ବିଳ ॥
ବିଚାରେ ଏହି ମାର୍ଗେ ଯିବି । କାହୁଁ ଅଇଲି ତା ଦେଖିବି ॥
ଏମନ୍ତେ ବିଚାରି ସଂଶୟେ । ବିନେ ପଶିଲା ମହାଭୟେ ॥
ସେ ନାଳମାର୍ଗେ ନାଭିପଥେ । ପଶିଲା ବିଷ୍ଣୁ ନାଭିଗତେ ॥
ଅନେକ କାଳ ଗର୍ଭେ ଭ୍ରମି । ଫୁଟି ହୋଇଲା ପଥଶ୍ରମୀ ॥
ସେ କାଳ ଜନ୍ତୁଙ୍କର ପ୍ରାଣ । ବଳେ ହରଇ ଅନୁକ୍ଷଣ ॥
ସେ କାଳ ବଳ କରଷଣେ । ବାହାର ହୋଇଲା ତକ୍ଷଣେ ॥
ମନ କଳ୍ପିତ ନ ପାଇଲା । ନିଜ ଆସନେ ସେ ବସିଲା ॥
ସ୍ଥିର ନିଃଶ୍ୱାସ ଦୃଢ଼େ ଧରି । ମନପବନ ହୃଦେ ଭରି ॥
ନିବୃତ୍ତି ଚିତ୍ତେ ପ୍ରଜାପତି । ଯୋଗ ଅଭ୍ୟାସେ କଲା ମତି ॥
ସେ ଗୁଣ ଅତି କାଳଭୋଗେ । ବିଶେଷେବୋଧ ସିଦ୍ଧ ଯୋଗେ ॥
ତାର ହୃଦୟ ବିଷ୍ଣୁ ଭାବେ । ପ୍ରକାଶେ ସୃଷ୍ଟି ଅର୍ଥ ଲାଭେ ॥
ପୂର୍ବେ ଯେମନ୍ତେ ମହାଜଳେ । ଦେଖିଛି ନୟନ ନିଷ୍କଳେ ॥
ମୃଣାଳ ଦେହ ଗୌରକାନ୍ତି । ଅନନ୍ତ ଶୟନେ ଶ୍ରୀପତି ॥
ଏକା ଅଛନ୍ତି ନାହିଁ କେହି । ଦେଖେ ନିଶ୍ଚଳ ନେତ୍ରେ ଚାହିଁ ॥

ଫଣା ସହସ୍ର ଉର୍ଦ୍ଧ୍ୱ ଜ୍ୟୋତି । ରତ୍ନ ମୁକୁଟ ଝଟକନ୍ତି ॥
ଯୁଗାନ୍ତ କାଳେ ଅନ୍ଧକାର । ଯେ ରତ୍ନ ଜ୍ୟୋତି କଲା ଦୂର ॥
ମହାପୁରୁଷ ବୃକ୍ଷରୂପେ । ଏକା ପ୍ରକାଶେ ମହାକଳ୍ପେ ॥
ପ୍ରକାଶେ ଆତ୍ମକ୍ଷ ବିସ୍ତାର । ତ୍ରୈଲୋକ୍ୟ ପ୍ରକାଶେ ଶରୀରେ ॥
ଦିବ୍ୟ ବିଚିତ୍ର ଆଭରଣ । ପ୍ରକାଶେ ବସ୍ତ୍ର ଆଚ୍ଛାଦନ ॥
ସର୍ବ ସୁନ୍ଦରଙ୍କ ସମୂହ । ତେଜେ ପ୍ରକାଶେ ବିଶ୍ୱଦେହ ॥
ମିଳି ସକଳ ମହାଜନେ । ନିଜ ବାଞ୍ଛିତ ଅବଧାନେ ॥
ସେ ନାମ ଯେ କରନ୍ତି ଧ୍ୟାୟେ । ତାହାଙ୍କୁ କାମଧେନୁ ପ୍ରାୟେ ॥
ଦୟାସାଗର ଭଗବାନ । ବ୍ରହ୍ମାଙ୍କୁ ଦେଲେ ଦରଶନ ॥
ଅଙ୍ଗୁଳି ଅଗ୍ର ନଖକାନ୍ତି । ଶଶାଙ୍କ ପ୍ରାୟେ ବିରାଜନ୍ତି ॥
ସ୍ଫୁରିତ ବିଶେ ହାସ୍ୟ ମୁଖ । ଦେଖନ୍ତେ ହରେ ପ୍ରାଣୀ ଦୁଃଖ ॥
କର୍ଣ୍ଣେ କୁଣ୍ଡଳ ବେନି ଶୋହେ । ଚନ୍ଦ୍ର ତପନ ସରି ନୁହେଁ ॥
ଶଶୀ ଅରୁଣ ଓଷ୍ଠ ବେନି । ବିରାଜେ ଦନ୍ତପନ୍ତି ଘେନି ॥
କଦମ୍ବ ପୁଷ୍ପ ତେଜ ପ୍ରାୟେ । ପୀତ ବସନେ କଟି ଶୋହେ ॥
ରତ୍ନମେଖଳା ତେଜ ଦମ୍ଭେ । ସୁନ୍ଦର ପ୍ରକାଶେ ନିତମ୍ବେ ॥
ଅମୂଲ୍ୟ ଧଣ୍ଡା ହାରମାଳ । ଲମ୍ବେ ଶ୍ରୀବତ୍ସ ବକ୍ଷସ୍ଥଳ ॥
ହାର କୟୂର ରତ୍ନମାଳେ । ସୁନ୍ଦର ଅଳକା କପୋଳେ ॥
ଭୁଜ ଶୋଭିତ ଜାନୁଯାଏ । ଲମ୍ବେ ଶ୍ରୀବଟଗୁହ ପ୍ରାୟେ ॥
ଅଦୃଶ୍ୟ ମୂଳ ତା ସ୍ୱଭାବ । କେ ଅବା ଲୋଚନେ ଦେଖିବ
ସର୍ବ ଭୁବନ ତାର ଦେହେ । ବିରାଜେ ପୁଷ୍ପରାଣୀ ପ୍ରାୟେ ॥
ମନ୍ଦର ଗିରି ଯେହ୍ନେ ଜଳେ । କ୍ଷୀରୋଦ ମନ୍ଥନର କାଳେ ॥
ସହସ୍ର ଶୃଙ୍ଗ ତାର ସାଜେ । ସ୍ୱରତ୍ନ କିରୀଟ ବିରାଜେ ॥
କଣ୍ଠେ କୌସ୍ତୁଭମଣି ଶୋହେ । ରତ୍ନ ପ୍ରଭାରେ ମନ ମୋହେ ॥
ସ୍ୱକୃତ ମୟ ବନମାଳ । ଲମ୍ବେ ସୁନ୍ଦର ବକ୍ଷସ୍ଥଳ ॥
ଗନ୍ଧେ ଆବୃତ ଭୃଙ୍ଗପନ୍ତି । ସୂର୍ଯ୍ୟ ଶଶାଙ୍କ ଅଗ୍ନିଜ୍ୟୋତି ॥
ସେ ବୃକ୍ଷ ଦେଖି ଜଳ ମାଝେ । ଅଦ୍ଭୁତ ଶରୀର ବିରାଜେ ॥
ପବନ ଗଗନ ସମୂହେ । ବିଧାତା ଦେଖି ବୃକ୍ଷଦେହେ ॥
ଲୋକ ଦିଦୃକ୍ଷିଦେହେ ଦେଖି । ବିଧାତା ଆସନ ଉପେକ୍ଷି ॥
କରଯୁଗଳ ଦେଇ ମୁଣ୍ଡେ । ସ୍ତୁତି କରଇ ଚାରି ତୁଣ୍ଡେ ॥
ସେ ହରି ଚରଣେ ବିଶ୍ୱାସେ । ଭଣଇ ଜଗନ୍ନାଥ ଦାସେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଷ୍ଣୁ ନାଭିପଦ୍ମୁଁ ଜନ୍ମେ ନାମ ଅଷ୍ଟମୋଽଧ୍ୟାୟଃ ।*

# ନବମ ଅଧ୍ୟାୟ

## ବ୍ରହ୍ମା ଉବାଚ

ଭୋ ନାଥ ତୋର ଗତି ମୁହିଁ । ଜାଣିଲି ତୋର ଭାବ ବହି ॥
ଏ ଜୀବେ ତୋର ମାୟା ବୃତ୍ତି । କାହିଁ ଜାଣିବେ ତୋର ଗତି ॥
ଦୃଶ୍ୟ ଅଦୃଶ୍ୟ ତୋର ଭାବ । ଏ ଘେନି ତୋତେ କେ ଜାଣିବ ॥
ମାୟା ଉପରେ ତୋର ବାସ । ନିତ୍ୟ ନିରଞ୍ଜନ ପ୍ରକାଶ ॥
ଶବଦେ ବ୍ରହ୍ମ ବନମାଳୀ । ତୁ ନାଥ ମାୟା ସଙ୍ଗେ ମିଳି ॥
ତୁମ୍ଭ ବିସ୍ୱର୍ଗ ନାରାୟଣ । ସତ୍ୟ ଅବତାର କାରଣ ॥
ତୁ ନାଭି ପଦ୍ମ ମୋର ଜାତ । ସ୍ୱଭାବ ଅବିକାର ସତ୍ୟ ॥
ତୋ ରୂପ ଦେଖିଲେ ଲୋଚନେ । ଏ ଲାଗୁଁ ଲାଭ ନାହିଁ ଭିନ୍ନେ ॥
ଆନନ୍ଦେ ରୂପୀ ଏ ବିକାର । ଅବିଧି ବୀର୍ଯ୍ୟରୂପ ତୋର ॥
ତୁ ବିଶ୍ୱସୃଷ୍ଟି ମୂଳ ଏକ । ତୋ ତହୁଁ ପ୍ରକାଶେ ଅନେକ ॥
ତୁ ତ ଇନ୍ଦ୍ରିୟ ଆତ୍ମା ତୁହି । ତୋ ପାଦେ ଆଶ୍ରେ କଲିମୁହିଁ ॥
ତୁ ଯେ ସଂସାର ଆଦିମୂଳ । ତୋ ରୂପ ଭୁବନ ମଙ୍ଗଳ ॥
ଧାରଣା ଧ୍ୟାନେ ମନ ଦେଇ । ପ୍ରାଣୀ ଚିନ୍ତନ୍ତି ଯାହା ଧ୍ୟାୟି ॥
ତୋ ଅନୁଭାବେ ଭଭୋରମ । ତୁ ନାଥ ପୁରୁଷ ଉତ୍ତମ ॥
ଶ୍ରୀବାସୁଦେବ ନମୋସ୍ତୁତେ । ମନ ବଚନ ଧ୍ୟାନମତେ ॥
ଯେ ତୋତେ ଅନାଦର କରେ । ନରକ ମାର୍ଗେ ସେ ସଞ୍ଚରେ ॥
ଅସତ୍ୟ ସଙ୍ଗେ ଯାର ବାସ । ତୋ ଭାବୁ ହୋନ୍ତି ସେ ନିରାଶ ॥
ତୋ ପାଦପଦ୍ମ ଗନ୍ଧ ଯାର । ଆଘ୍ରାଣ କରେ ନାସାଦ୍ୱାର ॥
ଶ୍ରୁତି ଯୁଗଳେ ନାମ ଶୁଣେ । ଯେ ଅବା ଜିହ୍ୱାଅଗ୍ରେ ଗୁଣେ ॥
ପରମ ଭକ୍ତି ଯୋଗବଳେ । ଯେ ନମେ ତୋ ପାଦ କମଳେ ॥
ତା ହୃଦ ପଦ୍ମ ମଧ୍ୟେ ଥାଉ । କେବେହେଁ କେଣେହେଁ ନ ଯାଉ ॥
ତା ଭବ ଭୟ ଧନ ମୋହେ । ସୁହୃଦ ବନ୍ଧୁ ଶୋକ ସ୍ନେହେ ॥
ସନ୍ତତ ଜାଳା ଜାତି କୁଳେ । ସର୍ବ ଆପାଦ ବନ୍ଧୁମୂଳେ ॥
ଯାବତ ତୋ ପାଦ କମଳେ । ଯେ ପ୍ରାଣୀ ନରହେ ନିଶ୍ଚଳେ ॥
ଏ ସର୍ବଭୟ ଯହିଁ ନାଶେ । ତୋ ସଙ୍ଗ ସଙ୍ଗେ ଯେହୁ ମିଶେ ॥
ତା ପୁଣି ଇନ୍ଦ୍ରିୟ ଲାଳସେ । କ୍ଷଣକେ ସୁଖ ନାହିଁ ଲେଶେ ॥
ଯତ୍ନ କରନ୍ତି ଅବିରତେ । ତୋ ମାୟା ତରିବେ କେମନ୍ତେ ॥
କ୍ଷୁଧା ପିପାସା ଶ୍ରମେ ଶ୍ରମି । ଆତ୍ମା ବଚନେ ପଥ ଭ୍ରମି ॥
ଶୀତ ନିଦାଘ ବାତ ବୃଷ୍ଟି । ଏଣେ ଭ୍ରମନ୍ତେ ପ୍ରାଣୀ ଫୁଟି ॥
ଦୁର୍ଭାର କାଳାନଳ ବହେ । କେବେହେଁ ତୋ ପାଦେ ନ ରହେ ॥
ଏ ଦୁଃଖ ଦେଖି ମୋର ମନ । ଭୟେ କମ୍ପଇ ଭଗବାନ ॥
ଯାବତ ଏ ମାୟା ଗହନେ । ମନ କହଇ ଭିନେ ଭିନେ ॥

ଇନ୍ଦ୍ରିୟ ଅର୍ଥେ ଚିତ୍ତ ଜଡ଼େ । ଘୋର ସଂକଟ ଦୁଃଖେ ପଡ଼େ ॥
ତାବତ ସଂସାର ନ ତୁଟେ । ଆସିବା ଯିବା ପଥେ ଫୁଟେ ॥
ଏ ବେନି ଏକ କ୍ରିୟ ଅର୍ଥେ । ଶୁଣି ଭ୍ରମଇ ଶ୍ରୁତ ପଥେ ॥
ଦୁଃଖ ସମୂହେ ସୁଖ ମିଶେ । ଯତ୍ନ ନ କରେ ସୁଖଲେଶେ ॥
ଭୂତ ଭବିଷ୍ୟେ ଆତ୍ମା କରି । ସର୍ବ ବିଷୟେ ଚିତ୍ତ ଭରି ॥
ରାତ୍ରେ ନିଦ୍ରିତ ହୋଏ ଯେବେ । ସ୍ୱପ୍ନ ସଂକଳ୍ପେ ନାନାଭାବେ ॥
ଭ୍ରମଇ ମୁନିଙ୍କର ମନ । ତୋ ମାୟାବଳେ ଭଗବାନ ॥
ଏଣୁ ତୋ ସଙ୍ଗେ ଯେ ବିମୁଖ । ଇହ ସଂସାରେ ପାଏ ଦୁଃଖ ॥
ତୋ ଭାବ ଯୋଗେ ସୁଭାବିତ । ହୃଦୟ ପଦ୍ମେ ତୁ ଉଦିତ ॥
ସର୍ବ ଜୀବରେ ତୋ ବିହାର । ତୁ ପୁଣି ତୋତେ ଅଗୋଚର ॥
ଯେ ଯେଉଁ ଭାବେ ତୋତେ ଭାବେ । ତୋ ଅନୁଗ୍ରହେ ସୁଖ ଲଭେ ॥
ନାନା ପ୍ରକାରେ ଉପହାରେ । ତୋ ଆରାଧନା ଯେବା କରେ ॥
ତୁ ପୁଣି ତେଣେ ତୋଷ ନୋହୁଁ । ଯେଣୁ ତ୍ରିଦଶ ଦେହେ ରହୁ ॥
ତୋତେ ସେ ଶୁଦ୍ଧଭାବେ ଚିନ୍ତି । ନିଶ୍ଚିନ୍ତେ ତ୍ରିଦଶେ ବସନ୍ତି ॥
ତୁ ପୁଣି ସର୍ବଜନ୍ତୁ ଦେହେ । ପ୍ରକାଶୁ ଆଦିତ୍ୟର ପ୍ରାୟେ ॥
ଏକେ ଅନେକ ତୋ ପ୍ରକାଶ । ପ୍ରସନ୍ନେ ଯେସନେ ଆକାଶ ॥
ସର୍ବ ହୃଦରେ ଅନ୍ତରାତ୍ମା । କେ ଲେଖିପାରେ ତୋ ମହିମା ॥
ପ୍ରାଣୀଙ୍କ ମନ କର୍ମବଳେ । ଦଣ୍ଡେ ହେଁ ନ ରହେ ନିଶ୍ଚଳେ ॥
ଅରାଧେ ନାନା ତାପ ବ୍ରତେ । ସେ କ୍ରିୟା ଫଳ ଦେଇ ତୋତେ ॥
ତୋର ସ୍ୱରୂପ ନିତ୍ୟେ ଚିନ୍ତି । ଅମୋହ ଭେଦୁ ନିସ୍ତରନ୍ତି ॥
ଏମନ୍ତ ମହିମା ତୋହର । ଭୋ ଦେବ ତୋତେ ନମସ୍କାର ॥
ବିଶ୍ୱ ଉତ୍ପତ୍ତି ସ୍ଥିତି ନାଶେ । ତୋ ଲୀଳା ସ୍ୱରୂପେ ପ୍ରକାଶେ ॥
ତୋ ଅବତାର ଗୁଣକର୍ମ । ନାମ ଉଚ୍ଚାରେ ଯେବା ଧର୍ମ ॥
ନିରତେ ଶୁଣନ୍ତି ଯେ ମୁଖେ । ବେଗେ ତରନ୍ତି ମହାଦୁଃଖେ ॥
ଅନେକ ଜନ୍ମ ନ ଭ୍ରମନ୍ତି । ନିର୍ଭୟେ ବେଗେ ସେ ତରନ୍ତି ॥
ଅମୃତ ଲଭେ ଅପ୍ରମାଦେ । ସୁଖେ ଗମନ୍ତି ମୋକ୍ଷ ପାଦେ ॥
ଏମନ୍ତ ପ୍ରଭୁ ପାଦ ମୂଳେ । ଶରଣ ପଶିବ ନିଶ୍ଚଳେ ॥
ତୁ ନାଥ ପରମ ମଙ୍ଗଳ । ସ୍ଥିତି ପାଳନ ଅନ୍ତମୂଳ ॥
ଭୁବନ ଦ୍ରୁମ ତୋ ମହିମା । କେ ଜାଣିପାରେ ଅନ୍ତସୀମା ॥
ଏ ଜୀବ ଲୋକ ଅବିରତ । ବିକର୍ମ ମାର୍ଗେ ସୁ ଯନ୍ତ୍ରିତ ॥
ଭାବଇ ଅକୁଶଳ କର୍ମ । ନିତ୍ୟ କଳ୍ପଇ ନିଜ ଧର୍ମ ॥
ପ୍ରମାର୍ଥ ନାନାଫଳ ଲାଭେ । ତୋହର ବଚନ ପ୍ରସ୍ତାବେ ॥
ତାର ଜୀବନ ଆତ୍ମା ତୁହିଁ । କ୍ଷଣକେ ଛେଦୁ ଭାବଗ୍ରାହୀ ॥
ଏମନ୍ତେ ପ୍ରଭୁ ପାଦଗତେ । ମୋ ନମସ୍କାର ଅବିରତେ ॥
ଭୋ ନାଥ ଜୀବିତୁ ତୋହର । ବେନି ପରାର୍ଦ୍ଧ ଅଧିକାର ॥
ସକଳ ଲୋକ ମନସ୍ତୁତି । ସପ୍ତମଣ୍ଡଳେ ମୋର ସ୍ଥିତି ॥
ଅନେକ ତପେ ଅଧିକାରୀ । ତୋ ମାୟାବଳେ ରୂପଧରି ॥
ତୁ ଅଧିଯଜ୍ଞ ଦାମୋଦର । ତୋ ପାଦେ ମୋର ନମସ୍କାର ॥
ପଶୁ ମନୁଷ୍ୟ ଦେବ ଦେହେ । ଜୀବନ ରୂପେ ଯେବା ଶୋହେ ॥
ଇଚ୍ଛାଏ ରମେ ନାନାକର୍ମ । ଏଣୁ ତୁ ପୁରୁଷ ଉତ୍ତମ ॥
ଯେ ନିଦ୍ରାବତୀ ପଞ୍ଚକୃତି । ତିତିକ୍ଷା ସ୍ୱପ୍ନ ଯେ ସୁଷୁପ୍ତି ॥
ତୋର ଆଦେଶେ ଶିରେ ଧରି । ମୁଁ ଏ ସଂସାରେ ଅଧିକାରୀ ॥
ଜୀବ ସଞ୍ଚୟ ଶ୍ରୁତି ସ୍ଥାନ । ପ୍ରଳୟ ଜଳେ ତୋ ଶୟନ ॥
ତ୍ରିଲୋକ ଉପକାର ପଦେ । ମୋ ଜନ୍ମ ତୋର ନାଭି ମଧ୍ୟେ ॥
ଏ ଯୋଗମାୟା ଅବସାନ । ନମସ୍ତେ ନଳିନ ଲୋଚନ ॥
ଜୟ ତୁ ଜୟ ଭଗବାନ । ଅଶେଷ ଜନ୍ତୁଙ୍କ ଜୀବନ ॥
ତୋର ଆଦେଶ ଶିରେ ଧରି । ମୁଁ ଏ ସଂସାରେ ଅଧିକାରୀ ॥
ଏ ଦଶଗୁଣ ଏ ସଂସାରେ । ସର୍ଜଇ ଅଶେଷ ଶରୀରେ ॥
ତୋ ଅନୁଗ୍ରହେ ମୁଁ ଏ ଦେହେ । ସୃଷ୍ଟି କରିବି ପୂର୍ବ ପ୍ରାୟେ ॥
ଭୋ ନାଥ ପରମ ପୁରୁଷ । ଏ ଆତ୍ମା ସଂଶୀ ତୋ ବିଶ୍ୱାସ ।
ଅଶେଷ ଜନ୍ତୁଙ୍କ ଜୀବନ । ତୁ ନାଥ ପରମ କାରଣ ॥
ଗୁଣ ଗୃହୀତ ଅବତାରେ । ଯେ ଅବା କରିବି ସଂସାରେ ॥
ସେ ଗୁଣ ଘେନି ସୃଷ୍ଟି ଅର୍ଥେ । ଯେ ଅବା ହୋଇବ ଯେମନ୍ତେ
ସ୍ରିଜବି ଆତ୍ମା ଯୋଗ ବଳେ । ମୋ ଚିତ୍ତେ ଯେମନ୍ତେ ନିଶ୍ଚଳେ
ତୋର ଚରଣେ ଦୃଢ଼ ହୁଏ । ଭୋ ନାଥ କର ଏ ଉପାୟେ ॥
ଦୁର୍ଗମ ପ୍ରଳୟ ଏ ଜଳେ । ମୁଁ ଜାତ ତୋ ନାଭି କମଳେ ॥
ବିଜ୍ଞାନ ଶକ୍ତି ତେଣୁ ବହୁ । ଏଣୁ ଅନନ୍ତ ତୁ ବୋଲାଉ ॥
ସ୍ୱଭ୍ରମେ ପଦ୍ମଜଳେ ମୁହିଁ । ଭ୍ରମଇ ତୋର ମାୟାବହି ॥
ଦେଖିଲି ତୋ ପବିତ୍ର ରୂପ । ଯେ ରୂପେ ନିଗମେ ସଂକଳ୍ପ ॥
ଅଶେଷ କରୁଣା ସାଗର । ଭୋ ନାଥ ଶରଣ ତୋହର ॥
ରଙ୍ଗ ଅଧରେ ମନ୍ଦହାସ । ଦେଖି ମୋହର ମନ ତୋଷ ॥
ଏ ବିଶ୍ୱ ସଂସାର କୁଶଳେ । ମୁଁ ଯେଣୁ ଥିଲି ମହାଜଳେ ॥
ସୃଷ୍ଟି କଳ୍ପନା ଚିନ୍ତା ଅର୍ଥେ । ମୁଁ ହିଁ ଭାଳଇ ଅବିରତେ ॥
ତୁ ନାଥ ମଧୁର ବଚନେ । ଚିନ୍ତା ହରିଲୁ ମୋର ମନେ ॥

## ମୈତ୍ରେୟ ଉବାଚ

ଏମନ୍ତେ ସଂଭ୍ରମ ବଚନେ । ତପ ସମାଦି ଯୋଗଧ୍ୟାନେ ॥
ନିର୍ମଳ ଦିବ୍ୟ ଅନୁଭାବେ । ନିଗମ ବଚନ ପ୍ରସ୍ତାବେ ॥
ନାନା ପ୍ରକାରେ କରି ସ୍ତୁତି । ମନ ବଚନେ ଯେତେ ଶକ୍ତି ॥

ଅନ୍ତେ ଗୋବିନ୍ଦ ଭାବ ଘେନି । ସେ ପଦ୍ମ ମଧ୍ୟେ ହେଲା ତୁନି ॥
ଏମନ୍ତେ ବ୍ରହ୍ମା ମନ ଜାଣି । ଦୟାସାଗର ଚକ୍ରପାଣି ॥
ବିଷାଦ ଚିତ୍ତେ ସେ ଭାଳଇ । ପ୍ରଳୟ ଜଳ ମଧ୍ୟେ ରହି ॥
ଲୋକର ସ୍ଥାନ ଚିନ୍ତା କରି । ଭାଳଇ ଖେଦ ମନେ ଭରି ॥
ସେ ଚିନ୍ତା ଜାଣି ଭଗବାନ । କୋମଳ ଗଭୀର ବଚନ ॥
ବ୍ରହ୍ମାର ମନ ଖେଦ ହରି । କହନ୍ତି ପ୍ରଭୁ ଦଇତାରି ॥

## ଶ୍ରୀ ଭଗବାନ ଉବାଚ

ହେ ବେଦଗର୍ଭ ବ୍ରହ୍ମା ଦେଖ । ବେଗେ ତୁ ଛାଡ଼ ମନ ଦୁଃଖ ॥
ତୁ ଯେ କଳ୍ପିତ ମାଗୁ ମୋତେ । ଆଗେ ମୁଁ କହୁଅଛି ତୋତେ ॥
ତୁ ଏବେ ତପେକରୁ ଆଶା ।ମୋ ବିଦ୍ୟାବଳେ ତୋ ଭରସା ॥
ଏ ତପ ଯୋଗ ବିଦ୍ୟାବଳେ । ସୃଷ୍ଟି ତୁ କରୁ ମହାଜଳେ ॥
ଆତ୍ମା ନିଯୋଗ ଭକ୍ତିକର । ଯେ ଯେତେ ଭଜିବେ ସଂସାର ॥
ସର୍ବ ଦେଖିବୁ ମୋର ଦେହେ । ମୋତେ ଦେଖିବୁ ସର୍ବମୟେ ॥
ମୁଁ ବସେ ସର୍ବପ୍ରାଣୀ ମନେ । ଇନ୍ଧନ ମଧ୍ୟେ ଅଗ୍ନି ଯେହ୍ନେ ॥
ମୋତେ ଦେଖିଲେ ବେଦବର । ତୋର ସଂଶୟ ଯିବ ଦୂର ॥
ଭୂତ ଇନ୍ଦ୍ରିୟ ଗଣ ବଳେ । ଅନ୍ତେ ତୁ ଶରଣ ନିଷ୍କଳେ ॥
ଯେବେ ଦେଖଇଦେହେ ମୋତେ । ସ୍ୱରାଜ୍ୟେରହେ ସେ ନିଷ୍କନ୍ତେ
କର୍ମ ବିଭାଗ ପଥଯେତେ । ଏ ସୃଷ୍ଟି ସର୍ଜିବୁ ଯେମନ୍ତେ ॥
ମୋ ଅନୁଗ୍ରହେ ତୋର ମନ । କେବେହେଁ ନ ଭାଷିବୁ ଆନ॥
ତୁ ଯେ ମୋହର ଦେହେ ମନ । ଦେଇ ସର୍ଜିବୁ ପ୍ରଜାଜନ ॥
ଏ ତୋରଗୁଣ ଯେତେ ଭାବ । କେବେ ହେଁ ତୋତେ ନଲାଗିବ ॥
ପ୍ରାଣୀଙ୍କ ଦୁର୍ଲ୍ଲଭ ଜଗତେ । ତୁ ଯେ ଜାଣିଲୁ ଯେବେ ମୋତେ॥
ଯେ ଜୀବ ସମ୍ଭାଦିବ ମୋତେ । ତୁ ଯେ ଇନ୍ଦ୍ରିୟ ଗୁଣ ପ୍ରସ୍ତେ ॥
ତୁ ଯେ ସଂଶୟ ଚିତ୍ତେ କହି । କମଳ ଦଳ ମଧ୍ୟେ ଯାଇ ॥
ତୋହର ମନେ ଇଚ୍ଛା କଲୁ । ଅନେକ କାଳ ତୁ ପଶିଲୁ ॥
ଦୟା ବସିଲା ମୋର ଚିତ୍ତେ । ବାହାରେ ଦେଖାଇଲି ତୋତେ ॥
ତୁ ଯେ କଲୁ ମୋତେ ସ୍ତୁତି । କହିବା ଶୁଣ ବେଦପତି ॥
ଯେତେ ସୁନିଷ୍ଠା ତୋର ଦେହେ । ଲଭିଲୁ ମୋର ଅନୁଗ୍ରହେ ॥
ସୁପ୍ରୀତ ହୋଇଲି ମୁଁ ତୋତେ । କଲ୍ୟାଣ ଲଭ ତୁ ଜଗତେ ॥
ଲୋକ ମଙ୍ଗଳ ଅର୍ଥେ ତୋର । ମହିମା ବର୍ଣ୍ଣିଲୁ ମୋହର ॥
ଏ ସ୍ତୋତ୍ରେ ଯେ ଭଜିବ । ସଂସାରୁ ଭୟ ସେ ନାଶିବ ॥
ପଣ୍ଡିତେ ଯୋଗ ଯଜ୍ଞମତେ । ଜ୍ଞାନ ବୈରାଗ୍ୟ ଉପଗତେ ॥
ଏଣେ ନିସ୍ତାର ପ୍ରାଣୀ ଲଭେ । ମୋର ନିଷ୍ଠୟ ପ୍ରିୟଭାବେ ॥
ମୁଁ ଆତ୍ମା ଜଗତ ଈଶ୍ୱର । ସଂଶୟ ଚିତ୍ତେ ଅଗୋଚର ॥
ଏଣୁଯେ ମୋ ବିଷୟେ ଭଜେ । ସ୍ୱଭାବେ ସର୍ବମାୟା ତେଜେ ॥
ଆତ୍ମାରେ ଆତ୍ମା ଜ୍ଞାନ କରେ । ନ ବୁଡ଼େ ସଂସାର ସାଗରେ ॥
ଯେ ପ୍ରାଣୀ ମୋର ଦେହେ ଥିଲେ ।ପ୍ରଳୟ ଜଳେ ନାଶ ଗଲେ ॥
ତାହାଙ୍କ ଧର୍ମର ଆୟତ୍ତେ । ପୁଣି ପ୍ରକାଶ ଏ ଜଗତେ ॥
ଏମନ୍ତେ ବ୍ରହ୍ମା ଆଗେ କହି । ଅନ୍ତର ହେଲେ ଭାବଗ୍ରାହୀ ॥
ସେ ହରି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସକ୍ୟାଂ ତୃତୀୟସ୍କନ୍ଧେ ବିଦୁର ବ୍ରହ୍ମସ୍ତବ*
*ବର୍ଣ୍ଣନେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

## ବିଦୁର ଉବାଚ

ମୈତ୍ରେୟ ପାଦେ ଦେଇ କର । ଆନନ୍ଦେ ପଚାରେ ବିଦୁର ॥
ଭୋ ମୁନି କହ ଶୁଦ୍ଧମନେ । ଯେ ବିଷ୍ଣୁ ଗଲେ ଅନ୍ତର୍ଦ୍ଧାନେ ॥
ସେ ବେଦପତି ଜ୍ଞାନମତେ । ପ୍ରଜା ସର୍ଜିଲା ସେ କେମନ୍ତେ ॥
ତାର କି ଦେହେ ପ୍ରଜାଥିଲା । କେତେ ପ୍ରକାରେ ଭିଆଇଲା ॥
ମନେ କଳ୍ପିତ ଦେହମତେ । କହ ସଂଶୟ ଯାଉ ଚିତ୍ତେ ॥
ବିଦୁର ବାକ୍ୟ କର୍ଣ୍ଣେ ଶୁଣି । କହନ୍ତି ମଇତ୍ରେୟ ମୁନି ॥

## ମୈତ୍ରେୟ ଉବାଚ

ଶୁଣ ବିଦୁର ଏକଚିତ୍ତେ । ଜଗତ ସର୍ଜିଲା ଯେମନ୍ତେ ॥
ଗୋବିନ୍ଦ ବାକ୍ୟେ ବେଦପତି । ତପ ସାଧନେ କଲାମତି ॥
ଶତବରଷ ବେଦମତେ । ତପ ସାଧିଲା ଦୃଢ଼ଚିତ୍ତେ ॥
ଆତ୍ମାରେ ଆତ୍ମା ଲୀନ କରି । ଗୋବିନ୍ଦ ବଚନ ସୁମରି ॥
ଦେଖିଲେ ନୟନ ଯୁଗଳେ । ଭ୍ରମି ସକଳ ମହାଜଳେ ॥
ପବନ ଯୋଗେ ଅତିଖର । ସ୍ୱଭାବେ ଦିଶେ ଭୟଙ୍କର ॥
ପଦ୍ମ ସହିତେ ଜଳ କମ୍ପେ । ଭୂମି ସଂକୁଳେ ଅତିରେକେ ॥
କାଳର ବଳ କର୍ମମାନ । ଦେଖି ଉଷତ ବ୍ରହ୍ମାମନ ॥
ତକ୍ଷଣେ ତପ ବିଦ୍ୟାବଳେ । ଶରୀର ବିଜ୍ଞାନ ନିଷ୍କଳେ ॥
ଭୂମି ସହିତ ଜଳରାଶି । ସେ ବ୍ରହ୍ମା ଯୋଗବଳେ ଗ୍ରାସି॥
ପ୍ରଳୟ ଜଳେ ବେଗେ ଗଲା । ନିଷ୍କଳେ ପଦ୍ମ ପ୍ରକାଶିଲା ॥
ସେ ପଦ୍ମ ମଧ୍ୟେ ବେଦବର । ସୁମନେ କରଇ ବିଚାର ॥
ପୂର୍ବେ କଶ୍ୟପ ଗର୍ଭଗତେ । ଜନ୍ତୁ ଏ ପଶିଛନ୍ତି ଯେତେ ॥
ତାହାଙ୍କୁ କରିବି ପ୍ରକାଶ । ସେ ଯେଣୁ ସୁକର୍ମେ ପ୍ରବେଶ॥

ଏକୁ ଅନେକ ରୂପ ଚିନ୍ତେ । ସ୍ୱକର୍ମ ବଳେ ନାନାମତେ ॥
ଦ୍ୱିତୀୟ ତୃତୀୟ ସପ୍ତମ । ଏମନ୍ତେ ଜୀବ ଲୋକସ୍ଥାନ ॥
ଯେ ଯାହାମତେ ଧର୍ମ ଚିନ୍ତି । ନିଷ୍ଠଳେ ଯୋଗ ପ୍ରଜାପତି ॥

### ବିଦୁର ଉବାଚ

ଭୋ ମୁନି ହରିର ମହିମା । ଅଦ୍ଭୁତ କର୍ମ ଏକସୀମା ॥
କାଳ ସ୍ୱରୂପେ ନାରାୟଣ । ସୃଷ୍ଟି ପାଳନ ସଂହାରଣ ॥
ଖେଳାଇ ନିଜ ମାୟାବଳେ । କେ ତା ଦେଖିବ ଚର୍ମଡ଼ୋଳେ ॥
ତାର ଲକ୍ଷଣ କହ ମୋତେ । ଏଣୁ ପ୍ରମାଣ ଅବା କେତେ ॥

### ମୈତ୍ରେୟ ଉବାଚ

ସ୍ୱଭାବେ ନିର୍ଗୁଣ ଅଚ୍ୟୁତ । ନିର୍ଲ୍ଲେପ ନିର୍ବିଶେଷ ସ୍ଥିତ ॥
ତାର ଶରୀରୁ ଆତ୍ମା ଜାତ । କାଳେ ଏ ସର୍ଜ୍ଜଇ ଜଗତ ॥
ସେ ବିଶ୍ୱ ବ୍ରହ୍ମ ମାୟାରୂପୀ । ନିଜ ମାୟାର ବଳେ ବ୍ୟାପୀ ॥
ଈଶ୍ୱର ଭାବେ ପରିଛିନ୍ନ । ଯେ କାଳରୂପୀ ଭଗବାନ ॥
ଯେମନ୍ତେ ସୃଷ୍ଟି ଥିଲା ପୂର୍ବେ । ସ୍ୱକର୍ମ ବିକର୍ମ ସ୍ୱଭାବେ ॥
ପ୍ରକୃତି ବିଦିତ ପ୍ରକାରେ । ଯେ ରୂପ ନବ ପରକାରେ ॥
ଯେ କାଳେ ଦିବ୍ୟ ଗୁଣେ ଛନ୍ତି । ମହତ ଆଦି ସର୍ବ ଚିନ୍ତି ॥
ଗୁଣ ବିଷୟେ ଆତ୍ମା ମିଶେ । ସ୍ୱଭାବେ ସ୍ୱଗୁଣ ପ୍ରକାଶେ ॥
ଦ୍ୱିତୀୟ ଅହଂକାର ବଳେ । ଯେ ଦିବ୍ୟ ଜ୍ଞାନ କ୍ରିୟାମୂଳେ ॥
ତୃତୀୟେ ଉତ୍ସର୍ଗ ଯେ ହୁଏ । ସେ ମାୟା ବ୍ରହ୍ମଶକ୍ତି ବହେ ॥
ଚତୁର୍ଥେ ଇନ୍ଦ୍ରିୟଙ୍କ ଜନ୍ମ । ଯେ ଜ୍ଞାନ କ୍ରିୟାତ୍ମକ ନାମ ॥
ଇନ୍ଦ୍ରିୟ ରକ୍ଷା ଦେବଗଣ । ଯେ ମନ ପଞ୍ଚମେ ପ୍ରମାଣ ॥
ଷଷ୍ଠରେ ଅହଙ୍କାର ସର୍ବେ । ଅବୁଦ୍ଧି ମୁକ୍ତି ଶକ୍ତି ଭାବେ ॥
ସ୍ୱକର୍ମ ପ୍ରକୃତି ଗୋଚରେ । ବିକୃତି ତାର ଅଭ୍ୟନ୍ତରେ ॥
ଏ ସୃଷ୍ଟି ଜାତ ହରି ଗୁଣ । ସେ ହରିଲୀଳା ଏବେ ଶୁଣ ॥
ଏବେହୋ ମୋକ୍ଷ ସ୍ୱର୍ଗ ଏହି । ଏବେ ହୋ ସୃଜ ଯଶ କହି ॥
ବୃକ୍ଷ ଓଷଧି ଲତାଗୁଳ୍ମ । ସଂକକ୍ଷେ ସାର ଏହା ନାମ ॥
ଏହାଙ୍କ ନାମ ଉଧରେତ । ଅନ୍ତ ସ୍ୱରସ ଜ୍ଞାନ ତତ୍ତ୍ୱ ॥
ଅଶେଷ ସୃଜେ ପଶୁଗଣ । ଅଷ୍ଟ ବିଷୟେ ଏବେ ଶୁଣ ॥
ଅଜ୍ଞାନ ତମ ଗୁଣ ଥାନ୍ତି । କେବଳ ପ୍ରାଣ ସେ ରଖନ୍ତି ॥
ଗୋରୁ ମହିଷ ଅଜ ତିନି । କୁକୁର ଶୂକର ହରିଣୀ ॥
ଏହାଙ୍କ ପାଦେ ବେନି ଖର । ମେଷ ଶରଭ ଓଟ ଖର ॥
ସମ୍ବର ମୃଗ ଆଦି ଯେତେ । ଯେ ଏକ ଖୁର କହୁଁ ତୋତେ ॥
ଏବେ କହିବା ବୀର ଶୁଣ । ଯେ ପଞ୍ଚନଖ ପଶୁଗଣ ॥
ଶ୍ୱାନ ଶୃଗାଳ ଲୋଳ ବ୍ୟାଘ୍ର । ମଞ୍ଜାର ଶଶା ସାଲୁ ବେଙ୍ଗ ॥
ସିଂହ ବିବର ଗଜଂଗମ । ଗୋଧି ଜାମୁକି ଅନୁପାମ ॥
ମକର ଆଦି ଜଳ ଜୀବେ । ଭାବେ କହିବା ଶୁଣ ଏବେ ॥
ସେ କାକ ସଞ୍ଚାଣ ଶାଗୁଣ । ଭାଲୁ ଉଲକ ବରହିଣ ॥
ହଂସ ସାରସ ଚକ୍ରବାକ । ଉଲୁକ ଆଦି ଚିଲ କାକ ॥
ଏ ନବ ସର୍ଗ ଯେବେ କହି । ବିଦୁର ଶୁଣ ମନ ଦେଇ ॥
ମନୁଷ୍ୟ ମଧ୍ୟେ ସେ ମିଶନ୍ତି । ଯେ ଦୁଃଖ ସୁଖ ପ୍ରାୟେ ଚିନ୍ତି ॥
ରଜ ଅଧିକ କର୍ମ ତାର । ବିକୃତି କୃତି ଅପକାର ॥
ଯେ ଦେବ ସୃଷ୍ଟି ଅନୁପାମ । କୁମାର ସୃଷ୍ଟି ଏ ନବମ ॥
ଦେବଙ୍କ ସୃଷ୍ଟି ଅନୁବିଧି । ପିତାର ଅସୁର ବିବୁଧି ॥
ଗନ୍ଧର୍ବ ଅପସରା ସିଦ୍ଧ । ଚାରଣ ଯକ୍ଷ ରକ୍ଷ ଭେଦ ॥
ଭୂତ ପିଶାଚ ପ୍ରେତଗଣ । ବିଦ୍ୟାଧର କିନ୍ନର ପୁଣ ॥
ଏ ଅଷ୍ଟବିଧିଙ୍କ ଉତ୍ପତ୍ତି । ସ୍ୱଭାବେ ଦେବତା ବୋଲାନ୍ତି ॥
ଏବେ ଅପରେ କହୁ ତୋତେ । ଉଭୟ ମଧ୍ୟେ ସୃଷ୍ଟି ଯେତେ ॥
କୁମାର ସ୍ୱର୍ଗ ସେ ବୋଲାଇ । ଉଭୟେ ମତେ ଭେଦ ରହି ॥
ଏବେ ହୋ ଶୁଣ କୁରୁବୀର । ଯେ ବଂଶ ମନୁଷାନ୍ୟନ୍ତର ॥
ଯେମନ୍ତେ ରଜୋଗୁଣ ମିଶି । ସୃଷ୍ଟି ଆଗମେ ବ୍ରହ୍ମରାଶି ॥
ଅମୁହାଁ କକ୍ଷେ ସେ ସ୍ୱଭାବ । ଆତ୍ମାରୁ ଆତ୍ମା ପଦ୍ମଲାଭ ॥
ତକ୍ଷଣେ ରହେ ସେ ବୃହତ । ଈଶ୍ୱର ମାୟା ବିଦ୍ୟାମତ ॥
ଏମନ୍ତେ ସୃଷ୍ଟି ସେ ବୋଲାନ୍ତି । ସେ ଯୁଗାନ୍ତରେ ନ ମିଶନ୍ତି ॥
ନଦୀଙ୍କ ତଳେ ଯେଉଁ ଭୂମେ । ଜଳଧି ଯାନ୍ତି ଯଥାକ୍ରମେ ॥
ଏମନ୍ତେ ଦେବାସୁର ଆଦି । ଯେତେ କହିଲି ମୁଁ ସମ୍ପାଦି ॥
ମନୁ ଅନ୍ତରେ ହୋଇଥାନ୍ତି । ସେ ନାମରୂପେ ଆଦି ହୋନ୍ତି ॥
ଏମନ୍ତେ ବିଦୁର ସମୀପେ । ମୁନି କହିଲେ ପଦ୍ମ କକ୍ଷେ ॥
ଏ ଭାଗବତେ ଜ୍ଞାନରସ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବ୍ରହ୍ମା ସୃଷ୍ଟି ସର୍ଜ୍ଜନେ ନାମ ଦଶୋମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ବିଦୁର ଏକ ଚିତ୍ତେ । ସେ କାଳରୂପ ସାଂଖ୍ୟମତେ ॥
ନିମିଷେ ଆଦି ରୂପ ତାର । ଯେସନେ ପୂରଇ ବତ୍ସର ॥
ନିମିଷେ ଚକ୍ଷୁ ପଞ୍ଚ ଭ୍ରମ । ଏଣୁ ବୋଲାଇ ତାର ନାମ ॥

ତାହାର ଅର୍ଦ୍ଧେ ପରିମାଣୁ । ତ୍ରିଭାଗ ହୁଏ ଶତ ରେଣୁ ॥
ଏ ଅଷ୍ଟ ଦଶ ନିଜ କ୍ଷଣେ । କାଷ୍ଠା ବୋଲାଇ ଏ ପ୍ରମାଣେ ॥
ତିରିଶ କାଷ୍ଠା ଯେହ୍ନେ ଗଣେ । କଳା ବୋଲାଇ ସେ ପ୍ରମାଣେ ॥
କଳା ତିରିଶେ କ୍ଷଣେ ହୋଏ । ଦ୍ୱାଦଶ ମୁହୂର୍ତ୍ତେ ବୋଲାଏ ॥
ଏ ବେନି ମୁହୂର୍ତ୍ତେ ପ୍ରହର । ଏମନ୍ତେ ସେ ଅଷ୍ଟ ପ୍ରକାର ॥
ଚାର ଦ୍ୱାଦଶ ଗୁଣୀ ଅର୍ଥେ । ଚତୁର ଅଙ୍ଗୁଳି ସମେତେ ॥
କରାଇ ଆଏମ ବିସ୍ତାରି । ସୁବର୍ଣ୍ଣ ନାଶେ ଛିଦ୍ରକରି ॥
ଜଳେ ବୁଡ଼ନ୍ତେ ଦଣ୍ଡେ ହୁଏ । ଏ ଅଷ୍ଟ ପ୍ରହର ବୋଲାଏ ॥
ଅଷ୍ଟ ପ୍ରହରେ ଦିବା ରାତ୍ରି । କାଳକୁ ଏମନ୍ତେ ଗଣନ୍ତି ॥
ଚନ୍ଦ୍ର ପନ୍ଦର ବେନି ପକ୍ଷ । ସେ ଶୁକ୍ଳ କୃଷ୍ଣଟି ପ୍ରତ୍ୟକ୍ଷ ॥
ଏ ବେନି ପକ୍ଷେ ହୋଏ ମାସେ । ଦ୍ୱିମାସେ ଋତୁଙ୍କ ଉଦ୍ଦେଶ୍ୟେ ॥
ତୃତୀୟ ଋତୁ ଛଡ଼ ମାସେ । ଅୟନ ସେ ଅର୍ଦ୍ଧ ବରଷେ ॥
ବେନି ଅୟନେ ସମ୍ବତ୍ସର । ଯେ କହି ଦକ୍ଷିଣ ଉତ୍ତର ॥
ଏମନ୍ତେ ଶତେକ ବରଷ । ମନୁଷ୍ୟମାନଙ୍କ ଆୟୁଷ ॥
ଗ୍ରହ ନକ୍ଷତ୍ର ଯାର ଚକ୍ରେ । ସେ କାଳ ବଶେ ଅତିରେକେ ॥
ଏ ବେନି ପକ୍ଷେ ମାସେ କହି । ପିତୃଙ୍କୁ ଅହୋ ରାତ୍ରେ ହୋଇ ॥
ଏମନ୍ତେ ପିତୃଙ୍କୁ ବରଷେ । ବେଦକୁ ହୋଇ ସେ ବରଷେ ॥
ଅଣୁ ପ୍ରମାଣୁ ପରିମାଣେ । ପ୍ରାଣୀଙ୍କି ମାସେ ଅନୁକ୍ଷଣେ ॥
ଏମନ୍ତ ସମ୍ବତ୍ସରେ ଅର୍ଥେ । ବିହରେ ଆତ୍ମାର ଆୟତେ ॥
ଏ ପଞ୍ଚଋତୁ ସର୍ବେଶ୍ୱର । ସୁମନେ ଶୁଣ ହୋ ବିଦୁର ॥
ପ୍ରଥମେ ସମ୍ବତ୍ସର ହୋଏ । ଚାରି ବରଷେ ଗୁଣ କହେ ॥
ଇନ୍ଦୁ ବତ୍ସର ଦ୍ୱିତୀୟେକେ । ଚତୁର୍ଥେ ଲବଣର କଛେ ॥
ପଞ୍ଚମେ ବତ୍ସର ବୋଲାଇ । କାଳସ୍ୱରୂପେ ଗୁଣ ମୟୀ ॥
ଏମନ୍ତେ କାଳକୁ ସମସ୍ତେ । ବୁଲି ହରଇ ଆଜ ଏତେ ॥

## ବିଦୁର ଉବାଚ

ପିତୃ ଦେବତା ନର ଆଦି । ପରମ ଆୟୁ ଯଥାବିଧି ॥
ଶୁଣିଲୁ ତୁମ୍ଭ ମୁଖୁଁ ଏବେ । ସନ୍ତୋଷେ କହ ମୁନିଭାବେ ॥
ଏଠାରେ କଳ୍ପେ ଆଦି ଯେତେ । କହିଲେ ସନ୍ତୋଷେ ଯେମୋତେ॥
ଅଛନ୍ତି କାଳର ଆୟତେ । ନାନା ପ୍ରକାରେ ଏ ଜଗତେ ॥
ତୁମ୍ଭେ ସେ କାଳ ଗତି ଜାଣ । ଯେ ରୂପେ ଏ ଅବା ପ୍ରମାଣ ॥
ଏଣେ ଯେ ବିଲକ୍ଷଣ ଧୀର । ସୁବୁଦ୍ଧି ସୁପୁଣ୍ୟେ ସୁଧୀର ॥
ଯେତେ ବିଷୟ ଏ ଶୟଳେ । ଜାଣନ୍ତି ଜ୍ଞାନ ଚକ୍ଷୁବଳେ ॥

## ମୈତ୍ରେୟ ଉବାଚ

ସତ୍ୟ ତ୍ରେତା ଦ୍ୱାପର ଆଦି । କଳି ଏ ଚତୁର୍ଯ୍ୟୁଗ ବିଧି ॥
ଦେବଙ୍କ ଆୟୁଷ ବରଷେ । ଏ ଚାରି ଯୁଗ କାଳଅଂଶେ ॥
ଚାରି ସହସ୍ର ଯୁଗ ସତ୍ୟ । ତିନି ସହସ୍ର ତ୍ରେତାମତ ॥
ଦ୍ୱାପର ଦିସହସ୍ର ପ୍ରାଣୀ । କଳି ସହସ୍ର ପରିମାଣି ॥
ଏମନ୍ତେ ଦେବ ସାଂଖ୍ୟାଯେତେ । ଦ୍ୱାଦଶ ସହସ୍ର ସମେତେ ॥
ଏହି ପ୍ରମାଣେ ସତ ଦେଇ । ଦ୍ୱିଗୁଣେ ଏହାକୁ ମିଶାଇ ॥
ଯୁଗଙ୍କ ସିଦ୍ଧି ସାଧ ଅଂଶେ । ଆୟରେ ସେ କାଳ ପ୍ରକାଶେ॥
ଏଣୁ ସେ ଯୁଗ ସଂଖ୍ୟା ବାଣୀ । ଜ୍ଞାନୀଙ୍କ ବଚନ ପ୍ରାମାଣି ॥
ଯେ ଯୁଗେ ଯେବା ଧର୍ମ ବିଧି । ଆଗମ ନିଗମ ସମ୍ପାଦି ॥
ଚତୁର ଦ୍ୱିତୀୟ ଦୁସୟେ । କଳିର ଏକପାଦେ ରହେ ॥
ଦେବଙ୍କ ସହସ୍ର ସଂଯୋଗେ । ବ୍ରହ୍ମକୁ ଦିବସେକ ଭୋଗେ ॥
ପୁଣି ସହସ୍ର ରାତି ହୋଏ । ନିଶି ଆଗମେ ବ୍ରହ୍ମ ଶୋଏ ॥
ରାତିର ଅନ୍ତେ ପୁଣି ଉଠି । ବେଦ ବଚନେ କରେ ସୃଷ୍ଟି ॥
ଏମନ୍ତେ ବ୍ରହ୍ମାର ଦିବସ । ଭଜନ୍ତି ମନୁ ଚତୁର୍ଦଶ ॥
ଏକ ସଂଗତି ଚତୁର୍ଯୁଗେ । ଚତୁର ଦେବା ମୁନି ଭୋଗେ ॥
ମନୁଙ୍କ ବଂଶେ ମନୁ ଶ୍ରୁତେ । ଋଷି ଦେବତାଙ୍କ ସମେତେ ॥
ତିନି ଭୁବନେ ପ୍ରାଣୀ ଯେତେ । ଭୁଞ୍ଜନ୍ତି କଳ୍ପ ପରିଯନ୍ତେ ॥
ଏ ସୃଷ୍ଟି ବହି ତିନି ନାମ । ଋଷି ଦେବତା ପିତୃ ଥାନ ॥
ଏମନ୍ତେ କଳ୍ପେ ପରିଯନ୍ତେ । କର୍ମ ଭୁଞ୍ଜନ୍ତି ପ୍ରାଣୀ ଯେତେ ॥
ମନ୍ୱାଦି ଏ ଆଦି ସଂସାରେ । କାଳ କ୍ରୀଡ଼ଇ ପଶୁତାରେ ॥
ମାୟାର ବଳେ ସେ ବିହରେ । ବ୍ରହ୍ମା ଦିବସ ଅନ୍ତକରେ ॥
ନିଶି ଆଗମେ ବିସ୍ମୃଦେହୀ । ମଉନ ବ୍ରତେ ସେ ବସଇ ॥
ତ୍ରିଲୋକ କଲେ ତାହା ଦେଖି । ମୁଁ ଜ୍ଞାନୀ ଜୀବନ ଉପେକ୍ଷି ॥
ରବି ଶଶାଙ୍କ ଶୂନ୍ୟେ ଗଲା । ପ୍ରଳୟ ଅଗ୍ନି ପ୍ରକାଶିଲା ॥
ଶଙ୍କରଷଣ ମୁଖୁଁ ଆଣି । ଅନଳ ତ୍ରିଲୋକ ପରାଣୀ ॥
ପ୍ରଚଣ୍ଡ ବ୍ରହ୍ମ ତେଜେ ଗ୍ରାସେ । ଋଷିଏ ଥିଲେ ଯେ ଆକାଶେ॥
ସ୍ୱର୍ଲୋକ ଛାଡ଼ି ଅତିରେକେ । ଯାଇ ପଶିଲେ ଜନଲୋକେ ॥
ତକ୍ଷଣେ ସପ୍ତସିନ୍ଧୁ ଜଳେ । ତ୍ରିଲୋକ ଆଚ୍ଛାଦିଲା ଜଳେ ।
ପବନ ଆଚ୍ଛାଦିଲେ ବଳେ । ଭ୍ରମିଣ ନାଦକଲେ ମେଳେ ॥
ଜଳ ତରଳ ନାଦ ଶୁଣି । ନାଗ ଶୟନେ ଚକ୍ରପାଣି ॥
ନିଶ୍ଚିନ୍ତେ ନିଦ୍ରିତ ଲୋଚନେ । ଶୋଇଲେ ଅନନ୍ତ ଶୋୟନେ ॥
ସଙ୍ଗତେ ସଙ୍ଗ ନାହିଁ ଏକେ । ସ୍ତୁତି କରନ୍ତି ଜନଲୋକେ ॥
ଏମନ୍ତେ ଅହୋରାତ୍ର ଗଣି । ଆଗମେ ନିଗମେ ପ୍ରମାଣି ॥
ଏ ଭାବେ ଶତେକ ବରଷ । ବ୍ରହ୍ମାର ପରମ ଆୟୁଷ ॥
ଅର୍ଦ୍ଧେକ ପରାର୍ଦ୍ଧ ବୋଲାଇ । ଯେ ପୂର୍ବ ପର ଭାବ ଦୁଇ ॥

ପୂର୍ବ ପରାର୍ଦ୍ଧେ ବ୍ରହ୍ମା ନାମ । ଶବଦ ବ୍ରହ୍ମ ଅନୁପମ ॥
ପରାର୍ଦ୍ଧ କଳ୍ପ ଯେବେ ହୁଏ । ସେ ପଦ୍ମକଳ୍ପ ଏକ ହୋଏ ॥
ବିଷ୍ଣୁର ନାଭିପଦ୍ମୁ ଜାତ । ଯହୁଁ ଉପୁଜେ ବେଦନାଥ ॥
ଦ୍ୱିତୀୟ କଳ୍ପ ଏବେ କହି । ଶ୍ୱେତ ବରାହ ସେ ବୋଲାଇ ॥
ଯେବଣ କଳ୍ପେ ନରହରି । ଶ୍ୱେତ ବରାହ ରୂପ ଧରି ॥
ଏ ବେନିକଳ୍ପ ଋଷି କାଳ । ନିମିଷ ଆଦି ଅନ୍ତରାଳ ॥
ଅନନ୍ତ ଅବ୍ୟକତ ସୀମା । ଅନାଦି ଈଶ୍ୱର ମହିମା ॥
ଷୋଡ଼ଶ ବିକାରେ ସଞ୍ଚରେ । ନାନା ବିଷୟ ରୂପ ଧରେ ॥
ଏମନ୍ତେ କୋଶ ଖାଞ୍ଚା ଅନ୍ତେ । ପଚାଶ କୋଟି ପରିମିତେ ॥
ଦଶା ଭରଣେ ଯାର ଦେହେ । ଦିଶଇ ପ୍ରମାଣୁ ପ୍ରମାଣେ ॥
ବ୍ରହ୍ମ ଅକ୍ଷର ନିଜଗୁଣ । ସେ ସର୍ବ କରଣ କାରଣ ॥
ତାର ଚରଣେ ଦେଇ ଚିତ୍ତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ସତ୍ୟକାଳ ବର୍ଣ୍ଣନେ*
*ମୈତ୍ରେୟ ବିଦୁର ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏବେ ବିଦୁର କହୁ ତୋତେ । ଯେ ବ୍ରହ୍ମା କାଳ ଅନୁଗତେ ॥
ବେଦ ପ୍ରକୃତେ କଲା ସୃଷ୍ଟି । ତେଣୁ ଅମୋହ ତାର ଦୃଷ୍ଟି ॥
ଅନ୍ଧ ତାମସ ସୃଷ୍ଟି ଆଗେ । ବଶ୍ୟ ବିକାର ଯଥାଭାଗେ ॥
ସ୍ରିଜିଲା ଯୋଗମାୟା ମୋହେ । ତମେ ଅଜ୍ଞାନ ବୃତ୍ତି ବହେ ॥
ପାପ ବହୁଳେ ସୃଷ୍ଟି ଏହି । ତା ଦେଖି ବ୍ରହ୍ମା ବିଚାରଇ ॥
ଏ ନୁହେଁ ଆଦି ସୃଷ୍ଟି ଭୂତ । ଦୃଢ଼େ ଗୋବିନ୍ଦ କଲା ଚିତ୍ତ ॥
ଗୋବିନ୍ଦ ପାଦ ଧ୍ୟାନ ବଳେ । ସଂଯୁକ୍ତ ଭଗତି ନିଷ୍କଳେ ॥
ବିଷ୍ଣୁର ଅଂଶେ ଚାରିଭ୍ରାତ । ବ୍ରହ୍ମାର ମନ ମଧ୍ୟୁ ଜାତ ॥
ସନକ ସନାତନ ବେନି । ସ୍ୱନନ୍ଦ କପିଳ ଏ ଘେନି ॥
କପିଳ ଭୋ ତୁ ସେ ଅସୁରୀ । ସାତ ପୁତ୍ରଙ୍କ ନାମ ଧରି ॥
ସ୍ୱଭାବେ ଊର୍ଦ୍ଧରେତା ହୋନ୍ତି । ବିଷ୍ଣୁ ହୁଁ ଆନ ନ ଜାଣନ୍ତି ॥
ତାହାଙ୍କୁ ଚାହିଁ ବେଦବର । ସ୍ୱଭାବେ କହଇ ମଧୁର ॥
ତୁମ୍ଭେ ସପତ ପୁତ୍ରେ ମୋର । ବେଦ ପ୍ରମାଣେ ସୃଷ୍ଟି କର ॥
ଏମନ୍ତେ ପିତା ବାକ୍ୟ ଶୁଣି । ପୁତ୍ରେ ବୋଲନ୍ତି ମନେ ଗୁଣି ॥
ଆମ୍ଭର ଏଣେ କାର୍ଯ୍ୟ ନାହିଁ । ଏମନ୍ତେ ଆଜ୍ଞା ଦିଅ ତୁହି ॥
ଗୋବିନ୍ଦ ଚରଣାରବିନ୍ଦେ । ଭକ୍ତି କରିବୁ ମୋକ୍ଷ ସଧେ ॥
ଏମନ୍ତ ଶୁଣି ତାଙ୍କ ବାଣୀ । କ୍ରୋଧେ କଂପିଲା କୃଶପାଣି ॥
ପୁଣି ଯୁଦ୍ଧରେ ଚିତ୍ତ ଧରି । ଧ୍ୟାନେ ସୁମରିଲା ମୁରାରି ॥
କୋପେ ଭ୍ରୂକୁଟୀ ତା କୁଟିଳ । ବଦନ ଦିଶିଲା ପିଙ୍ଗଳ ॥
ଭ୍ରୂକୁଟୀ ମଧ୍ୟୁପୁତ୍ର ଜାତ । ଦିଶନ୍ତି ସୁଲୋଳ ଲୋହିତ ॥
ଦେବଙ୍କ ପୂର୍ବେ ଜାତ ହୋଇ । କାନ୍ଦଇ ବ୍ରହ୍ମା ମୁଖ ଚାହିଁ ॥
ବୋଲନ୍ତି ଶୁଣ ବେଦବର । ମୋହର ନାମ ଅଗୋଚର ॥
ନିର୍ଭୟେ ସ୍ଥାନେ ଛାଡ଼ ମୋତେ । ଯେମନ୍ତେ ରହଇ ନିଶ୍ଚିନ୍ତେ ॥
ଶୁଣି ସନ୍ତୋଷ ପ୍ରଜାପତି । ଚିନ୍ତିଲା ଯେବା ନାମେ ସ୍ଥିତି ॥
ହେ ପୁତ୍ର ରୋଦନ ନ କର । କରିବି ବଚନ ତୁମ୍ଭର ॥
ରୋଦନ କଲେ ଆମ୍ଭେ ମଣୁ । ତୋ ରୁଦ୍ରନାମ ହେଉ ତେଣୁ ॥
ଏମନ୍ତେ କହି ତାର ଆଗେ । ସ୍ଥାନ କଳ୍ପିଲା ଯଥାଭାଗେ ॥
ମନ ଇନ୍ଦ୍ରିୟ ଦେହ ବ୍ୟୋମେ । ବାୟୁ ଅନଳ ଜଳସ୍ଥାନେ ॥
ମହୀ ମନ୍ଦିର ଚନ୍ଦ୍ରାତପ । ଏମନ୍ତେ ଏକାଦଶ ରୂପ ॥
ଯେ ସ୍ଥାନେ ଯେ ନାମ ତୋହର । ହୋଇବୁ ଶୁଣ ହୋ କୁମର ॥
ମନୁ ଉପରେ ମନୁ ନାମ । ଇନ୍ଦ୍ରି ସମୂହେ ମନଧାମ ॥
ଦେହ ଉପରେ ମହୀ ନାଶେ । ଆକାଶୁ ମହାନୁ ପ୍ରକାଶେ ॥
ପବନେ ଶିବ ରୂପ ମିଶେ । ଅନଳେ ରତୁଧ୍ୱଜ ନାଶେ ॥
ଉପରେ ଉଷ୍ଣ ଜଳ ଯୋଗେ । ତତ୍ତ୍ୱ ବସିବ ଭୂମିଭାଗେ ॥
ରବି ବିମାନେ କାଳଥିବ । ଚନ୍ଦ୍ର ବସିବ ବାମଦେବ ॥
ତପେ ବସି ବିଧୃତ ବ୍ରତ । ଏମନ୍ତେ ଏକାଦଶ ମତ ॥
ଏହାଙ୍କ ପତ୍ନୀନାମେ ଯେତେ । ଶୁଣ କହିବୁ ତୋ ଅଗ୍ରତେ ॥
ଧୀଧୃତି ରସା ଫଳା ଉମା । ଅପରେ ଶୁଣ ଯେତେ ବାମା ॥
ନିଉତି ସର୍ପା ଇଳାମ୍ବିକା । ଇରାବତୀ ଯେ ସ୍ୱଧା ଦୀକ୍ଷା ॥
ଏ କନ୍ୟା ରୁଦ୍ରାଣୀ ବୋଲାନ୍ତି । ଏହାଙ୍କ ଏକାଦଶ ପତି ॥
ଏବେ ସଂଯୋଗେ ସୃଷ୍ଟିକର । ତୁ ହୁଅ ପ୍ରଜାପତି ବୀର ॥
ଏମନ୍ତେ ଗୁରୁ ଆଜ୍ଞା ପାଇ । ନୀଳ ଲୋହିତ ତୋଷ ହୋଇ ॥
ସତ୍ୟ ଯେ ଶ୍ରୁତି ପ୍ରଜାଗଣ । ତକ୍ଷଣେ କଲା ସେ ନିର୍ବାଣ ॥
ସେ ବ୍ରହ୍ମା ସୃଷ୍ଟି ରୁଦ୍ର ଚାହିଁ । ସଂଶୟ ଚିତ୍ତେ ବିଚାରଇ ॥
ଏ ସୃଷ୍ଟି ମହା ଭୟଙ୍କର । ଦେଖି କମ୍ପିଲା ଚିତ୍ତ ମୋର ॥
ବୋଲନ୍ତି ରୁଦ୍ରମୁଖ ଚାହିଁ । ଭୋ ପୁତ୍ର ଏଣେ କାର୍ଯ୍ୟ ନାହିଁ ॥
ଏ ସୃଷ୍ଟି ଦଶଦିଶ କାଳେ । ମୋହର ମନେ ତାପ କଲେ ॥
ଏବେ ତୁ ତପ ସାଧ୍ୟକର । ସର୍ବଜୀବଙ୍କ ସୁଖ ଘର ॥
ତପର ବଳେ ଏ ଜଗତେ । ପ୍ରଜା ତୁ କର ପୂର୍ବମତେ ॥

ତପେ ତୁ ବିଷ୍ଣୁଙ୍କୁ ପାଇବୁ । ଏ ଭାବେ ସର୍ବ କାଳେ ଥିବୁ ॥

## ମୈତ୍ରେୟ ଉବାଚ

ଏମନ୍ତେ ବ୍ରହ୍ମା ଆଜ୍ଞା ପାଇ । ନୀଳଲୋହିତ ତୋଷ ହୋଇ ॥
ବ୍ରହ୍ମାର ଚରଣେ ନମିଲା । ତପ ସାଧନେ ବନେ ଗଲା ॥
ରୁଦ୍ର ଭୂତଙ୍କୁ ଆଜ୍ଞା ଦେଇ । ସେ ବ୍ରହ୍ମା ମନେ ବିଚାରଇ ॥
ଏ ତ ଅସଂଖ୍ୟ ପୁତ୍ରଗଣେ । ନୁହନ୍ତି ସୃଷ୍ଟିର କାରଣେ ॥
ତାହାଙ୍କୁ ଶିବଲୋକେ ଥୋଇ । ପୁଣି ସଂଶୟେ ବିଚାରଇ ॥
ଏବେ କି କରିବି ଉପାୟ । ନ ପୁଣ କୋପେ ଦେବରାୟ ॥
ଏମନ୍ତେ ବିଷ୍ଣୁ ପାଦ ଚିନ୍ତି । ଧ୍ୟାନେ ବସିଲା ପ୍ରଜାପତି ॥
ତାର ଶରୀରୁ ଦଶ ସୁତ । ତକ୍ଷଣେ ହୋଇଲେ ସମ୍ଭୂତ ॥
ଲୋକ ଜନକ ହେତୁ ଅର୍ଥେ । ନମିଲେ ବ୍ରହ୍ମା ପାଦଗତେ ॥
ମରୀଚି ଅତ୍ରି ଅଙ୍ଗିରସ । ପୌଲସ୍ତ୍ୟ ପୁଲହ ପ୍ରକାଶ ॥
କ୍ରତୁ ବଶିଷ୍ଠ ଭୃଗୁ ଦକ୍ଷ । ଦଶମେ ନାରଦ ପ୍ରତ୍ୟକ୍ଷ ॥
ଶୁଣି ବିଦୁର କହୁଁ ଭଲେ । ଯେ ଅଙ୍ଗୁ ଯେବା ଉପୁଜିଲେ ॥
ନାରଦ ଉପୁଜିଲେ କୋଳେ । ଦକ୍ଷ ଦକ୍ଷିଣାଙ୍ଗୁଷ୍ଠି ମୂଳେ ॥
ପ୍ରାଣୁ ବଶିଷ୍ଠ ମୁନି ଜାତ । ଭୃଗୁ ତ୍ୱକରୁ ଉପଗତ ॥
ଅଙ୍ଗିରା ବଦନୁ ସମ୍ଭୂତ । ପୌଲସ୍ତ୍ୟ କର୍ଣ୍ଣମୂଳୁଁ ଜାତ ॥
କ୍ରତୁ ଉପୁଜେ ଭୁଜମୂଳେ । ପୁଲହ ଅବନୀ ମଣ୍ଡଳେ ॥
ଅତ୍ରି ଉପୁଜେ ଚକ୍ଷୁ ଯୁଗେ । ମରୀଚି ମନରୁ ସଂଯୋଗେ ॥
ଦକ୍ଷିଣ ଜାନୁ ଧର୍ମ ଜାତ । ଯେ ଧର୍ମ ଧରେ ଏ ଜଗତ ॥
ଅଧର୍ମ ପୃଷ୍ଠଦେଶୁଁ ହୁଏ । ମୃତ୍ୟୁ ସଞ୍ଚରେ ଯାର ଦେହେ ॥
କାମ ତା ହୃଦରୁ ସମ୍ଭୂତ । ଭବ ମଣ୍ଡଳୁ କ୍ରୋଧ ଜାତ ॥
ଲୋଭ ହୋଇଲା ଓଷ୍ଠଦେଶେ । ବଚନ ବଦନୁ ପ୍ରକାଶେ ॥
ମୃତ୍ୟୁଦେବତା ଗୁହ୍ୟଦେଶେ । ସପତସିନ୍ଧୁ ନେତ୍ରେ ବସେ ॥
କର୍ଦ୍ଦମ ଛାୟାରୁ ସମ୍ଭୂତି । ଯାହାର ପତ୍ନୀ ଦେବହୂତି ॥
ଏମନ୍ତେ ଅଶେଷ ଜଗତ । ବ୍ରହ୍ମାର ମନୁ କଲେ ଜାତ ॥
ଯେ କନ୍ୟା ବଚନୁ ଜନ୍ମିଲା । ବ୍ରହ୍ମାର ମନ ସେ ମୋହିଲା ॥
ସକାମେ ବ୍ରହ୍ମା ତାର ହସ୍ତେ । ଧଇଲେ ରତି ରଙ୍ଗ ଅର୍ଥେ ॥
ଅଧର୍ମ ଦେଖି ବ୍ରହ୍ମା ଚିତ୍ତେ । ପୁତ୍ରେ ମିଳିଲେ ତା ଅଗ୍ରତେ ॥
ମରୀଚି ଆଦି ଯେତେ ଭାଇ । ବୋଇଲେ ପିତା ମୁଖ ଚାହିଁ ॥
ହେ ତାତ ସ୍ଥିର କର ଚିତ୍ତ । ଏ ତ ତୁମ୍ଭର ବିପରୀତ ॥
ଯେ କର୍ମ ପୂର୍ବାପରେ ନାହିଁ । ଏବେ ସେ ସମ୍ଭବିବ କାହିଁ ॥
କାହାର ଦୁହିତା ଏ ପିତା । ଏଣେ ଆମ୍ଭର ମନେ ଚିନ୍ତା ॥
ପୂର୍ବେଟି ଜନ୍ମି ଯେତେ ଥିଲେ । ସତ୍ୟ ସେ ଧର୍ମ ଆଚରିଲେ ॥
ସେ ନ କରନ୍ତି ଯେଡ଼େ କର୍ମ । ସ୍ୱଭାବେ ନୁହଇଁ ନା ଧର୍ମ ॥
ଯେ କର୍ମ ଲୋକ କ୍ଷମାକରେ । ଆନନ୍ଦେ ଆତ୍ମାକୁ ଉଦ୍ଧରେ ॥
ଆରକ ତାକୁ ନମସ୍କାର । ତୁ ଦେବ ଆତ୍ମାକୁ ସୁମର ॥
ସେ ଆତ୍ମା ଭାବି ବେଦବର । ସ୍ୱଧର୍ମ ମନ ଥିର କର ॥
ଏମନ୍ତେ ଶିରେ କରଦେଇ । ପାଦେ ପଡ଼ିଲେ ସର୍ବଭାଇ ॥
ଭୋ ନାଥ ଧର୍ମ କର ଚିତ୍ତ । ଅଧର୍ମେ ନ ପଡୁ ଜଗତ ॥
ତୁ ଏଡ଼େ ପାପ ଆଚରିଲେ । ସଂସାର ଥିବ କାହିଁ ଭଲେ ॥
ଏମନ୍ତେ ପୁତ୍ରଙ୍କୁ ଅନାଇଁ । ବ୍ରହ୍ମା ରହିଲେ ଲଜ୍ଜା ପାଇ ॥
ତକ୍ଷଣେ ଛାଡ଼ି ତାର ହାତ । ବିଷ୍ଣୁ ସୁମରେ ବେଦନାଥ ॥
ସେ କନ୍ୟା ଚିତ୍ତେ ଲଜ୍ଜା କଲା । ତକ୍ଷଣେ ଅଷ୍ଟଦିଗେ ଗଲା ॥
ଘୋର ଅନ୍ଧକାର ସୁରେଖା । ନାମ ହୋଇଲା କୁଜ୍‌ଝଟିକା ॥
ଅଧର୍ମେ ଅନ୍ଧକାର ହୋଇ । ସୂକ୍ଷ୍ମ ସ୍ୱରୂପେ ପ୍ରକାଶଇ ॥
ପୁଣି ଚଳଇ ଅଷ୍ଟଦିଶେ । ସଂହରି ସମ୍ଭବି ଆକାଶେ ॥
ମେଘର ପ୍ରାୟ ତାର ଦେହୀ । ଶୁଣ ବିଦୁର ଏବେ କହି ॥

## ବିଦୁର ଉବାଚ

ଚିନ୍ତା ଆକୁଳେ ପ୍ରଜାପତି । ସୃଷ୍ଟି ସଂଗ୍ରହେ କଲା ମତି ॥
ଶବଦ ବ୍ରହ୍ମ ପରିମାଣେ । ଧର୍ମ ଅଧର୍ମ ସେ ବଖାଣେ ॥
ଧ୍ୟାନେ କରନ୍ତେ ମନେ ଖେଦ । ମୁଖୁଁ ଜନ୍ମିଲା ଚାରିବେଦ ॥
ଦେଖି ବିଚାରେ ପଦ୍ମ ଯୋନି । ମୁଁ ଏବେ ବେଦ ତତ୍ତ୍ୱ ଘେନି ॥
କରିବି ବିଷୟ ଗୋଚର । ଯେଣେ ବିଦିତ ଏ ସଂସାର ॥
ବେଦ ବିଚାରେ ନାନାମତେ । କର୍ମ ବିଚାରି ଏ ଜଗତେ ।
ଏ ଚାରିଲୋକେ କର୍ମ ତତ୍ତ୍ୱ । ଉପବେଦାନ୍ତ ତୁଲେ ମନ୍ତ୍ର ॥
ସ୍ୱଭାବେ ଚତୁର୍ଦ୍ଦଶ କର୍ମ । ଆଗମ ବୃତ୍ତି ଯଥା ଧର୍ମ ॥
ଏ ଯୁଗେ ପ୍ରଚରିବେ ଯେତେ । ବ୍ରହ୍ମା ବିଚାରି ଅନ୍ତର୍ଗତେ ॥
ସେ ବିଶ୍ୱ ସବୁଙ୍କ ଈଶ୍ୱର । ଅଶେଷ ଚିତ୍ତ ଶକ୍ତିଧର ॥
ଯେ ମୁଖେ ଯେ ବେଦ ସଜ୍ଜିଲା । ଯହୁଁ ଯେ ଧର୍ମ ପ୍ରକାଶିଲା ॥
ସେ କଥା କହ ମୁନି ମୋତେ । ସଂଶୟ ନ ରହୁ ମୋ ଚିତ୍ତେ ॥

## ମୈତ୍ରେୟ ଉବାଚ

ଶୁଣ ହେ ବିଧାତାର ଲୀଳା । ଯେ ମୁଖେ ଯେ ବେଦ ସଜ୍ଜିଲା ॥
ଋକ୍‌କୁ ପୂର୍ବ ମୁଖୁ କଲା । ଦକ୍ଷିଣେ ଯଜୁ ପ୍ରକାଶିଲା ॥
ସାମ ପଶ୍ଚିମ ମୁଖୁ ଜାତ । ଅଥର୍ବ ଉତ୍ତରୁ ସମ୍ଭୂତ ॥
ବେଦାନ୍ତ ଶାସ୍ତ୍ର ଶ୍ରୁତି ଯେତେ । ଯଜ୍ଞାଦି କୃତ ଅଗ୍ନି ହୋତ୍ରେ ॥
ଦେବଙ୍କ ଅଗ୍ର ଆଦି ଯେତେ । ପ୍ରତ୍ୟକ୍ଷେ ଯଥା କର୍ମ ତନ୍ତ୍ରେ ॥
ଆୟୁର୍ବେଦ ଯେ ଧନୁର୍ବେଦ । ଗନ୍ଧର୍ବ ଜ୍ଞାନ ଶିକ୍ଷା ଭେଦ ॥

ଦେବଙ୍କ ଅଙ୍ଗ ଅନୁ ମତେ । ସ୍ଥାପତ୍ୟ ସଂଗ ଆଦି ଯେତେ ॥
ପୂର୍ବାଭିମୁଖେ ଯେତେକରି । ପୁଣି ବିଧାତା ମନେ ସ୍ମରି ॥
ପଞ୍ଚମବେଦ ଇତିହାସ । ଚତୁର ମୁଖେ ସୁପ୍ରକାଶ ॥
ଷୋଡ଼ଶ ଶିକ୍ଷା ପୂର୍ବ ମୁଖେ । ପଞ୍ଚମେ ଅଗ୍ନିସ୍ମୃତି ମୁଖେ ॥
ଅତ୍ରି ଯମସ ଯେତେ ଭ୍ରାତ । ଗୋ ଶବ୍ୟ ବ୍ୟାପ ପିତୃମତ ॥
ଧର୍ମ ଚାରଣ ଚାରିବେଦେ । ବ୍ରହ୍ମା କହିଲା ଜ୍ଞାନ ଭେଦେ ॥
ଯେ ବିଦ୍ୟା ନବଜ୍ଞାନ ସତ୍ୟ । ଏ ଧର୍ମ ଚତୁର୍ଦ୍ଦଶ ମତ ॥
ଚତୁରାଶ୍ରୁ ବୃତ୍ତି ସ୍ୱଭାବେ । ଯେ ଧର୍ମ ଯେବା ନିସ୍ତରିବେ ॥
ସାବିତ୍ରୀ ପ୍ରପଦିତ ବ୍ରହ୍ମ । ବୃହତ ଆଦି ଚାରି କର୍ମ ॥
କୃଷି ଗୋରସ ଆଦିକର୍ମ । ସିଳୋଠ ଆଦି ଯେତେ ଧର୍ମ ॥
ବୈଜ୍ଞାନ ବାଳଖିଳାଦୀକ୍ଷା । ସୁଖେ ନ ଲଭୁ ବର ଶିକ୍ଷା ॥
ସନ୍ନ୍ୟାସ କୁଟିନ୍ତର ଆଦି । ଆଶ୍ରମ ଧର୍ମ ଯେତେ ସିଦ୍ଧି ॥
ଉପାୟ ଆମ୍ବ ଛନ ଆଦି । ନନ୍ଦନି ତୀରେ ଯେ ସମ୍ପାଦି ॥
ବିକୃତି ଶ୍ରୁତି ଏହିମତେ । ଜନ୍ମିଲେ ଜାଣ ସେ ଆଘାତେ ॥
ଗାୟତ୍ରୀ ଆଦି ସପ୍ତଛନ୍ଦ । ମନ୍ତ୍ର ଦେବତା ଅନୁବନ୍ଧ ॥
ଉଷ୍ଣିକ ଛନ୍ଦ ଲୋମୁଁ ଜାତ । ଗାୟତ୍ରୀ ଚର୍ମୁ ପ୍ରାଦୁର୍ଭୁତ ॥
ମାତ୍ରେ ଉପୁଜି ସୁରୀ ଛନ୍ଦ । ଅନୁଷ୍ଟୁପ ଶିରେ ସମ୍ଭବ ॥
ଜପ ଇନ୍ଦ୍ରିୟ ରିକ୍ତ ହୁଏ । ପଞ୍ଚରେ ପଞ୍ଚ ଗନ୍ଧ ବହେ ॥
ବୃହତୀଛନ୍ଦ ଦଶ ପ୍ରାଣେ । ସ୍ୱରସ ଜୀବର କାରଣେ ॥
ସ୍ୱର ବ୍ରହ୍ମା ଶରୀରୁ ଜାତ । ଶ୍ଳେଷେଣ ଇନ୍ଦ୍ରିୟେ ସମ୍ଭୂତ ॥
ବଳ ଉଦିତ ଅନ୍ତଦେଶେ । ଯେ ବଳ ଶରୀରେ ପ୍ରକାଶେ ॥
ବ୍ରହ୍ମା ଦେହରେ ସପ୍ତସ୍ୱର । ଭଗତି ଶୁଣ ହେ ବିଦୁର ॥
ଏ ସପ୍ତବ୍ରହ୍ମ ତା ଶରୀର । ସ୍ୱଭାବେ ବ୍ୟକ୍ତେ ବ୍ୟକ୍ତ ତାର ॥
ଏଣୁ ସଂସାର ବ୍ରହ୍ମମୟେ । ଏ ବ୍ରହ୍ମ ଶକ୍ତି ନାମ ବହେ ॥
ଏମନ୍ତେ ସର୍ବ ବ୍ରହ୍ମା କରି । ଅପରେ ସୃଷ୍ଟି ମନେ ସ୍ମରି ॥
ଯେ ଋଷି ସୃଷ୍ଟି ପୂର୍ବେ କଲା । ତାଙ୍କ ବିସ୍ତାର ନ ଦେଖିଲା ॥
ସ୍ୱଭାବେ ତେଜୋବନ୍ତ ହୋନ୍ତି । ପ୍ରଜା ସଂଯୋଗ ନ କରନ୍ତି ॥
ଏମନ୍ତେ ବିଚାରି ବିଧାତା । ମନେ ପାଇଲା ଗୁରୁ ଚିନ୍ତା ॥
ଦେଖ ମୋହର କର୍ମ ମନ୍ଦ । ମୁଁ ଯେ ସିର୍ଜିଲି ଋଷିଛନ୍ଦ ॥
ତକ୍ଷଣେ ବ୍ରହ୍ମା ନିଜ ପିଣ୍ଡ । ତପେ ହୋଇଲା ବେନିଖଣ୍ଡ ॥
ସେ ବେନିଖଣ୍ଡ ବ୍ରହ୍ମା ଦେହେ । ନାରୀ ପୁରୁଷ ବେନି ହୁଏ ॥
ସେ ବେନିଖଣ୍ଡ ଅନୁମାନୁ । ଜନ୍ମିଲା ସ୍ୱୟମ୍ଭୁବ ମନୁ ॥
ସଂସାରେ ରାଜା ମୁଁ ବୋଲାଇ । ଶୁଣ ବିଦୁର ଏବେ କହି ॥
ଉତ୍ତରଖଣ୍ଡ ନାରୀ ଜନ୍ମ । ହୋଇଲା ସତ୍ୟରୂପା ନାମ ॥
ମନୁର ପତ୍ନୀ ବୋଲାଇଲା । ମୈଥୁନେ ସୃଷ୍ଟି ସମ୍ଭବିଲା ॥
ପଞ୍ଚ ବାଳେକ ତାଙ୍କ ଠହୁଁ । ହୋଇଲେ ଶୁଣ ନାମ କହୁଁ ॥
ଉତ୍ତାନପାଦ ପ୍ରିୟବ୍ରତ । ଆଗେ ହୋଇଲେ ବେନିସୁତ ॥
ଅପରେ ଜାତ ତିନି କନ୍ୟା । ସୁନ୍ଦରୀ ସୁଲୋଚନା ବାମା ॥
ଆକୃତି ଦେବହୂତି ବେନି । ପ୍ରସୂତି ନାମେ କନ୍ୟା ତିନି ॥
ସେ ମୁନି କନ୍ୟାଦାନେ ଦେଲା । ଆକୃତି ରୁଚି ବିପ୍ରେ ଦେଲା ॥
ତାହାର ଗର୍ଭୁ ନାନାମତେ । ସନ୍ତତି ପୂରିଲେ ଜଗତେ ॥
ଏମନ୍ତେ ଭାଗବତ ବାଣୀ । ମୈତ୍ରେୟ ବିଦୁରେ ବଖାଣି ॥
ଶୁଣ ସୁଜନେ ଶୁଦ୍ଧଚିତ୍ତେ । ତୃତୀୟସ୍କନ୍ଧ ଭାଗବତେ ॥
ମେତ୍ରେୟ ବିଦୁର ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଏଣେ ହରିଙ୍କି କର ଲୟେ । ବ୍ରାହ୍ମଣ ଜଗନ୍ନାଥ କହେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବେୟାସିକ୍ୟାଂ ତୃତୀୟସ୍କନ୍ଧେ ବ୍ରହ୍ମା ସୃଷ୍ଟି ସର୍ଜନା ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏମନ୍ତେ ମୈତ୍ରେୟ ବଚନ । ଶୁଣି ବିଦୁର ତୋଷମନ ॥
କୃଷ୍ଣ ଚରିତେ ଭାବଭରି । ପୁଣି ପୁଛଇ ପାଦ ଧରି ॥

### ବିଦୁର ଉବାଚ

ସେ ସ୍ୱାୟମ୍ଭୁବ ବ୍ରହ୍ମା ସୁତ । ସଂସାର ପ୍ରିୟେ ପ୍ରିୟବ୍ରତ ॥
ପ୍ରତ୍ୟକ୍ଷେ ବ୍ରହ୍ମାର ଶରୀର । ସେ ସ୍ୱାୟମ୍ଭୁବ ନୃପବର ॥
ସେ ସତ୍ୟରୂପା ପତ୍ନୀ ତାର । ସ୍ୱଭାବେ ବ୍ରହ୍ମାର ଶରୀର ॥
ନିର୍ମିତ ନର ନାରୀ କକ୍ଷେ । ବିଷ୍ଣୁ ଆଦେଶେ ମୋହକକ୍ଷେ ॥
ମିଥୁନ ଭାବେ ସେ ରହିଲେ । କେମନ୍ତେ ସୃଷ୍ଟି ଭିଆଇଲେ ॥
ସେ ରାଜଋଷିଙ୍କ ଚରିତ । କହି ସନ୍ତୋଷ କର ଚିତ୍ତ ॥
ଏ କୃଷ୍ଣ କଥା ପୁଣ୍ୟ ଯଶ । ଶ୍ରବଣେ ଚିତ୍ତ କଲା ଆଶ ॥

### ମୈତ୍ରେୟ ଉବାଚ

ବ୍ରହ୍ମାର ଦେହରୁ ସମ୍ଭବ । ପଦ୍ମାର ତୁଲେ ଅଂଗଭାବ ॥
କର ଅଞ୍ଜଳି ଶିରେ ଦେଇ । କହଇ ବ୍ରହ୍ମାମୁଖ ଚାହିଁ ॥
ତୁ ସର୍ବ ଜନ୍ତୁଙ୍କର ପିତା । ଜନ୍ମ ସମ୍ପଦ ବୃତ୍ତିଦାତା ॥
ଆମ୍ଭେ ତୋହର ଭୃତ୍ୟଗଣେ । ଯେମନ୍ତେ ଖଟୁ ତୋ ଚରଣେ ॥
ସେ ଆଜ୍ଞା ଦିଅ ବେଦବର । ତୋର ଚରଣେ ନମସ୍କାର ॥

ଏ କର୍ମ ସାଧି ଏକେ ଏକେ । ସର୍ଜ୍ଜଇ ଇହ ପରଲୋକେ ॥
ଭଗତି ପ୍ରାଣୀ ଆତ୍ମା ସୁଖେ । ସେ ଆଜ୍ଞା କହ ତାତ ମୁଖେ ॥

## ବ୍ରହ୍ମା ଉବାଚ

ଏମନ୍ତେ ପୁତ୍ରର ବଚନେ । ବ୍ରହ୍ମା କହନ୍ତି ତୋଷମନେ ॥
ଶୁଣ କୁମର ସାଧୁ ଧୀର । ତୁ ଏ ସଂସାରେ ନୃପବର ॥
ନିର୍ମଳ ହୃଦେ ତୁ ବିଚାରୁ । ଯେହ୍ନେ ସମାଦି ଶିଷ୍ୟ ଗୁରୁ ॥
ପିତାର ଆଜ୍ଞା ଶିରେ ଧରି । ଆଦରେ ସର୍ବ ଦୂରକରି ॥
ସନ୍ତତି କରି ଅଙ୍ଗ ସୁଖେ । ଶୋକ ନ କରି ନିଜଦୁଃଖେ ॥
ଧର୍ମ ପାଳନ ତାକୁ କହି । ବିଷ୍ଣୁଙ୍କୁ ପୂଜେ ଯଜ୍ଞଦାହି ॥
ପ୍ରଜା ରକ୍ଷଣେ ଧର୍ମ କଲେ । ବିଷ୍ଣୁ ସନ୍ତୋଷ ହୋନ୍ତି ଭଲେ ॥
ଯେ ଯଜ୍ଞ ଲିଙ୍ଗ ଜନାର୍ଦ୍ଦନ । ଯାହାକୁ ହୁଏ ସୁପ୍ରସନ୍ନ ॥
ଆଶ୍ରମେ ତୋର କାର୍ଯ୍ୟଭଲେ । ବିଷ୍ଣୁ ସମ୍ପଦେ ଆତ୍ମା ତୁଲେ ॥
ଭୋ ନାଥ ତୋହର ଆଦେଶେ । ବିଷ୍ଣୁଙ୍କୁ କରି ମୁ ବିଶ୍ୱାସେ ॥
ମୁଁ ଅବା ପୟଣିବ କାହିଁ । ଏ ଜଳେ ଧରଣୀ ତ ନାହିଁ ॥
ତାର ଉଦ୍ଧାରେ କର ଯତ୍ନ । ସୃଷ୍ଟି ଆଗମେ ବେଦକର୍ମ ॥
ମାୟା ପ୍ରବଳ ଜଳରାଶି । ପବନ ସଙ୍ଗେ ମୁହିଁ ଗ୍ରାସି ॥
ପୃଥିବୀ ନିବେଶିଲେ ଜଳେ । ପ୍ରଜା କଞ୍ଚିବି ଯୋଗବଳେ ॥
ଦେବତା ସୁର ପିତୃ ନର । ପଶୁ ପତଙ୍ଗ ମହୀଧର ॥
ପତଙ୍ଗ ଆଦି ଯେବା ଜଳେ । ଧରଣୀ ସ୍ଥାପିବି ଯେ ଜଳେ ॥
ଏବେ ତ ଜଳେ ନାହିଁ ମହୀ । ଏମନ୍ତ ବ୍ରହ୍ମା ବିଚାରଇ ॥

## ମୈତ୍ରେୟ ଉବାଚ

ଜଳେ ନ ଦେଖି ବସୁନ୍ଧରୀ । ବିଧାତା ମନେ ଧ୍ୟାନ କରି ॥
ମହୀ ବୁଡ଼ିଲା ମହାଜଳେ । କେମନ୍ତେ ଉଦ୍ଧରିବି ବଳେ ॥
ଯାର ଆଦେଶେ ଅବତରି । ମୁଁ ଏ ସଂସାରେ ଅଧିକାରୀ ॥
ସେ ହରି ଯେବେ ଦୟାକରେ । ଧରଣୀ ଆପଣେ ଉଦ୍ଧରେ ॥
ନୋହିଲେ ମୋର ସଖ୍ୟ ନାହିଁ । ଏମନ୍ତେ ବିଷ୍ଣୁ ପାଦେ ଧାୟି ॥
ବ୍ରହ୍ମା ରହିଲା ସ୍ତମ୍ଭୀଭୂତେ । ଶୁଣ ବିଦୁର ଏକଚିତ୍ତେ ॥
ତକ୍ଷଣେ ପ୍ରଭୁ ନରହରି । ବାଳ ଶୂକର ରୂପ ଧରି ॥
ଅଙ୍ଗୁଷ୍ଠି ପ୍ରମାଣ ଶରୀରେ । ଜନ୍ମିଲେ ବ୍ରହ୍ମା ନାସାଦ୍ୱାରେ ॥
ପୁଣ କ୍ଷଣକେ ଗଜ ପ୍ରାୟେ । ଅଦ୍ଭୁତେ ବଢ଼େ ଦେବରାୟେ ॥
ମରୀଚି ଆଦି ମୁନି ଯେତେ । ସନତ କୁମାର ସହିତେ ॥
ଅଦ୍ଭୁତ ବରାହ ଶରୀର । କ୍ଷଣକ୍ଷଣକେ ଅଗୋଚର ॥
ଅଙ୍ଗୁଷ୍ଠି ମାତ୍ରେ ଜନ୍ମ ହୋଇ । ପର୍ବତ ସଂଖ୍ୟାରେ ବଢ଼ଇ ॥
ଋଷିଙ୍କୁ ଚାହିଁ ବେଦବର । କହିଲା ଦେଖି ତା ଶରୀର ॥
ଶୁଣ ସକଳ ମୁନି ଜନେ । ଏ ରୂପ ଦେଖି ମୋର ମନେ ॥
ଏମନ୍ତେ ପୁତ୍ରଗଣ ଘେନି । ବିଚାର କଲେ ପଦ୍ମଯୋନି ॥
ଏବା ଅନାଦି ଭଗବାନ । ଅଦ୍ଭୁତେ ଖେଦ ମୋର ମନ ॥
ଏ ବାକ୍ୟ ଶୁଣି ବାସୁଦେବ । ଗର୍ଜିଲେ ଗଜେନ୍ଦ୍ର ସନ୍ନିଭ ॥
ବ୍ରହ୍ମାଙ୍କୁ ଋଷିଙ୍କ ସମେତେ । ତରସ୍ତ କଲେ ସର୍ବ ଚିତ୍ତେ ॥
ଦିଗ ପୂରିଲା ମୁଖରାବେ । ଅଦ୍ଭୁତ ସଙ୍ଗୀତ ଶବଦେ ॥
ସେ ମାୟାମୟ ରୂପେ ହରି । ଜଳେ ଶୂକର ରୂପ ଧରି ॥
ଦେଖି ଚକିତ ମୁନିଜନେ । ସଖେଦେ ବିଚାରନ୍ତି ମନେ ॥
ଜନ ତପସ୍ୱୀ ଅନ୍ୟ ବାସୀ । ମିଳି ସକଳ ବ୍ରହ୍ମଋଷି ॥
ସ୍ତୁତି କରନ୍ତି ମନ ତୋଷେ । ଧରଣୀ ଉଦ୍ଧରିବା ଆଶେ ॥
ମୋହର ଗୁଣ ଅବା ଭେଦେ । କ୍ଷମ ନୁହନ୍ତି କେହି ଖେଦେ ॥
ଯା ରୂପ ମନଜ୍ଞାନେ ଚିନ୍ତି । ଅଶେଷ ଶାସ୍ତ୍ରେ ନ ଜାଣନ୍ତି ॥
ମୁନିଙ୍କ ସ୍ତୁତି ବାକ୍ୟ ଶୁଣି । ତକ୍ଷଣେ ପ୍ରଭୁ ଚକ୍ରପାଣି ॥
ଦେବଙ୍କ ହିତେ ଅର୍ଥେ ହରି । ପୁଣି ଶୂକର ରୂପ ଧରି ॥
ଗଜେନ୍ଦ୍ର ଲୀଳା କରି ହେଳେ । ବିଷ୍ଣୁ ପଶିଲେ ମହାଜଳେ ॥
କ୍ଷୁର ଲାଙ୍ଗୁଳ ମୁଖ ତାଡ଼ି । ଶବଦ କଲେ ଘଡ଼ଘଡ଼ି ॥
ବରାହ ଦେବ ଜଳକୋଣେ । ଶୂନ୍ୟେ ଚିନ୍ତିଲେ ଦେବଗଣେ ॥
ସ୍ୱର୍ଗ ବିଧୌତ ଜଳ ଲାଗି । ଧ୍ୱଜେ ହୋଇଲେ ସଉଭାଗୀ ॥
ତକ୍ଷଣେ ଖୁରଚାପ ଜଳେ । ସମୁଦ୍ର ଉଛୁଳେ ଉଲ୍ଲୋଳେ ॥
ପର୍ବତ ପ୍ରାୟେ ଦେହକାନ୍ତି । ଜ୍ୟୋତି ସମୂହେ ଝଟକନ୍ତି ॥
ମହୀ ଖୋଜନ୍ତେ ଘ୍ରାଣବଶେ । ଧରଣୀ ଉଦ୍ଧାରିବା ଆଶେ ॥
କରାଳ ଦଂଷ୍ଟ୍ର ଦନ୍ତ ପାଟି । ଉର୍ଦ୍ଧ୍ୱେ ଚାହାନ୍ତି ଘୋର ଦୃଷ୍ଟି ॥
ଅଙ୍ଗ ନିର୍ଘାତ ବଜ୍ର ପ୍ରାୟେ । ଦେଖି ଜଳଧି କଲା ଭୟେ ॥
ଉଲୋଳ-କର ଉଚ୍ଚେ କରି । ଡାକଇ ରଖ ଦଇତ୍ୟାରି ॥
ହେ ଯୋଗେଶ୍ୱର ତ୍ରାହିକର । ମୁଁ ତୁମ୍ଭ ଚରଣେ କିଙ୍କର ॥
ସମୁଦ୍ର ମୁଖରାବ ଗୋଳେ । ହରି ପଶିଲେ ରସାତଳେ ॥
ଜଳେ ନିମଗ୍ନ ବସୁନ୍ଧରୀ । ତକ୍ଷଣେ ଦନ୍ତାଗ୍ରେ ଉଦ୍ଧରି ॥
ଜଳୁଁ ଆସନ୍ତେ ଊର୍ଦ୍ଧ୍ୱମୁଖେ । ଅସୁର ମିଳିଲେ ପ୍ରତ୍ୟକ୍ଷେ ॥
ଆଦି ଅସୁର ସେ ପ୍ରତ୍ୟକ୍ଷେ । ମିଳିଲା ଭଗନାଥ ମୁଖେ ॥
ଗଦା ବୁଲାଇ ଅତିବେଗେ । ମିଳିଲା ଯଜ୍ଞନାଥ ପାଖେ ॥
ମତ୍ତ ମାତଙ୍ଗ ଯେହ୍ନେ ମହୀ । କର୍କଶ ଦନ୍ତେ ବିଦାରଇ ॥
ଶୁଭ୍ର ତିକ୍ଷଣ ଦନ୍ତ ଦୁଇ । ଦନ୍ତର ଅଗ୍ରେ ନାହିଁ ତହିଁ ॥
ଚନ୍ଦ୍ର କଳଙ୍କ ଯେହ୍ନେ ଆଭା । ଦନ୍ତାଗ୍ରେ ମହୀ ତେହ୍ନେ ଶୋଭା ॥
ଏମନ୍ତ ରୂପ ଦେଖି ବେଗେ । ବ୍ରହ୍ମା ମିଳିଲେ ବିଷ୍ଣୁ ଆଗେ ॥

ସଙ୍ଗତେ ମୁନିଗଣ ଘେନି । ସ୍ତୁତି କରଇ ପଦ୍ମଯୋନି ॥

### ବ୍ରହ୍ମା ଉବାଚ

ହେ ଯଜ୍ଞରୂପୀ ଜନାର୍ଦ୍ଦନ । ତୋର ବିହାର ତ୍ରିଭୁବନ ॥
ଯଜ୍ଞ ମୂରତି ନିଜ ପିଣ୍ଡେ । ଯେ ଯଜ୍ଞ ଧର୍ମ କର୍ମକାଣ୍ଡେ ॥
ତୋର ଶରୀରେ ଲୋମକୂପେ । ସମୁଦ୍ର ଲୁଚିଲା ସ୍ୱରୂପେ ॥
ନମୋ ଗୋବିନ୍ଦ ମହୀଧର । ଅଶେଷ ମହିମା ସାଗର ॥
ହେ କାଳରୂପୀ ତୋ ଚରଣ । ନିର୍ଭୟେ ପଶିଲୁ ଶରଣ ॥
ଯଜ୍ଞାଦି ଆତ୍ମା ତୋ ଶରୀର । ଦୃଷ୍କୃତ ଜନେ ଅଗୋଚର ॥
ତୋ ଦେହ ଚର୍ମେ ବେଦ ବସେ । ଅନଳ ଲୋମକୂପେ ରସେ ॥
ଘୃତ ଆହୁତି ନେତ୍ରଯୁଗେ । ଚତୁର ହୋତ୍ର ପାଦଭାଗେ ॥
ଏ ଶ୍ରୁତବନ୍ତ ତୋର ତୁଣ୍ଡ । ସ୍ୱରେ ନିର୍ମିତ ନାସାଖଣ୍ଡ ॥
ଓଁ କାର ଉଦରାନୁବନ୍ଧେ । ଚମସା ରହେ କର୍ଣ୍ଣରନ୍ଧ୍ରେ ॥
ଶଶୀ ଯେ ରହେ ତୋ ଆୟୁଷେ । ଗ୍ରହ ବସନ୍ତି ତୋର ଗ୍ରାସେ ॥
ଶ୍ରବଣେ ଅଗ୍ନି ହୋତ୍ର ରହେ । ଦୀକ୍ଷାରେ ବେନି ଘଟି ବହେ ॥
ଦନ୍ତେ ବସନ୍ତି ଉଦୟିନୀ । ମସ୍ତକେ ଯଜ୍ଞଭାବ ଘେନି ॥
ପ୍ରାଣେ ବସନ୍ତି ଚନ୍ଦ୍ରଗଣେ । ସମୁଦ୍ର ରହେ ଆବରଣେ ॥
ପବନ ବସେ ପଞ୍ଚଭୂତେ । ସର୍ବ୍ୱ ଶରୀର ସନ୍ଧିଗତେ ॥
ଶୋଏ ଦେବତା ରୂପ ତୁହି । ତୁ ଦେବ କ୍ରିୟା ଆତ୍ମାଦେହୀ ॥
ବୈରାଗ୍ୟ ଭକ୍ତି ଆତ୍ମାଜାତ । ତୁ ନାଥ ଯୋଗେଶ୍ୱର କାନ୍ତ ॥
ତୁ ବିଦ୍ୟାଗୁରୁ ଜ୍ଞାନ ଦାତା । ଜୀବ ଧାରଣେ ପିତାମାତା ॥
ତୋ ଦନ୍ତ ଅଗ୍ରେ ବସୁନ୍ଧରୀ । ବିରାଜେ ନିଜରୂପ ଧରି ॥
କି ଅବା ଦେବା ପଟାନ୍ତର । ଜଳେ ଯେସନେ କରୀବର ॥
ପଦ୍ମ ବନସ୍ତ ଅବଗାହେ । ତା ଦନ୍ତଅଗ୍ରେ ଯେହ୍ନେ ଶୋହେ ॥
ଏ ଯେ ଶୂକର ତୋ ଦେହ । ଅଶେଷ ଯଜ୍ଞ ବେଦମୟ ॥
ଦନ୍ତେ ଧରଣୀ କରେ ଶୋଭା । କିବା ଉପମା ଆମ୍ଭେ ଦେବା ॥
ପର୍ବତ ଶୃଙ୍ଗେ ଜଳଧାର । ଯେମନ୍ତ ଦିଶିବ ସୁନ୍ଦର ॥
ଏବେ ଧରଣୀ ସ୍ଥାପି ଜଳେ । ଭୋ ନାଥ ତୋର ମାୟାବଳେ ॥
ଏ ଭୂମି ଜୀବ ଲୋକେଦାତା । ତୁ ନାଥ ଜୀବ ଲୋକପିତା ॥
ତୋ ବିନୁ ଅନ୍ୟ କେବା ନଳେ । ମହୀ ଉଦ୍ଧାରେ ମହାବଳେ ॥
ଏଣୁ ବିଷୟ ଆଉ କାହିଁ । ତୁ ଯେ ଈଶ୍ୱର ବିଶ୍ୱଦେହୀ ॥
ଜଳେ ପଶନ୍ତେ ତୋ ଶରୀର । ଜଳଧି ଦିଶେ ଭୟଙ୍କର ॥
ତୋ ଲୋମଅଗ୍ରେ ଜଳରାଶି । ଧ୍ୱନି ତୋ ଗଗନେ ପ୍ରକାଶି ॥
ଜଳେ ତପସ୍ୟା ତୋ ଭୁବନେ । ଆମ୍ଭେ ଯେ ରହୁ ତୋଷ ମନେ ॥
ତୋ ଲୋମମୂଳେ କରି ସ୍ନାନ । ଆମ୍ଭର ତୋଷ କଲ ମନ ॥
ପବିତ୍ର କଲୁ ପିଣ୍ଡ ପ୍ରାଣ । ତୋହର ଶରଣ ଭଗବାନ ॥
ତୋ ଗୁଣମାୟା ଯୋଗବଳେ । ଆମ୍ଭେ ମୋହିତ ଏ ଶୟଳେ ॥
ସ୍ଥାନେ ନ ପାରୁ ଆମ୍ଭେ ରହି । ଆମ୍ଭଙ୍କୁ କର ନାଥ ତ୍ରାହି ॥

### ମୈତ୍ରେୟ ଉବାଚ

ବ୍ରହ୍ମାଦି ମୁନିଙ୍କ ବଚନେ । ବରାହରୂପୀ ତୋଷ ମନେ ॥
ଜଳେ ବସାଇ ବସୁନ୍ଧରୀ । ଅଦୃଶ୍ୟ ହୋଇଲେ ମୁରାରି ॥
ସେ ହରି ଅଦ୍ଭୁତ ଚରିତେ । ବିଦୁର ଶୁଣ ତୋଷ ଚିତ୍ତେ ॥
ସଂସାରୁ ତରିବ ଯେମନ୍ତେ । ସୁଜନେ ଶୁଣ ଏକଚିତ୍ତେ ॥
ଯାର ପ୍ରସନ୍ନେ ମାୟ ଘୋରେ । ନଳିନୀ ପତ୍ରେ ଯେହ୍ନେ ନୀରେ ॥
ନ ଲାଗେ ସେ ନୀର ସିଞ୍ଚନ୍ତେ । ବିଷ୍ଣୁ ପ୍ରବେଶ ଅନ୍ତର୍ଗତେ ॥
କର୍ଣ୍ଣେ ପଶନ୍ତେ ହରିବାଣୀ । ଶୁଣି ନରକୁ ତରେ ପ୍ରାଣୀ ॥
ଆନନ୍ଦେ କର ସୁଧାପାନ । ଯେଣେ ନୋହିବ ହତଜ୍ଞାନ ॥
ତୃତୀୟସ୍କନ୍ଧେ ଭାଗବତ । ଅଦ୍ଭୁତ ଗୋବିନ୍ଦ ଚରିତ ॥
ଏଣେ ନିବେଶି ବୁଦ୍ଧି ଚିତ୍ତ । କହିଲା ଦାସ ଜଗନ୍ନାଥ ॥
ଏ ଅଧ୍ୟା ପୃଥିବୀ ଚରିତ । ସୁଜନ ଜନଙ୍କର ହିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ତୃତୀୟସ୍କନ୍ଧେ ପୃଥିବୀ ବର୍ଣ୍ଣନେ ନାମ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ମୈତ୍ରେୟ ବାଣୀ ଶୁଣି କର୍ଣ୍ଣେ । ହରଷ ବିଦୁରର ମନେ ॥
କୃଷ୍ଣ ଶୂକର ରୂପ କଥା । ଅମୃତ ପଦମୟ ଗାଥା ॥
ଆନନ୍ଦେ ଶିରେ କର ଦେଇ । ସନ୍ତୋଷ ଚିତ୍ତେ ପଚାରଇ ॥

### ବିଦୁର ଉବାଚ

ଯଜ୍ଞ ବରାହ ରୂପ ଧରି । ଦନ୍ତାଗ୍ରେ ଧରଣୀ ଉଦ୍ଧାରି ॥
ଜଳେ ଆସନ୍ତେ ଊର୍ଦ୍ଧ୍ୱଗତେ । ଆଦି ଅସୁରର ଅଗ୍ରତେ ॥
ମିଳିଲା ଗଦା ହସ୍ତେ ଧରି । ତା ଦେହ ଦନ୍ତାଗ୍ରେ ବିଦାରି ॥
ଶୁଣି ଏ କଥ ତୁମ୍ଭ ମୁଖେ । ଏବେ ପଚାରେ ମନସୁଖେ ॥
ଏ ଦୈତ୍ୟ କେଉଁ ଅନର୍ଗଳା । କି ହେତୁ ଗଦାଯୁଦ୍ଧ କଲା ॥
ତାହାର ଜନ୍ମ କର୍ମ ଯେତେ । ବିସ୍ତାରି କହ ମୋ ଅଗ୍ରତେ ॥
ପରମ କୁତୂହଳ ବାଣୀ । ଜୀବ ନିସ୍ତରେ ଯାହା ଶୁଣି ॥

## ମୈତ୍ରେୟ ଉବାଚ

ତୁ ଧନ୍ୟ ସାଧୁ କୁରୁବୀର । ମୁଁ ଧନ୍ୟ ପ୍ରଶ୍ନ ଏ ତୋହର ॥
ହରି ଚରିତ ଗୁଣ ଗାଥା । ଅମୃତ ରସମୟ କଥା ॥
ଯାହା ଶୁଣନ୍ତେ ମୃତ୍ୟୁ ପାଶେ । ସୁତପ୍ତ ଚକ୍ରେ ହୋଇ ନାଶ ॥
ସେ ସାୟମ୍ଭୁବ ମନୁସୁତ । ଉତ୍ତାନ ତନୟେ ବିଖ୍ୟାତ ॥
ତପର ବଳେ ସେ ପ୍ରଚଣ୍ଡେ । ଚରଣ ଦେଇ ମୃତ୍ୟୁପିଣ୍ଡେ ॥
ସ୍ୱଭାବେ ତେଜେ ଅନର୍ଗଳା । ପରମପଦେ ସେ ବସିଲା ॥
ତୁ ଏବେ ପଚାରିଲୁ ମୋତେ । ଶୁଣ ବିଦୁର ଏକଚିତ୍ତେ ॥
ପ୍ରସ୍ତାବେ ଇତିହାସ ବାଣୀ । ଦେବଙ୍କ ସଭାମଧ୍ୟେ ଶୁଣି ॥
ଜାଣଇ ଏଥିର କାରଣ । କହିବି ଏକଚିତ୍ତେ ଶୁଣ ॥
ଦକ୍ଷ ଦୁହିତା ଦିତି ନାମା । କଶ୍ୟପ ଋଷିଙ୍କର ବାମା ॥
ସେ ଏକ ଦିନେ ଯଜ୍ଞଶାଳେ । ଏକା ପଶିଲା ସନ୍ଧ୍ୟାକାଳେ ॥
ବସିଲା ନିଜ ପତି ପାଶେ । କାମେ ପୀଡ଼ିତ ରତି ଆଶେ ॥
ସେ ମହାମୁନି ଯଜ୍ଞ ଘରେ । ମନ୍ତ୍ର ଆହୁତି ଘୃତ ଧାରେ ॥
ଯଜ୍ଞ ପୁରୁଷ ପ୍ରୀତି ଅର୍ଥେ । ଅସ୍ତେ ପ୍ରବେଶ ସୂର୍ଯ୍ୟ ଯାନ୍ତେ॥
ନିବିଧ ସନ୍ଧ୍ୟା ଆଗମନେ । ମିଳିଲା ସ୍ୱାମୀ ସନ୍ନିଧାନେ ॥
କରପଲ୍ଲବ ଶିରେ ଦେଇ । ବୋଲେ କଶ୍ୟପ ମୁଖ ଚାହିଁ ॥

## ଦିତି ଉବାଚ

ଭୋ ନାଥ ଶୁଣ ତପୋଧନ । କନ୍ଦର୍ପ ଘେନି ଶରାସନ ॥
ଅନଙ୍ଗ ବାଣେ ମୋର ମନ । କହଇ ଅତି ଶୁଣ ସାବଧାନ ॥
କଦଳୀ ବନେ ଯେହ୍ନେ ଗଜ । ଦନ୍ତେ ବିଦାରେ ଅତି ତେଜ ॥
ମୁଁ ଯେ ସପତ୍ନୀର ସମୁଖେ । ମନ କଳ୍ପଇ ଅତି ଦୁଃଖେ ॥
ତୁ ପ୍ରଜାପତିଙ୍କ ଈଶ୍ୱର । ସର୍ବ କଳ୍ପନା ସୁଖଘର ॥
ଯାହାକୁ ସ୍ୱାମୀ ହୋଏ ତୋଷ । ସଂସାରେ ରହେ ତାର ଯଶ ॥
ମୋ ପିତା ଦକ୍ଷ ପ୍ରଜାପତି । ପ୍ରଜା ସର୍ଜନେ ତାର ମତି ॥
ଆମ୍ଭର ଗର୍ଭେ ପୁତ୍ର ଯେତେ । ଧର୍ମ ପାଳିବେ ସେ ଜଗତେ ॥
ଏ କଥା ମନେ ବିଚାରିଲା । ଯତ୍ନେ ଆମ୍ଭଙ୍କୁ ପଚାରିଲା ॥
ସୁମତି ଦେଖିଲା ଆମ୍ଭର । ତେଣୁ ବରିଲା ତୋତେ ବର ॥
ଆମ୍ଭେ ଯେ ଭଗ୍ନୀ ତ୍ରୟୋଦଶେ । ତୁମ୍ଭର ଚରଣେ ବିଶ୍ୱାସେ ॥
ଆମ୍ଭର ଶୀଳରୂପ ଗୁଣ । ତୁମ୍ଭେ ପ୍ରତ୍ୟେକେ ପରିମାଣ ॥
ଭୋ ନାଥ ନଳିନ ଲୋଚନ । ଏବେ ତୁ କର ମୋ ବଚନ ॥
ମୋର ସଙ୍ଗତେ କର ମତି । ସୁଭୋଗେ ହେଉ ମୋର ଶାନ୍ତି॥
ଏମନ୍ତେ ଶୁଣିଣ ବଚନ । କଶ୍ୟପ ଋଷି ଦୁଃଖମନ ॥
ଏ ସନ୍ଧ୍ୟାକାଳେ ମୋର ପାଶେ । ତୁ ଯେ ମିଳିଲୁ ରତିଆଶେ ॥
ଯେ ଧର୍ମ ପ୍ରମାଣେ ତୋହର । ଅନ୍ୟଥା କେ କରୁ ତାହାର ॥
ଏଣୁ ତୋହର ପ୍ରିୟ ଯେତେ । କରିବି ତୋହର ଆୟତେ ॥
ସଂସାର ବେଭାରଟି ଏହି । ଏ ଧର୍ମ କର୍ମେ ରହେ ଗୃହୀ ॥
ସର୍ବ ଆଶ୍ରମ ମଧ୍ୟେ ସାର । ପୁତ୍ର କଳତ୍ର ଧନ ଘର ॥
ଏଣୁ ମୋହର ଚିତ୍ତ ରସେ । ବୋଇତ ଯେହ୍ନେ ଜଳେ ଭାସେ ॥
ଆତ୍ମାର ଅର୍ଦ୍ଧ ସମ ନାରୀ । ଅନ୍ୟଥା କେବା କରି ପାରି ॥
ତାହାର ତହିଁ ଗୃହଭାର । ଦେଇ ନିଶ୍ଚିନ୍ତେ ଥାନ୍ତି ନର ॥
ଯାହାର ଆଶ୍ରେ ପ୍ରାଣୀ ଥାଇଁ । ଇନ୍ଦ୍ରିୟ ଶତ୍ରୁକୁ ଜିଣଇ ॥
ଏ କଥା କେ କରିବ ଆନ । ଯାହା ସଞ୍ଚିଲେ ଭଗବାନ ॥
ଏବେ ତୁ ଥିର ଆତ୍ମାମନେ । ଶୁଭେ ତୁ ରହ ମୋ ଚରଣେ॥
ଦେଖ ଏ ଭୟଙ୍କର ବେଳା । ପ୍ରେତ ପିଶାଚଗଣ ମେଳା ॥
ଭୂତ ବେତାଳଗଣ ରଙ୍ଗେ । ଭବାନୀଗଣ ଘେନି ସଙ୍ଗେ ॥
ବୃଷରେ ବସି ଭୂତପତି । ଦେଖଇ ସର୍ବଜନ ଗତି ॥
ତାହାର ବେଳ ସେ ସ୍ୱଭାବେ । ମୁହୂର୍ତ୍ତେ ରହ ସଖୀ ଏବେ ॥
ପର ଅପର ଯାର ନାହିଁ । ବଦନେ ନିନ୍ଦା ସ୍ତୁତି କାହିଁ ॥
ଆମ୍ଭେ ସକଳେ ତା ଚରଣେ । ସେବୁଛୁ ବ୍ରତ ଆଚରଣେ ॥
ଯାହାର ପ୍ରସନ୍ନେ ସୌଭାଗୀ । ଭଜି ଅଚଳ ସୁଖଭୋଗୀ ॥
ଯାର ନିର୍ମଳ ଗୁଣ ଚିନ୍ତି । ଦିବ୍ୟ ପଟଳେ ସର୍ବେ ଛନ୍ତି ॥
ଚିନ୍ତନ୍ତି ନିର୍ଲେପ ଶରୀର । ଅଚିନ୍ତ ଗୁଣ ଯେ ଗମ୍ଭୀର ॥
ଏମନ୍ତେ ସ୍ୱାମୀ ମୁଖୁଁ ଶୁଣି । ସ୍ୱଭାବେ ଲଜ୍ଜିତ ତରୁଣୀ ॥
ମଦନ ବାଣେ ଭୋଳ ଚିତ୍ତ । ବେଗେ ଧଇଲା ସ୍ୱାମୀ ହସ୍ତ ॥
ବସ୍ତ୍ର ଆକର୍ଷି ବାମ କରେ । କଟାକ୍ଷେ ଚାହେଁ ରୋଷଭରେ ॥
ବୃଷଳୀ ପ୍ରାୟେ ଲଜ୍ଜା ଛାଡ଼ି । ରମଣ ରସେ ଚିତ୍ତେ ବଢ଼ି ॥
ପତ୍ନୀ ନିର୍ବନ୍ଧ ମୁନି ଦେଖି । ଧର୍ମ ବିଷୟ ମନୋପେକ୍ଷି ॥
ବଳେ କମ୍ପିଲା ତାର ଅଙ୍ଗ । ଆକର୍ଷେ ସ୍ୱଭାବେ ଅନଙ୍ଗ ॥
ପତ୍ନୀ ରମଣ ସଙ୍ଗେ ଛାଡ଼ି । ତକ୍ଷଣେ ଆଲୋଚନ କରି ॥
କର ଚରଣେ ଧୋଇ ଜଳେ । ମଉନେ ବସିଲେ ନିଷ୍କଳେ ॥
ଗାୟତ୍ରୀ ମନ୍ତ୍ର ପ୍ରାଣାୟମ । କରି ଚିନ୍ତିଲେ କିଛି ଧ୍ୟାନ ॥
ନିର୍ମଳ ଯତି ରୂପେ ମନ । ନିର୍ବେଳ ହୋଇଲେ ମଉନ ॥
ତକ୍ଷଣେ ଦିତି ଉଠି ବେଗେ । ବସ୍ତ୍ର ଆଚ୍ଛାଦି ସର୍ବ ଅଙ୍ଗେ ॥
ସଲଜ୍ଜେ ଅଧୋମୁଖ ହୋଇ । କହେ କଶ୍ୟପ ମୁଖ ଚାହିଁ ॥

## ଦିତି ଉବାଚ

ଏ ଗର୍ଭେ ହୋଇବ ମୋହର । ସ୍ୱଭାବେ ମହା ଭୟଙ୍କର ॥
ପ୍ରାଣୀଙ୍କ ତେଜ ସେ ହରିବ । ଦୁର୍ବୁଦ୍ଧି ପଣେ ଦୁଷ୍ଟଭାବ ॥

ଅବଜ୍ଞା କରି ନିଜ ପତି । ମୁଁ ଯେ ଆଚରିଲି ଅନୀତି ॥
ଭୋ ରୁଦ୍ର ନମୁ ତୋ ଚରଣେ । ତୋର ବେଭାର ଭୂତଗଣେ ॥
ସର୍ବ ବିନାଶ ଦଣ୍ଡଧର । ତୁ ଦଣ୍ଡ ଦୁର୍ଦ୍ଧଣ୍ଡ କ୍ରୋଧର ॥
ତୁ ଭୀମଉଗ୍ର ଉମାପତି । ତୋ ଅନୁଗ୍ରହେ ଦେହ ସ୍ଥିତି ॥
ଅପ୍ରାଧି ବିଷୟେ ତୋ ଦୟା । ଯାକୁ ନ ଲାଗେ ବିଷ୍ଣୁମାୟା ॥
ଅଗତି ଲୋକଙ୍କର ଗତି । ନମୋ ନମସ୍ତେ ଭୂତପତି ॥
ଗର୍ଭ ଆଶିଷେ ମନ ଦେଇ । କହେ କଶ୍ୟପ ମୁଖ ଚାହିଁ ॥
ତକ୍ଷଣେ ଧ୍ୟାନ ଛାଡ଼ି ବେଗେ । ମୁନି କହନ୍ତି ପତ୍ନୀ ଆଗେ ॥

### କଶ୍ୟପ ଉବାଚ

ଭୋ ସଖୀ ଶୁଣ ଶୁଦ୍ଧଚିତ୍ତେ । ଏ କର୍ମ ତୋହର ଆୟତେ ॥
ମୁହୂର୍ତ୍ତେ ଦୋଷ ଭୟଙ୍କର । ବେଦ ହେଳନ କର୍ମ ତୋର ॥
ଏ ଦୋଷେ ତୋର ଗର୍ଭଗତେ । ଜନ୍ମ ହୋଇବେ ବେନି ସୁତେ
ଦୁଷ୍ଟ ହୋଇବେ ଏ ଶୟଳେ । ତପସ୍ୟା ଜନ୍ମ କର୍ମଫଳେ ॥
ଏ ତିନିପୁରେ ରାଜାଗଣେ । ସକଳେ ଖଟିବେ ଚରଣେ ॥
ଧନ ଜୀବନ ସେ ହରିବେ । ପ୍ରାଣୀଙ୍କୁ ଦୁଃଖ ସୁଖ ଦେବେ ॥
ନିର୍ଦ୍ଦୋଷ ପ୍ରାଣୀଙ୍କି ମାରଣେ । ପର ରମଣୀ କରଷଣେ ॥
ମହା ଅନଳେ କୋପ ଜାତ । ବଳେ ହରିବେ ବେନି ଭ୍ରାତ ॥
ତାହାଙ୍କ ଦେଖିବ ଦୁଷ୍ଟପଣ । କୋପିବେ ଦେବ ନାରାୟଣ ॥
ଏ ଭୂମି ମଧ୍ୟେ ରୂପେ ବହି । ବିଷ୍ଣୁ ମାରିବେ ବେନି ଭାଇ ॥
ଇନ୍ଦ୍ର ଯେସନେ ବଜ୍ର ଧାରେ । ଘୋର ପର୍ବତ ଦର୍ପହାରେ ॥

### ଦିତି ଉବାଚ

ଭୋ ନାଥ ମୋର ପୁତ୍ରେ ଯେବେ ।ସଂସାରେ ଦୁଷ୍ଟ କର୍ମଭାବେ ॥
ବିଷ୍ଣୁର ହସ୍ତେ ଯିବେ ନାଶ । ଏଣେ ମୋହର ନାହିଁ ରୋଷ ॥
ତହିଁକି ମୋର ଡର ନାହିଁ । ବ୍ରାହ୍ମଣ ଶାପକୁ ଡରଇ ॥
ବ୍ରାହ୍ମଣ କୋପେ ଯେ ମରନ୍ତି । ପ୍ରାଣୀଙ୍କ ବଧ ଆଚରନ୍ତି ॥
ତାହାଙ୍କୁ ନାହିଁ ସୁଖ ଲେଶ । ନରକେ ହୁଅନ୍ତି ପ୍ରବେଶ ॥

### କଶ୍ୟପ ଉବାଚ

କର୍ମର ବଳେ ନୀଚ ଯୋନି । ଜନ୍ମ ଲଭନ୍ତି ଦେହ ଘେନି ॥
ଅଶେଷ ଦୁଃଖ ଫଳଭୋଗେ । ଭୁଞ୍ଜନ୍ତି ଜୀବନ ସଂଯୋଗେ ॥
ସଂସାର ଶୋକ ଅନୁତାପେ । ଯେବା ଅର୍ଜିବ ବଳଦର୍ପେ ॥
ବିଷ୍ଣୁର ହସ୍ତେ ପ୍ରାଣଦେଇ । ଶାପୁଁ ତରିବେ ବେନି ଭାଇ ॥
ତାହାଙ୍କ ପୁତ୍ରଙ୍କର ମଧ୍ୟେ । ବିଷ୍ଣୁ ଭକତି ଅନୁଭାବେ ॥
ହୋଇବେ ବିଷ୍ଣୁ ଭକ୍ତ ସାର । ଅମୂଲ୍ୟ ସୁଖ ସୁବିଚାର ॥
ତାହାର ଯଶ ଇହଲୋକେ । ବିଷ୍ଣୁ ଭଗତେ ମନ ସୁଖେ ॥
ତା ଯଶ ଗାଇ ନିରନ୍ତରେ । ତରିବେ ଏ ଭବ ସଂସାରେ ॥
ଯାର ପ୍ରସନ୍ନେ ଏ ସଂସାର । ହୋଇବେ ମାୟା ବନ୍ଧୁ ପାର ॥
ସେ ମହାଭାଗବତ ବାଣୀ । ଯେ ଯାହା ଗାଇ ତରେ ପ୍ରାଣୀ ॥
ସେ ବିଷ୍ଣୁ ଭାବ ଅତିରେକେ । ଅନ୍ତେ ମିଳିବେ ବିଷ୍ଣୁ ଲୋକେ ॥
ତୁ ପୁଣି ଦେଖିବୁ ତା ମୁଖ । ଲଭ ଅଶେଷ ଜନ୍ମ ସୁଖ ॥
ସୁନ୍ଦର ବୀର ସୁକୁମାର । କର୍ଣ୍ଣେ କୁଣ୍ଡଳ ହୃଦେ ହାର ॥

### ମୈତ୍ରେୟ ଉବାଚ

ପୁତ୍ର ପୌତ୍ରର ଗୁଣ ଶୁଣି । ବୈଷ୍ଣବ ପଣେ ଶିରୋମଣି ॥
ଅନ୍ତର ଆତ୍ମା ଅତି ତୋଷେ । ସ୍ୱାମୀଙ୍କୁ ନମିଲା ହରଷେ ॥
ଦିତି କଶ୍ୟପର ସମ୍ବାଦେ । ଶୁଣ ସୁଜନେ ଜ୍ଞାନ ବାଦେ ॥
ତୃତୀୟସ୍କନ୍ଧେ ଭାଗବତ । କହିଲା ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ଦିତି କଶ୍ୟପ ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଦିତି ଉଦରେ ଶୂନ୍ୟମାର୍ଗେ । ସେ ପ୍ରଜାପତି ତେଜ ବୀର୍ଯ୍ୟେ ॥
ଶତେ ବରଷ ବେଦମତେ । ଗର୍ଭେ ଧଇଲା ଭୟଚିତ୍ତେ ॥
ଦେବ ଦଳନ ତେଜ ଶୁଣି । ଅନ୍ତରେ ଭାଳଇ ତରୁଣୀ ॥
ନ ଜାଣି କଲି ଏଡ଼େ କର୍ମ । କାମେ ହୋଇଲି ମତିଭ୍ରମ ॥
ଦଇବ ଯୋଗ ବଳିୟାର । କି କରିପାରେ ସୁରନର ॥
ଏବେ ହୋ ଶୁଣ କୁରୁବୀର । ସଂସାରେ ହୁଏ ଅନ୍ଧକାର ॥
ଇନ୍ଦ୍ରାଦି ଦିଗପାଳେ ମିଳି । ସକଳେ ଏକ ମନେଭାଳି ॥
ବ୍ରହ୍ମାର ନିକଟେ ମିଳିଲେ । ଭୟେ ଅନେକ ସ୍ତୁତି କଲେ ॥

### ଦେବଗଣ ଉବାଚ

ହେ ଦେବ ଦେବ ବେଦପତି । ଦିଗେ ଦିଶନ୍ତି ଭୟା ଯତି ॥
ଏ ଘୋର ଅନ୍ଧକାର ଯେଣୁ । ଆମ୍ଭେ ତ ଭଲେ ନ ପ୍ରମାଣୁ ॥
କୁଶଳ ନୋହେ ଏ ଆମ୍ଭର । ଅଦ୍ଭୁତ ଘୋର ଅନ୍ଧକାର ॥
ଏ କାଳ ମହିମା ଯେ ଜାଣେ । ଆଗମ ନିଗମ ପ୍ରମାଣେ ॥
ତୁ ଦେବ ଦେବ ଜଗନ୍ନାଥ । ଆମ୍ଭେ ସକଳେ ତୋର ଭୃତ୍ୟ ॥
ତୁ ପରାତ୍ପର ଭୂବ ଦେହୀ । ଜଗତ ମାୟାବଳେ ମୋହି ॥
ଗୃହୀତ ଭାବ ଗୁଣ ଦେହୀ । ତୋ ରୂପ ନ ଜାଣନ୍ତି କେହି ॥

ଅନ୍ୟୋନ୍ୟ ଭାବେ ଆତ୍ମଲାଭ । ଯେ ପ୍ରାଣୀ ତୋ ଚରଣ ଭାବ ॥
ତାର ଅଶୁଭ କ୍ଳେଶ ନାହିଁ । ସଦ ଅସଦ ଯାର ନାହିଁ ॥
ନିଜ ନିବେଶି ଯୋଗୀଜନ । ନିଶ୍ଚଳ ଚିତ୍ତ ଯୋଗଧ୍ୟାନ ॥
ମନ ପବନ ହୃଦେ ଛନ୍ଦି । ଇନ୍ଦ୍ରିୟ ସମୂହେ ନିରୋଧି ॥
ତୋର ପ୍ରସନ୍ନେ ଯେ ଲଭନ୍ତି । ତାହାଙ୍କୁ ନାହିଁ ଭବଭୀତି ॥
ଯାର ବଚନେ ପ୍ରଜାଗଣେ । ଭାବେଣ ଥାନ୍ତି ଅନୁକ୍ଷଣେ ॥
ତରନ୍ତି ଭବଭୟ ତ୍ରାସ । ତୁ ନାଥ ଅନାଦି ପୁରୁଷ ॥
ଆତ୍ମର ସୁଖ ଲାଭ ଜୟେ । ଭୋ ନାଥ କର ତୁ ଉପାୟେ ॥
ଦେଖ କଶ୍ୟପ ପ୍ରଜାପତି । ଦିତି ସାମ୍ଭୋଗେ କଲା ରତି ॥
ଦିତିର ଗର୍ଭେ ବୀର୍ଯ୍ୟ ଦେଲା । ଯେ ଭୟେ ଭୁବନ କମ୍ପିଲା ॥
ଏ ବୀର୍ଯ୍ୟ ଦିଶେ ଅଗ୍ନି ତେଜେ । ଦହିବା ପ୍ରାୟେ ତ ବିରାଜେ ॥
ଏମନ୍ତେ ଦେବେ ସ୍ତୁତି ଶୁଣି । ସମ୍ଭ୍ରମ ଚିତ୍ତେ କୁଶପାଣି ॥
ଶବଦ ବ୍ରହ୍ମେ ବେଦବର । ଦେବଙ୍କୁ କହନ୍ତି ମଧୁର ॥

### ବ୍ରହ୍ମା ଉବାଚ

ଶୁଣ ସକଳ ଦେବଗଣ । କହିବା ଏଥିର କାରଣ ॥
ତୁମ୍ଭର ପୂର୍ବେ ସୃଷ୍ଟିଲାଭେ । ମୁଁ ଯେ ବସିଲି ଧ୍ୟାନଭାବେ ॥
ସନକ ଆଦି ସାତ ଭ୍ରାତେ । ଜନ୍ମିଲେ ମୋର ଶୁଦ୍ଧଚିତ୍ତେ ॥
ଉର୍ଦ୍ଧ୍ୱେ ଜନ୍ମିଲେ ଶୁଦ୍ଧଚେତା । ଏଣୁ ହୋଇଲେ ଉର୍ଦ୍ଧ୍ୱରେତା ॥
ଗଗନ ମାର୍ଗେ ତାଙ୍କ ଗତି । ସକଳ ଭୁବନେ ମିଳନ୍ତି ॥
ଲୋକେ ବିଖ୍ୟାତ ମୋହ ଶିକ୍ଷା । ନିତ୍ୟେ ପରମହଂସ ଦୀକ୍ଷା ॥
ଧୂଳି ଧୂସର ଦିଗମ୍ବର । ନିତ୍ୟେ ନିର୍ବିଷୟେ ଗୋଚର ॥
ସେ ମୁନିଗଣେ ଏକଦିନେ । ମିଳିଲେ କଶ୍ୟପ ଭୁବନେ ॥
ଅଚ୍ୟୁତ ବୈକୁଣ୍ଠ ବିଦିତ । ସର୍ବ ଦେବତା ମନୋସୁତ ॥
ଯହିଁ ପୁରୁଷେ ମହା ସୁଖେ । ବସନ୍ତି ବିଷ୍ଣୁର ସମ୍ମୁଖେ ॥
ସର୍ବେ ଦିଶନ୍ତି ବିଷ୍ଣୁ ରୂପେ । ବିନାଶ ନାହିଁ କାଳକଳ୍ପେ ॥
ନିମିତ୍ୟା ନିମିତ୍ୟ ଆଚାରେ । ହରିଙ୍କୁ ଭଜନ୍ତି ବେଭାରେ ॥
ଯହିଁ ଆଦି ପୁରୁଷ ହରି । ଭକ୍ତବତ୍ସଳ ରୂପ ଧରି ॥
ସର୍ବଗୋଚର ଦୃଷ୍ଟିପାତେ । ବିଷ୍ଣୁ ସଂସର୍ଗ ଅବିରତେ ॥
ନିର୍ମଳ ସତ୍ୟ ଗୁଣେ ହରି । ସୁଜନ ସମ୍ଭବ ବିସ୍ତାରି ॥
ତହିଁ ବିମଳ ନାମେ ବନ । ଆନନ୍ଦେ କଳ୍ପ ବୃକ୍ଷ ସ୍ଥାନ ॥
ସକଳ ଋତୁ ଯହିଁ ବସେ । ଅନ୍ୟ ସେ ରହି କଳ୍ପପାଶେ ॥
ଯହିଁ ବିମାନ ଶତ ଶତ । ଦିବ୍ୟ କାମିନୀ ଯୂଥ ଯୂଥ ॥
କୋଟି ଶଶାଙ୍କ ରୂପ କାନ୍ତି । ବିଷ୍ଣୁର ଯଶ ଗୁଣ ଗାନ୍ତି ॥
ବିକଚ ପୁଷ୍ପ ଜଳେ ସ୍ଥଳେ । ମଧୁମାଧବୀ ଗନ୍ଧଭୋଳେ ॥
ନାନା ପକ୍ଷୀଏ ରସଭରେ । କୋକିଳେ ଡାକନ୍ତି ସୁସ୍ୱରେ ॥
ଚକ୍ରବାକ ଆଦି ସାରସ । ଭୃଙ୍ଗ ଭୃଙ୍ଗିଣୀ ସୁପ୍ରକାଶ ॥
ସର୍ବେ କରନ୍ତି ହରି ଗାଥା । ଏ ଭାବେ ଖଣ୍ଡେ ଭବବ୍ୟଥା ॥
ମନ୍ଦାର କୁରୁବକ କୁନ୍ଦ । ଉତ୍ପଳ ଚମ୍ପକ କୁମୁଦ ॥
ପୁନାଗ ନାଗ ପାରିଜାତ । ତୁଳସୀବନ ସୁଲଳିତ ॥
ନାନା କୁସୁମେ ପରିମଳ । ସୁଗନ୍ଧ ସମୀର ଶୀତଳ ॥
ମର୍କତ ବଇଦୂର୍ଯ୍ୟ ହେମ । ସହସ୍ର ସମୂହ ବିମାନ ॥
ସୁନ୍ଦରୀ ଶତ ସସ୍ର ଯହିଁ । ବସନ୍ତି କୃଷ୍ଣକଥା ଗାଇ ॥
ପରମଲକ୍ଷ୍ମୀ ଯହିଁ ନିତ୍ୟେ । ନୀଳ ଲୋହିତ ପଦ୍ମ ହସ୍ତେ ॥
ସ୍ଫଟିକ ପ୍ରତି ଘରେ ପଶି । ପାଦ ନୂପୁର ରାବେ ଘୋଷି ॥
ସୁବର୍ଣ୍ଣ ସ୍ତମ୍ଭ ଗୃହ ମଧ୍ୟେ । ବିରାଜେ ଭୁବନ ଆନନ୍ଦେ ॥
ପଦ୍ମକଣ୍ଟିତ ସମାର୍ଜନୀ । ମାର୍ଜନ୍ତି ପଦ୍ମ କରେ ଘେନି ॥
ବିଷ୍ଣୁର ଅନୁଗ୍ରହ ଆଶେ । ତୁଳସୀବନ ପୁଷ୍ପ ବାସେ ॥
ଯେ ବନେ ପଶେ ପଦ୍ମ ଗନ୍ଧେ । ତୀରେ ପ୍ରବାଳ ତଟବନ୍ଧେ ॥
ଯେ ପୁଣ୍ୟ ଜନେ ମୁଖ ଚାହେଁ । କୃଷ୍ଣ ଚୁମ୍ବନ ଅବଗାହେ ॥
ଯେ ପୁରେ ଦୁଷ୍ଟ ପାପୀଜନ । ପ୍ରବେଶେ ନୁହନ୍ତି ଭାଜନ ॥
ସେ ଅନ୍ୟ କଥା ରତିକରେ । ଗୋବିନ୍ଦ ଗୁଣ ନ ସୁମରେ ॥
ଦୁଷ୍କର୍ମେ ସ୍ତ୍ରୀ ସଂଗେ ରମନ୍ତି । ନରକ ମାର୍ଗେ ତାର ଗତି ॥
ସେ କାହିଁ ପଶିବେ ସେ ପୁରେ । ନରକେ ପଡ଼ନ୍ତି ନିର୍ଭରେ ॥
ଯେ ଯୋଗମାର୍ଗ ଅନୁବାଦେ । ତୁମ୍ଭେ କଠୋର ତପସାଧେ ॥
ମନ ପବନ ହୃଦେ ଛନ୍ଦି । ଚଞ୍ଚଳ ହୃଦୟ ନିରୋଧି ॥
ଯେଣେ ଗୋବିନ୍ଦ ଭାବ ନାହିଁ । ସେ ପୁରେ ପଶିବେ ସେ କାହିଁ
ବିଷ୍ଣୁର ମାୟାବଳେ ବୁଡ଼ି । ଜନ୍ମ ମରଣେ ଥାନ୍ତି ପଡ଼ି ॥
ବ୍ରହ୍ମାଦି ଦେବେ ଯା ଚରଣେ । ଭୟେ କମ୍ପନ୍ତି ଅନୁକ୍ଷଣେ ॥
ନିଗମ ମାର୍ଗେ ଯାଥା ଗାଇ । ପାଦେ ଖଟନ୍ତି ବଳିଆଇ ॥
ବିଷ୍ଣୁର ଯଶ ଗୁଣ ଗାଥା । ନିତ୍ୟେ କରନ୍ତି ମନେ ଚିନ୍ତା ॥
ଆନନ୍ଦେ ଅଶ୍ରୁ ବହେ ନେତ୍ରେ । ଲୋମ ହରଷ ସର୍ବଗାତ୍ରେ ॥
ଏମନ୍ତେ ବିଷ୍ଣୁର ଭୁବନେ । ପଶିଲେ ବ୍ରହ୍ମାର ନନ୍ଦନେ ॥
ଯହିଁ ପୁରାଣ ଇତିହାସ । ଆଗମ ନିଗମ ପ୍ରକାଶ ॥
ତର୍କ ବେଦାନ୍ତ ଯୋଗମାର୍ଗେ । ଶ୍ରୁତି ସ୍ମୃତି ଏ ସାଂଖ୍ୟଯୋଗେ ॥
ସ୍ତୁତି କରନ୍ତି ଅବଧାନେ । କୃଷ୍ଣ ଚରିତ ଗୁଣଗାନେ ॥
ଏମନ୍ତ ଶାସ୍ତ୍ର ମୂର୍ତ୍ତିମନ୍ତେ । ଯହିଁ ସେବନ୍ତି ଅବିରତେ ॥
ସେ ପୁରେ ପଶି ମନସୁଖେ । ଆନନ୍ଦେ ବିଷ୍ଣୁ ପାଦ ଦେଖେ ॥
ନିରତେ ହରି ଗୁଣଚିନ୍ତି । ବିଷ୍ଣୁ ମାୟାରେ ନ ପଡ଼ନ୍ତି ॥

ଶତ କୁମର ଏକ ମେଳେ । ଆନନ୍ଦେ ଗଡ଼ଦ୍ୱାରେ ଗଲେ ॥
ସପତ ଦ୍ୱାରେ ଯାନ୍ତେ ବଳେ । ବେଗେ ମିଳିଲେ ଦ୍ୱାରପାଳେ ॥
ଦିଶନ୍ତି ବିଷ୍ଣୁ ରୂପ ତେଜେ । ସୁବର୍ଣ୍ଣ ବେତ ଘେନି ଭୁଜେ ॥
ସେ ବ୍ରହ୍ମା ପୁତ୍ରେ ପ୍ରତିଦିନେ । ମିଳନ୍ତି ବିଷ୍ଣୁ ସନ୍ନିଧାନେ ॥
ଦ୍ୱାରେ କପାଟ ହେମମୟେ । ପ୍ରାଣୀ ନୟନ ମନମୋହେ ॥
ସେ ଦ୍ୱାରେ ମିଳି ବେନିଭାଇ । ଦ୍ୱାର ରୁନ୍ଧିଲେ ରୋଷ ବହି ॥
ସେ ସାତଭାଇ ବ୍ରହ୍ମା ସୁତ । ଦେବଙ୍କ ପୂର୍ବେ ସ୍ୱର୍ଗେ ଜାତ ॥
ସ୍ୱଭାବେ ବୃଦ୍ଧ ସେ ଅଟନ୍ତି । ବାଳକ ପ୍ରାୟେ ତାଙ୍କ ଗତି ॥
ପାଞ୍ଚ ବରଷ ପୁତ୍ର ପ୍ରାୟେ । ଦିଶନ୍ତି ବସ୍ତ୍ର ନାହିଁ ଦେହେ ॥
ଉଲଗ୍ନ ଦେଖି ତାଙ୍କ ରୂପ । ହୃଦେ ବସିଲା ମହାକୋପ ॥
ତକ୍ଷଣେ ଅତି କୋପଭରେ । ନିରୋଧ କଲେ ସାତଦ୍ୱାରେ ॥
ଦେବେ ଦେଖନ୍ତି ଶୂନ୍ୟେ ରହି । ନିରୋଧ କଲେ ଦ୍ୱାରେ ରହି ॥
ସେ ସପ୍ତଋଷି ହରିଦ୍ୱାରେ । ପୂର୍ବେ ବିଚାରି କୋପଭରେ ॥
ବିଷ୍ଣୁର ଅତି ପ୍ରିୟ ପଣେ । ପାଦେ ଚିନ୍ତନ୍ତି ଅନୁକ୍ଷଣେ ॥
ଦେଖି ନ ପାରି କୃଷ୍ଣ ରୂପ । ହୃଦେ ପଶିଲା ମହାକୋପ ॥
ବୋଲନ୍ତି ଅନ୍ୟୋଅନ୍ୟେ ଚାହିଁ । ଏ ଭାବ ଏ ପୁରେ ତ ନାହିଁ ॥

## ମୁନିଗଣ ଉବାଚ

ଏ ଦ୍ୱାରପାଳ ପଣେ ଥାଇ । କୁହୁକ ଜନ ପ୍ରାୟେ ହୋଇ ॥
ଯେବେ ବୈକୁଣ୍ଠ ପୁରେ ଥାନ୍ତି । ତାକୁ ନ ଲାଗେ ରିପୁ ଭ୍ରାନ୍ତି ॥
କାମାଦି ମତ ବେନି ଭାଇ । ଏ ପୁରେ ଦମ୍ଭେ ଥିବେ କାହିଁ ॥
ସ୍ୱଭାବେ ସର୍ବପ୍ରାଣୀ ହୃଦେ । ହରି ବସନ୍ତି ଆତ୍ମାପଦେ ॥
ବାହ୍ୟ ଅନ୍ତରେ ବିଶ୍ୱରୂପୀ । ଘଟ ଆକାଶ ପ୍ରାୟେ ବ୍ୟାପି ॥
ସତ୍ୟ ଅସତ୍ୟ ଯହିଁ ନାହିଁ । ଅନ୍ୟାୟ କଲେ ବେନି ଭାଇ ॥
ବିଷ୍ଣୁର ଦ୍ୱାରପାଳ ଗର୍ବେ । ଗର୍ବ ଯେ କଲେ ଦୁଷ୍ଟଭାବେ ॥
କପଟ ଧର୍ମ ବେନି ଭାଇ । ଏ ପୁରେ ଥାଇ ନ ଯୋଗାଇ ॥
ବେଗେ ତୁ ପଡ଼ ମହୀତଳେ । ଜନ୍ମିବୁ ଅସୁରର କୋଳେ ॥
ତୃତୀୟ ଜନ୍ମେ ଭୋଗ ସାରି । ପୁଣି ଲଭିବ କୃଷ୍ଣ ପୁରୀ ॥
ପୁଣି ବୋଇଲେ ଦୟା ଚିତ୍ତେ । ସ୍ୱଭାବେ ଥାଉ ଦୁଷ୍ଟ ଚିତ୍ତେ ॥
ଏହାଙ୍କ ମଧ୍ୟେ ବିଷ୍ଣୁଭାବ । କଳାଏ ମାତ୍ର ଅଂଶ ଥିବ ॥
ଅର୍ଜିଲା କର୍ମର ଆୟତ୍ତେ । ଜନମ ଅର୍ଦ୍ଧ ଉର୍ଦ୍ଧ୍ୱେ ଯାନ୍ତେ ॥
ଏମନ୍ତ ଶାପ୍ୟ ତାକୁ ଦେଇ । ଦୂରେ ରହିଲେ ସାତ ଭାଇ ॥
ଏ ବ୍ରହ୍ମ ଦଣ୍ଡ ଅନିର୍ବାର । କେବେ ହେଁ ନାହିଁ ପ୍ରତିକାର ॥
ଏବେହୋ ଶୁଣ ସୁରଗଣ । ତାହା ଜାଣିଲେ ଭଗବାନ ॥
ଦେବଦଳନ କର୍ମ ଶୁଣି । ପୁରୁଁ ବାହାର ଚକ୍ରପାଣି ॥
ଦ୍ୱାରପାଳଙ୍କୁ ଦୟା ବହି । ଭକ୍ତ ବତ୍ସଳ ଭାବଗ୍ରାହୀ ॥
ଲକ୍ଷ୍ମୀର କରେ ଦେଇ କର । ଗୋବିନ୍ଦ ହୋଇଲେ ବାହାର ॥
ଗୋବିନ୍ଦ ଚଳନ୍ତି ଧରଣେ । ଯହିଁ ଅଛନ୍ତି ମୁନିଜନେ ॥
ପରମହଂସ ଦୀକ୍ଷା ବହି । ତେଜେ ପ୍ରଚଣ୍ଡ ସାତ ଭାଇ ॥
କୋପେ କରନ୍ତି ମହାତାପେ । ଗୋବିନ୍ଦ ମିଳିଲେ ସମୀପେ ॥
ଯାହାର ଦରଶନ ଅର୍ଥେ । ଯୋଗ ସାଧନ୍ତି ମୁନି ସନ୍ତେ ॥
ଲକ୍ଷ୍ମୀ ଦେବୀଙ୍କ ପରିବାରୀ । କରେ ଚାମର ଛନ୍ତି ଧରି ॥
ସେ ଶୁକ୍ଳ ପାଟ ଛତ୍ରକରେ । ଘେନି ଚଳନ୍ତି ଧୀରେ ଧୀରେ ॥
ବକ୍ଷରେ ମୁକ୍ତାମଳା ଶୋହେ । ହେମାଦି ରତ୍ନେ ଶୋଭା ପାଏ ॥
ପ୍ରସନ୍ନ ମୁଖ ଭଗବାନ । କିବା ସୁନ୍ଦର ଅନୁପମ ॥
ସ୍ନେହ ଦୟାରେ ସର୍ବଜନ । ହୃଦେ ମୋହିଲେ ଆତ୍ମାମନ ॥
ଶ୍ୟାମସୁନ୍ଦର ପୃଥୁ ଭାରେ । ସୁସଞ୍ଚ ମନୋହର ହାରେ ॥
କୌସ୍ତୁଭମଣି କଣ୍ଠେ ଶୋହେ । ଅଶେଷ ଜନ ମନ ମୋହେ ॥
ପୀତବସନ କଟି ମାଝେ । କନକ ମେଖଳା ବିରାଜେ ॥
ଉରେ ଲମ୍ବଇ ବନମାଳ । ସୁନ୍ଦର ଅଳକା କପୋଳ ॥
କେୟୂର କଙ୍କଣ ବିରାଜେ । ରୂପେ କୋଟିଏ କାମ ଗଞ୍ଜେ ॥
ଶିରେ ମୁକୁଟ ମଣି ମୟେ । ଅଧିକେ ଜଗୁଜନ ମୋହେ ॥
କଣ୍ଠେ ଲମ୍ବଇ ମଣିହାର । ମଧ୍ୟେ କୌସ୍ତୁଭ ମଣିସାର ॥
ଯାହାର ଗୁଣ କର୍ମ ଗାଥା । ଏକାନ୍ତେ ବସି ଆମ୍ଭ ପିତା ॥
କହିଲା ତା ମନ ଆନନ୍ଦେ । ବ୍ରହ୍ମା ନିଗ୍ରହ ଅନୁବାଦେ ॥
ସେ ଆତ୍ମା ପଶି କର୍ଣ୍ଣଦ୍ୱାରେ । ରହିଲା ହୃଦୟ ବିମ୍ବରେ ॥

## କୁମାରଗଣ ଉବାଚ

ତୁ ନାଥ ତତ୍ତ୍ୱ ପରମାର୍ଥ । ଧ୍ୟାନେ ଚିନ୍ତନ୍ତି ମୁନି ଶାନ୍ତ ॥
ତୋ ଧ୍ୟାନ ଅତିଶୟ ଗୁଣେ । ଯେବା ଚିନ୍ତନ୍ତି ଅନୁକ୍ଷଣେ ॥
ସଂସାର ଅନୁତାପ ଛନ୍ତି । ସୁହୃଦ ମାର୍ଗେ ଭକ୍ତି ଚିନ୍ତି ॥
ହୃଦେ ଯେ ସ୍ଥାପି ତାଙ୍କ ରୂପ । ବେଗେ ଛାଡ଼ନ୍ତି ତିନିତାପ ॥
ତାର ପ୍ରସାଦେ ଅନ୍ୟ ଏକେ । ଯେ ପ୍ରାଣୀ ତରନ୍ତି ନରକେ ॥
ଭୋ ଦେବ ତୋହର ଚରଣେ । ଯେ ପ୍ରାଣୀ ପଶନ୍ତି ଶରଣେ ॥
ତୋର ପ୍ରସାଦେ ହରି ଭ୍ରାନ୍ତି । ଘୋର ସଂସାରୁ ସେ ତରନ୍ତି ॥
ଭୋ ନାଥ କମଳାରମଣ । ଅନାଦି ପରମ କାରଣ ॥
ଯେ ଯଶ ଶୁଣେ କର୍ଣ୍ଣମାର୍ଗେ । ତୋ ନାମ ଗୁଣେ ଜିହ୍ୱାଅଗ୍ରେ ॥
ତୋର ଚରଣେ ହୋଇ ରତି । ଆତ୍ମାରେ ଜଡ଼ ବୁଦ୍ଧିମତି ॥
ଭୋ ନାଥ କମଳା ରମଣ । ଅନାଦି ପରମ କାରଣ ॥
ଏମନ୍ତେ ମୋର ସପ୍ତ ସୁତେ । ନମିଲେ ବିଷ୍ଣୁ ପଦାଗ୍ରତେ ॥

ସେ ହରି ଚରଣ କମଳେ । ସକଳେ ଚିନ୍ତ ଧ୍ୟାନବଳେ ॥
ତୃତୀୟସ୍କନ୍ଧେ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ଶ୍ରୀକୃଷ୍ଣ ବିଜୟେ ବ୍ରହ୍ମାକୁମର ଦର୍ଶନେ ନାମ ପଞ୍ଚଦଶୋଽଧ୍ୟାୟଃ ।*

## ଷୋଡ଼ଶ ଅଧ୍ୟାୟ

### ବ୍ରହ୍ମା ଉବାଚ

ଏମନ୍ତେ ମୁନିଙ୍କ ବଚନ । ଶୁଣି ସନ୍ତୋଷ ଭଗବାନ ॥
ମୁନିଙ୍କ ମୁଖ ଚାହିଁ ଭଣି । ମୃଦୁ କୋମଳ ଶୁଭବାଣୀ ॥

### ଶ୍ରୀ ଭଗବାନ ଉବାଚ

ଜୟ ବିଜୟ ବେନି ଭ୍ରାତେ । ମୋ ଦ୍ୱାରେ ଥାନ୍ତି ଅବିରତେ ॥
ମୋ ପାରୁଷଦ ମୋର ମନ । ଦ୍ୱାରେ ଖଟନ୍ତି ବେନି ଜନ ॥
ଲଙ୍ଘନା କରି ଯେବେ ମୋତେ । କୋପେ ବସିଲା ତୁମ୍ଭ ଚିତ୍ତେ ॥
ଏ ବ୍ରହ୍ମଦଣ୍ଡ ଏ ପାଇଲେ । ଅନ୍ୟଥା ନୁହେଁ କାର ବୋଲେ ॥
ମୁଁ ପ୍ରଶ୍ନ ମନ୍ତ୍ରୀ କଲି ଚିତ୍ତେ । ଦେବହେଳନ ଅନୁମତେ ॥
ଅସାଧୁ କର୍ମ ଯେ କରନ୍ତି । ସେ ଅପରାଧେ ଦଣ୍ଡ ପାନ୍ତି ॥
ଅଜୟ ସଂସାରେ ପ୍ରକାଶି । ବ୍ୟାଧି ଯେସନେ ରୂପ ନାଶି ॥
ଯାହାର ଗୁଣ ଏ ସଂସାରେ । ଯେହ୍ନେ ନିର୍ମଳ ସାଧୁ ଧୀରେ ॥
ଶ୍ରବଣପୁଟେ କରି ପାନ । ସଂସାରୁ ତରେ ସର୍ବଜନ ॥
ସେ ବଇକୁଣ୍ଠ ନାଥ ମୁହିଁ । ତୁମ୍ଭର ଭାବ ହୃଦେ ବହି ॥
ତୁମ୍ଭର କୋପେ ଅତିରେକେ । ମିଳିଲି ତୁମ୍ଭର ସମୀପେ ॥
ତୁମ୍ଭର ଭାବ ଦୂର କରି । ଅତ୍ୟନ୍ତ କୋପହୃଦେ ଧରି ॥
ଦଣ୍ଡିଲ ଦ୍ୱାରପାଳ ଦଣ୍ଡ । ବ୍ରାହ୍ମଣ କୋପ ଯେ ପ୍ରଚଣ୍ଡ ॥
ଯା ପାଦରେଣୁ ଆଶା କରି । ସେବନ୍ତି ଯତି ବ୍ରହ୍ମଚାରି ॥
ଶ୍ରବଣ ମାତ୍ରେ ମନ ହରେ । ସକଳ ପ୍ରାଣୀଙ୍କି ନିସ୍ତାରେ ॥
ମୋ ରୂପେ କମଳା ନିରତେ । ପ୍ରେମ ନ ଛାଡ଼େ ଅନ୍ତର୍ଗତେ ॥
ମୋତେ ବ୍ରାହ୍ମଣ ବେଦମାର୍ଗେ । ଯଜ୍ଞେ ପୂଜନ୍ତି ହବିର୍ଭାଗେ ॥
ଦଧି ଓଦନ ଘୃତ ମତେ । ମଧୁ ସଂଯୁକ୍ତେ ବେଦମତେ ॥
ବ୍ରାହ୍ମଣ ଦେହେଁ ମୁଁ ବସଇ । ଏଣେ ମୋହର ତୋଷ ନାହିଁ ॥
ବ୍ରାହ୍ମଣ ମୁଖେ ଯେବେ ଭକ୍ଷେ । ଭକ୍ଷଇ ମୁହିଁ ତା ପ୍ରତ୍ୟକ୍ଷେ ॥
ବ୍ରାହ୍ମଣ ପାଦରଜ ବଳେ । ମୁଁ ଏ ସଂସାରେ ଜନମେଳେ ॥
ମାୟା ବିଭୂତି ଅଇଶ୍ୱର୍ଯ୍ୟେ । ଭୁଞ୍ଜଇ ସର୍ବ ହେତୁ ମାଝେ ॥
ବ୍ରାହ୍ମଣ ପାଦରେଣୁ ବହି । ସଂସାର ହିତେ ମୋର ଦେହୀ
ବ୍ରାହ୍ମଣ ଦୋଷ ଯେ ନ ସହେ । ତା ପାଦ ଜଳ ଅର୍ଘ୍ୟବହେ ॥
ଚନ୍ଦ୍ର ସହିତେ ଅତିରେକେ । ପବିତ୍ର ହୋନ୍ତି ତିନିଲୋକେ ॥
ବିପ୍ର ଶରୀର ମୋର ତନୁ । ଏଣୁ ଦୁଃସହ ବିପ୍ର ମନ୍ୟୁ ॥
ଯେ ଭେଦ ବୁଦ୍ଧି ନ ବିଚାରି । ମୋତେ ଚିନ୍ତନ୍ତି ଭିନ୍ନ କରି ॥
ସେ ମୋତେ ଅପରାଧ କରେ । କେବେହେଁ ସଂସାରୁ ନତରେ ॥
ବ୍ରାହ୍ମଣ ଦେହେ ଦ୍ରୋହ ଚିନ୍ତି । ଏ ଭବସିନ୍ଧୁ ନ ତରନ୍ତି ॥
ତୁମ୍ଭର ଗତି ମୁକ୍ତ ନିତ୍ୟେ । ଭ୍ରମନ୍ତି ଘୋର ମାୟାପଥେ ॥
ତୁମ୍ଭେ ଏ ବ୍ରହ୍ମଶାପ୍ୟ ଫଳେ । ତୃତୀୟ ଜନ୍ମ ଦୁଷ୍ଟକୁଳେ ॥
ଦୁଷ୍ଟ ଆଚର କର୍ମ କରି । ଧର୍ମ ଅଧର୍ମ ନ ବିଚାରି ॥
ଏବେ ଏ ବିପ୍ରଙ୍କର ତୋଷେ । ପୁଣି ମିଳିବ ମୋର ପାଶେ ॥
ମୁଁ ପୁଣି ତୁମ୍ଭ ଉପକାରେ । ଶରୀର ବହିବି ସଂସାରେ ॥
କରିବି ତୁମ୍ଭଙ୍କୁ ନିସ୍ତାର । ଏମନ୍ତ କହି ଚକ୍ରଧର ॥
ଏମନ୍ତେ ବିଷ୍ଣୁ ମୁଖୁଁ ବାଣୀ । ସନ୍ତୋଷେ ବିପ୍ରବର ଶୁଣି ॥
ବିଷ୍ଣୁର ଭକ୍ତି ହୃଦେ ବହି । ବୋଲନ୍ତି ଶିରେ କର ଦେଇ ॥

### ଦ୍ୱାରପାଳ ଉବାଚ

ଭୋ ଦେବ ଦେବ ଲକ୍ଷ୍ମୀପତି । ଆମ୍ଭେ ନ ଜାଣୁ ତୋର ଗତି ॥
ଆମ୍ଭଙ୍କୁ ଅନୁଗ୍ରହ କରି । ଯାହା ବୋଇଲେ ନରହରି ॥
ବ୍ରାହ୍ମଣ ଦେବତା ମହିମା । ତୋ ଗତି ନ ଜାଣନ୍ତି ବ୍ରହ୍ମା ॥
ତୁ ପୁଣି ବିପ୍ର ଦେବଙ୍କର । ଆତ୍ମା ସୁହୃଦ ଶକ୍ତିଧର ॥
ଧର୍ମ ତୋ ଶରୀରୁ ପ୍ରକାଶ । ଯେ ଧର୍ମେ ସୃଷ୍ଟି ପାପ ନାଶ ॥
ତାହାଙ୍କ ଅନୁଗ୍ରହେ ଜନ । ଧର୍ମ ସଞ୍ଚୟେ ଦ୍ୟନ୍ତି ମନ ॥
ଏମନ୍ତ ମୁନିଙ୍କ ବଚନ । ଶୁଣି ସନ୍ତୋଷ ଭଗବାନ ॥
ବ୍ରାହ୍ମଣ ଭାବ ଚିତ୍ତେ ବହି । କହନ୍ତି ବିପ୍ରଙ୍କୁ ଅନାଇ ॥

### ଶ୍ରୀ ଭଗବାନ ଉବାଚ

ଜୟ ବିଜୟ ବେନି ଭାଇ । ତୁମ୍ଭର ଚିତ୍ତେ କ୍ରୋଧ ବହି ॥
ଅସୁର ଯୋନି ଏ ପାଇବେ । ଦୁର୍ବୃତ୍ତ କର୍ମ ଆଚରିବେ ॥
ପୁଣି ଯେମନ୍ତେ ମୋର ପୁରେ । ସୁବର୍ଣ୍ଣ ବେତ ଘେନି କରେ ॥
ଏ ପୁଣି ବଇକୁଣ୍ଠେ ବସେ । ଯେବେ ତୁମ୍ଭର ମନ ତୋଷେ ॥
ସେ ସପ୍ତ ମୋହର ନନ୍ଦନ । ତକ୍ଷଣେ ଆନନ୍ଦ ବଚନ ॥
ବିଷ୍ଣୁର ମୁଖ ଦେଖି ତୋଷେ । ବେଗେ ମିଳିଲେ ବିଷ୍ଣୁ ପାଶେ ॥
ସ୍ୱଭାବେ ବିଷ୍ଣୁର ଭୁବନେ । ଯହିଁ ନ ଯାନ୍ତି ଦୁଷ୍ଟଜନେ ॥
ବିଷ୍ଣୁର ପାଦେ ସେ ନମିଲେ । ଆନନ୍ଦେ ନିଜସ୍ଥାନେ ଗଲେ ॥
ଦ୍ୱାରପାଳଙ୍କ ମୁଖ ଚାହିଁ । କହନ୍ତି ପ୍ରଭୁ ଭାବଗ୍ରାହୀ ॥

ତୁମ୍ଭେ ଯେ ଧରଣୀ ମଣ୍ଡଳେ । ଜନ୍ମିବ ଅସୁରଙ୍କ କୁଳେ ॥
ତୁମ୍ଭ କୁଶଳ ମୁଁ କରିବି । ତୃତୀୟ ଜନ୍ମେ ଉଦ୍ଧାରିବି ॥
ମୁଁ ଅବା ସମର୍ଥ ଅଟଇ । ବ୍ରାହ୍ମଣ କୋପକୁ ଡରଇ ॥
ସେ କଥା କମଳା ସମୀପେ । ମୁଁ କହିଅଛି ପୂର୍ବ କଳ୍ପେ ॥
ବ୍ରହ୍ମହେଳନେ ଯେ କରନ୍ତି । ମୋ ହୃଦେ ସର୍ବ ସମର୍ପନ୍ତି ॥
ତୁମ୍ଭର ଉଦ୍ଧାର ନିମତେ । ମୁଁ ଦେହ ବହିବି ଜଗତେ ॥
ଯେ କୀର୍ତ୍ତି ରହିବ ମୋ ଯଶ । ଶୁଣନ୍ତେ ପାପ ଯିବ ନାଶ ॥
ମୋ କଥା ଭୁବନ ପାବେନୀ । ଯେ ଭୂମି ମଧ୍ୟେ ଦେହ ଘେନି ॥
କରିବେ ଶ୍ରବଣ କୀର୍ତ୍ତନ । ଶୁଣି ତରିବେ ସର୍ବଜନ ॥
ଏମନ୍ତେ ଦ୍ୱାରପାଳ କହି । ନିଜ ଭୁବନେ ଭାବଗ୍ରାହୀ ॥
ବସିଲେ କମଳାର ମେଳେ । ଆବୃତ ବିମାନ ସଂକୁଳେ ॥
ସେ ଦ୍ୱାରପାଳ ବେନିଭାଇ । ଭାଳନ୍ତି ଚଉଦିଗ ଚାହିଁ ॥
ତକ୍ଷଣେ ଅଧର ଶୁଖିଲା । ଆତ୍ମାରୁ ବିଷ୍ଣୁ ତେଜ ଗଲା ॥
ତକ୍ଷଣେ ହତଗର୍ବ ହୋଇ । ଅଧୋବଦନେ ବେନିଭାଇ ॥
ବିଷ୍ଣୁର ଭୁବନୁ ପଡ଼ନ୍ତେ । ହା ହା ଶବଦ ଶୂନ୍ୟପଥେ ॥
ସେ ବେନି ବୀର ଏକ ଭାବେ । ତକ୍ଷଣେ ପଶି ଦିତି ଗର୍ଭେ ॥
କଶ୍ୟପ ବୀର୍ଯ୍ୟେ ଆଶ୍ରେକରି । ଏଣୁ ଭୁବନ ଲୋକେ ଡରି ॥
ସେ ବେନି ଅସୁରଙ୍କ ଦର୍ପେ । ତିନି ଭୁବନ ଦିଗ କମ୍ପେ ॥
ସେ ବିଷ୍ଣୁ ସୃଷ୍ଟିର କାରଣ । ଅନାଦି ପ୍ରଭୁ ନାରାୟଣ ॥
ଯା ମାୟା ନ ଜାଣନ୍ତି କେହି । ସଂସାର ମଧ୍ୟେ ଦେହବହି ॥
ଆମ୍ଭେ ସକଳେ ତୋ ଚରଣେ । ଆଶ୍ରୟ କରି ଭୃତ୍ୟପଣେ ॥
ଏ ଘେନି ଘୋର ଭୟଙ୍କର । ଖଣ୍ଡିବେ ପ୍ରଭୁ ଚକ୍ରଧର ॥
ଏମନ୍ତେ ଦେବଗଣ ମଧ୍ୟେ । ବିଧାତା କହିଲେ ଆନନ୍ଦେ ॥
ସେ ହରି ବ୍ରାହ୍ମଣ ବତ୍ସଳେ । ସୁଜନେ ଚିନ୍ତ ଧ୍ୟାନ ବଳେ ॥
ସେ କୃଷ୍ଣ ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ଜୟ ବିଜୟ ଶାପ ବର୍ଣ୍ଣନେ ନାମ ଷୋଡ଼ଶୋଽଧ୍ୟାୟଃ ।*

## ସପ୍ତଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ବ୍ରହ୍ମାବଚନ ଦେବଗଣେ । ଶୁଣିଲେ ଅଦ୍ଭୁତ କାରଣେ ॥
ବିଧାତା ପାଦେ ପ୍ରଣମିଲେ । ଆନନ୍ଦେ ନିଜପୁରେ ଗଲେ ॥
ଦିତି କଶ୍ୟପ ଆଜ୍ଞା ପାଇଁ । ପୁତ୍ରଙ୍କ ଜନ୍ମେ ସଂଗୀ ହୋଇ ॥
ଶତେ ବରଷ ପୂର୍ଣ୍ଣ ହେଲା । ବେନି ବାଳକ ପ୍ରସବିଲା ॥
ସେ ବେନି ପୁତ୍ର ଜନ୍ମ କାଳେ । ନିଗମ ଦ୍ୱନ୍ଦ୍ୱ ଅନ୍ତରାଳେ ॥
ଘୋର ଉତ୍ପାତ ଭୟଙ୍କର । ଦେଖି କମ୍ପିଲେ ସୁରନର ॥
ଚର ଅଚର ସଙ୍ଗେ ମହୀ । କମ୍ପିଲା ମହାଭୟ ପାଇ ॥
ଦହିବା ପ୍ରାୟେ ଅଷ୍ଟଦିଗେ । ଦିଶନ୍ତି ଅନଳ ସଂଯୋଗେ ॥
ଉଲ୍‌କା ସଂକୋଳ ବଜ୍ର ସଙ୍ଗେ । ସମୁଦ୍ର କମ୍ପିତ ତରଙ୍ଗେ ॥
ଏ କିସ ବହଇ ପବନେ । ଉଚ୍ଚେ ଶ୍ରବଣେ ଘୋର ସ୍ୱନେ ॥
ଘୋର ପ୍ରଚଣ୍ଡ ବାତ ବଳେ । ବୃକ୍ଷେ ଉଡ଼ିଲେ ଅନ୍ତରାଳେ ॥
ଧ୍ୱନି ପଶିଲା ଦଶଦିଶେ । ନିବିଧ ଅନ୍ଧାର ଆକାଶେ ॥
ଗଗନେ ଯେତେ ଜ୍ୟୋତି ଥିଲେ । ଘୋର ତିମିରେ ନ ଦିଶିଲେ ॥
ଗଗନ ନ ଦିଶେ କି ପଥ । ତମେ ଆକାଶ କଲା ଗ୍ରସ୍ତ ॥
ନଦୀଙ୍କ ଜଳ ଶୁଖିଗଲା । ନିବିଡ଼େ ପଙ୍କ ପ୍ରକାଶିଲା ॥
ଆକାଶେ ଚନ୍ଦ୍ର ଦିବାକର । ମଣ୍ଡଳ ଦିଶେ ଅସୁନ୍ଦର ॥
ନିର୍ବାତେ ରଥଘୋଷ ଚଳେ । ଯେସନ୍ଥେ ଗର୍ଜିଲ ଅନ୍ତରାଳେ ॥
ଫେରବ ଗଣେ ପୂର୍ବମୁଖେ । ନାଦ କରନ୍ତି ଅତି ଦୁଃଖେ ॥
କରନ୍ତି ଅତି ଘୋର ସ୍ୱନ । ତୁଣ୍ଡେ କି ଜଳେ ହୁତାଶନ ॥
ଶୃଗାଳ ଉତ୍କଟ ବୀରେ । ନାଦ କରନ୍ତି ଅତିଖରେ ॥
ଗନ୍ଧର୍ବେ ସୂର୍ଯ୍ୟ ମୁଖେ ମିଳି । କାନ୍ଦନ୍ତି ଊର୍ଦ୍ଧ୍ୱେ ତୁଣ୍ଡ ତୋଳି ॥
ବୃକ୍ଷୁଁ ପଡ଼ନ୍ତେ ପକ୍ଷୀଗଣେ । ଅରଣ୍ୟେ ପଶୁ ଘୋରସ୍ୱନେ ॥
ମୂତ୍ର ପୁରୀଷେ ଉତ୍ସର୍ଗନ୍ତି । ଗଭୀର ଜଳେ ମହାଭୀତି ॥
ଗାବ ଦୋହନ୍ତେ ରକ୍ତ ସ୍ରାବେ । ଗଗନେ ଘୋରନାଦ ଶୁଭେ ॥
ଆକାଶ ପୂରି ମେଘମାଳେ । ଗୁଣ ବରଷନ୍ତି ବହୁଳେ ॥
ଲିଙ୍ଗେ କାନ୍ଦନ୍ତି ଶକ୍ତି ଯୁକ୍ତେ । ବୃକ୍ଷେ ପଡ଼ନ୍ତି ବିନା ବାତେ ॥
ଆକାଶେ ଗ୍ରହଗଣେ ମିଳି । ଶୂନ୍ୟେ ନାଚନ୍ତି ତାରାବଳୀ ॥
ଗୃଧେ କରନ୍ତି ଘୋର ସ୍ୱନ । ଗହ୍ୱରେ ଦିଶେ ଅଗ୍ନି କୋଣ ॥
ଉତ୍ପାତ ଦିଶେ ଘୋରତରେ । ପ୍ରଜାଏ କମ୍ପିଲେ ନିର୍ଭରେ ॥
ସନକ ଆଦି ସାତଭାଇ । ଦେଖନ୍ତି ଶୂନ୍ୟମାର୍ଗେ ରହି ॥
ବିଶ୍ୱ ସଂସାରେ ମହାତ୍ରାସେ । ସୃଷ୍ଟି ପ୍ରଳୟ ପ୍ରାୟେ ଦିଶେ ॥
ଏମନ୍ତ କଶ୍ୟପ ଭୁବନେ । ପୁତ୍ରେ ବଢ଼ନ୍ତି ଦିନେ ଦିନେ ॥
ସ୍ୱଭାବେ କର୍କଶ ଶରୀର । ଦିଶନ୍ତି ମହା ଭୟଙ୍କର ॥
ପର୍ବତ ପ୍ରାୟେ ଦିନେ ଦିନେ । ବଢ଼ିଲେ କଶ୍ୟପ ଭୁବନେ ॥
ଶିରେ କିରଟୀ ହେମମୟେ । ଉଚ୍ଚେ ଗମନ କିବାଅଛୟେ ॥
ରଙ୍ଗବସନ କଟିମାଝେ । ସୁରଙ୍ଗ ମେଖଳା ବିରାଜେ ॥

ବଜ୍ର ସମାନ ଗଦା ହସ୍ତେ । ନିତ୍ୟ ଧାମନ୍ତି ନାନାପନ୍ଥେ ॥
ଗୃହେ ମିଳନ୍ତି ଘୋରନାଦେ । ଭୂମି କମ୍ପଇ ବାଜି ପାଦେ ॥
ଏମନ୍ତ ପୁତ୍ରଙ୍କର ଗତି । ଦେଖି କଶ୍ୟପ ପ୍ରଜାପତି ॥
ନାମ କରଣେ ହୋମ କଲା । ବେନିପୁତ୍ରଙ୍କୁ ନାମ ଦେଲା ॥
ବଜ୍ର କଠିନ ଦେଖି ବପୁ । ଏ ବଡ଼ ହିରଣ୍ୟ କଶିପୁ ॥
ଅନୁଜ ଚାହିଁ ଦେଖି ଦକ୍ଷ । କହିଲା ନାମ ହିରଣ୍ୟାକ୍ଷ ॥
ଦିନହୁଁ ଦିନ ମହାବପୁ । ବଢ଼ିଲା ହିରଣ୍ୟ କଶିପୁ ॥
ତପେ ବ୍ରହ୍ମାଙ୍କୁ ସେବାକଲା । ସ୍ୱଭାବେ ତେଜ ଅନର୍ଗଳା ॥
ଗଦା ବୁଲାଇ ମହାରୋଷେ । ବେଗେ ଧାଇଁଲା ଦଶଦିଶେ ॥
ଦେବେ ମିଳିଲେ ତାର ପାଶେ । ଖଟିଲେ ଜୀବନର ଆଶେ ॥
ତାର ଅନୁଜ ହିରଣାକ୍ଷ । ଗଦା ସଂଗ୍ରାମେ ମହାଦକ୍ଷ ॥
ଦେଖି ତାହାର ଦୁଷ୍ଟପଣ । ଭୟେ କମ୍ପିଲେ ଦେବଗଣ ॥
ଚାଲନ୍ତେ ଗୁଣ୍ଡୁଝୁଣ୍ଡୁ ବାଜେ । କୁସୁମ ମାଳା ଗଳେ ସାଜେ ॥
ଜ୍ୟେଷ୍ଠ ଭ୍ରାତାର ପ୍ରିୟକାରୀ । ଯୁଦ୍ଧେ ବୁଲଇ ଗଦାଧରି ॥
ବଳେ ପଶିଲା ସ୍ୱର୍ଗପୁରେ । ସୁବର୍ଣ୍ଣ ନେପୁର ପୟରେ ॥
କନ୍ଧେ ପକାଇ ଗଦାବର । କି ଅବା ଦେବା ପଟାନ୍ତର ॥
ତାର ଗମନ ମନୋପମ । ଦେଖି ପଳାନ୍ତି ରିପୁଯମ ॥
ନିର୍ଭୟେ ଭ୍ରମନ୍ତି ଜଗତେ । ଦେବ ଦାନବ ଭୂମିଗତେ ॥
ଦେବେ ତାହାର ରୂପ ଦେଖି । ଭାଜିଲେ ତ୍ରିଦଶ ଉପେକ୍ଷି ॥
ଆକାଶ ମାର୍ଗେ ଦେବଗଣେ । ଛାଡ଼ି ପଶିଲେ ଘୋରବନେ ॥
ବନେ ଲୁଚିଲେ ତାର ଦର୍ପେ । ଗରୁଡ଼ ଭୟେ ଯେହ୍ନେ ସର୍ପେ ॥
ସ୍ୱର୍ଗେ ପଶିଲା ବେଗେ ଯାଇଁ । ଦେଖିଲା ସ୍ୱର୍ଗ ଲୋକ ନାହିଁ ॥
ଦେଖଇ ଇନ୍ଦ୍ରରାଜା ତୁଲେ । ସ୍ୱର୍ଗ ସମ୍ପଦ ଛାଡ଼ିଗଲେ ॥
ଦେଖିଣ ଇନ୍ଦ୍ରର ସମ୍ପଦ । ଅନେକ କଲା ଘୋରନାଦ ॥
ମୁହୂର୍ତ୍ତେ ସ୍ୱର୍ଗପୁରେ ବସି । ପୁଣି ମିଳିଲା ମର୍ତ୍ତେ ଆସି ॥
ଅସୁର ବିଚାରଇ ମନେ । ପଶିବି ବରୁଣ ଭୁବନେ ॥
ମୋହର ପ୍ରାୟ ଗଦାବଳେ । କେ ଅବା ଅଛନ୍ତି ପାତାଳେ ॥
ଏମନ୍ତ ମନେ ବିଚାରିଲା । ଜଳଧି ମଧ୍ୟରେ ପଶିଲା ॥
ସ୍ୱଭାବେ ବିଶ୍ୱରୂପ କାୟେ । ହସ୍ତୀର ପ୍ରାୟେ ଅବଗାହେ ॥
ଜଳେ ପଶନ୍ତେ ମହାସୁର । କମ୍ପିଲା ବରୁଣର ପୁର ॥
ଭାଜିଲେ ଜଳଜନ୍ତୁ ଗଣେ । କେବା ମିଳିବ ତାର ରଣେ ॥
ଏମନ୍ତ କହି ପଳାଇଲେ । ଗଭୀର ଜଳେ ସେ ପଶିଲେ ॥
ଭ୍ରମଇ କରେ ଗଦା ଧରି । କେ ତାର ସମରେ ଉବୁରି ॥
ରାତ୍ର ଆଗମ ଏକଦିନେ । ମିଳିଲା ବରୁଣ ଭୁବନେ ॥
ବୋଲଇ କରେ ଗଦାତୋଳି । ଘୋର ଶବଦେ ମହାବଳୀ ॥
ମୁଁ ଏବେ ଭୁବନେ ତୋହର । ରହିଲି ବହୁ ସମ୍ବତ୍ସର ॥
ତୁ ମୋତେ ଗଦାଯୁଦ୍ଧ ଦେବୁ । ନ ଦେଲେ ଭୁବନେ ନ ଥିବୁ ॥
ଏମନ୍ତ ଶୁଣି ତା ବଚନ । ଜଳାଧିପତି ମହାଛନ୍ନ ॥
ନୀଚ ଜନଙ୍କ ପ୍ରାୟ ହୋଇ । ବୋଲଇ ଶିରେ କରଦେଇ ॥
ଭୋ ବୀର ରହ ଦିନାକେତେ । ଶୁଣି ଦାନବ କୋପଚିତ୍ତେ ॥
ତୁ ଯୁଦ୍ଧ କର ମୋରତୁଲେ । ନ କଲେ ନ ଥିବୁଟି ଭଲେ ॥
ତୁ ଲୋକପାଳ ଶିରୋମଣି । ଏ ତୋର ମହିମା ମୁଁ ଜାଣି ॥
ମିଳିଲି ତୋହର ସମ୍ମୁଖେ । ସମର କର ଆତ୍ମାସୁଖେ ॥
ଧର୍ମଧାତାଙ୍କ ମଧ୍ୟେ ମେରୁ । ବୀରମାନଙ୍କ ଦର୍ପଚୂରୁ ॥
ମୋହର ଦର୍ପ ଏବେ ହର । ସୁଖେ ରାଜୁସି ଯାଗ କର ॥
ଏମନ୍ତ ତାର ବାକ୍ୟ ଶୁଣି । କୋପେ କମ୍ପଇ ସିନ୍ଧୁମଣି ॥
ତୁ ବୀର କହୁ ମୋର ହିତେ । ମୁଁ ତୋତେ ଯୁଝିବି କେମନ୍ତେ ॥
ତୁ ମହା ବୀରଙ୍କର ଗୁରୁ । ମୋ ବୋଲେ କୋପ ତୁ ସଂହାରୁ ॥
ଯେ ତୋର ତୁଲେ ଯୁଦ୍ଧ କରି । ମିଳିବ ମୋତେ ଦୟା ଭରି ॥
ତୋତେ ମାରିବ ସେ ସମରେ । ତୁ ପୁଣି ସଂଗ୍ରାମ ଭୂମିରେ ॥
ବୀର ଶୟନ ତୋ ଆନନ୍ଦେ । ଶୋଇବୁ ରଣ ଭୂମି ମଧ୍ୟେ ॥
ଯେ ରୂପ ବହି ଏ ଜଗତେ । ତୋହର ପ୍ରାୟେ ଦୁଷ୍ଟଚିତ୍ତେ ॥
ତାହାଙ୍କ ଗର୍ବ ଚୂରକରେ । ସଂସାର ହିତେ ସେ ବିହରେ ॥
ଏମନ୍ତ ଅସୁରକୁ କହି । ମନେ ଚିନ୍ତଇ ଭାବଗ୍ରାହୀ ॥
ଶ୍ରୀକୃଷ୍ଣ ଚରଣାର ବିନ୍ଦେ । ସୁଜନେ ଚିନ୍ତ ହୋ ଆନନ୍ଦେ ॥
କହଇ ବିପ୍ର ଜଗନ୍ନାଥ । ତୃତୀୟସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ଅସୁର ବରୁଣ ପୁରେ ଯୁଦ୍ଧ ଆରମ୍ଭୋ ନାମ ସପ୍ତଦଶୋଽଧ୍ୟାୟଃ ।*

## ଅଷ୍ଟାଦଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ବରୁଣ ବାକ୍ୟ ଶୁଣି କର୍ଣ୍ଣେ । ଅସୁର ବିଚାରଇ ମନେ ॥
ବରୁଣ ତୁଲେ ଯୁଦ୍ଧ ମୋର । ଏ ତ ନୁହଇ ପୁରନ୍ଦର ॥
ନାରଦ କହିଛନ୍ତି ମତେ । ବିଷ୍ଣୁର ଗତି ଏ ଜଗତେ ॥
ଶୂକର ରୂପେ ଏ ଧରଣୀ । ସ୍ଥାପିବ ଦନ୍ତ ଅଗ୍ରେ ଆଣି ॥
ତାହାର ତୁଲେ ମୋ ସମର । ନାମ ଯାହାର ଗଦାଧର ॥

ତୋ ଭୁଜଦର୍ପ ସେ ହରିବ । ଦେବ ଲୋକଙ୍କୁ ଉଦ୍ଧାରିବ ॥
ଏମନ୍ତ ମନେ ବିଚାରିଲା । ତକ୍ଷଣେ ପାତାଳେ ପଶିଲା ॥
ଦେଖଇ ଗୋବିନ୍ଦର ଗତି । ଦଶନ ଅଗ୍ରେ ବସୁମତି ॥
ଆଦିତ୍ୟ ପ୍ରାୟ ତେଜ ଦେଖି । ଭୟେ ବୁଜିଲା ବେନି ଆଖି ॥
ପୁଣି କ୍ଷଣକେ ଚକ୍ଷୁ ଫେଇ । ବିଷ୍ଣୁକୁ ଦେଖି ବିଚାରଇ ॥
ନାରଦ ବାକ୍ୟ ଯେବେ ସତ । ମୁହିଁ ଦେଖଇ ବିପରୀତ ॥
ଏ ମୃଗ କାନନ ଗୋଚର । ପଙ୍କ ଦୂଷିତ ଏ ଧୂସର ॥
ବୋଲେ ଅସୁର ମୁଖ ଚାହିଁ । ଦଶନୁ ବେଗେ ମୁଞ୍ଚ ମହୀ ॥
ପାତାଳ ଲୋକଙ୍କୁ ମେଦିନୀ । ପୂର୍ବେ ଦେଇଛି ପଦ୍ମଯୋନି ॥
ଯେବେ ମେଦିନୀ ନ ଛାଡ଼ିବୁ । ମୋ ମୁଖୁ ଭଲେ ନ ବଞ୍ଚିବୁ ॥
ସୁର ଅଧମ ତୁ ବୋଲାଉ । ଯେଣୁ ଶୂକର ରୂପ ବହୁ ॥
ମୋର ରିପୁଙ୍କ ଶୁଭ ଚିନ୍ତି । ତୁ ବହୁଁ ଶୂକର ଆକୃତି ॥
ମାୟାରେ ମାରୁ ତୁ ଅସୁର । କପଟ ଧର୍ମ ଏ ତୋହର ॥
ତୋର ମୋହର ଗଦାଯୁଦ୍ଧେ । ତ୍ରିଦଶେ ଦେଖନ୍ତୁ ଆନନ୍ଦେ ॥
ତୋର ମୂର୍ଦ୍ଧନୀ ଗଦାଘାତେ । ବେଗେ ଉଡ଼ିବ ମହାବାତେ ॥
ବଳ ହରନ୍ତି ଯେବେ ଦେବେ । ତୋହର ମରଣ ଦେଖିବେ ॥
ମୂଷଳୀ ନାଶେ ବୃକ୍ଷ ଯେହ୍ନେ । ତ୍ରିଦଶେ ହୋଇବେ ତେସନେ ॥
ଏମନ୍ତେ ଅସୁରର ବାଣୀ । ତା ଶୁଣି କମ୍ପିଲା ଧରଣୀ ॥
ଜଳେ ବଢ଼ିଲା ମହାକାୟେ । ଗୋବିନ୍ଦ ଦେଖି ଭୂମିଭୟେ ॥
ବରାହ ରୂପେ କୋପମନେ । ମର୍ମ ପ୍ରହାରେ ହସ୍ତୀ ଯେହ୍ନେ ॥
ଜଳୁ ଉଠନ୍ତି ମହାରୋଷେ । ପର୍ବତ ପ୍ରାୟେ ଦେହ ଦିଶେ ॥
ସେ ହରିଣାକ୍ଷ ଦେଖି କୋପେ । ମିଳିଲା ବରାହ ସମୀପେ ॥
ସିଂହ ଯେସନେ ହସ୍ତୀ ଆଗେ । ମିଳିଲା ପବନ ହୁଁ ବେଗେ ॥
କରିଣ ଗଦା ଦୃଢ଼ପାଣି । ବଜ୍ର ନିଷ୍ଠୁର ପ୍ରାୟେ ଜାଣି ॥
ବୋଲେ ବରାହ ମୁଖ ଚାହିଁ । ତୋର ବଦନେ ଲଜ୍ଜା ନାହିଁ ॥
ଦେବଙ୍କ ଈଶ୍ୱର ବୋଲାଉ । ଶୂକର ରୂପ କିମ୍ପା ବହୁ ॥
ଏମନ୍ତେ ଅସୁର ବଚନେ । କୋପ ବସିଲା ବିଷ୍ଣୁ ମନେ ॥
ଧରଣୀ ସମୁଦ୍ରର କୂଳେ । ଦନ୍ତୁ ଥୋଇଲେ ବିଷ୍ଣୁତଳେ ॥
ନିଜ ମୂରତି ଗଦାଧର । କି ଅବା ଦେବା ପଟାନ୍ତର ॥
ଦେଖି ସାନନ୍ଦ ଦେବଗଣ । କରନ୍ତି ପୁଷ୍ପ ବରଷଣ ॥
ବ୍ରହ୍ମାଦି ଦେବଗଣ ମିଳି । ସ୍ତୁତି କରନ୍ତି ଭୁଜ ଟେକି ॥
ଅସୁର ଦେବ ସ୍ତୁତି ଶୁଣି । କୋପେ ମିଳିଲା ଶିରଝୁଣି ॥
ବିଷ୍ଣୁର ହସ୍ତେ ଗଦା ସାଜେ । କାଞ୍ଚନ ଦଶନ ବିରାଜେ ॥
କୋପେ କମ୍ପିଲେ ଭଗବାନ । ଶୁଣି ଅସୁର ଦୁର୍ବଚନ ॥
ପ୍ରଚଣ୍ଡ ମନ୍ଦ ମନ୍ଦ ହାସେ । ଅସୁର ମୁଖ ଚାହିଁ ରୋଷେ ॥
ମନ ବଚନ ଶୁଚିଭାବେ । ମୋର ମହିମା ଶୁଣ ଏବେ ॥

## ଶ୍ରୀ ଭଗବାନ ଉବାଚ

ତୁମ୍ଭେ ଯେ ପ୍ରକୃତ ବରାହ । ଖୋଜୁ କୁକୁର ତୋର ନ୍ୟାୟ ॥
ତୁ କିମ୍ପା ଆତ୍ମଶ୍ଳାଘା କରୁ । ନ ଯିବୁ ତୁ ମୃତ୍ୟୁ ମୁଖରୁ ॥
ବୀର ପୁରୁଷେ ନ କରିବେ । ତୋର ପ୍ରଶଂସା ଏହି ଭବେ ॥
ଆମ୍ଭେ ଯେ ଜଳବାସୀଙ୍କର । ହରିଛୁ ସମ୍ପତ୍ତି ଆବର ॥
ସେ ହେତୁ ତୁହି ଗଦାଘାତେ । ବାହାର କରିବୁ ନିଶ୍ଚିନ୍ତେ ॥
କାୟ କ୍ଳେଶରେ ବ୍ୟସ୍ତ ଅଛୁ । ଏ ସ୍ଥାନୁ ଯିବା ତୁ ନ ଇଚ୍ଛୁ ॥
ତୋହର ପ୍ରାୟେ ଶ୍ୱାନଗଣ । ମୋ ତୁଲେ କେ କରିବ ରଣ ॥
ମୃତ୍ୟୁର ପାଶେ ଦମ୍ଭ ହୋଇ । ବିଶ୍ୱାସ କହୁ କିସପାଇଁ ॥
ଆକାଶେ ଦେବଗଣ ଯେତେ । ଦେଖି ତୋହର ଗଦା ହସ୍ତେ ॥
ଆକାଶ ଛାଡ଼ି ପଳାଇଲେ । ମୋହର ସଙ୍ଗତେ ମିଳିଲେ ॥
ମୁଁ ଆଜ ସଂଗ୍ରାମ କରିବି । ଏହାଙ୍କୁ ସଂକଟୁ ତାରିବି ॥
ଗଦା ପ୍ରହାରି ତୋର ହୃଦେ । ଦେବଙ୍କୁ ସ୍ଥାପି ନିଜ ପଦେ ॥
ଏମନ୍ତେ ବରାହ ବଚନେ । ହିରଣ୍ୟ ଶୁଣି କୋପମନେ ॥
ସ୍ୱଭାବେ ଦୁଷ୍ଟ ମହାବଳୀ । ଗର୍ଜ୍ଜଇ ଗଦା ହସ୍ତେ ତୋଳି ॥
ଶବଦେ ଭୁବନ କମ୍ପିଲା । ବରାହ ଅଙ୍ଗେ ପ୍ରହାରିଲା ॥
ସେ ହରି ନିଜ ଭୁଜ ବଳେ । ଦୁଷ୍ଟ ପ୍ରହାର ବଞ୍ଚାଇଲେ ॥
ପୁଣି ଅସୁର ଗଦାହସ୍ତେ । ପ୍ରଚଣ୍ଡ ଭାବେ ଶୂନ୍ୟପଥେ ॥
ଗଦା ବୁଲାଇ ଅତି ରୋଷେ । ପିଟିଲା ବିଷ୍ଣୁ ପୃଷ୍ଠ ଦେଶେ ॥
ଶୁଭିଲା ବଜ୍ର ଘଡ଼ଘଡ଼ି । ଅଧର ଦଶନେ କାମୁଡ଼ି ॥
ସେ ଗଦା ବଞ୍ଚାଇ ମୁରାରି । ଦକ୍ଷିଣ ଭୁଜେ ଗଦା ଧରି ॥
ପିଟିଲେ ଅସୁରର ମୁଣ୍ଡେ । ବ୍ରଜ ଯେସନେ ଗିରିଖଣ୍ଡେ ॥
ଏମନ୍ତେ ହରି ହିରଣ୍ୟାକ୍ଷେ । ଦେବେ ଦେଖନ୍ତି ଅନ୍ତରୀକ୍ଷେ ॥
ବେନି ଶରୀରେ ଗଦାଘାତେ । ଶୁଭଇ ଯେହ୍ନେ ବଜ୍ରପାତେ ॥
ଜିଣିବା ପ୍ରାୟେ ଅନ୍ୟେ ଅନ୍ୟେ । କରନ୍ତି ଯୁଦ୍ଧ କୋପମନେ ॥
ଏମନ୍ତେ ହରି ହିରଣ୍ୟାକ୍ଷେ । ଗଦା ପ୍ରହାରେ ଜାନୁ ବକ୍ଷେ ॥
ଫାଟି ବହଇ ଶୋଣୀ ଧାର । ବିଶେଷେ ଯୁଦ୍ଧ ମହାଘୋର ॥
ଗଦା ବିଚିତ୍ର ଗତି କରି । ବେଗେ ପିଟଇ ଗଦା ଧରି ॥
ଶବଦ ଶୁଭଇ ପ୍ରଚଣ୍ଡେ । ଯେହ୍ନେ ଯୁଝନ୍ତି ବେନିଷଣ୍ଢେ ॥
ଏମନ୍ତେ ହରି ହରିଣ୍ୟାକ୍ଷେ । ଯୁଦ୍ଧେ ଦେବତା ଅନ୍ତରୀକ୍ଷେ ॥
ମିଳିଲେ ଦେବ ଋଷି ଆଦି । କପୋଳ ଅଞ୍ଜଳି ଆହ୍ଲାଦି ॥
ବିଧାତା ଶୂନ୍ୟପଥେ ଥାଇ । ସ୍ତୁତି କରନ୍ତି ବିଷ୍ଣୁ ଚାହିଁ ॥

## ବ୍ରହ୍ମା ଉବାଚ

ହେ ଦେବଦେବ ତୋ ଚରଣେ । ଆମ୍ଭେ ଯେ ପଶିଲୁ ଶରଣେ ॥
ଗୋରୁ ବ୍ରାହ୍ମଣ ଦେବଙ୍କର । ନିଶ୍ଚୟ ଅନିଷ୍ଟ ଅସୁର ॥
ନିର୍ଭୟେ ଗଦା ଘେନି କରେ । ଯୁଦ୍ଧବର ଅର୍ଥେ ତିନିପୁରେ ॥
ଭ୍ରମଇ ଅତି ମହାରୋଷେ । ବାରଣ ଯେହ୍ନେ ନିରଙ୍କୁଶେ ॥
ବାଳ କ୍ରୀଡ଼ାରେ ଦିତିବଳା । ତିନି ଭୁବନେ କରେ ଖେଳା ॥
ଦିନକୁ ଦିନ ଏ ବଢ଼ନ୍ତେ । କେ ସୁଖେ ଥିବ ଏ ଜଗତେ ॥
ଆମ୍ଭଙ୍କୁ ସଙ୍କଟୁ ଉଦ୍ଧର । ଏହାର ପ୍ରାଣ ବେଗେ ହର ॥
ଦେଖ ଏ ସନ୍ଧ୍ୟା ବିଭାବରୀ । ଏ ଭୂମିଲୋକ ଛନ୍ନ କରି ॥
ଆସଇ ମହାଘୋର ରୂପେ । ଭୋ ନାଥ ଦେଖ ତୋ ସମୀପେ ॥
ଆମ୍ଭରେ କ୍ଷୟ ଦିତିବଳା । ଦେଖି ତୋହର ବିଷ୍ଣୁ ଲୀଳା ॥
ମୁହୂର୍ତ୍ତ ଅଭିଜିତ ନାମ । ସର୍ବ ମଙ୍ଗଳ ସୁଖଧାମ ॥
ଏ ଶୁଭବେଳେ ଚକ୍ରଧର । ଆମ୍ଭଙ୍କୁ ସଙ୍କଟୁ ଉଦ୍ଧର ॥
ଏହା ମୃତ୍ୟୁ ଜାଣିବା ମାତ୍ରେ । ରାଗେ ମିଳିଲା ତା ଅଗ୍ରତେ ॥
ଏମନ୍ତେ ଅସୁର ବିନାଶ । ଋଷି ଦେବତାଙ୍କୁ ପ୍ରଭୁରସ ॥
ଅତି ବିକଳେ ସ୍ତୁତି କଲେ । ବରାହରୂପୀ ପାଦତଳେ ॥
ସୁଜନେ ଚିନ୍ତ ଅନୁକ୍ଷଣେ । ସେ ଯଜ୍ଞବରାହ ଚରଣେ ॥
ତୃତୀୟସ୍କନ୍ଧେ ବିଷ୍ଣୁବାଣୀ । ସନ୍ତୋଷେ ଶ୍ରୁତିପଥେ ଶୁଣି ॥
ହରି ଚରଣେ କରି ଆଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ହିରଣ୍ୟାକ୍ଷ ଯୁଦ୍ଧକରଣେ ନାମ ଅଷ୍ଟାଦଶୋଽଧ୍ୟାୟଃ ।*

## ଊନବିଂଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ଏମନ୍ତେ ବ୍ରହ୍ମାର ବଚନ । ଶୁଣି ସନ୍ତୋଷ ଭଗବାନ ॥
ଅମୃତ ପ୍ରାୟେ ଶୁଣି କର୍ଣ୍ଣେ । ଅସୁର ବଧେ ସାବଧାନେ ॥
ଦକ୍ଷିଣ ହସ୍ତେ ଗଦାଧରି । ହୁଁ କାର ନାଦେ ଦଇତ୍ୟାରି ॥
ନିର୍ଭୟ ଦେଖି ତା ନିକଟେ । ପ୍ରହାର କଲେ କର୍ଣ୍ଣତଟେ ॥
ପ୍ରହାର କଲେ କର୍ଣ୍ଣମୂଳେ । ଗଦା ପଡ଼ିଲା ହସ୍ତୁ ତଳେ ॥
ବିଷ୍ଣୁକୁ ହିରଣ୍ୟାକ୍ଷ ଚାହିଁ । ସାହାସ୍ତ୍ର ଧର୍ମେ ବିଚାରଇ ॥
ଆୟୁଧ ନାହିଁ ଏହା ହସ୍ତେ । ଏହାକୁ ମାରିବି କେମନ୍ତେ ॥
ଏମନ୍ତେ ବିଚାରେ ଅସୁର । ଶୂନ୍ୟେ ଶୁଭିଲା ହାହାକାର ॥
ତା ଶୁଣି ପ୍ରଭୁ ଗଦାଧର । ସଂଭ୍ରମେ ଟେକି ବେନିକର ॥
ଭୟ ନ କର ତୁମ୍ଭେ କେହି । ବୋଲନ୍ତି ଦେବଗଣେ ଚାହିଁ ॥
ଏମନ୍ତ କହି ଦେବରାଜ । ଊର୍ଦ୍ଧ୍ୱେ ଟେକି ଦକ୍ଷିଣ ଭୁଜ ॥
ନିଜ ଆୟୁଧେ ଦେଇ ମନ । ତକ୍ଷଣେ ଜାଣି ସୁଦର୍ଶନ ॥
ବେଗେ ଧାଇଲା ଶୂନ୍ୟବ୍ୟାପି । ତେଜେ ବିରାଜେ ଶୂନ୍ୟରୂପୀ ॥
ବିଷ୍ଣୁର କରେ ମିଳିଯାଇଁ । ଦିତିର ପୁତ୍ର ନ ଜାଣଇ ॥
ଦେବେ ଡାକନ୍ତି ଶୂନ୍ୟପଥେ । ଚକ୍ରକୁ ଚାହିଁ ବିଷ୍ଣୁହସ୍ତେ ॥
ଭୋ ନାଥ ତୋର ଦ୍ୱାରପାଳ । ଏ ଦୁଷ୍ଟ ତେଜେ ଅନର୍ଗଳ ॥
ଏହାର ପ୍ରାଣ ବେଗେ ହର । ଆମ୍ଭଙ୍କୁ ସଙ୍କଟୁ ଉଦ୍ଧର ॥
ଦେବଙ୍କ ବାକ୍ୟ କର୍ଣ୍ଣେ ଶୁଣି । କୋପେ ଧାଇଁଲା ବୀରମଣି ॥
ସମୀପେ ଦେଖି ଚକ୍ରଧର । ଓଠ କାମୁଡ଼େ ସେ ଅସୁର ॥
ନିଶ୍ୱାସ ଖରତର ବହେ । କୋପେ କମ୍ପଇ ତାରଦେହେ ॥
କରାଳ ଦିଶେ ତା ବଦନ । ନୟନୁ ପ୍ରକାଶେ ଦହନ ॥
ଦହିବା ପ୍ରାୟେ ଦଶଦିଶେ । ବେଗେ ଧାଇଁଲା ମହାରୋଷେ ॥
ଡାକଇ ପୂରିଲା ତୋ କାଳ । ମୋ ଗଦା ପ୍ରହାର ସମ୍ଭାଳ ॥
ଏମନ୍ତ ବୋଲି କୋପଭରେ । ପିଟିଲା ବିଷ୍ଣୁଙ୍କ ଉପରେ ॥
ଗୋବିନ୍ଦ ଶିରେ ଗଦାଘାତ । ପଡ଼ି ଶୁଭିଲାକ ନିର୍ଘାତ ॥
ଶବଦେ ଭୁବନ କମ୍ପିଲା । ତକ୍ଷଣେ ଭୂମିରେ ପଡ଼ିଲା ॥
ଭାଙ୍ଗିଲା ଶତ ଖଣ୍ଡ ହୋଇ । ଦେବେ ଦେଖନ୍ତେ ଶୂନ୍ୟେ ରହି ॥
ଗଦା ବିଭଙ୍ଗ କୋପଭରେ । ତୀକ୍ଷ୍ଣ ତ୍ରିଶୂଳ ଧରି କରେ ॥
ଅନଳ ପ୍ରାଏ ଶୂଳ ଜଳେ । ଦେଖି କମ୍ପିଲେ ଦିଗପାଳେ ॥
ଯଜ୍ଞ ସ୍ୱରୂପେ ବିଷ୍ଣୁ ଦେହେ । ବ୍ରାହ୍ମଣ ଅଭିଚାର ପ୍ରାଏ ॥
ପଡ଼ିବା ପ୍ରାଏ ମହାବଳୀ । ଊର୍ଦ୍ଧ୍ୱେ ଧାଇଁଲା ଶୂଳ ଟେକି ॥
ତା ଦେଖି ପ୍ରଭୁ ଜଗନ୍ନାଥେ । ସୁତୀକ୍ଷ୍ଣ ଚକ୍ର ଘେନି ହସ୍ତେ ॥
ତ୍ରିଶୂଳ ଭଗ୍ନ ଦେଖି ରୋଷେ । ବେଗେ ମିଳିଲା ବିଷ୍ଣୁପାଶେ ॥
ମୁଷ୍ଟି ଉଞ୍ଚାଇ ବଜ୍ର ପ୍ରାୟେ । ପିଟିଲା ଯଜ୍ଞରୂପୀ ଦେହେ ॥
ମାୟାବୀ ଦୁଷ୍ଟ ହିରଣ୍ୟାକ୍ଷ । ଶରୀର ଗଲା ଅନ୍ତରୀକ୍ଷ ॥
କେହି ନ ଦେଖେ କେଣେ ଗଲା । ଅଦ୍ଭୁତେ ଶବଦ ଶୁଭିଲା ॥
ତାର ପ୍ରହାରେ ପଦ୍ମମୁଖ । ସହସେ ରହିଲେ ନିଷ୍କମ୍ପ ॥
ଯୁଦ୍ଧକୁ ପଶୁ ମେଶ ଯେହ୍ନେ । ପ୍ରହାରେ ଦୁଃଖ ନାହିଁ ମନେ ॥
ପୁଣି କ୍ଷଣକେ ମହାରୋଷେ । ଅସୁର ମିଳି ବିଷ୍ଣୁପାଶେ ॥
ମାୟା ସର୍ଜ୍ଜିଲା ଅପ୍ରମିତେ । ଶ୍ରୀମାୟାଧରର ଅଗ୍ରତେ ॥
ଏ ମାୟା ଦେଖି ଦେବଜନେ । ହସ୍ତ ଆଚ୍ଛାଦିଲେ ଲୋଚନେ ॥
ଶରୀର କମ୍ପେ ମହାଭୟେ । ମଣିଲେ ପ୍ରଳୟର ପ୍ରାୟେ ॥

ପ୍ରଚଣ୍ଡ ବାତ ବହେ ଖରେ । ଶୂନ୍ୟେ ପାଷାଣ ବୃଷ୍ଟିକରେ ॥
ଭସ୍ମ ପୂରିଲା ଦଶଦିଶେ । ନିର୍ଝର ପାଷାଣ ବରଷେ ॥
ବିଷମ ଭସ୍ମ ବରଷଣେ । ଶୂନ୍ୟେ ରହିଲେ ତାରାଗଣେ ॥
ଘୋର ଗହନ ମାୟାମେଘେ । ବିଜୁଳିପୂରେ ଦଶଦିଶେ ॥
ଘୋର ଗର୍ଜନେ ଶ୍ୟାମ ମେଘେ । ରୁଧିର ବରଷନ୍ତି ବେଗେ ॥
ପୁଣି ପୁରୀଷ ମୂତ୍ର ଅସ୍ଥି । ପାଣିର ସଙ୍ଗେ ବରଷନ୍ତି ॥
ପର୍ବତ ପ୍ରାୟେ ଦେହକରି । ରାକ୍ଷସ କରେ ବୃକ୍ଷ ଧରି ॥
ଧାମଇ ଅତି ମହାରୋଷେ । କଟି ବିବସ୍ତ୍ର ମୁକ୍ତ କେଶେ ॥
ହସ୍ତେ ବିରାଜେ ତୀକ୍ଷ୍ଣ ଶୂଳ । ଶୁଭଇ ମୁଖ ରାବ ଗୋଳ ॥
ପ୍ରଳୟ କାଳ ପ୍ରାୟେ ମଣି । ଅଦ୍ଭୁତେ କମ୍ପଇ ଧରଣୀ ॥
ଶୂନ୍ୟେ ରାକ୍ଷାସ ପନ୍ତି ପନ୍ତି । ଖର ତୁରଙ୍ଗ ମତ୍ତହସ୍ତୀ ॥
କୁତ୍ସିତ ବାକ୍ୟେ ରବ ଶୁଭେ । ଶୂନ୍ୟେ କମ୍ପନ୍ତି ଦଶଦିଗେ ॥
ଏମନ୍ତ ମାୟା ଦେଖି ହରି । ନିଶ୍ଚୟେ ଜାଣିଲେ ଅସୁରୀ ॥
ମାୟାର ଦର୍ପ ବିନାଶନେ । କୋପ ବସିଲା ବିଷ୍ଣୁମନେ ॥
ସୁଦରଶନ ଧରି କରେ । ହରି ଧାଇଁଲେ ଧାଡିକାରେ ॥
ତକ୍ଷଣେ କଶ୍ୟପ ଭୁବନେ । ଭୟ ପଶିଲା ଦିତି ମନେ ॥
ହୃଦୟ କମ୍ପଇ କାତରେ । ବାକ୍ୟ ନ ସ୍ଫୁରେ କମ୍ପଜ୍ୱରେ ॥
ସ୍ୱାମୀର ବଚନ ସୁମରେ । ସ୍ତନୁ ରୁଧିର ଧାର ଝରେ ॥
ଚକ୍ରର ତେଜେ ମାୟା ଗଲା । ରବି କିରଣ ପ୍ରକାଶିଲା ॥
ପୁଣି ଅସୁର ମହାକୋପେ । ମିଳିଲା ବିଷ୍ଣୁର ସମୀପେ ॥
ରୋଷେ ଅରୁଣ ଦିଶେ ଦୃଷ୍ଟି । ଊର୍ଦ୍ଧ୍ୱେ ଟୋକିଲା ବେନିମୁଷ୍ଟି ॥
ଗୋବିନ୍ଦ ପାଦେ ପ୍ରହାରିଲା । ଶବଦେ ଭୁବନ କମ୍ପିଲା ॥
ମୁଷ୍ଟି ବାଜିଲା ବଜ୍ର ପ୍ରାୟେ । ଦେଖି କୋପିଲା ଦେବରାୟେ ॥
କର ପ୍ରସାରି କର୍ଣ୍ଣମୂଳେ । ଗୋବିନ୍ଦ ପ୍ରହାରିଲେ ବଳେ ॥
ପୂର୍ବେ ଯେସନେ ସୁରରାୟେ । ବିଶ୍ୱକର୍ମାର ପୁତ୍ର ଦେହେ ॥
ପ୍ରହାର କରି କର୍ଣ୍ଣମୂଳେ । ପ୍ରାଣ ହାରିଲେ ତାର ବଳେ ॥
ଏମନ୍ତ ବିଷ୍ଣୁର ପ୍ରହାରେ । ପ୍ରାଣ ଛାଡ଼ିଲା କଳେବରେ ॥
ମୁଷ୍ଟି ପ୍ରହାରେ ମୁଣ୍ଡଫାଟି । ପଡ଼ିଲା ମହୀତଳେ ଲୋଟି ॥
ଦନ୍ତ କାମୁଡ଼ି ହୃଦେ ଛନ୍ଦେ । ପ୍ରାଣ ଛାଡ଼ିଲା ଘୋରନାଦେ ॥
ଅସୁର ମୃତ୍ୟୁ ଦେବେ ଦେଖି । ମିଳିଲେ ଗଗନ ଉପେକ୍ଷି ॥
ଦେଖିଲେ ଅସୁର ବଦନ । ଭ୍ରୂକୁଟି କୁଟିଳ ନୟନ ॥
ବିଧାତା ଆଦି ସୁରବୃନ୍ଦ । କରନ୍ତି ଜୟ ଜୟ ନାଦ ॥
କହନ୍ତି ଧନ୍ୟ ଏ ଅସୁର । ବିଷ୍ଣୁର ହସ୍ତେ ଗଲା ମାର ॥
ଏମନ୍ତେ କେ ପାଇ ମରଣ । ମାୟାରେ କଲା ଘୋର ରଣ ॥
ଧନ୍ୟ ଜୀବନଟି ଏହାର । ବ୍ରାହ୍ମଣ ଶାପୁଁ ଗଲା ପାର ॥
ପୁଣି ହୋଇବ ଜନ୍ମ ଦୁଇ । ଏମନ୍ତ ବୋଲି ବିଷ୍ଣୁ ଚାହିଁ ॥
ବ୍ରହ୍ମାଦି ଦେବେ କରଯୋଡ଼ି । ସ୍ତୁତି କରନ୍ତି ପାଦେ ପଡ଼ି ॥

## ଦେବଗଣ ଉବାଚ

ନମସ୍ତେ ଯଜ୍ଞ ଶୀଳଜନ୍ତୁ । ତୋ ଅବତାର ଜନ ହେତୁ ॥
ଆମ୍ଭର ପାଇଁ ଭଗବାନ । ଏ ଦୁଷ୍ଟ କଲୁ ତୁ ନିଧନ ॥
ତୋର ପ୍ରସନ୍ନେ ଜଗନ୍ନାଥ । ଆମ୍ଭେ ଯେ ହୋଇଲୁ ନିଶ୍ଚିତ ॥
ତୋର ସଂସାର ପାଳ ଏବେ । ଏମନ୍ତେ କହି ସର୍ବ ଦେବେ ॥
ଆନନ୍ଦେ ଗଲେ ନିଜ ପୁର । ସୁମନେ ଶୁଣ ହେ ବିଦୁର ॥

## ମୈତ୍ରେୟ ଉବାଚ

ଏମନ୍ତେ ହିରଣ୍ୟାକ୍ଷ ମାରି । ଯଜ୍ଞ ବରାହ ରୂପ ଧରି ॥
ନିଜ ଭୁବନେ ହରି ଗଲେ । ଉତ୍ସବ ପରମ ମଙ୍ଗଳେ ॥
ବ୍ରହ୍ମାଦି ଦେବେ କଲେ ସ୍ତୁତି । ନିଜ ଭୁବନେ ଲକ୍ଷ୍ମୀପତି ॥
ଭକ୍ତ ଉଦ୍ଧାରି ମହାରୋଷେ । ମିଳିଲେ କମଳିଣୀ ପାଶେ ॥
ତୁ ଯାହା ପଚାରିଲୁ ମୋତେ । ପ୍ରସନ୍ନେ କହିଲି ମୁଁ ତୋତେ ॥
ବିଷ୍ଣୁର ଲୀଳା ଅବତାର । ହିରଣ୍ୟାକ୍ଷ ଶାପ୍ୟ ଉଦ୍ଧାର ॥

## ଶ୍ରୀ ସୂତ ଉବାଚ

ଏମନ୍ତେ ମୈତ୍ରେୟଙ୍କ ବାଣୀ । ବିଦୁର ସାବଧାନେ ଶୁଣି ॥
ପରମାନନ୍ଦ ଖେଳାଲୀଳା । କାନନେ ପରାଶର ବଳା ॥
ଅନ୍ୟ ଯେ ପୁଣ୍ୟଶ୍ଳୋକ ଜନେ । ନାନା ପ୍ରକାରେ ଏ ଭବନେ ॥
ତାହାଙ୍କ ଯଶ କର୍ଣ୍ଣେ ଶୁଣି । ଭବସାଗରୁ ତରେ ପ୍ରାଣୀ ॥
କୃଷ୍ଣର ଗୁଣ ଅବତାର । କର୍ଣ୍ଣେ ଅମୃତ ରସସାର ॥
ଶୁଣିବା ଜନେ କର୍ଣ୍ଣଦ୍ୱାରେ । କିମ୍ପା ନ ତରିବେ ସଂସାରେ ॥
ବନସ୍ତ ଗଜ ଜଳେ ପଶି । କର ପଖାଳନ୍ତେଣ ଆସି ॥
ଜଳେ ଚରନ୍ତେ ପଦ୍ମବଣେ । କୁମ୍ଭୀର ଗ୍ରାସିଲା ତକ୍ଷଣେ ॥
ଚରଣ ନ ପାରିଲା ଆଣି । ଅନେକ ହସ୍ତୀ ତାକୁ ଟାଣି ॥
ନ ପାରି ହୋଇଲା ବିଷାଦ । ଚିତ୍ତେ ଚିନ୍ତିଲା ବିଷ୍ଣୁପାଦ ॥
ତକ୍ଷଣେ ପ୍ରଭୁ ଚକ୍ରପାଣି । ଗଜ ରଖିଲେ ଗ୍ରାହ ହାଣି ॥
ତାର ଚରଣେ ମୁନିବୃନ୍ଦେ । ନାନା ପ୍ରକାରେ ଯୋଗସାଧେ ॥
ଅଭୟ ପାଦେ ସେ ମିଶନ୍ତି । ଯେ ଅନ୍ୟ ନାନାଭାବେ ଚିନ୍ତି ॥
ଏବେ ହୋ ଶୁଣ ପରୀକ୍ଷିତ । ଅମୀୟ ରସ ଭାଗବତ ॥
ଶୂକର ରୂପେ ନାରାୟଣ । କଲେ ପାଳନ ସଂହାରଣ ॥
ଧରଣୀ ଉଦ୍ଧରିଲେ ଦନ୍ତେ । କ୍ରୀଡ଼ା ବେହାର ଏ ଜଗତେ ॥
ଏ କଥା ଶ୍ରବଣ କାର୍ତନେ । କ୍ଷଣେ ବଞ୍ଚନ୍ତି ଯେଉଁଜନେ ॥

ବ୍ରାହ୍ମଣ ବଧ କରିଥିଲେ | ଦୋଷ ନ ଲାଗେ ତାକୁ ଭଲେ
ଏ ପୁଣ୍ୟ ଯଶ ହରି କଥା | ଧନ ଆୟୁଷ ସୁଖଦାତା ||
ପ୍ରାଣ ଇନ୍ଦ୍ରିୟ ସୁଖଭାବେ | ଦୁର୍ଗତି ଦୁଷ୍ଟବୁଦ୍ଧି ଭାବେ ||
ସୁଜନ ଜନ ସଙ୍ଗେ ମିଶେ | ଅନ୍ତେ ଗୋବିନ୍ଦ ଦେହେ ପଶେ ||
ଏ କଥା ଶୁଣେ ସାଧୁଜନେ | ବଞ୍ଛିଲେ ଶ୍ରବଣ କୀର୍ତ୍ତନେ ||
ଯେତେ କହିଲେ ହରି ବାଣୀ | ଶୁଣି ସଂସାରୁ ତରେ ପ୍ରାଣୀ ||
ତୃତୀୟ ସ୍କନ୍ଧେ ଭାଗବତ | ବିଦୁର ମୈତ୍ରେୟ ଅଗ୍ରତ ||
ଭାଷା ପ୍ରବନ୍ଧେ ଭାଗବତ | କହିଲେ ବିପ୍ର ଜଗନ୍ନାଥ ||

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ ହରଣ୍ୟାକ୍ଷ ବଧ କରଣେ ନାମ ଉନବିଂଶୋଽଧ୍ୟାୟଃ ।*

## ବିଂଶ ଅଧ୍ୟାୟ

### ଶୌନକ ଉବାଚ

ବରାହ ରୂପୀ ଭାବଗ୍ରାହୀ | ଜଳେ ଧରଣୀ ଗଲେ ଥୋଇ ||
ସେ ସ୍ୱୟଂଭୁବ ମନୁବଳା | ଧରଣୀ ପୃଷ୍ଠେ ଯେବା କଲା ||
ନାନା ସ୍ଥାବର ଜନ୍ତୁ ଯେତେ | ତାହାକୁ ସାଧିଲା କେମନ୍ତେ ||
ବିଦୁର ଭ୍ରମି ତୀର୍ଥମାର୍ଗେ | ଆନନ୍ଦେ ମଇତ୍ରେୟ ଆଗେ ||
ତୀର୍ଥ ସାଧନା ପୁଣ୍ୟବଳେ | ଏମନ୍ତେ ବିଷ୍ଣୁଭକ୍ତି ଫଳେ ||
କୃଷ୍ଣ ଚରଣେ ଆଶ୍ରେକରି | ପଶିଲା ହସ୍ତିନା ନଗରୀ ||
ତା ଜ୍ୟେଷ୍ଠଭ୍ରାତା ଧୃତରାଷ୍ଟ୍ର | ତାହାର ପୁତ୍ର ବଡ଼ ଦୁଷ୍ଟ ||
କର୍ଣ୍ଣ ଶକୁନି ଦୁଃଶାସନ | ଏହାଙ୍କୁ ବୋଲେ ଦୁର୍ଯ୍ୟୋଧନ ||
ପାଣ୍ଡବ ହିତେ ସେ ବିଶ୍ୱାସେ | ବର୍ତ୍ତଇ ବୋଲି ମହାରୋଷେ ||
ରାଜ୍ୟୁ ବାହାର କରିଦେଲା | ସେ ପୁଣି ବ୍ୟାସଙ୍କର ବଳା ||
ଗୋବିନ୍ଦ ଭକ୍ତି ସେ ନିଷ୍ଠଳେ | ବର୍ତ୍ତଇ ଭକ୍ତଜନ ମେଳେ ||
ବନ ଗହନ ତୀର୍ଥ କୂଳେ | ଭଜଇ ଆତ୍ମାର ନିଷ୍ଠଳେ ||
ମୈତ୍ରେୟେ ବିଦୁର ପୁଚ୍ଛିଲା | କହିବା ତୋତେ ବିଷ୍ଣୁଲୀଳା ||
ସେ ବିଷ୍ଣୁ କଥା ପରାଶର | ଶ୍ରୁତି ଗୋଚର ସୁଧାଧାର ||
ଯେ ପ୍ରାଣୀ ଗଙ୍ଗା ସ୍ନାନ କରେ | ସେ ତିନିପୁରୁଷ ଉଦ୍ଧରେ ||
ବିଷ୍ଣୁର କଥା ସେହିମତ | ପାପ ନ ରହେ ଅନ୍ତର୍ଗତ ||
ବିଷ୍ଣୁ ଚେଷ୍ଟିତ ଭାବ ଚିତ୍ତେ | ଭୋ ମୁନି କହ ମୋ ଅଗ୍ରତେ ||
ଯାହାର ଜିହ୍ୱା ବିଷ୍ଣୁରସେ | ପଶଇ କର୍ଣ୍ଣଦ୍ୱାର ପାଶେ ||
ସେ କାହିଁ ଛାଡ଼େ କୃଷ୍ଣକଥା | ଯେଣେ ହରଇ ଭବବ୍ୟଥା ||
ବିଷ୍ଣୁ ଶୂକର ରୂପ ଧରି | ଧରଣୀ ପାତାଳୁ ଉଦ୍ଧରି ||
ଲୀଳା ବିହାରେ ହିରଣ୍ୟାକ୍ଷ | ଗୋବିନ୍ଦ ମାଇଲେ ପ୍ରତ୍ୟକ୍ଷ ||
ସେ କଥା ଶୁଣି ତୋଷଚିତ୍ତେ | ଅଶ୍ରୁ ଲୋଚନେ ଲୋମଗାତ୍ରେ ||
ମୈତ୍ରେୟ ପାଦେ ଦେଇ ଶିର | ଆନନ୍ଦେ ପୁଚ୍ଛଇ ବିଦୁର ||

### ବିଦୁର ଉବାଚ

ବ୍ରହ୍ମା ନାଭିରୁ ଅବତାର | ଯେ ପ୍ରଜାପତିଙ୍କ ଈଶ୍ୱର ||
ମତେ ବିଦୁର ପ୍ରଶ୍ନକଲା | କହିବା ମୋତେ ବିଷ୍ଣୁଲୀଳା ||
ପ୍ରଜାପତି କି ଜାତ କଲା | ସୃଷ୍ଟି ସିର୍ଜନେ ଆଜ୍ଞା ଦେଲା ||
ସନକ ଅଦି ସପ୍ତତନୁ | ଅପରେ ସ୍ୱାୟମ୍ଭୁବ ମନୁ ||
ଶ୍ରମେ ସାଧିଲେ ଯୋଗ ମତେ | ସମାଧି ନିଜ କର୍ମତନ୍ତେ ||
କିବା ସକଳେ ଏକମେଳେ | ସୃଷ୍ଟି ସର୍ଜିଲେ ଅନ୍ତରାଳେ ||
କିବା ଧରଣୀ ସ୍ଥଳେ ଥାପି | ପ୍ରଜାସର୍ଜନେ ବିଶ୍ୱରୂପୀ ||

### ମୈତ୍ରେୟ ଉବାଚ

ଶୁଣ ବିଦୁର ଏକ ଚିତ୍ତେ | ଯେ ସୃଷ୍ଟି ପଦ୍ମକଳ୍ପ ଅନ୍ତେ ||
ଯେ କାଳରୂପୀ ବିଶ୍ୱନାଥ | ତା ମାୟା ବଳେ ଏ ଜଗତ ||
ସେ ମାୟା ବଳେ କ୍ଷୋଭପାଇ | ମହତ ରୂପ ସେ ଧରଇ ||
ରଜ ପ୍ରଧାନ ତିନିଗୁଣେ | କଳ୍ପିଲା ଦଇବ ପ୍ରମାଣେ ||
ସେ ଭୂତ ଆଦି ସେ ମହତ | ଅଙ୍ଗେ ସର୍ଜିଲା ପଞ୍ଚଭୂତ ||
ଶବଦ ଆଦି ପଞ୍ଚଗୁଣ | ମିଳିଲେ ସୃଷ୍ଟିର କାରଣ ||
ସେ ପୁଣି ହୋଇ ଏକଗୁଣ୍ଠ | କଳ୍ପିଲେ ସୁବର୍ଣ୍ଣର ଅଣ୍ଡ ||
ସେ ଅଣ୍ଡକୋଷ ମହାଜଳେ | ପଡ଼ି ଭାସଇ କାଳବଳେ ||
ସେ ପୁଣି ସହସ୍ର ବରଷେ | ଅଗାଧ ମହାଜଳେ ଭାସେ ||
ସେ ଅଣ୍ଡକୋଷ ମଧ୍ୟେ ହରି | ଶୁଏ ଅନନ୍ତ ଶଯ୍ୟା କରି ||
ସେ ନାଭିପଦ୍ମ ପଦ୍ମକୋଷ | ସଲିଳେ ହୁଅଇ ପ୍ରକାଶ ||
ସେ ପଦ୍ମ ନିଜ ତେଜପୁଞ୍ଜେ | ସହସ୍ର ରବି ରଶ୍ମି ଗଞ୍ଜେ ||
ସେ ପଦ୍ମ ମଧ୍ୟେ ସର୍ବଜନ୍ତୁ | ପ୍ରକାଶେ ନିଜ କର୍ମ ହେତୁ ||
ବିରାଜ ରୂପ ତାର ମଧ୍ୟେ | ଜନ୍ମିଲା ଜନ୍ତୁ କର୍ମ ସାଧେ ||
ସେ ପୁଣି ବିଷ୍ଣୁ ଉପଦେଶେ | ସୃଷ୍ଟି ସର୍ଜିଲା ଅଣ୍ଡକୋଷେ ||
କାଳର ବଳେ କୋପମନେ | ନିଃଶ୍ୱାସ ଛାଡ଼େ ଘନ ଘନେ ||
ତାର ନିଃଶ୍ୱାସ ତତକ୍ଷଣେ | ସଂସାର ହିତେ ପଞ୍ଚଗୁଣେ ||
ତାମିସ୍ରେ ଅଂଧତମ ବେନି | ତମ ମହତ୍ତ୍ୱ ମୋହବେନି ||
ଏ ପଞ୍ଚକର୍ମ ଏକମେଳେ | ଜନ୍ମିଲେ ଅନ୍ଧକାର ବଳେ ||
ଏ ସୃଷ୍ଟି ଦେଖି ତମୋମୟ | ଧାତା ଛାଡ଼ିଲା ନିଜଦେହ ||
ସେ ପିଣ୍ଡ ଦେଖି ତମୋଗୁଣେ | ବେଗେ ଧାଇଁଲେ ତତକ୍ଷଣେ ||

ସେ ଦେହ ମଧ୍ୟେ ସନ୍ଧ୍ୟା ମିଶି । ତମେ ରଜନୀ ପ୍ରାୟ ଦିଶି ॥
କ୍ଷୁଧା ତୃଷାର ଗାତ୍ର ବେଳେ । ସେ ସର୍ବେ ମିଳି ଏକମେଳେ ॥
ଥୋକେ ବୋଲନ୍ତି ରଖ ରଖ । ଥୋକେ ବୋଲନ୍ତି ଭକ୍ଷ ଭକ୍ଷ ॥
ତକ୍ଷଣେ ବ୍ରହ୍ମା ଶୂନ୍ୟେ ରହି । ବୋଲେ ତାହାଙ୍କ ମୁଖ ଚାହିଁ ॥
ଏ ପିଣ୍ଡ ରକ୍ଷ ହୋ ନ ଭକ୍ଷ । ଏଣୁ ହୋଇବ ଯକ୍ଷ ରକ୍ଷ ॥
ତୁମ୍ଭେ ସେ ଯକ୍ଷ ରକ୍ଷଗଣ । ମୋର ବଚନ ଏବେ ଶୁଣ ॥
ତୁମ୍ଭେ ମୋହର ପ୍ରଜା ହୁଅ । ଏମନ୍ତ କହି ପିତାମହ ॥
ସର୍ଜିଲା ଅପଛରା ଗଣ । ଦେବଙ୍କ ଭୋଗ ଯେ ପ୍ରମାଣ ॥
ତାହାକୁ ଦେଖି ତତକ୍ଷଣେ । ଧାଇଁଲେ ଯକ୍ଷ ରକ୍ଷ ଗଣେ ॥
ମୈଥୁନ ଆଶେ ଲୋଭେଧାଇଁ । ବେଗେ ବେଢ଼ିଲେ ଲୋଭବହି ॥
ନିର୍ଲ୍ଲଜ ପଣ ତାହାଙ୍କର । ଦେଖି ହସିଲେ ବେଦବର ॥
ବ୍ରହ୍ମାର ହାସ୍ୟ ଦେଖି କୋପେ । ମିଳିଲେ ବ୍ରହ୍ମାର ସମୀପେ ॥
ଚାହାନ୍ତି କୁପିତ ବଦନେ । ଭୟ ପଶିଲା ବ୍ରହ୍ମା ମନେ ॥
ଶୂନ୍ୟେ ଗୋବିନ୍ଦ ପାଦଧ୍ୟାୟି । ବୋଲଇ ଶିରେ କର ଦେଇ ॥
ପ୍ରାଣୀଙ୍କ ଅନୁଗ୍ରହ ଅର୍ଥେ । ତୁ ନାଥ ଆଜ୍ଞା ଦେଲୁ ମୋତେ ॥
ସୃଷ୍ଟି କରଇ ଯୋଗବଳେ । ତୋ ଅନୁରୂପ ଏ ଶୟଳେ ॥
ତୁ ଏବେ ରଖ ଚକ୍ରଧର । ଏ ଗଣ ମହା ଭୟଙ୍କର ॥
ଏ ଯେବେ ଭକ୍ଷିବେଟି ମୋତେ । କେମନ୍ତେ ସର୍ଜିବି ଜଗତେ ॥
ବ୍ରହ୍ମା ବଚନ କର୍ଣ୍ଣେ ଶୁଣି । ବୋଇଲେ ପ୍ରଭୁ ଚକ୍ରପାଣି ॥
ଏ ଗଣ ମହାଭୟଙ୍କର । ବେଗେ ତୁ ଛାଡ଼ ଏ ଶରୀର ॥
ଶୁଣି ଗୋବିନ୍ଦର ବଚନ । ତକ୍ଷଣେ ଛାଡ଼ିଲା ଜୀବନ ॥
ସେ ଦେହ ସନ୍ଧ୍ୟାରୂପ ହୋଇ । ପୂର୍ବେ ରାକ୍ଷସ ମନମୋହି ॥
ଯେ ଅପସରା ଗଣ ଥିଲେ । ତା ରୂପ ଦେଖି ମୋହଗଲେ ॥
ନାନା ଅଳଙ୍କାର ସାଜେଣି । ଚରଣେ ନୂପୁର ବାଜେଣି ॥
ବସ୍ତ୍ରେ ବେଷ୍ଟିତ ରୂପ ଛନ୍ନ । ମୋଦେ ବିଗଳିତ ନୟନ ॥
ହୃଦରେ ତୁଙ୍ଗ ପୟୋଧର । କଟୀ ମେଖଳା ରତ୍ନସାର ॥
ସୁନ୍ଦର ନାସିକା ବିରାଜେ । ଦନ୍ତ ଡାଳିମ୍ବ ବୀଜ ଗଞ୍ଜେ ॥
ସୁନ୍ଦର ହାସ ମନୋହର । ସୁବିମ୍ବ ସୁନ୍ଦର ଅଧର ॥
ବସ୍ତ୍ର ଆଚ୍ଛାଦି କଳେବରେ । ପଥେ ରହିଲା ଲାଜଭରେ ॥
ପଥରେ ଦେଖି ତା ବଦନ । ସର୍ବେ ହୋଇଲେ ହତଜ୍ଞାନ ॥
କହନ୍ତି ଏକୁ ଏକ ଚାହିଁ । ଏମନ୍ତେ ଦେଖିଲାତ ନାହିଁ ॥
ନବୀନ ଶରୀର ଏହାର । ଲାବଣ୍ୟ ରୂପ ମନୋହର ॥
ଏ ଆମ୍ଭ ମଧ୍ୟେ ମନୋରମେ । ଅକର୍ମ କଳା ପ୍ରାୟେ ଭ୍ରମେ ॥
ଏମନ୍ତେ ସନ୍ଧ୍ୟାରୂପ ଦେଖି । ପ୍ରମଦା ପ୍ରାୟ ଉପଲକ୍ଷି ॥
ନୟନ ଦେଇ ତା ବଦନେ । ଭାବେ ବୁଜନ୍ତି ଅନ୍ୟୋଅନ୍ୟେ ॥
ହେ ରମ୍ଭା ଉର୍ବଶୀ କଲ୍ୟାଣୀ । ପ୍ରମଦା କୁଳ ଶିରୋମଣି ॥
କି ପ୍ରୟୋଜନେ ତୋ ଗମନ । କହ ତୁ କିସ ତୋର ନାମ ॥
ତୋ ରୂପ ଗୁଣେ ହେଉ ଛନ୍ନ । ଆମ୍ଭର ସ୍ଖଳିତ ଲୋଚନ ॥
ତୋହର ରୂପ ଗୁଣ ରାଶି । ଆମ୍ଭର ପ୍ରଭା ଏ ବିଧ୍ୱଂସି ॥
କାହାର ପତ୍ନୀ ତୁ ବୋଲାଉ । କହ ତୁ ଉପୁଜିଲୁ କାହୁଁ ॥
ଆମ୍ଭର ପୂର୍ବ ଭାଗ୍ୟବଳେ । ମିଳିଲୁ ଆମ୍ଭର ଛାମୁରେ ॥
କୌତୁକ କ୍ରୀଡ଼ା ତୋ ବଦନ । ରୂପେ ହରିଲୁ ଆମ୍ଭ ମନ ॥
ତୋର ଚରଣ ପଦ୍ମ ଯୁଗେ । ଗମନ ମନ୍ଥର ତରଙ୍ଗେ ॥
ହସ୍ତ କମଳ ତୋର ସାଜେ । ତୋ ମଝା ସିଂହ ମଝା ଗଞ୍ଜେ ॥
ଭାବ ଗମ୍ଭୀର ବଶ ଚିତ୍ତ । ଦେଖିବ ବିଧାତା ହରପ୍ରୀତ ॥
ଯେ ପୁଣି ସ୍ତନଭାର ଛିନ୍ନେ । ଭାଜିବା ପ୍ରାୟ ଅନୁମାନେ ॥
ଏମନ୍ତେ ସନ୍ଧ୍ୟା ରୂପ ଚାହିଁ । ଯକ୍ଷ ରାକ୍ଷସ ଲୋଭ ବହି ॥
ସନ୍ଧ୍ୟାକୁ ଧରି ବାହୁବଳେ । ମୋହେ ଭଜିଲେ କାମବଳେ ॥
ଭାବ ଗଭୀର ବାକ୍ୟ ଚିତ୍ତେ । ଦେଖି ବିଧାତା ହରଷିତେ ॥
ତକ୍ଷଣେ ନିଜ କାନ୍ତି ତେଜେ । ବ୍ରହ୍ମାର ଶରୀରୁ ବିରାଜେ ॥
ସ୍ୱଭାବେ ବ୍ରହ୍ମା ସେ ଆନନ୍ଦ । ଗନ୍ଧର୍ବ ଅପସରା ବୃନ୍ଦ ॥
ବ୍ରହ୍ମାର ଶରୀରୁ ବାହାର । ଯେ ରୂପେ ମୋହେ ସୁରନର ॥
ଗନ୍ଧର୍ବ ବିଶ୍ୱାବସୁ ଆଦି । ସୁନ୍ଦର ରୂପେ ସେ ପ୍ରସିଦ୍ଧି ॥
ଆବୋରି ଅପସରା ଗଣେ । ସୁଖେ ରହିଲେ ଜଣେ ଜଣେ ॥
ପ୍ରଥମେ ଆତ୍ମାତନ୍ତେ ଭରି । ଭୂତ ପିଶାଚଗଣ କରି ॥
ପଛେ ତାହାଙ୍କ ରୂପ ଦେଖି । ଭୟେ ବୁଜିଲେ ବେନି ଆଖି ॥
ସେ ମୁକ୍ତକେଶ ଦିଗମ୍ବର । ଦେଖି କମ୍ପିଲେ ସୁରନର ॥
ଭୟ ଅଳସ ତାର ମୁଖେ । କ୍ଷଣେ ଶୋଇଲା ପ୍ରାଣସୁଖେ ॥
ସେ ଦେବ ନିଦ୍ରାବଶ ହୋଇ । ପୁଣି ଛାଡ଼ିଲା ନିଜଦେହୀ ॥
ପରୋକ୍ଷେ ରହି ରଜଗୁଣ । ସର୍ଜ୍ଜିଲା ସିଦ୍ଧ ପିତୃଗଣ ॥
ସେ ସିଦ୍ଧ ବିଦ୍ୟାଧରଗଣେ । ଜାତ ହୋଇଲେ ତତକ୍ଷଣେ ॥
ସ୍ୱଭାବେ ତେଜ ଅନର୍ଗଳା । ତାହାକୁ ଅନ୍ତର୍ଦ୍ଧାନ ଦେଲା ॥
କିନ୍ନର କିଂପୁରୁଷ ଗତି । ପୁଣି ସର୍ଜିଲା ପଜାପତି ॥
ବିଧାତା ବର୍ଦ୍ଧି ରୂପବଳେ । ସେ ପୁଣି ସୁରଲୋକ ମେଳେ ॥
ମିଥୁନ ଭାବେ ବୀଣା ବାଇ । ଦେବଙ୍କ ତୋଷେ ଗୀତ ଗାଇ ॥
ତାହାକୁ ସିର୍ଜି ଦେବବର । ତକ୍ଷଣେ ଛାଡ଼ିଲା ଶରୀର ॥
ଦେହ ଅନ୍ତରେ ଶୂନ୍ୟେରହି । ଶରୀର ଦେଖି ବିଚାରଇ ॥
ଏମନ୍ତ ଭାଳୁ ବେଦପ୍ରତି । ତହୁଁ ଜନ୍ମିଲେ ସର୍ପଜାତି ॥

ତକ୍ଷଣେ ତମୋଗୁଣେ ଜାତ । ଯାହାର ତେଜେ ବଳବନ୍ତ ॥
ତାହାକୁ ଚାହିଁ ପ୍ରଜାନାଥ । ସନ୍ତୋଷେ ହୋଇ କୃତକୃତ୍ୟ ॥
ପୁଣି ପଚ୍ଛିଲା ମନୋରଥେ । ଆବର ସୃଷ୍ଟିଭାବ ଯେତେ ॥
ସ୍ତିରୀ ପୁରୁଷେ କଲେ ମନେ । ଯେ ସୃଷ୍ଟି ଉପୁଜେ ମିଥୁନେ ॥
ଏମନ୍ତେ ବ୍ରହ୍ମା ସୃଷ୍ଟି ଚାହିଁ । ବିବୁଧେ ଯାର ଯଶ ଗାଇ ॥
ବୋଲନ୍ତି ଧନ୍ୟ ବେଦପତି । ସୃଷ୍ଟି ସଞ୍ଚରେ ଦୃଢ଼ମତି ॥
ଅନେକ ତପ ଯହୁଁ କଲା । ଜ୍ଞାନେ ଗୋବିନ୍ଦ ଆଜ୍ଞାଦେଲା ॥
ନିଜ ସାଧନ ତପଫଳେ । ଏ ସୃଷ୍ଟି କଲେ ବୁଦ୍ଧି ବଳେ ॥
ଏମନ୍ତେ ସୃଷ୍ଟିର କାରଣ । ବିଧାତା ରୂପେ ନାରାୟଣ ॥
କହଇ ପୁଣ ପୁଣ ଭାବେ । ତାର ଭକ୍ତ ଜନର ଲାଭେ ॥
ଏମନ୍ତେ ଭାଗବତ ବାଣୀ । ମୈତ୍ରେୟ ମୁନି ଆଗେ ଭଣି ॥
ବନେ ପିପ୍ପଳ ବୃକ୍ଷମୂଳେ । ମନୁଷ୍ୟ ରୂପ ତ୍ୟାଗ କଲେ ॥
ସେ କଥା ବ୍ୟାସ ତାଙ୍କ ଆଗେ । ମୁନି କହିଲେ ପ୍ରିୟଭାବେ ॥
ହରି ଚରିତ ଭାଗବତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବ୍ରହ୍ମା ସୃଷ୍ଟି ସର୍ଜନେ ନାମ ବିଂଶୋଽଧ୍ୟାୟଃ ।*

## ଏକବିଂଶ ଅଧ୍ୟାୟ

### ବିଦୁର ଉବାଚ

ବ୍ରହ୍ମାର ତନୁ ଯାର ତନୁ । ଯେ ପୂର୍ବେ ସ୍ୱୟଂଭୁବ ମନୁ ॥
ତାହାର ବଂଶ ଏ ଜଗତେ । ଏ ରୂପେ ପ୍ରବର୍ତ୍ତିଲା କେତେ ॥
ମିଥୁନଭାବେ କଲା ପୂଜା । ସେ ପୁଣି ମନୁବଂଶ ରାଜା ॥
ତେଜେ ପ୍ରଚଣ୍ଡ ସେ ବିରାଜେ । ଏ ସପ୍ତଦ୍ୱୀପ ମହୀଭୁଞ୍ଜେ ॥
ତାର ଦୁହିତା ଅନୁପମ । ତାହାର ଦେବହୂତି ନାମ ॥
କର୍ଦ୍ଦମ ତାର ନିଜପତି । ତାର ଭୁବନେ ଦେବହୂତି ॥
ସେବା କରଇ ଅନୁବ୍ରତେ । ଯେ ଧର୍ମ ପତିବ୍ରତା ମତେ ॥
ସ୍ୱାମୀ ସ୍ୱଭାବେ ଷଡ଼ଭାଗେ । ମୈଥୁନ ଭାବେ ରତି ରଂଗେ ॥
ତାହାର ଗର୍ଭେ ପୁତ୍ର ଯେତେ । ଜନ୍ମିଲେ କହ ମୋ ଅଗ୍ରତେ ॥
ସେ ମହାଯତି ବ୍ରହ୍ମମୁନି । ସର୍ବ ଅଧିକ ଯେତେ ଜ୍ଞାନୀ ॥
ସେ ବ୍ରହ୍ମସୁତ ଋଷିସାର । ତପ ସାଧନେ ନିର୍ବିକାର ॥
ମନୁ ଦୋହିତା ପତ୍ନୀ ପାଇ । କେବେହେଁ ସଙ୍ଗ ନ ଛାଡ଼ଇ ॥

### ମୈତ୍ରେୟ ଉବାଚ

କର୍ଦ୍ଦମ ରାଜ ବେଦବର । ବୋଇଲେ ପ୍ରଜା ସୃଷ୍ଟିକର ॥
ବ୍ରହ୍ମାର ଆଜ୍ଞା ପାଇ ଶିରେ । ମିଳିଲା ସରସ୍ୱତୀ ତୀରେ ॥
ଘୋର କଠୋର ତପକଲା । ଶୁଣ ହୋ ଯେତେ ଦିନଗଲା ॥
ଦେବଙ୍କ ଅୟୁତ ବରଷେ । ବସିଲା ଆତ୍ମାର ବିଶ୍ୱାସେ ॥
ତପ ସମାଧି କ୍ରିୟା ଯୋଗେ । ନିଷ୍କଳ ଭକ୍ତି ଅନୁରାଗେ ॥
ତାର ସମୀପେ ହୃଷୀକେଶ । ତକ୍ଷଣେ ହୋଇଲେ ପ୍ରକାଶ ॥
ଶୁକ୍ଳ ଶରୀର ଶୂନ୍ୟମାର୍ଗେ । ଯେ ରୂପ ବହେ ସତ୍ୟଯୁଗେ ॥
ଶବଦ ବ୍ରହ୍ମ ରୂପ ଧରି । ସତେ ଆଦିତ୍ୟ ଯେହ୍ନେ ସରି ॥
ଲୋଚନ ପୁଣ୍ଡରୀକ ଦଳ । ସୁନ୍ଦର ଅଳକା କପୋଳ ॥
ବିରାଜ ବସ୍ତ୍ର ପରିଧାନ । ସ୍ନିଗ୍ଧ ମୁଖ ଯେ ଶୋଭାବନ ॥
କିରୀଟୀ କୁଣ୍ଡଳ ବିରାଜେ । ଶଙ୍ଖ କମଳ ଗଦା ସାଜେ ॥
ଚକ୍ର ବିରାଜେ ଦକ୍ଷକରେ । ତେଜେଣ ଦଶଦିଗ ପୂରେ ॥
ସ୍ମିତ ବାରିତ ତନୁ ବେନି । ବିରାଜେ ନିଜ ତେଜ ଘେନି ॥
ସୁନ୍ଦର ହାସ ମନ ମୋହେ । କୋଟି କନ୍ଦର୍ପ ରୂପ ଶୋହେ ॥
ଗରୁଡ଼ କନ୍ଧେ ଆରୋହଣ । ଅମୂଲ୍ୟ ରତ୍ନ ବିଭୂଷଣ ॥
ଭୁଭଂଗ ଅନୁଗ୍ରହ ମୁଖ । ଦେଖନ୍ତେ ହରେ ଭବଦୁଃଖ ॥
ବ୍ରହ୍ମା ବରଷ ତପଶ୍ରମ । ଯେ ରୂପେ ହୋଏ ଉପଶମ ॥
ଶ୍ରୀବତ୍ସ ଚିହ୍ନ ହୃଦେ ସାଜେ । କୌସ୍ତୁଭମଣି କଣ୍ଠେ ମାଝେ ॥
ଶୂନ୍ୟମଣ୍ଡଳେ ବିଷ୍ଣୁ ଦେଖି । ଉଠିଲା ଆସନ ଉପେକ୍ଷି ॥
ରୋମ ହରଷ କଳେବର । ନୟନୁ ବହେ ଅଶ୍ରୁଧାର ॥
କରଅଞ୍ଜଳି ଦେଇ ମାଥେ । ଦଣ୍ଡ ପ୍ରଣାମ ଭୂମିଗତେ ॥
ଆନନ୍ଦେ ପ୍ରାପ୍ତ ମନୋରଥ । ଅନ୍ତରେ ହୋଇ କୃତ କୃତ ॥
ଭୋ ନାଥ ତୋର ଦରଶନ । ନିର୍ମଳ କଲା ମୋର ମନ ॥
ଯେ ରୂପ ଦେଖିବାର ଅର୍ଥେ । ଯୋଗ ସାଧନ୍ତି ମୁନି ସନ୍ତେ ॥
ଭୋ ନାଥ ତୋହର ଚରଣ । ଜୀବର ପରମ କାରଣ ॥
ତୋ ପାଦପଦ୍ମ ଆଶ୍ରେକରି । ଭବସାଗରୁ ଯାନ୍ତି ତରି ॥
ଏ ଭାବ ଛାଡ଼ି ଏ ସଂସାରେ । ବିଷୟ ରସ ଭୋଗକରେ ॥
ନରକେ ଯାନ୍ତି ସେହିମତେ । ସେ ତୋତେ ପାଇବେ କେମନ୍ତେ ॥
ସେହି ପ୍ରକାରେ ମନ ମୋର । କଳ୍ପଇ ବିଷୟ ଗୋଚର ॥
ତୋର ଆଦେଶେ ସୃଷ୍ଟି ଧର୍ମେ । କଳ୍ପଇ ଗୃହସ୍ଥ ଆଶ୍ରମେ ॥
ସେ ଗୃହ କାମ ଧେନୁ ପ୍ରାୟେ । କୁଟୁମ୍ବ ଜନ ମନ ମୋହେ ॥
ତୋର ଚରଣ କଳ୍ପଦ୍ରୁମ । ଆଶ୍ରମେ ଲଭେ ପ୍ରାଣୀ ଶ୍ରମ ॥
ସେ ଅନୁଗ୍ରହେ ମନୁରାଜା । କଳ୍ପିତ ତାହାର ତନୁଜା ॥
ମୁଁ ପୁଣି ସର୍ବ ପ୍ରାଣୀ ହିତେ । ଯେମନ୍ତେ ତୋ ଚରଣାଗତେ ॥

ମନ ନିବେଶି ଗୃହଧର୍ମେ । ଯେମନ୍ତେ ରମଇ ଆଶ୍ରମେ ॥
ତୋ ପାଦ ତାପତ୍ରୟ କ୍ଷେତ । ଏ କଥା ଜଗତେ ବିଖ୍ୟାତ ॥
ତୋ ରୂପ ଗୁଣ ଅବତାର । ନିର୍ମଳ ବହେ ସୁଧାଧାର ॥
ତେଣେ ଲୋଭିତ ଯାର ଚିତ୍ତ । ସେ ନୁହେ କାଳ ଫାଶେ ଗ୍ରସ୍ତ ॥
ତୁ ଏକରୂପୀ ତନୁ ଦେହା । ଜଗମୋହନ ତୋର ମାୟା ॥
ଜରଇ ସୃଷ୍ଟି ସ୍ଥିତି ଅନ୍ତ । ଯେସନେ ଘନ ନଭମତ ॥
ଭୋ ନାଥ ତୋହର ମହିମା । କେ କହିପାରେ ଗୁଣସୀମା ॥
ଏମନ୍ତେ ମୁନିବାକ୍ୟ ଶୁଣି । ଗରୁଡ଼ କନ୍ଧେ ଚକ୍ରପାଣି ॥
ଜ୍ୟୋତି ସ୍ୱରୂପେ ଶୂନ୍ୟେ ଥାଇ । କହନ୍ତି ମୁନି ମୁଖ ଚାହିଁ ॥
ଶୁଣ ହୋ ପ୍ରଜାପତି ସୁତ । ମୁହିଁ ଜାଣଇ ତୋର ଚିତ୍ତ ॥
ତୁ ଯେଣୁ ଭଜୁ ମୋ ଚରଣ । କହିଲୁ ସୃଷ୍ଟିର କାରଣ ॥
ତୁ ଏବେ ସାବଧାନେ ଶୁଣ । କହିବା ତହିଁର କାରଣ ॥
ତୋ ପୂର୍ବେ ପଦ୍ମଯୋନି ତନୁ । ସମ୍ଭୂତ ସ୍ୱାୟଂଭୁବ ମନୁ ॥
ଏ ବ୍ରହ୍ମାବ୍ରତେ ରାଜା ହୋଇ । ଭୁଞ୍ଜଇ ସପ୍ତଦ୍ୱୀପା ମହୀ ॥
ତାହାର ସତରୂପା ନାରୀ । ରୂପେ କମଳା ନୋହେ ସରି ॥
ସେ ଏକ ଦିନେ ଏକମତେ । ତୋ ରୂପ ଦେଖିବ ନିରତେ ॥
ତୋହର ସମୀପେ ସେ ସାକ୍ଷାତେ । ମିଳିବ ବେନିଦିନ ଅନ୍ତେ ॥
ତାର ଦୁହିତା ଦେବହୂତି । ରୂପେ ସମାନ ନୋହେ ରତି ॥
ତାର ବୟସ ରୂପ ଗୁଣ । ଅପରେ କେ ଅଛି ପ୍ରମାଣ ॥
ତୋ ରୂପ ଅତି ମନୋହର । ତୁ ତାହା ଅନୁରୂପେ ବର ॥
ସେ କନ୍ୟା ସମର୍ପିବ ତୋତେ । ଯେ ବିଧିବିଧାନ ଉକତେ ॥
ତୁ ମୋ ଚରଣେ ଚିତ୍ତ ଦେଇ । ଯେତେ ବରଷ ତପ ଧାୟି ॥
ନିରତେ କଲୁ ଅଷ୍ଟାଯୋଗ । ଏ ବିଶ୍ୱ ତତ୍ତ୍ୱ ଅନୁଭବ ॥
ମନୁ ଦୁହିତା ତୋର ସଙ୍ଗେ । ନିରତେ ଭଜି ଅନୁରାଗେ ॥
ସେ ତୋର ତୁଲେ କରି ଭାବ । ନବଧା ଗର୍ଭ ପ୍ରସବିବ ॥
ତାର ସମ୍ଭବେ ତୋର ବିର୍ଯ୍ୟେ । ଯେ ବା ପ୍ରତ୍ୟକ୍ଷେ ଉପୁଜିବେ ॥
ରୂପେ କିଦେବା ଅନୁପାମ । ହୋଇବ ଅନୁଗତ ନାମ ॥
ତୁ ଯେ ମୋହର ଭାବଭରି । ଆତ୍ମା ଇତର ପ୍ରାୟେ କରି ॥
ଅଶେଷ ଭୂତେ ତୋର ଦୟା । ତୋତେ ନ ଲାଗେ ବିଷ୍ଣୁ ମାୟା ॥
ଆତ୍ମାରେ ଜଗତ ଆବୋରି । ତୁ ଯେ ମୋହର ଭାବ ଭରି ॥
ତପ ସାଧିଲୁ ଚିରକାଳେ । ଏ ଘୋର ସଂସାର ଉଲ୍ଲୋଳେ ॥
ଏଣୁ ମୁଁ ପଶି ତୋର ବୀର୍ଯ୍ୟେ । ସ୍ୱଭାବେ ବିଷ୍ଣୁ ମହାତେଜେ ॥
ତୋହର କ୍ଷେତ୍ରେ ମୁଁ ସମ୍ଭୂତ । ହୋଇବି ଦେବହୂତି ସୁତ ॥
ଏମନ୍ତ କହି ମୁନି ଆଗେ । ହରି ଗମିଲେ ଶୂନ୍ୟମାର୍ଗେ ॥
ମିଳିଲେ ବିନ୍ଦୁ ସରୋବରେ । ନିର୍ମଳ ସରସ୍ୱତୀ ତୀରେ ॥
ଦେଖିଲେ କର୍ଦ୍ଦମ ଶରୀର । ତପ ସାଧନେ ସେ ନିଷ୍ଠୁର ॥
ସେ ନଦୀତୀରେ ପୁଷ୍ପବନ । ଗଭୀର ପକ୍ଷୀ ନାଦ ସ୍ୱନ ॥
ଭୃଙ୍ଗ ସମୂହେ ନାଦ ବହେ । ଶୁଭଇ ସାମଗାନ ପ୍ରାୟେ ॥
ଏମନ୍ତେ ଶୁଣ ହେ ବିଦୁର । ମନୁ ଯେ ବ୍ରହ୍ମାର କୁମର ॥
ସୁବର୍ଣ୍ଣ ପରିଚ୍ଛଦ ରଥେ । ଆରୋହି ପତ୍ନୀର ସହିତେ ॥
ମଧ୍ୟେ ବସାଇ ଦେବହୂତି । ଭୂମି ପର୍ଯ୍ୟଟନ କରନ୍ତି ॥
ଏମନ୍ତ ବିନ୍ଦୁସର କୂଳେ । ବିଷ୍ଣୁ ମିଳିଲେ ଋଷିମେଳେ ॥
ଦେଖି ତାହାଙ୍କ ଭକ୍ତିଭାବ । ତନୁ ପୁଲକ ପଦ୍ମନାଭ ॥
ସ୍ୱଭାବେ ଭକ୍ତଜନ ବନ୍ଧୁ । ନୟନେ ଅଶ୍ରୁଜଳ ବିନ୍ଦୁ ॥
ପଡ଼ିଲା ସରସ୍ୱତୀ ତୀର । ତେଣୁ ହୋଇଲା ବିନ୍ଦୁସର ॥
ପୁଣ୍ୟ ପବିତ୍ର ଶୁଦ୍ଧଜଳ । ସ୍ୱଭାବେ ନିର୍ମଳ ଶୀତଳ ॥
ଯେ ଜଳ ବିଷ୍ଣୁର ଚରଣେ । ସେବା କରନ୍ତି ମୁନିଗଣେ ॥
ପୁଣ୍ୟ ପବିତ୍ର ବୃକ୍ଷଡ଼ାଳେ । ନାଦ କରନ୍ତି ପକ୍ଷୀମେଳେ ॥
କ୍ରୀଡ଼ନ୍ତି ନାନା ବନଜୀବେ । ଗଭୀର ଶୁଭେ ଭୃଙ୍ଗ ରାବେ ॥
ସକଳ ଋତୁ ଫଳ ଯହିଁ । ପୁଷ୍ପ ପଲ୍ଲବ ବିରାଜଇ ॥
ମତ୍ତ ମୟୂର ଯୂଥ ଯୂଥ । କୋକିଳ ରାବ ସୁଲଳିତ ॥
କଦମ୍ବ ଚମ୍ପକ ଅଶୋକ । ନାଗ କେଶର କୁରୁବକ ॥
କରଞ୍ଜ ପନସ ଅସନ । କୁନ୍ଦ ମନ୍ଦାର ଚୂତବନ ॥
ହଂସ ସାରସ ପୂର୍ବ ଗତି । ଜଳ କୁକୁଟେ ଟାବଦ୍ୟନ୍ତି ॥
ସାରସ ଚକ୍ରବାକ ବାଣୀ । ଅତି ଗମ୍ଭୀର ପରିମାଣି ॥
ଗୟଳ ସଲକ କୁଞ୍ଜର । ତୁରଙ୍ଗ ହରିଣ ଶୂକର ॥
ବାନର ଗୋଲାଙ୍ଗୁଳା ସାଙ୍ଗେ । ନକୁଳ କସ୍ତୁରୀ ବିରାଜେ ॥
ଶାଳିଆ ଯୁଆ ଦବଳିଆ । ଜଳେ ବୁଡ଼ନ୍ତି ଜଳକୁଆ ॥
ସେ ତୀର୍ଥବରେ ଆଦି ରାଜା । ରଥେ ମିଳିଲେ ମହାତେଜା ॥
କଳତ୍ର ଦୁହିତା ସମେତେ । ପ୍ରବେଶ କଲା ରତ୍ନପଥେ ॥
ଦେଖିଲା ମୁନିଙ୍କ ବଦନ । ସ୍ୱଭାବେ ଦୃଢ଼ ହୁତାଶନ ॥
ସ୍ୱଭାବେ ଘୋରତପ ତେଜେ । ସୁନ୍ଦର ଶରୀର ବିରାଜେ ॥
ବିଷ୍ଣୁ ଦେଖିଲେ ତା ଶରୀରେ । ସୁନ୍ଦର କେତେକ ମାତରେ ॥
ବିଷ୍ଣୁ ଗମ୍ଭୀର ସାଧୁବାଣୀ । ସେ ମୁନି କର୍ଣ୍ଣପଥେ ଶୁଣି ॥
ରୋମ ପୁଲକ କଳେବର । ନେତ୍ରେ ଆନନ୍ଦ ଅଶ୍ରୁଧାର ॥
ଶିରେ ସୁନ୍ଦର ଶୋହେ ଜଟା । ବସନ ବେଷ୍ଟିତ କାଛଟା ॥
ସ୍ନାନ ସଲିଳ ଶୋହେ ଗାତ୍ରେ । ହାସର ପ୍ରାୟ ଅପଗାତ୍ରେ ॥
ରଥ ଉପରୁ ଅବତରି । ମୁନି ସମୀପେ ଦଣ୍ଡଧାରୀ ॥

ମିଳିଲା ଯୋଡ଼ି କର ବେନି । ଦେଖି ଉଠିଲେ ବେଗେ ମୁନି ॥
ବସାଇ ପୂଜିଲେ ଆସନେ । କହନ୍ତି ଅମୃତ ବଚନେ ॥
ତୋର ଗମନ ନୃପବର । ଧନ୍ୟ ଏ ଆଶ୍ରମ ମୋହର ॥
ରାଜା କୁଶଳେ ପ୍ରଶ୍ନ ଶୁଣି । ସନ୍ତୋଷେ ପୁଚ୍ଛେ ବିପ୍ରମଣି ॥
ବିଷ୍ଣୁ ଆଦେଶ ଚିତ୍ତେ ଶୁଣି । ରାଜା ଆଦେଶ ଚାହିଁ ଭଣି ॥
ଆନନ୍ଦେ ଉଲୋଳ ଲୋଚନେ । କହନ୍ତି ଅମୃତ ବଚନେ ॥
ତୁମ୍ଭ ଭ୍ରମଣ ଏ ଜଗତେ । ସାଧୁଜନ ରକ୍ଷଣ ଅର୍ଥେ ॥
ଅସାଧୁଜନ ନିବାରଣେ । ନିଷ୍କଳ ଧର୍ମର ସ୍ଥାପନେ ॥
ଏ ଅଷ୍ଟଦିଗପାଳ ତେଜ । ଏଣୁ କ୍ଷତ୍ରିୟ ଅଷ୍ଟଭୁଜ ॥
ଦିଗପାଳଙ୍କ ତେଜ ହରେ । ଅସାଧୁଜନ ଗର୍ବ ହରେ ॥
ଘୋର ଗର୍ଜନ ଧ୍ୱନି ଭାବେ । ଉଦଣ୍ଡ ସଂଗ୍ରାମ ଉଚ୍ଛବେ ॥
ବେଢ଼ିବ ବେତ୍ରରଙ୍ଗ ବଳ । ତୋ ଭ୍ରମ ଅବନୀ ମଣ୍ଡଳ ॥
ସୂର୍ଯ୍ୟର ପ୍ରାୟେ ତେଜ ଧରି । ପେଣ୍ଡ ପାଟଣା ବନଗିରି ॥
ଶତ୍ରୁ ବିନାଶେ ଅବଧାନ । ରାଜାର ଧର୍ମ ଏ ସମାନ ॥
ଏହା ନ କରି ଯେବେ ଘରେ । ସୁଖେ ଶୟନ ନିଦ୍ରାକରେ ॥
ତେବେ ଅନନ୍ତ ରିପୁବଳ । ନାଶନ୍ତି ଅବନୀମଣ୍ଡଳ ॥
ତଥାପି ଶୁଣ ହେ ରାଜନ । ଯେ ଅର୍ଥେ ତୁମ୍ଭ ଆଗମନ ॥
ତୁମ୍ଭର ପ୍ରିୟଭାବ ବହି । ସୁହୃଦ ଭାବେ ପଚାରଇ ॥
ଏମନ୍ତ କହି ରାଜା ଆଗେ । କର୍ଦ୍ଦମ ଅତି ଅନୁରାଗେ ॥
ବିଷ୍ଣୁର ବଚନ ସୁମରି । ଅଧିକ ପ୍ରିୟଭାବ କରି ॥
ସେ ମୁନି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟ ସ୍କନ୍ଧେ କର୍ଦ୍ଦମ ମୁନି ଶିଷ୍ୟ ସମ୍ବାଦେ ନାମ ଏକବିଂଶୋଽଧ୍ୟାୟଃ ।*

## ଦ୍ୱାବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ରାଜା ଗୁଣଗ୍ରାମ । ଆନନ୍ଦେ ବନ୍ଦିଲେ କର୍ଦ୍ଦମ ॥
ତାହାର ବଦନ ଅନାଇ । ସଲଜ୍ଜ ଚିତ୍ତେ ପଚାରଇ ॥

### ମନୁ ଉବାଚ

ବ୍ରହ୍ମାର ମନରୁ ସମ୍ଭୂତ । ତୁମ୍ଭେ ସ୍ୱଭାବେ ପ୍ରଜାନାଥ ॥
ଏଣୁ ପବିତ୍ର ତୁମ୍ଭ ଦେହ । ସ୍ୱବିଦ୍ୟା ତପ ଛନ୍ଦମୟ ॥
ଯୋଗ ସାଧନେ ତୁ ଇଷ୍ଟ । ତୁମ୍ଭ ସାଧନେ ଯଜ୍ଞବାଟ ॥
ଏ ସର୍ବ ଧର୍ମ ରକ୍ଷାଅର୍ଥେ । ସେ ପିତାମହ ଏ ଜଗତେ ॥
ସହସ୍ର ଭୁଜ ତେଜ ଘେନି । ସୃଷ୍ଟି ପାଳନେ ପଦ୍ମଯୋନି ॥
କ୍ଷତ୍ରିୟ ଜନ୍ମ ଭିଆଇଲା । ପ୍ରତକ୍ଷେ ସୃଷ୍ଟି ଆବୋରିଲା ।
ବଳେ ସିର୍ଜିଲା ତେଜ ଘେନି । ବ୍ରହ୍ମା ସମେତ ପଦ୍ମଯୋନି ॥
ଏ ବେନି ତେଜେ ବ୍ରହ୍ମାରହେ । ଧର୍ମ ପାଳନେ ଦେହ ବହେ ॥
ଏଣୁ ଅନେକ ଭାଗ୍ୟ ମୋର । ଦେଖିଲି ତୁମ୍ଭର ଶରୀର ॥
ତୁମ୍ଭର ଅନୁଶିକ୍ଷା ପାଇ । ପବିତ୍ର କରୁ ନିଜ ଦେହୀ ॥
ତୁମ୍ଭର ବାକ୍ୟ କର୍ଣ୍ଣପଥ । ନିଶ୍ଚଳ ହୋଏ କୃତ କୃତ ॥
ମୁଁ ଏ ଦୁହିତା ସ୍ନେହେ ଜଡ଼ି । ମୋହର ସୁବନ୍ଧନେ ପଡ଼ି ॥
ଏଣୁ ମୋହର ଦୁଃଖମନେ । କହିବି ଶୁଣ ସାବଧାନେ ॥
ମୋହର ଜ୍ୟେଷ୍ଠ ବେନି ସୁତ । ଉତ୍ତାନପାଦ ପ୍ରିୟବ୍ରତ ॥
ତାଙ୍କ ଭଗିନୀ ଏ ସୁମୁଖୀ । ଏ ଦେବହୂତି ଚନ୍ଦ୍ରମୁଖୀ ॥
ଏହାର ଗୁଣଶୀଳ ସମେ । ପତି ଇଚ୍ଛଇ ନିଜ ଧର୍ମେ ॥
ତୁମ୍ଭର ରୂପ ଗୁଣ ଯେତେ । ନାରଦ ଏହାର ଅଗ୍ରତେ ॥
କହିଲେ ମୋହର ସାକ୍ଷାତେ । ଏଣୁ କହିଲା ଏହା ଚିତ୍ତେ ॥
ମୁଁ ଏବେ ଶ୍ରଦ୍ଧା ପ୍ରିୟ ଚିତ୍ତେ । ଘେନି ମିଳିଲି ତୋ ଅଗ୍ରତେ ।
ତୁ ଧର୍ମଜ୍ଞାନୀଙ୍କର ବର । ଗୃହ ମଧ୍ୟରେ ଧର୍ମ କର ॥
ଏଣେ ତୋ ପ୍ରତିବାଦୀ ନାହିଁ । ପୁଷ୍କଳ ଧର୍ମ ଏହା କହି ॥
ଉଦ୍ୟମ ଧର୍ମ ଏହା ଛାଡ଼ି । ଯେ ଯାନ୍ତି ଭିକ୍ଷାପଥେ ପଡ଼ି ॥
ଉଭୟ ଲୋକ ତାର ନାହିଁ । ସେ ପୁଣି ସମର୍ପିବେ କାହିଁ ॥
ତୁମ୍ଭର ଗୃହ ମେଧି ଧର୍ମ । ଦେଖ ପୁଷ୍କଳ ଯେଉଁ କର୍ମ ॥
ଏ ଦେବହୂତି କନ୍ୟା ମୋର । ବେଦ ପ୍ରମାଣେ ବିଭା କର ॥

### କର୍ଦ୍ଦମ ଉବାଚ

ତୁମ୍ଭର ଆଜ୍ଞା ଶିରେ ଧରି । ଏ ଦେବହୂତି ବିଭାକରି ॥
ଭ୍ରମିବି ସଂସାର ଧାରଣେ । ଆତ୍ମାର ଉତ୍ପତ୍ତି କାରଣେ ॥
ଏ ଦେବହୂତି କନ୍ୟାସାର । କି ଅବା ଦେବା ପଟାନ୍ତର ॥
ଶୁକଳ କୂଳେ ଏ ବିଦିତ । ସୁନ୍ଦର ଗୁଣ ବର୍ଣ୍ଣେ ଯୁକ୍ତ ॥
ଶୁକ୍ଳ ବଚନ ମାନ୍ୟ ମୋର । ଯେ ଭାବେ ଜନ ଉପକାର ॥
କରିବି ଦାର ପରିଗ୍ରହ । ତୁମ୍ଭେ ମୋହର ସ୍ନେହ ବହ ॥
ଏମନ୍ତେ ଦ୍ୱିଜ ବାକ୍ୟ ଶୁଣି । ସନ୍ତୋଷ ଚିତ୍ତେ ରାଜାରାଣୀ ॥
ମୁନିଙ୍କି ବର ବେଶ କରି । ବେଦ ବିଧାନେ କନ୍ୟାବରି ॥
ବିବାହ ଦେଇ ସେ ଉତ୍ସୁକ । ଅନେକ ଦେଲା ଯଉତୁକ ॥
ଅମୂଲ୍ୟ ବସନ କାଞ୍ଚନ । ଗୃହ ପୁଷ୍କର ମହାଦାନ ॥
ସକଳ ଦେଇ ବେନି ଜନେ । ବୋଧିଲେ ଅମୃତ ବଚନେ ॥

ଆନନ୍ଦଚିତ୍ତେ ଦଣ୍ଡଧାରୀ । ମୁନିଙ୍କୁ ଆଲିଙ୍ଗନ କରି ॥
କଣ୍ଠ କୁଣ୍ଠିତ ଅଶ୍ରୁମୁଖେ । ବହୁତ ସ୍ନେହଭର ସୁଖେ ॥
ମୁନିଙ୍କୁ କନ୍ୟାଦାନ ଦେଇ । ଆନନ୍ଦେ କୃତ କୃତ୍ୟ ହୋଇ ॥
ରଥ ଆରୋହୀ ବେନିଜନେ । ଗଲେ ସେ ଆପଣା ଭୁବନେ ॥
ସେ ବେନି ଋଷି କୁଲ୍ୟକୁଟେ । ଅନେକ ମୁନିଙ୍କ ନିକଟେ ॥
ପର୍ଣ୍ଣ କୁଟୀର ସେ ଭିଆଇ । ସୁଦୃଢ଼େ କୁଶ କାଂଶେ ଛାଇ ॥
ସେ ନଦୀ ତୀରେ ସୁଖେ ରହି । ବିଷ୍ଣୁ ଭଜିଲେ ଯଜ୍ଞ ଦାହି ॥
ବୃଦ୍ଧି ସମ୍ପାଦି ନାନାସ୍ଥାନେ । ମନୁ ରହିଲେ ସେ ଭୁବନେ ॥
ପୁର ନିର୍ମିତ କୁଶ କାଂଶେ । ସେ ସ୍ଥାନେ ତାପତ୍ରୟ ନାଶେ ॥
ଏ ଗୃହେ ପତି ସଙ୍ଗେ ରହି । ସନ୍ତତି ଅର୍ଥେ ପ୍ରିୟ ବହି ॥
କଳ୍ପିତ ସୁଖ ବଇଭୋଗେ । ସେ ପ୍ରଜା ଅର୍ଥେ ରତିରଙ୍ଗେ ॥
ସୁସ୍ୱର ଗୀତ ନାଦଧ୍ୱନି । ଗନ୍ଧର୍ବେ ସ୍ତିରୀବୃନ୍ଦ ଘେନି ॥
ସଙ୍ଗୀତ ରସ ବୀଣା ନାଦେ । ଲଳିତ ଗତି ଅନୁବନ୍ଧେ ॥
ପ୍ରତି ଦିବସ ପୁତ୍ର ଅର୍ଥେ । ବିଷ୍ଣୁ ଚରିତ ହୃଦଗତେ ॥
କର୍ଣ୍ଣେ ଶୁଣନ୍ତି ଧ୍ୟାନ କରି । ଚିତ୍ତେ ଗୋବିନ୍ଦ ଭାବ ଭରି ॥
ନିରତେ କୃଷ୍ଣଭାବ ଆଶେ । ସେ ବେନିଜନ ଗୃହବାସେ ॥
ବିଷ୍ଣୁ ଚରିତ ହୃଦେ ଧରି । ନାମ ଶ୍ରବଣେ ଆଶ୍ରେ କରି ॥
ଏମନ୍ତେ ନିଜ ମନ୍ୱନ୍ତରେ । ଯେ ଯୁଗ ଗଣନା ବେଭାରେ ॥
ଏକ ସପ୍ତତି ଚତୁର୍ଯୁଗେ । ଯେ ଭାବ ମନ୍ୱନ୍ତର ଭାବେ ॥
ଏମନ୍ତେ ରହି ଭାବ କରି । ତୃତୀୟ ତାପୁଁ ସେ ନିସ୍ତାରି ॥
ଶୁଣ ବିଦୁର ପୁଣ୍ୟଦେହା । କହିଲୁ ପଚାରିଲ ଯାହା ॥
ସେ ଆଦି ରାଜା ପୁଣ୍ୟଗାଥା । ଶୁଣନ୍ତେ ତୁଟେ ଭବବ୍ୟଥା ॥
ଏଣୁ ସୃଷ୍ଟି ଆଦି କାରଣ । ଏବେ ହୋ ମନୁବଂଶ ଶୁଣ ॥
ତୃତୀୟ ସ୍କନ୍ଧେ ଭାଗବତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ
ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କର୍ଦ୍ଦମ ଋଷି
ଚରିତ ନାମ ଦ୍ୱାବିଂଶୋଽଧ୍ୟାୟଃ ।*

## ତ୍ରୟୋବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ କନ୍ୟା ବିଭାଦେଇ । ମନୁ ଯେ ଗଲେ ରଥ ବାହି ॥
ଦୃଢ଼େ ରହିଲେ ତପସ୍ଥାନେ । ସେ ନଦୀତୀରେ ପୁଷ୍ପବନେ ॥
ଏବେ ହୋ ଶୁଣ ନରନାଥ । କର୍ଦ୍ଦମ ମୁନିର ଚରିତ ॥
ତାହାଙ୍କ ପତ୍ନୀ ଦେବହୂତି । ସୁଗୁଣ ସୁନ୍ଦର ସୁମୂର୍ତ୍ତି ॥
ସ୍ୱାମୀର ସେବା ଜାଣି ଚିତ୍ତେ । ସେବା କରନ୍ତି ଅବିରତେ ॥
ଇଙ୍ଗିତ ମାର୍ଗେ କାର୍ଯ୍ୟ ବହେ । ଭବାନୀ ଭାବ ସେବା ପ୍ରାୟେ ॥
ବିଶ୍ୱାସ ଆତ୍ମା ଶୌଚ ଧର୍ମେ । ଧୀର ଗୌରବ ତପ ଦମେ ॥
ସ୍ପଷ୍ଟ ସୁହୃଦ ସମ ପ୍ରେମେ । ମଧୁର ବାକ୍ୟେ ସୁ ସମ୍ଭ୍ରମେ ॥
ବର୍ଜିତ କାମ ଦମ୍ଭ ହିଂସା । ଲୋଭ ବର୍ଜିତ ମିଥ୍ୟାଭାଷା ॥
ଉର୍ମିଳ ଅଳସ ନିର୍ମିତ । ସ୍ୱାମୀ ସକାଶେ ମନ ଭୀତ ॥
ଏମନ୍ତେ ଦେବହୂତି ଚାହିଁ । ମୁନି ସାନନ୍ଦେ ସ୍ନେହବହି ॥
ପତି ଦେବତାର ଆଶିଷେ । ନିରତେ ସେବା ସ୍ୱାମୀ ପାଶେ ॥
ଏମନ୍ତେ ପତିବ୍ରତା ଧର୍ମ । ଦେଖି ବିଚାରନ୍ତି କର୍ଦ୍ଦମ ॥
ଏ ପତିବ୍ରତାଙ୍କର ସାର । ସୁଶୀଳ ସୁଗୁଣ ଗମ୍ଭୀର ॥
ଏମନ୍ତ ଗୁଣ ମନେ ଗୁଣି । ସେ ପ୍ରେମେ ଗଦଗଦ ବାଣୀ ॥
ନିଜ କାମିନୀ ମୁଖ ଚାହିଁ । କର୍ଦ୍ଦମ କହେ ପ୍ରେମ ବହି ॥
ଶୁଣ ସୁନ୍ଦରୀ ମୋ ବଚନ । ମୋର ବିଷୟେ ତୋର ମନ ॥
ଦେଖି ସନ୍ତୋଷ ମୋର ଚିତ୍ତ । ତୁ ଅନୁରୂପେ ମୋରି ଗତ ॥
ପ୍ରାଣୀଙ୍କ ମଧ୍ୟେ ନରଦେହ । ସୁହୃଦ ମଧ୍ୟେ ଅତି ସ୍ନେହ ॥
ସେ ଦେହେ ତୋର ଯତ୍ନ ନାହିଁ । ମୋ ପରିଚେଷ୍ଟେ ମନ ଦେଇ ॥
ସୁଧର୍ମ ତପ ପ୍ରାଣୀଙ୍କର । ତପ ସମାଧି ବିଦ୍ୟାସାର ॥
ସୁହୃଦ କର୍ମ ଆତ୍ମା ଧ୍ୟାନେ । ଜୀବଙ୍କ ତତ୍ତ୍ୱହିତ ଜ୍ଞାନେ ॥
ଏ ସର୍ବ ଗୋବିନ୍ଦ ପ୍ରସାଦେ । ମୁଁ ସର୍ବ ତୋହର ସୁସାଧେ ॥
ତୁ ଏବେ ଭଜ ବିଷ୍ଣୁ ପାଦ । ପାଇବୁ ଅକଳ ସମ୍ପଦ ॥
ଅଧିକ ଗୁଣ ଅବା କହି । ସର୍ବ ସମ୍ପଦ ଯେଣୁ ପାଇ ॥
ସେ ହରି ଚରଣ ପଙ୍କଜେ । ନିର୍ମଳ ଚିତ୍ତେ ଯେବା ଭଜେ ॥
ଏମନ୍ତେ କର୍ଦ୍ଦମ ବଚନେ । ସେ ଦେବହୂତି ତୋଷମନେ ॥

### ଦେବହୂତି ଉବାଚ

ଭର୍ତ୍ତା ବଦନ ଚାହିଁ କହେ । ଗମ୍ଭୀର ବାକ୍ୟେ ସୁଧାମୟେ ॥
ଭୋ ନାଥ ତୋହର ପ୍ରସାଦେ । ତୁମ୍ଭ ଚରଣ ଅପ୍ରମାଦେ ॥
ନିରତେ ହେଉ ମୋର ସେବା । ପ୍ରସନ୍ନେ ମୋତେ ଆଜ୍ଞାଦେବା ॥
ତୁମ୍ଭେ ମୋହର ତୁଲେ ଏବେ । ଗୃହସ୍ଥ ଧର୍ମେ ପ୍ରିୟ ଭାବେ ॥
ଅତୁଲ୍ୟ ଧର୍ମ ଭୋଗ କର । ଯେ ଧର୍ମ କାମଧେନୁ ସାର ॥
ଏମନ୍ତେ ପତ୍ନୀର ବଚନ । କର୍ଦ୍ଦମ ଶୁଣି ତୋଷମନ ॥

### ମୈତ୍ରେୟ ଉବାଚ

ପ୍ରିୟ କଳତ୍ର ମନ ଜାଣି । ଚିତ୍ତେ ବିଚାରେ ବିପ୍ରମଣି ॥
ବିଶ୍ୱକର୍ମାକୁ ମନେ ସ୍ମରି । ବିମାନେ ତପବଳେ କରି ॥

ଯହିଁ କଞ୍ଚିତ ବସୁ ପୁତ୍ର । ଅଶେଷ କର୍ମେ ସେ ନିର୍ମିତ ॥
ସକଳ ଋତୁ ପୁଷ୍ପଫଳ । ମଣି ନିର୍ମିତ ସ୍ତମ୍ଭ ଠୂଳ ॥
ଦେବଙ୍କ ଦିବ୍ୟ ଭୋଗ ଯହିଁ । ସର୍ବଦା କାଳେ ସୁଖମୟୀ ॥
ବିଚିତ୍ର ଚିତ୍ର ହେମ ମୟେ । ଚିତ୍ର ପତକା ଧ୍ୱଜେ ଶୋହେ ॥
ସୁଗନ୍ଧ ପୁଷ୍ପମାଳ ମାଳେ । ଯେ ରଥେଲୟେ ପୁଣ ହେଳେ ॥
ଗମ୍ଭୀରନାଦ ଭୃଙ୍ଗ ଶୋହେ । ପାଟବସନ ମନ ମୋହେ ॥
ଉପରେ ରତ୍ନ ନୀଳମଣି । ବିରାଜେ ରବିତେଜ ଜିଣି ॥
ସେ ରଥେ ସୁବର୍ଣ୍ଣ ପଲ୍ୟଙ୍କ । ରଙ୍ଗେ ବିରାଜେ ସେ ତ୍ରିଲୋକ ॥
ବିଶ୍ୱକର୍ମାର ଶିଳ୍ପ ପଣ । ସେ ରଥେ ଦେଖେ ପୁଣ ପୁଣ ॥
ମହାମର୍କତ ସ୍ତମ୍ଭ ଯହିଁ । ବିଦ୍ରୁମ ବେଦି ବିରାଜଇ ॥
ଯେ ଦ୍ୱାରେ ବିଦ୍ରୁମ ସାଙ୍କୋଳା । ହୀର କବାଟ ଯହିଁ କଳା ॥
ବାମେ ଦକ୍ଷିଣେ ପୂର୍ଣ୍ଣକୁମ୍ଭେ । ବିରାଜେ ଇନ୍ଦ୍ରନୀଳ ଖମ୍ଭେ ॥
ଜଳନ୍ତି ପଦ୍ମରାଗ ଦୀପେ । ବିଚିତ୍ର ଚନ୍ଦ୍ରାତପ ଶିଖେ ॥
ମୁକୁତା ହେମମାଳ ଲମ୍ବେ । ପଟ ଦୌଳିକା ରତ୍ନ ସ୍ତମ୍ଭେ ॥
ଶ୍ୱେତହଂସକ ପାରାବତ । ନାଦ କରନ୍ତି ଉନମତ ॥
ବିମାନ ଶିଖେ ଜ୍ୱାଳାବନ୍ଧେ । ଧର୍ମ ନିର୍ମିତ ଧୂପଗନ୍ଧେ ॥
ବିରାଜ ସ୍ଥାନ ସୁରଗଣ । ସୁବର୍ଣ୍ଣ ନିର୍ମିତ ପ୍ରାଙ୍ଗଣ ॥
ନାନାଦି ଶୋଭାସ୍ଥାନ ଶୋହେ । ଦେଖି ଦେବଙ୍କ ମନ ମୋହେ ॥
ଏମନ୍ତ ଦିବ୍ୟପୁର ଚାହିଁ । ସନ୍ତୋଷ ଲଭେ ନେତ୍ର ଦୁଇ ॥
ନାନା ବିଚିତ୍ର କାନ୍ଥ ଭିତି । ଦେଖି ସନ୍ତୋଷ ଦେବହୂତି ॥
କର୍ଦ୍ଦମ ମୁନି ପତ୍ନୀ ଚାହିଁ । ଅମୃତ ବଚନ ବୋଲଇ ॥
ସେ ସର୍ବପ୍ରାଣୀ ହିତ ଜାଣେ । ତପ ସମାଧି ବିଦ୍ୟାଗୁଣେ ॥
ସୁନ୍ଦରୀ ଶୁଣ ମୋ ବଚନ । ଏ ତୀର୍ଥେ ତୋଷେ କର ସ୍ନାନ ॥
ଏ ରଥେ ସୁଖେ ବିଜେକର । ଚିତ୍ତେ ଗୋବିନ୍ଦ ପାଦ ସ୍ମର ॥
ସୁଖ ନିମିତ୍ତ ତୀର୍ଥ ଏହି । ପ୍ରାଣୀଙ୍କି ଶୁଭ ଫଳ ଦେଇ ॥
ଏମନ୍ତେ ସ୍ୱାମୀର ବଚନେ । ସେ ଦେବହୂତି ଶୁଦ୍ଧମନେ ॥
ବିରଜବସ୍ତ୍ର ପରିଧାନ । ହୃଦେ ଆଚ୍ଛାଦି ତୁଙ୍ଗସ୍ତନ ॥
ଶିରେ ଶୋଭିତ ଜଟା ବେଣୀ । ସୁଗନ୍ଧ ଗନ୍ଧ ଲେପେ ଆଣି ॥
ପଶିଲା ସରସ୍ୱତୀ ନୀରେ । ଯେ ନୀରେ ସର୍ବ ପାପ ହରେ ॥
ତକ୍ଷଣେ ସରୋବର ଜଳେ । ସହସ୍ର କନ୍ୟା ଏକ ମେଳେ ॥
ଉଠିଲେ ଦିବ୍ୟରୂପ ଧରି । ଜୟ ଶବଦ ମୁଖେ ଭରି ॥
ରୂପେ କି ଦେବା ପଟାନ୍ତର । ମୋହନ୍ତି ବ୍ରହ୍ମା ଶିବ ସୁର ॥
କିଶୋର ବୟସେ ଆନନ୍ଦ । ବାସନ୍ତି ନୀଳୋତ୍ପଳ ଗନ୍ଧ ॥
କନ୍ୟାଏ ଉଠି ଜଳ ତଟେ । ସେ ଦେବହୂତିର ନିକଟେ ॥
କପୋଳେ ଦେଇ ବେନିକର । ସ୍ୱଭାବେ କହନ୍ତି ମଧୁର ॥
ଆମ୍ଭେ ତୋହର ଦାସୀଗଣ । ସେବିବୁଁ ତୋହର ଚରଣ ॥
ଦେଖ ଆମ୍ଭର ଦିବ୍ୟ ଦେହ । କିସ କରିବୁ ଆଜ୍ଞା ଦିଅ ॥
ଏମନ୍ତ କହି କନ୍ୟାଗଣେ । ସେ ଦେବହୂତିର ଚରଣେ ॥
ତକ୍ଷଣେ ନମସ୍କାର କରି । ସର୍ବେ ହୋଇଲେ ଚାରି ଚାରି ॥
ସୁଗନ୍ଧ କନ୍ୟା ଅଙ୍ଗେ ବୋଳି । ଆନନ୍ଦେ ଦେଲେ ହୁଳହୁଳୀ ॥
ସ୍ନାନ କରାଇ ପୁଣ୍ୟନୀରେ । ମଣ୍ଡିଲେ ନାନା ଉପହାରେ ॥
ନୂତନ ବସ୍ତ୍ରଯୁଗ୍ମ ଦେଲେ । ବିବିଧ ଅଳଙ୍କାର ତୁଲେ ॥
ଅମୂଲ୍ୟ ହାର ରତ୍ନପନ୍ତି । ଚନ୍ଦ୍ର କିରଣେ ଝଟକନ୍ତି ॥
କର୍ପୂର କୁଙ୍କୁମ ସୁଗନ୍ଧେ । ଅଙ୍ଗେ ଲେପନ ସେ ଆନନ୍ଦେ ॥
ଅନ୍ନ ବ୍ୟଞ୍ଜନ ଷଡ଼ରସେ । ଭୋଜନ କରାନ୍ତି ସନ୍ତୋଷେ ॥
ସୁବାସ ଜଳେ ଆଚମନ । କରାଇ ସୁମୁଖ ବାସନ ॥
ଉତ୍ତମ ଶଯ୍ୟାରେ ବସାଇ । ଦର୍ପଣ ସମର୍ପିଲେ ନେଇ ॥
ଦର୍ପଣେ ଚାହିଁ ମୁଖଶୋଭା । ଶିରେ ଖୋସିଲେ ପୁଷ୍ପଗଭା ॥
ଦୂର୍ବା ଅକ୍ଷତ ଗନ୍ଧ ଆଣି । ଆଶିଷ କନ୍ୟାଗଣେ ଭାଣି ॥
ଏମନ୍ତେ ସର୍ବ ପରିବାରୀ । ଉଲଗ୍ନେ ଶୁଦ୍ଧସ୍ନାନ କରି ॥
ଗଳେ ଲମ୍ବାଇ ରତ୍ନହାର । ହରଷେ ଖଞ୍ଜିଲେ ନୂପୁର ॥
କଟି ଶୋଭିତ କାଞ୍ଚିଦାମ । ହୃଦେ କାଞ୍ଚୁଲା ଅନୁପମ ॥
ଅମୂଲ୍ୟହାର ହୃଦେ ଶୋହେ । ରୂପେ କାମିନୀ ଜନ ମୋହେ ॥
ଶୁଭ୍ର ସୁନ୍ଦର ଦନ୍ତ ହାସ । ଅପାଙ୍ଗ ମୋହନ ସଦୃଶ ॥
ଲଲାଟେ ସୁନୀଳ କୁନ୍ତଳ । ସୁନ୍ଦର ପଦ୍ମକୋଷ ଦଳ ॥
ଏମନ୍ତେ ରୂପଶୋଭା ଯେବେ । ସ୍ୱାମୀ ସ୍ମରଣ କରେ ତେବେ ॥
ରୂପ ମୋହନ ପ୍ରିୟଭାବେ । ବାକ୍ୟ କହନ୍ତି ଶିଖୀରାବେ ॥
ତକ୍ଷଣେ କନ୍ୟାଗଣ ତୁଲେ । ପ୍ରଜାପତି ସମୀପେ ମିଳିଲେ ॥
ସ୍ୱାମୀର ଯୋଗଗତ ଦେଖି । ସଭୟେ ଚିତ୍ତେ ଅଧୋମୁଖୀ ॥
ସଂଶୟ ଦେଖି ତାର ମନେ । ମୁନି ଜାଣିଲେ ଯୋଗଧ୍ୟାନେ ॥
ତକ୍ଷଣେ ଧରି କନ୍ୟାହସ୍ତ । ମୁନି ଆରୋହୀ ଦିବ୍ୟରଥ ॥
ସହସ୍ର ନାରୀଗଣ ମଧ୍ୟେ । ଉର୍ଦ୍ଧ୍ୱେ ଗମନ ବିଷ୍ଣୁ ପାଦେ ॥
ସ୍ୱର୍ଗେ ଦେଖନ୍ତି ସୁରଦେବା । କି ପଟାନ୍ତର ଆମ୍ଭେ ଦେବା ॥
ଯେସନେ ତାରାଗଣ ମଧ୍ୟେ । ଚନ୍ଦ୍ର ବିରାଜେ ଶୂନ୍ୟେ ଉର୍ଦ୍ଧ୍ୱେ ॥
ଦେଖନ୍ତି ଅଷ୍ଟଦିଗ ପାଳେ । ବିମାନପନ୍ତି ଅନ୍ତରାଳେ ॥
ଗିରି ପର୍ବତ ଘୋରବନେ । ସିଦ୍ଧ କିନ୍ନର କ୍ରିୟାସ୍ଥାନେ ॥
ଏମନ୍ତେ ନାନା କ୍ରୀଡାସ୍ଥାନେ । ବିଭାନେ ବସି ତୋଷମନେ ॥
ଗଗନ ପ୍ରାୟେ ଅଷ୍ଟଦିଶେ । ଗମେ ଗମନ ପଥ ମାର୍ଗେ ॥

ଏମନ୍ତେ ସନ୍ତୋଷେ ବିଦୁରି । ନମିଲେ ସଙ୍ଗେ ସାଙ୍ଗ କରି ॥
ରତ୍ନ ବିଭାନ କାମଗତି । ଯେ ଭାବେ ଯେବାର ଭକତି ॥
ପୁଷ୍ପ କାନନ ଅଧିଦେଶେ । କାମ ବିମାନ କି ପ୍ରକାଶେ ॥
ଉଦାର ଚିତ୍ତ ପ୍ରାଣୀଙ୍କର । କି ଅବା ସମ୍ପଦ ଗୋଚର ॥
ଏମନ୍ତେ ଦଶଦିଗ ଭ୍ରମି । ପଥିକ ପ୍ରାୟେ ପଥଶ୍ରମୀ ॥
ପୁଣି ମିଳିଲେ ନିଜ ଘରେ । ଗୃହସ୍ଥ ଧର୍ମର ବେଭାରେ ॥
ସେ ମୁନି ତପେ ଅନର୍ଗଳା । ଆତ୍ମାନୁ ନବରୂପ କଲା ॥
ପତ୍ନୀ ସଂଯୋଗେ ବହୁକାମୀ । ଅନେକ ସମ୍ବତ୍ସର ରମି ॥
କେବେହେଁ କାମ ନ ପୂରିଲା । ମୁହୂର୍ତ୍ତ ପ୍ରାୟ ଦିନ ଗଲା ॥
ଏମନ୍ତ ଯୋଗ ଅନୁଭାବେ । ରମିଲେ ଦମ୍ପତି ସ୍ୱଭାବେ ॥
ଶତେ ବରଷ ବେଦମତେ । ଶୃଙ୍ଗାରେ ରମିଲେ ନିଶ୍ଚିନ୍ତେ ॥
ଏମନ୍ତେ ପ୍ରଜାପତି ରେତେ । ସେ ଦେବହୂତି ଗର୍ଭ ଗତେ ॥
ନବକୁମାରୀ ଉପୁଜିଲେ । ଶୁଦ୍ଧ ମଙ୍ଗଳ ଲଗ୍ନ ବେଳେ ॥
ସୁବାସ ରୂପେ ରୂପ ଗନ୍ଧେ । ଶୁଣିତେ ଅଳସୁ ଆମୋଦେ ॥
ଏମନ୍ତ ନବ କନ୍ୟା ଚାହିଁ । ସେ ଦେବଦୂତି ବିଚାରଇ ॥
ଏ କି ଅଦ୍ଭୁତ କର୍ମ ମୋର । ଦଇବ କର୍ମ ବଳିୟାର ॥
ଏମନ୍ତ ମୁନିପାଶେ ଯାଇ । ରହିଲା ଅଧୋମୁଖ ହୋଇ ॥
ଅଶ୍ରୁ ପୂରିତ ସେ ଲୋଚନ । ବୋଲଇ ବିନୟ ବଚନ ॥

### ଦେବହୂତି ଉବାଚ

ଭୋ ନାଥ ତୁମ୍ଭର ପ୍ରସାଦେ । ସକଳ ଦୁଃଖରୁ ଆନନ୍ଦେ ॥
ତରଇ ତୁମ୍ଭ ପାଦଧ୍ୟାୟି । ମୋହର ଚିତ୍ତେ ଅନ୍ୟ ନାହିଁ ॥
ଏବେ ମୁଁ କନ୍ୟା ଜନ୍ମ ଦେଖି । ହୋଇଲି ମନୁଦୁଃଖେ ଦୁଃଖୀ ॥
ସେବଇ ଚରଣେ ତୁମ୍ଭର । ମୋହର ମନଦୁଃଖ ହର ॥
ପୁତ୍ର ନୋହିଲା ମୋର ଗର୍ଭେ । ଏଣୁ ମୋ ମନ ଦୁଃଖଭାବେ ॥
ଏବେ ହୋଇଲା ନବନାରୀ । ଏ ଅନୁରୂପେ ବର ବରି ॥
ବିବାହ ଦିଅ ମୋ ସମ୍ମୁଖ । ମୋ ମନ ନ ଲଭୁ ଏ ଦୁଃଖ ॥
ତୁମ୍ଭେ ହେ ତପ କରି ଗଲେ । ମୋ ମନ ନ ରହଇ ଭଲେ ॥
ମୁଁ ଏତେ କାଳ ତୁମ୍ଭ ତୁଲେ । ବଞ୍ଚିଲି ନାନା ଭୋଗବଳେ ॥
ଇନ୍ଦ୍ରିୟ ଅର୍ଥରେ ଲାଳସ । ବଞ୍ଚିଲି ଅନେକ ବରଷ ॥
ତୁମ୍ଭର ଅଙ୍ଗସଙ୍ଗ ମେଳେ । ଏ ଜନ୍ମ ଗଲା ମୋର ହେଳେ ॥
ଏ କର୍ମ ଭୂମି ମଧ୍ୟେ ମୁହିଁ । ଉତ୍ତମକୁଳେ ଜନ୍ମ ହୋଇ ॥
ଆତ୍ମାର ଗତି ନ ଜାଣଇ । ଏ ଦୁଃଖସୁଖ ମୁଁ ଜାଣଇ ॥
ତୁମ୍ଭର ସଙ୍ଗେ ସଙ୍ଗ କରି । ହରି ଭଜନ ମୁଁ ପାସୋରି ॥
ହେ କାନ୍ତ ମୋତେ ଦୟାକର । ଏ ଭବସାଗରୁ ଉଦ୍ଧର ॥
ଭୟ ନିବାରି ମୋର ଚିତ୍ତ । ଏ ମାୟା ତରିବି ଯେମନ୍ତ ॥
ବିଷୟାବଶେ ଯାର ସଙ୍ଗ । ଆବୋରି ସଂସାର ତରଙ୍ଗ ॥
ତାର ନିସ୍ତାର ଆର କାହିଁ । କର୍ମର ବନ୍ଧନେ ପଡ଼ଇ ॥
ବୁଡ଼ଇ ସଂସାର ସାଗରେ । ସେ ଭ୍ରମେ ଅଶେଷ ଭାବରେ ॥
ଏଭାବେ ଜାଣି ଯାର ମନ । ବିଷ୍ଣୁ ଭଜନେ ଅବଧାନ ॥
ସେ ଜୀବ ଆତ୍ମାକୁ ଉଦ୍ଧରେ । ନ ବୁଡ଼େ ସଂସାର ସାଗରେ ॥
ଯେବା ଭଜନ୍ତି କାମଧର୍ମେ । ହର ନ ଭଜି ଆତ୍ମା ରାମେ ॥
ସୁପୁଣ୍ୟ ତିର୍ଥେ ସେ ନ ଗଲେ । ସେ ପ୍ରାଣୀ ଜୀବ ଥାଉଁ ମରେ ॥
ମୁଁ ଏ ଇନ୍ଦ୍ରିୟ ଭୋଗବଳେ । ବଞ୍ଚିଲି ବିଷ୍ଣୁ ମାୟା କାଳେ ॥
ମୁଁ ତୁମ୍ଭ ପାଦ ସେବାକରି । ମୋକ୍ଷେ ହୋଇଲି ଅଧିକାରୀ ॥
ଏବେ ଉପାୟ କହ ମୋତେ । ଏ ମାୟା ତରିବି କେମନ୍ତେ ॥
ଏମନ୍ତ କର୍ଦ୍ଦମ ସମ୍ମୁଖେ । ସେ ଦେବହୂତି ମନଦୁଃଖେ ॥
ଯେତେ କହିଲେ ମନ ତୋଷେ । ସୁଜନ ଜନ ଏଣେ ରସେ ॥
ତୃତୀୟସ୍କନ୍ଧେ ଭାଗବତ । କହିଲା ବିପ୍ର ଜଗନ୍ନାଥ ।

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କର୍ଦ୍ଦମ ଋଷି ଗୃହସ୍ଥାଧର୍ମ ନାମ ତ୍ରୟୋବିଂଶୋଽଧ୍ୟାୟଃ ।*

## ଚତୁର୍ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ପତ୍ନୀର ବଚନେ । କର୍ଦ୍ଦମ ଅତି ଅବଧାନେ ॥
ଗୋବିନ୍ଦ ପାଦେ ମନଦେଇ । କହିଲେ ପତ୍ନୀ ମୁଖ ଚାହିଁ ॥
ଶୁକ ବଚନ ସ୍ମରି ମନେ । କହନ୍ତି ଅମୃତ ବଚନେ ॥

### କର୍ଦ୍ଦମ ଉବାଚ

ତୁ ଦେବୀ ତପେ ଅବିଦିତା । ମନେ ନ କର କିଛିଚିନ୍ତା ॥
ଏହି ନିକଟେ ତୋ ଉଦରେ । ଗୋବିନ୍ଦ ନର କଳେବରେ ॥
ଜନ୍ମ ହୋଇବେ ତୋର ଭାବେ । ତା ତପ ବ୍ରତର ପ୍ରଭାବେ ॥
ତୁ ବ୍ରତ ଦାନ ଧ୍ୟାନ କରି । ବିଷ୍ଣୁ ଚରଣ ହୃଦେ ଧରି ॥
ଏ ମୋହ ମାୟା ସୁଖ ତେଜ । ଚିତ୍ତେ ଗୋବିନ୍ଦ ପାଦ ଭଜ ॥
ସେ ଶୁକ୍ଳ ବର୍ଣ୍ଣ ତୋର ଭାବେ । ମୋହୋର ତପଫଳ ଲାଭେ ॥
ସଂଶୟ ଗ୍ରନ୍ଥି ତୋର ଚିତ୍ତେ । ଯେ ବଦ୍ଧ କର୍ମବଦ୍ଧ ମତେ ॥
ଯାହାର ଜ୍ଞାନ ଉପଦେଶେ । ସର୍ବ ଛେଦିବ ଅବଶେଷେ

## ମୈତ୍ରେୟ ଉବାଚ

ସେ ଦେବହୂତିର ସନ୍ଦେଶ । କର୍ଦ୍ଦମ ଭଗତି ବିଶ୍ୱାସ ॥
ଏ ବେନି ଭାବ ହୃଦେ ଧରି । ଅଶେଷ ମଙ୍ଗଳ ମୁରାରି ॥
ପତି କାମିନୀ ଅଙ୍ଗ ସଙ୍ଗେ । ସେ ପ୍ରଜାପତି ରତିରଙ୍ଗେ ॥
ଗର୍ଭ ସଂଯୋଗେ ଦେହ ଧରି । ଜନ୍ମ ହୋଇଲେ ନରହରି ॥
ସଂସାର ନିସ୍ତାରଣ ସାଧେ । ଅନଳ ଯେହ୍ନେ ଦାରୁ ମଧ୍ୟେ ॥
ଆକାଶେ ସୁରଗଣ ବାଦ୍ୟ । ଶୁଭେ ମଙ୍ଗଳ ଶୁଭ ନାଦ ॥
ଗନ୍ଧର୍ବ ଗାନ ସୁଲଳିତ । ନୃତ୍ୟନ୍ତି ଅପଛରା ଯୂଥ ॥
ଦେବେ କରନ୍ତି ପୁଷ୍ପବୃଷ୍ଟି । ମହା ମଙ୍ଗଳ ନବସୃଷ୍ଟି ॥
ପ୍ରସନ୍ନ ଦଶଦିଗ ଦିଶେ । ଜଳଧି ଉଲ୍ଲୋଳ ପ୍ରକାଶେ ॥
ସକଳ ପ୍ରାଣୀଙ୍କର ମନ । ସ୍ୱଭାବେ ହୁଏ ସୁପ୍ରସନ୍ନ ॥
କର୍ଦ୍ଦମ ଆଶ୍ରମ ମଣ୍ଡଳ । ସ୍ରବିଲା ସରସ୍ୱତୀ ଜଳ ॥
ମରୀଚି ଆଦି ସର୍ବଋଷି । ବ୍ରହ୍ମାର ତୁଲେ ସର୍ବେ ଆସି ॥
ପରମ ବ୍ରହ୍ମ ନରରୂପୀ । ସାତ୍ତ୍ୱିକ ଅଂଶେ ଦେହ ବ୍ୟାପି ॥
ସେ ସତ୍ତ୍ୱ ଜ୍ଞାନ ସାଧ ଅର୍ଥେ । ବିରାଟ ରୂପେ ଏ ଜଗତେ ॥
ବିଶୁଦ୍ଧ ଚିତ୍ତେ ନରହରି । କର୍ଦ୍ଦମ ଭକ୍ତି ହୃଦେ ଧରି ॥
ପ୍ରବେଶ କର୍ଦ୍ଦମ ମନ୍ଦିରେ । ଅଶେଷ ଜନ ଉପକାରେ ॥
କର୍ଦ୍ଦମ ମୁଖ ଚାହିଁ ଭଣି । ଆନନ୍ଦ ମନେ କୁଶପାଣି ॥
ତୁ ଯେ ମୋହର ଆଜ୍ଞା ଶିରେ । ଘେନି ଏ ସଂସାର ସାଗରେ ॥
ତପ ସାଧିଲୁ ଘୋର ଦୁଃଖେ । ତୁ ନିବର୍ତ୍ତିଲୁ ମୃତ୍ୟୁ ମୁଖେ ॥
ପୁତ୍ରର ଧର୍ମଟି ଏମନ୍ତ । ଯେ ବାକ୍ୟ ବୋଲେ ପିତାମାତ ॥
ଆଦରେ ସର୍ବଥା କରିବ । ତେଣେ ସନ୍ତୋଷ ବ୍ରହ୍ମାଶିବ ॥
ତାହାର ଇହପର ଲୋକେ । ସକଳ କାଳ ସୁଖେ ବଞ୍ଚେ ॥
ଏ ଭାବେ କୁମାରୀ ତୋହର । ପ୍ରଶଂସ ଗୁଣେ ଏ ସୁନ୍ଦର ॥
ଏ ସୃଷ୍ଟି ହେତୁର କାରଣ । ତୁ ଏବେ ମୋର ବୋଲ ଶୁଣ ॥
ମରୀଚି ମୁନି ଆଦି ଯେତେ । ତାହାଙ୍କୁ ବରି ଶୁଦ୍ଧ ଚିତ୍ତେ ॥
ଯଥା ଉଚିତେ କର ଶୋଭା । ନିଗମ ମାର୍ଗେ ଦେଇ ବିଭା ॥
ତୋ ଯଶ ରହୁ ସର୍ବକାଳେ । ଅଶେଷ ଅବନୀ ମଣ୍ଡଳେ ॥
ଏବେ ତୋହର ଘରେ ହରି । ଅଂଶେ ଜନ୍ମିଲେ ଦେହ ଧରି ॥
ଜୀବଙ୍କୁ ନିସ୍ତାରଣ ଅର୍ଥେ । କପିଳ ରୂପେ ଏ ଜଗତେ ॥
ଜ୍ଞାନ ବିଜ୍ଞାନ ଯୋଗ କର୍ମେ । ଦେଖ ଏ ଯତି ରୂପ ଧର୍ମେ ॥
ଶିରେ ଅରୁଣ ଜଟାଧାର । ସ୍ୱରୂପେ ଜଗତ ସୁନ୍ଦର ॥
କର ଚରଣ ପଦ୍ମଚିହ୍ନ । ସୁନ୍ଦର ଜଗତ ମୋହନ ॥
ଏମନ୍ତ କର୍ଦ୍ଦମକୁ ଚାହିଁ । ସେ ଦେବହୂତି ବିଚାରଇ ॥
କହନ୍ତି ପ୍ରଭୁ ବେଦବର । ଧନ୍ୟ ଜୀବନ ମାତା ତୋର ॥
ଏ ହରି ତୋହର ନନ୍ଦନ । ଛେଦିବ ସଂସାର ବନ୍ଧନ ॥
ପରମଜ୍ଞାନ ତୋତେ କହି । ଇଚ୍ଛା ଭ୍ରମିବ ସେ ମହୀ ॥
ଏ ସିଦ୍ଧ ଗଣଙ୍କ ଈଶ୍ୱର । ସୁସିଦ୍ଧ ଯୋଗୀଙ୍କ ଗୋଚର ॥
ତୋ ଯଶ ପ୍ରୀତିର ବିଧାନ । ହୋଇବ କପିଳ ଏ ନାମ ॥

## ମୈତ୍ରେୟ ଉବାଚ

କର୍ଦ୍ଦମ ଦେବହୂତି ବେନି । ଆଶୀଷ କହି ପଦ୍ମଯୋନି ॥
ନାରଦ ଆଦି ପୁତ୍ରମେଳେ । ଅନେକ ମୁନି ଏ ଗହଳେ ॥
ସେ ହଂସମୟ ଯୁକ୍ତଦାନେ । ସେକ୍ଷଣେ ଗଲେ ନିଜସ୍ଥାନେ ॥
ବ୍ରହ୍ମା ଅନ୍ତରେ ସେ କର୍ଦ୍ଦମ । ହରଷ ଚିତ୍ତେ ସୁସଂଭ୍ରମ ॥
ବ୍ରହ୍ମାର ଆଜ୍ଞା ଘେନି ଶିରେ । ଋଷିଙ୍କି ଆଣି ନିଜ ଘରେ ॥
ମଙ୍ଗଳ ଦୂର୍ବା ସୂତ୍ର ରଖେ । ବର ବରିଲା ଏକେ ଏକେ ॥
ମରୀଚି ମୁନି ହସ୍ତ ଧରି । କଳା କନ୍ୟାକୁ ବରେ ବରି ॥
ଆନନ୍ଦ ମନେ କରି ବିଭା । କି ଅବା ପଟାନ୍ତର ଦେବା ॥
ତ୍ରିଦଶେ ଦେଖନ୍ତି ଆକାଶେ । ହର ଗଉରୀ ପ୍ରାୟେ ଦିଶେ ॥
ଦ୍ୱିତୀୟ କନ୍ୟା ଅନୁସୂୟା । ଅତ୍ରି ମୁନିଙ୍କି ଦେଲାବିଭା ॥
ଶ୍ରଦ୍ଧାଲୁ ଅଙ୍ଗୀରସ ମୁନି । ବରିଲା ଷଡ଼ ଅର୍ଘ୍ୟ ଘେନି ॥
ପୁଲସ୍ତେ ହବି ଦେଲା ଦାନେ । ପୁଲହେ ମତି ବିଦ୍ୟମାନେ ॥
କ୍ରତୁକୁ ଦେଲା କ୍ରିୟାବତୀ । ଭୃଗୁକୁ ସମର୍ପିଲା ଦିତି ॥
ବଶିଷ୍ଠେ ବରି ଅରୁନ୍ଧତୀ । ବହ୍ନୁକୁ ତୋଷ ପ୍ରିୟମତୀ ॥
ଧନେ ସନ୍ତୋଷି ତାଙ୍କ ମନ । ଗଲେ ସେ ଯେ ଯାହା ଭୁବନ ॥
ମୁନିଙ୍କି କରି ଅନୁଯାନ । ସମ୍ଭ୍ରମ କର୍ଦ୍ଦମର ମନ ॥
ଘରେ ଯେ ପୁତ୍ର ଉପୁଜିଲା । ବିବାହ ବିଳମ୍ବେ ବଞ୍ଚିଲା ॥
ବେଗେ ମିଳିଲା ପୁତ୍ର ପାଶେ । ସ୍ୱଭାବେ ଜନକ ବିଶ୍ୱାସେ ॥
ବିଷ୍ଣୁର ଜନ୍ମ ବିଷ୍ଣୁ ଗର୍ଭେ । ସୁମରି ଶୁଦ୍ଧ ବାକ୍ୟ ଦମ୍ଭେ ॥
ଏମନ୍ତେ ପୁତ୍ର ପାଶେ ଯାଇ । ବୋଲେ କପୋଳେ ହସ୍ତଦେଇ ॥
ଦେଖ ମୋହର ଦୃଷ୍ଟପଣ । ନ ସେବି ତୁମ୍ଭର ଚରଣ ॥
ଏ ଗୃହ ଅନ୍ଧକୂପ ପଥେ । ପଡ଼ିଲି ଅମଙ୍ଗଳ ଯନ୍ତ୍ରେ ॥
ଯେ ପ୍ରାଣୀ ଗୃହବନ୍ଧ ତେଜେ । ବନସ୍ତେ ତା ଚରଣ ଭଜେ ॥
ଅନେକ କାଳ ଯୋଗ ସାଧେ । ଯୋଗ ସମାଧି ଅନୁବାଦେ ॥
ପର୍ଣ୍ଣ କୁଟୀର ମଧ୍ୟେ ଥାଇଁ । ବଢ଼ନ୍ତି ତୋ ଚରଣ ଧ୍ୟାଇ ॥
ତୋ ପାଦ ଦେଖିବାର ଆଶେ । ସାଧନ୍ତି ଅନେକ ବରଷେ ॥
ଏମନ୍ତେ ପ୍ରଭୁ ତୁମ୍ଭେ ହରି । ମୋର ଭୁବନେ ଅବତରି ॥
ସ୍ୱଭାବେ ସର୍ବ ଭୂତେ ଥାଉ । ଭଗତମାନେ ବଶ ହେଉ ॥

ଭଗତ ହିତେ ନାନା ଯୋନି । ତୁ ଜନ୍ମୁ ନିଜ ତେଜ ଘେନି ॥
ପଣ୍ଡିତ ଜନେ ତୋ ବିଶ୍ୱାସେ । ଭଜନ୍ତି ତୋ ଚରଣ ଆଶେ ॥
ସଂସାର ତେଜି ଯେ ଭଜନ୍ତି । ଅନ୍ତେ ତୋ ଶରୀରେ ପଶନ୍ତି ॥
ତୁ ପୁଣି ବ୍ରହ୍ମ ନରହରି । ପ୍ରକାଶୁ ଜ୍ୟୋତିରୂପ ଧରି ॥
ସେ ରୂପେ କରି ନମସ୍କାର । ଭୋ ନାଥ ଦୋଷ ମୋ ନ ଧର॥
ତୁ ନାଥ ପରମ ପୁରୁଷ । ପ୍ରକୃତି ମଧ୍ୟେ ତୁ ପ୍ରକାଶ ॥
ମହତ୍ତ୍ୱ ଦ୍ୱାଦି ରୂପେ ତୋର । ଭୂତଙ୍କ ସୂକ୍ଷ୍ମ ଅନ୍ଧକାର ॥
ତ୍ରିଗୁଣ ମୟ କାଳରୂପୀ । ତ୍ରିଗୁଣ ସର୍ବଭୂତେ ବ୍ୟାପି ।
ରୂପ ପରମ ଜ୍ଞାନ ଅର୍ଥେ । କପିଳ ରୂପେ ଏ ଜଗତେ ॥
ତୁ ପ୍ରଜାପତିଙ୍କର ନାଥ । ତୁ ଯେ ହୋଇଲୁ ମୋର ସୁତ ॥
ତୋତେ ମାଗଇ ପ୍ରିୟ ଅର୍ଥେ । ତୋ ପାଦେ ଧ୍ୟାନ ଏ ଜଗତେ
ଯେମନ୍ତେ ବଞ୍ଚଇ ବନସ୍ତେ । ଏମନ୍ତେ ଅଜ୍ଞା ଦେବ ମତେ ॥

## ଶ୍ରୀ ଭଗବାନ ଉବାଚ

କର୍ଦ୍ଦମ ମୁଖ ଚାହିଁ ହସି । ଆଜ୍ଞା ଦିଅନ୍ତି ବ୍ରହ୍ମରାଶି ॥
ତୋହର ତପ ତେଜ ବଳେ । ମୋ ଅବତାର ଯେ ଶୟଳେ ॥
ନିଜ ବଚନ ସତ୍ୟ କରି । ତୋ ପତ୍ନୀ ଗର୍ଭେ ଅବତରି ॥
କେ ଲଭିପାରେ ମୋର ଭାବ । ମୋ ରୂପ ଯୋଗୀଙ୍କି ଦୁର୍ଲ୍ଲଭ ॥
ମୁଁ ଏବେ ସଂସାରର ଅର୍ଥେ । ଜ୍ଞାନ ପ୍ରକାଶି ଏ ଜଗତେ ॥
ଏ ସିଦ୍ଧ ଦେହେ ଥିବି ମୁହିଁ । ଯାବତ ଚନ୍ଦ୍ର ସୂର୍ଯ୍ୟ ମହୀ ॥
ପୂର୍ବେ ଯେ ତତ୍ତ୍ୱଜ୍ଞାନ ଥିଲା । କାଳର ବଳେ ନଷ୍ଟ ଗଲା ॥
ସେ ତତ୍ତ୍ୱ ପ୍ରକାଶିବା ଅର୍ଥେ । ମୋ ଅବତାର ଏ ଜଗତେ ॥
ତୋହର ସତ୍ୟପ୍ରିୟ ଯେତେ । ସର୍ବସ୍ୱ କର୍ମ ଦେଇ ମତେ ॥
ମୋର ଚରଣ ଭାବବତୀ । ଚଳତୁ ଗୃହ ଦ୍ୱନ୍ଦ ଏଡ଼ି ॥
ସୁଦୃଢ଼େ ମୋ ପାଦ ସେବିବୁ । ଦୁର୍ଜ୍ଜୟ ମରଣୁ ବଞ୍ଚିବୁ ॥
ଅନ୍ତେ ବସିବୁ ମୋ ଚରଣେ । ଯା ବେଗେ ତପ ସାବଧାନେ॥
ମୁଁ ଆତ୍ମାନନ୍ଦ ଜ୍ୟୋତି ପର୍ବେ । ପ୍ରକାଶୁ ସର୍ବ ଭୂତ ହୃଦେ ॥
ଆତ୍ମାର ମଧ୍ୟେ ଆତ୍ମା ଦେଖ । ମୃତ୍ୟୁ ସମ୍ମୁଖୁ ଆତ୍ମା ରଖ ॥
ଅଧ୍ୟାତ୍ମ ବିଦ୍ୟା ସାଧ କରି । ଘୋର ବନ୍ଧନୁ ତୁ ନିସ୍ତରି ॥

## ମୈତ୍ରେୟ ଉବାଚ

ଏମନ୍ତ ହରି ଆଜ୍ଞା ପାଇ । ଅଭୟ ପଦେ ମନ ଦେଇ ॥
ବିଷ୍ଣୁଙ୍କୁ ପ୍ରଦକ୍ଷିଣ କଲା । ମଉନ ବ୍ରତେ ବନ ଗଲା ॥
ନିଃସଙ୍ଗ ସଙ୍ଗ ନିରପେଣ । ଅନିଳ ପ୍ରାୟେ ସେ ପ୍ରତ୍ୟକ୍ଷ ॥
ଭ୍ରମଇ ବନ ଘନ ଗିରି । ଦେଖଇ ସର୍ବଭୂତେ ହରି ॥
ଏମନ୍ତେ ଭକ୍ତିରସେ ରସି । ଜିଣିଲା କାଳଦଣ୍ଡ ଫାଶି ॥
ଇନ୍ଦ୍ରିୟ ବୟ ଗୁଣ ଭେଦି । ଯେସନେ ନିଶ୍ଚଳ ଜଳଧି ॥
ସର୍ବଙ୍କ ପ୍ରାୟେ ଆତ୍ମ ଭାବ । ଯେଣେ ବୋଲାଇ ବାସୁଦେବ॥
ସ୍ୱଭାବେ ରହି ଧୀରପଣେ । ନିର୍ବାଣ ଭକ୍ତି ସାଧି ବନେ ॥
ଅନ୍ତେ ହରିଲା ହରି ଭାବ । ଯେ ହରି ଦେବଙ୍କୁ ଦୁର୍ଲ୍ଲଭ ॥
ଏମନ୍ତେ ବିଦୁରର ଆଗେ । ମୈତ୍ରେୟ କହେ ପ୍ରିୟଭାବେ॥
ନିର୍ମଳ ଭାଗବତ ବାଣୀ । ଭାଷା ପ୍ରବନ୍ଧେ ପରିମାଣି ॥
ତୃତୀୟସ୍କନ୍ଧେ ବିଷ୍ଣୁରସ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ମୈତ୍ରେୟ*
*ସମ୍ବାଦେ କର୍ଦ୍ଦମ ନିସ୍ତାରଣେ ନାମ ଚତୁର୍ବିଂଶୋଽଧ୍ୟାୟଃ ।*

## ପଞ୍ଚବିଂଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ମୁନି ଅନ୍ତରେ ଦେବହୂତି । ସ୍ୱଭାବେ ସୁଗୁଣ ଯୁବତୀ ॥
କ୍ଷେଣେ ପୁତ୍ର ପାଶେ ଯାଇ । କହେ କପୋଳେ କରଦେଇ॥

## ଦେବହୂତି ଉବାଚ

ଅଜ ନିର୍ଗୁଣ ସେ ନିର୍ଲକ୍ଷ । ତୋର ଭଜନେ ତୁ ପ୍ରତ୍ୟକ୍ଷ ॥
ଜୀବର ପରିତ୍ରାଣ ଅର୍ଥେ । ତୋ ଅବତାର ଏ ଜଗତେ ॥
ସ୍ତିରୀ ସ୍ୱଭାବେ ମୁହିଁ ମନ୍ଦ । ତୁ ପ୍ରାଣୀ ଆତ୍ମା ଆଦିକନ୍ଦ ॥
କି ରୂପେ ସଂସାରୁ ତରଇ । ଜୀବର ବନ୍ଧନ ଫିଟଇ ॥
ମୁଁ ଯେ ଅଜ୍ଞାନ ଅଧୋଗତି । ସ୍ୱଭାବେ ଜନ୍ମ ମୁଁ ଯୁବତୀ ॥
ତୁ ମତେ ଆଜ୍ଞା ଚକ୍ଷୁ ଦେଇ । ଉଦ୍ଧର ଦୁର୍ଗତି ଖଣ୍ଡଇ ॥
ତୁ ମତେ ଦୟା ଏବେ କର । ଏ ଘୋର ସଂସାରୁ ଉଦ୍ଧର ॥
ମାତୃ ସ୍ୱଭାବେ କର ଦୟା । ଯେମନ୍ତେ ତୁଟେ ମୋର ମାୟା
ମାତା ବଚନ ହୃଷୀକେଶ । ସେ କ୍ଷଣେ ଧରି ମୁନିବେଶ ॥
ଅଶେଷ ଜୀବ ଦେହ ବାସୀ । କହନ୍ତି ପ୍ରଭୁ ବ୍ରହ୍ମରାଶି ॥
ଶୁଣ ଜନନୀ କହୁଁ ତୋତେ । ତୁ ଯହୁଁ ପ୍ରଶ୍ନ କଲୁ ମୋତେ ॥
ଯାହାର ଚିତ୍ତ ଭକ୍ତି ଯୋଗେ । ଚିନ୍ତଇ ମୋ ଚରଣ ଯୁଗେ ॥
ତେବେ ଏ ବିଷୟେ ବୈରାଗ୍ୟ । ଉପୁଜେ ଯାହାର ଯେ ଭାଗ୍ୟ ॥
ତେବେ ଏ ଘୋର ମାୟାବଳେ । ନିସ୍ତରେ ଭକ୍ତି କରଷଣେ ॥
ଶୁଣ ଜନନୀ ଯେ ନିର୍ଗୁଣ । କହିବା ଭକ୍ତିର ଲକ୍ଷଣ ॥
ଜୀବର ବନ୍ଧ ଜନ୍ମ ପାଶ । ଯେ ଭାବେ ହୋଇବ ଉଶ୍ୱାସ ॥
ଏ ଭବ ଜଳଧି ତରଙ୍ଗ । ହରଇ ସାଧୁଙ୍କର ସଙ୍ଗ ॥

ଭଜନ୍ତି କୈବଲ୍ୟ କାରଣେ । ମନ ନଭ୍ରମେ ଘୋର ବନେ ॥
ପ୍ରାଣୀ ବିଷୟେ ଦୟାମତ । କରନ୍ତି ଆତ୍ମା ସମ ଚିତ୍ତ ॥
ଜଗତ ଆତ୍ମା ପ୍ରାୟେ ଦେଖେ । ନିଷ୍କଳ ରଖି ଆତ୍ମାସୁଖେ ॥
ନିରତେ ଗୋବିନ୍ଦ ଚରଣେ । ସ୍ତୁତି କୀର୍ତ୍ତନ ଅନୁକ୍ଷଣେ ॥
ଦାରା ସୁଜନ ସୁତ ଧନ । ଗୃହ ଉପେକ୍ଷି ଚଳେ ବନ ॥
ସକଳ କର୍ମ ଛାଡ଼ି ଦୃଢ଼େ । ମୋ ଭାବେ ମଜ୍ଜେ ଅତିଗାଢ଼େ ॥
ମୋ ରୂପ ଗୁଣ କର୍ମ ଯେତେ । ଶ୍ରବଣ କୀର୍ତ୍ତନ ନିରତେ ॥
ଏମନ୍ତ ଭାବ ନିତ୍ୟେ କରି । ଏ ମାୟା ଭାବୁ ଯାନ୍ତି ତରି ॥
ଏମନ୍ତେ ଭକ୍ତ ଜନ ସଂଗ । କରନ୍ତେ ତରେ ଏ ତରଙ୍ଗ ॥
ଭଗତ ଜନ ସଂଗ ଯେବେ । କରଇ ଭ୍ରମ ଖଣ୍ଡେ ତେବେ ॥
ମୋର ଚରିତ ଗୁଣ ଗାଥା । କରଇ ଅନ୍ୟୋ ଅନ୍ୟେ ଚିନ୍ତା ॥
ଗୁଣୀ ଗୁଣଇ ସୁସ୍ଥ କରେ । ଆନନ୍ଦେ ପୁଲକେ ଶରୀରେ ॥
ନିରତେ ଭକ୍ତି ଶ୍ରଦ୍ଧା ବଢ଼େ । ଭବ ବନ୍ଧନ ଫାଶ ଛିଡ଼େ ॥
ଅଶେଷ ଜନ୍ମେ ଭାଗ୍ୟୋଦୟେ । ଭଗତ ଜନ ସଂଗ ହୋଇଯେ ॥
ଭଗତି ଶ୍ରଦ୍ଧା ନିଜ ପ୍ଳବେ । ବସି ତରିବ ଭକ୍ତି ଭାବେ ॥
ଭଗତ ସଙ୍ଗେ ନାବେ ବସି । ଏ ସିନ୍ଧୁ ତରଣେ ସାହାସୀ ॥
ଯେଣୁ ଭଗତ ପ୍ରିୟ ହରି । ତା ପାଦ ଭଜି ସିନ୍ଧୁତରି ॥

## ମୈତ୍ରେୟ ଉବାଚ

କି ରୂପେ ଭକ୍ତି ଯୋଗ ଜାଣି । କି ରୂପେ ଭକ୍ତି ପରିମାଣି ॥
ଏଣେ ମୋ ଚିତ୍ତର ସଂଶୟେ । କହ ହେ ପ୍ରଭୁ ମହାମାୟେ ॥
ଏମନ୍ତ ମାତା ବାକ୍ୟ ଶୁଣି । କପିଳ ବେଶେ ଚକ୍ରପାଣି ॥
ଶୁଣି ଜନନୀ ବାକ୍ୟ ସାର । ଆଗମ ନିଗମ ପ୍ରକାର ॥
ଯେ ଧର୍ମ କହେ ଶାସ୍ତ୍ର ବାଦେ । ଇନ୍ଦ୍ରିୟ କର୍ମର ସମ୍ବାଦେ ॥
କେ ବର୍ଣ୍ଣେ କେବା ନିଜ ଧର୍ମେ । ଇନ୍ଦ୍ରିୟ କରେ ସେହୁକର୍ମେ ॥
ଏ ସର୍ବ କର୍ମ ଦେଇ ମତେ । ସୁଖେ ଭଜଇ ଅବିରତେ ॥
ଆପଣେ ଅକିଞ୍ଚନ ରୂପେ । ଭ୍ରମଇ ମାୟାମୟ କୂପେ ॥
ଭଗତି ଜନେ ସେ ପ୍ରଧାନ । ଲଭଇ କଇବଲ୍ୟ ସ୍ଥାନ ॥
ଜୀବ ବାସନା ବନ୍ଧହରେ । ନପଡ଼େ ସଂସାର ସାଗରେ ॥
ବ୍ୟାଧି ଯେସନେ ସ୍ଥାନେ ସ୍ଥାନେ । ହରଇ ଔଷଦର ପାନେ ॥
ଏ ଭାବେ ଯେ କରେ ବିଚାର । କୈବଲ୍ୟ କିବା ବସ୍ତୁ ଚିର ॥
ନିତ୍ୟେ ଭଗତି ଜନ ମଧ୍ୟେ । ବିଷ୍ଣୁ ଚରିତ ନାନା ଛନ୍ଦେ ॥
ନିରତେ କରି ଅନୁପାମ । ଆନନ୍ଦେ ସୁଧାନୀରେ ସ୍ନାନ ॥
ଏମନ୍ତେ ବଞ୍ଚେ ଦୁଃଖସୁଖେ । ସେ ମୋର ନିଜ ରୂପଦେଖେ ॥
ତାର ମହିମା ଅନ୍ୟ ଜନେ । ନ ଦେଖେ ଏ ତିନି ଭୁବନେ ॥
ସୁନ୍ଦର ପ୍ରସନ୍ନ ବଦନ । ବିକଚ କମଳ ଲୋଚନ ॥
ଏ ରୂପ ଛାଡ଼ି ଯାର ମନ । କହଇ କିବା ପ୍ରୟୋଜନ ॥
ମୋର ଅମୃତ କଥା ବାଣୀ । ତନୁ ରୋମାଞ୍ଚ କରେ ଶୁଣି ॥
ମୋ ଶ୍ୟାମ ସୁନ୍ଦର ଶରୀର । ସର୍ବ ସମ୍ପଦ ମନୋହର ॥
ଏ ରୂପେ ପ୍ରାଣୀ ଚିତ୍ତ ହରେ । କୈବଲ୍ୟ ଲଭେ ଅଭ୍ୟନ୍ତରେ ॥
ଅଷ୍ଟ ଐଶ୍ୱର୍ଯ୍ୟ ଯାହାଚିନ୍ତି । ଅନନ୍ତ ଅତ୍ୟନ୍ତ ବିଭୂତି ॥
ସେ ସର୍ବେ ଖଟନ୍ତି ତା ପାୟେ । ସେ ଭକ୍ତ ଜନେ ଦୂରନୋହେ ॥
ଏଣୁ ଭଗତ ରଖେ ହରି । କାଳ ପାଶରେ ଗ୍ରସ୍ତ କରି ॥
ଯାହାର ଇଷ୍ଟବନ୍ଧୁ ମୁହିଁ । ଯେ ମୋତେ ସର୍ବ ସମର୍ପଇ ॥
ନାହିଁ ତା ଇହ ପରଲୋକେ । ନ ମାନେ ଆତ୍ମା ଦୁଃଖସୁଖେ ॥
ଏକାନ୍ତେ ଭକ୍ତିବଳେ ମୋତେ । ମନ ବଚନେ ନିତ୍ୟେ ଚିନ୍ତେ ॥
ସର୍ବ ସମର୍ପେ ଅବିରତେ । ପଶଇ ମୋର ପାଦଗତେ ॥
ମୁଁ ଜୀବ ପୁରୁଷ ପ୍ରଧାନ । ମୋ ବିନୁ ବନ୍ଧୁ ନାହିଁ ଆନ ॥
ଦେଖ ମୋହର ଭୟ ଯେତେ । ଯନ୍ତ୍ରିତେ ଅଛନ୍ତି ଜଗତେ ॥
ମୋ ଆଜ୍ଞା କରିଥାନ୍ତି ନିତ୍ୟେ । ନିତ୍ୟ କମ୍ପିତ ଭୟ ଚିତ୍ତେ ॥
ଦେଖ ପବନ ମୋର ଡରେ । ବହଇ ବାହ୍ୟ ଅଭ୍ୟନ୍ତରେ ॥
ମତେ ଡରଇ ସୁନାସୀର । କେବେହେଁ ନ କରେ ସମର ॥
ମୋ ଡରେ ଯମ ଦଣ୍ଡ ଧରେ । ମୃତ୍ୟୁ ସକଳ ପ୍ରାଣ ହରେ ॥
ମତେ ଯେ ଧର୍ମ ଲୋକେ ରଖେ । ଅଗ୍ନି ଜଳଇ ଯେ ପ୍ରତ୍ୟକ୍ଷେ ॥
ଶଶାଙ୍କ ଦିଶଇ ଆକାଶେ । ପ୍ରାଣୀଙ୍କ ଜ୍ଞାନ ସେ ଆଶ୍ୱାସେ ॥
ଏମନ୍ତେ ମହାଯୋଗୀ ଜନେ । ଯନ୍ତ୍ରିତ ମୋହର ବଚନେ ॥
କରନ୍ତି ପ୍ରାଣୀ ହିତ ନିତ୍ୟେ । ଅନନ୍ୟ ଭାବ ଏ ଜଗତେ ॥
ଏବେ ତୁ ଭକ୍ତି ଯୋଗ ଶୁଣ । ଯେଣେ ଜୀବର ପରିତ୍ରାଣ ॥
ଯେ ଭାବେ ଏ ସଂସାର ତୁଟେ । ସୁଦୃଢ଼େ ଦୃଢ଼ ଭ୍ରାନ୍ତି ଫିଟେ ॥
ତତ୍ତ୍ୱ ତପନ ତମ ନାଶେ । ନିର୍ମଳ ଜ୍ଞାନ ହିଁ ପ୍ରକାଶେ ॥
ଏଣୁ ସେ ତତ୍ତ୍ୱଜ୍ଞାନ କହି । ଶୁଣ ଜନନୀ ମନ ଦେଇ ॥
ଏମନ୍ତେ ତତ୍ତ୍ୱଜ୍ଞାନ ଜାଣି । ଯେ ଭାବେ ଭଜେ ଚକ୍ରପାଣି ॥
ସେ ଦୟା ସାଗର ମୁରାରି । ମାତା ବିଷୟେ ଦୟାକରି ॥
ଯେତେ କହିଲେ ଉପଦେଶ । ସୁଜନ ଜନେ ଏଣେ ରସ ॥
ତୃତୀୟ ସ୍କନ୍ଧେ ଭାଗବତେ । ଜୀବର ପରିତ୍ରାଣ ଅର୍ଥେ ॥
ବିଷ୍ଣୁ ଚରିତ ସୁଧା ରସ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ଦେବହୂତି ପ୍ରତି କପିଳୋପଦେଶ କଥନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।*

## ଷଡ଼ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର ତତ୍ତ୍ୱବାଣୀ । ଯେ ଜୀବ ତରେ ଯାହା ଶୁଣି ॥
କପିଳ ରୂପେ ପ୍ରିୟ ଭାବେ । ଜନନୀ ପ୍ରବୋଧ ପ୍ରସ୍ତାବେ ॥
ଯାହା କହିଲେ ନାରାୟଣ । ନିଶ୍ଚଳେ ଚିତ୍ତେ ଯେବେ ଶୁଣ ॥

### ଶ୍ରୀ ଭଗବାନ ଉବାଚ

ବିଷ୍ଣୁ କହନ୍ତି ତୋଷ ମନେ । ମନୁ ତନୟ ସାବଧାନେ ॥
ଶୁଣ ଜନନୀ ଏକ ମନେ । ସେ ହରି ଅଜ ନିରଞ୍ଜନେ ॥
ନିର୍ଗୁଣ ନିର୍ବିକାର ମୟେ । ବସଇ ଅତ୍ମା ରୂପେ ଦେହେ ॥
ସେ ଧର୍ମବନ୍ତ ଦେହ ହୋଇ । ଆତ୍ମାକୁ ଅହଙ୍କାର ବହି ॥
ଆତ୍ମାର ଦୁଃଖ ସୁଖ ଜାଣେ । କର୍ମର ଗତି ନ ପ୍ରମାଣେ ॥
ଆତ୍ମାର ବନ୍ଧ ଆତ୍ମ ପାକେ । ନିତି କଳ୍ପଇ ଦୁଃଖେ ସୁଖେ ॥
ଦେହକୁ କରେ ଅନୁମାନ । ଏଣେ ହରଇ ନିଜଜ୍ଞାନ ॥
ନିରତେ ଅହଂକାର ଘେନି । ପୁଣି ଜନ୍ମଇ ନାନା ଯୋନି ॥
ଯେସନେ ଜଳେ ପ୍ରାଣୀ ପଶେ । ପୁଣି ଉଠନ୍ତେ ଶିର ଦିଶେ ॥
ଜନ୍ମ ମରଣ ଏହି ମତେ । ଅର୍ଜ୍ଜଇ କର୍ମର ଆୟତେ ॥
ଆତ୍ମାର କର୍ମ ଫଳ ଘେନି । ଏମନ୍ତେ ନାନା ଯୋନି ଭ୍ରମି ॥
ଅଜ୍ଞାନେ ଯେ ଘୋର ସଂସାରେ । ଜୀବ ଭ୍ରମଇ ଅନ୍ଧକାରେ ॥
ଦୁଃଖ ଲଭଇ ବାରେ ବାରେ । ଆତ୍ମାର ଗତି ନ ବିଚାରେ ॥
ସ୍ୱପ୍ନରେ ଯେତେ ଅର୍ଥ ଦେଖି । ନାନା ପ୍ରପଞ୍ଚ ଉପଲେଖି ॥
ଦେଖନ୍ତେ ମଣେ ତା ପ୍ରତକ୍ଷ । ଯେହ୍ନେ ଜାଗ୍ରତେ ହୋଇ ମିଛ ॥
ଯେମନ୍ତେ ଜୀବର ସଂସାର । ମାନସ ମଧ୍ୟେ ତୁ ବିଚାର ॥
ଯେ ଜୀବ ଆହାର ଅଧୀନ । ତା ରୂପେ ପଡ଼ଇ ବନ୍ଧନ ॥
ଯେଣୁ ସଂଯମ ଚିତ୍ତ କରି । ବିଷୟ ବିଷରୁ ଉଦ୍ଧରି ॥
ନିୟମ ସ୍ଥାପି ସୁନିଶ୍ଚଳେ । ଛାଡ଼ି ଇନ୍ଦ୍ରିୟ ସୁଖମେଳେ ॥
ବିଷ୍ଣୁ ବିଷୟେ ମନ ଭରି । ସାଧିବ ଶରୀର ପାସୋରି ॥
ଯତ୍ନେ ସାଧିବ ଯୋଗ ତପ । ସତ୍ୟ ଶଉଚ ସିଦ୍ଧ କଳ୍ପ ॥
ମୋହର ଗୁଣ କର୍ମ ଯଶ । ଶ୍ରବଣେ ହୋଇବ ହରଷ ॥
ସକଳ ଜୀବେ ଜୀବ ପ୍ରାୟେ । ନିତ୍ୟ ଦେଖିବ ବିଷ୍ଣୁମୟେ ॥
ପ୍ରାଣୀଙ୍କ ହିତେ ଥିବ ନିତ୍ୟେ । ଚଞ୍ଚଳ ଇନ୍ଦ୍ରିୟ ସଂଗତେ ॥
ଆଶ୍ରମ ଶାସ୍ତ୍ର ତତ୍ତ୍ୱ ମତେ । ସତ୍ୟ ଶଉଚ ଇନ୍ଦ୍ରି ଯେତେ ॥
କରି ଛାଡ଼ିବ ଘରୁ ଦେହ । ନିରହଂକାର ମାୟାମୋହ ॥
ହୋଇବ ତୃପ୍ତି ଦୟା ଶାନ୍ତି । ଧଇର୍ଯ ଛାଡ଼ି ମନ ଭ୍ରାନ୍ତି ॥
ଯେତେ ସାଧନେ ଚିତ୍ତ କରି । ଦୃଢ଼େ ସାଧିବ ବ୍ରହ୍ମଚାରୀ ॥
କୃଷ୍ଣର ଶ୍ରବଣ କୀର୍ତ୍ତନେ । ନିରତେ ସାଧିବ ଯତନେ ॥
ଯେ ସର୍ବ ପ୍ରକାରେ ସାଧନ । ଖଣ୍ଡଇ ଜୀବର ବନ୍ଧନ ॥
ହରି ଚରଣ ଭକ୍ତି ବିନେ । ଉପାୟ ନ ଘଟଇ ଅନ୍ୟେ ॥
ଯେବେ ଜନନୀ ସ୍ଥିରେ ଶୁଣ । କହିବା ଯୋଗର ଲକ୍ଷଣ ॥
ଯେ ଜୀବ ବିଷୟ ଭ୍ରମଣ । ମନକୁ ସନ୍ତୋଷେ ବନ୍ଧନ ॥
ସନ୍ତୋଷ ଚିତ୍ତେ ଯଥାଲାଭେ । ଭଜିବ ଚରଣ ସେ ଭାବେ ॥
ଯେ ଗ୍ରାମ ଧର୍ମ ପରିହରି । ମୋକ୍ଷ ସାଧନେ ଆଶ୍ରାକରି ॥
ଜୀବ କୁଶଳ ସର୍ବ ସ୍ଥାନେ । ରୁନ୍ଧିବ ଇନ୍ଦ୍ରିୟ ପବନେ ॥
ହୃଦୁ ତେଜିବ ମିଥ୍ୟା ଭାଷା । ଦୁରିତ ବୁଦ୍ଧି ପରହିଂସା ॥
ଧନ ଅର୍ଜ୍ଜନେ ଅତି ଗାଢ଼େ । ଚିନ୍ତା ନ କରିବ ନିବିଡ଼େ ॥
ତପ ଶଉଚ ବ୍ରହ୍ମଚାରୀ । ଦେବ ଅଭ୍ୟାସ ନିତ୍ୟ କରି ॥
ପୁରୁଷ ଅର୍ଚ୍ଚନେ ମଉନ । ସାଧିବ ଯୋଗର ଆସ୍ଥାନ ॥
ବ୍ରହ୍ମ ଆସନ ସମ୍ୟାସନେ । ରୁନ୍ଧିବ ଇନ୍ଦ୍ରିୟ ପବନେ ॥
ସାଧିବ ଧାରଣା ମଉନ । ନିଶ୍ଚଳ ମାର୍ଗେ ରଖିମନ ॥
ଅଷ୍ଟାଙ୍ଗ ଯୋଗ ଆଦିଘେନି । ଯାହା ଚିନ୍ତନ୍ତି ବ୍ରହ୍ମଜ୍ଞାନୀ ॥
ବିଷ୍ଣୁର ଶ୍ରବଣ କୀର୍ତ୍ତନେ । ସେ ଯେଣୁ କରିବ ଯତନେ ॥
ଏମନ ଦୁଷ୍ଟ ଦୁରାଚାର । ସ୍ୱଭାବେ ବଳେ ବଳିଆର ॥
ବିଷ୍ଣୁ ଭଜନ ରଜ୍ଜୁ ବଳେ । ବନ୍ଧନେ ରହିବ ନିଶ୍ଚଳେ ॥
ବିଷ୍ଣୁ ଚରଣ ପଦ୍ମ ଦୁଇ । ଧ୍ୱଜ ଅଙ୍କୁଶ ବିରାଜଇ ॥
ଚନ୍ଦ୍ର କିରଣ ନଖ ପନ୍ତି । ଗଞ୍ଜେ ଶଶାଙ୍କ ରବି ଜ୍ୟୋତି ॥
ନିରତେ ଚିତ୍ତ ଯାର ଦିଶେ । ହୃଦୟ ତନୁ ବେଗେ ଧ୍ୱଂସେ ॥
ଯେ ପାଦ ପଦ୍ମେ ଶୌଚ ନୀରେ । ଭାବେ ଶଙ୍କର ବହେ ଶିରେ ॥
ଯେଣୁ ବିଶ୍ୱର ପାଦ ଧରେ । କାଳାନ୍ତେ ଜଗତ ସଂହରେ ॥
ସେ ପାଦପଦ୍ମ ଅବିରତେ । ହୃଦେ ଚିନ୍ତିବ ଦୃଢ଼ ଚିତ୍ତେ ॥
ତେବେ ଭକତ ତମ ନାଶେ । ପର୍ବତ ଯେହ୍ନେ ବଜ୍ରତ୍ରାସେ ॥
ଯେମନ୍ତେ ଚିନ୍ତି ନରହରି । ଅନ୍ତେ ଲଭଇ ବିଷ୍ଣୁପୁରୀ ॥
ଏବେ ଜନନୀ କହୁ ଶୁଣ । ଯେ ଭକ୍ତି ଯୋଗର ଲକ୍ଷଣ ॥
ଦମ୍ଭ ମତ୍ସର ହିଂସା ଛଳେ । କ୍ରୋଧ କୁଶଳ ଭାବଭରେ ॥
ବିଷ୍ଣୁଙ୍କୁ ଭଜେ ଏହିଜ୍ଞାନେ । ବ୍ରତ ବିଷୟ ସନ୍ଧାନେ ॥
ତାମସ ଭକ୍ତି ବୋଲି ତାରେ । ତା ଭାବ କେ କରେ ଗୋଚରେ ॥
ଯେ ବିଷ୍ଣୁ ଭକ୍ତି ମଧ୍ୟେ ବର । ତା ଭାବ ଦେବେ ଅଗୋଚର ॥
ଦାରା ତନୟ ଧନ ଅର୍ଥେ । ବିଷ୍ଣୁଙ୍କୁ ଭଜେ ବାହ୍ୟ ଅର୍ଥେ ॥
ରାଜସ ଭକ୍ତି ବୋଲି ତାରେ । ବଞ୍ଚଇ ଆତ୍ମା ଅପ୍ରକାରେ ॥
ବାହ୍ୟ ଅନ୍ତରେ ମାୟାତେଜେ । କେବଳ ବିଷ୍ଣୁ ଭାବେ ଭଜେ ॥

ସ୍ୱାତ୍ତ୍ୱିକ ଭକ୍ତି ବୋଲି ତାରେ । ନ ବୁଡ଼େ ସଂସାର ସାଗରେ ॥
ଶୁଣ ଜନନୀ ପରିମାଣି । ସାତ୍ତ୍ୱିକ ଭକ୍ତି ଯେଣେ ଜାଣି ॥
ବିଷ୍ଣୁର ଗୁଣ ଶୁଣେ ଯେବେ । ରୋମ ପୁଲକେ ତନୁଭାବେ ॥
ଆନନ୍ଦେ ଅଶ୍ରୁ ନେତ୍ରେ ବହେ । କଣ୍ଠେ ଗଦ୍‌ଗଦେ ବାଣୀ କହେ ॥
ଚୈତନ ବୁଦ୍ଧି ଅହଂକାରେ । ଯେ ଭୂତ ଭବିଷ୍ୟ ଗୋଚରେ ॥
ଏ ସର୍ବ ହରି ଭାବେ ମାନେ । ଗଙ୍ଗା ସମୁଦ୍ର ଜଳ ଯେହ୍ନେ ॥
ସାତ୍ତ୍ୱିକ ଭକ୍ତି ବୋଲି ତାରେ । ସେଭ ଦୁର୍ଲଭ ଏ ସଂସାରେ ॥
ନିର୍ଗୁଣ ବ୍ରହ୍ମେ ସେ ମିଶଇ । ଉଦୟ ଅସ୍ତ ତାର ଦେହୀ ॥
ଏମନ୍ତ ଭକ୍ତି ଚାରି ଭାବେ । ତୋ ଆଗେ କହିଲି ପ୍ରସ୍ତାବେ ॥
ମୁକ୍ତି ଯେ ଚାରି ଭାବେ ଜାଣି । ସଂକ୍ଷେପେ ଶୁଣ ଗୋ ଜନନୀ ॥
ଏ ଚାରି ମୁକ୍ତି ଯେ ପ୍ରତକ୍ଷେ । ଗୋବିନ୍ଦ ଭକ୍ତି କି ଯେ ଇଛେ ॥
ନିତ୍ୟେ ଭାବନ୍ତି ନିର୍ବିକାରେ । ସେ ଧନ୍ୟ ସଂସାର ସାଗରେ ॥
କେ ଜାଣି ପାରେ ତାର ଭାବ । ସେ ଟି ପ୍ରତକ୍ଷେ ପଦ୍ମନାଭ ॥
ଏ ଚାରି ପ୍ରକାରେ ପ୍ରମାଣି । ଭକ୍ତି ଲକ୍ଷଣ ଏଣେ ଜାଣି ॥
ଅବିଦ୍ୟା ବନ୍ଧ ଏଣେ ନାଶ । ନିର୍ମଳ କୈବଲ୍ୟ ପ୍ରକାଶ ॥
ଏମନ୍ତେ ଭକ୍ତି ଯୋଗ ବାଣୀ । କପିଳ ମାତା ଆଗେ ଭଣି ॥
ସଂସାର ଜନହିତ ଅର୍ଥେ । ତୃତୀୟ ସ୍କନ୍ଧେ ଭାଗବତେ ॥
ଭବ ବନ୍ଧନ ଏଣେ ନାଶ । ଯେ ପ୍ରାଣୀ ଏଭାବେ ବିଶ୍ୱାସ ॥
ଜ୍ଞାନ ଅମୃତ ମୟ ରସ । କହିଲେ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କପିଳ ଦେବହୂତି ସମ୍ୱାଦେ ନାମ ଷଡ଼ବିଂଶୋଽଧ୍ୟାୟଃ ।*

## ସପ୍ତବିଂଶ ଅଧ୍ୟାୟଃ

### ମୈତ୍ରେୟ ଉବାଚ

ବିଷ୍ଣୁ କହନ୍ତି ଶୁଣ ମାତା । ଯେ ବିଧି ତତ୍ତ୍ୱ ଜ୍ଞାନ କଥା ॥
ମୋହର ମାୟା ଅଗୋଚର । ଜାଣି ନ ପାରେ ବ୍ରହ୍ମାହର ॥
ଯେ କଥା ଶୁଣି ପ୍ରାଣୀ ଚିରେ । ପୁଲକ ଅଶ୍ରୁଜଳ ନେତ୍ରେ ॥
ସକଳ ଗୁଣେ ସେ ଭଜନ୍ତି । ଭବ ସଂକୁଟୁ ତରିଯାନ୍ତି ॥
ବିଷ୍ଣୁ ମାୟାରେ ଏ ସଂସାରେ । ଯେ ଜୀବ ନାନା କର୍ମ କରେ ॥
ଶରୀର ଦାରା ଧନ ପୁତ୍ର । ଗୃହ ସୁହୃଦ ବନ୍ଧୁମିତ୍ର ॥
ସ୍ୱଭାବେ ସତ୍ୟ ପ୍ରାୟ ମଣେ । ଛାଡ଼ି ନ ପାରି ଏକାକ୍ଷଣେ ॥
ଯେ ପୁଣ ସ୍ୱପ୍ନ ପ୍ରାୟେ ସତ । କ୍ଷଣକେ ଭଜେ ବିପରୀତ ॥
ଏମନ୍ତେ ଥାଇ ସର୍ବ କର୍ମେ । ଯେ ଭାବେ ନାନା ଯୋନିଭ୍ରମେ ॥
କର୍ମର ବଳେ କର୍ମ ବହେ । ସେ ଯେହ୍ନେ ଊର୍ଣ୍ଣ ନାଭିପ୍ରାୟେ ॥
ତାହାଙ୍କୁ ଦେଖି ନରହରି । ତକ୍ଷଣେ ନରରୂପ ଧରି ॥
ତିଳକେ ସକଳ ହରଇ । ଏ ଭାବ ମୂଢ଼ ନ ଜାଣଇ ॥
ଅନ୍ତରେ ନରକେ ପଡ଼ନ୍ତି । ପୁଣି ସଂସାରେ ସଞ୍ଚରନ୍ତି ॥
ସୁଖ ମଣନ୍ତି ମହାଦୁଃଖେ । ପୁଣି ଭ୍ରମନ୍ତି ଅତିରେକେ ॥
ସାଧୁ ସେବନ ସାଧୁସଂଗେ । ନ କରି ଭଜେ ଅନୁରାଗେ ॥
କୁଟୁମ୍ବ ପୋଷେ ଦୁଃଖ ଭରେ । ଅଜ୍ଞାନେ ନାନା କର୍ମକରେ ॥
ଘୋର ଗହନ ମାର୍ଗେ ବୁଡ଼ି । ଅଜ୍ଞାନେ ଭ୍ରମେ ଦୁଃଖେ ପଡ଼ି ॥
ସେ ସର୍ବ ସୁଖ ପ୍ରାୟେ ମଣେ । କୃଷ୍ଣ ନ ଭଜେ ଏକ କ୍ଷଣେ ॥
କୁଟୁମ୍ବ ପୋଷଣ ଉପାୟେ । ନିରତେ ଆକୁଳ ହୃଦୟେ ॥
ଗ୍ରନ୍ଥି ବନ୍ଧନେ ଅଙ୍ଗ ଫୁଟେ । କଫେ ନିରୋଧ କଣ୍ଠତଟେ ॥
ସ୍ମରଣ ବିସ୍ମରଣ କରେ । ଶୁଏ ଅଜୀର୍ଣ୍ଣ କଳେବରେ ॥
ଉତ୍ଥାନେ ପାରେ ଅସମର୍ଥେ । ତା ଦେଖି ପୁତ୍ରଦାରା ଭୃତ୍ୟେ ॥
କରନ୍ତି ଅତି ତାପମାନ । ବୋଲିଣ ନିନ୍ଦିତ ବଚନ ॥
କିଛି ନ ପାରେ ତୁଣ୍ଡେ କହି । ଅନ୍ତରେ ଅପମାନ ପାଇ ॥
ଅନ୍ତରେ କ୍ଷୁଧାର ଆକୁଳେ । ଯେବା ମାଗଇ ଯେତେବେଳେ ॥
କର୍ମ ଆୟତ୍ତେ ଯେବା ପାଇ । ସନ୍ତୋଷ ନୋହେ ତାହା ଖାଇ ॥
ନିରତେ ବହେ ଅପମାନ । ବଞ୍ଚଇ କୁକୁର ସମାନ ॥
କ୍ଷୁଧାରେ କମ୍ପଇ ଶରୀର । ଭକ୍ଷଇ ଅଳପ ଆହାର ॥
କିଛି ନ ବୋଲେ ଅହଙ୍କାରେ । ଭିତରେ ପକ୍ଷୀ ପ୍ରାୟେ ଝୁରେ ॥
ନିରତେ କଫ ବାତ ପିତ୍ତେ । ଶ୍ୱାସେ ନାଶିକା ହୋଏ ଗ୍ରସ୍ତେ ॥
କାଶ ଉଠଇ ଘନ ଘନ । କ୍ଷଣକେ ଲଭେ ଅଚେତନ ॥
ଧନ ଅର୍ଜନ ନାନା ପାକେ । ରାତ୍ର ଦିବସ ଅତିରେକେ ॥
କୁଟୁମ୍ବ ପୋଷଣେ ଶକତା । ନିରତେ କରେ ଧର୍ମ ଚିନ୍ତା ॥
ଧନକୁ ଗୁରୁ ପ୍ରାୟେ ମଣେ । ଆତ୍ମାର ଗତି ସେ ନ ଜାଣେ ॥
କୁଟୁମ୍ବ ସୁଖେ ଆତ୍ମା ସୁଖୀ । ସୁଖେ ନ ଦେଖି ନିତ୍ୟେ ଦୁଃଖୀ ॥
ନାନା ପ୍ରକାରେ ଅର୍ଜ୍ଜେ ଧନ । ସୁଦଢ଼େ କରେ ତା ସଞ୍ଚନ ॥
ସେ ଯେବେ ରାଜାରାଜ୍ୟତୋଷେ । ସଞ୍ଚିତ୍ ଧନ ହିଁ ବିନାଶେ ॥
ପୁଣ ଅର୍ଜନ କରେ ମତି । ରାତ୍ର ଦିବସ ନ ଜାଣନ୍ତି ॥
ନାନା ପ୍ରକାରେ ନାନା ସ୍ଥାନେ । ପଶନ୍ତି ଧନ ଅରଜନେ ॥
ଜୀବନେ ନ କରନ୍ତି ଆଶ । ବିପାକେ ଲଭନ୍ତି ବିନାଶ ॥
ଧନ ଅର୍ଜନେ ପାଇ କ୍ଳେଶ । ବ୍ୟାଧି ମରଣେ ହୋୟେ ଶେଷ ॥
ଧନ ଅର୍ଜନ ରହେ ଦୂରେ । ଆତ୍ମା ଏ ଉଦରେ ନିର୍ଭରେ ॥

ଶରୀର ସମ୍ଭାଳି ନ ପାରେ । ଜରା ଯନ୍ତ୍ରିତ କଳେବରେ ॥
ବକର ପ୍ରାୟେ କରେ ଦୃଷ୍ଟି । ସ୍ୱଭାବେ ନ ପାରଇ ଉଠି ॥
ଅଙ୍ଗ କମ୍ପଇ କଫବାତେ । ନିରତେ ଥାଇ ଅନ୍ତର୍ଗତେ ॥
ବିଅର୍ଥେ ଜୀବନ ଉପେକ୍ଷି । ଅନ୍ତେ ତାହାର କିସ ସୁଖୀ ॥
ଏମନ୍ତେ ତାର ଦୁଃଖେ ଦୁଃଖୀ । ବନ୍ଧୁ ବାନ୍ଧବେ ହୋନ୍ତି ଦୁଃଖୀ ॥
କାନ୍ଦଇ ବଂଧୁ ରୂପ ଚାହିଁ । ବଦନୁ ବାକ୍ୟ ନ ସ୍ଫୁରଇ ॥
ଚିନ୍ତଇ କିରୂପେ ମରିବି । କାହିଁ କେବଣ ମାର୍ଗେ ଯିବି ॥
ମୋର ମରଣେ ପୁତ୍ରନାରୀ । କେମନ୍ତେ ଥିବେ ଗୃହକରି ॥
ଦୁଃଖେ ସଞ୍ଚିଲି ଯେତେ ଧନ । ମୁଁ ମଲେ ନେବଟି ଯେ ଆନ ॥
ଏ ଯେ ହୋଇବ ଅରକ୍ଷିତ । ଏଣୁ ବ୍ୟାକୁଳ ମୋର ଚିତ୍ତ ॥
ଭିତରେ ବ୍ୟାକୁଳେ କାନ୍ଦଇ । ତା ମନ କେହି ନ ଜାଣଇ ॥
ଜୀବନ ରହେ ଦାରା ଧନେ । ଗୋବିନ୍ଦ ନ ସ୍ମରେ ଅଜ୍ଞାନେ ॥
ଏମନ୍ତେ ଜୀବନର ଅନ୍ତେ । ବେଗେ ମିଳନ୍ତି ଯମଦୂତେ ॥
ପ୍ରଚଣ୍ଡ ରୂପ ଭୟଙ୍କର । ଉଦଣ୍ଡ ଫାଶ ଚର୍ମଧର ॥
ତାହାଙ୍କ ରୂପକୁ ସେ ଚାହିଁ । ଅଜ୍ଞାନେ ଜୀବନ କମ୍ପଇ ॥
ମୂତ୍ର ପୁରୀଷ ହୁଅ ନେତ୍ର । ସମ୍ଭାଳି ନୋହଇ ସମର୍ଥ ॥
ଯମ କିଙ୍କରେ ଆଗସରି । ଯାତନା ଶରୀରକୁ ଧରି ॥
ବଂଧନ କରନ୍ତି ସେ ଭୟେ । ତର୍ଜ୍ଜନ୍ତି ରାଜା ଭଟ ପ୍ରାୟେ ॥
ବଂଧନ କରି ଚର୍ମଫାଶେ । ଦଣ୍ଡ ପ୍ରହାରେ ମହାରୋଷେ ॥
ସେ ରୂପ କେହି ନ ଦେଖନ୍ତି । ଅନ୍ଧାର ପଥେ ଘେନି ଯାନ୍ତି ॥
ସର୍ପ କୁକୁର ମହାତ୍ରାସ । ପଛେ ଭକ୍ଷନ୍ତି ତାର ମାଂସ ॥
ତାହାଙ୍କ ରୂପ ଦେଖି ଡରି । କାନ୍ଦଇ ଉଚ୍ଚ ନାଦ କରି ॥
ଯେ ମାର୍ଗେ ଜଳ ବୃକ୍ଷ ନାହିଁ । ପ୍ରାଣ ସମ୍ବଳ ମିଳେ ନାହିଁ ॥
କ୍ଷୁଧା ତୃଷାରେ ପ୍ରାଣ ଦହେ । ଚଳନ୍ତେ ଦଣ୍ଡେ ହେ ନ ରହେ ॥
ବୈତରଣୀର ନଦୀ କୂଳେ । ବାଲୁକା ଜଳଇ ଅନଳେ ॥
ଜଳି ତାପଇ ଅତି ଖରେ । ସେ ତାପ କେ ସହେ ଶରୀରେ ॥
ଯେବେ ନ ପଶେ ଭୟ କରି । ସେ କ୍ଷଣେ ଶିରେ ଯଷ୍ଟିମାରି ॥
ପ୍ରବେଶ କରନ୍ତି ବହନେ । ନିନ୍ଦନ୍ତି କୁତ୍ସିତ ବଚନେ ॥
ଯେ ମାର୍ଗେ ଜଳବୃକ୍ଷ ନାହିଁ । ପାଣ ସମ୍ବଳ ମିଳେ ନାହିଁ ॥
ଏମନ୍ତ ପଥେ ନ୍ୟନ୍ତି ଧରି । ଏକାନ୍ତେ କର୍ମକୁ ଆଦରି ॥
କ୍ଷଣ ମୂର୍ଚ୍ଛିତ ଜ୍ଞାନ ହତେ । ପୁଣ ପଡ଼ଇ ଭୂମିଗତେ ॥
ମାରଣେ ସତ୍ୱରେ ଉଠଇ । ଅଜ୍ଞାନେ ପୁଣି ସେ ପଡ଼ଇ ॥
ନିଅନ୍ତି ସହସ୍ରେ ଯୋଜନ । ଭୂମିକି ଯମର ଭୁବନ ॥
ଏତେ ଯୋଜନ ଘୋରଦାଣ୍ଡେ । ଘେନି ପଶନ୍ତି ତିନି ଦଣ୍ଡେ ॥
ଯମ ନିକଟେ ତାକୁ ନେଇ । କହନ୍ତି ଶିରେ କରଦେଇ ॥
ଭୋ ଧର୍ମରାଜ ତୋ ବଚନେ । ଆଣିଲୁ ତୋର ଅବଧାନେ ॥
ସେ ଯମ କରଣେ ପଚାରି । ତା ପାପ ସୁକୃତ ବିଚାରି ॥
ସୁକୃତ ରହେ ସ୍ୱର୍ଗ ଲୋକେ । ନାରକୀ ପଡ଼ଇ ନରକେ ॥
କହନ୍ତି ପ୍ରଭୁ ନାରାୟଣ । ପାପୀ ଯାତନା ମାତା ଶୁଣ ॥
ଯେ ପ୍ରାଣୀ ନରକେ ପଡ଼ନ୍ତି । ଦୁଗର୍ମ ତାର ହୃଦ ଗତି ॥
ଅଗ୍ନି ଦହଇ ତା ଶରୀର । ଭକ୍ଷନ୍ତି ଶୃଗାଳ କୁକୁର ॥
ମିଳନ୍ତି ମହା ମହା ସର୍ପେ । ବସନ୍ତି ତାର ଅଙ୍ଗେ କୋପେ ॥
ଦଂଶନେ ସଂକୋଚେ ଶରୀର । ବେଢ଼ି ଭକ୍ଷନ୍ତି ନିରନ୍ତର ॥
କ୍ଷୁର ପ୍ରହାରି ତାର ପିଣ୍ଡେ । କାଟି କରନ୍ତି ଖଣ୍ଡେ ଖଣ୍ଡେ ॥
ଉଭାନେ ପକାଇ ଧରଣୀ । ଗଜେ ମାରନ୍ତି ଦନ୍ତ ଆଣି ॥
ଟୋଳନ୍ତି ପର୍ବତ ଶିଖରେ । ଶିଳେ ପଡ଼ନ୍ତି ସେ ନିର୍ଭରେ ॥
ଗର୍ଭେ ପୋଷନ୍ତି ଅତି ରୋଷେ । ଧୂମ ପୂରିତ କରୁ ନାଶେ ॥
ଏମନ୍ତେ ଯମର ଆୟରେ । ନାନା ଯାତନା ଦ୍ୟନ୍ତି ଯେତେ ॥
ଚତୁର ଅଶୀତି ନରକେ । ନେଇ ପକାନ୍ତି ଏକେ ଏକେ ॥
ଏମନ୍ତେ ସଂସାର ଭ୍ରମଣେ । ବ୍ୟାକୁଳ କୁଟୁମ୍ବ ପୋଷଣେ ॥
ବାଆ ବର୍ଷଇ ଏକ ସରେ । ଦୁଃଖ ସୁଖ ଉଦର ଭରେ ॥
ଅନ୍ତେ ଯମର ଘର ଯାନ୍ତେ । କେହି ନ ଗମେ ତାର ସାଥେ ॥
ବନ୍ଧୁ ବାନ୍ଧବ ଯେତେ ଜନେ । ଦହନ କରନ୍ତି ଶ୍ମଶାନେ ॥
ବିମୁଖେ ନିଜପୁରେ ଯାନ୍ତି । ତା ସଙ୍ଗେ କେହି ନ ରହନ୍ତି ॥
ଅର୍ଜ୍ଜିଲା ପାପ ପୁଣ୍ୟ ବେନି । ପଥେ ଚଳନ୍ତେ ତାହା ଘେନି ॥
ଏ ଦୁଇ ବଳେ ପରଲୋକେ । ଭୋଜନ କରେ ଏକେ ଏକେ ॥
ଅଧର୍ମେ ଧନାର୍ଜ୍ଜନ କରି । କୁଟୁମ୍ବ ପ୍ରପୋଷଣେ ଭରି ॥
ଧର୍ମ ନ ସଞ୍ଚେ କଣ ମାତ୍ରେ । ନିତ୍ୟେ ମଜ୍ଜଇ ଦାରା ସୁତେ ॥
ତାହାର ନାହିଁ ଇହ ପର । ଅନ୍ତେ ନରକ ମାତ୍ର ସାର ॥
ଏମନ୍ତେ କର୍ମର ଆୟରେ । ଗମନ୍ତି ପ୍ରେମାର୍ଜ୍ଜିତ ପଥେ ॥
ସେ ପାପ ପୁଣ୍ୟ ଅବଶେଷ । ପୁଣସେ ଉଦରେ ପ୍ରବେଶ ॥
ଭୁଞ୍ଜନ୍ତି ପ୍ରାଣୀ ଦେହେ ଘେନି । କହିବା ଶୁଣ ଗୋ ଜନନୀ ॥
ଏମନ୍ତେ ମାତାର ସମୀପେ । ଗୋବିନ୍ଦ କପିଳ ସ୍ୱରୂପେ ॥
ଯେତେ କହିଲେ ଜ୍ଞାନବାଣୀ । ସୁଜନ ଜନେ ଏହାଶୁଣି ।
ହରିବ ଭବ ବନ୍ଧ ତ୍ରାସ । କହିଲେ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କପିଳ ଦେବହୂତି*
*ସମ୍ବାଦେ ନାମ ସପ୍ତବିଂଶୋଽଧ୍ୟାୟଃ ।*

## ଅଷ୍ଟାବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ସକଳ ମୁନି ଜନେ । ଯାହା କହିଲେ ଜନାର୍ଦ୍ଦନେ ॥
ପୁଣି ଜନନୀ ମୁଖ ଚାହିଁ । କହନ୍ତି ପ୍ରଭୁ ଭାବଗ୍ରାହୀ ॥

### କପିଳ ଉବାଚ

ଯେମନ୍ତେ ସୁକୃତ ବିପାକେ । ଯେ ଜୀବ ଭୁଞ୍ଜେ ପରଲୋକେ ॥
ଯେମନ୍ତେ ପୁଣି ଦେହ ପାଇ । ଶୁଣ ଜନନୀ ତାହା କହି ॥
ପୁରୁଷ ଦେହ ରସ ରୂପେ । ପଶଇ ଆତ୍ମାର ସମ୍ମୁଖେ ॥
ଯେଜନ୍ମ ଯେ ଗର୍ଭେ ସଂଯୋଗେ । ପଶଇ ରଜ ବୀର୍ଯ ଯୋଗେ ॥
ପ୍ରଥମ ଦିନ ଜଳ ମୟେ । ବୁଦ୍‌ବୁଦ ପଞ୍ଚ ଦିନେ ହୋୟେ ॥
ପୁଣ ଅପରେ ପଞ୍ଚଦିନେ । ବଞ୍ଚଇ ବଦରି ସମାନେ ॥
ଅଣ୍ଡ ପ୍ରମାଣେ ପଞ୍ଚଦଶେ । ଶୁଣ ଜନନୀ ମନତୋଷେ ॥
ସେ ଅଣ୍ଡ ପୁଣି ପୂର୍ଣ୍ଣ ମାସେ । ଶିର ପ୍ରକାଶେ କନ୍ଧ ଦେଶେ ॥
ପୁଣ ପଞ୍ଚଚାଳିଶି ଦିନେ । ପ୍ରକାଶେ ଶ୍ରବଣ ଲୋଚନେ ॥
କର ଚରଣ ବେନି ମାସେ । ସେ ମୂର୍ଦ୍ଧା ଅର୍ଦ୍ଧ ଦେହେ ବସେ ॥
ତୃତୀୟ ମାସେ ରୋମ ଲିଙ୍ଗ । ଚତୁର୍ଥ ମାସେ ଜାନୁ ଜଂଘ ॥
ଚର୍ମ ଶୋଣିତ ମାଂସ ମେଦ । ଅସ୍ଥି ସଂଚାର ଅସ୍ଥି ଭେଦ ॥
ପଞ୍ଚମ ମାସେ ତୃଷା କ୍ଷୁଧା । ଯେଣେ ଜୀବନ ପ୍ରାଣ ବାଧା ॥
ଏମନ୍ତେ ଥାଇ ଅତି ଶ୍ରମେ । ଅଷ୍ଟମ ମାସେ ଗର୍ଭେ ଭ୍ରମେ ॥
ମାତୃ ଭୋଜନେ ନିତ୍ୟେ ବଢ଼େ । ଶୟନେ ଦୁଃଖ ମହାଗାଢ଼େ ॥
ଅଶେଷ ସ୍ଥାନେ ଦୁଃଖ ସହେ । ସ୍ଥାବର ଆଦି ଚାରି ଦେହେ ॥

### ଗର୍ଭ ଉବାଚ

ଏମନ୍ତେ ଗର୍ଭ ମଧ୍ୟେ ଯାଇ । ସ୍ତୁତି କରଇ ଗର୍ଭ ଚାହିଁ ॥
ତୁ ନାଥ ପୂର୍ଣ୍ଣ ଜ୍ଞାନମୟେ । ଆତ୍ମା ସ୍ୱରୂପେ ବସେ ଦେହେ ॥
ସକଳ ହୃଦୟ ପ୍ରକାଶ । ଗଗନେ ଯେହ୍ନେ ରବିଭ୍ରାସ ॥
ଏବେ ପ୍ରମାଣ ତୋର ପ୍ରାୟେ । ଭୋ ନାଥ କର ମୋତେ ଦୟେ ॥
ଏ ଗର୍ଭବାସ ଦୁଃଖ ଯେତେ । ଏମନ୍ତେ ନ ଲାଗଇ ମୋତେ ॥
ନିର୍ଲେପ ନିରଞ୍ଜନ ତୁହି । ତୋ ରୂପ ନଜାଣଇ କେହି ॥
ତୋ ପାଦ ନ ଭଜିଲି ମୁହିଁ । ସେ ଦୋଷେ ଗର୍ଭେ ଦେହ ବହି ॥
ତେଣୁ ଯେ କଲ ଗର୍ଭ ବାସ । ଜନ୍ମିଣ ପୁଣି ହେଲ ନାଶ ॥
ତୁ ଏବେ ମୋତେ ଦୟାକର । ଏ ଗର୍ଭ ସଂକଟୁ ଉଦ୍ଧର ॥
ଏମନ୍ତେ ଗର୍ଭର କଷଣ । ଏଥୁ ଉଦ୍ଧର ନାରାୟଣ ॥
ଏ ଗର୍ଭୁ ହୋଇଲେ ନିସ୍ତାର । ତୋର ଚରଣେ ଚକ୍ରଧର ॥
ମୁଁ ପୁଣି ଭଜିବି ନିରତେ । ଏ ଦୁଃଖ ନ ଲଭି ଯେମନ୍ତେ ॥
ଏମନ୍ତେ ମନ ନିରନ୍ତରେ । ନିବେଶି ବିଷ୍ଣୁର ପୟରେ ॥
ଏମନ୍ତ ଭାବେ ସ୍ତୁତି କରେ । ଦୁଃଖ ଜୀବନକୁ ନ ସ୍ମରେ ॥
କୃଷ୍ଣହୁଁ ନ ଜାଣଇ ଆନେ । ମନ ବଚନେ ଅବଧାନେ ॥
ଏମନ୍ତେ ଭଜି ଭାବ ବଶେ । ଅନେକ ସ୍ତୁତି ନବମାସେ ॥
କରନ୍ତେ ନୋହଇ ଉଶ୍ୱାସ । ଏ ଦୁଃଖ ଲଭେ ଦଶମାସ ॥
ଦୁର୍ଗମ ଜନନୀ ଉଦରେ । ପ୍ରସୂତି ପବନ ପ୍ରସରେ ॥
ଶୂଳ ଦୁଃସହ ଅତିରେକେ । ତକ୍ଷଣେ ହୋଏ ଅଧୋମୁଖେ ॥
ବିକଳେ ବେନି କର ଯୋଡ଼ି । ଅଜ୍ଞାନେ ଭୂମି ତଳେ ପଡ଼ି ॥
ପଡ଼ି ଭୂମିରେ ଜ୍ଞାନ ଖଣ୍ଡେ । କ୍ୱାହଂ ଶବଦ କରେ ତୁଣ୍ଡେ ॥
ରୋଦନ କରେ ଘନ ଘନ । ତିଳକେ ଲଭେ ହତଜ୍ଞାନ ॥
ତକ୍ଷଣେ ମିଳି ବନ୍ଧୁଗଣେ । ତାହାର ଜୀବନ ରକ୍ଷଣେ ॥
ମୁଖେ ପିଅଇ ସ୍ତନ ରସ । ଯେଣେ ହୁଅଇ ପ୍ରାଣ ତୋଷ ॥
ଗର୍ଭର ଜ୍ଞାନ ସେ ପାସୋରେ । ଶୟନେ ମଳ ମୂତ୍ର କରେ ॥
କର ଚରଣ ନ ଚଳନ୍ତି । ଶରୀରେ କୃମୀ କୀଟେ ଖାନ୍ତି ॥
ଯିବାକୁ ନୋହଇ ସମର୍ଥ । ଜନ୍ମ ସ୍ତକିତ ପାଦ ହସ୍ତ ॥
ଅଜ୍ଞାନ ଭାବେ ଦୁଃଖ ସହେ । ଡାକିଣୀ ଭୂତ ପ୍ରେତ ଭୟେ ॥
ନାନା ପ୍ରକାରେ ପୀଡ଼ା କରେ । ଜୀବନ ସଂଶୟ ଉଦ୍ଧରେ ॥
ଏମନ୍ତେ ନାନା ଦୁଃଖ ସହେ । ଜନ୍ମ ସ୍ୱଭବେ ପଡ଼ି ରହେ ॥
ଏମନ୍ତେ ବଢ଼େ ଦିନେ ଦିନେ । ଯେ ରୂପେ ପୌଗଣ୍ଡ ଯୌବନେ
ବ୍ୟାକୁଳେ ଧନର ଅର୍ଜନେ । ଚିନ୍ତା ଆକୁଳ ଦୁଃଖ ମନେ ॥
ଦିନକୁ ଦିନ ଚିନ୍ତା ଗାଢ଼େ । ନିରତେ ଅହଙ୍କାର ବଢ଼େ ॥
ସନ୍ତତି ଜନ୍ମର ବ୍ୟାକୁଳ । କାମିନୀ ସଙ୍ଗେ ରତିମେଳ ॥
ବଞ୍ଚଇ ସୁଖ ପ୍ରାୟେ ମଣି । ଆତ୍ମାର ଦୁଃଖ ନ ପ୍ରମାଣି ॥
ଏ ପଞ୍ଚଭୂତ କଳେବରେ । ବଢ଼ଇ ମନୁଷ୍ୟ ଶରୀରେ ॥
ଚର୍ମ ଶୋଣିତ ବାତ ପିତ । ଅଶେଷ ରୋଗ ଯହିଁ ସ୍ଥିତ ॥
ମୋର ଶରୀର ବୋଲି ଜାଣେ । ବିଷ୍ଣୁ ମାୟାରେ ନ ପ୍ରମାଣେ ॥
ଏ ଦେହ ଅସତ୍ୟ ସ୍ୱଭାବେ । ଏ ଆତ୍ମା ବୁଦ୍ଧି ଅନୁଭବେ ॥
ପର ହିସଂନେ କରେ ମତି । ନିଜ ଶରୀରେ ସୁଖ ଚିନ୍ତି ॥
ଅସାଧୁ ସଙ୍ଗେ ନିତ୍ୟେ ଥାଇ । ସୁ ସାଧୁ ସଙ୍ଗ ନ ଇଚ୍ଛଇ ॥
ନିତ୍ୟେ ବିଷୟ ସଙ୍ଗ ଚିନ୍ତି । ଏଣୁ ନ ଲଭେ ଆତ୍ମାଗତି ॥
ଆହାର ଶୃଙ୍ଗାର ଇଚ୍ଛଇ । ନର୍ବନ୍ଧେ ନିତ୍ୟେ ମନଦେଇ ॥
ତାର ବିଶ୍ୱାସେ ମତି ମର୍ଜେ । ଜିହ୍ୱା ଇନ୍ଦ୍ରିୟ ରସେ ଭଜେ ॥
ଭଜଇ ବିଷୟ ତରଙ୍ଗ । କେବେ ହେ ନୋହେ ସାଧୁ ସଙ୍ଗ

ଆତ୍ମାକୁ ନ କରେ ବିଚାର । ଏଣୁ ଏ ଦୁଃଖ ମହାଘୋର ॥
ସାଧୁ ସଙ୍ଗମେ ଯାର ଚିତ୍ତ । କେବେହେଁ ନୋହେ ବିମୋହିତ ॥
ଯେବେ ଅପୂର୍ବ ପୁଣ୍ୟ ଗାଢ଼େ । ଆନନ୍ଦେ ବର୍ଦ୍ଧଇ ନିବିଡ଼େ ॥
ତାହାର ପୂର୍ବ ତପ ନାହିଁ । ସେ ସଙ୍ଗ ସେ ପାଇବ କାହିଁ ॥
ଅର୍ଜିଲେ ଅସାଧୁ ସଙ୍ଗମେ । ମିଳେ ଅନୀତି ଭାବେ ପ୍ରେମେ ॥
ଏ ସଙ୍ଗେ ମନ ଅତି ରସେ । ଆନନ୍ଦ ରସମୟେ ମିଶେ ॥
ସତ ଶଉଚ ଦାନ କ୍ଷମା । ଲଜ୍ଜା ସନ୍ତୋଷ ଦୟା ସୀମା ॥
ସ୍ତ୍ରୀ ସଙ୍ଗ ଦୋଷ ଏତେ ଗୁଣ । ପ୍ରତ୍ୟକ୍ଷେ ହରେ ତତକ୍ଷଣ ॥
ସ୍ତ୍ରୀ ସଙ୍ଗ ସଙ୍ଗ ସଙ୍ଗତରେ । ଯେ ପ୍ରାଣୀ ଦ୍ରୋହଚିନ୍ତେ ପରେ ॥
ଏ ପାପେ ପଡ଼ଇ ଦୁର୍ଗତି । ଯେଣେ ନ ବୋଲି ଇଷ୍ଟମତି ॥
ଏ ସଙ୍ଗ ଛାଡ଼ିବ ଯତନେ । କେବେହେଁ ନ ଚିନ୍ତିବ ମନେ ॥
ପୂର୍ବେ ମୋହିନୀ ଜନ୍ମ କରି । ମୋହେ ପଡ଼ିଲା ବେଦଧାରୀ ॥
ଏଣୁ ସ୍ତ୍ରୀ ସଙ୍ଗ ନ କରିବ । ଯେଣେ ମୋହିତ ବ୍ରହ୍ମା ଶିବ ॥
ଏଣୁ ନିଶ୍ଚୟେ ଯତ୍ନ କରି । କୁସଙ୍ଗ ସଙ୍ଗ ଦୂର କରି ॥
ଯତ୍ନ କରିବ ସନ୍ଥ ମେଳେ । ଯେ ସଙ୍ଗ ଯୋଗ ଭକ୍ତିବଳେ ॥
ଭକ୍ତି ମିଳନେ ମୁକ୍ତିଭାବ । ଭବ ଜଳଧି ତଟେ ନାବ ॥
ସେ ନାବେ ବସ ଦୃଢ଼କରି । ମାୟା ଜଳଧି ଯେହ୍ନେ ତରି ॥
ଯେମନ୍ତ କହି ନାରାୟଣ । ବନ୍ଦିଲେ ଜନନୀ ଚରଣ ॥
ସେ ହରି ଚରଣ ପଙ୍କଜେ । ସୁଜନ ଜନ ନିତ୍ୟେ ଭଜେ ॥
ତୃତୀୟ ସ୍କନ୍ଧେ ଭାଗବତ । କହିଲେ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କପିଳ ଦେବହୂତି*
*ସମ୍ବାଦେ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।*

## ଊନତ୍ରିଂଶ ଅଧ୍ୟାୟ

### କପିଳ ଉବାଚ

ପ୍ରାଣ କୁଟୁମ୍ବ ଧନ ଆଶେ । ପିତୃ ଦେବତା ଯଜ୍ଞେ ତୋଷେ ॥
ସ୍ୱଭାବେ ପିତୃଦେବ ଗଣେ । ଭଜନ୍ତି ଜଗତ ଲକ୍ଷଣେ ॥
କଳ୍ପିତ ବାଞ୍ଛା ଦେଖି ତାରେ । ଆଗମ ନିଗମ ବେଭାରେ ॥
ସେ ଫଳ ଭୁଞ୍ଜେ ଦୁଃଖ ସୁଖେ । କଳ୍ପଇ ଇହ ପରଲୋକେ ॥
ଲୋଭେ ସକଳ ଦେବ ପୂଜେ । ଭୂତ ପିଶାଚ ଗଣେ ଭଜେ ॥
ଏମନ୍ତେ ଫଳ ଆଶା କରି । ଆତ୍ମାର ଗତି ନ ବିଚାରି ॥
ବିଷୟା ଘୋର ଅନ୍ଧକାର । ଭଜଇ ଆତ୍ମା ଅଂହକାର ॥
ନିରତେ ହୋୟେ ଆତଯାତ । କେବେହେଁ ନ ଘୁଞ୍ଚେ ଅନର୍ଥ ॥
ସଂସାର ଜନଙ୍କର ଗତି । କେବେହେଁ ଶୁଦ୍ଧ ନୋହେ ମତି ॥
ଯେବେ ନ ଭଜେ ନାରାୟଣ । କି ଭାବେ ତୁଟିବ ତା ଭ୍ରମ ॥
ସେ ହରି ଶୁଦ୍ଧ ସତ୍ତ୍ୱମୟେ । ଗୁରୁ ସ୍ୱରୂପ ସର୍ବ ଦେହେ ॥
ଆନନ୍ଦମୟ ଦୟାନିଧି । ଚିନ୍ତିଲେ ଦେଇ ଅଷ୍ଟସିଦ୍ଧି ॥
ତାର ଚରଣେ ଯେବେ ଭଜେ । ଆଶ୍ରମ ମାୟା ଜଡ଼ ତେଜେ ॥
ସେ ହରି ଜଗତ ଜୀବନ । ଏ ମୟା ଭ୍ରମ ବିମୋଚନ ॥
ଏ ହରି ଭାବ ଯେବେ ଛାଡ଼େ । ଗୃହ ସଞ୍ଚନେ ଚିତ୍ତ ବଢ଼େ ॥
ପିତୃ ଦେବତା ଯଜ୍ଞେ କରି । ସଂସାର ସୁଖେ ଆଶାକରି ॥
କେବେହେଁ ଗତି ତାର ନାହିଁ । ଦେହାନ୍ତେ ନରକେ ପଡ଼ଇ ॥
ସେ ହରି ଅଭୟ ଚରଣେ । ଭୋ ମାତ ପଶତୁ ଶରଣେ ॥
ବିଷ୍ଣୁ ଚରିତ ଗୁଣ ଗାଥା । ଅଶେଷ ନିଧି ମୋକ୍ଷ ଦାତା ॥
ସେ କଥା ନ କଲେ ଶ୍ରବଣ । ଏ କଥା କରେ ଅନୁକ୍ଷଣ ॥
ଯେ ପ୍ରାଣୀ ଇହ ପର ଲୋକେ । ଭ୍ରମିଣ ପଡ଼ଇ ନରକେ ॥
କଳ୍ପାନ୍ତେ ଯେବେ ଜନ୍ମ ହୋଇ । ଶୂକର ରୂପେ ସେ ଜନ୍ମଇ ॥
ସେ ହରି ପିତୃ ଦେବ ମୟେ । ବସଇ ଜୀବ ରୂପେ ଦେହେ ॥
ଯେ ଏହା ଶୃତି ପଥେ ଶୁଣି । ଅନ୍ତଃ କରଣେ ପରିମାଣି ॥
ଅନ୍ତର ବାହ୍ୟେ ସେ ପ୍ରମାଣ । ଅନାଦି ପ୍ରଭୁ ନାରାୟଣ ॥
ସେ ହରି ସର୍ବଲୋକ ଗତି । ସନ୍ତୋଷେ ଦେଇ ସୁଖ ମତି ॥
ଏଣୁ ଗୋବିନ୍ଦ ଭାବ ଜାଣି । ଦୃଢ଼େ ହୃଦୟ ପରିମାଣି ॥
ଯେ ପ୍ରାଣୀ ଭଜେ ନିରବଧି । ସେ ତରେ ଅଜ୍ଞାନ ଜଳଧି ॥
ଭୋ ମାତା କହିଲି ମୁଁ ତୋତେ । ତୁ ଯେଣୁ ପ୍ରଶ୍ନ କଲୁ ମୋତେ ॥
ତୁ ଏବେ ସର୍ବ ପରିହର । ହୃଦେ ଗୋବିନ୍ଦ ଧ୍ୟାନ କର ॥
ଅଳ୍ପ ଆହାରେ ଦେହ ବହି । ଭୋ ମାତ ରହ ଯହିଁ ତହିଁ ॥
ଅଭେଦ ଜ୍ଞାନ ଭକ୍ତି ଯୋଗ । ଏଣେ ଖଣ୍ଡଇ ଭବ ରୋଗ ॥
ଭକ୍ତିର ଲାଭ ଜ୍ଞାନ ଧ୍ୟାନ । ଯେଣେ ନିଶ୍ଚଳେ ରହେ ମନ ॥
ମନ ନିଶ୍ଚିତେ ଜ୍ଞାନ ସ୍ଫୁରେ । ଅଜ୍ଞାନ ରହେ ଅତି ଦୂରେ ॥
ମୋକ୍ଷ ଲକ୍ଷଣ ଚାରିମତେ । କହିଲି ତୁମ୍ଭର ଅଗ୍ରତେ ॥
ଯେ ଭାବେ ଚିତ୍ତ କରି ସ୍ଥିର । ହରି ଚରଣେ ଆଶ୍ରେକର ॥
ସେ ଉପଦେଶ ହରିକଥା । ବିରଚି ସଭାମଧ୍ୟେ ଗୀତା ॥
ଏଣୁ ସଙ୍କଟୁ ତରେ ଗାଇ । ଅଭକ୍ତ ଜନଙ୍କୁ ନ କହି ॥
ଯେ ମୂଢ଼ ଅଧାର୍ମିକ ପ୍ରାଣୀ । ଯାହାଙ୍କୁ ସାଧୁରେ ନ ଗଣି ॥
ଯେ ଗୃହ ଦ୍ୱନ୍ଦ ଅବିରତେ । ଚିତ୍ତ ମଜାଇ ଭାବେ ନିତ୍ୟେ ॥
ଭକ୍ତ ଜନଙ୍କୁ ନିନ୍ଦାକରେ । ଆତ୍ମାର ଗତିକି ନ ସ୍ମରେ ॥

ନ ଜାଣି ଭବ ବନ୍ଧ ମୋକ୍ଷ । କଳୁଷ କର୍ମେ ନିତ୍ୟେ ଦକ୍ଷ ॥
ତାହାଙ୍କୁ ନ କହିବ ଯେହା । ଜନ୍ତୁଙ୍କୁ ନାହିଁ ଯାର ଦୟା ॥
ଯେ ପ୍ରାଣୀ ସର୍ବଜନ ହିତେ । କର୍ମ କରଇ ଶୁଦ୍ଧ ଚିତ୍ତେ ॥
ନିର୍ମଳ ଚିତ୍ତ ଶୁଦ୍ଧ ଭାବ । ବିଷୟେ ବିରକ୍ତ ସ୍ୱଭାବ ॥
ଦମ୍ଭ ମତ୍ସର ହିଂସାମାନ । ଏଣେ ନ ରହେ ଯାର ମନ ॥
ଚିତ୍ତେ ନ ରହେ କାମକ୍ରୋଧ । ନିରହଙ୍କାର ମନ ବୋଧ ॥
ଏମନ୍ତ ପାତ୍ରେ ଏହା କହି । ଅଜ୍ଞାନ ମୂଢ଼ ନ ଜାଣଇ ॥
ଯେ ଭକ୍ତି ତତ୍ତ୍ୱ ଯେ ନିର୍ଗୁଣ । ଅଶେଷ ପରମ କାରଣ ॥
ଯେ ବାଣୀ ଯେବା ଶୁଣି କହେ । ଅଶେଷ କର୍ମ ବନ୍ଧ ଦହେ ॥
ଯେ ଭାବେ ଭାବି ବିମୋଚନ । ସେ ଲଭେ ବିଷ୍ଣୁର ଭୁବନ ॥
ଯେମନ୍ତ ପ୍ରଭୁ ଚକ୍ରପାଣି । ମାତାର ଆଗେ ତତ୍ତ୍ୱ ଭଣି ॥
ତାରିଲେ ଜନନୀର ପ୍ରାଣ । ସୁଜନେ ଚିତ୍ତେ ଯେହା ଗୁଣ ॥
ସୁଜନ ହିତେ ଭାଗବତ । ଭାଷା ପ୍ରବନ୍ଧେ ଜ୍ଞାନତତ୍ତ୍ୱ ॥
ଜୀବର ଅବିଦ୍ୟା ତାରଣେ । ବ୍ରାହ୍ମଣ ଜଗନ୍ନାଥ ଭଣେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କପିଳ ପ୍ରସ୍ତାବେ ନାମ ଊନତ୍ରିଂଶୋଽଧ୍ୟାୟଃ ।*

## ତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ପୁତ୍ର ବାକ୍ୟ ଶୁଣି । ଆନନ୍ଦ କର୍ଦ୍ଦମ ଘରଣୀ ॥
ଚରଣେ ପୁନଃପୁନଃ ପଡ଼ି । କହେ କପୋଳେ କର ଯୋଡ଼ି ॥
ଭୋ ନାଥ କର ମୋତେ ତ୍ରାହି । ତୋ ବିନୁ ଅନ୍ୟଗତି ନାହିଁ ॥
ବିଷ୍ଣୁର ନାଭି ପଦ୍ମ ମୂଳେ । ବ୍ରହ୍ମା ଉପୁଜେ ମହା ଜଳେ ॥
ପ୍ରଜା ସର୍ଜନେ ଅବଧାନେ । ସାଧିଲା ଯାର ପାଦ ଧ୍ୟାନେ ॥
ସେ ହରିନାମ ଯେ ସଂସାରେ । ଯେ ବା ଶୁଣନ୍ତି ନିରନ୍ତରେ ॥
ମୁଖେ ବୋଲନ୍ତି ନିରବଧି । ତରନ୍ତି ସଂସାର ଜଳଧି ॥
ସଜ୍ଜନ ଦୁର୍ଜନ ବେଭାର । ଯହିଁ ଚାଣ୍ଡାଳ ଦୁରାଚାର ॥
ତାର ବଦନେ ହରିବାଣୀ । କର୍ଣ୍ଣେ ଶୁଣନ୍ତି ଯେତେପ୍ରାଣୀ ॥
ସେ ଭାବେ ଅଜ୍ଞାନ ବିଧ୍ୱଂସେ । ଅନ୍ତରେ କୈବଲ୍ୟେ ସେ ମିଶେ ॥
ଯାହାର ଜିହ୍ୱାରେ ସେ ନାମ । ନ ପଶେ ସେ ପ୍ରାଣୀ ଅଧମ ॥
ଯାହାର ଶ୍ରବଣ ବଦନେ । ତୋ ଗୁଣ ଶ୍ରବଣ କୀର୍ତ୍ତନେ ॥
ତାର ବଦନ କର୍ଣ୍ଣ ସାର । ଯେ ମାୟା ଘୋରୁ ସେ ନିସ୍ତାର ॥
ସେ ଯଜ୍ଞେ ସର୍ବତପ ସ୍ନାନ । ଯୋଗ ସମାଧି ମହାଦାନ ॥
ପ୍ରାଣୀଙ୍କ ହିତ ସ୍ଥିର ମତି । ସେ ପ୍ରାଣୀ ତରନ୍ତି ଦୁର୍ଗତି ॥
ଏମନ୍ତ ମାତା ବାକ୍ୟ ଶୁଣି । ସନ୍ତୋଷେ ପ୍ରଭୁ ଚକ୍ରପାଣି ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ଯେ ଯୋଗୀ ଜନଙ୍କ ଈଶ୍ୱର ॥
ତକ୍ଷଣେ କର୍ଦ୍ଦମ ଆଶ୍ରମ । ତେଜିଲେ ଶ୍ରୀ ପୁରୁଷୋତ୍ତମ ॥
ପୂର୍ବ ଉତ୍ତର ଦିଗ ମଧ୍ୟେ । ତପ ଆଶ୍ରମେ ସେ ଆନନ୍ଦେ ॥
ସମୁଦ୍ରତୀରେ ଘୋର ବନେ । ବସି ନିର୍ମଳ ଜ୍ଞାନ ଧ୍ୟାନେ ॥
ବିଷ୍ଣୁର ବିଷ୍ଣୁ ତେଜ ଦେଖି । ସମୁଦ୍ର ସେ ସ୍ଥାନ ଉପେକ୍ଷି ॥
ଅଭୟ ଚରଣେ ନମିଲା । ଜଳଧି ମଧ୍ୟେ ସ୍ଥାନ ଦେଲା ॥
ସେ ହରି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ କପିଳ ଦେବହୂତି ସମ୍ବାଦେ ନାମ ତ୍ରିଂଶୋଽଧ୍ୟାୟଃ ।*

## ଏକତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁକ ବିଦୁର ଶୁଦ୍ଧ ବାଣୀ । କପିଳ ରୂପେ ଚକ୍ରପାଣି ॥
ସୁଜ୍ଞାନ ମାତାଙ୍କୁ ବୁଝାଇ । ତପେ ଚଳିଲେ ଭାବଗ୍ରାହୀ ॥
ସେ ବ୍ରହ୍ମଯୋନି ନିରାକାର । ତପସ୍ୱୀ ରୂପେ ଅବତାର ॥
ଉତ୍ତରୀ ରୁଦ୍ରାକ୍ଷର ମାଳ । ପିନ୍ଧିଣ ବୃକ୍ଷର ବକଳ ॥
କକ୍ଷା କୌପୁନୀ କମଣ୍ଡଳ । ଶିରେ ପିଙ୍ଗଳ ଜଟାଭାର ॥
ଭସ୍ମ ବିଭୂତି ଅଙ୍ଗେ ବୋଳି । ତୁଳସୀ କଟା କରମାଳି ॥
ସମୁଦ୍ର ତୀରେ ଘୋର ବନେ । ବସିଲେ ନିଶ୍ଚଳ ଆସନେ ॥
ଦକ୍ଷିଣ ପାଦେ ବାମ ଜାନୁ । ତପେ ବସିଲେ ମହାମନୁ ॥
ତପ ସମାଧି ମହା ଘୋରେ । ମନକୁ ରଖିଲେ ନିଶ୍ଚଳେ ॥
ନାସାଗ୍ରେ ନୟନକୁ ଦେଇ । ଶୂନ୍ୟରେ ସମାଧି ବୁଡ଼ାଇ ॥
ଊର୍ଦ୍ଧ୍ୱକୁ ଆଣି ବାୟୁବଳେ । କମଳ କେଶର ମଧ୍ୟରେ ॥
ଅମନ ଗୁମ୍ଫା ମଧ୍ୟେ ଭରି । ସ୍ୱଛନ୍ଦେ ଖେଳନ୍ତି ମୁରାରି ॥
ଆପଣା ନାମ ହୃଦେ ଧରି । ଅନ୍ତରଗତେ ଯୋଚି ଧରି ॥
ଯୋଗ ସମାଧିଲେ ଅନନ୍ତ । ଚାହିଁଲେ ନିର୍ମଳ ସୁଚିତ୍ତ ॥
ଏମନ୍ତେ କେତେ କାଳ ଗଲା । ବିଷ୍ଣୁର ତପ ନ ଭାଜିଲା ॥
ବିଷ୍ଣୁ କଠୋର ତପ ଦେଖି । ତ୍ରିଦଶେ ଆସନ ଉପେକ୍ଷି ॥
ସମସ୍ତେ ଯେକ ମେଳେ ହୋଇ । ମିଳିଲେ ବ୍ରହ୍ମା କୋଳେଯାଇ ॥

ଇନ୍ଦ୍ରାଦି ଦେବ ଗଣ ଯେତେ । ଶିର ନିବେଶି ବେନି ହସ୍ତେ ॥
ଡାକନ୍ତି ରଖ ପିତାମହ । ଅର୍ଜନେ ପାଳନ ତୋ ଦେହ ॥
କପିଳ ରୂପେ ଭାବଗ୍ରାହୀ । କର୍ଦ୍ଦମ ବୀର୍ଯ୍ୟେ ଜାତ ହୋଇ ॥
ମାତାକୁ ବୁଝାଇ ସେ ଜ୍ଞାନ । ତପେ ବସିଲେ ଘୋର ସ୍ଥାନ ॥
ବିଷ୍ଣୁର ବିଶ୍ୱ ତେଜ ଦେଖି । ସମୁଦ୍ରେ ସେ ସ୍ଥାନ ଉପେକ୍ଷି ॥
ପୂର୍ବ ଉତ୍ତର ଦିଗ ମଧ୍ୟେ । ତପସ୍ୟା କରନ୍ତି ଆନନ୍ଦେ ॥
ତାହାଙ୍କ ଘୋର ତପ ଦେଖି । ତ୍ରିଦଶେ ଆସନ ଉପେକ୍ଷି ॥
ମନ ହୋଇଲା ଅନ୍ତରାଳ । ଦେଖି ତାହାଙ୍କ ତପବଳ ॥
ଯେ ପ୍ରଭୁ ସଂସାରର ସାର । କିମ୍ପା ବସିଲେ ଉପଘୋର ॥
ଆମ୍ଭେ ସକଳ ଦେବ ଗଣ । କି ଅପରାଧ କରି ପୁଣ ॥
ସକଳ ଜନଙ୍କର ହିତେ । କିବା ଆମ୍ଭଙ୍କୁ ନାଶ ଅର୍ଥେ ॥
କହନ୍ତେ ପ୍ରଭୁ ପଦ୍ମଯୋନି । କହି ଦେବତା ହେଲେ ତୁନି ॥
ଦେବଙ୍କ ବ୍ୟାକୁଳେ ସେ ବ୍ରହ୍ମା । କହନ୍ତି ପୁରୁଷ ଉତ୍ତମା ॥
ବ୍ରହ୍ମାଦି ଦେବେ ଚାଲ ଯିବା । ସ୍ତୁତି ବଚନେ ପ୍ରବୋଧିବା ॥
ଦେବତା ଗଣ ସଙ୍ଗେ ଘେନି । ଗଗନେ ଗଲେ ପଦ୍ମଯୋନି ॥
ସମୁଦ୍ର ତୀରେ ମାହାବନେ । ପୂର୍ବ ଉତ୍ତର ଉପସ୍ଥାନେ ॥
ସର୍ବ ଦେବତା ହେଲେ ମେଳି । ବ୍ରହ୍ମାୟେ କଲେ ନିଉଛାଳି ॥
ଦେବଙ୍କ ଅଗ୍ରେ ଅଷ୍ଟନେତ୍ର । ଶିରେ ନିବେଶି କରପତ୍ର ॥
ଓଁକାର ମନ୍ତ୍ରେ ତୁଷ୍ଟି ଭଣି । ହୃଦେ ନିବେଶି ଚକ୍ରପାଣି ॥
ନମୋ ପରମ ଯୋଗେଶ୍ୱର । ପରମ ଆତ୍ମା ତୁ ଈଶ୍ୱର ॥
ନମସ୍ତେ ପରମ ଯୋଗ୍ରାହି । ଅପର ପର ଯାର ନାହିଁ ॥
ନମସ୍ତେ ଭକତ ବତ୍ସଳ । ପରମାନନ୍ଦ ଆଦି ମୂଳ ॥
ଅଖିଳ ଘଟେ ତୁ ପ୍ରକାଶ । ନମସ୍ତେ ପ୍ରଭୁ ପୀତବାସ ॥
ଦୟା ସାଗର ଦୀନ ବନ୍ଧୁ । ଦାସ ବତ୍ସଳ କୃପା ସିନ୍ଧୁ ॥
ନିର୍ଲେପ ଆତ୍ମା ସର୍ବ ଘଟେ । ତପେ ବସିଲ ସିନ୍ଧୁ ତଟେ ॥
ମୁନିଙ୍କ ମଧ୍ୟେ ମୋକ୍ଷ ହୋଇ । କପିଳ ରୂପେ ଭାବଗ୍ରାହୀ ॥
ତୋହର ଆଜ୍ଞା ପାଇ ମୁହିଁ । ସକଳ ରୂପ ସେ ସର୍ଜଇ ॥
ପ୍ରତିପାଳନ ନାଥ କରୁ । ତୋ ନାମ ଯେଣୁ ମହାମେରୁ ॥
କର୍ଦ୍ଦମ ଘରେ ଅବତରି । ମାତା ପ୍ରବୋଧି ତପଚାରୀ ॥
ତୋହର ଘୋର ତପ ଦେଖି । ଆମ୍ଭେ ହୋଇଲୁ ମହା ଦୁଃଖୀ ॥
କିବା କାରଣେ ଘୋର ତପ । କହିବା ମୋହର ସମୀପ ॥
ଯେତେକ କହି ପଦ୍ମଯୋନି । ଜ୍ଞାନ ହରାଇ ହୋଯେ ତୁନି ॥
ବ୍ରହ୍ମାର ତୁଷ୍ଟି କର୍ଣ୍ଣେ ଶୁଣି । ସନ୍ତୋଷ ହେଲେ ମହାମୁନି ॥
ଶ୍ୟାମ ସୁନ୍ଦର କଳେବର । ସୁନ୍ଦର ଶୋହେ ଚାରିକର ॥
ଶ୍ରବଣେ ମକର କୁଣ୍ଡଳ । ହୃଦେ ଲମ୍ୱଇ ବନମାଳ ॥
ଗୁଞ୍ଜରା ମାଳି ଶିଖିପୁଚ୍ଛ । ଶ୍ରୀଅଙ୍ଗେ ଶୋହଇ ଶ୍ରୀବତ୍ସ ॥
କଟିରେ ପୀତାମ୍ୱର ଶୋଭା । ରତ୍ନ ମେଖଳା କଟି ଆଭା ॥
ଚରଣେ ନେପୁର ବାଜେଣୀ । କରେ କଙ୍କଣ କଣ୍ଠ ମଣି ॥
ରଙ୍ଗ ଅଧରେ ମନ୍ଦହାସ । ବ୍ରହ୍ମାଙ୍କୁ ହୋଇଲେ ସେ ଦୃଶ୍ୟ ॥
ବୋଲନ୍ତି ଶୁଣ ପଦ୍ମଯୋନି । ମୋ ତପ ଦେଖି ଭଏ ମାନୀ ॥
ମାତା ବଚନେ ଆତ୍ମା ଇଚ୍ଛା । ଭୟ ନ କର ତୁମ୍ଭେ ବାଞ୍ଛା ॥
ସକଳ ଦେବ ଘେନି ଯାଅ । ସ୍ୱର୍ଗେ ନିଶ୍ଚଳେ ବସିଥାଅ ॥
ତପ ସଂପୂର୍ଣ୍ଣେ ମୁହିଁ ଯିବି । ବୈକୁଣ୍ଠ ବିଜେୟ କରିବି ॥
ବିଷ୍ଣୁ ଆଦେଶ ବ୍ରହ୍ମା ମାନି । ସ୍ୱର୍ଗେ ଚଳିଲେ ଦେବଘେନି ॥
ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଯେହ୍ନୁ ଗୀତ ॥
ତୃତୀୟ ସ୍କନ୍ଧେ ଭାଗବତ । କହିଲା ସାଧୁଙ୍କର ହିତ ॥
ପଣ୍ଡିତେ ନ ଧରିବେ ଦୋଷ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ତୃତୀୟସ୍କନ୍ଧେ ବିଦୁର ମୈତ୍ରେୟ ସମ୍ୱାଦେ କପିଳୋପାଖ୍ୟାନେ ଜୀବ ପ୍ରସଙ୍ଗେ ନାମ ଏକତ୍ରିଂଶୋଽଧ୍ୟାୟଃ ।*

## ଦ୍ୱାତ୍ରିଂଶ ଅଧ୍ୟାୟ

### ଶ୍ରୀଭଗବାନ ଉବାଚ

ଏଥୁ ଉତ୍ତାରୁ ଯେଉଁ ଜନ । କରଇ ଗୃହସ୍ଥ ଆଶ୍ରମ ॥
ଗୃହ ଆଶ୍ରମ ନିଜ ବର୍ଣ୍ଣ । ଉଚିତ ଧର୍ମ ଅର୍ଥ କାମ ।
ଭୋଗ ସେ ମାୟା ବଶ ହୋଇ । ପୁଣି ତାହାକୁ ଆଚରଇ ॥
ସେ ମୋହେ ଭୁଞ୍ଜେ କାମ ସୁଖ । ବିଷ୍ଣୁ ଧର୍ମରୁ ପରାଙ୍ମୁଖ ॥
ହୋଇଣ ଯଜ୍ଞ ଆରମ୍ଭଇ । ଶ୍ରଦ୍ଧାରେ ବିଷ୍ଣୁଙ୍କୁ ପୂଜଇ ॥
ପିତୃ ଦେବତା ଶ୍ରଦ୍ଧା ଯୁତ । ତାଙ୍କ ବ୍ରତରେ ଦେଇ ଚିତ୍ତ ॥
ପୁରୁଷ ଇନ୍ଦ୍ର ଲୋକ ପାଇ । ଚନ୍ଦ୍ରମା ଠାରୁ ସୁଧା ଖାଇ ॥
ପୁଣି ଜନ୍ମଇ ନର ଲୋକେ । ଗୃହସ୍ଥ ଆଶ୍ରମ ବିବେକେ ॥
ବ୍ରହ୍ମାର ନିଶା ପ୍ରଦେଶରେ । କୃଷ୍ଣ ଶୟନ ଶେଷଠାରେ ॥
ଗୃହସ୍ଥାଶ୍ରମେ ଯେହ୍ନୁ ଥାଇ । ସେ କାଳେ ତା ପ୍ରଳୟ ହୋଇ
ସେ ପୁଣ୍ୟେ ଅଳ୍ପ ପୁଣ୍ୟ ଯହୁଁ । ଆଗେ ପ୍ରଳୟ ହୋଏ ତହୁଁ ॥
ଯେ ଜନ ଅନାସକ୍ତ ହୋଇ । କର୍ମ କରଇ ଲୋକ ପାଇଁ ॥
ଶାନ୍ତିରେ ଶୁଦ୍ଧ ଚିତ୍ତ ହୋଇ । ଈଶ୍ୱରେ କର୍ମ ସମର୍ପଇ ॥
ଛାଡ଼ିଣ କାମ୍ୟ କର୍ମ ଆଶ । ସେ ଧୀର ଜନ ବିଷ୍ଣୁ ଦାସ ॥

ନିବୃତ୍ତ ଧର୍ମର ନିରତ । ମମତା ଅହଂକାର ତ୍ୟକ୍ତ ॥
ସ୍ୱଧର୍ମେ ଶୁଦ୍ଧ ସତ୍ତ୍ୱ ଗୁଣ । ନିର୍ମଳ ନିର୍ବିକଳ୍ପ ମନ ॥
ଶୁଣ ଜନନୀ ତାଙ୍କ ଗତି । ଯାହା କହିବା ବେଦ ଚିନ୍ତି ॥
ସେ ସୂର୍ଯ୍ୟଦ୍ୱାର ଭେଦି ଯାନ୍ତି । ସଂପୂର୍ଣ୍ଣ ପୁରୁଷେ ପଶନ୍ତି ॥
ପ୍ରକୃତି ପରା ପର ଈଶ । ଯେ କରେ ସୃଷ୍ଟି ସ୍ଥିତି ନାଶ ॥
ଈଶ୍ୱର ବୁଦ୍ଧି କରି ଯେହୁ । ହିରଣ୍ୟ ଗର୍ଭ ଯେଣେ ସେହୁ ॥
ବ୍ରହ୍ମ ଆୟୁଷ ଶେଷ ଯାଏ । ନିଷ୍ଠେ ବ୍ରହ୍ମପଦେ ରହେ ॥
ପୃଥିବୀ ଆଦି ପଞ୍ଚ ଭୂତେ । ମନ ଇନ୍ଦ୍ରିୟ ତନ ମାତ୍ରେ ॥
ଅହମ ଆଦିରେ ପ୍ରବୃତ । ବ୍ରହ୍ମାଣ୍ଡ ସଂଗ୍ରହଣ ଚିତ୍ତ ॥
ଦୁଇ ପରାର୍ଦ୍ଧ କାଳ ଭୁଞ୍ଜି । ଈଶ୍ୱରେ ପଶନ୍ତି ନିମଜ୍ଜି ॥
ସେ କାଳେ ବ୍ରହ୍ମାଙ୍କ ସଂଗତେ । ବ୍ରହ୍ମ ଚରଣେ ଭକ୍ତ ଯେତେ ॥
ପୁରାଣ ପୁରୁଷେ ପଶନ୍ତି । ନିର୍ଗୁଣ ନିରଞ୍ଜନ ଜ୍ୟୋତି ॥
ଯେ ଜିଣିଥିଲେ ମନ ପ୍ରାଣ । ଗର୍ବ କାମାଦି ଅରି ଗଣ ॥
ଶୁଣ ହେ ପୁରୁଷ ବିବେକ । ଆନନ୍ଦ ମୟ ବ୍ରହ୍ମ ରୂପ ॥
ଏବେ ତୁ ଶୁଣିମା ପ୍ରମାଣେ । ନିର୍ମଳ ନିର୍ବିକଳ୍ପ ମନେ ॥
ସକଳ ଭୂତେ ଯାର ବାସ । ଶରଣ ତାର ପାଦେ ପଶ ॥
ଶୁଣିଲ ମହିମା ଯାହାର । ଜନନୀ ସେ ଭକ୍ତ ସୋଦର ॥
ଈଶ୍ୱର ବ୍ରହ୍ମ ଭିନ୍ନ ଜାଣି । ଏମନ୍ତେ ଭଜନ୍ତି ଯେ ପ୍ରାଣୀ ॥
ଲଭନ୍ତି ସଗୁଣ ଈଶ୍ୱର । ନିର୍ଗୁଣ ତାଙ୍କୁ ଅତିଦୂର ॥
ଯେ ସ୍ଥିର ଚର ବିଶ୍ୱ ଆଦି । ଯା ଗର୍ଭେ ବେଦକୁ ସମ୍ପାଦି ॥
ସନକ ଆଦି ଯୋଗ ସିଦ୍ଧ । ଯେବେ କରନ୍ତି ତାଙ୍କୁ ଭେଦ ॥
ସୁଗୁଣ ପୁରୁଷ ଲଭନ୍ତି । ସେହି ନିର୍ଗୁଣେ ନ ମିଶନ୍ତି ॥
ଭୁଞ୍ଜି ସକାମ କର୍ମ ଫଳ । ପୁଣି ଜନ୍ମନ୍ତି ଏ ଶୟଳ ॥
ଆପଣା କର୍ମ ଅନୁରୂପେ । ଐଶ୍ୱର୍ଯ୍ୟ ଲଭନ୍ତି ଏ ନିତ୍ୟେ ॥
ପୂର୍ବ ଜନ୍ମର ପ୍ରାୟେ ହୋଇ । ବ୍ରହ୍ମାଦି ଅଧିକାର ପାଇ ॥
ସମସ୍ତ କଥାରେ ଏ ସାର । ସାକ୍ଷାତେ ଯେ ଭଜେ ଈଶ୍ୱର ॥
ନିର୍ଗୁଣ ବ୍ରହ୍ମ ପ୍ରାପ୍ତି ତାର । ଆଉକି କହିବା ନିସ୍ତାର ॥
ଅଭେଦ ବ୍ରହ୍ମ ଯେ ଭଜଇ । ତା ସଙ୍ଗେ ନିର୍ଗୁଣ ଲଭଇ ॥
ଯେ ଭେଦେ ବ୍ରହ୍ମରୂପେ ଭଜେ । ସୁଗୁଣ ପୁରୁଷେ ନିମଜ୍ଜେ ॥
ଯେ କଥା କର୍ମା ଶକ୍ତ ହୋଇ । ବିହିତ କାମ ନିତ୍ୟ ଦୁଇ ॥
କର୍ମ କରଇ ଫଳ ପାଇ । ରଜ ଆକୃଷ୍ଟ ଚିତ୍ତ ହୋଇ ॥
ଜିଣି ସକଳ ଇନ୍ଦ୍ରି ଗଣ । ଗୃହେ ଆସକ୍ତି କରି ମନ ॥
ପିତୃ ପୂଜନ୍ତି ଦିନେ ଦିନେ । ଶୁଣ କହିବା ତୋଷ ମନେ ॥
ଯା ଗୁଣ ନ୍ତେ ଭବ ଦୁଃଖ । ଯେ ବିଷ୍ଣୁ ଭାବେ ଯେ ବିମୁଖ ॥

ସେ ଧର୍ମ ଅର୍ଥ କାମ ତିନି । ବର୍ଗ ଭୁଞ୍ଜଇ ପରିମାଣି ॥
ଛାଡ଼ି ଅଚ୍ୟୁତ ସୁଧା କଥା । ଶୁଣନ୍ତି ଯେହୁ ଅନ୍ୟ ଗାଥା ॥
ପୂର୍ବ ଅଶୁଭ କର୍ମବାସ, । ଜାଣ ତାହାଙ୍କୁ କଳା ନାଶ ॥
ଗ୍ରାମ୍ୟ ଶୂକର ସୁଧା ଛାଡ଼ି । ଯେହ୍ନେ ପୁରୁଷ ଭକ୍ଷେ ବଢ଼ି ॥
ଦକ୍ଷିଣ ଦିଗ ପଥେ ଯାଇ । ଅର୍ଜମା ପିତୃଲୋକ ପାଇ ॥
ତହିଁସେ ଫଳ ଭୋଗ କରି । ନୃଲୋକେ ଜନ୍ମେ ଦେହଧରି ॥
ସେ ଜନ୍ମେ ଗର୍ଭଧାନ ଆଦି । ଶ୍ମଶାନ ଅନ୍ତେ କର୍ମସିଦ୍ଧି ॥
ତେଣୁ ଜନନୀ ସର୍ବ ଭାବେ । ତାହାଙ୍କ ଗୁଣର ଆଶ୍ରୟେ ॥
ଯେ ଭକ୍ତି ଜନ୍ମେ ପ୍ରାଣୀ ଦେହେ । ତାକୁ ସାତ୍ତ୍ୱିକ ବୋଲିକହେ ॥
ତେଣେ ଭଜନ୍ତି ଅଜ ପାଦ । ଯେ ଖଣ୍ଡେ ସଂସାର ପ୍ରମାଦ ॥
ସେ ବାସୁଦେବ ଭଗବାନ । ପାଦରେ ଭକ୍ତି ନିୟୋଜନ ॥
ଦିଅଇ ବଇରାଗ୍ୟ ଜ୍ଞାନ । ଯହିଁରୁ ବ୍ରହ୍ମ ଦରଶନ ॥
ଯେବେ ସେ ଭକ୍ତ ଜନ ଚିତ୍ତ । ନ ଘେନେ ପ୍ରିୟ ପ୍ରିୟା ଅର୍ଥ ॥
ଇନ୍ଦ୍ରିୟ ବୃତ୍ତି ମାନଙ୍କରେ । କେବେହେ ବିଷମ ଭାବରେ ॥
ଯେବେ ସେ ଆତ୍ମାକୁ ଦେଖଇ । ଆତ୍ମାରେ ସମଭାବ ବହି ॥
ତାହାର ତ୍ୟାଗ ଗ୍ରାହ୍ୟ ନାହିଁ । ପରମାନନ୍ଦ ରୂପ ହୋଇ ॥
ଜ୍ଞାନ ମାତ୍ରକ ବ୍ରହ୍ମ ପର । ପୁରୁଷ ପରମ ଈଶ୍ୱର ॥
ଏକ ସ୍ୱରୂପ ଭଗବାନ । ଦିଶିବା ଦେଖିବାରେ ଭିନ୍ନ ॥
ଭାବରେ ନାନା ପ୍ରୀତି ହୋଇ । ନିଶ୍ଚୟେ ସର୍ବ ଭୂତେ ସେହି ॥
ଏତେ ମାତ୍ରକ ଯୋଗ ଫଳ । ଯୋଗୀ ଲଭନ୍ତି ଏ ଶୟଳ ॥
ଯାହା ହୋଇଣ ଶାନ୍ତି ଚିତ୍ତ । ସଂସାରେ ନୋହେ ଆସକତ ॥
ଜ୍ଞାନ ନିର୍ଗୁଣ ବ୍ରହ୍ମ ଏକ । ତହିଁ ବିମୁଖେନ୍ଦ୍ରିୟ ଲୋକ ॥
ଭ୍ରମରେ ଲୋକ ବୋଲି ଜାଣି । ସଚରାଚର ସର୍ବ ପ୍ରାଣୀ ॥
ମହତ ଅହଂକାର ତ୍ରିଧା । ସତ୍ୟ ରଜ ତମରେ ଭେଦା ॥
ଭୂତ ଭେଦରେ ପଞ୍ଚ ବିଧ । ଇନ୍ଦ୍ରିୟ ଏକାଦଶ ଭେଦ ॥
ଏମନ୍ତ ନିର୍ମିତ ବିରାଟ । ତା ଅଙ୍ଗେ ସକଳ ଜଗତ ॥
ଏମନ୍ତ ରୂପେ ଜ୍ଞାନୀ ଜନ । ଜଗତେ କରେ ବ୍ରହ୍ମ ଜ୍ଞାନ ॥
ଶୁଣ ଜନନୀ ତୋଷ ମନେ । ତୋତେ କହିଲି ଯେଉଁ ଜ୍ଞାନେ ॥
ଯହିଁରେ ବ୍ରହ୍ମ ଦରଶନ । ଯେହୁ ଜ୍ଞାନ ଯୋଗ ନିର୍ଗୁଣ ॥
ଯେ ଯୋଗ ଭକ୍ତିର ଲକ୍ଷଣ । ତାଙ୍କର ଏକ ପ୍ରୟୋଜନ ॥
ଉଭୟେ ଲଭ ଭଗବାନ । ତହିଁରେ ଭେଦ ଏବେ ଶୁଣ ॥
ଈଶ୍ୱର ଏକ ବ୍ରହ୍ମ ରୂପୀ । ଶାସ୍ତ୍ର ଭେଦରେ ନାନା କଳ୍ପି ॥
ଯେମନ୍ତେ ଇନ୍ଦ୍ରି ଶକ୍ତି ଭେଦେ । ଏକ ପଦାର୍ଥ ନାନା ବିଧେ ॥
ପ୍ରତ୍ୟେ ହୁଅଇ ଚକ୍ଷୁ ଦ୍ୱାରେ । ଶୁକ୍ଳ ରୂପରେ ରସନାରେ ॥

ପରଚେ ମଧୁର ରୂପରେ । ଏକ ପଦାର୍ଥ ଏ ରୂପରେ ॥
କେବଳ ଦୁଷ୍ଟ ଏତେ ବିଧ । ସେ ରୂପେ ଈଶ୍ୱରର ଭେଦ ॥
କୂପ ତଡ଼ାଗ ବାମ୍ଫି ଆଦି । ଦାନ ଯଜନ କର୍ମ ସାଧି ॥
ତପ ମିମାଂସା ଦେବ ଧ୍ୟାନ । ନିଗ୍ରହ କରି ଇନ୍ଦ୍ରି ମନ ॥
କର୍ମମାନଙ୍କ ସନ୍ୟାସରେ । ବିବିଧ ପ୍ରକାର ଯୋଗରେ ॥
ଭକ୍ତି ଯୋଗରେ ବେନି ଧର୍ମେ । ଯା କହି ସକାମ ନିଷ୍କାମେ ॥
ଯେ କାଳ ଅନ୍ତରେ ଧାବଇ । ସୃଜନ ଆଦି ଯେ କରଇ ॥
କହିଲୁଁ ସ୍ୱରୂପ ତାହାର । ଭୋ ମାତ କରତୁ ବିଚାର ॥
ଗତି ଏ ଜୀବମାନଙ୍କର । ଅବିଦ୍ୟାକର୍ମରେ ପ୍ରଚୁର ॥
ଏ ଆତ୍ମା ତହିଁ ପଶିଥାଇ । ଆପଣା ଗତି ନ ବୁଝଇ ॥
ଏମନ୍ତେ ଜୀବ ଗତାଗତି । କହିଲୁ ଛାଡ଼ ମନୁ ଭ୍ରାନ୍ତି ॥
ଏ ଯୋଗ ନ କରି ପ୍ରକାଶ । କହିଲେ ଧର୍ମ ହୋଏ ନାଶ ॥
କେବେହେଁ ଖଳେ ନ କହିବ । ବିନୟ ଯେ ପ୍ରାଣୀ ନୋହିବ ॥
ନ କହି ଦୁର୍ଜନ ଅଗ୍ରତେ । ଅପରେ ଧର୍ମଧ୍ୱଜୀ ଯେତେ ॥
ଦାମ୍ଭିକ ଅଗ୍ରତେ ନ କହି । ପ୍ରଲୋଭୀ ପ୍ରାଣୀ ଅଟେ ଯେହି ॥
ଯେ ଗୃହଧର୍ମେ ହୋଇ ରତ । ତାରେ ନ କହି କଦାଚିତ ॥
ନ ସହେ ଯେ ଭକତନେ । ନ କହ ଭକ୍ତିହୀନ ଜନେ ॥
ଏମନ୍ତ ଲୋକେ ନ କହିବ । ଗର୍ବିତ ଭାବ ଯାର ଥିବ ॥
ମୋ ଭକ୍ତିହୀନେ ନ କହିବ । ମୋ ଭକ୍ତେ ଦ୍ୱେଷ ଯାର ଥିବ ॥
ଯାହାର ଶ୍ରଦ୍ଧା ଏଥି ଥିବ । ତାହାକୁ ଏ ମାର୍ଗ କହିବ ॥
ଭକତଜନେ ଏହା କହି । ଯେ ଭକ୍ତଜନରେ ସେବଇ ॥
ଯେ ପ୍ରାଣୀ ଏଥେ ସ୍ପୃହା କରେ । ଏ ଧର୍ମ କହିବ ତାହାରେ ॥
ଯେ ପ୍ରାଣୀ ସର୍ବଭୂତେ ମିତ୍ର । ତାହାକୁ କହି ଏ ଚରିତ ॥
ଯେ ପ୍ରାଣୀ ଗୁରୁଙ୍କୁ ସେବଇ । ଏ ଦୀକ୍ଷା ତାରେ ଶିକ୍ଷା ଦେଇ ॥
ବିଷୟେ ବୈରାଗ୍ୟ ଯାହାର । ଯେ ପ୍ରାଣୀ ଶାନ୍ତଚିତ୍ତ ଧୀର ॥
ଯେ ପ୍ରାଣୀ ହୋଏ ନିର୍ମତ୍ସର । ବିନୀତ ଶୁଚି ନିରନ୍ତର ॥
ପ୍ରିୟମାନଙ୍କ ଅତିପ୍ରିୟ । କରଇ ମୋର ଠାରେ ସ୍ନେହ ॥
ଏମନ୍ତ ପ୍ରାଣୀଙ୍କି କହିବ । ଅଧର୍ମଠାରେ ଲୁଚାଇବ ॥
ଶ୍ରଦ୍ଧାରେ ଯେ ଏହା ଶୁଣନ୍ତି । ଅଥବା ଆଦରେ ଭଣନ୍ତି ॥
ମୋହର ପଦବୀ ସେ ପାଏ । ସତ୍ୟ କହିଲୁ ଏହା ମାଏ ॥
ତୃତୀୟସ୍କନ୍ଧେ ଭାଗବତ । କପିଳମୁନି ଯୋଗ ଖ୍ୟାତ ॥
ମାତାଙ୍କୁ ଦେଲେ ଜ୍ଞାନବାଣୀ । ସୁଜନେ ତର ଏହା ଶୁଣି ॥
କର୍ମବିପାକ ପ୍ରାଣୀଙ୍କର । ଦ୍ୱାତ୍ରିଂଶ ଅଧ୍ୟାୟ ସଞ୍ଚାର ॥
ଶ୍ରବଣ କର ସାଧୁଜନେ । ବ୍ରାହ୍ମଣ ଜଗନ୍ନାଥ ଭଣେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ତୃତୀୟସ୍କନ୍ଧେ କପିଳେୟ ଦ୍ୱାତ୍ରିଂଶୋଽଧ୍ୟାୟଃ ।*

## ତ୍ରୟତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ବୋଲନ୍ତି ମୈତ୍ରେୟ ବ୍ରାହ୍ମଣ । ବିଦୁର ସାବଧାନେ ଶୁଣ ॥
କର୍ଦ୍ଦମ-ପତ୍ନୀ ଦେବହୂତି । ସ୍ୱଭାବେ ମନୁର ଦୁହିତୀ ॥
କପିଳ ବଚନ ଶୁଣିଲେ । ମୋହପଟଳ ପ୍ରତେଜିଲେ ॥
ତତ୍ତ୍ୱବିଷୟ ସଂଖ୍ୟଜ୍ଞାନ । କହିଲେ ଯେଣୁ ଭଗବାନ ॥
ତାହାଙ୍କୁ କଲେ ପ୍ରଣିପାତ । ବିନୟ ଯୋଡ଼ି ବେନିହସ୍ତ ॥
ଚାହିଁଣ କପିଳ-ବଦନ । ଆନନେ କରନ୍ତି ସ୍ତବନ ॥

### ଦେବହୂତି ଉବାଚ

ତୁ ନାଥ ଲୀଳା-ଅବସାନେ । କାଳକୁ ନିବେଶି ନୟନେ ॥
ଶୟନ ସଲିଳ ଭିତରେ । ସର୍ପଙ୍କ ବିରାଟ-ଶରୀରେ ॥
ଭୂତ ଇନ୍ଦ୍ରିୟ ମନୋମୟ । ଯହିଁରେ ଗୁଣଙ୍କ ପ୍ରବାହ ॥
ଅଶେଷ କାରଣ-କରଣ । ତୋ କଳେବର ନାରାୟଣ ॥
ଜଠର-ପଦ୍ମରୁ ଯାହାର । ଜାତ ହୋଇଲା ବେଦବର ॥
ତୋ ରୂପ ଦେଖିବା ନିମନ୍ତେ । ସେ ଅଜ ବିଚାରିଲା ଚିତ୍ତେ ॥
ଅନେକ ବ୍ୟାପାର ସେ କଲା । କେବେହେଁ ଦେଖି ନ ପାରିଲା ॥
କେବଳ ଧ୍ୟାନେ ସେ ଦେଖିଲା । ଏ ବିଶ୍ୱସୃଷ୍ଟି ତହୁଁ କଲା ॥
ତୁ ପ୍ରଭୁ ବହୁରୂପ ଧରି । ନିଜ ଶକ୍ତିରେ ମାୟା କରି ॥
କଲୁ ଏ ବିଶ୍ୱ ସରଜନ । ସ୍ୱଭାବେ ତୁ ଯେ କର୍ମ ଭିନ୍ନ ॥
ସତ୍ୟ-ସଂକଳ୍ପ ତୁମ୍ଭେ ହରି । ଜୀବଙ୍କ ଭୋଗ ଅନୁସରି ॥
ସୃଷ୍ଟ୍ୟାଦି କରିଛ ବିଧାନ । ଏ ତୁମ୍ଭ ମାୟାର ଭିଆଣ ॥
ଅନନ୍ତଶକ୍ତି ଏ ତୁମ୍ଭର । ତୋ ମାୟା କେ କରୁ ଗୋଚର ॥
ପ୍ରଳୟକାଳେ ତୁମ୍ଭେ ହରି । ଏ ବିଶ୍ୱ ଉଦରେ ସଂହରି ॥
ଶୟନ ବଟପତ୍ରେ ତୋର । ବାଳମୁକୁନ୍ଦ ରୂପଧର ॥
ଚରଣ ଅଙ୍ଗୁଳି ବଦନେ । ଭରି ଶୟନ ଶିଶୁ ଯେହ୍ନେ ॥
ଏ ବିଶ୍ୱ ଯାହାର ଉଦରେ । ମୁଁ ତାକୁ କେମନ୍ତେ ଜଠରେ ॥
ଧଇଲି ବୁଝି ନ ପାରଇ । କେବଳ ତୋ ମାୟା ଗୋସାଇଁ ॥
ତୁ ଦୁଷ୍ଟ ନିବାରିବା ପାଇଁ । ସାଧୁ ରକ୍ଷଣେ ତୋର ଦେହୀ ॥
ଏଣୁ ତୁମ୍ଭର କଳେବର । ଅନ୍ୟଥା କିକାର୍ଯ୍ୟ ତୋହର ॥
ତୁମ୍ଭେ କୋଳାଦି ରୂପଧରି । ଧର୍ମ ସ୍ଥାପିଲ ଦୁଷ୍ଟ ମାରି ॥
ଏ ତତ୍ତ୍ୱଜ୍ଞାନ ଦେବା ପାଇଁ । ଏ ରୂପ ଧଇଲ ଗୋସାଇଁ ॥
ଏଣୁ କୃତାର୍ଥ ମୋତେ କଲ । ପୁତ୍ର ସ୍ୱରୂପେ ପ୍ରକାଶିଲ ॥
ତୋତେ ଦେଖିଣ ଚର୍ମତୋଳେ । କୃତାର୍ଥ ହେଲି ମହୀତଳେ ॥
ଏ କଥା ଅତି ଯେ ଆଶ୍ଚର୍ଯ୍ୟ । ତୋ ନାମ ଧରନ୍ତେ ଶ୍ୱପଚ ॥

ସକଳ ବର୍ଣ୍ଣ ଶ୍ରେଷ୍ଠ ହୋଇ । ଉତ୍ତମ ଶ୍ଳୋକ ଯେବେ ଗାଇ ॥
ତେବେ ଏତେକ ପୁଣ୍ୟ ପାଇ । ଦେବେ ଅଛନ୍ତି ତାହା କହି ॥
ତପସ୍ୟା ହୋମ ତୀର୍ଥ ସ୍ନାନ । ବେଦ ପଠନର ଯେ ପୁଣ୍ୟ ॥
ପୁରୁଷ ପରଂବ୍ରହ୍ମ ତୁହି । ଏକାଗ୍ର ମନେ ଯାକୁ ଧ୍ୟାୟି ॥
ସ୍ୱତେଜେ ଧ୍ୱଂସି ଗୁଣତ୍ରୟି । କପିଳ ରୂପେ ବେଦ ବହି ॥
ତୁ ବିଷ୍ଣୁ ତୋତେ ନମସ୍କାର । ଅନାଦି ଅନ୍ତ ଯୋଗେଶ୍ୱର ॥
ତୁହି ସଚରାଚର ସର୍ବ । ସମସ୍ତ ଦେବେ ତୋର ଗର୍ଭ ॥

## ମୈତ୍ରେୟ ଉବାଚ

ଏମନ୍ତ ମାତାଙ୍କ ବଚନ । କପିଳ ରୂପୀ ଭଗବାନ ॥
ବୋଲନ୍ତି ଗଭୀର ବଚନ । ଜନନୀ ସ୍ନେହେ ତୋଷମନ ॥

## ଶ୍ରୀ ଭଗବାନ ଉବାଚ

ମୁଁ ତତେ କହିଲି ଯେ ମାର୍ଗ । ତୁ ତାହା ସୁଖେ ମାତ ସେବ ॥
ଯେଉଁ ମାର୍ଗକୁ ଆଶ୍ରେ କଲେ । ଜୀବନ ମୁକ୍ତ ହେବ ଭଲେ ॥
ମୋର ଏମନ୍ତେ ସେବା କର । ଯାହା ସେବନ୍ତି ମୁନିଶ୍ୱର ॥
ମୁକ୍ତି ପାଇବ ଯେଉଁ ମତେ । ମରଣ ଯାହା ନ ଜାଣନ୍ତେ ॥

## ମୈତ୍ରେୟ ଉବାଚ

ଏମନ୍ତେ ପ୍ରଭୁ ଭଗବାନ । ମାତାଙ୍କୁ ଦେଇ ଆତ୍ମଜ୍ଞାନ ॥
ମାତାଙ୍କ ଠାରୁ ଆଜ୍ଞା ପାଇ । ଗଲେ ଆତ୍ମର ସୁଖ ବହି ॥
ସୂତ ମୁଖରୁ ଯୋଗ ଶୁଣି । ଯୋଗ ଅଭ୍ୟାସେ କୁରୁମଣି ॥
ଆଶ୍ରମେ ସରସ୍ୱତୀ ତୀରେ । ବସିଲେ ମନାସନ ସ୍ଥିରେ ॥
ସେ ସରସ୍ୱତୀର ଆଶ୍ରମ । ଯେ ପୁଷ୍ପ ମୁକୁଟ ଉପମ ॥
ଅନବରତେ ସ୍ନାନ ତାର । କେଶ ପିଙ୍ଗଳ ତାମ୍ରାକାର ॥
ତପ ସାଧନେ ତନୁକ୍ଷୀଣ । ଶୁକ୍ଳ ପ୍ରତୀପେ ଯେହ୍ନେ ଜହ୍ନ ॥
କର୍ଦ୍ଦମ ତପ ଯୋଗ ବଳେ । ଅତି ଦୁର୍ଲ୍ଲଭ ଏ ଶୟଳେ ॥
କର୍ଦ୍ଦମ ଋଷିଙ୍କ ଆଶ୍ରମ । ତିନି ଭୁବନେ ଅନୁପାମ ॥
ପୁତ୍ରେ କପିଳେ ଦେଇଧ୍ୟାନ । ଆଶ୍ରମେ ନରହେ ତା ମନ ॥
ଶୁଣ ଆଶ୍ରମର ମହିମା । ଯହିଁ ସୁଖର ନାହିଁ ସୀମା ॥
ଦୁଗ୍ଧେ ଫେନର ପ୍ରାୟେ ବର୍ଣ୍ଣ । ଏମନ୍ତେ ତହିଁ ଶେଯ୍ୟାମାନ ॥
ପଲଙ୍କ ଗଜଦନ୍ତେ ପରା । ଶୁଦ୍ଧ ସୁବର୍ଣ୍ଣ ଘଣ୍ଟ ଝରା ॥
ସୁବର୍ଣ୍ଣ ପାରା ନାନାସନ । ବିବିଧ ରତ୍ନରେ ଭୂଷଣ ॥
ନିର୍ମଳ ସ୍ଫଟିକର ଗୃହ । ଖମ୍ବଇ ବାଟ ଲୀଳାମୟ ॥
ଜଳନ୍ତି ରତ୍ନ ଦୀପମାଳ । ବିଶେଷେ ଦିଶନ୍ତି ଉଜ୍ଜ୍ୱଳ ॥
ପଦକ ରତ୍ନରେ ଭୂଷିତ । ପ୍ରମଦା ଅଛନ୍ତି ବହୁତ ॥
ଗୃହ ଉଦ୍ୟାନ ପୁଷ୍ପବନ । ତହିଁ ଅନେକ କଳ୍ପ ଦ୍ରୁମ ॥
ବିବିଧ କୁସୁମେ ଭୂଷଣ । ଧ୍ୱନି କରନ୍ତି ପକ୍ଷୀଗଣ ॥
ମତ୍ତ ଭ୍ରମର ଚାରୁସ୍ୱନ । ଯହିଁକି କରନ୍ତି ଗମନ ॥
ଦେବହୂତିକି ସିଦ୍ଧଗଣ । ସ୍ତୁତି କରନ୍ତି ଅନୁକ୍ଷଣ ॥
ଚାରଣ ଅପସରା ଗଣେ । ଗୁଣ ଗାବନ୍ତି ଅନୁକ୍ଷଣେ ॥
ପଦ୍ମ ସୁଗନ୍ଧ ବାପୀଜଳ । ନିର୍ମଳ ଦୁର୍ଲ୍ଲଭ ଶୀତଳ ॥
ଏମନ୍ତ ଜଳ ଘେନି କରେ । କର୍ଦ୍ଦମ ଆଶ୍ୱାସଇ ଯାରେ ॥
ଇନ୍ଦ୍ର ଶଙ୍କର ଯହିଁ ବାଞ୍ଛା । ତହିଁ ତା ନ ବଳିଲା ଇଚ୍ଛା ॥
କର୍ଦ୍ଦମ ତପବନ ଯାନ୍ତେ । ପୁତ୍ର ବିଚ୍ଛେଦ ଦୁଃଖ ଚିତ୍ତେ ॥
ଦେବହୂତିର ଦେହ କ୍ଷୀଣେ । ବତ୍ସ ଗମେଣ ଧେନୁ ଯେହ୍ନେ
ସମସ୍ତ ତତ୍ତ୍ୱ ଜ୍ଞାନ ଅଛି । ତେବେହେଁ ସୁତ ଦୁଃଖେ ଦୁଃଖୀ
କପିଳ ରୂପ ଧରି ହରି । ତା ଗର୍ଭେ ଥିଲେ ଦେହ ଧରି
ସେ ଦେବଧ୍ୟାନେ ଚିତ୍ତ ଦେଇ । ଏମନ୍ତେ ତାର ସ୍ପୃହା ନାହିଁ ॥
କପିଳ ମୁନି ଆତ୍ମ ସୁତ । ଯାହା କହିଲେ ହରି ରୂପ ॥
ମନୁ ସମସ୍ତ ଚିନ୍ତା ଛାଡ଼ି । ତପ କରଣେ ଚିତ୍ତ ବଢ଼ି ॥
ବୈରାଗ୍ୟ ବଳେ ଭକ୍ତି ଯୋଗେ । ଯୋଗ ସାଧନ ଯାର ମାର୍ଗେ ॥
ନିର୍ମଳ ବ୍ରହ୍ମ ତତ୍ତ୍ୱ ଜ୍ଞାନେ । ବ୍ରହ୍ମେ ନିମଗ୍ନ ହେଲା ଭଲେ ॥
ଯେ ବ୍ରହ୍ମ ଜୀବର ଆଶ୍ରୟ । ନିତ୍ୟ ନିରୀହ ଜ୍ୟୋତିମୟ ॥
ସେ କାଳେ ଜୀବ ଭାବ ଛାଡ଼ି । ସୁଖେ ବୁଡ଼ିଲା ଦୁଃଖ ଏଡ଼ି ॥
ସ୍ମରଣ ନାହିଁ ଆତ୍ମ ଦେହେ । ସ୍ୱପ୍ନେ ଦେଖିଲା ଦ୍ରବ୍ୟ ପ୍ରାୟେ
ନିତ୍ୟ ସମାଧି ଆଶ୍ରେ ଯହୁଁ । ମାୟା ଛାଡ଼ିଲା ମନୁ ତହୁଁ ॥
ତା ଦେହ ପରିବାରୀ ଗଣ । ସ୍ୱବଂଶେ କରନ୍ତି ପୋଷଣ ॥
ଭୋଜନ ଚେଷ୍ଟା ତାର ନାହିଁ । କୃଷ ବହିଲା ତାର ଦେହୀ ॥
ମଳିରେ ରଚି ଅଛି କାନ୍ତି । ତେବେହେଁ ବିରାଜଇ ଜ୍ୟୋତି
ଧୂମ ଆଚ୍ଛନ୍ନ ଯେହ୍ନେ ବହ୍ନି । ବିରାଜେ ନିଜ ଜ୍ୟୋତି ଘେନି
ତପସ୍ୟା ଯୋଗମୟ ଅଙ୍ଗ । ଯହିଁରେ ନାହିଁ ବସ୍ତୁ ସଙ୍ଗ ॥
ଯୋଗ ସାଧନୁ ସ୍ମରି ନାହିଁ । ବାସୁ ଦେବରେ ଚିତ୍ତ ଦେଇ ।
ଏମନ୍ତେ କପିଳୋକ୍ତ ମାର୍ଗେ । ସେ ଦେବୀ ଦେବହୂତି ବେଗେ
ଆନନ୍ଦମୟ ଭଗବାନ । ବ୍ରହ୍ମ ଲଭିଲା ସନାତନ ॥
ସେ କ୍ଷେତ୍ର ଅତି ପୁଣ୍ୟତମ । ଶୁଣ ବିଦୁର ତାର ନାମ ॥
ନାମ ତାହାର ସିଦ୍ଧେଶ୍ୱର । ତିନି ଲୋକରେ ଖ୍ୟାତି ଯାର ॥
ଯେଉଁ କ୍ଷେତ୍ରରେ ଦେବହୂତି । ଲଭିଲେ ନିରଞ୍ଜନ ଜ୍ୟୋତି ॥
ବିଦୁର ତାର କଳେବର । ଯୋଗ ସାଧନେ ଶୁଦ୍ଧ ତର ॥
ଅତି ନିର୍ମଳ ଶୁଦ୍ଧ ଜଳ । ନଦୀ ବହିଲା ସେହି ସ୍ଥଳ ॥
ସକଳ ନଦୀ ମଧ୍ୟେ ଶ୍ରେଷ୍ଠ । ସିଦ୍ଧିଦା ସେ ସିଦ୍ଧ ସେବିତ ॥

ଗରୁଡ଼ ଧ୍ୱଜ ରଥେ ବସି । ସେ ହରି ପାଦ ପଦ୍ମେ ପଶି ॥
ପୁରାଣ ଭାଗବତ ବାଣୀ । ସୁଜନେ ଭବ ତରଙ୍ଗିଣୀ ॥
ତର ନିଷ୍ଠିନ୍ତ ମନେ ଗୁଣି । ହରି ଚରଣ ଭେଳା ଘେନି ॥
ମୁଁ ଯେ ପୁରାଣ ଭାଗବତ । ଭାଷା ପ୍ରବନ୍ଧେ କଲିଗୀତ ॥
ମୋହୋର ନ ଘେନିବା ଦୋଷ । କେ ଜାଣେ ଏହା ଅର୍ଥ ଶେଷ ॥
ଯେମନ୍ତେ ଆକାଶ ଅନନ୍ତ । ସେ ରୂପ ଭାଗବତ ଅର୍ଥ ॥
ଅଜ୍ଞାନୀ ମାନେ ନ ଜାଣନ୍ତି । ତାକି ଜାଣିବି ମୁଁ ଦୁର୍ମତି ॥
ତଥାପି ଚଞ୍ଚଳ ସ୍ୱଭାବେ । ପ୍ରକାଶ କଲି ଗୀତ ଭାବେ ॥
ତୃତୀୟ ସ୍କନ୍ଧେ ଭାଗବତ । ଭଣଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀ ମଦ୍ଭାଗବତେ ମହା ପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟା ତୃତୀୟା ସ୍କନ୍ଧେ ବିଦୁର ମୈତ୍ରେୟ ସମ୍ବାଦେ କପିଳୋପାଖ୍ୟାନେ ନାମ ତ୍ରୟୋତ୍ରିଂଶୋଽଧ୍ୟାୟଃ ।*

କପିଳ ମହାଯୋଗୀ ମୁନି । ପୂର୍ବରୁ ମାତା ଆଜ୍ଞା ଘେନି
ପିତାଙ୍କ ଆଶ୍ରମରୁ ଗଲେ । ପୂର୍ବ ସମୁଦ୍ର କୂଳେ ମିଳେ
ସ୍ତୁତି କରନ୍ତି ମୁନି ଗଣ । ଗନ୍ଧର୍ବ ଅପସରା ପୁଣ
ନିରାବଧି ହିଁ ସ୍ତୁତିକରି । ଅର୍ଘ୍ୟ କଲ୍ୟାଣ ଦେଲା ବାରି
ତପସ୍ୟା ଅର୍ଥେ ସ୍ଥାନ ଦେଲା । ଆନନ୍ଦେ କୃତକୃତ୍ୟ ହେଲା
ବସିଲା ଯୋଗ ଆଶ୍ରେ କରି । ସ୍ତୁତି କରନ୍ତି ସାଂଖ୍ୟ ଚାରି
ତିନି ଲୋକରେ ଶାନ୍ତି ଅର୍ଥେ । ସମାଧି ଯୁତ ଶୁଦ୍ଧ ଚିତ୍ତେ
ଶୁଣ ବିଦୁର ପୁଣ୍ୟ ଦେହା । ତୁ ମୋତେ ପଚାରିଲୁ ଯାହା
ତୋତେ କହିଲି ତୋଷ ମନେ । କପିଳ ଦେବହୂତି ଖ୍ୟାନେ
ଶୁଣିଲେ ପାପ ନାଶ ଯାଇ । ପବିତ୍ର ହୋଏ ନର ଦେହୀ
ଏ ଯେ କପିଳ ମୁନିମତ । ଆତ୍ମ ଯୋଗରେ ସେ ଗୁପତ
ଭଗବାନରେ ଚିତ୍ତ ଦେଇ । ଯେ ଏହା ସାଧୁ ମଧ୍ୟେକହି

# ଚତୁର୍ଥ ସ୍କନ୍ଧ

**ଓଁ ନମୋ ଭଗବତେ ବାସୁଦେବାୟ ନମଃ**
**ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ**
**ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥**
**ମୂକଂକରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ ॥**
**ଯତ୍କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ॥**
**ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକ ମୁଖାଦମୃତଦ୍ରବସଂଯୁତଂ ।**
**ପିବତ ଭାଗବତଂ ରସମାଳୟଂ ମୁହୁରହୋ ରସିକା ଭୁବି ଭାବୁକାଃ ॥**

## ପ୍ରଥମ ଅଧ୍ୟାୟ

### ଶ୍ରୀ ମୈତ୍ରେୟ ଉବାଚ

ଏବେ ହୋ ଶୁଣ ଏକ ଚିତ୍ତେ । ଚତୁର୍ଥସ୍କନ୍ଧ ଭାଗବତେ ॥
ପୂର୍ବେ ଯେ ପଦ୍ମ ଯୋନି ତନୁ । ଜନ୍ମିଲେ ସ୍ୱୟମ୍ଭୁବ ମନୁ ॥
ତା ନାରୀ ସତ୍ୟରୂପା ନାମ । ପବିତ୍ର ସର୍ବ ଗୁଣ ଧାମ ॥
ତାର ଉଦରେ ବେନି ସୁତ । ଅପରେ ତୃତୀୟ ଦୋହିତ ॥
ଆକୂତି ଦେବହୂତି ବେନି । ପ୍ରସୂତି ନାମେ କନ୍ୟା ତିନି ॥
ଆକୂତି ରୁଚିଙ୍କି ବରିଲା । ପୁତ୍ରିକା ଧର୍ମେ ବିଭା ଦେଲା ॥
ଯେ ଧର୍ମ ବେଦ ବିଧି ମାର୍ଗେ । ବିଚାରି ସତ୍ୟରୂପା ସଙ୍ଗେ ॥
ସେ ପ୍ରଜାପତି ଗୃହେ ଆଣି । ସ୍ୱଧର୍ମେ ଆକୂତି ଘରଣୀ ॥
ସେ କନ୍ୟା ଗର୍ଭେ ରୁଚି ବୀର୍ଯ୍ୟେ । ପୁତ୍ରଦୋହିତା ମହା ତେଜେ ॥
ଜନ୍ମିଲେ ଅତି ସୁଲକ୍ଷଣ । ତାହାଙ୍କ ନାମ ଏବେ ଶୁଣ ॥
ଯଜ୍ଞ ପୁରୁଷ ତାଙ୍କ ବଂଶେ । ଜନ୍ମ ହୋଇଲେ ବିଷ୍ଣୁ ଅଂଶେ ॥
କନ୍ୟା ସୁରୂପା ସୁଲକ୍ଷଣା । ତା ନାମ କହିଲା ଦକ୍ଷିଣା ॥
ସେ ବେନି କନ୍ୟାପୁତ୍ର ଆଣି । ସ୍ୱଗୃହେ ମନୁଙ୍କ ଘରଣୀ ॥
ନିଜ ଅପତ୍ୟ ପ୍ରିୟ ଭାବେ । ପାଳଇ ମନୁବଂଶ ଲାଭେ ॥
ଏମନ୍ତେ ଗଲା ଦିନାକେତେ । ସେ ମନୁ ଅଳଙ୍କାର ଯୁତେ ॥
ସେ ଯଜ୍ଞପତି କନ୍ୟାପାଇଁ । ଗୃହସ୍ଥ ଧର୍ମ ବିଧି ବହି ॥
ଦକ୍ଷିଣା ଗର୍ଭେ ମୁନିବଳା । ଦ୍ୱାଦଶ ପୁତ୍ର ଜନ୍ମ କଲା ॥
ତୋଷ ପ୍ରତୋଷ ପୁତ୍ର ବେନି । ସନ୍ତୋଷ ଭଦ୍ର ଶାନ୍ତି ତିନି ॥
ଷଷ୍ଠରେ ପୁତ୍ର ଇଡ଼ସ୍ପତି । ବେଦେ ଅଧିକ ଯାର ମତି ॥
ଇଧ୍ମ କବି ଯେ ବିଭୁସ୍ୱାହ୍ନ । ସୁଦେବ ଦ୍ୱାଦଶ ରୋଚନ ॥
ଏ ଯେ ଦ୍ୱାଦଶ ଭାତୃଗଣେ । ମନୁର ଆଜ୍ଞା ପରମାଣେ ॥
ତୁଷିତ ନାମେ ଦେବଗଣ । ହୋଇଲେ ସୃଷ୍ଟିର କାରଣ ॥
ମରୀଚି ଆଦି ସପ୍ତମୁନି । ଯଜ୍ଞଙ୍କୁ ଇନ୍ଦ୍ର ପଦେ ଘେନି ॥
ଉତ୍ତାନପାଦ ପ୍ରିୟବ୍ରତ । ଏ ବେନି ମନୁ ରାଜା ସୁତ ॥
ଏହାଙ୍କ ବଂଶେ ରାଜା ଯେତେ । ପୁତ୍ର ପଉତ୍ର ଅପ୍ରମିତେ ॥
ଯେ କନ୍ୟା ଦେବହୂତି ନାମ । ଯାହାଙ୍କୁ ଲଭିଲା କର୍ଦ୍ଦମ ॥
ତାହାର ନବକନ୍ୟା ଗର୍ଭେ । ଯେ ଅବା ଉପୁଜିଲେ ପୂର୍ବେ ॥
ସେ କଥା କହିବଇଁ ତୋତେ । ତୁ ଯେଣୁ ପଚାରିଲୁ ମୋତେ ॥
ପ୍ରସୂତି କନ୍ୟା ମନୁ ରାଜା । ଦେଇ ଦକ୍ଷଙ୍କୁ କଲାପୂଜା ॥
ତାର ସନ୍ତତି ତିନିଲୋକେ । ବିଖ୍ୟାତ ହୋଇଲେ ଅନେକେ ॥
କହିବ ଏଥିର କାରଣ । ତୁ ଏବେ ସାବଧାନେ ଶୁଣ ॥
ଶୁଣନ୍ତେ ନବ ମୁନିବଂଶ । ହରଇ ଅଶେଷ କଳ୍ମଷ ॥
କର୍ଦ୍ଦମ ଋଷିଙ୍କର ବାଳା । ଜ୍ୟେଷ୍ଠ ଦୋହିତା ନାମ କଳା ॥
ମରୀଚି ବୀର୍ଯ୍ୟେ ତା ଉଦରେ । ଜନ୍ମିଲେ ଏ ବେନି କୁମରେ ॥
କାଶ୍ୟପ ପୂର୍ଣ୍ଣିମା ଯେ ଦୁଇ । ଶୁଚି ସୁନ୍ଦର ବେନି ଭାଇ ॥
ଏ ବେନି ଭାଇଙ୍କର ବଂଶ । ଜଗତେ ଅନେକ ପ୍ରକାଶ ॥
ବିରଜ ବିଶ୍ୱଗ ସେ ସୁତ । ଅପରେ ବିଶେଷ ବିଦିତ ॥
ଅତ୍ରିର ଅନସୂୟା ନାରୀ । ଅତି ସୁନ୍ଦର ସୁକୁମାରୀ ॥
ତାହାର ଗର୍ଭେ ତିନି ସୁତ । ହୋଇଲେ ଜଗତ ବିଦିତ ॥
ଦତ୍ତ ଦୁର୍ବାସା ସୋମ ତିନି । ତିନି ଦେବଙ୍କ ରୂପ ଘେନି ॥

### ବିଦୁର ଉବାଚ

ଅତ୍ରିର ପତ୍ନୀ ଗର୍ଭଗତେ । ତ୍ରିଦେବ ଜନ୍ମିଲେ କେମନ୍ତେ ॥
ସେ ବ୍ରହ୍ମା ବିଷ୍ଣୁ ତ୍ରିପୁରାରି । ସୃଷ୍ଟି ପାଳନ ଅନ୍ତକାରୀ ॥
ଏ କଥା ସଂଶୟ ତ ମୋତେ । ଭୋ ମୁନି କହ ଶୁଦ୍ଧଚିତ୍ତେ ॥
କି ହେତୁ କି କର୍ମ ବିଚାରି । କିପାଁ ଜନ୍ମିଲେ ଦେହ ଧରି ॥

### ମୈତ୍ରେୟ ଉବାଚ

ଶୁଣ ବିଦୁର ସ୍ଥିର ମନେ । ଅତ୍ରି ଯେ ବ୍ରହ୍ମାର ବଚନେ ॥
ସ୍ୱଭାବେ ବ୍ରହ୍ମ ବିଦ୍ୟାବର । ବୋଇଲେ ତପସ୍ୟା ତୁ କର ॥
ସେ ତପେ ଯେବା ଦେବ ସେବି । ତାର ପ୍ରସନ୍ନେ ଫଳ ଲଭି ॥
ଏମନ୍ତେ ପିତା ବାକ୍ୟ ଶୁଣି । ଧର୍ମପତ୍ନୀକି ସଙ୍ଗେ ଘେନି ॥
ସେ ପତିବ୍ରତା ଅନସୂୟା । ଯାକୁ ନ ଲାଗେ ବିଷ୍ଣୁମାୟା ॥
ସେ ସାଧୁ ପତ୍ନୀ ସଙ୍ଗମେଳେ । ମିଳିଲେ ଗିରି କୁଳାଚଳେ ॥
ସେ ଗିରି ଶିଖେ ନାନା ଫୁଲ । ସୁଗନ୍ଧ ସୁରଙ୍ଗ ଅମୂଲ୍ୟ ॥
ଚନ୍ଦନ ଚମ୍ପକ ଅଶୋକ । ପାରିଜାତକ କୁରୁବକ ॥
ନର୍ମଦା ନଦୀ ତଳେ ବହେ । ସ୍ନାନେ ସକଳ ପାପ ଦହେ ॥
ସେ ସ୍ଥାନେ ବସି ବେନିଜନେ । ତପ ସମାଧି ଯୋଗଧ୍ୟାନେ ॥

ମନକୁ ଧରି ଆତ୍ମବଳେ । ପବନ ଇନ୍ଦ୍ରିୟ ନିଷ୍ଫଳେ ॥
ଏକ ଚରଣେ ଉଭା ହୋଇ । ଉପର ମୁଖେ ଶୂନ୍ୟେ ଧାୟି ॥
ଶତେ ବରଷ ଯୋଗଧ୍ୟାନେ । ବଞ୍ଚିଲେ ପବନ ଭୋଜନେ ॥
ନିଷ୍ଫଳ ଯୋଗଧ୍ୟାନେ ଚିନ୍ତି । ଚିତ୍ତେ ଏମନ୍ତ ବିଚାରନ୍ତି ॥
ଜଗତ ପ୍ରଭୁ ଯେ ଈଶ୍ୱର । ସୃଷ୍ଟି ପାଳନ ଚକ୍ରଧର ॥
ଅନାଦି ପରମ କାରଣ । ଦୁର୍ଲ୍ଲଭ ଯାହାର ଚରଣ ॥
ଆମ୍ଭର ସନ୍ତତି କାରଣ । ଶରଣ ଗଲୁ ତା ଚରଣେ ॥
ଏମନ୍ତ ଯୋଗ ଚିତ୍ତେ ଚିନ୍ତି । ହରିହୁଁ ଅନ୍ୟ ନ ଜାଣନ୍ତି ॥
ସେ ହରି ଯେବେ ଦୟାକରେ । ଜନ୍ମ ଲଭିବେ ମୋର ଘରେ ॥
ତେବେ ସେ ଜୀବନ ଆମ୍ଭର । ସେ ହରି ଶରଣ ସୋଦର ॥
ଏମନ୍ତ ଚିତ୍ତେ ନିତ୍ୟେ ଚିନ୍ତି । ସେ ବନେ ତପରେ ସାଧନ୍ତି ॥
ଉର୍ଦ୍ଧ୍ୱ ବଦନେ ସେ ନିଷ୍ଫଳ । ଏମନ୍ତେ ଗଲା ଦୀର୍ଘକାଳ ॥
ପ୍ରାଣ ସଂଯମ ଶ୍ରମବଳେ । ଶିରେ ଉପୁଜିଲା ଅନଳେ ॥
ତେଜେ ତାପିଲେ ତିନିପୁର । ଦେଖି କମ୍ପିଲେ ପୁରନ୍ଦର ॥
ବିଶ୍ୱ କମ୍ପିତ ତେଜ ଭୟେ । ଦେଖି ଗୋବିନ୍ଦ କଲେ ଭୟେ
ତକ୍ଷଣେ ପ୍ରଭୁ ନରହରି । ତିନି ଦେବଙ୍କ ରୂପ ଧରି ॥
ବେଗେ ଗମିଲେ ଶୂନ୍ୟପଥେ । ଗନ୍ଧର୍ବ ବିଦ୍ୟାଧର ଯୂଥେ ॥
ସୁସ୍ୱରେ ଯନ୍ତ୍ର ଗୀତଗାନ । ଯେଣେ ତୋଷିତ ଆତ୍ମାମନ ॥
ସେ ହରି ନିଜଗୁଣ ଗାଇ । ତପ ପ୍ରଭାବ ହୃଦେ ବହି ॥
ଦୂର ଗମନ ଅତିଶ୍ରମେ । ମିଳିଲେ ମୁନିଙ୍କ ଆଶ୍ରମେ ॥
ଦେବଙ୍କ ଆଗମନ ଦେଖି । ସେ ମୁନି ଆସନ ଉପେକ୍ଷି ॥
ସମାଧି ତପ ଆଚରଣେ । ଥିଲେ ସେ ଏକଇ ଚରଣେ ॥
ବେନି ଚରଣ ଥିଲେ ଥୋଇ । କପୋଳେ ବେନିକର ଦେଇ ॥
ଭରିଣ ଅଶ୍ରୁଜଳ ନେତ୍ରେ । ପ୍ରଲମ୍ବ କରି ଦଣ୍ଡବତେ ॥
ଉଠି ଚାହଇଁ ଶୂନ୍ୟମାର୍ଗେ । ତିନି ମୂରତି ଦେଖି ଆଗେ ॥
ବୃଷଭ ପକ୍ଷୀରାଜ ଯାନେ । ପରମହଂସର ବିମାନେ ॥
ତିନି ଦେବଙ୍କ ଚିହ୍ନ ଦେଖି । ନିର୍ମଳ କଲା ବେନି ଆଖି ॥
ଦେଖଇ ବ୍ରହ୍ମା ବିଷ୍ଣୁ ହର । ନିଜ ଆୟୁଧେ ଧରି କର ॥
ପ୍ରସନ୍ନ ଦିଶେ ମୁଖକାନ୍ତି । ଈଷତ ହାସେ ଶୋଭା ପାନ୍ତି ॥
ଏମନ୍ତେ ଦେଖି ତିନିମୁଖେ । ମୁନି ଛାଡ଼ିଲେ ମନୋଦୁଃଖେ ॥
କଣ୍ଠ କୁଣ୍ଠିତ ଗଦ ଗଦେ । ପ୍ରଲମ୍ବ କରି ପଡ଼େ ପାଦେ ॥
କର ଯୁଗଳ ଶିରେ ଦେଇ । ବୋଲଇ ତାଙ୍କ ମୁଖ ଚାହିଁ ॥

## ଅତ୍ରି ଉବାଚ

ସ୍ଥିତ ଉଦ୍ଭବ ଲୟ କାର୍ଯ୍ୟେ । ତୁମ୍ଭର ଶରୀର ବିରାଜେ ॥
ଭକ୍ତଜନଙ୍କ ପ୍ରିୟଭାବେ । ଶରୀର ବହୁ ଅନୁରାଗେ ॥
ତୁମ୍ଭେ ଯେ ବ୍ରହ୍ମା ବିଷ୍ଣୁ ହର । ମୁଁ ତୁମ୍ଭ ଚରଣେ କିଙ୍କର ॥
ତୁମ୍ଭର ରୂପ ଏ ସଂସାରେ । ପ୍ରକାଶେ ଜନ ଉପକାରେ ॥
ଏମନ୍ତେ ଅତ୍ରି ବାକ୍ୟ ଶୁଣି । ବିଷ୍ଣୁ ଶଙ୍କର କୁଶପାଣି ॥
ବୋଲନ୍ତି ଅତ୍ରି ମୁଖ ଚାହିଁ । ଭୋ ମୁନି ଭାଗ୍ୟବନ୍ତ ତୁହି ॥
ତୋହର ପ୍ରାୟେ ତପ ଘୋରେ । ତପସ୍ୱୀ ନାହିଁ ଏ ସଂସାରେ ॥
ପତ୍ନୀ ସହିତେ ଦୁଃଖ ସହି । ତପ ଯେ କଲୁ ବନେ ରହି ॥
ଚିତ୍ତେ ତୁ କଛି ଅଛୁ ଯାହା । ତେଣୁ ଆତ୍ମର ଚିତ୍ତେ ଦୟା ॥
ମନରେ ସଂଶୟ ନ କର । ହୋଇବୁ ତୋହର କୁମର ॥
ତୋହର ଯଶ ଏ ଜଗତେ । ନିଶ୍ଚୟ ରହିବ ଯେମନ୍ତେ ॥
କରିବୁ ସତ୍ୟ ଏ ବଚନ । ଏମନ୍ତ କହି ଅନ୍ତର୍ଦ୍ଧାନ ॥
ନିଜ ଭୁବନେ ଗଲେ ଦେବେ । ଶୁଣ ବିଦୁର କହୁ ଏବେ ॥
ସେ ଅତ୍ରି ପତ୍ନୀ ଗର୍ଭ ଭାଗେ । ଜନ୍ମ ହୋଇଲେ ତିନି ଦେବେ ॥
ଚକ୍ଷୁର ମଧ୍ୟେ ସୋମ ଜାତ । ଉଦରୁ ରୁଦ୍ର ଯେ ସମ୍ଭୂତ ॥
ଦୁର୍ବାସା ଧୂର୍ଜଟିର ଅଂଶେ । ଜନ୍ମ ହୋଇଲେ ପୃଷ୍ଠ ଦେଶେ ॥
ତପ ପ୍ରଭାବର ଏ ଗୁଣ । ଏବେ ଅଙ୍ଗିରା ବଂଶ ଶୁଣ ॥
ଶ୍ରଦ୍ଧା ଯେ ଅଙ୍ଗୀରା ଯୁବତୀ । ତାର ସଂଯୋଗେ ପ୍ରଜାପତି ॥
ଚାରି କୁମାରୀ ଜନ୍ମ କଲା । ସୁନ୍ଦର ରୂପଗୁଣ ଶୀଳା ॥
ତୁଳନା ନାହିଁ ଅନୁପମ । ଶୁଣ ହୋ ତାହାଙ୍କର ନାମ ॥
ପ୍ରଥମ କନ୍ୟା ସିନୀବାଲୀ । ଅପରେ କୁହୁ ରାକାବାଳୀ ॥
ଚତୁର୍ଥ ନାମ ଅନୁମତି । ଏମନ୍ତେ କନ୍ୟାଙ୍କର ଖ୍ୟାତି ॥
ଅପରେ ବେନି ସୁତ ଜାତ । ଔତର୍ଥ୍ୟ ବୃହସ୍ପତି ଖ୍ୟାତ ॥
ବ୍ରହ୍ମ ବନ୍ଦିତ ତାଙ୍କ ଗୁଣ । ପୌଲସ୍ତି ବଂଶ ଏବେ ଶୁଣ ॥
ଅଗସ୍ତି ହବି ନାମ ବେନି । ଜନ୍ମିଲେ ବ୍ରହ୍ମତେଜ ଘେନି ॥
ଏଯେ ସୁରୁଚି ମନ୍ୱନ୍ତରେ । ବିଖ୍ୟାତ ଖ୍ୟାତି ତିନି ପୁରେ ॥
ସେ ପୁଣି ଅନ୍ୟଜନେ ଖ୍ୟାତ । ବ୍ରତୋଳି ବିଶ୍ରବା ସମ୍ଭୂତ ॥
ବ୍ରତୋଳି ପତ୍ନୀ ଇଡ଼ବିଳା । ଦୁର୍ଜ୍ଜୟ ପୁତ୍ର ପ୍ରସବିଲା ॥
କୁରୂପ ଦେଖି ତା ଶରୀର । ତା ନାମ କହିଲା କୁବେର ॥
ପୁଣି ବିଶ୍ରବା ରୂପ ଘେନି । ଅସୁରୀ ଗର୍ଭେ ପୁତ୍ର ତିନି ॥
ରାବଣ କୁମ୍ଭକର୍ଣ୍ଣ ନାମ । ଏ ଯେ ତୈଲୋକେ ନାହିଁ ସମ
କ୍ରତୁର କ୍ରିୟା ଗର୍ଭ ଶୁଣ । ଜନ୍ମ ହୋଇଲେ ବିଭୀଷଣ ॥
ପୌଲସ୍ତି ପତି ଭାନୁ ଗର୍ଭେ । ତିନି କୁମର ସୃଷ୍ଟି ଲଭେ ॥
ଜ୍ୟେଷ୍ଠର ନାମ କର୍ମଶ୍ରେଷ୍ଠ । ଦ୍ୱିତୀୟ ବରୀୟ ସେ ଶ୍ରେଷ୍ଠ ॥
ସହିଷ୍ଣୁ ତୃତୀୟ ପ୍ରକାଶ । ଏବେ ତୁ ଶୁଣ କ୍ରତୁବଂଶ ॥

କ୍ରତୁର ପତ୍ନୀ କର୍ମକ୍ରିୟା । ତା ପୁତ୍ର ଶୁଣ ପୁଣ୍ୟଦେହା ॥
ଷାଠି ସହସ୍ର ବାଳଖିଲ୍ୟା । ତା ଗର୍ଭେ ପୁତ୍ର ଉପୁଜିଲା ॥
କେ ପାରେ ତାଙ୍କ ଗୁଣ ଚିହ୍ନି । ଅନଳ ପ୍ରାୟେ ଦିଶେ କାନ୍ତି ॥
ଶୁଣ କହିବା ବଂଶ ଏବେ । ବଶିଷ୍ଠ ଅରୁନ୍ଧତୀ ଗର୍ଭେ ॥
ନିର୍ମଳ ଗୁଣ ସପ୍ତଋଷି । ଭାନୁ ଉଦୟେ ଯାହା ଘୋଷି ॥
ଶୁଣ ବିଦୁର ମନ ସୁଖେ । କହିବି ଚିତ୍ରକେତୁ ମୁଖେ ॥
ଜ୍ୟେଷ୍ଠ ଚିତ୍ରକେତୁ ସୁରୋଚି । ବିରାଜ ମିତ୍ର ବେନି ଶୁଚି ॥
ଉଲ୍ଵଣ ବସୁଭୃତ ଯାତ । ଦ୍ୟୁମାନ ଶକ୍ତିଙ୍କ ସମ୍ଭୂତ ॥
ଚିତ୍ରର ବଂଶ ଏବେ କହି । ଶୁଣ ବିଦୁର ମନ ଦେଇ ॥
ଅପୂର୍ବ ପତ୍ନୀ ସେ ସ୍ୱଭାବେ । ପୁତ୍ର ଜନ୍ମିଲା ତାର ଗର୍ଭେ ॥
ଦଧୀଚି ନାମେ ମହାବୀର । ସ୍ୱଭାବେ ଦିଶେ ଅଶ୍ୱଶିର ॥
କେ କହିପାରେ ତାଙ୍କ ଗୁଣ । ଏବେ ତୁ ଭୃଗୁବଂଶ ଶୁଣ ॥
ଭୃଗୁର ପତ୍ନୀ ଖ୍ୟାତି ଗର୍ଭେ । ତିନି ଅପତ୍ୟ ସୃଷ୍ଟି ଲଭେ ॥
ଧାତା ବିଧାତା ବେନି ସୁତ । କନ୍ୟାଏ କମଳା ସମ୍ଭୂତ ॥
ଧାତା ବିଧାତା ବେନି ବାଳେ । ସୁନ୍ଦର ରୂପ ବାଳକାଳେ ॥
ସୁମେରୁ ପର୍ବତ ଦୋହିତା । ଆୟତି ନିୟତି ସମ୍ଭୂତା ॥
ଏ ବେନି କନ୍ୟା ବେନି ଭାଇ । ବିବାହ କଲେ ବେନିକୁହିଁ ॥
ସେ ବେନି କନ୍ୟା ଗର୍ଭଗତେ । ଜନ୍ମ ହୋଇଲେ ବେନିସୁତେ ॥
ମୃକୁଣ୍ଡ ପ୍ରାଣ ତାଙ୍କ ନାମ । ସୁନ୍ଦର ସମ ନୁହେଁ କାମ ॥
ମୃକୁଣ୍ଡ ସୁତ ମାର୍କଣ୍ଡେୟ । ପ୍ରାଣର ଏକଇ ତନୟ ॥
ସେ ପୁଣି ବେଦ ଶିରା ହୁଏ । ମୁନିଙ୍କ ମଧ୍ୟେ ମହାଶୟେ ॥
ଉଶନା ମୁନି ଯାର ସୁତ । କବିଙ୍କ ମଧ୍ୟେ ମହାବ୍ରତ ॥
ଏ ସର୍ବ ମୁନି ମହାଜନ । ସ୍ୱଭାବେ ତୈଲୋକ୍ୟ ଭାବନ ॥
ଏମନ୍ତ କର୍ଦ୍ଦମ ସନ୍ତତି । କହିଲି ମୁନି ବଂଶ ଖ୍ୟାତି ॥
ଏ ଯଶ ଶୁଣନ୍ତେ ସଂସାରେ । ଜ୍ଞାନ ଅଜ୍ଞାନ ପାପହରେ ॥
ଏ ସ୍ୱାୟମ୍ଭୁବ ମନୁ ସୁତା । ପ୍ରସୂତି ନାମେ ପତିବ୍ରତା ॥
ତାହାର ପ୍ରିୟ ଶୁଦ୍ଧମତି । ଯା ନାମ ଦକ୍ଷ ପ୍ରଜାପତି ॥
ତା ବୀର୍ଯ୍ୟେ ପ୍ରସୂତିର ଗର୍ଭେ । ଷୋଡ଼ଶ କନ୍ୟା ସେ ପ୍ରସବେ ॥
ଜନ୍ମିଲେ ନାରୀ ସୁଲୋଚନୀ । ରୂପେ ତ୍ରିଭୁବନ ମୋହିନୀ ॥
ଧର୍ମଙ୍କୁ ତ୍ରୟୋଦଶ ନାରୀ । ଦେଲେ ସେ ଅଳଙ୍କାର ଭରି ॥
ଅଗ୍ନିକୁ ଏକ କନ୍ୟା ଦେଲା । ପିତୃ ପୁରୁଷେ ଏକ ବଳା ॥
ଅପରେ ନାମ ସତୀ କନ୍ୟା । ସୁଗୁଣା ପତିବ୍ରତା ଧନ୍ୟା ॥
ଅନେକ ମତେ ତାରଗୁଣ । ଧର୍ମ ପତ୍ନୀର ନାମ ଶୁଣ ॥
ଶ୍ରଦ୍ଧା ମଇତ୍ରୀ ଦୟା ଶାନ୍ତି । ତୁଷ୍ଟି ପୁଷ୍ଟ କ୍ରିୟା ଉନ୍ନତି ॥
ତିତିକ୍ଷା ମୂର୍ତ୍ତି ବୁଦ୍ଧି ମେଧା । ଲଜ୍ଜା ସହିତେ ପରିସିଦ୍ଧା ॥
ଏମନ୍ତେ ଧର୍ମ ଏତେ ନାରୀ । ଦକ୍ଷରେ ଭାବେ ବିଭାକରି ॥
ଶ୍ରଦ୍ଧା ସତ୍ୟକୁ ପ୍ରସବିଲା । ମୈତ୍ରୀ ପ୍ରସାଦେ ଉପୁଜିଲା ॥
ଦୟାର ସୁତ ସେ ଅଭୟ । ସୁଖ ଯେ ଶାନ୍ତିର ତନୟ ॥
ଆନନ୍ଦ ତୁଷ୍ଟି ତହୁଁ ଜାତ । ପୁଷ୍ଟିରୁ ଗର୍ଭ ଯେ ସମ୍ଭୂତ ॥
କ୍ରିୟାର ତହୁଁ ଯୋଗ ହୋଇ । ଉନ୍ନତି ଦର୍ପ ପ୍ରସବଇ ॥
ଅର୍ଥ ବୁଦ୍ଧିରୁ ପ୍ରସବିଲା । ଲଜ୍ଜାରୁ ବିନୟ ହୋଇଲା ॥
କ୍ଷେମ ପ୍ରସୂତି କ୍ରିୟା ତହୁଁ । ମୂର୍ତ୍ତିର ସୁତ ଏବେ କହୁଁ ॥
ଯହିଁ ଆଶ୍ରିତ ସର୍ବଗୁଣ । ସେ ବେନି ନର ନାରାୟଣ ॥
ଏ ବେନି ପୁତ୍ର ଜନ୍ମଦିନେ । ଆନନ୍ଦ ଏ ତିନି ଭୁବନେ ॥
ଦିଗ ପବନ ଗିରିନଦୀ । ଆନନ୍ଦେ ଉଚ୍ଛୁଳେ ଜଳଧି ॥
ଗଗନେ ସୁର ତୂର ଘୋଷେ । ନିର୍ମଳ କୁସୁମ ବରଷେ ॥
ସକଳ ମୁନି ସ୍ତୁତି କରି । ରଙ୍ଗେ ନାଚନ୍ତି ଅପସରୀ ॥
ଗନ୍ଧର୍ବ କିନ୍ନରେ ଆନନ୍ଦେ । ନାଚନ୍ତି ଅପସରା ବୃନ୍ଦେ ॥
ସକଳ ଗ୍ରହେ ଅନୁକୂଳ । ଉତ୍ସବ ପରମ ମଙ୍ଗଳ ॥
ହରଷେ ହର ପଦ୍ମଯୋନି । ସଙ୍ଗେ ଦେବତା ବୃନ୍ଦ ଘେନି ॥
ମିଳିଲେ ଧର୍ମର ଭୁବନେ । ଆନନ୍ଦ ମନେ ସର୍ବଜନେ ॥

## ଦେବଗଣ ଉବାଚ

ଯେ ନିଜ ମାୟାଗୁଣେ ହରି । ବିଶ୍ୱ ସଂସାରେ ରୂପଧରି ॥
ବିଶ୍ୱ ପାଳନ କ୍ଷମ ଅର୍ଥେ । ଭାରତ ଭୂମି ମଧ୍ୟଗତେ ॥
ତପ ଆଚରି ଜନ ହିତେ । ସେ ହରି ଚରଣେ ନମସ୍ତେ ॥
ଯେ ହରି ସୃଷ୍ଟି ଲୟ ଅର୍ଥେ । ଆତ୍ମକୁ ସର୍ଜିଲା ଜଗତେ ॥
ସର୍ବ ଲକ୍ଷଣ ଅର୍ଥେ ହରି । ଆତ୍ମାକୁ ବେନି ରୂପ କରି ॥
ପରିପାଳନ ତପ ବଳେ । ଆସନେ ଧରଣୀ ମଣ୍ଡଳେ ॥
ଶ୍ରୀ ନିକେତନ ତିନି ନେତ୍ର । କ୍ଷଣେ କିଞ୍ଚିତ ସେ ପବିତ୍ର ॥
ସଂସାରାର୍ଣ୍ଣବ ସୁଖେ ତରେ । ଯେ ପ୍ରାଣୀ ମୋତେ ଆଶ୍ରେ କରେ ॥
ଏମନ୍ତ ସୁରଗଣ କହି । ସ୍ତୁତି କରନ୍ତି ମୁଖ ଚାହିଁ ॥
ତପେ ଜଗତ ଜନ ହିତେ । ସେ ଗନ୍ଧମାର୍ଦ୍ଦନ ପର୍ବତେ ॥
ମିଳିଲେ ଶୁଭ ଲଗ୍ନ ବେଳେ । ଭାରତ ଭୂମି ସୁମଙ୍ଗଳେ ॥
ସେ ବେନି ରୂପ ବିଷ୍ଣୁ ଅଂଶେ । ଜନ୍ମ ହୋଇଲେ ଧର୍ମ ବଂଶେ ॥
ଭୂମିର ଭାରା ନିବାରଣେ । ଜଗତ ପରମ କାରଣେ ॥
ସମ୍ଭବେ ଯଦୁ କୁରୁ ବଂଶେ । କୃଷ୍ଣ ଅର୍ଜ୍ଜୁନ ବିଷ୍ଣୁ ଅଂଶେ ॥
ଅଗ୍ନିର ସ୍ୱାହା ସ୍ୱାଧା ନାରୀ । ତିନି ଅପତ୍ୟ ଜନ୍ମ କରି ॥
ପାବକ ପାବମାନ ଶୁଚି । ହୃତ ଭୋଜନେ ତାଙ୍କ ରୁଚି ॥

ଏ ତିନି ବୀର୍ଯ୍ୟେ ଅଗ୍ନି ଗଣେ । ଜନ୍ମିଲେ ସଂସାର ଧାରଣେ ॥
ଊନପଞ୍ଚାଶ ରୂପ ହୋଇ । ତେତେକେ ଗଞ୍ଜନ୍ତି ସ୍ୱର୍ଗ ମହୀ ॥
ସ୍ୱଚ୍ଛନ୍ଦେ ପିତୃଗଣ ସଙ୍ଗେ । ମିଳନ୍ତି ବୈତାଳିକ ରଙ୍ଗେ ॥
ଯେ ବ୍ରହ୍ମବାଦୀ ବିପ୍ରଗଣେ । ସୁଯଜ୍ଞ ମନ୍ତ୍ର ଉଚ୍ଚାରଣେ ॥
ଅଗ୍ନିକୁ କରନ୍ତି ବରଣ । ତାହାଙ୍କ ନାମ ଏବେ ଶୁଣ ॥
ଅଗ୍ନି ସ୍ୱଧା ଯେ ବର୍ହିଷଦ । ସୋମପା ଆଜ୍ୟପା ସୁବେଦ ॥
ଅଗ୍ନିର ପତ୍ନୀ ସ୍ୱହା ନାମ । ସ୍ୱରୂପ ଗୁଣେ ଅନୁପମ ॥
ତାର ଉଦରେ କନ୍ୟା ବେନି । ଜନ୍ମିଲେ ପିତୃ ରୂପ ଘେନି ॥
ଏ ବେନି କନ୍ୟା ଯୋଗଜ୍ଞାନୀ । ବଞ୍ଚନ୍ତି ଭୁବନ ପାବିନୀ ॥
ଏମନ୍ତ ଦକ୍ଷ ପ୍ରଜାପତି । ତାର କୁମାରୀ ନାମ ସତୀ ॥
ଈଶ୍ୱର ପତ୍ନୀ ସେ ସ୍ୱଭାବେ । ତାର ଚରିତ ଶୁଣ ଏବେ ॥
ଆତ୍ମା ସଦୃଶ ପୁତ୍ର ଗର୍ଭେ । ସେ ସତୀ କେବେହେଁ ନ ଲଭେ ॥
ପିତାର ଯଜ୍ଞଶାଳେ ଯାଇ । ସ୍ୱାମୀର ଛଳେ କ୍ରୋଧବହି ॥
ଦେବଙ୍କ ମଧ୍ୟେ ଯଜ୍ଞଶାଳେ । ଜୀବନ ଛାଡ଼ିଲେ ଅନଳେ ॥
ଚତୁର୍ଥ ସ୍କନ୍ଧେ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ମୈତ୍ରେୟ ବିଦୁର*
*ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

### ବିଦୁର ଉବାଚ

ଯେ ଭବ ସାଧୁଙ୍କର ଶ୍ରେଷ୍ଠ । ତା ସଙ୍ଗେ ଦକ୍ଷ କଲା ହଟ ॥
ଦୁହିତା ବତ୍ସଳ ସ୍ୱଭାବେ । ସତୀକି ଦେଇଅଛି ଭବେ ॥
କିମ୍ପା ଅନୀତି ବିଚାରିଲା । ସତୀକୁ ଅନାଦର କଲା ॥
ସଚରାଚର ଗୁରୁ ହର । ସେ ଆତ୍ମାରାମ ଯୋଗେଶ୍ୱର ॥
ଶାନ୍ତି ବିଗ୍ରହ ନିର୍ବିକାର । ଅଦ୍ଭୁତ ମହିମା ଯାହାର ॥
ସମ ସହୃଦ ଶୁଦ୍ଧ ଚିତ୍ତ । ଜଗତ ବନ୍ଧୁ ବିଶ୍ୱନାଥ ॥
ତାଙ୍କୁ ଅବଜ୍ଞା କିମ୍ପା କଲା । କେବା ତାହାକୁ ଶିକ୍ଷା ଦେଲା ॥
ଜାମାତା ଶ୍ୱଶୁର ସମ୍ବନ୍ଧେ । କେବା ସାଧିଲା ବୁଦ୍ଧି ଭେଦେ ॥
ଶିବଙ୍କୁ ଅନାଦର କଲା । ସେ ଭାବେ ସତୀ ପ୍ରାଣ ଦେଲା ॥
ଏ ବାଣୀ ଶୁଣି ମୋର ମନ । ଚଞ୍ଚଳ ଭାବେ ହୁଏ ଛନ୍ନ ॥
ଭୋ ମୁନି କରିବାକୁ ସ୍ନେହ । କହିବା ନ ରହୁ ସନ୍ଦେହ ॥

### ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ । ସୃଷ୍ଟିର ପୂର୍ବେ ଦକ୍ଷ ଯଜ୍ଞେ ॥
ଯଜ୍ଞ ଆରମ୍ଭ ଆଚରଣେ । ମିଳିଲେ ସର୍ବ ଦେବଗଣେ ॥
ଅଶେଷ ମୁନିଙ୍କର ମେଳେ । ମିଳିଲେ ଦଶଦିଗପାଳେ ॥
ଯକ୍ଷ କିନ୍ନର ନାଗ କୁଳ । ମିଳିଲେ ତୃତୀୟ ଅନଳ ॥
ପିତୃ ଦେବତା ଗଣ ଆଦି । ଯେଣେ ମହାଯଜ୍ଞ ସମ୍ପାଦି ॥
ଏମନ୍ତ ସୁରଗଣ ଯେତେ । ମିଳିଲେ ବ୍ରହ୍ମାର ଅଗ୍ରତେ ॥
ସୁର କିନ୍ନର ସର୍ବ ମୁନି । ଦକ୍ଷକୁ ସର୍ବ ସଙ୍ଗେ ଘେନି ॥
ସେ ଦକ୍ଷ ନିଜ ବ୍ରହ୍ମ ତେଜେ । ସୁନ୍ଦର ତ୍ରିଭୁବନ ଗଞ୍ଜେ ॥
ଆଦିତ୍ୟ ପ୍ରାୟ ଦେହ କାନ୍ତି । ମଣି କଙ୍କଣ ଝଟକନ୍ତି ॥
ବ୍ରହ୍ମାର ସଭା ମଧଗତେ । ଥିଲେ ଯେ ତିମିର ଆୟତେ ॥
ଦକ୍ଷର ତେଜେ ତମ ଗଲା । ସେ ସଭା ନିର୍ମଳ ଦିଶିଲା ॥
ଦେବଙ୍କ ମଧ୍ୟେ ଦକ୍ଷ ଦେଖି । ଉଠିଲେ ଆସନ ଉପେକ୍ଷି ॥
ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ । ଦକ୍ଷକୁ ଦେଖି ନ ଉଠିଲେ ॥
ସେ ସଭା ମଧ୍ୟେ ମୁନି ଯେତେ । ଆନନ୍ଦେ ଭଜ ଶୁଦ୍ଧ ଚିତ୍ତେ ॥
ରୋମାଞ୍ଚ ଅଶ୍ରୁ ଜଳ ନେତ୍ରେ । ଅଞ୍ଜଳି କରି କର ପାତ୍ରେ ॥
ଦକ୍ଷକୁ ସାଧୁ ସାଧୁ ବାଣୀ । ଭାବେ କରନ୍ତି ପୁଣ ପୁଣି ॥
ସେ ଦକ୍ଷ ସଭା ମଧ୍ୟେ ଗଲା । ବ୍ରହ୍ମା ଚରଣେ ପ୍ରଣମିଲା ॥
ସେ ବ୍ରହ୍ମା କୃତ କୃତ୍ୟ ହୋଇ । ଦକ୍ଷକୁ ଆଲିଙ୍ଗନ ଦେଇ ॥
ନିଜ ସମୀପେ ବସାଇଲେ । ଅନେକ ପୁରସ୍କାର ଦେଲେ ॥
ରୁଦ୍ର ଯେ ସଭା ମଧ୍ୟେ ଥିଲା । ଦକ୍ଷକୁ ଦେଖି ନ ଉଠିଲା ॥
ଦେଖିଣ ରୁଦ୍ର ଅପମାନ । ଦକ୍ଷର ଚିତ୍ତେ ଗରୁତମ ॥
ସେ ଦକ୍ଷ ସ୍ୱଭାବେ ଶ୍ୱଶୁର । ତାକୁ ନ ଗଣିଲେ ଈଶ୍ୱର ॥
ଅବଜ୍ଞା ଦୋଷ ସେ ପ୍ରଚଣ୍ଡ । ଯେହ୍ନେ ଉଦିତ ମାରତଣ୍ଡ ॥
କର ପ୍ରସାରି ସଭା ମଧ୍ୟେ । କୋପେ ବୋଲନ୍ତି ଶାପବାଦେ ॥
ଶୁଣ ହେ ବ୍ରହ୍ମଋଷି ଗଣେ । ଆଗମ ନିଗମ ପ୍ରମାଣେ ॥
ତୁମ୍ଭେ ଯେ ସଭା ମଧ୍ୟେ ଅଛ । ଏବେ ତ ଦେଖିଲ ପ୍ରତ୍ୟକ୍ଷ ॥
ଶାସ୍ତ୍ରେ ତୁମ୍ଭର ବାକ୍ୟ ଯେତେ । ଯେ ସଦାଚାର ଏ ଜଗତେ ॥
କେ ଲଙ୍ଘି ପାରେ ତାହା ବଳେ । ଏ ତିନି ଭୁବନ ମଣ୍ଡଳେ ॥
ଦେଖ ଏ ତୁମ୍ଭର ବଚନ । ଲଙ୍ଘିଲା ବିକଟ ଲୋଚନ ॥
ରୁଦ୍ର ବୋଲାଇ ଗର୍ବ କଲେ । ଏ ମୋତେ ଦେଖି ନ ଉଠିଲେ ॥
ଦେଖ ଏ ଲୋକ ପାଳ ମଧ୍ୟେ । ନିର୍ଲଜ୍ଜେ ରହି ଅପବାଦେ ॥
ଯେ ସାଧୁ ସନ୍ତୁ ଆଚରଣ । କି ଭାବେ କଲାକ ଦୂଷଣ ॥
ମୋର ଶିଷ୍ୟ ଏ ବୋଲାଇ । ଯେଣୁ ଦୋହିତା ଦେଲି ମୁହିଁ ॥

ଅଗ୍ନି ଦେବତା ବିପ୍ର ସ୍ଥାନେ । ଦୋହିତା କରିଛି ପ୍ରଦାନେ ॥
ଏଣୁ ମୁଁ ଏହାର ଶ୍ୱଶୁର । ଗୁରୁଙ୍କ ମଧ୍ୟେ ଗୁରୁବର ॥
ଅଭିବାଦନ ସ୍ତୁତିବାଦେ । ଧର୍ମେ ନମିବ ମୋର ପାଦେ ॥
ଏହା ନ କରି ମୋ ଚରଣେ । ଅବଜ୍ଞା କଲା ଦୃଷ୍ଟପଣେ ॥
ମର୍ଯ୍ୟାଦା ଭେଦ ଅଭିମାନୀ । ବର୍ତ୍ତଇ ଶୂଦ୍ର ଦେହ ଘେନି ॥
ଏହା ମୁଁ ନ ଜାଣଇ ଜ୍ଞାନେ । ବିଶ୍ୱାସ ବ୍ରହ୍ମାର ବଚନେ ॥
ଦୋହିତା ଦାନ ଦେଲି ମୁହିଁ । ଶୂଦ୍ରକୁ ଯେହ୍ନେ ବେଦ କହି ॥
ଅପାତ୍ରେ ଦେଲା ଫଳ ଯେତେ । ଏବେ ବାଧିଲା ଆସି ମୋତେ ॥
ଶ୍ମଶାନବାସୀ ଏ ନିରତେ । ବର୍ତ୍ତଇ ପ୍ରେତ ଭୂତ ସାଥେ ॥
ଉନ୍ମତ୍ତ ପ୍ରାୟେ ନଗ୍ନ ହୋଇ । ଶ୍ମଶାନେ ନିରତେ ଭ୍ରମଇ ॥
ଜଟା ସହିତେ ମୁକୁଳିତେ । ଶ୍ମଶାନେ ଭ୍ରମେ ନିତ୍ୟେ ନିତ୍ୟେ ॥
ଉନ୍ମତ୍ତ ଭୋଳେ ହରେ ମୁଖେ । ନିତ୍ୟେ ବଞ୍ଚଇ ଆତ୍ମା ସୁଖେ ॥
ପତ୍ନୀର ଉପଦେଶ ଫଳେ । ନିତ୍ୟେ ଭ୍ରମଇ ଅନ୍ତରାଳେ ॥
ଅଶିବ ଗଣ ନିତ୍ୟେ ସାଧ । ଏଣୁ ଅଶିବ, ଶିବ ବାଦ ॥
ପ୍ରମତ୍ତ ମତ୍ତ ଜନ ପ୍ରାୟେ । ଏଣୁ ଅଶୁଚି ଦେହ ବହେ ॥
ପ୍ରମଥ ଭୂତଗଣ ପତି । ନିତ୍ୟେ ତାମସ ବହେ ମତି ॥
ଯେଣୁ ତାମସ ଜନପ୍ରିୟ । ନିତ୍ୟେ ନିନ୍ଦିତ ଏହା ଦେହ ॥
ନପୁଂସ ଅଟେ ଏ ଦୁର୍ମତି । ସୁହୃଦ ପ୍ରାୟେ ବହେ ମତି ॥
ସୁମତ ନ ଜାଣି ଅଜ୍ଞାନେ । ବିଶ୍ୱାସ ବ୍ରହ୍ମାର ବଚନେ ॥
ଏହାକୁ ସତୀ କନ୍ୟା ଦେଲି । ଦୁଷ୍ଟେ ଅନୀତି ଆଚରିଲି ॥
ଏମନ୍ତ କୁତ୍ସିତ ବଚନେ । ସେ ପ୍ରଜାପତି କୋପମନେ ॥
ଦୁର୍ବୁଦ୍ଧି ପଣ ଆଚରିଲେ । ଗିରିଶେ ବହୁ ନିନ୍ଦା କଲେ ॥
ତକ୍ଷଣେ ଉଠେ କୋପାନଳ । ସ୍ୱହସ୍ତେ ଦତ୍ତ ଘେନି ଜଳ ॥
ଭୃଗୁର ବଚନ ସମେତେ । ହରଙ୍କୁ ଶାପ ଦେବା ଅର୍ଥେ ॥

### ଦକ୍ଷ ଉବାଚ

ଇନ୍ଦ୍ର ଉପେନ୍ଦ୍ର ଆଦି ଯେତେ । ଅଶେଷ ଦେବଙ୍କ ସମେତେ ॥
ଅଶେଷ ଯଜ୍ଞ ହବିର୍ଭାଗ । କେବେହେଁ ହର ନ ଲଭିବ ॥
ଏ କଥା ମୋହର ପ୍ରମାଣ । ଏଥକୁ ସାକ୍ଷୀ ନାରାୟଣ ॥
ଏ ଦେବଗଣଙ୍କ ଅଧମ । ଆତ୍ମାକୁ ମଣେ ସର୍ବସମ ॥
ଦକ୍ଷକୁ ଚାହିଁ ଦେବଗଣେ । ନିଷେଧ କଲେ ଜଣେ ଜଣେ ॥
ସେ ଦକ୍ଷ କୋପେ ଅଭିମାନୀ । ଦେବଙ୍କ ବଚନ ନ ମାନି ॥
ଅତ୍ୟନ୍ତ କୋପେ ଶାପ ଦେଲା । ଋଷିଙ୍କ ବଚନ ନ କଲା ।
ଶିବଙ୍କୁ କୋପେ ଶାପ ଦେଇ । ଅତ୍ୟନ୍ତ କ୍ରୋଧ ମନେ ବହି ॥
ବ୍ରହ୍ମାର ସଭାରୁ ବାହାର । ତକ୍ଷଣେ ଗଲେ ନିଜପୁର ॥

ନନ୍ଦୀ ଯେ ରୁଦ୍ର ପାଶେ ଥିଲେ । ଦକ୍ଷର ଶାପ ନ ଶୁଣିଲେ ॥
ରୋଷେ ସେ ବିଶିଖ ନୟନ । ଦକ୍ଷର ବାକ୍ୟେ କୋପମନ ॥
ଦକ୍ଷକୁ ପ୍ରତିଶାପ ଦେଇ । ବୋଲଇ ସଭାମୁଖ ଚାହିଁ ॥
ଯକ୍ଷର ଯେତେ ମତେ ଥିବେ । ଏ ଶାପ ଭଲେ ସେ ହରିବେ ॥
ଦକ୍ଷକୁ ଯେବେ ଆରାଧିବେ । ଅଶେଷ ଦ୍ରୋହ ସେ ଲଭିବେ ॥
ଏ କୂଟ ପୂରି ଧର୍ମ ମଧ୍ୟେ । ବିଷୟ ଭୋଗ ଇଚ୍ଛା ସାଧେ ॥
ବିସ୍ତାରି ଯଜ୍ଞ କର୍ମକାଣ୍ଡେ । ଯେ ଏହା ବଖାଣିବ ତୁଣ୍ଡେ ॥
ପଶୁଙ୍କୁ ପ୍ରାୟ କରି ଆଶ । ଯେବା କରନ୍ତି ଅନ୍ନଗ୍ରାସ ॥
ଅବିଦ୍ୟା ମାର୍ଗେ ବିଦ୍ୟା କଛି । ଲାଭ ଅଲାଭେ ଚିତ୍ତ ବ୍ୟାପି ॥
ପଶୁ ହିଂସନେ ଦୃଢ଼ ଚିତ୍ତେ । ଅଜ୍ଞାନ ବଳେ ବିମୋହିତେ ॥
ଅଶେଷ ଯଜ୍ଞ କର୍ମ କରି । ଏ ରୁଦ୍ର ଭାବ ନ ଆଦରି ॥
ଯେ ବିପ୍ର ବ୍ରତ ଧର୍ମ କେତୁ । ଅଶେଷ କର୍ମଫଳ ହେତୁ ॥
ଚିତ୍ତ ଇନ୍ଦ୍ରିୟ ଦେହେ ରମି । ଚାତକ ପ୍ରାୟେ ଶ୍ରମେ ଭ୍ରମି ॥
ଭ୍ରମଇ ଇହ ପରଲୋକ । ଅରୁଦ୍ର ମାର୍ଗେ ଅତିରେକ ॥
ଏମନ୍ତ ଶାପ ଦେବା ବେଳେ । ସେ ନନ୍ଦୀଶ୍ୱର କୋପାନଳେ ॥
ଭୃଗୁ ସେ ସଭା ମଧ୍ୟେ ଥିଲେ । ନନ୍ଦୀର ବଚନ ଶୁଣିଲେ ॥
ଦକ୍ଷର ମତେ ପକ୍ଷ ଧରି । ରୁଦ୍ର ବିଷୟେ କୋପ କରି ॥
ଯେ ଶିବ ବ୍ରତ ଏ ଜଗତେ । କରିବ ଶିବର ଆୟତେ ॥
ସେ ବ୍ରହ୍ମ ଦଣ୍ଡ ଦୂରତ୍ୟୟ । ସ୍ୱଭାବେ ଭୃଗୁ ମହାଶୟ ॥
ଦକ୍ଷିଣ ହସ୍ତେ ଜଳ ଘେନି । ସଭା ସମୂହେ ଉଚ୍ଚେ ବାଣୀ ॥
କହଇ ହସ୍ତେ ଜଳ ଧରି । ହୃଦୟେ କୋପାନଳ ଭରି ॥
ଯେ ଶିବ ବ୍ରତ ଏ ଜଗତେ । କରିବ ଶିବର ଆୟତେ ॥
ସେ ଶାସ୍ତ୍ର ମତ ନ ଆଦରି । ପାଷାଣ୍ଡ ହୋନ୍ତୁ ତମ ଧରି ॥
ଅଶୁଚି ପୁତ୍ର ନଷ୍ଟ ବୁଦ୍ଧି । ପାଷାଣ୍ଡ ଗଣରେ ପ୍ରସିଦ୍ଧି ॥
ଭୂଷଣ ଜଟା ଭସ୍ମ ଅସ୍ଥି । ଶିବ ପୂଜନେ ଦୃଢ଼ ମତି ॥
ବହନ୍ତି ଶିବ ଦୀକ୍ଷା ହୃଦେ । ଯେ ଅବା ଦେବାସୁର ମଧ୍ୟେ ॥
ବ୍ରହ୍ମା ବ୍ରାହ୍ମଣ ନିନ୍ଦା କରି । ନିରତେ ଶିବ ଦୀକ୍ଷା ଧରି ॥
ଶିବର ପଥ ସନାତନ । ଯେ ଅବା ଆଚରିବେ ଜନ ॥
ଅନ୍ତେ ପାଷାଣ୍ଡ ଗତି ହେଉ । ବିଷ୍ଣୁ ନନ୍ଦନ ଜ୍ଞାନ ବହୁ ॥

### ମୈତ୍ରେୟ ଉବାଚ

ଏମନ୍ତ ଭୃଗୁ ବାକ୍ୟ ଶୁଣି । ସଭାର ମଧ୍ୟେ ଶୂଳପାଣି ॥
ବିମନ ହୋଇ ବେଗେ ଉଠି । ଅନଳ ପ୍ରାୟେ କୋପ ଦୃଷ୍ଟି ॥
ଶିବ ଗଣଙ୍କୁ ଘେନି ସଙ୍ଗେ । ମିଳିଲେ ନିଜସ୍ଥାନ ମାର୍ଗେ ॥
ଶିବ ଗମନେ ମୁନିଗଣେ । ଆଗମ ନିଗମ ପ୍ରମାଣେ ॥

ଯଜ୍ଞେ ସହସ୍ର ଋଷିଗଣେ । ସେ ଯଜ୍ଞ ବିଧାନ ପ୍ରମାଣେ ॥
ବିଷ୍ଣୁର ପୂଜା ବିଧି ସାରି । ଯଜ୍ଞ ବଭୃଥ ସ୍ନାନ କରି ॥
ଜାହ୍ନବୀ ଜଳେ କରି ସ୍ନାନ । ବିପ୍ରେ ମିଳିଲେ ନିଜସ୍ଥାନ ॥
ହେ ବ୍ରହ୍ମ ଯଜ୍ଞ ନମସ୍ତୁତେ । ଭାଷା ପ୍ରବନ୍ଧେ ଭାଗବତେ ॥
ବିଷ୍ଣୁ ଚରିତ ସୁଧାରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ଚତୁର୍ଥସ୍କନ୍ଧେ ଦକ୍ଷ ପ୍ରଜାପତି ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର ଏକମନେ । କାଳର ଗତି ସାବଧାନେ ॥
ଜାମାତା ଶ୍ୱଶୁର ସମ୍ବନ୍ଧେ । ବିବାଦ ଆଚରିଲେ ବାଦେ ॥
କମଳଯୋନି ଯେତେବେଳେ । ଦକ୍ଷକୁ ଶୁଭ ଲଗ୍ନ ବେଳେ ॥
ସକଳ ମୁନି ମନୁଗଣେ । ସ୍ଥାପିଲେ ପ୍ରଜାପତି ପଣେ ॥
ଦକ୍ଷକୁ ପୂଜି ଅଭିଷେକେ । ମାନ୍ୟ ଯେ କଲେ ଏକଏକେ ॥
ତୁମ୍ଭ ସକଳ ମଧ୍ୟେ ଏହୁ । ପାଳନେ ପ୍ରଜାପତି ହେଉ ॥
ଦକ୍ଷକୁ ବୋଲେ ବେଦବର । ତୁ ରାଜସୂୟ ଯଜ୍ଞକର ॥
ସେ ଦକ୍ଷ ମନେ ଗର୍ବକଲା । ରୋଷେ ରୁଦ୍ରକୁ ନ ବରିଲା ॥
ଭୃଗୁଙ୍କୁ କଲେ ପୁରୋହିତ । ସଂଗେ ଘେନାଇ ମୁନି ସନ୍ତ ॥
ସେ ଯଜ୍ଞ ବୃହସ୍ପତି ନାମ । ଶୁଣିଲା ଯଜ୍ଞଙ୍କ ଉତ୍ତମ ॥
ସେ ଯଜ୍ଞ ଆରମ୍ଭର ବେଳେ । ସକଳ ମୁନି ଏକମେଳେ ॥
ଯେ ବ୍ରହ୍ମ ଋଷି ଦେବ ଋଷି । ସର୍ବ ଦେବଙ୍କ ସଙ୍ଗେ ବସି ॥
ପିତୃ ଦେବତା ଗଣମାନେ । ପତ୍ନୀକି ଘେନି ଦିବ୍ୟ ଯାନେ ॥
ଯଜ୍ଞେ ମିଳନ୍ତି ଯୂଥେ ଯୂଥେ । ଗୀତ ସୁବାଦ୍ୟ ଶୂନ୍ୟପଥେ ॥
ଆକାଶେ ବିମାନ ଗହଳ । ଚଳନ୍ତେ ଶୁଭେ ମୁଖ ଗୋଳ ॥
ଏମନ୍ତେ ଶମ୍ଭୁର ଘରଣୀ । ଆକାଶେ ଶୁଣି ଦେବବାଣୀ ॥
ନିଜ ସଖୀକି ପଚାରିଲା । ତାହର ବଦନୁ ଶୁଣିଲା ॥
ତୋର ପିତାର ମହାଯଜ୍ଞେ । ଦେବେ ଗମନ୍ତି ଶୂନ୍ୟମାର୍ଗେ ॥
ନିଜ କାମିନୀ ଘେନି ସଙ୍ଗେ । ବିମାନେ ଯାନ୍ତି ନାନା ରଙ୍ଗେ ॥
ତିନି ଭୁବନେ ଯେତେ ଜନେ । ଯଜ୍ଞେ ଗମନ୍ତି ତୋଷମନେ ॥
ଦିବ୍ୟ ଅଳଙ୍କାର ଭୂଷଣ । ବିମାନେ ବସି ବଧୂଗଣ ॥
ସ୍ୱାମୀଙ୍କ ସଙ୍ଗେ ସେ ଚଳନ୍ତି । ଦେଖ ଗଗନେ ପନ୍ତି ପନ୍ତି ॥
ନକ୍ଷତ୍ର ଗଣ ପ୍ରାୟେ ଶୋଭା । କିବା ଉପମା ଅନ୍ୟେ ଦେବା ॥
ତା ଶୁଣି ଗଗନକୁ ଚାହିଁ । ଅମ୍ବିକା ମନେ ବିଚାରଇ ॥
ଦେଖ ଅଭାଗ୍ୟ କର୍ମ ମୋର । ମୋହର ସ୍ୱାମୀ ମହେଶ୍ୱର ॥
ମୋହର ପିତା ଯଜ୍ଞକାଳେ । ମୁହିଁ ନିରାଶ କର୍ମଫଳେ ॥
ମୋର ସ୍ୱାମୀଙ୍କୁ ନ ବରିଲା । ଅବହେଳନ ମୋତେ କଲା ।
ମୋର ମାତାର ଦୟା ନାହିଁ । କେ ଅବା ସହୁ ଦେହ ବହି ॥
ଏମନ୍ତ ଭାଳି ଦେବୀ ମନେ । ମିଳିଲେ ସ୍ୱାମୀ ସନ୍ନିଧାନେ ॥
ହୃଦୟେ କୋପଭର ହୋଇ । ବୋଲଇ ରୁଦ୍ର ମୁଖ ଚାହିଁ ॥

### ସତୀ ଉବାଚ

ଭୋ ନାଥ ଶୁଣ ପଶୁପତି । ତୁମ୍ଭ ଶ୍ୱଶୁର ମୂଢ଼ମତି ॥
ଯଜ୍ଞ ଆରମ୍ଭ ପୁଣ୍ୟ କାଳେ । ତା ଶୁଣି ସର୍ବଦେବ ମିଳେ ॥
ମୁନିଏ ସପତ୍ନୀକ ହୋଇ । ଶୂନ୍ୟେ ଗମନ୍ତି ରଥେ ଥାଇ ॥
ଦେଖ ଏ ମୁଖ ରାବ ଗୋଳ । ପୂରିତ ଗଗନ ମଣ୍ଡଳ ॥
ଦେଖ ସନ୍ତୋଷେ ଦେବଗଣେ । ଚରନ୍ତି ଯଜ୍ଞର କାରଣେ ॥
ଭୋ ନାଥ ଚାଲ ଆମ୍ଭେ ଯିବା । ପିତାର ଉତ୍ସବ ଦେଖିବା ॥
ଯଜ୍ଞ ଉତ୍ସବ ପିତା ଘରେ । ମୋର ଭଗିନୀ ସହୋଦରେ ॥
ମିଳିଲେ ସ୍ୱାମୀ ଘେନି ସଙ୍ଗେ । ଯଜ୍ଞ ଦେଖିବେ ନାନାରଙ୍ଗେ ॥
ମୁହିଁ ତୁମ୍ଭର ସଙ୍ଗେ ଥିବି । ପିତାର ଉତ୍ସବ ଦେଖିବି ॥
ମାତାଙ୍କୁ ଦେଖିବି ଲୋଚନେ । ଭଗିନୀ ଗଣ ସୁଖମନେ ॥
ଭୋ ନାଥ ଆଜ୍ଞା ଦିଅ ମୋତେ । ମୁହିଁ ଚଳିବି ତୁମ୍ଭ ସାଥେ ॥
ତୁମ୍ଭ ଗୋଚରେ ବିଷ୍ଣୁ ମାୟା । କେ ଜାଣିପାରେ ନାଥ ଏହା ॥
ତଥାପି ସ୍ତିରୀ ଜନ୍ମ ମୋର । ମୁଁ କାହୁଁ କରିବି ଗୋଚର ॥
ଦେଖ ଏ ପ୍ରଭୁ ଶୂନ୍ୟପଥେ । ଦେବେ ଗମନ୍ତି ଯୂଥେ ଯୂଥେ ॥
ଯେସନେ ରାଜହଂସ ପନ୍ତି । ବିମାନ ମଧ୍ୟେ ଶୂନ୍ୟେ ଯାନ୍ତି ॥
ମୋର ପିତାର ଘରେ ଯାଇ । ଯଜ୍ଞ ଦେଖିବେ ସୁଖବହି ॥
ମୁଁ ଏହା ସହିବି କେମନ୍ତେ । ଶରୀର ବହି ଏ ଜଗତେ ॥
ପିତା ଭର୍ତ୍ତା ଗୁରୁ ସଦନେ । ଯୋଗାଇ ଯିବା ଅବରଣେ ॥
ଭୋ ନାଥ ଶୁଣ ସଦାଶିବ । ଯେବେ ଅବରଣେ ନ ଯିବ ॥
ମୁଁ ଯିବି ଆଜ୍ଞାଦିଅ ମୋତେ । ଆନନ୍ଦ ମନେ ଶୁଦ୍ଧ ଚିତ୍ତେ ॥

### ମୈତ୍ରେୟ ଉବାଚ

ଏମନ୍ତେ ପ୍ରିୟା ମୁଖୁ ଶୁଣି । ଈଶ୍ୱର ସ୍ଥିର ଚିତ୍ତେ ଗୁଣି ॥
ସ୍ୱଭାବେ ଜଗତ ଈଶ୍ୱର । ସଂସାର ଯାର ଖେଳଘର ॥
ଅଳପ ଅପମାନେ ରହି । କହନ୍ତି ପତ୍ନୀ ମୁଖ ଚାହିଁ ॥

### ଈଶ୍ୱର ଉବାଚ

ଶୁଣ ସୁନ୍ଦରୀ କହୁଁ ତୋତେ । ତୁ ଯେବେ ପଚାରିଲୁ ମୋତେ ॥

ସାଧୁ ବିଚାର ଏ ତୋହର । ଶୁଦ୍ଧ ସୁନ୍ଦର ମନୋହର ॥
କହୁ ଯେ ବନ୍ଧୁ ଅପମାନ । କେ ସହିପାରେ ଦୁର୍ବଚନ ॥
ବନ୍ଧୁକୁ ବନ୍ଧୁ ଭାବ ଭୋଳେ । ଅମାନ୍ୟ କରେ ଅବହେଳେ ॥
ଯେ ବିଦ୍ୟାବଳେ ତପ ଦାହେ । ସତ୍ୟ ସୁନ୍ଦର ଦେହ ବହେ ॥
ଉତ୍ତମ କୁଳେ ମୋର ଜାତ । ସକଳ ଗୁଣରେ ସେ ଖ୍ୟାତ ॥
ଜାଣଇ ଶ୍ରୁତି ସ୍ମୃତି ଧର୍ମ । ଆଗମ ନିଗମ ଯେ କର୍ମ ॥
ସେ ପୁଣି ପୂର୍ବ କର୍ମ ବଳେ । ବନ୍ଧୁ ନିନ୍ଦଇ ଅବହେଳେ ॥
ଅଜ୍ଞାନବାଦୀ ବୋଲି ତାରେ । ସୁଖ ନ ଲଭେ ଏ ସଂସାରେ ॥
ଯେ ପ୍ରାଣୀ ଅଭ୍ୟାଗତ ଦେଖି । ବକ୍ର ବଦନେ କୁଞ୍ଚେ ଆଖି ॥
ବନ୍ଧୁର କୁ ବଚନ ବାଣେ । ଅନିଶେ ଦହେ ପଶୁ ପ୍ରାଣେ ॥
ତୁ ପୁଣି ପିତା ପ୍ରିୟ ବନ୍ଧୁ । ତାର ସୁହୃଦେ ଧର୍ମ କହୁ ॥
ସାଧୁ ସଙ୍ଗତେ ଯେ ବସଇ । ତାହାର ରିପୁ ମିତ୍ର ନାହିଁ ॥
ଏଣୁ ଅସାଧୁ ସଙ୍ଗେ ଥିଲେ । ପ୍ରାଣ ଇନ୍ଦ୍ରିୟ ବୁଡ଼ିବଳେ ॥
ପରମ ଆତ୍ମାକୁ ନିନ୍ଦଇ । ଅସାଧୁ ବାକ୍ୟ ମନଦେଇ ॥
ସେ ବନ୍ଧୁ ଆଗମନ ଦେଖି । ଉଠିବ ଆସନ ଉପେକ୍ଷି ॥
ଭାବେ ଆସନ୍ତି କିଛିଦୂର । ବଚନ କହନ୍ତି ମଧୁର ॥
ଅଭିଗମନ ମଞ୍ଜୁବାଣୀ । ପୂଜିବ ନିଜଘରେ ଆଣି ॥
ବିଷ୍ଣୁର ଭାବେ ପୂଜାକରି । ଆନନ୍ଦେ ପ୍ରିୟ ଭାବ ଭରି ॥
ତାହାକୁ ବୋଲି ସାଧୁଜନ । ସେ ବିଷ୍ଣୁ ଦେବଙ୍କ ସମାନ ॥
ଯେଣୁ ସେ ଦକ୍ଷ ପ୍ରଜାପତି । ମୋ ଭାବେ ଚିନ୍ତଇ ଅନୀତି ॥
ତୁ ଯେବେ ମୋହର ବଚନ । ଅଜ୍ଞାନେ କରିବୁ ଲଙ୍ଘନ ॥
ପିତା ଭୁବନେ ଯିବୁ ତୁହି । କେବେହେଁ ଭଲ ତା ନୁହଇ ॥
ଅଧର୍ମ ଜନ ସଙ୍ଗ ଯେବେ । ହାବେ ଉତ୍ତମଜନ ଭାବେ ॥
କେବେହେଁ ଭଲ ତାର ନାହିଁ । ଏମନ୍ତ ଦେବୀ ଆଗେ କହି ॥
ସ୍ଥିର ହୋଇଲେ ଉମାକାନ୍ତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଦକ୍ଷଗୌରୀ*
*ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ଦେବୀ ଆଗେ କହି । ରୁଦ୍ର ରହିଲେ ଆତ୍ମାଧାୟି ॥
ମନେ ଚିନ୍ତନ୍ତି ବିଶ୍ୱନାଥ । ନ ପୁଣ ହୁଏ ବିପରୀତ ॥
ମୋ ପତ୍ନୀ ପିତୃଘର ଗଲେ । ପ୍ରାଣ ଏ ନ ଧରିବ ଭଲେ ॥
ଏହାର ମନ ସ୍ଥିର ନାହିଁ । ଅବଶ୍ୟ ଯିବ ଏ ନ ରହି ॥
ଏମନ୍ତେ ଚିନ୍ତେ ଚିନ୍ତି ହର । କେବେହେଁ ନାହିଁ ମନସ୍ଥିର ॥
ଚିନ୍ତା ବିକଳେ ଦୁଃଖମତି । ନିଜଗଣଙ୍କୁ ମନେ ଚିନ୍ତି ॥
ଏହାଙ୍କ ସଙ୍ଗେ ଥିବି ମୁହିଁ । ନିଜଗଣଙ୍କୁ ସଙ୍ଗେ ଲଇ ॥
ଏମନ୍ତ ରୁଦ୍ର ଚିନ୍ତା କରୁ । ଦେବୀ ଉଠିଲେ ନିଜ ଘରୁ ॥
ନୟନୁ ବହେ ଅଶ୍ରୁଜଳ । ଶୁଖିଲା ବଦନ କମଳ ॥
ଶରୀର କମ୍ପେ ଦୁଃଖଚିତ୍ତେ । କଦଳୀ ବନ ଯେହ୍ନେ ବାତେ ॥
ନିଶ୍ୱାସ ବହେ ଖରତର । ଶୁଖିଲା ସୁରଙ୍ଗ ଅଧର ॥
ଅଧୋ ବଦନେ ମନଦୁଃଖୀ । ଉଠିଲେ ସ୍ୱାମୀକୁ ଉପେକ୍ଷି ॥
ସତୀ ଚଳନ୍ତେ ରୋଷଭରେ । ଅବନୀ କମ୍ପେ ପାଦଭରେ ॥
ପିତା ଭୁବନେ ଦେବୀ ଯାନ୍ତେ । କେହି ନାହାନ୍ତି ତାଙ୍କ ସାଥେ ॥
ଶତ ସହସ୍ର ରୁଦ୍ରଗଣ । ନିକଟେ ମିଳିଲେ ତକ୍ଷଣ ॥
ସତୀଙ୍କୁ ବୃଷଭେ ବସାଇ । ସର୍ବେ ଧାଇଁଲେ ସଜହୋଇ ॥
ଏମନ୍ତ ରୁଦ୍ରମୁଖ ଚାହିଁ । ନନ୍ଦୀ ଚଳିଲେ ଗଣ ନେଇ ॥
ମୁଁ ଯିବି ଅମ୍ବିକାର ପଛେ । ମୋ କଥା ଦେଖ ତୁ ପ୍ରତ୍ୟକ୍ଷେ ॥
ଅମ୍ବିକା ତୁଲେ ନାରୀ ଯୂଥେ । ମିଳିଲେ ଉପାୟନ ହସ୍ତେ ॥
କନ୍ଦୁକ ଦର୍ପଣ ଅମ୍ବୁଜ । ଶ୍ୱେତାତ ପତ୍ର ଶ୍ୱେତ ଧ୍ୱଜ ॥
ବ୍ୟଞ୍ଜନ ପୁଷ୍ପମାଳା ଘେନି । ସଙ୍ଗୀତ ଗୀତ ପଦଧ୍ୱନି ॥
ଦୁନ୍ଦୁଭି ଶଙ୍ଖ ବେଣୁନାଦେ । ସଙ୍ଗତେ ଚଳିଲେ ଆନନ୍ଦେ ॥
ଧୂମ ବ୍ୟାପିତ ଯଜ୍ଞଶାଳେ । ଅଶେଷ ଋଷି ବିପ୍ର ମେଳେ ॥
ବିପ୍ରଙ୍କ ସଙ୍ଗେ ପ୍ରଜାପତି । ଅନଳେ କ୍ଷେପନ୍ତି ଆହୁତି ॥
ଯଜ୍ଞର ଭାଣ୍ଡେ ନାନାବିଧି । ଯେ ଦ୍ରବ୍ୟ ଯେଉଁ ଭାଣ୍ଡେ ସିଦ୍ଧି ॥
ମନ୍ତ୍ର ଆହୁତି ହୋମ ବେଳେ । ସତୀ ମିଳିଲେ ଯଜ୍ଞଶାଳେ ॥
ସତୀ ଚାହାନ୍ତି କୋପଚିତ୍ତେ । ସେ ଯଜ୍ଞେ ଅଛନ୍ତି ସମସ୍ତେ ॥
ସତୀ ବଦନେ କୋପ ବହି । ସମୀପେ ନ ରହିଲେ କେହି ॥
ଭଗିନୀଗଣ ମାତୃତୁଲେ । ସତୀର ସମୀପେ ମିଳିଲେ ॥
ପ୍ରେମାଶ୍ରୁ କଣ୍ଠେ ଭଗ୍ନୀଗଣ । କୋଳେ ଧରନ୍ତେ ଜଣ ଜଣ ॥
ସୋଦର ଅର୍ଥେ ପ୍ରଶ୍ନ କଲେ । ସର୍ବମଙ୍ଗଳ ପଚାରିଲେ ॥
ଉତ୍ତମ ପୂଜା ବିଧି ଦ୍ରବ୍ୟ । ସମୀପେ ଆଣି ଦେଲେ ସର୍ବ ॥
ରତ୍ନ ଆସନ ବେଗେ ଆଣି । ସେ ପ୍ରଜାପତିର ଘରଣୀ ॥
ସତୀ ସମୀପେ ଆଣିଦେଲେ । ତା ଦେଖି ସତୀ କୋପକଲେ ॥
ପିତାର ଅନାଦର ଦେଖି । ଭୟେ କମ୍ପଇ ଅଶ୍ରୁମୁଖୀ ॥
ଯଜ୍ଞେ ନ ଦେଖି ସ୍ୱାମୀ ଭାଗ । ମନେ ବଢ଼ିଲା ମହାରାଗ ॥
ଈଶ୍ୱର ପଣ ନ ଗଣିଲା । ଅବହେଳନ କର୍ମ କଲା ॥

ସଭାରେ ଯେତେ ଲୋକ ଥିଲେ। ସତୀଙ୍କୁ କେହି ନ ଗଣିଲେ ॥
ପିତା ଅବଜ୍ଞା କର୍ମ ଦେଖି । କୋପେ କମ୍ପଇ ଅଶ୍ରୁମୁଖୀ ॥
ନିଜ ଶରୀର ମହାତେଜେ । ନିବାସ ଭୂତଗଣ ମାଝେ ॥
ପିତାର ଅନାଦର ଜାଣି । କୋପେ ବୋଇଲେ ଉଚ୍ଚେ ବାଣୀ ॥

## ଦେବୀ ଉବାଚ

କୋପେ କମ୍ପଇ ତାର ଦେହୀ । ବୋଲଇ ପିତା ମୁଖ ଚାହିଁ ॥
ପ୍ରିୟ ଅପ୍ରିୟ ଅତିରେକେ । ନ ଦେଖି ଯାର ଇହଲୋକେ ॥
ସ୍ୱାମୀ ମୋହର ସର୍ବପ୍ରିୟ । ଜଗତ ମଧ୍ୟେ ଯେତେ ଦେହ ॥
ଯେ ରୁଦ୍ର ସର୍ବ ଆତ୍ମା ହୋଇ । ମିତ୍ର ବଇରୀ ତାଙ୍କ ନାହିଁ ॥
ଯେ ସେ ଅଶେଷ ଜନ ଗୁରୁ । ତାହାଙ୍କୁ ତୁହି ନିନ୍ଦାକରୁ ॥
ଦେଖ ଏ ସଂସାର ବେଭାରେ । ଯେ ସାଧୁ ଜନେ ହିଂସା କରେ ॥
ଅନେକ ଦୋଷ କରିଥିଲେ । ସାଧବେ ନ ଧରନ୍ତି ଭଲେ ॥
ସାଧୁଜନଙ୍କ ପ୍ରାୟ ହୋଇ । ରୁଦ୍ର ବିଷୟେ କୋପ ବହି ॥
ଯେଣୁ ବୋଲାଉ ପ୍ରଜାପତି । ସେ ଗର୍ବେ ନିନ୍ଦୁ ମୋର ପତି ॥
ଏ ନୁହେଁ ମହତଙ୍କ କର୍ମ । ଗର୍ବେ ହୋଇଲୁ ମତିଭ୍ରମ ॥
ଯେ ବେନି ଅକ୍ଷର ଉଚ୍ଚାରେ । ମନରେ ଶିବ ନାମ ଧରେ ॥
ଶ୍ରବଣେ ଯାର ଶ୍ରୁତି ପଥେ । ପାପ ପଶଇ କ୍ଷଣମାତ୍ରେ ॥
ଯାହାର ନାମ ଏ ଜଗତେ । ସର୍ବ ମଙ୍ଗଳ ବହୁମତେ ॥
ତୋର ଜୀବନ ପାପବନ୍ଧୁ । ଅଶିବ ହୋଇ ଶିବ ନିନ୍ଦୁ ॥
ତୋହର ଜନ୍ମ ମୋର ଦେହୀ । ହୋଇଲା ପୂର୍ବ ପାପ ବହି ॥
ମୋ ସ୍ୱାମୀ ନିନ୍ଦା ଅର୍ଥ ବହି । ଏ ଦେହ ନ ପାରିବ ସହି ॥
ପୂର୍ବର ପାପ ଯେ ନ ସ୍ମରେ । ତା ପ୍ରତିକାର ଯେ ନ କରେ ॥
ଦିନ ହରଇ ଦୁଃଖ ସୁଖେ । ଅନ୍ତେ ସେ ପଡ଼ଇ ନରକେ ॥

## ମୈତ୍ରେୟ ଉବାଚ

ଏମନ୍ତ ଦକ୍ଷ ଆଗେ କହି । କୁଣ୍ଡ ଉତ୍ତର ଦିଗେ ଯାଇ ॥
ଯୋଗ ଧାରଣା ଆଗମନେ । ବସିଲେ ନିଶ୍ଚଳ ଆସନେ ॥
ସ୍ୱାମୀର ଅପମାନ ଅର୍ଥେ । ପିତାର ଅନାଦର ଚିତ୍ତେ ॥
ପୀତ ବସନ ପରିଧାନ । ସୁଜଳେ କରି ଆଚମନ ॥
ହୃଦରେ କରି ମହାମନ୍ତ୍ୟ । ପବନ ମୂଳ ଶିଖା ସ୍ଥାନୁ ॥
ନାଭିକମଳେ ମୁନିଷ୍ଠଳେ । ପ୍ରାଣ ଧାରଣ ଯୋଗବଳେ ॥
ସମାନ ପ୍ରାଣ ତାଲୁ ଦେଇ । ଏ ତିନି ପ୍ରାଣ ଉର୍ଦ୍ଧ୍ୱେ ଥୋଇ ॥
ହୃଦୟ ପ୍ରାଣ ସଙ୍ଗେ ବ୍ୟାପୀ । କଣ୍ଠ ଲଲାଟେ ଚକ୍ଷୁ କ୍ଷେପି ॥
ଭ୍ରୂମଧ୍ୟେ ସ୍ଥାପି ଅନୁମାନେ । ଯୋଡିଲା ବ୍ରହ୍ମରନ୍ଧ୍ର ସ୍ଥାନେ ॥
ସ୍ୱାମୀ ଚରଣେ ଧ୍ୟାନ କରି । ଯୋଗ ଅନଳେ ଜ୍ଞାନ ଭରି ॥
ମୂର୍ଦ୍ଧନୀ ଭେଦି ତତକ୍ଷଣେ । ଶୂନ୍ୟେ ମିଳିଲା ଦଶପ୍ରାଣ ॥
ସତୀ ମରଣ କର୍ମ ଚାହିଁ । ଦେବେ ଯେତେକ ଥିଲେ ରହି ।
ଭୂମି ଗଗନେ ଯେବା ଥିଲେ । ହା ହା ଶବଦ ଉଚ୍ଚେ କଲେ ॥
ଦେଖ ଏ ଦେବ ଦେବ ନାରୀ । କି ଅପମାନେ କୋପକରି ॥
ପ୍ରାଣ ଛାଡ଼ିଲା ଯଜ୍ଞଘରେ । ପିତାର ମାନ କୋପଭରେ ॥
ଦେଖ ଏ ଦକ୍ଷ ପ୍ରଜାପତି । ଗର୍ବେ ଆଚରିଲା ଅନୀତି ॥
ପ୍ରଜାଙ୍କ ପତି ଏ ବୋଲାଇ । ଅନ୍ୟାୟ କଲା ଗର୍ବବହି ॥
ନିଜ ଦୋହିତାର ନିଧନେ । ଯତ୍ନ ନ କଲା କୋପ ମନେ ॥
ଏ ନୁହେଁ ଦକ୍ଷର ବେଭାର । ଅଧର୍ମ କଲା ଗୁରୁତର ॥
ଏମନ୍ତ ବାକ୍ୟ କହୁ ଜନେ । ସତୀର ପ୍ରାଣ ଅବସାନେ ॥
ସତୀ ମରଣ କଥା ଶୁଣି । ନନ୍ଦୀକେଶ୍ୱର ବୀରମଣି ॥
ରୁଦ୍ରଗଣଙ୍କୁ ସଙ୍ଗେ ନେଇ । ବେଗେ ଧାଇଁଲେ ରୋଷହୋଇ ॥
ବିବିଧ ଶସ୍ତ୍ର ଧରି କରେ । ମିଳିଲା ଦକ୍ଷ ଯଜ୍ଞଘରେ ॥
ତାହାଙ୍କୁ ଦେଖି ଭୃଗୁମୁନି । ଘୃତ ଆହୁତି କରେ ଘେନି ॥
ଯଜ୍ଞଘ୍ନ ନାଶି ଯଜୁର୍ମନ୍ତ୍ରେ । କହିଲା ଅଭିଚାର ତନ୍ତ୍ରେ ॥
ଆହୁତି ଦ୍ୟନ୍ତି ଅଗ୍ନିକୁଣ୍ଡେ । ଧୂମ୍ର ନ ଦିଶେ ରୁଦ୍ର ପିଣ୍ଡେ ॥
ମନ୍ତ୍ର ମନ୍ତ୍ରିତ ସୋମ ପାଇ । ପ୍ରଚଣ୍ଡ ରୂପେ କୋପ ବହି ॥
ରଭବ ବୋଲି ଦେବଗଣ । ଅନଳୁ ଉଠିଲେ ତକ୍ଷଣ ॥
ଅନଳ କାଠ ଘେନିକରେ । ଶତସହସ୍ର କୋପଭରେ ॥
ଶବଦେ ଦଶଦିଗେ ପୂରି । ଧାଇଁଲେ ଘୋରନାଦ କରି ॥
ଶବଦେ କମ୍ପଇ ମେଦିନୀ । ତା ଦେଖି ବେଗେ ଦେବମୁନି ॥
ବେଗେ ଧାଇଁଲେ ଶୂନ୍ୟମାର୍ଗେ । କହିଲେ ସଦାଶିବ ଆଗେ ॥
ସତୀ ମରଣ କଥା ଆଦି । କହିଲେ ସକଳ ସମାଦି ॥
ସେ ବ୍ରହ୍ମ ମୁନିଙ୍କ ଚରଣେ । ଆତ୍ମାର ନିସ୍ତାର କାରଣେ ॥
କୃଷ୍ଣ ବିଷୟ ଭାଗବତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ସତୀମରଣେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

## ମୈତ୍ରେୟ ଉବାଚ

ନାରଦ ବାକ୍ୟେ ଅବଧାନେ । ରୁଦ୍ର ଉଠିଲେ କୋପମନେ ॥
ଧାଇଁଲେ ରୁଦ୍ରଗଣ ଘେନି । ଚଳନ୍ତେ କମ୍ପଇ ମେଦିନୀ ॥

ଦକ୍ଷର ଯଜ୍ଞ ନାଶ ଅର୍ଥେ । କୋପ ବସିଲା ରୁଦ୍ର ଚିତ୍ତେ ॥
ସକଳ ପାରିଷଦ ଗଣେ । ନାନା ଆୟୁଧ ତୀକ୍ଷ୍ଣ ବାଣେ ॥
ଅତି ଅସଂଖ୍ୟ କୋପ ଭରେ । ଧାଇଁଲେ ଶସ୍ତ୍ର ଧରି କରେ ॥
ରୁଦ୍ର ବଚନେ କୋପ ଦେଖି । ବିବୁଧେ ତ୍ରିଦଶ ଉପେକ୍ଷି ॥
କମ୍ପିଲେ ରୁଦ୍ର ବୋଲ ଶୁଣି । ମହାପ୍ରଳୟ ପ୍ରାୟେ ଜାଣି ॥
କୋପେ କାମୁଡ଼ି ଓଷ୍ଠ ପାଟି । ପ୍ରଚଣ୍ଡ ଦିଶଇ ଭ୍ରୂକୁଟି ॥
ଜଟା କଳାପେ ଅଗ୍ନିଜଳେ । ଦେଖି କମ୍ପିଲେ ଦିଗପାଳେ ॥
ରୁଦ୍ରର ଜଟାଭାର ମଧ୍ୟେ । ପୁରୁଷ ଉଠେ ଘୋରନାଦେ ॥
ହସେ ଗଭୀର ଘୋର ସ୍ୱନେ । ରୁଦ୍ରଗଣଙ୍କ ଅବଧାନେ ॥
ସହସ୍ରବାହୁ ମେଘସ୍ୱନେ । ଅନଳ ଜଳଇ ନୟନେ ॥
କୋଟିଏ ସୂର୍ଯ୍ୟ ତେଜ ଯେହ୍ନେ । ଦେଖି ପଳାନ୍ତି ସର୍ବ ଜନେ ॥
କରାଳଦଂଷ୍ଟ୍ର ଶୋହେ ତୁଣ୍ଡେ । ଅଗ୍ନି ଜଳଇ ଶିଖା ଖଣ୍ଡେ ॥
ନାନା ଆୟୁଧ ଦିଶେ କରେ । ମୁଣ୍ଡମାଳା ଏ ଲମ୍ବେ ଉରେ ॥
ରୁଦ୍ରଙ୍କୁ ଚାହିଁ କରଯୋଡ଼ି । ବୋଲଇ ଅଧର କାମୁଡ଼ି ॥
କହ ତୁ କି କରିବି ମୁହିଁ । ରୁଦ୍ର ବୋଇଲେ ତାକୁ ଚାହିଁ ॥
ତୁ ମୋର ଗଣଙ୍କ ଈଶ୍ୱର । ମୋହର ବୋଲ ଏବେ କର ॥
ଦକ୍ଷର ପ୍ରାଣ ଯଜ୍ଞ ସଙ୍ଗେ । ବିନାଶ କର ରଣରଙ୍ଗେ ॥
ତୁ ମୋର ଅଂଶେ ଆତ୍ମାରୂପୀ । ସହସ୍ର ଭୁଜଶୂନ୍ୟେ ବ୍ୟାପୀ ॥
ଦକ୍ଷର ଯଜ୍ଞ ନାଶ କର । ଏହାର ପ୍ରାଣ ବେଗେ ହର ।
ଏମନ୍ତେ ରୁଦ୍ର ଆଜ୍ଞା ପାଇ । କୋପେ କମ୍ପିଲା ତାର ଦେହୀ ॥
ଜଳଇ ଅତି କୋପାନଳେ । ମିଳିଲା ରୁଦ୍ର ପାଦତଳେ ॥
ସ୍ୱଭାବେ ରୁଦ୍ର ଆତ୍ମା ସେହି । ତାର ମହିମା କେ ଜାଣଇ ॥
ଗର୍ଜ୍ଜଇ ଭଇରବ ନାଦେ । ବେଗେ ଧାମଇ ବେନିପାଦେ ॥
ଶୂଳ ବୁଲାଇ ଦକ୍ଷକରେ । ନୂପୁର ବାଜଇ ପୟରେ ॥
ଧାମଇ ପବନହୁଁ ବେଗେ । ସେ ରୁଦ୍ର କୋପେ ଚାରିଦିଗେ ॥
ଶବଦେ ଦଶଦିଗ ପୂରେ । ଧୂଳି ଉଡ଼ଇ ପାଦଭରେ ॥
ବିପ୍ରେ ଯେ ଥିଲେ ଯଜ୍ଞଶାଳେ । ଧୂଳି ଦେଖନ୍ତି ଅନ୍ତରାଳେ ॥
ଉତ୍ତର ଦିଗେ ରେଣୁ ଦେଖି । ଉଠିଲେ ଯଜ୍ଞ ସେ ଉପେକ୍ଷି ।
ଉତ୍ତର ଦିଗକୁ ଅନାଇ । କହନ୍ତି ଏକୁ ଆରେ ଚାହିଁ ॥
ଦେଖ ଦିବସେ ଘୋରତମ । ଦିଗ ଦ ଦିଶେ ବାତ ଭ୍ରମ ॥
ଏମନ୍ତେ ଦେବ ବିପ୍ର ନାରୀ । ଦେଖନ୍ତି ହସ୍ତେ ହସ୍ତ ଧରି ॥
ବୋଲନ୍ତି କିଏ ତମଘୋର । ଦିଶଇ ଅତି ଭୟଙ୍କର ॥
ପ୍ରଚଣ୍ଡ ବହଇ ପବନ । ତମେ ଆଚ୍ଛାଦିଲା ଗଗନ ॥
ଗୋରୁ ଚରଣ ଧୂଳି ନୁହେଁ । କି ଏ ତମସା କାହୁଁ ହୁଏ ॥
ଆଜ କି ପ୍ରଳୟ ହୋଇବ । ବାମ କି ହୋଇଲା ଦଇବ ॥
ପ୍ରସୂତି ଆଦି ବାମା ଯେତେ । ଉଠି ଚାହାନ୍ତି ଦୁଃଖଚିତ୍ତେ ॥

## ଶ୍ରୀଶୁକ ଉବାଚ

ଏମନ୍ତେ ଶୁଣ ବ୍ୟାସସୁତ । ଅଦ୍ଭୁତ ରୁଦ୍ରର ଚରିତ ॥
ପ୍ରଚଣ୍ଡ ମଣ୍ଡଳ ଆକାରେ । ତୀକ୍ଷ୍ଣ ତ୍ରିଶୂଳ ଧରି କରେ ॥
ରୁଦ୍ର ଧାଇଁଲେ ଅତି ବେଗେ । ଦେଖି ପଳାନ୍ତି ଦଶଦିଗେ ॥
ହସ୍ତ ସହସ୍ର ଉର୍ଦ୍ଧ୍ୱେ କରି । ନଟଙ୍କ ପ୍ରାୟେ ବେଶ ଧରି ॥
ଚଣ୍ଡାଟ୍ଟହାସ୍ୟ ଶୋହେ ତୁଣ୍ଡେ । ଯେହ୍ନେ ବିଜୁଳି ମେଘଖଣ୍ଡେ ॥
ଅସଂଖ୍ୟ ତେଜ ଯୋଗବଳ । ଦିଶଇ ଭ୍ରୂକୁଟି କୁଟିଳ ॥
କରାଳଦଂଷ୍ଟ୍ର ଶୋହେ ତୁଣ୍ଡେ । ତେହ୍ନେ ନକ୍ଷତ୍ରଗଣ ଖଣ୍ଡେ ।
ଦକ୍ଷକୁ ଚାହିଁ ସଭାଜନେ । କହନ୍ତି ଅତି ଦୁଃଖ ମନେ ॥
ଦେଖ ଏହାର କର୍ମଫଳ । ଆଜ ତ ନାଶିଲୁ ସକଳ ॥
ଉତ୍ପାତ ଭୟେ ଦୁଃଖ ମନେ । ଭୟେ ଲୁଚିଲେ ସର୍ବଜନେ ॥
କେ କହୁ ଜନଙ୍କ ବିକଳ । ତକ୍ଷଣେ ମିଳି ରୁଦ୍ରବଳ ॥
ନାନା ଆୟୁଧ ଧରି କରେ । ବେଢ଼ିଲେ ଯାଇ ଯଜ୍ଞଘରେ ॥
ପୀତ ପିଙ୍ଗଳ ଦିଶେ ବର୍ଣ୍ଣ । ମଗର କୁମ୍ଭୀର ଆନନ ॥
ଶବଦେ ଗଗନ ଉଚ୍ଛୁଳେ । ବେଗେ ମିଳିଲେ ଯଜ୍ଞ ଶାଳେ ॥
କେହୁ ଭାଙ୍ଗନ୍ତି ଯଜ୍ଞବାସ । ପତ୍ନୀ ଭୁବନ କରେ ଶେଷ ॥
କେ ପାକଶାଳେ ପ୍ରବେଶନ୍ତି । କେ ଯଜ୍ଞ ପାତ୍ରକୁ ଲୁଟନ୍ତି ॥
କେ ଯଜ୍ଞ କୁଣ୍ଡରେ ମିଳନ୍ତି । ମୂତ୍ର ପୁରିଷ ଉତ୍ସର୍ଗନ୍ତି ॥
କେ ବହୁ ଘୋରନାଦ କଲେ । ଯଜ୍ଞ ମେଖଳା ବେଦି ତୁଲେ ॥
ଭାଜିଲେ ଅତି କୋପଭରେ । ଶୂଳ ବୁଲାଇ ଦକ୍ଷକରେ ॥
କେ ଧାଏଁ ମୁନିଙ୍କ ଉପରେ । ଗର୍ଜନ୍ତି ଅତି କୋପଭରେ ॥
ସ୍ତିରୀ ଜନଙ୍କ ମଧ୍ୟେ ପଶି । ରାହୁ ଗ୍ରାସଇ ଯେହ୍ନେ ଶଶୀ ॥
ଦେବେ ପଳାନ୍ତି ତାହା ଦେଖି । ଯଜ୍ଞର ବିଭାଗ ଉପେକ୍ଷି ॥
ତାହାଙ୍କୁ ରୁଦ୍ରଗଣେ ଧରି । ଭୃଗୁ ସମେତେ ବନ୍ଦି କରି ॥
ଭୃଗୁକୁ ମଣିମାନ ବାନ୍ଧେ । ତା ଦେଖି ପ୍ରଜାପତି କାନ୍ଦେ ॥
ଦକ୍ଷକୁ ବୀରଭଦ୍ର ଧରି । ପଶୁର ପ୍ରାୟେ ବନ୍ଦୀ କରି ॥
ଗଣେ ରିପୁଗଣଙ୍କୁ ଧରେ । ଓଷ୍ଠ କାମୁଡ଼ି କୋପଭରେ ॥
ଭୃଗୁକୁ ଧରି ନନ୍ଦୀଶ୍ୱର । ହୁଙ୍କାର ନାଦେ ମହାଘୋର ॥
ଯଜ୍ଞେ ଦେବତା ଯେତେ ଥିଲେ । ଋତ୍ୱିକ ଋଷି ବିପ୍ରକୁଳେ ॥
ରୁଦ୍ର ଗଣଙ୍କ ତେଜ ଦେଖି । ଭାଜିଲେ ଯଜ୍ଞକୁ ଉପେକ୍ଷି ॥
ଭୃଗୁ ଯେ ଯଜ୍ଞ ହୋମ କରି । ଘୃତ କ୍ଷେପନ୍ତି ଶ୍ରୁବ ଧରି ॥
ତାହାଙ୍କ କେଶ ବାମହସ୍ତେ । ରୋଷେ ଧଇଲେ ବିଶ୍ୱନାଥେ ॥

ତାହାଙ୍କ ଦାଢ଼ି ଦକ୍ଷକରେ । ରୁଦ୍ର ଉପାଡ଼ି କୋପଭରେ ॥
ସଭାରେ ପଦ୍ମଯୋନି ବଳା । ସେ ଦାଢ଼ି ଦେଖାଇ ହସିଲା ॥
ଉପାଡ଼ି ଭୃଗୁ ଲମ୍ବାଦାଢ଼ି । ତକ୍ଷଣେ ଭୂମିତଳେ ପାଡ଼ି ॥
ଚକ୍ଷୁ ଉପାଡ଼େ ନଖ ଅଗ୍ରେ । ପୂର୍ବର ଶାପେ ବଇରାଗେ ॥
ମଣି ଯେ ଶାପ ଦେଲାବେଳେ । ଅପମାନିତ କୋପ ଭରେ ॥
ଦନ୍ତ ଦେଖାଇ କରି ହସେ । ସେ କଥା ସ୍ମରି ମହାରୋଷେ ॥
ମୁଷ୍ଟି ପ୍ରହାରି ବାମକରେ । ଦନ୍ତ ଝାଡ଼ିଲେ କୋପଭରେ ॥
ଦକ୍ଷର ହୃଦେ କର ଭିଡ଼ି । ରୁଦ୍ର ଯେ ଅଧର କାମୋଡ଼ି ॥
ଭୂମିରେ ପାଡିଲେ ଉତ୍ତାନେ । କେ କାହା କହିବ ବଚନେ ॥
ଅଛିଦ୍ର ଏହାର ଶରୀର । ଦେଖି ବିସ୍ମିତ ଶୂଳଧର ॥
ଅଜଏ ଦେଖି ଯୋଗପତି । ବିସ୍ମୟେ ଭାଳି ବିଚାରନ୍ତି ॥
ତୀକ୍ଷ୍ଣ ଖଡ଼ଗେ ଛେଦି ଶିର । ଈଶ୍ୱର ହୋଇଲେ ବାହାର ॥
ଶିର ପଡ଼ିଲା ଅଗ୍ନିକୁଣ୍ଡେ । ତଳେ ରହିଲା ମୃତ୍ୟୁପିଣ୍ଡେ ॥
ପିଶାଚ ଗଣ ଘେନି ସଙ୍ଗେ । ରୁଦ୍ର ନାଚନ୍ତି ରଣରଙ୍ଗେ ॥
ଦକ୍ଷ ସମ୍ପଦ ନାଶକରି । ଦକ୍ଷିଣ କରେ ଶୂଳ ଧରି ॥
ଶଙ୍କର ହୋଇଲେ ବାହାର । ଦେଖି କମ୍ପନ୍ତି ସୁର ନର ॥
ସେ ରୁଦ୍ର ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଦକ୍ଷଯଜ୍ଞ ଭଙ୍ଗୋ ନାମ ପଞ୍ଚମମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

### ମୈତ୍ରେୟ ଉବାଚ

ରୁଦ୍ରର ଦେଖି ଘୋରରଣ । ଭୟେ ଭାଜିଲେ ଦେବଗଣ ॥
ଶୂଳ ପଟ୍ଟୀଶ କୁନ୍ତ ଶର । ନିସ୍ତ୍ରିଂଶ ଗଦା ମୁଦ୍ଗର ॥
ଏ ଶସ୍ତ୍ର ପଡ଼ି ସର୍ବ ଅଙ୍ଗେ । ଭୟ ଭାଜିଲେ ଦଶଦିଗେ ॥
ଭୟେ ସକଳ ଏକମେଳେ । ଗମିଲେ ଗଗନ ମଣ୍ଡଳେ ॥
ଛନ୍ନ ବ୍ୟାକୁଳ ମନ ଦୁଃଖେ । ବେଗେ ମିଳିଲେ ବ୍ରହ୍ମଲୋକେ ॥
ବ୍ରହ୍ମା ଚରଣ ତଳେ ପଡ଼ି । ଦେବେ ନମିଲେ କରଯୋଡ଼ି ॥

### ବ୍ରହ୍ମା ଉବାଚ

ହେ ଦେବଗଣ ଶୁଣ ଏହା । ଅପରାଧର ଯେଉଁ କ୍ରିୟା ॥
ବଳିଷ୍ଠ ଲୋକେ ଅପରାଧ । କରିବା ନୁହଇଟି ସାଧ ॥
କଲେ ଯେ ପ୍ରାଣ ରକ୍ଷା ନୁହେଁ । ଅଥବା ଅମଙ୍ଗଳ ହୁଏ ॥
ଶିବଙ୍କୁ ଭାଗ ଯେ ନ ଦେଲ । ତାହାଙ୍କଠାରେ ଦୋଷି ହେଲ ॥
ସେହି ହେତୁରୁ ଶିବ କୋହେ । କହୁଛୁ ଏକଇ ଉପାୟେ ॥
ସମସ୍ତେ ଯାଇ ତା ଚରଣ । ପଡ଼ିଣ କରାଅ ପ୍ରସନ୍ନ ॥
ତାହାଙ୍କ ନାମ ଆଶୁତୋଷ । ଅବଶ୍ୟ ହେବେ ସେ ସନ୍ତୋଷ॥
ସାମାନ୍ୟ ଲୋକ ସେ ନୁହନ୍ତି । କୋପେ ସମସ୍ତ ସେ ଦହନ୍ତି ॥
ଯଜ୍ଞରୁ ଉଦ୍ଧାରିବା ପାଇଁ । ତାଙ୍କୁ ପ୍ରାର୍ଥନା କର ଯାଇ ॥
ଆମ୍ଭେ ସକଳ ତାଙ୍କ ତତ୍ତ୍ୱ । ନ ଜାଣୁ ଏହିଟି ନିଶ୍ଚିତ ॥
କିପରି ତାହାଙ୍କ ନିକଟ । ପ୍ରାର୍ଥନା ପାଇଁ ହେବ ଭେଟ ॥

### ମୈତ୍ରେୟ ଉବାଚ

ତକ୍ଷଣେ ଉଠି ପଦ୍ମଯୋନି । ସଂଗତେ ନାରାୟଣ ଘେନି ॥
ଦକ୍ଷର ଯଜ୍ଞଶାଳେ ମିଳି । ଦେଖନ୍ତି ବ୍ରହ୍ମା ବନମାଳୀ ॥
ଯଜ୍ଞ ବିନାଶି କୋପଭରେ । ରୁଦ୍ର ଯେ ଗଲେ ନିଜପୁରେ ॥
ସ୍ୱଭାବେ ତେଜ ଅପ୍ରମିତ । ଅନ୍ତେ ଜଗତ କରେ ଗ୍ରସ୍ତ ॥
ତାହାର ତେଜବଳ ତଥ୍ୟ । କେ ତାହା ବର୍ଣ୍ଣନେ ସମର୍ଥ ॥
ତାହାରେ ଅପରାଧ କରି । କେ ଅବା ଥିବେ ଦେହ ଧରି॥
ଏବେ ସକଳ ଦେବେ ଶୁଣ । କେ ଜାଣେ ଈଶ୍ୱର ପ୍ରମାଣ ॥
ଚାଲ ସକଳ ସୁର ଦେବା । ଏବେ ହୋ କପିଳାସ ଯିବା ॥
ରୁଦ୍ର ଚରଣେ ନମସ୍କାର । ତୁଷ୍ଟି ବଚନେ କରି ଥିର ॥
ଈଶ୍ୱର ଚରଣ କମଳେ । ଶରଣ ପଶ ଏକମେଳେ ॥
ମୋହର ବୋଲ ଏବେ କର । ଅନ୍ୟଥା ନାହିଁଟି ନିସ୍ତାର ॥
ଯେ ଅନ୍ତଃକାଳେ ଅଣ୍ଡକୋଷ । ନିମିଷ ମାତ୍ରେ କରେ ଗ୍ରାସ ॥
ତାର ଚରଣ ନ ସେବିଲେ । କେବା ସଂସାରେ ଥିବ ଭଲେ॥
ବିଶେଷ ପତ୍ନୀର ବିୟୋଗେ । ସ୍ୱଭାବେ ତମଗୁଣ ଯୋଗେ ॥
କଞ୍ଛିଲା ଘୋରରଣ ରଙ୍ଗେ । ଦକ୍ଷର ଯଜ୍ଞଅର୍ଥ ଭଙ୍ଗେ ॥
କେବା ମିଳିବ ତାର ଆଗେ । ମନ ଯାହାର ବଇରାଗେ ॥
ଯାର ମହିମା ବିଚାରଣେ । ମୋ ଆଦି ସର୍ବ ଦେବଗଣେ ॥
ଏ ଯଜ୍ଞେ ଆଦି ଯେତେ ମୁନି । ସଙ୍ଗରେ ଦେବତତ୍ତ୍ୱ ଘେନି ॥
କେ ଜାଣି ପାରିବ ପ୍ରମାଣ । ସେ ଆଦିଦେବ ନାରାୟଣ ॥
ସ୍ତୁତି କରିବା ନାନାମତେ । ଯେମନ୍ତେ ଦୟା କରେ ଚିତ୍ତେ ॥
ଏମନ୍ତ କହି ପଦ୍ମଯୋନି । ସଙ୍ଗେ ସକଳ ଦେବ ଘେନି ॥
ଅଗ୍ରେ ଚଳିଲେ ନାରାୟଣ । ଯକ୍ଷ କିନ୍ନର ଋଷିଗଣ ॥
ସିଦ୍ଧ ଚାରଣ ପିତୃ ତୁଲେ । ସର୍ବେ ଚଳିଲେ ବ୍ରହ୍ମା ବୋଲେ ॥
ଈଶ୍ୱର ଦରଶନ ଆଶେ । ମିଳିଲେ କପିଳାସ ଦେଶେ ॥
ଯେ ବନେ ବସେ ସଦାଶିବ । ସେ ସ୍ଥାନ ଉପମା କେ ଦେବ ॥

ଜନ ଔଷଧି ତପମନ୍ତ । ଯୋଗ ସଂସିଦ୍ଧ ଦେବଯୂଥ ॥
ଯକ୍ଷ କିନ୍ନର ବିଦ୍ୟାଧରୀ । ଗନ୍ଧର୍ବ ମୁନି ଅପସରୀ ॥
ସର୍ବେ ବସନ୍ତି ସିଦ୍ଧବନେ । ତରୁ କ୍ରୋଟରେ ଯୋଗଧ୍ୟାନେ ॥
ଅଶେଷ ମଣି ରତ୍ନରେଖେ । ଶୃଙ୍ଗ ବିରାଜେ ଗିରିଶିଖେ ॥
ଅଙ୍ଗେ ବିରାଜେ ନାନାଧାତୁ । ଅତି ଆନନ୍ଦ ରୂପ ହେତୁ ॥
ବିରାଜେ ନାନା ଗୁଳ୍ମଲତା । କେ ତା ବର୍ଣ୍ଣନେ ସାମରଥା ॥
ଆନନ୍ଦେ ମନୋହର ବନେ । କ୍ରୀଡ଼ନ୍ତି ନନା ପଶୁଗଣେ ॥
ଅନେକ କନ୍ଦର ଗମ୍ଭୀରା । ବହନ୍ତି ପ୍ରସବଣ ଧାରା ॥
ରମଣ ବନେ ନାରୀଗଣେ । ରମନ୍ତି ଯେ ଯାହା ରମଣେ ॥
କୋକିଳ କେକୀନାଦ ବାଣୀ । ଯେସନେ ମନୋହର ଶୁଣି ॥
ପକ୍ଷୀ କୋମଳ କଣ୍ଠ ସ୍ୱରେ । ନାଦ କରନ୍ତି ଚିଉଥିରେ ॥
ବସନ୍ତି କଳ୍ପଦ୍ରୁମ ପନ୍ତି । କି ଅବା ପକ୍ଷୀଙ୍କୁ ଡାକନ୍ତି ॥
ମତ୍ତ ମାତଙ୍ଗ ବହୁମେଳେ । ଗର୍ଜ୍ଜଇ କ୍ଷୁଦ୍ର ନଦୀ ଜଳେ ॥
ମନ୍ଦାର ପାରିଜାତ ଦ୍ରୁମ । ସରଳ କୋବିଦାର ବନ ॥
ତମାଳ ଶାଳ ତାଳବନ । ଆବର ଅସନ ଅର୍ଜ୍ଜୁନ ॥
ଚୂତ କଦମ୍ବ ନାଗେଶ୍ୱର । ପୁନ୍ନାଗ ଚମ୍ପା କରବୀର ॥
କୁମୁଦ ଉତ୍ପଳ କହ୍ଲାର । ପାଟଳ ଶୋକ ଗନ୍ଧସାର ॥
ବକୁଳ କୁନ୍ଦ କୁରୁବକ । ସୁବର୍ଣ୍ଣ ବର୍ଣ୍ଣ ଅତିରେକ ॥
ଚିର ବେଣୁକ ଜାତିଯୂଥ । ମାଧବୀ କନିଅର ବେତ ॥
ପନସ ଉଦୁମ୍ବର ପ୍ଲକ୍ଷ । ବଟ ତିନ୍ଦୁକ ବହୁ ବୃକ୍ଷ ॥
ଅଗସ୍ତି ପୁନ୍ନାଗ ଚମ୍ପକ । ଜମ୍ବୁ ଖଦୀର ସଫରିକ ॥
ଖର୍ଜ୍ଜୁର ଅମ୍ବ୍ରାତକ ବନ । ପିଆଳ ମଧୁକ ଶୋଭନ ॥
ବୃକ୍ଷେ ଅଛନ୍ତି ନାନାବର୍ଣ୍ଣେ । ଶୋଭନ କପିଳାସ ସ୍ଥାନେ ॥
ଗମ୍ଭୀର ନାଦ କୋଳାହଳ । କ୍ରୀଡ଼ା କରନ୍ତି ପକ୍ଷୀକୁଳ ॥
ମୃଗ ବାନର କୋଳ ଯୂଥ । ସିଂହ ଶଲ୍ଲକ ଗଜ ଯୂଥ ॥
ଗବୟ ବ୍ୟାଘ୍ର ରକ୍ଷଦଳ । ଚାରୁ ମହିଷ ଶଶାକୁଳ ॥
ଅନ୍ୟ ଯେ ମୃଗନାଭି ଆଦି । କେ କହୁ ସେ ବନ ସଂପାଦି ॥
ସୁନ୍ଦର ଶୋହେ ରମ୍ଭା ବନ । ଦେଖନ୍ତେ ମୋହେ ପ୍ରାଣୀମନ ॥
ନଦୀର ନଦାଶୟେ ବେନି । ସ୍ୱଭାବେ ପୂର୍ଣ୍ଣ ତରଙ୍ଗିଣୀ ॥
ଏମନ୍ତେ ବିଶ୍ୱନାଥ ବନ । ଦେଖି ଆନନ୍ଦ ତୋଷମନ ॥
ମନେ ବିସ୍ମୟ ପାଇ ବେଗେ । ଦେବେ ଚହାନ୍ତି ଦଶଦିଗେ ॥
ତାର ଉପର କୂଳେ ଯାଇ । ଅଳକାପୁରୀକି ଅନାଇଁ ॥
ସୁଗନ୍ଧ ନାମ ବନ ଯହିଁ । ହେମ ପଙ୍କଜ ବିରାଜଇ ॥
ନନ୍ଦା ଅଳକାନନ୍ଦା ନଦୀ । ବହେ ଦକ୍ଷିଣ ବାମ ଭେଦି ॥
ବିଷ୍ଣୁ ଚରଣ ରଜ ଲାଗି । ସେ ନଦୀ ଅତି ସଉଭାଗୀ ॥
ଯେ ନଦୀ ଜଳେ ସୁରନାରୀ । ରମନ୍ତି ନାନା କ୍ରୀଡ଼ାକରି ॥
କୁଚ କୁଙ୍କୁମ ଜଳେ ମିଶେ । ସ୍ୱଭାବେ ସୁନ୍ଦର ସେ ଦିଶେ ॥
କରିଣୀ ତୁଲେ ହସ୍ତୀବଳ । ନିତ୍ୟେ ପିବନ୍ତି ଯାର ଜଳ ॥
ସେ ନଦୀ କୂଳେ ଉପଗତ । ରତ୍ନ ବିମାନ ଯୂଥ ଯୂଥ ॥
ପୁଣ୍ୟ ଜନଙ୍କ ପରିମଳ । ତେଣୁ ପୂଜିତ ଗଙ୍ଗାଜଳ ॥
ତଡ଼ିତ ଯେହ୍ନେ ନୀଳ ମେଘେ । ଶୋଭାରେ କାନ୍ତି ଦଶ ଦିଗେ ॥
ଏମନ୍ତେ କୁବେର ନଗରୀ । ସୁଗନ୍ଧ ବନ ଆଦିକରି ॥
ଯେ ବୃକ୍ଷ କାମଧେନୁ ପ୍ରାୟେ । ଫଳ ପଲ୍ଲବ ମାନ ଶୋହେ ॥
କୋମଳକଣ୍ଠ ନାଦ ପକ୍ଷୀ । ଭୃଙ୍ଗ ଶବଦ ଯହିଁ ଅଛି ॥
ଜଳେ ଚରନ୍ତି ପକ୍ଷୀଗଣେ । କ୍ରୀଡ଼ା କରନ୍ତି ପଦ୍ମ ବନେ ॥
ହରି ଚନ୍ଦନ ବାୟୁସଙ୍ଗେ । ମତ୍ତ ମାତଙ୍ଗ ରଣରଙ୍ଗେ ॥
ବୈଡୂର୍ଯ୍ୟ ବାମ୍ପୀ କୂପମାନେ । ନିବିଡ଼ ବନ୍ଧନ ସୋପାନେ ॥
ସ୍ୱଭାବେ ଉତ୍ପଳ ମାଳିନୀ । ବିରାଜେ ଗନ୍ଧ ଗୁଣ ଘେନି ॥
ଯେ ବନେ ଜନ୍ମ ବଟବୃକ୍ଷ । ଯହିଁ କିନ୍ନର ଗଣ ରକ୍ଷ ॥
ଶତେ ଯୋଜନ ଉଚ୍ଚ ବହେ । ସୁନ୍ଦର ରୂପ ଜନ ମୋହେ ॥
ସେ ବୃକ୍ଷଛାୟା ଦେହେ ଲାଗି । ପ୍ରାଣୀଏ ହୁନ୍ତି ସଉଭାଗୀ ॥
ଏମନ୍ତ ସର୍ବ ଦେବମାନେ । ମିଳିଲେ ଈଶ୍ୱରଙ୍କ ସ୍ଥାନେ ॥
ଦେଖନ୍ତି ବଟବୃକ୍ଷ ମୂଳେ । ନିର୍ବନ୍ଧ ଆସନ ନିଶ୍ଚଳେ ॥
ସନକ ଆଦି ସପ୍ତମୁନି । ସଙ୍ଗେ ଅନେକ ଶିଷ୍ୟଘେନି ॥
ଗୁହ୍ୟକ ରକ୍ଷକ ଅନେକ । ସେ ଭକ୍ତି ଯୋଗ ଉପାସକ ॥
ବିଦ୍ୟା ତପସ୍ୟା ଯୋଗ ଆଦି । ସକଳେ ଖଟନ୍ତି ସବିଧି ॥
ବିଶ୍ୱ ସୁହୃଦ ଯା ମହିମା । ସର୍ବ ମଙ୍ଗଳ ଏକ ସୀମା ॥
ତପସ୍ୱୀ ଅଭିଷିକ୍ତ ଅଙ୍ଗ । ଯାର ଶରୀର ସିଦ୍ଧ ଲିଙ୍ଗ ॥
ଜଟା ଅଜିନ ଭସ୍ମଦଣ୍ଡ । ଯଥା ରଚିତ ଇନ୍ଦୁଖଣ୍ଡ ॥
କୁଶ ଦୂଦୁରା ମଧ୍ୟେ ବସେ । ପରମବ୍ରହ୍ମ ଯେ ପ୍ରକାଶେ ॥
ନାରଦ ମୁଖ ଚାହିଁ ଧୀରେ । ବଚନ କହନ୍ତି ସୁସ୍ୱରେ ॥
ଦକ୍ଷିଣ ଜାନୁର ଉପରେ । ବାମ ଚରଣ ସ୍ଥାପି ଧୀରେ ॥
ଚାହାନ୍ତି ବେନି ବାହୁ ବଳେ । ଅରୁଣ ବର୍ଣ୍ଣ ବେନି ତୋଳେ ॥
ସ୍ୱଭାବେ ତର୍କମୁଦ୍ରା କରି । ଯେ ରୂପେ ସଂସାର ସଂହରି ॥
ନିଶ୍ଚଳେ ସମାଧି ଧାରଣ । ଦେଖିଲେ ସର୍ବ ଦେବଗଣ ॥
ସର୍ବ ଋଷିଙ୍କ ସଙ୍ଗମେଳେ । ଇନ୍ଦ୍ରାଦି ଦଶ ଦିଗପାଳେ ॥
ବ୍ରହ୍ମା ସହିତେ ସର୍ବଜନ । ଚାହିଁଲେ ରୁଦ୍ରଙ୍କ ବଦନ ॥
ଜୟ ଶବଦ କରି ତୁଣ୍ଡେ । ରୁଦ୍ର ଚରଣେ ନମି ମୁଣ୍ଡେ ॥

ଯେ ହରି ମନୁଙ୍କର ମନୁ । ଭକ୍ତ ଚରଣ କାମଧେନୁ ॥
ତାର ଚରଣ ତଳେ ଯାଇ । ସକଳେ ଶିରେ ହସ୍ତ ଦେଇ ॥
ନମିଲେ ଈଶ୍ୱର ଚରଣେ । ଦେବ କିନ୍ନର ଋଷିଗଣେ ॥
ଆନନ୍ଦେ ବ୍ରହ୍ମା ନାରାୟଣ । ନମିଲେ ରୁଦ୍ରଙ୍କ ଚରଣ ॥
ସ୍ୱଭାବେ ମନ୍ଦ ମନ୍ଦ ହସି । ଅମୃତ ବାକ୍ୟେ ମନ ତୋଷି ॥
ବ୍ରହ୍ମା କହନ୍ତି କର ଯୋଡ଼ି । ଚରଣେ ପୁନଃ ପୁନଃ ପଡ଼ି ॥

## ବ୍ରହ୍ମା ଉବାଚ

ତୁ ନାଥ ଜଗତ ଈଶ୍ୱର । ସଂସାର ତୋର ଖେଳଘର ॥
ତୁ ଏ ଜଗତ ବୀଜ ଯୋନି । ସୃଷ୍ଟି ସଂହାରୁ ମାୟା ଘେନି ॥
ତୁ ନାଥ ଜଗତ ଈଶ୍ୱର । ନିର୍ଲେପ ବ୍ରହ୍ମ ନିରାକାର ॥
ତୁ ଶିବ ଶକ୍ତିରୂପ ଧରି । ସଂସାର ଖେଳ ଘର କରି ॥
ସୃଜି ପାଳିଣ କରୁ ଅନ୍ତ । ବିଶ୍ୱ ସଂସାରେ ବିଶ୍ୱନାଥ ॥
କ୍ରୀଡ଼ା ବିହାର ମାୟା ଧରି । ତୁ ଖେଳୁ ନାନାରୂପ ଧରି ॥
ସେ କାହିଁ ସମ୍ପାଦିବ ତୋତେ । ତେଣୁ ଭ୍ରମନ୍ତି ଏ ଜଗତେ ॥
ଧର୍ମାର୍ଥ କାମ ଯହୁଁ ଝରେ । ଯେ ଯଜ୍ଞ ଧେନୁ ରୂପ ଧରେ ॥
ତୁ ଯାହା ଅର୍ଜ୍ଜିଛୁ ଜଗତେ । ସଂସାର ଭ୍ରମଣ ନିମନ୍ତେ ॥
ସେ ମାୟା ସଂସାର ବନ୍ଧନେ । ଯନ୍ତ୍ରିତ ହୋଇ ମହାଜନେ ॥
କରନ୍ତି ନାନା କର୍ମ ବିଧି । ତୁମ୍ଭେତ ସକଳ ପ୍ରସିଦ୍ଧି ॥
ସର୍ବ ମଙ୍ଗଳ କର୍ମଫଳ । ତୁ ଯେ ଅନାଦି ଆଦିମୂଳ ॥
ଅମଙ୍ଗଳକୁ ତମ ହେଉ । ଧର୍ମକୁ ସର୍ବକାଳେ ବହୁ ॥
ସେ ସାଧୁଜନ କର୍ମକରି । ଭାବ ପ୍ରଭାବ ମୋଦ ଭରି ॥
ସେ ଫଳ ତୋର ପାଦେ ଦ୍ୟନ୍ତି । ମାୟା ପଟଳୁ ତରିଯାନ୍ତି ॥
ଯେ ଲୋଭବଶେ ତାହା ଚିନ୍ତି । ପଶୁଙ୍କ ପାୟ ସେ ଭୁଞ୍ଜନ୍ତି ॥
ସେ କାହିଁ ସମ୍ପାଦିବେ ତୋତେ । ଯେଣୁ ଭ୍ରମନ୍ତି ଏ ଜଗତେ ॥
ତୋତେ ନ ଜାଣି ପ୍ରଜାପତି । ଦୁର୍ମତି ଲଭିଲା ଦୁର୍ଗତି ॥
ଆମ୍ଭ ଭଗତି ହୃଦେ ଧର । ଏହାକୁ କର ପ୍ରତିକାର ॥
ଏ ପ୍ରାଣୀ ଯଜ୍ଞଶାଳେ ମଲା । ସଂସାରେ ଯଶ ତୋ ରହିଲା ॥
ଏବେ ମୋହର ବୋଲ କର । ଏହାର ଯଜ୍ଞ ତୁ ଉଦ୍ଧର ॥
ଏ ଯଜ୍ଞେ ତୋ ଭାଗ ନ କଲେ । ଏଣୁ ଜୀବନ ଥାଉଁ ମଲେ ॥
ଏହାକୁ ଦଣ୍ଡ ଏ ଉଚିତ । ଯେଣୁ ନିନ୍ଦିଲେ ବିଶ୍ୱନାଥ ॥
ଏବେ ତୁ ଏହାକୁ ବଞ୍ଚାଅ । ଭଗକୁ ଚକ୍ଷୁଦାନ ଦିଅ ॥
ଭୃଗୁର ଦାଢ଼ି ଏବେ ରୋପ । ସୁଷମ ଦନ୍ତ ପାଟି ଥାପ ॥
ତୋହର ଶସ୍ତ୍ର ବରଷଣେ । ଭୟେ ଭାଜିଲେ ଦେବଗଣେ ॥
ତୋ ତ୍ରାସେ ଛିନ୍ନ ଭିନ୍ନ ହୋଇ । ପଳାଇ ଗଲେ ଯହିଁ ତହିଁ ॥
ଋତ୍ୱିଜଗଣେ ସେହି ମତ । ତାହାଙ୍କୁ ରଖ ବିଶ୍ୱନାଥ ॥
ଯଜ୍ଞେ ତୋ ରୁଦ୍ର ଭାଗଶେଷେ । ସାଧିବା ମନ୍ତ୍ର ଉପଦେଶେ ॥
ଏମନ୍ତ କହି ପଦ୍ମଯୋନି । ମିଳିଲେ ଦେବଗଣ ଘେନି ॥
ସେ ରୁଦ୍ର ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ରୁଦ୍ର କୋପୋଶମନେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

## ମୈତ୍ରେୟ ଉବାଚ

ଏମନ୍ତେ ବ୍ରହ୍ମା ବୋଲ ଶୁଣି । ହସି କହନ୍ତି ଶୂଳପାଣି ॥

## ମହେଶ୍ୱର ଉବାଚ

ହେ ବ୍ରହ୍ମା ମୋର ବୋଲ ଶୁଣ । ବାଳକ କି ବର୍ଣ୍ଣିବା ଗୁଣ ॥
ବାଳକ ମତେ ଏହା ସହି । ଆନ ସହିବ ଏହା କାହିଁ ॥
ଦେଖ ଏ କର୍ମ କଲା ଯେତେ । କେ ସହିପାରେ ଏ ଜଗତେ ॥
ଏଣୁ ଏ ତୋହର ସନ୍ତତି । ବୋଲାଇ ଦକ୍ଷ ପ୍ରଜାପତି ॥
ଯେ ଦେବ ମାୟାରେ ମୋହିତ । ତାହାକୁ ଦଣ୍ଡ ମୋ ଉଚିତ ॥
ଏବେ ସକଳ ଦେବେ ଯାଅ । ମୋହର ଆଜ୍ଞା ଶିରେ ବହ ॥
ଦକ୍ଷର ମୁଣ୍ଡ ଅଗ୍ନିକୁଣ୍ଡେ । ଭସ୍ମ ହୋଇଲା ଅତି ଚାଣ୍ଡେ ॥
ଛାଗଳ ଶିର ତାର କନ୍ଧେ । ବସାଅ ମନ୍ତ୍ର ଅନୁବନ୍ଧେ ॥
ଭଗର ଏକଚକ୍ଷୁ ରହୁ । ମୋର ମହିମା ଗିରେ ବହୁ ॥
ଯଜ୍ଞର ଭାଗ ସେ ଭୁଞ୍ଜିବ । ନିରତେ ସେବୁ ସଦାଶିବ ॥
ପୂଷା ଯେ ତାର ଯଜମାନ । ପାଟିରେ ଖାଉ ପିଠାମାନ ॥
ଦେବେ ପାଇବେ ନିଜ ରୂପ । ଯାହାର ପୂର୍ବେ ଯେ ସ୍ୱରୂପ ॥
ଅଶ୍ୱିନୀ କୁମାରଙ୍କ ବାହୁ । ବାହୁ ଛିଣ୍ଡିଲା ଲୋକ ପାଉ ॥
ପୁଣି ସହସ୍ର ବାହୁ ମୂଳେ । ସର୍ବଦା ଖଟୁ କର୍ମବଳେ ॥
ଭୃଗୁର ଦାଢ଼ି ଏକ ଖଣ୍ଡେ । ସର୍ବଦା ରହୁ ତାର ତୁଣ୍ଡେ ॥

## ମୈତ୍ରେୟ ଉବାଚ

ଏମନ୍ତେ ରୁଦ୍ର ବାକ୍ୟ ଶୁଣି । ସକଳେ ସାଧୁ ସାଧୁ ଭଣି ॥
ଇନ୍ଦ୍ର ସହିତେ ଦେବ ଗଣ । ରୁଦ୍ର ବିରଞ୍ଚି ନାରାୟଣ ॥
ଦକ୍ଷର ଯଜ୍ଞଶାଳେ ମିଳି । ବସିଲେ ବ୍ରହ୍ମା ବନମାଳୀ ॥
ରୁଦ୍ରଙ୍କୁ ବସାଇ ଆସନେ । ତକ୍ଷଣେ ଶିବର ବଚନେ ॥
ଦକ୍ଷର ଶିରେ ଛାଗ ଶିର । ମନ୍ତ୍ରେ ବସାଇଲେ ଶଙ୍କର ॥

ତକ୍ଷଣେ ପ୍ରଜାପତି ଅଙ୍ଗେ । ଜୀବ ପଶିଲା ପ୍ରାଣ ସଙ୍ଗେ ॥
ଯେସନେ ସ୍ୱପ୍ନ ପ୍ରାଣୀମାନେ । ଉଠନ୍ତି ନିଦ୍ରା ଅବସାନେ ॥
ଚକ୍ଷୁ ଘଷନ୍ତି ବେନି ହସ୍ତେ । ଶିବଙ୍କୁ ଦେଖିଲା ଅଗ୍ରତେ ॥
ରୁଦ୍ରେ ଚାହାନ୍ତେ ତା ଶରୀର । ତକ୍ଷଣେ ହୋଇଲା ସୁନ୍ଦର ॥
ଶରଦ ଚନ୍ଦ୍ର ପ୍ରାୟେ ଦିଶେ । ରୁଦ୍ରଙ୍କୁ ଚାହିଁ ମନ ତୋଷେ ॥
ତକ୍ଷଣେ ବେନିକର ଯୋଡ଼ି । ଆନନ୍ଦେ ରୁଦ୍ର ପାଦେ ପଡ଼ି ॥
ସ୍ତୁତି କରଣେ ଶକ୍ୟ ନୁହେଁ । କଣ୍ଠ କୁଣ୍ଠତେ ବାଣୀ କହେ ॥
ଚଞ୍ଚଳ ମନ ସ୍ଥିର କରି । ସତୀ ମରଣ କଥା ସ୍ମରି ॥
ନିର୍ମଳ ଚିତ୍ତେ ପ୍ରଜାପତି । ରୁଦ୍ରଙ୍କୁ ଚାହିଁ କରେ ସ୍ତୁତି ॥

### ଦକ୍ଷ ଉବାଚ

ଭୋ ନାଥ ଶୁଣ ବିଶ୍ୱଦେହ । ତୁ ମୋତେ କଲୁ ଅନୁଗ୍ରହ ॥
ମୁଁ ଯେ ହୋଇଲି ଜ୍ଞାନହତ । ମୋତେ ତୋ ଦଣ୍ଡିବା ଉଚିତ ॥
ତୋତେ ନିନ୍ଦିଲି ଗର୍ବ ବହି । ମୋର କୁଶଳ ଆଉ କାହିଁ ॥
ଅଭୟ ତୋର ପଦ୍ମପାଦ । ମୁଁ ତହିଁ କଲି ଅପରାଧ ॥
ବ୍ରାହ୍ମଣ ତୋର ମୁଖୁଁ ଜାତ । ସାଧନ୍ତି ବିଦ୍ୟା ତପ ବ୍ରତ ॥
ତାଙ୍କ ବିପତ୍ତି ତୁମ୍ଭେ ରଖ । ଯେସନେ ପଶୁଙ୍କ ପାଳେକ ॥
ମୋହର ସଭା ମଧ୍ୟେ ତୋତେ । ନିନ୍ଦା ଯେ କଲି ମୂଢ଼ଚିତ୍ତେ ॥
ପ୍ରହାର କଲି ଦୁଷ୍ଟ ଚିତ୍ତେ । ନିନ୍ଦିତ ବାକ୍ୟଗଣ ତୋତେ ॥
ସେ ଫଳ ପାଇଲି ପ୍ରତ୍ୟକ୍ଷେ । ଏ ଋଷି ଗଣଙ୍କ ସମକ୍ଷେ ॥

### ମୈତ୍ରେୟ ଉବାଚ

ଏମନ୍ତେ ରୁଦ୍ରେ ସ୍ତୁତିକରି । ପୁଣି ଋତ୍ୱିକ ଯଜ୍ଞେ ବରି ॥
ରୁଦ୍ର ସନ୍ତୋଷେ ବିପ୍ରଗଣେ । ପୂର୍ବର କଳ୍ପିତ ବରଣେ ॥
ପୂଜିଲେ ମନ୍ତ୍ରର ବିଶ୍ୱାସେ । ଯେ ପୁରାତନ ଇତିହାସେ ॥
ଅଗ୍ନି ପୂଜିଲେ ସାବଧାନେ । ସକଳେ ବସି ଅର୍ଥ ମନେ ॥
ସାକ୍ଷାତେ ହୋଇଲେ ପ୍ରସନ୍ନ । ଅନଳ ରୂପେ ଜନାର୍ଦ୍ଦନ ॥
ତେଜେ ବିରାଜେ ଦଶଦିଶ । ଅନଳୁ ହୋଇଲେ ପ୍ରକାଶ ॥
ଶ୍ୟାମ ହିରଣ୍ୟ ତନୁ ବର୍ଣ୍ଣ । ନିଷ୍କଳ ଗରୁଡ଼ ଆସନ ॥
କିରୀଟ ରବି ତେଜ ଗଞ୍ଜେ । ମର୍କତ କୁଣ୍ଡଳ ବିରାଜେ ॥
ଶଙ୍ଖ କମଳ ଚକ୍ର ଗଦା । ଧନୁ ଖଡ଼ଗ ଶର ବିଦ୍ୟା ॥
ଏ ଅଷ୍ଟଭୁଜେ ଅନୁପାମ । ରୂପେ ଗଞ୍ଜଇ କୋଟିକାମ ॥
ବିଶ୍ୱ ମଙ୍ଗଳ ରୂପସାର । ହୃଦେ ଲମ୍ୱଇ ରତ୍ନହାର ॥
ଉପରେ ଶୋହେ ଶ୍ୱେତଛତ୍ର । ଦିଶଇ ଶୁକ୍ଳ ଜୀମୂତ ॥
ଉଠିଲେ ପଦ୍ମଯୋନି ହର । ଉର୍ଦ୍ଧ୍ୱେ କରିଣ ନିଜ ଘର ॥
ପ୍ରଣାମ କରି ଜଣେ ଜଣେ । ବନ୍ଦିଲେ ବିଷ୍ଣୁର ଚରଣେ ॥

ବିଷ୍ଣୁର ତେଜେ ତେଜହୀନ । ସଙ୍ଗେ ଥୋକାଏ ମଉନ ॥
କର ଅଞ୍ଜଳି ଶିରେ ଦେଇ । ସ୍ତୁତି କରନ୍ତି ବିଷ୍ଣୁ ଚାହିଁ ॥
ଦକ୍ଷ ମିଳିଲା ଅର୍ଘ୍ୟ ଘେନି । ଥିଲେ ଅଶେଷ ବ୍ରହ୍ମମୁନି ॥
ସୁନନ୍ଦ ଆଦି ପାରିଷଦେ । ମିଳିଲେ ଜୟ ଜୟ ନାଦେ ॥
ଦକ୍ଷ ପଡ଼ଇ କର ଯୋଡ଼ି । ବୋଲଇ ବିଷ୍ଣୁ ପାଦେ ପଡ଼ି ॥

### ଦକ୍ଷ ଉବାଚ

ତୁ ନାଥ ଶୁଦ୍ଧ ଚଇତନ । ନିର୍ମଳ ନିତ୍ୟ ନିରଞ୍ଜନ ॥
ଚିହ୍ନତୁ ଏ ବଡ଼ ନିର୍ଭୟେ । ଏ ବିଶ୍ୱ ପୂର୍ଣ୍ଣ ତୋର ଦେହେଁ ॥
କେ ତୋତେ ଜାଣିବେ ସଂସାରେ । ତୁ ଥାଉ ମାୟା ଅତି ଦୂରେ ॥

### ଋତ୍ୱିକଗଣ ଊଚାଚ

ଭୋ ନାଥ ରଦ୍ର ଶାପେ ଆମ୍ଭେ । ବୁଡ଼ିଲୁ ମାୟା ଅତି ଦମ୍ଭେ ॥
ନିରତେ କର୍ମବଶ ହୋଇ । ତୋ ଭାବେ ଆତ୍ମଜ୍ଞାନ ନାହିଁ ॥
ଏ ଯଜ୍ଞ ଧର୍ମର ଲକ୍ଷଣ । ଅଶେଷ ପରମ କାରଣ ॥
ଏ ତୋର ରୂପ ମହାବାହୁ । ଆମ୍ଭେ ଜାଣିବୁ ଅବା କାହୁଁ ॥

### ସଦସ୍ୟାଗଣ ଉବାଚ

ତକ୍ଷଣେ ସଭାଲୋକେ ଉଠି । ବିଷ୍ଣୁଙ୍କୁ ଦେଇ ତୁଲ୍ୟ ଦୃଷ୍ଟି ॥
ଭୋ ନାଥ ତୋର ମାୟାବଳେ । ଏ ଜୀବ ଆତ୍ମା ଏ ଶୟଳେ ॥
ନିରତେ ଚିନ୍ତେ ଆତ୍ମସୁଖ । ଏଣୁ ଭଜନ୍ତି ମହାଦୁଃଖ ॥

### ରୁଦ୍ର ଉବାଚ

ତୋର ଚରଣେ ଭଗବାନ । ଆଶିଷ ଫଳେ ମୁନିଜନ ॥
ଅଖିଳ କାମେ ଅନାସକ୍ତ । ଆଦରେ ପୂଜନ୍ତି ନିରତ ॥
ସେ ପଦ୍ମପାଦ ଶିରେ ଧରି । ତମେ ମୁଁ ଜଗତ ସଂହରି ॥
ବର୍ତ୍ତଇ ତୋ ଚରଣ ଆଶେ । ନିରତେ ଉମା ଘେନି ପାଶେ ॥

### ଭୃଗୁ ଉବାଚ

ଭୋ ନାଥ ତୋ ମାୟା ଗହନେ । ବ୍ରହ୍ମାଦି ସର୍ବ ମୁନିଜନେ ॥
ବିବ୍ରତ ପ୍ରାୟେ ତମେ ଥାନ୍ତି । ତୋର ମହିମା ନ ଜାଣନ୍ତି ॥
ତୁ ଏବେ ରଖ ଆମ୍ଭ ମନ । ତୋର ଚରଣେ କରି ଲୀନ ॥

### ବ୍ରହ୍ମା ଉବାଚ

ଯେ ତୋତେ ନାନାରୂପେ ଦେଖି । ପଦାର୍ଥ ଗୁଣ ଭେଦ ରଖି ॥
ଜ୍ଞାନ ସଙ୍ଗତେ ଆତ୍ମାମତେ । ଆଶ୍ରୟ କରି ଏ ଜଗତେ ॥
ମାୟାର ବଳେ ଜ୍ଞାନ ଥୋଇ । ତୋତେ ଜାଣିବ ଅବା କାହିଁ ॥

### ଇନ୍ଦ୍ର ଉବାଚ

ହେ ବିଶ୍ୱଭାବନ ମୁରାରି । ତୁ ଯେ ଆନନ୍ଦ ବପୁଧାରୀ ॥
ସକଳ ପ୍ରାଣୀ ମନୋହର । ଭୋ ନାଥ ତୋହର ଶରୀର ॥

ଏ ଯେ ତୋହର ଅଷ୍ଟକର । ଏ ଦିଗପାଳଙ୍କ ଶରୀର ॥

## ଦକ୍ଷ ପତ୍ନୀ ଉବାଚ

ଏ ଯଜ୍ଞ ପ୍ରଜା ତୋର ଅର୍ଥେ । ଏ ପ୍ରଜାପତି ଏ ଜଗତେ ॥
କେବଳ ବିଧାତାର ବଳେ । ତୁ ନାଥ ପଶି ଯଜ୍ଞଶାଳେ ॥
ଦକ୍ଷକୁ ଦେଲୁ କର୍ମଫଳ । ତୁ ନାଥ ପରମ ମଙ୍ଗଳ ॥
ଏବେ ପବିତ୍ର ମୋ ଭୁବନ । କଲ୍ଲିଲା ତୋର ଦରଶନ ॥

## ଋଷିଗଣ ଉବାଚ

ଭୋ ନାଥ ତୋର ବିଚେଷ୍ଟିତ । ବିଶ୍ୱ ସଂସାରେ ବିପରୀତ ॥
ଈଶ୍ୱର ମାୟାର ବିଭୂତି । ଯା ବଳେ ଦେବ ଭ୍ରମିଯାନ୍ତି ॥

## ସିଦ୍ଧା ଉଚୁ୍ୟ

ତୋ କଥା ସୁଧା ତରଙ୍ଗିଣୀ । ସୁଶୀଳ ଜଳ ପ୍ରାୟ ମଣି ॥
ମନ ବାରଣ ତୃଷାକାଳେ । ପ୍ରବେଶ ହୋଇ ଶୀତଜଳେ ॥
ନ ପୁଣ ସ୍ମରେ ଦାବାନଳ । ତୋର ପ୍ରସନ୍ନେ ଆଦିମୂଳ ॥

## ଦକ୍ଷପତ୍ନୀ ଉବାଚ

ଭୋ ନାଥ ତୋର ଆଗମନ । ଆନନ୍ଦ କଲା ଆମ୍ଭ ମନ ॥
ତୁ ଲକ୍ଷ୍ମୀକାନ୍ତ ସୁଧାନିଧି । ସକଳ ସମ୍ପଦ ପ୍ରସିଦ୍ଧି ॥
ତୋ ବିନୁ ଏ ଯେ ଯଜ୍ଞଘର । ଭୋ ନାଥ ନ ଦିଶେ ସୁନ୍ଦର ॥
କି ଅବା ଦେବା ପଟାନ୍ତର । କବନ୍ଧ ପ୍ରାୟ ଛିନ୍ନଶିର ॥

## ଲୋକପାଳ ଉବାଚ

ଆମ୍ଭର ଦୁଷ୍ଟ ଗ୍ରହ ଦୋଷେ । ତୋତେ ଦେଖିବୁ କାହିଁ ଦୃଶ୍ୟେ
ତୁ ସର୍ବେ ପଞ୍ଚଭୂତେ ବସୁ । ତୁ ମାୟା ସ୍ୱରୂପ ପ୍ରକାଶୁ ॥

## ଯୋଗେଶ୍ୱର ଉବାଚ

ଭୋ ନାଥ ତୋର ଦରଶନେ । ଆମ୍ଭେ ଯେ ଦୃଢ଼ କଲୁ ମନେ ॥
ଅଷ୍ଟାଙ୍ଗ ମତେ ଯୋଗ ସାଧି । ଲଭିବା ପାଇଁ ଅଷ୍ଟନିଧି ॥
ସେ ପୁଣ ତୋର ମାୟାବଳେ । କେମନ୍ତେ ଧରିବୁ ନିଷ୍ଫଳେ ॥
ତୁ ନାଥ ଯେବେ କଲୁ ଦୟା । ତେବେ ବଞ୍ଚିବୁ ତୋର ମାୟା ॥
ଜଗତ ସ୍ଥିତି ସୃଷ୍ଟିଅନ୍ତ । ତ୍ରିଗୁଣେ କରୁ ଆତଯାତ ॥
ନିର୍ଲ୍ଲେପ ଗୁଣେ ସର୍ବ ବ୍ୟାପୀ । ତୁ ନାଥ ନିରଞ୍ଜନ ରୂପୀ ॥

## ବ୍ରହ୍ମା ଉବାଚ

ଆବରି ତୁ ଯେ ସତ୍ତ୍ୱଗୁଣ । ଧର୍ମ ପ୍ରକାଶୁ ଭଗବାନ ॥
ତୁହି ନିର୍ଗୁଣ ନିରାକାର । ତୋ ପାଦ ମୋର ନମସ୍କାର ॥

## ଅଗ୍ନି ଉବାଚ

ଯେଣୁ ତୋ ତତ୍ତ୍ୱ ମୁଁ ନଜାଣେ । କାହୁଁ ଜାଣିବେ ଦେବ ଗଣେ ॥
ଯାହାର ତେଜବଳେ ମୁହିଁ । ଅନଳ ରୂପେ ଯଜ୍ଞେ ରହି ॥
ଘୃତ ଆହୁତି ପଞ୍ଚବିଧେ । ମନ୍ତ୍ର ନିବେଦିତ ସମିଧେ ॥
ତୁ ଯଜ୍ଞରୂପୀ ଦାମୋଦର । ନିରତେ ମୋର ନମସ୍କାର ॥

## ବେଦଗଣ ଉବାଚ

ତୁ ନାଥ ପୂର୍ବ କଳ୍ପେ ହରି । ପ୍ରଳୟ କାଳେ ଗର୍ଭେ ଭରି ॥
ସର୍ବ ସଂହାରି ବିଶ୍ୱରୂପେ । ଶୟନ ନାଗମୟ କଳ୍ପେ ॥
ଆମ୍ଭେ ଯେ ତୋର ନିଜ ଭୃତ୍ୟ । ଏ କଥା ଜଗତେ ବିଖ୍ୟାତ ॥
ଆମ୍ଭଙ୍କୁ ସଙ୍କଟ ପଡ଼ିଲେ । ତୁ ନାଥ ରକ୍ଷାକରୁ ଭଲେ ॥

## ଗନ୍ଧର୍ବଗଣ ଉବାଚ

ଭୋ ନାଥ ତୋତେ ନମସ୍କାର । ଏ ବିଶ୍ୱ କ୍ରୀଡ଼ା ଭାଣ୍ଡ ତୋର ॥
ଏ ବ୍ରହ୍ମା ରୁଦ୍ର ଆଦି ଯେତେ । ସକଳ ଦେବତା ସମତେ ॥
ମରୀଚି ଆଦି ସର୍ବଋଷି । ସର୍ବେ ତୋ ଅଂଶରୁ ପ୍ରକାଶି ॥

## ବ୍ରହ୍ମ ଉବାଚ

ତୁମ୍ଭର ମାୟାବଳେ ପ୍ରାଣୀ । ମର୍ମାହ ମିତି ପରିମାଣି ॥
ଉତ୍ପଥ ଗାମୀ ଇନ୍ଦ୍ରିଗଣେ । ଏ ନିତ୍ୟ ଭଜେ କରଷଣେ ॥
ଏଣୁ ଲାଳସେ ଆତ୍ମା ଦେହେ । ତୋଭାବେ କେବେହେଁ ନ ରହେ ॥
ତୋ କଥା ଅମୃତ ନ ସେବେ । ଏଣୁ ପଡ଼ଇ ଭବାର୍ଣ୍ଣବେ ॥

## ବ୍ରହ୍ମା ଉବାଚ

ତୁ ନାଥ ଯଜ୍ଞ ଅଗ୍ନି ସୋମ । ତୁ ନିତ୍ୟାଚାର ବିଧିକର୍ମ ॥
ସମୀଧ ପାତ୍ର ତୁ ଋତ୍ୱିକ । ଯଜ୍ଞାଦି ଯଜମାନ ଦ୍ୱିଜ ॥
ତୁ ସ୍ୱାହା ସ୍ୱଧା ଯଜ୍ଞ ପଶୁ । ତୁ ଯଜ୍ଞ ପୁରୁଷ ପ୍ରକାଶୁ ॥
ଦନ୍ତେ ଉଦ୍ଧରୁ ଏ ଧରଣୀ । ସଂଗ୍ରାମେ ହିରଣ୍ୟକ୍ଷ ଜିଣି ॥
ଧରଣୀ ସ୍ଥାପି ମହାଜଳେ । ଯେଣୁ ଏ ରହିଲ ନିଷ୍ଫଳେ ॥
ଏହା ଉପରେ ଲୋକ ସ୍ୱର୍ଗ । ଏଣୁ ତୋ ରୂପ ଅପବର୍ଗ ॥
ସକଳ କର୍ମ ସାକ୍ଷୀ ତୁହି । ଭୋ ନାଥ ରଖ ଭାବଗ୍ରାହୀ ॥
ଯାହାର ନାମ ଉଚ୍ଚାରଣେ । କରଇ ବିଘ୍ନ କରଷଣେ ॥

## ମୈତ୍ରେୟ ଉବାଚ

ଏମନ୍ତେ ଦେବଗଣ ସ୍ତୁତି । ଶୁଣି ସନ୍ତୋଷ ଯଜ୍ଞପତି ॥
ଦକ୍ଷକୁ ଚାହିଁ ଚକ୍ରପାଣି । ମେଘ ଗମ୍ଭୀର ମଞ୍ଜୁବାଣୀ ॥

## ଶ୍ରୀ ଭଗବାନ ଉବାଚ

ମୁଁ ବ୍ରହ୍ମା ହରରୂପ ଧରି । ଏ ବିଶ୍ୱ ସର୍ଜ୍ଜି ପାଳି ହରି ॥
ଏଣୁ ମୋହର ତିନିଗୁଣ । ସଂସାର ପରମ କାରଣ ॥
ନିର୍ଲ୍ଲେପ ନିରଞ୍ଜନ ମୁହିଁ । ସକଳ ଭୂତେ ମୁଁ ବସଇ ॥
ଯାହାକୁ ଯେବା ଶିକ୍ଷାଦେଇ । ପ୍ରାଣୀ ଛାଡ଼ିବ ତାହା କାହିଁ ॥
ସକଳ କର୍ମ ମୋ ଗୋଚର । ଅଜ୍ଞାନୀ ଜନେ ମୁହିଁ ଦୂର ॥

ଦେଖ ଏ ଦେହ ମଧ୍ୟେ ଗତେ । ଶିର ଚରଣ କର ଯେତେ ॥
ଏହାକୁ ଭିନ୍ନ ପ୍ରାୟେ ମଣେ । ଆତ୍ମାରେ ଗତି ନ ପ୍ରମାଣେ ॥
ଯାହାର ନିର୍ମଳ ବିବେକ । ବାହ୍ୟ ଅନ୍ତରେ ଦେଖେ ଏକ ॥
ଦୂରେ ରହଇ ଆତ୍ମାଭ୍ରାନ୍ତି । ସେ ପ୍ରାଣୀ ଲଭେ ଆତ୍ମା ଶାନ୍ତି ॥

## ମୈତ୍ରେୟ ଉବାଚ

ଏମନ୍ତେ ବିଷ୍ଣୁ ମୁଖୁଁ ଶୁଣି । ଅମୃତ ପ୍ରାୟ ମଞ୍ଜୁବାଣୀ ॥
ହରିଙ୍କୁ ଯଜ୍ଞେ ପୂଜା କଲା । ଯେଣୁ ତାହାର ଭାଗ୍ୟ ଥିଲା ॥
ଋଷି ଦେବତା ପୂଜା କରି । ରୁଦ୍ରଙ୍କୁ ରୁଦ୍ରଭାବେ ବରି ॥
ଯଜ୍ଞର ଶେଷେ ଭାଗ ଦେଲା । ସେ ଅବଭୃଥ ସ୍ନାନ କଲା ॥
ଦକ୍ଷ ରହିଲା ଯଜ୍ଞଘରେ । ଦେବେ ଚଳିଲେ ନିଜପୁରେ ॥
ଏବେ ହୋ ଶୁଣ କୁରୁବୀର । ସତୀ ଯେ ଛାଡ଼ିଲା ଶରୀର ॥
ପୁଣି ସେ ହିମବନ୍ତ ଘରେ । ଜନ୍ମିଲା ମେନକା ଉଦରେ ॥
ପୁଣି ସେ ରୁଦ୍ରଙ୍କୁ ବରିଲା । ଅମ୍ବିକା ହିମଗିରି ବଳା ॥
ଏମନ୍ତେ ରୁଦ୍ରର ଚରିତ । ଯେମନ୍ତେ ଦକ୍ଷଯଜ୍ଞ ହତ ॥
ଉଦ୍ଧବ ମୁଖୁଁ ମୁହିଁ ଶୁଣି । ତୋତେ କହିଲି ପରିମାଣି ॥
ଏଣୁ ଏ ବିଷ୍ଣୁର ଚରିତ । ଭକ୍ତ ତାରଣେ ଭାଗବତ ॥
ତତେ କହିଲି ଭକ୍ତିମତେ । ଯେଣୁ ତୁ ପଚାରିଲୁ ମତେ ॥
ସର୍ବ ସମ୍ପଦ ଏଣେ ଲଭେ । ଜୀବ ନ ପଡ଼େ ମାୟା ଭାବେ ॥
କହଇ ଦାସ ଜଗନ୍ନାଥ । ସୁଜନ ଜନଙ୍କର ହିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଯଜ୍ଞପୁରୁଷ ପ୍ରସଙ୍ଗେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

## ଧ୍ରୁବଚରିତ

### ରାଗ - କଳଶା

ନମାମି ଅମ୍ବିକାସୁତ ଚରଣ ପଙ୍କଜ ।
ସର୍ବ ଦେବଙ୍କ ମଧ୍ୟେ ଯା ନାମ ବିଘ୍ନରାଜ ॥
ଅମ୍ବରୀଶଗିରି ସମୁଦ୍ରର କଳେବର ।
କିରୀଟ କୁଣ୍ଡଳ କଣ୍ଠେ ହାର ମନୋହର ॥
ତୁଙ୍ଗ ବକ୍ଷସ୍ଥଳ ଦୀର୍ଘ ଶୋହେ ଭୁଜଚାରି ।
ଅକ୍ଷୟ ଅମୃତଦୃଣୀ ପାଶାଙ୍କୁଶ ଧାରୀ ॥
ଯାହାର ପ୍ରସନ୍ନ ବଳେ ଜଡ଼ ବୁଦ୍ଧି ତୁଟେ ।
ନିର୍ମଳ ବଚନ ଯେ ସ୍ଫୁରଇ କଣ୍ଠତଟେ ॥
ମୋର ଚିତ୍ତେ ସୁପ୍ରସନ୍ନ ହୁଅ ହେ ଲମ୍ବୋଦର ।
କହେ ଭଗବତ ବାଣୀ ସଂସାରରେ ସାର ॥
ଭକ୍ତିଯୋଗ ମଧ୍ୟେ ଯେ ଉତ୍ତମ ଭାଗବତ ।
କହିବି ଚତୁର୍ଥସ୍କନ୍ଧେ ଧ୍ରୁବର ଚରିତ ॥
ସପତ ବରଷ ପୁତ୍ର ଘୋରତାପ କଲା ।
ମାତୃସପତ୍ନୀର ବାକ୍ୟେ ହରିଙ୍କି ଭଜିଲା ॥
ପିତା ଜାନୁ ଆରୋହଣ ଭଙ୍ଗ ଦୋଷ ମନେ ।
ସପ୍ତଋଷି ଊର୍ଦ୍ଧ୍ୱେ ଯାଇ ବସିଲା ଗଗନେ ॥
ଯାର ଘୋର ତପ ଦେଖି ଭୃଗୁ ମନତୋଷେ ।
ଧନ୍ୟ ଧନ୍ୟ ଧ୍ରୁବ ବୋଲି ଋଷି ମଧ୍ୟେ ଭାଷେ ॥
ଜନନୀ ସହିତେ ଧ୍ରୁବ ଗମଇ ଆକାଶେ ।
ଦରଶନ ମାତ୍ରେ ତ୍ରିକାଳର ପାପ ନାଶେ ॥
ଅଧିକ ଆୟୁଷ ଲଭେ ତ୍ରୟୋଦଶ ସମା ।
ଯାର ଭାବ ନ ଲଭନ୍ତି ଇନ୍ଦ୍ର ହର ବ୍ରହ୍ମା ॥
ତାହାର ଚରିତ ଯେ ଶୁଣନ୍ତି ସାବଧାନେ ।
ସର୍ବ ପାପ ହରେ ମନ ରହେ ବିଷ୍ଣୁ ଧ୍ୟାନେ ॥
ଅଶେଷ ଅମୃତ ବାଣୀ ଧ୍ରୁବର ଚରିତ ।
କହିବି ପ୍ରସନ୍ନ ହୁଅ ମୋତେ ଗଣନାଥ ॥
ପୁଣ୍ୟ କ୍ଷେତ୍ରବନେ ସରସ୍ୱତୀ ତଟେ ରହି ।
ମୈତ୍ରେୟ ମୁନି ଯେ ବିଦୁରର ଆଗେ କହି ॥
ଦୁର୍ଗତିତାରଣ ପୁଣ୍ୟେ ଭୀଷ୍ମ ନିବାରଣ ।
କହେ ବିପ୍ର ଜଗନ୍ନାଥ ସାବଧାନେ ଶୁଣ ॥

## ମୈତ୍ରେୟ ଉବାଚ

ସର୍ବଶାସ୍ତ୍ର ଜାଣି ଯେ କହଇ ନାନାମତେ ॥
ଧ୍ରୁବଙ୍କ ଚରିତ ବିଷ୍ଣୁଭକ୍ତ ଜନ ହିତେ ।
ମଇତ୍ରେୟ ଆଗେ ପରାଶର ମୁନି କହି ।
ବିଷ୍ଣୁ ଜନହିତେ ବଇଷ୍ଣବ ଭାବ ବହି ॥
ପରମହଂସ ବିମାନେ ବୈକୁଣ୍ଠକୁ ଯାନ୍ତେ ।
ବୈଷ୍ଣବ ଅଗ୍ରଣୀ ଶିବ ଉମାର ଅଗ୍ରତେ ॥
ବିଷ୍ଣୁ ଦୂତେ ହରି କଥା କହିଛଇ ଯାହା ।
ଭାଷା ପ୍ରବନ୍ଧରେ ମୁହିଁ ପ୍ରକାଶିବି ତାହା ॥
ସାଧୁଜନେ ଦୃଢ଼ଚିତ୍ତେ କର ଏଥେ ଭାବ ।
ଏ ଦୃଢ଼ ବୋଇତେ ଭବ ବାରିଧି ତରିବ ॥

ବିଷ୍ଣୁର ଆଦେଶେ ସୃଷ୍ଟିକାଳେ ପଦ୍ମଯୋନି ।
ମୈଥୁନ ପ୍ରକାରେ ସେହୁ ଶିବଶକ୍ତି ଘେନି ॥
ନିଜ କଳେବର ବ୍ରହ୍ମା ବେନିଖଣ୍ଡ କଲେ ॥
ସ୍ୱାୟମ୍ଭୁବ ମନ ଯତରୂପା ପ୍ରକାଶିଲେ ।
ମୈଥୁନ ପ୍ରବନ୍ଧେ ଉପୁଜିଲେ ପୁତ୍ର ବେନି ।
ସୃଷ୍ଟି ଅଂଶ ହେତୁ ତିନି କନ୍ୟା ସଙ୍ଗେ ଘେନି ॥
ପ୍ରିୟବ୍ରତ ଉତ୍ତାନପାଦ ନାମ ଆଦ୍ୟର ।
ସୁଗୁଣ ସ୍ୱରୂପ ରୂପେ ମୋହେ ତିନିପୁର ॥
କନ୍ୟା ଏକ ତହୁଁ ପ୍ରଜାପତିର ସମ୍ଭୂତ ।
ଯେଣୁ ବ୍ରହ୍ମା ଭିଆଇ ସଜିଲା ଏ ଜଗତ ॥
ସୃଷ୍ଟି ପୂର୍ବେ ଆନରୂପେ ବେନି ସହୋଦର ।
ପ୍ରଜାବର୍ଗ ସର୍ଜିଲେ ସେ ଅନେକ ପ୍ରକାର ॥
ଉତ୍ତାନପାଦର ସେ ହୋଇଲେ ପତ୍ନୀ ବେନି ।
ସୁରୁଚି ସୁନୀତି ଯେ ସୁନ୍ଦର ଗୁଣ ଘେନି ॥
ସେ ବେନି ପତ୍ନୀଙ୍କ ମଧ୍ୟେ ସୁରୁଚି ସୁପ୍ରିୟା ।
ଉତ୍ତାନପାଦର ଚିତ୍ତେ ତାରେ ବଡ଼ ଦୟା ॥
ତାହାର ଉଦରେ ଯେଉଁ ବେନିପୁତ୍ର ହୁଏ ।
ରୂପଗୁଣ ସୁନ୍ଦରରେ ଜଗଜ୍ଜନ ମୋହେ ॥
ତାର ବହୁ ପ୍ରିୟ ଯେ ଉତ୍ତାନପାଦ ରାଜା ।
ଭୂଷଣ ବସନ ଆଦି କରେ ତାକୁ ପୂଜା ॥
ନିତ୍ୟେ ପ୍ରିୟବତୀ ସେ ନିମିଷେ ନ ଛାଡ଼ଇ ।
ପତ୍ନୀ ସୁତ ସ୍ୱଭାବେ ଗୌରବ ଭାବ ବହି ॥
ସୁନୀତି ଅପ୍ରିୟ ତାର ସୁତ ଧ୍ରୁବ ନାମ ।
ରୂପଗୁଣେ ସୁନ୍ଦର ମୋହିତ କୋଟି କାମ ॥
ବେନିସୁତ ବେନି ଧାତ୍ରୀ ଘେନିଥାନ୍ତି ନିତ୍ୟେ ।
ପିତାର ସମୀପେ ଦ୍ୟନ୍ତି ରାଜସେବା ମତେ ॥
ଏକଦିନେ ସୁରୁଚି ଉତ୍ତମ କର ଧରି ।
ନୃପତି ସମୀପେ ମିଳେ ପ୍ରିୟଭାବ କରି ॥
ଉତ୍ତମକୁ କୋଳେ ଦେଇ ରହିଲା ଅନ୍ତରେ ।
ନୃପତି ସଭାର ମଧ୍ୟେ ପ୍ରିୟଭାବ ଭରେ ॥
ଏମନ୍ତ ସମୟେ ଧାତ୍ରୀ ଧ୍ରୁବ ଘେନି ସଙ୍ଗେ ।
ରାଜାର ସମୀପେ ପ୍ରେମ ପୁତ୍ରଭାବ ରଙ୍ଗେ ॥
ଉତ୍ତମକୁ କୋଳେ ଦେଖି ଧ୍ରୁବ ସ୍ନେହ କଲା ।
ପିତାକୋଳେ ବସିବାକୁ ହସ୍ତ ପ୍ରସାରିଲା ॥
ତାହା ଦେଖି କୋପଚିତ୍ତେ ସୁରୁଚି କହଇ ।
ଦୁର୍ଭାଗା ତନୟ ତୋ ବଦନେ ଲାଜ ନାହିଁ ॥
ଆରୋହଣ କରି ଲୋଡୁ ନୃପ ସିଂହାସନ ।
ଯେ ଆସନ ସୁପୂଜିତ ଏ ତିନି ଭୁବନ ॥
ପୂର୍ବ ତପ ଫଳେ ଦେଖ ଉତ୍ତମ କୁମର ।
ନୃପବୀର୍ଯ୍ୟେ ଉପୁଜିଲା ମୋହର ଉଦର ॥
ଏ ଯେ ନୃପ ସିଂହାସନ ବସିବାକୁ ଏକ ।
ଏ କଥା ବିଦିତ ଭଲେ ଜାଣନ୍ତି ତ୍ରିଲୋକ ॥
ବିଷ୍ଣୁରେ କଠୋର ତପ ପୂର୍ବେ ଯେ କରଇ ।
ତପ ବଳେ ଲଭେ ସେ ଦୁର୍ଲ୍ଲଭ ନରଦେହୀ ॥
ଯେଉଁ ତପେ ଯେତେ ଭୋଗ କରନ୍ତି ଜଗତେ ।
କହଇ ବାଳକୁ ପୁତ୍ର ଶୁଣ ଏକଚିତ୍ତେ ॥
ଯେଉଁ ତପେ ବସନ୍ତି ଯେ ଏ ରାଜ ଆସନେ ।
କୋଟି ତପେ ପାଇଛନ୍ତି ତାହା ରାଜାମାନେ ॥
ଜାଣିଲି ମୁଁ ପୂର୍ବେ ତୋର କିଛି ତପ ନାହିଁ ।
ତେଣୁ ଅଭାଗିନୀ ଗର୍ଭେ ଉପୁଜିଲୁ ତୁହି ॥
ଏହି ଅନୁମାନେ ତୋର ଅଳ୍ପ ପୁଣ୍ୟ ଜାଣ ।
ଶୁଭାଶୁଭ ଫଳ ଅନୁମାନେ ଏ ପ୍ରମାଣ ॥
ରାଜାର କୁମର ପଣେ ଏ ଜନ୍ମ ତୋହର ।
ନାନା ସୁଖ ଭୋଗେ ତୋର ନାହିଁ ଅଧିକାର ॥
ଦେଖ ଏ କୁମର ମୋର ଗର୍ଭେ ଜାତ ହୋଇ ।
ଏ ନୃପ ସିଂହାସନକୁ ଯୋଗ୍ୟ ଏ ଅଟଇ ॥
ନୃପାସନେ ବସିବାକୁ ଚିତ୍ତ ଯେବେ ତୋର ॥
କିମ୍ପା ଜନ୍ମ ନ ଲଭିଲୁ ମୋହର ଉଦର ॥
ଏମନ୍ତ ସଭାର ମଧ୍ୟେ ସୁରୁଚି ବଚନ ।
ଶୁଣି ଧ୍ରୁବ ଶୋକ ଚିତ୍ତେ ହୋଇଲା ମଉନ ॥
ଅନ୍ତର୍ଗତେ କମ୍ପଇ ତାହାର ନିଜଦେହୀ ।
ଅଧୋମୁଖେ ରହିଲା ଭୂମିକୁ ଦୃଷ୍ଟି ଦେଇ ॥
ଅନୁଚିତ ଉଚିତ ନ କହେ ନୃପ ବାଣୀ ॥
ସଭାମଧ୍ୟେ ଶୁଣି ସେ ସୁରୁଚି ଗର୍ବବାଣୀ ।
ତାହାର ଗୌରବେ ଯେ ଯନ୍ତ୍ରିତ ଚିତ୍ତ ହୋଇ ।
ସଭାମଧ୍ୟେ ଏକବାକ୍ୟ ନ ପାରଇ କହି ॥

ଏମନ୍ତେ ନୃପତି ଗୁଣ ଦେଖି ଧ୍ରୁବ ମନେ ।
ଧାତ୍ରୀ ସଙ୍ଗେ ସୂନୁ ନୃପ ଗମିଲେ ଭୁବନେ ॥
ମାର୍ଗେ ଯାନ୍ତେ ବ୍ୟାକୁଳେ ନ ଦିଶେ ଦଶଦିଗ ।
ସର୍ପ ପ୍ରାୟେ ପୁଣ ପୁଣ ଛାଡ଼ଇ ନିଃଶ୍ୱାସ ॥
ମାତାର ସନ୍ନିଧେ ଧ୍ରୁବ ନିଜପୁରେ ଯାଇ ।
ଅଶ୍ରୁବହେ ଲୋଚନୁ କମ୍ପଇ ନିଜଦେହୀ ॥
ଅଶ୍ରୁ କଣ୍ଠ କୁଣ୍ଠିତ ବଚନ ଗଦ ଗଦ ।
ନ ସ୍ଫୁରଇ ବାକ୍ୟ ମୁଖୁ ଦୁଃଖମନେ ଖେଦ ॥
ଏମନ୍ତେ ପୁତ୍ର ବଦନ ସୁନୀତି ଅନାଇ ।
ଛନ୍ନଚିତ୍ତେ ପଚାରଇ ଧାତ୍ରୀ ମୁଖ ଚାହିଁ ॥
ତୁ ଯେ ପୁତ୍ର ଘେନିଗଲୁ ନୃପତି ସମୀପେ ।
କିମ୍ପା ଏ ରୋଦନ କରେ ଅତି ମନସ୍ତାପେ ॥
ମାତାର ବଚନ ଶୁଣି ନୃପତି ନନ୍ଦନ ।
ଊର୍ଦ୍ଧ୍ୱେ ମୁଖେ ଚାହିଁ କହେ ବିକଳ ବଚନ ॥
ଜନନୀ ଜାଣିଲେ ପୁତ୍ର ଅପମାନ ପାଇ ।
ପିତାର ସମୀପେ କିବା ଅପମାନ ବହି ॥
ମୁଖ ଲକ୍ଷ୍ମୀ ଏହାର ତ ନ ଦିଶେ ସୁନ୍ଦର ।
ଅତି ଦୁଃଖେ ବୁଡ଼ିଲାତ ମୋହର କୁମର ॥
ବେନିକରେ ଆକର୍ଷି ପୁତ୍ରକୁ କୋଳେ ଧରି ।
ମୂର୍ଦ୍ଧନୀ ଆଘ୍ରାଣ କରି ନିଃଶ୍ୱାସ ସଂହରି ॥
ଅତିମ୍ଳାନ ମୁଖ ଦେଖି ପୁନଃ ପୁନଃ କୋଳେ ॥
ଉଦରେ ଲଗାଇ ପୁଛେ ଅତି ସ୍ନେହଭରେ ।
ମୁଖେ ଜଳସିଞ୍ଚି ସେ ବଦନୁ ପୋଛେ ଲୁହ ।
କିମ୍ପା ତୁ ରୋଦନ କରୁ ବେଗେ ବତ୍ସ କହ ॥
ରାଜାର କୁମର ତୁ ଦୁର୍ଲ୍ଲଭ ପ୍ରାଣୀଙ୍କର ।
ସ୍ୱଭାବେ ସୁନ୍ଦର ଗୁଣ ନିତି ମନୋହର ॥
ତୋତେ ଶୋକ ଦେବାକୁ କେ ଅଛଇ ଜଗତେ ।
କିମ୍ପା ତୁ ରୋଦନ କରୁ କହ ମୋ ଅଗ୍ରତେ ॥
ମାତାର ବଚନ ଶୁଣି ଧ୍ରୁବ ଦୁଃଖମନେ ।
ନିଶ୍ୱାସ କୁଣ୍ଠିତ କଣ୍ଠ ଅଶ୍ରୁ ପୂର୍ଣ୍ଣାନନେ ।
ଶୁଣ ଗୋ ଜନନୀ କହୁଁ ତୁମ୍ଭର ଅଗ୍ରତେ ।
ରାଜା ମହାଦେଈ ତୁମ୍ଭେ ବୋଲାଅ କେମନ୍ତେ ।
ସୁରୁଚି ସମ ତୁମ୍ଭଙ୍କୁ ଜାଣନ୍ତି ଜଗତେ ॥
ସେ ରାଜାର ପ୍ରିୟା ତୁମ୍ଭେ ଦୁର୍ଭାଗୀ କେମନ୍ତେ ॥
କେଉଁମତେ ଉତ୍ତମ ବୋଲାଇ ତାର ପୁଅ ।
ମୁଁ କିମ୍ପା ଅଧମ ମାତା ସତ ମୋତେ କହ ॥
ନୃପ ସିଂହାସନେ ବସିବାକୁ ବେନି ଭାଇ ।
ସେ କିମ୍ପା ହୋଇଲା ଯୋଗ୍ୟ ମୋତେ ଭୋଗ ନାହିଁ ॥
ସେ କମ୍ପା ଉତ୍ତମ ନାମ ବହିଲା ଜଗତେ ॥
ତୋର ପୁତ୍ର ହୋଇ ମୁହିଁ ଅଧମ କେମନ୍ତେ ॥
ମୋହର ସୁକୃତ କିମ୍ପା ଏମନ୍ତ ହୋଇଲା ।
ଉତ୍ତମ ଉତ୍ତମ ସୁଖ କେମନ୍ତେ ପାଇଲା ॥
ଏମନ୍ତେ ପୁତ୍ର ବଚନ ଶୁଣିଣ ସୁନୀତି ।
ପୁତ୍ରର ବିଚାର ପଶ୍ୱେ ଦୃଢ଼ତର ମତି ॥
ସ୍ତବଧେ ରହି ନିଃଶ୍ୱାସ ଛାଡ଼େ ଧୀରେ ଧୀରେ ।
ଶିଶୁ କୋପେ ଶାନ୍ତି ଅର୍ଥେ କହଇ ମଧୁରେ ॥
ସ୍ୱଭାବେ ରାଜନୀତି ସେ କହେ ପୁତ୍ରେ ଚାହିଁ ।
କହିବି ସକଳ ମନ ଦୁଃଖ ଛାଡ଼ ତୁହି ॥
ଜାଣିଲି ନୃପ ସମୀପେ ଅପମାନ କଥା ।
ଶୁଣ ହେ ସାଧୁ ନନ୍ଦନ ଛାଡ଼ି ମନୁ ବ୍ୟଥା ।
ତୁ ଯେତେ କହିଲୁ ବାବୁ ଏ ସତ୍ୟ ପ୍ରତ୍ୟକ୍ଷେ ।
ସୁରୁଚି ବଚନ ଶୁଣି ନୃପବର ପକ୍ଷେ ॥
ସୁରୁଚି ସୌଭାଗ୍ୟ ସେହି ରାଜ ପାଟରାଣୀ ।
ସର୍ବ ରାଜ ପତ୍ନୀଙ୍କ ଉପରେ ଶିରୋମଣି ॥
ଜନ୍ମାନ୍ତରେ ଯେଣୁ ସେ ଅନେକ ତପ କଲା ।
ତପବଳେ ସ୍ୱାମୀର ସେ ସୁହାଗୀ ହୋଇଲା ॥
ଜାଣିଲି ନିଶ୍ଚୟ ମୋର ପୂର୍ବ ତପ ନାହିଁ ।
ସେ ଫଳେ ଦୁର୍ଭାଗୀ ମୁହିଁ ରାଜପତ୍ନୀ ହୋଇ ॥
ପୂର୍ବେ ତୋର ଭାଇ ଯେ ଉତ୍ତମ ତପ କଲା ।
ତପ ବଳେ ନୃପ ସିଂହାସନରେ ବସିଲା ॥
ସୁରୁଚି ସୁଭାଗୀ ତପ ବଳେ ରାଜରାଣୀ ।
ସର୍ବ ପତ୍ନୀ ମଧ୍ୟେ ସେ ବୋଲାଇ ଇଷ୍ଟରାଣୀ ॥
ଉତ୍ତମ ଉତ୍ତମ ପୁତ୍ର ପୁଣ୍ୟ ତା ଉଦର ।
ଜନ୍ମିଲା ଉତ୍ତମ ସିଂହାସନେ ଅଧିକାର ॥
ଶୁଣ ହେ କୁମରମଣି ସ୍ଥିର କରି ମନ ।
ସାବଧାନ ହୋଇ ଶୁଣ ମୋହର ବଚନ ॥
ଯେବା ଭାଗ୍ୟେ ପୂର୍ବଜନ୍ମ ନାନା ତପ କରି ।
ନାନା ରୂପେ ଭୋଗ ଭୁଞ୍ଜେ ନାନା ଦେହ ଧରି ॥

ଚନ୍ଦ୍ର ଜ୍ୟୋତି ପାଟଛତ୍ର ଚାମର ସମେତେ ।
ନୃପ ସିଂହାସନେ ବସେ ବାଦ୍ୟନାଦ ଗୀତେ ॥
ସିନ୍ଦୂରେ ମଣ୍ଡିତ ଶିର ରାଜବୃନ୍ଦ ମେଳେ ।
ମନୋଗାମୀ ତୁରଙ୍ଗମ ଚତୁରଙ୍ଗ ବଳେ ।
ଅନାଦି ବ୍ୟାଧୀ ଜୀବନେ ଜୟ ଶିତସୀମା ॥
ଉତ୍ତମ ସୁଜନେ ତାର ସୁଚିତ୍ର ମହିମା ॥
ଶୁଭ ରାଜେ ରାଜପଦ ଲଭେ ଅକଣ୍ଟକ ॥
ରାଜା ଯଶ ଗୁଣେ ପୂରେ ଇହ ପରଲୋକ ।
ହରି ହର ଚରଣେ ସେବଇ ନିତ୍ୟ ନିତ୍ୟ ।
ଦୁଃଖୀ ଜନଙ୍କରେ ଦୟା ବହେ ହୃଦଗତ ॥
ନିର୍ମଳ କଲୁଷ ଜ୍ଞାନ ନିତ୍ୟ ଯାର ଚିତ୍ତେ ।
ସର୍ବଶାସ୍ତ୍ର ଅଭ୍ୟାସ କରଇ ଶୁଦ୍ଧଚିତ୍ତେ ॥
ରିପୁ ରାଜବର୍ଗ ଜୟ ସତ୍ୟଗୁଣେ ମତି ।
କାରୁଣ୍ୟ ସମ୍ପୂର୍ଣ୍ଣ ଦୃଷ୍ଟି ବାଣୀ ଶୁଦ୍ଧାକୃତି ॥
ସର୍ବଦା ଯେ ନିଷ୍ଠଳେ ସଦଗୁରୁ ପାଦେ ଭକ୍ତି ।
ସର୍ବଦା ସୁଖ ଯେ ଜାତ ସଂଯୋଗରେ ଶକ୍ତି ॥
ଉପାସନା ମନ ଶୁଚି ନିର୍ଦ୍ଦୟ ବଚନ ।
ସଭା ମଧ୍ୟେ ସୁପଣ୍ଡିତ ଅତି ବିଦ୍ୟମାନ ॥
ପ୍ରଜାନ୍ତ ତାରଣ ମଧ୍ୟେ ଅତି ବୀରପଣ ।
ଇହ ପରଲୋକେ ହୁଏ ସୁଯଶ ସ୍ମରଣ ॥
ବନ୍ଧୁ ବର୍ଗେ ଧୀରପଣେ ଅନୁବ୍ରତ ରହେ ।
ବାଣିଜ୍ୟେ ଚତୁର ଭାବ ବାକ୍ୟେ ମନ ମୋହେ ॥
ଯୋଷିତ ପ୍ରୟୋଗେ ମୃଦବଚନ ଭାଷିତ ॥
ବ୍ରାହ୍ମଣ ବିଷୟେ ଚିତ୍ତେ ଭଜେ ସବିନୀତ ।
ସ୍ୱଧର୍ମେ ଜୀବନ ପୋଷେ ନିଜ ବୃତ୍ତି ରହି ॥
ବୃଦ୍ଧଙ୍କର ଭାବେ ସେ ସାତ୍ତ୍ୱିକେ ମନଦେଇ ॥
ଭାଗୀରଥୀ ତୀରେ ବାସ ସୁତୀର୍ଥେ ମରଣ ।
ଅର୍ଥୀ ଭୋକୀଗଣ ମୁଖ୍ୟ ଅତିଥି ତୋଷଣ ॥
ବନ୍ଧୁ ଜନ ତୁଲେ ଭୋଗ କରେ ସମତୁଲେ ।
ଦାନଦକ୍ଷେ ଦିବସ ଯାହାର ଯାଇ ଭଲେ ॥
ନିଜ ବିଦ୍ୟା ବ୍ୟସନେ ବର୍ତ୍ତଇ ନିରନ୍ତରେ ।
ନିତ୍ୟେ ସେବା କରେ ତାତ ଜନନୀ ପୟରେ ॥
ଯଶ ଧର୍ମ ନିରନ୍ତରେ ସଞ୍ଚେ ଧନ ପ୍ରାୟେ ।
ସ୍ୱର୍ଗ ଅପବର୍ଗ ବୁଦ୍ଧି ଅହଙ୍କାର ବହେ ॥
ନିତ୍ୟ ମିଳେ ସାଧୁ ସଙ୍ଗ ମାତ୍ର ସର୍ବ ଭୂତେ ।
ଇତିହାସ ପୁରାଣାଦି ଶୁଣେ ଶୁଦ୍ଧଚିତ୍ତେ ॥
ବିପଦର କାଳେ ଧୀର ଚିତ୍ତ ହୋଇ ଦୃଢ଼େ ।
ସମ୍ପଦେ ଆଗମ ବୃଦ୍ଧ ବହେ ଧୀରଗାତ୍ରେ ॥
ବିଦ୍ୟା ପଢ଼ି ଗଭୀର ସାଗର ପ୍ରାୟେ ରହେ ।
ପାତ୍ରେ ଦାନ ସମ୍ପଦେ ଉଦାସ ଭାବ ବହେ ॥
ଯଶ ଧର୍ମ ସଞ୍ଚିବାରେ ନିତ୍ୟ କରେ ମତି ।
ସ୍ୱର୍ଗାମୋଦ ଶୁଦ୍ଧଫଳ ସ୍ୱଭାବେ ଯେ କୀର୍ତ୍ତି ॥
ସାଧୁ ସଙ୍ଗମେଳେ ଦୃଢ଼ ନିତ୍ୟେ କରେ ଆଶା ।
ପିତୃମାତୃ ପ୍ରାୟେ ଜୀବ ଯେବେ କରେ ବାଞ୍ଛା ॥
ଇତିହାସ ବାଣୀ ଯେହୁ ପୁରାଣ ଶ୍ରବଣେ ।
ଉତ୍କଣ୍ଠା ସ୍ୱଭାବ ନିତ୍ୟ ବହେ ଅନୁକ୍ଷଣେ ॥
ବିପଦ ଆଗମେ ଯେ ଆପଣେ ବଞ୍ଚେ ଦିନ ।
ସମ୍ପଦର କାଳେ ଭାଷେ ମଧୁର ବଚନ ॥
ଗଭୀର ବଚନ କହେ ବଚନ ବିକାଶେ ।
ଉତ୍ତମ ଉଦାର ବୁଦ୍ଧି ପ୍ରାୟେ ଉପଦେଶେ ॥
ଶମ ଦମ ମହତ ଯେ ଶରୀର ଧରଇ ।
ଏତେ ଗୁଣ ବହେ ଯାର ପୂର୍ବଭାଗ୍ୟ ଥାଇ ॥
ଏଣୁ ପୂର୍ବେ ତୋହର ମୋହର ତପ ନାହିଁ ॥
ଏ ଜନ୍ମେ ଲୋଡ଼ିଲେ ପୁତ୍ର ପାଇବା ତା କାହିଁ ।
ମାନ ଅପମାନ ଯେ ଫଳଇ କର୍ମ ବଳେ ।
ଏହାଜାଣି ପ୍ରାଣୀ ଚିତ୍ତ ନ ରହେ ନିଷ୍ଠଳେ ॥
ଆପଣା ଅର୍ଜ୍ଜିଲା କର୍ମ ଆପଣେ ଭୁଞ୍ଜଇ ।
ବିଧାତାର ବଳେ କର୍ମ ଅନ୍ୟଥା ନୁହଇ ॥
ଏଣୁ ତୁ ନ କରି ଶୋକ କର୍ମକୁ ଆଦର ।
ମୋହର ବଚନେ ପୁତ୍ର ଶୋକ ତୁ ସଂହର ॥
ଏମନ୍ତ ମାତାର ବାକ୍ୟ ସାବଧାନେ ଶୁଣି ।
ଧ୍ରୁବହିଁ ପଣ୍ଡିତ ବାକ୍ୟ ମନେ ମନେ ଗୁଣି ॥
ଜନନୀ ବଦନ ଚାହିଁ ବେନି କର ଯୋଡ଼ି ।
କହେ ସୁ ପ୍ରମୋଦ ବାକ୍ୟ ମାତାପାଦେ ପଡ଼ି ॥

## ଧ୍ରୁବ ଉବାଚ

କହଇ ମଧୁର ବାଣୀ ଜନନୀ ଗୋ ଶୁଣ ।
ମୋତେ ତୁ ବାଳକ ପ୍ରାୟେ କେବେହେଁ ନ ମଣ ॥
ପବିତ୍ର ମନୁ ବଂଶରେ ଜନ୍ମ ଯେ ମୋହର ।

ଉତ୍ତାନପାଦର ବୀର୍ଯ୍ୟେ ତୋହର ଉଦର ॥
ତୁ ଯେ ବୋଲୁ ତପେ ସର୍ବ ସମ୍ପଦ କାରଣ ।
କହିବି ତୋହର ଆଗେ ସ୍ଥିର ମନେ ଶୁଣ ॥
ସଂସାର ଦୁର୍ଲ୍ଲଭ ପଦ ଯେବା ତପେ ପାଇ ।
ନିଗମ ଦୁର୍ଗମ ବନେ ସାଧିବଇଁ ମୁହିଁ ॥
ଏକମାତ୍ର ଆଜ୍ଞା ମୋତେ ଦିଅ ଶୁଦ୍ଧଚିତ୍ତେ ।
ଆଶୀର୍ବାଦ ଦିଅ ତପ ସାଧଇ ଯେମନ୍ତେ ॥
ଏମନ୍ତେ ନିଷ୍ଠୁର ବାଣୀ ଶୁଣି ପୁତ୍ରମୁଖେ ।
ସୁନୀତି କପୋଳେ କର ଦେଇ ମନ ଦୁଃଖେ ॥
ଏମନ୍ତ ଧ୍ରୁବର ବାଣୀ ଦୃଢ଼ ଶୁଣି ମାତା ।
ପୁତ୍ର ମୁଖ ଚାହିଁ ମନେ କଲା ଗୁରୁଚିନ୍ତା ॥
ବୋଲଇ ମୋହର ଗର୍ଭଜାତ ଏ କୁମର ।
ରାଜାର ଆତ୍ମା ସମ୍ଭୂତେ ତେଜେ ପରଖର ॥
କ୍ଷତ୍ରିୟ ସ୍ୱଭାବେ ବହେ ଦୁର୍ଗମ ଚରିତ ।
ତପବଳ ଶ୍ରବଣେ ଦ୍ରବିଲା ଅନ୍ତର୍ଗତ ॥
ତେଜ ବିରାଜଇ ଦେହେ ତପନ ପରାୟେ ।
ଅବଶ୍ୟ ଗମିବ ତପେ ଜାଣିଲି ନିଶ୍ଚୟେ ॥
ଏ କେବେହେଁ ନ ରହିବ ମୋହର ବଚନେ ।
ନ ଜାଣି ମୁଁ ଉପଦେଶ କହିଲି ଅଜ୍ଞାନେ ॥
ଏହାର ସୁନ୍ଦର ମୁଖ ନ ଦେଖି ସମ୍ମୁଖେ ।
ନିମିଷ କୋଟିଏ ଯୁଗ ହୋଇବ ପ୍ରତ୍ୟକ୍ଷେ ॥
କି ବୁଦ୍ଧି ଉପାୟ କରି କେମନ୍ତେ ରଖିବି ।
ଦୁର୍ଗମ ସଙ୍କଟୁ ଏବେ କେମନ୍ତେ ବଞ୍ଚିବି ॥
ଏମନ୍ତ ବିଚରି ସେ ପୁତ୍ରର ମୁଖ ଚାହିଁ ।
କହଇ ସୁନୀତି ମନେ ଦୁଃଖେ ଖେଦ ବହି ॥
ଶୁଣ ପୁତ୍ର ସାବଧାନେ ମୋହର ବଚନ ।
କେବଳ ଅଟୁ ତୁ ପୁତ୍ର ରାଜାର ନନ୍ଦନ ॥
ତୋତେ ଆଜ୍ଞା ଦେବାରେ ମୋହର ଶକ୍ତି ନାହିଁ ।
ତୁ ତ ସପ୍ତବର୍ଷ ସୁକୁମାର ତୋର ଦେହୀ ।
ତଥାପି କହିବି ଶୁଣ ସାବଧାନ ଚିତ୍ତେ ॥
ରାଜାର ଭୁବନେ ଅଛି ସପତ୍ନୀ ଆୟତ୍ତେ ।
ତାର ବାକ୍ୟ ନିର୍ଘାତେ ମୋହର ଚିତ୍ତ ଦହେ ॥
ଗିରିରୁ ସ୍ରବିଲା ପ୍ରାୟ ଅଶ୍ରୁଧାରା ବହେ ।
ଏବେ ତୋର ବନଗତି ଶୁଣି ମୋର ମନ ॥

ଅଧିକେ ସ୍ରବଇ ଯେ ଲୋତକ ମୋ ନୟନ ।
ନଦୀପ୍ରାୟେ ବହେ ବାରି କେବେହେଁ ନ ରହେ ।
କହ ପୁତ୍ର ଏବେ ମୁଁ କି କରିବି ଉପାୟେ ॥
ସ୍ୱଭାବେ ମୁଁ ଏକପୁତ୍ରୀ ରାଜାର ଭବନେ ।
ପ୍ରାଣ ଦେହ ଧରଇ ତୋହର ଦରଶନେ ॥
ମୋହର ତୁ ଅନ୍ଧଯଷ୍ଟି ତୋର ପଛେ ଥାଇ ।
ବାଡ଼ି ହସ୍ତୁ ଗଲେ ଅନ୍ଧ କେମନ୍ତେ ବଞ୍ଚଇ ॥
ପୁତ୍ରଜନ୍ମ ନୋହିଲା ମୋହର ମନେ ବ୍ୟଥା ।
ତୋର ପ୍ରାପ୍ତି ଅର୍ଥେ କେତେ ପୂଜିଲି ଦେବତା ॥
କୃଚ୍ଛ୍ର ଚନ୍ଦ୍ରାୟଣ ଉପାସିକ ବ୍ରତ କଲି ।
ସେ ତପ ସାଧାନ୍ତେ ପୁତ୍ର ତୋତେ ମୁଁ ପାଇଲି ॥
ତୋର ମୁଖ ଚନ୍ଦ୍ରୋଦୟ ଦେଖି ମୋର ମନ ।
ସମୁଦ୍ରେ ତରଙ୍ଗ ପ୍ରାୟ ଉଲ୍ଲୋଳ ନୟନ ॥
ଆନନ୍ଦେ ପୟ ଯେ ପୂରେ ମୋର ବେନି ସ୍ତନ ।
ଗଳିତ ହୁଅଇ ଦେଖି ତୋହର ବଦନ ॥
ତୋର ମୁଖ ନ ଦେଖି ମୋହର ଅଙ୍ଗ ତାପେ ।
ତକ୍ଷଣେ ଶୀତଳ ହୋଏ ମିଳିଲେ ସମୀପେ ॥
ମୋହର ହୃଦରେ ତୁ ନିଦ୍ରିତ ସ୍ତନ୍ୟପାନେ ।
ବସ୍ତ୍ର ଆରୋହିତ ଦୁଗ୍ଧ ବୋଧିତ ବଦନେ ॥
ତୋହର ଶୀତଳ ବାକ୍ୟ କର୍ଣ୍ଣେ ଶୁଭେ ଯେବେ ।
ସପତ୍ନୀର ବାକ୍ୟତାପ ହୃଦରେ ନ ବାଧେ ॥
ବିଳମ୍ବ ତୋହର ନିଦ୍ରା ଦେଖି ମୋର ଚିତ୍ତ ।
ପଦ୍ମେ ଯେହ୍ନେ ଚାହୁଁ ଥାଇ ସୂର୍ଯ୍ୟର ଉଦିତ ॥
ବାଳକଙ୍କ ସଙ୍ଗେ କ୍ରୀଡ଼ା କରିବାର ଅର୍ଥେ ।
ଗୃହରୁ ବାହାର ହୋଇ ମିଳୁ ଯେବେ ପଥେ ॥
ତୋହର ବିଳମ୍ବ ହୃଦେ ବେନି ସ୍ତନ ମୋର ।
ଉନ୍ମୁଖେ ଝରଇ ଯେହ୍ନେ ମେଘ ଜଳଧାର ॥
ତୁ ମୋର ତପସ୍ୟା ଅର୍ଥେ ଯେବେ ଯିବୁ ହଟେ ।
ମୋର ପଞ୍ଚପ୍ରାଣ ଯେ ମିଳିବ କଣ୍ଠତଟେ ॥
ଅତି ତାପେ ତାପିବି ଯେ ତୋହର ଗମନେ ।
ଏମନ୍ତ କୁମରମଣି ଜନନୀ ବଚନେ ॥
ବିଷ୍ଣୁର ପୟରେ ହୃଦେ କରି ନମସ୍କାର ।
ମଙ୍ଗଳ ମୁହୂର୍ତ୍ତେ ଧ୍ରୁବ ହୋଇଲା ବାହାର ॥
ଜନନୀ ମନ ଯେ ପୁତ୍ରର ପଛେ ଗଲା ।

ଚଳନ୍ତେ ରାଜାର ପୁରେ କେହି ନ ଦେଖିଲା ॥
ବାଳକ ବାଳଆଦିତ୍ୟ ପ୍ରାୟ ପଥେ ଯାନ୍ତେ ।
ଅନୁକୂଳ ପବନ ବହିଲା ଅକସ୍ମାତେ ॥
ପବନେ ଚଳିତ ବନଲତା ତରୁଗଣ ।
ହସ୍ତ ପ୍ରସାରିଲା ପ୍ରାୟ କରନ୍ତି କଲ୍ୟାଣ ॥
କାନନେ ପଶିଲେ ଧ୍ରୁବ ଗୋବିନ୍ଦ ସୁମରି ।
ଜନନୀ ଚରଣ ବେନି ହୃଦଗତେ ଧରି ॥
ଭୂମିକି ଅନାଇ ଯେ ଅନେକ ଦୂର ଗଲା ।
ଗହନ କାନନ ରାଜପଥ ନ ଜାଣିଲା ॥
ନ ଭକ୍ଷିଣ ତୃଷିତ ବାଧିତ ଦୁଃଖମନେ ।
ବୃକ୍ଷ ମୂଳେ ବସିଲା ଆଦିତ୍ୟ ଅବସାନେ ॥
ବାଳକ ଭାବଇ ମନେ ଦଶଦିଗ ଚାହିଁ ।
କାହାକୁ ପୁଛିବି ମୋର ସଙ୍ଗେ କେହିନାହିଁ ॥
ବେନି ଚକ୍ଷୁ ବୁଜି ସେ କୃଷ୍ଣଙ୍କୁ ସୁମରଇ ।
ବନଜନ୍ତୁ ଭୟେ ଧ୍ରୁବ ପୁଣିହିଁ ଅନାଇ ॥
ତାର ପୂର୍ବ ତପବଳେ ସେ ଘୋର କାନନେ ।
ସାୟଂକାଳେ ସମୀପେ ମିଳିଲେ ମୁନିମାନେ ॥
ପର୍ବତ କାନନେ ଦ୍ରୁମ ଜଳ ଅଗ୍ନି ପଥେ ।
ବାଳବୃଦ୍ଧ ବନିତା ଦୁର୍ବଳ ବ୍ୟାଧିଗ୍ରସ୍ତେ ॥
ପୂର୍ବଭାଗ୍ୟ ଥିଲେ ପ୍ରାଣୀ ଦୁସ୍ତରୁ ତରନ୍ତି ।
ଭାଗ୍ୟହୀନେ ଗୃହେ ଯତ୍ନ କରନ୍ତେ ମରନ୍ତି ॥
ଦେଖ ତାର ଭାଗ୍ୟବଳ ସପ୍ତଋଷି ଗଣେ ।
ସମୀପେ ମିଳିଲେ ଆସି ଭୟଙ୍କର ବନେ ॥
ରାଜାର କୁମର ଅବା କହ ବନବାସ ।
ଦୈବର ଘଟନ ଦେଖ ଧର୍ମର ବିଶ୍ୱାସ ॥
ଏଣୁ ନିଜ କର୍ମକୁ କରିବ ନମସ୍କାର ।
ଯାହାର ଉପରେ ନାହିଁ ପ୍ରଭୁ ଅଧିକାର ।
ଯାହାର ସେ ଶୁଭାଶୁଭ ପୁଣ୍ୟବଳ ଥାଇ ।
ମନେ ନ କଳ୍ପିଲେ ଅକସ୍ମାତେ ସେ ମିଳଇ ॥
ଭବିଷ୍ୟତେ ରଜ୍ଜୁବନ୍ଧେ କରି ଆକର୍ଷଣ ।
ନାନାସ୍ଥାନେ କରୁଥାଇ ଭବିଷ୍ୟ କାରଣ ॥
ଶରୀର ସମ୍ପଦ ଚିତ୍ତ ବିବିଧ ଚେଷ୍ଟିତ ।
ତେଜୋବଳ ଉଦ୍ୟମ ସେ ସହାୟ ପ୍ରମଥ ॥
ପୁଣ୍ୟବଳ ଥିଲେ ସେ ସମସ୍ତ ଫଳ ପାଇ ।
ପୂର୍ବେ ନ ଅର୍ଜିଲେ ଲାଭ ନ ପାଇଟି କାହିଁ ॥
ଚକ୍ଷୁ ମଳି ଚାହାନ୍ତେ ଦେଖିଲା ମୁନିଗଣ ।
ତେଜ ବିରାଜଇ ଯେହ୍ନେ ସୂର୍ଯ୍ୟର କିରଣ ॥
ଭାଗ୍ୟ ଜାତ ଆକ୍ରୋଶେ ମିଳିଲେ ସର୍ବମୁନି ।
ଲଲାଟେ ତିଳକ ଦଣ୍ଡପ୍ରଭା କରେ ଘେନି ॥
କୃଷ୍ଣାଜିନ ପରିଧାନ ପବିତ୍ର ଉତ୍ତରୀ ।
ଉନ୍ମିଳ ଲୋଚନେ ଅକ୍ଷସୂତ୍ର ଦଣ୍ଡଧାରୀ ॥
ଅକସ୍ମାତେ ମିଳିଲେ ଅଗାଧ କ୍ଷୀରନିଧି ।
ଆଦିଧାତା ଜାଣି ଜ୍ଞାନଗୁଣେ ଯେ ପ୍ରସିଦ୍ଧି ॥
ଅମୃତ ବଚନ କି ବଦନେ ବରଷନ୍ତି ।
କ୍ଷୀରନିଧି ମଧ୍ୟେ ହଂସ ପ୍ରାୟ ସେ ଦିଶନ୍ତି ॥
ଏମନ୍ତ ମୁନିଙ୍କି ଧ୍ରୁବ ସନ୍ନିଧିରେ ଦେଖି ।
ସଂଭ୍ରମ ଚିତ୍ତେ ଉଠିଲା ଆସନ ଉପେକ୍ଷି ॥
କପାଳେ କର ସଂପୁଟ ଦେଇ ଦୃଢ଼ମନେ ।
ମୁନିଙ୍କି ପ୍ରଣାମ କଲା ହରଷ ବଦନେ ॥
ଆନନ୍ଦେ ମୁନିଙ୍କ ପାଦେ ଧ୍ରୁବ କରଯୋଡ଼ି ।
କହଇ କୋମଳ ବାଣୀ ବିନୟେ ଆଦରି ॥
ଉତ୍ତାନପାଦ ବୀର୍ଯ୍ୟରେ ସୁନୀତି ଉଦରେ ।
ଶରୀର ବହିଲି ମୁହିଁ ଏ ଘୋର ସଂସାରେ ॥
ଧ୍ରୁବ ନାମ ବୋଲାଇ ଅଧ୍ରୁବ ନାମ ମୋର ।
ନିର୍ମଳ ମାନସେ ମୁହିଁ ମନ୍ଦିରୁ ବାହାର ॥
ଅନାଥ ହୋଇ ମିଳିଲି ଏ ଘୋର କାନନେ ।
ସନାଥ ହୋଇଲି ଏବେ ତୁମ୍ଭ ଦରଶନେ ॥
ନିରାଶ ଶରୀର ମୋର ଏଣେ କାର୍ଯ୍ୟ ନାହିଁ ।
ବଞ୍ଚିତ ହୋଇଲି ନୃପ ସିଂହାସନେ ମୁହିଁ ॥
ପୂର୍ବେ କୋଟିଜନ୍ମେ ମୁଁ ନ କଲି ତପରାଶି ।
ଏବେ କଲି ଚିତ୍ତ ନୃପ ସିଂହାସନେ ବସି ॥
ଏଣୁ ମୁଁ ନିରାଶ ଚିତ୍ତେ ପଶିଲି ବନସ୍ତେ ।
ସ୍ଥିରଭାବେ ମନ ମୋ ନ ରହେ ଅନ୍ତର୍ଗତେ ॥
ଏମନ୍ତ ଧ୍ରୁବର ବାଣୀ ଶୁଣି ମୁନିଗଣେ ।
ତାର ମୁଖ ଚାହିଁ ସେ କହନ୍ତି ଜଣେ ଜଣେ ॥
ସ୍ୱଭାବେ ମଧୁରାକୃତି ଦେଖି ତା ବଦନ ।
ସୁଧାରୁ ଅଧିକ କହେ ମଧୁର ବଚନ ॥
ଅତି ଦୟାଚିତ୍ତେ ବସି ଧ୍ରୁବର ସମୀପେ ।

ଦୟା ଚିତ୍ତେ ମୁନିଏ ବୋଲନ୍ତି ଏକେ ଏକେ ॥

**ଋଷିଗଣ ଉବାଚ**

ଆହେ ବାଳ ବିଶାଳକ୍ଷ ମହାରାଜ ସୁତ ।
ବିଚାରି ନ ପାରିଲୁ ତୋହର ଅନ୍ତର୍ଗତ ॥
ନିବେଦନ କାରଣ ଆମ୍ଭର ଆଗେ କହ ।
ତୋର ବାକ୍ୟେ ଆମ୍ଭଙ୍କୁହିଁ ଲାଗିଲା ସନ୍ଦେହ ॥
ସ୍ୱଭାବେ ବାଳକ ତୋର ଅର୍ଥ ଚିନ୍ତା ନାହିଁ ।
ରାଜପୁରେ ଜନନୀର ସଙ୍ଗେ ଥାଉ ତୁହି ॥
ଆଧିବ୍ୟାଧି ନ ଦେଖି ତ ତୋହର ଶରୀରେ ।
ନିବେଦ୍ୟ କାରଣ କହ ଆମ୍ଭର ଆଗରେ ॥
ଯୁବା କାଳେ ଭୋଗ ଯେବେ ନ ପାଆନ୍ତି ନରେ ।
ସ୍ୱଭାବେ ବୈରାଗ୍ୟ ଜନମ ହୁଅଇ ଶରୀରେ ॥
ସପ୍ତଦ୍ୱୀପ ମଧରେ ତୁ କୁମର ସ୍ୱଭାବେ ।
କି କାରଣେ କାନନେ ପଶିଲୁ ବାଳଭାବେ ॥
ଯୁବା ନୋହୁ ବୃଦ୍ଧ ନୋହୁ ବ୍ୟାଧି ଦେହେ ନାହିଁ ।
ବାଳକାଳେ ଅରଣ୍ୟେ ପଶିଲୁ କାହିଁପାଇଁ ॥
ଏମନ୍ତ ପ୍ରକାରେ ଶୁଣି ମୁନିଙ୍କ ବଚନ ।
ଗଦଗଦ ବାକ୍ୟ କହେ ନୃପତି ନନ୍ଦନ ॥
ଶୁଣ ହେ ସକଳ ବ୍ରହ୍ମମୁନିଗଣ ଧୀରେ ।
ନିବେଦ୍ୟ କାରଣ କହେ ତୁମ୍ଭର ଛାମୁରେ ॥
ରାଜସେବା ଅର୍ଥେ ମୋତେ ଜନନୀ ପେଷିଲା ।
ମୋର ଧାତ୍ରୀ ପିତ୍ରା ଆଗେ ନେଇ ବସାଇଲା ॥
ପିତାଙ୍କ ଚରଣେ ମୁହିଁ ନମସ୍କାର କରି ।
ଉଭା ହୋଇଅଛି ମୁଁ ଧାତ୍ରୀର ବସ୍ତ୍ର ଧରି ॥
ମୋର ଭାଇ ଉତ୍ତମକୁ ଦେଖି ପିତା କୋଳେ ।
ମୁହିଁ ବସିବାକୁ ଯାଇ ଧରିଲି ଅଞ୍ଚଳେ ॥
ତାହା ଦେଖିଣ ସୁରୁଚି ମୋ ମାତା ସପତ୍ନୀ ।
ଅନେକ ଭର୍ତ୍ସନା କଲା ସଉତୁଣୀ ଘେନି ॥
ଆପଣା ପୁତ୍ରକୁ କଲା ଉତ୍ତମ ସ୍ୱଭାବେ ।
ଅନେକ ନିନ୍ଦିଲା ମୋତେ ନିନ୍ଦିତ ପ୍ରସ୍ତାବେ ॥
ଅଭାଗିନୀ ଗର୍ଭେ ହେଲା ଜନମ ତୋହର ।
ଦେଖ ଅତି ଭାଗ୍ୟବନ୍ତ ମୋହର କୁମର ॥
ଏ ଗର୍ଭେ ଜନ୍ମିଲେ ନୃପ ସିଂହାସନ ପାଇ ।
ମୋର ଗର୍ଭେ କିମ୍ପା ଜନ୍ମ ନ ଲଭିଲୁ ତୁହି ॥
ତୋହର ମାତାର ପୂର୍ବେ କିଛି ପୁଣ୍ୟ ନାହିଁ ।
ସେ ଗର୍ଭେ ଜନ୍ମିଲେ ସୁଖ ଲଭିବୁ ତୁ କାହିଁ ॥
ଦୁର୍ଭାଗୀର ପୁତ୍ରହୋଇ ନୃପ ସିଂହାସନେ ।
ତୋର ପୁଣ୍ୟ ନାହିଁ ଏବେ ବସିବୁ କେସନେ ॥
ଏମନ୍ତ ପ୍ରକାରେ ମୋର ମାତା ନିନ୍ଦା କଲା ॥
ଧିକ ଧିକ ଜନ୍ମବୋଲି ବହୁ ଝିଙ୍ଗାସିଲା ॥
ମୁଁ କାନ୍ଦି କହିଲି ନିଜ ଜନନୀ ଅଗ୍ରତେ ।
ତପ କରିବାକୁ ମାତା ଆଜ୍ଞା ଦେଲେ ମୋତେ ॥
ବୋଇଲେ ସଂସାରେ ସାର ତପସ୍ୟା କରିଣ ।
ଉଚ୍ଚ ନୀଚ ମଧ୍ୟେ ଦେଖ ସଂସାର ଧାରଣ ॥
ନୃପ ସିଂହାସନେ ଯେବେ ବାଞ୍ଛା ଅତି ତୋର ।
ଏବେ ନରଦେହେ ପୁତ୍ର ତପ ସିଦ୍ଧ କର ॥
ଏମନ୍ତ ଜନନୀ ମୁଖୁଁ ଉପଦେଶ ପାଇ ।
ତପସଧେ ଘୋରବନେ ପ୍ରବେଶ ହେଲଇଁ ॥
ନିବେଦନ କାରଣ କହିଲି ତୁମ୍ଭ ଆଗେ ।
ପଶି ବନେ ଭାଳଇ ମୁଁ ବାଳକ ସ୍ୱଭାବେ ॥
ଏମନ୍ତ ଧ୍ରୁବର ବାକ୍ୟ ମୁନିଗଣେ ଶୁଣି ।
ଅନ୍ୟୋନ୍ୟରେ ଚାହିଁ ସେ କହନ୍ତି ମନେ ଗୁଣି ॥
ଦେଖ ଏ କ୍ଷତ୍ରିୟ ତେଜ ସଂସାରେ ଦୁସ୍ତର ।
ପୁଣି ଧ୍ରୁବ ମୁଖ ଚାହିଁ କହନ୍ତି ମଧୁର ॥
ଆମ୍ଭର କି ସାଧ କର୍ମ ତୋର ଉପକାର ।
ନିର୍ଣ୍ଣୟ କରିଣ କହ ଆମ୍ଭର ଆଗର ॥
ତୋର ମନରଥ ଆମ୍ଭେ ଜାଣିବୁ କେମନ୍ତେ ।
ଭ୍ରାନ୍ତି ଛାଡ଼ି କରି କହ ଆମ୍ଭର ଅଗ୍ରତେ ।
ଶୁଣିମା ଭୋ ମୁନିଜନେ ମୋର ମନୋରଥ ।
ପିତାର ଦୁର୍ଲ୍ଲଭ ପୁତ୍ର ଉତ୍ତମ ମୋ ଭ୍ରାତ ॥
ପିତାର ସମୀପେ ବସେ ନୃପ ସିଂହାସନେ ।
ତାହାକୁ ମୋହର କିଛି ଆନ ନାହିଁ ମନେ ॥
ତୁମ୍ଭେ ମୋତେ ସାହା ହୁଅ ଏ ଘୋର କାନନେ ।
ଉପଦେଶ କହ ମୁନି ନିସ୍ତରେ ଯେସନେ ॥
ଶରୀର ବାଳକ ମୋର ବୁଦ୍ଧି ବାଳ ନୁହେଁ ।
କହିଲି ତୁମ୍ଭର ଆଗେ ଚିତ୍ତର ନିର୍ଣ୍ଣୟେ ॥
ମୋର ମନ କହେ ତୁମ୍ଭେ ଶୁଣ ମୁନିଗଣେ ।
ଯେବେ ଅହଙ୍କାରେ ମୁଁ ପଶିଲି ଘୋରବନେ ॥

ଯେ ସ୍ଥାନକୁ ପୂର୍ବେ ତପେ କେହି ଲଭି ନାହିଁ ।
ଇନ୍ଦ୍ର ଆଦି ଦେବତାଙ୍କୁ ଗୋଚର ନୁହଇ ॥
ତ୍ରିଲୋକ ଉପରେ ସର୍ବ ବନ୍ଦିତ ଯେ ସ୍ଥାନ ।
ତହିଁ ବସିବି ନିଶ୍ଚିନ୍ତେ କଳ୍ପଇ ମୋ ମନ ॥
ମୋର ପିତୃ ପିତାମହ ଯାହା ନ ପାଇଲେ ।
କଳ୍ପ କଳାନ୍ତରେ ଯାହା ନ ପାଇବେ ଭଲେ ॥
ସେ ଭୁବନେ ଯେଉଁଭାବେ ବସିବଇଁ ମୁହିଁ ।
ତହିଁର ଉପାୟ ମୋତେ କହ ଭାବ ବହି ॥
ଧନ ରାଜ୍ୟଭୋଗ ମୋର ପ୍ରୟୋଜନ ନାହିଁ ।
ଏତେ କହି ମୁନିଙ୍କ ଚରଣେ ପ୍ରଣମଇଁ ॥
ଧ୍ରୁବର ବଚନ ଶୁଣି ସର୍ବ ମୁନିଗଣେ ।
ଅନ୍ୟୋନ୍ୟରେ ମିଳି ସେ କହନ୍ତି ତୋଷମନେ ॥

## ମରୀଚି ଉବାଚ

ଶୁଣ ହୋ ନୃପନନ୍ଦନ କହୁଁ ତୋର ଆଗେ ।
ଯେ ସର୍ବବେଦ ପୁରାଣ ଶାସ୍ତ୍ର ଅନୁଭବେ ॥
ବିଷ୍ଣୁର ଚରଣେ ସେବା ଯେ କରେ ନିଶ୍ଚୟେ ।
ଇହ ପରଲୋକେ ସେ ବାଞ୍ଛିତ ଫଳ ପାଏ ॥
ଅନ୍ୟ ଦେବଙ୍କର ବର ଅନୁଭବେ ସରେ ।
ବିଷ୍ଣୁର ପ୍ରସନ୍ନେ ଭୋଗ ଭୁଞ୍ଜେ ନିରନ୍ତରେ ॥

## ଅତ୍ରି ଉବାଚ

ଅତ୍ରି କହେ ଶୁଣ ବାବୁ ସୁନୀତିକୁମର ।
ନାରାୟଣ ସନ୍ତୋଷେ ନିର୍ମଳ ତପ କର ॥
ସେ ପରମ ପୁରୁଷ ଯାହାକୁ ତୋଷ ହୋଇ ।
ମନର ବାଞ୍ଛାରୁ ସେ ଅଧିକେ ଫଳ ପାଇଁ ॥
ଅକ୍ଷୟ ସ୍ଥାନରେ ତୁ ହୋ ପାଅ ଅଧିକାର ।
ବିଘ୍ନକରି ନ ପାରନ୍ତି ଶିବ ସିଦ୍ଧ ସୁର ॥
ଏ ସତ୍ୟ ବଚନ ମୋର କର ହରି ଧ୍ୟାନ ।
ଅଳ୍ପଦିନେ ଲଭିବୁ ଅକ୍ଷୟ ଦିବ୍ୟ ସ୍ଥାନ ॥

## ଅଙ୍ଗିରା ଉବାଚ

ଅଙ୍ଗିରା କହନ୍ତି ଶୁଣ ନୃପତି କୁମର ।
ଭାବେଣ ଗୋବିନ୍ଦଙ୍କ ଚରଣେ ଆଶ୍ରେ କର ॥
ବିଶ୍ୱ ବାହ୍ୟାଭ୍ୟନ୍ତରେ ଯାହାର ନିବାସ ।
ଆତ୍ମା ରୂପେ ସର୍ବଭୂତେ ଯାହାର ଆବାସ ॥
ଅଗ୍ରସ୍ଥାନେ ବସିବାକୁ ଇଚ୍ଛା ଯେବେ ତୋର ।
ସର୍ବଭାବେ ବିଷ୍ଣୁର ଚରଣେ ଆଶ୍ରେ କର ॥

## ପୁଲହ ଉବାଚ

ପରଂବ୍ରହ୍ମ ପରଂଧାମ ପରାପର ନାହିଁ ।
ବିଶ୍ୱ ବାହ୍ୟ ଅଭ୍ୟନ୍ତରେ ଯାର ବିଶ୍ୱଦେହୀ ॥
ସେ ହରି ଚରଣେ ଆଶ୍ରେ କର ଦୃଢ଼ଚିତ୍ତେ ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ସ୍ଥାନ ଲଭିବୁ ଯେମନ୍ତେ ॥

## କ୍ରତୁ ଉବାଚ

କ୍ରତୁ କହେ ଶୁଣ ବୀର ମୋହର ବଚନ ।
ଯେ ଯଜ୍ଞ ପୁରୁଷ ଭୁଞ୍ଜେ ଏ ତିନି ଭୁବନ ॥
ତାହାର ପ୍ରସନ୍ନେ ଯେ ଦୁର୍ଲ୍ଲଭ ଲଭେ ପ୍ରାଣୀ ।
ମୁଁ ଏହା ଜାଣଇ ସର୍ବଶାସ୍ତ୍ର ପରିମାଣି ॥

## ପୌଲସ୍ତ୍ୟ ଉବାଚ

ପୌଲସ୍ତ୍ୟ କହନ୍ତି ଧ୍ରୁବ ଶୁଣ ଏକଚିତ୍ତେ ।
ଇନ୍ଦ୍ରାଦି ଦୁର୍ଲ୍ଲଭ ସ୍ଥାନ ଲଭିବୁ ଯେମନ୍ତେ ॥
ଘୋର ତପେ ବିଷ୍ଣୁର ଚରଣେ ଆଶ୍ରେ କର ।
ଦୁର୍ଲ୍ଲଭ ଆସନେ ବସି ଭୁଞ୍ଜ ଭୋଗ ସାର ॥

## ବଶିଷ୍ଠ ଉବାଚ

ବଶିଷ୍ଠ କହନ୍ତି ଶୁଣ ନୃପତି ନନ୍ଦନ ।
ତପୋବନେ ବାସୁଦେବେ କର ଦୃଢ଼ ଧ୍ୟାନ ॥
ପରମ କୈବଲ୍ୟଦାତା ପ୍ରଭୁ ଚକ୍ରଧର ।
ତାହାର ପ୍ରସନ୍ନେ କି ଦୁର୍ଲ୍ଲଭ ଅଗୋଚର ॥

## ଧ୍ରୁବ ଉବାଚ

ଶୁଣି ବୈନିକର ଧ୍ରୁବ ଶିରେ ଦେଇ ତୋଷେ ।
ପୁନଃ ପୁନଃ ପ୍ରଣମିଲା ଭକ୍ତିର ବିଶ୍ୱାସେ ॥
ତୁମ୍ଭ ଉପଦେଶେ ଯେବେ ହରିଙ୍କୁ ଭଜିବି ।
ଉପାୟ କହିବା ମୋତେ କେମନ୍ତେ ପାଇବି ॥
ସାଂଖ୍ୟଯୋଗେ କିବା ଜପ ତପ ମନ୍ତ୍ର ଧ୍ୟାନେ ।
ପ୍ରାଣାୟାମ ବଳେ କିବା ନିଶ୍ଚଳ ଆସନେ ॥
ଯେମନ୍ତେ ପାଇବି ଅଳ୍ପ ଦିନେ ତପ କରି ।
ସ୍ୱଭାବେ ବାଳକ ମୁହିଁ ଦୁଃଖୀ ବ୍ରହ୍ମଚାରୀ ॥
ଯେ ଆରାଧନେ ଲଭିବି ହରିଙ୍କ ଚରଣ ।
ପ୍ରସନ୍ନ ବଦନେ ମୋତେ କହ ମୁନିଗଣ ॥
ଋଷିଗଣ ଏମନ୍ତ ବାଳକ ବାକ୍ୟ ଶୁଣି ।

ସପ୍ତ ଋଷିଗଣ ଏକଚିତ୍ତେ ପରିମାଣି ॥

## ଋଷିଗଣ ଉବାଚ

କହନ୍ତି ହେ ଧ୍ରୁବ ଶୁଣ ନିର୍ବାଣ ପ୍ରକାର ।
ଯେଉଁ ଆରାଧନେ ଭବୁଁ ନିସ୍ତରନ୍ତି ନର ॥
ପ୍ରତ୍ୟାହାର ବିଷୟ ବଳେ ସେ ଇନ୍ଦ୍ରିଗଣ ।
ବାହାର ଭିତରେ ମନେ କରନ୍ତି ଗମନ ॥
ଇନ୍ଦ୍ରିଙ୍କ ବିଷୟ ମନ ନିଶ୍ଚଳେ ନିରୋଧି ।
ଗୁରୁବାକ୍ୟ ସାଧନ ବିଧାନ ଏ ପ୍ରସିଦ୍ଧି ॥
ଜାଗ୍ରତ ସ୍ୱପ୍ନ ମଧ୍ୟେ ତୁରୀୟ ଭୂମିସ୍ଥାନେ ॥
ପଞ୍ଚପ୍ରାଣ ନିରୋଧନ କର ତତ୍ତ୍ୱଜ୍ଞାନ ।
ବାହ୍ୟ ଅନ୍ତେ ଜଳଘଟେ ଗଗନ ଯେସନେ ।
ସେହି ଭାବେ ସର୍ବ ଘଟେ ଦେଖି ଦିବ୍ୟଜ୍ଞାନେ ॥
ନାଭିଚକ୍ର ଊର୍ଦ୍ଧ୍ୱେ ଦେଖ ଦଶହିଁ ଅଙ୍ଗୁଳେ ।
ପୀତବର୍ଣ୍ଣ ପ୍ରାୟେ ଦିଶେ ହୃଦୟ କମଳେ ॥
ଦ୍ୱାଦଶ ପାଖୁଡ଼ା ମଧ୍ୟେ ଷଡ଼ ଯେ କେଶର ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ଦିଶେ ମଣ୍ଡଳ ଆକାର ॥
ତାର ମଧ୍ୟେ ଧ୍ୟାନକରି ଚିନ୍ତ ଦିବ୍ୟରୂପ ।
ସର୍ବ ଭୂତାଶ୍ରୟ ଯେ ପୁରୁଷୋତ୍ତମ କଳ୍ପ ॥
ସେହ ସ୍ଥାନେ ବସ ତୁ ଆସନ ଦୃଢ଼ କରି ।
ନାରାୟଣ ମନ୍ତ୍ର ଯେ ଜପ ତୁ ହୃଦେ ଧରି ॥
ଏହି ମନ୍ତ୍ର ପୂର୍ବେ ଜପି ସ୍ୱାୟମ୍ଭୁବ ମନୁ ।
ସୃଷ୍ଟି ହେତୁ ସାଧ କଲା ବ୍ରହ୍ମା ନିଜ ତନୁ ॥
ସାଧୁଜନେ ଏହିଭାବେ କର ଦୃଢ଼ ଚିତ୍ତ ।
ସଂସାର ନିସ୍ତାରେ କହେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବ ଚରିତେ ନାମା ଅଷ୍ଟୋମଽଧ୍ୟାୟଃ ।*

## ନବମ ଅଧ୍ୟାୟ

## ସୂତ ଉବାଚ

ଘୋରବନେ ରାତ୍ର କାଳେ ଯାନ୍ତି ମୁନିଜନେ ।
ଅନ୍ତରୀକ୍ଷ ବାଣୀ ତାଙ୍କୁ ଶୁଭିଲା ଗଗନେ ॥
ମଧୁବନ କାଳିନ୍ଦୀ ଦକ୍ଷିଣ ତଟେ ରହି ।
ନିଶ୍ଚଳ ଆସନେ ତପ ସାଧକର ତୁହି ॥
ଅନ୍ତରୀକ୍ଷ ବଚନ ଶୁଣିଲା ଯହୁଁ ଚିତ୍ତେ ।
ତତକ୍ଷଣେ ନମିଲା ସେ ମୁନିଙ୍କ ପାଦଗତେ ॥
କୃତ କୃତ୍ୟ ହୋଇ ସେ ବାଳକ ଅରକ୍ଷିତ ।
ସେ ବନୁ ଚଳିଲା ଦୃଢ଼ ଚିତ୍ତେ ଦୂର ପଥ ॥
ମନ ସଙ୍ଗ ବଳେ ଯେ ଯମୁନା ତଟେ ଯାଇ ।
ଅନ୍ତରୀକ୍ଷ ବାଣୀ ଚିନ୍ତେ ଗଗନକୁ ଚାହିଁ ॥
ମଧୁନାମେ ଦୈତ୍ୟ ଆଧିଷ୍ଠିତ ପୂର୍ବେ ଥିଲା ॥
ସେ କାରଣୁ ମଧୁବନ ନାମ ସେ ପାଇଲା ॥
ବିଷ୍ଣୁ ସମ ଧାମ ସେ ବୋଲାଇ ଯୁଗେ ଯୁଗେ ।
ତାର ପୁତ୍ର ଲବଣ ଯେ ଥିଲା ବନ ଭାଗେ ॥
ଶତ୍ରୁଘନ ରୂପେ ତାକୁ ମାରି ଚକ୍ରଧର ।
ଗ୍ରାମେ ବସାଇଲେ ନାମ ମଥୁରା ନଗର ॥
ସର୍ବପାପ ହରଇ ଯମୁନା ଜଳେ ଯହିଁ ।
ତାର ତୀରେ ବସିଲା ନିଶ୍ଚଳେ ଧ୍ରୁବ ଯାଇ ॥
ମୁନିଙ୍କର ଉପଦେଶ ସୁମରେ ନିଶ୍ଚଳେ ।
ଯମୁନାର ତୀରେ ସେ କଦମ୍ବ ତରୁତଳେ ॥
ନିଶ୍ଚଳ ଆସନେ ବସି ପ୍ରତ୍ୟାହାର କଲା ।
ହରି ଅନୁଗ୍ରହେ ମନ ନିଶ୍ଚଳେ ରହିଲା ॥
ଅଶେଷ ଦେବ ଈଶ୍ୱର ବିଷ୍ଣୁ ତା ହୃଦୟେ ।
ପ୍ରକାଶ ହୋଇଲେ ପୂର୍ବ ଭାଗ୍ୟର ଉଦୟେ ॥
ସର୍ବଭୂତ ଦେହେ ବସେ ଆକାଶରେ ପ୍ରାୟ ।
ସର୍ବଗତେ ସର୍ବଭାବେ ସର୍ବ ଜୀବମୟେ ॥
ଦ୍ୱାଦଶ ଅକ୍ଷର ମନ୍ତ୍ର ହୃଦରେ ସୁମରି ।
ବିଷ୍ଣୁର ଚରଣେ ଚିତ୍ତ ଅତି ଦୃଢ଼େ ଧରି ॥
ମନେ ବିଚାରିଲା ଏ ଆସନେ କାର୍ଯ୍ୟ ନାହିଁ ।
ଊର୍ଦ୍ଧ୍ୱ ମୁଖେ ଊର୍ଦ୍ଧ୍ୱ ବାହୁ ତପ ସାଧିବଇଁ ॥
ଏମନ୍ତ ବିଚରି ସେ ଆସନୁ ଉଠୁରିଲା ।
ଦକ୍ଷିଣ ଚରଣ ସେ ମେଦିନୀ ପୃଷ୍ଠେ ଦେଲା ॥
ସମସ୍ତ ଧରିତ୍ରୀ କମ୍ପେ ଧ୍ରୁବ ପାଦଭରେ ।
ବନଗିରି ଜଳଧି ସହିତେ ଯା ଶରୀରେ ॥
ବାମପାଦ ଭରେ ଊର୍ଦ୍ଧ୍ୱ ନମିଲା ଧରିଣୀ ।
ପୁଣି ଧ୍ରୁବ ଦ୍ୱିତୀୟ ଚରଣ ସ୍ଥାପେ ଆଣି ॥
ବାମପାଦ ଅଙ୍ଗୁଷ୍ଠି ଅଗ୍ରରେ ଭାରଦେଇ ।

ବାମ ଜାନୁ ଉପରେ ଦକ୍ଷିଣ ପାଦ ଥୋଇ ॥
ପାଦ ଅଙ୍ଗୁଷ୍ଠିରେ ଧ୍ରୁବ ନିଶ୍ଚଳେ ରହିଲା ।
ଧ୍ରୁବର ଚରଣ ଭାରେ ଅବନୀ କମ୍ପିଲା ॥
ପର୍ବତ ଆଦି ଯେ ବନ ଜଳଧି ସହିତେ ।
କମ୍ପଇ ଧରଣୀ ରମ୍ଭା ବୃକ୍ଷ ଯେହ୍ନେ ବାତେ ॥
ଦଶଦିଗ କମ୍ପିଲା କମ୍ପିଲେ ଦିଗପାଳେ ।
ବିଚାରିଲେ ଧ୍ରୁବର ତପସ୍ୟା ଭଙ୍ଗଫଳେ ॥
ତେବେ ନିଜ ଅଧିକାରେ ରହିବା ସକଳେ ।
ଯଦ୍ୟପି ଏହାର ତପ ରହିବ ନିଶ୍ଚଳେ ॥
ଚତୁର୍ଦ୍ଦଶ ଲୋକ ଯହିଁ ଏହାରେ କମ୍ପିଲେ ।
ଧ୍ରୁବ ତପ ଭଗ୍ନ ଯିବ କି ଉପାୟ କଲେ ॥
ମହାଘୋର ତପ କରୁ ସୁନୀତିର ବାଳେ ।
ଦେବଙ୍କର ମାନସ କମ୍ପିଲା ଅନ୍ତରାଳେ ॥
ଯମ ଆଦି ଦେବଗଣେ ପରମ ଆକୁଳେ ।
ଇନ୍ଦ୍ରର ସଙ୍ଗତେ ବସି ଭାଳିଲେ ସକଳେ ॥
ଏମନ୍ତ ବିଚାରି ଦେବ ରହିଲେ ଚକିତେ ।
ଧ୍ରୁବର ନିଶ୍ଚଳେ ତପ ବିଷ୍ଣୁ ପାଦଗତେ ॥
ପରଂବ୍ରହ୍ମ ଅନାମୟ ବାସୁଦେବ ଯନ୍ତ୍ରେ ।
ଆଗମ ନିଗମ ପଥ ଯଥା ତନ୍ତ୍ର ମନ୍ତ୍ରେ ॥
ବାସୁଦେବ ପ୍ରାୟ ସେ ଯେ ଜଗତ ଦେଖଇ ॥
ଉନ୍ମୀଳ ଲୋଚନେ ଧ୍ରୁବ ପରାଭବ ସହି ॥
ସର୍ବ ଘଟେ ସର୍ବଭାବେ ଦେଖେ ହରି ରୂପ ।
ସର୍ବଦିଗେ ଅନଳ ପବନ ସର୍ବ ଘଟ ॥
ବନ ଗିରି କନ୍ଦରେ ଯେତେକ ପଶୁଯୂଥ ।
ବରୁଣ ଭୁବନେ ଜଳଜନ୍ତୁ ଯେ ସମସ୍ତ ॥
ଅଶ୍ୱ ଗଜ ସହିତେ ରାଜନ ପୁରେ ଯେତେ ।
ବିଷ୍ଣୁ ସ୍ୱରୂପେ ରୂପ ଦେଖଇ ସମସ୍ତେ ॥
ପାତାଳେ ଅନନ୍ତ ରୂପ ଗଗନେ ଅନନ୍ତ ।
ଏକରୂପେ ରୂପଭେଦ କେ କରିବ ଅନ୍ତ ॥
ଜୀବଙ୍କର ଦେହେ ନିତ୍ୟେ ଯେ ଦେବ ବସନ୍ତି ।
ତାର ନିଜ ଦେହରେ ଦେବଙ୍କର ବସତି ॥
ବିଶ୍ୱବ୍ୟାପୀ ଧାତାର ଗୋଚର ଅର୍ଥେ ଯେହୁ ।
ଏଣୁ ବ୍ୟାପି ଅଛନ୍ତି ମହିମା କେହୁ କହୁ ॥
ଏହି ଅର୍ଥେ ଧନ ଯାର ବିଷ୍ଣୁ ଉଚ୍ଚାରନ୍ତି ।
ସର୍ବଭୂତେ ପୂରିଛନ୍ତି କେହି ନ ଜାଣନ୍ତି ॥
ସର୍ବଜନ୍ତୁ ହୃଦଗତେ ରବିପ୍ରାୟ ଦିଶେ ।
ଇନ୍ଦ୍ରିୟଙ୍କ ଈଶ୍ୱର ଯେ ହୃଷୀକେଶ ଘୋଷେ ॥
ଯାହାର ଯେ ଭକ୍ତଜନ ପ୍ରଳୟେ ନ ମିଶେ ।
ଏଣୁ ଏ ଅଚ୍ୟୁତ ନାମ ସର୍ବଦେବେ ଘୋଷେ ।
ଚରାଚର ବିଶ୍ୱଭାବ ହୋଇ ସେ ବିନାଶେ ।
ଏଣୁ ବିଶ୍ୱଭାବ ନାମ ସର୍ବ ଉପଦେଶ ।
ଧ୍ରୁବର ଲୋଚନ ବିଷ୍ଣୁ ପାଦେ ଲୀନ ଗଲା ।
କର୍ଣ୍ଣଯୁଗ ବିଷ୍ଣୁର ଶବଦେ ଆଶ୍ରେ କଲା ॥
ବଚନ ରହିଲା ବିଷ୍ଣୁ ଚରିତ ବର୍ଣ୍ଣନେ ।
ବିଷ୍ଣୁ ପାଦପଦ୍ମ ଗନ୍ଧ ନାନାରନ୍ଧ୍ର ଜାଣେ ॥
ହସ୍ତ ବେନି ସେ ଭାବେ ହୋଇଲେ ଅର୍ପିତ ।
ପାଦବେନି ଗୋବିନ୍ଦ ଭୁବନେ ଉପଗତ ॥
କର୍ମେନ୍ଦ୍ରିୟ ରସିଲା ପରମବ୍ରହ୍ମ ରସେ ।
ଶୀତ ଘର୍ମ ନ ଲାଗିଲା ବିଷ୍ଣୁ ଉପଦେଶେ ॥
ଶବ୍ଦ ସ୍ପର୍ଶ ରସ ରୂପ ଗନ୍ଧଆଦି ଯେତେ ।
ବିଷ୍ଣୁର ଚରଣେ ଲୀନ ହୋଇଲେ ସମସ୍ତେ ॥
ବାକ୍ୟ ପାଣି ପାଦ ଲିଙ୍ଗ ମୂଳାଧାର ଆଦି ।
ନିଶ୍ଚଳେ ରହିଲା ଧ୍ରୁବ ଯୋଗର ସନ୍ନିଧି ॥
ତାର ଘୋର ତପ ତେଜେ ସର୍ବତପ ଲୀନ ।
ଅଗ୍ନି ସୁଧାକର ବାୟୁ ଆକାଶ ତପନ ॥
ଧ୍ରୁବର ତପରେ ଧରା ହୁଏ ରସାଗତ ।
ତପ ଯଜ୍ଞ ଶରାସନେ ଉଦିତ ସମସ୍ତ ॥
ନିର୍ମଳ ଶୀତଳ ସ୍ୱାଦ ରସ ଯେ ବହନ୍ତି ।
ସୁଗୁପ୍ତେ ସମୀର ବହେ ଶବ୍ଦ ଦ୍ୱାରେ ଚିନ୍ତି ॥
ଯେତେ ରୂପ ଗୁଣ ଯେତେ ସୁନ୍ଦର ତ୍ରୈଲୋକ୍ୟେ ।
ସର୍ବ ଲୀନ ହୋଇଲେ ସୁନୀତି ପୁତ୍ର ପାଖେ ॥
ସମୀର ବହଇ ଯେ ଧ୍ରୁବର ଦେହେଁ ଲାଗି ।
ସେ ବାୟୁର ସ୍ପର୍ଶେ ସର୍ବଦିଗ ସୁଖଭାଗୀ ॥
ଅଶେଷ ଶବଦ ଘେନି ଗଗନ ନିଷ୍ଠଳେ ।
ଆଶ୍ରେକରି ରହିଲେ ଧ୍ରୁବର କର୍ଣ୍ଣମୂଳେ ॥
ଧ୍ରୁବ ତପ ଦେଖି ଯେ ପବନ ବିଚାରଇ ।
ମୋର ଲୋକ ତପବଳେ ସଂହରିବ ଏହି ॥
ଏହାର ତପସ୍ୟା ବଳେ ମୁହିଁ କ୍ଷମ ନୁହେଁ ।

ଏଣୁ ଏ ଧ୍ରୁବର ଅଙ୍ଗେ ଶୀତ ଉଷ୍ଣେ ବହେ ॥
ଅପସରାଗଣେ ଚାହିଁ ପାରିବୁ ସମାଧି ।
ଏହିପରି ଭାବନା ସେ କରନ୍ତି ଆରାଧି ॥
କାମ କ୍ରୋଧ ଅଛନ୍ତି ଯେ ଆମ୍ଭରି ସଙ୍ଗତେ ।
କେହି ନ ପାରିବେ ପଶି ଏ ବାଳକ ଚିତ୍ତେ ॥
ଏମନ୍ତେ ସମସ୍ତ ଦେବ ଇନ୍ଦ୍ର ମୁଖ ଚାହିଁ ।
କହନ୍ତି ସଂଭ୍ରମ ଚିତ୍ତେ ଶିରେ କର ଦେଇ ॥
କି ବୁଦ୍ଧି କରିବା ଏବେ ଶୁଣ ଦେବରାୟ ।
ଧ୍ରୁବର ତପସ୍ୟା ଭଗ୍ନେ କି ଅଛି ଉପାୟ ॥
ମୁହୂର୍ତ୍ତେ ରହିଲା ଇନ୍ଦ୍ର ଦେବ ବାକ୍ୟ ଶୁଣି ॥
ତପଭଗ୍ନ ନିମନ୍ତେ ଉପାୟ ମନେ ଗୁଣି ।
ବୋଇଲେ ସ୍ୱଭାବେ ଏ ବାଳକ ଦେହ ଧରେ ॥
ଭୟଙ୍କର ଭୂତଗଣ ଦେଖି ଅବା ଡରେ ।
ଭୟଙ୍କର ରୂପ ଦେଖି ବାଳକେ ଡରନ୍ତି ॥
ଅନ୍ୟ କିଛି ପ୍ରକାରେ ଏହାର ନାହିଁ ଭୀତି ।
ଅସୁରୀ ମାୟାରେ ଯେବେ ଭଗ୍ନ କରିପାର ॥
ନିଷ୍ଟିନ୍ତେ ଭୁଞ୍ଜିବ ତୁମ୍ଭେ ଯେଝା ଅଧିକାର ।
ଅନ୍ୟଥା ଉପାୟ ନାହିଁ ସେ ତପର ଭଗ୍ନେ ।
ଧ୍ରୁବର ତପସ୍ୟା ଯେବେ ଭଗ୍ନ ପ୍ରୟୋଜନେ ॥
ଇନ୍ଦ୍ରର ସଙ୍ଗତେ ଦେବ ଏମନ୍ତ ବିଚାରି ।
ଭୂତଗଣ ଧାଇଁଲେ ଭୀଷଣ ରୂପ ଧରି ॥
ଭଲ୍ଲୁକ ଆକାର ଉଷ୍ଟ୍ର ଖଗ ରୂପ ଧରି ॥
ଇୟଗ୍ରୀବ ଶିରୋଃଧର ବଦନ ବିସ୍ତରି ।
ଭୂତ ଦଣ୍ଡାଘାତେ ତରୁ ଭଗ୍ନ ଯେ କରନ୍ତି ॥
ଅତି ବେଗବନ୍ତେ ଧ୍ରୁବ ନିକଟେ ମିଳନ୍ତି ।
ବୃଷଭ ଆକାରେ ତୀକ୍ଷ୍ଣ ଶୃଙ୍ଗେ ଭୂ ବିଦାରି ॥
ମନୋଜବେ ଧାମନ୍ତି ଉନ୍ମତ୍ତ ରୂପ ଧରି ॥
ସର୍ପରୂପ ଧରି ଫଣା ଉଭାରନ୍ତି ବଳେ ।
ବେନି କଳେ ବେନି ଜିହ୍ୱା ବିଜୁଳି ଚଞ୍ଚଳେ ॥
ଉଦ୍‌ଗାରନ୍ତି ବିଷକଣା ଜଳବୃଷ୍ଟି ପ୍ରାୟେ ।
ଏ ରୂପେ ଧ୍ରୁବ ସମୀପେ ଗମିଲେ ଥୋକାଏ ॥
ମହିଷ ଆକାରେ ଗିରି ଶୃଙ୍ଗ ଅଗ୍ରେ ଧରି ।
ଉପାଡ଼ନ୍ତି କୋପଭରେ ଲାଙ୍ଗୁଳ ଉଭାରି ॥
ଭୂତଗଣ ଧାମନ୍ତି ବିସ୍ତାରି ମହାକାୟ ।
ବେନିପାଦ ଦିଶଇ ଖର୍ଜ୍ଜୁର ବୃକ୍ଷ ପ୍ରାୟ ॥
ମୁଖ ବିସ୍ତାରନ୍ତି କିବା ଭକ୍ଷିବେ ଗଗନ ॥
ନାସା ଅଗ୍ରେ ବହଇ ଅଣଚାଶ ପବନ ।
ଭଲ୍ଲୁକ ଆକାରେ ପୁଣି ଫୁ ଫୁ ନାଦକରି ॥
ହୃଦୟ କମ୍ପନେ ଧ୍ରୁବ ନିକଟରେ ମିଳି ।
ଯକ୍ଷିଣୀ ମିଳିଲା ଯେ ହୁଙ୍କାର ନାଦ କରି ।
ରୋଦନ କରଇ ଶିଶୁ ବେନି ପାଦ ଧରି ॥
ଧ୍ରୁବର ନିକଟେ ଅତି କୋପେ ସେ ମିଳିଲା ।
ମୃଣାଳ ପ୍ରାୟେକ ଶିବମୁଣ୍ଡ ଚୋବାଇଲା ॥
ଅଧର ବିସ୍ତାରି ସେ ରୁଧିର ପାନକରି ।
ଧ୍ରୁବର ବଦନ ଚାହିଁ ବୋଲେ ମାୟାଧରୀ ॥
ସୁଲଳିତ ପ୍ରାଣ ତୋର ଶୁଣରେ କୁମର ।
ସନ୍ତୋଷେ ରୁଧିର ପାନ କରିବି ତୋହର ॥
ମୃଣାଳ ପ୍ରାୟେକ ଅସ୍ଥି କରିବି ଆହାର ।
ଦଣ୍ଡେ ଯେବେ ରହିପାରୁ ମୋହର ଆଗର ॥
ଏମନ୍ତ କହନ୍ତେ ପୁଣ ଗୁହ୍ୟକ ମିଳିଲେ ।
ଧ୍ରୁବ ଚାରିପାଖେ ଶୁଷ୍କ କାଷ୍ଠ ଗୁଣ୍ଡ କଲେ ॥
ଦାବାଗ୍ନି ସେ ଲଗାଇ ବିଞ୍ଚନ୍ତେ କରପତ୍ର ।
ବୃଷ୍ଟିପ୍ରାୟ ଅଗ୍ନିକଣା ପଡ଼େ ଧ୍ରୁବ ଗାତ୍ର ॥
ମଣ୍ଡପ ଅପୂର୍ଣ୍ଣାକାରେ ବୃକ୍ଷ ଉପାଡ଼ନ୍ତି ।
ଧ୍ରୁବର ସମୀପେ ରହି ଶବଦ ଗର୍ଜନ୍ତି ॥
ଗଗନେ ଖେପନ୍ତି ତରୁଲତା କୋଟି କୋଟି ।
ଅନ୍ୟାନ୍ୟ ବୃକ୍ଷ ଘେନିଣ ଧାମନ୍ତି ତରାଟି ॥
ଶତ ଶତ ଶୃଗାଳ ଶବଦ ଶୁଭେ ଶୂନ୍ୟେ ।
ଧ୍ରୁବ ପାଶେ ମିଳନ୍ତି ସେ କୁପିତ ବଦନେ ॥
ପୁଣି ଏକ ରାକ୍ଷସୀ ସୁନୀତି ରୂପ ଧରି ।
ଧ୍ରୁବର ସମୀପେ ବସେ ମାତୃମାୟା କରି ॥
ହା ହା ପୁତ୍ର ବୋଲି ବେନିକର ହୃଦେ ତାଡ଼ି ।
କେଶବାସ ଅସମ୍ଭାଳ ପୁଣ ପୁଣ ପଡ଼ି ॥
ବହୁ ମାୟା ବିନିର୍ମିତ ଚାଟୁବାକ୍ୟ କହେ ।
ଜନନୀ ବାଳକ ମଧ୍ୟେ କେହୁ ବା ତା ସହେ ॥
ଅତ୍ୟନ୍ତ କାରୁଣ୍ୟ ପୁତ୍ରସ୍ନେହେ ସେ ରୋଦନ ।
ପୁଣ ସ୍ଥିରକରି ଚାହେଁ ଧ୍ରୁବର ବଦନ ॥
ତୁହି ଏକପୁତ୍ର ମୋର ସଙ୍ଗେ କେହି ନାହିଁ ।

କେବଳ ତୋହର ଧ୍ୟାନେ ପ୍ରାଣ ମୁଁ ରଖଇ ॥
ତୁହି ମୋ ରକ୍ଷକ ତୋର ତହୁଁ ଆନ ନାହିଁ ।
ତୋର ବନ ଗମନେ ଅଜ୍ଞାନ ମୋର ଦେହୀ ॥
ତୋର ବିନୁ ମରଣ ନିକଟେ ମୋର ମିଳେ ।
କାଳସର୍ପ ପ୍ରାୟେ ନିତ୍ୟେ ନିତ୍ୟେ ଜାଳେ ॥
ତୋହର ଉଦ୍ଦେଶ୍ୟ ମୁଁ ଅନେକ ଗ୍ରାମ ପୁରେ ।
ଖୋଜି ନ ପାଇଲି ବଳା ଅନେକ ପ୍ରକାରେ ॥
ବନଗିରି ପାଟଣା ଅନେକ ପୁରେ ଖୋଜି ।
ପ୍ରାଣରକ୍ଷା କରଇ ଉଦକ ପୁତ୍ର ଭୁଞ୍ଜି ।
ଯେଉଁଦିନୁ ମୋର ପୁରୁ ହୋଇଲୁ ବାହାର ।
ନିତ୍ୟେ ଶବଦ ଉଚ୍ଛୁଳେ କଣ୍ଠେ ହାହାକାର ॥
ଯେତେ ଦିନ ତୋହର ବିହୁନେ ଥିଲି ମୁହିଁ ।
ସପତ୍ନୀର ବାଣୀ ମୁହିଁ ସହି ନ ପାରଇ ॥
ଦାବାଗ୍ନି ବନକୁ ଯେହ୍ନେ ଦହେ ଗ୍ରୀଷ୍ମ କାଳେ ।
ସପତ୍ନୀ ବଚନାନଳ ଦହେ ଅତି ବଳେ ॥
ନିଦ୍ରା ଉଜାଗର ମୁହିଁ ନ ଜାଣଇ କିଛି ।
ଶୟନ ଭୋଜନ ମାନ ନ କରଇ କିଛି ॥
ତପର ଯୋଗିନୀ ଯୋଗ ପ୍ରାୟେ କରି ଧ୍ୟାନ ।
ସ୍ୱପ୍ନରେ ହି ନ ଦେଖଇ ତୋହର ବଦନ ।
ତୋହର ବଦନ ମୁହିଁ ପ୍ରତିକ୍ଷଣେ ଦେଖି ॥
ତୋର ମୁଖ ଧ୍ୟାନେ ମୋର ସ୍ରବେ ବେନି ଆଖି ॥
ଅନେକ ପ୍ରକାରେ ମାତୃ ବଚନହିଁ ଶୁଣି ।
ସମାଧି ସଂଯୋଗେ ଧ୍ରୁବ ମନେ ମନେ ଗୁଣି ॥
ବିଚାରଇ ଜନନୀ ଏ ନୁହଇ ମୋହର ।
ସର୍ବଥା ଜାଣଇ ଏ ଅସୁରୀ ମାୟା ଘୋର ॥
ଏମନ୍ତ ବିଚାରି ମନେ ନିଶ୍ଚଳେ ରହିଲା ।
ରଖ ହେ ଗୋବିନ୍ଦ ବୋଲି ଶରଣ ପଶିଲା ॥
ଏମନ୍ତ ଅସୁରୀ ମାୟା ଇନ୍ଦ୍ରର ବଚନେ ॥
ଯେତେ ମାୟା ପ୍ରକାଶିଲେ ଧ୍ରୁବ ସନ୍ନିଧାନେ ॥
ଧ୍ରୁବ ତପଭଙ୍ଗେ କେହି ସମର୍ଥ ନୋହିଲେ ॥
ବିଷ୍ଣୁ ଚକ୍ର ତେଜ ଧ୍ରୁବ ନିକଟେ ଦେଖିଲେ ॥
ସକଳେ ଭାଜିଲେ ତେଜ ଦେଖି ଧ୍ରୁବ ଦେହେ ।
ନିଶି ଅନ୍ଧକାରେ ଯେହ୍ନେ ତପନ ଉଦୟେ ॥

ସର୍ବ ଭୂତବଳ ଧ୍ରୁବ ଚରଣେ ନମିଲେ ।
ବ୍ୟର୍ଥ ମନୋରଥେ ନିଜ ମନ୍ଦିରେ ଚଳିଲେ ॥
ଇନ୍ଦ୍ର ଆଦି ଦିଗପାଳେ ଭୂତବଳ ଭଗ୍ନେ ।
ପୁଣି ବିଚାରନ୍ତି ବସି ବିଘ୍ନ ଅନୁମାନେ ॥
ବିଚାରି ନ ପାରି ଦୁଃଖ ମନେ ଦେବଗଣେ ।
ଶରଣ ପଶିଲେ ଯାଇ ବ୍ରହ୍ମାଙ୍କ ଚରଣେ ॥
ପିତାମହ ଚରଣେ ନମିଲେ ଦେବଗଣ ।
ଦେଖି ବ୍ରହ୍ମା ପଚାରିଲେ ଆଗମ କାରଣ ॥
ଧାତାର ବଚନ ଶୁଣି ଶିରେ କରଯୋଡ଼ି ।
ଦେବଗଣେ କହନ୍ତି ଚରଣ ତଳେ ପଡ଼ି ॥
ଉତ୍ତାନପାଦର ପୁତ୍ର ଧ୍ରୁବ ତପ ତେଜେ ।
ଧରଣୀ କମ୍ପିଲା ଗିରି ସମୁଦ୍ର ସମାଜେ ॥
ଆମ୍ଭେ ରହି ନ ପାରିଲୁ ଗଗନ ମଣ୍ଡଳେ ।
ତାର ତପେ କମ୍ପିଲେ ସକଳ ଦିଗପାଳେ ॥
ତ୍ରୈଲୋକ୍ୟେ ସକଳେ କେହି ନ ପାରିଲୁ ରହି ॥
ନ ଜାଣୁ କାହାର ପଦ ମନେ ସେ ବାଞ୍ଛଇ ।
ଏମନ୍ତ ବଚନ ସେ ଦେବଙ୍କ ମୁଖୁ ଶୁଣି ॥
ଊର୍ଦ୍ଧ୍ୱ ମୁଖେ କ୍ଷଣେକ ରହିଲେ କୁଶପାଣି ॥
ଧ୍ରୁବ ତପ ଦେଖି କିମ୍ପା ଭାଳ ଦେବଗଣ ।
ହରଷେ କହନ୍ତି ଧ୍ରୁବ ତପର କାରଣ ॥

## ବ୍ରହ୍ମା ଉବାଚ

କହନ୍ତି ଚତୁରାନନ ଶୁଣ ଦେବଗଣେ ।
ଯେ ନିମନ୍ତେ ଧ୍ରୁବ ତପ କରେ ଘୋରବନେ ॥
ଘୋର ତପଫଳେ ତାକୁ ବିଷ୍ଣୁ ବର ଦେବେ ।
ତ୍ରୈଲୋକ୍ୟ ଉପରେ ଧ୍ରୁବ ପୁର ବସାଇବେ ॥
ତୁମ୍ଭ ଅଧିକାରେ ପ୍ରୟୋଜନ ନାହିଁ ତାର ।
ନିଶ୍ଚିନ୍ତେ ଗମନ କର ଦେବେ ନିଜ ପୁର ॥
ବିଷ୍ଣୁ ଭକ୍ତ ପ୍ରାଣୀ ବିଷ୍ଣୁ ପ୍ରାୟେ ଦେଖେ ସର୍ବ ।
କେବେହେଁ ତପର ବଳେ ନ କରେ ସେ ଗର୍ବ ॥
କେବେହେଁ ପରକୁ ପୀଡ଼ା ନ କରଇ ଚିତ୍ତେ ।
ନିରନ୍ତରେ ରହେ ସର୍ବ ଜନଙ୍କର ହିତେ ॥
ବିଷ୍ଣୁଙ୍କ ଆଦେଶେ ଧ୍ରୁବ ଆସନେ ବସିବ ।
ତୁମ୍ଭ ଦିଗପାଳ ପଦ ନିଶ୍ଚଳେ ସ୍ଥାପିବ ॥

ଏମନ୍ତେ ବ୍ରହ୍ମାର ବାକ୍ୟ ଶୁଣି ସାବଧାନେ ।
ନିଜ ପୁରେ ଦେବତାଏ ଗଲେ ତୋଷ ମନେ ॥
ଶୁକ କହେ ଶୁଣ ପରୀକ୍ଷିତ ନୃପମଣି ।
ଧ୍ରୁବ ତପେ ତାରେ ଦୟା କଲେ ଚକ୍ରପାଣି ॥
ଗରୁଡ଼ ଆସନେ ବସି ଚତୁର୍ଭୁଜ ରୂପେ ।
କାଳିନ୍ଦୀ ତଟେ ମିଳିଲେ ଧ୍ରୁବର ସମୀପେ ॥
ଅମୃତ ବରଷେ କିବା ମଧୁବନ ବନେ ।
ଧ୍ରୁବକୁ ଅନାଇ ହରି ପ୍ରସନ୍ନ ବଦନେ ॥
ତପ ତେଜ ଶାନ୍ତିକର ଅମୃତ ବଚନେ ।
ତପ ଶାନ୍ତି କଲା ଧ୍ରୁବ ବିଷ୍ଣୁ ଦରଶନେ ॥

### ଶ୍ରୀ ଭଗବାନ ଉବାଚ

ବର ମାଗ ପ୍ରସନ୍ନହୋଇଲି ମୁହିଁ ତୋତେ ।
ତପୀଗଣେ ଶ୍ରେଷ୍ଠ ତୁ ହୋଇଲୁ ସର୍ବମତେ ॥
ବାଳକ ବୟସ ତୋର ଅତି ସୁକୁମାର ।
କାହିଁ ଘୋରତପ ବନେ ସାଧନେ କଠୋର ॥
ଏମନ୍ତ ବଚନ ବିଷ୍ଣୁ ତହୁଁ ଶୁଣି ଧ୍ରୁବ ।
କଠୋର ସମାଧି ଛାଡ଼ି ବହେ ମୃଦୁଭାବ ॥
ଅମୃତ ସମାନେ ବିଷ୍ଣୁ ବଚନ ଶୁଣିଲା ।
ଉନ୍ମୀଳ ଲୋଚନେ ଉର୍ଦ୍ଧ୍ୱ ମୁଖେ ଅନାଇଲା ॥
ଇନ୍ଦ୍ର ନୀଳମଣି ପ୍ରାୟେ ଗଗନେ ପ୍ରକାଶେ ।
ନୀଳୋତ୍ପଳସମୂହ କି ଦିଶେ ଦଶଦିଶେ ॥
ଗଗନ ମଣ୍ଡଳେ ସରୋବର ପ୍ରାୟେ ହୋଇ ।
ଲକ୍ଷ୍ମୀଦେବୀ କଟାକ୍ଷେ କି ଜଗତେ ମୋହଇ ॥
ପୁତ୍ର ଦୁଃଖ ଦେଖି ଯେହ୍ନେ ପିତା ଦୟାକରେ ।
ଧ୍ରୁବକୁ ଧରିଲେ କୋଳେ ତୋଳି ବେନିକରେ ॥
ଧୂଳିରେ ଧୂସର ତନୁ ଝାଡ଼ି ସ୍ନେହଭରେ ।
ବାମ ଭୁଜେ ଆଲିଙ୍ଗନ ପୁଲକ ଶରୀରେ ॥
ବିଷ୍ଣୁକର ଲାଗି ଧ୍ରୁବ ତପଦୁଃଖ ଗଲା ।
କୋଟିଏ ବ୍ରହ୍ମାର ବୁଦ୍ଧି ହୃଦେ ପ୍ରକାଶିଲା ॥
ସେ ହରି ଚରଣ ଯୁଗ ହୃଦେ କରି ଧ୍ୟାନ ।
ବିପ୍ର ଜଗନ୍ନାଥ କହେ ଶୁଣ ହେ ସୁଜନ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବ ବିଷ୍ଣୁ ପ୍ରସଙ୍ଗେ ନାମ ନବୋମଽଧ୍ୟାୟଃ ।*

## ଦଶମ ଅଧ୍ୟାୟଃ

ବିଷ୍ଣୁର ଚରଣେ ଧ୍ରୁବ କରି ଧୀରମତି ।
ଶ୍ରୀକୃଷ୍ଣ ଚରଣେ ଚାହିଁ ଆରମ୍ଭିଲେ ସ୍ତୁତି ॥
ହିରଣ୍ମୟ ବ୍ରହ୍ମା ଯା ଶରୀରୁ ଜାତ ହୋଇ ।
ସର୍ବ ସୃଷ୍ଟି ବିଧାନ କରଇ ଆଜ୍ଞା ବହି ॥
ଏଣୁ ସେ ହିରଣ୍ୟରେତ ସୁହିରଣ୍ୟ ଦାତା ।
ନମସ୍ତେ ହିରଣ୍ୟରୂପ ସୃଷ୍ଟି ପିତାମାତା ॥
ହିରଣ୍ୟକ ରୂପ ତୋର ସୃଷ୍ଟି ସଂହାରଣେ ।
ମହାଭୂତଙ୍କର ଆତ୍ମା ବହୁ ତୁ କାରଣେ ॥
ଏଣୁ ଭୂତଙ୍କର ଗତି ପତି ରୂପ ହୋଇ ।
କ୍ଷିତିକୃତେ ବିଷ୍ଣୁ ଗର୍ଭ ବିଷ୍ଣୁ ଗର୍ବ ଦେହୀ ॥
ସୃଷ୍ଟି ସଂହାରଣେ କୃଷ୍ଣରୂପ ଯେ ତୋହର ।
ମହାଭାରା ସହି ବିଷ୍ଣୁ କୂର୍ମରୂପ ଧର ॥
ଅସୁର ଅରଣ୍ୟେ ମହା ଦାବାଗ୍ନି ସ୍ୱରୂପ ।
ଦୈତ୍ୟ ତମଛେଦନ କୁଠାର ବହୁ ଦର୍ପ ॥
ଶାରଙ୍ଗ ଧନୁ ଧରିଣ ରିପୁବଳ ନାଶି ।
କୌମୁଦକୀ ଗଦା ତେଜେ ଦୈତ୍ୟବଳ ଧ୍ୱଂସି ॥
ମହାଦୈତ୍ୟ ନାଶନେ ସେ ନନ୍ଦକ ଧାରଣ ।
ନମୋ ଲକ୍ଷ୍ମୀପତେ ଦୈତ୍ୟଙ୍କର ନିସୂଦନ ॥
ବାସୁଦେବ ନମସ୍ତୁଭ୍ୟଂ ଦେବକୀ ନନ୍ଦନ ।
ପ୍ରଦ୍ୟୁମ୍ନାଦି ଅନିରୁଦ୍ଧ ଅବ୍ୟକ୍ତ କାରଣ ॥
କଂସ କେଶୀ ଚାଣୂର ପୂତନା ଦର୍ପ ହାରୀ ।
ନିଗୁଢ଼ ବନ୍ଧନୁ ପିତାମାତାଙ୍କୁ ଉଦ୍ଧରି ॥
ଦାମୋଦର ହୃଷୀକେଶ ଗୋବିନ୍ଦ ଅଚ୍ୟୁତ ।
ହେ ମାଧବ ଅନନ୍ତ ଦୈତ୍ୟଙ୍କ ପ୍ରାଣହତ ॥
ନାରାୟଣ ନରକ ନାଶନ ପାପହାରୀ ।
କାମନାୟ ନମୋସ୍ତୁଭ୍ୟଂନମୋ ନରହରି ॥
ଅନନ୍ତାୟ ଅନନ୍ତଶୟନ ବନମାଳୀ ॥
ରୁକ୍ମିଣୀ ବଲ୍ଲଭ ରୁକ୍ମ ଗର୍ବ ହେଳେ ଦଳି ॥
ଶିଶୁପାଳ ପ୍ରାଣହତ ଅସୁର ଦଳନ ॥
ଦାନବାନ୍ତକ ଶ୍ରୀକୃଷ୍ଣ ଜୟ ନାରାୟଣ ॥
ମୁକୁନ୍ଦ ପରମାନନ୍ଦ ଜୟ ନନ୍ଦବାଳ ।
ନମସ୍ତେ ପୁଣ୍ଡରୀକାକ୍ଷ ଦନୁଜେନ୍ଦ୍ର କାଳ ॥
ନମନ୍ତେ ଗୋପାଳ ରୂପ ବେଣୁ ବାଦ୍ୟକାରୀ ॥

ରାମ ରଘୁନାଥ ଯେ ରାବଣ ପ୍ରାଣହାରୀ ।
ବଳେ ବଳଭଦ୍ର ନାମ ବଳରାମ ପ୍ରିୟ ॥
ବଳିଯଜ୍ଞ ଭଞ୍ଜନ ଯେ ଭକ୍ତ ଜନୋଦୟ ॥
ରଣପ୍ରିୟ ହିରଣ୍ୟକଶିପୁ ବିଦାରଣ ।
ନମୋ ବ୍ରାହ୍ମଣ୍ୟ ଦେବାୟ ରକ୍ଷ ଗୋ ବ୍ରାହ୍ମଣ ॥
ସତ୍ୟଯୁଗେ ବ୍ରହ୍ମରୂପ ଧରୁ ଅନ୍ତରୀକ୍ଷେ ।
ସକଳ ଜଗତ ଜୀବ ପାଳୁ ତୁ ପ୍ରତ୍ୟକ୍ଷେ ॥
ସହସ୍ର ଶିରସେ ନମୋ ସହସ୍ର ବଦନ ।
ସହସ୍ର ବାହୁ ନାସିକା ସହସ୍ର ଶ୍ରବଣ ॥
ବିଷ୍ଟୁର ଶ୍ରବସେ ନମୋ ଗରୁଡ଼ ବାହାନ ।
ବିଶ୍ୱକସେନ ନମୋ ଜଗନ୍ନାଥ ଜନାର୍ଦ୍ଦନ ॥
ତ୍ରିବିକ୍ରମ ସତ୍ୟ ନମୋନମଃ ସତ୍ୟପ୍ରିୟ ।
ଅନେକ ପ୍ରକାରେ ଧ୍ରୁବ କରେ ସ୍ତୁତିଚୟ ॥
ବହୁ ସ୍ତୁତିକରି ଧ୍ରୁବ ମଉନେ ରହିଲା ।
ନିଶ୍ଚଳେ ଗୋବିନ୍ଦ ପାଦେ ଚିତ୍ତ ସମର୍ପିଲା ॥
ଏମନ୍ତ ତା ଭକ୍ତିଭାବ ଗୋବିନ୍ଦ ଜାଣିଲେ ।
ଗରୁଡ଼ ଉତ୍ତୁରି ଧ୍ରୁବ ସମୀପେ ମିଳିଲେ ॥
ଧ୍ରୁବକୁ ଲଗାଇ ହୃଦେ କମଳା ରମଣ ।
ଜଳଦ ଗମ୍ଭୀର ବାକ୍ୟେ ପ୍ରଭୁ ନାରାୟଣ ॥

### ଶ୍ରୀଭଗବାନ ଉବାଚ

ଶୁଣ ହେ ବାଳକ ମୁଁ ଜାଣଇ ତୋର ମନ ।
ଘୋର ତପ କଲୁ ତୁ ରେ ଜନନୀ ବୋଲେଣ ॥
ତୋହର ମନୋବାଞ୍ଛା ତ ଜାଣଇ ମୁଁ ଭଲେ ।
ଧ୍ରୁବଲୋକେ ବସାଇବି ଜନନୀର ତୁଲେ ॥
ଧ୍ରୁବଲୋକେ ଅଧିକାର ତୋହର ହୋଇଲା ।
କୋଟି କଳ୍ପାନ୍ତରେ ଯାହା କେହି ନ ପାଇଲା ॥
ତୋର ପିତୃ ପିତାମହ ଅଗୋଚର ସ୍ଥାନ ।
ସେ ପଦକୁ ଭୁଞ୍ଜି ନିତ୍ୟେ ବସନ୍ତି ଆସନ ॥
ସ୍ୱର୍ଗଲୋକେ ଊର୍ଦ୍ଧ୍ୱ ଗତେ ମର୍ତ୍ତ୍ୟଲୋକ ତଳେ ।
ତ୍ରୈଲୋକ୍ୟ ପ୍ରଳୟ କାଳେ ନ ଦହେ ଅନଳେ ॥
ଶିଶୁମ୍ନା ଚକ୍ରରେ ବସ ଧ୍ରୁବ ଅଧିକାରେ ।
ଯେ ଚକ୍ର ଭ୍ରମରେ ଭ୍ରମେ ଶଶୀ ଦିବାକରେ ॥
ଗ୍ରହ ଋକ୍ଷ ଋଷି ଯୋଗୀ ଗଗନ ସହିତେ ।
ଧ୍ୟାନ ନିବନ୍ଧନେ ଛନ୍ତି ସମୀରଣ ଯନ୍ତ୍ରେ ॥

ସେହି ସ୍ଥାନେ ବସ ଗ୍ରହ ଚକ୍ରେ ତୁ ପ୍ରତ୍ୟକ୍ଷେ ।
ଉଚ୍ଚେ ରହି ମନୋରଥ ପୂର୍ଣ୍ଣ କଳ୍ପସଂଖ୍ୟେ ॥
ପୂର୍ବେ ମହାଦେବ ବରେ ସେ ସ୍ଥାନ ମୋହର ।
ମୁହିଁ ଦେଲି ଧ୍ରୁବ ତୁ ନିଶ୍ଚୟ ଭୋଗ କର ॥
ମନୁ ଯାହା ନ ପାଇଲା କେ ଅନ୍ୟ ମାନବେ ।
ଜନନୀ ସହିତେ ବାଳ ସୁଖ ଭୁଞ୍ଜ ଏବେ ॥
ପୂର୍ବେ ତୁହି ବ୍ରହ୍ମପୁତ୍ର ରାଜପୁତ୍ର ସଙ୍ଗେ ।
ମାତୃ ବୋଲ ଶୁଣି ଚିତ୍ତ କଳ୍ପି ଅଛୁ ଭୋଗେ ॥
ଏ ପୁଣ୍ୟ ସ୍ୱଭାବେ ରାଜକୁଳେ ହୋଇ ଜନ୍ମ ।
ଏବେ ତପବଳେ ଭୁଞ୍ଜ ସମ୍ପାଦିଲା କର୍ମ ॥
ଶୁଣ ଅବିହିତ ଚିତ୍ତେ ମୁଁ କହିଲି ତୋତେ ।
ତପସ୍ଥାନେ ରହି ସ୍ତୁତି କଲୁ ଯେତେ ମୋତେ ॥
ସର୍ବ ସ୍ତୋତ୍ରମାନଙ୍କର ରାଜା ଏ ପ୍ରତ୍ୟକ୍ଷେ ।
ଯେ ନର ଏ ସ୍ତୁତି କରେ ମୋହର ସମ୍ମୁଖେ ॥
ତ୍ରି ସନ୍ଧ୍ୟା ପଢ଼ନ୍ତି ଯେବା ଏହା ଇଷ୍ଟକରି ।
ତ୍ରିବିଧ ପାତକ ମୁଖୁ ବେଗେ ଯାନ୍ତି ତରି ॥
ତାହାର ଭୁବନୁ ଲକ୍ଷ୍ମୀ କେବେହେଁ ନ ତେଜେ ।
ଜନନୀ ବନ୍ଧୁ ବିଯୋଗ କେବେହେଁ ନ ଭଜେ ॥
ଏ ତୋହର ସ୍ତୁତି ପୁଣ୍ୟ ପାପ ବିନାଶିନୀ ।
ବ୍ରହ୍ମହତ୍ୟା ଦୋଷହରେ ମୋର ଆଜ୍ଞା ଘେନି ॥
ଶ୍ରଦ୍ଧାଯୁକ୍ତେ ମୋର ଭାବେ ନିତ୍ୟ ଯେବା ପଢ଼େ ।
ସୁଖେ ମୋହ ଜଳୁ ତରେ କେବେହେଁ ନ ବୁଡ଼େ ॥
ଏମନ୍ତ ପ୍ରସନ୍ନେ କହି ପ୍ରଭୁ ଚକ୍ରଧର ।
ସନ୍ତୋଷେ ଧ୍ରୁବକୁ ଚାହିଁ ଧରି ବେନିକର ॥
କହନ୍ତି ମନୁର ବଂଶେ ଜନ୍ମ ତୋ ଶରୀର ।
ନର ନାରାୟଣ ଦେବତାଙ୍କୁ ଅଗୋଚର ॥
ଏ ଶରୀର ଭୋଗେ ତୁ ଆତ୍ମାକୁ କର ଭୋଗ ।
ଆଧିବ୍ୟାଧି ବର୍ଜିତ ଜୀବ ତୁ ସତ୍ୟଯୁଗ ।
ଶରୀର ଅନ୍ତରେ ଧ୍ରୁବଲୋକେ ବସ ତୁହି ।
କଳ୍ପସଂଖ୍ୟା ପ୍ରମାଣେ ଜନନୀ ସଙ୍ଗେ ନେଇ ॥
ଏମନ୍ତ ଧ୍ରୁବକୁ ବର ଦେଇ ଜନାର୍ଦ୍ଦନ ॥
ଗରୁଡ଼ ବାହନେ ସେ ହୋଇଲେ ଅନ୍ତର୍ଦ୍ଧାନ ॥
ବିଷ୍ଣୁବର ପାଇ ସେ ଉତ୍ତାନପାଦ ବଳା ॥
ଦିବ୍ୟ ରୂପ ନିଜେ ଧରି ସଦନେ ଗମିଲା ॥

ଜନନୀ ଚରଣେ ସେବା କଲା ଅନୁକ୍ଷଣେ ।
ଅନୁଭବେ ଦୁଃଖଗଲା ଯେତେ ଥିଲା ମନେ ॥
ପିତାର ବଲ୍ଲଭ ଦିନେ ଦିନେ ସେ ବଢ଼ଇ ॥
ଧ୍ରୁବର ମହିମା ଅବା କେ ପାରିବ କହି ।
ଏମନ୍ତ ବିଦୁର ଆଗେ ମଇତ୍ରେୟ ମୁନି ।
କହିଲେ ଧ୍ରୁବର କଥା ହରିଭାବ ଘେନି ॥
ବିଷ୍ଣୁପଦୀ ତୀରେ ରହି ପରୀକ୍ଷିତ ଆଗେ ।
ଭାବଭକ୍ତି ଯୋଗେ ସେ କହିଲେ ଅନୁରାଗେ ।
ସାନନ୍ଦ ମନେ କହିଲେ ବ୍ୟାସଙ୍କର ଶିଷ୍ୟ ।
ସେ ଚରିତ କଥା ଯେ ପବିତ୍ର ପୁଣ୍ୟ ରସ ॥
ସାଧୁଜନ ହିତେ ମୁହିଁ କଲାଇଁ ପ୍ରକାଶ ॥
ଭଗବତ କହେ ବିପ୍ର ଜଗନ୍ନାଥ ଦାସ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବତପସ୍ୟାକରଣେ ଭଗବାନ ପ୍ରସନ୍ନେ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର ତୋଷମନେ । କୃଷ୍ଣ ସମେତେ ବୃନ୍ଦାବନେ ॥
ପ୍ରସନ୍ନେ କମଳା ରମଣ । ବୋଇଲେ ଧ୍ରୁବ ଏବେ ଶୁଣ ॥
ତୋ ଜନ୍ମ ସ୍ୱାୟମ୍ଭୁବ ଘରେ । ଉତ୍ତାନପାଦର ବୀର୍ଯ୍ୟରେ ॥
ଦେବେ ବାଞ୍ଛନ୍ତି ସ୍ୱର୍ଗେ ଯାହା । ତୁ ତା ଲଭିବୁ ପୁଣ୍ୟ ଦେହା ॥
ତୁ ଏବେ ନିଜ ପୁରେ ଚଳ । ଚିତ୍ତେ ଆରାଧି ମୋର ବୋଲ ॥
ମାତୃ ସପତ୍ନୀର ବଚନେ । ବସିବୁ ନୃପ ସିଂହାସନେ ॥
ତୋହର ପରମ ଆୟୁଷ । ଛତିଶ ସହସ୍ର ବରଷ ॥
ନିରୋଗ ଦେହେ ଭୋଗ ଭୁଞ୍ଜି । ସ୍ୱଦେହେ ରିପୁବଳ ଗଞ୍ଜି ॥
ଉତ୍ତମ ତୋର ସାନ ଭ୍ରାତ । ବନେ ହୋଇବ ପ୍ରାଣେ ହତ ॥
ମୃଗୟା ଯିବ ଘୋରବନେ । ମିଳିବ କୁବେର ଭୁବନେ ॥
ଗୁହ୍ୟକ ଗଣ ସଙ୍ଗେ ମିଳି । ଯୁଦ୍ଧେ ହାରିବ ମହାବଳୀ ॥
ତହିଁ ହୋଇବ ପ୍ରାଣେ ହତ । ତା ଶୁଣି ତାର ନିଜ ମାତ ॥
ସେ ପୁତ୍ର ଶୋକର ବିକଳେ । ବନେ ମରିବ ଦାବାନଳେ ॥
ତୁ ମୋତେ ଯଜ୍ଞେ କରି ପୂଜା । ଦେବଙ୍କୁ ଦେଇ ବଳିଭୋଜା ॥
ବିପ୍ରଙ୍କୁ କରି ତୋଷମନ । ଗୁରୁ ଦକ୍ଷିଣା ଅନ୍ନ ଧନ ॥
ବିପ୍ରଙ୍କ କଲ୍ୟାଣର ଫଳେ । ମୋତେ ସ୍ମରିବୁ ଅନ୍ତକାଳେ ॥
ମୋହର ଧ୍ୟାନେ ସ୍ୱର୍ଗ ପଥେ । ଗମିବୁ ଜନନୀ ସହିତେ ॥
ସପ୍ତଋଷିଙ୍କ ଊର୍ଦ୍ଧ୍ୱପଥେ । ଜନନୀ ସଙ୍ଗେ ଦିବ୍ୟରଥେ ॥
ବସିବୁ ଶିଶୁମାର ପଛେ । ଉତ୍ତର ଦିଗକୁ ପ୍ରତ୍ୟକ୍ଷେ ॥
ଏମନ୍ତ କହି ଭଗବାନ । ବନେ ହୋଇଲେ ଅନ୍ତର୍ଦ୍ଧାନ ॥
ବିଷ୍ଣୁ ନ ଦେଖି ବୃନ୍ଦାବନେ । ଧ୍ରୁବ ଭାବଇ ମନେ ମନେ ॥
ଦେଖ ଅଭାଗ୍ୟ କର୍ମ ମୋର । ତପେ ତୋଷିଲି ଚକ୍ରଧର ॥
ଜନନୀ ସପତଣୀ ଛଳେ । ମୋକ୍ଷ ନ ମାଗି ବିଷ୍ଣୁ ତୁଳେ ॥
ଲଭିଲି ଧ୍ରୁବ ଅଧିକାର । ଦେଖ ଅଭାଗ୍ୟ କର୍ମ ମୋର ॥
ଏମନ୍ତେ ମନେ ବିଚାରିଲା । ତକ୍ଷଣେ ନିଜପୁରେ ଗଲା ॥

### ବିଦୁର ଉବାଚ

ଯେ ହରି ପରମ ଦୁର୍ଲ୍ଲଭ । ଲଭି ନ ପାରେ ବ୍ରହ୍ମା ଶିବ ॥
ସେ ହରି ତହୁଁ ବର ପାଇ । ତାର ମାୟାରେ ମନ ମୋହି ॥
ଆତ୍ମାର ଗତି ନ ମାଗିଲା । ମୋତେ ତ ସନ୍ଦେହ ଲାଗିଲା ॥

### ମୈତ୍ରେୟ ଉବାଚ

ମାତୃ ସପତ୍ନୀର ବାକ୍ୟରେ । ମର୍ମ ଭେଦିଲା ତା ହୃଦରେ ॥
ମୁକ୍ତି ନ ଇଚ୍ଛି ବିଷ୍ଣୁ ତୋଷେ । ପଛେ ତାପିଲା ଦୁଃଖ ତ୍ରାସେ ।

### ଧ୍ରୁବ ଉବାଚ

ସନନ୍ଦ ଆଦି ଯୋଗୀଜନେ । ଅଷ୍ଟାଙ୍ଗଯୋଗ ଅଭ୍ୟାସନେ ॥
ଯେ ପଦ ଲଭି ନ ପାରନ୍ତି । ନିଶ୍ଚଳ ମନେ ଧ୍ୟାନେ ଚିନ୍ତି ॥
ସେ ପଦ ହସ୍ତୁ ପକାଇଲି । ଦେଖ ଅଭାଗ୍ୟ କର୍ମ କଲି ॥
କଳ୍ପ ପାଦପ ଛାୟା ତେଜି । ନିରାଶ ପଥେ ଚକ୍ଷୁ ବୁଜି ॥
ଧାଇଁଲି ତୃଷାର୍ତ୍ତେ ବଦନ । ଧିକ୍ ଏ ମୋହର ଜୀବନ ॥
ଏମନ୍ତ ମନ ଦୁଃଖକରି । ଧ୍ରୁବ ଚଳିଲେ ନିଜପୁରୀ ॥
ଧ୍ରୁବଙ୍କୁ ପଥେ ଦେଖି ଜନେ । ମିଳିଲେ ରାଜା ସନ୍ନିଧାନେ ।
କେତେହେଁ ଜନେ ବେଗେ ଧାଇଁ । କହିଲେ ରାଜା ଆଗେ ଯାଇ ॥
ଭୋ ନାଥ ଶୁଣ ସାବଧାନେ । ଧ୍ରୁବ ମିଳିଲେ ଉପବନେ ॥
ନିଧି ପ୍ରାପତ ପ୍ରାୟ ମଣି । ସତ୍ତମ ଚିତ୍ତେ ନୃପମଣି ॥
ତକ୍ଷଣେ ଆସନୁ ଉଠିଲା । ଆନନ୍ଦ ସାଗରେ ବୁଡ଼ିଲା ॥
କାନ୍ଦଇ କଣ୍ଠ ଗଦଗଦେ । ତକ୍ଷଣେ ମିଳିଲେ ନାରଦେ ॥
ସମ୍ଭ୍ରମେ ରାଜା ମୁଖ ଚାହିଁ । ଧ୍ରୁବ ଆସନ୍ତା କଥା କହି ॥
ଶୁଣି ସାନନ୍ଦେ ନୃପବର । ମୁନିଙ୍କ କଣ୍ଠେ ଦେଲା ହାର ॥
ସୁବର୍ଣ୍ଣ ପରିଚ୍ଛଦ ରଥେ । ବେଗେ ମିଳିଲା ରାଜପଥେ ॥
ସଙ୍ଗେ ବ୍ରାହ୍ମଣ କୁଳ ବୃଦ୍ଧେ । ଜ୍ଞାତିଙ୍କ ବାନ୍ଧବ ସୁହୃଦେ ॥

ଅମାତ୍ୟ ମନ୍ତ୍ରୀଗଣ ଯେତେ । ଧାଇଁଲେ ବାଦ୍ୟନାଦ ଗୀତେ ॥
ସୁରୁଚି ସୁନୀତ ସହିତେ । ନାନା ଅଳଙ୍କାର ସମେତେ ॥
ସୁବର୍ଣ୍ଣ ବିମାନ ଆରୋହି । ଉତ୍ତମ ପୁତ୍ର ସଙ୍ଗେ ନେଇ ॥
ଧ୍ରୁବକୁ ଦେଖି ଉପବନେ । ଆନନ୍ଦେ ବିସ୍ମିତ ଲୋଚନେ ॥
ପୁତ୍ରକୁ ଆଲିଙ୍ଗନ କଲା । ଯେଣୁ ଅଶେଷ ପୁଣ୍ୟ ଥିଲା ॥
ସେ ଧ୍ରୁବ ବିଷ୍ଣୁ ଅଙ୍ଗ ସଙ୍ଗେ । ଅଶେଷ ତୀର୍ଥ ଯାର ଅଙ୍ଗେ ॥
ଆଘ୍ରାଣ କରି ଶିର ଦେଶେ । ହୃଦେ ଲଗାଇ ଅତି ତୋଷେ ॥
ମୁଣ୍ଡେ ସିଞ୍ଚିଲା ଅଶ୍ରୁବାରି । ହୃଦରେ ପୁନଃ ପୁନଃ କରି ॥
ପିତା ଚରଣେ ଧ୍ରୁବ ନମି । ବଳକ ଭାବେ ପଥଶ୍ରମୀ ॥
ସୁରୁଚି ସୁନୀତିର ପାଦେ । ଧ୍ରୁବ ପ୍ରଣମଇଁ ଆନନ୍ଦେ ॥
ସୁରୁଚି ଧ୍ରୁବ ଧରି କୋଳେ । ଚୁମ୍ବନ ଦେଲା ସୁଖ ଭୋଳେ ॥
ସୁନୀତି ପୁତ୍ର କୋଳେ ଧରି । ହୃଦରୁ ବହେ କ୍ଷୀର ବାରି ॥
ଜନେ କହନ୍ତି ହା ହା ବାଣୀ । ଧ୍ରୁବକୁ ଘେନି ନୃପମଣି ॥
ମିଳିଲା ନିଜପୁରେ ଆସି । ଜନେ ସୁମନେ ପରଶଂସି ॥
ଧ୍ରୁବ ପ୍ରବେଶେ ପୁରଜନେ । ସାନନ୍ଦେ ଯେ ଯାହା ଭୁବନେ ॥
ଉତ୍ସବ ଅନେକ ପ୍ରକାରେ । ପ୍ରଦୀପ ପୂର୍ଣ୍ଣ କୁମ୍ଭ ଦ୍ୱାରେ ॥
ପାଚେରି ଅଟାଳୀ ସମେତେ । ଚିତ୍ର ପ୍ରତିମା ରତ୍ନ କାନ୍ଥେ ॥
ତୋରଣ ଲମ୍ବେ ସର୍ବଦ୍ୱାରେ । ଚନ୍ଦନ ଛେରା ନିରନ୍ତରେ ॥
ସ୍ୱଭାବେ ପ୍ରିୟବ୍ରତ ପୁର । କି ଅବା ଦେବା ପଟାନ୍ତର ॥
ସକଳ ପୁରଜନ ସଙ୍ଗେ । ଧ୍ରୁବକୁ ଦେଖି ପୁରମାର୍ଗେ ॥
ଦୂର୍ବା ଅକ୍ଷତ ପୁଷ୍ପ ଆଣି । ଗନ୍ଧ ଚନ୍ଦନ ବାସପାଣି ॥
ଅକ୍ଷତ ଦେଇ ଧ୍ରୁବମୁଣ୍ଡେ । ଜୟ ଶବଦ କରି ତୁଣ୍ଡେ ॥
ଏମନ୍ତ ମଙ୍ଗଳ ଉତ୍ସବେ । ସକଳ ଜନ ପ୍ରିୟଭାବେ ॥
ଧ୍ରୁବ ପ୍ରବେଶ ନିଜପୁରେ । କାମିନୀ ଗଣ ପୂଜା କଲେ ॥
ପୁରେ ପ୍ରବେଶ ରାଜସୁତ । ଦେଖି ସକଳେ କୃତକୃତ ॥
ଶଙ୍ଖ ଦୁନ୍ଦୁଭି ବାଦ୍ୟ ସ୍ବରେ । ମଙ୍ଗଳନାଦେ ଗୀତ ପୂରେ ॥
ଯେ ଧ୍ରୁବ ହରି ଅଙ୍ଗ ସଙ୍ଗେ । ଅଶେଷ ଲକ୍ଷ୍ମୀ ଯାର ଅଙ୍ଗେ ॥
ସେ ଧ୍ରୁବ ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନବଳେ ॥
ଯାର ସ୍ମରଣେ ପାପ ନାଶେ । ନିର୍ମଳ ଜ୍ଞାନ ଯେ ପ୍ରକାଶେ ॥
ଚତୁର୍ଥ ସ୍କନ୍ଧେ ଭାଗବତ । କହିଲା ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବ ନିଜ ଗୃହ ପ୍ରବେଶେ ନାମ ଏକାଦଶୋଽଧ୍ୟାୟ ।*

## ଦ୍ୱାଦଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ଶୁଣ ବିଦୁର କୃଷ୍ଣକଥା । ଯେଣେ ଖଣ୍ଡିବ ଭବବ୍ୟଥା ॥
ଉତ୍ତାନପାଦ ଧ୍ରୁବ ଦେଖି । ସଫଳ କଲା ବେନି ଆଖି ॥
ନିଜ ଶରୀର ବୃଦ୍ଧ ଚାହିଁ । ବାନ୍ଧବ ସୁହୃଦ ବସାଇ ॥
ସ୍ୱଭାବେ ଅଟେ ମହାତେଜା । ରାଜ୍ୟେ ପୁତ୍ରକୁ କଲେ ରାଜା ॥
ସ୍ୱଭାବେ ବିଷ୍ଣୁ ତେଜବଳେ । ଭାବେ ନମନ୍ତି ଦିଗପାଳେ ॥
ଏ ଭୂମିସ୍ଥଳେ ଯେତେ ରାଜା । ଧ୍ରୁବ ଚରଣେ କଲେ ପୂଜା ॥
ସେ ଶିଶୁମାର ପ୍ରଜାପତି । ତା କନ୍ୟା ଭ୍ରମି ହେମବତୀ ॥
ରୂପେ କମଳା ସମ ସରି । ବିବାହେ କନ୍ୟା ଧ୍ରୁବେ ବରି ॥
ଅଶେଷ ଅଳଙ୍କାର ଶୋଭା । ସେ କନ୍ୟା ଧ୍ରୁବେ ଦେଲା ବିଭା ॥
ସେ କନ୍ୟା ଗର୍ଭେ ପୁତ୍ର ଦୁଇ । କଳ୍ପ ବତ୍ସର ବେନି ଭାଇ ॥
ଦ୍ୱିତୀୟା ଭାର୍ଯ୍ୟା ଇଳା ନାମ । ରୂପେ ଗଞ୍ଜଇ ସୂର୍ଯ୍ୟ ସୋମ ॥
ସ୍ୱଭାବେ ସମୀରଣ ସୁତା । ସୁଗୁଣା ସୁନ୍ଦରୀ ସୁବ୍ରତା ॥
ତାର ଉଦରେ ଧ୍ରୁବ ବୀର୍ଯ୍ୟେ । ପୁତ୍ର ଜନ୍ମିଲା ମହାତେଜେ ॥
ଉତ୍କଳ ନାମେ ସେ କୁମର । କନ୍ୟାଏ ଅତି ମନୋହର ॥
ଧ୍ରୁବର କନିଷ୍ଠ ଉତ୍ତମ । ରୂପେ ଭୁବନେ ନାହିଁ ସମ ॥
ସ୍ୱଭାବେ ବୟସେ କିଶୋର । ବିଭା ନ କଲେ ନୃପବର ॥
ସେ ଏକଦିନେ ଅଶ୍ୱେ ବସି । ମୃଗୟା କଲେ ବନେ ପଶି ॥
ମିଳିଲା କୁବେର ଭୁବନେ । ତାହାକୁ ଦେଖି ଗୁହ୍ୟ ଜନେ ॥
ବଳେ ରୁନ୍ଧିଲେ ଯୁଦ୍ଧ କରି । ଅଶ୍ୱ ଘେନିଲେ ତାକୁ ମାରି ॥
ତା ଶୁଣି ତାହାର ଜନନୀ । ବିକଳେ ପୁତ୍ର କଷ୍ଟ ଘେନି ॥
ବନେ ଅନଳେ ଦେହ ଦେଲା । ପୁତ୍ର ବିଯୋଗେ ଦୁଃଖେ ମଲା ॥
ସେ କଥା ଶୁଣି ଧ୍ରୁବ ଶୋକେ । କମ୍ପିଲା ମାତା ଭ୍ରାତ ଦୁଃଖେ ॥
ଜୟିତ୍ର ନାମ ରଥେ ବସି । ସ୍ୱଭାବେ ଶୋହେ ରୂପରାଶି ॥
ଶୋକ ଅନଳେ କୋପ ଭରେ । କଠୋର ଧନୁ ଧରି କରେ ॥
କୁବେର କାନନେ ମିଳିଲା । ଉଦଣ୍ଡେ ଶଙ୍ଖ ନାଦ କଲା ॥
ଯେ ବନେ ରୁଦ୍ର ଅନୁଚରେ । ଗୁହ୍ୟକ ବସନ୍ତି ସକଳେ ॥
ହେମ ପର୍ବତ ଦ୍ରୋଣୀ ମଧ୍ୟେ । ସ୍ୱଚ୍ଛନ୍ଦେ ବସନ୍ତି ଆନନ୍ଦେ ॥
ସେ ବନେ ପଶି ବଳେ ଧ୍ରୁବ । ଉଦଣ୍ଡେ କଲା ଶଙ୍ଖ ରବ ॥
ଶବଦ ପୂରିଲା ଆକାଶେ । ଭୂମି ପର୍ବତେ ଦଶଦିଶେ ॥
ସେ ନାଦ ଶୁଣି ଦଶଦିଶେ । ଗୁହ୍ୟକ ଗଣ ମହାରୋଷେ ॥
ଗୁହ୍ୟକ ଗଣ ଧ୍ରୁବ ଚାହିଁ । ନିଜ କୋଦଣ୍ଡେ ଗୁଣଦେଇ ॥
ଆକର୍ଣ୍ଣ ଯାଏ ଟାଣି ଗୁଣ । ବିନ୍ଧିଲେ ତିନି ତିନି ବାଣ ॥

ଧ୍ରୁବର ତୀକ୍ଷ୍ଣ ବାଣ ବଳେ । ପଡ଼ିଲେ ଗୁହ୍ୟକ ସକଳେ ॥
ଗୁହ୍ୟକ ଗଣେ ଦେଖି ତ୍ରାସେ । ରଣେ ଭାଜିଲେ ଦଶଦିଶେ ॥
ଅଦ୍ଭୁତ କର୍ମ ଦେଖି ତାର । ବିଷ୍ଣୁର ତେଜ ବଳୀୟାର ॥
କରନ୍ତି ଧନ୍ୟ ଧନ୍ୟ ବାଣୀ । ଆନନ୍ଦେ ଦେବ ଲୋକେ ଶୁଣି ॥
ସେ ବାଣୀ ଶୁଣି ଗୁହ୍ୟଗଣେ । ପୁଣି ମିଳିଲେ ଘୋରରଣେ ॥
ପାଦ ମାରନ୍ତେ ଅହି ଯେହ୍ନେ । ଧ୍ରୁବକୁ ଦେଖି କୋପମନେ ॥
ଧ୍ରୁବର ରଥ ବେଗେ ରୁନ୍ଧି । ଦ୍ୱିଗୁଣ ତୀକ୍ଷ୍ଣ ବାଣ ବିନ୍ଧି ॥
ପରିଘ ନିସ୍ତ୍ରିଂଶ ଆୟୁଧ । ପ୍ରାଶେ ତୋମର ଶରଯୁଦ୍ଧ ॥
ଶକ୍ତି ଋଷ୍ଟି ଭୁଷୁଣ୍ଡି ଜାଣ । ବେଗେ ବିନ୍ଧିଲେ ଗୁରୁଟାଣ ॥
କୋପେ ବିନ୍ଧିଲେ ଅତି ରୁଷ୍ଟେ । ରଥୀ ସାରଥୀ ଅଶ୍ୱ ପୃଷ୍ଟେ ॥
ଅୟୁତ ତ୍ରୟୋଦଶ ମିଳି । ଶବଦେ ବ୍ରହ୍ମାଣ୍ଡ ଉଛୁଳି ॥
ବେଢ଼ିଲେ ଅତି ଅଣାୟର । ଛନ୍ନେ ନ ଦିଶେ ଧ୍ରୁବରଥ ॥
ଗଗନେ ମିଳି ଦେବ ଲୋକେ । କହନ୍ତି ଏକକୁ ଆରେକେ ॥
ଶୁଭଇ ହାହାକାର ବାଣୀ । ଦେବେ ବୋଲନ୍ତି ତାହା ଶୁଣି ॥
ଦେଖ ଏ ମନୁବଂଶ ସୁତ । ପ୍ରଚଣ୍ଡ ଯେସନେ ଆଦିତ୍ୟ ॥
ଗୁହ୍ୟକ ସମୁଦ୍ରେ ବୁଡ଼ିଲା । ଧ୍ରୁବ ନିଶ୍ଚୟେ ନାଶଗଲା ॥
ଗର୍ଜନ୍ତି ଯାତୁ ଧାନଗଣେ । ଧ୍ରୁବ ତା ଶୁଣି ଶ୍ରବଣେ ॥
ସାରଥି ଚାହିଁ ପୁଣ୍ୟଦେହା । ବୋଇଲା ଉର୍ଦ୍ଧେ ରଥ ବାହା ॥
ଶୁଣି ସାରଥି ଅତି ବେଗେ । ରଥ ବାହିଲା ଶୂନ୍ୟମାର୍ଗେ ॥
ନିହାର ନାଶି ସୂର୍ଯ୍ୟ ଯେହ୍ନେ । ତେମନ୍ତେ ଦିଶଇ ଗଗନେ ॥
ଗଗନେ ରହି ମନୁସୁତ । ବାଣ ବରଷେ ଅପ୍ରମିତ ॥
ଗୁହ୍ୟକ ବାଣ ବୃଷ୍ଟି ନାଶେ । ନିହାର ଯେହ୍ନେ ଚଣ୍ଡ ତ୍ରାସେ ॥
ପବନଯୋଗେ ମେଘ ଯେହ୍ନେ । ନିର୍ଜନେ ଉଡ଼ନ୍ତି ଗଗନେ ॥
ଗୁହ୍ୟକ ଗଣ ନାଶ କରି । ପୁଣି ବିନ୍ଧଇଁ ରୋଷଭରି ॥
ଧ୍ରୁବ ନାରଚ ତୀକ୍ଷ୍ଣମୁନେ । ପଡ଼ିଲେ ଗୁହ୍ୟକର ସୈନ୍ୟେ ॥
ଗୁହ୍ୟକ ଦେହେ ବାଣ ପଡ଼ି । ଶୁଭେ କି ମେଘ ଘଡ଼ଘଡ଼ି ॥
ସର୍ବେ ପଡ଼ିଲେ ଭୂମିଗତେ । ପର୍ବତ ଯେହ୍ନେ ବଜ୍ରାଘାତେ ॥
ଶିରେ ଭେଦିଲା ଭଲ୍ଲ ଶସ୍ତ୍ର । ବାଣେ ରୁନ୍ଧିତ ନିଜ ଗାତ୍ର ॥
ଶିର ପଡ଼ିଲା ଛିଡ଼ିତଳ । ବିରାଜେ କିରୀଟ କୁଣ୍ଡଳ ॥
ହୃଦେ ଲମ୍ବିତ ହେମହାର । ଛିଡ଼ି ଲୋଟନ୍ତି ଅବନୀର ॥
ଶସ୍ତ୍ର ସମୂହେ ଶଯ୍ୟା କରି । ବେଗେ ଶୋଇଲେ ପ୍ରାଣହାରି ॥
ଯେବା ଉବୁରି ଗଲେ ଗଣେ । ଭୟେ ଲୁଚିଲେ ଘୋର ବନେ ।
ସିଂହର ତ୍ରାସେ ଯେହ୍ନେ ମୃଗେ । ଭୟେ ଭାଜିଲେ ଦଶଦିଗେ ॥
ଧ୍ରୁବ ଯେ ଦଶଦିଗ ଚାହିଁ । ଦେଖଇ ରଣେ କେହି ନାହିଁ ॥
ବୋଲେ ସାରଥି ମୁଖ ଚାହିଁ । ଏ ପୁରେ ପଶ ରଥ ବାହି ॥
ଦହନ କରିବି ଅନଳେ । ଯେବା ଅଛନ୍ତି ଗୁହ୍ୟକୁଳେ ॥
ସର୍ବ ମାରିବି ଭ୍ରାତୃ ଛଳେ । ତୁ ଏବେ ରଥ ବାହା ବଳେ ॥
ଏମନ୍ତ ଧ୍ରୁବ ବାକ୍ୟ ଶୁଣି । ସାରଥି କହେ ମନେ ଗୁଣି ॥
ଗୁହ୍ୟକ ମାୟାର ପ୍ରମାଣେ । ଏମନ୍ତ ଘୋର ନାଦ ଶୁଣେ ॥
ପ୍ରଳୟ କାଳେ ସିନ୍ଧୁ ଯେହ୍ନେ । ଲହରୀ ଉଛୁଳେ ଗଗନେ ॥
ଶୁଣ ଦେଖଇ ଚାରିଦିଗେ । ଧୂଳି ଉଡ଼ଇ ଶୂନ୍ୟମାର୍ଗେ ॥
ତକ୍ଷଣେ ଘୋର ନାଦ କରି । ମେଘ ସମୂହେ ଶୂନ୍ୟେ ପୂରି ॥
ବିଜୁଳି ପ୍ରାୟେ ଦଶ ଦିଶେ । ବ୍ରଜ ଶବଦ ସଙ୍ଗେ ମିଶେ ॥
ଉଲ୍କା ପଡ଼େ କୋଟି କୋଟି । ରୁଧିର ସଙ୍ଗେ ପୂଜ ବୃଷ୍ଟି ॥
ମୂତ୍ର ପୁରୀଷ ରେତ ତୁଲେ । ଦୁର୍ଗନ୍ଧେ ଧରଣୀ ପୂରିଲେ ॥
କବନ୍ଧେ ପଡ଼ିଲେ ଆକାଶୁ । ଦିଗେ ପୂରିଲେ ଘୋର ପାଂଶୁ ॥
ନିର୍ଘାତେ ଗଗନୁ ପଡ଼ନ୍ତି । ଗଦା ପରିଘ ପନ୍ତି ପନ୍ତି ॥
ମୂଷଳ ବଜ୍ର ସଙ୍ଗେ ପଡ଼ି । ଘୋର ଶବଦ ଘଡ଼ ଘଡ଼ି ॥
ସର୍ପେ ଧାମନ୍ତି ଫୁ ଫୁ କରି । ଅନଳ ପ୍ରାୟେ ଚକ୍ଷୁ ଧରି ॥
ଗର୍ଜେ ଧାମନ୍ତି ଶୁଣ୍ଢ ଟେକି । ସିଂହ ଶାର୍ଦ୍ଦୁଳ ସଙ୍ଗେ ମିଳି ॥
ତକ୍ଷଣେ ସିନ୍ଧୁ ଉଛୁଳିଲା । ଲହରୀ ଗଗନେ ଲାଗିଲା ॥
ଭୂମି ପଡ଼ିଲା ମହାଜଳେ । ପ୍ରଚଣ୍ଡ ପବନ ଉଲ୍ଲୋଳେ ॥
କଳ୍ପାନ୍ତେ ଘୋର ନାଦ ଯେହ୍ନେ । ଶବଦ ପୂରିଲା ଗଗନେ ॥
ଏମନ୍ତେ ନାନା ମାୟା କରି । ଗୁହ୍ୟକ ସଂଗ୍ରାମେ ଆବୋରି ॥
ମିଳିଲେ ନାନା ଶସ୍ତ୍ର ଘେନି । ଶବଦେ କମ୍ପଇ ମେଦିନୀ ॥
ଧ୍ରୁବ ଉପରେ ମାୟା କରି । ଗୁହ୍ୟକ ସନ୍ଧିଲେ ଆବୋରି ॥
ଗୁହ୍ୟକ ମାୟା ଦେଖି ବେଗେ । ମୁନି ମିଳିଲେ ଧ୍ରୁବ ଆଗେ ॥
କଲ୍ୟାଣ ହସ୍ତେ ଆଗେ ରହି । ବୋଲନ୍ତି ଧ୍ରୁବ ମୁଖ ଚାହିଁ ॥

## ମୁନିଗଣ ଉବାଚ

ଶୁଣ ହେ ଉତ୍ତାନ କୁମର । ତୋତେ ପ୍ରସନ୍ନ ଚକ୍ରଧର ॥
ଯେ ହରି ଭବଭୟ ନାଶେ । ଆମ୍ଭେ ତା ଦେଖିଲୁ ତୋ ପାଶେ
ଯା ନାମ ସ୍ମରି ଅନ୍ତକାଳେ । ମୃତ୍ୟୁ ତରନ୍ତି ପ୍ରାଣୀ ହେଳେ ॥
ସେ ହରି ପାଦେ ତୁ ସୁମର । ଗୁହ୍ୟକ ମାୟାକୁ ସଂହର ॥
ଏମନ୍ତ ମୁନି ବାକ୍ୟ ବଳେ । ରଥ ଟେକିଣ ଅନ୍ତରାଳେ ॥
ସୁଜନେ ଶୁଣ ହରି କଥା । ହରି ନ ସହେ ଭୃତ୍ୟବ୍ୟଥା ॥
ସେ ହରି ନାମ ହୃଦେ ଚିନ୍ତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଗୁହ୍ୟକ ମାୟାଯୁଦ୍ଧ କରଣେ ନାମ ଦ୍ୱାଦଶୋଽଧ୍ୟାୟ*

## ତ୍ରୟୋଦଶ ଅଧ୍ୟାୟଃ

### ମୈତ୍ରେୟ ଉବାଚ

ଏମନ୍ତେ ମୁନି ବାକ୍ୟ ଶୁଣି । ଧ୍ରୁବ ଆନନ୍ଦ ମନେ ଗୁଣି ॥
ସୁଜନେ କରି ଆଚମନ । ସୁମରି ଅସ୍ତ୍ର ନାରାୟଣ ॥
ସନ୍ଧାନ ଧନୁହୁଳେ କଲା । ତା ଦେଖି ମାୟା ଭସ୍ମ ହେଲା ॥
ଗୁହ୍ୟକ ହୋଇଲେ ଅଦୃଶ୍ୟ । ଦିଶିଲା ଧରଣୀ ଆକାଶ ॥
ଜ୍ଞାନ ଉଦୟେ କ୍ଲେଶ ଯେହ୍ନେ । ଦେବେ ଦେଖନ୍ତି ରହି ଶୂନ୍ୟେ ॥
ଧ୍ରୁବ ଆମଞ୍ଚି ଧନୁର୍ଗୁଣ । ଯୋଚି ସୁବର୍ଣ୍ଣ ପୁଂଖ ବାଣ ॥
ବାଣର ପକ୍ଷ କଳହଂସ । ଦେଖି କମ୍ପିଲେ ଦଶଦିଶ ॥
ସେ ବାଣ ରିପୁ ବଳେ ପଶି । ଅନଳ ପ୍ରାୟେ ତେଜ ରାଶି ॥
ଏମନ୍ତେ ତୀକ୍ଷ୍ଣ ବାଣ ଭେଦି । ଗୁହ୍ୟକ ମାୟାଗୁଣ ଛେଦି ॥
ନିଶସ୍ତ୍ର ହୋଇ ଅନାୟତ୍ତେ । ଧାଇଁଲେ ଶସ୍ତ୍ର ଘେନି ହସ୍ତେ ॥
ମୟୂର ଯେହ୍ନେ ନାଦ କରି । ଆନନ୍ଦେ ବନସ୍ତେ ବିହରି ॥
ଯେସନେ ସର୍ପେ ଫଣା ଧରି । ଗୁରୁଡ଼େ ଧାମେ କୋପକରି ।
ତାହାଙ୍କୁ ଦେଖି ରଣ ଦେଶେ । ନାରାଚ ଗୁଣ ଧରି ରୋଷେ ॥
ବିନ୍ଧଇ ଗୁହ୍ୟକ ଶରୀରେ । ଭେଦିଲା ବାହୁ ଉରୁ ଶିରେ ॥
ତକ୍ଷଣେ ଗଲେ ଛିନ୍ନ ଭିନ୍ନେ । ସଂଗ୍ରାମେ ଶମନ ଭୁବନେ ॥
ଗୁହ୍ୟକ ବଳ ନାଶ ଦେଖି । ମନୁ ଯେ ଭୁବନ ଉପେକ୍ଷି ॥
ଉତ୍ତମ ଚିତ୍ରରଥେ ବସି । ମିଳିଲେ ଗଣମଧେ ଆସି ॥
ସଙ୍ଗେ ଅନେକ ମୁନିଜନେ । ଧ୍ରୁବକୁ ଦେଖି ତୋଷମନେ ॥
ଗୁହ୍ୟକ ଗଣେ ଦୟା ବହି । ବୋଲନ୍ତି ଧ୍ରୁବ ମୁଖ ଚାହିଁ ॥

### ମନୁ ଉବାଚ

ଶୁଣ ତୁ ମୋର ଉପଦେଶ । ଭୋ ବତ୍ସ ଛାଡ଼ ମନୁ ରୋଷ ॥
ଏ ରୋଷ ଘୋର ତମଦ୍ୱାର । ଏ ନୋହେ ଉତ୍ତମ ବେଭାର ॥
ଯେ ରୋଷବଶେ ଜ୍ଞାନ ହାରି । ନିର୍ଦ୍ଦୋଷ ଜନେ ଯୁଦ୍ଧେ ମାରି ॥
ଏ ଆମ୍ଭ କୁଳଧର୍ମ ନୋହେ । ସାଧୁଙ୍କ ମଧେ ଦୋଷ ବହେ ॥
ଏକଇ ଜନ ଅପରାଧେ । ଅନେକ ମାର କିମ୍ପା ଯୁଦ୍ଧେ ॥
ତୁ ଭ୍ରାତୃବଧେ କ୍ରୋଧ ବହି । ସାଧୁଙ୍କ ମାର୍ଗ ଏ ନୁହଇ ॥
ବିଷ୍ଣୁର ଭାବ ଯାର ଦେହେ । ପ୍ରାଣୀଙ୍କି ହୃଦେ ଦୟା ବହେ ॥
ସମଦୃ ସର୍ବଭୂତେ ଦେଖେ । ତାହାକୁ ନାରାୟଣ ରଖେ ॥
ହରି ପ୍ରସନ୍ନେ ପ୍ରାଣୀ ଦେହେ । ପୁରୁଷ ପ୍ରକୃତି ନ ବହେ ॥
ନ ଲାଗେ ତ୍ରିଗୁଣ ବନ୍ଧନ । ଅନ୍ତେ ଲଭଇ ନିରଞ୍ଜନ ॥
ତୁ ହରିଭକ୍ତ ଶିରୋମଣି । ସର୍ବ ସମ୍ମତେ ତୋତେ ଗଣି ॥
ସାଧୁଜନଙ୍କ ବ୍ରତ କରି । କେ ପାରେ ଅଧର୍ମ ଆଚରି ॥
ଯେ ପ୍ରାଣୀ ଆତ୍ମଭାବେ ସୁଖେ । ହରିଙ୍କି ସର୍ବଭୂତେ ଦେଖେ ॥
ବିଷ୍ଣୁର ଭକ୍ତି ହୃଦେ ଭରି । ଦୟା ତିତିକ୍ଷା ଜୀବେ କରି ॥
ମଇତ୍ର ଭାବେ ଯାର ମନ । ତାହାକୁ ରଖେ ଭଗବାନ ॥
ହରି ପ୍ରସନ୍ନେ ପ୍ରାଣୀଙ୍କର । ପ୍ରବୃତ୍ତି ବନ୍ଧ ହୋଏ ଦୂର ॥
ଜୀବ ବନ୍ଧନୁ ମୋକ୍ଷ ହୋଇ । ନିର୍ବାଣ ପଦେ ପଶେ ଯାଇ ॥
ଏ ପଞ୍ଚଭୂତେ ଦେହ ବହି । ସ୍ତିରୀ ପୁରୁଷ ରୂପ ହୋଇ ॥
ଏ ବେନିସଙ୍ଗ ଏକମେଳେ । ରଜ ସଙ୍ଗେ ବୀର୍ଯ୍ୟ ନିଷ୍ଠଳେ ॥
ଏମନ୍ତେ ସୃଷ୍ଟି ସ୍ଥିତି ନାଶେ । ତ୍ରିଗୁଣ ମାୟା ପରକାଶେ ॥
ତହିଁ ନିମିତ୍ତ ମାତ୍ର ରହେ । ଜୀବ ପରମ ରୂପ ବହେ ॥
ତାହାର ଦେହ ଏ ଜଗତେ । ଦିଶଇ ଲୋକ ଭ୍ରମଗତେ ॥
ଏଣୁ ସେ ହରି କାଳରୂପୀ । ନିଜ ମୟାରେ ବିଶ୍ୱ ବ୍ୟାପି ॥
ପ୍ରବାହେ ଯେସନେ ବୃକ୍ଷରାଶି । ଜଳ ପ୍ରବଳେ ଯାନ୍ତି ଭାସି ॥
ଏମନ୍ତ କାଳ ଚେଷ୍ଟା ବଳେ । ପ୍ରାଣୀ ଭାସନ୍ତି ଅବହେଳେ ॥
ବିପକ୍ଷ ସପକ୍ଷ ଏ ଦୁଇ । ଯାର ସ୍ୱଭାବ ନ ଘଟଇ ॥
ପ୍ରଜାଏ ଯାହାର ଆୟତ୍ତେ । ସମେ ବସନ୍ତି ଏ ଜଗତେ ॥
ଧୂଳି ଯେହ୍ନେ ବାତବଳେ । ଉଡ଼ିଣ ଯାନ୍ତି ଅନ୍ତରାଳେ ॥
ଜନ୍ମ ଆୟୁଷ ହାନି ଲାଭ । ଏ ଦୁଇ କାଳର ସ୍ୱଭାବ ॥
କେହୁ ବୋଲନ୍ତି ଏ ଜଗତେ । ସ୍ୱଭାବେ କର୍ମର ଆୟତ୍ତେ ॥
ଅବିଦ୍ୟା କାମ ସଙ୍ଗେ ଜଡ଼ି । ଘୋର ଅନ୍ଧାରେ ପ୍ରାଣୀ ପଡ଼ି ॥
ଭ୍ରମନ୍ତି କାଳ ବାତ ବଳେ । ଉଲ୍ଲୋଳ ଯେହ୍ନେ ସିନ୍ଧୁଜଳେ ॥
ଅବକ୍ତ ଅପ୍ରମିତ ସୀମା । କେ ଜାଣିପାରେ ତା ମହିମା ॥
ଏଣୁ ତୋ ଭ୍ରାତାର ମରଣେ । ଗୁହ୍ୟକ ନୁହନ୍ତି କାରଣେ ॥
ବିଧାତା ବଳେ ଯେ ପ୍ରମାଣ । ଏ କଥା ନିଶ୍ଚୟ ତୁ ଜାଣ ॥
ଏଣୁ ଏ କାଳ ମଧେ ଥୋଇ । ଦେବେ ପୂଜନ୍ତି ବଳି ଦେଇ ॥
ନାସା ଭେଦିତ ଗାବ ଯେହ୍ନେ । ଭ୍ରମନ୍ତି ଦାମିନୀ ବନ୍ଧନେ ॥
ଜନନୀ ସପତ୍ନୀ ବଚନେ । ମର୍ମ ଭେଦିତ ତୋର ମନେ ॥
ବନେ ପଶିଲୁ ତପ ଆଶେ । ସ୍ୱଭାବେ ତୁ ପାଞ୍ଚ ବରଷେ ॥
ବିଷ୍ଣୁ ଆରାଧି ତପବଳେ । ବସିଲୁ ଗଗନ ମଣ୍ଡଳେ ॥
ତ୍ରୈଲୋକ୍ୟ ପଥ ମଧ ଗତେ । ବସିବୁ କଳ୍ପ ପରିଯନ୍ତେ ॥
ଏ ମାୟା ମୟ ମୋହପାଶ । ଛେଦିଲୁ ଭବ ବନ୍ଧ ତ୍ରାସ ॥
ଏବେ ତୋହର ତାପ ତେଜ । ସୁମତି ଚିତ୍ତେ ପୁତ୍ର ଭଜ ॥
ସମେ ସକଳ ବ୍ୟାଧି କ୍ଷୟେ । ଅମାୟା ଯେହ୍ନେ ପୁଣ୍ୟଦହେ ॥
ଯାହାକୁ ଦେଖି ପ୍ରାଣୀ ଡରେ । ସେ ପ୍ରାଣୀ ଜୀବ ଥାଉଁ ମରେ ॥
ଈଶ୍ୱର ମିତ୍ର ଏ କୁବେର । ଏହାକୁ ଅବଜ୍ଞା ତୋହର ॥

ଏହାର ସ୍ୱଜନକୁ ମାରି । ଅନ୍ୟାୟ ପଥକୁ ଆଚରି ॥
ଏବେ ଏହାକୁ ପ୍ରୀତି କର । ଯେବେ ହୋ କୁଳ ଭୟ ତୋର
ଏମନ୍ତେ ସ୍ୱାୟମ୍ଭୁବ ମନୁ । ପ୍ରବୋଧ କଲେ ପୁତ୍ର ମନୁ ॥
ଧ୍ରୁବକୁ ଆଲିଙ୍ଗନ କଲେ । ମୁନିଙ୍କ ସଙ୍ଗେ ପୁରେ ଗଲେ ॥
ସେ ମୁନି ଚରଣାରବିନ୍ଦେ । ସୁଜନେ ନମିବ ଆନନ୍ଦେ ॥
ଚତୁର୍ଥ ସ୍କନ୍ଧେ ଭାଗବତ । ହରି ମହିମା ସୁଚରିତ ॥
ସୁଜନ ଜନେ ଏଣେ ରସ । କହିଲେ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥ ସ୍କନ୍ଧେ ଧ୍ରୁବ ଚରିତେ ନାମ ତ୍ରୟୋଦଶୋଽଧ୍ୟାୟ*

## ଚତୁର୍ଦ୍ଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଧ୍ରୁବର କୋପ ଯହୁଁ ଗଲା । କୁବେର ଭୁବନେ ଜାଣିଲା ॥
ତକ୍ଷଣେ ନିଜ ଗଣ ତୁଲେ । ଧ୍ରୁବର ସଙ୍ଗେ ଆସି ମିଳେ ॥
ଅଞ୍ଜଳି କରି ବେନି ପାଣି । ଧ୍ରୁବଙ୍କୁ କହେ ମଞ୍ଜୁବାଣୀ ॥

### ଧନଦ ଉବାଚ

ଆହେ କ୍ଷତ୍ରୀଙ୍କ ଚୂଡ଼ାମଣି । ତୋର ମହିମା ମୁହିଁ ଶୁଣି ॥
ମିଳିଲୁଁ ତୋହର ସମୀପେ । ଗୁହ୍ୟ କିନ୍ନର ଘେନି ସୁଖେ ॥
ତୁ ଯେଣୁ ପିତାମହ ବୋଲେ । କୋପ ଛାଡ଼ିଲୁ ରିପୁ ତୁଲେ ॥
ଭ୍ରାତୃ ମରଣେ କୋପ ବହି । ଗୁହ୍ୟକ ବିନାଶିଲୁ ତୁହିଁ ॥
କେହି କାହାର ହନ୍ତା ନୋହେ । ପ୍ରାଣୀ ଜୀବନ କାଳ ଦହେ ॥
ଏ ଜୀବ ଅହଙ୍କାର ବହି । ଆତ୍ମାକୁ ବୋଲେ ତୁହି ମୁହିଁ ॥
ଏ ନୋହେ ଜ୍ଞାନୀଙ୍କର ମତ । ଯାହାକୁ ପ୍ରସନ୍ନ ଅନନ୍ତ ॥
ସଂସାର ଦେଖେ ସ୍ୱପ୍ନ ପ୍ରାୟେ । ସେ ମୋହେ ନୋହେ ବିପର୍ଯ୍ୟୟୋ ।
ତୋର ମଙ୍ଗଳ ହେଉ ନିତ୍ୟେ । ଗୃହେ ତୁ ଚଳ ଶୁଦ୍ଧ ଚିତ୍ତେ ॥
ହରିଚରଣେ ସେବା କର । ସଂସାରୁ ଆତ୍ମାକୁ ଉଦ୍ଧର ॥
ତୋତେ ମୋ ହୃଦ ଅନୁରାଗ । ଯେ ତୋର ଇଚ୍ଛା ବରମାଗ ॥
ହରିଙ୍କୁ ହୃଦେ ପରିମାଣୁ । ତୁ ବଡ଼ ଯୋଗୀ ହେଉ ତେଣୁ ॥

### ମୈତ୍ରେୟ ଉବାଚ

ଏମନ୍ତେ କୁବେର ବଚନେ । ଧ୍ରୁବ ବିଚାରେ ତୋଷମନେ ॥
ବୋଲଇ ହରି ପାଦଗତେ । ମୋହର ମନ ଧାଉ ନିତ୍ୟେ ॥
ଅନ୍ୟ କଳ୍ପନା ନାହିଁ ମୋର । ଯାର ପ୍ରସନ୍ନେ ଭବୁ ପାର ॥

କୁବେର ବୋଲେ ଧ୍ରୁବ ଚାହିଁ । ଏ ବର ଧ୍ରୁବ ଲଭ ତୁହି ॥
ଏମନ୍ତ କହି ଧ୍ରୁବ ପାଶେ । କୁବେର ଗମିଲା ଆକାଶେ ।
ଏବେ ହୋ ଶୁଣ ମହୀପତି । ଧ୍ରୁବର ଅର୍ଜିଲା ବିଭୂତି ॥
କୁବେର ଭୁବନୁ ସନ୍ତୋଷେ । ଧ୍ରୁବ ଗମିଲା ନିଜ ଦେଶେ ॥
ନିଜ ଭୁବନୁ ଧ୍ରୁବ ଯାଇ । ଋତ୍ୱିକ୍ ପୁରୋହିତ ଘାଇ ॥
ସଂକଳ୍ପ କଲା ଯଜ୍ଞମତେ । ପୂଜିଲା ବିଷ୍ଣୁ ପାଦଗତେ ॥
ସର୍ବ ସମ୍ପଦ ଭୋଗ କଲା । ଗୃହେ ଉତ୍ତାନପାଦ ବଳା ॥
ସର୍ବ ପ୍ରକାରେ ବିଷ୍ଣୁ ପାଦେ । ଭକ୍ତି ସାଧିଲା ଅପ୍ରମାଦେ ॥
ପ୍ରଜାଏ ଧ୍ରୁବର ରାଜତ୍ୱେ । ଆନନ୍ଦେ ବଞ୍ଚିଲେ ଜଗତେ ॥
ସ୍ୱଭାବେ ଧ୍ରୁବ ଧର୍ମଶୀଳ । ସୁ ସାଧୁ ବ୍ରାହ୍ମଣ ବତ୍ସଳ ॥
ଧ୍ରୁବକୁ ପିତୃଭାବେ ଜାଣି । ସୁଖ ଦୁଃଖକୁ ନ ପ୍ରମାଣି ॥
ଆନନ୍ଦ ମନ ଜନ ପ୍ରଜା । ଧ୍ରୁବ ସପତ ଦ୍ୱୀପେ ରାଜା ॥
ଛତିଶ ସହସ୍ର ବରଷ । ସ୍ୱଭାବେ ପରମ ଆୟୁଷ ॥
ଆନନ୍ଦ ଚିତ୍ତେ ଭୋଗକଲା । ଭୂମିମଣ୍ଡଳେ ମନୁବଳା ॥
ସୁବର୍ଣ୍ଣ ବର୍ଣ୍ଣ ଶୁଦ୍ଧ ଦେହେ । ପୁଣ୍ୟ ଉଦୟ ଅର୍ଘ୍ୟକ୍ଷୟେ ॥
ତୃତୀୟ ବର୍ଗ ଭୋଗ କରି । ପୁତ୍ରକୁ ଅର୍ଦ୍ଧ ରାଜ୍ୟେ ବରି ॥
ନୃପ ଆସନେ ବସାଇଲେ । ସ୍ୱଭାବେ ଅଭିଷେକ କଲେ ॥
ଆତ୍ମା ସମ୍ପଦ ଆଦି ଯେତେ । ସ୍ୱପ୍ନର ପ୍ରାୟ ମଣି ଚିତ୍ତେ ।
ବିଷ୍ଣୁର ମାୟାବଳ ଜାଣି । ଗନ୍ଧର୍ବ ପୁର ପ୍ରାୟ ମଣି ॥
ସର୍ବ ସମ୍ପଦ ପରିହରି । ସଂଯମେ ଆତ୍ମା ବଶ କରି ॥
ବିଷ୍ଣୁର ସ୍ଥୁଳ ରୂପେ ମନ । ସଂଯମ ବଳେ କରି ଧ୍ୟାନ ।
ତକ୍ଷଣେ ଲିଙ୍ଗ ରୂପ କଲା । ନିର୍ମଳ ଜ୍ୟୋତି ପ୍ରକାଶିଲା ॥
ତହୁଁ ଯେ ଭେଦ ଶୂନ୍ୟେ ହେଲା । ସ୍ଥୁଳର ଧ୍ୟାନ ସେ ଛାଡ଼ିଲା ।
ଏହି ପ୍ରକାରେ ଧ୍ରୁବ ନିତି । ହରିଙ୍କ ପ୍ରତି କଲା ଭକ୍ତି ।
ଅଶ୍ରୁତା ନୟନୁ ବହିଲା । ତହିଁରେ ଅଭିଷିକ୍ତ ହେଲା ॥
ତା ଦେହ ଆନନ୍ଦେ ବୁଡ଼ିଲା । ସର୍ବାଙ୍ଗ ପୁଲକ ହୋଇଲା ॥
ନିଜକୁ ଜାଣି ନ ପାରିଲା । ଜ୍ଞାନସାଗରେ ବୁଡ଼ିଗଲା ॥
ଅଳପ ସମୟ ଅନ୍ତରେ । ବିମାନ ଦେଖେ ଆକାଶରେ ॥
ତେଜେ ଦଶଦିଗ ବିରାଜେ । ବିଷ୍ଣୁଙ୍କୁ ଦେଖିଲା ସମାଜେ ॥
ପୌର୍ଣ୍ଣମୀ ସୁଧାକର ଯେହ୍ନେ । ହରିଙ୍କି ଦେଖିଲା ଗଗନେ ॥
ରଥେ ଦେଖିଲା ବେନି ସୁତ । ଗଞ୍ଜନ୍ତି ଶଶାଙ୍କ ଆଦିତ୍ୟ ॥
କିଶୋର ଶ୍ୟାମ ତନୁବର୍ଣ୍ଣ । ବିରାଜେ ଅରୁଣ ଲୋଚନ ॥
ଶୋହେ ସୁନ୍ଦର ଭୁଜ ଚାରି । ବିଷ୍ଣୁ ଆୟୁଧ ଛନ୍ତି ଧରି ॥
ଅଙ୍ଗଦ କିରୀଟ କୁଣ୍ଡଳ । ହୃଦେ ଲମ୍ୱଇ ବନମାଳ ॥

ରତ୍ନ ମେଖଳା କଟିମାଝେ । ମକର କୁଣ୍ଡଳ ବିରାଜେ ॥
ଧ୍ରୁବ ନିକଟେ ଯାଇ ମିଳି । ଗଗନୁ ଖସେ କି ବିଜୁଳି ॥
ତୁଣ୍ଡେ ଗୋବିନ୍ଦ ନାମ ଗାଇ । କପାଳେ ବେନିକର ଦେଇ ॥
ଧ୍ରୁବ ନମିଲା ପାଦ ମୂଳେ । ରୋମ ପୁଳକ ଅଶ୍ରୁଜଳେ ॥
ସୁନନ୍ଦ ଆଦି ପାରିଷଦେ । ତକ୍ଷଣେ ମିଳିଲେ ଆନନ୍ଦେ ॥
ଶ୍ରୀକୃଷ୍ଣ ନାମ ତୁଣ୍ଡେ ଗାଇ । ବୋଲନ୍ତି ଧ୍ରୁବ ମୁଖ ଚାହିଁ

## ସୁନନ୍ଦ ନନ୍ଦନଗଣ ଉବାଚ

ଶୁଣ ଉତ୍ତାନପାଦ ସୁତ । ସଂସାରେ ତୁମ୍ଭେ ଭାଗ୍ୟବନ୍ତ ॥
ତୁ ବାଳ ପଞ୍ଚମ ବରଷ । ତପେ ତୋଷିଲୁ ହୃଷୀକେଶ ॥
ଏବେ ଗୋବିନ୍ଦ ଆଜ୍ଞା ଶିରେ । ଘେନି ମିଳିଲୁ ତୋ ଛାମୁରେ ॥
ଧ୍ରୁବ ପଦକୁ ନେବୁ ତୋତେ । ଦେଖ କାଞ୍ଚନ ଦିବ୍ୟରଥେ ॥
ଦୁର୍ଲ୍ଲଭ ବିଷ୍ଣୁ ପଦ ତୁହି । ବଳେ ଲଭିଲୁ ତପ ଦାହି ॥
ଯେ ଶିଶୁମାର ଚକ୍ର ତଳେ । ଚନ୍ଦ୍ର ଆଦିତ୍ୟ ତାରା ମେଳେ ॥
ନିତ୍ୟେ ଭ୍ରମନ୍ତି ପ୍ରଦକ୍ଷିଣେ । ପବନ ରଜ୍ଜୁ ଆକର୍ଷଣେ ॥
ଯେ ପଦେ ତୋର ପିତୃଜନ । ପ୍ରବେଶେ ନୋହିଲେ ଭାଜନ ॥
ଯେ ଆନ ତାହା ଲଭିପାରେ । ଅନିତ୍ୟ ସଂସାର ସାଗରେ ॥
ଅଶେଷ ଜଗତ ବନ୍ଦନେ । ବିଷ୍ଣୁ ପରମ ପଦ ସ୍ଥାନେ ॥
ଏଣୁ ଏ ଉତ୍ତମ ବିମାନ । ତୋତେ ପେଷିଲେ ଭଗବାନ ॥
ତୁ ଏବେ ବସ ସ୍ଥିର ମନେ । ବିମାନ ବାହିବୁଁ ଗଗନେ ॥

## ମୈତ୍ରେୟ ଉବାଚ

ଏମନ୍ତେ ବିଷ୍ଣୁ ଦୂତ ବାଣୀ । ଆନନ୍ଦ ମନେ ଧ୍ରୁବ ଶୁଣି ॥
ତକ୍ଷଣେ ଅଭିଷେକ କଲା । ମୁନିଙ୍କ ଚରଣେ ନମିଲା ॥
ମୁନିଜନଙ୍କ ଆଶୀର୍ବାଦେ । ଜୟ ମଙ୍ଗଳ ବେଦ ନାଦେ ॥
ବିମାନେ ପ୍ରଦକ୍ଷିଣ କରି । ବିଷ୍ଣୁ ଦୂତଙ୍କୁ ନମସ୍କରି ॥
ହିରଣ୍ୟମୟ ରୂପ ଧରେ । ସ୍ୱତେଜେ ଦଶଦିଗ ପୂରେ ॥
ଗଗନେ ଚତୁର୍ବିଧ ବାଦ୍ୟେ । ଦିଗ ପୂରିଲା ଗୀତ ନାଦେ ॥
ପୁଷ୍ପ ବରଷନ୍ତି ହରଷେ । ବିବୁଧେ ଦେଖନ୍ତି ଆକାଶେ ॥
ଧ୍ରୁବ ସ୍ୱର୍ଗକୁ ଯିବାବେଳେ । ଜନନୀ ପଡ଼ିଲା ମନରେ ॥
ଦୁଃଖିନୀ ଅଟେ ମୋ ଜନନୀ । କାହିଁ ରହିଲେ ସେହୁ ପୁଣି ॥
ତାହାଙ୍କୁ ଛାଡ଼ି କି ପ୍ରକାରେ । ଯିବି ମୁଁ ଏବେ ବିଷ୍ଣୁ ପୁରେ ॥
ଦୂତେ ବୁଝିଲେ ଧ୍ରୁବ ଭାବ । ମାତାଙ୍କୁ ଦେଖାଇଲେ ଜବ ॥
ସୁନୀତି ଜନନୀ ସମେତେ । ବସିଲେ ରତ୍ନମୟ ରଥେ ॥
ବିମାନେ ଯାନ୍ତେ ସ୍ୱର୍ଗପଥେ । ଦେବେ ଯେ ବସି ନିଜ ରଥେ
ଧ୍ରୁବକୁ ଦେଖି ପ୍ରଶଂସନ୍ତି । କେବା ଆନନ୍ଦେ କରେ ସ୍ତୁତି ॥

ଏମନ୍ତେ ପୁଷ୍ପବୃଷ୍ଟି ପଥେ । ଗ୍ରହଙ୍କୁ ଦେଖିଲେ ଅଗ୍ରତେ ॥
ତ୍ରୈଲୋକ୍ୟ ଜିଣି ଦିବ୍ୟ ଯାନେ । ମୁନିଙ୍କୁ ଦେଖିଲା ଗଗନେ ॥
ମୁନିଙ୍କି ନମିଲା ଆନନ୍ଦେ । ବିଜୟେ କଲା ବିଷ୍ଣୁ ପଦେ ॥
ସେ ବିଷ୍ଣୁ ପଦର ମହିମା । କେ କହି ପାରେ ଗୁଣ ସୀମା ॥
ଯେ ପ୍ରାଣୀ ଶାନ୍ତସମ ଦୃଶ୍ୟ । ଅଶେଷ ଜନଙ୍କ ବିଶ୍ୱାସ ॥
ହରି ଚରଣେ ଚିତ୍ତ ଯାର । ସନ୍ତୋଷ ଶୁଦ୍ଧ ସାଧୁ ଧୀର ॥
ଯେ ପ୍ରାଣୀ ସେ ପୁରେ ପଶନ୍ତି । ମାୟା ବନ୍ଧନୁ ନିସ୍ତରନ୍ତି ॥
ଏଣୁ ଉତ୍ତାନପାଦ ସୁତ । ବିଷ୍ଣୁର ପରମ ଭକତ ॥
ତ୍ରିଲୋକ ଚୂଡ଼ାମଣି ସ୍ଥାନେ । ବସିଲା ନିଶ୍ଚଳ ଆସନେ ॥
ଗମ୍ଭୀର ବେଗେ କାଳଚକ୍ରେ । ବାୟୁ ରସନା ଅତିରେକେ ॥
ଗ୍ରହ ନକ୍ଷତ୍ର ତାରାଗଣେ । ଭ୍ରମନ୍ତି ମେଧି ଆକର୍ଷଣେ ॥
ତାର ମହିମା ଯଶ ଘୋଷି । ବୀଣା ଶବଦେ ଦେବ ଋଷି ॥
ପ୍ରଚେତାଗଣେ ଅଗ୍ରେ ଥାଇ । ନୃତ୍ୟ କରନ୍ତି ବୀଣା ବାଇ ॥
ମାତୃ ସପତ୍ନୀ ବାଦ୍ୟ ଯନ୍ତେ । ବନସ୍ତେ ପଶିଲା ଯେମନ୍ତେ ॥
ଯେମନ୍ତେ ହରିଙ୍କୁ ତୋଷିଲା । ଜନନୀ ସଙ୍ଗେ ସ୍ୱର୍ଗ ଗଲା ॥

## ମୈତ୍ରେୟ ଉବାଚ

ଶୁଣି ହେ ବ୍ୟାସଙ୍କ କୁମର । ତୁ ସାଧୁଜନ ମଧ୍ୟେ ବର ॥
ତୁ ଯେଣୁ ପଚାରିଲୁ ମୋତେ । ଧ୍ରୁବ ଚରିତ ଭାଗବତେ ॥
ଉତ୍ତମ ଯଶ ଧ୍ରୁବ ବାଣୀ । ଯେ ଏହା ଏକମନେ ଶୁଣି ॥
ଶୁଣି କହନ୍ତି ସାଧୁମେଳେ । ମିଳନ୍ତି ବିଷ୍ଣୁର ମନ୍ଦିରେ ॥
ଯଶ ଆୟୁଷ ଜନମାନ । ସ୍ୱର୍ଗେ ନିବାସ ସ୍ୱସ୍ତୟନ ॥
ବିଘ୍ନ ସମୂହେ ନାହିଁ ଭ୍ରାନ୍ତି । ସକଳ କ୍ଲେଶୁ ତରିଯାନ୍ତି ॥
ବିପ୍ର ସମୀପେ ପ୍ରାତଃକାଳେ । ଗୋବିନ୍ଦ ଭକ୍ତି ଭାବ ବଳେ ॥
ପୌର୍ଣ୍ଣମୀ ଅମାବାସ୍ୟା ଦିନେ । ଦ୍ୱାଦଶୀ ଶ୍ରବଣା ବିଧାନେ ॥
ଦିବସ କ୍ଷୟ ବ୍ୟତିପାତେ । ସଂକ୍ରାନ୍ତି ଅର୍କବାର ଯୁକ୍ତେ ॥
ଶ୍ରଦ୍ଧାପୂର୍ବକ ଯେ ପଢ଼ନ୍ତି । ଅଥବା ଶ୍ରବଣେ ଶୁଣନ୍ତି ॥
ଛାନେ ସନ୍ତୋଷ ପ୍ରାଣୀଙ୍କର । ଚତୁରବର୍ଗ ନୋହେଁ ଦୂର ॥
ସକାମେ ଚିତ୍ତେ ଚିନ୍ତେ ଯେବେ । ଶୁଣନ୍ତି ଧନ ପୁତ୍ର ଲଭେ ॥
କୁଳେ ସୁପୁତ୍ର ହୁଏ ଜାତ । ଶୁଣି ଏ ଧ୍ରୁବର ଚରିତ ॥
ସଂସାର ଜନ ହିତେ ଗୀତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଧ୍ରୁବ ଧ୍ରୁବଲୋକ ଗମନେ ନାମ ଚତୁର୍ଦ୍ଦଶୋଽଧ୍ୟାୟ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ମୈତ୍ରେୟ ବାଣୀ ଶୁଣି କର୍ଣ୍ଣେ । ଆନନ୍ଦ ବିଦୁରର ମନେ ॥
ଧ୍ରୁବ ଯେ ଜନନୀ ସହିତେ । ନିଶ୍ଚଳେ କଛେ ପରିଯନ୍ତେ ॥
ନମିଲା ଯାଇ ଧ୍ରୁବପଦେ । ଜ୍ୟୋତିଷ ଗଣ ଚକ୍ର ମଧେ ॥

### ବିଦୁର ଉବାଚ

ମୈତ୍ରେୟ ପାଦେ କର ଦେଇ । ଆନନ୍ଦେ ବିଦୁର ପୁଚ୍ଛଇ ॥
ଭୋ ମୁନି ପ୍ରଚେତା ବଚନେ । ଧ୍ରୁବ ଯେ ଗଲା ନିଜ ସ୍ଥାନେ ॥
କେବଣ ବଂଶ କେବା ଜାତି । କାହାର ପୁତ୍ର ସେ ବୋଲାନ୍ତି ॥
ପୂର୍ବେ ନାରଦର ବଚନେ । ଯଜ୍ଞ ଆରମ୍ଭି କେଉଁ ଜନେ ॥
ହରିଙ୍କି କ୍ରିୟାଯୋଗେ ପାଇ । ଭବୁ ତରିଲେ ଦଶ ଭାଇ ॥
ଯେ ଧର୍ମ ଶୀଳ ପ୍ରଚେତସ । ଯଜ୍ଞରେ ବିଷ୍ଣୁ କରି ତୋଷ ॥
ସେ କଥା କହ ମୁନି ମୋତେ । ସଂସାରୁ ତରିବି ଯେମନ୍ତେ ॥

### ମୈତ୍ରେୟ ଉବାଚ

ଧ୍ରୁବର ପୁତ୍ର ଗୁଣଧାମ । ଜ୍ୟେଷ୍ଠ ଉତ୍କଳ ତାର ନାମ ॥
ତାହାକୁ ଅଧ ରାଜ୍ୟେ ସ୍ଥାପେ । ଧ୍ରୁବ ଯେ ବନେ ଗଲା ତପେ ॥
ସେ ବସି ରାଜାର ଆସନେ । ଉତ୍ତମ ରତ୍ନ ସିଂହାସନେ ॥
ସୁଖ ନ ଲଭେ ଦୁଃଖ ମନେ । ପିତାର ଯାତ୍ରା ଶୁଣି କର୍ଣ୍ଣେ ॥
ସେ ଯେ ସ୍ୱଭାବେ ଆତ୍ମଜ୍ଞାନୀ । ସମଦରଶୀ ବୁଦ୍ଧି ଘେନି ॥
ଦେଖଇ ସର୍ବଭୂତେ ହରି । ସ୍ଥାବର ଜଙ୍ଗମାଦି କରି ॥
ଏକାନ୍ତ ଆତ୍ମା ବୋଧରସେ । ଗୁଣ ପ୍ରବାହେ ସେ ନ ମିଶେ ॥
ଜଡ଼ାନ୍ଧ ବଧିରଙ୍କ ପ୍ରାୟେ । ଭସ୍ମ ଭୂଷିତ ଶୁଦ୍ଧ ଦେହେ ॥
ବୁଲଇ ନାନା ମାର୍ଗେ ଲୁଚି । କେହି ନ ପାରେ ତାକୁ ଲକ୍ଷି ॥
ଏମନ୍ତ ତାର ରୂପ ଦେଖି । ବନ୍ଧୁ ବାନ୍ଧବ ମନେ ଦୁଃଖୀ ॥
ମନ୍ତ୍ରୀ ଅମାତ୍ୟ ଗଣେ ମିଳି । ରାଜ୍ୟ ରକ୍ଷଣେ ମନେ ଭାଳି ॥
ବତ୍ସର ତା ଅନୁଜ ନାମ । ସୁନ୍ଦର ସର୍ବ ଗୁଣ ଧାମ ॥
ତାହାର କୁଶଳ ବିଚାରି । ସ୍ୱରାଜ୍ୟେ ଅଭିଷେକ କରି ॥
ଥାପିଲେ ନୃପତି ଆସନେ । ଏମନ୍ତେ ଗଲା କେତେ ଦିନେ ॥
ସୁବୀଥି ନାମେ ପତ୍ନୀ ତାର । ଜ୍ୟୋତିଷ ଗୁଣେ ସେ ଗମ୍ଭୀର ॥
ତାର ଉଦରେ ସୁତେ ଜାତ । ହୋଇଲେ ଗୁଣେ ଅପ୍ରମିତ ॥
ପୁଷ୍ପାର୍ଣ୍ଣ ତୀଗ୍ମକେତୁ ନାମ । ଈଶ ଉର୍ଜ୍ଜ ଯେ ଅନୁପମ ॥
ବସୁଜୟ ଏ ଷଟ ସୁତେ । ଗୁଣେ ବିଖ୍ୟାତ ଏ ଜଗତେ ॥
ପ୍ରଭା ଦୋଷା ଯେ ବେନି ନାରୀ । ପୁଷ୍ପାର୍ଣ୍ଣ ତୁଲେ ବିଭାକରି ॥
ସୁପ୍ରଭା ଗର୍ଭେ ବେନି ସୁତ । ହୋଇଲେ ଜଗତେ ବିଖ୍ୟାତ ॥
ପ୍ରାତଃ ମଧ୍ୟାହ୍ନ ସାୟଂକାଳ । ସ୍ୱଭାବେ ତେଜ ଅନର୍ଗଳ ॥
ପ୍ରଦୋଷ ଅର୍ଦ୍ଧ ରାତ୍ରେ ବୃଷ୍ଟି । ଦୋଷର ଗର୍ଭେ ତିନି ସୃଷ୍ଟି ॥
ବୃଷ୍ଟର ପତ୍ନୀ ପୁଷ୍କରିଣୀ । ତା ଗର୍ଭେ ସର୍ବ ତେଜା ଜନ୍ମି ॥
ତାହାର ନାମ ସୁଚାରିଣୀ । ଅବଳା ମଧେ ଶିରୋମଣି ॥
ଚାକ୍ଷୁଷ ମନୁ ତାର ବୀର୍ଯ୍ୟେ । ଜନ୍ମିଲେ ଆକୁତିର ଗର୍ଭେ ॥
ନଡ୍ୱୋଳା ଚାକ୍ଷୁଷର ନାରୀ । ରୂପେ କମଳା ନୋହେ ସରି ॥
ତାର ଉଦରେ ବାର ସୁତେ । ଜନ୍ମିଲେ ବିଷ୍ଣୁ ତେଜଯୁତେ ॥
ନାମେ ସେ ପୁରୁକୃଷ ରତ । ଦ୍ୟୁମ୍ନ ସତ୍ୟ ଯେ ଧୃତ ବ୍ରତ ॥
ସେ ଷଟପୁତ୍ର ଷଟ ଭାଇ । ଶୁଣ ତାହାର ନାମ କହି ॥
ଅଗ୍ନିସୋମ ଯେ ଅତିରାତ୍ର । ପ୍ରଦ୍ୟୁମ୍ନ ଶିବି ଯେ ଉନ୍ମୁକ ॥
ଉନ୍ମୁକ ତହୁଁ ଷଟସୁତ । ହୋଇଲେ ମନୁବଂଶେ ଖ୍ୟାତ
ଅଙ୍ଗ ସୁମନ ସ୍ୱାତୀ ତିନି । କ୍ରତୁ ଅଙ୍ଗିରା ଗାୟ ଘେନି ॥
ସୁନିଥା ଯମର ଦୁହିତା । ଅଙ୍ଗର ଅଟେ ସେ ବନିତା ॥
ବେଢ଼ା ତାହାର ଗର୍ଭୁ ଜାତ । ଶୁଣ ହେ ତାହାଙ୍କ ଚରିତ ॥
ସେ ପୁଣି ମାତାମହ ଦୋଷେ । ଦୁଷ୍ଟ ହୋଇଲେ ମନୁବଂଶେ ॥
ତାହାର ଦେଖି ଦୁଷ୍ଟପଣ । କୋପେ ଶାପିଲେ ମୁନିଗଣ ॥
ପୁଣି ତାହାର ମୃତଗାତ୍ରେ । ବିପ୍ରେ ମନ୍ଥିଲେ ପୁତ୍ର ଅର୍ଥେ ॥
ଦକ୍ଷିଣ ହସ୍ତେ କୁଶ ଭିଡ଼ି । ମନ୍ଥନ କଲେ ବେଦ ପଢ଼ି ॥
ପ୍ରଜା ଅନାଥ ଅରାଜଦେ । ଦୁଷ୍ଟେ ପୀଡ଼ିତ ଅତିରେକେ ॥
ତା ଦେହୁ ପୃଥୁ ନାମେ ହରି । ଜନ୍ମିଲେ ରାଜା ରୂପ ଧରି ॥
ତା ଶୁଣି ସନ୍ତୋଷେ ବିଦୁର । ମୁନି ଚରଣେ ଦେଇ କର ॥
ଲୋମ ପୁଲକ ତାର ଦେହୀ । ସ୍ୱଭାବେ କୃତ୍ୟ କୃତ୍ୟ ହୋଇ ॥

### ବିଦୁର ଉବାଚ

ଯେ ଅଂଶେ ସାଧୁଶୀଳ ନିଧି । ସର୍ବ ଲକ୍ଷଣ ଶ୍ରେଷ୍ଠ ବୁଦ୍ଧି ॥
ବ୍ରାହ୍ମଣ ପ୍ରଜା ରକ୍ଷାକରି । ସେ ସର୍ବ ଧର୍ମେ ଅଧିକାରୀ ॥
ଯେ ବେଣୁନାମେ ତାର ସୁତ । ଦୁଷ୍ଟ ହୋଇଲେ ସେ କେମନ୍ତ ॥
ପ୍ରଜାଏ ରାଜା ଦୁଷ୍ଟ ପଣେ । ଭୟେ ପଶିଲେ ଘୋରବନେ ॥
କିପାଁ ବ୍ରାହ୍ମଣ କୋପ କଲେ । ତାହାକୁ କିପାଇଁ ନାଶିଲେ ॥
ସେ ବିପ୍ରବର ଧର୍ମଜ୍ଞାତା । ଆଗମ ନିଗମ ବକତା ॥
ଏତେ ଅନ୍ୟାୟ କିମ୍ବା କଲେ । ରାଜାଙ୍କୁ ଘୋର ଶାପ ଦେଲେ ॥
ରାଜାଙ୍କ ଶରୀରେ ନିଶ୍ଚଳେ । ବସନ୍ତି ସର୍ବ ଦିଗପାଳେ ॥
ସେ ରାଜାବିଷ୍ଣୁ ତେଜ ବହି । ସ୍ୱଧର୍ମେ ପ୍ରଜାଙ୍କୁ ପାଳଇ ॥
ଯମର ସୁତାସୁତ ଯେଣୁ । ଦୁଷ୍ଟ ହୋଇଲେ ଅବା ତେଣୁ ॥

ଏକଥା କହ ମୁନି ମୋତେ । ସଂଶୟ ନ ରହୁ ମୋ ଚିତ୍ତେ ॥

## ମୈତ୍ରେୟ ଉବାଚ

ଶୁଣ ହେ ବେଣୁ ଦୁଷ୍ଟପଣ । କହିବା ନିମିତ୍ତ କାରଣ ॥
ଅଙ୍ଗ ଯେ ଅଶ୍ୱ ମେଧ କଲା । ଉତ୍ତମ ଋଷିଙ୍କୁ ବରିଲା ॥
ସକଳେ ମିଳି ବେଦନାଦେ । ଅନଳ ପୂଜିଲେ ସମାଧେ ॥
ଯଜ୍ଞକୁଣ୍ଡକୁ ବିପ୍ରେ ଚାହିଁ । ଦେଖିଲେ ଦେବଗଣେ ନାହିଁ ॥
ଇନ୍ଦ୍ରାଦି ଦଶଦିଗପାଳେ । ଯଜ୍ଞରେ କେହି ନ ମିଳିଲେ ॥
ଦେଖି ବିସ୍ମୟ ମୁନିଜନେ । ନିକଟେ ରାଇ ଯଜମାନେ ॥
ବୋଇଲେ ରାଜା ମୁଖ ଚାହିଁ । ଏ ଯଜ୍ଞ କର କିସପାଇଁ ॥
ଶୁଣ ରାଜନେ ସାବଧାନେ । କିବା କଳ୍ପନା ତାର ମନେ ॥
ପବିତ୍ର ବସ୍ତୁ ଶ୍ରଦ୍ଧାକରି । ସକଳ ନିଗମ ଉଚ୍ଚାରି ॥
ଆମ୍ଭେ ସକଳେ ଧ୍ରୁବବ୍ରତା । ତୁମ୍ଭେ ସ୍ୱଭାବେ ଶୁଦ୍ଧଚେତା ॥
ମନ୍ତ୍ର ଉଚ୍ଚାରି ଆମ୍ଭେ ତୁଣ୍ଡେ । ଆହୁତି ଦେଲୁ ଯଜ୍ଞକୁଣ୍ଡେ ॥
ଦେବେ ନଇଲେ କେଉଁଭାବେ । ତାର ପ୍ରସ୍ତାବ କହ ଏବେ ॥
ସକଳ କର୍ମ ସାକ୍ଷୀ ଦେବେ । କିମ୍ପା ନଇଲେ ଯଜ୍ଞଭାବେ ॥

## ମୈତ୍ରେୟ ଉବାଚ

ଅଙ୍ଗ ଯେ ବିପ୍ରମୁଖୁଁ ଶୁଣି । ସ୍ୱଧର୍ମ ବିପ୍ରେ ପରିମାଣି ॥
ସଭାଜନଙ୍କ ମୁଖ ଚାହିଁ । ଏ ଯଜ୍ଞ କଲୁ କିସପାଇଁ ॥

## ଅଙ୍ଗରାଜ ଉବାଚ

କି ମନ୍ଦକର୍ମ ମୋର ଅଛି । ଭୋ ବିପ୍ରେ କହ ଧର୍ମ ଲକ୍ଷି ॥
ଦେବେ ନଇଲେ ଯଜ୍ଞଭାଗେ । କାରଣ କହ ମୋର ଆଗେ ॥

## ସଦସ୍ୟଗଣ ଉବାଚ

ଏମନ୍ତେ ରାଜା ମୁଖୁଁ ଶୁଣି । ସ୍ୱଧର୍ମେ ବିପ୍ରେ ପରିମାଣି ॥
ବୋଇଲେ ରାଜାମୁଖ ଚାହିଁ । ତୋ ଦେହେ କିଛି ପାପ ନାହିଁ ॥
ପୂର୍ବ ଅର୍ଜିତ କର୍ମଫଳେ । ସନ୍ତତି ନାହିଁ ତୋର କୋଳେ ॥
ଅପୁତ୍ର ଦୋଷେ ଦେବଗଣେ । ନଇଲେ ଯଜ୍ଞ ନିମନ୍ତଣେ ॥
ତୁ ଏବେ ପୁତ୍ରଯଜ୍ଞ କର । ଯଜ୍ଞେ ଯଜ୍ଞପୁରୁଷ ବର ॥
ତେବେ ସକଳ ଦେବଗଣ । ତୋ ଯଜ୍ଞେ ହୋଇବେ ବରଣ
ସେ ବିଷ୍ଣୁ ହବିର୍ଭାଗ ପାଇ । ତୋହର ଯଜ୍ଞେ ତୋଷ ହୋଇ॥
ସେହରି ପୁତ୍ର ଦେବେ ତୋତେ । ସଂସାରୁ ତରିବୁ ଯେମନ୍ତେ ॥

## ମୈତ୍ରେୟ ଉବାଚ

ଏମନ୍ତେ ସଭାବାକ୍ୟ ଶୁଣି । ସେ ଅଙ୍ଗରାଜା ମନେ ଗୁଣି ॥
ଯଜ୍ଞେ ଯଜ୍ଞ ପୁରୁଷ ତୁଣ୍ଡେ । ଆହୁତି ଦେଲା ହୋମକୁଣ୍ଡେ ।
ତକ୍ଷଣେ ଯଜ୍ଞକୁଣ୍ଡୁ ଜାତ । ପୁରୁଷେ ହୋଇଲା ସମ୍ଭୂତ ॥
ହୃଦେ ଲମ୍ବଇ ହେମ ହାର । କଟୀରେ ନିର୍ମଳ ଅମ୍ବର ॥
ଶଙ୍ଖ କମଳ ଚତୁର୍ଭୁଜେ । କୋଟି କନ୍ଦର୍ପ ଜିଣି ରାଜେ ॥
ସେ ତେଜ ଗଞ୍ଜେ ଦିବ୍ୟକାନ୍ତି । ଦେଖିଣ ବିପ୍ରେ କଲେ ନତି ॥
ଷୋଡ଼ଶ ଉପଚାର ଯୁକ୍ତେ । ଯଜ୍ଞେ ପୂଜିଲେ ଜଗନ୍ନାଥେ ॥
ବିଷ୍ଣୁଙ୍କୁ ପୂଜି ଯଜ୍ଞବାକ୍ୟେ । ବର କହିଲେ ଯଥାଯୁକ୍ତେ ॥
ଯାଜ୍ଞିକ ମନ ଜାଣି ହରି । କହନ୍ତି ଶଙ୍ଖ ଚକ୍ରଧାରୀ ॥

## ଯଜ୍ଞପୁରୁଷ ଉବାଚ

ଶୁଣ ଉତ୍ତମ ବିପ୍ରଗଣେ । ଏ ରାଜା ସନ୍ତତି କାରଣେ ॥
ମୋତେ ପୂଜିଲା ଯଜ୍ଞମତେ । ତୁମ୍ଭର କାମ ସାଧ ଅର୍ଥେ ॥
ସିଦ୍ଧ ହୋଇବ ବାଞ୍ଛାଫଳ । ମୋ ଅବଶେଷ ଯେ ନିର୍ମାଲ୍ୟ ॥
ଏହାକୁ ଦିଅ ରାଜା ହସ୍ତେ । ଆଘ୍ରାଣ କରି ନାସାଗ୍ରତେ ॥
ପତ୍ନୀ ଭୁଞ୍ଜିବ ତାର ଯେବେ । ସୁପୁତ୍ର ହେବ ତାର ଗର୍ଭେ ॥

## ମୈତ୍ରେୟ ଉବାଚ

ଏମନ୍ତ କହି ଜନାର୍ଦ୍ଦନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ଯଜ୍ଞପୁରୁଷ ଆଜ୍ଞାଘେନି । ବ୍ରାହ୍ମଣେ କରି ଜୟଧ୍ୱନି ॥
ସୁବର୍ଣ୍ଣ ପାତ୍ର କରେ ଧରି । ପୁରେ ଅମୃତମୟ କ୍ଷୀରୀ ॥
ବିପ୍ରଙ୍କ ବାକ୍ୟେ କ୍ଷୀରୀପାତ୍ର । କରେ ଘେନିଲେ ନୃପନାଥ ॥
ଆଘ୍ରାଣ କରି ନାସାଦ୍ୱାରେ । ଦେଲେ ଯେ ନିଜ ପତ୍ନୀ କରେ ॥
ସେ ପୁଂସବନେ କ୍ଷୀରୀ ଆଣି । ରହି ଭୁଞ୍ଜିଲା ତା ଘରଣୀ ॥
ତକ୍ଷଣେ ପୁଂସବନ ଭାବେ । ପୁତ୍ର ରହିଲା ତାର ଗର୍ଭେ ॥
ସେ ଗର୍ଭ ତାର ଉପଗତେ । କ୍ରମରେ ଜନ୍ମିଲା ଅଦ୍ଭୁତେ ॥
ଦିନକୁ ଦିନ ସେ ବଢ଼ିଲା । ମାତାର ଅଂଶ ନ ଛାଡ଼ିଲା ॥
ସ୍ୱଭାବେ ହୋଇ ଅଧାର୍ମିକ । କ୍ଷତ୍ରିୟ ଭାବେ ଅତିରେକ ॥
ନିରତେ ଧନୁଶର ଧରି । ବନେ ମୃଗୟା ନିତ୍ୟେ କରି ॥
ଦୟା ବିବେକ ନ ବିଚାରେ । ନିର୍ଦ୍ଦୋଷେ ପଶୁଗଣ ମାରେ ॥
ତୁଲ୍ୟ ବୟସ ଶିଶୁମେଳେ । ଯେବେ ଖେଳଇ କୁତୂହଳେ ॥
ତାହାଙ୍କୁ ଦୁଷ୍ଟପଣେ ଦୃଢ଼େ । ଚରଣେ ଚାପି ମୁଣ୍ଡମୋଡ଼େ ॥
ଏମନ୍ତେ ତାର ଦୁଷ୍ଟପଣ । ରାଜାର ଅଗ୍ରେ ପ୍ରଜାଜନ ॥
ରୋଦନ କରି ଉଚ୍ଚତୁଣ୍ଡେ । କର ଅଞ୍ଜଳି ଦେଇ ମୁଣ୍ଡେ ॥
କହନ୍ତି ବେଣୁ ଦୁଷ୍ଟପଣ । ରୋଦନ କରି ପ୍ରଜାଗଣ ॥
ଏମନ୍ତେ ପୁତ୍ର ଗୁଣ ଗୁଣି । ବଳେ ପୁତ୍ରକୁ ଘରେ ଆଣି ॥
ନାନା ପ୍ରକାରେ ଧର୍ମ କହି । ଅନେକ ମତରେ ବୁଝାଇ ॥
ଶୁଣନ୍ତେ ନାନା କୋପ କରେ । ପିତାର ବଚନ ନ ଧରେ ॥

ଦିନକୁ ଦିନ ଦୁଷ୍ଟପଣେ । କୋପ ବହିଲେ ପ୍ରଜାଗଣେ ॥
ଅଙ୍ଗ ତାହାର କର୍ମ ଦେଖି । ଭାଳଇ ଅତି ଦୁଃଖେ ଦୁଃଖୀ ॥
ସୁପୁତ୍ର କୁପୁତ୍ର ବିଚାରେ । ଚିତ୍ତ ନ ରହେ ତାର ଘରେ ॥
ରଜନୀ ଅର୍ଦ୍ଧେ ନୃପବର । ମନ୍ଦିରୁ ହୋଇଲା ବାହାର ॥
ବନେ ପଶିଲା ନରପତି । କେହି ନ ଜାଣେ ତାର ଗତି ॥
ତାହାର ପାତ୍ର ମନ୍ତ୍ରୀଗଣେ । ଅନେକ ଖୋଜି ଘୋରବନେ ॥
ନ ଦେଖି ନଗରେ ମିଳିଲେ । ଅନେକ ପ୍ରକାରେ ଭାଳିଲେ ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା*
*ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ଅରାଜ୍ୟ କରଣେ*
*ବେଣୁ ଜନ୍ମନି ନାମ ପଞ୍ଚଦଶୋଽଧ୍ୟାୟ*

## ଷୋଡଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଭୃଗୁ ଅଙ୍ଗିରା ଆଦି ଯେତେ । ଋଷିଏ ମିଳିଲେ ସମସ୍ତେ ॥
ଭାଳନ୍ତି ଅତି ମନ ଦୁଃଖେ । ପ୍ରଜା ରକ୍ଷଣ ଅରାଜକେ ॥
ବୋଲନ୍ତି ଯେବେ ନାହିଁ ରାଜା । ଦୁଷ୍ଟେ ଲୁଟିବେ ଜନପ୍ରଜା ॥
ଏମନ୍ତ ବିଚାରି ସମସ୍ତେ । ବେଣୁର ଜନନୀ ଅଗ୍ରତେ ॥
ପ୍ରଜା ରକ୍ଷଣେ ଧର୍ମ କହି । ସକଳ ଜନେ ତୁଷ୍ଟ ହୋଇ ॥
ବିଚାର କରି ଅତିରେକେ । ବେଣୁକୁ ରାଜ ଅଭିଷେକେ ।
ନିଜ ଭୁବନେ କଲେ ରାଜା । ଯେଣେ ରଖିବ ଜନ ପ୍ରଜା ॥
ଦୁଷ୍ଟେ ଯେ ଥିଲେ ଦୁଷ୍ଟପଣେ । ଲୁଟିବେ ବୋଲି ପ୍ରଜାଗଣେ ॥
ବେଣୁର ରାଜପଣ କର୍ଣ୍ଣେ । ଶୁଣି ଲୁଚିଲେ ଘୋରବନେ ॥
ଗରୁଡ଼ ଡରେ ଯେହ୍ନେ ନାଗେ । ପଶିଲେ ଗିରି ଘୋର ମାର୍ଗେ ॥
ବେଣୁ ଯେ ରାଜ୍ୟେ ରାଜା ହୋଇ । ରାଜସମ୍ପଦେ ଗର୍ବ ବହି ॥
ସ୍ୱଭାବେ ଦୁଷ୍ଟ ଦୁରାଚାର । ଧର୍ମେ ନ କରଇ ବିଚାର ॥
ଆତ୍ମାକୁ ସିଦ୍ଧ ପ୍ରାୟ ମଣି । ଋଷିଙ୍କ ବଚନ ନ ଶୁଣି ॥
ଲଭିଣ ଅଶେଷ ବିଭୂତି । ମାତିଲା ଯେହ୍ନେ ମତ୍ତହସ୍ତୀ ॥
କାଞ୍ଚନ ରଥେ ବିଜେ କରି । ବୁଲନ୍ତେ କମ୍ପେ ବସୁନ୍ଧରୀ ॥
ନିତ୍ୟେ ସେ ବିପ୍ରଙ୍କୁ ଅଣାଇ । କହଇ ମନେ ତୋଷବହି ॥
ଶୁଣ ହେ ବିପ୍ରେ ମୋର ବାଣୀ । ମୁଁ ଯେ ଜଗତେ ନୃପମଣି ॥
ମୋହର ବଚନ ତୁମ୍ଭର । ସ୍ୱଭାବେ ପାଳିବା ବେଭାର ॥
ଦେଖ ମୋହର ବେନି ଭୁଜ । ଦଶଦିଗପାଳଙ୍କ ତେଜ ॥
ମୁଁ ଯେ ପ୍ରତ୍ୟକ୍ଷେ ଭଗବାନ । ଦେଖ ମୋହର ବର୍ଣ୍ଣ ଚିହ୍ନ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ । ପାଶେ ବସାଇ ପ୍ରଜାଗଣ ॥
ଆତ୍ମାକୁ ସିଦ୍ଧପ୍ରାୟ ମଣି । ବୋଲଇ ଅସମ୍ଭବ ବାଣୀ ॥
ଶୁଣ ସକଳ ପ୍ରଜାଜନେ । ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ ॥
ମୋ ରାଜ୍ୟେ ଯଜ୍ଞ ନ କରିବ । ପିତୃ ଦେବତା ନ ପୂଜିବ ॥
ଦାନ ନ ଦେବ ବିପ୍ର ହସ୍ତେ । ତୀର୍ଥ ନ ଯିବ ପାଦଗତେ ॥
ସଂସାରେ ଧର୍ମ କର୍ମ ଯେତେ । ସକଳ ସମର୍ପିବ ମୋତେ ॥
ମୋ ଠହୁଁ ବଡ଼ ନାହିଁ ଆନ । ମୁଁ ଯେ ପ୍ରତ୍ୟକ୍ଷ ଭଗବାନ ॥
ମୋ ନାମ ଜପୁଥିବ ତୁଣ୍ଡେ । ମୋତେ ପୂଜିବ ଯଜ୍ଞକୁଣ୍ଡେ ॥
ଯେ ମୋର ବାକ୍ୟ ନ କରିବ । ମୋର ରାଜ୍ୟେ ଦଣ୍ଡେହେଁ ନଥିବ
ଜୀବନ ନାଶିବି ତାହାର । ସର୍ବ ସମ୍ପଦ କରି ଚୁର ॥
ଏମନ୍ତ ପୁର ଗ୍ରାମ ଦେଶେ । ହସ୍ତୀର କନ୍ଧେ ଭେରୀ ଘୋଷେ ॥
ଘୋଷଣା ଦେଲା ସର୍ବ ଦେଶେ । ଶୁଣି ସକଳଜନ ତ୍ରାସେ ॥
ବେଣୁର ବାକ୍ୟ ଶିରେ କଲେ । ସକଳ ଧର୍ମ ଉପେକ୍ଷିଲେ ॥
ଜପନ୍ତି ତାର ନାମ ନିତ୍ୟେ । ଭୟେ ଖଟନ୍ତି ପାଦଗତେ ॥
ଏମନ୍ତେ ରାଜା ଦୁଷ୍ଟ ପଣ । ଦେଖି ଭାଳନ୍ତି ମୁନିଗଣ ॥
ବୋଲନ୍ତି ଏକୁ ଆରେ ଚାହିଁ । ଏମନ୍ତ ଶୁଣିଲା ତ ନାହିଁ ॥
ଭୂମିରେ ଯେତେ ରାଜା ଥିଲେ । ଏମନ୍ତ କେବା ପ୍ରକାଶିଲେ ॥
ଯଜ୍ଞ ନ କଲେ ମେଘ ନାହିଁ । ବୃଷ୍ଟି ନ ହେଲେ ଅନ୍ନ କାହିଁ ॥
ଏ ପଞ୍ଚଯଜ୍ଞ କ୍ରିୟା ଲୋପେ । ଅଧର୍ମେ ତ୍ରିଭୁବନ କମ୍ପେ ॥
ଏ ଘୋର ସଙ୍କଟ ପଡ଼ିଲା । ଉଭୟ ଲୋକ ନାଶ ଗଲା ॥
ଆମ୍ଭେ ଏହାକୁ ରାଜା କଲୁ । ସର୍ପକୁ କ୍ଷୀର ପିଆଇଲୁ ॥
ସେ ଯେବେ ବଢ଼େ ଅତିଘୋରେ । କ୍ଷୀରଦାତାର ପ୍ରାଣ ହରେ ॥
ଆମ୍ଭେ ନ ବୁଝି କର୍ମ କଲୁ । ବେଣୁକୁ ରାଜପଣ ଦେଲୁ ॥
ଖଳକୁ ଦେଲୁ ରାଜ୍ୟେ ବାସ । ଆମ୍ଭେ ହୋଇଲୁ ଏବେ ନାଶ ॥
ସୁନିଥା ଗର୍ଭରୁ ସମ୍ଭୂତ । ସ୍ୱଭାବେ ଯମ ସୁତାସୁତ ॥
ଆମ୍ଭେ ଏହାର ପାଶେ ଯିବା । ଧର୍ମ ବଚନ ବୁଝାଇବା ॥
ଏ ଯେବେ ବୋଲ ନ କରିବ । ଅଧର୍ମ ଭାବେ ନାଶ ଯିବ ॥
ଏତେ ବିଚାରି ବିପ୍ରଜନେ । ମିଳିଲେ ବେଣୁ ସନ୍ନିଧାନେ ॥
କଲ୍ୟାଣ କରି ବେଦ ନାଦେ । ବୋଧିଲେ ସାମଗାନ ବାଦେ ॥

### ଋଷିଗଣ ଉବାଚ

ହେ ନୃପନାଥ ଶୁଣ ଧୀରେ । ଯାହା କହିବୁ ତୋ ଛାମୁରେ ॥
ଯେଣେ ହୋଇବ ତୋର ଲାଭ । ଜଗତେ ଯଶକୀର୍ତ୍ତି ଥିବ ॥
ମନ ବଚନ ଦେହଗତେ । ଯେ ପ୍ରାଣୀ ଥାନ୍ତି ଜନ ହିତେ ॥

ଏ ବେନି ଲୋକ ସେ ଜିଣନ୍ତି । ନ କଲେ ଜୀବନ୍ତେ ମରନ୍ତି ॥
ପ୍ରଜାଏ ଧର୍ମ ଆଚରିଲେ । ନୃପ ସମ୍ପଦ ବଢ଼େ ଭଲେ ॥
ସେ ଧର୍ମ ଯେବେ ନାଶ ଯାଇ । ନୃପ ସମ୍ପଦ ଆଉ କାହିଁ ॥
ପ୍ରଜାଙ୍କୁ ନିଶ୍ଚିନ୍ତ ଯେ କରେ । ଚୌର୍ଯ୍ୟାଦି ସର୍ବ ଭୟ ହରେ ॥
ସେ ରାଜା ଇହ ପରଲୋକେ । ବିଷ୍ଣୁଙ୍କୁ ପୂଜନ୍ତି ହରଷେ ॥
ସେ ରାଜା ଯଜ୍ଞେ ପୂଜା ପାଇ । ବିଷ୍ଣୁ ସନ୍ତୋଷେ ଦୟା ବହି ॥
ରାଜା ପରଜା ସୁଖ ବହେ । ଏ ଧର୍ମ ଚାରିବେଦ କହେ ॥
ବିଷ୍ଣୁର ପାଦପଦ୍ମ ତଳେ । ଖଟନ୍ତି ସର୍ବ ଦିଗପାଳେ ॥
ସେ ସର୍ବ ଯଜ୍ଞ ମୟ ହରି । ମନୁ ଦେବତା ଆଦି କରି ॥
ସେ ହରି ଯଜ୍ଞେ ହେଲେ ତୋଷ। ସଂସାରେ ରହିବ ତୋ ଯଶ ॥
ସର୍ବ ଦେବତା ତାର ଦେହେ । ବସନ୍ତି ସର୍ବ ଲୋମ ପ୍ରାୟେ ।
ସେ ସର୍ବ ଦେବମୟ ହରି । ତାର ଚରଣ ପୂଜା କରି ॥
ଲଭିବୁ ସର୍ବ ଶୁଭ ଭଲେ । ଆମ୍ଭର ଧର୍ମ ବାକ୍ୟ କଲେ ॥

## ବେଣୁ ଉବାଚ

ଋଷିଙ୍କ ବୋଲ ଶୁଣି କର୍ଣ୍ଣେ । ରାଜା ବୋଲଇ କୋପମନେ॥
ଯାର ପୁରୁଷେ ଲୋଭ ବଢ଼ି । ଯୁବତୀ କୂଳ ଧର୍ମ ଏଡ଼ି ॥
ଏଣୁ ଏ ମୂଢ଼ ପ୍ରାଣୀ ଯେତେ । ବର୍ଜନ୍ତି ଶାସ୍ତ୍ର ଅବିରତେ ॥
ତାହାଙ୍କ ଧର୍ମ ଜ୍ଞାନ ନାହିଁ । ଉଭୟ ଲୋକେ ସୁଖ କାହିଁ ॥
ଯେ ଯଜ୍ଞ ପୁରୁଷ ତୁମ୍ଭର । ଯାର ଚରଣେ ସେବାକର ॥
ସେ କଥା ଶୁଣ ବ୍ରହ୍ମଚାରୀ । ସକଳ କହିବା ବିସ୍ତାରି ॥
ଦେଖ ନୃପତି ଏ ଶରୀରେ । ଦେବେ ବସନ୍ତି ଅଧିକାରେ ॥
ବିଷ୍ଣୁ ବିରଞ୍ଚି ମହେଶ୍ୱର । ଇନ୍ଦ୍ର ପବନ ଦିବାକର ॥
ଯମରାଜନ ଧର୍ମଦାତା । ସୋମ ଧରଣୀ ଭସ୍ମ କର୍ତ୍ତା ॥
ଇନ୍ଦ୍ର ବରୁଣ ଆଦି ଯେତେ । ସର୍ବେ ବସନ୍ତି ନୃପ ଗାତ୍ରେ ॥
ଯେ ବର ଶାପ ଦ୍ୟନ୍ତି ଲୋକେ । ନୃପ ଶରୀର ଏକେ ଏକେ ॥
ଏଣୁ ଏ ନରପତି ଦେହେ । ପ୍ରତକ୍ଷ୍ୟ ସର୍ବ ଦେବମୟେ ॥
ଏ ଦେହେ ମହିମା ନ ଜାଣି । ଅଧର୍ମ ଧର୍ମ ପରିମାଣି ॥
ଏଣୁ ତୁମ୍ଭର କର୍ମ ଯେତେ । ସେ ଧର୍ମେ ପୂଜା କର ମୋତେ॥
ମୋହର ଅଙ୍ଗେ ବନ୍ଦୀ କର । ଏ ଧର୍ମ ସ୍ୱକର୍ମ ତୁମ୍ଭର ॥
ମୁଁ ଯଜ୍ଞ ଭାଗ ଆଗ ପାଇ । ମୋ ତହୁଁ ଅନ୍ୟ ଦେବ ନାହିଁ
ଏମନ୍ତ ବିପରୀତ ମତି । ଭଜିଲା ପାଷାଣ୍ଡଙ୍କ ଗତି ॥
ମୁନିଙ୍କ ଅନୁନୟ ବାଣୀ । ନିର୍ଣ୍ଣେ ନ କଲା ନୃପମଣି ॥
ସ୍ୱଭାବେ ଦୁଷ୍ଟ ଅନର୍ଗଳ । ଆତ୍ମାକୁ କଲା ଅମଙ୍ଗଳ ॥
ଏମନ୍ତେ ମୁନିଙ୍କ ବଚନେ । ଅବଜ୍ଞା କଲା ଦିନେ ଦିନେ ॥
ଆତ୍ମା ପଣ୍ଡିତ ମାନ୍ୟକରେ । ମୁନିଙ୍କ ବଚନ ନ ଧରେ ॥
ମୁନିଏ ଦିନେ ଦିନେ ଆସି । ଧର୍ମ କହନ୍ତି ପାଶେ ବସି ॥
କେବେହେଁ ନ କଲା ବଚନ । ମୁନିଙ୍କି କଲା ଅପମାନ ॥
ତାହାର ଅଧର୍ମ ବିଶ୍ୱାସେ । ମୁନିଏ ବୋଲନ୍ତି ଯେ ରୋଷେ
ବୋଲନ୍ତି ଏକୁ ଆରେ ଚାହିଁ । ଏହା ଜୀବନେ କାର୍ଯ୍ୟ ନାହିଁ ॥
ଏହାର ଅଧର୍ମ ବିଚାରେ । ପ୍ରଜାଏ ନାଶିବେ ସଂସାରେ ॥
ଅସାଧୁ ବ୍ରତ ଏହା ଦେହେ । ନୃପ ଆସନେ ଯୋଗ୍ୟ ନୁହେଁ ॥
ଏ ରାଜା ଲଜ୍ୟା ଦୂରକରି । ଯଜ୍ଞେ ନିନ୍ଦନ୍ତି ନରହରି ॥
କେ ଏହା ସହେ ଦେହବହି । ବେଣୁକୁ ରାଜପଣେ ଥୋଇ ॥
ଏମନ୍ତେ ବେଣୁ ନାଶ ପାଇଁ । ମୁନିଏ ମହାକୋପ ବହି ॥
ହୁଂକାର କରି ବେଦବାଣ । ପ୍ରହାର କଲେ ବେଣୁପ୍ରାଣ ॥
ଅଚ୍ୟୁତ ନିନ୍ଦାଫଳ ଥିଲା । ତକ୍ଷଣେ ଦେହୁ ପ୍ରାଣ ଗଲା ॥
ବେଣୁକୁ ମାରି ମୁନିଜନେ । ଗମିଲେ ଯେ ଯାହା ଭୁବନେ॥
ସୁନିଥା ପୁତ୍ରର ମରଣ । ଦେଖି କରଇ ବିଚାରଣ ॥
ଅବଶ୍ୟ ଏହାର ଶରୀରେ । ପୁତ୍ର ଉପୁଜିବ ସଂସାରେ ॥
ହୋଇବେ ପ୍ରଜାଜନେ ସୁଖୀ । ଏତେ ବିଚାରି ଅଶ୍ରୁମୁଖୀ ॥
ତଇଳ ଦ୍ରୋଣୀ ମଧ୍ୟେ ଥୋଇ । ବେଣୁର ଶରୀର ପାଳଇ ॥
ଏହି ସମୟେ ଏକଦିନେ । ସରଯୂ ଜଳେ ବିପ୍ରଜନେ ॥
ସେ ଜଳେ ପ୍ରାତଃ ସ୍ନାନକରି । ହୋମେ ପୂଜିଲେ ନରହରି ॥
ବିଷ୍ଣୁର କଥା ଗୋଷ୍ଠୀ କଲେ । ଏମନ୍ତେ ଉତ୍ପାତ ଦେଖିଲେ ॥
ଶୁଭଇ ଲୋକେ ମୁଖ ଘୋଷ । ଭୟେ କମ୍ପଇ ଦଶଦିଶ ॥
ପ୍ରଜାଏ ଅନାଥ ଆତୁରେ । ଭୟେ ପଳାନ୍ତି ଗିରି ଘୋରେ ॥
ମୁନି ଚାହାନ୍ତି ଚାରିଦିଗେ । ଧୂଳି ଉଡ଼ିଲା ବାୟୁଯୋଗେ ॥
ଦୁଷ୍ଟେ ଧାମନ୍ତି ଶସ୍ତ୍ର ଧରି । ଡାକନ୍ତି ମାର ମାର କରି ॥
ତାଙ୍କ ଚରଣ ଧୂଳିବେଗେ । ଆଚ୍ଛାଦି ଉଡ଼େ ଦଶଦିଗେ ॥
ଦୁଷ୍ଟେ ଲୁଟନ୍ତି ପ୍ରଜାଧନ । ଅଦ୍ଭୁତେ ଶୁଭେ ଘୋର ସ୍ୱନ ॥
ମୁନିଏ ପ୍ରଜା ଦୁଃଖ ଦେଖି । ମନେ ହୋଇଲେ ଗୁରୁ ଦୁଃଖୀ ॥
ବୋଲନ୍ତି କଲ ମନ୍ଦ କୃତ୍ୟ । ପ୍ରଜାଏ ହୋଇଲେ ଅନାଥ ॥
ରାଜା ନ ଥିଲେ ପ୍ରଜା କାହିଁ । ଏମନ୍ତେ ବୋଲି ଦୟାବହି ॥
ବୋଲନ୍ତି ବ୍ରାହ୍ମଣ ବେଭାରେ । ସଂସାରେ ପର ଉପକାରେ ॥
କ୍ଷୀର ଯେସନେ ଭିନ୍ନ ଭାଣ୍ଡେ । ଯତ୍ନ କରନ୍ତି ଦଣ୍ଡେ ଦଣ୍ଡେ ॥
କେବେହେ ନୋହେ ସେ ନିରୋଧ । ଏମନ୍ତ ମଣି ଶାସ୍ତ୍ର ବାଦ ॥
ବୋଲନ୍ତି ଅଙ୍ଗ ରାଜ ବଂଶେ । ଧାର୍ମିକ ରାଜା ବିଷ୍ଣୁ ଅଂଶେ ॥
ସେ ରାଜା ଗୋବିନ୍ଦ ଆଶ୍ରୟେ । ପ୍ରଜା ପାଳନେ ସ୍ନେହବହେ ॥

ତାର ଜୀବନ ଏ ସଂସାରେ । ଜୀଅଇ ପର ଉପକାରେ ॥
ଏତେ ବିଚାରି ବିପ୍ରବରେ । ପିଣ୍ଡ ମନ୍ଥିଲେ ବେଦସ୍ୱରେ ॥
ବାହୁକ ନାମେ ନର ଅଂଶେ । ଅଦ୍ଭୁତେ ହୋଇଲା ପୁରୁଷେ ॥
କାକହୁଁ କୃଷ୍ଣ ଅଙ୍ଗ ତାର । ଅତି ଦୁର୍ବଳ ତା ଶରୀର ॥
ଭ୍ରୂକୁଟୀ କୁଟିଳ ବଦନ । ଅରୁଣ ବିରାଜେ ଲୋଚନ ॥
ବୃଦ୍ଧ ଚରଣ ହ୍ରସ୍ୱ ନାଶ । ତାମ୍ରର ପ୍ରାୟ ମୁଣ୍ଡ କେଶ ॥
ବିପ୍ରଙ୍କ ମୁଖକୁ ଅନାଇ । କହଇ କି କରିବି ମୁହିଁ ॥
ତାହାର ରୂପ ଦେଖି ମନେ । ବିଚାର କଲେ ମୁନିଜନେ ॥
ଦେଖ ଅଦ୍ଭୁତ ଏହା କାୟେ । ରାଜ ଆସନେ ଯୋଗ୍ୟ ନୁହେ ॥
ଏହାକୁ ଆମ୍ଭେ ରାଜା କଲେ । ସଂସାର ନାଶିବ ଏ ଭଲେ ॥
ଏମନ୍ତେ ବିପ୍ରେ ବିଚାରିଲେ । ନିଷାଦ ବୋଲି ଆଜ୍ଞା ଦେଲେ ॥
ବୋଇଲେ ବନେ ହୁଅ ରାଜା । ଗିରି କାନନେ ତୋତେ ପୂଜା
ନିଷାଦ ଗଣେ ତାର ବଂଶେ । ବନେ ରହିଲେ ଗିରି ଦେଶେ
ଯେ ବେଣୁ ଦେହେ ପାପ ଥିଲା । ନିଷାଦ ରୂପେ ବନେ ଗଲା ॥
ନିର୍ମଳ ଦେଖି ବେଣୁ ଅଙ୍ଗେ । ପୁଣି ମନ୍ଥିଲେ ବାହୁ ଯୋଗେ ॥
ନାରୀ ପୁରୁଷ ଏକ ମେଳେ । ଜନ୍ମିଲେ ବେଦମନ୍ତ୍ର ବଳେ ॥
ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ନିଷାଦକଥନେ ବନେ ରାଜାବରଣେ ନାମ ଷୋଡଶୋଽଧ୍ୟାୟ ।*

## ସପ୍ତଦଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ସ୍ତିରୀ ପୁରୁଷ ଜନ୍ମ ଦେଖି । ବିଷ୍ଣୁର କଳା ଉପଲକ୍ଷି ॥
ଆନନ୍ଦମନେ ମୁନିଗଲେ । ଭାବେ କହନ୍ତି ଜଣେ ଜଣେ ॥

### ଋଷିଗଣ ଉବାଚ

ଦେଖ ଏ ପୁରୁଷ କାମିନୀ । ଅଶେଷ ଭୁବନ ପାବନୀ ॥
ଦେଖ ଏ ମିଥୁନ ଲକ୍ଷଣ । ପ୍ରତ୍ୟକ୍ଷେ ଲକ୍ଷ୍ମୀ ନାରାୟଣ ॥
ବେଣୁର ବଂଶ ଏ ରଖିବେ । ଆନନ୍ଦେ ଭୁବନ ପାଳିବେ ॥
ଏହାକୁ ରାଜ୍ୟେ ରାଜା କରି । ଏ ନାରୀ ରାଣୀ ରୂପେ ବରି ॥
ପ୍ରଖ୍ୟାତ ଯଶ କୀର୍ତ୍ତି ଯେଣୁ । ଏହାର ପୃଥୁ ନାମ ତେଣୁ ॥
ଏ ଯେ ସୁନ୍ଦରୀ ଶୁଭ୍ରଦନ୍ତୀ । ମୌକ୍ତିକ ପ୍ରାୟ ଦନ୍ତପନ୍ତି ॥
ସକଳ ଗୁଣେ ଏ ଭୂଷିତ । ବିରାଜେ ଯେସନେ ଆଦିତ୍ୟ ॥
ରୂପେ ଅର୍ଚ୍ଚିଲା ପୃଥୁ ଯେଣୁ । ଏହାର ଅର୍ଚ୍ଚି ନାମ ତେଣୁ ॥
ଏ ରାଜା ବିଷ୍ଣୁ ଅଂଶେ ଜାତ । ସୁଗୁଣେ ଲୋକରେ ବିଖ୍ୟାତ ॥
ଏ ବାମା ଜାତ ରମ୍ଭା ରୂପେ । ଜନ୍ମ ହୋଇଲା ଜନହିତେ ॥

### ମୈତ୍ରେୟ ଉବାଚ

ଏତେ ବିଚାରି ଶୁଦ୍ଧ ମନେ । ସ୍ତୁତି କରନ୍ତି ବିପ୍ର ଜନେ ॥
ଗନ୍ଧର୍ବେ ଗୀତ ନାଦ କଲେ । ଦେବେ କୁସୁମ ବରଷିଲେ ॥
ନୃତ୍ୟ କରନ୍ତି ଅପସରୀ । ଆନନ୍ଦେ ବାଦ୍ୟନାଦ କରି ॥
ଶଙ୍ଖ ମୃଦଙ୍ଗ ତୂରୀନାଦେ । ଦେବେ ଦୁନ୍ଦୁଭି ବିଷ୍ଣୁପଦେ ॥
ଦେବତା ଋଷି ପିତୃଜନେ । ମିଳିଲେ ହରଷିତ ମନେ ॥
ଶୁକ୍ର ଯେ ପଦ୍ମଯୋନି ତୁଲେ । ବେଦ ଶବଦେ ସ୍ତୁତି କଲେ ॥
ଦେଖିଲେ ବେଣୁ ସୁତ ହସ୍ତେ । ବିଷ୍ଣୁର ଚିହ୍ନ ପାଦଗତେ ॥
ବିଷ୍ଣୁର ଅଂଶ ନିଶ୍ଚେ ଜାଣି । ବେଗେ ଆଣିଲେ ତୀର୍ଥପାଣି ॥
ଯେ ଅଭିଷେକ ବସ୍ତୁମତେ । ପ୍ରଜାଏ ଆଣି ଯେଝାମତେ ॥
ସମୁଦ୍ର ପର୍ବତ ସରିତ । ସର୍ପ ବିହଙ୍ଗ ମୃଗଯୂଥ ॥
ଧରଣୀ ଆଦି ପଞ୍ଚଭୂତେ । ଯାହାର ଯେ ଅବା ଉଚିତେ ॥
ସକଳେ ନାନାଦ୍ରବ୍ୟ ଆଣି । ମୁନି ଆନନ୍ଦେ ବେଦ ଭଣି ॥
ପୃଥୁକୁ ଅଭିଷେକ କଲେ । ମଙ୍ଗଳ ବେଦବାକ୍ୟ ତୁଲେ ॥
ପୃଥୁକୁ କଲେ ମହାରାଜା । ଶୁଭେ ବିରାଜେ ମହା ତେଜା ॥
କୁବେର ଦେଖି ଶୁଦ୍ଧ ମନେ । ଦେଲା ସେ ସୁବର୍ଣ୍ଣ ଆସନେ ॥
ବରୁଣ ଦେଲା ଛତ୍ର ଆଣି । ଟେକନ୍ତେ ବରଷଇ ପାଣି ॥
ଯେ ଛତ୍ର ନାମ ଜଳଶ୍ରବା । ସ୍ୱଭାବେ ଦିଶେ ଶିରୀପ୍ରଭା ॥
ଚାମର ସମୀରଣ ଦେଲା । ଧର୍ମ ଦେବତା କୀର୍ତ୍ତିମାଳା ॥
ଇନ୍ଦ୍ର ମୁକୁଟ ଦେଲା ଶିରେ । ଶମନ ଦଣ୍ଡ ଦେଲା କରେ ॥
ବେଦ କବଚ ବ୍ରହ୍ମା ଦେଲେ । ଭାରତୀ ହାର ଲମ୍ବାଇଲେ ॥
ଗୋବିନ୍ଦ ଚକ୍ର ଦେଲେ କରେ । କମଳା ବସେ ତାର ଉରେ ॥
ସୁବର୍ଣ୍ଣ ଦଶଚନ୍ଦ୍ର ଯୁତେ । ରୁଦ୍ର ଖଡ଼୍‌ଗ ଦେଲେ ହସ୍ତେ ॥
ଅମ୍ବିକା ଦେଲେ ଚର୍ମାମ୍ବର । ଅଙ୍କିତ ଶତେ ନିଶାକର ॥
ଅମୃତମୟ ଅଶ୍ୱ ଆଣି । ବିମାନ ଅର୍ଥେ ନିଶାମଣି ॥
ପୃଥୁ ସମୀପେ ଆଣି ଦେଲେ । ସଙ୍ଗେ ତା ବିଶ୍ୱକର୍ମା ଥିଲେ ॥
ବିମାନ ନାନା ରତ୍ନେ ସାଜି । ତହିଁ ଯୋଚିଲା ଯୁଦ୍ଧ ବାଜୀ ।
ଅନଳ ଆଣିଦେଲେ ଧନୁ । ରଶ୍ମି ନାରାଚ ଦେଲେ ଭାନୁ ॥
ବେନି ପାଦୁକା ଯୋଗମୟୀ । ଚରଣ ତଳେ ଦେଲା ମହୀ ॥
ଆକାଶ ଦେଲା ପୁଷ୍ପମାଳୀ । ଆକାଶ ଚର ଗଣେ ମିଳି ॥
ନୃତ୍ୟ ସୁଗୀତ ବାଦ୍ୟ ଯେତେ । ତ୍ରିଦଶ ଅନ୍ତର୍ଦ୍ଧାନ ମତେ ॥

ମିଳି ସକଳ ମୁନିଗଣେ । ଆଶିଷ ଦେଲେ ଜଣେ ଜଣେ
ସମୁଦ୍ର ଦେଲା ଶଙ୍ଖକରେ । ଯେ ନାଦ ଦଶ ଦିଶ ପୂରେ ॥
ନଦୀ ସମୁଦ୍ରେ ଗିରି ଯେତେ । ଯେ ଯାହା ମତେ ଦ୍ରବ୍ୟଯେତେ
ଅନଳ କୁଣ୍ଡୁ ଜନ୍ମ ହୋଇ । ସୁତ ମାଗଧ ଭାଟ ଦୁଇ ॥
ସ୍ତୁତି ନିମନ୍ତେ ଏକମେଳେ । ପୃଥୁର ସମୀପେ ମିଳିଲେ ॥
ଆନନ୍ଦେ ତୋଳି ବେନି ହସ୍ତ । ସ୍ତୁତି କରନ୍ତି ଭବିଷ୍ୟତ ॥
ତାହାଙ୍କ ସ୍ତୁତି ଶୁଣି କର୍ଣ୍ଣେ । ଅତ୍ୟନ୍ତ ମଧୁର ବଚନେ ॥
ଆନନ୍ଦେ ନିକଟେ ବସାଇ । ପୃଥୁ ବୋଲଇ ଭାବ ବହି ॥

## ପୃଥୁ ଉବାଚ

ଆହେ ମାଗଧ ସୁତ ଶୁଣ । ଭବିଷ୍ୟ ସ୍ତୁତି ଯେତେ ଗୁଣ ॥
ରାଜନ ଧର୍ମର କାରଣ । ଏବେ କହିବା ସୁଖେ ପୁଣ ॥
ମୋର କର୍ତ୍ତବ୍ୟ କର୍ମ ଯେତେ । ତୁମ୍ଭେ ଯେ କହ ଭବିଷ୍ୟତେ ॥
ସେ କଥା ସତ୍ୟମତ ମୋର । ଏବେ ବିଷ୍ଣୁଙ୍କୁ ସ୍ତୁତିକର ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ।
ଚତୁର୍ଥ ସ୍କନ୍ଧେ ବିଷ୍ଣୁବାଣୀ । ଶୁଣି ସଂସାରୁ ତରେ ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ
ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁ ରାଜାବିଜୟୋ
ନାମ ସପ୍ତଦଶୋଽଧ୍ୟାୟଃ ।*

# ଅଷ୍ଟାଦଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ । ସୂତ ମାଗଧ ତୋଷମନେ ॥
ମୁନିଙ୍କ ମତେ ସାଧୁବାଣୀ । ପୃଥୁ ବଦନ ଚାହିଁ ଭଣି ॥

## ସୂତ ମାଗଧାଗଣ ଉବାଚ

ଅମୃତମୟ ବାଣୀ କହି । ବୋଲନ୍ତି ପୃଥୁ ମୁଖେ ଚାହିଁ ॥
ଭୋ ନାଥ ତୋହର ମହିମା । କେ କହିପାରେ ଗୁଣସୀମା ॥
ତୁ ଦେବ ଦେବ ବୀର୍ଯ୍ୟବଳେ । ଶରୀର ବହୁ ଏ ଶୟଳେ ॥
ବେଣୁ ଶରୀରୁ ତୁହି ଜାତ । ଏ କଥା ଜଗତେ ବିଖ୍ୟାତ ॥
ତଥାପି ତୋର ଗୁଣ ଯେତେ । ଭାବେ କହିବୁ ତୋ ଅଗ୍ରତେ ॥
ତୁ ଧର୍ମ ଜ୍ଞାନୀଙ୍କର ସାର । ଯେ ଧର୍ମଲୋକ ଉପକାର ॥
ଅଧର୍ମ ନାଶି ଧର୍ମ ପାଳୁ । ତୁ ନାଥ ପରମ ଦୟାଳୁ ॥
ଶରୀର ବହୁ କାଳେକାଳେ । ସୁଧର୍ମ ରଖୁ ମହୀତଳେ ॥
ସକଳ ଭୂତେ ସମେ ବସୁ । ସବିତା ରୂପେ ତୁ ପ୍ରକାଶୁ ॥
ତୋର ମହିମା ଅଧ ଊର୍ଦ୍ଧ୍ୱେ । ପ୍ରକାଶ କଲେ ଶୂନ୍ୟେ ମଧ୍ୟେ ॥
ପ୍ରାଣୀଙ୍କ ମଧ୍ୟେ ତୁ ବରୁଣ । ଆରତ ଦୁଃଖ ନିବାରଣ ॥
ଇନ୍ଦ୍ର ଯେସନେ ଛାଡ଼େ ବାରି । ଜନ ନିମନ୍ତେ ଦୟାକରି ॥
ତୋହର ବଚନ ଅମୃତ । ଦେଖି ନିସ୍ତରିବେ ଜଗତ ॥
ତୋହର ବଚନ ଚାରୁହାସ । ଦେଖନ୍ତେ କରେ ଦୁଃଖ ନାଶ ॥
ତୋହର କର୍ମ ବ୍ୟକ୍ତ ନୁହେଁ । ଯାହାଙ୍କ ମାୟା ଜନ ମୋହେ ॥
ଏ ଯେ ଗଭୀର ମାୟା ଜାଳ । ତୋହର ଶ୍ରେଷ୍ଠ ଅନ୍ତରାଳ ॥
ଅନନ୍ତ ମହିମା ତୋହର । ଅଶେଷ ଗୁଣଙ୍କ ସାଗର ॥
ତୁ ଦୁରାସ୍ୟ ଦୁର୍ବିସହ । ସୁଦୂରମୟ ଆତ୍ମମୟ ॥
ଜନ୍ତୁଙ୍କ ଅନ୍ତର ବାହାରେ । ତୋ ଠହୁଁ କେବା ଅଛି ପରେ ॥
ଅଧ୍ୟକ୍ଷ ହୋଇ ଉପାସନ । ଶରୀରେ ଯେସନେ ପବନ ॥
ଅଦୋଷୀ ଜନ ତୁ ନ ଦଣ୍ଡୁ । ତୋର ସେବକ ଦୁଃଖ ଖଣ୍ଡୁ ॥
ଅପ୍ରତିହତ ଚକ୍ର ତୋର । ତେଜେ ଯେସନେ ଦିବାକର ॥
ନୟନ ଆତ୍ମା ବିଚେଷ୍ଟିତେ । ଲୋକରଞ୍ଜନ ତୁ ଜଗତେ ॥
ଯେ ରାଜା ପ୍ରଜା ମନରଞ୍ଜେ । ରାଜ୍ୟ ସମ୍ପଦ ସୁଖେ ଭୁଞ୍ଜେ ॥
ସତ୍ୟସନ୍ଧକ ଦୃଢ଼ ବ୍ରତ । ବିପ୍ର ସେବକ ବିଷ୍ଣୁ ଭକ୍ତ ॥
ଶରଣ ସର୍ବ ପ୍ରାଣୀଙ୍କର । ଦୀନବତ୍ସଳ ମାନ ହର ॥
ପର ରମଣୀ ମାତୃ ପ୍ରାୟେ । ନିଜ କାମିନୀ ନିଜ କାୟେ ॥
ରାଜାକୁ ପିତୃପ୍ରାୟେ ଚିନ୍ତେ । ବିପ୍ରଙ୍କ ସେବା ଯାର ନିତ୍ୟେ ॥
ପ୍ରାଣୀ ବସଇ ଆତ୍ମପ୍ରାୟେ । ଦୟା ବସଇ ଯାର ଦେହେ ॥
ସୁହୃଦେ ଆନନ୍ଦ ବଦନ । ବିମୁକ୍ତ ସଙ୍ଗେ ସଙ୍ଗ ଧ୍ୟାନ ॥
ଅସାଧୁ ଗଣେ ଦଣ୍ଡଧର । ସ୍ୱଭାବେ ଶରଣ ସୋଦର ॥
ମେଦିନୀ ସ୍ତନ୍ୟ ପୟ ତୁହିଁ । ଶସ୍ୟେ ପୂରିବ ନାଥ ମହୀ ॥
ଖିଳ ଅଖିଳ ବସୁନ୍ଧରୀ । ଧେନୁଙ୍କ ଅଗ୍ରେ ସମସରି ॥
ତ୍ରିଗୁଣ ବିଶ୍ୱନାଥ ତୁହି । ତୁ ଯେ ଆତ୍ମାର କଳା ଦହି ॥
ଅବିଦ୍ୟା ବିଚରିତ ଯେତେ । ତାହାକୁ ନିରର୍ଥକ ମତେ ॥
ଭ୍ରମିବୁ ରଥେ ରଜ୍ଜୁ ଧରି । ଦିଗ ସମୁଦ୍ର ବନ ଗିରି ॥
ଦକ୍ଷିଣାବର୍ତ୍ତ ସନ୍ନିଧାନେ । ଶୂନ୍ୟେ ଆଦିତ୍ୟ ରଥ ଯେହ୍ନେ ॥
ଭୂମିରେ ଯେତେ ନୃପଗଣେ । ଭୟେ ପଶିବେ ଘୋର ବନେ ॥
ମୃଗ ଯେସନେ ସିଂହ ଦେଖି । ପଳାଇ କାନନ ଉପେକ୍ଷି ॥
କରିବୁ ଅଶ୍ୱମେଧ ମତ । ତ୍ରିଦିବେ ଯେହ୍ନେ ସୁରନାଥ ॥
ସ୍ୱଭାବେ ଅନ୍ତେ ଗଙ୍ଗାଜଳେ । ସନତକୁମାରଙ୍କ ମେଳେ ॥
ଭକତି କରି ବିଷ୍ଣୁ ପାଦେ । ଅନ୍ତେ ବସିବୁ ନିଜପଦେ ॥
ତୋର ଚରିତ ଇହଲୋକେ । ପ୍ରାଣୀ ବିସ୍ତାର କରି ମୁଖେ ॥

ଏ ପୃଥୁ ପରାକ୍ରମ ତୋର । ଦେବ ମାନବେ ଅଗୋଚର ॥
ତୋର ମହିମା କର୍ଣ୍ଣେ ଶୁଣି । ତରିବେ ଭବଜଳୁଁ ପ୍ରାଣୀ ॥
କହଇ ବିପ୍ର ଜଗନ୍ନାଥ । ପୃଥୁ ରାଜାର ଏ ଚରିତ ॥
ସୁଜନେ ଶୁଣ ଶୁଦ୍ଧ ଚିତ୍ତେ । ଭାଷା ପ୍ରବନ୍ଧେ ଭାଗବତେ ॥
ମୋ ଜନ୍ମ ବିପ୍ରକୁଳେ ହୋଇ । ଅଜ୍ଞାନ ପଣେ ଗଲା ଦେହୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁ ରାଜାଚରିତୋ ନାମ ଅଷ୍ଟାଦଶୋଽଧ୍ୟାୟ ।*

## ଉନବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଏମନ୍ତେ ପୃଥୁରାଜା ବୋଲେ । ସୂତ ମାଗଧ ଏକତୁଲେ ॥
ଭବିଷ୍ୟେ କଲେ ଯେତେ ସ୍ତୁତି । ଶୁଣି ସାନନ୍ଦ ନରପତି ॥
ଆତ୍ମାର ଗୁଣକର୍ମ ଶୁଣି । ସନ୍ତୋଷ ମନେ ନୃପମଣି ॥
ବାଞ୍ଛିତ ସର୍ବସୁଖ ଦେଲା । ଅନେକ ମତେ ମାନ୍ୟ କଲା ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ । ଅମାତ୍ୟ ପୁରୋହିତ ଜନେ ॥
ସକଳ ଜନପଦ ଆଣି । ସନ୍ତୋଷ କଲା ନୃପମଣି ॥

### ବିଦୁର ଉବାଚ

କେମନ୍ତେ ଗାଭୀ ରୂପ ଧରି । କ୍ଷୀର ସ୍ରବିଲା ବସୁନ୍ଧରୀ ॥
ସ୍ୱଭାବେ ସେ ବହୁରୂପିଣୀ । କେବା ମହିମା ତାର ଜାଣି ॥
ସ୍ୱଭାବେ ସେ ଅନନ୍ତରୂପୀ । ଜଗତ ଅଛି ଦେହେ ବ୍ୟାପି ॥
ତାହାକୁ କେମନ୍ତେ ଦୁହିଁଲା । ଦୋହନେ କେ ବତ୍ସା ହୋଇଲା ।
ସ୍ୱଭାବେ ଶରୀର ବିଷମ । କେବା ତାହାକୁ କଲା ସମ ॥
କିମର୍ଥେ ଅଶ୍ୱମେଧ କଲା । ଇନ୍ଦ୍ର କିପାଇଁ ଅଶ୍ୱ ନେଲା ॥
ସନତ କୁମାରଙ୍କ ମେଳେ । ବ୍ରହ୍ମ ସମ୍ପାଦି କେତେ କାଳେ ॥
ପଶିଲା ନିଜ ତେଜେ ବହି । ବ୍ରହ୍ମାର ତହୁଁ ଜ୍ଞାନପାଇ ॥
କିମର୍ଥେ ପ୍ରଭୁ ନରହରି । ଜଗତେ ପୃଥୁ ରୂପ ଧରି ॥
ସୁପୁଣ୍ୟ କଥା ବିଚାରିଲେ । ଯେ ଯଶ ଜଗତେ ରଖିଲେ ॥
ସେ କଥା କହ ମୁନି ମୋତେ । ମୁଁ ତୋର ସେବକ ଉଚିତେ ॥
ବିଷ୍ଣୁର କଥା ପୁଣ୍ୟସାର । ଯା ଶୁଣି ତରଇ ସଂସାର ॥
କେମନ୍ତେ ପୃଥୁ ରୂପ ଧରି । ଦୋହନ କରେ ବସୁନ୍ଧରୀ ॥

### ଶ୍ରୀ ସୂତ ଉବାଚ

ଏମନ୍ତ ବିଦୁର ବଚନେ । ମୈତ୍ରେୟ ମୁନି ତୋଷମନେ ॥
ପ୍ରଶଂସି ବିଦୁର ବଚନ । କହେ ପରାଶର ନନ୍ଦନ ॥

### ମୈତ୍ରେୟ ଉବାଚ

ଶୁଣ ବିଦୁର ତୋଷ ମନେ । ପୃଥୁକୁ ମିଳି ବିପ୍ରଜନ ॥
ଜନ ପରଜା ଏକମେଳେ । ଆନନ୍ଦେ ଅଭିଷେକ କଲେ ॥
ସକଳେ ମିଳି ଏକଦିନେ । କହିଲେ ପୃଥୁ ସନ୍ନିଧାନେ ॥

### ଜନ ଉବାଚ

ବୋଲନ୍ତି ଶିରେ କର ଦେଇ । କ୍ଷୁଧାରେ କମ୍ପେ ଆମ୍ଭ ଦେହୀ ॥
ବୃକ୍ଷ କୋଟରେ ଅଗ୍ନି ଯେହ୍ନେ । କ୍ଷୁଧା ଅନଳେ ଦହେ ବନେ ॥
ଏଥକୁ କର ତୁ କାରଣ । ତୋ ପାଦେ ପଶିଲୁ ଶରଣ ॥
କ୍ଷୁଧା ନ ସହେ ଆମ୍ଭ ଦେହ । ଭୋ ନାଥ ଅନ୍ନଦାନ ଦିଅ ॥
କ୍ଷୁଧା ହରଇ ଆମ୍ଭ ପ୍ରାଣ । ଭୋ ନାଥ କର ପରିତ୍ରାଣ ॥

### ମୈତ୍ରେୟ ଉବାଚ

ଏମନ୍ତେ ପ୍ରଜାଙ୍କ ରୋଦନ । ଶୁଣି ଉଚ୍ଛନ ପୃଥୁମନ ॥
କହଇ ଧାନ୍ୟ କେ ହରିଲା । ତୁମ୍ଭଙ୍କୁ ଏତେ ଦୁଃଖ ଦେଲା ॥
ଶୁଣି କହନ୍ତି ପ୍ରଜାଜନେ । ଶୁଣ ରାଜନ ସ୍ଥିର ମନେ ॥
ତୋ ପିତା ଅରାଜକ କାଳେ । ଏ ଭୂମି ଗୋରୂ ରୂପେ ବଳେ ॥
ରାତ୍ରେ ସକଳ ଶସ୍ୟ ଖାଇ । ଦିବସେ ସମୁଦ୍ରେ ଲୁଚାଇ ॥
ଆମ୍ଭର ଶସ୍ୟ ଖାଇ ବଳେ । ଭକ୍ଷିଲା କ୍ଷୁଧାରେ ଅନଳେ ॥
ତାହାକୁ କେବେହେଁ ନ ଦେଖି । ଆମ୍ଭେ ହୋଇଲୁ ଏଣେ ଦୁଃଖୀ ॥
ଏମନ୍ତେ ପ୍ରଜା ବାକ୍ୟ ଶୁଣି । ପୃଥୁ ବିଚାରେ ମନେ ଗୁଣି ॥
ଭୂମିକୁ ମନେ ଧ୍ୟାନକରି । ନିଜ କୋଦଣ୍ଡ କରେ ଧରି ॥
ବାଣ ନିବେଶି ତୀକ୍ଷ୍ଣ ମୁନେ । ତ୍ରିପୁରା ବଧେ ରୁଦ୍ର ଯେହ୍ନେ ॥
ଧରଣୀ ପୃଥୁ ତେଜ ଦେଖି । ଧାଇଁଲା ସମୁଦ୍ର ଉପେକ୍ଷି ॥
ଭୟେ ଚାହାଇଁ ଦଶଦିଶେ । ମୃଗ ଯେସନେ ସିଂହ ତ୍ରାସେ ॥
ପୃଥୁ ଧାମଇଁ କୋପମନେ । ରୋଷିତ ଅରୁଣ ଲୋଚନେ ॥
ଶର ସନ୍ଧାନି ଧନୁ କରେ । ଭୂମି କମ୍ପଇ ପାଦଭରେ ॥
ଯେଣେ ପଳାଏ ବସୁନ୍ଧରୀ । ପୃଥୁ ଧାମଇ କୋପକରି ॥
ଦିଗ ବିଦିଗ ଭୂମି ଶୂନ୍ୟେ । ରାଜା ଯେ ମିଳିଲେ ଗଗନେ ॥
ପୃଷ୍ଟେ ଚାହାନ୍ତେ ପୃଥୁ ଦେଖି । କେବା ଅବନୀ ପ୍ରାଣ ରଖି ॥
ତ୍ରାସେ ପଡ଼ଲା ଦେବୀ କାୟେ । ପ୍ରାଣୀ ଯେସନେ ମୃତ୍ୟୁ ଭୟେ ॥
ଚଳି ନ ପାରି ଦୁଃଖ ମନେ । ମିଳିଲା ପୃଥୁ ସନ୍ନିଧାନେ ॥
ଭୟେ କମ୍ପଇ ବସୁନ୍ଧରୀ । ପୃଥୁ ଚରଣେ ମାନ୍ୟକରି ॥
ବୋଲଇ ମଧୁର ବଚନ । ଈଷିତ ବିକଳ ବଦନ ॥

## ଧରଣୀ ଉବାଚ

ତୁ ମହାବିଶ୍ୱ ବ୍ରହ୍ମବେତ୍ତା । ଭୂତ ଭବିଷ୍ୟ କାଳଜ୍ଞାତା ॥
ପ୍ରାଣୀ ରକ୍ଷଣେ ଜନ୍ମେ ତୋର । ତୁ ନାଥ ଶରଣ ସୋଦର ॥
କିମ୍ବା ଝିଙ୍ଗାସ ମୋତେ କର । ଅପ୍ରାଧୀ ନୁହଇଁ ତୁମ୍ଭର ॥
ସ୍ତିରୀ ଗୋବଧ ମୁହିଁମଲେ । କେମନ୍ତେ ସମ୍ପାଦିବୁ ଭଲେ ॥
ଏକ ମରଣେ ବେନି ଦୋଷ । ସଂସାରେ ହେବ ଅପଯଶ ॥
ସ୍ତ୍ରୀ ଲିଙ୍ଗ ଅପରାଧ କଲେ । ପଣ୍ଡିତେ ନିନ୍ଦିବେଟି ଭଲେ ॥
ତୁ ନାଥ କରୁଣା ସାଗର । ଦୁଃଖୀ ଦରିଦ୍ରଙ୍କ ସୋଦର ॥
ଦଦରା ନାବ ପ୍ରାୟେ ମୁହିଁ । ଏ ଭାର ସହି ନ ପାରଇ ॥
ମୋହର ମଲେ ଏ ଜଗତେ । ଏ ପ୍ରଜା ରଖିବୁ କେମନ୍ତେ ॥

## ପୃଥୁ ଉବାଚ

ଶୁଣ ଧରଣୀ ମୋ ଉତ୍ତର । ତୁ ମଲେ ଡର ନାହିଁ ମୋର ॥
ମୋହର ଆଜ୍ଞା ଭଙ୍ଗ ତୁହି । ତୋର ମରଣ ଦୋଷ ନାହିଁ ॥
ତାତ ମରଣେ ଅରାଜକେ । ସକଳ ଶସ୍ୟଭୁଞ୍ଜି ସୁଖେ ॥
ଖାଇଲୁ ଗୋରୁ ରୂପେ ତୁହିଁ । ସଂସାର ଶସ୍ୟ ବୀଜ ନାହିଁ ॥
ଅନ୍ନ ନ ଥିଲେ ପ୍ରଜାଜନ । କେମନ୍ତେ ରଖିବେ ଜୀବନ ॥
ପ୍ରଜା ନ ଥିଲେ ରାଜା ନାହିଁ । ଏ ଘେନି ତୋତେ ମୁଁ ମାରଇ ॥
ଦୁଷ୍ଟ ମାରଣେ ରାଜ ଧର୍ମ । ଏ ତ ସ୍ୱଭାବେ ରାଜକର୍ମ ॥
ମୁଁ ଯେବେ ନ ମାରିବି ତୋତେ । ପ୍ରଜାଏ ବଞ୍ଚିବେ କେମନ୍ତେ ॥
ବିଧାତା ସୃଷ୍ଟି କଲା ଯେତେ । ଅନ୍ନ ଜୀବନ ରକ୍ଷା ଅର୍ଥେ ॥
ତୁ ମନ୍ଦବୁଦ୍ଧି ଦୁରାଶୟ । ମାୟା ଭିଆଣେ ବହୁ ଦେହ ॥
ଏ ପ୍ରଜା ଆନନ୍ଦ କେମନ୍ତେ । ବଞ୍ଚିବେ ଅନ୍ନ ଅପ୍ରାପତେ ॥
ନାରୀ ପୁରୁଷ ନଂପୁସକେ । ପୀଡ଼ିତ ହୁନ୍ତି ଯେବେ ଲୋକେ
ତାହାଙ୍କୁ ରାଜା ନ ଦଣ୍ଡିଲେ । ସେ କି ସଂସାରେ ଥିବେ ଭଲେ॥
ତାଙ୍କ ମରଣେ ଦୋଷ ନାହିଁ । ସଂସାରେ ଧର୍ମକଥା ଏହି ॥
ତୁ ମାୟା ଗୋରୁ ରୂପ ହୋଇ । ସକଳ ଶସ୍ୟ ବୀଜ ଖାଇ ॥
ଅବଜ୍ଞା କଲୁ ଯେବେ ମୋତେ । ନିଶ୍ଚେ ଦଣ୍ଡିବି ଆଜି ତୋତେ॥
ତୋର ଶରୀର ତୀକ୍ଷ୍ଣ ବାଣେ । କାଟିବି ମୁଁ ତିଳ ପ୍ରମାଣେ ॥
ବାଣେ ତୋହର ପ୍ରାଣହରି । ମୁଁ ଏବେ ମାୟା ଯୋଗ କରି ॥
ବିସ୍ତାରି ମୋହର ଶରୀରେ । ଏ ଯୋଗ ରଖିବି ନିର୍ଭରେ ॥
ଏମନ୍ତ କହି ହେଲେ କୋପ । ପୃଥ୍ୱୀକି ଦିଶିଲା ସ୍ୱରୂପ ॥
ଏମନ୍ତ ପୃଥୁ ରୂପ ଚାହିଁ । ଭୟେ କମ୍ପଇ ତାର ଦେହୀ ॥
ପୃଥୁ ଚରଣେ ଶିର ଦେଇ । ବୋଲଇ ଅଶ୍ରୁ ମୁଖୀ ହୋଇ ॥

## ପୃଥୀବ ଉବାଚ

ନମସ୍ତେ ପରମ ପୁରୁଷ । ଗୁଣ ପ୍ରକାଶେ ତୋର ଦୃଶ୍ୟ ॥
ନିଜ ମାୟାରେ କ୍ଷୀଣ ହୋଇ । ସଂସାର ହିତେ ବହୁ ଦେହୀ ॥
ସ୍ୱରୂପା ଅନୁଭବ ବୃତ୍ତି । ଦ୍ରବ୍ୟ କରଣ କ୍ରିୟା ରୀତି ॥
ସକଳ କର ମାୟ ଭ୍ରମେ । ଉର୍ମି ଯେସନେ ଜଳ ଗ୍ରାସେ ॥
ମାୟା ରଚନା ମୋତେ କରି । ବିଦୂର ଆତ୍ମା ରୂପ ଧରି ॥
ସର୍ଜି ପାଳିଣ କରୁ ଅନ୍ତ । ଯେ ସ୍ୱୟଂ ପ୍ରକାଶେ ଜଗତ ॥
ସେ ମୋତେ ମାରିବାର ସଧେ । ଧାମଇ ଉଦ୍ୟତେ ଆୟୁଧେ ॥
କେବା ରକ୍ଷଣେ ଅଛି ମୋର । ତୁ ନାଥ ନ କରୁ ବିଚାର ॥
ତୁ ନିଜ ମାୟା ତର୍କ ବଳେ । ଜନ୍ତୁଙ୍କୁ ସର୍ଜୁ ଏ ଶୟଳେ ॥
ତୁ ନାଥ ଧାର୍ମିକଙ୍କ ଗୁରୁ । କିମ୍ପା ନ ବୁଝି ମୋତେ ମାରୁ ॥
ଅନ୍ନ ନ ପାଇ ପ୍ରଜା ଯେବେ । ତୋତେ କହିଲେ ଅନୁଭାବେ ॥
ତୁ ନାଥ ଜଗତ ଈଶ୍ୱର । ଏ ତୋତେ ନୋହେ ଅଗୋଚର ॥
ତୁ ଆଦି ପଦ୍ମ କଳ୍ପ ଅନ୍ତେ । ଶୂକର ରୂପେ ତୋଳି ଦନ୍ତେ ॥
ମୋତେ ସ୍ଥାପିଲୁ ଜନ ହିତେ । ପୁଣି ସଂହାରିବୁ କେମନ୍ତେ ॥
କହିଲି ଏବେ ତୋର ଇଚ୍ଛା । ଯେମନ୍ତେ କର ତୋର ବାଞ୍ଛା ॥
ତୁ ନାଥ ଜଗତ ଈଶ୍ୱର । ଏ ତୋତେ ନୋହେ ଅଗୋଚର ॥
କହଇ ବିପ୍ର ଜଗନ୍ନାଥ । ସୁଜନ ହିତେ ଭାଗବତ ॥
ପୃଥିବୀ ପୃଥୁର ସଂପାଦ । ଶୁଣନ୍ତି ଖଣ୍ଡଇ ପ୍ରମାଦ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁରାଜ ପୃଥିବୀ ସମ୍ପାଦନେ ନାମ ଊନବିଂଶୋଽଧ୍ୟାୟଃ ।*

## ବିଂଶ ଅଧ୍ୟାୟ

## ମୈତ୍ରେୟ ଉବାଚ

ଏମନ୍ତେ ପୃଥୁ ମୁଖ ଚାହିଁ । ଭୟେ ଚରଣେ ଶିର ଦେଇ ॥
ବୋଲଇ ସୁସାର ବଚନେ । ସ୍ୱଭାବେ ଅରୁଣ ଲୋଚନେ ॥
ଏମନ୍ତେ କରି ଦିବ୍ୟ ସ୍ତୁତି । ପୁଣି ବୋଲଇ ବସୁମତୀ ॥
ଭୋ ନାଥ କୋପ ଛାଡ଼ ମୋତେ । ମୁହିଁ ଶରଣ ଗଲି ତୋତେ ॥
ଯେ ଆତ୍ମା କାର୍ଯ୍ୟ ବିଚାରଇ । ସଂସାରୁ ସାର ଆହରଇ ॥
ଚିତ୍ତେ ନ କରେ ଭିନ୍ନେ ଭିନ୍ନେ । ପୁଷ୍ପର ମଧୁକର ଯେହ୍ନେ ॥
ଯେ ସତ୍ୟ ଇହ ପରଲୋକେ । ସୁଯୋଗୀ ଜନ କହେ ମୁଖେ॥
ଉପାୟେ ସେ ଫଳ ଭୁଞ୍ଜନ୍ତି । ଉଭୟ ଲୋକେ ନାହିଁ ଭ୍ରାନ୍ତି ॥

ଏହା ଯେ ନ କରନ୍ତି ଚିତ୍ତେ । ସେ ଯଶ ଲଭିବେ କେମନ୍ତେ
ବ୍ରହ୍ମା ଯେ ସର୍ବ ପ୍ରାଣୀ ହିତେ । ଶସ୍ୟ ସାମଗ୍ରୀ କଲା ଯେତେ ॥
ସେ ସର୍ବ ମୋର ଦେହେ ଥିଲା । ଏମନ୍ତେ ତୋର ପିତା ମଲା ॥
ଚତୁର ରାଜ୍ୟେ ଅରାଜକେ । ଭବିଷ୍ୟ ଯଜ୍ଞ ରକ୍ଷା ଅର୍ଥେ ॥
ଯେତେ ଔଷଧ ବୀଜ ଥିଲା । ଅରାଜ୍ୟ ଯୋଗେ ନାଶ ଗଲା ॥
ରାଜା ବିଯୋଗ ସର୍ବ ଧର୍ମ । ଦୁଷ୍ଟେ ନଶିଲେ ମନ୍ଦ କର୍ମ ॥
କ୍ଷଣ ବିରୋଧ ଦୁଃଖ ସହି । ଭକ୍ଷିଲି ଧେନୁରୂପ ହୋଇ ॥
ସେ ସର୍ବ ଶସ୍ୟରସ ଯେତେ । କ୍ଷୀର ବସନ୍ତି ମୋର ଗାତ୍ରେ ॥
ଦୋହନ କର ତୁ ଜଗତେ । ଦୁଗ୍ଧ ସ୍ରବିବି ଧେନୁରୂପେ ॥
କ୍ଷରିବି ସର୍ବ ଶସ୍ୟ ମୁହିଁ । ପ୍ରାଣୀ ଜୀବନ ଯେଣେ ରହି ॥
ମୁଁ ସର୍ବ କାମଧେନୁ ରୂପେ । ସ୍ରବବି ସର୍ବଜନ ମୁଖେ ॥
ତୁ ଏବେ ମୋତେ ରକ୍ଷାକର । ଧନୁ ଆୟୁଧ କରୁ ହର ॥
ସୁସମ କରି ମୋର ଗାତ୍ରେ । ମୁହିଁ ଯେସନେ ଶସ୍ୟକ୍ଷେତ୍ରେ ॥
ସମ ହୋଇବ ମୋ ଶରୀରେ । ଶସ୍ୟ ଉଠିବ ନିରନ୍ତରେ ॥
ହୋଇବ ନାନାରୂପେ ଧାନ୍ୟ । ଜନ୍ତୁଏ ଲଭିବେ ଜୀବନ ॥
ଏମନ୍ତେ ଧରଣୀ ବଚନ । ଶୁଣି ସନ୍ତୋଷ ପୃଥୁ ମନ ॥
ମନକୁ ବତ୍ସାରୂପ କରି । ଭାବେ କହଇ ଦଣ୍ଡଧାରୀ ॥
ତୁ ଏବେ ସ୍ତନ୍ୟପାନ କର । ଯେମନ୍ତେ ସଞ୍ଚରଇ କ୍ଷୀର ॥
ତକ୍ଷଣେ ପୃଥୁର ବଚନେ । ସେ ମନୁ ମୁଖ ଦେଲା ସ୍ତନେ
ପିବନ୍ତେ ସଞ୍ଚରଇ କ୍ଷୀର । ମେଘୁ ଯେସନେ ବୃଷ୍ଟିଧାର ॥
ଚରଣେ ବାନ୍ଧି ବତ୍ସା ମନୁ । ପୃଥୁ ଦୁହିଁଲେ ପୟ ସ୍ତନୁ ॥
କ୍ଷୀର ପୂରିଲା ବସୁନ୍ଧରୀ । ଯେସନେ ସିନ୍ଧୁର ଲହରୀ ॥
ଯେ ଶସ୍ୟ ବୀଜ ଗର୍ଭେ ଥିଲା । କ୍ଷୀର ସଙ୍ଗତେ ସଞ୍ଚରିଲା ॥
ଶସ୍ୟ ହୋଇଲା ଅପ୍ରମିତେ । ପ୍ରଜାଏ ଥିଲେ ଯେଝାମତେ ॥
ପୃଥୁଦୋହନ ଅନ୍ତେ ଦେବେ । ସର୍ବେ ଦୁହିଁଲେ ଯେଝାଭାବେ
ମିଳି ସକଳ ମୁନିଗଣ । ଆନନ୍ଦେ ହରିଷତ ମନ ॥
ଗୁରୁଙ୍କୁ ବତ୍ସାରୂପ କରି । ଯେ ଯାହା ମତେ ସ୍ତନ ଧରି ॥
ଦୁହିଁଲେ ପୟ ଛନ୍ଦମୟ । ଯେ ଭାବେ ତୁଟଇ ସଂଶୟ ॥
ପୁଣି ସକଳ ଦେବେ ଧରି । ଇନ୍ଦ୍ରକୁ ବତ୍ସାରୂପ କରି ॥
ସର୍ବେ ଦୁହିଁଲେ ଯେଝାମତେ । ଅଶେଷ ଯଜ୍ଞକର୍ମ ଅର୍ଥେ ॥
ସୁବର୍ଣ୍ଣମୟ ପାତ୍ର ଆଣି । ଆନନ୍ଦେ ଦୁହିଁଲେ ଧରଣୀ ॥
ଦେବ ଦାନବ ପୁଣ ଧରି । ପ୍ରହଲାଦକୁ ବତ୍ସା କରି ॥
ଦୁହିଁଲେ ଲୌହମୟ ପାତ୍ରେ । ସୁରା ଆସୁର ଆଦି ଯେତେ ॥
ଗନ୍ଧର୍ବ ଅପସରା ଗଣେ । ବେଗେ ମିଳିଲେ ତତକ୍ଷଣେ ॥
କମଳ ପାନ ପତ୍ର କରି । ଦୁହିଁଲେ ଭୂମିସ୍ତନ ଧରି ॥
ବିଶ୍ୱବଶୁଙ୍କୁ ବତ୍ସାକଲେ । ଗନ୍ଧର୍ବେ ଦୁହିଁ ଏକ ମେଳେ ॥
ଶ୍ରାଦ୍ଧଦେବଙ୍କୁ ବତ୍ସା କରି । ପିତୃ ଯେ କବ୍ୟପାତ୍ର ଧରି ॥
ପୟ ଦୁହିଁଲେ କବ୍ୟପାତ୍ରେ । ଯେଣେ ଅମୃତ ପୂରେ ଗାତ୍ରେ ॥
ସିଦ୍ଧେ ମିଳିଲେ ନାନାରଙ୍ଗେ । କପିଳ ବତ୍ସା ଘେନି ସଙ୍ଗେ ॥
ସଂକଳ୍ପକରି କ୍ଷୀର ଧାରେ । ଦୁହିଁଲେ ଜନ ଉପକାରେ ॥
ପୁଣି ମିଳିଲେ ବିଦ୍ୟାଧରେ । ଯେ ଯାହା ପାତ୍ର ଧରି କରେ ॥
ଆନନ୍ଦ ମନେ କ୍ଷୀର ଦୁହିଁ । ବସିଲେ ନିଜ ଭାବେ ଯାଇ ॥
ପୁଣି ମିଳିଲେ ଶିବ ଜନେ । କ୍ଷୀର ଦୁହିଁଲେ ଯୋଗଧ୍ୟାନେ ॥
ମାୟାବୀ ଗଣେ ପୁଣି ଆସି । ଧରଣୀ ସ୍ତନ ତଳେ ବସି ॥
ଆନନ୍ଦି ପାତ୍ର କରି ମନ । ସର୍ବେ ଦୁହିଁଲେ ଅନ୍ତର୍ଦ୍ଧାନ ॥
ଯମ ନିୟମ ବତ୍ସା କରି । ଧରଣୀ ସ୍ତନ କରେ ଧରି ॥
ଧରଣୀ କ୍ଷୀର ମାୟାପାତ୍ରେ । ସର୍ବେ ଦୁହିଁଲେ ଯେଝା ମତେ ॥
ମିଳିଲେ ଯକ୍ଷ ରକ୍ଷଗଣେ । ଭୂତ ବେତାଳ ଯାତୁଧାନେ ॥
ମୃତ୍ତିକା ପାତ୍ରେ କ୍ଷୀର ଦୁହିଁ । କ୍ଷୀର ରୁଧିର ମାଂସମୟୀ ॥
ତତକ୍ଷଣେ ସର୍ପ ଗଣେ ଆସି । ଧରଣୀ ସ୍ତନ କରେ ଧରି ॥
ବ୍ୟାକୁଳ ପାତ୍ର ଧରି ବେଗେ । ବିଷ ଦୁହିଁଲେ ସର୍ବନାଗେ ॥
ପଶୁଏ ମିଳି ସ୍ତନତଳେ । ବୃଷକୁ ବତ୍ସା କରି ବଳେ ॥
କ୍ଷୀର ଦୁହିଁଲେ ଯେଝା ସୁଖେ । ତକ୍ଷଣେ ଗ୍ରାସ କରି ମୁଖେ ॥
ସିଂହ ସହିତେ ପଶୁ ଗଣେ । ମାଂସ ଦୋହନ କଲେ ବଣେ ॥
ତକ୍ଷଣେ ଯାତୁ ଧାନେ ଆସି । ଧରଣୀ ସ୍ତନ ତଳେ ବସି ॥
ଶରୀର ପାତ୍ରେ କ୍ରବ୍ୟ ଦୁହିଁ । ଆନନ୍ଦ କଲେ ନିଜ ଦେହୀ ॥
ପକ୍ଷୀଏ କ୍ଷୀରପାନ ଆଶେ । ମିଳିଲେ ଧରଣୀର ପାଶେ ॥
ଖଗେନ୍ଦ୍ରେ ବାସା ବରି ବଳେ । ଯେ ଯାହା ଭକ୍ଷ୍ୟ ଦୁହିଁ ନେଲେ ॥
ସକଳ ବୃକ୍ଷେ ଆଗୁ ସରି । ବଟ ବୃକ୍ଷକୁ ବତ୍ସା କରି ॥
ସନ୍ତୋଷେ ଦୁହିଁ କ୍ଷୀରମୟେ । ଲତା ଯେସନେ ବୃକ୍ଷ ଦେହେ ॥
ବହିମନ୍ତ କୁ ବତ୍ସା କରି । କ୍ଷୀର ଦୁହିଁଲେ ସର୍ବ ଗିରି ॥
ପୃଗୁ ଭାବିତ ମହୀ ଶୋଭା । ସକଳମତେ କାମଦୁହା ॥
ଏମନ୍ତେ ପୃଥୁ ଆଦି ସର୍ବେ । କ୍ଷୀର ଦୁହିଁଲେ ଯେଝା ଭାବେ ॥
ଯେତେକ ଲୋକ ମୁନି ଆଦି । ଦୁହିଁଲେ ଜୀବନ ସମ୍ପାଦି ॥
ପୃଥୁ ଧରଣୀ ରୂପ ଚାହିଁ । ଆନନ୍ଦ ମନେ ବିଚାରଇ ॥
ଏ ମୋର ପାଇଁ ଦୁଃଖ ସହି । ରୂପ ଧଇଲେ ଧେନୁ ହୋଇ ॥
ଯେ ଯାହା ସୁଖେ ପୟ ନେଲେ । ସର୍ବେ ତୋଷିଲୁ ମହୀସ୍ଥଳେ ॥
ସକଳ ଲଭିଲେ ଜୀବନ । ଦେଖ ଏହାର ଦେହ ଧନ୍ୟ ॥

ଏ ମୋର ଦୁହିତା ହୋଇବ । ଏଣେ ବଞ୍ଚିଲେ ସର୍ବ ଜୀବ ॥
ଜୀବଙ୍କ ଜୀବଦାତା ଯେଣୁ । ଏହାର ପୃଥ୍ୱୀ ନାମ ତେଣୁ ॥
ହୋଇବ ଏ ମୋର ପ୍ରମାଣ । ଏଣୁ ଏ ସଂସାର ଧାରଣ ॥
ଏମନ୍ତେ ପୃଥ୍ୱୀ ନାମ କରି । ସୁଖେ ଥାପିଲେ ବସୁନ୍ଧରୀ ॥
ଭୂମି ଉପରେ ନାନା ଦେଶ । ସକଳ ସ୍ଥାପି ଉପଦେଶ ॥
ଜନଙ୍କୁ ସ୍ଥାପି ପିତା ପ୍ରାୟେ । ସକଳେ ରହିଲେ ନିର୍ଭୟେ ॥
ନିର୍ଭୟେ ରହିଲେ ସକଳେ । ପୃଥ୍ୱୀ ଯେସନେ ନିଶ୍ଚଳେ ॥
ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ପୃଥୁ ଚରିତ ସୁଧା ବାରି । ଶୁଣି ସଂସାରୁ ପ୍ରାଣୀ ତରି ॥
ଗୋବିନ୍ଦ ଚରଣେ ମିଶନ୍ତି । ବିନାଶି ଭବ ଭୟ ଭ୍ରାନ୍ତି ॥
ଏଣେ ଜୀବନ ଆଶାକର । ସଂସାରୁ ସଙ୍କଟୁ ନିସ୍ତର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତ୍ୟାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁ ରାଜ ଗୋରୂପୀ ପୃଥ୍ୱୀ ଦୋହନେ ନାମ ବିଂଶୋଽଧ୍ୟାୟ ।*

## ଏକବିଂଶ ଅଧ୍ୟାୟ
## ମୈତ୍ରେୟ ଉବାଚ

ଏବେ ହୋ ଶୁଣ ବିଷ୍ଣୁ ଗାଥା । କହିବି ପୃଥୁ ଯଜ୍ଞ କଥା ॥
ମିଳି ସକଳ ମୁନିଜନେ । ସନ୍ତୋଷେ ପୃଥୁ ସନ୍ନିଧାନେ ॥
ଯଜ୍ଞ କରଣେ ଦେବ ବେଗେ । ସର୍ବ ସମ୍ଭାର ନାନା ଭାବେ ॥
ଆରମ୍ଭ କଲେ ବ୍ରହ୍ମାବର୍ତ୍ତେ । ସୁପ୍ରାଚୀ ସରସ୍ୱତୀ ତୀର୍ଥେ ॥
ଇନ୍ଦ୍ରାଦି ସର୍ବ ଦେବେ ଆସି । ଯଜ୍ଞ ଉତ୍ସବ ଘରେ ପଶି ॥
ସେ ଯଜ୍ଞ ଯଜ୍ଞପତି ହରି । ମନ୍ତ୍ର ଆଧାନେ ତାଙ୍କୁ ବରି ॥
ଶଙ୍କର ପଦ୍ମଯୋନି ମୂଳେ । ମିଳି ସକଳ ଦିଗପାଳେ ॥
ଗନ୍ଧର୍ବ ଅପସରାଗଣେ । ମୁନିଏ ବେଦ ଉଚାରଣେ ॥
ଆନନ୍ଦେ ନୃତ୍ୟ ଗୀତେ ସ୍ତୁତି । ସିଦ୍ଧ ଗୁହ୍ୟକ ପନ୍ତି ପନ୍ତି ॥
ଦାନବ କିନ୍ନର ସକଳେ । ସେ ଯଜ୍ଞେ ମିଳିଲେ ଗହଳେ ॥
ସେ ପୃଥୁ ରାଜ୍ୟେ ବସୁମତୀ । ଧେନୁର ପ୍ରାୟେ ଦୁଗ୍ଧ ବତୀ ॥
କାମ ଧେନୁର ପ୍ରାୟ ହୋଇ । ସର୍ବ ସମ୍ପଦ ଦେଲା ମହୀ ॥
ନଦୀଏ ଦିବ୍ୟ ରସ ଜଳେ । ସଧୀରେ ବହନ୍ତି କଲ୍ଲୋଳେ ॥
ଘୃତ ସଂଯୋଗେ ଦଧି ଅନ୍ନେ । ତୋଷେ ଭୁଞ୍ଜନ୍ତି ସର୍ବଜନେ ॥
ସର୍ବ ବୃକ୍ଷରେ ମଧୁପନ୍ତି । ଜୀମୂତ ପ୍ରାୟ ବରଷନ୍ତି ॥
ସମୁଦ୍ର ନାନା ରତ୍ନେ ପୂରି । ଗର୍ଜନ୍ତି ଉଲ୍ଲୋଳେ ଲହରୀ ॥
ସର୍ବତ୍ର ତୋଷି ଦୁଗ୍ଧ ଅନ୍ନ । ଦେଇ ରଞ୍ଜିଲେ ପୃଥୁ ମନ ॥
ଲୋକପାଳଙ୍କ ଲୋକ ତୁଲେ । ସର୍ବ ସମ୍ଭାର ସମ୍ପାଦିଲେ ॥
ଯଜ୍ଞ କରଣ ବିଷ୍ଣୁ ଅର୍ଥେ । ସର୍ବ ସମ୍ପାଦିଲେ ସମସ୍ତେ ॥
ପୃଥୁର ଯଜ୍ଞାରମ୍ଭେ ଚାହିଁ । ବାସବ ମନେ ବିଚାରଇ ॥
ଏ ପୃଥୁ ଶତକ୍ରତୁ କଲେ । ଲଭିବ ଇନ୍ଦ୍ରପଦ ଭଲେ ॥
ମୋର ସମ୍ପଦ ଯିବ ନାଶ । ଏମନ୍ତ ବୋଲି ଛାଡ଼େ ଶ୍ୱାସ ॥
ଯଜ୍ଞର କିଛିଦିନ ଅନ୍ତେ । ଆତ୍ମାର ହିତ ଚିନ୍ତି ଚିତ୍ତେ ॥
ଯଜ୍ଞ ପଶୁକୁ ହରିନେଲା । ନିଜ ଭୁବନେ ବିଜେ କଲା ॥
ଆକାଶ ମାର୍ଗେ ଇନ୍ଦ୍ର ଗଲା । ପାଷାଣ୍ଡ ଧର୍ମ ଆଚରିଲା ॥
ଧର୍ମେ ବିଭ୍ରମ ତାର ମନ । ସଭୟ ଚିତ୍ତେ ଛନ୍ନ ଛନ୍ନ ॥
ଅତ୍ରି ଯେ ଥିଲେ ଯଜ୍ଞଶାଳେ । ଅଶ୍ୱର ହରଣ ଜାଣିଲେ ॥
ପୃଥୁ ପୁତ୍ରକୁ ରାଇ ବେଗେ । ଇନ୍ଦ୍ରର କର୍ମ ତାଙ୍କ ଆଗେ ॥
କହିଲେ ଅଶ୍ୱହର ବାଣୀ । ପୃଥୁ ନନ୍ଦନ ତାହା ଶୁଣି ॥
ଘେନିଣ ଧନୁ ଶର ହସ୍ତେ । ବେଗେ ଧାଇଁଲା ଶୂନ୍ୟପଥେ ॥
ଡାକଇ ରହ ରହ ବାଣୀ । ସଭୟେ ଇନ୍ଦ୍ର ତାହା ଶୁଣି ॥
ନିଜ ଶରୀର ଛିନ୍ନ କଲା । ଜଟିଳ ରୂପ ପ୍ରକାଶିଲା ॥
ଭସ୍ମ ଭୂଷିତ ଦେହ ଚାହିଁ । ପୃଥୁ ନନ୍ଦନ ବିଚାରଇ ॥
ଜଟିଳ ଭସ୍ମ ଏହା ଗାତ୍ରେ । ଏହାକୁ ମାରିବି କେମନ୍ତେ ॥
ଏମନ୍ତ ମନେ ବିଚାରିଲା । ଇନ୍ଦ୍ରକୁ ବାଟ ନ ଛାଡ଼ିଲା ॥
ତାର ରହିବା ପଥ ଦେଖି । ଅତ୍ରି ଯଜ୍ଞଶାଳ ଉପେକ୍ଷି ॥
ଡାକଇ ମାର ମାର ବେଗେ । ତା ଶୁଣି ଇନ୍ଦ୍ର ଶୂନ୍ୟମାର୍ଗେ ॥
ଭୟେ ଚାହିଁଲା ଦଶଦିଶେ । ସ୍ୱଭାବେ କେହି ନାହିଁ ପାଶେ ॥
ବୋଲଇ ଇନ୍ଦ୍ର ବେଗେ ମାର । ସ୍ୱଭାବେ ଯଜ୍ଞ ଅଶ୍ୱ ଚୋର ॥
ଏମନ୍ତେ ଅତ୍ରିର ବଚନେ । ପୁଣି ଧାଇଁଲା କୋପମନେ ॥
ଧାମଇ ଅତି କ୍ରୋଧ କରି । ହସ୍ତୀକି ଯେସନେ କେଶରୀ ॥
ବାସବ ଦେଖି ତ୍ରାସ ମନେ । ଅଶ୍ୱକୁ ଛାଡ଼ି ଅନ୍ତର୍ଦ୍ଧାନେ ॥
ଅଦୃଶ୍ୟ ଶୂନ୍ୟ ମାର୍ଗେ ଯାଇ । ପୃଥୁ ନନ୍ଦନ ବିଚାରଇ ॥
ପରଶୁ ଘେନି ମହାରୋଷେ । ଇନ୍ଦ୍ରକୁ ଚାହେଁ ଦଶ ଦିଶେ ॥
ନ ଦେଖି ପୁଣ ଯଜ୍ଞସ୍ଥାନ । ମିଳିଲା ଅତ୍ରି ସନ୍ନିଧାନ ॥
ଅଶ୍ୱର ରଜ୍ଜୁ ହସ୍ତେ ଧରି । ଅତ୍ରି ଚରଣେ ନମସ୍କରି ॥
ତାର ଅଦ୍ଭୁତ କର୍ମ ଦେଖି । ମୁନିଏ ନାମ ଉପଲକ୍ଷି ॥
ବିଷ୍ଣୁ ଉଚ୍ଚାରି ପୁଣ୍ୟଧାମ । ଦେଲେ ସେ ବାଜିତାଶ୍ୱନାମ ॥
ଏମନ୍ତେ ରଜନୀ ପ୍ରବେଶେ । ଇନ୍ଦ୍ର ଯେ ମିଳି ଯଜ୍ଞ ଦେଶେ॥
ବିଚାରି ଅନ୍ଧକାର ଛଳେ । ଅଶ୍ୱକୁ ପୁଣି ନେଲା ବଳେ ॥

ଯଜ୍ଞର ଯୂପ ତଳୁ ଛନ୍ନେ । ହରିଲା ସୁବର୍ଣ୍ଣ ‌ନେ ॥
ଅତ୍ରି ଦେଖନ୍ତେ ଶୂନ୍ୟମାର୍ଗେ । ତ୍ରାସେ ପଳାଇ ଇନ୍ଦ୍ର ବେଗେ ॥
ପୃଥୁ ପୁତ୍ରର ମୁଖ ଚାହିଁ । ବୋଇଲେ ଅଶ୍ୱ ଆଣ ଯାଇ ॥
ତା ଶୁଣି ହସ୍ତେ ଧନୁ ଧରି । ଧାଇଁଲା ଘୋର ନାଦ କରି ॥
ଡାକଇ ରହ ରହ ବାଣୀ । ତାର ବଚନ ଇନ୍ଦ୍ର ଶୁଣି ॥
ପଥେ ଅଶ୍ୱକୁ ଛାଡ଼ି ଛନ୍ନେ । ତକ୍ଷଣେ ଗଲା ଅନ୍ତର୍ଦ୍ଧାନେ ॥
ପୁଣି ସେ ଅଶ୍ୱ ଧରି କରେ । ମିଳିଲା ଆସି ଯଜ୍ଞ ଘରେ ॥
ଅଶ୍ୱ ହରନ୍ତେ ଇନ୍ଦ୍ର ପଥେ । ଛଳେ ଧଇଲେ ରୂପ ଯେତେ ॥
ପାଷାଣ୍ଡ ଜନ ସେହି ମତେ । ରୂପ ପ୍ରକାଶିଲେ ଜଗତେ ॥
ପୃଥୁର ଯଜ୍ଞ ଘର ସ୍ଥାନେ । ଇନ୍ଦ୍ରର ଯେତେ ରୂପ ଛନେ ॥
ପାଷାଣ୍ଡେ ସେହି ରୂପ ଚିହ୍ନି । ଅଧର୍ମ ଧର୍ମ ବିଚାରନ୍ତି ॥
କେ ନଗ୍ନ ରକ୍ତପଟ ଧରେ । କେ ଭସ୍ମ ଭୂଷଣ ଶରୀରେ ॥
ଅଧର୍ମ ମାର୍ଗ ଆଚରନ୍ତି । ଆତ୍ମାର ହିତ ନ କରନ୍ତି ॥
ପାଷାଣ୍ଡ ମାର୍ଗେ ଥାଇ ନିତ୍ୟେ । ଦୂଷଣ ଦେଇ ବେଦପଥେ ॥
ତାହାଙ୍କ ମତ ଯେ କରନ୍ତି । ଅନ୍ତେ ନରକେ ପ୍ରବେଶନ୍ତି ॥
ଅଶ୍ୱ ଚୋରାନ୍ତେ ଇନ୍ଦ୍ର ପଥେ । ଛନ୍ନେ ଧଇଲା ରୂପ ଯେତେ ॥
ସେ ରୂପେ ପ୍ରକାଶି ବ୍ରହ୍ମାଣ୍ଡେ । ନିଗମ ନିନ୍ଦିଲେ ପାଷାଣ୍ଡେ ॥
ସେ କଥା ଶୁଣି ପୃଥୁ କୋପେ । ଇନ୍ଦ୍ର ଝିଙ୍ଗାସେ ଦେହ କମ୍ପେ ॥
ଇନ୍ଦ୍ର ମାରଣେ କୋପ କରି । ନିଜ କୋଦଣ୍ଡେ କରେ ଧରି ॥
କୋପନ୍ତେ ଅରୁଣ ନୟନ । ପ୍ରଚଣ୍ଡ ବିରାଜେ ବଦନ ॥
ପୃଥୁ ଗମନ ଦେଖି ରଣେ । ବେଗେ ମିଳିଲେ ବିପ୍ରଗଣେ ॥
ଇନ୍ଦ୍ରର ହିତ ଚିତ୍ତେ କହି । ବୋଲନ୍ତି ପୃଥୁ ମୁଖ ଚାହିଁ ॥
ଶୁଣ ହେ ପୃଥୁ ଧର୍ମକଥା । ଆଗମ ନିଗମ ବ୍ୟବସ୍ଥା ॥
ଦେବଙ୍କ ଦେହେ ଇନ୍ଦ୍ର ତେଜେ । ସେ ତେଜେ ଦେବଯଜ୍ଞ ଭୁଞ୍ଜେ ॥
ଏଣୁ ଇନ୍ଦ୍ରକୁ ଯଜ୍ଞେ ବରି । ମନ୍ତ୍ରେ ଅନଳେ ହୋମ କରି ॥
ସୃଷ୍ଟି ପାଳନେ ଏ କାରଣ । ଏ ଭାବେ ସଂସାର ଧାରଣ ॥
ଇନ୍ଦ୍ରର କୋପ ତୁ ସଂହର । ଆମ୍ଭର ବାକ୍ୟ ଚିତ୍ତେ ଧର ॥
ଏମନ୍ତ କହି ମୁନିଗଣେ । ବ୍ରହ୍ମା ମିଳିଲେ ତତକ୍ଷଣେ ॥
ପୃଥୁ ବଦନ ଚାହିଁ ଧୀରେ । ବୋଲନ୍ତି ବଚନ ଗଭୀରେ ॥
ଏ ଇନ୍ଦ୍ର ନାରାୟଣ ତନୁ । ଏହାକୁ କୋପ ଛାଡ଼ ମନୁ ॥
ଏହାର ଦେହେ ସର୍ବଦେବେ । ନିତ୍ୟେ ବସନ୍ତି ଯଜ୍ଞଭାବେ ॥
ଆହୁତି ଯାର ମୁଖେ ଦେଇ । ତାହାକୁ କୋପ ନ ଯୋଗାଇ ॥
ଏହାକୁ କୋପ ତୁ ନ କର । ଯଜ୍ଞ ପୁରୁଷ ଅର୍ଥେ ବର ॥
ଏ ଧର୍ମ ପରମ କାରଣ । ଅଶେଷ ସୃଷ୍ଟିର ଧାରଣ ॥
ଏ ଯଜ୍ଞ ଦ୍ରୋହକର୍ମ କଲା । ପାଷାଣ୍ଡ ପଥ ବିସ୍ତାରିଲା ॥
ପାଷାଣ୍ଡ ଉଦ୍ଧାରିବା ଅର୍ଥେ । ତୋ ଅବତାର ଏ ଜଗତେ ॥
ବେଣୁର ଦେହେ ଯେତେ ଦୋଷ । ତୋ ଜନ୍ମ କଲା ତାହା ନାଶ ॥
ତୁ ଏବେ ମୋର ବୋଲ କର । ପାଷାଣ୍ଡ ସୃଷ୍ଟିକି ଉଦ୍ଧର ॥

## ମୈତ୍ରେୟ ଉବାଚ

ଏମନ୍ତ ବ୍ରହ୍ମାର ବଚନେ । ଯଜ୍ଞର ଅବଭୃଥ ସ୍ନାନେ ॥
ଦକ୍ଷିଣା ଦେଇ ବିପ୍ରଜନେ । ଯଜ୍ଞେ ତୋଷିଲେ ସର୍ବଜନେ ॥
ଅପରିମିତ ଧେନୁ ଦାନେ । ତିଳ କାଞ୍ଚନ ଯେ ବିଧାନେ ॥
ସେ ବିପ୍ରଜନ ହୋଇ ତୋଷ । ପୃଥୁକୁ କରନ୍ତି ଆଶିଷ ॥
ତୋର ବଚନେ ସର୍ବଦେବେ । ତୋଷ ହୋଇଲେ ଯଜ୍ଞଭାବେ ॥
ଏମନ୍ତ କହି ପଦ୍ମଯୋନି । ସଙ୍ଗେ ସକଳ ବିପ୍ର ଘେନି ॥
ତକ୍ଷଣେ ଗଲେ ନିଜ ସ୍ଥାନେ । ଶୁଣ ବିଦୁର ତୋଷମନେ ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ଚତୁର୍ଥ ସ୍କନ୍ଧେ ପୃଥୁବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଚତୁର୍ଥସ୍କନ୍ଧେ ପୃଥୁ ରାଜା*
*ଯଜ୍ଞକରଣେ ନାମ ଏକବିଂଶୋଽଧ୍ୟାୟ ।*

## ଦ୍ୱାବିଂଶ ଅଧ୍ୟାୟ

କୃଷ୍ଣ ଚରିତ ମନେ ଘେନି । କହନ୍ତି ମଇତ୍ରେୟ ମୁନି ॥

## ମୈତ୍ରେୟ ଉବାଚ

ଏ ଅନ୍ତେ ଶୁଣ ହେ ବିଦୁର । ସେ ପୃଥୁଦେବ ରାଜ୍ୟେଶ୍ୱର ॥
ପ୍ରଜା ପାଳନେ ଧର୍ମଶୀଳ । ହରି-ଭକତି ରସେ ଭୋଳ ॥
ସେ ରାଜ୍ୟେ ଯେତେ ପ୍ରଜାଗଣ । ପିତୃ ଦେବ ଋଷି ବ୍ରାହ୍ମଣ ॥
ପୃଥୁଙ୍କ ଗୁଣ ବଖାଣନ୍ତି । ସେ ସର୍ବେ ହରିଙ୍କି ପୂଜନ୍ତି ॥
ଏମନ୍ତେ କେତେ କାଳାନ୍ତରେ । ବିଜୟ କଲେ ମୁନିବରେ ॥
ସେ ସିଦ୍ଧଗଣ ମଧ୍ୟେ ବର । ବିଶେଷେ ବ୍ରହ୍ମାଙ୍କ କୁମର ॥
ତପ-ସାଧନେ ବିରାଜନ୍ତି । ସୂର୍ଯ୍ୟକିରଣ ପ୍ରାୟେ ଜ୍ୟୋତି ॥
ଆକାଶେ ଦେଖିଲେ ରାଜନ । କାନ୍ତିରୁ କଲେ ଅନୁମାନ ॥
ଏ ସର୍ବେ ସିଦ୍ଧ ସନକାଦି । ବିଷ୍ଣୁଭକତି ବ୍ରହ୍ମବାଦୀ ॥
ଲୋକଙ୍କ ପାପଶୁଦ୍ଧି ଅର୍ଥେ । ଭ୍ରମଣ କରନ୍ତି ଜଗତେ ॥
ନିଶ୍ଚୟ ଜାଣି ଅନୁମାନେ । ଉଠିଲେ ସହାସ୍ୟେ ସଗଣେ ॥
ତାଙ୍କ ଦର୍ଶନେ ନୃପପ୍ରାଣ । ଊର୍ଦ୍ଧ୍ୱକୁ କଲା କି ଗମନ ॥

ଯେହ୍ନେ ଜୀବନ ପିଣ୍ଡ ପାଇ । ସତ୍ୱରେ ଉଠିଲେ ଚିତୋଇ ॥
ସଦସ୍ୟ ଆଦି ଯେତେ ଥିଲେ । ସକଳେ ସତ୍ୱରେ ଉଠିଲେ ॥
ଯେସନେ ଗନ୍ଧାଦି ଗୁଣକୁ । ଜୀବ ଉତ୍ସୁକ ଘେନିବାକୁ ॥
ତେସନେ ନୃପ ହେଲେ ଉଭା । ମୁନି ପ୍ରବେଶ ହେଲେ ସଭା ॥
ଆନନ୍ଦେ ପୃଥୁ-ନୃପବର । ପ୍ରଣମି ମୁନିଙ୍କ ପୟର ॥
ସୁଗନ୍ଧ-ଶୀତଜଳ ନେଇ । ପଦକମଳ ଦେଲେ ଧୋଇ ॥
ଦିବ୍ୟ-ଆସନେ ବସାଇଲେ । ସବିଧି ବେଭାରେ ପୂଜିଲେ ॥
ତାହାଙ୍କ ଚରଣ-ସଲିଳେ । ଅଳକ-ବନ୍ଧ ସମ୍ମାର୍ଜିଲେ ॥
ଯେ ପ୍ରାଣୀ ହୋଏ ଶୀଳବନ୍ତ । ତାହାଙ୍କ ଚରିତ ଏମନ୍ତ ॥
ଛାଡ଼ି ନୃପତି ଅଭିମାନ । ଆନନ୍ଦେ କଲେ ବହୁମାନ୍ୟ ॥
ହାଟକ-ଆସନେ ବସାଇ । ପାଦ-ଉଦକ ଶିରେ ଲଇ ॥
ସେ ଭଚ-ଅଗ୍ରଜନ୍ମା ଯେଣୁ । ରାଜନ ମାନ୍ୟ କଲେ ତେଣୁ ॥
ଭାଧେ ପ୍ରତୋଷି ତାଙ୍କ ମନ । କହନ୍ତି ମଧୁର ବଚନ ॥

## ପୃଥୁ ଉବାଚ

ଆଜ ମୋ ପୂର୍ବଭାଗ୍ୟଫଳ । ଜୀବନ ହୋଇଲା ସଫଳ ॥
ଦୁର୍ଲଭ ଦେଖିଲି ତୁମ୍ଭଙ୍କୁ । ଖୋଜି ନ ପା'ନ୍ତି ଯୋଗୀ ଯା'ଙ୍କୁ ॥
କି ତା'ର ଦୁର୍ଲଭ ସଂସାରେ । ଯେ ଅବା ଅଛି ଇହପରେ ॥
ଯାହାକୁ ବିଷ୍ଣୁ ବଇଷ୍ଣବ । ପ୍ରସନ୍ନ ବିପ୍ର ସଦାଶିବ ॥
ଅବ୍ୟକ୍ତ-ଗତି ଯେ ତୁମ୍ଭର । ଭ୍ରମଣ ଚତୁର୍ଦ୍ଦଶ-ପୁର ॥
ଅଭାଗ୍ୟବନ୍ତ ପ୍ରାଣୀ ଯେହି । ତୁମ୍ଭ ଦର୍ଶନେ ଯୋଗ୍ୟ କାହିଁ ॥
ଏ ଆତ୍ମାପୁରୁଷ ଯେସନେ । ସକଳ ଦେଖଇ ଚେତନେ ॥
ତାହାକୁ ନ ଦେଖନ୍ତି କେହି । ଏ ବିଶ୍ୱ ହେତୁଭୂତ ଯେହି ॥
ହେ ସିଦ୍ଧ ତୁମ୍ଭଙ୍କୁ ଦେଖିଲି । ଧନ୍ୟ ମୋ ଜୀବନ ମଣିଲି ॥
ନିର୍ଦ୍ଧନ ଗୃହେ ଯେହ୍ନେ ଧନ । ଅଣ ଆୟାସେ ଲଭେ ପୁଣ୍ୟ ॥
ତେହ୍ନେ ମଣିଲି ଅଦଭୂତ । କି ଭାଗ୍ୟେ ତୁମ୍ଭେ ଉପଗତ ॥
ଯା ଗୃହେ ଅତିଥି ଆଗତ । ଭାବେ ପୂଜଇ ଶୁଦ୍ଧଚିତ୍ତ ॥
ବିଭବେ ପୂଜି ବହୁବିଧେ । କାୟ ବାଚିକ ମନ-ଶୁଦ୍ଧ ॥
ବିଭବ-ହୀନ ଯେବା ଜନ । ପୂଜିବ ଯେ ବିଧି-ବିଧାନ ॥
ଭୂମି ଉଦକ ତୃଣାସନେ । ଦେଇ ପୂଜିବ ଶୁଦ୍ଧମନେ ॥
ଏ ଭାବେ ଯେବା ନ ପୂଜନ୍ତି । ସେ ବ୍ୟର୍ଥ-ଜୀବନେ ଜୀବନ୍ତି ॥
ବ୍ୟାଳ-ଆଳୟ ଦ୍ରୁମ ଯେହ୍ନେ । ତା ଗୃହ ଭୟଙ୍କର ତେହ୍ନେ ॥
ଯା ଗୃହଗତେଣ ଅତିଥି । ସୁଖେ ଚରଣ ନ ଧୁଅନ୍ତି ॥
ତା'ର ଜୀବନ ଅକାରଣ । ବ୍ୟର୍ଥ ଆୟୁଷ ଯଶ ଗୁଣ ॥
ଯେ ଭକ୍ତଜନଙ୍କୁ ନ ସେବେ । ତା' ସୁଖ ସମ୍ପଦ କି ଲାଭେ ॥

ଭୋ ମୁନି ତୁମ୍ଭ ଆଗମନ । ମଙ୍ଗଳ ମଣିଲି ଜୀବନ ॥
ତୁମ୍ଭର ବ୍ରତ ବିଧି ଆଦି । ଆଚରନ୍ତି ଯେ ମୋକ୍ଷବାଦୀ ॥
ଯେ ବାଳ ବୟସୁ ଆଚରେ । ସେ ତେବେ ମୋକ୍ଷମାର୍ଗ ଧରେ ॥
ଏ ବାଳ ପୌଗଣ୍ଡ କୈଶୋରେ । ଯେ ଧରେ ଦୃଢ଼ ନିଷ୍ଠାପରେ ॥
ସେ ତେବେ ମୋକ୍ଷପଦେ ଯାନ୍ତି । ଏ ବିଷ୍ଣୁ ମାୟାରୁ ତରନ୍ତି ॥
ଇନ୍ଦ୍ରିୟ ମାନଙ୍କ ବିଷୟ । ନ ଛାଡ଼େ ଯାହାର ହୃଦୟ ॥
ସେ କାହିଁ ସୁଖ ନ ଲଭନ୍ତି । ସ୍ୱକର୍ମ-ବନ୍ଧେ ବନ୍ଦୀ ହୋନ୍ତି ॥
ଏ ଘୋର ସଂସାରେ ପଡ଼ିଣ । ଦୁଃଖ ଭୁଞ୍ଜନ୍ତି ଜ୍ଞାନହୀନ ॥
ଭୋ ମୁନିଗଣେ ତୁମ୍ଭେ ଜ୍ଞାନୀ । ଆତ୍ମାରାମଙ୍କ ମଧ୍ୟେ ମାନୀ ॥
ଏଣୁ ଯେ ତୁମ୍ଭ ମାନଙ୍କରେ । କୁଶଳ ପ୍ରଶ୍ନ କେ ପଚାରେ ॥
ତୁମ୍ଭର ମତି-ବୃତ୍ତିମାନେ । କୁଶଳାକୁଶଳ ନ ଘେନେ ॥
ଏହି ବିଶ୍ୱାସ ମୋର ଅଛି । ସଭୟେ ନ ପାରଇ ପୁଚ୍ଛି ॥
ସଂସାର-ତାପେ ଯେ ତାପିତ । ତା'ଙ୍କ କୁଶଳ ଯେ ଚରିତ ॥
ତୁମ୍ଭେ ତପସ୍ୱୀଗଣ ମିତ୍ର । ନିର୍ମଳ ଚରିତ ପବିତ୍ର ॥
ଏ ଅଭିପ୍ରାୟେ ମୁଁ ପୁଚ୍ଛଇ । ଫେଡିଣ କହିବା ଗୋସାଇଁ ॥
ଏ ଦୁଃଖ ଅଜ୍ଞାନ ସଂସାରେ । ଏ ଜୀବ ଭ୍ରମେ ନିରନ୍ତରେ ॥
ଭୋ ମୁନି କିବା କର୍ମ କଲେ । ଏ ଜୀବ ନିସ୍ତରିବେ ଭଲେ ॥
ଏ ଅଭିପ୍ରାୟେ ମୁଁ ପୁଚ୍ଛଇ । ଭକ୍ତ-ଉଦ୍ଧାରଣେ ଗୋସାଇଁ ॥
ତୁମ୍ଭେ ଭକତ-ଜନହିତେ । କୁଶଳ ବାଞ୍ଛା ଅବିରତେ ॥
ସିଦ୍ଧ-ଯୋଗୀନ୍ଦ୍ର ରୂପ ଧରି । ସଂସାରେ ଭ୍ରମୁଥାନ୍ତି ହରି ॥
ସକଳ ଆତ୍ମା ସେ ଗୋସାଇଁ । ଭ୍ରମନ୍ତି ସଜ୍ଜନ ପାଇଁ ॥
ସେ ଆଜ ସିଦ୍ଧ ରୂପେ ଥାନ୍ତି । ଆପକୁ ଆପେ ପ୍ରକାଶନ୍ତି ॥
ପ୍ରତ୍ୟକ୍ଷେ ତୁମ୍ଭେ ସେ ଗୋସାଇଁ । ଦର୍ଶନେ ନିସ୍ତରିଲି ମୁହିଁ ॥
ଏ ଭବତରଣ ଉପାୟେ । ଫେଡିଣ କହିବା ଥୋକାଏ ॥
ତୁମ୍ଭେ ଯେ ମୋତେ କୃପା ଘେନି । ଆମ୍ଭ କୁଶଳ କହ ମୁନି ॥

## ମୈତ୍ରେୟ ଉବାଚ

ଏମନ୍ତେ ଶୁଣ ହେ ବିଦୁର । ସେ ପୃଥୁ ବଚନ ମଧୁର ॥
ଶ୍ରବଣେ ତୋଷ ହେଲେ ମୁନି । ସାଧୁ-ସମ୍ମତ ବାକ୍ୟ ଘେନି ॥
ହରଷେ କହନ୍ତି କୁମାର । ଶୁଣ ହେ ପୃଥୁ ନୃପବର ॥
ସଂସାରେ ସାଧୁଜନ ଯେହି । ତା'ଙ୍କ ମହିମା ସିନା ଏହି ॥
ବିଷୟ ସୁଖ ନ ଘେନନ୍ତି । ପ୍ରାଣୀଙ୍କ ଶ୍ରେୟ ପଚାରନ୍ତି ॥
ତୁମ୍ଭେ ଯେ ପଣ୍ଡିତ ସୁଶୀଳ । ଏଣୁ ଉତ୍ତମ ପଚାରିଲ ॥
ସୁସାଧୁ ଜନଙ୍କ ସଙ୍ଗତ । ଉଭୟ ଲୋକଙ୍କୁ ସେ ହିତ ॥
ଏଣୁ ସାଧୁଙ୍କ ସମ୍ଭାଷଣ । ସୁପୁଣ୍ୟ ମଙ୍ଗଳ କାରଣ ॥

ଅଶେଷ ଜୀବହିତ କରେ । ଏଣୁ ପଚାରିଲ ବେଭାରେ ॥
ସୁଶାନ୍ତ ଆମ୍ଭ ମନ ହେଲା । ତୁମ୍ଭ ପ୍ରଶନେ ଦୁଃଖ ଗଲା ॥
ଏବେ ହୋ ଶୁଣ ନୃପବର । କହିବା ଏଥି ପ୍ରତିକାର ॥
ଯେ ମୋକ୍ଷ-ସାଧନ ପୁଚ୍ଛିଲ । ଅଶେଷ ଜୀବର ଯେ ଭଲ ॥
ଉପାୟ ଅଛଇ ଯେ ଏକ । ଭୋ ନୃପ ମନେ ବୁଝି ଦେଖ
ଗୋବିନ୍ଦ-ଚରଣ-କମଳେ । ଯେ ପ୍ରାଣୀ ଭଜନ୍ତି ଶୟଳେ ॥
ତରନ୍ତି ଏ ଭବ-ଜଳଧି । ଯେ ପ୍ରାଣୀ ଭଜେ ନିରବଧି ॥
ତ୍ରିବିଧ କୃଷ୍ଣ-ଉପାସନ । ରଜ ସାତ୍ତ୍ୱିକ ତମ ଗୁଣ ॥
ତାମସ-ଭକ୍ତ ଏ ଲକ୍ଷଣ । କହିବା ଏଥିର କାରଣ ॥
ଶ୍ରୀକୃଷ୍ଣ-ଭକତଙ୍କ ମେଳେ । ଯେ ନାଚେ ସଙ୍କୀର୍ତ୍ତନ ବେଳେ
ତହିଁ ଯାହାର ନୋହେ ରତି । ସେ ହୀନ କପଟ ଭକତି ॥
ତାହାର ଅନ୍ତର ମଳିନ । କାମ-କଷାୟେ ହୋଏ ହୀନ ॥
ତାମସ ଭକ୍ତ ବୋଲି ତା'ରେ । ନ ତରେ ଏ ଭବସାଗରେ ॥
କୃଷ୍ଣଭଜନେ ହୋଏ ରତି । ଆତ୍ମାକୁ ବିଶୁଦ୍ଧ କରନ୍ତି ॥
ଯେ ନିଷ୍ଠା ଶାସ୍ତ୍ରମାର୍ଗେ କହେ । ନିଶ୍ଚୟ ବୁଝ ନରରାୟେ ॥
ସେ ଟି ନିର୍ମଳ ଜ୍ଞାନହେତୁ । ଭବସାଗର ପାର ସେତୁ ॥
ଚିତ୍ତ ବିଶୁଦ୍ଧ ଯାର ନାହିଁ । ତା'ର ବୈରାଗ୍ୟ ଜ୍ଞାନ କାହିଁ ॥
ହରି ଚରଣେ ସେବା ରତି । ବୈରାଗ୍ୟ ନିଷ୍ଫଳ ଭକତି ॥
ଏଟି କୈବଲ୍ୟ ସୁସାଧନ । ନିଶ୍ଚୟ ବୁଝି ତୁ ରାଜନ ॥
ବୈରାଗ୍ୟେ ହୋଏ ଯେ ଅସଙ୍ଗ । ତହୁଁ ଜନ୍ମଇ ଭକ୍ତି ଅଙ୍ଗ ॥
ଯେଣୁ ତା' ଦେହେ ସଙ୍ଗ ନାହିଁ । ଏଣୁଟି ଆତ୍ମେ ରତି ହୋଇ ॥
ସେ ବ୍ରହ୍ମ ନିର୍ଗୁଣ ନିର୍ମଳ । ବ୍ୟାପିଛି ଅଶେଷ ଶୟଳ ॥
ଭକ୍ତି-ବୈରାଗ୍ୟେ ତା'କୁ ପାଇ । ଏ ବିନେ ଜୀବ ଭ୍ରମୁଥାଇ ॥
ସେ ବ୍ରହ୍ମେ ଏ ରତି ପ୍ରକାର । ଶାସ୍ତ୍ରରେ ଶ୍ରଦ୍ଧା ଥାଇ ଯା'ର ॥
ହରି-ଚରଣେ ଯେବେ ଭାବେ । ନିଷ୍କାମ-ଭକ୍ତି ହୋଏ ତେବେ
ଯୋଗରେ ନିଷ୍ଠା ଥାଇ ଯା'ର । ପୁଚ୍ଛଇ ଶାସ୍ତ୍ର-ମାର୍ଗ ସାର ॥
ଯୋଗୀନ୍ଦ୍ର ଗଣେ ସେବାକଲେ । ସେ ରତି ଲଭେ ବ୍ରହ୍ମତୁଲେ ॥
କି ଅବା ହରି ସଂକୀର୍ତ୍ତନ । ଶୁଣେ ଶ୍ରବଣେ କରେ ଧ୍ୟାନ ॥
ଅସଙ୍ଗ ରତି ଏହି ଭାବେ । ସାଧନ ତାରତମ୍ୟେ ଲଭେ ॥
ଶୁଣ ରାଜନ କୃଷ୍ଣ ଲୟେ । ତ୍ରିବିଧ ପ୍ରକାରେ ଯେ ହୋଏ ॥
ଯେ ମାର୍ଗେ ଯେ ସାଧ୍ୟ କରନ୍ତି । ବ୍ରହ୍ମନିର୍ବାଣେ ହୋଏ ରତି ॥
ଅର୍ଥ-ବାଞ୍ଛିତ ମନ ଯା'ର । ତାମସେ ବଦ୍ଧ ସେହୁ ନର ॥
ସେ ପ୍ରାଣୀ ଇନ୍ଦ୍ରିଭୋଗ ବଶ । ତାହାକୁ ବୋଲିଟି ରାଜସ ॥
ଏହାକୁ ନ କରିବ ସଙ୍ଗ । ସେ ସଙ୍ଗ ଦୋଷେ ଜ୍ଞାନଭଙ୍ଗ ॥

ତହିଁ ନ ଦେବ ମନ ଦୃଷ୍ଟି । କେବେହେଁ ନ କରିବ ଗୋଷ୍ଠୀ
ସେ ସଙ୍ଗ ଯେବା ଆଦରନ୍ତି । ସକାମ ଅର୍ଥ ସେ ବାଞ୍ଛନ୍ତି ॥
ଏଣୁ ତାହାଙ୍କ ସଙ୍ଗ ତେଜି । ଯେ ପ୍ରାଣୀ ଆତ୍ମା ଲାଭ ଖୋଜି
ନିଃସଙ୍ଗେ ନିର୍ଜନେ ସେବଇ । ତେବେ ଆତ୍ମାକୁ ଭେଟ ପାଇ
ଏ ରୂପେ ହୋଏ ବ୍ରହ୍ମେ ରତି । ଶୁଣ ସୁମନେ ହେ ନୃପତି ॥
ଅପରେ ଅସାଧୁ କହିବା । ଯାହାର ନାହିଁ ଭକ୍ତି ସେବା ॥
ହରି-ଚରଣେ ଭକ୍ତି ନୋହି । ତାହାର ବ୍ରହ୍ମେ ରତି କାହିଁ ॥
ସେ ହରି ଗୁଣ ସୁଧା-ପାନ । ସେ ବିନୁ ନୋହେ ବ୍ରହ୍ମଜ୍ଞାନ ॥
ଅହିଂସା-ଧର୍ମେ ଯେବା ଥାନ୍ତି । ଏ ବ୍ରହ୍ମଜ୍ଞାନ ସେ ଲଭନ୍ତି ॥
ପରମହଂସର ଯେ ବିଧି । ତିତିକ୍ଷା ଶମ ଦମ ଆଦି ॥
ଆତ୍ମାର ହିତ ଅନୁଧାନେ । ନିର୍ଗୁଣ ହୋଏ ବ୍ରହ୍ମଜ୍ଞାନେ ॥
ସେ ହରି ପରମ-ପୁରୁଷ । ତାହାଙ୍କ ଚରିତ ପୀୟୂଷ ॥
ସେ ସୁଧାପାନ ଯେବେ କରେ । ତେବେ ସେ ବ୍ରହ୍ମଜ୍ଞାନ ଧରେ
ଯମ ନିୟମ ଶମ ଦମ । ଏ ଆଦି ସାଧନ ନିର୍ଗୁଣ ॥
ସଂସାରେ ଶାସ୍ତ୍ର-ବ୍ୟବହାରେ । ନିନ୍ଦା-ଧର୍ମକୁ ନ ଆଚରେ ॥
ପରମଧର୍ମ ଏ ବିଚାରେ । ନିର୍ମଳ ବାହ୍ୟ-ଅଭ୍ୟନ୍ତରେ ॥
ଶୀତୋଷ୍ଣ ସୁଖ-ଦୁଃଖ ସହେ । ସେ ତେବେ ବ୍ରହ୍ମଜ୍ଞାନ ବହେ
ହରି-ଭକତ ଯେତେ ଜନ । ଏ ସର୍ବ ତାହାଙ୍କ ଭୂଷଣ ॥
ଯେତେ କୃଷ୍ଣର ଗୁଣ-ଗ୍ରାମ । ତହିଁ ସାଧକ ଯେଉଁ ଜନ ॥
ତେଣୁ ବଢ଼ଇ ତାର ଭକ୍ତି । ଆନ ପ୍ରସଙ୍ଗେ ଅନାଶକ୍ତି ॥
ସେ ବ୍ରହ୍ମ ଅଟେ ସଦା ସତ । ଅନାଦି ନିର୍ଗୁଣ ଅନନ୍ତ ॥
ତହିଁ ଯାହାର ରତି ହୋଏ । ସେ ପ୍ରାଣୀବନ୍ଧ ନୋହେ ମୋହେ
ସେ ବ୍ରହ୍ମେ ଯା'ର ନିଷ୍ଠା ରତି । ତେବେ ତା ହୋଏ ମୁକ୍ତ ମତି
ଯେ ସଦା ଗୁରୁ ସେବାକରେ । ସେ ତେବେ ଜ୍ଞାନମାର୍ଗ ଧରେ
ଜ୍ଞାନ-ବୈରାଗ୍ୟ ଯୋଗବଳେ । ଏ ଜୀବକୋଷ ଦହେ ହେଳେ
ଏ ପଞ୍ଚଭୂତର ହୃଦୟ । ଜୀବର ହୋଇଛି ଆଳୟ ॥
ଜ୍ଞାନ-ଅନଳ ହେଲେ ଜାତ । ତେବେ ସେ ହୋଏ ଭସ୍ମଗତ
ଏ ଜୀବକୋଷ ଯେବେ ଯାଇ । ତେବେ ସେ ବ୍ରହ୍ମଜ୍ଞାନ ପାଇ ॥
ଅନଳ ପ୍ରକାଶିଲେ ଯେହ୍ନେ । ଦଗ୍ଧ ହୁଅନ୍ତି କାଷ୍ଠମାନେ ॥
ତେସନେ ଏ ଲିଙ୍ଗ ଶରୀର । ଜ୍ଞାନେ ଦହଇ ନୃପବର ॥
ଏମନ୍ତ ଜ୍ଞାନ ଉଦେ ଯା'ର । ନୁହଇ ଭବ-ବନ୍ଧ ତା'ର ॥
ଉପାଧି ବାସନା ଅଶେଷ । ଜ୍ଞାନ-ଅନଳେ ହୋଏ ଧ୍ୱଂସ ॥
ଉପାଧି ହତେ ନୃପରାୟେ । ତା'ର ଗୁଣାଦି ହୋଏ ଲୟେ ॥
ବିନାଶ ହୋଏ ଅଭିମାନ । ଆପଣା ପର ଆଦିଜ୍ଞାନ ॥

ଜନ୍ମଇ ନିଜ ଭାବେ ରତି । ଏ ପରାପର ନୋହେ ମତି ॥
ସେ ପୁଣି ଅନ୍ତର ବାହାରେ । ଏ ଦୁଃଖ ସୁଖ ନ ବିଚାରେ ॥
ବାହ୍ୟେ ସେ ନ ଲକ୍ଷଇ କିଛି । ଘଟାଦି ବସ୍ତୁ ଯେତେ ଅଛି ॥
ଏଥକୁ ପ୍ରତିଲକ୍ଷ୍ୟ ଦେବା । ଭୋ ନୃପ ଦେଖାଇ କହିବା ॥
ଦ୍ରଷ୍ଟା-ଦୃଶ୍ୟର ଭିନ୍ନେ ବିଧି । ଏହାଙ୍କ ହେତୁ ମନ ବୁଦ୍ଧି ॥
ଏ ଆତ୍ମା ଏ ମୋହର ପର । ଏ ଭେଦ କରେ ଅହଂକାର ॥
ଭେଦ କରନ୍ତା ଯେବେ ମଲା । ତା'ର ଅଜ୍ଞାନ କ୍ଷୟ ଗଲା ॥
ଅଜ୍ଞାନ ନାଶେ ସର୍ବେ ଏକ । ଭୋ ନୃପ ବିଚାର ବିବେକ ॥
ଯେସନେ ଶୟନେ ସ୍ୱପନ । ମିଥ୍ୟାଭିଳାଷେ ଦେଖେ ମନ ॥
ଆପଣେ ହୋଇଥାଇ ରାଜା । ସଙ୍ଗତେ ଦେଖେ ଜନପ୍ରଜା ॥
ସୈନ୍ୟସାମନ୍ତ ଗଜ ରଥ । ମିଥ୍ୟା ପ୍ରପଞ୍ଚ ମଣେ ସତ ॥
ସେ ପୁଣି ସ୍ୱପ୍ନ ଅବସାନେ । ସକଳ ମିଥ୍ୟା କରି ମଣେ ॥
ରାଜ୍ୟ ସମ୍ପଦ ଭୋଗ ଯେତେ । ଶୋଚନା ନ କରଇ ଚିତ୍ତେ ॥
ତେସନେ ଜ୍ଞାନ ଉପୁଜିଲେ । ଏ ସର୍ବ ନାଶ ଯା'ନ୍ତି ଭଲେ ॥
ଏ ଆତ୍ମା ଦେଖନ୍ତା ପୁରୁଷ । ଇନ୍ଦ୍ରିୟ ଅର୍ଥାଦି ପ୍ରକାଶ ॥
ଏ ବେନି ପର ଅହଂକାର । ଏ ଭେଦ ବିବେକ ବିଚାର ॥
ଯାବତ ଉପାଧି ଅଛଇ । ତାବତ ଭେଦ-ବୁଦ୍ଧି ଥାଇ ॥
ଉପାଧି ହତେ ସର୍ବନାଶ । ତେବେ ସେ ଆତ୍ମା ସୁପ୍ରକାଶ ॥
ଏ ଆତ୍ମା ପରମ-ପୁରୁଷ । ଯାହାର ନାହିଁ ଗୁଣ ଦୋଷ ॥
ଉପାଧି ଭେଦେ ଭିନ୍ନ ଦିଶେ । ତା' ବିନା ଏକ ସେ ପ୍ରକାଶେ
ଯେହ୍ନେ ଦର୍ପଣ ଜଳାଦିରେ । ଆପଣା ପ୍ରତିବିମ୍ବ ଧରେ ॥
ଏ ବେନି ହୀନେ ନ ଦିଶନ୍ତି । ଆପଣା ଶରୀର ଆକୃତି ॥
ଉପାଧି ହେତୁ ଭିନ୍ନ ଭିନ୍ନ । ତା' ଅବଶେଷେ ଏକ ଚିହ୍ନ ॥
ଶୁଣ ହେ ପୃଥୁ ମହୀପତି । ଅସଙ୍ଗ ଆର ବ୍ରହ୍ମରତି ॥
ଏବେ ନିମାର୍ଗ ମୋକ୍ଷ ହେତୁ । ଭବସାଗର ପାର ସେତୁ ॥
ଶୁଣ ସୁମନେ ହେ ରାଜନ । ବିବେକ-ହୀନ ଯେବା ଜନ ॥
ଯାହାର ଆତ୍ମା-ରତି ନୋହେ । ଯେ ଦେହେ ଅହଂକାର ବହେ
ଏମୋର ଦାରା-ସୁତ-ଘର । ବୋଲି କ୍ଷଣୟେ ଅହଂକାର ॥
ବିଷୟ-ରସେ ଇନ୍ଦ୍ରି ରସ । ମନକୁ ଆଣଇ ଆକର୍ଷି ॥
ଇନ୍ଦ୍ରିୟ ସଙ୍ଗେ ମନ ରସେ । ନିଜ ଚେତନା ବଳ ଧ୍ୱଂସେ ॥
ଏଣୁ ବିବେକ ତା'ର ନାହିଁ । କୁସଙ୍ଗ ଦୋଷେ ମନ ମୋହି ॥
ଯେସନେ କୁଶ ଆଦି ମୂଳ । ହ୍ରଦରୁ ଓଟାରନ୍ତି ଜଳ ॥
ତେସନେ ଦେଖ ବିଷୟାଦି । ହରଇ ସର୍ବ ମନ ବୁଦ୍ଧି ॥
ଚେତନା ବଳେ ସ୍ମୃତି ରହି । ତା'ର ଅଭାବେ ସ୍ମୃତି କାହିଁ ॥

ଯାହାର ସ୍ମୃତି ହୋଏ ନାଶ । ତା ହୃଦେ ଜ୍ଞାନ ଅପ୍ରକାଶ ॥
ଜ୍ଞାନ ବିନାଶେ ଆତ୍ମା ହତ । ବେଦାନ୍ତେ କହନ୍ତି ପଣ୍ଡିତ ॥
ଶୁଣ ନୃପତି ପୁରୁଷର । ଏଥୁଟି ହାନି ନାହିଁ ପର ॥
ବିଷୟ-ସୁଖ ଭୋଗ ଲାଗି । ହୁଅଇ ଆତ୍ମାବଧେ ଭାଗୀ ॥
ଯେ ନିଜ ହାନି ନ ବୁଝଇ । ତା'ର ବିବେକ ଗୁଣ କାହିଁ ॥
ଅର୍ଥ-କାମାଦି ଧ୍ୟାନ ରାୟେ । ଏ ସର୍ବ ବିନାଶ ଉପାୟେ ॥
ଯେ ଜ୍ଞାନବିଜ୍ଞାନରୁ ହୀନ । ତା' ଜୀବ ସ୍ଥାବର ସମାନ ॥
ଯେ ଚିତ୍ତ ବ୍ରହ୍ମେ ରତି ନୋହେ । ସର୍ବ-ଅନର୍ଥେ ଭାଗୀହୋଏ ॥
ଅପରେ ଶୁଣ ହେ ରାଜନ । ସଙ୍ଗଟି ଅନର୍ଥ କାରଣ ॥
ସଂସାର-ତ୍ୟାଗ ଯେ ଇଚ୍ଛିବ । କେବେ ହେଁ ସଙ୍ଗ ନ କରିବ।
ଧର୍ମାର୍ଥ-କାମ-ମୋକ୍ଷ ଭଙ୍ଗ । କରଇ ପାପୀ କ୍ରୂର ସଙ୍ଗ ॥
କୁସଙ୍ଗେ ସର୍ବନାଶ ହୋଏ । ପଡଇ ମିଥ୍ୟା ମାୟା ମୋହେ ।
ଏବେ ତୁ ଶୁଣ ନୃପରାଣ । ଏ ଚତୁର୍ବର୍ଗର କାରଣ ॥
ଯେ ଧର୍ମ ଅର୍ଥ କାମ ମୋକ୍ଷ । ଏ ଚାରି ମଧ୍ୟେ ଶ୍ରେୟ ମୋକ୍ଷ
ଧର୍ମାର୍ଥ କାମ ବୋଲି ଯାହା । ଅନିତ୍ୟ ମିଥ୍ୟା ବୋଲି ତାହା ॥
ଅନିତ୍ୟେ ମୃତ୍ୟୁ ଭୟ ପାଇ । ଏଣୁ ଜ୍ଞାନୀ ତା' ନ ଭାବଇ ॥
ତୁରୀୟବର୍ଗ ବୋଲି ରାୟେ । ଦୁର୍ଲ୍ଲଭ ଯେ ଅର୍ଥ ଉପାୟେ ॥
ମୃତ୍ୟୁର ଭୟ ଯହିଁ ନାହିଁ । ନିତ୍ୟ ଆନନ୍ଦ ରୂପ ସେହି ॥
ଚତୁର୍ଥ-ବର୍ଗ ବହୁ ମୂଲ୍ୟ । ତୃତୀୟବର୍ଗ ନୋହେ ତୁଲ୍ୟ ॥
ଯାହାର କାଳ-ଭୟ ଅଛି । ତାହାର ସୁଖ ନାହିଁ କିଛି ॥
ଗୁଣ-କ୍ଷୋଭର ପରେ ପ୍ରାୟେ । ଯେ ଯେ ହୋଇଲେ ଭାବ ରାୟେ
ସ୍ଥାବରୁ ବ୍ରହ୍ମାଦି ପର୍ଯ୍ୟନ୍ତ । ଈଶ୍ୱର-ମାୟାରେ ଯନ୍ତ୍ରିତ ॥
ଏହାଙ୍କ ଶ୍ରେୟ କେବେ ନୋହେ । ଏଣୁ ଦଣ୍ଡଇ ଜନ୍ତୁରାୟେ ॥
ଆପଣେ ଅର୍ଜଇ ଅନର୍ଥ । ରାଜନ ବୁଝ ଏହି ମତ ॥
ସ୍ଥାବର ଜଙ୍ଗମାଦି ଠାରେ । ଦେହ ଇନ୍ଦ୍ରିୟ ଅହଂକାରେ ॥
ପ୍ରାଣ ବୁଦ୍ଧିରେ ଯେ ଆବୃତ । ଏହାଙ୍କ ହୃଦରେ ବ୍ୟକତ ॥
ଯେ ଅଧ ଉର୍ଦ୍ଧ୍ୱେଛନ୍ତି ପୂରି । ସର୍ବ-ବ୍ୟାପକ ନରହରି ॥
ଦେହକୁ କ୍ଷେତ୍ର ବୋଲି କହି । ଜୀବ ନ ଜାଣେ ଏହା ବହି ॥
ଏ ଦେହ ବହି ଅହଂକାରେ । ଜୀବ ପରମ ବୁଦ୍ଧି ହରେ ॥
ଜୀବର ପ୍ରଭୁ ଭଗବାନ । ପ୍ରକାଶ କରନ୍ତି ଚେତନ ॥
ଭୋ ରାଜା ନିଷ୍ଠେ ଜାଣ ତୁହି । ଏ ଆତ୍ମା ରୂପ ତୁହି ମୁହିଁ ॥
ଏ ଆଦି ଚରାଚର ଯେତେ । ଆତ୍ମା-ସ୍ୱରୂପ ସର୍ବଭୂତେ ॥
ଯେ ଆତ୍ମା ଆଶ୍ରୟେ ଜଗତ । ଶୋଭା ପାଉଛି ସଦସତ ॥
ମାୟାରେ ହୋଇଣ ପ୍ରଭେଦ । ଜ୍ଞାନ ବିବେକେ ତାହା ଛେଦ॥

ଆତ୍ମାକୁ ମାୟା ନ ସ୍ପରଶେ । ଯେସନେ ପବନ ଆକାଶେ ॥
କର୍ମର ମୂଳ ଏ ପ୍ରକୃତି । ଏହାକୁ ଯେ ନାଶ କରନ୍ତି ॥
ସେ ଆତ୍ମା ସର୍ବଠାରେ ଯୁକ୍ତ । ଲିପ୍ତ ହୋଇଣ ଥାଇ ମୁକ୍ତ ॥
ସେ ଶୁଦ୍ଧ ପରମ-ପୁରୁଷ । ତାରେ ଶରଣ ବେଗେ ପଶ ॥
ଯାହାର ପାଦପଦ୍ମେ ଭକ୍ତି । କରି ସାଧୁଏ ନିସ୍ତରନ୍ତି ॥
ସୁଗମ ପଥ ଏ କାରଣ । ଅବିଘ୍ନେ ଲଭ ନାରାୟଣ ॥
କଠୋର ଯୋଗାଦି ସାଧନ । ସୁଗମ ଭକ୍ତି ହେ ରାଜନ ॥
ସେ ଆତ୍ମା ଆନନ୍ଦ ପାଇବ । ଭକ୍ତିରେ ଭଜ ବାସୁଦେବ ॥
ଏ ଭବ-ସମୁଦ୍ର ଅପାର । ଇନ୍ଦ୍ରିୟ-ନକ୍ର ମହା-ଘୋର ॥
ଏ ଜଳ-ତରଣେ ଯେ ଭେଳା । ତହିଁରେ ନ କର ତୁ ହେଳା ॥
ଅଷ୍ଟାଙ୍ଗ ଯୋଗ ଯୋଗୀ ସାଧି । ତରନ୍ତି ଯୋଗ-ଭେଳା ବାନ୍ଧି ॥
ସେ ଅତି କ୍ଳେଶେ ହୋନ୍ତି ପାର । ନୋହିଲେ ଭ୍ରମନ୍ତି ଅପାର ॥
ସୁଗମ-ତରଣୀ ଉପାୟେ । ତୁମ୍ଭଙ୍କୁ କହିଦେବା ରାୟେ ॥
ଗୋବିନ୍ଦ ଅଭୟ-ପୟର । ଯେ ଭଜେ ଭେଳା ମଧ୍ୟେ ସାର
ସେ ପାଦେ କଲେ ଏକଭାବ । ସୁଖେ ତରିବ ଭବାର୍ଣ୍ଣବ ॥
ଏ ଭକ୍ତିଯୋଗ ସୁସାଧନ । ମୋକ୍ଷକୁ ପରମ-କାରଣ ॥

## ମୈତ୍ରେୟ ଉବାଚ

ଏମନ୍ତ ଶୁଣ ହେ ବିଦୁର । ଯେ ଜ୍ଞାନ କହିଲେ କୁମାର ॥
ପୃଥୁ ଶ୍ରବଣେ ଆତ୍ମାଗତି । ପ୍ରଣମି ଚରଣେ ବୋଲନ୍ତି ॥

## ରାଜା-ଉବାଚ

ତୁମ୍ଭେ ଦୟାଳୁ ଯୋଗୀଜନ । ସୁଭାଗ୍ୟ ତୁମ୍ଭ ଦରଶନ ॥
ଯେଣୁ ଗୋବିନ୍ଦ କୃପା ଥିଲା । ତେଣୁ ଦର୍ଶନ ମୋର ହେଲା ॥
ହରିଙ୍କି ଦେଖାଇବା ପାଇଁ । ମୋ ହିତେ ଅଇଲ ଗୋସାଇଁ ॥
ମୋର ସଂଶୟ ଯେତେ ଥିଲା । ତୁମ୍ଭ ଦର୍ଶନେ ଦୂର ଗଲା ॥
ମୋହର ମନୋରଥ ଯେତେ । ସମ୍ପୂର୍ଣ୍ଣ କରି ଦେଲ ମୋତେ ॥
ତୁମ୍ଭଙ୍କୁ କି ଭାବେ ସେବିବି । ଉତ୍ତମ ଦ୍ରବ୍ୟ କିବା ଦେବି ॥
ଦେହ ସହିତେ ଦ୍ରବ୍ୟ ମୋର । ସାଧୁଙ୍କ ଉଚ୍ଛିଷ୍ଟ ବେଭାର ॥
ସୁଦୟା କରି ସାଧୁଜନେ । ରାଜ ବିଭୂତି ତୋଷ ମନେ ॥
ସମର୍ପିଛନ୍ତି ମୋର ତହିଁ । ଏଥେ ପ୍ରଭୁତ୍ୱ ମୋର ନାହିଁ ॥
କି ଭାବେ କରିବି ସେବନ । ଏ ଦେହ ସାଧୁଙ୍କ ଅଧୀନ ॥
ଯେହ୍ନେ ବାଳକେ ସ୍ନେହ ବହି । ତାତ ଜନନୀ ଧନ ଦେଇ ॥
ପୁଣି ନ କରନ୍ତି ଗ୍ରହଣ । ଏ ସର୍ବ ତୁମ୍ଭର ଅର୍ପଣ ॥
ତୁମ୍ଭ ପ୍ରତୋଷେ ଶକ୍ୟ ନାହିଁ । ରାଜସେବକ ପ୍ରାୟେ ହୋଇ ॥
ତାଙ୍କୁ ତାମ୍ବୁଳ ନିଯୋଜନ୍ତି । ମଧ୍ୟରେ ସେବକ ବୋଲାନ୍ତି ॥
ସେ ଅନୁସାରେ ମୋ ବିଚାର । ଯେ କିଛି ଦ୍ରବ୍ୟ ଅଛି ମୋର ॥
ପ୍ରାଣ ତନୟ ଆଦି ଯେତେ । ଏ ରାଜ-ବିଭୂତି ସହିତେ ॥
ଅପରେ ଚତୁରଙ୍ଗ ବଳ । ସମର୍ପି ଅଛି ମୁଁ ସକଳ ॥
ଏଥେ ମୋ ନାହିଁ ଅଧିକାର । ମୋ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ॥
ଯେ ସର୍ବ-ସେନା ଅଧିପତି । ଦଣ୍ଡ-ଅଦଣ୍ଡ ରାଜନୀତି ॥
ସକଳ-ଲୋକେ ଅଧିକାର । ଏ ସର୍ବ ବେଦବିଦଙ୍କର ॥
ସେ ବିପ୍ରେ ନିଜ-ଧନେ ଶାନ୍ତି । ଜୀବଙ୍କୁ କଲ୍ୟାଣେ ପାଳନ୍ତି ॥
ବ୍ରାହ୍ମଣ-ଅନୁଗ୍ରହେ ଅନ୍ନ । ଭୁଞ୍ଜନ୍ତି କ୍ଷତ୍ରିୟାଦି ବର୍ଣ୍ଣ ॥
ବ୍ରହ୍ମା-ସର୍ଜନେ ଏ ଜଗତେ । ଅଛି ଅପୂର୍ବ-ଦ୍ରବ୍ୟ ଯେତେ ॥
ଏ ସର୍ବ ଯେବେ ସମର୍ପିବି । ତେବେ ପ୍ରତୋଷି ନ ପାରିବି ॥
ନିଗମବେତ୍ତା ପ୍ରଭୁମାନେ । ମୋତେ ତୋଷିଲ ଦିବ୍ୟଜ୍ଞାନେ
ଏକାନ୍ତେ ଦେଲ ଆତ୍ମାପଦ । ମୋହର ନାଶିଲ ପ୍ରମାଦ ॥
ତୁମ୍ଭେ ଦୟାଳୁ ଯୋଗେଶ୍ୱର । ଅଧମ ଜନେ କୃପାକର ॥
ଅବ୍ୟକ୍ତ - ବ୍ରହ୍ମ ଦୃଷ୍ଟିଗତେ । ପ୍ରତ୍ୟକ୍ଷେ ଦେଖାଇଲ ମୋତେ
ଅଜ୍ଞାନଭାବ ବିନାଶିଲ । ସଂସାର ବନ୍ଧୁ ନିସ୍ତାରିଲ ॥
ଏମନ୍ତ ମହିମା ତୁମ୍ଭର । ଅଶେଷ-ଜୀବେ ହିତକର ॥
ଏଣୁ ଗୁରୁଙ୍କ ସୁକଲ୍ୟାଣ । ସାଧକ ମୋକ୍ଷର କାରଣ ॥
ଉପାୟ ନାହିଁ ମୋର କିଛି । କେବଳ ଅଞ୍ଜଳି ମୋ' ଅଛି ॥

## ମୈତ୍ରେୟ ଉବାଚ

ଏମନ୍ତ ସନକାଦି ଜନେ । ସନ୍ତୋଷ ପୃଥୁର ବଚନେ ॥
ନୃପ-ଶୀଳତା ପ୍ରଶଂସିଲେ । ତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ ॥
ସକଳ-ଜନ ଦୃଷ୍ଟିଗତେ । ସିଦ୍ଧେ ଗମିଲେ ଶୂନ୍ୟ ପଥେ ॥
ତଦନ୍ତେ ଯେ ପୃଥୁ-ରାଜନ । ମହତ-ପଣେ ସେ ପ୍ରଧାନ ॥
ଅଧ୍ୟାତ୍ମ-ମାର୍ଗରେ ରହିଲେ । ଆତ୍ମଜ୍ଞାନରେ ପୂର୍ଣ୍ଣ ହେଲେ ॥
ଆତ୍ମାରେ କରି ଅବସ୍ଥିତି । କାଳରେ କର୍ମାଦି କରନ୍ତି ॥
ସେ ଦେଶ କାଳ ଯଥୋଚିତ । ଯେମନ୍ତ ଅଛଇ ବିହିତ ॥
ସେ ଅନୁସାରେ କର୍ମ କଲେ । ବିପ୍ରଙ୍କୁ ଦାନେ ପ୍ରତୋଷିଲେ ॥
ନିଜ ପରଜାଗଣ ରାଇ । ଅତି ଆନନ୍ଦେ ଦୟା ବହି ॥
କହନ୍ତି ଭବସିନ୍ଧୁ ପାର । ଅମୃତୁ ସୁସ୍ନିଗଧ ମଧୁର ॥
ହେ ପୁତ୍ରେ ସାବଧାନେ ଶୁଣ । ଯେଣେ ହୋଇବ ପରିତ୍ରାଣ ॥
କହିବା ତହିଁର ଉପାୟ । ଯେଣେ ଖଣ୍ଡିବ ମୃତ୍ୟୁଭୟ ॥
ସକଳେ କୃଷ୍ଣ ଆଶ୍ରେ କର । ଏ ଘୋର-ସଂସାରୁ ନିସ୍ତର ॥
ଯେ କୃଷ୍ଣ-ଚରଣେ ସେବନ୍ତି । ଏ ଭବଭୟ ନିବାରନ୍ତି ॥
ଆମ୍ଭର ବାକ୍ୟ ଦୃଢ଼େ ଧର । ରାଜସ୍ୱ-ଭୟ ପରିହର ॥

ଆୟୁଷ ଧର୍ମ ଧନ ଯେତେ । ଆମ୍ଭେ ପାଇଲୁ ତୋଷଚିତ୍ତେ ॥
ଏମନ୍ତ ମଧୁର-ବଚନେ । ପ୍ରଜା ଶିଖାଇ ପ୍ରବୋଧନେ ॥
ଅର୍ପଣ କରି କାମ୍ୟଫଳ । ନିବୃତ୍ତ ହୋଇଲେ ଭୂପାଳ ॥
ମୁଁ ଆତ୍ମା ପ୍ରକୃତିରୁ ପର । ଅଧକ୍ଷ କର୍ମମାନଙ୍କର ॥
ଆତ୍ମାକୁ ଏମନ୍ତ ସେ ମଣି । ଗୃହେ ରହିଲେ ନୃପମଣି ॥
ସମ୍ପଦ ପରିପୂର୍ଣ୍ଣେ ଛନ୍ତି । ଇନ୍ଦ୍ରିୟ ଭୋଗ ନ ଇଚ୍ଛନ୍ତି ॥
ଛାଡ଼ି ସକଳ ଅହଂକାର । ବିଷୟ ଆଦି ଯେ ବିକାର ॥
କେଉଁ କର୍ମରେ ଲିପ୍ତ ନୋହି । ସୂର୍ଯ୍ୟ କିରଣ ପ୍ରାୟ ହୋଇ ॥
ଏ ରୂପେ ଅଧାତ୍ମ-ଯୋଗରେ । କର୍ମ ଆଚରନ୍ତି ସଂସାରେ ॥
ତାହାଙ୍କ ଅର୍ଚ୍ଚି ନାମେ ରାଣୀ । ପ୍ରତ୍ୟକ୍ଷେ ଲକ୍ଷ୍ମୀ ଠାକୁରାଣୀ ॥
ପଞ୍ଚତନୟ ତାଙ୍କ ଠାରେ । ପୃଥୁ ଜନ୍ମାଇଲେ ବେଭାରେ ॥
ବିଜିତଅଶ୍ୱ ଧୂମ୍ରକେଶ । ହର୍ଯ୍ୟକ୍ଷ ଦ୍ରବିଣ ବୃକେଶ ॥
ଏ ପଞ୍ଚ-ତନୟ ତାଙ୍କର । ନୃପ ସମାନେ ଶୂର ବୀର ॥
କହିବା ଶୁଣ ହେ ବିଦୁର । ରାଜାଙ୍କ ଯେ ଗୁଣ ପ୍ରଚାର ॥
ଇନ୍ଦ୍ରାଦି ଦଶଦିଗପାଳ । ଏହାଙ୍କ ଗୁଣେ ସେ ଭୂପାଳ ॥
ସେ ନୃପ-ଅଙ୍ଗେ ଏକେ ଏକେ । ବସିଲେ ଅବୟବ ଯାକେ ॥
ବସିଲେ ସ୍ୱବୃତ୍ତି ଆବୋରି । ଶୁଣ ବିଦୁର ହେତୁ କରି ॥
ଜଗତ ପ୍ରତି-ପାଳିବାରେ । ସେ ଜନ୍ମ ଲଭିଲେ ସଂସାରେ
ମନ-ବଚନ-କାୟ-ବୃତ୍ତି । ଅତି ସୁନ୍ଦର ଗୁଣ କୀର୍ତ୍ତି ॥
ଯେଣୁ ରଞ୍ଜିତ ଜନପ୍ରଜା । ତେଣୁ ତାହାଙ୍କ ନାମ ରାଜା ॥
ତା ତୁଲ୍ୟ ନାହିଁ ନୃପବର । ସମେ କି ସୋମ ପଟାନ୍ତର ॥
ସେ ରାଜା ସୂର୍ଯ୍ୟଙ୍କ ସମାନ । ତା ତେଜେ ପୃଥ୍ୱୀ ଦୀପ୍ତି ମାନ
କେହି ନ ପାରେ ତେଜ ଧରି । ତେଣୁ ସେ ଅଗ୍ନି ସମ ସରି ॥
ରଣେ ଦୁର୍ଜୟ ମହାରାଜା । ଏଣୁ ମହେନ୍ଦ୍ର ସମ ତେଜା ॥
ସହିଷ୍ଣୁ ଗୁଣେ ସେ ପୃଥ୍ୱୀ । ଅଭୀଷ୍ଟ-ଦାନେ ସେ ସୁରଭୀ ॥
ଜୀମୂତ ପ୍ରାୟେ ବୃଷ୍ଟି କରେ । ପ୍ରଜାଙ୍କ ପ୍ରାର୍ଥନା ଯେ ପୂରେ ॥
ପୟୋଧି ତୁଲେ ଯେ ଗମ୍ଭୀର । ସୁଧୀର କନକ-ଭୂଧର ॥
ଧର୍ମ ସମାନେ ଶିକ୍ଷାକାରୀ । ଆଶ୍ଚର୍ଯ୍ୟେ ହିମାଳୟ ଗିରି ॥
କୁବେର ତୁଲେ ଧନେଶ୍ୱର । ରକ୍ଷକ ଯେହ୍ନେ ରତ୍ନାକର ॥
ଗୁଣେ ସକଳ ଜୀବେ ପ୍ରାଣ । ଶୀତଳ ପଣେ ଚନ୍ଦ୍ରକାଣ ॥
ଜୀବନ ବଳ ତେଜ ଘେନି । ଏଣୁ ମରୁତ ସମ ମାନି ॥
କ୍ରୋଧରେ କାଳରୁଦ୍ର ସମ । ସୁନ୍ଦରେ ସମ ନୋହେ କାମ ॥
ପ୍ରାକ୍ରମେ ସମ ମୃଗଇନ୍ଦ୍ର । ଦୟାରେ ସେ ମନୁ ନରେନ୍ଦ୍ର ॥
ପ୍ରଭୁତ୍ୱ ପଣେ ଯେହ୍ନେ ବିଧି । ଗୁରୁ ସମାନେ ବ୍ରହ୍ମବାଦୀ ॥

ବିଷ୍ଣୁ ସମାନେ ଜିତେନ୍ଦ୍ରିୟ । ପାଳନେ ଗୋଗୁ-ବିପ୍ରପ୍ରିୟ ॥
ବିଷ୍ଣୁ ବୈଷ୍ଣବ ଜନଠାରେ । ସେବନ୍ତି ବିନୟ ବେଭାରେ ॥
ସମେ ପ୍ରତୁଲ୍ୟ କେହି ନାହିଁ । ସଜ୍ଜନେ ଦୂତୀବ୍ରହ୍ମ ସେହି ॥
ଏ ତିନିଲୋକେ ତାଙ୍କ ଯଶ । ଯେହ୍ନେ ଶ୍ରବଣେ ହରି ରସ ॥
ଶ୍ରୀରାମ ତୁଲ୍ୟ କୀର୍ତ୍ତିକାରୀ । ଶୁଣ ଗାବନ୍ତି ନରନାରୀ ॥
ଶୁଣ ବିଦୁର ଭାଗ୍ୟବନ୍ତ । ସେ ପୃଥୁ ରାଜାର ଚରିତ ॥
ପୃଥୁ-ଚରିତ ସୁଧାରସ । ମନ-ଭ୍ରମର ତହିଁ ରସ ॥
ଅମୃତ-ରସମୟ ବାଣୀ । ଚତୁର୍ଥସ୍କନ୍ଧେ ଯାହା ଭଣି ॥
କହଇ ଦାସ ଜଗନ୍ନାଥ । ସନ୍ଥ-ଚରଣେ ଦେଇ ଚିତ୍ତ ॥

*ଇତି ଶ୍ରୀମଦ୍ ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟା ଚତୁର୍ଥ ସ୍କନ୍ଧେ ପୃଥୁଚରିତେ ଦ୍ୱାବିଂଶୋଽଧ୍ୟାୟଃ ।*

## ତ୍ରୟୋବିଂଶ ଅଧ୍ୟାୟ

ଶୁଣି ବିଦୁର କୃତକୃତ । ନମେ ମୈତ୍ରେୟ ପାଦଗତ ॥
ଭୋମୁନି କରିବା ନିସ୍ତାର । କହ ସଂଶୟ ଯାଉ ଦୂର ॥
ପୃଥୁ କି କଲେ ଏ ଅନ୍ତରେ । ବୈକୁଣ୍ଠ ଗଲେ କି ପ୍ରକାରେ ॥
ବିଦୁର ତହୁଁ ଏହା ଶୁଣି । କହେ ମୈତ୍ରେୟ ମନେ ଗୁଣି

### ମୈତ୍ରେୟ ଉବାଚ

ଶୁଣ ବିଦୁର ଶୁଦ୍ଧଚିତ୍ତେ । ରାଜାର କିଛିକାଳ ଅନ୍ତେ ॥
ବୃଦ୍ଧ ଶରୀର ଗ୍ରାସେ କାଳ । ଦେଖି ବିଷାଦ ମହୀପାଳ ॥
ମୁଁ ଯେ ଦ୍ୱିତୀୟ ପ୍ରଜାପତି । ଯେଣୁ ମୁଁ କଲି ସର୍ବସ୍ଥିତି ॥
ଅନ୍ନାଦି ଉତ୍ପତ୍ତି ମୁଁ କଲି । ନଗର ପୁର ବସାଇଲି ॥
ସ୍ଥାବର ଜଙ୍ଗମାଦି ଯେତେ । ଅନ୍ନ ମୁଁ ଦେଲି ଯେଝାମତେ ॥
ସାଧୁଙ୍କ ଧର୍ମ ରକ୍ଷା କଲି । ଈଶ୍ୱର ବଚନ ପାଳିଲି ॥
ଏ ଧର୍ମ-ରକ୍ଷା ଅର୍ଥେ ମୁହିଁ । ଜନ୍ମ ଲଭିଲି କର୍ମଭୂଇଁ ॥
ଏବେ ଶରୀର ବୃଦ୍ଧ ହେଲା । କାମାଦି କର୍ମ ହିଁ ସରିଲା ॥
ଏବେ କି ଅର୍ଥେ ଥିବି ମୁହିଁ । ବନେ ପଶିବି କୃଷ୍ଣ ଧ୍ୟାୟି ॥
ଏବେ ଶମନ ନିଜ ସ୍ଥିତି । କରିବ ବିଚାରେ ନୃପତି ॥
ଦୁହିତା ପ୍ରତୁଲ୍ୟେ ଧରଣୀ । ପୁତ୍ରେ ନିବେଶି ନୃପମଣି ॥
ପୁତ୍ରକୁ ଦେଇ ସିଂହାସନ । ଦଣ୍ଡ ଛତ୍ରାଦି ନୃପ ଚିହ୍ନ ॥
ସକଳ ସମର୍ପି କ୍ରମରେ । ଗମନ କଲେ ବନ ଘୋରେ ॥
ପୃଥିବୀ ପୃଥୁ ତ୍ୟାଗଭରେ । ଶୋକେ ରହିଲା ପୁତ୍ରଠାରେ ॥
ସଙ୍ଗତେ ଘେନି ଅର୍ଚ୍ଚି ନାରୀ । ରୋଦନ୍ତି ପ୍ରଜା ନଗ୍ର ପୁରୀ ॥

ସ୍ୱଇଚ୍ଛା ମନେ ଦୁଃଖ-ଶ୍ରମେ । ତପ ଆରାଧି ଯୋଗଧର୍ମେ ॥
କଠୋର ଉଗ୍ରତପେ ରାୟେ । ଯେମନ୍ତେ ପୂର୍ବେ ରାଜ୍ୟ ଜୟେ
ଯେ ବାନପ୍ରସ୍ଥର ବିଧାନ । ନିୟମ କଲେ ସେ ରାଜନ ॥
ଫଳାଦି ଶାକ କନ୍ଦମୂଳ । ଭୋଜନ କଲେ ମହୀପାଳ ॥
ଏମନ୍ତେ କେତେ କାଳାନ୍ତରେ । ତାହା ତେଜିଲେ ନୃପବରେ ॥
ନୀରସ-ପତ୍ର ଭୋଗ କରି । ତୁଷ୍ଟେ ଆନନ୍ଦେ ପ୍ରାଣ ଧରି ॥
ତାହା ଭକ୍ଷିଣ କିଛିଦିନ । ତପ ସାଧିଲେ ତୋଷମନ ॥
ସେ ପତ୍ରାଶନ ତେଜି ରାୟେ । ଜଳ ଆହାରେ ସୁଖମୟେ ॥
ଏମନ୍ତେ କିଛି କାଳାନ୍ତରେ । ଜଳ ତେଜିଲେ ନୃପବରେ ॥
ନିର୍ଜଳ ତପସ୍ୟା କଠୋର । କେବଳ ପବନ ଆହାର ॥
ପୁଣି ନିଦାଘ କାଳେ ନୃପ । ତପସ୍ୟା କଲେ ପଞ୍ଚ ତାପ ॥
ଅଗ୍ନି ଜାଳି ଦିଗ ସକଳେ । ନିର୍ବିଘ୍ନେ ରାଜନ ବସିଲେ ॥
ସୂର୍ଯ୍ୟ-ମଣ୍ଡଳେ ଦୃଷ୍ଟି ଧରି । ପରମ ବ୍ରହ୍ମେଧ୍ୟାନ କରି ॥
କୃଷ୍ଣ-ଚରଣ-ପଦ୍ମ ଆଶେ । ତପ ସାଧିଲେ ବହୁକ୍ଳେଶେ ॥
ବରଷା କାଳେ ମହୀପତି । ଦୁଃସହ-ଜଳଧାରେ ତିନ୍ତି ॥
ଶିଶିର କାଳେ ତପ କରେ । ବୁଡ଼ି ଆକଣ୍ଠ ଶୀତନୀରେ ॥
ଶୟନେ ଭୂମି ଶଯ୍ୟା କରି । ଏ ଘୋର-ତପସ୍ୟା ଆଚରି ॥
ଜିତ-ବଚନ ଉର୍ଦ୍ଧ୍ୱରେତ । ଚିତ୍ତ ସମୀର ଶାନ୍ତ ଦାନ୍ତ ॥
କୃଷ୍ଣ ଚରଣ ସେବା ପାଇଁ । କଠିନ-ତପେ ନୃପସାଇଁ ॥
ଲୋକ-ଶିକ୍ଷାରେ ତପ କଲେ । ବିଷୟ କର୍ମ ବିନାଶିଲେ ॥
ନିରତେ ପ୍ରାଣାୟାମ କରି । ଇନ୍ଦ୍ରିୟ ବିଷୟ ସଂହରି ॥
ଛାଡ଼ିଲେ ଅଶେଷ ବନ୍ଧନ । ଯେ କିଛି ବାସନାଦି ମାନ ॥
ନିଶ୍ଚଳ ଚିତ୍ତେ ନୃପବର । ଯୋଗସାଧନେ ନିଷ୍ଠାପର ॥
ଯେ ଜ୍ଞାନ ବ୍ରହ୍ମାଙ୍କ କୁମର । କହି ଯେ ଥିଲେ ଯୋଗସାର ॥
ଯେ ଯୋଗେ ଗୋବିନ୍ଦ ଚରଣ । ନିତ୍ୟେ ଆରାଧି ନୃପରାଣ ॥
ଶ୍ରଦ୍ଧା ଭକତି ଦୃଢ଼ଚିତ୍ତେ । ଭକ୍ତି ଜନ୍ମିଲା ହୃଦଗତେ ॥
ଆନନ୍ଦେ ପ୍ରେମାଙ୍ଗ-ଭକତି । ଶ୍ରୀକୃଷ୍ଣେ କଲେ ମହୀପତି ॥
ସେ ହରି ଭଜନ ପ୍ରବଳ । ହୋଇଲା ମନ ସୁନିଶ୍ଚଳ ॥
ନିର୍ମଳ- ମନ ପ୍ରକାଶିଲା । ବୈରାଗ୍ୟ ଜ୍ଞାନ ଉପୁଜିଲା ॥
ସେ ଜ୍ଞାନ ତୀକ୍ଷ୍ଣ ଶସ୍ତ୍ରେ ରାୟେ । ଛେଦିଲେ ହୃଦୟ ସଂଶୟେ ॥
ଯେ କର୍ମ-ଗ୍ରନ୍ଥି ଜୀବକୋଷ । ଜ୍ଞାନ ଖଡ଼ଗେ କଲେ ନାଶ ॥
ଦେହରେ ଆତ୍ମାବୁଦ୍ଧି ଯେହି । ତକ୍ଷଣେ ଦୂରେ ଗଲା ସେହି ॥
ଏଣୁ ପାଇଲେ ଆତ୍ମାଗତି । ନିରହଙ୍କାର ହେଲା ମତି ॥
ଏ ସର୍ବ ଯେ ଜ୍ଞାନେ ବିନାଶ । ତା ପରିହରି ନୃପଈଶ ॥

ଯାବତ ହରିଙ୍କ ଭଜନ । ନୋହିଛି ତାବତ ସାଧନ ॥
ଯେବେ ଶ୍ରୀକୃଷ୍ଣ ଭାବେ ରତି । ଶୁଦ୍ଧ ହୋଇବ ତେବେ ମତି ॥
ଭଜନ-ରସେ ମତ୍ତ ହୋଏ । ନ ପଡ଼େ ଶୋକ ମାୟାମୋହେ
ଏ ରୂପେ କଲେ ସେ ରାଜନ । ଆତ୍ମାରେ ଆତ୍ମାକୁ ଯୋଜନ ॥
ସେ ଯୋଗୀ ଯୋଗାସନ ବଳେ । ବ୍ରହ୍ମସ୍ୱରୂପୀ ସେ ହୋଇଲେ ॥
କାଳେ ଛାଡ଼ିଲେ କଳେବର । ଏ ଅନୁକ୍ରମେ ହେ ବିଦୁର ॥
ସୁସ୍ଥିରେ ବସି ଯୋଗାସନେ । ଦେହେ ସମୀର ସମାଧାନେ ॥
ବାମ-ଚରଣ ମୂଳାଧାରେ । ନିରୋଧି ଚାପିଲେ ନଭରେ ।
ସେ ମୂଳାଧାରରୁ ପବନ । ଉର୍ଦ୍ଧ୍ୱକୁ ଟେକିଲେ ରାଜନ ॥
ନାଭିରୁ ହୃଦୟ-କମଳେ । ପବନ ରଖିଲେ ସଧୀରେ ॥
ତହୁଁ ଷୋଡଶଦଳେ ନେଲେ । ତହୁଁ କଣ୍ଠରେ ତହୁଁ ଶିରେ ॥
ଏ ରୂପେ ପ୍ରାଣାଦି ପବନ । ଭେଦିଣ ଏ ଷଡଚକ୍ରେଣ ॥
ସେ ବ୍ରହ୍ମରନ୍ଧ୍ରେ ଯୋଗବଳେ । ଏ ସର୍ବ କରି ଏକ ଠୂଳେ ॥
ମନ ପବନ ଦୃଢ଼େ ଧରି । ଭିତରେ ରହିଲେ ପାସୋରି ॥
ସେ ବନେ ପୃଥୁ ନୃପନାଥ । ଦେହ ଧାରଣେ ପଞ୍ଚଭୂତ ॥
ଯେଝାନୁକ୍ରମେ ଯୋଗବଳେ । ସମଷ୍ଟିଭୂତେ ଲୟ କଲେ ॥
ପବନ ନ୍ୟାସି ସମୀରଣେ । ଯେ କିଛି ଦେହାଦି ଧାରଣେ ॥
କ୍ଷିତିକି ଆପ ମଧ୍ୟେ ନ୍ୟାସି । ସେ ଜଳ ଅନଳେ ନିବେଶି ॥
ତେଜକୁ ପବନେ ସଂହରି । ଆକାଶ ମଧ୍ୟେ ବାୟୁଧରି ॥
ଇନ୍ଦ୍ରିୟ ଗଣେ ଯୁକ୍ତ ମନ । ତାହା ଆକାଶେ କରି ଲୀନ ॥
ଆକାଶ ଶବଦେ ସଂହରି । ଶବଦ ତମୋଗୁଣେ ଧରି ॥
ଏ ଯେ ତାମସ ଅହଂକାର । କାର୍ଯ୍ୟ ଯେ ମହାଭୂତ ତା'ର ॥
ଯେ ରୂପେ ଲୟ କଲେ ନୃପ । ଶୁଣ ବିଦୁର ତା' ସ୍ୱରୂପ ॥
ପୃଥିବୀ ଗନ୍ଧେ ଲୟ କରି । ଆପକୁ ରସ ମଧ୍ୟେ ଧରି ॥
ତେଜକୁ ରୂପ ମଧ୍ୟେ ଥୋଇ । ପବନ ସ୍ପର୍ଶେ ଲଗାଇ ॥
ଶବଦେ ଆକାଶ ସଂହରି । ଏ ସର୍ବ ତମଗୁଣେ ଭରି ॥
ଯେ ତମ ସାତ୍ତ୍ୱିକ ରାଜସ । ଏକତ୍ରେ କଲେ ତା' ପ୍ରକାଶ ॥
ଇନ୍ଦ୍ରି ସହିତେ ବୁଦ୍ଧି ମନ । ଯେଝାନୁକ୍ରମେ କଲେ ଲୀନ ॥
ଶବଦ ଆଦି ଇନ୍ଦ୍ରିଗଣେ । ଲୀନ ହୋଇଲେ ଯେଝାସ୍ଥାନେ
ଏହାଙ୍କ ଅଧିଷ୍ଠାତା ଦେବେ । ଲୟେ ପାଇଲେ ଯେଝାଭାବେ
ଏକତ୍ରେ ଅହଙ୍କାର ନେଇ । ସେ ମହତ୍ତତ୍ତ୍ୱରେ ମିଶାଇ ॥
ଏ ସର୍ବ ତତ୍ତ୍ୱ ଗୁଣେ ନ୍ୟାସି । ମହତ୍ତ୍ୱରେ ପରକାଶି ॥
ସେ ମହତତ୍ତ୍ୱ ମାୟା ମୟେ । ପ୍ରକୃତି ସଙ୍ଗେ ହେଲେ ଲୟେ
ଜ୍ଞାନ ବୈରାଗ୍ୟ ଯୋଗବଳେ । ଏ ଜୀବ ବ୍ରହ୍ମେ ଯାଇ ମିଳେ॥

ଏମନ୍ତେ ପୃଥୁ ମହୀପାଳ । ଦେହ ତେଜିଲେ ପାଇ କାଳ ।।
ସେ ଅର୍ଚ୍ଚି ପତିବ୍ରତା ନାରୀ । ସ୍ୱଧର୍ମେ ସ୍ୱାମୀ-ପାଦ ଧରି ।।
ଦେହ ଶୁଖାଇ ତପେ ଥିଲେ । ସ୍ୱାମୀର ମରଣ ଦେଖିଲେ ।।
ତକ୍ଷଣେ ହୋଇ ହତଜ୍ଞାନ । ଆକୁଳେ କରନ୍ତି ରୋଦନ ।।
ଭୋ ନାଥ ମୋର ପ୍ରାଣନାହା । ମୋତେ ଦେଖାଅ କିପାଁ ଏହା
କପଟେ ମୁଦ୍ରିତ ଲୋଚନ । ଶ୍ୱାସ ବହଇ ଅତି କ୍ଷୀଣ ।।
ତୁ କାଳ ବିହନ୍ତା ଈଶ୍ୱର । ଏ ତୋର ମାୟା ଖେଡ଼ଘର ।।
ସ୍ଥିତି ଉତ୍ପତ୍ତି କରୁ ନାଶ । ତୁ ମାତ୍ର ରହୁ ଅବଶେଷ ।।
ତୁ ସର୍ବକାରଣ ମୁରାରି । କାର୍ଯ୍ୟ କାରଣେ ଦେହ ଧରି ।।
ତୁ କାଳ ରୂପୀ ଭଗବାନ । ଅନ୍ତେ ସକଳ କରୁ ଲୀନ ।।
ଭୋ ଯୋଗେଶ୍ୱର ତୋ ମହିମା । ନ ଜାଣି ପାରେ ହରବ୍ରହ୍ମା ।।
ଯା ନାମେ ମୃତ୍ୟୁଭୟ ନାଶେ । ମୃତ୍ୟୁ ଅମୃତ୍ୟୁ ପରକାଶେ ।।
ଏବେ କପଟେ ମୃତ୍ୟୁ ଭୟେ । ମୋତେ ଦେଖାଅ ମାୟାମୋହ
ଏ ମାୟାମୋହ ଦ୍ୱନ୍ଦ୍ୱ-ପାଶ । ପ୍ରତେଜି ତୁମ୍ଭ ପ୍ରତିଆଶ ।।
ଏବେ ଉପକ୍ଷେ ବନ ଘୋରେ । ତେଜିଣ ଗଲ ନିଜପୁରେ ।।
ମୁଁ ଯେ ନିରତେ ଅପରାଧୀ । ତୋ ପାଦେ ନ ସେବି ଦୁର୍ବୁଦ୍ଧି
ସେ ଅପରାଧ ଦୋଷେ ମୋତେ । ଏବେ ତେଜିଲ ଦୁଃଖ ଚିତ୍ତେ
ତୁମେ ଯେ ମୋର ମନ ଦୁଃଖେ । ବହ ସୁଦୟା-ଭାବ ସୁଖେ ।।
ଭୋ ସଖୀ ନ ତେଜିବି ତୋତେ । ଯାବତ ପ୍ରାଣ ଦେହଗତେ ।।
ସେ ଆଜ୍ଞା ଅଭାଗ୍ୟେ ମୋହର । ଏବେ ଫଳିଲା ଯୋଗେଶ୍ୱର ।।
ଏ ରୂପେ ବିଳପେ ସୁନ୍ଦରୀ । ଶୋକ ସାଗରେ ତନୁଘାରି ।।
ସେ ଅର୍ଚ୍ଚିଦେବୀ ଜ୍ଞାନବତୀ । ତକ୍ଷଣେ ଧୀର କରି ମତି ।।
ପର୍ବତ-ପ୍ରାନ୍ତେ ଚିତା କଲେ । ସ୍ୱାମୀଙ୍କି ତହିଁ ନିବେଶିଲେ ।।
ମୁଖାଗ୍ନି କରି ବିଧିମତେ । ସ୍ନାନ ଉଦକ କ୍ରିୟା ଯେତେ ।।
ସୂର୍ଯ୍ୟଙ୍କୁ କରି ଅର୍ଘ୍ୟଦାନ । ଯେ କର୍ମ ଯେ ବିଧି ବିଧାନ ।।
ଦେବଙ୍କୁ କରି ନମସ୍କାର । ସଂପୁଟେ ଯୋଡ଼ି ବେନିକର ।।
ଏସର୍ବ ସାରିଣ ସୁନ୍ଦରୀ । ଅଗ୍ନିକୁ ପ୍ରଦକ୍ଷିଣ କରି ।।
ପ୍ରବେଶ ଅଗ୍ନି ମଧ୍ୟେ ଯାଇ । ଦେବେ ଦେଖନ୍ତି ଶୂନ୍ୟେ ଥାଇ
ସିଦ୍ଧ ଚାରଣ ବିଦ୍ୟାଧର । ଇନ୍ଦ୍ରାଦି ଯେତେ ଅନୁଚର ।।
ଯେ ଯାହା ମତେ କରି ସ୍ତୁତି । ଆନନ୍ଦେ ପୁଷ୍ପ ବରଷନ୍ତି ।।
ଦୁନ୍ଦୁଭି ବାଦ୍ୟ-ନାଦ କରି । ରଙ୍ଗେ ନାଚନ୍ତି ଅପସରୀ ।।
ମଙ୍ଗଳାଳାପେ ଶୁଦ୍ଧ-କାଳେ । ସେ ପତିପତ୍ନୀ ଏକମେଳେ ।।
ଆକାଶେ ଯାନ୍ତି ଦେବଯାନେ । ଯେହ୍ନେ ତଡ଼ିତ ନବଘନେ ।।
ଦେବେ ଆନନ୍ଦେ ସ୍ତୁତି ଭଣି । ଶିରେ ନିବେଶି ବେନିପାଣି ।।

ପ୍ରଶଂସି ଦେବୀ ଜଣେ ଜଣେ । ଆନନ୍ଦେ ଅଶ୍ରୁଳ ଲୋଚନେ ।।
ଧନ୍ୟ ସାଧବୀ ପତିବ୍ରତା । ସ୍ୱାମୀ-ସେବାରେ ଅନୁରତା ।।
ତେଜିଣ ଅଚଳ-ବିଭୂତି । ସ୍ୱାମୀର ସଙ୍ଗତେ ଚଳନ୍ତି ।।
ଯେଣୁ ଏ ପୂର୍ବେ ତପ କଲେ । ତେଣୁ ଦେବଙ୍କ ଉର୍ଦ୍ଧ୍ୱେ ଗଲେ
ଯେସନେ ଲକ୍ଷ୍ମୀନାରାୟଣ । ଏ ବେନି ଦିଶନ୍ତି ତେସନ ।।
ଲକ୍ଷ୍ମୀ ସଦୃଶ ଏ ଯୁବତୀ । ଲଭିଲେ ଏକାଙ୍ଗ ଭକତି ।।
ଯେଣୁ ସୁକର୍ମ କରିଛନ୍ତି । ତେଣୁ ଲଭିଲେ ନିଜପତି ।।
ଧନ୍ୟ ସେ ମର୍ତ୍ତ୍ୟ କର୍ମଭୂମି । ଅଳ୍ପ-ଆୟୁଷ ପ୍ରାଣୀ ଜନ୍ମି ।।
ସ୍ୱଧର୍ମ-କର୍ମ ଆଦରନ୍ତି । ସକଳ ଆପଦୁ ତରନ୍ତି ।।
ନିଷ୍ପାପ ଅଟେ ଯେଉଁ ନର । ସ୍ୱର୍ଗାପବର୍ଗ ନୋହେ ଦୂର ।।
ଏଣୁ ନିଷ୍କାମ ଯା'ର ମତି । ସେ ଲଭେ ଏକାନ୍ତ ଭକତି ।।
ସ୍ୱର୍ଗାଦି ଭୋଗ କିବା ତା'ର । ଯହିଁ ବସନ୍ତି ଭକ୍ତ ନର ।।
କୃଷ୍ଣ-ଚରିତ ନିତ୍ୟେ ଭାବି । ରୋମ ପୁଲକେ ଅଶ୍ରୁ ଦ୍ରବି ।।
ନିର୍ମଳ ହୋଏ ବୁଦ୍ଧି ମତି । ଅଜ୍ଞାନ ମୋହ ବିନାଶନ୍ତି ।।
ଏ ଭାବ ନ ଘେନେ ଯା ଚିତ୍ତ । ଯେ ଦୁଃଖସାଗରେ ପୀଡ଼ିତ ।।
ସେ ଆତ୍ମବୋଧେ ଭାଗୀହୋଇ । ଯେ ନିତ୍ୟେ ବିଷୟେ ମଜ୍ଜଇ ।।
ଏମନ୍ତେ ଶୁଣ ହେ ବିଦୁର । ସେ ଦେବ କାମିନୀ ବିଚାର ।।
ସେ ଅର୍ଚ୍ଚିଦେବୀଙ୍କି ସ୍ତୁବନ୍ତି । ପ୍ରବେଶ ପତିଲୋକେ ସତୀ ।।
ସେ ପୃଥୁ ଭକତ-ଉତ୍ତମ । ଯାହାଙ୍କ ଚରିତ ଉଦ୍ଦାମ ।।
ବର୍ଣ୍ଣିଲୁ ତାହାଙ୍କ ଚରିତ । ଶ୍ରବଣେ ହୁଅ ଶୁଦ୍ଧଚିତ୍ତ ।।
ସେ ପୃଥୁ ପୁଣ୍ୟ-ଉପାଖ୍ୟାନ । ଶ୍ରଦ୍ଧାରେ ପଢନ୍ତି ଯେ ଜନ ।।
ସେ ପୃଥୁ ପଦକୁ ଲଭନ୍ତି । ଜନ୍ମ ମରଣୁ ନିସ୍ତରନ୍ତି ।।
ଏ ଚାରିବର୍ଣ୍ଣ ମଧଗତେ । ପଢନ୍ତି ଶୁଣନ୍ତି ଯେ ନିତ୍ୟେ ।।
ତା ସର୍ବକାମ ହୋଏ ସିଦ୍ଧି । ସକଳ-ବର୍ଣ୍ଣେ ସେ ପ୍ରସିଦ୍ଧି ।।
ଯେ ବିପ୍ରଜନ ଏହା ପଢ଼େ । ବ୍ରହ୍ମପଦକୁ ଲଭେ ଦୃଢ଼େ ।।
କ୍ଷତ୍ରିୟ କଲେ ଅଧ୍ୟୟନ । ରାଜତ୍ୱ ପଣେ ସେ ନିପୁଣ ।।
ଗାୟନ କଲେ ବୈଶ୍ୟଜନ । କୃଷ୍ୟାଦି ବାଣିଜ୍ୟେ ନିପୁଣ ।।
ସେ ଜ୍ଞାନୀଜନେ ଶ୍ରେଷ୍ଠ ହୋଇ । ଧର୍ମାର୍ଥୀଜୀବନେ ଜୀଅଁଇ ।।
ଶ୍ରବଣେ ଶୂଦ୍ର ହୋଏ ସୁଖୀ । ଭକତ ମଧ୍ୟେ ତାକୁ ଲେଖି ।।
ତ୍ରିକାଳ ଶ୍ରବଣ କୀର୍ତ୍ତନେ । ଯେ ନରନାରୀ ଶୁଦ୍ଧମନେ ।।
ସକଳ-କାମାର୍ଥ ଲଭନ୍ତି । ଭୋଗାନ୍ତେ ବୈକୁଣ୍ଠ ବସନ୍ତି ।।
ନିର୍ଦ୍ଧନ-ଅପୁତ୍ରିକ-ଜନ । ଲଭେ ଅପତ୍ୟ ବହୁ-ଧନ ।।
ଅକୀର୍ତ୍ତିମନ୍ତ ଯେବା ଜନ । ଶ୍ରବଣେ ଲଭେ କୀର୍ତ୍ତିମାନ ।।
ସେ ପୁଣ୍ୟ ପୃଥୁର ଚରିତ । ଶ୍ରବଣେ ମୂର୍ଖ ସୁପଣ୍ଡିତ ।।

ଯେ ପ୍ରତିଦିନେ ଅଧ୍ୟୟନ୍ତି । ଅଶୁଭ କର୍ମ ବିନାଶନ୍ତି ॥
ଯଶ ଆୟୁଷ ଧନ ଆର । ଶ୍ରବଣେ ବଢ଼େ ନିରନ୍ତର ॥
ଅପରେ ଧର୍ମ ଅର୍ଥ ଚାରି । ଲଭନ୍ତି ତ୍ରିତାପ ନିବାରି ॥
ଯେବେ କ୍ଷତ୍ରିୟ ରିପୁ ଭୟେ । ଶ୍ରବଣେ ଚତୁର୍ଦ୍ଦିଗ ଜୟେ ॥
ଏ ସର୍ବ କର୍ମଫଳ ପାଇ । ଯେ ଅବା ନିରତେ ଶୁଣଇ ॥
ଏ ପୁଣ୍ୟ ପୃଥୁର ଚରିତ । ସଦ୍ୟ ବିଶୁଦ୍ଧ ହୋଏ ଚିତ୍ତ ॥
ପଠନ କରେ ଯେବା ପ୍ରାଣୀ । ସୁସାଧୁ ମଧ୍ୟେ ତାକୁ ଗଣି ॥
ଯେ ମୁଖେ କରନ୍ତି ଗାୟନ । ବିଶୁଦ୍ଧ ହୋଏ ବୁଦ୍ଧି ମନ ॥
ତା'ର ଅଶେଷ ପୁଣ୍ୟମୟେ । ବିପ୍ର କଲ୍ୟାଣେ ତା'ର ହୋଏ
ବ୍ରାହ୍ମଣ-ମୁଖୁ ଯେବେ ଶୁଣି । ଅନ୍ୟତ୍ର ଚତୁର୍ଗୁଣ ଜାଣି ॥
ବିପ୍ର ପୂଜନେ ହରିତୋଷ । ତାକୁ ନ ଲାଗେ ଗୁଣ-ଦୋଷ ॥
ଶୁଣ ବିଦୁର ସାବଧାନେ । ସେ ପୃଥୁ ଚରିତ ଆଖ୍ୟାନେ ॥
ଅମୃତ ରସମୟ ଗୀତ । ଶ୍ରବଣେ ନିସ୍ତରେ ପତିତ ॥
ପାର୍ଥୀବ ଗତି ହୋଏ ତାର । ସ୍ୱର୍ଗାପବର୍ଗ ନୋହ ଦୂର ॥
ଏ ମୋହ ସଂସାର ତାରଣେ । ଅନ୍ୟଥା ନାହିଁ ଉଦ୍ଧାରଣେ ॥
ଚତୁର୍ଥ ସ୍କନ୍ଧେ ଭାଗବତ । ତ୍ରିବିଂଶ-ଅଧ୍ୟାୟ ଚରିତ ॥
ମୈତ୍ରେୟ-ବିଦୁର ସମ୍ବାଦ । ଶ୍ରବଣେ ଖଣ୍ଡଇ ଆପଦ ॥
ଶୁଣନ୍ତେ ତୁଟେ ଭବବ୍ୟାଧି । ଶ୍ରବଣେ ପାପ-ବନ୍ଧ ଛେଦି ॥
ହରି-ଚରଣ ଆଶ୍ରେ କର । ସକଳ-ପାପ ହେବ ଦୂର ॥
ସୁଜନେ ଏହି ରସେ ରସ । ଭଣଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟା ଚତୁର୍ଥସ୍କନ୍ଧେ ତ୍ରୟବିଂଶୋଽଧ୍ୟାୟଃ ।*

## ଚତୁର୍ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁର । ଯେ ପଞ୍ଚ ପୃଥୁଙ୍କ କୁମର ॥
ବିଜିତଅଶ୍ୱ ନାମ ଯା'ର । ବସିଲା ନୃପାସନେ ବୀର ॥
ତା'ର ଅନୁଜାଜ୍ଞା-ତରିଭ୍ରେ । ରାଜ୍ୟ-ବିଭାଜେ ଯଥୋଚିତ ॥
ଉତ୍ତର ଦକ୍ଷିଣ ପଶ୍ଚିମେ । ପୂର୍ବାଦି ଚାରି ଅନୁକ୍ରମେ ॥
ହର୍ଯ୍ୟାକ୍ଷ ନାମେ ଯେ କୁମର । ତାହାକୁ ପୂର୍ବେ ଅଧିକାର ॥
ଧୂମ୍ରକେଶକୁ ଦେଲେ ଭୂପ । ଦକ୍ଷିଣଦିଗେ ସେ ଅଧିପ ॥
ପଶ୍ଚିମେ ବୃକ ନୃପରାଣ । ଉତ୍ତର ଦିଗେଣ ଦ୍ରବିଣ ॥
ବିଜିତଅଶ୍ୱ ନାମ ଯା'ର । ସେ ଜ୍ୟେଷ୍ଠ ପୃଥୁଙ୍କ କୁମର ॥
ଦ୍ୱିତୀୟେ ଅନ୍ତର୍ଦ୍ଧାନ ନାମ । ତାହାକୁ ଦେଲେ ସୁରୋତ୍ତମ ॥
ଶୁଣି ବିଦୁର ହରଷିତ । ନମେ ମୈତ୍ରେୟ ପାଦଗତ ॥

### ବିଦୁର ଉବାଚ

କିମର୍ଥେ ଅନ୍ତର୍ଦ୍ଧାନ ନାମ । ତାହାକୁ ଦେଲେ ମଘବାନ ॥
ଏ ବଡ଼ ସଂଶୟ ମୋ ଚିତ୍ତ । ଭୋ ମୁନି କହିବା ତଦନ୍ତ ॥
ଏମନ୍ତ ତା'ର ବାକ୍ୟ ଶୁଣି । କହେ ମୈତ୍ରେୟ ମହାମୁନି ॥

### ମୈତ୍ରେୟ ଉବାଚ

ହେ କୁରୁଶ୍ରେଷ୍ଠ ଭାଗ୍ୟବନ୍ତ । ଅମୃତ ପୃଥୁର ଚରିତ ॥
ଶ୍ରବଣେ ଇଚ୍ଛା ଯେବେ ତୋର । କହିବା ସେ ପୂର୍ବ ବିଚାର ॥
ପୃଥୁ ଯେ ଅଶ୍ୱମେଧ କଲେ । ସକଳ ଦେବଙ୍କୁ ବରିଲେ ॥
ଯଜ୍ଞେ ପୂଜିଲେ ଭଗବାନ । ବେଦୋକ୍ତ କର୍ମେ ଧରି ମନ ॥
ଯଜ୍ଞ-ବିଧାନେ ବିଧି ଯେତେ । ସମ୍ଭାର କରି ନାନାମତେ ॥
ଏମନ୍ତେ ଯଜ୍ଞାହୁତି କାଳେ । ଅଶ୍ୱ ହରିଲା ଇନ୍ଦ୍ର ଛଳେ ॥
ବିଜିତଅଶ୍ୱ ତାହା ଜାଣି । ଇନ୍ଦ୍ର ନ ମାରି ଅଶ୍ୱ ଆଣି ॥
ତା ଦେଖି ତୋଷେ ପୁରନ୍ଦର । ଭୋ ବୀର ବେଗେ ମାଗ ବର
ତା' ଶୁଣି ସେ ପୃଥୁ ନନ୍ଦନ । ଅତି ଆନନ୍ଦେ ତୋଷମନ ॥
ମୋହର ବରେ କାର୍ଯ୍ୟ ନାହିଁ । ଯେବେ ଯାଚିଲ ସୁରସାଇଁ ॥
ଏ ତୋର ଅନ୍ତର୍ଦ୍ଧାନ ଗତି । ପ୍ରସନ୍ନେ ଦିଅ ଶଚୀପତି ॥
ଶୁଣି ସନ୍ତୋଷ ମଘବାନ । ତାହାକୁ ଦେଲେ ଅନ୍ତର୍ଦ୍ଧାନ ॥
ସେ ଘେନି ଅନ୍ତର୍ଦ୍ଧାନ ନାମ । ଜଗତେ କରନ୍ତି ଗାୟନ ॥
ସେ ବୀର ନିଜ ରାଜ୍ୟେ ରାଜା । ଧର୍ମେ ପାଳଇ ଜନ ପ୍ରଜା ॥
ତା'ର ଶିଖଣ୍ଡୀ ନାମେ ନାରୀ । ରୂପେ କାମିନୀ ମନୋହାରୀ ॥
ତାହାର ଗର୍ଭେ ନୃପ-ବୀର୍ଯ୍ୟେ । ପୁତ୍ରେ ଜନ୍ମିଲେ ମହାତେଜେ ॥
ପାବକ ପବମାନ ଶୁଚି । ତେଜ ଶରୀର ଶୁଭ୍ରରୁଚି ॥
ଅଗ୍ନି ଯେ ବଶିଷ୍ଠ ଶାପରୁ । ଜନ୍ମିଲେ ଏ ତିନି ଯୋଗରୁ ॥
ଆଉ ଯେ ପତ୍ନୀ ନଭସ୍ୱତୀ । ସେ ଅନ୍ତର୍ଦ୍ଧାନର ଯୁବତୀ ॥
ତାହାର ଗର୍ଭେ ଯେ କୁମର । ହବିର୍ଦ୍ଧାନ ନାମ ତାହାର ॥
ତାହାକୁ କଲେ ସେ ନୃପତି । ତା' ଅଶେ ରାଜାର ସନ୍ତତି ॥
ସେ ଅନ୍ତର୍ଦ୍ଧାନ ନୃପରାୟେ । ବିଷୟଭୋଗ ନ ଯୋଗାଏ ॥
ସେ ଜ୍ଞାନ-ବୈରାଗ୍ୟେ ନୃପତି । ତେଜିଣ ଅଚଳ ବିଭୂତି ॥
ମନେ ବିଚାରେ ନୃପରାଣ । ଏ ସର୍ବ ଅନର୍ଥ କାରଣ ॥
ରାଜସମ୍ପଦେ ଅନ୍ଧ ହୋଇ । ଅଜ୍ଞାନେ ଧର୍ମ ନ ଜାଣଇ ॥
କରଇ ଶତ୍ରୁ-ମିତ୍ରଭାବ । ସକଳ-ଘଟେ ଏକ ଜୀବ ॥
ରାଜଦ୍ୱି-ଧର୍ମେ କ୍ରୋଧ ବହି । ପ୍ରଜା ପୀଡନ୍ତି ଧନ ପାଇଁ ॥

ଅଧର୍ମ-ମାର୍ଗେ ନ୍ୟନ୍ତି ବଳେ । ପ୍ରଜା କ୍ଷୋଭତି କ୍ଷୁଧାକୁଳେ ॥
ପ୍ରଜାବିନାଶେ ଘୋର-ପାପ । ନରକେ ପଡନ୍ତି ଅଧୀପ ॥
ପୋତୁ ଏ ରାଜ୍ୟେ କାର୍ଯ୍ୟ ନାହିଁ । ଯଜ୍ଞ କରିବା ସୁଖେ ରହି ॥
ଯଜ୍ଞର ଛଳେ ସେ ରାଜନ । ତେଜିଲେ ନୃପ ସିଂହାସନ ॥
ନିଷ୍କାମ-ପଥ ଆଶ୍ରେ କଲେ । ପରମ ପୁରୁଷ ଭଜିଲେ ॥
ସେ ହଂସଦୀକ୍ଷାରେ ରାଜନ । ଗମିଲେ ବୈକୁଣ୍ଠ ଭୁବନ ॥
ସେ ହବିର୍ଦ୍ଧାନ ତା କୁମର । ବସିଲା ନୃପାସନେ ବୀର ॥
ତା ପତ୍ନୀ ନାମ ହବିର୍ଦ୍ଧାନୀ । ସୁର-ମୋହିନୀ ସୁଲୋଚନୀ ॥
ତାହାର ଗର୍ଭେ ଷଡ ସୁତ । ଜନ୍ମିଲେ ତେଜେ ବଳବନ୍ତ ॥
ବର୍ହିଷଦ ଯେ ଶୁକ୍ଳ ସତ୍ୟ । କୃଷ୍ଣ ଗୟ ଯେ ଜିତବ୍ରତ ॥
ସେ ହବିର୍ଦ୍ଧାନର ସନ୍ତତି । ମହତ-ଗୁଣ ତା'ର ଅତି ॥
ଏ ଛଅ ମଧ୍ୟେ ବର୍ହିଷଦ । ହୋଇଲେ ଭୂପ ଭାଗ୍ୟବନ୍ତ ॥
ସୌଭାଗ୍ୟବାନ ପ୍ରଜାପତି । ରଖିଲେ ଜଗତରେ ଖ୍ୟାତି ॥
ହୋଇଲେ ଶୁଭକାର୍ଯ୍ୟେ ବ୍ରତୀ । ପ୍ରାଣାୟାମାଦି ଯୋଗେ ରତି ॥
ସେ ଭାଗ୍ୟବନ୍ତ ଦଣ୍ଡଧର । ତା ଯଶ ତ୍ରୈଲୋକ୍ୟେ ବିସ୍ତାର ॥
ସେ କ୍ରିୟାକାଣ୍ଡରେ ନିପୁଣ । ଅଦ୍ଭୁତ ତା'ର କର୍ମମାନ ॥
ଯେ କର୍ମ କଲା ଏ ଜଗତେ । ଶୁଣ ବିଦୁର କହୁଁ ତୋତେ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ନ ଦେଖି ଏ ତିନି ଭୁବନେ ॥
ତା ଯଜ୍ଞେ ପ୍ରାଚୀ-ନଗ୍ର ସ୍ଥଳ । କୁଶେ ଆଚ୍ଛାଦିଲା ସକଳ ॥
ଏଣୁ ତା ନାମ ମହୀତଳେ । ପ୍ରାଚୀନ-ବରହିଷ ବୋଲେ ॥
ସେ ଯେ ପ୍ରାଚୀନ ମହୀପତି । ବିବାହ ସମୁଦ୍ର ଦୁହିତି ॥
ସେ ଶତଦ୍ରୁତି କନ୍ୟା ସାର । ତ୍ରୈଲୋକ୍ୟ ନାହିଁ ପଟାନ୍ତର ॥
ତାର ଚରିତ ପୂର୍ବ-କଥା । ହୋଇଲା ଯେବଣ ବ୍ୟବସ୍ଥା ॥
ବ୍ରହ୍ମା ତାହାର ପୁରେ ଆସି । କନ୍ୟାକୁ କହିଲେ ବିଶ୍ୱାସି ॥
ବ୍ରହ୍ମା ବଚନେ ସିନ୍ଧୁପତି । ରାଜାରେ ବରିଲେ ଦୁହିତୀ ॥
ସେ ଯେ ପ୍ରାଚୀନ ନୃପବର । ବିଭା-ସଂଯୋଗେ କନ୍ୟାବର ॥
ଅଗ୍ନି-ପ୍ରଦକ୍ଷିଣ କରନ୍ତେ । ଯେହ୍ନେ ଚଣ୍ଡାଂଶୁ ଭୂମିଗତେ ॥
ସେ କନ୍ୟା ରୂପେ ହୁତାଶନ । ଅନଙ୍ଗେ ହୋଇଲା ଅଧୀନ ॥
ସପ୍ତର୍ଷି -ଯଜ୍ଞେ ଋଷିପତ୍ନୀ । ଦେଖି କାମୁକ ହେଲେ ଅଗ୍ନି ॥
ତାହାଙ୍କ ପତ୍ନୀ ସ୍ୱାହା ଜାଣି । ଋଷିପତ୍ନୀଙ୍କ ରୂପ ଘେନି ॥
ଅଗ୍ନିଙ୍କ ଠାରେ ଉଭା ହେଲେ । ଅଗ୍ନି ଯେ ଆଲିଙ୍ଗନ କଲେ ॥
ଏହି ପ୍ରକାରେ ହୁତାଶନ । ଶତଦ୍ରୁତିର ପ୍ରେମେ ମଗ୍ନ ॥
ସେ ଶତଦ୍ରୁତି ରୂପବତୀ । ଚରଣେ ନୂପୁର ଶୋଭନ୍ତି ॥
ସେ ମତ୍ତ ଦ୍ୱିରଦ ଗାମିନୀ । ଚରଣେ ନୂପୁର ବାଜେଣି ॥

ଶ୍ରବଣେ ଅନଙ୍ଗ ପୀଡ଼ିତ । ମୂର୍ଖ ପଣ୍ଡିତ ଶୂରବନ୍ତ ॥
ତା ରୂପ ଦେଖି ବୁଦ୍ଧଜନେ । ସିଦ୍ଧ ଚାରଣ ଖଗ ମୃଗ ॥
ଇତ୍ୟାଦି ପଶୁଜୀବ ଯେତେ । ତା' ରୂପେ ହେଲେ ବିମୋହିତେ ॥
ତାହାଙ୍କ ତୁଲ୍ୟ ଏ ଜଗତେ । ନ ଦେଖି ସ୍ୱର୍ଗ-ମର୍ତ୍ତ୍ୟଗତେ ॥
ପ୍ରାଚୀନବରହି ରାଜନ । ତା ରୂପେ ହୋଇଲା ଅଧୀନ ॥
ସକଳ-ଧର୍ମ ପରିହରି । ତା'ବଶେ ନିତ୍ୟେ ଦଣ୍ଡଧାରୀ ॥
ସେ କ୍ରୀଡ଼ାମୃଗ ଜୀବ ପ୍ରାୟ । ତା' ବଶେ ଧର୍ମ କଲା କ୍ଷୟ ॥
ତା ବିନା-ଆଜ୍ଞାରେ ରାଜନ । ନ କରେ ଅନ୍ୟ କର୍ମମାନ ॥
ରାତ୍ର-ଦିବସ ନ ଜାଣିଲା । ତା' ଅଙ୍ଗସଙ୍ଗେ ଦିନ ନେଲା ॥
ସେ ପତ୍ନୀ-ଗର୍ଭେ ତା'ର ବୀର୍ଯ୍ୟେ । ପୁତ୍ରେ ଜନ୍ମିଲେ ମହାତେଜେ ॥
ଦଶକୁମର ଆତ୍ମା ଏକ । ଶୁଭ୍ର ସୁନ୍ଦର ସୁବିବେକ ॥
ସମ ଆକୃତି ରୂପ-ବେଶ । ଏକଇ ନାମ ପ୍ରଚେତସ ॥
ତାହାଙ୍କୁ ଚାହିଁ ନୃପବର । ବୋଇଲେ ପ୍ରଜା ସୃଷ୍ଟି କର ॥
ତକ୍ଷଣେ ପିତା ଆଜ୍ଞା ପାଇ । ସେ ପ୍ରଚେତସ ଦଶ ଭାଇ ॥
ତପ-ସାଧନେ ଆଗମନ । ପଥରେ ଭେଟିଲେ ଈଶାନ ॥
ବୃଷଭ-ବାହନେ ମହେଶ । ଡମ୍ବରୁ ବାଦ୍ୟ ନାଦ ଘୋଷ ॥
ଶିରେ ସୁଧାଂଶୁ ଶୋଭାକର । ଜାହ୍ନବୀ ସ୍ରବେ ଜଟାଭାର ॥
ଉଚ୍ଚେ ଉଚାରି ମୁଖେ ନାମ । ରାମ ଗୋବିନ୍ଦ କୃଷ୍ଣ ଶ୍ୟାମ ॥
ଗୋବିନ୍ଦ ଗୋପାଳ ଶ୍ରୀହରି । ହେ ହୃଷୀକେଶ ଦଇତ୍ୟାରି ॥
ଆନନ୍ଦେ ରୋମ ପୁଲକିତ । ପ୍ରେମ ଗଦ୍‌ଗଦେ ଅଶ୍ରୁପାତ ॥
ଏମନ୍ତ ସମୟେ କୁମର । ଦର୍ଶନ କଲେ ଦେବହର ॥
ଭେଟିଲେ ପୂର୍ବ ପୁଣ୍ୟ ଫଳେ । ଯା' ନାମ ଧରି ଅନ୍ତଃକାଳେ ॥
ପ୍ରାଣୀ ତରନ୍ତି ଅଘାର୍ଣ୍ଣବ । ଯେ ଶିବ ଦେବଙ୍କୁ ଦୁର୍ଲ୍ଲଭ ॥
ତାହାଙ୍କୁ ଚାହିଁଣ ଗିରୀଶ । ବୋଲନ୍ତି ଶୁଣ ବାଳଶିଷ ॥
କାହାର ପୁତ୍ର ତୁମ୍ଭେମାନେ । କି ନାମ ଗୋତ୍ର ବାଞ୍ଛା ମନେ ॥
ବୟ ଆକୃତି ସମ-ଦୃଶ । ବାଳ ନବୀନ ତୁମ୍ଭେ ଦଶ ॥
କିମର୍ଥେ ଶ୍ରମେ ଆଗମନ । କହ ସଂଶୟ ତେଜି ମନ ॥
ସେ ଦେବବାକ୍ୟ ସୁମଧୁର । ଅମୃତ ଜିଣି ସୁଧାକର ॥
ଶୁଣି ପ୍ରଚେତା ଦଶଭାଇ । ବୋଲନ୍ତି ଶିରେ କର ଦେଇ ॥
ଶୁଣିମା ପ୍ରଭୁ ଦେବ ଈଶ । ପ୍ରଚେତା ନାମେ ଆମ୍ଭେ ଦଶ ॥
ସୁପ୍ରାଚୀ ନଗ୍ର ଅଧିପତି । ତା ବୀର୍ଯ୍ୟେ ଆମ୍ଭେ ଉତପତ୍ତି
ପିତା ବଚନେ ତପ ଅର୍ଥେ । ଅଇଲୁ ପ୍ରାଚୀ ଦିଗ ପଥେ ॥
କଠୋର-ତପ ସିଦ୍ଧ କରି । ଭାବେ ସେବିବୁ ନରହରି ॥
ତୁମ୍ଭ ଦର୍ଶନେ ଯୋଗ ଶ୍ୱର । ଆମ୍ଭ ସଂଶୟ ହେଉ ଦୂର ॥

ତା' ଶୁଣି ଦେବ-ଉମାସାଇଁ । ସନ୍ତୋଷେ ତାଙ୍କୁ ଦୀକ୍ଷା ଦେଇ
ସେ ତପେ ତୋଷି ଭଗବାନ । ଆନନ୍ଦେ ଗଲେ ନିଜ ସ୍ଥାନ
ଶୁଣି ବିଦୁର ବିପରୀତ । ପୁଣି ସଂଶୟ କରି ଚିତ୍ତ ॥
କହେ ମୈତ୍ରେୟ ମୁଖ ଚାହିଁ । ଅଦ୍ଭୁତ କହିଲ ଗୋସାଇଁ ॥
ନର ଅମରେ କାହିଁ ସଙ୍ଗ । କେସନେ ହୋଇଲା ସଂଯୋଗ
ଏ ବଡ଼ ସଂଶୟ ମୋ ଚିତ୍ତେ । ଭୋ ମୁନି ଫେଡ଼ି କହ ମୋତେ
ଯେ କାଳ ରୁଦ୍ର ରୂପେ ସ୍ଥିତି । ଉତ୍ପତ୍ତି ପାଳିଣ ନାଶନ୍ତି ॥
ସେ ଯେ ପ୍ରଚେତା ଭାଇ ଦଶ । କିରୂପେ ତାଙ୍କୁ କଲେ ତୋଷ ॥
ଦେବ ମାନବେ ଭେଟ କାହିଁ । ସେ ଯେ ଭେଟିଲେ ଉମାସାଇଁ
ଅତି ଦୁର୍ଲ୍ଲଭ ମୋକ୍ଷ ଅଙ୍ଗ । ମନୁଷ୍ୟେ ହୋଇଲା ସଂଯୋଗ
ବିମୁକ୍ତ-ସଙ୍ଗ ଯୋଗୀଜନେ । ଯାଙ୍କୁ ଭାବନ୍ତି ତତ୍ତ୍ୱଜ୍ଞାନେ ॥
ଧ୍ୟାନ-ଧାରଣେ ନ ଦେଖନ୍ତି । କେହ୍ନେ ତୋଷିଲେ କାଳମୂର୍ତ୍ତି
ସେ ଆତ୍ମନିରତ ପୁରୁଷ । ଘୋର ଶକ୍ତିଏ ଯା'ର ପାଶ ॥
ସେ ଶିବ ମୃତ୍ୟୁଦଣ୍ଡ ଧରେ । ଏ ଚରାଚର ପ୍ରାଣ ହରେ ॥
ତେଣୁ ସଂଶୟ ମୋର ଚିତ୍ତ । ଭୋମୁନି କହିବା ତଦନ୍ତ ॥
କି ରୂପେ ତୋଷ ଶୂଳଧର । ବିସ୍ତାରି କହ ମୁନିବର ॥

## ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ । ଯେ ପୂର୍ବ ଆଦ୍ୟନ୍ତ ବିଧାନେ ॥
ଯେ ଶିବ ଶରୀରେ ଅଶେଷ । ସ୍ଥିତି ପାଳନ କରେ ନାଶ ॥
କର୍ମାନୁସାରେ ପ୍ରାଣୀଙ୍କର । ସୃଜନ ପାଳନ ସଂହାର ॥
ଅବିଦ୍ୟା କର୍ମେ କାଳରୂପୀ । ସେ ଶିବ ମୃତ୍ୟୁ ରୂପେ ବ୍ୟାପୀ ॥
ସୁବିଦ୍ୟା ଆଚାର ଯାହାର । ତାଙ୍କୁ ପ୍ରସନ୍ନ ଶୂଳ ଧର ॥
ସମ-ବିଷମ ତାଙ୍କ ନାହିଁ । ମିତ୍ର-ଅରି ଅବା କାହିଁ ॥
ଏଣୁ ସେମତେ ଯେ ଭାବନ୍ତି । ଏ ଘୋର-ମୃତ୍ୟୁ ନିସ୍ତରନ୍ତି ॥
ସେ ଯେ ପ୍ରଚେତା ଭାଇ ଦଶ । ପିତା ବଚନେ ଯେଣୁ ତୋଷ ॥
ତପ ସାଧନେ ଆଗମନ । ତେଜି ଅଚଳ-ଭୋଗମାନ ॥
ସମୁଦ୍ର ନିକଟେ ମିଳିଲେ । ସୁରମ୍ୟ-ସରସୀ ଦେଖିଲେ ॥
ସେ ଜଳ ଅତ୍ୟନ୍ତ ନିର୍ମଳ । ଦର୍ଶନେ ହରେ ତୃଷାକୁଳ ॥
ସୁଖ ଆନନ୍ଦ ଶୀତକର । ଅମୃତ-ତୁଲ୍ୟ ସୁମଧୁର ॥
ନିର୍ମଳ ଯେହ୍ନେ ସାଧୁମନ । ତେସନ ଦିଶଇ ଶୋଭନ ॥
ପୁଷ୍ପ ସମୂହେ ବିରାଜନ୍ତି । ଯେହ୍ନେ ଆକାଶେ ଗ୍ରହପନ୍ତି ॥
ପ୍ରସନ୍ନ ଛଳେ ସୁମଞ୍ଜୁଳ । ନାନାଦି ବର୍ଣ୍ଣେ ଯହିଁ ଫୁଲ ॥
ନୀଳଉତ୍ପଳ ଆଦି କରି । ପୁଷ୍ପ ସମୂହେ ଛନ୍ତି ପୂରି ॥
ପଙ୍କଜ-ଅରୁଣ ପ୍ରକାଶେ । ଶୋଭନ୍ତି ଇନ୍ଦୀବର ପାଶେ ॥

ସେ ଜଳେ ନାନା ପକ୍ଷୀ କୁଳେ । କ୍ରୀଡନ୍ତି କାମେ ମତ୍ତଭୋଳେ ॥
ହଂସ ସାରସ ଚକ୍ରବାକ । କାରଣ୍ଡବ ବକ ଡାହୁକ ॥
ମତ୍ତ ଭ୍ରମରେ ସ୍ୱନ ଦ୍ୟନ୍ତି । ଆନନ୍ଦେ ମଧୁପାନେ ମାତି ॥
ତୀରେ ଶୋଭନ୍ତି ତରୁଗଣେ । ବିବିଧ ଲତା ଆଚ୍ଛାଦନେ ॥
ଶୁକ କୋକିଳ ପକ୍ଷୀଗଣେ । ସୁସ୍ୱର ନାଦେ ଅନୁକ୍ଷଣେ ॥
ପଦ୍ମକେଶର ରଜ ନେଇ । ଶୀତଳ-ପବନ ବହଇ ॥
ସୁଗନ୍ଧ ପୁଷ୍ପ ସୌରଭରେ । ଯେ ଦିଗ ବିଦିଗ ପ୍ରସରେ ॥
ସେ ଗନ୍ଧବାୟୁ ଘ୍ରାଣେ ମୋଦ । ସୁଖେ ସଙ୍ଗୀତ ବାଦ୍ୟନାଦ ॥
ତାଳ ମୃଦଙ୍ଗ ଯନ୍ତ୍ର ବୀଣା । ସ୍ୱର ମୂର୍ଚ୍ଛନା ନିର୍ଘୋଷଣା ॥
ଗନ୍ଧର୍ବେ ଗାବନ୍ତି ଆନନ୍ଦେ । ସଙ୍ଗେଣ ଅପସରୀ ବୃନ୍ଦେ ॥
ବୃଷଭ ଆରୋହୀ ମହେଶ । ସେ ଜଳେ ହୋଇଲେକ ଦୃଶ୍ୟ
ଦେଖି ପ୍ରଚେତା ଦଶ ଭାଇ । ରୋମ ପୁଲକେ ଅଶ୍ରୁ ଦେହୀ ॥
ବେନି ପାଶୁଶେ ଦେବ ଗଣେ । ସ୍ତୁବନ୍ତି ବିବିଧ-ସ୍ତବନେ ॥
ପ୍ରସାଦ-ମୁଖ ସୁପ୍ରସନ୍ନ । ସେ ଦେବ ଦେବ ତ୍ରିଲୋଚନ
ତପ୍ତ କାଞ୍ଚନ ପ୍ରାୟ କାନ୍ତି । ରତ୍ନ-ସମୂହେ ବିରାଜନ୍ତି ॥
ସୁଗ୍ରୀବ କଣ୍ଠ ସୁଶୋଭନ । ସୁନୀଳ ପ୍ରଭା ତ୍ରିଲୋଚନ ॥
ଏମନ୍ତ ସମୟେ କୁମରେ । ଦେଖି ସାନନ୍ଦ ସୁଖଭରେ ॥
ସତ୍ୱରେ ଦଣ୍ଡବତ କଲେ । ପ୍ରସନ୍ନ-ରକ୍ଷଣ ବୋଇଲେ ॥
ଭୋ ଧର୍ମରକ୍ଷଣ ଈଶାନ । ତୋ' ପାଦେ ନ ସେବି ଅଜ୍ଞାନ
ପ୍ରାଣୀ ବୃଜିନ-ଦୁଃଖାନଳେ । ଦଗ୍ଧ ସନ୍ତପ୍ତ ମହାକୁଳେ ॥
ଦାରା-ତନୟ ସ୍ନେହେ ଜଡ଼ି । ଦୁଃଖ-ସଙ୍ଗଟେ ନିତ୍ୟେ ପଡ଼ି
ଏ ଘେନି ତୋ ପାଦ-କମଳେ । ତା ଚିତ୍ତ ନ ରହେ ନିଷ୍ଠଳେ ॥
ତୁ ନାଥ ଭକତ-ସୋଦର । ଅଧମ ଦୀନ ତାପ ହର ॥
ତୋ ନାମ ଭଜନ୍ତି ଯେ ନିତ୍ୟେ । ସେ ତରି ତାରନ୍ତି ଜଗତେ ॥
ଏମନ୍ତେ ପ୍ରଚେତାଙ୍କ ବାଣୀ । ଶୁଣି ସନ୍ତୋଷ ଶୂଳପାଣି ॥
ପ୍ରସନ୍ନ-ଚିତ୍ତେ ଶୂଳହସ୍ତ । ଦେଖି ତାହାଙ୍କ ଶୀଳବନ୍ତ ॥
କହନ୍ତି ପ୍ରଚେତସମାନେ । ଜାଣିଲୁ ତୁମ୍ଭ ମନ ଜ୍ଞାନେ ॥
ତେଣୁ ଦର୍ଶନ ଦେଲୁ ଆଗେ । ଭୋପୁତ୍ରେ ବର ମାଗ ବେଗେ
ଶୁଣି ସାନନ୍ଦ ପ୍ରଚେତସ । ଯେହ୍ନେ ଆପ୍ୟାନେ ସୁଧାରସ ॥
ସତ୍ୱରେ ଦଣ୍ଡବତେ ପଡି । କହନ୍ତି ଶିରେ କରଯୋଡ଼ି ॥
ଭୋ ପ୍ରଭୁ ତୋ ପଦ-କମଳେ । ନ ଭଜି ମଜ୍ଜିଲୁ ଶୟଳେ ॥
ବିଫଳେ ଗଲା ଆମ୍ଭ ଦିନ । ତୋ କୃପା ବିହୀନେ ଈଶାନ ॥
ଏବେ ଜାଣିଲୁ ଶୁଦ୍ଧଚିତ୍ତେ । ତୋର ଦର୍ଶନ ଆମ୍ଭ ହିତେ ॥
ଅଶେଷ-କର୍ମ ଗଲାନାଶ । ତୋର ପ୍ରସନ୍ନେ ଦେବ ଈଶ ॥

ଭୋ ଦେବ କରୁଣାସାଗର । ପ୍ରସନ୍ନ ଜନ ଦୁଃଖ ହର ।
ତୋର ପ୍ରସନ୍ନେ ପ୍ରାଣୀଙ୍କର । ସ୍ୱର୍ଗାପବର୍ଗ ନୋହେ ଦୂର ।
ଭୋ ଯୋଗେଶ୍ୱର ତୋ ମହିମା । ନ ଜାଣି ପାରେ ସୁରବ୍ରହ୍ମା ।
ଆମ୍ଭେ ବାଳକ ଶିଶୁମତି । କାହୁଁ ଜାଣିବୁ ତୋର ଗତି ।
ଏ ଆଜ୍ଞା ହେବ ପ୍ରଭୁ ତୋର । ଧର୍ମାର୍ଥ କାମ ମୋକ୍ଷ ଦ୍ୱାର ।
ଏମନ୍ତେ ନାନା ସ୍ତୁତି କରି । ପ୍ରେମ-ଆନନ୍ଦେ ଅଶ୍ରୁପୂରି ।
ଶୁଣି ସାନନ୍ଦ ଉମାକାନ୍ତ । ପ୍ରସନ୍ନେ କହନ୍ତି ତଦନ୍ତ ।

## ରୁଦ୍ର ଉବାଚ

ହେ ପୁତ୍ରେ ଶୁଣ ମୋ ଉତ୍ତର । ହରି ଭକତେ ପ୍ରିୟ ମୋର ।
ଭକତଜନ ମୋ ହୃଦୟ । ଏଣୁ ଭକତ ମୋ ପ୍ରିୟ ।
ଯେ ଯଜ୍ଞେଶ୍ୱର ବାସୁଦେବ । ଯାହାର ନାମ ଦୟାର୍ଣ୍ଣବ ।
ତ୍ରିଗୁଣ ପରେ ଯା ବିହାର । ପ୍ରଧାନ-ପୁରୁଷ ଈଶ୍ୱର ।
ତାଙ୍କ ଭକତ ଯେତେ ଜନ । ସେ ମୋର ଅଟନ୍ତି ଜୀବନ ।
ଏଣୁ ମୁଁ ତୁମ୍ଭରେ ପ୍ରସନ୍ନ । ବୈଷ୍ଣବେ ନୁହଁନ୍ତି ଅଭିନ୍ନ ।
ତାଙ୍କ ମହିମା ଯଶ ଗୁଣ । ମୋ ଠହୁଁ ସାବଧାନେ ଶୁଣ ।
ଯେ ପ୍ରାଣୀ ଶତ-ଜନ୍ମାନ୍ତରେ । ସ୍ୱଧର୍ମ ନିଷ୍ଠାରେ ଆଚରେ ।
ତଦନ୍ତେ ବ୍ରହ୍ମପଦ ପାଇ । ଅଶେଷ କଳୁଷ ନାଶଇ ।
ଯେ ବିପ୍ରଦେହେ ନିତ୍ୟାଚାରେ । ଯେ ପୁଣ୍ୟକରେ ନିରନ୍ତରେ ।
ଅଶେଷ ପୁଣ୍ୟକର୍ମଫଳେ । ସେ ମୋତେ ଲଭେ ଅନ୍ତକାଳେ ।।
ତେବେ ବୈଷ୍ଣବ ପଦ ପାଇ । ଏ ଲିଙ୍ଗ ଶରୀର ନାଶଇ ।
ଲିଙ୍ଗ-ଭଞ୍ଜନେ ମୋକ୍ଷଯୋଗ । ନ ଲଭେ ମୃତ୍ୟୁ ଭୟ ସଙ୍ଗ ।
ତୁମ୍ଭେ ଭକତ-ଜନସାର । ଲକ୍ଷଣ ଜାଣିଲୁ ତୁମ୍ଭର ।
ଆମ୍ଭର ପ୍ରିୟ ଯେଣୁ ହରି । ତୁମ୍ଭେ ତେସନେ ମୋତେ ସରି ।
ଏଣୁ ମାନବେ ଭକ୍ତ ଯେହି । ମୋ ପ୍ରିୟ ତହୁଁ କେହି ନାହିଁ ।
ହେ ପ୍ରଚେତସ ଭାଇ ଦଶ । ତୁମ୍ଭର ବାକ୍ୟେ ହେଲୁତୋଷ ।
ହରି-ଭଜନ ଯେ ପ୍ରକାର । କହିବା ଦୃଢ଼ଚିତ୍ତେ ଧର ।
ସେ ହରି ପ୍ରସନ୍ନ ଯେମନ୍ତେ । ତାହା କହିବା ଆମ୍ଭେ ତୋତେ ।
ଏ ସର୍ବ-ସ୍ତୋତ୍ର ମଧ୍ୟେ ସାର । ତୁମ୍ଭେ ସକଳ ଚିତ୍ତେ ଧର ।

## ମୈତ୍ରେୟ ଉବାଚ

ଏମନ୍ତ କହିଣ ମହେଶ । ଶୁଣ ବିଦୁର ଜ୍ଞାନରସ ।
ନୃପକୁମରେ ଦୟାବହି । ପ୍ରସନ୍ନେ କହନ୍ତି ଗୋସାଇଁ ।
ସର୍ବେ ଯୋଡ଼ିଣ ବେନିକର । ଶୁଣନ୍ତି ଡେରି ଶ୍ରୁତିଦ୍ୱାର ।

## ରୁଦ୍ର ଉବାଚ

ନିରାତିଶୟ ଯେ ପରମ । ଆନନ୍ଦ ସୂକ୍ଷ୍ମ ନିରଞ୍ଜନ ।
ସ୍ୱରୂପେ ସିଦ୍ଧ ହୁଅ ତୁମ୍ଭେ । ଏଣୁ ଆନନ୍ଦ ନାମ ଭାବେ ।
ତୁମ୍ଭର ଯେବା ବଡ଼ ପଣ । ଜ୍ଞାନୀଙ୍କ ଆନନ୍ଦ କାରଣ ।
ଏଣୁ ଆନନ୍ଦଲାଭ ମୋର । କରୁଣା କର ଚକ୍ରଧର ।
ତୁ ସର୍ବ ଆତ୍ମା ତୋତେ ମୋର । ନିରତେ ହେଉ ନମସ୍କାର ।
ତୋ ନାଭିପଦ୍ମ ନାରାୟଣ । ଏ ବିଶ୍ୱ ଉତ୍ପତ୍ତି କାରଣ ।
ଏଣୁ ତୋ ନାମ ପଦ୍ମନାଭ । ବୋଲନ୍ତି ସଂସାର ଉଦ୍ଭବ ।
ସେ ନାମେ ପ୍ରଣତି ମୋହର । ଏ ବିନୁ ନାହିଁ ବାଞ୍ଛା ଆଉ ।
ପୃଥିବୀ ଆପ ତେଜ ବାୟୁ । ଆକାଶ ପଞ୍ଚଭୂତ ଯେହୁ ।
ଶବ୍ଦ ସ୍ପର୍ଶ ରୂପ ରସ । ଗନ୍ଧ ଯେ ଇନ୍ଦ୍ରି ଏକାଦଶ ।
ଏହାଙ୍କ ଅନ୍ତରାତ୍ମା ହୋଇ । ଯେ ବିଶ୍ୱ ସଂସାର ସର୍ଜଇ ।
ତାହାଙ୍କୁ ପ୍ରଣତି ମୋହର । ଏଭବୁ କରେ ଯେ ନିସ୍ତାର ।
ଯେ ଅନ୍ତଃକରଣ ଚତ୍ୱାର । ଏ ମନ ବୁଦ୍ଧି ଅହଂକାର ।
ତାଙ୍କ ଅନ୍ତର ଆତ୍ମା ହୋଇ । ପ୍ରକାଶ କରୁ ତୁ ଗୋସାଇଁ ।
ଯେ ପ୍ରଭୁ ଚିତ୍ତ ଅଧିଷ୍ଠାତା । ଶ୍ରୀବାସୁଦେବ ଶୁଦ୍ଧଚେତା ।
ସେ ଅତି ଶାନ୍ତ ନିର୍ବିକାରେ । ନମଇଁ ଭକ୍ତିଯୋଗେ ତାରେ ।
ଅଧିଷ୍ଠ ଅହଂକାରେ ଯେହୁ । ସଙ୍କରଷଣ ମହାବାହୁ ।
ସେ ଯେ ଅନନ୍ତ ସୂକ୍ଷ୍ମମୟେ । ମୋର ପ୍ରଣାମ ତାଙ୍କ ପାୟେ ।
ଯେ ପ୍ରଭୁ ବୁଦ୍ଧି ଅଧିଷ୍ଠାତା । ପ୍ରଦ୍ୟୁମ୍ନ ରୂପେ ବିଚାରନ୍ତା ।
ଯେ ବିଶ୍ୱ ପ୍ରବୋଧ କରନ୍ତି । ସେ ପ୍ରଭୁ ପାଦେ ମୋ ପ୍ରଣତି
ତାଙ୍କ ପ୍ରସନ୍ନେ ମୋ ଅଜ୍ଞାନ । ତକ୍ଷଣେ ହୋଇବ ଦହନ ।
ଇନ୍ଦ୍ରିୟ ଅଧିପ ଯେ ମନ । ତାହାଙ୍କ ଅଧିଷ୍ଠାତା ନାମ ।
ସେ ଅନିରୁଦ୍ଧ ଯେ ଈଶ୍ୱର । କରିବେ ସଂସାରୁ ନିସ୍ତାର ।
ଯେ ସୂର୍ଯ୍ୟ ରୂପେଣ ପ୍ରକାଶ । ପ୍ରତ୍ୟକ୍ଷେ ସେ ପରମହଂସ ।
ସେ ଜ୍ୟୋତିର୍ମୟ ରୂପ ଧରି । ଏ ବିଶ୍ୱ ପ୍ରକାଶକୁ କରି ।
ସ୍ୱର୍ଗାପବର୍ଗ ଦ୍ୱାର ବେନି । ନାହିଁ ଯାହାର ବୁଦ୍ଧି ହାନି ।
ପବିତ୍ର ଚିତ୍ତେ ଯାର ସିଦ୍ଧି । ସେ ପ୍ରଭୁ ପାଦେ ମୋ' ପ୍ରଣତି
ଯେ ଅଗ୍ନି ରୂପୀ ଭଗବାନ । ଯଜ୍ଞାଦି ଯାହାରେ ସାଧନ ।
ପ୍ରବୃତ୍ତି ନିବୃତ୍ତି ଯେ କରି । ଯେ ହରି ସଂସାରେ ବିହରି ।
ସେ ପିତୃଦେବଙ୍କ କାରଣ । ହୋଇଲେ ଅନ୍ନ ସ୍ୱରୂପେଣ ।
ସେ ସୋମରୂପୀ ନାରାୟଣ । ଧଇଲେ ପୋଥି ଉଦ୍ଧାରିଣ ।
ତ୍ରିପତି ପାଦେ ମୋ ପ୍ରଣତି । ଯେଣେ ହୋଇବ ମୋର ଗତି
ସେ ଆପରୂପ ଭଗବାନ । ରସ ସ୍ୱରୂପେ ଆସ୍ୱାଦନ ।
ଯେ ପୃଥ୍ୱୀ ରୂପେ ସର୍ବକାୟ । ବିଶ୍ୱ ସଂସାର ଯା'ର ଦେହ ।
ସେ ପ୍ରଭୁ ଚରଣେ ମୋ ମନ । ନିରତେ ରହୁ ଅନୁକ୍ଷଣ ।

ବିରାଟ ରୂପ ଭଗବାନ । ବନ୍ଦଇ ସେ ପ୍ରଭୁ ଚରଣ ॥
ଯାହାର ରୋମ-କୂପ ମୂଳେ । ଅଶେଷ-ବ୍ରହ୍ମାଣ୍ଡ ନିଷ୍କଳେ ॥
ଅଛନ୍ତି ପରମାଣୁ ବଡ଼ । ସେ ପାଦେ ମୋର ପ୍ରତିପାତ ॥
ଯେ ପ୍ରଭୁ ବାୟୁ-ରୂପ ଧରେ । ପ୍ରାଣ-ସ୍ୱରୂପ ସର୍ବଠାରେ ॥
ଯେ ରୂପେ ପାଳନ୍ତି ଜଗତ । ସେ ସହ-ଓଜ-ବଳବନ୍ତ ॥
ସେ ପ୍ରଭୁ ରଖନ୍ତୁ ମୋ ପ୍ରାଣ । ତା ପାଦେ ପଶିଲି ଶରଣ ॥
ଆକାଶ-ରୂପୀ ଭଗବାନ । କରନ୍ତି ଯେ ବିଧିବିଧାନ ॥
ଶବ୍ଦ -ସ୍ୱରୂପେ ଶୂନ୍ୟେ ରହେ । ଯେ ଶବ୍ଦେ ଅର୍ଥ-ବୋଧ ହୁଏ
ଯେ ବାହ୍ୟାନ୍ତରେ ଛନ୍ତି ପୂରି । ସେ ପାଦେ ପ୍ରଣତି ମୋହରି
ସ୍ୱର୍ଗାଦି-ପୁଣ୍ୟଲୋକ ଯେହି । ପ୍ରବୃତ୍ତି -ନିବୃତ୍ତିରେ ରହି ॥
ସେ ସର୍ବ-କର୍ମଫଳ-ଦାତା । ଏ ଭବ ସଙ୍କଟୁ ତାରନ୍ତା ॥
ଅଧର୍ମେ ମୃତ୍ୟୁରୂପ ଧରି । ଦୁଃଖ-ପୀଡ଼ିତ କର୍ମ କରି ॥
ଯେ ଶୁଭକର୍ମେ ମୋକ୍ଷଦାତା । ସେ ହରି ପାଦେ ମୋର ଚିନ୍ତା
ନମସ୍ତେ କୃଷ୍ଣରୂପ ହରି । ପୁରାଣ-ପୁରୁଷ ମୁରାରି ॥
ନମସ୍ତେ ସାଂଖ୍ୟ-ଯୋଗେଶ୍ୱର । ପରମ ଆତ୍ମା ରୂପ ଧର ॥
ଯେ କର୍ମେ ବିଷ୍ଣୁରୂପ ଧରେ । ବ୍ୟାପକବନ୍ତ ଏ ସଂସାରେ ॥
ଯେ ରୁଦ୍ର ରୂପ ଧରିଛନ୍ତି । କାଳାନ୍ତେ ତ୍ରୈଲୋକ୍ୟ ନାଶନ୍ତି
ସେ ରୁଦ୍ରଦେବ ପାଦେ ମୋର । ପ୍ରଣତି ହେଉ ନିରନ୍ତର ॥
ସେ ମୋର ତ୍ରିତାପ ନାଶିବେ । ଅବିଦ୍ୟା- ବନ୍ଧୁ ନିସ୍ତାରିବେ ॥
ଯେ ବ୍ରହ୍ମସ୍ୱରୂପ ଗୋସାଇଁ । ଏ ସୃଷ୍ଟି ସର୍ଜିବାର ପାଇଁ ॥
ଏ ରୂପେ ଯେବା ଭଗବାନ । ସେ ପ୍ରଭୁ ଚରଣେ ଶରଣ ॥
ସେ ଆମ୍ଭ ଭକତି ଘେନିବେ । ଦର୍ଶନେ ଆଶା ପୂରାଇବେ ॥
ଯେ ରୂପ ଭକତେ ପୂଜନ୍ତି । ଇନ୍ଦ୍ରିୟଗୁଣ ପ୍ରକାଶନ୍ତି ॥
ନବରୁଚିର ଘନଶ୍ୟାମ । ପ୍ରତୁଲ୍ୟ ନୋହେ କୋଟିକାମ ॥
ସେ ରୂପ ପ୍ରକାଶେ ଶୋଭନ୍ତି । ଅଶେଷ-ଗୁଣ ସେ ବହନ୍ତି ॥
ଅବ୍ୟୟ ଗୁଣ ଏକ ଯା'ର । କୋଟି-ଅନଙ୍ଗ ଦର୍ପ ହର ॥
ଏ ସର୍ବ ମୋହର ତ୍ରିତାପ । ଦର୍ଶନେ ହରିବେ ସନ୍ତାପ ॥
ଅଜାନୁ ଲମ୍ବିତ ଶ୍ରୀଭୁଜ । ଶଙ୍ଖାଦି ଚାରିଚିହ୍ନ ତେଜ ॥
ନୀଳ ଜୀମୂତ ଦିବ୍ୟକାନ୍ତି । ବଳୟ ମଣି ବିଭାଜନ୍ତି ॥
ସେ କରେ ଆଶ୍ରୟ ଯେ କରି । ସେ ମୋକ୍ଷପଦେ ଅଧିକାରୀ ॥
ଏ ମୃତ୍ୟୁ ଜରା ଭୟ ଯେତେ । ସେ ସର୍ବ ନାଶିବେ ତୁରିତେ ॥
ଅତି ସୁଠାମ ସୁଆନନ । ଅରୁଣ ପଙ୍କଜ ଲୋଚନ ॥
ଆବୃତ୍ତ ଶୋଭା ଚାରି କର । ଭକ୍ତଜନଙ୍କ ତାପ ହର ॥
ଶିରେ ସୁନୀଳ ସୁକୁନ୍ତଳ । ଦେଖି ଅନଙ୍ଗକୋଟି ଭୋଳ ॥

ଚୂଡ଼ା ପ୍ରବନ୍ଧ ଶିଖେ ସାଜେ । ରତ୍ନକିରୀଟ ତେଜ ପୁଞ୍ଜେ ॥
ଦେଖି ଅନଙ୍ଗ ଭ୍ରମ କି ସେ । ଭକତଜନ ରିପୁ ଧ୍ୱଂସେ ॥
ସୁଚାରୁ କପୋଳ ଅଳକା । ଯେହ୍ନେ ଶୋଭିତ ରାହୁରେଖା
ଚାରୁ ସୁନ୍ଦର ସୁକପୋଳ । ଅଳକା ବେଢ଼ି ଭୃଙ୍ଗମେଳ ॥
ଭ୍ରୂଭଙ୍ଗ ଯୁଗଳ ସୁଠାଣି । ଅତନୁ-ଚାପ ପ୍ରଭା ଜିଣି ॥
ଶୋଭନେ ନାହିଁ ପଟାନ୍ତର । ମନ ବଚନେ ଅଗୋଚର ॥
ଦିବ୍ୟ ସୁସଞ୍ଚ ନାସା ଠାଣି । ତିଳ ପ୍ରସୂନ ପ୍ରଭା ଜିଣି ॥
ତା'ପରେ ସିନ୍ଧୁଫଳ ରାଜେ । ଦେଖି ଅନଙ୍ଗ ଦର୍ପ ଗଞ୍ଜେ ॥
ଅରୁଣାଙ୍କିତ ବିମ୍ବାଧର । ଉପମା ନାହିଁ ତିନିପୁର ॥
ନବ-ଅରୁଣ ଜିଣି ଶୋଭା । ଦେଖି ଅନଙ୍ଗ କୋଟି ଲୋଭା
ଶୁଭ୍ର ଦଶନ ବେନି-ପଂକ୍ତି । ଜିତ ଡାଳିମ୍ବ ବୀଜ କାନ୍ତି ॥
ସସ୍ମିତେ ବିମ୍ବାଧର ରାଜେ । ଭକତଜନ ମନ ରଞ୍ଜେ ॥
ତା ତୁଲେ ନାହିଁ ପଟାନ୍ତର । ସେ ଅତି ଶୁଭ୍ର ନିଶାକର ॥
ଶ୍ରୁତି ଯୁଗଳେ ଝଟକନ୍ତି । ମକର କୁଣ୍ଡଳ ସୁକାନ୍ତି ॥
ଈଷିତ ଅପାଙ୍ଗ ଈକ୍ଷଣ । ମୋହିତ ସୁର ମୁନିଗଣ ॥
ନୀଳସୁନ୍ଦର କଳେବର । ତଡ଼ିତ ଜିଣି ପୀତାମ୍ବର ॥
ନୀଳସୁନ୍ଦର ଘନେ ଯେହ୍ନେ । ଝଟକେ ବସନ ତେସନେ ॥
ନୀଳମର୍କତ ଚାରୁ ପ୍ରଭା । ଚାରୁ ଚତ୍ୱାର ଭୁଜ ଆଭା ॥
ନିଜ ଆୟୁଧେ ବିରାଜନ୍ତି । ଅଜ୍ଞାନତମ ବିନାଶନ୍ତି ॥
ସେ ଶଙ୍ଖ ଚକ୍ର ଶୋଭାକର । କୋଟି ଆଦିତ୍ୟ ତେଜହର ॥
ଗଦା କମଳ ଆଦି ଯେତେ । ଶୋଭନ୍ତି ନାନା ତେଜବନ୍ତେ ॥
କିରୀଟ କୁଣ୍ଡଳ ନୂପୁର । କଟୀ-ମେଖଳା ଶୋଭାକର ॥
ଆଜାନୁ ଲମ୍ବେ ବନମାଳ । ଶୋଭେ ଶ୍ରୀବତ୍ସ ବକ୍ଷସ୍ଥଳ ॥
ସେ ରୂପ କେ ପାରିବ ଚିନ୍ତି । ଦେଖି ଅନଙ୍ଗ ଭ୍ରମ ଯାନ୍ତି ॥
ସୁଗ୍ରୀବ କଣ୍ଠ ଯେ ସୁନ୍ଦର । ଶୋଭେ କୌସ୍ତୁଭମଣି ସାର ॥
ଏ ମନ୍ତ ରୂପ ଦେଖାଇବ । ଆମ୍ଭର ତାପ ବିନାଶିବ ॥
ଯେ ହୃଦେ କମଳା ଶୋଭନ । ନୀଳ ପାଷାଣେ ଯେହ୍ନେ ହେମ
ରେଚକ ପୂରକ ଯେ ଶ୍ୱାସେ । କି ଜଳ-ଲହରୀ ସଦୃଶେ ॥
ସୁନୀଳ ରୋମଶ୍ରେଣୀ ଜଳେ । ଦିଶନ୍ତି ଯେସନେ ପ୍ରଚଳେ ॥
ଉଦରେ ତ୍ରିବଳୀ ମଞ୍ଜୁଳ । ଶୋଭିତ ସୁନାଭି ଗଭୀର ॥
ଯେ ଦ୍ୱାରେ ଏ ବିଶ୍ୱ ନିର୍ଗତ । ଫେରି ପ୍ରବେଶେ କି ଆବର୍ତ୍ତ ॥
ସେ ଶ୍ୟାମ-ନିତମ୍ବେ ଦୁକୂଳ । ବିରାଜେ ସୁବର୍ଣ୍ଣ ମେଖଳ ॥
ସୁସମ ଚାରୁ ଅଂଘ୍ରିବର । ଜଘନ ଜାନୁ ଶୋଭାକର ॥
ତରୁ-ଯୁଗଳ ଶୋଭା ଠାଣି । ଉଲଟ-ରମ୍ଭାକୁ ସେ ଜିଣି ॥

ଶ୍ରୀଯୁତ ଚରଣ -କମଳ । ଶୋଭିତ ନଖଶ୍ରେଣୀ କୂଳ ॥
କୋଟି-ଶଶାଙ୍କ ଶୁଭ୍ରକାନ୍ତି । ଜିତ ସୁଶ୍ରେଣୀ ନଖପନ୍ତି ॥
ସରୋଜ-ପାଦଯୁଗ ଯହିଁ । ଦର୍ଶନେ ଭବ-ଭୟ ନାହିଁ ॥
ଏ ସର୍ବେ ମୋହର ତ୍ରିତାପ । ଦର୍ଶନେ ହରିବେ ଦୁରାପ ॥
ଏମନ୍ତ ରୂପ ପ୍ରକାଶିବ । ଆମ୍ଭ ସଂଶୟ ବିନାଶିବ ॥
ତୁ ଗୁରୁ ରୂପେ ନାରାୟଣ । ମୂଢ଼ ଅଜ୍ଞାନୀଙ୍କ କାରଣ ॥
ସକଳ ଭୂତେ ତୁମ୍ଭେ ଥାଇ । ପ୍ରାଣୀଙ୍କି ଜ୍ଞାନଦୀକ୍ଷା ଦେଇ ॥
ସେ ଜ୍ଞାନେ ପ୍ରାଣୀଙ୍କ ନିସ୍ତାର । ଅଜ୍ଞାନୀ ମଜ୍ଜେ ଏ ସଂସାର ॥
ଆତ୍ମାର ସିଦ୍ଧି ଯେ ଇଛନ୍ତି । ତୋ ରୂପ ଦର୍ଶନ ବାଞ୍ଛନ୍ତି ॥
ସେ ନିତ୍ୟେ ସ୍ୱଧର୍ମ ଆଚରେ । ତୁମ୍ଭ ଭକତି ନିଷ୍ପାପରେ ॥
ତୋ ପଦେ ଅଭୟ ଭକତି । ସୁସ୍ଥିରେ ରହେ ତା'ର ମତି ॥
ସକଳ ଦେହେ ତୁ ଦୁର୍ଲଭ । ଭକତେ ହେଉ ତୁ ସୁଲଭ ॥
ଯେ ସୁଖ-ଭୋକ ନିତ୍ୟ କରେ । ସେ କାହିଁ ଦେଖିବ ତୁମ୍ଭରେ ॥
କେବଳ ଆତ୍ମଜ୍ଞାନୀ ଜନ । ତୋତେ ଲଭନ୍ତି ଭଗବାନ ॥
ଏକାନ୍ତ ଭକ୍ତିଯୋଗେ ନର । ଯେ ଭଜେ ତୁମ୍ଭର ପୟର ॥
ସ୍ୱର୍ଗାଦି ନ ବାଞ୍ଛଇ ମନେ । ତୋ' ପାଦପଦ୍ମ ସୁଧାପାନେ ॥
ନିରତେ ଚିତ୍ତେ ଦୃଢ଼େ ଧ୍ୟାୟି । ତରନ୍ତି ଭବ-ଦୁଃଖୁ ସେହି ॥
ଯେ ତୁମ୍ଭ ଚରଣେ ସେବିବ । ସେ କାଳ ଭୟ ବିନାଶିବ ॥
ଭ୍ରୂକୁଟି କୁଟିଳ ପ୍ରକାଶେ । ତକ୍ଷଣେ ସଂସାର ବିନାଶେ ॥
ଯେ କାଳ ଅତି ଭୟଙ୍କର । ତୋର ସେବକେ ସେ କିଙ୍କର
ଏଣୁ ଭକତ ସଙ୍ଗେ ତୋ'ର । କ୍ଷଣେ ନିମିଷେ ଯେଉଁ ନର ॥
ସେ ସଙ୍ଗୁ ଯେବା ସୁଖ ହୋଇ । ସ୍ୱର୍ଗାପବର୍ଗ ସମ ନୋହି ॥
ଏ ମର୍ତ୍ତ୍ୟଭୋଗ ତୁଚ୍ଛ ମଣି । ତୋ ଭକ୍ତ ସଙ୍ଗେ ଯେତେ ପ୍ରାଣୀ
ତୋର ପଙ୍କଜ-ଅଂଘ୍ରି-ରସ । ଯେ ରସେ କଳୁଷ ବିନାଶ ॥
ଯେବା ପିବନ୍ତି ଅନୁଦିନେ । ବ୍ରହ୍ମ ଆନନ୍ଦ ସୁଧାପାନେ ॥
ଯେ ଗଙ୍ଗାସ୍ନାନ ନିତ୍ୟେ କରେ । ଅଶେଷ ପାପୁ ସେ ନିସ୍ତରେ ॥
ତୋର ଭକତ ସଙ୍ଗେ ଯେବେ । ଯେ କ୍ଷଣେ ବସେ ଶୁଦ୍ଧ ଭାବେ
ପବିତ୍ର ହୋଏ ତତକ୍ଷଣେ । ଜନ୍ମ ମରଣ ନିବାରଣେ ॥
ଏ ସାଧୁ-ସଙ୍ଗ ଭାଗ୍ୟେପାଇ । ସକଳ-ଭୂତେ ଦୟାବହି ॥
ସୁସାଧୁଜନଙ୍କ ସଙ୍ଗତ । ଯେ ପ୍ରାଣୀ କରେ ଅବିରତ ॥
ସେ ଯେ ତୁମ୍ଭର କୃପା ପାଇ । ମାୟା ପଟଳୁ ନିସ୍ତରଇ ॥
ଯେ ଶୁଦ୍ଧ ଭକ୍ତିରେ ଭଜନ୍ତି । ବିଶୁଦ୍ଧ ହୋଏ ତା'ଙ୍କ ମତି ॥
ବିଷୟ ଭ୍ରମେ ଭ୍ରମ ନୋହେ । ଅଜ୍ଞାନ ନାଶି ଜ୍ଞାନ ରହେ ॥
ଏଣୁ ଭକତ ସଙ୍ଗ ମେଳେ । ଲଭେ ଭକତି ସୁନିଷ୍ଠଳେ ॥

ଯେ ତତ୍ତ୍ୱେ ଏ ବିଶ୍ୱ ବ୍ୟକତ । ବିଶ୍ୱେ ଶୋଭିତ ଯେଉଁ ତତ୍ତ୍ୱ ॥
ତତ୍ତ୍ୱ ପରମ ବ୍ରହ୍ମଜ୍ୟୋତି । ଆକାଶ ପ୍ରାୟେ ବ୍ୟାପିଛନ୍ତି ॥
ଏ ବିଶ୍ୱ ମିଥ୍ୟା ସତ୍ୟ ପରି । ସର୍ଜି ପାଳିଣ ତା' ସଂହରି ॥
ଯା ମାୟା ବହୁରୂପ ଧରେ । ଜୀବରେ ଭେଦ-ବୁଦ୍ଧି କରେ ॥
ମାୟା ସ୍ପରଶ ଯା'ର ନାହିଁ । ଜାଣିବ ବ୍ରହ୍ମରୂପ ସେହି ॥
ଯେ ଅନ୍ତଃ ବିକାର ବିହୀନ । ସେହିଟି ଜାଣ ତତ୍ତ୍ୱଜ୍ଞାନ ॥
ନିର୍ଗୁଣେ ସଗୁଣ ବୋଲନ୍ତି । କ୍ରିୟା କଳାପେ ଯୋଗୀ ଚିନ୍ତି ॥
ଏହାଙ୍କ ପ୍ରାୟେ ଭଜେ ଯେହୁ । ପଣ୍ଡିତ ବେଦାଗମେ ସେହୁ ॥
ପୁରୁଷ-ଆଦି ତୁମ୍ଭେ ପର । ଅଶେଷ ବ୍ରହ୍ମାଣ୍ଡ ଈଶ୍ୱର ॥
ତୁମ୍ଭର ଶକ୍ତି ଗୁପ୍ତେ ଥିଲା । କାଳାନ୍ତେ ଶୟନୁ ଉଠିଲା ॥
ସେ ଶକ୍ତି ତୋର ଆଜ୍ଞା ଭାବେ । ସତ୍ତ୍ୱାଦି ଭେଦ କଲା ତେବେ ॥
ତହୁଁ ମହତ-ଅହଙ୍କାର । ଜଳାଗ୍ନି-ଆକାଶ-ସମୀର ॥
ଭୂଦେବ-ଋଷି-ସର୍ବଭୂତେ । ଜନ୍ମିଲେ ଏ ନାନା ଜଗତେ ॥
ମାୟାରୁ ଏ ଚାରି ପ୍ରକାର । ଯେ ତତ୍ତ୍ୱେ ସଞ୍ଚରିଲା ପୁର ॥
ନିର୍ମିତ କଲେ ଭଗବାନ । ଯେ ପ୍ରଭୁ ଜଗତ ଜୀବନ ॥
ଅଶେଷ ଶରୀରେ ପ୍ରବେଶ । ଏଣୁ ଜୀବ ନାମ ପୁରୁଷ ॥
ଅବିଦ୍ୟା-ବନ୍ଧେ ବଦ୍ଧ ହୋଇ । ଏ ଦୁଃଖ-ସୁଖ ସେ ଭୁଞ୍ଜଇ ॥
ମାୟାରୁ ସୃଜନ ସେ କଲେ । ନିୟନ୍ତା-ପୁରୁଷ ହୋଇଲେ ॥
ଭୂତରୁ ଭୂତକୁ ନିଅନ୍ତି । ଯେହ୍ନେ ଆକାଶେ ମେଘପନ୍ତି ॥
ପବନେ ନାନା ଦିଗେ ଯାନ୍ତି । ଏ ଭାବେ ଭୂତେ ସଞ୍ଚରନ୍ତି ॥
ଜୀବକୁ କର୍ମବଳେ ଟାଣି । ସଂହାରି ନିସ୍ତାରୁ ତୁ ପୁଣି ॥
ଏ ଜୀବ କର୍ମେ ହୋଇ ମତ୍ତ । ଲୋଭେ ବିଷୟେ ଦେଇ ଚିତ୍ତ
ତୁ ହେଉ ଅପ୍ରମିତ ଅସି । ତକ୍ଷଣେ ଜୀବକୁ ବିନାଶି ॥
କାଳ ସ୍ୱରୂପେ ପ୍ରାଣହର । ଯେ ତୋତେ ନ ଭଜେ ପାମର
ଏମନ୍ତ ପ୍ରଭୁ ତୋ'ର ମାୟା । ଜୀବ ନ ଜାଣି ଭୋଗେ ଏହା
କ୍ଷୁଧା-ଅନଳେ ଓଷ୍ଠ ଅହି । ଚାଟିଣ ମୂଷା ଯେହ୍ନେ ଖାଇ ॥
ତେସନ ଅନ୍ତକ ତୁ ହରି । ଜୀବ ବିନାଶୁ ଭୋଗେ କରି ॥
ତୋ'ମାୟା-ଭୋଗେ ଜୀବ ବଶ । ଏ ଘେନି ତୁ କାଳ ପୁରୁଷ ॥
ଏ ବେନି ତୋ' ପାଦ-କମଳେ । ଶରଣ ରଖ ତୁହି ବେଳେ ॥
ଆମ୍ଭେ ବ୍ରହ୍ମାଦି ଯା' ଚରଣେ । ସେବୁ ଏ ସୃଷ୍ଟିର କାରଣେ ॥
ଉପୃରି ନ ପାରୁ ଯେ କରି । ତୋ' ପାଦ ବିନୁ ନରହରି ॥
ଏଣୁ ଏ ମନୁ ଚତୁର୍ଦ୍ଦଶ । ତୋ'ପାଦେ ଭଜେ ହୃଷୀକେଶ
ଅନେକ ସୃଷ୍ଟିକି ସୃଜନ୍ତି । ଅନ୍ତେ ତୋ' ଶରୀରେ ପଶନ୍ତି
ସେ ଘେନି ତୋ' ପାଦକମଳ । କେ ବୁଧ ଛାଡ଼େ ଆଦିମୂଳ ॥

ଯାବତ ଜୀବ ଏ ଶରୀରେ । ଛାଡ଼ି ନ ପାରନ୍ତି ନିର୍ଭରେ ॥
ତୋ' ପାଦ-ଧ୍ୟାନେ ନିଜ ଦେହୀ । ଯେ ତ୍ୟାଗେ ଅନୁରାଗ ବହି
ତାହାଙ୍କୁ ବୋଲି ସୁପଣ୍ଡିତ । ସେ ପ୍ରାଣୀ ତୁମ୍ଭର ଭକତ ॥
ଏଣୁ ଏ ତୋ ପାଦକମଳେ । ଶରଣ ଇଚ୍ଛୁ ଆମ୍ଭେ ବଳେ ॥
ଏ ବିଶ୍ୱ-ଭୟ ରୁଦ୍ର କୋପେ । ବିନାଶ କରେ କାଳ ରୂପେ ॥
ଏଣୁ ତୁମ୍ଭରେ କରୁ ସ୍ତୁତି । ଭୋନାଥ ହୁଅ ଆମ୍ଭ ଗତି ॥
ଏ ତୁମ୍ଭ ପଙ୍କଜ-ଚରଣ । ଯେ ପ୍ରାଣୀ ପଶନ୍ତି ଶରଣ ॥
ଅଶେଷ ଦ୍ୱନ୍ଦ୍ୱ-ମାୟା-ଭୟେ । ଖଣ୍ଡନ୍ତି ପ୍ରଭୁ ଦେବରାୟେ ॥
ସେ ରୁଦ୍ର କହନ୍ତି କୁମର । ଏ ଗୀତା ଶୁଦ୍ଧ ଚିତ୍ତେ ଧର ॥
ଏ ସ୍ତବ ପଢ଼ନ୍ତେ ତୁମ୍ଭର । ଅଜ୍ଞାନ ତମ ହେବ ଦୂର ॥
ନିତ୍ୟେ ସ୍ୱଧର୍ମ-ମାର୍ଗେ ଥିବ । ସକଳ କୃଷ୍ଣେ ସମର୍ପିବ ॥
ମନ ନିବେଶି ପଦ୍ମପାଦେ । ଭବୁ ତରିବ ଅପ୍ରମାଦେ ॥
ସେ ଆତ୍ମା ସର୍ବ-ଘଟଧାରୀ । ଦୃଶ୍ୟେ ଅଦୃଶ୍ୟେ ଛନ୍ତିପୂରି ॥
ତା'ଙ୍କୁ ଏ ରୂପେ ଧ୍ୟାନ କର । ବଦନେ ତା' ନାମ ଉଚ୍ଚାର ॥
ଶ୍ରବଣ କର ନିରବଧି । ତା'ପାଦେ ଦେଇ ଚିତ୍ତ ବୁଦ୍ଧି ॥
ଏ ଯୋଗ ସର୍ବେ ଚିତ୍ତେ ଧର । ଏ ମୁନିବ୍ରତ ଦୃଢ଼କର ॥
ସମତା ଭାବେଣ ଆରାଧି । ହୃଦରେ ଘୋଷ ନିରବଧି ॥
ଏ ଗୀତା ପୂର୍ବେ ଧାତା ମୋତେ । କହିଲେ ଭୃଗ୍ୱାଦି ସହିତେ ॥
ଏ ସ୍ତବ ପଢ଼ନ୍ତେ ଆମ୍ଭର । ଅଜ୍ଞାନଦଶା ଗଲା ଦୂର ॥
ଅଜ୍ଞାନ ଶେଷେ ଜ୍ଞାନ ଦୃଶ୍ୟ । ସକଳେ ହୋଇଲୁ ହରଷ ॥
ତେବେ ବିବିଧମତେ ଆମ୍ଭେ । ସୃଷ୍ଟି ସର୍ଜିଲୁ କ୍ରିୟା ଦମ୍ଭେ ॥
ଏ ଗୀତା ପଠନ ଶ୍ରବଣେ । ଯେ ଫଳ ହୋଇବ ବିଧାନେ
କହିବା ଶୁଦ୍ଧ-ଚିତ୍ତେ ଶୁଣ । ବେଦ ବେଦାନ୍ତେଯେ ପ୍ରମାଣ ॥
ଏହା ଯେ ନିରତେ ଶୁଣନ୍ତି । ତ୍ରିବିଧ-ତାପ ବିନାଶନ୍ତି ॥
ଯେବା ଆଦରେ ଦୃଢ଼େ ସ୍ମରେ । ସକଳ ଆପଦୁ ଉଦ୍ଧରେ ॥
ଏ ସର୍ବ-ଧର୍ମ ମଧେ ସାର । ଏ ବିନୁ ନାହିଁ ଶ୍ରେୟ ଆର ॥
ହେ ପୁତ୍ରେ ଦୃଢ଼ଚିତ୍ତେ ଧର । ଦୁଃଖସାଗରୁ ହେବ ପାର ॥
ଇହ ଲୋକରେ ସୁଖ ଭାବ । ତୃତୀୟ-ତାପ ନ ଲାଗିବ ॥
ଏ ସ୍ତବେ ପୂଜ ହରିପାଦ । ଖଣ୍ଡିବ ବିଷୟା - ବିଷାଦ ॥
ତୁମ୍ଭର ଭକ୍ତି ଯେ ଘେନିବେ । କାମାଦି-ଶତ୍ରୁ ନିବାରିବେ ॥
କାମନା-ଭୋଗେ ଇଚ୍ଛା ଯା'ର । ସମ୍ପୂର୍ଣ୍ଣେ ଲଭିବ ସେ ନର ॥
ପ୍ରଭାତ ମଧ୍ୟାହ୍ନ ସନ୍ଧ୍ୟାରେ । ଯେବା ପଢ଼ନ୍ତି ନିରନ୍ତରେ ॥
ନିର୍ମଳେ ପ୍ରକାଶଇ ଜ୍ଞାନ । ଅସତ୍ୟ ଦେଖେ ଭୋଗମାନ ॥
ଯେ ଶ୍ରଦ୍ଧାବିଧାନେ ପଢ଼ନ୍ତି । ଅଜ୍ଞାନ-ଭ୍ରମେ ନ ପଡ଼ନ୍ତି ॥

ଅଜ୍ଞାନ ଗୃହବାସ ତା'ର । ସେ ଜନ୍ମ ନୋହେ ପୁନର୍ବାର ॥
ମହେଶ କହିଲେ କର୍ଣ୍ଣରେ । ଆନନ୍ଦେ ଶୁଣି ତା କୁମରେ ॥
ସାଷ୍ଟାଙ୍ଗେ ତାହାଙ୍କ ଚରଣେ । ନମିଲେ ପ୍ରଚେତସ ଗଣେ ॥
କଲ୍ୟାଣ କଲେ ଶୂଳଧର । ସକଳ-ବାଞ୍ଛା ପୂର୍ଣ୍ଣକର ॥
ସେ ଗୁରୁ-ଶିଷ୍ୟଙ୍କ ଚରିତ । ମୈତ୍ରେୟ-ବିଦୁର କଥିତ ॥
କହିଲୁ ତୁମ୍ଭଙ୍କୁ ପ୍ରସନ୍ନେ । ଯେ ଏହା ଶୁଣେ ଶୁଦ୍ଧମନେ ॥
ଏ ଘୋର ସଂସାରୁ ତରନ୍ତି । ମରଣେ ନାହିଁ ତା'ଙ୍କ ଭୀତି ॥
ମୈତ୍ରେୟ-ବିଦୁର ସମ୍ବାଦ । କହିଲୁ ଶୁଣ ଭକ୍ତି ଭେଦ ॥
ଯେ ଏହା ଶ୍ରଦ୍ଧାରେ ଶୁଣନ୍ତି । ଚତୁରବର୍ଗ ଫଳ ପାନ୍ତି ॥
ଭଣଇ ବିପ୍ର ଜଗନ୍ନାଥ । ଚତୁର୍ଥସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ରୁଦ୍ରଗୀତଂ ନାମ ଚତୁର୍ବିଂଶୋଽଧ୍ୟାୟଃ ।*

## ପଞ୍ଚବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ସୁମନେ ହେ ବିଦୁର । ଏମନ୍ତେ ପ୍ରଭୁ ମହେଶ୍ୱର ॥
କୃପା ଯେ କଲେ ସେମାନଙ୍କୁ । କହିଲେ ରୁଦ୍ରଗୀତା ତାଙ୍କୁ ॥
ସେ ସର୍ବେ ହରଷ ହୋଇଲେ । ବିଧାନେ ଶିବଙ୍କୁ ପୂଜିଲେ ॥
ତାହାଙ୍କୁ ଦେଇ ଦିବ୍ୟଜ୍ଞାନ । ଶିବ ହୋଇଲେ ଅନ୍ତର୍ଦ୍ଧାନ ॥
ସେ ଦଶଭାଇ ପ୍ରଚେତସ । ଜ୍ଞାନରେ ହୋଇଲେ ହରଷ ॥
ଭଗବାନଙ୍କ ସ୍ତୋତ୍ର-ଗାନେ । ନିମଗ୍ନ ପ୍ରଚେତସ ମାନେ ॥
ବୁଡ଼ିଣ ସମୁଦ୍ର-ସଲିଳେ । ସେ ଘୋର ତପସ୍ୟା ନିଷ୍ଠଳେ
ଅୟୁତେ-ସମ୍ବତ୍ସର ଶେଷ । ତପ ସାଧିଲେ ଭାଇ ଦଶ ॥
ରହିଲେ ଷଡ-ରିପୁ ମାରି । ମନ-ପବନ ହୃଦେ ଧରି ॥
ନିତ୍ୟେ ପଢ଼ନ୍ତି ରୁଦ୍ରଗୀତା । ତପେ ହୋଇଲେ ଊର୍ଦ୍ଧ୍ୱରେତା
ତଦନ୍ତେ ଶୁଣ ହେ ବିଦୁର । ସେ ଯେ ପ୍ରାଚୀନ ନୃପବର ॥
ରାଜ୍ୟ କରନ୍ତି ଅବିବେକ । ସ୍ୱଭାବେ ଅଜ୍ଞାନୀ କାମୁକ ॥
ହିଂସକ-କର୍ମ ଜାଣି ତା'ର । ମନେ ଚିନ୍ତନ୍ତି ମୁନିବର ॥
ଏ ମହୀପତି ପୃଥୁ ବଂଶ । ଅକର୍ମ-ମାର୍ଗେ ଗଲା ନାଶ ॥
ବିପ୍ର ବଚନେ ଭ୍ରମ ହେଲା । ଅନେକ ପଶୁ ବଧ କଲା ॥
ନିର୍ଦ୍ଦୋଷ-ଜୀବ ଯଜ୍ଞେ ମାରି । ଯେ ତାର ନୁହନ୍ତି ବଇରୀ ॥
ଦୁର୍ଲଭ-ଜନ୍ମ କଲା ନାଶ । କର୍ମେହୋଇଲା ଜ୍ଞାନ ଭ୍ରଂଶ ॥
ଏମନ୍ତ ସ୍ମରି ଦୟା-ଚିତ୍ତ । ସେ ମୁନି ସଦ୍ୱରେ ଆଗତ ॥

ସେ ସର୍ବଘଟେ ଦୟା ପର । ଅଧ୍ୟାତ୍ମ-ବିଦ୍ୟା ଜ୍ଞାନେ ସାର ॥
କରୁଣା କରି ସେ ରାଜାଙ୍କୁ । ଦର୍ଶନ ଦେଲେ ଆସି ତାଙ୍କୁ ॥
ମୁନିଙ୍କି ଦେଖିଣ ରାଜନ । ଉଠିଲା ଆସନ ତେଜିଣ ॥
ସତ୍ୱରେ କରି ନମସ୍କାର । ଆନନ୍ଦେ ପୂଜିଲା ପୟର ॥
ଆସନେ ବସାଇଲା ନେଇ । ପାଦକମଳ ଦେଲା ଧୋଇ ॥
ତା'ର ଭକତି ଭାବେ ତୋଷ । ସେ ମୁନିବର ହେଲେ ବଶ ॥
କହନ୍ତି ତା'ରେ ଦୟାବହି । ଭୋ ରାଜା ତୋର ଜ୍ଞାନ ନାହିଁ
ତୁ କର୍ମମାର୍ଗେ ହେଲୁ ହୀନ । ବିଅର୍ଥେ ଗଲା ତୋର ଦିନ ॥
ନିରତେ କର୍ମେ ନିମଜ୍ଜିଲୁ । ଆତ୍ମାର ହିତ ନ ଜାଣିଲୁ ॥
ଯେ କର୍ମେ ମୋକ୍ଷମାର୍ଗ ହାନି । ତୁ ତାହା ଶ୍ରେୟ ପ୍ରାୟ ମଣି ॥
ଯେ ସଙ୍ଗ-ଦୋଷେ ଜ୍ଞାନ କ୍ଷୟେ। ବୁଝି ତୁ ନ ପାରିଲୁ ରାୟେ ॥
ତୁ ଅତିସ୍ନେହେ ତହିଁ ବଦ୍ଧ । ସେ ସଙ୍ଗ-ଦୋଷ ଧର୍ମବାଧ ॥
ତା ଶୁଣି ଭୟେ ନୃପମଣି । ବଜ୍ର ପଡ଼ିଲା ପ୍ରାୟ ମଣି ॥
ଉଚ୍ଛନ୍ନେ କହଇ ନୃପତି । ଭୋ ମୁନି ମୁଁ ଯେ ମୂଢ଼ମତି ॥
ସ୍ୱକର୍ମ ମାର୍ଗେ ବଦ୍ଧ ହୋଇ । ମୁଁ ମୂଢ଼ଜ୍ଞାନ ନ ଜାଣଇ ॥
ଯେବେ ଅଇଲ ମୋର ହିତେ । ମୋ ଭାଗ୍ୟବଶେ ଦୟା ଚିତ୍ତେ
ଯେବେ ସଦୟ ମୁନିବର । ଯେମନ୍ତେ ଜ୍ଞାନ ହୋଏ ମୋର
ଯେଣେ ନୋହିବି କର୍ମେ ବଦ୍ଧ । ହୋଇବ ମୋକ୍ଷମାର୍ଗେ ସଧ ॥
ଯେଣୁ ତୁମ୍ଭର ଦରଶନ । ହରଇ ବିଷୟ-ବନ୍ଧନ ॥
ଏଘୋର ଜଡ଼ କର୍ମ ମୋର । ସୁଜ୍ଞାନ ଦାନେ ଦୂର କର ॥
ତୁମ୍ଭେ ସଂସାରେ ପ୍ରାଣୀ ହିତେ । ଭ୍ରମଣ କରୁଥାଅ ନିତ୍ୟେ ॥
ଅବ୍ୟକ୍ତ ଗତି ଯେ ତୁମ୍ଭର । ଦେବ ମାନବେ ଅଗୋଚର ॥
ଯେହ୍ନେ ଆଗମ ମୃତ୍ୟୁ ଜନ । ତେସନେ ତୁମ୍ଭ ଦରଶନ ॥
ଏ ଗୃହଦ୍ୱନ୍ଦେ ମୋ' ପୀରତି । ଏ ପୁତ୍ର ଦାରା ମୋହେ ମତି ॥
ଏଣୁ ନୋହିଲା ଜ୍ଞାନେ ସଧ । ରାଜବିଭୂତି ମତେ ଅନ୍ଧ ॥
ଇନ୍ଦ୍ରିୟରସ ଭୋଗ ମୁହିଁ । ନିରତେ ଛାଡ଼ି ନ ପାରଇ ॥
ଯେବେ ସୁଦୟା ତୁମ୍ଭ ଚିତ୍ତେ । ଘୋର ବନ୍ଧନୁ ଫେଡ ମୋତେ
ପ୍ରସନ୍ନେ କହ ମୁନିବର । ମୁଁ ତୁମ୍ଭ ଚରଣେ କିଙ୍କର ॥
ଏମନ୍ତ ତା'ର ବାକ୍ୟ ଶୁଣି । ଅତି ଆନନ୍ଦେ ଦେବମୁନି ॥
କହନ୍ତି ଚିତ୍ତେ ଦୟା ବହି । ଶୁଣ ପ୍ରାଚୀନ ପୁଣ୍ୟଦେହୀ ॥
ତୁ କର୍ମଜ୍ଞାନେ ବିଶାରଦ । ତେଣୁ ହୋଇଲୁ କର୍ମବଦ୍ଧ ॥
ତୁ ଯେ ମମତ୍ୱେମହୀପତି । ଏ ଯଜ୍ଞକର୍ମେ ମୂଢ଼ ମତି ॥
ଯେ ପୂର୍ବ ପୁଣ୍ୟ ତୋର ଥିଲା । ଏ ଯଜ୍ଞେକର୍ମେ ନଷ୍ଟ ଗଲା ॥
ତୁ ବିପ୍ରବାକ୍ୟେ ହେଲୁ ଅନ୍ଧ । ଅନେକ କଲୁ ପଶୁ ବଧ ॥
ଅଦୋଷୀ ଜୀବ ଯଜ୍ଞେ ମାରି । ସେ ତୋ'ର ନୁହନ୍ତି ବଇରୀ ॥
ତୁ ରାଜା ଏତେ ଅବିବେକ । ଦୟା ନ ବସିଲା ତିଳେକ ॥
ଏ ପଶୁଗଣେ କୋପ ବହି । ତୋ ମୃତ୍ୟୁବାଟ ଛନ୍ତି ଚାହିଁ ॥
ସେ ତୋତେ ନିଷ୍ଠେ ବିନାଶିବେ। ତୁ ନୃପ ବୋଲି ନ ଡରିବେ ॥
ତୁ ପୀଡ଼ା ଦେଇଅଛୁ ଯେତେ । ସେ କୋପେ ସୁମରନ୍ତି ନିତ୍ୟେ
ତାହାଙ୍କ ଯାଇ ନାହିଁ କ୍ରୋଧ । ଦୁଃଖ ଦେବାକୁ ତା'ଙ୍କ ସଧ ॥
ତୋତେ ପାଇଲେ ପରଲୋକେ । କାଟି ଭକ୍ଷିବେ ଏକେ ଏକେ ॥
ତାହାଙ୍କ ଶୃଙ୍ଗ ତୀକ୍ଷ୍ଣ ଧାର । ସେ ଲୌହସମାନ କଠୋର ॥
ସେ ଶୃଙ୍ଗେ ତୋତେ ବିନାଶିବେ । ତେବେ ସେ କ୍ରୋଧ ଉପେକ୍ଷିବେ
ଆମ୍ଭେ ଦେଖିଲୁ ସ୍ୱର୍ଗପଥେ । ତୋ ପ୍ରତିଆଶେ ପଶୁଯୂଥେ ॥
ଦଶନେ ଅଧର କାମୋଡ଼ି । କୋପେ ଦିଅନ୍ତି ଘୋର ରଡ଼ି ॥
ଦଶନ ଅତି ବିକରାଳ । କ୍ଷୁରେ ଖୋଳନ୍ତି ଦିବ୍ୟ ସ୍ଥଳ ॥
ସେ ତୋତେ ପାଇଲେ ରାଜନ । କରିବେ ଅବଶ୍ୟ ଭୋଜନ ॥
ତାହାଙ୍କ ମୁଖରେ ରାଜନ । ପଡ଼ି କେ ପାଇବ ଜୀବନ ॥
ଆମ୍ଭେ ଦେଖିଣ ଦୟା ଚିତ୍ତେ । ଶୀଘ୍ରେ ଅଇଲୁ ତୋ'ର ହିତେ
କହିଲୁ ସତ୍ୟ ନିରାଧାର । ଏ ମିଥ୍ୟା ନୋହେ ନୃପବର ॥
ଯେବେ ସଂଶୟ ତୋର ଚିତ୍ତେ । ପ୍ରତ୍ୟକ୍ଷେ ଦେଖାଇବା ତୋତେ
ଏମନ୍ତ କହି ମୁନିବର । ଯୋଗନିଦ୍ରାରେ ତା' ଶରୀର ॥
ହରିଲେ ମନ-ବୁଦ୍ଧିଜ୍ଞାନ । ତକ୍ଷଣେ ନୃପତି ଅଜ୍ଞାନ ॥
ଯେ ଯୋଗନିଦ୍ରାର ସ୍ୱପନେ । ପ୍ରବେଶ ଯମର ଭୁବନେ ॥
ତହିଁ ଦେଖିଲା ନୃପରାଣ । ବେଢ଼ି ସକଳ ପଶୁଗଣ ॥
ଦେଖିଲା ତହିଁ ନୃପଗଣେ । ଦୁଃଖିତ ବିବିଧ କାରଣେ ॥
ଯେ ଯାହା କର୍ମ ଅନୁସାରେ । ପୀଡନ୍ତି ଯେ ଶତ୍ରୁ ଯାହାରେ ॥
ଯେ ଶସ୍ତ୍ରେ ଯାକୁ ଯେବା ମାରି । ସେ ରୂପେ ଶୃଙ୍ଗ ଛନ୍ତି ଧରି ॥
ଗଦା ମୁଦ୍‌ଗର ଅସିବର । କୁନ୍ତ କୁଠାର ଶକ୍ତିଶୂଳ ॥
ଏ ଆଦି ଅସ୍ତ୍ର ଅପ୍ରମିତେ । ପ୍ରକୋପେ ପ୍ରହାରନ୍ତି ନିତ୍ୟେ ॥
ତା ପୂର୍ବ-ଦଣ୍ଡ ଅନୁକ୍ରମେ । ସୁମରି ଦ୍ୟନ୍ତି ଶତ୍ରୁ ଜନେ ॥
କେ ବୃକ୍ଷେ ବାନ୍ଧିଣ ପିଟନ୍ତି । କେ ରୋଷେ ଟୋକି କଟାଡନ୍ତି
ଅଧୋବଦନ ଉର୍ଦ୍ଧ୍ୱେ ପାଦ । ଏ ଆଦି ଅଶେଷ ବିଷାଦ ॥
ନାନା-କଦର୍ଥନେ ପୀଡନ୍ତି । ପ୍ରକୋପ ନୟନେ ଚାହାନ୍ତି ॥
ଅଧର ଚାପି ଦନ୍ତେ ଭିଡ଼ି । କୋପେ କରନ୍ତି ଘୋର ରଡ଼ି ॥
ପଶୁଙ୍କ ଦଣ୍ଡ ଉପତାପେ । ଉଚ୍ଚେଣ ରୋଦନ୍ତି ଅଧୀପେ ॥
ଦୁଃସହ-ଦୁଃଖେ ଭୟେ ଛନ୍ନ । ସ୍ରବିତ ମୂତ୍ରଦ୍ୱାରମାନ ॥
ତା ଦେଖି ପ୍ରାଚୀ ନୃପରାଣ । ଭୟେ ଉସର୍ଗ ପଞ୍ଚପ୍ରାଣ ॥

ଭ୍ରମ ହୋଇଲା ତା'ର ମତି । ପଳାଇ ଗଲଇ ନୃପତି ॥
ତା' ଯାଗେ ବଧ ପଶୁଗଣେ । ତାକୁ ବେଢ଼ିଲେ ତତକ୍ଷଣେ ॥
ନିଜ ଶତ୍ରୁକୁ ପାଇ କୋପେ । ବେଢ଼ି ଭକ୍ଷିଲେ କ୍ଷୁଧା ତାପେ ॥
ବୃକ ସମୂହ ମୃଗେ ଯେହ୍ନେ । ରାଜାକୁ ଭକ୍ଷିଲେ ତେସନେ ॥
ଆବୋରି ଶତେପୁର କରି । ଏକ-ଆରେକ ବଳେ ଧରି ॥
ଦଶନେ ଧରି ଓଟାରନ୍ତି । ଏକ-ଆରକେ ନ ଛାଡ଼ନ୍ତି ॥
ଦୁଃସହ ଦୁଃଖେ ସେ ରାଜନ । ବ୍ୟାକୁଳେ କରଇ ରୋଦନ ॥
ନିର୍ଦ୍ଦୟ-ପଶୁ ଦୁଷ୍ଟପଣେ । ମାଂସ ଭକ୍ଷନ୍ତି ଅନୁକ୍ଷଣେ ॥
ଭକ୍ଷନ୍ତି ଅସ୍ଥି ଶେଷଯାଏ । ଯାବତ କ୍ରୋଧ ଶାନ୍ତି ନୋହେ
ତଦନ୍ତେ ଅନ୍ୟ ପଶୁଗଣେ । ବେଢ଼ି ସେ ଭକ୍ଷନ୍ତି ତକ୍ଷଣେ ॥
ମାୟାରେ ପୁନରପି କାୟେ । ପ୍ରକାଶେ ପୂର୍ବତନୁ ପ୍ରାୟେ ॥
ଦୁଃସହ-ଦୁଃଖେ ସେ ନୃପତି । ଭୟେ ପଳାଇ ଚଉକତି ॥
ତେଣେ ଗୋଡ଼ାନ୍ତି ପଶୁଗଣେ । କୋପେ ଭକ୍ଷନ୍ତି ଅନୁକ୍ଷଣେ ॥
ଏମନ୍ତ ଦୁଃଖ ମହାଘୋରେ । ରୋଦନ କରେ ଉଚ୍ଚସ୍ୱରେ ॥
ତାରେ ରକ୍ଷକ କେହି ନାହିଁ । ଶତ୍ରୁ ସମୂହେ ପୀଡେ ଦେହୀ ॥
ସଭୟେ ଭାଳଇ ରାଜନ । ନିଶ୍ଚେ ନାଶିବେ ମୋ' ଜୀବନ
ଏମନ୍ତ ଭାଳନ୍ତେ ଆକୁଳେ । ମୁନି ଜାଣିଲେ ଯୋଗବଳେ ॥
ଏ ମିଥ୍ୟା-ଭୟେ ନୃପରାଣ । ଅବଶ୍ୟ ଛାଡ଼ିବ ପରାଣ ॥
ଉଚ୍ଛନ୍ନ ଦେଖି ନୃପବର । ହରିଲେ ଯୋଗନିଦ୍ରା ତାର ॥
ତକ୍ଷଣେ ସେ ଜ୍ଞାନ ଲଭିଲା । ବିହ୍ୱଳେ ସତ୍ୱରେ ଉଠିଲା ॥
ମୁନିଙ୍କି କୋଳାଗ୍ରତ କରି । ସେ ମିଥ୍ୟା ନୃପଭୟେ ଡରି ॥
ଭୟେ ନ ଛାଡ଼େ ନୃପବର । ଭୋ ମୁନି ମୋତେ ରକ୍ଷା କର
ଏ ଦୁଷ୍ଟ-ପଶୁ ଭୟଙ୍କର । ନିଶ୍ଚେ ଭକ୍ଷିବେ ମୋ' ଶରୀର
ଏମନ୍ତ କହି ଯେ ରାଜନ । ଉଚ୍ଛନ୍ନେ କରଇ ରୋଦନ ॥
ମତି ବିଭ୍ରମ ଦେଖି ତା'ର । ପ୍ରବୋଧ କଲେ ମୁନିବର ॥
ଏ ମିଥ୍ୟା ଭୟେ ତୁ ରାଜନ । ବିଅର୍ଥେ ହେଉଛୁ ଉଚ୍ଛନ୍ନ ॥
ଏବେ ପ୍ରତ୍ୟକ୍ଷେ ଦେଖ ରାୟେ । ନୟନ ଫେଡ଼ି ତୁ ନିର୍ଭୟେ ॥
ଏ ଘୋର ଭୟ ପୀଡ଼ା ତୋତେ । ଅଜ୍ଞାନେ ଦେଲେ ଶତ୍ରୁଯୂଥେ ॥
ଦେଖ ପ୍ରତ୍ୟକ୍ଷେ ନୃପରାଣ । ତୋ ଭୟଙ୍କର ଶତ୍ରୁଗଣ ॥
ଅଦୃଶ୍ୟ ହେଲେ ଆମ୍ଭ ଡରେ । ତୋ ଅନ୍ତେ ପୀଡିବେ ସେଠାରେ
ତୁ ତାଙ୍କୁ ଦୁଃଖ ଦେଲୁ ଯେତେ । ଅବଶ୍ୟ ପୀଡ଼ିବେ ସେ ତୋତେ
ଶୁଣି ସଂଭ୍ରମେ ନୃପରାଣ । ବୋଲେ ମୁନିଙ୍କି ରଖ ପ୍ରାଣ ॥
ପଶୁଙ୍କ କଷଣୁ କେମନ୍ତେ । ତରିବି କହ ମୁନି ମୋତେ ॥
ତୁମ୍ଭେ ସର୍ବଜ୍ଞ ସର୍ବଜାଣ । କହିବା ଏଥିର କାରଣ ॥

ଏମନ୍ତ ଶୁଣି ମହାଋଷି । ରାଜା ବିଭ୍ରମେ ମନ୍ଦେ ହସି ॥
ଶୁଣି ସୁମନେ ନୃପବର । କହିବା ଏଥିର ବିଚାର ॥
ଏବେ ତୁ ଛାଡ଼ ସୁତ-ବିତ୍ତ । ଦାରା-ବନ୍ଧୁରେ ସ୍ନେହଚିତ୍ତ ॥
ଅଷ୍ଟ ଐଶ୍ୱର୍ଯ୍ୟ ଭୋଗ ଯେତେ । ଏ ରାଜ ବିଭୂତି ସହିତେ ॥
ଏ ସର୍ବ ତେଜି କୃଷ୍ଣପାଦେ । ଏକାନ୍ତେ ଭଜ ଅପ୍ରମାଦେ ॥
ତେବେ ଏ ହତ୍ୟା ଦୁଃଖ ଘୋର । ବେଗେ ଛାଡ଼ିବ ନୃପବର ॥
ଏ ବିନେ ତୋର ଅନ୍ୟ ଗତି । ଅପରେ ନ ଦେଖି ନୃପତି ॥
ତା' ଶୁଣି ବୋଲଇ ରାଜନ । ଭୋ ମୁନି ମୁଁ ମୂଖ ଅଜ୍ଞାନ ॥
ଏ ପୁତ୍ର ଦାରା ସ୍ନେହ ଅତି । ଇନ୍ଦ୍ରିୟ ଭୋଗ ରସେ ମାତି ॥
ଏ ଆଦି ଗୃହବସ୍ତୁ ଯେତେ । ମୁଁ ଛାଡ଼ି ପାରିବି କେମନ୍ତେ ॥
ଉପାୟ ଥିଲେ ମୁନିବର । ଏ ମାୟାବନ୍ଧ ପରିହର ॥
ତା ବାକ୍ୟେ ହସି ମୁନି ତୋଷ । କହିବା ତୋତେ ଇତିହାସ ॥
ଶ୍ରବଣେ ହେବ ତୋର ଜ୍ଞାନ । ସେ ପୁରଞ୍ଜନର ଆଖ୍ୟାନ ॥
ଏ ଘୋରଭୟ ସ୍ନେହ ତୋର । ଶ୍ରବଣେ ବେଗେ ହେବ ଦୂର ॥
ସେ ପୁରଞ୍ଜନ ଏକ ରାଜା । ପୂର୍ବେ ସେ ଥିଲା ମହାତେଜା ॥
ବିଜ୍ଞାତ ନାମେ ସଖା ତା'ର । ଜ୍ଞାନ-ଚେଷ୍ଟାରେ ସେହୁ ଧୀର ॥
ସେ ନିଜ-ସଖା ପରିହରି । ଇନ୍ଦ୍ରିୟଭୋଗ ଇଚ୍ଛା କରି ॥
ନିରତେ ଭାବେ ଅନୁଦିନ । ଇନ୍ଦ୍ରିୟ ବଶେ ହୋଇ ଛନ୍ନ ॥
ସେ ରାଜା ପୃଥିବୀ ଭ୍ରମଇ । ଉତ୍ତମ-ସ୍ଥାନ ସେ ଇଚ୍ଛଇ ॥
ନ ପାଇ ନିଜ ରୂପେ ସ୍ଥିତି । ବିଷାଦମନ ସେ ନୃପତି ॥
ଯାବତ-ପୁର ମହୀତଳେ । ସେ ରାଜା ଦେଖଇ ନିରୋଳେ
ତା ନିଜ କାମ ପୂର୍ଣ୍ଣ ପାଇଁ । ସେ ରାଜା ସନ୍ତତେ ଭ୍ରମଇ ॥
ଏମନ୍ତେ ଏକାନ୍ତେ ଭ୍ରମନ୍ତେ । ଗଲା ସେ ହିମାଳୟ ପଥେ ॥
ସେ ଗିରି ଦକ୍ଷିଣ ଭାଗରେ । ପ୍ରବେଶ ହୋଇଲା ସଧୀରେ ॥
ସୁବିଦ୍ୟପୁର ତହିଁ ଥିଲା । ସେ ରାଜା ସନ୍ତୋଷେ ଦେଖିଲା
ନାନା ଲକ୍ଷଣେ ବିରାଜଇ । ସେ ନବଦ୍ୱାରେ ଶୋଭାପାଇ ॥
ସେ ପୁରେ ପାଚେରି ଶୋଭନ । ତା ଚଉପାଶେ ଉପବନ ॥
ଗୃହାଦି ଅଟ୍ଟାଳୀ ଶୋଭନ୍ତି । ପରିଖା ତ୍ରୋଣ ବିରାଜନ୍ତି ॥
ହେମ-ରଜତ-ଲୌହ-ଶୃଙ୍ଗ । ବିଚିତ୍ର-ବର୍ଣ୍ଣେ ନାନାରଙ୍ଗ ॥
ରତ୍ନ ସମୂହେ ବିରାଜନ୍ତି । ଶୁଭ୍ର-ସୁନ୍ଦର ପୁର କାନ୍ତି ॥
ନୀଳାଦି ସ୍ଫଟିକ ପୋଏଳା । ମୋତି ମର୍କତ ଆଦି ଶିଳା ॥
ନିର୍ମିତ ହେମମୟ ସ୍ଥଳୀ । କାନ୍ତି ସମୂହେ ଅତି ଝଳି ॥
ସେ ପୁର ଦେଖିଣ ନୃପତି । କିଏ ଦ୍ୱିତୀୟ ଭୋଗବତୀ ॥
ସଭା ଚତ୍ୱର ରାଜ ବାଟ । ପଶା-ଖେଳନ ସ୍ଥାନ ହାଟ ॥

ବିଶ୍ରାମ-ସ୍ଥାନ ପ୍ରାଣୀଙ୍କର । ଏ ଆଦି ଅଛି ଯେ ମନ୍ଦିର ॥
ପତାକା ଶୋହେ ନାନାବିଧି । ଶୁଦ୍ଧ ସୁବର୍ଣ୍ଣେ ଶୋହେ ବେଦି
ଯେ ପୁର ବାହ୍ୟେ ଉପବନ । ଶୋଭିତ ନାନା ଦ୍ରୁମମାନ ॥
ପୁଷ୍ପିତ-ସରୋବର ଶୋହି । ବିହଙ୍ଗ କୁଳ କୂଳେ ଯହି ॥
ହିମ-ନିର୍ଝର-ବିନ୍ଦୁଯୋଗେ । କୁସୁମାକର-ବାୟୁ ବେଗେ ॥
ପ୍ରଚଳେ ଦଳ ବିଟପୀରେ । ସରସୀତଟ ସମ୍ପଦରେ ॥
ନାନାବର୍ଣ୍ଣର ମୃଗମାନେ । ବିହରୁଛନ୍ତି ଉପବନେ ॥
ଯହିଁ କୋକିଳ କୁଜୁଛନ୍ତି । କିବା ସେ ପାନ୍ଥକୁ ଲୋଡନ୍ତି ॥
ଏମନ୍ତେ ନାନା ଜୀବ କୂଳେ । କ୍ରୀଡନ୍ତି କାମମତ୍ତ ଭୋଳେ ॥
ସେ ଦିବ୍ୟବନେ ହେ ରାଜନ । କହିବା ଅପର ବିଧାନ ॥
କାମିନୀରତ୍ନ ସେହୁ ବନେ । ଆସି ଯେ ଥିଲା ସ୍ୱଚ୍ଛ ମନେ ॥
ରମଣିରତ୍ନ ସେହୁ ବାଳା । ତାହାକୁ ନୃପତି ଦେଖିଲା ॥
ସଙ୍ଗେ ତା ଦଶ ପରିବାରୀ । ଘେନିଣ ଆସିଛି ସୁନ୍ଦରୀ ॥
ଭୃତ୍ୟମାନଙ୍କେ ଏକେ ଏକେ । ସଙ୍ଗତେ ଶତ ସ୍ୱନାୟିକେ ॥
ପଞ୍ଚମସ୍ତକ ଏକ ଅହି । ସେ ନାରୀ ଦ୍ୱାରପାଳ ସେହି ॥
ସେ କାମରୂପୀ ଦିବ୍ୟନାରୀ । ବିବାହ ନୋହିଛି ତାହାରି ॥
ତହୁଁ ସେ ସ୍ୱାମୀଙ୍କି ସଙ୍ଖୋଳେ । ତା ଯୋଗ୍ୟ ବର ହିଁ ନ ମିଳେ
ଲାବଣ୍ୟ-ସମୂହେ ତରୁଣୀ । କେ ତା ନିର୍ମାଣିଲା ନ ଜାଣି ॥
ସୁସଞ୍ଜ -ନାସା ଦନ୍ତପନ୍ତି । ଯେହ୍ନେ ସୁନ୍ଦର ଗଜମୋତି ॥
ଅରୁଣ-ବିମ୍ବାଧାର ରାଜେ । ପକ୍ୱ-ଡାଳିମ୍ବ-ବୀଜ ଗଞ୍ଜେ ॥
ଅରୁଣ-ପଙ୍କଜ ଲୋଚନ । ସୁଧାଂଶୁ-ଆନନ ଶୋଭନ ॥
ସୁଚାରୁ ଭ୍ରୂଭଙ୍ଗ ସୁନ୍ଦର । ଅତନୁଚାପ ପଟାନ୍ତର ॥
ଦଗ୍ଧ ହାଟକ ସୁକପୋଳ । ଅଳକାବୃତ୍ତ ଭୃଙ୍ଗମାଳ ॥
ତା ପ୍ରତିଲକ୍ଷଣେ ଶୋଭନ । ନ ଦେଖି ଏ ତିନି ଭୁବନ ॥
ଶ୍ରବଣେ କୁଣ୍ଡଳ ଝଲକେ । ତୁଳନା ନାହିଁ ତିନିଲୋକେ ॥
କନକମେଖଳା ନିତମ୍ବୀ । ଚାରୁ ସୁସଞ୍ଚ ତାର ନାଭି ॥
ଗମଇ ମତ୍ତଗଜ ଠାଣି । ଚରଣେ ନୂପୁର ବାଜେଣି ॥
କର୍ଣ୍ଣାଭିରାମ ସୁମଧୁର । ଶ୍ରବଣେ କାମଦର୍ପହର ॥
ରତ୍ନସମୂହେ ଝଟକନ୍ତି । ପଥେ କି ଦେବତା ଗମନ୍ତି ॥
ସେ ନବଯୌବନ-ଶୋଭିନୀ । ସମ ବର୍ତ୍ତୁଳ ପୀନସ୍ତନୀ ॥
ତା ବସ୍ତ୍ର ଅଞ୍ଚଳେ ଢାଙ୍କନ୍ତି । ଯେହ୍ନେ ବିଦ୍ୟୁତେ ଗଜମୋତି
ଅପାଙ୍ଗ-ଲଙ୍ଘିତ ବିଶିଖ । ଭ୍ରୂରୁ କମାଣେ ସନ୍ଧି ଲାଖ ॥
ରାଜାକୁ ସତ୍ୱରେ ବିନ୍ଧିଲା । ତକ୍ଷଣେ ନୃପ ମୋହ ହେଲା ॥
ସେ ବୀର ଲଜ୍ଜା ପାଇ ମନେ । ନାରୀକି ପଚାରେ ଅଙ୍କନେ ॥

ଭୋ ସଖୀ ନାମ ଗୋତ୍ର ତୋର । କହ କିମର୍ଥେ ବନଘୋର ॥
ଭ୍ରମଣ କରୁଛୁ ସୁନ୍ଦରୀ । ସୁର-ମୁନୀନ୍ଦ୍ର ମନୋହାରୀ ॥
ଏ ଦିବ୍ୟପୁର-ଉପବନେ । କହ କି ଅଛି ତୋର ମନେ ॥
କି କାମ ମୃଗ ବିଦାରଣେ । ବିହାର କରୁ ଏ କାରଣେ ॥
ମୋ କାମ-ଶତ୍ରୁ ବିନାଶନେ । ସଦନ ତେଜି ଏ ବିପିନେ ॥
ମୁଁ ନିଶ୍ଚେ ଜାଣିଲଇ ଚିତ୍ତେ । ସ୍ୱଗୁଣ ଘେନି ମୋର ହିତେ ॥
ଏ ପୁରେ କରୁ ତୁ ବିହାର । ମୁଁ ଯେ ତୋହର ପରିଚାର ॥
ଭୋ ସଖୀ ଏ ତୋ ସଖୀଜନ । କହ କାହାର କିସ ନାମ ॥
ଏ ଦେଶ ଏକୁ ଏକ ଶୋଭା । ଏ ତୁମ୍ଭ କି କରନ୍ତି ସେବା ॥
ଏ ସର୍ପ କେ ତୁମ୍ଭ ଛାମୁର । ପଞ୍ଚମସ୍ତକ କିପାଁ ତା'ର ॥
ଏହାଙ୍କ ନାମ-କର୍ମ ଯେତେ । ଭୋ ସଖୀ କହ ମୋ ଅଗ୍ରତେ ॥
ତୁମ୍ଭେ କି ଲଜ୍ଜାରୂପ ଧରି । ଧର୍ମ ପତିକି ଅନୁସରି ॥
କି ଅବା ତୁମ୍ଭେ ଗୋ ଭବାନୀ । ସଙ୍ଖୋଳୁ ଅଛ ଶୂଳପାଣି ॥
କି ଅବା ତୁମ୍ଭେ ପଦ୍ମାଳୟା । ଲୋଡୁଛ କୃଷ୍ଣ-ପଦଛାୟା ॥
ତୁମ୍ଭେ କି ଅଟ ଅରୁନ୍ଧତୀ । ବାଞ୍ଛା କି କର ନିଜପତି ॥
ଭୋ ସଖୀ ତୋର ରୂପ-ପ୍ରଭା । ଦେଖି ଟଳିବେ ସୁରଦେବା ॥
କାମୀଜନଙ୍କ ପୂର୍ଣ୍ଣ କାମ । ବାଞ୍ଛାକୁ ଅଟୁ କଳ୍ପଦ୍ରୁମ ॥
ଅଶେଷ ସୁଖ ସେ ଲଭନ୍ତି । କାମାଦି ଶତ୍ରୁ ବିନାଶନ୍ତି ॥
ମୁନିମୋହିନୀ ରୂପ ଧରି । ଏକାନ୍ତେ ଭ୍ରମୁ ତୁ କିଶୋରୀ ॥
ତୋ ଗୁଣ କୀର୍ତ୍ତିପ୍ରଭା ଚାହିଁ । ଦେବତା ପ୍ରାୟେ ମୁଁ ମଣଇଁ ॥
ଭୂମିରେ ନ ଚାଲେ ଦେବତା । ଏଣୁ ମୋ' ମନେ ଗରୁ ଚିନ୍ତା
ତୋ ଗୁଣ ବର୍ଣ୍ଣିବଇଁ କେତେ । ତୋ ସମ ନାହିଁ ଏ ଜଗତେ ॥
ଏବେ ନିଶ୍ଚୟେ ମୋତେ ଘେନି । ଏ ପୁରେ ବିହର କାମିନୀ ॥
ତୋହର ଲଜ୍ଜା ଭାବ ସ୍ମୃତି । ଏ କାମୀଜନଙ୍କୁ ପୀଡ଼ିତ ॥
ଅନଙ୍ଗ ଶର ବାଧେ ମୋତେ । ମୁଁ ପେଡ଼ି କହିଲିଇଁ ତୋତେ ॥
ତୋ ମୁଖ ଅପାଙ୍ଗ-ଲକ୍ଷଣେ । ସ୍ଖଳିତ ଏ ମୋର ଚରଣେ ॥
ତୁ ଅନୁଗ୍ରହ ମୋତେ କର । ଏ କାମାନଳ ପରିହର ॥
ସେ ତାପେ ଦହି ମୁଁ ହେଉଛି । ତୁ ଶାନ୍ତି କର ଗୋ ମୃଗାକ୍ଷି ॥
ସଖୀ ତୋ ରୁଚିର ଆନନ । ଶୁଭ୍ର ସୁନ୍ଦର ସୁଲୋଚନ ॥
ଅଳକ କପୋଳେ ଝଲକେ । ଟେକିଣ ନ ଚାହୁଁ ତୁ କିକେ ॥
କହ ତୁ ମଧୁର ବଚନ । ନିଶ୍ଚେ ମୋ ଗଲାଟି ଜୀବନ ॥
ତୁ ଲଜ୍ଜାଭାରେ ନ ଚାହୁଁଛୁ । ଭୋ ସଖୀ ପ୍ରାଣେ ତୁ ମାରୁଛୁ ॥
ତୁ ହସି ସୁମଧୁର ଭାଷ । ମୁଁ ନିଶ୍ଚେ ହେବି ତୋର ଦାସ ॥
ଅନେକ ବିନୟ ବଚନ । ସେ ନାରୀବଶେ ପୁରଞ୍ଜନ ॥

## ନାରଦ ଉବାଚ

ହେ ନୃପ ତୋର ପ୍ରାୟ ସେହି । ସ୍ତିରୀରେ ବଶ କଲା ଦେହୀ ॥
ପ୍ରଭୁତ୍ୱ ପଣ ସେ ତେଜିଲା । ତା ବଶେ ଜ୍ଞାନ ପାସୋରିଲା ॥
ସ୍ତିରୀରେ ବଶ ଯେଉଁ ପ୍ରାଣୀ । ତାହାକୁ ମନୁଷ୍ୟେ ନ ଗଣି ॥
ଯେ ଅଶ୍ୱ ବିଡ଼ାଳ ଗର୍ଦ୍ଦଭ । ତା'ଙ୍କ ସମାନେ ସେହୁ ଜୀବ
ପଣ୍ଡିତ ବୋଲି ତା ନ ଗଣି । ସ୍ତିରୀରେ ବଶ ଯେଉଁ ପ୍ରାଣୀ ॥
ଭୋ ନୃପ ମନେ ତୁ ବିଚାର । କାହିଁ ପଣ୍ଡିତ ଜ୍ଞାନ ତାର ॥
ଏମନ୍ତ ସେ ଯେ ପୁରଞ୍ଜନ । ବୋଧିଲା ଚାଟୁବାକ୍ୟେ ମନ ॥
ସନ୍ତୋଷ ଲଭିଲା ତରୁଣୀ । ତା'ର କାର୍ପଣ୍ୟ ବାକ୍ୟ ଶୁଣି ॥
ସେ ନାରୀ ବୁଝିଲା ମନର । ଏ କାମେ ହୋଇଛି ଅସ୍ଥିର ॥
ନୃପକୁ ଆତୁରହରା ଦେଖି । ଅଳପ ହସିଲା ସୁମୁଖୀ ॥
କହେ ଲଳିତ ସୁବଚନ । ଶୁଣ ହେ ବୀର ପୁରଞ୍ଜନ ॥
ଆମ୍ଭର ଭର୍ତ୍ତା କେହି ନାହିଁ । ବିହରୁଁ ଏ ପୁରରେ ରହି ॥
ସୁନାମ ଗୋତ୍ର ତା ନ ଜାଣି । ଏ ତନୁ କେ ଅଛି ନିର୍ମାଣି ॥
ଏତେକ ଜାଣୁ ଆମ୍ଭେମାନେ । ସକଳେ ଅଛୁ ଏ ଭୁବନେ ॥
ଅପରେ ନ ଜାଣୁ ନା କିଛି । ଏ ପୁରେ କେ ମୋତେ ରଖିଛି
ଦେଖ ଏ ଯେତେ ପରିଜନ । ଏ ମୋର ନୁହନ୍ତି ଅଭିନ୍ନ ॥
ଏହାଙ୍କ ନାମ-କର୍ମ-ଗୁଣ । ପୁଚ୍ଛିଲ ଶୁଣ ନୃପରାଣ ॥
ମୁଁ ଯେବେ ନିଦ୍ରାଗତ ହୋଇ । ଏ ସର୍ପ ପୁର ଜଗିଥାଇ ॥
ଏ ଆମ୍ଭ ପାଳକ ପୁରର । ସକଳ-କାର୍ଯ୍ୟେରେ ତତ୍ପର ॥
କରନ୍ତି ଆମ୍ଭ ଅନୁମତେ । ଯେ ଭୋଗବାଞ୍ଛା ଯାର ଚିତ୍ତେ
ଯେ ଶୁଭାଶୁଭ ଫଳ ଦେଇ । ବିଧି-ନିଷେଧ ମାର୍ଗେ ନେଇ ॥
ଏଣୁ ଆତ୍ମିକ ପ୍ରିୟ ମୋର । ଯେଣୁ ଏ ସେବେ ନିରନ୍ତର ॥
ଏହାର ବେନି-ପତ୍ନୀ ନାମ । ପ୍ରବୃତ୍ତି ନିବୃତ୍ତି ରାଜନ ॥
ପ୍ରବୃତ୍ତି ପତ୍ନୀ ନାମ ଯା'ର । ସେ ସେବେ ପ୍ରବୃତ୍ତି ମାର୍ଗର ॥
ନିବୃତ୍ତି ନାମେ ଯେ ଯୁବତୀ । ସେ ଧର୍ମ ମାର୍ଗେ ସେବେ ପତି
ସେ ବେନିନାରୀଙ୍କ କୁମର । କେ ସାଧୁ କେବା ଦୁରାଚାର ॥
ଏ ଯେତେ ପ୍ରବୃତ୍ତି ନନ୍ଦନ । ଯେ କାମ କ୍ରୋଧ ଅଭିମାନ ॥
ଅଜ୍ଞାନ ଲୋଭ ମୋହ ହିଂସା । ବିବାଦ ତର୍କ ମିଥ୍ୟାଭାଷା ॥
ଅପରେ କହିବଇଁ କେତେ । ଏ ଆଦି ପୁତ୍ରେ ଛନ୍ତି ଯେତେ ॥
ଏ ସର୍ବେ ଧର୍ମରେ ବିବାଦୀ । ପିତୃ ସେବନ୍ତି ନିରବଧି ॥
ଅଧର୍ମ-ମାର୍ଗେ ନିରନ୍ତର । ସୁସେବା କରନ୍ତି ପିଅର ॥
ଯେ କାମଭୋଗେ ତୁମ୍ଭ ଇଚ୍ଛା । ସେ ଦେଇ ପୂରାଇବେ ବାଞ୍ଛା ॥
ଏଣୁ ଏ ତୁମ୍ଭ ସଙ୍ଗେ ଥିବେ । ସେବାଦି କର୍ମରେ ତୋଷିବେ ॥
ଏହାଙ୍କୁ କ୍ଷଣେ ନ ଛାଡ଼ିବ । ଆମ୍ଭରେ ଯେବେ ଦୟା ଥିବ ॥
ଏ ଯେତେ ନିବୃତ୍ତି ନନ୍ଦନ । ଦୟା ବିବେକ ଧର୍ମ ଜ୍ଞାନ ॥
କ୍ଷମା ସନ୍ତୋଷ ଧୀର ଶାନ୍ତି । ଏ ଅନୁକ୍ରମେ ଯେତେ ଛନ୍ତି ॥
ଅଧର୍ମ-ମାର୍ଗେ ଏ ଦାରୁଣ । ଇଚ୍ଛନ୍ତି ପିତାର ମରଣ ॥
ଏ ନିଶ୍ଚେ ମାରି ନିଜ ତାତ । ରଖିବେ ପିତାର ପିତାନ୍ତ ॥
ଏଣୁ ଏହାଙ୍କୁ ପ୍ରତେଜିବ । ଭୋଗାଦି ବାଞ୍ଛା ଯେବେ ଥିବ
ଏ ଦୁଷ୍ଟେ ଅଧର୍ମ ନାଶନ୍ତି । ଭୋଗାଦି ସୁଖ ନ ଦେଖନ୍ତି ॥
ଯେ ପିତୃବଧେ ଛିଦ୍ର ବାଞ୍ଛା । ତୁମ୍ଭେ ପାଇବ କାହିଁ ରକ୍ଷା ॥
ତୁମ୍ଭେ ନ ଜାଣ ପୁରଞ୍ଜନ । କେ ସାଧୁ କେ ଅବା ଦୁର୍ଜନ ॥
ଆମ୍ଭର କହିବା ଉଚିତ । ତୁମ୍ଭେ ଯେ ଆମ୍ଭ ନିଜକାନ୍ତ ॥
ସ୍ୱାମୀ କପଟୀ ଯେବା ନାରୀ । ସେ ଟି ଅଜ୍ଞାନୀ ବ୍ୟଭିଚାରୀ ॥
ତୁମ୍ଭେ ଯେ ଭୋଗାଦି ଈଶ୍ୱର । ଇଚ୍ଛା-ସଂଯୋଗେ ଭୋଗ କର ॥
ଏ ସର୍ବେ ଭୋଗ ବିନାଶିବେ । କାମାଦି ବାଞ୍ଛା ଏ ନ ଦେବେ ॥
ଏହାଙ୍କ ସଙ୍ଗତେ ରାଜନ । ପଡ଼ି ହୋଇବ ଭୋଗେ ହୀନ ॥
ଏ ପୁରେ ଭୋଗ-ବାଞ୍ଛା ଯା'ର । ଏ ସଙ୍ଗ ନୁହେଁ ନୃପବର ॥
ତୁମ୍ଭେ ଏ ସଙ୍ଗ ପରିହର । ନିଶ୍ଚିନ୍ତେ ଏ ପୁରେ ବିହର ॥
ଏବେ ଆମ୍ଭର ସଙ୍ଗେ ତୁମ୍ଭେ । ସୁକୃତ କରି ରହ ଦମ୍ଭେ ॥
ଏ ସଙ୍ଗ ସଙ୍ଗତେ ଆମ୍ଭର । ପ୍ରୀତି ନୋହିବ ନୃପବର ॥
ସେ ନାରୀ ବାକ୍ୟେ ନୃପମଣି । ଅଜ୍ଞାନେ ମଜ୍ଜିଲା ନ ଜାଣି ॥
ଅଜ୍ଞାନ-ମାର୍ଗେ ଚିତ୍ତ ଦିଲା । ସ୍ୱ ପର ଭେଦ ବୁଦ୍ଧି କଲା ॥
ତା'ର ସ୍ୱବଶେ ନେଲା ଦିନ । ଅଜ୍ଞାନ ପୁରୁଷ ଯେସନ ॥
ଭୋ ସଖୀ ଯାତବ ଏ ପୁରେ । ଥିବି ତୋ ଆଜ୍ଞା ଅନୁସାରେ ॥
ଶୁଣି ସନ୍ତୋଷେ ସେ ସୁନ୍ଦରୀ । ରାଜାଙ୍କୁ ଘେନିଲା ଆଦରି ॥
ହେ ନୃପ ଶୁଣ ପୁରଞ୍ଜନ । ଏ ମୋର ଯେତେ ପରିଜନ ॥
ସୁସେବା କରିବେ ନିରତେ । ଯେ ଭୋଗବାଞ୍ଛା ତୁମ୍ଭ ଚିତ୍ତେ ॥
ଏ ସର୍ବେ ନିତ୍ୟେ ନିଯୋଜିବେ । ତୁମ୍ଭଙ୍କୁ କ୍ଷଣେ ନ ଛାଡ଼ିବେ ॥
ଯେ କାମ-ଭୋଗେ ଇଚ୍ଛା ମନ । ଏ ନିତ୍ୟେ ଖଟିବେ ରାଜନ ॥
ଭଜିବେ ଯେଝା ନିଜସ୍ଥାନେ । ନିର୍ଭୟ-ଚିତ୍ତେ ତୋଷମନେ ॥
ଏମନ୍ତ ପ୍ରବୋଧ ବଚନ । କହିଣ ତୋଷିଲା ରାଜନ ॥
ତା' ବାକ୍ୟେ ରାଜା ବିମୋହିତ । କନ୍ଦୁକ-ପ୍ରତିମା ଯେମନ୍ତ ॥
ତା'ବଶେ କହେ ଚାଟୁ ବାଣୀ । ଭୋ କାମାନଳ ଉଦ୍ଧାରିଣ ॥
ପ୍ରମଦାକୁଳ ମଧ୍ୟେ ସାର । ତୋ ତୁଲେ ନାହିଁ ପଟାନ୍ତର ॥
ତୋ' ରୂପ ନିର୍ମାଣିଲା ବିହି । ଦେଖି ଅନଙ୍ଗ ଚିତ୍ତ ମୋହି ॥
ତୁ କାମ-ଶତ୍ରୁ ବିନାଶନେ । ଅଇଲୁ ଏ ମର୍ତ୍ତ୍ୟ-ଭୁବନେ ॥

ମୋହର ତୁଳେ କାମୀ ଯେତେ । ନିସ୍ତାର ହେବେ ଏ ଜଗତେ ॥
କାମଯାଚକ ପ୍ରାଣୀଙ୍କର । ତୋ ବିନା ଅନ୍ୟ କାହିଁ ଆର ॥
ଭୋ ସ୍ତିରୀରତ୍ନ ସୀମନ୍ତିନୀ । କେ ତୁମ୍ଭ ପିଅର ଜନନୀ ॥
କହ ତାହାଙ୍କ ନାମ ଗୁଣ । ଶ୍ରବଣେ ମୋର ନିସ୍ତାରଣ ॥
ତା' ବାକ୍ୟ ଶୁଣିଣ ହରଷେ । ସେ ନାରୀ କହେ ମନ୍ଦହାସେ ॥
ଶୁଣ ହେ ଦେବ ପୁରଞ୍ଜନ । କହିବା ପୂର୍ବର ବିଧାନ ॥
ଆମ୍ଭର କେ ବା ତାତମାତ । ନ ଜାଣି ଜନ୍ମର ଚରିତ ॥
ଏ ତୁମ୍ଭ ଆମ୍ଭ ଦେହଧାରୀ । ସଚରାଚର ଆଦି କରି ॥
ଏ ପଞ୍ଚଭୂତ ଦେହ ଯେତେ । କେ ଜାଣି ପାରେ ତା' ତଦନ୍ତେ
ଯେସନେ ତୁମ୍ଭେ ନୃପରାଣ । ନ ଜାଣ ଜନ୍ମାଦି କାରଣ ॥
ଆମ୍ଭର ଏଣେ ନାହିଁ ଜ୍ଞାନ । ବିବେକୀ ବୁଝ ହେ ରାଜନ ॥
ତୁମ୍ଭେ କି ନ ଜାଣ ତୁମ୍ଭଙ୍କୁ । ଏ ଭେଦ ପଚାର ଆମ୍ଭଙ୍କୁ ॥
ଏକଇ ଆତ୍ମା ବେନି ଅଂଶ । ପ୍ରକୃତି ଭେଦେ ବହୁ ଦୃଶ୍ୟ ॥
ଈଶ୍ୱର-ଇଚ୍ଛା ଏ ବିହରେ । ପ୍ରକୃତି ଭେଦେ ସୃଷ୍ଟି କରେ ॥
ଏ ଘେନି କେ ଜାଣେ ତଦନ୍ତ । ଏ ମାୟା-ଜଡ଼େ ବିମୋହିତ ॥
ସ୍ୱନାମ-ଗୋତ୍ରେ କିବା ଫଳ । ମୋ ଭାଗ୍ୟେ ତୁମ୍ଭେ ଯେ ମିଳିଲ ॥
ଆଜ ମୋ ଭାଗ୍ୟ ଅଗୋଚର । ଦେଖିଲି ନୟନେ ମୋହର ॥
ଯାକୁ ଅଷ୍ଟାଙ୍ଗ ଯୋଗଧ୍ୟାନେ । ଯୋଗୀ ଭାବନ୍ତି ଅନୁଦିନେ ॥
ସେ ତୁମ୍ଭେ ମୋ ଭାଗ୍ୟେ ଆଗତ। ଏଣୁ ମଣିଲି ଅଦ୍‌ଭୂତ ॥
ଏ ପୁରେ କରିବା ବିଶ୍ରାମ । ଭୁଞ୍ଜ ସ୍ୱଇଚ୍ଛାସୁଖେ କାମ ॥
ମୁଁ ଆଣି ସର୍ବ ନିଯୋଜିବି । ଏହାଙ୍କ ତୁଲେ ମୁଁ ସେବିବି ॥
ଏ ମୋର ନବମୁଖ-ପୁର । ଏ ପୁରେ ଅଧିଷ୍ଠାନ କର ॥
ମୋ ସଙ୍ଗେକର ରତି ଯୋଗ । ଏ ଶତ ସମ୍ବତ୍ସର ଭୋଗ ॥
ଏ ତୁମ୍ଭ ବିନୁ ଯେବା ଜନ । କେ ରତି କରେ ତା ସଙ୍ଗେଣ
ସେ ଅପଣ୍ଡିତ ହୀନଦେହୀ । ତା ରତି ସୁଖେ ଜ୍ଞାନ ନାହିଁ ॥
ନାହିଁ ତା ପରଲୋକ ଚିନ୍ତା । ନ ଜାଣେ କାଳର ବାରତା ॥
କେବଳ ପଶୁ ତୁଲ୍ୟ ସେହି । ତା' ସଙ୍ଗେ କେବା ବିଳସଇ ॥
ତା ପୁରେ ସର୍ବ କର୍ମ ସାଧି । ଧର୍ମାର୍ଥ-କାମ-ମୋକ୍ଷ ଆଦି ॥
ପୁତ୍ର କଳତ୍ର ସୁଖ ଯଶ । ଏ ପୁରେ ଏ ସର୍ବ ପ୍ରକାଶ ॥
ଯେ ଲୋକ ନିର୍ମଳ ବିଶୋକ । ତା'କୁ ଭାବନ୍ତି ଜ୍ଞାନୀଲୋକ ॥
ସେ ଲୋକ ଏଥି ସୁଖ ପାଇ । ଯେଣୁ ଏ ପୁରୀ ସୁଖମୟୀ ॥
ପିତୃ ଦେବତା ମହାଋଷି । ସୁଖ ଲଭନ୍ତି ଯହିଁ ଆସି ॥
ଏ ଭାବେ ଗୃହସ୍ଥ ଆଶ୍ରମ । ରଖଇ ସର୍ବ ଲୋକ ଧର୍ମ ॥
ଏମନ୍ତ ଦିବ୍ୟପୁରେ ଥାଇ । ଯେ ଭୋଗେ ବାଞ୍ଛା ନ କରଇ

ତାହାକୁ ବୋଲିଟି ଅଜ୍ଞାନ । ବିବେକ ନୋହେ ତା'ର ମନ
ସେ ଅବା ଅଜ୍ଞାନ ଯୁବତୀ । ତୁମ୍ଭର ପ୍ରାୟେ ପାଇ ପତି ॥
ବିହାର ନ କରେ ତା ତୁଲେ । ତା ସ୍ୱାମୀ ଆସି ଯେବେ ମିଳେ
ବିଅର୍ଥ ସେ ନାରୀ ଜୀବନ । ନ କଲା ଭୁଜେ ଆଲିଙ୍ଗନ ॥
ସ୍ୱଇଚ୍ଛା ଆସି ଯେବେ ମିଳେ । ବରଣ ନ କରେ ଯେ ଭଲେ
ଧିକ ସେ ନାରୀର ଜୀବନ । ତା'ଙ୍କ ବିଶ୍ୱାସେ ଧର୍ମ ହୀନ ॥
ଯେ ସୁଖ-ଭୋଗ ନ ଇଚ୍ଛିବ । ସେ ବ୍ୟର୍ଥ-ଜୀବନେ ବଞ୍ଚିବ ॥
ତୁମ୍ଭେ ଯେ ବଡ଼ ଭାଗ୍ୟବନ୍ତ । ଦୀନ-ଉଦ୍ଧାରଣେ ସାମନ୍ତ ॥
ଏବେ ଯେ ତୁମ୍ଭେ ଦୟାକରି । ଅଇଲ ମୋ ଦୁଃଖ ଉଦ୍ଧରି ॥
ଯେବେ ସଦୟ ମୋତେ ହେବ। ଶତେ ବରଷ ଏଥି ଥିବ ॥
ଏମନ୍ତ ଶୁଣି ତା' ବଚନ । ସେ ନାରୀ ବଶେ ପୁରଞ୍ଜନ ॥
ସେ ପୁରେ କଲେକ ବସତି । ଶତେ ବରଷ ରଙ୍ଗେ ମାତି ॥
ଗାୟକମାନେ ଯେ ଗାବନ୍ତି । ସେ ବେନି ବିହାର କରନ୍ତି ॥
ସେ ସଖୀମାନଙ୍କୁ ଘେନିଣ । ସରସୀ ଜଳରେ ପଶିଣ ॥
ନିଦାଘ କାଳେ ସେ କ୍ରୀଡ଼ନ୍ତି । ସେ ପୁର କେବେ ନ ଛାଡ଼ନ୍ତି
ଏବେ ସେପୁର ଦ୍ୱାରମାନ । କହିବା ଯେ ଦିଗେ ଯେବଣ ॥
ଊର୍ଦ୍ଧ୍ୱେ ସପତ-ଦ୍ୱାର ତା'ର । ତା ଅଧୋଭାଗେ ବେନି ଦ୍ୱାର ॥
ଏ ଦ୍ୱାରମାନଙ୍କେ ନୃପତି । ଯେଝା ବିଷୟ ଆସ୍ୱାଦନ୍ତି ॥
ଏ ପୁରେ ଈଶ୍ୱରଟି ସେହି । ତାହାକୁ ନ ଜାଣନ୍ତି କେହି ॥
ଉପର ସପ୍ତଦ୍ୱାର ଶୁଣ । ଯେ ରୂପେ ହୋଇଛି ନିର୍ମାଣ ॥
ଯେ ପୂର୍ବେ ତହିଁ ପଞ୍ଚ ଦ୍ୱାର । ଅଗ୍ରେ କହିବା ନାମ ତା'ର ॥
ଖଦ୍ୟୋତା ଆବିର୍ମୁଖୀ ଦୁଇ । ଯେ ଦ୍ୱାରେ ରୂପ ସମ୍ପାଦଇ ॥
ନଳିନୀ ନାଳିନୀ ଯେ ଦ୍ୱାର । ଏ ପୂର୍ବଭାଗେ ଅଛି ତା'ର ॥
ଏ ଦ୍ୱାରେ ଅବଧୂତ ସଖା । ସୁଗନ୍ଧ ଘେନୁଥାଇ ଏକା ॥
ମୁଖ୍ୟା ନାମେଣ ଏକ ଦ୍ୱାର । ଉଭୟ କର୍ମ ସାଧ୍ୟକର ॥
ବିବିଧ ଆସ୍ୱାଦ ବଚନ । ଏ ଦ୍ୱାରେ ଘେନେ ପୁରଞ୍ଜନ ॥
ରସ ଆସ୍ୱାଦ ବାକ୍ୟ ଦୁଇ । ଏ ବେନି ଦ୍ୱାରେ ସେ ଘେନଇ
ଦେବହୁ ପିତୃହୁ ଯେ ନାମ । ଏ ବେନିଦ୍ୱାର ଦକ୍ଷ ବାମ ॥
ଯେ ଦ୍ୱାର ବିଷୟେ ରାଜନ । ଶବ୍ଦାଦି କରେ ସମ୍ପାଦନ ॥
ଦକ୍ଷିଣ ଉତ୍ତର ପଞ୍ଚାଳ । ରାଜ୍ୟ ପାଳଇ ମହୀପାଳ ॥
ପଶ୍ଚିମେ ଆସୁରୀ ତା' ନାମ । ସେ ବେନିଦ୍ୱାରେ ଯେବା କର୍ମ
ଗ୍ରାମକ ନାମେ ଯେ ବିଷୟ । ଯାହାକୁ ବୋଲିଟି ବ୍ୟବାୟ ॥
ସେ ଦ୍ୱାରେ ପ୍ରଜା ଉତପତ୍ତି । ଦୁର୍ମଦ ସହିତେ ନୃପତି ॥
ନିର୍ଋତି ନାମଟି ଯାହାର । ମଳ ଉତ୍ସର୍ଗେ ସେହୁ ଦ୍ୱାର ॥

ବୈଶସ ବିଷୟକୁ ଯାଇ । ଲୁବ୍‌ଧକ ମନ୍ତ୍ରୀ ସଙ୍ଗେ ଥାଇ ॥
ଏ ପୁରେ ଯେତେକ ଅଛନ୍ତି । ଏ କେହି ଅନ୍ଧ ଯେ ନୁହଁନ୍ତି ॥
ନିର୍ବାକ ପେଶସ୍କୃତ ଦୁଇ । ଏ ଥାଇ ଅନ୍ଧ ରୂପେ ତହିଁ ॥
ଏକଇ ଅନ୍ଧେ ସେ ରାଜନ । କରଇ ଆଦାନ ପ୍ରଦାନ ॥
ଯେ ଆର ଅନ୍ଧ ତା ପଯର । ତହିଁ ଗମଇ ନୃପବର ॥
ସେ ରାଜା ଅନ୍ତପୁରେ ବସେ । ବିଷୁଚୀ ଘେନି ଥାଇ ପାଶେ ॥
ବିଷୁଚୀ ନାମେ ଯେହୁ ଏକ । ତାହାର ସର୍ବଦିଗେ ମୁଖ ॥
ନତ୍ୟେ ସେ ରାଜା ସଙ୍ଗେ ଥାଇ । ଯେଣେ ପେଷଇ ତେଣେ ଯାଇ
ସେ କ୍ଷଣେ ନ ଛାଡ଼ଇ ତା'କୁ । ଅନାଇ ଥାଇ ତ ଆଜ୍ଞାକୁ ॥
ଏ ରୂପେ ରାଜା ପୁରଞ୍ଜନ । ସେ ପୁରେ ଥାଇ ଅନୁକ୍ଷଣ ॥
ତହିଁ ସେ ମୋଦ ପାଉଥାଇ । ବିରସ କେବେ ନ ଭଜଇ ॥
କ୍ଷଣକେ ହୋଇ ହତଜ୍ଞାନ । କ୍ଷଣକେ ଲଭଇ ଚେତନ ॥
ସେ କାମସୁଖେ ଦେଇ ଚିତ୍ତ । ଏଣୁ ହୋଇଲା ଜ୍ଞାନହତ ॥
ତା' ପତ୍ନୀ ଯେଣେ ପ୍ରବର୍ତ୍ତଇ । ସେ ମାର୍ଗେ ରାଜନ ଗମଇ ॥
ସେ ମଦ୍ୟପାନ ଯେବେ କରେ । ରାଜା ପିବଇ ସ୍ନେହ ଭରେ ॥
ଯେବେ ସେ କରଇ ଭୋଜନ । ତା' ପ୍ରାୟେ ଭକ୍ଷଇ ରାଜନ ॥
ସେ ଯେବେ ଆନନ୍ଦ ଭଜଇ । ତା' ଲାଗି ରାଜା ମୋଦ ହୋଇ
ସେ ଯେବେ କରଇ ରୋଦନ । ତା' ପଛେ ବିଳପେ ରାଜନ ॥
ସେ ଗୀତ ଗାବନ୍ତେ ସୁନ୍ଦରୀ । ରାଜନ ଗାଏ ଅନୁସରି ॥
ଆନନ୍ଦେ ହସେ ଯେବେ ରାଣୀ । ତା' ଭାବେ ହସେ ନୃପମଣି ॥
ବଚନ କହନ୍ତେ ରମଣୀ । ସେ ଭାବେ କହେ ନୃପମଣି ॥
ସେ ଯେବେ ବ୍ୟଗ୍ର ଗତେ ଯାଇ। ସେ ଭାବେ ରାଜନ ଗମଇଁ ॥
ତା' ପତ୍ନୀ କରନ୍ତେ ଆସନ । ସେ ଭାବେ ବସଇ ରାଜନ ॥
ଏମନ୍ତେ ସେ ନାରୀ ରାଜାକୁ । ସ୍ୱବଶେ ରଖିଲା ତାହାକୁ ॥
ତା' ବିନା ଆଜ୍ଞାରେ ରାଜନ । ନ କରେ ଅନ୍ୟ କର୍ମମାନ ॥
ତା' ବଶେ ହୋଇଲା ଆୟତ୍ତେ । ରାଜାର ଜନ୍ମ ହେଲା ବ୍ୟର୍ଥ ॥
ସେ କ୍ରୀଡାମୃଗ ଜୀବ ପ୍ରାୟେ । ସ୍ତିରୀବଶରେ ରହେ ରାୟେ ॥
ତୁମ୍ଭେ ଯେସନେ ଭୋ ରାଜନ । ସ୍ତ୍ରୀ ବଶେ ହରାଇ ଜ୍ଞାନ ॥
ସେ ଭାବେ ପୁରଞ୍ଜନ ରାୟେ । ସ୍ତ୍ରୀ ବଶେ ଜ୍ଞାନ କଳା କ୍ଷୟେ॥
ସେ ଭାବେ ସେ ଶେଷ ହୋଇଲା । ସେ ପୁଣ୍ୟମାର୍ଗ ଉପେକ୍ଷିଲା ॥
ତା ଦିନ ଗଲା ପତ୍ନୀ ବଶେ । ଅସତ୍ୟ ମିଥ୍ୟା ଅଭିଳାଷେ ॥
ସେ ପ୍ରାଣୀ ସ୍ତିରୀବଶ ହୋ'ନ୍ତି । ସେ ପୂର୍ବ-ପୁଣ୍ୟ ବିନାଶନ୍ତି ॥
ଇହଲୋକରେ ଅପଯଶ । ଦେହାନ୍ତେ ନରକେ ପ୍ରବେଶ ॥
ସ୍ତିରୀଙ୍କ ସଙ୍ଗ-ଦୋଷେ ରାୟେ । ଧର୍ମାଦି ଜ୍ଞାନମାର୍ଗ କ୍ଷୟେ ॥
ସ୍ତିରୀଙ୍କ ସଙ୍ଗ ଫଳ ଏହି । କିଞ୍ଚିତ ଶ୍ରେୟ ନାହିଁ ଯହିଁ ॥
ଏହା ତୁ ଶୁଦ୍ଧ ଚିତ୍ତେ ଧର । ଏ ସଙ୍ଗ ଦୂରେ ପରିହର ॥
ତୁ ଶାସ୍ତ୍ରମାର୍ଗେ ହେ ରାଜନ । ବିଚାରି କର ଅନୁମାନ ॥
ଏମନ୍ତେ ନାନା ଧର୍ମବାଟେ । ସେ ମୁନି ବୁଝାଏ ଉଚ୍ଚାଟେ ॥
ପ୍ରାଚୀନ ବର୍‌ହିନାରଦ । ଏ ପୁରଞ୍ଜନର ସମ୍ବାଦ ॥
ଏହା ଯେ ଶ୍ରବଣେ ଶୁଣନ୍ତି । ଅଥବା ବଦନେ ଗୁଣନ୍ତି ॥
ଖଣ୍ଡଇ ମାୟା ଦ୍ୱନ୍ଦ୍ୱ ବନ୍ଧ । ଜ୍ଞାନ ବର୍ଦ୍ଧିତ ଆତ୍ମା ଶୁଦ୍ଧ ॥
ଭଣଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ପଞ୍ଚବିଂଶୋଽଧ୍ୟାୟଃ ।*

## ଷଡ୍‌ବିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ପୁଣି ନାରଦ ମହାମୁନି । କହନ୍ତି ହରିଭାବ ଘେନି ॥

### ନାରଦ ଉବାଚ

ଶୁଣ ପ୍ରାଚୀନ ନୃପବର । ସେ ପୁରଞ୍ଜନ ସେ ମନ୍ଦିର ॥
ରହିଲା ସ୍ତିରୀବଶ ଭୋଗେ । ଅଜ୍ଞାନ-ମୋହ-ଅନୁରାଗେ ॥
ସେ ଏକଦିନେ ଦଣ୍ଡଧର । ମୃଗୟା ଅର୍ଥେ ବନଘୋର ॥
ଉଦ୍ୟମ କଲା ସେ ରାଜନ । ସଙ୍ଗେ ଦୁର୍ଜୟ-ଭଟମାନ ॥
ରଥ ଆରୋହୀ ଶୀଘ୍ର ଗତି । ଅରଣ୍ୟେ ପ୍ରବେଶ ନୃପତି ॥
ସେ ପୁରଞ୍ଜନ ଦିବ୍ୟଯାନ । ଅତି ସୁନ୍ଦର ନିରୁପମ ॥
ପଞ୍ଚ ତୁରଙ୍ଗ ରଥ ବହେ । ଗମନ୍ତି ପଞ୍ଚମାର୍ଗେ ହୟେ ॥
ଅଶେଷ ବେଗ ତାହାଙ୍କର । ଗମନେ ନ ପାରେ ସମୀର ॥
ସେ ବେନିଚକ୍ରେ ଶୋଭାବନ । ଏକଇ ଅକ୍ଷେ ନିବନ୍ଧନ ॥
ଧର୍ମ ଅଧର୍ମ ଚକ୍ର ଦୁଇ । ପବନ ଅଶ୍ୱ ରୂପେ ଯହିଁ ॥
ଧ୍ୱଜ ତ୍ରିବର୍ଣ୍ଣ ରୂପେ ସାଜେ । ସେ ରଥ ଉପରେ ବିରାଜେ ॥
ପଞ୍ଚବନ୍ଧନେ ସୁଶୋଭିତ । ଏକ ସାରଥୀ ତେଜବନ୍ତ ॥
ଏକଇ ନୀଡ ଶୋଭାବନ । ସେ ରାଜା ବସିବା ଆସନ ॥
ସେ ବେନି କୁବରେ ଶୋଭିତ । ପଞ୍ଚ ପ୍ରହରଣ ସଂଯୁତ ॥
ସପ୍ତ ଆବରଣ ସଙ୍ଗତି । ଏ ରୂପେ ସେ ରଥେ ଶୋଭନ୍ତି
ସେ ହେମ ଭୂଷଣେ ଶୋଭନ । ସାଞ୍ଜୁଆ ପିନ୍ଧି ସେ ରାଜନ ॥
ବସିଲେ ମନୋଜ୍ଞ ବିମାନେ । ଦେଖି ଶଙ୍କିତ ରିପୁଜନେ ॥
ଅକ୍ଷୟ ତୂଣୀର ବାନ୍ଧିଣ । ଭୂପତି ଅତି ହରଷେଣ ॥

ସେ ଏକାଦଶ ସେନାପତି । ସଙ୍ଗତେ କରିଣ ନୃପତି ॥
ଚଳନ୍ତି ଅତ୍ୟନ୍ତ ହରଷେ । ଦିଗ ବିଦିଗ ଚାହିଁ ତୋଷେ ॥
ପଞ୍ଚମ-ପ୍ରସ୍ଥ ନାମ ଯେହି । ପ୍ରବେଶ ଅରଣ୍ୟରେ ଯାଇ ॥
କରେଣ ଧରି ଶରାସନ । ମୃଗୟା ଛଳେ ସେ ରାଜନ ॥
ଛାଡ଼ି ତା ପ୍ରିୟବତୀ ନାରୀ । ଏକାନ୍ତେ ଗଲା ନ ବିଚାରି ॥
ଆସୁରୀ ବୁଦ୍ଧି ଧରି ରାୟେ । କଠୋର ନିର୍ଦ୍ଦୟ ହୃଦୟେ ॥
ନାହିଁ ତା ଅନୁଗ୍ରହ ଚିତ୍ତେ । ମୃଗୟା ଛଳେ ବିମୋହିତେ ॥
ନିଶିତ-ବାଣ ଶରାସନ । ବଧିଲା ବନ୍ୟ-ପଶୁମାନ ॥
ସେ ରାଜା ହୋଇ ଅପଣ୍ଡିତ । ଲୋଭେ ବଧଇ ମୃଗଯୂଥ ॥
ଯେ ପ୍ରାଣୀ ଜୀବବଧ କରେ । ସେ ପଶୁଯୋନିରେ ବିହରେ ॥
ସେ ନୃପ ଅଜ୍ଞାନ ଅଧମ । ତା'ର ଆୟୁଷ-ବୁଦ୍ଧି ହୀନ ॥
ଅଜ୍ଞାନେ ଯେବା ଜୀବ ମାରେ । ସେ ଜନ ନରକେ ସଞ୍ଚରେ ॥
ଯଜ୍ଞେ କେବଳ ପଶୁ ବଧ । ଅବଶ୍ୟ କରି ହେ ବିବୁଧ ॥
ଯେ ପିତୃଦେବ-ଶ୍ରାଦ୍ଧ ଅର୍ଥେ । ପଶୁ ବଧିବ ବେଦମତେ ॥
ତେବେ ହେଁ ପଶୁ-ବଧ ତା'ର । କେବଳ ଦୁଃଖ ମହାଘୋର ॥
ଯେ ବେଦ କର୍ମ ନ କରନ୍ତି । ସେ ଆତ୍ମାବଧେ ଭାଗୀ ହୋନ୍ତି
ଯେ ବିଧିହୀନେ ବଧ କରେ । ସେ ପ୍ରାଣୀ ସଂସାରୁ ନ ତରେ ।
ଅଜ୍ଞାନେ ଧର୍ମ-ମାର୍ଗ ବୁଡ଼େ । ଯା ଚିତ୍ତ ପଶୁବଧେ ବଢ଼େ ॥
ତାହାର ମୋକ୍ଷ କାହୁଁ ଆଉ । ମନୁଷ୍ୟ ଜନ୍ମ ହୋଏ ଦୂର ॥
ସେ ପଶୁଯୋନିରେ ଭ୍ରମଇଁ । ଯାତନା-କର୍ମ ନ ଛାଡ଼ଇ ॥
ପଶୁର ଦେହେ ରୋମ ଯେବେ । ଜନ୍ମ ଲଭଇ ସେହିମତେ ॥
ଏହା ନ ଜାଣି ନୃପବର । ସେ ପଶୁ ବଧିଲା ଅପାର ॥
ତାହାର ଘୋର ତୀକ୍ଷ୍ଣ-ବାଣ । ପଶୁଏ ଲଭିଲେ ମରଣ ॥
ବରାହ ଗୟଳ ହରିଣ । ଶଶା ମହିଷ ପଶୁଗଣ ॥
ମେଧ୍ୟ ଅମେଧ୍ୟ ପଶୁ ଯେତେ । ଇତ୍ୟାଦି ଜୀବ ଯେ ବନସ୍ତେ ॥
ଏମନ୍ତେ ନାନା ଜୀବ ମାରି । ସେ ଧର୍ମ ପଥ ନ ବିଚାରି ॥
ବନ ଭ୍ରମରେ ନୃପବର । ବହୁତ ଶ୍ରମ ହେଲା ତା'ର ॥
କ୍ଷୋଭିତ କ୍ଷୁଧା ତୃଷାକୁଳେ । ଆତ୍ମା ପୀଡ଼ିତ ଶ୍ରମ ବଳେ ॥
ସତ୍ୱରେ ସଦନେ ପ୍ରବେଶ । ସ୍ନାନାଦି ଭୋଜନ ସୁବେଶ ॥
ସୁଶାନ୍ତି କରାଇ ଶରୀର । ଅତି ଆନନ୍ଦେ ନୃପବର ॥
ସୁଗନ୍ଧ ଦ୍ରବ୍ୟ ପୁଷ୍ପମାଳ । ଭୂଷଣ ହେଲା ମହୀପାଳ ॥
ଖଞ୍ଜଣି ନାନା-ଆଭରଣ । ସ୍ୱକାମ-ଭୋଗେ ନୃପରାଣ ॥
ଇଚ୍ଛଇ ପତ୍ନୀର ସଙ୍ଗତି । ଅନଙ୍ଗ-ପୀଡ଼ାରେ ନୃପତି ॥
ପ୍ରବେଶ ଅନ୍ତପୁରେ ଯାଇ । ପତ୍ନୀ-ବିଷୟ ମନେ ଧ୍ୟାୟି ॥

ସକଳ ପୁରେ ସେ ରାଜନ । ଆପଣା ପତ୍ନୀକି ଖୋଜିଣ ॥
ନ ପାଇ ସେ ନିଜ ଯୁବତୀ । ସଖୀଙ୍କି ରାଇ ପଚାରନ୍ତି ॥
ବିଷାଦେ ପୁଛଇ ରାଜନ । ଶୁଣଗୋ ଏ ମୋର ବଚନ ॥
ମୋ ପ୍ରାଣସଖୀ ଛନ୍ତି କାହିଁ । କହି ସନ୍ତୋଷ କର ଦେହୀ ॥
ସେ ଅର୍ଦ୍ଧଆତ୍ମାଟି ମୋହର । ଅର୍ଦ୍ଧକେ କେ ଧରେ ଶରୀର ॥
ସଦନେ ଅଛନ୍ତି ନା ଭଲେ । ସଖୀଗଣଙ୍କ ସଙ୍ଗ ମେଳେ ॥
ତୁମ୍ଭେ ତାହାଙ୍କ ଅନୁଚର । କହ କୁଶଳ ତାହାଙ୍କର ॥
ଏମନ୍ତ ବିହ୍ୱଳ ରାଜନ । ବାତୁଳେ କହଇ ବଚନ ॥
ସେ ଯେ ମୋହର ପ୍ରାଣସଖୀ । ତା ବିନୁ ନ ବର୍ତ୍ତଇ ଏକା ॥
ଶୁଣ ଗୋ ସଖୀଗଣ ମୋର । ଏ ଗୃହଧର୍ମର ବେଭାର ॥
ପତ୍ନୀ ନ ଥିଲେ ନ ଶୋଭନ୍ତି । ଏ ରାଜସମ୍ପଦ ବିଭୂତି ॥
ସେ ଗୃହେ ନାହିଁ ଯେବେ ମାତା । ସୁପୁତ୍ରବତୀ ପତିବ୍ରତା ॥
ସେ ଗୃହପତି ଜୀବ ହୀନ । ସୁଖେ ତା ନାହିଁ ପ୍ରୟୋଜନ ॥
ଯେସନେ ଚକ୍ରହୀନ ରଥ । ବସିଲେ କାହିଁ ସୁଖ ଜାତ ॥
ତେସନେ ଗୃହିଣୀ ବିହୀନେ । ଗୃହସ୍ଥ ନ ଶୋହେ ସଦନେ ॥
ଆତ୍ମା ବିହୁନେ ଯେହ୍ନେ ଦେହୀ । ତା ଗୃହ ତେହ୍ନେ ନ ଶୋଭଇ
କହ ମୋ କାହିଁ ସୁଲକ୍ଷଣୀ । ସେ ମୋର ପ୍ରାଣ ଉଦ୍ଧାରିଣୀ ॥
ତା ବିନୁ ନ ସ୍ଫୁରଇ ଜ୍ଞାନ । କହି ଗୋ ରଖ ମୋ ଜୀବନ ॥
ବୁଡ଼ିଲି ମୁଁ ଦୁଃଖସାଗରେ । ଉଦ୍ଧରି ରଖ ପ୍ରାଣ ଭଲେ ॥
ତା ଶୁଣି ସଖୀଗଣ ଭୟେ । ବୋଲନ୍ତି ଶୁଣ ମହାରାୟେ ॥
ଆମ୍ଭେ ନ ଜାଣୁ ସେ କିପାଇଁ । ଭୂମିଶଯ୍ୟାରେ ଛନ୍ତି ଶୋଇ ॥
ଦେଖିଲେ ଦେଖ ମହାରାୟ । ଆମ୍ଭେ ନ ଜାଣୁ ଅଭିପ୍ରାୟ ॥
ଶୁଣିଣ ସତ୍ୱରେ ରାଜନ । ଅନ୍ତଃପୁରେ କଲା ଗମନ ॥
ରାଣୀକି ଦେଖି ସେ ରାଜନ । ସତ୍ୱରେ କଲା ଆଲିଙ୍ଗନ ॥
ଭୂମିରୁ କୋଳରେ ବସାଇ । ଅନେକ ଚାଟୁବାକ୍ୟ କହି ॥
କାମିନୀ ଦୁଃଖ-ବିମୋଚନେ । କହେ କାକୁସ୍ଥ ଭୟମନେ ॥
ଭୋ ସଖୀ ମୁଁ ଯେ ଅପରାଧୀ । ତୋ ସଙ୍ଗ ତେଜି ମୁଁ ଦୁର୍ବୁଦ୍ଧି ॥
ମୃଗୟା ଛଳେ ବନେ ଗଲି । ଏଣୁ ଅପ୍ରିୟ ତୋର ହେଲି ॥
ତୁ କ୍ଷମା ନ କଲେ ସୁନ୍ଦରୀ । ମୁଁ ପ୍ରାଣ ନ ପାରିବି ଧରି ॥
ପତି ବିନୟ ବାକ୍ୟ ଶୁଣି । ମାନ ନ ତେଜେ ସେ ମାନିନୀ
ଅନେକ ବିନୟେ ରାଜନ । ଚରଣେ ପଡ଼ିଲା ତକ୍ଷଣ ॥
ଚରଣ ଧରି ତା'ର ରାୟେ । ଅତି ବିଭ୍ରମ ଶୋକେ କହେ ॥
ଭୋ ସଖୀ ତୋର ଚିନ୍ତାଭାରେ । ମୋ ପ୍ରାଣ ନ ରହେ ଶରୀରେ
ସୁବାକ୍ୟ ହସି ଏବେ କହ । ବିକଳ ହେଉଅଛି ଦେହ ॥

ଭୋ ସ୍ତିରୀରତ୍ନ ଶିରୋମଣି । ମୋ କାମ ଦୁର୍ଗତି ତାରିଣୀ ॥
ତୋ ବିନୁ ଅନ୍ୟ କେବା ପାରେ । ଏ ଦୋଷ କ୍ଷମା କରିବାରେ ॥
ସେ ପୁଣ୍ୟବନ୍ତ ଭୃତ୍ୟ ଠାରେ । ଦୋଷେ ଦଣ୍ଡନ୍ତି ପ୍ରଭୁତ୍ୱରେ ॥
ଦୋଷାନୁକ୍ରମେ ପାଇ ଦଣ୍ଡ । ତା ଅପରାଧ ହୋଏ ଖଣ୍ଡ ॥
ଯେ ସ୍ୱାମୀ ଭୃତ୍ୟେ ନ ଦଣ୍ଡନ୍ତି । କପଟଭାବ ତାଙ୍କ ମତି ॥
ସେ ନିତ୍ୟେ ଭୟ-ଦୁଃଖେ ଦହୋ ସେବକଭାବ କାହିଁ ରହେ ॥
ସ୍ୱାମୀ ସେବକେ ଯେବେ ଦଣ୍ଡି । ଦିଅନ୍ତି ଅନୁଗ୍ରହେ ମଣ୍ଡି ॥
ତା ଯେବେ ଭୃତ୍ୟ ନ ବୁଝଇ । ସେ ମୂଢ଼ ଅଧମ ଅଟଇ ॥
ତାହାର କାହିଁ ଜ୍ଞାନ-ବୁଦ୍ଧି । ଚିନ୍ତା-ବିଭ୍ରମେ ନିରବଧି ॥
ଯେସନେ ପିତା ଅଭିମାନେ । ବାଳକ ରୋଦେ ଭୟଛନ୍ନେ ॥
ସେ ପୁତ୍ର ଦୋଷ ନ ଧରନ୍ତି । ପୁଣି ବାଳକେ ଆଶ୍ୱାସନ୍ତି ॥
ସେ ରୂପେ ମୋର ଅଭିମାନ । ଭୋ ସଖୀ କର ବିମୋଚନ ॥
ମୁଁ ଯେ ତୁମ୍ଭର ନିଜ ପତି । ମୃଗୟା ଶ୍ରମେ ଦୁଃଖ ଅତି ॥
ଏବେ ତୁ ତେଜି ଅଭିମାନ । ଆପଣା କରି ମୋତେ ଘେନ ॥
ହେ ନାରୀବର ଶୁଣ ଏବେ । ତୋ ଅପରାଧ ଆନ ଯେବେ ॥
ବିପ୍ର ବୈଷ୍ଣବ ନୋହିଥିଲେ । ଅବଶ୍ୟ ଦଣ୍ଡିବଇଁ ଭଲେ ॥
ପକାଇ ଏ ତିନିଭୁବନେ । ଯେବେ ପଶିବ ଭୟଛନ୍ନେ ॥
ତା'ରେ ଶରଣ ରଖେ କେବା । ତୋ ବିନୁ ଅନ୍ୟ ସୁରଦେବା ॥
ଏବେ ମୋ ଚିନ୍ତା-ତାପ-ଜ୍ୱର । ତୋର କଟାକ୍ଷେ ଦୂର କର ॥
ଭୋ ସଖୀ ତୋ ଚାରୁ ଆନନ । ତିଳେ ହେଁ ଦେଖିଲେ ମଳିନ ॥
ମୋର ଜୀବନ ହୋଏ ଦୁଃଖୀ । ସ୍ନାନାଦି ଭୋଜନ ଉପେକ୍ଷି ॥
ଏ ଶୁଭ୍ରତନୁ ତୋ ଧୂସର । ଶୟନ କରିଛୁ ଭୂମିର ॥
କେ ପ୍ରାଣୀ ଧରିବ ଜୀବନ । ଦେଖି ତୋ ବିବର୍ଣ୍ଣ ବଦନ ॥
ସୁନ୍ଦର ସୁକାନ୍ତି ତୋ ପ୍ରଭା । ଦେଖି ଟଳିବେ ସୁରଦେବା ॥
ତୋର ପଙ୍କଜାରୁଣାଧର । ଅଶେଷ ଭୁବନ ସୁନ୍ଦର ॥
ସେ ମୁଖେ ହସ ମୃଦୁବାଣୀ । କହି ତୁ ରଖ ପ୍ରାଣମଣି ॥
ମୁଁ ଯେ ତୋହର ପ୍ରାଣସଖା । ମୃଗୟା ଶ୍ରମେ ଭ୍ରମି ଏକା ॥
ତୁ ଶାନ୍ତି କରି ଗୋ ମୃଗାକ୍ଷି । ମୋ ପ୍ରାଣ ଶରୀରୁ ଛାଡୁଛି ॥
ବିପଦ କାଳେ ଯେ ଯୁବତୀ । ନିଜ ସ୍ୱାମୀକୁ ନ ସେବନ୍ତି ॥
ସେ ନାରୀ ଜ୍ଞାନହୀନ-ମତି । ଜନାପବାଦେ ସେ ମରନ୍ତି ॥
ସେ ସ୍ତିରୀକୁଳେ ଲଜ୍ଜା ପାଇ । ଉଭୟ ଲୋକ ତା'ର ନାହିଁ ॥
ଅନେକ ପ୍ରବୋଧ ବଚନ । କହିଣ ତୋଷିଲେ ରାଜନ ॥
ସେ ନାରୀ ମାନ ଦୂର କଲା । ସନ୍ତୋଷେ ସତ୍ୱରେ ଉଠିଲା ॥
ଏମନ୍ତେ ଶୁଣ ହେ ବିଦୁର । ସେ ପୁରଞ୍ଜନ ନୃପବର ॥
ତା ବଶେ ହୋଇଲା ଆୟତ୍ତ । ବିଭ୍ରମ ହେଲା ତା'ର ଚିତ୍ତ ॥
ଏ ସର୍ବ ଅନୁଭବ ବାଣୀ । ନାରଦ ନୃପରେ ବଖାଣି ॥
ଏ ସର୍ବ ଜ୍ଞାନମୟ ସାର । ଶୁଣନ୍ତେ ଖଣ୍ଡେ ମାୟା ଘୋର ॥
ଶ୍ରବଣେ ହରଇ ପ୍ରମାଦ । ନ ଲାଗେ ଗୃହବନ୍ଧ ଦ୍ୱନ୍ଦ୍ୱ ॥
ବିବେକ ହୋଏ ବୁଦ୍ଧିମତି । କୃଷ୍ଣ-ବିଷୟେ ବଢ଼େ ମତି ॥
ଏ ସାଧୁଜନଙ୍କ ବିଚାର । ସଂସାରବନ୍ଧୁ ହୁଅ ପାର ॥
ଚତୁର୍ଥସ୍କନ୍ଧେ ଭାଗବତ । ଛବିଶ ଅଧ୍ୟାୟ ଚରିତ ॥
ଅମୃତ ଜ୍ଞାନମୟ ଗୀତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ଷଡବିଂଶୋଽଧ୍ୟାୟଃ ।*

## ସପ୍ତବିଂଶ ଅଧ୍ୟାୟ

### ନାରଦ ଉବାଚ

କହନ୍ତି ବ୍ରହ୍ମାଙ୍କ ନନ୍ଦନ । ତଦନ୍ତେ ସେ ଯେ ପୁରଞ୍ଜନ ॥
ଅନେକମତେ ପ୍ରବୋଧିଲା । ରାଣୀର ମାନ ଦୂର କଲା ॥
ପ୍ରସନ୍ନ ବଦନେ ସୁନ୍ଦରୀ । ସ୍ନାନ ମାର୍ଜନା ବେଗେ ସାରି ॥
କୁଙ୍କୁମ କସ୍ତୁରୀ ଲଗାଇ । ସୁବାସଗନ୍ଧେ ମନ ମୋହି ॥
କଜ୍ଜ୍ୱଳ ସିନ୍ଦୂର ମଣ୍ଡିଲା । ସୁଦିବ୍ୟ ବସନ ପିନ୍ଧିଲା ॥
ସୁଗନ୍ଧ ପୁଷ୍ପମାଳା ଦେଇ । କବରୀ ବାନ୍ଧିଲା ସଜାଇ ॥
ଖଞ୍ଜିଣ ନାନା ଅଳଙ୍କାର । ମୁକୁରେ ନିରେଖି ଶରୀର ॥
ଭୋଜନ ସାରି ଷଡରସେ । ତାମ୍ବୁଳ ଭୁଞ୍ଜିଲା ହରଷେ ॥
ନୃପତି ସମୀପେ ମିଳିଲା । ହସି ପଲଙ୍କେ ବିଜେ କଲା ॥
ସେ କାମବିକାରେ ରାଜନ । ରାଣୀକି କଲା ଆଲିଙ୍ଗନ ॥
ବିବିଧ ସକାମ ବିକାରେ । ହାସ୍ୟ କଟାକ୍ଷ ମନୋହରେ ॥
ଏକାନ୍ତ ରତିରସରଙ୍ଗେ । ସେ ରାଣୀ ପୁରଞ୍ଜନ ସଙ୍ଗେ ॥
ଭ୍ରୂରୁ-କମାଣେ ସନ୍ଧି ଶର । ଦ୍ରୁହାସ କଟାକ୍ଷ ବିକାର ॥
ଷଟଚତ୍ୱାରିଂଶ ବିକାରେ । ସେ ରସ-ସଙ୍ଗମ ରତିରେ ॥
ରାତ୍ର ଦିବସ ନ ଜାଣିଲା । ଅଜ୍ଞାନ-ମୋହେ ନିମଜ୍ଜିଲା ॥
ସେ କାମଭୋଗେଣ ନୃପତି । ଫୁଟିଣ ଶାନ୍ତ ହେଲା ଅତି ॥
ଉପାଧି କରି ପତ୍ନୀ କର । ସୁଖେ ଶୋଇଲା ନୃପବର ॥
ପଲଙ୍କେ ସୁଖେ ନିଦ୍ରା ଗଲା । ସେ କାଳ-ଗତି ନ ଜାଣିଲା ॥
ନିତ୍ୟେ ହରନ୍ତେ ଆୟୁ ବଳ । ସେ ରାଜା ହୋଇଲା ନିର୍ବଳ ॥
ସେ କାମ ଭୋଗେ ନୃପବର । ସ୍ତିରୀ ସଙ୍ଗମେ ମନ ସ୍ଥିର ॥

ଅଜ୍ଞାନେ କ୍ରୀଡ଼ାରସେ ରତ । ନ ଦେଲା ଜ୍ଞାନମାର୍ଗେ ଚିତ୍ତ ॥
ନବୀନ ବୟସ ରାଜନ । ନାଶିଲା ଏ ସ୍ତିରୀ ଭୋଗେଣ ॥
ନିମିଷ ମାତ୍ର ସେ ମଣିଲା । ଏ ଯୁବାକାଳ ବିନାଶିଲା ॥
ଏମନ୍ତେ ବହୁ ସମ୍ବତ୍ସର । କାମିନୀ ବଶେ ନୃପବର ॥
ଭୋଗାନ୍ତେ ପୁରଞ୍ଜନ ଠାରେ । ଜନ୍ମିଲେ ଦୁହିତା କୁମରେ ॥
ଏଗାରଶତ ଯେ କୁମର । ଜନ୍ମ ଲଭିଲେ ଆଦ୍ୟେ ତା'ର
ଦଶ ଉତ୍ତର କନ୍ୟା ଶତ । ସୁଗୁଣଶୀଳେ ହେଲେ ଜାତ ॥
ସେ କନ୍ୟା-ପୁତ୍ରେ ବିଭା ଦେଇ । ନିଶ୍ଚିନ୍ତ ହେଲା ନରସାଇଁ ॥
ବିଭା-ନିର୍ବନ୍ଧେ ନିମଜ୍ଜିଲା । ଅର୍ଦ୍ଧେ ଆୟୁଷ ତା'ର ଗଲା ॥
ପୁତ୍ର-କନ୍ୟାଙ୍କ ପୁତ୍ର ଶହେ । ପଞ୍ଚାଳେ ବଞ୍ଚନ୍ତି ସେ ରାୟେ ॥
ଏ ସର୍ବେ ରାଜାର ଭଣ୍ଡାର । ଲୁଟିଣ କଲେ ସେ ବିହାର ॥
ତେବେ ହେଁ ମନେ କ୍ଷୋଭ ନାହିଁ । ବିଷୟ-ରସେ ମନ ମୋହି ॥
ଗାନ୍ଧର୍ବ ଭୋଗେ ସେ ନୃପତି । ବିଭ୍ରମେ ଅତି ମୂଢ଼ ମତି ॥
ବିଷୟେ ମମତା ବଢ଼ାଇ । ବନ୍ଦୀ ହୋଇଲା ନୃପସାଇଁ ॥
ତଦନ୍ତେ ଘୋର ଯଜ୍ଞ କଲା । ଅନେକ ପଶୁଙ୍କୁ ବଧିଲା ॥
ଦେବତା-ପିତୃ-ଭୂତପତି । ସେ ଯଜ୍ଞେ ପୂଜିଲା ନୃପତି ॥
ଯେ ରୂପେ ତୁମ୍ଭେ ହେ ରାଜନ । କରୁଛ ଘୋର ଯଜ୍ଞ ମାନ ॥
ସେ ରୂପେ ପୁରଞ୍ଜନ ରାୟେ । ଅନେକ ପଶୁ କଲା କ୍ଷୟେ ॥
ବିଷୟ ଜଡ଼େ ଉନମତ୍ତ । କୁଟୁମ୍ବେ ବନ୍ଦୀ କଲା ଚିତ୍ତ ॥
ତଦନ୍ତେ ପ୍ରବେଶିଲା କାଳ । ଯେ ହରେ ପ୍ରାଣୀ ଆୟୁବଳ ॥
ତାହାର ନାମ ଚଣ୍ଡବେଗ । ଗନ୍ଧର୍ବ-ରାଜ୍ୟ କରେ ଭୋଗ ॥
ଗନ୍ଧର୍ବମାନଙ୍କର ପତି । ଅତି ପ୍ରଚଣ୍ଡ ତା'ର ଗତି ॥
ତ୍ରିଶତଷାଠି ତା ପ୍ରମାଣ । ଗନ୍ଧର୍ବେ ଅତି ବଳବାନ ॥
ମିଥୁନ ଭାବେ କରି ସ୍ଥିତି । ଏତେ ଗନ୍ଧର୍ବୀ ତହିଁ ଥାନ୍ତି ॥
ଗନ୍ଧର୍ବ-ଗନ୍ଧର୍ବୀ ପ୍ରବଳ । କେ କୃଷ୍ଣ କେ ଅବା ଶୁକଳ ॥
ଏ ସର୍ବେ ଚଣ୍ଡବେଗଙ୍କର । ହୋଇଣ ଥାନ୍ତି ଅନୁଚର ॥
ସେ ଚଣ୍ଡବେଗ ଆଜ୍ଞାପାଇ । ବେଢ଼ିଲେ ରାଜାପୁର ଯାଇ ॥
ସେ ପୁରଞ୍ଜନ ଦିବ୍ୟପୁରୀ । ଗନ୍ଧର୍ବେ ବଳେ ଲୁର କରି ॥
ସେ ନଗ୍ରେ ସେନାପତି ଏକ । ରକ୍ଷଣେ ଥିଲା ସେ ଅଧ୍ୟକ୍ଷ ॥
ତାହାର ନାମ ପ୍ରଜାଗଣ । ସେ ବେଗେ ମିଳିଲା ଆଗର ॥
ତାହାଙ୍କୁ ମାରି ଘଉଡ଼ିଲା । ଅନେକ ଘୋରଯୁଦ୍ଧ କଲା ॥
ସେ ଶତ-ସମ୍ବତ୍ସର ନିତ୍ୟେ । ଯୁଝିଲା ଗନ୍ଧର୍ବ ସଙ୍ଗତେ ॥
ଗନ୍ଧର୍ବେ ଅତି ବଳବାନ । ତାହାଙ୍କୁ ମାରି କଲେ କ୍ଷୀଣ ॥
କ୍ଷୀଣ ହୁଅନ୍ତେ ପ୍ରଜାଗଣ । ସେ ଘୋରତାପେ ନୃପବର ॥

ସେ ପୁରବାସୀ ଯେତେ ଥିଲେ । ସେ ସର୍ବେ ଆକୁଳେ ରୋଦିଲେ
ଅନ୍ୟତ୍ର ନ ପାରନ୍ତି ଯାଇ । ଦୁଃଖେ ରୋଦନ୍ତି କ୍ଷୋଭ ପାଇ
ସେ ନଗ୍ରେ ନୃପ ପୁରଞ୍ଜନ । ସଙ୍ଗତେ ଘେନି ପ୍ରଜାଗଣ ॥
ପାଞ୍ଚାଳଦେଶେ ନାନା ସୁଖ । ଯେଣୁ ଭୁଞ୍ଜିଲା ଅବିବେକ ॥
ତା ଦିନ ପତ୍ନୀସ୍ନେହେ ଗଲା । କୁତ୍ସିତ ସୁଖେ ନିମଜ୍ଜିଲା ॥
ଇନ୍ଦ୍ରିୟ-ରସେ ଅନୁରାଗୀ । ସେ ମୋକ୍ଷ ତେଜିଲା ଦୁର୍ଭାଗୀ
ଅଳପ ସୁଖ-ଭୋଗେ ରତ । ନ ଦେଲା ଜ୍ଞାନମାର୍ଗେ ଚିତ୍ତ ॥
ନ କଲା ସେ ଭଲ ବିଚାର । ଏଣୁ ହୋଇଲା ଦୁଃଖ-ଘୋର ॥
ପ୍ରାଚୀନବର୍ହିଙ୍କୁ ନାରଦ । କହିଲେ ଅପୂର୍ବ ସମ୍ବାଦ ॥
କାଳର କନ୍ୟା ଏକ ଥିଲା । ତାହାକୁ କେହି ନ ବରିଲା ॥
ଏ ତିନିଲୋକ ସେ ଭ୍ରମଇ । ଡରେ କେ ତାକୁ ବିଭା ନୋହି
ସେ ଯାରେ ବର ଇଚ୍ଛା କରେ । ସେ ଦେଖି କମ୍ପେ ଥରହରେ ॥
ସେ ସର୍ବ-ଅଭାଗ୍ୟର ଧାମ । ଏଣୁ ଦୁର୍ଭାଗା ତା'ର ନାମ ॥
ସେ କନ୍ୟା ପୂର୍ବେ ଏକକାଳେ । ଯଯାତି ବଳେ ବିଭା ହେଲେ ॥
ତା'ଠାରେ ବହୁଭୋଗ ସାରି । ପୁତ୍ରକୁ ବରେ ଇଚ୍ଛା କରି ॥
ତାହାକୁ ଯଯାତି ରାଜନ । ପୁତ୍ରକୁ କଲେ ସମର୍ପଣ ॥
ତା ଜ୍ୟେଷ୍ଠ ଯେତେକ କୁମର । କେହି ନ କଲେ ଅଙ୍ଗୀକାର ॥
କନିଷ୍ଠପୁତ୍ର ପୁରୁ ଥିଲା । ସେ ପିତା ଆଜ୍ଞାରେ ବରିଲା ॥
ତାହାର ସଙ୍ଗେ ନୃପବଳା । ଅନେକ ଦିନ ଭୋଗ କଲା ॥
ବର ଇଚ୍ଛଇ ନିରନ୍ତରେ । ଦେଖିଣ ପ୍ରାଣୀ ତା'ଙ୍କ ଡରେ ॥
ଏମନ୍ତେ ସେ କାଳ ଦୁହିତୀ । ସେ ବରେ ନୋହେ ତୁଷ୍ଟମତି
ତା କାମଭୋଗେ ବଳ ହରି । ତଦନ୍ତେ ସଂସାରେ ବିହରି ॥
ମୁଁ ଦିନେ ବ୍ରହ୍ମଲୋକ ଠାରୁ । ଏ ମହୀ ଭ୍ରମଣ ଇଚ୍ଛାରୁ ॥
ଆସନ୍ତେ କୃଷ୍ଣରସେ ରସି । ମୋତେ ଭେଟିଲା ଦୁଷ୍ଟାଆସି ॥
ବୋଇଲା ଶୁଣ ମୁନିବର । ମୋ କାମଦୁଃଖ ପରିହର ॥
ଯଦିତ୍ୱପଣ ମୋର ଜାଣେ । ତଥାପି ବରେ ଭ୍ରମ ପଣେ ॥
ତୁମ୍ଭ ମହିମା ଶୁଣି ନିତ୍ୟେ । ମୁଁ ଅନୁସରି ଅବିରତେ ॥
ଏବେ ଭେଟିଲି ଭାଗ୍ୟଫଳେ । ତୋ ସଙ୍ଗେ ରତି ତୋଷ ବଳେ
ତୁମ୍ଭେ ଯେ ଦୟାଳୁ ଈଶ୍ୱର । ମୋ କାମ-ବାଞ୍ଛା ପୂର୍ଣ୍ଣକର ॥
ହେ ମୁନିଶ୍ରେଷ୍ଠ ଯୋଗେଶ୍ୱର । ମୋ ତୁଲେ ଗୃହଧର୍ମ କର ॥
ତୁମ୍ଭେ ମୋହର ନିଜ ପତି । ଏଣୁ ଅଇଲି ତୁମ୍ଭ କତି ॥
ପୁରୁଷ ସ୍ୱଧର୍ମଟି ଏହି । ପ୍ରାପତ-କନ୍ୟା ନ ତେଜଇ ॥
ଯାଚକ କନ୍ୟା ପ୍ରତେଜିଲେ । ସେ ସୁଖ ନ ଲଭଇ ଭଲେ ॥
ସେ ସାଧୁଜନ ଏ ଜଗତେ । ପ୍ରିୟ ଅପ୍ରିୟ ସମ ଚିତ୍ତେ ॥

ପ୍ରାଣୀଙ୍କ ହିତାର୍ଥ କାରଣେ । ଏଣୁ ଭ୍ରମନ୍ତି ଅନୁକ୍ଷଣେ ॥
ଅନ୍ୟତ୍ର ବାଞ୍ଛା ନାହିଁ ମୋର । ଏ କାମ-ଶତ୍ରୁ ମୋ' ନିବାର ॥
ଭୋ ମୁନିବର ତୁମ୍ଭ ବିନେ । ମୋ ଚିତ୍ତ ନ ବଳଇ ଆନେ ॥
ଏ ତୁମ୍ଭ ଆମ୍ଭ କାମଭୋଗ । ଦଇବ କରିଛି ସଂଯୋଗ ॥
ଏମନ୍ତ ବାକ୍ୟ ତା'ର ଶୁଣି । ଆମ୍ଭେ ପ୍ରକୋପେ ତାକୁ ଭଣି ॥
ବୋଇଲୁ ତୁ ନୀଚ ଯୁବତୀ । ପ୍ରମଦାକୁଳେ ନୋହୁ ସତୀ ॥
କୁଳ-ଦୂଷଣ-କର୍ମ ତୋର । ନ ମରି ଧରିଛୁ ଶରୀର ॥
ତୋତେ ଦେଖିଲେ ଲଭି ଦୋଷ । ଅଶେଷ ପୁଣ୍ୟ ହୁଏ ନାଶ ॥
ଯେ ସ୍ତିରୀ ବିଟପୀ ସଂସାରେ । ଉଭୟଲୋକ ପରିହରେ ॥
ତୁ ଛାର କହିଲୁ ଏମନ୍ତ । ନ ଜାଣୁ ଆମ୍ଭେ ତପୋବନ୍ତ ॥
ପାତ୍ର ଅପାତ୍ର ତୁ ନ ଜାଣୁ । ଦୂଷଣ କଥା ମୁଖେ ଭଣୁ ॥
ଶୁଣସି ତୁ ମୂଢ଼ ଅଜ୍ଞାନୀ । ଆମ୍ଭେ ଯେ ଅଟୁ ବ୍ରହ୍ମଜ୍ଞାନୀ ॥
ଗୃହସ୍ଥଧର୍ମ ଆମ୍ଭ ନାହିଁ । ତୋର ବରଣେ ଇଚ୍ଛା କାହିଁ ॥
ତୋହର ବରେ ଯେବେ ଇଚ୍ଛା । କହିବା ପୂରିବ ତୋ ବାଞ୍ଛା ॥
ଯବନ ମାନଙ୍କ ଈଶ୍ୱର । ତୁ ଯାଇ ବେଗେ ତାକୁ ବର ॥
ଯେ କାମ ଭୋଗେ ତୋର ଇଚ୍ଛା । ସେ ତୋର ପୂରାଇବେ ବାଞ୍ଛା ॥
ତା ଶୁଣି ବିମୁଖେ ତରୁଣୀ । ସକ୍ରୋଧେ ଶାପ ମୋତେ ଭଣି ॥
ବୋଇଲା ଶୁଣ ମୁନିବର । ମୋ ପ୍ରୀତି-ଆଶା କଲୁ ଦୂର ॥
ତୁ ଏକଠାବେ ନ ରହିବୁ । ଜୀବନ୍ତେ ଯେତେକାଳ ଥିବୁ ॥
ବ୍ରହ୍ମାଣ୍ଡ ମଧ୍ୟେ ସ୍ଥାନ ଯେତେ । ଭ୍ରମଣ କରୁଥିବୁ ନିତ୍ୟେ ॥
କାହିଁ ତୁ ନ ଲଭିବୁ ସୁଖ । ଭୋଗାଦି ନାମେଣ ବିମୁଖ ॥
ଏ ଘୋରଶାପ ମୋତେ ଦେଇ । ବରିଲା ଭୟପତି ଯାଇ ॥
ଭୋ ଦେବ ଯବନ ଈଶ୍ୱର । ତୁ ବୀର ବଳେ ବଳୀୟାର ॥
ଏଣୁ ବରିଲି ମୁହିଁ ତୋତେ । ମୋର ବିନୟ ଘେନ ଚିତ୍ତେ ॥
ତୁମ୍ଭଙ୍କୁ ଯେବା ମାଗେ ଯାହା । ବିନାଶ ନୋହେ କାମ ତାହା ॥
ଶୁଣ ଯବନ ଅଧିପତି । ଏ ବେନିଲୋକେ ଶିଷ୍ଟମତି ॥
ଯେ ଲୋକ-ଶାସ୍ତ୍ରର ଭକତ । ଦ୍ରବ୍ୟ ହୋଇଲେ ଉପଗତ ॥
ଯାଚକ ଜନେ ତା ନ ଦେଇ । ଅଥବା ଦେଲେ ନ ଘେନଇ ॥
ଏ ବେନି ଶିଷ୍ଟ ସଙ୍ଗେ ସରି । ଏଣୁ ତାହାଙ୍କୁ ମୁଁ ନ ବରି ॥
ତୁମ୍ଭେ ଦୟାଳୁ ଶୂରବନ୍ତ । ଯବନମାନଙ୍କ ସାମନ୍ତ ॥
ମୁଁ କାମେ ତୁମ୍ଭଙ୍କୁ ଭଜିଲି । ଲଜ୍ଜା ସଙ୍କୋଚ ଉପେକ୍ଷିଲି ॥
ମୋ ସଙ୍ଗେ କର ବଇଭୋଗ । ହର ଦୁର୍ଜୟ କାମରୋଗ ॥
ପୁରୁଷ ସ୍ୱଧର୍ମଟି ଏହି । ଦୀନଜନଙ୍କୁ ଦୟା ବହି ॥
ମୁଁ ଜନ୍ମକାଳୁ କାମଦୁଃଖେ । ତୁ ମୋତେ ନ ତେଜ ବିମୁଖେ ॥
ଯାଚକ ଜନ ନ ତୋଷିଲେ । ସ୍ୱଧର୍ମ ନାଶ ଯାଇ ଭଲେ ॥
ତାର କାର୍ପଣ୍ୟ ବାକ୍ୟ ଶୁଣି । ଯବନେଶ୍ୱର ମନେ ଗୁଣି ॥
ଦେବଙ୍କ ଗୁପ୍ତ ଯେ ମରଣ । ଏହାରେ ସାଧିବି ପ୍ରମାଣ ॥
ଏମନ୍ତ ମନେ ବିଚାରିଲା । କନ୍ୟାକୁ ପ୍ରତିବାକ୍ୟ ଦେଲା ॥
ଶୁଣ ଗୋ କାଳର ଦୁହିତୀ । ତୋ ସମେ ବରିଅଛି ପତି ॥
ଆପଣା ସମାଧି-ଯୋଗରେ । ମୁଁ ବର ବରିଅଛି ତୋରେ ॥
ଏ ଯେତେ ଲୋକବୃନ୍ଦ ଛନ୍ତି । ତୋର ସମୀପେ ନ ଗଚ୍ଛନ୍ତି ॥
ତୋ ରୂପ ଦେଖି ଅମଙ୍ଗଳ । ଡରନ୍ତି ଏ ଲୋକ ସକଳ ॥
ତୁ ଯେ ଅଲକ୍ଷ୍ୟ ଯୋଗେଶ୍ୱରୀ । ତାହାଙ୍କୁ ଭୋଗକର ଧରି ॥
ଏକାକୀ ବୋଲି ଭୟ ଯେବେ । ମୋ ସେନା ସଙ୍ଗେ ନଅ ତେବେ ॥
ଏ ସର୍ବେ ତୋର ସଙ୍ଗେ ଥିବେ । ତୋ ଆଜ୍ଞା କ୍ଷଣେ ନ ଛାଡ଼ିବେ ॥
ଏମନ୍ତେ ପ୍ରଜାନ୍ତ ବିନାଶ । ଏ ସର୍ବେ ହୋନ୍ତୁ ତୋର ବଶ ॥
ମୋହର ଭାଇ ସେ ପ୍ରଜ୍ୱର । ତୁ ଭଗ୍ନୀ ହେବୁ ଯେ ମୋହର ॥
ଏକତ୍ର ଭାଇ ଭଗ୍ନୀ ଥିବ । ମୋ ସେନାଗଣ ସଙ୍ଗେ ନେବ ॥
ଲୋକେ ନ ଜାଣିବେ ତୋ ଗତି । ଭ୍ରମୁଣ ଥିବୁ ଚଉକତି ॥
ଜୀବଙ୍କ ଭୋଗ ଅନୁସାରେ । ପୀଡ଼ିବୁ ଲୋଭାଦି ବ୍ୟାଧିରେ ॥
ଏମନ୍ତ ଶିକ୍ଷା ତାକୁ ଦେଇ । ଅଗ୍ରେ ପେଷିଲା ଭଗ୍ନୀଭାଇ ॥
ତା ସୈନ୍ୟ ସର୍ବବ୍ୟାଧିଗଣ । ଘେନାଇ ଚଳେ ନୃପରାଣ ॥
ଅପରେ କାମ କ୍ରୋଧ ଯେତେ । ପାଗୁଶେ ଥାନ୍ତି ଅବିରତେ ॥
ଏ ସର୍ବେ ପ୍ରାଣୀ ଅଙ୍ଗେ ଯାଇ । କୁକର୍ମ ମାର୍ଗେ ଲୋଭେ ନେଇ ॥
ନିତ୍ୟେ ପୀଡନ୍ତି ଅନୁକ୍ଷଣ । ଜୀବଙ୍କୁ ରୋଗ ପ୍ରଭେଦେଣ ॥

## ମୈତ୍ରେୟ ଉବାଚ

ଏମନ୍ତେ ଶୁଣ ହେ ବିଦୁର । ସେ କାଳକନ୍ୟା ଯେ ପ୍ରଜ୍ୱର ॥
ଯବନପତି ଆଜ୍ଞା ପାଇ । ଏ ସୈନ୍ୟବଳ ସଙ୍ଗେ ନେଇ ॥
ଭ୍ରମନ୍ତି ଏ ମହୀମଣ୍ଡଳେ । ହରନ୍ତି ଜୀବଆୟୁ ବଳେ ॥
ଭୋଗ ପ୍ରଲୋଭେ ବିନାଶନ୍ତି । ନିରତେ ଛିଦ୍ର ଉଦ୍ଦେଶନ୍ତି ॥
ପୃଥିବୀ ପର୍ଯ୍ୟନ୍ତେ କଲେ । କର୍ମାନୁସାରେ ଭୋଗ ଦେଲେ ॥
ଚତୁର୍ଥ ସ୍କନ୍ଧେ ଭାଗବତ । ନାରଦ ପ୍ରାଚୀନ ଭକତ ॥
ଏ ପୁରଞ୍ଜନର ଆଖ୍ୟାନ । ସପ୍ତବିଂଶ ଅଧ୍ୟା ସମ୍ପୂର୍ଣ୍ଣ ॥
ଏହା ଯେ ଶ୍ରବଣେ ଶୁଣନ୍ତି । ସଂସାର-ବନ୍ଧୁ ନିସ୍ତରନ୍ତି ॥
ସେ ପ୍ରାଚୀନ ଗ୍ରନ୍ଥ ପୁରାଣ । ନାରଦ ତାହାରେ ବଖାଣ ॥
ଭଣଇ ଜଗନ୍ନାଥ ଦାସ । ଏକାଳେ ହୋଇଲା ପ୍ରକାଶ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ସପ୍ତବିଂଶୋଽଧ୍ୟାୟଃ ।*

## ଅଷ୍ଟବିଂଶ ଅଧ୍ୟାୟ

ଶ୍ରୀକୃଷ୍ଣ ପାଦପଦ୍ମ ଚିହ୍ନ । ସହର୍ଷେ ମୈତ୍ରେୟ କହନ୍ତି ॥

### ମୈତ୍ରେୟ ଉବାଚ

ତଦନ୍ତେ ଶୁଣ ହେ ବିଦୁର । ସେ ପୁରଞ୍ଜନର ବିଚାର ॥

### ନାରଦ ଉବାଚ

ନାରଦ କହନ୍ତି ରାଜନ । ଏବେ କହିବା ଦିବ୍ୟଜ୍ଞାନ ॥
ଯବନ ଅଧିପତି ଯେହି । ତାହାର ନାମ ଭୟ କହି ॥
ସୈନ୍ୟାଦି ବ୍ୟାଧିଗଣେ ତା'ର । ସଙ୍ଗତେ ଥାନ୍ତି ନିରନ୍ତର ॥
ପ୍ରଜ୍ୱର କାଳକନ୍ୟା ବେନି । ଏହାଙ୍କୁ ରାଜା ସଙ୍ଗେ ଘେନି ॥
ଏ ସର୍ବେ ସଙ୍ଗତେ ଚଳନ୍ତି । ଯେ ଦିଗେ ବିଜୟେ ନୃପତି ॥
ସେ ଏକଦିନେ ନୃପବର । ସଙ୍ଗତେ ସୈନ୍ୟ ଜରା-ଜ୍ୱର ॥
ସେ ମହୀ ଭ୍ରମଣ କରନ୍ତେ । ଦେଖିଲା କାଳକର୍ମ ଗତେ ॥
ଯେ ପୁରେ ଥିଲା ପୁରଞ୍ଜନ । ତା ବେଶେ ବେଢ଼ିଲା ଯବନ
ଯେ କିଛି ପୃଥ୍ୱୀରେ ବୈଭୋଗ । ସକଳ ସେ ପୁରେ ସଂଯୋଗ ॥
ସେ ପୁରେ ଦ୍ୱାରୀ ବୃଦ୍ଧ ଅହି । ନିର୍ଭୟେ ପୁର ଜଗିଥାଇ ॥
ଏ ପଞ୍ଚଭୂତେ ଦେହ ଯେତେ । ତା'କୁ ନ ଛାଡ଼େ କଦାଚିତେ ॥
ବ୍ରହ୍ମାଣ୍ଡ ମଧ୍ୟେ ଦେହ ବହି । ତା'କୁ ଜିଣନ୍ତା କେହି ନାହିଁ ॥
ବ୍ରହ୍ମାଦି ସୁରମୁନି ଦେବା । ଭୟେ କରନ୍ତି ତାକୁ ସେବା ॥
ତା'କୁ ଜିଣନ୍ତା ଯେବା ଜନ । ନିଶ୍ଚିନ୍ତେ ରହେ ନିଜସ୍ଥାନ ॥
ଯବନେ ସେ ପୁର ନାଶିଲେ । ଯେ ପୁରେ ପୁରଞ୍ଜନ ଥିଲେ ॥
ସେ କାଳକନ୍ୟା ସଙ୍ଗେ ଥିଲା । ସତ୍ୱରେ ସେ ପୁରେ ପଶିଲା ॥
ବଳେ ସେ କଲା ବଳଭୋଗ । କାନ୍ତି ବଳ ବୀର୍ଯ୍ୟ ସଂଯୋଗ ॥
ସେ ନାରୀ ଯା'ରେ ସ୍ପର୍ଶଇ । ସେ ପ୍ରାଣୀ ଉଠି ନ ପାରଇ ॥
ଅଗ୍ରେ ସେ ନାରୀ ପ୍ରବେଶିଲା । ଯେତେ ଯବନବଳ ଥିଲା ।
ସର୍ବେ ସେ ଦ୍ୱାରମାର୍ଗେ ଗଲେ । ପ୍ରବେଶି ପୁର ବିନାଶିଲେ ॥
ପୁର ଉଜାଡ଼େ ଭୟ କରି । ସେ ପୁରଞ୍ଜନ ଦଣ୍ଡଧାରୀ ॥
ବହୁତ ସନ୍ତାପ ସେ କଲା । ନିର୍ବଳେ ଶଙ୍କିତେ ରହିଲା ॥
ସେ ରାଜା କ୍ରୋଧେ ଅଭିମାନୀ । ଦେଖିଲା ସ୍ୱକୁଟୁମ୍ବ ହାନି ॥
ସ୍ନେହାନୁବନ୍ଧ ନ ଛାଡ଼ଇ । ଆକୁଳେ ସନ୍ତାପେ ଶୋଚଇ ॥
ସେ କାଳକନ୍ୟା ଆସି ବେଗେ । ରାଜାକୁ କୋଳ କଲାସୋଗେ॥
ତା'ର ସ୍ପର୍ଶଣେ ମହାରାୟେ । ହୋଇଲା ନଷ୍ଟକାନ୍ତି-କାୟେ ॥
କୃପଣ-ବିଷୟୀ ରାଜନ । ହୋଇଲା ତା' ସଙ୍ଗ ପାଇଣ ॥
ପ୍ରଜ୍ଞା ଯେ ହେଲା ତା'ର ନାଶ । ସଘନେ ଛାଡ଼ଇ ନିଃଶ୍ୱାସ ॥
ଯବନ-ଗନ୍ଧର୍ବେ ପଶିଲେ । ରାଜ ଐଶ୍ୱର୍ଯ୍ୟ ବିନାଶିଲେ ॥
ସେ ପୁର କ୍ଷୀଣ ଦେଖି ତା'ର । ପୁତ୍ରାଦି ଛାଡ଼ିଲେ ଆଦର ॥
ଆତ୍ମୀୟ ଲୋକ ଯେତେ କହି । ଦେଖିଲା ପୂର୍ବସ୍ନେହ ନାହିଁ ॥
ତା' ପତ୍ନୀଠାରେ ଯେତେ ପ୍ରୀତି । ଦେଖିଲା ଅସ୍ନେହ ଅନୀତି ॥
ଆତ୍ମାକୁ ଜରା ଗ୍ରସ୍ତ କଲା । ପଞ୍ଚାଳ ବିଷୟ ତା' ଗଲା ॥
ଦୁରନ୍ତ ଚିନ୍ତା ପାଇ ରାୟେ । ନ ଦେଖେ ତରିବା ଉପାୟେ ॥
ସେ କନ୍ୟା ସ୍ପର୍ଶଣେ ନିର୍ବଳ । ଏକାନ୍ତେ ଝୁରେ ମହୀପାଳ ॥
ନିର୍ବଳ ଦେଖି ନିଜ ଦେହ । ଛାଡ଼ିଲା ପୁତ୍ର ଆଦି ସ୍ନେହ ॥
ସ୍ୱ-ପରଲୋକ ଚିନ୍ତା ଗଲା । ସେ କାଳକନ୍ୟା ଏହା କଲା ॥
ସେପୁର ଛାଡ଼ିବାରେ ମନ । ରୋଦନ କରେ ଅନୁକ୍ଷଣ ॥
ନ ପାରେ ସହି ଦୁଃଖଘୋର । ସେ ନିଶ୍ଚେ ଛାଡ଼ିବ ଶରୀର ॥
ଭ୍ରମ ତା' ହେଲା ନିଜ ମତି । ଆତୁରେ ଭାଳଇ ନୃପତି ॥
ଭୟର ଅଗ୍ରଜ ପ୍ରଜ୍ୱର । ଆଜ୍ଞାଦି ରହିଲା ସେ ପୁର ॥
ଏ ସର୍ବେ ପୁରମାର୍ଗେ ରହି । ପ୍ରଚଣ୍ଡ ତେଜେ କୋପ ବହି ॥
ସାନ-ଭ୍ରାତାର ପ୍ରିୟ ଅର୍ଥେ । ସେ ପୁର ଦହିଲା ତୁରିତେ ॥
ପୁର ଦହନ ଯହୁଁ ହେଲା । ସେ ରାଜା ମହାଭୟ କଲା ॥
ସେ ପୁରବାସୀ ଯେତେ ଥିଲେ । ସଭୟେ ସକଳେ କମ୍ପିଲେ ॥
ଯବନେ ପୁର ଦେଲେ ଦହି । କାଳକନ୍ୟାର ପଛେ ରହି ॥
ସଭୟେ ନ ପାରନ୍ତି ଯାଇ । ଦୁଃଖେ ରୋଦନ୍ତି ଛନ୍ନ ହୋଇ
ଯବନ-ପୁର ନେଲେ ବେଗେ । ସେ କାଳକନ୍ୟା ଘେନି ସଙ୍ଗେ
ଭୟର ଅଗ୍ରଜ ପ୍ରଜ୍ୱର । ପୁର ନାଶିଲେ ବେଗେ ତା'ର
ଦେଖିଣ ବିଷାଦେ ନୃପତି । ରୋଦନ କଲା ଭୟେ ଅତି ॥
ବହୁତ କଷ୍ଟେ ଯେ ରାଜନ । ପୁର ଛାଡ଼ିତେ କଲା ମନ ॥
ଯେସନେ ବୃକ୍ଷକୋଟେ ଅହି । ଅନଳ ତେଜ ତାପେ ଦହି ॥
ସେ ଯେହ୍ନେ ସେ ସ୍ଥାନ ଉପେକ୍ଷି। ରହେ ଅତ୍ୟନ୍ତ ଭୟେ ଦୁଃଖୀ ॥
ତେସନେ ଛାଡି ନିଜ ପୁରୀ । ସେ ରାଜା ବହୁ ଚିନ୍ତା କରି ॥
ହସ୍ତ ଚରଣ ତା' ନ ଚଳେ । ପୌରୁଷ ଗନ୍ଧର୍ବେ ହରିଲେ ॥
ଯବନ-ଶତ୍ରୁ ବ୍ୟାଧି ରୂପେ । କଷ୍ଟ ନିରୋଧ କଲା କୋପେ ॥
ମୂଢ଼ ଦୁର୍ମତି ସେ ରାଜନ । ରୋଦଇ ନ ଛାଡ଼ି ଜୀବନ ॥
ନ ଛାଡ଼ିପାରେ ସ୍ନେହ ଚିତ୍ତେ । ରାତ୍ର ଦିବସ ଭାଳେ ନିତ୍ୟେ ॥
ଏ ମୋର ପୁତ୍ର କନ୍ୟା ଯେତେ । ମୋ'ବିନା ବଞ୍ଚିବେ କେମନ୍ତେ
ଜାମାତା ବନ୍ଧୁ ପରିଷଦ । ଅପରେ ଗୃହାଦି ସମ୍ପଦ ॥
ମୁଁ ଏବେ ପୁର ପ୍ରତେଜିଲେ । ଏ ସର୍ବେ ନ ବର୍ତ୍ତିବେ ଭଲେ
ସ୍ୱପତ୍ନୀ ସହିତେ ରାଜନ । ଅନେକ କରନ୍ତି ରୋଦନ ॥
ମୁଁ ଏବେ ନିଶ୍ଚୟ ମରିବି । ଏ ବହୁ ଦୁଃଖ ନ ସହିବି ॥

ମୋର ଅଭାବେ ଏ କାମିନୀ । ଭାଳିବ ସ୍ୱକୁଟୁମ୍ବ ଘେନି ॥
ବାଳକ କନ୍ୟା ଯେତେ ମୋର । ପାଇବେ ବହୁ ଦୁଃଖ ଘୋର ॥
ବିଦେଶୀ ରାଜା ରାଜ୍ୟ ନେବେ । ଏହାଙ୍କୁ ବହୁ ଦୁଃଖ ଦେବେ ॥
ବାଳକେ ହୋଇବେ ଅନାଥ । ତା' ଦେଖି ରୋଦିବ ବହୁତ ॥
ଏ ସ୍ତିରୀ ପ୍ରାଣ ଗୁଣମଣି । ମୋ ବିନୁ ନାଶିବ ତରୁଣୀ ॥
ସ୍ନାନ ଭୋଜନ ମୁଁ ନ କଲେ । ଏ ରାଣୀ ନ କରେ ବିକଳେ ॥
ସୁଗୁଣବତୀ ମୋ' ଘରଣୀ । କେମନ୍ତେ ପ୍ରତେଜିବି ପୁଣି ॥
ଏହାର ଗୁଣ ଅଛି ଯେତେ । ମୁଁ କହି ପାରିବଇଁ କେତେ ॥
ସେ ମୋର କ୍ରୋଧ-କାଳ ଜାଣି । କ୍ଷଣେ ପ୍ରବୋଧେ ମୋ ତରୁଣୀ ॥
ମୁଁ ଯେବେ କ୍ରୋଧ ବହି ତା'ରେ । ସ୍ଥିର ସେ ରହଇ ଭୟରେ ॥
ମୋର ବିଚ୍ଛେଦ ଏ ସୁନ୍ଦରୀ । ବିରହ-ଦୁଃଖେ ନିତ୍ୟେ ଝୁରି ॥
ମୋର ଆପଦ ଚିନ୍ତାକାଳେ । ସେ ପ୍ରତିବୋଧ ଦେଇ ଭଲେ ॥
ଏ ଗୃହଧର୍ମ ନ କରିବ । ବ୍ୟାକୁଳ ଚିନ୍ତାରେ ମଜ୍ଜିବ ॥
ଏ ପୁତ୍ର-କନ୍ୟା ନ ଚାହିଁବ । ମୋ' ଅନ୍ତେ ଅବଶ୍ୟ ମରିବ ॥
ଏ ପୁତ୍ର କନ୍ୟା ମାତୃହୀନେ । ଦୁଃଖିତ ହେବେ ଆଶ୍ରେ ବିନେ ॥
ମୋ' ଅନ୍ତେ ଏ ସର୍ବେ ମରିବେ । କିବା ଭକ୍ଷିବେ କାହିଁ ଥିବେ ॥
ଆଶ୍ରୟ ନ ପାଇ ଶୟଳେ । ଅବଶ୍ୟ ମରିବେ ଆକୁଳେ ॥
ସମୁଦ୍ର ମଧ୍ୟେ ଯେହ୍ନେ ନାବ । ଭଗ୍ନେ ନାଶନ୍ତି ପ୍ରାଣୀ ସର୍ବ ॥
ଏ ସର୍ବେ ତେସନେ ମରିବେ । ମୋ' ଅନ୍ତେ କେହି ନ ଜିଇଁବେ ॥
ଏମନ୍ତ ଅଜ୍ଞାନ-ବୁଦ୍ଧିରେ । ସେ ନିତ୍ୟେ ବହୁ ଶୋକ କରେ ॥
ଏମନ୍ତ ଭାଳନ୍ତେ ରାଜନ । କାଳ ହୋଇଲା ଅବସାନ ॥
ରାଜାକୁ ଧରି ନେବାପାଇଁ । ଭୟେ ମିଳିଲା ବେଗ ହୋଇ ॥
ପଶୁର ପ୍ରାୟ ବନ୍ଦୀ କଲା । ତକ୍ଷଣେ ଉପ୍ରୋଧ ତେଜିଲା ॥
ଧରିଣ ଯବନଙ୍କ ବଳେ । ଆପଣା ସ୍ଥାନକୁ ସେ ନେଲେ ॥
ତା' ଅନୁଚର ଯେତେ ଥିଲେ । ଜଣେ ହେଁ ସପକ୍ଷ ନୋହିଲେ ॥
ସେ ସର୍ବେ ଆକୁଳେ ଶୋଚନ୍ତି । ରାଜାକୁ ସୁମରି କାନ୍ଦନ୍ତି ॥
ଦ୍ୱାରେ ଯେ ଥିଲା ବୃଦ୍ଧ ଅହି । ସେ ଛାଡ଼ିଗଲା ବେଗ ହୋଇ
ସେ ରାଜା ସଙ୍ଗତେ ଗମିଲା । ତା' ଅନ୍ତେ ପୁର ନଷ୍ଟ ଗଲା ॥
ଯବନବଳ ବଳବନ୍ତେ । ରାଜାକୁ ଧରି ଓଟାରନ୍ତେ ॥
ସେ ଅତି ବ୍ୟାକୁଳେ ରାଜନ । ରୋଦନ କରେ ଉଚ୍ଚସ୍ୱନ ॥
ମୃତ୍ୟୁଦଣ୍ଡେ ତା' ପୀଡ଼େ ଦେହୀ । ସେ ଦୁଃଖ କେବା ପାରେ ସହି
ଯେସନେ ସୂଚୀ-ରନ୍ଧ୍ରଗତେ । ମତ୍ତ-ବାରଣ ଉଛୁରନ୍ତେ ॥
ତେସନେ ପୀଡ଼ିତ ଶରୀର । ଦୁଃସହ ଦୁଃଖ ମୃତ୍ୟୁଘୋର ॥
ଏମନ୍ତେ ପ୍ରାଣତ୍ୟାଗ କାଳେ । ଜୀବ ଭ୍ରମଇ ଦୟାକୁଳେ ॥

ସେ ରାଜା ଅଜ୍ଞାନ ହୋଇଲା । ବେଳେ ଶ୍ରୀହରି ନ ଚିହ୍ନିଲା ॥
ଶ୍ରୀକୃଷ୍ଣ ନ ଭଜିଲା ଯେଣୁ । ଏ ମୃତ୍ୟୁଭୟ ତା'ର ତେଣୁ ॥
ଯଜ୍ଞାଦି ପୁଣ୍ୟକର୍ମ ଯେତେ । ରକ୍ଷଣେ ନୋହିଲେ ସମର୍ଥେ ॥
ସେ କାମ୍ୟକର୍ମେ ଯଜ୍ଞ କରି । ଅନେକ ପଶୁ ଥିଲା ମାରି ॥
ନିର୍ଦ୍ଦୋଷ-ଜୀବଙ୍କୁ ରାଜନ । ଯଜ୍ଞେ ବଧିଲା ପ୍ରତିଦିନ ॥
ସେ ରୋଷ ମନେ ଧରିଥିଲେ । ତକ୍ଷଣେ ରାଜାକୁ ଭେଟିଲେ ॥
ବେଗେ ବେଢ଼ିଲେ ପଶୁଗଣ । କୁଠାର କଲେ ପ୍ରହାରଣ ॥
ନାନାଦି ତୀକ୍ଷ୍ଣ ଶସ୍ତ୍ର ଧରି । କାଟନ୍ତି ସେ ଦୁଃଖ ସୁମରି ॥
ତୁଳା ପ୍ରମାଣେ ଅବଶେଷେ । ସେ ପଶୁଗଣେ ଅତି ରୋଷେ ॥
ଭକ୍ଷନ୍ତି ଅସ୍ଥି ଶେଷଯାଏ । ନିର୍ଦ୍ଦୟ-ଚିତ୍ତେ ସେ ନିର୍ଭୟେ ॥
ଦୁଃସହ ଦୁଃଖ-ପୀଡ଼ା ଯେତେ । ସହଇ କର୍ମର ଆୟତ୍ତେ ॥
ଏଣୁ ସୁସଙ୍ଗ ଦୋଷ ତାର । ହୋଇଲା ମହା ଦୁଃଖ ଘୋର ॥
ସେ ସ୍ତିରୀବଶେ ବଶ ହୋଇ । ସେବକ ଜନ ପ୍ରାୟ ଥାଇ ॥
ତା ବଶେ ହୋଇଲା ଅଧୀନ । ହରିଲା ତାର ପୂର୍ବ ଜ୍ଞାନ ॥
ହରି ଚରଣେ ନ ଭଜିଲା । ଏ ଘେନି କଷ୍ଟ ଲଭିଲା ॥
ପଡ଼ିଲା ଅକ୍ଷତମ ଘୋରେ । କିଛି ନ ସ୍ଫୁରେ ତା ମନରେ ॥
କୃଷ୍ଣ ଅଭାବେ ମୂଢ଼ମତି । ଏଣୁ ଦୁରନ୍ତ ମ୍ଳେଚ୍ଛ ଗତି ॥
ନରକେ ବହୁ ସମ୍ବତ୍ସର । ଭୋଗ ସେ କଲା ନୃପବର ॥
ପୀଡ଼ିତ କର୍ମର ଅବଶେ । ଯେ ପୂର୍ବକର୍ମ ପାପ ଦୋଷେ ॥
ଏମନ୍ତେ ନାନା ଦୁଃଖେ ପଡ଼ି । ଯେଣୁ ସ୍ୱଧର୍ମ ମାର୍ଗ ଛାଡ଼ି ॥
ଈଶ୍ୱର କାବ୍ୟ ବେଦବାଣୀ । ଅଜ୍ଞାନେ ତେଜିଲା ନ ଜାଣି ॥
ସେ ପାପ ଅନ୍ତେ ଜନ୍ମ ତାର । ବିଦର୍ଭ ରାଜାର ମନ୍ଦିର ॥
ସେ ରାଜା ମରଣ ସମୟେ । ସ୍ତ୍ରୀ ସଙ୍ଗ ଭାବିଲା ହୃଦୟେ ॥
ତେଣୁ ସେ ପ୍ରମଦା ହୋଇଲା । ପୁରୁଷ ଅଙ୍ଗ ପ୍ରତେଜିଲା ॥
ସେ ପତିବ୍ରତା ସଂଗ ଫଳେ । ଜନ୍ମ ଲଭିଲା ସାଧୁକୁଳେ ॥
ଏଣୁ ସୁସଙ୍ଗ ମୋକ୍ଷ ପ୍ରାଣୀ । ଜ୍ଞାନ ଭକତି ପରିମାଣି ॥
ବିଦର୍ଭ ମନ୍ଦିରେ ସୁନ୍ଦରୀ । ଜନ୍ମ ଲଭିଲା ଦେହ ଧରି ॥
ମଳୟଧ୍ୱଜ ନାମେ ରାଜା । ସେ କୃଷ୍ଣଭକ୍ତ ମହାତେଜା ॥
କନ୍ୟାର ରୂପ-ଗୁଣ ଶୁଣି । ଚିତ୍ତେ କଳ୍ପିଲା ନୃପମଣି ॥
ସେ ସୈନ୍ୟସାମନ୍ତ ସାଜିଲା । ବିଦର୍ଭ-ଦେଶେ ବିଜେ କଲା ॥
ସେ ରାଜା ସଙ୍ଗତେ ରାଜନ । ଯୁଦ୍ଧେ ଜିଣିଲା ରାଜ୍ୟ-ଧନ ॥
ବଳେ ହରିଲା ତା' ଦୁଲଣୀ । ବିବାହ କଲା ନୃପମଣି ॥
ମଳୟଧ୍ୱଜ ନୃପବର । ଦ୍ରାବିଡ଼ଦେଶେ ଅଧିକାର ॥
ସେ କନ୍ୟା ଗର୍ଭେ ତା' ସନ୍ତତି । ଜନ୍ମିଲା ସୁଗୁଣ ସୁମତି ॥

ସେ ରାଜା ସଦୃଶ କୁମାରୀ । ପ୍ରସବ କଲା ତା'ର ନାରୀ ॥
ଶ୍ରୀକୃଷ୍ଣ ସେବାରୁଚି ନାମ । ତା ନାମ ଦେଲେ ସେ ରାଜନ
ସପତ ତନୟ ଅନ୍ତରେ । ଜନ୍ମିଲେ ସେ ନାରୀ ଉଦରେ ॥
ଶ୍ରବଣ କୀର୍ତ୍ତନ ଯେ ଆଦି । ଏ ସପ୍ତନାମେ ଭକ୍ତିସିଦ୍ଧି ॥
ଏକୁ ଅନେକ ତାହାଙ୍କର । ଅର୍ବୁଦ ଅର୍ବୁଦ କୁମର ॥
ବଂଶର ସଂଖ୍ୟା ତା' ନ ଯାଇ । ଅସଂଖ୍ୟ ଅପ୍ରମିତ ହୋଇ ॥
ସେ ମନ୍ୱନ୍ତର ଭୋଗ କଲେ । ଆନନ୍ଦେ କୃଷ୍ଣଙ୍କୁ ଭଜିଲେ ॥
ମଳୟଧ୍ୱଜର ଦୁହିତା । ସେ ଜ୍ଞାନବତୀ ଧୃତବ୍ରତା ॥
ଅଗସ୍ତି ତା'ରେ ବିଭା ହେଲେ । ତା ଗର୍ଭେ ଦୃଢ଼ଚ୍ୟୁତ ହେଲେ ॥
ମଳୟଧ୍ୱଜ ରାଜରଷି । ପୁତ୍ରଙ୍କୁ ଡକାଇଲେ ବସି ॥
ବିଭାଗ କରି ରାଜ୍ୟ-ଖଣ୍ଡ । ପୁତ୍ରଙ୍କୁ ଦେଲେ ଛତ୍ର-ଦଣ୍ଡ ॥
କୃଷ୍ଣ ଭଜନେ ନରସାଇଁ । ରହିଲେ କୁଳାଚଳେ ଯାଇ ॥
ତା'ର ବୈଦର୍ଭୀ ନାମେ ଜାୟା । ଛାଡ଼ିଣ ଗୃହ-ସୁତ ମାୟ ॥
ସେ ରଜା ପଛେ ଗୋଡ଼ାଇଲା । ସୁଧାଂଶୁ ପଛେ ଶୋଭା ଗଲା ॥
ସେ କୁଳାଚଳ ଗିରିବର । ସକଳ ତୀର୍ଥଙ୍କ ମନ୍ଦିର ॥
ତୀର୍ଥଙ୍କ ନାମ ଏକା ଏକା । ଯେ ତାମ୍ରପର୍ଣ୍ଣୀ ବଟୋଦକା ॥
ଅପରେ ଚନ୍ଦ୍ରବସା ନାମ । ଏ ଆଦି ପୁଣ୍ୟତୀର୍ଥ ଧାମ ॥
କୃଷ୍ଣ-ଭକତି ସୁସାଧନେ । ତପ ଆଚରି ଶୁଦ୍ଧମନେ ॥
ସେ ପୁଣ୍ୟ-ତୀର୍ଥ-ଜଳେ ନିତି । ସ୍ନାନାଦି କର୍ମ ଯେ କରନ୍ତି ॥
ଦୁରନ୍ତ ବାହ୍ୟ-ଅନ୍ତଃମଳ । ସେ ଜଳେ ହୋଇଲା ନିର୍ମଳ ॥
ତପ ସାଧନେ ଅତିରେକ । ଭକ୍ଷିଣ ଫଳ-ମୂଳ-ଶାକ ॥
ପୁଷ୍ପ କୋମଳ ପତ୍ର ଜଳ । ତୃଣାଦି ଶଯ୍ୟାରେ ନିଶ୍ଚଳ ॥
କଠୋର ତପ ଆଚରିଲେ । ଶରୀର ତପେ ଶୁଖାଇଲେ ॥
ଶୀତ ଉଷ୍ଣାଦି ତ୍ରୟତାପ । କ୍ଷୁଧା ପିପାସା ତେଜି ଭୂପ ॥
ଦୁଃଖ-ସୁଖାଦି ସମ ତା'ରେ । ଶୋକ ହରଷ ଏକ କରେ ॥
ଏ ସର୍ବ ଜିଣି ସେ ରାଜନ । ନିର୍ମଳ ପ୍ରକାଶିଲା ମନ ॥
ମିତ୍ର ଅରି ସମ ତା'ର । ଲାଭ ଅଲାଭ ଏକାକାର ॥
ଏ ରୂପେ ଘୋର-ତପ କଲେ । ବ୍ରହ୍ମରେ ଆତ୍ମା ନିରୋପିଲେ ॥
ମନ ପବନ ବଶ କରି । ଦୁର୍ଜୟ-ଇନ୍ଦ୍ରିୟ ନିବାରି ॥
ଦୃଢ଼-ଆସନେ ନୃପବର । ସ୍ଥାଣୁ ସମାନେ ହୋଇ ସ୍ଥିର ॥
ଶତେ-ବରଷ ଦେବମାନେ । ନିଶ୍ଚଳେ ବସି ଯୋଗଧ୍ୟାନେ ॥
ଶ୍ରୀବାସୁଦେବ କରି ରତି । ଦେହ-ବିଷୟ ନ ଜାଣନ୍ତି ॥
ଆତ୍ମାକୁ ଆତ୍ମାରେ ଦେଖିଲେ । ଆନନ୍ଦ-ସାଗରେ ବୁଡ଼ିଲେ ॥
ସେ ଆତ୍ମା ବ୍ୟାପିତ ସକଳ । ନ ଘେନେ ବିଷୟ ଜଞ୍ଜାଳ ॥
ନିଶ୍ଚେ ଜାଣିଲେ ମିଥ୍ୟାମୟେ । ଏ ସର୍ବ ସପନର ପ୍ରାୟେ ॥
ଯେସନେ ସ୍ୱପ୍ନ ମନୋରଥେ । ଭ୍ରମଇ ନିଦ୍ରାର ଆୟତ୍ତେ ॥
ନାନା ବିକାର ସେ ଦେଖଇ । ଶିର-ଛେଦନ ହେଉଥାଇ ॥
ପ୍ରତ୍ୟକ୍ଷେ ମଣେ ତାହା ସତ୍ୟ । ଅଜ୍ଞାନ-ମୋହେ ଭ୍ରମ ଚିତ୍ତ ॥
ତହିଁ ଆତ୍ମାର ଲିପ୍ତି ନାହିଁ । ଏ ରୂପେ ଆତ୍ମା ସର୍ବଦେହୀ ॥
ଯେ ହରି ଗୁରୁ ଭଗବାନ । କହିଣ ଥିଲେ ଦିବ୍ୟଜ୍ଞାନ ॥
ସେ ଜ୍ଞାନ-ଦୀକ୍ଷା-ଦୀପ ପାଇ । ଦେଖିଲେ ଆତ୍ମା ସର୍ବଠାଇଁ ॥
ବ୍ରହ୍ମକୁ ଆତ୍ମାରେ ଦେଖିଲେ । ଆତ୍ମାକୁ ବ୍ରହ୍ମେ ନିରୋପିଲେ ॥
ଯେ କିଛି ଭେଦବୁଦ୍ଧି ଥିଲା । ସେ ସର୍ବ ଅଜ୍ଞାନ ଖଣ୍ଡିଲା ॥
ଏ ରୂପେ ଛାଡ଼ି କଳେବର । ସେ ଯୋଗବଳେ ଯୋଗେଶ୍ୱର
ନିଶ୍ଚଳ ଯୋଗାସନେ ରାୟେ । ଦିଶନ୍ତି ଧ୍ୟାନେ ଥିଲା ପ୍ରାୟେ ॥
ବିଦର୍ଭସୁତା ପତିବ୍ରତା । ଛାଡି ବିଷୟ-ଭୋଗ ଚିନ୍ତା ॥
ଖଣ୍ଡି ଅମ୍ବର ପରିଧାନ । ବେଣୀ-ପ୍ରବନ୍ଧ କେଶମାନ ॥
ପତି ସମୀପେ ବସିଥାଇ । ଦେଖନ୍ତେ ଅତି ଶୋଭା ପାଇ ॥
ଯେସନେ ଅଗ୍ନି ଶିଖା-ହୀନ । ସେ ରୂପେ ଦିଶନ୍ତି ରାଜନ ॥
ରାଜା ହୋଇଲେ ମୃତ୍ୟୁଗତ । ରାଣୀକି ନୋହିଲା ବିଦିତ ॥
ସୁସ୍ଥିର ଆସନେ ନୃପତି । ରାଣୀ ସେବାରେ ନ ଜାଣନ୍ତି ॥
ସ୍ୱାମୀ-ଚରଣେ ହସ୍ତ ଦେଲେ । ଉଷ୍ଣତା-ଭାବ ନ ଜାଣିଲେ ॥
ଦେଖିଲେ ପ୍ରାଣ ନାହିଁ ଦେହେ । ରାଣୀ ଅଜ୍ଞାନ-ଶୋକ-ମୋହେ
ଦୁରନ୍ତ ଚିନ୍ତାଭରେ ରାଣୀ । ପଡ଼ିଲା ମୃତ୍ୟୁ-ଶବ ଜାଣି ॥
ଅତି ବିଚ୍ଛେଦ ମନଦୁଃଖେ । ବଚନ ନ ସ୍ଫୁରେ ତା' ମୁଖେ ॥
ଯୂଥ-କୁରଙ୍ଗୀ ସଙ୍ଗ ହୀନେ । ଏକାକୀ ଭାଳଇ ଯେସନେ ॥
ତେସନେ ରାଣୀ ଛନ୍ନ ହୋଇ । ଦୁଃଖେ ସେ ରୋଦନ କରଇ ॥
ନିକଟେ ଜ୍ଞାତି-ବନ୍ଧୁଜନ । ନ ଦେଖି ଅତି ଭୟେ ଛନ୍ନ ॥
ରୋଦଇ ବିଚିତ୍ର-ବିଳାପେ । ସେ ଘୋର ବନେ ମନସ୍ତାପେ
ଉଠ ହେ ନୃପତି କେଶରୀ । ଏ ଘୋର ନିଦ୍ରା ପରିହରି ॥
କ୍ଷତ୍ରିୟ-ଧର୍ମ ଏ ନୁହଁଇ । ଶତ୍ରୁ ହସିବେ ନିନ୍ଦା ବହି ॥
ଏ ଯେ ଦୁର୍ଜୟ ଶୋକ ମୋର । ଭୋ ନାଥ ବେଗେ ପରିହର ॥
ଶୋକେ ଅଜ୍ଞାନ ମନତାପେ । ସେ ଅତି ରୋଦଇଁ ଦୁରାପେ ॥
ଉଦଧି-ଧର୍ମ ଏ ତୁମ୍ଭର । ଆରତ ଜନ ଦୁଃଖ ହର ॥
ପ୍ରଜାଏ ହୋଇବେ ନିରେଖ । ଆଶ୍ରୟ ନ ପାଇଁ ବିମୁଖ ॥
ରାଜନ୍ୟ-ଧର୍ମ ଏ ତୁମ୍ଭର । ଆରତ ଜନ ଦୁଃଖ ହର ॥
ଏମନ୍ତେ ଅତି ମନସ୍ତାପେ । କହେ ବିଭ୍ରମେ ସେ ବିଳାପେ
ମୁଁ ଏବେ କେମନ୍ତେ ବଞ୍ଚିବି । କାହାର ଚରଣେ ସେବିବି ॥
ତୋ ମୁଖ-କମଳ ଅଭାବେ । ମୋ ପ୍ରାଣ ରହେ କିପାଁ ହୃଦେ
ଏ ମୂଢ଼ ଦାରୁଣ ଜୀବନ । ନ ଯାଇ ରହିଛି ଅଜ୍ଞାନ ॥

ତା ଅଶ୍ରୁ ଉଦକ ନିର୍ଝରେ । ନୟନୁ ପଡଇ ଭୂମିରେ ॥
ହିମାଦ୍ରି- ଶିଖେ ଚନ୍ଦ୍ର ଯେହ୍ନେ । ତା' ମୁଖପଙ୍କଜ ତେସନେ ॥
କୁଚ-ଅମ୍ବର ଧୌତ କରି । ଯେହ୍ନେ ସ୍ରବିତ ସୁରବାରି ॥
ଏରୂପେ ଚିନ୍ତାର୍ଣ୍ଣବ-ଘୋରେ । ସେ ରାଣୀ ବୁଡ଼ିଲା ନିର୍ଭରେ ॥
ଏମନ୍ତେ ପଡିପାଦେ ପଡ଼ି । ରୋଦଇ ଶିରେ କର ତାଡି ॥
ସେ ରାଣୀ କରନ୍ତେ ରୋଦନ । ବେଳ ହୋଇଲା ଅବସାନ ॥
ଏ ବନ-ଘୋରେ ସଙ୍ଗ ନାହି । ରୋଦନ କାଳଏ ନୁହଁଇ ॥
ସତ୍ୱରେ ଉଠିଣ ତରୁଣୀ । ଶୁଷ୍କ ଇନ୍ଧନ ବେଗେ ଆଣି ॥
ଚିତା ସଂଯୋଗି ବେଗବନ୍ତେ । ସେ ବନେ ନିର୍ଜନେ ଏକାନ୍ତେ
ସ୍ୱାମୀଙ୍କି ତହିଁ ନିବେଶିଲା । ବିଧାନେ ମୁଖାଗ୍ନି ସେ ଦେଲା ॥
ଅନୁଗମନ ଯିବାପାଇଁ । ବସିଲା ସ୍ୱାମୀ-ପଦ ଧ୍ୟାୟି ॥
ଅନଳ ପ୍ରଦକ୍ଷିଣ କଲେ । ସ୍ୱାମୀ ସଙ୍ଗତେ ଯିବା ବେଳେ
ଅଦ୍ଭୁତେ ବ୍ରାହ୍ମଣ ମିଳିଲେ । ସେ ତା'ର ପୂର୍ବେ ସଖା ଥିଲେ ॥
ସେ ବିପ୍ର ରାଣୀ ହସ୍ତ ଧରି । କହେ ପ୍ରବୋଧି ଶାନ୍ତ କରି ॥

## ବ୍ରାହ୍ମଣ ଉବାଚ

ଶୁଣ ସୁନ୍ଦରୀ ମନୋହାରୀ । କେ ତୁମ୍ଭେ ଅଟ କାହା ନାରୀ ॥
ଏକେ ଶୟନେ ତୋ'ର କତି । କା ପାଇଁ ବିଳପୁ ଯୁବତୀ ॥
ସୁମରି କାନ୍ଦୁ ଯା'ର ପାଇଁ । ଏ ତୋର ଦୁଃଖ ନ ଘେନଇ ॥
ତୁ ଯେ ବିଳପୁ ଅବିଚାରେ । ଏ ତୋର ସ୍ନେହ ଛାଡ଼ି ଦୂରେ ॥
ଗମିଲା ନିଜ କର୍ମବଳେ । ତୋତେ ନିବେଶି ଶୋକାନଳେ ॥
ତୁ ତାହା ନ ବୁଝୁ ସୁନ୍ଦରୀ । ବିଅର୍ଥେ ମରୁ ଶୋକ କରି ॥
ଯେ ପତି ହୋଇଥିଲା ତୋର । ସେ ଜୀବଆତ୍ମାଟି ମୋହର ॥
ଯେଣୁ ତୁ ଆତ୍ମା ନ ଚିହ୍ନିଲୁ । ଏଣୁ ଅଜ୍ଞାନେ ନିମଜ୍ଜିଲୁ ॥
ମୁଁ ପୂର୍ବସଖାଟି ତୋହର । ତୁ ପ୍ରାଣସଖୀ ଅଟୁ ମୋର ॥
ଆପଣା ସଖା ନ ଚିହ୍ନିଲୁ । ଏ ମାୟା ମୋହେ ନିମଜ୍ଜିଲୁ ॥
ତୁ ମୋତେ ଛାଡ଼ି ଏକା କରି । ଅଇଲୁ ମୃତ୍ୟୁଭୟ ପୁରୀ ॥
ଏ ଭୂମି ବହୁଭୋଗ କଲୁ । ମୋ ସଙ୍ଗଏ ରସୁ ତେଜିଲୁ ॥
ତୁ ଆମ୍ଭେ ଏକ ବେନିଅଂଶ । ଏ ମାନସରୋବରେ ବାସ ॥
ଏ ବେନିଅଂଶ ହଂସ ହୋଇ । ସେ ଗୃହ ଛାଡ଼ି ଯେ ନ ଯାଇ
ସହସ୍ରେ ଯୁଗ ପରିଯନ୍ତେ । ମାନସେ ରହିଲୁ ଏକାନ୍ତେ ॥
ତୁ ମୋତେ ଛାଡ଼ିଣ ସେଠାରେ । ଅଇଲୁ ଏ ମହୀ ଭୋଗରେ ॥
ପ୍ରବେଶି ଏ ମର୍ତ୍ତ୍ୟମଣ୍ଡଳ । ଏଥି ଦେଖିଲୁ ଦିବ୍ୟସ୍ଥଳ ॥
ସେ ପୁରେ ଏକ ନାରୀ ଥିଲା । ସେ ତୋର ମନ ବନ୍ଦୀ କଲା ॥
ତା ବଶେ ନୋହେ ତୋ ଆୟତ୍ତ । ମିଥ୍ୟାଭିଳାଷେ ମୋହ ଚିତ୍ତ ॥
ସେ ନଗ୍ରେ ପଞ୍ଚ-ଉପବନ । ନବ-ଦୁଆରେ ଶୋଭାବନ ॥
ସେ ନବଦ୍ୱାରେ ନିରୁପମ । ଦେବ-ମାନବେ ମନୋରମ ॥
ରକ୍ଷଣେ ଏକ ଦ୍ୱାରପାଳ । ସେ ତ୍ରୟ କୋଠାରେ ବିସ୍ତାର ॥
ଅପରେ ଅଛି କୁଳ ଷଟ । ବସାଇ ଭଲେ ପଞ୍ଚହାଟ ॥
ପଞ୍ଚ ଯେ ପ୍ରକାରେ ପ୍ରକୃତି । ଏକଇ ନାରୀ ରୂପବତୀ ॥
ଏ ପଞ୍ଚଇନ୍ଦ୍ରିଙ୍କ ବିଷୟ । ଆରାମ ତହିଁରେ ନିଶ୍ଚୟ ॥
ଏକଇ ପ୍ରାଣ ତହିଁ ଦ୍ୱାରୀ । ସେ ନବଦ୍ୱାର ରକ୍ଷାକାରୀ ॥
ପୃଥିବୀ ଆପ ତେଜ ମାନ । ଏକା ସେ ତାହାର ସଦନ ॥
ଜ୍ଞାନ ଇନ୍ଦ୍ରିୟ ପାଞ୍ଚମନ । ତହିଁରେ ଷଟକୁଳ ଜାଣ ॥
ଏ କ୍ରିୟାଶକ୍ତି ତହିଁ ହାଟ । ପଞ୍ଚ ବିଷୟ ତହିଁ ବାଟ ॥
ପ୍ରକୃତି ପଞ୍ଚବିଂଶ ଗୁଣ । ଏ ରୂପେ ସେ ହାଟ ଭିଆଣ ॥
ଏ ପାପ-ପୁଣ୍ୟ କର୍ମ ଦୁଇ । କ୍ରୟ ବିକ୍ରୟ ତହିଁହୋଇ ॥
ଏ ସଙ୍ଗେ ମନ ସଞ୍ଚରଇ । ସୁକର୍ମ ବିକର୍ମ ଚଳଇ ॥
ସେ ହାଟେଶ୍ୱରୀ ବୁଦ୍ଧି ଥିଲା । ସେ ତୋର ମନ ବନ୍ଦୀ କଲା ॥
ତୁ ଭୋଗ କଲୁ ତାକୁ ତହିଁ । ମୋତେ ତୁ ସମ୍ଭାଦିଲୁ ନାହିଁ ॥
ଏକାନ୍ତେ ନାରୀସଙ୍ଗ କଲୁ । ଏ ପାପଦଶା ତୁ ଲଭିଲୁ ॥
ନୋହୁ ତୁ ପତ୍ନୀ ପୁରଞ୍ଜନ । ଏ ବୀର ନୋହେ ତୋର କାନ୍ତ
ନୋହୁ ତୁ ବିଦର୍ଭ ଦୁହିତୀ । ଯା ଲାଗି ତୋର ଏ ଦୁର୍ଗତି ॥
ମୁଁ କରି ଅଛି ଏହୁ ମାୟା । ପୁରୁଷ-ପ୍ରକୃତିରେ କାୟା ॥
ଛାଡ଼ ଏ ମାୟା ମୋହ ମତି । ଆମ୍ଭେ ବେନି ହଂସ ସଙ୍ଗତି ॥
ଏ ତୁମ୍ଭ ଆମ୍ଭ ନୋହେ ଭିନ୍ନ । ଏ ବେନି ଏକ କରି ଚିହ୍ନ ॥
ଯେବା ପଣ୍ଡିତ ଜ୍ଞାନମତି । ଏ ବେନି ଭେଦ ନ କରନ୍ତି ॥
ଅଜ୍ଞାନେ ଜ୍ଞାନ ଧର୍ମଭେଦ । ଅବିଦ୍ୟା ବିଦ୍ୟାରେ ଏ ଖେଦ ॥
ଯେହ୍ନେ ମୁକୁରେ ଦେଖେ ଦେହୀ । ଏକଇ ଅଙ୍ଗ ଦିଶେ ଦୁଇ ॥
ମୁକୁର ନ ଥିଲେ ନ ଦିଶେ । ଏମନ୍ତ ଏ ଭେଦ ବିଶେଷେ ॥
ନାରଦ କହନ୍ତି ସଦୟେ । ଶୁଣ ପ୍ରାଚୀନ ନୃପରାୟେ ॥
ଏ ଯେ ଆଧ୍ୟାତ୍ମ ଦିବ୍ୟଜ୍ଞାନ । କହିଲୁ ପରୋକ୍ଷ ବାଦେଣ ॥
ପରୋକ୍ଷବାଦ ପ୍ରିୟ ହରି । ଏଣୁ ଯେ କହିଲୁ ବିସ୍ତାରି ॥
ଚତୁର୍ଥ ସ୍କନ୍ଧେ ଭାଗବତ । ଏ ପୁରଞ୍ଜନ ଚରିତ ॥
ଏ ଅଷ୍ଟବିଂଶତି ଅଧାରେ । ପ୍ରାକୃତଭାଷା ଏ ପ୍ରକାରେ ॥
ଏହା ଶ୍ରବଣେ ପ୍ରାଣୀଙ୍କର । ଖଣ୍ଡିବ ବହୁ ଦୁଃଖ ଘୋର ॥
ସନ୍ଥ ଚରଣେ ଦେଇ ଚିତ୍ତ । ବର୍ଣ୍ଣଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ଚତୁର୍ଥସ୍କନ୍ଧେ ପୁରଞ୍ଜନୋପାଖ୍ୟାନେ ଅଷ୍ଟାବିଂଶୋଽଧ୍ୟାୟଃ*

## ଊନତ୍ରିଂଶ ଅଧ୍ୟାୟ
### ମୈତ୍ରେୟ ଉବାଚ

ସେ ଯେ ପ୍ରାଚୀନନୃପବର । ନାରଦ ପାଦେ ଦେଇ ଶିର ॥
କହଇ ଅତି ହରଷରେ । ସେ ମୁନି ବ୍ରହ୍ମାର କୁମରେ ॥

### ପ୍ରାଚୀନବର୍ହି ଉବାଚ

ଭୋ ମୁନି ତୁମ୍ଭେ ଜ୍ଞାନପାର । କହିଲ ଅଧ୍ୟାତ୍ମ ବିଚାର ॥
ତୁମ୍ଭେ ଯେ ପରୋକ୍ଷବାଦେଣ । କହିଲ ଯେ ସାଂଖ୍ୟ କାରଣ ॥
ମୁଁ ହେଜି ନ ପାରିଲି ଚିତ୍ତେ । ଛେଦି ସଂଶୟ କହ ମୋତେ ॥
ଯେ ମାର୍ଗେ ବୁଝିବଇଁ ମୁହିଁ । ସେ ମାର୍ଗେ କହିବା ଗୋସାଇଁ
ଯେବା ପଣ୍ଡିତ ଦୃଢ଼ମତି । ଏ ଅନୁଭବ ସେ ଜାଣନ୍ତି ॥
ଆମ୍ଭର ଏଣେ ନାହିଁ ଜ୍ଞାନ । ବିଷୟ-ଜଡ଼େ ମନ ଛନ୍ନ ॥
ଏଣୁ ନ ଧରେ ଜ୍ଞାନେ ରତି । ବିବେକ ନୋହେ ଆମ୍ଭ ମତି ॥
ଭୋ ମୁନି ଫେଡ ପୁଣ ତାହା । ମୋ ଅର୍ଥେ କହ ପୁଣ୍ୟଦେହା ॥
ସେ ପୁରଞ୍ଜନର ବିଚାର । ଶ୍ରବଣେ ଜ୍ଞାନ ହେବ ମୋର ॥
ଶୁଣି ନାରଦ ମହାଋଷି । ତା' ଭାବେ କହନ୍ତି ବିଶେଷି ॥

### ନାରଦ ଉବାଚ

ଶୁଣ ରାଜନ ସାବଧାନ । କହିବା ପରୋକ୍ଷ ଯେ ଜ୍ଞାନ ॥
ପୁରୁଷ ପୁରଞ୍ଜନ ଯେହି । କର୍ମରୁ ପୁର କଲା ସେହି ॥
କେ ଏକ ତ୍ରୟ ବେନିପାଦ । ବହୁ ଚଦ୍ବାର କେ ନିଷ୍ପାଦ ॥
ଏମନ୍ତେ ନାନା ପୁର କରି । ଏ ଜୀବ ତା ମଧ୍ୟେ ବିହରି ॥
ଅଜ୍ଞାତ-ସଖା ଯା'କୁ କହି । ଈଶ୍ୱର ନାମ ଅଟେ ସେହି ॥
ସେ ନାମ-ରୂପରୁ ବାହାର । ଏଣୁ ଅଜ୍ଞାତ ନାମ ତା'ର ॥
ସମଗ୍ର ପ୍ରକୃତି ଗୁଣକୁ । ପୁରୁଷ ଇଚ୍ଛିଲେ ଭୋଗକୁ ॥
ତେବେ ଏ ପୁର ନବଦ୍ୱାରେ । ରଚନା କରେ ସେ ବେଭାରେ
ଯେ ପୁରେ ହସ୍ତପଦ ଘେନି । କରଇ କର୍ମ ଲାଭହାନି ॥
ସେ ପୁରେ ଥାଇ କରେ ଭୋଗ । ମାୟା ନିର୍ବନ୍ଧେ ଅନୁରାଗ ॥
ଏ ପୁରୁ ଅନ୍ୟ ପୁର ଯେହି । ଭୋଗ ସୁଖାଦି ନୋହେ ତହିଁ ॥
ଏ ଯେ ମାନବ କଳେବର । ଅଶେଷ ଦେହ ମଧେ ସାର ॥
ସେ ପୁର ମଧ୍ୟେ ଜୀବ ରହି । ଇନ୍ଦ୍ରି-ବିଷୟ ରସେ ମୋହି ॥
ବିବିଧ ସୁଖ ଭୋଗ ସାର । ଜୀବ ଭୁଞ୍ଜଇ ଏ ମନ୍ଦିର ॥
ସେ ପୁର ମଧେ ବୁଦ୍ଧି ନାରୀ । ଏକା ସେ ସର୍ବତ୍ର ବିହରି ॥
ସେ ଯେ ମମତ୍ୱେ ହୋଏ ଛନ୍ନ । ବୋଲଇ ଏ ମୋର ସଦନ ॥
ସେ ନାରୀ ବଶେ ଜୀବ ଥାଇ । ଇନ୍ଦ୍ରିୟ ଭୋଗେ ତୋଷ ହୋଇ
ଇନ୍ଦ୍ରିୟଗଣ ବୁଦ୍ଧି ସଖା । ବିଷୟ ମାନେ ସଖୀ ଲେଖା ॥

ଯେ ଜ୍ଞାନ କର୍ମେନ୍ଦ୍ରିୟ ଗଣେ । ପୁରୁଷେ ଭୋଗ-ବିଷେ ଟାଣେ
ଏ ଜ୍ଞାନ-କର୍ମ-ଇନ୍ଦ୍ରିଦଶ । ଏହାଙ୍କ ଭୋଗେ ଜୀବ ବଶ ॥
ଏ ପାପ ପୁଣ୍ୟ ଆଦି କରି । ବଳେ ଭୁଞ୍ଜଇ କର୍ମ ଧରି ॥
ଏ ପୁର ଦ୍ୱାରୀ ସର୍ପ ଯେହି । ଏ ଦେହେ ପ୍ରାଣ ଅଟେ ସେହି
ସେ ପଞ୍ଚବୃତ୍ତିରେ ସଞ୍ଚାର । ଏଣୁ କହିଲୁଁ ପଞ୍ଚଶିର ॥
ପଞ୍ଚମସ୍ତକ ଏଣୁ ତା'ର । କହିଲୁ ତେଣୁ ନୃପବର ॥
ମହତ ଭଟ୍ଟ ଯାହା କହି । ମନର ନାମ ଅଟେସେହି ॥
ସେ ଦଶଇନ୍ଦ୍ରିଙ୍କ ନାୟକ । ତା'କୁ ଜିଣନ୍ତା ନାହିଁ ଲୋକ ॥
ତା'କୁ ଜିଣଇ ଯେବେ ଜନ । ସେ ଯୋଗୀ ଏ ତିନି ଭୁବନ ॥
ଉତ୍ତର ଦକ୍ଷିଣ ଯା' କହି । ରାଜା ପଞ୍ଚାଳ ଦେଶ ସେହି ॥
ଏ ପଞ୍ଚବିଷୟର ଆଳ । ଏହା ତୁ ବୁଝ ମହୀପାଳ ॥
ଇନ୍ଦ୍ରିୟ ଛିଦ୍ର ଯେତେ କହି । ଏ ପୁରେ ନବଦ୍ୱାର ସେହି ॥
ଏବେନି ଚକ୍ଷୁ ନାସା କର୍ଣ୍ଣ । ଯେ ମୁଖ ଗୁହ୍ୟ ଲିଙ୍ଗ ସ୍ଥାନ ॥
ଏହାକୁ ନବଦ୍ୱାର କହି । ଇନ୍ଦ୍ରିୟଗଣ ସ୍ଥାନ ଏହି ॥
ଏ ସଙ୍ଗେ ଜୀବର ଗମନ । ବିଷୟ କରେ ଆସ୍ୱାଦନ ॥
ନୟନ ମୁଖ ନାସା ତା'ର । ଏ ପୂର୍ବ ଦିଗ ପଞ୍ଚଦ୍ୱାର ॥
ଉତ୍ତର ଦକ୍ଷିଣ ଯା' କହି । ଏ ବେନି କର୍ଣ୍ଣଦ୍ୱାର ସେହି ॥
ପଶ୍ଚିମ ଦିଗେ ବେନି ଦ୍ୱାର । ଏ ଲିଙ୍ଗ ଗୁହ୍ୟ ନୃପବର ॥
ଏ ନବଦ୍ୱାରେଣ ନିର୍ମିତ । ଯେଝା ବିଷୟେ ଆସ୍ୱାଦିତ ॥
ସେବନ୍ତି ଆତ୍ମାରେ ବିହରି । ଏକ ଆରେକ ଆଗସରି ॥
ଖଦ୍ୟୋତା ଆବିର୍ମୁଖୀ ଦୁଇ । ଚକ୍ଷୁର ନାମ ଏ ବୋଲାଇ ॥
ଏ ବେନିଦ୍ୱାରେ ପୁରଞ୍ଜନ । କରଇ ରୂପ ସମ୍ପାଦନ ॥
ନଳିନୀ ନାଳିନୀ ଯେ ଦୁଇ । ନାସିକା ନାମ ସେ ଅଟଇ ॥
ଏ ଦ୍ୱାରେ ଅବଧୂତ ନାମ । ଗନ୍ଧାଦି ଆମୋଦ ପବନ ॥
ସୁଗନ୍ଧ ଦୁର୍ଗନ୍ଧ ସହିତେ । ଏ ଦ୍ୱାରେ ଘେନଇ ନିରତେ ॥
ବଦନ ନାମେ ମୁଖ୍ୟ ଦ୍ୱାର । ରସଜ୍ଞ ବାକ୍ୟ ତା' ମଧୁର ॥
ସ୍ୱାଦୁ ଅସ୍ୱାଦୁ ଦ୍ରବ୍ୟ ଯେତେ । ଏ ଦ୍ୱାରେ ଆସ୍ୱାଦେ ନିରତେ ॥
ପିତୃହୂ ଦେବହୂ ଯେ ନାମ । ଏ ବେନି କର୍ଣ୍ଣ ଦକ୍ଷ ବାମ ॥
ପିତୃହୂ ଦକ୍ଷିଣ ଅଟଇ । ଦେବହୂ ବାମେଣ ବସଇ ॥
ଏ ବେନି ଇନ୍ଦ୍ରିୟେ ରାଜନ । ବାକ୍ୟାଦି ରସ ଆସ୍ୱାଦନ ॥
ଏ ସାରାସାରା ଭାବ ଯେତେ । ଏ ଦ୍ୱାରେ ଘେନଇ ନିରତେ ॥
ଏ ଶ୍ରୁତିଯୁଗେ ପୁରଞ୍ଜନ । କରଇ ଶବ୍ଦ ଆସ୍ୱାଦନ ॥
ନିନ୍ଦା ସ୍ତବନ ବାକ୍ୟ ଯେତେ । ଏ ଦ୍ୱାରେ ଘେନନ୍ତି ଏ ନିତ୍ୟେ
ପ୍ରବୃତ୍ତି ନିବୃତ୍ତି ଏ ଦୁଇ । ଶାସ୍ତ୍ର ପାଞ୍ଚାଳ ବୋଲି କହି ॥

ଏ ପିତୃଯାନ ଦେବଯାନ । ଗତିରେ କରନ୍ତି ଗମନ ॥
ଏ ମାର୍ଗେ ଥା'ନ୍ତି ନିରନ୍ତର । ସେ ଇଚ୍ଛା ସୁଖେ ନୃପବର ॥
ଆସୁରୀ ଦ୍ୱାର ଲିଙ୍ଗସ୍ଥାନ । ଦୁର୍ମଦ ଉପସ୍ଥର ନାମ ॥
ବ୍ୟାବାୟ ନାମ ଗତି କହି । ପ୍ରଜା ସର୍ଜନ କରେ ତହିଁ ॥
ତା' ଅଧୋଭାଗେ ଗୁହ୍ୟଦ୍ୱାର । ନିରତି ନାମଟି ତାହାର ॥
ବୈଶସ ନାମ ନର୍କ କହି । ସେ ଦ୍ୱାରେ ମଳ ଉସର୍ଗଇ ॥
ଅନ୍ଧ ବୋଲି ବୋଇଲୁ ଯାହା । ଏ ପାଣିପାଦ ବୋଲି ତାହା ॥
ଏ ବେନି ଇନ୍ଦ୍ରିଙ୍କ ବିଷୟ । କହିବା ଶୁଣ ତା' ନିର୍ଣ୍ଣୟ ॥
ଆଦାନ ପ୍ରଦାନ ସେ କରେ । ଯେଝା ବିଷୟ ଅଧିକାରେ ॥
ଦ୍ୱିତୀୟ ଅନ୍ଧ ଯେ ପୟର । କହିବା ଏଥିର ବିଚାର ॥
ଏ ଇନ୍ଦ୍ରି ଯୋଗେ ପୁରଞ୍ଜନ । କାମାର୍ଥେ କରଇ ଗମନ ॥
ଅନ୍ତର ପୁର ବୋଲି ଯାହା । ହୃଦୟପଦ୍ମ କହି ତାହା ॥
ବିଷୂଚି ନାମଟି ଯାହାର । ଏ ମନ ନାମ ନୃପବର ॥
ତା ବଶେ ଥାଇଣ ପୁରୁଷ । ଭଜଇ ହରଷ ବିରସ ॥
ଏ ଜୀବ ପ୍ରକାଶ୍ୟେ ଚଳଇ । ବୁଦ୍ଧି ଯହିଁକି ପ୍ରବର୍ତ୍ତାଇ ॥
ତା ବଶେ ପୁରୁଷ ଅଧୀନ । କରଇ ନାନା କର୍ମମାନ ॥
ଏ ଦେହ ରଥ ସ୍ୱରୂପେଣ । ତୋତେ କହିଛି ନୃପରାଣ ॥
ଏ ରଥେ ଅଶ୍ୱରୂପ ହୋଇ । ଇନ୍ଦ୍ରିୟଗଣେ ଛନ୍ତି ରହି ॥
ପଞ୍ଚ ବିଷୟ ମାର୍ଗେ ହୟେ । ଗମନ୍ତି ସମ୍ବତ୍ସର ଯାଏ ॥
ଈଶ୍ୱର ଆଜ୍ଞାରେ ନିର୍ମିତ । ଏ ରଥେ ସକଳ ସଂଯୁତ ॥
ଏ ରଥେ ପୁଣ୍ୟ ପାପ ଦୁଇ । ସେ ଚକ୍ର ରୂପେ ତହିଁ ରହିଁ ॥
ଧ୍ୱଜ ସ୍ୱରୂପେ ତିନିଗୁଣ । ରଥ ବନ୍ଧନ ପଞ୍ଚପ୍ରାଣ ॥
ବୁଦ୍ଧି ସାରଥି ରୂପେ ରହି । ଏ ମନ ରଶ୍ମି ଅଟେ ତହିଁ ॥
ହୃଦୟ ପଙ୍କଜରେ ରଥୀ । ବସିବା ଆସନ ତା' ତିଥି ॥
ରଥ କୁବର ଦ୍ୱନ୍ଦ୍ୱ ଭାର । ଇନ୍ଦ୍ରି ବିଷୟ ତହିଁ ଶର ॥
ସପତ ଧାତୁ ଆବରଣ । ତା'ର ବିକ୍ରମ ମୂର୍ତ୍ତି ଜାଣ ॥
ଇନ୍ଦ୍ରିୟ ଗସେ ଗସୁଥାଇ । ସେ ମୃଗତୃଷ୍ଣାରେ ଧାମଇଁ ॥
ଯେ ଯାହା ବିଷୟେ ରସିଣ । ଆସ୍ୱାଦ କରି ଅନୁକ୍ଷଣ ॥
ଧନ୍ୟ ଯେ କର୍ମ ଏହାଙ୍କର । ଦୁର୍ଜୟ ଦୁଷ୍ଟ ଦୁରାଚାର ॥
ଏ ଜୀବ ଭୁଞ୍ଜେ ଇନ୍ଦ୍ରି ମୁଖେ । ଅଜ୍ଞାନମତି ମୋହ ଦୁଃଖେ ॥
ମୃଗତୃଷ୍ଣାରେ ଜଳ କରି । ଭୁଞ୍ଜଇ ମାୟା ମିଥ୍ୟା ଭରି ॥
କାଳର ଗତି ନ ଜାଣଇ । ଏ ମାୟାଭୋଗେ ମତ୍ତ ହୋଇ ॥
ଇନ୍ଦ୍ରିଙ୍କ ଅନ୍ୟାୟ ବିଷୟେ । ଭୁଞ୍ଜଇ ମୃଗୟାର ପ୍ରାୟେ ॥
ନିରତେ ହରେ ନିଜ ପ୍ରାଣ । ନ ଜାଣେ ଏ ମୂଢ଼ ଅଜ୍ଞାନ ॥

ଏ ସମ୍ବତ୍ସର ରୂପେ କାଳ । ଚଣ୍ଡବେଗ ନାମେ ଭୂପାଳ ॥
ଗନ୍ଧ ଗନ୍ଧର୍ବୀ ଦିବା ନିଶି । ତ୍ରିଶତ-ଷାଠିଏ ପ୍ରକାଶି ॥
ଏ ସର୍ବେ କାଳ ସଙ୍ଗେ ଥାନ୍ତି । ଜୀବର ଆୟୁଷ ହରନ୍ତି ॥
କାଳ ଦୁହିତା ଯାକୁ କହି । ଜରାର ନାମ ଅଟେ ସେହି ॥
ସେ ପ୍ରାଣୀ ରୂପ କାନ୍ତି ହରେ । ଦେଖିଲେ ପ୍ରାଣୀ ତା'କୁ ଡରେ ॥
ଏଣୁ ତାହାକୁ ପ୍ରାଣୀ ଭଲେ । ବରଣେ କେହି ନ ଇଚ୍ଛିଲେ ॥
ସେ ମୃତ୍ୟୁ ତାରେ ଭଗ୍ନୀ ପ୍ରାୟେ । ସ୍ନେହେ ଆବୋରି ନିତ୍ୟେ ରହେ ॥
ସେ ପ୍ରାଣୀଙ୍କର ରୂପ ହରେ । ମୃତ୍ୟୁ ପର୍ଯ୍ୟନ୍ତ ପୀଡ଼ା କରେ ॥
ଯବନ ଅଧିପତି ଯେହି । ମୃତ୍ୟୁର ନାମ ଅଟେ ସେହି ॥
ଏ ମୃତ୍ୟୁ ଯମ ରୂପ ଧରି । ଜୀବ ବିନାଶେ ଅଧିକାରୀ ॥
ଯବନେ ତା'ର ସେନାପତି । ଏ ଆଧିବ୍ୟାଧି ଯେତେ ଛନ୍ତି ॥
ଏ ଜୀବ-ଶରୀରେ ପୀଡନ୍ତି । ଏଣୁ ଏ ମୃତ୍ୟୁର ସଙ୍ଗତି ॥
ପ୍ରଜ୍ୱାର ଆଦି ଯେତେ ଜ୍ୱର । ପ୍ରବେଶ ନାଶନ୍ତି ଶରୀର ॥
ବିବିଧ ଦୁଃଖ ତାପତ୍ରୟେ । ପୀଡ଼ନ୍ତି ପ୍ରାଣ ଶେଷ ଯାଏ ॥
ଶତ ସମ୍ବତ୍ସର ପ୍ରମିତେ । ଶରୀରେ ଥାନ୍ତି ଅବିରତେ ॥
ପ୍ରାଣ ଇନ୍ଦ୍ରିୟ ମନ ଧର୍ମ । ନିର୍ଗୁଣ ଆତ୍ମାରେ ଅର୍ପିଣ ॥
ଏ କାମ ସୁଖ ଲବ ମାତ୍ରେ । ଭୁଞ୍ଜଇ ଦୁଃଖ ସୁଖ ଗାତ୍ରେ ॥
ଏ ମୋର ବୋଲି ଅହଂକାର । ବହିଛି ଦୁଃଖ ନିରନ୍ତର ॥
ପରମଆତ୍ମା ଭଗବାନ । ସେ ସର୍ବହେତୁ ଚଇତନ ॥
ଯାବତ ତା'କୁ ନ ଜାଣଇ । ଏ ଜୀବ ଭ୍ରମେ ଭ୍ରମୁଥାଇ ॥
ତାବତ ପ୍ରକୃତି ଗୁଣରେ । ଏ ଜୀବ ପଡ଼େ ମାୟା ଘୋରେ
ଗୁଣାଭିମାନୀ ନିରନ୍ତରେ । ଅବଶେ କର୍ମରେ ସଞ୍ଚରେ ॥
ସାତ୍ତ୍ୱିକ ରଜ ତମ ଆଦି । କର୍ମେ ଯେ ହୋଏ ତ୍ରୟବିଧି ॥
ପୁରୁଷ ଯେ କର୍ମ କରଇ । ସେ ଅନୁସାରେ ଦେହ ବହି ॥
ସାତ୍ତ୍ୱିକ କର୍ମ ଯେବା କରେ । ଅଧିକ ପ୍ରକାଶ ଲୋକରେ ॥
ଏ ତିନିଲୋକେ ଯଶ ତାର । ଗାବନ୍ତି ଦେବାସୁର ନର ॥
ରାଜସ କର୍ମ ଯେ କରନ୍ତି । ଆଦ୍ୟରେ ସୁଖ ସେ ଲଭନ୍ତି ॥
ପଶ୍ଚାତେ ଲଭେ ବହୁ ଦୁଃଖ । ଏ ଭାବ ନ ଜାଣେ ମୂରୁଖ ॥
ତାମସ କର୍ମର ଯେ ଫଳ । ସେ ଶୋକ ଦୁଃଖ ମୋହ ଆଳ
ଅଜ୍ଞାନ ଭାବେ ମୂଢ଼ ଦେହୀ । ସ୍ୱକର୍ମ ବଶେ ଭ୍ରମୁଥାଇ ॥
କେବେ ପୁରୁଷ ନାରୀ ହୋଇ । ଏ ଚରାଚର ଭ୍ରମେ ସେହି ॥
ନପୁଂସ ଜନ୍ମ କେବେ ଧରେ । ଏ ରୂପେ କର୍ମ ଅନୁସାରେ ॥
କେବେ ବା ଦେବତନୁ ପାଇ । ମନୁଷ୍ୟ ଜନ୍ମ କେ ଲଭଇ ॥
ଖଗାଦି ପଶୁ ଚରାଚରେ । ସ୍ୱକର୍ମ ଭୁଞ୍ଜନ୍ତି ପାମରେ ॥

ପଶୁ ପତଙ୍ଗ କୀଟ ଯେବେ । ଏ ଯୋନି ଲଭେ କର୍ମଭାବେ
ଭୁଞ୍ଜନ୍ତି ସ୍ୱକର୍ମ ଆବୋରି । ଏ ପାପ ପୁଣ୍ୟ ଆଦି କରି ॥
ଯେସନେ କ୍ଷୁଧାତୁର ହୋଇ । ବିକଳେ କୁକୁର ଭ୍ରମଇ ॥
ଆହାର ଅର୍ଥେ ନିରନ୍ତରେ । ଭ୍ରମୁଣ ଥାଇ ନାନା ପୁରେ ॥
କାହିଁ ବା ଆହାର ମିଳଇ । କାହିଁ ନିର୍ଘାତେ ଦଣ୍ଡ ପାଇ ॥
କାହାରି ଚିତ୍ତେ ଦୟା ନାହିଁ । ପଥେ ଗମନ୍ତେ ପୀଡ଼େ କେହି
ସର୍ବେ ବୋଲନ୍ତି ମାର ମାର । ଦୁଷ୍ଟ ସଜ୍ଜନ ଆଦି ନର ॥
ତା' ଭାବେ କର୍ମ ଶତ୍ରୁପଣେ । ନିରତେ ଦଣ୍ଡେ ଅନୁକ୍ଷଣେ ॥
ପ୍ରାଭବ ଭର୍ତ୍ସନା ଅନେକ । ପାଇ ସେ ଭ୍ରମେ ଅତିରେକ ॥
ସେ ରୂପେ ଏ ଜୀବ ସଂଜାତ । ସ୍ୱକର୍ମବଳେ ଆତଜାତ ॥
ଏଣୁ ଏ କାମ ଆଶେ ମୋହି । ନିରତେ କର୍ମେ ଭ୍ରମେ ମହୀ ॥
କେବା ବା ଉର୍ଦ୍ଧ୍ୱେ ଭୋଗକରେ । କେବେ ବା ଅଧୋ ମଧ ପୁରେ
ଏମନ୍ତ ଉଚ୍ଚ-ନୀଚେ ଭ୍ରମି । କର୍ମ ଭୁଞ୍ଜଇ ଦୁଃଖେ ଶ୍ରମୀ ॥
ସ୍ୱବଶ ନୋହେ ପ୍ରିୟା-ପ୍ରିୟେ । କାହିଁ ବା ଦୁଃଖ-ସୁଖ ଭୟେ ॥
କାହିଁ ଦଣ୍ଡାଦି ପରାଭବ । କାହିଁ ଐଶ୍ୱର୍ଯ୍ୟ ବଇଭୋଗ ॥
ଏ ଦୁଃଖ-ସୁଖାଦି ସହିତେ । ଆତ୍ମା ବନ୍ଧନ ଏ ସଙ୍ଗତେ ॥
ଏଣେ ତା' ନୋହେ ପ୍ରତିକାର । ଦୁଃସହ ଦୁଃଖ ମହାଘୋର ॥
ଯାବତ ତାପତ୍ରୟ ଅଛି । ତାବତ ସୁଖ ନାହିଁ କିଛି ॥
ଯେବେ ପ୍ରତିକାର ଇଚ୍ଛଇ । ଅତି ଦୁଃଖରେ ଦୁଃଖୀ ହୋଇ ॥
ଯେସନେ ପ୍ରାଣୀ ଶିରଭାର । ଉଶ୍ୱାସି ରଖଇ କନ୍ଧର ॥
ସେ କି ତାହାର ଭାର ନୋହେ । ତେସନ ଦୁଃଖ ପ୍ରତି ଦେହେ ॥
କର୍ମର କର୍ମଟି କେବଳ । ନୋହେ ଏକାନ୍ତ ପ୍ରତିକାର ॥
ଅବିଦ୍ୟା ମାର୍ଗ କର୍ମ ଦୁଇ । କର୍ମେ କି କର୍ମ ନାଶ ହୋଇ ॥
ଯେସନେ ଶୟନେ ସ୍ୱପନ । ଦେଖଇ ବିବିଧ ବିଧାନ ॥
ପ୍ରତୀତ ହୋଏ ନିଦ୍ରାଗତେ । ଅସତ୍ୟ ମଣେ ତା' ଜାଗ୍ରତେ ॥
ତେସନେ କର୍ମେ କର୍ମ ନାଶେ । ଧାମଇଁ ମିଥ୍ୟା ଅଭିଳାଷେ ॥
ଯାବତ ଆତ୍ମଜ୍ଞାନ ନାହିଁ । ସଂସାରେ ନିବୃତ୍ତି ତା' କାହିଁ ॥
ଉପାଧି ବିଷୟକୁ ମନ । ବଳେ ଆଣଇ ସନ୍ନିଧାନ ॥
ସ୍ୱପନ ପ୍ରତ୍ୟକ୍ଷ ସେ କରେ । କୁମତି-ଜନ ଏ ସଂସାରେ ॥
ଅନର୍ଥ ହେତୁ ଏ ସଂସାର । ନିରତେ ଘୋର ଭୟଙ୍କର ॥
ନିରତେ ଗତାଗତେ ଭ୍ରମି । ଜନ୍ମ-ମରଣେ ପଥ ଶ୍ରମି ॥
ଏଣୁ ଜୀବର ପାର ନାହିଁ । ଏ ଚରାଚରେ ଭ୍ରମେ ମୋହି ॥
ପରମ ଗୁରୁ ଭଗବାନ । ତା'ପାଦେ ଭକ୍ତି ଭାବେ ଧ୍ୟାନ
ତେବେ ଏ ସଂସାର ବିନାଶ । ଏ ବିନେ ବନ୍ଦୀ ମୋହପାଶ ॥

ଯାବତ କୃଷ୍ଣ ନ ଭଜଇ । ତାବତ ଜୀବଗତି କାହିଁ ॥
ଯେବେ ଭକତି ଯୋଗେ ନର । ଭଜଇ ଗୋବିନ୍ଦ ପୟର ॥
ତେବେ ବୈରାଗ୍ୟ ଜ୍ଞାନ ଜାତ । ପ୍ରକାଶି ନାଶଇ ଦୁରିତ ॥
ସେ ଜ୍ଞାନେ କୃଷ୍ଣପାଦେ ମତି । ହରି ଭଜନେ ହୋଏ ରତି ॥
ଶ୍ରଦ୍ଧାନୁଭାବେ ଗୁଣ ଗାଇ । ରୋମ ପୁଲକେ ଅଶ୍ରୁବହି ॥
ଜ୍ଞାନ-ଭକତି ଯୋଗାନଳେ । ଦହନ ହୋନ୍ତି ଅମଙ୍ଗଳେ ॥
ତେବେ ସେ ଜ୍ଞାନଯୋଗେ ହରି । ଲଭଇ କର୍ମ ପରିହରି ॥
ଯେ ଭଗବାନ ସାଧୁଜନେ । ବିଶ୍ରାମ କରନ୍ତି ଯେ ସ୍ଥାନେ ॥
କୃଷ୍ଣ ଚରିତ ଅନୁକ୍ଷଣେ । ଗାବନ୍ତି ଶୁଣନ୍ତି ଶ୍ରବଣେ ॥
ବିଷୟ ସୁଖ ନ ଘେନନ୍ତି । ନିରତେ ନାମ ଆସ୍ୱାଦନ୍ତି ॥
ସେ ସ୍ଥାନେ ନାମ-ସୁଧା-ନଈ । ଶ୍ରବଣେ ସର୍ବଦିଗେ ଯାଇ ॥
ପବିତ୍ର କରେ ତ୍ରିଭୁବନ । ଶ୍ରୋତା ବକତା ଯେତେ ଜନ
ଶ୍ରବଣେ ପଶି ପାପ ଦହେ । ଛାଡଇ ଜନ୍ମ ମୃତ୍ୟୁ ଭୟେ ॥
ଅନଳ ସ୍ପର୍ଶେ ଯେସନ । ଦହଇ ସୂକ୍ଷ୍ମ-ବସ୍ତ-ମାନ ॥
ଯେ ଶ୍ରୁତିଦ୍ୱାରେ ତା' ପିବନ୍ତି । ଏ ମାୟାବନ୍ଧୁ ନିସ୍ତରନ୍ତି ॥
ଏ ଶୋକ ମୋହ ପରିହରେ । ସ୍ୱଚ୍ଛନ୍ଦେ ଭବବନ୍ଧୁ ତରେ ॥
ଯେଣୁ ଅଜ୍ଞାନ ଶୋକ ମୋହେ । ବିବେକହୀନେ ଦୁଃଖ ସହେ ॥
ଏଣୁ ଶ୍ରୀକୃଷ୍ଣେ ନୋହେ ରତି । ତା' ନାମେ ନ ବଳଇ ମତି ॥
ଭ୍ରମେ ଭ୍ରମଇ ତାର ମନ । ନୁହଇ ନିଜ ଆତ୍ମଜ୍ଞାନ ॥
କୃଷ୍ଣ ସ୍ମରଣ ନ ସ୍ଫୁରଇ । ଅଜ୍ଞାନ ଜଡଭାବେ ଥାଇ ॥
ଯାବତ ସାଧୁସଙ୍ଗ ତା'ର । ନୋହିଛି ଶୁଣ ନୃପବର ॥
ତାବତ ନୋହେ ସଦଗତି । ଯଜ୍ଞାଦି କର୍ମେ ନ ତରନ୍ତି ॥
ନିଶ୍ଚୟେ କହିଲୁ ରାଜନ । ସତ୍ସଙ୍ଗ ଭକ୍ତି ଉପାଦାନ ॥
କୃଷ୍ଣ ପ୍ରାପତ ମାର୍ଗ ଏହି । ଅନ୍ୟତ୍ର ଜୀବଗତି ନାହିଁ ॥
ଯେ ସଙ୍ଗୁ ଭବାର୍ଣ୍ଣବ ପାର । ଅଶେଷ ଯେ ମାର୍ଗେ ନିସ୍ତାର ॥
ବ୍ରହ୍ମା ଶଙ୍କର ଦକ୍ଷ ମନୁ । ବିଶୁଦ୍ଧ ସନକାଦି ତନୁ ॥
ମରୀଚି ଅତ୍ରି ଅଙ୍ଗିରସ । ପୁଲହ ପୁଲସ୍ତ୍ୟ ପ୍ରକାଶ ॥
କ୍ରତୁ ଅଗସ୍ତି ବଶିଷ୍ଠାଦି । ଅପରେ ଯେତେ ବ୍ରହ୍ମବାଦୀ ॥
ଭୃଗ୍ୱାଦି ଆମ୍ଭେ ଯେତେ ମୁନି । ଅଦ୍ୟାପି ନ ପାରିଲୁ ଚିହ୍ନି ॥
ଆମ୍ଭେ ସମାଧି ଯୋଗବଳେ । ଦେଖି ନ ଦେଖୁଁ ତା'ଙ୍କୁ ତୋଳେ
ସେ ଦେଖି ଦେଖାନ୍ତି ସର୍ବକୁ । ଦୃଷ୍ଟିକୁ ଦୃଷ୍ଟି ବୋଲି ତା'ଙ୍କୁ ॥
ସେ ଆତ୍ମା ସର୍ବଜୀବ ହେତୁ । ଜୀବ ଭ୍ରମେ ନ ଜାଣି ତତ୍ତ୍ୱ ॥
ଯେ ବେଦଶାସ୍ତ୍ରେ ଅଗୋଚର । ଅଦୃଶ୍ୟ ଅତି ସୂକ୍ଷ୍ମତର ॥
ଏଣୁ କେ ବେଦମାର୍ଗେ ଜାଣେ । ଅବ୍ୟକ୍ତ ବ୍ରହ୍ମ ସୁରଗଣେ ॥

ସେ ବେଦ ଦୁସ୍ତର ବିସ୍ତାର । ତାହାର ନାହିଁ ଅନ୍ତଃପାର ॥
ବେଦବିହିତ ଯେତେ କର୍ମ । ଯଜ୍ଞ ଆଚରି ମୁନିଭ୍ରମ ॥
କ୍ଷୀଣ ମନ୍ତ୍ରେ ଲିଙ୍ଗ ଦେବତା । ବାଅନ୍ତି ଧ୍ୟାନେ କର୍ମେ ଶ୍ରୋତା ॥
ରତି ନିମନ୍ତେ କର୍ମଫଳ । କର୍ମ ବିନାଶେ ଜ୍ଞାନବଳ ॥
ମଳିନ ବୁଦ୍ଧିଯେବା ହୋନ୍ତି । ସେମାନେ ବେଦ କର୍ମ ଚିନ୍ତି ॥
ଇନ୍ଦ୍ରାଦି ଦେବଙ୍କୁ ପୂଜନ୍ତି । ଏଣୁ ଏ ବ୍ରହ୍ମ ନ ଜାଣନ୍ତି ॥
ଅଜ୍ଞାନୀ ବୋଲି ତାଙ୍କୁ ଜାଣ । ଯେ ଆତ୍ମା ନ କଲା ପ୍ରମାଣ ॥
ଯାହାର ଆତ୍ମଜ୍ଞାନ ନାହିଁ । ସଂସାରୁ ସେ ତରିବ କାହିଁ ॥
ସେ ହରି ଯା'ରେ କରେ ଦୟେ । ତା' ମତି ବେଦେ ନିଷ୍ଠା ନୋହେ ॥
ସେ ଆତ୍ମାତତ୍ତ୍ୱେ ହରି ପାଇ । ତାହା ନ ବୁଝି କର୍ମେ ବାଇ ॥
ତୁ ରାଜା କର୍ମକାଣ୍ଡେ ଭୋଳ । ତୋ'ଯଜ୍ଞକର୍ମୁ ମହୀସ୍ଥଳ ॥
ଆଚ୍ଛାଦି ପ୍ରାଚୀନଗ୍ର ତୋ'ର । କୁଶେ ପୂରିଲା ନୃପବର ॥
ପ୍ରଜାଏ ଶସ୍ୟ କରଷଣେ । ନ ପାରି କ୍ଷୁଧା ପ୍ରତୋଷଣେ ॥
ଅନ୍ନ ବିହୀନେ ସର୍ବଜନ୍ତୁ । ଦୁର୍ଭିକ୍ଷ ମଲେ ତୋ'ର ହେତୁ ॥
ଏ ସର୍ବଜୀବ ବିନାଶିଲୁ । ଏ ହତ୍ୟା ଦୋଷେ ଭାଗୀ ହେଲୁ ॥
ତୁ ବିପ୍ରବାକ୍ୟେ ବିମୋହିତ । ନ ଜାଣି ବେଦର ବୃତ୍ତାନ୍ତ ॥
ଏ ଯଜ୍ଞକର୍ମେ ହେଲୁ ଅନ୍ଧ । ନ ଜାଣୁ ତୁ ଆତ୍ମା ଦୁର୍ବୋଧ ॥
ଯେ କର୍ମ ମୋକ୍ଷ ମାର୍ଗଦୂର । ତୁ ତାହା ନ କଲୁ ବିଚାର ॥
ପରମତତ୍ତ୍ୱେ ନୋହେ ମତି । ଲଭିବୁ ଦୁଃସହ ଦୁର୍ଗତି ॥
ଏ ବିପ୍ରେ ତୋ' ହିତ ନ ଜାଣି । ନରକ ମାର୍ଗେ ତୋତେ ଟାଣି ॥
ଏହାଙ୍କ ବାକ୍ୟେ ତୁ ରାଜନ । ଭ୍ରମେ ହୋଇଲୁ ହତଜ୍ଞାନ ॥
ତୁ ଗୃହ-କୂପେ ଜନ୍ମଅନ୍ଧ । ଏ ବିପ୍ରେ କର୍ମକାଣ୍ଡେ ବନ୍ଧ ॥
ଅନ୍ଧକୁ ଅନ୍ଧ ପଥ କହି । ସେ ଯେହ୍ନେ କାର୍ଯ୍ୟେ ନ ଘଟଇ ॥
ତେସନେ ଏହାଙ୍କ ବଚନ । ହେ ରାଜା ଚିତ୍ତେ ତୁ ନ ଘେନ ॥
ତୋତେ ଭଣ୍ଡିଲେ ଧନ ଆଶେ । ଇନ୍ଦ୍ରିୟ-ସୁଖ ଗୃହବାସେ ॥
ତୋ' ପୂର୍ବପୁଣ୍ୟ ବିନାଶିଲେ । ଜୀବ ହିଂସନେ ଶିକ୍ଷା ଦେଲେ ॥
ହରି ଆଶ୍ରିତ କର୍ମ ଯେତେ । ନ କହି ଭ୍ରମାଇଲେ ତୋତେ ॥
ଏ ବିପ୍ରେ ନ ଜାଣନ୍ତି ତାହା । ତେଣୁ ଭଣ୍ଡିଲେ ନରନାହା ॥
ତୁ ତର୍କି ନ ପାରି ରାଜନ । ବିଅର୍ଥେ ଗଲା ତୋ'ର ଦିନ ॥
ଯେ କର୍ମେ ହରି ତୋଷ ହୋଏ । ତାହାକୁ କର୍ମ ବୋଲି ରାୟେ ॥
ଉତ୍ତମ ବିଦ୍ୟା ହେ ରାଜନ । ଯେ ହରି କରନ୍ତି ଭଜନ ॥
ଜ୍ଞାନୀଙ୍କ ମଧ୍ୟେ ସେହୁ ବର । ଯେ ହରିକର୍ମେ ତତପର ॥
ଯଜ୍ଞାଦି ଦାନ ପୁଣ୍ୟେ ସେହି । ଯେବେ ଜୀବରେ ଦୟା ବହି ॥
ସର୍ବଭୂତରେ ଆତ୍ମା ହରି । ପ୍ରକୃତି ସ୍ୱରୂପେ ବିହରି ॥
ସେ ଏକ ଆତ୍ମା ବେନି ଅଂଶ । ପ୍ରକୃତି ଭେଦେ ବହୁ ଦୃଶ୍ୟ ॥
ଏମନ୍ତ ହରିରେ ଶରଣ । ତୁ ଯାଇ ପଶ ନୃପରାଣ ॥
ସେ ସର୍ବଆତ୍ମା ପ୍ରିୟ ହରି । ଯାନାମ ଆଶ୍ରେ ଭବୁ ତରି ॥
ସେ କାଳଭୟ ବିନାଶନ୍ତି । ନିର୍ଭୟେ ନିଶ୍ଚିନ୍ତେ ରହନ୍ତି ॥
ଏ କଥା ଯେ ବୁଝେ ପଣ୍ଡିତ । ସେ ସର୍ବ ଗୁରୁଟି ଅଚ୍ୟୁତ ॥
ତୁମ୍ଭର ସନ୍ଦେହ ଫେଡିଲୁ । ଏ ଆତ୍ମଜ୍ଞାନ ଶିକ୍ଷା ଦେଲୁ ॥
ଅପରେ ଗୁପ୍ତ ଦୃଷ୍ଟାନ୍ତର । ତୋତେ କହିବା ନୃପବର ॥
ତା' ତୋତେ ବୁଝାନ୍ତେ ରାଜନ । ତେବେ ନୋହିଲା ତୋର ଜ୍ଞାନ ॥
କୁସୁମବାଡ଼ି ମଧ୍ୟେ ମୃଗ । ଇଚ୍ଛଇ ମଇଥୁନ ଯୋଗ ॥
ହରିଣୀ ବଶେ ବଶ ହୋଇ । ଅଜ୍ଞାନେ ମୃତ୍ୟୁ ନ ଜାଣଇ ॥
ଅଳପ ସୁଖ-ଲୋଭେ ମତି । ଭ୍ରମର-ଗୀତେ ଡେରି ଶ୍ରୁତି ॥
ତା' ଅଗ୍ରେ ବୃକମାନେ ଛନ୍ତି । ତା'ମାଂସ ଭକ୍ଷଣ କରନ୍ତି ॥
ତାହାଙ୍କ ମୁଖକୁ ରାଜନ । ସତ୍ୱରେ କରଇ ଗମନ ॥
ତା' ପଛେ ବ୍ୟାଧ ଗୋଡ଼ାଇଛି । ସଘନେ ବାଣ ସେ ବିନ୍ଧୁଛି ॥
ତାହାକୁ ନ କରିଣ ଭୟେ । ଆନନ୍ଦେ ମୃଗୀରସେ ରହେ ॥
ଭେଦିଣ ବ୍ୟାଧ ତୀକ୍ଷ୍ଣ ଶର । ମିଳାଇ ଅର୍ଦ୍ଧ ତା ଶରୀର ॥
ଗଲା ନ ଜାଣେ କାମସୁଖେ । ତେବେ ଉଛୁଡ଼ି ଲତା ଭକ୍ଷେ ॥
କାହାକୁ ନ କରିଣ ଭୟେ । ସଧୀରେ ଲତା ବୃକ୍ଷ ଖାଏ ॥
ଏମନ୍ତ ମୃଗ କେ ରାଜନ । ବିବେକୀ ଖୋଜ ତୁ ବହନ ॥
ତେବେ ଜାଣିବା ସାଧୁମତି । ବିଷୟ ରସ ତ୍ୟାଗ ଗତି ॥
ଏ ଅନୁଭବ ବୁଝି ରାୟେ । ବିବେକୀ ଜାଣିବୁ ଥୋକାଏ ॥
ତା'ଶୁଣି ସଂଭ୍ରମେ ରାଜନ । ମୁନିଙ୍କି ଚାହିଁ ତୋଷମନ ॥
କହେ ବିନୟ ଶୁଦ୍ଧଚିତ୍ତେ । ଅତି ଆନନ୍ଦେ ହରିଷିତେ ॥

## ରାଜା ଉବାଚ

ଆମ୍ଭର ଏଣେ ନାହିଁ ମତି । ବିବେକୀ ନୋହେ ଆତ୍ମଗତି ॥
ଯେବେ ମୋହେରେ ଦୟା ବହ । ଏ କଥା ଫେଡ଼ି ମୋତେ କହ ॥
ତୁମ୍ଭେ ଦୟାଳୁ ଯୋଗେଶ୍ୱର । ସକଳ ଘଟେ ଦୟାପର ॥
ମୁଁ ବୁଝି ନ ପାରିଲି ଚିତ୍ତେ । ଛାଡୁ ସଂଶୟ କହ ମୋତେ ॥
କେ ମୃଗ ବୃକ ବ୍ୟାଧ କେହି । ଭୋ ମୁନିବର ଦେବା କହି ॥

## ନାରଦ ଉବାଚ

ଶୁଣ ରାଜନ ଶୁଦ୍ଧଚିତ୍ତେ । ତା ଫେଡି କହିଦେବା ତୋତେ ॥
ହେ ରାଜା ମୃଗରୂପ ତୁହି । ତୋ ପତ୍ନୀଗଣେ ପୁଷ୍ପଦେହୀ ॥
ସେ ତୋତେ ବେଢ଼ି ଅଗ୍ରେଛନ୍ତି । ତୋ ପ୍ରାଣ ବିବାଦେ ନାଶନ୍ତି ॥
ତୁ ତାହା ତର୍କି ନ ପାରିଲୁ । ସୁବେଶେ ତାହାଙ୍କୁ ପୂଜିଲୁ ॥

ସର୍ପାଗ୍ନି ସ୍ତିରୀ ଯେ ଦୁର୍ଜନ । ବିଶ୍ୱାସ ନ ଯିବ ଏମାନ ॥
ତାଙ୍କ ବଶେ ନିମଜ୍ଜିଲୁ । ପ୍ରାଣୁ ଅଧିକ ସ୍ନେହ କଲୁ ॥
ସେ ତୋର ବଶ କଲେ ମନ । ବନ୍ଧନେ ପଶୁଏ ଯେସନ ॥
ଏ ତୋତେ ନିଶ୍ଚୟ ନାଶିବେ । ତୋ ସ୍ନେହଭରେ ପ୍ରାଣ ନେବେ ॥
ଏ ସଙ୍ଗଦୋଷୁ ନୃପବର । ହୋଇବ ମୋକ୍ଷମାର୍ଗ ଦୂର ॥
ତୁ ଅନୁଭବେ ବୁଝ ଏବେ । ତୋତେ କହିବା ଫେଡ଼ି ଭାବେ ॥
କୁସୁମବନ ବୋଲି ଯାହା । ନାରୀଙ୍କ ଧର୍ମ କହି ତାହା ॥
ତା ସଙ୍ଗେ ଏ ପୁରୁଷବର । କରଇ ଅଜ୍ଞାନେ ବିହାର ॥
ବିଷୟ ସୁଖେ ଉନମତ୍ତ । ସୁରତି ରସେ ଦେଇ ଚିତ୍ତ ॥
ଭ୍ରମରେ ଯେହ୍ନେ ଗୁଞ୍ଜରନ୍ତି । ତେସନେ ଯୁବତୀ ଭାଷନ୍ତି ॥
ସେ ବାକ୍ୟେ କର୍ଣ୍ଣ ଡେରିଥାଇ । କାଳ-ବୃକକୁ ଭୟ ନାହିଁ ॥
ତା' ପଛେ କାଳ ଗୋଡ଼ାଇଛି । ଏ କଥା ଜୀବ ନ ବୁଝୁଛି ॥
ଏବେ ତୁ ବୁଝ ମହୀପତି । ଏ ମୃଗତୃଷ୍ଣା ଜୀବଗତି ॥
ଆପଣେ ଚିତ୍ତେ ତୁ ବିଚାର । ଏମନ୍ତ ବୁଦ୍ଧି ଦୃଢ଼େ ଧର ॥
ଶ୍ରବଣ ନ ଦେଇ ବିଷୟେ । ଏ ସର୍ବହିତେ କର ଲୟେ ॥
କାମୁକ କାମ ସୁଖ ପାଇଁ । ଗୃହ-କାରଣେ ବନ୍ଦୀ ହୋଇ ॥
ଯେହ୍ନେ ମଧୁପ ମଧୁ ଆଶେ । ଲୋଭେ ବନ୍ଧନ ପଦ୍ମକୋଷେ ॥
ଅବଶେ ସ୍ନେହ ନ ତେଜିଲା । ପଦ୍ମ ମୁଦ୍ରିତେ ପ୍ରାଣ ଦେଲା ॥
ସେ ରୂପେ ସ୍ତିରୀ ମୁଖାମ୍ବୁଜେ । ଯହିଁ ଯୋଗୀନ୍ଦ୍ର ଯୋଗ ଭାଞ୍ଜେ ॥
ପୁଣ୍ୟାଦି ଶଉଚ ଦୟା ଧର୍ମ । ଅପରେ ଯେବା ଶ୍ରେୟକର୍ମ ॥
ଏ ସର୍ବ କରଇ ବିନାଶ । ସେ ସଙ୍ଗେ ନାହିଁ ସୁଖ ଲେଶ ॥
ତୁ ଗୃହ ଛାଡ଼ି ହରି ଭଜ । ବିଷୟ କର୍ମ ଦୂରେ ତେଜ ॥

## ରାଜା ଉବାଚ

ତା' ଶୁଣି ବୋଲଇ ରାଜନ । ଭୋ ମୁନି ଏ ତୁମ୍ଭ ବଚନ ॥
ବିଚାରି ବୁଝିଲଇଁ ଚିତ୍ତେ । ମୋ ରାଜ୍ୟେ ବିପ୍ରେ ଛନ୍ତି ଯେତେ ॥
ଏ ସର୍ବେ ନ ଜାଣନ୍ତି ଜ୍ଞାନ । ବିଦ୍ୟା ବିଭ୍ରମେ ଅଭିମାନ ॥
ସେ ଯେବେ ଜାଣନ୍ତେ ନା ଏହା। କିପାଇଁ ନ କହନ୍ତେ ତାହା ॥
ଏଣୁ ଏ କର୍ମେ ମୋତେ ଟେକି । ଯେଣୁ ଅଟନ୍ତି ଅବିବେକୀ ॥
ଭୋ ମୁନି ତୁମ୍ଭ ପ୍ରାୟେ ଯେତେ । ସାଧୁଏ ଅଛନ୍ତି ଜଗତେ ॥
ସେ ତୁମ୍ଭ ପ୍ରାୟେ ଦୟା କରି । କେହି ନ ଆସନ୍ତି ମୋ' ପୁରୀ ॥
ଏ କଥା କହ ମୁନିବର । ମୋର ସଂଶୟ ହେଉ ଦୂର ॥
ଏମନ୍ତେ ଦେବ ମହାଋଷି । କହନ୍ତି ତା ବାକ୍ୟ ପ୍ରଶଂସି ॥

## ନାରଦ ଉବାଚ

ତୁ ଯାହା ପୁଚ୍ଛିଲୁ ରାଜନ । କହିବା ଏଥିର ବିଧାନ ॥
ଯେ ପଦ୍ମନାଭ ପଦାଶ୍ରିତ । ତେବେ ଭାବିତ ଯା'ର ଚିତ୍ତ ॥
ସ୍ୱର୍ଗାପବର୍ଗ ତୁଚ୍ଛ ମଣି । ତୋ ରାଜଭୋଗ ମୃତ୍ୟୁ ଗଣି ॥
ଏଣୁ ସାଧବେ ତାହା ଦେଖି । ଭୟେ ବିମୁଖ ତା' ଉପେକ୍ଷି ॥
ଆତ୍ମା ବିଯୋଗେ ପିଣ୍ଡ ଯେହ୍ନେ । ସଭୟେ ତେଜନ୍ତି ଯେସନେ ॥
ତେସନେ ଏ ରାଜ-ବିଭୂତି । ଭୟେ ସାଧବେ ନ ଇଚ୍ଛନ୍ତି ॥
ତୁ ରାଜା ଚିତ୍ତେ ପରିମାଣ । ଭୋଗାଦି ଅନର୍ଥ କାରଣ ॥
ତା' ଶୁଣି ସଂଭ୍ରମେ ରାଜନ । ଚିନ୍ତା ବିମୁଖେ ଖେଦମନ ॥

## ରାଜା ଉବାଚ

ଏ ବିପ୍ରଗଣେ ଅନୁକ୍ଷଣେ । କହନ୍ତି ଯଜ୍ଞାଦି କାରଣେ ॥
ଏହାଙ୍କ ଶିକ୍ଷା କର୍ମ ଯେତେ । ଛାଡ଼ିଲା ତୁମ୍ଭ ବାକ୍ୟମତେ ॥
ଏ କର୍ମେ ଯୋଗୀଜନ ମୋହେ । ଏଣୁ ପ୍ରତୀତ ସର୍ବଠାଏ ॥
ଏକ ସଂଶୟ ମୋର ଅଛି । ଭୋ ମୁନି କହ ପଚାରୁଛି ॥
ଯେ ଦେହେ ପ୍ରାଣୀ କର୍ମକରେ । ତା'ଛାଡ଼ି ପରଲୋକେ ଗଲେ ॥
କର୍ମ ଭୁଞ୍ଜଇ ଅନ୍ୟ ଦେହେ । ଏ କଥା ସର୍ବବେଦ କହେ ॥
କର୍ତ୍ତା ଭୋକତା ବେନି ଭେଦ । ଏ ବେନି ସଂଶୟ ମୋ ଛେଦ ॥
ଫେଡ଼ିଣ କହିବା ଗୋସାଇଁ । ଆବର ସଂଶୟ ଅଛଇ ॥
ତାହା ପୁଚ୍ଛଇ ମୂଢ଼ଭାବେ । ମୋ ମନ ସୁମରୁଛି ଏବେ ॥
ବେଦ ବିହିତ ଯେତେ କର୍ମ । ଲୋକ ଆଚରେ ବିଧି-ଧର୍ମ ॥
କର୍ମ ଉତ୍ତାରେ ତା'ନ ଜାଣି । କି ରୂପେ କର୍ମ ଭୁଞ୍ଜେ ପ୍ରାଣୀ ॥
ଅଦୃଷ୍ଟ କର୍ମେ ସଂଯୋଗଇ । ଏଣେ ସଂଶୟ ମୋର ହୋଇ ।
ଏମନ୍ତ ରାଜା ମୁଖୁ ଶୁଣି । ନାରଦ କହେ ମନେ ଗୁଣି ॥

## ନାରଦ ଉବାଚ

ଶୁଣି କହିବା ନୃପରାଣ । ଏ ବେନି ସଂଶୟ ଫେଡ଼ିଣ ॥
ଯେ ଦେହେ ଜୀବ କର୍ମ କରେ । ପରଲୋକେ ତା' ଭୋଗ କରେ ॥
ଯେ ପାପପୁଣ୍ୟ ତା'ର ଥାଇ । ସେ କାଳେ ତାହା ସେ ଭୁଞ୍ଜଇ ॥
ଏ ସ୍ଥୁଳଦେହ ଗଲେ ନାଶ । ଏ ଲିଙ୍ଗ ଅନ୍ୟ ଦେହେ ବାସ ॥
କର୍ତ୍ତା ଭୋକତା ନୋହେ ଭିନ୍ନ । ସ୍ୱପ୍ନେ ଦୃଷ୍ଟାନ୍ତର ଯେସନେ ॥
ଶୟନେ ଦେହ ପଡ଼ିଥାଇ । ଶ୍ୱାସ କ୍ଷେପଣ ନ ଜାଣଇ ॥
ଏ ଦେହ ସ୍ନେହ ପରିହରି । ଏ ମନ ଲିଙ୍ଗଦେହ ଧରି ॥
ଅନ୍ୟଭୂତ କର୍ମ ବ୍ୟାପାର । ଏ ମନ କରେ ଅଙ୍ଗୀକାର ॥
ଏ ମନ୍ତ ଜାଣି ଦୃଷ୍ଟାନ୍ତରେ । ଏମନ୍ତ ଅନ୍ୟତ୍ର ଶରୀରେ ॥
ଧରିଣ ସ୍ଥୁଳଦେହ ମନ । ମୁଁ କୁଳଶ୍ରେଷ୍ଠ ବିଦ୍ୱଜ୍ଜନ ॥
ଏ ପୁତ୍ର-ଦାରାଦି ମନ୍ଦିର । ବୋଲିଣ କରେ ଅହଂକାର ॥
ଏ ଅଭିମାନ କର୍ମ କରେ । ସ୍ୱକର୍ମ ବଶେ ଦେହ ଧରେ ॥

କର୍ମ ନ ଥିଲେ ଜନ୍ମ ନାହିଁ । ତା' ପୂର୍ବକର୍ମ ଭୋଗ କାହିଁ ॥
ଏ ମନ ଲିଙ୍ଗ ଦେହ ବେନି । ଭୋଗାର୍ଥେ ସ୍ଥୂଳ ଦେହ ଘେନି ॥
ଯାହା ତୁ ପୁଚ୍ଛିଲୁ ନୃପତି । ବିନଷ୍ଟକର୍ମ ଉତପତ୍ତି ॥
ତା' ଫେଡ଼ି କହିବାକ ତୋତେ । ସଂଶୟ ଫିଟିବ ଯେମନ୍ତେ ॥
ଏ ଜ୍ଞାନ କର୍ମ ଭେଦେ ଦୁଇ । ଇନ୍ଦ୍ରିୟ କର୍ମାଦି କରଇ ॥
ଏ ପୁଣ୍ୟ ପାପାଦି ବିଷୟ । କରଇ ଏ ମନ ଇନ୍ଦ୍ରିୟ ॥
ଚିତ୍ତ ବିଷୟ କର୍ମ ଜାଣି । ନୋହିଲେ କେବା ପରିମାଣି ॥
ଏ ରୂପେ ଜାଣ ଚିତ୍ତବୁଦ୍ଧି । ଭୁଞ୍ଜଇ ପୂର୍ବକର୍ମ ସିଦ୍ଧି ॥
କର୍ମ ନ ଥିଲେ ଭୋଗ କାହିଁ । ବିବେକୀ ବୁଝ ନରସାଇଁ ॥
ଏ ପ୍ରତିଲକ୍ଷ୍ୟେ ଦୃଷ୍ଟାନ୍ତର । ତୋତେ କହିବା ନୃପବର ॥
ତୋ' ଅନ୍ୟ ଦେହ ଥାଉଁ ଏବେ । ଏ ଦେହେ ବୁଝ ଅନୁଭବେ ॥
ଜାଗ୍ରତେ ଯେତେ ରୂପମାନ । ଏ ଦେହେ ଭାବିଥାଇ ମନ ॥
ଦୃଷ୍ଟି ଶ୍ରବଣେ ଯେ ବିଷୟ । ସ୍ୱପନ ଗତେ ସେ ଉଦୟ ॥
ଏ ଲିଙ୍ଗଦେହ ଧରି ମନ । ବିଷୟକର୍ମ କରେ ଧ୍ୟାନ ॥
ବିଷୟକର୍ମେ ହୋଇ ବଶ । ଆନନ୍ଦେ ଘେନେ ଭୋଗରସ ॥
ଯେ କଥା ଅନୁଭବି ନାହିଁ । ସ୍ୱପନେ ଦେଖିବ ତା' କାହିଁ ॥
ଏହାର ପୂର୍ବକର୍ମ ଦୋଷ । ଯାବତ ନୋହିଛି ବିନାଶ ॥
ତା ଅନ୍ୟଦେହେ ଭୋଗ କରେ । ସେ ଶୁଭାଶୁଭ ତା' ବେଭାରେ ॥
ପୂର୍ବ ଅକର୍ମ-ଦୋଷେ ଜୀବ । ଜନ୍ମି ଲଭଇ ମୂଢ଼ଭାବ ॥
ଫଳାନୁସାରେ ଦେହ ପାଇ । ପୁଣ ସେ କର୍ମେ ପ୍ରବେଶଇ ॥
ଯାହା ଏ ଅନୁଭବି ନାହିଁ । ଏ ମନ ଚୁଇଁବ ତା' କାହିଁ ॥
ଶୁଣ ରାଜନ ସାବଧାନ । ସକଳ କର୍ମେ ସାକ୍ଷୀମନ ॥
ମନଟି ସୁଖଦୁଃଖ ଦାତା । ଏ ପାପପୁଣ୍ୟର କରତା ॥
ମନହୁଁ କର୍ତ୍ତା ଆଉ ନାହିଁ । ଇନ୍ଦ୍ରିୟ ଗୁଣ ଅର୍ଥ ବହି ॥
ତା' ପୂର୍ବ ଶୁଭାଶୁଭ କର୍ମ । ସେ ଅନୁସାରେ ଲଭେ ଜନ୍ମ ॥
କେ ଦାତା କୃପଣ ଈଶ୍ୱର । ସାଧୁ ଦୁର୍ଜନ କେବା ଚୋର ॥
ଏ ମନ କର୍ମର ଆୟତ୍ତେ । ଭ୍ରମଇ ଦୁଃଖସୁଖେ ନିତ୍ୟେ ॥
ଏ ବର୍ତ୍ତମାନ ଦେହେ ଯାହା । ଯେ ରୂପେ ଦେଖି କରେ ସ୍ନେହା ॥
ତା' ଅନାଗତ ଦେହେ ଦେଖେ । ଏ ବର୍ତ୍ତମାନ ଦେହୀ ପକ୍ଷେ ॥
ଯେ କଥା ଅନୁଭବି ନାହିଁ । ସ୍ୱପ୍ନରେ କେବେ ବା ଦିଶଇ ॥
ସମୁଦ୍ର ଗିରିଶିଖେ ଯେହ୍ନେ । ପ୍ରତୀତ କରଇ ସେ ମନେ ॥
ନକ୍ଷତ୍ର ଆଦି ଗ୍ରହମାନ । ଦିବସେ ଦୃଶ୍ୟ ଦୁର୍ଘଟନ ॥
ଆପଣା ଶିରଚ୍ଛେଦ ହୋଇ । ଏ ବିପରୀତ ସେ ଦେଖଇ ॥
ମିଥ୍ୟାଭିଳାଷେ ଏହୁ ଭ୍ରମ । ପ୍ରତ୍ୟକ୍ଷ କରେ ତାହା ମନ ॥

ଏ ସର୍ବ ନିଦ୍ରାଦୋଷେ ଜାଣେ । ଦେଶ-କାଳ-କ୍ରିୟା ପ୍ରମାଣେ ॥
ଇନ୍ଦ୍ରିୟ ବିଷୟ ସକଳ । ମନରେ ହୋନ୍ତି ସବୁ ଠୁଳ ॥
ସେ ସର୍ବେ ହୋନ୍ତି ଯା'ନ୍ତି ନିତ୍ୟେ । ଏଣୁ ଏ ମନ ବିପରୀତେ ॥
ଯେ ମନ କୃଷ୍ଣପାଦତଳେ । ସତ୍ତ୍ୱ-ନିଷ୍ଠାରେ ଥାଇ ଭୋଳେ ।
ଏ ବିଶ୍ୱ ପ୍ରକାଶ ହୁଅଇ । ସଂଯୋଗେ ପରିପ୍ରକାଶଇ ॥
ତଥାପି ବିଷୟ ପ୍ରବଳ । ମନକୁ କରଇ ଚଞ୍ଚଳ ॥
ଯେହ୍ନେ ଚନ୍ଦ୍ରକୁ ରାହୁ ଗ୍ରାସେ । ତେସନ ଗୁଣେ ମନ ମିଶେ ॥
ଏ ଗୁଣ ସମୂହ ଅନାଦି । ଯାବତ ଅଛି ମନ ବୁଦ୍ଧି ॥
ତାବତ ଅହଂକାର ବହେ । ଯେଣୁ ତ୍ରିଗୁଣ ଅଛି ଦେହେ ॥
ଏ ପ୍ରାଣ-ମାର୍ଗର ସନ୍ତାପେ । ସ୍ୱପନ-ମୂର୍ଚ୍ଛା-ଉପତାପେ ॥
ଏ ଗୁଣ ଜ୍ଞାନ ନ ଛାଡ଼ଇ । ମୃତ୍ୟୁ ପ୍ରଜ୍ୱର କାଳେ ସେହି ॥
ଏ ଗର୍ଭବାସେ ଥିଲା ଯେତେ । ବାଲ୍ୟ ଅବସ୍ଥା ଅବା ଯେବେ॥
ଏ ଲିଙ୍ଗ ସୂକ୍ଷ୍ମରୂପେ ରହେ । କେବଳ ପ୍ରକାଶିତ ନୋହେ ॥
ଯେସନେ କହୁ-ତିଥି ପାଇ । ଚନ୍ଦ୍ରକିରଣ ନ ଦିଶଇ ॥
ସେ ରୂପେ ବାଲ୍ୟାଦି କାଳରେ । ଏ ଗୁଣ ପ୍ରକାଶ ନ କରେ ॥
ଗୁଣେ ବନ୍ଧନ ଲିଙ୍ଗ ଦେହ । କର୍ମରେ କରୁଥାଇ ସ୍ନେହ ॥
ଏ ଦେହ ଯେ କାଳେ ନ ଥାଇ । ତେବେ ତା ଜନ୍ମ ଅବା କାହିଁ॥
ବିଷୟ ଧ୍ୟାନ ଯେଣୁ ଅଛି । ତେଣୁ ଏ ଶରୀର ଧରିଛି ॥
ସ୍ୱପ୍ନ ଦୃଷ୍ଟାନ୍ତର କରିଣ । ଭୋଗାଦି ବୁଝ ନୃପରାଣ ॥
ନାରଦ ବଚନ ଶୁଣିଣ । କହଇ ପ୍ରାଚୀ ନୃପରାଣ ॥

### ରାଜା ଉବାଚ

ଭୋ ମୁନିବର ତୁମ୍ଭେ ଶୁଣ । ଜୀବର କି କି କହ ଗୁଣି ॥
ଯାହାକୁ ଜୀବ ବୋଲି କହ । ତାହାର କିବା ରୂପ ଦେହ ॥
ନାରଦ ଶୁଣି ନୃପବାଣୀ । ଆନନ୍ଦଚିତ୍ତେ ମନେ ଗୁଣ ॥
ବୋଲନ୍ତି ଶୁଣ ନୃପବର । ସ୍ୱରୂପ କହିବା ଜୀବର ॥
ଶବଦ ଆଦି ମାତ୍ରା ପଞ୍ଚ । ଅପରେ ତ୍ରିଗୁଣ ପ୍ରପଞ୍ଚ ॥
ଦଶଇନ୍ଦ୍ରିୟ ପଞ୍ଚପ୍ରାଣ । ଯେ ମନ ବୁଦ୍ଧି ସଙ୍ଗତେଣ ॥
ଏହାକୁ ଲିଙ୍ଗ-ଦେହ କହି । ଯାବତ ଚେତନା ଏ ବହି ॥
ତାବତ ଜୀବ ବୋଲି ଜାଣ । ଯେଣୁ ଏ ଘେନେ ଦେହଗୁଣ॥
ଦେହାଦି ଛାଡ଼େ ଘେନେ ଏହି । ଶୋକ ହରଷ ବେନି ବହି ॥
ଯେସନେ ତୃଣେ ଜୋକମାନ । ଏକକୁ ଧରି ଛାଡ଼େ ଆନ ॥
ସେ ରୂପେ ଏ ଲିଙ୍ଗ-ଶରୀର । ଦେହ ସମ୍ଭବେ ବୁଝ ବୀର ॥
ଯାତବ ଅନ୍ୟଦେହ ନୋହେ । ତାବତ ଅଛି ପୂର୍ବଦେହେ ॥
ଏ ପୂର୍ବକର୍ମ ନ ଛାଡ଼ଇ । ସଙ୍ଗତେ ଘେନି ତା' ଭୁଞ୍ଜଇ ॥

ଯାବତ ଅଛି ମାୟା ଦ୍ୱନ୍ଦ୍ୱ । ତାବତ ଏ କର୍ମେ ସେ ବନ୍ଧ ॥
ଏ ଜୀବ ପଡ଼ି ମାୟାବନ୍ଧେ । କର୍ମ କରଇ ନାନାଛନ୍ଦେ ॥
ଏ ମାୟାବନ୍ଧ ଛାଡ଼େ ଯେବେ । କୃଷ୍ଣଚରଣେ ଭଜେ ତେବେ ॥
ସକଳ-ଘଟେ ଆତ୍ମା ରୂପେ । ଯେ ହରି ଛନ୍ତି ଦେହ-କୂପେ ॥
ସୃଷ୍ଟି-ପାଳନ-ସଂହାରଣ । ଯାହାର ତହୁଁ ଏ ଭିଆଣ ॥
ତା'ପାଦେ ଭଜିଲେ ମୁକତି । ତା'ବିନୁ ନାହିଁ ଅନ୍ୟଗତି ॥

## ମୈତ୍ରେୟ ଉବାଚ

କହେ ମୈତ୍ରେୟ ମୁନିବର । ସୁମନେ ଶୁଣ ହେ ବିଦୁର ॥
ଜୀବ ଆତ୍ମାର ଗତି ମାନ । ନାରଦମୁନି ପ୍ରଭେଦେଣ ॥
ରାଜାଙ୍କୁ କହିଲେ ବୁଝାଇ । ଏ ଲିଙ୍ଗ-ଶରୀର ଭେଦାଇ ॥
ଶୁଣି ସାନନ୍ଦ ନୃପବର । ଉଠି ଯୋଡ଼ିଲା ବେନିକର ॥
ସାଷ୍ଟାଙ୍ଗେ କରି ଦଣ୍ଡବତ । ହରଷେ ହୋଇ କୃତକୃତ୍ୟ ॥
ରୋମ ଉଦ୍‌ଗମ ଅଶ୍ରୁପାତ । ବୋଲଇ ହୋଇ ହରଷିତ ॥
ଭୋ ମୁନିବର ଯୋଗେଶ୍ୱର । ମୋ' ମୋହବନ୍ଧ କଲ ଦୂର ॥
ଏବେ ନିଷ୍କାମଭାବ ମୁହିଁ । କି ରୂପେ କରିବି ଗୋସାଇଁ ॥
ତୋ'ସଙ୍ଗ ଛାଡ଼ିଲେ ଗୋସାଇଁ । ମୋ'ମନ ନରହିବ କାହିଁ ॥
ଏଥକୁ କହିବା କାରଣ । ତୁମ୍ଭେ ସର୍ବଜ୍ଞ ସର୍ବଜାଣ ॥
କହିବା ମୋତେ ଦୟାଚିତ୍ତ । କେମନ୍ତେ ହେବି ବନ୍ଧମୁକ୍ତ ॥
ପ୍ରସନ୍ନେ କହ ମୁନିବର । ମୁଁ ତୁମ୍ଭ ଚରଣେ କିଙ୍କର ॥
ଏମନ୍ତେ ତା'ର ବାକ୍ୟେ ତୋଷି । କହେ ନାରଦ ମହାଋଷି ॥
ନିରତେ ସାଧୁ-ସଙ୍ଗ ଯେବେ । ମନ ନିଶ୍ଚଳ ରହେ ତେବେ ॥
ଏ ବିନେ ଅନ୍ୟତ୍ର ରାଜନ । ନ ଦେଖି ମନ ସମାଧାନ ॥
ସେ ସାଧୁସଙ୍ଗ ସେବା ଫଳେ । ଜ୍ଞାନ-ଭକତି-ଯୋଗବଳେ ॥
ଜନ୍ମ-ବିନାଶ-ଲିଙ୍ଗ ତୋ'ର । ତେବେ ଛାଡ଼ିବ ନୃପବର ॥
ଅପରେ ନାହିଁ ମୋକ୍ଷ ଆର । ନ ଦେଖି ଶୁଣ ନୃପବର ॥
ତା'ଶୁଣି ପଚାରେ ନୃପତି । କିରୂପେ ସାଧୁଙ୍କୁ ସେବନ୍ତି ॥
କହ ବିଧାନ ମୁନିବର । ଅଳପେ ସାଧି ମୋକ୍ଷ-ଦ୍ୱାର ॥
ହସି ନାରଦ ମହାଋଷି । ତା'ବାକ୍ୟେ କହନ୍ତି ପ୍ରତୋଷି ॥
ଶୁଣ ରାଜନ ଶୁଦ୍ଧ-ଚିତ୍ତେ । ବିଧାନ କହିବା ଯୁଗତେ ॥
ଏ ସର୍ବ-ଚିନ୍ତା ପରିହର । ମନ-ଇନ୍ଦ୍ରିୟ ଦୃଢ଼େ ଧର ॥
ଏକାଗ୍ର-ଚିତ୍ତେ ତୁ ନିଶ୍ଚଳେ । ବସ ତୁ ହୃଦୟ-ନିର୍ମଳେ ॥
ଯେ ଧର୍ମାଚାର ସାଧୁଜନ । ସେ ଧର୍ମ କର ତୁ ରାଜନ ॥
ସାଧୁଙ୍କ ମୁଖୁଁ ହରିରସ । ଶ୍ରବଣ-ପୁଟେ କର ଗ୍ରାସ ॥
ସେ ନାମାମୃତ ପାନେ ମତ୍ତ । ଯେ ପ୍ରାଣୀ ଭଜେ ଅବିରତ ॥
ତା'ଙ୍କୁ ପ୍ରତୋଷ ସାଧୁଜନେ । ଯେଣୁ ଦୟାଳୁ ନିଷ୍କିଞ୍ଚନେ ॥
ସାଧୁଙ୍କ ସେବାକର୍ମ ଏହି । ଯେ କୃଷ୍ଣରସ ଆସ୍ୱାଦଇ ॥
ଏବେ ତୁ ଶୁଣ ମହୀପାଳ । କପିଳାଶ୍ରମେ ବେଗେ ଚଳ ॥
ସେ ମୁନିବର ଆଶ୍ରେ ତୋ'ର । ଖଣ୍ଡିବ ଜନ୍ମ-ବନ୍ଧ ଘୋର ॥
ତା' ଶୁଣି ସତ୍ୱରେ ରାଜନ । ପୁତ୍ରକୁ ଡକାଇ ବହନ ॥
ରାଜ୍ୟ-ପାଳନେ ଆଜ୍ଞା ଦେଲା । ଦଣ୍ଡ-ଛତ୍ରାଦି ସମର୍ପିଲା ॥
ସେ ଗର୍ବ ତେଜି ନୃପବର । ମୁନିଙ୍କି କହେ ଯୋଡ଼ିକର ॥
ଭୋ ମୁନି ଯେବେ ଆଜ୍ଞା ହୋଇ । ମୋ' ପତ୍ନୀ ପ୍ରବୋଧି ଆସଇ ॥
ରାଜ-ବିଭବ ଦେଇ ତା'କୁ । ନିଶ୍ଚିନ୍ତେ ଯିବଇଁ ବନକୁ ॥
ଏମନ୍ତ ବାକ୍ୟ ଶୁଣି ତା'ର । କୋପେ ବୋଲନ୍ତି ମୁନିବର ॥
ତୁ ବଡ଼ ଅଜ୍ଞାନୀ ମୂରୁଖ । ନ ଜାଣୁ ପରଲୋକ ଦୁଃଖ ॥
ଏମନ୍ତ କହି ମୁନିବର । ଶ୍ୱାସ ଉପେକ୍ଷି ଚିନ୍ତାଭର ॥
ସେ ସ୍ତିରୀ ମୁଖାବଲୋକନ । କେ କାମୀ ତେଜିବ ଅଜ୍ଞାନ ॥
ଯହିଁ ଯୋଗୀନ୍ଦ୍ର ଭ୍ରମ ଯା'ନ୍ତି । ତା' ମୁଖୁଁ କେ ମୂଢ଼ ତରନ୍ତି ॥
ତୃଣାଦି ଯେହ୍ନେ ହୁତାଶନେ । ସ୍ୱଗଣେ ହୋନ୍ତି ଦହ୍ୟମାନେ ॥
ତେସନେ ସ୍ତିରୀ-ସଙ୍ଗ-ଦୋଷ । ଦେଖନ୍ତେ ଜ୍ଞାନ ହେବ ଧ୍ୱଂସ ॥
ଯେଣୁ ପ୍ରମଦା ନାମ ତା'ର । ତା' ମୁଖେ ପଡ଼ି କେ ନିସ୍ତାର ॥
ଏମନ୍ତ କହି ଅନୁରାଗେ । ତା' କର ଧରି ମୁନି ବେଗେ ॥
ପଶ୍ଚିମ-ଦ୍ୱାର-ମାର୍ଗେ ନେଇ । ବାହାର କରି ବେଗେ ଦେଇ ॥
ତକ୍ଷଣେ ନିଜ-ଲୋକେ ଗଲେ । ବ୍ରହ୍ମାଙ୍କ ଛାମୁରେ ମିଳିଲେ ॥
ସେ ଯେ ପ୍ରାଚୀନ ନୃପବର । ମୁନିଙ୍କ ଭୟେ ଛନ୍ନାତୁର ॥
ପ୍ରବେଶ କପିଳଆଶ୍ରମେ । ଗମିଲା ପଥ ପଦ-ଶ୍ରମେ ॥
ସେ ମୁନିବର ପାଶେ ଯାଇ । ତପ ଆଚରି ଯୋଗ ଧ୍ୟାୟି ॥
ଏକାଗ୍ର-ଚିତ୍ତେ ମହାରାଜ । ଭଜିଲେ ହରି-ପାଦମ୍ବୁଜ ॥
ମନ-ପବନ ଦୃଢ଼େ ଧରି । ସର୍ବ କୁସଙ୍ଗ ପରିହରି ॥
ସେ ହରି-ଚରଣ-ପ୍ରସନ୍ନେ । ଗମିଲେ ବୈକୁଣ୍ଠ ଭୁବନେ ॥
ଶୁଣ ବିଦୁର ଜ୍ଞାନମୟେ । ନାରଦ ନୃପରେ ସଦୟେ ॥
ପରୋକ୍ଷ-ବାଦେ ଆତ୍ମଜ୍ଞାନ । କହିଲେ ଦିବ୍ୟ-କଥା-ମାନ ॥
ଏହା ଯେ ଶ୍ରବଣ କରନ୍ତି । ଅଥବା ବଦନେ ଗୁଣନ୍ତି ॥
ସେ ସର୍ବେ ହୋନ୍ତି ମୋକ୍ଷ ପର । କହିଲୁ ବ୍ରହ୍ମତତ୍ତ୍ୱ -ସାର ॥
ଆତ୍ମା ବନ୍ଧନୁ ମୁକ୍ତ ହୋଏ । ଅଜ୍ଞାନେ ଗୃହବାସ ନୋହେ ॥
ପରୋକ୍ଷ ତତ୍ତ୍ୱଜ୍ଞାନ ସାର । ତୋ' ଆଗେ କହିଲୁ ବିଦୁର ॥
ଏବେ ଶ୍ରବଣେ କିବା ଇଚ୍ଛା । କହ ସଂଶୟ ତେଜି ବାଞ୍ଛା ॥
ଏମନ୍ତ ମୁନି ମୁଖୁଁ ଶୁଣି । ଶିରେ ନିବେଶି ବେନି-ପାଣି ॥

କହଇ ବିପ୍ର ଜଗନ୍ନାଥ । ମୈତ୍ରେୟ-ବିଦୁର-ଚରିତ ॥
ଚତୁର୍ଥ ସ୍କନ୍ଧେ ଏହୁ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ବିଦୁରମୈତ୍ରେୟ ସମ୍ବାଦେ ପ୍ରାଚୀନବର୍ହି ନାରଦ ସମ୍ବାଦେନାମ ଏକୋନୋତ୍ରିଂଶୋଽଧ୍ୟାୟଃ ।*

## ତ୍ରିଂଶ ଅଧ୍ୟାୟ

### ବିଦୁର ଉବାଚ

ତଦନ୍ତେ ପଚାରେ ବିଦୁର । ଶୁଣ ମୈତ୍ରେୟ ମୁନିବର ॥
ତୁମ୍ଭେ ଯେ କହିଥିଲ ପୂର୍ବେ । ତପେ ପ୍ରଚେତା ଭାଇ ସର୍ବେ ॥
ସେମାନେ ରୁଦ୍ରଗୀତା ସ୍ତବେ । ହରି ଭଜିଲେ ଏକଭାବେ ॥
କହ ହେ ଦେବଗୁରୁ-ଶିଷ୍ୟ । ତାହାଙ୍କ ସିଦ୍ଧି ହେଲା କିସ ॥
ସେ ସର୍ବେ ବଡ଼ ଭାଗ୍ୟବନ୍ତ । ଦେଖିଲେ ଉମାଦେବୀକାନ୍ତ ॥
ସେ ତା'ଙ୍କୁ ରୁଦ୍ରଗୀତା ଦେଲେ । ସେ ତହିଁ ଯୋଗଶିକ୍ଷା କଲେ ॥
ହରିଙ୍କି ପାଇଲେ କେମନ୍ତେ । ଇହକାଳରେ କିବା ଅନ୍ତେ ॥
ଏ କଥା କହ ମୁନିବର । ତାହା ଶ୍ରବଣେ ଇଚ୍ଛା ମୋର ॥

### ମୈତ୍ରେୟ ଉବାଚ

ଶୁଣ ବିଦୁର ସୁଚେତନ । ତଦନ୍ତେ ଯେବଣ ବିଧାନ ॥
ସେ ପିତାବାକ୍ୟେ ହୋଇ ତୋଷ । ତପ ସାଧନେ ଭାଇଦଶ ॥
ବାଟରେ ଭେଟିଲେ ଈଶାନ । ସେ ତା'ଙ୍କୁ ଦେଲେ ଦିବ୍ୟଜ୍ଞାନ ॥
ସେ ଦୀକ୍ଷା ପାଇ ଦଶଭାଇ । ସମୁଦ୍ରେ ପ୍ରବେଶିଲେ ଯାଇ ॥
ବୁଡ଼ିଣ ସମୁଦ୍ର ମଧ୍ୟରେ । ତପ ସାଧିଲେ ନିରାହାରେ ॥
ଅୟୁତ-ସମ୍ବତ୍ସର ଯାଏଁ । ତପ ସାଧିଲେ ଏକଠାଏଁ ॥
ତଦନ୍ତେ ଦେବ ନାରାୟଣ । ଦର୍ଶନ ଦେଲେ ତତକ୍ଷଣ ॥
ହରିଙ୍କ କାନ୍ତି ଶୋଭା କଲା । ତା' ଦେଖି ତା'ଙ୍କ ଦୁଃଖ ଗଲା ॥
ଖଗେନ୍ଦ୍ର ପୃଷ୍ଠେ ଦିବ୍ୟଅଙ୍ଗେ । ଯେହ୍ନେ ଜୀମୂତ ମେରୁଶୃଙ୍ଗେ ॥
ପୀତବସନ ପରିଧାନ । ଯେହ୍ନେ ତଡ଼ିତେ ନବଘନ ॥
ଅତି ସୁନ୍ଦର ସୁଭୂଷଣ । ସୁଗ୍ରୀବେ ରତ୍ନମଣି ଗଣ ॥
ରତ୍ନ ସମୂହେ ଶୁଦ୍ଧକାନ୍ତି । ସେ ଦିଗ ତିମିର ନାଶନ୍ତି ॥
ଶୋଭନେ ନାହିଁ ପଟାନ୍ତର । ଅଶେଷ-ଭୁବନ-ସୁନ୍ଦର ॥
ମକର-କୁଣ୍ଡଳ ଶ୍ରବଣେ । ଖଚିତ ନାନା ମଣିଗଣେ ॥
କଞ୍ଜବଦନ ଶୋଭାକର । ଅନଙ୍ଗ-କୋଟି-ଦର୍ପହର ॥
ଶିରେ କିରୀଟ ଶୋଭାମାନ । କାମ ନିନ୍ଦିତ ତନୁବର୍ଣ୍ଣ ॥
ଅଷ୍ଟ ଆୟୁଧ କରେ ଛନ୍ତି । ସେବକେ ସେବନ କରନ୍ତି ॥
ଦେବ-ସମୂହେ ମୁନିଜନେ । ସ୍ତୁବନ୍ତି ନିଗମ-ବଚନେ ॥
ଖଗେନ୍ଦ୍ର-ପକ୍ଷ-ନାଦ-ସ୍ୱର । ସୁର-ମୁନୀନ୍ଦ୍ର ମନୋହର ॥
ଶୁଭଇ ସାମଗାନ ପ୍ରାୟେ । ଶୁଣି କିନ୍ନରଜନ ମୋହେ ॥
ପୀନ ଆୟତ ଅଷ୍ଟଭୁଜ । ସୁର ଅଇରି ନାଶେ ବୀଜ ॥
ତା' ମଧ୍ୟେ ଶୋହେ ବନମାଳ । ମଧୁ-ଲୋଭିତ ଭୃଙ୍ଗକୁଳ ॥
ଭ୍ରମିଣ ଗୁଞ୍ଜରନ୍ତି ପାଶେ । ଲୋଭିତ ମକରନ୍ଦ ଆଶେ ॥
ଶୋଭନେ ନାହିଁ ପଟାନ୍ତର । ମନ-ବଚନେ ଆଗୋଚର ॥
ନାହିଁ ପ୍ରତୁଲ୍ୟ ରୂପ ଶୋଭା । ଅଗ୍ରେ ହୋଇଲେ ଆସି ଉଭା ॥
ତାହାଙ୍କୁ ଦେଖି ଦଶଭାଇ । ଚରଣେ ପ୍ରଣମିଲେ ଯାଇ ॥
ସନ୍ତୋଷ ତା'ଙ୍କୁ ଦାମୋଦର । କହନ୍ତି ବଚନ ମଧୁର ॥

### ଶ୍ରୀ ଭଗବାନ ଉବାଚ

ଶୁଣ ହେ ନୃପତି-ନନ୍ଦନ । ତୁମ୍ଭରେ ହୋଇଲୁ ପ୍ରସନ୍ନ ॥
ଯେଣୁ କଠୋର ତପ କଲ । ଏଣୁ ହୋଇବ ତୁମ୍ଭ ଭଲ ॥
ହେ ପୁତ୍ରେ ବରମାଗ ଦେବା । ଯେଣୁ ଆମ୍ଭରେ କଲ ସେବା ॥
ଯେଣୁ ଗୋବିନ୍ଦେ ଦଶଭାଇ । ସେବିଲ ଭେଦାଭେଦ ନୋହି ।
ସମାଧନଧର୍ମ ସମଶୀଳ । ଏଣୁ ଆମ୍ଭଙ୍କୁ ତୋଷ କଲ ॥
ତୁମ୍ଭର ଗୁଣ-କୀର୍ତ୍ତି-ଯଶ । ଶ୍ରବଣେ କଲୁଷ ବିନାଶ ॥
ଯେ ନର ଶଯ୍ୟାରୁ ଉଠିଣ । ତୁମ୍ଭରେ କରିବ ସ୍ମରଣ ॥
ନୋହିବ ତା'ଙ୍କ ଭାଇ ଭେଦ । ସେମାନେ ନ ପାଇବେ ଖେଦ ॥
ସକଳ-ଭୂତେ ସମଭାବ । ଖଣ୍ଡିବେ ଦୁଃଖ-ପରାଭବ ॥
ଯେ ନିତ୍ୟେ ପ୍ରଭାତ-ସନ୍ଧ୍ୟାରେ । ଏ ରୁଦ୍ରଗୀତା ସ୍ତବ କରେ ॥
ମୁଁ ତା'ରେ ଦେଇ କାମ୍ୟବର । ଶୋଭନ ହେବ ମତି ତା'ର ॥
ଯେଣୁ ଏ ତୁମ୍ଭେ ଦଶଭାଇ । ପିତାର ଆଜ୍ଞା ଶିରେ ବହି ॥
ସନ୍ତୋଷେ ତପ ଆଚରିଲ । ଏଣୁ ଲଭିବ କୀର୍ତ୍ତି ଭଲ ॥
ବିମଳ ସୁଯଶ ତୁମ୍ଭର । ବିଖ୍ୟାତ ରହିବ ସଂସାର ॥
ତଦନ୍ତେ କିଛିକାଳ ଅନ୍ତେ । ଏ ତୁମ୍ଭ ପତ୍ନୀ ଗର୍ଭଗତେ ॥
ହୋଇବ ଏକଇ ତନୟ । ସେ ହେବ ବ୍ରହ୍ମଗୁଣମୟ ॥
ଯେ ପୁତ୍ର ଆତ୍ମବୀର୍ଯ୍ୟବଳେ । ପୂରିବ ଏ ଲୋକ ଶୟଳେ ॥
ବଂଶର ସଂଖ୍ୟା ତ ନ ଥିବ । ସୃଷ୍ଟି ସୃଜନ ତେବେ ହେବ ॥
ଯେ କନ୍ୟା ବିଭା ହେବ ତୁମ୍ଭେ । କହିବା ତା'ର ଜନ୍ମ ଏବେ ॥
ଶୁଣ ହେ ନୃପତି ନନ୍ଦନେ । ସେ କଣ୍ଡୁଋଷି ତପୋବନେ ॥
ତପ ସାଧନ ମୋକ୍ଷ ଆଶେ । ବସି ନିର୍ଜନ-ଘୋର-ଦେଶେ ॥
ତାଙ୍କ ଆଶ୍ରମ ଅନୁସରି । ଅଇଲା ଏକଇ ସୁନ୍ଦରୀ ॥

ପ୍ରମ୍ଲୋଚା ନାମ ଯେ ତାହାର । ଅପ୍ସରାଗଣେ ଶ୍ରେଷ୍ଠ ସାର ॥
ତାହାକୁ ଦେଖି ମୁନିବର । ଅନଙ୍ଗେ ହୋଇଲେ ଅସ୍ଥିର ॥
ଛାଡ଼ି ତପସ୍ୟା ଆଦି ଧ୍ୟାନ । ତା' ରୂପେ ପାସୋରିଲେ ଜ୍ଞାନ ॥
ତା'ର ସଙ୍ଗତେ ମୁନିବର । ଗୃହସ୍ଥଧର୍ମେ ସୁବିଚାର ॥
ବଞ୍ଚିଲେ କାମଭୋଗେ ତୋଷେ । ଅଜ୍ଞାନେ ଇନ୍ଦ୍ରିୟ-ଅବଶେ ॥
ଏମନ୍ତେ କିଛି କାଳନ୍ତରେ । ଅମୋଘ-ବୀର୍ଯ୍ୟ ତା' ଉଦରେ
ରହିଲା କାଳ-କର୍ମ ଫଳେ । ବିଧି-ସଂଯୋଗେ କର୍ମବଳେ ॥
ତାହାର ଗର୍ଭେ ଏକ କନ୍ୟା । ହୋଇଲା ରୂପଗୁଣେ ଧନ୍ୟା ॥
କନ୍ୟାକୁ ଛାଡ଼ି ସେ ସୁନ୍ଦରୀ । ତକ୍ଷଣେ ଗଲା ନିଜ ପୁରୀ ॥
ସେ ବନେ ଯେତେ ବୃକ୍ଷ ଥିଲେ । ସର୍ବେ କନ୍ୟାକୁ ଘେନିଗଲେ ॥
ସେ କନ୍ୟା କ୍ଷୁଧାର ବିକଳେ । ରୋଦନ କରେ ବୃକ୍ଷମୂଳେ ॥
ତାହାକୁ ଦେଖି ନିଶାକର । ଦୟା ବସିଲା ତା' କଣ୍ଠର ॥
ତର୍ଜନୀ ଅଙ୍ଗୁଳି ତାଙ୍କର । ତା'ମୁଖେ ଦେଲେ ନିଶାକର ॥
ଚନ୍ଦ୍ରର କରେ ସୁଧା ଥିଲା । ତା' ପାନେ କ୍ଷୁଧା ଦୂର ହେଲା
ଏମନ୍ତେ ସେ ବନେ ସୁନ୍ଦରୀ । ରହିଲା କର୍ମ ଅନୁସରି ॥
ସେ ଗୁଣବତୀ କନ୍ୟାସାର । ତା' ଅନୁରୂପେ ତୁମ୍ଭେ ବର ॥
ଆମ୍ଭର ଭକ୍ତ ତୁମ୍ଭ ପିତା । ସୃଷ୍ଟି-ସର୍ଜନେ କରି ଚିନ୍ତା ॥
ଏଣୁ ତୁମ୍ଭଙ୍କୁ ଆଜ୍ଞା ଦେଲେ । ଏ ସୃଷ୍ଟିକର ତୁମ୍ଭେ ଭଲେ ॥
ଏଣୁ ଯେ ତୁମ୍ଭେ ଦଶଭାଇ । ସେ କନ୍ୟା ବିଭା ହୁଅ ଯାଇ ॥
ସମାନଧର୍ମୀ ତୁମ୍ଭେ ମାନେ । ଏ ମୋର ବାକ୍ୟେ ତୋଷମନେ ॥
ସେ କନ୍ୟା ତୁଲେ ସୃଷ୍ଟିକର । ସେ ଯୋଗ୍ୟ ଅଟଇ ତୁମ୍ଭର ॥
ସହସ୍ରବର୍ଷ ଦେବମାନେ । ଜୀବିତେ ରହ ସୁକଲ୍ୟାଣେ ॥
ପୃଥିବୀ ମୁଖେ ଭୋଗକର । ତ୍ରିବିଧ ତାପ ପରିହର ॥
ମୋ ପାଦେ କରିବ ଭକତି । ବୈକୁଣ୍ଠ ଲଭିବ ବସତି ॥
ଏ କର୍ମବନ୍ଧ ବିନାଶିବ । ବିଷୟଭୋଗ ନ ଲାଗିବ ॥
ଭୋଗାନ୍ତେ ମୋକ୍ଷ ଦଶଭାଇ । ହେବ ସଂଶୟ ଏଥି ନାହିଁ ॥
ଏ ଗୃହଧର୍ମେ ବସ୍ତୁ ଯେତେ । ମୋତେ ସମର୍ପି ଶୁଦ୍ଧଚିତ୍ତେ ॥
ଉଦାସୀଜନ ପ୍ରାୟ ହୋଇ । ମୋର ଭକତି ହୃଦେ ଧ୍ୟାୟି ॥
ମୁଁ ବ୍ରହ୍ମ ପରମ ପୁରୁଷ । ସକଳ ଘଟେ ମୋ' ପ୍ରକାଶ ॥
ଯେ ମୋର ଭକତି ଲଭନ୍ତି । ସେ ଆଉ କିଛି ନ ଜାଣନ୍ତି ॥
ତାଙ୍କୁ ନ ଲାଗେ ମାୟାମୋହ । ଛିଡ଼େ ଦୁର୍ଜୟ-ବନ୍ଧ-ସ୍ନେହ ॥
ତାହାଙ୍କୁ ଗୃହ ନ ଲାଗଇ । ମୋ ଭକ୍ତିବଳେ ନିସ୍ତରଇ ॥

## ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁର । ଏମନ୍ତ କହନ୍ତେ ଈଶ୍ୱର ॥
ଅଞ୍ଜଳି କରି ଦଶଭାଇ । ପ୍ରଣାମ କରନ୍ତି ବିନୋୟି ॥
ଶ୍ରୀମୁଖ ନିରେଖି ଚାହିଁଲେ । ଆନନ୍ଦ ସାଗରେ ବୁଡ଼ିଲେ ॥
ଦୂରତ ହେଲା ରଜ ତମ । ଖଣ୍ଡିଲେ ବିଷୟ ବିଭ୍ରମ ॥
ସଂଭ୍ରମେ ନ ପାରନ୍ତି ଚାହିଁ । ରୋମ ପୁଲକେ ଅଶ୍ରୁ ଦେହୀ ॥
ଆନନ୍ଦ ସାଗରେ ବୁଡ଼ିଣ । କହନ୍ତି ଗଦ୍‌ଗଦ ବଚନ ॥
ଦେହ ଜୀବନ ପାସୋରିଲେ । ଚରଣ-ପଙ୍କଜେ ନମିଲେ ॥
ସ୍ତୁତି କରଣେ ଶକ୍ୟ ନୋହି । ପ୍ରେମ ଆନନ୍ଦେ ପୂର୍ଣ୍ଣ ଦେହୀ ॥
ସ୍ତୁତି କରନ୍ତି ଏକେ ଏକେ । ବାକ୍ୟେ ନ ସ୍ଫୁରେ ଅଶ୍ରୁଦକେ ॥

## ପ୍ରଚେତଗଣ ଉବାଚ

ନମସ୍ତେ ପ୍ରଭୁ ନାରାୟଣ । ଅଶେଷ ଦୁଃଖ ନିବାରଣ ॥
ଉଦାର ଗୁଣ ଯେ ତୁମ୍ଭର । ତୋ'ନାମ ଦେବେ ଅଗୋଚର
ତୁମ୍ଭର ବେଗ ବଳବନ୍ତ । ମନ-ବଚନେ ନୋହେ ଅନ୍ତ ॥
ଇନ୍ଦ୍ରିୟଗଣ ନ ଜାଣନ୍ତି । କି ରୂପେ ଜାଣିବେ ତୋ' ଗତି
ଏମନ୍ତ ପ୍ରଭୁ ଯେ ଈଶ୍ୱର । ସେ ପାଦେ ଆମ୍ଭ ନମସ୍କାର ॥
ତୁମ୍ଭେ ବିଶୁଦ୍ଧ ଶାନ୍ତରୂପେ । ବସନ ନିର୍ମଳ-ମନ-କୂପେ ॥
ନମସ୍ତେ ପ୍ରଭୁ ଭଗବାନ । ଏ ଭବୁ କର ପରିତ୍ରାଣ ॥
ଭଗତ ଉଦେ ସ୍ଥିତି ଲୟେ । ହୋଇ ଯେ ଅଛି ଗୁଣମୟେ ॥
ମାୟା-ଗୁଣରୁ ରୂପ ଧରି । ସୃଷ୍ଟି ସର୍ଜନେ ଅଧିକାରୀ ॥
ନୋହିଲେ ତୁମ୍ଭେ ଶୁଦ୍ଧସତ୍ତ୍ୱ । କେହି ନ ପାନ୍ତି ତୁମ୍ଭ ତତ୍ତ୍ୱ ॥
ନମୋ ଶ୍ରୀକୃଷ୍ଣ ବାସୁଦେବ । ସକଳ-ସାତ୍ୱତ-ପ୍ରଭବ ॥
କମଳନାଭିଟି ଯାହାର । ସେ ପାଦେ ମୋର ନମସ୍କାର ॥
ନମସ୍ତେ କମଳମାଳିନେ । ପଙ୍କଜଲୋଚନ-ଚରଣେ ॥
କମଳ-କିଞ୍ଜଲ୍କ ଯେସନ । ନିର୍ମଳ-ବସନ ତେସନ ॥
ସେ ପୀତବାସଙ୍କୁ ନମଇଁ । ଚରଣେ ପରିମୁଣ୍ଡା ଯାଇ ॥
ସକଳ ଭୂତେ ଯା'ର ବାସ । ସେ ସାକ୍ଷୀ ରୂପେ ସୁପ୍ରକାଶ ॥
ସେ ରୂପେ ଭାବି ପ୍ରଣମିଲୁ । ଯେଣୁଟି ଦର୍ଶନ ଲଭିଲୁ ॥
ଭୋ ପ୍ରଭୁ ତୁମ୍ଭେ ଭଗବାନ । ଏ ଦୟା କରିବ କେ ଆନ ॥
ଆମ୍ଭଙ୍କୁ ଏ ରୂପ ଦେଖାଇ । ଦୁରିତ ଖଣ୍ଡିଲ ଗୋସାଇଁ ॥
ଏ ରୂପ ଯେ କରେ ଦର୍ଶନ । ସେ ଦୁଃଖେ ନୁହଁନ୍ତି ଭାଜନ ॥
ଭୋନାଥ ମହିମା ତୋ' ଯେତେ । ଦେଖିଲୁ ପ୍ରଭୁପଣ ତେତେ ॥

ବୁଝିଲୁ ତୁମ୍ଭେ ଦୟାସିନ୍ଧୁ । ଯେ ହୀନ-ଦୀନଜନ-ବନ୍ଧୁ ॥
ଆମ୍ଭେ ଯେ ଅତି ଦୀନହୀନ । ଆମ୍ଭଙ୍କୁ କର ନିସ୍ତାରଣ ॥
ଯେଉଁ ସ୍ମରଣେ ଆହେ ନାଥ । ସୁଶାନ୍ତି ଲଭି ସୁଖ ଜାତ ॥
ବୁଝିଲୁ ତୁମ୍ଭେ ଦୂରେ ନାହିଁ । ହୃଦୟପଦ୍ମେ ଗୁପ୍ତେ ଥାଅ ॥
ଏଣୁ ଭକତ-ଚିତ୍ତ-କଥା । ଜାଣିଣ ପାଅ ମନେ ବ୍ୟଥା ॥
ଯେଣୁ ତୋ ସର୍ବଘଟେ ବାସ । ଭକ୍ତ ଡାକିଲେ ଶୀଘ୍ର ଆସ ॥
ଭୋ ନାଥ ଜଗତଗୋସାଇଁ । ଏଣୁ ଉଦ୍ଧାରେ ବର ନାହିଁ ॥
ତୁମ୍ଭେ ଜଗତ-ଗୁରୁ-ପତି । ପ୍ରସନ୍ନ ହୋଇଲେ ତତଟି ॥
ଏ ବର ହେବ କି ଆମ୍ଭର । ଭୋ ନାଥ ତୁମ୍ଭେ କୃପାକର ॥
ତୁମ୍ଭ ବିଭୂତି ଅନ୍ତନାହିଁ । ଏଣୁ ଅନନ୍ତ ନାମକହି ॥
ପାରିଜାତକ ପୁଷ୍ପ ପାଇ । ସାରଙ୍ଗ ଅନ୍ୟ କି ଲୋଡ଼ଇ ॥
ଲଭିଣ ତୋ'ପାଦକମଳ । ଅନ୍ୟ ଏ ବରେ କିବା ଫଳ ॥
ଭୋ ନାଥ ନିବେଦୁଁ ଛାମୁରେ । ଏ ଆଜ୍ଞା ହେବ କି ଆମ୍ଭରେ ॥
ଯାବତ ତୁମ୍ଭ ମାୟା ଘେନି । ଜନ୍ମ ଲଭିବୁ ନାନା ଯୋନି ॥
ସ୍ୱକର୍ମବଶେ ଦେହ ବହି । ଭୋଗ ନ କଲେ ନାଶ ନୋହି ॥
ନିଜସ୍ୱ କର୍ମ ଭୁଞ୍ଜୁଥିବୁ । ତୋ' ସଙ୍ଗୀ ସଙ୍ଗତ ଲଭିବୁ ॥
ସୁକର୍ମ ସୁଯଜ୍ଞ ସୁଦାନ । ତୋ' କଥାମୃତ ନିତ୍ୟେ ପାନ
ସୁତୀର୍ଥେ ସୁବିପ୍ରଙ୍କ ଗୋଷ୍ଠୀ । ତୋ'ସେବା ସ୍ମରଣ ମୁକତି ॥
ତୋ'ଭକ୍ତସଙ୍ଗର ମହିମା । କେ ଜାଣିପାରେ ଗୁଣସୀମା ॥
ସେ ସଙ୍ଗୁ ଯେବା ସୁଖ ହୋଇ । ସେ ସୁଖ ସ୍ୱର୍ଗେ ଅଛି କାହିଁ ॥
ଯହିଁ ମୁକତି ତୁଲ୍ୟ ନୋହେ । ମନୁଷ୍ୟ ସୁଖ କାହିଁ ରହେ ॥
ଆମ୍ଭେ ବୁଝିଲୁ ଅନୁଭବେ । ସାଧୁ-ସଙ୍ଗମେ ସୁଖ ଲଭେ ॥
ତା' ତୁଲେ ନୋହେ ସ୍ୱର୍ଗ-ମୋକ୍ଷ । ଏ ମର୍ତ୍ତ୍ୟଭୋଗ ଅତି ତୁଚ୍ଛ ॥
ଯେ ଠାରେ ସାଧୁଏ ବସନ୍ତି । ଯେ ନିତ୍ୟେ ହରି-ଯଶ ଗାନ୍ତି ॥
ତୋ ଅବତାର ପୁଣ୍ୟ ଯଶ । ଯେ ଯଶେ କଲୁଷ ବିନାଶ ॥
ଗାବନ୍ତି ତୋ' ନାମ ଚରିତ । ତୋ ଯଶ-କର୍ମ ଅବିରତ ॥
ଯେ ତାହା ପିବେ ଶ୍ରୁତିଦ୍ୱାରେ । ଜ୍ଞାନେ ଅଜ୍ଞାନେ ପାପ ହରେ ॥
ତେବେ ବିଷୟ ଶାନ୍ତ ହୋଏ । ଜୀବେ ବଇରୀଭାବ ନୋହେ ॥
ଅହିଂସା-ଧର୍ମ ହୋଏ ଜାତ । ତହୁଁ ଉଦ୍‌ବେଗ ନୋହେ ଚିତ୍ତ ॥
ଯେ ହରିଦାସଙ୍କର ଗତି । ଯା'ପାଦେ ଭକତେ ସେବନ୍ତି ॥
ସଙ୍ଗ ଉପେକ୍ଷି ସାଧୁଜନେ । ଏକାନ୍ତେ ଥାନ୍ତି ତୁମ୍ଭ ଧ୍ୟାନେ ॥
ସେ ନିତ୍ୟେ ଭୂମି ପର୍ଯ୍ୟଟନ୍ତି । ଭ୍ରମିଣ ପ୍ରାଣୀ ନିସ୍ତାରନ୍ତି ॥
ତୀର୍ଥାଦି କରନ୍ତି ପବିତ୍ର । ଏମନ୍ତ ସାଧୁଙ୍କ ଚରିତ ॥
ତାହାଙ୍କ ଦର୍ଶନ ଯାହାଙ୍କୁ । ନ ଗୁଚେ କହିବା ଆମ୍ଭଙ୍କୁ ॥
ତୁମ୍ଭର ପ୍ରିୟସଖା ରୁଦ୍ର । ସେ ପ୍ରଭୁ ଦୟାର ସମୁଦ୍ର ॥
ପାଇଲୁ ତା'ଙ୍କ ସଙ୍ଗ ଯେଣୁ । ତେଣୁ ତରିଲୁ ଘୋରବଣୁ ॥
ସେ ସାଧୁସଙ୍ଗ ଭାଗ୍ୟେ କରି । ତୋତେ ଦେଖିଲୁ ନରହରି ॥
ଏ ଭବ-ବ୍ୟାଧି ମହାଘୋର । ଚିକିତ୍ସା ନାହିଁ ଯେ ଏଥିର ॥
ଏଥକୁ ବୈଦ୍ୟ ଅଟ ତୁମ୍ଭେ । ଏଣୁ ଆଶ୍ରୟ କଲୁ ଆମ୍ଭେ ॥
ତୋହର ନାମ ଦୀନବନ୍ଧୁ । ତୁହି କରୁଣାମୟ ସିନ୍ଧୁ ॥
ଆମ୍ଭେ ଯେ ଦୀନ ଅଭାଜନ । ପଶିଲୁ ତୋ'ପାଦେ ଶରଣ ॥
ରଖ ନ ରଖ ଭାବଗ୍ରାହୀ । ତୋ'ବିନୁ ଅନ୍ୟ ଗତି ନାହିଁ ॥
ତୋର ପ୍ରସନ୍ନେ ଭଗବାନ । କେବଳ ଆମ୍ଭର ଜୀବନ ॥
ଏ ଚତୁର୍ବର୍ଗ ଆଶ୍ରେ ଯହିଁ । ଅନ୍ୟତ୍ର ତୋଷେ ଶକ୍ୟ ନାହିଁ ॥
ଏଣୁ ଯେ ତୋ' ପାଦକମଳେ । ଶରଣାଶ୍ରିତ ଏ ଶୟଳେ ॥
ସେ କାଳଦଣ୍ଡ ପରିହରେ । ଆନନ୍ଦ-ସାଗରେ ବିହରେ ॥
ଭୋନାଥ ଆମ୍ଭେ ଦଶଭାଇ । ବେଦ ପଢ଼ିଲୁ ଯେତେ ଠାଇଁ ॥
ଗୁରୁଙ୍କ ଚରଣ ପୂଜିଲୁ । ବୃଦ୍ଧ-ବ୍ରାହ୍ମଣ ସେବା କଲୁ ॥
ଅହିଂସା ଧର୍ମ ବ୍ୟବହାରେ । ବନ୍ଧୁଙ୍କୁ ତୋଷିଲୁ ସଂସାରେ ॥
ଅନେକ କାଳ ସିନ୍ଧୁଜଳେ । ତପସ୍ୟା କଲୁ ନିରାହାରେ ॥
ଯେତେକ କଷ୍ଟେ ତପ କଲୁ । ତୋ'ପାଦେ ଏହା ସମର୍ପିଲୁ ॥
ଗୁରୁସେବନ ଆଦି ଯେତେ । ତୁମ୍ଭ ପ୍ରତୋଷେ ହେଉ ନିତ୍ୟେ
ଆମ୍ଭର ବର ପ୍ରଭୁ ଏହି । ଆବର ବରେ ଇଚ୍ଛା ନାହିଁ ॥
ମନୁ ବିଧାତା ରୁଦ୍ର ଆଦି । ଅପରେ ଯେତେ ଶୁଦ୍ଧବୁଦ୍ଧି ॥
ତୁମ୍ଭ ମହିମା ଅନ୍ତ କେହି । ଏ ଦେଖି ନ ପାରିଲେ ଯହିଁ ॥
ସେ ତୁମ୍ଭ ରୂପ ଧ୍ୟାଉଥାନ୍ତି । ହୃଦୟ-କମଳେ ଭାବନ୍ତି ॥
ସେ ସର୍ବେ ଜ୍ଞାନର ସାଗର । ସ୍ତବନ କରନ୍ତି ତୁମ୍ଭର ॥
ଆମ୍ଭେ ବାଳକ ଜ୍ଞାନହୀନ । ବିଦ୍ୟାରେ ନୋହିଛୁ ପ୍ରବୀଣ ॥
ତଥାପି ଜ୍ଞାନ ଅନୁସାରେ । ମନ ଅର୍ପିଲୁ ତୁମ୍ଭଠାରେ ॥
ସେ ଦୋଷ କ୍ଷମ କୃପାଦେହୀ । ତୁମ୍ଭେ କେବଳ ଭାବଗ୍ରାହୀ ॥
ନମସ୍ତେ ପ୍ରଭୁ ଶୁଦ୍ଧସମ । ପରମ-ପୁରୁଷ-ଉତ୍ତମ ॥
ତୁମ୍ଭେ ଯେ ସତ୍ୟ ବାସୁଦେବ । ଆମ୍ଭଙ୍କୁ ଅନୁଗ୍ରହ ଥିବ ॥
ତୁମ୍ଭ ଚରଣେ ପ୍ରଣମିତ । ଆମ୍ଭଙ୍କୁ ରଖ ଜଗନ୍ନାଥ ॥

## ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁରେ । ଏମନ୍ତେ ପ୍ରଭୁଙ୍କ ଛାମୁରେ ॥
ସ୍ତୁତି ପଠନେ ଦଶଭାଇ । ଶୁଣି ସନ୍ତୋଷ ଭାବଗ୍ରାହୀ ॥

ସେ ସର୍ବେ ହରି ରୂପ ଚାହିଁ । ସନ୍ତୋଷ ନ ଭଜିଲେ କେହି ॥
ମନଆନନ୍ଦେ ସେ ଭାବନ୍ତି । ଏ ରୂପେ ହରି ଯେବେ ଥାନ୍ତି ॥
ସତୃଷ୍ଣ-ନୟନେ ଦେଖିବା । ନିରତେ ଚରଣେ ସେବିବା ॥
ଏମନ୍ତେ ସେ ବାଞ୍ଛନ୍ତେ ମନ । ହରି ହୋଇଲେ ଅନ୍ତର୍ଦ୍ଧାନ ॥
ସେ ଯେ ପ୍ରଚେତା ଭାଇଦଶ । ଆକୁଳେ ଚାହିଁ ଦଶଦିଶ ॥
ନ ଦେଖି ପ୍ରଭୁ ଚକ୍ରଧର । ସେ ଦିଗେ କରି ନମସ୍କାର ॥
ବିଚ୍ଛେଦ-ଶୋକେ ନିମଜ୍ଜିଲେ । ସେ ଦୁଃଖସାଗରେ ବୁଡ଼ିଲେ ॥
ପଡ଼ିଲେ ମୃତ୍ୟୁତୁଲ୍ୟ ଜାଣି । ସେ ହରି ବିଚ୍ଛେଦେ ଧରଣୀ ॥
ଆତ୍ମାବିହୀନେ ଯେହ୍ନେ ଦେହୀ । ଶୂନ୍ୟ ପ୍ରକାଶେ ସର୍ବଠାଇଁ ॥
ପୁଣି ସଚେତ ଜ୍ଞାନ ପାଇ । ଜଳୁ ଉଠିଲେ ଦଶଭାଇ ॥
ଧୀରେ ଚାହାଁନ୍ତେ ଦଶଦିଗ । ଦ୍ରୁମେ ଆଚ୍ଛନ୍ନ ଭୂମିଭାଗ ॥
ଆକାଶ-ଘୋଟି ବେଢ଼ିଛନ୍ତି । ଦେଖିଣ ପ୍ରକୋପେ ଜଳନ୍ତି ॥
ସର୍ବେ ବିଚାରି ଏକମନେ । ବୃକ୍ଷ ନ ରଖିବା ଭୁବନେ ॥
ଅଗ୍ନି-ପବନ ବେଗେ ଦୁଇ । ମୁଖରୁ ଜାତ କଲେ ସେହି ॥
ସେ ଅଗ୍ନି ପବନେ ବଢ଼ିଲା । ସକଳ ଦ୍ରୁମ ଭସ୍ମକଲା ॥
ଅନଳ ଅନିଳ ପ୍ରତାପେ । ଅତି ଉଦର୍ଗେ ଧୂମ ବ୍ୟାପେ ॥
ବ୍ରହ୍ମାଣ୍ଡ-ଘୋଟେ ଅନ୍ଧକାର । ଅଦୃଶ୍ୟ ଚନ୍ଦ୍ର ଦିବାକର ॥
ତା' ଦେଖି ବେଗେ ପିତାମହ । ଜାଣିଲେ ଗଲା ମହୀରୁହ ॥
ନିଜଲୋକରୁ ବିଜେ କଲେ । ସେ ଦ୍ରୁମ ବିନାଶୁଁ ରଖିଲେ ॥
କ୍ରୋଧସାନ୍ତ୍ୱନା କରି ତା'ଙ୍କ । ପ୍ରବୋଧି କହିଲେ ଅନେକ ॥
ହେ ପ୍ରଚେତସଗଣେ ଶୁଣ । ବୃକ୍ଷେ ହୋଇଲେ ଅତି କ୍ଷୀଣ ॥
ତୁମ୍ଭେ ଯେ ଅଟ ସର୍ବଜ୍ଞାନୀ । କିପାଁ କରୁଛ ସୃଷ୍ଟି ହାନି ॥
ତୁମ୍ଭେ ପାଳନେ ପ୍ରଜାପତି । ପ୍ରାଣୀଙ୍କ ହିତେ ଉତପତି ॥
ଏବେ ଯେତେକ ବୃକ୍ଷ ଶେଷ । ରହନ୍ତୁ ଯାଇ ବନଦେଶ ॥
ବୃକ୍ଷଙ୍କୁ ଡାକି ପଦ୍ମଯୋନି । ବୋଇଲେ କନ୍ୟା ଆସ ଘେନି ॥
ଦଶଭାଇଙ୍କି କନ୍ୟା ଦେଇ । ନିର୍ଭୟେ ବନେ ରହ ଯାଇ ॥
ପାଦପେ ବିଧି-ବାକ୍ୟ ଶୁଣି । ତାହାଙ୍କୁ କନ୍ୟା ଦେଲେ ଆଣି ॥
ସେ କନ୍ୟା ନାମ ଯେ ମାରିଷା । ପଦ୍ମଲୋଚନୀ ପିକଭାଷା ॥
ସୁଚାରୁ ତନୁ ଚନ୍ଦ୍ରାନନୀ । ଦେଖି ମୋହିତ ସୁରମୁନି ॥
ଭ୍ରୂଭଙ୍ଗ ଯୁଗଳ ସୁନ୍ଦର । ଅତନୁ-ଚାପ-ପ୍ରଭାହର ॥
ଅପାଙ୍ଗେ ମୁନି-ମନ-ମୋହେ । ତା' ରୂପେ ରତି ସମ ନୋହେ ॥
ସେ ସର୍ବଲକ୍ଷଣେ ସୁନ୍ଦର । ତା' ତୁଲ୍ୟ ନାହିଁ ପଟାନ୍ତର ॥

ବିଧି ବୋଇଲେ ପ୍ରଚେତସ । ଏ କନ୍ୟା ବର ତୁମ୍ଭେ ଦଶ ॥
ଏ ପତ୍ନୀଗର୍ଭରେ ତୁମ୍ଭର । ହୋଇବ ଯେବଣ କୁମର ॥
ସେ ପୁତ୍ର ହେତୁ ଏ ଜଗତେ । ପ୍ରଜା ହୋଇବେ ଅପ୍ରମିତେ ॥
ତୁମ୍ଭର ହେବ ପଉରୁଷ । ସଂସାରେ ଆଚ୍ଛାଦିବ ଯଶ ॥
ଏମନ୍ତ ଧାତାର ବଚନେ । ସନ୍ତୋଷ ଭଜିଲେ ସେମାନେ ॥
ତକ୍ଷଣେ କନ୍ୟାକୁ ବରିଲେ । ବିଧାତା ନିଜପୁରେ ଗଲେ ॥
ତଦନ୍ତେ ସେ ଯେ ଦଶଭାଇ । ବସିଲେ ନୃପାସନେ ଯାଇ ॥
ଯେ ବିଷ୍ଣୁ-ବାକ୍ୟେ ପ୍ରଚେତସ । ସୁଖେ ପାଳିଲେ ପ୍ରଜାଦେଶ ॥
ଅନେକ ଦାନ-ଯଜ୍ଞେ କଲେ । ହରିଙ୍କି ସ୍ୱଧର୍ମେ ତୋଷିଲେ ॥
ତଦନ୍ତେ ଶୁଣ ହେ ବିଦୁର । ସେ କନ୍ୟା ଉଦରେ ତାଙ୍କର ॥
ଜନ୍ମିଲେ ଦକ୍ଷ ପ୍ରଜାପତି । ଯେ ପୂର୍ବେ ବ୍ରହ୍ମାର ସନ୍ତତି ॥
ପୂର୍ବେ ନିନ୍ଦିଲେ ଶିବଯେଣୁ । ଗର୍ଭ-ଯାତନା-ଦୁଃଖ ତେଣୁ ॥
ସେ ପାପବୀଜ କୁଟେ ଥିଲା । କେବେ ହେଁ ମୋଚନ ନ ଗଲା ॥
ସାଧୁଙ୍କ ଅପରାଧ ଦୋଷ । ସେ କୋଟିକଳ୍ପେ ନୋହେ ନାଶ ॥
ଚାକ୍ଷୁଷ ମନ୍ୱନ୍ତର ଅନ୍ତେ । ପୂର୍ବ ଶରୀର ଲୋପ ଯା'ନ୍ତେ ॥
ସେ ଦକ୍ଷ ଜନମ ଲଭିଲେ । ଏବେ ଯେ ପ୍ରଜା ସୃଷ୍ଟି କଲେ ॥
ଜନ୍ମିଲା ମାତ୍ରେକେ କୁମର । ତା' ତେଜ ହେଲାକ ଅପାର ॥
ତେଜସ୍ୱୀମାନେ ଯେତେ ଥିଲେ । ତା' ତେଜେ ସର୍ବେ ଲୀନ ହେଲେ ॥
ସେ ସର୍ବକର୍ମେ ଦକ୍ଷ ଯହୁଁ । ତା' ନାମ ଦକ୍ଷ ହେଲା ତହୁଁ ॥
ବିବିଧ ମତେ ପ୍ରଜାପତି । ସୃଷ୍ଟି ସେ କଲେ ମହାମତି ॥
ତାହାଙ୍କୁ ପ୍ରଜାରକ୍ଷା ପାଇଁ । ନିଯୋଗ କଲେ ବେଦସାଇଁ ॥
ଦ୍ୱିତୀୟ ଦକ୍ଷ ଜନ୍ମକଥା । ଶୁଣ ବିଦୁର ଶୁଦ୍ଧଚେତା ॥
ଯେଣୁ ସେ ପ୍ରଜା ସୃଷ୍ଟି କଲେ । ତେଣୁ ରାଜତ୍ୱ ପ୍ରତେଜିଲେ ॥
ଏଣୁ ଏ ଧ୍ରୁବବଂଶେ ରାଜ । ନୋହିଲେ ହେ ବ୍ୟାସତନୁଜ ॥
ପ୍ରିୟବ୍ରତରେ ରାଜ୍ୟ ଦେଲେ । ସେ ଦକ୍ଷ-ବାକ୍ୟେ ସୃଷ୍ଟି କଲେ ॥
ସେ ପ୍ରିୟବ୍ରତର ଚରିତ । ପଞ୍ଚମ ସ୍କନ୍ଧରେ ବ୍ୟକତ ॥
ପୂର୍ବେ ପଚାରିଥିଲୁ ମୋତେ । ପ୍ରଚେତା ବଂଶାନୁଚରିତେ ॥
ସେ ଧ୍ରୁବବଂଶେ ଉତପନ । ପ୍ରାଚୀନବରହୀ ନନ୍ଦନ ॥
ବିସ୍ତାର କହିବାକ ତୋତେ । ପ୍ରଚେତା ଜ୍ଞାନ-ଉପଗତେ ॥
ଏହା ଯେ ଶ୍ରବଣେ ଶୁଣନ୍ତି । ତ୍ରିତାପ-ଭୟ ନିବାରନ୍ତି ॥
ତିରିଶ ଅଧ୍ୟା ଏହୁ ବାଣୀ । ମୈତ୍ରେୟ ବିଦୁରେ ବଖାଣି ॥
ଏ ଶୁକ-ପରୀକ୍ଷ ସମ୍ବାଦ । ହରଇ ଅଶେଷ ଆପଦ ॥

ଇହ ଲୋକରେ ହୋଏ ଯଶ । ଅନ୍ତେ ତା' ବଇକୁଣ୍ଠେ ବାସ ॥
ଗ୍ରହାଦି ପୀଡ଼ା ଶତ୍ରୁଭୟ । ଏ ସର୍ବଦୁଃଖ ହୋଏ କ୍ଷୟ ॥
କହଇ ଦାସ ଜଗନ୍ନାଥ । ଚତୁର୍ଥ ସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଚତୁର୍ଥସ୍କନ୍ଧେ ତ୍ରିଂଶୋଽଧ୍ୟାୟଃ ।*

## ଏକତ୍ରିଂଶ ଅଧ୍ୟାୟ

### ମୈତ୍ରେୟ ଉବାଚ

ଶୁଣ ବିଦୁର ସାବଧାନେ । ତଦନ୍ତେ ଯେବଣ ବିଧାନେ ॥
ସେ ଦଶଭାଇ ଜ୍ଞାନ ପର । ହରିଆଦେଶ ଘେନି ଶିର ॥
ଅନେକ କାଳ ଭୋଗଅନ୍ତେ । ବୈରାଗ୍ୟ ଉପୁଜିଲା ଚିତ୍ତେ ॥
ରାଜ-ବିଭୂତି ପତ୍ନୀ ତୁଲେ । ପୁତ୍ରେ ସମର୍ପି ବନେ ଗଲେ ॥
ପଶ୍ଚିମ ଜଳଧି-ତଟରେ । ରହିଲେ ସିଦ୍ଧ-ଆଶ୍ରମରେ ॥
ଜାଜଳି ନାମେ ଦ୍ୱିଜବର । ଯହିଁ ହୋଇଲେ ସିଦ୍ଧେଶ୍ୱର ॥
ତହିଁ ସେମାନେ ତପ କରି । ପୂଜିଲେ ବ୍ରହ୍ମସତ୍ରେ ହରି ॥
ଏମନ-ବଚନ-ଲୋଚନ । ସେ ଜୟ କଲେ ପ୍ରାଣ-ମନ ॥
ଆସନ ଆଦି ଦୃଢ଼ କଲେ । ସୁଶାନ୍ତ-ବିଗ୍ରହ ହୋଇଲେ ॥
ଏମନ୍ତ ସମୟେ ବିଦୁର । ନାରଦ ବ୍ରହ୍ମାଙ୍କ କୁମର ॥
ମିଳିଲେ ସେହିଠାବେ ଆସି । ସେମାନେ ଛନ୍ତି ତପେ ବସି ॥
ଦେଖି ନାରଦ-ମୁନିବର । ସେମାନେ ଉଠିଲେ ସତ୍ୱର ॥
ବେଗେ ଆସନ ଆଣି ଦେଲେ । ଚରଣଯୁଗ ପ୍ରକ୍ଷାଳିଲେ ॥
ଅତି ଆନନ୍ଦେ ଦଶଭାଇ । ଭାବେ ପୂଜିଲେ ଅର୍ଘ୍ୟ ଦେଇ
ସୁଖେ ବସିଲେ ମୁନିବର । ସେମାନେ ଅଗ୍ରେ ଯୋଡ଼ିକର ॥
ରୋମ-ପୁଲକେ ଅଶ୍ରୁପନ୍ତି । ଆନନ୍ଦେ ବସି ପଚାରନ୍ତି ॥
ଆମ୍ଭେ କି ଭାଗ୍ୟ କରିଥିଲୁ । ଏ ତୁମ୍ଭ ଦର୍ଶନ ଲଭିଲୁ ॥
ଭୋ ମୁନି ଏ ତୁମ୍ଭ ଭ୍ରମଣ । ଅଜ୍ଞାନୀଜନ ଉଦ୍ଧାରଣ ॥
ନିର୍ଭୟ ହେତୁ ପ୍ରାଣୀଙ୍କର । ତୁମ୍ଭ ଦର୍ଶନ ମୁନିବର ॥
ଯେସନେ ସୂର୍ଯ୍ୟର ଉଦୟ । ଅଶେଷ-ପ୍ରାଣୀ-ସୁଖମୟ ॥
ତେସନେ ତୁମ୍ଭ ଦରଶନ । ଖଣ୍ଡଇ ତ୍ରିତାପ-ଅଜ୍ଞାନ ॥
ଭୋ ମୁନି ମନଖେଦ ଯେତେ । କହିବୁଁ ତୁମ୍ଭର ଅଗ୍ରତେ ॥
ପୂର୍ବେ ଯେ ପ୍ରଭୁ ଭଗବାନ । କହିଣ ଥିଲେ ଦିବ୍ୟଜ୍ଞାନ ॥
ଆମ୍ଭେ ଯେ ଗୃହଧର୍ମେ ପଡ଼ି । ସେ ଦିବ୍ୟଜ୍ଞାନ ଦେଲୁ ଛାଡ଼ି ॥
ଭୋ ମୁନି କର ଅନୁଗ୍ରହ । ସେ ତତ୍ତ୍ୱଜ୍ଞାନ ଏବେ କହ ॥
ଏ ଭବ ସାଗର ଦୁସ୍ତର । ସେ ଜ୍ଞାନେ ହୋଇବୁଁ ନିସ୍ତାର
ମୈତ୍ରେୟ କହନ୍ତି ଭାରତ । ଏମନ୍ତ ବୋଲନ୍ତେ ପ୍ରଚେତ ॥
ଶୁଣି ନାରଦ-ତପୋଧନ । ଉତ୍ତମ ଶ୍ଳୋକେ କଲେ ଧ୍ୟାନ ।
ଧ୍ୟାନ କରନ୍ତେ ମୁନିବର । ରୋମପୁଲକେ କଳେବର ॥
କୃଷ୍ଣ-ବିଷୟେ ନିମଜ୍ଜିଲେ । ଦେହ-ଜୀବନ ପାସୋରିଲେ ॥
ତକ୍ଷଣେ ପାଇ ଦିବ୍ୟବୁଦ୍ଧି । ତାହାଙ୍କୁ କହନ୍ତି ପ୍ରବୋଧି ॥

### ନାରଦ ଉବାଚ

ଶୁଣ ନୃପତି ଧର୍ମଶୀଳ । ଯେ କର୍ମେ ହୋଇବ କୁଶଳ ॥
କହିବା ତହିଁର ବିଧାନ । ଯହିଁରେ ହେବ ତୁମ୍ଭ ଜ୍ଞାନ ॥
ମନୁଷ୍ୟ ଜନ୍ମ-କର୍ମ ସେହି । ହରିଙ୍କ ସେବା ହୋଏ ଯହିଁ ॥
ହରିଭଜନ ଯେବେ ନାହିଁ । ଏଣୁ ଅଭାଗ୍ୟ ପରେ କାହିଁ ॥
ଯେ ତିନିବେଦ କର୍ମ କହେ । ସେ କର୍ମେ ପ୍ରାଣୀ ମୋକ୍ଷ ନୋହେ ॥
ଭବୁ ତରିବ ସେ ବା କାହିଁ । ଯାବତ ହରି ନ ଭଜଇ ॥
ଯେ ଦେବଆୟୁଷେ ଜୀବନ୍ତି । ହରି ନ ଭଜି ନ ତରନ୍ତି ॥
ଯେଣୁ ସେ ବିଷୟେ ପ୍ରମତ୍ତ । ନ ଦେଲା କୃଷ୍ଣପାଦେ ଚିତ୍ତ ॥
ସୁସାଧ୍ୟ କଲେ ଦିବ୍ୟମାନ । ଅପରେ ଯେତେ ତପଦାନ ॥
ଏ ସର୍ବ ତା'ର ଅକାରଣ । ଯେବେ ନ ଭଜେ ନାରାୟଣ ॥
ଯେତେକ କବିତ୍ୱ-ବଚନ । ବ୍ୟର୍ଥ କି କାର୍ଯ୍ୟେ ପ୍ରୟୋଜନ ॥
ବିଫଳ-ବୁଦ୍ଧି ହେଲା ତା'ର । ନ କଲା ଯେ କୃଷ୍ଣ-ବିଚାର ॥
ଇନ୍ଦ୍ରିୟ ବଳ ତେଜ ଘେନି । ଏଣୁ କି ଭବୁ ତରେ ପ୍ରାଣୀ ॥
ଅଷ୍ଟାଙ୍ଗ ଯୋଗ ସାଂଖ୍ୟ ଆଦି । ସନ୍ନ୍ୟାସ-ଧର୍ମ ବେଦବାଦୀ ॥
ଏ ସର୍ବ ଜୀବ ନ ତାରନ୍ତି । ଭୋଗାଦି-ଫଳ ବାଞ୍ଛା ଦ୍ୟନ୍ତି ॥
ଅପରେ ଯେତେ ଶ୍ରେୟକର୍ମ । ଇହ ସଂସାରେ ଲୋକଧର୍ମ ॥
ଏ ସର୍ବକାଳେ ନ ଘଟନ୍ତି । ଯେବେ ହରିଙ୍କି ନ ଭଜନ୍ତି ॥
ଏ ଯେତେ କର୍ମ ଶ୍ରେୟବିଧି । ଯଜ୍ଞାଦି କର୍ମ ଅଷ୍ଟସିଦ୍ଧି ॥
ସେ ସର୍ବ-ଅନ୍ତରାତ୍ମା-ହରି । ଯେ ଭଳମନ୍ଦେ ଅଧିକାରୀ ॥
କର୍ମାନୁସାରେ ଦେହେ ରହି । ପ୍ରାଣୀଙ୍କି କର୍ମଭୋଗ ଦେଇ ॥
ତେଣୁ ସେ ଆତ୍ମା ସର୍ବଭୂତେ । ସକଳ ପ୍ରିୟ ସେ ଏମନ୍ତେ ॥
ଯେବେ ହରିଙ୍କି ସେବା କରି । ଆତ୍ମାକୁ ଉଦ୍ଧାରନ୍ତି ହରି ॥
ଏ ସର୍ବ-ଫଳଦାତା ହରି । ପ୍ରାଣୀ ନ ଜାଣି ଭ୍ରମି ମରି ॥
ଦୁଃଖ-ଗହନେ କରେ ଆଶ । ଏ କର୍ମେ ମୂଢ଼ ଅବିଶ୍ୱାସ ॥
ଯେ ହରି ସର୍ବଭୂତେ ଥାଇ । କର୍ମାନୁସାରେ ଫଳ ଦେଇ ॥
ସକଳ-ପ୍ରିୟ ସେ ମୁରାରି । ସେ ଭଳମନ୍ଦେ ଅଧିକାରୀ ॥
ତାହାଙ୍କୁ ଯେ ପ୍ରାଣୀ ଭଜନ୍ତି । ତେବେ ଏ ଭବୁ ନିସ୍ତରନ୍ତି ॥

ଏମନ୍ତ ମହିମା ଯାହାର । ସେ ପ୍ରଭୁ କରନ୍ତି ଉଦ୍ଧାର ॥
ଯେସନେ ସର୍ବ-ତରୁ-ମୂଳେ । ଜଳ ସିଞ୍ଚନ ନେଇ କଲେ ॥
ତାହାର ଭୁଜ-ସ୍କନ୍ଧ-ଶାଖା । ସର୍ବେ ସନ୍ତୋଷ ମୂଳେ ଏକା ॥
ପ୍ରାଣକୁ ଉପହାର ଦେଲେ । ସନ୍ତୋଷ ଇନ୍ଦ୍ରିୟ ସକଳେ ॥
ଏମନ୍ତେ ହରିଙ୍କର ସେବା । କଲେ ସନ୍ତୋଷ ସର୍ବଦେବା ॥
ହରିଟି ସର୍ବ-ଦେବ-ମୂଳ । ଯେତେ ପ୍ରପଞ୍ଚ-ସୂକ୍ଷ୍ମମୂଳ ॥
ସକଳ-ଆତ୍ମା-ଅନ୍ତ-ହରି । ଯେ ପାଦ ଆଶ୍ରେ ପ୍ରାଣୀ ତରି ॥
ଯେସନେ ରବିଠାରୁ ଜଳ । ପ୍ରଭାବି ପ୍ରକାଶେ ଶୟଳ ॥
କାଳେ ସେ ରବିତେଜେ ପୁଣି । ପ୍ରବେଶ ହୋନ୍ତି ସର୍ବପ୍ରାଣୀ ॥
ସେ ରୂପେ ଏ ଗୁଣ ପ୍ରବାହ । ଏ ଚରାଚର-ଭୂତ-ଦେହ ॥
ଏ ସର୍ବେ ହରିରୁ କ୍ଷରନ୍ତି । କାଳେ ସେ ତହିଁ ପ୍ରବେଶନ୍ତି ॥
ଜଗତ ହରିଙ୍କ କିରଣ । ସୂର୍ଯ୍ୟର ପ୍ରଭାଟି ଯେସନ ॥
ତା' ତହିଁ ସର୍ବ-ଶକ୍ତି ଥା'ନ୍ତି । ଯେବେ ସେ ଜାଗ୍ରତ ଲଭନ୍ତି ॥
ତେବେ ସେ ଦ୍ରବ୍ୟ-କ୍ରିୟା-ଜ୍ଞାନ । ହୁଅଇ ଭେଦ-ଭ୍ରମମାନ ॥
ଯେହ୍ନେ ଆକାଶେ ଘନପନ୍ତି । ତମ-ବିଜୁଳି ପ୍ରକାଶନ୍ତି ॥
ତେମନ୍ତେ ପରମ-ବ୍ରହ୍ମରେ । ସକଳ-ଶକ୍ତି ଏ କ୍ରମରେ ॥
ହୁଅନ୍ତି ନୁହନ୍ତି ସେ କାଳେ । ସର୍ବ-ସତ୍ତ୍ୱାଦି ଗୁଣକାଳେ ॥
ସେ ଆତ୍ମା ଅଶେଷ-ଦେହୀଙ୍କ । ପୁରୁଷ ପ୍ରଧାନ ସେ ଏକ ॥
କାଳ ହିଁ ତାହାଙ୍କୁଟି କହି । ଗୁଣ-ପ୍ରବାହ-ହେତୁ ସେହି ॥
ତାହାଙ୍କୁ ଭଜ ଏକଭାବେ । ସଂସାରୁ ନିସ୍ତରିବ ଯେବେ ॥
ସକଳ-ଭୂତେ ଦୟା କର । ଯହିଁ ତହିଁରେ ତୋଷ ଧର ॥
ଇନ୍ଦ୍ରିୟବର୍ଗ ବିନାଶିଲେ । ହରିଙ୍କି ପାଇବ ଭଜିଲେ ॥
ବିଶୁଦ୍ଧ ହୋଏ ଯେବେ ମନ । ବିନାଶ ହୋନ୍ତି ଚେଷ୍ଟାମାନ ॥
ଏମନ୍ତ ଭକ୍ତି ଯେବେ ଚିତ୍ତେ । ବିଶୁଦ୍ଧ-ହୃଦ ଅବିରତେ ॥
ତହିଁ ବସନ୍ତି ଭଗବାନ । ନ ଯା'ନ୍ତି ତହୁଁ ଅନ୍ୟସ୍ଥାନ ॥
ଏ ବିନେ ଯେ ଆନ କୁଯୋଗୀ । ବିଷୟସୁଖେ ନିତ୍ୟେ ଭୋଗୀ ॥
ତାହାଙ୍କ ପୂଜା ନ ଘେନନ୍ତି । ଯେଣୁ ସେ ରସକୁ ଜାଣନ୍ତି ॥
ବିଦ୍ୟାଦି ଧନେ ଯେଉଁ ଜନେ । ରହନ୍ତି ଅହଂକାର ମନେ ॥
ଯେ ସାଧୁ ଅକିଞ୍ଚନ ଦେଖି । ହତଆଦରେ ଦୂରେ ପେଷି ॥
ଧନ ବିନାଶ ହେତୁ କରି । ଯେ ସାଧୁସେବା ପରିହରି ॥
ଅତ୍ୟନ୍ତ ମୂଢ଼ ସେ ପାମର । ଧନରେ ଅତି ସ୍ନେହ ତା'ର ॥
ଏମନ୍ତ ପ୍ରାଣୀ ଯେ ଅଟନ୍ତି । ଅଜ୍ଞାନେ ଧର୍ମ ନ ଜାଣନ୍ତି ॥
ତାଙ୍କୁ ବିମୁଖ ନରହରି । ସାଧୁ-ଦୂଷଣ ହେତୁ କରି ॥
ତାହାଙ୍କ ନିକଟେ ନ ଆସେ । ବସନ୍ତି ଅକିଞ୍ଚନ ପାଶେ ॥

ସେ ପରିପୂର୍ଣ୍ଣ ସର୍ବ ଭାବେ । ବଶ ନୁହନ୍ତି ଧନ-ଲୋଭେ ॥
ନିଜ ଭକତ-ବଶ ହରି । ଭକ୍ତ-ଡାକକୁ ଅନୁସରି ॥
ଏମନ୍ତ ମହିମା ତାହାର । ସେ ପାଦେ ନ ସେବେ ପାମର ॥
ଦାରା-ତନୟ-ମୋହେ ଜଡ଼ି । ଦୁଃଖ-ଗହନେ ସୁଖ ଲୋଡ଼ି ॥
ଅଜ୍ଞାନ ଭାବେ ଦମ୍ଭେ ଥାନ୍ତି । ଯେ ଅନ୍ୟ-ଦେବଙ୍କୁ ସେବନ୍ତି ॥
ଯେ ହରି ଛାଡ଼ି ସେବେ ଆନ । ଯେ ପ୍ରଭୁ ଭକତ-ଅଧୀନ ॥
ସେ ପାଦପଦ୍ମ ଛାଡ଼ି ସେହି । ଅନ୍ୟ ଭଜନେ ମନଦେଇ ॥
ଏ ସେବା ଛାଡ଼ି ଅନ୍ୟ ସେବେ । କେମନ୍ତେ ଭବୁ ନିସ୍ତରିବେ ॥
ତାହାଙ୍କୁ ବୋଲି ମୂଢ଼ ମତି । ସେ ପ୍ରାଣୀ ଭବୁ ନ ତରନ୍ତି ॥
ଯାହାର ଅଛି ଦିବ୍ୟଜ୍ଞାନ । ସେ କାହିଁ ଭଜେ ଦେବ ଅନ୍ୟ ॥
ସେ ହରିପାଦେ ସର୍ବସୁଖ । ଆଶ୍ରୟେ ଛେଦେ ଭବ ଦୁଃଖ ॥

## ମୈତ୍ରେୟ ଉବାଚ

ମୈତ୍ରେୟ କହନ୍ତି ବିଦୁର । ଏମନ୍ତେ ଦେବ-ମୁନିବର ॥
ସେ ପ୍ରଚେତସ ତପ ଠାବେ । ଏ ଜ୍ଞାନ କହିଲେ ସ୍ୱଭାବେ ॥
ଅପରେ ହରିଗୁଣମାନ । କହି ତୋଷିଲେ ତା'ଙ୍କ ମନ ॥
ତକ୍ଷଣେ ବ୍ରହ୍ମଲୋକେ ଗଲେ । ସେ ସର୍ବେ ସନ୍ତୋଷେ ରହିଲେ ॥
ଶୁଣ ବିଦୁର ଜ୍ଞାନବନ୍ତ । ନାରଦ ମୁଖରୁ ନିର୍ଗତ ॥
ହରିଙ୍କ ନାମ ଯଶ ଗୁଣ । ଯେବା ଭାବନ୍ତି ଅନୁକ୍ଷଣ ॥
ସେ ସର୍ବେ କାମାର୍ଥ ଲଭନ୍ତି । ଇତ୍ୟାଦି - ପାପ ବିନାଶନ୍ତି ॥
ଶୁଣି ସାନନ୍ଦ ନୃପଗଣେ । ହରି ଭଜିଲେ ଅନୁକ୍ଷଣେ ॥
ଅନ୍ତେ ସେ ହରିଙ୍କି ଲଭିଲେ । ନାରଦ- ହେତୁ ନିସ୍ତରିଲେ ॥
ଏ ଘେନି ସତସଙ୍ଗ ପ୍ରାଣୀ । ଆଦରି ଲଭେ ଚକ୍ରପାଣି ॥
ଏ ବିନେ ନାହିଁ ସଦଗତି । ଶୁଣ ବିଦୁର ଗୁହ୍ୟ ଅତି ॥
ସାଧୁଙ୍କ ସଙ୍ଗେ ପ୍ରୀତି କର । ମାନସ-ମୋହ ଯାଉ ଦୂର ॥
ଯେତେ ସଂଶୟ ହୃଦଗତି । ପଚାରିଥିଲୁ ଯେ ବୃତ୍ତାନ୍ତ ॥
ସାର ଉଦ୍ଧରି ଶାସ୍ତ୍ରମତେ । କହିଲୁ ଶିରୀ ଭାବବତେ ॥
ନାରଦ-ପ୍ରଚେତ-ସମ୍ବାଦ । ଶ୍ରୀହରି କ୍ଷଣ ଗୁଣ ବାଦ ॥
ଫେଡ଼ି ମୁଁ କହିଲଇଁ ତାହା । ସଂଶୟ କରିଥିଲୁ ଯାହା ॥

## ଶ୍ରୀ ଶୁକ ଉବାଚ

କହନ୍ତି ଶୁକମହାମୁନି । ଶୁଣ ପରୀକ୍ଷ ତତ୍ତ୍ୱଜ୍ଞାନୀ ॥
ମୈତ୍ରେୟ ଯେତେକ କହିଲେ । ବିଦୁର ବିନୟେ ଶୁଣିଲେ ॥
ଆନନ୍ଦେ ରୋମ-ପୁଲକିତ । ଭାଗ-ଗଦ୍‌ଗଦେ ଅଶ୍ରୁପାତ ॥
ଆନନ୍ଦ ସାଗରେ ବୁଡ଼ିଲେ । ଦେହ-ଜୀବନ ପାସୋରିଲେ ॥
ଧରି କହେ ମୁନିଚରଣ । ଭୋ ମୁନି କର ଉଦ୍ଧାରଣ ॥

ଯେବେ। ନିଜ ସଦନେ ଯିବି ତେବେ ॥
। ନମିଲା ମୁନିଙ୍କର ପାଦେ ॥
ାଜ୍ଞା ଦେଲେ। ନିଷ୍ଚିନ୍ତେ ଆସନେ ରହିଲେ ॥
। ଦେଖିବା ଅର୍ଥେ ସହୋଦର ॥
ମାହେ । ଗମିଲା ମାତ୍ର ଭ୍ରାତୃସ୍ନେହେ ॥
ଅତି । ପରୀକ୍ଷେ କହେ ଶୁକଯତି ॥
। ସେ ଯେ ପ୍ରାଚୀନ ନୃପବର ॥
ାର୍ତ୍ତି । ଯେ ନିତ୍ୟେ ଶୁଣେ ଦୃଢ଼ମତି ॥

ଗୁପତେ ବହୁକାଳ ଥିଲା । ହରି ଅଜ୍ଞାରୁ ଉଦେ ହେଲା ॥
ହରି ହରି ଭାବନା କରୁଁ । ସଂଶୟ ଛାଡ଼ିଲା ମନରୁ ॥
ସେ ବ୍ରହ୍ମ ଅନନ୍ତ ମହିମା । କେ କହିପାରେ ଗୁଣସୀମା ॥
ଅମୃତ ଚରିତ ଏ ବାଣୀ । ଶ୍ରବଣେ ନିସ୍ତରିବେ ପ୍ରାଣୀ ॥
ହୋଇବ ଭବବନ୍ଧ ନାଶ । ସୁଜନେ କୃଷ୍ଣପାଦେ ରସ ॥
ଚତୁର୍ଥ ସ୍କନ୍ଧ ହେଲା ଶେଷ । ହୃଦରେ ଚିନ୍ତି ହୃଷୀକେଶ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିତାୟାଂ*
*ଚତୁର୍ଥସ୍କନ୍ଧେ ପ୍ରଚେତ ଉପାଖ୍ୟାନଂ ନାମ ଏକତ୍ରିଂଶୋଽଧ୍ୟାୟଃ ।*

ମୁଁ ଏବେ ହେଲି ମୋ
ଭୋ ମୁନି ଆଜ୍ଞା ହେ
ଏମନ୍ତ କହିଣ ଆନନ୍ଦେ
ସେ ତା'ଙ୍କୁ ତୋଷେ
ହସ୍ତିନା ଗମିଲେ ବିଦୁ
ଛାଡ଼ି ସକଳ -ମାୟା
ଆନନ୍ଦେ ମନେ ସ୍ନେହ
ଶୁଣ ରାଜନ ଦଣ୍ଡଧର
ତାହାଙ୍କ ପୁଣ୍ୟ-ଯଶ-କ

# ପଞ୍ଚମ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

ପରମ ପୁରୁଷ ଗୋବିନ୍ଦ । ତାହାଙ୍କ ପାଦ ଅରବିନ୍ଦ ॥
ତହୁଁ ଗଳିତ ମକରନ୍ଦ । ଯେ ପ୍ରାଣୀ ପିବନ୍ତି ଆନନ୍ଦ ॥
ତାହାଙ୍କ ପାଦ ମୁଁ ବନ୍ଦଇ । ପଞ୍ଚମ ସ୍କନ୍ଧେ ଗୀତ ଗାଇ ॥

### ରାଜା ଉବାଚ

ଭୋ ମୁନି ରାଜା ପ୍ରିୟବ୍ରତ । ସେ ଆତ୍ମାରାମ ଭାଗବତ ॥
ଗୃହେ ରମିଲା ତାର ମନ । ପରାଭବ କର୍ମ ବନ୍ଧନ ॥
ନିଶ୍ଚୟ ମୁକ୍ତ ସଙ୍ଗ ଯାର । ଏମନ୍ତ ପ୍ରାଣୀମାନଙ୍କର ॥
କିମ୍ପା ଏ ଗୃହେ ମନ ରହେ । ଭୋ ମୁନି ଫେଡ଼ିବା ସନ୍ଦେହେ ॥
ନିଷ୍ଠେ ମହତ ଲୋକଙ୍କର । ଉତ୍ତମ ଶ୍ଳୋକ କଥା ସାର ॥
ନିବୃତ୍ତ ଚିତ୍ତ ଯେ ହୋଅଇ । ସେ କିପାଁ ଦ୍ୱନ୍ଦ ଆଚରଇ ॥
ଏ ମୋତେ ସଂଶୟ ବହୁତ । ଯେ ପ୍ରାଣୀ ବନ୍ଦୀ ଘରେ ସ୍ଥିତ ॥
ତାମତି କୃଷ୍ଣ ବିଷୟରେ । ହୋଇଲା କେମନ୍ତେ ସଂସାରେ ॥

### ଶ୍ରୀ ଶୁକ ଉବାଚ

ନିଶ୍ଚୟେ କହିବା ତୁ ଶୁଣ । ଧନ୍ୟ ଜୀବନ ତୁ ରାଜନ ॥
ଉତ୍ତମ ଶ୍ଳୋକ ଯେ ଗୋବିନ୍ଦ । ତାହାଙ୍କ ଚରଣାର ବିନ୍ଦ ॥
ତହୁଁ ଅମିୟ ରସ ବହେ । ସେ ରସ ଯେଉଁ ପ୍ରାଣୀ ପିଏ ॥
ଭଗତ ସାଧୁ ସେହୁ ଜନ । ପରମହଂସ ଦିବ୍ୟ ଜ୍ଞାନ ॥
ତାହାର କୃଷ୍ଣ କଥାବିନେ । କେବେହେଁ ଅନ୍ୟ ନାହିଁ ମନେ ॥
ଅନ୍ୟ ଯେ ସୁଖ କଥାମାନ । ଇଚ୍ଛା ନ କରନ୍ତି ସେ ଜନ ॥
ଯେବେ ସେ ନୃପ ପ୍ରିୟବ୍ରତ । ଗୁଣରେ ହୋଇଲା ପୂଜିତ ॥
ମୁନି ପରମ ଭାଗବତ । ନାରଦ ଲୋକରେ ବିଖ୍ୟାତ ॥
ତାହାଙ୍କ ଚରଣ ସେବାରେ । ସର୍ବ କଳୁଷ ଗଲା ଦୂରେ ॥
ତକ୍ଷଣେ ସତ୍ତ୍ୱ ଗୁଣ ହୋଇ । ବ୍ରହ୍ମ ଯଜ୍ଞରେ ଦୀକ୍ଷା ପାଇ ॥
ପିତାର ଆଜ୍ଞା ଘେନିକରି । ଅବନୀ ପାଳନେ ଆଚରି ॥
ଉତ୍ତମ ସତ୍ତ୍ୱ ଗୁଣ ତାର । ପରଜା ପାଳେ ନୃପବର ॥
ଅଖିଳ ଲୋକଙ୍କ ଜୀବନ । ଅନାଦି ନାଥ ନାରାୟଣ ॥
ତାହାଙ୍କ ଚରଣାର ବିନ୍ଦେ । ଚିତ୍ତ ନିବେଶି ଅପ୍ରମାଦେ ॥
ସକଳ ସଂସାର ବେଭାର । ମନକୁ କଲା ତହୁଁ ଦୂର ॥
ନୀଚ ଲୋକଙ୍କ ପରାଭବ । ବିଚାରି ଆପଣା ସ୍ୱଭାବ ॥
ଏଥୁ ଅନ୍ତରେ ଭଗବାନ । ଦେବଙ୍କ ଆଦି ସେ କାରଣ ॥
ରାଜାର ଗୁଣମାନ ଘେନି । ଜନ କୁଶଳେ ଆତ୍ମଯୋନି ॥
ନିଗମ ନିଜ ଗୁଣେ ଥୋଇ । ଭୁବନୁ ଅଇଲେ ଗୋସାଇଁ ॥
ଗଗନ ତଳେ ଚନ୍ଦ୍ର ଯେହ୍ନେ । ବିରାଜେ ଯେହ୍ନେ ତାରାଗଣେ
ଅପୂର୍ବ ଶୋଭାକୁ ବିସ୍ତାରି । ବିଜୟ ପ୍ରଭୁ ନରହରି ॥
ନିର୍ମଳ ପୂଜା ଉପହାରେ । ପୂଜିଲେ ତାଙ୍କୁ ଦେବ ବରେ ॥
ପଥରେ ଯୂଥ ଯୂଥ ହୋଇ । ସିଦ୍ଧ ଗନ୍ଧର୍ବେ ଗୀତ ଗାଇ ॥
ଚାରଣ ମୁନିଙ୍କ ସହିତେ । ପ୍ରୟାଣ କଲେ ଯେଝା ମତେ
ଗନ୍ଧମାର୍ଦ୍ଦନ ଗିରି ତଳେ । ସଭା କରାଇ ବିଜେ କଲେ ॥
ହଂସ ଯାନରେ ଭଗବାନ । ହିରଣ୍ୟଗର୍ଭ ଯାର ନାମ ॥
ସେଠାରେ ଯାଇଣ ନାରଦ । ବନ୍ଦିଲେ ପିତାଙ୍କର ପାଦ ॥
ତକ୍ଷଣେ ଉଠି ନୃପବର । ସାନନ୍ଦେ ଯୋଡ଼ି ବେନିକର ॥
ପିତାକୁ ପୁଏ ସେ ନମିଲା । ଚରଣେ ଶିର ଲଗାଇଲା ॥
ପ୍ରିୟବ୍ରତର ପୂଜା ଘେନି । କୋମଳ ବାକ୍ୟେ ପଦ୍ମଯୋନି
ସମ୍ମୁଖେ ଚାହିଁ ବେଦବର । ରାଜାକୁ ବୋଲନ୍ତି ଉତ୍ତର ॥
ହେ ବତ୍ସ ଯାହା କହୁଁ ତୋତେ । ଆମ୍ଭେ ନାରଦ ଆଦିଯେତେ ॥
କ୍ରୋଧ ନ ଧର ତୋର ଚିତ୍ତେ । ଯାହାର ଭାବ ଚିନ୍ତୁ ନିତ୍ୟେ ॥
ତପସ୍ୟା ବିଦ୍ୟା ଯୋଗ କରି । ପଣ୍ଡିତ ପଣେ ଯେ ଆଚରି ॥
ନୋହଇ ଧର୍ମ ଅର୍ଥେ ତାର । କର୍ମ ନାଶନେ ଅଧିକାର ॥
ଜନ୍ମ ମରଣେ କର୍ମ ପାଇ । ଜୀବ ଶରୀରକୁ ବହଇ ॥
ଶୋକ ମୋହକୁ ନିତ୍ୟେ ପାଇ । ସୁଖ ଦୁଃଖକୁ ସେ ଭୁଞ୍ଜଇ ॥
ଯାହାର ବାକ୍ୟ ଗୁଣ ନାମେ । ସେ ବତ୍ସ ଦୁସ୍ତର ସେ କର୍ମେ ॥
ଦ୍ୱିପଦ ଚତୁଷ୍ପଦ ଯେତେ । ସର୍ବେ ବନ୍ଧନ ତାର ଗତେ ॥
ଦୁଃଖ ସୁଖ ଗୁଣ କର୍ମରେ । ଏମାନ ଘେନି ସଙ୍ଗତରେ ॥
ଈଶ୍ୱର ସୃଷ୍ଟିକି କରନ୍ତି । ସକଳେ ତାହାଙ୍କୁ ସେବନ୍ତି ॥
ସେହି ଈଶ୍ୱର ବଶେ ଦେହୀ । ଅନ୍ଧର ପ୍ରାୟେ ଭ୍ରମୁ ଥାଇ ॥
ଦେଖୁ ଦେଖୁଣ ଭ୍ରମ ପାଇ । ଈଶ୍ୱର ମାୟାରେ ଭ୍ରମଇ ॥

ନିଦ୍ରାକୁ ପାଇ ଯେହ୍ନେ ନରେ । ଅନ୍ୟ ଦେହରେ ଭୋଗକରେ॥
ପ୍ରମର ପ୍ରାଣୀମାନଙ୍କର । କେବେହେଁ ଭୟ ନୋହେ ଦୂର ॥
ଲୋଭାଦି ମାନଙ୍କରେ ଯୁକ୍ତ । ତେଣୁ ହୋଅଇ ଅବିରତ ॥
ଯେ ବୁଧ ଜିଣେ ଇନ୍ଦ୍ରିମାନ । ତାହାଙ୍କ ଗୃହ କର୍ମମାନ ॥
ନାଶନ କରେ କି ତାହାରେ । ତେଣୁ ରମଇ ଗୃହାନ୍ତରେ ॥
ଲୋଭ ବିନାଶନ୍ତି ଯେ ଜନ । ଗୃହେ ନୋହିବ ତାର ମନ ॥
ଲୋଭାଦି ଜିଣନ୍ତି ଯେ ନନେ । ଆନନ୍ଦେ ଭ୍ରମନ୍ତି ସଂସାରେ ॥
ଯେ ଷଡ଼ ଶତ୍ରୁ ଜିଣି ଇଛେ । ସେ ଗୃହ କର୍ମ କରି ବାଛେ ॥
ତହିଁ ଶତ୍ରୁକୁ ଯେ ଜିଣଇ । ଦୁଃଖରେ ଯେତେ ରାଜା ଥାଇ ॥
ସେ ପଦ୍ମନାଭ ପାଦାଶ୍ରିତ । ସର୍ବ ସଙ୍ଗରୁ ହୋଇ ମୁକ୍ତ ॥
ସଂସାରେ ସୁଖକୁ ଭୁଞ୍ଜଇ । ଅନ୍ତେ ପରମ ଗତି ପାଇ ॥

### ଶ୍ରୀ ଶୁକ ଉବାଚ

ଏମନ୍ତେ ତ୍ରିଭୁବନ ପୁରୀ । ଭଗବାନର ଆଜ୍ଞା କାରୀ ॥
ନମ୍ରତା ଭାବେ ଉପଦେଶେ । ସ୍ୱୀକାର କଲା ସେ ବିଶ୍ୱାସେ ॥
ନାରଦ ରାଜା ପ୍ରିୟବ୍ରତେ । ପୂଜିତ ହୋଇ ଯଥୋଚିତେ ॥
ନିଷ୍କଳ ଚିତ୍ତେ ନିଜସ୍ଥାନ । ଗମିଲେ ପ୍ରଭୁ ଭଗବାନ ॥
ନାରଦ ବାକ୍ୟେ ମନ ଲଇ । ମନୁ ଆତ୍ମଜେ ମନ ଦେଇ ॥
ବିଷମ ବିଷୟକୁ ତେଜି । ରହିଲେ ସତ୍ତ୍ୱଗୁଣ ଭଜି ॥
ଏଥୁ ଅନ୍ତରେ ପୃଥିବୀରେ । ନିଯୁକ୍ତ ହେଲେ ସେ କର୍ମରେ ॥
ଅଖିଳ ଜଗତ ବନ୍ଦନ । ବିନାଶକାରୀ ଭଗବାନ ॥
ଆଦି ପୁରୁଷ ପାଦ ଦୁଇ । ମନ ନିବେଶି ନିତ୍ୟେ ତହିଁ ॥
ପୃଥିବୀ ପରିପାଳନରେ । ଚିତ୍ତ ସେ ଦେଲା ନିରନ୍ତରେ ॥
ସେ ବିଶ୍ୱକର୍ମା ପ୍ରଜାପତି । ତାର ଦୁହିତା ବର୍ହିଷ୍ମତୀ ॥
ଏ ଅନନ୍ତରେ ମହୀପତେ । ବିଭା ହୋଇଲେ ଯଥୋଚିତେ ॥
ଦଶ ଆତ୍ମଜ ତାର ତହିଁ । ଜନ୍ମିଲେ ରୂପ ଗୁଣ ବହି ॥
କନ୍ୟା ହୋଇଲେ ବେନି ଜାତ । ତା ନାମ ଊର୍ଯ୍ୟସ୍ୱୀ ବିଖ୍ୟାତ ॥
ଅଗ୍ନୀଧ୍ର ଇଧ୍ମଜୀହ୍ୱ ବୀର । ସେ ଯଜ୍ଞାବାହୁ ମହାବୀର ॥
ହିରଣ୍ୟରେତା ଘୃତ ପୃଷ୍ଠ । ସବନ ମେଧାତିଥି ଶ୍ରେଷ୍ଠ ॥
ବିତିହୋତ୍ରର ତୁଲେ କବି । ଏ ରୂପେ ଦଶପୁତ୍ର ଭୁବି ॥
ଏ ଦଶ ନାମ ପୁତ୍ରଙ୍କର । ଏ ଦଶ ମଧ୍ୟେ ତିନିସାର ॥
ସବନ କବି ମହାବୀର । ଊର୍ଦ୍ଧ୍ୱ ରେତା ଏ ଜଗତର ॥
ଆତ୍ମା ବିଦ୍ୟାଶକ୍ତିରୁ କରି । ଶିଶୁ ହୁଁ ପ୍ରାଣାୟାମ କରି ॥
ପରମ ହଂସ ଧର୍ମ କରି । ସକଳ ଚେଷ୍ଟା ପରିହରି ॥
ସର୍ବ ଜୀବରେ କୃପାମହେ । ଭଗବାନ ବାସୁଦେବୟେ ॥
ଭୃତ୍ୟ ଆରତ ପ୍ରାଣୀଙ୍କର । ଶରଣ ରକ୍ଷଣ ଶ୍ରୀଧର ॥
ସେ ପଦ୍ମପାଦ ଆଶ୍ରେ କରି । ଅନୁକ୍ଷଣେ ସୁମରେ ହରି ॥
ପରମ ଭକ୍ତ ଏ ଭାବରେ । ଦୟା ବହିଲେ ପ୍ରାଣୀଠାରେ ॥
ହୃଦେ ଆରତ ଚିତ୍ତ ହୋଇ । ସର୍ବଭୂତରେ ଆତ୍ମା ସେହି ॥
ସେ ମହାପ୍ରଭୁ ନାରାୟଣେ । ନିତ୍ୟେ ଭଜିଲେ ଦାସ ପଣେ ॥
ଦ୍ୱିତୀୟ ପତ୍ନୀଗର୍ଭେ ତାର । ହୋଇଲେ ତୃତୀୟ କୁମର ॥
ଉତ୍ତମ ତାମସ ରୈବତ । ମନୁର ହେଲେ ଅଧିପତ ॥
ଏମନ୍ତେ ପୁତ୍ରମାନ ଘେନି । ସେ ରାଜା ଚିରକାଳ ପୁଣି ॥
ପୃଥିବୀ ନିଷ୍କଣ୍ଟକ କରି । ସୁବାହୁ ବଳବୀର୍ଯ୍ୟେ କରି ॥
ସେ ରାଜା ପୁରୁଷାର୍ଥ କରି । ଧର୍ମ ପଥକୁ ନ ଆଚରି ॥
ସେ ରାଜା ପତ୍ନୀର ବିଷୟେ । ପ୍ରତି ଦିବସେ ସ୍ନେହ ବହେ ॥
ତାହାର ନବ ଯଉବନେ । ମନ୍ଦହାସ୍ୟ ଅବଲୋକନେ ॥
ବେଭାର ତାର ସଙ୍ଗେ କରି । ତା ବଶ ହୋଇ ଦଣ୍ଡଧାରୀ ॥
ମେରୁକୁ ସୂର୍ଯ୍ୟ ତେଜ ପ୍ରାୟେ । ତେଜରେ ପ୍ରକାଶ କରାଏ ॥
ତେଜ ସୂର୍ଯ୍ୟରେ ସେ ପୂରିତ । ତପସ୍ୟା ବଳୁ ପ୍ରିୟବ୍ରତ ॥
ପ୍ରକାଶ କରାଇବା ଅର୍ଥେ । ଆରୋହି ଜ୍ୟୋତିର୍ମୟ ରଥେ ॥
ରଜନୀ ଦିନ କରିବଇ । ଦ୍ୱିତୀୟ ସୂର୍ଯ୍ୟ ପ୍ରାୟେ ହୋଇ ॥
ଏମନ୍ତ ଜାଣି ରାଜାକୃତ । ବ୍ରହ୍ମା ମିଳିଲେ ରାଜାଗ୍ରତ ॥
ତୁମ୍ଭର ଅଧିକାର ନାହିଁ । ନିଷେଧ କଲେ ଏହା କହି ॥
ସେ ରାଜା ରଥ ଚକ୍ରେ କରି । ହୋଇଲା ଯେତେକ ବିସ୍ତାରି ॥
ତେଣୁ ସେ ସାତ ସିନ୍ଧୁ ହେଲା । ପୃଥିବୀ ସାତ ଦ୍ୱୀପ କଲା ॥
ଅନ୍ୟ ଉପାଦିପାନ୍ତର କରି । ଏ ଯଥାକ୍ରମରେ ବିଚାରି ॥
ପୁତ୍ରଙ୍କୁ ଅନୁଗ୍ରହ କଲେ । ଯଥା ବିଭାଗ କରି ଦେଲେ ॥
ଦୁହିତା ଉର୍ଜସ୍ୱତୀ ନାମ । ତାହାକୁ ଶୁକ୍ରେ ଦେଲେ ଦାନ ॥
ତାହାର ଦେବଯାନୀ ନାମ । କନ୍ୟାୟେ ହୋଇଲା ଉପାମ ॥
ଏଥୁ ଅନ୍ତରେ ରାଜା ଚିତ୍ତେ । ସ୍ୱ ନିନ୍ଦା କଲାକ ବହୁତେ ॥
କୁସଙ୍ଗେ ଆସକ୍ତ ହୋଇଲି । ବଡ଼ ଅସାଧୁ ପଣ କଲି ॥
ଏଣୁ ଇନ୍ଦ୍ରିୟ ବଶ ହୋଇ । ଅବିଦ୍ୟା ବିଷୟରେ ମୋହି ॥
ଏମନ୍ତେ ଧିକ ମୋ ଜୀବନ । ବିସ୍ମୟେ ଭାଳଇ ରାଜନ ॥
ଇଷ୍ଟଦେବତା ପ୍ରସାଦରେ । ବୈରାଗ୍ୟ ଜାତ ତା ହୃଦରେ॥
ବିଷୟ ଚେଷ୍ଟାକୁ ଛାଡ଼ିଲା । ଇନ୍ଦ୍ରିୟମାନ ନିରୋଧିଲା ॥
ରାଜ୍ୟ ସମ୍ପତ୍ତିକୁ ମୂର୍ଚ୍ଛିଲେ । ଯଥା ବିଭାଗ କରି ଦେଲେ ॥
ସ୍ୱପତ୍ନୀ ତେଜି ମୃତ ପ୍ରାୟେ । ମୁକ୍ତି ଇଚ୍ଛିଲା ନୃପରାୟେ ॥
ମହାନୁଭବ ଭଗବାନ । ନାରଦ ବ୍ରହ୍ମାର ନନ୍ଦନ ॥

ତହାଙ୍କ ପଥ ଆଶ୍ରେ କଲା । ନିଶ୍ଚୟେ ନିବୃତ୍ତ ହୋଇଲା ॥
ଯେଉଁ ରାଜାର ଯେଉଁ କୃତ୍ୟ । ଗାୟନ କରନ୍ତି ଜଗତ ॥
ପ୍ରିୟବ୍ରତର କଲା କର୍ମ । ଏହା କେ କରିବାକୁ କ୍ଷମ ॥
ତାହାର ରଥଚକ୍ର ମର୍ଗେ । ସପ୍ତ ସମୁଦ୍ର ପୃଥ୍ୱୀଭାଗେ ॥
ଭାଗ ବିଭାଗ ପୃଥ୍ୱୀ କରି । ଦ୍ୱୀପ ଉପଦ୍ୱୀପ ବିସ୍ତାରି ॥
ଯେ କଲା ମନୁର କୁମର । ପୃଥିବୀ ସ୍ୱର୍ଗେ ଅଗୋଚର ॥
ସେ ପ୍ରିୟବ୍ରତର ମହିମା । ତ୍ରୈଲୋକ୍ୟେ ନାହିଁନା ଉପମା ॥
ପ୍ରିୟ ଅଖିଳ ଲୋକଙ୍କରେ । ମହା ମହିମା ଜଗତରେ ॥
ପ୍ରିୟବ୍ରତ ରାଜା ଚରିତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ପ୍ରିୟବ୍ରତ ରାଜା ଚରିତେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏମନ୍ତେ ପିତାର ଅନ୍ତରେ । ପିତାର ଆଜ୍ଞା ଘେନି ଶିରେ ॥
ଜମ୍ବୁଦ୍ୱୀପ ପରଜା ମାନ । ଅଗ୍ନୀଧ୍ର କରଇ ପାଳନ ॥
ଏମନ୍ତେ କେତେଦିନ ଗଲା । ଅଗ୍ନୀଧ୍ର ମନେ ବିଚାରିଲା ॥
ସନ୍ତୋଷ ପିତୃ ଲୋକଙ୍କର । କେମନ୍ତେ ହୋଇବ ମୋହର॥
ଏମନ୍ତ ମନେ ବିଚାରିଲା । ସୁମେରୁ ଗିରିରେ ମିଳିଲା ॥
ସୁର ବନିତା କ୍ରୀଡ଼ାବନେ । ଗୁମ୍ଫା ଭିତରେ ଦିବ୍ୟସ୍ଥାନେ ॥
ସଂସାର କର୍ତ୍ତାକୁ ସେ ଧ୍ୟାୟି । ବସିଲା ସ୍ଥିର ମନ ହୋଇ ॥
ତାହା ଜାଣିଲେ ଭଗବାନ । ଯେ ବ୍ରହ୍ମା ସୃଷ୍ଟିର କାରଣ ॥
ଅତି ସୁନ୍ଦରୀ ଅପସରୀ । ତାହାକୁ ପେଷି ବେଗକରି ॥
ତାହାର ପୂର୍ବ ଚିତ୍ତି ନାମ । ସଭାରେ କରଇ ଗାୟନ ॥
ତାହାର ତପବନ ଲାଗେ । ମିଳିଲା ଅପସରା ବେଗେ ॥
ଅତି ମଞ୍ଜୁଳ ମନୋହର । ବିବିଧ ବିଟପୀ ଅପାର ॥
ଘନ ନିବିଡ଼ ଲତାମାନ । ଅଛନ୍ତି ନାନା ପକ୍ଷୀଗଣ ॥
କର୍ଣ୍ଣାଭିରାମ ଧ୍ୱନିମାନେ । କରନ୍ତି ହରଷିତ ମନେ ॥
ସ୍ୱଚ୍ଛ ନିର୍ମଳ ଜଳେ କରି । ବିବିଧ ଜଳାଶୟ ପୂରି ॥
କୁକ୍କୁଟ କାରଣ୍ଡବ ହଂସ । କରନ୍ତି ରୁଚିର ବିଳାସ ॥
ତହିଁରେ ନାନା ପୁଷ୍ପସାର । ପଦ୍ମ ପୂରିତ ସରୋବର ॥
ମନ୍ଦ ପବନ ବହେ ନିତ୍ୟେ । ତା ଦେଖି କନ୍ୟା ତୋଷ ଚିତ୍ତେ॥
କରଇ ଲଳିତ ଗାୟନ । ବିଳାସେ ପାଦ ଗତିମାନ ॥
ଚରଣେ ନୂପୁର ତାହାର । ଧ୍ୱନି କରଇ ମନୋହର ॥
ଅତି ମଞ୍ଜୁଳ ତାହା ଶୁଣି । ନୃପ କୁମର ଶିରୋମଣି ॥
ସମାଧି ଯୋଗରୁ ତାହାର । ନୟନ କମଳ ଯୁଗଳ ॥
ଈଷିତ ବିକସିତ କଲା । ମନ୍ଦ ମଧୁରେ ସେ ଚାହିଁଲା ॥
ନିକଟେ ତାର ମୁଖ ଦେଖି । ପିଛାଡ଼ି ନ ପାରଇ ଆଖି ॥
ଭୃଙ୍ଗର ପନ୍ତ୍ରୀ ସେ ଯେସନ । ପୁଷ୍ପ ଲୋଡ଼ଇ ବନେ ବନ ॥
ଦେବ ମାନବ ଆଦି ଯେତେ । ଉଲ୍ଲାସ ହୁଅନ୍ତି ଦେଖନ୍ତେ ॥
ବିହାର ଅବଲୋକନରେ । ଶରୀର ବଚନ ମଧୁରେ ॥
ପ୍ରାଣୀଙ୍କ ମନକୁ ସେ ନେଇ । ପବନ ଦେଶ ନ ଚଳଇ ॥
ସେ ଯେତେବେଳେ ବାକ୍ୟ କହି । ବଦନୁ ସୁଗନ୍ଧ ଉଠଇ ॥
ତେଣୁ ଲୁବ୍‌ଧକ ଭୃଙ୍ଗଗଣ । ଭ୍ରମନ୍ତି ତାହାର ଚରଣ ॥
ତେଣୁ ନ ପାରେ ବେଗେ ଯାଇ । ପବନେ ବସନ ଚଳଇ ॥
ତା ଦେଖି ନୃପତି ନନ୍ଦନ । ହୋଇଲା ଅନଙ୍ଗେ ଅଧୀନ ॥
ଜଡ଼ର ପ୍ରାୟେ ସେ ହୋଇଲା । କାହୁଁ ତୁ ଅଇଲୁ ବୋଇଲା ॥
ବନ ଦେବତା ମାୟା ହୋଇ । କି ଅବା ବନେ ଲୋଡୁ ତୁହି ॥
କାମର ଅସ୍ତ୍ରମାନ ଘେନି । କି ଅର୍ଥେ ବୁଲୁ ତୁ ଭାବେନୀ॥
ମୃଗାକ୍ଷି କହ ତୁ ବଚନ । ମୃଗକୁ ଲୋଡୁ ଯେହ୍ନୁ ବନ ॥
ତୋ ବେନି କମଳ ଲୋଚନ । ନିଶ୍ଚୟେ ଅନଙ୍ଗର ବାଣ ॥
କାହାକୁ ବିନ୍ଧିବୁ ସୁନ୍ଦରୀ । କହ ତୁ ମାୟା ଦୂର କରି ॥
ଯେଉଁ ଲୋକରେ ଦୟା କରି । ଅନଙ୍ଗ ଅଗ୍ନିରେ ନ ମାରି ॥
ତୋର ଶିରରୁ ଶ୍ଳଥ ହୋଇ । କୁସୁମମାନ ଯେ ପଡ଼ଇ ॥
ଚରଣ ପଙ୍କଜେ ତୋହର । ମଧୁର ବାଜଇ ନୂପୁର ॥
ଶରୀର ପୁଲକ ତୋହର । ଉଲ୍ଲୋଳ ଘନ କୁଚଭାର ॥
କି ଅବା ଚକ୍ରବାକ ବେନି । ଶରୀରେ ବହିଛୁ ଭାବେନୀ ॥
ମଧ୍ୟ ଭାଗରେ କୃଶ ତୋର । ବହିଛୁ ଅତି ମନୋହର ॥
ଚାହିଁ ମୋ ନୟନ ଯୁଗଳ । ଆଶ୍ରୟ କଲା ସେ ନିଷ୍ଫଳ ॥
ମୋହର ତପୋବନ ଭୂଇଁ । ଅତି ସୁଗନ୍ଧ କଲୁ ତୁହି ॥
ଯାହାର ଲୋଚନ ଗୋଚର । ହୋଇବ ରୂପ ଗୁଣ ତୋର ॥
ସେ କି ଅନଙ୍ଗ ବଶ ନୋହି । ରହିବ ଏମନ୍ତ କେ ଦେହୀ ॥
ଅଦ୍ଭୁତ ସୁଧା ରସ ସାର । ଆନନ୍ଦ କରାଇ ଅଧର ॥
ସୁରଙ୍ଗ ଦିଶଇ ବାହାରେ । କି ଅବା ଦେବା ପଟାନ୍ତରେ ॥
ବିଷ୍ଣୁର କଳା କି ତୁ ଧରି । ମର୍ତ୍ତ୍ୟକୁ ଅଇଲୁ ସୁନ୍ଦରୀ ॥
ମକର କୁଣ୍ଡଳ ତୋ କର୍ଣ୍ଣେ । ଚଞ୍ଚଳ ମୀନ କି ନୟନେ ॥

ତୋହର ଦନ୍ତ ପନ୍ତି ଦୁର । ମାଣିକ୍ୟ ମାଳାକୁ ଗଞ୍ଜଇ ॥
ଏ ବନ ସରୋବରେ ମୁହିଁ । କଠୋର ତପ ଆଚରଇ ॥
ତପସ୍ୟା ପୂର୍ଣ୍ଣ ହେଲା ମୋର । ଯେଣୁ ତୋ ନୟନ ଗୋଚର॥
ବନେ ଭ୍ରମଣ କରିବାରେ । ସେ ମୋକ୍ଷ ହୋଇଲା ସଂସାରେ
କିବା ପ୍ରଭୁଙ୍କ ପ୍ରସନ୍ନରେ । ସୁନ୍ଦରୀ ମିଳିଲୁ ମୋହରେ ॥
ଯେ ତୋର କର ପଦ୍ମେ କରି । ପତଙ୍ଗ ମାଇଲୁ ସୁନ୍ଦରୀ ॥
ପ୍ରସନ୍ନ ହୁଅ ମୋତେ ତୁହି । ମିତ୍ର ଭାବରେ ମୁଁ ଭଜଇ ॥
ତୋତେ ନ ଛାଡ଼ିବଇଁ ମୁହିଁ । ବ୍ରହ୍ମାକି ଦେଲେ ପଠିଆଇଁ ॥
ତୋହର ଦେହ ମୋର ମନ । ରହିଲା ନିଷ୍ଫଳେ ନୟନ ॥
ହେ ପୀନସ୍ତନୀ ଶୁଭ୍ରକେଶୀ । ତୁ ମୋତେ ଘେନଗୋ ବିଶ୍ୱାସୀ
ଚିତ୍ତ ମୋହର ତୋର ତହିଁ । ନିଷ୍ଫଳେ ରହିଲା ଗୋ ସହି ॥
ସୁଫଳ କର ତୁ ଗୋ ଏହା । ସ୍ୱଭାବେ ତୁ ତ ପୁଣ୍ୟଦେହା ॥
ଏମନ୍ତେ ଅନୁନୟ ବାଣୀ । ବିବିଧେ କହେ ନୃପମଣି ॥
ବିବିଧେ କହି ଭାଷାମାନ । କନ୍ୟାର ହରିଲା ସେ ମନ ॥
ନୃପ କୁମର ରୂପ ଗୁଣ । ବିଦ୍ୟା ଯୌବନ ଶ୍ରୀନିପୁଣ ॥
ଏମନ୍ତ ଗୁଣେ କନ୍ୟା ମନ । ତକ୍ଷଣେ ହୋଇଲା ବନ୍ଧନ ॥
ଅଗ୍ନୀଧ୍ର ସହିତେ ସୁନ୍ଦରୀ । ଲକ୍ଷେ ବରଷ ଭୋଗ କରି ॥
ଜମ୍ବୁ ଦ୍ୱୀପରେ ରାଜା ହୋଇ । ବିବିଧ ଭୋଗ ସେ ଭୁଞ୍ଜଇ ॥
ସେ ପୂର୍ବଚିତ୍ତି ଗର୍ଭୁ ଜାତ । ହୋଇଲା ଅଗ୍ନୀଧ୍ରର ସୁତ ॥
ନାଭି ରମ୍ୟକ କିଂ ପୁରୁଷ । ଭଦ୍ରାଶ୍ୱ କେତୁ ହରିବର୍ଷ ॥
ଇଳାବୃତ ଯେ କୁରୁନାମ । ହିରଣ୍ମୟ ଯେ ଏ ନବମ ॥
ଗୃହକୁ ତେଜି ପୂର୍ବଚିତ୍ତି । ବ୍ରହ୍ମାର ଚରଣ ସେବନ୍ତି ॥
ମାତାର ପୁଣ୍ୟେବଳୁଁ କରି । କୁମରେ ଧର୍ମକୁ ଆଚରି ॥
ପିତା ବିଭାଗ ଅନୁମତେ । ଜମ୍ବୁଦ୍ୱୀପକୁ ଯଥୋଚିତେ ॥
ଭୋଗ ଯେ କଲେ ଏ କୁମରେ । ପିତାର ଆଜ୍ଞା ଘେନି ଶିରେ ॥
ଏଥି ଅନ୍ତରେ ପୂର୍ଣ୍ଣମନ । ହୋଇଲା ଅଗ୍ନୀଧ୍ର ରାଜନ ॥
କିଛି ଦିନର ଅନନ୍ତରେ । ଗମିଲେ ସେ ପିତୃ ଲୋକରେ
ପିତା ପିତୃଲୋକ ଅନ୍ତରେ । ସେ ନବଭ୍ରାତ ସହୋଦରେ ॥
ପ୍ରତି ରୂପା ଯେ ଇଡାରମ୍ୟା । ମେରୁ ଦେବୀ ଯେ ନାରୀ ଶ୍ୟାମା ॥
ଉଗ୍ରଦଷ୍ଟ ଯେ ଦେବୀଉତି । ନବ କନ୍ୟା ନାମ ଶୋଭନ୍ତି ॥
କହିଲେ ବିପ୍ର ଜଗନ୍ନାଥ । ଅଗ୍ନୀଧ୍ର ସୁତର ଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଅଗ୍ନୀଧ୍ର ସୁତ ଚରିତେ ନାମ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଅଗ୍ନୀଧ୍ର ପୁତ୍ରଙ୍କ ମଧରେ । ନାଭି ଅପୁତ୍ର ହୋଇବାରେ ॥
ବାଞ୍ଛା କରି ପୁତ୍ର କାମରେ । ପତ୍ନୀ ମେରୁ ଦେବୀଙ୍କ ଠାରେ
ଭଗବାନ ଯଜ୍ଞ ପୁରୁଷେ । ତାହାକୁ ଭଜିଲେ ବିଶ୍ୱାସେ ॥
ନାଭି ଯେ ଶୁଦ୍ଧ ଭାବେ କରି । ମନ୍ତ୍ରେ ଆହୁତି ଦେଲା ଭରି ॥
ତାହାର ଶ୍ରଦ୍ଧା ଭାବୁ କରି । ଯଜ୍ଞେ ପ୍ରସନ୍ନ ନରହରି ॥
ଯେ ମନ୍ତ୍ରେ ସନ୍ତୋଷ ହୋଇଲେ । ପୁତ୍ର କାମରେ ରାଜା ବୋଲେ
ଭଗବାନ ଭକ୍ତ ବତ୍ସଳ । ସେ ସର୍ବ ଆତ୍ମାର କୁଶଳ ॥
ଲୋକର ସନ୍ତୋଷ ନିମନ୍ତେ । ସ୍ୱଇଚ୍ଛା ଅତି ସୁଖ ଚିତ୍ତେ ॥
ମନ ନୟନ ହୃଦ ଦେଶେ । ଆନନ୍ଦ କଲେ ପରକାଶେ ॥
ତେଜେ ବିରାଜମାନ ହୋଇ । କୌସ୍ତୁଭମଣି ଗଦା ଶୋହି ॥
ଭୁଜ ଯୁଗ ବାହାର କରି । ପୀତ ବସନ ଛନ୍ତି ଧରି ॥
ଅମୂଲ୍ୟ ରତ୍ନ ମାନଙ୍କରେ । ବିରାଜମାନ ହୃଦୟରେ ॥
ଏମନ୍ତ ମଣି ମାନଙ୍କରେ । ମୁକୁଟ ନିର୍ମିତ ଶିରରେ ॥
କୁଣ୍ଡଳ କଙ୍କଣ ସୁନ୍ଦର । କଟିମେଖଳା ରତ୍ନ ସାର ॥
ହାର କେୟୂର ସେ ନୂପୁର । ଏ ଆଦି ଭୂଷଣ ଶରୀର ॥
ସେ ଯଜ୍ଞ କରତା ଯାହାର । ଉତ୍ସବ ହୋଇଛି ହୃଦର ॥
ନିଧନ ଘରେ ପଡି ଧନ । କୋଟି ନିଧି ପ୍ରାୟ ଯେସନ ॥
ତେମନ୍ତ ହୋଇ ଦ୍ୱିଜଗଣ । ଯଜ୍ଞରେ ଥିଲେ ଯେତେଜନ ॥
ପରମ ହରଷକୁ ପାଇ । ବନ୍ଦିଲେ ନମ୍ର ଶିରେ ହୋଇ ॥
ଭୋ ନାଥ ପରମ କାରଣ । ତୁମ୍ଭର ଆମ୍ଭେ ଭୃତ୍ୟଗଣ ॥
ସର୍ବ ପୂଜିତ ତୁ ଠାକୁର । ସେବା ଯେ ଘେନ ତୁ ଆମ୍ଭର॥
ତୋହର ଚରଣାର ବିନ୍ଦେ । ନମିଲୁ ପରମ ଆନନ୍ଦେ ॥
ତୋର ଭିଆଣ ଏ ଜଗତ । ପ୍ରକୃତି ପୁରୁଷ ବିଦିତ ॥
ତ୍ରିଗୁଣ ଧର୍ମବଦ୍ଧ ହୋଇ । ପ୍ରାଣୀ ଏ ସଂସାରେ ଭ୍ରମଇ ॥
ସୃଷ୍ଟିର କର୍ତ୍ତା ଯେତେ ମାନ । ସେ ସର୍ବ ତୋହର ଅଧୀନ ॥
ଭୋ ନାଥ ତୋହର ମହିମା । ସଂସାରେ କେ କରିବ ସୀମା॥
ତୋର ଆକୃତି ରୂପ ଧାମ । ଧ୍ୟାନେ କରନ୍ତି ନିରୂପଣ ॥
ସାକ୍ଷାତେ ନୋହଇ ଗୋଚର । ଭୋ ପ୍ରଭୁ ରୂପ ଗୁଣ ତୋର॥
ତୋହର ନାମ ଉଚାରଣ । ସକଳ ପାପ ବିନାଶନ ॥
ଅଖିଳ ବ୍ରହ୍ମାଣ୍ଡ ଠାକୁର । ତୁ ନାଥ କରୁଣା ସାଗର ॥
ତୋହର ଜନ ଯେଉଁମାନେ । ଆନନ୍ଦ ମନର ପ୍ରସନ୍ନେ ॥
ସଲିଳ ଦୂର୍ବା ତୁଳସୀରେ । ପୂଜନ୍ତି ତୋହର ପୟରେ ॥

ତେଣୁ ତୁ ପରମ ସନ୍ତୋଷ । ପ୍ରସନ୍ନ ହୁଅ ହୃଷୀକେଶ ॥
ଏ ଯଜ୍ଞ ହୋଇଲା ସୁଫଳ । ତେଣୁ ପ୍ରସନ୍ନ ଆଦିମୂଳ ॥
ତଥାପି ଯେ ଅବା ଅପରେ । ହୋଇବ ତୋର ସନ୍ତୋଷରେ ॥
ବାଳକ ବୁଦ୍ଧି ସେ ଯେସନେ । ତେସନ ପ୍ରାୟେ ଆମ୍ଭେମାନେ॥
ପଣ୍ଡିତେ ପରମ ପୁରୁଷେ । ସ୍ତୁତି କେ କରିବ ଅଶେଷେ ॥
ପରମ ଦୟାର ସାଗର । ରାଜାଙ୍କୁ ପ୍ରଭୁ ଦୟା କର ॥
ଏମନ୍ତ ସ୍ତୁତି ଅନୁସାରେ । ଜଗତ ପ୍ରଭୁ ସେ ଅଗ୍ନିରେ ॥
ରାଜାର ଚକ୍ଷୁର ଗୋଚରେ । ହୋଇଲେ ଅତି ମନୋହରେ॥
ଯେ ଅଙ୍ଗସଙ୍ଗ ପାପଥିଲା । ତକ୍ଷଣେ ସର୍ବ ଦୂରଗଲା ॥
ପୁଣି ବୋଲନ୍ତି ଦ୍ୱିଜଗଣ । ଭୋ ନାଥ ସାବଧାନେ ଶୁଣ ॥
ଜ୍ଞାନ ଅନଳେ ପାପ ଦହି । ତୋ ପାଦପଦ୍ମ ଯୁଗଧ୍ୟାୟି ॥
ଯେ ଆତ୍ମାରାମ ମୁନିଗଣେ । ସେବନ୍ତି ତୋହର ଚରଣେ ॥
ତୋହର ଗୁଣି ଗୁଣମାନ । କରନ୍ତି ଅବିରତେ ଧ୍ୟାନ ॥
ତୁ ନାଥ ଅଖିଳ ଠାକୁର । ପରମ ମଙ୍ଗଳର ଘର ॥
ଆମେ ବିକଳ ହୀନ ଜନ । କରିବୁ କାହିଁ ତୋ ସ୍ମରଣ ॥
ସକଳ କଳୁଷ ନାଶନ । ନିର୍ମଳ ତୋର ଗୁଣ ମାନ ॥
ଆମ୍ଭର ମରଣ ଦଶାରେ । ତୋ ନାମ କହି ବଚନରେ ॥
ଏମନ୍ତ ଆଜ୍ଞା ପ୍ରଭୁଙ୍କର । ଅଖିଳ ବ୍ରହ୍ମାଣ୍ଡ ଠାକୁର ॥
ଏବେ ତୁ ଶୁଣ ଭାବଗ୍ରାହୀ । ଏ ରାଜା ପୁତ୍ରକାମ ହୋଇ ॥
ତୋର ପ୍ରସାଦୁ ଏ କୁମର । ମାଗଇ ତୋରେ ସତ୍ୟକର ॥
ସେ ସ୍ୱର୍ଗ ଭୋଗ ମୋକ୍ଷପଦ । ସକଳ ଦାତା ତୁ ଗୋବିନ୍ଦ ॥
ନିଧନ ପ୍ରାଣୀଏ ଯେସନେ । ମାଗନ୍ତି ଧନବନ୍ତ ଜନେ ॥
ଏଥୁ ଅନ୍ତରେ ସେ ରାଜନ । ନିଶ୍ଚଳ ହୋଇ ଏକମନ ॥
ଈଶ୍ୱର ମୁଖକୁ ସେ ଚାହିଁ । ଗଦ୍‌ଗଦ ବଚନ ବୋଲାଇ ॥
ଭୋ ନାଥ ପରମ ମଙ୍ଗଳ । ପ୍ରସନ୍ନ ହୁଅ ଆଦିମୂଳ ॥
ତୋହର ଚରଣାରବିନ୍ଦ । ଆଶ୍ରୟ ନ କରି ଗୋବିନ୍ଦ ॥
ଏ ଭବ ସାଗରୁ ଯେସନ । ମାୟାରେ ହୁଅନ୍ତି ଅଧୀନ ॥
ମୂଢ଼ ଯେ ପ୍ରାଣୀ ମାନଙ୍କର । ଭୋ ନାଥ ଏମନ୍ତ ବେଭାର ॥
ତୋର ଚରଣ ନ ଭଜନ୍ତି । ଅଜ୍ଞାନ ସଂସାରେ ପଡ଼ନ୍ତି ॥
ଏମନ୍ତେ ନାନା ସ୍ତୁତି ଭଣି । ଦେବାଧିଦେବ ଶିରୋମଣି ॥
ସକଳ କର୍ତ୍ତା ତୁ ଈଶ୍ୱର । ତୋର ଭିଆଣ ଏ ସଂସାର ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ସେବନ୍ତି ଯାହାର ଚରଣ ॥
ସଦୟେ ଚାହିଁ ଭଗବାନ । କହନ୍ତି କୋମଳ ବଚନ ॥

## ଶ୍ରୀ ଭଗବାନ ଉବାଚ

ଶୁଣ ହେ ମୁନିମାନେ ଯେତେ । ସ୍ତୁତି ଯେ କରୁଅଛ ମୋତେ ॥
ମୋର ସଦୃଶ ଏହା ସୁତ । ମାଗିଲା ଏ ବଡ଼ ଅଦ୍ଭୁତ ॥
ମୋହର ରୂପ ଯେ ଅପାର । କି ରୂପେ ହୋଇବେ କୁମର ॥
ତପସ୍ୟା ବ୍ରହ୍ମ ବାକ୍ୟ ମାନେ । ବ୍ୟର୍ଥ ଯେ ହୋଇବ କେସନେ ॥
ବ୍ରହ୍ମାର କୁଳେ ଯେ ହୁଅଇ । ମୋହର ପାଳିବା ଯୋଗାଇ ॥
ଏ ନାଭି ପୁତ୍ର ରୂପେ ମୁହିଁ । ଅଂଶରେ ଅବତରିବଇଁ ॥
ରାଜା ସହିତେ ମୁନିଗଣ । ଶୁଣିଲେ ଏମନ୍ତ ବଚନ ॥
ଏମନ୍ତ କହି ନାରାୟଣ । ଅଗ୍ନିରେ ହେଲେ ଅନ୍ତର୍ଦ୍ଧାନ ॥
ଏମନ୍ତ ମୁନିମାନେ କରି । ପ୍ରସନ୍ନ କରାଇଲେ ହରି ॥
ରାଜାର ପ୍ରିୟ ଭାବ ବହି । ସେ ପ୍ରଭୁ ମେରୁ ଦେବୀ ଠହିଁ ॥
ସଂସାର ଧର୍ମ ବିଚାରଣେ । ଅବତରିଲେ ନାରାୟଣେ ॥
ବୋଲଇ ବିପ୍ର ଜଗନ୍ନାଥ । ରାଜା ଯଜ୍ଞ ସ୍ତୁତି ଚରିତ ॥
ଶ୍ରବଣେ ଶୁଣେ ଯେହୁ ଜନ । କଳୁଷ ନାଶେ ତତକ୍ଷଣ ॥

*ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ରାଜା*
*ଯଜ୍ଞାସ୍ତୁତି ଚରିତେ ନାମ ତୃତୀୟୋଽଧ୍ୟାୟ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏଥୁ ଅନ୍ତରେ ଶୁଣ ରାୟେ । ନାଭିର ହୋଇଲା ତନୟେ ॥
ଯେତେ ଲକ୍ଷଣ କୃଷ୍ଣଠାରେ । ସକଳ ଅଛି ସେ କୁମରେ ॥
ଶାନ୍ତି ବୈରାଗ୍ୟ ଗୁଣ ଯେତେ । ଐଶ୍ୱର୍ଯ୍ୟ ଆଦି ଏ ସମସ୍ତେ ॥
ଅତି ସଂପତି ବ୍ରହ୍ମଧନେ । ପାଳଣ ହୋଇ ସର୍ବଜନେ ॥
ବଢ଼ଇ ପୁତ୍ର ଅନୁଦିନେ । ଶୁକ୍ଳ ପକ୍ଷରେ ଚନ୍ଦ୍ର ଯେହ୍ନେ ॥
ଅମାତ୍ୟ ପ୍ରଜା ଆଦି ଯେତେ । ଦେବତା ବ୍ରାହ୍ମଣ ସହିତେ ॥
ଅବନୀ ତଳେ ଯେତେ ଜନେ । ସାନନ୍ଦ ହେଲା ତାଙ୍କ ମନେ ॥
ତାହାର ବଳ ରୂପ ଗୁଣ । ଅତି ଅଦ୍ଭୁତ ଯେ ଲକ୍ଷଣ ॥
ଦେଖି ତାହାର ଗୁଣମାନ । ପିତା ଋଷଭ ଦେଲା ନାମ ॥
ପୂର୍ବେ ତାହାର ସଙ୍ଗତରେ । ବିବାଦ କଲା ପୁରନ୍ଦରେ ॥
ସେ ଭଗବାନ ଯୋଗେଶ୍ୱର । ଋଷଭ ନାମଟି ଯାହାର ॥
ଆପଣା ଯୋଗ ମାୟା ବଳେ । ଇନ୍ଦ୍ରକୁ ନିଗ୍ରହ ସେ କଲେ ॥
ନାଭିର କର୍ମମାନ ଦେଖି । ଲୋତକ ପୂର୍ଣ୍ଣ କଲା ଆଖି ॥

ବିକଳେ ଗଦଗଦ ହୋଇ । ମନ୍ଦ ମଧୁରେ ସେ ବୋଲାଇ ॥
ଏ ଭଗବାନ ଯୋଗେଶ୍ୱର । ପୁରାଣ ପୁରୁଷ ଠାକୁର ॥
ମାୟାରେ ଅଂଶ ରୂପ ହୋଇ । ସେ ଲୀଳା ଶରୀରେ ବହଇ ॥
ତାହାକୁ ତାତ ବସ କରି । ବଦନେ ବଚନ ଉଚ୍ଚାରି ॥
ସ୍ନେହ ଭାବରେ ସେ ଭଜିଲା । ପରମ ସୁଖକୁ ପାଇଲା ॥
ଏଥୁ ଅନ୍ତରେ ନୃପମଣି । କୁମର ବୁଦ୍ଧ ବଳଜାଣି ॥
ଆତ୍ମୀୟ ବ୍ରାହ୍ମଣଙ୍କୁ ରାଇ । ରାଜତ୍ୱ ପଣ ତାକୁ ଦେଇ ॥
ଯେ ମେରୁ ପତ୍ନୀ ଦେବୀ ତାରେ । ସଙ୍ଗତେ ଘେନି ନୃପବରେ ॥
ବିଶାଳା ନଗ୍ରେ ସେ ରହିଲା । ପରମ ତପ ଆଚରିଲା ॥
ସମାଦି ଯୋଗେ ସେ ରାଜନ । ଚିନ୍ତିଲା ପ୍ରଭୁ ନାରାୟଣ ॥
କେତେହେଁ ଦିନ ତପକଲା । ଅନ୍ତେ ସେ ମୁକତି ଲଭିଲା ॥
ଯାହାର ପୁଣ୍ୟଶ୍ଳୋକ ନରେ । ଗାୟନ କରନ୍ତି ସଂସାରେ ॥
ଏମନ୍ତ ସଂସାରେ କହିବ । ନାଭିର କରମ କରିବ ॥
ତାହାର ଶୁଦ୍ଧ କର୍ମ କରି । ପୁତ୍ର ହୋଇଲା ନରହରି ॥
ସେ ରାଜା ବିପ୍ର ଭକ୍ତ ହୋଇ । ଯଜ୍ଞେ ପୂଜିଲା ଭାବଗ୍ରାହୀ ॥
ଅଗ୍ନିରେ ପ୍ରଭୁ ଚକ୍ରଧର । ଦେଖିଲା ନୟନ ଗୋଚର ॥
ଏଥୁ ଅନ୍ତରେ ନୃପ ଶୁଣ । ସେ ଯେ ଋଷଭ ଭଗବାନ ॥
ଗୁରୁ କୁଳରେ ସେବା କଲେ । ଲୋକରେ ଧର୍ମ ଦେଖାଇଲେ ॥
ସମସ୍ତ ବିଦ୍ୟା ପୂର୍ଣ୍ଣ କରି । ଗୁରୁର ଆଜ୍ଞା ଶିରେ ଧରି ॥
ଗୃହସ୍ଥ ଧର୍ମ ଆଚରଣ । କରନ୍ତି ସଂସାର ପାଳନ ॥
ଗୁରୁ ସନ୍ତୋଷେ ଦେଲେ ବର । ହୋଇବ ଶତେକ କୁମର ॥
ଏମନ୍ତେ ଗଲା କେତେଦିନ । ଋଷଭ ମହା ସେ ରାଜନ ॥
ବେଦ ଉଚିତ କର୍ମ ରୂପେ । ବିଭା ହୋଇଲେ ଯଥୋଚିତେ ॥
ପୂର୍ବେ ଇନ୍ଦ୍ରର ହୋଇ ଦତ୍ତ । ଯେ କନ୍ୟା ଜୟନ୍ତ ବିଦିତ ॥
ଯହିଁ ବିବିଧ ଭୋଗକରି । ଆନନ୍ଦେ ସଂସାରେ ବିହରି ॥
ଯଥା କାଳରେ ତାହାଙ୍କର । ହୋଇଲା ଶତେକ କୁମର ॥
ଏହାଙ୍କ ମଧ୍ୟେ ମହାବୀର । ଜ୍ୟେଷ୍ଠ ଯେ ଭରତ କୁମର ॥
ଏ ଭୂମି ଯାହାର ନାମରେ । ଭାରତ ହୋଇଲା ସଂସାରେ ॥
ଯେ ନବ ତାହାର ଅନ୍ତରେ । ହୋଇଲେ ଋଷଭ କୁମରେ ॥
ଯେ ଇଳାବର୍ତ୍ତ କୁଶାବର୍ତ୍ତ୍ୟ । ଇନ୍ଦ୍ରସୃକ ଯେ ବ୍ରହ୍ମାବର୍ତ୍ତ ॥
ମଳୟକେତୁ ଯାର ନାମ । ବିଦର୍ଭ ଆଉ ଭଦ୍ରସେନ ॥
ଏ ନବ ପୁତ୍ରଙ୍କ ଚରିତ । ପଛେ କହିବୁ ନରନାଥ ॥
ବିକଟ ଏ ନବ କୁମର । ହୋଇଲା ତାଙ୍କ ମଧ୍ୟେ ସାର ॥
ପ୍ରବୁଦ୍ଧ ଯେ ପିପ୍ପଳାୟନ । ଦ୍ରାବିଡ଼ ଅବିହୋତ୍ର ନାମ ॥
ଚମସ ଅନ୍ତରୀକ୍ଷ କବି । କର ଭାଜନ ଆଉ ହବି ॥
ଏ ନବ ଶ୍ରେଷ୍ଠ ଭାଗବତ । ପବିତ୍ର କଲେ ଏ ଜଗତ ॥
ପୂର୍ବେ ବସୁଦେବ ନାରଦ । ହୋଇଣ ଅଛି ଯେ ସମ୍ବାଦ ॥
ସେଠାରେ ବର୍ଣ୍ଣିବୁ ସମସ୍ତ । ଶୁଣ ରାଜନ ପରୀକ୍ଷିତ ॥
ଏକାଶୀ ପୁତ୍ରଙ୍କ ଚରିତ । ଶୁଣ ରାଜନ ଏକଚିତ୍ତ ॥
ଶ୍ରୋତ୍ରିୟ ସୁଶୀଳ ମହାନ୍ତ । ପିତା ଆଜ୍ଞାରେ ଅନୁରତ ॥
ଯଜ୍ଞ କର୍ମରେ ସେ ନିପୁଣ । ବିଶୁଦ୍ଧ ହୋଇଲେ ବ୍ରାହ୍ମଣ ॥
ଏ ଅନନ୍ତରେ ସେ ଈଶ୍ୱର । ଋଷଭ ନାମେ ଯୋଗେଶ୍ୱର ॥
ଏ ନିତ୍ୟ ଅବ୍ୟୟ ଅନନ୍ତ । ପରମାନନ୍ଦ ଯେ ନିବୃତ ॥
ମାୟାରେ କରି ଦେହ ଧରି । ଅନେକ କାଳ ସେ ବିହରି ॥
ଧର୍ମ ଆଚରି ଶିକ୍ଷାମାନ । ଦିଅନ୍ତି ପ୍ରଜା ପୁତ୍ରମାନ ॥
ପରମ ଦୟାର ସେ ସ୍ଥାନ । ସର୍ବ ଭୂତରେ ମିତ୍ରପଣ ॥
ରାଜା ପାଳନ୍ତି ସର୍ବଜନ । ଆତ୍ମା ନନ୍ଦନଟି ଯେସନ ॥
ସେହି ପ୍ରକାରେ ନୃପବର । ପାଳନ କରନ୍ତି ସଂସାର ॥
ଉତ୍ତମ ସ୍ଥାନେ ଶୁଦ୍ଧକାଳେ । ନାନା ସମ୍ଭାରେ ସେ ନିଷ୍ଠଳେ ॥
ଅତି ସମ୍ପଦ ଅନୁକ୍ରମେ । ଯଜ୍ଞ କରନ୍ତି ଶୁଦ୍ଧମନେ ॥
ଏମନ୍ତେ କଲେ ଯଜ୍ଞ ଶତ । ବେଦ ବିହିତ ଯଥୋଚିତ ॥
ଋଷଭ ପରିପାଳ ହୋଇ । ଏମନ୍ତ କେ ଅବା ଅଛଇ ॥
ଦରିଦ୍ର ହିଂସା ଖଳ ଆଦି । ଅବିଦ୍ୟାବନ୍ତ ଯେ ପ୍ରସିଦ୍ଧି ॥
ଦ୍ରବ ଯାଚଞ୍ଚା ସୁମରଇ । ଏମନ୍ତ ଜନ କେହି ନାହିଁ ॥
ଭକ୍ତ ପ୍ରସନ୍ନ ବିନୁ ଆର । ଅନ୍ୟ ନ ମାଗନ୍ତି ସେ ବର ॥
ଏବେ ହୋ ଶୁଣ ସାବଧାନେ । ଋଷଭ ବୁଲି ଏକଦିନେ ॥
ବ୍ରହ୍ମଋଷି ସଭାରେ ଯାଇ । ତନୟାମାନେ ଛନ୍ତି ଯହିଁ ॥
କୋମଳ ମଧୁର ବଚନେ । ଶିକ୍ଷା କରାଇବାରେ ମନେ ॥
କହନ୍ତି ହିତ ବାକ୍ୟମାନ । ଶୁଣନ୍ତି ଯେତେ ସଭାଜନ ॥
କହଇ ଜଗନ୍ନାଥ ଦାସ । ଋଷଭ ନାରାୟଣ ଅଂଶ ॥
ତାର ଚରିତ ଯେ ଶୁଣନ୍ତି । ସେ ପ୍ରାଣୀ ସଂସାରୁ ତରନ୍ତି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭ ଚରିତେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

### ଋଷଭ ଉବାଚ

ଭୋ ପୁତ୍ରମାନେ ସାବଧାନେ । ଶୁଣହେ ଆମ୍ଭର ବଚନେ ॥
ଯେ ପ୍ରାଣୀ ନଷ୍ଟ କର୍ମମାନ । ନିର୍ଭୟେ କରେ ଆଚରଣ ॥
ସେ ପ୍ରାଣୀ ବ୍ୟର୍ଥ ଏ ସଂସାରେ । ପଡ଼େ ନରକ ତମ ଘୋରେ ॥
ଏ ବ୍ରହ୍ମ କର୍ମ ସତ୍ତ୍ୱଗୁଣ । ତପେ ଅନନ୍ତ ଆରାଧନ ॥
ନିର୍ବାଣ ମାର୍ଗ ଏ ବିଦିତ । ଶୁଣ କହିବା ଏକଚିତ୍ତ ॥
ସ୍ତିରୀଙ୍କ ସଙ୍ଗ ଆଦି ଯେତେ । ଏ ଘୋର ମତି ଏ ବିଦିତେ ॥
ମହାନ୍ତ ରାମ ଚିନ୍ତି ସେହି । ପ୍ରଶାନ୍ତ ସାଧୁ ସେ ବୋଲାଇ ॥
ଯେ ଜନ କ୍ରୋଧ ବିବର୍ଜିତ । ତାହାର ସୁହୃଦେ ଜଗତ ॥
ଯେ ପ୍ରାଣୀ ମୋର ପଦ୍ମପାଦେ । ମନ ଅର୍ପଇ ଅପ୍ରମାଦେ ॥
ନାହିଁତ ଗୃହ ଦାରା ଧନ । ତନୟ ଚେଷ୍ଟା ନାନା କର୍ମ ॥
କରଇ ମାୟା ଭ୍ରମ ହୋଇ । ଯାବତ ମୋତେ ନ ଭଜଇ ॥
ଅନିତ୍ୟ ଦେହ ନିତ୍ୟ କରେ । ସେ ସାଧୁ ନୋହଇ ସଂସାରେ ॥
ତାବତ ପରାଭବ ପାଇ । ଯାବତ ଆତ୍ମା ନ ଚିହ୍ନଇ ॥
ଯାବତ ନାନା କର୍ମ କରେ । ମନ ବଢ଼ଇ ନିରନ୍ତରେ ॥
ତେଣୁ ସେ କର୍ମ ବଶ ହୋଇ । ନାନା ଶରୀରକୁ ବହଇ ॥
ଅବ୍ୟକ୍ତ ବାସୁଦେବ ମୁହିଁ । ମୋରେ ଯାହାର ସ୍ନେହ ନାହିଁ ॥
ସେ ନୋହେ ଦେହ ବନ୍ଧୁପାର । ଯେଣୁ ନ ଚିହ୍ନଇ ଈଶ୍ୱର ॥
ସ୍ୱପ୍ନ ପ୍ରାୟେକ ଦେହ ନର । କରନ୍ତି ନାନା ଅହଂକାର ॥
ନିଦ୍ରାରେ ଯେହ୍ନେ ସୁଖ ଭାଗ । ଜାଗ୍ରତେ ତାପ ପାଇ ଲାଭ ॥
ଗୃହ ବନ୍ଧନର କାରଣ । ନାନା ସଙ୍ଗତ ବହୁ ଧନ ॥
ସ୍ତିରୀ ପୁରୁଷ ଭାବ ହୋଇ । ତହିଁରେ ମନକୁ ବାନ୍ଧଇଁ ॥
ମୋହର ଗୃହ ମୋର ଧନ । ବୋଲେ ମାୟାରେ ହୋଇ ଛନ୍ନ
ତାବତ କର୍ମ ବନ୍ଧମାନ । ନୋହଇ କାହାର ଖଣ୍ଡନ ॥
ଯାବତ ପଦ୍ମ ପାଦ ମୋର । ଆଶ୍ରୟ ନ କରଇ ନର ॥
ପାଦ ପଲ୍ଲବ ଯୁଗ୍ମ ଧରି । ତରଇ ଏ ଭବ ଲହରୀ ॥
ଅଖିଳ ଗୁରୁ ମୁହିଁ ହରି । ମୋତେ ଭଜିବ ଦେହ ଧରି ॥
ନିବୃତ୍ତି ଦୃଷ୍ଟିହୋଇ ନରେ । ଭକ୍ତି କରିବେ ମୋର ଠାରେ ॥
ବ୍ୟସନ ହିଂସାକୁ ଛାଡ଼ିବେ । ତପରେ ମୋତେ ଆରାଧିବେ ॥
ମୋହର ଗୁଣ କର୍ମମାନ । ନିରତେ କରିବ କୀର୍ତ୍ତନ ॥
ଏମନ୍ତ ଭାବ ମୋର ଠାରେ । ଭୋ ପୁତ୍ରେ କରନ୍ତି ଯେ ନରେ ॥
ସକଳ ପଣକୁ ନିବାରି । ଅଧ୍ୟାତ୍ମ ବିଦ୍ୟାକୁ ଆଚରି ॥
ଶ୍ରଦ୍ଧାରେ ବ୍ରହ୍ମଚର୍ଯ୍ୟ ନରେ । ପ୍ରଶାନ୍ତ ସତ୍ୟ ବଚନରେ ॥
ମୋହର ଭାବ ଅନୁକ୍ଷଣେ । ଚିତ୍ତ ଅର୍ପିବ ମୋ ଚରଣେ ॥
ଭବ ଜଳରୁ ସେ ତରଇ । ତାହାର ଗୃହବନ୍ଧ ନାହିଁ ॥
ସ୍ୱକର୍ମ କରି ଯେ ସଂସାରେ । ସେବିବ ମୋହର ପୟରେ ॥
ତାହାର କର୍ମବନ୍ଧ ମୁହିଁ । ଆଦରେ ନିଶ୍ଚୟେ ଛେଦଇ ॥
ଆତ୍ମାର ଶ୍ରେୟ କର୍ମଠାରେ । ଶ୍ରଦ୍ଧା ନ କରନ୍ତି ପାମରେ ॥
ଅଳପ ସୁଖ ହେତୁ କରି । ଅନ୍ୟୋନ୍ୟେ ହିଂସାକୁ ଆଚରି ॥
ଅଶେଷ ଦୁଃଖର କାରଣ । କରନ୍ତି ହୋଇ ମତି ଭ୍ରମ ॥
ମୃଗତୃଷ୍ଣାର ପ୍ରାୟେ ହୋଇ । ନାନା ଅବିଦ୍ୟାକୁ ଦେଖଇ ॥
ଅନ୍ଧ ଯେସନେ ପଥେ ଥାଇ । କଣ୍ଟକ ଦୁର୍ଗମେ ଭ୍ରମଇ ॥
ସେ ନୁହେଁ ଗୁରୁ ମିତ୍ର ପିତା । ସୁହୃଦ ଜନ ଆତ୍ମା ମାତା ॥
ନିୟତ ମୃତ୍ୟୁକୁ ନିବାରେ । ଏମନ୍ତ କେ ଅଛି ସଂସାରେ ॥
ମୂଢ଼ ଜାଣିବେ ଏହା କାହିଁ । ନିତ୍ୟେ ମାୟାରେ ଭ୍ରମୁଥାଇ ॥
ଭୋ ପୁତ୍ରେ ଶୁଣ ମୋ ଉତ୍ତର । ଏ ଯେ ମୋହର କଳେବର ॥
ଅଷ୍ଟାଙ୍ଗ ଯୋଗ ଧ୍ୟାନ ମତେ । ମୁନି ଚିନ୍ତନ୍ତି ଅବିରତେ ॥
ଯେଣୁ ଆମ୍ଭର ତୁମ୍ଭେ ପୁତ୍ର । ପରମ ଶ୍ରେଷ୍ଠ ଭାଗବତ ॥
ଏବେ ଏମନ୍ତ ତୁମ୍ଭେ କର । ଭରତ ଶ୍ରେଷ୍ଠ ଯେ ତୁମ୍ଭର ॥
ଅକ୍ଲେଶ ବୁଦ୍ଧିରେ ସମସ୍ତେ । ତାହାକୁ ଭଜ ଯଥୋଚିତେ ॥
ମୋର ବଚନ ଧରି ଶିରେ । ସୁଖେ ଭ୍ରମିବ ଏ ସଂସାରେ ॥
ସର୍ବ ଭୂତରେ ମୁହିଁ ଥାଇ । ସୁଖ ଦୁଃଖକୁ ମୁଁ ଭୁଞ୍ଜଇ ॥
ଭୂତ ଗନ୍ଧର୍ବ ଯୋ ମାନବ । ପ୍ରଥମଗଣ ଯେତେ ଦେବ ॥
ଯେ ବ୍ରହ୍ମ ସୁତ ଦକ୍ଷ ଆଦି । ମୋର ଶରୀରେ ସେ ପ୍ରସିଦ୍ଧି ॥
ସର୍ବ ଦେବଙ୍କ ମଧ୍ୟେ ସାର । ସଂସାରେ ବିପ୍ର କଳେବର ॥
ଶ୍ରଦ୍ଧାରେ ଶୁଦ୍ଧ ମନେ ଯେହି । ଯେ ଦ୍ରବ୍ୟ ବିପ୍ରଙ୍କୁ ଦିଅଇ ॥
ସନ୍ତୋଷେ ଭକ୍ଷଇ ମୁଁ ତାହା । ଯଜ୍ଞେ ସନ୍ତୋଷ ନାହିଁ ଯାହା ॥
ଯମ ନିୟମେ ଦମେ ମୋତେ । ପୂଜନ୍ତି ବିପ୍ରେ ଯଥୋଚିତେ ॥
ସକଳ ପରଙ୍କର ପର । ମୁହିଁ ଅନନ୍ତ ଯେ ଈଶ୍ୱର ॥
ସ୍ୱର୍ଗ ମୋକ୍ଷର ଦାତା ମୁହିଁ । ମୋ ବିନୁ ଅନ୍ୟ କେହି ନାହିଁ
ସେ ପ୍ରାଣୀ ଅକିଞ୍ଚନ ହୋଇ । ମୋହର ପାଦେ ଚିତ୍ତ ଦେଇ ॥
ତାହାର ଯେତେ କର୍ମମାନ । ସକଳ କରଇ ଗ୍ରହଣ ॥
ମୋହର ପୂଜା ତୁମ୍ଭେମାନେ । କର ଯେ ଯଥାର୍ଥ ବିଧାନେ ॥
ସେ ଶ୍ରଦ୍ଧା ଅବଲୋକନରେ । ସ୍ଥିର ବାକ୍ୟ ମନ ବୁଦ୍ଧିରେ ॥
ମୋହର ଅନୁଗ୍ରହ ବିନେ । ସଂସାରେ ଯେତେ ପ୍ରାଣୀମାନେ ॥
ଶମନ ପାଶ ବନ୍ଧନରୁ । କେ ଅବା ତରିବ ଏଥିରୁ ॥

## ଶ୍ରୀ ଶୁକ ଉବାଚ

ଏମନ୍ତ ଶିକ୍ଷା ପୁତ୍ରେ ଦେଇ । ଋଷଭ ପ୍ରଭୁ ଭାବଗ୍ରାହୀ ॥
ପ୍ରାଣୀଙ୍କ ନିସ୍ତାର କାରଣ । ଧର୍ମ ବିସ୍ତାରିଲେ ଆପଣ ॥
ତନୟ ଶତ ମଧ୍ୟେ ସାର । ଶ୍ରେଷ୍ଠ ଯେ ଭରତ କୁମର ॥
ପରମ ଭାଗବତ ସେହି । ନିରତେ ପ୍ରଭୁଙ୍କୁ ଭଜଇ ॥
ସାଧୁ ସଙ୍ଗତେ ଅନୁରତ । ତାହାର ଗୁଣ ଯେ ବହୁତ ॥
ଅବନୀ ପାଳନକୁ ପାଇ । ରାଜତ୍ୱ ପଣ ତାକୁ ଦେଇ ॥
ଯେ ମୁକ୍ତ କର୍ମ ମହାମୁନି । ଜ୍ଞାନ ବୈରାଗ୍ୟ ଭକ୍ତି ଘେନି ॥
ତାହାଙ୍କ ଲକ୍ଷଣ ଆଚରି । ଋଷଭ ପ୍ରଭୁ ନରହରି ॥
ବାହ୍ୟେ ଶରୀର ମାତ୍ର ଧରି । ଉନ୍ମତ ରୂପକୁ ଆଚରି ॥
ପ୍ରକୀର୍ଣ୍ଣ କରି କେଶପାଶ । ଯତନ କରି କଟୀବାସ ॥
ଯେହ୍ନେ ବିଧିର ଜଡ଼ମୂକ । ଅନ୍ଧ ପିଶାଚ ଉନ୍ମାଦକ ॥
ଏମନ୍ତ ଅବଧୂତ ବେଶ । ଧରି ସେ ବ୍ରହ୍ମାଣ୍ଡର ଈଶ ॥
ପ୍ରାଣୀଙ୍କି ବଚନ ନ କହି । ମୌନ ବ୍ରତକୁ ସେ ଲଭଇ ॥
ସକଳ ପୁର ଗ୍ରାମ ଗିରି । ଘୋର କାନନ ଆଦି କରି ॥
ଦୁର୍ଜ୍ଜନ ଦୁଷ୍ଟ ଯେତୁ ଜନ । ପ୍ରହାର ଆଦି ଯେତେ ମାନ ॥
ଏ ପରାଭବକୁ ସେ ସହି । ସୁଖେ ଭ୍ରମନ୍ତି ଏକାମହୀ ॥
ଆପଣା ଠାରେ ଚିତ୍ତ ଥୋଇ । ନିତ୍ୟେ ଆନନ୍ଦ ମନ ହୋଇ ॥
ଅତି ସୁନ୍ଦର ସୁକୁମାର । ଚରଣ ଯୁଗ ବେନି କର ॥
ବିପୁଳ ଉଚ୍ଚ ବକ୍ଷସ୍ଥଳ । ମଞ୍ଜୁଳ ବଚନ କୋମଳ ॥
ଅତି ସୁନ୍ଦର ସେ ଶରୀର । ଈଷତ ହାସ୍ୟ ବିମ୍ୱାଧର ॥
ନବ ନଳିନ ଦଳ ଯେହ୍ନେ । ଲୋଚନ ଯୁଗଳ ତେସନେ ॥
ସୁବର୍ଣ୍ଣ ସୁଭଗ କପୋଳ । ନିଗୂଢ଼ କର୍ଣ୍ଣ ଯେ ମଞ୍ଜୁଳ ॥
ରୂପ ତା ଦେଖିଣ ନୟନେ । ଚଳନ୍ତି ସୁରପତ୍ନୀମାନେ ॥
କୁସୁମାୟୁଧ ବାଣେ ମନ । ତକ୍ଷଣେ ହୋଇ ଛନ୍ନ ଛନ୍ନ ॥
ଏ ସର୍ବ ମନ୍ଦ ଭାବ କରି । ପିଙ୍ଗଳ ଜଟାଭାର ଧରି ॥
ସୁନ୍ଦର ଶରୀର ମଳିନ । ଦିଶିଲେ ଆନୁ ଆନ ବର୍ଣ୍ଣ ॥
ସଂସାରେ ଯେତେ ଦୁଷ୍ଟପ୍ରାଣୀ । ଯୋଗ ଭଜନେ ତାକୁ ଜାଣି ॥
ଯେ ବ୍ରତ ଅତି ଭୟଙ୍କର । ଅଜଗରର ଯେ ଆଚାର ॥
ସେ ଅଜଗର ପ୍ରାୟେ ହୋଇ । ରହିଲେ ନିଜ ରୂପ ଧ୍ୟାୟି ॥
ଏମନ୍ତେ ନାନା ଯୋଗଚିନ୍ତା । କରି ସେ କଇବଲ୍ୟ ଦାତା ॥
ସକଳ ଆତ୍ମା ଭୂତେ ସେହି । ଋଷଭ ଅଂଶେ ଧରି ଦେହୀ ॥
ପରମ ପ୍ରଭୁ ଯୋଗେଶ୍ୱର । ସେ ଯୋଗ ସାଧିଲେ ଅପାର ॥
ସେ ପ୍ରଭୁ ଚରଣେ ମୋ ଚିତ୍ତ । ନିଶ୍ଚଳେ ରହୁ ଅବିରତ ॥
କହଇ ବିପ୍ର ଜଗନ୍ନାଥ । ଋଷଭ ଗୋବିନ୍ଦ ଚରିତ ॥
ଏହି ଦୀକ୍ଷାକୁ ମନ କର । ଭବ ସଂସାରୁ ହୁଅ ପାର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭ ରାଜପୁତ୍ର ଧର୍ମାଚରଣେ ନାମ ପଞ୍ଚମୋଽଧ୍ୟାୟ ।*

## ଷଷ୍ଠ ଅଧ୍ୟାୟ

### ରାଜ ଉବାଚ

ସେ ସର୍ବଭୂତେ ମାୟାସାର । ଋଷଭ ଅଂଶେ ଅବତାର ॥
ଯାହାର ନାମ ଯୋଗେଶ୍ୱର । ଯୋଗ ସାଧିଲେ ସେ ଅପାର ॥
ମୋର ସନ୍ଦେହ ହୃଦଗତେ । ଭୋ ମୁନି କହ ତୋଷ ଚିତ୍ତେ ॥
ଯେ ଇଚ୍ଛା ବେହାର ପୁରୁଷ । ସକଳ କର୍ମରେ ଯେ ଈଶ ॥
ଏ ରୂପେ କି କାର୍ଯ୍ୟ ତାହାର । ସନ୍ଦେହ ଫେଡ଼ ମୁନିବର ॥
ଅଷ୍ଟ ଐଶ୍ୱର୍ଯ୍ୟ ଦାତା ହୋଇ । କଷ୍ଟ ଆଚର କାହିଁ ପାଇଁ ॥

### ଶ୍ରୀ ଶୁକ ଉବାଚ

ଏ ସତ୍ୟ କହିଲା ରାଜନ । କହିବା ଶୁଣ ସାବଧାନ ॥
ଐଶ୍ୱର୍ଯ୍ୟ ଧନ ଆଦି ଯେତେ । ନିତ୍ୟେ କଦର୍ଯ୍ୟ ମହୀପତେ ॥
ଯାହାର ମୂଳ ଲୋଭ କାମ । ଶୋକ ହରଷ ଆଦି କର୍ମ ॥
ଏ ସର୍ବ ଯାର ମୂଳ ହୋଇ । ପ୍ରାଣୀଙ୍କି ବନ୍ଧନ କରଇ ॥
କେ ଏହା ସାଧୁ କରି ମଣେ । ମୂଢ଼ ପାମର ଯେଉଁ ଜନେ ॥
ଏବେ ହୋ ଶୁଣ ମହୀପାଳ । ସେ ଯେ ଋଷଭ ଆଦି ମୂଳ ॥
ଅଖିଳ ଲୋକପାଳଙ୍କର । ବନ୍ଦନ୍ତି ଚରଣ ଯାହାର ॥
ସେ ଦେବ ନାନାଦି ଲକ୍ଷଣ । ଜଡ଼ର ପ୍ରାୟେ ଆଚରଣ ॥
ଭ୍ରମନ୍ତି ନାନା ଦେଶ ଗ୍ରାମେ । ଯୋଗ ଶିଖାଇ ଯୋଗୀଗଣେ ॥
ଏମନ୍ତେ ଗଲା କେତେ ଦିନ । ଏକ ମନେ ଶୁଣ ରାଜନ ॥
ଋଷଭ ମନେ ବିଚାରିଲେ । ଏ ଦେହ ଛାଡ଼ିବା ବୋଇଲେ ॥
ଆତ୍ମାରେ ମନକୁ ବୁଡ଼ାଇ । ଇନ୍ଦ୍ରିୟ ମତେ ମନ ଦେଇ ॥
ଏମନ୍ତ ଅଦ୍ଭୁତ ସେ ରୂପ । ହୋଇଁଲେ ଈଶ୍ୱର ସ୍ୱରୂପ ॥
ମୃତ୍ୟୁ ପିଣ୍ଡ ଏ ଦେହ ମାନି । ସ୍ୱଇଚ୍ଛା ବିହରିଲେ ଜ୍ଞାନୀ ॥
ଦକ୍ଷିଣ କର୍ଣ୍ଣାଟ ଦେଶରେ । ମିଳିଲେ ତ୍ରିକୁଟ ଗିରିରେ ॥
ତହିଁର ଭଗବାନ ସେହି । ବୁଲନ୍ତେ ମୁକ୍ତ କେଶ ହୋଇ ॥
ଏମନ୍ତେ ଗମନ୍ତି ବେଗରେ । ଅଗ୍ନି ଜଳିତ ଅତି ଖରେ ॥
ବନସ୍ତ ଜୀବ ବୃକ୍ଷମାନ । ଶୀଘ୍ରେ ସେ କରଇ ଦହନ ॥

ଯହିଁ ଉନ୍ନତ ରୂପଧର । ପଶିଲେ ଅଗ୍ନିର ଭିତର ॥
ପବନ ଅଗ୍ନି ବେଗେ ଖର । ଦହିଲା ତାହାଙ୍କ ଶରୀର ॥
ପାଷାଣ୍ଡ ପଣ ଯେଣୁ ହୋଇ । କୁପଥମାନଙ୍କୁ ସେ ନେଇ ॥
କଳି ଯୁଗରେ ନରନାଥ । ହୋଇବ ମାୟା ବିମୋହିତ ॥
ଶୌଚ ପବିତ୍ର ଦୂର କରି । ଦେବତା ନିନ୍ଦାକୁ ଆଚରି ॥
କଳିର ଆଚାର ଯେସନ । ତହିଁରେ ହୋଇ ମତିଭ୍ରମ ॥
ଦେବ ବ୍ରାହ୍ମଣ ଯଜ୍ଞମାନ । ନିନ୍ଦା କରିବେ ଅନୁକ୍ଷଣ ॥
ସୁପଥ କର୍ମକୁ ଛାଡ଼ିବେ । ଅତି ତମରେ ସେ ବୁଡ଼ିବେ ॥
ଶୁଣ କହିବା ନୃପବର । ଏ ଯେ ଋଷଭ ଅବତାର ॥
ରାଜ ଗୁଣରେ ଏହୁ ଯୁକ୍ତ । ଭକ୍ତି କି କଲେ ଏ ବିଖ୍ୟାତ ॥
ତାହାର ଗୁଣ ଏ ସଂସାରେ । ଗାୟନ କରୁଛନ୍ତି ନରେ ॥
ସପତ ସିନ୍ଧୁ ଆଦି କରି । ଧନ୍ୟ ଅଟଇ ବସୁନ୍ଧରୀ ॥
ଦ୍ୱୀପ ବରଷ ଭଦ୍ରସେନ । ଯହିଁରେ ଜନ୍ମ ପ୍ରାଣୀମାନ ॥
ଅଖିଳ ନାଥ ଯେ ଠାକୁର । ତାହାଙ୍କ କର୍ମ ଅବତାର ॥
ଗାୟନ କରନ୍ତି ହରଷେ । ଯହିଁ ଅଜ୍ଞାନ ପାପ ନାଶେ ॥
ଧନ୍ୟ ଏ ପ୍ରିୟବ୍ରତ ବଂଶ । ଯହିଁରେ ଜାତ ବିଷ୍ଣୁ ଅଂଶ ॥
ଧନ୍ୟ ସେ ରାଜା ପ୍ରିୟବ୍ରତ । ଯାହାଙ୍କ କର୍ମ ଅଦଭୂତ ॥
ଏହାର ତୁଲ୍ୟ କେ ଅପର । ଯେ ବଂଶେ ଦେବ ଯୋଗେଶ୍ୱର
ଦେବ ବ୍ରାହ୍ମଣ ଗୋରୁ ଆଦି । ଦେବତା ନରେ ଯେ ପ୍ରସିଦ୍ଧି ॥
ଏ ସର୍ବ ଗୁରୁ ଭଗବାନ । ଋଷଭ ପରମ କାରଣ ॥
କେବେହେଁ କୁଟୁମ୍ବ ଆବୋରି । ବିଷୟା ବିଷ ଖାଇ ମରି ॥
କୁଟୁମ୍ବ ଅନ୍ତେଣ ତେସନ । କାନ୍ତାର ଯେସନେ ଶୟନ ॥
ଶ୍ମଶାନେ ଶବ ପ୍ରାୟେ ହୋଇ । ସୁଖ ଦୁଃଖକୁ ନ ଜାଣଇ ॥
ଦୁର୍ଜନ ଦ୍ୱନ୍ଦ୍ୱ ସୁଖ କରି । ଉଦାର ଭାବକୁ ଆଦରି ॥
ବ୍ୟଥିତ ହୃଦୟକୁ ଚାହିଁ । ଅନ୍ଧ ଯେସନେ କଷ୍ଟ ଦେଇ ॥
ଅଜ୍ଞାନ ଭାବୁ ପାପ ଚିତ୍ତେ । ଅନ୍ଧ ତମେ ପଡ଼ଇ ଅନ୍ତେ ॥
କେବେହେଁ କରେ ପର ଦାରେ । ସ୍ୱକାମେ ପର ଦ୍ରବ୍ୟ ହରେ ॥
ସ୍ୱାମୀରେ ଦ୍ରୋହ ଚିନ୍ତା କରେ । ଦୃଗମ ମନରେ ଆବୋରେ ॥
ଏମନ୍ତ ଆତ୍ମା କର୍ମ ଫଳେ । ପ୍ରାଣୀ ଭ୍ରମନ୍ତି ଯେ ଶୟଳେ ॥
ଜନ୍ମ ବାସନା ଫଳେ ତାର । ପୁଣି ହିଁ ଜନ୍ମଇ ସଂସାର ॥
ଶୁଣ ରାଜନ ଏକ ମନେ । ଯେବେ ଯେ କର୍ମ ପ୍ରାଣୀମାନେ ॥
ଛେଦନ୍ତି ହରି ଆଶ୍ରେ କରି । ତେବେ ସେ ଭବୁଁ ଯାନ୍ତି ତରି
କେବେହେଁ ନାନାଗୀତ ବାଦ୍ୟ । ଦେବଙ୍କ ସଂସାର ସମ୍ପଦ ॥
କେବେହେଁ ଦୂରାନ୍ତ ଚିନ୍ତାରେ । ନିମଗ୍ନ ହୋଇଥାନ୍ତି ନରେ ॥

କେବେ ହେଁ ରହ ସ୍ଥଳେ ନେଇ। ଅନ୍ୟର ଧନ ଅନ୍ୟେ ଦେଇ ॥
ଉଦ୍‌ବେଗ ଭାବଲୋକେ ଦେଇ । ଅନ୍ତେ ସେ ନରକ ଲଭଇ ॥
ନାନା ଉପସର୍ଗ ସହିତ । ଯେ ଯେ ସଂସାର ଘୋରପଥ ॥
ଏହି ଆଶ୍ରୟ କରି ନରେ । ଯେ ସର୍ବ ଅନୁଭବ କରେ ॥
ଅପମାନ ଯେ ଦେଖ ଦୁଃଖ । ଉନ୍ମଦ ମତ ଅବା ସୁଖ ॥
ଶୋକ ଲୋଭାଦି ମୋହମାନ । ମାତ୍ସର୍ଯ୍ୟ କ୍ରୋଧ କ୍ଷୁଧା ଜନ୍ମ ॥
ପିପାସା ଆଦି ବ୍ୟାଧି ଯେତେ । ଜରା ମରଣର ସହିତେ ॥
ଦେବ ମାୟାରେ ମୋହି ହୋଇ । ସ୍ତିରୀ ବଶରେ ବଶ ହୋଇ ॥
ତା ଭୁଜ ଲତାର ବନ୍ଧନ । ତହିଁରେ ମନ ହୋଇ ଛନ୍ନ ॥
ତା ଅବଲୋକନ ବେହାର । ତେଣେ ଆସକ୍ତ ମୂଢ଼ନର ॥
ସୁତ ଦୁହିତାର ବନ୍ଧନେ । ଶ୍ରୁତି ନିବେଶି ଅନୁକ୍ଷଣେ ॥
ହୃଦୟ ହରଷିତ ହୋଇ । ଆତ୍ମାକୁ ତହିଁରେ ବୁଡ଼ାଇ ॥
ଅର୍ଜିତ ଆତ୍ମା ଯେ ଅଟଇ । ଜୀବକୁ ନରକେ ଥୋଅଇ ॥
କେବେହେଁ ଅଖିଳ ଈଶ୍ୱର । ବିଷ୍ଣୁ ଭଗବାନ ଠାକୁର ॥
ତାହାର କାଳ ଚକ୍ର କରି । ଆତ୍ମାକୁ ତୃଣ ସମ କରି ॥
ସକଳ ଭିଆଣ ତାହାର । ଯେମନ୍ତ ପ୍ରଭୁ ଯେ ଈଶ୍ୱର ॥
ତାହାର କାଳ ଚକ୍ର କରେ । ଭ୍ରମଇ ଅଖିଳ ସଂସାରେ ॥
ସେ ଯଜ୍ଞ ପୁରୁଷ ଠାକୁର । ଆତ୍ମାକୁ କରି ଅନାଦର ॥
ପାଷାଣ୍ଡ ଭାବକୁ ଆଚରି । ନାନା ଦେବତା ସେବାକରି ॥
ମୋକ୍ଷ ପଥକୁ ନ ଆଦରି । ବିବିଧ କୁପଥ ଆବୋରି ॥
ନିଗମ ଅନାଚାର କର୍ମ । କରନ୍ତି ହୋଇ ମତିଭ୍ରମ ॥
ପାଷାଣ୍ଡ ଭାବେ ସେ ବିଦିତ । ଆତ୍ମାକୁ କରନ୍ତି ବଞ୍ଚିତ ॥
ମୈଥୁନେ ଭବେ ଅନୁକ୍ଷଣେ । ଆକୁଳ କୁଟୁମ୍ବ ପୋଷଣେ ॥
ଅଜ୍ଞାନ କୁଟୁମ୍ବ ଭାବରେ । ନିରତେ ବିଷୟ ସୁମରେ ॥
ଅତି କୃପଣ ବୁଦ୍ଧି ହୋଇ । ଅନ୍ୟୋଽନ୍ୟେ ସ୍ନେହଭାବ ବହି
ସୁଖ ବିହାର ଅନୁକ୍ଷଣ । ଇତ୍ୟାଦି ଗ୍ରାମ ଯେତେ କର୍ମ ॥
ବିସ୍ତୃତ କାମ ଜାତ ହୋଇ । ସୁଜ୍ଞାନେ ସ୍ୱଚ୍ଛନ୍ଦେ ଭ୍ରମଇ ॥
ବାନର ପଶୁ ଯେ ଯେସନେ । ନିରାଶ ବୃକ୍ଷ ପଦ ଭଗ୍ନେ ॥
ଦାରା ତନୟ ବିନାଶରେ । ପଶଇ ଗିରିର କନ୍ଦରେ ॥
ଶୀତ ପବନ ଦୁଃଖମାନ । ଦୈବକ୍ୟ ଭକ୍ତିଙ୍କ ବ୍ୟସନ ॥
ଏହା ନ ବାରଣ ସେ ତହିଁ । ଅଚ୍ଛ ଭାବରେ ସେ ରହଇ ॥
କେବେହେଁ ତେମନ୍ତ ଯେ ନରେ । ମୃତ୍ୟୁ ସ୍ୱକାମୁଁ ଦୁଃଖ ଘୋରେ॥
ଦୂରନ୍ତ ଚିତାମଗ୍ନ ହୋଇ । ବିସ୍ମିତ ଭାବରେ ରହଇ ॥
କେମନ୍ତେ ଏକାନ୍ତେ ରମଇ । କେବେହେଁ ବହୁଧନ ପାଇ ॥

ଦ୍ରବ୍ୟ ସମ୍ଭାରେ ଦୋଷଭାବ । କ୍ଷିଣ ଧନରେ ଅଳ୍ପ ଲାଭ ॥
କେବେହେଁ ଉପଭୋଗ ତାର । ଦ୍ରବ୍ୟ ବିହୁନେ ହୋଇ ଦୂର ॥
ପୁଣି ହିଁ କେବେ ମନୋରଥ । ଦ୍ରବ୍ୟ ସ୍ନେହରେ ଉପଗତ ॥
ପୁଣି କେବେହେଁ ଦ୍ରବ୍ୟ ପାଇ । ମତି ତାହାର ଦୃଷ୍ଟ ହୋଇ ॥
ତେଣୁ ବେହାର ଆଦି ଯେତେ । ଇଚ୍ଛଇ କଳତ୍ର ସହିତେ ॥
ଯେମନ୍ତ ଚିତ୍ତବୃତ୍ତି ସଙ୍ଗ । ବଢ଼ଇ ବଇରାନୁବନ୍ଧ ॥
ଏଣୁ ସେ ପୂର୍ବ ବାସନାରେ । ବହଇ ବିବିଧ ଶରୀରେ ॥
ତେଣୁ ସଂସାର ପଥେ ନର । ନାନା କ୍ଳେଶ ବିଧି ଶରୀର ॥
ପୁଣି ଜନ୍ମଇ ନାଶ ଯାଇ । ନାନା ଆପଦକୁ ଭୁଞ୍ଜଇ ॥
ନାନା ଶୋକ ମୋହରେ ତାର । କଦର୍ଥୀ ହୁଅଇ ଶରୀର ॥
ଅସାଧୁ ନର ବନ୍ଦି ହୋଇ । ସେ ପଥ ପାର ନ ଦେଖଇ ॥
ଯେ ପଥେ ଉପସମଶୀଳ । ସୁ ସାଧୁ ପଶନ୍ତି ନିଷ୍କଳ ॥
ଯୋଗରେ ଅନୁଶୀଳ କରେ । ଅର୍ପଇ ରାଜ ଋଷି ବରେ ॥
ମାୟାକୁ ପରିହର କରି । ଯେ ପଥ ବଇଭୋଗ କରି ॥
ଆପଦୁ ନରକୁଁ ବିମୁକ୍ତ । ଯାହାକୁ ଗାୟନ ଜଗତ ॥
ଋଷଭ ରାଜ ଋଷିଙ୍କର । ପଥ ଯେ ଅତି ଅଗୋଚର ॥
ପ୍ରାଣୀର ମନୋରଥ ପଥ । ଅଗମ୍ୟ ଅଟଇ ଜଗତ ॥
ଗରୁଡ଼ ବେଗ୍ର ଗତି ଚାହିଁ । ପକ୍ଷିକା ଗତି ତହିଁ କାହିଁ ॥
ଦୁସ୍ତର ରାଜ୍ୟ ସୁତ ଧନ । ଏଥୁ ଯେ ଦୂର କରି ମନ ॥
ଯେ ଯେହା ତୁଚ୍ଛ ପ୍ରାୟେତେଜେ। ଉତ୍ତମ ଶ୍ଳୋକ ପଥ ଭଜେ ॥
ତାହାଙ୍କ ଯେ ରାଜ୍ୟ ସମ୍ପଦ । ତ୍ରିଦଶ ଲୋକଙ୍କୁ ଦୁର୍ଲ୍ଲଭ ॥
ଏହା ନ ଇଚ୍ଛେ ସାଧୁ ଚିତ୍ତେ । ମହତ ପୂଜ୍ୟ ପାଦ ଗତେ ॥
ସେବାନୁରତ ମନ ହୋଇ । ଭଜନ୍ତି ମନକୁ ବୁଡ଼ାଇ ॥
ଯେ ଯଜ୍ଞ ଧର୍ମ ତପମୟ । ବିଧି ନିର୍ଗୁଣ ଯୋଗ ଦେହ ॥
ସାଂଖ୍ୟ ଯୋଗରେ ଯେଉଁ ସାର । ଯେ ପ୍ରଭୁ ପ୍ରକୃତି ଈଶ୍ୱର ॥
ହେ ନାରାୟଣ କୃଷ୍ଣ ହରି । ଯେମନ୍ତେ ନାମ ମୁଖେ ଧରି ॥
ଛାଡ଼ିଲା ମୃଗ କଳେବର । କି ଅବା ତାର ପଟାନ୍ତର ॥
ଏ ଭାଗବତ ସୁସଂଗୀତ । ଶୁଦ୍ଧ ଗୁଣ କର୍ମ ଭରତ ॥
ଏହା ଅନୁସରିତ ମାନ । ଶୁଣଇ ବୋଲଇ ଯେସନ ॥
ତାହାଙ୍କ ଅଦଭୁତ କର୍ମ । ବିଶୁଦ୍ଧ ଯେତେ ଆଚରଣ ॥
ପ୍ରାଣୀ ମନରୁ ପାପହର । ପରମ ମଙ୍ଗଳ ମନ୍ଦିର ॥
ଶ୍ରଦ୍ଧାରେ ଶୁଣନ୍ତି ଯେ ନରେ । ହରଷେ କହନ୍ତି ସୁସ୍ୱରେ ॥
ଚଞ୍ଚଳ ଚିତ୍ତ ସ୍ଥିର କରି । ଯେ ଅବା ବଦନେ ଉଚ୍ଚାରି ॥
ବିଷୟ ତାପେ ବୁଡ଼ିଥାଇ । ଭକ୍ତି ଭେଳାରେ ସେ ତରଇ॥
ସର୍ବ ପୁରୁଷାର୍ଥକୁ ପାଇ । ଯାର ପ୍ରସାଦୁଁ ମୋକ୍ଷ ହୋଇ ॥
ଶୁଣ କହିବା ନୃପବର । ଯେ ଯଦୁବଂଶର ଠାକୁର ॥
ଯାହାର ଭୃତ୍ୟକୁ ରାଜନ । ସେ ଯେ ଅନାଦି ଭଗବାନ ॥
ନାନା ଅବତାରକୁ ବହି । ସଂସାର ପ୍ରାଣୀଙ୍କି ତାରଇ ॥
ଭକ୍ତିରେ ଯେ ତାକୁ ଭଜଇ । ସେ ପ୍ରଭୁ ମୋକ୍ଷ ତାକୁ ଦେଇ॥
ଯେ ନିତ୍ୟ ଆନନ୍ଦ ଶରୀର । ଯାହା ତୃଷ୍ଣା ଆଦିରୁ ଦୂର ॥
ପରମ କଲ୍ୟାଣ କାରଣ । ଲୋକରେ ଦୟା ପରାୟଣ ॥
ସେ ଯେ ଋଷଭ ଦେବଙ୍କର । ତାହାକୁ ମୋର ନମସ୍କାର ॥
କହଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ସେ ପ୍ରଭୁ ଋଷଭ ଚରଣେ । ମନ ମୋ ରହୁ ଅନୁକ୍ଷଣେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଋଷଭ ଚରିତେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଭରତ ମହାଭାଗବତ । ଋଷଭ ହୋଇ ସଚିନ୍ତିତ ॥
ତାହାଙ୍କ ଆଜ୍ଞା ଶିରେ ଘେନି । ଆନନ୍ଦେ ପାଳନ୍ତି ଅବନୀ ॥
ବିଶ୍ୱରୂପାର କନ୍ୟା ସେହି । ବେଦ ବିହିତେ ବିଭା ହୋଇ॥
ପଞ୍ଚ କୁମର ତାର ଠାରେ । ହୋଇଲା ଅତି ମନୋହରେ ॥
ଧୂମକେତୁ ଯେ ସୁଦର୍ଶନ । ସୁମତି ହ୍ରସ୍ୱ ଭୃତ୍ୟ ନାମ ॥
ଅପରେ ଅଜନାଭ ନାମ । ହୋଇଲେ ଅତି ଅନୁପମ ॥
ଏମନ୍ତେ ଶୁଣ ପରୀକ୍ଷିତ । ବିଷ୍ଣୁ ଭଗତ ସେ ଭରତ ॥
ବେଦ ପ୍ରମାଣେ ପ୍ରଜାଜନ । ସ୍ୱଚ୍ଛନ୍ଦେ କରନ୍ତି ପାଳନ ॥
ତାହାର କର୍ମ ବିନୁ ଆର । ପ୍ରଜା ନ କରନ୍ତି ଆଚାର ॥
ଯେସନେ ପୁଣ୍ୟ ମାସ ଆଦି । ଚାତୁର୍ମାସ୍ୟା ଯଜ୍ଞ ପ୍ରସିଦ୍ଧି ॥
ଯେ ଅଗ୍ନି ହୋତ୍ର ପଶୁ ସୋମ । ଏ ଆଦି ଯେତେ ଯଜ୍ଞମାନ ॥
ପ୍ରକୃତି ବିକୃତିରେ କରି । କରନ୍ତି ସେ ନୃପକେଶରୀ ॥
ଯଜ୍ଞେ ସକଳ ଦେବ ତୋଷି । ଯେ ଯାହା ଭାବେ ଦେବଋଷି॥
ନାନା ପ୍ରକାରେ ସେ ରାଜନ । ସୁଦୃଢ଼େ ଭଜି ଭଗବାନ ॥
ସର୍ବ ଦେବତା ମୂଳ ସେହି । ଯହିଁରେ ପ୍ରଭୁ ଭାବଗ୍ରାହୀ ॥
ଅଖିଳ ଦେବଙ୍କର ପର । ସକଳ ବ୍ରହ୍ମାଣ୍ଡ ଈଶ୍ୱର ॥
ତାହାଙ୍କ ଚରଣାରବିନ୍ଦେ । ମନ ନିବେଶି ଅପ୍ରମାଦେ ॥

ସକଳ ଯଜ୍ଞ ଅବସାନେ । ଦେବେ ସନ୍ତୋଷ ହେଲେ ମନେ
ପରମ କଲ୍ୟାଣକୁ କରି । ହରଷେ ଗଲେ ଯେଝାପୁରୀ ॥
ସୁକର୍ମ ପ୍ରସାଦୁଁ ରାଜାର । ନିର୍ମଳ ହେଲା କଳେବର ॥
ସତ୍ତ୍ୱ ଗୁଣରେ ନୃପମଣି । ଏମନ୍ତେ ଚିନ୍ତି ଚକ୍ରପାଣି ॥
ଆକାଶ ପ୍ରାୟେ ଯେ ଶରୀର । ଧର୍ମ ନିର୍ମଳ ସତ୍ୟସାର ॥
ପରମବ୍ରହ୍ମ ବାସୁଦେବ । ଅନାଦି ଯୋଗେ ସେ ମାଧବ ॥
ନାନା ଲକ୍ଷଣେ ବିରାଜିତ । ତାହାର ଭୁଜ ଅଦ୍ଭୂତ ॥
ଶ୍ରୀବତ୍ସ କଉସ୍ତୁଭ ମଣି । ଗଦା କମଳ ଚକ୍ରପାଣି ॥
ଅତି ଭକତି ନାରାୟଣେ । ହୋଇଲା ଅନୁ ଦିନେ ଦିନେ ॥
ଶୁଣ କହିବା ହେ ରାଜନ । ଯେମନ୍ତେ ଗଲା କେତେଦିନ ॥
ଶଙ୍ଖ ଶୋଭିତ ବାମ କରେ । ବନମାଳ ଏ ଶୋଭେ ଉରେ ॥
ଏ ଆଦି ଯେତେ ନାନା ଚିହ୍ନେ । ଚିନ୍ତା କରିଣ ସେ ରାଜନେ ॥
ସକଳ କର୍ମ ଦୂର କଲେ । ପୁତ୍ରଙ୍କୁ ଡାକି ସେ ନିଶ୍ଚଳେ ॥
ନାନା ସମ୍ପଦ ଯଥୋଚିତେ । ବିଭାଗ କର ଯେଝା ମତେ ॥
ଦେଇ ସେ ଋଷଭ କୁମର । ଆପଣେ ହୋଇଲେ ବାହାର ॥
ପୁଲହ ଋଷିଙ୍କ ଆଶ୍ରମ । ତହିଁକି କଲେ ସେ ଗମନ ॥
ଅଦ୍ୟାପି ହରିର ଗମନ । ଯହିଁ ଅଛନ୍ତି କରି ସ୍ନାନ ॥
ତହିଁର ନଦୀ ଶୁଦ୍ଧ ଜଳ । ସୁଖେ ବଞ୍ଚିତ ସେ ସକଳ ॥
ତାହାର ମହାନଦୀ ନାମ । ସ୍ପରଶେ ପାପ ବିନାଶନ ॥
ପୁଲହ ଆଶ୍ରମ ଗମନେ । ବିବିଧ ବିଟପୀ ଗହନେ ॥
ନାନା କୁସୁମେ ପରିମଳ । ନିର୍ମଳ ସୁଶୀତଳ ଜଳ ॥
ମନ୍ଦ ପବନ ଅବିରତେ । ତହିଁ ଭରତ ଶୁଦ୍ଧ ଚିତ୍ତେ ॥
କୋମଳ ତୁଳସୀର ଦଳ । ସୁସ୍ୱାଦୁ ଭୋଗ ପରିମଳ ॥
ଅନ୍ୟ ଯେ ବନ ଉପହାର । ନିବେଦି ଗୋବିନ୍ଦ ପୟର ॥
ଇନ୍ଦ୍ରିୟ ଗଣଙ୍କୁ ନିବାରି । ବିଷୟ ରସ ଦୂରକରି ॥
ନିତ୍ୟେ ଗୋବିନ୍ଦ ଆରାଧନ । କରଇ ହରଷିତ ମନ ॥
ମହାପୁରୁଷ ସେବା ବିନୁ । ନିମିଷେ ମୋହେ ଅନ୍ୟ ମନୁ ॥
ଜଗତ ପ୍ରଭୁ ନାରାୟଣେ । ଶୋଭା ବଢ଼ଇ ଅନୁକ୍ଷଣେ ॥
କୈବଲ୍ୟ ଦାତା ନାମ ଧରି । ହୃଦୟ ଗଦଗଦ କରି ॥
ଆସ୍ୱାଦ କରି ଅବିରତେ । ପରମ ଭକ୍ତି ଯୋଗ ମତେ ॥
ଗଭୀର ହୃଦୟ ପଦ୍ମରେ । ଚିତ୍ତ ବୁଡ଼ାଇ ନିରନ୍ତରେ ॥
ନିତ୍ୟେ ଯେ ପ୍ରଭୁ ସେବାତାର । ସ୍ମରଣ କଲେ ନୃପବର ॥
ରୋମ ପୁଲକେ ଅଶ୍ରୁଜାତ । ହରଷ ହୋଇ ଅବିରତ ॥
ଏମନ୍ତେ ପ୍ରଭୁ ଯେ ଗୋବିନ୍ଦ । ଅରୁଣ ଚରଣାରବିନ୍ଦ ॥
ସୂର୍ଯ୍ୟ ମଣ୍ଡଳେ ସେ ରାଜନ । ବ୍ରହ୍ମ ରୂପକୁ କରି ଧ୍ୟାନ ॥
ଏଥୁ ଅନ୍ତରେ ସେ ରାଜନ । ଅଜିନ କରି ପରିଧାନ ॥
ଶିରେ ନିର୍ମଳ ଜଟାଭାର । ଶରୀର ଦିଶଇ ସୁନ୍ଦର ॥
ଏମନ୍ତ ବାକ୍ୟ ଅନୁମାନ । ବୋଲଇ ହରଷିତ ମନ ॥
ରାଜା ପରମ ବ୍ରହ୍ମ ରୂପ । ହରିର ପାଦେ ମନ କଲ୍ପ ॥
ଭରତ କର୍ମ ଅନୁସରି । ସୁଜନ ଚିନ୍ତ ହୃଦେ ଧରି ॥
ସେ ପ୍ରଭୁ ଚରଣାରବିନ୍ଦେ । ମନ ନିବେଶି ଅପ୍ରମାଦେ ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ଭଜନର ଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭରତ ତପସ୍ୟାଗମନେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ସାବଧାନେ । ମହାନଦୀରେ ଏକ ଦିନେ ॥
ସ୍ନାନ ଆହ୍ନିକ କ୍ରିୟା ସାରି । ଭରତ ଗୋବିନ୍ଦ ସୁମରି ॥
ମୁହୂର୍ତ୍ତେ ସ୍ଥିର ଜଳେ ରହି । ଏକାନ୍ତେ ବ୍ରହ୍ମକୁ ଭଜଇ ॥
ସେ କ୍ଷଣେ ଶୁଣ ମହୀପାଳ । ହରିଣୀ ହୋଇ ତୃଷାକୁଳ ॥
ମିଳିଲା ଜଳାଶୟ ତୀରେ । ଜଳ ପିଅଇ ସେ ସଧୀରେ ॥
ଏମନ୍ତ ସମୟେ ରାଜନ । ମୃଗେନ୍ଦ୍ର ଭୟଙ୍କର ସ୍ୱନ ॥
ଉଠିଲା ଅତି ଦୂର ବନେ । ପ୍ରାଣ ମୂର୍ଚ୍ଛିତ ହୋଇ ସ୍ୱନେ ॥
ସେ ମୃଗ ବଧୂ ତାହା ଶୁଣି । ଅତି ଚକିତେ ନୃପମଣି ॥
ଚାରି ଦିଗରେ ସେ ନୟନ । ବୁଲାଇ ଅତି ଘନ ଘନ ॥
ନିକଟେ ସିଂହ ପ୍ରାୟେ ମଣି । ଅତି କାତରେ ସେ ହରିଣୀ ॥
ଜଳ ପାନରେ ତୃଷା ତାର । ପୂର୍ଣ୍ଣ ହୋଇଲା ନୃପବର ॥
ଜଳୁଁ ଉଠିଣ ଧାଡିକାରେ । ଡେଇଁଲା ମରଣ କାତରେ ॥
ସ୍ୱଭାବେ ଗର୍ଭ ହୋଇଥିଲା । ସେ ଗର୍ଭ ଜଳରେ ପଡ଼ିଲା ॥
ଗର୍ଭ ନିପାତେ ଖେଦମତି । ପ୍ରାଣ ଛାଡ଼ିଲା ମୃଗ ସ୍ତ୍ରୀ ॥
ନଦୀରେ ଚାହିଁ ମୃଗବାଳ । ସେ ଯେ ଭରତ ମହୀପାଳ ॥
ମାତାର ମୃତ୍ୟୁ ତାର ଦେଖି । ଦୟାରେ ଅଶ୍ରୁ ପୂର୍ଣ୍ଣ ଆଖି ॥
ମୃଗ ନନ୍ଦନ ଘେନି କୋଳେ । ଆଶ୍ରମେ ମିଳିଲେ ସତ୍ୱରେ ॥
ସେ ମୃଗ ନନ୍ଦନର ତହିଁ । ଅତ୍ୟନ୍ତ ସ୍ନେହକୁ ସେ ବହି ॥
ହସ୍ତେ କୋମଳ ଦୂର୍ବାଙ୍କୁର । ଲୋଡ଼ି ଆଣନ୍ତି ନୃପବର ॥

ଯହିଁ ସେ କରେ ଅଭିଳାଷେ । ତାହା ଦେଖିଣ ମନତୋଷେ ॥
ତା ସେବା ନିରତେ କରଇ । ମାୟାରେ ମତି ଭ୍ରମ ହୋଇ ॥
ନିୟମ ସଦଙ୍ଖାନ ଯେତେ । ବିସ୍ମର ହେଲା ନୃପଚିତ୍ତେ ॥
କେତେ ହେଁ ଦିନର ଅନ୍ତରେ । ପ୍ରଭୁର ସେବା କଲା ଦୂରେ ॥
ଦେଖ ଏହାର ମୂଢ଼ପଣ । ମୃଗ ବାଳକେ ଦୃଢ଼ମନ ॥
ସକଳ କର୍ମ ଦୂର କଲା । ମୃଗ ବାଳକେ ମନ ଦେଲା ॥
ଜଗତ ମାତା ପିତା ହରି । ତାର ଚରଣ ଚିତ୍ତେ ଧରି ॥
ଏ ଭାବେ ଥାଇ ନୃପବର । ଯେ ସର୍ବ କର୍ମ କଲା ଦୂର ॥
ଦାରା ତନୟ ଆଦି ଯେତେ । ସକଳ ଦୂର କରି ଚିତ୍ତେ ॥
ଅସାଧୁ ସଙ୍ଗ ଯେ କାରଣ । ଯେହୋରେ ହୋଇଲା ରାଜନ॥
ଆସନ ଶୟନ ଗମନେ । ସୁସ୍ଥ ନ ମଣେ ଜଳପାନେ ॥
ମୃଗ ବାଳକେ ମନ ତାର । ନିମିଷେ ନ କରଇ ଦୂର ॥
କାଷ ପଲାସ ଆଣିମାରେ । ଯେବେ ସେ ଯାଇ ବନଘୋରେ
ମୃଗ ବାଳକ ଘେନି ସଙ୍ଗେ । ପଥେ ଚଳଇ ନାନା ରଙ୍ଗେ ॥
ବାଳକ ଚଳି ନ ପାରଇ । ଯେମନ୍ତ ମନେ ବିଚାରଇ ॥
ଅତ୍ୟନ୍ତ ସ୍ନେହ ବଶ ହୋଇ । କନ୍ଧେ ତାହାକୁ ସେ ବହଇ ॥
ହୃଦେ ଆରୋପଇ ହରଷେ । ବାହୁରେ ଭିଡ଼େ ସ୍ନେହ ବଶେ
ସ୍ନାନ ଭୋଜନ ବେଳେ ତାର । କ୍ଷଣେ ସେ ନୋହଇ ଅନ୍ତର ॥
ସେ ଅବସ୍ଥାନେ ନୃପବର । ଦେଖିଣ ମୃଗର କୁମର ॥
ଚଞ୍ଚଳ ଚିତ୍ତ ସ୍ଥିର କରେ । ଆଶିଷ ଦିଅଇ ତାହାରେ ॥
ହେ ବତ୍ସ ତୋହର କଲ୍ୟାଣ । ସର୍ବତ୍ରେ କରି ନାରାୟଣ ॥
ଯେବେ ନିମିଷେ ନ ଦେଖଇ । ଶୋକ ସାଗରେ ସେ ବୁଡ଼ଇ॥
କୃପଣ ଦ୍ରବ୍ୟକୁ ଯେସନ । ଚଉର୍ଯ୍ୟେ କରି ନେଇ ଆନ ॥
ତେମନ୍ତେ ପ୍ରାୟେ ମହୀପାଳ । କ୍ଷଣେ ନ ଦେଖି ମୃଗବାଳ ॥
ଭ୍ରମେ ବୋଲଇ ବାକ୍ୟଆନ । ମଲାକି ମୃଗର ନନ୍ଦନ ॥
ବିହ୍ୱଳ ହୃଦେ ସେ କାତର । ଲୋଡ଼ଇ ମୃଗର କୁମର ॥
କି କର୍ମ କଲି ମୁଁ କିରାତ । କେଣେ ମୋ ଗଲା ମୃଗସୁତ॥
ମୃଗ ବାଳକ ସୁକଲ୍ୟାଣ । ଚରୁକି ଥିବ ଉପବନ ॥
ପ୍ରଭୁକି ରଖିଥିବେ ତାରେ । ଦେଖିବି ନୟନ ଗୋଚରେ ॥
କେଣେ ସେ ମୃଗବାଳ ମୋର । ଭକ୍ଷିଲା କିବା ବ୍ୟାଘ୍ର ନର ॥
ରବିର ଅସ୍ତକାଳ ହୋଇ । ଏବେ ହେଁ ବାଳମୃଗ ନାହିଁ ॥
ଶୋକ ଆକୁଳ ହୋଇ ମୁହିଁ । ସେ ଆସି ସୁଖକୁ ନ ଦେଇ ॥
ସେ ଯେ ମୃଗରାଜ କୁମର । ମନୋଜ୍ଞ ଗମନ ତାହାର ॥
ତେଣେ ଆଶ୍ରମ ଲୋକଙ୍କର । ଦୁଃଖ ଖଣ୍ଡଇ ନିରନ୍ତର ॥
ମିଥ୍ୟାରେ ଚକ୍ଷୁ ବୁଜି ମୁହିଁ । କ୍ଷଣ ମାତ୍ରକେ ଯେବେ ରହି ॥
ଚକିତ ପ୍ରାୟେ ସେ ହୋଅଇ । ମୋର ଅଗ୍ରତେ ସେ ଲୋଟଇ ॥
ଋଷିକୁମରଙ୍କର ସଙ୍ଗେ । ଖେଳୁ ଯେ ଥାଇ ନାନାରଙ୍ଗେ ॥
କୋମଳ ତୃଣାଙ୍କୁର ମାନ । ବାଳକେ ଦିଅନ୍ତି ବଦନେ ॥
ଅତ୍ୟନ୍ତ ଦୁଃଖ ଦୂରକଲା । ମୃଗ ବାଳକ କେଣେ ଗଲା ॥
ସେ ମୋର କୃଷ୍ଣସାର ବାଳ । ମୃଦୁଳ ତାର ପାଦତଳ ॥
କୋମଳ ଖୁର ପୁଟପନ୍ତି । ସେ ମୋର ଦ୍ରବିଣ ସମ୍ପତି ॥
ଅତ୍ୟନ୍ତ ସୁଖକୁ ସେ ଦେଇ । ତା ବିନୁ ମୋର କେହିନାହିଁ ॥
ଏ ଯେ ଆଶ୍ରମ ମୁନିଗଣ । କରନ୍ତି ନାନା ଶୁଭକର୍ମ ॥
ହରଷେ ସେ ଯେ ମୁନିଗଣ । କରନ୍ତି ତାହାରେ କଲ୍ୟାଣ ॥
ମୃଗେନ୍ଦ୍ର ଭୟରୁ ତାହାର । ଶରୀର ଛାଡ଼ିଲା ମାତାର ॥
ତେଣୁ ମୁଁ ଲଭିଲି ତାହାରେ । ଯେବେ ସେ ଗଲା କେତେଦୂରେ ॥
ଏମନ୍ତେ ଶୁଣ ମହୀପାଳ । କ୍ଷଣେ ନ ଦେଖି ମୃଗବାଳ ॥
ବ୍ୟର୍ଥ କର୍ମରେ ସେ କାତର । ସ୍ୱକର୍ମ ତେଜି ନୃପବର ॥
ପୂର୍ବର ହୀନ କର୍ମ ତାର । ଶୁଭ କର୍ମକୁ କଲା ଦୂର ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନାଦି ନାଥ ନାରାୟଣ ॥
ତାର ଚରଣ ଦୂର କରି । ମୃଗ ବାଳକ ମନ ଧରି ॥
ମୋକ୍ଷ ବନ୍ଧକୁ ପ୍ରତିବନ୍ଧ । ସେ ମୃଗ ବାଳ ପଶୁ ମନ୍ଦ ॥
ତହିଁ ଦୁସ୍ତର ଭାବ କଲା । ଯୋଗ ନାଶନ ନ ଜାଣିଲା ॥
ମୃଗ ବାଳକ ପୋଷଣ । ଯେଣେ ହରଇ ସେହୁ ଦିନ ॥
ଏମନ୍ତେ କେତେ ଦିନ ଗଲା । ଆୟୁଷ ଶେଷ ତା ହୋଇଲା ॥
ଏମନ୍ତେ ଶୁଣ ହେ ରାଜନ । କାଳର ହୋଇଲା ଅଧୀନ ॥
ସଙ୍ଗେ ନ ଦେଖି ମୃଗବାଳ । ଶୋକରେ ହୋଇଲା ବ୍ୟାକୁଳ ॥
ପୁତ୍ରର ପ୍ରାୟେ ସ୍ନେହ ଭରେ । ମନ ବଳିଲା ତାର ଠାରେ ॥
ତକ୍ଷଣେ ପ୍ରାଣକୁ ଛାଡ଼ିଲା । ମୃଗ ଶରୀରକୁ ଲଭିଲା ॥
ପୂର୍ବ ଜନ୍ମର କଥା ତାର । ସ୍ମରଣ ହେଲା ନୃପବର ॥
ମୃଗ ତନୁରେ ଯେ କାରଣ । ମନେ ଜାଣିଲା ସେ ରାଜନ ॥
ପ୍ରଭୁର ସେବା ଭ୍ରଷ୍ଟ ହୋଇ । ମନେ ବହୁତ ତାପ ପାଇ ॥
ଅତ୍ୟନ୍ତ ଶୋକ କରି ମନେ । ବୋଲଇ ଲୋତକ ନୟନେ ॥
ଭ୍ରଷ୍ଟ ହୋଇଲି ମୁଁ ପାମର । ପ୍ରଭୁଙ୍କ ସେବା କଲି ଦୂର ॥
ସମସ୍ତ ତପକୁ ଛାଡ଼ିଣ । ବିବିଧ ଯଜ୍ଞ ଶୁଦ୍ଧ କର୍ମ ॥
ନାମ ସ୍ମରଣ ଉଚ୍ଚାରଣ । ନିରତେ କରେ ଆରାଧନ ॥
ସକଳ ଆତ୍ମା ଭଗବାନ । ତା ପାଦେ ଅର୍ପି ଥିଲି ମନ ॥
ଯେଣୁ ଏ ସକଳ ଛାଡ଼ିଲି । ମୃଗ ଶିଶୁରେ ମନ ଦେଲି ॥

ଏମନ୍ତେ ନିଶ୍ଚୟେ ବିଚାରି । ଚଞ୍ଚଳ ମନ ସ୍ଥିର କରି ॥
ତାହାର ମାତା ଯେ ହରିଣୀ । ତାହାକୁ ତେଜି ନୃପମଣି ॥
ପ୍ରଭୁର ଅତି ପ୍ରିୟ ସ୍ଥାନ । ସେ ତୀର୍ଥଶାଳ ଗ୍ରାମ ନାମ ॥
ପରମ ସାଧୁ ମୁନି ଗଣେ । ଅଛନ୍ତି ତହିଁ ଅନୁକ୍ଷଣେ ॥
ତହିଁକି ଶୀଘ୍ରେ ଚଳିଯାଇ । ରହିଲା ମୃତ୍ୟୁ ବାଟ ଚାହିଁ ॥
କୁସଙ୍ଗ ଦୋଷକୁ ସେ ଡରି । ମନେ ଚିନ୍ତଇ ନରହରି ॥
ନୀରସ ଦଳକୁ ଭକ୍ଷଇ । ମୃଗ ଶରୀର ଯିବା ପାଇଁ ॥
ଏମନ୍ତେ କରଇ ବିଚାର । କେମନ୍ତେ ତେଜିବି ଶରୀର ॥
ଏମନ୍ତେ ଶୁଣ ହେ ରାଜନ । କେତେହେଁ ଗଲା ତହିଁ ଦିନ ॥
ସେ ତୀର୍ଥ ଜଳରେ ତାହାର । ତେଜିଲା ମୃଗ କଳେବର ॥
ସେ ପ୍ରଭୁ ବ୍ରହ୍ମାଣ୍ଡ କାରଣ । ବ୍ରହ୍ମା ଚିନ୍ତଇ ଯା ଚରଣ ॥
ସେ ଚକ୍ରଧର ନାରାୟଣ । ପାଦ ପଙ୍କଜରେ ଶରଣ ॥
କହଇ ଦାସ ଜଗନ୍ନାଥ । ସାଧୁଙ୍କ ହିତେ ଭାଗବତ ॥
ପଞ୍ଚମ ସ୍କନ୍ଧେ ହରିବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ*
*ଭରତ ଚରିତେ ନାମ ଅଷ୍ଟମୋଽଧ୍ୟାୟଃ ।*

## ନବମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ହେ ରାଜା ପରୀକ୍ଷିତ । ଏଥୁ ଅନ୍ତରେ ସେ ଭରତ ॥
ସନ୍ଧ୍ୟାହିଁ ତପ ଶମ ଦମ । ତିତୀକ୍ଷା ଆଦି ଯେ ନିୟମ ॥
ଜ୍ଞାନୀଙ୍କ ମଧ୍ୟେ ଶ୍ରେଷ୍ଠ ବର । ଦ୍ୱିଜ ଅଙ୍ଗିରସ ପ୍ରବର ॥
ତାହାଙ୍କ ପୁତ୍ର ଭାବ ହୋଇ । ଜନ୍ମିଲା ବିପ୍ର ଦେହ ବହି ॥
ଅପରେ ତାର ସହୋଦର । ଉତ୍ତମ ସାଧୁ ଶୀଳାଚାର ॥
ସେ ସାଧୁ ସଙ୍ଗରୁ ରାଜନ । ତାହାର ହେଲା ଶୁଦ୍ଧଜ୍ଞାନ ॥
ଯେଣୁ କର୍ମ ବନ୍ଧ ଖଣ୍ଡନ । ଶ୍ରୀକୃଷ୍ଣ ନାମରେ ଶରଣ ॥
ତାହା ଶୁଣଇ ଅବିରତେ । ପାଦାରବିନ୍ଦ ଧରି ଚିତ୍ତେ ॥
ପ୍ରଭୁର କୃପାରୁ ରାଜନ । ପୂର୍ବ ଜନ୍ମର କଥାମାନ ॥
ସ୍ମରଣ ହୋଅଇ ତାହାରେ । ଅସାଧୁ ସଙ୍ଗକୁ ସେ ଡରେ ॥
ଉନ୍ମତ୍ତ ଜଡ଼ ରୂପ ଧରେ । ହୋଇ ସେ ବ୍ରାହ୍ମଣ କୁମରେ ॥
ଅଶେଷ ଜ୍ଞାନ ଶ୍ରେଷ୍ଠ ହୋଇ । କପଟେ ଲୋକକୁ ଦେଖାଇ ॥
ତେବେ ହେ ପୁତ୍ରଠାରେ ତାର । ସ୍ନେହ ହୋଇଲା ନୃପବର ॥
ସୁସାଧୁ ଶୀଳ ନୃପବର । ସଂସ୍କାର କଲା ସେ କୁମର ॥
ବେଦ ଉଚିତ କର୍ମ ମତେ । ଦଶ କର୍ମକୁ ଯଥୋଚିତେ ॥
କହିବା ଶୁଣ ନୃପବର । ସେ ଯେ ବ୍ରାହ୍ମଣର କୁମର ॥
ଶଉଚ ଆଚମନ ଆଦି । ବ୍ରାହ୍ମଣ କର୍ମ ଯେ ପ୍ରସିଦ୍ଧି ॥
ଗୁରୁର ଉପଦେଶ ବିନେ । ଆତ୍ମା ଜାଣିଲା ଅନୁମାନେ ॥
ପୁତ୍ରର ଶୁଦ୍ଧମନ ଜାଣି । ସେ ଯେ ବ୍ରାହ୍ମଣ ଶିରୋମଣି ॥
ଅତ୍ୟନ୍ତ ସ୍ନେହ ଭାବ ବହି । ମନ ଅର୍ପିଲା ତାର ତହିଁ ॥
ଓଁକାର ଆଦି ବେଦସାର । ଗାୟତ୍ରୀ ପ୍ରଣବ ଅକ୍ଷର ॥
ସାବିତ୍ରୀ ମୂଳମନ୍ତ୍ର ସାର । ସକଳ ଦେଲେ ବିପ୍ରବର ॥
ଯଜନ ଆଦି ଷଡ଼କର୍ମ । ଏ ଯେ ବ୍ରାହ୍ମଣ ନିଜଧର୍ମ ॥
ପୁରୁଷସୁକ୍ତ ଆଦି ଯେତେ । ସର୍ବ କହିଲେ ଯଥୋଚିତେ ॥
ପୁତ୍ର ସ୍ନେହରେ ବିପ୍ରବର । ଶିକ୍ଷା କରନ୍ତି ନିରନ୍ତର ॥
ଏମନ୍ତ ଶୁଣ ନରନାଥ । ସମ୍ପୂର୍ଣ୍ଣ ହୋଇ ମନୋରଥ ॥
ଆୟୁଷ ଅନ୍ତେ ସେ ବ୍ରାହ୍ମଣ । କାଳରେ ହୋଇଲା ଅଧୀନ ॥
ଏଥୁ ଅନ୍ତରେ ଦ୍ୱିଜ ସତୀ । ସେ ଯେ ଆତ୍ମଜ ଜଡ଼ମତି ॥
ତାହାର ଜ୍ୟେଷ୍ଠ ସହୋଦରେ । ସମର୍ପି ଦେଲା ସେ କୁମରେ ॥
ଆପଣେ ପତିର ସଙ୍ଗତେ । ଚଳିଲେ ହରଷିତ ଚିତ୍ତେ ॥
ଏମନ୍ତେ ପିତାର ଅନ୍ତରେ । ସେ ଯେ ବ୍ରାହ୍ମଣର କୁମରେ ॥
ଜଡ଼ ଯେ ତାହାଙ୍କ ଭ୍ରାତର । ତାହାକୁ କଲେ ହତାଦର ॥
ତାହାର ପ୍ରଭାବ ନ ଜାଣି । ଜଡ଼ର ପ୍ରାୟେ ତାକୁ ମଣି ॥
ଜଡ଼ ବଧିର ଯେ ଉନ୍ମତ୍ତ । ଏମନ୍ତ ରୂପ ସେ ଭରତ ॥
ମୃଗ ଯେ ନର ପଶୁ ଯେତେ । ତାକୁ ଦେଖଇ ଏକମତେ ॥
ପର ଅଧୀନ ପ୍ରାୟ ହୋଇ । ଲୋକର କାର୍ଯ୍ୟ ସେ କରଇ ॥
ଲୋକ ଶ୍ରଦ୍ଧାରେ ଯାହା ଦେଇ । ପରମ ତୁଷ୍ଟେ ତା ଭକ୍ଷଇ ॥
ଇନ୍ଦ୍ରିୟ ପ୍ରୀତି ନିମିତ୍ତରେ । କେବେ ହେଁ ନକରେ ଆହାରେ
ନିବୃତ୍ତ ହୋଇ ସର୍ବଠାରେ । ପରମ ଆନନ୍ଦ ଶରୀରେ ॥
ସୁଖ ଦୁଃଖରେ ସମ ତାର । ଦୂରକୁ କରି ଅହଙ୍କାର ॥
ଗ୍ରୀଷ୍ମ ବରଷା ଶୀତ ବାତ । ସକଳ ସହି ସେ ଭରତ ॥
ଦିଶଇ ମହା ମଣି ସମ । ଗଭୀର ଅତି ସ୍ଥୁଳ ଦୀନ ॥
ଅତ୍ୟନ୍ତ ବ୍ରହ୍ମ ତେଜ ହୋଇ । ଜଡ଼ର ପ୍ରାୟେ ସେ ଭ୍ରମଇ ॥
ଆଧାର ଆଦି ସର୍ବଠାରେ । ସେ ଥାଇ ନିଗ୍ରହ ବେଳାରେ ॥
ତଥାପି ଶୁଣ ହେ ରାଜନ । ତାହାର ନିଜ ଭ୍ରାତାଗଣ ॥
କୃଷି ରକ୍ଷଣ କାରଣରେ । ନିଯୁକ୍ତି କରନ୍ତି ତାହାରେ ॥
ଭ୍ରାତ ବଚନ ଅନୁମତେ । କୃଷି ରଖଇ ଯଥୋଚିତେ ॥

ମୃଗ ବରାହକୁ ନିବାରି । ଥାଇ ସେ ନିରତେ ଆବୋରି ॥
ଏମନ୍ତେ ଶୁଣ ସାବଧାନ । ବୃଷଳୀପତି ଯେ ରାଜନ ॥
ଅତ୍ୟନ୍ତ ପୁତ୍ର କାମୀ ହୋଇ । ଦେବୀଙ୍କି ମହାପଶୁ ସେହି ॥
ସେ ନର ପଶୁ ଯତ୍ନ କରି । ନିରତେ ରଖଇ ଆବୋରି ॥
ଯେମନ୍ତେ ଅଭିମନ୍ୟୁ ବଳା । ସେ ନରପଶୁ କେଣେ ଗଲା ॥
ତାହାର ପଥ ଅନୁସାରେ । ଧାଇଁଲେ ତାର ଅନୁଚରେ ॥
ନିଶି ଅନ୍ଧାର ଘୋର ତମ । ଖୋଜନ୍ତି ନାନା ଦିଗ ଗ୍ରାମ ॥
ପଶୁ ନପାଇ ଅନୁଚରେ । ନିରାଶ ହୋଇଲା ଅନ୍ତରେ ॥
ଗୃହକୁ କରନ୍ତି ପ୍ରୟାଣ । ଦେଖିଲେ ବ୍ରାହ୍ମଣ ନନ୍ଦନ ॥
ଯେଥୁ ଅନ୍ତରେ ନୃପମଣି । ଜଡ଼ର ପ୍ରଭାବ ନ ଜାଣି ॥
ବନ୍ଧନ କରି ତତକ୍ଷଣେ । ସ୍ୱାମୀର ହର୍ଷ ସମ୍ପାଦନେ ॥
ଚଣ୍ଡିକା ଗୃହେ ପ୍ରବେଶିଲେ । ସ୍ୱାମୀଙ୍କି ସମର୍ପଣ ଦେଲେ ॥
ସୁଗନ୍ଧ ଶୀତଳ ଜଳରେ । ସ୍ନାନ କରାଇଲେ ବିଧିରେ ॥
ଶୁଭ୍ର ନିର୍ମଳ ବାସ କଲେ । ନାନା ଭୂଷଣରେ ମଣ୍ଡିଲେ ॥
ବିବିଧ ଉପହାରମାନ । ତାହାକୁ କରାଇ ଭୋଜନ ॥
ସୁଗନ୍ଧ ଧୂପ ଦୀପ ଦେଇ । ମାଳାଏ କଣ୍ଠରେ ଲମ୍ବାଇ ॥
ମୃଦଙ୍ଗ ଶଙ୍ଖ ଘୋର ସ୍ୱନ । ଆନନ୍ଦେ କରନ୍ତି ଗାୟନ ॥
ଯେମନ୍ତେ ନାନା ଗୀତ ମତେ । ସ୍ଥାପିଲେ ଦେବୀର ଅଗ୍ରତେ ॥
ବୃଷଳୀପତି ଏ ଅନ୍ତରେ । ତୀକ୍ଷ୍ଣ ଖଡ଼୍‌ଗ ଧରି କରେ ॥
ତାହାର ରୁଧିରକୁ ନେଇ । ଦେବୀ ସନ୍ତୋଷ ହେବା ପାଇଁ
ଯେମନ୍ତେ ଶୁଣ ହେ ରାଜନ । ବୃଷଳୀ ହୋଇ ମତି ଭ୍ରମ ॥
ଧନ ସମ୍ପଦ ମଦେ କରି । ତମ ଗୁଣକୁ ଆଶ୍ରେ କରି ॥
ଈଶ୍ୱର ଅଂଶକୁ ଯେ ଧରେ । ହିଂସା କରନ୍ତି ସେ ତାହାରେ ॥
ଦାରୁଣ କର୍ମ ତାହାଙ୍କର । ପ୍ରତ୍ୟକ୍ଷ ସେ ବିପ୍ର କୁମର ॥
ବିଷ୍ଣୁର କଳାବନ୍ତ ହୋଇ । ତାହାକୁ କଦର୍ଥ୍ୟନ୍ତି ସେହି ॥
ସେ ସର୍ବଭୂତେ ସମଚିତ୍ତ । ବିଷ୍ଣୁ ଭଜଇ ଅବିରତ ॥
ତାହାକୁ ପଶୁରେ ବିଚାରି । ନିକଟ ହୋଇ ଖଡ୍‌ଗଧାରୀ ॥
ଯେଥୁ ଅନ୍ତେରେ ପରୀକ୍ଷିତ । ବ୍ରାହ୍ମଣ ତେଜ ଅପ୍ରମିତ ॥
ଜ୍ୱାଳା କରାଳ ଦୁଃଖ ସହି । ତେଣେ ସେ ଦଗ୍ଧଦେବୀ ଦେହୀ
ତକ୍ଷଣେ ଉଚ୍ଚାଟକୁ ପାଇ । ଉଠିଲା ଅତି ରୋଷ ବହି ॥
ସେ ଦେବୀ ଚଣ୍ଡୀ ଭଦ୍ର କାଳୀ । ଅତ୍ୟନ୍ତ କୋପେଣ ପ୍ରଜ୍ୱଳି ॥
ଭୃକୁଟୀ ଯୁଗ ବକ୍ରତାର । ବଦନ ଦିଶେ ଭୟଙ୍କର ॥
ଦନ୍ତ ଦିଶଇ ସେ କରାଳ । ଅରୁଣ ନୟନ ଯୁଗଳ ॥
ଅଟ୍ଟହାସ୍ୟରେ ଘୋର ସ୍ୱନ । ପୂର୍ଣ୍ଣ ହୋଇଲା ଦେବୀମନ ॥
ଧାଇଁଲେ ଅତି ଶୀଘ୍ରତରେ । ପାପିଷ୍ଠ ମାନଙ୍କ ଉପରେ ॥
ତାହାର ହସ୍ତୁ ଖଡ୍ଗ ଆଣି । ଶୁଣ ହେ ନୃପ ଶିରୋମଣି ॥
ଖଡ଼୍‌ଗ ଅତି ତୀକ୍ଷ୍ଣ ଧାର । ଛେଦିଲେ ତାହାଙ୍କର ଶିର ॥
ପରମ ସନ୍ତୋଷକୁ ପାଇଁ । ଆପଣାଗଣ ସଙ୍ଗ ଲଇ ॥
ରୁଧିର ସୁରା କରି ପାନ । ଭୋଳେ ହୋଇଲେ ମନ ଛନ୍ନ ॥
ଦେବୀର ତେଜେ ପାରୁଷଦ । ଆନନ୍ଦେ କରି ଗୀତ ନାଦ ॥
ମସ୍ତକ ମାନ ଲଟୀ କରି । ହରଷେ ବୁଲନ୍ତି ବିହରି ॥
ଶୁଣ ରାଜନେ ସାବଧାନେ । ସେ ଯେ ବୃଷଳୀ ପାପୀ ଜନେ ॥
ସାଧୁଙ୍କୁ କରି ପରାଭବ । ଆପଣେ ନାଶିଲେ ସମ୍ପଦ ॥
ବିଷ୍ଣୁ ଭକତ ଯେତେ ନରେ । ଦୟା ବହନ୍ତି ସର୍ବଠାରେ ॥
ବୈରାଗ୍ୟ ହିଂସା ଦୂରେ ତେଜି । ସେ ପଦ୍ମ ପାଦ ଯୁଗେ ଭଜି ॥
ପରମ ହଂସ ଭାଗବତ । ତାହାକୁ ରଖନ୍ତି ଅଚ୍ୟୁତ ॥
କହିଲେ ଦାସ ଜଗନ୍ନାଥ । ପଞ୍ଚମ ସ୍କନ୍ଧେ ଭାଗବତ ॥
ସେ ପ୍ରଭୁ ପଦ୍ମ ପାଦତଳେ । ମୋ ମନ ରହିଲା ନିଷ୍ଠଳେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ*
*ଜଡ଼ଭରତ ଚରିତେ ନାମ ନ ବମୋଽଧ୍ୟାୟ*

## ଦଶମ ଅଧ୍ୟାୟ

ଏଥୁ ଅନ୍ତରେ ଏକ ଦିନେ । ଶୁଣ ରାଜନେ ସାବଧାନେ ॥
ସିନ୍ଧୁପତି ଯେ ରହୁଗଣ । ସେ ରାଜା ବିଷ୍ଣୁ ପରାୟଣ ॥
ରାଜାର ଗମନ ନିମିତ୍ତେ । ତାହାର ଏକଶତ ଭୃତ୍ୟେ ॥
ବିମାନ ବାହିବାର ପାଇଁ । ଏକ ପୁରୁଷକୁ ଲୋଡ଼ଇ ॥
ଦଇବ ଯୋଗ ଦେଖି ତାର । ସେ ବିଷ୍ଣୁ ଅଂଶ ନୃପବର ॥
ସେଠାରେ ହେଲା ଉପସ୍ଥିତ । ଦେଖିଲା ତାକୁ ନୃପଦୂତ ॥
ହରଷ ମନେ ବିଚାରଇ । ଏହାର ତୁଲ୍ୟ କେହି ନାହିଁ ॥
କଠିନ ପୃଷ୍ଠ ଏ ଶରୀର । ବିମାନ ବହିବ ସୁନ୍ଦର ॥
ଏମନ୍ତେ ଶୀଘ୍ରେ ଘେନି ଗଲା । ବିମାନ ବାହାରେ ଖଞ୍ଜିଲା ॥
ତହିଁ ନିଯୁକ୍ତ ନର ସଙ୍ଗେ । ବିମାନ ବହିଲେ ସେ ରଙ୍ଗେ ॥
ସାକ୍ଷାତେ ବିଷ୍ଣୁ ଅଂଶେ ଦେହୀ । ପର ଅଧୀନ ପ୍ରାୟେ ହୋଇ ॥
ସେ ଯେ ପରମ ଭାଗବତ । ଏ କର୍ମ ତାର ଅନୁଚିତ ॥
ବିମାନ ବହି ନ ଜାଣଇ । ବିଷମ ଶ୍ରମେ ସେ ଚଳଇ ॥
କ୍ଷୁଦ୍ର ଜୀବଙ୍କ ମୃତ୍ୟୁ ଡରେ । ପାଦ ନ କ୍ଷେପନ୍ତି ନିର୍ଭରେ ॥

ତେଣୁ ବିଷମ ଗତି ହୋଇ । ରାଜାର କଷ୍ଟ ହୋଯେ ଦେହୀ ॥
ବିମାନ ବୂହା ପୁରୁଷରେ । ନୃପ କହଇ କୋପଭରେ ॥
ବିଷମ ସମଭାବ ହୋଇ । ବିମାନ ବହ କିସ ପାଇଁ ॥
ପ୍ରଭୁ ବଚନ କୋପ ଭରେ । ଶୁଣି କମ୍ପନ୍ତି ସେ କିଙ୍କରେ ॥
ଅତ୍ୟନ୍ତ ଭୟଚିତ୍ତ ହୋଇ । ଜଡ଼କୁ ଦେଲେ ସେ ଦେଖାଇ ॥
ଭୋ ନାଥ ଆମ୍ଭ ଦୋଷ ନାହିଁ । ଏହି ପୁରୁଷ ନ ଚଳଇ ॥
ଏହାର ବକ୍ରଗତି ପାଇ । ବିମାନ ବକ୍ରଭାବ ହୋଇ ॥
ଭୋ ନାଥ ଶୁଣ ସାବଧାନେ । ପୁଣି ହିଁ ଚଳଇ ବିଷମେ ॥
ଏହାର ସଙ୍ଗତେ ରାଜନ । ବହି ନ ପାରିବୁ ବିମାନ ॥
ସଂସର୍ଗ ଦୋଷରୁ ଆମ୍ଭରେ । ଦଣ୍ଡିବ ତୁମ୍ଭେ ଅବିଚାରେ ॥
ଏମନ୍ତେ ଭୃତ୍ୟବାକ୍ୟ ଶୁଣି । ସେ ଯେ ରାଜନ ଶିରୋମଣି॥
ସ୍ୱଭାବେ ସାଧୁ ସେ ଅଟଇ । ରଜ ଗୁଣରେ ଦେହ ବହି ॥
ବିଷ୍ଣୁର ଭକ୍ତ ବିପ୍ରବର । ତାହାକୁ ବୋଲଇ ଉତ୍ତର ॥
ପୃଷ୍ଟ ପୃଥୁଳ ତୋ ଶରୀର । କଠିନ ପୀନ ସେ ବିପ୍ରର ॥
ସୁକିତେ ଚଳୁ କି କାରଣେ । ଏ ତୋର ଦେହ ନିଷ୍କାରଣେ॥
କ୍ଷୁଦ୍ର ଯେ ତୋର ସଙ୍ଗତରେ । ବିମାନ ବହନ୍ତି ଅପରେ ॥
ବ୍ୟର୍ଥ ତୋହର କଳେବର । ମିଥ୍ୟାରେ ବହୁ ତୁ ଶରୀର ॥
ଏମନ୍ତେ ଶୁଣ ପରୀକ୍ଷିତ । ସେ ଯେ ବ୍ରାହ୍ମଣ ବିଷ୍ଣୁ ଭକ୍ତ ॥
ଏତେ ବଚନେ ସେ ମଉନ । ସ୍ୱଭାବେ ବହନ୍ତି ବିମାନ ॥
ପୁଣି ବିମାନ ବକ୍ର ହେଲା । ସେ ରାଜା ଅତି କୋପକଲା ॥
ଆରେ ପାମର ମୂଢ଼ ଚିତ୍ତ । ଜୀବନ ଥାଉଁ ତୁହି ମୃତ ॥
ମୋହର ଅଙ୍ଗେ କଷ୍ଟ ଦେଉ । ପ୍ରମତ୍ତ ଭାବକୁ ତୁ ବହୁ ॥
ଯମର ପ୍ରଯେ ମୁଁ ଅଟଇ । ଦୁଷ୍ଟ ଦର୍ପକୁ ମୁଁ ନାଶଇ ॥
ତୋହର ମତ୍ତ ଭାବ ମୁହିଁ । ଦୂର ମୁଁ ଆଜ କରିବଇଁ ॥
ଏମନ୍ତେ ଅତି ନିନ୍ଦାମାନ । ବହୁତ କଲା ସେ ରାଜନ ॥
ରଜୋଗୁଣରୁ ତମ ତାର । ତମ ଗୁଣରୁ ଅହଂକାର ॥
ସକଳ ଭୂତେ ଦୟା ତାର । ସେ ଯେ ବ୍ରାହ୍ମଣର କୁମର ॥
ଈଷତ ହାସ୍ୟ ବଚନରେ । ବଚନ କହନ୍ତି ରାଜାରେ ॥

## ଶ୍ରୀ ବ୍ରାହ୍ମଣ ଉବାଚ

ଭୋ ନୃପ ଶୁଣ ସାବଧାନେ । ତୁମ୍ଭେ ଯେ କହିଲ ବଚନେ ॥
ଗମନ କରି ନ ପାରଇ । ସେ କଥା ଉଚିତ ଅଟଇ ॥
ଏ କର୍ମେ ଆମ୍ଭ ସାଧୁପଣ । ଲୋକେ ନ କରନ୍ତି ଗାୟନ ॥
ଜୀବନ ମୃତ ଯେ ବୋଲଇ । ଏ କଥା ସତ୍ୟଟି କହିଲ ॥
କୃଶ ଶରୀରଟି ଆମ୍ଭର । କେବେହେଁ ନୁହେଁ ନୃପବର ॥
ମାନବ ଦୁଃଖ ଆଦି ଯେତେ । ଜ୍ୱର ନାନା ବ୍ୟାଧି ସହିତେ ॥
କ୍ଷୁଧା ପିପାସା ଭୟମାନ । ଏ ମାନ ନାହିଁ ହେଁ ରାଜନ ॥
ନିଦ୍ରା ବିହାର କ୍ରୋଧ ଯେତେ । ଅଂହକାର ମଦ ସହିତେ ॥
ଯେ ପ୍ରାଣୀ ଦେହବନ୍ତ ହୋଇ । ତାହାର ତହିଁ ଏତେ ଥାଇ ॥
ମୋହର ଦେହେ ଏତେ ନାହିଁ । ଏଣୁ ଜୀବନ ମୃତ୍ୟୁ ମୁହିଁ ॥
କେ ଅବା କାହାର ବହଇ । ଏମନ୍ତ ମୁହିଁ ନ ଦେଖଇ ॥
କେବା ଈଶ୍ୱର କେ କିଙ୍କର । ଏମନ୍ତ ନ ଦେଖି ଅପର ॥
ତୁମ୍ଭେ ଆମ୍ଭରେ ଏ ବଚନ । କେମନ୍ତେ କହିଲ ରାଜନ ॥
ଆମ୍ଭେ କି କହିବୁଁ ତୁମ୍ଭରେ । ସ୍ୱଭାବେ ଏ ଜଡ଼ ଶରୀରେ ॥
ପ୍ରମତ୍ତ ଜଡ଼ ଭାବେ ମୁହିଁ । ବିମାନ କେବେ ହେଁ ନ ବହି ॥

## ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପବର । ସେ ଯେ ବ୍ରାହ୍ମଣର କୁମର ॥
ସୁଶୀଳ ସାଧୁ ସମଚିତ୍ତ । ବିଶେଷେ ବିଷ୍ଣୁର ଭକତ ॥
ସେ ରାଜା ବାକ୍ୟ ଅନୁସାରେ । ଏମନ୍ତ କହି ସେ ମଧୁରେ ॥
ପ୍ରକୃତି କର୍ମ କ୍ଷୟ ପାଇ । ପୁଣି କହନ୍ତି ତୁନି ହୋଇ ॥
ତତ୍ତ୍ୱ ଜିଜ୍ଞାସା ନିମନ୍ତରେ । ଯାଉ ସେ ଥିଲେ ସ୍ନେହ ଭରେ ॥
ବିଷୟ କର୍ମ କରି ଦୂର । ଏମନ୍ତେ ଶୁଣ ନୃପବର ॥
ବିପ୍ର ବଚନେ ତତ୍ତ୍ୱଜ୍ଞାନ । ବିଷୟ ଭ୍ରମ ତା ଖଣ୍ଡନ ॥
ଅମୃତ ପ୍ରାୟେ ତାହା ବାଣୀ । ମନେ ଚିନ୍ତିଲା ନୃପମଣି ॥
ତକ୍ଷଣେ ଶୀଘ୍ରତର ହୋଇ । ବିମାନୁ ପଡ଼ିଲା ଓହ୍ଲାଇ ॥
ବ୍ରାହ୍ମଣ ପାଦ ଯୁଗଳରେ । ଶିର ଅର୍ପିଲା ଭୟତରେ ॥
କ୍ଷମା କରାଇ ଅପରାଧ । ବୋଲଇ ବାକ୍ୟ ଗଦଗଦ ॥
କେ ତୁମ୍ଭେ କହ ସ୍ୱାମୀ ମୋରେ। କରୁଣା କର ଏ କିଙ୍କରେ ॥
ଗୁପତ ହୋଇ ଭ୍ରମୁଥାଅ । ବ୍ରାହ୍ମଣପୁତ୍ର ତୁମ୍ଭେ ହୁଅ ॥
କି ଅବା ଅବଧୂତ ବରେ । କେମନ୍ତେ ମିଳିଲ ଏଠାରେ ॥
ଏ ଯେ ଅପରାଧ ମୋହର । କ୍ଷମା କରସି ଦ୍ୱିଜବର ॥
ଇନ୍ଦ୍ରାଦି ଯେତେ ଦେବବର । ଅନଳ ଅଗ୍ନି ଦିବାକର ॥
ଏହାଙ୍କ କ୍ରୋଧରେ ମୋହର । ଭୟକୁ ନାହିଁ ଦ୍ୱିଜବର ॥
ବ୍ରାହ୍ମଣ ଅପମାନେ ମୋର । ହୃଦୟ କମ୍ପେ ଥରହର ॥
ଏଣୁ ଅପରାଧ ମୋହର । କ୍ଷମା କରିବ ଦ୍ୱିଜବର ॥
ଅଶେଷ ଜ୍ଞାନର କାରଣ । ତୁ ନାଥ ବିଷ୍ଣୁ ପରାୟଣ ॥
ଅଜ୍ଞାନ ପ୍ରାଣୀ ମାନଙ୍କରେ । ଦେଖାଅ ଏ ଜଡ଼ ଶରୀରେ ॥
ତୋହର ଯେତେ ବାକ୍ୟମାନ । ଗ୍ରନ୍ଥିତ ହୋଇଅଛି ଜ୍ଞାନ ॥
ସକଳ ବର୍ଣ୍ଣଗୁରୁ ତୁହି । ଭୋ ନାଥ ପ୍ରଶ୍ନ ମୁଁ କରଇ ॥

ଜ୍ଞାନ ସ୍ୱରୂପ ତୋ ଶରୀର । ଭୋ ନାଥ କୃପା ମୋତେ କର ॥
ଅଦ୍ଭୁତ ଜଡ଼ ରୂପ ହୋଇ । ପ୍ରାଣୀଙ୍କ ହିତେ ଭ୍ରମୁ ଥାଇ ॥
ଭୋ ନାଥ ବିପ୍ର ଯୋଗେଶ୍ୱର । ମୁଁ ମୂଢ଼ମତି ଯେ ପାମର ॥
କେମନ୍ତେ ତୋତେ ଚିହ୍ନିବଇଁ । ସ୍ୱଭାବେ ଗୃହ ବନ୍ଧେ ରହି ॥
ଏ ଯେ ମୋହର ଅନୁଚର । ଅତ୍ୟନ୍ତ ମୂଢ଼ ଦୁରାଚାର ॥
ଅଜ୍ଞାନ ରୂପେ ଆଣିଦେଲା । ଦଇବ ଘଟଣ ହୋଇଲା ॥
ଶୁଣ ରାଜନ ସାବଧାନ । ସେ ବିପ୍ର ନୃପର ବଚନ ॥
ଜ୍ଞାନ ବୈରାଗ୍ୟ ଆଦିକରି । ସକଳ ଏଥି ଅଛି ପୂରି ॥
ଗୋବିନ୍ଦ ପାଦ ପଦ୍ମ ତଳେ । ମନ ମୋ ରହିବ ନିଶ୍ଚଳେ ॥
ପଞ୍ଚମସ୍କନ୍ଧେ ଏହୁ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
କୃଷ୍ଣ ଚରିତ ସୁଧାରସ । କହିଲେ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ରହୂଗଣ ଜଡ଼ଭରତ ନାମ ଦଶମୋଽଧ୍ୟାୟ ।*

## ଏକାଦଶ ଅଧ୍ୟାୟ

### ବ୍ରାହ୍ମଣ ଉବାଚ

ହେ ନୃପ ଶୁଣ ସାବଧାନେ । ତୁମ୍ଭେ କହିଲ ଅନୁମାନେ ॥
ମୂର୍ଖ ପଣ୍ଡିତ ଦୁଇମତ । ଏ କଥା ଅଟଇ ଉଚିତ ॥
ତଥାପି ପଣ୍ଡିତ ଯେ ନୋହେ । ତତ୍ତ୍ୱ ଭାବରେ କ୍ରୋଧ ବହେ॥
ଅପରେ ଶୁଣ ହେ ରାଜନ । ଗୃହ କର୍ମରେ ଯେତେ ଜନ ॥
ସୁକର୍ମ ବିଦ୍ୟାକୁ ଆଚରେ । ସତ୍ତ୍ୱ ଗୁଣରେ ମନ ଧରେ ॥
ପଣ୍ଡିତ ବୋଲିବା ତାହାରେ । ସେ ଶୁଦ୍ଧ ଏ ଘୋର ସଂସାରେ ॥
ସେ ସାଧୁ ବୋଲାଇ ସଂସାରେ ।ଯେ ପ୍ରାଣୀ ଠାରେ ଦୟା କରେ॥
ଦଣ୍ଡିବା ଶକ୍ତି ଯାର ଥାଇ । ସେ ଯେବେ କ୍ଷମା ଆଚରଇ॥
ସାଧୁଙ୍କ ଶ୍ରେଷ୍ଠ ସେହୁ ନର । ସୁଖ ଦୁଃଖରୁ ସେ ବାହାର ॥
ଅପରେ ଶୁଣ ନୃପବର । ଯାବତ ପ୍ରାଣୀମାନଙ୍କର ॥
ସତ୍ତ୍ୱ ରଜ ତମ ଗୁଣରେ । ମନ ହୋଇଲା ଦୃଢ଼ତରେ ॥
ଯେ ଗୁଣ ଯାହାର ହୁଅଇ । ସେ ଗୁଣ ପ୍ରାଣୀ ପ୍ରକାଶଇ ॥
କୁଶଳ ମନ୍ଦ ଭାବ ଦୁଇ । ମଧ୍ୟମ ଭାବକୁ ବହଇ ॥
ଧରଇ ଗୁଣ ଅନୁସାରେ । ରୂପ ବେଭାରେ ଯେ ଅପରେ ॥
ଯେ ଦୁଃଖ ସୁଖ ଆଦି କରି । ଲଭଇ କର୍ମକୁ ଆବୋରି ॥
ଦେଖ ଏ ଅନିତ୍ୟ ଶରୀର । ମାୟା ରଚିତ ଆତ୍ମାସାର ॥
ତାହାର ଗୁଣ ଅନୁସାରେ । ପ୍ରାଣୀ ଯେ କର୍ମମାନ କରେ ॥
କ୍ଷେତ୍ରଜ୍ଞ ଭାବକୁ ସେ ବହି । ସକଳ ସାକ୍ଷ୍ୟ ସେ ହୋଅଇ ॥
ତେଣୁ କହନ୍ତି ବେଦସାର । ଗୁଣ ନିର୍ଗୁଣ ଯେ ଅପର ॥
ସୁଗୁଣ ପ୍ରାଣୀମାନଙ୍କର । ନାନା ବ୍ୟସନରେ ଆଚାର ॥
ନିର୍ଗୁଣ ଭାବକୁ ଯେ ଧରେ । ସେ ପ୍ରାଣୀ ଭବ ଜଳୁଁ ତରେ ॥
ଘୃତ ପ୍ରଦୀପ ପ୍ରାୟେ ହୋଇ । ସେ ପ୍ରାଣୀ ସଂସାରେ ଭ୍ରମଇ॥
ଦ୍ରବ୍ୟ ସ୍ୱଭାବ କାଳକର୍ମ । ଆଶ୍ରୟ ଆଦି ହେ ରାଜନ ॥
ମାୟାର ବଳେ ଏ ସଂସାରେ । ପ୍ରାଣୀର ମନକୁ ସେ ହରେ ॥
କ୍ଷେତ୍ରଜ୍ଞ ଭାବକୁ ଆଚରି । ଶରୀର ବସିଛି ଆବୋରି ॥
ପ୍ରିୟ ଭାବରେ ସେ ଅଛଇ । ତାହାକୁ ପ୍ରାଣୀ ନ ଜାଣଇ ॥
ଶୁଦ୍ଧ ଅଶୁଦ୍ଧ ସଦାଚାର । ସେ ଯେ କରନ୍ତି ପ୍ରାଣୀଙ୍କର ॥
ଅପରେ ଶୁଣ ହେ ରାଜନ । କ୍ଷେତ୍ରଜ୍ଞ ପୁରୁଷ ପୁରାଣ ॥
ପରମ ଆତ୍ମା ଜ୍ୟୋତିର୍ମୟ । ଅନାବୃତ ସେ ଯାର ଦେହ ॥
ସେ ନାରାୟଣ ଭଗବାନ । ବାସୁଦେବ ଆଦି କାରଣ ॥
ସ୍ୱକ୍ରିୟା ମାୟାରୁ ଜଗତ । କ୍ରୀଡ଼ା କରଇ ଅବିରତ ॥
ଯେମନ୍ତ ଜଙ୍ଗମର ଠାରେ । ପବନ ଯେସନେ ସଞ୍ଚରେ ॥
ତେମନ୍ତ ହୋଇ ସର୍ବଠାରେ । କ୍ଷେତ୍ରଜ୍ଞ ରୂପେ ସେ ବିହରେ॥
ଯାବତ କାଳ ପ୍ରାଣୀମାନେ । ଯେ ମାୟା ନ କରେ ଖଣ୍ଡନେ ॥
ଷଡ଼ ଅରିରି ନ ଜିଣଇ । ବିମୁକ୍ତ ସଙ୍ଗକୁ ନୋହଇ ॥
ପ୍ରଭୁଙ୍କୁ ଯେ ରୂପେ ନ ଜାଣେ । ତାବତେ ଭ୍ରମେ ଅକାରଣେ ॥
ସଂସାର ତାପ ପ୍ରକାଶନ । ସେ ଯେ ଅନାଦି ନାରାୟଣ ॥
ଯାବତ ତାକୁ ନ ଚିହ୍ନଇ । ଶୋକ ମୋହରେ ସେ ଭ୍ରମଇ ॥
ତୁ ଏବେ ଶୁଣ ନୃପବର । ଏ ଯେ ବ୍ରହ୍ମାଣ୍ଡର ଈଶ୍ୱର ॥
ଅଖିଳ ପ୍ରାଣୀଙ୍କର ଗୁରୁ । ଯାର ମହିମା ମହାମେରୁ ॥
ଯେହାର ଚରଣାରବିନ୍ଦେ । ମନ ନିବେଶି ଅପ୍ରମାଦେ ॥
ମାୟା କପଟ ଏ ସଂସାର । ତୁ ଏହା ଶୀଘ୍ରେ ତ୍ୟାଗ କର ॥
ବୋଲଇ ଦାସ ଜଗନ୍ନାଥ । ହରି ଚରିତ ଭାଗବତ ॥
ପଞ୍ଚମସ୍କନ୍ଧେ ବିପ୍ରବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
ସେ ପ୍ରଭୁ ପାଦ କମଳରେ । ମନ ମୋ ରହୁ ନିରନ୍ତରେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ରହୂଗଣେ ସମ୍ଭାଷଣେ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ

### ରାଜା ଉବାଚ

ନମଇ ପ୍ରଭୁ ବିପ୍ରବର । ପ୍ରାଣୀଙ୍କ ହିତେ ତୋ ଶରୀର ॥
ସ୍ୱଇଚ୍ଛା ବିହାର ତୋହର । ନମସ୍ତେ ଦୟାର ସାଗର ॥
ଗୁପତ ଭାବେ ଭ୍ରମୁ ତୁହି । ତୋହର ମାୟା କେ ଜାଣଇ ॥
ବ୍ୟାଧି ପୀଡ଼ିତ ଆର୍ତ୍ତଜନ । ତାହାର ଔଷଧ ଯେସନ ॥
ନିଦାଘ ଆତଙ୍କ ପୀଡ଼ିତ । ତାହାଙ୍କୁ ଯେହ୍ନେ ଜଳ ଶୀତ ॥
ସଂସାର ଦୁଃଖ ଦାବାନଳ । ତହିଁ ମୁଁ ହୋଇଣ ଆକୁଳ ॥
ପୀୟୂଷ ରସ ତୁମ୍ଭବାଣୀ । ପିଇ ତରିଲେ ଦ୍ୱିଜମଣି ॥
ସଂଶୟ ଶରୀରୁ ମୋହର । ତୁମ୍ଭେ ଛେଦିଲ ଦ୍ୱିଜବର ॥
ଅଜ୍ଞାନ ଜଡ଼ ଭାବେ ଥିଲେ । ତୁମ୍ଭେ ଛେଦିବ ତାହା ଭଲେ ॥
ଅଧ୍ୟାତ୍ମ ଯୋଗ ତୋ ବଚନ । ଶୁଣି ସନ୍ତୋଷ ମୋର ମନ ॥
ଏ କ୍ରିୟାଫଳ ଯେତେ ମାନ । କହିଲ ଈଶ୍ୱର ଅଧୀନ ॥
ପରମ ସତ୍ୟ ଯେ ବେଭାର । ପୃଥକ ବୁଦ୍ଧିମାନଙ୍କର ॥
ତତ୍ତ୍ୱଜ୍ଞାନରେ ପ୍ରାଣୀଙ୍କର । ମନ ନୋହଇ ଦୃଢ଼ତର ॥
ଏ ଯେ ସଂସାର ପ୍ରାଣୀମାନ । ନୃପ ସେବକ ଭିନ୍ନା ଭିନ୍ନ ॥
କେହୁ କାହାକୁ ନମସ୍କାର । କରଇ ଆଚାର ବେଭାର ॥
ଏ ଜୀବମାନେ ବସି ତହିଁ । ନନା କୁକଥାମାନ କହି ॥
ମୁଁ ନୃପବୋଲି ଅହଙ୍କାର । ଯେ ମୂଢ଼ ଲୋକଙ୍କ ଆଚାର ॥
ପ୍ରାଣୀଙ୍କି ଦଣ୍ଡ ଦେଇ ମୁହିଁ । ଯେମନ୍ତ ନାନା କଥା କହି ॥
ପ୍ରଶାନ୍ତ ଭାବକୁ ଧଇଲୁ । ଯେଣୁ ମୋହରେ ଶୋକ ଦେଲୁ ॥
ଦେଖ ଏ ଅଖିଳ ସଂସାର । ଜନ୍ମଇ ଯହୁଁ ଚରାଚର ॥
ତାହାର ନାମ ତହୁଁ ପରେ । ବହୁତ ନାହିଁ ଯେ ସଂସାରେ ॥
ପରମହଂସ ବୃହସ୍ଥଳ । ଏ ଆଦି ଯେତେକ କୁଶଳ ॥
ତା ବିନୁ ଅନ୍ୟ କେହି ନାହିଁ । ଅଜ୍ଞାନ ମନ ନ ଜାଣଇ ॥
ବୃହତ କର୍ମ ଆଦି ଯେତେ । ନିର୍ଜୀବ ସଜୀବ ସହିତେ ॥
ଦିବ୍ୟ ସ୍ୱଭାବ କାଳକର୍ମ । ପୃଥୁଳ ଭାବ ରୂପ ନାମ ॥
ଜ୍ଞାନ ବିଶୁଦ୍ଧ ସେ ଅଟଇ । ପରମ ଆତ୍ମା ରୂପ ବହି ॥
ଏକ ଅନେକ ସର୍ବ ସେହି । ପ୍ରଭୁର ବିନୁ ଅନ୍ୟ ନାହିଁ ॥
ସର୍ବଜ୍ଞ ପ୍ରଶାନ୍ତ ଅଚ୍ୟୁତ । ଲୀଳାରେ ଯାହର ଜଗତ ॥
ତାହାର ଅଖିଳ କାରଣ । ମୁନିଏ କରନ୍ତି ଗାୟନ ॥
ସେ ରଘୁରାଜ ସାବଧାନ । ଶୁଣ ତୁ ମୋହର ବଚନ ॥
ବିବିଧ ତପ ଯଜ୍ଞ ଆଦି । ବେଦ ଅଧ୍ୟୟନ ପ୍ରସିଦ୍ଧି ॥
ଏ ଆଦି ଯେତେ ହେଁ ରାଜନ । ସକଳ ଶ୍ରେଷ୍ଠ ଭଗବାନ ॥
ଯାର ସ୍ମରଣେ ପାପମାନ । ବିଶେଷେ ହୁଅନ୍ତି ଖଣ୍ଡନ ॥
ଉତ୍ତମ ଶ୍ଳୋକ କଥା ସାର । ଯେ ପ୍ରାଣୀ କରନ୍ତି ଆଚାର ॥
ଗ୍ରାମ୍ୟ କଥାରେ ଯାର ମତି । କେବେହେଁ ନୋହଇ ସୁଗତି ।
ଯିବେ ନିଶ୍ଚଳ ଭାବେ ମନ । ପ୍ରଭୁରେ କରଇ ଅର୍ପଣ ॥
ତାହାକୁ ପ୍ରଭୁ ଭାବଗ୍ରାହୀ । ସତ୍ୟ ପ୍ରଧାନ ମତି ଦେଇ ॥
ଏବେ ତୁ ଶୁଣ ନୃପମଣି । ଆମ୍ଭର ପୂର୍ବଜନ୍ମ ବାଣୀ ॥
ଭରତ ନାମେ ରାଜା ମୁହିଁ । ବ୍ରାହ୍ମଣ ବଂଶେ ଜାତ ହୋଇ ॥
ସର୍ବ ସମ୍ପଦ ଦୂର କଲି । ନିଶ୍ଚଳେ ପ୍ରଭୁଙ୍କୁ ଭଜିଲି ॥
ପୂର୍ବରେ ମୋର କର୍ମଫଳ । ମୃଗ ସଂଗରୁ ମତି ଭୋଳ ॥
ଯେଣୁ ଅସାଧୁ ଆଚରିଲି । ମୃଗ ଦେହକୁ ମୁଁ ପାଇଲି ॥
ପୂର୍ବ ଭଜନ ମୋର ଥିଲା । ପ୍ରଭୁର କରୁଣା ହୋଇଲା ॥
ତେଣୁ ପୂର୍ବର କଥାମାନ । ମୋହର ହୋଇଲା ସ୍ମରଣ ॥
ଏବେ ହୋ ଶୁଣ ନୃପବର । ଲଭିଲି ଏ ବିପ୍ର ଶରୀର ॥
ଅସତ୍ୟ ସଂଗକୁ ମୁଁ କରି । ଏ ଜଡ଼ ରୂପକୁ ଆଚରି ॥
ଭ୍ରମଇ ଏ ଭବ ସଂସାରେ । କର୍ମ ବନ୍ଧନ ଖଣ୍ଡିବାରେ ॥
ଏକାକୀ ନିବୃତ୍ତ ବେଭାର । ମନ ନିବେଶି କୃଷ୍ଣଠାର ॥
ଶୁଣ ରାଜନ ଏକମନେ । ଏଣୁ ସଂସାର ପ୍ରାଣୀମାନେ ॥
ଅସଙ୍ଗ ସଙ୍ଗେ ମୋହ ହୋଇ । ନାନା ଯୋନିରେ ଦେହବହି ॥
ସାଧୁଙ୍କ ସଙ୍ଗରୁ ତାହାର । ପବିତ୍ର ହୁଅଇ ଶରୀର ॥
ନିଶ୍ଚଳ ମତି ସେ ହୁଅଇ । ସଂସାର ସାଗରୁ ତରଇ ॥
ସାଧୁ ସଙ୍ଗତ ପ୍ରଭାବରେ । ପ୍ରଭୁର କୃପା ହୋଇ ତାରେ ॥
ସେ ଯେ ଅନାଦି ଚକ୍ରଧର । ଜଗତ ବଂଧୁ ସେ ସୋଦର ॥
ସେ ପ୍ରଭୁ ପାଦପଦ୍ମ ତଳେ । ମୋ ମନ ରହିବ ନିଶ୍ଚଳେ ॥
ବୋଲଇ ବିପ୍ର ଜଗନ୍ନାଥ । ପଞ୍ଚମ ସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ*
*ରହୂଗଣ ଭରତ ସଂବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

ଯେ ପଥ ଅତ୍ୟନ୍ତ ଦୁର୍ଗମ । ମାୟାରେ ତହୁଁ ପ୍ରବେଶିଣ ॥
ରଜ ତମରେ ଭିନ୍ନମତି । ପୃଥକ ଭାବେ କର୍ମ ଚିନ୍ତି ॥
ସେ ପ୍ରାଣୀ ସଂସାରେ ଭ୍ରମଇ । ସୁଖର ଲେଶ ତାର ନାହିଁ ॥
ଏ ଯେ ସଂସାର ମହାଘୋର । ନାନାଦି କଷ୍ଟ ଭୟଙ୍କର ॥

ଏଥି ନିବେଶି ମୂଢ଼ମନ । ନାନା ଯତନରେ ସେ ସ୍ଥାନ ॥
ବାତ ଉନ୍ମିତ ରେଣୁ ଲାଗି । ଏ ଦେହେ ଚକ୍ଷୁ ଦୁଃଖ ଭାଗି॥
ବିବିଧ ଘୋର ସ୍ୱନ ଲାଗି । କର୍ଣ୍ଣ ହୁଅଇ ଦୁଃଖ ଭାଗି ॥
ଉଲୁକ ଆଦି ଘୋର ବାଣୀ । ଦୁଃଖିତ ଆତ୍ମା ତାହା ଶୁଣି ॥
କ୍ଷୁଧା ତୃଷିତ ଯେତେ ହୋଇ । ନିଷ୍ଫଳ ବୃକ୍ଷକୁ ଧାମଇ ॥
କେବେହେଁ ମୃଗତୃଷା ଦେଖି । ତୃଷିତ ଜଳ ପ୍ରାୟେ ଲେଖି ॥
ନିରାଶ ହୋଇଣ ତହିଁରେ । ଧାମଇ ଶୁଷ୍କ ନଦୀତୀରେ ॥
ଅନ୍ନ୍ୟନ ଭାବକୁ ସେ ବହି । ନିଧନ ପ୍ରାଣୀଙ୍କି ମାଗଇ ॥
ଦାରାଦି ଅଗ୍ନି ତୁଲ୍ୟ ପ୍ରାୟେ । ତହିଁ କ୍ରୀଡ଼ଇ ଶୋକ ମୋହେ ॥
ନାନା ଶୋକ ଦୁଃଖକୁ ପାଇ । ପରମ କ୍ଳେଶକୁ ଲଭଇ ॥
ଗନ୍ଧର୍ବ ପୁରେ ପ୍ରବେଶିଣ । ପ୍ରମୋଦ ଲଭେ ଅନୁକ୍ଷଣ ॥
କାଷ୍ଠ ପାଷାଣେ ଦୁଃଖ ଧାମେ । କେବଳ ଆରୋହୀ ବିମାନେ॥
ବିମନ ହୋଇ ଦୁଃଖ ପାଇ । କ୍ଷଣକେ ପୁଣି ପାସୋରଇ ॥
ଅନ୍ତର ବାହାରେ ଜଡ଼ିତ । ପ୍ରାଣୀ ହୁଅଇ ଅବିରତ ॥
କୁଟୁମ୍ବ ପାଇଁ ନାନା ପାପ । ବିପକ୍ଷ ପକ୍ଷେ ହୋଏ ତାପ ॥
ଦୁଷ୍ଟ କର୍ମରେ ଦୁଃଖୀ ହୋଇ । ବିପିନେ କେତେହେଁ ମରଇ ॥
ଅନ୍ଧ ଯେସନେ ଅନ୍ଧକୂପେ । ପଡ଼ଇ କର୍ମର ବିପାକେ ॥
କେବେହେଁ ପ୍ରମାଦ ବଶରେ । ପଡ଼ଇ ଗିରିର କନ୍ଦରେ ॥
ପୁଣି ଭ୍ରମଇ ଛାଡ଼ି କରି । ନିର୍ଭୟ ପଥକୁ ଆବୋରି ॥
ତହିଁ ଅତି କଷ୍ଟରୁ ନର । ଆପହୁଁ ହୁଅଇ ସେ ପାର ॥
ପୁଣି ଆତ୍ମାର ତତ୍ତ୍ୱ ଜାଣି । କ୍ଷଣକେ ପାସୋରଇ ପୁଣି ॥
ମାୟାରୁ କରି ଏ ସଂସାର । ନିଷ୍ଫଳ ହୋଇ ମୂଢ଼ ନର ॥
ନାନା ଦୁଷ୍କର୍ମରେ ଭ୍ରମନ୍ତି । ଆତ୍ମା କାରଣ ନ ଜାଣନ୍ତି ॥
ଘୋର ଦୁର୍ଗମ ଏ ସଂସାର । ଦୁର୍ଗମ ପଥ ଯେ ଏହାର ॥
ସ୍ୱଯୁକ୍ତ ଆତ୍ମା ହୋଯେ ତହିଁ । ହରି ସେବାରେ ମନ ଦେଇ ॥
ଜ୍ଞାନ ଖଡ଼ଗେ ଯେ ଏହାର । ନିଶ୍ଚିନ୍ତେ ଛେଦି ହୁଅ ପାର ॥

## ରାଜା ଉବାଚ

ସାଧୁ ମାନବ ଜନ୍ମସାର । ସଂସାରେ କିବା ଜନ୍ମ ଆର ॥
ସେ ଜନ୍ମ ହୃଷୀକେଶ ଗୁଣ । ବଦନେ କରେ ଉଚ୍ଚାରଣ ॥
ଶ୍ରବଣେ ଶୁଣି ଯଶ ଗାଇ । ସୁସାଧୁ ସଙ୍ଗତେ ବସଇ ॥
ଭୋ ସ୍ୱାମୀ ତୁମ୍ଭ ପାଦରେଣୁ । ମୋ ଦେହେ ଲାଗିଲା ଯେ ଯେଣୁ॥
ସର୍ବ ଦୁରିତ କ୍ଷୟ ଗଲା । ନିର୍ମଳ ମୋ ମନ ହୋଇଲା ॥
ଅବିଦ୍ୟା କର୍ମ ଯେ ମୋହର । ଭୋ ସ୍ୱାମୀ ସମାଗମ ତୋର॥
ଅବିବେକ ଆଦି ପ୍ରମାଦେ । ହତ ହୋଇଲା ତୋ ପ୍ରସାଦେ ॥
ନମଇଁ ମହତ ଈଶ୍ୱର । ନମସ୍ତେ ଶିଶୁ ରୂପଧର ॥
ତୁ ନାଥ ଯୁବା ରୂପଧର । ତୋତେ ମୋହର ନମସ୍କାର ॥
ଯେ ଜଡ଼ ରୂପ ଯେ ତୁମ୍ଭର । ତୁମ୍ଭଙ୍କୁ ମୋର ନମସ୍କାର ॥
ଅବଧୂତ ରୂପକୁ ଧରି । ପୃଥିବୀ ପର୍ଯ୍ୟଟନ କରି ॥
ଯେମନ୍ତେ ରୂପ ଯେ ତୁମ୍ଭର । ତୋତେ ମୋହର ନମସ୍କାର ॥
ଏ ରୂପ ଧରି ଯେ ବ୍ରାହ୍ମଣ । ପୃଥିବୀ କରନ୍ତି ଭ୍ରମଣ ॥
ପ୍ରଜାଙ୍କ କୁଶଳ ନିମନ୍ତେ । ସେ ବିପ୍ରେ ହୋଅନ୍ତି ଭରଥେ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ରହୁଗଣ ବାଣୀ । ସାନନ୍ଦେ ଶୁଣି ବିପ୍ରମଣି ॥
ପରମ କରୁଣାକୁ ବହି । ରହୁଗଣକୁ ତତ୍ତ୍ୱ କହି ॥
ହରଷ ହୋଇ ରହୁଗଣ । ବନ୍ଦିଲା ତାହାର ଚରଣ ॥
ରାଜାର ପୂଜାକୁ ଘେନିଲେ । ଧରଣୀ ଭ୍ରମଣେ ଗମିଲେ ॥
ସେ ନରପତି ରହୁଗଣ । ପରମ ତତ୍ତ୍ୱକୁ ପାଇଣ ॥
ଆତ୍ମା ଅବିଦ୍ୟା ଧ୍ୟାନ ଯେତେ । ଦେହ ଅହଙ୍କାର ସହିତେ ॥
ତକ୍ଷଣେ ଛାଡ଼ିଲା ସକଳ । ଶୁଣ ପରୀକ୍ଷ ମହୀପାଳ ॥
ଭଗତ ଆଶ୍ରୟ ଯେ ଜନ । ଏତେ ପ୍ରଭାବ ହେ ରାଜନ ॥

## ପରୀକ୍ଷିତ ଉବାଚ

ବ୍ରହ୍ମ ପ୍ରକାରେ ଏ ସଂସାରେ । ଯେ ଭାଗବତ ଶ୍ରେଷ୍ଠ ନରେ ॥
ଏହାଙ୍କ ବାକ୍ୟ ଅନୁସରି । ଯେ ପ୍ରାଣୀ ସଂସାରୁ ନିସ୍ତରି ॥
ତାହାଙ୍କ କି ଗତି ଅପରେ । ଗତି ଅଗତି କର୍ମକରେ ॥
ଯେଥୁ ଅନ୍ତରେ ମୁନିବର । ଯେହୁ ଦୁର୍ଗମ ମନ ମୋର ॥
ତାହାର ସଂଘଟନ ଯେତେ । ସକଳ ମୋହର ଅଗ୍ରତେ ॥
ଅନୁକମ୍ପାରୁ କରି କହ । ମୋହର ଫେଡ଼ ତୁ ସନ୍ଦେହ ॥
ଯେ ବିପ୍ର ରହୁଗଣ ବାଣୀ । କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ॥
ସକଳ ପାପୁଁ ସେ ତରନ୍ତି । ଅନ୍ତେ କୈବଲ୍ୟକୁ ଲଭନ୍ତି ॥
କହଇ ବିପ୍ର ଜଗନ୍ନାଥ ' । ପଞ୍ଚମ ସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ*
*ରହୁଗଣ ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।*

# ଚତୁର୍ଦ୍ଦଶ ଅଧ୍ୟାୟଃ

## ବ୍ରାହ୍ମଣ ଉବାଚ

ଦେହାତ୍ମାମାନି ଯେଉଁ ନର । ସତ୍ୟାଦି ଗୁଣେ ତାହାଙ୍କର ॥
କୁଶଳ ଅକୁଶଳ ଦୁଇ । ଯେଥେ ନିର୍ମିତକୁ ସେ ହୋଇ॥

ନିବିଧ ଦେହମାନ ହୋଇ । ସଂଯୋଗ ବିଯୋଗ ସେ ହୋଇ
ପାପ ନିର୍ମିତ ଏ ସଂସାରେ । କରଇ ଇନ୍ଦ୍ରିୟ ବର୍ଗରେ ॥
ଭଗବାନ ପ୍ରଭୁ ଈଶ୍ୱର । ଯେ ବିଷ୍ଣୁ ଅଖିଳ ଠାକୁର ॥
ଏହା ମାୟାରେ ମୋହ ହୋଇ । ଏ ଜୀବ କିଛି ନ ଜାଣଇ ॥
କର୍ମ ସୁଦେହ ନିଷ୍ପାଦିତ । ଆହାର ଅନୁଭବ ମତ ॥
ସୁଖାନ୍ତ ପ୍ରାୟେ ସେ ଅଟଇ । ଏହାକୁ ମୂଢ଼ ନ ଜାଣଇ ॥
ଘୋର ବନ ଯେ ଯେ ସଂସାର । ଏଥିରେ ପଡ଼ି ମୂଢ଼ ନର ॥
ବିବିଧ ବିଫଳ ଯେ କର୍ମ । ତେଣେ ହୁଅଇ ମତି ଭ୍ରମ ॥
ପ୍ରଭୁର ଚରଣାରବିନ୍ଦ । ସ୍ୱାଦୁ ସୁଗନ୍ଧ ମକରନ୍ଦ ॥
ଏହାକୁ ଆଶ୍ରୟ ଯେ କରି । ଅଛନ୍ତି ଯେ ପଦ ଆବୋରି ॥
ପାପ ଧ୍ୱଂସଇ ସୁଖ ଦେଇ । ଯେମନ୍ତ ପଦ ବି ସେ ହୋଇ ॥
ସେ ପଥ ଆଶ୍ରୟ ନ କରି । ଭ୍ରମନ୍ତି ମାୟାକୁ ଆବୋରି ॥
ଯେ ଯେ ଦେହରେ ଇନ୍ଦ୍ରିଗଣ । ଚୌର୍ଯ୍ୟରେ ବିଦିତ ଯେସନ ॥
ପରମ ପୁରୁଷ ପ୍ରଧାନ । ଏ ଆଦି ଯେତେ ଶୁଭକର୍ମ ॥
ବହୁ କୃଚ୍ଛ୍ରାଦି ତପଫଳ । ବଳେ ହରନ୍ତି ମହୀପାଳ ॥
ଦୃଷ୍ଟିରେ ବହୁଗୁଣ ଦେଖି । କରେ ପରମ ଉପଲେଖି ॥
ଶବଦ ଶୁଣଇ କର୍ଣ୍ଣରେ । ଅସ୍ୱାଦ କରଇ ଜିହ୍ୱାରେ ॥
ଏ ଆଦି ଇନ୍ଦ୍ରିୟ ଯେ ଗଣ । ନାନା ଉପଭୋଗ କାରଣ ॥
ଗ୍ରାମ ଭୋଗରେ ଲୋଭ ହୋଇ । ଅର୍ଜିତ ଆତ୍ମା ଯେତେ ଦେହୀ ॥
କରନ୍ତି ଆତ୍ମା ପୁଣ୍ୟ ଦୂର । ଯେଣୁ ସେ ମୂଢ଼ ନୃପବର ॥
ଅଥବା କୁଟୁମ୍ବ ବିଷୟେ । ଅପତ୍ୟ ସ୍ନେହ ମାୟା ମୋହେ ॥
କଦର୍ଯ୍ୟ କୁଟୁମ୍ବ କାରଣେ । ମୋହ ହୁଅନ୍ତି ହତଜ୍ଞାନେ ॥
ଅସତ ସଙ୍ଗ କରି ନର । ଲଭଇ ପାଷାଣ୍ଡ ଶରୀର ॥
ଦାରା ତନୟ ଗୃହେ ଥାଇ । କେବଳ କ୍ଳେଶକୁ ଲଭଇ ॥
କେବେହେଁ ରାଜା ହରେ ଧନ । ନାନା କ୍ଳେଶିତ ଦୁଃଖମନ ॥
ଜୀବନ ମୃତ୍ୟୁ ପ୍ରାୟେ ହୋଇ । କେ ଅବା କ୍ଷଣେ ହେ ରହଇ॥
କେବେହେଁ ଦେହ ମିଥ୍ୟାମାନି । ନିବୃତ୍ତ ମନ ନୋହେ ପ୍ରାଣୀ ॥
ନିଦ୍ରାରେ ସ୍ୱପ୍ନ ପ୍ରାୟେ କରି । କ୍ଷଣକେ ପୁଣି ତା ପାସୋରି ॥
କେବେହେଁ ଗୃହାଶ୍ରମ କର୍ମେ । ଯେହ୍ନେ ଲଭଇ ମାୟାଭ୍ରମେ ॥
ପାପ ଅନଳ ଦେହେ କରି । ଜନ୍ମ ସାରଇ କର୍ମ କରି ॥
ଲୌକିକ ବ୍ୟସନେ ଭ୍ରମିତ । କ୍ଷଣ କ୍ଷଣକେ ଦୁଃଖ ଚିତ୍ତ ॥
କଣ୍ଟକ ଦୁର୍ଗମ ପର୍ବତେ । ଆରୋହି ଯେହ୍ନେ କଷ୍ଟମତେ॥
ଶ୍ମଶାନ ଶବ ପ୍ରାୟେ ହୋଇ । ସୁଖ ଦୁଃଖକୁ ନ ଜାଣଇ ॥
ଦୁର୍ଗମ ବିଳେ ସୁଖକରି । ଉନ୍ନିଦ୍ର ଭାବକୁ ଆଚରି ॥
ବ୍ୟଥିତ ହୃଦୟକୁ ପାଇ । ଅନ୍ଧ ଯେସନେ କଷ୍ଟ ଦେଇ ॥

ଅଜ୍ଞାନଭାବ ପାପ ଚିତ୍ତେ । ଅନ୍ଧତମ ପଡ଼ଇ ଅନ୍ତେ ॥
କେବେହେଁ ନ କରେ ପ୍ରଦାନ । ସ୍ୱକାମେ ହରେ ପରଧନ ॥
ସ୍ୱାମୀରେ ଦ୍ରୋହ ଚିନ୍ତା କରି । ଦୁର୍ଗମ ନରକ ଆବୋରି ॥
ଏମନ୍ତ କର୍ମ ଆତ୍ମା ଫଳେ । ପ୍ରାଣୀ ହୋଅଇ ଏ ସଂସାରେ॥
ଜନ୍ମ ବାସନା ଫଳତାରେ । ପୁଣି ଜନ୍ମଇ ଏ ସଂସାରେ ॥
ଶୁଣ ରାଜନ ସାବଧାନେ । ଯେବେ ଯେ କର୍ମ ପ୍ରାଣୀମାନେ
ଛେଦନ୍ତି ହରି ଆଶ୍ରେ କରି । ତେବେ ସେ ଭବୁଁ ହୋନ୍ତି ପାରି ॥
ତେବେ ହେଁ ନାନାମତ ବାଦ । ଦୈବିକ ଭୌତ୍ତିକ ସମ୍ପଦ ॥
କେବେହେଁ ହୃଦେ ନ ଚିନ୍ତିବ । ଯେ ଆଦି ଯେତେ ପାପ ସର୍ବ॥
କେବେହେଁ ରହେ ସ୍ଥୁଳ ହୋଇ । ଅନ୍ୟୋନ୍ୟେ ଧନ ନ ଦିଅଇ॥
ଲୋକ ଭାବରେ ଦେହ ବହି । ଅନ୍ତେ ସେ ନରକ ଲଭଇ ॥
ନାନା ତପ କର୍ମ ସରିତ । ଏ ଯେ ସଂସାର ଘୋର ପଥ॥
ଏହାର ଆଶ୍ରେ କରି ନରେ । ଏ ସର୍ବ ଅନୁଭବ କରେ ॥
ଅପମାନ ଯେ ଦେହ ଦୁଃଖ । ଉନ୍ମଦ ମଦ ଅବା ସୁଖ ॥
ଶୋକ ଯେ ମୋହ ଲୋଭମାନ । ମତ୍ସର୍ଯ୍ୟ କ୍ରୋଧ ପୁତ୍ର ଜନ ॥
ପିପାସା ଆଦି ବ୍ୟାଧି ଯେତେ । ଜରା ମରଣାଦି ସହିତେ ॥
ଦେବ ମାୟାରେ ମୋହି ହୋଇ । ସ୍ତିରୀ ସ୍ୱଭାବ ସେ ବହି ॥
ଅମୃତ ଲତାରେ ବନ୍ଧନ । ତହିଁରେ ମନ ହୋଇ ଛନ୍ନ ॥
ତା ଅବଲୋକନ ବେହାର । ତେଣେ ଆସକ୍ତ ମୂଢ଼ ନର ॥
ହୃଦୟ ହରଷିତ ହୋଇ । ଆତ୍ମାକୁ ତହିଁରେ ବୁଡ଼ାଇ ॥
ତହିଁତ ଆତ୍ମା ଯେ ଅଟନ୍ତି । ଜୀବକୁ ନରକେ ପକାନ୍ତି ॥
କେବେହେଁ ଅଖିଳ ଈଶ୍ୱର । ବିଷ୍ଣୁ ଭଗବାନ ଠାକୁର ॥
ଯାହାର କାଳ ଚକ୍ର କରି । ଆତ୍ମାର ଜ୍ଞାନ ଚକ୍ରେ ହେରି ॥
ସକଳ ବଶଟି ଯାହାର । ଏମନ୍ତ ପ୍ରଭୁ ଯେ ଈଶ୍ୱର ॥
ଯାହାର କାଳ ଚକ୍ର କରେ । ଭ୍ରମଇ ଅଖିଳ ସଂସାରେ ॥
ସେ ଯଜ୍ଞ ପୁରୁଷ ଠାକୁର । ତାହାକୁ କରି ଅନାଦର ॥
ଆଦ୍ୟ ପଥକୁ ନ ଆବୋରି । ବିବିଧ କୁପଥ ଆଦରି ॥
ନିଗମ ଅନାଚାର କର୍ମ । କରନ୍ତି ହୋଇ ମତିଭ୍ରମ ॥
ପାଷାଣ୍ଡ ଭାବେ ସେ ବିଦିତ । ଆତ୍ମାକୁ କରନ୍ତି ନିନ୍ଦିତ ॥
ମୈଥୁନ ଭବେ ଅନୁକ୍ଷଣେ । ଆକୁଳ କୁଟୁମ୍ବ ପୋଷଣେ ॥
ଅଜ୍ଞାନ ପାଷାଣ୍ଡ ଭାବରେ । ନିରତେ ବିଚାରି ବିହରେ ॥
ଅତି କୃପଣ ବୁଦ୍ଧି ହୋଇ । ଅନ୍ୟୋନ୍ୟେ ସ୍ନେହ ଭାବ ବହି
ସୁଖ ହେବାରେ ଅନୁକ୍ଷଣେ । ଇତ୍ୟାଦି ଗ୍ରାମ ଯେତେ କର୍ମେ
ବିସ୍ମୃତ କାମ ତାହା ତହିଁ । ଅଜ୍ଞାନେ ସ୍ୱଚ୍ଛନ୍ଦେ ଭ୍ରମଇ ॥
ବାନରଗଣ ଏ ଯେସନେ । ବିନାଶ ବୃକ୍ଷ ଶାଖା ଭଗ୍ନେ ॥

ଦାରା ତନୟ ବିନାଶରେ । ପଶଇ ଗିରିର କନ୍ଦରେ ॥
ଶୀତ ତପତ ଦୁଃଖ ମାନ । ଦଇବକ ଭୋଗ ବସନ ॥
ଦୁରନ୍ତ ଚିନ୍ତାମଗ୍ନ ହୋନ୍ତି । ବିଷଣ୍ଣ ଭାବରେ ରହନ୍ତି ॥
ଦ୍ରବ୍ୟ ସଂହାରଣେ ସ୍ୱଭାବ । କ୍ଷୀଣ ଧନରେ ଅଛ ଲାଭ ॥
କେବେହେଁ ଉପଭୋଗ ତାର । ଦ୍ରବ୍ୟ ବିହୁନେ ହୁଏ ଦୂର ॥
ପୁଣିହିଁ କେବେ ମନୋରଥ । ଦ୍ରବ୍ୟ ଲାଳସେ ଉପଗତ ॥
ପୁଣି କେବେହେଁ ଦ୍ରବ୍ୟ ପାଇ । ମତି ଯାହାର କଷ୍ଟ ହୋଇ ॥
ତେଣୁ ବିହାର ଆଦି ଯେତେ । ଇଚ୍ଛଇ କଳତ୍ର ସହିତେ ॥
ଏମନ୍ତ ଚିତ୍ତବୃତ୍ତି ସଙ୍ଗ । ବୁଡ଼ଇ ବୁଦ୍ଧି ବଇରାଗ ॥
ତେଣୁ ସେ ପୁଣ୍ୟ ବାସନାରେ । ବହଇ ବିବିଧ ଶରୀରେ ॥
ତେଣୁ ସଂସାର ପଥେ ନରେ । ନାନା କ୍ଳେଶ ବ୍ୟାଧି ଶରୀରେ ॥
ପୁଣି ଜନ୍ମର ନାଶ ଯାଇ । ନାନା ଆପଦକୁ ଭୁଞ୍ଜଇ ॥
ନାନା ଶୋକ ମୋହ ତାହାରେ । ଦୁର୍ଲ୍ଲଭ ନୋହଇ ଶରୀରେ ॥
ଅସାଧୁ ନର ବିହି ହୋଇ । ସେ ପଥ ପାର ନ ଦେଖଇ ॥
ଯେ ପଥେ ଉପଶମ ଶୀଳ । ସୁସାଧୁ ସୁଗୁଣ ନିଷ୍କଳ ॥
ମାୟାକୁ ପରିହାସ କରି । ସେ କର୍ମବଳ ଭାଗ ସାରି ॥
ଆପଦ ନରକୁ ମୁକତ । ଯାହାକୁ ଗାୟନ୍ତି ଜଗତ ॥
ଅଗ୍ରତ ରାଜ ଋଷିବର । ପଥ ଯେ ଅତି ଅଗୋଚର ॥
ପ୍ରାଣୀର ମନୋରଥ ପଥେ । ଅଗମ୍ୟ ଅଟଇ ଜଗତେ ।
ଗରୁଡ଼ ପତି ବ୍ରହ୍ମା ଯହିଁ । ସଚ୍ଚିଦାପତି ନାହିଁ ତହିଁ ॥
ଦୁସ୍ତର ସୁତ ରାଜା ଧନ । ଯେ ଏଥୁ ଦୂର ହରେ ମନ ॥
ଯେ ଏହା ତୁଚ୍ଛ ପ୍ରାୟେ ତେଜି । ଉତ୍ତମ ଶ୍ଳୋକ ପାଦେ ଭଜି ॥
ଏହାଙ୍କ ରାଜ୍ୟ ଯେ ସମ୍ପଦ । ତ୍ରିଦଶ ମାନଙ୍କୁ ଦୁର୍ଲ୍ଲଭ ॥
ଏହା ନ ଦେଖି ସାଧୁ ଚିତ୍ତେ । ମହତ ଗୁରୁ ପାଦ ଗତେ ॥
ସେ ବିନୁ ଭକ୍ତ ମତ୍ତ ହୋଇ । ଅଛନ୍ତି ମନକୁ ବୁଡ଼ାଇ ॥
ଯେ ଯଜ୍ଞ ଧର୍ମୋ ତପୋମୟ । ବିଧି ନିର୍ଗୁଣ ଯୋଗ ଦେହ ।
ସାଂଖ୍ୟ ଯୋଗରେ ଯେହୁ ସାର । ଯେ ପ୍ରଭୁ ପ୍ରକୃତି ଈଶ୍ୱର ॥
ସେ ନାରାୟଣ କୃଷ୍ଣ ହରି । ଅନନ୍ତ ନାମ ମୁଖେ ଧରି ॥
ଛାଡ଼ିଲେ ମୃଗ କଳେବର । କି ଅବା ଦେବା ପଟାନ୍ତର ॥
ଏ ଭାଗବତ ସେ ଭାଷିତ । ଶୁଦ୍ଧ ଗୁଣ କର୍ମ ଭରତ ॥
ଏହା ଅନୁ ଚରିତମାନ । ପଢ଼ଇ ଶୁଣଇ ଯେ ଜନ ॥
ଆୟୁଷ ଯଶ ଧର୍ମ ତାର । ହୁଅଇ ମଙ୍ଗଳ ଅପାର ॥
ଯେ ଏହା ଶୁଣି ଶ୍ରଦ୍ଧା ଚିତ୍ତେ । ଭରତ ଉପାଖ୍ୟାନ ମତେ ॥
ପ୍ରଭୁ ଚରଣେ ଭକ୍ତି ତାର । ଅଶେଷ ପାପୁଁ ହୋୟେ ପାର॥
ପ୍ରଭୁ ପଦାରବିନ୍ଦଗତେ । ମୋ ମନ ରହୁ ଅବିରତେ ॥
ବୋଲଇ ଜଗନ୍ନାଥ ଦାସ । ଭରତ କଥା ଗୀତ ରସ ॥
ଯେ ହେତୁ କରେ ହୃଦଗତେ । ହରି ଭଜନ ଦୃଢ଼ ଚିତ୍ତେ ॥
ସୁଜନ ଜନେ ଏଣେ ରସ । ଭରତ ଭାବ ହୃଦେ ଘୋଷ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭରତ ଉପାଖ୍ୟାନେ ସଂବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପବର । ସୁମତି ଭରତ କୁମର ॥
ଆଉ ଯେ ତାହାଙ୍କ ତନୟେ । ଋଷଭ ପଥ ସେ ଆତ୍ମୟେ ॥
କରିବେ କଳିଯୁଗ ଧର୍ମ । ପାପୀଷ୍ଠ ନାନା ଦ୍ୱନ୍ଦ୍ୱ କର୍ମ ॥
ସୁମତି ପତ୍ନୀଠାରେ ସୁତ । ହୋଇଲା ନାମେ ଦେବଜିତ ॥
ତାହାର ହୋଇଲା କୁମର । ଦେବଦ୍ରୁମନ ନାମ ତାର ॥
ପ୍ରମେଷ୍ଠୀ ନାମେ ତା କୁମର । ଜନ୍ମିଲା ଧେନୁ ମତିଠାର ॥
ସୁବର୍ଚ୍ଚଳା ନାମେ ପତ୍ନୀ ତାର । ଜନ୍ମିଲା ସତୀହ କୁମର ॥
ଯେ ଆତ୍ମା ବିଧିମତ କରି । ଭଜିଲା ପ୍ରଭୁ ନରହରି ॥
ତାହାର ପ୍ରତିହର୍ତ୍ତା ନାମ । ତନୟ ହୋଇଲା ରାଜନ ॥
ପ୍ରତିହର୍ତ୍ତାର ଯେ କୁମର । ବେନି ହୋଇଲା ନୃପବର ॥
ଭମାନ ଆଦି ଯେ କୁମର । ହୋଇଲା ସ୍ତୁତ୍ୟା ତହିଁ ତାର ॥
ଋଷି କନ୍ୟାର ତହୁଁ ଜାତ । ଉଦ୍‌ଗ୍ରୀଥ ଭୂମାନ ଯେ ସୁତ ॥
ଦେବକୁଲ୍ୟାର ତହିଁ ତାର । ହୋଇଲା ପ୍ରମୀବ କୁମର ॥
ବିରୁସା ଯାର ତହିଁ ତାର । ଜନ୍ମିଲା ବିଭୁ ଯେ କୁମର ॥
ରତିର ଠାରେ ଯେ ତାହାର । ପୃଥୁସେନ ବୋଲି କୁମର ॥
ଆକୂତି ଠାରେ ତାରସୁତ । ନକ୍ତ ସେ ନାମରେ ବିଦିତ ॥
ନକ୍ତ ରାଜାର ସେ କୁମର । ହୋଇଲା ଗୟା ନୃପବର ॥
ସେ ବିଷ୍ଣୁ ଅଂଶକୁ ବହଇ । ନାନା ଲକ୍ଷଣେ ପୂର୍ଣ୍ଣ ହୋଇ ॥
ସ୍ୱଧର୍ମ ପ୍ରଜା ପାଳନରେ । ମନ ତାହାର ନିରନ୍ତରେ ॥
ଯେ ମହାପୁରୁଷ ଈଶ୍ୱର । ଅନାଦି ନାଥ ନିରାକାର ॥
ସେ ସର୍ବ ଦେବଙ୍କର ପର । ପରମ ବ୍ରହ୍ମ ଯୋଗେଶ୍ୱର ॥
ତାହାଙ୍କ ତହିଁ ମନ ଥୋଇ । ପରମ ଭକ୍ତି ଭାବ ବହି ॥
ସତ୍ତ୍ୱ ପ୍ରଧାନ ମତି ହୋଇ । ଆନନ୍ଦେ ପାଳଇ ସେ ମହୀ ॥
ତାହାର ଗୁଣ ମହୀତଳେ । ଗାୟନ କରନ୍ତି ସକଳେ ॥

ଏହାର ସମ କେ ସଂସାରେ । ଯଜ୍ଞାଦି କର୍ମ କରିବାରେ ॥
ଯାହାର ଭକ୍ତି ଭାବୁଁ କରି । ବଶ ହୋଇଲେ ନରହରି ॥
ଯାହାକୁ ଦକ୍ଷ କନ୍ୟାନାରୀ । ସନ୍ତୋଷେ ଅଭିଷେକ କରି ॥
ସକଳ ତୀର୍ଥ ଜଳ ନେଇ । ରାଜତ୍ୱ ପଣ ତାକୁ ଦେଇ ॥
ତାହାରେ ପ୍ରଜା ସୁଖ ପାଇ । ବହୁତ ଶସ୍ୟ ଦେଇ ମହୀ ॥
ମହୀରେ ଯେତେ ନୃପବର । ଖଟନ୍ତି ତାହାଙ୍କ ପୟର ॥
ସଂଗ୍ରାମେ ତାହାର ଚରିତ । ସ୍ତୁତି କରନ୍ତି ସୁରବନ୍ତ ॥
ତାହାର ଯଜ୍ଞ ମାନଙ୍କରେ । ସନ୍ତୋଷ ହେଲେ ବେଦବରେ ॥
ସୂର୍ଯ୍ୟାଦି ନବଗ୍ରହ ଯେତେ । ତୃପ୍ତ ହୋଇଲେ ସେ ସମସ୍ତେ॥
ଯେଥୁ ଅନ୍ତରେ ପରୀକ୍ଷିତ । ତାହାର ହେଲା ତିନିସୁତ ॥
ସୁଗତି ଚିତ୍ରରଥ ନାମ । ତୃତୀୟେ ଯେ ଅବରୋଧନ ॥
ଚିତ୍ରରଥର ପତ୍ନୀଠାରେ । ସମ୍ରାଟ ହୋଇଲା କୁମରେ ॥
କଳାବତୀ ପତ୍ନୀ ତାହାର । ମରୀଚି ହୋଇଲା କୁମର ॥
ତାହାର ବିନ୍ଦୁମତି ଠାରେ । ବିନ୍ଦୁମାନ ହେଲା କୁମରେ ॥
ବିନ୍ଦୁମାନର ପତ୍ନୀଠାରେ । ମଧୁ ହୋଇଲା ଯେ କୁମରେ॥
ମଧୁର ସୁମନୁ କୁମର । ଭୋଜା ନାମରେ ପତ୍ନୀ ତାର ॥
ତାହାର ତହିଁ ବେନିସୁତ । ମନୁ ପ୍ରମନୁ ଯେ ବିଦିତ ॥
ମନୁର ସତ୍ୟାଠାରେ ତହିଁ । ଭୌବନ ହୋଇଲା ତନୟୀ ॥
ଭୂଷଣା ପତ୍ନୀଠାରେ ତାର । ତ୍ୱଷ୍ଟା ଯେ ହୋଇଲା କୁମର ॥
ବିରୋଚନାର ତହିଁ ତାର । ବିରଜ ହୋଇଲା କୁମର ॥
ଶୁଣ ରାଜନ ପରୀକ୍ଷିତ । ବିରଜ ପୁତ୍ର ହେଲା ଶତ ॥
ଏହାଙ୍କ ମଧ୍ୟେ ଶ୍ରେଷ୍ଠବର । ଶତଜିତ ପୁତ୍ର ତାଙ୍କର ॥
ବିଶୁଚି ପତ୍ନୀଠାରେ ତାର । କନ୍ୟା ଗୋଟିଏ ଏ ଅପର ॥
ଯେଣୁ ଏ ଲୋକେ ହୋଇ ଜାତ । ଶୁଣ ରାଜନ ପରୀକ୍ଷିତ ॥
ପ୍ରିୟବ୍ରତର ବଂଶମାନ । ବିରଜ ପ୍ରତାପୁ ରାଜନ ॥
ନିର୍ଭୟ ହୋଇଲେ ତେସନେ । ବିଷ୍ଣୁ ପ୍ରସାଦୁ ଦେବେ ଯେହ୍ନେ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ॥
ପ୍ରିୟବ୍ରତର ବଂଶଗୁଣ । ସୁଜନେ ସାବଧାନେ ଶୁଣ ॥
ଏଣୁ କୃଷ୍ଣର ପାଦତଳେ । ଭଗତି ହୋଇବ ନିଷ୍କଳ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ*
*ପ୍ରିୟବ୍ରତରାଜବଂଶ ବର୍ଣ୍ଣନେ ନାମ ପଞ୍ଚଦଶୋଽଧ୍ୟାୟଃ ।*

## ଷୋଡ଼ଶ ଅଧ୍ୟାୟ

### ରାଜା ଉବାଚ

ଭୂମି ମଣ୍ଡଳର ବିସ୍ତାର । ତୁମ୍ଭେ କହିଲ ମୁନିବର ॥
ଯାବତ ରବିର ପ୍ରକାଶ । ନକ୍ଷତ୍ର ଚନ୍ଦ୍ର ଯହିଁ ବାସ ॥
ପ୍ରିୟବ୍ରତର ଆଚରଣ । ଯାବତ କରିଛି ଭ୍ରମଣ ॥
ତହୁଁ ଜଗତ ଉପୁଜିଲା । ତେଣୁ ସପ୍ତସିନ୍ଧୁ ହୋଇଲା ॥
ଏହା କହିଲ ବିପରୀତ । ଅପରେ କି କି ଦ୍ୱୀପ ସାତ ॥
ଏହାର କେତେ ପରିମାଣ । ଅପରେ ଯେତେକ ଲକ୍ଷଣ ॥
ଏ ସର୍ବ କହ ମୁନିବର । ଶୁଣିବା ଶରଧା ମୋହର ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନେକ ଅଛି ଯାର ଗୁଣ ॥
ସେ ସ୍ଥୂଳରୂପ ଭଗବାନ । ଯେ ଜ୍ୟୋତି ରୂପ ସୂକ୍ଷ୍ମ ବ୍ରହ୍ମ॥
ପରମ ପରାପର ପର । ଯେ ବାସୁଦେବ ଚକ୍ରଧର ॥
ତାହାର ଚରଣାରବିନ୍ଦେ । ମନ ମୋ ଅଛି ଅପ୍ରମାଦେ ॥
ଏଣୁ ତୁମର ଅଗୋଚରେ । ନାହିଁ ଏ ବ୍ରହ୍ମାଣ୍ଡ ଭିତରେ ॥
ଏଣୁ ଯେ ମୋହର ସନ୍ଦେହ । ଭୋ ମୁନି ବିସ୍ତାରିଣ କହ ॥

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପବର । ମାୟାରେ ପ୍ରଭୁଙ୍କ ଶରୀର ॥
ସଂସାର ତାହାର ଭିଆଣ । ଅଶେଷ ଅଛି ତାର ସ୍ଥାନ ॥
ତାହାର ରୂପ ଗୁଣମାନ । ଏହା କେ କହିବ ବଦନ ॥
ନର ଅମର ଯେତେ ହୋଇ । କେବେ ହେ ବର୍ଣ୍ଣି ନ ପାରଇ ॥
ତଥାପି ଶ୍ରେଷ୍ଠ ଶ୍ରେଷ୍ଠ କରି । କହିବୁ ଶୁଣ ଦଣ୍ଡଧାରୀ ॥
ଭୂଗୋଳ ଚକ୍ରର ବର୍ଣ୍ଣନ । ରାଜନ ହୁଅ ସାବଧାନ ॥
ଏ ଜମ୍ବୁଦ୍ୱୀପେ ନୃପବର । ବିକାଶ ବିମଳ ଆକାର ॥
ଅତି ଅଦ୍ଭୁତ ଏହୁ ସ୍ଥଳ । ନିୟୁତ ଯୋଜନ ବିସ୍ତାର ॥
ଏ ମଧ୍ୟେ ନବ ଯେ ବରଷ । ସହସ୍ର ଯୋଜନ ପ୍ରକାଶ ॥
ମହତ ନବ ପର୍ବତରେ । ବିଭାଗ ହୋଇ ଯେଝା ଠାରେ ॥
ଏ ନବ ବରଷ ମଧ୍ୟରେ । ବର୍ଷ ଇଳା ବୃତ୍ତ ନାମରେ ॥
ଯାହାକୁ ନାଭି ଦେଶ ତହିଁ । ପର୍ବତ ରାଜ ଅଛି ଯହିଁ ॥
ସୁବର୍ଣ୍ଣମୟ ବିରାଜିତ । ଅତି ସୁନ୍ଦର ଅଦଭୂତ ॥
ମସ୍ତକ ଯାହାର ପ୍ରମାଣ । ବାଇଶ ସହସ୍ର ଯୋଜନ ॥
ମୂଳରେ ଯାହାର ପ୍ରମାଣ । ଷୋଳ ସହସ୍ର ଯେ ଯୋଜନ॥
ସୁବର୍ଣ୍ଣ ଶୃଙ୍ଗ ତିନି ତାର । ପୃଥ୍ୱୀରେ ସ୍ତମ୍ଭର ଆକାର ॥
ପୂର୍ବ ଭାଗରେ ତିନି ଗିରି । ନୀଳ ଧବଳ ରୂପ ଧରି ॥

ଲବଣ ସିନ୍ଧୁ ନିକଟରେ । ବେନି ସହସ୍ର ଯେ ବିସ୍ତାରେ ॥
ନିଷଧ ହେମକୂଟ ଆଦି । ଦକ୍ଷିଣେ ଏହାଙ୍କ ପ୍ରସିଦ୍ଧି ॥
ଏହା ଦକ୍ଷିଣେ ଗିରିବର । ହିମାଳୟ ନାମ ତାହାର ॥
ପୂର୍ବହୁଁ ଯଥାକର୍ମ ତାର । ଅୟୁତ ଯୋଜନ ବିସ୍ତାର ॥
ଅପରେ ପୂର୍ବ ମାଲ୍ୟବନ । ବିଶାଳ ଗନ୍ଧ ଯେ ମାର୍ଦନ ॥
ଅୟୁତେ ଯୋଜନ ବିସ୍ତାର । ଅଛଇ ଜଗତେ ପ୍ରଚାର ॥
ଭଦ୍ରାଶ୍ୱ କେତୁମାଳ ଆଦି । ଏହାଙ୍କ ନାମରେ ପ୍ରସିଦ୍ଧି ॥
ମନ୍ଦର ମେରୁ ଯେ ମନ୍ଦର । ସୁପାର୍ଶ୍ୱ ଆଦି ଗିରିବର ॥
ସ୍ୱର୍ଣ୍ଣଗିରି ଚତୁର୍ଭାଗରେ । ଅଛନ୍ତି ବେଷ୍ଟିତ ଆକାରେ ॥
ବୃକ୍ଷ ନ୍ୟଗ୍ରୋଧ ଆମ୍ରସାର । ଜମ୍ବୁ କଦମ୍ବ ଯେ ଚତ୍ୱାର ॥
ପର୍ବତ ପ୍ରାୟେ ଉଚ୍ଚବର । ଯୋଜନ ସହସ୍ର ବିସ୍ତାର ॥
ଚତ୍ୱର ସିନ୍ଧୁ ତା ନିକଟେ । ବିରାଜେ ନାନା ଶୁଭ୍ର ତଟେ ॥
ମଧୁର କ୍ଷୀର ଇକ୍ଷୁବନ । ଯହିଁ ସକଳ ଦେବଗଣ ॥
ଯେ ମହାମତେ କରି ଧ୍ୟାନ । ପ୍ରଭୁଙ୍କୁ କରନ୍ତି ଭଜନ ॥
ଭଦ୍ର ଚିତ୍ରରଥ ନନ୍ଦନ । ବୈଭ୍ରାଜ ଗରୁଡ଼ ପବନ ॥
ଯହିଁ ଅମର ବୃନ୍ଦମାନ । କ୍ରୀଡ଼ା କରନ୍ତି ଅନୁକ୍ଷଣ ॥
କାମିନୀ ସଙ୍ଗତେ ଘେନିଣ । ଯହିଁ ଅନନ୍ତ ମୂର୍ତ୍ତିମାନ ॥
ଏକାଦଶ ଶତ ଯୋଜନ । ମନ୍ଦର ଗିରି କ୍ରୋଟ ଜାଣ ॥
ଅତ୍ୟନ୍ତ ତୁଙ୍ଗ ବୃକ୍ଷବର । ସୁରଙ୍ଗ ଦଳ ଫଳ ତାର ॥
ସୁଗନ୍ଧ ଅମୃତ ସୁସ୍ୱାଦ । ରସ ଗଳଇ ବିଶାରଦ ॥
ସେ ଅରୁଣୋଦା ନଦୀ ସାର । ମନ୍ଦରୁ ହୋଇଛି ବାହାର ॥
ମେରୁ ମନ୍ଦରୁ ଜମ୍ବୁଫଳ । ପାଚି ପଡ଼ଇ ମହୀତଳ ॥
ହସ୍ତ ପ୍ରମାଣେ ଫଳ ତାର । ରସ ଗଳଇ ସେ ଅପାର ॥
ତହୁଁ ଜମ୍ବୁନଦୀର ଜାତ । ଶୁଣ ହେ ରାଜା ପରୀକ୍ଷିତ ॥
ତାହାର ଜଳ ସଂଯୋଗରେ । ସୁବର୍ଣ୍ଣ ହୋଇଛି କ୍ଷିତିରେ ॥
ମହାକଦମ୍ବ ତରୁବରେ । ତହିଁର ମଧର କ୍ରୋଟରେ ॥
ପରମ ଧାରା ରୂପ ହୋଇ । ତହୁଁ ସେ ମଧୁରସ ବହି ॥
ଇଳାବୃତ୍ତକୁ ବେଢ଼ି କରି । ସୁଗନ୍ଧ ବହଇ ପ୍ରସରି ॥
ତାର ସୁରଶ୍ମ ଯେ ପବନ । ସୁବାସ ଶତେକ ଯୋଜନ ॥
କୁମୁଦ ଗିରିତଟ ଦେଶେ । ବୃଶାଳ ତଟ ଯେ ପ୍ରକାଶେ ॥
ତାହାର କନ୍ଦରୁ ବାହାର । ବୃଶାଳ ପୟୋଗୁଣ ସାର ॥
ବିଷ୍ଣୁ ପଦରେ ସେ ରହିଲା । ବହୁତ କାଳ ତହୁଁ ଗଲା ॥
ସହସ୍ର ଯୁଗ ଅନନ୍ତରେ । ପଡ଼ିଲା ସ୍ୱର୍ଗୁ ମହୀପୁରେ ॥
ଧ୍ରୁବ ପରମ ଭାଗବତ । ଜାଣିଲା ବିଷ୍ଣୁ ପାଦୁଜାତ ॥
ଭକ୍ତିଯୋଗରେ ବଶ ହୋଇ । ଆନନ୍ଦେ ରୋମ ପୁଲକଇ ॥
ମାର୍ଜନା କରିବା ନିମନ୍ତେ । ଶିରରେ ବହିଲା ତୁରିତେ ॥
ତେଣୁ ସକଳ ମୁନିଗଣ । ପ୍ରଭାବ ଜାଣିଲେ ତକ୍ଷଣ ॥
ସକଳ ଆତ୍ମା ଭଗବାନେ । ତପ ସମାଧି ଯୋଗଧ୍ୟାନେ ॥
ମୋକ୍ଷ କାରଣେ ସେ ଭଜନ୍ତି । ପ୍ରଭୁର ମହିମା ଜାଣନ୍ତି ॥
ସେ ଜଳ ପାଇ ତୁଷ୍ଟ ହୋଇ । ଜଟାରେ ଥୋଇଲେ ସେ ନେଇ ॥
ତହୁଁ ସେ ବହୁତ ପ୍ରକାରେ । ଇନ୍ଦ୍ର ମଣ୍ଡଳେ ସେ ଶୂନ୍ୟରେ ॥
ତାହାଙ୍କୁ ଲକ୍ଷ୍ୟ କରିଗଲା । ବ୍ରହ୍ମ ଲୋକରେ ସେ ପଡ଼ିଲା ॥
ତହୁଁ ସେ ବିଦ୍ୟମାନ ହୋଇ । ଚତୁର୍ଦ୍ଧା ରୂପକୁ ସେ ବହି ॥
ଶୁଣ ପରୀକ୍ଷ ନୃପବର । ଏ ନାମ ଚତ୍ୱାର ତାହାର ॥
ସୀତା ଅଳକାନନ୍ଦା ଦୁଇ । ସିନ୍ଧୁ ସୁଭଦ୍ରା ନାମ ବହି ॥
ଚାରି ଦିଗରେ ସେ ଭ୍ରମଇ । ସିନ୍ଧୁରେ ପ୍ରବେଶ ହୋଅଇ ॥
ବ୍ରହ୍ମା ସଦନୁ ସୀତା ଯାଇ । କେଶବାଚଳେ ସେ ପଡ଼ଇ ॥
ଅଧଃ ଊର୍ଦ୍ଧ୍ୱରେ ସେ ଭ୍ରମଇ । ଗନ୍ଧମାର୍ଦନେ ସେ ପଡ଼ଇ ॥
ତାହାର ଶୃଙ୍ଗରେ ବିହରି । ଭଦ୍ରାଶ୍ୱ ବର୍ଗ ଶୁଦ୍ଧ କରି ॥
କ୍ଷୀରସିନ୍ଧୁର ପୂର୍ବଦିଗ । ପ୍ରବେଶ କରି ଅଛି ବେଗ ॥
ମେରୁ ଶିଖରେ ଭଦ୍ରା ଯାଇ । ଉତ୍ତର ଦିଗେ ସେ ଭ୍ରମଇ ॥
ମନ୍ଦର ଗିରି ଶୃଙ୍ଗ ଦେଶେ । ଅଳକାନନ୍ଦା ସେ ପ୍ରକାଶେ ॥
ଇଳାବୃତ୍ତର ଯେ ଉତ୍ତରେ । ପ୍ରକାଏ ସୁସ୍ଥ ଯାଇ ନୀରେ ॥
ଯାବତ ଜୀବ ସୁଖ ପାଇ । ଅଛନ୍ତି ଯାର ଜଳ ଖାଇ ॥
ଚିତ୍ରକୂଟର ଗିରି ଆଦି । କପିଳ ବୈଦୂର୍ଯ୍ୟ ପ୍ରସିଦ୍ଧି ॥
ନାଗ କାଳିନ୍ଦୀ ନୀର ନଦ । ଏ ଆଦି ଯେତେକ ପ୍ରସିଦ୍ଧ ॥
ମେରୁ କଳିକା ପ୍ରାୟେ ହୋଇ । ଏ ସର୍ବଗିରି ବିରାଜଇ ॥
ମେରୁ ଜଟରେ ପୃଷ୍ଠ ଦେଶେ । ଅଠର ଯୋଜନ ପ୍ରକାଶେ ॥
ଦେବକୂଟଏ ଗିରି ଦୁଇ । ମେରୁର ପୂର୍ବଭାଗେ ରହି ॥
ପବନ ପାରିଜାତ ଦୁଇ । ତାହାର ପଶ୍ଚିମେ ଶୋଭଇ ॥
କୈଳାସ କରବୀର ଦୁଇ । ଦକ୍ଷିଣ ପାଖେ ବିରାଜଇ ॥
ଉତ୍ତରେ ତ୍ରିଶୃଙ୍ଗ ମକର । ଅଛନ୍ତି ବେନି ଗିରିବର ॥
ଏ ଅଷ୍ଟ ଗିରି ମଧଦେଶେ । ସୁବର୍ଣ୍ଣ ଗିରି ଯେ ପ୍ରକାଶେ ॥
ସୁବର୍ଣ୍ଣଗିରି ଅଗ୍ରଦେଶେ । ବ୍ରହ୍ମାର ପୁର ଯେ ପ୍ରକାଶେ ॥
ଅୟୁତ ଯୋଜନ ସେ ହୋଇ । ନାନା କୁସୁମ ସୁବାସଇ ॥
ହେମ କଳସ ତୁଙ୍ଗ ସାର । କି ଅବା ଦେବା ପଟାନ୍ତର ॥
ଚାରି ଦିଗରେ ଯେ ତାହାର । ଇନ୍ଦ୍ରାଦି ଲୋକପାଳଙ୍କର ॥
ଯଥା କର୍ମରେ ଯେଝା ମତେ । ନିର୍ମିତ ପୁର ଯଥୋଚିତେ ॥

ବେହାର କରନ୍ତି ସେ ନିତ୍ୟେ । ଯଥାନୁକ୍ରମରେ ସମସ୍ତେ ॥
ଅଷ୍ଟପାଳଙ୍କ ଅଷ୍ଟପୁର । ସୁସଞ୍ଚ ଅତି ମନୋହର ॥
ପଞ୍ଚମସ୍କନ୍ଧେ ହରିବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ॥
ପ୍ରଭୁ ପଦାରବିନ୍ଦ ତଳେ । ମୋ ମନ ରହିବ ନିଶ୍ଚଳେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ*
*ଭୁବନକୋଷ ବର୍ଣନେ ନାମ ଷୋଡ଼ଶୋଽଧ୍ୟାୟଃ ।*

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ । ସେ ଯଜ୍ଞ ଲିଙ୍ଗେ ଯେ ଅଚ୍ୟୁତ ॥
ମାୟା ବାମନ ଅବତାର । ତାହାଙ୍କ ନାମ ଯେ ପୟର ॥
ତହିଁ କନିଷ୍ଠ ଅଙ୍ଗୁଷ୍ଠିରେ । ବ୍ରହ୍ମାଣ୍ଡ ବାଜିଲା ନିର୍ଭରେ ॥
ତହୁଁ ଅଦ୍ଭୁତ ଜଳଧାର । କି ଅବା ଦେବା ପଟାନ୍ତର ॥
ଦୁରିତ ନାଶଇ ସ୍ମରଣେ । ପ୍ରାଣୀ ତରନ୍ତି ସ୍ନାନ ପାନେ ॥
ତହୁଁ ଗଳିଲା ଅତିଖରେ । ପଡ଼ିଲା ତୁଙ୍ଗ ପର୍ବତରେ ॥
ଅଳକାନନ୍ଦା ନାମ ହୋଇ । ବହୁତ ଗିରି ସେ ଭ୍ରମଇ ॥
ସୁବର୍ଣ୍ଣ ଗିରି ହିମାଳୟ । ତାହାକୁ କରି ସେ ଆଶ୍ରୟ ॥
ଅତି ପ୍ରଖର ବେଗେ ବଶେ । ପଡ଼ଇ ଭୂମିଭାଗ ଦେଶେ ॥
ତହୁଁ ଲବଣ ସିନ୍ଧୁ ଜଳେ । ପ୍ରବେଶ ହୁଅଇ ନିଶ୍ଚଳେ ॥
ଅନ୍ୟ ଯେ ନଦନଦୀ ଯେତେ । ଶତ ସହସ୍ର ଯେଝାମତେ ॥
ନାନା ଗିରିରୁ ଜାତ ହୋଇ । ପଡ଼ନ୍ତି ସିନ୍ଧୁରେ ସେ ଯାଇ ॥
ଭାରତ ବରଷ ରାଜନ । ଏ କର୍ମକ୍ଷେତ୍ର ବୋଲି ଜାଣ ॥
ଅପରେ ଅଷ୍ଟ ଯେ ବରଷ । ସ୍ୱର୍ଗ ଲୋକଙ୍କର ସେ ବାସ ॥
ତହିଁ ପୁରୁଷଙ୍କ ଆୟୁଷ । ଦଶ ସହସ୍ର ଯେ ବରଷ ॥
ଦେବତା ତୁଲ୍ୟ ପରାକ୍ରମ । ନିତ୍ୟ ହୋଅନ୍ତି ସେ ନବୀନ ॥
ପରମ ଆନନ୍ଦ ସେ ନିତ୍ୟେ । ବେହାର ଯୁବତୀ ସହିତେ ॥
ସମସ୍ତ ସଙ୍ଗେ ସେ ସଭାରେ । ଦେବେ ରହନ୍ତି ସେହିଠାରେ ॥
ତହିଁରେ ଦେବ ଶ୍ରେଷ୍ଠମାନେ । ଆନନ୍ଦେ ହରଷିତ ମନେ ॥
ସୁର ସୁନ୍ଦର ବୃନ୍ଦମେଳେ । ବିହାର କରନ୍ତି ନିଶ୍ଚଳେ ॥
ଷଡ଼ ଋତୁ ଏକ ସମୟେ । ତହିଁ ଅଛନ୍ତି ଏକ ଠାରେ ॥
ନାନା କୁସୁମ ନାନା ଫଳ । ସୁଗନ୍ଧ ସମୀର ଶୀତଳ ॥
ବିକଚ ନାନା ପୁଷ୍ପଭରେ । ଲତାୟେ ବେଷ୍ଟିତ ଉପରେ ॥
ସଦନ ଅକାରେ ଆଚ୍ଛାଦି । ବୃକ୍ଷ ଲତାଏ ଛନ୍ତି ଛନ୍ଦି ॥
ଅତି ମଞ୍ଜୁଳ ମନୋରମ । ନିବିଡ଼ ଲତାର ସଦନ ॥
ପର୍ବତ ଦ୍ରୋଣୀ ସୁଶୀତଳ । ନିର୍ମଳ ଶୀତ ନାନା ଜଳ ॥
ରୁଚିର ପଙ୍କଜ ସୁନ୍ଦର । ସୁସଞ୍ଚ ବହୁ ସରୋବର ॥
ଜଳରେ ରାଜ ହଂସମାନେ । କ୍ରୀଡ଼ନ୍ତି ହରଷିତ ମନେ ॥
ଜଳ କୁଳ କୁଟ କଳହଂସ । ଚକ୍ର କାରଣ୍ଡବ ସାରସ ॥
ମଧୁର ନାନା ଧ୍ୱନି କରି । ଜଳେ ବିହରନ୍ତି ସେ ହରି ॥
ଏମନ୍ତେ ନାନା ସୁଖସ୍ଥଳେ । ସୁର ସୁନ୍ଦରୀ ବୃନ୍ଦ ମେଳେ ॥
ଅମର ବୃନ୍ଦ ତୋଷ ଚିତ୍ତେ । ତପ ଭୁଞ୍ଜନ୍ତି ଯେଝାମତେ ॥
ତପର ବଳେ ତାହାଙ୍କର । କରୁଣା କରନ୍ତି ଶ୍ରୀଧର ॥
ନବ ବରଷେ ହେ ରାଜନ । ସେ ଯେ ଅନାଦି ନାରାୟଣ ॥
ଲୋକ ନିସ୍ତାରଣ କାରଣେ । ଅଛନ୍ତି ପ୍ରଭୁ ଅନୁକ୍ଷଣେ ॥

### ଶ୍ରୀ ଭଗବାନ ଉବାଚ

ନମସ୍ତେ ପୁରାଣ ପୁରୁଷ । ଅଶେଷ ଗୁଣ ଯହିଁ ବାସ ॥
ଅବ୍ୟକ୍ତ ଅନନ୍ତ କାରଣ । ଭଜଇ ତୋହର ଚରଣ ॥
ବ୍ରହ୍ମା ବିଷ୍ଣୁର ପର ତୁହି । ପ୍ରକୃତି ପାର ତୋର ତହିଁ ॥
ଭୂତ ଭାବନା ତୋର ନାମ । ତୋ ନାମେ ଭବ ଯେ ଖଣ୍ଡନ
ତାହାର ମାୟା ପ୍ରାଣକର୍ମ । ମନ ଗୋଚରେ ନୁହେଁ ଗମ୍ୟ
ଆତ୍ମାକୁ ମାୟାଗୁଣେ ଛନ୍ଦି । ସଂସାରେ କରିଅଛି ବନ୍ଦୀ ॥
ତୋହର ସଦୃଶ ଅପରେ । କାହିଁ ଏ ବ୍ରହ୍ମାଣ୍ଡ ଭିତରେ ॥
ଉତ୍ପତ୍ତି ପ୍ରଳୟ କାରଣ । ଏ ସର୍ବ ଯାହାର ଭିଆଣ ॥
ଯାହାର ଆଦିଅନ୍ତ ନାହିଁ । ଅନନ୍ତ ନାମ ସେ ବୋଲାଇ ॥
ଯାର ଅସଂଖ୍ୟ ଶିରପ୍ରାଣ । ନମସ୍ତେ ପୁରୁଷ ପୁରାଣ ॥
ଯାହାର ତହୁଁ ଜନ୍ମ ହୋଇ । ଅଜୟ ସଂସାର କରଇ ॥
ବ୍ରହ୍ମାଦି ଆମ୍ଭେ ଏ ସକଳେ । ସେବିବୁ ତୋର ପାଦ ତଳେ॥
ରଜ୍ଜୁ ବନ୍ଧନ ପ୍ରାୟେ ହୋଇ । ଯନ୍ତ୍ରିତ ହୋଇ ଅଛୁ ରହି ॥
ସେ ଅନୁଗ୍ରହଟି ଯାହାର । ଭିଆଣ କଲେ ଏ ସଂସାର ॥
ତ୍ରିଗୁଣ ସଙ୍ଗତେ ବଂଧନ । ଯାର ମାୟାରୁ ପ୍ରାଣୀମାନ ॥
ତ୍ରିଗୁଣ ବଶେ ମୋହ ହୋଇ । ଜନ୍ମର ତତ୍ତ୍ୱ ନ ଜାଣଇ ॥
ଏମନ୍ତ ମାୟାକୁ ବିସ୍ତାରି । ସେ ପ୍ରଭୁ ଜଗତେ ବିହରି ॥
ତାହାକୁ ମୋର ନମସ୍କାର । ସେ ପ୍ରଭୁ ଜଗତେ ଠାକୁର ॥
ସୁଜନେ ଶୁଣ ଏହୁ ବାଣୀ । ପଞ୍ଚମସ୍କନ୍ଧେ ପରିମାଣି ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥

ସେ ପ୍ରଭୁ ଚରଣାରବିନ୍ଦେ । ମୋ ମନ ରହୁ ଅପ୍ରମାଦେ ॥
ମୁଁ ଯେ ପାମର ଦୁରାଚାର । ଭୋ ନାଥ ମୋତେ କୃପାକର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ସଂସାର ବ୍ୟବହାରେ ବର୍ଣ୍ଣନେ ନାମ ସପ୍ତଦଶୋଽଧ୍ୟାୟଃ ।*

## ଅଷ୍ଟାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଭଦ୍ରାଶ୍ୱ ବରଷ ବିଧାନ । ରାଜନ ଶୁଣ ସାବଧାନ ॥
ଭଦ୍ରଶ୍ରବା ନାମ ତାହାର । ସାକ୍ଷାତେ ଧର୍ମର କୁମର ॥
ତାହାର କୁଳେ ହୋଇ ଜାତ । ଯେତେକ ପୁରୁଷ ବିଦିତ ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନନ୍ତ ପ୍ରଭୁ ନାରାୟଣ ॥
ତାହାଙ୍କ ସନ୍ତୋଷ କାରଣେ । ପରମ ସମାଦି ବିଧାନେ ॥
ପ୍ରଭୁ ଯେ ଧର୍ମରୂପ ବହି । ଅଛନ୍ତି ପ୍ରାଣୀ ହିତ ପାଇଁ ॥
ତାହାଙ୍କ ସେବା ଅବିରତେ । କରନ୍ତି ଯେ ଯାହାର ମତେ ॥
ପରମ ପ୍ରିୟ ଭାବ ଧରି । ଏହି ସ୍ତୁତିରେ ସ୍ତୁତି କରି ॥
ଭଦ୍ରଶ୍ରବାର ପ୍ରିୟତନୁ । କରନ୍ତି ଅପ୍ରମାଦ ଯେଣୁ ॥
ନମଇ ଧର୍ମ ଅବତାର । ଆତ୍ମା ଅଶେଷ ପ୍ରାଣୀଙ୍କର ॥
ଏହୁ ଯେ ଆଶ୍ଚର୍ଯ୍ୟର ମତ । ପ୍ରଭୁର ଯେତେ ବିଚେଷ୍ଟିତ ॥
ଶରୀର ମାତ୍ର ସେ ଅଟଇ । ତଥାପି ପ୍ରାଣୀ ନ ଜାଣଇ ॥
ବିଶ୍ୱ ସଂସାରେ ମୂର୍ଖଜନେ । ସତ୍ୟ କରନ୍ତି ଅନୁକ୍ଷଣେ ॥
ପଣ୍ଡିତ ଜନ ଏହା ଜାଣି । ମିଥ୍ୟାରେ ମନେ ପରିମାଣି ॥
ତଥାପି ଯାହାର ମାୟାରେ । ପଣ୍ଡିତେ ଭ୍ରମନ୍ତି ସଂସାରେ ॥
ସେ ଅଜ ବ୍ରହ୍ମାଣ୍ଡ ଠାକୁର । ତାହାକୁ କରି ନମସ୍କାର ॥
ସକଳ ଆବୃତ୍ତ ଯେ ହୋଇ । ଯାହାର ଆବରଣ ମହୀ ॥
ଏ କଥା ଉଚିତ ତୋହର । କାର୍ଯ୍ୟକାରଣେ ତୁ ଠାକୁର ॥
ନାନା ଶରୀରବନ୍ତ ହୋଇ । ନାନା ଭୋଗ୍ରକୁ ଭୁଂଜୁ ତୁହି ॥
ତୋତେ ଆମ୍ଭର ନମସ୍କାର । ତୁ ନାଥ ସକଳ ଈଶ୍ୱର ॥
ଏମନ୍ତ ନାନା ସ୍ତୁତିମତେ । ସେବନ୍ତି ତାଙ୍କ ପାଦାଗ୍ରତେ ॥
ନୃସିଂହ ନାମେ ସେ ଠାକୁର । ଅଛନ୍ତି ହରି ବରଷର ॥
ତାହାଙ୍କ ରୂପର କାରଣ । ପଛେ କହିବା ହେ ରାଜନ ॥
ପରମ ଭାଗବତ ଜନ । ମହାପୁରୁଷ ହେ ରାଜନ ॥
ଦୈତ୍ୟ ଦାନବ କୁଳମଣି । ସୁଶୀଳ ସାଧୁ ସତ୍ୟବାଣୀ ॥
ପ୍ରହଲାଦ ନାମ ବୋଲାଇ । ପ୍ରଭୁର ପ୍ରିୟ ସେ ଅଟଇ ॥
ଇନ୍ଦ୍ରିୟ ଗଣକୁ ନିବାରି । ଚଞ୍ଚଳ ମତି ସ୍ଥିର କରି ॥
ସେ ସ୍ଥଳ ଲୋକଙ୍କ ସହିତେ । ପ୍ରଭୁଙ୍କୁ ଚିନ୍ତେ ଅବିରତେ ॥
ଏହି ସ୍ତୁତିରେ ସ୍ତୁତିକରି । ସେବଇ ପ୍ରଭୁ ନରହରି ॥
ନମଇ ପ୍ରଭୁ ଦଇତାରି । ତାହାର ତେଜେ ଦିଗ ପୂରି ॥
ନଖଙ୍କ ତେଜଙ୍କ ପ୍ରକାଶ । ରବି କିରଣ କରେ ନାଶ ॥
କରାଳ ଦ୍ରଂଷ୍ଟ ଯେ ବଦନ । ଅଗ୍ନିର ପ୍ରାୟେ ଯେ ଲୋଚନ॥
ଯାହାର ନାମେ ଦୁଷ୍ଟ ଡରେ । ନମଇ ତାହାର ପୟରେ ॥
ଭୋ ନାଥ ତୋହର ପ୍ରସାଦେ । ପ୍ରାଣୀ ତରନ୍ତି ଅପ୍ରମାଦେ ॥
ତୋହର ଅଭୟ ଚରଣେ । ମନ ମୋ ରହୁ ଅନୁକ୍ଷଣେ ॥
ଦାରା ତନୟ ଗୃହ ମୋର । ମନ ନ ରହୁ ଭୋ ଈଶ୍ୱର ॥
ତୁମ୍ଭର ଭକ୍ତଜନ ସଙ୍ଗେ । ସୁଖେ ବଞ୍ଚିବି ନାନା ରଙ୍ଗେ ॥
ସକଳ ଆତ୍ମା ତୁ ଠାକୁର । ଏଣୁ ତୁ ପ୍ରିୟ ପ୍ରାଣୀଙ୍କର ॥
ତୋହର ନାମ ସୁମରଣ । ଅଶେଷ ପାପର ଖଣ୍ଡନ ॥
ଏମନ୍ତ ଯାହାର ପ୍ରଭାବ । ତାହାକୁ କେବା ନ ସେବିବ ॥
ତୋହର ତହିଁ ଭକ୍ତି ଯାର । ପୂଜା ସେ ଦେବ ମାନଙ୍କର ॥
ସକଳ ଗୁଣ ତାର ଠାରେ । ଆଶ୍ରୟ କରନ୍ତି ବେଭାରେ ॥
ତୋର ଅଭକ୍ତ ପ୍ରାଣୀଜନ । ସଂସାର ବନ୍ଧନ କାରଣ ॥
ଏହା ଜାଣିଣ ଯେଉଁ ନର । ଭଜଇ ନୃସିଂହ ପୟର ॥
ଅଶେଷ ଭୟରୁ ତରଇ । କର୍ମ ବନ୍ଧନ ତାର ନାହିଁ ॥
ଶୁଣ ରାଜନ ମନ ତୋଷେ । କେତୁ ମାଳ ନାମେ ବରଷେ॥
ଅଖିଳ ବ୍ରହ୍ମାଣ୍ଡ କାରଣ । କାମଦେବ ରୂପ ଧରିଣ ॥
ଲକ୍ଷ୍ମୀର ସନ୍ତୋଷ କାରଣେ । ବିହାର କରନ୍ତି ଆପଣେ ॥
ସେ ସ୍ଥଳ ଲୋକ ପୁଣ୍ୟଫଳେ । ନାନା ବିହାର ସୁଖ ଭୋଳେ ॥
ଅତି ଲଳିତ ତୋଷ ଭରେ । ବିଳାସ ନାନା ମନୋହରେ ॥
ରୁଚିର ହାସ୍ୟ ଲୀଳାମାନ । କଟାକ୍ଷେ ଯେ ଅବଲୋକନ ॥
ବିକଚ ବଦନାରବିନ୍ଦ । ନିନ୍ଦଇ ପୂର୍ଣ୍ଣମୀର ଚାନ୍ଦ ॥
ଲଳିତ ଲତା ସୁଖସ୍ଥଳେ । ଲକ୍ଷ୍ମୀ ସହିତେ କୁତୂହଳେ ॥
କ୍ରୀଡ଼ା କରନ୍ତି ସୁଖମନେ । ଇନ୍ଦ୍ରିୟ ଭୋଗ୍ୟ ଅନୁମାନେ ॥
ପ୍ରଜାପତି ଦୁହିତା ସଙ୍ଗେ । ତହିଁ ଯେ ଲକ୍ଷ୍ମୀ ଦେବୀ ଅଙ୍ଗେ
ପରମ ସମାଧି ଯୋଗରେ । ସ୍ତୁତି କରନ୍ତି କୃଷ୍ଣଠାରେ ॥
ନମସ୍ତେ ପ୍ରଭୁ ହୃଷୀକେଶ । ସକଳ ଗୁଣେ ଯହିଁ ବାସ ॥
ଷୋଡ଼ଶ କଳାବନ୍ତ ତୁହି । ବେଦ ତୋହର ନିଜ ଦେହୀ॥
ସକଳ ଆତ୍ମା ତୁ ଈଶ୍ୱର । ଅମୃତମୟ ତୋ ଶରୀର ॥

ତୁମ୍ଭେ ପରମ ଭୟଙ୍କର । ତୁ ନାଥ ଶୁଭଙ୍କ ଈଶ୍ୱର ॥
ଅତି ସୁଶୀଳ ଶାନ୍ତ ତୁହି । ତୋ ତହୁଁ ଅନ୍ୟ କେହି ନାହିଁ ॥
ଭୋ ନାଥ ତୋ ପାଦ କମଳ । ସେବି ଲଭନ୍ତି ନାନା ଫଳ ॥
ତୋର ଭକ୍ତ ଜନ ଯେ ହୋଇ । ତାକୁ ସଙ୍କଟୁ ତାରୁ ତୁହି ॥
ତୋ ପାଦ ସରୋରୁହ ଦୁଇ । ନିରତେ ଯେମନ୍ତେ ସେବଇ ॥
ଏମନ୍ତ ଆଜ୍ଞା ମୋତେ କର । ତୁ ନାଥ କରୁଣାସାଗର ॥
ତୋତେ ଯେ ଭାବେ ଆରାଧଇ । ତାହାର ମନୋହର ତୁହି ॥
ତୋର ପ୍ରସନ୍ନ ବିନୁ ତାର । ଫଳ ନୋହଇ ସେ ଠାକୁର ॥
ଏଣୁ ତୁ ସକଳ ଈଶ୍ୱର । ଦ୍ୱିତୀୟ ନାହିଁ ପଟାନ୍ତର ॥
ଭୋ ନାଥ ତୁମ୍ଭେ ନାନା ଦେହ । ସାଧୁଙ୍କ ନିସ୍ତାରଣେ ବହ ॥
ତୁମ୍ଭର ଚେଷ୍ଟା ଏ ସଂସାରେ । ବ୍ରହ୍ମାଦି କେବା ଜାଣିପାରେ ॥
ବିଷ୍ଣୁଙ୍କ ଚରଣ ଚରିତ । ଶୁଣ ରାଜନ ପରୀକ୍ଷିତ ॥
ପ୍ରଭୁର ମତ୍ସ୍ୟ ଅବତାର । ଦେବ ମାନବେ ଅଗୋଚର ॥
ଅତି ସୁନ୍ଦର ରୂପ ରାଶି । ମନୁର ବଂଶ ତହିଁ ବସି ॥
ସେ ରୂପ ଆରାଧନା ପାଇଁ । ଏମନ୍ତ ସ୍ତୁତି ସେ କରଇ ॥
ନମଇ ପରମ ଈଶ୍ୱର । ଯାହାର ନାମ ଅଗୋଚର ॥
ବିସ୍ତାରେ ମତ୍ସ୍ୟ ତୋ ଶରୀର । ତୁ ପ୍ରଭୁ ସକଳ ପ୍ରାଣୀର ॥
ତୁ ଥାଉ ମନର ବାହାରେ । ତୋ ମାୟା କେବା ଜାଣିପାରେ ॥
ଏ ତୋର ମୀନ ମାୟା ଦେହୀ । ଦେବେ ମାନବେ ଦେଖି ନାହିଁ ॥
ସଂସାର ସାଗରେ ତୋ ଜନ୍ମ । ମାୟା ତରଙ୍ଗ ତହିଁ ଭ୍ରମ ॥
ପରମ ମହାବଳୀ ହେଉ । ସଂସାରେ ନାନା ଦେହ ବହୁ ॥
ଜଗତ ପ୍ରାଣୀଙ୍କ ଠାକୁର । ତୋ ପାଦେ ମୋର ନମସ୍କାର ॥
ହିରଣ୍ୟମୟ ରସ ବାଣୀ । ରାଜନ ଶୁଣ ପରିମାଣି ॥
ଅଖିଳ ବ୍ରହ୍ମାଣ୍ଡ ଠାକୁର । ଧରିଣ କୂର୍ମର ଶରୀର ॥
ଅର୍ଯ୍ୟମା ତୁଲେ ପିତୃଗଣେ । ଯେତେ ଅଛନ୍ତି ସେହି ସ୍ଥାନେ ॥
ତାହାଙ୍କୁ ଘେନି ପିତୃପତି । ପ୍ରଭୁଙ୍କୁ ଆନନ୍ଦେ ସେବନ୍ତି ॥
ଏମନ୍ତେ ନାନା ସ୍ତୁତି ମତେ । ସେବନ୍ତି ପ୍ରଭୁ ପାଦାଗ୍ରତେ ॥
ନମସ୍ତେ ସର୍ବ ତତ୍ତ୍ୱଗୁଣ । ଲକ୍ଷି ନ ହୋଇ ତାର ସ୍ଥାନ ॥
ଅଶେଷ ସ୍ଥାନେ ତୋର ସ୍ଥାନ । ନମଇଁ ପ୍ରଭୁ ଭଗବାନ ॥
ନିଜ ମାୟାରେ ରୂପ ଧରି । ଅଶେଷ ମାୟାକୁ ଆବୋରି ॥
ନାନା ଜନ୍ମରେ ଯେ ପ୍ରସିଦ୍ଧି । ତୋ ପଦ୍ମପାଦେ ମୋର ବୁଦ୍ଧି ॥
ଚର ଅଚର ପିତୃ ଭୂତ । ଇନ୍ଦ୍ରିୟ ଆଦି ଏ ସମସ୍ତ ॥
ଆକାଶ ଗ୍ରହ ମହୀସ୍ଥଳ । ଗିରି କାନନ ନାନା ଜଳ ॥
ଦ୍ୱୀପ ନକ୍ଷତ୍ର ଯେ ସାଗର । ଏ ସର୍ବ ନାମଟି ତୋହର ॥
ବ୍ରହ୍ମାଣ୍ଡେ ଯେତେକ ଅଛନ୍ତି । କବିଏ ତୁଣ୍ଡେ ଉଚ୍ଚାରନ୍ତି ॥
ସେ ସର୍ବରୂପଟୁ ଠାକୁର । ନମଇ ତୋହର ପୟର ॥
ଉତ୍ତର ବରଷେ ରାଜନ । ବରାହ ରୂପୀ ଭଗବାନ ॥
କୁରୁମ ରୂପେ ବହୁମହୀ । ଆନନ୍ଦେ ସ୍ତୁତିକି କରଇ ॥
ନମସ୍ତେ ଅନାଦି ଅବ୍ୟୟ । ସକଳ ଯଜ୍ଞେ ଯାର ଦେହ ॥
ତୃତୀୟ ଯୁଗ ରୂପ ଧର । ନମସ୍ତେ ତୋହର ପୟର ॥
ନିବୃତ୍ତି ତୃଷ୍ଣା ଜ୍ଞାନୀଜନ । ମାୟା ଯାହାରଟି ଖଣ୍ଡନ ॥
ସୃଷ୍ଟି ଉଦୟ ସୃଷ୍ଟି ଲୟ । ଯେ ଧରେ ଗୁଣେ ତିନି ଦେହ ॥
ସେ ତୋର ମାୟାରେ ଭ୍ରମନ୍ତି । ତୋ ମାୟା କେହି ନ ଜାଣନ୍ତି ॥
ସର୍ବ କର୍ମରେ ତୁ ଈଶ୍ୱର । ଭୋ ନାଥ ତୋତେ ନମସ୍କାର ॥
ସଂଗ୍ରାମେ ନାଶି ଦୁଷ୍ଟଗଣ । ମାୟା ଶୂକର ତୋର ଜନ୍ମ ॥
ଉପ ଦନ୍ତରେ ତୋର ତ୍ରାଣ । ଭୋ ନାଥ ରଖ ନାରାୟଣ ॥
ତୋହର ପାଦପଦ୍ମ ଦୁଇ । ଆନନ୍ଦେ ମୁହିଁ ଯେ ନମଇ ॥
କହଇ ଦାସ ଜଗନ୍ନାଥ । ହରି ଚରିତ ଭାଗବତ ॥
ବରାହ ଧରଣୀର ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍‌ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୁବନକୋଷ ବର୍ଣ୍ଣନେ ନାମ ଅଷ୍ଟାଦଶୋଽଧ୍ୟାୟଃ ।*

## ଊନବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କିଂପୁରୁଷ ବରଷ ବାଣୀ । ରାଜନ ଶୁଣ ପରିମାଣି ॥
ସୀତାରମଣ ପ୍ରଭୁ ରାମ । ଯାହାର କନିଷ୍ଠ ଲକ୍ଷ୍ମଣ ॥
ପରମ ପ୍ରଭୁ ଯେ ଈଶ୍ୱର । ତାହାଙ୍କ ହନୁମାନ ବୀର ॥
ପରମ ଭାଗବତ ସେହି । ନିଶ୍ଚଳେ ଭକ୍ତି ଯୋଗ ଲଇ ॥
ପ୍ରଭୁଙ୍କ ପାଦପଦ୍ମ ତଳେ । ସେବଇ ମନର ନିଶ୍ଚଳେ ॥
ସେ ରାମକଥା ପୁଣ୍ୟୋତ୍ତମ । ଗନ୍ଧର୍ବେ କରନ୍ତି ଗାୟନ ॥
ଆଷ୍ଟିଷେଣ ସହିତେ ତହିଁ । ହନୁ ଶୁଣଇ ତୋଷ ହୋଇ ॥
ଏମନ୍ତେ କରଇ ଗାୟନ । ସ୍ତୁତି କରଇ ତୋଷମନ ॥
ଉତ୍ତମଶ୍ଳୋକ ତୁ ଠାକୁର । ନମସ୍ତେ ତୋହର ପୟର ॥
ସକଳ ଲକ୍ଷଣ ତୋ ତହିଁ । ସୁଶୀଳ ବ୍ରତ ତୁ ଗୋସାଇଁ ॥
ସର୍ବ ବନ୍ଦନ ତୁ ଠାକୁର । ତୋତେ ମୋହର ନମସ୍କାର ॥
ନମସ୍ତେ ବ୍ରହ୍ମାଣ୍ଡ ଠାକୁର । ସକଳ ଦେବଙ୍କର ଦେବ ॥

ମହାପୁରୁଷ ମହାରାଜ । ନମସ୍ତେ ବ୍ରହ୍ମାଣ୍ଡର ବୀଜ ॥
ସ୍ୱତେଜ କରି ତିନିଗୁଣ । ବିନାଶ କରୁ ନାରାୟଣ ॥
ପ୍ରଶାନ୍ତ ସାଧୁ ତୁ ଠାକୁର । ଜ୍ଞାନୀ ଜ୍ଞାନର ତୁ ଗୋଚର ॥
ତୋହର ନାମ ରୂପ ଯେତେ । କେହି ନ ଜାଣନ୍ତି ଜଗତେ ॥
ସଂସାରେ ତୋର ମାୟା ଜନ୍ମ । ରାକ୍ଷସ ସଂହାର କାରଣ ॥
ଅନ୍ୟଥା ନାହିଁ ଭଗବାନ । ସୀତା ହରଣେ ଯେ ବ୍ୟସନ ॥
ଅଖିଳ ବ୍ରହ୍ମାଣ୍ଡ ଠାକୁର । ତୁମ୍ଭେ ବା କି କରି ନ ପାର ॥
ତେବେ ଯେ ପତ୍ନୀ ନିମନ୍ତରେ । କ୍ଲେଶ ମାନବ ଅବତାରେ ॥
ଏକି ତୋହର ସମ୍ଭବଇ । ଭୋ ନାଥ ତୋର ମାୟା ଏହି ॥
ଜନ୍ମ ମରଣ ଯାର ନାହିଁ । ଅଖିଳ ପ୍ରଭୁ ଭାବଗ୍ରାହୀ ॥
ସୁର ଅସୁର ଆଦି କରି । ବ୍ରହ୍ମାଣ୍ଡେ ଯେତେ ଦେହଧାରୀ ॥
ଏ ସର୍ବ ଆତ୍ମା ଯେ ଈଶ୍ୱର । କି ଅବା ଅକର୍ତ୍ତବ୍ୟ ତାର ॥
ଉତ୍ତର କୋଶଳରେ ଜାତ । ଯେ ପ୍ରଭୁ ନର ଦେହବନ୍ତ ॥
ସେ ରାମ ପାଦତଳେ ମୁହିଁ । ସହସ୍ର ପ୍ରଣାମ କରଇଁ ॥
ଶୁଣ ରାଜନ ମନ ତୋଷେ । ଏବେ ହୋ ଭାରତ ବରଷେ ॥
ନର ନାରାୟଣ ଯେ ହରି । କଳ୍ପେ ପର୍ଯ୍ୟନ୍ତେ ଦେହଧରି ॥
ସାଧୁଙ୍କ ପରିତ୍ରାଣ ପାଇ । ତପସ୍ୟା ରୂପବନ୍ତ ହୋଇ ॥
ଭ୍ରମନ୍ତି ଆତ୍ମା ଗୁଣମତେ । ନାରଦ ତାଙ୍କୁ ଯଥୋଚିତେ ॥
ଭଗତ ସାଧୁଜନ ମେଳେ । ସ୍ତୁତି କରନ୍ତି ସେ ନିଶ୍ଚଳେ ॥
ନମସ୍ତେ ସ୍ୱଭାବ ସୁଶୀଳ । ତୋ ରୂପ ଅକିଞ୍ଚନ ମେଳ ॥
ଋଷିଙ୍କ ବର ତୁ ଠାକୁର । ତୋତେ ମୋହର ନମସ୍କାର ॥
ନରନାରାୟଣ ଶରୀର । ପରମହଂସ ତୁ ଠାକୁର ॥
ସକଳ ଆତ୍ମାଭୂତେ ତୁହି । ତୋ ପାଦପଦ୍ମେ ମୁଁ ବନ୍ଦଇ ॥
ସକଳ କର୍ତ୍ତା ତୁ ଈଶ୍ୱର । ହିଂସ୍ରେକ ନାହିଁ ଯେ ତୋର ॥
ତୁ ଯେ ମାନବର ଶରୀର । ଶରୀର ଭୋଗ ନାହିଁ ତୋର ॥
ସକଳ ଦେଖୁ ତୁ ଠାକୁର । ଗୁଣରେ ଦୋଷ ନାହିଁ ତୋର ॥
ତୋହର ତହିଁ ଯାର ମନ । ତାହାର ସଂସାର ଖଣ୍ଡନ ॥
ଦାରା ତନୟ ଧନ ଘର । ଏଣେ ଅର୍ପିତ ମନ ଯାର ॥
ସେ ତୋତେ ପାଇବେ ବା କାହିଁ । ଶ୍ରମ କେବଳ ତାର ଦେହୀ ॥
ମୋହର ମୂଢ଼ ମତି ହୋଇ । ବିନାଶ କର ଭାବଗ୍ରାହୀ ॥
ତୋହର ଠାରେ ମୋର ମନ । ନିଶ୍ଚଳେ ରହୁ ଭଗବାନ ॥
ଏହି ଭାରତ ବରଷରେ । ପର୍ବତ ଅଛନ୍ତି ଅପାରେ ॥
ମଳୟ ଋଷଭ କୁଟକ । ମଙ୍ଗଳପ୍ରସ୍ଥ ଯେ ମୈନାକ ॥
କୋନ୍ ସହ୍ୟ ଦ୍ରୋଣ ତ୍ରିକୂଟ । ଦେବଗିରି ବିନ୍ଧ୍ୟ ବେଙ୍କଟ ॥

ବାରିଧର ଯେ ଋଷ୍ୟମୂକ । ଋଷ ଗିରି ଯେ ଗୋକମୁଖ ॥
ପାରିପାତ୍ର ଯେ ଶକ୍ତିମାନ । ଚିତ୍ରକୂଟ ଯେ ଗୋବର୍ଦ୍ଧନ ॥
କାମଗିରି କକୁଭ ନୀଳ । ରୈବତକ ଯେ ଇନ୍ଦ୍ରକୀଳ ॥
ମହେନ୍ଦ୍ର ଶ୍ରୀଶୈଳ ସମେତେ । ଅଛନ୍ତି ଶତ ସସ୍ର ମତେ ॥
ଆରବ ନଦ ନଦୀ ଆଦି । ଶତ ସହସ୍ର ଯେ ପ୍ରସିଦ୍ଧି ॥
ଚନ୍ଦ୍ରବସା ଯେ ତାମ୍ରପର୍ଣ୍ଣୀ । ଅଟଟୋଦା ଯେ ପୟସ୍ୱିନୀ ॥
କୃତମାଳ କାବେରୀ ବେନ୍ନା । ଶର୍କରା ବର୍ତ୍ତା କୃଷ୍ଣା ବେଣ୍ୱା ॥
ବୈହ୍ୟାୟସି ଯେ ତୁଙ୍ଗଭଦ୍ରା । ଭୀମରଥୀ ତାପ୍ତି ନିର୍ବିନ୍ଧ୍ୟା ॥
ଗୋଦାବରୀ ରେବା ସୁରସା । ପାୟୋଶ୍ରୀ ନର୍ମଦା ଯେ ବିଶ୍ୱା ॥
ଚର୍ମନ୍ୱତୀ ଶୋଣ ତ୍ରିସାମା । ସରଯୁ ସତଦ୍ରୁ ସୁଷମା ॥
ବ୍ରହ୍ମପୁତ୍ର ଯେ ମନ୍ଦାକିନୀ । ଯମୁନା ବିତସ୍ତା ଅସିନ୍ନୀ ॥
ମହାନଦୀ ଯେ ବେଦସ୍ମୃତି । ଋଷିକୂଲ୍ୟା ଯେ ଓଘବତୀ ॥
କୌଶିକୀ ପୁଣି ସ୍ୱରସ୍ୱତୀ । ଚନ୍ଦ୍ରଭାଗା ଯେ ଷଷ୍ଟବତୀ ॥
ଦୃଶଦ୍ୱତୀ ପୁଣି ଗୋମତୀ । ମରୁତ ବୃଦ୍ଧା ସପ୍ତସତୀ ॥
ଏହି ବରଷେ ହେ ରାଜନ । କର୍ମରୁ ପ୍ରାଣୀ ହୋଏ ଜନ୍ମ ॥
ଶୁକ୍ଳ ଲୋହିତ କୃଷ୍ଣବର୍ଣ୍ଣ । କର୍ମରୁ ପ୍ରାଣୀ ଲଭେ ଜନ୍ମ ॥
ସ୍ୱର୍ଗ ନରକ ଭୂମିଭାଗ । କର୍ମ ଅଧୀନେ କରେ ଭୋଗ॥
ସେ ପ୍ରାଣୀ ସର୍ବଭୂତେ ପର । କୃଷ୍ଣରେ ଭକ୍ତି ସେ ଯାହାର ॥
ସର୍ବ ଭୂତରେ ଆତ୍ମା ସେହି । ଅଖିଳ ବ୍ରହ୍ମାଣ୍ଡ ଗୋସାଇଁ ॥
ସେ ବାସୁଦେବ ଚକ୍ରଧର । ତାହାର ତହିଁ ମତି ଯାର ॥
ଭଗତି ଯୋଗ ଦୃଢ଼ ତାରେ । ସେ ପ୍ରାଣୀ କର୍ମବନ୍ଧୁ ତରେ ॥
ମହାପୁରୁଷ ପ୍ରସଙ୍ଗରେ । ହେଳାରେ ଶ୍ରଦ୍ଧାରେ ଯେ କରେ ॥
ଦେବେ ତାହାର ଗୁଣ କର୍ମ । ଆନନ୍ଦେ କରନ୍ତି ଗାୟନ ॥
ଧନ୍ୟ ଜନମ ତାର ସାର । ମୁକୁନ୍ଦ ପାଦେ ମତି ଯାର ॥
ଭାରତେ ମନୁଷ୍ୟ ଜନ୍ମରେ । ସେ ପ୍ରାଣୀ ଶ୍ରେଷ୍ଠ ସର୍ବଠାରେ ॥
ଦୁଷ୍କର ଯଜ୍ଞ ତପଦାନ । ଏଥିରେ କି ଅବା କାରଣ ॥
ଜନ୍ମର ଆଦି ଯେତେ କର୍ମ । ତାହାର ସବୁ ନିଷ୍କାରଣ ॥
ପ୍ରଭୁର ପାଦପଦ୍ମ ସାର । ସୁମତି ନୋହେଟି ଯାହାର ॥
କଳ୍ପ ଆୟୁଷ ସୁଖମାନ । ଏହୁ ସକଳ ବ୍ୟର୍ଥ ଶ୍ରମ ॥
କ୍ଷୀଣ ଆୟୁଷ ଭାରତରେ । ମନ ଯାହାର କୃଷ୍ଣଠାରେ ॥
ସେ ପ୍ରାଣୀ ସର୍ବଶ୍ରେଷ୍ଠ ହୋଇ । ତାହାର ସମ କେହି ନାହିଁ ॥
ପ୍ରାଣ ପ୍ରୟାଣ ସମୟରେ । ଯେବେ ମାନସ କୃଷ୍ଣଠାରେ ॥
କ୍ଷଣକେ କର୍ମକୁ ଛେଦଇ । ବୈକୁଣ୍ଠ ପଦକୁ ଲଭଇ ॥
ବୈକୁଣ୍ଠ କଥା ସୁଧାରସ । ସେ ସ୍ଥଳେ ଯେ ହୋଯେ ପ୍ରକାଶ ॥

କୃଷ୍ଣ ଆଶ୍ରୟ ପ୍ରାଣୀମାନ । ଯହିଁରେ ନାହିଁ ସାଧୁଜନ ॥
ଯଜ୍ଞାଦି ମହୋତ୍ସବ ଆଦି । ଯେ ସ୍ଥଳେ ନାହିଁ ଏ ପ୍ରସିଦ୍ଧି ॥
ଇନ୍ଦ୍ରର ପୁର ଯେବେ ହୋଇ । ତହିଁରେ ବାସ ନ ଯୋଗାଇ ॥
ମାନବ ଜନ୍ମ ହୋଇ ନର । ଜ୍ଞାନେ ଅଜ୍ଞାନେ ଜ୍ଞାନ ତାର ॥
ତଥାପି ପ୍ରଭୁର ଭଜନ । ତେଜଇ ଛନ୍ନ ହୋଇ ମନ ॥
ନାନା ଯୋନିରେ ଜନ୍ମ ହୋଇ । ଯଜ୍ଞେ ବନ୍ଧନେ ସେ ପଡ଼ଇ ॥
ଶ୍ରଦ୍ଧାରେ ଯେତେଯେତେ ନରେ। ଯଜ୍ଞ ଦିଅନ୍ତି ସେ ଅଗ୍ନିରେ ॥
ନାନା ଦେବତା ରୂପ ହୋଇ । ଯଜ୍ଞ ଭୁଞ୍ଜଇ ଭାବଗ୍ରାହୀ ॥
ମାୟାରେ ପୃଥକ ସେ ହୋଇ । ତତ୍ତ୍ୱ ତା ବିନୁ କେହି ନାହିଁ ॥
ତାକୁ ଭଜନ୍ତି ଯେତେ ପ୍ରାଣୀ । ତାଙ୍କ ମାନସକୁ ସେ ଜାଣି ॥
ଇଚ୍ଛା ବାକ୍ୟରେ ଫଳ ଦେଇ । ଏଣୁ ତୋ ନାମ ଭାବଗ୍ରାହୀ ॥
ପାଦ ପଲ୍ଲବ ଯତ୍ନ କରେ । ମନ ହୁଅଇ ଦୃଢ଼ତରେ ॥
ଭଗତ ପ୍ରାଣୀମାନ ଠାରେ । କରୁଣା କରନ୍ତି ବେଭାରେ ॥

## ଶ୍ରୀ ଶୁକ ଉବାଚ

ଜମ୍ବୁଦ୍ୱୀପରେ ନୃପବର । ଅଷ୍ଟ ଉପଦ୍ୱୀପ ଅପର ॥
ଅଶ୍ୱ ଖୋଜନ୍ତେ ବସୁଂଧରୀ । ସଗର ପୁତ୍ରଙ୍କରେ କରି ॥
ଗର୍ତ୍ତ ହୋଇଲା ଚାରିଦିଗେ । ଏଣୁ ଯେ ଦିଗ ଅଷ୍ଟଭାଗେ ॥
ଶୁଣ ହେ ପରୀକ୍ଷ ରାଜନ । ଅଷ୍ଟ ଉପଦ୍ୱୀପର ନାମ ॥
ରମଣକ ଯେ ଆବର୍ତ୍ତନ । ସ୍ୱର୍ଣ୍ଣ ପ୍ରସ୍ଥ ମନ୍ଦ ହରିଣ ॥
ପଞ୍ଚଜନ୍ୟ ସେ ଚନ୍ଦ୍ରଶୁକ୍ଳ । ଯେ ଲଙ୍କା ଅପରେ ସିଂହଳ ॥
ବିରଷ ବିଭାଗ ଯେମନ୍ତେ । ଜମ୍ବୁଦୀପରେ ଯଥୋଚିରେ ॥
ତୁମ୍ଭର ପ୍ରଶ୍ନ ଅନୁସାରେ । ଭୋ ନୃପ କହିଲୁ ତୁମ୍ଭରେ ॥
କହିଲେ ବିପ୍ର ଜଗନ୍ନାଥ । ଏ ଭାଗବତର ଚରିତ ॥
ଦିଗ ବରଷ ଆଦି କରି । ସକଳ କର୍ତ୍ତା ସେ ମୁରାରି ॥
ତାହାର ଚରଣାରବିନ୍ଦେ । ମନ ମୋ ରହୁ ଅପ୍ରମାଦେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମ ସ୍କନ୍ଧେ*
*ଋଷଭ ଚରିତେ ନାମ ଊନବିଂଶୋଧ୍ୟାୟଃ ।*

## ବିଂଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଏଥୁ ଅନ୍ତରେ ଭୋ ରାଜନ । ପ୍ଲକ୍ଷ ଦ୍ୱୀପ ଯେ ବିଦ୍ୟମାନ ॥
ବରଷ ଲକ୍ଷଣ ପ୍ରମାଣ । କହିବୁ ସାବଧାନେ ଶୁଣ ॥
ଜମ୍ବୁଦ୍ୱୀପ ଯେତେ ପ୍ରମାଣ । ପଲକ୍ଷ ତହିଁକି ଦ୍ୱିଗୁଣ ॥
ଜମ୍ବୁଦ୍ୱୀପରେ ଦ୍ୱୀପ ଖ୍ୟାତ । ପ୍ଲକ୍ଷରେ ସେ ଦ୍ୱୀପ ବିଦିତ ॥
ସପ୍ତଦ୍ୱୀପ ତାହା ପାଳଇ । ଅପରେ ଯେତେ ଛନ୍ତି ରହି ॥
ପ୍ରିୟବ୍ରତର ସେ ନନ୍ଦନ । ଇଧ୍ମଜିତ ତାହାର ନାମ ॥
ସେ ଦ୍ୱୀପ ବିଭାଗକୁ କରି । ପୁତ୍ରକୁ ଦେଲା ଦଣ୍ଡଧାରୀ ॥
ସପତ ପୁତ୍ର ଯେଝା ମତେ । ସପ୍ତ ବରଷ ଯଥୋଚିତେ ॥
କଳ୍ପେ ପର୍ଯ୍ୟନ୍ତେ ଯୋଗବଳେ । ଅଛି ସେ ଅବନୀ ମଣ୍ଡଳେ ॥
ବରଷ ନାମ ଶୁଣି ତୁହି । ଶିବ ବୟସ ଶାନ୍ତ ହୋଇ ॥
ସୁଭଦ୍ର କ୍ଷେମ ତା ଅମୃତ । ଅଭୟ ନାମ ଯେ ବିଦିତ ॥
ଏଥେ ଯେତେକ ଗିରିମାନ । ଅଛନ୍ତି ଶୁଣ ହେ ରାଜନ ॥
ମଣିକୂଟ ଯେ ଇନ୍ଦ୍ରସେନ । ବଜ୍ରକୂଟ ଯେ ଜ୍ୟୋତିଷ୍ମାନ ॥
ମେଘମାଳ ସୁବର୍ଣ୍ଣ ଦୁଇ । ହରିଣ୍ୟଷ୍ଠିବ ଯେ ଅଛଇ ॥
ସାବିତ୍ରୀ ଆଙ୍ଗିରସ ବେନି । ଅରୁଣ ନୃମଣା ତଟିନୀ ॥
ଋତମ୍ଭରା ସେ ସୁପ୍ରଭାତ । ସତ୍ୟମ୍ଭରା ନାମେ ବିଖ୍ୟାତ ॥
ଏ ମହାନଦୀ ମାନେ ତହିଁ । ଏଣୁ ସେ ସ୍ଥଳୀ ବିରାଜଇ ॥
ତାହାର ଜଳସ୍ନାନ ପାନେ । ମାନବ ପଶୁ ଜୀବମାନେ ॥
ସକଳ ପାପ ଦୂର କରି । ସୁଖେ ଅଛନ୍ତି ସେ ବିହରି ॥
ଦେବଙ୍କ ଆୟୁଷ ପ୍ରମାଣେ । ଜୀବନ୍ତି ତହିଁ ପ୍ରାଣୀମାନେ ॥
ଯଜ୍ଞ ଯୋଗରେ ପୂଜାକରେ । ସୂର୍ଯ୍ୟଙ୍କୁ ଭଜନ୍ତି ସେ ନରେ ॥
ବିଷ୍ଣୁ ସ୍ୱରୂପକୁ ସେ ଧରି । ଅଖିଳ ପ୍ରକାଶନ୍ତ କରି ॥
ତୁ ସତ୍ୟ ବ୍ରହ୍ମ ଯେ ପୁରୁଷ । ସକଳ ଭୂତେ ତୋର ବାସ ॥
ତୁ ଯେ ଅଶେଷ ବହୁ ନାମ । ସେ ପାଦେ ଆମ୍ଭର ପ୍ରଣାମ ॥
ପଞ୍ଚଦ୍ୱୀପରେ ପ୍ଲକ୍ଷ ଆଦି । ପୃଥିରେ ଯେତେକ ପ୍ରସିଦ୍ଧି ॥
ସେ ପ୍ରାଣୀମାନଙ୍କ ଆୟୁଷ । ଇନ୍ଦ୍ରିୟ ବଳେ ଯେ ବିଶ୍ୱାସ ॥
ସ୍ୱଇଚ୍ଛା ମତେ ସେ ହୁଅଇ । ଉପ୍ରରିମତେ ଯେଝା ତହିଁ ॥
ପ୍ଲକ୍ଷ ଦ୍ୱୀପର ଚାରିପାଶେ । ଇକ୍ଷୁର ସିନ୍ଧୁ ପରକାଶେ ॥
ଏହାକୁ ଦ୍ୱିଗୁଣ ବିସ୍ତାର । ଶାଲ୍ମଳୀଦ୍ୱୀପ ନୃପବର ॥
ସୁରା ସମୁଦ୍ର ବେଢ଼ି ତାରେ । ଅଛି ସେ ବଳୟ ଆକାରେ ॥
ଯେ ଦ୍ୱୀପ ତାର ଅଧିକାର । ପ୍ରିୟବ୍ରତର ସେ କୁମର ॥
ଯଜ୍ଞବାହୁ ତାହାର ନାମ । ସେ ସାଧୁ ବିଷ୍ଣୁ ପରାୟଣ ॥
ଏ ଦ୍ୱୀପ ସପ୍ତଭାଗ କରି । ପୁତ୍ରକୁ ଦେଲା ଦଣ୍ଡଧାରୀ ॥
ବେଭାରେ ତାର ସପ୍ତସୁତେ । ନେଲେ ସେ ଯେ ଯାହାର ମତେ॥
ସାତ କୁମରଙ୍କର ନାମ । ରାଜନ ଶୁଣ ସାବଧାନ ॥
ପାରିଭଦ୍ର ଯେ ସୁରଚନ । ଦେବବର୍ଣ୍ଣ ସେ ଆପାୟନ ॥

ରମଣକ ଯେ ଅଭିଜ୍ଞାତ । ସୌମନଶ ଏ ଭାଇ ସାତ ॥
ଯେ ସପ୍ତଠାରେ ନଦୀଗିରି । ଏତେ ଅଛନ୍ତି ଦଣ୍ଡଧାରୀ ॥
ଶତ ଶୃଙ୍ଗ ସେ ପୁଷ୍ପବର୍ଷ । କୁମୁଦ କୁନ୍ଦ ଯେ ସୁରସ ॥
ସହସ୍ର ସୁତର ସହିତେ । ବାମଦେବ ସପ୍ତ ପର୍ବତେ ॥
ସିନୀ ବାଲୀ ଯେ ସରସ୍ୱତୀ । ରାକାନନ୍ଦା ସେ ଅକୁମତି ॥
ରଜନୀ କୁହୁ ଏ ଯେ ଦୁଇ । ନଦୀଙ୍କ ସପ୍ତନାମ ଏହି ॥
ଏ ଯେ ବରଷ ପ୍ରାଣୀମାନେ । ତପ ଆରାଧନ ବିଧାନେ ॥
ସେ ରାଜା ଭଗବାନ ସମ । ତାହାକୁ କରନ୍ତି ବନ୍ଦନ ॥
ଭୋ ନାଥ ତୋର ସୁଧାରସ । ପିତୃ ଦେବତାରେ ସନ୍ତୋଷ ॥
ସପ୍ତ ସମୁଦ୍ର ମଧ ଦେଶେ । କୁଶ ନାମେ ଦ୍ୱୀପ ପ୍ରକାଶେ ॥
କ୍ରମେ ସେ ସିନ୍ଧୁ ଦ୍ୱୀପମାନ । ପୂର୍ବକୁ ଅପରେ ଦ୍ୱିଗୁଣ ॥
ପ୍ରିୟବ୍ରତର ସେ ନନ୍ଦନ । ହିରଣ୍ୟରେତା ତାର ନାମ ॥
ଜମ୍ବୁ ଦ୍ୱୀପରେ ସେ ରାଜନ । ତାହାର ସପତ ନନ୍ଦନ ॥
ଏ ସପ୍ତକର୍ମେ ଦଣ୍ଡଧାରୀ । ପୁତ୍ରଙ୍କୁ ଦେଲା ଭାଗକରି ॥
ସପତ ଭାଗ କରି ଦେଲା । ଯେ ଯାହା ମତେ ତାକୁ ଦେଲା ॥
ନଦୀ ପର୍ବତ ସୀମା କରି । ବିଭାଗେ ଦେଲା ଦଣ୍ଡଧାରୀ ॥
ଗିରିଙ୍କ ନାମେ ମହୀପାଳ । ବଭ୍ରୁଚନ୍ଦ୍ରଶୃଙ୍ଗ କପିଳ ॥
ଚିତ୍ରକୂଟ ଯେ ଊର୍ଦ୍ଧ୍ୱରୋମ । ଦେବାନିକ ଗିରି ଦ୍ରବିଣ ॥
ରସକୁଲ୍ୟା ଯେ ମିତ୍ରବିନ୍ଦା । ମଧୁକୁଲ୍ୟା ଯେ ଶ୍ରୁତବିଂଦା ॥
ଦେବଗର୍ଭା ଯେ ଘୃତଚ୍ୟୁତା । ମନ୍ତମାଳା ଗିରି ଦୁହିତା ॥
ଏ ସପ୍ତନଦୀ ଜଳପାନେ । ସୁଖେ ବହନ୍ତି ରାତ୍ର ଦିନେ ॥
ଜାତ ବେଦ ରୂପକୁ ଧ୍ୟାୟି । ଅଛନ୍ତି ଏକ ମନ ହୋଇ ॥
ପରମବ୍ରହ୍ମର ମୂରତି । ତୋ ରୂପ ଯୋଗୀଜନ ଚିନ୍ତି ॥
ସଂସାରେ ଯେତେ ସାଧୁଜନ । ଯଜ୍ଞେ କରନ୍ତି ତୋ ବନ୍ଦନ ॥
ଏମନ୍ତେ ସ୍ତୁତି ନାନା ମତେ । ଅଗ୍ନି ପୂଜନ୍ତି ଯଥୋଚିତେ ॥
କ୍ଷୀର ସିନ୍ଧୁ ମଧ ଭାଗରେ । ଦ୍ୱୀପ ଯେ କ୍ରୌଞ୍ଚତା ନାମରେ ॥
କ୍ରଉଞ୍ଚ ନାମେ ଗିରିବର । ତା ନାମେ ନାମ ସେ ଦ୍ୱୀପର ॥
ପ୍ରିୟବ୍ରତର ପୁତ୍ର ଦୁଇ । ଘୃତ ପୃଷ୍ଠ ନାମ ବହଇ ॥
ସେ ଦ୍ୱୀପେ ରାଜତ୍ୱ ତାହାର । ସପତ ତାହାର କୁମର ॥
ସପ୍ତବରଷ କରି ଦେଇ । ନିଷ୍କଳେ ପ୍ରଭୁଙ୍କୁ ଭଜଇ ॥
ମଧ ରୁହ ଯେ ମେଘପୃଷ୍ଠା । ସୁଧମା ଆତ୍ମା ଯେ ଭ୍ରାଜିଷ୍ଠା ॥
ଲୋହିତାର୍ଣ୍ଣଯେ ବନସ୍ପତି । ବରଷ ନାମ ଏ ପ୍ରସିଦ୍ଧି ॥
ଶୁକ୍ଳ ବର୍ଦ୍ଧମାନ ଭୋଜନ । ଉପବର୍ହତୀ ଯେ ନନ୍ଦନ ॥
ସର୍ବୋତ ଭଦ୍ର ଗିରି ଆଦି । ପର୍ବତ ନାମରେ ପ୍ରସିଦ୍ଧି ॥
ଅଭୟା ଶୁକ୍ଳ ତୀର୍ଥବତୀ । ଅମୃତୌଘା ଯେ ରୂପବତୀ ॥
ଆର୍ଯ୍ୟକା ଯେ ପବତ୍ରବତୀ । ଏ ସପ୍ତନଦୀ ନାମ ଖ୍ୟାତି ॥
ଯାହାର ଜଳ ପାନ କରି । ଦେବ ଦେହକୁ ପ୍ରାଣୀ ଧରି ॥
ଜଳମୟ ଯେ ରୂପ ରାଶି । ତାହାକୁ କହନ୍ତି ବିଶ୍ୱାସୀ ॥
ଭୟ ଗୋମୟ ତୁ ଈଶ୍ୱର । ଭୁବନ ପବିତ୍ର ତୁ କର ॥
ତୋହର ପାଦରେ ବଂଧନ । ଆମ୍ଭେ ଯେ କରୁ ହୃଷ୍ଟମନ ॥
ଏଥୁ ଅନ୍ତରେ ପରୀକ୍ଷିତ । ଶାକଲ୍ୟ ଦ୍ୱୀପର ତଦନ୍ତ ॥
ଦଧି ସମୁଦ୍ର ବେଢ଼ି ତାରେ । ଅଛି ସେ ଏ ସିଂଧୁ ମଧରେ ॥
ବତିଶ ଲକ୍ଷ ଯେ ଯୋଜନ । ଶାକଲ୍ୟ ଦ୍ୱୀପ ପରିମାଣ ॥
ତହିଁରେ ଶାକ ତରୁବର । ସୁଗଂଧ ବାସଇ ପ୍ରସର ॥
ପ୍ରିୟବ୍ରତର ସେ କୁମର । ମେଧାତିଥି ନାମ ତାହାର ॥
ରାଜତ୍ୱ ପଣ ହୋଇ ତହିଁ । ସେ ଶାକଦ୍ୱୀପ ସେ ପାଳଇ ॥
ଦ୍ୱୀପକୁ ସାତ ଭାଗକରି । ପୁତ୍ରଙ୍କୁ ଦେଲା ଦଣ୍ଡଧାରୀ ॥
ତାହାଙ୍କ ପୁତ୍ରଙ୍କର ନାମ । ରାଜନ ଶୁଣ ସାବଧାନ ॥
ମନୋଜବ ଏ ଧୂମାନକ । ପୁରୋଜୀବ ସେ ଚିତ୍ରରେଖ ॥
ବହୁରୂପ ଯେ ବିଶ୍ୱଧାର । ଦେବ ମାନବ ସେ ଅପର ॥
ସପ୍ତ ବରଷ ଯେଝାମତେ । ଦେଇ ସେ ନୃପ ଯଥୋଚିତେ ॥
ପ୍ରଭୁର ପାଦେ ଚିତ୍ତ ଦେଲା । ତପୋବନରେ ସେ ରହିଲା ॥
ଏହାଙ୍କ ପର୍ବତର ନାମ । କହିବା ଶୁଣ ହେ ରାଜନ ॥
ସହସ୍ର ଶ୍ରୋତା ଦେବପାଳ । ମହାନସ ସତ କେଶର ॥
ଗିରି ବଳଭଦ୍ର ଈଶାନ । ଉରୁଶୃଙ୍ଗ ଯେ ତାର ନାମ ॥
ସେ ବରଷରେ ସେ ପୁରୁଷ । ଋତବ୍ରତ ଆଦି ବିଶେଷ ॥
ଯେ ବାୟୁ ରୂପ ଭଗବାନ । ତାହାକୁ କରନ୍ତି ସେବନ ॥
ପରମ ଯୋଗ ସମାଧିରେ । ସ୍ତୁତି କରନ୍ତି ଯେ ସ୍ତୁତିରେ ॥
ଦେବ ପବନ ଯେ ଅପର । ତୋତେ ଆମ୍ଭର ନମସ୍କାର ॥
ପ୍ରାଣୀର ଅନ୍ତର ତାହାରେ । ତୁ ନାଥ ଥାଉ ନିରନ୍ତରେ ॥
ଦଧି ସିଂଧୁରେ ସେ ରାଜନ । ପୁଷ୍କର ଦ୍ୱୀପ ଯେ ଦ୍ୱିଗୁଣ ॥
ମଧୁର ସିଂଧୁ ଯେ ତାହାରେ । ବେଢ଼ିଛି ବଳୟ ଆକାରେ ॥
କମଳାସନ ପ୍ରଭୁଙ୍କର । ଯହିଁ ଆସନ ପଦ୍ମବର ॥
ଜ୍ୱଳନ କନକ ଶୋଭିତ । ଅୟୁତ ଶତ ଯାର ଗତ୍ର ॥
ତାହାର ନାମେ ଦ୍ୱୀପବର । ଲୋକେ ପ୍ରସିଦ୍ଧ ଯେ ପୁଷ୍କର ॥
ଯେ ଦ୍ୱୀପ ମଧ୍ୟେ ନୃପବର । ସେ ପବିତ୍ର ମାନସୋତ୍ତର ॥
ବିସ୍ତାର ଅୟୁତ ଯୋଜନ । ଚାରି ଦିଗରେ ଭୋ ରାଜନ ॥
ମେରୁ ଭ୍ରମନ୍ତେ ସେ ରବିର । ଉପରେ ଭ୍ରମେ ଚକ୍ରତାର ॥

ଧାତୁକ ରମଣ ଏ ଦୁଇ । ପ୍ରିୟବ୍ରତର ପୁତ୍ର ହୋଇ ॥
ଏ ଦ୍ୱୀପେ ତାଙ୍କ ଅଧିକାର । ଶୁଣ ପରୀକ୍ଷ ନୃପବର ॥
ସେ ସ୍ଥଳ ଲୋକଙ୍କ ସହିତେ । ଏହି ସ୍ତୁତିରେ ଯଥୋଚିତେ ॥
ଯେ ବ୍ରହ୍ମରୂପ ଭଗବାନ । ତାହାଙ୍କୁ କରନ୍ତି ଭଜନ ॥
ସେ ପ୍ରଭୁ ବ୍ରହ୍ମରୂପ ହୋଇ । ଅଖିଳ ସୃଷ୍ଟିକି ଭିଆଇ ॥
ସେ ବ୍ରହ୍ମରୂପ ଯେ ଠାକୁର । ନମଇ ତାହାଙ୍କ ପୟର ॥
ଏହାର ପରେ ପରୀକ୍ଷିତ । ଲୋକାଲୋକ ନାମେ ପର୍ବତ॥
ଏହାର ମଧ୍ୟେ ଯେଉଁସ୍ଥଳ । କାଞ୍ଚନ ଭୂମି ମହୀପାଳ ॥
ବେନି ପର୍ବତ ମଧ ଦେଶ । କାଞ୍ଚନ ଭୂମିରେ ପ୍ରକାଶ ॥
ଏଣୁ ଯେ ଏହାର ଅନ୍ତରେ । ଗତାଗତ ନାହିଁ ଅପରେ ॥
ଏଣୁ ଲୋକାଲୋକ ନାମ । ଏ ସର୍ବ ଈଶ୍ୱର ଭିଆଣ ॥
ଏ ଯେ ଭୂଗୋଳ ଭୋ ରାଜନ । ପଞ୍ଚାଶ କୋଟିଏ ବିସ୍ତୀର୍ଣ୍ଣ ॥
ପୃଥ୍ୱୀ ଚତୁର୍ଥ ଭାଗସମ । ଏ ଲୋକାଲୋକ ଗିରି ନାମ॥
ଅଖିଳ ଜଗତର ଗୁରୁ । ଯେ ଆତ୍ମଯୋନି ମହାମେରୁ ॥
ଅଖିଳ ଲୋକଙ୍କର ହିତେ । ଏହାର ଊର୍ଦ୍ଧ୍ୱେ ଯଥୋଚିତ୍ତେ ॥
ବିରଚି ପତିର ଉପରେ । ସ୍ଥାପିଲେ କର୍ମ ସେ ବେଭାରେ ॥
ଅପରାଜିତା ସେ ବାମନ । ପୁଷ୍କର ଋଷଭ ଏ ନାମ ॥
ଏହାଙ୍କ ବଳ ନିମିତ୍ତରେ । ଅଖିଳ ବ୍ରହ୍ମାଣ୍ଡ ଠାକୁରେ ॥
ସେନାଦି ପାରୁଷଦା ବରେ । ନାନା ଆୟୁଧ ଧରି କରେ ॥
ସେ ହସ୍ତୀ ରକ୍ଷଣର ପାଇଁ । ରଖିଲେ ପ୍ରଭୁ ଭାବଗ୍ରାହୀ ॥
ନାନା ଅଳଂକାରକୁ ଦେଇ । ବିଚିତ୍ର ବେଶକୁ ସେ ଶୋହି ॥
ବରଷ ଦ୍ୱୀପ ନଦୀଗିରି । ତୁମ୍ଭରେ କହିଲୁ ବିସ୍ତାରି ॥
ଲୋକା ଲୋକ ଗିରି ଅନ୍ତର । ଈଶ୍ୱର ସୃଷ୍ଟି ଅଗୋଚର ॥
ଅଣ୍ଡ ମଧରେ ରବି ସ୍ଥିତ । ଭୂମି ସ୍ୱର୍ଗରେ ମଧବର୍ତ୍ତି ॥
ସୂର୍ଯ୍ୟ ଅଣ୍ଡ ମଧର ମଧ । ପଚାଶ କୋଟି ଏ ପ୍ରସିଦ୍ଧ ॥
ମୃତ ଅଣ୍ଡରେ ଉଦେ ହୋନ୍ତି । ମାର୍ତ୍ତଣ୍ଡ ନାମକୁ ବହନ୍ତି ॥
ତେଣୁ ଅଣ୍ଡରୁ ସେ ସମ୍ଭବ । ତେଣୁ ନାମ ହିରଣ୍ୟଗର୍ଭ ॥
ଦିଗ ଆକାଶ ସୂର୍ଯ୍ୟକରି । ବିଭାଗ ହୋଇ ଦଣ୍ଡଧାରୀ ॥
ଦେବ ତୀର୍ଯ୍ୟକ ନର ଆଦି । ସରୀସୃପ ବୃକ୍ଷ ପ୍ରସିଦ୍ଧି ॥
ଆତ୍ମା ଚକ୍ଷୁ ସ୍ୱରୂପ ହୋଇ । ସେ ସୂର୍ଯ୍ୟ ଅଖିଳ ଗୋସାଇଁ ॥
ବିଷ୍ଣୁ ସ୍ୱରୂପ ସେ ସାକ୍ଷାତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ସପ୍ତଦ୍ୱୀପ*
*କଥନେ ନାମ ବିଂଶୋଽଧ୍ୟାୟଃ ।*

## ଏକବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଭୁବନ କୋଷର ପ୍ରମାଣ । କହିବା ଯେତେକ ଲକ୍ଷଣ ॥
ଏମନ୍ତେ ଯିବି ମଣ୍ଡଳରେ । ଲକ୍ଷଣ ଶୁଣ ନୃପବରେ ॥
ଯାହାର ନିକଟରେ ରହି । ସୂର୍ଯ୍ୟ ତୈଲୋକ୍ୟକୁ ତାପଇ ॥
ଅୟନ ବେନି ଭାଗ ହୋଇ । ଉତ୍ତର ଦକ୍ଷିଣେ ଭ୍ରମଇ ॥
ମନ୍ଦ କ୍ଷିପ୍ର ଯେ ବେନିନାମ । ବିଷୁବ ବେନି ଭୋ ରାଜନ ॥
ମକର ଠାରୁ ଋକ୍ଷ ଯେତେ । ଦୀର୍ଘ ହ୍ରସ୍ୱ ଶେଷ ପର୍ଯ୍ୟନ୍ତେ ॥
ବିଶୁଦ୍ଧ ସମାନକୁ ପାଇ । ପୁଣି ଦୀର୍ଘ୍ୟ ହ୍ରସ୍ୱ ବଢ଼ଇ ॥
ତୁଳ ବିଷୁବେ ପୁଣି ଯାଇ । ଅହୋରାତ୍ର ସମାନ ହୋଇ ॥
ନଅକୋଟି ଯେକାବନ ଲକ୍ଷ । ଯୋଜନ ପ୍ରମାଣ ପ୍ରତ୍ୟକ୍ଷ ॥
ମାନସୋତ୍ତର ଗିରି ତହିଁ । ଇନ୍ଦ୍ରର ପୁର ବିରାଜଇ ॥
ପୂର୍ବଭାଗରେ ସେ ମେରୁର । ଦେବଧାନୀ ନାମ ତାହାର ॥
ଯମର ପୁର ତା ଦକ୍ଷିଣେ । ବିରାଜେ ସଞ୍ଜମନୀ ନାମେ ॥
ପଶ୍ଚିମପୁର ବରୁଣର । ନିମ୍ଲୋଚନୀ ନାମ ତାହାର ॥
ଉତ୍ତର ଭାଗେ ସୋମପୁରୀ । ନାମ ତାହାର ବିଭାବରୀ ॥
ତହିଁ ଉଦୟ ମଧ ଅସ୍ତ । ଏ ତିନି କାଳ ଯେ ବିଦିତ ॥
ପ୍ରାଣୀ ପ୍ରବୃତ୍ତି ନିବୃତ୍ତିରେ । ସୁମେରୁ ଚଦ୍ୱାର ଦିଗରେ ॥
ଅହର୍ନିଶ ଭାବରେ ତହି । ପ୍ରାଣୀଙ୍କି ସମୟ ହୁଅଇ ॥
ବାମାବର୍ତ୍ତନ କରି ତହିଁ । ନିତ୍ୟେ ଆଦିତ୍ୟ ସେ ଭ୍ରମଇ॥
ଉଦୟକାଳେ ଯେ ଲକ୍ଷଣ । ଅସ୍ତକାଳରେ ସେହି ଗୁଣ ।
ଦ୍ୱିକୋଟି ଦ୍ୱାଦଶ ଯୋଜନ । ଲକ୍ଷରେ ହରି ପରିମାଣ ॥
ପଞ୍ଚଦଶ ଘଟିକା ବଳେ । ଇନ୍ଦ୍ରଇ ପୁର ଅବହେଳେ ॥
ଯମରପୁରେ ସେ ପ୍ରବେଶ । ସେଠାରେ କରନ୍ତି ପ୍ରକାଶ ॥
ଏଥୁ ବରୁଣ ଆଦି ଯେତେ । ଆଦିତ୍ୟ ଭ୍ରମନ୍ତି ସେ ନିତ୍ୟେ॥
ଇନ୍ଦ୍ରାଦି ଯେତେ ଗ୍ରହମାନ । ଏହି ପ୍ରକାରେ ସେ ଭ୍ରମଣ ॥
ଜ୍ୟୋତିଷ ଚକ୍ର ଏ ପ୍ରକାରେ । ଭ୍ରମଇ ଚଦ୍ୱାର ଦିଗରେ ॥
ଆଦିତ୍ୟ ରଥର ଗମନ । ମୁହୂର୍ତ୍ତେ ଶୁଣ ହେ ରାଜନ ॥
ଚଉତିଶ ଲକ୍ଷ ଯୋଜନ । ଅଷ୍ଟଶତ ଅଧିକ ପୁଣ ॥
ଇନ୍ଦ୍ରାଦି ଦେବ ପୁରମେଳେ । ଏ କ୍ରମେ ଭ୍ରମନ୍ତି ନିଶ୍ଚଳେ ॥
ଦାଦଶ ଅର ନାମ ତାର । ସେ ରଥେ ଏକ ଚକ୍ରବର ॥
ସୁମେରୁ ମସ୍ତକ ଉପରେ । କ୍ରମେ ସେ ମାନସ ଉତ୍ତରେ ॥
ତୈଳ ଯନ୍ତର ପ୍ରାୟେ ହୋଇ । ରବି ଚନ୍ଦ୍ର ତହିଁ ଭ୍ରମଇ ॥

ରଥର ଗର୍ଭ ପରିମାଣ । ଷଡ଼ତ୍ରିଂଶ ଲକ୍ଷ ଯୋଜନ ॥
ଯୁଗ ଯେ ବିସ୍ତାର ଅଟଇ । ଚଉବିଂଶ ଲକ୍ଷ ଖଟଇ ॥
ସେ ଅଶ୍ୱ ନିଯୁକ୍ତ କରନ୍ତି । ଆଦିତ୍ୟ ଦେବଙ୍କୁ ବହନ୍ତି ॥
ଅରୁଣ ନିଯୁକ୍ତ ତହିଁରେ । ସପତ ଅଶ୍ୱ ଯେଉଁଠାରେ ॥
ଅଙ୍ଗୁଠି ପର୍ବ ମାତ୍ର ହୋଇ । ଷାଠି ସହସ୍ର ମୁନି ତହିଁ ॥
ବିଦିତ ସେ ବାଳ ଖିଲ୍ୟାରେ । ରବିର ଅଗ୍ର ସେ ଭାଗରେ ॥
ସେ ମୁକ୍ତି ସର୍ବ ଲାଭ ମନ୍ତେ । ସ୍ତୁତି କରନ୍ତି ଯଥୋଚିତେ ॥
ଅନ୍ୟ ସେ ନାନା ଋଷିଗଣ । ଗନ୍ଧର୍ବ ସିଦ୍ଧ ଯେ ଚାରଣ ॥
ସକଳ ନାଗଙ୍କର ବଗେ । ଅପ୍ସରାଗଣ ଯେଉଁଠାରେ ॥
ଅପ୍ସରାଗଣେ ନୃତ୍ୟ ଗୀତେ । ଏମନ୍ତେ ଯେ ଯାହାର ମତେ ॥
ଧାତୁ ଧାନର ଶ୍ରେଷ୍ଠମାନ । ସଙ୍ଗତେ ଘେନି ଯେଉଁଗଣ ॥
ଯେ ସୂର୍ଯ୍ୟ ରୂପେ ଭଗବାନ । ଅଖିଳ ଆତ୍ମାର କାରଣ ॥
ତାହାଙ୍କ ଚରଣାର ବିନ୍ଦେ । ସେବନ୍ତି ମନର ଆନନ୍ଦେ ॥
ଯେ ଯାହା କର୍ମ ଅନୁମତେ । ସେବନ୍ତି ତାଙ୍କ ପାଦାଗ୍ରତେ ॥
ନବକୋଟି ଶତ ଯୋଜନ । ଅଧିକ ଲକ୍ଷ ଏକାବନ ॥
ବେନି ସହସ୍ର ଯେ ଯୋଜନ । ଏମନ୍ତ କ୍ରୋଶ ଯେ ଭୁବନ ॥
କ୍ଷଣ ମାତ୍ରକେ ଭଗବାନ । ସେ ସୂର୍ଯ୍ୟ କରନ୍ତି ଭ୍ରମଣ ॥
ପଞ୍ଚମସ୍କନ୍ଧେ ଭାଗବତ । କହଇ ବିପ୍ର ଜଗନ୍ନାଥ ॥
ଅଖିଳ ଅନାଦି କାରଣ । ସେ ସୂର୍ଯ୍ୟ ରୂପକୁ ଧରିଣ ॥
ଭ୍ରମନ୍ତି ପ୍ରାଣୀଙ୍କର ହିତେ । ତାହାଙ୍କ ପାଦ ପଦ୍ମଗତେ ॥
ମୁଁ ଯେ ପାମର ଦୁଷ୍ଟମତ । ତହିଁରେ ରହୁ ଅବିରତ ॥
ସେ ହରି ଅଭୟ ଚରଣେ । ପାମର ଜଗନ୍ନାଥ ଭଣେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୁବନ କୋଷ ବର୍ଣ୍ଣନେ ନାମ ଏକ ବିଂଶୋଽଧ୍ୟାୟଃ ।*

## ଦ୍ୱାବିଂଶ ଅଧ୍ୟାୟ

### ରାଜା ଉବାଚ

ଭୋ ମୁନି ଏହାର ତହନ୍ତ । ଜାଣିଲେ ଜୀବର ପବିତ୍ର ॥
ଆଦିତ୍ୟ ଦେବ ଯଥୋଚିତେ । ମେରୁ ପ୍ରଦକ୍ଷିଣ କରନ୍ତେ ॥
ଦ୍ୱାଦଶ ରାଶିଙ୍କ ସମ୍ମୁଖେ । ଭୋଗ କରନ୍ତି ସେ ପ୍ରତକ୍ଷେ ॥
ଆଦିତ୍ୟ ଗତି ବେଗ୍ରତର । ତହିଁରେ କେମନ୍ତ ସଂଚାର ॥
ଏଣେ ତ ମୋହର ସନ୍ଦେହ । ଭୋ ମୁନି ତଦଅନ୍ତ କହ ॥
କୁରାଳ ଚକ୍ର ପ୍ରାୟେ ହୋଇ । ଆଦିତ୍ୟ ରଥ ଯେ ଭ୍ରମଇ ॥
କୁରାଳ ଚକ୍ରର ସହିତେ । କ୍ଷୁଦ୍ର ଜନ୍ତୁଙ୍କ ଗତିମତେ ॥
ସେ କାଳ ଚକ୍ରର ଏ ଦେଶେ । ଭ୍ରମନ୍ତି ଯେ ଯାହା ପ୍ରକାଶେ ॥
ଧ୍ରୁବ ସୁମେରୁ ପ୍ରଦକ୍ଷିଣ । କରି ଭ୍ରମନ୍ତି ଅନୁକ୍ଷଣ ॥
ଆଦି ପୁରୁଷ ଭଗବାନ । ସାକ୍ଷାତେ ପ୍ରଭୁ ନାରାୟଣ ॥
ତ୍ରୟ ମୟ ଏ ତାଙ୍କ ମୂର୍ତ୍ତି । କର୍ମ ବିଶୁଦ୍ଧକୁ ବହନ୍ତି ॥
ସେ ମୂର୍ତ୍ତି ଦ୍ୱାଦଶ ପ୍ରକାର । କରି ସେ ବ୍ରାହ୍ମଣ ଠାକୁର ॥
ଷଡ଼ଋତୁ ବସନ୍ତ ଆଦି । ଏଥିରେ ଯେତେକ ପ୍ରସିଦ୍ଧି ॥
ଯେ ଋତୁକାଳେ ଯେ ହୁଅନ୍ତି । ଆପଣେ ବିଧାନ କରନ୍ତି ॥
ମହାପୁରୁଷ ସାଧୁ ଜନେ । ତର୍କ ଆଗମନର ବିଧାନେ ॥
ନାନା କର୍ମରେ ଯଥୋଚିତେ । ଆଶ୍ରମମତେ ନାନା ପଥେ ॥
ଯେ ତାଙ୍କ ଚରଣେ ସେବନ୍ତି । ସକଳ ପାପୁଁ ସେ ତରନ୍ତି ॥
ପରମ କଲ୍ୟାଣ ଲଭନ୍ତି । ଅନ୍ତେ ପରମ ଗତି ପାନ୍ତି ॥
ଏମନ୍ତେ ଶୁଣ ନୃପବର । ସେ ସୂର୍ଯ୍ୟ ଆତ୍ମା ପ୍ରାଣୀଙ୍କର ॥
ପୃଥିବୀ ଆକାଶ ମଧରେ । କାଳଚକ୍ରରେ ସେ ଶୂନ୍ୟରେ ॥
ଦ୍ୱାଦଶ ମାସ ଏ ଭୁଞ୍ଜନ୍ତି । ସମ୍ୱତ୍ସର ଯାହା କରନ୍ତି ॥
ମାସ ଯେ ବେନି ବେନି କରି । ଭୁଞ୍ଜନ୍ତି ଅହୋରାତ୍ରେ କରି ॥
ସେ ବେନି ମାସ ଏକ ଋତୁ । ଛଅଋତୁ ସମ୍ୱତ୍ସର କ୍ରତୁ ॥
ଯେ ବେନି ତାର ଅର୍ଦ୍ଧଭାଗେ । ରହନ୍ତି କାଳଚକ୍ର ଲାଗେ ।
ତାହାକୁ କାଳ ବୋଲି କହି । ଶୁଣ ରାଜନ ମନ ଦେଇ ॥
ଦାତା ପୃଥିବୀର ସହିତେ । ନଭ ମଣ୍ଡଳର ସମସ୍ତେ ॥
ରବି ଭୁଞ୍ଜନ୍ତି ଯେତେ କାଳେ । ସମ୍ୱତ୍ସର ବୋଲି ତାହାରେ ॥
ଏ ଅନନ୍ତରେ ହେ ରାଜନ । ଚନ୍ଦ୍ରର ଏ ରୂପେ ଗମନ ॥
ଲକ୍ଷେ ଯୋଜନର ଉପରେ । ସୂର୍ଯ୍ୟର ଠାରୁ ଯେ ବେଭାରେ ॥
ପ୍ରବଳ ଗତି ତାର ଖର । ଚନ୍ଦ୍ର ଭୁଞ୍ଜନ୍ତି ସେ ସତ୍ୱର ॥
ତାହାଙ୍କ ଭୋଗ ବେନିପକ୍ଷେ । ବେନି ପକ୍ଷକୁ ପାଦରୁକ୍ଷେ ॥
ପକ୍ଷ ଭୋଗକୁ ଏକ ଦିନେ । ଭୁଂଜନ୍ତି ଦିଗ ପତି ମାନେ ॥
ଏ ଅନନ୍ତରେ ନୃପବର । ଅଧର୍ମ କଳା ଶଶଧର ॥
ଅହୋରାତ୍ର ସେ ଦେବଙ୍କର । ଯେ ଶୁକ୍ଳ ପକ୍ଷର ବେଭାର ॥
ଅହୋରାତ୍ର ଯେ ନୃପବର । ସେ ଯେ ସକଳ ପ୍ରାଣୀଙ୍କର ॥
ସେ ଯେବେ ଆତ୍ମା ପ୍ରାଣୀଙ୍କର । ଜୀବନ ଭୂତ ଶଶଧର ॥
ଭୁଂଜନ୍ତି ତ୍ରିଂଶତ ମୁହୂର୍ତ୍ତେ । ଏକ ନକ୍ଷତ୍ର ଯଥୋଚିତେ ॥

ଏଣୁ ସେ ଅନାଦି ପୁରୁଷ । ଷୋଡ଼ଶ କଳା ସେ ବିଶେଷ ॥
ଅମୃତ ଶରୀରକୁ ଧରି । ପ୍ରାଣୀଙ୍କି ଅପ୍ୟାୟନ କରି ॥
ମନୁଷ୍ୟ ପକ୍ଷୀ ପଶୁ ଆଦି । ସରୀସୃପ ବୃକ୍ଷ ପ୍ରସିଦ୍ଧି ॥
ଏହାଙ୍କ ସୁଖକୁ ଦିଅନ୍ତି । ଏଣୁ ସେ ସର୍ବମୟେ ହୋନ୍ତି ॥
ଏହାର ଊର୍ଦ୍ଧ୍ୱେ ଭୋ ରାଜନ । ଦ୍ୱିତୀୟ ଲକ୍ଷ ଯେ ଯୋଜନ ॥
ନକ୍ଷତ୍ର ଯେ ଅଷ୍ଟ ବିଂଶତି । ମେରୁର ଦକ୍ଷିଣେ ବସନ୍ତି ॥
ଦ୍ୱି ଲକ୍ଷ ତାହାର ଉପରେ । ଉଷ୍ଣନା ବାସ ଯେଉଁଠାରେ ॥
ଆଦିତ୍ୟ ପ୍ରାୟେ ଶୀଘ୍ରଗତି । ଅପରେ ତାହାଙ୍କର ସ୍ଥିତି ॥
ଲୋକର ଯେ ଶୁଭ କଲ୍ୟାଣ । ଏଥେ ସେ ନିତ୍ୟେ ପରାୟଣ ॥
ଏହାର ଊର୍ଦ୍ଧ୍ୱ ଯେ ଭାଗରେ । ଦ୍ୱି ଲକ୍ଷ ଯୋଜନ ଉପରେ ॥
ବୁଧ ନାମେଣ ଚନ୍ଦ୍ରସୁତ । ତହିଁରେ ତାହାଙ୍କ ସ୍ଥିତ ॥
ପ୍ରାଣୀର ସୁଖେ ତହିଁ ଥାଇ । ସେ ଯେବେ ସୂର୍ଯ୍ୟ ବେଗେ ହୋଇ
ଅତି ପବନ ଖରତରେ । ଅନାବୃଷ୍ଟିକି ସେ ଆଗରେ ॥
ତାହାର ପରେ ବେନି ଲକ୍ଷ । ଯୋଜନେ ଯେତେକ ପ୍ରତ୍ୟକ୍ଷ ॥
ଏକ ରାଶିରେ ତିନି ପକ୍ଷ । ମଙ୍ଗଳ ଭୁଞ୍ଜଇ ପ୍ରତ୍ୟକ୍ଷ ॥
ବକ୍ର ଭାବରେ ଭୋଗକରେ । ଏ କର୍ମେ ଦ୍ୱାଦଶ ରାଶିରେ ॥
ଏହାର ଊର୍ଦ୍ଧ୍ୱେ ଭୋ ରାଜନ । ଦ୍ୱିତୀୟ ଲକ୍ଷ ଯେ ଯୋଜନ ॥
ତହିଁ ଅଛନ୍ତି ବୃହସ୍ପତି । ଯେ ଦେବ ପୁରୋହିତ ହୋନ୍ତି ॥
ଏକ ରାଶିରେ ସେ ବରଷେ । ଭୋଗ କରନ୍ତି ସେ ସନ୍ତୋଷେ ॥
ସେ ବୃହସ୍ପତି ଭଗବାନ । ବ୍ରାହ୍ମଣ କୁଳରେ କଲ୍ୟାଣ ॥
ଯେବେ ସେ ବକ୍ରଗତି ହୋଇ । କଦର୍ଯ୍ୟ ଫଳକୁ ଦିଅଇ ॥
ତହିଁ ଦ୍ୱି ଲକ୍ଷ ଯୋଜନରେ । ତହିଁ ଅଛନ୍ତି ଶନିଶ୍ଚରେ ॥
ଏକ ରାଶିରେ ଭୋଗତାର । ତ୍ରିଦଶ ମାସ ନୃପବର ॥
ଅଶାନ୍ତି ମତେ ଚକ୍ର ହୋଇ । ଅଧିକ କେ ଅବା ଭୁଞ୍ଜଇ ॥
ଏହାର ଉପରେ ରାଜନ । ଏକାଦଶ ଲକ୍ଷ ଯୋଜନ ॥
ଋଷିଙ୍କ ବାସ ଯେ ସେଠାରେ । ଯେ କୃପା କରନ୍ତି ପ୍ରାଣୀରେ ॥
ଯେ ବିଷ୍ଣୁପାଦ ନିତ୍ୟେ ଚିନ୍ତି । ପ୍ରଦକ୍ଷିଣରେ ଭ୍ରମୁଛନ୍ତି ॥
ଲୋକ ଭାବରେ ସେ ସକଳ । ଅଶେଷ କରୁଣାର ମୂଳ ॥
ସେ ମୁନିଗଣଙ୍କ ପୟରେ । ମୋ ମନ ରହୁ ନିରନ୍ତରେ ॥
କହଇ ବିପ୍ର ଜଗନ୍ନାଥ । ପଞ୍ଚମସ୍କନ୍ଧେ ଭାଗବତ ॥

*ଇତିଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମ ସ୍କନ୍ଧେ ଜ୍ୟୋତିଷ୍ଚକ୍ର ବର୍ଣ୍ଣନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।*

## ତ୍ରୟୋବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏଥୁ ଅନ୍ତରେ ଭୋ ରାଜନ । ତ୍ରୟୋଦଶ ଲକ୍ଷ୍ୟ ଯୋଜନ ॥
ସେ ସ୍ଥାନ ବିରାଜଇ ତହିଁ । ବିଷ୍ଣୁର ସ୍ଥାନ ତାକୁ କହି ॥
ଯହିଁ ପରମ ଭାଗବତ । ଧ୍ରୁବ ଉତ୍ତାନପାଦ ସୁତ ॥
ଅଛନ୍ତି କଶ୍ୟପ ସଙ୍ଗତେ । କାଳ ସୃଷ୍ଟିର ସେବାମତେ ॥
କଳ୍ପେ ପର୍ଯ୍ୟନ୍ତେ ସୁଖ ଭୋଳେ । ପ୍ରଭୁଙ୍କୁ ସେବନ୍ତି ନିଶ୍ଚଳେ ॥
ସେ ଭାଗବତ ଧ୍ରୁବ ବାଣୀ । ପୂର୍ବେ କହିଛୁ ନୃପମଣି ॥
ଗ୍ରହ ନକ୍ଷତ୍ର ଜ୍ୟୋତିର୍ଗଣ । ଧ୍ରୁବର ସହିତେ ରାଜନ ॥
କାଳ ଚକ୍ରରେ ଭ୍ରମ ଜାଣ । ବେଗେ ଭ୍ରମନ୍ତି ଅନୁକ୍ଷଣ ॥
ଈଶ୍ୱର ସୃଷ୍ଟି ଅନୁସାରେ । ଈକ୍ଷିତ ଦିଶଇ ଲୋକରେ ॥
ମେଧୀରେ ଶିଶୁଗଣ ଯେହ୍ନେ । ସକଳେ ଭ୍ରମନ୍ତି ତେସନେ ॥
ମଣ୍ଡଳ ଆକାରେ ଯେ ତହିଁ । ଯେ ଯେହା ସ୍ଥାନେ ସେ ଭ୍ରମଇ ॥
ଭଗତ ଗ୍ରହ ଆଦି ଯେତେ । ଏହି ପ୍ରକାରେ ସେ ସମସ୍ତେ ॥
କାଳ ଚକ୍ରରେ ସେ ଭ୍ରମଣ । ଭ୍ରମଣ କରଇ ପବନ ॥
କଳ୍ପାନ୍ତ ଯାଏ ସେ ପ୍ରକାରେ । ଅଛନ୍ତି ବିଷ୍ଣୁର ମାୟାରେ ॥
ଶୂନ୍ୟ ମଣ୍ଡଳେ ମେଘମାଳେ । ଯେସନେ ଥାନ୍ତି ବାୟୁବଳେ ॥
ଶ୍ୟେନାଦି ନାନା ପକ୍ଷୀମାନେ । ପବନ ବଳେ ଥାନ୍ତି ଶୂନ୍ୟେ ॥
କର୍ମ ଅଧୀନେ ଜ୍ୟୋତିର୍ଗଣ । ଶୂନ୍ୟରେ ଭ୍ରମନ୍ତି ତେସନ ॥
ପ୍ରକୃତି ପୁରୁଷର ଭୋଗ । ତପ୍ତରେ ହୁଅଇ ସଂଯୋଗ ॥
କର୍ମ ବନ୍ଧନ ନିମିତ୍ତରେ । ପତନ ହୋଅନ୍ତି ଭୂମିରେ ॥
ଏବେ ତୁ ଶୁଣ ହେ ରାଜନ । ଏ ଜ୍ୟୋତିଗଣଙ୍କର ସ୍ଥାନ ॥
ଏମନ୍ତ କରି କେ ବର୍ଣ୍ଣଇ । କହିବା ଶୁଣ ମନ ଦେଇ ॥
ଯେ ପ୍ରଭୁ ଅଖିଳ କାରଣ । ବାସୁଦେବ ଯେ ଭଗବାନ ॥
ତାହାଙ୍କ ମୂର୍ତ୍ତି ଶିଶୁମାର । ଶରୀର କୁଣ୍ଡଳୀ ଆକାର ॥
ଅଧୋବଦନ ତାହାଙ୍କର । ପୁଚ୍ଛରେ ବାସ ଯେ ଧ୍ରୁବର ॥
ଲାଙ୍ଗୁଡ଼େ ପ୍ରଜାପତି ବାସ । ଅପରେ ଧର୍ମ ଯେ ବିଶେଷ ॥
ଧାତା ବିଧାତା ପୁଚ୍ଛମୂଳେ । ସପତ ଋଷି କଟିସ୍ଥଳେ ॥
ଦକ୍ଷିଣା ବର୍ତ୍ତ ପ୍ରାୟେ ହୋଇ । କୁଣ୍ଡଳ ଆକାରେ ଯେ ଦେହୀ ॥
ତାର ଦକ୍ଷିଣ ଅଂଶ ଯେତେ । ନକ୍ଷତ୍ର ମାନ ଯେ ସମସ୍ତେ ॥
ଆକାଶ ଗଙ୍ଗା ଯେ ପୃଷ୍ଠରେ । ବିରାଜେ ଅତି ଶୁଭ୍ରତରେ ॥
ପୁନର୍ବସୁ ଯେ ପୁଷ୍ୟା ଦୁଇ । ବାମ ଦକ୍ଷିଣେ ଶ୍ରୋଣି ତହିଁ ॥
ବାମ ଦକ୍ଷିଣ ପାଦ ଦେଶେ । ଆରଦ୍ରା ଅଶ୍ଳେଷା ପ୍ରକାଶେ ॥
ଉତ୍ତରାଷାଢ଼ା ଅଭିଜିତ । ସବ୍ୟ ଦକ୍ଷିଣ ଘ୍ରାଣେ ସ୍ଥିତ ॥

ଶ୍ରବଣା ପୂର୍ବାଷାଢ଼ା ଦୁଇ । ଦକ୍ଷିଣ ବାମ ନେତ୍ରେ ରହି ॥
ଧନିଷ୍ଠା ମୂଳା ବେନି ଜନେ । ବାମ ଦକ୍ଷିଣ ବେନି କର୍ଣ୍ଣେ ॥
ମଘାଦି ଅଷ୍ଟ ଯେ ନକ୍ଷତ୍ର । ବାମ ଅଙ୍ଗରେ କରେ ସ୍ଥିତ ॥
ମୃଗଶିରାଦି ଦକ୍ଷିଣରେ । ଜ୍ୟେଷ୍ଠା ଶତଭିଷା ସ୍କନ୍ଧରେ ॥
ଉତ୍ତର ଅଧର ହନୁରେ । ଅଗସ୍ତି ଗମନ କ୍ରମରେ ॥
ମୁଖରେ ଅଙ୍ଗାରକ ରହେ । ଉପସ୍ଥେ ଶନିଶ୍ଚର ରହେ ॥
ଆଦିତ୍ୟ ବକ୍ଷସ୍ଥଳେ ବସେ । ବୃହସ୍ପତି ସେ କକ୍ଷଦେଶେ ॥
ହୃଦୟେ ନାରାୟଣ ସ୍ଥିତି । ଚନ୍ଦ୍ରମା ମନରେ ବସନ୍ତି ॥
ନାଭିରେ ଉଷନା ପ୍ରକାଶ । ସ୍ତନରେ ଅଶ୍ୱନୀର ବାସ ॥
ପ୍ରାଣ ଉପରେ ବୁଧ ବସେ । ଗଳାରେ ରାହୁ ଯେ ପ୍ରକାଶେ ॥
ସର୍ବ ଅଙ୍ଗରେ କେତୁ ସ୍ଥାନ । ଏ ଅନୁକ୍ରମେ ଭୋ ରାଜନ ॥
ରୋମ ମୂଳରେ ତାରାଗଣ । ବିଚିତ୍ର ରୂପ ନାରାୟଣ ॥
ଏ ରୂପସର୍ବ ଦେବମୟୀ । ଯେ ଜନ ଶୁଚିବନ୍ତ ହୋଇ ॥
ସଂଧ୍ୟାରେ ନିତ୍ୟେ ସ୍ତବ କରେ । ଅଶେଷ ପାପୁଁ ସେ ନିସ୍ତରେ ॥
ଏ ସ୍ତବ ତୁଣ୍ଡେ ଉଚ୍ଚାରିଣ । ସ୍ତୁତି କରିବ ସାବଧାନ ॥
ନମଇ ଜ୍ୟୋତିଲୋକମୟେ । କାଳ ଅଦ୍ଭୁତ ଯାର ଦେହେ ॥
ସକଳ ଦେହ ସ୍ୱାମୀ ତୁହି । ତୋ ପାଦେ ଆନନ୍ଦେ ନମଇଁ ॥
ଗ୍ରହରୂପୀ ଯେ ତାରାଗଣ । ସର୍ବାଦିଦେବ ନାରାୟଣ ॥
ଯେ ନିତି ସନ୍ଧ୍ୟାବେଳେ ନର । ସ୍ମରଣେ କରେ ନମସ୍କାର ॥
ଅହୋରାତ୍ର ପାପ ତାହାର । ଦହନ ହୋଏ ନୃପବର ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ସେ ଦେବମୟ ଯେ ଈଶ୍ୱର । ଅନାଦି ବ୍ରହ୍ମାଣ୍ଡ ଠାକୁର ॥
ତାହାଙ୍କ ଚରଣ କମଳେ । ମୋ ମନ ରହୁ ସୁନିଶ୍ଚଳେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଗ୍ରହଚକ୍ର ବର୍ଣ୍ଣନେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।*

## ଚତୁର୍ବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଆଦିତ୍ୟ ଠାରୁ ଅଧୋମେଳେ । ଅୟୁତ ଯୋଜନର ତଳେ ॥
ଭ୍ରମ ଆକାରେ ରହୁଛିତି । କେ ଅବା କେମନ୍ତେ କହନ୍ତି ॥
ସ୍ୱଭାବେ ସିଂହିକାନନ୍ଦନ । ଏଟି ଅସୁର ଭୋ ରାଜନ ॥
ଯେଣୁ ପ୍ରଭୁର କୃପା ହୋଇ । ଅଙ୍କରାମର ଏହା ଦେହୀ ॥
ଏହାର ଜନ୍ମ କର୍ମମାନ । ପଛେ କହିବା ଭୋ ରାଜନ ॥
ଅଧୋ ଭାଗରେ ଯେ ପଡଇ । ତରୁଣୀ ମଣ୍ଡଳ ବୋଲାଇ ॥
ଅୟୁତ ଯୋଜନ ବିସ୍ତାର । ଲୋକରେ ଖ୍ୟାତ ନୃପବର ॥
ଦ୍ୱାଦଶ ସହସ୍ର ଯୋଜନ । ଚନ୍ଦ୍ରମଣ୍ଡଳ ସେ ପ୍ରମାଣ ॥
ତ୍ରୟୋଦଶ ସହସ୍ର ମତେ । ରାହୁର ମଣ୍ଡଳ ଯୁଗତେ ॥
ବୈରାନୁବନ୍ଧ ଭାବ ତହିଁ । ଚନ୍ଦ୍ରସୂର୍ଯ୍ୟ ଗ୍ରାସିବା ପାଇଁ ॥
ଧାମଇ ବେଗମନ୍ତ ହୋଇ । ତା' ଦେଖି ବ୍ରହ୍ମାଣ୍ଡ ଗୋସାଇ ॥
ରକ୍ଷା ନିମନ୍ତେ ସୁଦର୍ଶନ । ରଖି ଅଛନ୍ତି ଭଗବାନ ॥
ଚନ୍ଦ୍ରର ତେଜ ଅତି ପାଇ । ନିକଟୁ ନିବୃତ୍ତ ହୋଅଇ ॥
ଚକିତ ହୋଇ କ୍ଷଣେ ତାର । ଉଦ୍‌ବେଗ ହୋଇଣ ଶରୀର ॥
ତାହାକୁ ଉପରାଗ ନାମ । ଏ ଲୋକେ କରନ୍ତି ରାଜନ ॥
ତାହାର ତଳେ ନୃପବର । ସିଦ୍ଧ ଚାରଣ ବିଦ୍ୟାଧର ॥
ଯେ ଏହା ସଦନ ନିର୍ମିତ । ଏହାର ତଳେ ପରୀକ୍ଷିତ ॥
ଯକ୍ଷ ପିଶାଚ ଭୂତ ପ୍ରେତ । ଏହାଙ୍କ ଗୃହ ଯେ ନିର୍ମିତ ॥
ଯାବତ ବାୟୁର ସଂଚାର । ତାବତ ଗତି ଜଳଧର ॥
ଏହାର ତଳେ ହେ ରାଜନ । ଭୂମିରୁ ଶତ ଯେ ଯୋଜନ ॥
ଗମନ କରନ୍ତି ଶୂନ୍ୟରେ । ସୁପର୍ଣ୍ଣ ଆଦି ପକ୍ଷୀବରେ ॥
ଭୂମି ମଣ୍ଡଳର ବର୍ଣ୍ଣନ । କହିତ ଅଛୁ ହେ ରାଜନ ॥
ଅବନୀ ତଳର ବେଭାର । କହିବା ଶୁଣ ନୃପବର ॥
ସପତ ଗିରିବରେ କରି । ସପ୍ତ ଭୁବନ ଦଣ୍ଡଧାରୀ ॥
ଅତଳ ବିତଳ ସୁତଳ । ତଳାତଳ ଯେ ମହୀତଳ ॥
ମହାତଳ ଯେ ରସାତଳ । ସପତ ବିଦିତ ପାତାଳ ॥
କ୍ରମେ ଅୟୁତ ଯେ ଯୋଜନ । ଏକ ଏକର ଯେ ପ୍ରମାଣ ॥
ବିଳସ୍ୱର୍ଗ ନାମ ଏହାର । ସ୍ୱର୍ଗୁ ଅଧିକ ସୁଖତର ॥
କାମ ଐଶ୍ୱର୍ଯ୍ୟ ନାନା ଭୋଗ । ନାନା ଆନନ୍ଦେ ଯେ ସଂପଦ ॥
ନାନା ରତ୍ନରେ ଦିବ୍ୟଘର । ସୌରଭ ଉଦ୍ୟାନ ସୁନ୍ଦର ॥
ସୁସଞ୍ଚ ସ୍ଥଳ ମନୋହର । ବିବିଧ କ୍ରୀଡ଼ା ଯେ ବେହାର ॥
ଏ ସ୍ଥଳେ କ୍ରୀଡନ୍ତି ଆନନ୍ଦେ । ସେ ସ୍ଥଳବାସୀ ଜୀବବୃନ୍ଦେ ॥
କାଦ୍ରବ୍ୟ ଦାନବ ଦଇତେ । ଅପତ୍ୟ ପତ୍ନୀର ସହିତେ ॥
ମାୟା ବିଦତ୍ୟମୟ ଯହିଁ । ନିର୍ମାଣ କରି ଯେ ଅଛଇ ॥
ନାନା ମଣିରେ ଦିବ୍ୟପୁର । ବିଚିତ୍ର ବୈଦୁର୍ଯ୍ୟର ଘର ॥
ସଭା ଚତ୍ୱର ଯେ ଗୋପୁର । ବିବିଧ ନାନା ମଣିସାର ॥
ମିଥୁନ ଶୁକ ପାରାବତ । କୃତ୍ରିମ ମଣିରେ ନିର୍ମିତ ॥
ଶାରିକା ଆଦି ପକ୍ଷୀମାନେ । ବିବିଧ ପ୍ରକାରେ ଭିଆଣେ ॥
ମଣି ସଦନ ଉଚ୍ଚସାର । ଶୋଭଇ ଅତି ମନୋହର ॥

ବିବିଧ ଚିତ୍ର ଉପବନ । ସୌରଭେ ହରେ ପ୍ରାଣୀମନ ॥
କୁସୁମ ଫଳ ଅତିଭରେ । ବିଟପୀ ଲମ୍ୱିଛନ୍ତି ତଳେ ॥
କୋମଳ ପଲ୍ଲବ ସୁରଙ୍ଗ । ପକ୍ଷୀ ମିଥୁନ ଯହିଁ ସଙ୍ଗ ॥
ବିବିଧ ଜଳାଶୟମାନ । କ୍ରୀଡନ୍ତି ନାନା ବିହଙ୍ଗମ ॥
ରକ୍ଷିଙ୍କ ପୁଷ୍ପ ଆଭରଣେ । କ୍ଷୋଭ ଲଭନ୍ତି ବିହଙ୍ଗମେ ॥
ନୀରଜ କୁମୁଦ କହ୍ଲାର । ଏହାଙ୍କ ବନେ ତାଙ୍କ ଘର ॥
ସେ ପକ୍ଷୀଗଣ ଦିବ୍ୟସ୍ୱନ । ଶ୍ରବଣେ ହରେ ପ୍ରାଣୀ ମନ ॥
ସ୍ୱର୍ଗହୁଁ ଅତି ମନୋହର । ସେ ସ୍ଥାନମାନ ନୃପବର ॥
ସେ ଭୂମି ଅତି ଅନୁପମ । ତହିଁ କି ନାହିଁ ରାତ୍ରଦିନ ॥
ଅହିଙ୍କ ଶିରେ ମଣିମାନ । ଯହିଁ ନାଶଇ ଅନ୍ଧତମ ॥
ବ୍ୟାଧିର ପରାଭବ ନାହିଁ । ଦେହରେ ଭୋଗ ନ ଲଭଇ ॥
ପୁଷ୍ପବଳାଦି ପ୍ରାଣୀଙ୍କର । ଯେଣୁ ସ୍ୱଭାବ ଯେ ଶରୀର ॥
ଯେବେ ସେ ସମୟ ହୁଅଇ । ଅନ୍ୟଥା ବ୍ୟାଧି ମୃତ୍ୟୁ ନାହିଁ ॥
ଅତଳେ ଅଛି ମହୀପାଳ । ମୟ ପୁତ୍ର ଯେ ସୁରବଳ ॥
ଯାହାର ମାୟା ଦୃଢ଼ତର । ଅଦ୍ୟପି ସଂସାରେ ପ୍ରଚାର ॥
ଯେ ରୂପ ଧଇଲେ ଏ ତିନି । ସ୍ୱୈରିଣୀ ପୁଂଶ୍ଚଳୀ କାମିନୀ ॥
ହଟକାକ୍ଷ ଯେ ମହାରସ । ତହିଁରେ ଥାଇଣ ପୁରୁଷ ॥
ଅୟୁତ ମହାଗଜ ବଳ । ଯାର ମାୟାରେ ମହୀପାଳ ॥
ବିଳାସ ଅବଲୋକନରେ । ନାନା ପ୍ରକାରେ କ୍ରୀଡ଼ାକରେ ॥
ବିତଳେ ଶମ୍ଭୁ ଭଗବାନ । ହାଟକେଶ୍ୱର ଯାର ନାମ ॥
ପ୍ରଜାପତି ସୃଷ୍ଟି ନିମନ୍ତେ । ଅଛନ୍ତି ଭବାନୀ ସହିତେ ॥
ଏହାଙ୍କ ବୀର୍ଯ୍ୟ ଜାତ ହୋଇ । ହାଟକୀ ନାମେ ନଦୀ ବହି ॥
ତାର ସଂସର୍ଗେ ଜାତ ହୋଇ । ସୁବର୍ଣ୍ଣ ହାଟକ ବୋଲାଇ ॥
ଅସୁରଙ୍କର ବଧୂଗଣ । ତାହାକୁ କରନ୍ତି ଭୂଷଣ ॥
ଉଦାର ଶୁଦ୍ଧ ପୁଣ୍ୟଶ୍ଳୋକ । ତାହାକୁ ବୋଲନ୍ତି ତ୍ରୈଲୋକ॥
ଇନ୍ଦ୍ରର ପ୍ରିୟ ଭାବ ବହି । ଅଖିଳ ବ୍ରହ୍ମାଣ୍ଡ ଗୋସାଇଁ ॥
ସୁତଳେ ବଳି ଯାର ନାମ । ତାହାର ଗୃହ ହେ ରାଜନ ॥
ଅଦିତି ତହୁଁ ଜାତ ହୋଇ । ବଟୁ ବାମନ ରୂପ ବହି ॥
ସଂପଦ ନାଶ ତାର କରି । ପୁଣି ଦୟା କଲେ ମୁରାରି ॥
ଇନ୍ଦ୍ରାଦି ସ୍ୱର୍ଗାଦି ସମାନ । ସଂପଦ ଦେଲେ ଭଗବାନ ॥
ପୂଜ୍ୟ ଅଖିଳ ଦେବଙ୍କର । ଅନାଦି ଦେବ ଯେ ଈଶ୍ୱର ॥
ସ୍ୱଧର୍ମେ ତାଙ୍କୁ ଆରାଧନ । ସୁଖେ ସେ ଅଛନ୍ତି ରାଜନ ॥
ସେ ସର୍ବ ଜୀବ ଭଗବାନ । ପରମ ଆତ୍ମା ସୂକ୍ଷ୍ମ ବ୍ରହ୍ମ ॥
ସେ ତୀର୍ଥମୟ ଜଗନ୍ନାଥ । ସକଳ ଦେଶ କାଳ ପାତ୍ର ॥

ତାହାଙ୍କୁ ଶ୍ରଦ୍ଧା ଯୁକ୍ତ ହୋଇ । ସ୍ଥିର ମନରେ ତୁମ୍ଭେ ଦେଇ ॥
ବିଳ ସ୍ୱର୍ଗକୁ ଭୋଗ କରେ । ନାନା ଐଶ୍ୱର୍ଯ୍ୟର ବେଢାରେ ॥
ଯାଚୟାଁ ଛଳେ ଯେ ଉପାୟେ । ତହିଁରେ କରି ଦେବ ରାୟେ ॥
ତୈଲୋକ୍ୟ ବ୍ୟାପିଲେ ଶରୀରେ । ସେ ମନ ରହିଲା ଯହିଁରେ ॥
ଯେ ଇନ୍ଦ୍ର ତେଜ ବର୍ଣ୍ଣେ କରି । ଇନ୍ଦ୍ରର ଭାତୃଭାବ ଧରି ॥
ଜନ୍ମିଲେ ବ୍ରହ୍ମାଣ୍ଡ ଠାକୁର । ଯାହା ନିମନ୍ତେ ନୃପବର ॥
ସେ ସର୍ବ ଜୀବ ଭଗବାନ । ଅଖିଳ ଗୁରୁ ନାରାୟଣ ॥
ଯାହାର ଦ୍ୱାରେ ଗଦା ଧରି । ଅଛନ୍ତି ପ୍ରଭୁ ଯେ ମୁରାରି ॥
ଏହାର ଅଧୋଦେଶେ ଯାଇ । ତଳାତଳ ନାମ ବୋଲାଇ ॥
ମୟ ନାମେ ଦାନବ ବରେ । ଦ୍ରୋହ ଯେ କଲେ ଚକ୍ରଧରେ॥
ସେ ପୁର ତାର ଦଗ୍ଧ କଲା । ତେଣୁ ସେ ବରକୁ ଲଭିଲା ॥
ମାୟାର୍ବୀ ମାନଙ୍କର ବର । ଐଶ୍ୱର୍ଯ୍ୟ ହୋଇ ସେ ଈଶ୍ୱର ॥
ଏମନ୍ତ ବରକୁ ସେ ପାଇ । ତଳାତଳରେ ସେ ଅଛଇ ॥
ସୁଦରଶନ ଚକ୍ର ଡରେ । ଶରଣ ପଶିଲା ଶମ୍ଭୁରେ ॥
ସେ ଭୟ ତାର ଦୂର କରି । ରଖିଲେ ଶିବ ଶୂଳଧାରୀ ॥
ନିର୍ଭୟ ହୋଇଣ ଦାନବ । ସେ ସ୍ଥଳେ ଭୁଞ୍ଜଇ ସଂପଦ ॥
ତାହାର ଅଧୋଭାଗ ଦେଶେ । ମହାତଳ ପୁର ପ୍ରକାଶେ ॥
ତହିଁରେ କାଦ୍ରବେୟ ଆଦି । କ୍ରୋଧବଶ ନାମ ପ୍ରସିଦ୍ଧି ॥
କୁହୁକ କାଳୀୟ ସୁଷେଣ । ତକ୍ଷକ ପ୍ରଧାନ ଏ ନାମ ॥
ମହା ଶରୀର ବଳବନ୍ତ । ତହିଁ ଅଛନ୍ତି ପରୀକ୍ଷିତ ॥
ନିତ୍ୟେ ବୈନେତ୍ରଙ୍କର ଭୟେ । ଉଦବେଗ ହୋଇ ତାରକାୟେ ॥
ଦାରା ତନୟ ବନ୍ଧୁ ସଙ୍ଗେ । ମତ୍ତେ ବିହରନ୍ତି ଏ ରଙ୍ଗେ ॥
ତାହାର ତଳେ ମହୀପାଳ । ପୁର ଯେ ନାମେ ରସାତଳ ॥
ଦୈତ୍ୟ ଦାନବେ ପତିମାନେ । କବଚ କାଳକୀ ହିରଣ୍ୟେ ।
ଅତ୍ୟନ୍ତ ବଳବନ୍ତ ହୋନ୍ତି । ଦେବଙ୍କୁ ଦ୍ରୋହ ସେ ଚିନ୍ତନ୍ତି ॥
ସକଳ ଲୋକର କାରଣ । ମହାପୁରୁଷ ନାରାୟଣ ॥
ସେ ମହାନୁଭାବ ଯେ ହରି । ତାହାକୁ ଅତି ତେଜ କରି ॥
ପ୍ରହତ ବଳ ଯେ ଦାନବେ । ସେ ସ୍ଥଳେ ଥାନ୍ତି ଉଦବେଗେ॥
ଇନ୍ଦ୍ର ଦୂତୀର ବାକ୍ୟଶୁଣି । ନିତ୍ୟେ ଡରନ୍ତି ନୃପମଣି ॥
ଏହା ଉତ୍ତାରେ ଯେ ପାତାଳ । ତହିଁ ଅଛନ୍ତି ନାଗବଳ ॥
ବାସୁକି ଆଦି ନାଗବଳ । ଶଙ୍ଖ କୁଳିକ ଯେ କଂବଳ ॥
ମହାଶଙ୍ଖ ଯେ ଆଉଶ୍ୱେତ । ଧନଞ୍ଜୟ ଯେ ଦେବଦତ୍ତ ॥
ଧୃତରାଷ୍ଟ୍ର ଯେ ଶଙ୍ଖଚୂଡ଼ । ଯେ ମହାଭୋଗୀ ଅଶ୍ୱତର ॥
ଏ ଯେତେ ମହାଭୋଗୀ ମାନେ । ବସନ୍ତି ପାତାଳ ଭୁବନେ ॥

ପଞ୍ଚସପତ ଦଶ ଶିର । ଅନେକ ଫଣା ବା କାହାର ॥
ଏହାଙ୍କ ମହାମଣି ମାନ । ପ୍ରକାଶେ ଆଦିତ୍ୟ ଯେସନ ॥
ପାତାଳ ବିବର ତିମିର । ସ୍ୱତେଜେ କରନ୍ତି ଯେ ଦୂର ॥
ପଞ୍ଚମ ସ୍କନ୍ଧେ ଏ ବର୍ଣ୍ଣନ । ସୁଜନେ ସାବଧାନେ ଶୁଣ ॥
କହଇ ଜଗନ୍ନାଥ ଦାସ । ଏ ଭାଗବତ ସୁଧାରସ ॥
କୃଷ୍ଣ ଚରଣେ ମନ ଦିଅ । ସୁଜନେ ଏହା ନିତ୍ୟେ ଗାଅ ॥
କୃଷ୍ଣ ପଦାର ବିନ୍ଦ ରସ । ମୋ ଜିହ୍ୱା କରି ନିତ୍ୟେ ଗ୍ରାସ

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୂଗୋଳ ବର୍ଣ୍ଣନେ*
*ନାମ ଚତୁର୍ବିଂଶୋଧ୍ୟାୟଃ ।*

## ପଞ୍ଚବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ତାହାର ତଳେ ହେ ରାଜନ । ତିରିଶ ସହସ୍ର ଯୋଜନ ॥
ତାମସ କଳା ଯେ ବିଶେଷ । ଅନନ୍ତ ନାମେ ଯେ ପ୍ରକାଶ ॥
ଯେ ବିଷ୍ଣୁ ଅଂଶବନ୍ତ ହୋଇ । ସଙ୍କରଷଣ ନାମ ବହି ॥
ଅନନ୍ତ ନାମେ ସେ ଠାକୁର । ସହସ୍ର ମସ୍ତକ ଯାହାର ॥
ତାହାର ଏକଇ ଶିରରେ । ମହୀମଣ୍ଡଳ ଅଛି ସ୍ଥିରେ ॥
ଯେ ସୃଷ୍ଟି କରଇ ସଂସାର । ଭ୍ରୁକୁଟି କରିଣ କରାଳ ॥
ଏକାଦଶ ରୁଦ୍ର ଯେ ହୋଇ । ସଙ୍କରଷଣ ନାମ ବହି ॥
ତିନି ଲୋଚନ ତିନି ଶିର । ପ୍ରଚଣ୍ଡ ଶୂଳଟି ଯାହାର ॥
ଯାହାର ପାଦ ଯେ କମଳ । ବିରାଜେ ନଖର ମଣ୍ଡଳ ॥
ଭକ୍ତିରେ ଅହିପତିମାନ । ତାହାରେ କରନ୍ତି ବନ୍ଦନ ॥
ଶିରୋମଣିରେ ନଖପନ୍ତି । ଚନ୍ଦ୍ରକୁ ଜିଣି ଦିଶେ କାନ୍ତି ॥
ଯାହାର ବଦନାରବିନ୍ଦେ । ଚକ୍ଷୁ ନିବେଶି ସେ ଆନନ୍ଦେ ॥
ପରମ ଯୋଗ ଭକ୍ତିମତେ । ଉଦିତ ହୋଇ ହୃଦ ଗତେ ॥
କୁଣ୍ଡଳ ପ୍ରଭାରେ ମଣ୍ଡିତ । ଗଣ୍ଡ ଯୁଗଳ ହୃଷ୍ଟଚିତ୍ତ ॥
ଯାହାକୁ ବିବିଧ ବିଧାନେ । ସେବନ୍ତି ନାଗପତ୍ନୀମାନେ ॥
ଯେ ଧରେ ରୂପ ମନୋହର । ବିଶଦ ଧବଳ ଶରୀର ॥
ବିପୁଳ ବକ୍ଷସ୍ଥଳେ ତାର । କୁଙ୍କୁମ ଚନ୍ଦନ ରୁଚିର ॥
ହଳ ମୂଷଳ କରେ ଯାର । କି ଅବା ଦେବା ପଟାନ୍ତର ॥
ରଜତ ସ୍ତମ୍ଭ ଭୁଜ ଦୁଇ । ମନ୍ଦସ୍ମିତ ରେ ଯେ ମୋହଇ ॥
ମଦେ ମୁଦିତ ଯା ବଦନ । ବିଘୂର୍ଣ୍ଣ ଅରୁଣ ଲୋଚନ ॥
ସେ ଯେ ଅନନ୍ତ ଭଗବାନ । ଗୁଣର ଅନାଦି ରାଜନ ॥
ସେ ଆଦି ଦେବ ଯେ ଈଶ୍ୱର । କ୍ରୋଧକୁ କରିଣ ସଂହାର ॥
ଲୋକ ପାଳନ ନିମନ୍ତରେ । ତହିଁ ଅଛନ୍ତି ଯେ ଠାକୁରେ ॥
ଉରଗସୁର ଯେ ଅସୁର । ସିଦ୍ଧ ଗନ୍ଧର୍ବ ବିଦ୍ୟାଧର ॥
ଅଶେଷ ମୁନିଗଣ ଯେତେ । ଆନନ୍ଦେ ଯେ ଯାହାର ମତେ॥
ଅପର ପାରିଷଦ ଗଣେ । ସେବନ୍ତି ଯାହାର ଚରଣେ ॥
ନବ ତୁଳସୀ ପୁଷ୍ପସାର । ସୁଗନ୍ଧ ଆନନ୍ଦେ ପ୍ରସର ॥
ଗନ୍ଧେ ମଧୁକର ନିକର । ଧ୍ୱନି କରନ୍ତି ମନୋହର ॥
ଏ ବନମାଳା କଣ୍ଠେ ଧରି । କୁଣ୍ଡଳ ଅତି ମନୋହରୀ ॥
ସୁନ୍ଦର ଲମ୍ବ ଭୁଜମାନ । ମହେନ୍ଦ୍ର ବାରଣ ଯେସନ ॥
ଧ୍ୟାନ ଶ୍ରବଣ ଯୋଗସାରେ । ମୁନି ଚିନ୍ତନ୍ତି ଯା ମନରେ ॥
କଳି କଲୁଷକୁ ନାଶନ୍ତି । ଅବିଦ୍ୟା ମତେ ଯାର ସ୍ଥିତି ॥
ଶ୍ରଦ୍ଧା ଆରତେ ଯେବା ଜନ । ଯେବେ ସେ କରଇ ସ୍ମରଣ ॥
ଯେ ଏହା ନାଶନ୍ତି ସକଳ । କରୁଣା ବହେ ଆଦିମୂଳ ॥
ଯାହାର ଅନୁଭାବ ମାନ । ନାରଦ ମୁନି ହେ ରାଜନ ॥
ବ୍ରହ୍ମା ସଭାରେ ବିସ୍ତାରିଲେ । ସକଳେ ଶୁଣି ନିସ୍ତରିଲେ ॥
ଯାହାର କଟାକ୍ଷକୁ ପାଇ । ଉତ୍ପତ୍ତି ସ୍ଥିତି ଲୟ ହୋଇ ॥
ଯାହାର ମୂର୍ତ୍ତି କୃପାମୟ । ସତ୍ୟ ଅସତ୍ୟ ଯାର ଦେହ ॥
ସୁଜନ ମନ ହରିବାରେ । ମୃଗେନ୍ଦ୍ର ପ୍ରାୟେ ଲୀଳାକରେ॥
ଯାହାର ନାମ ସୁମରଣେ । ଶ୍ରବଣ କୀର୍ତ୍ତନ ରାଜନ ॥
ଘୋର ଦୁର୍ଗମେ ନରେ ଥାଇ । ଯେବେ ଆରତେ ସୁମରଇ ॥
ଆପଦ ତାର ଯାଇ ଦୂର । ସକଳ ପାପୁଁ ହୋଏ ପାର ॥
ଆଶ୍ରୟ ହୋଇଥାଇ ଈଶ୍ୱରେ । ମୋକ୍ଷ ଲଭିଣ ସେ ନିସ୍ତରେ॥
ଭୂଗୋଳ ନଦୀ ନାନା ଗିରି । ଦିଗ ସମୁଦ୍ର ଆଦି କରି ॥
ଯାହାର ମସ୍ତକେ ଜଗତ । ସ୍ଥିରେ ଅଛନ୍ତି ପରୀକ୍ଷିତ ॥
ଅତି ବିକ୍ରମ ସେ ପୁରୁଷ । କେ କହୁ ତାହାର ବିଶେଷ ॥
ଯେ ଆତ୍ମା ତନ୍ତ୍ରେ ଭଗବାନ । ଯାର ଅଶେଷ ଗୁଣ ଗ୍ରାମ ॥
ଲୀଳା ମାତ୍ରକେ ଏ ସଂସାର । ଯେ ଧରି ଅଛି ବିଶ୍ୱଭାର ॥
ଏମନ୍ତ ପ୍ରଭାବ ଯାହାର । ଦୂରନ୍ତ ବୀର୍ଯ୍ୟ ସେ ଠାକୁର ॥
ଏବେ କହିଲୁ ଜୀବଗତି । କର୍ମରୁ ଯେ ଯାହା ଭୁଞ୍ଜନ୍ତି ॥
ଯାହାର ସ୍ଥାନଟି ଯେମନ୍ତ । ସକଳ କହିଲୁ ବିଦିତ ॥
ଯାହାର ଯେମନ୍ତ ଲକ୍ଷଣ । ଯେ ଧର୍ମ ଯାର ଆଚରଣ ॥
ଯେଉଁଠାବରୁ ଜୀବଜନ୍ତୁ । ଯାହାର ଯେବା କର୍ମ ହେତୁ ॥
ତୁମ୍ଭ ପ୍ରଶନ ଅନୁସାରେ । ସକଳ କହିଲୁ ତୁମ୍ଭରେ ॥

ଏବେ କି ତୁମ୍ଭ ଅଭିଳାଷ । ଅପରେ କହିବୁ ବିଶେଷ ॥
କହଇ ଜଗନ୍ନାଥ ଦାସ । ହରି ଚରିତ ସୁଧାରସ ॥
ଅଖିଳ ବ୍ରହ୍ମାଣ୍ଡ କାରଣ । ଅନାଦି ନାଥ ନାରାୟଣ ॥
ସେ ପ୍ରଭୁ ଚରଣେ ମୋ ମତି । ଅନୁକ୍ଷଣରତେ ହେଉ ସ୍ଥିତି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ଭୂଗୋଳ ବର୍ଣ୍ଣନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।*

## ଷଡବିଂଶ ଅଧ୍ୟାୟ

### ରାଜା ଉବାଚ

ବିଚିତ୍ର ଗତି ଲୋକଙ୍କର । ତୁମ୍ଭେ କହିଲ ନୃପବର ॥
ତ୍ରିଗୁଣ ବିଚିତ୍ର ହୁଅଇ । ଶୁଣ ପରୀକ୍ଷ ପୁଣ୍ୟଦେହୀ ॥
କର୍ତ୍ତାର ମତେ ଫଳପାଇ । ଶ୍ରଦ୍ଧା ଅଶ୍ରଦ୍ଧା ବେନି ଭାଇ ॥
ସକଳ ଏକ ଭାବ ହୋଇ । କେବେହେ କେହି ନ ଲଭଇ
ଯେଥୁ ଅନ୍ତରେ ଏବେ ଶୁଣ । ପ୍ରତିସିଦ୍ଧରେ ଯେ ଲକ୍ଷଣ ॥
ଅଧର୍ମ ଧର୍ମ ବେନି ମତ । ଶ୍ରଦ୍ଧା ଅଶ୍ରଦ୍ଧା ଯେ ବିଦିତ ॥
ସମାନ କ୍ରିୟା ଫଳମାନ । କାହାର ନୋହଇ ରାଜନ ॥
ଯେତେ ଅବିଦ୍ୟା କାମ୍ୟକର୍ମ । ଏହା ଲକ୍ଷଣ ପରିମାଣ ॥
ଶ୍ରୁତିରେ ସତ ସତ ମତ । ପ୍ରବୃତ୍ତ ହୋଇ ପରୀକ୍ଷିତ ॥
ଏହାର ଗତି ଆଗୋଚରେ । ବିସ୍ତାରି ବର୍ଣ୍ଣିବୁ ଅପରେ ॥
ଭୋମୁନି ତ୍ରୈଲୋକ୍ୟ ବାହାରେ । ନରକେ କିବା ଅନ୍ତରାଳେ ॥
କିବା ତ୍ରିଭୁବନ ମଧରେ । କହିବା ସାବଧାନେ ମୋରେ ॥

### ଶ୍ରୀ ଶୁକ ଉବାଚ

ତ୍ରି ଜଗତର ଅନ୍ତରାଳ । ଦକ୍ଷିଣ ଦିଗେ ମହୀପାଳ ॥
ଅଧେ ଦେଶ ଭୂମି ଉପରେ । ଅଗ୍ନିଯେ ସ୍ୱାତ୍ତା ଏ ମନ୍ଦିରେ ॥
ସକଳ ପିତୃଗଣ ଯେତେ । ସ୍ୱଗୋତ୍ର କଲ୍ୟାଣ ନିମିତ୍ତେ ॥
ଯହିଁ ବସନ୍ତି ହେ ରାଜନ । ଯହିଁ ଅନନ୍ତ ଭଗବାନ ॥
ଅନ୍ତେ ଜୀବକୁ ଯହିଁ ନ୍ୟନ୍ତି । ଯମ ପୁରୁଷେ ଦଣ୍ଡ ଦ୍ୟନ୍ତି ॥
ଦୋଷ ଯେ କର୍ମ ଅନୁସରି । ଯେ ପ୍ରାଣୀ ଯାହା ଥାନ୍ତି କରି ॥
ଭଗତ ଆଜ୍ଞା ଯେ ଲଙ୍ଘିଣ । ବିଅର୍ଥ କରେ ଆଚରଣ ॥
ତାହାକୁ ଯହିଁ ଦଣ୍ଡଧର । ଦଣ୍ଡକୁ ଦିଅନ୍ତି ଅପାର ॥
ଅଷ୍ଟବିଂଶତି ଯେ ଭାବରେ । ନରକେ ଅଛନ୍ତି ଯହିଁରେ ॥

ଏହାର ସ୍ୱନାମ ଲକ୍ଷଣ । କହିବା ଶୁଣହେ ରାଜନ ॥
ଅନ୍ଧକୂପ ଯେ ଅସିପତ୍ର । ଶୂକର ମୁଖେ କାଳ ସୂତ୍ର ॥
ରୌରବ ମହା ଯେ ନରକ । ଅନ୍ଧତାମିସ୍ର କୁମ୍ଭୀପାକ ॥
ତାମିସ୍ର କୃମି ଯେ ଭୋଜନ । ସଂଦଂଶ ତପ୍ତ ସୁର୍ମି ନାମ ॥
ବଜ୍ର କଣ୍ଟକ ଯେ ଶାଲ୍ମଳ । ବଇତରଣୀ ମହୀପାଳ ॥
ପ୍ରାଣ ରୋଧନ ବିଶ୍ୱସନ । ପୟୋଦ ସାରମେ ଆଦନ ॥
ଲାଲାଭକ୍ଷ ବିଧ୍ୱି ନରକ । ଅପରେ ଅନ୍ୟ ଯେ ପାତକ ॥
ଶୂଳ ପ୍ରୋତକ୍ଷାର କର୍ଦ୍ଦମ । ଯେବା ରକ୍ଷୋଗଣ ଭୋଜନ ॥
ଅବଟ ନିରୋଧନ ଆର । ଦନ୍ଦ ଶୂକ ନାମେ ଅପର ॥
ସୂଚିମୁଖ ପର୍ଯ୍ୟାବର୍ତ୍ତନ । ଅଷ୍ଟବିଂଶତି ଏହୁ ନାମ ॥
ଏ ଯେ ନରକ ମହୀପାଳ । ବିବିଧ ଯାତନାର ସ୍ଥଳ ॥
ପରର ସ୍ତ୍ରୀ ଅପତ୍ୟ ଯେ ଧନ । ଯେ ପ୍ରାଣୀ କରଇ ହରଣ ॥
ସେ କାଳପାଶେ ବନ୍ଦୀ ହୋଇ । ଯମର ପୁରେ ଦୁଃଖ ପାଇ ॥
ତ୍ରିଦଶ ନରକେ ପଡ଼ଇ । ନାନା ଯାତନାକୁ ଭୁଞ୍ଜଇ ॥
କ୍ଷୁଧା ପିପାସାରେ ପୀଡ଼ିତ । ହୋଇ ସେ ଦଣ୍ଡରେ ତାଡ଼ିତ ॥
ନାନା ଯାତନାରେ ପ୍ରହାରେ । ଯେତେ ଯାତନା ଭୟଙ୍କରେ ॥
ପରମ କଷ୍ଟ ପାଇ ତହିଁ । କ୍ଷଣ କ୍ଷଣକେ ମୂର୍ଚ୍ଛାଯାଇ ॥
ଅନ୍ଧ ତାମିସ୍ରେ ଯେ ପ୍ରକାରେ । ଯାତନା ଭୋଗ ପ୍ରାଣୀ କରେ ॥
ପର ଦାରାଦି ପାପ କରି । ତେବେ ତାମିସ୍ର ଭୋଗ କରି॥
ତେବେ ପଡ଼ଇ ସେ ଯେ ତହିଁ । ଯାତନା ସିନ୍ଧୁରେ ବୁଡ଼ଇ ॥
ନଷ୍ଟ ହୁଅଇ ମତି ତାର । ଦୃଷ୍ଟି ନାଶଇ ନୃପବର ॥
ମୋହେ ତାପିତ ଭାବ ହୋଇ । ଭୃତ୍ୟ ଭାବକୁ ସେ ଚିନ୍ତଇ ॥
କୁଟୁମ୍ବ ପାଇଁ ହିଂସା ବହି । ସେ ପ୍ରାଣୀ ରୌରବେ ପଡ଼ଇ ॥
ଯେ ଜୀବ ହିଂସନ୍ତି ସଂସାରେ । ତାହାଙ୍କୁ ପରୋକ୍ଷ ଲୋକରେ॥
ରୌରବ ମୂର୍ତ୍ତି ଜୀବ ହୋଇ । ସେଠାରେ ତାହାକୁ ହିଂସଇ ॥
ମହାରୌରବ ଏହି ମତେ । ଯହିଁ କ୍ରୂର ଜନ୍ତୁ ବିଦିତେ ॥
ତହିଁରେ ସେ ପ୍ରାଣୀ ପଡ଼ଇ । ରୌରବ ଜୀବ ତାକୁ ଖାଇ ॥
ସେ ନର ପଶୁପକ୍ଷୀମାନେ । ପ୍ରାଣ ରୋଧ କରେ ଯାତନ ॥
ରାକ୍ଷସୁ ବଳି ସେହି ହୋଇ । କୁମ୍ଭୀପାକରେ ସେ ପଡ଼ଇ ॥
ତପତ ତଇଳେ ତାହାର । ରନ୍ଧନେ ହୋଯେ ନୃପବର ॥
କାଳସୂତ୍ର ନରକ ନାମ । ବିସ୍ତାର ଅୟୁତ ଯୋଜନ ॥
ତାମିସ୍ରମୟେ ଭୂମିଯାର । ଉପରେ ଥାଇ ସେ ଭାସ୍କର ॥
ଅଧୋ ଭାଗରେ ଅଗ୍ନି ଥାଇ । ଏମନ୍ତ ନରକ ଅଟଇ ॥
ଯେ ନର ବ୍ରହ୍ମ ହତ୍ୟା କରେ । ସେ ତହିଁ ପଡ଼ଇ ନିର୍ଭରେ ॥

ତପନ ସୁବର୍ଣ୍ଣ ପୂଟଭ । ତହିଁ ସେ ଦଗ୍ଧ ମାନ ହୋଇ ॥
କ୍ଷଣକେ ଉଠଇ ଶୁଅଇ । ବସଇ ବ୍ୟାକୁଳେ ଧାମଇ ॥
କ୍ଷୁଧା ପିପାସା ପୀଡ଼ା ମାନ । ତକ୍ଷଣେ ହୋୟେ ଅଚେତନ ॥
ପଶୁର ଦେହେ ଲୋମ ଯେତେ । ବରଷ ସହସ୍ର ପର୍ଯ୍ୟନ୍ତେ ॥
ଉଗ୍ର ଯାତନା ସେ ଭୁଂଜଇ । ସେ ପ୍ରାଣୀ ପଡ଼ିଥାଇ ତହିଁ ॥
ଯେ ନିଜ ଧର୍ମ ପଥ ଛାଡ଼ି । ବେଦ ଆଜ୍ଞାକୁ ନିନ୍ଦେ ହୁଡ଼ି ॥
ପାଷାଣ୍ଡ ବୋଲି ତାକୁ କହି । ଅସି ପତ୍ରରେ ସେ ପଡ଼ଇ ॥
ଲୌହ ମୁଦ୍ଗର ତା ଉପରେ । ପ୍ରହାର କରନ୍ତି ନିର୍ଭରେ ॥
ଯେ ରାଜା ପ୍ରଜାଦି କିଙ୍କରେ । ଅଦୋଷେ ଦଣ୍ଡନ୍ତି ଯେ ନରେ ॥
ଅତ୍ୟନ୍ତ ପାପିଷ୍ଟଟି ସେହି । ଶୂକର ମୁଖେ ସେ ପଡ଼ଇ ॥
ତହିଁରେ ପଡ଼ଇ ନିର୍ଭରେ । ନାନା ଆୟୁଧର ପ୍ରହାରେ ॥
ଇକ୍ଷୁ ଦଣ୍ଡର ପ୍ରାୟେ କରି । ତାକୁ ପେଷନ୍ତି ଦଣ୍ଡଧାରୀ ॥
ପରମ କଷ୍ଟକୁ ସେ ପାଇ । କ୍ଷଣ କ୍ଷଣକେ ମୋହ ଯାଇ ॥
ଏ ଯେ ସଂସାରେ ନର ଦେହୀ । ହିଂସାରେ ପ୍ରାଣୀକୁ ପୀଡ଼ଇ ॥
ଦ୍ରବ୍ୟ ବିହୀନ ବ୍ୟର୍ଥମତେ । ସନ୍ତାପ ହୋଅଇ ଯେମନ୍ତେ ॥
ସେ ପ୍ରାଣୀ ପର ଲୋକ ଯାଇ । ଅନ୍ଧ ତମରେ ସେ ପଡ଼ଇ ॥
ଯେ ଗ୍ରାସ ନ ବାଣ୍ଟି ଭୁଂଜଇ । ବାୟସ ତୁଲ୍ୟ ତାକୁ କହି ॥
ଏ ନରକ କୃମି ଭୋଜନ । ନରକ ମାନଙ୍କ ଅଧମ ॥
ଶତ ସହସ୍ର ଯେ ଯୋଜନ । ଯେ କୃମି କୁଣ୍ଡ ପରିମାଣ ॥
ତହିଁରେ ପଡ଼ଇ ସେ ନର । ଉଗ୍ର ଯାତନାର ସେ ଘୋର ॥
କୃମିକି ଭକ୍ଷଇ ଯେ ଜନ । ତାକୁ ଭକ୍ଷନ୍ତି କୃମିମାନ ॥
ଯାବତ କର୍ମ କ୍ଷୟେ ନୋହେ । ତାବତ ତହିଁ ସେହି ରହେ ॥
ସ୍ଥାପିତ ଦ୍ରବ୍ୟ ଯେ ହରଇ । ସନ୍ଦେଶପାଡ଼ା ସେ ଲଭଇ ॥
ଅଗମ୍ୟ ସ୍ତିରୀ ଯେ ରମଇ । ତପ୍ତ ଶୂର୍ମିରେ ସେ ପଡ଼ଇ ॥
ନାରୀ ବା ଅଗମ୍ୟ ପୁରୁଷେ । ସେ ରମଇ ରତି ଲାଳସେ ॥
ତପତ ଲୌହ ମଦ ନାମ । ତାକୁ କରାନ୍ତି ଆଲିଙ୍ଗନ ॥
ପୁରୁଷ ରୂପେ ସ୍ତିରୀଠାରେ । ପୁରୁଷ ସ୍ତିରୀ ଯେ ବେଭାରେ ॥
ଆଗମ ନିଗମ ବଚନ । ନ ମାନେ ପାଷାଣ୍ଡ ଯେ ଜନ ॥
ବଜ୍ର କଣ୍ଟକ ଶିମୁଳିରେ । ଆରୋହଣ କରାନ୍ତି ତାରେ ॥
ଯେ ରାଜ ପୁରୁଷ ଅପର । ଧର୍ମକୁ କରନ୍ତି ସେ ଦୂର ॥
ଧର୍ମ ଆଚରେ ଯେଉଁ ନରେ । ତାକୁ ଯେ ହିଂସନ୍ତି ପାମରେ ॥
ସେ ଅନ୍ତେ ବଇତରଣୀରେ । ପାପିଷ୍ଟେ ପଡ଼ନ୍ତି ନିର୍ଭରେ ॥
ନିରୟ ପରିଖା ଯାହାର । ଯେମନ୍ତେ ଯେଉଁ ନଦୀବର ॥
ତହିଁରେ ଜଳଜନ୍ତୁମାନ । ପାପୀଙ୍କି କରଇ ଭକ୍ଷଣ ॥

ମୂତ୍ର ପୂରୀଷ ଯେ ଶୋଣିତ । ନଖ ଅସ୍ଥି ମେଦ ସର୍ବହୁତ ॥
ଏଥି ପଡ଼ଇ ତାହା ଖାଇ । ବାସନା କର୍ମ ସୁମରଇ ॥
ବୃଷଳୀ ଗମନ ଯେ କରେ । ଶୌଚ ଆଚରଣ ବିହରେ ॥
ନିର୍ଲ୍ଲଜ ଭାବକୁ ବହଇ । ନିତ୍ୟେ ନିୟମକୁ ଛାଡ଼ଇ ॥
ପୟୋଦ ଅନ୍ତେ ସେ ପଡ଼ଇ । ବିସ୍ମିତ ଶ୍ଳେଷ ମଳ ଯହିଁ ॥
ଅତି ବିଭସ କୋପାନଳ । ତାହାକୁ ଭୁଞ୍ଜଇ ପାମର ॥
ମୃଗୟା ବେହାର ଯେ ନରେ । ପ୍ରବୃତ୍ତ ହୋଇ ବାରମ୍ବାରେ ॥
ମୃଗାଦି ବାଳ ପଶୁମାନ । ବହୁତ ମାରନ୍ତି ରାଜନ ॥
ବିବିଧ ବାଣେ ଶତଶତ । ତାଙ୍କୁ ପ୍ରହାରନ୍ତି ବହୁତ ॥
କପଟ ଯଜ୍ଞ ଯେଉଁ ନରେ । ଦମ୍ଭ ଆଚରି ପଶୁମାରେ ॥
ସେ ଲୋକ ବିଷସମ ନାମେ । ନରକେ ପଡ଼ନ୍ତି ସେ ଜନେ ॥
ପତ୍ନୀଙ୍କି ରେତ ଯେ ପିଆଇ । ଯେ ଜନ କାମ ବଶ ହୋଇ ॥
ଅମୂତ୍ର ରେତ ଯେ କୂଳ୍ୟାରେ । ରେତକୁ ପିଆନ୍ତି ତାହାରେ ॥
ଯେ ନର ଅଗ୍ନି ଗୃହେ ଦେଇ । କପଟେ ଗରଳ ଭୁଂଜଇ ॥
ସେ ପର ଲୋକେ ଯେବେଯାଇ । ବିବିଧ ଯାତନା ଭୁଂଜଇ ॥
ଉଗ୍ର ଦ୍ରଷ୍ଟର ଶ୍ୱାନ ଶତ । ତାକୁ ଭକ୍ଷନ୍ତି ଅବିରତ ॥
ସାକ୍ଷ୍ୟରେ ମିଥ୍ୟା ଯେ କହଇ । ଅବିଚୀ ନରକେ ପଡ଼ଇ ॥
ଅଧ ବଦନେ ତାର ଶିର । ନରକ ଭୁଞ୍ଜଇ ପାମର ॥
ଯାହାର ଶ୍ରେଷ୍ଠ ଯେଉଁ ଜନ । ଶ୍ରେଷ୍ଠକୁ ନ କରେ ବନ୍ଦନ ॥
ନରକେ କର୍ଦ୍ଦମ ପଡ଼ଇ । ବହୁତ ଯାତନା ଭୁଞ୍ଜଇ ॥
ଯେ ପ୍ରାଣୀ ନରମେଧ କରେ । ଦେବତା ସନ୍ତୋଷ ପ୍ରକାରେ ॥
ଯେତେ ସ୍ତ୍ରୀ ବାଳ ପଶୁମାରେ । ଡାକିନୀ ଆଦି ରୂପଧରେ ॥
ସେ ଯେ ବାଳକ ପଶୁମାନ । ପରଶେ ଯମର ସଦନ ॥
ରାକ୍ଷସ ରୂପକୁ ଆଚରି । ଶ୍ରୋଣିତ ପିବନ୍ତି ତାହାରି ॥
ସେ ସ୍ତିରୀ ପୁରୁଷ ରକତ । ଖାଇ ହୋଇଣ ମଦେ ମତ୍ତ ॥
ନାଚନ୍ତି ଗାବନ୍ତି ହରଷେ । ଯେସନେ ରାକ୍ଷସ ପୁରୁଷେ ॥
ବିବିଧ ରଜ୍ଜୁ ପ୍ରକାରେ । ଯେ ନର ଗ୍ରାମ ଅରଣ୍ୟରେ ॥
ବିଶ୍ୱାସୀ ପଶୁକୁ ମାରଇ । ଯମ ସଦନେ ସେହୁ ଯାଇ ॥
ପାଶେ ବନ୍ଧନ ହୋଇ ସେହି । କ୍ଷୁଧା ତୃଷାରେ ପୀଡ଼ା ପାଇ ॥
କୁକୁରକୁ ଯେ ଯମ ଗଣ । ତୁଣ୍ଡରେ କରନ୍ତି ଯାଚନ ॥
ବିବିଧ କଳୁଷ ଲଭଇ । ଆପଣା କର୍ମକୁ ସ୍ମରଇ ॥
ଉଗ୍ର ସ୍ୱଭାବେ ଯେଉଁ ନର । ପ୍ରାଣୀର ଉଦ୍‌ବେଗକୁ କରେ ॥
ଦ୍ୱନ୍ଦ ଶୂକ ଘୋର ନରକେ । ପଡ଼ନ୍ତି ଯାଇ ପରଲୋକେ ॥
ପଞ୍ଚଶତ ମୁଖ ତାହାର । ଏ ଅନ୍ତ ଦ୍ୱନ୍ଦ୍ୱ ଶୂକବର ॥

ଅନେକ ଅଛନ୍ତି ତହିଁରେ । ରକ୍ଷନ୍ତି ସେ ପାପୀ ଶରୀରେ ॥
ଯେ ଗର୍ବ ଆଦି କଷ୍ଟଫଳେ । ପ୍ରାଣୀଙ୍କି ଥୋଇ ଅବହେଳେ ॥
ଦ୍ୱାର ରୁନ୍ଧଇ ମୂଢ଼ ନର । ଏମନ୍ତେ ଭୁଞ୍ଜେ ସେ ପାମର ॥
ଗର୍ତ୍ତେ ପାମରକୁ ଥୁଅନ୍ତି । ନିର୍ଧୂମ ଅଗ୍ନି ମୁଖେ ଦ୍ୟନ୍ତି ॥
ପୂର୍ବେ ଯେ ଆସି ଥାଇ ନାହିଁ । ଅତିଥି ଭାବରେ ଆସଇ ॥
ଗୃହେ ରଖନ୍ତି ତାକୁ ଯେବେ । ଅବଲୋକନ କ୍ରୋଧ ଭାବେ ॥
କୁସିତ ବାକ୍ୟ ସେ କହଇ । ଅନ୍ତେ ସେ ନରକେ ପଡ଼ଇ ॥
ବକ୍ରତୁଣ୍ଡ ଯେ ଗୃଧ୍ରକାକ । କାକର ଉପରେ ଯେ ବକ ॥
ଦୀର୍ଘ ଚଂଚୁରେ କରି ତାର । ଚକ୍ଷୁ ଖୋଳନ୍ତି ନୃପବର ॥
ଯେ ଅହଙ୍କାରେ ବକ୍ର ହୋଇ । ପ୍ରାଣୀଙ୍କି କଟାକ୍ଷେକ ଚାହିଁ ॥
କୁଟିଳ ହୃଦୟ ଭାବରେ । ଜୀବର ମନ୍ଦକୁ ଆଚରେ ॥
ଅନ୍ତେ ସେ ଯାଇ ପରଲୋକେ । ପଡ଼େ ନରକେ ସୂଚୀମୁଖେ ॥
ଯହିଁରେ ପାପୀଙ୍କ ଶରୀର । ପୀଡ଼ନ୍ତି ଯମଙ୍କ କିଙ୍କର ॥
ଏମନ୍ତ ପ୍ରକାରେ ରାଜନ । ଶତଶତ ନରକମାନ ॥
ଅଛନ୍ତି ଯମର ସଦନେ । ଯହିଁ ପ୍ରାଣୀଙ୍କି ନିଜସ୍ଥାନେ ॥
ଯେ ଯେତେ ଧର୍ମ ଆଚରଇ । ସେ ରୂପେ ଫଳକୁ ଭୁଂଜଇ ॥
ନିବୃତ୍ତ ମାର୍ଗର ଲକ୍ଷଣ । ଆଗେ ତ କହିଛି ରାଜନ ॥
ଏ ଚତୁର୍ଦ୍ଦଶ ମତ ହୋଇ । ବ୍ରହ୍ମାଣ୍ଡ ଏକ ଏ ବୋଲାଇ ॥
ପୁରାଣେ ଅନୁମାନ କରି । ତୁମ୍ଭରେ କହିଲୁ ବିସ୍ତାରି ॥
ଯେ ଭାଗବତ ନାରାୟଣ । ମହାପୁରୁଷ ଯେ ପୁରାଣ ॥
ଗରିଷ୍ଠ ରୂପ ତାହାଙ୍କର । ମାୟା ଗୁଣରେ ନୃପବର ॥
ଯେତେକ ବର୍ଣ୍ଣିଲଇ ମୁହିଁ । ସକଳ ରୂପେ ସେ ଅଟଇ ॥
ଯେ ନର ଶ୍ରଦ୍ଧାବନ୍ତ ହୋଇ । ପଢ଼ଇ ଶୁଣାଇ ଶୁଣଇ ॥
ଯେ ଶୁଦ୍ଧଭକ୍ତି ଶୁଦ୍ଧନର । ପରମ ଆତ୍ମା ଯେ ଈଶ୍ୱର ॥
ଅଗାଧ ରୂପଟି ତାହାର । ପରମ ସୂକ୍ଷ୍ମର ଯେ ପର ॥
ତାହାର ଅତି ସୂକ୍ଷ୍ମତର । ଦେବଙ୍କୁ ଯେହ୍ନେ ଅଗୋଚର ॥
ସେ ଗତି ଲଭ ହେ ରାଜନ । ପରମ ଶ୍ରେଷ୍ଠ ଯେହୁ ଜନ ॥
ଦ୍ୱୀପ ବରଷ ନଦୀ ଗିରି । ନଭ ସମୁଦ୍ର ଦଣ୍ଡଧାରୀ ॥
ପାତାଳ ଦ୍ୱିପ ଯେ ନରକ । ଭାଗ ଲକ୍ଷଣ ଯେତେ ଲୋକ ॥
ଈଶ୍ୱର ସ୍ଥୂଳ ଯେ ଶରୀର । ଆଶ୍ରୟ ସକଳ ଜୀବର ॥
ସେ ସର୍ବ ବିଭାଗ ପ୍ରକାରେ । ଭୋ ନୃପ କହିଲୁ ତୁମ୍ଭରେ ॥
କହିଲେ ଜଗନ୍ନାଥ ଦାସ । ପଞ୍ଚମସ୍କନ୍ଦେ ସୁଧାରସ ॥
ସାଦରେ ପିଅ ସାଧୁବାଣୀ । ତରିବ ଭବ ତରଙ୍ଗିଣୀ ॥
ଏ ଯେ ସଂସାର ସିଂଧୁ ଘୋର । ଦୁଷ୍ଟ ଜନରେ ଭୟଙ୍କର ॥
ପାଦ ପଲ୍ଲବ ଯୁଗ୍ମ ଧରି । ସୁଖେ ତରନ୍ତି ଭବ ବାରି ॥
ସେ ବିନୁ ଅନ୍ୟ ଗତି ନାହିଁ । କରୁଣା କର ଭାବଗ୍ରାହୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ପଞ୍ଚମସ୍କନ୍ଧେ ନରକେ ବର୍ଣ୍ଣନେ ନାମ ଷଡ଼୍ ବିଂଶୋଽଧ୍ୟାୟଃ*

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ
ଯଦି ଶୁଦ୍ଧମଶୁଦ୍ଧ ବା ମମ ଦୋଷ ନ ବିଦ୍ୟତେ ।
*ସମାପ୍ତ ।*

# ଷଷ୍ଠ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।।
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ।।
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ।।

## ପ୍ରଥମ ଅଧ୍ୟାୟ

### ରାଜା ଉବାଚ

ଶୁକ ଚରଣେ ପ୍ରଣମିତ । କରି ବୋଲଇ ପରୀକ୍ଷିତ ॥
ଆଦ୍ୟରେ ଭଗବାନ ବ୍ରହ୍ମା । ଅଷ୍ଟ ଐଶ୍ୱର୍ଯ୍ୟ ଯାର ସୀମା ॥
ନିବୃତ୍ତି ମାର୍ଗ ଯେ କହିଲେ । ତା ଯୋଗେଶ୍ୱର ନ ଜାଣିଲେ ॥
ସ୍ତିରୀ ସମ୍ମୋହ ଦୂଷଣ । ପ୍ରକୃତି ସୃଷ୍ଟି ନୋହେ ପୁଣ ॥
ନାନା ଯେ ଅଧର୍ମ ଲକ୍ଷଣ । ନରକ-ମାନଙ୍କ ବର୍ଣ୍ଣନ ॥
ଆଦ୍ୟେ ଯେ ସ୍ୱୟମ୍ଭୁବ ଠାରୁ । କହିଲେ ଯେତେ ମନ୍ୱନ୍ତରୁ ॥
ପ୍ରିୟବ୍ରତ ଯେ ରାଜ୍ୟେଶ୍ୱର । ଉତ୍ତାନ ପାଦ ରାଜାଙ୍କର ॥
ବଂଶ ଚରିତ ଏହାଙ୍କର । ଦ୍ୱୀପ ବରଷ ମହୀଧର ॥
ନଦୀ ଉଦ୍ୟାନ ସିନ୍ଧୁବନ । ପୃଥିବୀ ମଣ୍ଡଳର ସ୍ଥାନ ॥
ଚନ୍ଦ୍ର ତାରକା ଆଦିକରି । ଭାଗ ବିବର ଅନୁସରି ॥
ଏମନ୍ତ ପ୍ରକାରେ ଈଶ୍ୱର । ସର୍ଜିଲେ ଅଖିଳ ସଂସାର ॥
ନାନା ପ୍ରକାରେ ଯେ ନରକ । ପ୍ରାଣୀ ସଞ୍ଚରନ୍ତି ଅନେକ ॥
ବିଶେଷ କରି ମହାଭାଗ । କହ ଅନୁରାଗେ ମୋ ଆଗ ॥
ଯେ ପ୍ରାଣୀ ପରମ ଈଶ୍ୱରେ । ପୂଜା ନ କରେ ଭକ୍ତିଭରେ ॥
କର ପଲ୍ଲବେ ସଂକୀର୍ତ୍ତନ । ଶ୍ରଦ୍ଧା ନ କରେ ଭଗବାନ ॥
ନିଷ୍ଠେ ସେ ଯାତନା ନରକ । ସେ ପ୍ରାଣୀ ଲଭନ୍ତି ଅନେକ ॥
ଯେହି ପ୍ରକାରେ ସେ ଭିଷକ । ରୋଗର ଚିକିତ୍ସା ଅନେକ ॥
ଗୁରୁ ଲଘୁ ହିଁ କିଛି ଜାଣି । ନିଦାନ କଥା ପରିମାଣି ॥
ପାପର ନିରାକରଣାର୍ଥେ । ଆତ୍ମା ସଂଯୁତ ହୃଦଗତେ ॥
ପାପ ଅହିତ ବୋଲି ଜାଣି । ତଥାପି ବିବଶରେ ପ୍ରାଣୀ ॥
ପାପରେ ହୋଇ ପ୍ରବର୍ତ୍ତିତ । କିମ୍ପାଇ କରଇ ପ୍ରାୟଶ୍ଚିତ ॥
କେବେହେଁ ପାପୁଁ ନ ଡରଇ । ପୁଣି ହିଁ ପାପ ଆଚରଇ ॥
ଯେଣୁ ଉତ୍ତାରେ ପ୍ରାୟଶ୍ଚିତ । କୁଞ୍ଜର ସ୍ନାନ କଲା ମତ ॥
କର୍ମରେ କରି କର୍ମମାନ । ନିଗ୍ରହ କରନ୍ତି ଯେ ଜନ ॥
ନୁହନ୍ତି ଆତ୍ୟନ୍ତିକ ସେହି । ଏହାର ସ୍ୱଭାବଟି ଏହି ॥
ଅଧିକାରୀ ଆଜ୍ଞାକୁ କରି । ପ୍ରାୟଶ୍ଚିତକୁ ସେ ଆଚରି ॥
ସୁପଥ୍ୟ ଗ୍ରାସ ଯେ ନ କରେ । ତାହାକୁ ବ୍ୟାଧି ପୀଡ଼ା କରେ ॥
ଏହି ନିୟମ ଯେ କରନ୍ତି । କର୍ମେ କଲ୍ୟାଣ ସେ ଲଭନ୍ତି ॥
ତପସ୍ୟା ଯମ ନିୟମରେ । ଶମ ଦମ ଶୌଚ ତ୍ୟାଗରେ ॥
ସତ୍ୟ ବ୍ରହ୍ମଚର୍ଯ୍ୟ ଦୀକ୍ଷାରେ । ଜ୍ଞାନୀ ନାଶନ୍ତି ତାହା ଦୂରେ ॥
ଦେହ ବଚନ ବୁଦ୍ଧି ଘେନି । ଶ୍ରଦ୍ଧା ବିନୟ ମହାମୁନି ॥
ବେଣୁର ଗଣ୍ଠିର ଅନଳ । ଯେସନେ ଦହଇ ସକଳ ॥
କେହୁ କେବଳ ଭକ୍ତି କରି । ଗୋବିନ୍ଦ ପାଦେ ଆଶ୍ରେ କରି ॥
ଅଘ ଅଶେଷ କରି ନାଶେ । ହିମ ଯେସନେ ରବିତ୍ରାସେ ॥
ହେ ରାଜା ଅଘବନ୍ତ ଯେହି । ତପେ ପବିତ୍ର ନୋହେ ସେହି ॥
ଯେମନ୍ତେ କୃଷ୍ଣର ବିଷୟେ । ପ୍ରାଣ ଅର୍ପିତ ସେବା ହୋୟେ ॥
ସୁଶୀଳ ସାଧୁ ଯେଉଁ ଜନ । ନାରାୟଣରେ ପରାୟଣ ॥
ତାହାଙ୍କ ପଥ ଯେଉଁମାନେ । ଲୋକର କଲ୍ୟାଣ କରଣେ ॥
ରାଜେନ୍ଦ୍ର ଶୁଣ ପରିମାଣି । କୃଷ୍ଣ ବିମୁଖ ଯେତେ ପ୍ରାଣୀ ॥
ତାହାଙ୍କ ତପେ ଯେତେ ଫଳ । ସକଳ ହୁଅଇ ନିଷ୍ଫଳ ॥
କୃଷ୍ଣର ପାଦପଦ୍ମ ଦୁଇ । ତା ଗୁଣେ ଅନୁରାଗୀ ହୋଇ ॥
ଯେ ଏକାବେଳେ ବୋଲେ ନାମ । ସ୍ୱପ୍ନେ ସେ ନ ଦେଖଇ ଯମ ॥
ଯା ଦୂତ ପାଶ ରଜ୍ଜୁ ଧରି । ନ ଦେଖେ ଚିହ୍ନ ତାହାଙ୍କରି ॥
ଯେ ଇତିହାସ ପୁରାତନେ । କହିବା ଶୁଣ ସାବଧାନେ ॥
ବିଷ୍ଣୁ ଦୂତ ଶମନ ଦୂତ । ସମ୍ବାଦ ଅତି ଅଦଭୂତ ॥
କାନ୍ୟକୁବ୍ଜେ ନାମେ ଦେଶ । ଅଜାମିଳର ତହିଁ ବାସ ॥
ଆଶ୍ରମେ ଦ୍ୱିଜ ସେ ବୋଲାଇ । ସ୍ୱଭାବେ ଦାସୀ ପତି ହୋଇ ॥
ସଦାଚାରକୁ ନଷ୍ଟ କରି । ଦାସୀର ସଂସର୍ଗ ଆଚରି ॥
କୈତବ ଚୌର୍ଯ୍ୟପଣେ ଥାଇ । କୁତ୍ସିତ କର୍ମ ଆଚରଇ ॥
ଏମନ୍ତେ କେତେ ଦିନ ଗଲା । ତାହାର ପୁତ୍ର ଉପୁଜିଲା ॥
ସେ ନଗ୍ରେ ଥାଇ ଦାସୀପତି । ପୁତ୍ର ପାଳନେ ମହାମତି ॥
ଅଠାଶୀ ସହସ୍ର ବୟସରେ । କାଳ ହୋଇଲା ନୃପବରେ ॥
ବୃଦ୍ଧ ବୟସେ ତାର ପୁତ୍ର । ହୋଇଲା ଦଶ ପରିମିତ ॥
କନିଷ୍ଠ ନାମ ନାରାୟଣ । ପିତାର ଆନନ୍ଦ କାରଣ ॥
ତାହାର ତହିଁ ଚିତ୍ତ ଥାଇ । ଅନ୍ୟତ୍ର କେବେହେଁ ନ ଦେଇ
ବାଳକ ସ୍ୱଭାବେ କୋମଳ । ବଚନ କହଇ ମଞ୍ଜୁଳ ॥
ତାହାର ଲୀଳାମାନ ଦେଖି । ହରଷ କେ ପାରିବ ଲେଖି ॥
ଭୋଜନ ଜଳପାନ ବେଳେ । ନାନା ପ୍ରକାରେ ସୁଖ ଭୋଳେ ॥

ବାଳକ ସ୍ନେହ ବଶ ହୋଇ । ଅଗ୍ରେ ଭୋଜନ ତାରେ ଦେଇ ॥
ମରଣ ନ ଜାଣଇ ମୂଢ଼ । ବାଳକ ସ୍ନେହେ ଚିତ୍ତ ଦୃଢ଼ ॥
ମରଣ କାଳ ଉପଗତ । ତକ୍ଷଣେ କରି ଦୃଢ଼ଚିତ୍ତ ॥
ବାଳକ ନାମ ନାରାୟଣ । ମନ ନିବେଶିଲା ତକ୍ଷଣ ॥
ଶମନ ଦୂତ ପାଶ କରେ । ମିଳିଲେ ତାର ସମୀପରେ ॥
ଉଚ୍ଚ ପୁରୁଷ ଭୟଙ୍କର । ବକ୍ର ବଦନ ତାହାଙ୍କର ॥
ଲମ୍ବ ରୋମ ସର୍ବ ଶରୀର । ଦେଖି ଅଜାମିଳ କାତର ॥
ଦୂରେ ବାଳକ ସଙ୍ଗେ ମିଳି । ତାହାର ପୁତ୍ର କରେ କେଳି ॥
ଗଭୀର ସ୍ୱରେ ଉଚ୍ଚ କରି । ଡାକିଲା ତାର ନାମ ଧରି ॥
ଇନ୍ଦ୍ରିୟ ଆକୁଳେ ତକ୍ଷଣ । ଡାକିଲା ପୁତ୍ର ନାରାୟଣ ॥
ମଲା ଯେ ଅଜାମିଳ ନାମ । ସେ ନାମ କରି ସଂକୀର୍ତ୍ତନ ॥
ଶୁଣି ତା ମୁଖୁ ନାରାୟଣ । ଆସି ମିଳିଲେ ବିଷ୍ଣୁଗଣ ॥
ଯେ ଅଜାମିଳ ହୃଦୟରୁ । ଆକର୍ଷ କରି ଆତ୍ମା ଧରୁ ॥
ଯମ ଦୂତଙ୍କୁ ବିଷ୍ଣୁ ଦୂତେ । ବଳେ ନିବାରିଲେ ତୁରିତେ ॥
ବଇବସ୍ୱତ ପ୍ରଭୁ ଯାଇ । ସେ ଦୂତ ମାନଙ୍କ ଉତ୍ତର ॥
ବିଷ୍ଣୁ ଦୂତମାନଙ୍କୁ କହି । ତୁମ୍ଭେ ନିବାର କାହିଁପାଇଁ ॥
ଧର୍ମ ରାଜାର ଆଜ୍ଞାମାନ । କିପାଇଁ କରୁଅଛ ଭଗ୍ନ ॥
କାହାର ତୁମ୍ଭେମାନେ ଦୂତ । କାହୁଁବା ଅଇଲ ତୁରିତ ॥
କିମ୍ପାଇଁ ଆମ୍ଭଙ୍କୁ ନିଷେଧ । କିବା ଉତ୍ତମ ତୁମ୍ଭେ ସିଦ୍ଧ ॥
କିବା ଦେବତା ତୁମ୍ଭେମାନେ । ଥାଅ ଦେବଙ୍କ ସନ୍ନିଧାନେ ॥
ତୁମ୍ଭର ଚକ୍ଷୁ ପଦ୍ମଦଳ । ବିରାଜେ କିରୀଟ କୁଣ୍ଡଳ ॥
ଉରେ ଲମ୍ବଇ ବନମାଳ । ଶୋଭିତ ଏ ପୀତ ଦୁକୂଳ ॥
ସର୍ବେ ନୂତନ ତୁମ୍ଭ ବୟ । ଚାରି ଚତ୍ୱାର ଭୁଜ ବହ ॥
ଶଙ୍ଖ ଚକ୍ର ଗଦା କମଳ । ଯେଣେ ଶୋଭା ତୁମ୍ଭେ ସକଳ ॥
ଧନୁ ଖଡ଼ଗ ତୂଣ ଶର । ଯେ ସର୍ବ ଶସ୍ତ୍ର ତୁମ୍ଭ କର ॥
ଦିଗମାନଙ୍କର ତିମିର । ଆତ୍ମା କାନ୍ତିରେ କଲ ଦୂର ॥
ଆମ୍ଭେ ଧର୍ମ ରାଜା କିଙ୍କର । କିମ୍ପା ନିଷେଧ ତୁମ୍ଭେ କର ॥

## ଶ୍ରୀ ଶୁକ ଉବାଚ

ଯମ ଦୂତର କଥା ଶୁଣି । ବିଷ୍ଣୁର ଦୂତେ ତାଙ୍କୁ ଭଣି ॥
ମେଘ ଗଭୀର ପ୍ରାୟେ ବାଣୀ । ବୋଇଲେ ବିଷ୍ଣୁ ଦୂତେ ପୁଣି ॥
ତୁମ୍ଭେ ଦୂତେ ଧର୍ମ ରାଜାର । ତାହାଙ୍କ ଆଜ୍ଞା ଯେବେ କର
ଧର୍ମ ଅଧର୍ମର ଲକ୍ଷଣ । ତତ୍ତ୍ୱ ଆମ୍ଭଙ୍କୁ କହ ପୁଣ ॥
ପ୍ରାଣୀ କି କଲେ ଦଣ୍ଡ ପାଇ । ଦଣ୍ଡର ସ୍ଥାନ କେବା ହୋଇ ॥
ଦଣ୍ଡକୁ ସହଇ କେମନ୍ତେ । ମନୁଷ୍ୟ ଜନ୍ମ ଏ ଜଗତେ ॥

## ଯମଦୂତ ଉବାଚ

ବେଦ ବିହିତ ଯେତେ କର୍ମ । ସେହି ସଂସାରେ ନିଜ ଧର୍ମ ॥
ତା ବିନୁ ଅନ୍ୟ କର୍ମ ଯେତେ । ଅଧର୍ମ ବୋଲନ୍ତି ଜଗତେ ॥
ସାକ୍ଷାତେ ଦେବ ନାରାୟଣ । ଏ ନିଷ୍ଠେ ବ୍ରହ୍ମାର ବଚନ ॥
ଯେ ବେଦ ଆପଣା ଶକ୍ତିରେ । ସତ୍ତ୍ୱ ରଜ ତମ ଭାବରେ ॥
ଗୁଣ ନାମ କ୍ରିୟା ରୂପରେ । ଯଥା ତଥାରେ ଭିନ୍ନ କରେ ॥
ଜଳ-ଭୂ-ଧର୍ମ ଦିଗ ସ୍ଥାନ । ମନୁଷ୍ୟ ଦଣ୍ଡର ସାକ୍ଷୀଣ ॥
ପାପକୁ ଯେଣେ କରି ଜାଣି । ଦଣ୍ଡର ସ୍ଥାନ ପରିମାଣି ॥
କର୍ମ ଆୟତ୍ତ ହୋଇ ଜନ । ଦଣ୍ଡକୁ ହୁଅନ୍ତି ଭାଜନ ॥
ଆହେ ନିଷ୍ପାପୀ ପ୍ରାଣୀମାନେ । ଉତ୍ତମ ଧର୍ମ ଅରଜନେ ॥
ଯେମାନେ ସତ୍ କର୍ମ କରନ୍ତି । ସତ୍କର୍ମ ଫଳ ସେ ଲଭନ୍ତି ॥
ମନ୍ଦ କର୍ମରେ ଯୁକ୍ତ ଯେହୁ । ସୁକର୍ମ ଲଭିବ ସେ କାହୁଁ ॥
ଧର୍ମ ଅଧର୍ମ ଆଚରଣ । କରନ୍ତି ଯେଉଁ ପ୍ରାଣୀଗଣ ॥
ସେ ପ୍ରାଣୀମାନେ ଅବନୀରେ । ଫଳା-ଫଳକୁ ଭୋଗକରେ ॥
ହେ ଦେବ ଶ୍ରେଷ୍ଠ ତୁମ୍ଭେମାନେ ।ସଂସାରେ ପ୍ରାଣୀମାନେ ଯେହ୍ନେ ॥
ତ୍ରିବିଧ ଲକ୍ଷଣ ଲଭନ୍ତି । ଯେ ଯଥା କର୍ମ ଆଚରନ୍ତି ॥
ଗୁଣ ବିଚିତ୍ର ତାରେ କରି । ପ୍ରାଣୀର ବିଷୟ ବିଚାରି ॥
କାଳର ଏହି ବର୍ତ୍ତମାନ । ଗୁଣର ବନ୍ଧନ କାରଣ ॥
ତମ ଗୁଣରେ ଯୁକ୍ତ ହୋଇ । ପ୍ରାଣୀ ସ୍ୱଧର୍ମ ନ ଜାଣଇ ॥
ସତ୍ତ୍ୱ ଗୁଣକୁ ନ ଜାଣଇ । ଜନ୍ମ ଅକାରଣେ ନାଶଇ ॥
ବିଧାନ ପଞ୍ଚଭୂତେ ପୁଣ । ସୃଷ୍ଟି ସେ କରଇ ଭିଆଣ ॥
ମହତ ତତ୍ତ୍ୱ ଅହଂକାର । ଏ ଆଦି ଯେତେକ ଅପର ॥
ତ୍ରିଗୁଣ ଆଦି ଶକ୍ତି ଯେତେ । ଏହାକୁ ଧରି ହୃଦଗତେ ॥
ଏମନ୍ତ ପ୍ରକାରେ ତା ଦେହୀ । ହରଷ ଶୋକକୁ ଲଭଇ ॥
ଅଜ୍ଞାନ ଗୁଣ ସ୍ୱ ଅର୍ଜିତ । କରଇ କର୍ମ ବିପରୀତ ॥
କୋଷକାରୀର ପ୍ରାୟେ ହୋଇ । କର୍ମରେ ଆତ୍ମାକୁ ରଖଇ ॥
ଏଥୁ ଅନ୍ତରେ ପୁଣ ସେହି । ତହିଁ ରଖଇ ମୋହି ହୋଇ ॥
ସ୍ୱଭାବେ କର୍ମ ବଶ ହୋଇ । ସୁକର୍ମ କୁକର୍ମ କରଇ ॥
ଅବ୍ୟକ୍ତ କର୍ମକୁ ଲଭିଣ । ରହଇ ପୁଣ ହେ ରାଜନ ॥
ପ୍ରକୃତି ସଙ୍ଗରୁ ପୁରୁଷ । ସର୍ବ କର୍ମକୁ କରେ ନାଶ ॥
ପୂର୍ବ ବୃତ୍ତାନ୍ତ ଏବେ ଶୁଣ । ବେଦ ସଂପୂର୍ଣ୍ଣ ଯେ ବ୍ରାହ୍ମଣ ॥
ଧର୍ମିଷ୍ଠ ଶୀଳବନ୍ତ ପୁଣ । ସୁଜ୍ଞାନୀ ସୁଶାନ୍ତିର ଗୁଣ ॥
ମୃଦୁ ମନ୍ତ୍ର କି ଶୁଚିଦାତା । ସତ୍ୟ ବଚନ ଧୃତ ବ୍ରତା ॥

ଅତିଥି ବୃଦ୍ଧ ଗୁରୁ ଅଗ୍ନି । ଏହାଙ୍କ ସେବା ଶିରେ ଘେନି ॥
ସର୍ବ ଭୂତରେ ମିତ୍ର ପଣ । କୋପ ବର୍ଜିତ ସାଧୁଗଣ ॥
ଅଶେଷ ଗୁଣ ସ୍ଥାନ ଏହି । ସୁଶୀଳ ବୃତ୍ତିରେ ଜୀଅଇ ॥
ପିତା ଆଜ୍ଞାରେ ଏ ବ୍ରାହ୍ମଣ । ଏକକାଳେ ବନେ ଗମନ ॥
ଫଳ ପୁଷ୍ପ ସମିଧ କୁଶ । ଘେନି ଆସଇ ମନ ତୋଷ ॥
ସ୍ତିରୀ ସହିତେ ବନେ ଥିଲା । କାମୀ ଶୂଦ୍ରାକୁ ଏ ଦେଖିଲା ॥
ମଦ୍ୟ ପାନରେ ରକ୍ତ ନେତ୍ର । ବିହ୍ୱଳ ହୋଇଅଛି ଚିତ୍ତ ॥
ନୀବୀ ଖସିଛି ମତ୍ତ ଉରେ । ମୂଢ଼ ଲଜ୍ଜାକୁ କରି ଦୂରେ ॥
ହାସ୍ୟ ଗାୟନ କୃତ ରସେ । କ୍ରୀଡ଼ା କରଇ ତାର ପାଶେ ॥
ବିପ୍ର ସେ ସ୍ତିରୀ ଦେଖିକରି । ଇନ୍ଦ୍ରିୟ ବଶେ ଅନୁସରି ॥
ମନରେ ମୋହିତ ହୋଇଲା । ଯେମନ୍ତେ ତାହାକୁ ଦେଖିଲା ॥
କନ୍ଦର୍ପେ ଲିପ୍ତ ମନ ହୋଇ । ବାହୁ ଆଲିଙ୍ଗନ କରଇ ॥
ଆପଣା ଆତ୍ମା ସ୍ଥିର କରି । ମନ ସମର୍ଥ ନ ବିଚାରି ॥
ଯେବେ ସେ ସତ୍ୟଗୁଣେ ସ୍ଥିତ । କନ୍ଦର୍ପେ ହୋଇଲା ପୀଡ଼ିତ ॥
ସ୍ତିରୀ ବିଷୟେ ଅବିରାମ । କପଟ ଗ୍ରହ ହୋଇ କାମ ॥
ତେଣେ ଗମିତ ମନ ତାର । ଅଜ୍ଞାନେ କର୍ମ କଲା ଦୂର ॥
ଗ୍ରାମ ଉଭାବ ମନୋହରେ । ସ୍ନେହରେ ସ୍ତିରୀ ବିଷୟରେ ॥
ପରି ତୋଷିତ ତାଙ୍କୁ କରି । ଯେ ମୋତେ ପ୍ରସନ୍ନ ସୁନ୍ଦରୀ ॥
ନିଜ ଯୁବତୀ କୁଳସ୍ତିରୀ । ତେଜିଲା ବିପ୍ର ମନ୍ଦାଚାରୀ ॥
ସ୍ୱୈରିଣୀ ଅପାଙ୍ଗ ଇଙ୍ଗିତ । ବନ୍ଦୀ ହୋଇଲା ତାର ଚିତ୍ତ ॥
ଅଧର୍ମ ବୁଦ୍ଧି ସେ ବ୍ରାହ୍ମଣ । ନିରତେ ବେଶ୍ୟା ପରାୟଣ ॥
ଧର୍ମେ ଅଧର୍ମେ ଧନ ଆଣି । ସନ୍ତୋଷ କରଇ ସ୍ୱୈରିଣୀ ॥
କେଉଁ କାରଣ ଲଙ୍ଘି ଶାସ୍ତ୍ର । ସ୍ୱୈରିଣୀ ବ୍ରତ ଅନୁବ୍ରତ ॥
ଗର୍ହିତ କର୍ମ ପ୍ରବର୍ତ୍ତିଲା । ଦୁର୍ବିଚ ଧର୍ମ ନାଶକଲା ॥
ଯେଣୁ ଏ ପାପୀ ଦ୍ୱିଜେ ନେଇ । ଯମର ଛାମୁରେ ଦେବଇଁ ॥
ବୋଲଇ ଜଗନ୍ନାଥ ଦାସ । ଯମ ଦୂତେ ବେଦେ ପ୍ରକାଶ ॥

*ଇତି ଶ୍ରୀମଦ୍ଭାଗବତେ ମହପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଅଜାମିଳ ଉପାଖ୍ୟାନ ବିଷ୍ଣୁଦୂତ ଯମଦୂତ ସମ୍ବାଦେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

### ବାଦରାୟଣ ଉବାଚ

ଏମନ୍ତେ ଭାଗବତ ଦୂତେ । ଭାଷିତ ହୋଇ ଯମଦୂତେ ॥
ରାଜେନ୍ଦ୍ର ଶୁଣ ମନସ୍ଥିରେ । ତାହାଙ୍କ ବାକ୍ୟ ଅନୁସାରେ ॥
ସକଳ ଧର୍ମ ସେ ଜାଣନ୍ତି । ଯମଦୂତଙ୍କୁ ବୋଲୁଛନ୍ତି ॥

### ବିଷ୍ଣୁଦୂତ ଉବାଚ

ଏ ବଡ଼ ଆଶ୍ଚର୍ଯ୍ୟ ଚରିତ । ଦେଖିଲୁ ତୁମ୍ଭର ବୃତ୍ତାନ୍ତ ॥
ସମଦରଶୀ ସାଧୁଜନ । ଅଧର୍ମ ସ୍ପରଶ କେସନ ॥
ଅଦଣ୍ଡ୍ୟ ଅପାପୀ ଯେ ପ୍ରାଣୀ । ତାହାଙ୍କୁ ବ୍ୟର୍ଥେ ଦଣ୍ଡଗୁଣି ॥
ପ୍ରଜାମାନଙ୍କ ପିତା ଯେହି । ସେ ଯେବେ ପ୍ରଜା ଶାସ୍ତି ନେଇ
ତେବେ ସେ କାହାରେ ଶରଣ । ହୋଇବେ କହ ସେ କାରଣ ॥
ସେ ଯେ ସାଧଇ ଯହିଁ ତହିଁ । କଲ୍ୟାଣ ଆଚରନ୍ତି ତହିଁ ॥
ସେ ଯାହା ପ୍ରମାଣ କରିବେ । ଲୋକେ ସେ ପଥେ ପ୍ରବର୍ତ୍ତିବେ ॥
ଯାହାର ଅଙ୍କେ ଶିର ଦେଇ । ନିଃଶଙ୍କେ ନିଦ୍ରା ସେହୁ ଯାଇ ॥
ଧର୍ମ ଅଧର୍ମ ନ ଜାଣଇ । ପଶୁ ଯେମନ୍ତେ ସୁଖେ ଥାଇ ॥
ମିତ୍ର ସ୍ୱଭାବ ଯାର ତହିଁ । ବିଶ୍ୱାସେ ଆତ୍ମା ସମର୍ପଇ ॥
ବିଶ୍ୱାସ ସର୍ବ ପ୍ରାଣୀଙ୍କର । ଦୟା ପୂରିତ ଯା ଶରୀର ॥
ବିଶ୍ୱାସୀ ପ୍ରାଣୀକି ଯେମନ୍ତେ । ହିଂସା କରଇ ହୃଦଗତେ ॥
କୋଟି ଜନ୍ମର ଶୁଭଫଳ । କଲା ସେ ଦ୍ୱିଜ ଅଜାମିଳ ॥
ଯେଣୁ ବୋଇଲା ନାରାୟଣ । ମଙ୍ଗଳ କଲା ଉଚ୍ଚାରଣ ॥
ଏଣୁ ଏ ପାପୀ ମନ୍ଦ କୃତ । କଲା ସର୍ବ-ପାପ ପ୍ରାୟଶ୍ଚିତ ॥
ଯେଣୁ ଚତୁରାକ୍ଷର ନାମ । ମୁଖେ ବୋଇଲା ନାରାୟଣ ॥
ଯେ ବ୍ରହ୍ମହତ୍ୟା ମଦ୍ୟପାନ । ଗୁରୁପତ୍ନୀ ଅଭିଗମନ ॥
ମିତ୍ର ବିଷୟେ ଅପରାଧୀ । ସ୍ତିରୀ ରାଜା ପିତୃ ଗୋବଧ ॥
ଏ ଆଦି ପାପୀ ଯେ ଅପରେ । ସର୍ବ ଦୁରିତ ନିଷ୍ଠେ ହରେ ॥
ପ୍ରାୟଶ୍ଚିତ ସର୍ବ ପାପୀଙ୍କର । ନାମ ଉଚ୍ଚାରଣ ବିଷ୍ଣୁର ॥
ଯେବେ ବିଷ୍ଣୁ ବିଷୟେ ମତି । ପାପରେ ତ୍ରସ୍ତ ସେ ନୋହନ୍ତି ॥
ଏଣୁ ଏହାକୁ ତୁମ୍ଭେମାନେ । ତେଜି ଯାଅ ନିଜ ଭୁବନେ ॥
ଏହାର ଯେତେ ପାପମାନ । ବିଶେଷେ କଲା ଯେ ଖଣ୍ଡନ ॥
ଯେଣୁ ଏ ଦ୍ୱିଜ ଅଜାମିଳ । ନିକଟ ମରଣର କାଳ ॥
ତୁଣ୍ଡେ ଉଚ୍ଚାରି ନାରାୟଣ । ପ୍ରାଣ ଛାଡ଼ିଲା ତତକ୍ଷଣ ॥
ସଙ୍କେତ ପରିହାସ କରି । ଶ୍ରଦ୍ଧା ହେଳାରେ ଯେ ଉଚ୍ଚାରି ॥
ବୈକୁଣ୍ଠ ନାମ ଉଚ୍ଚାରଣ । ଅଶେଷ ପାପ ତା ଦହନ ॥
ପତନ ସ୍ଖଳନ ଉଚ୍ଚାରେ । ନାନା ପ୍ରକାରେ ଯେ ସୁମରେ ॥
ତୁଣ୍ଡେ ଉଚ୍ଚାରି ହରିନାମ । ତାହାକୁ ନ ଦଣ୍ଡଇ ଯମ ॥
ଅଚ୍ଛ ବହୁତ ପାପମାନ । ପ୍ରାୟଶ୍ଚିତ ହିଁ ଯଥାକର୍ମ ॥
ପାପଙ୍କ ଗୁରୁ ଲଘୁ ଜାଣି । ମୁନି କହନ୍ତି ପରିମାଣି ॥
ତପସ୍ୟା ଆଦି ଯଜ୍ଞଦାନ । ପାପ ନାଶନ୍ତି ମୁନିଜନ ॥

ତାହାଙ୍କ ହୃଦେ ପାପ ନାହିଁ । ପାଦ ପଙ୍କଜ ନିତ୍ୟେ ଧ୍ୟାୟି ॥
ଜ୍ଞାନେ ଅଜ୍ଞାନେ ଯେଉଁ ପ୍ରାଣୀ । ସ୍ମରଣ କରେ ଚକ୍ରପାଣି ॥
ନାମ କରଇ ସଂକୀର୍ତ୍ତନ । ପାପ ସେ କରଇ ଦହନ ॥
ଯେସନେ ବହୁ କାଷ୍ଠ ରାଶି । ଅନଳ ପ୍ରବେଶେ ବିନାଶି ॥
ଯେମନ୍ତେ ରୋଗ ବଳବନ୍ତ । ଶରୀରେ ହୋୟେ ଉପଗତ ॥
ତା ଅନୁସାରେ ମନ୍ତ୍ର ଯେବେ । ଅଜ୍ଞାନେ ପ୍ରୟୋଗ ହୋଇବେ ॥
ତେବେ ସେ ଆତ୍ମା ଗୁଣେ ତାର । ସେ କି ନ କରେ ଉପକାର ॥

## ଶ୍ରୀ ଶୁକ ଉବାଚ

ବିଷ୍ଣୁଦୂତଙ୍କ ଧର୍ମବାଣୀ । କୃତାନ୍ତ ଦୂତମାନେ ଶୁଣି ॥
ଅଜାମିଳକୁ ପାଶୁଁ ଫେଇ । ମୃତ୍ୟୁରୁ ଦେଲେ ବାହୁଡ଼ାଇ ॥
ଯମର ଦୂତମାନେ ଗଲେ । ଯମକୁ ଯେ ସର୍ବ କହିଲେ ॥
ପାଶରୁ ମୁକ୍ତ ଅଜାମିଳ । ଦେହ ଲଭିଲା ତତକାଳ ॥
ବିନାଶ ସର୍ବ ଭୟ ତାର । ଶିରରେ ଦେଇ ବେନିକର ॥
ବିଷ୍ଣୁ ଦୂତଙ୍କୁ ନମସ୍କାର । ଉଲ୍ଲାସ ହୋଇଛି ମନର ॥
କଥନ ମୁଖ ଦେଖି ତାର । ଜାଣିଲେ ବିଷ୍ଣୁର କିଙ୍କର ॥
ତକ୍ଷଣେ ହୋଇ ଅର୍ନ୍ତଦ୍ଧାନ । ତାହାର ନିକଟୁ ରାଜନ ॥
ଏ ଅନନ୍ତରେ ବିପ୍ର ପୁଣି । ବିଷ୍ଣୁ ଯମ ଦୂତଙ୍କ ବାଣୀ ॥
ଧର୍ମ ବିଶୁଦ୍ଧ ଭାଗବତ । ଗୁଣର ଆଶ୍ରୟ ତ୍ରିବିଧ ॥
ତକ୍ଷଣେ ଚରଣାରବିନ୍ଦେ । ଭକ୍ତି ଲଭିଲା ଅପ୍ରମାଦେ ॥
ହରିର ଚରିତ ଶ୍ରବଣେ । ପୂର୍ବର ଅଶୁଭ ସ୍ମରଣେ ॥
ମହତ ତାପ ମନେ କଲା । ତକ୍ଷଣେ ବିଷ୍ଣୁ ସୁମରିଲା ॥
ଆହୋ ମୋହର ବଡ଼ କଷ୍ଟ । ଅଜିତ ଇନ୍ଦ୍ରିୟ ମୁଁ ନଷ୍ଟ ॥
ସ୍ୱକର୍ମ କଲି ମୁଁ ଲଙ୍ଘନ । ଯେଣୁ ବୃଷଳିକି ଗମନ ॥
ଧିକ ମୋହର ମନ୍ଦକୃତ୍ୟ । କୁଳରେ କଳଙ୍କ ବିଦିତ ॥
ତେଜିଣ ନିଜ ପତ୍ନୀ ସତୀ । ରମିଲି ନିଶ୍ଚେ ମୁଁ ଅସତୀ ॥
ବୃଦ୍ଧ ଅନାଥ ପିତାମାତା । ମୋର ବିହୁନେ ଅରକ୍ଷିତ ॥
ତପସ୍ୱୀ ରୂପେ ଥାନ୍ତି ବନେ । ତାହାଙ୍କୁ ତେଜି ଅକାରଣେ ॥
କିଯେ ଆଶ୍ଚର୍ଯ୍ୟ ଏବେ ମୋର । ନରକ କଲି ନିଜ ଘର ॥
ବିଧି ବିଯୋଗେ ଏତେ କର୍ମ । ଲଭିଲି ନରକ ଦାରୁଣ ॥
ଧର୍ମ ହିଂସକ ପାପୀ ଯେହି । ନାନା ଯାତନା ଭୁଞ୍ଜୁଥାଇ ॥
କିଯେ ସ୍ୱପନ ଅଦଭୂତେ । ଯେସନେ ଦେଖିଲି ସାକ୍ଷାତେ ॥
ପାଶ ଦଉଡ଼ି ହସ୍ତେ କରି । ଯେ ମୋତେ ନେଉଥିଲେ ଧରି
ତେଣୁ ଆଶ୍ଚର୍ଯ୍ୟ ବଡ଼ ଯେଣେ । କ୍ଷଣକେ ଗଲେ କେଣେ କେଣେ॥
ଏ ଅନନ୍ତରେ ସିଦ୍ଧଗଣ । ଚତ୍ୱାର ଚାରୁ ଦରଶନ ॥
ପାଶେ ବନ୍ଧନ ମୋତେ କରି । ଅଧୋ ଭୂମିକି ନେଉ ଧରି ॥
ଛଡ଼ାଇ ଦେଲେ ଯେହି କ୍ଷଣେ । ଦେଖନ୍ତେ ଗଲେ କେଣେ କେଣେ॥
ଏ ଅନନ୍ତରେ ପାପୀହୀନ । ମୋହର ଦେବ ଦରଶନ ॥
ଯେଣୁ ହୋଇଲା ଏ ମଙ୍ଗଳ । ଆତ୍ମା ମୋ ଦିଶେ ଶୁଭଫଳ ॥
ଅଶୁଚି ଦାସୀପତି ମୁହିଁ । ଅନ୍ୟଥା କେମନ୍ତେ ଘଟଇ ॥
ମୋହର ମରଣର କାଳେ । ବୈକୁଣ୍ଠ ନାମ ଅବହେଳେ ॥
ଜିହ୍ୱା ମୋ କେମନ୍ତେ ବୋଇଲା । କି କଳ୍ପତରୁ ଦୟାକଲା ॥
ମୁଁ କାହିଁ ଧୂର୍ତ୍ତ ପାପୀବର । ବ୍ରହ୍ମଘ୍ନ ଲଜ୍ଜା ଯାର ଦୂର ॥
ବୈକୁଣ୍ଠ ନାମ ନାରାୟଣ । କାହିଁ ମଙ୍ଗଳର କାରଣ ॥
କେମନ୍ତେ କରିବଇଁ ମୁହିଁ । ଇନ୍ଦ୍ରି ଅଜିତ ମୁଁ ଅଟଇ ॥
ଯେମନ୍ତେ ଆତ୍ମା ଭୋଗ ଛାଡ଼ି । ବ୍ରହ୍ମ ଭାବନେ ରହେ ବୁଡ଼ି ॥
ମୋଚନ କରି ଏ ବନ୍ଧନ । ଅବିଦ୍ୟା ଗୁଣେ ନୋହି ଛନ୍ନ ॥
ସର୍ବ ଭୂତରେ ଶାନ୍ତି ହୋଇ । ଦୟା ବହିବି ହୃଦେ ମୁହିଁ ॥
ଯେ ମାୟା ଗ୍ରସ୍ତୁ ମୋର ମନ । ନିଶ୍ଚୟେ କରିବି ମୋଚନ ॥
ଯେଉଁ ମାୟାରେ ମୋହି ହୋଇ । କ୍ରୀଡ଼ା କୁରଙ୍ଗ ପ୍ରାୟେ ହୋଇ ॥
ଦେହ ସମ୍ପଦ ମୋର ଯେତେ । ଅଛଇ ଦମ୍ଭ ଅବିରତେ ॥
ଯେହାକୁ ତେଜି ବୁଦ୍ଧିମନ । କୃଷ୍ଣ ଚରଣେ ହୋଇ ଲୀନ ॥
ଯେମନ୍ତେ ଜାତ ଦିବ୍ୟଜ୍ଞାନ । ଯେଣୁ ତା ସାଧୁ ଦରଶନ ॥
ତେଜିଣ ସକଳ ବନ୍ଧନ । ଗଙ୍ଗା ଗମନେ ତାର ମନ ॥
ଦେବ ସଦନେ ବିପ୍ର ଯାଇ । ନିଶ୍ଚଳ ମନେ ଯୋଗ ଧ୍ୟାୟି ॥
ଇନ୍ଦ୍ରିୟ ନିଗ୍ରହ କରିଣ । ବ୍ରହ୍ମେ ନିବେଶି ସ୍ଥିରମନ ॥
ସକଳ ଗୁଣ ପରିହରି । ଆତ୍ମାକୁ ସମାଧିରେ କରି ॥
ପରମ ବ୍ରହ୍ମେ ମନ ଦେଲା । ମନକୁ ତହିଁ ନିବେଶିଲା ॥
ବ୍ରହ୍ମ ଭାବନେ ସ୍ଥିରମନ । ଦେଖିଲା ବିଷ୍ଣୁ ଦୂତମାନ ॥
ପୂର୍ବେ ଦେଖିଣ ଯହୁଁ ଥିଲା । ଆନନ୍ଦେ ଦଣ୍ଡବତ କଲା ॥
ଗଙ୍ଗାର ଜଳେ ଦ୍ୱିଜବର । ଛାଡ଼ିଲା ନିଜ କଳେବର ॥
ତକ୍ଷଣେ ବିଷ୍ଣୁ ଦୂତ ପ୍ରାୟେ । ହୋଇଲା ତାର ଦିବ୍ୟକାୟେ ॥
ବିଷୟ ସଙ୍ଗତ ଖଣ୍ଡନ । ବେଷ୍ଟିତ ହୋଇ ବିଷ୍ଣୁଜନ ॥
ହେମ ବିମାନେ ଆରୋହିଲା । ତକ୍ଷଣେ ବୈକୁଣ୍ଠକୁ ଗଲା ॥
ଦାସୀପତି ପତିତ କର୍ମ । ନଷ୍ଟ ଯାହାର ସର୍ବ ଧର୍ମ ॥
ବ୍ରତ ବିହୀନେ ଯେବେ ତାର । ନରକେ ପଡ଼ଇ ଶରୀର ॥
ଈଶ୍ୱର ନାମ ଗ୍ରହଣରୁ । ତତ୍କାଳ ମୁକ୍ତି ନରକରୁ ॥
ମୋକ୍ଷ ବାଞ୍ଛିତ ଲୋକଙ୍କର । ତୀର୍ଥ ସେବନ ତୀର୍ଥ ବର ॥
କର୍ମ ବନ୍ଧନର ଛେଦନ । ଏହାର ପରେ ନାହିଁ ଆନ ॥

ଯେ ମନ ରଜ ତମେ ଥାଇ । କର୍ମେ ନିମଗ୍ନ ସେ ହୁଅଇ ॥
ଯେ ପ୍ରାଣୀ ଯେହୁ ଗୁହ୍ୟତମ । ଅଶେଷ ପାପର ଖଣ୍ଡନ ॥
ଶୁଣଇ ଶ୍ରଦ୍ଧାଯୁକ୍ତ ହୋଇ । ବଦନେ କୀର୍ତ୍ତନ କରଇ ॥
ସେ ପ୍ରାଣୀ ନରକେ ନ ଯାଇ । ଯମ ଯାତନା ତାକୁ ନାହିଁ ॥
ଯେବେ ନିର୍ମଳ ପ୍ରାଣୀ ହୋଏ । ନିଃଶଙ୍କେ ବିଷ୍ଣୁ ଲୋକେ ରହେ॥
ନିକଟ ତାହାର ମରଣ । ପୁତ୍ରର ନାମ ନାରାୟଣ ॥
ସକଳ ପାପେ ଅଧିକାରୀ । ସୁଖେ ଲଭିଲା ନରହରି ॥
ଶ୍ରଦ୍ଧାରେ ନାମ ଯେ ଉଚ୍ଚାରେ । ତାର ମହିମା କେ ବିସ୍ତାରେ ॥
ଶୁଣ ହୋ ରାଜା ପୁଣ୍ୟକର୍ମା । ଗୋବିନ୍ଦ ନାମର ମହିମା ॥
ନିଶ୍ଚଳ ଚିତ୍ତେ କୃଷ୍ଣ ଭଜ । ଏ ଭବ ବନ୍ଧ ଗ୍ରନ୍ଥି ଛେଦ ॥
ବୋଲଇ ବିପ୍ର ଜଗନ୍ନାଥ । ଷଷ୍ଠମ ସ୍କନ୍ଧେ ଭାଗବତ ॥
ବିଷ୍ଣୁର ନାମର ମହିମା । ଶୁକ କହିଲେ ତାର ସୀମା ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଅଜାମିଳ ଉପାଖ୍ୟାନେ ନାମ ମହିମା ବର୍ଣ୍ଣନେ ନାମ ଦ୍ୱିତୀୟୋଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ରାଜନ ଉବାଚ

ଆପଣା ଦୂତ ବାକ୍ୟ ଶୁଣି । କି କି ବୋଇଲେ ଦଣ୍ଡପାଣି ॥
ଯମ ରାଜାର ଆଜ୍ଞାହତ । ଯେଣୁ ହୋଇଲା ବିପରୀତ ॥
ବିଷ୍ଣୁ ଦୂତରେ ପରାହତ । ଯେଣୁ ହୋଇଲେ ଯମଦୂତ ॥
ଯମର ଛାମୁରେ ମିଳିଲେ । ସକଳ ବାରତା କହିଲେ ॥

### ଯମଦୂତ ଉବାଚ

ସଂସାରେ ଜନ୍ତୁଛନ୍ତି ଯେତେ । ଏହାଙ୍କ ଶାସ୍ତି କେବା କେତେ ॥
ତ୍ରିବିଧ କର୍ମ ଯେ କରନ୍ତି । ସୁଫଳ କୁଫଳ ଭୁଞ୍ଜନ୍ତି ॥
ଯେଣୁ ଯେ ଅଖିଳ ଲୋକରେ । ଦଣ୍ଡ ସହନ୍ତି ନାନାକାରେ ॥
କାହାର ମୃତ୍ୟୁ ଅବା କାହିଁ । ଅମୃତ ଅଛି ଅବା କାହିଁ ॥
କର୍ମରେ ବଶ ହୋଇ ଜନ୍ତୁ । ଶାସ୍ତି ଲଭନ୍ତି କର୍ମ ହେତୁ ॥
ଯେଣୁ ଏ ଶାସ୍ତି ଏକ ଜାଣ । ତେଣୁ ଏ ଦୁଷ୍ଟ ଶାସ୍ତିମାନ ॥
ଯେଣୁ ଅଶେଷ ଜନ୍ତୁଙ୍କର । ତୁମ୍ଭେ ଯେ ଶାସ୍ତି ଦଣ୍ଡଧର ॥
ଈଶ୍ୱର-ମାନଙ୍କ ଈଶ୍ୱର । ଶୁଭ ଅଶୁଭର ଠାକୁର ॥
ତୁମ୍ଭର ଦଣ୍ଡ ଯେବେ କାହିଁ । ପାପୀଷ୍ଠ ଲୋକଙ୍କର ତହିଁ ॥
ଅଦ୍ଭୁତ ସିଦ୍ଧ ଚାରିଜଣ । ତୁମ୍ଭଙ୍କୁ କଲେ ଅବଜ୍ଞାନ ॥
ତୁମ୍ଭ ଆଦେଶ ଘେନି ଶିରେ । ଆମ୍ଭେ ଯେ ଆଣୁଥିଲୁ ତାରେ ॥
ଯାତନା ଗୃହକୁ ଆଣନ୍ତେ । ମୋଚନ କରାଇ ତୁରିତେ ॥
ପାଶ ତେଜିଣ ସେ ପ୍ରତ୍ୟକ୍ଷେ । ସିଦ୍ଧେ ଯେ ଗଲେ ଅନ୍ତରୀକ୍ଷେ ॥
ତାହା ତ ଜାଣିବାର ପାଇଁ । ଇଚ୍ଛା କରିଛୁ ଦଣ୍ଡ ସାଇଁ ॥
ଶୁଣିତ କ୍ଷେମ ଯେବେ ଆମ୍ଭେ । ଏ କଥା କହ ପ୍ରଭୁ ତୁମ୍ଭେ ॥
ଯେ କ୍ଷଣେ ପାପୀ ଦୁଷ୍ଟଜନ । ଉଚ୍ଚାର କଲା ନାରାୟଣ ॥
ଭୟ ନକର ହେ ବୋଇଲେ । ତକ୍ଷଣେ ଆସି ସେ ମିଳିଲେ ॥

### ବାଦରାୟଣ ଉବାଚ

ଦୂତଙ୍କ ବାକ୍ୟ ଶୁଣି ଯମ । ଆନନ୍ଦେ ହରଷ ବଦନ ॥
ଶ୍ରୀକୃଷ୍ଣ ଅଭୟ ଚରଣ । ତକ୍ଷଣେ କରି ସୁମରଣ ॥
ଅତ୍ୟନ୍ତ ପ୍ରୀତି ହୋଇ ମନେ । ବୋଲଇ ଶୁଣ ଭୃତ୍ୟମାନେ ॥

### ଧର୍ମରାଜ ଉବାଚ

ମୋ ତହୁଁ ଅନ୍ୟ ଶ୍ରେଷ୍ଠ ଶୁଣ । ଜଗତ ଯାହାର ଭିଆଣ ॥
ସୂତାରୁ ଯେହ୍ନେ ବସ୍ତ୍ର ହୋଇ । ବିଶ୍ୱ ତେମନ୍ତେ ତାର ତହିଁ ॥
ଯାହାର ଅଂଶରୁ ଜଗତ । ଜନ୍ମ ପାଳନ ପୁଣି ହତ ॥
ଯାହାର ନାମ ତନ୍ତ୍ର ଗୁଣ । ବନ୍ଧନ କରେ ପ୍ରାଣୀ ମନ ॥
ରଜ୍ଜୁରେ ଗୋରୁ ଯେହ୍ନେ ଥାଇ । ଅନ୍ୟତ୍ର ଯାଇ ନ ପାରଇ ॥
ନାମ କର୍ମରେ ବନ୍ଧ ହୋଇ । ଜଗତ ଯାହାକୁ ସେବଇ ॥
ମୁହିଁ ମହାନ୍ଦ୍ର ନଇରତୀ । ବରୁଣ ଆଦି ଦିଗପତି ॥
ସୋମ ଅନଳ ମହେଶ୍ୱର । ପବନ ବ୍ରହ୍ମା ଦିବାକର ॥
ଆଦିତ୍ୟ ବିଶ୍ୱାବସୁ ଯେତେ । ରୁଦ୍ର ମରୁଦ୍‌ଗଣ ସହିତେ ॥
ସିଦ୍ଧ କିନ୍ନର ଆଦି କରି । ଯେତେ ସଂସାରେ ଅଧିକାରୀ ॥
ସଂସାରେ ଆଉ ଅଛି ଯେତେ । ଭୃଗୁ ଆଦି ଦେବ ସହିତେ ॥
ଏ ଆଦି ଯେତେକ କହିଲୁ । ତାହାର ମାୟା ନ ଜାଣିଲୁ ॥
କେବା ଜାଣିମ ତା ମହିମା । ପ୍ରଭୁର ନାମ ଗୁଣ ସୀମା ॥
ଚକ୍ଷୁ ହୃଦୟ ବାକ୍ୟ ମନେ । ଯାହାକୁ ଚିନ୍ତେ ସାଧୁଜନେ ॥
ସର୍ବ ଶରୀରେ ଆତ୍ମା ରୂପ । ଯେ ଇନ୍ଦ୍ରିୟଙ୍କର ଅଧୀପ ॥
ଯେ ପ୍ରଭୁ ଆତ୍ମା ତନ୍ତେ ଥାଇ । ସଂସାର ଚେଷ୍ଟା ଯେ କରଇ ॥
ହେ ଦୂତେ ଶୁଣ ମୋ ଉତ୍ତର । ତାହାର ରୂପ ଗୁଣ ସାର ॥
ସଂସାରେ ନିର୍ଭୟେ ବିହରେ । ହେଲେ ଅଶେଷ ପ୍ରାଣୀ ତରେ ॥
ଦେବେ ପୂଜିତ ତେଜଯୁକ୍ତ । ଅତି ଅଦ୍ଭୁତ ବିଷ୍ଣୁ ଦୂତ ॥
ଭକ୍ତିବନ୍ତ ପ୍ରାଣୀମାନଙ୍କୁ । ଶତ୍ରୁ ସ୍ୱକାଶରୁ ତାହାଙ୍କୁ ॥
ଆମ୍ଭଙ୍କୁ ସଦା ସେ ରଖନ୍ତି । ସର୍ବତ୍ର ସେ ବିରାଜୁ ଥାନ୍ତି ॥
ବିଷ୍ଣୁ କଥିତ ଯେଉଁ ଧର୍ମ । ଅଜ୍ଞାତ ଦେବ ଋଷିଗଣ ॥

ସିଦ୍ଧ ଅସୁର ଯକ୍ଷମାନେ । ମନୁଷ୍ୟ ବିଦ୍ୟାଧର ମାନେ ॥
ଯେ ସର୍ବ ଜାଣିବେ କେମନ୍ତ । ତାହାର ମହିମା ଅନନ୍ତ ॥
ସ୍ୱୟମ୍ଭୁ ନାରଦ କୁମାର । ଶିବ କପିଳ ମନୁବର ॥
ପ୍ରହ୍ଲାଦ ଜନକ ଭୀଷ୍ମ । ବଳି ଶୁକ ମୁହିଁ ଦ୍ୱାଦଶ ॥
ହେ ଦୂତେ ଶୁଣ ମୋର ବାଣୀ । ବିଷ୍ଣୁ ଭଗତ ଯେତେ ପ୍ରାଣୀ ॥
ଗୁପତ ବିଶୁଦ୍ଧ ଦୁର୍ବୋଧ । ଯେ ଧର୍ମ ଜାଣି ମୃତ୍ୟୁ ଛେଦ ॥
କୃଷ୍ଣ ଚରଣେ ଯାର ମନ । ସଂସାରେ ଶ୍ରେଷ୍ଠ ସେହୁ ଜନ ॥
ନାମ ଉଚ୍ଚାରନ୍ତି ଯେ ବାରେ । ଭଗତ ବୋଲିବାକ ତାରେ ॥
ଭାଗବତର ଧର୍ମ ଜାଣି । କୋଟିକେ ଯେକ ପରିମାଣି ॥
ହେ ଦୂତେ ଈଶ୍ୱରର ନାମ । ମାହାତ୍ମ୍ୟ ଦେଖ ଉଚ୍ଚାରିଣ ॥
ଅଜାମିଳ ହିଁ ଯେ ନାମରୁ । ମୁକ୍ତି ହେଲା ମୃତ୍ୟୁ ପାଶରୁ ॥
କୃଷ୍ଣର ନାମ ସଂକୀର୍ତ୍ତନ । ପ୍ରାଣୀଙ୍କ ପାପ ବିମୋଚନ ॥
ଯେ କ୍ଷଣେ ନିକଟେ ମରଣ । ପୁତ୍ରର ନାମ ନାରାୟଣ ॥
ଉଚ୍ଚାର କଲା ଅଜାମିଳ । ମୁକ୍ତି ଲଭିଲା ତତକାଳ ॥
ନାମ ମହିମା ନ ଜାଣନ୍ତି । ବିଷ୍ଣୁ ମାୟାରେ ମୋହି ହୋନ୍ତି ॥
ଯଜ୍ଞାଦି କରି ଜଡ଼ମତି । ନାନା ପ୍ରକାରେ ପ୍ରବର୍ତ୍ତନ୍ତି ॥
ଏମନ୍ତେ ଯେ ପ୍ରାଣୀ ପଣ୍ଡିତ । କୃଷ୍ଣ ସୁମରେ ଅବିରତ ॥
ତାହାଙ୍କୁ ମୋର ଦଣ୍ଡ ନାହିଁ । ପାତକ ଯେବେ ତାର ଥାଇ ॥
ସକଳ ପାପ ହୋଏ ଭଙ୍ଗ । ଯେଣୁ ଈଶ୍ୱର ପରସଙ୍ଗ ॥
ସମଦରଶୀ ସାଧୁଜନ । ଯେମାନେ ବିଷ୍ଣୁ ପରାୟଣ ॥
ଦେବତା ସିଦ୍ଧ ତାହାଙ୍କର । ଯଶ କରନ୍ତି ସେ ବିସ୍ତାର ॥
ପରମ ଈଶ୍ୱର ପଦରେ । ରକ୍ଷିତ ହୋଏ ସେହୁ ନରେ ॥
ତାହାଙ୍କ ଦଣ୍ଡରେ ମୋହର । ନିଷୟେ ନାହିଁ ଅଧିକାର ॥
ମୁକୁନ୍ଦ ପାଦ ଅରବିନ୍ଦ । ନିତ୍ୟେ ସ୍ରବଇ ମକରନ୍ଦ ॥
ତହିଁ ବିମୁଖ ଯେଉଁଜନ । ତାହାଙ୍କୁ କରିଣ ବନ୍ଧନ ॥
ତାହାଙ୍କୁ ଆଣି ମୋ ଅଗ୍ରତେ । ଯାତନା ଦେବ ଅବିରତେ ॥
ନିର୍ଲୋଭୀ ଯେ ପରମହଂସ । ତାହାଙ୍କୁ ନ କରି ଜିଜ୍ଞାସ ॥
ଗୃହ ବନ୍ଧନେ ମନ ଦେଇ । ନିତ୍ୟେ ଅସାଧୁ ପଣେ ଥାଇ ॥
ଜିହ୍ୱାରେ ନ ବୋଲଇ ନାମ । ନିଶ୍ଚିତେ ଅଭୟ ଚରଣ ॥
କୃଷ୍ଣର ପାଦେ ଶିର ଦେଇ । କେବେ ହେଁ ସ୍ତୁତି କରଇ ॥
ବିଷ୍ଣୁର କର୍ମରେ ବର୍ଜିତ । ନିରତେ କୁସଙ୍ଗେ ମିଳିତ ॥
ଏମନ୍ତ ଭାବେ ଯେତେ ପ୍ରାଣୀ । ଯାତନା କର ତାଙ୍କୁ ଆଣି ॥
ମୋହର ଦୂତ ଅପରାଧ । କ୍ଷମା କରିବେ ପଦ୍ମପାଦ ॥
ଭଗତ ପୁରୁଷ ପୁରାଣ । କ୍ଷମା କରନ୍ତୁ ନାରାୟଣ ॥
ପଣ୍ଡିତେ ଯାର ପଦ୍ମପାଦେ । ନିତ୍ୟେ ସେବନ୍ତି ଅପ୍ରମାଦେ ॥
ତାହାଙ୍କୁ ମୋର ନମସ୍କାର । ଅପ୍ରାଧ ମୋର କ୍ଷମାକର ॥

### ଶ୍ରୀ ଶୁକ ଉବାଚ

ଯେଣୁଟି ବିଷ୍ଣୁ ସଂକୀର୍ତ୍ତନ । ଜଗତ ମଙ୍ଗଳ କାରଣ ॥
ମହତ ଲୋକମାନଙ୍କର । ଏକାନ୍ତ ଭକ୍ତି ନୃପବର ॥
ଈଶ୍ୱର ଉଦଣ୍ଡ ଚରିତ । ଗୁଣ ଗାବନ୍ତି ଅନୁବ୍ରତ ॥
ଶ୍ରୀକୃଷ୍ଣ ପାଦ ପଙ୍କଜରେ । ଯେ ଜନ ମଧୁପାନ କରେ ॥
ସେ ପୁଣି ମାୟାବନ୍ଧ ମୋହେ । ନ ପଡ଼େ ପାତେକ ସମୋହେ ॥
ଯେ ଜନ ଲୋଭେ ମୋହେ ପଡ଼ି । ରଜ ତମରେ ଥାଇ ବୁଡ଼ି ॥
ତାହାର ପୁନଃ ପୁନଃ ହୋଇ । ରଜ ତାମସ ଉପୁଜଇ ॥
ଏମନ୍ତେ ଯମ ବାକ୍ୟ ଶୁଣି । ବିସ୍ମୟ ମନେ ପରିମାଣି ॥
ଯମ କିଙ୍କର ଭୟ ଚିତ୍ତେ । ବୋଲନ୍ତି କିଯେ ବିପରୀତେ ॥
ଅଚ୍ୟୁତ ଆଶ୍ରେ ଯେତେଜନ । ତାହାଙ୍କୁ ଭୟ କଲେ ମନ ॥
ସେ ଦିନ ଠାରୁ ହେ ରାଜନ । ଦେଖିଲେ ଭୟେ ହୋନ୍ତି ଛନ୍ନ ॥
ମଳୟ ଗିରିତଟେ ବସି । ହରି ଚରିତ ପରଶଂସି ॥
କହିଲେ ତୁମ୍ଭଜନ୍ମ ମୁନି । ଗୁପତ ଇତିହାସ ବାଣୀ ॥
ଦାସ ଜଗନ୍ନାଥ ବୋଲଇ । କୃଷ୍ଣ ମହିମା ଯମ କହି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଶ୍ରୀକୃଷ୍ଣମହିମା ଯମ ବର୍ଣ୍ଣନେ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ରାଜ ଉବାଚ

ଦେବ ଅସୁର ନର ନାଗ । ତୁମ୍ଭେ କହିଲ ମହାଭାଗ ॥
ମୃଗ ପକ୍ଷୀଙ୍କ ସୃଷ୍ଟି ଯେତେ । କହିଲ ମୋହର ଅଗ୍ରତେ ॥
ଯେ ସ୍ୱୟମ୍ଭୁବ ମନ୍ୱନ୍ତରେ । ଦୟାରେ ବିସ୍ତାରିଲେ ମୋରେ ।
ସେ ମନ୍ୱନ୍ତରେ ଭଗବାନ । ସେ ଅନୁସର୍ଗର ଭିଆଣ ॥
ଯେମନ୍ତେ ଆପ୍ୟ ଶକ୍ତି ଘେନି । ସର୍ଜିଲେ ପ୍ରଭୁ ଅନ୍ତର୍ଯ୍ୟାମୀ ॥
ସେ କଥା ଶୁଣିବାକୁ ମୋର । ଶ୍ରଦ୍ଧା ବଳିଲା ମୁନିବର ॥

### ସୂତ ଉବାଚ

ରାଜାର ପ୍ରଶ୍ନ ଶୁଣି ମନେ । ଆନନ୍ଦେ ହରଷ ବଦନେ ॥
ନୃପେ କହିଲେ ଶୁକ ଯାହା । ହେ ମୁନିଗଣେ ଶୁଣ ତାହା ॥

### ଶ୍ରୀ ଶୁକ ଉବାଚ

ଯେ ପ୍ରଚେତା ମୁନି ଦଶ । ସମୁଦ୍ର ଉଠି ଦଶଦିଶ ॥
ଦେଖିଲେ ବହୁ ଦ୍ରୁମମାନ । ପୃଥିବୀ କଲେ ଆଚ୍ଛାଦନ ॥

ବୃକ୍ଷମାନଙ୍କୁ କୋପ ବଳେ । ତପେ ତାପିତ କ୍ରୋଧାନଳେ ॥
ମୁଖରୁ ବାୟୁ ଅଗ୍ନି ଦୁଇ । ସୃଜିଲେ ବୃକ୍ଷ କ୍ଷୟ ପାଇଁ ॥
ପବନ ଅଗ୍ନିର ଦହନ । ବୃକ୍ଷେ ହୋଇଲେ ଯହୁଁ କ୍ଷୀଣ ॥
ତା ଦେଖି ଶୁଣ ପରୀକ୍ଷିତ । ଚନ୍ଦ୍ର ହୋଇଲେ ଉପଗତ ॥
କ୍ରୋଧ ସାନ୍ତ୍ୱନା କରିବାରେ । ତାଙ୍କୁ ବୋଇଲେ ସୁଧାକରେ ॥
ଭୋ ସ୍ୱାମୀମାନେ ତୁମ୍ଭେ ଶୁଣ । ବୃକ୍ଷେ ହୋଇଲେ ଅତି କ୍ଷୀଣ ॥
ଦହନ ନ କର ହୋ ଆର । ତୁମ୍ଭେ ଯେ ପତି ପ୍ରଜାଙ୍କର ॥
ପ୍ରଜାପତିର ପତି ହରି । ଅବ୍ୟୟ ପୁରୁଷ ମୁରାରି ॥
ଔଷଧ ବନସ୍ପତି ଯେତେ । ତାର ସଞ୍ଚିଳା ଏ ଜଗତେ ॥
ଚର ଅଚର ଆଦି ଯେତେ । ପାଦ ନିପାଦର ସହିତେ ॥
ଅହସ୍ତ ହସ୍ତ ଯୁକ୍ତ ଯେହୁ । ଦ୍ୱିପଦ ଚତୁଷ୍ପଦ କେହୁ ॥
ତୁମ୍ଭେ ସକଳ ଏ ସର୍ଜିବ । ସଂସାରେ ଯେତେ ଅଛି ଜୀବ
ପ୍ରଜାରେ ସୃଷ୍ଟି କରିବାରେ । ଯେଣୁ ଅଇଲ ଏ ସଂସାରେ ॥
ଶୁଣହେ ମୋହର ବଚନ । ଦହନ ନ କର ଯେ ବନ ॥
ନ କର ସତ୍ୟ ମାର୍ଗ ଦୂର । କ୍ରୋଧ ଅନଳ ଦୂର କର ॥
ପିତୃ ପିତାମହ ତୁମ୍ଭର । ସେବିତ ପ୍ରପିତା ମୋହର ॥
ବାଳକ ବନ୍ଧୁ ପିତାମାତା । ନୟନ ବନ୍ଧୁ ଲୋମପତା ॥
ସ୍ତିରୀର ବନ୍ଧୁ ସ୍ୱାମୀ ନିଜ । ପରଜା ବନ୍ଧୁ ମହାରାଜ ॥
ଭିକ୍ଷୁକ ବନ୍ଧୁ ଗୃହୀଜନ । ଅବୁଦ୍ଧ ବନ୍ଧୁ ସୁଜ୍ଞଜନ ॥
ଜୀବନ ହୃଦଗତେ ହରି । ଅଛଇ ନିଜ ରୂପ ଧରି ॥
ଯେ ସର୍ବ ସମାନ ଦେଖଇ । ତାହାକୁ ଜ୍ଞାନୀ ବୋଲି କହି ॥
ଅନନ୍ତ ଗୁଣ କହି ତାରେ । ନିର୍ଭୟେ ବୁଲଇ ସଂସାରେ ॥
କଲ୍ୟାଣ ହୋଇବ ତୁମ୍ଭର । ଶେଷ ଦ୍ରୁମଙ୍କୁ ରକ୍ଷାକର ॥
ବୃକ୍ଷଙ୍କ କନ୍ୟା ଏକ କରି । ତୁମ୍ଭର ହେଉ ନିଜ ନାରୀ ॥
ଏମନ୍ତ ବୋଲି ରାଜା ସୋମ । ଆନନ୍ଦେ ହରଷ ବଦନ ॥
କନ୍ୟାକୁ ଆଣି ତାଙ୍କୁ ଦେଲେ । ଆନନ୍ଦେ ନିଜପୁର ଗଲେ ॥
ସେମାନେ କନ୍ୟା ଆଗ ସରି । ବିଭା ହୋଇଲେ ଧର୍ମକରି ॥
ସେ ଦଶ ଠାରୁ ସେ କନ୍ୟାର । ଜନ୍ମିଲେ ଦକ୍ଷ ଦେବବର ॥
ଯାହାର ପ୍ରଜାର ସର୍ଜନେ । ପ୍ରଜା ପୂରିଲେ ତ୍ରିଭୁବନେ ॥
ଯେମନ୍ତେ ଦକ୍ଷ ପ୍ରଜାପତି । ସର୍ଜିଲେ ସର୍ବ ଭୂତ ସ୍ଥିତି ॥
ବୀଜରେ ଅବା ମନେ ଯାହା । ସର୍ଜିଲେ ଗୁଣ କହୁଁ ତାହା ॥
ଦେବତା ସୁର ନର ଆଦି । ଆକାଶ ଜଳ ସ୍ଥଳ ସିଦ୍ଧି ॥
ପ୍ରଜା ଅବୃଦ୍ଧି ଦେଖି ଦକ୍ଷ । ମନରେ କଲେ ଅତି ଦୁଃଖ ॥
ବିନ୍ଧ୍ୟ ପର୍ବତକୁ ସେ ଯାଇ । ତପ ଆରମ୍ଭ କଲେ ତହିଁ ॥
ତକ୍ଷଣେ କରି ଆଗମନ । ଯେ ତୀର୍ଥ ଅଘମର ପଣ ॥
ଯାହାର ଜଳ ସ୍ପରଶରେ । ସକଳ ପାପ ହୋଇଯେ ଦୂରେ ॥
ତହିଁ ବସିଲେ ତପ କରି । ତୋଷିଲେ ପ୍ରଭୁ ନରହରି ॥
ଯେହି ସ୍ତବରେ କଲେ ସ୍ତୁତି । ଯେଣେ ପ୍ରସନ୍ନ ଶିରୀପତି ॥

## ପ୍ରଜାପତି ଉବାଚ

ନମସ୍ତେ ପ୍ରଭୁ ଆଦି ଭୂତ । ତ୍ରିଗୁଣ ଯାହାର ବାଞ୍ଛିତ ॥
ଅଦୃଷ୍ଟ ଯାହାର ମହିମା । ଗୁଣ ବୁଦ୍ଧିରେ ନୋହେ ସୀମା ॥
ଯାହାର ଆଜ୍ଞାରେ ସମ୍ଭବ । ନମସ୍ତେ ପ୍ରଭୁ ସ୍ୱୟଂଭୁବ ॥
ସଂସାରେ ଅଛି ପୂର୍ଣ୍ଣ ହୋଇ । ଯାହାର ଶତ୍ରୁ ମିତ୍ର ନାହିଁ ॥
ଗୁଣର ଗୁଣ ପ୍ରାୟେ ହୋଇ । ସେ ମହେଶ୍ୱରଙ୍କୁ ନମଇ ॥
ଯାହାର ଗୁଣ ଏ ସଂସାରେ । ଶ୍ରୁତି ସ୍ମୃତିରେ ଅଗୋଚରେ ॥
ସକଳ ଭୂତରେ ଯେ ଥାଇ । ତାହାକୁ କେହି ନ ଜାଣଇ ॥
ସର୍ବଜ୍ଞ ଅନନ୍ତ ଅଟଇ । ତାହାକୁ ଦଣ୍ଡବତ ମୁହିଁ ॥
ଯାହାର ରୂପ ଦୃଷ୍ଟିସ୍ଫୁତ । କରଇ ପ୍ରାଣୀରେ ଅର୍ପିତ ॥
ଯେ ପ୍ରଭୁ ସ୍ୱଇଚ୍ଛାରେ କରି । ଅଶେଷ ଘଟେ ଛନ୍ତି ପୂରି ॥
ହଂସ ଶିଖରେ ଶୁଚି ଘର । ତାହାକୁ ମୋର ନମସ୍କାର ॥
ହୃଦ ପଦ୍ମରେ ଯାକୁ ଧରି । ପଣ୍ଡିତେ ତପକୁ ଆଚରି ॥
ସର୍ବ ବିଶେଷେ ଯାର ମାୟା । ନିଷେଧ ଦୁଃଖ ସୁଖ ଯାହା ॥
ଯେ ସର୍ବ-ରୂପ ସର୍ବ-ନାମ । ସକଳ ଯାହାର ଭିଆଣ ॥
ସେ ପ୍ରଭୁ ହୁଅନ୍ତୁ ପ୍ରସନ୍ନ । ସର୍ବ କାରଣ ଭଗବାନ ॥
ଭଜନ କରନ୍ତି ଯେ ଜନେ । ବୁଦ୍ଧି ଇନ୍ଦ୍ରିୟର ବଚନେ ॥
ଯେ ପ୍ରଭୁ ସର୍ବ ଅଗୋଚର । ତାହାଙ୍କୁ ମୋର ନମସ୍କାର ॥
ଯାହା ଠାବରେ ଯାହା ତହୁଁ । ଯେ ସର୍ବ ରୂପ ଏକ ହେଉ ॥
ଯେ କାର୍ଯ୍ୟ କରଇ କରାଇ । ଯାହାର ତହୁଁ ଅନ୍ୟ ନାହିଁ ॥
ପର ଉପରେ ଯେହୁ ପର । ଆଦ୍ୟହୁଁ ସିଦ୍ଧ ଯେ ଈଶ୍ୱର ॥
ଏମନ୍ତ ଯେହୁ ବ୍ରହ୍ମପର । ତାହାକୁ ମୋର ନମସ୍କାର ॥
ନିଜ ଶକ୍ତିମାନ ଯାହାର । ବାଦୀ ବିବାଦୀ ମାନଙ୍କର ॥
ବିବାଦ ସମ୍ବାଦରେ କରି । ପ୍ରାଣୀମାନଙ୍କ ଚିତ୍ତ ହରି ॥
ଏମନ୍ତ ଅନନ୍ତ ଯା ଗୁଣ । ନମଇ ତାହାର ଚରଣ ॥
ସଂସାରେ ଅସ୍ତି ନାସ୍ତି ଯେତେ । ବସ୍ତୁର ନିଷ୍ଠା ଏହିମତେ ॥
ଭିନ୍ନ ବିରୋଧି ଧର୍ମ ସେହି । ତା ବିନୁ ଅନ୍ୟ କେହି ନାହିଁ ॥
ସାଂଖ୍ୟ ଯୋଗରେ ପ୍ରବର୍ତ୍ତିତ । ସେ ସର୍ବ ଅଳପ ବହୁତ ॥
ପାଦପଦ୍ମରେ ଯେ ଭଜଇ । ତାହାର ଅନୁଗ୍ରହ ପାଇ ॥
ଜନମ ନାମ ରୂପେ କରି । ଶରୀର ବହଇ ଯେ ହରି ॥
ସେ ମୋତେ ହେଉ ସୁପ୍ରସନ୍ନ । ସର୍ବ କାରଣ ଭଗବାନ ॥
ପ୍ରକୃତ ଜ୍ଞାନ ପଥେ କରି । ଯେ ପ୍ରଭୁ ସର୍ବ ଘରେ ପୂରି ॥

ଶୋଭା ପାଉଛି ଅନୁକ୍ଷଣ । ଅଖିଳ ପ୍ରଭୁ ନାରାୟଣ ॥
ପୃଥିବୀ ଗୁଣରେ ମିଶାଇ । ଅନିଳ ଯେସନେ ବହଇ ॥
ସେ ହରି ମହିମା ଅନନ୍ତ । ପୂର୍ଣ୍ଣ ମୋ କରୁ ମନୋରଥ ॥

### ଶ୍ରୀ ଶୁକ ଉବାଚ

ଏମନ୍ତେ ଦକ୍ଷ ସ୍ତୁତି ଶୁଣି । ଭକ୍ତ ବତ୍ସଳ ଚକ୍ରପାଣି ॥
ଆରୋହି ଖଗପତି ରାଜ । ଲମ୍ବିତ ଅଷ୍ଟ ମହାଭୁଜ ॥
ଶଙ୍ଖ ଅସି ଚର୍ମ ଖଡ଼ଗ । ଗଦା ଚକ୍ର ପାଶ ସାରଙ୍ଗ ॥
ଧରି ଅଛନ୍ତି ଅଷ୍ଟକର । ଅଦ୍ଭୁତ ରୂପ ମନୋହର ॥
ପୀତ ବସନ ଘନଶ୍ୟାମ । ବଦନ ଈକ୍ଷଣ ପ୍ରସନ୍ନ ॥
ନିବିଡ଼ ଅଙ୍ଗେ ବନମାଳ । ଶୋହିଛି ମକର କୁଣ୍ଡଳ ॥
ଶ୍ରୀବତ୍ସ କଉସ୍ତୁଭ ସାଜେ । କିରୀଟ କୁଣ୍ଡଳ ବିରାଜେ ॥
କାଞ୍ଚି ଅଙ୍ଗଦ ରତ୍ନମୁଦି । ବଳୟ ନୂପୁର ପ୍ରସିଦ୍ଧି ॥
ରୂପେ ତ୍ରିଲୋକ ମନୋହର । ଧରିଣ ବ୍ରହ୍ମାଣ୍ଡ ଠାକୁର ॥
ନନ୍ଦ ନାରଦ ଆଦି ଯେତେ । ବେଷ୍ଟିତ ହୋଇଣ ସମସ୍ତେ ॥
ବିଷ୍ଣୁଙ୍କୁ କରନ୍ତି ଗାୟନ । ସିଦ୍ଧ ଗନ୍ଧର୍ବ ଯେ ଚାରଣ ॥
ଅତି ଆଶ୍ଚର୍ଯ୍ୟ ରୂପ ହରି । ଦେଖିଣ ଦକ୍ଷ ଭୟ କରି ॥
ନମିଲେ ଦଣ୍ଡବତ ହୋଇ । ଆନନ୍ଦ କେ ପାରିବ କହି ॥
ମୁଖରୁ ନସ୍ଫୁରେ ବଚନ । ହରଷେ ବିହ୍ୱଳିତ ମନ ॥
ଇନ୍ଦ୍ରିୟଙ୍କର ପୂର୍ଣ୍ଣମନ । ନିର୍ଝରେ ହ୍ରଦିନୀ ଯେସନ ॥
ମୋର ଭଗତି ପ୍ରଜା କାମ । ଯେମନ୍ତ ଜାଣି ଭଗବାନ ॥
ସକଳ ପ୍ରାଣୀଙ୍କର ମନ । ଜାଣନ୍ତି ପ୍ରଭୁ ଭଗବାନ ॥
ପ୍ରଜାପତିଙ୍କି ଚାହିଁ ହରି । କିଛି ବୋଇଲେ ଦୟାକରି ॥
ହେ ପ୍ରିଚେତସ ମହାଭାଗ । ତୁମ୍ଭନ୍ତ ମୋର ଅନୁରାଗ ॥
ଯେଣୁ ଭକତି ଦୃଢ଼ମନେ । ଭଜିଲ ମୋହର ଚରଣେ ॥
ପ୍ରସନ୍ନ ହେଲୁ ପ୍ରଜାନାଥ । ଯେଣୁ ତୁମ୍ଭ ଉତ୍ତମ ତପ ॥
ଭକ୍ତ ମାନଙ୍କର ସମ୍ପତ୍ତି । ଅନୁବରତେ ମୁହିଁ ଚିନ୍ତି ॥
ବ୍ରହ୍ମା ଶଙ୍କର ମନ୍ବନ୍ତର । ତୁମ୍ଭେ ଇନ୍ଦ୍ରାଦି ଦେବବର ॥
ନ୍ୟାୟାଦି ପ୍ରାଣୀମାନଙ୍କର । ତୁମ୍ଭେ ଯେ ହେତୁ ସମ୍ପତ୍ତିର ॥
ତପସ୍ୟା ମୋହର ହୃଦୟ । ବ୍ରହ୍ମ ମୋହର ନିଜ ଦେହ ॥
ବିଦ୍ୟା ଯେ ମୋହର କାରଣ । ଯଜ୍ଞ ଯେ ମୋହର ଭୂଷଣ ॥
ମୋହର ଆତ୍ମ-ଧର୍ମ ଜାଣ । ଦେବତାମାନେ ମୋର ପ୍ରାଣ ॥
ବାହ୍ୟ ଅନ୍ତରେ ମୁହିଁ ଥାଇ । ସକଳ ଆଦିଭୂତ ମୁହିଁ ॥
ନାମରେ ଅବଶେଷ ହୋଇ । ମୋ ତହୁଁ ଅନ୍ୟ କେହି ନାହିଁ ॥
ସଂସାରେ ସତ୍ୟରୂପ ହୋଇ । ଅବ୍ୟକ୍ତ ରୂପେ ମୁହିଁ ଥାଇ ॥
ଅନନ୍ତ ଗୁଣେ ମୁଁ ଅନନ୍ତ । ମୋର ଗୁଣରୁ ହୋଇ ଜାତ ॥
ଗୁଣ ଶରୀରକୁ ଧଇଲେ । ସ୍ୱୟମ୍ଭୁ ଦେହକୁ ପାଇଲେ ॥
ସେ ସ୍ୱୟମ୍ଭୁବ ଏ ସଂସାରେ । ଦେଖିଲେ ସର୍ବ ଆତ୍ମା ପରେ ॥
ସୃଷ୍ଟି କରିବା ଚିତ୍ତେ ଧରି । ଉଦ୍ୟମ କଲେ ସେ ବିଚାରି ॥
ବୋଇଲୁ ଆମ୍ଭ ବାକ୍ୟ କର । ଘୋର ତପସ୍ୟାକୁ ଆଚର ॥
ସୃଷ୍ଟି କରତା ତୁମ୍ଭେ କାହିଁ । ତପର ବଳେ ସୃଷ୍ଟିହୋଇ ॥
ପଞ୍ଚଜନର ଏ କୁମାରୀ । ଅସିକ୍ନୀ ନାମ ଏ ସୁନ୍ଦରୀ ॥
ଏହାକୁ ପତ୍ନୀ ଭାବେ ବରି । ଗ୍ରହଣ କର ସୃଷ୍ଟି କରି ॥
ମୈଥୁନେ ହେବ ବଡ଼ଶୋଭା । ଆନନ୍ଦେ ହୋଅ ଶୁଭେ ବିଭା ॥
ତୁମ୍ଭର ଠାରୁ ପ୍ରଜା ଯେତେ । ମୈଥୁନେ ହୋଇବ ଜଗତେ ॥
ମୋର ମାୟାରେ ମୋହି ହେବେ । ହରଷେ ସଂସାର କରିବେ ॥
ଏତେକ କହି ଭଗବାନ । ଅଖିଳ ବିଶ୍ୱର ଭାବନ ॥
ସ୍ୱପ୍ନେ କହିଲା ପ୍ରାୟେ କରି । ଅନ୍ତର ହୋଇଲେ ମୁରାରି ॥
ବୋଲଇ ବିପ୍ର ଜଗନ୍ନାଥ । ଶ୍ରୀକୃଷ୍ଣ ଚରିତ ଅମୃତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଆଦିସୃଷ୍ଟି କଥନେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

### ଶ୍ରୀ ବାଦରାୟଣ ଉବାଚ

ବିଷ୍ଣୁ ମାୟାର ପ୍ରଭାବରୁ । ସେ ପଞ୍ଚଜନ କନ୍ୟାଠାରୁ ॥
ହର୍ଯ୍ୟଶ୍ୱ ସଂଜ୍ଞାରେ ଅୟୁତ । ଦକ୍ଷର ଜନ୍ମିଲେ ଏ ସୁତ ॥
ପୃଥକ ଭାବ ତାଙ୍କ ନାହିଁ । ସକଳ ଧର୍ମ ପର ହୋଇ ॥
ପିତାର ଆଜ୍ଞା ଘେନି ଶିରେ । ପ୍ରଜା ସର୍ଜନା କରିବାରେ ॥
ସେ ତୀର୍ଥ ନାରାୟଣ ସର । ସଙ୍ଗମ ସିନ୍ଧୁ ଯେ ସାଗର ॥
ସିଦ୍ଧ ମୁନିରେ ଯେ ସେବିତ । ସ୍ପରଶେ ପାପ କରେ ହତ ॥
ସେ ସରୋବରକୁ ସେ ଯାଇ । ପରମ ହଂସ ଧର୍ମ ବହି ॥
ପିତା ଆଜ୍ଞାରେ ସେ ଯନ୍ତ୍ରିତ । ସାଧିଲେ ନାନା ଉଗ୍ରତପ ॥
ପ୍ରଜା ସର୍ଜନେ କାମ କଲେ । ତପ ସାଧନେ ମନ ଦେଲେ ॥
ନାରଦ ଆସି ତତକ୍ଷଣ । କହିଲେ ମଧୁର ବଚନ ॥
ହର୍ଯ୍ୟଶ୍ୱ ଶୁଣ ମୋ ଉତ୍ତର । କେମନ୍ତେ ପ୍ରଜା ତୁମ୍ଭେ କର ॥
ପୃଥୀର ପରିମାଣ କାହିଁ । କେବେହେଁ ଦେଖିଅଛ ନାହିଁ ॥
ତୁମ୍ଭେ ବାଳକ ବୁଦ୍ଧିକର । ସୃଷ୍ଟି କରିବାକୁ ବିଚାର ॥
ଏମନ୍ତ ମନେ ବିଚାରିଲେ । ହର୍ଯ୍ୟଶ୍ୱ ଏକ ଚିତ୍ତ ହେଲେ ॥

ନାରଦେ କରି ପ୍ରଦକ୍ଷିଣ । ଗଲେ ଅନିବର୍ତ୍ତ ପଥେଣ ॥
ଅଚ୍ୟୁତ ବ୍ରହ୍ମ ହୃଷୀକେଶ । ଅଖିଳ ପ୍ରଭୁ ପୀତବାସ ॥
ଅଭୟ ପାଦ ପଙ୍କଜରେ । ଅଖଣ୍ଡ ଚିତ୍ତ ଥୋଇ ସ୍ଥିରେ ॥
ଆନନ୍ଦେ ହୋଇ ମୁନିବର । ଗମନ କଲେ ନିଜ ପୁର ॥
ସୁତ-ମାନଙ୍କ ନାଶ ଶୁଣି । ନାରଦ ପ୍ରଭାବରୁ ଜାଣି ॥
ପୁତ୍ରଙ୍କ ଗୁଣ ସୁମରିଲେ । ଦକ୍ଷ ଅନେକ ତାପ କଲେ ॥
ପୁଣି ହିଁ ଆସି କରି ତହିଁ । ଅନ୍ତରେ ପରିଶ୍ରାନ୍ତ ହୋଇ ॥
ବୀର୍ଯ୍ୟ ଆଧାନ କଲେ ଦକ୍ଷ । ପୁତ୍ର ଜନ୍ମିଲା ସର୍ବଳାଶ୍ୱ ॥
ସହସ୍ର ପରିମିତ ହୋଇ । ସର୍ବେ ଜନ୍ମିଲେ ଦେହ ବହି ॥
ପିତାର ଆଜ୍ଞାକୁ ଧଇଲେ । ପ୍ରଜା ସର୍ଜନେ ମନ ଦେଲେ ॥
ଯେ ନାରାୟଣ ସରୋବର । ତହିଁକି ଗଲେ ଖରତର ॥
ସେ ତୀର୍ଥ ସ୍ପରଶ ମାତ୍ରକେ । ଧଉତ ହୋଇଲା ପାତକେ ॥
ପରମ ବ୍ରହ୍ମ ଜପ କରି । ମହତ ତପକୁ ଆଚରି ॥
କେତେହେଁ ଦିନ ନିରାହାରେ । ବଞ୍ଚିଲେ ପବନ ଆହାରେ ॥
ଯେମନ୍ତେ କରି ଆରାଧନ । ସ୍ମରଣ କଲେ ନାରାୟଣ ॥
ଓଁ ନମୋ ପ୍ରଭୁ ଭଗବାନ । ଓଁ ନମୋ ପ୍ରଭୁ ନାରାୟଣ ॥
ଅଶେଷ ପୁରୁଷ ପୁରାଣ । ଅଶେଷ ପରମ କାରଣ ॥
ବିଶୁଦ୍ଧ ସତ୍ତ୍ୱ ମହାହଂସ । ନମସ୍ତେ ପ୍ରଭୁ ହୃଷୀକେଶ ॥
ଯେମନ୍ତ ପ୍ରକାରେ ରାଜନ । ପ୍ରଜା ନିମନ୍ତେ ଦେଇ ମନ ॥
ତପ ଯେ କରୁଥିଲେ ତହିଁ । ନାରଦ ମୁନି ତାଙ୍କୁ ଯାଇଁ ॥
କପଟ କରିଣ ବଚନ । ବୋଇଲେ ଶୁଣ ଋଷିଗଣ ॥
ଉଦ୍ଦେଶ୍ୟ ଭାଇମାନଙ୍କର । କିମ୍ପାଇ ତୁମ୍ଭେ ହେ ନ କର ॥
ଭ୍ରାତ ବତ୍ସଳ ତୁମ୍ଭେମାନେ । ଏ କର୍ମ କରୁଛ କେସନେ ॥
ଭାଇର ଦୁଃଖେ ଯେହୁ ଦୁଃଖୀ । ସେ ପ୍ରାଣୀ ସର୍ବ କାଳେ ସୁଖୀ ॥
ତାହାକୁ ପୁଣ୍ୟବନ୍ତ କହି । ଦେବଙ୍କ ସଙ୍ଗେ ସ୍ୱର୍ଗେ ଥାଇ ॥
ଏମନ୍ତ କହି ତାଙ୍କ ଆଗେ । ନାରଦ ଗଲେ ଶୂନ୍ୟମାର୍ଗେ ॥
ସେ ପୁଣି ଭାଇମାନଙ୍କର । ଉଦ୍ଦେଶ୍ୟେ ଗଲେ ନୃପବର ॥
ଭାଇର ଖୋଜେ ଯେତେ ଗଲେ । ଅଦ୍ୟାପି ନିବର୍ତ୍ତି ନୋହିଲେ ॥
ପଶ୍ଚିମ ରାତ୍ର ପ୍ରାୟ ହୋଇ । ନିବୃତ୍ତ ଆଉ ତାଙ୍କ ନାହିଁ ॥
ଅନେକ କାଳ ଗଲା ଯହୁଁ । ଦକ୍ଷ ଜାଣିଲେ ପୁଣ ତହୁଁ ॥
ପୁତ୍ରମାନଙ୍କ ନାଶ ଶୁଣି । ନାରଦ କୃତ୍ୟ ବୋଲି ଜାଣି ॥
ପୁତ୍ର ଶୋକରେ ମୋହି ହୋଇ । ନାରଦେ ଅତି କ୍ରୋଧ ବହି ॥
ନାରଦ ନିକଟେ ମିଳିଲେ । ଦେଖି ନାରଦ ଭୟ କଲେ ॥
କୋପେଣ କମ୍ପିତ ଅଧର । ନାରଦେ ବୋଇଲେ ଉତ୍ତର ॥

## ଦକ୍ଷ ଉବାଚ

ଆହେ ଅସାଧୁ ସାଧୁଙ୍କର । କଷ୍ଟ ତୁ ଦେଲୁ ଯେ ଅପାର ॥
ଯେଣୁ ମୋ ବାଳକଙ୍କୁ ତୁହିଁ । ଭଣ୍ଡୁ ଅଧର୍ମ ତୁ ଦେଖାଇ ॥
ତିନି ଋଣରୁ ଯେ ଅମୁକ୍ତ । ନୋହିଛି କର୍ମ ସମାପତ ॥
ଶ୍ରେୟ କାରଣ ତାଙ୍କ ତପ । କି କାର୍ଯ୍ୟେ ନଷ୍ଟ କଲୁ ପାପ ॥
କେମନ୍ତେ ଭକ୍ତବୋଲି ତୋତେ । ସକଳେ ବୋଲନ୍ତି ଜଗତେ ॥
ଈଶ୍ୱର ପାରୁଷଦ ହେଉ । ମନ୍ଦ କର୍ମରେ ନିତ୍ୟେ ଥାଉ ॥
ଯେ ଜନ ବିଷ୍ଣୁ ଭକ୍ତ ହୋଏ । ପ୍ରାଣୀଙ୍କି କରନ୍ତି ସଦୟେ ॥
ତୁ ମିତ୍ର ଦ୍ରୋହୀ ପାପୀ ଯହୁଁ । ଯେ କର୍ମ କରେ ଅବା କେହୁ
ନିର୍ବୈରଠାରେ ଶତ୍ରୁପଣ । କିମ୍ପାଇଁ କରୁ ଅକାରଣ ॥
ସତ୍ୟ ଲୋକରେ କ୍ରୋଧ ଭର । ତୋ ତହୁଁ ନାହିଁ ନା ଅନ୍ୟର ॥
ମୋହର ଯେହୁ ସ୍ନେହ ପାଶ । ଛେଦିଣ କଲୁ ତୁହି ନାଶ ॥
ବିଷୟ କର୍ମ ଯେହୁ ଜନ । ନ ଜାଣି ଥାଇ ଅନ୍ଧ ମନ ॥
ଏମନ୍ତ ଅନ୍ଧ ବୁଦ୍ଧିମାନେ । ହିତ ଅହିତକୁ ନ ଜାଣେ ॥
ତୁ ଯେଉଁ କାରଣରୁ କରି । ସାଧୁଙ୍କୁ ଅପ୍ରିୟ ଆଚରି ॥
ସ୍ୱକର୍ମ ବନ୍ଧ ଗୃହ ମେଧି । ପରର ହିତେ ଯାର ବୁଦ୍ଧି ॥
ମୂଢ଼ ତୁ ଅକାରଣୁ କରି । ଲୋକ ବିଷୟରେ ତୋହରି ॥
ଭ୍ରମଣ କରୁଥିବୁ ତୁହି । ତୋହର ସ୍ଥିତି କାହିଁ ନାହିଁ ॥

## ଶ୍ରୀ ଶୁକ ଉବାଚ

ଅସ୍ତୁ ବୋଲିଣ ଶାପ ଘେନି । ସାଧୁଜନ ନାରଦ ମୁନି ॥
ଏଣୁ କରି ସେ ସାଧୁ ବାଦ । ସକଳେ ବୋଲନ୍ତି ନାରଦ ॥
ବୋଲଇ ଦାସ ଜଗନ୍ନାଥ । ସଂସାର ଲୋକ ଜନ୍ମ ମତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ନାରଦ ଶାପ କଥନେ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଯେ ଉତ୍ତାରେ । ତକ୍ଷଣେ ବ୍ରହ୍ମାର ଆଜ୍ଞାରେ ॥
ଦକ୍ଷ ଜନ୍ମାଇଲେ ଷାଠିଏ । କନ୍ୟା ସୁଲକ୍ଷଣୀ ସଭିଏ ॥
ଧର୍ମକୁ ଦେଲେ କନ୍ୟା ଦଶ । ଚନ୍ଦ୍ରକୁ ଦେଲେ ସପ୍ତବିଂଶ ॥
ଭାନୁ ଲମ୍ବା କକୁଦ ଯାମି । ମୁହୂର୍ତ୍ତା ବସୁଧର୍ମ ପତ୍ନୀ ॥
ବିଶ୍ୱା ସାଧ୍ୟା ଯେ ମରୁତ୍ୱତୀ । ସଂକଳ୍ପା ନାମେ ସେହୁ ସ୍ୱତୀ ॥

ଧର୍ମର ଦଶ ପତ୍ନୀ ନାମ । କହିଲୁ ଶୁଣ ହେ ରାଜନ ॥
ଯେ ମାନଙ୍କର ଅପତ୍ୟରେ । ପୂର୍ଣ୍ଣ ହୋଇଲା ତିନି ପୁରେ ॥
ବିଦ୍ୟୋତ ସ୍ତନୟିତ୍ନୁ ନାମ । ଲମ୍ବାର ଉଦରେ ଜନମ ॥
କକୁଟ ପୁତ୍ର ଯେ ସଂକଟ । ତାହାର ତନୟ କୀକଟ ॥
ଯାମୀର କନ୍ୟାର ବାଳକ । କହିବା ଶୁଣ ଯେକ ଯେକ ॥
ଭାନୁର ତନୟ ରାଜନ । ହେଲା ଋଷଭ ଉଗ୍ରେସନ ॥
ବିଶ୍ୱାର ତହୁଁ ବିଶ୍ୱଦେବା । ତାହାଙ୍କୁ ଅପୁତ୍ରି ବୋଲିବା ॥
ସାଧ୍ୟାର ପୁତ୍ର ସାଧ୍ୟ ଗଣ । ତା ପୁତ୍ର ଅର୍ଥ ସିଦ୍ଧ ପୁଣ ॥
ଜୟନ୍ତ ମରୁତ୍ୱାନ ଦୁଇ । ଜନ୍ମିଲେ ମରୁତ୍ୱତୀ ତହିଁ ॥
ଜୟନ୍ତ ପୁତ୍ର ବସୁଦେବ । ଯା ନାମ ଉପେନ୍ଦ୍ର ପ୍ରସିଦ୍ଧ ॥
ମୁହୂର୍ତ୍ତା ପୁତ୍ର ଦେବଗଣ । ଜନ୍ମିଲେ ଅଖିଳ କାରଣ ॥
ଯେ ଫଳ ବିଫଳ ପ୍ରାଣୀର । ଦିଅନ୍ତି ଆତ୍ମାସୁଖ ସାର ॥
ସଂକଳ୍ପ ସଂକଳ୍ପାର ସୁତ । କାମ ଯାହାର ପୁତ୍ରଖ୍ୟାତ ॥
ବସୁର ଅଷ୍ଟବସୁ ସୁତ । କହିବା ଶୁଣ ପରୀକ୍ଷିତ ॥
ଧ୍ରୁବାର୍କ ଅଗ୍ନି ଦୋଷ ଦ୍ରୋଣ । ବାସ୍ତୁ ଯେ ବିଭାବସୁ ପ୍ରାଣ ॥
ହରଷ ଭୟ ଶୋକ ଆଦି । ଦ୍ରୋଣର ପତ୍ନୀ ଏ ପ୍ରସିଦ୍ଧି ॥
ପ୍ରାଣର ପତ୍ନୀ ଉର୍ଜସ୍ୱତୀ । ସହଶ୍ରାର୍ଜ୍ଜୁନ ରୋଷମତି ॥
ଧରଣୀ ଧ୍ରୁବ ଭାର୍ଯ୍ୟା ହେଲା । ବିବିଧ ସୁତ ପ୍ରସବିଲା ॥
ଅର୍କର ରମଣୀ ବାସନା । ତା ପୁତ୍ର ହର୍ଷ ଆଦି ନାମା ॥
ଅଗ୍ନିର ଭାର୍ଯ୍ୟା ବିସୋଧାର । ଦ୍ରବିଣ ଆଦି ପୁତ୍ର ତାର ॥
କୃତ୍ତିକା ପୁତ୍ର ସ୍କନ୍ଦ ହୋଇ । ଯହୁଁ ବିଶାଖା ଆଦି ହୋଇ ॥
ଶର୍ବରୀ ରମଣୀ ଦୋଷର । ଯାହାର ପୁତ୍ର ଶିଶୁମାର ॥
ଈଶ୍ୱର ଅଂଶ ସେ ଅଟଇ । ଜଗତେ ବିଖ୍ୟାତ ସେ ହୋଇ ॥
ବାସ୍ତୁର ଅଂଗୀରସୀ ପତ୍ନୀ । ତା ପୁତ୍ର ବିଶ୍ୱକର୍ମା ଯତି ॥
ସକଳ କାର୍ଯ୍ୟ ମାନଙ୍କର । ସ୍ୱାମୀ ଅଟଇ ଜଗତର ॥
ଚାକ୍ଷୁଷ୍ଟୁଁ ମନୁ ଏ ଅନ୍ତରେ । ମନୁର ଯେତେକ କୁମରେ ॥
ବିଶେଷ ଆଦିକରି ଯେତେ । ମନୁର ପୁତ୍ର ଏ ଜଗତେ ॥
ବିଭାବସୁର ଏ କୁମର । ବ୍ୟୁଷ୍ଟ ରୋଚିଷ ଆତପର ॥
ଯେଥୁ ଅନ୍ତରେ ପଞ୍ଚ ଯାମ । ଯେ ଜାଣେ ସର୍ବଭୂତ କର୍ମ ॥
ସ୍ୱରୂପା ଭାର୍ଯ୍ୟା ଠାରୁ କରି । ସୁର ବହୁତ ଜାତ କରି ॥
ରୈବତ ଅଜଭବ ଭୀମ । ଉଗ୍ର ବୃଷାକପି ଯେ ବାମ ॥
ଅଜୈକ ପାଦ ଅହି ବ୍ରଧ୍ନ । ବହୁରୂପା ମହାନ ନାମ ॥
ରୁଦ୍ରର ପାରୁଷଦ ଯେତେ । କହିବା ଏକେ ଏକେ କେତେ ॥
ପ୍ରେତ ବିନାୟକ ଯେ ଘୋର । ଯେମନ୍ତେ ଜନ୍ମିଲେ ଅପାର ॥
ଅଙ୍ଗୀରସ ଯେ ପ୍ରଜାପତି । ତାହାଙ୍କ ପତ୍ନୀ ସ୍ୱଧା ସତୀ ॥

ପିତୃଗଣଙ୍କୁ ସେ ଜନ୍ମାଇ । ଆବର ଶୁଣ ଯାହା କହି ॥
ଅର୍ଥବ ଅଙ୍ଗୀରସ ବେଦ । ସତୀର ପୁତ୍ର ଯେ ସମ୍ବାଦ ॥
କୃଶାଶ୍ୱ ଅର୍ଚ୍ଚୀ ଭାର୍ଯ୍ୟା ତହିଁ । ଧୂମକେତୁ ଜନ୍ମିଲେ ଯାଇ ॥
ଧିଷଣା ତହିଁ ଦେବଶର । ବୟୁନ ମନୁ ଏ ଦେବଳ ॥
ବିନିତା କଦ୍ରୁ-ତାର୍କ୍ଷ୍ୟପତ୍ନୀ । ପତଙ୍ଗୀ ଯାମିନୀ ଯେ ସ୍ୱତୀ ॥
ପତଙ୍ଗୀ ପତଙ୍ଗ ମାନଙ୍କୁ । ଯାମିନୀ ଶଲଭ ପୁତ୍ରଙ୍କୁ ॥
ବିନତା ଗରୁଡ଼ ଜନ୍ମାଇ । ଗୋବିନ୍ଦ ବାହାନ ଯେ ହୋଇ ॥
ଅଶେଷ ନାଗଲୋକ ଯହିଁ । ଜାତ ହୋଇଲେ କଦ୍ରୁ ତହିଁ ॥
କୃତିକା ଆଦି ଯେତେ ଋକ୍ଷ । ଇନ୍ଦୁର ପତ୍ନୀ ଏ ପ୍ରତ୍ୟକ୍ଷ ॥
ଦକ୍ଷଙ୍କ ଶାପ ସେ ପାଇଲେ । ଚନ୍ଦ୍ର ଅନପତ୍ୟ ହୋଇଲେ ॥
ଯକ୍ଷ୍ମା ରୋଗରେ କରି ସୋମ । ଦିନକୁ ଦିନ ହୋଇ କ୍ଷୀଣ ॥
ଦକ୍ଷକୁ ପ୍ରସନ୍ନ କରାଇ । ପୁଣ ଲଭିଲେ ଦେହ ବହି ॥
ଏଥୁ ଅନ୍ତରେ ମାତୃଗଣ । ତାହାଙ୍କ ନାମ କହୁ ଶୁଣ ॥
କଶ୍ୟପ ପତ୍ନୀମାନଙ୍କର । କହିବା ନାମର ବିସ୍ତାର ॥
ଯାହାର ଅପତ୍ୟରୁ କରି । ଜଗତ ହୋଇଅଛି ପୂରି ॥
କାଷ୍ଠା ଅରିଷ୍ଟା ଦନୁଦିତି । ସୁରସା ଇଳା ସେ ଅଦିତି ॥
ସୁରଭି କ୍ରୋଧବଶା ତିମି । ସରମା ତାମ୍ରା ସୁରମୁନି ॥
ତିମିର ପୁତ୍ର ଯାଦୋଗଣ । ଶ୍ୱାପଦେ ସରମା ନନ୍ଦନ ॥
ସୁରଭି ପୁତ୍ର ଗୋ ମହିଷି । ଦ୍ୱିଶଫେ ହୋଇଲେ ବିକାଶି ॥
ଶ୍ୟେନ ଗୃଧ୍ରାଦି ତାମ୍ରାସୁତ । ଅପସରାମୁନିର ଦୁହିତ ॥
ଦନ୍ଦଶୂକାଦି ସର୍ପ ଯେତେ । କ୍ରୋଧବସା ସୁତ ସମେତେ ॥
ଇଳାର ତହୁଁ ବୃକ୍ଷମାନେ । ସରସା ସୁତ ଜାତୁଧାନେ ॥
ଗନ୍ଧର୍ବେ ଅରିଷ୍ଟ କୁମର । କାଷ୍ଠାର ଦ୍ୱିଶଫୁ ଇତର ॥
ଦନୁର ଏକଷଠୀ ସୁତ । ଏ ମଧ୍ୟେ ପ୍ରଧାନ ଚରିତ ॥
ଶୁଣ କହିବା ହେ ରାଜନ । ଏହାଙ୍କ ଏକ ଏକ ନାମ ॥
ଦ୍ୱିମୁଦା ଅରିଷ୍ଟ ଶମ୍ବର । ହୟଗ୍ରୀବ ଯେ ଶଙ୍କୁଶିର ॥
ସ୍ୱର୍ଭାନୁ ଆୟୋମୁକୁ ରାଣ । କପିଳ ବିଭାବସୁ ପୁଣ ॥
ପୁଲମ ବିଭାବସୁ ନାମ । ଏକ ଚକ୍ର ଅନୁତାପନ ॥
ଯେ ଧୂମ୍ରକେଶ ବିରୂପାକ୍ଷ । ବିପ୍ରଚିତ୍ତି ଦୁର୍ଜ୍ଜୟ ବୃକ୍ଷ ॥
ସ୍ୱଭାନୁ କୁମାରୀ ସୁପ୍ରଭା । ନମୁଚି ତାକୁ ହୋଇ ବିଭା ॥
ରାଜନ ଯେ ବୃଷପର୍ବାର । ଶର୍ମିଷ୍ଠା ନାମେ କନ୍ୟାତାର ॥
ଅତି ସୁନ୍ଦରୀ କନ୍ୟା ଥିଲା । ଯଯାତି ତାକୁ ବିଭା ହେଲା ॥
ବୈଶ୍ୱାନରର ଚାରି କନ୍ୟା । ଥିଲା ଯେ ଚାରୁ ଦରଶନା ॥
ଉପଦାନବୀ ହୟ ଶିରୀ । କାଳକା ପୁଲମ ସୁନ୍ଦରୀ ॥
ଉପଦାନବୀ ହିରଣାକ୍ଷ । କ୍ରତୁ ହୟଶିରା ପ୍ରତ୍ୟକ୍ଷ ॥

ବ୍ରହ୍ମାର ଆଜ୍ଞା ପାଇକରି । କଶ୍ୟପ ବିଭା ହେବିନାରୀ ॥
ପୁଲୋମା କାଳକା ଏ ଦୁଇ । କଶ୍ୟପ ଏହା ବିଭା ହୋଇ ॥
ପୁଲୋମା କାଳକାର ସୁତ । ଦାନବେ ହୋଇଲେକ ଜାତ ॥
ଷାଠି ସହସ୍ର ଚାର ମଧ୍ୟେ । ଯଜ୍ଞ ନାଶନ୍ତି ସେହୁ ବାଦେ ॥
ସ୍ୱର୍ଗକୁ ଯାଇ କଲେ ନଷ୍ଟ । ଦାନବେ ବଳବନ୍ତ ଦୁଷ୍ଟ ॥
ଇନ୍ଦ୍ରରେ ଅପ୍ରୀତି କରନ୍ତି । ନିତ୍ୟେ କୁକର୍ମ ଆଚରନ୍ତି ॥
ସିଂହିକା ତହିଁ ବିପ୍ର ଚିତ୍ତି । ଏକଶତ କଲେ ଉତ୍ପତ୍ତି ॥
ରାହୁ କେତୁ ଯେତେକ ଆଦି । ହୋଇଲେ ଗ୍ରହରେ ପ୍ରସିଦ୍ଧି ॥
ଏଥୁ ଅନ୍ତରେ ନୃପବର । ଅଦିତି ବଂଶର ବିସ୍ତାର ॥
ଯହିଁ ଶ୍ରୀ ବ୍ରହ୍ମାଣ୍ଡ ଠାକୁର । ଅଂଶେ ହୋଇଲେ ଅବତାର ॥
ଅର୍ଯ୍ୟମା ବିବସ୍ୱାନ ତ୍ୱଷ୍ଟା । ଧାତା ବିଧାତା ଯେ ସବିତା ॥
ପୂଷା ଭଗ ଆର ବରୁଣ । ମିତ୍ର ଶକ୍ର ଯେ ଉରୁକ୍ରମ ॥
ବିବସ୍ୱାନର ତହୁଁ ଜାତ । ଶ୍ରାଦ୍ଧଦେବ ହେଲେ ସାକ୍ଷାତ ॥
ସେ ପୁତ୍ର ବଡ଼ବା ରୂପରେ । ଜନ୍ମିଲେ ଅଶ୍ୱନୀ କୁମାରେ ॥
ଛାୟାର ଶନିଶ୍ଚର ସୁତ । ଶୁଣ କହିବା ଯେ ଭାରତ ॥
ଏ ଅନନ୍ତରେ ତାର ତହିଁ । ସାବର୍ଣ୍ଣ ମନୁ ଜାତ ହୋଇ ॥
କନ୍ୟାଯେ ହୋଇଲା ଜନମ । ଯାହାର ପତି ସମ୍ୱରଣ ॥
ମାତୃକା ପତ୍ନୀ ଅର୍ଯ୍ୟମାର । ମାରିସା କନ୍ୟାଯେ ଯାହାର ॥
ପୂଷା ସ୍ୱାଭାବେ ଅନପତ୍ୟ । ପୂର୍ବେ ତା ଥିଲା ଭଗ୍ନଦନ୍ତ ॥
ଯେ ଦକ୍ଷ କୋପର କାରଣ । ହସିଲା ଦେଖାଇ ଦଶନ ॥
ବୈତ୍ୟାତ୍ମଜା ପତ୍ନୀ ତ୍ୱଷ୍ଟାର । ରଚନା ନାମ ସେ କନ୍ୟାର ॥
ସନ୍ନିବେଶ ତାର କୁମର । ବିଶ୍ୱରୂପ ସୁତ ଅପର ॥
ତାହାକୁ ସୁରଗଣମାନେ । ବରିଲେ ପୁରୋହିତ ପଣେ ॥
ଶତୃତା ଅଛି ଯେବେ ତାର । ଯେ ଯେ ସ୍ୱଭାବେ ବଳୀୟାର ॥
ଯେବେ ସେ ଗୁରୁ ଅଙ୍ଗୀରସ । ମନରେ ହୋଇ ଅସନ୍ତୋଷ ॥
ତାଙ୍କୁ ତେଜିଲେ ମୁନିରାଣ । ସେ ମୁନି ସକଳ କାରଣ ॥
ବୋଲଇ ବିପ୍ର ଜଗନ୍ନାଥ । ଦକ୍ଷଙ୍କ ସୃଷ୍ଟି ଏ ଜଗତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଦକ୍ଷକନ୍ୟାବଂଶ ବର୍ଣ୍ଣନେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ରାଜା ଉବାଚ

କି ହେତୁ କରି ଅଙ୍ଗୀରସ । ଦେବଙ୍କୁ କଲେ ଅବିଶ୍ୱାସ ॥
ଏକଥା କହ ମୁନିବର । ଯେବେ କରୁଣା ମୋତେ କର ॥
ଶିଷ୍ୟ ବୁଝିବାର ନିମନ୍ତେ । ଗୁରୁ କହନ୍ତି ନାନା ମତେ ॥

### ବାଦରାୟଣ ଉବାଚ

ଇନ୍ଦ୍ର ତ୍ରିଭୁବନ ସମ୍ପଦ । ସତ୍ୟଯେ ଲଙ୍ଘିଲା ଦୃମଦ ॥
ପବନ ବସୁ ରୁଦ୍ରଗଣ । ଆଦିତ୍ୟ ଯେତେ ଋଷିଗଣ ॥
ବିଶ୍ୱଦେବା ସାଧ୍ୟ ସହିତେ । ଅଶ୍ୱନୀ କୁମାର ବେଷ୍ଟିତେ ॥
ସିଦ୍ଧ ଗନ୍ଧର୍ବ ଯେ ଚାରଣ । ବ୍ରହ୍ମବାଦୀ ଯେ ମୁନିଗଣ ॥
ସେବିତ ଅପସରାମାନ । କିନ୍ନର ବିଦ୍ୟାଧର ଗଣ ॥
ପତଙ୍ଗ ଉରଗ ଯେ ଆଦି । ସେବିତ ଯେ ଯାହାର ବିଧି ॥
ସ୍ତୁତି କରନ୍ତି ବନ୍ଦୀଗଣ । ଆସ୍ଥାନେ ବସି ମଘବାନ ॥
ଲଳିତେ କେହୁ ଗୀତ ଗାଇ । ଚାମର ଧରିକେ ବିଞ୍ଚଇ ॥
ଶ୍ୱେତାତପତ୍ର ଶୋଭାକର । ଯେ ଚାରୁ ଚନ୍ଦ୍ରମଣ୍ଡଳର ॥
କେବଳ ପାରୁଷଦ ଜନ । ସେବନ୍ତି ଘେନି ସେ ବ୍ୟଞ୍ଜନ ॥
ଶଚୀ ସଙ୍ଗତେ ଦେବ ରାଜେ । ରତ୍ନ ଆସନେ ସେ ବିରାଜେ ॥
ଏମନ୍ତ ସମୟେ ରାଜନ । କହିବା ଶୁଣ ଏକମନ ॥
ପରମ ଗୁରୁ ଦେବଙ୍କର । ପ୍ରବେଶ ହୋଇଲେ ସଭାର ॥
ତାହାଙ୍କୁ ପରିସ୍ଥାନ କରି । ଅଭିନନ୍ଦନକୁ ନ କରି ॥
ବାଚସ୍ପତି ମୁନିଙ୍କ ବର । ବନ୍ଦଇ ସୁରାସୁରଙ୍କର ॥
ଏମନ୍ତେ ମୁନିଙ୍କି ଦେଖିଲେ । ଇନ୍ଦ୍ର ଆସନୁ ନ ଉଠିଲେ ॥
ସେଠାରୁ ଶୀଘ୍ରେ ଅଙ୍ଗୀରସ । ମଉନେ ସ୍ୱଗୃହେ ପ୍ରବେଶ ॥
ଶ୍ରୀମଦେ ଇନ୍ଦ୍ରିୟ ବିକ୍ରିୟା । ମୁନି ଜାଣିଲେ ମନେ ଏହା ॥
ତାହାଙ୍କ ବିନୁ କେ ପଣ୍ଡିତ । ସ୍ୱର୍ଗ ରାଜାକୁ ସେ ରକ୍ଷିତ ॥
ସେ କ୍ଷଣେ ଇନ୍ଦ୍ର ଜାଣି କରି । ଗୁରୁ ଅପ୍ରାଧକୁ ବିଚାରି ॥
ଆତ୍ମାକୁ ଇନ୍ଦ୍ର ନିନ୍ଦାକଲା । ଅନେକ ସନ୍ତାପ ପାଇଲା ॥
ବଡ଼ ଅସାଧୁ ପଣ କଲି । ମୁଁ ଅନ୍ଧ ବୁଦ୍ଧିକି ପାଇଲି ॥
ଐଶ୍ୱର୍ଯ୍ୟ ଅଜ୍ଞାନ ମଦରେ । ଗୁରୁ ନିନ୍ଦିଲି ମୁଁ ସଭାରେ ॥
ମୁଁ ଦେବତାମାନଙ୍କ ଈଶ୍ୱର । ଅସୁର ଭାବ ମୋ ଆଗର ॥
ଧର୍ମ ଧାରଣା ଯେଉଁମାନେ । ସାଧୁ ମତରେ ଯେଉଁ ଜନେ ॥
ଏହାକୁ ନିନ୍ଦା ଯେ କରନ୍ତି । ସେମାନେ ଧର୍ମ ନ ଜାଣନ୍ତି ॥
କୁପଥ ଭଜନ୍ତି ଯେ ଜନେ । ନରକେ ପଡନ୍ତି ବହନେ ॥
ତାହାଙ୍କ ବୋଲ ଯେ କରନ୍ତି । ପାଷାଣ ଭେଳା ପ୍ରାୟ ହୋନ୍ତି ॥
ସ୍ୱଭାବେ ଗରୁ ସେ ପାଷାଣ । ତାହାର ଆଶ୍ରୟ ମରଣ ॥
ଏବେ ଅମରମାନଙ୍କର । ଆଚାର୍ଯ୍ୟ ଅଗାଧ ବୁଦ୍ଧିର ॥
ମୁଁ ମୂଢ଼ ସେହି ବ୍ରାହ୍ମଣର । ମସ୍ତକ ଦେବି ତା ପୟର ॥
ତାହାଙ୍କୁ କରାଇ ପ୍ରସନ୍ନ । ଦୁଃଖ ମୋ ହୋଇବ ଦହନ ॥
ଏମନ୍ତ ଚିନ୍ତା ଇନ୍ଦ୍ର କରି । ଗୁରୁ ଭୁବନେ ଆଗସରି ॥

ଗୁରୁ ତା ଆଗମନ ଦେଖି । ଗୃହକୁ ଗଲେ ସେ ଉପେକ୍ଷି ॥
ଗୁରୁ ଦରଶନ ନ ପାଇ । ଭୟ ଶୋକରେ ଯୁକ୍ତ ହୋଇ ॥
ଆତ୍ମାର ଅକୁଶଳ ଜାଣି । ଏମନ୍ତ ଚିନ୍ତି ବଜ୍ରପାଣି ॥
ଏକଥା ଶୁଣି ଦୈତ୍ୟମାନେ । ଶୁକ୍ର ମନ୍ତ୍ରୀର ସେ ବଚନେ ॥
ଦେବଙ୍କ ନାଶ ବିଚାରନ୍ତି । ସ୍ୱଭାବେ ଦୃମଦ ହୋଅନ୍ତି ॥
ଅବା ସେ ଦେବଙ୍କ ବାହନ । ତାହାଙ୍କ ଅଙ୍ଗ ହେଲା କ୍ଷୀଣ ॥
ବ୍ରହ୍ମା ଛାମୁରେ ଦେବେ ଗଲେ । ଏ ସର୍ବ କର୍ମ ନିବେଦିଲେ ॥
ନତ କନ୍ଧରେ ଦେବଗଣ । ନମିଲେ ବ୍ରହ୍ମାର ଚରଣ ॥
ଦୁଃଖିତ ହୋଇ ଦେବଗଣ । ଆତ୍ମଭୂ ଅଜ ଭଗବାନ ॥
ପରମ କୃପା ଯୁକ୍ତ ହୋଇ । କିଛି ବୋଇଲେ ସ୍ନେହ ବହି ॥

### ବ୍ରହ୍ମା ଉବାଚ

ହେ ଦେବେ ଶୁଣ କହୁ ଆମ୍ଭେ । ଅତ୍ୟନ୍ତ ମନ୍ଦକଲ ତୁମ୍ଭେ ॥
ବ୍ରହ୍ମିଷ୍ଠ ଦାନ୍ତ ଯେ ବ୍ରାହ୍ମଣ । ତାହାଙ୍କୁ କଲ ଅବଜ୍ଞାନ ॥
ତୁମ୍ଭେ ସେ ପାପର କାରଣେ । ତେଣୁ ଜିଣିଲେ ଶତ୍ରୁଗଣେ ॥
ତୁମ୍ଭଙ୍କୁ ନ ପାରନ୍ତି ବାଦେ । ତେଣୁ ଜିଣିଲେ ଅପ୍ରମାଦେ ॥
ହେ ଇନ୍ଦ୍ର ଶୁଣ ସାବଧାନ । ଗୁରୁଙ୍କୁ କଲେ ଅବଜ୍ଞାନ ॥
ଶୁକ୍ରଙ୍କୁ ଆରାଧି ଅସୁରେ । ଐଶ୍ୱର୍ଯ୍ୟ ଲଭିଲେ ସ୍ୱର୍ଗରେ ॥
ବିପ୍ରଗୋ ଜନଙ୍କ ଈଶ୍ୱର । ଆବର ଯେତେ ଦେବଙ୍କର ॥
ଅଶେଷ ପ୍ରାଣୀମାନଙ୍କର । ଶୁଭ କରିବେ ଚକ୍ରଧର ॥
ବିଶ୍ୱରୂପକୁ ବେଗେ ଭଜ । ତୁମ୍ଭର କରିବେ ସେ କାର୍ଯ୍ୟ ॥
ସେ ବିପ୍ର ପ୍ରସନ୍ନ ହୋଇଲେ । ତୁମ୍ଭର ଦୁଃଖ ଯିବ ଭଲେ ॥

### ଶୁକ ଉବାଚ

ଶୁଣି ଦେବତାଯେ ହରଷ । ବ୍ରହ୍ମା ବଚନରେ ବିଶ୍ୱାସ ॥
ଋଷିଙ୍କଠାକୁ ବେଗେ ଗଲେ । ହରଷେ ଆଲିଙ୍ଗନ କଲେ ॥
ଯେଥୁ ଉତ୍ତାରେ ତୁଷ୍ଟ ହୋଇ । ଦେବେ କହିଲେ କଥା ଯେହି

### ଦେବ ଉବାଚ

ଆମ୍ଭେ ଅତିଥି ହୋଇ ଯହୁଁ । ଆଶ୍ରମ ଶୁଭ ତୁମ୍ଭ ହେଉ ॥
ପିତୃମାନଙ୍କ କାମ ପୂର୍ଣ୍ଣ । କରଯେ ଯଧୋଚିତ କର୍ମ ॥
ଉତ୍ତମ ପୁତ୍ରଙ୍କର ଧର୍ମ । ଯେ ପିତୃଗଣ ଶୁଶ୍ରୂଷଣ ॥
ଗୃହସ୍ଥ ଜନଙ୍କର ଧର୍ମ । ନ ତୁଲ୍ୟ ବ୍ରହ୍ମଚାରୀ କର୍ମ ॥
ଆଚାର୍ଯ୍ୟ ବ୍ରହ୍ମାର ମୂରତି । ପିତା ପ୍ରତ୍ୟକ୍ଷେ ପ୍ରଜାପତି ॥
ଭ୍ରାତା ଯେ ମୂରତି ଇନ୍ଦ୍ରର । ମାତା ସାକ୍ଷାତେ ପୃଥିବୀର ॥
ଭଗ୍ନି ଯେ ଦୟାର ମୂରତି । ଧର୍ମ ମୂରତିଟି ଅତିଥି ॥
ଅଗ୍ନିର ମୂର୍ତ୍ତି ଅଭ୍ୟାଗତ । ଆତ୍ମାର ମୂର୍ତ୍ତି ସର୍ବଭୂତ ॥
ଶତୃ ସକାଶୁ ପରାଭବ । ଯେଣେ ପିତୃଙ୍କ ଆର୍ତ୍ତିଭାବ ॥
ତୁ ଏ କାରଣୁ ମୁନିବର । ତପସ୍ୟା ସାଧି ଏହାକର ॥
ଗୁରୁ ଉପାଧାୟ ବ୍ରାହ୍ମଣ । ବ୍ରହ୍ମିଷ୍ଠ ତୁମ୍ଭେ ଯେତେ ଗୁଣ ॥
ତୁମ୍ଭଙ୍କୁ କଲୁ ପୁରୋହିତ । ଶତ୍ରୁକୁ ଜିଣି ମୁ ତୁରିତ ॥

### ଶୁକ ଉବାଚ

ତାହାଙ୍କୁ ପୁରୋହିତ ପଣେ । ବରଣ କଲେ ଦେବ ଗଣେ ॥
ମୁନି ବିଶ୍ୱରୂପ ହସିଲେ । ଦେବତାମାନଙ୍କୁ ବୋଇଲେ ॥

### ବିଶ୍ୱରୂପ ଉବାଚ

ଭୋ ଦେବଗଣେ କହୁ ଶୁଣ । ତୁମ୍ଭେ ଯେ ଅଖିଳ କାରଣ ॥
ଆମ୍ଭେ ନିନ୍ଦିତ ଶୂଦ୍ର ଜନ । ଆମ୍ଭେଙ୍କୁ କିମ୍ପା ଆରାଧନ ॥
ହେ ଅଧିଶ୍ୱର ତୁମ୍ଭେମାନେ । ଦୁର୍ମତି ପ୍ରାୟେ ଆଚରଣେ ॥
କିମ୍ପାଇ ତୁଚ୍ଛ ବୁଦ୍ଧି କଲ । ଗୁରୁଙ୍କ ତହିଁ ଆଚରିଲ ॥
ତୁମ୍ଭମାନଙ୍କର ପ୍ରାର୍ଥିତ । ଆମ୍ଭର କରିବା ଉଚିତ ॥
ମନରେ ଯେତେ ଅପରାଧ । ସର୍ବ ସଂଶୟ ତୁମ୍ଭେ ଛେଦ ॥
ତୁମ୍ଭର ଯେତେ କଥାମାନ । ସାଧିବୁ ଶୁଣ ଦେବଗଣ ॥

### ବାଦରାୟଣ ଉବାଚ

ଏ ଅନନ୍ତରେ ବିଶ୍ୱରୂପ । ବରଣ ହୋଇ ପରିତାପ ॥
ଶ୍ରୀକୃଷ୍ଣ ବୋଲିଣ ସୁମରି । ପରମ ସମାଧିରେ କରି ॥
ଶୁକ୍ରର ବିଦ୍ୟାବଳୁଁ କରି । ଅସୁରଙ୍କର ଯେଉଁ ଶିରୀ ॥
ନିଷଯେଁ କରିଥିଲେ ବାସ । ଶୁଣ ରାଜନ ଇତିହାସ ॥
ବିଶ୍ୱରୂପରୁ ବିଶ୍ୱମାୟା । ଇନ୍ଦ୍ର ନିମନ୍ତେ ଯାଇ ତାହା ॥
ଆଣି ଇନ୍ଦ୍ରଙ୍କୁ ତାହା ଦେଲେ । ଯାହା ଅସୁରେ ରଖିଥିଲେ ॥
ସେ ବିଦ୍ୟା ପ୍ରଭାବରୁ ଇନ୍ଦ୍ର । ଜାଣିଲା ଦାନବଙ୍କ ବୃନ୍ଦ ॥
ଇନ୍ଦ୍ରକୁ ଦେଲେ ବିଦ୍ୟାସାର । ମହତ ବିଶ୍ୱରୂପ ଧର ॥
ଇନ୍ଦ୍ରର ଗୁରୁଦ୍ରୋହ ଦୋଷ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ପରମପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଇନ୍ଦ୍ରଅପରାଧ କଥନେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ରାଜ ଉବାଚ

ଶୁଣ ଭୋ ମୁନି ସାବଧାନେ । ଯେ ତୁମ୍ଭେ କହିଲ ବିଧାନେ ॥
ଯେଣେ ରକ୍ଷିତ ଇନ୍ଦ୍ର ହୋଇ । ସ୍ୱର୍ଗେ ରାଜ ଭୋଗ ଭୁଞ୍ଜଇ ॥

ଗଜ ତୁରଙ୍ଗ ରିପୁବଳେ । ଲୀଳା ମାତ୍ରକେ ଜିଣି ହେଳେ ।
ତ୍ରୈଲୋକ୍ୟ ଅଶେଷ ସମ୍ପଦେ । ଭୁଞ୍ଜୁ ଅଛଇ ଅପ୍ରମାଦେ ॥
ଗୋସ୍ୱାମୀ ମୋତେ ଯେବେ ଦୟା । ବିସ୍ତାରି କହିବାକ ଯେହା ॥
କେମନ୍ତ କର୍ମ୍ମ ନାରାୟଣ । ଇନ୍ଦ୍ରର ରକ୍ଷକ କାରଣ ॥
ଯେ କର୍ମ୍ମ ବଳେ ଶତ୍ରୁ ଜିଣି । ସ୍ୱର୍ଗେ ନିର୍ଭୟେ ବଜ୍ରପାଣି ॥

## ବାଦରାୟଣ ଉବାଚ

ଇନ୍ଦ୍ର ନିମନ୍ତେ ହୋଇ କୃତ । ପ୍ରସନ୍ନ ହୋଇ ପୁରୋହିତ ॥
ଯେ କର୍ମ ନାମ ନାରାୟଣ । କହିବା ସାବଧାନେ ଶୁଣ ॥

## ବିଶ୍ୱରୂପ ଉବାଚ

କର ଚରଣ ଜଳେ ଧୋଇ । ଗଣ୍ଡୁଷ ଉନ୍ମୁଖ ହୋଇ ॥
ମନ୍ତ୍ରେଣ କରି ଅଙ୍ଗନ୍ୟାସ । ମଉନ ଶୁଚି ହୋଇ ତୋଷ ॥
ଯେବଣ କର୍ମ୍ମେ ନାରାୟଣ । ତୋଷ ହୋଇବେ ତତକ୍ଷଣ ॥
ନିକଟ ଭୟ ଯେତେ ବେଳେ । ଚରଣ ଜାନୁ ବକ୍ଷସ୍ଥଳେ ॥
ଉଦର ହୃଦୟ ମୁଖରେ । ଓଁ କାର ଆଦି ଦେଇ ଶିରେ ॥
ଓଁ କାର ଆଦି ନାରାୟଣ । ଉଚ୍ଚାର କରିବ ତକ୍ଷଣ ॥
କରେ କରିଣ ଅଙ୍ଗନ୍ୟାସ । ଯେ ବିଦ୍ୟା ଅକ୍ଷର ଦ୍ୱାଦଶ ॥
ପ୍ରଣବ ଆଦି କରି ଯେତେ । କରିବ ଯ କାର ପର୍ଯ୍ୟନ୍ତେ ॥
ଅଙ୍ଗୁଳି ଅଙ୍ଗୁଷ୍ଠ ପଦରେ । ଯଥା କର୍ମ ଦେଇ ଅକ୍ଷରେ ॥
ହୃଦରେ ଦେଇଣ ଓଁ କାର । ମସ୍ତକେ ଦେବ ସେ ବି କାର ॥
ଷ କାର ଭୂରୁ ଯୁଗ ଦେଇ । ଣ କାର ଶିଖରେ ବସାଇ ॥
ବି କାର ନୟନ ମଧରେ । ନ କାର ସକଳ ସନ୍ଧିରେ ॥
ମ କାର କରିଣ ସ୍ମରଣ । ମନ୍ତ୍ର ସ୍ୱରୂପେ ହୋଇ ଜନ୍ମ ॥
ବିଷ୍ଣୁବେ ନମଃ ଉଚ୍ଚାରିବ । ଓଁ କାର ତାର ଆଦ୍ୟେ ଦେବ ॥
ପରମ ଆତ୍ମା ଏହି ମନ୍ତେ । ଧ୍ୟାନ କରିବ ଅବିରତେ ॥
ଷଟ ଶକତି ଉପଯୁକ୍ତ । ଅନାଦି ଦିବା ଶୁଦ୍ଧ ତତ୍ତ୍ୱ ॥
ଯେ ହରି ଗରୁଡ଼ ପୃଷ୍ଠରେ । ପାଦପଦ୍ମ ଦେଇଛି ଶିରେ ॥
ଯେ ଅଷ୍ଟ ବାହୁରେଣ କରି । ଚର୍ମ ଅସି ଗଦାକୁ ଧରି ॥
ଶଙ୍ଖ ପାଶ ଇକ୍ଷୁ ଚାପରେ । ରଖନ୍ତୁ ସେ ସର୍ବ କାଳରେ ॥
ଯେ ଜଳେ ମତ୍ସରୂପ ହୋଇ । ସେ ପ୍ରଭୁ ରକ୍ଷା କରୁ ଦେହୀ ॥
ଜଳ ଜନ୍ତୁଙ୍କ ସକାଶରୁ । ରଖିବେ ବରୁଣ ପାଶରୁ ॥
ମାୟା ବାମନ ରୂପ ଛଳେ । ସେ ରକ୍ଷାକରୁ ଅବହେଳେ ॥
ତ୍ରିବିକ୍ରମ ରଖୁ ଭୂମିରେ । ବିଶ୍ୱରୂପ ଯେ ଆକାଶରେ ॥
ବନ ସଂଗ୍ରାମ ସଂକଟରୁ । ଦୁର୍ଗରୁ ମୋତେ ସେ ଉଦ୍ଧରୁ ॥
ଅସୁର ଯୂଥର ଅରି । ସେ ନୃସିଂହ ମୋତେ ଉଦ୍ଧରି ॥

ଯାହାର ଉଚ୍ଚହାସ ଶୁଣି । କମ୍ପନ୍ତି ଦିଗ ଯେ ଧରଣୀ ॥
ଖସି ପଡ଼ଇ ଗର୍ଭମାନେ । ଯାହାର ହାସ୍ୟର ନିଃସ୍ୱନେ ॥
ପଥେ ରଖନ୍ତୁ ଯଜ୍ଞକଳ୍ପ । ଅଖିଳ ଧାରୀ ବିଶ୍ୱରୂପ ॥
ସ୍ୱଦନ୍ତେ ଅବନୀ ଯେ ଧରି । ସେ ବରାହ ମୋତେ ଉଦ୍ଧରି ॥
ତ୍ରିକୂଟେ ଯେ ରାମ ନିବାସ । ଲକ୍ଷ୍ମଣ ଅଛି ଯାର ପାଶ ॥
ଭରତ ଅଗ୍ରଜଟି ଯେହୁ । ସେ ମୋତେ ସଦାରକ୍ଷା ହେଉ ॥
ଅଖିଳ ନାନା ପ୍ରମାଦରୁ । ସେ ନାରାୟଣ ରକ୍ଷାକରୁ ॥
ନରଲୋକ ଶରୀରୁ ମୋତେ । ରକ୍ଷା କରିବେ ଜଗନ୍ନାଥେ ॥
ହୃତାପ ମାନ ହୋଇ ଯେତେ । ରଖିବେ ଜଗନ୍ନାଥ ମୋତେ ॥
କପିଳ କର୍ମର ଈଶ୍ୱର । କର୍ମ ବନ୍ଧରୁ ରକ୍ଷାକର ॥
ଅନଙ୍ଗ ପୀଡ଼ାରୁ ଜଗତେ । ସନକୁମାର ରଖୁ ମୋତେ ॥
ଦେବତା ଅନାଦର ପଥେ । ରଖନ୍ତୁ ହୟଗ୍ରୀବ ମୋତେ ॥
ଅନ୍ୟ ଦେବତା ଆରାଧନୁ । ନାରଦ ରଖନ୍ତୁ ମୋ ତନୁ ॥
କର୍ମଠ ରୂପୀ ଚକ୍ରଧର । ଅଶେଷ ପାପୁଁ ତ୍ରାହିକର ॥
ଅପଥ୍ୟ ଭୋଜନରୁ ମୋର । ଯେ ବ୍ୟାଧି ଜନ୍ମେ ଅତିଘୋର
ତାହା ନାଶିବେ ଧନ୍ୱନ୍ତରୀ । ଯେ ପଦ ଶରୀର ବିସ୍ତାରି ॥
ଦୁର୍ବାଦ ଜନମ ମୋହର । ରକ୍ଷା କରିବେ ଯଜ୍ଞଧର ॥
ଯେ କ୍ରୋଧବଶ ବଳୀୟାର । ତହୁଁ ରଖିବେ ଅହୀଶ୍ୱର ॥
ମୋହର ମନବୁଦ୍ଧି ବେନି । ରଖନ୍ତୁ ବ୍ୟାସ ମହାମୁନି ॥
ପ୍ରମାଦୁ ପାଷାଣ୍ଡ ନିକର । ତହିଁ ରଖିବେ ମୁନିବର ॥
ଧର୍ମ ପାଳନେ ଅବତାର । ଯେ ପ୍ରଭୁ କଳ୍କି ରୂପଧର ॥
କଳିକାଳ ପାଶରୁ ମୋତେ । ସେ ପ୍ରଭୁ ରଖିବେ ଯୁକତେ ॥
କେଶବ ଗଦାଧରି କରେ । ମୋତେ ରଖିବେ ପ୍ରଭାତରେ ॥
ଶକତିଧର ପ୍ରହାରରେ । ରଖିବେ ନାରାୟଣ ମୋରେ ॥
ରଖନ୍ତୁ ସାୟଂକାଳେ ମୋତେ । ତ୍ରିଧାମ ମାଧବ ତୁରିତେ ॥
ଅପରାହ୍ନରେ ମଧୁହାରୀ । ରଖିବେ କରେ ଧନୁ ଧରି ॥
ଦୋଷେ ରଖିବେ ହୃଷୀକେଶ । ଅଶେଷ ବ୍ରହ୍ମାଣ୍ଡର ଈଶ ॥
ଅନ୍ଧାର ରଜନୀ ସହିତେ । ରଖିବେ ପଦ୍ମନାଭ ମୋତେ ॥
ଶ୍ରୀବତ୍ସ ଧାମ ତାର ରାତ୍ରେ । ଖଡ୍‌ଗ ଆୟୁଧ ପ୍ରଭାତେ ॥
ଅନୁସନ୍ଧ୍ୟାରେ ଦାମୋଦର । ରାତ୍ର ପ୍ରଭାତେ ବିଶ୍ୱେଶ୍ୱର ॥
କାଳ ମୂରତି ଭଗବାନ । ରଖନ୍ତୁ ମୋହର ଜୀବନ ॥
ଯାହାର ତେଜ ଏ ସଂସାରେ । ଅନଳ ତୁଲ୍ଯ ପ୍ରାୟେ କରେ ॥
କୃଷ୍ଣରେ ପ୍ରଯୋଜିତ ହୋଇ । ନିର୍ଭୟେ ଜଗତ ଭ୍ରମଇ ॥
ସେ ଚକ୍ରଧର ପାଦେ ମୋର । ନିତ୍ୟେ କରିବି ନମସ୍କାର ॥
ଦଗଧ ମୋର ଐରି ସୈନ୍ୟ । ବହ୍ନି ଯେସନେ ଶୁଷ୍କ ତୃଣ ॥

ଗଦା ଅଶନି ତୁମ୍ଭେ ଦୁଇ । ମୋର ବିପକ୍ଷ ଦେହେ ଯାଇ ॥
ସ୍ଫୁଲିଙ୍ଗେ ଚୂର୍ଣ୍ଣକରି ହିଆ । ତୁମ୍ଭେ ଅଖିଳ ନାଥ ପ୍ରିୟା ॥
କୁଷ୍ମାଣ୍ଡ ବିନାୟକ ଯକ୍ଷ । ଗୁହ୍ୟକ ଭୂତ ଗ୍ରହ ରକ୍ଷ ॥
ପିଶାଚ ପ୍ରେତ ମାତୃଗଣ । ଶୀଘ୍ରେ କରନ୍ତୁ ପ୍ରମଦ୍ଦନ ॥
ଏ ପଞ୍ଚଜନ ଶଙ୍ଖସାର । କୃଷ୍ଣେ ପୂରିତ ହୋଇ ମୋର ॥
ଶତ୍ରୁର ହୃଦୟ କମ୍ପାଅ । ନିଃସ୍ୱନେ ମହାଭୟ ଦିଅ ॥
ତୁମ୍ଭ ଖଡ୍‌ଗ ତୀକ୍ଷ୍ଣ ଧାର । ଅଶେଷ ରିପୁବଳ ମୋର ॥
କୃଷ୍ଣରେ ହୋଇ ପଯୋଜିତ । ସକଳ ରିପୁ କର ଗ୍ରସ୍ତ ॥
ହେ ଚର୍ମ ଶତ ଚନ୍ଦ୍ର ଶୁଣ । ଯେତେ ଅଛନ୍ତି ଐରି ଗଣ ॥
ଏହାଙ୍କ ଲୋଚନ ଆଚ୍ଛାଦ । ଯେଣେ ହୋଇବେ ଦୃଷ୍ଟି ଭେଦ
ଯେ ମୋର ଭୟ ଜାତ ହୋଇ । ଗ୍ରହ ମନୁଷ୍ୟ କେତୁ ତହିଁ ॥
ଯେ ସରୀସୃପ ଭୂତ ଆଦି । ଦକ୍ଷ ପିଶାଚ ମନ୍ଦବାଦୀ ॥
ଶ୍ରୀକୃଷ୍ଣ ରୂପ ଆଶ୍ରେ ନାମ । ଯେଣୁ ମୁଁ କଲି ସଂକୀର୍ତ୍ତନ ॥
ତାର ପ୍ରସାଦୁଁ ଜନ୍ତୁ କ୍ଷୟ । ଯେତେ ଯେ ସର୍ବେ ଦୃଷ୍ଟାଶ୍ରୟ ॥
ଯେ ମୋର ଶ୍ରେୟ ଆଚରଣ । ହିଂସା କରନ୍ତି ଦୁଷ୍ଟଗଣ ॥
ଗରୁଡ଼ ଭଗବାନ ମୋତେ । ରକ୍ଷା କରିବେ ଅବିରତେ ॥
ରଖିବେ ବିଶ୍ୱକ୍‌ସେନ ହରି । ଅଶେଷ କଷ୍ଟୁ ମୋତେ ତାରି ॥
ରୂପ ଆୟୁଧ କୃଷ୍ଣ ନାମ । ଆପଦ କରିବେ ମୋଚନ ॥
ପ୍ରଭୁ ନିକଟେ ଯେତେ ଗଣ । ଅପରେ ଅଛନ୍ତି ଭୂଷଣ ॥
ବୁଦ୍ଧି ଇନ୍ଦ୍ରିୟ ମୋର ମନ । ସେ ସର୍ବ ରଖନ୍ତୁ ମୋ ପ୍ରାଣ ॥
ଯେମନ୍ତେ ପ୍ରଭୁ ଭଗବାନ । ସତ୍ୟ ଅସତ୍ୟର କାରଣ ॥
ଏହି ସତ୍ୟରୁ ମୋର ସର୍ବ । ନଷ୍ଟ ହୁଅନ୍ତୁ ଉପଦ୍ରବ ॥
ଆତ୍ମା ଅଶେଷ ପ୍ରାଣୀଙ୍କର । ସକଳ କାର୍ଯ୍ୟରୁ ବାହାର ॥
ଭୂଷଣ ଆୟୁଧ ସ୍ୱନାମ । ଧରନ୍ତି ସ୍ୱ ମାୟାରେ ଭିନ୍ନ ॥
ଯେମନ୍ତେ ପରମ ଈଶ୍ୱର । ରକ୍ଷା କରନ୍ତୁ ମୋ ଶରୀର ॥
ସର୍ବଜ୍ଞ ଭଗବାନ ହରି । ସଦା ସର୍ବତ୍ର ରୂପ ଧରି ॥
ଦିଗ ବିଦିଗ ଅଧୋ ଉର୍ଦ୍ଧ୍ୱ । ରଖନ୍ତୁ ନରସିଂହ ଦେବ ॥
ସ୍ୱ ଆତ୍ମା ନରଲୋକ ତ୍ରାସି । ସ୍ୱତେଜେ ସର୍ବତେଜ ଧ୍ୱଂସି ॥
ଭୋ ଇନ୍ଦ୍ର ଶୁଣ ମୋ ବଚନ । କହିଲୁ କର୍ମ ନାରାୟଣ ॥
ଅସୁର ଯୂଥପତିମାନ । ଯେ ବ୍ରହ୍ମ ରୂପର କାରଣ ॥
ଏ ବିଦ୍ୟା ଯାର ତହିଁ ଥାଇ । ଯେ ଯାକୁ ଦୃଷ୍ଟିରେ ଦେଖଇ ॥
ପାଦେ ମିଳିତ ଯେ ଇଚ୍ଛଇ । ତାହାର ଆଉ ଭୟ ନାହିଁ ॥
ଏ ବିଦ୍ୟା ଯେହୁ ଧରିଥାଇ । ଭୀତି ତାହାର କାହିଁ ନାହିଁ ॥
ରାଜା ଚସ୍କର ଗ୍ରହ ଆଦି । ଯେ ଦୁଷ୍ଟଗଣ ନାନା ବ୍ୟାଧି ॥
ଏ ବିଦ୍ୟା ପୂର୍ବେ ଦ୍ୱିଜ ଏକ । ଧରିଣ ଥିଲା କଉଶିକ ॥
ମରୁଧ୍ୱନନ ଦେଶ ସେହି । ଯୋଗ ଧାରଣେ ନିଜ ଦେହୀ ॥
ତେଜିଲା ତହିଁ ଦ୍ୱିଜବର । ଶୁଣ କହିବା ସୁନାଶିର ॥
ଗନ୍ଧର୍ବ ପତି ଏକ ଦିନେ । ତାହାର ଉପରେ ବିମାନେ ॥
ଯାଉଣ ଥିଲା ଚିତ୍ରରଥ । ଅମର କନ୍ୟାରେ ବେଷ୍ଟିତ ॥
ଯହିଁ ବ୍ରାହ୍ମଣ ମରିଥିଲା । ତାହାର ଉର୍ଦ୍ଧ୍ୱେ ଯହୁଁ ଗଲା ॥
ଗଗନୁ ପଡ଼ିଲା ତକ୍ଷଣେ । ବିମାନ ଗଲା ତାର କେଣେ ॥
ପଡ଼ିଲା ଅଧୋମୁଖ ହୋଇ । ସଭୟେ ଚକିତେ ସେ ଚାହିଁ ॥
ବାଳ ଖିଲ୍ୟର ବାକ୍ୟ ଶୁଣି । ତକ୍ଷଣେ ବିପ୍ର ଅସ୍ଥି ଆଣି ॥
ଶୀଘ୍ରେଣ କଲାକ ପ୍ରାସନ । ସରସ୍ୱତୀରେ କଲା ସ୍ନାନ ॥
ପୁଣି ବିମାନ ଆରୋହିଲା । ସୁଖେ ସେ ନିଜପୁର ଗଲା ॥

## ଶ୍ରୀ ଶୁକ ଉବାଚ

ଯେ ଏହା ଶ୍ରବଣେ ଶୁଣି । ଆଦର କରି ଧରେ ପ୍ରାଣୀ ॥
ସେ ସର୍ବ ପାପରୁ ବାହାର । ସର୍ବେ କରନ୍ତି ନମସ୍କାର ॥
ଇନ୍ଦ୍ର ବିଶ୍ୱରୂପରୁ ତହିଁ । ଏ ମହା ବିଦ୍ୟା ଶିକ୍ଷା ପାଇ ॥
ସଂଗ୍ରାମେ ଅସୁର ଜିଣିଲେ । ତ୍ରୈଲୋକ୍ୟ ଲକ୍ଷ୍ମୀ ଭୋଗ କଲେ
ବୋଲଇ ଜଗନ୍ନାଥ ଦ୍ୱିଜ । ଗୋବିନ୍ଦ ନାମ ନିତ୍ୟେ ଭଜ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ନାରାୟଣ ଧର୍ମୋଽପଦେଶ କଥନେ*
*ନାମ ଅଷ୍ଟମୋଽଧ୍ୟାୟଃ*

## ନବମ ଅଧ୍ୟାୟ

## ବାଦରାୟଣ ଉବାଚ

ଶୁଣ ପରୀକ୍ଷ ନୃପବର । କୃଷ୍ଣ ମହିମା ଅଗୋଚର ॥
ତ୍ରିଶିର ହେଲା ନୃପବର । ତକ୍ଷଣେ ସେ ବିଶ୍ୱରୂପର ॥
ଅନ୍ନାଦି ସୋମ ପ୍ରିୟ ତାର । ଆସ୍ତି ପଥ ନାମ ଅପର ॥
ବେଦମାନଙ୍କୁ ତହୁଁ ଆଣି । ଯଜ୍ଞର ଭାଗ ନୃପମଣି ॥
ଯଦ୍ୟପି ଦେବେ ପିତା ତାର । ତାହାକୁ କରି ଅନାଦର ॥
ଦେଲା ଅସୁର ମାନଙ୍କରେ । ଭୋଗକୁ ଆଣି ପରୋକ୍ଷରେ ॥
ମାତୃ ପକ୍ଷରେ ସ୍ନେହ କରି । ଏମନ୍ତ କର୍ମ ସେ ଆଚରି ॥
ଏମନ୍ତେ ଦେବଙ୍କ ହେଳଣ । ଦେଖି ତାହାର ମଘବାନ ॥
ଭୟରେ ହୋଇ ଖରତର । ଦେଖି ଛେଦିଲା ତାର ଶିର ॥
ତାର ଯେ ସୋମ ପ୍ରିୟ ଆଦି । ତୃତୀୟ ଶିର ସେ ପ୍ରସିଦ୍ଧି ॥
କର ଅଞ୍ଜଳି ପ୍ରସାରିଣ । ବ୍ରହ୍ମହତ୍ୟା କଲେ ଗ୍ରହଣ ॥
ଆତ୍ମାର ବିଶୁଦ୍ଧ ନିମନ୍ତେ । ବିଭାଗ କରି ଏହିମତେ ॥

ସ୍ତିରୀ ଭୂଜଙ୍କ ଦ୍ରୁମଠାରେ । ବିଶେଷେ ଏମନ୍ତ ପ୍ରକାରେ ॥
ଭୂମି ଘେନିଲା ଭାଗ ଚାରି । ଖ୍ୟାତ ପୂରଣ ବରେ କରି ॥
ବ୍ରହ୍ମହତ୍ୟା ଯେହି ପ୍ରକାରେ । ଅଦ୍ୟାପି ଦିଶଇ ଭୂମିରେ ॥
ଦ୍ରୁମ ଘେନିଲେ ଭାଗ ଭାଗ । ଛେଦନ କଲେ ମହୀ ଭୋଗ ॥
ନିର୍ଯ୍ୟାସ ରୂପେ ଏହାଙ୍କର । ପାପ ଦିଶଇ ନୃପବର ॥
କାମ ବଶରେ ସ୍ତିରୀଜନ । ସମ୍ଭୋଗ କଲେ ପ୍ରତିଦିନ ॥
ରଜ ରୂପରେ ପ୍ରତି ମାସ । ଏବେହେଁ ପାପେ ହୋନ୍ତି ଦୃଶ୍ୟ ॥
ଦିବ୍ୟଭୂତ ବରରେ ମାଳ । ଘେନିଲା ଚାରିଭାଗ ଜଳ ॥
ସେ ପାପ ବୁଦ୍ ବୁଦ୍ ଫେନରେ । ଅଦ୍ୟାପି ଦିଶଇ ସଂସାରେ ॥
ଏମନ୍ତ ପ୍ରକାରେଣ ନୃପ । ହରି କଳ୍ପିତ ହୋଇ ପାପ ॥
ଏ ଅନନ୍ତରେ ସେ ତ୍ୱଷ୍ଟାର । ଯେଣୁ ହତ ହେଲା କୁମର ॥
ପୁତ୍ର ଶୋକରେ ଦୁଃଖୀ ହୋଇ । ଇନ୍ଦ୍ରର ଶତ୍ରୁ ବୃଦ୍ଧି ପାଇଁ ॥
ହୋମ ଆରମ୍ଭକୁ ବିଚାରି । ବୋଲନ୍ତି ଅତି କ୍ରୋଧ କରି ॥
ଇନ୍ଦ୍ରର ଶତ୍ରୁ ହୋଇ ଜାତ । ବେଗେ ଇନ୍ଦ୍ରକୁ କରି ହତ ॥
ଏମନ୍ତେ ବୋଲୁ ସେ ବଚନ । ଉଠିଲା ଘୋର ଦରଶନ ॥
ଯୁଗାନ୍ତ କାଳରେ ଯେମନ୍ତ । ପ୍ରାଣୀକି ଯେସନେ କୃତାନ୍ତ ॥
ଦିନକୁ ଦିନ ଅତି ଘୋର । ବଢ଼ଇ ବିଶ୍ୱରୂପ ତାର ॥
ଦଗଧ ଗିରି ପ୍ରାୟେ ହୋଇ । କାନ୍ତି ତାହାର ବିରାଜଇ ॥
ତପତ ତାମ୍ର ଶିଖା ଯେହ୍ନେ । କେଶତା ଦିଶଇ ତେସନେ ॥
ମଧ୍ୟାହ୍ନ ରବି ପ୍ରାୟେ ହୋଇ । ବେନି ଲୋଚନ ବିରାଜଇ ॥
ଅନଳ ତେଜ ପ୍ରାୟେ ତାର । ଏମନ୍ତ ଶୂଳ ଧରି କର ॥
ବୁଲାଇ ଅତି ଖରତର । ଶବଦ କରେ ମହାଘୋର ॥
ନୃତ୍ୟ କରଇ ମତ୍ତ ହୋଇ । ପାଦେ କମ୍ପଇ ମହାମହୀ ॥
କରି ଗଭୀର ସେ ବଦନ । ତେଜେଁ ପିଉଛି ଯେହ୍ନେ ଶୂନ୍ୟ ॥
ଜିହ୍ୱା ବୁଲାଉଛି ତେସନ । ଗିଳିବ ଯେହ୍ନେ ତ୍ରିଭୁବନ ॥
ଦନ୍ତ ଅତି ରୌଦ୍ର ଦିଶଇ । ପୁଣିହିଁ ପୁଣିହିଁ ହସଇ ॥
ତରସ୍ତ ହୋଇ ସର୍ବଜନ । ଗଲେ ସେ ଘେନିଣ ଜୀବନ ॥
ତ୍ୱଷ୍ଟାର ପୁତ୍ର ଯେ ଯେ ପାପ । ଲୋକ ପାଇଲେ ବହୁ ତାପ ॥
ଏ ଯେ ଦାରୁଣ ବୃତ୍ରାସୁର । ଯେ ରୂପେ ଜନ୍ମୁଟି ତାହାର ॥
ଇନ୍ଦ୍ର ଆତ୍ମାଗଣ ସହିତେ । ମିଳିଲେ ତାହାର ଅଗ୍ରତେ ॥
ଯେ ଯାହା ଶସ୍ତ୍ର ଧରି କରେ । ପିଟିଲେ ବୃତ୍ରର ଉପରେ ॥
ଶସ୍ତ୍ରଟି ଯେତେ ଦେବଙ୍କର । ସବୁ ଗିଳିଲା ସେ ଅସୁର ॥
ଏ ଅନନ୍ତରେ ଦେବଗଣ । ବିସ୍ମୟ ହୋଇ ହତଜ୍ଞାନ ॥
କଷ୍ଟରେ ମନ ଥିର କଲେ । ମହାପୁରୁଷ ଆରାଧିଲେ ॥

## ଦେବ ଉବାଚ

ପବନ ଆକାଶ ଯେ ଅଗ୍ନି । ଜଳର ସହିତେ ଅବନୀ ॥
ବ୍ରହ୍ମାଦି କରି ଆମ୍ଭେମାନେ । ଉଦ୍‌ବେଗ ପାଉଅଛୁ ମନେ ॥
ଯାହାକୁ ବଳି ଆମ୍ଭେମାନେ । ଦେଇଣ ସେବୁ ଅନୁକ୍ଷଣେ ॥
ଯେ କାଳ ଅନ୍ତକ ଯେ ଦେହୀ । ସେ ଯାହାଠାରୁ ଭୟେ ପାଇ ॥
ସେ ପ୍ରଭୁ ଆମ୍ଭଙ୍କୁ ଶରଣ । ହୁଅନ୍ତୁ ଅଖିଳ କାରଣ ॥
ଅବିସ୍ମିତ ଯେ ପୂର୍ଣ୍ଣକାମ । ପ୍ରଶାନ୍ତ ସର୍ବଭୂତେ ସମ ॥
ଏମନ୍ତ ଯେ ପରମେଶ୍ୱର । ତା ବିନୁ ସଙ୍କଟରୁ ପାର ॥
ଯେ ଜନ ଇଚ୍ଛଇ ଭ୍ରମରେ । ବାଳକ ବୁଦ୍ଧି ବୋଲି ତାରେ ॥
ଶ୍ୱାନ ପୁଚ୍ଛକୁ ଧରି କରେ । ଅଜ୍ଞାନୀ ଯେହ୍ନେ ସିନ୍ଧୁତରେ ॥
ନଉକା ରୂପେ ଯେ ସଂସାର । ଶୃଙ୍ଗରେ ବାନ୍ଧିଣ ଯାହାର ॥
ମନୁ ଯେମନ୍ତେ ଦୁର୍ଗ ତରି । ଯାହାର ପ୍ରସାଦରୁ କରି ॥
ଏମନ୍ତ ଯେହୁ ମହାବାହୁ । ଆମ୍ଭଙ୍କୁ ବତ୍ରାସୁର ତହୁଁ ॥
ଦୁରନ୍ତ ପାପ ଯେ ଦାରୁଣ । ତହୁଁ ରଖନ୍ତୁ ନାରାୟଣ ॥
ଯେ ଏକ ଈଶ୍ୱର ଅଟଇ । ମାୟାରେ ଆମ୍ଭଙ୍କୁ ସୃଜଇ ॥
ଯାର ପ୍ରସାଦୁ ଆମ୍ଭେମାନେ । କରିଛୁ ଜଗତ ପାଳଣେ ॥
ଯାହାର ମହିମା ପ୍ରସିଦ୍ଧି । ଆମ୍ଭେ ନ ଜାଣୁ ମନ୍ଦ ବୁଦ୍ଧି ॥
ଆମ୍ଭେ ଈଶ୍ୱର ବୋଲି ମାନି । ମୋହରେ ଯେସନେ ଅଜ୍ଞାନୀ ॥
ଶତ୍ରୁଗଣରୁ ଆମ୍ଭେମାନେ । ଦୁଃଖ ପାଉଛୁ ଅନୁକ୍ଷଣେ ॥
ଋଷି ମନୁଷ୍ୟ ପଶୁ ଆଦି । ସଂସାରେ ଯେତେକ ପ୍ରସିଦ୍ଧି ॥
ଆମ୍ଭେ ଯେ ସର୍ବେ ଅରକ୍ଷିତ । ରକ୍ଷା କରନ୍ତୁ ସେ ଅଚ୍ୟୁତ ॥
ସେ ପ୍ରଭୁଧରି ଅବତାର । ଖଣ୍ଡିବେ ଦୁଃଖକୁ ଆମ୍ଭର ॥
ସେ ଯୁଗେ ଯୁଗେ ରକ୍ଷାକରୁ । ଯାର ମହିମା ମହାମେରୁ ॥
ପ୍ରଧାନ ପରମ ପୁରୁଷ । ଅଖିଳ ସଂସାରର ଈଶ ॥
ଅଖିଳ ଜନର ଶରଣ । ଏମନ୍ତ ଯେଉଁ ନାରାୟଣ ॥
ଆମ୍ଭେ ତାହାଙ୍କର ଶରଣ । ଆମ୍ଭଙ୍କୁ କରନ୍ତୁ କଲ୍ୟାଣ ॥

## ଋଷି ଉବାଚ

ଦେବଙ୍କ ସ୍ତୁତି ଏ ବଚନ । ଶୁଣିଣ ପ୍ରଭୁ ଭଗବାନ ॥
ପୂର୍ବ ଦିଗରେ ହେ ରାଜନ । ହୋଇଲେ ଆସି ସେ ପ୍ରସନ୍ନ ॥
ଶଙ୍ଖ ଚକ୍ର ଗଦା କମଳ । ଧରିଣ ପ୍ରଭୁ ଆଦିମୂଳ ॥
ଆତ୍ମାତୁଲ୍ୟ ଷୋଡଶ ଜନ । ସେବୁ ଅଛନ୍ତି ଅନୁକ୍ଷଣ ॥
ଶ୍ରୀବତ୍ସ କଉସ୍ତୁଭ ଚିହ୍ନ । ପୂର୍ଣ୍ଣ ହୋଇଣ ସର୍ବଗୁଣ ॥
ଶରଦ କମଳ ଲୋଚନ । ଦେବେ ଦେଖିଣ ହୃଷ୍ଟମନ ॥
ଇନ୍ଦ୍ରାଦି ଯେତେ ଦେବ ବଳେ । ପ୍ରଭୁଙ୍କୁ ନମିଲେ ସକଳେ ॥
ଦଣ୍ଡବତ ପ୍ରାୟେ ରାଜନ । ସ୍ତୁତି କରନ୍ତି ସେ ବଚନ ॥

## ଦେବ ଉବାଚ

ତୁମ୍ଭେ ବିଳେ ସର୍ବ ଯଜ୍ଞର । ତୁମ୍ଭଙ୍କୁ କରୁ ନମସ୍କାର ॥
ସକଳ ବୟୋଽଧି ତୁମ୍ଭେ । ତୁମ୍ଭ ଚରଣେ ବନ୍ଦୁ ଆମ୍ଭେ ॥
ଅଖିଳ ଈଶ୍ୱର ଯେ ତୁହି । ନମସ୍ତେ ପ୍ରଭୁ ଭାବଗ୍ରାହୀ ॥
ତୁ ପୁରୁହୂତ ଶ୍ରେଷ୍ଠପର । ନମସ୍ତେ ପ୍ରଭୁ ଚକ୍ରଧର ॥
ବ୍ୟାପକ ଆଦିତ୍ୟ ବ୍ରହ୍ମର । ତୋ ଗତି କ୍ରୀଡ଼ାୟେ ବିହାର ॥
ଏହା ସଂଖ୍ୟା କରିବା ପାଇଁ । ବିଧାତା ସମର୍ଥ ନୋହଇ ॥
ହେ ଭଗବାନ ବାସୁଦେବ । ନାରାୟଣ ମହାନୁଭବ ॥
ଆଦି ପୁରୁଷ ସର୍ବେଶ୍ୱର । କେବଳ ଜଗତ ଆଧାର ॥
ପରମହଂସ ଲକ୍ଷ୍ମୀକାନ୍ତ । ଜଗଜ୍ଜୀବନ ଜଗନ୍ନାଥ ॥
ଭୋ ନାଥ ପରମ ମଙ୍ଗଳ । ପରମ ମଙ୍ଗଳର ମୂଳ ॥
ହେ ସର୍ବ ପରମ କାରଣ । ଅଖିଳ ଭୂତଙ୍କ ଭାବନ ॥
ପରମ ଯୋଗ ସମାଧିରେ । ଭଜନ ବିବିଧ ପ୍ରକାରେ ॥
ପରମହଂସ ମୁନିଗଣେ । ସେବନ୍ତି ଯାହାର ଚରଣେ ॥
ପରମହଂସ ଧର୍ମ କରି । ଅଜ୍ଞାନ ଦୂରେ ପରିହରି ॥
ଯେମନ୍ତେ ଲୋକର ଆତ୍ମାରେ । ପ୍ରଭାବ ଯାହାରେ ବିହରେ ॥
ଏମନ୍ତ ପ୍ରଭୁ ତୁ ଈଶ୍ୱର । ନମସ୍ତେ ବ୍ରହ୍ମାଣ୍ଡ ଠାକୁର ॥
ଏ ତୋର ମହିମା ବେହାର । ବ୍ରହ୍ମାରେ ନୋହଇ ଗୋଚର ॥
ଯେ ମାୟା ଅଖିଳ ସଂସାର । ଭୋ ଦେବ ଭିଆଣ ତୁମ୍ଭର ॥
ତ୍ରିଗୁଣ ଘେନି ପ୍ରଭୁ ତୁହି । ତ୍ରୈଲୋକ୍ୟ ସମ୍ଭାଳୁ ତୁ ନେଇ ॥
ଭୋଦେବ ଏ ମାୟା ସଂସାରେ । ତ୍ରିଗୁଣେ ଜଡ଼ି ଯେଉଁ ନରେ ॥
ପର ତନ୍ତରେ ବଶ ହୋଇ । ଶୁଭାଶୁଭ କର୍ମ କରଇ ॥
ତାହାର ଶୁଭାଶୁଭ ଫଳ । ତୁମ୍ଭର ତହୁଁ ଆଦିମୂଳ ॥
ଭୋ ନାଥ ତୁମ୍ଭେ ଆତ୍ମାରାମ । ସକଳ କାର୍ଯ୍ୟେ ଉପଶମ ॥
ତୁ ସର୍ବ ବସ୍ତୁରୁ ବାହାର । ଏମନ୍ତ ନିତ୍ୟଟି ତୁମ୍ଭର ॥
ତୋର ବିରୋଧ ନାହିଁ ପୁଣ । ଅପରୀକ୍ଷିତ ତୋର ଗୁଣ ॥
ସଂଖ୍ୟା ନୋହଇ ତୋ ମହିମା । ତୋତେ ବା କେ କରିବ ସୀମା ॥
ବିକଳ୍ପ ବିତର୍କ ବିଚାର । ପ୍ରମାଣ ନ କରେ ଯାହାର ॥
ନାନା ବିଚାର ଶାସ୍ତ୍ର ଆଦି । ସଂସାରେ ଯେତେକ ପ୍ରସିଦ୍ଧି ॥
ଯେହା ବିଚାରି ସାଧୁଜନେ । ଚିନ୍ତନ୍ତି ତୋତେ ଦିବ୍ୟଜ୍ଞାନେ ॥
କ୍ଷଣକେ ମତି ତାହାଙ୍କର । ଭ୍ରମ କରାଉ ଚକ୍ରଧର ॥
ସକଳ ମାୟାମୟ ହୋଉ । ନଟର ପ୍ରାୟେ ତୁ ଦେଖାଉ ॥
ଯଦ୍ୟପି ଏକ ରୂପ ହୁଅ । ନାମ ରୂପକୁ ତୁମ୍ଭେ ବହ ॥
ବିଷମ ମତି ତାହାଙ୍କର । ପ୍ରବେଶ ହୋଇଛି ମନର ॥
ରଜ୍ଜୁରେ ସର୍ପ ବୁଦ୍ଧି ଯେହ୍ନେ । ଯେକା ତୁ ଦିଶୁ ଭିନ୍ନେ ଭିନ୍ନେ ॥
ବିଚାରେ ଯେକ ବସ୍ତୁ ତୁହି । ସର୍ବ ଈଶ୍ୱର ତୁ ଗୋସାଇଁ ॥
ସକଳ ଜଗତ କାରଣ । ଶୋଭା ପାଉଛି ସର୍ବଗୁଣ ॥
ପ୍ରତ୍ୟକ୍ଷେ ନାନା ରୂପ ଧରି । ଲକ୍ଷିତ ହେଉ ନରହରି ॥
ତୁ ଏକ ପରମ ପୁରୁଷ । ସକଳ ଠାରୁ ସର୍ବଶେଷ ॥
ଭୋ ନାଥ ମହିମା ତୋହର । ଅମୃତ ରସର ସାଗର ॥
ସେ ସ୍ୱାଦୁ ପାନ କରି ମନେ । ଯେକାନ୍ତ ଭଗବତ ଜନେ ॥
ସେ ନ ଜାଣନ୍ତି ଦୃଷ୍ଟି ଶ୍ରୁତ । ସ୍ଥିର ଚିତ୍ତରେ ଅବିରତ ॥
ବିଷୟ ସୁଖ ଲେଶ ଛାଡ଼ି । ନିତ୍ୟେ ତୋ ରସେ ଥାନ୍ତି ବୁଡ଼ି ॥
ସର୍ବାତ୍ମା ସର୍ବଭୂତ ପ୍ରିୟ । ଭଗବାନ ସ୍ୱରୂପ ହୁଅ ॥
ଯେ ସର୍ବ ଗୁଣେ ପୂର୍ଣ୍ଣ ହୋଇ । କେ ତୋତେ ଜାଣୁ ଭାବଗ୍ରାହୀ ॥
ଅନବରତେ ସ୍ଥିର ମନ । ତୋ ପାଦେ କରି ନିବେଦନ ॥
ହେ ମଧୁସୂଦନ ଈଶ୍ୱର । ଆତ୍ମା କୁଶଳ ସାଧୁଙ୍କର ॥
କମଳ ଚରଣ ତୁମ୍ଭର । ସେବୁ ଅଛନ୍ତି ନିରନ୍ତର ॥
ଯେ ପାଦ ପଙ୍କଜର ଧ୍ୟାନ । ସଂସାରେ ଗତାଗତ ଜନ ॥
ନୋହଇ ଯାହାର ପ୍ରସାଦେ । ଗତି ଲଭଇ ଅପ୍ରମାଦେ ॥
ତ୍ରିଭୁବନ ପ୍ରଭୁ ଭବନ । ହେ ତ୍ରିବିକ୍ରମ ତ୍ରିଲୋଚନ ॥
ତିନିଲୋକର ମନୋହର । ଅନୁଭବ ରୂପ ଯାହାର ॥
ତୁମ୍ଭ ପ୍ରକୃତିରୁ ଉଦିତ । ଏମନ୍ତେ ଯେତେକ ଦଇତ ॥
ଏହାର କର୍ମ ଭାଗ୍ୟବଳ । ଶାନ୍ତି କରିବା ଆଦିମୂଳ ॥
ଆତ୍ମ ମାୟାରେ ସୁର ନର । ମୃଗ ସହିତେ ଜଳଚର ॥
ଏ ଆଦି ଯେତେକ ଅସୁର । ଯଥା ଅପ୍ରାଧେ ଦଣ୍ଡକର ॥
ଏମନ୍ତ ତୁମ୍ଭେ ଯେ ଈଶ୍ୱର । ବୃତ୍ର ଅସୁରକୁ ସଂହାର ॥
କହିଲୁ ପ୍ରଭୁ ଭାବଗ୍ରାହୀ । ଯେବେ ତୁମ୍ଭର ଇଚ୍ଛା ହୋଇ ॥
ତୋର ତନୟ ଆମ୍ଭେ ହୋଇ । ଭୋ ନାଥ ଆମ୍ଭ ପିତା ତୁହି ॥
ତୋହର ଚରଣ ନଳିନ । ବନ୍ଦି ହୋଇଛି ଆମ୍ଭ ମନ ॥
ଆପଣା କରି ଆମ୍ଭ ମନ । ରଖିଣ ଅଛ ଭଗବାନ ॥
ଆମ୍ଭକୁ ଅନୁକମ୍ପା କରି । ଏହା ଦେଖାଅ ନରହରି ॥
ଶବଦ ହାସ ମନୋହର । ବଦନ ଈକ୍ଷଣ ତୁମ୍ଭର ॥
ସ୍ରବୁ ଯେ ଥାଇ ମଧୁରସ । ଅମୃତ ତୁଲ୍ୟ ପୀତବାସ ॥
ଆମ୍ଭର ତ୍ରାସ ଦୂର କର । ଭୋ ନାଥ ଶରଣ ତୋହର ॥
ଉତ୍ପତ୍ତି ସ୍ଥିତି ଯେ ପ୍ରଳୟ । ଏହି କାରଣେ ତୁମ୍ଭେ ହୁଅ ॥
ସକଳ ଜୀବଠାରେ ତୁହି । ଅଛ ଯେ ବ୍ରହ୍ମରୂପ ହୋଇ ॥
ତୁ ସର୍ବ ମାୟାମୟ ରୂପ । ଅଶେଷ ପ୍ରଧାନ ପୁରୁଷ ॥

ତୁ ଦେଖ କାଳପାତ୍ର ହୋଇ । ସକଳ ଠାବେ ଅଛୁ ତୁହି ॥
ସକଳ ସାକ୍ଷୀ ଚକ୍ରଧର । ଆକାଶ ଶରୀର ତୋହର ॥
ପରମ ବ୍ରହ୍ମ ରୂପ ତୁହି । ଥାଉ ତୁ ଆତ୍ମା ରୂପ ବହି ॥
ଆମ୍ଭେ ଅଗ୍ନିର କଣା ପ୍ରାୟେ । କିସ କରିବୁଁ ଦେବରାୟେ ॥
ଆମ୍ଭ ପରମ ଗୁରୁ ତୁହି । ତୋ ପାଦ ଶତଦଳ ଦୁଇ ॥
ବିବିଧ ଗତି କର୍ମ ମୋହ । ସଂସାର ପରିଶ୍ରମ ଚୟ ॥
ଛେଦଇ ଯେ କମଳ ଦଳ । ତୋର ମାୟାରେ ଆଦିମୂଳ ॥
ଆଶ୍ରୟ କରି ଆମ୍ଭ ମନ । ଅଛି ଯେ ପ୍ରଭୁ ଭଗବାନ ॥
ଆମ୍ଭର କାର୍ଯ୍ୟ ଆଦିମୂଳ । ଭୋ ନାଥ କର ତୁ ସୁଫଳ ॥
ଭାସୁଛି ବୃତ୍ର ତ୍ରିଭୁବନ । ଏହା ସଂହାର ଭଗବାନ ॥
ତେଜ ଧଇର୍ଯ୍ୟ ଯେ ଆମ୍ଭର । ନାଶୁଛି ପାପୀ ବୃତ୍ରାସୁର ॥
ନମସ୍ତେ ପ୍ରଭୁ ଶୁଦ୍ଧ ହଂସ । ତୁ ନିରାକାର ପୀତବାସ ॥
ନମସ୍ତେ ପ୍ରଭୁ କୃଷ୍ଣ ତୁହି । ବ୍ରହ୍ମାଣ୍ଡେ ଯାର ଯଶ ଶୋହି ॥
ଭବ ସାଗର ପଥଶ୍ରମ । ତୁ ତାହା ନାଶୁ ଭଗବାନ ॥
ପରମ ଶ୍ରେଷ୍ଠ ଗତି ତୋର । ନମସ୍ତେ ଜଗତ ଈଶ୍ୱର ॥

## ଶ୍ରୀ ଶୁକ ଉବାଚ

ଏଥୁ ଅନ୍ତରେ ହେ ରାଜନ । ସ୍ତୁତି ଯେ କଲେ ଦେବଗଣ ॥
ସାଦରେ ସ୍ତୁତି ଶୁଣି ହରି । ସୁପ୍ରିୟ ସ୍ତୁତି ଶ୍ରୀଣି କରି ॥
ଆନନ୍ଦ ହୋଇ ଭଗବାନ । ଦେବଙ୍କୁ କହନ୍ତି ବଚନ ॥

## ଶ୍ରୀ ଭଗବାନ ଉବାଚ

ତୁମ୍ଭର ବିଦ୍ୟାର ସ୍ତୁତିରେ । ସନ୍ତୋଷ ହେଲୁ ଦେବବରେ ॥
ଯେଉଁ ବିଦ୍ୟାର ପରସାଦେ । ଦୃଢ଼ ଭଗତି ମୋର ପାଦେ ॥
ତତ୍ତ୍ୱଜ୍ଞ ଏମନ୍ତ ଯେ ମତି । ମୋ ତହୁଁ ଅନ୍ୟ ନ ବାଞ୍ଛନ୍ତି ॥
ଗୁଣ ବସ୍ତୁକୁ ଯେ ଦେଖନ୍ତି । ଏମନ୍ତ କୃପଣ ଯେ ଛନ୍ତି ॥
ସେ ଆତ୍ମା ଶ୍ରେୟ ନ ଜାଣନ୍ତି । ଯେବେ ସେ ତେମନ୍ତ ହୁଅନ୍ତି ॥
ଇଚ୍ଛା ନ ଥାଇ ଯା ଚିତ୍ତରେ । ସର୍ବକାମ ଦେଇ ହସ୍ତରେ ॥
ଇନ୍ଦ୍ର ଗୃହେ ଯାଅ ଶୀଘ୍ରେଣ । ତୁମ୍ଭର ହୋଇବ କଲ୍ୟାଣ ॥
ଅଥର୍ବଣ ଯେ ଋଷିବର । ମାଗ ତାହାଙ୍କର ଶରୀର ॥
ବିଦ୍ୟାବ୍ରତ ତପ ଯାହାର । ପବିତ୍ର ହୋଇଛି ଶରୀର ॥
ଯାଚଞ୍ଚା ତୁମ୍ଭେମାନେ କଲେ । ଧର୍ମଙ୍କ ଅଙ୍ଗ ଦେବ ଭଲେ ॥
ଅସ୍ଥି ତାହାଙ୍କର ଆଣିବ । ଆୟୁଧ ଶ୍ରେଷ୍ଠ ଗଢ଼ାଇବ ॥
ବିଶ୍ୱକର୍ମା ନିର୍ମିତ କରି । ବଜ୍ରକୁ ଧରି ବଜ୍ରଧାରୀ ॥
ଯେ ବଜ୍ରେ ହରେ ତାର ଶିର । ଛେଦିବ ଶୁଣ ପୁରନ୍ଦର ॥
ମୋହର ତେଜ ଯୁକ୍ତ ହୋଇ । ଶତ୍ରୁ ନାଶିବ ଦେବ ସାଇଁ ॥
ସେ ହତ ହେଲେ ତୁମ୍ଭେମାନେ । ସ୍ୱର୍ଗ ଲଭିବ ଦେବଗଣେ ॥
ଯେ ତେଜ ଅସ୍ତ୍ର ଯେ ଆୟୁଧ । ପୁଣି ହିଁ ଲଭିବ ସମ୍ପଦ ॥
ମୋର ଭଗତ ଲୋକଙ୍କର । ହିଂସା ନୋହିବ ପୁନର୍ବାର ॥
ବୋଲଇ ଦାସ ଜଗନ୍ନାଥ । ଇନ୍ଦ୍ରକୁ କୃଷ୍ଣ କୃପା ଚିତ୍ତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଭଗବାନୁପଦେଶେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

## ବାଦରାୟଣ ଉବାଚ

ଯେ ରୂପେ ଇନ୍ଦ୍ରକୁ କହିଣ । ବିଶ୍ୱଭାବନ ଭଗବାନ ॥
ଦେବତାମାନେ ଦେଖୁଥିଲେ । ତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ ॥
ଶ୍ରୀକୃଷ୍ଣ ଆଜ୍ଞା ପରମାଣେ । ମାଗିଲେ ଯାଇ ଦେବଗଣେ ॥
ମହତ ଋଷି ଆଥର୍ବଣ । ବୋଇଲେ ଶୁଣ ଦେବଗଣ ॥
ଜନ୍ତୁଙ୍କ ପ୍ରାଣ ପରିତ୍ୟାଗ । ଦୁଃସହ ଦୁଃଖ ଯେତେ ଭୋଗ ॥
ତୁମ୍ଭେ ସ୍ୱଭାବେ ଦେବଗଣ । ମରଣ ଦୁଃଖକୁ ନ ଜାଣ ॥
ଜୀବନ ପାଇଁ ପ୍ରାଣୀଙ୍କର । ସୁତ କଳତ୍ର ଏ ସଂସାର ॥
ଏମନ୍ତ ପ୍ରାଣୀ ଅବା କାହିଁ । ଜୀବନ ମାଗିଲେ ଦିଅଇ ॥
ଯେବେ ମାଗିବେ ନାରାୟଣ । ତେବେ ବା କେ ଦେବ ଜୀବନ ॥

## ଦେବ ଉବାଚ

ଯେ ପ୍ରାଣୀ ସର୍ବଭୂତ ଠାରେ । ଆତ୍ମାର ପ୍ରାୟେ ଦୟା କରେ ॥
ଈକ୍ଷିତ ମାତ୍ରେ ଦେଇ ପ୍ରାଣ । କରଇ ପ୍ରାଣୀ ପରିତ୍ରାଣ ॥
ତୁମ୍ଭର ପ୍ରାୟେ ପୁଣ୍ୟଶ୍ଳୋକ । ଯେ ଅବା ପୁଣ୍ୟବନ୍ତ ଲୋକ ॥
ତାହାର ଏମନ୍ତ ବିଚାର । ସେ ନ ଜାଣଇ ପରା ପର ॥
ଅଜ୍ଞାନ ପ୍ରାଣୀ ଯେଉଁମାନେ । ପର ସଂକଟ ସେ ନ ଜାଣେ ॥
ଯାଚଞ୍ଚ ଶ୍ରେଷ୍ଠ ଲୋକଙ୍କର । କେବେହେଁ ନ କରନ୍ତି ଦୂର ॥

## ଋଷି ଉବାଚ

ଭୋ ଦେବ ରାଜ ଦେବବୃନ୍ଦେ । ଧର୍ମ କହିଲ ମୋ ସନ୍ନିଧେ ॥
ଏ ଯେ ମୋହର ନିଜ ଦେହ । ଛାଡ଼ିବି ନ କର ସନ୍ଦେହ ॥
ଦେହକୁ ଧରି ଯେଉଁ ଜନ । ନ କରେ ଯଶ ପୁଣ୍ୟ ଧର୍ମ ॥
ତାହାକୁ ଆତ୍ମଘାତୀ କହି । ଅଶୌଚ ସର୍ବଭୂତେ ସେହି ॥
ଯେ ପ୍ରାଣୀ ପର ଦୁଃଖେ ଦୁଃଖୀ । ପର ସୁଖରେ ଅତିସୁଖୀ ॥
ଅବୟ ଅକ୍ଷୟ ଯେ ଧର୍ମ । କହନ୍ତି ପୁଣ୍ୟ-ଶ୍ଳୋକ ଜନ ॥
ଏ ବଡ଼ ଆଶ୍ଚର୍ଯ୍ୟ ଲୋକରେ । କ୍ଷଣ ଭଙ୍ଗୁର ଦେହ ନରେ ॥

କରନ୍ତି ଆତ୍ମା ସାର୍ଥ ଭେଦ । ଇହ ଲୋକରେ ଅପବାଦ ॥

**ବାଦନାରାୟଣ ଉବାଚ**

ଏମନ୍ତ କହି ଆଥର୍ବଣ । ନିଶ୍ଚଳ କରି ଆତ୍ମା ମନ ॥
ପରମ ବ୍ରହ୍ମେ ନିବେଶିଲା । ସଂଯମେ ଶରୀର ଛାଡ଼ିଲା ॥
ମନ ବୁଦ୍ଧି ବ୍ରହ୍ମେ ନିବେଶି । ଯେହି ଯୋଗରୁ କରି ଋଷି ॥
ତ୍ୟାଗ ହୋଇଲା ଯେ ଶରୀର । ଜାଣିଲେ ଦେବ ପୁରନ୍ଦର ॥
ଏ ଅନନ୍ତରେ ଦେବରାଜ । ବିଶ୍ୱକର୍ମା ନିର୍ମିତ ବଜ୍ର ॥
ମୁନି ଅସ୍ଥିରେ ହୋଇ ଯୁକ୍ତ । ବିଷ୍ଣୁ ତେଜରେ ସେ ମିଶ୍ରିତ ॥
ଦେବଗଣରେ ସେ ବେଷ୍ଟିତ । ଆରୋହି ହସ୍ତି ଐରାବତ ॥
ମୁନି ଗଣରେ ସ୍ତୁତି ହୋଇ । ତ୍ରିଲୋକ ହରଷ କରାଇ ॥
ବୃତ୍ରାସୁରକୁ ଦେବରାଜ । ସୈନ୍ୟ ସହିତେ ହୋଇ ସଜ ॥
ଅଶେଷ ବଳ ସଙ୍ଗେଇଲ । ଅନ୍ଧକୁ ରୌଦ୍ର ଯେହ୍ନେଧାଇ ॥
ଯେଥୁ ଉତ୍ତାରେ ହେ ରାଜନ । କହିବା ହୋଉ ସାବଧାନ ॥
ସୁର ଅସୁରଙ୍କର ରଣ । ଅତ୍ୟନ୍ତ ପରମ ଦାରୁଣ ॥
ତ୍ରେତୟା ଯୁଗର ସୁଖରେ । ହୋଇଲା ନର୍ମଦାର ତୀରେ ॥
ରୁଦ୍ରବସୁ ପିତୃ ଆଦିତ୍ୟ । ବ୍ରହ୍ମଋଷି ଅଶ୍ୱିନୀ ସୁତ ॥
ସିଦ୍ଧ ବିଶ୍ୱଦେବା ମରୁତ । ଇନ୍ଦ୍ର ଦେବଗଣେ ବେଷ୍ଟିତ ॥
ବିରାଜମାନ ସମ୍ମୁଖରେ । ବଜ୍ରକୁ ଧରି ନିଜ କରେ ॥
ଏ ଭାବେ ଇନ୍ଦ୍ରକୁ ଦେଖିଲେ । ସକ୍ରୋଧେ ଅସୁରେ ଧାଇଁଲେ ॥
ନମୁଚି ଦ୍ୱିମୂର୍ଦ୍ଧା ସମ୍ବର । ଅନର୍ବା ଋଷଭ ଅସୁର ॥
ହୟଗ୍ରୀବ ଯେ ବିପ୍ରଚିତ୍ତି । ଅୟୋମୁଖ ଯେ ଲୋମା ହେତି
ଉକ୍କଳ ବୃଷପର୍ବା ସୁର । ପ୍ରହ୍ଲେତି ଆଦି ଦୈତ୍ୟବର ॥
ଦାନବ ଦଇତ ଯେ ଦକ୍ଷ । ଅସଂଖ୍ୟ ହୋଇଣ ଯେ ରକ୍ଷ ॥
ସୁମାଳୀ ମାଳୀ ଆଦି ଯେତେ । କାର୍ତ୍ତିଶ୍ୱର ରାଜା ସହିତେ ॥
ଇନ୍ଦ୍ରର ସୈନ୍ୟର ଅଗ୍ରତେ । ବଳେ ଉଗାଳିଲେ ଦ୍ରୁତେ ॥
ଯେ ଇନ୍ଦ୍ର ସେନାର ସମୂହ । କାଳକୁ ଅତି ଦୁରାଶୟ ॥
ନିଃଶଙ୍କେ ହୋଇ ସିଂହ ନାଦେ । ପୂରିଲେ ଦାନବ ଦୁର୍ମଦେ ॥
ଗଦା ପରିଘ ବାଣ ପାଶ । ମୁଦ୍‌ଗର ତୋମର ଅଶେଷ ॥
ଶୂଳ ପରଶୁ ଧନୁ ଖଡ୍‌ଗ । ଶତଘ୍ନ ଭୂଷଣ୍ଡୀ ଆୟୁଧ ॥
ଏ ଯେତେ ଅସ୍ତ୍ର ଶସ୍ତ୍ର ମାନ । ଦେବଙ୍କୁ କଲେ ପ୍ରହାରଣ ॥
ଅସୁର ଶର ବରଷଣେ । ଦୃଶା ନୋହନ୍ତି ଦେବଗଣେ ॥
କର୍ମ ଅକର୍ମ ପଡ଼ିବାରେ । ନକ୍ଷତ୍ର ଯେସନେ ମେଘରେ ॥
ସ୍ୱଶସ୍ତ୍ର ଯେତେ ଦାନବର । କିଛି ନ କଲା ଦେବଙ୍କର ॥
ଯେତେ ଅସୁରଙ୍କ ଆୟୁଧ । ସକଳ ଦେବେ କଲେ ଛେଦ ॥

ଏ ଅନନ୍ତରେ ଶୂନ୍ୟ ହସ୍ତ । ଦାନବେ ଅତ୍ୟନ୍ତ କୋପିତ ॥
ଗିରିର ଶୃଙ୍ଗ ଦ୍ରୁମମାନ । ଦେବଙ୍କୁ କଲେ ପ୍ରହାରଣ ॥
କୁଶଳ ଦେଖି ଦେବଙ୍କର । ଦାନବେ କୋପେ ଖରତର ॥
ପୁଣି ପଥର ଦ୍ରୁମ କରେ । ପିଟିଲେ ଦେବଙ୍କ ଉପରେ ॥
ବିବିଧ ଗିରି ଶୃଙ୍ଗମାନ । ଦେବଙ୍କୁ କଲେ ପ୍ରହାରଣ ॥
ଦୈତ୍ୟେ ନିଷ୍ଫଳ କାର୍ଯ୍ୟହୋଇ । ଆତ୍ମା ଦେବତୁ ନିନ୍ଦା ବହି ॥
ଯାହାକୁ ରଖନ୍ତି ଈଶ୍ୱର । ଅସୁରେ କେତେକ ମାତର ॥
ଆତ୍ମା ଉଦ୍ୟମ ଯହୁଁ ହତ । ଦେଖି ଅସୁରେ ଭୟ ଚିତ୍ତ ॥
ସ୍ୱଭାବେ ବିଷ୍ଣୁରେ ବିମୁଖ । ରଣେ ଲଭିଲେ ଅତିଦୁଃଖ ॥
ସ୍ୱାମୀକି ଛାଡ଼ି ସଂଗ୍ରାମରେ । ପଳାଇ ଯାନ୍ତି ପ୍ରାଣ ଡରେ ॥
ବୃତ୍ର ଅସୁର ଚୂଡ଼ାମଣି । ସୈନ୍ୟ ପଳାଇ ବୋଲି ଜାଣି ॥
ଧାଇଁବା ଦେଖି ଭୃତ୍ୟଙ୍କର । କହଇ ବଚନ ମଧୁର ॥
ଅତି ଭୟରେ ରଣ ଛାଡ଼ି । ପଳାନ୍ତି ପଡ଼ି ହୁଡ଼ ହୁଡ଼ି ॥
ଏମନ୍ତ ଦେଖି ବୃତ୍ରାସୁର । ହସି ବୋଲଇ ମହାବୀର ॥
ହେ ବିପ୍ରଚିତ୍ତି ଅନର୍ବନ । ନମୁଚି ଶୁଣ ମୋ ବଚନ ॥
ଜାତ ଯେ ହୁଅଇ ସଂସାରେ । ମରଣ ଧ୍ରୁବଟି ତାହାରେ ॥
ମୃତ୍ୟୁ ଯେ ଦ୍ୱିତୀୟ ପ୍ରକାର । ସଂସାରେ ବୋଲନ୍ତି ଏ ସାର ॥
ବ୍ରହ୍ମ ଭାବନେ ଦେଇ ଚିତ୍ତ । ଯେ ପ୍ରାଣୀ ପ୍ରାଣେ ହୋଏ ହତ ॥
ଏ ରଣ କ୍ଷେତ୍ରେ ପ୍ରାଣ ଦେଇ । ବୀର ଶଯ୍ୟାରେ ରହେ ଶୋଇ ॥
ବୋଲଇ ଦାସ ଜଗନ୍ନାଥ । ଇନ୍ଦ୍ର ବୃତ୍ରାସୁର ଚରିତ ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବୃତ୍ରାସୁରଯୁଦ୍ଧେ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

**ଶ୍ରୀ ଶୁକ ଉବାଚ**

କହନ୍ତି ଶୁକ ବ୍ରହ୍ମବେତ୍ତା । ଇନ୍ଦ୍ର ବୃତ୍ରର ଯୁଦ୍ଧ କଥା ॥
ସ୍ୱାମୀ କଥିତ ଧର୍ମ୍ମ ଭୃତ୍ୟେ ।ଆରତେ ନ ଘେନିଲେ ଚିତ୍ତେ ॥
ପୁଣି ସମସ୍ତେ ପଳାଇଲେ । ସଭୟେ ସଂଗ୍ରାମ ଛାଡ଼ିଲେ ॥
କାଳାନୁକୂଳେ ଦେବଗଣେ । ଅସୁରଙ୍କର ସଂହାରଣେ ॥
କାଳ ପ୍ରତିକୂଳରୁ କରି । ଅନ୍ୟଥା ପ୍ରାୟେ ସେ ଆଚରି ॥
ସକଳେ ଉଦ୍‌ଭ୍ରତ ହୋଇ । ଜୀବନ ଭୟେ ସେ ପଳାଇ ॥
ଏମନ୍ତ ଦେଖି ସୈନ୍ୟଗଣ । ଅସୁର କୋପେ ପରି ଝାଣ ॥
ତାହାକୁ ଆବୋରି ଆପଣ । ଭର୍ତ୍ସନା କରନ୍ତି ବଚନ ॥
ପଳାଉଁ ପଳାଉଁ ପିଠିରେ । ଦତ୍ୟନ୍ତ କହେ ସେ ତପ୍ରରେ ॥

ଭଯେ ନ କର ତୁମ୍ଭେ ରଣେ । ବଧ ହିଁ ଭଲ ପ୍ରାଏ ମଣେ ॥
ଏ ବଳବନ୍ତ ପ୍ରାଣୀଙ୍କର । ସ୍ୱର୍ଗ ପ୍ରାପତ ହିଁ ଦୁସ୍ତର ॥
ଏତେ ବୋଲିଣ ତାଙ୍କୁ କହି । ଦେବଗଣଙ୍କୁ କ୍ରୋଧ ବହି ॥
ଆତ୍ମ ଶରୀର ପ୍ରକାଶିଲା । ଦେବଙ୍କୁ ଭଯ ଦେଖାଇଲା ॥
ଅସୁର କଲା ଘୋର ନାଦ । ବ୍ରହ୍ମାଣ୍ଡେ ପୂରିଲା ଶବଦ ॥
ଲୋକେ ହୋଇଲେ ହତଜ୍ଞାନ । ଦେବେ ଶୁଣିଲେ ତାର ସ୍ୱନ ॥
ସେ ନାଦ ଶୁଣି ଦେବଗଣ । ମୂର୍ଚ୍ଛିତ ହୋଇ ଅଚେତନ ॥
ସକଳେ ପଡ଼ିଲେ ଭୂମିରେ । ବଜ୍ର ପଡ଼ିଲା ଯେହ୍ନେ ଶିରେ ॥
ଚକ୍ଷୁ ବୁଜିଣ ଦେବଗଣେ । ପଡ଼ି ଅଛନ୍ତି ଘୋର ରଣେ ॥
ଦୁର୍ମଦ ରଣରଙ୍ଗ ବୀର । ପାଦେ ମର୍ଦ୍ଦିଲା ବୃତ୍ରାସୁର ॥
ଅବନୀ କମ୍ପାଇ ଅସୁର । ଶୂଳ ଘେନିଲା ନିଜ କର ॥
ଭ୍ରମଇ ସଂଗ୍ରାମ ଭୂମିରେ । ଯେସନେ ମତ୍ତ କରୀବରେ ॥
ତାହାକୁ ଦେଖି ବଜ୍ରଧର । କୋପେ କମ୍ପିଲେ ଥର ହର ॥
ମହା ଗଦାରେ ଦେବବର । ବୃତ୍ରାକୁ କଲେ ସେ ପ୍ରହାର ॥
ଦୁଃସହ ଗଦା ଆସିବାରେ । ଦେଖି ଧଇଲା ବାମ କରେ ॥
ଇନ୍ଦ୍ରର ଗଦା ଧରି କର । ସେହି ଗଦାରେ ବୃତ୍ରାସୁର ॥
ଅଇରାବତ କୁମ୍ଭ ସ୍ଥଳେ । ଦାନବ ପ୍ରହାରିଲା ବଳେ ॥
ବୃତ୍ରର ଏ କର୍ମ ଦେଖିଣ । ସକଳ କଲେ ଧନ୍ୟ ଧନ୍ୟ ॥
ବୃତ୍ର ଗଦାରେ ଐରାବତ । ବଜ୍ରରେ ଯେହ୍ନେ ଗିରିହତ ॥
ରଣରେ ପରାଙ୍ମୁଖ ହେଲା । ଇନ୍ଦ୍ରକୁ ଘେନି ବାହୁଡ଼ିଲା ॥
ଅତ୍ୟନ୍ତ ହୋଇଣ ଆରତ । ପଛକୁ ଗଲା ଧନୁ ସାତ ॥
ଚକିତ ବହୁଛନ୍ତି ଚିତ୍ତ । ଏମନ୍ତ ହୋଇ ପୁରୁହୂତ ॥
ବୃତ୍ର ଅସୁର ପୁନର୍ବାର । ଇନ୍ଦ୍ରକୁ କଲାକ ପ୍ରହାର ॥
ଇନ୍ଦ୍ର ଅମୃତ ସ୍ରାବୀ କରେ । ଦେଇଣ ହସ୍ତୀ କୁମ୍ଭ ସ୍ଥଳେ ॥
ଆଶ୍ୱାସ କରି ଦେବବର । ରହିଲେ ବୃତ୍ରର ଆଗର ॥
ସଂଗ୍ରାମ କରିବାର ଆଶେ । ଇନ୍ଦ୍ରକୁ ଦେଖି ଆତ୍ମା ପାଶେ ॥
ଭ୍ରାତର ହତ ବଜ୍ରାୟୁଧ । ଦେଖି ଅସୁର କଲା କ୍ରୋଧ ॥
ସ୍ମରଣ କଲା ଭ୍ରାତୃନାଶ । ଶୋକ ମୋହେ ହୋଇ ବିରସ ॥
ବୋଲଇ ଇନ୍ଦ୍ର ମୋ ବଚନ । ଶୁଣ ହୋଇଣ ସାବଧାନ ॥

## ବୃତ୍ରାସୁର ଉବାଚ

ଭାଗ୍ୟରୁ କରି ଇନ୍ଦ୍ର ମୋର । ସଂଗ୍ରାମେ ଅଛୁ ଦୁରାଚାର ॥
ମୋହର ଭ୍ରାତା ନାଶ କରି । ଆଜି ନାଶିବି ତୋର ଶିରୀ ॥
ମୋହର ହସ୍ତେ ହୃଦତୋର । ନିଶ୍ଚୟେଂ କରିବି ବିଦାର ॥
ଯେଉଁ କାରଣୁ ମୋ ଅଗ୍ରଜ । ଆପଣ ଆତ୍ମଜ୍ଞାନୀ ଦ୍ୱିଜ ॥
ଖଡ଼ଗେ କାଟି ତାର ଶିର । ଛେଦିଲୁ ତୁହି ଦୁରାଚାର ॥
ପଶୁର ପ୍ରାୟେକ ମାଇଲୁ । ସ୍ୱର୍ଗ ଭୋଗକୁ ବାଞ୍ଛା କଲୁ ॥
ଲଜ୍ଜା ସମ୍ପଦ ଦୟା କୀର୍ତ୍ତି । ସବୁ ଛାଡ଼ିଲୁ ମୂଢ଼ମତି ॥
ମୋ ତୀକ୍ଷ୍ଣ ବାଣେ ତୋ ଶରୀର । ନାଶ ହୋଇବ ଦୁରାଚାର ॥
ଅଗ୍ନି ନ କରିବ ଦହନ । ଖାଇବେ ଗୃଧ୍ର କୃମି ଶ୍ୱାନ ॥
ଯେତେ ତୋ ସଙ୍ଗେ ଦୁଷ୍ଟଗଣେ । ଗୃହୀତ ଶସ୍ତ୍ର ହୋଇ ରଣେ ॥
ଯେ ମୋତେ ପ୍ରହାରକୁ କଲେ । ତାହାକୁ ଛାଡ଼ିବି କି ଭଲେ ॥
ଶାଣିତ ତ୍ରିଶୂଳ ପ୍ରହାରେ । କନ୍ଧ ଛେଦିବି ତାହାଙ୍କରେ ॥
ଏଥି ଉତ୍ତାରେ ପାଇ ଜ୍ଞାନ । ଇନ୍ଦ୍ରକୁ ବୋଲଇ ବଚନ ॥
ଭୋ ଇନ୍ଦ୍ର ଦେବଙ୍କ ଠାକୁର । କୁଳିଶେ ମୋର ଶିର ହର ॥
ଆତ୍ମାକୁ ମୁହିଁ ବଳୀ ଦେଇ । ସ୍ୱଲୋକ ଚରଣେ ଭଜଇ ॥
ଭୋ ଦେବ ଦେବଙ୍କ ଈଶ୍ୱର । ବଜ୍ର କିପାଇଁ ନ ପ୍ରହାର ॥
ଅଗ୍ରେ ଯେ ଅଛି ଉଭା ହୋଇ । ସଂଶୟ କର କିସ ପାଇଁ ॥
ଗଦା ପ୍ରାୟେ ବଜ୍ର ନ ମଣ । ବଜ୍ର ମୋ ମରଣ କାରଣ ॥
ଆପଣା ତେଜେ ବଜ୍ରଧର । ଦେବଙ୍କ ଅଇରୀ ସଂହାର ॥
ବିଷ୍ଣୁ ଜନ୍ମିତ ଦେବବର । ବିଜୟ ହୋଇବ ତୁମ୍ଭର ॥
ଶ୍ରୀକୃଷ୍ଣ ପାଦ ପଙ୍କଜରେ । ମନ ନିବେଶି ମୁଁ ସ୍ଥିରେ ॥
ତୁମ୍ଭର ବଜ୍ରରେ ମୋହର । ହୋଇବ ମୋହ ପାଶ ଦୂର ॥
ତିନି ଭୁବନ ପ୍ରାଣୀଙ୍କର । ବହୁତ ସମ୍ପତ୍ତି ଯାହାର ॥
ଉଦ୍‌ବେଗ ଅଧି ଗର୍ବ ଆର । କଳି ବ୍ୟସନ ଯେ ଅପାର ॥
ତ୍ରିବର୍ଗେ ଯେତେ ଦୁଃଖ ମୋର । ନାଶିବେ ପ୍ରଭୁ ଚକ୍ରଧର ॥
ଦୁର୍ଲ୍ଲଭ ଯେ ପ୍ରଭୁ ପ୍ରସାଦ । ଯେଣୁ ଲଭିଲେ ଅପ୍ରମାଦ ॥
ଭୋ ପ୍ରଭୁ ତୁମ୍ଭ ପଦ୍ମପାଦେ । ଭୃତ୍ୟର ଭୃତ୍ୟ ମୁଁ ସ୍ୱଭାବେ ॥
ହୋଇବି ଏ ମୋହର ମନ । ସେବିବି ମୁହିଁ ଅନୁକ୍ଷଣ ॥
ଯେ ଗୁଣ କର୍ମଟି ତୁମ୍ଭର । ତାହା କରିବାରେ ଶରୀର ॥
ସ୍ୱର୍ଗ ଲୋକେ ଇନ୍ଦ୍ରର ପଦ । ବ୍ରହ୍ମ ଲୋକେ ବ୍ରହ୍ମ ସମ୍ପଦ ॥
ସପତ ଦ୍ୱୀପ ରାଜା ହୋଇ । ପାତାଳେ ଭୋଗ ଯୋଗ ନୋହି ॥
ଯେଣେ ମୋହର ନାହିଁ ଇଚ୍ଛା । ତୋ ପାଦ ସେବାରେ ମୋ ବାଞ୍ଛା ॥
ଯୋଗ ସିଦ୍ଧି ପୁର୍ନଜନ୍ମରେ । କାର୍ଯ୍ୟ ମୋ ନାହିଁ ଏହାଙ୍କରେ ॥
ଏକାନ୍ତ ଭକ୍ତି ତୁମ୍ଭ ପାଦ । ବାଞ୍ଛା କରଇ ଚକ୍ରାୟୁଧ ॥
ଅଜାତ ପକ୍ଷ ଖଗ ଯେହ୍ନେ । ମାତା ଲୋଡ଼ଇ ଅନୁକ୍ଷଣେ ॥
କ୍ଷୁଧାର୍ତ୍ତ ହୋଇଣ ବାଛୁରୀ । ମାତା ସ୍ତନକୁ ଲୋଡ଼ି କରି ॥
ସ୍ୱାମୀକି ପ୍ରିୟା ଭଜେ ଯେହ୍ନେ । ମୋ ମନ ତୋ ପାଦେ ତେସନେ ॥
ଭୋ ପ୍ରଭୁ କମଳ ଲୋଚନ । ତୋ ପାଦେ ରହୁ ମୋର ମନ ॥

| | |
|---|---|
| ଆପଣା କର୍ମ ବନ୍ଧେ ଜଡ଼ି | ସଂସାର ଚକ୍ରେ ଅଛି ପଡ଼ି ॥ |
| ଏମନ୍ତ ପାପୀ ମୁହିଁ ଯହୁଁ | ଉତ୍ତମ ସାଧୁସଙ୍ଗେ ହୋଉ ॥ |
| ଦାରା ତନୟ ଗୃହ ମୋର । | ଭୋ ନାଥ ମନ ମୋ ନ କର ॥ |
| ବୋଲଇ ଦାସ ଜଗନ୍ନାଥ | ଇନ୍ଦ୍ର ବୃତ୍ରାସୁରର ଚରିତ ॥ |

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବୃତ୍ରବାକ୍ୟେ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

| | |
|---|---|
| ଶୁକ କହନ୍ତି ହରଷିତ | ଇନ୍ଦ୍ର ବୃତ୍ରାସୁର ଚରିତ ॥ |
| ଏମନ୍ତେ ସଂଗ୍ରାମେ ଅସୁର | ଛାଡ଼ିବ ବୋଲି କଳେବର ॥ |
| ଜୟରୁ ଭଲ ମୋ ମରଣ | ମନରେ କଲା ସେ ରାଜନ ॥ |
| ଶୂଳ ଧରିଣ ବୃତ୍ରାସୁର | ଧାଇଁଲା ଇନ୍ଦ୍ରର ଉପର ॥ |
| ଯେମନ୍ତେ କଇଟଭ ବୀର | ବିଷ୍ଣୁଙ୍କୁ ଧାଇଁଲା ଅସୁର ॥ |
| ଯୁଗାନ୍ତ ଅଗ୍ନିପ୍ରାୟେ ତେଜ | ଯେ ଶୂଳ ଅତ୍ୟନ୍ତ ବିରାଜ ॥ |
| ବୃତ୍ର ଅସୁର ଚୂଡ଼ାମଣି | ଇନ୍ଦ୍ରଙ୍କୁ ପ୍ରହାରିଲା ଆଣି ॥ |
| ଘୋର ଶବଦ ରୋଷେ କଲା | ପାପୀଷ୍ଠ ମଲୁ ତୁ ବୋଇଲା ॥ |
| ଆକାଶୁଁ ଗ୍ରହ ଉଲ୍‌କାମାନ | ଖସି ପଡ଼ିଲା ତତକ୍ଷଣ ॥ |
| ଦୁଃସହ ଦେଖିଣ ଅସୁର | ଭୟେ ବିକଳ ସୁର ନର ॥ |
| ବଜ୍ରରେ କରି ଦେବରାଜ | ଛେଦିଲେ ତାର ଏକ ଭୁଜ ॥ |
| ପରିଘ ଘେନି ଆର କର | ଇନ୍ଦ୍ରକୁ ଧାଇଁଲା ଅସୁର ॥ |
| ଦେବରାଜ ନିକଟେ ଯାଇ | ସମ୍ମୁଖେ ପ୍ରହାରିଲା ନେଇ ॥ |
| ଇନ୍ଦ୍ର ହସ୍ତୁ ବଜ୍ର ଖସିଲା | ଅଧୋ ଭୂମିରେ ସେ ପଡ଼ିଲା ॥ |
| ବୃତ୍ର ଅଦ୍ଭୁତ ଦେଖି କର୍ମ | ସୁର ଚାରଣ ସିଦ୍ଧଗଣ ॥ |
| ସକଳେ କଲେ ଧନ୍ୟ ଧନ୍ୟ | ଇନ୍ଦ୍ର ସଙ୍କଟେ ମନଛନ୍ନ ॥ |
| ଯେତେକ ସେନା ଇନ୍ଦ୍ରଙ୍କର | ସକଳେ କଲେ ହାହାକାର ॥ |
| ଲଜ୍ଜାରେ ବୃତ୍ରର ଅଗ୍ରତେ | ବଜ୍ର ନ ଧରେ ଇନ୍ଦ୍ର ହସ୍ତେ ॥ |
| ଇନ୍ଦ୍ରଙ୍କୁ ଚାହିଁ ବୃତ୍ରାସୁର | ବଚନ କହଇ ମଧୁର ॥ |
| ମନରେ ବିଷାଦ ନ କରି | ବଜ୍ର ଉଦ୍ଧରି ଶତ୍ରୁ ମାର ॥ |
| ଯୁଦ୍ଧ ଇଚ୍ଛଇ ଯେଉଁ ସୁର | ଜୟ ଦୁସ୍ତରଟି ତାହାର ॥ |
| ଯେ ସୁର ରଣେ ଭୀତ ପାଇ | ଜୟର ଲେଖ ତାର କାହିଁ ॥ |
| ଉତ୍ପତ୍ତି ପାଳଣ ସଂହାର | ଯେ ପ୍ରଭୁ ଏହାଙ୍କ ଈଶ୍ୱର ॥ |
| ସର୍ବଜ୍ଞ ଆଦି ସନାତନ | ଅଖିଳ ପୁରୁଷ ପୁରାଣ ॥ |
| ଏ ବିନୁ ଜୟ ବା ଅଜୟ | କାହାର ବୋଲେ ହୋଇ କ୍ଷୟ ॥ |
| ଯେ ପ୍ରଭୁ ଅଖିଳର ଈଶ | ଅଖିଳ ଲୋକେ ଯାର ବାସ ॥ |
| କାଳ ସ୍ୱରୂପ ଯେ ଈଶ୍ୱର | ମୃତ୍ୟୁ ଅମୃତ୍ୟୁ ରୂପ ଧର ॥ |
| ସକଳ ହେତୁ ସେ ଅଟଇ | ତାକୁ ଅଜ୍ଞାନୀ ନ ଜାଣଇ ॥ |
| କାଷ୍ଠର ପିତୁଳି ଯେସନ | ଜଗତ ତାହାର ଭିଆଣ ॥ |
| ଯେମନ୍ତ ପତ୍ରମୟେ ମୃଗ | ପ୍ରାଣୀ ତେମନ୍ତେ ମହାଭାଗ ॥ |
| ପୁରୁଷ ପ୍ରକୃତ ଯେ ଦୁଇ | ତା ବିନୁ ଜଡ଼ ପ୍ରାୟେ ହୋଇ ॥ |
| ସୃଷ୍ଟି କରତା ଅବା କେହି | ତା ବିନୁ ଯେତେକ ଅଛଇ ॥ |
| ଏମନ୍ତ ଆତ୍ମାରୂପ ଯେହି | ଅଜ୍ଞାନୀ ଜାଣିବ ତା କାହିଁ ॥ |
| ସେହି ପ୍ରାଣୀଙ୍କି ସୃଷ୍ଟି କରି | ପ୍ରତି ପାଳଣକୁ ଆଚରି ॥ |
| ଗ୍ରାସଇ କାଳରୂପ ହୋଇ | ଧର୍ମ ଅଧର୍ମ ରୂପ ସେହି ॥ |
| ଆୟୁଧ ସମ୍ପଦ ହିଁ ଯେତେ | ପ୍ରାଣୀର ହୋଇ ସେ ତୁରିତେ ॥ |
| ସେ ଯାକୁ ପ୍ରସନ୍ନ ହୁଅଇ | ଅଷ୍ଟ ଐଶ୍ୱର୍ଯ୍ୟ ତାର ହୋଇ ॥ |
| ଏ ସତ୍ୱ ରଜ ତମ ପୁଣ | ଆତ୍ମା ପ୍ରକୃତିର କାରଣ ॥ |
| ଏହାର ସାକ୍ଷୀ ଯେଉଁ ଜନ | ସେ ଯାକୁ ହୁଅନ୍ତି ପ୍ରସନ୍ନ ॥ |
| ସଂସାରେ ବଦ୍ଧ ସେ ନୋହଇଁ | ସକଳ ପାପୁଁ ସେ ତରଇ ॥ |
| ରଣରେ କ୍ଷୀଣଭୁଜ ହୋଇ | ଭୋ ଇନ୍ଦ୍ର ଦେଖୁ ମୁଁ ଅଛଇ ॥ |
| ଜୟ ଅଜୟରୁ ବାହାର | ତୁମ୍ଭେ କି ନ ଜାଣ ଈଶ୍ୱର ॥ |

### ଶ୍ରୀ ଶୁକ ଉବାଚ

| | |
|---|---|
| ଶୁଣ କହିବା ନୃପମଣି | ବୃତ୍ରର ବାକ୍ୟ ଇନ୍ଦ୍ର ଶୁଣି ॥ |
| ବୃତ୍ରକୁ ଧନ୍ୟ ଧନ୍ୟ କରି | ହସି ଡାକିଲେ ବଜ୍ରଧରି ॥ |
| ଆହୋ ଦାନବ ସିଦ୍ଧ ତୁହି | ଯେଣୁ ତୁ ସିଦ୍ଧ ମତି ହୋଇ ॥ |
| ସକଳ ଆତ୍ମାର ଈଶ୍ୱର | ଭଜିଲୁ ଚରଣ ତାହାର ॥ |
| ଜଗମୋହନ ବିଷ୍ଣୁ ମାୟା | ଦାନବ ଛେଦିଲୁ ତୁ ଏହା ॥ |
| ଅଇରୀଭାବ କରି ଦୂର | କଲୁତୁ ସ୍ୱର୍ଲୋକ ଆଚାର ॥ |
| ଆହୋ ଆଶ୍ଚର୍ଯ୍ୟ ବଡ଼ ମୋର | ସ୍ୱଭାବେ ରଜୋ ଗୁଣ ତୋର ॥ |
| ଅଖିଳ ବ୍ରହ୍ମାଣ୍ଡର ପତି | ତା ତହିଁ ତୋର ଦୃଢ଼ମତି ॥ |
| ପରମ ବ୍ରହ୍ମ ହରି ଯେହି | ତା' ତହିଁ ଯାର ଭକ୍ତି ହୋଇ ॥ |
| ଅମୃତ ସିନ୍ଧୁରେ ଯେସନ | କ୍ରୀଡ଼ା କରଇ ଅନୁକ୍ଷଣ ॥ |
| କି କାର୍ଯ୍ୟ କୂପ ଜଳେ ତାର | ସ୍ୱଭାବେ ତୁଚ୍ଛ ସେ ଅସାର ॥ |

### ବାଦରାୟଣ ଉବାଚ

| | |
|---|---|
| ଅନ୍ୟୋନ୍ୟ ଧର୍ମକୁ କହିଲେ | ପୁଣି ହିଁ ଯୁଦ୍ଧ ଆରମ୍ଭିଲେ ॥ |
| ଅଶାନ୍ତ ବୀର ବେନି ଜନ | କରି ଲାଗିଲେ ଘୋର ରଣ ॥ |
| ବୃତ୍ର ପରିଘ କରେ ଲଇଁ | ଇନ୍ଦ୍ରକୁ ପ୍ରହାରିଲା ନେଇ ॥ |
| ପରିଘ ଘେନି ବାମ କରେ | ଶବଦ କଲା ମହାଘୋରେ ॥ |

ଜର ପରିଘ ଏକାବେଳେ । ଇନ୍ଦ୍ର ଛେଦିଲେ ଅବହେଳେ ॥
ବୃତ୍ରର ଗଲା ଦୁଇ କର । ରକତେ ହୋଇ ଜର ଜର ॥
ବଜ୍ର ଘାତରେ କି ପର୍ବତ । ଯେସନେ ହୁଅଇ ନିପାତ ॥
ଅଧର ହନୁ ତା ଭୂମିରେ । ଉତ୍ତର ହନୁ ତା ସ୍ୱର୍ଗରେ ॥
ଆକାଶ ଗଭୀର ମୁଖରେ । ଲିହଇ କଠୋର ଜିହ୍ୱାରେ ॥
କାଳର ପ୍ରାୟେ ଦନ୍ତ ମାନ । ଗ୍ରାସିବ ଯେହ୍ନେ ତ୍ରିଭୁବନ ॥
ଅତ୍ୟନ୍ତ ଶରୀର ବିସ୍ତାରି । ଯେହ୍ନେ ଦିଶଇ ମହାଗିରି ॥
ପାଦେ ଅବନୀ କମ୍ପାଇଲା । ଇନ୍ଦ୍ରର ନିକଟେ ମିଳିଲା ॥
ଇନ୍ଦ୍ରକୁ ଗଜେନ୍ଦ୍ର ସହିତ । ଗିଳିଲା ବୃତ୍ର ମହାଦୈତ୍ୟ ॥
ସ୍ୱଭାବେ ଅଟଇ ଅସୁର । ଭେକକୁ ଯେହ୍ନେ ସର୍ପବର ॥
ଦେଖି ଇନ୍ଦ୍ରକୁ ଗିଳିବାରେ । ବ୍ରହ୍ମାଦି ଯେତେ ସୁର ନରେ ॥
ସକଳେ କଲେ ହାହାକାର । ଇନ୍ଦ୍ରକୁ ଗିଳିଲା ଅସୁର ॥
ଅସୁର ଉଦରେଣ ଥାଇ । ଜୀର୍ଣ୍ଣ ନୋହିଲା ଶଚୀ ସାଇ ॥
ମହାପୁରୁଷ ଧ୍ୟାନ କରି । ଯୋଗମାୟାକୁ ସେ ଆବୋରି ॥
ବଜ୍ରେ ଛେଦିଲା ପେଟ ତାର । ଗର୍ଭରୁ ହୋଇଲା ବାହାର ॥
ଆପଣା ବଳେ ଦେବ ବର । ବଜ୍ରେ ଛେଦିଲା ତାର ଶିର ॥
ବଜ୍ର ହିଁ ଅତି ବେଗେ ଗଲା । କନ୍ଧରୁ ମସ୍ତକ କାଟିଲା ॥
ଇନ୍ଦ୍ର ଆଜ୍ଞାରେ ଅବହେଳେ । ତକ୍ଷଣେ ପକାଇଲା ତଳେ ॥
ଆକାଶେ ଦୁନ୍ଦୁଭି ତକ୍ଷଣେ । ଶବଦ କଲେ ଦେବ ଗଣେ ॥
ଗନ୍ଧର୍ବ ସିଦ୍ଧି ଋଷିଗଣ । ଆନନ୍ଦେ ହରଷିତ ମନ ॥
ବୃତ୍ର ଶତ୍ରୁକୁ ତୁଷ୍ଟି କଲେ । ହରଷେ ପୁଷ୍ପ ବରଷିଲେ ॥
ବୃତ୍ରର ତହୁଁ ଜ୍ୟୋତି ରୂପ । ବାହାର ହୋଇଲା ହେ ନୃପ ॥
ସକଳେ ଦେଖୁଥିଲେ ରହି । ସାଲୋକ୍ୟ ପାଇଲା ସେ ତହିଁ ॥
ବୋଲଇ ଦାସ ଜଗନ୍ନାଥ । ଇନ୍ଦ୍ର ବୃତ୍ରର ଯୁଦ୍ଧ କଥା ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବୃତ୍ରାସୁରବଧୋ ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

### ବାଦରାୟଣ ଉବାଚ

ଶୁକ କହନ୍ତି ଶୁଦ୍ଧ ଚେତା । ବୃତ୍ର ଇନ୍ଦ୍ରର ଯୁଦ୍ଧ କଥା ॥
ବୃତ୍ର ହୋଇଲା ଯହୁଁ ହତ । ସୁଖୀ ହୋଇଲା ତ୍ରିଜଗତ ॥
ଯେତେ ଯେ ଦିଗପାଳ ଗଣେ । ବିହ୍ୱଳ ହୋଇଲେ ତକ୍ଷଣେ ॥
ଇନ୍ଦ୍ର ଭୁବନେ ଯେତେ ଜନ । ହରଷ କଲେ ସର୍ବ ମନ ॥
ଅମର ଦେବ ଋଷି ଗଣ । ପିତୃ ଦୈବତ ଲୋକ ପୁଣ ॥
ବ୍ରହ୍ମା ଶଙ୍କର ଚକ୍ରଧର । ଗଲେ ସେ ଯେ ଯାହା ମନ୍ଦିର

### ରାଜା ଉବାଚ

ଭୋ ମୁନି ହୁଅ ସାବଧାନ । ଏହା ଶୁଣିବାକୁ ମୋ ମନ ॥
କିମ୍ବା ହରଷ ଦେବଗଣ । ଇନ୍ଦ୍ର ବିଷାଦ କିମ୍ପାଇଣ ॥
କିମ୍ବା ସେ ଇନ୍ଦ୍ର ଦୁଃଖ ମନ । କହିବ ମୋତେ ତପୋଧନ ॥

### ବାଦରାୟଣ ଉବାଚ

ବୃତ୍ର ବିକ୍ରମ ଦେଖି ଦେବେ । ମହତ ଋଷି ଆଦି ସର୍ବେ ॥
ଭୋ ଦେବ ଦେବଙ୍କ ଈଶ୍ୱର । ବୃତ୍ର ଅସୁରକୁ ସଂହର ॥
ବ୍ରାହ୍ମଣ ବଧେ ପାପ ଘୋର । ଇନ୍ଦ୍ର ନ କଲେ ସିଉକାର ॥

### ଇନ୍ଦ୍ର ଉବାଚ

ସ୍ତିରୀ ଭୂଜଳ ଦ୍ରୁମମାନେ । ପାପ ଘେନିଲେ ବିଦ୍ୟମାନେ ॥
ବିଶ୍ୱରୂପ ବଧରୁ ଯେହୁ । ବୃତ୍ରକୁ ମାରି କେବା ତହୁଁ ॥

### ଶ୍ରୀ ଶୁକ ଉବାଚ

ଇନ୍ଦ୍ର ବଚନେ ଋଷି ଜନ । ଶୁଣି କହନ୍ତି ସେ ବଚନ ॥
ଅଶ୍ୱମେଧ ଯଜ୍ଞରୁ କରି । ପାପକୁ ନାଶିବୁ ତୁମ୍ଭରି ॥
ସେ ମହାଋଷି ଆତ୍ମାପର । ଅଖିଳ ଜଗତ ଈଶ୍ୱର ॥
ଯେ ଦେବ ପ୍ରଭୁ ଭଗବାନ । ଯଜ୍ଞରେ କରାଇ ପ୍ରସନ୍ନ ॥
ବୃତ୍ର ବଧରୁ ଦେବ ବର । ଅବହେଳାରେ ହେବପାର ॥
ବ୍ରାହ୍ମଣ ଗୋରୁ ପିତା ମାତା । ଯେ ଜନ ଆଚାର୍ଯ୍ୟର ହନ୍ତା ॥
ଶ୍ୱାନକୁ ଖାଇ ଅବା ଯେହୁ । ଶୁଣ କହିବା ମହାବାହୁ ॥
ଗୋବିନ୍ଦ ନାମ ଯେହୁ ଧରେ । ଏ ସର୍ବ ପାପରୁ ସେ ତରେ ॥
ମହା ଯଜ୍ଞରେ କରି ତୁହି । ଜପିବୁ ପ୍ରଭୁ ଭାବଗ୍ରାହୀ ॥
ତାର ସ୍ମରଣେ ଦେବ ବର । ଦୁରିତ କେତେକ ମାତର ॥

### ଶ୍ରୀ ଶୁକ ଉବାଚ

ଶୁଣି ଋଷିଙ୍କର ବଚନ । ଶତ୍ରୁ ମାଇଲେ ମଘବାନ ॥
ତକ୍ଷଣେ ବ୍ରହ୍ମହତ୍ୟା ଗଲା । ଇନ୍ଦ୍ର ଦେବଙ୍କୁ ଆଶ୍ରେ କଲା ॥
ତାହାଙ୍କୁ ଦେଖି ଦୁଃଖ ପାଇ । ଦେବ ଇନ୍ଦ୍ର ଗଲେ ପଳାଇ ॥
ଚାଣ୍ଡାଳୀ ରୂପକୁ ଧଇଲା । ଇନ୍ଦ୍ରର ପଛେ ଗୋଡ଼ାଇଲା ॥
ବୃଦ୍ଧରୂପକୁ ଧରି ସେହି । ଯକ୍ଷ୍ମା ରୋଗରେ ଗ୍ରସ୍ତ ହୋଇ ॥
ଶୋଣିତ ପ୍ରାୟେ ଜଟା ତାର । ବିବର୍ଣ୍ଣ କେଶ ମସ୍ତକର ॥
ରହ ରହ ବୋଲି ଡାକଇ । ଆମିଷ ଗନ୍ଧ ତାର ଦେହୀ ॥
ଆକାଶ ସକଳ ଦିଗରେ । ଇନ୍ଦ୍ର ପଳାନ୍ତି ଖରତରେ ॥
ଉତ୍ତର ଦିଗକୁ ସେ ଗଲା । ମାନସରୋବରେ ମିଳିଲା ॥

ପୁଷ୍କର ତୀର୍ଥେ ଦେବବର । ଚଞ୍ଚଳ ମନ କରି ସ୍ଥିର ॥
ସହସ୍ର ସମ୍ବତ୍ସର ତହିଁ । ବ୍ରହ୍ମ ଭାବନେ ମନ ଦେଇ ॥
ବ୍ରହ୍ମ ବଧରୁ ମୋକ୍ଷ ପାଇ । ରହିଲେ ନିରାହାର ହୋଇ ॥
ତାବତ ନହୁଷ ରାଜନ । ସ୍ୱର୍ଗରେ କଲେ ଇନ୍ଦ୍ରପଣ ॥
ବିଦ୍ୟାଯେ ଯୋଗବଳୁଁ କରି । ସ୍ୱର୍ଗ ସମ୍ପଦ ଭୋଗ କରି ॥
ସମ୍ପଦ ଐଶ୍ୱର୍ଯ୍ୟ ମଦରେ । ନହୁଷ ହୋଇଛି ବଦ୍ଧରେ ॥
ଇନ୍ଦ୍ର ପତ୍ନୀକି ଇଚ୍ଛା କଲା । ସ୍ୱର୍ଗ ଲୋକରୁ ଚ୍ୟୁତ ହେଲା ॥
ନହୁଷ ସ୍ୱର୍ଗେ ଇନ୍ଦ୍ର ହୋଇ । ବାରତା ଇନ୍ଦ୍ରାଣୀରେ ଦେଇ ॥
ମୁଁ ଇନ୍ଦ୍ର ସ୍ୱର୍ଗ ଭୁବନରେ । ମୋତେ ତୁମ୍ଭେ ଭଜ ବିଧିରେ ॥
ଇନ୍ଦ୍ରାଣୀ ଗୁରୁଙ୍କୁ କହିଲେ । ପ୍ରତି ଉତ୍ତର ଗୁରୁ ଦେଲେ ॥
ଗୁରୁ ଏମନ୍ତ ବିଚାରିଲେ । ଅତି ଅସମ୍ଭବ ବୋଇଲେ ॥
ଅନେକ ତପସ୍ୟାର ଫଳ । ମନୁଷ୍ୟ ହୋଇ ଦେବପାଳ ॥
ବ୍ରାହ୍ମଣ କୋପ ଶାପୁଁ କରି । ହତ ହୋଇବ ଏହା ଶିରୀ ॥
ନହୁଷେ ଏମନ୍ତ କହିବ । ଋଷିଙ୍କ କନ୍ଧେ ଦୋଳାଥିବ ॥
ତୁମ୍ଭେ ଦୋଳାରେ ବସିଥିବ । ଆମ୍ଭର ପୁରକୁ ଆସିବ ॥
ତେବେ ସେ ତୁମ୍ଭଙ୍କୁ ଭଜିବୁ । ସ୍ୱର୍ଗେ ଇନ୍ଦ୍ର ବୋଲି ଜାଣିବୁ ॥
ଏମନ୍ତ ଗୁରୁ ଆଜ୍ଞା ଶୁଣି । ନହୁଷେ କହନ୍ତି ଇନ୍ଦ୍ରାଣୀ ॥
ଋଷିମାନଙ୍କୁ ଆଣି କରି । ଋଷିଙ୍କ କନ୍ଧେ ଦୋଳାକରି ॥
ସେ ଦୋଳା ଉପରେ ନହୁଷ । ଆସୁଣ ଅଛି ସେ ହରଷ ॥
ଦୋଳା ମନ୍ଦ ମନ୍ଦ ଗମନ । ନହୁଷ କ୍ରୋଧିତ ବଚନ ॥
ସର୍ପ ସର୍ପ ବୋଲି ବୋଇଲା । ପାଦେ ଅଗସ୍ତିଙ୍କି ମାଇଲା ॥
ନହୁଷ କ୍ରୋଧ ମନ ହୋଇ । ନହୁଷଙ୍କୁ ସେ ଶାପ ଦେଇ ॥
ତୁ ସର୍ପ ହୁଅ ବେଗ ହୋଇ । ଯେଣୁ ସଙ୍କଟ ଦେଲୁ ତୁହି ॥
ଯେ ହେତୁ ଋଷିଙ୍କ ଶାପରୁ । ଚ୍ୟୁତ ସେ ହୋଇଲା ସ୍ୱର୍ଗରୁ ॥
ପରମେଶ୍ୱର ଧ୍ୟାନ କରି । ବ୍ରହ୍ମହତ୍ୟା ଦୋଷରୁ ତରି ॥
ସ୍ୱର୍ଗରେ ଇନ୍ଦ୍ର ପୁନର୍ବାର । ଦେବଙ୍କୁ ଘେନି ସେ ବିହାର ॥
ଇନ୍ଦ୍ରଙ୍କୁ ଦେବଋଷିମାନେ । ଅଶ୍ୱମେଧ ଯଜ୍ଞ ବିଧାନେ ॥
ମହାପୁରୁଷ ଆରାଧନ । ଦୀକ୍ଷା କରାଇଲେ ରାଜନ ॥
ଏ ଅନନ୍ତରେ ଦେବମୟ । ସର୍ବାତ୍ମା ପୁରୁଷ ଅବ୍ୟୟ ॥
ଇନ୍ଦ୍ର ବ୍ରହ୍ମ ଋଷି ସହିତେ । ଆରାଧି ଅଶ୍ୱମେଧ ମତେ ॥
ବ୍ରହ୍ମବଧ ପାପ ସମୂହ । ଯଜ୍ଞରେ କରିଗଲା କ୍ଷୟ ॥
ରବି କିରଣେ ତମ ପ୍ରାୟ । ସକଳ ପାପ ଗଲା କ୍ଷୟ ॥
ଅଶ୍ୱମେଧରେ କରି ଇନ୍ଦ୍ର । ମରୀଚି ଆଦି ମୁନିବୃନ୍ଦ ॥
ଆରାଧି ପୁରୁଷ ପୁରାଣ । ସ୍ୱର୍ଗେ ହୋଇଲେ ସେ ରାଜନ ॥
ଯଜ୍ଞର ପ୍ରସାଦରୁ କରି । ନିଷ୍ପାପ ହେଲେ ବଜ୍ରଧାରୀ ॥
ଅଶେଷ ପାପୀମାନଙ୍କର । ପାପକୁ କରଇ ଯେ ଦୂର ॥
ଏ ମହାସୁଖ ଜ୍ଞାନମୟୀ । ଯେ ଜନ ଶ୍ରଦ୍ଧାରେ ଶୁଣଇ ॥
ଭଗତ ଜନରେ ବର୍ଣ୍ଣନ । ଇନ୍ଦ୍ର ଜୟ ମୋକ୍ଷ କାରଣ ॥
ଯେ ପ୍ରାଣୀ ପ୍ରୀତିରେ ପଢଇ । ଶ୍ରଦ୍ଧାରେ କରି ଯେ ଶୁଣଇ ॥
ଗାୟନ କରେ ପ୍ରତିଦିନ । ସର୍ବ ସିଦ୍ଧ ଲଭେ ସେ ଜନ ॥
ଶତ୍ରୁକୁ ଜୟ ଧନ ଯଶ । ପାପ ମୋଚନ ଦୀର୍ଘାୟୁଷ ॥
ସର୍ବ କଲ୍ୟାଣ ତାର ହୋଇ । ଧନଧାନ୍ୟ ଯଶ ଲଭଇ ॥
ବୋଲଇ ଦାସ ଜଗନ୍ନାଥ । ଇନ୍ଦ୍ର ଯେ ପାପ କଲା ନାଶ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଇନ୍ଦ୍ର ବିଜୟ କଥନେ ନାମ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

### ପରୀକ୍ଷିତ ଉବାଚ

ଶୁକ ଚରଣ ଧରି ରାଜା । ସାନନ୍ଦ ମନେ କରି ପୂଜା ॥
ଭୋ ମୁନି ଅସମ୍ଭବ କଥା । ବୃତ୍ର ଅସୁରର ବ୍ୟବସ୍ଥା ॥
ରଜ ତାମସ ଭାବ ତାର । ପାପୀ ଅଟଇ ବୃତ୍ରାସୁର ॥
ଅଖିଳ ହେତୁ ଭଗବାନ । ଯେହାର ମତି ବା କେସନ ॥
ସତ୍ତ୍ୱ ପ୍ରଧାନ ଦେବଗଣ । ନିର୍ମଳ ଆତ୍ମା ମୁନିଜନ ॥
ମୁକୁନ୍ଦ ପାଦ ପଙ୍କଜରେ । ଯେହାଙ୍କ ମନ ନୋହେ ସ୍ଥିରେ
ରଜ ଗୁଣରେ ଯୁକ୍ତ ହୋଇ । ସଂସାରେ ଯେତେକ ଅଛଇ ॥
ଏହାର ମଧ୍ୟେ କେହୁ ଜନ । ଶ୍ରେୟ କରଇ ଆଚରଣ ॥
ମୋକ୍ଷକୁ ବାଞ୍ଛା ଏ ସଂସାରେ । ସିଦ୍ଧେ ଯେ ଅଛନ୍ତି ଅପରେ ॥
ଏହାଙ୍କ ମଧ୍ୟେ କେହି ଜନ । କଷ୍ଟେ ଲଭନ୍ତି ଭଗବାନ ॥
ଦୁର୍ଲ୍ଲଭ ମୁନିମାନଙ୍କର । ବିଷ୍ଣୁ ଭଗତ ଯେଉଁ ନର ॥
କୋଟିକେ ଗୋଟିକେ ସେଥାଇ । ଶୁଣିବା ସାବଧାନେ ହୋଇ ॥
ସ୍ୱଭାବେ ବୃତ୍ର ଅତି ପାପ । ଲୋକଙ୍କୁ ଦେଇଅଛି ତାପ ॥
କେମନ୍ତେ ମହା ଘୋର ରଣେ । ମତି ହୋଇଲା ନାରାୟଣେ ॥
ଏଣେ ସଂଶୟ ମୋର ମନ । କହିବା ମୋତେ ତପୋଧନ ॥
ଯେ ବୃତ୍ର ଘୋର ସଂଗ୍ରାମରେ । ବଳେ ତୋଷିଲା ବ୍ରଜଧରେ ॥
ଯେମନ୍ତେ ରାଜା ପ୍ରଶ୍ନ ଶୁଣି । ଆନନ୍ଦେ ସେ ବାଦରାୟଣି ॥
ହରଷ ହୋଇ ମୁନିବର । ବଚନ କହନ୍ତି ମଧୁର ॥

## ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଏକ ମନେ । ଯେ ଇତିହାସ ପୁରାତନେ ॥
ବେଦବ୍ୟାସ ବାକ୍ୟରୁ ମୁହିଁ । ନାରଦ ମୁଖୁ ଶୁଣିଲଇଁ ॥
ପୂର୍ବେ ସୁରସେନ ଦେଶରେ । ଥିଲା ଯେ ଏକ ନୃପବରେ ॥
ଚିତ୍ରକେତୁ ନାମ ତାହାର । କାମଧେନୁ ପୃଥ୍ୱି ଯାହାର ॥
ଦଶ ସହସ୍ର ପତ୍ନୀ ତାର । ରୂପେ କି ଦେବା ପଟାନ୍ତର ॥
ଯେତେ ଅଛନ୍ତି ତାର ନାରୀ । ପୁତ୍ର ନୋହିଲା ସେ କାହାରି ॥
ରୂପେ ସୁନ୍ଦର ମନୋହର । ବିଦ୍ୟା ସମ୍ପତ୍ତି ମତି ଧୀର ॥
ଏ ସର୍ବ ଗୁଣ ଅଛି ତାର । ସୁତ ନୋହିଲା ନୃପବର ॥
ଅମାତ୍ୟ ସମ୍ପଦ ସହିତେ । ପଟ୍ଟ ମହିଷୀ ତାର ଯେତେ ॥
କାମକୁ ପ୍ରବେଶ ଯେ ମହୀ । ସୁଖ ନୋହିଲେ ତାର କେହି ॥
ଶୁଣ ରାଜନ ଏକ ଦିନେ । ଚିତ୍ରକେତୁ ରାଜା ଭୁବନେ ॥
ଅଙ୍ଗିରା ଋଷି ବ୍ରହ୍ମ ସୁତେ । ମିଳିଲେ ରାଜାର ଅଗ୍ରତେ ॥
ସ୍ୱଇଚ୍ଛା ଲୋକରେ ବିହରେ । ମିଳିଲେ ଚିତ୍ରକେତୁ ଘରେ ॥
ତାହାକୁ ଦେଖି ନୃପବର । ସତ୍ୱରେ କଲା ନମସ୍କାର ॥
ଉତ୍ତମ ଆସନେ ବସାଇ । ପୂଜିଲା ପାଦ୍ୟେ ଅର୍ଘ୍ୟ ଦେଇ ॥
ସୁଖେ ଆସନେ ବସି ଋଷି । ଚିତ୍ରକେତୁକୁ ପରଶଂସି ॥
ଭଗତି ଦେଖିଣ ତାହାର । ଆନନ୍ଦ ହୋଇ ଋଷିବର ॥
ରାଜାକୁ କରି ଆରାଧନ । କହନ୍ତି ମଧୁର ବଚନ ॥

## ଅଙ୍ଗିରା ଉବାଚ

ଭୋ ରାଜା ଚିତ୍ରକେତୁ ଶୁଣ । ତୁମ୍ଭର ପରମ କଲ୍ୟାଣ ॥
ତୁମ୍ଭର ପାତ୍ରମନ୍ତ୍ରୀ ଯେତେ । କୁଶଳେ ଟିକିଏ ସମସ୍ତେ ॥
ଦାରା ତନୟ ଭୃତ୍ୟ ଯେତେ । ସୁହୃଦ ପରଜା ସହିତେ ॥
ଯାହାର ଆତ୍ମ ଆତ୍ମା ବଶ । ତାହାର ବଶ ଯେ ଅଶେଷ ॥
ଯାହାର ଆତ୍ମା ବଶ ହୋଇ । ସର୍ବତ୍ର ପୂଜ୍ୟ ସେ ଅଟଇ ॥
ଆତ୍ମା ଆତ୍ମ ସମ୍ପଦ ଯେତେ । ଅମାତ୍ୟ ପୁରସ୍ଥ ସହିତେ ॥
ଏ ତୁମ୍ଭ ପ୍ରିୟ ନୋହେ କେହି । ଏମନ୍ତ ପ୍ରାୟେ ମୁଁ ମଣଇ ॥
ଚିନ୍ତା ମଳିନ ମୁଖ ତୋର । ଅଲବ୍ଧ କାମ ନୃପବର ॥
ଶୁଣ ପରୀକ୍ଷ ନୃପମଣି । ରାଜା ଯେମନ୍ତ ବାକ୍ୟ ଶୁଣି ॥
ସାଦରେ ପୁତ୍ରକାମୀ ହୋଇ । ହରଷେ ମୁନିଙ୍କି କହଇ ॥

## ଚିତ୍ରକେତୁ ଉବାଚ

ଭୋ ମୁନି ତୁମ୍ଭ ଅଗୋଚର । କି ଅବା ଅଛି ଏ ସଂସାର ॥
ପ୍ରାଣୀର ଅନ୍ତର ବାହାରେ । ଦେଖ ତପସ୍ୟା ପ୍ରଭାବରେ ॥
ତୁମ୍ଭର ଆଜ୍ଞା ପରମାଣେ । କହିବି ଶୁଣ ସାବଧାନେ ॥
ମନରେ ଚିନ୍ତା ଯେ ମୋହର । ପ୍ରଶ୍ନ ଯେ କଲ ମୁନିବର ॥
ଦେବଗଣଙ୍କୁ ଯେ ଦୁର୍ଲ୍ଲଭ । ସାମ୍ରାଜ୍ୟ ସମ୍ପଦ ବିଭବ ॥
ପୁତ୍ର ବିହୀନେ ମୋର ଦେହୀ । କେତେହେଁ ସୁଖ ନ ଲଭଇ ॥
କ୍ଷୁଧା ତୃଷାରେ ଯେହ୍ନେ ଜନ । ଦିନକୁ ଦିନ ହୋଯେ କ୍ଷୀଣ ॥
ଭୋ ମହାଭାଗ ମୁନିବର । ଯେମନ୍ତେ ତରଇ ସଂସାର ॥
ପିତୃ ଋଣରୁ ମୋତେ ପାର । କରିବା ତୁମ୍ଭେ ବିପ୍ରବର ॥
ପୁତ୍ର ଯେମନ୍ତେ ମୋର ହୋଇ । ସଂସାର ଦୁଃଖରୁ ତରଇ ॥
ରାଜାର ଶୁଣି ଏ ବଚନ । କୃପାଳୁ ବ୍ରହ୍ମାର ନନ୍ଦନ ॥
ଯଜ୍ଞକୁ କରି ମୁନିବର । ଆରାଧି ଅଖିଳ ଈଶ୍ୱର ॥
ରାଜାର ଜ୍ୟେଷ୍ଠ ଯେଉଁ ନାରୀ । କୃତଦ୍ୟୁତ ନାମ ତାହାରି ॥
ଯଜ୍ଞରୁ ଚରୁ ତାକୁ ଦେଲେ । ରାଜାକୁ ଏମନ୍ତ କହିଲେ ॥
ଭୋ ଚିତ୍ରକେତୁ ନୃପବର । ହୋଇବ ଯେକ ତୋ କୁମର ॥
ହରଷ ଶୋକ ଦେବ ତୋରେ । କହିଣ ଗଲେ ନୃପବରେ ॥
ଚିତ୍ରକେତୁର ତହୁଁ ସେହି । କୃତଦ୍ୟୁତ ଯେ ମହା ଦେଈ ॥
ଚରୁ ଭୋଜନର ମାତ୍ରକେ । ଗର୍ଭ ଧଇଲା ସେହୁ ସୁଖେ ॥
ଅଗ୍ନିର କୁମାର ଯେମନ୍ତ । ଗର୍ଭେ ଧଇଲା ସେହି ମତ ॥
ତାହାର ଗର୍ଭ ପ୍ରତିଦିନେ । ଶୁକ୍ଳ ପକ୍ଷରେ ଚନ୍ଦ୍ର ଯେହ୍ନେ ॥
ଚିତ୍ରକେତୁ ହରଷ ମନ । ଗର୍ଭ ବଢ଼ିଲା ପ୍ରତିଦିନ ॥
ଏଥୁ ଅନ୍ତରେ ସମ୍ୱତ୍ସରେ । ଜନ୍ମିଲା ତାହାର କୁମରେ ॥
ଚିତ୍ରକେତୁର ଯେତେ ଲୋକ । ହରଷ ଲଭିଲେ ଅନେକ ॥
ହରଷ ହୋଇ ସେ ରାଜନ । ତକ୍ଷଣେ କରି ସେ ସ୍ନାହାନ ॥
ଶୁଚି ହୋଇଣ ନୃପବର । ଭୂଷଣ ହୋଇ ଅଳଙ୍କାର ॥
ବ୍ରାହ୍ମଣ ଆଦି ବେଦଧର୍ମ । କଲା ସେ ପୁତ୍ରଜାତ କର୍ମ ॥
ବ୍ରାହ୍ମଣେ ସୁବର୍ଣ୍ଣ ରଜତ । ଦେଲା ଧେନୁ ଶତ ଅୟୁତ ॥
ପୃଥିବୀ ହୟ ଗଜଗଣ । ଦେଲା ସେ ବିବିଧ ବସନ ॥
ଯେ ଲୋକ ଯାହା ବାଞ୍ଛା କଲା । ମନ ସନ୍ତୋଷେ ବହି ନେଲେ
ପ୍ରାଣୀ ସନ୍ତୋଷେ ମଘବାନ । ବରଷା କରଇ ଯେସନ ॥
ପୁତ୍ର ଆୟୁଷ ଯଶ ଧନ । ବିବୃଦ୍ଧି ଅର୍ଥେ ଦେଲା ଦାନ ॥
କଷ୍ଟରେ ଲଭିଲା ସେ ସୁତ । ପୁତ୍ରରେ ସ୍ନେହ ତା ବହୁତ ॥
ଦରିଦ୍ର ଯେହ୍ନେ ଧନ ପାଇ । ତେସନ ସ୍ନେହ ଯେ ବଢ଼ଇ ॥
ମାତାର ସ୍ନେହ ଅତି ତାରେ । ମୋହ ହୋଇଲା ପୁତ୍ରଠାରେ ॥
କୃତଦ୍ୟୁତି ସପତ୍ନୀମାନେ । ଦୁଃଖିତ ସନ୍ତତି କାରଣେ ॥
ଚିତ୍ରକେତୁ ଯେ ସ୍ନେହ ବହି । କୃତଦ୍ୟୁତିର ପୁତ୍ର ତହିଁ ॥
ଅନ୍ୟ ଯେ ପତ୍ନୀମାନେ ଛନ୍ତି । ସେ ଭାବେ ନାହିଁ ସ୍ନେହମତି ॥

ଅପୁତ୍ର ଦୁଃଖ ତାହାଙ୍କର । ରାଜାର ଯେଣୁ ଅନାଦର ॥
ସେମାନେ ମନ ଦୁଃଖ କରି । ଆତ୍ମାର ନିନ୍ଦାକୁ ଆଚରି ॥
ପାପିଷ୍ଠ ଏ ଯେ କୃତଦ୍ୟୁତି । ଧିକ ଏହାର ଦୁଷ୍ଟମତି ॥
ଗୃହ ସମ୍ପଦ ଯେ ସ୍ୱାମୀର । ଏ ଧିକ ହେଉ ଦୁରାଚାର ॥
ଏହି ସପତ୍ନୀର ଚରଣେ । ଦାସୀ ହୋଇଲୁ ଆମ୍ଭେମାନେ ॥
ଦାସୀର କି ଅବା ସନ୍ତାପ । ସ୍ୱାମୀ ସେବଇ ଅବିରତ ॥
ମାନ ଲଭିଲୁ ଅନୁକ୍ଷଣେ । ଦାସୀର ଦାସୀ ହୋଇ ଯେହ୍ନେ ॥
ସପତ୍ନୀ ପୁତ୍ର ବିଭୂତିରେ । ଅନ୍ଧ ହୋଇଲେ କ୍ରୋଧଭରେ ॥
ସକଳେ ଏକ ଚିତ୍ତ ହେଲେ । ରାଜାର ଦୋଷ ଆଚରିଲେ ॥
ଦାରୁଣ ଚିତ୍ତ ସ୍ତିରୀ ଜନ । କ୍ରୋଧେ ହୋଇଲେ ହତଜ୍ଞାନ
ସ୍ୱାମୀକି ଅତି କ୍ରୋଧ କଲେ । ଗରଳ କୁମରକୁ ଦେଲେ ॥
ଏହା ନ ଜାଣେ କୃତଦ୍ୟୁତି । ସପତ୍ନୀମାନଙ୍କର ଗତି ॥
ପୁତ୍ର ଶୁଆଇ ଥିଲା ଘରେ । ଗଲା ସେ ଅନ୍ୟ ଗୃହାନ୍ତରେ ॥
ଅନେକ ବେଳ ଶୋଇଥିଲା । ପୁତ୍ର ଆଣିମା ମନେ କଲା ॥
ଭୋ ସଖୀ ପୁତ୍ର ଆଣ ମୋର । ଧାତ୍ରୀକି ବୋଇଲା ଉତ୍ତର ॥
ଧାଇ ତାହାର ଆଜ୍ଞା ପାଇ । ବାଳକ ନିକଟେ ମିଳଇ ॥
ଦେଖିଲା ପୁତ୍ର ଅଛି ଶୋଇ । ନିବୃତ୍ତ ନେତ୍ର ତାର ଦୁଇ ॥
ପ୍ରାଣ ଇନ୍ଦ୍ରିୟ ନାହିଁ ତାର । ଦେଖି ପଡ଼ିଲା ସେ ଭୂମିର ॥
ହତ ହୋଇଲା ବୋଲି ଧାଇ । ପଡ଼ିଲା ଅଚେତନ ହୋଇ ॥
ବେନି କରେଣ ହୃଦ ତାଡ଼ି । ଆରତେ ପାଡୁଅଛି ରଡି ॥
ତା ଦେଖି ପାଟ ମହାଦେଈ । ଧାଇଁଲା ଅସମ୍ଭାଳ ହୋଇ ॥
ପୁତ୍ରର ନିକଟେ ମିଳିଲା । ମୃତ ପୁତ୍ରକୁ ସେ ଦେଖିଲା ॥
ମହାପ୍ରବଳ ଶୋକ ଭରେ । ଭୂମିରେ ପଡ଼ିଲା ନିର୍ଭରେ ॥
ତକ୍ଷଣେ ମୋହଗତ ହୋଇ । କେଶ ବସନେ ଜ୍ଞାନ ନାହିଁ ॥
ରାଜାର ଅନ୍ତଃପୁର ଜନ । ସ୍ତିରୀ ପୁରୁଷ ହେ ରାଜନ ॥
ରୋଦନ ଶୁଣି ସେ ଅଇଲେ । ତା ତୁଲେ ଶୋକଭର ହେଲେ ॥
କହିବା ଶୁଣ ନୃପବର । ଯେତେକ ସପତ୍ନୀ ତାହାର ॥
ଅନ୍ତରେ କ୍ରୋଧ ଆଚରିଲେ । କପଟେ ରୋଦନ ସେ କଲେ ॥
ପୁତ୍ର ମରଣ ରାଜା ଶୁଣି । ମୃତ୍ୟୁର କାରଣ ନ ଜାଣି ॥
ମୋହରେ ନ ଦିଶଇ ପଥ । ପଦ ପଦକେ ଜ୍ଞାନ ହତ ॥
ସ୍ନେହ ବନ୍ଧରୁ ଶୋକ ବଢ଼ି । ମୂର୍ଚ୍ଛିତ ହୋଇ ପାଡ଼େ ରଡି ॥
ଆମାତ୍ୟ ଆଦି ଯେତେ ଜନ । ଦେଖୁ ଅଛନ୍ତି ହେ ରାଜନ ॥
ମୃତ ବାଳକ ପାଦତଳେ । ପଡ଼ିଲା ଯାଇ ମତି ଭୋଳେ ॥
ଫିଟିଲା ତାର ବନ୍ଧ କେଶ । ବିଚିତ୍ର ପରିଧାନ ବାସ ॥
ଦୀର୍ଘ ନିଶ୍ୱାସ ସେ ଛାଡ଼ଇ । ନୟନୁ ଅଶ୍ରୁଜଳ ବହି ॥
ନିରୋଧ କଣ୍ଠ ହାର ହୋଇ । ବଚନ ନ ପାରଇ କହି ॥
ପତିତ ଦେଖି ଶୋକଭର । ମୃତ୍ୟୁ ଲଭିଲା ତା କୁମର ॥
କୃତଦ୍ୟୁତି ଯେ ମହାଦେଈ । ବିଚିତ୍ର ବିଳାପ କରଇ ॥
ସ୍ତନ ଯୁଗଳ ଯେ ତାହାର । ମଣ୍ଡିତ କୁଙ୍କୁମ ପଙ୍କର ॥
ଅଞ୍ଜନ ସହିତେ ଲୋତକ । ସ୍ତନ କୁଙ୍କୁମ ଧଉତକ ॥
କେଶ ହୋଇଲା ଅସମ୍ଭାଳ । ଖସି ପଡ଼ିଲା ଫୁଲମାଳ ॥
କୁରରୀ ପ୍ରାୟେ ଶୋକ ଭର । ରୋଦନ କରଇ ସୁସ୍ୱର ॥
ହେ ବିହି ଅତି ତୁ ଦାରୁଣ । ବାଳକ ପ୍ରାୟେ ଆଚରଣ ॥
ଆପଣେ କରିଣ ରଚନ । କ୍ଷଣକେ କରୁ ଭଗ୍ନମାନ ॥
କେ ଅବା ଅଛି କେବା କାହିଁ । ଏହାର ନିଦାନ ନ ପାଇ ॥
ଯେବେ ସଂସାରେ ପ୍ରାଣୀଙ୍କର । ଅକ୍ରମ ଜନ୍ମ ମରଣର ॥
ସ୍ନେହ ପାଶକୁ ବଢ଼ାଇଣ । ଆପଣେ ସୃଷ୍ଟିର ଭିଆଣ ॥
ଛେଦନ କରୁ କି କାରଣେ । ଅଜ୍ଞାନ ପ୍ରାଣୀଏ ଯେସନେ ॥
ହେ ତାତ ତନୟ ମୋହର । ଦେଖୁ କି ନାହିଁ ତୋ ପିଅର ॥
ଶୋକ ସାଗରେ ମୋତେ ଥୋଇ । ଛାଡ଼ିଣ ନ ଯା ବାବୁ ତୁହି ॥
ମୁଁ ଯେ ପାପିଷ୍ଠୀ ଦୁଃଖୀ ଜନ । ତୁ ମୋତେ ନ ଯାଅ ଛାଡ଼ିଣ ॥
ତୋହର ଆଶ୍ରେ ବାବୁ ମୁହିଁ । ଦୁସ୍ତର ନରକୁ ତରଇ ॥
ଦାରୁଣ ଯମ ବଶ ହୋଇ । ଦୂରକୁ ନ ଯା ଛାଡ଼ି ତୁହି ॥
ଉଠ ହେ ନୃପତି ନନ୍ଦନ । ଆନନ୍ଦେ କର ସ୍ତନ୍ୟ ପାନ ॥
ସମ ବୟସୀ ଯେ କୁମରେ । ଡାକୁ ଅଛନ୍ତି ବାବୁ ତୋରେ ॥
ବାଳକ ସଙ୍ଗତେ ବିହର । ବହୁତ ନିଦ୍ରା ଦୂର କର ॥
ମୋହର ଶୋକ ଦୂର କର । ଆବର ଯେତେ ଲୋକଙ୍କର ॥
ହରଷ ନୟନ ପଙ୍କଜ । ତୋହର ନ ଦେଖି ତନୁଜ ॥
ଦାରୁଣ ଯମ କି ତୋହରେ । ଘେନାଇ ଗଲା ନିଜପୁରେ ॥
ଏଣୁ ତୋ କୋମଳ ବଚନ । ଶୁଣିଲି ନାହିଁ ଭୋ ନନ୍ଦନ ॥

### ଶ୍ରୀ ଶୁକ ଉବାଚ

ମୃତ ପୁତ୍ରର ଠାରେ ତାର । ରୋଦନ କରେ ନୃପବର ॥
ଚିତ୍ରକେତୁ ମଗ୍ନ ଶୋକରେ । ରୋଦନ କରେ ଉଚ୍ଚସ୍ୱରେ ॥
ବିଳାପ ପତ୍ନୀର ସହିତେ । ନୃପକୁ ଦେଖିଣ ସମସ୍ତେ ॥
ଯେତେ ଅମାତ୍ୟ ଆଦି ତାର । ରୋଦନ କଲେ ଉଚ୍ଚସ୍ୱର ॥
ସ୍ତିରୀ ପୁରୁଷ ଯେତେ ଜନ । ସକଳେ ହୋଇ ଅଚେତନ ॥
ଏମନ୍ତେ ଶୁଣ ନୃପବର । ସକଳେ ଅତି ଦୁଃଖତର ॥
ଦୁଃଖୀ ରାଜନ ଦେଖି ମୁନି । ଅଙ୍ଗିରା ନାରଦଙ୍କୁ ଘେନି ॥

ଶୀଘ୍ରେଣ ଦୁହେଁ ଚଳିଗଲେ । ରାଜାର ପୁରରେ ମିଳିଲେ ॥
ବୋଲଇ ବିପ୍ର ଜଗନ୍ନାଥ । ଚିତ୍ରକେତୁ ଶୋକ ଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଚିତ୍ରକେତୁ ରାଜା ଚରିତେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀଶୁକ ଉବାଚ

ଶୋକରେ ଜ୍ଞାନ ଭ୍ରଷ୍ଟ ହୋଇ । ଚିତ୍ରକେତୁ ପଡ଼ି ଅଛଇ ॥
ନାରଦ ଅଙ୍ଗିରସ ଦୁଇ । ମିଳିଲେ ତାର ପାଶ ଯାଇ ॥
ଉତ୍ତମ ବାକ୍ୟମାନ କହି । ବୋଧୁ ଅଛନ୍ତି ରାଜା ଚାହିଁ ॥
ଭୋ ଚିତ୍ରକେତୁ ନୃପବର । ତୁମ୍ଭେ ଯାହାକୁ ଶୋକ କର ॥
ଯେହାର ସୁତ ପୂର୍ବେ ତୁହି । ତୁ ପିତା କେତେ ଜନ୍ମ ହୋଇ ॥
ଏବେ ତୁମ୍ଭର ସୁତ ଏହି । ସଂସାର ମାୟା ଏ ଅଟଇ ॥
ଯେସନେ ନଦୀସ୍ରୋତ ଜଳେ । ବାଲୁକା ନ ଥାଇ ନିଷ୍ଚଳେ ॥
ତେସନେ ପ୍ରାଣୀ ଯଥା କାଳେ । ଆସଇ ଯାଇ କର୍ମବଳେ ॥
ବୀଜ ଯେସନେ ହୋଇ ନୋହି । ପ୍ରାଣୀ ହିଁ ତେମନ୍ତ ଅଟଇ ॥
ଈଶ୍ୱର ମାୟାରେ ଜଗତ । ଉତ୍ପତ୍ତି ନାଶ ସର୍ବ ଭୂତ ॥
ସ୍ଥାବର ଅଦି କରି ଯେତେ । ଚର ଅଚର ଏ ସମସ୍ତେ ॥
ଜନ୍ମ ମରଣ ଆଗପଛ । ହୋଅଇ ଦେଖୟେ ପ୍ରତ୍ୟକ୍ଷ ॥
ଭୂତରେ କରିଣ ଈଶ୍ୱର । ଜନ୍ମଇ ଅଖିଳ ସଂସାର ॥
ପ୍ରତିପାଳନ କରି ପୁଣ । ହତ କରଇ ତତକ୍ଷଣ ॥
ଆୟତ୍ତେ ନୋହଇ କାହାରି । ବାଳକ ଯେହ୍ନେ ଖେଳ କରି ॥
ଦେହରୁ ଦେହ ହୋୟେ ଜାତ । ରାଜନ ଶୁଣ ଏକ ଚିତ୍ତ ॥
ବୀଜରୁ ବୀଜ ଯେହ୍ନେ ଜାତ । ଦେହ ନିର୍ମିତ ଏ ଜଗତ ॥
ଆତ୍ମା ଶରୀର ଭିନ୍ନ କରି । ପୂର୍ବେ ବିଧାତା ଏ ଆଚରି ॥
ଜାତି ସଂଖ୍ୟାରେ କରି ଭିନ୍ନେ । ସୁବର୍ଣ୍ଣ ନାନା ଦ୍ରବ୍ୟ ଯେହ୍ନେ ॥

### ଶ୍ରୀ ଶୁକ ଉବାଚ

ଏସନ ବାକ୍ୟ ବିପ୍ରଙ୍କର । ଆଶ୍ୱସ୍ତ ହୋଇ ନୃପବର ॥
ମଳିନ ମୁଖ ଆପଣାର । ପୋଛିଣ କହଇ ମଧୁର ॥

### ଚିତ୍ରକେତୁ ଉବାଚ

କେ ତୁମ୍ଭେ ଦୁଇ ମହାଜନ । ଅଶେଷ ଜ୍ଞାନରେ ସଂପୂର୍ଣ୍ଣ ॥
ଜ୍ଞାନୀମାନଙ୍କ ତୁମ୍ଭେ ବର । ଅବଧୂତ ବେଶ ତୁମ୍ଭର ॥
ସ୍ୱଭାବେ ଗୁପ୍ତ ପ୍ରାୟେ ହୋଇ । ଆସିଣ ଅଛ ତୁମ୍ଭେ ଦୁଇ ॥
ବିଷ୍ଣୁର ଦୂତ ଯେଉଁ ଲୋକେ । ପୃଥ୍ୱୀରେ ଭ୍ରମୁଥାନ୍ତି ଥୋକେ ॥
ମୋହର ପ୍ରାୟେ ଦୁଃଖୀ ହୋଇ । ସଂସାରେ ଯେତେ ବା ଅଛଇ ॥
ଏହାଙ୍କ ହିତ ଇଚ୍ଛା କରି । ଏମାନେ ବୁଲନ୍ତି ବିହରି ॥
ଗୌତମ ଅସିତ ଦେବଳ । କୁମାର ବଶିଷ୍ଠ କପିଳ ॥
ମାରକଣ୍ଡ ବ୍ୟାସ ଅଙ୍ଗିରା । ଲୋମଶ ଦତ୍ତ ବେଦଶିରା ॥
ଦୁର୍ବାସା ଯାଜ୍ଞବଳକ ମୁନି । ଜାତୁକର୍ଣ୍ଣ ବାଦରାୟଣି ॥
ଋତୁଧ୍ୱଜ ଯେ ଶ୍ରୁତଦେବ । ପଞ୍ଚଶିଖ ହିରଣ୍ୟନାଭ ॥
କୌଶଲ୍ୟା ନାରଦ ଆସୁରୀ । ଧୌମ୍ୟ ଚ୍ୟବନ ପତଞ୍ଜଳି ॥
ସେବନ୍ତି ଆଦି ସିଦ୍ଧେଶ୍ୱର । ଯେମାନେ ଭ୍ରମନ୍ତି ସଂସାର ॥
ପ୍ରାଣୀର ମଙ୍ଗଳ କାରଣେ । ଭ୍ରମୁୟେ ଥାନ୍ତି ଅନୁକ୍ଷଣେ ॥
ସ୍ୱଭାବେ ଗ୍ରାମ ପଶୁ ମୁହିଁ । ଅନ୍ଧ ତମରେ ବୁଡ଼ିଛଇଁ ॥
କେ ଦୁଇ ସିଦ୍ଧ ତୁମ୍ଭେ କହ । ଜ୍ଞାନ ଦୀପକୁ ମୋତେ ଦିଅ ॥

### ଅଙ୍ଗିରା ଉବାଚ

ହେ ଚିତ୍ରକେତୁ ନୃପବର । ମୁଁ ଦେଇଥିଲି ଏ କୁମର ॥
ଅଙ୍ଗିରା ନାମଟି ମୋହର । ଯେ ଦେଖ ବ୍ରହ୍ମାର କୁମର ॥
ଅତ୍ୟନ୍ତ ବିଷ୍ଣୁଭକ୍ତ ଏହି । ନାରଦ ବୋଲି ଯାକୁ କହି ॥
ଦୁସ୍ତର ଶୋକେ ମଗ୍ନ ତୋର । ଦେଖିଲୁ ଯହୁଁ ନୃପବର ॥
ତୋହର ଯୋଗ୍ୟ ଏ ନୁହଇ । ଏହା ବିଚାରି ଆମ୍ଭେ ଦୁଇ ॥
ତୋହରେ ଅନୁଗ୍ରହ କରି । ଆଇଲୁ ଶୁଣ ଦଣ୍ଡଧାରୀ ॥
ବ୍ରାହ୍ମଣ ବିଷ୍ଣୁଭକ୍ତ ହେତ । ଶୋକେ ନ ବୁଡ଼ ମହାବାହୁ ॥
ପୂର୍ବେ ତୋ ଗୃହେ ଆସିଥିଲୁ । ସେ ଦିନେ ଜ୍ଞାନକୁ କହିଲୁ ॥
ପୁତ୍ର ବିଷୟେ ଜ୍ଞାନ ତୋର । ଜାଣିଣ ଦେଲୁ ପୁତ୍ରବର ॥
ଏବେ ତୁ ପୁତ୍ର ଶୋକ ଭର । ଅନୁଭବିଲୁ ନୃପବର ॥
ଐଶ୍ୱର୍ଯ୍ୟ ରାଜ୍ୟ ସୈନ୍ୟ କୋଷ । ଶୂରସେନ ଲୋକ ଅଶେଷ ॥
ଯେ ସର୍ବ ଶୋକ ମୋହ ଆର । ଭୟେ ଭାଜିଲେ ନୃପବର ॥
କର୍ମକୁ ଧାୟି ଯେଉଁ ଜନ । କରଇ ନାନା କର୍ମମାନ ॥
ନାନା କର୍ମରେ ମନ ତାର । ପ୍ରବେଶ ହୋୟେ ନିରନ୍ତର ॥
ଏମନ୍ତ ଦେହୀମାନଙ୍କର । ଦେହଟି ଏ ମାୟା ସଂସାର ॥
ବିବିଧ କ୍ଳେଶ ଦେହୀଙ୍କର । ସନ୍ତାପ ଯେତେକ ଅସାର ॥
ଏହି କାରଣେ ହେ ରାଜନ । ଆପଣା ସୁସ୍ଥ କର ମନ ॥
ଏ ସର୍ବ ସଂସାର ଅସାର । ଦେହର ଗତିକି ବିଚାର ॥
ଶୋକ ତୁ ତେଜ ନୃପବର । ଆତ୍ମା ମନକୁ ସ୍ଥିର କର ॥

## ନାରଦ ଉବାଚ

ଏ ଯେ ମୋହର ମନ୍ତ୍ର ଦୀକ୍ଷା । ଶୁଚି ହୋଇଣ କର ଶିକ୍ଷା ॥
ଯେ ବିଦ୍ୟା ଧରି ସାତ ଦିନ । ଦେଖିବୁ ପ୍ରଭୁ ଭଗବାନ ॥
ପାଦ ପଙ୍କଜଟି ଯାହାର । ଆଶ୍ରୟ କରିଣ ଶଙ୍କର ॥
ସର୍ବ ବିଷୟକୁ ଛାଡ଼ିଲେ । ତକ୍ଷଣେ ପଦକୁ ଲଭିଲେ ॥
ତୁମ୍ଭେ ଏ ବିଦ୍ୟାର ପ୍ରସାଦେ । ତାହା ଲଭିବ ଅପ୍ରମାଦେ ॥
ବୋଲଇ ଦାସ ଜଗନ୍ନାଥ । ହରି ଚରିତ ଭାଗବତ ॥
ଚିତ୍ରକେତୁ ଶୋକ ଖଣ୍ଡନ । ସୁଜନେ ଏଣେ ଦିଅ ମନ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଚିତ୍ରକେତୁ ପୁତ୍ରଶୋକ ଖଣ୍ଡନେ ନାମ ପଞ୍ଚଦଶୋଽଧ୍ୟାୟଃ ।*

## ଷୋଡଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏଥୁ ଅନ୍ତରେ ହେ ରାଜନ । ମଲା ଯେ ନୃପତି ନନ୍ଦନ ॥
ନାରଦ ମୁନି ତାଙ୍କୁ ରାଇ । ବୋଲନ୍ତି ଜୀବ ଶୁଣ ତୁହି ॥
ଦେଖାନ୍ତି ଜ୍ଞାତି ସହୋଦରେ । ପଡ଼ିଣ ଅଛନ୍ତି ଭୂମିରେ ॥

### ନାରଦ ଉବାଚ

ହେ ଜୀବ ଦେଖ ତୋର ମାତା । ଶୋକ ମୋହରେ ବଡ଼ ଚିନ୍ତା ॥
ତୋ ପିତା ଶୋକ ଗୁରୁତର । ବନ୍ଧୁ ବାନ୍ଧବ ଯେତେ ତୋର ॥
ଆପଣା କଳେବରେ ପଶ । ଶେଷ ତୋ ଯେତେକ ଆୟୁଷ ॥
ସୁହୃଦ ଗଣେ ବୃତ୍ତ ହୋଇ । ନାନା ଭୋଗକୁ ଭୁଞ୍ଜ ତୁହି ॥
ନୃପ ଆସନେ ବିଜେ କର । ପିତାର ଶୋକ କର ଦୂର ॥
ଋଷିଙ୍କ ଏ ବଚନ ଶୁଣି । ସେ ଜୀବ କହୁଅଛି ବାଣୀ ॥

### ଜୀବ ଉବାଚ

କେଉଁ ଜନ୍ମରେ ଯେ ମୋହର । ହୋଇଛନ୍ତି ମାତା ପିଅର ॥
ଦେବତା ମନୁଷ୍ୟ ପଶୁରେ । ଭ୍ରମଇ ମୁହିଁ ମୋ କର୍ମରେ ॥
ବାନ୍ଧବ ଜ୍ଞାତି ମିତ୍ର ଐରି । ଯେ ଉଦାସୀନ ଦୋଷକାରୀ ॥
ଏ ସର୍ବେ ପରସ୍ପରେ ଥାନ୍ତି । କେବେ କେ ହୋଅନ୍ତି ନୋହନ୍ତି ॥
ହେମରୁ ନାନା ଦ୍ରବ୍ୟ ଯେହ୍ନେ । ଜ୍ୟୋତିରୁ ଜୀବନ ତେସନେ ॥
ସତ୍ୟ ଯେ ସମ୍ବନ୍ଧ ଲୋକରେ । ଅସତ୍ୟ ହୋଇ ସେ ବିଚାରେ ॥
ସମ୍ବନ୍ଧ ଯାବତ ଯାହାର । ଯାବତ ମମତା ତାହାର ॥
ଏ ଜୀବ ଯେ ନିତ୍ୟ ଅବ୍ୟୟ । ସୂକ୍ଷ୍ମ ସ୍ୱରୂପ ସର୍ବାଶ୍ରୟ ॥
ଆତ୍ମା ମାୟା ଗୁଣରୁ କରି । ଆତ୍ମା ସୃଷ୍ଟିକି ସେ ଆଚରି ॥
ଏହାର ପ୍ରୀତି ଅବା କେହି । ଅପ୍ରୀତି ଜନ କେହି ନାହିଁ ॥
ଏହାର ଆତ୍ମା ପର ନାହିଁ । କେବଳ ଗୁଣ ଦୋଷ ତହିଁ ॥
ଗୁଣ ଦୋଷ କ୍ରିୟାର ଫଳ । ଗ୍ରହଣ ନ କରେ ସକଳ ॥
ଉଦାସୀ ଜନ ପ୍ରାୟେ ହୋଇ । ପର ଅପରକୁ ଦେଖଇ ॥
ଏମନ୍ତ ଏକ ସେ ଈଶ୍ୱର । ସଂସାର ନିର୍ମିତ ତାହାର ॥
ଏମନ୍ତ କରିଣ ବଚନ । ଜୀବ ଚଳିଲା ହେ ରାଜନ ॥
ବିସ୍ମିତ ତାର ବନ୍ଧୁ ଜନ । ଶୋକ ଛାଡ଼ିଲେ ତତକ୍ଷଣ ॥
ତା ତହୁଁ ଜ୍ଞାନକୁ ଶୁଣିଲେ । ସେନେହ ଶାଙ୍କୁଳି ଛାଡ଼ିଲେ ॥
ଏଥୁ ଅନ୍ତରେ ଜ୍ଞାତି ଜନ । ଦେହ ଉଚିତ କର୍ମମାନ ॥
ଲୋକ ବିଧିରେ ଏହା କଲେ । ସମସ୍ତେ ତାପକୁ ଛାଡ଼ିଲେ ॥
ଶୋକ ମୋହ ଯେ ସ୍ନେହ ଦେହୀ । ତାହା ଛାଡ଼ିଲେ ଜ୍ଞାନ ପାଇ ॥
ରାଜନ ଯେତେ ପୁରନାରୀ । ଲାଜ ପାଇ ମନେ ବିଚାରି ॥
ବାଳକ ହତ୍ୟା ପାପୁଁ କରି । ହତ ହୋଇଛି ତାଙ୍କ ଶିରୀ ॥
ବ୍ରାହ୍ମଣେ ବରିଣ ଉଚିତ । ବାଳକ ହତ୍ୟାର ଯେ ବ୍ରତ ॥
ଯମୁନା କୂଳକୁ ସେ ଗଲେ । ବାଳକ ହତ୍ୟା ବ୍ରତ କଲେ ॥
ବ୍ରାହ୍ମଣ ଆଜ୍ଞା ପରମାଣେ । କଲେ ସେ ବେଦର ବିଧାନେ ॥
ଏମନ୍ତେ ଶୁଣ ହେ ରାଜନ । ଚିତ୍ରକେତୁ ବିପ୍ର ବଚନ ॥
ତକ୍ଷଣେ ଶୁଣି ଜ୍ଞାନ ପାଇ । ଗୃହ କୂପୁଁ ବାହାର ହୋଇ ॥
ସରୋବର ପଙ୍କରୁ ଯେହ୍ନେ । ଗଜ ବାହାର ବିଦ୍ୟମାନେ ॥
ତେସନେ ରାଜା ସର୍ବ ଛାଡ଼ି । ଗୋବିନ୍ଦ ପାଦେ ଚିତ୍ତ ବଢ଼ି ॥
କାଳିନ୍ଦୀ ଜଳେ ସ୍ନାନ କଲା । ପୁଣ୍ୟ କ୍ରିୟାକୁ ଆଚରିଲା ॥
ମଉନ ବ୍ରତ ହୋଇ ରାଜା । ମୁନି ଚରଣେ କଲା ପୂଜା ॥
ଏଥୁ ଅନ୍ତରେ ମୁନିବର । ଭଗତି ଦେଖିଣ ତାହାର ॥
ନାରଦ ତାଙ୍କୁ କୃପା କଲେ । ଏ ବିଦ୍ୟା ତାହାରେ କହିଲେ ॥
ପରମ ସାନନ୍ଦେ ନୃପତି । ଧ୍ୟାନେ ଗୋବିନ୍ଦ କଲେ ସ୍ତୁତି ॥
ନମସ୍ତେ ପ୍ରଭୁ ଭଗବାନ । ବାସୁଦେବ ସର୍ବ କାରଣ ॥
ପ୍ରଦ୍ୟୁମ୍ନ ଅନିରୁଦ୍ଧ ବେନି । ନମସ୍ତେ ପ୍ରଭୁ ହଳପାଣି ॥
ନମସ୍ତେ ଜ୍ଞାନର ଈଶ୍ୱର । ପରମାନନ୍ଦ ମୂର୍ତ୍ତି ଯାର ॥
ନମସ୍ତେ ଶାନ୍ତ ଆତ୍ମା ରାମ । ଅବ୍ୟୟରୂପ ପୂର୍ଣ୍ଣ କାମ ॥
ଯେ ହୃଷୀକେଶ ଯେ ମହତ । ନମସ୍ତେ ଯେ ମୂର୍ତ୍ତି ଅନନ୍ତ ॥
ମନ ବଚନେ ଅଗୋଚର । ନାମ ରୂପ ମହିମା ଯାର ॥
ଚିହ୍ନ ମାତ୍ରକେ ଯେଉଁ ନାମ । ଅରୂପରେଖ ପୂର୍ଣ୍ଣକାମ ॥
ଯାହାର ଠାରୁ ଏ ଜଗତ । ପ୍ରକାଶ ହୋଯେ ଅବିରତ ॥

ମୃତ୍ତିକା ବିକାର ଯେମନ୍ତ । ନିର୍ମାଣ କରେ ନାନା ପାତ୍ର ॥
ପ୍ରଳୟ ସ୍ଥିତି ଛାଡ ନାହିଁ । ସେ ବ୍ରହ୍ମେ ନମସ୍କାର ହୋଇ ॥
ବୁଦ୍ଧି ଇନ୍ଦ୍ରିୟ ଆଦିମନ । ଯାହାକୁ ନ ଜାଣଇ ପ୍ରାଣ ॥
ବାହ୍ୟ ଅନ୍ତରେ ବ୍ୟାପି ହୋଇ । ଆକାଶ ପ୍ରାୟ ଯେ ଅଛଇ ॥
ତାହାକୁ ମୋର ନମସ୍କାର । ଯେ ପ୍ରଭୁ ଜଗତ ଠାକୁର ॥
ଦେହ ଇନ୍ଦ୍ରିୟ ଆଦିପ୍ରାଣ । ବୁଦ୍ଧି ସହିତେ ଯେହୁ ମନ ॥
ଯାହାର ଅଂଶରୁ ଏମାନ । କର୍ମରେ କରନ୍ତି ଭ୍ରମଣ ॥
ଭଗବାନ ମହାପୁରୁଷ । ଯାହାର ଭାବରେ ପ୍ରକାଶ ॥
ମହା ବିଭୂତିର ଈଶ୍ୱର । ସକଳ ଜନ୍ତୁ ବଶ କର ॥
ତାହାଙ୍କ କରପଦ୍ମେ କରି । ସେବିତ ଚରଣ ଯାହାରି ॥
ଏମନ୍ତ ପରମ ଈଶ୍ୱର । ତାହାଙ୍କୁ ମୋର ନମସ୍କାର ॥
ଭଗତ ରାଜାଙ୍କୁ ନାରଦେ । ଏ ବିଦ୍ୟା ଦେଲେ ଅପ୍ରମାଦେ ॥
ଅଙ୍ଗିରା ସହିତେ ରାଜନ । ଗଲେ ସେ ବ୍ରହ୍ମାର ଭୁବନ ॥
ଚିତ୍ରକେତୁ ଯେ ବିଦ୍ୟାଘେନି । ଯେମନ୍ତେ କହିଥିଲେ ମୁନି ॥
ଧଇଲା ସପ୍ତ ରାତ୍ର ସେହି । ପବିତ୍ର ନିରାହାର ହୋଇ ॥
ସପ୍ତମ ରାତ୍ରେ ଅପ୍ରମାଦେ । ନାରଦ ବିଦ୍ୟାର ପ୍ରସାଦେ ॥
ବିଦ୍ୟାଧର ଅଧିପ ପଣ । ଲଭିଲା ଚିତ୍ରକେତୁ ରାଣ ॥
ଶୁଣ ରାଜନ ଏକମନେ । ଯେଥୁ ଉତ୍ତାରେ ଏକ ଦିନେ ॥
ଶେଷଦେବ ଯେ ଦେବେଶ୍ୱର । ଗଲା ନିକଟେ ତାହାଙ୍କର ॥
ବିଦ୍ୟାରୁ କରି ମନୋଗତି । ନିଷ୍ଠିନ୍ତେ ଲଭିଲା ନୃପତି ॥
ମୃଣାଳ ପ୍ରାୟେ ଶୋଭାବନ । ଶୁକ୍ଳ ବସନ ପରିଧାନ ॥
ଶୋଭିତ କିରୀଟ କେଉର । ମେଖଳା କଙ୍କଣ ଆବର ॥
ପ୍ରସନ୍ନ ରୁଚିର ବଦନ । ଅରୁଣ ରାଜୀବ ଲୋଚନ ॥
ବେଢ଼ିଣ ଛନ୍ତି ସିଦ୍ଧେଶ୍ୱର । ଦେଖିଲା ଯାଇ ନୃପବର ॥
ତାହାଙ୍କ ଦରଶନ ପାଇ । ସକଳ ପାପୁଁ ମୁକ୍ତ ହୋଇ ॥
ଅନ୍ତଃକରଣ ଶୁଦ୍ଧ କଲା । ଅଶ୍ରୁରେ ଲୋଚନ ପୂରିଲା ॥
ଭକ୍ତିରେ ରୋମାଞ୍ଚ ହୋଇଲା । ଆଦି ପୁରୁଷଙ୍କୁ ନମିଲା ॥
ସେ ଚିତ୍ରକେତୁ ହୃଷ୍ଟ ହୋଇ । ନୟନ ଜଳେ ପାଦ ଧୋଇ ॥
ପ୍ରେମରେ ରୁଦ୍ଧ କଣ୍ଠ ହୋଇ । ସ୍ତୁତି କରିଣ ନ ପାରଇ ॥
ହରଷେ ପୂର୍ଣ୍ଣ ଇନ୍ଦ୍ରିଗଣ । କ୍ରମରେ କରି ନିବାରଣ ॥
ଜଗତ ଗୁରୁ ଗୁରୁବର । ଯାଦବ ବଂଶର ଠାକୁର ॥
ତାହାଙ୍କ ପାଦେ ଦେଇ ମନ । କହଇ ମଧୁର ବଚନ ॥

## ଚିତ୍ରକେତୁ ଉବାଚ

ସ୍ୱଭାବେ ତୁମ୍ଭେ ଯେ ଅଜିତ । ସମମତି ଲୋକରେ ଜିତ ॥
ଅସାଧୁ ଆତ୍ମା ଲୋକଙ୍କର । ଜିତ ତୁ ହେଉ ହେ ଈଶ୍ୱର ॥
ଯେ ତୋତେ କରନ୍ତି ଭଜନ । ତାର କାମନା କରୁ ପୂର୍ଣ୍ଣ ॥
ଅତି ଦୟାଳୁ ରୂପ ତୋର । ଜଗତ ବିଭବ ତୋହର ॥
ଅନାଦି ତୁହି ତୋର ତହିଁ । ଉଦୟ ସ୍ଥିତି ଅନ୍ତ ତହିଁ ॥
ସୃଷ୍ଟି କରତା ଅଛି ଆର । ବୋଲଇ ଅଜ୍ଞ ଯେଉଁ ନର ॥
ପରମ ଅଣୁ ପ୍ରାୟେ ହୋଇ । ମହତ ତେଜକୁ ତୁ ବହି ॥
ଆଦ୍ୟାନ୍ତ ଅନ୍ତର୍ଗତ ସ୍ଥିତ । ଆଦି ଅନ୍ତରେ ତୁ ପୂରିତ ॥
ହେ ଦେବ ପ୍ରାଣୀମାନଙ୍କର । ସାକ୍ଷୀ ରୂପକୁ ତୁମ୍ଭେ ଧର ॥
କ୍ଷିତି ଆଦି ଯେ ପଞ୍ଚଭୂତ । ଯେଥୁଁ ତୁ ହୋଇଣ ନିର୍ମିତ ॥
ସେହି ମହତ ଅଣ୍ଡକୋଷ । ଏହାର ତୋର ତହିଁ ବାସ ॥
ବିଷୟ ଜଳେ ମୋହ ହୋଇ । ଯେ ନର ବିଭୂତି ଚିନ୍ତଇ ॥
ତୁମ୍ଭ ଅର୍ଚ୍ଚନାକୁ ନ ଚିନ୍ତେ । ଗ୍ରାମର ପଶୁ ସେ ବିହିତେ ॥
ସେ ପ୍ରଭୁ ସେ ଜନ କଲ୍ୟାଣ । କେବେହେଁ ନୋହଇଟି ପୁଣ ॥
ଜ୍ଞାନ ଆତ୍ମା ଅଗୁଣ ମୟ । ଅଜିତ ଭଗବାନ ହୁଅ ॥
ତୁମ୍ଭେ ଯେ ଭାଗବତ ଧର୍ମ । କହିଲ ପୁରୁଷ ଉତ୍ତମ ॥
ଅକିଞ୍ଚନ ଯେ ଆତ୍ମା ରାମ । ଏମନ୍ତ ଯେଉଁ ମୁନି ଜନ ॥
ମୋକ୍ଷ ନିମନ୍ତେ ଯେଉଁ ଧର୍ମ । କରନ୍ତି ନିତ୍ୟେ ଉପାସନ ॥
ବିଷମ ମତିଟି ଯାହାର । ଏ ଧର୍ମୁ ସେ ଜନ ବାହାର ॥
ଯେଉଁ ଧର୍ମରେ ତୁମ୍ଭେ ମୁହିଁ । ତୁମ୍ଭର ମୋର ଭେଦ ନାହିଁ ॥
ଅଧର ମରୁ ତୁମ୍ଭ କ୍ରୋଧ । ପରସ୍ପରେ ପୀଡ଼ା ବିରୋଧ ॥
ବିହିତ ଭାଗବତ ଧର୍ମ । ଯହିଁରେ ନାହିଁ ସର୍ବ କର୍ମ ॥
ସ୍ଥାବର ଚର ଜୀବଙ୍କରେ । ଅଭିନ୍ନ ଭାବ ଯେଉଁ କରେ ॥
ସେ ନିତ୍ୟେ ପାଦପଦ୍ମେ ତୋର । ସେବା କରଇ ନିରନ୍ତର ॥
ପାଷାଣ୍ଡ ମତି ଯେଉଁ ନର । ଏ ଭାବ ନାହିଁ ତା ଚିତ୍ତର ॥
ଯେ ପାଦ ପଲ୍ଲବ ସୁଧାମ । ପରମ ମଙ୍ଗଳ ଯେ ନାମ ॥
ଯେ ନାମ ସୁମରଣ କରି । ପାପୀ ସଂସାରୁ ଯାନ୍ତି ତରି ॥
ହେ ଦେବ ଦେବ ନାରାୟଣ । ହେ ପ୍ରଭୁ ଅଖିଳ କାରଣ ॥
ତୋ ରୂପ ଦରଶନେ ମୁହିଁ । ପବିତ୍ର ହୋଇଲି ଗୋସାଇଁ ॥
ନାରଦ ବଚନର ଫଳେ । ତୋତେ ଦେଖିଲି ଚର୍ମଚୋଳେ ॥
ଜଗତ ଆତ୍ମା ହେ ଅନନ୍ତ । ସକଳ ଜାଣୁ ତୁ ତଦନ୍ତ ॥
ଏ ଘୋର ସଂସାରରେ ଜନ । କେ ତୋତେ ଜାଣୁ ଭଗବାନ ॥
ତୁମ୍ଭେ ଆଦିତ୍ୟ ଦେବରାୟେ । ନର ଯେ ଖଦ୍ୟୋତର ପ୍ରାୟେ ॥
ଜଗତ ଉତ୍ପତ୍ତି ପାଳନ । ପ୍ରଳୟେ ହେତୁ ନାରାୟଣ ॥
ପରମହଂସ ରୂପ ତୁହି । ନମସ୍ତେ ପ୍ରଭୁ ଭାବଗ୍ରାହୀ ॥

ଯାର ଶ୍ୱାସକୁ ଅନୁସରି । କମ୍ପିଲା ହୋଏ ବସୁନ୍ଧରୀ ॥
ପ୍ରାଣୀ ସମୂହ ଆଦିକରି । ଅବନୀ ଅଛି ଯେହୁ ଧରି ॥
ସହସ୍ର ମସ୍ତକ ଯାହାର । ନମସ୍ତେ ବ୍ରହ୍ମାଣ୍ଡ ଠାକୁର ॥

## ଶ୍ରୀ ଶୁକ ଉବାଚ

ଏମନ୍ତ ସ୍ତୁତି ତାର ଶୁଣି । ଅନନ୍ତ ଗୁଣ ଚକ୍ରପାଣି ॥
ଯେ ଚିତ୍ରକେତୁ ବିଦ୍ୟାଧର । ତାହାଙ୍କୁ ବୋଲନ୍ତି ଉତ୍ତର ॥

## ଶ୍ରୀଭଗବାନ ଉବାଚ

ଶୁଣ ରାଜନ ପୁଣ୍ୟ ଦେହ । ମୋର ଭଗତ ଅନୁରହ ॥
ନାରଦ ଅଙ୍ଗିରା ତୋହରେ । କହିଲେ ଯେଉଁ ବିଦ୍ୟାସାରେ ॥
ତେଣୁ ସିଦ୍ଧ ହୋଇ ରାଜନ । ପାଇଲୁ ମୋର ଦରଶନ ॥
ମୁଁ ସର୍ବ ପ୍ରାଣୀରେ ଅଶେଷ । ଆତ୍ମ ରୂପରେ ମୋର ବାସ ॥
ପରମ ବ୍ରହ୍ମ ଯାରେ କହି । ସେ ମୋର ଶରୀର ଅଟଇ ॥
ସେ ଆତ୍ମା ଖ୍ୟାତ ଲୋକଠାରେ । ଲୋକ ବିଖ୍ୟାତ ଯେ ଆତ୍ମାରେ ॥
ଉଭୟ ବ୍ୟାପ୍ତ ହୋଇ ମୁହିଁ । ସଂସାରେ ଅଛି ଦେହ ବହି ॥
ଯେସନେ ନିଦ୍ରା ଯାଇ ଜନେ । ବିଶ୍ୱ ଦେଖଇ ବିଦ୍ୟମାନେ ॥
ନିଦ୍ରା ଉପେକ୍ଷି ପୁଣି ସେହି । କେବଳ ଆତ୍ମାକୁ ଦେଖଇ ॥
ଉଠିଣ ଜ୍ଞାନ ପାଇ ଯେହ୍ନେ । ସକଳ ମିଥ୍ୟା ଜାଣି ମନେ ॥
ଯେଉଁ ପୁରୁଷ ତା ଦେଖଇ । ତାହାକୁ ଶରୀରେ ଚିନ୍ତଇ ॥
ଯାହାକୁ ସୁପ୍ତ ବୋଲି କହି । ନର ଅଶେଷକୁ ଦେଖଇ ॥
ସୁଖ ବା ଦୁଃଖ ବା ନିର୍ଗୁଣ । ସେ ସର୍ବ ମୁହିଁ ବୋଲି ଜାଣ ॥
ନିଦ୍ରାରେ ଜାଗ୍ରତରେ ଜନ । ଉଭୟେ ଦେଖାଇ ସ୍ୱପନ ॥
ଯେ ସତ୍ୟ ମିଥ୍ୟା ଭାବ ଦୁଇ । ମୋ ବିନୁ ଅନ୍ୟ କେହି ନାହିଁ ॥
ଏଣୁ ମୋ ଭାବ ପ୍ରାଣୀ ଜନେ । ମରନ୍ତି ଦୃଢ଼ କରି ମନେ ॥
ଏଣୁ ଏ ଅଖିଳ ସଂସାରେ । ମୃତ୍ୟୁ ଜନ୍ମ ଲଭନ୍ତି ନରେ ॥
ମନୁଷ୍ୟ ଜନ୍ମ ଆଶ୍ରେ କରି । ଜ୍ଞାନେ ଅଜ୍ଞାନେ ଦେହ ଧରି ॥
ଆତ୍ମାକୁ ନ ଜାଣେ ଯେ ନର । କେବେହେଁ ସୁଖ ନାହିଁ ତାର ॥
ଚେଷ୍ଟା କରଇ କାର୍ଯ୍ୟପାଇଁ । ଯମ ଯାତନା ଲଭେ ତହିଁ ॥
ତାହାର ଫଳ ଲଭେ ତହିଁ । ସଂକଳ୍ପେ ଛାଡ଼ିଣ ଭଜଇ ॥
ସୁଖ ଦୁଃଖ ମୋକ୍ଷ ର ପାଇଁ । ଦମ୍ପତି ଭାବ ଆଚରଇ ॥
ସୁଖ ଦୁଃଖର ଭୋଗ ତହିଁ । କେବେ ଲଭଇ ନ ଲଭଇ ॥
ଏମନ୍ତ ବିଚାର ଯେ ଜାଣି । କର୍ମ କରଇ ଯେଉଁ ପ୍ରାଣୀ ॥
ସୂକ୍ଷ୍ମ ଆତ୍ମାଗତି ତା ଠାରେ । ବିମୁକ୍ତ ହୋଇ ସେ ସଂସାରେ ॥
ଜ୍ଞାନ ସଂପୂର୍ଣ୍ଣ ହୋଇ ନର । ଭକ୍ତି କି ଲଭଇ ମୋହର ॥
ପ୍ରାଣୀର ଧର୍ମ ମାତ୍ର ଏହି । ସମ ଦରଶୀ ଯେବେ ହୋଇ ॥
ଶ୍ରଦ୍ଧାରେ ଯୁଗତେ ରାଜନ । ଘେନିବ ମୋହର ବଚନ ॥
ଜ୍ଞାନ ସଂପୂର୍ଣ୍ଣ ହୋଯେ ତୋର । ପରମାନନ୍ଦ ସୁଖ ତୋର ॥
ଚିତ୍ରକେତୁକୁ ଯେତେ କହି । ଭଗତ ବନ୍ଧୁ ଭାବଗ୍ରାହୀ ॥
ଦେଖୁ ଯେ ଥିଲା ସେ ରାଜନ । କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ ॥
ବୋଲଇ ଦାସ ଜଗନ୍ନାଥ । ଚିତ୍ର କେତୁ ରାଜା ଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠ ସ୍କନ୍ଧେ ଚିତ୍ରକେତୁ ରାଜା ଭକ୍ତିଯୋଗ କଥନେ ନାମ ଷୋଡଶୋଽଧ୍ୟାୟଃ*

# ସପ୍ତଦଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଯେ ଦିଗେ ଅନନ୍ତ ଈଶ୍ୱର । ତା ଠାରୁ ହୋଇଲେ ଅନ୍ତର ॥
ସେ ଚିତ୍ର କେତୁ ବିଦ୍ୟାଧର । ସେ ଦିଗେ କରି ନମସ୍କାର ॥
ତକ୍ଷଣେ ହରଷ ହୋଇଲା । ଗମନ ମାର୍ଗେ ଚଳିଗଲା ॥
ଲକ୍ଷେ ବରଷ ଅବ୍ୟାହତ । ବଳ ଇନ୍ଦ୍ରିୟ ହୋଇ ଯୁତ ॥
ସିଦ୍ଧ ଚାରଣ ମୁନି ଯେତେ । ସ୍ତୁତି କରନ୍ତି ଅବିରତେ ॥
ମହାଯୋଗୀ ସେ ସିଦ୍ଧେଶ୍ୱର । ରହି କୁଳାଚଳ ଦ୍ରୋଣୀର ॥
ଆନନ୍ଦେ ବିଦ୍ୟାଧର ସଙ୍ଗେ । କ୍ରୀଡ଼ା କରଇ ନାନା ରଙ୍ଗେ ॥
ପରମ ଈଶ୍ୱରର ନାମ । କରଇ କରାଇ ଗାୟନ ॥
ଏକ ସମୟେ ହେ ରାଜନ । ଆରୋହି ଅମୂଲ୍ୟ ବିମାନ ॥
ତେଜେ ଗଞ୍ଜାଇ ଦିବାକର । ବିଷ୍ଣୁ ଦେଇଛି ତାକୁ ବର ॥
ଗିରିଶ ଦେଖି-ବାର ପାଇଁ । ଗଲା ସିଦ୍ଧରେ ବୃତ ହୋଇ ॥
ମୁନି ମାନେ ଛନ୍ତି ପାଖରେ । ଦୁର୍ଗାଙ୍କୁ ଘେନିଣ କୋଳରେ ॥
ବାହୁରେ କରି ଆଲିଙ୍ଗନ । ସଭାରେ ଅଛନ୍ତି ଈଶାନ ॥
ତାହାଙ୍କ ନିକଟରେ ଯାଇ । ଉଚ୍ଚେ ହସିଣ ସେ ବୋଲଇ ॥

## ଚିତ୍ରକେତୁ ଉବାଚ

ଧର୍ମ ବକତା ଲୋକଙ୍କର । ଜଗତ ଗୁରୁ ଏ ଶଙ୍କର ॥
ସଭାର ମଧ୍ୟେ ସ୍ତିରୀ ସଙ୍ଗେ । ମୈଥୁନ ଭାବ ହୋଇ ରଙ୍ଗେ ॥
ଶିରରେ ଧରି ଜଟା ଭାର । କେ କହୁ ତପ ଏହାଙ୍କର ॥
ଜଗତ ସ୍ୱାମୀ ବ୍ରହ୍ମ ବାଦୀ । ଅଷ୍ଟ ଐଶ୍ୱର୍ଯ୍ୟ ଯାର ସିଦ୍ଧି ॥
ଅଛନ୍ତି ପତ୍ନୀ ସଙ୍ଗେ ଲଇ । ଗତ ଲଜ୍ଜିତ ପ୍ରାୟେ ହୋଇ ॥
ଏକାନ୍ତ ଜନ ହିଁ ସ୍ୱଭାବେ । ନ ହୋଇ ସ୍ତିରୀବଶ ଭାବେ ॥
ଏ ଯେ ସ୍ୱଭାବେ ଦେବବର । ଏହାକୁ ବୋଲି ବ୍ରତ ଧର ॥

ଅଗାଧ ବୁଦ୍ଧି ସେ ରାଜନ । ହସିଣ ହୋଇଲେ ମଉନ ॥
ଯୋଗ୍ୟ ନୁହଇ ଏ ପାମର । ଗନ୍ଧର୍ବ ରାଜନ ପଦର ॥
ଯେ ସ୍ଥିରମତି ସାଧୁଜନ । ସେ ପାଦ କରନ୍ତି ସେବନ ॥
ଏମନ୍ତ ଜାଣି ମାହେଶ୍ୱରୀ । ତାହାକୁ ବୋଲେ କୋପକରି ॥
ଏହି କାରଣୁ ଦୁଷ୍ଟମତି । ଯାଅ ତୁ ଏଥି ନାହିଁ ସ୍ଥିତି ॥
ପାପିଷ୍ଠ ଅସୁର ଯୋନିରେ । ଜନ୍ମ ତୁ ଲଭ ତମ ଘୋରେ ॥

## ଶ୍ରୀ ଶୁକ ଉବାଚ

ଶାପ ପାଇଣ ସେ ରାଜନ । ବିମାନୁ ଓହ୍ଲାଇ ତକ୍ଷଣ ॥
ନତ କନ୍ଧରେ ସିଦ୍ଧପତି । ପ୍ରସନ୍ନ କରିବାରେ ସତୀ ॥

## ଚିତ୍ରକେତୁ ଉବାଚ

ଭୋ ଦୁର୍ଗେ ଶୁଣ ମୋ ବଚନ । ଶାପ ମୁଁ ଘେନିଲି ଶିରେଣ ॥
ଭୋ ଦେବ ଅସୁର ଯୋନିରେ । ଜନ୍ମ ଯେ କହିଲ ମୋହରେ ॥
ସେ ମୋର ପୂର୍ବର ଅର୍ଜନ । କହିବି ଶୁଣ ସାବଧାନ ॥
ସଂସାରେ ଯେତେ ଜନ୍ତୁ ଛନ୍ତି । ଅଜ୍ଞାନେ ମୋହ ହୋଇଛନ୍ତି ॥
ଭ୍ରମଣ କରି ଅନୁକ୍ଷଣେ । ଭୁଞ୍ଜନ୍ତି ଦୁଃଖ ସୁଖ ମନେ ॥
ଈଶ୍ୱର ମହିମା ନ ଜାଣି । ଯେତେ ବୋଇଲି ପରିମାଣି ॥
ସଭାର ମଧେ ଦୁଷ୍ଟମତି । ଶୁଣି କ୍ରୋଧିତ ପଶୁପତି ॥
ନିନ୍ଦିତ ଆତ୍ମା ଅଭିମାନୀ । ଶଙ୍କରେ ବୋଲନ୍ତି ଭବାନୀ ॥
ଶୁଣିମା ଜଗତ ଗୋସାଇଁ । ଏ ଦଣ୍ଡ ଧରିତ ନୋହଇ ॥
ଆମ୍ଭର ପ୍ରାୟେ ଦୁଷ୍ଟଜନ । ନିର୍ଲଜ ଛନ୍ତି ଯେତେ ଜନ ॥
ଏମାନେ ଧର୍ମ ନ ଜାଣନ୍ତି । ପଦ୍ମ ଯୋନି ଯେ ଆଦିଛନ୍ତି ॥
ବ୍ରହ୍ମାର ପୁତ୍ରଛନ୍ତି ଯେତେ । ଭୃଗୁ ନାରଦର ସହିତେ ॥
କୁମାର କପିଳ ଯେ ହୋଇ । ଧର୍ମକୁ ନ ଜାଣନ୍ତି କେହି ॥
ମୋର ନିକଟେ ବସିଛନ୍ତି । ଏ ମୋତେ ନିନ୍ଦା ନ କରନ୍ତି ॥
ପାଦ ପଙ୍କଜ ଦୁଇ ଯାର । ନିତ୍ୟ ଭଜନ ଏହାଙ୍କର ॥
ସକଳ ମଙ୍ଗଳର ସୀମା । ଜଗତ ଗୁରୁ ଯା ମହିମା ॥
ଯେଣୁ ନିନ୍ଦିଲା ଏ ଈଶ୍ୱର । ଦଣ୍ଡକୁ ଯୋଗ୍ୟ ଏ ପାମର ॥
ବୈକୁଣ୍ଠ ପାଦ ଆଶ୍ରେ ଯାର । ସ୍ୱଭାବେ ନାହିଁ ପରାପର ॥
ସେ ଆତ୍ମା ଜ୍ଞାନୀ ଜନ ହୋଇ । ସୁଖ ଦୁଃଖ ସମ ମଣଇ ॥
ଅଜ୍ଞାନୀ ପ୍ରାଣୀମାନେ ଛନ୍ତି । ପରଦ୍ଵୀ କର୍ତ୍ତା ସେ ବୋଲାନ୍ତି ॥
ଗୁଣର ପ୍ରବାହଟି ଏହି । ଶାପ ବା ଅନୁଗ୍ରହ କାହିଁ ॥
କେ ଅବା ସ୍ୱର୍ଗ କେ ନରକ । କେ ଅବା ସୁଖ କେବା ଦୁଃଖ ॥
ଏକଇ ପ୍ରଭୁ ଆଦିମୂଳ । ମାୟାରେ ସର୍ଜଇ ସକଳ ॥
ଏ ମାୟା ବନ୍ଧ ମୋକ୍ଷ ଯେହି । ସୁଖ ଦୁଃଖକୁ ଏ ଲଭଇ ॥
ଏକଇ ପୁରୁଷ ମୁରାରି । ତାହାର କେବା ମିତ୍ର ବୈରି ॥
ଜ୍ଞାତି ବାନ୍ଧବ କେବା ପର । ଆତ୍ମା ହିଁ ନାହିଁଟି ଯାହାର ॥
ସର୍ବ ଭୂତରେ ସମ ସେହି । ରାଗ ହିଂସେକ ତାର ନାହିଁ ॥
ତାହାର ଶକ୍ତିରେ ଏ ଭୂତ । ହେଉ ଅଛନ୍ତି ଆତଯାତ ॥
ଏହାଙ୍କ ବନ୍ଧ ମୋକ୍ଷ ସୁଖ । ହିତ ଅହିତ ଅବା ଦୁଃଖ ॥
ଏହାଙ୍କ ଜନ୍ମ ଅବା ମୃତ୍ୟୁ । ହୁଅଇ ତାର ଶକ୍ତି ହେତୁ ॥
ଏ ଅନନ୍ତରେ ମୋ ବଚନ । ଭୋ ଦୁର୍ଗେ ହୁଅ ସାବଧାନ ॥
ଶାପରୁ ମୋକ୍ଷ ହେବା ପାଇଁ । ତୁମ୍ଭଙ୍କୁ କିଛି ନ ବୋଲଇ ॥
ସଭାରେ ମୁଁ ମନ୍ଦ ବଚନେ । ତୁମ୍ଭଙ୍କୁ ବୋଇଲି ଅଜ୍ଞାନେ ॥
ଏ ଦୋଷ କ୍ଷମା କର ମୋର । ତୁମ୍ଭେ ଯେ ଅଖିଳ ଈଶ୍ୱର ॥
ଏମନ୍ତେ ପ୍ରସନ୍ନ କରାଇ । ଈଶ୍ୱର ପାର୍ବତୀଙ୍କି ସେହି ॥
ଆପଣା ବିମାନେ ବସିଲା । ନିଜ ମନ୍ଦିରେ ବିଜେକଲା ॥
ଏ ଅନନ୍ତରେ ସେ ଈଶ୍ୱର । ଦୁର୍ଗାଙ୍କୁ କହନ୍ତି ମଧୁର ॥
ଋଷି ବୈବିଧ ସିଦ୍ଧଗଣ । ଶୁଣୁ ଅଛନ୍ତି ସେ ବଚନ ॥

## ଶ୍ରୀ ଦେବଦେବ ଉବାଚ

ଅଦ୍ଭୁତ କର୍ମା ଯେ ଈଶ୍ୱର । ପ୍ରଭାବ ଭୃତ୍ୟ ମାନଙ୍କର ॥
ନିସ୍ପୃହା ମହାତ୍ମା ସେମାନେ । ସୁଶ୍ରୋଣି ଦେଖ ବିଦ୍ୟମାନେ ॥
ବିଷ୍ଣୁ ଭଗତି ଯେତେ ଜନେ । ଭୟ ତାହାଙ୍କ ନାହିଁ ମନେ ॥
ସ୍ୱର୍ଗ ବା ମୋକ୍ଷ ବା ନରକ । ସମାନ ଦେଖଇ ସେ ଲୋକ ॥
ଦେହର ଦେହୀ ସଂଯୋଗରୁ । ପରମ ଈଶ୍ୱର ଲୀଳାରୁ ॥
ଜନ୍ମ ବା ମୃତ୍ୟୁ ଅବା ଦୁଃଖ । ଶାପ ଅନୁଗ୍ରହ ବା ଦୁଃଖ ॥
ପୁରୁଷ ଅବିବେକ ସେହି । ଏ ଭିନ୍ନ ଭିନ୍ନ ଯେ ଦେଖଇ ॥
ତାହାର ଗୋବିନ୍ଦ ଭଗତି । ଶୁଦ୍ଧ ତାହାର ଦୃଢ଼ମତି ॥
ଜ୍ଞାନ ବୈରାଗ୍ୟ ଅଛି ଯାର । ପୃଥକ ଭାବ ନାହିଁ ତାର ॥
ମୁହିଁ ବିରଞ୍ଚି ଯେ କୁମାର । ନାରଦ ଆଦି ମୁନିବର ॥
ବ୍ରହ୍ମାଦି ଯେତେ ଦେବବର । ନ ଜାଣୁ ମହିମା ତାହାର ॥
ଏହାର ପ୍ରିୟ ନାହିଁ କେହି । ଅପ୍ରିୟ ଏହାରଟି ନାହିଁ ॥
ମିତ୍ର ଅଇରୀ ନାହିଁ ଯାର । ସମାନ ଦେଖେ ନୃପବର ॥
ସକଳ ପ୍ରାଣୀଙ୍କର ପ୍ରିୟ । ଏହିଟି ସର୍ବଭୂତ ମୟ ॥
ଏ ଚିତ୍ରକେତୁ ମହାଭାଗ । ତାହାର ପ୍ରିୟ ଅନୁରାଗ ॥
ସର୍ବତ୍ର ସମ ଦୃଷ୍ଟି ଏହି । ଅଚ୍ୟୁତ ପ୍ରିୟ ଯେହ୍ନେ ମୁହିଁ ॥
ମହାତ୍ମା ପୁରୁଷ ଯେ ସେହି । ତେଣୁ ବିସ୍ମୟେ ତାର ନାହିଁ ॥
ନ କରି ସ୍ଥିର କରି ମନ । ବିଷ୍ଣୁ ଭଗତ ଯେହ୍ନୁ ଜନ ॥
ସମଦରଶୀ ଶାନ୍ତ ସେହି । ବିସ୍ମୟ ଅବା ତାର କାହିଁ ॥

## ଶ୍ରୀ ଶୁକ ଉବାଚ

ଭାଗବତ ଶିବର ବାଣୀ । ହରଷେ ଶୁଣି ସେ ଭବାନୀ ॥
ହେ ରାଜା ସ୍ଥିର କରି ମନ । ବିସ୍ମୟ ଛାଡ଼ିଲେ ତକ୍ଷଣ ॥
ସେ ଚିତ୍ରକେତୁ ଏ ପ୍ରକାରେ । ଦେବୀର ଶାପ ଘେନି ଶିରେ ॥
ତାହାର ଏ ସାଧୁ ଲକ୍ଷଣ । ଯେଣୁ ଶାପ କଲା ଗ୍ରହଣ ॥
ତ୍ୱଷ୍ଟାର ଦକ୍ଷିଣ ଅଗ୍ନିରେ । ଜନ୍ମିଲା ଦାନବୀ ଯୋନିରେ ॥
ବୃତ୍ର ହୋଇଲା ତାର ନାମ । ଜ୍ଞାନ ବିଜ୍ଞାନରେ ସଂପୂର୍ଣ୍ଣ ॥
ଯେ ପ୍ରଶ୍ନ କଲୁ ନୃପବର । କହିଲୁଁ ତୋହର ଆଗର ॥
ଗୋବିନ୍ଦେ ମତି ବୃତ୍ରାସୁର । ଜନ୍ମର କାରଣ ତାହାର ॥
ଇତିହାସ ଏ ପୁଣ୍ୟସାର । ମହାତ୍ମା ଏ ଚିତ୍ରକେତୁର ॥
ବିଷ୍ଣୁ ଭଗତ ପ୍ରାଣୀ ଯେହି । ତାହାଙ୍କ ଗୁଣ ଯେ ଶୁଣଇ ॥
ସକଳ ବନ୍ଧୁ ମୋକ୍ଷ ହୋଇ । ବୈକୁଣ୍ଠ ପଦକୁ ଲଭଇ ॥
ଏ ଇତିହାସ ଯେ ପ୍ରଭାତେ । ଶୁଣାଇଁ ଶୁଣେ ସ୍ଥିର ଚିତ୍ତେ ॥
ନିରତେ ଭଜେ କୃଷ୍ଣପାଦ । ହରଇ ବିଷୟ ବିଷାଦ ॥
ବୋଇଲା ଦାସ ଜଗନ୍ନାଥ । ଚିତ୍ରକେତୁ ବିଷ୍ଣୁ ଭଗତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଚିତ୍ରକେତୁ ଆଖ୍ୟାନେ ନାମ ସପ୍ତଦଶୋଽଧ୍ୟାୟଃ ।*

## ଅଷ୍ଟାଦଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ହରଷିତ । ସାନନ୍ଦେ ଶୁଣ ପରୀକ୍ଷିତ ॥
ସବିତା ପତ୍ନୀ ଯଶ୍ମୀ ହୋଇ । ବ୍ୟାହୃତି ସାବିତ୍ରୀ ଯେ ତ୍ରୟୀ ॥
ଏ ତିନି କନ୍ୟା ଯେ ଏହାର । ପୁତ୍ରର ନାମ ଶୁଣ ତାର ॥
ଅଗ୍ନି ହୋତ୍ର ଯେ ପଶୁ ସୋମ । ଚାତୁର୍ମାସ୍ୟ ଏ ଚାରିନାମ ॥
ଭଗର ପତ୍ନୀ ସିଦ୍ଧ ନାମ । ତାହାର ପୁତ୍ର ମହୀମାନ ॥
ଆଶିଷ ବରାରୋହା ତାର । କନ୍ୟା ହୋଇଲା ସେ ସିଦ୍ଧର ॥
ଧାତାର ତହୁଁ ଯେତେ ସୁତ । କୁହୁ ସାୟଂ ଯେ ଦର୍ଶପ୍ରାତ ॥
ସିନୀବାଲି ରାକା ପୂର୍ଣ୍ଣିମା । ଅନୁମତି କ୍ରମରେ ନାମା ॥
ବରୁଣର ପତ୍ନୀ ଚର୍ଷଣୀ । ତାହାର ତହୁଁ ଭୃଗୁ ଜନ୍ମି ॥
ବାଲ୍ମୀକି ମହା ଯୋଗେଶ୍ୱର । ବଲ୍ମୀକୁଁ ଜାତ ତାହାଙ୍କର ॥
ଅଗସ୍ତ ବଶିଷ୍ଠ ବରୁଣ । ରେତସିନ୍ଧୁ କୁମ୍ଭରୁ ଜନ୍ମ ॥
ରେବତୀ ଠାରୁ ମିତ୍ର ମୁନି । ପିପ୍‌ପଳ ଅରିଷ୍ଟ ଏ ତିନି ॥
ପୌଲମି ଇନ୍ଦ୍ର ନିଜ ନାରୀ । ତିନି ତନୟ ତାହାଙ୍କରି ॥
ଜୟନ୍ତ ଋଷଭ କୁମର । ମିଢୁଷ ଶୁଣ ନୃପବର ॥
ଉରୁକ୍ରମ ମାୟା ବାମନ । ତାହାଙ୍କ ପତ୍ନୀ କୀର୍ତ୍ତିନାମ ॥
ସୌଭଗ ଆଦି ତାହାଙ୍କର । କୁମାର ହୋଇଲା ଅପାର ॥
କଶ୍ୟପ ପୁତ୍ର ଯେ ବାମନ । ତାହାଙ୍କ ବୀର୍ଯ୍ୟ କର୍ମଗୁଣ ॥
ଅଦିତି ଗର୍ଭେ ତାହାଙ୍କର । ଯେମନ୍ତେ ହେଲେ ଅବତାର ॥
ଏ ଜେ ସକଳ ନୃପମଣି । ପଛେ ପିହିବା ପରିମାଣି ॥
କଶ୍ୟପ ବଂଶେ ଯେ ଦଇତ । ଯେ ପ୍ରହରାଜ ଭାଗବତ ॥
ଆଗେ ତାହାଙ୍କର ଚରିତ । କହିବା ଶୁଣ ଏକ ଚିତ୍ତ ॥
ଦିତିର ବେନି ଯେ ନନ୍ଦନ । ଦୈତ୍ୟ ଦାନବଙ୍କ ବନ୍ଦନ ॥
ହିରଣାକ୍ଷ ନାମ ତାହାର । ହରିଣ୍ୟକଶ୍ୟପୁ ଅପର ॥
ହିରଣ୍ୟକଶ୍ୟପୁ ଯେ ବୀର । କାୟାଧୁ ନାମେ ପତ୍ନୀ ତାର ॥
ଜମ୍ଭର କନ୍ୟା ସେ ଯୁଗତେ । ପ୍ରସବ କଲା ଚାରିସୁତେ ॥
ସଂହ୍ରାଦ ଅନୁହ୍ରାଦ ବୀର । ପ୍ରହ୍ଲାଦ ହ୍ରାଦ ଏ ଚତୁର ॥
ଏକ ବହିଣୀ ତାହାଙ୍କର । ସିଂହିକା ନାମଟି ତାହାର ॥
ରାହୁ ଯେ ତାହାର କୁମର । ଲୋକରେ ଖ୍ୟାତ ସେ ଅସୁର ॥
ଅମୃତ ପାନରେ ଗୋବିନ୍ଦ । ଚକ୍ରେ ଛେଦିଲେ ତାର କନ୍ଧ ॥
ସଂହ୍ରାଦ ପତ୍ନୀ ମତି ନାମ । ସୁତ ତାହାର ପଞ୍ଚଜନ ॥
ଧମନୀ ପତ୍ନୀ ସେ ହ୍ରାଦର । ବାତାପୀ ତାହାର କୁମର ॥
ଅନୁ ହ୍ରାଦର ସୂର୍ଯ୍ୟାପତ୍ନୀ । ବାସ୍କଳ ମହିଷ ଏ ବେନି ॥
ପ୍ରହ୍ଲାଦ ପୁତ୍ର ବିରୋଚନ । ଦ୍ରବ୍ୟା ତାହାର ପତ୍ନୀ ନାମ ॥
ତାହାର ବଳି ଯେ କୁମର । ଲୋକରେ ବିଖ୍ୟାତ ସେ ବୀର
ଅଶନା ଠାରେ ହେଲା ତାର । ବାଣ ଦି ଶତେକ କୁମର ॥
ବାଣାର ପ୍ରତାପ ଯେ ତେଜ । ପଛେ କହିବା ମହାରାଜ ॥
ବାଣା ଆରାଧି ଈଶ୍ୱରଙ୍କୁ । ଲଭିଲା ଗଣ ପ୍ରଭୁତ୍ୱକୁ ॥
ପୁର ପାଳକ ରୂପେ ହରି । ଅଦ୍ୟାପି ଅଛନ୍ତି ଆବୋରି ॥
ଦିତିର ତନୟ ମରୁତ । ଚତ୍ୱାରିଂଶ ନବ ଅଧିକ ॥
ଜନ୍ମ ନିକଟେ ତାହାଙ୍କର । ଆତ୍ମାକୁ ନେଲେ ବଜ୍ରଧର ॥

## ରାଜା ଉବାଚ

କେମନ୍ତେ ଅସୁର ଭାବକୁ । ଛାଡ଼ିଲେ ନିଜ ସ୍ୱଭାବକୁ ॥
ଇନ୍ଦ୍ରରେ ସପକ୍ଷ ହୋଇଲେ । କି ସାଧୁ କର୍ମ ଇନ୍ଦ୍ରେ କଲେ ॥
ଶ୍ରଦ୍ଧା ଅଧିକ ଏଣେ ମୋର । ଶୁଣିବି ବୋଲି ମୁନିବର ॥
ମୋହର ଜ୍ଞାନ ଉଦେ ପାଇଁ । ବିସ୍ତାରି କହିବା ଗୋସାଇଁ ॥

## ଶ୍ରୀ ଶୁକ ଉବାଚ

ଭକ୍ତି ଚିତ୍ତରେ ରାଜାବାଣୀ । ଶୁଣିଣ ସେ ବାଦରାୟଣି ॥
ରାଜାକୁ ଧନ୍ୟ ଧନ୍ୟ କରି । ଚଞ୍ଚଳ ମନ ସ୍ଥିର କରି ॥
କହନ୍ତି ରାଜା ମୁଖ ଚାହିଁ । ଶୁଣ ରାଜନ ଚିତ୍ତ ଦେଇ ॥
ଇନ୍ଦ୍ରରେ କରି ହତ ସୁତ । ଦିତି ହୋଇଲା ମୋହଗତ ॥
କ୍ରୋଧ ଶୋକରେ କରି ଜଳି । ଚିନ୍ତା କରଇ ମନେ ଭାଳି ॥
କନିଷ୍ଠ ଭ୍ରାତୃହନ୍ତା ଏହି । କେବେ ମରିବ ପାପ ଦେହୀ ॥
କୁଟିଳ ହୃଦୟ ଯେ ଜନ । ଏ ମଲେ ସୁଖେ ମୋ ଶୟନ ॥
ବିଷ୍ଠା କୃମି ଭସ୍ମ ସମାନେ । ଯେ ଲଭେ ଦେହ ଅବସାନେ ॥
ଏ ଦେହ ପାଇ ଭୂତ ନାଶ । କରି ନରକେ ସେ ପ୍ରବେଶ ॥
ଯେ ପ୍ରାଣୀ ଆତ୍ମାକୁ ଜାଣଇ । ଏ ପାପେ ପ୍ରବେଶ ନୋହଇ ॥
ଯେ ଯେ ପାପିଷ୍ଠ ଦୁଷ୍ଟମତି । ଏହାର ନାହିଁ ଧର୍ମଗତି ॥
ଏ ଭାବେ ପୁତ୍ର ମୋର ଜାତ । ଇନ୍ଦ୍ରକୁ କରିବ ନିପାତ ॥
ତାହାମୁଁ କରିବି ବିଧାନେ । ଏମନ୍ତ ବିଚାରିଲା ମନେ ॥
ଭର୍ତ୍ତାର ନିକଟେ ମିଳିଲା । ପ୍ରୀତି ଭାବକୁ ଆଚରିଲା ॥
ନାନା ପ୍ରକାରେ ସେବା କରି । ବିନୟ ଭାବକୁ ଆଚରି ॥
ପରମ ପ୍ରୀତିଯୁକ୍ତ ହୋଇ । ମନୋଜ୍ଞ ବଚନ ବୋଲଇ ॥
ସସ୍ମିତ ଅପାଙ୍ଗ ଈକ୍ଷଣେ । ସ୍ୱାମିର ମନ ଆକର୍ଷଣେ ॥
ଏମନ୍ତେ ତାର ଭାବ ଘେନି । ପତ୍ନୀ ବିନୟ ଭାବେ ମୁନି ॥
ତାହାର ବଶ ସେ ହୋଇଲେ । ବାଞ୍ଛିତ ଦେବଇ ବୋଇଲେ ॥
ସ୍ତିରୀର ବଶ ହୋଇବାରେ । ବିଚିତ୍ର ନୋହଇ ସଂସାରେ ॥
ଆଦ୍ୟ ସୃଷ୍ଟିରେ ପ୍ରଜାପତି । ପ୍ରାଣୀ ମାନଙ୍କୁ ସୃଜିଛନ୍ତି ॥
ପୁରୁଷ ଅର୍ଦ୍ଧଅଙ୍ଗ ନାରୀ । ନର ସ୍ୱଭାବେ ବଶ ନାରୀ ॥
ଦିତି ଯେ ହୋଇ ସୁବେଶିତ । ଏଥି ଉତ୍ତାରେ ଶୁଣ କୃତ୍ୟ ॥
ଈକ୍ଷିତେ ହସି ପ୍ରୀତି ମନେ । ଆନନ୍ଦେ ଦିତିକି ବଚନେ ॥

## କଶ୍ୟପ ଉବାଚ

କହେ କଶ୍ୟପ ମହାମୁନି । ବୋଲନ୍ତି ଶୁଣ ହେ ଭବାନୀ ॥
ବର ତୁ ମାଗ ଯେ ମନରେ । ପ୍ରସନ୍ନ ହୋଇଲି ତୋହରେ ॥
କାନ୍ତ ପ୍ରସନ୍ନେ ସ୍ତିରୀଙ୍କର । ଦୁର୍ଲ୍ଲଭ ଅଛି କେ ସଂସାର ॥
ସ୍ୱାମୀ ଦେବତା ନାରୀଙ୍କର । ଦେବେ କହନ୍ତି ଧର୍ମସାର ॥
ସର୍ବଭୂତରେ ଆତ୍ମା ହୋଇ । ଅଛନ୍ତି ପ୍ରଭୁ ଭାବଗ୍ରାହୀ ॥
ସେ ହରି ନାନା ଦେବ ମତେ । ରୂପକୁ ଧରିଛି ଜଗତେ ॥
ଗୋବିନ୍ଦ ପୂଜନ୍ତି ଯେ ଜନେ । ନାନା ଯଜ୍ଞ ବେଦ ବିଧାନେ ॥
ପତିବ୍ରତା ଯେ ନାରୀମାନେ । ଆତ୍ମା କାର୍ଯ୍ୟକୁ ଚିନ୍ତି ମନେ ॥
ଅନ୍ୟୋନ୍ୟ ଭାବେ ଏ ଜଗତେ । ସ୍ୱାମୀ ଚିନ୍ତତି ବେଦମତେ ॥
ସ୍ୱଭାବେ ମୁହିଁ ଭୋ ସୁନ୍ଦରୀ । ପ୍ରସନ୍ନ ହୋଇଲି ତୋହରି ॥
ନାହିଁ ଅଭିଳାଷ ତୋହରି । ପୂର୍ଣ୍ଣ କରିବି କୃଶୋଦରି ॥
ମୁଁ ଯେଉଁ ବର ଦେବି ତୋରେ । ଦୁର୍ଲ୍ଲଭ ଅନ୍ୟ ସ୍ତିରୀଙ୍କରେ ॥

## ଦିତି ଉବାଚ

ଭୋ ସ୍ୱାମୀ ବର ଯେବେ ଦେବ । ଏକ କୁମରେ ମୋ ହୋଇବ ॥
ଅମର ହୋଇବ ମୋ ସୁତ । ଇନ୍ଦ୍ରକୁ ମାରିବ ଯୁଗତ ॥
ଯେଣୁ ମୋ ପୁତ୍ରକୁ ମାଇଲା । ପୁତ୍ର ଶୋକକୁ ମୋତେ ଦେଲା
ଶୁଣିଣ ତାହାର ବଚନ । କଶ୍ୟପ ହୋଇଲେ ମଉନ ॥
ମନରେ ଗରୁ ତାପ ଭର । କୋପେ ବୋଲନ୍ତି ମୁନିବର ॥
ଆଜ କି ଅଧର୍ମ ମହତ । ହୋଇଲା ମୋର ଉପଗତ ॥
ସ୍ତିରୀରେ କରି ମୋର ମନ । ହୋଇଲା ମହା ହତଜ୍ଞାନ ॥
କଠିଣ ଘୋର ନରକରେ । ନିଶ୍ଚୟେଁ ପଡ଼ିବି ଅନ୍ତରେ ॥
ସ୍ତିରୀର କିସ ଅବା ଦୋଷ । ସ୍ତିରୀ ସ୍ୱଭାବେ ଅବିଶ୍ୱାସ ॥
ମୁହିଁ ଯେ ଦୁର୍ବୁଦ୍ଧି ପାମର । ଧିକ ଯେ ହୋଉ ଜନ୍ମ ମୋର ॥
ଶରଦ ପଙ୍କଜ ଯେସନ । ସ୍ତିରୀ ମାନଙ୍କର ବଦନ ॥
ବଚନ ସୁଧା ଶ୍ରବଣରେ । ହୃଦୟ ଯେହ୍ନେ କ୍ଷୁରଧାରେ ॥
ଏମନ୍ତ ସ୍ତିରୀର ସ୍ୱଭାବ । ଯେହାଙ୍କ ଚେଷ୍ଟା କେ ଜାଣିବ
ପ୍ରୀତି ନାହିଁ କେହି ନାରୀର । କ୍ଷଣକେ ବୁଦ୍ଧିଟି ତାହାର ॥
ସ୍ୱକ୍ରିୟା ଅର୍ଥେ ସେ ମାରନ୍ତି । ପୁତ୍ର ଭ୍ରାତାର ନିଜ ପତି ॥
କରି ଯେ ଅଛି ଅଙ୍ଗୀକାର । ଏହାରେ ଦେବି ବୋଲି ବର ॥
ମୋହର ବାକ୍ୟ ମିଥ୍ୟା ନୋହି । ଇନ୍ଦ୍ର ତ ବଧଯୋଗ୍ୟ ନୋହି ॥
ଏମନ୍ତ ଚିନ୍ତା କରି ମୁନି । ଶୁଣ କହିବା ନୃପମଣି ॥
ଆତ୍ମାର ନିନ୍ଦା ଭାବ ବହି । ମୁନି ବୋଲନ୍ତି କୋପ ବହି ॥
ଭୋ ସହୀ ପୁତ୍ର ତୋ ହୋଇବ । ନିଶ୍ଚୟେ ଇନ୍ଦ୍ରକୁ ମାରିବ ॥
ଏକ ବରଷେ ଶୁଚି ହୋଇ । ଏ ବ୍ରତ ଧରୁ ଯେବେ ତୁହି ॥

## ଦିତି ଉବାଚ

ଭୋ ସ୍ୱାମୀ ବ୍ରତ ଧରିବଇଁ । ବିଧାନ କହିବା ଗୋସାଇଁ ॥
ବ୍ରତ ଖଣ୍ଡନ ଯେ କରଇ । କି ଅବା ନିଷେଧ ଅଟଇ ॥

## କଶ୍ୟପ ଉବାଚ

ପ୍ରାଣୀଙ୍କି ହିଂସା ନ କରିବ । କ୍ରୋଧରେ ଶାପକୁ ନ ଦେବ ॥
ମିଥ୍ୟା ନ କହିବ ବଚନ । ଛେଦିବ ନାହି ନଖ ରୋମ ॥
ଅମଙ୍ଗଳ ଯେ ଦ୍ରବ୍ୟ ଥାଇ । କେବେହେଁ ସ୍ପର୍ଶିବ ନାହିଁ ॥
ଜଳରେ ପଶି ଯେ ସ୍ନାହାନ । କୋପେ ନ କହିବ ବଚନ ॥

କୁଜନ ସଙ୍ଗତେ ଆଳାପ । କେବେହେଁ ନ କରିବ ପାପ ॥
ଅଧୌତ ବସ୍ତ୍ର ପରିଧାନ । ମାଳା ନ କରିବ ଗ୍ରହଣ ॥
ଦେବୀ ଉଚ୍ଛିଷ୍ଟ ଦ୍ରବ୍ୟମାନ । କେବେ ନ କରିବ ଗ୍ରହଣ ॥
ଆମିଷ ନ କରି ଭୋଜନ । ହସ୍ତେ ନ କରିବ ଜଳପାନ ॥
ଉଚ୍ଛିଷ୍ଟ ହୋଇ ଜଳ ଭିନ୍ନେ । କେବେ ହେଁ ନ ରହିବ କ୍ଷଣେ
ବହୁବଚନ ନ କହିବ । ସଂଧ୍ୟାରେ କେଶ ନ ମେଲିବ॥
ସନ୍ଧ୍ୟରେ ଅସମ୍ଭାଳ ହୋଇ । କେବେହେଁ ବାହାରିବ ନାହିଁ ॥
ଅଧୌତ ଆର୍ଦ୍ର ପାଦ ଯେବେ । ଶୟନ ନ କରିବ ତେବେ ॥
ଉତ୍ତର ଦିଗେ କରି ଶିର । ଶୟନ ଉଭୟ ସଂଧ୍ୟାର ॥
ଉଲଗ୍ନ ଭାବରେ ଶୟନ । ଏତେ ନ କରି ଆଚରଣ ॥
ଧଉତ ବସ୍ତ୍ର ପରିଧାନ । ଶୁଚି ହୋଇବ ତତକ୍ଷଣ ॥
ପ୍ରାତ କାଳରେ ଉଠିକରି । ସର୍ବ ମଙ୍ଗଳକୁ ଆଚରି ॥
ଲକ୍ଷ୍ମୀ ସହିତେ ନାରାୟଣ । ପୂଜିବ ଗୁରୁ ସୁବ୍ରାହ୍ମଣ ॥
ସଧବା ସ୍ତିରୀଙ୍କି ଆଣିବ । ମାଳ ଚନ୍ଦନ ତାଙ୍କୁ ଦେବ ॥
ଯଥା ବିଧିରେ ଆତ୍ମାପତି । ପୂଜିବ ସ୍ଥିର କରି ମତି ॥
ଏକ ଧିଆନ ଦୃଢ଼ ଚିତ୍ତ । ଯେବେ ଧରିବୁ ଏହି ବ୍ରତ ॥
ତେବେ ଇନ୍ଦ୍ର ହନ୍ତା କୁମର । ନିଶ୍ଚୟେ ହୋଇବ ତୋହର ॥
ବ୍ରତକୁ ଧରିବ ବୋଇଲା । ଚଞ୍ଚଳ ଚିତ୍ତ ସ୍ଥିର କଲା ॥
କଶ୍ୟପ ବୀର୍ଯ୍ୟ ଗର୍ଭେ ଧରି । ବିଧିରେ ବ୍ରତକୁ ଆଚରି ॥
ଦିତିର ବ୍ରତର ବିଧାନ । ଇନ୍ଦ୍ର ଜାଣିଲା ହେ ରାଜନ ॥
ଦିତିର ବ୍ରତ ଦେଖିକରି । ଇନ୍ଦ୍ର ତା ସେବାକୁ ଆଚରି ॥
ପବିତ୍ର ଶୁଚିବନ୍ତ ହୋଇ । ତାହାଙ୍କ ସଙ୍ଗତେ ବୁଲଇ ॥
ନିତ୍ୟେ ବନରୁ ପୁଷ୍ପଫଳ । ସମିଧ କୁଶ କନ୍ଦମୂଳ ॥
ପତ୍ର ଅଙ୍କୁର ଦଳ ଆଣି । ସମୀପେ ଦ୍ୟନ୍ତି ବଜ୍ରପାଣି ॥
ଏମନ୍ତେ ବ୍ରତ ଛିଦ୍ର ତାର । ଇନ୍ଦ୍ର ଇଚ୍ଛଇ ନୃପବର ॥
ଯେମନ୍ତେ ବ୍ୟାଧ ସେ ମୃଗର । ଛିଦ୍ରଟି କରି ନିରନ୍ତର ॥
କେବେହେଁ ବ୍ରତ ଛିଦ୍ର ସେହି । ଅନେକ ଯତ୍ନେ ନ ଦେଖଇ ॥
ତୀବ୍ର ଚିନ୍ତାରେ ଇନ୍ଦ୍ରମନ । ଛନ୍ନ ହୋଇଲା ହେ ରାଜନ ॥
ଶକ୍ର ବିଚାରୁ ଅଛି ମନେ । ଛିଦ୍ର ଯେ ହୋଇବ କେସନେ॥
ବ୍ରତରେ କୃଶ ହୋଇଛନ୍ତି । ସନ୍ଧ୍ୟାରେ ଏକ ଦିନେ ଦିତି ॥
ବିଧାତା ବଶେ ମୋହି ହୋଇ । ଉଚ୍ଛିଷ୍ଟେ ଜଳସ୍ପର୍ଶ ନାହିଁ ॥
ପାଦ ଧଉତ ନ କରିଣ । କଲେ ସେ ଭୂମିରେ ଶୟନ ॥
ନିଦ୍ରାରେ ହତ ତାର ମନ । ଶକ୍ର ଦେଖିଲା ବ୍ରତହୀନ ॥
ଯୋଗମାୟାରେ ସେ ଯୋଗେଶ । ଇନ୍ଦ୍ରତା ଗର୍ଭେଣ ପଶିଣ ॥

ସେ ବଜ୍ରଧର ବଜ୍ରଧରି । ସପତ ଖଣ୍ଡ ଗର୍ଭକରି ॥
ଶୁଦ୍ଧ କନକ ପ୍ରାୟ ହୋଇ । ଗର୍ଭ ତାହାର ବିରାଜଇ ॥
ବଜ୍ରରେ ସାତଖଣ୍ଡ ହୋଇ । ରୋଦନ କରୁଛନ୍ତି ସେହି ॥
ଏକକୁ ସାତଖଣ୍ଡ କରି । ନ କାନ୍ଦ ବୋଲେ ବଜ୍ରଧାରୀ ॥
ସେ ସପ୍ତ ଖଣ୍ଡ ହୋଇଛନ୍ତି । ଇନ୍ଦ୍ରକୁ ବଚନ ବୋଲନ୍ତି ॥
ଭୋ ଇନ୍ଦ୍ର ତୁ ଆମ୍ଭମାନଙ୍କୁ । କିମ୍ପା ତୁ ବହିଲୁ ହିଂସାକୁ ॥
ତୁମ୍ଭର ଆମ୍ଭେମାନେ ଭାଇ । ମରୁତ ଆମ୍ଭ ନାମ ହୋଇ ॥
ଇନ୍ଦ୍ର ବୋଇଲେ ଭ୍ରାତାମାନେ । ଭୟ ନ କର ତୁମ୍ଭେମାନେ ॥
ଅନ୍ୟୋନ୍ୟଭାବକୁ ଆଚର । ହୋଇବ ପାରୁଷଦ ମୋର ॥
ମରୁତ ହୋଇ ଅଣଞ୍ଚାଶ । ରହିଲେ ଦେବରାଜ ପାଶ ॥
ଦିତିର ଗର୍ଭ ଯେ ନମଲା । ବିଷ୍ଣୁର ଅନୁକମ୍ପା ହେଲା ॥
ଅନେକ ବାର ସେହିମାନେ । କୁଳିଶେ ହୋଇଲେ ଛେଦନେ ॥
ଦ୍ରୋଣୀ ଅସ୍ତ୍ରରେ କରି ତୁହି । ଯେମନ୍ତ ହେଲୁ କୁରୁସାଇଁ ॥
ବାରେକ ଗୋବିନ୍ଦ ଭଜନେ । ପାପ ନାଶନ୍ତି ପ୍ରାଣୀମାନେ ॥
କିଛି ନିଉନ ସମ୍ବତ୍ସର । ଯେଣୁ ପୂଜିଲା ସେ ଈଶ୍ୱର ॥
ଏହି କାରଣୁ ଇନ୍ଦ୍ର କରି । ପୁତ୍ରେ ହୋଇଲେ ଦେବପରି ॥
ଅସୁର ଭାବକୁ ଛାଡ଼ିଲେ । ଅମର ଭାବ ଆଚରିଲେ ॥
ନିଦ୍ରା ଉପେକ୍ଷିଣ ବସିଲା । ଦିତି ପୁତ୍ରଙ୍କୁ ଅନାଇଲା ॥
ଅନଳ ପ୍ରଭା ପ୍ରାୟେ ହୋଇ । କୁମାରମାନ ଛନ୍ତି ରହି ॥
ଇନ୍ଦ୍ର ସହିତେ ପୁତ୍ରମାନ । ଦେଖି ସନ୍ତୋଷ ଦେବୀମନ ॥
ଇନ୍ଦ୍ରର ଚାହିଁଣ ବଦନ । ଦିତି ଯେ ବୋଲଇ ବଚନ ॥
ଅଦିତି ପୁତ୍ରଙ୍କୁ ମୋହର । ଭୟକୁ ଦେବ ଯେ କୁମର ॥
ଏମନ୍ତ ଇଚ୍ଛା ମୁହିଁ କରି । ଦୁସ୍ତର ବ୍ରତକୁ ଆଚରି ॥
ହେ ତାତ ଏକଇ କୁମର । ମୁହିଁ ଯେ ମାଗିଥିଲି ବର ॥
ସପତ ସପ୍ତ ଯେ କେସନେ । କହତୁ ଏଥିର ବିଧାନେ ॥
ତୋହର ମୁଖୁଁ ଏ ବିଧାନ । ଶୁଣିବି ମୁହିଁ ଭୋ ନନ୍ଦନ ॥
ସତ୍ୟ କହିବୁ ମୋର ଆଗେ । ମିଥ୍ୟା ନ କହ ଅନୁରାଗେ ॥

**ଇନ୍ଦ୍ର ଉବାଚ**

ଭୋ ମାତା ଶୁଣ ସାବଧାନେ । ନିଦ୍ରା ମୋହିତ ତୁମ୍ଭେ ମନେ ॥
ତୁମ୍ଭର ବ୍ରତ ଛିଦ୍ର ଚାହିଁ । ନିକଟେ ମିଳିଲି ମୁଁ ଯାଇ ॥
ଗର୍ଭ ଛେଦିଲି ଆତ୍ମ ଅର୍ଥେ । ବିଚାର ନାହିଁ ଧର୍ମ ପଥେ ॥
ଗର୍ଭକୁ ସାତଖଣ୍ଡ କରି । ଛେଦିଲି ଧର୍ମ ନ ବିଚାରି ॥
ସାତ କୁମର ହେଲେ ଜାତ । ଏକକୁ କଲି ସାତ ସାତ ॥
କେବେହେଁ ନ ମଲେ ଏ କେହି । ଏତ ସଂଶୟ ବଡ଼ ହୋଇ ॥

ସେବାରୁ ମହା ପୁରୁଷର । ସିଦ୍ଧି ହୋଇଛି ଏ ତୁମ୍ଭର ।
ପରମେଶ୍ୱର ଆରାଧନ । ସକଳ ମଙ୍ଗଳ କାରଣ ।
ନିରତେ କରନ୍ତି ଯେ ନରେ । ଆତ୍ମଜ୍ଞାନୀ ବୋଲି ତାହାରେ ।
ଯେ ଆତ୍ମାପଦ ଭଗବାନ । ତାହାଙ୍କୁ କର ଆରାଧନ ।
କେବେହେଁ ନାହିଁ ଅକୁଶଳ । ସେ ସର୍ବ ପରମ ମଙ୍ଗଳ ।
ଦୁର୍ଜନ ଭାବ ଯେ ମୋହର । ଭୋ ମାତ କ୍ଷମା ଏବେ କର ।
ସ୍ୱଭାବେ ବାଳକ ମୁଁ ହୋଇ । ତୁମ୍ଭର ସହିବା ଯୋଗାଇ ।
ମୃତ୍ୟୁରୁ ଏ ଯେବେ କୁମରେ । ରହିଲେ ତୁମ୍ଭର ଭାଗ୍ୟରେ ।

## ଶ୍ରୀ ଶୁକ ଉବାଚ

ଆଜ୍ଞା ମାଗିଣ ସୁନୀଶିର । ଶୁଦ୍ଧ ଭାବ ଘେନି ମନର ।
ମରୁତ ଗଣଙ୍କୁ ଘେନିଲା । ଆନନ୍ଦେ ଦିତିକି ନମିଲା ।
ଶୁଣ ରାଜନ ଶିରୋମଣି । ସ୍ୱର୍ଗକୁ ଗଲେ ବଜ୍ରପାଣି ।
ଯେ ପ୍ରଶ୍ନ କଲୁ ତୁହି ମତେ । ସକଳ କହିଲି ସାକ୍ଷାତେ ।
ମଙ୍ଗଳ ମରୁତଙ୍କ ଜନ୍ମ । ଈଶ୍ୱର ମହିମା ରାଜନ ।
ବୋଲଇ ବିପ୍ର ଜଗନ୍ନାଥ । ଦେବ ଅସୁରଙ୍କ ଚରିତ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ଦେବାସୁର ଜନ୍ମ ଲକ୍ଷଣେ ପବନ ଜନ୍ମେ ନାମ ଅଷ୍ଟାଦଶୋଽଧ୍ୟାୟଃ ।*

## ଊନବିଂଶ ଅଧ୍ୟାୟ

## ରାଜା ଉବାଚ

ଭୋ ମୁନି ହୁଅ ସାବଧାନ । ଯେ ବ୍ରତ ନାମ ପୁଂସବନ ।
ତୁମ୍ଭେ ଯେ କହିଲ ବିଧାନ । ଏହା ଶୁଣିତ ମୋର ମନ ।
ଏ ବ୍ରତ ପ୍ରସାଦୁ କରି । ପ୍ରସନ୍ନ ହୁଅନ୍ତି ମୁରାରି ।

## ବାଦରାୟଣ ଉବାଚ

ପ୍ରଥମ ମାର୍ଗଶିରେ ଯେହୁ । ଶୁକ୍ଳ ପ୍ରତିପଦା ଠାଉ ।
ଭର୍ତ୍ତାର ଆଜ୍ଞା ପରମାଣେ । ବ୍ରତ କରିବେ ସ୍ତିରୀଗଣେ ।
ଯେ ବ୍ରତ ଦେଇ ସର୍ବସିଦ୍ଧି । ଆଦରେ ଯେ କରଇ ବିଧି ।
ବ୍ରାହ୍ମଣେ କରିଣ ବରଣ । ଶୁଣିବ ମରୁତଙ୍କ ଜନ୍ମ ।
ଶୁଚି ହୋଇଣ କରି ସ୍ନାନ । ଶୁକ୍ଳ ବସନ ପରିଧାନ ।
ପୂର୍ବ ଦିଗକୁ ମୁଖ କରି । ଚଞ୍ଚଳ ମନ ସ୍ଥିରେ ଧରି ।
ଲକ୍ଷ୍ମୀ ସହିତେ ଭଗବାନ । ପୂଜିବ ହୋଇ ତୋଷମନ ।

ଭୋ ନିରପେକ୍ଷ ପୂର୍ଣ୍ଣକାମ । ନମସ୍ତେ ପ୍ରଭୁ ଆତ୍ମାରାମ ।
ନମୋ ମହା ବିଭୂତେଶ୍ୱର । ସକଳ ସିଦ୍ଧର ଠାକୁର ।
ଅଷ୍ଟ ଗୁଣରେ ଯୁକ୍ତ ହୋଇ । ନମସ୍ତେ ପ୍ରଭୁ ଭାବଗ୍ରାହୀ ।
ଭୋ ଦେବୀ ଗୋବିନ୍ଦ ଘରଣୀ । ଅଶେଷ ଗୁଣେ ସୁଲକ୍ଷଣୀ ।
ଲୋକମାତା ସୃଷ୍ଟି କାରଣ । ମୋହରେ ହୁଅ ତୁ ପ୍ରସନ୍ନ ।
ନମଇ ତୋହର ଚରଣ । ଜଗତ ଯାହାର ଭିଆଣ ।
ନମଇଁ ପ୍ରଭୁ ଭଗବତ । ମହାପୁରୁଷ ଆଦିଭୂତ ।
ମହା ବିଭୂତି ପତି ତୁହି । ମହାବିଭୂତି ଯୁକ୍ତ ହୋଇ ।
ଅଖିଳ ବ୍ରହ୍ମାଣ୍ଡ ଈଶ୍ୱର । ଗ୍ରହଣ କର ଉପହାର ।
ଏମନ୍ତ କରି ଆରାଧନ । ପୂଜିବ ଲକ୍ଷ୍ମୀ ଭଗବାନ ।
ପାଦ୍ୟ ଅର୍ଘ୍ୟ ଯେ ଆବାହନ । ବିଧିରେ କରାଇ ସ୍ନାହାନ ।
ଦିବ୍ୟ ବସନ ସମର୍ପିବ । ଶୁକ୍ଳ ଉତ୍ତରି ନିବେଦିବ ।
ନାନା ଭୂଷଣ ଗନ୍ଧଧୂପ । ପ୍ରସୂନ ଉପହାର ଦୀପ ।
ଅପରେ ଯେତେ ଉପହାର । ସ୍ଥାପିବ ବିଷ୍ଣୁର ଛାମୁର ।
ହବି ଆହୁତି ଯେ ଦ୍ୱାଦଶ । ଆନନ୍ଦେ କରିବ ପ୍ରକାଶ ।
ନମୋ ଭଗବାନ ଈଶ୍ୱର । ମହାପୁରୁଷ ଦେବବର ।
ମହା ବିଭୂତି ପତି ତୁହି । ସ୍ୱାହା ବୋଲି ଅର୍ପିବ ତହିଁ ।
ଭୋ ଦେବୀ ଲକ୍ଷ୍ମୀ ଭୋ ଅଚ୍ୟୁତେ । ବରଜ ସର୍ବଦା ଭଗତେ ।
ଭକ୍ତିରେ ନିତ୍ୟେ ସେ ପୂଜିବ । ସର୍ବ ସମ୍ପଦ ଯେ ଇଚ୍ଛିବ ।
ଚିତ୍ତରେ ହୋଇ ଭକ୍ତିଯୁକ୍ତ । ଭୂମିରେ ହୋଇ ଦଣ୍ଡବତ ।
ମନ୍ତ୍ର ଜପିବ ଦଶବାର । ଏ ସ୍ତୋତ୍ର କରିବ ଉଚ୍ଚାର ।
ଯେ ତୁମ୍ଭେ ଦୁଇ ଜଗତର । ବ୍ୟାପକ ଅଟନ୍ତି ଈଶ୍ୱର ।
ସଂସାର ପରମ କାରଣ । ତୁମ୍ଭେ ଯେ ଅଟ ନାରାୟଣ ।
ଯେ ଯେ ସୂକ୍ଷ୍ମମାୟା ପ୍ରକୃତି । ଦୂର ତ ଅଟଇ ଶକତି ।
ଏହାର ତୁମ୍ଭେ ଅଧିଶ୍ୱର । ସାକ୍ଷାତ ପୁରୁଷଙ୍କ ପର ।
ତୁମ୍ଭେ ସକଳ ଯଜ୍ଞମୟ । ପତ୍ନୀ ରୂପରେ ଲକ୍ଷ୍ମୀ ହୁଅ ।
ଅଶେଷ କ୍ରିୟାର ଈଶ୍ୱରୀ । କ୍ରିୟା ରକ୍ଷଣେ ନରହରି ।
ଗୁଣ ବ୍ୟକ୍ତିର ଏ କାରଣ । ଯାହାର ଭୋକ୍ତା ଭଗବାନ ।
ସର୍ବ ଶରୀର ଆତ୍ମା ତୁହି । ଲକ୍ଷ୍ମୀ ଇନ୍ଦ୍ରିୟ ପ୍ରାଣ ହୋଇ ।
ନାମ ରୂପରେ ଉପଗତ । ସର୍ବ ଶରୀରେ ତୁମ୍ଭେ ସ୍ଥିତ ।
ଯେମନ୍ତେ ତୁମ୍ଭେ ବ୍ରହ୍ମାଣ୍ଡର । ବର ତୁ ଦିଅ ହେ ଈଶ୍ୱର ।
ତେମନ୍ତ ହୋଇ ଚକ୍ରଧର । ସର୍ବ ମଙ୍ଗଳ ହେଉ ମୋର ।
ଲକ୍ଷ୍ମୀ ନିବାସ ଯେ ପୁରୁଷ । ଏହି ସ୍ତୁତିରେ କରି ତୋଷ ।
ପୂଜିବ ଲକ୍ଷ୍ମୀ ନାରାୟଣ । ଯେ ପ୍ରଭୁ ବ୍ରହ୍ମାଣ୍ଡ କାରଣ ।

ରାତ୍ରେ ଉପହାର ଲେଛିବ । ମନକୁ ସନ୍ତୋଷ କରିବ ॥
ଏଥୁ ଉତ୍ତାରୁ ପୁନର୍ବାର । ଅର୍ଚ୍ଚନା କରିବ ଈଶ୍ୱର ॥
ଯଜ୍ଞ ଉଚ୍ଛିଷ୍ଟ ଯେବା ଥିବ । ମନ ସନ୍ତୋଷେ ତା ଭୁଞ୍ଜିବ ॥
ଚିତ୍ତରେ ହୋଇ ଭାବ ଭକ୍ତି । ପୁଣି କରିବ ସ୍ତୋତ୍ରେ ସ୍ତୁତି ॥
ସ୍ୱାମୀଙ୍କି ଭକ୍ତିରେ ଭଜିବ । ଈଶ୍ୱର ଭାବରେ ଚିନ୍ତିବ ॥
ନାନା ପ୍ରୀତିରେ ବାକ୍ୟ କରି । ସ୍ୱାମୀ ତୋଷିବ ନିଜନାରୀ ॥
ପତ୍ନୀ ସହିତେ ହୋଇ କରି । ସର୍ବ କର୍ମ ସ୍ୱାମୀ ଆଚରି ॥
ଏ ବିଷ୍ଣୁ ବ୍ରତକୁ ଧରିବ । କେବେହେଁ ଭଗ୍ନ ନ କରିବ ॥
ଗନ୍ଧମାଲ୍ୟ ମଣି ଭୂଷଣ । ବ୍ରତେ ତୋଷିବ ବିପ୍ରଗଣ ॥
ଭକ୍ତି ଭାବରେ କରିମନ । ନିୟମେ ଥାଇ ପ୍ରତିଦିନ ॥
ପରମ ଈଶ୍ୱରେ ନମିବ । ସ୍ୱସ୍ଥାନେ ନେଇ ନିବେଶିବ ॥
ଭକ୍ତି ଭାବରେ ବେନିଜନ । ନିର୍ମାଲ୍ୟ କରିବ ଭୋଜନ ॥
ସର୍ବ କାମନା ପୂର୍ଣ୍ଣ ପାଇଁ । କରିବ ଭକ୍ତି ଯୁକ୍ତ ହୋଇ ॥
ଯେ ପୂଜାବିଧି ବାର ମାସ । କରିବ ଏକଇ ବରଷ ॥
ତାହାର ଯେଉଁ ପର ଦିନ । ବିଧିରେ କରି ଆଚମନ ॥
ପୂର୍ବର ପ୍ରାୟେ କରି ପୁଣି । ବିଷ୍ଣୁ ଅର୍ଚ୍ଚିବ ତହୁଁ ଆଣି ॥
ଚରୁ ଘୃତ ସହିତେ କ୍ଷୀରେ । ହୋମ କରିବ ଏ ବିଧିରେ ॥
ଯଜ୍ଞ ବିଧାନେ ପାକ ଶେଷ । ଆହୁତି ଦେବ ଯେ ଦ୍ୱାଦଶ ॥
ଆଶିଷ ଘେନିବ ମସ୍ତକେ । ବ୍ରାହ୍ମଣମାନଙ୍କର ବାକ୍ୟେ ॥
ଭକ୍ତିରେ କରି ନମସ୍କାର । ଆଜ୍ଞାକୁ ଘେନି ବିପ୍ରଙ୍କର ॥
ଆଚାର୍ଯ୍ୟ କରିଣ ଅଗ୍ରତେ । ଶୁଚି ହୋଇ ବନ୍ଧୁ ସହିତେ ॥
ପତ୍ନୀକି ଚରୁ ଦେବ ନେଇ । ସୁପୁତ୍ର ସୌଭାଗ୍ୟର ପାଇଁ ॥
ଏ ବିଷ୍ଣୁ ବ୍ରତ ଯେ କରଇ । ବାଞ୍ଛିତ ଫଳ ସେ ଲଭଇ ॥
ଯେ ସ୍ତିରୀ ଏ ବ୍ରତ ଆଚରି । ସୌଭାଗ୍ୟେ ଭର୍ତ୍ତାକୁଳେଶ୍ୱରୀ ॥
ଉତ୍ତମ ପୁତ୍ର ସ୍ୱାମୀ ଯଶ । ଏ ସର୍ବ ଲଭଇ ଅଶେଷ ॥
ଉତ୍ତମ ଲକ୍ଷଣ ଯାହାରେ । କନ୍ୟା ଲଭଇ ସ୍ୱାମୀ ତାରେ ॥
ବିଧବା ଅନପତ୍ୟ ଯେହି । ସେ ନାରୀ ନିଷ୍ପାପୀ ହୁଅଇ ॥
ଦୁର୍ଭାଗା ସୌଭାଗ୍ୟ ଲଭଇ । କୁରୂପା ସୁରୂପା ହୁଅଇ ॥
ମୃତବତ୍ସା ବା ଯେଉଁ ନାରୀ । ନିରଜୀବୀ ପୁତ୍ର ତାହାରି ॥
ସର୍ବ ରୋଗରୁ ମୁକ୍ତ ହୋଇ । ନିର୍ମଳ ହୋଏ ତାର ଦେହୀ ॥
ସକଳ କର୍ମର ଅନ୍ତରେ । ଯେ ଏହା ପଢେ ମନସ୍ଥିରେ ॥
ପିତୃ ଦେବତା ତୋଷ ହୋଇ । ବାଞ୍ଛିତ ଫଳ ତାରେ ଦେଇ ॥
ହୋମର ପୂର୍ଣ୍ଣ ଯଜ୍ଞ ସାର । ହବି ଭୁଞ୍ଜନ୍ତି ଚକ୍ରଧର ॥
ମରୁତ ଜନ୍ମର ବିଧାନ । ଶୁଣି ଶରଧା କରମନ ॥
ଦିତିର ବ୍ରତ ଆଦି କରି । ତୋ ଆଗେ କହିଲୁ ବିସ୍ତାରି ॥
ବୋଲଇ ବିପ୍ର ଜଗନ୍ନାଥ । ପବନ ଜନ୍ମର ଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଷଷ୍ଠସ୍କନ୍ଧେ ବିଷ୍ଣୁବ୍ରତେ ନାମ ଊନବିଂଶୋଽଧ୍ୟାୟଃ ।*

# ସପ୍ତମ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏବେ ହୋ ଶୁଣ ନୃପମଣି । ହରି ଚରିତ ସୁଧାବାଣୀ ॥
ଜନ୍ମ ବାସନା କର୍ମଫଳେ । ପ୍ରାଣୀ ଭୁଞ୍ଜନ୍ତି ମହୀତଳେ ॥
ସପ୍ତମସ୍କନ୍ଧେ ଉପଦେଶ । କହିବା ଶୁଣ ଏକଚିତ୍ତ ॥
କର୍ମ ବାସନା ରୂପ ଧରେ । ବେନି ପ୍ରକାରେ ସେ ସଞ୍ଚରେ ॥
ଶୁଭ ଅଶୁଭ ବେନି ପଦେ । ପ୍ରକାଶ କରେ ହେତୁଭେଦେ ॥
ମହତ ଅପମାନ କୋପେ । ଅଶୁଭ ଜନ୍ମ ଲଭେ ପାପେ ॥
ପୁଣି ମହାନ୍ତ ଅନୁଗ୍ରହେ । ସେ କର୍ମ ଶୁଭଫଳ ବହେ ॥
ଶୁଣ କହିବା ପ୍ରିୟ ଭାବେ । ଯେ ଯହିଁ ଯେମନ୍ତ ପ୍ରସ୍ତାବେ ॥
ବୈକୁଣ୍ଠେ ହରି ଦ୍ୱାରପାଳ । ଜୟ ବିଜୟ ମହାବଳ ॥
ସେ ବେନିଭାଇ ହରି ଦ୍ୱାରେ । ଖଟନ୍ତି ସେବା ଅନୁସାରେ ॥
ଚତୁଃସନଙ୍କ କୋପଫଳେ । ଜନ୍ମିଲେ ଅସୁରଙ୍କ କୁଳେ ॥
ବ୍ରାହ୍ମଣେ ଅପରାଧ କରି । ମର୍ତ୍ତେ ଜନ୍ମିଲେ ଦେହ ଧରି ॥
ଅସୁରବଂଶେ ଅବତାର । ହିରଣ୍ୟ କଶିପୁ କୁମର ॥
ସେ ପ୍ରହ୍ଲାଦ ତା ତନୟେ । ନାରଦ ମୁନି ଅନୁଗ୍ରହେ ॥
କୃଷ୍ଣର ଚରଣ କମଳେ । ନିଶ୍ଚଳ ଭକ୍ତି ଯୋଗବଳେ ॥
ଜନ୍ମ ବାସନା ହେତୁ ସ୍ମରି । କୃଷ୍ଣ ଭକତି ଦୃଢ଼େ ଧରି ॥
ବିଷ୍ଣୁ ଭକତ ହୋଇ ଯେବେ । ଭକତି କରେ ସେହୁ ଭାବେ ॥
ତାହାକୁ ରଖେ ଭଗବାନ । ନ ସହେ ଭକ୍ତ ଅପମାନ ॥
ଜୟ ବିଜୟ ବେନିଭାଇ । ଅସୁର କୁଳେ ଜନ୍ମ ହୋଇ ॥
ହରିଙ୍କି ଅପରାଧ କଲେ । ତୃତୀୟ ଜନ୍ମେ ନିସ୍ତରିଲେ ॥
ଏଣୁ ପଣ୍ଡିତ ପ୍ରାଣୀମାନେ । ମାଗନ୍ତି ଅନୁଗ୍ରହ ଧ୍ୟାନେ ॥
ଯତ୍ନ କରିଣ ନିରନ୍ତରେ । ଆତ୍ମାକୁ ଆପଣେ ଉଦ୍ଧାରେ ॥
ଏ ଭାବ ମୁନିଗଣେ ଚିନ୍ତି । ଭବସାଗରୁ ତରିଯାନ୍ତି ॥
ଏ ଆଦି ଅନ୍ତ ତୋତେ କହି । ଶୁଣ ପରୀକ୍ଷ ମନ ଦେଇ ॥
ଅସୁର କୁଳେ ଦେହ ବହି । ଜୟ ବିଜୟ ବେନି ଭାଇ ॥
ବିଷ୍ଣୁ ବଇରୀ ନିରନ୍ତରେ । ସ୍ୱଭାବେ ଅସୁର ବେଭାରେ ॥
ତାହାଙ୍କ କୁଳେ ପ୍ରହ୍ଲାଦ । ହରି ବିଷୟେ ଭକ୍ତି ଭେଦ ॥
ଏ ପିତା ପୁତ୍ର ମଧ୍ୟ ଗତେ । ଗୁଣ ବାସନା ଅନୁମତେ ॥
ମହାନ୍ତ କୋପ ଅନୁଗ୍ରହେ । ବାସନା ଭେଦ ଏ ସଂଶୟେ ॥
ବାସନା ବଳେ କର୍ମ ଜାତ । ହରଇ ପ୍ରାଣୀଙ୍କର ଚିତ୍ତ ॥
ଏ ପଞ୍ଚ ପ୍ରସ୍ତାବ କାରଣ । ଧର୍ମ ନିୟମ କଥା ଶୁଣ ॥
ପ୍ରଥମ ଅଧ୍ୟାରେ ପ୍ରସ୍ତାବ । କହିବା ପିତା ପୁତ୍ର ଭାବ ॥
ହରିଣ୍ୟକଶିପୁ କୁମର । ବିଷ୍ଣୁ ଭକତ ମଧ୍ୟେ ବର ॥
ବ୍ରାହ୍ମଣ ଶାପେ ବେନି ଭାଇ । ଅସୁର ରୂପେ ଜନ୍ମ ହୋଇ ॥
ଇନ୍ଦ୍ରର ଅର୍ଥେ ଭଗବାନ । ଅସୁର କରିବେ ନିଧନ ॥
ଏମନ୍ତେ ମୁନିବାକ୍ୟ ଶୁଣି । ବୋଲେ ସାନନ୍ଦେ ନୃପମଣି ॥

### ପରୀକ୍ଷିତ ଉବାଚ

ଭୋ ମୁନି ଶୁଣ ମୋ ବଚନ । ଯେ ହରି ସର୍ବଘଟେ ସମ ॥
ପ୍ରିୟ ସୁହୃଦ ପ୍ରାଣୀଙ୍କର । ବିଶେଷେ ଶରଣ ସୋଦର ॥
ସେ କିପାଁ ଇନ୍ଦ୍ରଙ୍କ ବୋଲରେ । ନିର୍ଦ୍ଦୟେ ଅସୁର ସଂହାରେ ॥
ବିଷମ ମତ ଏହାଙ୍କର । ଯେ ହରି ଭକତ ସୋଦର ॥
ସୁରଗଣଙ୍କ ନିମିତ୍ତରେ । ନିଷ୍ଠୁର ପ୍ରାୟ କର୍ମ କରେ ॥
ଯେ ହରି ସର୍ବ ଜୀବପତି । ସେ କିପାଁ ଆଚରେ ଅନୀତି ॥
ଅଶେଷ ଜନ୍ତୁ ହୃଦେ ଥାଇ । ଅନ୍ତରେ ସମସ୍ତ ଦେଖଇ ॥
ଆତ୍ମାର ନିସ୍ତାରଣ କରେ । ସେ କିପାଁ ଭେଦକୁ ବିଚାରେ ॥
ଦେବ ଅସୁର ତାର ଦେହୀ । ସମ ବିଷମ ତାର ନାହିଁ ॥
ସ୍ୱଭାବେ ନିର୍ଗୁଣ ଶରୀର । ସେ ନିରଞ୍ଜନ ନିରାକାର ॥
ନିର୍ଗୁଣେ ସତ୍ୟ ଦେବପତି । ସକଳଭୂତେ ତାର ସ୍ଥିତି ॥
ଏଣୁ ଗୋବିନ୍ଦ ଗୁଣ କର୍ମେ । ସଂଶୟେ ମୋର ଚିତ୍ତଭ୍ରମେ ॥
ପୂଜଇ ଚରଣେ ତୁମ୍ଭର । ମୋର ସଂଶୟ ଦୂର କର ॥

### ଶ୍ରୀ ଶୁକ ଉବାଚ

ଭୋ ନୃପ ତୋର ସାଧୁବାଣୀ । ତୁ ଯେ ପଚାରୁ ପରିମାଣି ॥
ଅଦ୍ଭୁତ ବିଷ୍ଣୁର ମହିମା । କେ ଜାଣିପାରେ ଗୁଣସୀମା ॥
ଏ ଗ୍ରନ୍ଥ ଭାଗବତେ ପୁଣ । ଏ ବିଷ୍ଣୁ ଭକତି ଲକ୍ଷଣ ॥
ପରମ ପୁଣ୍ୟ ହେତୁ ବାଣୀ । ଯେ ଶୁଣେ ଯେବା ମୁଖେ ଭଣି ॥
ନାରଦ ଆଦି ମୁନିଗଣେ । ଯାହା ଭଜନ୍ତି ଅନୁକ୍ଷଣେ ॥

ବ୍ୟାସ ଚରଣେ ସେବି ମୁହିଁ । କହିବି ଯାହା ମୁଁ ଜାଣଇ ॥
ସେ ହରି ସ୍ୱଭାବେ ନିର୍ଗୁଣ । ଅଜନ୍ମା ଅବ୍ୟକ୍ତ କାରଣ ॥
ସ୍ୱଭାବେ ସର୍ବଗୁଣ ପର । ବ୍ରହ୍ମାଶଙ୍କରେ ଅଗୋଚର ॥
ସେ ମାୟା ଗୁଣ ଆଶ୍ରେକରି । ବାଧ ବାଧକ ରୂପ ଧରି ॥
ସେ ସତ୍ତ୍ୱ ରଜ ତମୋଗୁଣ । ପ୍ରକୃତି ଏହାଙ୍କ ପ୍ରମାଣ ॥
ଆତ୍ମାର ଗୁଣ ଏ ନୁହନ୍ତି । ପ୍ରକୃତି ରୂପେ ପ୍ରକାଶନ୍ତି ॥
ଉଦୟ ଅସ୍ତ ଏକାବେଳେ । ନୁହନ୍ତି ଗୁଣ କାଳ ବଳେ ॥
ସୃଷ୍ଟି ପାଳନ କାଳେ ହରି । ସତ୍ତ୍ୱ ଗୁଣକୁ ଆଶ୍ରେକରି ॥
ଦେବତା ଋଷିରୂପ ହୋଇ । ସ୍ୱଧର୍ମେ ସୃଷ୍ଟିକୁ ପାଳଇ ॥
ରାଜୋଗୁଣକୁ ଆଶ୍ରେ କରି । ଅସୁରଗଣଙ୍କୁ ବିସ୍ତାରି ॥
ଯକ୍ଷ ରାକ୍ଷସ ତମୋଗୁଣେ । ସୃଜଇ କାଳର ପ୍ରମାଣେ ॥
ଜ୍ୟୋତି ଆକାଶେ ପ୍ରକାଶଇ । ବିଚାରେ କାହିଁ ନ ମିଳଇ ॥
କାଷ୍ଠ ସଂଯୋଗେ ଅଗ୍ନିଯେହ୍ନେ ଜ୍ୱଳେ ଯେସନେ ପାତ୍ର ସ୍ଥାନେ ॥
ଆକାଶେ ଯେହ୍ନେ ଜଳଘଟେ । ତେମନ୍ତ ରୂପେ ସେ ପ୍ରକଟେ ॥
ମାୟାରେ ନାନାରୂପ ହୋଇ । ସେ ମାୟା ତାକୁ ନ ଲାଗଇ ॥
ଏହା ବିଚାରି ମୁନିଜନେ । ଆତ୍ମାକୁ ଆତ୍ମା ଅନୁମାନେ ॥
ସଂଶୟ ନ କରନ୍ତି ମନେ । ହରି ବିଷୟ କ୍ରୀଡ଼ାସ୍ଥାନେ ॥
ସେ କାଳେ ମାୟାଯୋଚି ଯୁତେ । ପୁର ସର୍ଜଇ ଏ ଜଗତେ ॥
ରଜୋଗୁଣରୁ ସୃଷ୍ଟି କରେ । ସତ୍ତ୍ୱରେ ବ୍ରହ୍ମରୂପ ଧରେ ॥
ଦେବାଦି ଯୋନି ଦେହ ମଧ୍ୟେ । ବସଇ ସତ୍ତ୍ୱ ଅନୁବାଦେ ॥
ରମିବା ଅର୍ଥେ ଭାବଗ୍ରାହୀ । ଅଶେଷ ଜନ୍ତୁ ହୃଦେ ସେହି ॥
କ୍ରୀଡ଼ାର ଅନ୍ତେ ସେ ଆପଣେ । ସୃଷ୍ଟି ସଂହାର ତମୋଗୁଣେ ॥
ସେ ପୁଣି ସୃଷ୍ଟି କାଳେ ହରି । ଜୀବ ପ୍ରକୃତି ରୂପ ଧରି ॥
ପ୍ରଧାନ ପୁରୁଷ ଏ ବେନି । ନିମିତ୍ତେ ତାଙ୍କୁ ସଙ୍ଗେ ଘେନି ॥
ତାଙ୍କ ଆଶ୍ରୟ ସଙ୍ଗମେଳେ । ଜଗତ ବୁଲାଇଲା କାଳେ ॥
ସେ କାଳ ହରି ଆଜ୍ଞା ଘେନି । ପ୍ରଧାନ ପୁରୁଷ ଏ ବେନି ॥
ଉଭୟ ମତେ ନାନା ଗୁଣ । ସୃଜଇ ସଂସାର କାରଣ ॥
ସେ ହରି କାଳରୂପ ଧରେ । ସାତ୍ତ୍ୱିକେ ଦେହକୁ ଉଦ୍ଧରେ ॥
ଦେବଙ୍କ ପ୍ରିୟ କର୍ମ କରେ । ଅସୁର କୁଳକୁ ସଂହାରେ ॥
ଏଣୁ ସେ ପ୍ରଭୁ ଭଗବାନ । ବହଇ ସୁର ପ୍ରିୟନାମ ॥
ରଜ ତାମସ ଗୁଣ ଯେତେ । ତାକୁ ସଂହାରେ ଅବିରତେ ॥
ଏବେ ହୋ ଶୁଣ ନରନାଥ । ବିଷ୍ଣୁ ଚରିତ ଭାଗବତ ॥
ତାହାଙ୍କ ମହିମା ବିଶେଷ । ଶୁଣ କହିବା ଇତିହାସ ॥
ରାଜୁସି ଯଜ୍ଞ ସଭା ଅନ୍ତେ । ଧର୍ମ ନନ୍ଦନର ଅଗ୍ରତେ ॥
ନାରଦ ମୁନି ଯାହା କହି । ସେ ସଭାମଧ୍ୟେ ପାଣ୍ଡଭାଇ ॥
ଦେବକୀ ନନ୍ଦନର ତୁଲେ । ରାଜା ମୁନିଙ୍କୁ ପଚାରିଲେ ॥
ସେ ସଭା ମଧ୍ୟେ ଧର୍ମବଳା । ନୟନେ ଅଦ୍ଭୁତ ଦେଖିଲା ॥
ଶିଶୁପାଳର ପଞ୍ଚପ୍ରାଣ । ଗୋବିନ୍ଦେ ପଶିଲା ଶରଣ ॥
ସଭାଜନଙ୍କ ଦୃଷ୍ଟିଆଗେ । ଯେହ୍ନେ ବିଜୁଳି କଳା ମେଘେ ॥

## ଯୁଧିଷ୍ଠିର ଉବାଚ

ଭୋ ମୁନି ଦୁର୍ଲ୍ଲଭ ଏ କଥା । ଦେଖି ମୋ ମନେ ଗୁରୁବ୍ୟଥା ॥
ଅଷ୍ଟାଙ୍ଗ ଯୋଗେ ମୁନିଗଣ । ଚିନ୍ତନ୍ତି ଯାହାଙ୍କ ଚରଣ ॥
ଏକାନ୍ତେ ଭକ୍ତି ଯୋଗେ ଚିନ୍ତି । ଯା ରୂପ କେହି ନ ଦେଖନ୍ତି ॥
ଦେବ ଦାନବେ ଅଗୋଚର । ଯେ ବ୍ରହ୍ମ ନିତ୍ୟ ନିରାକାର ॥
ଏ ଦମଘୋଷର କୁମର । ସ୍ୱଭାବେ ଦୁଷ୍ଟ ଦୁରାଚାର ॥
କୃଷ୍ଣେ ଅନେକ ନିନ୍ଦା କଲା । ସେ କିପାଁ କୃଷ୍ଣଙ୍କୁ ପାଇଲା ॥
ଏ ସଭାଲୋକ ମଧ୍ୟେ ମୁହିଁ । ତୁମ୍ଭର ଛାମୁରେ ପୁଛଇ ॥
କହ ହେ କେବଣ କାରଣ । ସକଳେ ଶୁଣନ୍ତୁ ପ୍ରମାଣ ॥
ବିଷ୍ଣୁଙ୍କୁ ଦୁଷ୍ଟଜନ ମେଳେ । ଯେବା ନିନ୍ଦନ୍ତି ଜ୍ଞାନଭୋଳେ ॥
ସେ ପ୍ରାଣୀ ନରକେ ପଡ଼ନ୍ତି । ମହାନ୍ତେ ଏମନ୍ତ କହନ୍ତି ॥
ସେ ଦମଘୋଷ ସୁତ ବାଣୀ । ସଭାରେ ଦନ୍ତବକ୍ର ଶୁଣି ॥
ସେହି ଅନେକ ନିନ୍ଦା କଲା । ମୋତେ ତ ସନ୍ଦେହ ଲାଗିଲା ॥
ଏ ବେନିଜନେ ନିନ୍ଦାକଲେ । ସଭାର ମଧ୍ୟେ ଏକ ତୁଳେ ॥
କୃଷ୍ଣ ନୋହିଲା କିମ୍ବା ତୁଣ୍ଡେ । କିପାଁ ନ ଗଲେ ଯମକୁଣ୍ଡେ ॥
କେବଣ ହେତୁ ବେନି ବୀରେ । ପଶିଲେ କୃଷ୍ଣର ଶରୀରେ ॥
ଏଣେ ଭ୍ରମଇ ମୋର ମନ । ବନେ ଯେସନେ ହୁତାଶନ ॥
କାରଣ କହ ମୁନି ମୋତେ । ଶୁଣି ମୁଁ ଯିବଇଁ ପରତେ ॥

## ଶୁକ ଉବାଚ

ଏମନ୍ତ ରାଜା ବାକ୍ୟ ଶୁଣି । ସାନନ୍ଦମନେ ବ୍ରହ୍ମମୁନି ॥
କହନ୍ତି ରାଜାର ଅଗ୍ରତେ । ସମସ୍ତେ ଶୁଣନ୍ତି ଏମନ୍ତେ ॥

## ନାରଦ ଉବାଚ

ଯାହାର ନିନ୍ଦା ସ୍ତୁତି ଅର୍ଥେ । ମନୁଷ୍ୟ ଶରୀର ଜଗତେ ॥
ପ୍ରକୃତି ପୁରୁଷ ସଂଯୋଗେ । ଜନ୍ମଇ ଅବିବେକ ଭାବେ ॥
ବଢ଼ଇ ହିଂସା ଅଭିମାନେ । ଦଣ୍ଡ ପାରୁଷ୍ୟ ସାବଧାନେ ॥
ମୁହିଁ ମୋହର ବୋଲି ଜାଣେ । ଯାବତ ବସଇ ତ୍ରିଗୁଣେ ॥
ମନୁଷ୍ୟ ସ୍ୱଭାବେ ଏମନ୍ତେ । ସଂସାର ମଧ୍ୟେ ଛନ୍ତି ଯେତେ ॥
ଆତ୍ମଭିମାନେ ଦେହ ବହି । ଲୁବ୍ଧେ ପ୍ରାଣୀ ବଧ ହୋଇ ॥
ସେ ପୁଣି କୈବଲ୍ୟ ଆସ୍ଥାନେ । ନ ଖଟେ ଆତ୍ମା ଅନୁମାନେ ॥

ହରି ବିଷୟେ କଲେ ଯେତେ । କୈବଲ୍ୟ ଲଭେ ପ୍ରାଣୀ ଅନ୍ତେ ॥
କେ ଭଜେ ରିପୁ ଅନୁବନ୍ଧେ । କେ ଅବା ମିତ୍ରଭାବ ସାଧେ ॥
କେ ଅବା ଭଜେ ତାକୁ ଡରେ । କେ ଅବା ପ୍ରିୟଭାବ କରେ ॥
କେ ଅବା ସ୍ନେହଚିତ୍ତ ଧରି । କେ ଅବା ରୂପ ଚିନ୍ତା କରି ॥
ସେ ସର୍ବଜନେ ଅନ୍ତଃକାଳେ । ପଶନ୍ତି ଚରଣ କମଳେ ॥
ନିତ୍ୟ ବଇରୀ ଭାବେ ଚିନ୍ତି । ହରିଙ୍କି ଏମନ୍ତ ଭଜନ୍ତି ॥
ନିଶ୍ଚଳ ଯୋଗେ ଚିତ୍ତେ ଧାୟି । ଯୋଗୀଏ ଲଭିବାର ପାଇଁ ॥
ଏ ଭାବ ମୋର ନିତ୍ୟେମନେ । ଏବେ ହୋ ଶୁଣ ସାବଧାନେ ॥
ଭ୍ରମରକୀଟ କୀଟ ମାରେ । ନେଇ ସ୍ଥାପଇ ନିଜ ଘରେ ॥
ସେ କୀଟ ପ୍ରାଣ ଯିବାକାଳେ । ଭ୍ରମର ଦେଖୁଥାଇ ଡୋଳେ ॥
ଭ୍ରମର ଯୋଗେ ଭୟେ ମରେ । ତାର ସ୍ୱରୂପ ଅନ୍ତେ ଧରେ ॥
ଏମନ୍ତ କୃଷ୍ଣର ବିଷୟେ । ମାୟା ମନୁଷ୍ୟ ନିଜ କାୟେ ॥
ବଇରୀପଣେ ତାକୁ ଭଜି । ନିର୍ମଳ ହୃଦୟ ନିମନ୍ତି ॥
ଏ ଘେନି କାମକ୍ରୋଧ ଭୟେ । ଯେବା ଭଜନ୍ତି ମିତ୍ରସ୍ନେହେ ॥
କୃଷ୍ଣ ବିଷୟେ ଚିତ୍ତ ଦେଇ । ଅନେକ ଗଲେ ମୋକ୍ଷ ହୋଇ ॥
ଗୋପନଗରେ ଗୋପୀଯେତେ । ବିଷ୍ଣୁଙ୍କୁ ଭଜି କାମଚିତ୍ତେ ॥
କଂସ ଯେ ନିତ୍ୟ ଭୟ କଲା । ଅନ୍ତେ ସେ ଗୋବିନ୍ଦେ ପଶିଲା ॥
କ୍ଷତ୍ରିୟ ଶିଶୁପାଳ ଆଦି । କୃଷ୍ଣ ବିଷୟେ ହୋଇ ବାଦୀ ॥
ସମ୍ବନ୍ଧେ ବୃଷ୍ଣିବଂଶ ଯେତେ । ଭଜନ୍ତି ଭ୍ରାତୃସ୍ନେହେ ଚିତ୍ତେ ॥
ମୁଁ ତାର ଚରଣକମଳେ । ଭକତି କରଇ ନିଶ୍ଚଳେ ॥
ପୂର୍ବେ ଯେବେଣ ସତ୍ୟଯୁଗେ । ନିରତେ ନ ଭଜି ଏ ମାର୍ଗେ ॥
ବ୍ରାହ୍ମଣ ଶାପୁଁ ନାଶ ଗଲା । ଅନ୍ତେ ସେ ନରକେ ପଡ଼ିଲା ॥
ଏଣୁ ହରିଙ୍କୁ ନାନାମତେ । ଯେ ଭଜିପାରେ ଦୃଢ଼ଚିତ୍ତେ ॥
ନିର୍ଭୟେ ଗୋବିନ୍ଦେ ପଶନ୍ତି । ଜନ୍ମ ମରଣୁ ନିସ୍ତରନ୍ତି ॥
ଯେ ଦମଘୋଷର କାମିନୀ । ତୋହର ମାତାର ଭଗିନୀ ॥
ତାର ଉଦରୁ ବେନି ବାଳ । ଏ ଦନ୍ତବକ୍ର ଶିଶୁପାଳ ॥
ପୂର୍ବେ ଏ ହରି ଦ୍ୱାରେ ଥିଲେ । ବ୍ରାହ୍ମଣେ ଅପରାଧ କଲେ ॥
ଏ ବେନିଭାଇ ସହୋଦର । ବିଷ୍ଣୁ ସେବକ ମଧେ ବର ॥
ମହାନ୍ତ ଅପରାଧ ଫଳେ । ଜନ୍ମିଲେ ଅସୁରଙ୍କ କୁଳେ ॥
ବ୍ରାହ୍ମଣେ ଅପରାଧ କଲେ । ବ୍ରହ୍ମ ଋଷିଏ ଶାପ ଦେଲେ ॥
ଏ ଜନ୍ମେ ମନୁଷ୍ୟ ଶରୀରେ । ପୁଣି ମିଳିଲେ ହରି ଦ୍ୱାରେ ॥

## ଯୁଧିଷ୍ଠିର ଉବାଚ

ଯେ ହରିନାମ ଉଚ୍ଚାରନ୍ତି । ସର୍ବ ସଙ୍କଟୁ ସେ ତରନ୍ତି ॥
ଯେ ହରି ଦ୍ୱାରପାଳପଣେ । ପାଦେ ସେବନ୍ତି ଅନୁକ୍ଷଣେ ॥
ତାହାଙ୍କୁ କେବା ଶାପ ଦେଲା । ମୋତେ ତା' ସନ୍ଦେହ ଲାଗିଲା ॥
ସେ ବଇକୁଣ୍ଠ ପୁରେ ଥାନ୍ତି । ସେ ତ ସଂସାରେ ନ ପଡନ୍ତି ॥
ଦେହ ସମ୍ବନ୍ଧ ଯହିଁ ନାହିଁ । ସେ କିପାଁ ମର୍ତ୍ତ୍ୟେ ଦେହପାଇ ॥
କିମ୍ବା ହୋଇଲେ ଦୁରାଚାର । ଏଣୁ ସଂଶୟ ଚିତ୍ତେ ମୋର ॥
ଭୋ ମୁନି ନମୁଁ ତୋ ଚରଣେ । କହ ଏ କେବଣ କାରଣେ ॥

## ନାରଦ ଉବାଚ

ଶୁଣ ରାଜନ ସାବଧାନେ । ଦିନେକ ବୈକୁଣ୍ଠ ଭୁବନେ ॥
ବ୍ରହ୍ମାର ପୁତ୍ରେ ବେଦବାଦୀ । ସନକ ସନାତନ ଆଦି ॥
ସେ ଚାରିଭାଇ ଏକ ଦିନେ । ଭ୍ରମନ୍ତି ଏ ତିନି ଭୁବନେ ॥
ପୁଣି ସେ ଅନ୍ତରୀକ୍ଷେ ଗଲେ । ବିଷ୍ଣୁର ଭୁବନେ ମିଳିଲେ ॥
ପ୍ରବେଶ ହରି ଦ୍ୱାରଦେଶେ । ବିଷ୍ଣୁର ଦର୍ଶନ ଲାଳସେ ॥
ଜ୍ୟେଷ୍ଠ ଅଟନ୍ତି ସେହିମାନେ । ମରୀଚି ଆଦି ମୁନିଗଣେ ॥
ପଞ୍ଚଷଷ୍ଠ ବରଷ ପ୍ରାଏ । ସର୍ବେ ଦିଶନ୍ତି ଏକଦେହେ ॥
ବାଳ ସ୍ୱଭାବେ ଦିଗମ୍ବର । ସ୍ୱଭାବେ ବ୍ରହ୍ମାଙ୍କ କୁମର ॥
ସନକ ଆଦି ମୁନିଗଣେ । ସେବନ୍ତି ବିଷ୍ଣୁଙ୍କ ଚରଣେ ॥
ତାଙ୍କୁ ବାଳକ ପ୍ରାୟେ ଚାହିଁ । ଜୟ ବିଜୟ ବେନି ଭାଇ ॥
ବାଳକ ଦେଖି ଦ୍ୱାରପାଳେ । ନିଷେଧ କଲେ ତାଙ୍କୁ ବଳେ ॥
ତାହାଙ୍କ ମନ ହରିପାଦେ । ପଶି ନ ପାରିଲା ପ୍ରମାଦେ ॥
ଦ୍ୱାରପାଳଙ୍କ ମୁଖ ଚାହିଁ । କୋପେ ବୋଲନ୍ତି ଚାରିଭାଇ ॥
ତୁମ୍ଭେ ତ ଦୁଷ୍ଟ ବେନିଭାଇ । ଏ ପୁରେ ଥିବା ନ ଯୋଗାଇ ॥
ଏ ପୁର ବଇକୁଣ୍ଠ ଧାମ । ପଶି ନ ପାରେ ରଜ ତମ ॥
ଏଥେ ନ ଥାଅ ଭାଇ ବେନି । ମର୍ତ୍ତ୍ୟେ ଜନ୍ମିବ ଦେହ ଘେନି ॥
ଅତି ପାପିଷ୍ଠ ତୁମ୍ଭ ଦେହ । ଅସୁର ଘରେ ଜନ୍ମ ହୁଅ ॥
ଏମନ୍ତ ବିପ୍ର ଶାପ ପାଇ । ପୁରୁଁ ଖସିଲେ ବେନି ଭାଇ ॥
ଉର୍ଦ୍ଧ୍ୱଚରଣ ଅଧୋମୁଖ । ତକ୍ଷଣେ ଦେଖି ତାଙ୍କ ଦୁଃଖ ॥
ଦୟା ବସିଲା ତାଙ୍କ ଦେହୀ । ସ୍ନେହେ ବୋଲନ୍ତି ଚାରିଭାଇ ॥
ଅସୁର ହୋଇ ତିନି ଜନ୍ମ । ନିତ୍ୟେ କରିବ ଦୁଷ୍ଟ କର୍ମ ॥
ତୃତୀୟ ଜନ୍ମେ ଜାତ ହୋଇ । ଶାପୁଁ ତରିବ ବେନିଭାଇ ॥
ବିଷ୍ଣୁଙ୍କୁ ଚିନ୍ତି ଅପରାଧ । ପୁଣି ଲଭିବ ବିଷ୍ଣୁପାଦ ॥
ପ୍ରଥମେ କଶ୍ୟପଙ୍କ ଘରେ । ବେନିଏ ଦିତିର ଗର୍ଭରେ ॥
ଜନ୍ମିଲେ ହିରଣ୍ୟ କଶିପୁ । ହରିଣ୍ୟାକ୍ଷ ଯେ ମହାବପୁ ॥
ଦେବ ଦାନବ ତାଙ୍କ ପାଦେ । ଖଟନ୍ତି ଅପରାଧୀ ଭାବେ ॥
ହିରଣ୍ୟାକ୍ଷର ଗର୍ବଭରେ । ମହୀ କମ୍ପଇ ଥରହରେ ॥
ସେ କଷ୍ଟ ହରି ନ ସହିଲେ । ଶୂକର ରୂପକୁ ଧଇଲେ ॥
ଧରଣୀ ଉଦ୍ଧାରଣ ପାଇଁ । ବରୁଣ ପୁରେ ହେଲେ ଯାଇଁ ॥

ସେ ଦୁଷ୍ଟ ହରିଣ୍ୟାକ୍ଷ ବୀର । ଅସୀମ ବଳ ଅଟେ ଯାର ॥
ବରାହ ରୂପ ଦେଖି କୋପେ । ମିଳିଲା ଗୋବିନ୍ଦ ସମୀପେ ॥
ଅନେକ ଗଦାଯୁଦ୍ଧ କଲା । ଶବଦେ ଭୁବନ କମ୍ପିଲା ॥
ବିଷ୍ଣୁର ଗଦାଘାତ ବଳେ । ପ୍ରାଣ ଛାଡ଼ିଲା ରସାତଳେ ॥
ହିରଣ୍ୟକଶିପୁର ସୁତ । ପ୍ରହ୍ଲାଦ ଗୋବିନ୍ଦଙ୍କ ଭକ୍ତ ॥
ତାକୁ ଅନେକ ଦୁଃଖ ଦେଇ । ବିଷ୍ଣୁ ଭଜନ ନ ସହଇ ॥
ପୁଣି ସେ ବିଷ୍ଣୁ ଭକ୍ତିବଳେ । ଅଜେୟ ଏ ମହୀମଣ୍ଡଳେ ॥
ତାକୁ ଅନେକ ଦୁଃଖ ଦେଲା । କେବେହେଁ ମାରି ନ ପାରିଲା ॥
ନୃସିଂହ ରୂପ ଧରି ହରି । ହିରଣ୍ୟକଶିପୁ ବିଦାରି ॥
ଦେବତା ହିତକୁ ସାଧିଲେ । ନିଜ ପୁରକୁ ଚଳିଗଲେ ॥
ପୁଣି ରାକ୍ଷସକୁଳେ ଜାତ । ବିଶ୍ରବା ଗୃହେ ବେନିଭ୍ରାତ ॥
ନିକଷା ଗର୍ଭେ ହୋଇ ଜନ୍ମ । ଅନେକ କଲେ ମନ୍ଦକର୍ମ ॥
ରାବଣ କୁମ୍ଭକର୍ଣ୍ଣ ରୂପେ । ତ୍ରୈଲୋକ୍ୟ ବଶକଲେ ଦର୍ପେ ॥
ତାହାଙ୍କୁ ରାମରୂପେ ମାରି । ରାକ୍ଷସ ଜନ୍ମରୁ ଉଦ୍ଧାରି ॥
ସେ ରାମ ଚରିତକୁ ସୁଖେ । ଶୁଣିଲୁ ମାରକଣ୍ଡ ମୁଖେ ॥
ପୁଣି ସେ ମହୀତଳେ ଜାତ । ତୋ ମାତା ଭଗିନୀର ସୁତ ॥
ଏବେ ତୋ ଯଜ୍ଞ ସଭାମଧେ । ବିଷ୍ଣୁଙ୍କୁ ନିନ୍ଦେ ଅପ୍ରମାଦେ ॥
ବିଷ୍ଣୁର ଚକ୍ରେ ଛିନ୍ନ ହୋଇ । ମୋକ୍ଷ ପାଇଲେ ବେନିଭାଇ ॥
ବଇରୀ ଭାବେ ତତ୍ତ୍ୱ ଧ୍ୟାନ । ତେଣୁ ପାଇଲେ ତତ୍ତ୍ୱଜ୍ଞାନ ॥
ତୃତୀୟ ଜନ୍ମେ କ୍ଷୟ ପାଇ । ଜୟ ବିଜୟ ବେନି ଭାଇ ॥
ପୁଣି ମିଳିଲେ ନିଜପୁରେ । ବିଷ୍ଣୁର ବୈକୁଣ୍ଠ ଦୁଆରେ ॥

## ଯୁଧିଷ୍ଠିର ଉବାଚ

ହିରଣ୍ୟକଶିପୁ କିପାଇଁ । ପୁତ୍ରକୁ ଦ୍ରୋହ ଆଚରଇ ॥
ଅସୁରେ ଜାତ ପ୍ରହଲାଦ । କିପାଁ ଭଜିଲା ବିଷ୍ଣୁ ପାଦ ॥
ବୋଲଇ ଦାସ ଜଗନ୍ନାଥ । ନାରଦ ଆଗେ କୁନ୍ତୀସୁତ ॥
ସଭାର ମଧେ ପଚାରିଲା । ଯେ ଭାଗବତ ବିଷ୍ଣୁଲୀଳା ॥
ସପ୍ତମସ୍କନ୍ଧେ ହରିବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଜୟ ବିଜୟ ପ୍ରଶ୍ନ କଥନେ ନାମ ପ୍ରଥମୋଽଧ୍ୟାୟଃ ।*

# ଦ୍ୱିତୀୟ ଅଧ୍ୟାୟ

## ନାରଦ ଉବାଚ

କହନ୍ତି ବ୍ରହ୍ମାଙ୍କ ନନ୍ଦନ । ରାଜନ ସାବଧାନେ ଶୁଣ ॥
ଅସୁରକୁଳେ ଜାତ ହୋଇ । ଜୟ ବିଜୟ ବେନିଭାଇ ॥
ହିରଣ୍ୟ ହିରଣ୍ୟାକ୍ଷବୀର । ତପେ ତୋଷିଲେ ବେଦବର ॥
ହିରଣ୍ୟକଶିପୁ ଅସୁର । ବଳେ ହୋଇଲା ରାଜେଶ୍ୱର ॥
କଷ୍ଟ ପାଇଲେ ଭୟଙ୍କର । ତ୍ରାସେ କମ୍ପିଲେ ସୁରନର ॥
ତାର ଅନୁଜ ହିରଣ୍ୟାକ୍ଷ । ଗଦା ସଂଗ୍ରାମେ ଅତି ଦକ୍ଷ ॥
ଦେବ ମନୁଷ୍ୟ ତାର ତୁଲେ । ଗଦା ଯୁଦ୍ଧରେ ହାରିଗଲେ ॥
ଏ ବେନିଲୋକ ଜିଣି ବଳେ । ବିଜୟ କଲା ସେ ପାତାଳେ ॥
ବରୁଣ ପୁରେ ଯାଇ ମିଳି । ପ୍ରଚଣ୍ଡ ଗଦା କରେ ତୋଳି ॥
ବୋଇଲା ଯୁଦ୍ଧ ମୋତେ ଦିଅ । ନୋହିଲେ ପାତାଳେ ନ ଥାଅ ॥
ମୋର ଏ ପାତାଳ ଭୁବନ । ଏମନ୍ତେ ଗଲା କେତେଦିନ ॥
ଯଜ୍ଞ ବରାହ ରୂପ ଧରି । ଦନ୍ତାଗ୍ରେ ଧରଣୀ ଉଦ୍ଧରି ॥
ସେ ହରି ଥିଲେ ତାର ପୁରେ । ତିନି ଭୁବନ ଉପକାରେ ॥
ଅସୁର ଦେଖି ଦାମୋଦର । ଗଦା ପ୍ରହାରେ କଲେ ଚୂର ॥
ହିରଣ୍ୟକଶିପୁ ତା ଶୁଣି । କୋପେ କମ୍ପିଲା ସେହିକ୍ଷଣି ॥
ଅଧର ଦନ୍ତରେ କାମୋଡ଼ି । ହା ହା ଶବଦେ ଶିର ତାଡ଼ି ॥
ଭ୍ରାତୃ ନିଧନେ ଯେ ବିକଳେ । ଚାହିଁଲା ଆକାଶ ମଣ୍ଡଳେ ॥
ସଧୂମ ଦିଶଇ ଆକାଶ । ଯେଣୁ ହୋଇଛି ମହାରୋଷ ॥
କରାଳ ବକ୍ତ୍ରେ ଊର୍ଦ୍ଧ୍ୱଦୃଷ୍ଟି । ଲଲାଟେ ଟେକିଣ ଭ୍ରୂକୁଟି ॥
ତୋଳି ତ୍ରିଶୂଳ ସଭାମଧେ । ବୋଲଇ ଭ୍ରାତୃ ଶୋକବାଦେ ॥
ଭୋ ଭୋ ଦାନବ ଦୈତ୍ୟଗଣ । କହଇ ସାବଧାନେ ଶୁଣ ॥
ଦ୍ୱିମୂର୍ଦ୍ଧ ତ୍ରିନେତ୍ର ଶମ୍ବର । ଭୋ ଶତବାହୁ ହୟ ଶିର ॥
ନମୁଚି ହେ ପାକଇଲ୍ୱଳ । ହେ ବିପ୍ରଚିତ୍ତ ଶୁଣ ବୋଲ ॥
ପୁଲୋମା ଶକୁନି ସହିତେ । ଏ ମୋର ସଭାମଧେ ଯେତେ ॥
ମୋହର ବୋଲ ଏବେ କର । ଏ ଶୋକସାଗରୁ ଉଦ୍ଧର ॥
ମୋର ବଇରୀ ଦେବଲୋକେ । ମନୁଷ୍ୟ ମଧେ ଛନ୍ତି ଥୋକେ ॥
ହରିଙ୍କୁ ଭଜନ୍ତି ଯେ ନିତ୍ୟେ । ଏବେ ବିଚାରି ମୋର ଚିତ୍ତେ ॥
ହରିର ପଥ ଆଶ୍ରେ କଲେ । ମୋର ଭାଇକି ସଂହାରିଲେ ॥
ସେ ହରି ମୋହର ବଇରୀ । ଅତି ନିର୍ଦ୍ଦୟ ଅହଂକାରୀ ॥
ମାୟାରେ ନାନାରୂପ ଧରେ । ଭକତ ସଙ୍ଗେ ସେ ବିହରେ ॥
ବାଳକ ପ୍ରାୟ ତାର ଗତି । ଏଣୁ ଅସ୍ଥିର ମୋର ମତି ॥
ଏ ଶୂଳ ମାରି ତା ଶରୀରେ । ତର୍ପଣ କରିବି ରୁଧିରେ ॥
ମୋର ଭ୍ରାତର ପ୍ରିୟ ଅର୍ଥେ । କହିଲି ତୁମ୍ଭର ଅଗ୍ରତେ ॥
ସେ କୂଟ ଦୁଷ୍ଟ ଦୁରାଚାର । ତାର ବିଶ୍ୱାସୀ ବେଗେ ମାର ॥
ସେ ମଲେ ମରିବେ ସକଳେ । ବୃକ୍ଷ କାଟିଲେ ଯେହ୍ନେ ଡାଳେ ॥

ଯାବତ ନ ମରଇ ହରି । ତାବତ ଭ୍ରମ ବସୁନ୍ଧରୀ ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଯେତେ । ବିଷ୍ଣୁ ଭଜନ୍ତି ଅବିରତେ ॥
ତପସ୍ୱୀଜନ ବେଗେ ମାର । ଯଜ୍ଞର ଅଗ୍ନି ନାଶ କର ॥
ତ୍ରିସନ୍ଧ୍ୟା ଭକ୍ତ ଜ୍ଞାନୀ ଯେତେ । ତାହାଙ୍କୁ ମାର ଅବିରତେ ॥
ଏ ଧର୍ମକ୍ରିୟା ମୂଳ ହରି । ସେ ଥାଇ ତାର ହୃଦେ ପୂରି ॥
ଋଷି ଦେବତା ପିତୃଗଣେ । ଯେ ଥାନ୍ତେ ଧର୍ମ ପରାୟଣେ ॥
ଗୋରୁ ବ୍ରାହ୍ମଣେ ଯଜ୍ଞ ଯହିଁ । ବେଦ ପଠନେ ମନ୍ତ୍ର ଧାୟି ॥
ଆଶ୍ରମ କ୍ରିୟା ଯହିଁ ଥିବ । ବେଗେ ବିନାଶି ଅଗ୍ନିଦେବ ॥
ଏମନ୍ତ ରାଜା ଆଜ୍ଞା ପାଇ । ଅସୁରେ ଗଲେ ସଜ ହୋଇ ॥
ସ୍ୱଭାବେ ଅସୁର ନିର୍ଦ୍ଦୟ । ପ୍ରାଣୀ ମାରଣେ ବଡ଼ପ୍ରିୟ ॥
ତକ୍ଷଣେ ପଶି ଗ୍ରାମପୁରେ । ଗିରି ବନସ୍ତ କ୍ଷେତ୍ରଦ୍ୱାରେ ॥
ଋଷି ଆଶ୍ରମେ ତପୋବନେ । ଖେଟ ଖବଟ ନାନା ସ୍ଥାନେ ॥
ଗୋରୁ ବ୍ରାହ୍ମଣ ଯଜ୍ଞସ୍ଥାନ । ଅନଳେ ଦହିଲେ ତକ୍ଷଣ ॥
ଖନିତ୍ର ଘେନି ମହାସୁର । ଭେଦିଲେ ପ୍ରାକାର ଗୋପୁର ॥
ଜୀବିତ ବୃକ୍ଷ ଯେତେ ଥିଲେ । ପରଶୁ ହସ୍ତେ ତା ଛେଦିଲେ ॥
ଏମନ୍ତେ ଦ୍ୱାଦଶ ବରଷେ । ଧର୍ମ ନାଶିଲେ ମହାରୋଷେ ॥
ନିରତେ ପ୍ରାଣୀ ନାଶ କଲେ । ଦେବେ ଆକାଶୁ ପଳାଇଲେ ॥
ଲୁଚିଲେ ବନ ଗିରି ଦୃଣେ । ଘୋର କାନନେ ସୁରଗଣେ ॥
ଭ୍ରାତୃ ମରଣେ କୋପ କଲା । ଏମନ୍ତେ ପ୍ରାଣୀ ନାଶକଲା ॥
ଭ୍ରାତୃର ପ୍ରେତକାର୍ଯ୍ୟ କଲା । ଅନେକ ଜଳ ଅନ୍ନ ଦେଲା ॥
ତର୍ପଣ ଶ୍ରାଦ୍ଧକର୍ମ ସାରି । ଭ୍ରାତୃସୁତଙ୍କୁ କୋଳେ ଧରି ॥
ତକ୍ଷଣେ ଅନ୍ତଃପୁରେ ଯାଇ । ସୁହୃଦ ଅସୁରଙ୍କୁ ରାଇ ॥
ଶକୁନି ଶମ୍ବର ଧୃଷ୍ଟିକ । ଭୂତ ସନ୍ତାପନ ଯେ ବୃକ ॥
କାଳନାଭ ମହାନାଭଙ୍କୁ । ହରିଶ୍ମଶ୍ରୁ ଉତ୍କଚକଙ୍କୁ ॥
ନିଜର ନିକଟେ ବସାଇ । ଅନୁଜ ପତ୍ନୀଙ୍କୁ ଅନାଇ ॥
ତାହାର ନାମ ଅଟେ ଭାନୁ । ସ୍ୱାମୀ ମରଣେ କ୍ରୋଧ ମନୁ ॥
ମାତାର ସଙ୍ଗେ ତାଙ୍କୁ ଆଣି । ବସାଇ କହେ ମଞ୍ଜୁବାଣୀ ॥

## ହିରଣ୍ୟକଶିପୁ ଉବାଚ

ହେ ମାତ ପୁତ୍ରବଧୂ ଗଣ । ଶୋକ କରିବା ଅକାରଣ ॥
ମୃତପ୍ରାଣୀଙ୍କୁ ନ ସୁମରି । ଏ ଜୀବ ନୁହଇ କାହାରି ॥
ବୀର ମରଣ ରିପୁମୁଖେ । ଲଭେ ଅକ୍ଷୟ ସ୍ୱର୍ଗ ସୁଖେ ॥
ତାର ମରଣେ ଚିନ୍ତା ନାହିଁ । ସ୍ୱର୍ଗେ ବସିଲା ମୋର ଭାଇ ॥
ପଥେ ପଥିକଜନ ପ୍ରାୟେ । ଏ ଭବେ କିଛି ସ୍ଥିର ନୁହେଁ ॥
ପୂର୍ବଜନ୍ମର କର୍ମଫଳେ । ପ୍ରାଣୀଏ ମିଳନ୍ତି ସଂସାରେ ॥

ତୃଷାର୍ତ୍ତ ତୃଷାନିବାରଣେ । ଯେହ୍ନେ ମିଳନ୍ତି ଜଳସ୍ଥାନେ ॥
ପୁଣି ଚଳନ୍ତି ଶ୍ରମ ସାରି । ସେ ଜଳ ନୁହଇ କାହାରି ॥
ଆତ୍ମା କେବେହେଁ ନାଶ ନୁହେଁ । ପ୍ରବେଶ କରେ ଯହୁଁ ଦେହେ ॥
ଅବ୍ୟୟ ଶୁଦ୍ଧ ସର୍ବଗାମୀ । ସର୍ବଜ୍ଞ ସର୍ବଦେହେ ଭ୍ରମି ॥
ସେ ଆତ୍ମା ଦେହରୁ ଚଳିଲେ । ଦେହ ବିନାଶ ଲଭେ ଭଲେ ॥
ଚଞ୍ଚଳ ଜଳେ ବୃକ୍ଷଛାଇ । ଚଳିଲା ପ୍ରାୟେକ ଦିଶଇ ॥
ସେ ଯେହ୍ନେ ଉଦକେ ନ ମିଶେ । ଆତ୍ମା ଶରୀରେ ପରକାଶେ ॥
ବାଳକେ କ୍ରୀଡ଼ାରେ ଘୂର୍ଣ୍ଣନ୍ତି । ଭ୍ରମିଣ ମହୀରେ ପଡ଼ନ୍ତି ॥
ତାହାନ୍ତେ ଭ୍ରମଇ ସଂସାରେ । ଏମନ୍ତ ମାୟା କ୍ରୀଡ଼ାଘରେ ॥
ଏଣୁ ଏ ଭ୍ରମଗୁଣ ଦୋଷେ । ମନ ନ ରହଇ ବିଶ୍ୱାସେ ॥
ଏ ଆତ୍ମା ହୋଇ ଦେହବନ୍ତ । ଦେହ ଅଭିନ୍ନ ମଣେ ନିତ୍ୟ ॥
ଅର୍ଜିଲା କର୍ମଫଳ ବଳେ । ପ୍ରାଣୀ ଭ୍ରମନ୍ତି ମହୀତଳେ ॥
ସଂସାର ସଂଯୋଗ ବିଯୋଗେ । ଶୋକ ହରଷ ବେନିମାର୍ଗେ ॥
ଏ ଅର୍ଥେ ଇତିହାସ କହି । ଶୁଣ ଜନନୀ ମନଦେଇ ॥
ପୂର୍ବେ ପୁତ୍ରବଧୂ ତୁଳେ । ଯେବା ସମ୍ପଦ ମହୀତଳେ ॥
ଶୁଣ ଜନନୀ ମନ ତୋଷେ । ଯେ କଥା ଉଗୀ ନରଅଂଶେ ॥
ସୁଯଜ୍ଞ ନାମେ ରାଜା ଥିଲା । ଶତ୍ରୁ ସଂଗ୍ରାମେ ପ୍ରାଣ ଦେଲା ॥
ତାହା ଶୁଣିଣ ପୁରଜନେ । ମିଳିଲେ ମୃତପିଣ୍ଡ ସ୍ଥାନେ ॥
ଦେଖିଲେ ରାଜାର ଶରୀର । ରୁଧିର ଧୂଳିରେ ଧୂସର ॥
ରତ୍ନକବଚ ଖଣ୍ଡ ଖଣ୍ଡ । ବିଭ୍ରମ ଅଳଙ୍କାର ପିଣ୍ଡ ॥
ତା ବକ୍ଷସ୍ଥଳ ଶରେ ଛିନ୍ନ । ବିନଷ୍ଟ ହୋଇଛି ନୟନ ॥
ବିଦୀର୍ଣ୍ଣ କେଶ ତାର ମୁଣ୍ଡେ । ବହେ ରୁଧିର ଧାରା ତୁଣ୍ଡେ ॥
ଅଧର ଦଂଶିତ ବଦନ । ହୋଇ ରହିଛି ବିଦ୍ୟମାନ ॥
ବାୟୁ ନ ବହେ ନାକବାଟେ । କର ଆୟୁଧ ଛିନ୍ନ ଅଟେ ॥
ଏକାଳେ ମିଳିଲେ ସମୀପେ । କାମିନୀ ଗଣେ ଦୁଃଖ ଶୋକେ ॥
ଅତି କାତର ହୋଇ ତହିଁ । କାନ୍ଦନ୍ତି ରାଜାମୁଖ ଚାହିଁ ॥
ଭୋ ନାଥ ତୋହର ମରଣେ । ତୋର ସକଳ ବନ୍ଧୁ ଗଣେ ॥
ଜୀବନ ଥାଉଁ ଥାଉଁ ମଲୁ । ବିଧି ଅଯୋଗ ଭିଆଇଲୁ ॥
ହୃଦରେ ବେନିକର ତାଡ଼ି । କାନ୍ଦନ୍ତି ଭୂମିତଳେ ପଡ଼ି ॥
ଚରଣ ପୁଣ ପୁଣ ଧରି । କାନ୍ଦନ୍ତି ଉଚ୍ଚନାଦ କରି ॥
ଚରଣସିକ୍ତ ଅଶ୍ରୁଜଳେ । ଲୋତକ ମିଶ୍ରିତ କଜ୍ଜଳେ ॥
କୁଚ କୁଙ୍କୁମ ଅଶ୍ରୁଜଳେ । ପଡଇ ରାଜା ପାଦତଳେ ॥
କେଶ ବସନ ଅସମ୍ଭାଳ । ଶୁଭେ ରୋଦନ ମହାଗୋଳ ॥
ହା ହା ଦଇବ ତୁ ନିର୍ଦ୍ଦୟ । ଦୂରେ ଛାଡ଼ିଲୁ ମାୟାମୋହ ॥

ଅଦୃଷ୍ଟ ଅଶ୍ରୁତ କରମ । ଭିଆଇ କଲୁ ମତିଭ୍ରମ ॥
ପୂର୍ବେ ଆମ୍ଭଙ୍କୁ ସୁଖ ଦେଲୁ । ଏବେ ତୁ ନିଷ୍ଠୁର ହୋଇଲୁ ॥
ପୁଣି ରାଜାର ପାଦ ଧରି । ଉଚ୍ଚେ କାନ୍ଦନ୍ତି ତାର ନାରୀ ॥
ଆମ୍ଭଙ୍କୁ ତେଜୁ ନାଥ ତୁହି । ମୁହୂର୍ତ୍ତେ ତୋ ସଙ୍ଗ ନ ପାଇ ॥
କେମନ୍ତେ ଧରିବୁ ଜୀବନ । ଦିଶଇ ଦଶଦିଗ ଶୂନ୍ୟ ॥
ତୋର ଚରଣେ ଆମ୍ଭେ ସେବୁ । କହ କେବଣ ଦିଗେ ଯିବୁ ॥
ଏମନ୍ତେ ପତି ପାଦ ଧରି । ଉଚ୍ଚେ କାନ୍ଦନ୍ତି ତାର ନାରୀ ॥
ଦହନ ପାଇଁ ନ ଛାଡ଼ନ୍ତି । ଦୁଃଖେ ରହିଲେ ଗୋତ୍ର ଜ୍ଞାତି ॥
ଏମନ୍ତେ ରବି ଅସ୍ତ ଗଲା । ଘୋର ତିମିର ପ୍ରକାଶିଲା ॥
ଆର୍ତ୍ତ ରୋଦନ ତାଙ୍କ ଦେଖି । ଶମନ ଭୁବନ ଉପେକ୍ଷି ॥
ଶୋକ ନିବାରେ ଇଚ୍ଛାକରି । ଯମ ବାଳକ ରୂପ ଧରି ॥
ମିଳିଣ ତାଙ୍କ ସନ୍ନିଧାନେ । କହଇ କୋମଳ ବଚନେ ॥

### ଯମ ଉବାଚ

ଆହୋ ଅଦ୍ଭୁତ କଥା ଦେଖ । ଏ ସର୍ବ ବୟସେ ଅଧିକ ॥
ବାଳକ ପ୍ରାୟ ନ ଜାଣନ୍ତି । ବିମୋହେ ରୋଦନ କରନ୍ତି ॥
ଏ ପ୍ରାଣ ଯହୁଁ ଆସିଥିଲା । କର୍ମ ସଙ୍ଗତେ କରି ଖେଳା ॥
ତହିଁକି ଗଲା କର୍ମ ଅନ୍ତେ । ଜାଣି ନ ଜାଣୁ ତୁ କେମନ୍ତେ ॥
ସମସ୍ତ ତୁଲ୍ୟ ଦେହ ବହି । କର୍ମ ସରିଲେ କେବା ରହି ॥
ଯହୁଁ ଅଇଲା ତା ନ ଜାଣେ । ଦେହକୁ ନିତ୍ୟପ୍ରାୟ ମଣେ ॥
ଅନ୍ତେ ଯହିଁକି ପ୍ରାଣ ଯିବ । ଏହା ନ ଜାଣେ ବ୍ରହ୍ମା ଶିବ ॥
ସଂସାର ମଧ୍ୟେ ଦେହ ବହି । ସକଳ ମଧ୍ୟେ ଧନ୍ୟ ମୁହିଁ ॥
ପିତା ଜନନୀ ମୋର ନାହିଁ । ବୁଲଇ ଅରକ୍ଷିତ ହୋଇ ॥
ବୃକ ପ୍ରଭୃତି ଜନ୍ତୁ ଯେତେ । କେ ଭକ୍ଷି ନ ପାରନ୍ତି ମୋତେ ॥
ଗର୍ଭେ ଯେ ରକ୍ଷା କଲା ମୋତେ । ଏବେ ସେ ଅଛି ମୋ ସଙ୍ଗତେ ॥
ଈଶ୍ୱର ଇଚ୍ଛାରେ ସର୍ଜଇ । ପାଳଇ ପୁଣ ସଂହାରଇ ॥
ତାହାର କ୍ରୀଡ଼ା ଏ ଜଗତ । କିବା ବାଳକ ତାତ ମାତ ॥
ଯେ ପ୍ରାଣୀ ନିଜ ପଥ ଛାଡ଼ି । ନିୟତ କର୍ମ ଯେବେ ତୁଡ଼ି ॥
କର୍ମ କରଇ ତାକୁ ରକ୍ଷା । ଗୁରୁଙ୍କ ପ୍ରାୟେ ଦେଇ ଦୀକ୍ଷା ॥
ବାଳକ ଗୃହେ ଥାଇ ଯେହ୍ନେ । କର୍ମେ ନ ଥିବ ଭୋଗ ମନେ ॥
ରକ୍ଷକ ଥିଲେହେଁ ମରଇ । ଅତି ଯତନେ ଯେବେ ଥାଇ ॥
ଯେ ବାଳ ବିପିନେ ବର୍ଜିତ । ସ୍ୱଭାବେ ହୋଇ ଅରକ୍ଷିତ ॥
ତାହାକୁ ଦଇବ ରଖଇ । ବେଦ ପୁରାଣେ ଏହା କହି ॥
ଏଣୁ ପ୍ରାଣୀଏ କର୍ମଫଳେ । ଜନ୍ମ ମରଣ ଏ ଶୟଳେ ॥
ଆତ୍ମା ସକଳ ଦେହେ ଥାଇ । ଶରୀରୁ ଭିନ୍ନ ସେ ଅଟଇ ॥
ଶରୀରେ ଆତ୍ମଜ୍ଞାନ ଖ୍ୟାତ । ମୋହବଶରୁ ହୁଏ ଜାତ ॥
ଯେତେ ବୁଦ୍ ବୁଦ ଜଳୁଁ ଜାତ । ମାଟିରୁ ଘଟ ସେ ସମ୍ଭୂତ ॥
ସ୍ୱର୍ଣ୍ଣରୁ କୁଣ୍ଡଳ ହୁଅଇ । ବିନାଶେ ନିଜତ୍ୱ ଲଭଇ ॥
ମିଶଇ ବୁଦ୍‌ବୁଦ ଜଳରେ । ଘଟ ବିଲୀନ ମୃତ୍ତିକାରେ ॥
କୁଣ୍ଡଳ ସ୍ୱର୍ଣ୍ଣତ୍ୱକୁ ପାଇ । ଶେଷରେ ଜଳାଦି ରହଇ ॥
ତେସନେ କାଳବଶେ ଜାତ । କର୍ମ ଭୋଗେଣ ଜୀବ ମୃତ ॥
ଅଗ୍ନି ଯେସନେ କାଷ୍ଠେ ଥାଇ । ସ୍ୱଭାବେ ଭିନ୍ନ ସେ ଅଟଇ ॥
ପବନ ଦେହ ମଧ୍ୟେ ଥାଇ । ଦେହରୁ ପୃଥକ ଅଟଇ ॥
ଆକାଶ ସର୍ବବ୍ୟାପୀ ହୋଇ । କାହାରି ସଙ୍ଗେ ଲିପ୍ତ ନୋହି ॥
ଏ ଜୀବ ପୁରୁଷ ତେମନ୍ତ । ସ୍ୱଭାବେ ତ୍ରିଗୁଣାତିରିକ୍ତ ॥
ସୁଯଜ୍ଞ ରାଜା ଏ ନୁହଇ । ରୋଦନ କର କାହିଁପାଇଁ ॥
ଶ୍ରୋତା ବକତା ନାହିଁ ଏଥେ । ରୋଦନ ଶୁଣିବ କେମନ୍ତେ ॥
ଏ ଦେହ ମଧ୍ୟେ ଆତ୍ମା ଥାଇ । ଇନ୍ଦ୍ରିୟ ସଙ୍ଗେ ପ୍ରକାଶଇ ॥
ସେ ଏଥୁ ଗଲା ଅନ୍ତରୀକ୍ଷେ । ଦେଖ ଏ ମୃତ୍ତିକା ପ୍ରତ୍ୟକ୍ଷେ ॥
ଏ ଦେହ ପାର୍ଥିବ ବିକାର । ପଡ଼ିଛି ପୃଥିବୀ ଉପର ॥
ଯାହାକୁ ଶୋକ ତୁମ୍ଭେ କର । ସେ ପ୍ରାଣୀ ଏ ଦେହରୁ ପର ॥
ଏ ପଞ୍ଚଭୂତ ଇନ୍ଦ୍ରିଗଣ । ମନ ଯେ ଏହାଙ୍କ କାରଣ ॥
ଆତ୍ମାଟି ଏହାଙ୍କର ସଙ୍ଗେ । ପ୍ରକାଶ ଉଚ୍ଚବାଚ ରଙ୍ଗେ ॥
ସେ ନିଜ ତେଜ ପ୍ରକାଶଇ । ଶରୀର ଘେନଇ ଛାଡ଼ଇ ॥
ଯାବତ ଆତ୍ମା ଦେହେ ଥାଇ । ଅଲିଙ୍ଗେ ଲିଙ୍ଗଦେହ ବହି ॥
ଏ ଜୀବ କର୍ମରେ ବନ୍ଧନ । ଏହା ନ ଜାଣେ ମୂର୍ଖଜନ ॥
ଏଣୁ ଏ ଗତାଗତ ପଥେ । କ୍ଲେଶ ଲଭଇ ଅବିରତେ ॥
ଏ ପୁଣି ମିଥ୍ୟା କଳେବରେ । ଅତଥ୍ୟ ତଥ୍ୟ ପ୍ରାୟେ ସ୍ଫୁରେ ॥
ଯେମନ୍ତେ ସ୍ୱପ୍ନ ମନୋରଥେ । ଭ୍ରମଇ ଇନ୍ଦ୍ରିୟଙ୍କ ଅର୍ଥେ ॥
ଦେଖଇ ସତ୍ୟପ୍ରାୟେ ତାହା । ନିଦ୍ରାର ଅନ୍ତେ ହୁଏ ମାୟା ॥
ଏହାଙ୍କ ନିତ୍ୟାନିତ୍ୟ ପଥେ । ପଣ୍ଡିତେ ନ ଘେନନ୍ତି ଚିତ୍ତେ ॥
କର୍ମ ଅନ୍ୟଥା କେ କରିବ । ଯାହା ନ ଜାଣେ ବ୍ରହ୍ମା ଶିବ ॥
ଶୁଣ କହିବା ପୂର୍ବ ବାଣୀ । ମୁଁ ଯେ ବାଳକ ଅଛି ଶୁଣି ॥
ଲୁବ୍‌ଧକ ପକ୍ଷୀଙ୍କ ମାରଣେ । ଦିନେ ପଶିଲା ଘୋରବନେ ॥
ବୁଲଇ ହସ୍ତେ ଫାଶ ନେଇ । ପକ୍ଷୀଙ୍କ କାଳପ୍ରାୟ ହୋଇ ॥
ଲତା ଗହଳେ ସେ ପଶିଲା । ଅନ୍ତରେ ଜାଲ ପ୍ରସାରିଲା ॥
ଆହାର ଜାଲ ତଳେ ଥୋଇ । ଲୁଚିଲା ଲତା ମଧ୍ୟେ ଯାଇ ॥
କୁଳିଙ୍ଗ ପକ୍ଷୀ ପତ୍ନୀମେଳେ । ବସି ଯେ ଥିଲା ବୃକ୍ଷଡାଳେ ॥
ଆହାର ଦେଖି ଜାଲ ତଳେ । ପଶିଲା କୁଳିଙ୍ଗ ଚଞ୍ଚଳେ ॥
ଲୁବ୍‌ଧକ ଜାଲଫାଶେ ଛନ୍ଦି । ସେହି ପତ୍ନୀକୁ କଲା ବନ୍ଦି ॥
ପତ୍ନୀ ମରଣ ପକ୍ଷୀ ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
ଉଚ୍ଚ ବୃକ୍ଷର ଡାଳେ ବସି । ନିର୍ଘାତ ନିଃଶ୍ୱାସ ସାହସୀ ॥

ଅତି ବକଳ ଦୁଃଖ ମନେ । ଲୋତକ ବହଇ ନୟନେ ॥
କର୍ମ ଆଦରି ସତୀ ଚାହିଁ । ବୋଲଇ ରବିକି ଅନାଇଁ ॥
ହା ହା ଦଇବ ତୁ ନିର୍ଦ୍ଦୟ । ମୋର ବିଷୟେ କଲୁ କୋହ ॥
କ୍ଷଣ କଲୁ ପତ୍ନୀ ହୀନେ । ଏ ଦେହ ଧରିବି କେସନେ ॥
ଶରୀର ଅର୍ଦ୍ଧଅଙ୍ଗ ନାରୀ । ଅର୍ଦ୍ଧକେ କେବା ଦେହ ଧରି ॥
ବାଳକ ଅଛନ୍ତି ମୋ ବାସେ । କି ଘେନି ଯିବି ତାଙ୍କ ପାଶେ ॥
କେମନ୍ତେ ପୋଷିବଇଁ ମୁହିଁ । ତାହାଙ୍କ ଦେହେ ପକ୍ଷ ନାହିଁ ॥
ବାଳକେ ମୋର ମାତୃହୀନେ । ଜୀବନ ଧରିବେ କେସନେ ॥
ମାତାକୁ ଲୋଡ଼ିବେ ନିରତେ । ମୁଁ ତାହା ସହିବି କେମନ୍ତେ ॥
ଏମନ୍ତେ ବୃକ୍ଷ ଡାଳେ ଥାଇ । ବିକଳେ କୁଳିଙ୍ଗ କାନ୍ଦଇ ॥
ପତ୍ନୀର ଦେହେ ଦେଇ ମନ । କ୍ଷଣ କ୍ଷଣକେ ଅଚେତନ ॥
ଏମନ୍ତେ ବ୍ୟାଧ ବୃକ୍ଷତଳେ । ମିଳିଲା ଚରଣେ ନିଷ୍ଫଳେ ॥
ନାରାଚ ବିନ୍ଧି ତାକୁ ମାରି । ମୁଦିଣ ଥୋଇଲା ପଞ୍ଜରୀ ॥
ଚହୁଁ ସେ ନିଜପୁର ଗଲା । ଶୁଣ ଗୋ ନୃପତି ଅବଳା ॥
ଶତବରଷ ଏହିଠାବେ । ରୋଦନ କରୁଥିବ ଯେବେ ॥
ତେବେ କି ଉଠିବ ଶରୀର । କେମନ୍ତେ ବିଚାର ତୁମ୍ଭର ॥

## ହିରଣ୍ୟକଶିପୁ ଉବାଚ

ବାଳକ ବଚନ ଏମନ୍ତେ । ଶୁଣି ସକଳ ଏକଚିତ୍ତେ ॥
ମାୟା ଛାଡ଼ିଲେ ଜ୍ଞାନ ପାଇ । ଉଠିଲେ ଏକୁ ଆରେ ଚାହିଁ ॥
ବୋଲନ୍ତି ମିଥ୍ୟା ଏ ସଂସାର । ଅନିତ୍ୟ ମନୁଷ୍ୟ ଶରୀର ॥
ଯମ ଏ ଉପଦେଶ ଦେଲା । ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା ॥
ତକ୍ଷଣେ ଜ୍ଞାତି ଗୋତ୍ରମେଳେ । ରାଜାର ପ୍ରେତକାର୍ଯ୍ୟ କଲେ ॥
ଏଣୁ ମୋ ଅନୁଜ ମରଣେ । ଶୋକ କରିବି କି କାରଣେ ॥
ଏମନ୍ତେ ମାୟାରେ ସଂସାର । କେ ନିଜ କେବା ଅଛି ପର ॥

## ନାରଦ ଉବାଚ

ଏମନ୍ତେ ଶୁଣି ପୁତ୍ର କଥା । ଶୋକ ଛାଡ଼ିଲେ ରାଜମାତା ॥
ପୁତ୍ରବଧୂଙ୍କୁ ଶାନ୍ତ କରି । ତଥ୍ୟ ବଚନ ମନେ ଧରି ॥
ଦିତି ଛାଡ଼ିଲା ପୁତ୍ରଶୋକ । ବ୍ରହ୍ମରେ ନିବେଶି ବିବେକ ॥
କହଇ ଦାସ ଜଗନ୍ନାଥ । ସପ୍ତମସ୍କନ୍ଧେ ଭାଗବତ ॥
ନାରଦ ମୁନି ଅନୁରାଗେ । କହିଲେ ଧର୍ମସୁତ ଆଗେ ॥
ଏ ବାଣୀ ତତ୍ତ୍ୱଜ୍ଞାନ ସାର । ଶୁଣି ସଂସାରୁ ପ୍ରାଣୀ ତର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ନାରଦ ଯୁଧିଷ୍ଠିର ସମ୍ବାଦେ ଦିତି ଶୋକୋପନୋଦନେ ନାମ ଦ୍ୱିତୀୟୋଽଧ୍ୟାୟ ।*

# ତୃତୀୟ ଅଧ୍ୟାୟ

## ନାରଦ ଉବାଚ

ଶୁଣ ପାଣ୍ଡବ ଚୂଡ଼ାମଣି । ହିରଣ୍ୟ କଶିପୁ କାହାଣୀ ॥
ଅନୁଜ ମରଣର ତାପେ । ମନାସି ଯାହା କଲା ତପେ ॥
ହେବି ମୁଁ ଅଜୟ ଅମର । ତପେ ତୋଷିଲେ ବେଦବର ॥
ଗୃହ ଉପେକ୍ଷି ତପ ଅର୍ଥେ । ମିଳିଲା ମନ୍ଦର ପର୍ବତେ ॥
ରହି ପର୍ବତ କ୍ରୋଡ ମଧ୍ୟେ । ତପସ୍ୟା କଲା ଯୋଗବାଦେ ॥
ହୋଇବି ତ୍ରିଭୁବନେ ରାଜା । ସର୍ବେ ହୋଇବେ ମୋର ପ୍ରଜା ॥
ଏମନ୍ତ ତୃଷ୍ଣା କରି ମନେ । ଶତ୍ରୁ ନ ଥିବେ ତ୍ରିଭୁବନେ ॥
ଏହି ସଂକଳ୍ପ କରି ମନେ । ରହିଲା ନିଶ୍ଚଳ ଆସନେ ॥
ଊର୍ଦ୍ଧ୍ୱେ ସେ ବେନିକର ତୋଳି । ଗଗନେ ଚାହିଁଲା ନିରୋଳି ॥
ପାଦ ଅଙ୍ଗୁଷ୍ଠି ମହୀ ଚାପି । ଦେହ ରହିଲା ଶୂନ୍ୟେ ବ୍ୟାପି ॥
ପିଙ୍ଗଳ ଜଟା ଶିରେ ସାଜେ । ପ୍ରଳୟ ଅର୍କପ୍ରାୟ ତେଜେ ॥
ତାହାର ଘୋରତପ ଚାହିଁ । ଶୂନ୍ୟେ ମିଳିଲେ ଦେବେ ଯାଇ ॥
ଶତେ ବରଷ ବେଦମତେ । ତପେ ରହିଲା ଦୃଢ଼ଚିତ୍ତେ ॥
କ୍ଷୁଧା ପିପାସା କଲା ଦୂର । କେବଳ ପବନ ଆହାର ॥
ତା ମୁଣ୍ଡୁ ଅଗ୍ନି ହୋଇ ଜାତ । ଧୂମରେ ପୂରିଲା ଜଗତ ॥
ସେ ଅଗ୍ନି ଅଧଊର୍ଦ୍ଧ୍ୱେ ବ୍ୟାପେ । ଜଗତ କମ୍ପେ ତାର ତାପେ ॥
ନଦୀ ସମୁଦ୍ର ଦିଗ ପୂରି । କମ୍ପିଲେ ମହାଭୟ କରି ॥
ଗଗନୁଁ ଗ୍ରହ ତାରା ତ୍ରାସେ । ଖସି ପଡ଼ିଲେ ଦଶଦିଶେ ॥
ଦେବେ କମ୍ପିଲେ ତାହାଦେଖି । ସଭୟେ ସ୍ୱରଗ ଉପେକ୍ଷି ॥
ଭୟେ କମ୍ପିଲେ ଏକେ ଏକେ । ସର୍ବେ ମିଳିଲେ ବ୍ରହ୍ମଲୋକେ ॥
ବ୍ରହ୍ମା ଚରଣେ ପ୍ରଣମିଲେ । ଅନେକମତେ ସ୍ତୁତି କଲେ ॥

## ଦେବଗଣ ଉବାଚ

ହେ ଧାତା ସକଳ ଈଶ୍ୱର । ଆମ୍ଭେ ଯେ ଶରଣ ତୋହର ॥
ଦିତିର ସୁତ ତପ ଚାହିଁ । ସ୍ୱର୍ଗେ ଥିବାର ଶଙ୍କାପାଇ ॥
ଭୟେ ଅଇଲୁ ତୁମ୍ଭ ପୁର । ଆମ୍ଭଙ୍କୁ ରଖ ବେଦବର ॥
ତୋହର ସୃଷ୍ଟି ସର୍ବଲୋକ । ଆମ୍ଭଙ୍କୁ ମହାଭୟୁଁ ରଖ ॥
ଯେମନ୍ତେ ଲୋକ ନାଶ ନୁହେ । ତେମନ୍ତ କର ତୁ ଉପାୟେ ॥
ଅସୁର ତପ ତୋର ଧ୍ୟାନେ । କିବା ସଂକଳ୍ପ ତାର ମନେ ॥
ଏ କଥା ତୋତେ ନୁହେ ଦୂର । ଆମ୍ଭେ ଯେ ତୋହର କିଙ୍କର ॥
ତଥାପି ତୋର ପାଦଗତେ । କହିଲୁ ମହାଭୟ ଚିତ୍ତେ ॥
ତୁମ୍ଭେ ଏ ଘୋର ତପକରି । ପୂର୍ବେ ତୋଷିଲ ନରହରି ॥

ଏଣୁ ଏ ବ୍ରହ୍ମଲୋକେ ସ୍ଥିତି । ପ୍ରଜା ରକ୍ଷଣେ ପ୍ରଜାପତି ॥
ଏ ବଳବନ୍ତ କାଳବଳେ । ଏ ଘୋର ସମାଧି ନିଷ୍ଠଳେ ॥
ଅନେକ ଜନ୍ମେ କରି ତପ । ସାଧ କରିବ ତିନିଲୋକ ॥
ଏତେ ବିଚାରି ସତ୍ୟଲୋକେ । ତୁମ୍ଭେ ରହିଲ ଆତ୍ମସୁଖେ ॥
ବ୍ରହ୍ମାଣ୍ଡ ସୃଜିବାର ଅର୍ଥେ । ଶ୍ରେୟ ବିଭୂତି ନାମ ଯୁକ୍ତେ ॥
ଏମନ୍ତ ଦେବ ବାକ୍ୟ ଶୁଣି । ସଙ୍ଗତେ ଭୃଗୁ ଦକ୍ଷ ଘେନି ॥
ଅପରେ ଯେତେ ବ୍ରହ୍ମମୁନି । ସଙ୍ଗତେ ଘେନି ପଦ୍ମଯୋନି ॥
ଆତ୍ମ କୁଶଳ ମନେ ଭାଳି । ଦୈତ୍ୟର ତପସ୍ଥାନେ ମିଳି ॥
ଦେଖିଲେ ଅସୁର ଶରୀର । ସ୍ୱଭାବେ ଅତି ଭୟଙ୍କର ॥
ତପ ସାଧନେ କ୍ଷୀଣ କାୟ । ମାଂସ ଶୋଣିତ ଶୁଷ୍କପ୍ରାୟ ॥
କେବଳ ଅସ୍ଥିଚର୍ମ ଅଛି । ବାଲ୍ମୀକେ ବ୍ୟାପିତ ହୋଇଛି ॥
ତାହାର ତପେ ଅତିରେକେ । ହେଲେ ତାପିତ ତିନି ଲୋକେ ॥
ଦେହ ନ ଦିଶେ ଗୁଳ୍ମ ତୃଣେ । ମେଘ ଆବୃତ ରବି ଯେହ୍ନେ ॥
ଏମନ୍ତ ଅସୁରର ଗତି । ଦେଖି ବିସ୍ମିତ ପ୍ରଜାପତି ॥
ଆରୋହି ନିଜ ହଂସଯାନ । ସହାସ୍ୟେ କହିଲେ ବଚନ ॥

## ବ୍ରହ୍ମ ଉବାଚ

ଉଠ ହେ କଶ୍ୟପ କୁମର । ହୋଇଛି ତପ ସିଦ୍ଧି ତୋର ॥
ତୋହର ତପ କଷ୍ଟ ଦେଖି । ଅଇଲି ସ୍ୱପୁର ଉପେକ୍ଷି ॥
ତୋହର ବରଦାତା ମୁହିଁ । ବାଞ୍ଛିତ ବର ମାଗ ତୁହି ॥
ତପେ ତୋ ପରି ସ୍ଥିରମତି । କେ ଅବା ଭୁବନେ ଅଛନ୍ତି ॥
ଅଦ୍ଭୁତ ଦେଖିଲି ମୁଁ ତୋତେ । ତୋ ସମ ନାହିଁ ଏ ଜଗତେ ॥
ପ୍ରାଣ ଅଛଇ ଅସ୍ଥିଗତେ । ଧ୍ୟାନ ତୋହର ଅନ୍ତର୍ଗତେ ॥
ପୂର୍ବେ ଯେ ଥିଲେ ମୁନିଜନେ । ତପ ଆଚରି ଏ ଭୁବନେ ॥
ତୋହରି ପ୍ରାୟେ ସେ ନୁହନ୍ତି । ନିରମ୍ବୁ ଭକ୍ଷଣେ ଜୀଅନ୍ତି ॥
ଶତବରଷ ବେଦମତେ । ତପ ସାଧିବ ଏକଚିତ୍ତେ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ଦେଖିଲି ନାହିଁ ତ୍ରିଭୁବନେ ॥
ଦୁସ୍ତର ତପ ଏ ତୋହର । ମନୁଷ୍ୟ ଲୋକେ ଅଗୋଚର ॥
ଏ ତପନିଷ୍ଠା ଦୃଢ଼ମତେ । ସ୍ୱଭାବେ ଜିଣିଲୁ ତୁ ମୋତେ ॥
ଏଣୁ ତୋ ତପ ଦୃଢ଼ ଦେଖି । ଅଇଲି ସ୍ୱରଗ ଉପେକ୍ଷି ॥
ହେଲି ସନ୍ତୁଷ୍ଟ ତପେ ତୋର । ମାଗିଲେ ଦେବି ଇଷ୍ଟବର ॥
ଦର୍ଶନ ଦେବଲୋକଙ୍କର । ନିଷ୍ଫଳ ନୁହଇ ଜନର ॥

## ନାରଦ ଉବାଚ

ଏମନ୍ତ କହି ତାଙ୍କୁ ବାଣୀ । ଦୟା ସାଗର କୁଶପାଣି ॥
ତକ୍ଷଣେ କମଣ୍ଡଳୁ କରେ । ଜଳ ସିଞ୍ଚିଲେ ତା ଉପରେ ॥
କୀଟ ବଲ୍ମୀକ ତାର ଦେହୀ । ତକ୍ଷଣେ ଦିବ୍ୟଜଳ ପାଇ ॥
ସର୍ବ ସମ୍ପୂର୍ଣ୍ଣ କଳେବର । ବଜ୍ରହୁଁ କଠିନ ଶରୀର ॥
ଯୁବ ବୟସ ସୁଗଠନ । ଯୁବତୀ ମନ ବିମୋହନ ॥
ତପ୍ତ କାଞ୍ଚନ ପ୍ରାୟେ ଦେହୀ । ତେଜେ ଅନଳ ରୂପ ଦହି ॥
ଲୋଚନ ଘଷି ଦଶଦିଗେ । ଚାହିଁ ଦେଖିଲା ଶୂନ୍ୟମାର୍ଗେ ॥
ହଂସ ବାହନେ ବ୍ରହ୍ମା ଚାହିଁ । ନମିଲା ଦଣ୍ଡ ପ୍ରାୟ ହୋଇ ॥
ବ୍ରହ୍ମାଙ୍କ ଦର୍ଶନ ଉତ୍ସବେ । ନିଷ୍ଠୁର ତପର ପ୍ରଭାବେ ॥
କରଅଞ୍ଜଳି ଶିରେ ଦେଇ । ହରଷେ ଲୋମ ପୁଲକଇ ॥
ଆନନ୍ଦେ ଅଶ୍ରୁ ଗଦଗଦେ । ସ୍ତୁତି କରଇ ପଦ୍ମପାଦେ ॥

## ହିରଣ୍ୟକଶିପୁ ଉବାଚ

ନମସ୍ତେ ପ୍ରଭୁ ବେଦପତି । ତ୍ରିଲୋକ ତୋହର କୀରତି ॥
କଳ୍ପ ଅନ୍ତରେ କାଳବଳେ । ଘୋର ଅନ୍ଧାର ଏ ଶୟଳେ ॥
ନିଜ ଶରୀର ତୋର ତେଜେ । ଜଗତେ ଯେ ପ୍ରଭୁ ବିରାଜେ ॥
ଆତ୍ମା ତ୍ରିଗୁଣ ମାୟା ଘୋରେ । ସର୍ଜଇ ପାଳଇ ସଂହରେ ॥
ଏଣୁ ତ୍ରିଗୁଣ ଏ ଜଗତେ । ସେ ଦେବରାୟ ନମସ୍ତୁତେ ॥
ପ୍ରାଣ ଇନ୍ଦ୍ରିୟ ମନ ବୁଦ୍ଧି । ବିକାର ବ୍ୟକ୍ତ ଯେ ପ୍ରସିଦ୍ଧି ॥
ଜ୍ଞାନ ବିଜ୍ଞାନ ଆଦି ବୀଜ । ନମସ୍ତେ ପ୍ରଭୁ ଦେବରାଜ ॥
ଜଗତ କଳ୍ପନା ସ୍ୱରୂପୀ । ଜୀବଙ୍କୁ ମାୟାରୂପେ ବ୍ୟାପି ॥
ପ୍ରଜାପତିଙ୍କ ପତି ହେଉ । ଇନ୍ଦ୍ରିୟ ଇନ୍ଦ୍ରିୟେ ବନ୍ଧାଉ ॥
ତୁ ମହାଭୂତ ଗୁଣଚୟ । ସକଳ ଶ୍ରୁତ ସ୍ମୃତିମୟ ॥
ତୁ ଦେବ ସପ୍ତତନ୍ତୁ ହେତୁ । ଚତୁର ହୋତ୍ର ମୂଳତତ୍ତ୍ୱ ॥
ଆମ୍ଭର ଆତ୍ମା ତୁ ଅନାଦି । ଅନନ୍ତ ଅପ୍ରମେୟ ବାଦୀ ॥
ତୁ ନାଥ ଅନିମିଷ କାଳ । ହରୁ ପ୍ରାଣୀଙ୍କ ଆୟୁବଳ ॥
ନିଃଶେଷେ ଆଦିରୂପ ତୋର । ତେଣୁ ପ୍ରାଣୀଙ୍କ ଆୟୁ ହର ॥
ତୋର ସର୍ଜିତ ଏ ଜଗତ । ତୁ କୂଟ ଆତ୍ମାରୂପେ ସ୍ଥିତ ॥
ତୁ ପରମେଷ୍ଠୀ ମହାଶୟ । ଜୀବଲୋକର ଜୀବ ଦେହ ॥
ତୋ ଠାରୁ ଅନେକ ଜଗତେ । ପର ଅପର ଛନ୍ତି ଯେତେ ॥
ସଂସାରେ ବିଦ୍ୟା କଳ ଯେତେ । ତୋର ଶରୀରେ ଏ ନିୟତେ ॥
ବ୍ରହ୍ମାଣ୍ଡ ତୋର ମନୁ ଜାତ । ତୁ ଦେବ ତ୍ରିପୁରର ନାଥ ॥
ଜଗତରୂପେ ତୋର ଦେହୀ । ମନ ଇନ୍ଦ୍ରିୟ ଗୁଣଗ୍ରାହୀ ॥
ପ୍ରାଣ ଧାରଣେ ଏହାଙ୍କର । ତୋର ବିକୃତ କଳେବର ॥
ପରମ ପଦ ତୋର ପାଶ । ଏହାଙ୍କୁ କିମ୍ପା କରୁ ତ୍ରାସ ॥
ଅବ୍ୟକ୍ତ ଆତ୍ମା ତୁ ନିର୍ମାଣ । ତୁ ନାଥ ପୁରୁଷ ପୁରାଣ ॥
ଅନନ୍ତ ଅବ୍ୟୟ ଶରୀରେ । ତୁ ନାଥ ବ୍ରହ୍ମାଣ୍ଡ ଭିତରେ ॥

ଚିତ୍ତ ଅଚିତ୍ତ ଶକ୍ତି ଯୁକ୍ତ । ନମସ୍ତେ ପ୍ରଭୁ ଭଗବତ ।
ଯେବେ ତୁ ବରଦେବୁ ମୋତେ । ଶୁଣ କହିବି ତୋ ଅଗ୍ରତେ ।
ତୋର ସୃଜିତ ସୃଷ୍ଟି ଯେତେ । ରୂପେ ଅରୂପେ ଏ ଜଗତେ ।
ତାହାଙ୍କ ହସ୍ତେ ନ ମରିବି । ଅଜରାମର ହୋଇଥିବି ।
ନର ଅଥବା ପଶୁ ହସ୍ତେ । ଅପରେ ରଜନୀ ଦିବସେ ।
ନାନାଆୟୁଧ ଛନ୍ତି ଯେତେ । କେବେହେଁ ନ କାଟିବ ମୋତେ
ଉରଗେ ନ ମାରିବେ ମୋତେ । ନ ମରି ଭ୍ରମି ଶୂନ୍ୟପଥେ ।
ଜୀବେ ଅଜୀବେ ନ ମରିବି । ନିତ୍ୟେ ନିର୍ଭୟେ ମୁଁ ସଞ୍ଚରିବି ।
ସୁର ଅସୁର ଶସ୍ତ୍ର ଘାତେ । ବିୟୋଗ ନ କରିବ ମୋତେ ।
ସମରେ ମୋର ତୁଲେ ବଳେ । କେହି ନ ଥିବେ ଏ ଶୟଳେ ।
ହୋଇବି ତ୍ରିଭୁବନେ ରାଜା । ସର୍ବେ କରିବେ ମୋତେ ପୂଜା ।
ଦିଗପାଳଙ୍କ ମଧ୍ୟଗତେ । ମୋ ଦୃଢ଼ ଯୋଗଫଳ ଜାତେ
କେବେହେଁ ବଂଶ ନାଶ ନାହିଁ । ଏ ବର ମାଗୁଅଛି ମୁହିଁ ।
ଏମନ୍ତେ ବ୍ରହ୍ମାର ସନ୍ମୁଖେ । ବର ମାଗିଲା ଆତ୍ମାସୁଖେ ।
କହଇ ଦାସ ଜଗନ୍ନାଥ । ସପ୍ତମସ୍କନ୍ଧେ ଭାଗବତ ।
ନାରଦ ଯୁଧିଷ୍ଠିର ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ହିରଣ୍ୟକଶିପୁ ତପ*
*ଆରାଧନେ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ନାରଦ ଉବାଚ

ଶୁଣ ରାଜନ ସ୍ଥିର ଚିତ୍ତେ । କହିବୁ ଯାହା ତୋ ଅଗ୍ରତେ ।
ତପେ ହିରଣ୍ୟକଶିପୁର । ସନ୍ତୁଷ୍ଟ ହୋଇ ବେଦବର ।
ବର ପ୍ରାର୍ଥନା ତାର ଶୁଣି । କହିଲେ ଏମନ ବଖାଣି ।

### ବ୍ରହ୍ମ ଉବାଚ

ଶୁଣ ହେ ଅସୁର ପୁଙ୍ଗବ । ତୋହର ଜନ୍ମ ଏ ଦୁର୍ଲ୍ଲଭ ।
ଯେତେ ମାଗିଲୁ ବର ମୋତେ । ପ୍ରାଣୀଙ୍କି ଦୁର୍ଲ୍ଲଭ ଜଗତେ ।
ତୋହର ତପେ ତୋଷହୋଇ । ଦେବି ଅନ୍ୟଥା ଏଥେ ନାହିଁ ।
ହେଉ ତୋ ମନୋବାଞ୍ଛା ସିଦ୍ଧି । ଏମନ୍ତେ କହି ବେଦନିଧି ।
ତକ୍ଷଣେ ଗଲେ ଅନ୍ତର୍ଦ୍ଧାନ । ମିଳିଲେ ଆପଣା ଭୁବନ ।
ଏମନ୍ତେ ବ୍ରହ୍ମା ବର ପାଇ । ସୁବର୍ଣ୍ଣମୟ ତନୁ ବହି ।
ଅନୁଜ ବଧ ମନେ ସ୍ମରି । ବିଷ୍ଣୁ ବିଷୟେ ତମ ଧରି ।
ବଳେ ଜିଣିଲା ଦଶଦିଶ । ତିନିଭୁବନ କଲା ବଶ ।
ଦେବ ଅସୁର ନୃପ ସର୍ବ । ଉରଗ ଗରୁଡ଼ ଗନ୍ଧର୍ବ ।
ସିଦ୍ଧ ଚାରଣ ବିଦ୍ୟାଧର । ଋଷି ପିତର ମନୁବର ।
ପିଶାଚ ଯକ୍ଷ ତକ୍ଷଗଣ । ଭୂତ ବେତାଳ ପତିମାନ ।
ସକଳ ପ୍ରାଣୀ ଦର୍ପ ହରି । ବିଶ୍ୱସଂସାର ବଶକରି ।
ଦିଗପାଳଙ୍କ ଘରୁ ଆଣି । ଅମୂଲ୍ୟ ଧନ ରତ୍ନମଣି ।
ସ୍ୱର୍ଗ ଭୁବନେ ସ୍ଥାନ ଯେତେ । ବିଚିତ୍ର ରଥ ବଳ ଯୁତେ ।
ସକଳ ବଳେ ଆବୋରିଲା । ଇନ୍ଦ୍ର ଭୁବନେ ବିଜେ କଲା ।
ବିଶ୍ୱକର୍ମାର ଶିଳ୍ପ ଯହିଁ । ଦେବ ଉଦ୍ୟାନ ମଧ୍ୟେ ଶୋହି ।
ତ୍ରୈଲୋକ୍ୟେ ଲକ୍ଷ୍ମୀ ଯହିଁ ବସେ । ଅଶେଷ ସମ୍ପଦ ପ୍ରକାଶେ ।
ମର୍କତ ଭୁବି ଯହିଁ ସାଜେ । ପ୍ରବାଳ ପାବଚ୍ଛ ବିରାଜେ ।
ସ୍ଫଟିକ ପାଚେରି ଆରମ୍ଭ । ନିର୍ମିତ ବଇଦୂର୍ଯ୍ୟ ସ୍ତମ୍ଭ ।
ଉପରେ ବିଚିତ୍ର ବସନ । ମାଣିକ୍ୟ ଘଟିତ ଆସନ ।
ଦିବ୍ୟ ଆସନ ହେମମୟ । ଦିଶଇ ଦୁଗ୍ଧ ଫେନପ୍ରାୟ ।
ଲମ୍ବନ୍ତି ମୁକୁତାର ଝରା । ସୁବର୍ଣ୍ଣ ପୁଷ୍ପ କେରା କେରା ।
ଦିବ୍ୟ କାମିନୀଗଣ ତହିଁ । ଚଳନ୍ତି ଇତସ୍ତତଃ ହୋଇ ।
ଚରଣେ ନୂପୁର ବାଜଇ । ରତ୍ନ ମେଖଳା ବିରାଜଇ ।
ଆପଣା ମୁଖ ରତ୍ନକାନ୍ତେ । ହରଷେ ଦେଖନ୍ତି ଏକାନ୍ତେ ।
ଏମନ୍ତେ ଇନ୍ଦ୍ରର ଭୁବନେ । ଅସୁର ରସେ ତୋଷ ମନେ ।
ତିନି ଭୁବନେ ଏକ ରାଜା । ଦେବେ କରନ୍ତି ପାଦ ପୂଜା ।
ପ୍ରଚଣ୍ଡ ତେଜେ ଆଜ୍ଞା କରେ । ଯମର ପ୍ରାୟେ ରୋଷଭରେ ।
ସୁଗନ୍ଧ ମଦ୍ୟ ପାନ କଲା । ସ୍ୱଭାବେ ବିକୃତ ହୋଇଲା ।
ତମ୍ୟାର ପ୍ରାୟ ଚକ୍ଷୁଦ୍ୱଳେ । ଦେବେ ମିଳିଲେ ପାଦତଳେ ।
ହସ୍ତରେ ଘେନି ଉପାୟନ । ଦିଶନ୍ତି ଅରକ୍ଷ ଯେସନ ।
ସ୍ୱଭାବେ ତପ ତେଜବଳ । ଥିବାରୁ ଦିଶଇ ଉଜ୍ଜ୍ୱଳ ।
ସର୍ବ ଦେବତା ତାର ପାଶେ । ଖଟନ୍ତି ଜୀବନର ଆଶେ ।
ବିଧାତା ବିଷ୍ଣୁ ମହେଶ୍ୱର । ଏହୁ ରହିଲେ ନିଜପୁର ।
ଏହାଙ୍କୁ ଛାଡ଼ି ସର୍ବଦେବା । ତାର ଚରଣେ କଲେ ସେବା ।
ଇନ୍ଦ୍ର ଆସନେ କରି ବିଜେ । ଇନ୍ଦ୍ରହୁଁ ଅଧିକ ବିରାଜେ ।
ଗନ୍ଧର୍ବେ ମିଳି ତା ଚରଣେ । ସଙ୍ଗତେ ଅପସରାଗଣେ ।
ନାରଦ ବିଶ୍ୱାବସୁ ପୁଣ । ତୁମ୍ବୁର ତୋଷିଲେ ଗାଇଣ ।
ମିଳିଲେ ସିଦ୍ଧ ଋଷିଗଣେ । ସଂଭ୍ରମେ ଅସୁର ଚରଣେ ।
ସ୍ତୁତି କରନ୍ତି ମୁନିଗଣେ । ଗନ୍ଧର୍ବେ ନୃତ୍ୟନ୍ତି ଚରଣେ ।
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ । ସର୍ବ ଆଶ୍ରମ ଯୁକ୍ତ କର୍ମେ ।
ପୂଜନ୍ତି ପିତୃ ଦେବ ଯଜ୍ଞେ । ତାର ଚରଣେ ହବିର୍ଭାଗେ ।

ସପତ ଦ୍ୱୀପେ ମହୀତଳେ । ବିନା ବର୍ଷଣେ ଶସ୍ୟ ଫଳେ ॥
ଫୁଲ ଫଳରେ ଭୂମି ପୂରି । ହୋଇଲା କାମଧେନୁ ସରି ॥
ଏମନ୍ତ ବେଳେ ନଭସ୍ଥଳ । ଦିଶଇ ଅତ୍ୟନ୍ତ ସୁଢ଼ଳ ॥
ସମୁଦ୍ରେ ରତ୍ନ ଆଣି ଦ୍ୟନ୍ତି । ନଦୀଏ ଊର୍ମି ଉଛୁଳନ୍ତି ॥
ଲବଣ ଇକ୍ଷୁ ସୁରା ଘୃତ । ଦଧି ଦୁଗ୍ଧରେ ସେ ପୂରିତ ॥
ପର୍ବତ ଦ୍ରୋଣୀ କ୍ରୀଡ଼ାଠାବ । ସକଳ ଋତୁ ପୂର୍ଣ୍ଣ ନଭ ॥
ଦିଗପାଳଙ୍କ ଗଣ ଯେତେ । ରହିଲେ ଅସୁର ଆଶ୍ରିତେ ॥
କାଶ୍ୟପ ଦଶଦିଗ ଜିଣି । ସପତ ଦ୍ୱୀପେ ନୃପମଣି ॥
ସକଳ ଭୋଗ୍ୟ ଭୋଗ କଲା । କେବେହେଁ ସନ୍ତୋଷ ନୋହିଲା
ଉଗ୍ର ତପସ୍ୟା ଯୋଗୁ ସେହି । ବିଶେଷ ଗର୍ବକୁ ବହଇ ॥
ଐଶ୍ୱର୍ଯ୍ୟ ମଦେ ମତ୍ତ ହୋଇ । ଈଶ୍ୱର ବାକ୍ୟ ନ ମାନଇ ॥
ଏଣେ ଅନେକ କାଳ ଗଲା । ସନକ ଶାପେ ଅନର୍ଗଳା ॥
ତାହାର ଉଗ୍ରଦଣ୍ଡ ଦେଖି । ତ୍ର ଦଣେ ଭୁବନ ଉପେକ୍ଷି ॥
ଅନ୍ୟତ୍ର ଶରଣ ନ ପାଇ । ସକଳ ଦେବେ ରୁଣ୍ଡ ହୋଇ ॥
ଭାଳନ୍ତି ଦଶଦିଗ ଚାହିଁ । କାହିଁ ଦେଖିବୁ ଭାବଗ୍ରାହୀ ॥
ଯେ ଦିଗେ ଛନ୍ତି ଚକ୍ରଧର । ତହିଁକି କରି ନମସ୍କାର ॥
ନିର୍ମଳ ଯୋଗୀଜନେ ଯହିଁ । ଗଲେ ପୁନରାଗମ ନାହିଁ ॥
ଏମନ୍ତ ଏକମନେ ଭାଳି । କ୍ଷୀରସମୁଦ୍ର ତୀରେ ମିଳି ॥
ଉନ୍ନିଦ୍ର ପବନ ଭୋଜନ । ଡାକନ୍ତି ରଖ ଭଗବାନ ॥
ଅନେକ ମତେ କରି ସ୍ତୁତି । ଜଳଧି ତଟେ ସେ ଭ୍ରମନ୍ତି ॥
ମସ୍ତକେ ଦେଇ ବେନିକର । ଡାକନ୍ତି ରଖ ଚକ୍ରଧର ॥
ମହାପୁରୁଷ ଭଗବାନ । ପରମ ଆତ୍ମା ନିରଞ୍ଜନ ॥
ବିଶୁଦ୍ଧ ଆତ୍ମାର ସମୂହ । ନମସ୍ତେ ପ୍ରଭୁ ଦିବ୍ୟଦେହ ॥
ଏମନ୍ତେ ଦେବସ୍ତୁତି ଭଣି । କହନ୍ତି ପ୍ରଭୁ ଚକ୍ରପାଣି ॥
ମେଘ ଗମ୍ଭୀର ପ୍ରାୟ ସ୍ୱରେ । ସାଧୁଜନଙ୍କ ଦୁଃଖ ହରେ ॥
ଭୟ ନ କର ଦେବଗଣ । ତୁମ୍ଭର ହୋଇବ କଲ୍ୟାଣ ॥
ମୋହର ଦରଶନ ଲାଭ । ଅଶେଷ ସମ୍ପଦ ସମ୍ଭବ ॥
ପାପୀ ଅସୁର ଦୁଷ୍ଟପଣେ । ଭୟ କରାଏ ଦେବଗଣେ ॥
ଆଉ ନ କର ତୁମ୍ଭେ ଭ୍ରାନ୍ତି । ଏ ଭୟ କରିବି ମୁଁ ଶାନ୍ତି ॥
ଅଳପ କାଳ ଦୁଃଖ ସହ । ନାଶିବି ତୁମ୍ଭର ସନ୍ଦେହ ॥
ଏ ଯେବେ ଦେବଙ୍କୁ ନିନ୍ଦିବ । ଗୋରୁ ବ୍ରାହ୍ମଣ ଏ ନାଶିବ ॥
ସାଧୁଜନଙ୍କୁ ଦୁଷ୍ଟପଣେ । ଯେବେ ହସିବ ଅକାରଣେ ॥
ମୋତେ କରିବ ରିପୁଭାବ । ତେବେ ଏ ବେଗେ ନାଶଯିବ ॥
ଏବେ ଏହାର ନିଜ ସୁତ । ହୋଇବ ବିଷ୍ଣୁର ଭକତ ॥
ସମଦରଶୀ ସାଧୁ ଧୀର । ପ୍ରହ୍ଲାଦ ନାମ ତାହାର ॥
ତାହାକୁ ଯେବେ ଏ ଲଙ୍ଘିବ । କୋପେ ଅନେକ ଦୁଃଖ ଦେବ ॥
ତାହାକୁ ସଙ୍କଟୁ ରଖିବି । ବ୍ରହ୍ମାର ବର ବିନାଶିବି ॥

## ନାରଦ ଉବାଚ

ଏମନ୍ତେ ବିଷ୍ଣୁବାଣୀ ଶୁଣି । ଦେବେ ନମିଲେ ଚକ୍ରପାଣି ॥
ଗୋବିନ୍ଦ ଚରଣେ ବିଶ୍ୱାସ । ଜାଣିଲେ ନିଶ୍ଚେ ଯିବ ନାଶ ॥
ବିଷ୍ଣୁଙ୍କ ପାଦପଦ୍ମେ ନମି । ଚଳିଲେ ଦେବେ ନିଜ ଭୂମି ॥
ଏବେ ହୋ ଶୁଣ ଧର୍ମସୁତ । ଭକତ ପ୍ରହ୍ଲାଦ ଚରିତ ॥
ଯାହା ଶୁଣନ୍ତେ ପ୍ରାଣୀ ଦେହେ । ଅଶେଷ ଦୁରିତ ନ ରହେ ॥
ହିରଣ୍ୟକଶିପୁର ଘରେ । ତାହାର ପତ୍ନୀର ଉଦରେ ॥
ଜନ୍ମ ହୋଇଲେ ଚାରି ସୁତ । ଶୁଣ ପ୍ରହଲାଦ ଚରିତ ॥
ପ୍ରହଲାଦ ତାହାଙ୍କ ମଧ୍ୟେ । ବିଷ୍ଣୁ ଭଜିଲା ଚିତ୍ତ ଶୁଦ୍ଧେ ॥
ଗୁଣେ କି ଦେବା ପଟାନ୍ତର । ବିଷ୍ଣୁ ଭକତ ମଧ୍ୟେ ବର ॥
ସତ୍ୟସମ୍ପନ୍ନ ଶୀଳଗୁଣେ । ସେବଇ ବିଷ୍ଣୁଙ୍କ ଚରଣେ ॥
ସର୍ବଭୂତଙ୍କ ମଧ୍ୟେ ପ୍ରିୟ । ସ୍ୱଭାବେ ନିବୃତ୍ତ ଇନ୍ଦ୍ରିୟ ॥
ସନ୍ଥ ଚରଣେ ଦାସ ପ୍ରାୟେ । ଦୁଃଖୀକୁ ଭଜେ ପିତାସ୍ନେହେ ॥
ସମବୟସ ସ୍ନେହମୟେ । ଗୁରୁଙ୍କୁ ସେବେ ଦାସପ୍ରାୟେ ॥
ବିଦ୍ୟାର୍ଥ-ରୂପ-ଜନ୍ମସାର । ସ୍ୱଭାବେ ଗର୍ବ ନାହିଁ ତାର ॥
ଦୁଃଖେ ଦୁଃଖିତ ଚିତ୍ତ ନୋହେ । ଜ୍ଞାନ ଗୋଚରେ ସର୍ବ ସହେ ॥
ନିଷ୍ଫଳ ଦୃଷ୍ଟ ଶ୍ରୁତଗୁଣେ । ବସ୍ତୁ ଅବସ୍ତୁ ପରିମାଣେ ॥
ଦୁଃଖୀ ବାଳକ ପ୍ରାୟେ ରହେ । ସ୍ୱଭାବେ ତପ କ୍ଳେଶ ସହେ ॥
ପ୍ରଶାନ୍ତ ଚିତ୍ତ ନିତ୍ୟେ ବହେ । ମଦ ମତ୍ସର ନାହିଁ ଦେହେ ॥
ଅସୁର ହେଲେହେଁ ପ୍ରତ୍ୟକ୍ଷେ । ଅସୁର ଭାବକୁ ନ ରଖେ ॥
ଯାହାର ଦେହେ ମହାଗୁଣ । ମୁନି କହନ୍ତି ପୁଣ ପୁଣ ॥
ଏବେହେଁ ଅଲକ୍ଷିତ ନୋହେ । ତା ନିଷ୍ଠା ଗୋବିନ୍ଦ ବିଷୟେ ॥
ସୁର ସଭାରେ ଯାର କଥା । ନିତ୍ୟେ ଗାବନ୍ତି ସାଧୁ ଗାଥା ॥
ଅସୁରବଂଶେ ଜାତ ହୋଇ । ଅସୁରଭାବ ହୃଦେ ନାହିଁ ॥
ବିପଦେ ଧୀରଭାବ ବହି । ସମସ୍ତ ନଶ୍ୱର ଭାବଇ ॥
ଇନ୍ଦ୍ରିୟ ବୃନ୍ଦ ଜୟକରି । ଶାନ୍ତ ଭାବରେ ଦେହଧରି ॥
ହରି ଭଜନେ ତାର ମନ । ନିଷ୍ଠଳେ ରହେ ସବୁଦିନ ॥
ତାହର ମହାଗୁଣମାନ । ମୁନି କହନ୍ତି ପୁଣ ପୁଣ ॥
ସେ ପୁଣି ବିଷ୍ଣୁର ବିଷୟେ । ଲକ୍ଷିତ ଅଲକ୍ଷିତ ରହେ ॥
ଶତ୍ରୁକୁ ଶତ୍ରୁ ପରଶଂସେ । ଯାର ମହିମା ବିଷ୍ଣୁ ଅଂଶେ ॥
ତାହାକୁ ସାଧୁଗଣ ମଧ୍ୟେ । କେବା ନ ଗଣେ ଅପ୍ରମାଦେ ॥
ଯାର ମହିମା ମୁନିଗଣେ । ଚିତ୍ତେ ଭାବନ୍ତି ଅନୁକ୍ଷଣେ ॥
ସ୍ୱଭାବେ ତାର ଶୁଦ୍ଧମତି । ହରି ଚରଣେ ନିତ୍ୟ ରତି ॥

ବାଳକ ସଙ୍ଗେ କ୍ରୀଡ଼ା କରେ । କ୍ରୀଡ଼ା କନ୍ଦୁକ ନ ସୁମରେ ॥
ଜଡ଼ଙ୍କ ପ୍ରାୟ ହୋଇ ଖେଳେ । ଚିତ୍ତ ଗୋବିନ୍ଦ ପାଦତଳେ ॥
ନ ଥାଏ ତାର ସଂଜ୍ଞା ଦେହେ । କୃଷ୍ଣେ ଆବିଷ୍ଟ ହୋଇଥାଏ ॥
ମନ ତା ଗୋବିନ୍ଦ ଚରଣେ । ସଂସାର ଗୁଣ ସେ ନ ଜାଣେ ॥
ଜାଗ୍ରତେ ଶୟନେ ଭୋଜନେ । ଗମନେ କିବା ଜଳପାନେ ॥
ଗୋବିନ୍ଦ ପାଦେ ଚିତ୍ତ ଥାଇ । ବିଷୟା ରସେ ଜ୍ଞାନ ନାହିଁ ॥
ବିଷ୍ଣୁ ଚରଣ ଚିନ୍ତି ବୁଲେ । ଯେ ଅବା ବୋଲେ ଯେତେବେଳେ ॥
ଊର୍ଦ୍ଧ୍ୱେ ଉତ୍କଣ୍ଠେ ନାଦ ସ୍ଫୁରେ । ନିର୍ଲ୍ଲଜ ପ୍ରାୟ ନୃତ୍ୟ କରେ ॥
କାନ୍ଦି ହସଇ ଉଚ୍ଚନାଦେ । ବିଷ୍ଣୁଙ୍କୁ ଭଜଇ ଆନନ୍ଦେ ॥
ନିର୍ମଳ ଭାବେ ଭକ୍ତିପୂରେ । ବିଷ୍ଣୁ ଚେଷ୍ଟାରେ ମତିଭୋଳେ ॥
ବିଷ୍ଣୁର ନାମ ମୁଖେ ଭଜି । ପୁଲକ କରି ରୋମରାଜି ॥
ଆନନ୍ଦେ ଅଶ୍ରୁ ଝର ଝର । ନିରତେ ବହେ ଚକ୍ଷୁଦ୍ୱାର ॥
ବିଷ୍ଣୁ ଚରଣେ ଭାବ ଭୋଳେ । ରମଇ ଅକିଞ୍ଚନ ମେଳେ ॥
ଆତ୍ମା ନିବୃତ୍ତି ଅନୁକ୍ଷଣେ । ବିଷୟ ସଙ୍ଗେ ଦୁଃଖ ମଣେ ॥
ଏମନ୍ତେ ପୁତ୍ରର ବିଷୟେ । ହିରଣ୍ୟକଶିପୁ ନିର୍ଦ୍ଦୟେ ॥
ଦେଲା ସେ ପୀଡ଼ା ଅତିରେକେ । କେ ସହିପାରେ ନରଲୋକେ ॥

### ଯୁଧିଷ୍ଠିର ଉବାଚ

ହେ ଦେବଋଷି ସତ୍ୟବ୍ରତା । କହିଲ ଅଦଭୁତ କଥା ॥
ନିଜ ପୁତ୍ରକୁ ପିତା ଯେବେ । ଦଣ୍ଡିଲା ଶତ୍ରୁଜନ ଭାବେ ॥
ସେ ଶୁଦ୍ଧ ଚିତ୍ତ ପ୍ରହ୍ଲାଦ । କିମ୍ପା ପଡ଼ିଲା ଏ ପ୍ରମାଦ ॥
କୁପୁତ୍ରପଣ ଯେ କରନ୍ତି । ପିତାକୁ ରିପୁପ୍ରାୟ ଚିନ୍ତି ॥
ଏ ପୁତ୍ର ପିତା ଅନୁଚର । ସ୍ୱଭାବେ ଶୁଦ୍ଧ ସାଧୁ ଧୀର ॥
ଏହାକୁ କିମ୍ପା ଦୁଃଖ ଦେଲା । ମୋତେ ତ ସନ୍ଦେହ ଲାଗିଲା ॥
ଯେ ପିତା ପୁତ୍ରେ ଦିଏ ଦୁଃଖେ । ଏକଥା ମରଣୁ ଅଧିକ ॥
ଏଣୁ ଦୁଃଖିତ ମୋର ମନ । କହ ହେ ବ୍ରହ୍ମାର ନନ୍ଦନ ॥
ଏମନ୍ତ ଧର୍ମସୁତ ବାଣୀ । ନାରଦ ସାବଧାନେ ଶୁଣି ॥
କୃଷ୍ଣ ଚରଣେ ଦେଇ ଚିତ୍ତ । କହିଲେ ବିଷ୍ଣୁର ଚରିତ ॥
ସେ ବ୍ରହ୍ମମୁନିଙ୍କ ଚରଣେ । ସୁଜନେ ନମ ଅନୁକ୍ଷଣେ ॥
ସୁଜନ ହିତେ ଭାଗବତ । ଭାଷା ପ୍ରବନ୍ଧେ କଲି ଗୀତ ॥
ସପ୍ତମସ୍କନ୍ଧେ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ବିଷ୍ଣୁ ପ୍ରସନ୍ନ ବର୍ଣ୍ଣନେ*
*ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

ଅସୁରକୁଳେ ପୁରୋହିତ । ସର୍ବଜ୍ଞ ଶୁକ୍ର ଭୃଗୁସୁତ ॥
ମୁନିଙ୍କ ପୁତ୍ର ବେନି ଭାଇ । ଷଣ୍ଡ ଅର୍ମକ ନାମେ ଦୁଇ ॥
ରାଜ ଆଚାର୍ଯ୍ୟ ତାଙ୍କୁ କଲେ । ପୁତ୍ରମାନଙ୍କୁ ପଢ଼ାଇଲେ ॥
ରାଜା ମନ୍ଦିରେ ବେନି ଭାଇ । ଦୈତ୍ୟପୁତ୍ରଙ୍କୁ ସଙ୍ଗେ ନେଇ ॥
ଯତ୍ନେ ପଢ଼ନ୍ତି ଜ୍ଞାନବଳେ । ସର୍ବେ ପଢ଼ନ୍ତି ଏକମେଳେ ॥
ତାହାଙ୍କ ମଧ୍ୟେ ପ୍ରହ୍ଲାଦ । ସକଳ ଶାସ୍ତ୍ରେ ହେଲେ ସିଦ୍ଧ ॥
ଗୁରୁଙ୍କ ମୁଖୁଁ ଥରେ ଶୁଣି । ତକ୍ଷଣେ ଚିତ୍ତେ ପରିମାଣି ॥
ଚିତ୍ତ ନିର୍ମଳେ ତାହା ଜାଣେ । କେବଳ ମନେ ନ ପ୍ରମାଣେ ॥
ବିଚାର କରେ ହୃଦଗତେ । କେ ରିପୁ ମିତ୍ର ଏ ଜଗତେ ॥
ଏକଇ ଆତ୍ମା ନରହରି । ସମେ ସକଳ ଦେହେ ପୂରି ॥
ଏ କଥା ନୁହେ ଅପ୍ରମାଣ । ସକଳ ଆତ୍ମା ନାରାୟଣ ॥
ଯେ ପାଠପଢ଼େ ବାପ ଡ଼ରେ । ଦୃଢ଼େ ନ ଧରେ ହୃଦଯୁଗେ ॥
ଦିନେକ ପ୍ରହ୍ଲାଦ ଆଣି । କୋଳେ ବସାଇ ନୃପମଣି ॥
ଅନେକ ଅଳଙ୍କାର ଦେଇ । ସାନନ୍ଦେ ପୁତ୍ରକୁ ପୃଚ୍ଛଇ ॥

### ହିରଣ୍ୟକଶିପୁ ଉବାଚ

ହେ ପୁତ୍ର ଶୁଣ ମୋ ଉତ୍ତର । ଯେ ଷଟନୀତି ରାଜାଙ୍କର ॥
ତୁ ଯାହା ଗୁରୁମୁଖେ ଶୁଣୁ । ସୁଦୃଢ଼ ଚିତ୍ତେ ନପ୍ରମାଣୁ ॥
ମୁହିଁ ଶୁଣିଲି ଭଲେ ଏହା । କହ ତୁ ସାଧୁ ମଣୁ ଯାହା ॥
ଯେ ରାଜନୀତି ଚିତ୍ତେ ଧରେ । କେବେହେଁ ଶତ୍ରୁକୁ ନ ଡରେ ॥
ସଂଗ୍ରାମେ ରିପୁ ଜୟ କଲେ । ସେ ରାଜା ସୁଖ ଭୁଞ୍ଜେ ଭଲେ ॥
ବିଦ୍ୟା ପଢ଼ିଲୁ ଏତେ କାଳ । ଭଲ କି ମଣୁ ମୋତେ ବୋଲ ॥
ପିତା ବଚନ ପୁତ୍ର ଶୁଣି । ଶିରେ ନିବେଶି ବେନି ପାଣି ॥
ଦେଖ ଏ ଗୃହ ଅନ୍ଧକୂପ । ଆତ୍ମା ନିପାତ ମହାତାପ ॥
ଏହାକୁ ଦୂରେ ପରିହର । ଅରଣ୍ୟେ ବିଷ୍ଣୁ ଆଶ୍ରା କର ॥
ସାଧୁ ମଣଇ ଏହା ଚିତ୍ତେ । ସତ୍ୟ କହିଲି ତୋ ଅଗ୍ରତେ ॥

### ନାରଦ ଉବାଚ

ଏମନ୍ତେ ପୁତ୍ର ବାକ୍ୟ ଶୁଣି । ଶତ୍ରୁର ପକ୍ଷ ପ୍ରାୟେ ମଣି ॥
ଉଚ୍ଚେ ହସିଲା ଅତିରେକ । ବୋଇଲା ବାଳ ଅବିବେକ ॥
ଏପରି ପରବୁଦ୍ଧି ବଳେ । ନଷ୍ଟ ହୁଅନ୍ତି ସର୍ବକାଳେ ॥
ଏହାର ବୁଦ୍ଧି କେ ହରିଲା । ଏ ମୋର ଶତ୍ରୁକୁ ଭଜିଲା ॥
କୋପେ ବାଳକ ତଳେ ଥୋଇ । ବୋଲେ ସେବକ ମୁଖ ଚାହିଁ ॥
ଗୁରୁଙ୍କ ଘରେ ନେଇ ଦିଅ । ଏ କଥା ଗୁରୁ ଆଗେ କହ ॥

ଏ ମୋର ବାଳକର ମନ । ରିପୁ ବିଷୟେ କିପାଁ ଛନ୍ନ ॥
ଏହାର ବୁଦ୍ଧି ବିଷ୍ଣୁ ପକ୍ଷେ । ଯେମନ୍ତେ ନ ଭଜେ ପ୍ରତ୍ୟକ୍ଷେ ॥
ରାଜାର ଆଜ୍ଞା ଭୃତ୍ୟ ପାଇ । ବାଳକ ଗୁରୁଦ୍ୱାରେ ନେଇ ॥
ବ୍ରାହ୍ମଣ ଗୋଷ୍ଠୀ ମଧ୍ୟେ କଲା । ରାଜା ବଚନ ଜଣାଇଲା ॥
ଶୁଣି ତା ବିପ୍ର ଉଦବେଗେ । ବୋଲନ୍ତି ପ୍ରହଲାଦ ଆଗେ ॥
ସାଧୁ ବଚନ ବାକ୍ୟମତେ । କହନ୍ତି ହସ୍ତ ଧରି ହସ୍ତେ ॥
ହେ ବତ୍ସ ପ୍ରହଲାଦ ଶୁଣ । ସର୍ବଦା ହେଉ ତୋ କଲ୍ୟାଣ ॥
ଆମ୍ଭଙ୍କୁ ଲାଗିଲା ସନ୍ଦେହ । ମିଥ୍ୟାକୁ ଛାଡ଼ି ସତ୍ୟ କହ ॥
ବାଳକ ବୁଦ୍ଧି ତୋ ନ ଦେଖି । ଅଦ୍ଭୁତ ପ୍ରାୟେ ଉପଲକ୍ଷି ॥
ତୋହର ବୁଦ୍ଧି କେ ହରିଲା । ଶତ୍ରୁ ଭଜନେ ଶିକ୍ଷା ଦେଲା ॥
କିବା ଏ ସ୍ୱଭାବ ତୋହର । ଆମ୍ଭଙ୍କୁ ଲାଗେ ଅଗୋଚର ॥
କହ କେ ତୋତେ ଦେଲା ଦୀକ୍ଷା । ଆମ୍ଭେ ଶ୍ରବଣେ କରୁ ଇଚ୍ଛା ॥

## ପ୍ରହ୍ଲାଦ ଉବାଚ

ଯାହାର ମାୟାବଳେ ଜନ । ସଂସାର ବୁଦ୍ଧି କରେ ଛିନ୍ନ ॥
ଯାହାର ନାହିଁ ପରାପର । ତାହାକୁ ମୋର ନମସ୍କାର ॥
ଯାହାର ଆଜ୍ଞା ପରମାଣେ । ପ୍ରାଣୀ ସୁବୁଦ୍ଧି ପରିମାଣେ ॥
ସେ ସର୍ବ ଆତ୍ମା ଯୋଗେଶ୍ୱର । ତାହାର ନାହିଁ ଆତ୍ମା ପର ॥
ବାସନାବଳେ ସର୍ବଜନ୍ତୁ । ଭୁଞ୍ଜନ୍ତି ପରାପର ହେତୁ ॥
ବ୍ରହ୍ମାଦି ଦେବହିଁ ସରବେ । ବିମୁଗ୍ଧ ହୋନ୍ତି ଯାରଭାବେ ॥
ସେ ମୋର ମତି ଭିନ୍ନ କଲା । ପର ଅପର ନ କହିଲା ॥
ଯେସନେ ଚୁମ୍ବକ ଦର୍ଶନେ । ଲୋହ ଭ୍ରମଇ ଆକର୍ଷଣେ ॥
ମୋହର ମନ ସେହିମତେ । ଭ୍ରମଇ ବିଷ୍ଣୁର ଆୟତେ ॥

## ନାରଦ ଉବାଚ

ଗୁରୁଙ୍କୁ କହି ଏ ବଚନ । ପ୍ରହ୍ଲାଦ ହୋଇଲା ମଉନ ॥
ବାଳକ ବାଣୀ ଶୁଣି କର୍ଣ୍ଣେ । କୋପ ବସିଲା ଗୁରୁ ମନେ ॥
ସମୀପେ ଅଛି ରାଜଲୋକ । ଗୁରୁହିଁ ରାଜାର ସେବକ ॥
କୋପେ କମ୍ପିଲା ବାକ୍ୟ ଶୁଣି । ତକ୍ଷଣେ ଘରୁ ବେତ ଆଣି ॥
ରାଜାର ବଂଶେ ଦୁରାଚାର । ନିଶ୍ଚେ ଜନ୍ମିଲା କୁଳାଙ୍ଗାର ॥
ଦୁର୍ବୁଦ୍ଧିପଣ ଏ ବାଳକ । ଏହାକୁ ଦଣ୍ଡେ ହେଁ ନ ରଖ ॥
ଚନ୍ଦନ ବନେ କଣ୍ଟାବୃକ୍ଷ । ଜନ୍ମିଲା ଦେଖ ଏ ପ୍ରତ୍ୟକ୍ଷ ॥
କଣ୍ଟକ ବୃକ୍ଷ ଯେବେ ମାରି । ଚନ୍ଦନ ବନ ଯତ୍ନ କରି ॥
କଣ୍ଟକ ଥିଲେ ନିତ୍ୟେ ଡରି । ନିର୍ଭୟେ ଭୋଗ ନୁହେଁ କରି ॥
ଚନ୍ଦନବନ ଦତ୍ୟଗଣ । ଶ୍ରୀବିଷ୍ଣୁ କୁଠାର ସମାନ ॥
କୁଠାର ବେଣ୍ଟ ଏହୁ ହୋଇ । ଏ ଥିଲେ ଆମ୍ଭ ଭଲ ନାହିଁ ॥

ଏମନ୍ତ ଦେଖାଇଲେ ଭୟେ । ତର୍ଜିଲେ ବିବିଧ ଉପାୟେ ॥
ପୁଣି ଆଶ୍ୱାସ ତାକୁ କରି । ଗୁରୁ ପଢ଼ାନ୍ତି ହସ୍ତ ଧରି ॥
ଯେ ଧର୍ମ ଅର୍ଥ କାମଫଳେ । ସେ ବିଦ୍ୟା ପଢ଼ାଇଲେ ବଳେ ॥
ମୋକ୍ଷ ହିଁ ଅଛି ତାର ତହିଁ । ଏମନ୍ତ ବାଳକେ ପଢ଼ାଇ ॥
ମାତାଙ୍କ ଆଗେ ନେଇ ଦେଲେ । ସେ ତାଙ୍କୁ ଅଳଙ୍କୃତ କଲେ ॥
ରାଜା ସମୀପେ ଦେଲେ ନେଇ । ତା ଦେଖି ରାଜା ତୋଷ ହୋଇ ॥
ଚରଣ ତଳେ ପୁତ୍ର ଚାହିଁ । ତକ୍ଷଣେ କୋଳ କଲା ନେଇ ॥
କଲ୍ୟାଣ କରି କୋଳେ ରଖି । ସ୍ନେହେ ଲୋତକ ବେନି ଆଖି ॥
ପ୍ରସନ୍ନ ବଚନେ ଅନାଇଁ । ସଧୀରେ ପୁତ୍ରକୁ ବୋଲଇ ॥

## ହିରଣ୍ୟ ଉବାଚ

ହେ ପୁତ୍ର ଶୁଣ ମୋ ବଚନ । ଗୁରୁଙ୍କ ଗୃହେ ଏତେ ଦିନ ॥
ତୁ ଯେ ପଢ଼ିଲୁ ଶାସ୍ତ୍ର ଭାବେ । ମୋର ସମ୍ମୁଖେ କହ ଏବେ ॥
ଉତ୍ତମ ବିଦ୍ୟା ମୋତେ କହ । ମୋ ମନେ ନ ରହୁ ସନ୍ଦେହ ॥

## ପ୍ରହ୍ଲାଦ ଉବାଚ

ଶୁଣ ହେ ତାତ ମନଦେଇ । ଯେ ବିଦ୍ୟା ଉତ୍ତମ ମଣଇ ॥
କୃଷ୍ଣର ଶ୍ରବଣ କୀର୍ତ୍ତନ । ସ୍ମରଣ ଚରଣେ ସେବନ ॥
କରିବ ତାଙ୍କ ପୂଜା ସ୍ତବ । ସଙ୍ଗତେ ଦାସପଣେ ଥିବ ॥
ସଖ୍ୟ ଭାବରେ ନେବ ଦିନ । କରିବ ଆତ୍ମା ସମର୍ପଣ ॥
ଏ ଭାବେ ଚିତ୍ତ ସମର୍ପିବ । ଯେ ଶାସ୍ତ୍ର କହେ ଏତେ ଭାବ ॥
ତାହା ମୁଁ ଉତ୍ତମ ମଣଇ । କହିଲି ତୋର ପାଶେ ମୁହିଁ ॥
ଏ ନବ ଲକ୍ଷଣ ଭକତି । ଯେ ନର ଗୋବିନ୍ଦେ କରନ୍ତି ॥
ଉତ୍ତମ ବିଦ୍ୟା ବୋଲି ତାହା । ଯେଣେ ନ ଲାଗେ ବିଷ୍ଣୁ ମାୟା ॥
ଏମନ୍ତ ପୁତ୍ର ମୁଖୁ ଶୁଣି । କୋପେ ଉଠିଲା ଶିର ଝୁଣି ॥
ଆରକ୍ତ ବେନି ଚକ୍ଷୁ ତାର । ପ୍ରଚଣ୍ଡେ କମ୍ପଇ ଅଧର ॥
ଗୁରୁ ପୁତ୍ରର ମୁଖ ଚାହିଁ । ବୋଲଇ କୋପଭର ହୋଇ ॥

## ହିରଣ୍ୟକଶିପୁ ଉବାଚ

ତୁ ବ୍ରହ୍ମବଂଶୀ ଗୁରୁସୁତ । ଏ କି ତୋହର ବିପରୀତ ॥
ବିପକ୍ଷ ସ୍ତୁତି କଥା ଯେତେ । ଏ ଶିକ୍ଷା ଦେଲୁ ତୁ କେମନ୍ତେ ॥
ଅସାର ବିଦ୍ୟା ଶିଖାଇଲୁ । ତୁ ତ ଅବଜ୍ଞା ମୋତେ କଲୁ ॥
ଅସାଧ ଲୋକ ଏ ସଂସାରେ । ଅଛନ୍ତି କେତେକ ବେଭାରେ ॥
ତାହାଙ୍କ ଦୋଷ ତାଙ୍କୁ ମାରେ । ରୋଗ ଯେସନେ କଳେବରେ ॥
ସେ ପ୍ରାଣୀ ବ୍ରହ୍ମହତ୍ୟା କରେ । ସେ କ୍ଷୟ ବ୍ୟାଧି ଜନ୍ମାନ୍ତରେ ॥
ଯେ ନିତ୍ୟେ ମଦ୍ୟପାନ କରେ । ବିକଟ ଦନ୍ତ ତା ଅଧରେ ॥
ସୁବର୍ଣ୍ଣ ହରି ଥାଇ ଯେବେ । ସେ କୁଳକ୍ଷୟ ଦୋଷ ଲଭେ ॥

ଗୁରୁ କାମିନୀ ଯେହ୍ନେ ରଚେ । ଧବଳ ହୋଇ ବେନି ହସ୍ତେ ॥
ଏମନ୍ତ ଅସୁର ବଚନେ । କହନ୍ତି ଗୁରୁଙ୍କ ନନ୍ଦନେ ॥

## ଗୁରୁପୁତ୍ର ଉବାଚ

ଏ ଶିକ୍ଷା ଦେଇନାହିଁ ମୁହିଁ । ଅନ୍ୟ ବା ପଢ଼ାଇବ କାହିଁ ॥
ତୋହର ପୁତ୍ରର ସ୍ୱଭାବ । ଜାଣି ତୁ ଚିନ୍ତ ପରାଭବ ॥
ଏମନ୍ତେ ଗୁରୁବାକ୍ୟ ଶୁଣି । ସନ୍ଦେହ ମନେ ପରିମାଣି ॥
ପୁତ୍ରକୁ ଚାହିଁ କୋପଭରେ । ବୋଲଇ କର୍କଶ ବାକ୍ୟରେ ॥
ଏ ବିଦ୍ୟା ଗୁରୁ ବାକ୍ୟ ନୁହେଁ । କେଅବା ତୋର ଚିତ୍ତ ମୋହେ ॥

## ପ୍ରହ୍ଲାଦ ଉବାଚ

ଶୁଣ ହେ ତ୍ରୈଲୋକ୍ୟ ଈଶ୍ୱର । ମତିର ଗତି ଚକ୍ରଧର ॥
ଯେ ପ୍ରାଣୀ ଗୃହେ ବାସକରେ । ତା ମତି ବିଷ୍ଣୁଙ୍କୁ ନ ସ୍ମରେ ॥
ଗୁରୁ ବଚନ କି କରିବ । ଯାହର ଯେମନ୍ତ ସ୍ୱଭାବ ॥
ଅସାଧ ଇନ୍ଦ୍ରିୟଙ୍କ ବଳେ । ଗୃହସ୍ଥ ପଡ଼େ ରସାତଳେ ॥
କୁଳ ବେଢାରେ ବଶ ହୋଇ । ଚର୍ବ୍ୟ ଚର୍ବଣ ସେ ଲଭଇ ॥
ତାହାଙ୍କ ମତି କୃଷ୍ଣ ଭାବେ । କେବେହେଁ ନୋହେ ଶୁଦ୍ଧଭାବେ ॥
ଯେ ପ୍ରାଣୀ ଦୁରାଶୟ ପଣେ । ଅନର୍ଥ ଅର୍ଥ ପ୍ରାୟେ ମଣେ ॥
ସେ କାହିଁ ବିଷ୍ଣୁଙ୍କୁ ଜାଣିବ । ଯେ ବ୍ରହ୍ମା ଶଙ୍କରେ ଦୁର୍ଲ୍ଲଭ ॥
ତାହାର ମତି ଅର୍ଥ ତହିଁ । ପ୍ରାଣୀ ଲଭିବ ତାକୁ କାହିଁ ॥
ଅନ୍ଧକୁ ଅନ୍ଧ ଯେହ୍ନେ ବହେ । ଈଶ୍ୱର ତତ୍ତ୍ୱ ଯେହ୍ନେ କହେ ॥
ଏମନ୍ତେ ପ୍ରାଣୀଙ୍କ ସ୍ୱଭାବ । କେମନ୍ତେ କୃଷ୍ଣଙ୍କୁ ସେବିବ ॥
ବିଷ୍ଣୁ ଚରଣପଦ୍ମ ଦୁଇ । ଏ ଜନ୍ମେ ଲଭି ନ ପାରଇ ॥
ଯାହାଙ୍କ ଚରଣାରବିନ୍ଦ । ସେବି ନ ପାନ୍ତି ସୁରବୃନ୍ଦ ॥
ବିଷ୍ଣୁ ଭକତ ପାଦଧୂଳି । ଶିରେ ନ ବୋଳେ ହସ୍ତତୋଳି ॥
ସନ୍ଥ ଚରଣେ ଇଚ୍ଛା ନାହିଁ । ହରିଙ୍କୁ ଲଭିବ ସେ କାହିଁ ॥
ଏମନ୍ତ କହି ଦୈତ୍ୟ ବଳା । ମଉନ ହୋଇଣ ରହିଲା ॥
ଶୁଣି ଅସୁର କୋପାନଳେ । କୋଳରୁ ପକାଇଲା ତଳେ ॥
କୋପେ ଅରୁଣ ଚକ୍ଷୁ କଲା । ଅସୁରଗଣେ ଆଜ୍ଞା ଦେଲା ॥

## ହିରଣ୍ୟକଶିପୁ ଉବାଚ

ଦେଖ ହେ ନଇର୍ରତଗଣ । ମୋର ପୁତ୍ରର ଦୁଷ୍ଟପଣ ॥
ମରଣ ଅର୍ଜ୍ଜିଲା ବେଢାରେ । ଏହାକୁ ରାଜ୍ୟୁ କର ଦୂରେ ॥
ମୋର ଅନୁଜ ନାଶକାରୀ । ସେ ବିଷ୍ଣୁ ବଇରୀ ମୋହରି ॥
ତାହାର ପକ୍ଷ ଏ ହୋଇଲା । ନିଜ ସମ୍ପଦ ଉପେକ୍ଷିଲା ॥
ବିଷ୍ଣୁର ଦାସପଣେ ରହେ । କେ ପ୍ରାଣ ଥାଉଁ ଏହା ସହେ ॥
ଶତ୍ରୁ ଆଶ୍ରିତ ଏ କୁମର । ନିର୍ଣ୍ଣେ କରିବ ଅପକାର ॥
ଏ ପଞ୍ଚ ବରଷର ସୁତ । ପିତା ମାତାରେ ଅଭକତ ॥
ପରର ପୁତ୍ର ହୋଇ ଯେବେ । ଆତ୍ମାର ହିତ ଅନୁଭବେ ॥
ତାହାକୁ ବୋଲି ନିଜସୁତ । ରୋଗୀକୁ ଔଷଧ ଯେମନ୍ତ ॥
ଆତ୍ମାର ତହୁଁ ଜନ୍ମ ହୋଇ । ପରର ହିତେ ଯେବେ ଥାଇ ॥
ବ୍ୟାଧିର ପ୍ରାୟ ଜନ୍ମ ତାର । ସେ ମଲେ ଆତ୍ମାର ନିସ୍ତାର ॥
ଯେ ଅଙ୍ଗେ ସର୍ପାଘାତ କରେ । ସେ ଅଙ୍ଗଦୋଷେ ପ୍ରାଣୀମରେ ॥
ସେ ଅଙ୍ଗ ଛେଦି ପକାଇଲେ । ଦେହେ ଜୀବନ ରହେ ଭଲେ ॥
ଯେ ହିତ କରେ ପର ହୋଇ । ତା ତହୁଁ ବନ୍ଧୁ ଅନ୍ୟ ନାହିଁ ॥
ବନ୍ଧୁ ଅହିତ ଚିନ୍ତ ଯେବେ । ତାହାକୁ ଲେଖି ଶତ୍ରୁଭାବେ ॥
ଦେହରୁ ବ୍ୟାଧି ଜନ୍ମ ହୋଇ । ଆତ୍ମା ସହିତେ ସଂହାରଇ ॥
ଅରଣ୍ୟ ମହୌଷଧି ଆଣି । ରୋଗ ସଂକଟୁତରେ ପ୍ରାଣୀ ॥
ପର ଅପର ଏ ବିଚାର । କେ ରିପୁ କେବା ଆପଣାର ॥
ସୁହୃଦ ହୋଇ ଶତ୍ରୁପଣେ । ପାପ ଚିନ୍ତଇ ଅନୁକ୍ଷଣେ ॥
ନାନା ଉପାୟେ ତାକୁ ମାରି । ସେ ମଲେ ସୁଖେ ପ୍ରାଣ ଧରି ॥
ଯୋଗୀଙ୍କ ଯୋଗଧ୍ୟାନ କାଳେ । ଦୁଷ୍ଟ ଇନ୍ଦ୍ରିୟ ଯେତେବେଳେ ॥
ତାହାକୁ କରେସେହୁ ସାଧ । ସୁଖେ ଲଭଇ ବ୍ରହ୍ମପଦ ॥
ଏମନ୍ତେ ରାଜା ଆଜ୍ଞା ପାଇ । ଅସୁରେ ଶସ୍ତ୍ର ଘେନି ଧାଇଁ ॥
ବାଳକ ନାଶ ମନେ ଚିନ୍ତି । ଶୂଳ ଅନ୍ତରୀକ୍ଷେ ବୁଲାନ୍ତି ॥
ସୁଦୀର୍ଘ ଦିଶେ ଦନ୍ତପତି । କରାଳ ବଚନେ ଚାହାନ୍ତି ॥
ତମ୍ବାର ବର୍ଣ୍ଣପ୍ରାୟେ ଦାଢ଼ି । ଶିରେ ପିଙ୍ଗଳ ଜଟା ବେଢ଼ି ॥
ନାଚନ୍ତି ଭଇରବ ନାଦେ । ଅସୁରେ ଛନ୍ଦି ପାଦ ପାଦେ ॥
ଶୂଳ ବୁଲାଇ ଅନ୍ତରୀକ୍ଷେ । ବାଳକ ଉପରେ ପ୍ରତ୍ୟକ୍ଷେ ॥
ତା ଦେଖି ଅସୁର କୁମର । ମନେ ଚିନ୍ତଇ ଚକ୍ରଧର ॥
ଗୋବିନ୍ଦ ପାଦେ ଚିତ୍ତଦେଇ । ବୋଲଇ ଅସୁରଙ୍କୁ ଚାହିଁ ॥
ତୁମ୍ଭର ଦେହେ ଯେବେ ହରି । ଆତ୍ମା ସ୍ୱରୂପେ ଛନ୍ତି ପୂରି ॥
ସକଳ ଶସ୍ତ୍ରେ ହରି ଯେବେ । ଘଟନ ଅଛି ଆତ୍ମ ଭାବେ ॥
ଏ କଥା ସତ୍ୟ ଯେବେ ହୁଏ । ଶସ୍ତ୍ର ନ କାଟୁ ମୋର ଦେହେ ॥
ଶୁଣି ଅସୁର କୋପ କଲେ । ଅନେକ ଶସ୍ତ୍ର ପ୍ରହାରିଲେ ॥
ପ୍ରହଲାଦର ଦେହେ ବାଜି । ତକ୍ଷଣେ ଶସ୍ତ୍ରେ ଗଲେ ଭାଜି ॥
ଅପୁଣ୍ୟବନ୍ତ ପ୍ରାଣୀ ଦେହେ । ସାତ୍ତ୍ୱିକ ଫଳ ଯେହ୍ନେ ନୋହେ ॥
ଅଦ୍ଭୁତ କର୍ମ ତାର ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
ଭିତରେ ଗମିଲା ଅସୁର । ଭୟେ କମ୍ପିଲା ତା ଶରୀର ॥
ମନ୍ତ୍ରୀ ସଙ୍ଗତେ ବିଚାରିଲା । ନିର୍ବନ୍ଧେ ମରଣ ଚିନ୍ତିଲା ॥

ଐରାବତ ଆଦି ଗଜ । ତାହାଙ୍କୁ ଅଣାଇଲା ତେଜେ ॥
ବୋଲଇ ଦନ୍ତାଘାତ କର । ଯେମନ୍ତେ ମରଇ କୁମର ॥
ଶୁଣି ଅନେକ ହସ୍ତୀ ତୁଲେ । ବାଳକ ନିକଟେ ମିଳିଲେ ॥
ହାସ୍ତୀଙ୍କୁ ଚାହିଁ ଦୈତ୍ୟବଳା । ଅନ୍ତରେ ବିଷ୍ଣୁ ସୁମରିଲା ॥
ମହାକ୍ରୋଧରେ ଗଜବରେ । ନିଷ୍ଠୁର ଦନ୍ତର ଅଗ୍ରରେ ॥
ନିର୍ଘାତେ କରନ୍ତେ ପ୍ରହାର । ସକଳ ଦନ୍ତ ହେଲା ଚୂର ॥
ଭୟେ ଭାଜିଲେ ହସ୍ତୀବଳ । ଦେଖି ଅସୁର କୋପାନଳ ॥
ତକ୍ଷକ ଆଦି ଅଷ୍ଟନାଗେ । ଥିଲେ ଯେ ଅନ୍ତରୀକ୍ଷ ମାର୍ଗେ ॥
ତାହାଙ୍କୁ ରାଇ ନୃପବର । ନିଷ୍ଠୁରେ ବୋଲଇ ଉତ୍ତର ॥
ଏ କୁଳ ଅଙ୍ଗାରକୁ ମାର । ଏହାର ପ୍ରାଣ ବେଗେ ହର ॥
ନାଗଙ୍କୁ ଦେଖି ପ୍ରହଲାଦ । ଚିତ୍ତେ ଚିନ୍ତିଲା ବିଷ୍ଣୁପାଦ ॥
ତକ୍ଷଣେ ନାଗେ କୋପେ ଗଲେ । ବାଳକ ଶରୀରେ ଦଂଶିଲେ ॥
ବଦନେ ବିଷ ନ ଭେଦିଲା । ନାଗଙ୍କ ଫଣା ବଥାଇଲା ॥
ନାଗେ ପଳାଇ ଗଲେ ବେଗେ । ଜୀବନ ଭୟେ ଦଶଦିଗେ ॥
ପୁଣି ସେ କୃତ୍ୟା ହୋମ କଲା । ପର୍ବତ ଶିଖୁଁ କଚାଡ଼ିଲା ॥
ସାଗର ଜଳେ ବୁଡ଼ାଇଲା । କେବେହେଁ ତା ପ୍ରାଣ ନ ଗଲା ॥
ବନ୍ଧନ କରେ ପ୍ରତିଦିନେ । ମରିବ ବୋଲଇ ଯେସନେ ॥
କେତେହେଁ ଦିନ ଅଭୋଜନ । ବଞ୍ଚିଲା ଅସୁର ନନ୍ଦନ ॥
ହିମ ପବନ ଅଗ୍ନି ଜଳେ । କଷଣ ଦେଲା କୋପାନଳେ ॥
ନାନା ପ୍ରକାରେ କଷ୍ଟ ଦେଲା । କେବେହେଁ ବାଳକ ନ ମଲା ॥
ସ୍ୱଭାବେ ପାପ ତାର ନାହିଁ । ଦଣ୍ଡ ବାଧିବ ତାକୁ କାହିଁ ॥
କେବେହେଁ ମାରି ନ ପାରିଲା । ଚିନ୍ତା ସାଗରେ ନିମଜ୍ଜିଲା ॥
ଜାଗ୍ରତ ସ୍ୱପ୍ନପ୍ରାୟ ହୋଇ । କେବେହେଁ ଶାନ୍ତି ନ ଭଜଇ ॥
ଦେଖ ଏ ବାଳକ ବିଷୟେ । କେତେ ନ ଚିନ୍ତଇ ଉପାୟେ ॥
ସାଧୁ ବିଷୟେ ଦ୍ରୋହ କଲେ । କେବା ସଂସାରେ ଥିବେ ଭଲେ ॥
ଏ ମୋର ଶତ୍ରୁପକ୍ଷ ହୋଇ । କେବେହେଁ ଚିତ୍ତେ ନ ଡରଇ ॥
କଷଣ ଦେଲି ଯେତେ ମୁହିଁ । ସେ ତ ତାହାର ଚିତ୍ତେ ନାହିଁ ॥
ଶୁନଃଶେଫର ପ୍ରାଏ ରହେ । କି ଆଉ କରିବି ଉପାୟେ ॥
ମହାନୁଭବ ଏ କୁମର । ମନ ବଚନ ଅଗୋଚର ॥
ନିର୍ଭୟେ ଏତେ ଦୁଃଖ ସହେ । ଏଣୁ ମୋ ଚିତ୍ତେ ମହାଭୟେ ॥
ଏହାର ସଙ୍ଗେ ବାଦ କଲେ । ପ୍ରାଣ ମୁଁ ନ ପାଇବି ଭଲେ ॥
ଏମନ୍ତ ଭାଳି ମନ ଦୁଃଖେ । ଦଣ୍ଡେ ରହିଲା ଅଧୋ ମୁଖେ ॥
ଗୁରୁକୁମର ତାହା ଶୁଣି । ଅସୁର ମୁଖ ଚାହିଁ ଭଣି ॥

## ଗୁରୁପୁତ୍ର ଉବାଚ

ଶୁଣ ହେ ନୃପ ଚୂଡ଼ାମଣି । ତପେ ତୁ ତ୍ରିଭୁବନେ ଜିଣି ॥
ଆତ୍ମା ସୁଖରେ ଭୋଗ କରୁ । ଯେହ୍ନେ ଅଚଳ ମହାମେରୁ ॥
ତୋହର ରିପୁ ଏ ସଂସାରେ । ନ ଦେଖି ଶରୀର ବେଭାରେ ॥
ଏ ବାଳକୁମର ତୋହର । ଏହାକୁ କିମ୍ପା ତୋର ଡର ॥
ଏ ଶିଶୁବୁଦ୍ଧି ଛାଡ଼ିନାହିଁ । ସଂଶୟ କରୁ କାହିଁପାଇଁ ॥
ଯେବେ ସଂଶୟ ତୋର ମନେ । କହିବା ଶୁଣ ସାବଧାନେ ॥
ତାହାକୁ ବରୁଣର ପାଶେ । ବନ୍ଧନ କର ତୁ ବିଶ୍ୱାସେ ॥
ନିକଟେ ରଖ ତୋ ଆୟତ୍ତେ । ଭୟ ନ ଲାଗୁ ତୋର ଚିତ୍ତେ ॥
ବାଳୁତ ଦଶା ଏ ଛାଡ଼ିଲେ । ସୁବୁଦ୍ଧି ପ୍ରକାଶିବ ଭଲେ ॥
ଏ କଥା କର ଆମ୍ଭମତେ । ତୋ ପାଶେ ଥାଉ ଅନୁବ୍ରତେ ॥
ତାବତ ଥାଉ ଏହି ମତେ । ସନ୍ଦେହ ନ କର ତୁ ଚିତ୍ତେ ॥
ଗୁରୁପୁତ୍ରଙ୍କ ବାକ୍ୟ ଶୁଣି । ସନ୍ତୋଷେ କହେ ନୃପମଣି ॥

## ହିରଣ୍ୟକଶିପୁ ଉବାଚ

ଶୁଣ ହେ ଗୁରୁଙ୍କ କୁମର । ଏବେ ମୋହର ବୋଲକର ॥
ଗୃହସ୍ଥ ଧର୍ମେ ଧର୍ମ ଯେତେ । ରାଜାଙ୍କ ଧର୍ମ ନୀତି ଯୁକ୍ତେ ॥
ତ୍ରିବର୍ଗ ଧର୍ମ ଅର୍ଥ କାମ । ଯେମନ୍ତେ ପଢ଼େ ଅନୁକ୍ରମ ॥
ଏମନ୍ତେ ରାଜାର ବଚନେ । ପ୍ରହ୍ଲାଦ ଗୁରୁ ବେନିଜନେ ॥
ଅନେକ ଯତନେ କହିଲେ । ଅସୁର କୁମାରଙ୍କ ତୁଲେ ॥
ଗୁରୁଙ୍କ ମୁଖୁଁ ଯେତେ ଶୁଣେ । ଅନ୍ତରେ ସାଧୁ ତା ନ ମଣେ ॥
ଗୃହସ୍ଥ ଧର୍ମର ବ୍ୟବସ୍ଥା । ଆତ୍ମାର ନିପାତ ଏ କଥା ॥
ଏ ଧର୍ମେ ମୋହ ହୁଏ ଜନ । ଏଣେ କି ମୋର ପ୍ରୟୋଜନ ॥
ଏମନ୍ତେ କରେ ବିଚାରଣ । ଏବେ ହୋ ଧର୍ମସୁତ ଶୁଣ ॥

## ନାରଦ ଉବାଚ

ପଢ଼ଇ ବାଳକଙ୍କ ମେଳେ । ଗୁରୁ ଯେ ଗୃହଧର୍ମେ ଗଲେ ॥
ସେ ପ୍ରହଲାଦ ତାହା ଚାହିଁ । ବୋଲେ ବାଳକ ମଧ୍ୟେ ଥାଇ ॥
ଶୁଣ ହୋ ଅସୁର କୁମରେ । ଯେ ବିଦ୍ୟା ସଂସାରୁ ଉଦ୍ଧରେ ॥
ମର୍ତ୍ତ୍ୟେ ମନୁଷ୍ୟ ଦେହ ବହି । ଆତ୍ମାର ଜ୍ଞାନ ଯାର ନାହିଁ ॥
ତାର ଜୀବନ ଅକାରଣ । ଏବେ ହୋ ସାବଧାନେ ଶୁଣ ॥
କହଇ ଦାସ ଜଗନ୍ନାଥ । ସପ୍ତମସ୍କନ୍ଧେ ଭାଗବତ ॥
ଏ ପିତା ପୁତ୍ରର ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ହିରଣ୍ୟକଶିପୁ ପ୍ରହ୍ଲାଦ ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

### ପ୍ରହ୍ଲାଦ ଉବାଚ

ଶୁଣ ହେ ଅସୁର ବାଳକେ । ଯେବିଦ୍ୟା ସାର ନରଲୋକେ॥
ଆହେ ବାୟେସ୍ୟେ ତୁମ୍ଭେ ଦେଖ। ମୃତ୍ୟୁ ଅଧୀନ ଜୀବଲୋକ ॥
ମାୟା କ୍ରୀଡ଼ାରେ ମତ୍ତହୋଇ । ଜ୍ଞାନ ତୁମ୍ଭର ଦେହେ ନାହିଁ ॥
ବାଳକ ଯୁବା ବୃଦ୍ଧ ଦେହେ । କେବେହେଁ ଆତ୍ମା ଲିପ୍ତନୁହେଁ ॥
ଏ ଭାବ ଚିତ୍ତେ ଯେ ଚିନ୍ତନ୍ତି । ଅନ୍ତେ କୈବଲ୍ୟ ସେ ଭୁଞ୍ଜନ୍ତି॥
ବିଷୟ ପଥେ ଯେବା ପଢ଼େ । ଆତ୍ମାର ଜ୍ଞାନପଥ ହୁଡ଼େ ॥
ପର ଅପର ବୋଲି ଚିନ୍ତି । ସେ ମୃତ୍ୟୁମୁଖେ ସଞ୍ଚରନ୍ତି ॥
ଯେ ଗୁରୁ କହେ ଶାସ୍ତ୍ରମତେ । ଅର୍ଥକୁ ବୁଝାଇ ଅନର୍ଥେ ॥
ଅଜ୍ଞାନ ନିନ୍ଦିତ ବଚନେ । ନ ଭାଙ୍ଗେ ଶାସ୍ତ୍ର ଅନୁକ୍ରମେ ॥
ସେ ଗୁରୁବାକ୍ୟେ କାର୍ଯ୍ୟ କିସ । ବିଫଳ ତାର ଉପଦେଶ ॥
ଆତ୍ମାର ଶରୀର ଧାରଣ । ଅଜ୍ଞାନ ଏହାର କାରଣ ॥
ଏବେ ଅବ୍ୟୟ ଆତ୍ମା ଯେତେ । ଯତ୍ନ କରିବ ଆତ୍ମହିତେ ॥
ଏଣୁ ଅଜ୍ଞାନୀଙ୍କ ବଚନ । ନ ମାନେ ଆତ୍ମଜ୍ଞାନୀ ଜନ ॥
ଅଜ୍ଞାନୀ ଅଜ୍ଞାନ ଦେଖାଇ । ଅନ୍ଧକୁ ଅନ୍ଧ ଯେ କଢ଼ାଇ ॥
ଜ୍ଞାନୀର ଶତ୍ରୁ ମିତ୍ର ନାହିଁ । ନିତ୍ୟେ ଉଦାସପଣେ ଥାଇ ॥
ପ୍ରାଣୀ ଭୁଞ୍ଜଇ କର୍ମାୟତେ । ସମ୍ପଦ ବିପଦ ଜଗତେ ॥
ଏ ମାୟାମୟ ଗୃହବାସେ । ପ୍ରାଣୀ ଯନ୍ତ୍ରିତ ମାୟାପାଶେ ॥
ମନର ଚରଣେ ଶାଙ୍କୁଳି । ଏଣୁ ନ ପାରେ ପ୍ରାଣୀ ଚଳି ॥
ଏ ମାୟାବଦ୍ଧ ଯା ବଚନେ । ତୁଟଇ ଜ୍ଞାନ ଅନୁମାନେ ॥
ସେ ଗୁରୁ ବଚନ ଯେ ଜାଣି । ତେବେ ସଂସାରୁ ତରେ ପ୍ରାଣୀ ॥
ବିଅର୍ଥ କ୍ରିୟା ନିତ୍ୟେ ଚିନ୍ତି । ଆୟୁଷ କ୍ଷୟ ନ ଜାଣନ୍ତି ॥
ଏମନ୍ତ ଅସୁରଙ୍କୁ ଚାହିଁ । ସେ ପ୍ରହଲାଦ ଦୟା ବହି ॥
କହଇ ଭାଗବତ ଧର୍ମ । ଯେଣେ ତୁଟଇ ମାୟାଭ୍ରମ ॥
ଶୁଣ ବାଳକ ମୋ ବଚନ । ସଂସାରେ ପଣ୍ଡିତ ଯେ ଜନ ॥
କୁମାରକାଳୁ ଧର୍ମ କରେ । ଶରୀର ଅନିତ୍ୟ ବିଚାରେ ॥
ମନୁଷ୍ୟ ଶରୀର ଦୁର୍ଲ୍ଲଭ । ଯେବେ ଗୋବିନ୍ଦ କରେ ଭାବ ॥
ଯେ ହରି ସର୍ବଜୀବ ଦେହେ । ଆତ୍ମା ରୂପରେ ପୂରି ରହେ ॥
ବସଇ ଈଶ୍ୱରର ଭାବେ । ଇନ୍ଦ୍ରିୟ ଭୋଗ ସୁଖ ଲୋଭେ॥
କର୍ମର ବଳେ ଯାହା ଭଳେ । ସୁଖ ଦୁଃଖରେ ଭୋଗ କଲେ॥
ଏଣୁ ନ କର ପ୍ରତିଆଶ । ନିରତେ ହୋଇବ ସନ୍ତୋଷ ॥
ଦେଖ ଆୟୁଷ ଏ ଶରୀରେ । ଛିଦ୍ର ଘଟର ପ୍ରାୟ ଝରେ ॥
ଏଣୁ ମୁକୁନ୍ଦ ପାଦଯୁଗେ । ନିରତେ ଭାବ ମନଯୋଗେ ॥
ମରଣ ନିତ୍ୟ ସନ୍ନିହିତ । ତା ମୁଖେ ନ ପଡ଼େ ଯାବତ ॥
ଯାବତ ସୁସ୍ଥ ଏ ଶରୀର । ବୃଦ୍ଧ ଅବସ୍ଥା ଅଛି ଦୂର ॥
ଯାବତ ଏ ଦୁର୍ଲ୍ଲଭ ଦେହେ । ଇନ୍ଦ୍ରିୟ ଶକ୍ତି ନଷ୍ଟ ନୁହେଁ ॥
ଯାବତ ଜୀବର ଏ ଦେହେ । କାଳର ବଳେ କ୍ଷୟ ନୁହେଁ ॥
ତାବତ ଆତ୍ମା ନିସ୍ତାରଣେ । ଯତ୍ନ କରିବ ଅନୁକ୍ଷଣେ ॥
ତେବେ ଆତ୍ମାର ହିତ କରେ । ଦୁର୍ଲ୍ଲଭ ମାନବ ଶରୀରେ ॥
ଏ ଜ୍ଞାନ ବୁଝେ ଯେତେବେଳେ। ବୋଲେ କରିବ ବୃଦ୍ଧକାଳେ ॥
ଗୃହେ ଲାଗିଲେ ଅଗ୍ନି ଯେହ୍ନେ । ଉଦ୍ୟମ କୂପର ଖନନେ ॥
ଏମନ୍ତ ଅଜ୍ଞାନୀଙ୍କ ମତି । କେବେହେଁ ସୁଖ ନ ଲଭନ୍ତି ॥
ସ୍ୱଭାବେ ଅଳପ ଆୟୁଷ । ଜୀବର ଶତେକ ବରଷ ॥
ଯେବେ ଅଜ୍ଞାନ ପଣେ ଥାଇ । ତାହାର ଅର୍ଦ୍ଧେ ନାଶଯାଇ ॥
ସ୍ୱଭାବେ ରାତ୍ରେ ନିଦ୍ରାକାଳେ । ଅଧେ ଆୟୁଷ ଯାଇ ହେଳେ ॥
ବାଳକ ପୌଗଣ୍ଡ କିଶୋରେ । ବିଂଶ ବରଷ ତହୁଁ ହରେ ॥
ବାଳର ସ୍ୱଭାବ ଏମନ୍ତ । କ୍ରୀଡ଼ା ବିନୋଦେ ଥାଏ ଲିପ୍ତ ॥
ଶେଷରେ ଜରାଗ୍ରସ୍ତ ହୋଇ । ବିଂଶତି ବରଷ କଟଇ ॥
ବାକି ଯେ ଆୟୁ ରହିଥାଏ । ଗୃହ ବନ୍ଧନେ କଟିଯାଏ ॥
ଏ ଗୃହବନ୍ଧେ ବନ୍ଦୀ ହୋଇ । ଆତ୍ମ ଉଦ୍ଧରି ନ ପାରଇ ॥
ଅତି ଯନ୍ତ୍ରିତ ସ୍ନେହ ପାଶେ । ଦୁର୍ଜ୍ଜୟ ଇନ୍ଦ୍ରିୟ ଲାଳସେ ॥
ଅର୍ଥ ଅର୍ଜନେ ଅବିରତେ । ଲୋଭ ବଢ଼ଇ ସର୍ବମତେ ॥
ପ୍ରାଣହୁଁ ଅତି ସ୍ନେହଭରେ । ସେ ତୃଷ୍ଣା କେବା ତେଜିପାରେ
ଯେ ଧନ ଅର୍ଥେ ବିକେ ପ୍ରାଣ । ତାହର ନାହିଁ ପରିତ୍ରାଣ ॥
ତସ୍କର ରୂପେ ଚୋରି କରେ । ସେବା କରଇ ଯାଇ ପରେ ॥
ବୋଇତେ ବସି ବଣିଜାରେ । ଅଗାଧ ସିନ୍ଧୁ ଲୋଭେ ତରେ ॥
ନିତ୍ୟେ ଯେ ଗୃହବନ୍ଧେ ବଞ୍ଚେ । ପ୍ରାଣୁ ଅଧିକ ଧନ ସଞ୍ଚେ ॥
ଏକାନ୍ତେ କାମିନୀଙ୍କ ମେଳେ । କ୍ରୀଡ଼ା କରଇ କାମଭୋଳେ ॥
ପତ୍ନୀର ବାକ୍ୟ ଅନୁକ୍ଷଣେ । ଗୁରୁଙ୍କ ମନ୍ତ୍ର ପ୍ରାୟ ମଣେ ॥
ବନ୍ଧୁ ବାନ୍ଧବ ସ୍ନେହଭରେ । ବାଳକ ସଙ୍ଗେ ମନ ହରେ ॥
ସ୍ନେହ ମମତା ଅବିରତେ । ଚିନ୍ତଇ ଅନୁରାଗ ଚିତ୍ତେ ॥
ଘରୁ ବାହାର ହୋଇ ଯେବେ । ପ୍ରବାସ କରଇ ସ୍ୱଭାବେ ॥
ତହିଁ ଜୀବନ ସୁସ୍ଥ ନୋହି । ଭାବଇ ଗୃହେ ମନଦେଇ ॥
ପୁତ୍ର ଦୁହିତା ସ୍ନେହଚିତ୍ତେ । ମନୋଜ୍ଞ ପତ୍ନୀ ଭାବ ଚିନ୍ତେ ॥
ଭ୍ରାତା ଜନନୀ ତାତ ସ୍ମରେ । ଏ ଭଳେ ଥିବେ କିବା ଘରେ॥
ମନୋଜ୍ଞ ଗୃହେ ବସ୍ତୁ ଯେତେ । ଜୀବିକା ପଶୁ ଭୃତ୍ୟମତେ ॥
ଏରୂପେ କୋଷାକାରୀ ପ୍ରାୟେ । ହୃଦରେ ଅବିରତ ଧାୟେ ॥
ଦୁସ୍ତର ମୋହଭାବ ଚିତ୍ତେ । ଏ ପ୍ରାଣୀ ତରିବ କେମନ୍ତେ ॥

ନିରତେ କୁଟୁମ୍ବ ପୋଷଣେ । ଆୟୁଷ କ୍ଷୟ ସେ ନ ଜାଣେ ॥
ସର୍ବଦା ତାପତ୍ରୟେ ଦୁଃଖୀ । କୁଟୁମ୍ବ ପାଳେ ସେ ନ ଭକ୍ଷି ॥
ଅନିତ୍ୟେ ନିତ୍ୟେ ଦେଇ ଚିତ୍ତ । କାମେ ଜଡ଼ିତ ଅବିରତ ॥
ପଣ୍ଡିତପଣ ସର୍ବ ଜାଣେ । ଆତ୍ମାର ଗତି ନ ପ୍ରମାଣେ ॥
ଯେ ଫଳ ଇହ ପରଲୋକେ । ତା ପୁଣି ଜାଣେ ବିଦ୍ୟା ସୁଖେ॥
କୁଟୁମ୍ବୀ ପଣେ ଗୃହ କରେ । କ୍ରୀଡ଼ା ବିନୋଦେ ସେ ବିହରେ
ସୁହୃଦ ବନ୍ଧୁର ଶରୀରେ । ଉଭୟ ଲୋକୁ ନ ନିସ୍ତରେ ॥
ବିଭିନ୍ନ ଆତ୍ମାପର ରାଗୀ । ଜନ୍ମ କଷ୍ଟନେ ଅନୁରାଗୀ ॥
ବିମୂଢ଼ ମତିର ବିଭ୍ରମେ । ଅନ୍ତେ ପଡ଼ଇ ଘୋର ତମେ ॥
ତୁମ୍ଭେ ସକଳେ ଏହା ଶୁଣ । ଆତ୍ମାର ହିତ ମନେ ଗୁଣ ॥
ବିଷୟାସକ୍ତ ମାୟା ସଙ୍ଗ । ଯେସନେ ମାୟାର ତରଙ୍ଗ ॥
ଏ ସର୍ବ ଦୂରେ ପରିହର । ନାରାୟଣଙ୍କୁ ଆଶ୍ରେକର ॥
ସେ ନାରାୟଣ ସର୍ବ ଧାତା । ଇଛିତେ କଇବଲ୍ୟ ଦାତା ॥
ବିଷ୍ଣୁଙ୍କୁ ଆଶ୍ରେ ଯେ କରନ୍ତି । ସେ ସର୍ବଦୁଃଖୁଁ ନିସ୍ତରନ୍ତି ॥
ଅସୁର ଭାବକୁ ଉପେକ୍ଷ । ଆତ୍ମାର ପ୍ରାୟ ସର୍ବ ଦେଖ ॥
ଏ ବିଷ୍ଣୁ ମାୟା ପରାପର । ବ୍ରହ୍ମାଣ୍ଡ ବାହାର ଅନ୍ତର ॥
ବ୍ରହ୍ମାଦି ସ୍ଥାବର ପର୍ଯ୍ୟନ୍ତେ । ଅବ୍ୟକ୍ତ ଭୂତଆଦି ଯେତେ ॥
ଗୁଣ ନିର୍ଗୁଣେ ହୋଇ ସମ । ଏ ଆଦି ସର୍ବଘଟେ ବ୍ରହ୍ମ ॥
ବସଇ ସର୍ବଘଟେ ହରି । ଭୁଞ୍ଜେ ଅବ୍ୟୟ ରୂପ ଧରି ॥
ଆତ୍ମା ସ୍ୱରୂପେ ସର୍ବଦେହେ । ଦୃଶ୍ୟ ଅଦୃଶ୍ୟ ଭାବ ବହେ ॥
ନିର୍ଦ୍ଦେଶ ଅନିର୍ଦ୍ଦେଶ ମତେ । କଳି କେ ପାରିବ ଜଗତେ ॥
କେବଳ ଆନନ୍ଦାନୁଭବ । ଅଶେଷ ଦେହେ ସର୍ବଜୀବ ॥
ମାୟା ଅନ୍ତରେ ସୁଖେ ରହେ । ଅଶେଷ ଗୁଣ ସଙ୍ଗ ବହେ ॥
ଏ ଘେନି ସର୍ବ ଭୂତେଶ୍ୱରେ । ପ୍ରାଣୀ ବିଷୟେ ଦୟା କରେ ॥
ସୁଦୃଢ଼ ଭାବ ଧରି ଚିତ୍ତେ । ହରିଙ୍କୁ ଲଭିବ ଯେମନ୍ତେ ॥
ଅସୁର ଭାବ ପରିହରି । ତେଣେ ସନ୍ତୋଷ ନରହରି ॥
ଏ ଭାବେ ଦୃଢ଼ କର ଚିତ୍ତେ । ହରିଙ୍କୁ ଭଜ ଅବିରତେ ॥
ସେ ବିଷ୍ଣୁ ତୋଷ ଯାକୁ ଚିତ୍ତେ । କି ଅବା ଅଲଭ୍ୟ ଜଗତେ ॥
ଅନନ୍ତ ଅନାଦି ମହିମା । କି ଗୁଣେ କରିବା ଉପମା ॥
ତ୍ରି ଗୁଣେ କରେ ନିସ୍ତାରଣ । କୈବଲ୍ୟ ପରମ କାରଣ ॥
ସଂସାର ମଧ୍ୟେ ସାର ସେହି । ତାର ଚରଣୁ ଅନ୍ୟ ନାହିଁ ॥
ଏ ଘେନି ବିଷ୍ଣୁର ଚରଣ । ଯେ ପ୍ରାଣୀ ପଶନ୍ତି ଶରଣ ॥
ତାର ଚରଣେ ଭାବ କର । ସଂସାର ମାୟାରୁ ଉଦ୍ଧର ॥
ଧର୍ମାର୍ଥ କାମ ବେଦମତେ । ଏ ତିନିବର୍ଗ ଅନୁମତେ ॥
ସାଧନ କର ସମ ଦମ । ଯଜ୍ଞାଦି ନାନାବିଧ କର୍ମ ॥
ସତ୍ୟ ବଚନ ବେଦବାଣୀ । ଏଣେ ସଂସାରୁ ତରେ ପ୍ରାଣୀ॥
ନାନା ପ୍ରକାରେ ପୁଣ୍ୟ ଦାହି । ସେ ସବୁ କୃଷ୍ଣ ସମର୍ପଇ ॥
ଧନ୍ୟ ତା ଶରୀର ଧାରଣ । ସେ ଲଭେ ପରମ କାରଣ ॥
ନିର୍ମଳ ଦୁର୍ଲ୍ଲଭ ଏ ଜ୍ଞାନ । ନିଗମ ସାର ଅନୁପମ ॥
ନାରଦ ମୁନିଙ୍କ ଅଗ୍ରତେ । ସୁପୁଣ୍ୟ ବଦରିକା ତୀର୍ଥେ ॥
ତପ ଆଚରି ଅନୁକ୍ଷଣେ । ଅଛନ୍ତି ନରନାରାୟଣେ ॥
ନାରଦ ମୁନି ଶୁଦ୍ଧଚେତା । ପୁଚ୍ଛିଲେ ହରିଗୁଣ ଗାଥା ॥
ସେ ନାରାୟଣ ଶୁଦ୍ଧଭାବେ । ଏ ବାଣୀ ବିବିଧ ପ୍ରସ୍ତାବେ ॥
ନାରଦ ମୁନିଙ୍କୁ ସନ୍ତୋଷେ । କହିଲେ ଜ୍ଞାନ ଉପଦେଶେ ॥
ବିଷ୍ଣୁର ପାଦପଦ୍ମ ଧୂଳି । ଆନନ୍ଦ ଭାବେ ଅଙ୍ଗେ ବୋଳି ॥
ସଂସାରେ ଅକିଞ୍ଚନ ଜନେ । ଯାହା ଭାବନ୍ତି ଅନୁକ୍ଷଣେ ॥
ପୂର୍ବେ ମୁଁ ନାରଦଙ୍କ ବାଣୀ । ମାତାଙ୍କ ଗର୍ଭେ ଥାଇ ଶୁଣି ॥
ଏ ବାଣୀ ଭାଗବତ କଥା । ଶୁଣନ୍ତେ ତୁଟେ ଭବବ୍ୟଥା ॥
ଭାବେ କହିଲି ତୁମ୍ଭ ଆଗେ । ହରି ଚରିତ ଅନୁରାଗେ ॥
ଏମନ୍ତ ପ୍ରହଲାଦ ବାଣୀ । ଭାବେ ଅସୁରପୁତ୍ରେ ଶୁଣି ॥
ବୋଲନ୍ତି ପ୍ରହଲାଦ ଆଗେ । ତୁଲ୍ୟ ବୟସ ଅନୁରାଗେ ॥

## ଦୈତ୍ୟପୁତ୍ର ଗଣ ଉବାଚ

ଶୁଣ ହେ ନୃପତି କୁମର । ଆମ୍ଭେ ଯେ ସଙ୍ଗତେ ତୋହର ॥
ତୋହର ଭିନ୍ନେ ଗୁରୁ ନାହିଁ । ଏ ବିଦ୍ୟା ସାଧିଲୁ ତୁ କାହିଁ ॥
ଏ ଗୁରୁପୁତ୍ରଙ୍କ ଚରଣେ । ଆମ୍ଭେ ଭଜିଲୁ ଅନୁକ୍ଷଣେ ॥
ଏହାଙ୍କ ଉପଦେଶ ଜାଣୁ । ତୁ ଏହା କେମନ୍ତେ ବଖାଣୁ ॥
ତୁହି ତ ଆମ୍ଭ ସଙ୍ଗତରେ । ନିରତେ ଥାଉ ଅନ୍ତଃପୁରେ ॥
ସ୍ୱଭାବେ ସ୍ତିରୀଙ୍କ ମନ୍ଦିର । ଦେବ ମାନବେ ଅଗୋଚର ॥
ତହିଁ ଭିତରେ ଥାଉ ତୁହି । ସାଧୁଙ୍କ ସଙ୍ଗ ତୋର ନାହିଁ ॥
ଏଣୁ ସଂଶୟ ଆମ୍ଭ ମନ । ନିହାର ବଳେ ଯେହ୍ନେ ଲୀନ ॥
ତୋହର ପାଦେ ନମସ୍କାର । ସଂଶୟ ଛେଦ ତୁ ଆମ୍ଭର ॥
ଏମନ୍ତ ଅସୁର ବାଳକେ । ତାର ସମୀପେ ଏକେ ଏକେ ॥
ଚରଣ ଧରି ପଚାରିଲେ । ଧର୍ମର କଥା କହ ଭଲେ ॥
ଏମନ୍ତ ଭାଗବତ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
ସପ୍ତମସ୍କନ୍ଧେ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ବାଳକ ସଂଶୟେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ନାରଦ ଉବାଚ

ଏବେ ହୋ ଶୁଣ ଧର୍ମସୁତ । ଅସୁର ବାଳକ ଚରିତ ॥
ସେ ପ୍ରହ୍ଲାଦ ଦୟା ମନେ । କହେ ବାଳକ ସନ୍ନିଧାନେ ॥

### ପ୍ରହ୍ଲାଦ ଉବାଚ

ମୋହର ପିତା ତପଅର୍ଥେ । ଗଲେ ଯେ ମନ୍ଦର ପର୍ବତେ ॥
ନିଷ୍କଳ ତପ ତାର ଦେଖି । ବିବୁଧେ ସ୍ୱରଗ ଉପେକ୍ଷି ॥
ଯୁଦ୍ଧ ଉଦ୍ୟମ କରି ହେଳେ । ଚଳିଲେ ସର୍ବେ ଏକମେଳେ ॥
ହିରଣ୍ୟକଶିପୁ ଅସୁର । ସ୍ୱଭାବେ ପାପୀ ଦୁରାଚାର ॥
ଯେସନେ ପିପିଳିକାଗଣ । କରନ୍ତି ସର୍ପକୁ ଭକ୍ଷଣ ॥
ତେସନ ମତି ଦେବଗଣ । ମାରନ୍ତି ହିରଣ୍ୟକୁ ପୁଣ ॥
ଯେତେ ଅସୁରେ ଥିଲେ ପୁରେ । ଦେବଙ୍କୁ ଦେଖି ମହାଡ଼ରେ ॥
ନିଶସ୍ତ୍ର ହୋଇ ଶସ୍ତ୍ରାଘାତେ । ସଂଗ୍ରାମେ ଭାଜିଲେ ସମସ୍ତେ ॥
ଭୟେ ପଶିଲେ ଦଶଦିଶେ । ନ ରହି ଦେବଙ୍କର ପାଶେ ॥
ଗୃହ କଳତ୍ର ପୁତ୍ର ଏଡ଼ି । ସର୍ବ ସମ୍ପଦ ବେଗେ ଛାଡ଼ି ॥
ଜୀବନ ଘେନି ପଳାଇଲେ । ବିବୁଧେ ଯୁଦ୍ଧେ ଜୟ କଲେ ॥
ସର୍ବ ସମ୍ପଦ ଲୁଟକରି । ନେଇ ଚଳିଲେ ସ୍ୱର୍ଗପୁରୀ ॥
ଇନ୍ଦ୍ର ପଶିଣ ନିଜ ପୁରୀ । ମୋର ଜନନୀ ନେଲେ ହରି ॥
ପଥେ ଚଳାଇ ନ୍ୟନ୍ତେ ବଳେ । ଜନନୀ କାନ୍ଦନ୍ତି ବିକଳେ ॥
ମୋର ଜନନୀ ଅତିଭୟେ । ଚଳି ନ ପାରେ ଗୁରୁଦେହେ ॥
ଅନେକ ଦୁଃଖେ ଗୁରୁଶୋକେ । କୁରରୀ ପ୍ରାୟେ ଝୁରେ ଦୁଃଖେ ॥
ଏମନ୍ତେ ଗଲେ କେତେ ଦୂର । କାନନେ ବ୍ରହ୍ମାଙ୍କ କୁମର ॥
ମୋର ଜନନୀ ଦେଖି ପଥେ । ମିଳିଲେ ଇନ୍ଦ୍ରଙ୍କ ଅଗ୍ରତେ ॥
ବୋଲନ୍ତି ଇନ୍ଦ୍ର ମୁଖ ଚାହିଁ । ଏ କଥା ଉଚିତ ନୁହଇ ॥
ପରମା ସତୀ ଏ ସୁନ୍ଦରୀ । କିପାଇଁ ନିଅ ବନ୍ଦୀକରି ॥
ଏହାର ଅପରାଧ ନାହିଁ । ବେଗେ ଏହାକୁ ଛାଡ଼ ତୁହି ॥

### ଇନ୍ଦ୍ର ଉବାଚ

ଅସୁର ବୀର୍ଯ୍ୟେ ଏହା ଗର୍ଭେ । ଏ ମୋର ବଇରୀ ସ୍ୱଭାବେ ॥
ସେ ବୀର୍ଯ୍ୟ ଅଛି ଗର୍ଭେ ରହି । ତାହାର ତେଜ କିବା କହି ॥
ସ୍ୱର୍ଗ ଘେନିବ ଏ ମୋହର । ଏହାକୁ ମୋର ବଡ଼ଡ଼ର ॥
ଏ ନାରୀ ମୋର ଘରେ ଥିବ । ଯାବତ ପ୍ରସବ କରିବ ॥
ଶିଶୁକୁ ମାରି ଯାକୁ ଆଣି । ଛାଡ଼ିବି ନିଜ ଘରେ ପୁଣି ॥
ଏ କଥା ସଂକଳ୍ପ ମୋହର । ଏହା ଜାଣ ହେ ମୁନିବର ॥

### ନାରଦ ଉବାଚ

ଏହାର ଗର୍ଭେ ଯେ କୁମର । ନିର୍ଣ୍ଣେ ସେ ବଇଷ୍ଣବବର ॥
ଅଶେଷ ଗୁଣେ ଗୁଣନିଧି । ଏହାର ଦେହେ ସର୍ବସିଦ୍ଧି ॥
ଏହାର ଗର୍ଭେ ଅଛି ଯେହୁ । କୃଷ୍ଣସେବକ ଅଟେ ସେହୁ ॥
ତୁ କାହିଁ ଏହାକୁ ମାରିବୁ । ଏହାର ଚରଣେ ସେବିବୁ ॥
ଏ କଥା ମୁନିମୁଖୁଁ ଶୁଣି । ଇନ୍ଦ୍ର ହିଁ ମନେ ମନେ ଗୁଣି ॥
ନାରଦ ବାକ୍ୟେ ସୁରପତି । ଛାଡ଼ିଲା ଅସୁର ଯୁବତୀ ॥
ମାତାରେ ପ୍ରୀୟଭାବ କରି । ମୁନିଙ୍କୁ ଦଣ୍ଡବତ କରି ॥
ତକ୍ଷଣେ ନିଜପୁରେ ଗଲା । ଶୁଣ ହେ ଅସୁରଙ୍କ ବଳା ॥
ମୋର ମାତାକୁ ଆଗକରି । ଆଶ୍ୱାସ କରି ବ୍ରହ୍ମଚାରୀ ॥
ନିଜ ଆଶ୍ରମେ ମୁନି ଆଣି । ମୁଖେ ସିଞ୍ଚନ୍ତି ଶୀତପାଣି ॥
ବୋଲନ୍ତି ମଧୁର ବଚନ । ତୁ ଏଥେ ଥିବୁ ଥୋକେ ଦିନ
ଯାବତ ସ୍ୱାମୀ ତପୁଁ ଆସେ । ତାବତ ଥିବୁ ମୋରପାଶେ ॥
ମୁନି ବଚନେ ମୋର ମାତା । ଛାଡ଼ିଲା ମନୁ ଦୁଃଖ ଚିନ୍ତା ॥
ନିର୍ଭୟେ ମୁନି ଘରେ ରହି । ଭର୍ତ୍ତା ଆଗମେ ପଥ ଚାହିଁ ॥
ପରମ ଭକ୍ତ ମୁନି ପାଦେ । ମୋର ଜନନୀ ଅପ୍ରମାଦେ ॥
ସେବା କରଇ ନିରନ୍ତରେ । ସୁଖ ପ୍ରସବ ଉପକାରେ ॥
ମୁନି ଚରଣ ପରସାଦେ । ପ୍ରସବ ହୋଇ ଅପ୍ରମାଦେ ॥
ଏ କଥା ମନେ କରି ଚିନ୍ତା । ସୁଖେ ରହିଲା ମୋର ମାତା ॥
ଗୃହେ ନାରଦ ବ୍ରହ୍ମଚାରୀ । ମୋର ମାତାକୁ ଦୟାକରି ॥
ଦିନକୁ ଦିନ କହି ଜ୍ଞାନ । ଆନନ୍ଦ କରି ମାତା ମନ ॥
ନିର୍ମଳ ଧର୍ମ ତତ୍ତ୍ୱ ଯେତେ । କହନ୍ତି ମାତାଙ୍କ ଅଗ୍ରତେ ॥
ଯାହା କହିଲେ ମହାମୁନି । ମୁଁ ତାହା ଗର୍ଭେ ଥାଇ ଶୁଣି ॥
ଜନନୀ ସ୍ୱଭାବେ ଅବଳା । କାଳେ ସେ ଜ୍ଞାନ ପାସୋରିଲା
ନାରଦ ଅନୁଗ୍ରହ ମୋତେ । ଜ୍ଞାନ ରହିଲା ମୋର ଚିତ୍ତେ ॥
ମୋର ବଚନେ ଶ୍ରଦ୍ଧା କର । ଏ ଜ୍ଞାନ ହୋଇବ ତୁମ୍ଭର ॥
ନିର୍ମଳ ଜ୍ଞାନ ହେଲେ ଜାତ । ବିନାଶ ହୋଇବ ଦୁରିତ ॥
ଆତ୍ମାର ଯେମନ୍ତ ସ୍ୱଭାବ । ଶୁଣ କହିବା ଜ୍ଞାନଭାବ ॥
ବୃକ୍ଷର ଫଳ ଯେହ୍ନେ କାଳେ । ପାଚି ପଡ଼ଇ ମହୀତଳେ ॥
ଷଡ଼ ବିକାରେ ନାଶ ଯାଇ । ଶରୀର ସ୍ୱଭାବଟି ଏହି ॥
ଗର୍ଭୁ ଶରୀର ଜାତ ହୋଇ । ସ୍ଥିତି ବୃଦ୍ଧିକୁ ସେ ଲଭଇ ॥
ପରିଣତ କ୍ଷୟ ଭଜିଣ । ଶେଷେ ବିନାଶ ଲଭେ ପୁଣ ॥
ଆତ୍ମାର ନୁହେଁ ଏ ବିକାର । ଯେଣୁ ସେ ଆତ୍ମା ନିର୍ବିକାର ॥
ଯେ ନିତ୍ୟ କ୍ଷେତ୍ରଜ୍ଞ ଅବ୍ୟୟ । ବିକାର ଶୂନ୍ୟ ସର୍ବାଶ୍ରୟ ॥

ସର୍ବ କାରଣ ଅସଙ୍ଗତ । ବିଶୁଦ୍ଧ ଏକ ଅନାବୃତ ॥
ଏମନ୍ତ ଆତ୍ମାର ଲକ୍ଷଣ । ଅଧ୍ୟାତ୍ମ ଜ୍ଞାନୀ ଯେଉଁଜନ ॥
ଅହଙ୍କାରକୁ ପରିହରେ । ଦେହାଭିମାନ ଦୂରକରେ ॥
ଆତ୍ମାଯୋଗରେ କରେ ଧ୍ୟାନ । ଏ ଦେହେ ଲଭେ ବ୍ରହ୍ମଜ୍ଞାନ ॥
ମୁହିଁ ମୋହର ବୋଲିଯେତେ । ଦେବାଧି ଉପାଧି ସହିତେ ॥
ମମତା ଜାତ ଉପଦେଶେ । ଏ ସବୁ ହରିଙ୍କ ସନ୍ଦେଶେ ॥
ମୋର ବଚନ ବେଗେ ହେଜ । ମୁକୁନ୍ଦ ପଦ୍ମପାଦେ ଭଜ ॥
ସୁବର୍ଣ୍ଣକାରୀ ଯେହ୍ନେ ଜଳେ । ପାଷାଣୁ ସୁବର୍ଣ୍ଣ ଧୋଇଲେ ॥
ଘେନଇ ଅତି ଯତ୍ନ କରି । ଏହି ସ୍ୱଭାବେ ବ୍ରହ୍ମଚାରୀ ॥
କ୍ଷେତ୍ରରୁ କ୍ଷେତ୍ରଜ୍ଞ ଉଦ୍ଧରେ । ଆତ୍ମାକୁ ଲଭେ ଅଭ୍ୟନ୍ତରେ ॥
ଅଷ୍ଟ ପ୍ରକୃତି ତିନିଗୁଣ । ଷୋଡ଼ଶ ବିକାର ଲକ୍ଷଣ ॥
ପରମ ବ୍ରହ୍ମ ସଙ୍ଗତେଣ । ବିରାଜିଛନ୍ତି ଅନୁକ୍ଷଣ ॥
ଏ ଦେହ ଦ୍ୱିବିଧରେ ଜାତ । ସ୍ଥାବର ଜଙ୍ଗମେ ବିଦିତ ॥
ଆତ୍ମାର ସମ୍ବନ୍ଧ ଏ ଦେହେ । ସ୍ୱଭାବେ ଭିନ୍ନଭାବେ ରହେ ॥
ଏମନ୍ତ ଦେହେ ଶୁଦ୍ଧଚିତ୍ତେ । ବ୍ରହ୍ମ ପୁରୁଷ ଭାବ ନିତ୍ୟେ ॥
ସୃଷ୍ଟି ସ୍ଥିତି ଯେ ପ୍ରଳୟର । କାରଣ ବୁଝି ହେତୁ କର ॥
ସୁସୁପ୍ତି ସ୍ୱପ୍ନ ଜାଗରଣ । ବୁଦ୍ଧିର ଏ ତିନି ଲକ୍ଷଣ ॥
ଏହା ଯେ ଅନୁଭବ କରେ । ପରମ ପୁରୁଷ ବିହରେ ॥
ବୁଦ୍ଧି ବୃତ୍ତିର ପରିମାଣ । ନୁହଇ ଆତ୍ମାର ଏ ଧର୍ମ ॥
ଏ ତିନିଗୁଣ ନିବନ୍ଧନ । ସଂସାରେ ଜ୍ଞାନୀ ଅନୁମାନ ॥
ଅଜ୍ଞାନ ମୂଳର ଏ ଅର୍ଥ । ସ୍ୱପ୍ନ ପ୍ରକାଶ ନିଦ୍ରାଗତ ॥
ମାୟାର ସ୍ୱପ୍ନ ଏ ଜଗତ । ଏଣୁ ଏ ତ୍ରିଗୁଣେ ବିଦିତ ॥
ନିର୍ଗୁଣ ଆତ୍ମା କର୍ମଦିଗେ । ଏ ଜୀବ ଅନଳ ସଂଯୋଗେ ॥
ଦହନ କରି ଯୋଗମାର୍ଗେ । ଅନ୍ୟ ଉପାୟ ନ ସଂଯୋଗେ ॥
କେ ସାଧି ପାରିବ ସାମର୍ଥେ । ଏ ଭାବ ଅନୁଭବ ଚିତ୍ତେ ॥
ଭକ୍ତି ଲକ୍ଷଣ ଯେଣେ ସାଧି । ଗୁଣ ଲକ୍ଷଣେ ଯେଣେ ଭେଦି ॥
କୃଷ୍ଣେ ସମର୍ପ ସର୍ବ ଲାଭ । ସଙ୍ଗେ ସେବିବ ସାଧୁଭାବ ॥
ଯେଣେ ଈଶ୍ୱର ଆରାଧନ । କରିବ ଶ୍ରବଣ କୀର୍ତ୍ତନ ॥
ସେ ବିଷ୍ଣୁ କଥାର ଶ୍ରବଣ । କୃଷ୍ଣର ଯେତେ ନାମ ଗୁଣ ॥
ପଦାରବିନ୍ଦ ଧ୍ୟାନବଳେ । ବନ୍ଦିବ ବଇଷ୍ଣବ ମେଳେ ॥
ବିଷ୍ଣୁଭକ୍ତଙ୍କ ପାଦ ସେବି । ଭାବ ବିହ୍ୱଳେ ବିଷ୍ଣୁ ଭାବି ॥
ଏ ଭକ୍ତିଯୋଗ ବଳେ ପ୍ରାଣୀ । ଷଡ଼ ଅଇରୀ ରିପୁ ଜିଣି ॥
ବିଷ୍ଣୁ ଚରଣେ ସେବି ନିତି । ଏଭାବେ ସଂସାରୁ ତରନ୍ତି ॥
ଏବେ ଅସୁର ସୁତେ ଶୁଣ । ଜୀବର ଯେଣେ ପରିତ୍ରାଣ ॥
ବିଷ୍ଣୁ ଚରଣେ ସେବି ନିତି । ଏଭାବେ ସଂସାରୁ ତରନ୍ତି ॥

ଲୀଳା ଶରୀରେ ଯେତେ କଳା । ଅନ୍ୟାନ୍ୟଗୁଣେ ଯେତେଖେଳା ॥
ସେ କଥା ଶୁଣି କର୍ଣ୍ଣଦ୍ୱାରେ । ପୁଲକ ଯାହାର ଶରୀରେ ॥
ହରଷେ ଅଶ୍ରୁଜଳ ବହେ । କଣ୍ଠେ ଗଦ୍‌ଗଦ ବାଣୀ କହେ ॥
ଆନନ୍ଦେ କହେ କୃଷ୍ଣବାଣୀ । ଉଚ୍ଚେ ରୋଦଇ ତାହା ଶୁଣି ॥
ନୃତ୍ୟ କରଇ ବେନି ପାଦେ । ହରଷେ କହେ ଉଚ୍ଚନାଦେ ॥
ଭୂତ ଗନ୍ଧର୍ବ ଗ୍ରହ ଯେହ୍ନେ । ଲାଗିଲେ ଭୋଳ ହନ୍ତି ଜନେ ॥
ଉନ୍ମତ୍ତ ହୋଇ ଭାବବଳେ । ହୁଂକାର ନାଦେ କୃଷ୍ଣ ବୋଲେ ॥
ଜନଙ୍କୁ ବିଷ୍ଣୁପ୍ରାୟ ମଣେ । ନମଇଁ ତାହାଙ୍କ ଚରଣେ ॥
ତୁଣ୍ଡେ ବୋଲନ୍ତି ହରି ହରି । ଭୋ ଜଗନ୍ନାଥ ଦଇତ୍ୟାରି ॥
ହେ ନାରାୟଣ ଯଦୁପତି । ନିର୍ଲ୍ଲଜ ପ୍ରାୟ ବହେ ମତି ॥
ଏମନ୍ତ ଭାବେ ଯେତେବେଳେ । ଭଜଇ ବିଷ୍ଣୁ ପାଦତଳେ ॥
ଅଶେଷ କର୍ମବନ୍ଧ ପାଶ । ତକ୍ଷଣେ ଯାଏ ତାର ନାଶ ॥
କୃଷ୍ଣ ଚରଣେ ଭାବ କରେ । ଅଶେଷ ବନ୍ଧହିଁ ନିସ୍ତରେ ॥
କୃଷ୍ଣର ଭାବେ ହୁଏ ଶୁଦ୍ଧି । ଚେତନା ଅହଙ୍କାର ବୁଦ୍ଧି ॥
ମନର ବାହାର ଅନ୍ତରେ । ନିର୍ମଳ ପ୍ରକାଶେ ଶରୀରେ ॥
କର୍ମ ବାସନା ବୀଜବଳେ । ଜୀବ ସଞ୍ଚରେ ଏ ଅନଳେ ॥
ବିଷ୍ଣୁ ଭକତି ଯୋଗବଳେ । ପ୍ରକାଶେ ପ୍ରକାଣ୍ଡ ଅନଳେ ॥
ସେ ଅଗ୍ନିତେଜେ କର୍ମବୀଜ । ତକ୍ଷଣେ ହୁଅଇ ଦହିଯ୍ୟ ॥
କର୍ମ ବିନାଶେ ଜୀବ ତରେ । ନିଶ୍ଚିନ୍ତେ ବିଷ୍ଣୁ ଆଶ୍ରେ କରେ ॥
କୃଷ୍ଣ ଆଶ୍ରୟ ପ୍ରାଣୀଙ୍କର । ଶୁଭ ଅଶୁଭ ହୁଏ ଦୂର ॥
ଏ ଶୁଭାଶୁଭ ଚକ୍ରେ ଥାଇ । ପ୍ରାଣୀ ଅଶେଷ ଜନ୍ମ ପାଇ ॥
ସଂସାର ଚକ୍ର ଦୃଢ଼ପାଶ । ହରି ଭଜନେ ହୁଏ ନାଶ ॥
ଏ ଜୀବ ବଦ୍ଧ ମୋକ୍ଷ ହୋଇ । ବ୍ରହ୍ମନିର୍ବାଣେ ପଶେ ଯାଇ ॥
ପଣ୍ଡିତ ଜନଙ୍କର ମତ । ବିଷ୍ଣୁ ଭଜନ ବ୍ରହ୍ମତତ୍ତ୍ୱ ॥
ବାଳକେ ମୋର ବୋଲ କର । ବେଳହୁ ଗୋବିନ୍ଦ ସୁମର ॥
ହରିଙ୍କୁ ଭଜ ଦୃଢ଼ମନେ । କି ଦୁଃଖ କୃଷ୍ଣ ଉପାସନେ ॥
ହରି ଅଶେଷ ପ୍ରାଣୀ ଦେହେ । କ୍ଷୁଦ୍ର ଆକାଶ ପ୍ରାୟ ରହେ ॥
ଆତ୍ମାର ସଖା ପଦ୍ମନାଭ । ଅନ୍ୟ ଭଜନେ କିବା ଲାଭ ॥
ଦେଖ ଏ ଧନ ଦାରା ସୁତ । ପଶୁ କୁଞ୍ଜର ଧ୍ୱଜ ଛତ୍ର ॥
ନାନା ସମ୍ପଦ ଅର୍ଥ କାମ । କ୍ଷଣ ଭଙ୍ଗୁର ସର୍ବ ଜାଣ ॥
ସ୍ୱପନ ପ୍ରାୟ ମିଥ୍ୟା ହନ୍ତି । ଜୀବଙ୍କୁ କିବା ଏ କରନ୍ତି ॥
ସମ୍ପତ୍ତି ନୁହଇ ନିଶ୍ଚଳ । ଯେସନେ ସମୁଦ୍ର ଉଲ୍ଲୋଳ ॥
ଏହା ନ ଜାଣି ସର୍ବଜନେ । ଏ ମାୟା ନିଗମ ବଚନେ ॥
ଯଜ୍ଞ ଆରମ୍ଭେ କରି କର୍ମ । ଆଶ୍ରୟ ମୂଳେ ହନ୍ତି ଭ୍ରମ ॥
ସେ ଯଜ୍ଞଫଳ ବେନିଲୋକେ । ଆବୋରି ଭୁଞ୍ଜେ ଏକେ ଏକେ ॥

କର୍ମ ଚଳିଲେ ପୁଣି ଚଳେ । ଭ୍ରମଇ ଏ ମାୟା ଶୟଳେ ॥
ଅଦୃଷ୍ଟ କୃତ କର୍ମଫଳ । କେବେହେଁ ନୁହଇ ନିର୍ମଳ ॥
ଏ କର୍ମ ଦୂରେ ପରିହରେ । ଆତ୍ମାକୁ ମାୟାରୁ ଉଦ୍ଧରେ ॥
ଅନ୍ତରେ ଆତ୍ମା ସୁଖ ଲଭେ । କୃଷ୍ଣ ଚରଣେ ଭକ୍ତିଭାବେ ॥
ଯେ ଅର୍ଥେ ପ୍ରାଣୀ ଇହଲୋକ । କର୍ମେ ଆସକ୍ତ ଏକେ ଏକେ ॥
ସେ କର୍ମ ଦେଇ ହରିପାଦେ । ନିଷ୍କାମ ଭାବରେ ଆନନ୍ଦେ ॥
ନିର୍ମଳ ଚିତ୍ତେ ହରି ଭାବେ । ସେ ପ୍ରାଣୀ ମୋକ୍ଷଫଳ ଲଭେ ॥
ଦୁଃଖ ବିନାଶେ ସୁଖ ଅର୍ଥେ । ପ୍ରାଣୀ ଭ୍ରମନ୍ତି ଏ ଜଗତେ ॥
ଆପଦ ଦୁଃଖ ଭୁଞ୍ଜେ ନିତ୍ୟେ । ସୁଖ ନ ମିଳେ କଦାଚିତେ ॥
ଅଶେଷ ଭୋଗ କାମ ଅର୍ଥେ । କର୍ମ କରଇ ପ୍ରାଣୀ ନିତ୍ୟେ ॥
ସେ ଫଳ ପରଲୋକେ ପାଇ । ମିଳଇ ଅବା ନ ମିଳଇ ॥
ଯେ ଦେହପାଇଁ କର୍ମମାନ । କରଇ ଭକ୍ଷେ ତାକୁ ଶ୍ୱାନ ॥
ଏ ଦାରାସୁତ ଗୃହ ଧନ । ରାଜ୍ୟ ଭଣ୍ଡାର ଭୃତ୍ୟ ଜନ ॥
ମହତ ଆବୃତେ ଏ ଥାନ୍ତି । ଦିଶନ୍ତି ପୁଣି ନ ଦିଶନ୍ତି ॥
ଏ ତୁଚ୍ଛ ପ୍ରାୟେ ଦେହ ତୁଲେ । ସର୍ବେ ନାଶନ୍ତି ଅନ୍ତଃକାଳେ ।
ଅନର୍ଥ ଅର୍ଥ ପ୍ରାୟ ମଣି । ମାୟା ସମୂହେ ସର୍ବପ୍ରାଣୀ ॥
ଏ ନିତ୍ୟ ଆନନ୍ଦେ ସାଗରେ । ଚିତ୍ତ ମଜାଅ ନିରନ୍ତରେ ॥
ଦେହ ଧାରଣେ ଏତେ ଲାଭ । ଅସୁର ମତି ଛାଡ଼ି ଭାବ ॥
ଦେଖ ଏ ସଂସାର ଧାରଣ । ଜନ୍ମହୁଁ ଯାବତ ମରଣ ॥
ଏମନ୍ତେ ଅଶେଷ ଉପାୟେ । ଜୀବର ନାଶ ସର୍ବ ହୁଏ ॥
କର୍ମ ସଂଯୋଗେ ଦେହ ବହି । ନିରତେ କର୍ମକୁ ସଞ୍ଚଇ ॥
ଜନ୍ମ ମରଣ କର୍ମଫଳେ । ଭୁଞ୍ଜଇ ଅବିବେକ ବଳେ ॥
ଏ ଘେନି ଧର୍ମ ଅର୍ଥ କାମ । ଏ ତିନି ଜୀବର ଯେ ଭ୍ରମ ॥
ଏଣୁ ଭ୍ରମଇ ନିରନ୍ତରେ । କ୍ଷଣେ ନ ରହେ ସୁଖଘରେ ॥
ଏଣୁ ସଂଶୟ ଦୂରକରି । ଅନ୍ତରେ ଭଜ ନରହରି ॥
ଆତ୍ମାର ସ୍ୱରୂପେ ଈଶ୍ୱର । ଚିତ୍ତ ନିର୍ମଳେ ଆଶ୍ରେ କର ॥
ହରି ସ୍ୱକୃତ ପଞ୍ଚଭୂତେ । ଜନ୍ମ କରାଇ ସ୍ୱ ଆୟତେ ॥
ସଂଯୋଗେ ଶରୀର ପ୍ରକାଶେ । କର୍ମ ସରିଲେ ଦେହ ନାଶେ ॥
ଦେବ ଅସୁର ନର ଯେବେ । ଯକ୍ଷ ଗନ୍ଧର୍ବ ହରିଭାବେ ॥
ଭଜନ୍ତି ମୁକୁନ୍ଦ ଚରଣେ । ସେ ଜୀବ ପରମ କାରଣେ ॥
ବିପ୍ର ଦେବତା ଋଷି ହୋଇ । ଯେବେ କୃଷ୍ଣଙ୍କୁ ନ ଭଜଇ ॥
ଅନେକ ବିଦ୍ୟା ବାଦ କରେ । ଶଉଚ ବ୍ରତକୁ ଆଚରେ ॥
ଅନେକ ଦିନ ତପ ସାଧି । ଅଷ୍ଟାଙ୍ଗ ଯୋଗ କର୍ମ ବିଧି ॥
କରି ସମସ୍ତ କ୍ରିୟା ଯେତେ । ନାନା ଉପାୟ ଏ ଜଗତେ ॥
ଅଜ୍ଞାନ ବିଡ଼ମ୍ବନ ଏହି । ଏଣେ ଗୋବିନ୍ଦଙ୍କୁ ନ ପାଇ ॥
ନିର୍ମଳ ଭକ୍ତି ଅନ୍ତର୍ଗତେ । ଯେବେ କରଇ ଅବିରତେ ॥
ତେବେ ଲଭଇ ଭଗବାନ । ଅନ୍ୟଥା ସର୍ବ ବିଡ଼ମ୍ବନ ॥
ଏଣୁ ଗୋବିନ୍ଦ ପାଦେ ଭଜ । ଅସୁରବୁଦ୍ଧି ଦୂରେ ତେଜ ॥
ସେ ଆତ୍ମା ସୁବୁଦ୍ଧି ବିବେକ । ଆତ୍ମା ସମାନେ ସର୍ବ ଦେଖ ॥
ସକଳ ଘଟେ ଏକା ହରି । ସୂକ୍ଷ୍ମ ସ୍ୱରୂପେ ଅଛି ପୂରି ॥
ଏ ଭାବ ଜାଣି ଏ ଶୟଳେ । ଅନେକ ପ୍ରାଣୀ ନିସ୍ତରିଲେ ॥
ଅସୁର ଯକ୍ଷ ରକ୍ଷଗଣ । ସ୍ତ୍ରୀ ଶୂଦ୍ର ଚାଣ୍ଡାଳ ପ୍ରମାଣ ॥
ମୃଗ ପତଙ୍ଗ ପାପଜୀବେ । ସର୍ବେ ତରିବେ ବିଷ୍ଣୁଭାବେ ॥
ଏ ଜୀବଲୋକେ ଯେ ଦୁର୍ଲ୍ଲଭ । ଏମନ୍ତ ଚିତ୍ତେ ହରି ଭାବ ॥
ଜ୍ଞାନଲୋଚନେ ସର୍ବେ ଦେଖ । ଆତ୍ମାକୁ ଆତ୍ମ ଭାବେ ରଖ ॥
ବୋଲଇ ବିପ୍ର ଜଗନ୍ନାଥ । ଜନ ବିସ୍ତାରେ ଭାଗବତ ॥
ସପ୍ତମସ୍କନ୍ଧେ ହରିଲୀଳା । ଭବସମୁଦ୍ରକୁ ଏ ଭେଳା ॥
ଅସୁର ପୁତ୍ରଙ୍କର ଭାବେ । ପ୍ରହ୍ଲାଦ ଦୟା ଅନୁରାଗେ ॥
ଯେତେ କହିଲି ହରିବାଣୀ । ସୁଜନେ ତର ଏହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଅସୁରବାଳକ ବୋଧନେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ନାରଦ ଉବାଚ

ବାଳକେ ସାବଧାନେ ଶୁଣି । ବୋଲନ୍ତି ମନେ ମନେ ଗୁଣି ॥
ଏ ଗୁରୁ ବଚନ ନୁହଇ । ଏଣେ ଆମ୍ଭର କାର୍ଯ୍ୟ ନାହିଁ ॥
ପ୍ରହଲାଦର ମୁଖ ଚାହିଁ । ଏମନ୍ତ ଭାଳି ସର୍ବେ ଯାଇ ॥
ଗୁରୁଙ୍କ ଆଗେ ଜଣାଇଲେ । ସଂକ୍ଷେପି ସକଳ କହିଲେ ॥
ଶିଶୁ ବଚନ ଶୁଣି ଗୁରୁ । ମନେ ଚିନ୍ତିଲା ମହାମେରୁ ॥
ଏକାନ୍ତ ବୁଦ୍ଧି ତ ଏହାର । ଅନ୍ୟେ ଅଲକ୍ଷ୍ୟ ଅଗୋଚର ॥
ସତ୍ୟ ସଂଯୋଗ ଆବୋରିଲା । ବାଳକ ବୁଦ୍ଧି ନାଶଗଲା ॥
ଯେବେ ଏହାର ବୋଲେ ଥିବେ । ସର୍ବବାଳକ ନାଶଯିବେ ॥
ଏମନ୍ତ ହୃଦରେ ବିଚାରି । ରାଜଦଣ୍ଡକୁ ଭୟକରି ॥
ବେଗେ ରାଜାର ଆଗେ ବସି । ବିସ୍ତାରି କହିଲା ବିଶେଷି ॥
ଅସୁର ଶୁଣି ସର୍ବକଥା । ମନେ ପାଇଲା ଗୁରୁଚିନ୍ତା ॥
ପୁତ୍ରର ଅନ୍ୟାୟ ବଚନ । ଶୁଣି ଅସୁର ଛନ୍ନଛନ୍ନ ॥
କ୍ରୋଧେ କମ୍ପଇ ତା ଶରୀର । ସର୍ପ ଯେସନେ ଫୁଫୁକାର ॥
ଅନେକମତେ ବିଚାରିଲା । ପୁତ୍ର ମରଣେ ମନ ଦେଲା ॥

ଗୁରୁଙ୍କ ବାକ୍ୟ କର୍ଣ୍ଣେ ଶୁଣି । ପ୍ରଚଣ୍ଡ କୋପେ ବୀରମଣି ॥
ଆଡ଼ ନୟନେ ଅନାଇଲା । ପାପିଷ୍ଟପଣେ ଭୟ କଲା ॥
ବିଶ୍ୱାସପଣେ ସେ ଦଇତ । ସ୍ୱଭାବେ ତାର ଶାନ୍ତ ଦାନ୍ତ ॥
କରଅଞ୍ଜଳି ଦେଇ ମାଥେ । ପ୍ରହ୍ଲାଦ ପିତାର ଅଗ୍ରତେ ॥
ଚରଣ ଅଗ୍ରେ ଶିରଦେଇ । ସର୍ବ ବାଳକେ ମେଳ ହୋଇ॥
ଏମନ୍ତେ ପୁତ୍ରକୁ ଅନାଇଁ । ଚିତ୍ତେ ପ୍ରଳୟ କୋପବହି ॥
ଗର୍ଜ୍ଜଇ ବହି ମନେ କୋପ । ପାଦେ ପ୍ରହାରେ ଯେହ୍ନେ ସର୍ପ ॥
ସ୍ୱଭାବେ ଦାରୁଣ ଅସୁର । ଦିଶଇ ଯେହ୍ନେ ଦିବାକର ॥

## ହିରଣ୍ୟକଶିପୁ ଉବାଚ

ଦୁର୍ବୁଦ୍ଧି ଦୁଷ୍ଟ କୁଳାନ୍ତକ । ଅଧର୍ମୀ ମହାପାପୀ ବୃକ ॥
ସୁଜ୍ଞଜନଙ୍କ ବାକ୍ୟ ଦୂର । ଦୁଃଶୀଳ ଦୁଷ୍ଟ ଦୁରାଚାର ॥
ମୋହର କୋପେ ତିନିପୁର । ଭୟେ କମ୍ପନ୍ତି ଥରହର ॥
ତ୍ରାସେ କମ୍ପନ୍ତି ଦିଗପାଳେ । ନକ୍ଷତ୍ର ଗଗନ ମଣ୍ଡଳେ ॥
ଧିକ ତୋ ଜ୍ଞାନ ମୂଢ଼ପଣେ । ମୋ ଆଜ୍ଞା ଭାଙ୍ଗୁ ଅପ୍ରମାଣେ ॥
ତୁ ପୁତ୍ର ମୋର କୁଳାଙ୍ଗାର । ଆଜ ପେଷିବି ଯମପୁର ॥
କାହାର ବୋଲେ ଦୁଷ୍ଟପଣେ । ମୋ ବୋଲ ଭାଙ୍ଗୁ ଅକାରଣେ ॥

## ପ୍ରହ୍ଲାଦ ଉବାଚ

ଶୁଣ ରାଜନ ମୋର ବାଣୀ । ତୁମ୍ଭେ ତ୍ରିଲୋକରେ ବରଣି ॥
ଯେ କଥା ଉଚିତ ମୋହର । କହଇ ଶୁଣ ନୃପବର ॥
ଯେଉଁ ପ୍ରଭୁର ବଳେ ମୁହିଁ । ନୀଚକୁ ସମାନ ଜାଣଇ ॥
ତୋର ମୋହର ଆଦିକରି । ଅପରେ ଯେତେ ଦେହଧାରୀ ॥
ଜଗତେ ମହାବଳୀ ଯେତେ । ସ୍ଥାବର ଜଙ୍ଗମ ସହିତେ ॥
ବ୍ରହ୍ମାଦି ଯେତେ ସୁରାସୁରେ । ଯାର ଚରଣେ ପୂଜା କରେ ॥
ସେରୂପେ କର୍ମ କାଳରୂପୀ । ଯଜ୍ଞ ଶରୀର ବିଶ୍ୱବ୍ୟାପୀ ॥
ପ୍ରାଣୀଙ୍କ ବଳ ପ୍ରାଣ ସେହି । ବାହ୍ୟ ଅନ୍ତରେ ସମ ହୋଇ ॥
ଇନ୍ଦ୍ର ଦେବତା ଇନ୍ଦ୍ରିଗଣ । ଇନ୍ଦ୍ରିୟ ବଶର କାରଣ ॥
ସେ ବିଶ୍ୱ ସଂସାର ସର୍ଜ୍ଜଇ । ତ୍ରିଗୁଣ ମାୟା ସଙ୍ଗେ ନେଇ ॥
ଭୁଞ୍ଜଇ ଅଶେଷ ଶରୀରେ । କ୍ରୀଡ଼ାର ଅନ୍ତେ ଅନ୍ତକରେ ॥
ଏହା ତୁ ଜାଣି ତାକୁ ସ୍ମର । ଅସୁର ଭାବ ଦୂର କର ॥
ଆତ୍ମାର ଭାବେ ଆତ୍ମା ରଖ । ସକଳ ଘଟେ ସମ ଦେଖ ॥
ଯେ ଭାବେ ରିପୁ ମିତ୍ର ନାହିଁ । ସେ ଭାବେ ରହ ମନଦେଇ ॥
ମିତ୍ର ଉଦାସ ଶତ୍ରୁଗଣେ । ହରିହୁଁ ନାହିଁ ଅନ୍ୟ ଜଣେ ॥
ଏ ଭାବ ଚିନ୍ତି ହେ ପିଅର । ହରି ସନ୍ତୋଷେ କର୍ମ କର ॥
ତୁ ଯେ ବୋଲାଉ ବୀରମଣି । ତ୍ରିଲୋକ ଦଶଦିଗ ଜିଣି ॥
ଏ ତିନି ଭୁବନ ଆବୋରି । ଭୁଞ୍ଜ ତୁ ଅକଣ୍ଟକ ଶିରୀ ॥
ଜଗତେ ରିପୁ ତୋର ନାହିଁ । କହିବି ଶୁଣ ମନଦେଇ ॥
ବ୍ରହ୍ମାଣ୍ଡେ ଯେ ଅଛନ୍ତି ପୁଣ । ଏକଦ୍ ଦେହ ପରିମାଣ ॥
ଯେ ଷଡରିପୁ କାମଆଦି । ହୃଦୟ ମଧ୍ୟେ ଛନ୍ତି ଭେଦି ॥
ମନକୁ କରି ସେନାପତି । ଆତ୍ମା ସମ୍ପଦ ଲୁଟୁଛନ୍ତି ॥
ଏ ଦଶଇନ୍ଦ୍ରି ଦିଗପାଳେ । ଆତ୍ମାକୁ ନାଶନ୍ତି ସମୂଳେ ॥
ଏହାଙ୍କୁ ଦେହେ ନ ନିବାରି । ମୁଁ ବୀର ବୋଲି ଗର୍ବକରି ॥
ଏହାଙ୍କୁ ଜିଣିଲୁ କେମନ୍ତେ । ଏବେ ହୋ ଦୃଢ଼ କର ଚିତ୍ତେ॥
ଏମନ୍ତେ ପ୍ରହଲାଦ ବାକ୍ୟେ । ଅସୁର ଦେହ କୋପେ କମ୍ପେ॥
ବୋଲଇ ପୁତ୍ରମୁଖ ଚାହିଁ । ନିଶ୍ଚେ ମରିବୁ ଆଜ ତୁହି ॥
ଅଧିକ କେତେ କଥା କହୁ । ତୁ ଯେ ଅସୁର ତନୁ ବହୁ ॥
ମୃତ୍ୟୁ ଯାହାର ସନ୍ନିଧାନ । ମନୁ ହରଇ ତାର ଜ୍ଞାନ ॥
ଆତ୍ମାର ଗତି ନ ପ୍ରମାଣି । ବାଳୁତ ଭାବେ କହୁ ବାଣୀ ॥
ଜୀବନେ ଭାବ ନାହିଁ ତୋର । ବଚନ କହୁ ଅଗୋଚର ॥
ଏ ତିନିପୁରେ ମୁଁ ଈଶ୍ୱର । ମୋ ତହୁଁ ଅଛି କେବା ପର ॥
କାହାର ବୋଲେ ତୁ ପାମର । ମୋ ବାକ୍ୟ ଅବଜ୍ଞା ତୋହର॥
ସ୍ଥାବର ଜଙ୍ଗମ ସହିତେ । ମୁହିଁ ପାଳଇ ଏ ଜଗତେ ॥
ମୋ ତହୁଁ କେବା ଅଛି ଭିନ୍ନେ । ଈଶ୍ୱର ଏ ତିନି ଭୁବନେ ॥
ତୁ ଯେବେ ବୋଲୁ ଦୃଢ଼କରି । ଦୃଶ୍ୟେ ଅଦୃଶ୍ୟେ ଅଛି ପୂରି ॥
ଆଜ ତୁ ମୋହର ସମ୍ମୁଖେ । ହରିକୁ ଦେଖାଅ ପ୍ରତ୍ୟକ୍ଷେ ॥
ସେ ଯେବେ ସର୍ବ ବ୍ୟାପିଥାଇ । ଏ ସ୍ତମ୍ଭେ କିପାଁ ନ ଦିଶଇ ॥
ତୁ ଯେ ବୋଲାଉ ତାର ସଖା । ପ୍ରତ୍ୟକ୍ଷେ ସ୍ତମ୍ଭ ମଧ୍ୟେ ଦେଖା ॥
ଆଜ ହାଣିବି ତୋର ଶିର । କେମନ୍ତେ ରଖେ ଚକ୍ରଧର ॥
ଏମନ୍ତେ ପିତାର ବଚନେ । ପ୍ରହ୍ଲାଦ ଭୟ କଲା ମନେ ॥
ବାଳକ ବିଷ୍ଣୁର ବିଶ୍ୱାସେ । ଚଞ୍ଚଳେ ଚାହିଁ ଦଶଦିଶେ ॥
ଦେଖିଲା ସ୍ତମ୍ଭମଧ୍ୟେ ହରି । ଶଙ୍ଖ କମଳ ଚକ୍ରଧାରୀ ॥
ଉଦଣ୍ଡ ଗଦା ଶୋଭେ କରେ । ଦେଖିଲା ସମ୍ଭର ଭିତରେ ॥
ବୋଲଇ ପିତା ମୁଖ ଚାହିଁ । କପୋଳେ ବେନିକର ଦେଇ॥
ଭୋ ତାତ ସ୍ତମ୍ଭମଧ୍ୟେ ହରି । ଦେଖ ପ୍ରତ୍ୟକ୍ଷେ ଛନ୍ତି ପୂରି ॥
ଏମନ୍ତେ ପୁତ୍ରମୁଖୁ ଶୁଣି । କୋପେ ଉଠିଲା ଶିରଝୁଣି ॥
ପୁତ୍ରକୁ ଚାହିଁ କୋପଦୃଷ୍ଟି । ଓଷ୍ଠ ଚାପିଲା ଦନ୍ତପାଟି ॥
ତୀକ୍ଷ୍ଣ ଖଡ଼ଗ ଧରି କରେ । ଅସୁର ଉଠି କୋପଭରେ ॥
ସ୍ତମ୍ଭକୁ ଚାହିଁ କୋପଦୃଷ୍ଟି । ପ୍ରହାର କଲା ବାମମୁଷ୍ଟି ॥
ତକ୍ଷଣେ ଘୋର ନାଦକରି । ସ୍ତମ୍ଭ ମଧ୍ୟରେ ଦଇତ୍ୟାରି ॥

ଅତି ଦୁଃସହ ଘୋର ନାଦେ । ବ୍ରହ୍ମାଣ୍ଡ ପୂରିଲା ଶବଦେ ॥
ବ୍ରହ୍ମାଦି ତ୍ରିଭୁବନ ଲୋକେ । ଭୟେ କମ୍ପିଲେ ଏକେ ଏକେ॥
ଶବଦ ଯେହ୍ନେ ଘଡ଼ଘଡ଼ି । ବ୍ରହ୍ମାଣ୍ଡ ପଡ଼ିଲା କି ଛିଡ଼ି ॥
ଅଦ୍ଭୁତ ଘୋରନାଦ ଶୁଣି କୋପେ ଧାଇଁଲା ଖଡ଼୍ଗ ଘେନି॥
ଦେଖି କମ୍ପିଲେ ଦିଗପାଳ । ଧଇଲା ପ୍ରହ୍ଲାଦ ବାଳ ॥
ଦେଖିଲା ସ୍ତମ୍ଭେ କେହି ନାହିଁ । ବୋଇଲା ପୁତ୍ରମୁଖ ଚାହିଁ ॥
ଆଜ ପେଷିବି ଯମପୁର । ଦେଖା ତୋ କାହିଁ ଚକ୍ରଧର ॥
ତକ୍ଷଣେ ଭକତବତ୍ସଳ । ଦେଖିଲେ ଭୃତ୍ୟର ବିକଳ ॥
ଯେ ହରି ସର୍ବଭୂତେ ପୂରି । ତାର ବଚନ ସତ୍ୟକରି ॥
ସ୍ତମ୍ଭର ମଧ୍ୟେ ରୂପ ଧରି । ଯେସନେ ବିକ୍ରମ କେଶରୀ ॥
ଅଦ୍ଭୁତ ରୂପ ଦେବରାୟେ । ଶୋହେ ମନୁଷ୍ୟ ପଶୁକାୟେ ॥
ଅଦ୍ଭୁତ ରୂପ ଭୟଙ୍କର । ଦେଖି ବିଚାରଇ ଅସୁର ॥
ଏ ରୂପ ଦେଖିଲା ତ ନାହିଁ । ସ୍ତମ୍ଭେ ଏ ପ୍ରକାଶିଲା କାହିଁ ॥
ଦଗ୍ଧ ସୁବର୍ଣ୍ଣ ପ୍ରାୟେ ବର୍ଣ୍ଣ । କର୍କଶ ପିଙ୍ଗଳ ଲୋଚନ ॥
ସ୍ଫୁରିତ କେଶର କମ୍ପନେ । ଜଳଦେ ଉଡିଲେ ଗଗନେ ॥
ବିସ୍ତାର ତୁଣ୍ଡ ବେନି କଲେ । ଜିହ୍ୱା ବୁଲାଇ ଅନ୍ତରାଳେ ॥
ବିକଟ ଦନ୍ତ ବେନି ପାଟି । ନିଷ୍ଠୁର ଚଞ୍ଚଳ ଭ୍ରୂକୁଟି ॥
ଊର୍ଦ୍ଧ୍ୱେ ଟଳଇ କର୍ଣ୍ଣ ଦୁଇ । ଗିରି ଗୁହାର ପ୍ରାୟ ହୋଇ ॥
ନାସିକା ରନ୍ଧ୍ର ଅନ୍ଧକାର । ବିସ୍ତାର ହନୁ ମହାଘୋର ॥
ଗ୍ରୀବାର ତନୁ ଦୀର୍ଘ ବିଶେ । ମସ୍ତକ ଲାଗଇ ଆକାଶେ ॥
ଚନ୍ଦ୍ର ଗଉର ତନୁରୁହ । ବିଶ୍ୱପୂରିତ ବିଶ୍ୱଦେହ ॥
କର ଚରଣ ନଖାୟୁଧ । ତା ଦେଖି କମ୍ପିଲେ ବିବୁଧ ॥
ଅସୁରେ ପଳାଇଲେ ତ୍ରାସେ । ଭୟେ ପଶିଲେ ଦଶଦିଶେ ॥
ଏମନ୍ତ ରୂପ ଦେଖି ଆଗେ । ଦାନବପତି ମହାରାଗେ ॥
ଗଦା ବୁଲାଇ ଦକ୍ଷକରେ । ପିଟିଲା ନୃସିଂହ ଉପରେ ॥
ପୁଣି ପ୍ରହାରେ ବାମବକ୍ଷେ । ଦେବେ ଦେଖନ୍ତି ଅନ୍ତରୀକ୍ଷେ ॥
ଅତି ବିକ୍ରମ ତେଜ ଦେଖି । ନୃସିଂହ ଉନ୍ମୀଳିତ ଆଖି ॥
କର ପ୍ରସାରି ନରହରି । ତକ୍ଷଣେ ଅସୁରକୁ ଧରି ॥
ଗଦା ଯେ ଅଛି ତାର ହସ୍ତେ । ସର୍ପକୁ ଗରୁଡ଼ ଯେମନ୍ତେ ॥
ତକ୍ଷଣେ ଦାନବଙ୍କ ପତି । ହସ୍ତରୁ ଖସି କରେ ଗତି ॥
ଗରୁଡ଼ ହସ୍ତୁ ଯେହ୍ନେ ଅହି । ପଡ଼ି ଗର୍ଜଇ ବ୍ୟସ୍ତ ହୋଇ ॥
ଓଷ୍ଠ କାମୋଡ଼ି ଅତି ବଳେ । ଦେଖି ଡ଼ରିଲେ ଦିଗପାଳେ ॥
ଅସାଧ ଦେଖି ଦେବଗଣ । ମେଘେ ଲୁଚିଲେ ତତକ୍ଷଣ ॥
ନୃସିଂହ ହସ୍ତୁ ଗଲା ଚଳି । ଦେବେ ଭାଳନ୍ତି ଶୂନ୍ୟେ ମିଳି॥

ପୁଣି ଧାଇଁଲା ନାଦ କରି । ତକ୍ଷଣେ ଖଡ଼୍ଗ ଚର୍ମ ଧରି ॥
ତମେ ଶୋଭିତ ଶତଚନ୍ଦ୍ର । ଦୁର୍ଜ୍ଜୟ ଅସୁର ନରେନ୍ଦ୍ର ॥
ଖଡ଼୍ଗ ମଣ୍ଡଳ ଗତି ଦେଖି । ଭୟେ ବୁଜିଲେ ସର୍ବେ ଆଖି ॥
ଶୂନ୍ୟେ ଉଡଇ ବାହୁବଳେ । ପୁଣି ମିଳଇ ଭୂମିତଳେ ॥
ପ୍ରଚଣ୍ଡ ହସେ ନରହରି । ତକ୍ଷଣେ ଅସୁରକୁ ଧରି ॥
ହୃଦେ ଚାପନ୍ତେ ପୁଣି ଗଳି । ତଳେ ପଡ଼ିଲା ମହାବଳୀ ॥
ପୁଣି ଧରନ୍ତି ଅତି ବେଗେ । ବଳେ ଉଛୁଡ଼େ ଦଶଦିଗେ ॥
ମାର୍ଜ୍ଜାର ମୂଷିକକୁ ଯେହ୍ନେ । ଧଇଲେ ରାକ୍ଷସକୁ ତେହ୍ନେ ॥
ସ୍ୱଭାବେ ଦୁର୍ଜ୍ଜୟ ଅସୁର । ବଜ୍ରହୁଁ କଠିନ ଶରୀର ॥
ଊରୁ ଉପରେ ନରହରି । ଉତ୍ତାନ କରି ତାକୁ ଧରି ॥
ବାମ ଦକ୍ଷିଣ ଧରି କରେ । ଲୀଳା ମାତ୍ରକେ ନଖାଙ୍କୁରେ ॥
ରୋଷେ ହୁଁକାର ନାଦକରି । ହୃଦୟ କମଳ ବିଦାରି ॥
ଦେବେ ଦେଖନ୍ତି ଥାଇ ଶୂନ୍ୟେ । ସର୍ପକୁ ଗରୁଡ଼ ଯେସନେ ॥
ଅସୁର ହୃଦୟ ରୁଧିରେ । ତିନ୍ତିଲା ଲଲାଟ କେଶରେ ॥
ସିଂହ ଯେସନେ ହସ୍ତୀ ମୁଣ୍ଡେ । ବସି ବିଦାରେ ଦନ୍ତ ତୁଣ୍ଡେ ॥
ଅସୁର ହୃଦୟ କମଳ । ନଖେ ବିଦାରି ମହାବଳ ॥
କୋପେ ଚାହାନ୍ତେ ଦଶଦିଶେ । ଦୈତ୍ୟେ ମିଳିଲେ ଆସି ପାଶେ॥
ନାନାଦି ଅସ୍ତ୍ର ଧରି କରେ । ପିଟିଲେ ନୃସିଂହ ଉପରେ ॥
ତାହାଙ୍କୁ ଧରି ତତକ୍ଷଣ । ନଖେ ବିଦାରି କଲେ ରଣ ॥
ସହସ୍ର ସହସ୍ର ଅସୁର । ସମରେ ଗଲେ ଯମପୁର ॥
ଅସୁର ବଳ କୋପେ ମାରି । ବେଗେ ଧାଇଁଲେ ନରହରି ॥
ନୃସିଂହ ଜଟାର ସ୍ୱରଶେ । ଜଳଦେ କମ୍ପିଲେ ଆକାଶେ ॥
ଗ୍ରହ ନକ୍ଷତ୍ର ମାଳ ମାଳ । ସ୍ୱର୍ଗୁ ପଡ଼ିଲେ ମହୀତଳ ॥
ନିଃଶ୍ୱାସ ବାତେ ସିନ୍ଧୁଜଳ । ହୋଇଲେ ଅତ୍ୟନ୍ତ ଚଞ୍ଚଳ ॥
ନୃସିଂହ ଶବ୍ଦେ ଦିଗପନ୍ତି । ଭୟରେ ଚିତ୍କାର କରନ୍ତି ॥
ଦେବେ ଗଗନୁ ଗଲେ ତ୍ରାସେ । ଭୟେ ଦିଶିଲେ ଦଶଦିଶେ ॥
ସକଳ ଅସୁର ସଂହାରି । ବିଜୟ କଲେ ନରହରି ॥
ବସିଲେ ଅସୁର ଆସନେ । ଯେହୁ ପୂଜିତ ତ୍ରିଭୁବନେ ॥
ଦେଖି ଅସୁରେ ପଳାଇଲେ । ଯେ ଅବା ଅବଶେଷେ ଥିଲେ॥
ଶସ୍ତ୍ର ଧରନ୍ତା କେହି ନାହିଁ । ଚଞ୍ଚଳେ ଚଉଦିଗ ଚାହିଁ ॥
ଏମନ୍ତେ ଅସୁର ସଂହାରି । ସଭାର ମଧ୍ୟେ ବିଜେ ହରି ॥
ହିରଣ୍ୟକଶିପୁ ଅସୁର । ତ୍ରୈଲୋକ୍ୟ ମଧ୍ୟେ ଥିଲା ବୀର॥
ସଂଗ୍ରାମେ ହରି ତା ଜୀବନ । ସୃଷ୍ଟି ରଖିଲେ ଭଗବାନ ॥
ଅସୁର ନିଧନ ସମ୍ବାଦେ । ବିବୁଧେ ପରମ ଆନନ୍ଦେ ॥
ନନ୍ଦନ ବନୁଁ ପୁଷ୍ପ ତୋଳି । ଶୂନ୍ୟେ ସକଳ ଦେବେ ମିଳି॥

ହରଷ ଲୋଚନେ ଅନାଇଁ । ମଙ୍ଗଳସ୍ୱରେ ଗୀତ ଗାଇ ॥
ମିଳି ସକଳ ସୁରନାରୀ । ସାନନ୍ଦେ ପୁଷ୍ପବୃଷ୍ଟି କରି ॥
ଶୂନ୍ୟେ ଅସୁର ଭୟେ ଭାଜି । ଥିଲେ ଯେ ଦଶଦିଶେ ରାଜି ॥
ଗଗନେ ବିମାନ ସଙ୍କୁଳେ । ମିଳିଲେ ଦଶଦିଗପାଳେ ॥
ଦୁନ୍ଦୁଭି ବାଦ୍ୟ ନାଦ କଲେ । ଗନ୍ଧର୍ବ ଅପସରା ମେଳେ ॥
ଆନନ୍ଦ ହେଲେ ସୁରନାରୀ । ହସନ୍ତି ନୃତ୍ୟ ଗୀତ କରି ॥
ବ୍ରହ୍ମା ଶଙ୍କର ଇନ୍ଦ୍ର ତୁଲେ । ଋଷିଏ ପିତୃ ସିଦ୍ଧ ମେଳେ ॥
ଉରଗ ବିଦ୍ୟାଧରଗଣ । ମାନବ ପ୍ରଜାପତି ପୁଣ ॥
ମିଳିଲେ ଗନ୍ଧର୍ବ ଚାରଣ । ଯକ୍ଷ ଯେ କିଂ ପୁରୁଷଗଣ ॥
ଆବର ବେତାଳ କିନ୍ନର । ଏ ଆଦି ଅଶେଷ ଅମର ॥
ମିଳିଲେ ବିଷ୍ଣୁ ପାରିଷଦ । ସନନ୍ଦ ସନକ ମୁକୁନ୍ଦ ॥
କର ଅଞ୍ଜଳି ଶିରେ ଦେଇ । ମିଳିଲେ ବିଷ୍ଣୁ ପାଶେ ଯାଇ ॥
ପ୍ରଚଣ୍ଡ ତେଜ ମହାଘୋର । ଭୟେ ରହିଲେ କିଛି ଦୂର ॥
ସର୍ବେ ରହିଲେ ଦୂର ହୋଇ । ସମୀପେ ନ ପାରିଲେ ଯାଇ ॥
ଶଙ୍କିତ ଚିତ୍ତ ସର୍ବ ଲୋକେ । ସ୍ତୁତି କରନ୍ତି ଏକେ ଏକେ ॥

## ବ୍ରହ୍ମା ଉବାଚ

ଅଦ୍ଭୁତ ଅନନ୍ତ ମୂରତି । ଦୁରନ୍ତ ଯାହାଙ୍କର ଶକ୍ତି ॥
ଯେ କରେ ଜଗତ ପାଳନ । ସୃଜଇ ସ୍ଥିତି ସଂହାରଣ ॥
ବିଚିତ୍ରବୀର୍ଯ୍ୟ ଯାର ନାମ । ଯେ କରେ ସର୍ବ ଶୁଭକର୍ମ ॥
ଅଶେଷ ଯାହାର ମହିମା । କେ ବର୍ଣ୍ଣିପାରେ ଗୁଣସୀମା ॥
ସେ ପ୍ରଭୁ ଚରଣାରବିନ୍ଦେ । ପ୍ରସନ୍ନ ଅର୍ଥେ ମୁହିଁ ବନ୍ଦେ ॥
ଶ୍ରୀହରି ପ୍ରସନ୍ନ ହୁଅନ୍ତୁ । ସକଳେ ଅଭୟ ଦିଅନ୍ତୁ ॥

## ମହାଦେବ ଉବାଚ

ହେ ପ୍ରଭୁ ଭକତବତ୍ସଳ । ଦୁଷ୍ଟ ଅସୁର ବିନାଶିଲ ॥
ତା ପୁତ୍ର ଭକ୍ତ ପ୍ରହଲାଦ । ଆଶ୍ରା ନେଇଛି ତୁମ୍ଭ ପାଦ ॥
ତା ସମ ଭକ୍ତ କେହି ନାହିଁ । ରଖ ତାହାକୁ ଭାବଗ୍ରାହୀ ॥

## ଇନ୍ଦ୍ର ଉବାଚ

ଇନ୍ଦ୍ର ନୃସିଂହ ମୁଖ ଚାହିଁ । ବୋଇଲେ କର ତ୍ରାହି ତ୍ରାହି ॥
ଏ ମହାସୁର ମହାବେଗେ । ଯଜ୍ଞ ଆରମ୍ଭେ ହବିର୍ଭାଗେ ॥
ବଳେ ଭୁଞ୍ଜଇ ସେ ଆକର୍ଷି । ଆମ୍ଭ ହୃଦୟପଦ୍ମ ଗ୍ରାସି ॥
ତୁ ନାଥ ସର୍ବ ପ୍ରାଣୀଙ୍କର । ହୃଦୟପଦ୍ମେ ତୋର ଘର ॥
ସେ ପଦ୍ମ ଅସୁର ଶଶାଙ୍କେ । ମୁଦ୍ରିତ ଥିଲା ଅତିରେକେ ॥
ତୁ ଏବେ ସୂର୍ଯ୍ୟରୂପ ଧରି । ହୃଦୟପଦ୍ମ ଭେଦ କରି ॥
ତୋହର ହୃଦ ତୁ ରଖିଲୁ । ଆମ୍ଭଙ୍କୁ ଯଜ୍ଞଭାଗ ଦେଲୁ ॥
ଏ ଘୋର ସଂସାର ସାଗରେ । ପ୍ରାଣୀ ଜୀବନ ନିରନ୍ତରେ ॥
ଅଜ୍ଞାନ ମୋହିତ ଏ ନିତ୍ୟେ । କିବା କହିବୁଁ ତୋ ଅଗ୍ରତେ ॥
ତୋର ସେବକ ପ୍ରାଣୀଙ୍କର । ତୁ ନାଥ ଶରଣ ସୋଦର ॥

## ଋଷିଗଣ ଉବାଚ

ତୋର ଚରଣ ଧ୍ୟାନ ଅର୍ଥେ । ତପ ସମାଧି ଏ ଜଗତେ ॥
ତୋର ବଚନେ ଆମ୍ଭେ ରହି । ସଂସାରେ ବିପ୍ରଦେହ ବହି ॥
ସେ ତପ ସାଧିବାରୁ ବେଳେ । ହରଣ କଲା ଦୁଷ୍ଟ ବଳେ ॥
ତୋର ବଚନେ ତୋତେ ଭାବି । ଦୃଢ଼େ ପଦାରବିନ୍ଦେ ସେବି ॥
ସେ ତପ ହରିଲା ଆମ୍ଭର । ନିଜର ପ୍ରତାପେ ଅସୁର ॥
ଏବେ ତାହାକୁ ନାଶ କରି । ଆମ୍ଭର ତପସ୍ୟା ଉଦ୍ଧରି ॥
ରଖିଲୁ ଋଷିଙ୍କର ଧର୍ମ । ତୁ ନାଥ ସର୍ବକୁଳ କର୍ମ ॥

## ପିତୃଗଣ ଉବାଚ

ଆମ୍ଭର ଶ୍ରାଦ୍ଧ ତୋଷଚିତ୍ତେ । ପୁତ୍ରେ କରନ୍ତି ବେଦମତେ ॥
ଆମ୍ଭ ଦିବସ ଶ୍ରାଦ୍ଧକାଳେ । ଅସୁର ଭୁଞ୍ଜେ ଆସି ବଳେ ॥
ତିଳ ଉଦକ ଯେତେ ତୀର୍ଥେ । ପୁତ୍ରେ ଦିଅନ୍ତି ସ୍ନେହମତେ ॥
ସେ ଜଳ ବଳେ ପାନ କରେ । ଅର୍ପିତ ଦାନ ବଳେ ହରେ ॥
ଆମ୍ଭର ଜଳପିଣ୍ଡ ଯେତେ । ଥିଲା ଅସୁର ଗର୍ଭଗତେ ॥
ନଖର ଅଗ୍ରେ ତାହା ଖୋଳି । ଆମ୍ଭଙ୍କୁ ଦେଲୁ ନରହରି ॥

## ସିଦ୍ଧ ଗଣ ଉବାଚ

ଆମ୍ଭର ଯୋଗ ସିଦ୍ଧିଗତି । ବଳେ ହରିଲା ଦୈତ୍ୟପତି ॥
ତାହାକୁ ନଖେ ବିଦାରିଲୁ । ତୁ ନାଥ ଆମ୍ଭଙ୍କୁ ରଖିଲୁ ॥
ତୋର ଚରଣେ ନମସ୍କାର । ଯେଣୁ ତୁ ଶରଣ ସୋଦର ॥

## ବିଦ୍ୟାଧର ଉବାଚ

କର ପ୍ରସାରି ବିଦ୍ୟାଧରେ । ବୋଲନ୍ତି ନୃସିଂହ ଛାମୁରେ ॥
ଆମ୍ଭର ଅନ୍ତର୍ଦ୍ଧାନ ଗତି । ବଳେ ହରିଲା ଦୈତ୍ୟପତି ॥
ତାହାକୁ ପଶୁ ବଧ ପ୍ରାୟେ । ସଂହାର କଲୁ ଦେବରାୟେ ॥
ମାୟା ନୃସିଂହ ଅବତାର । ଆମ୍ଭେ ଯେ ଶରଣ ସୋଦର ॥

## ନାଗଗଣ ଉବାଚ

ଆମ୍ଭ ଫଣିରେ ଯେତେ ମଣି । ଯେ ଗୃହେ ଉତ୍ତମ ରମଣୀ ॥
ସବୁ ହରିଲା ବାହୁବଳେ । ଅଜୟ ଭୁବନ ମଣ୍ଡଳେ ॥
ସେ ଭୟ ନିବାରି ଗୋବିନ୍ଦ । ଆମ୍ଭଙ୍କୁ ଦେଲୁ ତୁ ଆନନ୍ଦ ॥
ତୁ ନାଥ ସଂସାର ଉଦ୍ଧାର । ତୋର ଚରଣେ ନମସ୍କାର ॥

## ମନୁଗଣ ଉବାଚ

ବିଧାତା ବଂଶେ ଅବତରି । ତୋର ଆଦେଶ ଶିରେ ଧରି ॥

ମନୁଷ୍ୟ ବୋଲାଇ ଜଗତେ । ଥାଉ ଯେ ତୋହର ଆୟତେ ॥
ଧର୍ମେ ସଂସାର ଜନ ପାଳୁ । ତୁ ନାଥ ପରମ ଦୟାଳୁ ॥
ତୁମ୍ଭ କିଙ୍କର ଆମ୍ଭ ଦେହ । କିବା କରିବୁ ଆଜ୍ଞା ଦିଅ ॥

## ପ୍ରଜାପତିଗଣ ଉବାଚ

ତୋ ପ୍ରଜା ସୃଷ୍ଟିର ପାଳନେ । ଆମ୍ଭଙ୍କୁ ନାନା ଜୀବମାନେ ॥
ରଖିଲୁ ପ୍ରଜାପାଳ କରି । ଆମ୍ଭେ ଯେ ତୋର ଆଜ୍ଞାଧାରୀ॥
ସୃଷ୍ଟି ପାଳନ କରି ଭଲେ । ମାନବ ପ୍ରଜାପତି ତୁଲେ ॥
ଅସୁର ଭୟ ଚିତ୍ତେ ବହି । ସ୍ଥାନ ନ ପାଇ ଆମ୍ଭେ ରହି ॥
ସେ ଏବେ ତୋର ନଖ ଘାତେ । ମରି ପଡ଼ିଛି ଭୂମିଗତେ ॥
ତୁ ସତ୍ୟ ପ୍ରଭୁ ଚକ୍ରଧର । ଏବେ ନୃସିଂହ ଅବତାର ॥
ଜଗତ ମଙ୍ଗଳ ବିଧାନ । ସଂସାର ରଖ ଭଗବାନ ॥

## ଗନ୍ଧର୍ବ ଗଣ ଉବାଚ

ଭୋ ନାଥ ତୋହର ବଚନେ । ନିତ୍ୟେ ଦେବଙ୍କ ସନ୍ନିଧାନେ ॥
ନୃତ୍ୟ ଖଟଣି ଗୀତସ୍ୱରେ । ବିବିଧ ଅନେକ ପ୍ରକାରେ ॥
ଗୀତ ଖଟଣି ରତିରସେ । ନିରତେ ଖଟୁ ଅବକାଶେ ॥
ତୋହର ଚରଣ ପ୍ରସାଦେ । ଆମ୍ଭେ ବର୍ତ୍ତିଲୁ ଅପ୍ରମାଦେ ॥
ଭୟେ ନ ପାରୁ ଆମ୍ଭେ ରହି । ତୋର ବଚନେ ନିତ୍ୟେ ଥାଇ॥
ଉତ୍ପଥଗାମୀ ଜନଙ୍କର । କେବେହେଁ ନାହିଁ ସୁଖ ସାର॥

## ଚାରଣଗଣ ଉବାଚ

ଭୋ ଦେବ ଚରଣେ ତୁମ୍ଭର । ଭୋଗାପବର୍ଗ ସୁଖ ଘର ॥
ସଂସାର ନିବୃତ୍ତି କାରଣ । ଭୋ ନାଥ ତୋହର ଚରଣ ॥
ସେ ପାଦସେବା ଆମ୍ଭେ ଛାଡ଼ି । ଅସୁର ଘରେ ବନ୍ଦି ପଡ଼ି ॥
ସେ ମନଦୁଃଖ ଏବେ ଗଲା । ଯେବେ ଅସୁର ବୀର ମଲା ॥

## ଯକ୍ଷଗଣ ଉବାଚ

ସେବକମୁଖ୍ୟ ଆମ୍ଭେ ତୋର । ନିରତେ ଚରଣେ କିଙ୍କର ॥
ମନୋଜ୍ଞ ସାଧୁଗଣ ପୁରେ । ତୋର ଚରଣ ଏଡ଼ି ଦୂରେ ॥
ଆମ୍ଭଙ୍କୁ ନିତ୍ୟ ଦୁଃଖ ଦେଇ । ବାହନ କରି ନିତ୍ୟେ ବାହି ॥
ସେ ପୁଣି ଜନ ପରିତାପେ । ପ୍ରାଣ ହାରିଲା ତୋ ସମୀପେ ॥

## କିଂପୁରୁଷ ଗଣ ଉବାଚ

ତୁ ମହାପୁରୁଷ ଈଶ୍ୱର । ଆମ୍ଭେ କିଙ୍କର ନାଥ ତୋର ॥
କୁତ୍ସିତ ପୁରୁଷ ଏ ଦୁଷ୍ଟ । ସାଧୁ ବର୍ଜିତ ମହାକଷ୍ଟ ॥
ଅନ୍ୟାୟ କର୍ମ ଆଚରିଲା । ତୋର ପ୍ରତାପେ ନାଶଗଲା ॥

## ବୈତାଳିକା ଗଣ ଉବାଚ

ଆମ୍ଭେ ସାଧୁଙ୍କ ସଙ୍ଗ ମଧ୍ୟେ । ଯଜ୍ଞ ଆରମ୍ଭ ପରିବନ୍ଧେ ॥
ତୋର ନିର୍ମଳ ଯଶ ଗାଇ । ସତ୍ୱରେ ପୂଜାବିଧି ପାଇ ॥
ଆନନ୍ଦେ ପୂଜୁଁ ସାଧୁମେଳେ । ଅସୁର ଉପଦ୍ରବ ବଳେ ॥
ତୋହର ଶତ୍ରୁ ନାଶଗଲା । ଆମ୍ଭଙ୍କୁ ମହାସୁଖ ହେଲା ॥
ଏ ଆମ୍ଭ ଦେହେ ବ୍ୟାଧି ଥିଲା । ତୁମ୍ଭର ତେଜେ ନାଶଗଲା ॥

## କିନ୍ନରଗଣ ଉବାଚ

ତୋର କିଙ୍କରଗଣ ଆମ୍ଭେ । ତୋ ଅନୁଗ୍ରହେ ଥାଉ ଦମ୍ଭେ ॥
ଏ ଦିତିପୁତ୍ର ମହାଦୁଷ୍ଟ । ଆମ୍ଭଙ୍କୁ ଦେଲା ମହାକଷ୍ଟ ॥
ତୁମ୍ଭେ ଏ ଅସୁର ମାରିଲ । ଆମ୍ଭର ମାନ ଉଦ୍ଧାରିଲ ॥
ତୁ ନାଥ ଦେବଙ୍କର ବର । ଆମ୍ଭର ଭୟ ନାଶ କର ॥

## ବିଷ୍ଣୁପାରିଷଦ ଗଣ ଉବାଚ

ଭୋ ନାଥ ଏ ରୂପ ତୋହର । ଦୈତ୍ୟ ମାୟାବୀ ଭୟଙ୍କର ॥
ଅଦ୍ଭୁତ ଦେଖି ସର୍ବଜନେ । ଭୟେ କମ୍ପିଲେ ତ୍ରିଭୁବନେ ॥
ତାହାଙ୍କ କର୍ମଦାତା ତୁହି । ଆମ୍ଭଙ୍କୁ ନାଥ କର ତ୍ରାହି ॥
ଯେଣୁ ନାଶିଲ ମହାସୁର । ଆମ୍ଭଙ୍କୁ ଅନୁଗ୍ରହ ତୋର ॥
ଏମନ୍ତେ ନୃସିଂହ ସମୀପେ । ସ୍ତୁତି ବଚନ ଏକେ ଏକେ ॥
କହି ରହିଲେ ତୋଷମନେ । ଏବେ ହୋ ଶୁଣ ସାବଧାନେ॥
ନାରଦ ଯୁଧିଷ୍ଠି ଅଗ୍ରତେ । ଯାହା କହିଲେ ଭାଗବତେ ॥
ଅଦ୍ଭୁତ ନୃସିଂହ ଚରିତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ନୃସିଂହ ଅବତାର ହିରଣ୍ୟକଶିପୁ ବଧୋ ନାମ ଅଷ୍ଟମୋଽଧ୍ୟାୟଃ ।*

# ନବମ ଅଧ୍ୟାୟ

## ନାରଦ ଉବାଚ

ବ୍ରହ୍ମାଦି ଯେତେ ଦେବଗଣେ । ନୃସିଂହ ମୂରତି ଭୀଷଣେ ॥
କାତରେ ନା ନା ସ୍ତୁତି କଲେ । ସମୀପେ ରହି ନ ପାରିଲେ ॥
ଲକ୍ଷ୍ମୀଙ୍କୁ ଆଣି ଦେବଗଣେ । ବିଶ୍ୱାସେ ନମିଲେ ଚରଣେ ॥
ବୋଲନ୍ତି ଶୁଣ ଜଗନ୍ମାତ । ଶାନ୍ତ କରାଅ ତୋର କାନ୍ତ ॥
ଦେବଙ୍କ ବଚନେ କମଳା । ଭାବେ କେତେହେ ଦୂର ଗଲା॥
ଅଦୃଷ୍ଟ ଉଗ୍ରରୂପ ଚାହିଁ । ଭୟରେ ନ ପାରିଲେ ଯାଇ ॥
ନିକଟେ ପ୍ରହ୍ଲାଦ ଆଣି । ବିଶ୍ୱାସେ କହେ କୁଶପାଣି ॥
ନୃସିଂହ ପାଶେ ବେଗେ ଯାଅ । ସ୍ତୁତିରେ ତୋଷକରି କହ ॥
ଭୟେ ନ ପାରୁ ଆମ୍ଭେ ଯାଇ । ତକ୍ଷଣେ ବ୍ରହ୍ମା ଆଜ୍ଞା ପାଇ ॥

ନୃସିଂହ ନିକଟେ ମିଳଇ । କରଅଞ୍ଜଳି ଶିରେ ଦେଇ ॥
ଚରଣ ତଳେ ଶିର ଦେଇ । ନମିଲା ଦଣ୍ଡବତ ହୋଇ ॥
ଦେଖି ନୃସିଂହ ଦୟାଚିତ୍ତେ । ସାନନ୍ଦେ ଧରି ତାକୁ ହସ୍ତେ ॥
ଭୂମିରୁ ତୋଳି ବସାଇଲେ । ହସ୍ତପଙ୍କଜ ଶିରେ ଦେଲେ ॥
ସେ ପଦ୍ମହସ୍ତର ମହିମା । କି ଗୁଣେ କରିବା ଉପମା ॥
କାଳ ଭୁଜଙ୍ଗ ଭୟେ ଯାଇ । ଯେ ପ୍ରାଣୀ ଶରଣ ପଶଇ ॥
ସେ ପଦ୍ମକର ରଖେ ତାରେ । ପ୍ରାଣୀ ବଞ୍ଚଇ ସୁଖଭରେ ॥
ନୃସିଂହ କର ଲାଗି ଶିରେ । ଅଶୁଭ ଗଲା ଅତି ଦୂରେ ॥
ତକ୍ଷଣେ ଜ୍ଞାନ ପ୍ରକାଶିଲା । ସ୍ୱଭାବେ ଅସୁରର କଳା ॥
ନୃସିଂହ ଚରଣ କମଳେ । ମନ ନିରୋପିଲା ନିଶ୍ଚଳେ ॥
ଲୋମ ପୁଲକ ତାର ଦେହୀ । ଆନନ୍ଦେ ଅଶ୍ରୁଜଳ ବହି ॥
ଏକାଗ୍ର ମନ ଦୃଢ଼ କରି । ସେ ରୂପ ଅନ୍ତର୍ଗତେ ପୂରି ॥
କରଅଞ୍ଜଳି ବେନି ପାଣି । ପ୍ରେମ ପୁଲକେ କହେ ବାଣୀ ॥
ବ୍ରହ୍ମାଦି ଦେବଙ୍କ ବିଷୟେ । ଯେଣେ ନୃସିଂହ ଦୟା ବହେ ॥
ଆତ୍ମାର ନିସ୍ତାରଣ ଅର୍ଥେ । ସଂସାରୁ ତରିବା ନିମନ୍ତେ ॥
ତ୍ରିଚତ୍ୱାରିଂଶ ପଦ ଶ୍ଳୋକେ । ସ୍ତୁତି କରଇ ଏକେ ଏକେ ॥

## ପ୍ରହ୍ଲାଦ ଉବାଚ

ବ୍ରହ୍ମାଦି ସିଦ୍ଧ ମୁନିଗଣେ । ସ୍ୱଭାବେ ସାତ୍ତ୍ୱିକ ଲକ୍ଷଣେ ॥
ଅମୃତ ବଚନ ପ୍ରବାହେ । ନିର୍ମଳ ବିଶୁଦ୍ଧ ହୃଦୟେ ॥
ନାନା ପ୍ରକାରେ ସ୍ତୁତିକରି । ଆରାଧି ନ ପାରିଲେ ହରି ॥
ମୁ ଛାର ଅସୁର ହୋଇଣ । କାହୁଁ ତୋଷିବି ନାରାୟଣ ॥
ଧନ କୌଳିନ୍ୟ ଜନ ତପ । ପ୍ରଭାବ ଶ୍ରୁତି ତେଜରୂପ ॥
ବଳ ପୌରୁଷ ବୁଦ୍ଧିଯୋଗ । ବିଭୂତି ସୁବିପୁଳ ଭୋଗ ॥
ଏ ଆଦି ଯେତେ ଗୁଣଗ୍ରାମ । ନ ହୁଏ ବିଷ୍ଣୁ ତୋଷେ କ୍ଷମ ॥
ଭକ୍ତିରେ ଭଗବାନ ତୋଷ । ଗଜର ପୂର୍ଣ୍ଣ କଲେ ଆଶ ॥
ବିପ୍ର ଦ୍ୱାଦଶ ଗୁଣେ ଯୁକ୍ତ । ସେ ଯେବେ ନୁହେ ବିଷ୍ଣୁଭକ୍ତ
ସେ ବିପ୍ର ଶ୍ରେଷ୍ଠ ନ ବୋଲାଇ । ସଂସାରୁ ତରିବ ସେ କାହିଁ ॥
ଯେବେ ଦ୍ୱାଦଶ ଗୁଣ ଧରେ । ସେ ବିପ୍ର ସଂସାର ବେଢାରେ
ସ୍ୱଭାବେ ସତ୍ୟ ସମ ଦମ । ଅହିଂସା ତପ କ୍ଷମା ଧର୍ମ ॥
ଆର୍ଜ୍ଜବ ଦାନ ବ୍ରତ ଧୃତି । ଶଉଚ ଶ୍ରୁତ ଆଦିକୃତି ॥
ଦ୍ୱାଦଶ ବ୍ରାହ୍ମଣ ଲକ୍ଷଣ । ବେଦେ ବର୍ଣ୍ଣିତ ଯେତେ ଗୁଣ ॥
ଏମନ୍ତ ବିପ୍ର ହୋଇ ଯେବେ । ଭକ୍ତି ନ କରେ ବିଷ୍ଣୁଭାବେ ॥
ଚଣ୍ଡାଳ ଜନ୍ମ ହୋଇ ଯେବେ । ମନ ବଚନେ ବିଷ୍ଣୁଭାବେ ॥
ଆତ୍ମା ପବିତ୍ର ଯେବେ କରେ । ଚଣ୍ଡାଳ ଜନ୍ମ ସେ ନିସ୍ତରେ ॥
ବ୍ରାହ୍ମଣ ସର୍ବମାନ୍ୟ ହୋଇ । ଆତ୍ମା ଉଦ୍ଧରି ନ ପାରଇ ॥
ସେ ହରି ନିତ୍ୟଭାବେ ବର୍ଣ୍ଣ । ଆତ୍ମା ପ୍ରକାଶ ନିରଞ୍ଜନ ॥
ସେ କାହିଁ ଅଜ୍ଞାନ ସଂକଷ୍ଟେ । ଆବର ପ୍ରଜା ନାନା କଷ୍ଟେ ॥
ତେଣୁ ସେ ଦୟାଳୁ ବୋଲାଇ । ଏଣୁ ଭରସା ପ୍ରାଣୀ ବହି ॥
କରନ୍ତି ପୂଜାବିଧି ଯେତେ । ଆତ୍ମ ମଙ୍ଗଳ ପ୍ରାପ୍ତି ଅର୍ଥେ ॥
ସ୍ୱଭାବେ ନିଜ ଆତ୍ମାଦେଶ । ଯେସନେ ଦର୍ପଣେ ପ୍ରକାଶ ॥
ତେଣୁ ଭରସା କଲି ମୁହିଁ । ଈଶ୍ୱର ମହିମା ବର୍ଣ୍ଣଇ ॥
ଯଦ୍ୟପି ନୀଚେ ଜନ୍ମ ମୋର । ସ୍ତବରେ ନାହିଁ ଅଧିକାର ॥
ତଥାପି ବୁଦ୍ଧି ଅଳ୍ପ ମୋର । ମନ ବଚନେ ଅଧିକାର ॥
ମନ ବଚନେ ଏ ସଂସାରେ । ଅବିଦ୍ୟା ଅଶେଷ ପ୍ରକାରେ ॥
କର୍ମର ବଳେ ସଞ୍ଚରଇ । ହରି ଭଜନେ ଏ ତରଇ ॥
ତୁ ସତ୍ୟ ଧର୍ମ ଦାମୋଦର । ମୁହିଁ ଯେ କିଙ୍କର ତୋହର ॥
ବ୍ରହ୍ମାଦି ଯେତେ ଦେବଗଣେ । ସେ ସର୍ବେ ତୋହର ଚରଣେ
ତୋତେ ଡରନ୍ତି ଭୟେ ଚିତ୍ତେ । ପାଦେ ସେବନ୍ତି ଅବିରତେ ॥
ଏଣୁ ସଂସାର ରକ୍ଷାଅର୍ଥେ । ତୋ ଅବତାର ଏ ଜଗତେ ॥
ଏଣୁ ଏ କୋପ ତୁ ସଂହର । ତୁ ନାଥ ଜଗତ ଈଶ୍ୱର ॥
ତୁ ଯେ ଅସୁର ହତ କଲୁ । ସଂସାର ଭୟ ନିବାରିଲୁ ॥
ଆନନ୍ଦ ସାଧୁଙ୍କର ମନେ । ସର୍ପ ମୂଷିକ ନାଶେ ଯେହ୍ନେ ॥
ଲୋକ ନିବୃତ୍ତ ଉପାଦାନେ । ଭଜିଲେ ତୋହର ପ୍ରସନ୍ନେ ॥
ଏବେ ଏ ଭୀମରୂପ ହର । ଶୁଣ ହୋ ପ୍ରଭୁ ଚକ୍ରଧର ॥
ଜିହ୍ୱା ଚଞ୍ଚଳ ସୌଦାମିନୀ । ପ୍ରଳୟାନ୍ୱିତ ନେତ୍ର ବେନି ॥
ଭ୍ରୁକୁଟି କୁଟିଳ ପ୍ରଚଣ୍ଡ । ଦଂଷ୍ଟ୍ରା କରାଳ ପାଟି ତୁଣ୍ଡ ॥
ଅସୁର ହୃଦୟ ରୁଧିରେ । ଅଙ୍ଗେ ତୋ ପୁଷ୍ପମାଳା ଭରେ ॥
କେଶର ଦିଶେ ଗୌରବର୍ଣ୍ଣେ । ରୁଧିରେ ରଙ୍ଗ ବେନି କର୍ଣ୍ଣେ ॥
ତୁମ୍ବର ଘୋରନାଦ ଶୁଣି । ପ୍ରଳୟ ବଜ୍ର ପ୍ରାୟେ ମଣି ॥
ଅଇରାବତ ଆଦି ନାଗେ । ପଳାଇ ଗଲେ ଅଷ୍ଟଦିଗେ ॥
ଅନଳ ପ୍ରାୟେ ନଖ କାନ୍ତି । ଅସୁର ରୁଧିର ପିବନ୍ତି ॥
ଏମନ୍ତ ରୂପ ତୋର ଚାହିଁ । ଭୋ ନାଥ ମୋର ଭୟ ନାହିଁ
ତୁ ନାଥ ଶରଣବତ୍ସଳ । ଅଭୟ ଆତ୍ମା ଆଦିମୂଳ ॥
ସଂସାରେ ତୋର ଚକ୍ରେ ପଡ଼ି । ଆତ୍ମାର ନିଜପଥ ଛାଡ଼ି ॥
ଯେ ମାୟାଚକ୍ରେ ଜୀବ ଘେନି । ବୃଥା ଭ୍ରମଇ ନାନାଯୋନି ॥
ସେ ଚକ୍ରେ ବଧ ମୋ ଜୀବନ । ଏଣୁ ହରଇ ନିଜ ଜ୍ଞାନ ॥
ଶରଣ ତୋ ପାଦ କମଳେ । ତ୍ରାହି କରିବ ଆଦିମୂଳେ ॥
ତୋତେ ନ ଭଜି ନାରାୟଣ । ମୋର ଜୀବନ ଗତି ଶୂନ୍ୟ ॥

ଏ ଘୋର ସଂସାର ସାଗରେ । ଜନ୍ମ ମରଣ ଅଭ୍ୟନ୍ତରେ ॥
ସଂଯୋଗ ବିଯୋଗ ଅଞ୍ଚାନେ । ଦୁଃଖ ଯେ ସୁଖ ହୁତାଶନେ ॥
ଏ ଦେହେ ସର୍ବଦୋଷ ବ୍ୟାଧି । ତୋର ଚରଣ ମହୌଷଧି ॥
ସେ ପାଦ ଛାଡ଼ି ମୁହିଁ ଦୂରେ । ଭ୍ରମଇ ଘୋର ଅନ୍ଧକାରେ ॥
ଏବେ ଏମନ୍ତ ଆଜ୍ଞା କର । ଯେମନ୍ତେ ପାଦେ ସେବୁଁ ତୋର
ତୁ ନାଥ ପ୍ରାଣୀଙ୍କ ଜୀବନ । ପ୍ରିୟ ଦେବତା ବନ୍ଧୁଜନ ॥
ତୋର କୀର୍ତ୍ତନ ଲୀଳାକଥା । ବିରଞ୍ଚି ସଭାମଧ୍ୟେ ଗୀତା ॥
ମୁଁ ତୋର ଲୀଳାଭାବ ଗୁଣି । ତରିବି ଭବ ତରଙ୍ଗିଣୀ ॥
ସେ ପାଦପଦ୍ମ ମନ ମଧ୍ୟେ । ଯେ ଅବା ଚିନ୍ତନ୍ତି ଆନନ୍ଦେ ॥
ତାହାଙ୍କ ସଙ୍ଗ ମୋତେ କର । ଏ ମାୟାସଂସାରୁ ଉଦ୍ଧର ॥
ବାଳକ ରକ୍ଷଣ ସଂସାରେ । ପିତା ମାତାହୁଁ ନାହିଁ ପରେ ॥
ଭୀଷଣ ସମୁଦ୍ର ଲଙ୍ଘନେ । ପ୍ରାଣୀଙ୍କୁ ନଉକା ଯେସନେ ॥
ପଥ ତୃଷିତ ପ୍ରାଣୀ ଯେହ୍ନେ । ଜୀବନ ରଖେ ଜଳପାନେ ॥
ତେମନ୍ତେ ତୋହରି ଚରଣ । ଏଣୁ ମୁଁ ପଶିଲି ଶରଣ ॥
ଭୋ ନାଥ ତୋର ମାୟାବଳେ । ପ୍ରକୃତି ଏ ମାୟା ଶୟଳେ ॥
କାଳର ବଳେ ସଙ୍ଗ ହୋଇ । ଯାହାକୁ ଯେଣେ ସଂଯୋଗଇ॥
ଏଣେ କାହାକୁ ନ ଯୋଗାଇ । ସେ ଫଳ ପରହସ୍ତେ ଦେଇ ॥
ତାକୁ ଆସଇ କାହିଁ ଥୋଇ । କାହାକୁ କାହା ନେଇ ଦେଇ ॥
ଜୀବନ କରେ ନାନାଗତି । ଏମନ୍ତ ପ୍ରଧାନ ପ୍ରକୃତି ॥
ସେ ଜୀବ ତାର ସଙ୍ଗେ ରହେ । ଭାବେ ଭ୍ରମଇ ସର୍ବଦେହେ ॥
ଏ ଜୀବ ତୋର ଅଂଶୁ ଜାତ । ଯାହାର ବଶ ଏ ଜଗତ ॥
ତାହାକୁ କର୍ମମୟ କରି । ଏ ମାୟା ଯମରୂପ ଧରି ॥
କାଳର ବଳେ ବଶ ହୋଇ । ବେଦ ବଚନେ ବଦ୍ଧ ଯହିଁ ॥
ସଂସାର କ୍ରୀଡ଼ା ଘେନି କରେ । କର୍ମ ଭ୍ରମଇ ଅତି ଖରେ ॥
ଦଶଇନ୍ଦ୍ରିୟ ମନ ସଙ୍ଗ । ଶବ୍ଦ ସ୍ପରଶ ରୂପ ଗନ୍ଧ ॥
ରସେ ରସଇ ସର୍ବକାଳେ । ଏମନ୍ତେ ଭ୍ରମେ ସବୁବେଳେ ॥
ଏମନ୍ତ ଚକ୍ରେ ଜୀବ ବସି । କର୍ମ ବିଷୟା ରସେ ରସି ॥
ଚକ୍ରେ ଭ୍ରମଇ ଦୁଃଖ ସହି । ତାବତ ଆତ୍ମା ମୋକ୍ଷ କାହିଁ ॥
ନିତ୍ୟ ବିଜିତ ଆତ୍ମାଗୁଣ । ସ୍ୱତେଜ ବଳେ ନାରାୟଣ ॥
କାଳକୁ ଆତ୍ମା ବଶକରି । ବିସର୍ଗ ଶକ୍ତିକୁ ଆବୋରି ॥
ସେ ସୃଷ୍ଟି କାଳଚକ୍ରେ ଥାଇ । ସେ ଚକ୍ରେ ଜୀବକୁ ବସାଇ ॥
ପେଡ଼ଇ ଇକ୍ଷୁଯନ୍ତ୍ର ପ୍ରାୟେ । ତେଣୁ ପୀଡଇ ମୋର କାୟେ॥
ଏବେ ମୁଁ ତୋ ଚରଣଗତେ । ଚକ୍ରୁଁ ଉଦ୍ଧର ନାଥ ମୋତେ ॥
ଏବେ ମୁଁ ଦେଖିଲି ପ୍ରତ୍ୟକ୍ଷେ । ଭୋ ନାଥ ମୋହର ସମକ୍ଷେ ॥

ବ୍ରହ୍ମାଣ୍ଡ ମଧ୍ୟେ ଯେତେ ଦେବା । ମନୁଷ୍ୟ କରି ତାଙ୍କୁ ସେବା ॥
ଇଚ୍ଛନ୍ତି ଅଇଶ୍ୱର୍ଯ୍ୟ ଭୋଗ । ସାତ୍ତ୍ୱିକ ସଂଯୋଗ ବିଯୋଗ ॥
ଏ ଦେବେ ମୋର ପିତାତ୍ରାସେ । ଦଣ୍ଡେ ନ ଥାନ୍ତି ଅବକାଶେ ॥
ଦୃହାସ ଭ୍ରୂକୁଟି କୁଟିଳ । ଭୟେ ଡରଇ ଆଖଣ୍ଡଳ ॥
ତୁ ଏବେ ଏହାକୁ ସଂହାରି । ରଖିଲୁ ସର୍ବଦେବ ଶିରୀ ॥
ତେଣୁ ମୁଁ ପ୍ରାଣୀଙ୍କ ବିଶ୍ୱାସେ । ଯେ ଫଳ ଏ ଭୂତ ଭବିଷ୍ୟେ॥
ଆତ୍ମା ସଂଯୋଗ ପ୍ରିୟଅର୍ଥେ । ଇନ୍ଦ୍ରିୟ ସୁଖ ପରମାର୍ଥେ ॥
ଏ ସର୍ବ ବାଞ୍ଛିତୋର ବଳେ । କାଳ ହରଇ ଅବହେଳେ ॥
ତେଣୁ ମୋହର ନାହିଁ କାର୍ଯ୍ୟ । ଚରଣେ ରଖ ଦେବରାଜ ॥
ତୋ ମାୟା ଅଶେଷ ସଂସାରେ । ସ୍ୱପ୍ନ ମୃଗତୃଷ୍ଣା ଆକାରେ ॥
ଯେ କଳେବରର ମହିମା । ଅଶେଷ ରୋଗଙ୍କର ସୀମା ॥
ଏ ସର୍ବସ୍ତୁତି ମୁହିଁ ଶୁଣି । ସ୍ୱପ୍ନ ପ୍ରାୟେକ ପରିମାଣି ॥
ଅଛଇ ତୋର ମାୟାମୋହେ । କେବେହେଁ ବିରକତ ନୁହେ॥
କାମ ଅନଳ ମଧୁ ଲବେ । କେମନ୍ତେ ନିଭିବା ସମ୍ଭବେ ॥
ମୋହର ଜନ୍ମର ଲକ୍ଷଣ । ଅଧିକ ତାମସ ପ୍ରମାଣ ॥
ଅସୁର କୁଳେ ମୋର ଦେହୀ । ତୋ ତହୁଁ ଅନ୍ୟ ମୋର ନାହିଁ
ତୁ ହସ୍ତ ମୋର ଶିରେ ଆଣି । ପ୍ରସନ୍ନେ ଦେଲୁ ପଦ୍ମପାଣି ॥
ତୋର ପ୍ରସାଦେ ପଦ୍ମନାଭ । ବ୍ରହ୍ମା ଶଙ୍କରେ ଯେ ଦୁର୍ଲ୍ଲଭ ॥
କମଳା ତୋର ପାଦେ ଥାଇ । ତୋ ପାଦ ଲଭି ନ ପାରଇ ॥
ତୋର ମହିମା ଭାବଗ୍ରାହୀ । ପର ଅପର ତୋର ନାହିଁ ॥
ଏ ଜୀବ ପରାପର ଜାଣେ । ସଂସାର ଗତି ପରିମାଣେ ॥
ଉତ୍ତମେ ସେବି ତୋ ଚରଣେ । ସେ ପ୍ରାଣୀ ଖଟେ ଅନୁକ୍ଷଣେ ॥
ସେ ପାଦ ତାରେ ଦୟା କରେ । ପ୍ରସନ୍ନେ ସର୍ବଦୁଃଖ ହରେ ॥
ସେବାନୁରୂପେ ଫଳ ଦେଇ । ପର ଅପର ତୋର ନାହିଁ ॥
ଏମନ୍ତ ଭବବନ୍ଧ କୂପେ । ଅନ୍ତେ ପୀଡ଼ିତ କାଳସର୍ପେ ॥
ସେ କୂପେ ପଡ଼ି ସର୍ବଜନେ । କାମ କଳ୍ପନ୍ତି ନିତି ମନେ ॥
ତାହାଙ୍କ ସଙ୍ଗ ଫଳ ପାଇ । ସେ କାମ କଳ୍ପୁଥାଇ ମୁହିଁ ॥
ନାରଦ ମୁନି ମହାଶୟ । ସେ ମୋତେ କଲେ ଅନୁଗ୍ରହ
ଏଣୁ ସାଧୁଙ୍କ ସଙ୍ଗେ ବଢ଼ି । ତୋଷେ ମୋ ବାଳମତି ଛାଡ଼ି
ଅନନ୍ତ ମୋ ପ୍ରାଣ ରକ୍ଷଣ । ପିତାର ମରଣ କାରଣ ॥
ଭକ୍ତବାକ୍ୟ ରକ୍ଷଣ ଅର୍ଥେ । ତୋ ଅବତାର ଏ ଜଗତେ ॥
ମୋ ପିତା ଖଡ୍‌ଗ ଧରି କରେ । ପ୍ରତିଜ୍ଞା କଲା ମୋ ଆଗରେ ॥
ବୋଇଲା ଦେଖା ତୋ ଈଶ୍ୱର । ନୋହିଲେ ଛେଦିବି ତୋ ଶିର
ମୁହିଁ ଈଶ୍ୱର ତିନିପୁରେ । ମୋ ତହୁଁ ଅଛି କେବା ପରେ॥

ଏଣୁ ମୋ ବାକ୍ୟ ସତ୍ୟ କରି । ତୋହର ରୂପ ନରହରି ॥
ତୁ ଏ ଜଗତ ରୂପ ଧରି । ସଂସାର ମଧ୍ୟେ ବିଜେକରି ॥
ପ୍ରକାଶୁ ସ୍ଥୂଳ ସୂକ୍ଷ୍ମରୂପେ । ନିର୍ଲ୍ଲେପ ହେଉ ଏକରୂପେ ॥
ସଗୁଣେ ଭକ୍ତ ଗୁଣମୟେ । ମାୟା ପ୍ରକାଶୁ ନାନାଦେହେ ॥
ବିହରୁ ଗୁଣମଧ୍ୟେ ପଶି ।କେ କହେ ତୋ ଗୁଣ ବିଶେଷି ॥
ସତ୍ୟ ଅସତ୍ୟ ଏ ଜଗତ । ତୋ ତହୁଁ ନୁହେ ଭିନ୍ନମତ ॥
ମାୟାରେ ଆତ୍ମା ପରକାରେ । ଅଶେଷ ବୁଦ୍ଧିର ବିଚାରେ ॥
ସ୍ଥିତି ପାଳକ ଅନ୍ତର୍ଦୃଷ୍ଟି । ତରୁ ପଲ୍ଲବ ପ୍ରାୟେ ସୃଷ୍ଟି ॥
ଜଗତେ ତୁହି ମାୟାବଳେ । ଆତ୍ମାରେ ଥାଉ ତୁ ନିଶ୍ଚଳେ ॥
ସୃଷ୍ଟି ସଂହାରି ମାୟାବଳେ । ନାଗଶୟନ ତୁ ନିଶ୍ଚଳେ ॥
ତୁ ନିଜ ସୁଖ ଅନୁଭବ । ନିତ୍ୟ ସ୍ୱରୂପ ପଦ୍ମନାଭ ॥
ମୁଦ୍ରିତ ଲୋଚନେ ମୁରାରି । ନିଦ୍ରାକୁ ହୃଦରେ ସଂହରି ॥
ତୁହି ଅଖିଳେ ରହୁ ତହିଁ । ଗୁଣ ସମ୍ଭବ ଆଉ ନାହିଁ ॥
ସେ ଗୁଣମାନ ତୋ ଶରୀରେ । ଚେତଇ ନିଦ୍ରା ଅଭ୍ୟନ୍ତରେ ॥
କାଳର ବଳେ ତୋ ନୟନେ । ଯୋଗ ସମାଧି ଅବସାନେ ॥
ତୋ ନାଭି ମଧ୍ୟୁ ଜଳ କୋଣ । ବୀଜ ପ୍ରକାଶେ ତତକ୍ଷଣ ॥
ବଟ ବୃକ୍ଷର ପ୍ରାୟ ହୋଇ । ପଦ୍ମ ମୃଣାଳ ପ୍ରକାଶଇ ॥
ସେ ପଦ୍ମ ମଧ୍ୟୁ ବ୍ରହ୍ମାଜାତ । ନ ଜାଣେ ଆତ୍ମାର ତଦନ୍ତ ॥
ତୁ ଜୀବ ଆତ୍ମା ତା ଶରୀରେ । ପ୍ରକାଶୁ ବାହ୍ୟ ଅଭ୍ୟନ୍ତରେ ॥
ତାହା ନ ଜାଣେ ବେଦମୁଖେ । ଆରତେ ଖୋଜିଲା ଅନେକେ॥
କାହୁଁ ଅଇଲି ବୋଲି ଚିନ୍ତି । ଭୟେ ଭାଜିଲା ପ୍ରଜାପତି ॥
ପୁଣି ପଶିଲା ପଦ୍ମନାଳେ । ଶତେ ବରଷ ଯୋଗବଳେ ॥
ଅଙ୍କୁର ମାର୍ଗେ ବୀଜ ଲୋଡ଼ି । ଭ୍ରମଇ ବହୁଦୁଃଖେ ପଡ଼ି ॥
ରହି ନ ପାରି ମହାଜଳେ । ପୁଣି ଉଠିଲା ଆସି କୂଳେ ॥
ଭାଳଇ ପଦ୍ମମଧ୍ୟେ ରହି । ତୋ ଅନ୍ତ ପାଇବ ସେ କାହିଁ ॥
ତୋତେ ନ ପାଇ ପ୍ରଜାପତି । ତପ ସାଧନେ ଦେଲା ମତି ॥
ଅନେକ କାଳ ସାଧି ତପ । ଦେଖିବା ନିମନ୍ତେ ତୋ ରୂପ ॥
ତୋ ରୂପ ଦେଖି ଅନୁମାନେ । ଭୂମିରେ ଖଦ୍ୟୋତ ଯେସନେ॥
ସହସ୍ର ବଦନ ନୟନ । ସହସ୍ର ଶିର ନାସା କର୍ଣ୍ଣ ॥
ସହସ୍ର ଉର ସସ୍ରପାଦ । ସହସ୍ର ଭୁଜେ ସସ୍ରାୟୁଧ ॥
ସେ ମାୟାମୟ ରୂପ ସୁଖେ । ବିଧାତା ଦେଖିଲା ସମ୍ମୁଖେ ॥
ତୋହର ଦେଖି ଦିବ୍ୟବେଶ । ବିଧାତା ହୋଇଲା ସନ୍ତୋଷ ॥
ବ୍ରହ୍ମାର ଅର୍ଥେ ପଦ୍ମନାଭ । ରୂପ ପ୍ରକାଶୁ ହୟଗ୍ରୀବ ॥
ବିଷ୍ଣୁର ଯୋଗନିଦ୍ରା କାଳେ । ଶ୍ରବଣୁ ମଳ ପଡ଼ି ଜଳେ ॥
ରଜ ତାମସ ଗୁଣୁଁ ଜାତ । ମଧୁ କୈଟଭ ବେନି ଭ୍ରାତ ॥
ଦେବ ଦଳନ ମହାଘୋର । ତେଜେ ପ୍ରଚଣ୍ଡ ଭୟଙ୍କର ॥
ତାହାଙ୍କୁ ମାରି ଶତ୍ରୁପଣେ । ବ୍ରହ୍ମାଙ୍କୁ କଲୁ ସର୍ମପଣେ ॥
ଏହି ପ୍ରକାରେ ନରହରି । ନୃସିଂହ ରୂପେ ଅବତରି ॥
ଦେବତା ମତ୍ସ୍ୟ ଆଦି ରୂପେ । ତୋ ଅବତାର ମହାକଳ୍ପେ ॥
ଦୁଷ୍ଟ ନିବାରି ସନ୍ଥ ପାଳୁ । ତୁ ନାଥ ପରମ ଦୟାଳୁ ॥
ଯୁଗାନୁମତେ ଧର୍ମ ଯେତେ । ତୁ ନାଥ ପାଳୁ ଏ ଜଗତେ ॥
କଳି କଳୁଷ ଆଦି ଗୁଣ । ଯୁଗ ସ୍ୱଧର୍ମେ ତୁ ପାଳିଣ ॥
ନିରତେ ମାୟାଜଡ଼େ ଛନ୍ନ । ପାପ ସଂକଳ୍ପ ଦୁଷ୍ଟମନ ॥
ଏଣୁ ତୋ କଥାମୃତେ ରତ । କେ କରି ପାରେ ଦୃଢ଼ଚିତ୍ତ ॥
କାମ ସଂକଳ୍ପେ ମୁଁ ଆତୁର । କାହିଁ ଲଭିବି ଗତି ତୋର ॥
ଏ ଦେହେ ଇନ୍ଦ୍ରିୟଙ୍କ ଗୁଣ । ଭୋ ନାଥ ସାବଧାନେ ଶୁଣ ॥
ଏ ଆତ୍ମା ରହି ହୃଦଗତେ । ଚଳଇ ଇନ୍ଦ୍ରିୟ ଆୟତ୍ତେ ॥
କ୍ଷୁଧା ଲାଳସେ ଜିହ୍ୱା ଧରେ । ତୃଷିତେ ତୃଷାବଳ କରେ ॥
ଇନ୍ଦ୍ରିୟ ଧରେ କାମ ଭୋଗେ । ଗୁହ୍ୟ ଧରଇ ମଳୋତ୍ସର୍ଗେ ॥
ଚର୍ମ ଧରଇ ଶୀତ ଘର୍ମେ । ଉଦର ଧରେ ଭକ୍ଷ କର୍ମେ ॥
ଶ୍ରବଣ ଶବ୍ଦଅର୍ଥେ ଧରେ । ଗନ୍ଧାର୍ଥେ ନାସିକା ବିବରେ ॥
ରୂପ ସଂଯୋଗେ ଦୃଷ୍ଟି କରେ । ବଳ ବିକ୍ରମ ଶକ୍ତି ଧରେ ॥
ଇନ୍ଦ୍ରିୟଗଣ କର୍ମବଳେ । ପ୍ରାଣ ନାଶନ୍ତି ଅବହେଳେ ॥
ବହୁତ ସପତଣୀ ଘରେ । ଗୃହସ୍ଥ ରମେ ନିରନ୍ତରେ ॥
ସେ ଯେହ୍ନେ ପତ୍ନୀଙ୍କ ଆୟତ୍ତେ । ନିରତେ ରମେ ନାନାମତେ ॥
ସେ ନାରୀଗଣେ ତାର ଚିତ୍ତ । କରନ୍ତି ଆପଣା ଆୟତ୍ତ ॥
ଯେ ଯାହା ମନେ ସୁଖ ଚିନ୍ତି । ସ୍ୱାମୀ ଜୀବନ ସେ ହରନ୍ତି ॥
ଏମନ୍ତ କର୍ମପାଶ ବଳେ । ବଇତରଣୀ ବ୍ରହ୍ମଜଳେ ॥
ଜନ୍ମ ମରଣ ପ୍ରାଣୀ ରହେ । ଅନ୍ୟାନ୍ୟ ଘଟଣା ବିଗ୍ରହେ ॥
ସଂସାରେ ବେଦପଥ ହୁଡ଼ି । ଯାତନା ମଧ୍ୟେ ଛନ୍ତି ପଡ଼ି ॥
ତାହାଙ୍କ ମଧ୍ୟେ ମୁହିଁ ଥାଇ । ଆତ୍ମାର ଗତି ନ ଜାଣଇ ॥
ତୋ ପାଦେ ପଶିଲି ଶରଣ । ଏଥୁ ଉଦ୍ଧର ନାରାୟଣ ॥
ଦୁଃଖୀଜନଙ୍କ ଉପକାରେ । ତୋ ସମ ନାହିଁ ଏ ସଂସାରେ ॥
ଅଶେଷ ଉପତି ପାଳନ । ଈକ୍ଷିତେ କରୁ ସଂହାରଣ ॥
ମୂଢ଼ପ୍ରାଣୀଙ୍କୁ ତୋର ଦୟା । କେ ଜାଣି ପାରେ ତୋରମାୟା॥
ଆରତଜନ ବନ୍ଧୁ ହେଉ । କରୁଣାସିନ୍ଧୁ ନାମ ବହୁ ॥
ତୋହର ସେବକ ତାରଣେ । ତୁ ନାଥ ଥାଉ ଅନୁକ୍ଷଣେ ॥
ଏଣୁ ମୋହର ଭୟ ନାହିଁ । ବଇତରଣୀ ମଧ୍ୟେ ଥାଇ ॥

ତୋର ମହିମା ଗୁଣ ଗୁଣି । ନିଷ୍କଳ ହୃଦେ ପରିମାଣି ॥
ତୋର ବିମୁଖ ଯାର ମନ । ସେ ପ୍ରାଣୀ ଜୀବନ୍ତେ ନିଧନ ॥
ଭାର ବହଇ ଅବିରତେ । କୁଟୁମ୍ବ ରକ୍ଷଣ ନିମନ୍ତେ ॥
ଇନ୍ଦ୍ରିୟ ଅର୍ଥେ ସାରେ ଦିନ । କୁଟୁମ୍ବ ସ୍ନେହେ ପରାଧୀନ ॥
ଏଣୁ ସକଳ ମୁନିଜନେ । ନିର୍ମଳ ନିଷ୍କଳ ଚେତନେ ॥
ମାୟା କଳ୍ପନା ଦୂରକରି । ମଉନବ୍ରତ ବନେଚରି ॥
ନିର୍ଜନେ ବସନ୍ତି ନିଷ୍କଳେ । ଜପନ୍ତି ପରମ ମଙ୍ଗଳେ ॥
ତାହାଙ୍କ ସାଧ ଅନୁକ୍ଷଣେ । କଷ୍ଟଇ ଭବ ଭ୍ରମବଣେ ॥
ଭ୍ରମେ ଭ୍ରମନ୍ତା ପ୍ରାଣୀଙ୍କର । ତୋ ତହୁଁ ରକ୍ଷକ କେ ଆର ॥
ଏ ଗୃହେ ମୈଥୁନାଦି ସୁଖେ । ପ୍ରାଣୀ ପଡନ୍ତି ଦୁଃଖ ଶୋକେ ॥
କଣ୍ଡୁ ଯେସନେ ନଖେ ମାଜେ । ନିମିଷ ମାତ୍ର ସୁଖ ବୁଝେ ॥
କଣ୍ଡୁ ଅନ୍ତରେ ବହେ ଦୁଃଖ । ତେସନେ ଗୃହବନ୍ଧ ସୁଖ ॥
ଏଣୁ କରମେ ଜ୍ଞାନୀଜନ । ତୋ ପାଦପଦ୍ମେ ଦେଇ ମନ ॥
ମଉନବ୍ରତ ଶୌଚ ତପ । ସ୍ୱଧର୍ମ ଅଧ୍ୟୟନ ଜପ ॥
ଏକାନ୍ତ ସର୍ବ ସେବାବିଧି । ନିର୍ମଳ ନିଷ୍କଳ ସମାଧି ॥
ଜ୍ଞାନ ଅମୃତ ଗୁରୁବାଣୀ । ସୁଜନେ ଶୁଣ ପରିମାଣି ॥
ଯେ ଅପବର୍ଗ ସାଧ ଅର୍ଥେ । ପ୍ରାଣୀଙ୍କ ମତି ସାଧୁଚିତ୍ତେ ॥
ତୋର ଚରଣେ ଭାବଗ୍ରାହୀ । ଦମ୍ଭେ ଲଭିବେ ଏହା କାହିଁ ॥
ଏ ସୃଷ୍ଟି ମଧ୍ୟେ ପଦ୍ମମୁଖ । ତୁ ନାଥ ହେଉ ସ୍ଥୁଳ ସୂକ୍ଷ୍ମ ॥
ବୀଜରୁ ଅଙ୍କୁର ଯେମନ୍ତ । ପ୍ରକାଶ କରେ ଏ ଜଗତ ॥
ଯେ ବୀଜ ଅଙ୍କୁର ତା ଦେହୀ । ତୋର ପ୍ରକାଶ ହୃଦେ ବହି ॥
ସତ୍ୟ ଲଭଇ ଅବିରତେ । ତୋ ରୂପ ନ ଜାଣନ୍ତି ଚିତ୍ତେ ॥
ଯୋଗ ସାଧନେ ସାଧେ ସାଧେ । ଅନଳ ଯେହ୍ନେ ଦାରୁ ମଧ୍ୟେ ॥
ଗଗନ ସମୀର ଅନଳ । ଅବନୀ ଆଦି ମହାଜଳ ॥
ଇନ୍ଦ୍ର ସହିତେ ଦେବଗଣେ । ଚତୁର ଅନ୍ତର କରଣେ ॥
ତୋ ଅନୁଗ୍ରହେ ଦେହ ବହି । ଗୁଣ ବିଗୁଣେ ଯେତେ ହୋଇ॥
ମନ ବଚନେ ଯେତେ କରି । ତୁ ସର୍ବରୂପ ନରହରି ॥
ନିର୍ଗୁଣ ଦମ୍ଭ ଅହଙ୍କାର । ମନ ପ୍ରକୃତି ନିରନ୍ତର ॥
ଏ ଆଦିଅନ୍ତ ମଧ୍ୟେ ଥାଇ । କେବେହେଁ ତୋତେ ନ ଜାଣଇ
ସେ ଭାବ ଜାଣି ମୁନିଜନେ । ରହିଲେ ନିଷ୍କଳେ ମଉନେ ॥
ଭୋ ନାଥ ତୋର ନାମ ସ୍ତୁତି । ତୋ ପାଦେ ଯାର ଦୃଢ଼ମତି ॥
ନିତ୍ୟେ ଚିନ୍ତିବେ ତୋ ଚରଣ । ତୋ ପୁଣ୍ୟ କଥନ ଶ୍ରବଣ ॥
ସୁପୁଣ୍ୟ କର୍ମେ ଅର୍ଚ୍ଚି ତୋତେ । ଏ ଷଡ ଭକ୍ତି ଅନୁମତେ ॥
ଯେ ଅବା ସାଧନ୍ତି ଜଗତେ । ସେ ତୋତେ ଲଭନ୍ତି ନିଶ୍ଚିନ୍ତେ॥
ତୁ ନାଥ ଅନନ୍ତ ମୂରତି । ପରମ ଜ୍ୟୋତିଙ୍କର ଜ୍ୟୋତି ॥

## ନାରଦ ଉବାଚ

ଏମନ୍ତେ ଧର୍ମସୁତ ଆଗେ । ନାରଦ ମୁନି ଅନୁରାଗେ ॥
କହନ୍ତି ସଭାମଧ୍ୟେ ବସି । ଶୁଣ ନୃପତି କୁରୁବଂଶୀ ॥
ଅସୁରସୁତ ଅନୁମତେ । ଯେତେ ବର୍ଣ୍ଣିଲା ଭକ୍ତିମତେ ॥
ଶୁଣି ସନ୍ତୋଷ ନାରାୟଣ । ଯେ ହରି ସ୍ୱଭାବେ ନିର୍ଗୁଣ ॥
ସୁପ୍ରୀତେ ତାଙ୍କୁ କୋଳେ ଧରି । ପ୍ରଚଣ୍ଡ କୋପ ପରିହରି ॥
କହନ୍ତି ମଧୁର ବଚନ । ଶୁଣ ହୋ ଅସୁର ନନ୍ଦନ ॥

## ଶ୍ରୀ ନୃସିଂହ ଉବାଚ

ସନ୍ତୋଷେ ଜାଣିଲି ତୋ ଭାବ । ଏ ନରଲୋକେ ତୁ ଦୁର୍ଲ୍ଲଭ ॥
ମୁଁ କାମପୂର୍ଣ୍ଣ ପ୍ରାଣୀଙ୍କର । ଆତ୍ମାନୁରୂପେ ମାଗ ବର ॥
ଯେ ପ୍ରୀତି ନ କରଇ ମୋତେ । ମୁଁ ତାକୁ ଦୁର୍ଲ୍ଲଭ ଜଗତେ ॥
ମୋତେ ଦେଖଇ ଯେ ନୟନେ । ତାର କି ତପ ପ୍ରୟୋଜନେ ॥
ଏ ଘେନି ଛନ୍ତି ଜ୍ଞାନୀ ଯେତେ । ଭାବେ ଭଜନ୍ତି ପ୍ରାଣୀ ମୋତେ
ଚିତ୍ତ ପ୍ରସନ୍ନେ ବର ଦେଇ । ସର୍ବ ଆଶିଷ ପୂର୍ଣ୍ଣ ମୁହିଁ ॥

## ନାରଦ ଉବାଚ

ଏମନ୍ତେ ବର ଲୋଭ କହି । ମନ ମୋହିଲେ ଭାବଗ୍ରାହୀ ॥
ଏମନ୍ତେ ଦୃଢ଼ଭକ୍ତି ତାର । ବରେ ନ କଲା ଅଙ୍ଗୀକାର ॥
ଏମନ୍ତ ମହିମା ଯାହାର । ଦେବ ମାନବେ ଅଗୋଚର ॥
ସେ ପ୍ରହ୍ଲାଦ ପାଦଗତ । ନମଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ପ୍ରହ୍ଲାଦ ନୃସିଂହ ସ୍ତୁତି ଚରିତେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

## ନାରଦ ଉବାଚ

ବିଷ୍ଣୁର ବର କଥା ଶୁଣି । ମନେ ବିଚାରେ ବୀରମଣି ॥
ଭକ୍ତିଯୋଗରୁ ବିଘ୍ନ ପ୍ରାୟ । ମଣି ପ୍ରହ୍ଲାଦ କଲା ଭୟ ॥
ହସି ନୃସିଂହ ମୁଖ ଚାହିଁ । ବୋଲଇ ଶିରେ କର ଦେଇ ॥

## ପ୍ରହ୍ଲାଦ ଉବାଚ

ଭୋ ନାଥ ଶୁଣ ଚକ୍ରଧର । ତୋର ସେବକ ମୋତେ କର
କାମେ ଆସକ୍ତି ପ୍ରାୟେ ଜାଣି । ବର ଯାଚିଲୁ ଚକ୍ରପାଣି ॥
ମୋହର ଇଚ୍ଛା ତୋର ପାଦେ । ତୁ ମୋତେ ନ ଚିନ୍ତୁ ପ୍ରମାଦେ

ଭୃତ୍ୟ ଲକ୍ଷଣ ଜାଣିବାରେ । ସ୍ୱାମୀ ସ୍ୱଭାବ ଏ ସଂସାରେ ॥
କାମେ ଭ୍ରମଇ ଭୃତ୍ୟ ଚିତ୍ତ । ମଣଇ ଭକତ ଅଭକ୍ତ ॥
ସଂସାର ଜୀବ ହୃଦେ ଗୁନ୍ଥି । ଅଭେଦ ବୀଜକର୍ମ ଭ୍ରାନ୍ତି ॥
ସେ କଥା ଭଲେ ଜାଣୁ ତୁହି । ଏ ଅନୁମାନ ନ ଘଟଇ ॥
ତୋତେ ଆରାଧି ପ୍ରାଣୀ ଯେବେ । ତୋର ଆଶିଷ ଚିତ୍ତେ ଭାବେ ॥
ଭକ୍ତ ଲକ୍ଷଣ ତା ନ ଗଣି । ଯେ ଆତ୍ମା ଚିତ୍ତେ ନ ପ୍ରମାଣି ॥
ବଣିକ ସ୍ୱଭାବ ତାହାର । ସେ କାହିଁ ତରିବ ସଂସାର ॥
ଯେ ପ୍ରାଣୀ ଇଷ୍ଟ ଆଶା କରେ । ଭୃତ୍ୟ ନ ବୋଲି ତା ସଂସାରେ ॥
ଯେ ସ୍ୱାମୀ ଭୃତ୍ୟେ କଷ୍ଟଦେଇ । ତା ସ୍ୱାମୀପଣ ରହେ ନାହିଁ ॥
ନିଷ୍କାମ ଭୃତ୍ୟ ମୁଁ ତୋହର । ତୁ ସ୍ୱାମୀ ଜଗତ ଈଶ୍ୱର ॥
ରାଜାର ସେବକ ଯେସନେ । ବଞ୍ଚଇ ଆଜ୍ଞା ଅଲଙ୍ଘନେ ॥
ତଥାପି ମୋର ଦୋଷ ଅର୍ଥେ । ତୋ ବାକ୍ୟ ପାଳନ ଯୁକତେ ॥
ମାଗଇ ବର ତୋର ପାଦ । ଯେମନ୍ତେ ନ ପଡ଼େ ପ୍ରମାଦ ॥
ଏମନ୍ତ ବର ଦିଅ ମୋତେ । ତୋ ମାୟା ତରିବି ଯେମନ୍ତେ ॥
ଯେ ବର ହୃଦେ ମୋର ରହି । ବୃକ୍ଷ ରୋପଣ ପ୍ରାୟେ ହୋଇ ॥
ପତ୍ର କୁସୁମ ଫଳ ନିତ୍ୟେ । ମଙ୍ଗଳ କୁଶଳ ଜଗତେ ॥
ସେ ବୃକ୍ଷ ମୋର ହୃଦେ ରହୁ । ଭୋ ନାଥ ଏହି ବର ହେଉ ॥
ଇନ୍ଦ୍ରିୟ ମନପ୍ରାଣ ଗତି । ଆତ୍ମା ସ୍ୱଭାବେ ପ୍ରୀତମତି ॥
ଲାଜ ସମ୍ପଦ ତେଜ ଜ୍ଞାନ । ସତ୍ୟ ସନ୍ତୋଷ ବ୍ରତମାନ ॥
ଯେ ଜନ ଏ ସର୍ବ ନାଶନ୍ତି । ସେ ଜନ୍ମ କର ଶିରୀପତି ॥
ମନ ସଂକଳ୍ପେ ଯେତେ ଥାଇ । ଯେ ଜନ୍ମେ ପ୍ରାଣୀ ତା ସଞ୍ଚଇ ॥
ସେ ଜନ୍ମ ମିଳେ ତା ସମୀପେ । ତୋଷ ମୋ ଅଇଶ୍ୱର୍ଯ୍ୟ କଳ୍ପେ ॥
ଏମନ୍ତ ପ୍ରହଲାଦ ବାଣୀ । ଶୁଣି କହନ୍ତି ଚକ୍ରପାଣି ॥

## ଶ୍ରୀଭଗବାନ ଉବାଚ

ଏମନ୍ତ ଭକ୍ତି ଯେ ମୋହର । ଏ ନିର୍ଦ୍ଧେ ତାହାର ବେଭାର ॥
ଯେବେ ଆଶିଷ ମନେ କଳ୍ପେ । ନ ଲାଗେ ଇହ ପରଲୋକେ ॥
ତୋର ସଦୃଶ ଭକ୍ତ ଯେତେ । ନିଷ୍କାମେ ଅଛନ୍ତି ଜଗତେ ॥
ତୁ ଏବେ ମୋର ବୋଲ କର । ଏ ଯେତେକାଳ ମନ୍ୱନ୍ତର ॥
ଦୈତ୍ୟମାନଙ୍କ ମଧ୍ୟେ ରହି । ଅତୁଲ୍ୟ ଭୋଗ ଭୁଞ୍ଜ ତୁହି ॥
ତୁ ମୋତେ ସର୍ବଭୂତେ ପୂଜ । ଯଜ୍ଞ ଈଶ୍ୱର ରୂପ ଭଜ ॥
କର୍ମ ବିନାଶ ଯୋଗବଳେ । ସାଧୁ ଏ ଅବନୀ ମଣ୍ଡଳେ ॥
ତୁ ଯେତେ ସ୍ତୁତି କଲୁ ମୋତେ । ସଂସାର ତାରଣ ନିମନ୍ତେ ॥
ରଜନୀ ଅନ୍ତେ ପ୍ରାତଃକାଳେ । ଆନନ୍ଦ ହୃଦୟ ନିଶ୍ଚଳେ ॥
ମୋତେ ସ୍ମରିବ ମୋର ସଙ୍ଗେ । ପାପ ନ ଥାଉ ତାର ଅଙ୍ଗେ ॥
ଅଶେଷ କର୍ମବନ୍ଧ ପାଶ । ତକ୍ଷଣେ ହେଉ ତାର ନାଶ ॥
ଏମନ୍ତ ନରହରି ବାକ୍ୟେ । ଅସୁର ପୁତ୍ର ମନ ସୁଖେ ॥
ଆନନ୍ଦେ ଶିରେ କରଦେଇ । ବୋଲଇ ଶୁଣି ଭାବଗ୍ରାହୀ ॥

## ପ୍ରହ୍ଲାଦ ଉବାଚ

ତୋତେ ପ୍ରସନ୍ନେ ମାଗେ ବର । ତୁ ବରଦାତାଙ୍କ ଈଶ୍ୱର ॥
ତୁ ବ୍ରହ୍ମପ୍ରଭୁ ଚକ୍ରପାଣି । ତୋର ମହିମା କେବେ ଜାଣି ॥
ପିତା ନିନ୍ଦଇ କୋପମନେ । ବୋଲେ ମୁଁ ଈଶ୍ୱର ଭୁବନେ ॥
ଭ୍ରାତା ମରଣେ କୋପବହି । ତୋହର ମହିମା ନିନ୍ଦଇ ॥
ତୋ ଭକ୍ତତୁଲେ କରି ମୋତେ । କ୍ରୋଧେ ହିଂସଇ ଅବିରତେ ॥
ସେ ପାପୁଁ ପିତାଙ୍କୁ ଉଦ୍ଧର । ଭୋ ନାଥ ମାଗେ ଏହିବର ॥
ଅମୃତ ପ୍ରାୟେ ଦୃଷ୍ଟି ତୋର । ପଡଇ ଯାହାର ଉପର ॥
ପବିତ୍ର ଦୃଷ୍ଟି ମାତ୍ରେ ହୋଇ । ଅଙ୍ଗେ ଦୁରିତ ନ ରହଇ ॥

## ଶ୍ରୀଭଗବାନ ଉବାଚ

କଶ୍ୟପ ମରୀଚି ବିଧାତା । ସହିତ ଉଦ୍ଧରିଲୁ ପିତା ॥
ଅପରେ ସର୍ବରଷି ଯେତେ । ସର୍ବେ ପବିତ୍ର ତୋର କୃତେ ॥
ତାହାଙ୍କ କୁଳେ ତୋର ଜନ୍ମ । ତୁ କଲୁ ସକଳ ପାବନ ॥
ମୋର ଭକତ ଯହିଁ ଥାଇ । ସମଦରଶୀ ଶାନ୍ତ ହୋଇ ॥
ଜଗତେ ସାଧୁ ସେ ବୋଲାନ୍ତି । ପତିତ ପବିତ୍ର କରନ୍ତି ॥
ପ୍ରାଣୀ ହିଂସନ ତାଙ୍କ ନାହିଁ । ଯେ ଉଚ୍ଚ ନୀଚେ ଦେହ ବହି ।
ଯେ ମୋର ଭାବେ ନିତ୍ୟେଥାନ୍ତି । କେବେହେଁ ପ୍ରାଣୀ ନ ହିଂସନ୍ତି
ମୁଁ ପୁଣି ତାହାଙ୍କର ପକ୍ଷେ । ସେ ମୋତେ ଦେଖନ୍ତି ପ୍ରତ୍ୟକ୍ଷେ
ତୁ ମୋର ଭକ୍ତ ମଧ୍ୟେ ସାର । ମୋର ବଚନ ଏବେ କର ॥
ଭାବେ ଭକତ ଜନ ଯେତେ । ଯଜ୍ଞ କରନ୍ତି ପିତୃଅର୍ଥେ ॥
ମୋ ଅଙ୍ଗ ସ୍ପର୍ଶନେ ତୋ ତାତ । ସ୍ୱଭାବେ ହୋଇଲା ମୁକତ ॥
ପୁତ୍ର ସ୍ୱଧର୍ମ ଏବେ ତୋର । ପିତାଙ୍କୁ ପ୍ରେତୁଁ ପାରି କର ॥
ବେଦବାଦୀଙ୍କ ବାକ୍ୟଅର୍ଥେ । ପିତୃ ତର୍ପଣ କର ତୀର୍ଥେ ॥
ମୋ ପାଦେ ମନ କର ସ୍ଥିର । ପିଣ୍ଡେ ତୁ ପିତାଙ୍କୁ ଉଦ୍ଧର ॥

## ନାରଦ ଉବାଚ

ବିଷ୍ଣୁ ବଚନ ଘେନି ଶିରେ । ପିତାର କର୍ମ ଗଙ୍ଗାତୀରେ ॥
ଆନନ୍ଦେ ଅସୁରର ବଳା । ପିତୃ ତର୍ପଣେ ପିଣ୍ଡ ଦେଲା ॥
ବିପ୍ରେ ମିଳିଲେ ବିଷ୍ଣୁ ବାକ୍ୟେ । ପ୍ରହ୍ଲାଦ ନୃପ ଅଭିଷେକେ ॥
କ୍ଷିତି ମଣ୍ଡଳେ କଲେ ରାଜା । ନୃପେ କରନ୍ତି ପାଦପୂଜା ॥
ଅଦ୍ଭୁତ ଦେଖି ତାର କଥା । ଆନନ୍ଦ ମନେ ସେ ବିଧାତା ॥
ସଙ୍ଗେ ଘେନିଣ ସର୍ବନୃପ । ମିଳିଲେ ନୃସିଂହ ସମୀପ ॥

ଆନନ୍ଦେ କର ଦେଇ ଶିରେ । ପବିତ୍ର ବାକ୍ୟେ ସ୍ତୁତି କରେ ॥

ବ୍ରହ୍ମା ଉବାଚ

ଭୋ ଦେବ ଦେବଙ୍କର ବର । ଅଖିଳ ସୃଷ୍ଟି ସୃଷ୍ଟି କର ॥
ଭୂତଭାବନ ସର୍ବସିଦ୍ଧି । ତୁ ନାଥ କରୁଣାବାରିଧି ॥
ଲୋକ ସନ୍ତାପି ଏ ଅସୁର । ଭୋ ନାଥ କଲୁ ତୁ ସଂହାର ॥
ମୋହର ଠହୁଁ ବର ପାଇ । ମୋ ସୃଷ୍ଟି ମଧ୍ୟେ ମୃତ୍ୟୁନାହିଁ ॥
ତପର ତେଜବନ୍ତେ ଦୁଷ୍ଟ । ନିଗମ ମାର୍ଗ କଲା ନଷ୍ଟ ॥
ତୁ ନାଥ ତାହାକୁ ସଂହାରି । ରଖିଲୁ ବେଦମାର୍ଗ ଶିରୀ ॥
ତାହାର ପୁତ୍ର ଭାଗ୍ୟବନ୍ତ । ଦୁର୍ଲ୍ଲଭ ବିଷ୍ଣୁଙ୍କ ଭକତ ॥
ତାକୁ ରଖିଲୁ ପିତା ମାରି । ମରଣ ସଂକଟୁ ଉଦ୍ଧରି ॥
ଏ ନରସିଂହ ରୂପ ତୋର । ଧ୍ୟାନେ ଚିନ୍ତିବେ ଯେତେ ନର
ସର୍ବ ସଙ୍କଟୁ ହେବେ ପାର । ଶରଣେ ଫିଟିବ ଦୁସ୍ତର ॥

ଶ୍ରୀଭଗବାନ ଉବାଚ

ଶୁଣ ବିଧାତା ମୋ ଉତ୍ତର । ସନ୍ତୋଷ ହୋଇ ଏତେ କର ॥
ତପ ସମାଧି ଯୋଗ ସାଧେ । ନ ଦେବୁ ଅସୁରଙ୍କ ମଧ୍ୟେ ॥
ଦୁଷ୍ଟ ପ୍ରାଣୀଙ୍କୁ ବର ଦେଲେ । ଉରଗେ କ୍ଷୀର ପାନ ତୁଲେ ॥

ନାରଦ ଉବାଚ

ବ୍ରହ୍ମାକୁ ବୋଲି ଏ ବଚନ । ସେ ସ୍ଥାନୁ ହେଲେ ଅନ୍ତର୍ଦ୍ଧାନ ॥
ତକ୍ଷଣେ ଶୂନ୍ୟେ ବିଜେ କରି । ବ୍ରହ୍ମା ପୂଜିତ ନରହରି ॥
ଜୟ ଶବଦ ତ୍ରିଭୁବନେ । ପ୍ରହ୍ଲାଦ ଦେଖି ତୋଷମନେ ॥
ଶିରେ ବନ୍ଦିଲା ବ୍ରହ୍ମାପାଦ । ଭକ୍ତିରେ ହୋଇ ଗଦ ଗଦ ॥
ଶଙ୍କର ପ୍ରଜାପତି ଗଣେ । ନମିଲା ଦେବଙ୍କ ଚରଣେ ॥
ସନ୍ତୋଷ ହୋଇ ପଦ୍ମଯୋନି । ସଙ୍ଗେଣ ସପ୍ତଋଷି ଘେନି ॥
ପ୍ରହ୍ଲାଦ ସ୍ଥାପି ରାଜପଦେ । ଦୈତ୍ୟ ଦାନବଙ୍କର ମଧ୍ୟେ ॥
ଆଶିଷ ଦେଲେ ଦେବଗଣେ । ହସ୍ତ ପ୍ରସାରି ଜଣେ ଜଣେ ॥
ପୂଜିଲେ ବ୍ରହ୍ମା ଆଦିମୂଳେ । ଇନ୍ଦ୍ରାଦି ଦଶଦିଗ ପାଳେ ॥
ଅସୁରପୁତ୍ର ସୁପୂଜିତେ । ସର୍ବେ ଆନନ୍ଦ ହୋଇ ଚିତ୍ତେ ॥
ସ୍ୱସ୍ଥାନେ ଗଲେ ଦେବଗଣ । ଏବେ ହୋ ଧର୍ମସୁତ ଶୁଣ ॥
ଜୟ ବିଜୟ ବେନି ଭାଇ । ବିଷ୍ଣୁ ଭୁବନ ଦ୍ୱାରେ ଥାଇ ॥
ବ୍ରହ୍ମାକୁମର ଶାପବନ୍ଧେ । ଜନ୍ମ ଲଭିଲେ ଦିତିକୋଳେ ॥
ବଇରୀଭାବ ହୃଦେ ଭରି । ବିଷ୍ଣୁ ଦ୍ରୋହରେ କାଳ ହରି ॥
ହରିର ହସ୍ତେ ପ୍ରାଣ ଦେଇ । ପୁଣି ଜନ୍ମିଲେ ବେନିଭାଇ ॥
ନିକଷା ଗର୍ଭେ ଜନ୍ମ ହୋଇ । ରାବଣ କୁମ୍ଭକର୍ଣ୍ଣ ଦୁଇ ॥
ସୀତା ହରଣେ ରାମବାଣେ । ପ୍ରାଣ ଛାଡ଼ିଲେ ଘୋର ରଣେ ॥
ରାମ ଶରୀରେ ଦୃଷ୍ଟି ଦେଇ । ପ୍ରାଣ ଛାଡ଼ିଲେ ବେନିଭାଇ ॥
ପୁଣି ଏ ଧରଣୀ ମଣ୍ଡଳେ । ଜନ୍ମ ଲଭିଲେ ରାଜକୁଳେ ॥
ସେ ଦନ୍ତବକ୍ର ଶିଶୁପାଳ । ତେଜ ସ୍ୱଭାବେ ଅନର୍ଗଳ ॥
ବୈରାନୁବନ୍ଧେ ଭରି ଦେହେ । ସାଯୁଜ୍ୟ ଲଭିଲେ ସମୂହେ ॥
ଏମନ୍ତ ଦୁଷ୍ଟ ରାଜଗଣେ । କୃଷ୍ଣେ ନିନ୍ଦିତ ରିପୁଗଣେ ॥
ଅନ୍ତେ ପାଇଲେ ବିଷ୍ଣୁଗତି । ଯେସନେ କୀଟ ପେଷକୃତି ॥
ଯେ ପ୍ରାଣୀ ଯେମନ୍ତେ ଭଜଇ । ହୃଦେ ଭକତି ଭାବ ବହି ॥
ସେହି ପ୍ରକାରେ ଲଭେ ଗତି । ଯେ ପ୍ରାଣୀ ଯେମନ୍ତେ ଚିନ୍ତନ୍ତି ॥
ଏବେ ହୋ ଶୁଣ ନୃପବର । ହରି ମହିମା ଅଗୋଚର ॥
ଯେବେ ପୁଚ୍ଛିଲୁ ଯେଉଁ ଭାବେ । ସେ ହରି ଚରିତ ପ୍ରସ୍ତାବେ ॥
ସେ ପୂର୍ବ ପ୍ରଶ୍ନ ତୋ ଅଗ୍ରତେ । କହିବା ଯଥାଶକ୍ତି ମତେ ॥
ଶ୍ରୀବିଷ୍ଣୁ କଥାକୁ ଯେ ରସେ । ଆତ୍ମା ଅଶୁଭକୁ ବିନାଶେ ॥
ଏ ପ୍ରହଲାଦଙ୍କ ଚରିତ । ସ୍ୱଭାବେ ମହାଭାଗ୍ୟବନ୍ତ ॥
ଜ୍ଞାନ ବୈରାଗ୍ୟ ଭକ୍ତିବଳେ । ରହିଲା ବିଷ୍ଣୁ ଆଦିମୂଳେ ॥
ବିଷ୍ଣୁର ସୃଷ୍ଟି ସ୍ଥିତି ଅନ୍ତ । ଯେ ଗୁଣ କର୍ମାନୁବର୍ଣ୍ଣିତ ॥
ଦେବ ମାନବଙ୍କର ସ୍ଥାନ । କେବେହେଁ ନୁହଇ ତ ଆନ ॥
ହରି ଭଜନ ବିପରୀତ । ଏ ବିଷ୍ଣୁ ଜନଙ୍କର ମତ ॥
ଅଜ୍ଞାନେ ବଇଷ୍ଣବ ଧର୍ମ । ଅଶେଷ ଆଦି ଆତ୍ମା କର୍ମ ॥
ବିଷ୍ଣୁ ମହିମା ପୁଣ୍ୟ ଜାଣି । ଯେ ନର ଶ୍ରୁତିମାର୍ଗେ ଶୁଣି ॥
ଲୋକେ କହନ୍ତି ସୁଧାରସେ । ସର୍ବ ଦୁରିତ ସେ ବିନାଶେ ॥
ଏ ଆଦି ପୁରୁଷଙ୍କ କଳା । ଶ୍ରୀ ନୃସିଂହଙ୍କ ରୂପଲୀଳା ॥
ଅସୁରପତି ବଧ ବାଣୀ । ଯେ ମୁଖେ କହେ ନିତ୍ୟେଶୁଣି
ସନ୍ତୋଷେ ସର୍ବ ଗୁଣ କଥା । ଅଶେଷ ମୁନିମଧ୍ୟେ ଜ୍ଞାତା ॥
ପ୍ରସ୍ତାବେ ଶୁଣି ଜନମଧ୍ୟେ । ନିର୍ଭୟେ ଯାନ୍ତି ବିଷ୍ଣୁପାଦେ ॥
ତୁ ଯେ ପାଣ୍ଡବ କୁଳେ ଜାତ । ତ୍ରୈଲୋକ୍ୟ ମହା ଭାଗ୍ୟବନ୍ତ ॥
ଲୋକେ ପବିତ୍ର ମୁନିଗଣେ । ତୋର ଭୁବନେ ଅନୁକ୍ଷଣେ ॥
ମିଳନ୍ତି ଘେନି ତୋର ଭାବ । ତୋ ଗୃହେ ବସେ ପଦ୍ମନାଭ ॥
ଯାର ମହିମା ଦେବଗଣେ । ଲୋଡ଼ି ନ ପାନ୍ତି ଭବବଣେ ॥
ଯେ ବ୍ରହ୍ମ ନିର୍ବାଣ ଦୁର୍ଲ୍ଲଭ । କୈବଲ୍ୟ ମୁକ୍ତି ଅନୁଭବ ॥
ସେ ପ୍ରାୟ ସୁହୃଦ ତୋହର । ଅଶେଷ ମଙ୍ଗଳ ଆକର ॥
ସକଳ ଆତ୍ମା ସେ ପୂରିତ । ଅଶେଷ ଗୁରୁ ଦଇବତ ॥
ଯାହାର ମହିମା ବର୍ଣ୍ଣନେ । ଭବ ବିରଞ୍ଚି ଆଦି ଜନେ ॥
ବସ୍ତୁ ବୁଦ୍ଧିରେ ଭାବଚିନ୍ତି । କେବେହେଁ ଚିହ୍ନି ନ ପାରନ୍ତି ॥
ମଉନେ ଭକ୍ତିଯୋଗେ ପୂଜି । କେବେହେଁ ନ ପାରନ୍ତି ଖୋଜି
ସେ ବଇଷ୍ଣବ ଜନ ଗତି । ତା ପାଦେ ରହୁ ମୋର ମତି ॥

ସେ ହରି ତୋତେ ଦୟାକରି । ତୋ ନାମ ଜଗତେ ବିସ୍ତାରି ॥
ପୂର୍ବେ ଯେ ଦେବାସୁର ଯୁଦ୍ଧେ । ରୁଦ୍ରଙ୍କୁ ରଖିଲେ ପ୍ରସାଦେ ॥
ଏ ବାକ୍ୟ ମୁନି ମୁଖୁଁ ଶୁଣି । କପାଳେ ଦେଇ ବେନିପାଣି ॥

## ଯୁଧିଷ୍ଠିର ଉବାଚ

ବୋଲେ ନାରଦ ମୁଖ ଚାହିଁ । ଭୋ ମୁନି ମୋତେ କର ତ୍ରାହି
କହ ଯେବଣ କାଳେ ହରି । ଦେବଙ୍କ ଶଙ୍କା ଦୂରକରି ॥
ଅସୁରବଳ କଲେ ନାଶ । ଯେ ହରି ଜଗତେ ବିଶ୍ୱାସ ॥
ଏମନ୍ତ ଧର୍ମସୁତ ବାଣୀ । ଶୁଣି କହନ୍ତି ବ୍ରହ୍ମମୁନି ॥

## ନାରଦ ଉବାଚ

ପୂର୍ବେ ଯେ ଦେବାସୁର ରଣେ । ଯୁଦ୍ଧେ ଜିଣିଲେ ଦେବଗଣେ ॥
ଅସୁରେ ପଳାଇ ବିଷାଦେ । ମୟ ଦଇତ୍ୟ ବେନିପାଦେ ॥
କାତରେ ପଶିଲେ ଶରଣ । ଭୟେ ସକଳେ ଦୈତ୍ୟଗଣ ॥
ମୟ ଦଇତ୍ୟ ତାହା ଚାହିଁ । ଅସୁର ଗଣେ ଦୟା ବହି ॥
ବିମାନ କଲା ତିନିପୁର । ଭିତରେ ଘୋର ଅନ୍ଧକାର ॥
କାଞ୍ଚନ ରୌପ୍ୟ ଲୌହମୟେ । ଦେଖି ତ୍ରିଦଶେ କହେ ଭୟେ ॥
ରଖି ନ ପାରି ତାଙ୍କୁ ଭଲେ । ପଡ଼ିଲା ଅପମୃତ୍ୟୁ ତୁଲେ ॥
ବିତର୍କ ଲୌହ ପରିଚ୍ଛଦ । ପୂରିତ ଅଶେଷ ଆୟୁଧ ॥
ସେ ରଥେ ବସି ଦୈତ୍ୟଗଣେ । ଦେବଙ୍କୁ ଆବୋରିଲେ ରଣେ
ତିନି ଭୁବନେ ଲୋକଶିରୀ । ନାଶନ୍ତି ବଇରୀ ସୁମରି ॥
ଆକୁଳେ ତ୍ରିଭୁବନ ଲୋକେ । ବିଷ୍ଣୁ ଭଜିଲେ ଅତିରେକେ ॥
ସଙ୍କଟୁ ରଖ ନାରାୟଣ । ତୋ ପାଦେ ପଶିଲୁ ଶରଣ ॥
ଭୁବନେ ରହି ନ ପାରିଲୁ । ଅସୁର ଭୟେ ପଳାଇଲୁ ॥
ତ୍ରିପୁରେ ଥାଇ ଦୃଷ୍ଟିମାତ୍ରେ । ଲୋକେ ନାଶିଲେ ଶସ୍ତ୍ରାଘାତେ
ଶୁଣି ଈଶ୍ୱର ତୋଷମନେ । ବୋଲନ୍ତି ମଧୁର ବଚନେ ॥
ଭୟ ନ କର ତୁମ୍ଭେ କେହି । ଅସୁର ସଂହାରିବି ମୁହିଁ ॥
ଏମନ୍ତେ କହି ତ୍ରିଲୋଚନ । ହସ୍ତେ ଘେନିଲେ ଶରାସନ ॥
ଶର ସମୂହ ରବି ଯେହ୍ନେ । ଧରି ବିନ୍ଧିଲେ କୋପମନେ ॥
ରୁଦ୍ର ନାରାଚ ତେଜୋମୟେ । ପଡ଼ିଲା ଅସୁରଙ୍କ ଦେହେ ॥
କର ହୃଦୟ ଶିର ଛିଡ଼ି । ପଡ଼ିଲେ ଭୂମିପଥ ମାଡ଼ି ॥
ଜାବନ୍ତେ ପଡ଼ିଲେ ଥୋକାଏ । ଘୋର ପ୍ରଚଣ୍ଡ ମହାଭୟେ ॥
ମୟ ଦଇତ୍ୟ ଦେଖି ତାହା । ଅସୁର ବଳେ କରି ମାୟା ॥
ମିଳିଲା ସୁରଙ୍କ ସମୀପେ । ପ୍ରହାର କଲା ଶର କୋପେ ॥
ଅମୃତ ରସ ଜଳ ସଙ୍ଗେ । ଲାଗିଲା ଅସୁରଙ୍କ ଅଙ୍ଗେ ॥
ବଜ୍ରର ପ୍ରାୟେ ଦେହ ଧରି । ଉଠିଲେ ଘୋର ନାଦ କରି ॥
ଖରେ ଉଠିଲେ ଧାତିକାରେ । ମିଳିଲେ ଦେବଙ୍କ ସଙ୍ଗରେ ॥
ଯୁଝନ୍ତି ନାନା ଶସ୍ତ୍ର ଧରି । ଶବଦେ କମ୍ପେ ବସୁନ୍ଧରୀ ॥
ଭୟେ ପଳାନ୍ତି ଦେବଗଣ । ଡାକନ୍ତି ରଖ ନାରାୟଣ ॥
ଦେଖି ଶଙ୍କର ମନ ଦୁଃଖେ । ଭଗ୍ନ ସଂକଳ୍ପ ଅତିରେକେ ॥
ବିମୁଖ ଦେଖିଣ ଶଙ୍କର । ଉପାୟ କଲେ ଚକ୍ରଧର ॥
ବ୍ରହ୍ମାଙ୍କୁ ବତ୍ସାରୂପ କରି । କୃଷ୍ଣ ସୁରଭୀ ରୂପ ଧରି ॥
ବଦନ ରସକୂପେ ଭରି । ନିଃଶେଷ ପାନ କଲେ ହରି ॥
ଯେତେ ଅସୁର ବଳୀ ଥିଲେ । କେହି ନିରୋଧି ନ ପାରିଲେ ॥
ଚାହିଁ ଅସୁରଙ୍କ ବଦନ । ବୋଲନ୍ତି ପ୍ରଭୁ ତ୍ରିଲୋଚନ ॥
ଦେବ ଅସୁର କିବା ନର । କର୍ମକୁ ନୁହନ୍ତି ଈଶ୍ୱର ॥
ଯେ ଜନ ନିତ୍ୟ କର୍ମ କରେ । ସେ କର୍ମ ଅତି ବଳୀୟାରେ ॥
ସେ ନିଷ୍ଫେ ଲୋଭକୁ ନ କରେ । କେବା ନିବାରି ତାକୁ ପାରେ ॥
ତକ୍ଷଣେ ପ୍ରଭୁ ନରହରି । ରୁଦ୍ର ଶରୀରେ ତେଜ ଭରି ॥
ସେ ବିଷ୍ଣୁ ଶକ୍ତି ବଳେ ବଳ । ତେଜ ବିରାଜେ ଅନର୍ଗଳ ॥
ବୈରାଗ୍ୟ ଜ୍ଞାନ ଧର୍ମ ଋଦ୍ଧି । ତପ ପ୍ରକ୍ରିୟା ବିଦ୍ୟା ସିଦ୍ଧି ॥
ଏ ସପ୍ତଗୁଣ ସପ୍ତତେଜ । ରଥ ସାରଥି ମହାଧ୍ୱଜ ॥
କୋଦଣ୍ଡ ଧନୁ ତୂଣ ଶର । ରୁଦ୍ରଙ୍କୁ ଦେବେ ଦାମୋଦର ॥
ଏ ଆଦି ନାନା ଶସ୍ତ୍ର ଯେତେ । ରୁଦ୍ରଙ୍କୁ ଦେଲେ ଦେବନାଥେ ॥
ମର୍ମବିଘାତୀ ବ୍ରହ୍ମଶର । କରେ ଧଇଲେ ଧନୁଶର ॥
ମଧ୍ୟାହ୍ନ ସମୟେ ଶଙ୍କର । ରଥେ ଉଠିଲେ କୋପଭର ॥
ଅନଳ ବାଣ ସର୍ବ ବିନ୍ଧି । ସର୍ବ ଅସୁର ବଳ ରୁନ୍ଧି ॥
ତ୍ରିପୁର କଲେ ସେ ଦହନ । ହରଷ ଦେବଙ୍କର ମନ ॥
ବିମାନ ଶତ ଶତ ଶୂନ୍ୟେ । ଦୁନ୍ଦୁଭି ବାଦ୍ୟନାଦ ଘନେ ॥
ପିତୃ ଦେବତା ସିଦ୍ଧଗଣେ । ପୁଷ୍ପ ବରଷେ ତତକ୍ଷଣେ ॥
କୁସୁମବୃଷ୍ଟି ରୁଦ୍ର ଶିରେ । ଜୟ ଶବଦ ନିରନ୍ତରେ ॥
ଆନନ୍ଦ ମନେ ଶୁଭକ୍ଷଣେ । ନୃତ୍ୟନ୍ତି ଅପସରା ଗଣେ ॥
ଏହି ପ୍ରକାରେ ତିନିପୁର । ଦହନ କଲେ ଦେବହର ॥
ବ୍ରହ୍ମାଦି ଦେବେ କଲେ ସ୍ତୁତି । ସ୍ୱଗୃହେ ଗଲେ ଉମାପତି ॥
ଏହି ପ୍ରକାରେ ନରହରି । ମାୟା ମନୁଷ୍ୟ ରୂପ ଧରି ॥
ମୁନି ବର୍ଣ୍ଣନ୍ତି ତାହା ଗୀତେ । ଯେ କର୍ମ କଲେ ଏ ଜଗତେ ॥
ଲୋକ ପବିତ୍ର ତା ମହିମା । ଏଣୁ କେ କହେ ଗୁଣସୀମା ॥
ବୋଲଇ ବିପ୍ର ଜଗନ୍ନାଥ । ଗୀତ ପ୍ରବନ୍ଧେ ଭାଗବତ ॥
ସପ୍ତମସ୍କନ୍ଧେ ଏହା ଶୁଣି । ମାୟା ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ନୃସିଂହ ପ୍ରସଙ୍ଗେ ପ୍ରହ୍ଲାଦ ଚରିତ୍ରେ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

### ଶ୍ରୀଶୁକ ଉବାଚ

ଶୁଣି ନାରଦ ମୁଖୁଁ କଥା । ଯେ ଧର୍ମମତି ଶୁଦ୍ଧଚେତା ॥
ସେ ପ୍ରହ୍ଲାଦର ଚରିତ । ସୁସାଧୁ ସଭାମଧ୍ୟେ ଖ୍ୟାତ ॥
ଉତ୍ତମ ମଧ୍ୟେ ଅଗ୍ରେ ଗଣି । ଯାହାର ଆତ୍ମା ଚକ୍ରପାଣି ॥
ତାର ଚରିତ ଧର୍ମସୁତ । ଶୁଣି ଆନନ୍ଦେ ହରଷିତ ॥
ବ୍ରହ୍ମା ନନ୍ଦନଙ୍କର ମୁଖେ । ପୁଣି ପୁଚ୍ଛିଲେ ଆତ୍ମସୁଖେ ॥

### ଯୁଧିଷ୍ଠିର ଉବାଚ

ମନୁଷ୍ୟ ଜନ୍ମର ସ୍ୱଧର୍ମ । ଯେ ଅବା ଜାଣେ ସାଧୁକର୍ମ ॥
ଈଶ୍ୱର ବାକ୍ୟେ ଧର୍ମ ସାଧି । ଯେବା ଆଶ୍ରମେ ଯେବା ବିଧି
କର୍ମ ସମାଦି ଜନମଧ୍ୟେ । ଅନ୍ତେ ପଶନ୍ତି ବିଷ୍ଣୁପାଦେ ॥
ତୁମ୍ଭେ ଯେ ପଦ୍ମଯୋନି ସୁତ । ଜାଣ ସକଳ ପରମାର୍ଥ ॥
ଯେ ବିପ୍ର ନାରାୟଣରେ । ତାହାର ନାହିଁ ଆତ୍ମପରେ ॥
କରୁଣାବନ୍ତ ଶାନ୍ତଦେହେ । ଯେବା ଅଟନ୍ତି ତୁମ୍ଭ ପ୍ରାୟେ ॥
କେବଳ ଦୟାସିନ୍ଧୁ ଧୀର । ଅଶେଷ ଜ୍ଞାନର ଈଶ୍ୱର ॥

### ନାରଦ ଉବାଚ

ନମଇଁ ପ୍ରଭୁ ନରହରି । ଆଜନ୍ମ ଜନ୍ମରୂପ ଧରି ॥
ଅଶେଷ ପ୍ରାଣୀ ଧର୍ମସେତୁ । ଅଖିଳ ସୃଷ୍ଟି ଧର୍ମହେତୁ ॥
ଯେ ସନାତନ ମୁନିବାଣୀ । ସେ ନାରାୟଣ ମୁଖୁ ଶୁଣି ॥
ସେ ଅବତାର ଆତ୍ମା ଅଂଶେ । ଜନ୍ମ ଲଭିଲେ ଦେବଅଂଶେ ॥
ଦକ୍ଷ କନ୍ୟାର ଗର୍ଭେ ହରି । ନର ରୂପରେ ଅବତରି ॥
ସଂସାର ଲୋକ ସିଦ୍ଧ କର୍ମେ । ସେ ବସେ ବଦରିକାଶ୍ରମେ ॥
ଯୋଗ ସାଧିଲେ ଦୃଢ଼ ତପେ । ଯେ ନର ନାରାୟଣ ରୂପେ ॥
ଯେ ହରି ସର୍ବଦେବ ଆତ୍ମା । ଧର୍ମର ମୂଳ ଶୁଦ୍ଧକର୍ମା ॥
ତାର ବଚନ ଶ୍ରୁତିପଥେ । ଯେ ପ୍ରାଣୀ ଶୁଣେ ଅବିରତେ ॥
ଭକ୍ତି ସମାଦି ତା ଚରଣେ । ପ୍ରବେଶ ହୋନ୍ତି ତତକ୍ଷଣେ ॥
ସତ୍ୟ ଶଉଚ ଦୟା ତପ । ତିତିକ୍ଷା ଶମ ଦମ ଜପ ॥
ଅହିଂସା ବ୍ରହ୍ମଚର୍ଯ୍ୟ ତ୍ୟାଗ । ସହାୟ ଗୁଣ ରିପୁଭାବ ॥
ସନ୍ତୋଷ ସମଦୃଷ୍ଟି ସେବା । ଯେଣେ ସନ୍ତୋଷ ଋଷି ଦେବା
କର୍ମ ନିବୃତ୍ତି ଜ୍ଞାନ ଧର୍ମ । ମଉନ ଆତ୍ମା ନିତ୍ୟକର୍ମ ॥
ହୃଦେ ଆରାଧି ହୃଷ୍ଟମନ । ସ୍ୱଧର୍ମ ମାର୍ଗେ କର ଧ୍ୟାନ ॥
ତତ୍ତ୍ୱ ଧାରଣା କର୍ତ୍ତୃଜ୍ଞାନ । ଯା ଦେଖି ରହିବ ଚେତନ ॥
ନ ଦେଖି ଅନୁଭବ ଭାଗେ । ଭୂତ ଅତିଥି ପୂଜା ଅଙ୍ଗେ ॥
ଆତ୍ମା ଦେବତା ବୋଧକରି । ଏଭାବେ ଗୃହେ ଥିଲେ ତରି ॥
କୃଷ୍ଣର ନାମ ଅନୁକ୍ଷଣ । କରିବ କୀର୍ତ୍ତନ ଶ୍ରବଣ ॥
ସେବା ପୂଜନେ ଦାସପଣେ । ସୁବାକ୍ୟ ଆତ୍ମା ସମର୍ପଣେ ॥
ପରମରୂପେ ଧର୍ମ ସାଧି । ମନୁଷ୍ୟେ ନାହିଁ ରିପୁବୁଦ୍ଧି ॥
ତ୍ରିଂଶ ଲକ୍ଷଣ ଧର୍ମ ଏହି । ଏଣେ ସନ୍ତୋଷ ଭାବଗ୍ରାହୀ ॥
ଅଖିଳ ସଂସାର କାରଣେ । ବେଦ ଅଭ୍ୟାସି ସେ ବ୍ରାହ୍ମଣେ
ବ୍ରାହ୍ମଣ ଆଦି ତିନିବର୍ଣ୍ଣ । ଯଜନ ଦାନ ଅଧ୍ୟାପନ ॥
ଯଜ୍ଞାଦି କ୍ରିୟାକର୍ମ ଯେତେ । ଚତୁର୍ଥ ଆଶ୍ରମ ସମେତେ ॥
ଅଧ୍ୟୟନାଦି ଷଟ କର୍ମ । ବ୍ରାହ୍ମଣ ଜନ୍ମର ଏ ଧର୍ମ ॥
ରାଜାର ଧର୍ମ ପ୍ରଜା ରକ୍ଷା । ଆଦାନ ବିନେ ପଞ୍ଚ ଦୀକ୍ଷା ॥
ବାଣିଜ୍ୟ କୃଷି ଗୋ ରକ୍ଷଣ । ବୈଶ୍ୟ ଜନର ଏ ଲକ୍ଷଣ ॥
ଶୂଦ୍ରଜନର ବିପ୍ର ସେବା । ଯେଣେ ସନ୍ତୋଷ ସର୍ବଦେବା ॥
ଯେ ଧର୍ମ ଶ୍ରୁତି ସ୍ମୃତି ଭେଦେ । ତାହା ସାଧିବ ନିରାପଦେ ॥
ଆପଦେ ବୃତ୍ତି ନିତ୍ୟକର୍ମ । ସାଧି ବଞ୍ଚିବ ତିନିବର୍ଣ୍ଣ ॥
ଏତେ ଲକ୍ଷଣ ତୋତେ କହି । ରାଜନ ଶୁଣ ମନଦେଇ ॥
ଶୌଚ ସନ୍ତୋଷ ଶମ ଦମ । ସହିଷ୍ଣୁ ଭିକ୍ଷା ତିତିକ୍ଷମ ॥
ଦୟାତ୍ମା ଅବିରିକ୍ତ ଶାନ୍ତି । ବିପ୍ର ଲକ୍ଷଣ ଏ କହନ୍ତି ॥
ତେଜ ଶଉର୍ଯ୍ୟ କ୍ଷମା ଧୃତି । ତ୍ୟାଗ ଅର୍ଚ୍ଚନା ଦୟା ଶାନ୍ତି ॥
ନିତ୍ୟେ ପ୍ରସନ୍ନ ବିପ୍ର ରକ୍ଷା । କ୍ଷତ୍ରିୟ ଲକ୍ଷଣ ଏ ଦୀକ୍ଷା ॥
ବିପ୍ର ଦେବତା ଗୁରୁ ଭଜି । ତ୍ରିଯୋଗ ପୋଷଣେ ନିମଜି ॥
ଆସ୍ତିକ୍ୟ ନିତ୍ୟ ନମ୍ରଗୁଣ । ବୈଶ୍ୟ ଜନର ଏ ଲକ୍ଷଣ ॥
ଶଉଚ ପ୍ରଭୁସେବା କର୍ମ । ଶୂଦ୍ରଜନର ଯେ ଲକ୍ଷଣ ॥
ଏବେ ହୋ ଯୁଧିଷ୍ଠିର ଶୁଣ । ସ୍ତିରୀ ଜନର ଏ ଲକ୍ଷଣ ॥
ସ୍ୱାମୀର ଚରଣ କମଳେ । ସେବିବ ହୃଦୟ ନିଶ୍ଚଳେ ॥
ସ୍ୱାମୀର ବନ୍ଧୁ ଥିବ ଯେତେ । ତାଙ୍କ ପୋଷଣେ ଥିବ ନିତ୍ୟେ
ପତିବ୍ରତାଙ୍କ ଏ ଲକ୍ଷଣ । ନିଗମ ବଚନ ପ୍ରମାଣ ॥
ଗୃହ ମାର୍ଜ୍ଜନା ଉପଲେପ । ମଣ୍ଡଳ ସାୟଂକାଳେ ଦୀପ ॥
ଆତ୍ମା ମଣ୍ଡିବ ନିରନ୍ତରେ । ଭୂଷଣ ଅଞ୍ଜନ ସିନ୍ଦୂରେ ॥
ସନ୍ତୋଷ ଅଲୋଭ ସୁଦକ୍ଷ । ଧର୍ମଜ୍ଞ ପ୍ରିୟ ସତ୍ୟବାକ୍ୟ ॥
ଶୁଚି ସୁସ୍ନିଗ୍ଧେ ସେ ଆନନ୍ଦେ । ନିରତେ ସେବେ ସ୍ୱାମୀପଦେ ॥
ଯେ ନାରୀ ହରିପ୍ରାୟେ ନିତି । ସେବା କରନ୍ତି ନିଜ ପତି ॥
ସେ ନାରୀ ଲକ୍ଷ୍ମୀପ୍ରାୟ ହୋଇ । ପତିର ହସ୍ତେ ହସ୍ତ ଦେଇ ॥
ପତି ସଙ୍ଗତେ ବିଷ୍ଣୁଲୋକେ । ବସଇ ଆନନ୍ଦେ ଅଶୋକେ ॥
ଅନ୍ୟ ଜାତିଙ୍କ ନିଜ ଧର୍ମ । ଅନୀତି ଯେବା କୁଳଧର୍ମ ॥
ଏମନ୍ତ ଧର୍ମ ଯୁଗେ ଯୁଗେ । ପ୍ରାଣୀ ସେବିବେ ଅନୁରାଗେ ॥
ବେଦ ସୃଷ୍ଟିରେ ବିପ୍ରଜନେ । କହନ୍ତି ଧର୍ମ ଅବଧାନେ ॥

ଯେ ଧର୍ମ ଇହ ପରଲୋକେ । ପ୍ରାଣୀ ତରନ୍ତି ଆତ୍ମସୁଖେ ॥
ବୃତ୍ତି ସ୍ୱଭାବେ କ୍ରିୟା ଘେନି । ଯେ ଧର୍ମ ଇହ ପର ମାନି ॥
ବର୍ତ୍ତନ୍ତି ସୁକର୍ମ କରଣେ । ସେ ନର ପଶନ୍ତି ନିର୍ଗୁଣେ ॥
ନିରତେ ଯମେ ତପକରି । ବିଷ୍ଣୁ ମାୟାରୁ ଯାନ୍ତି ତରି ॥
ନିଷ୍କାମେ ଯେବା ଧର୍ମେ ଭଜେ । ଅଙ୍କୁରେ ଥାନ୍ତି ଯେହ୍ନେ ବୀଜେ
କେବେହେଁ ବୃକ୍ଷ ସେ ନୁହନ୍ତି । ଯତ୍ନ ନ କଲେ ନାଶଯାନ୍ତି ॥
ଏମନ୍ତ କାମ ଜଡ଼ଚିତ୍ତେ । ଯେବେ ସେବଇ ଅବିରତେ ॥
ତେବେ ବିରକ୍ତ ଚିତ୍ତ ନୁହେ । ନିଷ୍କାମ ଅଗ୍ନି କାମ ଦହେ ॥
ଯେ ବର୍ଣ୍ଣେ ଯେମନ୍ତ ଲକ୍ଷଣ । ବେଦେ ବର୍ଣ୍ଣନ୍ତି ମୁନିଗଣ ॥
ତା ଅଧ ଉର୍ଦ୍ଧ୍ୱେ ଯେବେ ଦେଖି । ସେ ଧର୍ମପଥ ଉପଲକ୍ଷି ॥
ଏମନ୍ତ ଧର୍ମ ଅନୁବାଦେ । ମୁନି କହନ୍ତି ସଭା ମଧ୍ୟେ ॥
ଶୁଣି ସାନନ୍ଦ ଧର୍ମସୁତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ବର୍ଣ୍ଣଧର୍ମ ବର୍ଣ୍ଣନେ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ

### ନାରଦ ଉବାଚ

ଶୁଣ ହୋ ଧର୍ମର ନନ୍ଦନ । ବାନସ୍ଥ ବ୍ରହ୍ମଚାରୀ ଜନ ॥
ଗୃହସ୍ଥ ଧର୍ମ ଭିକ୍ଷୁ ଯେତେ । ଏବେ କହିବା ତୋ ଅଗ୍ରତେ ॥
ଗୁରୁ ଭବନେ ବ୍ରହ୍ମଚାରୀ । ବସିବ ଦୃଢ଼ବ୍ରତ କରି ॥
ସ୍ୱଭାବେ ତପକ୍ଳେଶ ଯେତେ । ନିରତେ ଥିବ ଗୁରୁହିତେ ॥
ସୁଦୃଢ଼ ସୁହୃଦ ଲକ୍ଷଣେ । ଆଜ୍ଞା ବହିବ ଦାସପଣେ ॥
ଉଭୟ ସନ୍ଧ୍ୟାରେ ମଉନ । ଜପିବ ବ୍ରହ୍ମ ସନାତନ ॥
ବେଦ ପଢ଼ିବ ନିରନ୍ତରେ । ଗୁରୁ ବଚନ ଧରି ଶିରେ ॥
ନିକଟେ ବସି ଶୁଦ୍ଧଚିତ୍ତେ । ଚରଣେ ନମି ବେନିହସ୍ତେ ॥
ମେଖଳା ଚର୍ମ କଉପିନ । ଜଟା କମଣ୍ଡଳୁ ମଉନ ॥
ଯଜ୍ଞୋପବୀତ ଦର୍ଭପାଣି । ଯେବା କଳ୍ପିତ ଅନ୍ନ ଆଣି ॥
ବିପ୍ର ଭବନୁ ମାଗି ଭିକ୍ଷା । ଦୃଢ଼େ ରଖିବ ଗୁରୁଦୀକ୍ଷା ॥
ପଞ୍ଚ ଭବନୁ ଭିକ୍ଷାଦ୍ରବ୍ୟ । ଗୁରୁ ସମୀପେ ସମର୍ପିବ ॥
ଗୁରୁ ବଚନେ କରି ଭିକ୍ଷା । ଯେ ଧର୍ମ ବ୍ରହ୍ମଚାରୀ ଦୀକ୍ଷା ॥
ଅନ୍ନ ଭୁଞ୍ଜିବ ନିତ୍ୟେ ନିତ୍ୟେ । ଅଥବା ଉପବାସ ବ୍ରତେ ॥
ଆନନ୍ଦେ ମନେ ବଞ୍ଚି ଦିନ । ନିରତେ ଜ୍ଞାନେ ଦେଇ ମନ ॥
ଗୁରୁଙ୍କ କାର୍ଯ୍ୟ ଦକ୍ଷପଣେ । ଶ୍ରଦ୍ଧା କରିବ ଅନୁକ୍ଷଣେ ॥
ଇନ୍ଦ୍ରିୟ ଆଦି କରି ବନ୍ଦି । ଚଞ୍ଚଳ ମନ ହୃଦେ ରୁନ୍ଧି ॥
ସ୍ତ୍ରୀବଶ ଲୋକଙ୍କର ମେଳେ । ସଙ୍ଗ ନ ଥିବ ସର୍ବକାଳେ ॥
ନ ଶୁଣି ସ୍ତିରୀଙ୍କ ବଚନ । ନ କରି ମୁଖାବଲୋକନ ॥
କେଶ ସାଧନ ମର୍ଦ୍ଦନ । ସ୍ନାହାନ ସୁବେଶ ଭୋଜନ ॥
ଗୁରୁ କାମିନୀଙ୍କ ଗୋଚରେ । ଦୃଢ଼େ ବର୍ଜ୍ଜିବ ଅତି ଦୂରେ ॥
ଯୁବତୀ ଜନ ଅଗ୍ନି ସଙ୍ଗ । ପୁରୁଷ ଦେହ ଘୃତକୁମ୍ଭ ॥
ଏଣୁ ଯୁବତୀ ଦୂରକରି । ଧର୍ମ ସାଧିବ ବ୍ରହ୍ମଚାରୀ ॥
ଏମନ୍ତେ ବସି ଗୁରୁଘରେ । ବେଦ ଅଭ୍ୟାସି ନିରନ୍ତରେ ॥
ଅଙ୍ଗ ଉପାଙ୍ଗ ବେଦ ପଢ଼ି । ଗୁରୁ ସମୀପେ କରଯୋଡ଼ି ॥
ଦକ୍ଷିଣା ଦେଇ ପାଦଯୁଗେ । ଆଜ୍ଞା ମାଗିବ ଅନୁରାଗେ ॥
ଗୁରୁ ବଚନ ଶିରେ ଧରି । ତେବେ ବଞ୍ଚିବ ଗୃହକରି ॥
ଅଥବା ବନସ୍ତେ ପଶିବ । ସନ୍ନ୍ୟାସମତେ ବା ବଞ୍ଚିବ ॥
ଗୁରୁ ବଚନ ଆଜ୍ଞା ଦେହେ । ତୁଲ୍ୟେ ଦେଖିବ ବିଷ୍ଣୁମୟେ ॥
ଏହି ପ୍ରକାରେ ସାଧି କର୍ମ । ଯେବା ଆଶ୍ରମେ ଯେବା ଧର୍ମ ॥
ଯେବା ସାଧନ୍ତି ଅପ୍ରମାଦେ । ଅନ୍ତେ ପଶନ୍ତି ବିଷ୍ଣୁପାଦେ ॥
ଏବେ ହୋ ଶୁଣ ନରପତି । ବନସ୍ଥ ଆଶ୍ରମର ଗତି ॥
ବନସ୍ତେ କର୍ମ ସାଧି ଦୁଃଖେ । ଅନ୍ତେ ମିଳନ୍ତି ମୁନିଲୋକେ ॥
ଭକ୍ଷିଣ ଫଳମୂଳ ଶାକ । ଅଗ୍ନି ବା ଜାଳି ଅର୍କପକ୍ୱ ॥
ନବୀନ ବନଫଳ ଲୋଭେ । ସେ ରସ ତେଜିବ ସ୍ୱଭାବେ ॥
ବନ ସମ୍ଭବ ବସ୍ତୁ ଘେନି । କାଳେ ପୂଜିବ ଇଷ୍ଟ ଅଗ୍ନି ॥
ଅଗ୍ନି ରକ୍ଷଣ ଅର୍ଥେ ଘରେ । ଅଥବା ପର୍ବତ କନ୍ଦରେ ॥
କେଶ ଲୋମାଦି ନଖ ଶ୍ମଶ୍ରୁ । ଜଟିଳ ବସ୍ତ୍ର କକ୍ଷା ପାଂଶୁ ॥
ଦଣ୍ଡ କମଣ୍ଡଳୁ ଅଜିନ । ବୃକ୍ଷ ବକଳ ପରିଧାନ ॥
ତ୍ରିସନ୍ଧ୍ୟା କରିଣ ସ୍ନାହାନ । ବାଲୁକା ମଣ୍ଡଳେ ଶୟନ ॥
ଏମନ୍ତେ ଦ୍ୱାଦଶ ବତ୍ସର । ବନେ ବଞ୍ଚିତ ବ୍ରତଧର ॥
ଅଷ୍ଟ ବରଷ କିବା ଅର୍ଦ୍ଧେ । ଧର୍ମ ସାଧିବ ଅପ୍ରମାଦେ ॥
ବେନି ବରଷ କିବା ଏକ । ବଞ୍ଚିବ ଏ ବିଧି ବିବେକ ॥
ବ୍ୟାଧି ଜରାରେ ହୋଇ ଗ୍ରସ୍ତ । ଧର୍ମ ସାଧନେ ଅସମର୍ଥ ॥
ଅଭ୍ୟାସି ଅନଶନ ବ୍ରତ । ହରି ସ୍ମରଣେ ହୁଅ ରତ ॥
ତେବେ ତେଜକୁ ନାଶକରି । ମନ ସଙ୍ଗରେ ମନ ଧରି ॥
ଜୀବ କାରଣେ କ୍ଷିତି ନାଶି । ଅନଳେ ପବନ ବିନାଶି ॥
କର ଯୁଗଳେ ଇନ୍ଦ୍ରି ନ୍ୟାସ । ସୁଦୃଢ଼େ କରିବ ସନ୍ନ୍ୟାସ ॥
ଇନ୍ଦ୍ରିୟ ଗତି ନାରାୟଣ । ଉପସ୍ଥେ ପ୍ରଜାପତିଗଣ ॥
ଗୁହ୍ୟ ବିମର୍ଷ ମୃତ୍ୟୁ ଅଙ୍ଗେ । ଦିଗ ଶ୍ରବଣ ଶ୍ରୁତି ସଙ୍ଗେ ॥

ସ୍ପରଶ ଗୁଣ ତ୍ୱଚେ ନ୍ୟାସି । ରୂପକୁ ଚକ୍ଷୁବଳେ ଗ୍ରାସି ॥
ରୂପେ ନିବେଶି ଚକ୍ଷୁଗୁଣ । ସୁଗନ୍ଧ ବାସେ ଘ୍ରାଣେ ଘ୍ରାଣ ॥
ମନକୁ ଅମନେ ସଂହରି । ବୋଧକୁ ବୁଦ୍ଧି ମଧେ ଭରି ॥
ଅଶେଷ କର୍ମ ରୂପ ଦେହେ । କ୍ରିୟାକୁ କରିବ ସମୂହେ ॥
ଚିତ୍ତକୁ ସତ୍ତ୍ୱଗୁଣେ ଭରି । ଗୁଣ ବିକାରକୁ ସଂହାରି ॥
ମହତ ତତ୍ତ୍ୱ ଅହଙ୍କାରେ । ମହତ ପ୍ରକୃତି ଗୋଚରେ ॥
ସେ ଗୁଣମୟ ସର୍ବବ୍ୟାପି । ଯଜ୍ଞ ଈଶ୍ୱର ସର୍ବରୂପୀ ॥
ଜୀବ ପରମ ବେନି ଅଂଶ । ଚିନ୍ତୁଅଛନ୍ତି ଏ ବିଶେଷ ॥
ତହିଁ ପ୍ରବେଶ ଜ୍ଞାନମୟେ । ଅନଳେ ଦଗ୍ଧ ଜ୍ୟୋତି ପ୍ରାୟେ
ଏମନ୍ତେ ସୃଷ୍ଟିକୁ ସଂହାରି । ବିଷ୍ଣୁମାୟାରୁ ଯାନ୍ତି ତରି ॥
ଏମନ୍ତେ ତରଇ ଜଗତ । କହିଲା ବିପ୍ର ଜଗନ୍ନାଥ ॥
ସୁଜନେ ବୋଲ ହରି ହରି । ଭବସାଗରୁ ହେବ ପାରି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଭିକ୍ଷୁ ଚତୁର୍ବର୍ଣ୍ଣ*
*ବର୍ଣ୍ଣନେ ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

### ନାରଦ ଉବାଚ

ଏବେ କହିବା ଯତିଧର୍ମ । ସ୍ୱଭାବେ ଅବଧୂତ କର୍ମ ॥
ମାୟା ସଂଯୋଗ ଦୂରକରି । ବୁଲିବ ଦେହମାତ୍ର ଧରି ॥
ଗ୍ରାମେ ବସିବ ଏକଦିନ । ନ ରହି ଏକାଧିକ ପୁଣ ॥
ନିର୍ଜ୍ଜନେ ଦିଗମ୍ବର ବେଶେ । ଯେବେ ବଞ୍ଚିବ ବନଦେଶେ ॥
କୌପିନ କରିବ ବସନ । ଏକା ଭ୍ରମିବ ରାତ୍ରଦିନ ॥
କେବେହେଁ ନ କରିବ ସଙ୍ଗ । ସମୁଦ୍ରେ ଯେସନେ ତରଙ୍ଗ ॥
ସର୍ବଭୂତକୁ ଶାନ୍ତପଣେ । ଶ୍ରୀନାରାୟଣ ପ୍ରାୟ ମଣେ ॥
ସାଧୁ ଅସାଧୁ ତୁଲ୍ୟ ବେନି । ଭାବି ବଞ୍ଚିବ ଆତ୍ମା ଘେନି ॥
ପରମ ବ୍ରହ୍ମ ଆତ୍ମାସାର । ସେ ସର୍ବବ୍ୟାପୀ ନିରନ୍ତର ॥
ଜାଗ୍ରତ ସ୍ୱପ୍ନ ମଧେ ରହି । ଆତ୍ମାର ଗତି ଆତ୍ମା ଧାୟି ॥
ଆତ୍ମାର ବନ୍ଧ ମୋକ୍ଷ ବେନି । ଲକ୍ଷିତ ମାୟା ମାତ୍ର ଘେନି ॥
ଗୃହସ୍ଥ ଭାବ ନାହିଁ ତାର । ଏଣୁ ସର୍ବଦା ନିରାକାର ॥
ବସ୍ତୁର ନିତ୍ୟାନିତ୍ୟ ଭାବ । ଏଣୁ ଏ ସଂସାର ଅଧ୍ରୁବ ॥
ଜୀବର ଉତ୍ପତ୍ତି ମରଣ । କାଳଟି ଏହାର କାରଣ ॥
ଶରୀର ଧର୍ମେ ଏହା ଜାଣି । ଆତ୍ମାର ଗତି ପରିମାଣି ॥
ଅପରେ ନ କରିବ ଗତି । ଜୀବନ ଜୀବିକା ପ୍ରବୃତ୍ତି ॥
ଦୂରେ ତେଜିବ ତର୍କବାଦ । ଯେ ଶାସ୍ତ୍ର ପରମାଦପ୍ରଦ ॥
ଅଭ୍ୟାସ ନ କରିବ ଗ୍ରନ୍ଥେ । ଶିଷ୍ୟ ନ କରିବ ସଙ୍ଗତେ ॥
ବ୍ୟାଖ୍ୟାନ ନିଜ ପ୍ରୟୋଜନେ । କେବେହେଁ ନ କରିବ ମନେ
ପ୍ରଶାନ୍ତ ଯତିର ଆଶ୍ରମେ । ଥାଇ ଶିଖିବ ତତ୍ତ୍ୱ ଧର୍ମେ ॥
ସୁଶାନ୍ତ ବୁଦ୍ଧି ସମଚିତ୍ତ । ହୋଇବ ଅର୍ଥେ ବା ବିରକ୍ତ ॥
ଦୃଶ୍ୟ ବା ଅଦୃଶ୍ୟରେ ଥିବ । ବୃଦ୍ଧ ବାଳକ ଚେଷ୍ଟାଭାବ ॥
ମୂର୍ଖ ପଣ୍ଡିତ ପ୍ରାୟେ ଦିଶେ । ଭାବେ ବଞ୍ଚିବ ଆତ୍ମବଶେ ॥
ଶୁଣ ରାଜନ ସାବଧାନେ । ଯେ ଇତିହାସ ପୁରାତନେ ॥
ପ୍ରହ୍ଲାଦ ସଙ୍ଗେ ମୁନିବର । ନାମ ତାହାର ଅଜଗର ॥
ଏ ବେନି ଜନଙ୍କ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ସେ ପ୍ରହଲାଦ ଏକଦିନେ । ମୃଗୟା ଅର୍ଥେ ଗଲା ବନେ ॥
ଭୃତ୍ୟନିକର ଘେନି ସଙ୍ଗେ । ଅରଣ୍ୟେ ଗଲେ କ୍ରୀଡ଼ାରଙ୍ଗେ ॥
ଏମନ୍ତେ ସହ୍ୟ ଗିରିତଟେ । ଭ୍ରମଣକ୍ରମେ ଭୂମିପୃଷ୍ଠେ ॥
ଶୟନେ ଦେଖେ ମୁନିବର । ଶରୀର ଧୂଳିରେ ଧୂସର ॥
ସ୍ୱଭାବେ କର୍ଦ୍ଦମ ଭୂଷିତ । ସମ୍ମୁଖେ ଦେଖି ବିପରୀତ ॥
କର୍ମ ବଚନ ଲିଙ୍ଗ ବର୍ଣ୍ଣେ । ଲକ୍ଷ୍ୟ ନ ପାରେ ଅନୁମାନେ ॥
କିବା ଆଶ୍ରମ ଲକ୍ଷ୍ୟ ନୁହେ । ଶୟନ ବିପରୀତ ଦେହେ ॥
ତାହାଙ୍କୁ ଦେଖି ପ୍ରହଲାଦ । ଭାବେ ନମିଲା ତାଙ୍କ ପାଦ ॥
ଲକ୍ଷ୍ୟ ନ ପାରି ତାଙ୍କ ଗତି । ବୋଲନ୍ତି ଅସୁରଙ୍କ ପତି ॥

### ପ୍ରହ୍ଲାଦ ଉବାଚ

ଏ ସ୍ଥୂଳ ଶରୀର ତୋହର । ସ୍ୱଭାବେ ଦିଶଇ ସୁନ୍ଦର ॥
ଭୋଗୀ ପୁରୁଷ ପ୍ରାୟେ ଦେହୀ । ସ୍ୱଭାବେ ସ୍ଥୂଳରୂପ ହୋଇ ॥
ବିତ୍ତ ଅର୍ଜ୍ଜନେ ଭୋଗୀଜନେ । ଭ୍ରମନ୍ତି ନବର ବିପିନେ ॥
ଭୋଗ ପ୍ରବଳେ ପୁଷ୍ଟଦେହୀ । ଏ ଅନୁମାନେ ମୁଁ ଗଣଇ ॥
ଉଦ୍ୟମ ନ କରୁ ତୁ ଧନେ । କିପାଁ ଶୋଇଛୁ ଘୋରବନେ ॥
କେମନ୍ତେ ପୁଷ୍ଟ ତୋ ଶରୀର । କହ ସଂଶୟ ଯାଉ ମୋର ॥
କହ ତୁ ନ ଭଜି ମଉନ । ମୁଁ ଯେବେ ଶୁଣିବା ଭାଜନ ॥
ସେ ଦକ୍ଷ ପଣ୍ଡିତ ଚତୁର । ବିଚିତ୍ର ବାକ୍ୟ ପ୍ରିୟକର ॥
ତାଙ୍କୁ ପୁଛିଲେ ସର୍ବ କହେ । ମନେ ଅହଂକାର ନ ବହେ ॥
ଏମନ୍ତ ପ୍ରହଲାଦ ବାଣୀ । ସେ ଅବଧୂତ କର୍ଣ୍ଣେ ଶୁଣି ॥
ତାହାର ଅମୃତ ବଚନ । କହଇ ହର୍ଷିତ ବଦନ ॥

### ଅବଧୂତ ଉବାଚ

ତୁ ପ୍ରହଲାଦ ଦୈତ୍ୟ ବୀର । ମୁଁ ଜାଣେ ମହିମା ତୋହର ॥
ସଂଶୟ ନାହିଁ ତୋର ମନେ । ତୁ ଦେଖୁ ନିର୍ମଳ ନୟନେ ॥

ଯାର ହୃଦରେ ନାରାୟଣ । ବସଇ ପୁରୁଷ ପୁରାଣ ॥
ସେ ଭକ୍ତ ତରେ ତମଘୋର । ନାଶଇ ଯେହ୍ନେ ଦିବାକର ॥
ତୁ ମୋତେ ପଚାରିଲୁ ଯେବେ । ଶୁଣ କହିବି ତୋତେ ଭାବେ ॥
ଆତ୍ମାର ଶୁଦ୍ଧି ଯେ ଇଛନ୍ତି । ମହାନ୍ତ ପୁଚ୍ଛିଲେ କହନ୍ତି ॥
ଘୋର ସଂସାରେ ସଞ୍ଚରନ୍ତି । ଏ ଘେନି ମୋର ମନେ ଭ୍ରାନ୍ତି
ଦେଖ ଅଜ୍ଞାନ ମନ ଛନ୍ନେ । ସଂସାରେ ସଞ୍ଚରନ୍ତି ଜନେ ॥
ଯେ ଜଳ ତୃଣ ଆଚ୍ଛାଦିତ । ତାହା ନ ଭକ୍ଷଇ ତୃଷିତ ॥
ମୃଗ ତୃଷ୍ଣାକୁ ଜଳ ମଣେ । ଭ୍ରମେ ଭ୍ରମଇ ଅକାରଣେ ॥
ତାହାର ଶ୍ରମ ମାତ୍ର ସାର । ଯେ ଆତ୍ମା ନ କରେ ବିଚାର ॥
କର୍ମ ଆୟରେ ଦେହ ବହି । ଆତ୍ମାର ସୁଖ ଯେ ଅଟଇ ॥
ସଂକଳ୍ପେ କ୍ରିୟା କରେ ଯେତେ । ନିଷ୍ଫଳ ହୁଏ କାର୍ଯ୍ୟ ଅନ୍ତେ ॥
ବିମୁକ୍ତ ପ୍ରାଣୀଙ୍କର ଏଣେ । କି ପ୍ରୟୋଜନ ନିସ୍ତାରଣେ ॥
ଲୋଭୀ ପ୍ରାଣୀଙ୍କ ଦୁଷ୍ଟମନ । ବଳେ ବନ୍ଧନ କରେ ଧନ ॥
ଧନୀଜନଙ୍କ ଦୁଃଖ ଦେଖି । ମୁଁ ଧନ ତୃଷ୍ଣାକୁ ଉପେକ୍ଷି ॥
ଦେଖଇ ଧନୀଙ୍କର ଦୁଃଖ । ନିଦ୍ରା ଭୋଜନେ ନାହିଁ ସୁଖ ॥
ରାଜାର ଭୟ ଚିତ୍ତ ଧନେ । ଚୌର୍ଯ୍ୟ ସ୍ୱଜନ ଶତ୍ରୁଜନେ ॥
ଯେ ଅବା ଆସେ ଧନ ମାଗି । ତା ଦେଖି ଚିତ୍ତେ ଦୁଃଖଭାଗୀ ॥
ଯେ ଶୋକ ମୋହ ଭୟ ରୋଗ । ପ୍ରମାଦ ନିତ୍ୟ ଉଦବେଗ ॥
ଯାହାର ମୂଳୁଁ ଏ ସ୍ରବନ୍ତି । ଧନର ବଳେ ପ୍ରାଣୀ ଭ୍ରାନ୍ତି ॥
ଏ ଘେନି ଯେ ପଣ୍ଡିତ ଜନେ । ଲୋଭ ନ ଜନ୍ମେ ଯେବେ ଧନେ
ଭ୍ରମଇ ଯଥାଲାଭ ଧର୍ମେ । ନିତ୍ୟ ବ୍ୟାକୁଳ ଚିତ୍ତମର୍ମେ ॥
ମହାସର୍ପର ପ୍ରାୟ ସେହି । ବଞ୍ଚଇ ଉପଦେଶ ଧାୟି ॥
ତଥା ଶ୍ରୀ ଗୋବିନ୍ଦ ପ୍ରସନ୍ନେ । ନିତ୍ୟ ଆନନ୍ଦ ମୋର ମନେ ॥
ମୋ ଦେହେ ବଳକାନ୍ତି ତୁଷ୍ଟି । ସୁଖ ସଂକଳ୍ପେ ଦେହ ପୁଷ୍ଟି ॥
ଏ ଭାବେ ବର୍ଦ୍ଧିତ ମୋ ଦେହୀ । ମୁଁ ଦୁଃଖ ସୁଖ ନ ଜାଣଇ ॥
ଅଳ୍ପ ଆହାର କାହିଁ ପାଇ । କାହିଁ ବା ସନ୍ତୁଷ୍ଟେ ଭୁଞ୍ଜଇ ॥
ସ୍ୱାଦୁ ଅସ୍ୱାଦୁ ନ ଜାଣଇ । ଯହିଁ ବା ଯେମନ୍ତ ମିଳଇ ॥
ସେ ସବୁ ଅମୃତ ମଣଇ । ଯେ ଯେତେବେଳେ ଯାହା ଦେଇ
ଅଳ୍ପ ବହୁତ ନ ବାରଇ । ଯହିଁ ଯା ମିଳେ ତୁଷ୍ଟ ତହିଁ ॥
କାହିଁ ବା ଶ୍ରଦ୍ଧା ଉପହୃତ । କାହିଁ ବା ମାନ୍ୟ ବିବର୍ଜିତ ॥
ଏମନ୍ତେ ପୋଷଇ ଜୀବନ । ନିଶ୍ଚିନ୍ତ ମନେ ମୋ ଶୟନ ॥
ରାତ୍ର ଦିବସ ନ ଜାଣଇ । ଉପରେ ଏକତ୍ୱ ମଣଇ ॥
ପାଟ ବସନ କାହିଁ ପିନ୍ଧି । କାହିଁ ବୁଲଇ ଚର୍ମ ବାନ୍ଧି ॥
ଚିର୍କୁଟି ବସ୍ତ୍ର କାହିଁ ମିଳେ । କାହିଁ ବା ବଞ୍ଚଇ ବଲ୍‌କଳେ ॥
କର୍ମ ଆଦରି ତୋଷମନେ । ବସଇ ଇଚ୍ଛା ସୁଖସ୍ଥାନେ ॥
କାହିଁ ବା ଧରଣୀ ଶୟନେ । କାହିଁ ପାଷାଣେ ତୃଣ ଗୁଳ୍ମେ ॥
କାହିଁ ପ୍ରାସାଦ ମଧ୍ୟେ ଯାଇ । କାହିଁ ପଲ୍ୟଙ୍କ ମଧ୍ୟେ ଶୋଇ ॥
କାହିଁ ବା ଧୂଳିର ଉପରେ । କାହିଁ ଶୟନ ବନଘୋରେ ॥
କାହିଁ ବା ସ୍ନାନ କରି ଶୁଦ୍ଧେ । ସୁବାସ ତୈଳ ଶୁଚିପଦେ ॥
କାହିଁ ଚନ୍ଦନ ଗନ୍ଧସାର । କାହିଁ ବା ନାନା ଅଳଙ୍କାର ॥
ସୁବାସ ପୁଷ୍ପମାଳ ଗନ୍ଧେ । କାହିଁ ବା ଅଶ୍ୱ ଗଜ କନ୍ଧେ ॥
କାହିଁ ବେଷ୍ଟିତ ପୀତାମ୍ବର । କାହିଁ ବା ଧୂଳିଆ ଧୂସର ॥
କାହିଁ ବା ଜ୍ଞାନ ଥାଇ ଦେହେ । କାହିଁ ଭ୍ରମଇ ଗୃହୀପ୍ରାୟେ ॥
ବିଷମମତେ ପ୍ରାଣୀ ଥାନ୍ତି । ନିତ୍ୟ ସ୍ୱଭାବ ପ୍ରକାଶନ୍ତି ॥
କାହାକୁ ସ୍ତୁତି ନିନ୍ଦା ମୋର । କେବେହେଁ ନକରି ବିଚାର ॥
ସର୍ବ ପ୍ରାଣୀଙ୍କ ଶ୍ରେୟ ଚିନ୍ତି । ତେଣୁ ମୋ ମନେ ନାହିଁ ଭ୍ରାନ୍ତି
ଆନନ୍ଦେ ଗୋବିନ୍ଦପୟରେ । ଚିତ୍ତ ନିବେଶି ନିରନ୍ତରେ ॥
ଚିତ୍ତ ବିକଳ୍ପେ ହୋମକରି । ନିଷ୍କାମ ତପସ୍ୟା ଆବୋରି ॥
ମର୍ମ ବିକାରେ ତତ୍ତ୍ୱ ଥୋଇ । ଯେଣେ ମାୟାକୁ ଭୟ ନାହିଁ ॥
ସେ ମାୟା ଆତ୍ମା ଅଦଭୂତେ । ସତ୍ୟ ସଂକଳ୍ପ ମୁନିମତେ ॥
ତେଣୁ ନିର୍ବିକାର ମୋ ମନ । ନିର୍ଗୁଣ ବ୍ରହ୍ମେ କରି ଧ୍ୟାନ ॥
ଏମନ୍ତେ ଆତ୍ମା ଅନୁଭୂତେ । କହିଲି ତୋହର ଅଗ୍ରତେ ॥
ଯେତେକ ମାୟା ମାତ୍ର ହୋଇ । ତେଣେ ବର୍ଜିତ ମୋର ଦେହୀ
ତୁ ଯେଣୁ ଥାଉ ବିଷ୍ଣୁ ମତେ । ଏଣୁ କହିଲି ତୋ ଅଗ୍ରତେ ॥
ଏମନ୍ତ ମୁନି ମୁଖୁଁ ଶୁଣି । ପରମହଂସ ଧର୍ମବାଣୀ ॥
ସେ ପ୍ରହଲାଦ ଜ୍ଞାନଧର । ସ୍ୱଭାବେ ବିଷ୍ଣୁର କିଙ୍କର ॥
ଆନନ୍ଦେ ନମି ତା ଚରଣେ । ସ୍ୱସ୍ଥାନେ ଗଲା ତତ୍‌କ୍ଷଣେ ॥
ଶୁଣ ସୁଜନେ ଦୃଢ଼ଚିତ୍ତ । ହରି ଚରିତ ଭାଗବତ ॥
ଶୁଣନ୍ତେ ଖଣ୍ଡେ ଭବବ୍ୟଥା । ପ୍ରହ୍ଲାଦ ଅବଧୂତ କଥା ॥
ଏଣେ ନିର୍ମଳ କର ଚିତ୍ତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ପ୍ରହ୍ଲାଦ ଅବଧୂତ ସମ୍ବାଦେ*
*ନାମ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

### ଯୁଧିଷ୍ଠିର ଉବାଚ

ଶୁଣ ହେ ବ୍ରହ୍ମାଙ୍କ ନନ୍ଦନ । ବାନସ୍ଥ ବିଦ୍ୟା ଧର୍ମମାନ ॥
ଶୁଣିଲି ମହତ ପ୍ରସ୍ତାବେ । ଗୃହସ୍ଥ ଧର୍ମ କହ ଏବେ ॥
ଯେ ବିଧି ଗୃହ ଆଚରଣେ । ଆଗମ ନିଗମ ପ୍ରମାଣେ ॥

ଗୃହସ୍ଥ ରଜନୀ ପ୍ରଭାତେ । ଶୁଚି ନିର୍ମଳ ଶୁଦ୍ଧଚିତ୍ତେ ॥
ସୁମରି ନାରାୟଣ ନାମ । ହରେ ଗୋବିନ୍ଦ କୃଷ୍ଣଶ୍ୟାମ ॥
ପୁରୁଷୋତ୍ତମ ଦାମୋଦର । ବିଶ୍ୱସମ୍ଭବ ବିଶ୍ୱମ୍ଭର ॥
ଏ ଆଦି ପୁଣ୍ୟଶ୍ଳୋକ ଯେତେ । ନାମ ସଂକୀର୍ତ୍ତନ ପ୍ରଭାତେ ॥
ଏମନ୍ତେ ନିତ୍ୟେ ନିତ୍ୟେ କରି । ଗୃହସ୍ଥ ଧର୍ମକୁ ଆଚରି ॥
ମହାନ୍ତ ଜନର ଏ କର୍ମ । ନିତ୍ୟେ କରିବ ଉପାଦାନ ॥
ବିଷ୍ଣୁର ଅବତାର କଥା । ପୁରାଣ ଆଦି ଶାସ୍ତ୍ର ଗୀତା ॥
ସଙ୍ଗ କରିବ ଉପାସାନ୍ତେ । ଦିନ ବଞ୍ଚଇ ନିତ୍ୟେ ନିତ୍ୟେ ॥
ସାଧୁ ସଙ୍ଗମେ ଥୋଇ ମନ । ତେବେ ଭାବିବ ଗୃହୀଜନ ॥
ତାହାଙ୍କୁ ସୁଖଭୋଗ ଦେଇ । ଆତ୍ମାକୁ ସନ୍ତୋଷେ ଭୁଞ୍ଜାଇ ॥
ସ୍ୱପ୍ନ ସଂକଳ୍ପ ପ୍ରାୟେ ମଣି । ଚିତ୍ତେ ଚିନ୍ତିବ ଚକ୍ରପାଣି ॥
ଯେ ସୁଖ ଗୃହଧର୍ମ ଅର୍ଥେ । ଗୃହେ ସାଧିବ ନିତ୍ୟେ ନିତ୍ୟେ
ବିରକ୍ତ ଚିତ୍ତେ ଅବିରତେ । ଲୋକ ବେଭାର ଜନହିତେ ॥
ପ୍ରବର୍ତ୍ତ କରି ବିଦ୍ୟମାନେ । ଭଜନ୍ତି ହୃଦୟ ଯତନେ ॥
ସ୍ୱଜାତି ବନ୍ଧୁଜନ ସୁତ । ଏ ସର୍ବ କର୍ମର ଆୟତ୍ତ ॥
ଯେବା ଇଚ୍ଛନ୍ତି ଯେ ବୋଲନ୍ତି । ସେ ଭାବେ ସନ୍ତୋଷେ ରହନ୍ତି
ସନ୍ତୋଷେ ତାକୁ ବର ଦେବ । ନିଷ୍କାମେ ସର୍ବଦା ବଞ୍ଚିବ ॥
ଭୂମି ଗଗନ ଅନ୍ତରୀକ୍ଷେ । ଯେ ଧର୍ମ ଲଭଇ ପ୍ରତ୍ୟକ୍ଷେ ॥
କୃଷ୍ଣର ଲୀଳା ପ୍ରାୟେ ଭଜ । ସେ ଧର୍ମ ଦୁଃଖ ସୁଖେ ମଜ୍ଜ ॥
ଦିନ ବଞ୍ଚିବ ହରିଭାବେ । ଯତ୍ନ କରିବ କୃଷ୍ଣଲାଭେ ॥
ଯାବତ ଦେହେ ପ୍ରାଣ ଥିବ । ତାବତ ସନ୍ତୋଷେ ବଞ୍ଚିବ ॥
ଲୋଭେ ଅଧିକ ଯେ ଚିନ୍ତନ୍ତି । ଚୌର ସମାନେ ଦଣ୍ଡ ପାନ୍ତି ॥
ବାନର ନାରୀ ଶୁକଗଣ । ମୃଗ ମକ୍ଷିକା ଯେ ଚାରଣ ॥
ପଶୁ ପତଙ୍ଗ ଆଦି ଯେତେ । ତାହାଙ୍କୁ ପୁତ୍ର ପ୍ରାୟେ ଚିତ୍ତେ ॥
ଆତ୍ମାର ପ୍ରାୟେ ନିତ୍ୟେ ଦେଖି । ଅନ୍ତର ପ୍ରାୟେ ଉପଲକ୍ଷି ॥
ତ୍ରିବର୍ଗ କଷ୍ଟେ ନ ସାଧିବ । ଯେ ଭାବେ ନିଶ୍ଚିନ୍ତେ ରହିବ ॥
ଯେ ଦ୍ରବ୍ୟ ଅତିକଷ୍ଟେ ପାଇ । ଯେ ମୂର୍ଖ ଅତିଲୋଭେ ଥାଇ ॥
ଏ କର୍ମ ଅତିପୀଡ଼ା ବୃତ୍ତେ । ଯେ ଦେଶକାଳ ପାତ୍ରମତେ ॥
କର୍ମ ଆୟତ୍ତେ ଯା ମିଳିବ । ତହିଁରେ ଜୀବନ ପୋଷିବ ॥
ପ୍ରାଣୀକୁ ନ କରିବ ଭିନ୍ନ । ଦେଖିବ ସକଳେ ସମାନ ॥
ଶ୍ୱାନ ଶୃଗାଳ ଅନ୍ୟ ଜାତି । ଆତ୍ମାର ପ୍ରାୟେ ତାକୁ ଚିନ୍ତି ॥
ତାହାଙ୍କ ଯଥାଭାଗ ଦେବ । ଆତ୍ମାର ସଦୃଶ ଭାବିବ ॥
ଏକ ଗୃହିଣୀ ସଂଗ୍ରହଣେ । ସ୍ୱଧର୍ମ ଗୃହର କାରଣେ ॥

ସେ ସତ୍ୟପର ନାମା ନାରୀ । ତାହା ସନ୍ତୋଷେ ଭୋଗକରି ॥
ବିମୁକ୍ତ ମତିକୁ ସେବନେ । ଯତ୍ନ କରିବ ନିଜ ଧନେ ॥
ଆପଦେ ପିତା ଗୁରୁଅର୍ଥେ । ପ୍ରାଣହିଁ ନ ଚିନ୍ତିବ ସ୍ୱାର୍ଥେ ॥
ପତ୍ନୀକୁ ଅପଦୁଁ ଉଦ୍ଧରି । ଏ ଭାବେ ସାଧୁ ନରହରି ॥
ଦେଖ ଏ ତୁଚ୍ଛ ନରଦେହୀ । ଅନ୍ତେ ତ୍ରିପ୍ରକାରେ ଭଜଇ ॥
ଅବଶ୍ୟ ଭଜେ ଅବସାନେ । ଭସ୍ମେ ପୁରୀଷ କୃମିପାନେ ॥
ସେ ଦେହେ ପତିପତ୍ନୀମେଳେ । ଘନ ଯେସନେ ନଭସ୍ଥଳେ ॥
ଯଜ୍ଞବଶେଷ ସିଦ୍ଧି ଅର୍ଥେ । ଆହାର କଳ୍ପିତ ଜୀବନ୍ତେ ॥
ଏମନ୍ତ ମତ ଯା ବେଭାର । ସେ ପ୍ରାଣୀ ଯଜ୍ଞଜନ ସାର ॥
ଦେବତା ଋଷି ପିତୃଗଣେ । ଆତ୍ମାର ଶତ୍ରୁ ଅନୁକ୍ଷଣେ ॥
ଏହାଙ୍କୁ ବିଷ୍ଣୁ ଭାବେ ଭଜି । ନାନାଦି ଉପହାରେ ମଜି ॥
ଆତ୍ମା ବିକାରେ ନାନାବିଧି । ପଞ୍ଚବିଶିଖ ମୁନିଆଦି ॥
ବିଧି ବିଧାନ ବେଦମତେ । ଯଜ୍ଞ କରିବ ଅଗ୍ନିହୋତ୍ରେ ॥
ସେ ଅଗ୍ନି ହୋତ୍ର ଅବସାନେ । ବିପ୍ରଙ୍କୁ ତୋଷିବ ଭୋଜନେ ॥
ବ୍ରାହ୍ମଣ ଦେହେ ଥାଇ ହରି । ଏଣୁ ଭୋଜନେ ପୂଜାକରି ॥
ବିପ୍ର ଭୋଜନେ ତୋଷ ଯେତେ। ସେ ନୁହେ ଯଜ୍ଞେ କୋଟିମତେ
ଏ ଘେନି ଦେବତା ବ୍ରାହ୍ମଣ । ପୂଜା କରିବ ଅନୁକ୍ଷଣ ॥
ଏଣୁ ବ୍ରାହ୍ମଣ ମୁଖେ ଦେଇ । ପୂଜା କରିବ ଭାବଗ୍ରାହୀ ॥
ଅଶ୍ୱିନ ମାସେ କୃଷ୍ଣପକ୍ଷେ । ପିତୃଙ୍କୁ ପୂଜିବ ପ୍ରତ୍ୟକ୍ଷେ ॥
ପିତୃ ପୂଜନେ ଶ୍ରଦ୍ଧାମନେ । ଜ୍ଞାତି ବାନ୍ଧବ ସୁଭୋଜନେ ॥
ଏବେ ହୋ ଶୁଣ ମହୀପତି । ଗୃହସ୍ଥ ଜନର ଏ ଗତି ॥
ବେନି ଅୟନ ବିଷୁବରେ । ହରଷେ ଯେ ବ୍ୟତିପାତରେ ॥
ଅକ୍ଷୟ ତୃତୀୟା ଦିବସେ । ଆଦିତ୍ୟ ଶଶାଙ୍କର ଗ୍ରାସେ ॥
ଦ୍ୱାଦଶୀ ଶ୍ରବଣା ସଂଯୋଗେ । ତୃତୀୟା ସ୍ୱନକ୍ଷତ୍ର ଭୋଗେ ॥
ଶୁକ୍ଳ ନବମୀ ଉର୍ଜ୍ଜ୍ୟମାସେ । ଋତୁର ଅଷ୍ଟମ ଦିବସେ ॥
ସପ୍ତମୀ ମାଘ ଶୁକ୍ଳପକ୍ଷେ । ପୌର୍ଣ୍ଣମାସୀରେ ମଘାଋକ୍ଷେ ॥
ଦ୍ୱାଦଶୀ ଅନୁରାଧା ଯୋଗେ । ତ୍ରିପୂର୍ବା ଉତ୍ତରା ସଂଯୋଗେ ॥
ଏ ତ୍ରୟତିଥି ଏକାଦଶୀ । ଜନ୍ମ ନକ୍ଷତ୍ର ଯୋଗେ ମିଶି ॥
ଶ୍ରେୟ ସାଧନ ଯୋଗ ଏତେ । ପ୍ରାଣୀଙ୍କ କର୍ମସିଦ୍ଧି ଅର୍ଥେ ॥
ଏ ଦିନେ ଧର୍ମକର୍ମ କଲେ । ଶ୍ରେୟ ଆୟୁଷ ବଢ଼େ ଭଲେ ॥
ଏ ଦିନେ ତପ ହୋମ ସ୍ନାନ । ଯଜ୍ଞେ ଦେବତା ଆରାଧନ ॥
ପିତୃ ଦେବତା ଭୂତଗଣେ । ଅନ୍ନ ଜଳ ତିଳ ତର୍ପଣେ ॥
ସଂସ୍କାର କାଳେ ପତ୍ନୀ ସଙ୍ଗେ । ରମିବ ଅପତ୍ୟ ସଂଯୋଗେ ॥

ଜାତି ମରଣ ପ୍ରେତକାର୍ଯ୍ୟେ । ପୂଜିବ ବାନ୍ଧବ ସମାଜେ ॥
ଏବେ ହୋ ଶୁଣ ଧର୍ମଶିଷ୍ୟ । କହିବା ପୁଣ୍ୟସ୍ଥାନ ଦେଶ ॥
ସତ୍ପାତ୍ର ଜନ ଜାତ ଯହିଁ । ତାହାକୁ ପୁଣ୍ୟଦେଶ କହି ॥
ବିଷ୍ଣୁଭକତ ବାସ ଯହିଁ । ସଚରାଚର ପୂତ ସେହି ॥
ବ୍ରାହ୍ମଣ କୁଳ ବସେ ଯହିଁ । ଦୟା ତପସ୍ୟା ଧର୍ମ ତହିଁ ॥
ବିଷ୍ଣୁର ପୂଜା ଯହିଁ ନିତ୍ୟେ । ସେ ପୁଣ୍ୟଦେଶ ଦେବମତେ ॥
ଗଙ୍ଗାଦି ନଦୀ ଯହିଁ ବହେ । ସେ ପୁଣ୍ୟକ୍ଷେତ୍ର ବେଦ କହେ
ପୁଷ୍କର ଆଦି ସରୋବର । ଯହିଁ ବସନ୍ତି ବିଷ୍ଣୁନର ॥
ପ୍ରୟାଗ ପୁଲହ ଆଶ୍ରମ । ସନ୍ନ୍ୟାସୀ ଋଷି ଗୁଣଧାମ ॥
ପ୍ରଭାସ କୁରୁ ମଧୁପୁରୀ । ଗୟା ମଥୁରା କୁଶସ୍ଥଳୀ ॥
ଯେ କାଶୀ ପମ୍ପା ବିନ୍ଦୁସର । କାଞ୍ଚି ଅବନ୍ତୀ ସୁଧାସାର ॥
ପୁଲମା ନରନାରାୟଣ । ନନ୍ଦା ସୀତୟା ରାମାଶ୍ରମ ॥
ମହେନ୍ଦ୍ର ମଳୟ ପର୍ବତେ । ଏମନ୍ତେ କ୍ଷେତ୍ର ଅଛି ଯେତେ ॥
ଏ ସର୍ବସ୍ଥାନ ହରିପ୍ରିୟ । ତେଣୁ ଜଗତେ ପୁଣ୍ୟମୟ ॥
ଯେ ପୁଣ୍ୟଦେଶ ତତ୍ତ୍ୱ ଭାବି । ବିଷ୍ଣୁ ପ୍ରତିମା ଯହିଁ ସେବି ॥
କୈବଲ୍ୟ ଇଚ୍ଛା ଯାର ଚିତ୍ତେ । ଏ ଦେଶେ ରହୁଥିବ ନିତ୍ୟେ ॥
ଏବେ କହିବା ପାତ୍ର ଯେତେ । ଶୁଣ ରାଜନ ଶୁଦ୍ଧଚିତ୍ତେ ॥
ପୁରାଣ ପୁରୁଷ ମୁରାରି । ଯାର ଚରଣେ ବସୁନ୍ଧରୀ ॥
ସଚରାଚର ଯା ଚରଣେ । ଋଷି ଦେବତାଦି ବ୍ରାହ୍ମଣେ ॥
ଅଗ୍ରେ ଚରଣେ ପୂଜା ଯାର । ତା ତହୁଁ ପାତ୍ର କେବା ପର ॥
ଯାର ଶରୀରେ ଜୀବ ନାଶି । ଜଳ ଯେସନେ ଜଳେ ମିଶି ॥
ଯେ ହରି ସର୍ବଦେବ ମୂଳ । ଅଶେଷ ପୂଣ୍ୟ କର୍ମଫଳ ॥
ନାନାପ୍ରକାରେ ପୁରକରି । ତା ମଧ୍ୟେ ଜୀବରୂପ ଧରି ॥
ହୃଦୟପଦ ମଧ୍ୟେ ଶୋହେ । ଅରୂପ ଜ୍ୟୋତିରୂପ ବହେ ॥
ପୁରୁଷୋତ୍ତମ ନାମ ବହେ । ସେ ହରି ତା ସଦନେ ରହେ ॥
ଏଣୁ ପୁରୁଷଙ୍କ ଉତ୍ତମ । ଯେ ନିତ୍ୟେ ରମେ ଆତ୍ମାରାମ
ଏ ଭାବେ ସଂଶୟ ବିଚାରି । ତ୍ରେତାଦିଯୁଗେ ପୂଜାକରି ॥
ସଂସ୍କାର ଆଗମ ନିଗମେ । ପୂଜା କରନ୍ତି ଗ୍ରାମେ ଗ୍ରାମେ ॥
ଯେ ପୂଜାମତେ ତୋଷ ହୁନ୍ତି । ବାଞ୍ଛିତ ଫଳ ନିତ୍ୟେ ଦ୍ୟନ୍ତି ॥
ଯେ ପ୍ରାଣୀପରେ ହିଂସା କରେ । ଦେବତା ପୂଜି ସେ ନ ତରେ
ଏଣୁ ପୁରୁଷଙ୍କର ମଧ୍ୟେ । ଯେ ବିପ୍ରେ ଥାନ୍ତି ବେଦ ସାଧେ
ତା ତହୁଁ ପାତ୍ର ନାହିଁ କେହି । ସେ ବିପ୍ର ନିତ୍ୟେ ବିଷ୍ଣୁଦେହୀ
ଏଣୁ ଏ ବ୍ରାହ୍ମଣ ଚରଣେ । ତ୍ରିଲୋକ ନିସ୍ତାର କାରଣେ ॥
ଏ ଭାବେ ଦେଶକାଳ ପାତ୍ର । ଧର୍ମାଦି ଦୀକ୍ଷା ଯନ୍ତ୍ରମନ୍ତ୍ର ॥

ନାରଦ ମୁନି ପ୍ରିୟଭାବେ । କହିଲେ ଯୁଧିଷ୍ଠିର ଆଗେ ॥
ଏ ଭାଗବତ ଧର୍ମବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
ସପ୍ତମସ୍କନ୍ଧେ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ଦେଶକାଳପାତ୍ର କଥନେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏ ପଞ୍ଚଦଶ ବର୍ଣ୍ଣାଶ୍ରମ । ସାର ସଂଗ୍ରହେ ଯେବା ଧର୍ମ ॥
ପ୍ରାଣୀଙ୍କ ନିସ୍ତାର କାରଣେ । ମୋକ୍ଷ ଲକ୍ଷଣେ ଯେବା ମଣେ
ବର୍ଣ୍ଣିତ ନିଗମ ବଚନେ । ଶୁଣ ରାଜନ ସାବଧାନେ ॥
ବ୍ରାହ୍ମଣ ଯେବା କର୍ମନିଷ୍ଠା । ତପସ୍ୱୀ ଯତୀନ୍ଦ୍ର ପ୍ରତିଷ୍ଠା ॥
ବେଦାଧ୍ୟୟନ କାର ସିଦ୍ଧି । କେବା ନିସ୍ତରେ ଯୋଗ ସାଧି
ଗୃହସ୍ଥ ପିତୃ ଶ୍ରାଦ୍ଧକାଳେ । ଜ୍ଞାନୀପୁରୁଷ ଯେବା ମିଳେ ॥
ତାହାଙ୍କୁ ହବ୍ୟ କବ୍ୟ ଦାନ । କଲେ ଅନେକ ହୁଏ ପୁଣ୍ୟ ॥
ଜ୍ଞାନ ଅଭ୍ୟ ସେ ଯେବା କର୍ମେ । ଯେ ପ୍ରାଣୀ ରହେ ନିଜ ଧର୍ମେ
ତାହାଙ୍କୁ ଯଥାଭାବେ ଦେଇ । ତେବେ ଉଚିତ ଫଳ ପାଇ ॥
ଶ୍ରାଦ୍ଧେ ଦେବତା ଅର୍ଥେ ଦୁଇ । ସେ ଭାବେ ବିଶ୍ୱଦେବା ହୋଇ
ତିନୋଟି ପିତୃସ୍ଥାନେ ବରି । ଅଭାବେ ଏକ ଏକ କରି ॥
ଉତ୍ତମ ଦ୍ରବ୍ୟ ଭୁଞ୍ଜାଇବ । ଶ୍ରାଦ୍ଧେ ବିସ୍ତାର ନ କରିବ ॥
ଯେ ଦ୍ରବ୍ୟଦେଶ କାଳୋଚିତେ । ମିଳିବ ଶାସ୍ତ୍ର ଅନୁମତେ ॥
ମୁନିଙ୍କୁ ବରି ବେଦମତେ । ପୂଜିବ ମନ ଶାନ୍ତିପୁତେ ॥
ପ୍ରାଣୀ କରନ୍ତି ବିଷ୍ଣୁଭାବେ । ଆମିଷ ଦ୍ରବ୍ୟ ଶ୍ରାଦ୍ଧେ ଯେବେ
ଶ୍ରାଦ୍ଧ ଯୁକତେ ପାତ୍ରେ ଦେଇ । ସେ ଶ୍ରାଦ୍ଧ କାମଧେନୁ ହୋଇ
ଭୁଞ୍ଜନ୍ତି ଅକ୍ଷୟ କଲ୍ୟାଣ । ଏ ବାକ୍ୟ ନିଗମ ପ୍ରମାଣ ॥
ଦେବ ବ୍ରାହ୍ମଣ ପିତୃମତେ । ଆତ୍ମା ସଜ୍ଜନ ଜନ ଯେତେ ॥
ଏହାଙ୍କୁ ବିଷ୍ଣୁ ରୂପ ମଣି । ସନ୍ତୋଷେ ଦେବ ଅନ୍ନପାଣି ॥
ଯା ଚିତ୍ତ ଧର୍ମ ଉପଦେଶେ । ଶ୍ରାଦ୍ଧ ସେ ନ କରି ଆମିଷେ ॥
ଯେ ଧର୍ମବଳେ ନିରାମିଷେ । ତାହା ନ ଲଭି ପଶୁ ହିଂସେ ॥
ସ୍ୱଧର୍ମେ ଇଚ୍ଛା ଯାର ଥିବ । କେବେହେଁ ପଶୁ ନ ହିଂସିବ
ମନ କର୍ତ୍ତବ୍ୟ ଏ ବଚନେ । ନ କରି ପଶୁଙ୍କୁ ହିଂସନେ ॥
ଯଜ୍ଞର ଫଳ ଯେ ଜାଣନ୍ତି । ନିଷ୍ଠେ କର୍ମ ଆଚରନ୍ତି ॥
ଆତ୍ମା ସଂଯମେ ଅଗ୍ନିଜାଳି । ଇନ୍ଦ୍ରିୟ ଅର୍ଥେ ଘୃତ ଢାଳି ॥

ଏ ଜ୍ଞାନଯଜ୍ଞ ଦୃଢ଼କରି । ବିଷ୍ଣୁ ମାୟାରୁ ଯାନ୍ତି ତରି ॥
ଯେ ଦ୍ରବ୍ୟମୟ ଯଜ୍ଞ କରେ । ତାହାଙ୍କୁ ଦେଖି ସାଧୁ ଡରେ ॥
ଏହାର ଦେହେ ଜ୍ଞାନ ନାହିଁ । ଆମ୍ଭ ଜୀବନ ରଖେ କାହିଁ ॥
ଏ ଘେନି ଦୟା ଯାର ଚିତ୍ତେ । ଯଜ୍ଞ କରିବ ମୁନିମତେ ॥
ବିଧର୍ମ ପରଧର୍ମ ବେନି । ଆଭାସ ଉପମାକୁ ଘେନି ॥
ଅଧର୍ମ ପଞ୍ଚଶାଖା ଏହି । ଧର୍ମଜ୍ଞ ଏହା ନ କରଇ ॥
ଯେ ଧର୍ମେ ସ୍ୱଧର୍ମରେ ବାଧା । ସେ ଧର୍ମେ ନ କରିବ ଶ୍ରଦ୍ଧା ॥
ଯେ ଧର୍ମ ପରବାକ୍ୟ କରି । ସେ ଧର୍ମେ କେବେହେଁ ନ ଡରି
ପାଷାଣ୍ଡ ଧର୍ମ ଉପଧର୍ମ । ଦମ୍ଭ ବଚନ ଆଦିକର୍ମ ॥
ସ୍ୱଧର୍ମେ ଆତ୍ମଶାନ୍ତି କରି । ଯେ ତାହା ନିରତେ ସୁମରି ॥
ନିଷ୍କାମ ପ୍ରାଣୀ ଯେବେ ହୋଇ । ଧର୍ମାର୍ଥେ ଜୀବନ ବଞ୍ଚଇ ॥
ଚେଷ୍ଟା ନ କରେ ବହୁଧନେ । ସନ୍ତୋଷ ଅଳପ ଭୋଜନେ ॥
ସହଜ ଅଜଗର ଯେହ୍ନେ । ଆହାର ନ ବାଞ୍ଛଇ ମନେ ॥
ସନ୍ତୋଷେ ଆତ୍ମାରାମ ସରେ । ଅନ୍ତେ ପଶନ୍ତି ସୁଖଘରେ ॥
ଯେ ଧନଲୋଭେ ଅସନ୍ତୋଷ । ଭବେ ଭ୍ରମଇ ସର୍ବଦିଶ ॥
ତହିଁରେ କଷ୍ଟ ସାର ହୁଏ । ସର୍ବେ ସନ୍ତୋଷେ ସୁଖମୟେ ॥
ଚର୍ମ ପାଦୁକା ଯା ଚରଣେ । ସେ ଯେହ୍ନେ କଣ୍ଟକ ପାଷାଣେ
ଭ୍ରମି ନ ଲଭେ କିଛି ଦୁଃଖ । ରାତ୍ର ଦିବସେ ଲଭେ ସୁଖ ॥
ଯେ ଜନ ସର୍ବଦିଗ ଜିଣି । ସନ୍ତୋଷେ ଭୁଞ୍ଜଇ ଧରଣୀ ॥
ସେ ପ୍ରାଣୀ ଇହ ପରଲୋକେ । ସନ୍ତୋଷେ ଫଳ ଭୁଞ୍ଜେ ଏତେ
ପଣ୍ଡିତ ଜନ ହୋଇ ଯେବେ । ନିରିତେ ଅସନ୍ତୋଷ ଭାବେ ॥
ଅଧୋଗମନ ତାହାଙ୍କର । ଶୁଣ ସୁମନେ ନୃପବର ॥
କାମକୁ ଜିଣେ ଅସଂକଳ୍ପେ । ପ୍ରାଣ ନାଶଇ ଯାର ଦର୍ପେ ॥
କାମକୁ କ୍ରୋଧ ତ୍ୟାଗ ଜୟେ । ଅର୍ଥକୁ ଅନର୍ଥର କ୍ଷୟେ ॥
ଲୋଭ କ୍ରୋଧ ଯେ ତତ୍ତ୍ୱଜ୍ଞାନେ । ଶୋକ ମୋହକୁ ବିଷ୍ଣୁଧ୍ୟାନେ ॥
ମହନ୍ତ ସେବା ଦମ୍ଭ ନାଶେ । ଯେ ଭାବେ କୈବଲ୍ୟ ପ୍ରକାଶେ
ଯୋଗ ସାଧନେ ବିଘ୍ନ ହୋଇ । ତାହାକୁ ମଉନେ ଖଣ୍ଡଇ ॥
ହିଂସାକୁ ଜିଣି କାମତ୍ୟାଗେ । କାମ ଜିଣଇ ଯୋଗମାର୍ଗେ ॥
ପ୍ରାଣୀଙ୍କ ଭୟ ଦୟା ହରେ । ତ୍ରିତାପ ସମାଧି ଯୋଗରେ ॥
ସଂଯମେ ଦେହୁ ବ୍ୟାଧି ନାଶେ । ନିଦ୍ରାକୁ ପ୍ରାଣୀଙ୍କ ନିଃଶ୍ୱାସେ ॥
ରଜ ତାମସ ସତ୍ତ୍ୱଗୁଣେ । ସତ୍ୟକୁ ଉପଶମ ଜିଣେ ॥
ଗୁରୁ ସେବନେ ମହାଦୁଃଖେ । ପ୍ରାଣୀ ତରନ୍ତି ଆତ୍ମା ସୁଖେ ॥
ଯେ ଗୁରୁଜ୍ଞାନ ଦାନ ଦେଇ । ତାକୁ ଯେ ମନୁଷ୍ୟ ମଣଇ ॥
ସେ ଯେବେ କର୍ମ କରେ ଦେହେ । ନ ଲଭେ ହସ୍ତୀ ସ୍ନାନ ପ୍ରାୟେ
ଦେଖ ଏ ପ୍ରଭୁ ଚକ୍ରଧର । ପ୍ରଧାନ ପୁରୁଷ ଈଶ୍ୱର ॥
ତାର ଚରଣ ସେବା ଅର୍ଥେ । ଜ୍ଞାନୀ ନୁହନ୍ତି ସାମରଥେ ॥
ତାହାକୁ ନର ପ୍ରାଣେ ମଣି । ଅଧୋଗତିକୁ ଯାନ୍ତି ପ୍ରାଣୀ ॥

ଏକାନ୍ତ ଧର୍ମ ଯେବେ ପ୍ରାଣୀ । ନ କରେ ମାୟା ମୋହ ଜିଣି ॥
ଯମ ନିୟମ ସାଧ ଯେଣେ । ନିଗମ ବଚନ ପ୍ରମାଣେ ॥
ଯେବେ ନ ଭଜେ ନରହରି । ସେ ନରମଧ୍ୟେ ହୁନ୍ତି ଭାରୀ ॥
ବୃତ୍ତି କଷ୍ଟନେ ଯେତେ ଅର୍ଥ । ଯୋଗେ ନୁହନ୍ତି ସାମରଥ ॥
ଏଣୁ ଏ ଇଚ୍ଛାମତେ ଯେତେ । ଅନର୍ଥ ଭଜନ୍ତି ସମସ୍ତେ ॥
ଚିତ୍ତ ପ୍ରସନ୍ନେ ଯତ୍ନ ଯାର । ନିଃସଙ୍ଗେ କରଇ ବିହାର ॥
ନିଗ୍ରହ ମନ ଇନ୍ଦ୍ରି ଦୁଃଖେ । ଯୋଗ ସାଧଇ ଅତିରେକେ ॥
ଏକାନ୍ତେ ଏକମତେ ଥାଇ । ଅଳପ ଭୋଗେ ତୋଷ ହୋଇ
ଏକାନ୍ତମନ ଶୁଚିଦେଶେ । ଆତ୍ମାର ଆସନ ଉଶ୍ୱାସେ ॥
ପବିତ୍ର ସ୍ଥାନେ ସୁଖମନେ । ଆସନେ ବସିବ ନିମଗ୍ନେ ॥
ଓଁକାର କରି ଉଚ୍ଚାରଣ । ଆକର୍ଷି ଚାପିବ ଚରଣ ॥
ବାମ ଚରଣ ଗୁହ୍ୟଦ୍ୱାରେ । ଦକ୍ଷିଣ ପାଦ ତା ଉପରେ ॥
ଦେଇ ଟେକିବ ମେରୁଦଣ୍ଡ । ଭୁଜେ ଆମଣ୍ଠି ଜାନୁଖଣ୍ଡ ॥
ପ୍ରାଣ ଅପାନ କରି ଏକ । ସାଧିବ ପୁରକ କୁମ୍ଭକ ॥
ରେଚକ କରି ଆତ୍ମାସନ । ପ୍ରାଣ ସଙ୍ଗମେ ସ୍ଥାପି ମନ ॥
ଯାବତ କର୍ମ ହିଁ ନ ତ୍ୟଜେ । ତାବତ ସଂଯମ ନ ଭଜେ ॥
ଏଣୁ ନିଶ୍ଚଳେ ସ୍ଥାପି ମନ । କରିବ ନାସାଅଗ୍ରେ ଧ୍ୟାନ ॥
ଅଗ୍ନିର ବଳେ କାମବନ । ଜ୍ଞାନେଣ ଇନ୍ଦ୍ରିୟ ଦହନ ॥
ତହିଁ ରଖିବ ମନ ଧରି । ଯୋଗ ଅଭ୍ୟାସ ଧୀରେ କରି ॥
ନିର୍ମଳ କରି ଚକ୍ଷୁଦ୍ୱାର । କର୍ମ ସାଧିବ ନିରନ୍ତର ॥
ଅଭ୍ୟାସ ବଳେ ଜିଣି ମନ । ଅଳପ ଅଳପ ସାଧନ ॥
ଏମନ୍ତ ସାଧି ନିରନ୍ତର । ସୁଖେ ମିଳିବ ମୋକ୍ଷଦ୍ୱାର ॥
ନିର୍ଧୂମ ଅଗ୍ନିପ୍ରାୟ ହୋଇ । ସୂକ୍ଷ୍ମ ସ୍ୱରୂପେ ପ୍ରକାଶଇ ॥
ଯେ ଚିତ୍ତେ ସର୍ବ ବୃତ୍ତି ତେଜେ । କାମାଦି ରିପୁଙ୍କୁ ନ ଭଜେ ॥
ସେ ଚିତ୍ତ ମିଶେ ବ୍ରହ୍ମମୁଖେ । କେବେହେଁ ନ ପଡଇ ଦୁଃଖେ
କେବେହେଁ ମାୟା ନ କଷ୍ଟଇ । ଅନ୍ତରେ ରହେ ସୂକ୍ଷ୍ମ ହୋଇ ॥
ଯେ ପ୍ରାଣୀ ଗୃହଦ୍ୱନ୍ଦ୍ୱ ତେଜେ । ପ୍ରତିଜ୍ଞା ଗତି ବଳେ ଭଜେ ॥
ପୁଣି ମିଳଇ ଗୃହେ ଯାଇ । ସେବଇ ଭୋଗଫଳ ପାଇ ॥
ଏ ଦେହେଁ ସୁଖ ଯେ ଲୋଡ଼ନ୍ତି । ଅଜରାମର ପ୍ରାୟେ ଚିନ୍ତି ॥
ଜୀବନ ଅନ୍ତେ ଏ ଶରୀର । ଭସ୍ମ ପୂରିତ ଧୂଳି ସାର ॥
ଏହାକୁ ସତ୍ୟ ପ୍ରାୟେ ମଣି । ଅଧର୍ମେ ପଶନ୍ତି ଯେ ପ୍ରାଣୀ ॥
ତାହାକୁ ବୋଲି ମୂଢ଼ପଣ । ନିଷ୍ଫଳ ତାଙ୍କର ଜୀବନ ॥
ଗୃହସ୍ଥ ଗୃହକର୍ମ ଛାଡ଼ି । ଅନ୍ୟ ଆଶ୍ରମେ ଲୋଭ ବଢ଼ି ॥
ବ୍ରତକୁ ତ୍ୟଜେ ବ୍ରତାଚାରୀ । ତପସ୍ୱୀ ଗ୍ରାମସେବା କରି ॥
ସନ୍ନ୍ୟାସୀ ଇନ୍ଦ୍ରିଲୋଭ ରସେ । ଗ୍ରାମ ଗହନେ ଯେବେ ପଶେ
ଆଶ୍ରମ ଭ୍ରଷ୍ଟ ଯେତେ ପ୍ରାଣୀ । ଏହାକୁ ଆଶ୍ରମେ ନ ଗଣି ॥
ଯେ ଧର୍ମେ ବିଡମ୍ବନ କର୍ମ । ବିଷ୍ଣୁ ମାୟାରେ ହୋନ୍ତି ଭ୍ରମ ॥

ବୁଲନ୍ତି ମାୟାରୂପ ଧରି । ତାହାଙ୍କୁ ସମ୍ଭାଷ ନ କରି ॥
ପରମ ଜ୍ଞାନପଥେ ଚିନ୍ତି । ଯେ ଆତ୍ମା ଗତି ନ ଜାଣନ୍ତି ॥
ସେ କି କାରଣେ ଦେହ ଧରେ । ଏ ନର ସଂସାର ବେଭାରେ ॥
ଏବେ ହୋ ଶୁଣ ଯୁଧିଷ୍ଠିର । ବହୁ ଭୋଜନ ପୁଷ୍ଟିକର ॥
ଦେହ ବହିଲା ଯେବା ଅର୍ଥେ । କେବେହେଁ ନ ରହନ୍ତି ଚିରେ ॥
ବିଧାତା ତିଆଣ ନିର୍ମାଣ । ଏହା ନ ଜାଣେ ମୂର୍ଖଜନ ॥
ଦେହକୁ ରଥପ୍ରାୟେ ଗଢ଼ି । ଦଶ ତୁରଙ୍ଗ ଅଗ୍ରେ ଯୋଡ଼ି ॥
ଦଶ ଇନ୍ଦ୍ରିୟ ଦଶ ବାଜୀ । ତା ସଙ୍ଗେ ମନ ଦେଇ ଖଞ୍ଜି ॥
ଶବଦ ରସ ରୂପ ଗନ୍ଧେ । ସ୍ମରଣେ ଚଳେ ଅନୁବନ୍ଧେ ॥
ସାରଥି ପଣେ ବୁଦ୍ଧି ରହେ । ଏ ପଞ୍ଚ ମାର୍ଗେ ରଥ ବାହେ ॥
ଏ ନରଦେହେ ବଳ ସତ୍ୟେ । ଛନ୍ଦ ବନ୍ଧନ ଈଶ ତନ୍ତେ ॥
ପ୍ରାଣ ବହନ୍ତି ଏ ଶରୀରେ । ଦ୍ୱିପଞ୍ଚ ବାହ୍ୟ ଅଭ୍ୟନ୍ତରେ ॥
ସେ ପ୍ରାଣ ଅକ୍ଷରୂପ ଧରି । ବାହାରେ ଭିତରେ ସଞ୍ଚରି ॥
ଅଧର୍ମ ଧର୍ମ ଚକ୍ର ଦୁଇ । ମାନବ ଅହଂକାର ବହି ॥
ରଥେ ବସଇ ରଥୀ ରୂପେ । କର୍ମ ଭୂଷିତ ବଳଦର୍ପେ ॥
ପ୍ରଣବ ହସ୍ତେ ଧନୁ ତାର । ଆକାର ଉକାର ମକାର ॥
ଜୀବକୁ ତାର ରୂପ କରି । ପ୍ରଣବ ହସ୍ତେ ଧନୁ ଧରି ॥
ପରମ ଆତ୍ମା କରି ଲକ୍ଷ୍ୟ । ନାରାଚ ବିନ୍ଧଇ ପ୍ରତ୍ୟକ୍ଷ ॥
ସମ୍ମୁଖେ ଯେତେ ରିପୁ ଥିବେ । ଯୁଦ୍ଧେ ସକଳ ନାଶ ଯିବେ ॥
ଶୁଣ ରାଜନ ଶୁଦ୍ଧଚିତ୍ତେ । ସମ୍ମୁଖେ ରିପୁଛନ୍ତି ଯେତେ ॥
ଏ କାମ କ୍ରୋଧ ମୋହଶୋକ । ଲୋଭ ସାହସ ଅବିବେକ ॥
ପ୍ରମାଦ ମାନ ଅପମାନ । ଅସତ୍ୟ ମିଥ୍ୟା ହିଂସା ଜ୍ଞାନ ॥
ଲଜ୍ଜା ପ୍ରମାଦ ନିଦ୍ରା କ୍ଷୁଧା । ଏତେ ଶତ୍ରୁର ଯହିଁ ବାଧା ॥
ତ୍ରିଗୁଣମୟୀ ସେ ପ୍ରକୃତି । ଏ ଆଦି ଯେତେ ରିପୁଛନ୍ତି ॥
ଏହାଙ୍କୁ ସମ୍ମୁଖେ ଆବୋରି । ଯେ ରଥୀ ପାରେ ଯୁଦ୍ଧେ ମରି
ରଥକୁ ଆତ୍ମବଶ କରି । ଜ୍ଞାନ ଖଡଗ ହସ୍ତେ ଧରି ॥
ସମ୍ମୁଖେ ଶତ୍ରୁ କରେ ଛେଦ । ତେବେ ନିର୍ଭୟ ସୁଖାନନ୍ଦ ॥
ସୁଖେ ଭୁଞ୍ଜଇ ସେ ସ୍ୱରାଜ୍ୟ । ଆନନ୍ଦେ ଅଷ୍ଟ ଅଇଶ୍ୱର୍ଯ୍ୟ ॥
ଯେବେ ଏ ରଥ ତ୍ୟାଗକରେ । ନିଶ୍ଚିନ୍ତେ ରହେ ମୋଦଭରେ ॥
ଏ ରଥେ ରିପୁ ଯେ ନ ମାରେ । ସେ କାହିଁ ଆତ୍ମସୁଖେ ତରେ ॥
ଯେବେ ଅଳସେ ରହେ ରଥେ । ତାହାକୁ ବେଢନ୍ତି ସମସ୍ତେ ॥
ଅସାଧ ଅଶ୍ୱ ଯେତେ ରଥେ । ସାରଥି ବିମାନ ସହିତେ ॥
ଦୁର୍ଗମ ମାର୍ଗେ ରଥ ନ୍ୟନ୍ତି । ଶତ୍ରୁଙ୍କ ମଧ୍ୟେ ପ୍ରବେଶନ୍ତି ॥
ସେ ଶତ୍ରୁଗଣେ ବଳ କରି । ଅଶ୍ୱ ସାରଥି ଯୁଦ୍ଧେ ଧରି ॥
ସଂସାର କୂପ ଅନ୍ଧକାରେ । କ୍ଷେପନ୍ତି ମୃତ୍ୟୁ ଭୟଙ୍କରେ ॥
ପଡ଼େ ଅଜ୍ଞାନ ଦୁଃଖଘୋରେ । ମନୁଷ୍ୟ ଜନ୍ମ ହୁଏ ଦୂରେ ॥
ପ୍ରବୃତ୍ତି ନିବୃତ୍ତି ଯେ ଧର୍ମ । ସଂସାରେ ବଇଦିକ କର୍ମ ॥

ପ୍ରବୃତ୍ତି - ପଥେ ସଞ୍ଚରନ୍ତି । ନିବୃତ୍ତି ଅମୃତ ଭୁଞ୍ଜନ୍ତି ॥
ଯେ ଦ୍ରବ୍ୟମୟ ଯଜ୍ଞକାମ । ଶାନ୍ତିକ ଅଗ୍ନିହୋତ୍ର ନାମ ॥
ପୌର୍ଣ୍ଣମୀ ଅମାବାସ୍ୟା ଆଦି । ପଶୁଏ ଚତୁର୍ମାସ୍ୟା ବାଦୀ ॥
ହୃତ ପ୍ରହୃତ ଆଦି ଯେତେ । ପ୍ରବୃତ୍ତି ଇଷ୍ଟ ପଥ ଏତେ ॥
କୂପ ପ୍ରାସାଦେ ଯେ ଭବନ । ଏ ଆଦି ପୂର୍ବର ଲକ୍ଷଣ ॥
ବିପାକେ ଦ୍ରବ୍ୟ ସୂକ୍ଷ୍ମ ଯେତେ । ଧୂମ ରଜନୀ ଅସାକ୍ଷାତେ ॥
ଦକ୍ଷିଣାୟନ ସୋମ ବୁଧ । ପରଶ ଔଷଧି ବିରୁଦ୍ଧ ॥
ସେ ମନ୍ୱନ୍ତର ଅସମ୍ଭବ । ଏ ପିତୃଦାନ ପୁଣ୍ୟ ଭାବ ॥
ଦେବଙ୍କ ରାତ୍ରି ଏ ବୋଲାଇ । ଶୁଣ ଦିବସ ଏବେ କହି ॥
ଏ ଅନୁରୂପେ ଏକେ ଏକେ । ଭବେ ଭ୍ରମନ୍ତି ଜୀବଲୋକେ ॥
ପ୍ରବୃତ୍ତି ମାର୍ଗ ଏ ପ୍ରମାଣ । ଏବେ ହୋ ଧର୍ମସୁତ ଶୁଣ ॥
ସମ୍ଭବୁଁ ମରଣ ପର୍ଯ୍ୟନ୍ତେ । ବିପ୍ର ସଂସାରେ ବେଦମତେ ॥
ସେ ବିପ୍ର ଜ୍ଞାନୀ ଯେବେ ହୁଏ । ଯଜ୍ଞ କରଇ ନିଜ ଦେହେ ॥
ଇନ୍ଧନ ଇନ୍ଦ୍ରି ଅର୍ଥେ କଲ୍ପେ । ହୋମ କରଇ ଜ୍ଞାନଦୀପେ ॥
ମନେ କରିବ ଇନ୍ଦ୍ରି ଲୀନ । ବଚନେ ସଂହରିବ ମନ ॥
ବଚନ ସ୍ୱରେ ଲୀନ କରି । ସ୍ୱରଗୁଁ ଓଁକାରେ ସଂହରି ॥
ଓଁକାର ବିନ୍ଦୁ ନାଦେ ଯାଇ । ବିନ୍ଦୁକୁ ପ୍ରାଣେ ଯୋଗେଥୋଇ
ଜ୍ଞାନୀର ଅଟେ ଏ ଲକ୍ଷଣ । ଯେ ପଥେ ଯିବ ତାହା ଶୁଣ ॥
ଅଗ୍ନି ଆଦିତ୍ୟ ପ୍ରାତଃକାଳେ । ପୌର୍ଣ୍ଣମୀ ପକ୍ଷ ଯେ ଶୁକ୍ଳେ ॥
ଯେ ସ୍ୱର୍ଗମାର୍ଗ ଅନୁମାନ । ଉତ୍ତରାୟଣ ଏହା ନାମ ॥
ବିଶ୍ୱ ତେଜସ ସାଧୁଲୟେ । ତୁରୀୟ ଦୀପ୍ତେ ଆତ୍ମାମୟେ ॥
ଏ ବେଦପଥେ ମନେ ଚିନ୍ତି । ଏ ମାର୍ଗେ ଭୋଗ ନ ମିଳନ୍ତି ॥
ଯେ ଆତ୍ମା ଉପଶାନ୍ତ ଜନେ । ନିତ୍ୟେ ରହନ୍ତି ଆତ୍ମାଧାନେ ॥
ସେ ନ ପଡନ୍ତି ନରଲୋକେ । ନିଶ୍ଚିନ୍ତେ ଥାନ୍ତି ଆତ୍ମସୁଖେ ॥
ଏ ପିତୃଦେବ ଯାନ ପଥେ । ଯେ ଜନ ଥାନ୍ତି ବେଦମତେ ॥
ପରମ ବ୍ରହ୍ମ ସେ ଲଭନ୍ତି । ଜ୍ଞାନୀ ରହନ୍ତି ଏହା ଚିନ୍ତି ॥
ଆଦି ଅନ୍ତରେ ପ୍ରାଣୀଙ୍କର । ଯେ ବ୍ୟାପୀ ବାହ୍ୟ ଅଭ୍ୟନ୍ତର
ପର ଅପର ତାର ଦେହେ । ସ୍ୱଭାବେ ଜ୍ଞାନୀ ଅର୍ଥ ହୁଏ ॥
ବଚନ ଦୀପ ତମ ଜ୍ୟୋତି । ଦୃଶ୍ୟ ଅଦୃଶ୍ୟ ତାର ଗତି ॥
ଯେ ତାକୁ ଯେମନ୍ତେ ଚିନ୍ତନ୍ତି । ଅଭ୍ୟାସ ମାତ୍ରେ ସେ ଦେଖନ୍ତି
ଭାବ ପ୍ରମାଣ ବଶ ହୁଏ । ଦର୍ପଣେ ପ୍ରତିବିମ୍ବ ପ୍ରାୟେ ॥
ଧଇର୍ଯ୍ୟ ନୁହେ କଦାଚିତେ । ଏ ଭାବ ଘଟିବ କେମନ୍ତେ ॥
ଏଣୁ ନିଷ୍କଳ ବୃତ୍ତି ଚିତ୍ତେ । ଯେ ତାକୁ ଚିନ୍ତେ ଅବିରତେ ॥
ଏ ଭୂମିଆଦି ପଞ୍ଚଭୂତେ । ସେ ରହେ ବାହ୍ୟ ଅନ୍ତର୍ଗତେ ॥
ତାହା ନ ପାଇ ଏକେ ଏକେ । ସେ ତାରତମ୍ୟ ଅତିରେକେ ॥
ବନସମୂହ ଲତା ଯେହ୍ନେ । ଜାଣିଲେ ନିଜ କର୍ମ ତେହ୍ନେ ॥
ବିଚାରେ ବହେ ଏକମୂଳେ । ଅନ୍ୟତ୍ର ନ ଲାଗେ ନିଷ୍କଳେ ॥

ତାହାର ଆଦ୍ୟନ୍ତ ନ ଜାଣି । ଏହି ପ୍ରକାରେ ଭ୍ରମେ ପ୍ରାଣୀ ॥
ସ୍ୱପ୍ନ ଜାଗ୍ରତ ନିଦ୍ରାଗତ । ବିଧି ନିଷେଧ ସେହିମତ ॥
ଶରୀର ବହି ଏ ଜଗତେ । କେ କର୍ମକରି ବେଦମତେ ॥
ହରି ବିଷୟେ ସମର୍ପିଲେ । ଏ ବିଷ୍ଣୁମାୟା ତରେ ଭଲେ ॥
ଶରୀର ଦାରା ପୁତ୍ରଆଦି । ଅନ୍ୟ ବାନ୍ଧବେ ସେ ସମ୍ପାଦି ॥
ଏହାଙ୍କ ଅର୍ଥେ ଆତ୍ମା ଦୁଃଖୀ । ସେ କାହିଁ ଭବମଧେ ସୁଖୀ ॥
ଏ ଆଦି ବେଦବାଦ୍ୟ ଯେତେ । ଗୃହେ ଯେ ସାଧେ ଅବିରତେ ।
କୃଷ୍ଣେ ନ କଲେ ସମର୍ପଣ । ତାର ଜୀବନ ଅକାରଣ ॥
ଦେଖ ତୁ ଗୃହମଧେ ଥାଇ । ସତତେ ଘେନି ଚାରିଭାଇ ॥
ରାଜ୍ୟ ବିହୀନେ ବନଦେଶେ । ଯେତେ ଭ୍ରମିଲୁ ବନବାସେ ॥
ଯାର ଚରଣେ ଆଶ୍ରେକରି । ଘୋର ସଙ୍କଟୁ ତୁ ନିସ୍ତରି ॥
ଏବେ ତୋହର ଦେଖ ଭାଗ୍ୟ । କଲୁ ରାଜୁସି ମହାଯଜ୍ଞ ॥
ଲଭିଲୁ ପରମ କାରଣ । ତୋତେ ସୁଲଭ ନାରାୟଣ ॥
ମୁହିଁ ଯେ ପୂର୍ବେ ଦେହ ବହି । କୃଷ୍ଣ ମାୟାରେ ଭ୍ରମ ହୋଇ ॥
ପୂର୍ବେ କଳ୍ପର ନାମ ଶୁଣ । ଗନ୍ଧର୍ବ ଉପବରହଣ ॥
ସେ କଳ୍ପ ଅନ୍ତେ ଦେହ ବହି । ଗନ୍ଧର୍ବଗଣ ମଧେ ଥାଇ ॥
ସ୍ୱଭାବେ ରୂପ ଗୁଣ ମୋର । ଅତି ସୁନ୍ଦର ମନୋହର ॥
ଗନ୍ଧର୍ବ ନାରୀଗଣ ମଧେ । ଉନ୍ମତ୍ତରୂପେ ମୁଁ ଆନନ୍ଦେ ॥
ଯୁବତୀଗଣେ ପ୍ରିୟତମ । ଏମନ୍ତେ ଗଲା କେତେ ଦିନ ॥
ଏକ ଦିବସେ ଦେବଗଣେ । ସମସ୍ତେ ମିଳି ପୁଷ୍ପବନେ ॥
ବ୍ରହ୍ମା ଶଙ୍କର ଆଦି ବସି । ହରି ଗାୟନ ରସେ ରସି ॥
ଗନ୍ଧର୍ବ ଗଣେ ଶୁଣାଇଲେ । ମୁହିଁ ଯେ ଥିଲି ତାଙ୍କ ତୁଲେ ॥
ଯୁବତୀ ଜନ ମଧେ ଥାଇ । ଆନନ୍ଦେ ବୀଣାବାଦ୍ୟ ଗାଇ ॥
ଆବୃତ ଅପସରା ବୃନ୍ଦେ । ହସ୍ତ ନିବେଶି ତାଙ୍କ କନ୍ଧେ ॥
ନୃତ୍ୟ ମୁଁ କଲି ନାନାମତେ । ତା' ଦେଖି ବ୍ରହ୍ମା କୋପଚିତ୍ତେ
ଦେବହେଳନ କାର୍ଯ୍ୟ ଦେଖି । କୋପେ ଅରୁଣ କଲେ ଆଖି ॥
ବ୍ରହ୍ମାଙ୍କ ଶାପ କୋପାନଳେ । ପଡ଼ିଲି ଅବନୀ ମଣ୍ଡଳେ ॥
ଲଭିଲି ଦାସୀ ଗର୍ଭେ ଜନ୍ମ । ଯେଣୁ ମୋ ଥିଲା ଶୁଭକର୍ମ ॥
ତେଣୁ ମୁଁ ସେବି ବିପ୍ରପାଦ । ତରିଲି ଦୁର୍ଗମ ପ୍ରମାଦ ॥
ବିପ୍ର ଚରଣ ସେବା ଫଳେ । ପୁଣି ଜନ୍ମିଲି ବିପ୍ରକୁଳେ ॥

ତୋର ଅଗ୍ରତେ ଗୃହୀଧର୍ମ । କହିଲି ଯଥାବିଧି କର୍ମ ॥
ଏହା ଶୁଣନ୍ତେ ପାପ ହରେ । ସେ ଗୃହଧର୍ମେ ଥାଇ ତରେ ॥
ତୁ ବଡ଼ଲୋକ ଭାଗ୍ୟବନ୍ତ । ତେଣୁ ତୋ ବାନ୍ଧବ ଅନନ୍ତ ॥
ତୋହର ଗୃହେ ନରହରି । ବସଇ ନରରୂପ ଧରି ॥
ସେ ହରିବ୍ରହ୍ମ ନିରଞ୍ଜନ । ଧ୍ୟାନେ ନ ପାନ୍ତି ମୁନିଜନ ॥
କେବଳ ସୁଖ ଅନୁଭୂତି । ପରମ ସୁଖେ ତାର ସ୍ଥିତି ॥
ତୋହର ପ୍ରିୟ ଭଗବାନ । ସ୍ୱଭାବେ ମାତୁଳ ନନ୍ଦନ ॥
ଜଗତ ଆତ୍ମା ମହାଗୁରୁ । କେବା ମହିମା ବର୍ଣ୍ଣିପାରୁ ॥
ବ୍ରହ୍ମା ଶଙ୍କର ଆଦି ଦେବେ । ତାର ମହିମା ନ ଜାଣିବେ ॥
ମଉନ ବ୍ରତ ତପଆଦି । ନିଷ୍କଳ ଧାରଣା ସମାଧି ॥
ନିର୍ମଳ ଭକ୍ତି ହୁଏ ଯେବେ । ନିର୍ବାଣ ମୁକ୍ତି ତାର ଭାବେ ॥
ସାତ୍ତ୍ୱିକ ଜନଙ୍କର ଗତି । ସେ ହରି ହେଉ ଆମ୍ଭ ପ୍ରୀତି ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ଦେବଋଷି ବାକ୍ୟେ । ପଞ୍ଚ ପାଣ୍ଡବ ଏକେ ଏକେ ॥
କୃଷ୍ଣ ଚରଣେ ପୂଜା କଲେ । ନାରଦ ପାଦେ ପ୍ରଣମିଲେ ॥
ନାରଦ ଉଠି ତତକ୍ଷଣେ । ନମିଲେ କୃଷ୍ଣର ଚରଣ ॥
ସେ କୃଷ୍ଣେ କରି ଅନୁମାନ । ମୁନି ହୋଇଲେ ଅନ୍ତର୍ଦ୍ଧାନ ॥
ଏମନ୍ତେ ଦକ୍ଷକନ୍ୟା ଗର୍ଭେ । ଯେତେ ଉପୁଜିଲେ ଦାନବେ
ଦେବ ଦାନବ ଆଦି ଯେତେ । ସର୍ବ କହିଲୁ ତୋ ଅଗ୍ରତେ ॥
ସୁଜନେ ଶୁଣ ଦୃଢ଼ଚିତ୍ତେ । ହରି ଚରିତ ଭାଗବତେ ॥
ନୃସିଂହ ଅମୃତ ଚରିତ । ଶୁଣନ୍ତେ ନାଶଇ ଦୁରିତ ॥
ସପ୍ତମସ୍କନ୍ଧେ ଯାହା କହି । ଶୁଣନ୍ତେ ପାପଭୟ ନାହିଁ ॥
ଏ ଦାସ ଜଗନ୍ନାଥ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ସପ୍ତମସ୍କନ୍ଧେ ନାରଦ ଯୁଧିଷ୍ଠିର ସମ୍ବାଦେ ବର୍ଣ୍ଣାଶ୍ରମ ଧର୍ମ କଥନେ ନାମ ପଞ୍ଚଦଶୋଽଧ୍ୟାୟଃ ।*

ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ
ଯଦି ଶୁଦ୍ଧମଶୁଦ୍ଧଂ ବା ମମଦୋଷୋ ନ ବିଦ୍ୟତେ ।
ସପ୍ତମ ସ୍କନ୍ଧ ସମାପ୍ତ

# ଅଷ୍ଟମ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

ହରଷେ ଅଭିମନ୍ୟୁ ସୁତ । ରୋମ ପୁଲକେ କୃତ କୃତ୍ୟ ॥
ଶୁକଚରଣେ କର ଦେଇ । ବୋଲଇ ନିସ୍ତରିଲି ମୁହିଁ ॥

### ରାଜା ଉବାଚ

ବିଷ୍ଣୁ ଚରିତ ତୁମ୍ଭ ମୁଖେ । ନ ଶୁଣି ଅଦୃଷ୍ଟ ବିପାକେ ॥
ଭୋ ମୁନି ଦୟାକର ମୋତେ । ମରଣୁ ତରିବି ଯେମନ୍ତେ ॥
ମୋହର ସ୍ନେହ ବହ ଯେବେ । ପ୍ରସନ୍ନ ଚିତ୍ତେ କହ ଏବେ ॥
ପୂର୍ବେ ଯେ ସ୍ୱାୟମ୍ଭୁବ ମନୁ । ପ୍ରତ୍ୟକ୍ଷେ ପଦ୍ମଯୋନି ତନୁ ॥
ତାହାଙ୍କ ବଂଶେ ଯେ ଚରିତ । ଯେ ପୂର୍ବେ ଭୂତ ଭବିଷ୍ୟତ ॥
ବିସ୍ତାରି ତୁମ୍ଭ ମୁଖୁ ଶୁଣି । ତରିବି ଭବ ତରଙ୍ଗିଣୀ ॥
ଯେ ବଂଶେ ବିଶ୍ୱସୃକ ରାଜା । ମନୁ ପୁରୁଷ ରୂପେ ପୂଜା ॥
ପୂଜିତ ଏ ମାୟା ଜଗତେ । ଯେ ବା ଚରିତ କଲେ ଯେତେ ॥
ଯେ ମନୁବଂଶେ ଯେତେ କୃତ୍ୟ । ଅଦ୍ଭୁତ ବିଷ୍ଣୁର ଚରିତ ॥
ଅଦ୍ୟାପି ବସି କବି ଜନେ । ଅଶେଷ ଶାସ୍ତ୍ର ଅନୁମାନେ ॥
ଗ୍ରନ୍ଥିଲେ କୃଷ୍ଣ ଗୁଣ ଗାଥା । ଅଶେଷ କର୍ମ ହରି କଥା ॥
ଯେ କଥା କର୍ଣ୍ଣ ରନ୍ଧ୍ରେ ପଶେ । ଅଶେଷ କଲୁଷ ବିନାଶେ ॥
ଯେ ମନୁ ଅନ୍ତରେ ଯେ କଥା । ବିଷ୍ଣୁ ଚରିତ ସାଧୁ ଗାଥା ॥
ଯେ ବର୍ତ୍ତମାନ ପୂର୍ବ ଭୂତେ । ଯେ ଅବା କଲେ ଭବିଷ୍ୟତେ ॥
ସକଳ କହି ମୁନିବର । ଏ ଦୁଃଖ ସାଗରୁ ଉଦ୍ଧର ॥
ଏ ମନ୍ତେ ପରୀକ୍ଷିତ ଆଗେ । ଶୁକ କହନ୍ତି ବିଷ୍ଣୁ ଭାବେ ॥

### ଶ୍ରୀ ଶୁକ ଉବାଚ

ପ୍ରଥମ କହେ ମୁଁ ସଂପାଦି । କହିଲି ସ୍ୱାୟମ୍ଭୁବ ଆଦି ॥
ଏ ଷଡ଼ ମନୁବଂଶେ ଯେତେ । ଦେବାଦି ମନୁଷ୍ୟ ପର୍ଯ୍ୟନ୍ତେ ॥
ଆଦ୍ୟନ୍ତ ମଧ୍ୟେ କଲେ ଯେତେ । ପୂର୍ବେ ମୁଁ କହିଅଛି ତୋତେ ॥
ଆକୃତି ଦେବହୂତି ବେନି । ମନୁ ଦୁହିତା ବେନି ଭଗ୍ନୀ ॥
ଧର୍ମ ଜ୍ଞାନର ଉପଦେଶେ । ପରମ ବ୍ରହ୍ମ ନିଜ ଅଂଶେ ॥
ଯଜ୍ଞ ବରାହ କଳ୍ପ ପୂର୍ବେ । ଜନ୍ମିଲେ ଦେବହୂତି ଗର୍ଭେ ॥
କପିଳ ରୂପେ କଲେ ଯେତେ । ପୂର୍ବେ ମୁଁ କହିଅଛି ତୋତେ ॥
ଆକୃତି ଗର୍ଭେ ଯଜ୍ଞ ରୂପେ । ଯେ ଅବା କଲେ ପୂର୍ବ କଳ୍ପେ ॥
ସେ କଥା ଶୁଣ ନୃପବର । ହରି ଚରିତ ସୁଧାସାର ॥
ଯେ ସ୍ୱାୟମ୍ଭୁବ ମନୁ ରାଜା । ସୃଷ୍ଟି ସର୍ଜନେ ମହାତେଜା ॥
ସେ ପତ୍ନୀ ଶତରୂପା ସଙ୍ଗେ । ବିରକ୍ତ ଚିତ୍ତେ କାମ ଭୋଗେ ॥
ବନେ ପଶିଲା ତପ ଅର୍ଥେ । ସେ ପତିବ୍ରତାର ସମେତେ ॥
ସୁନନ୍ଦା ତୀରେ ଏକ ପାଦେ । ଭୂମି ସ୍ପରଶେ ଦୃଢ଼ ବନ୍ଧେ ॥
ଗଗନ ଗତେ ମୁଖ କରି । ଚଞ୍ଚଳ ଚିତ୍ତକୁ ନିବାରି ॥
ସୁଘୋର ତପେ ରହି ବନେ । ସେ ରାଜା ବିଚାରଇ ମନେ ॥
ଯେ ହରି ଏ ବିଶ୍ୱ ସଂସାରେ । ଚେତନା ରୂପେ ହୃଦପୂରେ ॥
ଚେତନା ଅଚେତନା ରୂପୀ । ଜାଗ୍ରତ ସ୍ୱପ୍ନ ଦୃଢ଼ବ୍ୟାପୀ ॥
ବ୍ରହ୍ମ ନ ଜାଣେ ଯାର ଅନ୍ତ । ତେଣୁ ସେ ବୋଲାଇ ଅନନ୍ତ ॥
ଏ ବିଶ୍ୱ ଆତ୍ମା ଯାର ହୋଏ । ସ୍ୱୟଂ ବିରାଜେ ନିଜଦେହେ ॥
ସର୍ଜଇ ପାଳଇ ସଂହରେ । ବାଳକ ଲୀଳାରେ ବିହରେ ॥
ଦେଖନ୍ତା ପ୍ରାଣୀ କି ନ ଦିଶେ । ଦୃଶ୍ୟ ଅଦୃଶ୍ୟ ରୂପେ ମିଶେ ॥
ସକଳ ରୂପେ ଯାର ବାସ । ବିଭବେ ଯେହ୍ନେ ଘଟାକାସ ॥
ସେ ସର୍ବ ପ୍ରାଣୀଙ୍କ ମନ୍ଦିର । ଜୀମୂତ ମଧ୍ୟେ ଯେହ୍ନେ ନୀର ॥
ସୁପର୍ଣ୍ଣ ପୃଷ୍ଟେ ତାର ମତି । ଜ୍ୟୋତିଙ୍କ ମଧ୍ୟେ ଦିବ୍ୟ ଜ୍ୟୋତି ॥
ଆଦ୍ୟନ୍ତ ମଧ୍ୟ ଯାର ନାହିଁ । ସ୍ୱ ପର ଭେଦ ଆଉ କାହିଁ ॥
ନ ମିଶେ ଅନ୍ତର ବାହ୍ୟରେ । ଏ ମାୟା ମୋହମ ସଂସାରେ ॥
ଏ ବିଶ୍ୱଜ୍ୟୋତି ଯେ ବୋଲାଇ । ବେଢାରେ ଆତଯାତ ନାହିଁ ॥
ସେ ବିଶ୍ୱକାୟ ପୁରୁହୂତ । ବିଶ୍ୱ ସର୍ଜନେ ଉପଗତ ॥
ବିମୋହ ମୋହ ପାଶେ ଛନ୍ଦି । ଯାର କ୍ରୀଡ଼ାରେ ବିଶ୍ୱ ବନ୍ଦୀ ॥
ସତ୍ୟ ପରମଜ୍ୟୋତି ଅଜ । ପୁରାଣ ପୁରୁଷ ବିରାଜ ॥
ଜୀବର ଜନ୍ମ ଆଦି ଯେତେ । ଧରେ ଆତ୍ମାଗତି ଆୟତ୍ତେ ॥
ନିରୀହ ଚେଷ୍ଟା ବିବର୍ଜିତ । ସ୍ୱଭାବେ ଇଚ୍ଛଇ ସମସ୍ତ ।
ଏ ଭାବ ଜାଣି ଋଷିଜନେ । କର୍ମ ଇଚ୍ଛନ୍ତି ଦୃଢ଼ମନେ ॥
ଏ ଭାବେ କର୍ମ କର୍ମଫଳେ । ଏଣୁ ସେ ଲଭନ୍ତି ନିଷ୍ଫଳେ ॥
ଈଶ୍ୱର ଭାବେ କର୍ମ କଲେ । ନିର୍ଗୁଣ ଲଭନ୍ତି ସେ ଭଲେ ॥
ଇଷ୍ଟ କରନ୍ତି ପ୍ରାଣୀଙ୍କର । ସ୍ୱଭାବେ ଭଜେ ଦୁରାଚାର ॥

ଆତ୍ମାରେ ଆତ୍ମା ପୂର୍ଣ୍ଣ ଅର୍ଥେ । ଯେ ତାଙ୍କୁ ଭଜନ୍ତି ଜଗତେ ॥
କେବେ ହେଁ ଭ୍ରଷ୍ଟ ସେ ନୁହନ୍ତି । ଅନ୍ତେ ଲଭନ୍ତି ବ୍ରହ୍ମଗତି ॥
ସକଳ ଆତ୍ମାରେ ଈଶ୍ୱର । ସ୍ୱଭାବେ ନାହିଁ ଅହଙ୍କାର ॥
ପୂର୍ଣ୍ଣ ଅନାଦି ନିରଞ୍ଜନ । କାହାର ନୋହେ ସେ ଅଧୀନ ॥
ସ୍ୱଭାବେ ନିଜମାର୍ଗେ ରହେ । କେ ଚିହ୍ନି ପାରେ ତାଙ୍କୁ ଦେହେ ॥
ଏଣୁ ସେ ସଂସାରର ସାର । ତା ପାଦେ ମୋର ନମସ୍କାର ॥

## ଶ୍ରୀ ଶୁକ ଉବାଚ

ଏମନ୍ତ ବ୍ରହ୍ମ ଭାଗବତ । ସେ ସ୍ୱାୟମ୍ଭୁବ ଦୃଢ଼ଚିତ୍ତ ॥
ଚିନ୍ତା କରନ୍ତି ତପବଳେ । ସୁଦୃଢ଼ ସମାଧି ନିଷ୍ଠଳେ ॥
ଅସୁର ଯା ତୁ ଧାନ ଗଣେ । ବେଗେ ମିଳିଲେ ଘୋର ବନେ ॥
ଭକ୍ଷିବା ପ୍ରାୟେ କ୍ଷୁଧା ଗ୍ରାସେ । ବେଗେ ମିଳିଲେ ତାର ପାଶେ ॥
ତାହାଙ୍କୁ ଦେଖି ନରହରି । ଯଜ୍ଞ ପୁରୁଷ ରୂପଧରି ॥
ନିବାରି ଯାତୁଧାନ ଗଣ । ସ୍ୱର୍ଗେ ମିଳିଲେ ନାରାୟଣ ॥
ସେ ମନୁ ଅନ୍ତେ ସ୍ୱାରୋଚିଷ । ଦ୍ୱିତୀୟ ମନୁ ସେ ବିଶେଷ ॥
ଅଗ୍ନିର ପୁତ୍ର ସେ ସ୍ୱଭାବେ । ରାଜତ୍ୱ କଲା ବିଶ୍ୱଭାବେ ॥
ଦ୍ୟୁମତ ସୁଷେଣ ରୋଚିଷ । ଏ ଆଦି ପୁତ୍ର ତାର ଦଶ ॥
ସେ ମନୁ କାଳେ ସୁରନାଥ । ରୋଚନ ନାମେ ବଳବନ୍ତ ॥
ଯାହାର କାଳେ ଦେବଗଣ । ତୁଷିତ ନାମେ ଉଚ୍ଚାରଣ ॥
ଋଷିଏ ଊର୍ଜ୍ଜସ୍ତମ୍ଭ ଆଦି । ଏ ସପ୍ତଋଷି ବ୍ରହ୍ମବାଦୀ ॥
ସେ ବେଦଶିରା ନାମେ ମୁନି । ତୁଷିତା ନାମେ ତା ଭାବିନୀ ॥
ସେ ପତ୍ନି ଗର୍ଭେ ବିଭୁ ରୂପେ । ବିଷ୍ଣୁ ଜନ୍ମିଲେ ଆଦି କଳ୍ପେ ॥
ପୂର୍ବେ ଯେ ବାଳଖିଲ୍ୟା ରୂପେ । ଅଠାଶୀ ସସ୍ର ଆଦି କଳ୍ପେ ॥
ଯଜ୍ଞ ଅଭ୍ୟାସେ ଉର୍ଦ୍ଧ ରେତା । ବିଷ୍ଣୁ ଭଜନେ ବଳବନ୍ତା ॥
ବିଷ୍ଣୁର ଶିକ୍ଷା ଶିରେ ଧରି । ସେ ମୁନିଗଣେ ବ୍ରହ୍ମଚାରୀ ॥
କୁମାର ବ୍ରତ ଆଚରିଲେ । ତେଣୁ ବାଳକ ସେ ହୋଇଲେ ॥
ତୃତୀୟ ମନୁ ଯେ ଉତ୍ତମ । ସେ ପ୍ରିୟବ୍ରତର ନନ୍ଦନ ॥
ତାର ସୃଞ୍ଜିୟ ଯଜ୍ଞ ହୋତ୍ର । ଏ ଆଦି ପୂର୍ବେ ବଳମନ୍ତ ॥
ସେ କଳ୍ପେ ସପ୍ତଋଷି ଜନ । ବଶିଷ୍ଠ ଋଷିଙ୍କ ନନ୍ଦନ ॥
ପ୍ରମଦ ଆଦି ସପ୍ତସୁତେ । ସତ୍ୟକ ନାମେ ଦେବଯୂଥେ ॥
ସତ୍ୟଜିତ ଯେ ଇନ୍ଦ୍ର ରାଜା । ହରି ଭଗତେ ମହାତେଜା ॥
ସୁ ନୃତା ଧର୍ମପତ୍ନୀ ଗର୍ଭେ । ପୁରୁଷୋତ୍ତମ ରୂପେ ପୂର୍ବେ ॥
ଜନ୍ମିଲେ ସତ୍ୟଗୁଣ ତୁଲେ । ଶୁଣ ତୁ ଯେ ବା କର୍ମ କଲେ ॥
ଯକ୍ଷ ରାକ୍ଷସ ଭୂତ ଗଣ । ପ୍ରାଣୀଙ୍କି କରନ୍ତି ଭକ୍ଷଣ ॥
ତାହାଙ୍କୁ ମାରି ସତ୍ୟସଂଗେ । ଧର୍ମ ରଖିଲେ ସତ୍ୟ ଯୁଗେ ॥
ଚତୁର୍ଥ ପ୍ରିୟବ୍ରତ ସୁତ । ତାମସ ଉତ୍ତମର ଭ୍ରାତ ॥
ଯେ କେତୁ ପୃଥୁ ଖ୍ୟାତି ନର । ଏ ଆଦି ଦଶ ତାକୁମର ॥
ତାର ଅନ୍ତରେ ସ୍ୱର୍ଗପୁରେ । ତ୍ରିଶିଖ ନାମେ ସୁରେ ଶ୍ୱରେ ॥
ସତ୍ୟକ ହରି ଦେବଗଣ । ଋଷିଙ୍କ ନାମ ଏବେ ଶୁଣ ॥
ମୁନିଏ ଜ୍ୟୋତିଧାମ ଆଦି । ତାମସ ଅନ୍ତରେ ପ୍ରସିଦ୍ଧି ॥
ବୈଧୃତି ନାମେ ଦେବଗଣ । ଶୁଣ ହୋ ତାହାଙ୍କ ପ୍ରମାଣ ॥
କାଳେ ସକଳେ ନାଶ ଗଲେ । ସେ ମନୁ ଅନ୍ତରେ ଯେ ଥିଲେ ॥
ସେ ମନୁ ଅନ୍ତରେ ଅଚ୍ୟୁତ । ହରିଣୀ ଉଦରେ ସମ୍ଭୂତ ॥
ତେଣୁ ବହିଲେ ହରି ନାମ । ରୂପେ ମୋହନ କୋଟି କାମ ॥
ଯେ ହରି ନାମ ଏ ସଂସାରେ । ଅଶେଷ ଦୁରିତ ସଂହରେ ॥
ଯେ ରୂପେ ଗଜେନ୍ଦ୍ର ମୋକ୍ଷଣ । କୁମ୍ଭୀର ଦର୍ପ ନିବାରଣ ॥
ଜଳେ କୁମ୍ଭୀର ମୁଣ୍ଡ ହାଣି । ଗଜ ରଖିଲେ ଚକ୍ରପାଣି ॥
ଯା ନାମ ଭୁବନ ମଣ୍ଡଳ । ଦୁରିତ ବନେ ଦାବାନଳ ॥
ଏକଥା ଶୁକମୁଖୁ ଶୁଣି । ପାଣ୍ଡବ ବଂଶ ଚୂଡ଼ାମଣି ॥
ଆନନ୍ଦେ ହୋଇ କୃତକୃତ୍ୟ । ବୋଲେ ନୃପତି ପରୀକ୍ଷିତ ॥

## ରାଜା ଉବାଚ

ଭୋ ମୁନି ଦୁର୍ଲ୍ଲଭ ବଚନ । ଶୁଣି ଆନନ୍ଦ ମୋର ମନ ॥
କେମନ୍ତେ ପ୍ରଭୁ ନରହରି । ଗଜ ରଖିଲେ ଗ୍ରାହ ମାରି ॥
କୁମ୍ଭୀର କେଉଁ ଜଳେ ଥିଲା । ଗଜକୁ କେମନ୍ତେ ଧଇଲା ॥
ସେ ଜଳ ଜୀବ ଜଳେ ଥାଇ । ହସ୍ତୀ ସଂଯୋଗ ତାର କାହିଁ ॥
ହସ୍ତୀ ସ୍ୱଭାବେ ମହାକାୟେ । କୁମ୍ଭୀର କେତେ ବଳ ବହେ ॥
ଏ କଥା ସଂଶୟ ତ ମୋତେ । ଭୋ ମୁନି କହ ଶୁଦ୍ଧ ଚିତ୍ତେ ॥
ଏ ପୁଣ୍ୟକଥା ମୋର ଧନ୍ୟ । ମଙ୍ଗଳ ଯୁତ ସୁଖାୟନ ॥
ସେ ଯେ ପ୍ରସ୍ତାବେ ହରି ବାଣୀ । ଶ୍ରବଣ ମାର୍ଗେ ଶୁଣେ ପ୍ରାଣୀ ॥
ହରି ପ୍ରସାଦେ ଭବୁ ତରେ । ସଂସାର ଦୁଃଖ ବେଗେ ସାରେ ॥
ଏମନ୍ତେ ପରୀକ୍ଷିତ ବାଣୀ । ଆନନ୍ଦେ ଶୁକମୁନି ଶୁଣି ॥
ଗଙ୍ଗାର ତୀରେ ଅନ୍ତର୍ଜଳେ । ଅସଂଖ୍ୟ ମୁନିଗଣ ମେଳେ ॥
ଗୋବିନ୍ଦ ପାଦେ ଦେଇ ଚିତ୍ତ । ବୋଲଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଷ୍ଟମସ୍କନ୍ଧେ ମନ୍ୱନ୍ତରାନୁବର୍ଣ୍ଣନଂ ପ୍ରଥମୋଽଧ୍ୟାୟଂ ।*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ॥
ପର୍ବତ ତ୍ରିକୂଟ ଯେ ନାମ । ସର୍ବ ସମ୍ପଦ ମୂଳଧାମ ॥
ଅୟୁତ ଯୋଜନ ବିସ୍ତୃତ । କ୍ଷୀର ସମୁଦ୍ରେ ସେ ଆବୃତ ॥
ଉଚ୍ଚ ସେ ଅୟୁତ ଯୋଜନ । ଦେଖନ୍ତେ ହରେ ପ୍ରାଣୀମନ ॥
ବିରାଜେ ଅଷ୍ଟ ଦିଗ ମଧ୍ୟେ । ଆନନ୍ଦ କରେ ଦେବବୃନ୍ଦେ ॥
ତୃତୀୟ ଶୃଙ୍ଗ ବହେ ଶିରେ । ଆକାଶେ ଶୂନ୍ୟ ରୂପ ଧରେ ॥
ରତ୍ନ ଧାରଣ ତାର ଅଙ୍ଗେ । ବିରାଜେ ଶୋହେ ଦଶ ଦିଶେ ॥
ନାନା ପ୍ରକାରେ ଲତା ଗୁଳ୍ମ । ନିର୍ଝର ତଟେ ବହୁ ଦ୍ରୁମ ॥
ନିର୍ଝର ଶବଦ ଗମ୍ଭୀର । ଅତି ସୁରମ୍ୟ ମନୋହର ॥
ନିର୍ଝର ଜଳ ରମ୍ୟ ଶୋହେ । ଗିରି ଚରଣ କିବା ଧୋୟେ ॥
ମର୍କତ ପାଷାଣ ସମୂହେ । ଶ୍ୟାମଳ ବର୍ଣ୍ଣ ଭୂବ ମୋହେ ॥
ସିଦ୍ଧି ଚାରଣ ବିଦ୍ୟାଧର । ଗନ୍ଧର୍ବ ସଂଗତେ କିନ୍ନର ॥
ଅପସରା ମିଳି ନୃତ୍ୟଗୀତ । ପ୍ରମଦା ଗଣ ଯୂଥ ଯୂଥ ॥
ନାନା ଅରଣ୍ୟେ ପଶୁଗଣେ । ଗିରି କନ୍ଦରେ ଘୋର ବଣେ ॥
ନାଦ କରନ୍ତି ମନୋହର । ମୟୂର କୋକିଳ ଭ୍ରମର ॥
ସରିତ ସରୋବର ନଦେ । ମଣି ବାଲୁକା କୂଦେ କୂଦେ ॥
ବେଦ କାମିନୀ ଗଣ ଯହିଁ । ସ୍ନାନ କରନ୍ତି ମୋଦ ବହି ॥
ତାହାଙ୍କ ଅଂଗରେ ଲେପିତ । ଗନ୍ଧ ଚନ୍ଦନ ପାରିଜାତ ॥
ସେ ଗନ୍ଧ ସମୀର ସଂଗରେ । ସୁଗନ୍ଧ ଦଶଦିଶେ ପୂରେ ॥
ସେ ଗିରି ଦ୍ରୋଣୀ ମଧ୍ୟେ ବନ । ବରୁଣ କ୍ରୀଡ଼ାର ଉଦ୍ୟାନ ॥
ଉତ୍ତମ ଶୋଭା ସେ ବନର । ସୁର କାମିନୀ କ୍ରୀଡ଼ାଘର ॥
ପାର୍ବତ ଅଳଙ୍କୃତ ବନ । ଫୁଲ ପଲ୍ଲବ ଫଳ ମାନ ॥
ମନ୍ଦାର ପାଟଳୀ ଚମ୍ପକ । ପାରିଜାତକ କୁରୁବକ ॥
ଚୂତ ପିଆଳ ପନସକ । ଆମ୍ର ଅଶୋକ ଆମ୍ରାତକ ॥
କଦମ୍ବ ନାରୀକେଳ ବନ । ଖର୍ଜ୍ଜୁର ବୀଜ ପୁର ଘନ ॥
ମଧୁକ ଶାଳ ତାଳ ଶୋହେ । ତମାଳ ଅସନ ସମୂହେ ॥
ଅରିଷ୍ଟ ଉଡୁମ୍ବର ପ୍ଲକ୍ଷ । ନ୍ୟଗ୍ରୋଧ ଚନ୍ଦନ ରୁଦ୍ରାକ୍ଷ ॥
ନିମ୍ବ କୋବିଦାର ସରଳ । ଅର୍ଜ୍ଜୁନ ଦେବଦାରୁ କୁଳ ॥
ଦ୍ରାକ୍ଷା ଇକ୍ଷୁକ ରମ୍ଭାବନ । ବଦରି ଅରଷ୍ଟି ଡାଳିମ୍ବ ॥
ବିଲ୍ୱ ଜମ୍ବୀର କପିତ୍‌ଥକ । ଆମଳକ ଯେ ହରିତକ ॥
ଯହିଁ ବରୁଣ ସରୋବର । ସୁବର୍ଣ୍ଣ ପଦ୍ମ ମନୋହର ॥
କହ୍ଲାର କୁମୁଦ ଉତ୍ପଳ । ସ୍ୱଭାବେ ସୁଗନ୍ଧ ଶୀତଳ ॥
ଉତ୍ପଳ ଶୀତ ପତ୍ରେ ଶୋଭା । କିବା ଉପମା ଆନେ ଦେବା ॥
ମତ୍ତ ଭ୍ରମର ପକ୍ଷୀଗଣ । ନାଦ କରନ୍ତି ଅନୁକ୍ଷଣ ॥
ହଂସ କାରଣ୍ଡବ ସମୂହେ । ସାରସ ଚକ୍ରବାକ ଶୋହେ ॥
ଜଳ କୁକ୍କୁଟ କୋପ ପିକ । କୂଜିତ କୋମଳ ଡାହୁକ ॥
ମତ୍ସ୍ୟ କଚ୍ଛପାଦି ସଂଚରେ । ପଦ୍ମ ରଜ ଅତି ଧୂସରେ ॥
କଦମ୍ବ ବର୍ଣ୍ଣଳକ ବେତ । ନୀପ-କୀଚକ ଯୂଥ ଯୂଥ ॥
କୁନ୍ଦ ଅଶୋକ କୁରୁବକ । କୁଟ ଇଙ୍ଗୁଦି ଶିରୀଷକ ॥
କୁଞ୍ଜ କୁସୁମ ସ୍ୱର୍ଣ୍ଣ ଯୂଥି । ନାଗ ପୁନ୍ନାଗ ଗନ୍ଧଜାତି ॥
ମଲ୍ଲିକା ଶତପତ୍ର ଶୋଭେ । ମାଧବୀ ଜାଳକ ସ୍ୱଭାବେ ॥
ଅନ୍ୟତ୍ର ଯେତେ ଫୁଲ ଫୁଲ୍ୟ । ଶୀତଳ ସୁଗନ୍ଧ ଅମୂଲ୍ୟ ॥
ଏମନ୍ତେ ବନେ ଏକ ଦିନେ । ଗଜେନ୍ଦ୍ର ବିଚାରଇ ମନେ ॥
ଏ ଘର୍ମକାଳେ ଏ ବନସ୍ତେ । ତୃଷିତ ହୋଇ ପଶୁଯୂଥେ ॥
ଜଳ ନ କରନ୍ତି ଆହାର । କେମନ୍ତେ ଧରିବି ଶରୀର ॥
ଏମନ୍ତେ ମନେ ବିଚାରଇ । ଶୀତଳ ନୀର ଅଛି କାହିଁ ॥
ବ୍ୟାକୁଳେ ବନସ୍ତୁ ବାହାର । ଦୃଷ୍ଟିତେ ଦିଗ ଅନ୍ଧକାର ॥
ସେ ଗଜ ଆଶ୍ରେ ସେ ବନସ୍ତେ । ସୁଖେ ଚରନ୍ତି ପଶୁ ଯୂଥେ ॥
ସେ ଏକ ଦିନେ ପଶୁଯୂଥେ । ବିହାର କରନ୍ତି ବନସ୍ତେ ॥
କଣ୍ଟା କିଚକ ବେଣୁ ବନେ । ଭ୍ରମଇ ତୃଷିତ ବଦନେ ॥
ସ୍ୱଭାବେ ମତ୍ତ ଗଜଦନ୍ତା । ବନେ ବିହାରେ ବଳବନ୍ତା ॥
ଯାର ଚାଲନ୍ତେ ପାଦ ଲାଗି । ପଡ଼ନ୍ତି ବୃକ୍ଷ ଗୁଳ୍ମ ଭାଙ୍ଗି ॥
ତାହାର ମଦ ଗନ୍ଧ ବାସେ । ପଶୁଏ ନ ରହନ୍ତି ପାଶେ ॥
ବ୍ୟାଘ୍ର ଉରଗ ଖଗ ମୃଗ । ଯେବା ସଞ୍ଚରେ ମହୋରଗ ॥
ସରଭ କୃଷ୍ଣ ବର୍ଣ୍ଣହରି । ବୃକର ଯୂଥ ସାଚାମରୀ ॥
ବରାହ ମହିଷ ଶଲ୍ୟକ । ଗୋପୁଚ୍ଛ ଆଦି ଶାଳାବୃକ ॥
କ୍ଷୁଦ୍ର ହରିଣୀ ଶଶା ଯେତେ । ଚରନ୍ତି ଯେ ଯାହା ଆୟତ୍ତେ ॥
ସେ ଗଜପତି ଗଜ ଯୂଥେ । ଅନେକ ଭ୍ରମିଲା ବନସ୍ତେ ॥
ବରୁଣ ହ୍ରଦ ତୀରେ ଯାଇ । ତୃଷିତ ଲୋଚନେ ଅନାଇଁ ॥
ଜଳ ଶୀତଳ ପୁଷ୍ପ ଗନ୍ଧେ । ଆଘ୍ରାଣ କରି ନାସାରନ୍ଧ୍ରେ ॥
କରଣୀ ଯୂଥ ସଙ୍ଗେ ମିଶି । ସନ୍ତୋଷେ ଶୀତ ଜଳେ ପଶି ॥
ସୁବର୍ଣ୍ଣ ପଦ୍ମ ବନ ମଧ୍ୟେ । ସକଳେ ପଶିଲେ ଆନନ୍ଦେ ॥
ସକଳ ହରଷ ବଦନ । ସନ୍ତୋଷେ କରି ଜଳ ପାନ ॥
ଜଳ ତୋଳନ୍ତି ଥୋର ହସ୍ତେ । ସିଞ୍ଚନ୍ତି ଅନ୍ୟୋ ଅନ୍ୟ ଗାତ୍ରେ ॥
ନିଦାଘ କାଳେ ଶୀତ ଜଳେ । କ୍ରୀଡ଼ା କରନ୍ତି ହସ୍ତୀ ବଳେ ॥
ଶବଦ ଶୁଭେ ଉଚ୍ଛୁଳିତ । ଯେସନେ ଜୀମୂତ ଗର୍ଜ୍ଜିତ ॥

ଅଗାଧ ଜଳେ ଗ୍ରାହ ଥିଲା । ଜଳେ ଶବଦ ସେ ଶୁଣିଲା ॥
ବେଗେ ଧାଇଁଲା କୋପମନେ । ମିଳିଲା ଗଜ ସନ୍ନିଧାନେ ॥
କେହି ନ ଦେଖେ ତାକୁ ଜଳେ । କୁମ୍ଭୀର ଅତି କୋପାନଳେ ॥
ଧଇଲା ଗଜପତି ପାଦ । ଶବଦ କରି ଘୋର ନାଦ ॥
ଦଇବ ଯୋଗବଳ ବଳେ । ଗଜ ବିପତ୍ତି ଗାଢ଼ ଜଳେ ॥
ଗ୍ରାହ ଧଇଲା ଅକସ୍ମାତେ । ଗଜ ଚରଣ ଦୃଢ଼ ଘାତେ ॥
ସେ ଗଜପତି ବଳବନ୍ତ । ବଜ୍ରୁ ହୁଁ ତୀକ୍ଷ୍ଣ ତାର ଦନ୍ତ ॥
କି କରି ପାରେ ତାର ମତେ । ବିଷ୍ଣୁର ମାୟାର ଆୟତ୍ତେ ॥
ଗଜ ସ୍ୱଭାବେ ମହାବଳୀ । ଚରଣ ନ ପାରିଲା ଚାଳି ॥
କରଣୀ ଯୂଥ ତାହାଦେଖି । ଦୁଃଖେ ହୋଇଲେ ଅଶ୍ରୁମୁଖୀ ॥
ସ୍ୱଭାବେ ଅତି ଶୀତ ପାଣି । ଗଜ ନ ପାରେ ପାଦ ଆଣି ॥
ସେ ହସ୍ତୀ ପଲ ତାକୁ ଧରି । ଟାଣନ୍ତି ଘୋର ନାଦ କରି ॥
ମୁଖରୁ ରୁଧିର ଗଳଇ । କେବେ ହେଁ ଗଜ ନ ଟଳଇ ॥
ବଳେ ଆଣନ୍ତେ କିଛି ଦୂର । କୁମ୍ଭୀର ମହା ବଳୀୟାର ॥
ପୁଣି ଗଭୀର ଜଳେ ଭରେ । ସୁଦୃଢ଼େ ଦନ୍ତେ ପାଦ ଧରେ ॥
ଏମନ୍ତେ ଗଜ ଗ୍ରାହ ଯୁଦ୍ଧ । ଗଗନେ ଦେଖନ୍ତି ବିବୁଧ ॥
ଗଜେ ଟାଣନ୍ତେ ଅତି ଖରେ । ପୁଣି କୁମ୍ଭୀର ଜଳେ ଭରେ ॥
ଏମନ୍ତେ ସହସ୍ର ବରଷ । ଯୁଦ୍ଧ ନୋହିଲା ଅବଶେଷ ॥
ଏମନ୍ତେ ଦୀର୍ଘ କାଳ ବଳେ । ଗଜ କୁମ୍ଭୀର ମହାଜଳେ ॥
କ୍ଷୀଣ ଆୟତେ ଗଜପତି । ସଂଗତେ ଥିଲେ ଯେତେ ହସ୍ତୀ ॥
ଦଣ୍ଡେ ଚରନ୍ତି ଘୋର ବନେ । ଜଳେ ବଞ୍ଚନ୍ତି ରାତ୍ର ଦିନେ ॥
ଗଜ କୁମ୍ଭୀର ଯୁଦ୍ଧ ଘାତେ । ସେ ଜଳେ ଜଳ ଜନ୍ତୁ ଯେତେ ॥
ଦୁଃଖିତ ହୋଇ ଝଟକନ୍ତି । ଜଳୁ ପଳାଇ ନ ପାରନ୍ତି ॥
ଏହି ପ୍ରକାରେ ଗଜ ଦୁଃଖୀ । ଗଜେ କାନ୍ଦନ୍ତି ତାହା ଦେଖି ॥
ଏମନ୍ତେ ପୂର୍ବେ ପୁଣ୍ୟ ବଳେ । ବୁଦ୍ଧି ସ୍ଫୁରିଲା ତାକୁ ଜଳେ ॥
ଅନ୍ତରେ କରଇ ବିଚାର । ସେ ହରି ସଂସାରର ସାର ॥
ସଙ୍କଟେ କରେ ପରିତ୍ରାଣ । ଯେ ତାକୁ ପଶନ୍ତି ଶରଣ ॥
କାଳ ଭୁଜଙ୍ଗ ଗ୍ରାସ କାଳେ । ଯେ ତାକୁ ସ୍ମରେ ଧ୍ୟାନ ବଳେ ॥
ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ଗଜେନ୍ଦ୍ର ଯୁଦ୍ଧ କର୍ମ ବାଣୀ । ଆନନ୍ଦେ ଯେ ଶୁଣନ୍ତି ପ୍ରାଣୀ ॥
ଜନ୍ମ ମରଣେ ନାହିଁ ଭ୍ରାନ୍ତି । ହେଳେ ସଂକଟୁ ତରିଯାନ୍ତି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମ ସ୍କନ୍ଧେ*
*ଗଜେନ୍ଦ୍ର ଉପାଖ୍ୟାନେ ଦ୍ୱିତୀୟୋଽଧ୍ୟାୟ ।*

## ତୃତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପାଣ୍ଡବ ଚୂଡ଼ାମଣି । ଗଜେନ୍ଦ୍ର ବୋଲେ ମୋକ୍ଷବାଣୀ ॥
ଏମନ୍ତ ବୁଦ୍ଧି ସେ ବିଚାରି । ଚଞ୍ଚଳ ମନସ୍ଥିର କରି ॥
ପରମ ଜପ ସେ ଜପିଲା । ଯେ ପୂର୍ବ ଜନ୍ମେ ଶିକ୍ଷା ଥିଲା ॥

### ଗଜେନ୍ଦ୍ର ଉବାଚ

ଶ୍ରୀକୃଷ୍ଣ ବ୍ରହ୍ମ ଆଦି ପଦେ । ବୋଲେ ଆନନ୍ଦ ଗଦଗଦେ ॥
ନମସ୍ତେ ପ୍ରଭୁ ଭଗବାନ । ଅଶେଷ ବ୍ରହ୍ମାଣ୍ଡ ଜୀବନ ॥
ତୋର ମହିମା ଚିଦାତ୍ମକ । ଅନାଦି ପୁରୁଷ ବିବେକ ॥
ଜୀବର ଆଦି ଜୀବ ତୁହି । ପରମେଶ୍ୱର ଭେଦି ମହୀ ॥
ଯାହାର ଦେହେ ବିଶ୍ୱ ବସେ । ସ୍ୱଭାବେ ସ୍ୱରୂପ ପ୍ରକାଶେ ॥
ଜୀବ ପରମ ଆତ୍ମାପର । ତୁ ବ୍ରହ୍ମ ଶରଣ ସୋଦର ॥
ଏ ଯେ ସଂସାର ମାୟାବଳେ । ଆତ୍ମାର କଳ୍ପଏ ନିଷ୍କଳେ ॥
କରେ ପ୍ରକାଶ ତିରୋହିତ । ଯେସନେ ଊର୍ଣ୍ଣନାଭି ମତ ॥
ମଧ୍ୟେ ଦେଖଇ ସାକ୍ଷୀ ରୂପେ । କ୍ରୀଡ଼ା କରଇ କଳ୍ପେ କଳ୍ପେ ॥
ସେ ବିଷ୍ଣୁ ରଖୁ ମୋର ପ୍ରାଣ । ତା ପାଦେ ପଶିଲି ଶରଣ ॥
କାଳେ ସକଳ ଜୀବଧାରୀ । ଅନନ୍ତ ରୂପେଣ ସଂହରି ॥
ସକଳ ହେତୁ କରେ ଅନ୍ତ । ତମ ନିବିଡ଼ ଘୋର ପଥ ॥
ପୁଣି ତାମସ ପରବେଶେ । ବିରାଜ ରୂପେ ପରକାଶେ ॥
ତାର ମହିମା ବିଚାରଣେ । ଯେତେକ ଦେବ ଋଷିଗଣେ ॥
କେହି ନ ଜାଣେ ପ୍ରଭୁ ତୋତେ । ଅନେକ ଶାସ୍ତ୍ର ଯୋଗ ମତେ ॥
କେ ପ୍ରାଣୀ ତଦନ୍ତ ଜାଣିବ । ଯହିଁ ଭ୍ରମନ୍ତି ବ୍ରହ୍ମା ଶିବ ॥
ନଟ ଆକୃତି ପ୍ରାୟେ ଖେଳେ । ଏ ମାୟା ଶାହନ ଶୟଳେ ॥
ମନ କର୍ମକୁ ଦୂର ଯେହି । ସେ ହରି ରଖୁ ମୋର ଦେହୀ ॥
ଯାର ମହିମା ମୁନି ଜନେ । ସକଳ ଶାସ୍ତ୍ର ଅନୁମାନେ ॥
ବିମୁକ୍ତ ସଙ୍ଗ ସାଧୁ ଜନେ । ତପ ସାଧନ୍ତି ଘୋର ବନେ ॥
ଭୂତଙ୍କ ଆତ୍ମା ଭୂତ ଯେହୁ । ସେ ହରି ମୋର ଗତି ବହୁ ॥
ଯାହାର ନାମ କର୍ମ ନାହିଁ । ଅପରେ ଶୁଣ ଦୋଷ କାହିଁ ॥
ତଥାପି ଲୋକ ରକ୍ଷା ଅର୍ଥେ । ରୂପେ ସମ୍ଭବେ ଏ ଜଗତେ ॥
ସ୍ୱ ମାୟା ବଳେ ଏ ଜଗତ । ପୁଣି ପାଳନ କରୁ ଅନ୍ତ ॥
ଅରୂପ ରୂପ ଯେ ଅଦ୍ଭୁତ । ଆତ୍ମା ପ୍ରଦୀପ ସାକ୍ଷୀମତ ॥
ପରମ ଆତ୍ମା ସୁଖ ଘର । ମନ ବଚନେ ଦୂରନ୍ତର ॥
ସୂକ୍ଷ୍ମ ନିର୍ମଳ ରୂପ ଯାର । ଦୁସ୍ତର ତପେ ମହାଘୋର ॥
ଯୈହାକୁ ସର୍ବଗୁଣେ ପାଇ । ନିଷ୍କାମ ଚିତ୍ତେ ସେବା ଧ୍ୟାୟି ॥

କୈବଲ୍ୟ ନାଥ ନମୋଽସ୍ତୁତେ । ନିର୍ବାଣ ସୁଖେଣ ଉଦିତେ ॥
ତୁ ନାଥ ଶାନ୍ତ ଘୋର ରୂପୀ । ମୂଢ଼ ଧର୍ମେଣ ବିଶ୍ୱବ୍ୟାପୀ ॥
ଯେ ନିର୍ବିଶେଷ ସାମ୍ୟ ରୂପୀ । ସୁଜ୍ଞାନ ଘନଙ୍କର ରୂପୀ ॥
କ୍ଷେତ୍ରଜ୍ଞ ରୂପୀ ନମୋନମଃ । ସର୍ବଜ୍ଞ ସାକ୍ଷୀ ନିଜ ଧାମ ॥
ଯେ ଏ ଜଗତ ଆଦିମୂଳ । ପ୍ରକୃତି ମଧ୍ୟେ ସୂକ୍ଷ୍ମ ସ୍ଥୂଳ ॥
ସର୍ବ ଇନ୍ଦ୍ରିୟ ଗୁଣ ଦ୍ରଷ୍ଟା । ସର୍ବ ପ୍ରତ୍ୟୟ ଆଦି ସ୍ରଷ୍ଟା ॥
ଅଭକ୍ତ ଜନେ ଅପ୍ରକାଶ । ଭଗତ ପଦ୍ମେ ରବି ତ୍ରାସ ॥
ଅଖିଳ କାରଣ ସ୍ୱରୂପୀ । ଅଦ୍ଭୁତ ରୂପେ ବିଶ୍ୱବ୍ୟାପୀ ॥
ସ୍ୱୟଂ ପ୍ରକାଶ ଗୁଣ ପାଶେ । ବନ୍ଧନ ତୋ ମାୟା ବିଶ୍ୱାସେ ॥
ତୁ ନାଥ କରୁଣା ସାଗର । ତୋ ପାଦେ ଶରଣ ମୋହର ॥
ଅଶେଷ ଜନ୍ତୁ ହୃଦ ଗତେ । ତୋର ପ୍ରକାଶ ଆତ୍ମା ମତେ ॥
ସକଳ ଦେଖୁ ନାଥ ତୁହି । ଏ ଅନୁଭବ କେ ଜାଣଇ ॥
ତୁ ବ୍ରହ୍ମ ପରମ ମଙ୍ଗଳ । ସମସ୍ତେ ପ୍ରଭୁର ଆଦିମୂଳ ॥
ଆତ୍ମା ଆତ୍ମଜ ଗୃହ ଚିତ୍ତେ । ମମତ୍ୱ ଗୁଣ ଦୃଢ ଚିତ୍ତେ ॥
ଯେ ପ୍ରାଣୀ ଗୃହ ବନ୍ଧେ ମଜ୍ଜେ । ତୋତେ ସେ କେବେହେଁ ନ ଭଜେ ॥
ଯେ ମୁକ୍ତି ସଂଗ ଏ ଜଗତେ । ସେ ତୋତେ ଭଜେ ଅବିରତେ ॥
ଏଣୁ ବବେକୀ ପ୍ରାଣୀଙ୍କର । ତୁ ନାଥ ଶୁଭ ସୁଖଘର ॥
ଧର୍ମାର୍ଥ କାମେ ଯେ ବିମୁକ୍ତ । ନିଷ୍କାମେ ଭଜେ ଅବିରତ ॥
ଅନ୍ତେ ଲଭନ୍ତି ଇଷ୍ଟ ଗତି । ଦୁଃଖ ସଂକଟେ ନ ପଡ଼ନ୍ତି ॥
ଅବ୍ୟୟ ସ୍ଥାନେ ରହେ ମନ । ଏଣୁ ଲଭନ୍ତି ଦିବ୍ୟଜ୍ଞାନ ॥
ଏ ପ୍ରାଣୀ ଶରଣ ତୋହର । ଏ ଗ୍ରାହ ଗ୍ରସ୍ତୁ କର ପାର ॥
ଏକାନ୍ତ ଚିତ୍ତେ ଯେ ରହନ୍ତି । ବିଷୟ ସୁଖ ନ ବାଞ୍ଛନ୍ତି ॥
ତୋ ଜ୍ଞାନ ସୁଧା ସୁଖ ପାଇ । ଅଧିକ ବାଞ୍ଛା ତାଙ୍କ ନାହିଁ ॥
ଅତି ଅଦ୍ଭୁତ ତୋ ଚରିତ । ଆନନ୍ଦ ରୂପେ ସୁଲଳିତ ॥
ତୋ କଥା ସୁଧା ସିନ୍ଧୁ ଜଳେ । ଅବଗାହନ ସୁଖ ଭୋଳେ ॥
କରି ତରନ୍ତି ଦିବ୍ୟଦେହୀ । ଏଣୁ ତୋ ମହିମା କେ କହି ॥
ଅକ୍ଷର କ୍ଷର ନାହିଁ ଯାର । ଯେ ବ୍ରହ୍ମ ପରମ ଈଶ୍ୱର ॥
ଅବ୍ୟକ୍ତ ଅଧ୍ୟାତ୍ମ ସ୍ୱରୂପୀ । ପରମ ଯୋଗବଳେ ବ୍ୟାପୀ ॥
ଏଣୁ ଯେ ଅତି ଦୂରେ ରହେ । ଅତ୍ୟନ୍ତ ସୁଖ ସୂକ୍ଷ ପ୍ରାୟେ ॥
ଏଣୁ ଅନନ୍ତ ଆଦି ପୂର୍ଣ୍ଣ । ସେ ହରି ରଖୁ ମୋ ଜୀବନ ॥
ମନ ବଚନ ତା ଚରଣେ । ନିବେଦ କରି ଅନୁକ୍ଷଣେ ॥
ଏ ଘୋର ଗ୍ରାହ ବନ୍ଧ ପାଶୁଁ । ଉଦ୍ଧରି ମୋତେ ସେ ଆଶ୍ୱାସୁ ॥
ଯାର ଚରିତ ବଳ ଘେନି । ବ୍ରହ୍ମାଦି ଦେବାସୁର ମୁନି ॥
ସଂସାର ସୁଖ ତ୍ୟାଗ କରି । ମାୟା ସଂସାରୁ ଗଲେ ତରି ॥

ଅଗ୍ନି ସବିତା ଜ୍ୟୋତି ଯେହ୍ନେ । ପ୍ରକାଶି ପ୍ରବେଶ ଗଗନେ ॥
ଏଣୁ ପ୍ରବାହ ଯେ ସଂସାରେ । ଇନ୍ଦ୍ରିୟ ବୁଦ୍ଧି ଅହଙ୍କାରେ ॥
ଶରୀର ଆଦି ସେହି ମତେ । ପ୍ରବେଶ ହୋନ୍ତି ତୋର ଗାତ୍ରେ ॥
ଯେ ନୋହେ ଦେବାସୁର ମର୍ତ୍ତ୍ୟେ । ନ ସ୍ତିରୀ ନ ପୁରୁଷ ଗାତ୍ରେ ॥
ଜନ୍ତୁ ଶରୀର ପଶୁ ଆଦି । ଯେ ରୂପେ ଅରୂପ ସମାଦି ॥
କେବେହେଁ ନୋହେ କର୍ମ ଗୁଣ । ତୁ ସତ୍ୟ ଅଶେଷ ନିର୍ଗୁଣ ॥
ନିଃଶେଷ ଶେଷ ପୂର୍ଣ୍ଣ ପ୍ରାଣ । ଏଣୁ ଏ ଅନାଦି କାରଣ ॥
ନମୋ ନମସ୍ତେ ଯେ ଅନନ୍ତ । ଅସହ୍ୟ ବେଗ ବଳବନ୍ତ ॥
ଅଖିଳ ବୁଦ୍ଧି ଗୁଣମୟ । ଯେ ସର୍ବ ନିଧି ଗୁଣ ତ୍ରୟ ॥
ପ୍ରପନ୍ନ ଜନ ଯେ ପାଳଇ । ଦୁରନ୍ତ ଶକ୍ତି ଯାର ଦେହୀ ॥
କୁତ୍ସିତ ଇନ୍ଦ୍ରିଗଣେ ଯାର । ମାର୍ଗରେ ନୁହନ୍ତି ଗୋଚର ॥
ମୁଁ ଗ୍ରାହ ଗ୍ରସ୍ତେ ଗ୍ରସ୍ତ ହୋଇ । ଆତ୍ମା ଶରୀର ନ ଜାଣଇ ॥
ଯେ ହରି ସଂସାର କାରଣ । ତା ପାଦେ ପଶିଲି ଶରଣ ॥
ରଖୁ ନ ରଖୁ ସେ ଜାଣଇ । ତୋ ବିନୁ ଅନ୍ୟ ଗତି ନାହିଁ ॥
ଏମନ୍ତେ ଗଜରାଜ ସ୍ତୁତି । ଦେଇ ଗୋବିନ୍ଦ ପାଦେ ମତି ॥
ଇନ୍ଦ୍ରାଦି ଦେବେ ଗମ୍ୟ ନୋହେ । ଯେ ପୂର୍ବ ଭାଗ୍ୟର ଉଦୟେ ॥
ଗଜ ବିକଳ ଦେଖି ହରି । ଆନନ୍ଦ ଚିତ୍ତେ ମୋଦ ଭରି ॥
ଯେ ହରି ସର୍ବ ଦେବମୟେ । ଅଶେଷ ବିଶ୍ୱ ଯାର ଦେହେ ॥
ସର୍ବ ଦେବଙ୍କୁ ଘେନି ସଙ୍ଗେ । ସୁବାକ୍ୟ ଶ୍ରୁତି ସ୍ତୋତ୍ର ରଙ୍ଗେ ॥
ଗରୁଡ଼ ପୃଷ୍ଟେ ବିଜେ କରି । କରେ ପ୍ରଚଣ୍ଡ ଚକ୍ର ଧରି ॥
ବେଗେ ମିଳିଲେ ଗଜ ପାଶେ । ବିବୁଧେ ଦେଖନ୍ତି ଆକାଶେ ॥
ସେ ଗଜ ଦେଖି ଚକ୍ରଧର । ଚରଣେ ଗୃହୀତ କୁମ୍ଭୀର ॥
ପଦ୍ମ ଗୋଟିଏ ଘେନି ହସ୍ତେ । ଊର୍ଦ୍ଧ୍ୱେ ଚାହିଁଲା ଶୂନ୍ୟ ପଥେ ॥
ଊର୍ଦ୍ଧ୍ୱେ ଚାହିଁଲା ମୁଣ୍ଡ ତୋଳି । ଦେଖନ୍ତି ପ୍ରଭୁ ବନମାଳୀ ॥
ଚକ୍ର ବିରାଜେ ଦକ୍ଷ କରେ । ସୂର୍ଯ୍ୟ କି ଉଦିତ ଅମ୍ବରେ ॥
ଡାକଇ ଆରତ ଭଞ୍ଜନ । ଭୋ ନାଥ ରଖ ମୋ ଜୀବନ ॥
ହେ ନାରାୟଣ ବିଶ୍ୱଗୁରୁ । ଆରତ ଜନ ଦୁଃଖ ହାରୁ ॥
ନମସ୍ତେ ପ୍ରଭୁ ଭଗବାନ । ତୁ ନାଥ ଜଗତ ଜୀବନ ॥
ଗ୍ରାହ ପୀଡ଼ିତ ଗଜଦେଖି । ତକ୍ଷଣେ ଗରୁଡ଼ ଉପେକ୍ଷି ॥
ଜଳେ ପଶିଲେ ଚକ୍ରପାଣି । ଚକ୍ରେ କୁମ୍ଭୀର ମୁଣ୍ଡ ହାଣି ॥
କୁମ୍ଭୀର ମୁଖୁ ବନମାଳୀ । ହସ୍ତୀ ଚରଣ ହସ୍ତେ ତୋଳି ॥
ଦେଖନ୍ତି ସ୍ୱର୍ଗେ ଦିଗପାଳେ । ଗଜକୁ ଘେନି ମିଳି କୂଳେ ॥
ବୋଲଇ ବିପ୍ର ଜଗନ୍ନାଥ । ଶୁଣ ସୁଜନେ ଏକ ଚିତ୍ତ ॥
ଅଶେଷ ହରିର ମହିମା । କେ ଜାଣିପାରେ ଗୁଣ ସୀମା ॥

ଗଜଙ୍କୁ ରଖିଲେ ଯେମନ୍ତ । ଅଷ୍ଟମ ସ୍କନ୍ଧେ ଭାଗବତ ॥
ଭାଷା ପ୍ରବନ୍ଧେ ହରିବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଅଷ୍ଟମସ୍କନ୍ଧେ ଗଜେନ୍ଦ୍ର ମୋକ୍ଷଣଂ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଗଜ ଇନ୍ଦ୍ରର ମୋକ୍ଷ ଶୁଣି । ବରୁଣ ହ୍ରଦେ ଚକ୍ରପାଣି ॥
ଦେଖିବା ଅର୍ଥେ ଦେବଗଣେ । ମଙ୍ଗଳ ସ୍ତୁତି ଉଚ୍ଚାରଣେ ॥
ବ୍ରହ୍ମା ଶଙ୍କର ଦେବ ଋଷି । ଗନ୍ଧର୍ବେ କୁସୁମ ବରଷି ॥
ହରିର କର୍ମ ପ୍ରଶଂସନେ । ମିଳିଲେ ହସ୍ତୀ ସନ୍ନିଧାନେ ॥
ଦେବେ ଦୁନ୍ଦୁଭି ନାଦ କରି । ନୃତ୍ୟ କରନ୍ତି ବିଦ୍ୟାଧରୀ ॥
ଗନ୍ଧର୍ବେ ଯନ୍ତ୍ର ଗୀତ ସ୍ୱରେ । ମଙ୍ଗଳ ସ୍ତୁତି ଉପଚାରେ ॥
ଋଷି ଚାରଣ ସିଦ୍ଧଗଣେ । ଆଗମ ନିଗମ ପ୍ରମାଣେ ॥
ପୁରୁଷୋତ୍ତମ ରୂପ ଚାହିଁ । ସ୍ତୁତି କରନ୍ତି ଭାବ ବହି ॥
ଭୂମି ଅନ୍ତରୀକ୍ଷ ଗଗନେ । ମଙ୍ଗଳ ଶୁଣି ତୋଷ ମନେ ॥
କରନ୍ତି ଜୟ ଜୟ ବାଣୀ । କୁମ୍ଭୀର ଆତ୍ମା ଜଳେ ଶୁଣି ॥
ତକ୍ଷଣେ ହୋଇଲା ବାହାର । କି ଅବା ଦେବା ପଟାନ୍ତର ॥
ରବି ଶଶାଙ୍କ ଅଗ୍ନି ଗଞ୍ଜେ । ଅଦ୍ଭୁତ ରୂପ ତେଜ ପୁଞ୍ଜେ ॥
ଦେବଳ ଶାପୁଁ ପାର ଗଲା । ଯେ ବିଷ୍ଣୁ ଚକ୍ରେ ପ୍ରାଣ ଦେଲା ॥
ହୂ ହୂ ଗନ୍ଧର୍ବ ତାର ନାମ । ସ୍ୱଭାବେ ରୂପ ତେଜୋ ଧାମ ॥
ଦେଖନ୍ତି ସର୍ବ ଦେବ ଜନେ । ବିଷ୍ଣୁ ଚରଣେ ତୋଷ ମନେ ॥
ଶତେ ପ୍ରଣାମ ଦଣ୍ଡବତ । ନମିଲା ହରି ପାଦଗତ ॥
ଉଠି ଅଞ୍ଜଳି ଶିରେ ଦେଇ । ଗନ୍ଧର୍ବ ନାଦେ ଗୀତ ଗାଇ ॥
ଆନନ୍ଦେ ନମିଲା ଚରଣେ । ହରିର ଆଜ୍ଞା ପରମାଣେ ॥
ଦେଖନ୍ତି ସର୍ବ ଦେବତାଏ । ପଶିଲା ଗୋବିନ୍ଦର ଦେହେ ॥
ଗଜ ଯେ ଥିଲା କୃଷ୍ଣ ପାଶେ । ଗୋବିନ୍ଦ ଶରୀର ସ୍ପରଶେ ॥
ତକ୍ଷଣେ ହୋଇ କୃତକୃତ୍ୟ । ଅଜ୍ଞାନ ବନ୍ଧନୁ ବିମୁକ୍ତ ॥
ବିଷ୍ଣୁର ରୂପ ପରକାଶେ । ରତ୍ନ କୁଣ୍ଡଳ ରବି ତ୍ରାସେ ॥
କଟୀରେ ପୀତବସ୍ତ୍ର ଶୋହେ । ହାର କେୟୂର ଜନ ମୋହେ ॥
ସୁନ୍ଦର ଶୋହେ ଚତୁର୍ଭୁଜ । ବିଷ୍ଣୁ ଆୟୁଧ ଦିବ୍ୟ ତେଜ ॥
ତକ୍ଷଣେ ନିଜ ରୂପ ହୋଇ । ଗରୁଡ଼ ପୃଷ୍ଠରେ ଆରୋହୀ ॥
ଗରୁଡ଼ ଉଡ଼େ ମହାଶୂନ୍ୟେ । ପଶିଲା ବିଷ୍ଣୁର ଭୁବନେ ॥
ଶୁଣ ପରୀକ୍ଷ ନୃପନାଥ । ସେ ଗଜ ଇନ୍ଦ୍ରର ବାରତ ॥
ଦ୍ରବିଡ଼ ରୂପେ ପାଣ୍ଡ୍ୟ ନାମ । ଶୁଭ୍ର ସୁନ୍ଦର ଗୁଣଧାମ ॥
ଇନ୍ଦ୍ରଦ୍ୟୁମ୍ନ ତାର ନାମ । ରୂପେ ତୁଳିତ ପୁଣ୍ୟଧାମ ॥
ବିଷ୍ଣୁର ବ୍ରତ ପରାୟଣ । ନିବିଡ଼େ ଭଜନ କରିଣ ॥
ସେ ରାଜା ବସି ଏକଦିନେ । ବିଷ୍ଣୁ ପୂଜନେ ଦୃଢ଼ ମନେ ॥
ମଉନ ବ୍ରତେ ଜପ କରି । ଧ୍ୟାନେ ଚିନ୍ତଇ ନରହରି ॥
ନିଷ୍ଟଳେ ବସି ଇନ୍ଦ୍ର ଛାଲେ । ଅନେକ ବିଷ୍ଣୁ ଭକ୍ତ ମେଳେ ॥
ଜଟା କଳାପ ମୁଣ୍ଡେ ସାଜେ । ନିବିଡ଼ ଧ୍ୱନି ବଳ ତେଜେ ॥
ଏମନ୍ତେ ମୁନିଗଣ ତୁଲେ । ଅଗସ୍ତି ଋଷି ବିଜେ କଲେ ॥
ତାହାଙ୍କୁ ଦେଖି ନ ଉଠିଲା । ତୁଣ୍ଡେ ସମ୍ଭାଷଣ ନ କଲା ॥
ଏକାନ୍ତେ ବସି ମୁନି ଜନେ । ବେଗେ ଉଠିଲେ କୋପମନେ ॥
ବୋଲନ୍ତି ଏକୁ ଆରେ ଚାହିଁ । ଦେଖ ଏହାର ଜ୍ଞାନ ନାହିଁ ॥
ଅବଜ୍ଞା କଲା ବିପ୍ରଗଣେ । ଗଜଙ୍କ ପ୍ରାୟେ ମୂଢ଼ ପଣେ ॥
ବିପ୍ରଙ୍କୁ ଅମାନନା କରେ । ରାଜ ସମ୍ପଦ ଗର୍ବ ଭରେ ॥
ଅନ୍ତେ ପଡ଼ଇ ତମ ଘୋରେ । କେବେ ହେଁ ଦୁଃଖୁ ନ ନିସ୍ତରେ ॥
ଏ ଧର୍ମ ପ୍ରମାଣ ପ୍ରସ୍ତାବେ । ଗଜ ଏ ହେଉ ଏହି ଭାବେ ॥
ଗହନ ବନେ ଚିରକାଳେ । ଗ୍ରାହ ଗ୍ରାସିବ ନିମ୍ନ ଜଳେ ॥
ଏମନ୍ତେ ତାକୁ ଶାପଦେଇ । ମୁନିଏ ଗଲେ କୋପ ବହି ॥
ଏ ରାଜା ପ୍ରାଣ ତ୍ୟାଗ କାଳେ । ଗଜ ଦେଖିଲା ବେନି ଡୋଳେ ॥
ସେ ଗଜ ଯୋନି ଜ୍ଞାନ ହରେ । ନିବାସ କରି ବନ ଘୋରେ ॥
ଯେଣୁ ଗୋବିନ୍ଦ ଭଜୁଥିଲା । ସେ ଭାବେ ହରି ସୁମରିଲା ॥
ଏମନ୍ତେ ଗଜ ମୋକ୍ଷ କରି । ନିଜ ଭୁବନେ ଗଲେ ହରି ॥

### ଶ୍ରୀ ଶୁକ ଉବାଚ

ଏବେ ହେ ପରୀକ୍ଷିତ ଶୁଣ । କହିଲି ଗଜେନ୍ଦ୍ର ମୋକ୍ଷଣ ॥
ଏ କଥା ଫଳ ଶୁଣ ଏବେ । ଯେ ନର ଶୁଣେ ଭକ୍ତି ଭାବେ ॥
ଯେ ବା ଉଚ୍ଚାରନ୍ତି ବଦନେ । ଯେ ବା ପୁଚ୍ଛନ୍ତି ଅନ୍ୟୋ ଅନ୍ୟେ ॥
ସର୍ବ ସମ୍ପଦ ଯଶ କରେ । କଳି କଳୁଷ ଦୁଃଖ ହରେ ॥
ଦୁଷ୍ଟ ସ୍ୱପନ ଗ୍ରହ ପୀଡ଼ା । ସ୍ମରଣେ ନାଶେ ସର୍ବ ପୀଡ଼ା ॥
ବ୍ରାହ୍ମଣ ଆଦି ଚାରବର୍ଣ୍ଣେ । ଯେ ବା ବାଞ୍ଛନ୍ତି ଏହା ମନେ ॥
ରଜନୀ ଅନ୍ତେ ଉଷା କାଳେ । କର ବଦନ ଧୋଇ ଜଳେ ॥
ଗଜେନ୍ଦ୍ର ମୋକ୍ଷ ଯେ ଶୁଣନ୍ତି । କି ଅବା ବଦନେ ଗୁଣନ୍ତି ॥
ଦୁଃସ୍ୱପ୍ନ ଗ୍ରହ ପୀଡ଼ା ନାଶେ । ନିର୍ମଳ ଯଶ ପରକାଶେ ॥
ସକଳ ଦେବଋଷି ମଧ୍ୟେ । ଗୋବିନ୍ଦ କହିଲେ ଆନନ୍ଦେ ॥
ଗଜେନ୍ଦ୍ର ମୋକ୍ଷ କରି ହରି । କହନ୍ତି ଜନେ ଦୟା କରି ॥

## ଶ୍ରୀ ଭଗବାନ ଉବାଚ

ଗଜେନ୍ଦ୍ର ଶୁଣ ମୋ ବଚନ । ଅଶେଷ ଦୁରିତ ଦହନ ॥
ଯେ ନର ଅହୋରାତ୍ର ଅନ୍ତେ । ଶୁଚି ନିର୍ମଳ ଶୁଦ୍ଧ ଚିତ୍ତେ ॥
ମୋହର ସଙ୍ଗେ ତୋତେ ସ୍ମରେ । ଘୋର ଗହନ ଦୁଃଖୁ ତରେ ॥
ପର୍ବତ କନ୍ଦର କାନନେ । ବେତ କୀଚକ ବେଣୁ ବନେ ॥
ସୁର ପାଦପ ପୁଷ୍ପ ଆଦି । ପର୍ବତ ତ୍ରିଶୃଙ୍ଗ ସମାଦି ॥
ବ୍ରହ୍ମା ଭୁବନ ମୋ ନିବାସ । ଶଙ୍କର ସ୍ଥାନ କପିଳାସ ॥
କ୍ଷୀର ଜଳଧି ପ୍ରିୟ ମୋର । ଯେ ଶ୍ୱେତ ଦ୍ୱୀପ ମନୋହର ॥
ଶ୍ରୀବତ୍ସ କଉସ୍ତୁଭ ମଣି । ଚତୁରଭୁଜ ପରିମାଣି ॥
ଶଙ୍ଖ କମଳ ଚକ୍ର ଗଦା । ମୋ ଶ୍ରୀଭୁଜେ ଶୋହେ ସଦା ॥
ବିନତା ନନ୍ଦନ ଅନନ୍ତ । କମଳା ମୋର ହୃଦଗତ ॥
ବ୍ରହ୍ମା ଶଙ୍କର ଯେ ନାରଦ । ଭଗତ ମଧ୍ୟେ ପ୍ରହଲାଦ ॥
ମତ୍ସ୍ୟ କଚ୍ଛପ କୋଳ ଆଦି । ଯେ ରୂପେ ଅଛି ମୁଁ ସମାଦି ॥
ଅଶେଷ ଗୁଣ କର୍ମ ଯେତେ । ମୋହର ଯଶ ଏ ଜଗତେ ॥
ସୂର୍ଯ୍ୟ ଶଶାଙ୍କ ହୃତାଶନ । ପ୍ରଣବ ସତ୍ୟ ଯେ ବଚନ ॥
ଗୋ ବିପ୍ର ଆଦି ଧର୍ମ ଯେତେ। ଋଷି ଦେବତା ଯଜ୍ଞ ମତେ ॥
ଦକ୍ଷ ଦୁହିତା ମନୁ ଯେତେ । ପୂର୍ବେ ମୁଁ କହିଅଛି ତୋତେ ॥
ସୋମ କଶ୍ୟପ ବଂଶ ଆଦି । ସୃଷ୍ଟି ସର୍ଜନେ ଯେ ପ୍ରସିଦ୍ଧି ॥
ଗଙ୍ଗା କାଳିନ୍ଦୀ ସରସ୍ୱତୀ । ଶୀତ ବାରଣ ନନ୍ଦାବୃତି ॥
ଧ୍ରୁବାଦି ସପ୍ତଋଷି ଯେତେ । ଯେ ପୁଣ୍ୟଶ୍ଳୋକ ଏ ଜଗତେ ॥
ସ୍ମରଣେ ସର୍ବ ପାପ ହରେ । ଏ ଘୋର ସଂକଟୁ ନିସ୍ତରେ ॥
ଏମନ୍ତ କହି ଦେବ ବୃନ୍ଦେ । ସେ ହରି ପରମ ଆନନ୍ଦେ ॥
ଆରୋହୀ ଗରୁଡ଼ ଉପରେ । ତକ୍ଷଣେ ଗଲେ ନିଜ ପୁରେ ॥
ସୁଜନ ହିତେ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଗଜେନ୍ଦ୍ର ମୋକ୍ଷଣେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଗଙ୍ଗାଜଙ୍କେ । ସକଳ ମହାଋଷି ମେଳେ ॥
ହରି ଚରିତ ସୁଧାସାର । ଗଜ କୁମ୍ଭୀର ଉପଚାର ॥
ସେ ପ୍ରଶ୍ନ କହି ରାଜା ଆଗେ । ପୁଣି କହନ୍ତି ଅନୁରାଗେ ॥
ଶୁଣ ହୋ ଅଭିମନ୍ୟୁ ସୁତ । ଅଦ୍ଭୁତ ଗଜେନ୍ଦ୍ର ଚରିତ ॥
ତୋତେ କହିଲି ହରି ଗୁଣ । ମନୁ ଚରିତ ଏବେ ଶୁଣ ॥
ପଞ୍ଚମେ ତାମସ ସୋଦର । ରୈବତ ନାମେ ମନୁବର ॥
ଅର୍ଜୁନ, ବଳି, ବିନ୍ଧ୍ୟନାମ । ତାର ତନୟ ଅନୁପାମ ॥
ଇନ୍ଦ୍ର ବସଇ ସ୍ୱର୍ଗ ଗ୍ରାମେ । ଘେନିଣ ସପ୍ତଋଷି ଗଣେ ॥
ଦେବ ଦାନବ ଭୂତ ଆଦି । ଯେ ଭାବେ ଅମର ସମାଦି ॥
ହିରଣ୍ୟ ରୋମା ବେଦଶିର । ଊର୍ଦ୍ଧ୍ୱବାହୁ ଯେ ମୁନି ବର ॥
ବିକୁଣ୍ଠା ନାମେ ଶୁଭ୍ର ନାରୀ । ରୂପେ କମଳା ନୋହେ ସରି ॥
ବୈକୁଣ୍ଠପୁର ଲୋକ ସଙ୍ଗେ । ବିଷ୍ଣୁ ତାହାର ନିଜ ଅଙ୍ଗେ ॥
ଜନ୍ମ ହୋଇଲେ ନିଜ ଧାମ । ଏଣୁ ବୈକୁଣ୍ଠ ଧାରି ନାମ ॥
ବୈକୁଣ୍ଠପୁର ମନେ କଳ୍ପି । ଯହିଁ ବିଜୟେ ବିଶ୍ୱରୂପୀ ॥
ସେ ସର୍ବ ଲୋକ ନମସ୍କୃତ୍ୟ । ଶୁଣ ନୃପତି ପରୀକ୍ଷିତ ॥
ଲକ୍ଷ୍ମୀର ପ୍ରାର୍ଥନେ ମୁରାରି । କମଳା ତୁଲେ ପ୍ରୀତି କରି ॥
ନିବାସ କଲେ ପ୍ରିୟଭାବେ । ବିଷ୍ଣୁ ଭଗତଙ୍କର ଲାଭେ ॥
ବୈକୁଣ୍ଠ ଭାବ ଗୁଣ ଯେତେ । ଭାବେ କହିଲି ତୋ ଅଗ୍ରତେ ॥
କେ ବିଷ୍ଣୁ ଗୁଣ ପରିମାଣୁ । କେ ଗଣି ପରେ ଭୂମି ରେଣୁ ॥
ଶୁଣ ରାଜନ ମନତୋଷେ । ଏବେ କହିବା ମନୁ ବଂଶେ ॥
ଷଷ୍ଠରେ ଚକ୍ଷୁଷଙ୍କ ସୁତ । ଚାକ୍ଷୁଷ ନାମେ ସେ ବିଦିତ ॥
ସୁଦ୍ୟୁମ୍ନରୁ ପୁରୁତେଜ୍ୟା । ପୁରୁଷ ଚାକ୍ଷୁଷ ତନୁଜା ॥
ଇନ୍ଦ୍ରର ନାମ ମନ୍ତ୍ରଦ୍ରୁମ । ଆପ୍ୟାନ ଦେବଗଣ ନାମ ॥
ହର୍ଯ୍ୟସ୍ମବର ସପ୍ତ ମୁନି । ଉଦୟ ନିଜ ଗୁଣ ଘେନି ॥
ସେ ମନୁକାଳେ ଚକ୍ରଧର । ବୈରାଜ ନାମେ ଅବତାର ॥
ଅଜିତ ନାମେ ଭଗବାନ । ବୈରାଜ ଋଷିର ନନ୍ଦନ ॥
ଯେ ରୂପେ ସମୁଦ୍ର ମନ୍ଥିଲେ । ସୁରଗଣଙ୍କୁ ସୁଧା ଦେଲେ ।
ଜଳେ ଭ୍ରମନ୍ତେ ଗିରିବର । କୂର୍ମ ରୂପେ ଧରି ମନ୍ଦର ॥
ଅମୃତ ଦେଲେ ଦେବ ଗଣେ । ଅସୁର ମୋହି ସ୍ତିରୀ ପଣେ ॥

## ରାଜା ଉବାଚ

ଶୁକ ବଦନ ଚାହିଁ ହସି । ବୋଲେ ପରୀକ୍ଷ କୁରୁବଂଶୀ ॥
ଭୋ ମନୁ ଅସମ୍ଭବ କଥା । ସମୁଦ୍ର ମନ୍ଥନ ବ୍ୟବସ୍ଥା ॥
କିମର୍ଥେ ପ୍ରଭୁ ଜନାର୍ଦନ । କଳ୍ପିଲେ ଜଳଧି ମନ୍ଥନ ॥
କେମନ୍ତେ କୂର୍ମ ରୂପ ଧରି । ପୃଷ୍ଠେ ବହିଲେ ମହାଗିରି ॥
କେମନ୍ତେ ସର୍ବ ଦେବଗଣ । ସନ୍ତୋଷେ କଲେ ସୁଧାପାନ ॥
ଅନ୍ୟ ବା କି କି ଉପୁଜିଲା । କେତେ ବା ସମ୍ଭୂତ ହୋଇଲା ॥
ବିଷ୍ଣୁ ଚରିତ ଅଗୋଚର । ଭ୍ରମନ୍ତି ବ୍ରହ୍ମା ଶିବ ସୁର ॥

ହରି ମହିମା ତୁମ୍ଭ ମୁଖେ । ଶ୍ରବଣେ ଜ୍ଞାନ କରି ସୁଖେ ॥
ତୃପିତ ନୋହିଲା ମୋ ପ୍ରାଣ । ଭୋ ମୁନି କର ପରିତ୍ରାଣ ॥

## ଶ୍ରୀ ସୂତ ଉବାଚ

ସୂତ କହନ୍ତି ବ୍ରହ୍ମ ମତେ । ଅଶେଷ ଋଷିଙ୍କ ଅଗ୍ରତେ ॥
ଏମନ୍ତେ ପରୀକ୍ଷିତ ବାଣୀ । ଶୁକ ଆନନ୍ଦ ମନେ ଗୁଣି ॥
ହରି ମହିମା ସୁଖେ ମଜ୍ଜି । ଦଣ୍ଡେ ରହିଲେ ଚକ୍ଷୁ ବୁଜି ॥
ଅନ୍ତର ଚିତ୍ତେ ହରି ଧ୍ୟାୟି । କହନ୍ତି ରାଜା ମୁଖ ଚାହିଁ ॥

## ଶ୍ରୀ ଶୁକ ଉବାଚ

ପୂର୍ବେ ଯେ ଦେବାସୁର ରଣେ । ଯୁଦ୍ଧେ ହାରିଲେ ଦେବଗଣେ ॥
ପଡ଼ିଲେ ଗତ ପ୍ରାଣ ପ୍ରାୟେ । ଜ୍ଞାନ ନ ଲଭନ୍ତି କେବେ ହେଁ ॥
ଯେବେ ଦୁର୍ବାସା ମୁନି କ୍ରୋଧେ । ଧ୍ୱଂସିଲା ଇନ୍ଦ୍ରର ସମ୍ପଦେ ॥
ଯଜ୍ଞାଦି କ୍ରିୟା ନାଶ କଲା । ଏ ତିନି ଭୁବନ କମ୍ପିଲା ॥
ଇନ୍ଦ୍ର ନପାରେ ସ୍ୱର୍ଗେ ରହି । କମ୍ପଇ ଅଷ୍ଟଦିଗ ଚାହିଁ ॥
ଭୟେ ନ ରହେ ସ୍ୱର୍ଗଲୋକେ । ବନେ ବୁଲନ୍ତି ଏକେ ଏକେ ॥
ତ୍ରୈଲୋକ୍ୟ ଦିଶେ ଅନ୍ଧକାର । ଭୂମି କମ୍ପଇ ଥରହର ॥
ଲକ୍ଷ୍ମୀ ବିହୁନେ ତିନିଲୋକେ । ଦୁଃଖେ ମଜ୍ଜିଲେ ଅତିରେକେ ॥
ଏମନ୍ତେ ଦେବଲୋକ ଚାହିଁ । ବାସବ ସଙ୍ଗେ ସଙ୍ଗ ହୋଇ ॥
ଦିଗପାଳଙ୍କୁ ସଙ୍ଗ କରି । ଅନେକ ପ୍ରକାରେ ବିଚାରି ॥
ନିସ୍ତାର ନ ପାରିଲେ ଚିନ୍ତି । ଚିତ୍ତେ ବହିଲେ ବହୁ ଭ୍ରାନ୍ତି ॥
ଏମନ୍ତେ କେତେ ଦିନ ରହି । ପୁଣି ସକଳେ ରୁଣ୍ଡହୋଇ ॥
ବିଚାର କଲେ ଏକ ମତେ । କହିବା ବ୍ରହ୍ମାଙ୍କ ଅଗ୍ରତେ ॥
ଇନ୍ଦ୍ର ନ ଥିଲେ ସୃଷ୍ଟି କାହିଁ । ଆମ୍ଭେ ନ ପାରୁ ସ୍ଥାନେ ରହି ॥
ଲକ୍ଷ୍ମୀ ନ ଥିଲେ ସୃଷ୍ଟି ନାସେ । ସଂସାରେ ଘୋର ତମ ଗ୍ରାସେ ॥
ବ୍ରହ୍ମାର ସୃଷ୍ଟି ଯାର ବଳେ । ସେହି ନ ରହେ ଆଖଣ୍ଡଳେ ॥
ଯେମନ୍ତେ ବିଚାରି ସକଳେ । ଶଙ୍କର ସଙ୍ଗେ ଦେବବଳେ ॥
ସୁମେରୁ ମଧ୍ୟେ ବ୍ରହ୍ମସଭା । ଯହିଁ ସକଳ ଋଷି ଦେବା ॥
ସେ ସଭା ମଧ୍ୟେ ଦେବଗଣେ । ନମିଲେ ବ୍ରହ୍ମାର ଚରଣେ ॥
ରୁଦ୍ରଙ୍କୁ କରି ଆଗୁସାର । ବୋଇଲେ ଶୁଣ ବେଦବର ॥
ଦୁର୍ବାସା କୋପେ ଇନ୍ଦ୍ରଦୁଃଖୀ । ଆମ୍ଭେ ସକଳେ ତାହା ଦେଖି ॥
ତ୍ରୈଲୋକ୍ୟ ଲକ୍ଷ୍ମୀ କେଣେ ଗଲା । ଦୁଃଖ ତିମିର ପ୍ରକାଶିଲା ॥
ରବି ଶଶାଙ୍କ ହୁତାଶନେ । ତେଜ ନ ଦିଶେ ଲକ୍ଷ୍ମୀ ହୀନେ ॥
ତ୍ରୈଲୋକ୍ୟ ଲକ୍ଷ୍ମୀ ଇନ୍ଦ୍ରମୂଳେ । ସ୍ୱର୍ଗରେ ନ ରହେ ନିଶ୍ଚଳେ ॥
ଆମ୍ଭେତ ହୋଇଲୁ ଅନାଥ । ଋଷି ଦେବତା ଦେବ ସନ୍ଥ ॥
ଏମନ୍ତେ ଋଷିଙ୍କ ବଚନ । ଶୁଣିଣ ପଦ୍ମଯୋନି ମନ ॥
ଦଣ୍ଡେ ରହିଲା ଛନ୍ନ ହୋଇ । ଦେବଙ୍କୁ ଚାହିଁ ବିଚାରଇ ॥
ଏ ଇନ୍ଦ୍ର ଆଦି ଦିଗ ପାଳେ । ଗଗନ ଧରଣୀ ପାତାଳେ ॥
ଯେତେ ଅଛନ୍ତି ରାଜାଜନେ । ତେଜ ନ ଦିଶେ ଲକ୍ଷ୍ମୀ ହୀନେ ॥
ଅଶୁଭ ପ୍ରାଏତ ଦିଶଇ । ଏମନ୍ତେ ଦୁଃଖ ମନେ ରହି ॥
ପୁରୁଷୋତ୍ତମ ପାଦ ମୂଳେ । ଚିନ୍ତିଲା ସମାଧି ନିଶ୍ଚଳେ ॥
ହରି ପ୍ରସନ୍ନ ଲେଶ ପାଇ । ବୋଲଇ ଦେବଙ୍କୁ ଅନାଇ ॥

## ବ୍ରହ୍ମା ଉବାଚ

ଉଜ୍ଜ୍ୱଳ ବେଶେ ବେଦଙ୍କର । ଦେବଙ୍କୁ କହନ୍ତି ମଧୁର ॥
ଶୁଣ ସକଳ ଦେବ ଗଣ । କହିବି ଏଥର କାରଣ ॥
ଆମ୍ଭେତ ହୋଇଲୁ ଅନାଥ । ମନୁଷ୍ୟ ପଶୁ ଗୁଳ୍ମ ବର୍ଣ୍ଣ ॥
ଏମନ୍ତେ ଋଷିଙ୍କ ବଚନ । ଆମ୍ଭେ ସକଳେ ବହୁ ଦେହ ॥
ସେ ହରି ଅବ୍ୟୟ ଈଶ୍ୱର । ଆମେ ଯେ ଶରଣ ତାହାର ॥
ଯାହାର ରିପୁ ମିତ୍ର ନାହିଁ । ରକ୍ଷ ଅରକ୍ଷ ସେ ନୋହଇ ॥
ତଥାପି ସୃଷ୍ଟି ସେ କରଇ । ସ୍ୱଭାବେ ତିନି ଗୁଣ ବହି ॥
ସୃଷ୍ଟି କରଇ ରଜ ଗୁଣେ । ସତ୍ୟ ପାଳଇ ଇନ୍ଦ୍ର ପଣେ ॥
ତାମସ ଗୁଣେ ସଂହାରଇ । ଅନ୍ତରେ ସର୍ବରୂପ ବହି ॥
ତେଣୁ ଜଗତ ଗୁରୁ ପାଦେ । ଶରଣ ପଶ ଅପ୍ରମାଦେ ॥
ତାର ମହିମା ସୁର ପ୍ରିୟ । ସୁର ରକ୍ଷଣେ ବହେ ଦେହ ॥
ଆମ୍ଭ ସୁଫଳ ସେ କରିବ । ଅନାଦି ପ୍ରଭୁ ପଦ୍ମନାଭ ॥

## ଶ୍ରୀ ଶୁକ ଉବାଚ

ଏମନ୍ତ ବୋଲି ପଦ୍ମଯୋନି । ସଙ୍ଗେ ସକଳ ଦେବ ଘେନି ॥
ଆନନ୍ଦେ ଜୟ ଜୟ ନାଦେ । ସର୍ବେ ମିଳିଲେ ବିଷ୍ଣୁ ପାଦେ ॥
ଯେ ବୈକୁଣ୍ଠ ଗୋପ୍ୟ ନାମ । ପରମ ଆତ୍ମା ପରିଧାମ ॥
ପ୍ରକୃତି ନ ଜାଣଇ ଯାହା । ଯହି ନପଶଇ ବିଷ୍ଣୁମାୟା ॥
ଅଦୃଷ୍ଟା ଅଶ୍ରୁତ ଭୁବନେ । ଦେବେ ମିଳିଲେ ମହାଶୂନ୍ୟେ ॥
ଯହିଁକି ଜୀବ ଆତ୍ମା ଗଲେ । ପୁଣି ନ ସଞ୍ଚରେ ଶୟଳେ ॥
ବ୍ରହ୍ମା କପଳେ କର ଦେଇ । ବୋଲେ ବୈକୁଣ୍ଠ ନାମ ଧ୍ୟାୟି ॥

## ବ୍ରହ୍ମା ଉବାଚ

ସତ୍ୟ ଅନନ୍ତ ଅବିକାର । ଯେ ନିରଞ୍ଜନ ନିରାକାର ॥
ଜନ୍ତୁଙ୍କ ହୃଦେ ଯାର ଘର । ନିଜ ବିଭୂତି ଅଗୋଚର ॥
ମନରୁ ବେଗମାନ ଯେହି । ମନ ବଚନେ ଭେଦ କାହି ॥
ବରେଣ୍ୟେ ଦେବବର ପାଦେ । ଆମ୍ଭେ ମିଳିଲୁ ଅପ୍ରମାଦେ ॥
ସ୍ୱଭାବେ ମନ ପ୍ରାଣ ବୁଦ୍ଧି । ଏ ଯହିଁ ନ ପାରନ୍ତି ଭେଦି ॥
ଇନ୍ଦ୍ରିୟ ଗଣେ ଯେ ଅଦୃଶ୍ୟ । ଉନ୍ନିଦ୍ର ଭାବେ ଅବିନାଶ ॥

ଛାୟା ଆତପେ ଯେ ନ ମିଶେ । ଅକ୍ଷୟ ଶୂନ୍ୟେ ପରକାଶେ ॥
ତ୍ରିୟ ସ୍ୱରୂପ ଯେ ବୋଲାଇ । ଆମ୍ଭେ ଶରଣ ଗଲୁ ତହିଁ ॥
ଯେ କାଳ ଚକ୍ର ରୂପ ଧରେ । ସର୍ବଦା ମଣ୍ଡଳେ ସଞ୍ଚରେ ॥
ଯେ ଚକ୍ର ପଞ୍ଚ ଦଶ ଅର । ତ୍ରିନାଡ଼ ଷଡ଼ ଋତୁଙ୍କର ॥
ଅଖୟ ଆତ୍ମା ଅକ୍ଷରୂପୀ । ଯେ ଆଦି ଅନ୍ତ ମଧ୍ୟେ ବ୍ୟାପୀ ॥
ସେ ସତ୍ୟ କାଳର ଚରଣେ । ଆମ୍ଭେ ହେ ପଶିଲୁ ଶରଣେ ॥
ଯାହାର ଜ୍ୟୋତି ପରକାଶ । ନିର୍ମଳ କରେ ଦଶ ଦିଶ ॥
ଯୋଗୀ ଯେ ଯୋଗ ପଥେ ଥାଇ । କାଳ ହରନ୍ତି ଯୋଗ ଧ୍ୟାୟି ॥
ଯହିଁ ନ ଲାଗେ ମାୟା ଭ୍ରମ । ରୂପ ସ୍ୱଭାବେ ଶୁଭ୍ର କର୍ମ ॥
ଯେ ମାୟା ଜଗତେ ସଞ୍ଚରେ । ଅନନ୍ତ ନାନା ରୂପ ଧରେ ॥
ନିର୍ଜିତ ଆତ୍ମା ଆତ୍ମାଗୁଣ । ପରମ ପୁରୁଷ ପୁରାଣ ॥
ଜନ୍ତୁଙ୍କ ଦେହେ ସମରୂପୀ । କେ ଯେ ସଞ୍ଚରେ ସର୍ବବ୍ୟାପୀ ॥
ତାର ଚରଣେ ନମସ୍କାର । ଯେ ବ୍ରହ୍ମ ପରମ ଈଶ୍ୱର ॥
ଏ ଦେବଗଣ ବ୍ରହ୍ମ ଆଦି । ଯା କ୍ରୀଡ଼ା ଅର୍ଥରେ ସଂପାଦି ॥
ସତ୍ତ୍ୱ ବିଯୋଗେ ସୃଷ୍ଟି କରି । ତହିଁ ଯେ ସୂକ୍ଷ୍ମ ରୂପ ଧରି ॥
ଦିଶଇ ଅନ୍ତର ଦାହି ଯେ । ପ୍ରଦୀପ ଯେହ୍ନେ ଗୃହ ମାଝେ ॥
ଯାହାର ସୂକ୍ଷ୍ମଗତି ଆମ୍ଭେ । ଜାଣି ନ ପାରି ଜ୍ଞାନ ଦମ୍ଭେ ॥
ସଂସାର ମଧ୍ୟେ ଛନ୍ତି ଯେତେ । ସେ ଅବା ଜାଣିବେ କେମନ୍ତେ ॥
ଏ ମହୀ ଯାର ବେନି ପାଦ । ସ୍ୱୀକୃତେ ଭବେ ଚର୍ତୁବେଦ ॥
ଯେ କର୍ମ ଗହନେ ସଞ୍ଚରି । ଶରୀର ବହେ ନରହରି ॥
ମହାପୁରୁଷ ଆତ୍ମା ତତ୍ତ୍ୱ । ମହା ବିଭୂତି ବ୍ରହ୍ମତତ୍ତ୍ୱ ॥
ପ୍ରସନ୍ନ ହେଉ ସେ ଆମ୍ଭଙ୍କୁ । ଶରଣ ପଶିଲୁ ତାହାଙ୍କୁ ॥
ଜଳ ଯାହାର ବୀର୍ଯ୍ୟ ହୋଇ । ସ୍ୱଭାବେ ନିଜ ତେଜ ବହି ॥
ଭୂତ ସଞ୍ଚରେ ଜୀବ ରୂପେ । ହରଷ ବୃଦ୍ଧି ଅନୁ ରୂପେ ॥
ମଧ୍ୟେ ତ୍ରିଭୁବନେ ଅଖିଳ । ଜୀବନ ବ୍ୟାପୀ ରହେ ଜଳ ॥
ମହା ବିଭୂତି ବ୍ରହ୍ମା ଯେହୁ । ଆତ୍ମା ବିଷୟେ ଦୟା ବହୁ ॥
ସୋମ ଯାହାର ମନ ହୋଏ । ଦେବଙ୍କ ଆତ୍ମା ଯେବେ ବହେ ॥
ସ୍ଥାବରଙ୍କର ଯେ ଈଶ୍ୱର । ପ୍ରଜାଙ୍କ ରକ୍ଷା ବୃଦ୍ଧି କର ॥
ମହାବିଭୂତି ବ୍ରହ୍ମରୂପ । ଆତ୍ମାଙ୍କୁ ରଖୁ ହରି ଦୁଃଖ ॥
ଯାହାର ମୁଖୁ ଅଗ୍ନି ଜାତ । ତେଜେ ପ୍ରତାପଇ ଜଗତ ॥
କ୍ରିୟାକାଣ୍ଡ ନିମିତ୍ତ ଜନ । ଯେ ସର୍ବ ସାଧେ ସିଦ୍ଧ କର୍ମ ॥
ଅନ୍ତସମୁଦ୍ର ଅଗ୍ନି ବହି । ଆହାର ରୂପେ ସେ ଭୁଞ୍ଜଇ ॥
ଯାହାର ଚକ୍ଷୁ ମାରତଣ୍ଡ । ତେଜେ ପ୍ରକାଶଇ ବ୍ରହ୍ମାଣ୍ଡ ॥
ସେ ଦେବଯାନ ତ୍ରୟିମୟ । ବ୍ରହ୍ମାର ସ୍ଥାନ ଶୁଦ୍ଧ ଦେହ ॥
ମୁକ୍ତିର ଦ୍ୱାର ଯେ ବୋଲାଇ । ଅମୃତ ମୃତ ରୂପ ବହି ॥
ଚରାଚରଙ୍କ ଦେହ ପ୍ରାଣ । ଯେ କରେ ଜୀବ ପରିତ୍ରାଣ ॥
ପ୍ରକାଶେ ସହ ଓଜ ବଳେ । ଯାର ବେହାର ଏ ଶୟଳେ ॥
ଯାହା ଶ୍ରବଣ ଅଷ୍ଟଦିଶ । ହୃଦୟ ପରମ ଆକାଶ ॥
ଯାହାର ନାଭି ଅନ୍ତରୀକ୍ଷ । ଶିର ଶୋଭିତ ସ୍ୱର୍ଗ ଦେଶ ॥
ପ୍ରାଣ ଇନ୍ଦ୍ରିୟ ଆତ୍ମା ହେତୁ । ଯାର ପ୍ରସନ୍ନେ ଜ୍ଞାନ ତନୁ ॥
ଯାହାର ବଳୁ ଇନ୍ଦ୍ର ଜାତ । ତ୍ରିଦିଶ ଦେବଙ୍କର ନାଥ ॥
ଯାହାର ପ୍ରାଣେ ଜନ ପ୍ରାଣ । ଏଣୁ ଏ ସର୍ବ ପରିତ୍ରାଣ ॥
ଯାର ପ୍ରସାଦୁ ଦେବେ ଭୁଞ୍ଜି । କ୍ରୋଧେ ପ୍ରବେଶ ପଶୁପତି ॥
ହରଷେ ବ୍ରହ୍ମା ଜାତ ହୋୟେ । ଲୋକ ପ୍ରକାଶ ତାର ଦେହେ ॥
ଯାର ଇନ୍ଦ୍ରିୟ ସାତ ଛନ୍ଦ । ମେଢ୍ରୁଁ ପ୍ରଜାପତି ଆନନ୍ଦ ॥
କମଳା ଯାର ବକ୍ଷ ସ୍ଥଳ । ଛାୟା ସଂଭବ ପିତୃକୁଳ ॥
ଧର୍ମ ଉଦିତ ସ୍ତନ ଯୁଗେ । ଗଗନ ଯାର ଶିର ଭାଗେ ॥
ହାସରୁ ଅପସରା ଗଣ । ଆମ୍ଭଙ୍କୁ କରୁ ପରିତ୍ରାଣ ॥
ବିପ୍ର ଯାହାର ମୁଖୁ ଜାତ । ବ୍ରହ୍ମା ନିର୍ମାଣ ଗୁହ୍ୟଜାତ ॥
କ୍ଷେତ୍ରିୟ ଭୁଜୁଁ ଜନ୍ମବଳ । ଉରୁ ସମ୍ଭବ ବୈଶ୍ୟ କୁଳ ॥
ଶୁଦ୍ର ଚରଣୁ ଉତପତି । ଯେ ବ୍ରହ୍ମା ପରମ ବିଭୂତି ॥
ଉପର ଓଷ୍ଠେ ଲୋଭଜାତ । ଅଧରୁ କ୍ରୋଧ ଯେ ସମ୍ଭୂତ ॥
ସ୍ୱରଶେ କାମର ସମ୍ଭବ । ନାମ ଯାହାର ଉରୁ ଯୁଗ ॥
କାଳ ସମ୍ଭବ ପୃଷ୍ଠ ଦେଶେ । କରାଳ ବସେ ବେନି ପାଶେ ॥
ଦ୍ରବ୍ୟ ବୟସ କର୍ମ ଗୁଣ । ଏ ମାୟା ପ୍ରକାଶେ ଲକ୍ଷଣ ॥
ଯେ ଉପଶାନ୍ତି ଶକ୍ତି ବହେ । ଆମ୍ଭେ ନମିଲୁ ତାର ପାୟ ॥
ସ୍ୱରାଜ୍ୟ ଲାଭେ ଯେ ପୂରିତ । ମାୟା ରଚିତ ଗୁଣେ ସ୍ଥିତ ॥
ସେ ହରି ଦେଖାଉ ଶରୀର । ଯେ ନୋହେ କରଣେ ଗୋଚର ॥
ତା ମୁଖ ଦେଖିବାର ଅର୍ଥେ । ଶରଣ ଗଲୁ ପାଦଗତେ ॥
ବୋଲଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ସୁଜନେ କର ଏଣେ ଭାବ । ଯେ ନାବେ ସଂସାରୁ ତରିବ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ*
*ବ୍ରହ୍ମସ୍ତୁତି ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏମନ୍ତେ ଦେବ ସ୍ତୁତି ଶୁଣି । ଶୂନ୍ୟେ ପ୍ରକାଶେ ଚକ୍ରପାଣି ॥
ସହସ୍ରେ ଅର୍କ ତେଜ ଦେଖି । ଦେବେ ବୁଜିଲେ ଭୟେ ଆଖି ॥
ଦିଗ ନ ପାରନ୍ତି ବିଚାରି । ବଧିର ମତେ ପ୍ରାଣ ଧରି ॥
ରହିଲେ ଅନ୍ଧାକାର ଛନ୍ନେ । ଚାହିଁ ନ ପାରନ୍ତି ଗଗନେ ॥
ମଧ୍ୟେ ଯେ ବ୍ରହ୍ମା ରୁଦ୍ର ଥିଲେ । ଟେକି ଅନ୍ତରୀକ୍ଷେ ଚାହିଁଲେ ॥
ଦେଖିଲେ ବିଷ୍ଣୁର ପ୍ରକାଶ । ଶରୀର ପୂରିଛି ଆକାଶ ॥
ନୀଳ ମର୍କତ ପ୍ରାୟେ ଦିଶେ । ଅରୁଣ ଲୋଚନ ପ୍ରକାଶେ ॥
ବିକଚ କୁଣ୍ଡରିକ ପ୍ରାୟେ । କୁଣ୍ଡେ କୁଣ୍ଡଳ ବେନି ଶୋହେ ॥
ତପ୍ତ କାଞ୍ଚନ ପ୍ରାୟେ ବର୍ଣ୍ଣ । ପୀତ ବସନ ପରିଧାନ ॥
ପ୍ରସନ୍ନ ଚାରୁ ସର୍ବ ଅଙ୍ଗେ । ସୁମୁଖ ସୁନ୍ଦର ଭ୍ରୂଭଂଗେ ॥
ଅମୂଲ୍ୟ ମୁକୁଟ ଲଲାଟେ । କାଞ୍ଚନ ଭୂଷଣ ପ୍ରକଟେ ॥
ଆଜାନୁଲମ୍ବ ଚାରିଭୁଜେ । କେୟୂର କଂକଣ ବିରାଜେ ॥
କାଞ୍ଚି କଳାପ କଟୀ ଭାଗେ । ଅମୂଲ୍ୟ ହାର ହୃଦ ଯୁଗେ ॥
କୌସ୍ତୁଭ ମଣି କଣ୍ଠେ ଶୋହେ । ତେଜ ପ୍ରକାଶ ଜନମୋହେ ॥
କମଳା ବନମାଳା ରୂପେ । ଉରେ ଲମ୍ବଇ ସୂକ୍ଷ୍ମ ରୂପେ ॥
ଏମନ୍ତ ରୂପ ଶୂନ୍ୟେ ଚିନ୍ତି । ସଭୟେ ଚିତ୍ତେ ବେଦପତି ॥
ଧ୍ୟାନେ ଗୋବିନ୍ଦ ପାଦେ ପଡ଼ି । ସ୍ତୁତି କରଇ କରଯୋଡ଼ି ॥

### ବ୍ରହ୍ମା ଉବାଚ

ଅଜାତ ଜନ୍ମ ଯେ ସ୍ୱଭାବେ । ସୃଷ୍ଟି ସ୍ଥିତି ପାଳନ ଲାଭେ ॥
ଗୁଣ ବିଶ୍ରାମ ତୁମ୍ଭେ କର । ମହିମା ଅମୃତ ସାଗର ॥
ଅଣୁ ହୁଁ ଅଣୁ ଭାବ ହୋଇ । ସ୍ୱମୟା ସୁଖେ ଯେ ଭଜଇ ॥
ମହାନୁଭାବ ଏ ଜଗତେ । ମହାପୁରୁଷ ନମୋସ୍ତୁତେ ॥
ତୁ ନାଥ ସଂସାର ଧାରଣେ । ଏଣୁ ଅଶେଷ ଋଷି ଗଣେ ॥
ଆଗମ ନିଗମ ସମ୍ପାଦି । ବିଚାରି ତତ୍ତ୍ୱ ଯୋଗ ବିଧି ॥
ବେଦ ବିହିତ ଗବି ତଳେ । ମନ ପବନର ନିଶ୍ଚଳେ ॥
ତୁମ୍ଭର ରୂପ ଧ୍ୟାନ କରି । ମାୟା ଗହନୁ ଯାନ୍ତି ତରି ॥
ତୁ ନାଥ ଆଦି ମଧ୍ୟ ଅନ୍ତେ । ଯେବା କରାଉ ଆତ୍ମାତନ୍ତେ ॥
ଜଗତ ଆଦି ମଧ୍ୟେ ତୁହି । ତୋ ରୂପ କେ ପାରିବ କହି ॥
ଚିତ୍ତକୁ ସ୍ୱପ୍ନ ପ୍ରାୟେ ହୋଇ । ତୋ ରୂପ ବିଶ୍ୱେ ପ୍ରକାଶଇ ॥
ଆତ୍ମା ଆଶ୍ରାୟେ ମାୟା କରି । ତୁ ଏ ସଂସାରେ ରୂପ ଧରି ॥
ସଂସାରେ ପଶୁ ଆତ୍ମା ରୂପେ । ସୁଖେ ବିହରୁ କଞ୍ଚେ କଞ୍ଚେ ॥
ନିର୍ମଳ ଚେତା ମୁନି ଜନେ । ତୋତେ ଦେଖନ୍ତି ଶୁଦ୍ଧ ମନେ ॥
ଯଥା ଅନଳ କାଷ୍ଠେ ଥାଏ । ଯେସନ୍ତେ ଅମୃତ ଗୋରୁ ଦେହେ ॥
ଧରଣୀ ଦେହେ ଯେସନ୍ତେ ଅନ୍ନ । ସଂଯୋଗେ କୃଷି କରଷଣ ॥
ମନୁଷ୍ୟ ନାନା ଯୋଗ ବଳେ । ଭଜନ୍ତି ତୋ ପାଦ କମଳେ ॥
ନମନ୍ତି ତୋ ଚରଣ ତଳେ । ଭବସାଗରୁ ତରେ ଭଲେ ॥
ସର୍ବେ ନମନ୍ତି ତୋ ଚରଣେ । ତୁ ଥାଉ ସଂସାର ଧାରଣେ ॥
ବାଞ୍ଛିତ ଅର୍ଥ ଫଳ ପାନ୍ତି । ନାନା ପ୍ରକାର ତୋତେ ଚିନ୍ତି ॥
ଆତ୍ମା ତୋ ରୂପ ଆଜି ଦେଖି । ସଂସାର ତେଜି ହୋନ୍ତି ସୁଖୀ ॥
ଯେସନେ ଗଜ ଦାବାନଳେ । ପ୍ରବେଶ କରେ ଗଂଗା ଜଳେ ॥
ଏ ଦେହ ବାହାର ଅନ୍ତରେ । ତୋ ତହୁଁ କେବା ଅଛି ପରେ ॥
ଏ ଦେବଗଣ ତୋର ତୁଲେ । ଦକ୍ଷାଦି ପ୍ରଜାପତି ମେଳେ ॥
ତୋ ଅନୁଗ୍ରହେ ବହୁ ଅଂଗ । ଅନଳେ ଯେସନ ପତଙ୍ଗ ॥
କିବା କହିବୁ ତୋ ଅଗ୍ରତେ । ଆତ୍ମାକୁ ରଖ ଏ ଜଗତେ ॥

### ଶ୍ରୀ ଶୁକ ଉବାଚ

ଏମନ୍ତେ ବ୍ରହ୍ମା ବାକ୍ୟ ଶୁଣି । ସଂସାର ହିତେ ମନେ ଗୁଣି ॥
ପରମ ସୁଖେ ତନୁ ପୂରି । ବ୍ରହ୍ମାକୁ କହନ୍ତି ମୁରାରି ॥
ଜଳଧି ମନ୍ଥନ ପ୍ରସ୍ତାବେ । ଆତ୍ମା ପ୍ରକାଶ ଅନୁରାଗେ ॥
ପ୍ରସନ୍ନ ଚିତ୍ତେ ଭାବଗ୍ରାହୀ । କହନ୍ତି ବ୍ରହ୍ମା ମୁଖ ଚାହିଁ ॥

### ଶ୍ରୀ ଭଗବାନ ଉବାଚ

ଶୁଣ ହେ ବ୍ରହ୍ମା ଶମ୍ଭୁ ଦେବେ । ଯେ ବା କରିବି ତୁମ୍ଭ ଲାଭେ ॥
ତୁମ୍ଭର ଶ୍ରେୟ ଯେଉଁ ମତେ । କହିବା ଶୁଣ ଏକ ଚିତ୍ତେ ॥
ଅସୁରଙ୍କର ସଂଗେ ଯାଇ । ବସ ବିଶ୍ୱାସ ରୂପ ହୋଇ ॥
ନାନା ପ୍ରକାରେ ସନ୍ଧି କର । ପ୍ରଲୋଭେ ତାଙ୍କ ମନ ହର ॥
ଯାବତ ସିଦ୍ଧ ନୁହେଁ କାର୍ଯ୍ୟ । ତାବତ ମିତ୍ର ଭାବେ ଭଜ ॥
ଆପଣା କାର୍ଯ୍ୟ ସିଦ୍ଧି ଅର୍ଥେ । ଶତ୍ରୁଙ୍କୁ ଭଜନ୍ତି ସମସ୍ତେ ॥
କାର୍ଯ୍ୟ ସରିଲେ ନିଜ ଭାବେ । ସର୍ବେ ରହନ୍ତି ଆତ୍ମାଲାଭେ ॥
ଅହି ମୂଷକେ କରି ସନ୍ଧି । ଯେମନ୍ତେ ଆତ୍ମା କାର୍ଯ୍ୟ ସାଧି ॥
ଅମୃତ ଅର୍ଥେ ଯତ୍ନ କର । ଯେ ପାନେ ହୋଇବ ଅମର ॥
ଶୁଣ କହିବା ଉପଦେଶ । ବେଗେ ଗହନ ବନେ ପଶ ॥
ଅମ୍ଳ ଔଷଧି ଗୁଳ୍ମ ଯେତେ । ବନସ୍ଥ ଆଣ ଅପ୍ରମିତେ ॥
ପାଷାଣେ ଛେଚି ଭୁଜ ବଳେ । ନିକ୍ଷେପ କ୍ଷୀର ସିନ୍ଧୁ ଜଳେ ॥
ସେ ଅମ୍ଳଯୋଗେ ବସୁ ଦଧି । ଯେଣେ ଲଭିବ ସର୍ବସିଦ୍ଧି ॥
ଏ ଯେ ମନ୍ଦର ମହୀଧର । ମନ୍ଥନ ଦଣ୍ଡ ଏହାଙ୍କର ॥
ବାସୁକୀ ନାଗ ରେଜୁ କରି । ମନ୍ଥିବେ ଦେବାସୁର ଧରି ॥
ମୋହର ବୋଲେ ମହାଜଳେ । ମନ୍ଥନ କର ଯା ନିଶ୍ଚଳେ ॥

ତୁମ୍ଭେ ସେ ଅମୃତ ଖାଇବ । ନିରାଶ ହୋଇବେ ଦାନବ ॥
ଇନ୍ଦ୍ର ଲଭିବ ସର୍ବ ସିଦ୍ଧି । ସର୍ବ ସମ୍ପାଦିବ ଜଳଧି ॥
ଶାନ୍ତି ବଚନେ କାର୍ଯ୍ୟ ପାଇ । ଆଗାମ ଶାସ୍ତ୍ରେ ଏହା କହି ॥
ପ୍ରଥମେ ବାସୁକୀ ବଦନେ । ଗରଳ ଛାଡ଼ିବ ବହନେ ॥
ତହିଁକି ନ କରିବ ଭୟେ । ମୁଁ ପୁଣି କରିବି ଉପାୟେ ॥
ପ୍ରାଣୀ ଯେ ଲୋଭ ମୋହମୋତେ । ବସ୍ତୁକୁ ଆବୋରେ ଜଗତେ ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ଦେବ ଗଣେ କହି । ତକ୍ଷଣେ ଗରୁଡ଼ ଆରୋହି ॥
ବିଷ୍ଣୁ ଭବନେ ହରି ଗଲେ । ଭଗତ ପାରିଷଦ ତୁଲେ ॥
ରୁଦ୍ର ବ୍ରହ୍ମାଦି ଦେବଗଣେ । ନମିଲେ ବିଷ୍ଣୁର ଚରଣେ ॥
ସକଳେ ହୋଇ ଏକ ମତ । ବଳି ଭୁବନେ ଉପଗତ ॥
ଦ୍ୱାରେ ଅସୁରେ ଯେତେ ଥିଲେ । ଦେବଗଣଙ୍କୁ ନିରୋଧିଲେ ॥
ଦେବ ନିଷେଧ କଥା ଶୁଣି । ଅସୁରଙ୍କର ଚୂଡ଼ାମଣି ॥
ସନ୍ଧି ବିଗ୍ରହ ସେ ଜାଣଇ । ବୋଲଇ ନିଜ ଗଣ ରାଇ ॥
ଦେବଙ୍କୁ ଛାଡ଼ ତୁମ୍ଭେ ଦ୍ୱାର । କିସବା କରିବେ ବିଚାର ॥
ଏମନ୍ତେ ବଳି ଆଜ୍ଞା ପାଇଁ । ଦ୍ୱାର ଛାଡ଼ିଲେ ଭାବବହି ॥
ବଳି ନିକଟେ ଦେବେ ଯାଇ । ଜୟ ଶବଦ ଉଚ୍ଚେ ଗାଇ ॥
ବଳିକି ଦେଖିଲେ ଆସନେ । ବେଷ୍ଟିତ ଅସୁର ଗହଣେ ॥
ସର୍ବ ସମ୍ପଦ ଯାର ଘରେ । କିବା ଉପମା ଦେବା ତାରେ ॥
ନିଜ ଶରୀର ତେଜ କୁଞ୍ଜେ । ଦିଗ ପାଳଙ୍କ ତେଜ ଗଞ୍ଜେ ॥
ଇନ୍ଦ୍ର ଯେ ବଳି ମୁଖ ଚାହିଁ । ବିଶ୍ୱାସେ ବଚନ ବୋଲଇ ॥
ଶୁଣ ରାଜନ କହୁ ତୋତେ । ଏ ତିନି ଲୋକ ଶୁଭ ଅର୍ଥେ ॥
ଦୁର୍ବାସା ଶାପ ମହା ଘୋର । ସମ୍ପଦ ନାଶିଲା ମୋହର ॥
ସୋମ ସବିତା ତେଜ ଗଲା । ସ୍ୱାହା ସ୍ୱଧାହିଁ ନ ଚଳିଲା ॥
କମ୍ପଇ ଏ ତିନି ଭୁବନ । ସର୍ବେ ହୋଇଲେ ଦୁଃଖେ ଛନ୍ନ ॥
ଏଣୁ ବିଷ୍ଣୁ ଭୁବନେ ଯାଇ । କହିଲୁ ବ୍ରହ୍ମା ରୁଦ୍ର ଲଇ ॥
ସେ ପୁରୁଷୋତ୍ତମ ବଚନେ । ଶୁଣ ରାଜନ ସାବଧାନେ ॥
ବୋଇଲେ ଏ କ୍ଷୀର ଜଳଧି । ଅମ୍ଳ ସଂଯୋଗେ କର ଦଧି ॥
ମନ୍ଦର ଗିରିକୁ ଆଣିବ । ସମୁଦ୍ର ମଧରେ ସ୍ଥାପିବ ॥
ବାସୁକୀ ନାଗ ରେଜୁ କରି । ଦେବେ ଅସୁରେ ତାହା ଧରି ॥
ମନ୍ଥନ କରି ଅତି ଯତ୍ନେ । ସୁଧା କରିବ ମୁଖେ ପାନେ ॥
ଯେତେ ଉପୁଜିବ ମନ୍ଥନେ । ସକଳେ ମିଳି ତୋଷମନେ ॥
ସମାନ ଭାଗେ ଭୋଗ କର । ସନ୍ତୋଷ ମନେ ଦେବାସୁର ॥
ଏଣୁ ତୁମ୍ଭର ସଂଗେ ଆମ୍ଭେ । ଜଳଧି ମନ୍ଥନ ଆରମ୍ଭେ ॥
ତୁମ୍ଭ ଆମ୍ଭର ଏକ ଗତି । ଯାହା ବୋଇଲେ ଶିରୀପତି ॥
ଏମନ୍ତେ ଇନ୍ଦ୍ର ମୁଖୁ ଶୁଣି । ଅସୁରେ ମନେ ମନେ ଗୁଣି ॥
ବୋଇଲେ ଶୁଭ କଥା ଏହି । ବିଷ୍ଣୁ ମାୟାରେ ମନ ମୋହି ॥
ବଳି ସଂଗତେ ଉଠି ସର୍ବେ । ସତ୍କୃତ କରି ପ୍ରିୟ ଭାବେ ॥
ସମ୍ବରାରିଷ୍ଟ ନେମି ତୁଲେ । ଯେତେ ଦାନବ ଜନେ ଥିଲେ ॥
ବିଷ୍ଣୁ ମୋହନ ମାୟା ମୋତେ। ହରଷ ଅସୁରଙ୍କ ଚିତ୍ତେ ॥
ଦେବ ଦାନବ ପ୍ରିୟ ମନେ । ମିଳିଲେ ଗିରି ସନ୍ନିଧ୍ୟାନେ ॥
ନାନାଦି ତୀକ୍ଷ୍ଣ ଶସ୍ତ୍ର ଧରି । ଉପାଡ଼ି ବାହା ନାଦ କରି ॥
ଇନ୍ଦ୍ରର ତୁଲେ ଦେବ ଯେତେ। ଅସୁର ବଳିର ସମେତେ ॥
ସମସ୍ତେ ମୁଣ୍ଡେ ଗିରି କଲେ । ବଳେ କେତେହେଁ ଦୂର ଗଲେ ॥
କାହିଁ ବହିବେ ଗରିବର । ଯେ ଗିରି ବରଙ୍କ ଶେଖର ॥
ବଳେ ବହନ୍ତେ ଗରୁ ତରେ । ପଡ଼ିଲା ତାହାଙ୍କ ଉପରେ ॥
ଚୂର୍ଣ୍ଣ ହୋଇଲେ ମହାଭାରେ । ସକଳେ ପଡ଼ିଲେ ଭୂମିରେ ॥
ମୁଣ୍ଡ ଚରଣ ବାହୁଚୂରି । ପଥେ ପଡ଼ିଲା ମହାଗିରି ॥
ଦେବଙ୍କୁ ଦେଖି ଭଗବାନ । ତକ୍ଷଣେ ଗରୁଡ଼ ଆସନ ॥
ପଥେ ମିଳିଲେ ତାଙ୍କ ପାଶେ । ଦେବଙ୍କ ଭଗତି ବିଶ୍ୱାସେ ॥
କରେ ମନ୍ଦର ଗରି କଲେ । ଦେବ ଅସୁରଙ୍କୁ ଚାହିଁଲେ ॥
ଅମୃତ ନୟନେ ଅନାଇଁ । ଜୀବନ ଦେଲେ ଭାବଗ୍ରାହୀ ॥
ଲାଗନ୍ତେ ଗୋବିନ୍ଦର କର । ତକ୍ଷଣେ ପାଇଲେ ଶରୀର ॥
ଗୋବିନ୍ଦ ଏକ ହସ୍ତେ ଗିରି । ନିଷ୍ଠେ ନିଜ କରେ ଧରି ॥
ଗରୁଡ଼ ଉଡ଼େ ଶୂନ୍ୟ ପଥେ । ଦେବ ଦାନବ ଦଳ ସାଥେ ॥
କ୍ଷୀର ଜଳଧି ତୀରେ ମିଳି । ଦେବେ ଅସୁରେ ବନମାଳୀ ॥
ଗରୁଡ଼ କାନ୍ଧୁ ଗରିବର । କୂଳେ ନିବେଶି ଗଦାଧର ॥
ଗରୁଡ଼ ଗଲା ନିଜ ଘର । ଶୁଣ ପରୀକ୍ଷ ଦଣ୍ଡ ଧର ॥
ବୋଲଇ ଦାସ ଜଗନ୍ନାଥ । ଅଷ୍ଟମ ସ୍କନ୍ଧେ ଭାଗବତ ॥
ସୁଜନେ ଏଣେ ଚିତ୍ତ କର । ମାୟା ସଂକଟରୁ ନିସ୍ତର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ*
*ମନ୍ଦରାନ୍ଦୋଳାନୟନେ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ବ୍ୟାସ ତନୟ ଅନୁରାଗେ । କହନ୍ତି ପରୀକ୍ଷିତ ଆଗେ ॥
ଦେବ ଦାନବ ଏକ ମେଳେ । ପ୍ରବେଶ ହୋଇଲେ ପାତାଳେ ॥

ବାସୁକୀ ନିକଟେ ମିଳିଲେ । ସମୁଦ୍ର ମନ୍ଥନେ ବରିଲେ ॥
ଗୋବିନ୍ଦ ଆଜ୍ଞା ଶିରେ ଧରି । ଉଭୟ ରୂପ ଅଙ୍ଗୀ କରି ॥
ଧରଣୀ ଧରି ଏକ ରୂପେ । ମିଳିଲେ କ୍ଷୀରାବ୍ଧି ସମୀପେ ॥
ଦେହେ ବେଷ୍ଟିତ ମହାଗିରି । ରହିଲା ବିଶ୍ୱରୂପ ଧରି ॥
ଦେବେ ସକଳ ତୋଷମନେ । ଆରମ୍ଭ ସମୁଦ୍ର ମନ୍ଥନେ ॥
ବାସୁକୀ ଫଣା ଅଗ୍ରେ ହରି । ଦେବଙ୍କ ତୁଲେ କର ଧରି ॥
ବୋଲନ୍ତି ଅସୁରଙ୍କୁ ଚାହିଁ । ତୁମ୍ଭେ ହୋ ପୁଚ୍ଛ ଧର ଯାଇ ॥
ହରି ବଚନ ଶୁଣି କର୍ଣ୍ଣେ । ଅସୁରେ ଭାଳି ଅନ୍ୟୋ ଅନ୍ୟେ ॥
ବୋଲନ୍ତି ବିଷ୍ଣୁ ମୁଖ ଚାହିଁ । ଏ କଥା ଉଚିତ ନୁହଇ ॥
ସ୍ୱଭାବେ ସର୍ପର ଲାଂଗୁଳ । କେବେ ହେଁ ନୁହଇ ମଂଗଳ ॥
ଆମ୍ଭେ ଦେବଙ୍କ ପୂର୍ବେ ଜାତ । ପବିତ୍ର କଶ୍ୟପଙ୍କ ସୁତ ॥
ଧର୍ମ ଅଧର୍ମ ଆମ୍ଭେ ଜାଣୁ । ଆଗମ ନିଗମ ପ୍ରମାଣୁ ॥
ପ୍ରଖ୍ୟାତ ଜନ୍ମ କୁଳ ଶୀଳ । କେମନ୍ତେ ଧରିବୁ ଲାଂଗୁଡ଼ ॥
ଆମ୍ଭର ଏଣେ କାର୍ଯ୍ୟ ନାହିଁ । ଏମନ୍ତେ ଭଗ୍ନ ଚିତ୍ତେ ରହି ॥
ସର୍ବ ଅସୁର ଏକ ମେଳେ । ରହିଲେ କ୍ଷୀର ସିନ୍ଧୁ ଜଳେ ॥
ରହିଲେ ଆରମ୍ଭ ଉପେକ୍ଷି । ପୁରୁଷୋତ୍ତମ ତାହା ଦେଖି ॥
ପୁଚ୍ଛ ଧରିଲେ ଶିରୀରଙ୍ଗ । ସର୍ବ ଦେବତା ଘେନି ସଙ୍ଗ ॥
ମନ୍ଦର ଧରି ବାହୁ ବଳେ । ସ୍ଥାପିଲେ କ୍ଷୀର ସିନ୍ଧୁ ଜଳେ ॥
ସ୍ୱଭାବେ ଗଭୀର ଜଳଧି । ଯୋଜନ ଷଷ୍ଠ ଲକ୍ଷ୍ୟାବଧି ॥
ଗିରି ପଡ଼ିଲା ରସାତଳେ । ଖୋଜି ନ ପାଇଲେ ସକଳେ ॥
ତୀରେ ଉଠିଲେ ଦୁଃଖମନେ । ବଦନେ ଚାହିଁ ଅନ୍ୟୋ ଅନ୍ୟେ ॥
ନାଶିଲା ନିଜ ପୁରସ୍କାର । ହୃଦେକେ ବହୁ ଅହଂକାର ॥
ଦଇବ ବଳ ଅତି ବଳେ । ଯେବେ ଆରମ୍ଭେ ପ୍ରାଣୀ ବଳେ ॥
ଦେବେ ଦାନବ ବିଷ୍ଣୁ ପାଶେ । ରହି ଚାହାନ୍ତି ଦଶ ଦିଶେ ॥
ତାହାଙ୍କ ଦର୍ପ ଭଗ୍ନ ଚାହିଁ । ହସି ବୋଲନ୍ତି ଭାବଗ୍ରାହୀ ॥
ପାତାଳୁ କୂର୍ମ୍ମ ରୂପ ଧରି । ପୃଷ୍ଠେ ବସାଇ ମହାଗିରି ॥
ଉଠିଲେ ଘେନି ଗିରିବର । ତୀରେ ଦେଖନ୍ତି ଦେବାସୁର ॥
ଯେସନେ ସରୋବର ମଧ୍ୟେ । ପୃଷ୍ଠକୁ ସ୍ଥାପି ଜଳ ମଧ୍ୟେ ॥
ଗିରି ଯୋଜନ ଏକାଦଶ । ଜଳେ ରହିଲା ଅବଶେଷ ॥
ଗୋବିନ୍ଦ ଯୋଗ ମାୟାକରି । ତକ୍ଷଣେ ମାୟା ରୂପ ଧରି ॥
ଗିରି ଆବୋରି ପୃଷ୍ଠଦେଶେ । ମସ୍ତକ ଲାଗିଲା ଅକାଶେ ॥
ଦେଖି ସାନନ୍ଦ ଦେବାସୁରେ । ବାସୁକୀ ଧରି ତେଜ ଭରେ ॥
ପର୍ବତେ ତିନି ଗୁଣ କରି । ଲଭିଲେ ମନ୍ଥନ ଆବୋରି ॥
ଦେବ ଅସୁର ବେନି ଭାଗେ । ବାସୁକୀ ଧରି ଅତିବେଗେ ॥
ହୁଂକାରେ କରନ୍ତି ମନ୍ଥନ । ଶୁଣ ପରୀକ୍ଷିତ ରାଜନ ॥
କଚ୍ଛପ ଗିରି ଘରଷଣେ । ଅନଳ ଉଠିଲା ତକ୍ଷଣେ ॥
କଣ୍ଡୁ ଯେ କୂର୍ମ୍ମ ପୃଷ୍ଠେ ଥିଲା । ତକ୍ଷଣେ ଉଶ୍ୱାସ ହୋଇଲା ॥
କଣ୍ଡୁ ଘର୍ଷଣ ସୁଖ ବୁଝି । ସେ କୂର୍ମ୍ମ ବେନି ଚକ୍ଷୁ ବୁଜି ॥
ସୁଖେ ନିଦ୍ରିତ ନାରାୟଣ । କେ ସହେ ଅଚଳ ଧାରଣ ॥
ପୁଣି ଗୋବିନ୍ଦ ଅନ୍ତରୀକ୍ଷେ । ମିଳିଲେ ଦେବଙ୍କ ପ୍ରତ୍ୟକ୍ଷେ ॥
ଦେବ ଅସୁର ଅଳ୍ପ ବଳ । ଜାଣିଲେ ପ୍ରଭୁ ଆଦି ମୂଳ ॥
ତକ୍ଷଣେ ପ୍ରଭୁ ଭାବଗ୍ରାହୀ । ଦେବ ଦାନବ ମଧ୍ୟେ ଯାଇ ॥
ପଶିଲେ ତାହାଙ୍କର ଚିତ୍ତେ । ହୋଇଲା ବଳ ଅପ୍ରମିତେ ॥
ବାସୁକୀ ଦେହେ ନରହରି । ପଶିଲେ ବଳରୂପ ଧରି ॥
ସହସ୍ର ଭୁଜେ ଶୂନ୍ୟେ ପଥେ । ଗିରି ଆବୋରି ହୃଦଗତେ ॥
ରହିଲେ ପ୍ରଭୁ ନାରାୟଣ । ଶୂନ୍ୟେ ଦେଖନ୍ତି ଋଷିଗଣ ॥
ଆନନ୍ଦେ ଗଗନ ଆରୋହୀ । ସ୍ତୁତି କରନ୍ତି ବିଷ୍ଣୁ ଚାହିଁ ॥
ପୁଷ୍ପ ବରଷି ବେଦ ନାଦେ । ମୁନିଏ କହନ୍ତି ଆନନ୍ଦେ ॥
ଦେଖନ୍ତି ଅଧଃ ଊର୍ଦ୍ଧ୍ୱ ଚାହିଁ । ହରି ହୁଁ ଅନ୍ୟ ନ ଦିଶଇ ॥
ପ୍ରକୃତ ମଦେ ସୁରା ସୁରେ । ଗିରି ମନ୍ଥନ୍ତି ଅତି ଖରେ ॥
ମହାପର୍ବତ ଘରଷଣେ । ଜଳେ ଯେ ଜଳ ଜନ୍ତୁ ଗଣେ ॥
ଜଳଧି ସଙ୍ଗେ କ୍ଷୋଭ ପାଇ । କାଛେ ରହିଲେ ସ୍ଥିର ହୋଇ ॥
ବାସୁକୀ ସହସ୍ର ବଦନେ । ନିଶ୍ୱାସ ଛାଡ଼େ ଘନ ଘନେ ॥
ତା'ର ନିଶ୍ୱାସ ଦାବାନଳ । ପୂରିଲା ଦିଗ ଅନ୍ତରାଳ ॥
ନିଶ୍ୱାସ ଅଗ୍ନି ଧୂମ ଲାଗି । ଦେବ ଦାନବେ ଦୁଃଖ ଭାଗି ॥
ଚାଳି ନ ପାରନ୍ତି ମନ୍ଦର । ତାହାଙ୍କୁ ଦେଖି ଚକ୍ରଧର ॥
ନିଶ୍ୱାସ ସୁଖେ ହତପ୍ରାଣ । ତାହା ଜାଣିଲେ ନାରାୟଣ ॥
ତକ୍ଷଣେ ଶୂନ୍ୟେ ମେଘମାଳ । ଶୀତଳ ବରଷନ୍ତି ଜଳ ॥
କ୍ଷୀର ସମୁଦ୍ରେ ଶୀତ ବାତ । ରୂପେ ପଶିଲେ ଜଗନ୍ନାଥ ॥
ବାସୁକୀ ଆଦି ଜଳ ଜୀବେ । ତାପୁଁ ତରିଲେ ଶୀତ ଭାବେ ॥
ଦେବ ଦାନବ ଦେହଗତେ । ମାଳ କଂକଣ ଥିଲା ଯେତେ ॥
ସକଳ ଧୂମେ ହତ ପ୍ରଭ । ଅନାଇ ପ୍ରଭୁ ପଦ୍ମନାଭ ॥
ଜଳ ସିଞ୍ଚନେ ସୁସ୍ଥ କଲେ । ବଳି ପ୍ରମୁଖେ ଯେତେ ଥିଲେ ॥
ଏମନ୍ତେ ବାସୁକୀ ଶରୀରେ । ଅତି ମନ୍ଥନ ଖେଦ ଭରେ ॥
ଗରଳ ଛାଡ଼େ ଅତି ଦୁଃଖେ । ବରଷା ପ୍ରାୟେ ସସ୍ର ମୁଖେ ॥
ଜଳେ ପଡ଼ନ୍ତେ ବିଷ ଜ୍ୱାଳେ । ଯେ ଜନ୍ତୁ ଗଣେ ଥିଲେ ଜଳେ ॥
ବିକଳେ ବୁଲି ଛଟପଟେ । ପୁଣି ଗଭୀରେ ପୁଣି ତଟେ ॥
ସେ ବିଷ ବେଗବନ୍ତ ଜ୍ୱାଳେ । ଦିଗ ପୂରିଲା ଅନ୍ତରାଳେ ॥

ଚକିତେ ଅଧଃ ଊର୍ଦ୍ଧ୍ୱ ମଧ୍ୟେ । ଜନ୍ତୁଏ ପଳାନ୍ତି ବିଷାଦେ ॥
ଡାକନ୍ତି ଊର୍ଦ୍ଧ୍ୱ ମୁଖ କରି । ରଖ ହେ ପ୍ରଭୁ ଶୂଳଧାରୀ ॥
ସହି ନ ପାରିଲୁ କଷଣ । ତୋ ପାଦେ ପଶିଲୁ ଶରଣ ॥
ହର ସମୀପେ ମୁନିଗଣ । ମିଳି କରନ୍ତି ପ୍ରଦକ୍ଷିଣ ॥
ଯେ ଦୁଃଖବନ ଧୂମ କେତୁ । ଅଶେଷ ଅପବର୍ଗ ହେତୁ ॥
ବିକଳେ ମିଳି ଶିବ ପାଶେ । ସ୍ତୁତି କରନ୍ତି ବିଷ ତ୍ରାସେ ॥
ମିଳି ସକଳ ପ୍ରଜାପତି । ସନ୍ନିଧେ ବସାଇ ପାର୍ବତୀ ॥
ହେ ମହାଦେବ ସଦାଶିବ । କେ ଗମିପାରେ ତୋର ଭାବ ॥
ତୁ ଭୂତ ଭାବନ ଈଶ୍ୱର । ଆମ୍ଭର ପ୍ରାଣ ରକ୍ଷା କର ॥
ଏ ବିଷ ସଂସାର ଦହିବ । ଏଥୁ ଉଦ୍ଧର ସଦାଶିବ ॥
ସର୍ବ ଜଗତ ବନ୍ଧ ମୋକ୍ଷ । ତୁ ନାଥ ଈଶ୍ୱର ପ୍ରତ୍ୟକ୍ଷ ॥
କୁଶଳ ଇଚ୍ଛା ଯାର ମନେ । ଯେ ତୋତେ ଚିନ୍ତେ ନିତ୍ୟେଧ୍ୟାନେ ॥
ଜଗତ ଗୁରୁ ନାଥ ତୁହି । ଯେ ତୋତେ ଶରଣ ପଶଇ ॥
ସ୍ୱଶକ୍ତି ତୋର ଗୁଣ ମୟୀ । ଯେ ଭାବେ ସ୍ୱର୍ଗ ସ୍ଥିତି ହୋଇ ॥
ପ୍ରଳୟ କରୁ ନାଥ ତୁହି । ତୁ ବ୍ରହ୍ମା ବିଷ୍ଣୁ ରୁଦ୍ର ଦେହୀ ॥
ତୁ ବ୍ରହ୍ମ ପରମ ଗୁପତ । ସଦ ଅସଦ ଭାବମତ ॥
ପ୍ରକାଶୁ ନାନା ଶକ୍ତି ରୂପେ । ତୁ ଆତ୍ମା ରୂପ ମୋହ କଳ୍ପେ ॥
ଜଗତ ଆଦି ଶବ୍ଦ ଯୋନି । ପ୍ରାଣ ଇନ୍ଦ୍ରିୟ ଗୁଣ ଘେନି ॥
ତୁ କାଳ ଯଜ୍ଞ ସତ୍ୟ ରତ । ତୁ ବ୍ରହ୍ମ ଅଛିଦ୍ର ତ୍ରିବୃତ ॥
ଅନଳ ତୁମ୍ଭର ବଦନ । ଆଦିତ୍ୟ ଶଶାଙ୍କ ଲୋଚନ ॥
ସର୍ବ ଦେବଙ୍କ ଆତ୍ମା ତୁମ୍ଭେ । ଅଶେଷ ଯଜ୍ଞର ଆରମ୍ଭେ ॥
ଏ ଭୂମି ତୋ ପାଦ ବେନି । ତୋ ବଳ ବହଇ ମେଦିନୀ ॥
ଜ୍ଞାନ ତୋହର ନିଜ ଗତି । ତୋର ଭୂଷଣ ପ୍ରଜାପତି ॥
ଏ ଅଷ୍ଟ ଦିଗେ ତୋର ଶ୍ରବଣ । ତୋହର ରଚନା ବରୁଣ ॥
ନଭ ତୋହର ନାଭି ଦେଶ । ନିଃଶ୍ୱାସ ବାତ ଅଣଚାଶ ॥
ପର୍ବତ ତୋର ଅସ୍ଥି ସଂଘ । ତୋ ରୋମ ଔଷଧି ବିରୁହ ॥
ଏ ସାତ ଛନ୍ଦ ସପ୍ତ ଧାତୁ । ତୁ ଧର୍ମ ସୃଷ୍ଟି ସ୍ଥିତି ହେତୁ ॥
ଭୋ ନାଥ ତୋ ପଞ୍ଚ ବଦନ । ଯେ ଉପନିଷଦ ବଚନ ॥
ଅଷ୍ଟ ଉତ୍ତର ତିନି ଶତ । ଯେ ବ୍ରହ୍ମ ମନ୍ତ୍ରଙ୍କ ଭକତ ॥
ଯେ ପରମାତ୍ମା ତତ୍ତ୍ୱଧାମ । ଯେଣୁ ତୋହର ଶିବ ନାମ ॥
ଜ୍ୟୋତି ସ୍ୱରୂପେ ତୋର ବାସ । ତୁ ବ୍ରହ୍ମ ପରମ ପ୍ରକାଶ ॥
ଅଧର୍ମ ତୋ ଶରୀର ଛାୟା । ତୋ ଆଶ୍ରିତେ ମହାମାୟା ॥
ତୋ ତିନି ନେତ୍ର ତିନି ଗୁଣ । ଯେ ଗୁଣେ ସଂସାର ଧାରଣ ॥
ଯେ ଛନ୍ଦୋମୟ ଶାସ୍ତ୍ର ଦିକ୍ଷା । ଏ ଭାବେ ଋଷିଙ୍କର ଶିକ୍ଷା ॥
ଅଖିଳ ଲୋକ ପାଳ ତୁହି । ତୋ ଅନ୍ତ କେହି ନ ଜାଣଇ ॥

ବିରଞ୍ଚି ବୈକୁଣ୍ଠର ଧାମ । ସୁରେନ୍ଦ୍ର ଗୁଣେ ନୋହେ ସମ ॥
ପରମ ଜ୍ୟୋତି ତୋ ଆନନ୍ଦ । କେବେହେଁ ଗୁଣେ ନୋହେ ଭେଦ ॥
କାମ ତ୍ରିପୁର ଘୋର କାଳ । ଦକ୍ଷର ଯଜ୍ଞ ଧ୍ୱଂସ କଲ ॥
ଯେବା ଅଛନ୍ତି ଭୂତ ଦ୍ରୋହ । ଯେ ଅବା କ୍ରୋଧଲୋଭ ମୋହ ॥
ଏହାଙ୍କୁ କରୁ ତୁ ଦହନ । ତୁ ନାଥ ଆଦି ନିରଞ୍ଜନ ॥
ପ୍ରାଣୀଙ୍କୁ ଅନ୍ତକାଳେ ଧରି । ତୃତୀୟ ନେତ୍ର ତୁ ଆବୋରି ॥
ପ୍ରାଣୀଙ୍କି କରୁ ତୁ ଆତ ଯାତ । ଏଣୁ ତୋ ନାହିଁ ଆଦି ଅନ୍ତ ॥
ଯେ ଆତ୍ମା ଜ୍ଞାନୀ ଏ ଜଗତେ । ତେ ପାଦେ ଚିନ୍ତେ ଅବିରତେ ॥
ଯେ ବା ତପସ୍ୟା କରି ଭଜେ । ତୋ ରୂପଧ୍ୟାନ ଭାବେ ପୂଜେ ॥
ତୋ ରବିସୁତେ ନ ବ୍ରତନ୍ତି । ଏ ଘୋର ସଂସାରୁ ତରନ୍ତି ॥
ଆମ୍ଭେ ଏ ଘୋର ବିଷ ଭୟେ । ଶରଣ ପଶୁ ତୋର ପାୟେ ॥
ଏ ବିଷ ତେଜେ ଦଶ ଦିଶ । କେବେ ହେଁ ନ ଦିଶେ ପ୍ରକାଶ ॥
ଭୟେ କମ୍ପଇ ତିନି ପୁର । ଆକାଶେ କମ୍ପେ ସୁରେଶ୍ୱର ॥
ଏ ଘୋର ଭୟୁ କର ତ୍ରାଣ । ଭୋ ନାଥ ରଖ ଆମ୍ଭ ପ୍ରାଣ ॥
ତୁ ଧର୍ମ ଜ୍ଞାନୀଙ୍କର ସାର । ଯେ ଧର୍ମ ଜନ ଉପକାର ॥
ସାତ୍ତ୍ୱିକ ଜନଙ୍କର ଗତି । ଅଜ୍ଞାନୀ ଜନେ ନ ଜାଣନ୍ତି ॥
ତା ଜନ୍ମ ଧନ୍ୟ ଏ ସଂସାରେ । ଯେ ରହେ ପର ଉପକାରେ ॥
ଯେ ହୀନ ପରିତ୍ରାଣ କରେ । ସଂକଟୁ ପ୍ରାଣୀଙ୍କି ଉଦ୍ଧରେ ॥
ସାଧୁ ଜନଙ୍କର ଏ ଗତି । କେବେ ହେଁ ଧର୍ମ ନ ଛାଡ଼ନ୍ତି ॥
କ୍ଷଣ ଭଂଗୁର ଏ ଶରୀର । ସୁଦୃଢ଼ ପର ଉପକାର ॥
ଏମନ୍ତ ଦେବଙ୍କ ବଚନେ । ଅମ୍ବିକା ଶୁଣି ତୋଷମନେ ॥
ରୁଦ୍ର ଚରଣ କରେ ଧରି । ମଧୁରେ କହନ୍ତି ଗଉରୀ ॥
ଭୋ ନାଥ ଜଗତ ଈଶ୍ୱର । ଦେବଙ୍କ ବୋଲ ତୁମ୍ଭେ କର ॥
ଏ ଘୋର ବିଷ କର ଗ୍ରାସ । ସଂସାରେ ଥିବ ତୁମ୍ଭ ଯଶ ॥
ଧର୍ମ କରନ୍ତି ଯେତେ ପ୍ରାଣୀ । ତାହାଙ୍କୁ ରଖେ ଚକ୍ରପାଣି ॥
ଏମନ୍ତେ ଗଉରୀ ବଚନେ । ରୁଦ୍ର ଉଠିଲେ ତୋଷମନେ ॥
କ୍ଷୀରାବ୍ଧି ତଟେ ବିଜେ କରି । କର ଅଞ୍ଜଳି ଜଳେ ଭରି ॥
ଉତ୍କଟ ଘୋର ମହାବିଷ । ଏକା ଗ୍ରାସକେ କଲେ ଗ୍ରାସ ॥
ରଖିଲେ ଅଶେଷ ଭୁବନ । ଶୁଣ ପରୀକ୍ଷିତ ରାଜନ ॥
ଗଳେ ଦିଶିଲା ନୀଳ ପ୍ରଭା । ସାଧୁ ଜନଙ୍କର ଏ ଶୋଭା ॥
ସାଧୁ ଜନଙ୍କ ମତ ଏହି । ଯେ ପର ଦୁଃଖେ ଦୁଃଖ ସହି ॥
କରନ୍ତି ପ୍ରାଣୀ ଉପକାର । ଧନ୍ୟ ଜୀବନ ତାହାଙ୍କର ॥
ଏମନ୍ତେ ରୁଦ୍ର କର୍ମ ଦେଖି । ସଂସାର ଜନେ ହୋଇ ସୁଖୀ ॥
ବ୍ରହ୍ମା ଗୋବିନ୍ଦ ଦେବ ମେଳେ । ନମିଲେ ରୁଦ୍ର ପାଦ ତଳେ ॥
ରୁଦ୍ର ପିବନ୍ତେ ଘୋର ବିଷ । କୂଳେ ଯେ ଥିଲା ଅବଶେଷ ॥

ବୃଶ୍ଚିକ ଦନ୍ଦଶୂକ ଗଣେ । ଭକ୍ଷିଲେ ଶେଷ ବିଷ କଣେ ॥
ବୋଇଲ ବିପ୍ର ଜଗନ୍ନାଥ । ବିଷ ଭକ୍ଷିଲେ ଉମାକାନ୍ତ ॥
ଏ କ୍ଷୀର ସାଗର ମନ୍ଥନ । ଶୁଣି ପବିତ୍ର ହୁଅ ଜନ ॥
ସୁସାଧୁ ପ୍ରାଣୀଙ୍କର ହିତେ । ଅଷ୍ଟମ ସ୍କନ୍ଧେ ଭାଗବତେ ॥
ଭାଷା ପ୍ରବନ୍ଧେ ଗୀତ ନାଦେ । ସୁଜନେ ଶୁଣ ଅପ୍ରମାଦେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ସାବଧାନେ । ସଦାଶିବର ବିଷପାନେ ॥
ଦେବ ଦାନବ ମନ ତୋଷେ । ରୁଦ୍ର ବିରଞ୍ଚି ଘେନି ପାଶେ ॥
ପୁଣି ମନ୍ଥିଲେ କରି ମନୁ । ମନ୍ଥୁ ଉଠିଲେ କାମଧେନୁ ॥
ଧେନୁ ଦେଖି ହରଷ ମନେ । ବ୍ରାହ୍ମଣେ ଥିଲେ ଯେ ମନ୍ଥନେ ॥
ହରଷେ ଅଗ୍ନି ହୋତ୍ର ଅର୍ଥେ । ମିଳିଲେ ଅଗ୍ନି ହୋତ୍ରୀ ଯେତେ ॥
ସ୍ୱଭାବେ ବିପ୍ରେ ବ୍ରହ୍ମବେତ୍ତା । ଅଗ୍ନି ପୂଜନେ ସାମରଥା ॥
ସେ କାମଧେନୁ ଘେନି ଗଲେ । ଆନନ୍ଦ ମନେ ଯଜ୍ଞକଲେ ॥
ପୁଣି ମନ୍ଥିଲେ ସୁର ଦେବା । ଉଠିଲା ଅଶ୍ୱ ଉଚ୍ଚୈଃଶ୍ରବା ॥
ସେ ସର୍ବ ଲକ୍ଷଣେ ସୁନ୍ଦର । ଶଶାଙ୍କ ସଦୃଶ ପାଣ୍ଡୁର ॥
ସେ ଅଶ୍ୱ ଦେଖି ବଳି ଚିତ୍ତେ । ଶ୍ରଦ୍ଧା ବସିଲା ଅନ୍ତର୍ଗତେ ॥
ଈଶ୍ୱର ତାର ମନ ଜାଣି । ବୋଇଲେ ଶୁଣ ବୀରମଣି ॥
ଇନ୍ଦ୍ରର ଅଶ୍ୱ ଏ ଉଚିତେ । ସେ ନେଉ ଆମ୍ଭର ସମ୍ମତେ ॥
ପୁଣି ମନ୍ଥିଲେ ଯତ୍ନଚିତ୍ତେ । ଉଠିଲା ଗଜ ଐରାବତେ ॥
ଚତୁର ଦନ୍ତ ଶୋଭା କରେ । କୈଳାସ କନ୍ଦର ଆକାରେ ॥
ଇନ୍ଦ୍ରର ଗଜ ସେ ସ୍ୱଭାବେ । ତେଣୁ ନ ଇଚ୍ଛିଲେ ଦାନବେ ॥
ଗଜକୁ ଇନ୍ଦ୍ର ଆବୋରିଲା । ପୁଣି ମନ୍ଥନେ ଉପୁଜିଲା ॥
ପୁଷ୍ପ ସୁନ୍ଦର ପାରିଜାତ । ସୁଗନ୍ଧ ମୋହିଲା ଜଗତ ॥
ତକ୍ଷଣେ ଉଠିଲା ଗଗନେ । ମିଳିଲା ଶଚୀପତି ବନେ ॥
ପୁଣି ମନ୍ଥିଲେ ବାହୁ ବଳେ । ମନ୍ଦର କ୍ଷୀର ସିନ୍ଧୁ ଜଳେ ॥
ଉଠିଲେ ଅପ୍ସରା ବୃନ୍ଦ । ସୁସ୍ୱରେ କଲେ ଗୀତ ନାଦ ॥
ରତ୍ନ ମେଖଳା କଟିତଟେ । କୁଚ କାଞ୍ଚୁଲା ସୁପ୍ରକଟେ ॥
ରତ୍ନ ଭୂଷଣ ଶୋହେ ଗ୍ରୀବା । ରୂପେ କି ପଟାନ୍ତର ଦେବା ॥
ହାର କେୟୂର ଝଟକନ୍ତି । ଗଗନେ ଯେହ୍ନେ ଗ୍ରହ ପନ୍ତି ॥
ତାହାନ୍ତେ କଟାକ୍ଷ ଲୋଚନ । ଯେ ରୂପେ ତ୍ରୈଲୋକ୍ୟ ମୋହନ ॥
ଗଗନ ମାର୍ଗେ ଶୂନ୍ୟେ ଗଲେ । ଲକ୍ଷ୍ମୀ ଉଠିଲେ ମହାଜଳେ ॥
ଦିଗ ପ୍ରସାରେ ଦେହ ଝଳି । ଜୀମୂତେ ଯେସନେ ବିଜୁଳି ॥
କମଳା ରୂପ ଦେଖି ଜନେ । ଲୋଭ ବସିଲା ସର୍ବ ମନେ ॥
ଲକ୍ଷ୍ମୀ ବଦନ ଚାହିଁ ବେଗେ । ଇନ୍ଦ୍ର ମିଳିଲା ପାଦ ଯୁଗେ ॥
ରତ୍ନ ଆସନ ଦେଲା ଆଣି । ଯହିଁ ବିଜୟେ କମଳିନୀ ॥
ଯାହ୍ନବୀ ଆଦି ନଦୀ ଯେତେ । ସର୍ବେ ମିଳିଲେ ପାଦଗତେ ॥
ସୁବର୍ଣ୍ଣ କୁମ୍ଭେ ନୀରଭରି । ମୁନିଏ ରହିଲେ ଉଭାରି ॥
ଧରଣୀ ଅଷ୍ଟରତ୍ନ ସିଦ୍ଧି । ଅପରେ ଅଭିଷେକ ବିଧି ॥
ଐରାବତ ପୁଣ୍ଡରୀକ । ଏ ବେନି ହସ୍ତୀଙ୍କ ନାୟକ ॥
ସୁବର୍ଣ୍ଣ କୁମ୍ଭେ ନୀର ଭରି । ଢାଳିଲେ ଥୋର ହସ୍ତଧରି ॥
ସୁରଭି ପଞ୍ଚମୃତ ଧାରେ । ସିଞ୍ଚିଲା କମଳା ଉପରେ ॥
ମଧୁ ମାଧବ ବେନି ମାସେ । ମିଳିଲେ ଲକ୍ଷ୍ମୀ ଦେବୀ ପାଶେ ॥
ମିଳି ଅଶେଷ ଦେବଗଣ । ଆଗମ ନିଗମ ପ୍ରମାଣ ।
କଲେ ସେ ଅଭିଷେକ ବିଧି । ଆଗମ ନିଗମ ପ୍ରସିଦ୍ଧି ॥
ଗନ୍ଧର୍ବେ କରି ଗୀତ ନାଦ । ନାଚନ୍ତି ଅପସରା ବୃନ୍ଦ ॥
ପ୍ରଣବ ମୃଦଂଗ ଗୋମୁଖ । ମୁରଜ ଯନ୍ତ୍ର ଯେ ଆନକ ॥
କମ୍ବୁ କାହାଳ ବେଣୁସ୍ୱନ । ଗର୍ଜନ୍ତି ଶୂନ୍ୟପଥେ ଘନ ॥
ସକଳେ ମିଳି ଚାରିପାଶେ । ସୁବାକ୍ୟ ବେଦ ମନ୍ତ୍ର ଘୋଷେ ॥
ହସ୍ତୀର ରତ୍ନ କୁମ୍ଭ ନୀର । ଢାଳିଲେ କମଳାର ଶିର ॥
କ୍ଷୀର ଜଳଧି ଉଠି ତୋଷେ । ମିଳିଲା କମଳାର ପାଶେ ॥
ପୀତ ପଟନୀ ବେନି ଦେଲା । ଅମ୍ଳାନ ପଙ୍କଜର ମାଳା ॥
ବରୁଣ ଦେଲା ଦେବୀ ଗଳେ । ମତ୍ତ ମଧୁପ କର ରୋଳେ ॥
ନାନା ଭୂଷଣ ରତ୍ନ ଜ୍ୟୋତି । ଯେ ବିଶ୍ୱକର୍ମା ପ୍ରଜାପତି ॥
ହାର କଂକଣ କର୍ଣ୍ଣ ଭୂଷ । ରତ୍ନ ଜଳନ୍ତି ରବି ତ୍ରାସ ॥
ସେ ଦେବୀ ଅଭିଷେକ ଅନ୍ତେ । ପଙ୍କଜ ମାଳା ଘେନି ହସ୍ତେ ॥
ପାଦେ ଚଳନ୍ତେ ମହୀତଳେ । ସ୍ୱର୍ଣ୍ଣ କୁଣ୍ଡଳ କର୍ଣ୍ଣେ ଦୋଳେ ॥
ସୁଶୁଭ୍ର ହାସ୍ୟ ଶୁଭ୍ରଦନ୍ତୀ । ହୃଦେ ପୟୋଧରେ ଚଳନ୍ତି ॥
ମୁକୁତା ହାର କୁଚ ଶିଖେ । କୁଙ୍କୁମ ଲେପନ ସୁରେଖେ ॥
ଚରଣେ ରୁଣିତ ନୂପୁର । ସୁଘୋଷ ଶୁଭଇ ସୁନ୍ଦର ॥
ପଥେ ଚଳନ୍ତେ ଜନମାତା । ରୂପେ କି ଦିଶେ ହେମଲତା ॥
ବିଷ୍ଣୁ ଚରଣେ ମନ ଦେଇ । ଆନନ୍ଦେ ବେନି ପାଶ ଚାହିଁ ॥
ଅଶେଷ ବ୍ରହ୍ମାଣ୍ଡ କାରଣ । କହଇ ଯାହାର ଚରଣ ॥
ଯଦ୍ୟପି କନ୍ୟାର ରୂପ ଧରେ । ମନ ନ ରହେ ଅନ୍ୟ ବରେ ॥

ଚଞ୍ଚଳ ଗୁଣ ଏହି ମତେ । ବିଷ୍ଣୁ ଚରଣ ଚିନ୍ତି ଚିତ୍ତେ ॥
ଗୋବିନ୍ଦ ଗଳେ ମାଳା ଦେଇ । ଅନଙ୍ଗ ଲୋଚନେ ଅନାଇ ॥
କୋଳେ ବସିଲେ ଜଗନ୍ମାତା । ଯେ ଜୀବ ଜୀବନର ଦାତା ॥
ଗୋବିନ୍ଦ କୋଳେ ଲକ୍ଷ୍ମୀ ଦେଖି । ଅସୁରେ ମନ୍ଥନ ଉପେକ୍ଷି ॥
ତୂର ଘୋଷଣ ଶଙ୍ଖ ସ୍ୱନ । ନୃତ୍ୟ ଉତ୍ସବ ଘନ ଘନ ॥
ବ୍ରହ୍ମା ଶଙ୍କର ଆଦି ଯେତେ । ତକ୍ଷଣେ ମିଳିଲେ ସମସ୍ତେ ॥
ପୁଷ୍ପ ବରଷି ସ୍ତୁତି କରି । ସକଳ ଦେବେ ମୋଦ ଭରି ॥
ଲକ୍ଷ୍ମୀ କଟାକ୍ଷ ଦେହେ ଲାଗି । ସର୍ବେ ହୋଇଲେ ସୁଖ ଭାଗି ॥
ସମ୍ପନଶୀଳ ଆଦି ଗୁଣେ । ମୁକ୍ତି ହୋଇଲେ ତତକ୍ଷଣେ ॥
ବ୍ରହ୍ମା ଶଂକର ଆଦି ଦେବେ । ଲକ୍ଷ୍ମୀ ଗୋବିନ୍ଦ ତୋଷ ଭାବେ ॥
ଲକ୍ଷ୍ମୀ ଗୋବିନ୍ଦ ମନ୍ତ ଭାଗେ । ଗୀତ ମଙ୍ଗଳ ସ୍ତୁତି ମାର୍ଗେ ॥
ଶିଳାଦି ଅଷ୍ଟଗୁଣେ ଯୁତ । ସର୍ବେ ହୋଇଲେ କୃତ କୃତ ॥
ଲକ୍ଷ୍ମୀକି ନ ଲଭି ଅସୁରେ । ବିଗୁଣ ବହିଲେ ଅନ୍ତରେ ॥
ନିର୍ବଳ ହୋଇଲେ ସ୍ୱଭାବେ । ଲୋଭ ଜନ୍ମିଲା ହୃଦଭାଗେ ॥
ଉଦ୍‌ବେଗେ ହୋଇଲେ କାତର । ଲାଜ ସ୍ୱଭାବ ଗଲା ଦୂର ॥
ମିଳି ସକଳ ଦିଗପାଳେ । ପୁଷ୍ପ ବରଷିଲେ ଗହଳେ ।
ଲକ୍ଷ୍ମୀ ଗୋବିନ୍ଦ ମୁଖ ଦେଖି । ଦେବେ ସକଳେ ହେଲେ ସୁଖୀ ॥
ପୁଣ ମନ୍ଥନ୍ତି ମନ ଦୁଃଖେ । ଚାହାନ୍ତି ଅନ୍ୟୋ ଅନ୍ୟ ମୁଖେ ॥
ମନ୍ଥନ ହୋଇଲା ବାରୁଣୀ । ରୂପେ ଶୋଭିତ କମଳିନୀ ॥
ଅସୁରେ ହସିଣ ଉନ୍ମତେ । ସେ କନ୍ୟା ଲଭିଲେ ସମସ୍ତେ ॥
ପୁଣି ମନ୍ଥିଲେ ତୋଷମନେ । ପୁରୁଷେ ହସିତ ବଦନେ ॥
ଅଦ୍ଭୁତ ପୁରୁଷ ଉପୁଜେ । ତେଜେ ସକଳ ରୂପ ଗଞ୍ଜେ ॥
ହସ୍ତୀର ହସ୍ତ ପ୍ରାୟେ ହୋଇ । ଲମ୍ବେ ଉଦଣ୍ଡ ଭୁଜ ଦୁଇ ॥
ସୁନ୍ଦର କମ୍ବୁଗ୍ରୀବା ସାଜେ । ଅରୁଣ ଲୋଚନ ବିରାଜେ ॥
ଶ୍ୟାମ ତରୁଣ ରୂପ ଶୋହେ । ରତ୍ନ ଭୂଷଣ ଜନ ମୋହେ ॥
ହୃଦେ ଲମ୍ବଇ ବନମାଳ । ସୁନ୍ଦର ଅଳକା କପୋଳ ॥
ସିଂହ ବିକ୍ରମ ଶୁଭ ଅଙ୍ଗ । ପୀତ ବସନ କଟୀଭାଗ ॥
ରତ୍ନ ବଳୟ ମଣିବନ୍ଧେ । ଅମୃତ କୁମ୍ଭ ଘେନି କନ୍ଧେ ॥
ସେ ରୂପ ନାରାୟଣ ଅଂଶେ । ଧନ୍ୱନ୍ତରୀ ରୂପ ପ୍ରକାଶେ ॥
ସ୍ୱଭାବେ ଆୟୁର୍ବେଦ ଗୁରୁ । ଧୀର ସ୍ୱଭାବେ ଯେହ୍ନେ ମେରୁ ॥
ଅସୁର ଗଣ ତାହା ଦେଖି । ଧାଇଁଲେ ମନ୍ଥନ ଉପେକ୍ଷି ॥
ଲୁଟିଲେ ସର୍ବବସ୍ତୁ ବଳେ । ଦେବଙ୍କୁ କରି ଅବହେଳେ ॥
ଅମୃତ କୁମ୍ଭ ଅତି ଖରେ । ଥିଲା ଯେ ଧନ୍ୱନ୍ତରି କରେ ॥

ସେ କୁମ୍ଭ ବଳେ ଅପହରି । ଧାଇଁଲେ ଘୋର ନାଦ କରି ॥
ପଳାନ୍ତେ ଗର୍ଜଣ ଧାଇଁଲେ । ପର୍ବତ ଉପରେ ଉଠିଲେ ॥
ଦେବେ ଦୁଃଖିତ ମନ ହୋଇ । ଗୋବିନ୍ଦ ପାଦ ତଳେ ରହିଁ ॥
ବୋଲନ୍ତି ରଖ ନାରାୟଣ । ଘୋର ସଂକଟୁ ଆମ୍ଭ ପ୍ରାଣ ॥
ଅମୃତ ଭକ୍ଷିଲେ ଅସୁରେ । ଆମ୍ଭେ କି ଥିବୁ ସ୍ୱର୍ଗପୁରେ ॥
ନିଶ୍ଚୟେ ହୋଇଲୁ ଅନାଥ । ଶରଣ ରଖ ଜଗନ୍ନାଥ ॥
ଏମନ୍ତେ ଦେବଙ୍କ ବିକଳ । ଦେଖି କହନ୍ତି ଆଦିମୂଳ ॥
ସ୍ୱଭାବେ ପରମ ଆନନ୍ଦ । ଭୃତ୍ୟ ବତ୍ସଳ ଆଦିକନ୍ଦ ॥
ବୋଲନ୍ତି ଶୁଣ ଦେବତାଏ । ଚିନ୍ତେ ନ କର ତୁମ୍ଭେ ଭୟେ ॥
ମୁଁ ଆଜ ଯୋଗ ମାୟା ବଳେ । ଅମୃତ ଆଣିଦେବି ହେଳେ ॥
ତକ୍ଷଣେ ଅସୁରଙ୍କ ଦେହେ । ହରି ପଶିଲେ ମାୟା ମୋହେ ॥
ତକ୍ଷଣେ ଚିତ୍ତେ କ୍ରୋଧ ହୋଇ । ବୋଲନ୍ତି ଏକ ଗର୍ବ ବହି ॥
କେହି କାହାକୁ ନ ଗଣନ୍ତି । ମୁ ଆଗେ ଭକ୍ଷିବି ବୋଲନ୍ତି ॥
ଦେବଙ୍କ ଭାଗ ଆଗେ ଦେବା । କେ ବୋଲେ ଆମ୍ଭେ ସେ ଭୁଞ୍ଜିବା ॥
ଆମ୍ଭର ତୁଲେ ତେବେ ଦୁଃଖୀ । ଆମ୍ଭେ ଯେ ତାହାଙ୍କୁ ଉପେକ୍ଷି ॥
ବଳେ ଆଣିଲୁ ସୁଧା କୁମ୍ଭ । ଏମନ୍ତ କହି ମହାଦମ୍ଭ ॥
କେହି କାହାକୁ ନ ଗଣନ୍ତି । ଧର୍ମ ସଂଗ୍ରହେ ବିଚାରନ୍ତି ॥
ମଧ୍ୟେ ଅମୃତ ଘଟ ଥୋଇ । ବିଷ୍ଣୁ ମାୟାରେ ମନ ମୋହି ॥
ଏମନ୍ତ ସମୟେ ମୁରାରି । ତକ୍ଷଣେ ମାୟା ରୂପ ଧରି ॥
ସ୍ୱରୂପ ହୋଇଲେ କାମିନୀ । ଅଶେଷ ଜଗତ ମୋହିନୀ ॥
ଶ୍ୟାମ ଉତ୍ପଳ ପରିମାଣି । କାମିନୀ ଗଣେ ଶିରୋମଣି ॥
ସମାନ କର୍ଣ୍ଣ ଆଭରଣ । ବିରାଜେ କେୟୂର କଂକଣ ॥
ସୁନ୍ଦର ନାଶା ଭୂରୁ ଶୋହେ । କଟାକ୍ଷେ ଜଗୁ ଜନ ମୋହେ ॥
ଏମନ୍ତେ ନବ ଯଉବନ । ଯୌବନ ଭାରେ ମଝିକ୍ଷୀଣ ॥
ରଙ୍ଗ ଅଧରେ ଦନ୍ତ ପନ୍ତି । ହାସ୍ୟ ବଦନେ ଝଟକନ୍ତି ॥
ଉତ୍ପଳ ବନମାଳା ଭରେ । ଶୋହେ ସୁନୀଳ କଳେବରେ ॥
ସୁଗ୍ରୀବ କଣ୍ଠେ ଆଭରଣ । ଶ୍ରୀ ଭୁଜେ ଅଂଗଜ ଭୂଷଣ ॥
ବିରଜ ଅମ୍ବରେ ଭୂଷିତ । ଉଦିତ ନିତମ୍ବ ଶୋଭିତ ॥
କଟୀ ମେଖଳା ମନ ରଞ୍ଜି । ଉତ୍ପଳ ମଣିଗଣ ଗଞ୍ଜି ॥
ଚରଣେ ନୂପୁର ବାଜେଣି । ସୀମନ୍ତ ମଧ୍ୟେ ଶୋହେ ମଣି ॥
ସର୍ବାଙ୍ଗ ଭୂଷିତ ଭୂଷଣ । ଭୂରୁ ବିଳାସ ବିମୋହନ ॥
ଅସୁରଙ୍କର ଚିତ୍ତ ହରି । ମୋହିନୀ ରୂପେ ବନ୍ଦୀ କରି ॥
ଚିତ୍ତେ ଅନଙ୍ଗେ ରୂପବନେ । ହରି ପଶିଲେ ତାଙ୍କ ମନେ ॥

ବ୍ରାହ୍ମଣ ଜଗନ୍ନାଥ କହେ । ଅସୁରେ ହରି ମୟା ମହେ ॥
ଅମୃତ ଭକ୍ଷଣ ପାସୋରି । ବିଷ୍ଣୁଙ୍କୁ ରହିଲେ ଆବୋରି ॥
ବିଷ୍ଣୁର ଜ୍ୟୋତି ରୂପ ବାଣି । ସଂକଟୁ ତର ଏହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଅମୃତ ମଂଥନେ ଭଗବନ୍ମାୟୋ ପକ୍ରମନୋ ଅଷ୍ଟମୋଽଧ୍ୟାୟଃ ।*

## ନବମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଅସୁରେ ବସି ଏକମେଳେ । ଶୁଦ୍ଧ ସୁବର୍ଣ୍ଣ ଯଜ୍ଞଶାଳେ ॥
ବିବିଧ ପାନ ପାତ୍ର ଆଣି । ଏକ ଆରକେ ବାକ୍ୟଭଣି ॥
ସହୃଦ ପଣ ଦୂର କଲେ । ଦୁଷ୍ଟ ଆଚାର ଆଚରିଲେ ॥
ଏମନ୍ତ ଶୁଣ ପରୀକ୍ଷିତ । ମୋହିନୀ ରୂପେ ଜଗନ୍ନାଥ ॥
ମିଳିଲେ ଅସୁରଙ୍କ ପାଶେ । ଅମୃତ ହରଣ ବିଶ୍ୱାସେ ॥
ବିଷ୍ଣୁ ମୋହିନୀ ରୂପ ଦେଖି । ନିଷ୍ଫଳ କଲେ ବେନି ଆଖି ॥
ଚକିତେ ଅନ୍ୟୋ ଅନ୍ୟେ ଚାହିଁ । ବୋଲନ୍ତି ବିଷ୍ଣୁ ରୂପେ ମୋହି ॥
ଦେଖ ଏ ରୂପ କାନ୍ତି ଧାମ । ନବ ଯୁବତୀ ଅନୁପାମ ॥
କାହୁଁ ଅଇଲା କି ବା ଅର୍ଥେ । ପାଦେ ଚାଲଇ ଦୃଷ୍ଟି ପଥେ ॥
ଏମନ୍ତ କହି କନ୍ୟା ଆଗେ । ପଥେ ମିଳିଲେ ଯାଇ ବେଗେ ॥
ନିଷ୍ପଳେ ନ ପାରନ୍ତି ଚାହିଁ । ବୋଲନ୍ତି କନ୍ୟା ପାଶେ ରହି ॥
ହେ ପଦ୍ମଲୋଚନା ସୁନ୍ଦରୀ । ଯୁବା ଜନଙ୍କ ମନୋହାରୀ ॥
କି ତୋର ନାମ କିବା ଅର୍ଥେ । ଅଇଲୁ କହ ଶୁଦ୍ଧ ଚିତ୍ତେ ॥
କାହାର ପତ୍ନୀ ତୁ ବୋଲାଉ । ଜ୍ଞାନ ହରିଲୁ ଆମ୍ଭ ତହୁଁ ॥
ଆମ୍ଭେ ଯେ ଦେବତା ଅସୁରେ । ସିଦ୍ଧ ଗନ୍ଧର୍ବ ଯେ କିନ୍ନରେ ॥
ମୁନି ଚାରଣ ବିଦ୍ୟାଧର । ଯେ ଅନ୍ୟ ସିଦ୍ଧ ଯୋଗେଶ୍ୱର ॥
ଅଦୃଷ୍ଟ ପୂର୍ବ ରୂପ ତୁହି । ତୋତେ ତ କେହି ନ ଜାଣଇ ॥
ନିଷ୍ଠେ ଜାଣିଲୁ ତୋ ବାରତା । ତୋତେ ବା ସର୍ଜିଲା ବିଧାତା ॥
ପ୍ରାଣୀଙ୍କ ଇନ୍ଦ୍ରିୟ ହରଣେ । ମୋହନ ଅଜ୍ଞାନ କାରଣେ ॥
ତୋ ରୂପ ଅତି ମନୋହର । ତୁ ଏବେ ଆମ୍ଭ ବୋଲ କର ॥
ଆମ୍ଭେ ଯେ ଦେବତା ଦାନବେ । ଅମୃତ ପାନ ସମଭାବେ ॥
ଏ ବସ୍ତୁ ବେନି ଭାଗ କରି । ଆମ୍ଭେ ସ୍ୱଭାବେ ବନ୍ଧ-ବୈରୀ ॥
କଶ୍ୟପ ପୁତ୍ର ଆମ୍ଭେ ଦୁଇ । କେବେ ଆମ୍ଭର ନ ପଡ଼ଇ ॥
ତୁ ଏ ଅମୃତ ଆମ୍ଭ ପାତ୍ରେ । ବିଭାଗ କର ଯଥାଅର୍ଥେ ॥
ତୁହିଁ ପରଶ ଶୁଦ୍ଧ ଚିତ୍ତେ । ସମାନ ଭାବେ ଆମ୍ଭ ପାତ୍ରେ ॥
କେବେ ହେଁ ନ କରିବୁ ଭେଦ । ଯେମନ୍ତେ ଉଭୟ ଆନନ୍ଦ ॥
ଅସୁରଙ୍କର ବାକ୍ୟ ଶୁଣି । ମାୟା ମୋହିନୀ ଚକ୍ରପାଣି ॥
ମୋହନ ମନ୍ଦ ହାସ୍ୟ ମୁଖେ । ଅପାଙ୍ଗ କଟାକ୍ଷ ସୁରେଖେ ॥
ଅମୃତ ସମାନ ବଚନ । କହନ୍ତି ଜଗତ ମୋହନ ॥

### ଶ୍ରୀ ଭଗବାନ ଉବାଚ

ତୁମ୍ଭେ ଯେ କଶ୍ୟପ ନନ୍ଦନ । ଶୁଣ ହୋ ମୋହର ବଚନ ॥
ସ୍ୱଭାବେ ମୋର ସ୍ୱାମୀ ନାହିଁ । କୁଳଟା ବାଦ ମୋର ତହିଁ ॥
ଅସତୀ ନାରୀଙ୍କ ସ୍ୱଭାବ । କେ ଅବା ବିଶ୍ୱାସ ଅର୍ଜିବ ॥
କହିଲି ତୁମ୍ଭ ଆଗେ ସତ । ଏ ନୋହେ ପଣ୍ଡିତଙ୍କ ମତ ॥

### ଶ୍ରୀ ଶୁକ ଉବାଚ

ଏମନ୍ତ କନ୍ୟାର ବଚନ । ଶୁଣି ହୋଇଲେ ତୋଷ ମନ ।
ଭାବ ସୁଗଭୀର ବଚନେ । ମନୁଷ୍ୟ ଯେସ୍ନେ ସୁଧା ପାନେ ॥
ଅସୁରଙ୍କର ବୋଲ ଶୁଣି । ଆନନ୍ଦେ ପ୍ରଭୁ ଚକ୍ରପାଣି ॥
ଅମୃତ ଭାଣ୍ଡ କାଖେ ଧରି । ଅଳପ ହାସ୍ୟ ମୁଖ କରି ॥
ସାଧୁ ଅସାଧୁ ନ ଜାଣଇ । ସର୍ବେ ସମାନ ବେନି ଭାଇ ॥
ବିଭାଗେ ଦେବି ସୁଧାରସ । ସଂସ୍କାର ଦେହେ ତୁମ୍ଭେ ବସ ॥
ଏମନ୍ତେ ମୋହିନୀ ବଚନେ । ଶୁଣି ଦାନବେ ତୋଷ ମନେ ॥
ପ୍ରଥମେ ଉପବାସ କରି । ପ୍ରାତ ସ୍ନାହନ ସନ୍ଧ୍ୟା ସାରି ॥
ଆନନ୍ଦେ ଘୃତ ହୋମ କଲେ । ଗୋବିନ୍ଦ ଚରଣେ ପୂଜିଲେ ॥
ଭୂତଙ୍କୁ ଦେଇ ଭୂତ ବଳି । ସ୍ୱସ୍ତ୍ୟନ୍ତ କଲେ ଦ୍ୱିଜେ ମିଳି ॥
ଅହତ ବସ୍ତ୍ର ଯୁଗ ପିନ୍ଧି । ଶୋଭନ ଗନ୍ଧେ ନାନାବିଧି ॥
କୁଶ ଆସନେ ସର୍ବେ ବସି । ବଦନ କଲେ ପୂର୍ବଦିଶି ॥
ଧୂପ ଆମୋଦ ଯଜ୍ଞଶାଳେ । ଆନନ୍ଦେ ବସିଲେ ସକଳେ ॥
ସୁଗନ୍ଧ ମାଲ୍ୟ ଦୀପ ପନ୍ତି । ଆବୋରି ପାନ ପାତ୍ର ଛନ୍ତି ॥
ସେ ଯଜ୍ଞଶାଳେ ନରହରି । ଅତି ମୋହିନୀ ରୂପଧରି ॥
ଅସୁରଙ୍କର ମନ ମୋହି । ଅମୃତ କୁମ୍ଭ ତଳେ ଥୋଇ ॥
ଅତି ମୋହନ ରୂପ ଦେଖି । ଦେବତା ଅସୁରଙ୍କ ଆଖି ॥
ରହିଲା ହରି ବକ୍ଷ ସ୍ଥଳେ । ସୁସଞ୍ଚ କୁଚ ଯୁଗ ମୂଳେ ॥
ହରି ବିଚାର କଲେ ମନେ । ଅସୁର ଗଣ ସୁଧା ପାନେ ॥
ଦେବେ ହୋଇଲେ ଅରକ୍ଷିତ । ସେ କଥା ନୁହଁଇ ଉଚିତ ॥
ସର୍ପକୁ କ୍ଷୀର ଯେ ପିଆନ୍ତି । ସର୍ପର ଘାତେ ସେ ମରନ୍ତି ॥
ଜାତି ସ୍ୱଭାବେ ନୃଶଂସକ । ଅସୁରେ ନୁହନ୍ତି ବିବେକ ॥
ଏମନ୍ତ ଚିତ୍ତେ କୃଷ୍ଣ ଚିନ୍ତି । ବୋଇଲେ ହୁଅ ବେନି ପନ୍ତି ॥

ବାମ ଦକ୍ଷିଣେ ମୋର ବସ । କହି ହୁଅନ୍ତି ହସ ହସ ॥
ଶୂନ୍ୟରେ ଅସୁରଙ୍କ ମନ । ବଳେ ହରିଲେ ଭଗବାନ ॥
ରୂପ ଦେଖନ୍ତେ ହୋଇ ଛନ୍ନ । ବଦନୁ ନ ସ୍ଫୁରେ ବଚନ ॥
ଦୂରେ ଯେ ଦେବଗଣେ ଥିଲେ । ତାହାଙ୍କ ପାତ୍ରେ ସୁଧାଦେଲେ ॥
ଅସୁରେ ସୁକୃତ ପାଳନେ । ନିଷ୍କଳେ ବସିଲେ ମଉନେ ॥
କାମିନୀ ସମ୍ମତ ପାଳନେ । ଧର୍ମେ ରହିଲେ ଦୃଢ଼ ମନେ ॥
ମାୟା ମୋହିଲେ ଚକ୍ରଧର । ବଦନେ ନ ସ୍ଫୁରେ ବଚନ ॥
ଦେବଙ୍କୁ ପରଶିବା ବେଳେ । ରାହୁ ଯେ ଥିଲା ଦେବ ମେଳେ ॥
ଗୁପତେ ବସି ଦେବବୃନ୍ଦେ । ଅମୃତ ଭକ୍ଷିଲା ଆନନ୍ଦେ ॥
ରବି ଶଶାଙ୍କ ତାହା ଦେଖି । ଉଠିଲେ ଆସନ ଉପେକ୍ଷି ॥
ଚାହିଁଲେ ଗୋବିନ୍ଦ ବଦନେ । ଚକ୍ଷୁରେ ଠାରିଲେ ମଉନେ ॥
ସୁଦରଶନେ ତାହା ଶିର । ବେଗେ ଛେଦିଲେ ଚକ୍ରଧର ॥
ଅମୃତ ପାତ୍ରେ ପଡ଼େ ମୁଣ୍ଡ । ତକ୍ଷଣେ ହୋଇ ବେନି ଖଣ୍ଡ ॥
ଅମର ହୋଇଲା ତକ୍ଷଣ । ଦେଖି ସନ୍ତୋଷ ନାରାୟଣ ॥
ବୋଇଲେ ବର ମାଗ ତୁହି । ରାହୁ ବୋଲଇ ବିଷ୍ଣୁ ଚାହିଁ ॥
ଭୋ ନାଥ ତୋର ଅବଶେଷ । ଅବଶ୍ୟ କରିବଇଁ ଗ୍ରାସ ॥
ଶୁଣି ସନ୍ତୋଷ ମହାବାହୁ । ବୋଇଲେ ଏହି ବର ହେଉ ॥
ଏମନ୍ତ କହି ଭଗବାନ । ଗ୍ରହ ମଣ୍ଡଳେ ଦେଲେ ସ୍ଥାନ ॥
ତେଣୁ ସେ ରହୁ ସର୍ବକାଳେ । ଗିଳଇ ରବି ଚନ୍ଦ୍ର ବଳେ ॥
ବଇରୀ ବୁଦ୍ଧି ନ ଛାଡ଼ଇ । ଅୟନେ ଅୟନେ ଭ୍ରମଇ ॥
ଦେବଙ୍କୁ ଦେଇ ସୁଧାପାନ । ତକ୍ଷଣେ ପ୍ରଭୁ ଭଗବାନ ॥
ଦେଖନ୍ତି ଦେବତା ଅସୁର । ମାୟା ଛାଡ଼ିଲେ ମାୟାଧର ॥
ମୋହିନୀ ରୂପ ଗଲା କେଣେ । ଯେ ରୂପ ଅମୃତ କାରଣେ ॥
କଠୋର ସାଧି ଭଗବାନ । ଦେବଙ୍କୁ ଦେଲେ ସୁଧାପାନ ॥
ନିଜ ଭୁବନେ ଗଲେ ହରି । ଶୁଣ ପରୀକ୍ଷ ଦଣ୍ଡଧାରୀ ॥
ଶତୃଗଣଙ୍କ ସିଦ୍ଧି ଦେଖି । ଅସୁରେ ମନେ ବଡ଼ ଦୁଃଖୀ ॥
ବଳି ସଙ୍ଗତେ ବିଚାରିଲେ । ଯୁଦ୍ଧ ଉଦ୍ୟମ ତାର ବୋଲେ ॥
ନାନା ଆୟୁଧ ଧରି କଲେ । ଧାଇଁଲେ ମହାକୋପ ଭରେ ॥
ସିନ୍ଧୁ ମନ୍ଥନ ପ୍ରାୟେ ଗୋଳ । ଧାଇଁଲେ ଚତୁରଙ୍ଗବଳ ॥
ଅଶ୍ୱକୁ ଅଶ୍ୱ ସଜ କଲେ । ହସ୍ତୀକି ହସ୍ତୀ ଘେନି ତୁଲେ ॥
ଓଟ ମଇଁଷି ଖର ପୃଷ୍ଠେ । ବେଗେ ଧାଇଁଲେ ଘୋର ଦୁଷ୍ଟେ ॥
ଶଉଚ ମାର୍ଗେ କେ ବସନ୍ତି । କେ କପି ପୃଷ୍ଠେ ଆରୋହନ୍ତି ॥
କେ ଗୃଧ୍ର କାକ ବକ ଶୂନ୍ୟେ । ଭାଷେ ଗମ୍ଭୀର କୋପମନେ ॥
ଅମୂଲ୍ୟ ଧନୁ ବଜ୍ର ମୁଷ୍ଟି । ପରିଘ ଘୋର କୋନ୍ତ ଯଷ୍ଟି ॥
ଚର୍ମ ଭୂଷିତ କଳେବରେ । ଭୂଷିତ କନ୍ଦୁକ ବିସ୍ତାରେ ॥
ନାନା ପ୍ରକାରେ ସଜ ହୋଇ । ଧାଇଁଲେ ମନେ କ୍ରୋଧ ବହି ॥
ଶଙ୍ଖ ମୃଦଙ୍ଗ ତୂରୀ ଭେରୀ । ଅତି ତୁମୁଳେ ନାଦ କରି ॥
ଏମନ୍ତେ ପରମ ଦାରୁଣ । ହୋଇଲା ଦେବାସୁର ରଣ ॥
ବୋଲଇ ଦାସ ଜଗନ୍ନାଥ । ଅଷ୍ଟମ ସ୍କନ୍ଧେ ଭାଗବତ ॥
ସେ ବିଷ୍ଣୁ ମାୟା ବିଦ୍ୟମାନେ । ଯେ ରୂପ ସମୁଦ୍ର ମନ୍ଥନେ ॥
ଦେବଙ୍କୁ ସୁଧାପାନ ଦେଇ । ନିଜ ଭୁବନେ ଭାବଗ୍ରାହୀ ॥
ବସିଲେ ଗରୁଡ଼ ଆସନେ । ସୁଜନେ ଚିନ୍ତ ସ୍ଥିର ମନେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଅମୃତ ଭକ୍ଷଣେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

ଏମନ୍ତେ ବିଷ୍ଣୁର ମୋହନେ । ନିରାଶ ହୋଇ ସୁଧାପାନେ ॥
ସର୍ବ ଦାନବ ଏକ ମତେ । ଜଣାଇ ବଳିର ଅଗ୍ରତେ ॥
ଉଦ୍ୟମ କଲେ ଯେବା ଅର୍ଥେ । ନ ଲଭି ବିଧିର ଆୟତେ ॥
ଶତ୍ରୁଙ୍କ କାର୍ଯ୍ୟ ସିଦ୍ଧି ଦେଖି । ଭାଳି ସକଳେ ମନେ ଦୁଃଖୀ ॥
ସକଳେ ମିଳି ଯୂଥେ ଯୂଥେ । ବିଚାର କଲେ ଏକ ମତେ ॥
ଦେବଙ୍କୁ ବାହୁ ବଳେ ମାରି । ସର୍ବ ସମ୍ପଦ ନେବେ ହରି ॥
ତେବେ ସେ ଜୀବନ ଆମ୍ଭର । ସଂଗ୍ରାମେ ମୃତ୍ୟୁ ଶ୍ରେୟସ୍କର ॥
ଏମନ୍ତେ ସମସ୍ତେ ବିଚାରି । ସର୍ବେ ଧାଇଁଲେ ଶସ୍ତ୍ର ଧରି ॥
ଅମୃତ ପାନେ ଦେବଗଣ । ଇଚ୍ଛନ୍ତି ଅସୁରଙ୍କ ରଣ ॥
ସ୍ୱଭାବେ ବିଷ୍ଣୁ ପରାୟଣ । ଭୟେ ସେ ନ କରନ୍ତି ରଣ ॥
ଏମନ୍ତେ ଦେବାସୁର ରଣ । ସୁଘୋର ସୁଭୀମ ଦାରୁଣ ॥
ଶତେ ବରଷ ନିରନ୍ତରେ । ସମର କଲେ ଦେବାସୁରେ ॥
ଶବଦ କରି ବାହୁ ନାଦେ । ଯୁଝନ୍ତି ବିବିଧ ଆୟୁଧେ ॥
ବାଜନ୍ତି ଶଙ୍ଖ ରଣ ଭେରୀ । ପଟହ ମଙ୍ଗଳ ମହୁରୀ ॥
ସକଳ ମଙ୍ଗଳ ସୁବାଦ୍ୟେ । ଗଜ ତୁରଙ୍ଗ ଗଣି ନାଦେ ॥
ଶୁଭିଲା ଶବଦ ତୁମୂଳେ । ପ୍ରଳୟ ସିନ୍ଧୁର ଉଲ୍ଲୋଳେ ॥
ଲାଗିଲା ଯୁଦ୍ଧ ଏକେ ଏକେ । ଦନୁଜ ଗଣ ବୃନ୍ଦାରକେ ॥
ନାନା ବାହନେ ବିଜେ କରି । ରଣେ ଧାଇଁଲେ ଶସ୍ତ୍ର ଧରି ॥
ଓଟର କାନ୍ଧେ କେ ବସନ୍ତି । କେ ଉଚ୍ଚ ଅଶ୍ୱ ଆରୋହନ୍ତି ॥
ଗର୍ଦ୍ଦଭେ ବସି ଅବା ଖରେ । କେ ମୃଗ ବାନର କାନ୍ଧରେ ॥
କେ ବ୍ୟାଘ୍ର ସାର୍ଦ୍ଦୂଳ ଆରୋହୀ । କେ ଗୃଧ୍ର କଙ୍କ ବକ ଦେହୀ ॥

ଶ୍ୟେନ ଭାସ ବା ତିମିଙ୍ଗଳେ । ଭୂତ ଆସନେ ବସି ବଳେ ।।
ଅମୂଲ୍ୟ ରତ୍ନ ଦଣ୍ଡ ଛତ୍ର । ନୀଳ ଲୋହିତ ଶ୍ୱେତ ପୀତ ।।
ବ୍ୟଞ୍ଜନ ବରହୀ ଚାମରେ । ସେନା ଭୂଷଣ ପାଗ ଶିରେ ।।
ବିବିଧ ସଂଗ୍ରାମ ଭୂଷଣ । ଗର୍ଜନ୍ତି ଦେବା ସୁରଗଣ ।।
ବିବିଧ ତୀକ୍ଷଣ ଶସ୍ତ୍ର ମୁନେ । ବିରାଜେ ରବି ରଶ୍ମି ଯେହ୍ନେ ।।
ଏମନ୍ତେ ଦେବାସୁର ବଳ । ସ୍ୱଭାବେ ବଳିଷ୍ଠ ସକଳ ।।
ଅତି କୁପିତ ସୁର ଦେବା । କି ବା ଉପମା ଆମ୍ଭେ ଦେବା ।।
ଶୋଭନ୍ତି ମହାବୀର ରଣେ । ଜଳଧି ଯେସନେ ମନ୍ଥନେ ।।
ଅପର ବଳ ଝଟକନ୍ତି । ଯେ ବଳେ ବଳି ସେନାପତି ।।
ଶୁଣ ରାଜନ ଏକ ଚିତ୍ତେ । ବଳି ମହିମା କହୁ ତୋତେ ।।
ମୟ ନିର୍ମିତ ଘୋର ଯାନ । ସ୍ୱଭାବେ ବିହାୟସ ନାମ ।।
ସମର ଅର୍ଥେ ଶସ୍ତ୍ର ଯେତେ । ସର୍ବ ପୂରିତ ମୟ ରଥେ ।।
ମନ ବଚନେ ଆଗୋଚର । ଦୃଶ୍ୟ ଅଦୃଶ୍ୟ ଭୟଙ୍କର ।।
ଏମନ୍ତ ରଥେ ବଳି ବସେ । ବୀରେ ବସିଲେ ଚାରି ପାଶେ ।।
ବାମ ଦକ୍ଷିଣେ ମହାବୀରେ । ଛତ୍ର ଚାମର ଧରି କରେ ।।
ମଧ୍ୟେ ବିରାଜେ ବଳି ଶୋଭା। କିବା ଉପମା ତାକୁ ଦେବା ।।
ନକ୍ଷତ୍ର ମଧ୍ୟେ ପୂର୍ଣ୍ଣ ଶଶୀ । ଅସୁର ଗଣ ମଧ୍ୟେ ଦିଶି ।।
ବଳି ସମୀପେ ପନ୍ତି ପନ୍ତି । ମିଳିଲେ ସର୍ବ ଯୂଥ ପତି ।।
ଦେବ ଅସୁର ଘୋର ରଣେ । ବଳେ ଆବୋରି ଜଣେ ଜଣେ ।।
କରନ୍ତି ଅଦ୍ଭୁତ ସଂଗ୍ରାମ । ଶୁଣ ହୋ ଅସୁରଙ୍କ ନାମ ।।
ନମୁଚି ଶମ୍ବର ଯେ ବାଣ । ଲୋହବଦନ ସୁପ୍ରମାଣ ।।
ଦ୍ୱିମୂର୍ଦ୍ଧା କାଳ ବିପ୍ରଚିତ୍ତ । ଉଲ୍ମୁକ ହେତି ସୁପ୍ରହେତି ।।
ଶକୁନି ଭୂତ ସନ୍ତାପନ । ବଜ୍ରଦଶନ ବିରୋଚନ ।।
ସେ ହୟଗ୍ରୀବ ଶଙ୍କୁଶିରା । କପିଳା ନାମେ ମହାବୀରା ।।
ତାରକା ଚକ୍ର ଦୃକବଳ । ଶମ୍ଭୁ ନିଶୁମ୍ଭ ଭଜିକଳ ।।
ଅରିଷ୍ଟ ରିଷ୍ଟ ନେମି ବେନି । ମୟ ତ୍ରିପୁର ସଂଗେ ଘେନି ।।
ସୁଲୋମ କାଳେୟ କବଚ । ସୁଘୋର ନିବାତ କବଚ ।।
ନ ପାଇ ଅମୃତର ଭାଗ । ମନେ ବହିଲେ ମହାରାଗ ।।
ଦେବଙ୍କୁ ଯୁଦ୍ଧେ କରି ମେଳେ । ବେଢ଼ିଲେ ଅଶେଷ ଗହଳେ ।।
କରନ୍ତି ସର୍ବେ ସିଂହ ନାଦ । ଦୁନ୍ଦୁଭି ସଂଗେ ବହୁ ବାଦ୍ୟ ।।
ଏମନ୍ତେ ବଳି ବଳ ଚାହିଁ । ସକଳ ଦେବେ କୋପ ବହି ।।
ସାଜିଲେ ସୁରପତି ସଂଗେ । ଅଶେଷ ଘୋର ରଣ ରଙ୍ଗେ ।।
ଐରାବତ କନ୍ଧେ ବସି । ପୂର୍ଣ୍ଣମୀ ରାତ୍ରେ ଯେହ୍ନେ ଶଶୀ ।।
ସେ ଯୂଥପତିଙ୍କି ଆବୋରି । ଆନନ୍ଦେ ବାଦ୍ୟ ନାଦ କରି ।।
ନିଜ ବାହାନ ଶସ୍ତ୍ର ତୁଲେ । ଅଶେଷ ଦେବେ ବିଜେ କଲେ ।।
ରଣ ସଂକୁଳ ମହା ଗୋଳେ । ସମୁଦ୍ର ତୀରେ ବେନି ବଳେ ।।
ଶବଦ ଶୁଭଇ ତୂମୂଳେ । ମିଳିଲେ ସର୍ବଦିଗପାଳେ ।।
ଶସ୍ତ୍ର ଉଞ୍ଚାଇ କୋପମନେ । ନାମ ଡାକନ୍ତି ଅନ୍ୟୋ ଅନ୍ୟେ ।।
ନିକଟେ ମିଳି ଘୋର ନାଦେ । ଯୁଦ୍ଧ କରନ୍ତି ମାଲ ବନ୍ଧେ ।।
ଇନ୍ଦ୍ରର ତୁଲେ ବଳି ଯୁଝେ । ଦାରୁଣ ଦେବାସୁର ମାଝେ ।।
ସ୍କନ୍ଦ ତାରକ ଅବହେଳେ । ଯୁଦ୍ଧ କରନ୍ତି ବାହୁବଳେ ।।
ବରୁଣ ହେତି ବେନି ବୀରେ । ପ୍ରହେତି ମିତ୍ର ଯୁଦ୍ଧ କରେ ।।
ଯମର ତୁଲେ କାଳନାଭ । ବିଶ୍ୱକର୍ମା ମୟଦାନବ ।।
ଶମ୍ବର ତ୍ୱଷ୍ଟା ତୁଲେ ରଣ । ସବିତା ସଂଗେ ବିରୋଚନ ।।
ନମୁଚି ଯେ ଅପରାଜିତେ । ଅଶ୍ୱିନୀ ବୃଷପର୍ବା ସାଥେ ।।
ସବିତା ସଂଗେ ବାଣାସୁର । ରାହୁର ତୁଲେ ନିଶାକର ।।
ପୁଲୋମା ସଂଗତେ ସମର । କରଇ ଅନିଳ ଯେ ବୀର ।।
ଶମ୍ଭୁ ନିଶୁମ୍ଭ ଭଦ୍ରକାଳୀ । ଜୟ ବବୃଷା କପି ମିଳି ।।
ମହିଷେ ବିଭାବସୁ ଯୁଝେ । ଗହଳେ ଦେବାସୁର ମାଝେ ।।
ଇଲ୍ଲୋଳ ବାତାପିର ମେଳେ । ସଂଗ୍ରାମେ ବ୍ରହ୍ମ ପୁତ୍ର ତୁଲେ ।।
ସନକ ତୁଲେ ଅରିନ୍ଦମ । ନିର୍ଭୟେ କରନ୍ତି ସଂଗ୍ରାମ ।।
ଦୁର୍ମର୍ଷ ତୁଲେ ରତି ପତି । ଉତ୍କଳେ ମାତୃକା ଯୁଝନ୍ତି ।।
ଗୁରୁ ଭାର୍ଗବେ ଯୁଦ୍ଧ ଘୋର । ନାରକା ତୁଲେ ଶନିଶ୍ଚର ।।
ମରୁତ ନିବାତ କବଚେ । କାଳେୟ ବସୁଙ୍କ ସଂଗତେ ।।
ପୁଲୋମା ବିଶ୍ୱେ ଦେବା ସଂଗେ । ଯୁଦ୍ଧ କରନ୍ତି ରଣ ରଂଗେ ।।
ଦେବେ ଅସୁର ଗଣ ସଂଗେ । ନିର୍ଘାତ ଯୁଦ୍ଧ ରଣ ରଂଗେ ।।
ରୁଦ୍ରଙ୍କୁ କ୍ରୋଧବଶ ଗଣ । ଆବୋରି କଲେ ଘୋର ରଣ ।।
ଏମନ୍ତେ ମହାରଣ ମଧ୍ୟେ । ଦେବ ଦାନବ ବାହୁ ଯୁଦ୍ଧେ ।।
ଏମନ୍ତେ ମାଲଯୁଦ୍ଧ ସାରି । ଧାଇଁଲେ କରେ ଶସ୍ତ୍ର ଧରି ।।
ଖଡ଼୍‌ଗ ତୋମର ଶର ବୃଷ୍ଟି । ଭୂଷଣ୍ଡି ଚକ୍ର ଗଦା ରିଷ୍ଟି ।।
ପଟ୍ଟିଶ ଶକ୍ତି ତିକ୍ଷମୂଳେ । କୋନ୍ତ କୋଠାର ଘୋର ଶୂଳେ ।।
ନିସ୍ତଂଶ ଭଲ୍ଲ ଯେ ପରିଘ । ମୁଦ୍ଗର ଭିନ୍ଦି ପାଳ ବେଗ ।।
ଏମନ୍ତେ ନାନା ଶସ୍ତ୍ର ଭେଦି । ଅସୁରଙ୍କର ଶିର ଛେଦି ।।
ଗଜ ତୁରଙ୍ଗ ରଥ ପତି । ଯୁଦ୍ଧେ ପଡ଼ିଲେ ପନ୍ତି ପନ୍ତି ।।
ଶସ୍ତ୍ରେ ଖଣ୍ଡିତ କଳେବର । କରଟେ ଗଳଇ ରୁଧିର ।।
ବାହୁରୁ ଶିର ଶିରୋଧର । ଉଷ୍ଣିସ ବସନ କୁକ୍ଷିର ।।
ଶରଭ ବିଷ୍ଣୁ ଦନ୍ତ ଛନ୍ଦେ । ପଡ଼ି ବସନ୍ତି ରଣ ମଧ୍ୟେ ।।
ନାନା ଆଭରଣ ଆୟୁଧେ । ଭୁଜେ ଛନ୍ଦନ୍ତି ବାହୁଛନ୍ଦେ ।।

ଗଜ ତୁରଙ୍ଗ ମୃତ୍ୟୁପିଣ୍ଡେ । ଆଚ୍ଛାଦି ରହେ ଯୁଦ୍ଧ ଖଣ୍ଡେ ॥
କବନ୍ଧ ଉଠି ରଣ ମଧ୍ୟେ । ନୃତ୍ୟ କରନ୍ତି ନାନା ବାଦ୍ୟେ ॥
ତୀକ୍ଷ୍ଣ ଖଡ଼ଗ ଭୁଜେ ଧରି । ଧାମନ୍ତେ କମ୍ପେ ବସୁନ୍ଧରୀ ॥
ଧାମନ୍ତେ ଓଟଙ୍କ ଉପରେ । ହୁଙ୍କାରେ ମହାନାଦ କରେ ॥
ବଳି ଯେ ଇନ୍ଦ୍ର ସଙ୍ଗେ ଥିଲା । ଅନେକ ବାହୁଯୁଦ୍ଧ କଲା ॥
ଜିଣି ନ ପାରି ମାଲଯୁଦ୍ଧେ । ମାୟା ବିମାନେ ବସି ମଧ୍ୟେ ॥
ଧନୁକେ ଦଶ ଶସ୍ତ୍ର ଧରି । ଇନ୍ଦ୍ର ବିନ୍ଧିଲା କ୍ରୋଧ ଭରି ॥
ତିନି ନାରାଚ ଐରାବତେ । ବିନ୍ଧିଲା ଆତ୍ମାର ଆୟତେ ॥
ଚାରି ଅଶ୍ୱଙ୍କୁ ଚାରିବାଣ । ବେଗେ ବିନ୍ଧିଲା ଗରୁଟାଣ ॥
ସାରଥି ଏକ ବାଣ ଯୋଖି । ଇନ୍ଦ୍ର ଧାଇଁଲା ତାହା ଦେଖି ॥
ବଳିର ଯେତେକ ନାରାଚ । ବେଗେ ଛେଦିଲେ ଦେବରାଜ ॥
ବଳିକି ଚାହିଁ ମନ୍ଦ ହାସେ । ବେଗେ ମିଳିଲେ ତାର ପାଶେ ॥
ଇନ୍ଦ୍ର ଅଦ୍ଭୁତ କର୍ମ ଚାହିଁ । ବଳି ଯେ ମନେ ବିଚାରଇ ॥
ପୁଣି ଶକ୍ତିଏ ଧରି କରେ । ପେଷିଲା ବାସବ ଉପରେ ॥
ଉଲ୍‌କା ଯେସନେ ଶୂନ୍ୟମାର୍ଗେ । ପଡ଼ି ବିରାଜେ ଦଶ ଦିଶେ ॥
ସେ ଶକ୍ତି ବଳି ହାତେ ଥିଲା । ଇଷିତେ ଇନ୍ଦ୍ର ତା ଛେଦିଲା ॥
ଏମନ୍ତେ ଶୂଳ କୁନ୍ତ ବୃଷ୍ଟି । ବଳି ହସ୍ତରୁ ବେଗେ କାଟି ॥
ନ ପାରି ମାୟା ଆଚ୍ଛାଦିଲା । ତକ୍ଷଣେ ଅନ୍ତର୍ଦ୍ଧାନେ ଗଲା ॥
ମାୟାରେ ଶିଳା ବୃଷ୍ଟି ଘନ । ମେଘେ ଆଚ୍ଛାଦିଲା ଗଗନ ॥
ଦେବଙ୍କ ଉପରେ ବରଷେ । ବିଜୁଳି ତେଜେ ଦଶଦିଶେ ॥
ପୁଣି କ୍ଷଣକେ ବହ୍ନି ବୃଷ୍ଟି । ଶୁଷ୍କ ଇନ୍ଧନ କୋଟି କୋଟି ॥
ଦାବାଗ୍ନି ଦେବଙ୍କ ଉପରେ । ପଡ଼ନ୍ତି ମଣ୍ଡଳ ସମିରେ ॥
ଶିଳା ପଡ଼ନ୍ତେ ତାଙ୍କ ଶିରେ । ଗହଳେ ଦେବଙ୍କ ଉପରେ ॥
ପଡ଼ନ୍ତି ମହୋରଗ ଗଣ । ବୃଷ୍ଚିକ ଆଦି ବରଷଣ ॥
ବରାହ ସିଂହ ବ୍ୟାଘ୍ର ହସ୍ତୀ । ସ୍ୱଭାବେ ଗର୍ଜନ କରନ୍ତି ॥
ଶତ ସହସ୍ର ଯାତୁ ଧାନୀ । ଅନେକ ଶାକିନୀ ଡାକିନୀ ॥
ବିବସ୍ତ ହୋଇ ଶୂଳ କରେ । ପିଟନ୍ତି ଦେବଙ୍କ ଉପରେ ॥
ରାକ୍ଷସେ ଛେଦ ଭେଦ ନାଦେ । ସମରେ ମିଳିଲେ ଆନନ୍ଦେ ॥
ପ୍ରଳୟ କାଳେ ମେଘମାଳେ । ମିଳିଲେ ଗଗନ ମଣ୍ଡଳେ ॥
ଗଭୀର ଘୋର ନାଦ କରି । ସଘନେ ବରଷନ୍ତି ବାରି ॥
ପୁଣି କ୍ଷଣକେ ଅଗ୍ନି ବୃଷ୍ଟି । ପ୍ରଳୟ ସମୀର ପ୍ରକଟି ॥
ପ୍ରଳୟ ପ୍ରାୟେ ଅତି ବେଗେ । ବହ୍ନି ବେଢ଼ିଲା ଚାରିଦିଗେ ॥
ସମୁଦ୍ର ଉଲ୍ଲୋଳ ଲହରୀ । ଉଠିଲା ଘୋର ନାଦ କରି ॥
ପ୍ରଚଣ୍ଡ ବାତେ ଉର୍ମି ଗଣ । ଉଠନ୍ତେ ଦିଶଇ ଭୀଷଣ ॥
ଏମନ୍ତେ ଅସୁରଙ୍କ ମାୟା । ଦୃଶ୍ୟ ଅଦୃଶ୍ୟ ନାନା କାୟା ॥
ନାନା ପ୍ରକାରେ ମାୟାବଳେ । ଯୁଝିଲେ ଦେବଗଣ ମେଳେ ॥
ଅସୁର ମାୟାବଳ ଦେଖି । ତ୍ରିଦଶେ ସମର ଉପେକ୍ଷି ॥
ବିକଳେ ଭ୍ରମନ୍ତି ଗହନେ । ଅସୁର ବଳମାୟା ଛନ୍ନେ ॥
ରହି ନ ପାରି ସ୍ୱର୍ଗ ପଥେ । ବିଷ୍ଣୁଙ୍କୁ ଧ୍ୟାନ କଲା ଚିତ୍ତେ ॥
ଦେବଙ୍କ ଭୟ ଦେଖି ହରି । ଖଗେନ୍ଦ୍ର ପୃଷ୍ଠେ ବିଜେ କରି ॥
ପୀତ ବସନ ପରିଧାନ । ସୁରଂଗ କମଳ ଲୋଚନ ॥
ଉଦିତ ଉର୍ଦ୍ଧେ ଅଷ୍ଟ ଭୁଜେ । କର୍ଣ୍ଣେ କୁଣ୍ଡଳ ରତ୍ନ ସାଜେ ॥
ଶ୍ରୀ ବତ୍ସ କୌସ୍ତୁଭ ମଣି । ଅମୂଲ୍ୟ ରତ୍ନ ସୁଖଞ୍ଜଣି ॥
ଏମନ୍ତ ରୂପ ଦଇତାରି । ଦେବଙ୍କ ମଧ୍ୟେ ବିଜେ କରି ॥
ମାୟା ଦେବଙ୍କୁ ବେଢ଼ିଥିଲା । ବିଷ୍ଣୁଙ୍କୁ ଦେଖି ନାଶ ଗଲା ॥
ଦେବେ ଯେ ଦେଖନ୍ତି ଆକାଶେ । ତମ ଯେସନେ ରବି ତ୍ରାସେ ॥
ଜାଗ୍ରତେ ସ୍ୱପ୍ନ ଯେହ୍ନେ ମିଛ । ଗୋବିନ୍ଦ ଅଗ୍ରତେ ପ୍ରତକ୍ଷ ॥
ଅସୁର ମାୟା ନାଶ ଗଲା । ଦବଙ୍କୁ ନିର୍ଭୟ ହୋଇଲା ॥
ହରି ସ୍ମରଣେ ବନ୍ଧ ମୋକ୍ଷ । ଏ ଭାବେ ବୁଝିଲେ ପ୍ରତ୍ୟକ୍ଷ ॥
ଦେବଙ୍କ ମଧ୍ୟେ କାଳନେମି । ଲୁଚି ଯେ ଥିଲା ମାୟା ଘେନି ॥
ଶୂଳ ବୁଲାଇ ଅନ୍ତରୀକ୍ଷେ । ମିଳିଲା ଗୋବିନ୍ଦ ସମୀପେ ॥
ପିଟନ୍ତେ ଗରୁଡ଼ ଉପରେ । ହରି ଧଇଲେ ବାମ କରେ ॥
ସେ ଶୂଳ କାଳନେମି ମୁଣ୍ଡେ । ହରି ପ୍ରହାରିଲେ ପ୍ରଚଣ୍ଡେ ॥
ବାହୁ ସହିତେ ମହାସୁର । ହେଲା ଶତେକ ଖଣ୍ଡ ଚୂର ॥
ମାଳି ସୁମାଳି ବେନି ବୀରେ । ଦେଖି ମିଳିଲେ ମହାଘୋରେ ॥
ତାହାଙ୍କ ତେଜ ଦେଖି ହରି । ସୁଦରଶନ କରେ ଧରି ॥
ସେ ବେନି ବୀର ମୁଣ୍ଡ ହାଣି । ଶଙ୍ଖ ଶବଦେ ଚକ୍ରପାଣି ॥
ମିଳିଲେ ଦେବାସୁର ମଧ୍ୟେ । ତ୍ରିଦଶେ ଦେଖନ୍ତି ଆନନ୍ଦେ ॥
ସେ ହରି ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନ ବଳେ ॥
ଅଷ୍ଟମ ସ୍କନ୍ଧେ ଭାଗବତ । ଅଦ୍ଭୁତ ଗୋବିନ୍ଦ ଚରିତ ॥
ଭାଷା ପ୍ରବନ୍ଧେ ହରି ଗୀତ । କହିଲା ବିପ୍ର ଜଗନ୍ନାଥ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ଦେବାସୁର ଯୁଦ୍ଧ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ହରିଙ୍କ ଦେଖି ଦେବଗଣେ । ପୁଣି ମିଳିଲେ ଘୋର ରଣେ ॥
ଗୋବିନ୍ଦ ଅନୁକମ୍ପା ବଳେ । ସମରେ ରହିଲେ ନିଶ୍ଚଳେ ॥

ଇନ୍ଦ୍ର ପବନ ଆଦି ବଳେ । ବେଗେ ମିଳିଲେ ଦିଗପାଳେ ॥
ନିରତେ ଅସୁରଙ୍କ ଗାତ୍ରେ । ପ୍ରହାର କଲେ ନାନା ଶସ୍ତ୍ରେ ॥
ଦେବଙ୍କ ଶସ୍ତ୍ରଘାତେ ଫୁଟି । ଅସୁରେ ମଲେ କୋଟି କୋଟି ॥
ଅସୁରଙ୍କର ଭଗ୍ନ ଦେଖି । ଇନ୍ଦ୍ର ଯେ ସମର ଉପେକ୍ଷି ॥
ବଳି ସମୀପେ ବେଗେ ମିଳି । ବଜ୍ର ଉଞ୍ଚାଇ ମହାବଳୀ ॥
ବୋଇଲଇ ଅତି କୋପ ମନେ । କର୍କଶ ପୁରୁଷ ବଚନେ ॥
ତୁ ଯେ ବୋଲାଉ ମହାବୀର । ସମ୍ଭାଳ ବଜ୍ରାଘାତ ମୋର ॥
ଶୂନ୍ୟେ ବୁଲାଇ ଶତେ ବାର । ଦେଖି କମ୍ପିଲେ ସୁରନର ॥
ଅସୁର ଦେଖି ହାହା ରାବେ । ବଳି ଗର୍ଜ୍ଜଇ ଘୋର ନାଦେ ॥
ବଳି ବଚନ ଇନ୍ଦ୍ର ଚାହିଁ । ନିନ୍ଦିତ ବଚନ ବୋଲଇ ॥
ରେ ମୂଢ଼ ମୋତେ ମାୟା କରି । ଜିଣିବା ପ୍ରାୟେ ମନେ ଧରି ॥
ନଟର ପ୍ରାୟେ କାର୍ଯ୍ୟ କଲୁ । ନିଜ ସ୍ୱଭାବ ଦେଖାଇଲୁ ॥
କୁହୁକେ ଯେହ୍ନେ ନଟଜନ । ମାୟାରେ ହରେ ପ୍ରାଣୀ ମନ ॥
ମାୟାର ବଳେ ସ୍ୱର୍ଗ ଜିଣି । ଇଚ୍ଛା କରନ୍ତି ଯେତେ ପ୍ରାଣୀ ॥
ତାହାଙ୍କ ଦର୍ପ ଗଞ୍ଜି ବେଗେ । ମୁହିଁ କ୍ଷେପଇ ଅଧୋମାର୍ଗେ ॥
ଏବେ ଏ ଶୂରପଣ ତୋର । କୁଳିଶ ଘାତୁ ତୁ ଉଦ୍ଧାର ॥
ଏବେ ଏ ତୋର ଶିରଚ୍ଛେଦି । ରଖିବି ଅମର ସମୃଦ୍ଧି ॥
ଏବେ ଏ ବଜ୍ରାଘାତ ସହ । ଜ୍ଞାତିଙ୍କ ତୁଲେ ରୁଣ୍ଡ ହୁଅ ॥

### ବଳି ଉବାଚ

କାଳର ବଳେ ଏ ସଂସାର । ଯୁଦ୍ଧେ ମିଳନ୍ତି ଯେତେ ନର ॥
ଅଜୟ ଜୟ କୀର୍ତ୍ତି ଯଶ । ଯେ ବା ରହଇ ଅବଶେଷ ॥
ଯୁଦ୍ଧେ ଶରଣ ଜୟ ଘୋଷି । ଅଜୟ ସ୍ୱର୍ଗେ ଯେଣେ ବସି ॥
ଏଣୁ ଶୟଳ ଜନ୍ତୁ ଜନ । କାଳ ଗରାସେ ନିବନ୍ଧନ ॥
ପଣ୍ଡିତ ଜନ ଏହା ଜାଣି । ଧର୍ମ ଅଧର୍ମ ପରିମାଣି ॥
ଶୋକ ହରଷ ପଥେ ମନ । କେବେ ହେଁ ନ କରନ୍ତି ଛନ୍ନ ॥
ଆମ୍ଭେ ସକଳେ ଏହା ଜାଣି । ଆଗମ ନିଗମ ପ୍ରମାଣି ॥
ଏଣୁ ଏ ତୁମ୍ଭର ବଚନ । ମର୍ମ ତାଡ଼ିବ ଅନୁମାନ ॥
ଆମ୍ଭେ ତ କେବେ ହେଁ ନ ଗଣି । ତୁମ୍ଭର ବୀରଭାବ ଜାଣି ॥

### ଶ୍ରୀ ଶୁକ ଉବାଚ

ଏମନ୍ତ ଇନ୍ଦ୍ର ଆଗେ କହି । ନିଜ ଧନୁରେ ଗୁଣ ଦେଇ ॥
ଆକର୍ଣ୍ଣ ପୂରି ଦଶ ବାଣେ । ବଳି ବିନ୍ଧିଲା ଗରୁ ଟାଣେ ॥
ଇନ୍ଦ୍ର ଉପରେ ବାଣ ବାଜି । ତଳେ ପଡ଼ିଲେ ବେଗେ ଭାଜି ॥
ଗଜ ଶରୀରେ ପୁଷ୍ପମାଳେ । ବାଜି ପଡ଼ନ୍ତି ଯେହ୍ନେ ତଳେ ॥
ଇନ୍ଦ୍ର ଅମୋଘ ଶକ୍ତି ଧରି । ଘୋର ହୁଙ୍କାର ନାଦ କରି ॥
ହୃଦୟେ ବାଜି ଶତକୋଟି । ତକ୍ଷଣେ ବକ୍ଷସ୍ଥଳେ ଫୁଟି ॥
ବଳି ପଡ଼ିଲା ମହୀତଳେ । ସ୍ୱର୍ଗେ ଦେଖନ୍ତି ଦିଗପାଳେ ॥
ବଳିରେ ଭୂମିଗତ ଚାହିଁ । ଜମ୍ଭ ମିଳିଲା ବେଗେ ଧାଇଁ ॥
ସଖାର ଦେଖିଣ ମରଣ । ଆବୋରି କଲା ଘୋର ରଣ ॥
ସିଂହ ବାହନେ ବେଗେ ମିଳି । ହୁଂକାର ନାଦେ ଗଦା ଟୋଳି ॥
ଇନ୍ଦ୍ର ଉପରେ ପ୍ରହାରିଲା । ସେ ଗଦା ହସ୍ତୀକି ବାଜିଲା ॥
ଗଦା ପ୍ରହାରେ ଜ୍ଞାନ ହାରି । ଇନ୍ଦ୍ର ଦେଖିଣ ମନେ ଭାଳି ॥
ଗଜ ଚରଣ ବେଗେ ପଡ଼ି । ଶୁଭଇ ନାଦ ଘଡ଼ଘଡ଼ି ॥
ପଡ଼ିଲା ଅଚେତନ ହୋଇ । ଦେଖି ମାତଳି ବେଗେ ଧାଇଁ ॥
ବିମାନେ ଦଶ ଅଶ୍ୱ ଯୋଡ଼ି । ଇନ୍ଦ୍ର ନିକଟେ କର ଯୋଡ଼ି ॥
ବିମାନ ଦେଖି ସୁରପତି । ତକ୍ଷଣେ ତେଜି ନିଜ ହସ୍ତୀ ॥
ବିମାନେ ବସି ବଜ୍ର ହସ୍ତେ । ସମରେ ରହିଲା ଆୟତ୍ତେ ॥
ଜମ୍ଭ ମାତଳି କର୍ମ ଚାହିଁ । ଧନ୍ୟ ବଚନେ ପ୍ରଶଂସଇ ॥
ଜଳନ୍ତା ଶୂଳ ଧରି ବେଗେ । ପିଟିଲା ମାତଳିର ଅଂଗେ ॥
ସେ ଶୂଳ ପ୍ରହାରେ ମାତଳି । ସହେ ସ୍ୱଭାବେ ମହାବଳୀ ॥
ଇନ୍ଦ୍ର ଧାଇଁଲା ଦେଖି ବେଗେ । ବଜ୍ର ପ୍ରହାରେ ଜମ୍ଭ ଅଂଗେ ॥
ଜମ୍ଭ ମରଣ ବଜ୍ରଘାତେ । ଶୁଣି ତାହାର ଜ୍ଞାତି ଯେତେ ॥
ନାରଦ ମୁଖୁ ବାକ୍ୟ ଶୁଣି । ଜୟ ଅଜୟ ନ ପ୍ରମାଣି ॥
ନମୁଚି ବଳ ପାକ ସଙ୍ଗେ । ପାକ ସମେତ ମହାରାଗେ ॥
ଇନ୍ଦ୍ର ନିକଟେ ବେଗେ ମିଳି । ପୁରୁଷ ବାକ୍ୟେ ଦେଇ ଗାଳି ॥
ଶସ୍ତ୍ର ବରଷନ୍ତି ଗହଳେ । ଯେସନେ ଆକାଶ ମଣ୍ଡଳେ ॥
ପବନ ବଳେ ମେଘମାଳ । ଯେସନେ ବରଷନ୍ତି ଜଳ ॥
ଗର୍ଜ୍ଜନ କରି ମେଘପନ୍ତି । ପର୍ବତ ଶୃଙ୍ଗେ ବରଷନ୍ତି ॥
ଅଦ୍ଭୁତ ଦେଖି ଦେବରାଜ । ବିନ୍ଧିଲେ ସହସ୍ରେ ନାରାଜ ॥
ସର ସନ୍ଧାନ ଭଗ୍ନ କଲା । ତା ଦେଖି ପାକ କୋପ କଲା ॥
ଧନୁ ଆକର୍ଷି କର୍ଣ୍ଣ ମୂଳେ । ବେନି ନାରାଜ କୋପାନଳେ ॥
ମାତଳି ଉପରି ପ୍ରହାରି । ଅଦ୍ଭୁତ ଘୋର ନାଦ କରି ॥
ନମୁଚି କରି ମହାରୋଷ । ବାଣ ବିନ୍ଧିଲା ପଞ୍ଚଦଶ ॥
ସୁବର୍ଣ୍ଣ ପକ୍ଷ ଲୋହ ମୁଖେ । ଇନ୍ଦ୍ର ତା ପୁରେ ଥାଇ ଦେଖେ ॥
ପଡ଼ଇ ମାତଳି ଉପରେ । ତୋୟାଦି ଯେସନେ ଅମ୍ବରେ ॥
ଏମନ୍ତେ ଅସୁରଙ୍କ ଶସ୍ତ୍ରେ । ଭେଦିଲା ଦେବଙ୍କର ଗାତ୍ରେ ॥
ଶରଦ କାଳେ ରବି ଯେହ୍ନେ । ଜୀମୂତ ଆଚ୍ଛାଦେ ଗଗନେ ॥
ଅସୁର ଗଣ ରଣ ଦେଖି । ଦେବେ ହୋଇଲେ ମନ ଦୁଃଖୀ ॥
ଅନାଥ ହୋଇ ରିପୁ ଡରେ । ବଣିଜେ ଯେହ୍ନେ ସିନ୍ଧୁ ନାରେ ॥

ଅସୁର ବଳ ମଧ ଗତେ । ଦେବେ ଯେ ପଡ଼ିଲେ ଆୟତେ ॥
ପଞ୍ଜରେ ଯେହ୍ନେ ପକ୍ଷୀଗଣେ । ଦେବେ ଦିଶନ୍ତି ଘୋର ରଣେ ॥
ଏମନ୍ତ ସମୟେ ବାସବ । ଆବୋରି ଥିଲେ ଯେ ଦାନବ ॥
ବାହାର ହୋଇ ଦିବ୍ୟ ରଥେ । ରବି ଯେସନେ ରାତ୍ର ଅନ୍ତେ ॥
ଅସୁର ବାଣେ ଦେବେ ଦୁଃଖୀ । ସଂଭ୍ରମେ ଇନ୍ଦ୍ର ତାହା ଦେଖି ॥
ପୁଣି ଧାଇଁଲା ରଣ ମଧ୍ୟେ । ବଜ୍ର ଉଞ୍ଚାଇ ଘୋର ନାଦେ ॥
ସେ ଅଷ୍ଟ ଧାରା ବଜ୍ର ଘାତେ । ଜୀମୂତେ ଯେହ୍ନେ ଘୋରବାତେ ॥
ବଳ ପାକର ଶିର ହାଣି । ଘୋର ଶବଦ ବଜ୍ରପାଣି ॥
ଦେଖିଣ ତାର ବନ୍ଧୁ ବଳ । ବିକଳେ ପାଡ଼ନ୍ତି ଚହଳ ॥
ନମୁଚି ତାର ବଧ ଦେଖି । ଦଣ୍ଡେ ହୋଇଲା ଅଶ୍ରୁ ମୁଖି ॥
ଶୋକ ସାଗରେ ସେ ବୁଡ଼ିଲା । ପୁଣି କ୍ଷଣକେ କୋପକଲା ॥
ଲୋହ ନିର୍ମିତ ଶୂଳ କରେ । ଘେନି ଧାଇଁଲା ଅତି ଖରେ ॥
ସେ ଶୂଳେ ସୁବର୍ଣ୍ଣ ବିରାଜେ । ଚଳନ୍ତେ ଘଣ୍ଟା ରବ ବାଜେ ॥
ସେ ଶୂଳ ଘେନି ଅତି ବେଗେ । ମିଳିଲା ସୁରନାଥ ଆଗେ ॥
ଇନ୍ଦ୍ର ଉପରେ ପ୍ରହାରିଲା । ନିର୍ଭୟେ ସିଂହନାଦ କଲା ॥
ଶୂଳ ଆସନ୍ତେ ଶୂନ୍ୟ ପଥେ । ଇନ୍ଦ୍ର ହିଁ ଧନୁ ଧରି ହସ୍ତେ ॥
ବାଣେ ଛେଦିଲା ଶତେ ଖଣ୍ଡେ । ପାଷାଣେ ଯେହ୍ନେ ଛତୁ ପିଣ୍ଡେ ॥
ବଜ୍ର ଘେନିଲା ପୁରନ୍ଦର । ଛେଦିଲା ନମୁଚି କନ୍ଧର ॥
ବଜ୍ର ପ୍ରହାରେ ନ କାଟିଲା । କନ୍ଧରୁ ଚର୍ମ ନ ଛିଡ଼ିଲା ॥
ତା ଦେଖି ଇନ୍ଦ୍ର ବିଚାରଇ । ଅଦ୍ଭୁତ ଦେଖିଲା ତ ନାହିଁ ॥
ବଜ୍ରେ ଏ ବଞ୍ଚିଲା କେମନ୍ତେ । ଏ ତ ସଂଶୟ ମୋର ଚିତ୍ତେ ॥
ଏ ଶସ୍ତ୍ର ଅସୁରଙ୍କ ଗଣେ । ପ୍ରହାର କଲି ଅକାରଣେ ॥
ଏମନ୍ତ ରଣ ମଧ ଗତେ । ଶବଦ ଶୁଭେ ଶୂନ୍ୟପଥେ ॥
ଶୁଣ ହେ ଶକ୍ର ଏକ ଚିତ୍ତେ । ନ ଭେଦେ ଶୁଷ୍କ ଆର୍ଦ୍ର ଶସ୍ତ୍ରେ ॥
ପୂର୍ବେ ଏ କଲା ତପ ଘୋର । ଏହାକୁ ଦେଇଅଛୁ ବର ॥
ଅମର ହୋଇଲା ଶରୀର । ଅଜେୟ ଯୁଦ୍ଧେ ମହାର୍ଣ୍ଣବେ ॥
ଶୁଷ୍କ ଆର୍ଦ୍ରକେ ଯୁଦ୍ଧ ନୋହୁଁ । ଏଣୁ ତୋ ଦେହେ ଚିର ରହୁ ॥
ତୁ ଏବେ ଶୁଣ ମଘବାନ । ଏହାର ମରଣ କର ଧ୍ୟାନ ॥
ଯେ ତୋତେ ଦିଶେ ଧ୍ୟାନ ମାର୍ଗେ । ତେଣେ ଜୀବନ ହରବେଗେ ॥
ଏମନ୍ତେ ଦେବବାଣୀ ଶୁଣି । ବାସବ ଧ୍ୟାନ ମନେ ଗୁଣି ॥
ଧ୍ୟାନେ ଦେଖଇ ଜଳ ଫେନ । ତା ଦେଖି ବିଚାରଇ ମନ ॥
ଏ ଆର୍ଦ୍ର ଶୁଷ୍କ ନ ବୋଲାଇ । ଏଣେ ନାଶିବି ତାର ଦେହୀ ॥
ଏମନ୍ତ ମନେ ବଚାରନ୍ତେ । ଫେନ ମିଳିଲା ଆସି ହସ୍ତେ ॥
ନମୁଚି ଦେହେ ପ୍ରହାରିଲା । ତକ୍ଷଣେ ଶିର ତା ଛେଦିଲା ॥
ସମରେ ନମୁଚି ମରଣେ । ମିଳିଲେ ଋଷି ଦେବଗଣେ ॥
ଇନ୍ଦ୍ର ଉପରେ ପୁଷ୍ପ ବୃଷ୍ଟି । କରନ୍ତି ଚିତ୍ତେ ହୋଇ ତୁଷ୍ଟି ॥
ଗନ୍ଧର୍ବେ ଅପସରା ବୃନ୍ଦେ । ନୃତ୍ୟ କରନ୍ତି ଗୀତ ନାଦେ ॥
ଜୟ ଦୁନ୍ଦୁଭି ରଣେ ବାଜେ । ଦେବ ଦାନବ ରଣ ମଧ୍ୟେ ॥
ଏହି ପ୍ରକାରେ ଦିଗପାଳେ । ବରୁଣ ପବନ ଅନଳେ ॥
ଅସୁର ବଳେ ଶତ୍ରୁମାରି । ପଶୁଙ୍କୁ ଯେସନେ କେଶରୀ ॥
ଅସୁର ବଳ ଭଗ୍ନ ଶୁଣି । ନାରଦ ବାକ୍ୟେ କୁଶପାଣି ॥
ଦେବଗଣଙ୍କୁ ବୋଧ କଲେ । ଯୁଦ୍ଧ ନ କର ଆଜ୍ଞା ଦେଲେ ॥
ନାରଦ ସର୍ବଦେବ ଗଣେ । ପ୍ରବୋଧ ବାକ୍ୟେ ଜଣେ ଜଣେ ॥
ବୋଲନ୍ତି ଦେବରାଜ ଚାହିଁ । ସମର କର କିସ ପାଇଁ ॥
ସିନ୍ଧୁ ମନ୍ଥନେ ପାଇ ପ୍ରାସ । ଅସୁରେ ହୋଇଲେ ନିରାଶ ॥
ତୁମ୍ଭେ ଅମୃତ ପାନ କରି । ସ୍ୱର୍ଗେ ଲଭିଲ ଦେବ ଶିର ॥

### ଶ୍ରୀ ଶୁକ ଉବାଚ

ନାରଦ ବାକ୍ୟ ଶୁଣି ଭଲେ । ତ୍ରିଦଶେ ସମର ନ କଲେ ॥
ଆନନ୍ଦେ ନୃତ୍ୟ ଗୀତ କରି । ତ୍ରିଦଶେ ଗଲେ ଦେବପୁରୀ ॥
ଯୁଦ୍ଧେ ଅସୁର ଯେତେ ଥିଲେ । ନାରଦ ବାକ୍ୟେ ବାହୁଡ଼ିଲେ ॥
ବ୍ରହ୍ମା ନନ୍ଦନ ବାକ୍ୟ ମାନି । ବଳିର ମୃତ୍ୟୁ ପିଣ୍ଡଘେନି ॥
ସକଳେ ମିଳି ଏକ ମେଳେ । ପଶ୍ଚିମେ ଅସ୍ତ ଗିରି ଗଲେ ॥
ଯେ ଅବା ଶିର ଉର ଛିଡ଼ି । ସଂଗ୍ରାମ ମଧ୍ୟେ ଥିଲେ ପଡ଼ି ॥
ଶୁକ୍ରର ମୃତ୍ୟୁ ସଂଜୀବନେ । ସକଳେ ଲଭିଲେ ଜୀବନେ ॥
ବଳି କି ଶୁକ୍ର ଧରି କୋଳେ । ଆସନେ ବସାଇ ନିକଟେ ॥
ଯୁଦ୍ଧେ ହାରିଲେ କୋପାରମ୍ଭେ । ସଂହରି ରହେ ନିଜ ଦମ୍ଭେ ॥
ବୋଲଇ ଦାସ ଜଗନ୍ନାଥ । ଶୁଭ ଗୋ ବିଷ୍ଣୁର ଚରିତ ॥
ସୁଜନେ ଏଣେ କର ଭାବ । ଏ ଭାବେ ସଂସାରୁ ତରିବ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧ*

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କୃଷ୍ଣ ଯେ ମୋହିନୀ ସ୍ୱରୂପେ । ଅମୃତ ହରି ମୋହକଲେ ॥
ଦେବଙ୍କୁ କରାଇଲେ ପାନ । ମାୟା ମୋହିନୀ ଭଗବାନ ॥
ସେ କଥା ଶୁଣି ବିପରୀତ । ବୃଷେ ଆରୋହୀ ବିଶ୍ୱନାଥ ॥

ସକଳ ଭୂତ ଗଣ ମେଳେ । ଅମ୍ବିକା ଘେନି ନିଜ କୋଳେ ॥
ଦେଖିବା ଅର୍ଥେ ଗଲେ ହର । ଯହିଁ ବିଜୟେ ମାୟାଧର ॥
ଗୋବିନ୍ଦ ରୁଦ୍ର ଦେଖି ତୋଷେ । ଆସନେ ବସାଇ ହରଷେ ॥
ପୂଜିଲେ ହର ଗୌରୀ ପାଦେ । ରୋମ ହରଷ ଗଦଗଦେ ॥
ସାନନ୍ଦେ ସେ ହର ଗଉରୀ । ହରଷେ ହସ୍ତେ ହସ୍ତ ଧରି ॥
ସନ୍ତୋଷ କରି କୃଷ୍ଣ ମନ । ବୋଲନ୍ତି ମଧୁର ବଚନ ॥

## ଈଶ୍ୱର ଉବାଚ

ହେ ଦେବ ଦେବ ଜଗତବ୍ୟାପୀ । ଜଗଦୀଶ୍ୱର ବିଶ୍ୱରୂପୀ ॥
ସର୍ବ ଶରୀରେ ଆତ୍ମା ରୂପେ । ତୁ ନାଥ ବସୁ ମୋହ କଳ୍ପେ ॥
ସକଳ ହେତୁ ତୋ ଗୋଚର । ତୁ ନାଥ ଧର୍ମ ନିରାକାର ॥
ଜଗତ ଆଦି ମଧ୍ୟ ଅନ୍ତ । ଏଣୁ ତୁ ବୋଲାଉ ଅନନ୍ତ ॥
ଚରଣ କମଳ ତୋହର । ଚିନ୍ତନ୍ତି ଶ୍ରେୟ ପ୍ରାଣୀଙ୍କର ॥
ବିଷୟ ସଙ୍ଗ ଦୂର କରି । ମୁନି ସନ୍ୟାସୀ ବ୍ରହ୍ମଚାରୀ ॥
ଚିନ୍ତନ୍ତି ତୋ ଚରଣ ହୃଦେ । ଅନ୍ତେ ପଶନ୍ତି ମୋକ୍ଷ ପଦେ ॥
ତୁ ପୂର୍ଣ୍ଣ ବ୍ରହ୍ମ ସୁଧାସାର । ନିର୍ଗୁଣ ବିଶୋକ ମନ୍ଦିର ॥
ଆନନ୍ଦ ମାତ୍ର ଅବିକାର । ଅନନ୍ୟ ଭାବ ଅନ୍ୟନ୍ତର ॥
ବିଶ୍ୱର ହେତୁ ନିରଞ୍ଜନ । ସ୍ଥିତି ଉଦୟ ସଂଯମନ ॥
ଆତ୍ମାର ଆତ୍ମା କାଳରୂପୀ । ଏଣୁ ଅଶେଷ ଜନ ବ୍ୟାପୀ ॥
ସଦ ଅସଦ ଏକ ରୂପୀ । ଅଦୟ ଦୟ ବିଶ୍ୱ ବ୍ୟାପୀ ॥
ତୁ ବ୍ରହ୍ମ ହେତୁ ଚିଦାନନ୍ଦ । ଅନାଦି କନ୍ଦ ଆଦିକନ୍ଦ ॥
ସଦ ଅସଦ ଏକ ସ୍ଥିତି । ପରମ ପୁରୁଷ ପ୍ରକୃତି ॥
ଅନ୍ୟେ ବଦନ୍ତି ତୋର ଗତି । ତୋ ଦେହେ ସାଙ୍କୁର୍ଯ୍ୟ ବସନ୍ତି ॥
ଅବ୍ୟୟ ଆତ୍ମା ତତ୍ତ୍ୱ ବ୍ୟାପୀ । ତୁ ନାଥ ସ୍ଥୂଳ ଶୂନ୍ୟ ରୂପୀ ॥
ଦେବ ଦାନବ ଦୈତ୍ୟ ଯେତେ । ତୋ ମାୟା ବଳେ ଏ ଜଗତେ ॥
ତୋ ରୂପ ନ ଜାଣନ୍ତି କେହି । ଦୁଷ୍ଟେ ଜାଣିବେ ଅବା କାହିଁ ॥
ଜଗତ ସ୍ଥିତି ଜନ୍ମ ନାଶ । ଭୂତଙ୍କ ଦେହେ ତୋ ପ୍ରକାଶ ॥
ଜୀବର ବଧ ମୋକ୍ଷ ବେନି । ତୁ ନାଥ କରୁ ମାୟା ଘେନି ॥
ଆକାଶେ ଯେହ୍ନେ ବାୟୁ ବହେ । ପାର୍ଥିବ ରେଣୁ ବହେ ଦେହେ ॥
ଅଦେହେ କେହି ନ ଭଜନ୍ତି । ଏମନ୍ତ ଈଶ୍ୱରର ଭ୍ରାନ୍ତି ॥
ସଚରାଚର ତୋର ଦେହେ । ପବନେ ରେଣୁ ପ୍ରାୟେ ରହେ ॥
ତୁ ଏ ସଂସାର ଉପକାରେ । ତ୍ରିଗୁଣେ ନାନା ରୂପ ଧରେ ॥
ଯେତେ ସାଧିଲୁ କ୍ରୀଡ଼ା ଅର୍ଥେ । ସେ ରୂପେ ଦେଖିଲି ମୁଁ ତୋତେ ॥
ଏବେ ଏ ସମୁଦ୍ର ମନ୍ଥନେ । ଦେବ ଦାନବ ଏକ ମନେ ॥
ଅମୃତ ଅର୍ଥେ ଅନ୍ୟୋ ଅନ୍ୟେ । ତା ଦେଖି ଦେବେ ଦୁଃଖ ମନେ ॥
ତୋତେ ଚିନ୍ତିଲେ ଧ୍ୟାନ କରି । ତୁ ନାଥ ମାୟା ରୂପ ଧରି ॥
ମୋହିନୀ ରୂପେ ଭଗବାନ । ମୋହିଲୁ ଅସୁରଙ୍କ ମନ ॥
ସେ ରୂପ ଦେଖାଅ ତୁ ମୋତେ । ଦେଖିବୁ ଗଉରୀ ସମେତେ ॥
ତୋ ରୂପ ପରମ ମଙ୍ଗଳ । ମୁଁ ତ ଦେଖିବି କୁତୂହଳ ॥
ଏମନ୍ତ ରୁଦ୍ର ବୋଲ ଶୁଣ । ହସି କହନ୍ତି ଚକ୍ରପାଣି ॥

## ଶ୍ରୀ ଭଗବାନ ଉବାଚ

ଅସୁରେ ସୁଧା ନେବାବେଳେ । ମୁହିଁ ଯେ ଦେବଙ୍କ ବିକଳେ ॥
ମାୟା ମୋହିନୀ ରୂପଧରି । ଅସୁର ବଳେ ମାୟା କରି ॥
ଅମୃତ ଦେବଗଣେ ଦେଲି । ପୁଣି ସେ ରୂପ ସଂହରିଲି ॥
ଏବେ ତୁ ଦେଖିବାର ଆଶେ । ଯେବେ ମିଳିଲୁ ମୋର ପାଶେ ॥
ସେ ରୂପ ଦେଖାଇବି ମୁହିଁ । ଯେବେ ସମ୍ଭାଳି ପାରୁ ତୁହି ॥
କାମେନୀ ମଧ୍ୟେ ମହାମୋହ । ପୁରୁଷ କେ ଧରିବ ଦେହ ॥

## ଶ୍ରୀ ଶୁକ ଉବାଚ

ଏମନ୍ତ କହି ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ॥
ରୁଦ୍ର ଚାହାନ୍ତେ ଦଶଦିଶେ । ଗଉରୀ ସଙ୍ଗେ ପ୍ରିୟବାସେ ॥
ଅଗ୍ରେ ଯେ ଅଛି ଉପବନ । ନାନା କୁସୁମେ ତରୁ ଘନ ॥
ତହିଁ ବିଜୟେ ଦୈତାରି । ଜଗ ମୋହିନୀ ରୂପ ଧରି ॥
ହସ୍ତେ କନ୍ଦୁକ ସାର ଶୋହେ । ଯେ ରୂପେ ଜନ ମନ ମୋହେ ॥
ନିତମ୍ବ ବେଷ୍ଟିତ ଅମ୍ବର । କଟୀ ମେଖଳା ରତ୍ନ ସାର ॥
ହୃଦେ କମ୍ପଇ ଘନକୁଚ । ହାର କାଞ୍ଚଲା ଅତି ସଞ୍ଚ ॥
ଅତି ସୁସଞ୍ଚ କ୍ଷୀଣ ମଝା । କି ପଟାନ୍ତର ଦେବା ଦୁଜା ॥
ସ୍ୱଭାବେ ଡମ୍ବରୁ ଆକାର । ଖଞ୍ଜିତ ନାନା ଅଳଙ୍କାର ॥
ଶିରେ ସୀମନ୍ତି ମଣିମୟେ । ନୀଳ ଅଳକେ ମୁଖ ଶୋହେ ॥
ଶିରେ ସୁନ୍ଦର ଭୃରୁ ସାଜେ । କମଳ ଲୋଚନ ବିରାଜେ ॥
ହେମ କୁଣ୍ଡଳ ଶୋହେ କର୍ଣ୍ଣେ । ଦଶନ ହସିତ ବଦନେ ॥
କବରୀ ମଧ୍ୟେ ପୁଷ୍ପ ଦିଶେ । କି ଏ କନ୍ଦର୍ପ ଦେଖି ହସେ ॥
ଅଳକା ତୋଳେ ବାମ କରେ । ସୁରଙ୍ଗ ଅଙ୍ଗୁଳି ଉପରେ ॥
କନ୍ଦର୍ପ ଦକ୍ଷ କରେ ଧରି । ଲୀଳାୟେ ଲୁବ୍ଧ ମୋଦ ଭରି ॥
ଏମନ୍ତ ରୂପ ହର ଦେଖି । ପିଛାଡ଼ି ନ ପାରନ୍ତି ଆଖି ॥
ଲୀଳା କଟାକ୍ଷ ମୁଖ ଚାହିଁ । ହୃଦୟେ ଚିତ୍ତ ନ ରହଇ ॥
ସ୍ୱଗଣ ଗଉରୀ ସମେତେ । ସକଳେ ଚାହାନ୍ତି ଚକିତେ ॥
ଏମନ୍ତେ ମୋହିନୀର କରେ । ଥିଲା କନ୍ଦୁକ ଖସେ ଧୀରେ ॥
ତକ୍ଷଣେ ଭୂମିରେ ପଡ଼ିଲା । ପଡ଼ି ଅନେକ ଦୂର ଗଲା ॥
କନ୍ଦୁକ ଆଣିବା ଭିତରେ । ବୃକ୍ଷ ଉହାଡ଼େ ଅତି ଖରେ ॥

ଧାମନ୍ତେ ଅଦ୍ଭୁତ ଅବଳା । କୁଚ ଉପରୁ ବସ୍ତ୍ର ଗଲା ॥
ପବନେ ଉଡ଼େ ଜାନୁ ବସ୍ତ୍ର । ବେଗେ ତୋଳିଲା ବାମ ହସ୍ତ ॥
ଅଳକା ଅଙ୍ଗୁଳିର ଅଗ୍ରେ । କପୋଳୁଁ ଟୋଳେ ସୂକ୍ଷ୍ମ ବେଗ୍ରେ ॥
ଏମନ୍ତ ରୂପ ତାର ଦେଖି । ଈଶ୍ୱର ଗଉରୀ ଉପେକ୍ଷି ॥
ମନ ବୁଡ଼ିଲା ତାର ସଙ୍ଗେ । ମଦନ ବାଣ ପୀଡ଼େ ଅଙ୍ଗେ ॥
ଉମା ଦେଖନ୍ତେ ଲାଜ ଛାଡ଼ି । ଧାମନ୍ତେ କାମେ ମନ ବୁଡ଼ି ॥
ହରଙ୍କୁ ଦେଖି ବେଗେ ଧାଇଁ । ବୃକ୍ଷ ଗହଳେ ସେ ଲୁଚଇ ॥
ରୁଦ୍ର ଧାଇଁଲେ ଅତି ବେଗେ । ମିଳିଲେ ବୃକ୍ଷଙ୍କର ଲାଗେ ॥
ବୃକ୍ଷକୁ ବୃକ୍ଷ ଯାଇ ଗଳି । ହସ୍ତ ଦେଖାନ୍ତି ବସ୍ତ୍ର ଟୋଳି ॥
ଦେଖି ଧାମନ୍ତି ରୁଦ୍ର ବେଗେ । ବସ୍ତ୍ର ହିଁ ନାହିଁ କଟୀ ଭାଗେ ॥
ଜଟା କଳାପ ଅସମ୍ଭାଳ । କପଳୁ ଗଳେ ଶ୍ରମଝାଳ ॥
କରିଣୀ ଦେଖି ଯେହ୍ନେ ଗଜ । ଧାମଇ ଟୋଳି ଉଚ୍ଚେ ଭୁଜ ॥
ରୁଦ୍ର ଧଇଲେ ତାର ବାଳ । ଆବୋରି ବେନି ଭୁଜ ବଳ ॥
ପୁଣି ମୋହିନୀ ଗଲା ଗଳି । ଧାମଇ ଜାନୁ ବସ୍ତ୍ର ଟୋଳି ॥
କବେରୀ ଭାର ଫିଟି ତଳେ । ଖସି ପଡ଼ଇ ଫୁଲମାଳେ ॥
ପୁଣି ଧରନ୍ତି ହର କୋଳେ । ମୋହିନୀ ଗଳେ ଭୁଜ ତଳେ ॥
ମୁକୁଳ କେଶ ଅଧୋମୁଖେ । ଧାମନ୍ତି ମଦନ ସୁରେଖେ ॥
ପୃଥୁ ନିତମ୍ବ ଚଳେ ଧୀରେ । ପୁଣି ଧଇଲେ ରୁଦ୍ର କରେ ॥
ଏମନ୍ତେ ବିଷ୍ଣୁ ମାୟା ବଳେ । ଶଙ୍କର ମଦନ ଆକୁଳେ ॥
ବଉରା ବସେ ସେ ବିକଳେ । ପୁଣି ଧରନ୍ତି ରୁଦ୍ର କୋଳେ ॥
ପୁଣି ପଳାନ୍ତି ଭୁଜ ଟୋଳି । ରୁଦ୍ର ଶରୀରୁ ରେତ ଗଳି ॥
ବାସିତା ଅର୍ଥେ ହସ୍ତୀ ଯେହ୍ନେ । ଧାମଇ ଉଠଇ ଅଜ୍ଞାନେ ॥
ରେତ ପଡ଼ିଲା ଯହିଁ ତହିଁ । ମୋହିନୀ ବଶେ ମୋହ ପାଇ ॥
ସୁବର୍ଣ୍ଣ ହୋଇଲା ତକ୍ଷଣେ । ଲତା ଗହନ ଘୋର ବନେ ॥
ନଦୀ ପର୍ବତ ସରୋବରେ । ଧାମନ୍ତି ରେତ ବୃଷ୍ଟି ଧାରେ ॥
କୂପେ ପଡ଼ନ୍ତେ ରସ କୂପ । ତେଜ ସମୂହେ ସନ୍ଦୀପକ ॥
ଏମନ୍ତେ ବିଷ୍ଣୁ ମାୟାବଶେ । ଈଶ୍ୱର ଧାଇଁ ବନ ଦେଶେ ॥
ନିରାଶ ହୋଇ ନିବର୍ତ୍ତିଲେ । ଗଉରୀ ନିକଟେ ମିଳିଲେ ॥
ବିଷ୍ଣୁ ମାୟାରେ ମୋହି ମନ । ରୁଦ୍ର ହୋଇଲେ ଛନ୍ନ ଛନ୍ନ ॥
ଈଶ୍ୱର ଦୁଃଖ ବିଷ୍ଣୁ ଦେଖି । ମୋହିନୀ ଶରୀର ଉପେକ୍ଷି ॥
ନିଜ ମୂରତି ଧରି ହରି । ରୁଦ୍ର ସମୀପେ ବିଜେ କରି ॥

## ଶ୍ରୀ ଭଗବାନ ଉବାଚ

ହେ ଦେବ ଦେବ ବିଶ୍ୱନାଥ । ମୋହର ମାୟାରେ ମୋହିତ ॥
ଅଶେଷ ଜନ ମାୟା ବଳେ । ଭ୍ରମନ୍ତି ଅବନୀ ମଣ୍ଡଳେ ॥
ନାନା ପ୍ରକାରେ ତନୁ ଧରି । କେବା ପାରିବ ତହୁଁ ତରି ॥
ଭୋ ରୁଦ୍ର ମହିମା ତୋହର । ଅଜ୍ଞାନୀ ଜନେ ଅଗୋଚର ॥
ତୁ ନାଥ ନିଜ ମାୟା ବଳେ । ତ୍ରିଗୁଣ ଗ୍ରାସୁ ଅନ୍ତଃ କାଳେ ॥
ଯେ ବିଷ୍ଣୁ ମାୟା ଗୁଣମୟୀ । ସେ ତୋତେ ପାରିବଟି କାହିଁ ॥

## ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଏକ ଚିତ୍ତେ । ହରଙ୍କୁ ପ୍ରବୋଧି ଏମନ୍ତେ ॥
ସାଷ୍ଟାଙ୍ଗେ ପ୍ରଦକ୍ଷିଣ କରି । ନିଜ ଭୁବନେ ଗଲେ ହରି ॥
ରୁଦ୍ର ଭାବନୀ ଗଣ ତୁଲେ । ନିଜ ଭୁବନେ ବିଜେ କଲେ ॥
ଋଷିଙ୍କ ମଧ୍ୟେ ହର ବସି । ବିଷ୍ଣୁର ମାୟା ପରଶଂସି ॥
ଶୁଣ ଅଶେଷ ଋଷି ବଳେ । ବିଷ୍ଣୁର ମାୟା ଏ ଶୟଳେ ॥
ଅଶେଷ ଜନ ମନ ହରେ । କେବା ଏ ସଂସାରୁ ନିସ୍ତରେ ॥
ସେ ମାୟାଧଙ୍କର ଈଶ । ତା ମାୟା ଦେଖି କଲି ତ୍ରାସ ॥
ଯା ମାୟା ବଶେ ମୋହ ଶିବ । ଅନ୍ୟ କେ ସେ ମାୟା ତରିବ ॥
ବିଷ୍ଣୁର ମାୟା ଅଗୋଚର । ଯହିଁ ଭ୍ରମନ୍ତି ବ୍ରହ୍ମା ହର ॥
ଏମନ୍ତେ ହରର ମହିମା । କେ କହି ପାରେ ଗୁଣ ସୀମା ॥
ଯେ ହରି ଜଗତ ଉର୍ଦ୍ଧ୍ୱରେ । କପଟେ କୂର୍ମ ରୂପ ଧରେ ॥
ତାର ଚରିତ୍ର ଶୁଣି କର୍ଣ୍ଣେ । ମୁଖେ ଗୁଣନ୍ତି ଯେବା ଜନେ ॥
ଯେ ଅବା ପ୍ରସ୍ତାବେ କହନ୍ତି । ଘୋର ସଂସାରୁ ସେ ତରନ୍ତି ॥
ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ଅଷ୍ଟମ ସ୍କନ୍ଧେ ବିଷ୍ଣୁ ବାଣୀ । ସୁମରି ତର ତରଙ୍ଗିଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାମଷ୍ଟମ ସ୍କନ୍ଧେ ଶଙ୍କର ମୋହନଂ ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁଣ ହୋ ଅଭିମନ୍ୟୁ ସୁତ । କହବା ମନୁବଂଶ ଜାତ ॥
ସୂର୍ଯ୍ୟ ତନୟ ଅନୁପମ । ତାହାର ଶ୍ରାଦ୍ଧଦେବ ନାମ ॥
ସପ୍ତମେ ବର୍ତ୍ତମାନ ଜାତ । ଶୁଦ୍ଧ ସୁଗୁଣେ ସୁବିଖ୍ୟାତ ॥
ତାର ସନ୍ତତି ହେଲେ ଯେତେ । କହିବା ଶୁଣ ଏକଚିତ୍ତେ ॥
ଇକ୍ଷ୍ୱାକୁ ନଭଗ ଶର୍ଯ୍ୟାତି । ଧୃଷ୍ଟ ନରିଷ୍ୟନ୍ତ ସନ୍ତତି ॥
ସପ୍ତମେ ଦିଷ୍ଟ ନାମ ବହି । ଚରୁଷ ପୃଷଧ୍ର ଏ ଦୁଇ ॥
ଦଶମ ପୁତ୍ର ବସୁମାନ । ଏ ବୈବସ୍ୱତ ଦଶ ନାମ ॥
ସେ ମନୁକାଳେ ଦେବଗଣ । କହିବା ଦେବଙ୍କ ପ୍ରମାଣ ॥

ଆଦିତ୍ୟ ବସୁ ରୁଦ୍ର ବିଶ୍ୱ । ଅଶ୍ୱିନୀ ଋଭୁ ଅବଶେଷ ॥
ତାହାଙ୍କ ମଧେ ବେଦବର । ଇନ୍ଦ୍ରର ନାମ ପୁରନ୍ଦର ॥
ସେ ଇନ୍ଦ୍ର କାଳେ ସପ୍ତଋଷି । ଭ୍ରମନ୍ତି ଧ୍ରୁବ ଚକ୍ରେ ବସି ॥
କଶ୍ୟପ ଅତ୍ରି ଆଦି ଶ୍ରେଷ୍ଠ । ତୃତୀୟ ତନୟ ବଶିଷ୍ଠ ॥
ସେ ବିଶ୍ୱାମିତ୍ର ଗଉତମ । ଜମଦଗ୍ନି ଯେ ଭରଦ୍ୱାଜ ॥
ଏ ଆଦି ନାମ ସପ୍ତମୁନି । କାଳେ ଭ୍ରମନ୍ତି କର୍ମ ଘେନି ॥
ବଇବସ୍ୱତ ମନୁ କଳ୍ପେ । ଗୋବିନ୍ଦ ବାମନ ସ୍ୱରୂପେ ॥
ଜନ୍ମିଲେ ଅଦିତି ଉଦରେ । କାରଣେ କଶ୍ୟପର ଘରେ ॥
ଏ ସପ୍ତ ମନ୍ୱନ୍ତରେ ଯେତେ । ଭାବେ କହିଲି ତୋ ଅଗ୍ରତେ ॥
ଏବେ ଭବିଷ୍ୟ ମନୁ ସପ୍ତ । ଶୁଣ ସୁମନେ ପରୀକ୍ଷିତ ॥
ବିଶ୍ୱକର୍ମାର କନ୍ୟା ବେନି । ସୂର୍ଯ୍ୟ ବରିଲା ଭାବ ଘେନି ॥
ରୂପେ ଦିଶନ୍ତି ଅନୁପମ । ତାହାଙ୍କ ସଂଜ୍ଞା ଛାୟା ନାମ ॥
ସୂର୍ଯ୍ୟର ତେଜ ଅସହନେ । ସଂଜ୍ଞା ଅଶ୍ୱିନୀ ରୂପେ ବନେ ॥
ପ୍ରଥମେ ସୂର୍ଯ୍ୟ ତୁଲେ ରମି । ସଂଜ୍ଞା ପ୍ରସବେ ପୁତ୍ର ତିନି ॥
ଯମ ଯମୁନା ଭାଇ ଭଗ୍ନୀ । ଜନ୍ମିଲେ ଶ୍ରାଦ୍ଧଦେବ ତିନି ॥
କେ କହିପାରେ ତାଙ୍କ ଭାବେ । ଛାୟା ଅପତ୍ୟ ଶୁଣ ଏବେ ॥
ସାବର୍ଣ୍ଣି ନାମେ ଏକ ସୁତ । କନ୍ୟା ତପତୀ ରୂପେ ଜାତ ॥
ତୃତୀୟ ପୁତ୍ର ଶନିଶ୍ଚର । ଏବେ ହୋ ଶୁଣ ନୃପବର ॥
ସାବର୍ଣ୍ଣି ଅଷ୍ଟ ମନ୍ୱନ୍ତରେ । ଭଜିଲା ସଂହାର ବେଭାରେ ॥
ନିର୍ମୋକ ବିରଜସ୍କ ଆଦି । ସାବର୍ଣ୍ଣି ତନୟ ସମ୍ପାଦି ॥
ବିରଜା ବଂଶ ଦେବଗଣେ । ଜନ୍ମିବେ ସଂସାର କାରଣେ ॥
ତାହାଙ୍କ ପାଳନ ପ୍ରବନ୍ଧେ । ବଳି ବସିବ ଇନ୍ଦ୍ରପଦେ ॥
ତାହାଙ୍କୁ ଛଳିବ ବାମନ । ଯଜ୍ଞେ ପୃଥିବୀ ଦେବ ଦାନ ॥
ତିନି ଚରଣ ଦାନ ଦେଇ । ବାମନ ପାଦ ମୁଣ୍ଡେ ବହି ॥
କେତେହେଁ କାଳେ ଦାନ ଫଳେ । ସେ ଭୋଗ ଭୁଞ୍ଜିବ ପାତାଳେ
ସ୍ୱର୍ଗେ ବସିବ ଇନ୍ଦ୍ର ପଣେ । ଅନ୍ତେ ପଶିବ ନାରାୟଣେ ॥
ସେ କଳିକାଳେ ସପ୍ତମୁନି । ଉଦୟ ନିଜ ତେଜ ଘେନି ॥
ଯେ ରୂପେ ସଂସାର ଧାରଣ । ତାହାଙ୍କ ନାମ ଏବେ ଶୁଣ ॥
ଗାଲବ ଦୀପ୍ତିମାନ ରାମ । କୃପ ଯେ ଦ୍ରୋଣର ନନ୍ଦନ ॥
ଅପରେ ଋଷ୍ୟଶୃଙ୍ଗ ବ୍ୟାସ । କହିଲି ଋଷିଙ୍କ ଉଦେଶ୍ୟ ॥
ଏ ଆଦି ସପ୍ତଋଷି ଗଣେ । ବ୍ରହ୍ମାର ଆଜ୍ଞା ପରମାଣେ ॥
ହୋଇବେ ଭବିଷ୍ୟତ କାଳେ । ଅଛନ୍ତି ଆଶ୍ରମ ମଣ୍ଡଳେ ॥
ସେ କାଳେ ବିଷ୍ଣୁ ନିଜ ଭାବେ । ବଳିକି ଇନ୍ଦ୍ର ପଦ ଦେବେ ॥
ଏବେ ହୋ ବରୁଣ ନନ୍ଦନ । ଦକ୍ଷ ସାବର୍ଣ୍ଣି ଯେ ନବମ ॥

ପୁତ୍ର ଜନ୍ମିଲେ ତାର ରେତୁ । ଯେ ଭୂତକେତୁ ଦୀପ୍ତକେତୁ ॥
ପାରା ମରୀଚି ଗର୍ଭ ଆଦି । ଏ ନାମେ ଦେବ ଗଣ ସିଦ୍ଧି ॥
ଇନ୍ଦ୍ର ହେବ ଅଦ୍ଭୁତ ନାମେ । ଭୋଗ କରିବ ସ୍ୱର୍ଗ ଗ୍ରାମେ ॥
ଋଷିଏ ଦ୍ୟୁତିମାନ ଆଦି । ହୋଇବେ ସେ ମନୁ ସଂପାଦି ॥
ଦଶମେ ଉପଶ୍ଳୋକ ସୁତ । ବ୍ରହ୍ମସାବର୍ଣ୍ଣି ସେ ବିଖ୍ୟାତ ॥
ତାର କୁମର ବ୍ରହ୍ମବାଦୀ । ଜନ୍ମିଲେ ଭୂରିଷେଣ ଆଦି ॥
ଦେବେ ଯେ ସୁବାସନ ଗଣ । ଇନ୍ଦ୍ରର ନାମ ଶମ୍ଭୁରାଣ ॥
ବିଶ୍ୱକେଶନ ଶମ୍ଭୁ ସଙ୍ଗେ । ଇନ୍ଦ୍ରର ମିତ୍ର ସତ୍ୟଯୁଗେ ॥
ତାହାର ଘରେ ଅସଂମୃତେ । ବିଷ୍ଣୁ ହୋଇବେ ଗର୍ଭଗତେ ॥
ଧର୍ମ-ସାବର୍ଣ୍ଣି ରୂପ ବହି । ପାଳିବେ ଏକାଦଶ ମହୀ ॥
ତାର ହୋଇବେ ପୁତ୍ର ଦଶ । ପାଳିବେ ମହୀ ସ୍ୱର୍ଗ ଦେଶ ॥
ଇନ୍ଦ୍ର ହୋଇବ ବଇଧୃତି । ଋଷିଏ ବ୍ରହ୍ମାର ସନ୍ତତି ॥
ସେ ବଇଧୃତି ଇନ୍ଦ୍ରବଳେ । ତୈଲୋକ୍ୟ ପାଳିବ ନିଶ୍ଚଳେ ॥
ରୁଦ୍ର ସାବର୍ଣ୍ଣି ଯେ ଦ୍ୱାଦଶେ । ଜନ୍ମିବ ନାରାୟଣ ଅଂଶେ ॥
ଦେବ ସାବର୍ଣ୍ଣି ତା କୁମର । ସ୍ୱର୍ଗେ ବସିବ ମହାବୀର ॥
ଚିତ୍ର ବିଚିତ୍ର ସେନ ମୁଖେ । ସୁକର୍ମା ଆଜି ପୁତ୍ର ରେଖେ ॥
ଇନ୍ଦ୍ର ଯେ ଦିବସ୍ପତି ନାମେ । ନିଶ୍ଚିନ୍ତେ ବସେ ସ୍ୱର୍ଗଗ୍ରାମେ ॥
ନିର୍ମୋକ ତତ୍ତ୍ୱ ଦରଶନ । ହୋଇବେ ସପ୍ତ ଋଷିଗଣ ॥
ସେ ଇନ୍ଦ୍ର କାଳେ ଜଗନ୍ନାଥ । ହୋଇବେ ଦେବହୋତ୍ର ସୁତ ॥
ଇନ୍ଦ୍ର ସାବର୍ଣ୍ଣି ଚତୁର୍ଦ୍ଦଶେ । ହୋଇବେ ନାରାୟଣ ଅଂଶେ ॥
ଉରୁ ଗମ୍ଭୀର ବୁଦ୍ଧି ତୁଲେ । ବାଳକ ଉପୁଜିବ ଭଲେ ॥
ଚାକ୍ଷୁସ ନାମେ ଦେବଗଣେ । ହୋଇବେ ସଂସାର ଧାରଣେ ॥
ହୋଇବ ଶୁଚି ନାମେ ଇନ୍ଦ୍ର । ସୁଖେ ପାଳିବ ଦେବ ବୃନ୍ଦ ॥
ଅଗ୍ନିବାହୁ ଯେ ଶୁଚି ଶୁଦ୍ଧି । ମାଗଧ ଆଦି ଋଷି ସିଦ୍ଧି ॥
ଏ ସର୍ବେ ନିତ୍ୟେ ତପସ୍ୱିନ । ହୋଇବେ ମନୁର ନନ୍ଦନ ॥
ବୃହଦଭାନୁ ଅବତାରେ । ବିଷ୍ଣୁ ଯେ ସତ୍ରାୟଣ ଘରେ ॥
ଜନ୍ମି ତାରିବେ ଏ ସଂସାରେ । ଏବେ ହୋ ଶୁଣ ନୃପବରେ ॥
ଚତୁରଦଶ ମନୁ ଯୁଗେ । ଭାବେ କହିଲି ତୋର ଆଗେ ॥
କଳ୍ପାନ୍ତେ ମନୁ ଚତୁର୍ଦ୍ଦଶ । ଏମନ୍ତେ ବ୍ରହ୍ମାର ଦିବସ ॥
ସହସ୍ର ଯୁଗ ବେଦମତେ । କଳ୍ପ ବୋଲାଇ ଏ ଜଗତେ ।
ଏମନ୍ତେ ବେନି କଳ୍ପ ଗଲେ । ବ୍ରହ୍ମାର ଅହୋରାତ୍ର ଭଲେ ॥

## ରାଜା ଉବାଚ

ଏ ଭାବେ ବ୍ରହ୍ମାର ଦିବସ । ମନୁ ଭାଷନ୍ତି ଚତୁର୍ଦ୍ଦଶ ॥
ଯେ ମନୁକାଳେ ଯେବା କର୍ମ । ଯୁଗ ସ୍ୱଭାବେ ଯଥା ଧର୍ମ ॥

ବିଷ୍ଣୁର ଆଜ୍ଞା ପରମାଣେ । ଯେବା ସାଧିଲେ ଜଣେ ଜଣେ ॥
ସେ କଥା କହ ମୁନି ମୋତେ । କେ ଅବା କର୍ମ କଲେ କେତେ॥

### ଋଷିଗୁଣ ଉବାଚ

ଯେ ମନୁ ମନୁର ତନୁଜେ । ଯେ ସପ୍ତଋଷି ସୃଷ୍ଟିମାଝେ ॥
ଯଜ୍ଞାଦିକ୍ରିୟା ତା ଶରୀର । ଯେ ହରି ଧର୍ମ ନିରାକାର ॥
କଳ୍ପ ଅନ୍ତରେ କାଳ ବଳେ । ତ୍ରୈଲୋକ୍ୟ ମର୍ଜନ୍ତି ସଲିଳେ ॥
କାଳ ଗରାସେ ଶ୍ରୁତି ପଥ । ତ୍ରୈଲୋକ୍ୟ ଦିଶଇ ଅନାଥ ॥
ଋଷି ସକଳେ ତପ ବଳେ । ଧର୍ମକୁ ଚିନ୍ତନ୍ତି ଶୟଳେ ॥
ଧର୍ମ ପାଳନ୍ତି ମନୁ ଗଣେ । ସ୍ମୃତି ସଂଯୋଗ ବିଚାରଣେ ॥
ଇନ୍ଦ୍ର ପାଳଇ ତ୍ରିଭୁବନ । ଆଦରି ବିଷ୍ଣୁର ବଚନ ॥
ସେ ହରି ଧରି ସିଦ୍ଧ ରୂପ । ଯେ ଯୋଗ ଧର୍ମ ଆଦି କଳ୍ପ ॥
ଆତ୍ମାର ମାୟା ଯୋଗବଳେ । ନାନା ଶରୀର ଏ ଶୟଳେ ॥
ବିହାର କଲେ ପଦ୍ମନାଭ । ତ୍ୟାଜିଲା ଭବ ଜଳେ ନାବ ॥
ଦୃଶ୍ୟେ ଅଦୃଶ୍ୟେ ସେ ନ ମିଶେ । କେବଳ ଜୀବ ଜଳେ ଦିଶେ ॥
କହିଲି କଳ୍ପେ ସଂଖ୍ୟା ତୋତେ । ଯେ କଳ୍ପେ ଭୁଞ୍ଜନ୍ତି ଯେ ଯେତେ
ଚିତ୍ତେ ନ ରହେ ଭବଭ୍ରାନ୍ତି । ଘୋର ସଂସାରୁ ତରି ଯାନ୍ତି ॥
ଯେ ଏହା ଶୁଣେ କର୍ଣ୍ଣ ପଥେ । ନିଷ୍କଳେ ମନେ ଶୁଦ୍ଧ ଚିତ୍ତେ ॥
ବୋଲଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା ଅଷ୍ଟମସ୍କନ୍ଧେ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

### ଶ୍ରୀ ରାଜା ଉବାଚ

ଶୁକ ଚରଣ କରେ ଧରି । ବୋଲେ ପରୀକ୍ଷ ଦଣ୍ଡ ଧାରୀ ॥
ଭୋ ମୁନି ତୁମ୍ଭ ମୁଖୁ ଶୁଣି । ଦୁର୍ଗମ ଅସମ୍ଭବ ବାଣୀ ॥
ସଂଶୟ କଲି ମୁହିଁ ଚିତ୍ତେ । ସେ କଥା କହ ମୁନି ମୋତେ ॥
ବଳିର ଯଜ୍ଞ ଭଗ୍ନ ଅର୍ଥେ । ବାମନ ଜନ୍ମିଲେ କେମନ୍ତେ ॥
ଧରଣୀ ତିନି ପାଦ ଦାନେ । ବଳିକି ଛଳିଲେ ବନ୍ଧନେ ॥
ସେ ବଳି ସ୍ୱଭାବେ ଈଶ୍ୱର । ଅଶେଷ ଦ୍ରବ୍ୟେ ଅଧିକାର ॥
କୃପଣ ପ୍ରାୟେ ତାକୁ ଧରି । କିମ୍ପା ବାନ୍ଧିଲେ ନରହରି ॥

### ଶ୍ରୀ ଶୁକ ଉବାଚ

ଏମନ୍ତେ ରାଜା ବାକ୍ୟ ଶୁଣି । ଶୁକ କହନ୍ତି ମଞ୍ଜୁ ବାଣୀ ॥
ଶୁଣ ହୋ ଅଭିମନ୍ୟୁ ସୁତ । ଅଦ୍ଭୁତ ବିଷ୍ଣୁର ଚରିତ ॥
ଯେମନ୍ତେ ଖର୍ବ ରୂପେ ଛଳେ । ବଳିକି ଚାପିଲେ ପାତାଳେ ॥
ପୂର୍ବେ ଯେ ଦେବାସୁର ରଣ । ଯୁଦ୍ଧେ ଜିଣିଲେ ଦେବଗଣ ॥
ବଳି ସହିତେ ମରିଗଲେ । ଶେଷ ଦାନବ ଯେତେ ଥିଲେ ॥
ବଳିର ମୃତ୍ୟୁ ପିଣ୍ଡ ନେଇ । ପଶ୍ଚିମ ଗିରି ପୃଷ୍ଠେ ଥୋଇ ॥
ଶୁକ୍ରଙ୍କୁ ଆଣି ଗଉରବେ । ବିଶ୍ୱାସୀ କହିଲେ ଦାନବେ ॥
ଅସୁରଙ୍କର ଭାବ ଘେନି । ଶୁକ୍ର ଯେ ମୃତ୍ୟୁ ସଞ୍ଜୀବନୀ ॥
ମନ୍ତ୍ରେ ଜୀଆଇଲେ ତକ୍ଷଣେ । ଯେ ଅବା ମରିଥିଲେ ରଣେ ॥
ସମସ୍ତେ ଉଠି ତତକ୍ଷଣେ । ନମିଲେ ଶୁକ୍ରର ଚରଣେ ॥
ବୋଇଲେ ଶୁକ୍ର ମୁଖ ଚାହିଁ । ଅନାଥ ହୋଇଲୁ ଗୋସାଇଁ ॥
ଦେବେ ଯେ ଅମୃତ ଭକ୍ଷଣେ । ଅମର ହୋଇ ଘୋର ରଣେ ॥
ଆମ୍ଭଙ୍କୁ ମାରିଗଲେ ସର୍ବେ । ତୁମ୍ଭେ ଜୀବନ ଦେଲ ଏବେ ॥
ତୁମ୍ଭେ ଆମ୍ଭର ସାହା ହୁଅ । ଏବେ ହେ କି କରିବୁ କହ ॥
ଏମନ୍ତେ ଅସୁରଙ୍କ ବାକ୍ୟେ । ଶୁକ୍ର ଚିନ୍ତିଲେ ବସି ଏକେ ॥
ବିଚାର କରି ଶୁଦ୍ଧ ଚିତ୍ତେ । କହନ୍ତି ବଳିର ଅଗ୍ରତେ ॥
ତୁ ଯଜ୍ଞ ସର୍ଜ୍ଜ ବେଗେ କର । ଯେମନ୍ତେ ଜିଣିବୁ ଅମର ॥
ଏମନ୍ତ ଗୁରୁବାକ୍ୟ ଶୁଣି । ବଳି ଯଜ୍ଞର ବିଧି ଆଣି ॥
ଋତ୍ୱିକ ଆଣି ଜଣେ ଜଣେ । ବରିଲା ଯଜ୍ଞର କାରଣେ ॥
ତ୍ରିଦେବ ଜୟ ନାମ କ୍ରତୁ । କଲା ଅମର ଜୟ ହେତୁ ॥
ବ୍ରାହ୍ମଣ ମିଳି ବେଦ ବାକ୍ୟେ । ମାର୍ଜ୍ଜନ କଲେ ଏକେ ଏକେ ॥
ତ୍ରୈଲୋକ୍ୟ ମଧ୍ୟେ ରାଜା ଏକ । ଏ ଭାବେ କଲେ ଅଭିଷେକ ॥
ସୁବର୍ଣ୍ଣ ରଥେ ମତ୍ତ ତେଜେ । ବାକ୍ୟେ ଗମନ ଶୂନ୍ୟ ମାଝେ ॥
ହରିତ ବର୍ଣ୍ଣ ଅଶ୍ୱଗତି । ଯେସନେ ରବି ରଥ ଜ୍ୟୋତି ॥
ବିମାନ ମାର୍ଗେ ଧ୍ୱଜ ସାଜେ । ସୁବର୍ଣ୍ଣ ସିଂହାସନ ମାଝେ ॥
ସ୍ୱର୍ଣ୍ଣ ନିର୍ମିତ ଧନୁ ତ୍ରୋଣ । ଅଭେଦ କବଚ ଭୂଷଣ ॥
ଅମ୍ଳାନ ପୁଷ୍ପ ମାଳା ଆଣି । ଗଳେ ନିବେଶି କୁଶପାଣି ॥
ଭୃଗୁ ଯେ ଶଙ୍ଖ ଦେଲେ କରେ । ଯେ ନାଦେ ତ୍ରିଭୁବନ ପୂରେ ॥
ବିପ୍ର ଅର୍ଚ୍ଚିତ ମନ୍ତ୍ର ବଳେ । ସ୍ୱସ୍ତ୍ୟାନେ କରି ସୁମଙ୍ଗଳେ ॥
ବିପ୍ରଙ୍କୁ ପ୍ରଦକ୍ଷଣ କରି । ରୋମାଞ୍ଚ ଗାତ୍ରେ ମୋଦ ଭରି ॥
ପ୍ରହ୍ଲାଦ ପାଦେ ପ୍ରଣମିତ । ବଳି ଆରୋହି ଦିବ୍ୟ ରଥ ॥
ବ୍ରହ୍ମ ଭୂଷିତ କଳେବରେ । ଧନୁ ଖଡ଼୍ଗ ଧରି କରେ ॥
ରତ୍ନ କଂକଣ ବାହୁ ମୂଳେ । ବିରାଜେ ମୁକୁଟ କୁଣ୍ଡଳେ ॥
ବିରାଜେ ରଥ ମଧ୍ୟେ ବସି । ଆନଳ ପ୍ରାୟ ତେଜ ରାଶି ॥
ତୁଲ୍ୟ ଐଶ୍ୱର୍ଯ୍ୟ ବଳ ତେଜେ । ଅସୁର ବଳ ମଧ୍ୟେ ରାଜେ ॥
ଏମନ୍ତ ତୁଲ୍ୟ ବଳ ଘେନି । ଚଳନ୍ତେ କମ୍ପଇ ମେଦିନୀ ॥

ସକଳେ ହୋଇ ଏକ ମନ । ଦିଶେ କି ପିଇବେ ଗଗନ ॥
ଅସୁର ସେନା ରଥେ ବସି । ଧାଇଁଲେ ଗଗନ ଗରାସି ॥
ଚଳନ୍ତେ କମ୍ପେ ଦଶ ଦିଶ । କେ ସହେ ଅସୁରଙ୍କ ତ୍ରାସ ॥
ମିଳିଲେ ଇନ୍ଦ୍ରର ଭୁବନେ । ସକଳ ବିଧିର ବିଧାନେ ।
ନନ୍ଦନ ଆଦି ବନ ପନ୍ତି । କଳ୍ପ ପାଦପ ବିରାଜନ୍ତି ॥
ବିହଙ୍ଗ ମିଥୁନେ ନାଦନ୍ତି । ମତ୍ତ କୋକିଳ ସ୍ୱନଦ୍ୟନ୍ତି ॥
ହଂସ ସାରସ ଚକ୍ରବାକ । କାରଣ୍ଡ ଉନ୍ମତ୍ତ ଡାହୁକ ॥
ପ୍ରବାଳ ପୁଷ୍ପ ଫଳ ଭରେ । ବହନ୍ତି ସୁଗନ୍ଧ ସମୀରେ ॥
ନଳିନୀ ବନ ମନୋହର । ସୁର କାମିନୀ କ୍ରୀଡ଼ା ଘର ॥
ସୁସଜ୍ଜ ପରିଖା ଭୂଷଣ । ଆକାଶ ଗଂଗାର ପୟାଣ ॥
ଉପରେ ଦିଶେ ଅଗ୍ନି ବର୍ଣ୍ଣ । ଅଟାଳୀ ସୁରେଖ ଗଗନ ॥
ଦ୍ୱାର କବାଟ ହେମ ମୟେ । ଦେଖନ୍ତେ ପ୍ରାଣୀ ମନମୋହେ ॥
ସ୍ଫଟିକ ମୟ ପୁର-ଦ୍ୱାର । ଯେହ୍ନେ ବିରାଜେ ନିଶାକର ॥
କେ କହୁ ରୂପ ରାଶି ସୀମା । ଯାହା ଗଢ଼ିଲା ବିଶ୍ୱକର୍ମା ॥
ସଭା ଚତ୍ୱର ପଥ ଶୋହେ । ତପସ୍ୱୀ ଜନ ମନ ମୋହେ ॥
ଅପୂର୍ବ ବିମାନ ସଂକୁଳ । ମଣି ନିର୍ମିତ ସୁମଂଗଳ ॥
ପ୍ରବାଳ ବେଦିକା ବିରାଜେ । ମଣି ନିର୍ମିତ ମହାତେଜେ ॥
ଦିବ୍ୟ କାମିନୀ ଗଣ ଯହିଁ । ନବୀନ ବୟ ରୂପ ଦେହୀ ॥
ଶ୍ୟାମ ବିରଜ ବସ୍ତ୍ର ଯୁତ । ଯହିଁ ଚଳନ୍ତି ଯୂଥ ଯୂଥ ॥
ଶୋଭା କରନ୍ତି ନାନା ଜନ୍ନେ । ଘୃତେ ପ୍ରଦୀପ ଅଗ୍ନି ଯେହ୍ନେ ॥
କବରୀ ଭୃଙ୍ଗ ବନ୍ଧେ ମାଳା । ଅମର ପ୍ରସୂନ ମେଖଳା ॥
ନାନା ସୁଗନ୍ଧେ ଲେପ ଦେହେ । ପ୍ରମୋଦି ମୋଦ ବାୟୁ ବହେ ॥
ସୁବର୍ଣ୍ଣ କାନ୍ଥେ ଜଳା ରନ୍ଧ୍ରେ । ମହେ ଅପୂର୍ବ ଧୂପ ଗନ୍ଧେ ॥
ମାର୍ଗେ ଚଳନ୍ତି ଧୂପ ଧୂଆଁ । ମଧ୍ୟେ ଚଳନ୍ତି ସ୍ୱର୍ଗବାମା ॥
ପାଣ୍ଡୁର ଦିଶେ ପନ୍ତି ପନ୍ତି । ଧୂପ ମଣ୍ଡଳେ ସଞ୍ଚରନ୍ତି ॥
ମଣି ମଣ୍ଡିତ ହେମ କାନ୍ଥେ । ଛାୟା ଦିଶନ୍ତି ମାର୍ଗେ ଯାନ୍ତେ ॥
ଜଗତୀ ଅଟାଳୀ ସୁସଜ୍ଜେ । ପତାକା ଶୋହେ ଅତି ଉଚ୍ଚେ ॥
ମୟୂର ପାରାବତ ନାଦେ । ସଂଗୀତ ମଂଗଳ ସୁବାଦ୍ୟେ ॥
ମୃଦଙ୍ଗ ଶଙ୍ଖ ଭେରୀ ନାଦ । ତାଳ ମୁରଲୀ ବୀଣା ବାଦ୍ୟ ॥
ନାନା ବାଦ୍ୟ ତାଣ୍ଡବ ଶୋହେ । ଶ୍ରୁତି ପ୍ରବନ୍ଧେ ମନ ମୋହେ ॥
ଯେ ପୁର ଭୋଗେ ତପ ଦାହି । ପାପିଷ୍ଟେ ନ ପାରନ୍ତି ଯାଇ ॥
ଭୂତ ସନ୍ତାପି ଖଳ ଜନେ । ସୁଜନେ ପୀଡ଼ନ୍ତି ଅଜ୍ଞାନେ ॥
ଶଠ ହୃଦୟ କାମୀ ଲୋଭୀ । ଯେ ଚିତ୍ତେ ପର ହିଂସା ଭାବି ॥
ସେ କାହିଁ ଯିବେ ସେ ଭୁବନେ । ଯାହା ଚିନ୍ତନ୍ତି ଯୋଗୀ ଜନେ ॥
ଏମନ୍ତ ପୁରେ ରାତ୍ର କାଳେ । ବଳି ମିଳିଲା ଅତି ବଳେ ॥
ବେଗେ ରୁନ୍ଧିଲା ଅଷ୍ଟଦିଗ । କେ ସହେ ଅସୁରଙ୍କ ବେଗ ॥
ଭୂମି ଗଗନ ଅନ୍ତରାଳେ । ବାକ୍ୟ ନ ଶୁଭଇ ଚହଳେ ॥
ଶୁକ୍ରର ଶଙ୍ଖ ହସ୍ତେ ଘେନି । ବଳି କରଇ ଘୋର ଧ୍ୱନି ॥
ଶବଦେ ଭୁବନ କମ୍ପିଲା । ଯେ ରାବେ ଇନ୍ଦ୍ର ତ୍ରାସ କଲା ॥
ବଳି ଉଦ୍ୟମ ଇନ୍ଦ୍ର ଶୁଣି । ସଭୟେ ମନେ ମନେ ଗୁଣି ॥
ବିଚାର କଲା ଗୁରୁମେଳେ । କେମନ୍ତେ ରହିବି ନିଶ୍ଚଳେ ॥
ଅସୁରେ ଅମୃତ ନ ପାଇ । ଅତି କର୍କଶେ ରୋଷ ବହି ॥
ଶୁକ୍ରର ମୃତ୍ୟୁ ସଞ୍ଜୀବନେ । ପ୍ରାଣ ପାଇଲେ ଯାତୁ ଧାନେ ॥
କିବା ଉଦ୍ୟମ ପରିମାଣି । ଅଇଲେ ଆମ୍ଭେ ତ ନ ଜାଣି ॥
ଭୋ ଗୁରୁ ନମୁଁ ତୋର ପାୟେ । ସ୍ୱର୍ଗେ କେମନ୍ତେ ଥିବୁ ଭୟେ ॥
କହ କି କରିବି ଉପାୟେ । ଯାବତ ରଜନୀ ନ ପାହେ ॥
ଦେଖ ଏହାର ତେଜ ରାଶି । ମିଳିଲା ଗଗନ ଗରାସି ॥
ମୁଖେ କି ଆକାଶ ପିଇବ । ଦିଶ କି ଜିହ୍ୱାରେ ଲିହିବ ॥
ଇନ୍ଦ୍ରର ବାକ୍ୟେ ବୃହସ୍ପତି । ଇନ୍ଦ୍ରର କୁଶଳ ଚିତ୍ତେ ଚିନ୍ତି ॥
ବୋଲନ୍ତି ଶୁଣ ସୁରପତି । ତୁ ବେଗେ ଛାଡ଼ ନିଜ ସ୍ଥିତି ॥
ଶୁକ୍ର ଯେ ଅସୁରଙ୍କୁ ତାରି । ଚିତ୍ତେ ପ୍ରତିଜ୍ଞା ଅଛି କରି ॥
ସଂକଳ୍ପ କରି ପୁରୋହିତେ । ଯଜ୍ଞ କଳ୍ପିଲା ଇନ୍ଦ୍ରଜିତେ ॥
ତାହାର ମନ୍ତ୍ର ବଳ ତେଜେ । ତୁ କାହିଁ ଥିବୁ ସ୍ୱର୍ଗରାଜ୍ୟେ ॥
ଜୀବନେ ଅଛି ଯେବେ କାର୍ଯ୍ୟ । ବେଗେ ଅମରାବତୀ ତେଜ ॥
ମୁଁ ଏହା ଜାଣି ଯୋଗଧ୍ୟାନେ । ବଳି ଯେ ଶୁକ୍ରର ବଚନେ ॥
ଘୋର ସମରେ ତୋତେ ଜିଣି । ତିନି ଭୁବନେ ବୀରମଣି ॥
ରାଜା ହୋଇବ ଯଜ୍ଞବଳେ । ତୁ ଏବେ ରହ ଯା ନିଶ୍ଚଳେ ॥
ହରିଙ୍କି ପଶ ଯା ଶରଣ । ତୋତେ ରଖିବେ ନାରାୟଣ ॥
କାଳର ବଶେ ବଞ୍ଚ ଏବେ । ଚିନ୍ତେ ସେ ହରିପାଦ ଯୁଗେ ॥
ଯାବତ ବଳି ତେଜ ନାଶେ । ତାବତ ରହ ବନ ଦେଶେ ॥
ନିଗମ କାମ ରୂପେ ଚର । ଯହିଁ ପର୍ବତ ବନଘୋର ॥
ଏମନ୍ତେ ଗୁରୁ ବାକ୍ୟେ ଶୁଣି । ଅମୃତ ବାକ୍ୟ ଚିତ୍ତେ ଗୁଣି ॥
ମିଳି ସକଳ ଦେବ ଗଣେ । ଭୟେ ପଶିଲେ ଘୋର ବନେ ॥
ଏମନ୍ତେ ରଜନୀ ପ୍ରଭାତେ । ବଳି ସେ ଅସୁର ସମେତେ ॥
ବସିଲା ଇନ୍ଦ୍ରର ଆସନେ । ଭୃଗୁ ବଚନେ ସୁଖମନେ ॥
ଇନ୍ଦ୍ର ଆସନେ ବସି ସୁଖେ । ତ୍ରିଲୋକ୍ୟ କଲା ଆତ୍ମା ବଶେ ॥

ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ସୁଜନେ ଏଣେ କର ମତି । ତରିବ ବିଷୟ ଦୁର୍ଗତି ॥
ମନ ବଚନେ ସ୍ମର ହୃଦେ । ତରିବ ବିଷ୍ଣୁ ମାୟା ବାଦେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମ ସ୍କନ୍ଧେ ବଳି ବିଜୟୋ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏମନ୍ତେ ପୁତ୍ରଙ୍କର ରିଷ୍ଟେ । ସେ ଦେବମାତା ମନ କଷ୍ଟେ ॥
ଇନ୍ଦ୍ରର ଇନ୍ଦ୍ରପଣ ଗଲା । ଗିରି ଦୁର୍ଗମେ ଆଶ୍ରାକଲା ॥
ଦେବେ ଲୁଚିଲେ ଘୋର ବନେ । ଶୁଣି ଅଦିତି ଦୁଃଖ ମନେ ॥
ରାତ୍ର ଦିବସ ନ ଜାଣଇ । ନିରତେ ଗୃହେ ରହେ ଶୋଇ ॥
ତାହା ଭୁବନେ ଏକ ଦିନେ । କଶ୍ୟପ ଋଷି ଆଗମନେ ॥
ଅଦିତି ଶୟନ ସମୀପେ । କଶ୍ୟପ ବସି ମନଦୁଃଖେ ॥
ଦେଖିଲେ ଅଦିତ ଭୁବନେ । ଅଷ୍ଟ ସମ୍ପଦେ ଅତିହୀନେ ॥
ଉସବ ଆନନ୍ଦ ନ ଦିଶେ । ଆଦିତ୍ୟ ଧୂମ ଯେହ୍ନେ ଦିଶେ ॥
ପରିଗ୍ରହ କୁଶ ଆସନେ । ଚାହିଁଲେ ଅଦିତି ବଦନେ ॥
ଦେଖିଲେ ମୁଖେ ସୁଖ ନାହିଁ । ଶୋକ ସଂକୁଳେ କମ୍ପେ ଦେହୀ
ଅନାଇଁ ଅଦିତି ବଦନ । ବୋଲନ୍ତି ବ୍ରହ୍ମାର ନନ୍ଦନ ॥

### କଶ୍ୟପ ଉବାଚ

ଶୁଣ ସୁନ୍ଦରୀ ଶୁଦ୍ଧ ଚିତ୍ତେ । କହିବି ତୋହର ଅଗ୍ରତେ ॥
ବ୍ରହ୍ମା ସଞ୍ଚିତ ସୃଷ୍ଟି ମଧ୍ୟେ । ବ୍ରାହ୍ମଣେ ବସନ୍ତି ଆନନ୍ଦେ ॥
ତାହାଙ୍କ ଗୃହେ ଦୁଃଖନାହିଁ । ଏବେ ବିପରୀତ ଦେଖଇ ॥
ଧନ ସମ୍ପଦ ସୁଖ ନୋହେ । ଏ ଶୁଣ ନିଗମ ଯାହା କହେ ॥
ଅଶେଷ ବିଷ୍ଣୁର ଜଗତ । କର୍ମର ବଳେ ଏ ଛନ୍ଦିତ ॥
ଶୁଭ ଅଶୁଭ ଭାବ ବଳେ । କାଳ କ୍ରୀଡ଼ନ୍ତି ଅନ୍ତରାଳେ ॥
କାଳଇ ବଶ ଏ ସଂସାର । କେ ଭୂତ କେ ଅବା ଈଶ୍ୱର ॥
ଭୋଗ ସମ୍ପଦ ଅର୍ଥ ଗୃହେ । ପ୍ରାଣୀ ସାଧନ୍ତି ଅତି ମୋହେ ॥
ଏ ଭାବେ ସଂସାର ରଚିତ । ମୁଁ ତ ଦେଖଇ ବିପରୀତ ॥
ବିପ୍ର ଅତିଥି କି ବା ଘରେ । କୁଟୁମ୍ବ ଭରଣ ଉପରେ ॥
ପୂଜା ନ ପାଇ ଏ ଭୁବନେ । କିବା ସେ ଗଲା ଦୁଃଖ ମନେ ॥
ଯା ଘରୁ ଅତିଥି ବାହୁଡ଼େ । ସେ ପ୍ରାଣୀ ପ୍ରେତ ମୁଖେ ପଡ଼େ ॥
ତାର ସଞ୍ଚିଲା ପୁଣ୍ୟ ଯେତେ । ଗଛନ୍ତି ଅତିଥି ସଂଗତେ ॥
ଅଗ୍ନିର ତେଜ କାଳେ ହବି । କିମ୍ବା ନ ପାଇ ପରାଭବି ॥
ମୋର ପ୍ରବାସେ ତୋର ଚିତ୍ତ । କିମ୍ବା ହୋଇଲା ମୋହ ଗତ ॥
ଅଗ୍ନି ପୂଜନେ ଶୁଦ୍ଧ ମନୁ । ଯେ ଯଜମାନ କାମଧେନୁ ॥
ସମ୍ପଦ ବିପ୍ରଜନେ ଦ୍ୟନ୍ତି । ଦେବେ ଯେ କଲ୍ୟାଣ ବାଞ୍ଛନ୍ତି ॥
ବିପ୍ର ଅଗ୍ନି କି ନ ପୂଜିଲେ । କଲ୍ୟାଣ ଲଭେ କାହିଁ ଭଲେ ॥
ହରିଙ୍କି କାହିଁ ସେ ପାଇବ । ତାରେ ବଞ୍ଚିତ ସଦାଶିବ ॥
ଉଭୟ ଲୋକେ କାହିଁ ସୁଖ । ସର୍ବଦା ଲଭନ୍ତି ବିମୁଖ ॥
ତୋର ତନୁଜ ଦେବତାଏ । ସ୍ୱର୍ଗରେ ଅଛନ୍ତି ନିର୍ଭୟେ ॥
ଇନ୍ଦ୍ରର କୁଶଳ ନ ଦେଖି । କିମ୍ବା ହୋଇଛ ମନେ ଦୁଃଖୀ ॥

### ଅଦିତି ଉବାଚ

ଗୋରୁ ବ୍ରାହ୍ମଣ ସୃଷ୍ଟି ଲୋକେ । ଏ ସର୍ବେଛନ୍ତି ନାନା ସୁଖେ ॥
ଧର୍ମେ ହେଁ ଅଛି ଏ ସଂସାରେ । ଆଗମ ନିଗମ ବେଭାରେ ॥
ତ୍ରିବର୍ଗ ମୋହର ଭୁବନେ । କେବେ ହେଁ ନ ବର୍ତ୍ତଇ ଦିନେ ॥
ଅଗ୍ନି ଅତିଥି ମୋର ଗୃହେ । କେବେ ହେଁ ନିରାଶେ ନ ରହେ ॥
ସକଳ ଶୁଭ ତୁମ୍ଭ ବଳେ । ଯେ ଯାହା କର୍ମର କୁଶଳେ ॥
ତୁମ୍ଭେ କହିଲ ଯେବେ ଧର୍ମ । ଗୃହସ୍ଥ ସ୍ୱଭାବ ଯେ କର୍ମ ॥
ସର୍ବ ଶ୍ରବଣେ ମୋର ଚିତ୍ତ । କେବେ ହେଁ ନୋହେ ମୋହ ଗତ ॥
ତୁମ୍ଭେ ଯେ ଦେବଙ୍କ କୁଶଳେ । ନିରତେ ଭଜ ଯୋଗ ବଳେ ॥
ଏ ସୃଷ୍ଟି ମଧ୍ୟେ ଯେତେ ଜନ । ସକଳେ ତ୍ରିଗୁଣେ ବନ୍ଧନ ॥
ଅର୍ଜ୍ଜିଲା କର୍ମର ଆୟତେ । ଜନ୍ତୁ ସଞ୍ଚରନ୍ତି ଜଗତେ ॥
ତଥାପି ଭକ୍ତିକି ଭଜନ୍ତି । ବ୍ରହ୍ମା ଶଙ୍କର ଲକ୍ଷ୍ମୀ ପତି ॥
ଶୁଣ ହେ ସ୍ୱାମୀ ବ୍ରହ୍ମାସୁତ । ତୁମ୍ଭ ପ୍ରସାଦେ ମୋର ଚିତ୍ତ ॥
ଦୁର୍ଲ୍ଲଭ ଚତୁର୍ବର୍ଗ ନୋହେ । ସେବକୀ ପଣେ ତୁମ୍ଭ ଗୃହେ ॥
ତୁମ୍ଭର ଚିତ୍ତ ପ୍ରଜା ଅର୍ଥେ । ଯେ ଧର୍ମ କହ ମୋ ଅଗ୍ରତେ
ତୁମ୍ଭର ପୁତ୍ର ଦୁଇ ମତେ । ଦେବ ଅସୁର ଏ ଜଗତେ ॥
ଏହାଙ୍କ ଭଲ ତୁମ୍ଭେ ଇଚ୍ଛ । ମୁଁ ଏହା ଦେଖଇ ପ୍ରତକ୍ଷ ॥
ଦେବେ ଯେ ସତ୍ୟ ଗୁଣେ ଥାନ୍ତି । ଅସୁରେ ରଜ ତମ ଚିନ୍ତି ॥
ପୀଡ଼ା କରନ୍ତି ସାଧୁ ଜନେ । ଧର୍ମ ରଖନ୍ତି ମୋ ନନ୍ଦନେ ॥
ମୋ ପୁତ୍ରେ ଅସୁରଙ୍କ ଡରେ । ଲୁଚିଲେ ବନ ଗିରି ଘୋରେ ॥
ଇନ୍ଦ୍ରଙ୍କୁ ନ ଦେଖି ମୋ ମନ । ନିରତେ ହେଉଛି ଦହନ ॥
କହ କି କରିବି ଉପାୟେ । କେମନ୍ତେ ଇନ୍ଦ୍ର ସ୍ୱର୍ଗେ ରହେ ॥
ମୋର ସପତ୍ନୀ ପୁତ୍ର ବଳେ । ବିଚାର କରି ବଳି ତୁଳେ ॥
ଶୁକ୍ରର ମନ୍ତ୍ର ବଳ ତେଜେ । ବଳି ବସିଲା ସ୍ୱର୍ଗରାଜ୍ୟେ ॥

ମିଳିଲେ ଅନେକ ଦାନବ । ହରିଲେ ଇନ୍ଦ୍ରର ବିଭବ ॥
ମୁଁ ଏବେ ହୋଇ ସ୍ଥାନଭ୍ରଷ୍ଟ । ଅନେକ ପାଉ ଅଛି କଷ୍ଟ ॥
ମୋ ଚହୁଁ ଦୁଃଖୀ କେ ଶୟଳେ । କହିଲି ତୁମ୍ଭ ପାଦମୂଳେ ॥
ତୋର କୁମର ଭଲେ ଥିବେ । ମୋ ପୁତ୍ରେ ସ୍ୱସ୍ଥାନେ ରହିବେ ॥
ଏମନ୍ତ ଆଜ୍ଞା ମୋତେ କର । ତୁମ୍ଭେ ଯେ ବୁଦ୍ଧିର ଈଶ୍ୱର ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ ଅଦିତି ବଚନେ । କଶ୍ୟପ ବିଚାରନ୍ତି ମନେ ॥
ଦେଖ ଏ ବିଷ୍ଣୁ ମାୟାବଳେ । ଜୀବର ବନ୍ଧର ଶୟଳେ ॥
ପଞ୍ଚ ଭୂତଙ୍କ ଏ ସଂସାର । ଆତ୍ମା ନିର୍ଲ୍ଲେପ ନିରାକାର ॥
ଶରୀର ପତ୍ନୀ ପୁତ୍ର ଆଦି । ଏ ବିଷ୍ଣୁ ମାୟାରେ ସମ୍ପାଦି ॥
କେ ଏହା ଅନ୍ୟଥା କରିବ । ନା ବ୍ରହ୍ମା ଶଙ୍କର ବାସବ ॥
ତୁ ଏବେ ମୋର ବୋଲ କର । ହରି ଚରଣ ପଦ୍ମ ସ୍ମର ॥
ସେ ହରି ତୋର ମନ ଦୁଃଖ । ନିବାରି ଦେବ ସ୍ୱର୍ଗ ସୁଖ ॥
ଆରତ ଜନ ବନ୍ଧୁ ହରି । ସେ ପାରେ ଆରତ ନିବାରି ॥
ଯାର ଚରଣ ଆଶ୍ରେ କଲେ । ସଙ୍କଟୁ ତରେ ପ୍ରାଣୀ ଭଲେ ॥
ତାହା ଚରଣେ ସେବା କର । ନିର୍ଭୟେ ମନଦୁଃଖୁ ତର ॥

## ଅଦିତି ଉବାଚ

ଭୋ ନାଥ ବୁଦ୍ଧି କହ ମୋତେ । ହରିକି ସେବିବି କେମନ୍ତେ ॥
ଯେମନ୍ତେ ମୋର ମନୋରଥ । ସୁଫଳ କରେ ଜଗନ୍ନାଥ ॥
ପୁତ୍ର ବସିବ ଇନ୍ଦ୍ର ପଦେ । ଭୋ ନାଥ ନମୁ ତୋର ପାଦେ ॥

## କଶ୍ୟପ ଉବାଚ

ଏମନ୍ତେ ପତ୍ନୀ ବାକ୍ୟ ଶୁଣି । ବ୍ରହ୍ମା ନନ୍ଦନ ମନେ ଗୁଣି ॥
ବୋଇଲନ୍ତି ଶୁଣ ଦ୍ୱିଜ ରାଣୀ । ହରି ତୋଷଣ ସେବା ବାଣୀ ॥
ଯେ ବ୍ରତେ ପ୍ରଭୁ ହୃଷୀକେଶ । ତୋର ହୃଦରେ ପରବେଶ ॥
ସେ ବିଷ୍ଣୁ ଦ୍ୱିଜ ଖର୍ବ ରୂପେ । ବଳିକି ଛଳି ଦାନ କଳ୍ପେ ॥
ତୋର ପୁତ୍ରକୁ ସେ ରଖିବ । ତୁ ଏବେ ହରିପାଦେ ସେବ ॥
ହରି ତୋଷଣ ବ୍ରତ କର । ଏ ଦୁଃଖ ସାଗରୁ ନିସ୍ତର ॥
ଶୁଣ କହିବା ବେଦ ମତେ । ଏ ବ୍ରତ କରିବୁ ଯେମନ୍ତେ ॥
ଫାଲ୍‌ଗୁନ ଶୁକ୍ଳପକ୍ଷ ଯୁତ । ଦ୍ୱାଦଶ ଦିନ ପୟୋବ୍ରତ ॥
ଅର୍ଚ୍ଚନା କରି ଭକ୍ତି ବଳେ । ବିଷ୍ଣୁର ଚରଣ କମଳେ ॥
ସେବା କରିବ ଯେବା ମୋତେ । ଶୁଣ କହିବା କଳ୍ପ ତୋତେ ॥
ପ୍ରାତ ହୁଁ ଅମାବାସ୍ୟା ଦିନେ । ମନ୍ଦିର ଆସିବ ମଉନେ ॥
ବରାହ ପାତ୍ରେ ବ୍ରତେ ଯାଇ । ମୃତ୍ତିକା ବାମ ହସ୍ତେ ଲଇଁ ॥
ଶୁଣ ମନ୍ତ୍ରିବ ଯେଉଁ ମନ୍ତ୍ରେ । ଅଙ୍ଗେ ଘେନିବ ଯେଉଁ ଯନ୍ତ୍ରେ ॥
ଭୋ ଦେବୀ ତୁ ଯେ ଅନ୍ତଃକାଳେ । ମିଳାଇଥିଲୁ ମହାଜଳେ ॥
ପାତାଳେ ପଙ୍କ ରୂପେ ଥିଲୁ । ବରାହ ଦର୍ଶନେ ଉଠିଲୁ ॥
ହରିର ଦନ୍ତ ଅଗ୍ରେ ବସି । ତୁ ମୋର ହର ପାପରାଶି ॥
ଏମନ୍ତେ ମୃତ୍ତିକା ମନ୍ତ୍ରିବ । ଶରୀର ସର୍ବାଙ୍ଗେ ଲେପିବ ॥
ସ୍ନାନ କରିବ ପ୍ରାତଃକାଳେ । ପବିତ୍ର ଜଳେ ଉଦେବେଳେ ॥
ସୁଚିତ ଆତ୍ମା ଶୁଦ୍ଧ ଚିତ୍ତେ । ଅର୍ଚ୍ଚନା କରି ଶୁଚି ପାତ୍ରେ ॥
ଅର୍ଚ୍ଚନା କରି ମନ୍ତ୍ର ବଳେ । ସ୍ଥଣ୍ଡିଳେ ଆଦିତ୍ୟ ମଣ୍ଡଳେ ॥
ଆତ୍ମାର ଦୀକ୍ଷା ଗୁରୁ ଗାତ୍ରେ । ଏତ ସ୍ୱଭାବେ ଶୂନ୍ୟପାତ୍ରେ ॥
ଏମନ୍ତେ ପୂଜା ସ୍ଥାନେ ଚିନ୍ତି । ଶୁଣ କରିବ ଯେବା ସ୍ତୁତି ॥
ନମସ୍ତେ ପ୍ରଭୁ ଭଗବାନ । ମହାପୁରୁଷ ଶୁଦ୍ଧ ଧାମ ॥
ସକଳ ବିଦ୍ୟା ଆଦିପତି । ନମସ୍ତେ ସର୍ବ ଭୂତ ପତି ॥
ହିରଣ୍ୟ ଗର୍ଭ ନମୋସ୍ତୁତେ । ସାକ୍ଷୀ ସ୍ୱରୂପ ଏ ଜଗତେ ॥
ଯୋଗ ଐଶ୍ୱର୍ଯ୍ୟର ଯେ ଶେଷ। ନମସ୍ତେ ପ୍ରଧାନ ପୁରୁଷ ॥
ଚତୁର୍ବିଂଶତି ଗୁଣ ଜ୍ଞାତା । ଗୁଣ ସଂଖ୍ୟାନ ହେତୁ କର୍ତ୍ତା ॥
ଦ୍ୱିଶିର ତ୍ରିଚରଣ ତୁହି । ଚତୁର ଶୃଙ୍ଗ ତନୁ ଦେହୀ ॥
ସପତ ହସ୍ତ ଯଜ୍ଞ ରୂପୀ । ଏ ରୂପେ ଚାରିଦେବ ବ୍ୟାପୀ ॥
ନମସ୍ତେ ଶିବ ରୁଦ୍ରବର । ନମସ୍ତେ ସର୍ବ ଶକ୍ତିଧର ॥
ସକଳ ବିଦ୍ୟା ଅଧିପତି । ସର୍ବଭୂତଙ୍କ ଆତ୍ମାଗତି ॥
ହିରଣ୍ୟ ଗର୍ଭ ନମୋନମ । ଜଗତ ପ୍ରାଣ ବାୟୁ ସମ ॥
ଯୋଗ ଐଶ୍ୱର୍ଯ୍ୟ ଯା ଶରୀର । ଯୋଗୀଙ୍କ ହେତୁ ଯୋଗେଶ୍ୱର ॥
ନମସ୍ତେ ଆଦି ଦେବ ଦେବ । ନମସ୍ତେ ସଂସାର ପ୍ରଭବ ॥
ନମସ୍ତେ ନର ନାରାୟଣ । ନମସ୍ତେ ପରମ କାରଣ ॥
ନମୋ ମର୍କତ ଶ୍ୟାମଦେହ । ନମୋ କମଳାର ଆଶ୍ରୟ ॥
ନମୋ କେଶବ ପୀତବାସ । ନମନ୍ତେ ଭଗତ ବିଶ୍ୱାସ ॥
ଭଗତ ସର୍ବ ବରଦାତା । ନମସ୍ତେ ସର୍ବ ମାତା ପିତା ॥
ଶରଣ ବରଦାତା ଗୁରୁ । ନମୋ ଭଗତ କଳ୍ପତରୁ ॥
ତୋ ପାଦ ପଦ୍ମ ରେଣୁ ଶିରେ । ମୋକ୍ଷ ସାଧନେ ଯୋଗ ବଳେ ॥
ତୋ ପାଦ ପଦ୍ମ ଭକ୍ତ ସେବେ । ଭାବେ ଖଟନ୍ତି ଦେବୀ ଦେବେ ॥
ତୋ ପାଦ ପଦ୍ମ ଗନ୍ଧବାସେ । ଅଶେଷ ଭବ ଭୟ ନାଶେ ॥
ଏମନ୍ତ ଆବାହନ କରି । ନିଶ୍ଚଳ ଚିତ୍ତେ ଭାବ ଭରି ॥
ଏମନ୍ତେ ପାଦ ଅର୍ଘ୍ୟ ଆଦି । ଶ୍ରଦ୍ଧା ଭଗତି ଯୋଗ ସାଧି ॥
ଅର୍ଚ୍ଚନା କରି ଗନ୍ଧମାଲ୍ୟେ । ପୂଜିବ ଆସନ ନିଶ୍ଚଳେ ॥
ଉତ୍ତମ ବସ୍ତ୍ର ଅଳଙ୍କାର । ସୁଗନ୍ଧ ଧୂପ ମନୋହର ॥
ନୈବେଦ୍ୟ କରି ଷଡ଼ରସେ । ପୂଜିବ ପ୍ରଧାନ ପାୟସେ ॥
ଦଧି ଶର୍କରା ମଧୁ ଘୃତେ । ସୁଶାଳୀ ଅନ୍ନ ଦୁଗ୍ଧ ଯୁତେ ॥

ନାନା ପ୍ରକାରେ ଭୋଗଦେଇ । ହୃଦେ ଭଗତି ଭାବ ବହି ।
ଏମନ୍ତେ ଦ୍ୱାଦଶ ଅକ୍ଷର । ଜପିବ ଶହେ ଆଠବାର ।
ହୋମ କରିବ ହୃତାଶନେ । ଶତେକ ମୂଳମନ୍ତ୍ର ଧ୍ୟାନେ ।
ତୃତୀୟ ବ୍ରାହ୍ମଣ ବସାଇ । ସୁସ୍ୱାଦ ଅନ୍ନ ଭୋଗ ଦେଇ ।
ବିପ୍ରଙ୍କୁ ଦେଇ ଆଚମନ । ନିବେଦି ସୁମୁଖ ବାସନ ।
ଅତିଥି ଜନଙ୍କର ଦୁଃଖୀ । ତାଙ୍କୁ ଭୋଜନେ କରି ସୁଖୀ ।
ଚାହାଙ୍କୁ ଅନ୍ନ ଦାନ ଦେଇ । ସନ୍ତୋଷ ଚିତ୍ତେ ଆଜ୍ଞାପାଇ ।
ଅନ୍ନ ଭୁଞ୍ଜିବ ସାୟଂ କାଳେ । ପାଞ୍ଚ ସାତ ବାଳକ ମେଳେ ।
ରାତ୍ରେ ବଞ୍ଚିବ ବାଦ୍ୟ ଗୀତେ । ସୁଜନେ ବ୍ରହ୍ମଚାରୀ ବ୍ରତେ ।
ରାତ୍ର ଅନ୍ତରେ ପ୍ରାତଃ କାଳେ । ସ୍ନାନ କରିବ ଶୁଚି ଜଳେ ।
ଯଥାର୍ଥ ବିଧି ସମାହିତେ । ସୁସ୍ୱର ବାଦ୍ୟ ନାଦ ଗୀତେ ।
ସ୍ନାନ କରାଇ ଦେବ ମୂର୍ତ୍ତି । ପୟୋ ଭକ୍ଷଣ ପୟୋବ୍ରତୀ ।
ପୂର୍ବର ପ୍ରାୟେ ହୋମ କରି । ଦ୍ୱାଦଶ ବିପ୍ର ଭୋଜ୍ୟ କରି ।
ଦ୍ୱାଦଶ ଦିନ ଏହି ମତେ । ବଞ୍ଚିବ ଶୁଚି ପ୍ରୟୋବ୍ରତେ ।
ଏମନ୍ତେ ହରି ଆରାଧନେ । ହୋମାଗ୍ନି ବ୍ରାହ୍ମଣ ଭୋଜନେ ।
ପ୍ରତିପ ଦିନୁ ଏ ଅଭ୍ୟାସି । ଯାବତ ଶୁକ୍ଳ ତ୍ରୟୋଦଶୀ ।
ତ୍ରିକାଳ କରିବ ସ୍ନାହାନ । ରଜନୀ ଧରଣୀ ଶୟନ ।
ଅସାଧୁ ଆଳାପ ତେଜିବ । ନିନ୍ଦିତ ଭୋଗ ନ କରିବ ।
ହିଂସା ତେଜିବ ସର୍ବଭୂତେ । ବିଷ୍ଣୁ ଆଶ୍ରୟ କରି ନିତ୍ୟେ ।
ଏମନ୍ତେ ତ୍ରୟୋଦଶୀ ଦିନ । ସୁଗନ୍ଧ ଉଦକ ସ୍ନାହାନ ।
ଶାସ୍ତ୍ର ପ୍ରମାଣେ ପଞ୍ଚାମୃତେ । କରିବ ବେଦ ବିଧିମତେ ।
ପାୟସ କରି ପଞ୍ଚାମୃତେ । ମନ୍ତ୍ର ଉଚ୍ଚାରି ଶୁଦ୍ଧ ଚିତ୍ତେ ।
ପୂଜା କରିବ ବିଧିମତେ । ସମ୍ଭାର ଶକ୍ତି ମୟ ମୋତେ ।
ହରିହରଙ୍କୁ ଧ୍ୟାନେ ଧରି । ଅନଳ ମନ୍ତ୍ରେ ହୋମ କରି ।
ନାନା ପ୍ରକାରେ ନଇବେଦ୍ୟ । କଟୁ ମଧୁର ଆଦି ସ୍ୱାଦ ।
ନିବେଦି ବିଷ୍ଣୁ ତୁଷ୍ଟି ଅର୍ଥେ । ପୂଜା ସମର୍ପି ନାନା ମତେ ।
ଅଗ୍ନି ପୂଜନ କର୍ମ ସାରି । ଗୁରୁ ଆଚାର୍ଯ୍ୟ ପାଦ ଧରି ।
ଧନ ବସନ ଅଳଙ୍କାର । ଯେବା ଦକ୍ଷିଣା ବୃତ୍ତି ସାର ।
ଋତ୍ୱିକ ଜନ ମନ ତୋଷି । ଦୁଃଖୀ ଦରିଦ୍ରଙ୍କୁ ଆଶ୍ୱାସି ।
ଭୋଜନେ ତୋଷି ସର୍ବ ପ୍ରାଣୀ । ଯେଣେ ସନ୍ତୋଷ ଚକ୍ରପାଣି ।
ସକଳ ବନ୍ଧୁ ଜ୍ଞାତି ମେଳେ । ଭୋଜନ କରି ସାୟଂକାଳେ ।
ସୁବାଦ୍ୟ ନୃତ୍ୟ ଗୀତ ସ୍ୱରେ । ଉତ୍ସବ କରି ନିଜ ପୁରେ ।
ଏମନ୍ତେ ପ୍ରୟୋବ୍ରତ କରି । ଯେବା ସଂସାରେ ନରନାରୀ ।
ମନ ବାଞ୍ଛିତ ସେ ଲଭନ୍ତି । ଅନ୍ତେ ବିଷ୍ଣୁ ମାୟା ତରନ୍ତି ।
ଏ ବ୍ରତ ବ୍ରହ୍ମା ମୁଖୁଁ ପୂର୍ବେ । ମୁଁ ଯେ ଶୁଣିଅଛି ପ୍ରସ୍ତାବେ ।
ତୁ ଯେଣୁ ମୋହର ଭାବିନୀ । ତେଣୁ କହିଲି ଭାବ ଘେନି ।
ଏହା ତୁ ଶୁଦ୍ଧ ଚିତ୍ତେ ଧର । ହରି ସନ୍ତୋଷେ ବ୍ରତ କର ।
ଏ ବ୍ରତ ସର୍ବ ଯଜ୍ଞ ସାର । ଦୁର୍ଗମ ସଙ୍କଟୁ ଉଦ୍ଧର ।
ସର୍ବ ଭୂତଙ୍କ ପୂଜା ଏହି । ଦାନ ତପସ୍ୟା ଯେତେ ଥାଇ ।
ଏ ବ୍ରତ ଈଶ୍ୱର ତର୍ପଣ । ଚତୁର ବର୍ଗର କାରଣ ।
ଯମ ନିୟମ ଏଣେ ସାଧି । ଯେ ଧର୍ମ ବିଷ୍ଣୁଙ୍କୁ ସମ୍ପାଦି ।
ତୁ ଏବେ ଚିତ୍ତେ ମନେ ଧର । ହରି ସନ୍ତୋଷେ ବ୍ରତ କର ।
ତୋର ବାଞ୍ଛିତ ହରି ଦେବେ । ଦେବ ଅସୁରଙ୍କୁ ରଖିବେ ।
ବୋଲଇ ବିପ୍ର ଜଗନ୍ନାଥ । ଅଦିତି ଶୁଣି ପୟୋବ୍ରତ ।
ଚିତ୍ତେ ଚିନ୍ତିଲା ଭଗବାନ । ସୁଜନେ ଏଣେ କର ଧ୍ୟାନ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ କଶ୍ୟପାଦିତି ସମ୍ବାଦେ*
*ପୟୋବ୍ରତ କଥନଂ ନାମ ପଞ୍ଚଦଶୋଽଧ୍ୟାୟଃ ॥*

## ଷୋଡ଼ଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି । କଶ୍ୟପ ମୁଖୁ ବାକ୍ୟ ଶୁଣି ।
ଚିତ୍ତେ କଳ୍ପିଲା ଅନ୍ତର୍ଗତେ । ବିଧି ପୂର୍ବକ ପୟୋବ୍ରତେ ।
ଦ୍ୱାଦଶ ଦିନ ବିଧିମତେ । ସଂଯମେ ରହି ପୟୋବ୍ରତେ ।
ଏକାଗ୍ର ଚିତ୍ତେ ହରି ପାଦେ । ସେବା କଳ୍ପିଲା ଅପ୍ରମାଦେ ।
ସୁଦୃଢ଼ ମନ ବୁଦ୍ଧି ବଳେ । ଇନ୍ଦ୍ରିକି ଧଇଲା ନିଷ୍ଫଳେ ।
ଏକାଗ୍ର ଚିତ୍ତେ ହରିପାଦେ । ଧ୍ୟାନ ଗୋଚର ଅପ୍ରମାଦେ ।
ଦ୍ୱାଦଶ ଦିନ ପୟୋବ୍ରତେ । ବିଷ୍ଣୁ ଚିନ୍ତିଲା ଏକ ଚିତ୍ତେ ।
ଅଦିତି ପୟୋବ୍ରତ ତୋଷେ । ବିଷ୍ଣୁ ମିଳିଲେ ତାର ପାଶେ ।
ଶରୀର ଯେହ୍ନେ ନୀଳ ଘନ । ପୀତ ବସନ ପରିଧାନ ।
ଆଜାନୁ ଲମ୍ୱେ ଚାରିଭୁଜେ । ଗଦା କମଳ ଚକ୍ର ସାଜେ ।
ସମୀପେ ବିଷ୍ଣୁ ରୂପ ଦେଖି । ଉଲ୍ଲୋଳ କଲା ବେନି ଆଖି ।
ଉଠିଲା ଅଶ୍ରୁ ଗଦଗଦେ । ଶିର ନିବେଶି ପଦ୍ମପାଦେ ।
ଭୂମିରେ ଦଣ୍ଡବତେ ପଡ଼ି । କର ଅଞ୍ଜଳି ଶିରେ ଯୋଡ଼ି ।
ଆନନ୍ଦ ସାଗରେ ବୁଡ଼ିଲା । ନିଜ ଶରୀର ପାସୋରିଲା ।
ଶରୀର କମ୍ପିଲା ବିକଳେ । କଣ୍ଠ କୁଣ୍ଠିତ ଅଶ୍ରୁଜଳେ ।
ବଦନେ ବଚନ ନ ସ୍ଫୁରେ । ପ୍ରାଣ ହୋଇଲା କଣ୍ଠ ଦ୍ୱାରେ ।
ଚକୋର ଚନ୍ଦ୍ର ଦେଖି ଯେହ୍ନେ । ଅମୃତ ପିଅଇ ଲୋଚନେ ।

ମନ ନିବେଶି ବିଷ୍ଣୁ ପାଦେ । ଆନନ୍ଦେ ଶୋକ ଗଦଗଦେ ॥

## ଅଦିତି ଉବାଚ

ହେ ଯୋଗେଶ୍ୱର ଜଗନ୍ନାଥ । ତୋର ଚରଣେ ସର୍ବ ତୀର୍ଥ ॥
ସର୍ବ ମଙ୍ଗଳ ତୋର ନାମ । ରୂପ ଅରୂପ ଅନୁପମ ॥
ଶରଣଗତ ଦୁଃଖ ହର । ତୁ ନାଥ କରୁଣା ସାଗର ॥
କରୁଣାକର ବିଶ୍ୱ ବ୍ୟାପୀ । ବିଶ୍ୱ ଭାବନ ବିଶ୍ୱରୂପୀ ॥
ସ୍ଥିତି ସଂଯମ ସଂହାରଣ । ତୁ ନାଥ ପରମ କାରଣ ॥
ଆତ୍ମ ସମ୍ପଦ ବୁଦ୍ଧିଜ୍ଞାନ । ତୋର ପ୍ରସନ୍ନେ ପାନ୍ତି ଜନ ॥
କୈବଲ୍ୟ ଜ୍ଞାନ ତୋ ସନ୍ତୋଷେ । ଅନ୍ତେ ପରମ ପାଦେ ମିଶେ ॥
ଭୋ ନାଥ ତୋହର ଚରଣେ । ଯେ ପ୍ରାଣୀ ପଶନ୍ତି ଶରଣେ ॥
ସମସ୍ତ ଦୁର୍ଗତି ତରନ୍ତି । ଜନ୍ମ ମରଣୁ ନିସ୍ତରନ୍ତି ॥
ଭୋ ନାଥ ପ୍ରଭୁ ଆଦିମୂଳ । ଶୁଣିମା ମୋହର ବିକଳ ॥
ଦୁଃଖେ କୁଣ୍ଠିତ ମୋର ପ୍ରାଣ । ପଶିଲି ତୋ ପାଦେ ଶରଣ ॥
ପୁତ୍ରେ ନ ରହି ସ୍ୱର୍ଗ ପୁରେ । ଲୁଚିଲେ ବନଗିରି ଘୋରେ ॥
ସର୍ବ ଦାନବ ସଙ୍ଗେ ମିଳି । ବସିଲା ଇନ୍ଦ୍ରାସନେ ବଳି ॥
ଶୁକ୍ରର ତେଜ ଯଜ୍ଞ ବଳେ । ଭୟେ ଭାଜିଲେ ଦିଗପାଳେ ॥
ଇନ୍ଦ୍ର ହୋଇଲା ଅରକ୍ଷିତ । ଅମରେ ବସିଲେ ଦଇତ ॥
ମୋର ପୁତ୍ରଙ୍କୁ ଦୟାକର । ଭୋ ନାଥ ଶରଣ ତୋହୋର ॥
ସପତ୍ନୀ ଦୁଃଖ କି ନ ଜାଣୁ । ତୁ ନାଥ ଅନ୍ତର ପ୍ରମାଣୁ ॥

## ଶ୍ରୀ ଶୁକ ଉବାଚ

ଶୁଣି ଅଦିତିର ବଚନ । ପ୍ରସନ୍ନ କମଳ ଲୋଚନ ॥
ଅଦିତି ବଦନ ଅନାଇ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥

## ଶ୍ରୀ ଭଗବାନ ଉବାଚ

ଶୁଣ ଅଦିତି ଦେବମାତ । ମୁଁ ଜାଣେ ତୋର ମନୋରଥ ॥
ବଳି ଯେ ସ୍ୱର୍ଗ ବଳେ ନେଲା । ବିକଳେ ଇନ୍ଦ୍ର ପଳାଇଲା ॥
ତାର ସଙ୍ଗତେ ଦେବ ଗଣେ । ପଶିଲେ ଗିରି ଘୋର ବନେ ॥
ଏବେ ସେ ଆସି ସ୍ୱର୍ଗପୁରେ । ଶତୃକୁ ଜିଣି ରଣ ଘୋରେ ॥
ସ୍ୱର୍ଗେ ସେ ବସିବ ନିଶ୍ଚିନ୍ତେ । ତୁ ଏହା କହି ଅଛୁ ଚିତ୍ତେ ॥
ସମରେ ଅସୁର ମରଣେ । କାନ୍ଦିବେ ତାଙ୍କ ବଧୂଗଣେ ॥
ସ୍ୱାମୀ ମରଣେ ଅତି ଦୁଃଖୀ । ତୁ ତାହା ଦେଖି ହେବୁ ସୁଖୀ ॥
ସ୍ୱର୍ଗେ ବସିବ ଇନ୍ଦ୍ର ତୋର । ସଙ୍ଗତେ ଅଶେଷ ଅମର ॥
ସକଳ ସମ୍ପଦ ମିଳିବ । ତ୍ରୈଲୋକ୍ୟ ନିଶ୍ଚିନ୍ତେ ପାଳିବ ॥
ଏମନ୍ତ ଚିତ୍ତେ କହି ତୁହିଁ । ଶୁଣ କହଇ ଯାହା ମୁହିଁ ॥
ଅସୁରେ ପାଇ ସ୍ୱର୍ଗପୁର । ବଳେ ହୋଇଲେ ବଳିୟାର ॥
ବଳି ସଙ୍ଗତେ ଘୋର ରଣେ । କାହିଁ ଜିଣିବେ ଦେବଗଣେ ॥
ଏ କଥା ଭଲେ ଜାଣି ମୁହିଁ । ତୋର ପୁତ୍ରଙ୍କୁ ଜୟ ନାହିଁ ॥
ଯେମନ୍ତେ ତୋହର କୁମରେ । ସୁଖେ ବସିବେ ସ୍ୱର୍ଗପୁରେ ॥
ତୁ ଯେ ମୋହର ପାଦ ଯୁଗେ । ସେବିଲୁ ପ୍ରୟୋବ୍ରତ ମାର୍ଗେ ॥
ସେ କଥା ଅନ୍ୟଥା ନୋହିବ । ଏହା ଜାଣନ୍ତି ବ୍ରହ୍ମା ଶିବ ॥
ତପେ ତୁ ତୋଷିଅଛୁ ମୋତେ । ଇନ୍ଦ୍ର ସମ୍ପଦ ରକ୍ଷା ଅର୍ଥେ ॥
ମୋହର ସେବା ବ୍ରତ ଫଳ । କେବେହେଁ ନୁହଁଇ ବିଫଳ ॥
ମୁଁ ନିଜ ଅଂଶେ ତୋର ଗର୍ଭେ । ଜନ୍ମିବି ପୟୋବ୍ରତ ଭାବେ ॥
ଏ ବ୍ରତ ମହିମା ଏମନ୍ତ । ଅବଶ୍ୟ ମୋତେ ଲଭେ ସୁତ ॥
ତୋର ପୁତ୍ରଙ୍କୁ ମୁଁ ରଖିବି । ଶତ୍ରୁଙ୍କ ଭୟ ନିବାରିବି ॥
ନିଷ୍ଟେ ରଖିବି ଦେବକୁଳ । ତୁ ସ୍ୱାମୀ ସଙ୍ଗେ କର ମେଳ ॥
ଏ ବ୍ରତ ଫଳ ତେବେ ପାଇ । ବିଶ୍ୱାସେ ପରକୁ ନ କହି ॥
ସର୍ବ ସମ୍ପଦ ଲଭ ତୁହିଁ । ଦେବମାତାଙ୍କୁ ଏତେ କହି ॥
ତକ୍ଷଣେ ହୋଇଲେ ଅନ୍ତର । ଶୁଣ ପରୀକ୍ଷ ନୃପବର ॥
ଏମନ୍ତେ ବିଷ୍ଣୁର ବଚନେ । ଅଦିତି ଅତି ତୋଷ ମନେ ॥
ଆନନ୍ଦେ ପ୍ରଭୁ ହୃଷୀକେଶ । କଶ୍ୟପ ଶରୀରେ ପ୍ରବେଶ ॥
ବିଷ୍ଣୁର ତେଜ ବ୍ରହ୍ମରାଶି । ଉଦୟେ ରବି ପ୍ରାୟେ ଦିଶି ॥
ଅମର ଗୁରୁ ଲଗ୍ନ ବେଳେ । ଉଚ୍ଚେ ଅଛନ୍ତି ଗ୍ରହବଳେ ॥
ମୁହୂର୍ତ୍ତ ନାମ ଅଭିଜିତେ । ପତି କାମିନୀ ଏକ ଯୁକ୍ତେ ॥
ରତି ଆନନ୍ଦେ ରତି ବୀର୍ଯ୍ୟେ । ଗର୍ଭ ସଞ୍ଚାର ଅତି ତେଜେ ॥
ଦାରୁ ସଂଯୋଗେ ଅଗ୍ନି ଯେହ୍ନେ । ପ୍ରକାଶ କରେ ଦିନେ ଦିନେ ॥
ଅଦିତି ବିଷ୍ଣୁ ଗର୍ଭେ ଧରି । ଶଶାଙ୍କ ପ୍ରାୟେ ମନୋହାରୀ ॥
ଦିଶଇ ଅତି ରୂପକାନ୍ତି । ଦିନକୁ ଦିନ ଶୁଭ୍ର ଜ୍ୟୋତି ॥
ଅଦିତି ଉଦର ସଞ୍ଚାର । ସେ କଥା ଜାଣି ବେଦବର ॥
ରଜନୀ କାଳେ ବ୍ରହ୍ମା ଆସି । ଅଦିତି ନିଦ୍ରା ସ୍ଥାନେ ବସି ॥
ଗର୍ଭକୁ ଚାହିଁ ପ୍ରଜାପତି । ଆନନ୍ଦେ କଲେ ଦିବ୍ୟସ୍ତୁତି ॥

## ବ୍ରହ୍ମା ଉବାଚ

ଜୟ ଅନନ୍ତ ଉରୁକ୍ରମ । ନମୋ ନମସ୍ତେ ତ୍ରିବିକ୍ରମ ॥
ନାମୋ ବ୍ରାହ୍ମଣ୍ୟ ଭଗବତ । ନମସ୍ତେ ତ୍ରିଗୁଣ ଅଜିତ ॥
ନମସ୍ତେ ଦୃଶ୍ନି ଗର୍ଭରୂପୀ । ନମସ୍ତେ ତ୍ରୟବେଦ ବ୍ୟାପୀ ॥
ତ୍ରିନାଭ ତ୍ରିପୃଷ୍ଠ ତୋ ନାମ । ଶିପିବିଷ୍ଟ ଯେ ରୁଦ୍ର ଧାମ ॥
ଏ ସୃଷ୍ଟି ଆଦି ମଧ୍ୟ ଅନ୍ତେ । ତୁ ନାଥ ବିହରୁ ନିଶ୍ଚିନ୍ତେ ॥
ତୁ ସେ ଅନନ୍ତ ଶକ୍ତିଧର । ମନ ବଚନେ ଅଗୋଚର ॥
ତୁ କାଳ ରୂପେ ଏ ଜଗତେ । ସୃଷ୍ଟି ପାଳିଣ କରୁ ଅନ୍ତ ॥

ନୀର ଯେସନେ ବୃଷ୍ଟିଅନ୍ତେ । ତୁ ନାଥ ବିହରୁ ନିଶ୍ଚିନ୍ତେ ॥
ପଶେ ଜଳଧି ଗର୍ଭ ଗତେ । ଅନନ୍ତ ଶୟନ ନିଶ୍ଚିନ୍ତେ ॥
ସ୍ଥାବର ଆଦି ଜନ୍ତୁ ଚାରି । ତୁ ବସୁ ଆତ୍ମା ରୂପ ଧରି ॥
ତୋର ମାୟାର ବଳେ ଜନେ । ତୋ ରୂପ ଜାଣିମେ କେସନେ ॥
ଜନ୍ତୁଙ୍କ ବାହ୍ୟ ଆଭ୍ୟନ୍ତରେ । ତୋ ତହୁଁ କେବା ଅଛି ପରେ ॥
ଜଳେ ବୁଡ଼ନ୍ତି ଯେତେ ପ୍ରାଣୀ । ଯେବେ ନ ଲଭନ୍ତି ତରଣୀ ॥
ସେ କାହିଁ ଜଳଧି ତରିବେ । ଯେ ନ ପଶନ୍ତି ତୋର ଭାବେ ॥
ଏମନ୍ତେ କରି ଦିବ୍ୟସ୍ତୁତି । ନିଜ ଭୁବନେ ପ୍ରଜାପତି ॥
ଆନନ୍ଦ ମନେ ବ୍ରହ୍ମା ଗଲା । ଶୁଣ ରାଜନ ବିଷ୍ଣୁଲୀଳା ॥
ଭାଷା ପ୍ରବନ୍ଧେ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥
ବାମନ ରୂପ ଧରି ଏବେ । ବିଷ୍ଣୁ ଯେ ବଳିକି ଛଳିବେ ॥
ଏ ବାଣୀ ଏକମନେ ଶୁଣି । ନିସ୍ତର ଦୁଃଖ ତରଙ୍ଗିଣୀ ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟା ଅଷ୍ଟମସ୍କନ୍ଧେ ବାମନ ଜନ୍ମ ବୃତାନ୍ତ ନାମ ଷୋଡ଼ଶୋଽଧ୍ୟାୟ ।*

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ଅଭିମନ୍ୟୁ ନନ୍ଦନ । ଯେମନ୍ତେ ଜନ୍ମିଲେ ବାମନ ॥
ଯେ ହରି ପ୍ରୟୋବ୍ରତ ଫଳେ । ଜନ୍ମିଲେ ଅବନୀ ମଣ୍ଡଳେ ॥
ତାହା ଚରିତ ଶୁଣ ଏବେ । ଯେମନ୍ତେ ବଳିର ପ୍ରସ୍ତାବେ ॥
ବ୍ରହ୍ମାର ସ୍ତୁତି ଶୁଣି ତୋଷେ । ଯେ ବିଷ୍ଣୁର ପରମ ହରଷେ ॥
ଅମୃତ ସ୍ରବେ ଯା ଶରୀରେ । ପୂର୍ବେ ବାମନ ଅବତାରେ ॥
ଗଗନେ ଉଦେ ଦିବାକର । ବାମନ ଉଦରୁ ବାହାର ॥
ଅଦିତି ଯହୁଁ ଭୂମିଗତେ । ବାମନ ଦେଖିଲା ଅଗ୍ରତେ ॥
ନୀଳ ନୀରଦ ତନୁ ବର୍ଣ୍ଣ । ପ୍ରକାଶ କମଳ ଲୋଚନ ॥
ଆଜାନୁ ଲମ୍ବେ ଭୁଜ ଚାରି । ଶଙ୍ଖ କମଳ ଗଦା ଧରି ॥
ପୀତବସନ କଟୀ ଭାଗେ । ତଡ଼ିତ୍ ଯେହ୍ନେ ନୀଳ ମେଘେ ॥
ରତ୍ନ କୁଣ୍ଡଳ ଶ୍ରୁତି ଯୁଗେ । ଶ୍ରୀ ବସ୍ତ ଚିହ୍ନ ହୃଦ ଯୁଗେ ॥
କଣ୍ଠେ ଲମ୍ବଇ ବନମାଳ । ସୁନ୍ଦର ଅଳକା କପୋଳ ॥
ରତ୍ନ ମୁକୁଟ ଶିରେ ସାଜେ । ରତ୍ନ ମେଖଳା କଟୀ ମାଝେ ॥
ନୂପୁର ଅଙ୍ଗଦ ବିରାଜେ । ତେଜେ ଅନଙ୍ଗ ରୂପ ଗଞ୍ଜେ ॥
କଣ୍ଠେ ଶ୍ରୀ କଉସ୍ତୁଭ ମଣି । ଅମୂଲ୍ୟ ରତ୍ନ ସୁଖ ଜିଣି ॥

ପ୍ରସନ୍ନେ ଦଶଦିଗ ଦିଶେ । ସଲିଳେ କମଳ ପ୍ରକାଶେ ॥
ଜଳଧି ଉଛୁଳେ ଉଲ୍ଲୋଳେ । କାନନେ ନାନାପୁଷ୍ପ ଲୋଳେ ॥
ଋତୁ ବହଇ ଗୁଣ ମତେ । ପ୍ରସରେ ଶରଦ ବସନ୍ତେ ॥
ସୁଗନ୍ଧ ପବନ ଆମୋଦ । ଗଗନେ ମଙ୍ଗଳ ଶବଦ ॥
ଭୂମିରେ ବିପ୍ରେ ବେଦ ନାଦେ । ଅନଳ ପୂଜନ୍ତି ସମିଧେ ॥
ଗୋ ବିପ୍ର ହିତ କାଳ ବଳେ । ପର୍ବତେ ରହିଲେ ନିଷ୍ଫଳେ ॥
ଭାଦ୍ରବ ମାସ ଶୁକ୍ଳପକ୍ଷେ । ଦ୍ୱାଦଶୀ ଶ୍ରବଣା ଯେ ଋକ୍ଷେ ॥
ମୁହୂର୍ତ୍ତ ନାମ ଅଭିଜିତେ । ଗ୍ରହ ନକ୍ଷତ୍ରଙ୍କ ପ୍ରଶସ୍ତେ ॥
ସର୍ବ ନକ୍ଷତ୍ର ତାରାଗଣେ । ପ୍ରଶସ୍ତ ମଙ୍ଗଳ ଦକ୍ଷିଣେ ॥
ବିଜୟା ଯୋଗେ ମଧ୍ୟାୟନେ । ଶଙ୍ଖ ଦୁନ୍ଦୁଭି ବାଦ୍ୟ ସ୍ୱନେ ॥
ମୃଦଙ୍ଗ ପଟହ ସମାନେ । ଶୁଭନ୍ତି ଭେରୀ ନାଦ ସ୍ୱନେ ॥
ବାଜନ୍ତି ଗୋ ମୁଖ ଆନକା । ତାଣ୍ଡବ ପଟହ ମୃଷ୍ଟିକା ॥
ଗୀତ ବିନୋଦ ନୃତ୍ୟ ଗୋଳ । ଦିଗ ଉଛୁଳିଲା ତୁମୁଳ ॥
ନାଚନ୍ତି ଅପସରା ବୃନ୍ଦ । ଗନ୍ଧର୍ବେ ତାଳଯନ୍ତ୍ର ବାଦ୍ୟ ॥
ଦେବତା ମୁନି ପିତୃ ଗଣେ । ଅଗ୍ନି ସମେତେ ଜଣେ ଜଣେ ॥
ସ୍ତବନ୍ତି ସିଦ୍ଧି ବିଦ୍ୟାଧରେ । ତୁଳେ କିଁ ପୁରୁଷ କିନ୍ନରେ ॥
ଚାରଣ ଯକ୍ଷ ରକ୍ଷ ଆଦି । ସୁପର୍ଣ୍ଣ ଭୁଜଗ ପ୍ରସିଦ୍ଧି ॥
ସ୍ତୁତି ବଚନ ଗୀତ ସ୍ୱରେ । ପୁଷ୍ପ ବରଷେ ନିରନ୍ତରେ ॥
ଅଦିତି ଗୃହେ ପୁଷ୍ପ ବୃଷ୍ଟି । ଯେଣେ ଖଣ୍ଡିବ ଜନ୍ମରିଷ୍ଟି ॥
ଅଦିତି ନିଜ ପୁତ୍ର ଦେଖି । ନିର୍ମଳ କଲା ଚର୍ମ ଆଖି ॥
ଯେ ହରି ନିଜ ଯୋଗ ତେଜେ । ଜନ୍ମିଲେ କଶ୍ୟପର ବୀର୍ଯ୍ୟେ ॥
କଶ୍ୟପ ଜୟ ଜୟ ବାଣୀ । ମଙ୍ଗଳ ବେଦ ନାଦ ଭଣି ॥
ତକ୍ଷଣେ ପ୍ରଭୁ ଭଗବାନ । ରୂପେ ପ୍ରକାଶିଲେ ବାମନ ॥
ଦେଖନ୍ତି ସର୍ବ ଦିଗ ପାଳେ । ଦେବୀ ଦେବତା ଅନ୍ତରାଳେ ॥
ବଟୁ ବାମନ ରୂପ ଦେଖି । ମୁନିଏ ଆଶ୍ରମ ଉପେକ୍ଷି ॥
ପରମ ହରଷେ ମିଳିଲେ । ଜୟ ମଙ୍ଗଳ ସ୍ତୁତି କଲେ ॥
ବିଧାତା ଆଦି ମୁନି ତୁଳେ । ପୁତ୍ରର ଜାତକର୍ମ କଲେ ॥
ବାମନ ଉପୟନ ଦେଖି । ସବିତା ଗଗନ ଉପେକ୍ଷି ॥
ସାବିତ୍ରୀ ମନ୍ତ୍ର କର୍ଣ୍ଣେ କହେ । ଯେଣେ ସବିତା ତେଜ ବହେ ॥
ଗୁରୁ ପଇତା ଦେଲେ କନ୍ଧେ । କଶ୍ୟପ ମେଖଳା ଆନନ୍ଦେ ॥
ଅବନୀ କୃଷ୍ଣାଜିନ ଦେଲା । ଶଶାଙ୍କ ଦଣ୍ଡ ସମର୍ପିଲା ॥
ଅଦିତି ଦେଲା କଉପିନ । ଯେଣେ ତ୍ରିଦଣ୍ଡି ରୂପ ଧନ୍ୟ ॥
ମୁନିଏ ଦେଲେ କରେ ଦର୍ଭ । କମଣ୍ଡଳୁ ଯେ ବେଦଗର୍ଭ ॥

ଶାରଦା ଦେଲା ଅକ୍ଷମାଳା । ଯେମନ୍ତେ ବୁଦ୍ଧି ଅନର୍ଗଳା ॥
ବରୁଣ ରାଜା ଶୁଦ୍ଧ ଚିତ୍ତେ । ଭିକ୍ଷା ପାତ୍ରେକ ଦେଲା ହସ୍ତେ ॥
ଅମ୍ବିକା ଭିକ୍ଷା ଦେଲେ ଆଣି । ସଙ୍ଗତେ ଘେନି କମଳିନୀ ॥
ମୁନିଏ ବ୍ରହ୍ମତେଜ ଦେଲେ । ସ୍ତୁତି ବଚନେ ତୋଷ କଲେ ॥
କଶ୍ୟପ କରାଇଲେ ହୋମ । ବିଧାତା ସ୍ତୁତି ମନ୍ତ୍ରଧାମ ॥
ଏମନ୍ତେ ବିପ୍ର ରୂପ ଧରି । ପୂର୍ଣ୍ଣ ଆହୁତି ହୋମ ସାରି ॥
ଶୁକ୍ର ଯେ କରିଥିଲା ବିଧି । ବଳିର ଶତେ ଅଶ୍ୱାମେଧି ॥
କରାଇ ନିଜ ମନ୍ତ୍ର ବଳେ । ଅମରେ ସ୍ଥାପିବ ନିଷ୍ଠଳେ ॥
ସେ କଥା ଜାଣି ଭଗବାନ । ଯେ ରୂପେ ଅଦ୍ଭୁତ ବାମନ ॥
ବଳି ଭୁବନେ ବିଷ୍ଣୁ ଯାନ୍ତେ । ଭୂମି କମ୍ପଇ ପାଦ ଘାତେ ॥
ନର୍ମଦା ନଦୀର ଉତ୍ତରେ । ଗିରି ପର୍ବତ ବନ ଘୋରେ ॥
ବଳିକି ଯଜମାନେ କରି । ବିପ୍ରେ ଭୃଗୁଙ୍କୁ ଆଶ୍ରେ କରି ॥
ଯଜ୍ଞ କରନ୍ତି ମନ୍ତ୍ର ବଳେ । ଯେମନ୍ତେ ଅମର ନିଷ୍ଠଳେ ॥
ବଳି ବସିବ ଦୃଢ଼ ଚିତ୍ତେ । ନିର୍ଭୟେ କଚ୍ଛେ ପରି ଯନ୍ତେ ॥
ଏମନ୍ତେ ବଳି ଯଜ୍ଞ ବାଟେ । ବାମନ ମିଳିଲେ କପଟେ ॥
ରବିକି ଦେଖି ତାରାପନ୍ତି । ଯେମନ୍ତେ ହୋନ୍ତି ହତଜ୍ୟୋତି ॥
ଭାର୍ଗବ ଆଦି ପୁରୋହିତେ । ସର୍ବେ ଯଜମାନ ସମେତେ ॥
ବାମନ ତେଜେ ଅସ୍ତଗଲେ । ତମିସ୍ର ଯେହ୍ନେ ପ୍ରାତକାଳେ ॥
କେହି ନ ଜାଣି ଅନୁମାନ । ସର୍ବେ ହୋଇଲେ ହତଜ୍ଞାନ ॥
ରବି ଶଶାଙ୍କ କିବା ବହ୍ନି । ମିଳିଲେ ରବି ତେଜ ଘେନି ॥
କି ବା ସନତ ବ୍ରହ୍ମାସୁତ । ଯଜ୍ଞ ପ୍ରୋକ୍ଷଣେ ଉପଗତ ॥
ଏମନ୍ତେ ଜାଣି ନ ପାରିଲେ । ବାମନ ତେଜେ ଅସ୍ତ ଗଲେ ॥
ମୁହୂର୍ତ୍ତେ ରହି ଖେଦ ମନେ । ଚାହାନ୍ତି କୁଞ୍ଚିତ ଲୋଚନେ ॥
କରି ନ ପାରି ଅନୁମାନ । ସର୍ବେ ହୋଇଲେ ହତଜ୍ଞାନ ॥
ସେ ଜଳ କମଣ୍ଡଳୁ ଘେନି । କରନ୍ତି ଶ୍ୟାମବେଦ ଧ୍ୱନି ॥
ବିଷ୍ଣୁ ମିଳିଲେ ଯଜ୍ଞ ବାଟେ । ବଳି ନୃପତିର ନିକଟେ ॥
କନ୍ଧରେ କୃଷ୍ଣାଜିନ ଶୋହେ । ଉତ୍ତରୀ ପ୍ରାୟ ନିଜ ଦେହେ ॥
କଟୀରେ ମର୍କତ ମେଖଳା । ଯଜ୍ଞୋପବିତ ଅକ୍ଷ ମାଳା ॥
ଅଦ୍ଭୁତ ବାଳ ସୁକୁମାର । ଶିରେ ବିରାଜେ ଜଟା ଭାର ॥
ମାୟା ବାମନ ରୂପ ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
ଭୃଗୁ ସହିତେ ଶିଷ୍ୟ ଯେତେ । ଅଗ୍ନି ହୁଁ ଉଠିଲେ ତୁରିତେ ॥
ଅଞ୍ଜଳି ହସ୍ତ କରି ବେଗେ । ମିଳିଲେ ବାମନର ଆଗେ ॥
ବଳି ବାମନ ରୂପ ଚାହିଁ । ଆସନ ଦେଲା ବେଗେ ନେଇ ॥
ଚରଣେ ନମସ୍କାର କରି । କୁଶଳ ବାରତା ପଚାରି ॥
ଉତ୍ତମ ଜଳେ ଧୋଇ ପାଦ । ଆନନ୍ଦ କଣ୍ଠ ଗଦ ଗଦ ॥
ପାଦ ଉଦକ ଘେନି ଶିରେ । ରୋମ ହରଷ କଳେବରେ ॥
ଯାର ଚରଣ ସେ ଶୟଳ । ଖଣ୍ଡଇ ସର୍ବ ଅମଙ୍ଗଳ ॥
ଗିରୀଶ ବହେ ଜଟାଭାରେ । ଯେ ପାଦୋଦକ ବହେ ଶିରେ ॥
ବଳି ଯେ ବେନିକର ଯୋଡ଼ି । କହେ ବାମନ ପାଦେ ପଡ଼ି ॥

## ବଳି ଉବାଚ

ଭୋ ବିପ୍ର ନମୁ ତୋ ଚରଣେ । ଅଶେଷ କୁଶଳ କାରଣେ ॥
ବ୍ରହ୍ମଋଷିଙ୍କ ତପ ପ୍ରାୟେ । ମୁ ଯେ ଦେଖଇ ତୋର ଦେହେ ॥
ତୁ ବ୍ରହ୍ମ ପରମ ସାକ୍ଷାତେ । ତୋ ରୂପ ନାହିଁ ଏ ଜଗତେ ॥
କି ଅର୍ଥେ ତୋହର ଆଗମ । କହ ତୋହର କିସ ନାମ ॥
ମୋ ପିତୃଗଣେ ଆଜ ତୋଷ । ପବିତ୍ର ମୋର ଗୃହ ବାସ ॥
ଆଜ ମୋ ସୁଫଳ ଜୀବନ । ଯେଣୁ ତୁମ୍ଭର ଆଗମନ ॥
ପବିତ୍ର ହୋଇଲା ମୋ କୁଳ । ଲଭିଲି ଶତକ୍ରତୁ ଫଳ ॥
ଆଜ ଅନଳ ମୋତେ ତୋଷି । ଶୁଦ୍ଧେ ଜଳିବ ଘୃତ ରାଶି ॥
ଏ ଭୂମି ପବିତ୍ର ମୋହର । ନିର୍ମଳ ଯେହ୍ନେ ସ୍ୱର୍ଗ ପୁର ॥
ଭୋ ବିପ୍ର ଦାନ ମାଗ ମୋତେ । ଯେ ଅବା ଇଚ୍ଛା କର ଚିତ୍ତେ ॥
ଗୋରୁ କାଞ୍ଚନ ଦିବ୍ୟ ପୁର । କିବା ପ୍ରସାଦ ମନୋହର ॥
ଗ୍ରାମ ପାଟଣା କନ୍ୟା ଦାନ । ଅମୂଲ୍ୟ ରତ୍ନ ବା ସୁବର୍ଣ୍ଣ ॥
ଅନ୍ନ ବସନ ଆଦି ଯେତେ । ଭୋ ବିପ୍ର ! ମାଗ ବେଗେ ମୋତେ ॥
ଗଜ ତୁରଙ୍ଗ ଅଶ୍ୱ ତରୀ । ରଥ ପଲଙ୍କ ଆଦି କରି ॥
କି ଅବା ତୋର ଚିତ୍ତେ ଯେତେ । ଭୋ ବିପ୍ର ମାଗ ଅପ୍ରମିତେ ॥
ଦେବି ମୁଁ ସତ୍ୟ ମୋ ବଚନ । ଦାରା ତନୟ ବା ଜୀବନ ॥
ଏମନ୍ତେ ବଳି ବ୍ୟଗ୍ର ଚିତ୍ତେ । କହିଲା ବାମନ ଅଗ୍ରତେ ॥
ଏମନ୍ତେ ବଳି ବାକ୍ୟ ଶୁଣି । ବିଷ୍ଣୁ ସ୍ୱଭାବେ କୁଶପାଣି ॥
ମଙ୍ଗଳ ସ୍ୱରେ ବେଦ ଧ୍ୱନି । କହନ୍ତି ବଳି ମନ ଘେନି ॥
ତିନି ଭୁବନ କମ୍ପେ ନାଦେ । ସୁଜନେ ଚିନ୍ତ ବିଷ୍ଣୁ ପାଦେ ॥
କହିଲା ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହା ପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟା ଅଷ୍ଟମସ୍କନ୍ଧେ ବଳି ବାମନ ସମ୍ବାଦେ ସପ୍ତଦଶୋଽଧ୍ୟାୟଃ ॥*

## ଅଷ୍ଟାଦଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଏମନ୍ତେ ବଳି ବାକ୍ୟ ଶୁଣି । ସନ୍ତୋଷେ ପ୍ରଭୁ ପଦ୍ମପାଣି ॥
ବଳି ବାକ୍ୟକୁ ସ୍ତୁତି କରି । ବଟୁ ବାମନ ରୂପ ଧରି ॥

ବୋଲନ୍ତି ମଧୁର ବଚନ । ହେ ଦେବ ତୋଷ କରମନ ॥
କୁଳ ଉଚିତ ତୁହିଁ ଧନ୍ୟ । ସାଧୁ ପଣ୍ଡିତ ଶୁଦ୍ଧ ଜ୍ଞାନ ॥
ଧର୍ମ ସହିତେ ଯଶସ୍କର । ଅଜିନ କୁଶ ସୁଧାସାର ॥
ଯାହାର ବଂଶେ ପୁରୋହିତ । ଯେ ଭୃଗୁ ପଦ୍ମଯୋନି ସୁତ ॥
ପ୍ରହ୍ଲାଦ ଯା ପିତାମହ । ବିଷ୍ଣୁ ଭଜନେ ମହାଶୟ ॥
ଯେ କୁଳେ ନାହିଁ ବଳହୀନ । ନିସତ କୃପଣ ଜୀବନ ॥
ବ୍ରାହ୍ମଣେ ଦାନ ଅନ୍ୟ କୁଳେ । ନାହିଁନା ଭୁବନ ମଣ୍ଡଳେ ॥
ଯାହାର ବଂଶେ ରଣତୀର୍ଥ । ସଂଗ୍ରାମେ ନୋହନ୍ତି ନିସତ ॥
ଅତିଥି ଆଗମନେ ସୁଖୀ । ଦୁଃଖୀ ଜନଙ୍କ ଦୁଃଖେ ଦୁଃଖୀ ॥
ନିର୍ମଳ ଯଶ ଯାର କୁଳେ । ପ୍ରଖ୍ୟାତ ଭୁବନ ମଣ୍ଡଳେ ॥
ପ୍ରହ୍ଲାଦ ରହେ ବିଷ୍ଣୁ ବଳେ । ଯେହ୍ନେ ଶଶାଙ୍କ ତାରା ମେଳେ ॥
ଯେ ବଂଶେ ହିରଣ୍ୟାକ୍ଷ ବୀର । ଦେବେ ଦାନବେ ଅଗୋଚର ॥
ହିରଣ୍ୟକଶ୍ୟପୁ ତା ଜାଣି । ଉଦଣ୍ଡେ ଭ୍ରମଇ ଧରଣୀ ॥
ତାହାର ସଙ୍ଗେ ଗଦାଯୁଦ୍ଧେ । କେହି ନ ମିଳେ ରଣ ମଧେ ॥
ବରାହ ରୂପେ ପୂର୍ବେ ହରି । ଦନ୍ତାଗ୍ରେ ପୃଥିବୀ ଉଦ୍ଧରି ॥
ପାତାଳୁ ଆଗମନ କାଳେ । ସେ ବୀର ଥିଲା ମହାଜଳେ ॥
ବରୁଣ ପୁରେ ଦଇତାରି । ଦନ୍ତାଗ୍ରେ ହିରଣାକ୍ଷ୍ୟ ଚିରି ॥
ଅନେକ ମାୟା ଯୁଦ୍ଧ କଲା । ବିଷ୍ଣୁର ଗଦା ଘାତେ ମଲା ॥
ତାର ମହିମା ଚକ୍ରପାଣି । ଆନନ୍ଦେ ରୁଦ୍ର ଆଗେ ଭଣି ॥
ହର ଗଉରୀ ତୋଷ ଚିତ୍ତେ । ସେ ବିଷ୍ଣୁ କହିଲେ ଆନନ୍ଦେ ॥
ସେ ହରି ହିରଣାକ୍ଷ ମାରି । ଦନ୍ତାଗ୍ରେ ଧରଣୀ ଉଦ୍ଧରି ॥
ଆତ୍ମାକୁ ଜୟେ ପ୍ରାୟେ ମଣି । ସକଳ ସଭାମଧ୍ୟେ ଭଣି ॥
ତାହାର ବଧ ଶୁଣି ରଣେ । ହିରଣ୍ୟ କଶ୍ୟପୁ ତକ୍ଷଣେ ॥
ଭ୍ରାତ ମରଣେ କ୍ରୋଧକରି । ଉଦଣ୍ଡ ଗଦା କରେ ଧରି ॥
ଅତି କୋପିତ ଖେଦ ମନେ । ମିଳିଲା ବିଷ୍ଣୁର ଭୁବନେ ॥
ଗୋବିନ୍ଦ ତାର ଆଗମନ । ଦେଖିଣ ତେଜିଲେ ଆସନ ॥
କୃତାନ୍ତ ପ୍ରାୟେ ଗଦା ଧରି । ଧାମଇ କୋପେ ମହାବଳୀ ॥
ସେ ବିଷ୍ଣୁ ମାୟା ଯୋଗ ବଳେ । ଅଦ୍ଭୁତ ଦେଖି ପଳାଇଲେ ॥
ଲୀଳାଏ ଯାନ୍ତେ ବନମାଳୀ । ଦେଖି ବିଚାରେ ମହାବଳୀ ॥
ଏ ମୋର ମାରି ଅଛି ଭାଇ । ଅସୁର ମନେ କ୍ରୋଧ ବହି ॥
ଏହାକୁ ପ୍ରାଣେ ନାଶ କଲେ । ତେବେ ଜୀବନ ଥିବ ଭଲେ ॥
ଏମନ୍ତ ଚିନ୍ତି ଗଦାଧରି । ପଛେ ଧାଇଁଲା ରୋଷ ଭରି ॥
ବିଷ୍ଣୁ ପଳାନ୍ତେ ତାକୁ ଦେଖି । ସମ୍ଭ୍ରମେ ଭୁବନ ଉପେକ୍ଷି ॥
ଯେଣେ ପଳାନ୍ତି ନରହରି । ପଛେ ଅସୁର ଗଦାଧରି ॥
ସେ ବିଷ୍ଣୁ କରନ୍ତି ବିଚାର । ସ୍ୱଭାବେ ଅଜୟେ ଏ ବୀର ॥
ଏହାକୁ ମାୟା ମୁଁ ନ କଲେ । କେମନ୍ତେ ପୁରେ ଥିବି ଭଲେ ॥
ଏହାର ହୃଦୟେ ମୁଁ ପଶି । ମାୟାରେ ମନକୁ ଆକର୍ଷି ॥
ଯେମନ୍ତେ ମୋତେ ଏ ନ ପାଇ । ନିର୍ଭୟେ ନିଜ ପୁରେ ଯାଇ ॥
ମୋର ବିଷୟେ କରି କ୍ରୋଧ । ଅନ୍ତେ ପାଇବ ପ୍ରାଣ ବଧ ॥
ଏମନ୍ତେ ବିଷ୍ଣୁ ବିଚାରିଲେ । ମାୟାରେ ଅନ୍ତର ହୋଇଲେ ॥
ତାର ଶରୀର ପ୍ରାଣ ରନ୍ଧ୍ରେ । ବିଷ୍ଣୁ ପଶିଲେ ମାୟାବନ୍ଧେ ॥
ବିଷ୍ଣୁ ନ ଦେଖି ମନ କ୍ରୋଧେ । ଗର୍ଜିଲା ଭୟଙ୍କର ନାଦେ ॥
ଶବଦେ ଭୁବନ କମ୍ପିଲା । ସିନ୍ଧୁ ହୋଇଲା ବେନି କୂଳା ॥
ସେ ବୀର ବିଚାରଇ ମନେ । ଏ ତ ଭାଜିଲା ମନ ଛନ୍ନେ ॥
ନିଶ୍ଚୟେ ବଇକୁଣ୍ଠ ଗଲା । ଏମନ୍ତ ବୋଲି ବାହୁଡ଼ିଲା ॥
ପଥେ ଚାଲନ୍ତେ ମନେ ଭାବି । ବୋଲଇ ଅବଶ୍ୟ ମାରିବି ॥
ସେ ମୋର ଭ୍ରାତୃ ହତ୍ୟାକାରୀ । ଏମନ୍ତ ମନେ କ୍ରୋଧ ଭରି ॥
ଜୀବନ ଥିବା ପରିଯନ୍ତେ । ବିଷ୍ଣୁ ନ ଭଜି କୋପଚିତ୍ତେ ॥
ହରିର ତୁଲେ ବାଦ କଲା । ଅନ୍ତେ ସେ ବିଷ୍ଣୁଙ୍କୁ ପାଇଲା ॥
ତାର ତନୟ ପ୍ରହ୍ଲାଦ । ନିତ୍ୟେ ସେବିଲା ବିଷ୍ଣୁ ପାଦ ॥
ବିଷ୍ଣୁ ଭଗତି ମହାଶୟେ । ଦେବେ ଦାନବେ ସେ ଦୁର୍ଜୟେ ॥
ତାହାର ବଂଶେ ତୁହିଁ ଜାତ । ସ୍ୱଭାବେ ଅଟୁ ଭାଗ୍ୟବନ୍ତ ॥
ବ୍ରାହ୍ମଣ ମହିମା ତୋହର । ଏ କୁଳେ ଅତି ଯଶସ୍କର ॥
ତିନି ଭୁବନେ ତୁ ଯେ ରାଜା । ସର୍ବେ କରନ୍ତି ତୋତେ ପୂଜା ॥
ଏଣୁ ତୋହର ହସ୍ତେ ମୁହିଁ । ନିବାସ ଅର୍ଥେ କିଛି ଭୂଇଁ ॥
ମୋହର ପାଦେ ପାଦ ତିନି । ମାପିଣ ଦିଅ ତୁ ମେଦିନୀ ॥
ଦାରା ତନୟ ମୋର ନାହିଁ । କେବଳ ବାସ ମୁଁ ଇଚ୍ଛଇ ॥
ଏ ଭୂମି ଦାନ ଦିଅ ମୋତେ । ଯେମନ୍ତେ ରହଇ ନିଶ୍ଚିନ୍ତେ ॥
ତୁ ଅଟୁ ଜଗତ ଈଶ୍ୱର । ଆନେ କି ପ୍ରୟୋଜନ ମୋର ॥

**ବଳି ଉବାଚ**

ଭୋ ବିପ୍ର ଶୁଣ ମୋ ଉତ୍ତର । ତୁ ଅଟୁ ବାଳକ ଶରୀର ॥
ବୃଦ୍ଧ ସମାନେ କଥା କହୁ । ବିଚାରେ ବାଳକ ତୁ ନୋହୁ ॥
ସ୍ୱଭାବେ ବାଳ ବୁଦ୍ଧି ଘେନି । ନ ଜାଣୁ ଆତ୍ମାଲାଭ ହାନି ॥
ଅଜ୍ଞାନୀ ପ୍ରାୟେ ଚୋର ମତି । ଏ ତୋର ବିପରୀତ ଗତି ॥
ମୁଁ ଯେ ତ୍ରୈଲୋକ୍ୟେ ଏକ ରଜା । ସର୍ବେ କରନ୍ତି ମୋତେ ପୂଜା
ତ୍ରିପାଦ ଭୂମି ମାଗୁ ମୋତେ । ଏ ଦାନ ଦେବି ମୁଁ କେମନ୍ତେ ॥
ଲୋକେ କରିବେ ଉପହାସ । ଏକଥା ନୁହଇ ବିଶ୍ୱାସ ॥
ଯେ ବିପ୍ର ମୋର ଦାନ ନେବ । ସେ କାହିଁ ଆନକୁ ମାଗିବ ॥

ଏଣୁ ବହୁତ ବୃତ୍ତି କରି । ଭୋ ବିପ୍ର ମାଗ ବସୁନ୍ଧରୀ ॥

### ଶ୍ରୀ ଭାଗବାନ ଉବାଚ

ଶୁଣ ହେ ବଳି ନୃପନାଥ । ଅଜ୍ଞାନୀ ଜନଙ୍କର ମତ ॥
ସମୁଦ୍ର ଆବରଣ ମହୀ । ଏତେ ସମ୍ପଦ ଯେବେ ପାଇ ॥
ତେବେ ହେଁ ଆଶା ନ ପୂରଇ। ଶୁଣ ନୃପତି ଚିତ୍ତ ଦେଇ ॥
ସପତ ଦ୍ୱୀପେ ଅଧି-ପତି । ଥିଲେ ଯେ ଅନେକ ନୃପତି ॥
ମାନ୍ଧାତା ନାମେ ନୃପ ଆଦି । ଅସଂଖ୍ୟ ଅତୁଲ୍ୟ ସମୃଦ୍ଧି ॥
ସେ ଅର୍ଥକାମ ଯେତେ କଲେ । ତୃଷ୍ଣାର ଅନ୍ତ ନ ପାଇଲେ ॥
ପୂର୍ବର କର୍ମ ବଳ ଲଭ । ଯେ ଦିନେ ଯେ ଅବା ମିଳଇ ॥
ତେଣେ ସନ୍ତୋଷ ଚିତ୍ତ ଯାର । ସେ ପ୍ରାଣୀ ତ୍ରିଜଗତେ ସାର ॥
ସନ୍ତୋଷେ ତେଜେ ସର୍ବକାଳେ । ଅତୃପ୍ତ ପଡ଼ଇ ପାତାଳେ ॥
ଯେ ଅର୍ଥ କାମେ ଅସନ୍ତୋଷ । ହେଲେ ସେ ବିଧାତାର ବଶ ॥
ଉଭୟ ଲୋକେ ସୁଖ ନାହିଁ । ଅତୁଟେ ଥିବେ ଆର କାହିଁ ॥
ଅର୍ଜନେ ଅସନ୍ତୋଷ କଲେ । ଘୃତେ ଅନଳ ଯେହ୍ନେ ଜଳେ ॥
ସନ୍ତୋଷେ ଜଳବିନ୍ଦୁ ହୋଇ । ଅଗ୍ନିର ତେଜ ସେ ଲିଭଇ ॥
ଏଣୁ ସମ୍ପଦେ କାର୍ଯ୍ୟ ନାହିଁ । ତ୍ରିପାଦ ଦିଅ ମୋତେ ମହୀ ॥
ଏକଇ ମାତ୍ର ମୋ ଜୀବନ । ଅଧିକେ କିବା ପ୍ରୟୋଜନ ॥

### ଶ୍ରୀ ଶୁକ ଉବାଚ

ଏମନ୍ତ ବିପ୍ର ଯେବେ ଭାଷି । ସେ ବାକ୍ୟ ଶୁଣି ବଳି ହସି ॥
ବୋଲଇ ଧର କୁଶ ପାଣି । ତୋ ପାଦ ପ୍ରମାଣେ ଧରଣୀ ॥
ଶୁକ୍ର ଯେ ରାଜା ପାଶେ ଥିଲା। ଦାନର ନିଶ୍ଚୟେ ଦେଖିଲା ॥
କର ଅଞ୍ଜଳି ଶିରେ ଧରି । ବଳିକି କହେ ଆଗସରି ॥
ଶୁଣ ହେ ବୈରୋଚନ ସୁତ । ତୋର ଦେଖିଲି ବିପରୀତ ॥
ପାତ୍ର ଅପାତ୍ର ତୁ ନ ଜାଣୁ । ବିପ୍ରଙ୍କୁ ଦାନ ପରିମାଣୁ ॥
ଦେଖ ଏ ପ୍ରଭୁ ଭଗବାନ । ଶରୀର ଦିଶଇ ବାମନ ॥
ବିବୁଧ କୁଳ ରକ୍ଷା କାର୍ଯ୍ୟେ । ଜନ୍ମିଲେ କଶ୍ୟପର ବୀର୍ଯ୍ୟେ ॥
ଅଦିତି ଗର୍ଭେ ଜାତ ହୋଇ । ଅଇଲା ତୋର ଜ୍ଞାନ ମୋହି ॥
ଅର୍ଥ ଅନର୍ଥ ତୁ ନ ଜାଣି । ଏହାକୁ ଯାଚୁ କୁଶପାଣି ॥
ଦିତିର ବଂଶେ ଜାତ ହୋଇ । ଏମନ୍ତ ଦେଖିଲାତ ନାହିଁ ॥
ଏ ବିଷ୍ଣୁ ତୋର ଯଶ ଶିରୀ । ମାୟା ବାଳକ ରୂପ ଧରି ॥
ଇନ୍ଦ୍ରକୁ ଦେବ ବୁଦ୍ଧିବଳେ । ତୁ ମୂଢ଼ ପଶିବୁ ପାତାଳେ ॥
ତିନି ଚରଣେ ତିନିପୁର । ସମ୍ପଦ ହରିବ ତୋହର ॥
ସର୍ବସ୍ୱ ବିଷ୍ଣୁହସ୍ତେ ଦେଇ । ତୁ ମୂଢ଼ ବିଶ୍ରାମିବୁ କାହିଁ ॥
ପାଦେକ ଅବନୀ ହରିବ । ଶରୀର ଆକାଶେ ପୂରିବ ॥
ଦ୍ୱିତୀୟ ପାଦେ ଦଶଦିଶ । କ୍ରମେ ଘେନିବ ସେ ଅକାଶ ॥
ସଂକଳ୍ପେ ଯେବେ ତୁ ନ ଦେବୁ । ନିଶ୍ଚୟେ ନରକେ ପଡ଼ିବୁ ॥
ସଂକଳ୍ପ କରି ଦାନ ଅର୍ଥେ । ପଛେ ନ ଦ୍ୟନ୍ତି ଯେ ଜଗତେ ॥
ସେ କାହିଁ ଥିବେ ଏ ସଂସାରେ । ପଡ଼େ ନରକେ ତମଘୋରେ ॥
ଯେ ଦାନେ ବୃତ୍ତି ଯାଇ ନାଶ । କୁଳ ସଂପଦ ଧର୍ମ ନାଶ ॥
ସେ ଦାନ କେବେ ହେଁ ନ କରି । ଯଶ ସ୍ୱଧର୍ମ ପରିହରି ॥
ପୂର୍ବେ ଯେ ସିଦ୍ଧ ମୁନି ଯେତେ । ସେ ଧର୍ମ କହିଛନ୍ତି ମୋତେ ॥
ତାହା କହିବା ତୋ ଅଗ୍ରତେ । ରାଜନ ଶୁଣ ଏକ ଚିତ୍ତେ ॥
ମନ ବଚନେ ସତ୍ୟ କରି । ଓଁ କାର ବାକ୍ୟେ ଯେ ଉଚ୍ଚାରି ॥
ଦେବି ମୁଁ ବୋଲି ଯାହା କରେ । କେ ଜ୍ଞାନ ଥାଉ ତାହା ହରେ ॥
ଏ ଜୀବ ଆତ୍ମା ବୃକ୍ଷ ରୂପେ । ଫଳ ଫଳିବ ରୂପେ ରୂପେ ॥
ବୃକ୍ଷର ନାଶେ ନାଶ ଯାନ୍ତି । ବୃକ୍ଷର ମୂଳେ ଥିଲେ ଥାନ୍ତି ॥
ସକଳ ସତ୍ୟ ନାଶ ଯାନ୍ତେ । କେବେହେଁ ନ ମିଳେ ଜଗତେ ॥
ଶବଦ ମକାର ଓଁକାରେ । ଶବଦ ଉଚାରି ହଁ କରେ ॥
ଯେ ତାହା ଅଜ୍ଞାନେ ହରନ୍ତି । ନିଜ ଶରୀର ନ ଧରନ୍ତି ॥
ହରଷ ଯୋଗନାରୀ ପାଶେ । ବିବାହ କନ୍ୟାବର ଯୋଗେ ॥
ବୃତ୍ତ୍ୟାର୍ଥେ ପ୍ରାଣର ସଙ୍କଟେ । ଗୋରୁ ବ୍ରାହ୍ମଣର ନିକଟେ ॥
ମିଥ୍ୟା କହିଲେ ଯେବେ ତରେ । ଏକଥା କେ ପ୍ରାଣୀ ନ କରେ ॥
ଭୃଗୁ ଏମନ୍ତ ବାକ୍ୟ କହି । ବଳି ତା ବାକ୍ୟେ ମନ ଦେଇ ॥
ସଂଶୟ ରହିଲାକ ଚିତ୍ତେ । ଭୃଗୁ ବଚନେ ଧର୍ମ ମତେ ॥
ବୋଲଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ବଳି ବାମନ ବାକ୍ୟ ବନ୍ଧେ । ଯେ ରୂପେ ଯେ ଅଷ୍ଟମ ସ୍କନ୍ଧେ ॥
ସୁଜନେ ଶୁଣ ସ୍ଥିର ଚିତ୍ତେ । ହରି ଚରିତ ଭାଗବତେ ॥
ଏ ଭାବେ ସଂସାରୁ ତରିବ । ସୁଜନେ ଜନେ ନିତ୍ୟ ସେବ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଅଷ୍ଟମ ସ୍କନ୍ଧେ ବାମନ ଚରିତେ*
*ନାମ ଅଷ୍ଟାଦଶୋଽଧ୍ୟାୟଃ ॥*

## ଊନବିଂଶୋଧ୍ୟାୟ

### ଶ୍ରୀ ଶୁକ ଉବାଚ

ବଳି ଯେ ଅସୁରଙ୍କ ପତି । ସ୍ୱଭାବେ ଧର୍ମେ ତାର ମତି ॥
କୁଳ ଆଚାର୍ଯ୍ୟ ବାକ୍ୟ ଶୁଣି । ଧର୍ମ ଅଧର୍ମ ମନେ ଗୁଣି ॥

ତୁନି ହୋଇଲା କ୍ଷଣ ମାତ୍ରେ । ଶିଥିଳ କର୍ମମାନ ଗାତ୍ରେ ॥
ଦଣ୍ଡକେ ଗୁରୁ ମୁଖ ଚାହିଁ । କୋମଳ ବଚନ ବୋଲଇ ॥

### ବଳି ଉବାଚ

ଭୋ ଗୁରୁ ସତ୍ୟ ତୁମ୍ଭ କଥା । ଗୃହସ୍ଥ ଜନର ବ୍ୟବସ୍ଥା ॥
ଯେ ଧର୍ମ ଅର୍ଥ କାମ ଯଶ । ବୃତ୍ତି ସହିତେ ନୋହେ ନାଶ ॥
ଏବେ ମୁଁ ଧନ ଲୋଭେ ଭାବି । ବିପ୍ରଙ୍କୁ କେମନ୍ତେ ଲଘିବି ॥
ସର୍ବ ଦେବତା ବିପ୍ର ଦେହେ । ବ୍ରାହ୍ମଣ ଦେହେ ବିଷ୍ଣୁ ରହେ ॥
ଏକ ବିପ୍ରଙ୍କୁ ବଞ୍ଚାଇଲେ । ବ୍ରହ୍ମାଣ୍ଡ ନାଶ କରେ ଭଲେ ॥
ପ୍ରହଲାଦର ବଂଶେ ଜାତ । ଏ କଥା ଜଗତେ ବିଖ୍ୟାତ ॥
କେମନ୍ତେ ସତ୍ୟ ବାକ୍ୟ କହି । କୈତବ ପ୍ରାୟେ ମାୟା ହୋଇ ॥
ଲଭିବି ପାପ କର୍ମ ବଳେ । ଏ ଯଶ ଲଭିବି କ୍ଷୟଲେ ॥
ସତ୍ୟ ଉପରେ ଧର୍ମ ନାହିଁ । ଏକଥା ଭୂମି ଅଛି କହି ॥
ସର୍ବ ଅପ୍ରାଧ ସହିପାରେ । ମିଥ୍ୟାର ଭାରେ ମୁହିଁ ଡରେ ॥
ଅଧର୍ମ ସମୁଦ୍ର ପତନେ । ନରକେ ନ ଡରିବ ମନେ ॥
ସ୍ୱସ୍ଥାନ ଭ୍ରଷ୍ଟେ ନାହିଁ ତାପ । ବିପ୍ର ଲଙ୍ଘନେ ଯେତେ ପାପ ॥
ଏ ଭୂମି ଛାଡ଼ି ଅନ୍ତକାଳେ । ମୁହିଁ ଭଜିବି ଅନ୍ତରାଳେ ॥
ସେ ଭୂମି ବିପ୍ର ବାକ୍ୟେ ଦେଇ । କେମନ୍ତେ ଲଙ୍ଘିବଇ ମୁହିଁ ॥
ପ୍ରାଣୀଙ୍କ ହିତେ ସାଧୁଜନେ । କରନ୍ତି ଏ ଧନ ଜୀବନେ ॥
ଦଧୀଚି ଆଦି ଋଷି ଯେତେ । ପୂର୍ବେ ଯେ ସାଧବ ସମସ୍ତେ ॥
ପୃଥିବୀ ଆତ୍ମାବଶ କଲେ । ସଙ୍ଗତେ କିବା ଘେନି ଗଲେ ॥
ମୋହର ବଂଶେ ଯେ ଦାନବେ । ଏ ଭୂମି ପତି ଥିଲେ ପୂର୍ବେ ॥
ସେ ସର୍ବେ କାଳେ ଅସ୍ତ ଗଲେ । ଯଶ ରହିଲା ମହୀତଳେ ॥
ସମରେ ଯେ ବୀରେ ପଶନ୍ତି । ଆତ୍ମ ବିଚାର ନ କରନ୍ତି ॥
ଯେ ତିର୍ଥେ ତେଜନ୍ତି ଶରୀର । ସ୍ୱଧର୍ମେ କରନ୍ତି ବିଚାର ॥
ଯେ ସତପାତ୍ରେ ଦ୍ୟନ୍ତି ଦାନ । ସେ ସର୍ବେ ସାତ୍ତ୍ୱିକ ଜୀବନ ॥
ଏ ସତ୍ୟ ଧର୍ମ ଦୂର କରି । ତୁମ୍ଭ ବଚନ ମନେ ଧରି ॥
ଏ ମୋର ଶରୀର ନ ଥିବ । ଏଥକୁ ସାକ୍ଷୀ ସଦାଶିବ ॥
ବ୍ରହ୍ମାର ବଂଶେ ଜାତ ହୋଇ । ଏମନ୍ତ କହ କିସ ପାଇଁ ॥
ନିଷ୍ଟେ ଧରଣୀ ଦେବି ଦାନ । ଏଥକୁ ସାକ୍ଷୀ ଭଗବାନ ॥
ବେଦ ବିଧାନ ଯେ ଜାଣନ୍ତି । ଆତ୍ମାକୁ ସର୍ବ ଭୂତେ ପାନ୍ତି ॥
ଅନେକ ଯଜ୍ଞମତେ ପୂଜି । ଯାର ଚରଣେ ଭାବେ ଭକ୍ତି ॥
ସେ ହରି ମୋତେ ଦୟାକରି । ଅଥବା ଶରୀର ସଂହାରି ॥
ତହିଁକି ମୋର ଚିନ୍ତା ନାହିଁ । ବିପ୍ରେ ଧରଣୀ ଦେବି ମୁହିଁ ॥
ଅଧର୍ମ ମାର୍ଗେ ଯେବେ ମୋତେ । ବିପ୍ର ମାରିବ କୋପଚିତ୍ତେ ॥
ଏ ବ୍ରହ୍ମତନୁ ରିପୁ ମୋର । ମୁଁ ତ ଏହାର ନିର୍ବଇର ॥
ଯେବେ ବ୍ରାହ୍ମଣ ରୂପ ଧରି । ବିଷ୍ଣୁ ମୋ ସଙ୍ଗେ ରୋଷଭରି ॥
ଯେବେ ମାରିବ ଯୁଦ୍ଧେ ମୋତେ। ସେ ତହୁଁ ଧନ୍ୟ କେ ଜଗତେ

### ଶ୍ରୀ ଶୁକ ଉବାଚ

ଏମନ୍ତ ଶୁଣି ବଳି ମୁଖେ । ସେ ଭୃଗୁ ଅତି ମନ ଦୁଃଖେ ॥
ବଳିର ସତ୍ୟ କଷ୍ଟ ଦେଖି । କ୍ରୋଧେ ଅରୁଣ କରି ଆଖି ॥
କଟାକ୍ଷ ନୟନେ ଅନାଇ । ମୁଖେ କି ଅନଳ ଜଳଇ ॥
ନିର୍ଘାତ କମ୍ପିତ ନିଃଶ୍ୱାସେ । ବଳିକି ଶାପ ଦେଲା ରୋଷେ ॥
ତୁ ସତ୍ୟ ସନ୍ଧ ନୃପମଣି । ମୋହର ମହିମା ନ ଜାଣି ॥
ଗର୍ବ ବହିଲୁ ଯେବେ ଦୁଷ୍ଟ । ସର୍ବ ସଂପଦ ହେଉ ନଷ୍ଟ ॥
ଏମନ୍ତ ଗୁରୁ ଶାପ ପାଇ । ଧରଣୀ ଦାନେ ମନ ଦେଇ ॥
ବାମନ ବେନି ପାଦ ଧରି । ଉଦକ ପୂର୍ବେ ପୂଜା କରି ॥
ବଳିର ପତ୍ନୀ ବିନ୍ଧ୍ୟାବଳି । କଣ୍ଠେ ଭୂଷଣ ରତ୍ନ ମାଳି ॥
ଉଦକ ପୂର୍ଣ୍ଣ ଘଟେ ବେଗେ । ଘେନି ମିଳିଲା ସ୍ୱାମୀ ଆଗେ ॥
ବଳି ବାମନ ପାଦ ଯୁଗେ । ଜଳ ଢାଳିଲା ନେଇ ବେଗେ ॥
ପାଦ ଉଦକ ଘେନି ଶିରେ । ଆନନ୍ଦ ପୁଲକ ଶରୀରେ ॥
ଯେ ଜଳ ଭୁବନ ପାବନୀ । କାନ୍ତ କାମେନୀ ଶିରେ ଘେନି ॥
କୃତାର୍ଥ ହୋଇ କର ଯୋଡ଼ି । କିଙ୍କର ହୋଇ ପାଦେ ପଡ଼ି ॥
ଆନନ୍ଦ ସାଗରେ ବୁଡ଼ିଲେ । ଶୂନ୍ୟେ ଯେ ଦେବେ ଦେଖୁଥିଲେ ॥
ଗନ୍ଧର୍ବ ଗଣ ବିଦ୍ୟାଧର । ସୁସିଦ୍ଧ ଚାରଣ କିନ୍ନର ॥
କରନ୍ତି ଜୟ ଜୟବାଣୀ । କୁସୁମ କଷ୍ଟ ବୃଷ୍ଟି ଆଣି ॥
ସିଞ୍ଚଣ ମନ୍ଦାକିନୀ ବାରି । ପୁଷ୍ପ ବରଷି ସ୍ତୁତି କରି ॥
ସହସ୍ରେ ଦୁନ୍ଦୁଭିର ନାଦ । ବାଜନ୍ତି ଚର୍ତୁବିଧ ବାଦ୍ୟ ॥
ନୃତ୍ୟ କରନ୍ତି ଅପସରୀ । ମଙ୍ଗଳ ନାଦେ ମୋଦଭରି ॥
ଆଗ ହୋଇଲା ତାର ରାଣୀ । ବଳି ଯେ ଘେନି କୁଶପାଣି ॥
ବେଦ ବଚନ ବାକ୍ୟ କରି । ସ୍ୱାମୀ କାମିନୀ ମୋଦ ଭରି ॥
ବାମନ କଲା ସ୍ୱସ୍ତି ବାଦ । ଧରଣୀ ଦେଲା ତିନି ପାଦ ॥
ଆତ୍ମା ସହିତେ ଯେତେଧନ । ଦକ୍ଷିଣା ଦେଲା ଯଜମାନ ॥
ତାର ଦୁର୍ଲ୍ଲଭ କର୍ମ ଶୁଣି । ଦେବେ କରନ୍ତି ଜୟ ବାଣୀ ॥
ବାମନ ହସ୍ତେ ଜଳ ଘେନି । ପାଦକେ ଢାଙ୍କିଲା ମେଦିନୀ ॥
ଦ୍ୱିତୀୟ ପାଦେ ସ୍ୱର୍ଗ ଝାମ୍ପେ । ଘୋର ଶବଦେ ଦିଗ କମ୍ପେ ॥
ଅଦ୍ଭୁତ ବାମନ ଶରୀର । ପୂରିଲା ସ୍ୱର୍ଗ ଅଭ୍ୟନ୍ତର ॥
ବଳି ଯେ ଆଚାର୍ଯ୍ୟ ସହିତେ । ନିବେଶି ବାମନ ଅଗ୍ରତେ ॥
ଦେଖଇ ବାମନ ଶରୀର । ଦେବ ମାନବେ ଅଗୋଚର ॥

ତ୍ରିଗୁଣ ଆତ୍ମା ସେ ସ୍ୱଭାବେ । କିବା ଉପମା ଦେବା ଏବେ ॥
ବେନି ଚରଣ ଭୂ ଆକାଶେ । ପର୍ବତ ଗଣ ଜଙ୍ଘ ଦେଶେ ॥
ପତଙ୍ଗ ଗଣ ଜାନୁ ମୂଳେ । ଉଡ଼ନ୍ତି ଜନ୍ତୁ ଅନ୍ତରାଳେ ॥
ସନ୍ଧ୍ୟା ଦିଶଇ ବସ୍ତ୍ର ପ୍ରାୟେ । ନିଜ ସ୍ୱଭାବେ ବିଶ୍ୱ କାୟେ ॥
ଗୁହ୍ୟ ଦେଶରେ ପ୍ରଜାପତି । ଜଘନେ ଅସୁରେ ବସନ୍ତି ॥
ନାଭି ପ୍ରଦେଶ ନଭ ଦିଶେ । ସପତ ସିନ୍ଧୁ କୁକ୍ଷି ଦେଶେ ॥
ହୃଦେ ବିରାଜେ ତାରାଗଣ । ଯେସନ୍ତେ ଅଳଙ୍କାର ଭୂଷଣ ॥
ଧର୍ମ ବିରାଜେ ହୃଦ ମଧ୍ୟେ । ନିଜ ସ୍ୱଭାବେ ଅଧୋ ଉର୍ଦ୍ଧେ ॥
ସ୍ତନ ମଣ୍ଡଳେ ଋତ ସତ୍ୟ । ମନ ନିବେଶେ ନିଶାନାଥ ॥
ଲକ୍ଷ୍ମୀ ଯେ ହୃଦୟେ ବିରାଜେ । ବେନି କମଳ ହସ୍ତେ ସାଜେ ॥
କଣ୍ଠେ ବିରାଜେ ସାମବେଦ । ରଙ୍ଗ ପ୍ରକାଶେ ଅନୁପାମ ॥
ବାସବ ଆଦି ଦିଗପାଳେ । ଭୁଜେ ଦିଶନ୍ତି ଅନ୍ତରାଳେ ॥
ଗଗନ ଦିଶେ ଶିରଦେଶେ । ମେଘେ ଦଶନ୍ତି କେଶପାଶେ ॥
ନାସିକା ମଧ୍ୟେ ବହେ ଶ୍ୱାସ । ମୁଖେ ସମୀର ଅଣଶ୍ୱାସ ॥
ବେନି ଲୋଚନେ ରବି ଦିଶେ । ବଦନେ ଅନଳ ପ୍ରକାଶେ ॥
ସପତ ଛନ୍ଦ ବାଣୀ ଦେଶେ । ଜିହ୍ୱାରେ ବରୁଣ ପ୍ରକାଶେ ॥
ବିଧି ନିଷେଧ ଭ୍ରୂରୁ ମଧ୍ୟେ । ଦିଶନ୍ତି ଦିବାରାତ୍ର ବାଦେ ॥
କ୍ରୋଧ ଲଲାଟେ ପ୍ରକାଶଇ । ଅଧର ଓଷ୍ଠେ ଲୋଭ ବହି ॥
ସ୍ମରଣେ ରହେ କାମଦେବ । ଏତେ ବିରାଜେ ସର୍ବ ଅଙ୍ଗ ॥
ଅଧର୍ମ ପୃଷ୍ଠ ଦେଶେ ରହେ । କ୍ରମଣ ମାର୍ଗେ ଯଜ୍ଞ ଶୋହେ ॥
ଛାୟା ବିରାଜଇ ମରଣେ । ହସିତ ମାୟା ଅବଧାନେ ॥
ବୃକ୍ଷ ଔଷଧି ରୋମଗଣ । ଆଶ୍ରିତ ନାନା ପଶୁଗଣ ॥
ନଦୀ ସମୂହେ ନାଡ଼ୀ ଦେଶେ । ଅଚଳେ କୂଳ ନଖେ ବସେ ॥
ବ୍ରହ୍ମା ବିରାଜେ ବୁଦ୍ଧି ମଧ୍ୟେ । ରୂପେ ଦେବତା ଗଣ ସିଦ୍ଧେ ॥
ସ୍ଥାବର ଜଙ୍ଗମ ସହିତେ । କୀଟ ପତଙ୍ଗ ଦିଶେ ଗାତ୍ରେ ॥
ସର୍ବାଙ୍ଗେ ଦିଶେ ତିନିପୁର । ଦେବ ମାନବେ ଅଗୋଚର ॥
ଚତୁର ଶସ୍ତ୍ର ଚତୁର୍ଭୁଜେ । ଶଙ୍ଖ କମଳ ଚକ୍ର ସାଜେ ॥
ଗଦା ସାରଙ୍ଗ ଅସି ବର । ତୃଣ ଅକ୍ଷୟ ବାଣ ଶର ॥
ସୁନନ୍ଦ ଆଦି ପାରିଷଦେ । ସମୀପେ ଶ୍ରବନ୍ତି ଆନନ୍ଦେ ॥
ଦିଶେ ଉଭାରି ଦିଗପାଳେ । ମୁନି ବିବୁଧେ ଅନ୍ତରାଳେ ॥
କିରଟି ଅଙ୍ଗଦ ଉଜ୍ଜ୍ୱଳ । ଶ୍ରବଣେ ମକର କୁଣ୍ଡଳ ॥
ଶ୍ରୀବତ୍ସ ଚିହ୍ନ ବନ ମାଳା । କଟୀରେ ସୁବର୍ଣ୍ଣ ମେଖଳା ॥
ବନମାଳାର ଗନ୍ଧବାସେ । ଭ୍ରମରେ ଉଡ଼ୁଛନ୍ତି ପାଶେ ॥
ପାଦକେ ଧରଣୀ ପୂରିଲା । ଦ୍ୱିତୀୟେ ସ୍ୱର୍ଗ ଗ୍ରସ୍ତ କଲା ॥
ଦିଗ ପୂରିଲା ଅଷ୍ଟଭୁଜେ । ମେଘେ ଦିଶନ୍ତି ଚୂଳ ମାଝେ ॥
ଏମନ୍ତେ ବାମନର ଦେହୀ । ତୃତୀୟ ପାଦେ ସ୍ଥାନ କାହିଁ ॥
ମହତ ଜନ ତପ ଲୋକେ । ଲୁଚିଲେ ବାମନ ମସ୍ତକେ ॥
ବୋଲଇ ବିପ୍ର ଜଗନ୍ନାଥ । ଅଦ୍ଭୁତ ବିଷ୍ଣୁର ଚରିତ ॥
ସୁଜନେ ଚିନ୍ତ ଏକ ଚିତ୍ତେ । ଭାଷା ପ୍ରବନ୍ଧେ ଭାଗବତେ ॥
ବଳି ବାମନର ପ୍ରସ୍ତାବ । ତୃତୀୟ ତାପୁଁ ନିସ୍ତରିବ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ବିଶ୍ୱରୂପଦର୍ଶନ ନାମ ଉନବିଂଶୋଽଧ୍ୟାୟ ।*

## ବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବାମନ ମୁଖ ତେଜ ଦେଖି । ହର ବ୍ରହ୍ମା ବୁଜିଲେ ଆଖି ॥
ଭୟେ ମିଳିଲେ ବିଷ୍ଣୁ ପାଶେ । ଅଭୟ ଚରଣର ଆସେ ॥
ଅମର ଆଦି ମୁନିଗଣେ । ମିଳିଲେ ବାମନ ଚରଣେ ॥
ସନନ୍ଦ ଆଦି ଯୋଗୀ ଜନେ । ବେଦ ଉପବେଦ ସୁମନେ ॥
ଯମ ନିୟମ ବେନି ପାଶେ । ସର୍ବେ ମିଳିଲେ ମହାତ୍ରାସେ ॥
ତର୍କ ପୁରାଣ ଇତିହାସ । ଆଗମ ନିଗମ ପ୍ରକାଶ ॥
ଅପରେ ଯୋଗୀ ସିଦ୍ଧ ଯେତେ । ଜ୍ଞାନ ଅନଳ ରନ୍ଧି ଚିତ୍ତେ ॥
ଅଶେଷ କର୍ମ ବନ୍ଧ ଫାଶି । ଅଭ୍ୟାସ କରି ଭସ୍ମରାଶି ॥
ବେଗେ ମିଳିଲେ ମୋଦ ଭରି । ସ୍ତୁତି ବଚନ ମୁଖେ କରି ॥
ହରି ବିରଞ୍ଚି ତୋଷମନେ । କର ସଂପୁଟ ଉପାୟନେ ॥
ବାମନ ପାଦତଳେ ଥୋଇ । ତକ୍ଷଣେ ବ୍ରହ୍ମା ଆଗ ହୋଇ ॥
ଯେ ବିଷ୍ଣୁ ନାଭି ପଦ୍ମ ପାଦ । ଯାହା ସଞ୍ଚୟେ ଏ ଜଗତ ॥
ଆନନ୍ଦେ ଭରି କମଣ୍ଡଳେ । ଶୁଚି ପବିତ୍ର ଗଙ୍ଗା ଜଳେ ॥
ମନ୍ତ୍ର ଉଚାରି ହସ୍ତେ ଘେନି । ଯେ ନିଜ ଭୁବନ ପାବନୀ ॥
ବାମନ ପାଦ ଶୂନ୍ୟେ ଗଲା । ବାଜନ୍ତେ ବ୍ରହ୍ମାଣ୍ଡ ଭାଙ୍ଗିଲା ॥
ବ୍ରହ୍ମାଣ୍ଡେ ମଧ୍ୟେ ଜଳରାଶି । ବେଗେ ବ୍ରହ୍ମାଣ୍ଡ ମଧ୍ୟେ ପଶି ॥
ବିଷ୍ଣୁ ଭୁବନ ପଖାଳିଲା । ପତିତ ପାବନୀ ସ୍ରବିଲା ॥
ସେ ଜଳ କମଣ୍ଡଳେ ଘେନି । ବିଷ୍ଣୁ ସମୀପେ ପଦ୍ମଯୋନି ॥
ସଙ୍ଗତେ ଘେନି ଦେବଗଣ । ଯେ ସିଦ୍ଧ କିନ୍ନର ଚାରଣ ॥
ଯେଉଁଠାରେ ମିଳି ଉପାୟନେ । ମିଳିଲେ ବିଷ୍ଣୁ ସନ୍ନିଧାନେ ॥
ନମି ବାମନ ପାଦ ମୂଳେ । ନିଜ ଅଧିକାର ନିଷ୍ଠଳେ ॥
ଗଙ୍ଗା ଯେ କମଣ୍ଡଳେ ଥିଲା । ବ୍ରହ୍ମା ବିଷ୍ଣୁ ପାଦେ ଢାଳିଲା ॥

ଶୁଚି ପବିତ୍ର ଜଳରାଶି । ଚରଣ ନଖ କୋଣେ ବସି ॥
ତହୁଁ ଉଛୁଳି ଅନ୍ତରୀକ୍ଷେ । ପଡ଼ିଲା ମୁନିଙ୍କ ସମୀପେ ॥
ସୋମ ଆଦିତ୍ୟ ଲୋକ ଜିଣି । ସ୍ୱର୍ଗେ ପଡ଼ିଲା ତରଙ୍ଗିଣୀ ॥
ସୁମେରୁ ଶିଖେ ଅନ୍ତରୀକ୍ଷେ । ସେ ଜଳ ପଡ଼ିଲା ପ୍ରତ୍ୟେକ୍ଷେ ॥
ଚଦ୍ରୁର ଦିଗେ ଚାରିଧାରେ । ପଡ଼ିଲା ଧରଣୀ ଉପରେ ॥
ସମୁଦ୍ରେ ମିଶି ଚାରିଦିଗେ । ନଦୀ ସ୍ୱଭାବେ ଅତି ବେଗେ ॥
ଏବେ ହୋ ଶୁଣ ମହୀପତି । ଚରଣ ଧୋଇ ପ୍ରଜାପତି ॥
ଘେନି ସୁଗନ୍ଧ ପୁଷ୍ପମାଳେ । ଚନ୍ଦନ କର୍ପୂର ଲେପନେ ॥
ସନ୍ନିଧେ ଧୂପ ଦୀପ ଥୋଇ । ଫଳ ଅକ୍ଷତ ମନ୍ତ୍ର ଦେଇ ॥
ଜୟ ଶବଦେ ସ୍ତୁତି ଭଣି । ନିର୍ମଳ ବାକ୍ୟେ ବେଦବାଣୀ ॥
ବିଷ୍ଣୁର ମହିମା ଅଙ୍କିତେ । ତାଣ୍ଡବ ବାଦ୍ୟ ନୃତ୍ୟ ଗୀତେ ॥
ଶଙ୍ଖ ଦୁନ୍ଦୁଭି ସ୍ୱନ ଘୋଷେ । ଜାମ୍ବେବ ମିଳି ବିଷ୍ଣୁପାଶେ ॥
ଅତି ଉଲ୍ଲାସ ସୁଖମନେ । ମିଳି ଦୁନ୍ଦୁଭି ଶଙ୍ଖ ସ୍ୱନେ ॥
ବିଷ୍ଣୁର ଯଶ ଗାଇ ତୋଷେ । ଯେ ଯଶ ପୂରେ ଦଶଦିଶେ ॥
ଏମନ୍ତେ ମହୋତ୍ସବ ଦେଖି । ଅସୁରେ ଭୁବନ ଉପେକ୍ଷି ॥
ଦ୍ୱିପାଦ ଦାନେ ସର୍ବମହୀ । ପୂରିଲା ବାମନର ଦେହୀ ॥
ସ୍ୱସ୍ଥାନେ ରହି ନ ପାରିଲେ । ବଳିର ସମୀପେ ମିଳିଲେ ॥
ଗୁରୁ ବଚନ କୋପଚିତ୍ତେ । ବୋଲନ୍ତି ବଳିର ଅଗ୍ରତେ ॥
ବ୍ରାହ୍ମଣ ନୋହେ ଏ ବାମନ । କପଟେ ମାଗେ ଭୂମିଦାନ ॥
ପ୍ରତ୍ୟେକ୍ଷେ ପ୍ରଭୁ ଭଗବାନ । ମାୟାବୀ ଜନଙ୍କ ମୋହନ ॥
ମାୟାବୀ ମାନଙ୍କର ବର । ସମ୍ପଦ ହରିଲା ତୋହର ॥
ଏ ବଳି ନିତ୍ୟେ ସତ୍ୟବ୍ରତୀ । ବିଶେଷେ ବ୍ରାହ୍ମଣ ଭଗତି ॥
କେବେହେଁ ମିଥ୍ୟା ଏ ନ କହେ । ଦୁଃଖୀ ଜନଙ୍କୁ ଦୟା ବହେ ॥
ଏମନ୍ତ ବୋଲି ଏକ ଚିତ୍ତେ । ଅସୁରେ ଧାଇଁଲେ ତୁରିତେ ॥
ଶୂଳ ଖଡ଼୍ଗ ଧରି କରେ । ଧାଇଁଲେ ଘୋର ନାଦ ଭରେ ॥
ଶବଦେ ଆକାଶ ପୂରିଲା । ଧାମନ୍ତେ ଧରଣୀ କମ୍ପିଲା ॥
ତାହାଙ୍କୁ ଦେଖି ବିଷ୍ଣୁ ଗଣେ । ତକ୍ଷଣେ ଉଭାରିଲେ ରଣେ ॥
ମିଳିଲେ କରେ ଶସ୍ତ୍ରଧରି । ଶଙ୍ଖ ଶବଦେ ମୋଦ ଭରି ॥
ନନ୍ଦ ସୁନନ୍ଦ ଜୟ ଆଦି । ବିଜୟ ପ୍ରବଳ ସୁବୁଦ୍ଧି ॥
ନଳ କୁମୁଦ କୁମୁଦାକ୍ଷ । ବିଷ୍ୱକେଶନ ଶିବ ବକ୍ଷ ॥
ବିନତା ସୁତ ଯେ ଜୟନ୍ତ । ସୁବାହୁ ପିଶଙ୍ଗୀ ସମସ୍ତ ॥
ସାତ୍ୱତ ପୁଷ୍ପଦନ୍ତ ବୀର । ଶ୍ରୁତଦେବ ସୁମନୋହର ॥
ଦଶ ସହସ୍ର ହସ୍ତୀବଳ । ସ୍ୱଭାବେ ତେଜୋ ଅନର୍ଗଳ ॥
ବେଗେ ମିଳିଲେ ଘୋର ରଣେ । କୁଞ୍ଜର ଯେହ୍ନେ ପଦ୍ମବନେ ॥
ଅସୁର ବଳ ନାଶ ଦେଖି । ବଳି ହୋଇଲା ମନେ ଦୁଃଖୀ ॥
ଗୁରୁ ବଚନ ମନେ ସ୍ମରି । ବୋଲଇ ଜଣେ ଜଣେ ଧରି ॥
ହେ ବିପ୍ରଚିତି ହେ ପ୍ରହେତି । ହେ ରାହୁ ତାରକ ସୁମତି ॥
ମୋର ବଚନ ଚିତ୍ତେ ଧରି । କେବେହେଁ ସଂଗ୍ରାମ ନକରି ॥
ଆମ୍ଭର ନୁହେଁ ଯଶକାଳ । ଈଶ୍ୱର ମାୟା ଅନ୍ତରାଳ ॥
ଯେ ପ୍ରଭୁ ବଳେ ବଳବନ୍ତା । ପ୍ରାଣୀଙ୍କ ଦୁଃଖ ସୁଖ ଦାତା ॥
ସ୍ୱୟଂ ଅଶେଷ ମାୟାଧର । ସଂସାର ଯାର ଖେଳଘର ॥
ସେ ଯାକୁ କାଳେ ବାମ ହୋଇ । ତାହର ଜୟ ଯଶ କାହିଁ ॥
ଯେବେ ଦଇବ ଆମ୍ଭ ପକ୍ଷେ । ସୁକାଳ ହୋଇବ ପ୍ରତ୍ୟେକ୍ଷେ ॥
ତେବେ ଜିଣିବା ଆମ୍ଭେ ରଣେ । ଏମନ୍ତ ବୋଧି ଜଣେ ଜଣେ ॥
ବଳି ବଚନ ବୀରେ ଶୁଣି । ଜୟ ଅଜୟ ପରିମାଣି ॥
ପୁଣି ମିଳିବୁ ଜୟ କାଳେ । ଏମନ୍ତ ବୋଲି ରସାତଳେ ॥
ପଶିଲେ ମନେ କ୍ରୋଧ ଭରି । ଏବେ ହୋ ଶୁଣ ଦଣ୍ଡଧାରୀ ॥
ଗରୁଡ଼ ବିଷ୍ଣୁ ଆଜ୍ଞା ପାଇ । ବଳି ସମୀପେ କ୍ରୋଧ ବହି ॥
ବରୁଣ ପାଶ ଧରି କରେ । ବଳିକି ବାନ୍ଧିଲା ନିର୍ଭରେ ॥
ଯଜ୍ଞର ସପତ ଦିବସେ । ବଳିକି ବାନ୍ଧି ଅତିରୋଷେ ॥
ଶୁଭିଲା ହାହାକାର ନାଦ । ଅସୁରେ ହୋଇଲେ ବିଷାଦ ॥
ବଳିର ଦେଖିଣ ବନ୍ଧନ । ବୋଲନ୍ତି ପ୍ରଭୁ ଭଗବାନ ॥
ତୃତୀୟ ପାଦ ମୋର କରେ । ଦେଲୁ ଯେ ତୁକାର ଉଚ୍ଚାରେ ॥
ଭୂମି ଗଗନ ବେନି ପାଦେ । ଆବର ପାଦ ଶୂନ୍ୟେ ଭେଦେ ॥
ତୃତୀୟ ପାଦ ଏବେ ଦିଅ । ସକଳ ଦୁଃଖୁଁ ପାରି ହୁଅ ॥
ଯାବତ ଚନ୍ଦ୍ର ସୂର୍ଯ୍ୟ ଦିଶେ । ପବନ ଅନଳ ପ୍ରକାଶେ ॥
ତାବତ ଭୂମି ଏ ତୋହର । ମୁଁ ଯେ ଘେନିଲି ବେନିପୁର ॥
ତୃତୀୟ ପାଦେ ସ୍ଥାନ ଦେଇ । ତୁ ଏବେ ରହ ସୁଖୀ ହୋଇ ॥
ନଦେଲେ ପଡ଼ିବୁ ନରକେ । ଅଯଶ ଥିବ ତିନିଲୋକେ ॥
ଏମନ୍ତେ ବଳି ଆଗେ କହି । ବିଷ୍ଣୁ ରହିଲେ ସ୍ଥିର ହୋଇ ॥
ବୋଲଇ ବିପ୍ର ଜଗନ୍ନାଥ । ସୁଜନ ହିତେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ବଳି ବନ୍ଧନେ ନାମ ବିଂଶୋଽଧ୍ୟାୟଃ ।*

## ଏକବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବଳିକି ହରି ଯେତେବେଳେ । ବନ୍ଧନ କଲେ ଦାନ ଛଳେ ॥
ବନ୍ଧନ ଦୁଃଖେ ବଳି ମନ । ସାତ୍ତ୍ୱିକେ ନ ଭାଙ୍ଗିଲା ଆନ ॥

ବିଷ୍ଣୁର ପାଦେ ମନ ଦେଇ । ବୋଲେ ବାମନ ମୁଖ ଚାହିଁ ॥

## ବଳି ଉବାଚ

ଭୋ ନାଥ ମୋର ବାକ୍ୟ ଯେବେ । ମୁ ଯେ ଲଙ୍ଘିବି ମୂଢ଼ ଭାବେ ॥
ଏ କଥା କେବେ ହେଁ ନ ଘଟେ । ଯଦି ଜୀବନ ମୋର ତୁଟେ ॥
ତୃତୀୟ ପାଦ ତୋର ହସ୍ତେ । ଦେଇ ମୁଁ ଲଙ୍ଘିବି କେମନ୍ତେ ॥
ଚରଣ ଅଛି ଯେବେ ତୋର । ଭୋ ନାଥ ମୋର ମୁଣ୍ଡେ କର ॥
ନରକେ ମୋର ଭୟ ନାହିଁ । ତୋର ବନ୍ଧନେ ମୁଁ ଡରଇ ॥
ତୋ ଅନୁଗ୍ରହ ଯାରେ ହୋଏ । ସେ ପ୍ରାଣୀ ବହୁ ଦୁଃଖ ସହେ ॥
ତୁ ନାଥ ଅସୁରଙ୍କ ବଂଶେ । ପରୋକ୍ଷ ଗୁରୁ ତୁ ପ୍ରତ୍ୟେକ୍ଷେ ॥
ଆମ୍ଭର ଚକ୍ଷୁ ମଦେ ଅନ୍ଧ । ସତ୍ୟ ଯେ ମଣୁ ଏ ସମ୍ପଦ ॥
ଏ ମଦେ ଅଞ୍ଜନ ସଦୃଶ । ଦୟାରେ କଲୁ ତୁ ବିଭ୍ରଂସ ॥
ବଇରୀ କରି ତୋ ବିଷୟେ । ପୂର୍ବେ ଯେ ଥିଲେ ମହାଶୟେ ॥
ଅନ୍ତେ ଭଜିଲେ ତୋ ଚରଣ । ଅନେକ ମୁନି ସିଦ୍ଧ ଗଣ ॥
ତୁ ନାଥ ମୋତେ ଦୟାକରି । ବରୁଣ ପାଶେ ବନ୍ଦୀ କରି ॥
ନିଗ୍ରହ କରୁ ମୋତେ ଯେତେ । ସେ ଭୟ ନାହିଁ ମୋର ଚିତ୍ତେ ॥
ତୋ ଭକ୍ତ ମୋର ପିତା ମହ । ସାଧୁ ସୁଗୁଣ ମହାଶୟ ॥
ତୋର ଚରଣ ଆଶ୍ରେ କରି । ପିତାର ଦଣ୍ଡରୁ ନିସ୍ତରି ॥
ଜାଣଇ ମିଥ୍ୟା ଏ ଶରୀର । କେ ବନ୍ଧୁ କେ ଅବା ଅପର ॥
କିବା ଜନନୀ ଭ୍ରାତୃ ତାତ । କିବା ସମ୍ପଦ ଏ ଜଗତ ॥
ପତ୍ନୀ ତନୁଜ କେହି ନୋହେ । ସର୍ବେ ଅଛନ୍ତି ମାୟା ମୋହେ ॥
ଏ ଯେତେ ସଂସାର ଦେଖଇ । ଜନ୍ମ ମରଣ ହେତୁ ତୁହି ॥
ସେ ପୁଣି ଏମନ୍ତ ବିଚାରି । ତୋ ପାଦେ ଚିତ୍ତ ଦୃଢ଼ କରି ॥
ଅନ୍ତେ ପଶିଲା ତୋର ପାଦେ । ମାୟାକୁ ଜିଣି ଅପ୍ରମାଦେ ॥
ରହିଲା ପାରିଷଦ ହୋଇ । ଜନ୍ମ ମରଣ ଆଉ କାହିଁ ॥
ତୋର ମହିମା ଭାବଗ୍ରାହୀ । ମୂଢ଼େ ଜାଣିବେ ଅବା କାହିଁ ॥

## ଶ୍ରୀ ଶୁକ ଉବାଚ

ଏମନ୍ତ କହୁ କହୁ ବଳି । ପ୍ରତ୍ୟକ୍ଷେ ଯେସନେ ବିଜୁଳି ॥
ଗଗନେ ଶୁଭେ ଶଙ୍ଖନାଦ । ତକ୍ଷଣେ ମିଳି ପ୍ରହଲାଦ ॥
ବଳି ନମିଲା ତାକୁ ଦେଖି । ବାମନ ସମୀପ ଉପେକ୍ଷି ॥
ବିଷ୍ଣୁର ପ୍ରାୟେ ତାର ତେଜ । ତୁଲ୍ୟ ନୁହଁଇ ଗ୍ରହ ରାଜ ॥
ପିଶଙ୍ଗ ବସ୍ତ୍ର ପରିଧାନ । ସୁନ୍ଦର ନଳିନ ନୟନ ॥
ପ୍ରଳମ୍ବ ବାହୁ ହୃଦେ ଶୋହେ । ରୂପେ ଅନଙ୍ଗ ସମ ନୋହେ ॥
କଣ୍ଠେ କୁଣ୍ଠିତ ହୋଏ ପଦ । ଆନନ୍ଦେ ଶୋକ ଗଦଗଦ ॥
ଚରଣେ ଦଣ୍ଡବତେ ଶୋଇ । ମନ କଳ୍ପିତେ ଅର୍ଘ୍ୟ ଦେଇ ॥
ରହିଲା ପିତାମହ ପାଶେ । ବାମନ ଅନୁଗ୍ରହ ଆଶେ ॥
ସେ ପ୍ରହଲାଦ ଉଠି ବେଗେ । ମିଳିଲା ବିଷ୍ଣୁପାଦ ଯୁଗେ ॥
ଆନନ୍ଦେ ଅଶ୍ରୁ ଜଳ ଭରି । କର ଅଞ୍ଜଳି ଶିରେ ଧରି ॥
ଆନନ୍ଦେ ଶୋକ ଗଦଗଦ । ସ୍ତୁତି କରଇ ପ୍ରହଲାଦ ॥

## ପ୍ରହ୍ଲାଦ ଉବାଚ

ତୁ ନାଥ ଅନୁଗ୍ରହ ମନେ । ଏହାକୁ ସ୍ଥାପି ଇନ୍ଦ୍ର ସ୍ଥାନେ ॥
ପୁଣି ଭ୍ରଂଶାଉ ସୁଖ ସ୍ଥାନୁଁ । ଯେଣୁ ହୋଇଲା ତୋର ମନୁ ॥
ନିଶ୍ଚୟେ କଲୁ ଅନୁଗ୍ରହ । ଯେଣୁ ନାଶିଲୁ ମାୟା ମୋହ ॥
ନମସ୍ତେ ଜଗତ ଈଶ୍ୱର । ନମସ୍ତେ ଚକ୍ର-ଗଦାଧର ॥
ତୁ ନାରାୟଣ ବିଶ୍ୱରୂପୀ । ବିଶ୍ୱ ସଂସାର ବିଶ୍ୱବ୍ୟାପୀ ॥
ମହା ମହିମା ତୋର ପାଦେ । ଚତୁର ମୁଖେ ବେଦନାଦେ ॥
ବଳିର ପତ୍ନୀ ଆସି ବେଗେ । ବିଷ୍ଣୁ ଚରଣ ଅନୁରାଗେ ॥
ସ୍ୱାମୀଙ୍କ ସଙ୍ଗେ ଅତି ଦୁଃଖୀ । ସ୍ତୁତି କରଇ ଅଶ୍ରୁମୁଖୀ ॥

## ବିନ୍ଧ୍ୟାବଳି ଉବାଚ

ଭୋ ନାଥ ନିଜ କ୍ରୀଡ଼ା ଅର୍ଥେ । ତୋର ପ୍ରକାଶ ତ୍ରି ଜଗତେ ॥
ତୋହର ମହିମା ନଜାଣି । ଗର୍ବ ବହନ୍ତି ଯେତେ ପ୍ରାଣୀ ॥
ଜ୍ଞାନ ହରାନ୍ତି ସୁଖ ଭୋଳେ । ସେ କାହିଁ ଥିବେ ଏ ଶୟଳେ ॥

## ବ୍ରହ୍ମା ଉବାଚ

ଭୂତଭାବନ ଭୂତ ଈଶ । ହେ ଦେବ ଦେବ ଜଗଦୀଶ ॥
ଏହାକୁ ନିଗ୍ରହ ତୁ କଲୁ । ସକଳ ସମ୍ପଦ ହରିଲୁ ॥
ସର୍ବ ସମ୍ପଦ ଦେଇ ତୋତେ । ସମ୍ଭ୍ରମ ନ କଲାନା ଚିତ୍ତେ ॥
ନିର୍ମଳ ଚିତ୍ତ ତୋର ପାଦେ । ଅର୍ଘ୍ୟ ନିବେଶି ଅପ୍ରମାଦେ ॥
ତ୍ରିଲୋକ ତୋତେ ଦାନଦେଲା । ଚିତ୍ତେ ବିଷାଦ ନ ଚିନ୍ତିଲା ॥
ତୁ ନାଥ ବସୁ ସର୍ବ-ଭୂତେ । ଏହାକୁ ବାନ୍ଧିଲୁ କେମନ୍ତେ ॥
ତୁ ନାଥ ସର୍ବ ଚିତ୍ତ ଜାଣୁ । କେ ତୋର ମହିମା ବଖାଣୁ ॥
ବ୍ରହ୍ମାର ବାକ୍ୟ ଶୁଣି ହରି । ବଳି କି ଚିତ୍ତେ ଦୟା କରି ॥
ବୋଇଲନ୍ତି ପ୍ରଭୁ ଭଗବାନ । ବିଧାତା ଶୁଣ ମୋ ବଚନ ॥

## ଶ୍ରୀ ଭଗବାନ ଉବାଚ

ମୁଁ ଯାକୁ ଅନୁଗ୍ରହ କରି । ସର୍ବ ସଂପଦ ବେଗେ ହରି ॥
ଯେ ଅର୍ଥମଦେ ମତ୍ତ ହୋଇ । ପର ଅପର ନ ଜାଣଇ ॥
ମୁଁ ଯେ ବସଇ ସର୍ବ ଭୂତେ । ମୋତେ ନ ମାନେ ଗର୍ବ ଚିତ୍ତେ ॥
ଏ ଆତ୍ମା ଜୀବ କାମ କର୍ମେ । ମାୟାରେ ସର୍ବଭୂତେ ଭ୍ରମେ ॥
ନାନା ଯୋନିରେ ଜନ୍ମ ହୋଇ । ଜ୍ଞାନ ନ ଲଭେ ମାୟା ମୋହି ॥
ଜନ୍ମ କରମ ଦୟା ରୂପ । ବିଦ୍ୟା ଐଶ୍ୱର୍ଯ୍ୟ ଧନାଧିପ ॥

ଏ ଭାବେ ଗର୍ବ ଯାର ନାହିଁ । ମୋହର ଅନୁଗ୍ରହ ତହିଁ ॥
ଯେ ଜନ୍ମ ମାନସ୍ତମ୍ଭ ବହେ । ଧନ ସଂପଦ ରୂପ ଦେହେ ॥
ସେ ମୋତେ ଜାଣିବେ କେମନ୍ତେ । ମାୟା ମୋହିତ ଅବିରତେ ॥
ଏ ଯେ ଦାନବ ଦୈତ୍ୟ ରାଜା । ନିଜ ସ୍ୱଭାବେ ମହା ତେଜା ॥
ଅସୁର ବୁଦ୍ଧି ନ ମାନିଲା । ଗୁରୁ ବଚନ ନ ଶୁଣିଲା ॥
ବନ୍ଧୁ ବାନ୍ଧବ ଜ୍ଞାତି ଯେତେ । ଏହାକୁ ଛାଡ଼ିଲେ ସମସ୍ତେ ॥
କେବେହେଁ ସଖ ନ ଛାଡ଼ିଲା । ମୋର ବଚନେ ମନ ଦେଲା ॥
ଏ ଭୂମି ଦାନ ଦେଲା ମୋତେ । ତ୍ରୈଲୋକ୍ୟେ ଥିବ ଏ କେମନ୍ତେ
ଏହାକୁ ଦେବି ଦିବ୍ୟ ସ୍ଥାନେ । ସ୍ୱର୍ଗ ହୁଁ ଦୁର୍ଲ୍ଲଭ ଭୁବନେ ॥
ନିର୍ମିତ ବିଶ୍ୱକର୍ମା ପୁର । ଦେବ ମାନବେ ଅଗୋଚର ॥
ଯେ ପୁରେ ଯୁଗ ସଂଖ୍ୟା ନାହିଁ । କାଳର ତେଜ ନ ଲାଗଇ ॥
ସେ ପୁରେ ଥିବ ଦିନା କେତେ । ସାବର୍ଣ୍ଣି ମନୁ ପରିଯନ୍ତେ ॥
ସେ ମନୁ କାଳେ ସ୍ୱର୍ଗପୁରେ । ବସିବ ଅମର ଶରୀରେ ॥
ଇନ୍ଦ୍ର ହୋଇବ ସ୍ୱର୍ଗ ଦେଶେ । ମୁଁ ଏବେ ଥିବି ଏହାପାଶେ ॥
ନିଶ୍ଚିତେ ଥାଉ ଏ ସୁତଳେ । ଦାରା ତନୟ ଜ୍ଞାତି ମେଳେ ॥
ଧନହିଁ ଥିବ ଅପ୍ରମିତ । ଶତ୍ରୁ ନୋହିବ ଉପଗତ ॥
ସୁଦରଶନ ତୋ ସମୀପେ । ଆବୋରି ଥିବ ଅତିରେକେ ॥
ଦୈତ୍ୟ ଦାନବ ତାର ସଙ୍ଗେ । ନିରତେ ଥିବେ ମନରଙ୍ଗେ ॥
ମୁହିଁ ଯେ କରେ ଗଦାଧରି । ଥିବି ମୁଁ ତୋ ପୁର ଆବୋରି ॥
ଅନିଶେ ଦେଖୁଥିବ ମୋତେ । ଥିବି ମୁଁ ତୋହର ଅଗ୍ରତେ ॥
ଏମନ୍ତ କହି ଭଗବାନ । ଫେଡ଼ିଲେ ବଳିର ବଂଧନ ॥
ସେ ହରି ଚରଣ ପଂକଜେ । ବ୍ରାହ୍ମଣ ଜଗନ୍ନାଥ ଉଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂଅଷ୍ଟମସ୍କନ୍ଧେ ବଳିମୋକ୍ଷଣଂ ନାମ ଏକବିଂଶୋଽଧ୍ୟାୟଃ ।*

## ଦ୍ୱାବିଂଶ ଅଧ୍ୟାୟ

### ଶ୍ରୀଶୁକ ଉବାଚ

ଏମନ୍ତ ବିଷ୍ଣୁ ମୁଖୁ ଶୁଣି । ବଳି କୃତାର୍ଥ ପ୍ରାୟେ ମଣି ॥
ସାଧୁ ମହତ ସେ ସ୍ୱଭାବେ । ପ୍ରସନ୍ନ ମନେ ବିପ୍ର ଭାବେ ॥
କର ଅଂଜଳି ଶିରେ କରି । ରୋମ ପୁଲକେ ଅଶ୍ରୁ ଭରି ॥
ପ୍ରଣାମ କରି ବିଷ୍ଣୁ ପାଦେ । ବୋଲେ ଆନନ୍ଦ ଗଦଗଦେ ॥

### ବଳି ଉବାଚ

ମୋହର ଭାଗ୍ୟ ଏ ଜଗତେ । ଦାନ ମୁଁ ଦେଲି ତୋର ହସ୍ତେ ॥
ବ୍ରହ୍ମା ସୃଷ୍ଟିରେ ହୋଇ ଜନ୍ମ । କେବା ଲଭିବ ଏଡ଼େ କର୍ମ ॥
ଭୋ ନାଥ ଅନୁଗ୍ରହ କର । ଦିଗପାଳଙ୍କୁ ଅଗୋଚର ॥
ଯେ ଅବା ଧରି ନିଜ ପଦ । ଦୁର୍ଲ୍ଲଭ ଲଭେ ତୋ ପ୍ରସାଦ ॥

### ଶ୍ରୀ ଶୁକ ଉବାଚ

ଏମନ୍ତ ବିଷ୍ଣୁ ଆଗେ କହି । ପୁତ୍ର କଳତ୍ର ସଂଗେ ଲଇ ॥
ବଳି ଯେ ବସିଲା ନିଷ୍କଳେ । ଗୋବିନ୍ଦ ଚାପିଲେ ପାତାଳେ ॥
ତକ୍ଷଣେ ସୁତଳେ ପ୍ରବେଶ । ଶୁଭିଲା ଜୟ ଜୟ ଘୋଷ ॥
ଇନ୍ଦ୍ରକୁ ଆଣି ତୋଷ ମନେ । ସ୍ଥାପିଲେ ଅମର ଭୁବନେ ॥
ଅଦିତି କଲା ପୟୋବ୍ରତ । ସଫଳ କଲେ ଗୋପୀନାଥ ॥
ଦେଖିଣ ବାମନର ଗତି । କଲେ ପ୍ରହ୍ଲାଦ ସନ୍ତତି ॥
ଖଣ୍ଡିଲେ ଜଗତ ବିଷାଦ । ବଳି ଦେଖିଲା ପଦ୍ମପାଦ ॥
ଏମନ୍ତେ ନମି ବିଷ୍ଣୁ ପାଦେ । ଆନନ୍ଦେ ଅଶ୍ରୁ ଗଦଗଦେ ॥
ହିରଣ୍ୟ କଶ୍ୟପ କୁମର । ବୋଲଇ ଦେଖ ଭାଗ୍ୟ ମୋର ॥
ଏ ଜଗନ୍ନାଥ ପରସାଦେ । ଭଲେ ଲଭିଲେ ବ୍ରହ୍ମା ପାଦେ ॥
କମଳା ବକ୍ଷସ୍ଥଳେ ବସେ । କଟାକ୍ଷେ ଜନ ଦୁଃଖ ନାଶେ ॥
ସର୍ବଦା ସମୀପେ ବସନ୍ତି । ପ୍ରସାଦ ଲଭି ନ ପାରନ୍ତି ॥
ଯେ ପାଦପଦ୍ମ ରେଣୁ ଆଶେ । ଯୋଗୀ ଏ ଯୋଗ ସାଧିପ୍ରାସେ ॥
ଅଷ୍ଟାଙ୍ଗ ଯୋଗେ ପାଇ ପ୍ରାସ । ଚରଣେ କରି ଥାନ୍ତି ଆସ ॥
ସେ କାହିଁ ଲଭିବେ ଚରଣେ । ଯାହା ନ ପାନ୍ତି ମୁନିଗଣେ ॥
ଏମନ୍ତ ପ୍ରହ୍ଲାଦ କହି । ବାମନ ପାଦେ ଶିର ଦେଇ ॥
ଅନେକ ମତେ ସ୍ତୁତି କଲା । ତକ୍ଷଣେ ସୁତଳେ ପଶିଲା ॥
ପ୍ରହ୍ଲାଦ ସଙ୍ଗେ ଦୈତ୍ୟ ବଳେ । ସକଳେ ମିଳିଲେ ସୁତଳେ ॥

### ଶ୍ରୀ ଶୁକ ଉବାଚ

ଏବେ ହୋ ଶୁଣ ପରୀକ୍ଷିତ । ଅଦ୍ଭୁତ ବିଷ୍ଣୁର ଚରିତ ॥
ଯଜ୍ଞ ପୁରୁଷ ରୂପଧରି । ଅନଳ କୁଣ୍ଡୁ ଅବତରି ॥
ଭୃଗୁ ବଦନ ଚାହିଁ ରୋଷେ । ବୋଲନ୍ତି ସ୍ୱଧର୍ମ ବିଶ୍ୱାସେ ॥
ଚାହିଁ ସେ ବାମନ ଚରଣ । ଯଜ୍ଞ ଶରୀରେ ନାରାୟଣ ॥
ଯଜ୍ଞ ସ୍ୱଭାବେ ବ୍ରହ୍ମା ଆଦି । ବିପ୍ରେ ଅଛନ୍ତି ବେଦବାଦୀ ॥
ତାହାଙ୍କ ମଧ୍ୟେ ରୋଷ ଭରି । କହନ୍ତି ଯଜ୍ଞ ରୂପ ଧରି ॥

### ଯଜ୍ଞ ପୁରୁଷ ଉବାଚ

ତୁ ବ୍ରହ୍ମ ସନ୍ତନୁର ଶିଷ୍ୟ । ଜାଣୁ ତୁ ଏ ଭୂତ ଭବିଷ୍ୟ ॥
ଆଗମ ନିଗମ ବିଖ୍ୟାତ । ମୁଁ ତ ଦେଖିଲି ବିପରୀତ ॥
ଯଜ୍ଞ ସଂକଳ୍ପ କରି ବଳେ । ବଳି ଇନ୍ଦ୍ରପଦ ନିଷ୍କଳେ ॥

ଏବେ ତୁ କର୍ମ ଛିଦ୍ର ଦେଖି । ରହିଲୁ ଯଜ୍ଞକୁ ଉପେକ୍ଷି ॥
ଯଜ୍ଞ ଲଙ୍ଘନ କର୍ମ କଲେ । କେମନ୍ତେ ବର୍ତ୍ତିବୁ ତୁ ଭଲେ ॥
ଏ ଯଜ୍ଞ ତୋହର ଗୋଚର । ତୁ ଏବେ ପୂର୍ଣ୍ଣାହୁତି କର ॥
ଫଳ ପାଇବ ଯଜମାନ । ତା କୁଳେ ଥିବ ତୋର ମାନ୍ୟ ॥
ଏମନ୍ତ ଯଜ୍ଞ ମୁଖୁ ଶୁଣି । ଭୃଗୁ ଅନେକ ସ୍ତୁତି ଭଣି ॥
ବୋଲଇ ଯୋଡ଼ି ବେନିକର । ପୁଲକ ଆନନ୍ଦ ଶରୀର ॥
ଭୋ ନାଥ !ଏ ଯଜ୍ଞ ଶରୀର । ଅଶେଷ ଜନ୍ତୁ ଉପକାର ॥
ଏମନ୍ତ ଆଜ୍ଞା ଘେନି ମାଥେ । ଶ୍ରୁବ ଧଇଲା ଦକ୍ଷ ହସ୍ତେ ॥
ଋତ୍ୱିଜ ଋଷିଗଣ ସଙ୍ଗେ । ଆହୁତି ଦେଲା ନାନାରଙ୍ଗେ ॥
ଆନନ୍ଦେ କରି ଅଦଭୂତ । ଭୃଗୁ ହୋଇଲା କୃତ କୃତ୍ୟ ॥
ଏବେ ତୁ ଶୁଣ ହୋ ରାଜନ । ବାମନ ରୂପେ ଭଗବାନ ॥
ବଳିର ହସ୍ତୁ ଘେନି ଦାନ । କପଟେ ଏ ତିନି ଭୁବନ ॥
ଇନ୍ଦ୍ରକୁ ଇନ୍ଦ୍ର ପଦେ ସ୍ଥାପି । ତିନି ଭୁବନେ ଦେହ ବ୍ୟାପୀ ॥
ବିଷ୍ଣୁର ଦେଖି ଦିବ୍ୟ ଗତି । ସକଳ ଦେବେ ବେଦପତି ॥
ଭୃଗୁ ଅଙ୍ଗିରା ଘେନି ତୁଲେ । ପିତୃ ରାଜନ ମୁନି ଜନେ ॥
ସକଳ ତୁଲେ ଭୂତପତି । ମିଳିଲେ କଶ୍ୟପ ଅଦିତି ॥
ଦିଗପାଳଙ୍କ ମଧେ ଆଣି । କଞ୍ଜ କୁସୁମ ଗଙ୍ଗାପାଣି ॥
ବାମନ କରି ଅଭିଷେକ । ସର୍ବ ସମ୍ପଦେ ମନ ସୁଖ ॥
ଅଶେଷ ନୃତ୍ୟ ଗୀତ ବାଦ୍ୟେ । ବାମନ ସ୍ଥାପି ଇନ୍ଦ୍ର ପଦେ ॥
ସର୍ବ ସମ୍ପଦ ସଙ୍ଗେ ଘେନି । ମଙ୍ଗଳ ବେଦନାଦେ ଧ୍ୱନି ॥
ବ୍ରହ୍ମା ଶଙ୍କର ତୋଷ ମନେ । ବାମନ ବସାଇ ବିମାନେ ॥
ଆନନ୍ଦେ ପ୍ରଜାପତି ବୋଲେ । ସକଳ ଲୋକପାଳତୁଲେ ॥
ଇନ୍ଦ୍ର ବାମନ ଭୁଜ ବଳେ । ସକଳ ଦିଗପାଳ ମେଳେ ॥
ନିଷ୍ଠିନ୍ତେ ସ୍ୱର୍ଗେ ସେ ବସିଲା । ଯେଣୁ ଅଦିତି ବ୍ରତ କଲା ॥
ଏବେ ହୋ ପରୀକ୍ଷିତ ଶୁଣ । ସଙ୍ଗତେ ଘେନି ଦେବଗଣ ॥
ବାମନ ପାଦେ ସ୍ତୁତି କଲେ । ନିଷ୍ଠିନ୍ତେ ନିଜପୁର ଗଲେ ॥
ବଳି ବାମନର ପ୍ରସ୍ତାବେ । ପ୍ରଶଂସା କରି ଶୁଦ୍ଧଭାବେ ॥
ତୁ ଯେଣୁ ପଚାରିଲୁ ମୋତେ । ବାମନ ରୂପ ତୋ ଅଗ୍ରତେ ॥
କହିଲି ଆଦି ଅନ୍ତ କରି । ଯେ କଥା ଶ୍ରବଣେ ନିସ୍ତରି ॥
ବିଷ୍ଣୁ ମହିମା କେ କହିବ । ଯାହା ନ ଜାଣେ ବ୍ରହ୍ମା ଶିବ ॥
ଭୂମିରେ ରେଣୁ ଅଛି ଯେତେ । ଆକାଶେ ନକ୍ଷତ୍ର ସହିତେ ॥
ମେଘ ବରଷେ ଯେତେ ଧାରେ । ରେଣୁ ପ୍ରକାରେ ସେ ନିହାରେ
ଏହା ଜାଣନ୍ତି ଅତିରେକ । ଜଗତେ ଅଛନ୍ତି ବା ଲୋକେ ॥
ହରି ମହିମା ସଂଖ୍ୟା କରି । ନାହିଁ ସଂସାରେ ଦେହ ଧରି ॥
ସେ ହରି ଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ବଳି ପାତାଳ ଗମନେ ନାମ ଦ୍ୱାବିଂଶୋଽଧ୍ୟାୟ ।*

## ତ୍ରୟୋବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ହୋ ଅଭିମନ୍ୟୁ ବଳା । ଏମନ୍ତେ ଈଶ୍ୱରର ଲୀଳା ॥
ସ୍ୱମାୟା କଳ୍ପିତ ସଂସାରେ । ସମ୍ପାଦି ନାନା ରୂପ ଧରେ ॥
ଧର୍ମକୁ ପାଳେ ଯୁଗେ ଯୁଗେ । ସାଧୁଙ୍କୁ ରଖେ ଅନୁରାଗେ ॥
ଦୁଷ୍ଟ ନିବାରି ସାଧୁପାଳେ । ରୂପ ପ୍ରକାଶେ ଯଥାକାଳେ ॥
ତା ରୂପ କେ କରିବ ଅନ୍ତ । ସ୍ୱଭାବେ ମହିମା ଅନନ୍ତ ॥
ଆନନ୍ଦ ରାଜା କୁରୁମଣି । ଏମନ୍ତେ ଶୁକ ମୁଖୁ ଶୁଣି ॥
ବୋଲେ ଚରଣେ କର ଦେଇ । ଭୋ ମୁନି ନିସ୍ତରିଲି ମୁହିଁ ॥
ବୋଲେ ଯେ ମୀନ ଅବତାର । ହୋଇଲେ ଜଗତ ଈଶ୍ୱର ॥
ନିନ୍ଦିତ ଜଳଚର ରୂପେ । ଦେହେ ବହିଲେ କେଉଁ କଳ୍ପେ ॥
କେବଣ କାର୍ଯ୍ୟେ କିବା ଅର୍ଥେ । ପ୍ରସନ୍ନେ କହ ମୋ ଅଗ୍ରତେ ॥
ତାହା ଚରିତ ପାପ ହର । ଅଶେଷ ପ୍ରାଣୀ ସୁଖ ଘର ॥
ଅନାଦି ପ୍ରଭୁ ନାରାୟଣ । ମାୟାରେ ପରମ କାରଣ ॥
ଶୁକ କହନ୍ତି ମୁନି ମଧେ । ଅତି ଆନନ୍ଦ ଗଦଗଦେ ॥
ଶୁଣ ସକଳ ଋଷି ଜନେ । ଶୁକ ପରୀକ୍ଷ ସମ୍ପାଦନେ ॥
କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ॥

### ଶ୍ରୀ ଶୁକ ଉବାଚ

ଅଶେଷ ବ୍ରହ୍ମାଣ୍ଡ କାରଣ । ଅନାଦି ପ୍ରଭୁ ନାରାୟଣ ॥
ସର୍ଜଇ ପାଳଇ ସଂହରେ । ସଂସାର ମଧେ ରୂପ ଧରେ ॥
ଧର୍ମ ରକ୍ଷଣେ ଦେହ ଧରି । ଅଧର୍ମ ସମୁଦ୍ର ନିବାରି ॥
ଅସୁର କରେ ସଂହାରଣ । ସାଧୁଙ୍କୁ ରଖେ ନାରାୟଣ ॥
ଶୁଣ ତୁ ଯେବା ଅର୍ଥେ ହରି । ଇଚ୍ଛାରେ ମୀନ ରୂପ ଧରି ॥
ବ୍ରହ୍ମା ଯେ ସୃଷ୍ଟି ଆଦି କାଳେ । ବେଦ ପୁସ୍ତକ ଥୋଇ କୂଳେ ॥
ଜଳେ ପଶିଲା ସନ୍ଧ୍ୟାକରି । ସେ ବେଦ ହୟଗ୍ରୀବ ହରି ॥
ଅଗାଧ ଜଳେ ପଶିଗଲା । ବିଧାତା ବିଷ୍ଣୁକୁ ଚିନ୍ତିଲା ॥
ଦାନବ ଗତି କୃଷ୍ଣ ଜାଣି । ତକ୍ଷଣେ ପ୍ରଭୁ ଚକ୍ରପାଣି ॥

ଦୈତ୍ୟକୁ ହୟଗ୍ରୀବ ରୂପୀ । ପଶିଲେ ମହାଜଳେ ବ୍ୟାପୀ ॥
ଏମନ୍ତେ ମାଇଲେ ଅସୁର । ବେଦ ଉଦ୍ଧରି ଚକ୍ରଧର ॥
ସେ କଥା ଶୁଣ ଏକ ଚିତ୍ତେ । ଭାବେ କହିବି ତୋ ଅଗ୍ରତେ ॥
ପ୍ରବେଶ ବ୍ରହ୍ମାର ରଜନୀ । କଳ୍ପର ନାମ ଦୈନନ୍ଦିନ ॥
ଏମନ୍ତେ ପ୍ରଳୟ ନିକଟେ । ରାଜା ଯେ ଥିଲା ସିନ୍ଧୁ ତଟେ ॥
ସ୍ୱଭାବେ ସତ୍ୟ ବ୍ରତ ନାମ । ଅଶେଷ ରୂପ ଗୁଣ ଧାମ ॥
ସ୍ୱଭାବେ ବିଷ୍ଣୁ ପରାୟଣ । ତପ ସାଧନେ ସେ ନିର୍ଗୁଣ ॥
ତପ ସାଧିଲା ସିନ୍ଧୁ ତୀରେ । ଜଳ ଭକ୍ଷଣେ ଦିନହରେ ॥
ସେ ତପ ସାଧି କଳ୍ପ ଅନ୍ତେ । ମନୁ ହୋଇବ ଭବିଷ୍ୟତେ ॥
ଆଦିତ୍ୟ ବୀର୍ଯ୍ୟେ ଜନ୍ମହୋଇ । ସେ ଶ୍ରାଦ୍ଧଦେବ ନାମ ବହି ॥
ମନୁ ହୋଇବ ସେ ଜଗତେ । ହରି ସ୍ଥାପିବେ ତୋଷ ଚିତ୍ତେ ॥
ଏବେ ହୋ ଶୁଣ ନରପତି । ସେ ସତ୍ୟବ୍ରତ ରାଜା ଗତି ॥
ସେ ସତ୍ୟବ୍ରତ ଏକ କାଳେ । ମିଳିଲା କୃତମାଳା କୂଳେ ॥
ସେ ନଦୀ ଜଳେ ସ୍ନାନ କରି । ବିଷ୍ଣୁର ନାମ ଚିତ୍ତେ ସ୍ମରି ॥
ସ୍ନାହାନ କରି ସନ୍ଧ୍ୟା ଅର୍ଥେ । ଜଳ ଅଞ୍ଜଳି କର ହସ୍ତେ ॥
ତକ୍ଷଣେ ପ୍ରଭୁ ନରହରି । ମାୟାରେ ମୀନ ରୂପ ଧରି ॥
ଶଫରୀ ରୂପେ ଆଦିକନ୍ଦେ । ପଡ଼ିଲେ ଜଳାଞ୍ଜଳି ମଧ୍ୟେ ॥
ସେ ସତ୍ୟବ୍ରତ ତା ଦେଖିଲା । ଜଳ ଅଞ୍ଜଳି ପକାଇଲା ॥
ରାଜାର ହସ୍ତୁ ପଡ଼ି ଜଳେ । ସେ ମୀନ ଡାକିଲା ବିକଳେ ॥
ହେ ହେ ଦାରୁଣ ନୃପମଣି । ମୋହର ଦୁଃଖ ତୁ ନ ଜାଣି ॥
ଜଳେ ଯେ ପକାଇଲୁ ମୋତେ । ମୋ ଜ୍ଞାତି ଅଛନ୍ତି ସମସ୍ତେ ॥
ମୋତେ ଗିଳିବେ ବୋଲି ଡରେ। ଭୟେ ପଡ଼ିଲି ତୋର କରେ ॥
ମୋତେ ଗିଳିବେ ଏହି କ୍ଷଣି । ମୋ ପ୍ରାଣ ରଖ ନୃପମଣି ॥
ପ୍ରାଣୀ ଜୀବନ ରକ୍ଷା କଲେ । ଆପଣେ ରକ୍ଷା ହୋଇ ଭଲେ ॥
ଏବେ ମୁଁ ତୋହର ଶରଣ । ପଶିଲି ରଖ ମୋର ପ୍ରାଣ ॥
ଏମନ୍ତେ ଶଫରୀ ବଚନେ । ସେ ରାଜା ଶୁଣି ସାବଧାନେ ॥
କର ଅଞ୍ଜଳି କରି ହେଳେ । ଜଳୁ ଉଦ୍ଧରି କମଣ୍ଡଳେ ॥
ଜନ୍ତୁ ଜୀବନେ ଦୟା କରି । ଥୋଇଲା କମଣ୍ଡଳେ ଭରି ॥
ଜଳେ ତର୍ପଣ କରି ସାରି । ଗୃହେ ମିଳିଲା ଦଣ୍ଡଧାରୀ ॥
ସେ ମୀନ କମଣ୍ଡଳ ଜଳେ । ସହି ନ ପାରି ରାତ୍ରକାଳେ ॥
ବିକଳେ କରଇ ରୋଦନ । ମୋ ପ୍ରାଣ ରଖ ହେ ରାଜନ ॥
ଚଳି ନ ପାରି କମଣ୍ଡଳେ । ବେଗେ ତୁ ଥୁଅ ଅନ୍ୟ ଜଳେ ॥
ଏମନ୍ତେ ଶଫରୀ ବଚନ । ଶୁଣି ସମ୍ଭ୍ରମେ ସେ ରାଜନ ॥
ସେ ମୀନ କମଣ୍ଡଳୁ ଫେଇ । କଳସ ଜଳ ମଧ୍ୟେ ଥୋଇ ॥

ଏମନ୍ତେ ରଜନୀ ହୋଇଲା । ତକ୍ଷଣେ ମୀନ ବୋବାଇଲା ॥
ବୋଲଇ ଶୁଣ ଦଣ୍ଡ ଧର । କଳସୁଁ ମୋ ପ୍ରାଣ ଉଦ୍ଧର ॥
ମୋ ଦେହ କଳସେ ନ ଚଳେ । ବେଗେ ତୁ ଥୁଅ ଅନ୍ୟ ଜଳେ ॥
ସେ ଜଳେ ଆନନ୍ଦେ ବିହରି । ଅଳପ ଜଳେ ପ୍ରାଣ ହାରି ॥
ତକ୍ଷଣେ କଳସୁ ଉଦ୍ଧରି । କୂପେ କ୍ଷେପିଲା ଦଣ୍ଡଧାରୀ ॥
ମୁହୂର୍ତ୍ତେ କୂପ ମଧ୍ୟେ ରହି । ବିସ୍ତାର କଲା ତାର ଦେହୀ ॥
କୂପେ ସେ ଡାକଇ ବିକଳେ । ଭୋ ରାଜା ଥୁଅ ଅନ୍ୟଜଳେ ॥
କୂପେ ମୁଁ ନ ପାରିଲି ରହି । ମୋ ଜୀବନ ରଖ ତୁହି ॥
ଶଫରୀ ବାକ୍ୟେ ନୃପମଣି । କୂପୁଁ ଉଦ୍ଧରି ତାକୁ ଆଣି ॥
ତକ୍ଷଣେ ଖାତ ଜଳେ ଥୋଇ । ଖାତେ ବଢ଼ିଲା ତାର ଦେହୀ ॥
ଡାକଇ ଜୀବନ ବିକଳେ । ଭୋ ନୃପ ଭର ଅନ୍ୟ ଜଳେ ॥
ତକ୍ଷଣେ ଖାତୁ ସେ ଉଦ୍ଧରେ । ନେଇ ଥୋଇଲା ସରୋବରେ ॥
ଦିବସେ ସରୋବରେ ରହି । ଜଳେ ନ ଚଳେ ତାର ଦେହୀ ॥
ପୁଣି ଡାକିଲା ଭୟଙ୍କାରେ । ଭୋ ନୃପ ଅନ୍ୟ ଜଳେ ଭରେ ॥
ତକ୍ଷଣେ ତଡ଼ାଗୁଁ ଉଦ୍ଧରି । ହ୍ରଦେ କ୍ଷେପିଲା ଦଣ୍ଡଧାରୀ ॥
ସେ ମୀନ ଦିନେ ହ୍ରଦେ ରହେ । ତହିଁ ବଢ଼ିଲା ମହାକାୟେ ॥
ରାଜନ ନ ରହେ ମୁଁ ହ୍ରଦେ । ପୁଣି ଡାକିଲା ଘୋର ନାଦେ ॥
ତା ଶୁଣି ହ୍ରଦୁ ବେଗେ ତୋଳେ । କ୍ଷେପିଲା ସମୁଦ୍ର ଜଳେ ॥
ସେ ମୀନ ପଡ଼ି ସିନ୍ଧୁ ଜଳେ । ଡାକିଲା ଜୀବନ ବିକଳେ ॥
ଭୋ ନୃପ ରଖ ମୋର ପ୍ରାଣ । ତୋତେ ଯେ ପଶିଛି ଶରଣ ॥
ଶରଣ ପ୍ରାଣୀ ଉପେକ୍ଷିଲେ । କେ ତାକୁ ପ୍ରଶଂସଇ ଭଲେ ॥
ଏ ଜଳେ ଜୀବେ ଛନ୍ତି ଯେତେ । ବଳେ ଭକ୍ଷିବେ ଏବେ ମୋତେ
ଏମନ୍ତେ ମୀନ ମୁଖୁ ଶୁଣି । ଚିତ୍ତେ ବିଚାରେ ନୃପମଣି ॥
କି ଏ ଅଦ୍ଭୁତ କର୍ମା ମୁହିଁ । ଦେଖିଲା ନାହିଁ ନା ଜଗତେ ॥
କେଉଁ ଦେବତା ଅବା ବଳେ । ମୋତେ ଛଳଇ ମୀନ ଛଳେ
କି ବୁଦ୍ଧି କରିବଇ ମୁହିଁ । ଭାଳଇ ମୀନ ମୁଖ ଚାହିଁ ॥
ବିଷ୍ଣୁର ମାୟାରେ ମୋହିତ । ତକ୍ଷଣେ ହୋଇ ସ୍ତମ୍ଭୀଭୂତ ॥
ଶୁଣି ତକ୍ଷଣେ ନୃପବର । କପାଳେ ଦେଇ ବେନିକର ॥
ବୋଲଇ ମୀନ ମୁଖ ଚାହିଁ । ମୋହର ଧର୍ମ ରଖ ତୁହି ॥
କେଉଁ ଦେବତା ମାୟାବଳେ । ମୋତେ ତ ମୋହିଲୁ ନିଷ୍ଫଳେ ॥
ଏ ତୋର ବିଶ୍ୱରୂପ ଦେହ । ମାୟା ନ କରି ସତ୍ୟ କହ ॥
ଏମନ୍ତେ ଜଳଚର ଦେହୀ । ଜଗତେ ମୁଁ ତ ନ ଦେଖଇ ॥
ଭୋ ମୀନ ତୋହର ଶରୀରେ । ଶତେ ଯୋଜନ ହ୍ରଦ ପୂରେ ॥
ନିଶ୍ଚେ ଜାଣିଲି ତୋତେ ଆଜ। ତୁ ନାରାୟଣ ଦେବ ରାଜ ॥

ଅନାଦି ପ୍ରଭୁ ନିରଞ୍ଜନ । ଅବ୍ୟକ୍ତ ପ୍ରଭୁ ଭଗବାନ ।
ପ୍ରାଣୀଙ୍କ ନିସ୍ତରଣ ଅର୍ଥେ । ମୀନ ଶରୀର ଏ ଜଗତେ ॥
ସ୍ଥିତି ପାଳନ ସଂହାରଣେ । ତୁ ନାଥ ପରମ କାରଣ ॥
ନମସ୍ତେ ଜଳଚର ଦେହୀ । ଭୋ ନାଥ କର ମୋତେ ତ୍ରାହି ॥
ତୋର ମାୟାରେ ଭ୍ରମ ହୋନ୍ତି । ହର ବିରଞ୍ଚି ସୁରପତି ॥
ତୁ ନାଥ ଜନ ଉପକାରେ । ନାନା ଶରୀର ଏ ସଂସାରେ ॥
ତୋ ଅବତାର ଏ ଜଗତେ । ସାଧୁ ଜନଙ୍କ ଶୁଭ ଅର୍ଥେ ॥
କି କାର୍ଯ୍ୟେ ମୀନ ରୂପ ତୋର । କହ ହେ କମଳାର ବର ॥
ଏମନ୍ତେ ରାଜା ବାକ୍ୟ ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି ॥

## ଶ୍ରୀ ଭାଗବାନ ଉବାଚ

ଶୁଣ ହୋ ରାଜା ସତ୍ୟବ୍ରତ । ତୁ ଯେଣୁ ମୋହର ଭଗତ ॥
କି କାର୍ଯ୍ୟେ ମୀନ ରୂପ ମୋର । ଯେଣୁ ତୋହର ଦୟା ଭର ॥
ତେଣୁ ଅଗଣି ତୋତେ କହି । ଅଦ୍ଭୁତ ମୀନ ରୂପ ହୋଇ ॥
ମାୟାବୀ ପ୍ରଚଣ୍ଡ ଦାନବ । ନାମ ଯାହାର ହୟଗ୍ରୀବ ॥
ବ୍ରହ୍ମାର ବେଦ ହରି ବଳେ । ବେଗେ ପଶିଲା ମହାଜଳେ ॥
ପ୍ରଳୟ ଜଳେ ମୁଁ ବିହରି । ସେ ବେଦ ଉଦ୍ଧାରଣ କରି ॥
ରଖିବି ସଂସାରର ବୀଜ । ହରିବି ହୟଗ୍ରୀବ ତେଜ ॥
ତୁ ଏବେ ରହ ମୋ ବଚନେ । ଆଜ ହୁଁ ଗଣ ସାତଦିନେ ॥
ପ୍ରଳୟ ଜଳେ ତିନିପୁର । ନାଶିବ ଶୁଣ ନୃପବର ॥
ଅଠର ଖଣ୍ଡ ମେଘ ମିଳି । ପୂରିବ ପ୍ରଚଣ୍ଡ ବିଜୁଳି ॥
ଗଭୀର ନାଦେ ମେଘମାଳ । ପ୍ରଚଣ୍ଡ ବରଷିବ ଜଳ ॥
ତକ୍ଷଣେ ସିନ୍ଧୁ ଉଚ୍ଛୁଳିବ । ଉଲ୍ଲୋଳ ଗଗନେ ମିଶିବ ॥
ସପତ ଋଷିଙ୍କ ମଣ୍ଡଳେ । ଜଳଧି ଲାଗିବ ଉଲ୍ଲୋଳେ ॥
ବ୍ରହ୍ମାର ରଜନୀ ହୋଇବ । ଏ ତିନିପୁର ନାଶ ଯିବ ॥
ତୁ ଏବେ ମୋର ବୋଲ କରି । ଔଷଧି ବୀଜକୁ ସଂହରି ॥
ତୋର କୁଟୁମ୍ବ ଅଛି ଯେତେ । ସକଳ ଘେନାଇ ସଙ୍ଗତେ ॥
ଯେ ନାବ ସମୁଦ୍ରର କୂଳେ । ଆସି ମିଳିବ ସନ୍ଧ୍ୟାକାଳେ ॥
ତୁ ତହିଁ ବସ ସର୍ବ ଘେନି । ହୋଇବ ବ୍ରହ୍ମାର ରଜନୀ ।
ଆଗତ କଳ୍ପ ପରିଯନ୍ତେ । ଥିବୁ ତୁ ଋଷିଙ୍କ ସଙ୍ଗତେ ॥
ଯେ ନାବ ମୋର ଶୃଙ୍ଗେବାନ୍ଧି । ମୁହିଁ ବିହରବି ଜଳଧି ॥
ବ୍ରହ୍ମା ରଜନୀ କାଳ ଯେତେ । ସେ ନାବେ ଥିବୁ ତୁ ନିଶ୍ଚିନ୍ତେ ॥
ସପତ ଋଷି ସଙ୍ଗେ ଘେନି । ବଞ୍ଚିବୁ ବ୍ରହ୍ମାର ରଜନୀ ॥
ସେ ମହାଜଳେ ଯେବେ ନାବ । ପ୍ରଳୟ ପବନେ କମ୍ପିବ ॥
ମୋହର ଶୃଙ୍ଗେ ସେ ନିଶ୍ଚଳେ । ବନ୍ଧନେ ଥିବ ଯୋଗବଳେ ॥

ପରମ ବ୍ରହ୍ମ ତୋ ମହିମା । ଜାଣି ନ ପାରେ ହର ବ୍ରହ୍ମା ।
ମୋ ଅନୁଗ୍ରହେ ମୋତେ ଜାଣି । ସଂକଟୁ ତର ନୃପମଣି ॥
ଏମନ୍ତ କହି ଚକ୍ରଧର । ତକ୍ଷଣେ ହୋଇଲେ ଅନ୍ତର ॥
ଗୋବିନ୍ଦ ଆଜ୍ଞା ଘେନି ଶିରେ । ରାଜା ମିଳିଲା ସିନ୍ଧୁ ତୀରେ ॥
ଘେନାଇ ସର୍ବ ମହୌଷଧି । ରାଜାର ଯେତେକ ସମୃଦ୍ଧି ॥
ସମୁଦ୍ରତୀରେ କୁଶପାଡ଼ି । କପାଳେ ବେନି କର ଯୋଡ଼ି ॥
ମୀନ ରୂପକୁ ଧ୍ୟାନ କରି । ବିଷ୍ଣୁ ଚରଣେ ମନ ଦେଇ ॥
ସମୁଦ୍ର ତୀରେ ସେ ରହିଲା । ଏମନ୍ତେ ରଜନୀ ପାହିଲା ॥
ରାତ୍ର ହୁଁ ମେଘ ଶୂନ୍ୟେ ମିଳି । ପ୍ରଚଣ୍ଡ ଚମକ ବିଜୁଳି ॥
ବହେ ପବନ ଅଣଆଶ । ଶବଦ କମ୍ପେ ଦଶଦିଶ ॥
ଘୋର ଶବଦେ ଜଳରାଶି । ହସ୍ତୀର ଶୁଣ୍ଡ ପ୍ରାୟେ ଦିଶି ॥
ସମୁଦ୍ର ଉଚ୍ଛୁଳିଲା ଜଳେ । ଘୋର ପ୍ରଚଣ୍ଡ ବାୟୁ ବଳେ ॥
ବିଷ୍ଣୁର ଆଜ୍ଞା ପରମାଣେ । ନାବ ମିଳିଲା ତତକ୍ଷଣେ ॥
ଋଷିଏ ଶୂନ୍ୟ ମାର୍ଗେ ଆସି । ରାଜା ସମେତେ ନାବେ ବସି ॥
ଦେଖିଲେ ସର୍ବ ମହୌଷଧି । ରାଜାର ଯେତେକ ସମୃଦ୍ଧି ॥
ସେ ନାବେ ରାଜା ସଙ୍ଗେ ବସି । ମୁନିଏ ରାଜାଙ୍କୁ ପ୍ରଶଂସି ॥
ବୋଲନ୍ତି ତୁ ସେ ଭାଗ୍ୟବନ୍ତ । ସଙ୍କଟୁ ରଖିଲେ ଅନନ୍ତ ॥
ଏବେ ତୁ ଆମ୍ଭ ବୋଲ କର । ଏ ନାବେ ବିଷ୍ଣୁଙ୍କୁ ସୁମର ॥
ତୋହର ଭାବେ ସେ ମାଧବ । ଆମ୍ଭଙ୍କୁ ସଙ୍କଟୁ ତାରିବ ॥
ଏମନ୍ତେ ମୁନିଙ୍କ ବଚନେ । ରାଜା ବସିଲା ବିଷ୍ଣୁ ଧ୍ୟାନେ ॥
ତକ୍ଷଣେ ପ୍ରଭୁ ନରହରି । ଅଦ୍ଭୁତ ମୀନ ରୂପ ଧରି ॥
ଏକଇ ଶୃଙ୍ଗ ଶିରେ ସାଜେ । ଭାବେ ସୁବର୍ଣ୍ଣ ତେଜ ଗଜେ ॥
ମେରୁର ପ୍ରାୟେ ଅତି ଦମ୍ଭ । ଲକ୍ଷେ ଯୋଜନ ତାର ଲମ୍ବ ॥
ସେ ଶୃଙ୍ଗେ ନାବ ବାନ୍ଧି ବଳେ । ସେ ରାଜା ବସିଲା ନିଶ୍ଚଳେ ॥
ସେ ନାବେ ମୁନିଙ୍କ ସଙ୍ଗତେ । ବିଷ୍ଣୁଙ୍କୁ ଧ୍ୟାନ କଲା ଚିତ୍ତେ ॥
ମହାପ୍ରଳୟ ନାବେ ବସି । ଗୋବିନ୍ଦ ବଚନେ ସାହସୀ ॥
ଆକୁଳେ ଶିରେ କର ଦେଇ । ବୋଲଇ ରଖ ଭାବଗ୍ରାହୀ ॥
ଏ ଘୋର ସଙ୍କଟୁ ତାରଣେ । ଶରଣ ଗଲି ତୋ ଚରଣେ ॥
କାପାଳେ ଦେଇ ବେନି କର । ବିଷ୍ଣୁଙ୍କୁ ଚିନ୍ତେ ନୃପବର ॥
ଏମନ୍ତେ ମୁନିଙ୍କ ବଚନେ । ରାଜା ବସିଲେ ଯୋଗ ଧ୍ୟାନେ ॥
ମନ ବଚନ ହୃଦେ ଛନ୍ଦି । ନିଶ୍ଚଳେ ଇନ୍ଦ୍ରିୟ ନିରୋଧି ॥
ଅନ୍ତରେ ମନ ସ୍ଥିର କଲା । ସୁମରି ଗୋବିନ୍ଦର ଲୀଳା ॥

## ରାଜା ଉବାଚ

ଭୋ ନାଥ ସଙ୍କଟ ତାରଣ । ତୋ ପାଦେ ପଶିଲି ଶରଣ ॥

ଅଶେଷ ବ୍ରହ୍ମାଣ୍ଡ ଈଶ୍ୱର । ଏ ଘୋର ସଙ୍କଟୁ ଉଦ୍ଧର ।
ଅନାଦି ଅବିଦ୍ୟାର ବଳେ । ପ୍ରାଣୀ ଭ୍ରମନ୍ତି ଏ ଶୟଳେ ।
ଯାବତ ତୋ ପାଦ ନ ଚିନ୍ତେ । ତାବତ ସୁଖୀ କେ ଜଗତେ ।
ତୁ ନାଥ ତାପ ତ୍ରୟୁ ତାରୁ । ଅଶେଷ ଗୁରୁଙ୍କର ଗୁରୁ ।
ଅଜ୍ଞାନୀ ଜନେ ଏ ଜଗତେ । ନିବନ୍ଧ କର୍ମର ଆୟତେ ।
ସୁଖର ଲୋଭେ ଦୁଃଖେ ପଡ଼େ । ଯାବତ ଭକ୍ତି ମାର୍ଗ ଛୁଡ଼େ ।
ତାବତ ସୁଖ ନାହିଁ ତାର । ଲଭଇ ଦୁଃଖ ମାୟା ଘୋର ।
ଯାବତ ନ ଜାଣଇ ତୋତେ । ତାବତ ଭ୍ରମଇ ଜଗତେ ।
ତୋହର ମାୟା ଏ ସଂସାର । ଦୁର୍ଗମ ଘୋର ଅନ୍ଧକାର ।
ତୋର ଭଜନ ରବିତ୍ରାସ । ଆତ୍ମାର ତମ କରେ ନାଶ ।
ଏମନ୍ତ ସ୍ତୁତେ ଦଣ୍ଡଧାରୀ । ଚିରେ ଅନେକ ସ୍ତୁତି କରି ।
ରହିଲା ସମାଧି ନିଶ୍ଚଳେ । ନାବେ ଗୋବିନ୍ଦ ପାଦ ମୂଳେ ।

## ଶ୍ରୀ ଶୁକ ଉବାଚ

ଏମନ୍ତେ ଶୁଣି ନୃପମଣି । ତକ୍ଷଣେ ପ୍ରଭୁ ଚକ୍ରପାଣି ।
ପ୍ରଳୟ ଜଳେ ମୀନ ରୂପେ । ହୟଗ୍ରୀବକୁ ହରି ଦର୍ପେ ।
ବ୍ରହ୍ମାର ବେଦକୁ ଉଦ୍ଧରି । ଜଳେ ଅସୁର ପ୍ରାଣ ହାରି ।
ମିଳିଲେ ନୃପତିର ଆଗେ । ଦୟା ବଚନ ଅନୁରାଗେ ।
ବୋଲନ୍ତି ରାଜା ମୁଖ ଚାହିଁ । ସଂସାରେ ଭାଗ୍ୟବନ୍ତ ତୁହିଁ ।
ଏମନ୍ତ କହି ଭଗବାନ । ଆନନ୍ଦେ ଦେଲେ ତତ୍ତ୍ୱଜ୍ଞାନ ।
ବୋଇଲେ ଦିବାକର ବଂଶେ । ଜାତ ହୋଇବୁ ଜନ୍ମ ଶେଷେ ।
ବଇବ ସୁତ ମନୁ ହୋଇ । ପ୍ରଜା ପାଳିବୁ ଧର୍ମ ବହି ।
ଏ ଜ୍ଞାନେ ତୋହର ଜୀବନ । ମନୁଙ୍କ ମଧ୍ୟେ ହୁଅ ଧନ୍ୟ ।
ଏ ମୋର ମୀନ ଅବତାର । ଧ୍ୟାନେ ରହିବ ତୋ ଅନ୍ତର ।
ତୋହର ତୁଳେ ମୋ ସମ୍ବାଦ । ଶୁଣନ୍ତେ ତୁଟଇ ପ୍ରମାଦ ।
ଏମନ୍ତ କହି ଭଗବାନ । ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ ।
ବୋଲଇ ବିପ୍ର ଜଗନ୍ନାଥ । ସଂସାରୁ ତରିବ ଯେମନ୍ତ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଅଷ୍ଟମସ୍କନ୍ଧେ ମୀନ ଅବତାର ବର୍ଣ୍ଣନେ ନାମ ତ୍ରୟୋବିଂଶୋଽଧ୍ୟାୟ ।*

# ନବମ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

### ରାଜା ଉବାଚ

ଆନନ୍ଦେ ଅଭିମନ୍ୟୁ ସୁତ । ଶୁଣି ଗୋବିନ୍ଦର ଚରିତ ॥
ବ୍ୟାସନନ୍ଦନ ମୁଖ ଚାହିଁ । ବୋଲଇ ଶିରେ କର ଦେଇ ॥
ଭୋ ମୁନି ! ମନ୍ୱନ୍ତର କଥା । କହିଲେ ସକଳ ବ୍ୟବସ୍ଥା ॥
ଯେ ମନ୍ୱନ୍ତରେ ଯେବା ଦେହୀ । ଧର୍ମ ରକ୍ଷଣେ ଭାବଗ୍ରାହୀ ॥
ଅନନ୍ତ ଯାହାର ମହିମା । କେ ଜାଣିପାରେ ଗୁଣ ସୀମା ॥
ତୁମ୍ଭେ କହିଲ ମୁନିଗଣେ । ବିଷ୍ଣୁର ମହିମା ପ୍ରମାଣେ ॥
ଦ୍ରବିଡ଼େଶ୍ୱର ସତ୍ୟବ୍ରତ । ରାଜଋଷିଙ୍କ ସେ ଦବଇତ ॥
ଅନନ୍ତ କଳ୍ପଅନ୍ତେ ଥିଲା । ଭାବେ ସେ ବିଷ୍ଣୁଙ୍କୁ ଦେଖିଲା ॥
ନିତ୍ୟେ ଗୋବିନ୍ଦ ପାଦେଧ୍ୟାୟି । ବିଷ୍ଣୁର ତହୁଁ ଶିକ୍ଷା ପାଇ ॥
ପୁଣି ସେ ସୃଷ୍ଟି ଆଦି କାଳେ । କେମନ୍ତେ ବୈବସ୍ୱତ କୁଳେ ॥
ବଇବସୁତ ମନୁ ହୋଇ । ଜନ୍ମ ଲଭିଲା ଦେହ ବହି ॥
ପୁଣି ତାହାର ବୀର୍ଯ୍ୟେ ଜାତ । କେତେ ହୋଇଲେ ପୁଣି ସୁତ ॥
ଇକ୍ଷ୍ୱାକୁ ଆଦି ଦଶ ସୁତେ । ରାଜା ହୋଇଲେ ଯେ ଜଗତେ ॥
ଆଦିତ୍ୟ ଯେଣୁ କୁଳେ ଯେତେ । କହିବା ବଂଶାନୁ ଚରିତେ ॥
ଯାହାର ବଂଶେ ଯେବା ହୋଇ । ଯେ ଭୂମି ମଧ୍ୟେ ଦେହ ବହି ॥
ଯେବା ଚରିତ କଲା ଯେତେ । ଭୋ ମୁନି ! କହ ମୋ ଅଗ୍ରତେ ॥
ମୋତେ ଯେ ସଂକଟୁ ଉଦ୍ଧର । ମୁଁ ତୁମ୍ଭ ଚରଣେ କିଙ୍କର ॥
ଭୂତ ଭବିଷ୍ୟ ବ୍ରତମାନ । ସମ୍ପୂର୍ଣ୍ଣ ବଂଶାନୁ କୀର୍ତ୍ତନ ॥
ଯେବା ଜଗତେ କଲେ ଯାହା । କହିବ ଯେବେ ମୋତେ ଦୟା ॥

### ଶ୍ରୀ ସୂତ ଉବାଚ

ଯେମନ୍ତେ ଋଷିଗଣ ମଧ୍ୟେ । ଉତ୍ତରାସୁତ ଅନୁବାଦେ ॥
ଶୁଣି ଆନନ୍ଦେ କୃତ କୃତ । କହନ୍ତି ବ୍ୟାସଙ୍କର ସୁତ ॥

### ଶ୍ରୀ ଶୁକ ଉବାଚ

ଶୁଣହେ ନୃପ ପରୀକ୍ଷିତ । ଆଦିତ୍ୟ ବଂଶର ଚରିତ ॥
ସଂକ୍ଷେପ କହିବି ମୁଁ ତୋତେ । ଜାଣଇ ଯୋଗ ବଳେ ଯେତେ ॥
ଯେ ଭୂମି ମଧ୍ୟେ ଦେହ ବହି । ଶତେ ବରଷ କେବା କହି ॥
ରବିର ବଂଶେ ନୃପ ଯେତେ । ଯେ ଯାହା କଲେ ଯେ ଜଗତେ
ଭଗତି ଶିକ୍ଷ୍ୟେ ଯେହା କହି । ଯେବେ ତୁ ଚିନ୍ତ ମନ ଦେଇ ॥
ଯେବା ଉପୁଜି ଯାର ଅଂଶେ । ବଇବସୁତ ମନୁ ବଂଶେ ॥
ଶୁଣ ପାଣ୍ଡବ ଚୂଡ଼ାମଣି । ପ୍ରଳୟ କାଳେ ବେଦବାଣୀ ॥
ଯେ ହରି ଅନାଦି କାରଣ । ଜଗତ ଆତ୍ମା ନାରାୟଣ ॥
ପୂର୍ବେ ଯେ ସଂସାର ସଂହରି । ଜଳେ ଅନନ୍ତ ଶଯ୍ୟା କରି ॥
ନିବିଡ଼ ଅନ୍ଧାରେ ଶୋଇଲେ । ତାହାଙ୍କୁ କେହି ନ ଦେଖିଲେ ॥
ସେ ପୁଣି ପ୍ରଳୟର ଅନ୍ତେ । ଉଭାନେ ଶୋଇ ଅଣାୟତେ ॥
ତା ନାଭି କମଳୁ ପ୍ରକାଶ । ହୋଇଲା ହିରଣ୍ମୟ କୋଷ ॥
ସୁବର୍ଣ୍ଣମୟ ଦିବ୍ୟ ରୂପୀ । ଉଠିଲା ମହା ଜଳ ବ୍ୟାପୀ ॥
ସେ ଅଣ୍ଡ କୋଷେ ବ୍ରହ୍ମାଜାତ । ତାର ଶ୍ୱରୀରୁ ଯେ ଜଗତ ॥
ଭୂମି ଭିଆଇ ଯୋଗ ବଳେ । ବସିଲା ସମାଦି ନିଶ୍ଚଳେ ॥
ବ୍ରହ୍ମାର ମନରୁ ବାହାର । ହୋଇଲା ଅଦ୍ଭୁତ କୁମର ॥
କଶ୍ୟପ ତାର ତହୁଁ ଜାତ । ତାର ମହିମା ଅପ୍ରମିତ ॥
ଦକ୍ଷ ଦୋହିତା ବିଭା କଲା । ତା ତହୁଁ ସୂର୍ଯ୍ୟ ଉପୁଜିଲା ॥
ସୂର୍ଯ୍ୟର ପତ୍ନୀ ସଂଜ୍ଞା ନାମ । ଅତି ସୁନ୍ଦର ଅନୁପାମ ॥
ତାର ଉଦରୁ ଦିବ୍ୟ ତନୁ । ହୋଇଲା ଶ୍ରଦ୍ଧାଦେବ ମନୁ ॥
ସେ ପୁଣ ଶ୍ରଦ୍ଧା କନ୍ୟା ଗର୍ଭେ । ଦଶ କୁମର କଲା ଭାବେ ॥
ରୂପେ ମୋହିତ ଅନୁପାମ । ଶୁଣ ହୋ ତାହାଙ୍କର ନାମ
ଇକ୍ଷ୍ୱାକୁ ନୃପ ପୁତ୍ର ବେନି । ଶର୍ଯ୍ୟାତି ଦିଷ୍ଟ ଧୃଷ୍ଟଘେନି ॥
ଧୃଷ୍ଟ କରୁଷ ନରିଷ୍ୟନ୍ତ । ପୃଷଧ ନାଭଗ ଉଦିତ ॥
ହୋଇଲେ କବି ବିଭୂ ଆଦି । ସର୍ବେ ପ୍ରସସ୍ତ ସର୍ବ ସିଦ୍ଧି ॥
ସେ ଶ୍ରଦ୍ଧାଦେବ ପୁତ୍ର ଅର୍ଥେ । ବିଚାରି ବଶିଷ୍ଟ ସମେତେ ॥
ମିତ୍ରା-ବରୁଣ ଅର୍ଥେ ଇଷ୍ଟି । ଆରମ୍ଭ କଲେ ସେ ପୁତ୍ରେଷ୍ଟି ॥
ଯେମନ୍ତେ ତାର ଶ୍ରଦ୍ଧା ନାରୀ । ବଶିଷ୍ଟ ସଙ୍ଗତେ ବିଚାରି ॥
ବୋଇଲା ମୁହିଁ ପ୍ରୟୋବ୍ରତା । କେମନ୍ତେ ହୋଇବ ଦୋହିତା ॥
ସେ ଅର୍ଥେ ଯଜ୍ଞ ତୁମ୍ଭେ କର । ସେବଇ ଚରଣ ତୁମ୍ଭର ॥
ତା ଶୁଣି କୁଶକେତୁ ବଳା । ବିପ୍ରଙ୍କ ସଙ୍ଗେ ବିଚାରିଲା ॥
ଆହୁତି ଦେଲେକ ଅଯୁତ । ଯେମନ୍ତେ କନ୍ୟା ହୋଏ ଜାତ ॥
ତା ରୂପେ ଜଗତ ମୋହିଲା । ତାହାକୁ ଇଳା ନାମ ଦେଲା ॥
ରାତ୍ରେ ସେ କନ୍ୟା ଜନ୍ମ ଦେଖି । ସେ ମନୁ ଶୟନ ଉପେକ୍ଷି ॥

ବୋଲଇ ବିପ୍ରଙ୍କୁ ଅନାଇ । ଯେମନ୍ତ ଦେଖିଲାତ ନାହିଁ ॥
ତୁମ୍ଭେ ସକଳେ ବ୍ରହ୍ମ ବେତ୍ତା । ଯେ କର୍ମ ଅସମ୍ଭବ କଥା ॥
ବ୍ରାହ୍ମଣ କର୍ମ ତ ନୋହଇ । ଯେ କର୍ମ କଲ କିସ ପାଇଁ ॥
ତୁମ୍ଭେ ଯେ ନିଜ ତପବଳେ । ଦଗ୍ଧ କଳୁଷ ଯେ ଶୟଳେ ॥
ସଂକଳ୍ପ ହୋଇଲା ଅନ୍ୟଥା । ଯେ ବଡ଼ ଅସମ୍ଭବ କଥା ॥
ଅଜ୍ଞାନ ଜନଙ୍କର ମତ । ମୋର ସଂକଳ୍ପ ବିପରୀତ ॥
ଯେମନ୍ତେ ମନୁର ନିକଟେ । ବ୍ରହ୍ମା ମିଳିଲେ ଯଜ୍ଞ ବାଟେ ॥
ହୋତାଙ୍କ ବ୍ୟଭିଚାର ଜାଣି । ମନୁକୁ କହେ କୁଶ ପାଣି ॥
ତୋହର ନିଜ ନାରୀ ବୋଲେ । ଦୋହିତା ଅର୍ଥେ ହୋମକଲେ ॥
ମୁଁ ଯେବେ ସାଧିବି ତୋ ଅର୍ଥେ । କହିବି ବିଷ୍ଣୁର ଅଗ୍ରତେ ॥
ଯେମନ୍ତ ଯେ କନ୍ୟା ତୁମ୍ଭର । ହୋଇବ ପୁରୁଷଙ୍କ ବର ॥
ଯେମନ୍ତେ କହି ପ୍ରଜାପତି । ବିଷ୍ଣୁଙ୍କୁ କଲା ଦିବ୍ୟ ସ୍ତୁତି ॥
ବଶିଷ୍ଠ ସ୍ତୁତି ବାକ୍ୟ ଶୁଣି । ତକ୍ଷଣେ ପ୍ରଭୁ ଚକ୍ରପାଣି ॥
ଇଳା କନ୍ୟାକୁ ବିଷ୍ଣୁ ଚାହିଁ । ବୋଇଲେ ପୁତ୍ର ହୋଅ ତୁହି ॥
ତକ୍ଷଣେ ପୁରୁଷ ହୋଇଲା । ସୁଦ୍ୟୁମ୍ନ ନାମ ତାର ହେଲା ॥
ନିଜ ଭୁବନେ ଗଲେ ହରି । ଯେବେ ହୋ ଶୁଣ ଦଣ୍ଡଧାରୀ ॥
ବେଦ ବଚନର ସ୍ୱଭାବ । କେ ତାହା ଅନ୍ୟଥା କରିବ ॥
ଶୁଣ ରାଜନ ଯେକ ମନେ । ସେ ମନୁ ପୁତ୍ର ଯେକ ଦିନେ ॥
ମୃଗୟା ଅର୍ଥେ ସେ ବିପିନେ । ପଶିଲା ହରଷିତ ମନେ ॥
ଧନୁକୁ ଦୃଢ଼େ ଧରି କରେ । ବସିଲା ଅଶ୍ୱର ଉପରେ ॥
ସେବକେ ତାହାର ସଙ୍ଗତେ । ଧାଇଁଲେ ଅଶ୍ୱର ସହିତେ ॥
ନାନା ଆୟୁଧ କରେ ଧରି । ପଶୁ ଖୋଜନ୍ତି ବନେ ଘେରି ॥
ଗିରି କାନନ ଲତା କୁଞ୍ଜେ । ଖୋଜି ଅନେକ ବୃକ୍ଷ କୁଞ୍ଜେ ॥
ମୃଗ ନ ଦେଖି ଘୋର ବନେ । ପଶିଲେ ଉତ୍ତର କାନନେ ॥
ମେରୁ ନିକଟ ଖେଦ ମନେ । ମିଳିଲେ ସୁକୁମାର ବନେ ॥
ଯେ ବନେ ପ୍ରଭୁ ଶୂଳଧାରୀ । ସଙ୍ଗତେ ଘେନି ନିଜ ନାରୀ ॥
ନିତ୍ୟେ ସେ ପୀଡ଼ିତ ମଦନେ । ଗଉରୀ ସଙ୍ଗତେ ନିର୍ଜନେ ॥
ନିତ୍ୟେ ରମନ୍ତି ସୁଖ ମନେ । ଆନନ୍ଦେ ପୁଷ୍ପିତ କାନନେ ॥
ସେ ବନେ ପଶି ମନୁ ବଳା । ଅନେକ ମୃଗ ବଧ କଲା ॥
ମୃଗକୁ ମାରି ଅବହେଳେ । ଗ୍ରାମକୁ ଆସିବାର ବେଳେ ॥
ଅଶ୍ୱ ସହିତେ ସର୍ବଜନେ । ତକ୍ଷଣେ ସୁକୁମାର ବନେ ॥
ସର୍ବେ ହୋଇଲେ ସ୍ତିରୀ ଗଣ । ଅଶ୍ୱ ସହିତ କୁ-ଘଟଣ ॥
ଚାହାନ୍ତି ଅନ୍ୟୋଅନ୍ୟ ମୁଖେ । ସର୍ବେ ଲଭିଲେ ମନ ଦୁଃଖେ ॥
ସ୍ତିରୀ ସ୍ୱଭବେ କଲେ ଭ୍ରାନ୍ତି । ସ୍ୱଭାବେ ଚଳି ନ ପାରନ୍ତି ॥
ଶୁକ ବଦନୁ ବାକ୍ୟ ଶୁଣି । ବୋଲେ ପାଣ୍ଡବ ଚୂଡ଼ାମଣି ॥

## ରାଜା ଉବାଚ

ଭୋମୁନି ଅସମ୍ଭବ ବାଣୀ । ହୃଦୟ କମ୍ପିଲାକ ଶୁଣି ॥
ନାରୀ ହୋଇଲେ କିସ ଅର୍ଥେ । ଯେ କଥା କହ ମୋ ଅଗ୍ରତେ ॥
ସୁଦ୍ୟୁମ୍ନ ମନୁଙ୍କ ନନ୍ଦନ । ପୁରୁଷ କଲେ ଭଗବାନ ॥
ସେ କିମ୍ପା କାମିନୀ ହୋଇଲା । ଅଶ୍ୱ ସହିତେ ମନୁ ବଳା ॥
କି ଅବା ବନେ ଅଛି ଦୋଷ । କିବା ଶଙ୍କର କଲେ ରୋଷ ॥
କିମ୍ପା ହୋଇଲା ସ୍ତିରୀ ଦେହ । ସଂଶୟ ଯାଉ ମୁନି କହ ॥

## ଶ୍ରୀ ଶୁକ ଉବାଚ

ମୁନି କହନ୍ତି ଅନୁରାଗେ । ଆନନ୍ଦେ ପରୀକ୍ଷିତ ଆଗେ ॥
ଶୁଣହୋ ଅଭିମନ୍ୟୁ ସୁତ । କହିବା ସ୍ତିରୀଙ୍କ ଚରିତ ॥
ସପତ ଋଷି ଏକ-ମେଳେ । ଶଙ୍କର ଦେଖିବାର ଛଳେ ॥
ଦିଶନ୍ତି ରବି ତେଜ ପ୍ରାୟେ । ସେ ବନେ ଚଳନ୍ତି ନିର୍ଭୟେ ॥
ଦୂରୁ ତାହାଙ୍କ ରୂପ ଦେଖି । ଅମ୍ବିକା ଶୟନ ଉପେକ୍ଷି ॥
ଶଙ୍କର ଅଙ୍ଗ ଛାଡ଼ି ବେଗେ । ବସ୍ତ୍ର ପିନ୍ଧିଲେ ବୃକ୍ଷ ଲାଗେ ॥
ଲାଜେ ଲୁଚାଇ କଳେବର । ଭୟେ କମ୍ପନ୍ତି ଥରହର ॥
ଶଙ୍କର ରହେ ଅଧୋ ମୁଖେ । ଚାହିଁ ନ ପାରି ମନଦୁଃଖେ ॥
ଯେମନ୍ତେ ମୁନିଗଣେ ଚାହିଁ । ପାଦେକ ନ ପାରନ୍ତି ଯାଇ ॥
ତାହାଙ୍କ ଗତି ଦେଖି ଛନ୍ନେ । ତକ୍ଷଣେ ଗଲେ ଅନ୍ୟସ୍ଥାନେ ॥
ପଥେ ଚଳନ୍ତେ ମହାଶ୍ରମେ । ମିଳିଲେ ନାରାୟଣା ଶ୍ରମେ ॥
ସେ କଥା ଜାଣି ଶୂଳପାଣି । ଅମ୍ବିକା ମୁଖ ଚାହିଁ ଭଣି ॥
ପୁରୁଷ ହୋଇ ଯେବେ ଯେଥେ । ପ୍ରବେଶ ହୋଇବ ବନସ୍ତେ ॥
ତକ୍ଷଣେ ହେବ ସ୍ତିରୀ ରୂପ । ଯେମନ୍ତେ ରୁଦ୍ର ଦେଲେ ଶାପ୍ୟ ॥
ସେ ଦିନୁ ମହାଦେବ ରୋଷେ । ପୁରୁଷ ହୋଇ କେ ନ ପଶେ ॥
ଯେବେ ହୋ ଶୁଣ ନରନାଥ । ମନୁ ତନୟ ବିପରୀତ ॥
ଅଶ୍ୱ ସହିତେ ଘୋର ବନେ । ସର୍ବେ ଭ୍ରମନ୍ତି ଦୁଃଖ ମନେ ॥
ସେ ବନୁ ଗଲେ ଅନ୍ୟ ବନେ । ସୋମ ନନ୍ଦନ ତପସ୍ଥାନେ ॥
ଭ୍ରମନ୍ତି ଯେକୁ ଆରେ ଧରି । ସ୍ୱଭାବେ ସର୍ବେ ମନୋହାରୀ ॥
ତାହାଙ୍କ ମଧ୍ୟେ ଇଳା ଦେଖି । ସେ ବୁଧ ତପସ୍ୟା ଉପେକ୍ଷି ॥
ମନ କହ୍ଲିଲା କାମ ଭୋଳେ । ତକ୍ଷଣେ ଧରି ତାକୁ କୋଳେ ॥
ବନେ ରହିଲା ଚନ୍ଦ୍ରସୁତ । ତକ୍ଷଣେ ପୁତ୍ର ହୋଏ ଜାତ ॥
ତାହାର ଦେଖି ଗୁଣ ଧାମ । ଦେଲା ସେ ପୁରୁରବା ନାମ ॥
ଯେବେ ହୋ ଶୁଣ କୁରୁବୀର । ସେ ବନେ ମନୁର କୁମର ॥
କୁଳ ଆଚାର୍ଯ୍ୟ ସୁମରିଲା । ତକ୍ଷଣେ ବଶିଷ୍ଠ ମିଳିଲା ॥

ତାହାର ସ୍ତିରୀ ରୂପ ଚାହିଁ । ସେ ବ୍ରହ୍ମଋଷି ଦୟାବହି ॥
ଯେମନ୍ତେ ପୁରୁଷ ହୋଇବ । ତକ୍ଷଣେ ପୂଜି ମହାଦେବ ॥
ଅନେକ କଲେ ଦିବ୍ୟ ତୁଷ୍ଟି । ଶୁଣି ସନ୍ତୋଷ ପଶୁପତି ॥
ଆପଣା ବାକ୍ୟ ସତ୍ୟ ଅର୍ଥେ । ବଶିଷ୍ଠ ଚାହିଁ ଦୟା ଚିତ୍ତେ ॥
ବୋଇଲନ୍ତି ଅମ୍ବିକା ରମଣ । ବଶିଷ୍ଠ ମୋର ବାଣୀ ଶୁଣ ॥
ଯେ ଯେ ତୋହର ଗୋତ୍ରେ ଜାତ । ସ୍ୱଭାବେ ଇକ୍ଷ୍ୱାକୁର ସୁତ ॥
ମାସେ ହୋଇବ ସେ କାମିନୀ । ପୂର୍ବେ ବିଷ୍ଣୁର ବାକ୍ୟଘେନି ॥
ମାସେ ଯେ ପୁରୁଷ ହୋଇବ । ଜୀବନେ ଯେତେ କାଳ ଥିବ ॥
ଯେମନ୍ତେ ଦେଇ ତାକୁ ବର । ତକ୍ଷଣେ ଗଲେ ଶୂଳଧର ॥
ଯେମନ୍ତେ ଯେତେ କାଳ ଥିଲା । ମାସରେ ପୁରୁଷ ଅବଳା ॥
ରାଜଜ କଲା ଯେହି ମତେ । ନିଗମ ବାକ୍ୟ ଅନୁମତେ ॥
ତାହାର ରାଜ୍ୟେ ପ୍ରଜା ଯେତେ । ବଞ୍ଚିଲେ ଦୁଃଖ ସୁଖ ମତେ ॥
ତାର ହୋଇଲା ତିନି ସୁତ । ଶୁଣ ହୋ ନୃପ ପରୀକ୍ଷିତ ॥
ଗୟ ଉତ୍କଳ ପୁତ୍ର ବେନି । ବିମଳ ନାମେ ହୁଏ ତିନି ॥
ଦକ୍ଷିଣ ପଥେ ତିନି ରାଜା । ଧର୍ମେ ପାଳିଲେ ଜନ ପ୍ରଜା ॥
ଯେମନ୍ତେ କିଛିକାଳ ଅନ୍ତେ । ସୁଦ୍ୟୁମ୍ନ ଭାଳି ଅନ୍ତର୍ଗତେ ॥
ପୁରୁରବାକୁ ରାଜା କରି । ଛାଡ଼ିଣ ଅଧିଷ୍ଠାନ ପୁରୀ ॥
ତପ ସାଧନେ ବନେ ଗଲା । ସେ ବନେ ଶରୀର ଛାଡ଼ିଲା ॥
ବୋଲଇ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମ ସ୍କନ୍ଧେ ଇଳୋପାଖ୍ୟାନେ ନାମ ପ୍ରଥମୋଽଧ୍ୟାୟ ।*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ସୁଦ୍ୟୁମ୍ନ ଶ୍ରଦ୍ଧାଦେବ ବଳା । ତପ କରଣେ ବନେ ଗଲା ॥
ପଛେ ଛାଡ଼ିଲା ନିଜ ତନୁ । ତା ଶୁଣି ବୈବସ୍ୱତ ମନୁ ॥
ଅପୁତ୍ର ଭୟେ ସେ ଉଚାଟେ । ମିଳିଲା ଯମୁନାର ତଟେ ॥
ଶତେ ବରଷ ବେଦ ମତେ । ସମାଧି କରି ଦୃଢ଼-ଚିତ୍ତେ ॥
ସନ୍ତତି ଅର୍ଥେ ସୂର୍ଯ୍ୟବଳା । ବିଷ୍ଣୁ ଚରଣେ ପୂଜା କଲା ॥
ଅନେକ ମତେ ତୁଷ୍ଟି କରି । ତୋଷିଲା ପ୍ରଭୁ ନରହରି ॥
ପ୍ରସନ୍ନ ହୋଇ ମହାବାହୁ । ବୋଇଲେ ଦଶ ପୁତ୍ର ହୋଉ ॥
ଇକ୍ଷ୍ୱାକୁ ଆଦି ଦଶପୁତ୍ରେ । ହୋଇବ କହୁଅଛି ତୋତେ ॥

ସେ ଦଶପୁତ୍ର ମଧ୍ୟେ ଯେକ । ପୃଷଧ୍ର ନାମେ ସୁବିବେକ ॥
ବଶିଷ୍ଠ ବାକ୍ୟେ ଗୋରୁ ପାଳେ । ରାତ୍ରେ ବୀରାସନ ନିଷ୍ଠଳେ ॥
ଯେମନ୍ତେ ଏକ ଦିନେ ରାତ୍ରେ । ଅଶେଷ ବୃଷ୍ଟି ଜଳ ପାତେ ॥
ଜନ୍ତୁଙ୍କ ଘୋର ନିଦ୍ରା କାଳେ । ଶାର୍ଦ୍ଦୂଳ ମିଳିଲା ଗୋକୁଳେ ॥
ଆଘ୍ରାଣେ ତାର ବାସ ପାଇ । ଭୟେ ଉଠିଲେ ସର୍ବ ଗାଈ ॥
ଭ୍ରମନ୍ତି ଇତସ୍ତତଃ ହୋଇ । ବ୍ୟାଘ୍ର ଧରିଲା ଯେକ ଗାଈ ॥
ବେଗେ ଧଂସିଲା ନଖ ଦାଢ଼େ । ପୁଣି ଆକ୍ରେଷେ ପୁଣି ଛାଡ଼େ ॥
ସେ ଗୋରୁ ଭୟେ ରାବ କଲା । ତା ଶୁଣି ଉଠି ମନୁ ବଳା ॥
ସେ ଯେ ଖଡ୍‌ଗ ହାଥେ ଘେନି । ନିବିଡ଼ ଅନ୍ଧାର ଯାମିନୀ ॥
ଗାଈ ଯେ ଗୋଷ୍ଠେ ଥିଲା ଶୋଇ। ଅନ୍ଧାରେ କେହି ନ ଜାଣଇ ॥
ଶାର୍ଦ୍ଦୂଳ ବୋଲି ତାର ଶିର । ଛେଦିଲା ମନୁର କୁମର ॥
ଖଡ୍‌ଗଶିଖା ବ୍ୟାଘ୍ର ମୁଣ୍ଡେ । ପଡ଼ି ଛିଡ଼ିଲା ମାଂସ ଖଣ୍ଡେ ॥
ବ୍ୟାଘ୍ରର ଶିର ହୋଇ କ୍ଷତ । ପଥରେ ବହିଲା ରକତ ॥
ପୃଷଧ୍ର ଜାଣେ ବ୍ୟାଘ୍ର ମଲା । ଯେମନ୍ତେ ରଜନୀ ପାହିଲା ॥
ଗାଭି ମରଣ କଥା ଶୁଣି । ବଶିଷ୍ଠେ ମନେ କୋପପୁଣି ॥
ମିଳିଲେ ପୃଷଧ୍ର ସମୀପେ । ତାହାକୁ ଶାପ ଦେଲେ କୋପେ ॥
ବୋଲାଉ ତୁ ଯେ କ୍ଷତ୍ରୀ ଦେହ । ଯେବେ ତୁ କର୍ମେ ଶୂଦ୍ର ହୁଅ ॥
ଯେମନ୍ତେ ଗୁରୁ ଶାପ୍ୟ ପାଇ । କପୋଳେ କରାଞ୍ଜଳି ଦେଇ ॥
ଗୁରୁଙ୍କ ଆଜ୍ଞା ଧରି ଶିରେ । ଊର୍ଦ୍ଧ୍ୱ ବଦନେ ତପ କରେ ॥
ବିଷ୍ଣୁର ଚରଣ କମଳେ । ସମାଧି କରି ଯୋଗ ବଳେ ॥
ଆତ୍ମାକୁ ଭାବି ଯେକେ ଯେକେ । ସକଳ ଭୂତେ ହରି ଦେଖେ ॥
ନିଗ୍ରହ କରେ ଇନ୍ଦ୍ରିଗଣେ । ନିଃସଙ୍ଗେ ନିସଙ୍ଗେ ଅରଣ୍ୟେ ॥
ଯେବା ମିଳଇ ଯେତେବେଳେ । ସେ ଭିକ୍ଷା କରେ ସଂଧ୍ୟାକାଳେ ॥
ଶରୀର ଆତ୍ମାର ସମେତେ । ଜଡ଼ାନ୍ଧ ବଧିରଙ୍କ ମତେ ॥
ଭୂମି କରଇ ପ୍ରଦକ୍ଷଣ । ଯେମନ୍ତେ ଗଲା କେତେଦିନ ॥
ଯେମନ୍ତେ ହୋୟେ ଗ୍ରୀଷ୍ମକାଳ । ବନସ୍ତେ ଉଠିଲା ଅନଳ ॥
ସେ ଅଗ୍ନି ମଧ୍ୟେ ଦେହ ଦେଲା । ତକ୍ଷଣେ ଗୋବିନ୍ଦେ ପଶିଲା ॥
ତା ଦେଖି ତାର ସାନ ଭାଇ । ବିଷୟା ରସେ ନ ରସଇ ॥
ରାଜ୍ୟ ବିସର୍ଜ୍ଜି ବଂଧୁ ମେଳେ । ପଶିଲା ଅରଣ୍ୟ ଗହଳେ ॥
ନିରତେ ନାରାୟଣ ପାଦେ । ଭଗତି କଲା ଅପ୍ରମାଦେ ॥
ଅନ୍ତେ ପଶିଲା ହରି ଦେହେ । କିଶୋର ବୟେସ ବିରୋହେ ॥
କରୁଷ ତହୁଁ ଯେତେ ସୁତେ । ରାଜା ହୋଇଲେ ବଳବନ୍ତେ ॥
ସ୍ୱଭାବେ ବ୍ରାହ୍ମ ଧାର୍ମିକ । ନିରତେ ବିଷ୍ଣୁର ସେବକ ॥
ଉଭରା ପଥେ ହୋଇ ରାଜା । ଧର୍ମେ ପାଳିଲେ ଜନ ପ୍ରଜା ॥

ଧୃଷ୍ଟିରୁ ଧାଷ୍ଟି କ୍ଷେତ୍ରୀହୋଯେ । ସେ ନ ପଡ଼ିଲେ ମାୟାମୋହେ ।
ନିରତେ ଜ୍ଞାନଭାବେ ଜାଣି । ପୂଜିଲେ ପ୍ରଭୁ ଚକ୍ରପାଣି ।
ହରି ଭଗତି ଭାଗ ବଳେ । ବସିଲେ ସମାଧି ନିଷ୍କଳେ ।
ନୃଗର ବଂଶେ ଯେ ସୁମତି । ସୁମତି ପୁତ୍ର ଭୂତଜ୍ୟୋତି ।
ବସୁ ଯେ ତାହାର ସନ୍ତତି । ସୁଧର୍ମେ ପାଳଇ ଯେ କ୍ଷିତି ।
ପ୍ରତିକ ବସୁ ତହୁଁ ଜାତ । ଓଘବାନ ନାମେ ତା ସୁତ ।
ତାହାର କନ୍ୟା ଓଘବତୀ । ସୁଦରଶନ ତାର ପତି ।
ନରିଷ୍ୟନ୍ତର ଯେ ନନ୍ଦନ । ନାମ ତାହାର ଚିତ୍ରସେନ ।
ଚିତ୍ରସେନର ସୁତ ଋକ୍ଷ । ତହୁଁ ମୀଢ୍ୱବାନ ପ୍ରତ୍ୟକ୍ଷ ।
ମୀଢ୍ୱର ସୁତ ନାମ ପୂର୍ଣ୍ଣ । ଇନ୍ଦ୍ରସେନ ତାର ନନ୍ଦନ ।
ତାହାଙ୍କ ସୁତ ବୀତିହୋତ୍ର । ତା ତହୁଁ ସତ୍ୟଶ୍ରବା ଜାତ ।
ଉରୁଶ୍ରବା ତାହାର ସୁତ । ତା ତହୁଁ ଜାତ ଦେବଦତ୍ତ ।
ଅଗ୍ନିବେଶ୍ୟ ତାର ସନ୍ତତି । ତା ତହୁଁ ଅଗ୍ନି ଉତପତ୍ତି ।
ଅଗ୍ନିବେଶ୍ୟଙ୍କ ଦୁଇ ନାମ । ଯେ ଜାତୂକର୍ଣ୍ଣ ଯେ କନୀନ ।
ତହିଁରୁ ଅଗ୍ନି ବୈଶ୍ୟାୟନ । ନାମରେ ବ୍ରହ୍ମକୁଳ ଜନ୍ମ ।
ନରିଷ୍ୟନ୍ତର ବଂଶମାନ । ଯେବେ ତୁ ଶୁଣ ହୋ ରାଜନ ।
ଦିଷ୍ଟବଂଶର କଥାମାନ । ଶ୍ରବଣ କରହେ ରାଜନ ।
ନାଭାଗ ଦିଷ୍ଟର ନନ୍ଦନ । ତାଙ୍କ ତନୟ ଭଲନ୍ଦନ ।
ଭଲନ୍ଦନର ସେ ସନ୍ତତି । ତାହାଙ୍କ ନାମ ବତ୍ସପ୍ରୀତି ।
ପ୍ରାଂଶୁ ତାହର ସୁତ ହୋଯେ । ଯା ରୂପ କନ୍ଦର୍ପକୁ ମୋହେ ।
ପ୍ରମତୀନାମେ ତାର ସୁତ । ଖନିତ୍ର ତାର ଅଂଶେ ଜାତ ।
ଚାକ୍ଷୁଷ ନାମେ ତାର ପୁତ୍ର । ବିଂବିଶତି ତାହାର ସୁତ ।
ତହିଁରୁ ରମ୍ଭ ହେଲା ଜାତ । ଶୁଣ ରାଜନ ପରୀକ୍ଷିତ ।
ଖନୀନେତ୍ର ତାର ବାଳକ । ଥିଲେ ଯେ ପରମ ଧାର୍ମିକ ।
ତାର ତନୟ କରନ୍ଧମ । ତା ତହୁଁ ଅବୀକ୍ଷିତ ଜନ୍ମ ।
ମରୁତ ତାହାର ସନ୍ତତି । ସେ ଭୂମିପତି ଚକ୍ରବର୍ତ୍ତୀ ।
ସମ୍ବର୍ତ୍ତ ଅଙ୍ଗିରାର ବଳା । ଯାହାରେ ଯାଗ କରାଇଲା ।
ସେ ଯଜ୍ଞେ ସର୍ବ ଦେବ ଆସି । ନିତ୍ୟେ ଯଜ୍ଞକୁ ପରଶଂସି ।
ବୋଲନ୍ତି ଯଜ୍ଞବସ୍ତୁ ଚାହିଁ । ଯେମନ୍ତ ଦେଖିଲାତ ନାହିଁ ।
ହିରଣ୍ୟମୟ ବସ୍ତୁ ଦେଖି । ସର୍ବ ଶୋଭନ ଦେଖି ସୁଖୀ ।
ଇନ୍ଦ୍ର ମାତିଲେ ସୋମ ଖାଇ । ବିପ୍ର ମାତିଲା ଦାନ ପାଇ ।
ଯାର ସଭାରେ ବିଶ୍ୱଦେବା । ବାୟୁ ସମେତେ କଲେ ସେବା ।
ମରୁତ ସୁତ ଦମ ନାମେ । ଜଗତ ରୂପେ ଦେଖେ ସମେ ।
ରାଜ ବର୍ଦ୍ଧନ ତା ନନ୍ଦନ । ତାର ସୁଧୃତି ଅନୁପାମ ।

ଧୃତି କୁମର ସଉଧୃତି । ନର ନାମରେ ସେହୁ ଖ୍ୟାତି ।
କେବଳ ତାହାର ନନ୍ଦନ । ତା ବଂଶେ ଯାତ ଧୁନ୍ଧୁମାନ ।
ତାର କୁମର ବେଗବାନ । ତାର କୁମର ବୁଧ ନାମ ।
ତାର କୁମର ତୃଣ-ବିନ୍ଦୁ । ତା ରୂପେ ପଟାନ୍ତର ଇନ୍ଦୁ ।
ତାହାର ପତ୍ନୀ ଅଳମ୍ବୁଷା । ଅପସରା ଗଣେ ସେ ଯୋଷା ।
ତା ଗର୍ଭେ ଇଳବିଳା ଜାତ । ବିଶ୍ରବା ମୁନି ଯାର କାନ୍ତ ।
ବିଶ୍ରବା ଇଳବିଳା ଗର୍ଭେ । କୁବେର ଉପୁଜିଲା ଭାବେ ।
ସେ ମୁନି ଯୋଗେଶ୍ୱର ବଳା । ଆନନ୍ଦେ ପୁତ୍ରେ ଶିକ୍ଷା ଦେଲା ।
ବିଶାଳ ଶୂନ୍ୟବନ୍ଧୁ ବେନି । ଧୂମ୍ରକେତୁକୁ ଘେନି ତିନି ।
ତାର କୁମର ଧୂମ୍ରକେତୁ । ବିଶାଳ ରାଜା ଯାର ହେତୁ ।
ବିଶାଳ ପୁରୁ ସେ ନିର୍ମାଇ । ତା ତହୁଁ ହେମଚନ୍ଦ୍ର ହୋଇ ।
ଧୂମ୍ରାକ୍ଷ ନାମେ ତାର ସୁତ । ତାର ମହିମା ଆଲୋକିତ ।
ସଂଯମ ତାହାର ତନୁଜ । ତହୁଁ କୃଶାଶ୍ୱ ଯେ ଦେବଜ ।
ତାର କୁମର ସୋମଦତ୍ତ । ତାହର ମହିମା ଅଦ୍ଭୁତ ।
ଆନନ୍ଦେ ଅଶ୍ୱମେଧ କଲା । ପରମବ୍ରହ୍ମେ ସେ ପଶିଲା ।
ସୁମତି ସୋମଦତ୍ତ ବଳା । ରୂପେ ବିରାଜେ କାମକଳା ।
ତାର କୁମର ମହାଶୟ । ତା ବଂଶେ ଜାତ ଜନ୍ମେଜୟ ।
ବିଶାଳ ପୁରେ ଯେତେ ରାଜା । ସୁଖେ ପାଳିଲା ଜନପ୍ରଜା ।
ଯଶ ତାହାଙ୍କ ନିଜ ଧନ । ସକଳ ଗୁଣେ ସମ୍ପାଦନ ।
ଯେମନ୍ତେ କହିଲି ମୁଁ ଯେତେ । ଶୁଣ ପରୀକ୍ଷ ଯେକ ଚିତ୍ତେ ।
ବଂଶାନୁ ଚରିତ ଯେବିଧି । ଯାର ସ୍ମରଣେ ସର୍ବ ସିଦ୍ଧି ।
ଯାହା ଯେ ଶୁଣନ୍ତି ଗୁଣନ୍ତି । ଅପୁତ୍ରେ ଲଭନ୍ତି ସନ୍ତତି ।
କମଳା ରହେ ତା ଭୁବନେ । ଯଶ ବଢ଼ଇ ଦିନେ ଦିନେ ।
ବୋଲଇ ଦାସ ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ।
ସୁଜନେ ଶୁଣ ଯେକ ଚିତ୍ତେ । ସଂସାରୁ ତରିବ ଯେମନ୍ତେ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମ ସ୍କନ୍ଧେ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଯେବେ ହୋ ଶୁଣ ସାବଧାନେ । ମନୁର ବଂଶାନୁ ବିଧାନେ ।
ଶର୍ଯ୍ୟାତି ନାମେ ମନୁ ସୁତ । ଶୁଣହେ ତାହାର ଚରିତ ।
ସ୍ୱଭାବେ ବ୍ରହ୍ମିଷ୍ଠ ହୋଇଲା । ଅଙ୍ଗିରା ଯଜ୍ଞେ ଦୀକ୍ଷା ଦେଲା ।

ସୁକନ୍ୟା ନାମେ ତାର କନ୍ୟା । ହୋଇଲା ରୂପେ ଅନୁପମା ॥
ସେ କନ୍ୟା ପିତାର ସଙ୍ଗତେ । ଆନନ୍ଦେ ପଶିଲା ବନସ୍ତେ ॥
କୁମାରୀ ସାତ ପାଞ୍ଚ ସଙ୍ଗେ । ବନେ ଭ୍ରମଇ ଅତି ରଙ୍ଗେ ॥
ସେ ବନେ ଭୃଗୁର ନନ୍ଦନ । ଚ୍ୟବନ ନାମେ ବିଦ୍ୟମାନ ॥
ସେ ବନେ ନିଶ୍ଚଳ ଆସନେ । ବସିଲା ମୁନି ଯୋଗ ଧ୍ୟାନେ ॥
ବସିଲା ଅନେକ ବରଷ । ଯେମନ୍ତେ ଅସ୍ଥି ଚର୍ମ ଶେଷ ॥
ବଲ୍ମୀକ କୀଟେ ତାର ଦେହୋ ଢାଙ୍କିଲେ ମୁଖ ମୃତ୍ତିକାୟେ ॥
ବଲ୍ମୀକ କୁଦା ପ୍ରାୟେ ଦିଶେ । କେବଳ ନୟନ ପ୍ରକାଶେ ॥
ଯେମନ୍ତେ ରାଜକନ୍ୟା ଗଲା । ଚ୍ୟବନ ଆଶ୍ରମେ ମିଳିଲା ॥
ବଲ୍ମୀକ କୁଦା ମଧ୍ୟେ ଭିନ୍ନ । ଦିଶଇ ମୁନିର ଲୋଚନ ॥
ଅଦ୍ଭୁତ ବେନି ଜ୍ୟୋତି ଚାହିଁ । ସୁକନ୍ୟା ମନେ ବିଚାରଇ ॥
ଯେତ ସୁନ୍ଦର ଜ୍ୟୋତି ଦିଶେ । ତେଜେ ତିମିର ବନେ ନାଶେ ॥
ଯେମନ୍ତେ ମନେ ପରିମାଣି । କଣ୍ଟକ କଣ୍ଟା ବୃକ୍ଷୁ ଆଣି ॥
ଚ୍ୟବନ ଜ୍ୟୋତି କଲା କ୍ଷତ । ତକ୍ଷଣେ ସ୍ରବିଲା ରକତ ॥
ବଲ୍ମୀକ ମଧ୍ୟେ ଶ୍ରୋଣି ବହେ । ଧାରା ଦିଶଇ ମୁନି ଦେହେ ॥
ମୁନିକି ଅପରାଧ କଲା । ଶୁଣହୋ ଅଭିମନ୍ୟୁ ବଳା ॥
ତକ୍ଷଣେ ରାଜାର ସମେତେ । ଅପରେ ଲୋକ ଥିଲେ ଯେତେ॥
ସର୍ବେ ହୋଇଲେ ଅପରାଧି । ହୋଇଲା ମୂତ୍ରଦ୍ୱାର ରୁଦ୍ଧି ॥
କେହି ନ ପାରେ ମୂତ୍ରକରି । କାନ୍ଦନ୍ତି ମୂତ୍ରଦ୍ୱାର ଧରି ॥
ସର୍ବେ କରନ୍ତି ହା ହା କାର । ଶୁଣି ଶର୍ଯ୍ୟାତି ନୃପବର ॥
ଅଦ୍ଭୁତେ ଚାହିଁ ସର୍ବଜନ । କନ୍ୟାକୁ ବୋଲଇ ରାଜନ ॥
ତୁ ଯେ ବନସ୍ତେ ଭ୍ରମୁଥିଲୁ । କହ କି ଅବା ଆଚରିଲୁ ॥
ସେ କର୍ମ ବଳେଟି ଯେ ବ୍ୟାଧି । ରହିଲା ମୂତ୍ରଦ୍ୱାର ରୁଦ୍ଧି ॥
ସର୍ବେ ମରିବୁ ଯେହି କ୍ଷଣି । ସୁକନ୍ୟା କହେ ତାହାଶୁଣି ॥
ଭୋ ତାତ ବଲ୍ମୀକ ଉପରେ । ଜ୍ୟୋତି ଯୁଗଳ ଦେଖିଥରେ ॥
ମୁଁ ଯେ ଅଦ୍ଭୁତ ପ୍ରାୟେ ମଣି । କଣ୍ଟକେ ବୃକ୍ଷୁ କଣ୍ଟା ଆଣି ॥
ଛେଦିଲି ସେ ଜ୍ୟୋତି ଅଦ୍ଭୁତ । ତକ୍ଷଣେ ବୋହିଲା ରକତ ॥
ତା ଶୁଣି ନୃପ ଅତି ବେଗେ । ମିଳିଲା ବଲ୍ମୀକର ଆଗେ ॥
ସଂଭ୍ରମେ ବେନି କର ଯୋଡ଼ି । କହେ ବଲ୍ମୀକ ପାଦେ ପଡ଼ି ॥
ଭୋ କୀଟ ବଲ୍ମୀକ ତୋ ଦେହ । ରୋଧିର ବହେ କିମ୍ପା କହ ॥
ମୁଁ ତୋତେ କଲି ଅପରାଧ । ତୋ ଜ୍ୟୋତି କନ୍ୟା କଲା ଭେଦ ॥
ସେ କନ୍ୟା ସ୍ୱଭାବେ ଚଞ୍ଚଳ । ସ୍ୱଭାବେ ପାଇ ପ୍ରତି ଫଳ ॥
ନିରୋଧ କଲା ମୂତ୍ରଦ୍ୱାର । କହ ଶରଣ ଗଲି ତୋର ॥
ଯେମନ୍ତେ ରାଜାବାକ୍ୟ ଶୁଣି । ଚ୍ୟବନ କହେ ଦୁଃଖବାଣୀ ॥

ଭୋ ନୃପ ଭୃଗୁର ନନ୍ଦନ । ଚ୍ୟବନ ଋଷି ମୋର ନାମ ॥
ମୁଁ ଯେ ଅରଣ୍ୟେ ତପ କରି । ଚିନ୍ତଇ ପ୍ରଭୁ ନରହରି ॥
ଆସନେ ବସିଲି ନିଶ୍ଚଳ । ଯେମନ୍ତେ ଗଲା କେତେ କାଳ ॥
ବଲ୍ମୀକ କୀଟ ମୋ ଶରୀରେ । ମାଂସ ରୋଧିର ଭକ୍ଷି ଖରେ ॥
ମୁଖେ ଆଚ୍ଛାଦି ନିରନ୍ତରେ । ରହିଲେ ମୋହର ଶରୀରେ ॥
ଦେହେ ଭୁକ୍ଷିଲେ ସ୍ୱାଦୁରସେ । କେବଳ ଅସ୍ଥି ରହେ ଶେଷେ ॥
ଯେମନ୍ତେ ମୁନି ମୁଖୁ ଶୁଣି । ଚରଣେ ପଡ଼ି ନୃପମଣି ॥
ଧରି ସେ ମୁନିଙ୍କ ଚରଣ । ବୋଲଇ କର ପରିତ୍ରାଣ ॥
ଯେ ଯେ ସୁକନ୍ୟା ମୋ ଦୁଲଣୀ । ଯେ ହେଉ ତୁମ୍ଭର ଘରଣୀ ॥
ସତ୍ୟ ଯେ ବଚନ ମୋହର । ଯେଥକୁ ସାକ୍ଷ୍ୟ ଦିନକର ॥
ଯେମନ୍ତେ ରାଜା ମୁଖୁ ଶୁଣି । ଚ୍ୟବନ କହେ ମଞ୍ଜୁବାଣୀ ॥
ଯେ ଯେବେ ସତ୍ୟବାକ୍ୟ ତୋର । ସକଳେ ସ୍ରବୁ ମୂତ୍ରଦ୍ୱାର ॥
ଶୁଣି ସେ ଚ୍ୟବନ ବଚନ । ଫିଟିଲା ମୂତ୍ର ରନ୍ଧ୍ର ପୁନ ॥
ସର୍ବେ ଲଭିଲେ ପରିତ୍ରାଣ । ଯେବେ ହେ ପରୀକ୍ଷିତ ଶୁଣ ॥
ମୁନିଙ୍କି କନ୍ୟା ଦାନ କରେ । ରାଜା ଚଳିଲେ ନିଜ ପୁରେ ॥
ନିଜ ଜନଙ୍କ ସଙ୍ଗେ ମିଶି । ଚ୍ୟବନ ମହିମା ପ୍ରଶଂସି ॥
ସୁକନ୍ୟା ଚ୍ୟବନ ସମୀପେ । ଖଟଇ ମୁନି ଅନୁରୂପେ ॥
ନିତ୍ୟେ କଳ୍ପିତ ଭିକ୍ଷା ଆଣି । ଯେ ମିଳେ ଶାକକନ୍ଦ ପାଣି ॥
ଯେମନ୍ତେ ଶୁଣ ନୃପବର । ବିଧାତା ବିଧି ବଳୀୟାର ॥
ଯେମନ୍ତେ କେତେଦିନ ଗଲା । ସୁକନ୍ୟା ଋତୁବତୀ ହେଲା ॥
ସେ ଦିନ ପ୍ରଭାତର କାଳେ । ଅଶ୍ୱିନୀ କୁମାରେ ମିଳିଲେ ॥
ମୁନିଙ୍କି ନମସ୍କାର କରି । ବସିଲେ ଆସନ ଆବୋରି ॥
ଚ୍ୟବନ ଉଠି ମନ ତୋଷେ । ଅଶ୍ୱିନୀ କୁମାରଙ୍କ ପାଶେ ॥
ପାଦାର୍ଘ୍ୟେ ଚରଣ ପୂଜିଲେ । ଅନେକ ତୁଷ୍ଟି ବାକ୍ୟ କଲେ ॥
ବୋଲନ୍ତି ବିଶ୍ୱାସ କରାଇ । ଦେବ ବଇଦ ତୁମ୍ଭେ ଦୁଇ ॥
ଯେ ତୁମ୍ଭ ନାମ ଉଚ୍ଚାରନ୍ତି । ରୋଗ ପ୍ରବନ୍ଧୁ ସେ ତରନ୍ତି ॥
ଦେଖ ଏ ମୋହର ଶରୀର । ଜରା ଅବସ୍ଥା ଜରଜର ॥
ଶର୍ଯ୍ୟାତି କନ୍ୟା ମୋତେ ଦେଲା । ଭାବ ଅଭାବ ନ ଜାଣିଲା ॥
ଦେଖ ଯେ କନ୍ୟା ପତିବ୍ରତା । ଯେହାକୁ ହୋଅ ବରଦାତା ॥
ଯେ ବୃଦ୍ଧ ଦୁଃଖ ମୋର ହର । ଯୁବା ବୟସ ମୋତେ କର ॥
ମୁଁ ପୁଣି ତୁମ୍ଭ ଉପକାର । କରିବି ଯଥାର୍ଥ ବେଭାର ॥
ତୁମ୍ଭେ ଯେ ଦେବ ବୈଦ୍ୟଦୋଷେ । ଯଜ୍ଞେ ନ ଲଭ ସୋମଅଂଶେ
ଯଜ୍ଞେ ମୁଁ ତୁମ୍ଭଙ୍କୁ ବରିବି । ଆନନ୍ଦେ ଯଜ୍ଞେ ଭାଗ ଦେବି ॥
ଇନ୍ଦ୍ର କି କରିବ ମୋହର । ଯୁବା ଶରୀର ମୋତେ କର ॥

ଯେମନ୍ତ ମୁନି ମୁଖୁ ଶୁଣି । ଅଶ୍ୱିନୀ କୁମାରେ ତା ଗୁଣି ॥
ବୋଲନ୍ତି ମୁନି ମୁଖ ଚାହିଁ । ଯେ କଥା ଅନ୍ୟଥା ନୋହଇ ॥
ଆମ୍ଭର ସଙ୍ଗେ ସିଦ୍ଧ ହ୍ରଦେ । ସ୍ନାନ ତୁ କର ବେଦ ନାଦେ ॥
ହୋଇବୁ ଅମର ସ୍ୱରୂପ । ମନ୍ତ୍ରେ ପ୍ରତ୍ୟେକ୍ଷେ ତେଜ ଦେଖ ॥
ତା ଶୁଣି ଚ୍ୟବନ ଆନନ୍ଦେ । ବେଗେ ପଶିଲା ସିଦ୍ଧ ହ୍ରଦେ ॥
ତିନିହେ ହସ୍ତେ ହସ୍ତ ଧରି । ଜଳେ ବୁଡ଼ି ବୋଲନ୍ତି ହରି ॥
ତକ୍ଷଣେ ଯେକ ରୂପ ହୋଇ । ଉଠିଲେ କନ୍ୟା ମୁଖ ଚାହିଁ ॥
କି ଅବା ଦେବା ପଟାନ୍ତର । ରୂପେ ମୋହିଲେ ସୁର ନର ॥
କନ୍ୟା ଯେ ତାରେ ଚାହୁଁଥିଲା । ନିଜ ସ୍ୱାମୀଙ୍କି ନ ଚିହ୍ନିଲା ॥
ବିକଳେ ହୋଇ ଛନ୍ନ ଛନ୍ନ । ଅନାଇ ତାହାଙ୍କ ବଦନ ॥
କର ଯୁଗଳ ମୁଣ୍ଡେ ଦେଇ । ବୋଲଇ କର ମୋତେ ତ୍ରାହି ॥
ମୁଁ ଯେବେ ସତ୍ୟ ପତିବ୍ରତା । ନିକଟେ ଦିଅ ମୋର ଭ୍ରଥା ॥
ଶୁଣି ସଂଭ୍ରମେ ଅଶ୍ୱି ସୁତେ । ସ୍ୱାମୀକି ଦେଲେ ତା ଅଗ୍ରତେ ॥
ଋଷିଙ୍କି ନମସ୍କାର ହୋଇ । ସ୍ୱର୍ଗେ ଚଳିଲେ ବେନି ଭାଇ ॥
ଶୁଣହେ ପରୀକ୍ଷିତ ଯେବେ । ଶର୍ଯ୍ୟାତି ଯଜ୍ଞର ଆରମ୍ଭେ ॥
ଚ୍ୟବନ ଆଶ୍ରମେ ମିଳିଲା । ନୟନେ ଅଦ୍ଭୁତ ଦେଖିଲା ॥
ନିଜ କନ୍ୟାର ପାଶେ ବସି । ପୁରୁଷେ ଦିଶେ ତେଜୋ ରାଶି ॥
ସୁକନ୍ୟା ନମି ପିତା ପାଦେ । ସ୍ୱଭାବେ ବସିଲା ଆନନ୍ଦେ ॥
ତାହାକୁ କଲ୍ୟାଣ ସେ କରି । କନ୍ୟାକୁ ବୋଲେ କୋପ ଭରି ॥
ଆଦ୍ଭୁତ କର୍ମ ଯେ ତୋହର । ଅତ୍ୟନ୍ତ ବୃଦ୍ଧ ତୋର ବର ॥
ତାର ଚରଣେ ସେବା ଛାଡ଼ି । ଯୁବା ପୁରୁଷେ ଲୋଭ ବଢ଼ି ॥
କେମନ୍ତେ ଚଳିଲା, ତୋ ମତି । ସଂସାରେ ଯେସନେ ଅସତୀ
କୁଳ ଦୂଷଣ କର୍ମ କଲୁ । ବୃଦ୍ଧ ସ୍ୱାମୀକି ଉପେକ୍ଷିଲୁ ॥
ଜାର ପୁରୁଷେ କଲୁ ମତି । ଯେ ବଡ଼ ତୋହର ଅନୀତି ॥
ଉଭୟ କୁଳ କଲୁ ନାଶ । ଜାର ପୁରୁଷେ ତୁ ବିଶ୍ୱାସ ॥
ଯେ କର୍ମେ ପିତା ଭ୍ରଥା ନଷ୍ଟ । ନରକେ କଲୁ ତୁ ପ୍ରବେଶ ॥
ଯେମନ୍ତେ ପିତା ବାକ୍ୟ ଶୁଣି । ହସି ବୋଲଇ ତା ଦୁଲଣୀ ॥
ଭୋ ତାତ ଭ୍ରାନ୍ତି ତୁ ନ କର । ଯେହିଟି ମୋର ନିଜ ବର ॥
ଯେମନ୍ତେ ପିତାର ଅଗ୍ରତେ । ସର୍ବ କହିଲା ଆଦି ଅନ୍ତେ ॥
ଯେମନ୍ତେ ଅଶ୍ୱି ସୁତେ ଆସି । ସୁନ୍ଦର କଲେ ଜଳେ ପଶି ॥
ବୃଦ୍ଧକୁ ଯୁବା ରୂପ କଲେ । ରଥେ ଆରୋହି ସ୍ୱର୍ଗେ ଗଲେ ॥
ଯେମନ୍ତେ ପୁତ୍ରୀ ବାକ୍ୟ ଶୁଣି । ଅତି ଆନନ୍ଦେ ନୃପମଣି ॥
ତକ୍ଷଣେ ଦୁହିତା ବଚନେ । ଅଦ୍ଭୁତ ଶୁଣି ସେ ରାଜନେ ॥
ଅତି ଆନନ୍ଦେ ମୋଦ ଭରି । ନିଜ ଦୁହିତା କୋଳେ ଧରି ॥

ତକ୍ଷଣେ ନିଜ ପୁରେ ଗଲା । ଶୁଣହେ ଅଭିମନ୍ୟୁ ବଳା ॥
ନିଜ ଭୁବନେ ନୃପମଣି । ଚ୍ୟବନ ମୁନି ଗୃହେ ଆଣି ॥
ଆଗମ ନିଗମ ଉକତେ । ଯଜ୍ଞ ସେ କଲା ବହୁମତେ ॥
ଚ୍ୟବନ ବାକ୍ୟେ ଯଜ୍ଞଘରେ । ମିଳିଲେ ଅଶ୍ୱିନୀ କୁମାରେ ॥
ତାହାଙ୍କୁ ସୋମ ଦେବାକାଳେ । ଇନ୍ଦ୍ର ମିଳିଲା ଯଜ୍ଞ ଶାଳେ ॥
ବଜ୍ର ଉଞ୍ଚାଇ ଦକ୍ଷ କରେ । ତ୍ରାସି ଧାଇଲା ମନ୍ତ୍ର ସ୍ୱରେ ॥
ତା ଦେଖି ଚ୍ୟବନ ଉଠିଲା । ଇନ୍ଦ୍ରର ବଜ୍ରକୁ ସ୍ତମ୍ଭିଲା ॥
ମାରି ନ ମାରି ବଜ୍ର କୋପେ । ଇନ୍ଦ୍ର ଶ୍ୱରୀର ଭୟେ କମ୍ପେ ॥
ବୋଲଇ ମୁନି ମୁଖ ଚାହିଁ । ଯେ କଥା ଉଚିତ ନୋହଇ ॥
ଯଜ୍ଞେ ଯେହାକୁ ଭାଗ ନାହିଁ । ଆହୁତି ଦେଉ କିସ ପାଇଁ ॥
ଚ୍ୟବନ ବୋଲେ ଇନ୍ଦ୍ର ଚାହିଁ । ସତ୍ୟ ଯେ କରିଅଛି ମୁହିଁ ॥
ଯେ ଯେବେ ଯୁବା କଲେ ମୋତେ । ଆହୁତି ଦେବି ଯଜ୍ଞ ଅନ୍ତେ
ଯଜ୍ଞେ ଯେ ଶେଷଭାଗ ପାଇ । ସନ୍ତୋଷ ହୋଇ ବେନିଭାଇ ॥
ବାଞ୍ଛିତ ଦେବେ ଯଜ୍ଞମାନେ । ଯେମନ୍ତେ ଚ୍ୟବନ ବଚନେ ॥
ତୋଷ ହୋଇଲା ସୁରନାଥ । ମୁନି ଛାଡ଼ିଲେ ତାର ହସ୍ତ ॥
ସେ ଦିନୁ ସର୍ବଦେବ ଯଜ୍ଞେ । ତାଙ୍କୁ ସ୍ଥାପିଲେ ହବିର୍ଭାଗେ ॥
ଶେଷେ ସେ ସୋମଭାଗ ପାନ୍ତି । ଯେବେ ହୋ ଶୁଣ ମହୀପତି
ଯେମନ୍ତେ ଯଜ୍ଞ କର୍ମ ଫଳେ । ପୁତ୍ରେ ଜନ୍ମିଲେ ରାଜାକୁଳେ ॥
ଅତି ସୁନ୍ଦର ଅନୁପାମ । ଶୁଣହୋ ତାହାଙ୍କର ନାମ ॥
ଉତ୍ତାନ ବରହି ଆନର୍ତ୍ତ । ତୃତୀୟ ଭୂରିଷେଣ ସୁତ ॥
ଶର୍ଯ୍ୟାତି ପୁତ୍ରେ ମହା ତେଜେ । ପ୍ରଜା ପାଳିଲେ ଶୁଭ ରାଜ୍ୟେ ॥
ଆନର୍ତ୍ତ ତାର ମଧ୍ୟ ସୁତ । ଶୁଣହେ ତାହାର ଚରିତ ॥
ସେ ନିତ୍ୟେ ହରିପୂଜା କରେ । ତାହାର ପତ୍ନୀର ଉଦରେ ॥
ରେବତ ନାମେ ପୁତ୍ର ଜାତ । ହୋଇଲା ଅତି ବଳବନ୍ତ ॥
ସମୁଦ୍ର ମଧ୍ୟେ ପୁର କଲା । ତା ନାମ କୁଶସ୍ଥଳୀ ଦେଲା ॥
ସେ ରାଜ୍ୟେ ବସି ଦିନା କେତେ । ଭୋଗ ଭୁଞ୍ଜିଲା ନାନା ମତେ
ନିତ୍ୟେ ସେ ବିଷ୍ଣୁକୁ ସେବଇ । ତାହାର ଶତ୍ରୁ ନାହି କେହି ॥
ତାହାର ଶତେ ପୁତ୍ର ଜାତ । ତାହାଙ୍କ ମଧ୍ୟେ ଜ୍ୟେଷ୍ଠଭ୍ରାଥ ॥
କୁକୁଦ୍ମୀ ନାମ ତାର ହୋୟେ । ଇନ୍ଦ୍ର କମ୍ପଇ ତାର ଭୟେ ॥
ରେବତୀ ନାମେ କନ୍ୟା ତାର । ସୁନ୍ଦରେ ନାହିଁ ପଟାନ୍ତର ॥
ସେ କନ୍ୟା ଘେନି ଅତି ଦୁଃଖେ । ବେଗେ ମିଳିଲେ ବ୍ରହ୍ମଲୋକେ
ଭୂମିରେ ରାଜାଙ୍କ କୁମର । ଯେତେ ମିଳିଲେ ତାଙ୍କୁ ବର ॥
ତାକୁ ନ ଦେଲେ କୁଳ ଶ୍ରେଷ୍ଠେ । ମିଳିଲା ବ୍ରହ୍ମାର ନିକଟେ ॥
ସେ ବ୍ରହ୍ମା ଘେନି ମହାଜନ । କରଇ ବିଷ୍ଣୁର କୀର୍ତ୍ତନ ॥

କ୍ଷଣେ ରହିଲା ତାକୁ ଦେଖି । ତକ୍ଷଣେ କାର୍ତ୍ତିନ ଉପେକ୍ଷି ॥
ବ୍ରହ୍ମା ଅନାଇ ତା ବଦନ । ବୋଲଇ ମଧୁର ବଚନ ॥
କିମ୍ପା ଅଇଲ ବ୍ରହ୍ମ ଲୋକେ । ଯେ କନ୍ୟା ଘେନି ମନ ଦୁଃଖେ॥
ବ୍ରହ୍ମା ବଚନେ ଦଣ୍ଡଧାରୀ । ଚରଣେ ନମସ୍କାର କରି ॥
ବୋଇଲ ଅଟି ଦୁଃଖ ଭରେ । ଯେ କନ୍ୟା ଦେବି କେଉଁ ବରେ
ଯେ କଥା ରାଜା ମୁଖୁ ଶୁଣି । ହସି ବୋଲନ୍ତି କୁଶପାଣି ॥
ଅଦ୍ଭୁତ କଥା ଯେ ତୋହର । ଭୂମିରେ ନ ବରିଲୁ ବର ॥
ଯେବେ ଅଇଲୁ ମୋତେ କହିଁ । ଭୂମିରେ ତାଙ୍କ ବଂଶ କାହିଁ ॥
ବ୍ରହ୍ମାଣ୍ଡ ମଧ୍ୟେ କାଳ ଲୀଳା । ଅନେକ ଯୁଗ ବହିଗଲା ॥
ତା ଗୋତ୍ର ନାହିଁ ରବି ତଳେ । କାଳର ବଳେ ନାଶ ଗଲେ ॥
ପ୍ରଚଣ୍ଡ କାଳ ଲୀଳା ବଳେ । ବିଷ୍ଣୁ ବିହାର ରବି ତଳେ ॥
ସପତ ବିଂଶ ଚତୁର୍ଯୁଗ । ଭୂମିରେ କଲା କାଳଭୋଗ ॥
ଅଧିକେ ତିନି ଯୁଗ ଗଲା । କଳି ଆଗମନ ହୋଇଲା ॥
ଦ୍ୱାପର ଯୁଗ ଅବସାନ । ଯେବେ ତୁ ଶୁଣ ମୋ ବଚନ ॥
ଭାରା ନିବାରଣର ଅର୍ଥେ । ବିଷ୍ଣୁ ଜନ୍ମିଲେ ଯେ ଜଗତେ ॥
ଦେବକୀ ଗର୍ଭେ ଦେହ ବହି । ନୀଳ ଧବଳ ରୂପ ଦୁଇ ॥
ଅନନ୍ତ ବଳଭଦ୍ର ରୂପେ । ଜନ୍ମ ଲଭିବେ ମୋହ କଳ୍ପେ ॥
ଯେ କନ୍ୟାରତ୍ନ ତାକୁ ଦେଇ । ଭବସଂସାରୁ ତର ତୁହି ॥
ଯେମନ୍ତେ ବ୍ରହ୍ମା ମୁଖୁ ଶୁଣି । ସାନନ୍ଦ ମନେ ନୃପମଣି ॥
ତକ୍ଷଣେ ନିଜ ପୁରେ ଗଲା । ଶୁଣହେ ଗୋବିନ୍ଦର ଲୀଳା ॥
ତାହାର ଯେତେ ଭାଇ ଥିଲେ । ରାକ୍ଷସ ଭୟେ ପଳାଇଲେ ॥
ସେ କନ୍ୟା ବଳଦେବେ ଦେଇ । ଆନନ୍ଦେ କୃତ କୃତ ହୋଇ ॥
ତପଃ କରଣେ ଶୁଦ୍ଧ ମନେ । ମିଳିଲେ ବଦରିକା ଶ୍ରମେ ॥
ବୋଇଲ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ଭାଷା ପ୍ରବନ୍ଧେ ଗୀତ କରି । ଯାହା ବୋଇଲେ ନରହରି ॥
ସୁଜନେ ଯେଣେ ମତି କର । ତରିବ ସଂସାର ସାଗର ॥
ଅନ୍ତେ ପାଇବ ଚକ୍ରଧର । ଯେଣେ ବିଶ୍ୱାସ ବେଗେ କର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପରମହଂସ୍ୟାଂ ସହିଂତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ତୃତୀୟୋଽଧ୍ୟାୟ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ନାଭାଗ ନଭଗର ବଳା । ପୂର୍ବେ ଯେ ବ୍ରହ୍ମଚର୍ଯ୍ୟ କଲା ॥
ଭାଇୟେ ତାର ଭାଗ କାଟି । ସର୍ବ ସମ୍ପଦ ନେଲେ ବାଣ୍ଟି ॥
ଭ୍ରାଥଙ୍କୁ ବୋଲେ ଭାଗକାହିଁ ।"ପିତା ତୋ ଭାଗେ" ସର୍ବେ କହି॥
ପିତାକୁ କହଇ ତା ଯାଇ । ସେ ବୋଲେ ଉଚିତ ନୁହଇ ॥
କହିଲା ପୁଣି ଯାଅ ତୁହି । ଅଙ୍ଗିରସଙ୍କ ଯଜ୍ଞ ଯହିଁ ॥
ତାହାକୁ ଦେବୁ ଉପଦେଶ । ଲଭିବୁ ଦ୍ରବ୍ୟ ଯେ ବିଶେଷ ॥
ପିତାର ବାକ୍ୟେ ଯଜ୍ଞେ ଗଲା । ଅନେକ ସମ୍ପଦ ପାଇଲା ॥
ତା ଘେନି ସେ ଯେ ପଥେ ଆସେ । ଭେଟିଲା କାଳିଅ ପୁରୁଷେ ॥
କହଇ ମୋର ଧନ ନେଇ । ପଳାଇ ଯାଉ କିସ ପାଇଁ ॥
ସେ ବୋଲେ ନ ଜାଣଇ କିଛି । ପିତାର ବାକ୍ୟେ ନେଉ ଅଛି ॥
ପୁରୁଷ ବୋଲେ ତୁ ପଚାର । ତାତଙ୍କୁ, ଯେ ଧନ କାହାର ॥
ତହୁଁ ନାଭାଗ ଶୀଘ୍ର ଗଲା । ସମସ୍ତ ପିତାକୁ ବୋଇଲା ॥
ପିତା କହଇ ସତ ଯହା । ପୂରୁବେ ଋଷି କଲେ ଯାହା ॥
ଯାଗର ଶେଷ ପାତ୍ର ଆଦି । ରୁଦ୍ରଙ୍କ ଭାଗ ବୋଲି ବିଧି ॥
ନାଭାଗ ତହୁଁ ଶୀଘ୍ର ଗଲା । ଶିବେ ସକଳ ଦିଆଇଲା ॥
ତାତ ସୁତର ସତ ଜାଣି । ଶିବ ବୋଲନ୍ତି ସାଧୁ ବାଣୀ ॥
କହିଲେ ଯାହା ଘେନି ଯାଅ । ଆବର ବ୍ରହ୍ମଜ୍ଞାନ ପାଅ ॥
ଯେମନ୍ତେ ନାଭାଗ ସେ ରାଜା। ଆନନ୍ଦେ ପାଳେ ଜନପ୍ରଜା ॥
ଅନେକ କାଳ ପୃଥ୍ୱୀ କଲା । ଶେଷେ ସେ ଗୋବିନ୍ଦେ ମିଳିଲା।

### ରାଜା ଉବାଚ

ନାଭାଗ ପୁତ୍ର ଅମ୍ବରୀଷ । ସେ ଯେବେ ବିଷ୍ଣୁରେ ବିଶ୍ୱାସ ॥
ବ୍ରାହ୍ମଣ ଶାପ୍ୟ ନ ଲାଗିଲା । ମୋତେ ତ ସନ୍ଦେହ ଲାଗିଲା ॥
ସେ ବ୍ରହ୍ମଦଣ୍ଡ ବଜ୍ର ଘୋର । କେମନ୍ତେ ତହୁଁ ଗଲା ପାର
କିମ୍ପା ତାହାର ତପ ଫଳୁ । ତରିଲା ବ୍ରହ୍ମର ଅନଳୁ ॥
ଯେ କଥା କହି ମୁନି ମୋତେ । ସଂଶୟ ଲାଗିଲା ତ ଚିତ୍ତେ ॥

### ଶ୍ରୀ ଶୁକ ଉବାଚ

ଯେମନ୍ତେ ରାଜ ପ୍ରଶ୍ନ ଶୁଣି । ଶୁକ କହନ୍ତି ମଞ୍ଜୁ ବାଣୀ ॥
ଶୁଣ ରାଜନ ଯେକ ଚିତ୍ତେ । ଯେ ପ୍ରଶ୍ନ ବଂଶାନୁ ଚରିତେ ॥
ନାଭାଗ ପୁତ୍ର ଅମ୍ବରୀଷ । ଯେମନ୍ତେ ବିଷ୍ଣୁର ବିଶ୍ୱାସ ॥
ବ୍ରାହ୍ମଣ ଶାପ୍ୟ ନ ଲାଗିଲା । ଅନ୍ତେ ଗୋବିନ୍ଦେ ସେ ପଶିଲା ॥
ସେ ସପ୍ତ ଦୀପେ ଯେକ ରାଜା । ସୁଖେ ପାଳଇ ଜନପ୍ରଜା ॥
ଅବ୍ୟୟ ସମ୍ପଦ ତାହାର । ବିଭବେ କେ କରୁ ଗୋଚର ॥
ସପତ ଦୀପେ ରାଜା ପଣେ । ପ୍ରଜା ପାଳଇ ଅନୁକ୍ଷଣେ ॥
ଶ୍ୱରୀର ସୁଖକୁ ନ ଲେଖେ । ସମ୍ପଦ ସ୍ୱପ୍ନ ପ୍ରାୟେ ଦେଖେ ॥
ଯେ ପ୍ରାଣେ ସମ୍ପଦ ଉଛନ୍ତି । ଅନ୍ତେ ସେ ନରକେ ପଡ଼ନ୍ତି ॥
ଯେମନ୍ତେ ନିଷ୍ଠେ ଜାଣି ମନେ । ହରି ଭଗତି ସତ୍ୟ ମନେ ॥

ବିଷ୍ଣୁ ଭଗତି ଯେତେ ଜନ । ତାହାଙ୍କ ପାଦେ ତାର ମନ ।
ସାଧୁଙ୍କ ପାଦେ ନିତ୍ୟେ ସେବେ । ସଂସାର ଆତ୍ମା ରୂପେ ଭାବେ ॥
ହରି ଚରଣ ଯୁଗ ମନେ । ବିଷ୍ଣୁଙ୍କୁ ଉଚ୍ଚାରେ ବଦନେ ॥
ବିଷ୍ଣୁର ମନ୍ଦିର ମାର୍ଜନେ । କର ଯୁଗଳ ନିତ୍ୟେ ମାନେ ॥
ଶ୍ରବଣ ଯୁଗ ତା ସୁକଥା । ନିତ୍ୟେ ଶୁଣଇ ବିଷ୍ଣୁ କଥା ॥
ନିରତେ ତାହାର ନୟନ । କଳଇ ଭକ୍ତି ଦରଶନ ॥
ଶ୍ୱରୀର ଚର୍ମ ତାର ମନେ । କଲେ ବୈଷ୍ଣବ ଆଲିଙ୍ଗନେ ॥
ହରି ଚରଣ ପଦ ଗନ୍ଧେ । ନିରତେ ଆଘ୍ରାଣ ଆନନ୍ଦେ ॥
ବିଷ୍ଣୁର ଚରଣ ତୁଳସୀ । ତାହାର ରସନାରେ ରସି ॥
ଚରଣ ଯୁଗ କଲେ ନିତ୍ୟେ । କୃଷ୍ଣ ମନ୍ଦିର ଉପଗତେ ॥
ନମସ୍କାରଣେ ଅପ୍ରମାଦେ । ଶିର କଳଇ ତାର ସଧେ ॥
ଶ୍ୱରୀର କଲେ ଦାସ ପଣେ । ଇନ୍ଦ୍ରିୟ ଆଦି ନାନା ଗଣେ ॥
ବିଷ୍ଣୁ ଭଗତ ଜନେ ରତି । ନିରତେ କଲେ ତାର ମତି ॥
ଦେହ ବିଷୟେ ତାର ଯେତେ । କଳଇ ହରି ଭାବ ମତେ ॥
ବିପ୍ର ଦେବତା ପାଦେ ସେବେ । ପୂଜା ଦେଖଇ ବିଷ୍ଣୁ ଭାବେ ॥
ସକଳ ସମ୍ପଦ ପ୍ରସିଦ୍ଧି । ଭିଆଇ କରେ ଅଶ୍ୱମେଧି ॥
ବିପ୍ର ଚରଣ ପାନେ ପୂଜେ । ଯେ ଅଧିଯଜ୍ଞ ବିଧି ଭଜେ ॥
ଅତ୍ରି ବଶିଷ୍ଠ ଗଉତମ । ସଙ୍ଗତେ ଘେନି ବିପ୍ରଜନ ॥
ତୀର୍ଥ ସେବନ ଅନୁମତେ । ସରସ୍ୱତୀର ଅଭିସ୍ରୋତେ ॥
ତାହାର ଯଜ୍ଞ ସଭାମଧେ । ତ୍ରିଦଶେ ଅତିହି ଆନନ୍ଦେ ॥
ମୁନି ବ୍ରାହ୍ମଣ ମଧେ ବସି । ନିତ୍ୟେ ଯଜ୍ଞକୁ ପରଶଂସି ॥
ଦେବ ମନୁଷ୍ୟ ସଭାଗତେ । ସର୍ବେ ଦିଶନ୍ତି ଯେକ ମତେ ॥
ଦେବେ ସେ ସଭା ମଧେ ଥାନ୍ତି । ସ୍ୱର୍ଗ ଗମନେ ନ ଇଚ୍ଛନ୍ତି ॥
ବିଷ୍ଣୁ କୀର୍ତ୍ତନେ ସଭା ମଧେ । ସକଳେ ଶୁଣନ୍ତି ଆନନ୍ଦେ ॥
ସ୍ୱର୍ଗର ପ୍ରାୟେ ମହୀ ଦିଶେ । ଅଷ୍ଟମ ନିଧି ଯହିଁ ମିଶେ ॥
ଯମନ୍ତେ ଭକ୍ତି ଯୋଗ ବଳେ । ସେ ରାଜା ସରସ୍ୱତୀ କୂଳେ ॥
ସ୍ୱଭାବେ ବିଷ୍ଣୁକୁ ତୋଷିଲା । ସର୍ବ ସଂଶୟ ଉପେକ୍ଷିଲା ॥
ଗୃହ ସମ୍ପଦ ଦାରା ସୁତ । ଜ୍ଞାତି ବାନ୍ଧବ ଇଷ୍ଟ ମିତ୍ର ॥
ହସ୍ତୀ ମନୁସ ବାଜୀ ଧନେ । ଇଚ୍ଛା ନ କର ତାର ମନେ ॥
ନିରତେ ଗୋବିନ୍ଦ ଚରଣେ । ମନ ନିବେଶି ଅନୁକ୍ଷଣେ ॥
ତାହାର ଶୁଦ୍ଧ ଚିତ୍ତ ଜାଣି । ଚକ୍ରକୁ ରାଇ ଚକ୍ରପାଣି ॥
ବୋଇଲେ ଅମ୍ବରୀଷ ମେଳେ । ଚକ୍ର ତୁ ଥିବୁ ସବୁକାଳେ ॥
ଯେହାକୁ ରଖ ନିରନ୍ତରେ । ଯେମନ୍ତେ ସର୍ବ ଦୁଃଖ ହରେ ॥
ସେ ପୁଣି ପତ୍ନୀର ସମେତେ । ଉପାସେ ଯେକାଦଶୀ ବ୍ରତେ ॥

କାର୍ତ୍ତିକ ଶୁକ୍ଳ ପକ୍ଷେ ହରି । ପୂଜିଲା ଉପବାସ କରି ॥
ପ୍ରଭାତ କାଳେ ମଧୁବନେ । କାଳନ୍ଦୀ କୂଳେ ଯେକଦିନେ ॥
ଆନନ୍ଦେ ପତ୍ନୀର ସମେତ । ବିଷ୍ଣୁ ପୂଜିଲା ଦୃଢ଼ ବ୍ରତେ ॥
ଦ୍ରବ୍ୟ ସମ୍ପାଦି ଅତିରେକେ । ପୂଜିଲା ମହା ଅଭିଷେକେ ॥
ଉତ୍ତମ ବସ୍ତ୍ର ଅଳଂକାର । ସୁଗନ୍ଧ ମାଲ୍ୟ ଉପହାର ॥
ସଙ୍ଗତେ ଘେନି ନିଜ ନାରୀ । ଯେକାନ୍ତ ଭାବେ ପୂଜା କରି ॥
ଉତ୍ତମ ବ୍ରାହ୍ମଣ ବସାଇ । ସୁନ୍ଦର ଧେନୁମାନ ଦେଇ ॥
ଧେନୁକୁ କରି ଅଳଙ୍କାର । ବସ୍ତ୍ର ବେଷ୍ଟିତ ରୂପା ଖୁର ॥
ପୃଷ୍ଠ ପାରୁଷ ତାମ୍ର କାଂଶ୍ୟେ । ଧେନୁକୁ ମଣ୍ଡିଲା ହରଷେ ॥
ସୁବର୍ଣ୍ଣ ବତ୍ସା ପୟସ୍ୱିନୀ । ମଣ୍ଡିଲା ଅଳଙ୍କାର ଘେନି ॥
ବିପ୍ର ବସାଇ ବାକ୍ୟ କଲା । ଷଡ଼ ଅୟୁତ ଧେନୁ ଦେଲା ॥
ସୁସ୍ୱାଦ ଅନ୍ନ ଷଡ଼ ରସେ । ବିପ୍ରକୁ ଭୁଞ୍ଜାଇ ହରଷେ ॥
ବିପ୍ରଙ୍କ ପଦଯୁଗ ଲାଗି । ପାରଣ ଅର୍ଥେ ଆଜ୍ଞା ମାଗି ॥
ଉଦ୍ୟମ କଲା ନରପତି । ଯେମନ୍ତେ ମିଳିଲା ଅତିଥି ॥
ଦୁର୍ବାସା ଶଙ୍କରର ଅଂଶେ । ଯାହାକୁ ଦେଖି ଜନ ତ୍ରାସେ ॥
ତାହାଙ୍କୁ ଦେଖି ନୃପମଣି । ଆସନ ପଦାସନ ଆଣି ॥
ପୂଜିଲା ଅତିଥି ସ୍ୱଭାବେ । ଆନନ୍ଦେ ଅତି ଗଉରବେ ॥
ପୂଜି ଚରଣ ତଳେ ପଡ଼ି । ରାଜା ବୋଲଇ କର ଯୋଡ଼ି ॥
ଭୋ ମୁନି ! ପାରଣା ମୋହର । ମୋହର ସଙ୍ଗେ ଭିକ୍ଷା କର ॥
ତକ୍ଷଣେ ଅମ୍ବରୀଷ ବୋଲେ । ମୁନି ଆହ୍ନିକ କର୍ମେ ଗଲେ ॥
ଆନନ୍ଦ ମନେ ଧାନ କରି । କାଳନ୍ଦୀ ଜଳେ ମୋଦ ଭରି ॥
ସେ ଜଳେ ସ୍ନାନ ସନ୍ଧ୍ୟା କଲେ । ଆସନେ ବସି ନଦୀକୂଳେ ॥
ଯେବେ ହୋ ଶୁଣ ନୃପମଣି । ରାଜା ବିଚାରେ ବିପ୍ର ଘେନି ॥
ପାରଣା ହୋଇଲା ଉଚ୍ଛୁର । ଅତିଥି ନଇଲା ମୋହର ॥
କେମନ୍ତେ କରିବି ଭୋଜନ । ଅବଜ୍ଞା କରି ମହାଜନ ॥
ଅର୍ଦ୍ଧ ମୁହୂର୍ତ୍ତେ ଅଛି ବେଳ । ଯଥାର୍ଥ ପାରଣାର କାଳ ॥
ଉଚ୍ଛୁର ପାରଣାର ବେଳା । ମୋତେ ତ ସଂକଟ ପଡ଼ିଲା ॥
ଯେ କର୍ମ କଲେ ସାଧୁ ବାଣୀ । ଲୋକେ ବୋଲିବେ ମୋତେ ପୁଣି ॥
ଅଧର୍ମ ନ ଲାଗିବ ମୋତେ । ପାରଣା କରି ବେଦମତେ ॥
ଜଳ ଗଣ୍ଡୁଷେ କରି ପାନ । ଅତିଥି କରାଇ ଭୋଜନ ॥
ପଛେ ମୁଁ କରିବି ଆହାର । ଯେତେ ବିଚାରି ନୃପବର ॥
ଜଳ ପାରଣା ଅପାରଣ । ଯେ ଆଦି ନିଗମେ ପ୍ରମାଣ ॥
ବିଚାରି ବ୍ରାହ୍ମଣଙ୍କ ତୁଲେ । ଜଳ ଭକ୍ଷନ୍ତି ସେ ନିରୋଳେ ॥
ତକ୍ଷଣେ ଜଳ ପାନ କରି । ଭୟେ ସ୍ମରେ ନରହରି ॥

ଦୁର୍ବାସା ଆଗମନ ଚାହିଁ । ରାଜା ରହିଲା ତ୍ରାସ ପାଇ ॥
ଦୁର୍ବାସା ଯମୁନାର କୂଳେ । ସ୍ୱ କର୍ମ ସାରି ପ୍ରାତଃ କାଳେ ॥
ମିଳିଲେ ଅମ୍ବରୀଷ ପାଶେ । ପାରଣା ପାଇବାର ଆଶେ ॥
ନୃପତି କରି ବହୁ ମାନ୍ୟ । ବୋଲଇ କରିବା ଭୋଜନ ॥
ଯେମନ୍ତେ ଅମ୍ବରୀଷ ବାଣୀ । ଦୁର୍ବାସା ବହୁ ମାନ୍ୟ ଶୁଣି ॥
ସ୍ୱଭାବେ ସର୍ବଜ୍ଞ ଆପଣ । ଜାଣିଲେ କଲା ଯେ ପାରଣ ॥
ରାଜାର ବଦନ ଅନାଇ । ବୋଲଇ କୋପଭର ହୋଇ ॥
ତୁ ଅନାଦର କଲୁ ମୋତେ । ଜଳ ଭକ୍ଷିଲୁ ଯେ ଗୁପତେ ॥
ଅତିଥି କଲୁ ଅବହେଳା । ଭୁଞ୍ଜିଲୁ ପାରଣାର ବେଳା ॥
ତୁ ଯେ ଅବଜ୍ଞା କଲୁ ମୋତେ । ଉଚିଷ୍ଟ ଭୁଞ୍ଜିବୁ କେମନ୍ତେ ॥
ତୁ ମୋତେ କଲୁ ଅବହେଳ । ଭୁଞ୍ଜତୁ ଅଧର୍ମର ଫଳ ॥
ଯେମନ୍ତେ ବୋଲି କୋପଭରେ । ଜଟା ଉପାଡ଼ି ନିଜ ଶିରେ ॥
ଭ୍ରୂକୁଟି କୁଟିଳ ଲୋଚନ । ରାଜାଙ୍କୁ ବୋଲନ୍ତି ବଚନ ॥
ଦେଖି ଯେ ନୃପତିର ଗତି । ସମ୍ପଦେ ହୋଇ ମୂଢ଼ମତି ॥
ଧର୍ମ ବଞ୍ଚିତ ବିଷ୍ଣୁ ଭକ୍ତେ । ବୋଲେ ମୁ ଈଶ୍ୱର ଜଗତେ ॥
ଅତିଥି ମତେ ପୂଜା କଲା । ପାରଣା ଅର୍ଥେ ନିମନ୍ତ୍ରିଲା ॥
ଭିକ୍ଷା ନ ଦେଇ ଅଗ୍ରେ ମୋତେ । ପାରଣା କଲାଯେ ଯୁଗତେ ॥
ମୋତେ ଯେ କଲା ଅବହେଳ । ସ୍ୱ ଦେହେ ଭୁଞ୍ଜ ତାରଫଳ ॥
ଜଟାକୁ ଚାହିଁ ଆଜ୍ଞା ଦେଲେ । ଅନଳ ହୁଅ ତୁ ବୋଇଲେ ॥
ତକ୍ଷଣେ ହୁଙ୍କାର କରାଳ । ଉଠିଲା କୃତିହା ଅନଳ ॥
ତେଜ ଆଛାଦି ଦଶ ଦିଶେ । ପବନ ବହେ ଅଣଚାଶେ ॥
ଧୂମ ପୂରିତ ଶୂନ୍ୟ ପଥେ । ବେଗେ ଧାଇଁଲା ଘୋର ନାଦେ ॥
ପ୍ରଳୟାନଳ ପ୍ରାୟେ ହୋଇ । ମିଳିଲା ରାଜା ଅଗ୍ରେ ଯାଇ ॥
ଜ୍ୱଳନ୍ତା ଖଡ୍ଗ କରେ ଧରି । ମିଳିଲା ଘୋର ନାଦ କରି ॥
ଭୂମି କମ୍ପଇ ପାଦ-ଘାତେ । ପର୍ବତ ଉଡ଼େ ଶୁଖ ବାତେ ॥
ଦେଖି ତାହାର ତେଜ କଳା । ରାଜା ଚରଣେ ନ ଘୁଞ୍ଚିଲା ॥
ତାର ବଦନ ରାଜା ଚାହିଁ । ମନେ ଚିନ୍ତିଲା ଭାବଗ୍ରାହୀ ॥
ତକ୍ଷଣେ ବିଷ୍ଣୁଚକ୍ର ଆସି । କୋଟିଯେ ସୂର୍ଯ୍ୟ ପ୍ରାୟେଦିଶି ॥
କୃତିହା ଅନଳ ଉପରେ । ପଡ଼ିଲା ମହା ନାଦ ଘୋରେ ॥
ତକ୍ଷଣେ ଅନଳ ଲିଭିଲା । ଦିଶ ଆକାଶ ପ୍ରକାଶିଲା ॥
ସୁଦରଶନ ତେଜ ଦେଖି । ଦୁର୍ବାସା ଭୟେ ବୁଜେ ଆଖି ॥
ବଦନେ ଦେଇ ବେନି କର । ଭୟେ କମ୍ପଇ ଥରହର ॥
ସମ୍ମୁଖେ ଚାହିଁ ନ ପାରିଲା । ଜୀବନ ଭୟେ ପଳାଇଲା ॥
ତାର ଭାଜିଲା ଦେଖି ପଥେ । ଚକ୍ରହିଁ ଧାଇଁଲା ପ୍ରତକ୍ଷେ ॥
ମଣ୍ଡୁକ ଦେଖି ସର୍ପ ଯେହ୍ନେ । ଧାମଇ ଗର୍ଜିତ ବଦନେ ॥
ଦୁର୍ବାସା ଦଶ ଦିଶ ଚାହିଁ । ଭୟେ ନ ପାରଇ ପଳାଇ ॥
ପଶିଲା ମେରୁ ଗୁହା ମଧ୍ୟେ । ସୁଦରଶନ ଘୋର ନାଦେ ॥
ଦିଗ ଆକାଶ ଭୂମି ଗତେ । ବିବର ସମୋଦ୍ର ସହିତେ ॥
ଦିଗପାଳଙ୍କ ଘରେ ଲୁଚେ । ଚକ୍ରକୁ ଦେଖି ପୁଣି ପଛେ ॥
ଯହିଁ ରହିଁ କି ଧାମେ ବେଗେ । ସୁଦରଶନ ଧାମେ ରଙ୍ଗେ ॥
ସୁଦରଶନ ତେଜ ଦେଖି । କେହି ନ ପାରେ ତାକୁ ରଖି ॥
ତକ୍ଷଣେ ସ୍ଥାନ ନ ପାଇଲା । ସତ୍ୟ ଲୋକକୁ ପଳାଇଲା ॥
ଶୂନ୍ୟେ ପଳାନ୍ତେ ମନଦୁଃଖେ । ଭୟେ ପଶିଲା ବ୍ରହ୍ମଲୋକେ ॥
ବ୍ରହ୍ମାର ସମୀପେ ମିଳିଲା । ଚରଣ ସମ୍ଭାଳ ବୋଇଲା ॥
ଡାକଇ ପଶିଲି ଶରଣ । ବିଧାତ ରଖ ମୋର ପ୍ରାଣ ॥
ଯେମନ୍ତେ ମୁନି ବାକ୍ୟ ଶୁଣି । ଉଠି କହନ୍ତି କୁଶପାଣି ॥
କାଳ ସ୍ୱରୂପୀ ଯେ ଈଶ୍ୱର । ଭୃଭଙ୍ଗ ମାତ୍ରେ ଯା ସଂହାର ॥
ମୁଁ ବ୍ରହ୍ମା ଈଶ୍ୱର ସହିତେ । ଭୃଗୁ ଦକ୍ଷାଦି ମୁନି ଯେତେ ॥
ପ୍ରଜା ଈଶ୍ୱର ଭୂତେଶ୍ୱର । ଦେବ ସହିତେ ସୁରେଶ୍ୱର ॥
ଯେ ହରି ଆଜ୍ଞା ଶିରେ ଧରି । ଯେଝା ବିଷୟେ ଅଧିକାରୀ ॥
ଅଛୁ ସଂସାର ଲୋକ ହିତେ । ତା ରିପୁ ରଖିବୁ କେମନ୍ତେ ॥
ଯେମନ୍ତେ ବିଧାତା ବଚନ । ଶୁଣି ଦୁର୍ବାସା ଛନ୍ନ ଛନ୍ନ ॥
ତହୁଁ ଚଳଇ ମନ ଦୁଃଖେ । ବେଗେ ମିଳିଲା ଶିବଲୋକେ ॥
ଶଙ୍କର ଚରଣେ ପଡ଼ିଲା । ଶରଣ ସମ୍ଭାଳ ବୋଇଲା ॥

## ଶ୍ରୀ ଶଙ୍କର ଉବାଚ

ଦୁର୍ବାସା ବାକ୍ୟ ଶୁଣି ହର । ସମ୍ମୁଖେ ବୋଲନ୍ତି ଉତ୍ତର ॥
ଶୁଣ ଦୁର୍ବାସା ତୋତେ କହି । ଆମ୍ଭେ ଯାହାର ଆଜ୍ଞା ବହି ॥
ବ୍ରହ୍ମାଣ୍ଡ ପାଳଣ ପ୍ରକାଶେ । ଯେବା ବିଷୟ ଜୀବ କୋଷେ ॥
କାଳର ବଳେ ଦୃଶ୍ୟାଦୃଶ୍ୟ । ଭ୍ରମନ୍ତି ବିଳୟ ପ୍ରକାଶ ॥
ତାହାଙ୍କ ମଧ୍ୟେ ଆମ୍ଭେ ଭୂମି । ଗତ ଆଗତ ପଥ ଭ୍ରମୀ ॥
ମୋ ସଙ୍ଗେ ବ୍ରହ୍ମାର କୁମର । ନାରଦ ଆଦି ମୁନି ବର ॥
କପିଳ ଦେବଳ ଆସୁରୀ । ଧୌମ୍ୟ ମରୀଚି ଆଦି କରି ॥
ଯେ ଅନ୍ୟ ସିଦ୍ଧ ମୁନିଜନ । ବେଦାନ୍ତ ପାର ଦରଶନ ॥
ଜାଣି ନ ପାରି ଯାର ମାୟା । ନିରତେ ସମ୍ଭାଳି ବିଷୟା ॥
ସେ ବିଷ୍ଣୁ ଶସ୍ତ୍ର ନିବାରଣେ । ସାମର୍ଥେ କେ ଅଛି ଶରଣେ ॥
ତୁ ଯେବେ ଚଳ ବିଷ୍ଣୁପୁର । ହରି ଚରଣ ଆଶ୍ରା କର ॥
ସେ ତୋତେ ରଖିବେ ଶରଣ । ଅନ୍ୟଥା ନାହିଁ ପରିତ୍ରାଣ ॥
ଦୁର୍ବାସା ଈଶ୍ୱର ବଚନେ । ପଶିଲା ବିଷ୍ଣୁର ଭୁବନେ ॥

ଲକ୍ଷ୍ମୀ ସଙ୍ଗତେ ଯହିଁ ହରି । ବସନ୍ତି ଗୃହାଶ୍ରମ କରି ॥
ବିଷ୍ଣୁର ଚକ୍ର ତେଜ ଭରେ । ଶ୍ରମ ଭୂଷିତ କଳେବରେ ॥
ଦୁର୍ବାସା ଶୋକ ଗଦ ଗଦେ । ପଡ଼ିଲା ବିଷ୍ଣୁ ପଦ୍ମପାଦେ ॥
କାତରେ କମ୍ପଇ ଶ୍ୱରୀର । ଡାକଇ ପ୍ରଭୁ ରକ୍ଷାକର ॥
ହେ ନାଥ ଅନନ୍ତ ଅଚ୍ୟୁତ । ସନ୍ଥ ଜନଙ୍କର ତୁ ନାଥ ॥
ମୁ ତୋର ଅପରାଧ କରି । ଶରଣ ଗଲି ରଖ ହରି ॥
ମୁ ତୋର ମହିମା ନ ଜାଣୁ । ଶଙ୍କଟେ ପଡ଼ିଲି ମୁ ତେଣୁ ॥
ତୋର ସେବକ ଅପରାଧ । କଲି ମୁ ରଖ ହେ ଗୋବିନ୍ଦ ॥
ତୋର ଭଗତ ତୋର ଲୋକ । ମୋତେ ଯେ ଚକ୍ର ତେଜୁ ରଖ ॥

## ଶ୍ରୀ ଭଗବାନ ଉବାଚ

ଦୁର୍ବାସା ମୁଖ ଚାହିଁ ହରି । କହନ୍ତି ଅତି ମୋଦ ଭରି ॥
ମୁ ଯେ ଭଗତ ପରାଧୀନ । ମୋ ତହୁଁ ଭକ୍ତ ନୋହେ ଭିନ୍ନ ॥
ଭଗତ ପରାଧୀନ ମୁହିଁ । ସେବକ ପ୍ରାୟେ ପଛେ ଥାଇ ॥
ସାଧୁଙ୍କ ହୃଦେ ମୁ ବସଇ । ତାଙ୍କ ଭଗତ ଭାଗ ବହି ॥
ଭକ୍ତଟି ମୋହର ଶ୍ୱରୀର । ଅଳପ ନାହିଁ ଅଭ୍ୟନ୍ତର ॥
ଭକ୍ତ ନିମନ୍ତେ ଦେହ ବହି । ସଂସାରେ ନାନା ରୂପ ହୋଇ ॥
ଅତ୍ୟନ୍ତ ପ୍ରିୟ ମୋ ଭଗତ । ମୁ ସେ ଭଗତ ଜନ ପଥ ॥
ଯେ କଥା ମୁନିଙ୍କ ସଙ୍ଗମେ । ଜାଣନ୍ତି ଆଗମେ ନିଗମେ ॥
ଯେ କଥା ପରମ୍ପରା ବିଧି । ବେଦ ପୁରାଣ ମାର୍ଗେ ସିଦ୍ଧି ॥
ଯେ ବସେ ମୋହର ଶରଣେ । ସମ୍ପଦ ତୃଣ ପ୍ରାୟେ ମଣେ ॥
ଦାରା ମନ୍ଦିର ସୁତ ଧନ । କେବେହେଁ ନ କଢେ ତା ମନ ॥
ଯେ ପ୍ରାଣ ଛାଡ଼େ ମୋର ହିତେ । ମୁ ତାକୁ ଛାଡ଼ିବି କେମନ୍ତେ ॥
ମୋର ବିଷୟେ ଚିତ୍ତ ସ୍ଥାପି । ମୋତେ ଦେଖନ୍ତି ଆତ୍ମାରୂପି ॥
ମୁ ତାକୁ ଦିଶେ ସର୍ବଭୂତେ । ହୃଦରେ ଥାଇ ଅବିରତେ ॥
ଭକ୍ତିରେ ମୋତେ ବଶ କରି । ନିଜ ପୁରୁଷେ ଯେହ୍ନେ ନାରୀ ॥
ମୋର ଚରଣେ ନିତ୍ୟେ ଚିନ୍ତି । ଚତୁର୍ବ୍ଧା ମୂର୍ତ୍ତି ନ ବାଞ୍ଛନ୍ତି ॥
ଜନ୍ମ ମରଣ ତାର ନାହିଁ । ସ୍ଥିତି ସଂହାର ତାର କାହିଁ ॥
ମୋର ହୃଦୟେ ଭକ୍ତଜନ । ମୁହିଁଟି ତାହାଙ୍କ ଜୀବନ ॥
ମୋ ତହୁଁ ନ ଜାଣନ୍ତି ଆନ । ମୁହିଁ ତାହାଙ୍କର ଅଧୀନ ॥
ଯେବେ ମୋ ଭକ୍ତ ଅପରାଧେ । ସୁଦରଶନ ତୋତେ ବାଧେ ॥
ଯେ ମୋର ଭକ୍ତଙ୍କୁ ପୀଡ଼ନ୍ତି । ମୋ ଚକ୍ର ତେଜେ ସେ ପଡ଼ନ୍ତି ॥
ବିପ୍ରେ ଯେ ତପ ବିଦ୍ୟା ବଳେ । ଶ୍ରେୟ ଲଭନ୍ତି ଯେ ଶୟଳେ ॥
ସେ ଯେବେ ଭକ୍ତଙ୍କୁ ପୀଡ଼ନ୍ତି । ଉଭୟ ଲୋକେ ନ ଲଭନ୍ତି ॥
ଯେବେ ତୁ ଯାଅ ବେଗେ ହୋଇ । ନାଭାଗ ପୁତ୍ର ଅଛି ଯହିଁ ॥
ତାରେ ଶରଣ ପଶ ଯେବେ । ମୋ ଚକ୍ରୁ ନିସ୍ତରିବୁ ତେବେ ॥
ବୋଲଇ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ଗୋବିନ୍ଦ ଆଜ୍ଞା ପରମାଣେ । ଦୁର୍ବାସା ଗଲା ତତକ୍ଷଣେ ॥
ହରି ଭଗତଙ୍କ ମହିମା । କେ କହିପାରେ ଗୁଣ ସୀମା ॥
ସୁଜନେ ଚିନ୍ତ ହରିପାଦେ । ତରିବ ବିଷୟ ପ୍ରମାଦେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଅମ୍ବରୀଷ ଚରିତେ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଯେମନ୍ତେ ବିଷ୍ଣୁର ବଚନେ । ଦୁର୍ବାସା ଗଲା ତୋଷମନେ ॥
ତକ୍ଷଣେ ଅମ୍ବରୀଷ ପାଦେ । ପଡ଼ିଲା ଜୀବନ ପ୍ରମାଦେ ॥
ଚରଣ ତଳେ ତାକୁ ଦେଖି । ସମ୍ଭ୍ରମେ ଆସନ ଉପେକ୍ଷି ॥
ବିପ୍ର ଜୀବନ ରକ୍ଷା ଅର୍ଥେ । କର ଅଞ୍ଜଳି ଦେଇ ମାଥେ ॥
ସୁଦରଶନ ମୁଖୁ ଚାହିଁ । ଡାକନ୍ତି ରଖ ତ୍ରାହି ତ୍ରାହି ॥

## ଅମ୍ବରୀଶ ଉବାଚ

ଭୋ ଚକ୍ର ମହିମା ତୋ ଯେତେ । କେ ମୁଖେ କହିପାରେ ତୋତେ
ତୁ ଅଗ୍ନି ଆଦିତ୍ୟ ଯେ ସୋମ । ସର୍ବ ଜ୍ୟୋତିଙ୍କ ସୂକ୍ଷ୍ମଧାମ ॥
ତୁ ଅପକ୍ଷିତି ବାୟୁ ରୂପି । ବ୍ୟୋମ ପ୍ରକାରେ ସର୍ବବ୍ୟାପୀ ॥
ସୁଫଳ ମାତ୍ର ଇନ୍ଦ୍ରି ଗଣେ । ବିରାଜ ପୁରୁଷ କାରଣେ ॥
ଭୋ ଚକ୍ର ତୋତେ ନମସ୍କାର । ସ୍ୱଭାବେ ତୁ ସହସ୍ରଅର ॥
ବିଷ୍ଣୁର ନିଜ ପ୍ରିୟ ତୁହି । ତୋ ଭାବ ନ ଜାଣନ୍ତି କେହି ॥
ସକଳ ଶସ୍ତ୍ର ତେଜ ହରୁ । ତୋର ମହିମା ମହାମେରୁ ॥
ତୁ ଲୋକପାଳ ସର୍ବ ଆତ୍ମା । ତୋ ତେଜେ ପୁରୁଷ ମହାତ୍ମା ॥
ତୁ ସର୍ବ କର୍ମ ଧର୍ମ ହେତୁ । ଅଧର୍ମ କୁଳ ଧୂମକେତୁ ॥
ତ୍ରୈଲୋକ୍ୟ ପାଳ ଶୁଦ୍ଧଚେତା । ମନହୁଁ ବେଗ ବଳବନ୍ତା ॥
ତୋହର ନିଜ ତେଜ ତ୍ରାସେ । ସଂସାର ଘୋର ତମ ନାଶେ ॥
ଶ୍ରୁତି ତୋ ମହିମା ନ ଜାଣେ । କେବଳ ପ୍ରକାଶେ ପ୍ରମାଣେ ॥
ସଦ ଅସଦ ରୂପ ତୋର । ବ୍ରହ୍ମ ଶିବଙ୍କୁ ଅଗୋଚର ॥
ଦାନବ ବଳ ଭୟେ ହରି । ତୋତେ ସୃଜିଲେ ତପ କରି ॥
ତୁ ଦୈତ୍ୟବଳ ମଧେ ପଶି । ସକଳ ନିଜ ତେଜ ଧ୍ୱଂସି ॥
ଅସୁର ଗଣେ ତୋର ତେଜ । ଦେଖି କମ୍ପିଲା ଗ୍ରହରାଜ ॥
ଯେଣୁ ଜଗତ ପ୍ରାଣ ଅର୍ଥେ । ଖଳ ବିନାଶେ ଧରି ହସ୍ତେ ॥

ତୋ ବଳ ବଳେ ଗଦାଧର । ଯେ ବିପ୍ର ଦେବକୁ ଉଦ୍ଧର ॥
ଯେ ବିପ୍ରଦେବ କୁଳ ମୋର । ଯେହା ଜୀବନ ରକ୍ଷା କର ॥
ମୁଁ ଯେବେ ଦାନ ଯଜ୍ଞ କରି । ସ୍ୱଧର୍ମ ମାର୍ଗ ରକ୍ଷା କରି ॥
ବ୍ରାହ୍ମଣ ଚରଣ କମଳେ । ଯେବେ ସେବନ ମୋର କୁଳେ ॥
ଯେବେ ଗୋବିନ୍ଦ ପ୍ରୀତିମୋତେ । ମୁଁ ଯେବେ ଦେଖି ସର୍ବଭୂତେ
ସେ ଧର୍ମେ ଯେବେ ମୋର ଦୀକ୍ଷା । ଯେ ବିପ୍ରପ୍ରାଣ ହୋଉ ରକ୍ଷା

## ଶ୍ରୀ ଶୁକ ଉବାଚ

ଯେମନ୍ତେ ଶୁଣି ତା ବଚନ । ବିଷ୍ଣୁର ଚକ୍ର ସୁଦର୍ଶନ ॥
ତକ୍ଷଣେ ନିଶାକର ପ୍ରାୟେ । ଶୀତଳ ଲାଗେ ବିପ୍ର ଦେହେ ॥
ଦୁର୍ବାସା ଜୀବନ ପାଇଲା । ସନ୍ତୋଷେ ଚକ୍ରକୁ ଚାହିଁଲା ॥
ଚକ୍ରକୁ ନମସ୍କାର କରି । ବୋଲେ ନୃପତି କର ଧରି ॥

## ଦୁର୍ବାସା ଉବାଚ

ଦେଖ ଅନନ୍ତ ଦାସଙ୍କର । ମହା ମହିମା ଅଗୋଚର ॥
ଅପ୍ରାଧ କଲେ ହେ ସହନ୍ତି । ବିଷ୍ଣୁକୁ ସର୍ବଦେହେ ଚିନ୍ତି ॥
ସାଧୁଙ୍କୁ ଜାଣ କେହି ନୋହେ । ହରିକି ଦେଖେ ସର୍ବ ଦେହେ ॥
ଯାହାର ନାମ ଶ୍ରୁତିମାତ୍ରେ । ଦୁରିତ ନ ରହଇ ଗାତ୍ରେ ॥
ସେ ତୀର୍ଥପାଦେ ଦାସ ଯେତେ । ଦୁଃଖ ନାଶନ୍ତି ଯେ ଜଗତେ ॥
ଯେଣୁ ରଖିଲୁ ମୋ ଜୀବନ । ତୋର ମହିମା ଧନ୍ୟ ଧନ୍ୟ ॥
ଯେମନ୍ତ ବିପ୍ର ମୁଖୁ ଶୁଣି । କପୋଳେ ଦେଇ ବେନି ପାଣି

## ଅମ୍ବରୀଷ ଉବାଚ

ବୋଲେ ଦୁର୍ବାସା ମୁଖ ଚାହିଁ । ଭୋ ବିପ୍ର କର ତ୍ରାହି ତ୍ରାହି ॥
ତୁ ଯେ ଅତିଥି ମୋର କୁଳେ । ମିଳିଲୁ ପାରଣାର ବେଳେ ॥
ପାରଣା ଭୟେ ମୁ ଗୁପତେ । ଅପ୍ରାଧ କଲି ଦୃଢ଼ଚିତ୍ତେ ॥
ସେ ଅପରାଧ ମୋ ନ ଧର । ପାରଣା ମୋର ଘରେ କର ॥
ଯେମନ୍ତେ ରାଜାର ବଚନେ । ପାରଣା କଲେ ତୋଷ ମନେ ॥

## ଶ୍ରୀ ଶୁକ ଉବାଚ

କଲ୍ୟାଣ କରି ଅମ୍ବରୀଷେ । ଅନେକ ମନର ସନ୍ତୋଷେ ॥
ତକ୍ଷଣେ ଶୂନ୍ୟମାର୍ଗେ ଗଲେ । ବ୍ରହ୍ମାର ଭୁବନେ ମିଳିଲେ ॥
କହିଲେ ଅମ୍ବରୀଷ ବାଣୀ । ବ୍ରହ୍ମା ସନ୍ତୋଷେ ତାହା ଶୁଣି ॥
ରାଜାକୁ କଲେ ଧନ୍ୟ ଧନ୍ୟ । ଯେବେ ତୁ ଶୁଣ ହୋ ରାଜନ
ସେ ଅମ୍ବରୀଷ ଦଣ୍ଡଧାରୀ । ପୁତ୍ରକୁ ରାଜ୍ୟେ ରାଜା କରି ॥
ହରି ଚରଣେ ମନ ଦେଇ । ଘୋର ଯେ ବନେ ପଶେ ଯାଇ
ପ୍ରାଣ ଛାଡ଼ିଲା ତପବଳେ । ପଶିଲା ବିଷ୍ଣୁର ମଣ୍ଡଳେ ॥
ଅମ୍ବରୀଷର ଯେ ଆଖ୍ୟାନ । ଯେ କରେ ସର୍ବଣ କୀର୍ତ୍ତନ ॥
ହରି ଚରଣ ମନ ଚିନ୍ତି । ଅନ୍ତେ ସେ ଗୋବିନ୍ଦ ଲଭନ୍ତି ॥
ବୋଲଇ ବିପ୍ର ଜଗନ୍ନାଥ । ନବମସ୍କନ୍ଧେ ଭାଗବତ ॥
ସୁଜନେ ଅମ୍ବରୀଷ ବାଣୀ । ସଂସାରୁ ତର ଯେହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ବୈୟାସିକ୍ୟାଂ ସଂହିତାୟା ନବମସ୍କନ୍ଧେ ଅମ୍ବରୀଷେ ଉପାଖ୍ୟାନେ ନାମ ପଞ୍ଚମୋଽଧ୍ୟାୟ ।*

# ଷଷ୍ଠ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଯେବେ ହୋ ଶୁଣ ନରନାଥ । କହିବା ବଂଶାନୁଚରିତ ॥
ସେ ଅମ୍ବରୀଷ ପୁତ୍ର ତିନି । ବିରୂପ ଶମ୍ଭୁକେତୁ ଘେନି ॥
ରୂପେ ବିଜୟେ ଅନୁପମ । ଅଶେଷ ଗୁଣେ ଗୁଣ ଧାମ ॥
ବିରୂପ ପୁତ୍ର ପୃଷଦଶ୍ୱ । ରଥୀତର ତାହାର ବଂଶ ॥
ସେ ରଥୀତର ଅପୁତ୍ରିକ । ଉପାୟ କଲା ସେ ଅନେକ ॥
କେବେହେଁ ପୁତ୍ର ତା ନୋହିଲା । ଅଙ୍ଗିରା ତୁଲେ ବିଚାରିଲା ॥
ବୋଇଲା ମୋର ପତ୍ନୀ ଗର୍ଭେ । ସନ୍ତତି କର ତୁମ୍ଭେ ଭାବେ ॥
କ୍ଷେତ୍ରିୟ ପୁତ୍ର ହେଉ ମୋର । ଅପୁତ୍ର ଦୁଃଖ କର ପାର ॥
ଯେମନ୍ତେ ରାଜାର ବଚନେ । ଅଙ୍ଗିରା କରି ଗର୍ଭଧାନେ ॥
କେତେ କୁମର ବ୍ରହ୍ମତେଜେ । ଜନ୍ମିଲା ଅଙ୍ଗିରାର ବୀର୍ଯ୍ୟେ ॥
ସେ ପୁଣି କ୍ଷତ୍ରିୟ ହୋଇଲେ । କ୍ଷତ୍ରିୟ କ୍ଷେତ୍ର ଉପୁଜିଲେ ॥
ପୁଣି ତାହାର ଘ୍ରାଣୁ ଜାତ । ଇକ୍ଷ୍ୱାକୁ ନାମେ ହୋଇ ସୁତ ॥
ସେ ଇକ୍ଷ୍ୱାକୁର ବଂଶ ଯେତେ । କହିବା ଶୁଣ ଯେକ ଚିତ୍ତେ ॥
ହୋଇଲେ ଶତେକ କୁମର । ତାହାଙ୍କ ମଧ୍ୟେ ବଂଶଧର ॥
ବିକୁକ୍ଷି ନିମି ଦଣ୍ଡ ନାମେ । ଅତି ପ୍ରଶସ୍ତ ଗୁଣଗ୍ରାମେ ॥
ଯେ ତିନି ଆଦି ପୁତ୍ର ଯେତେ । ରାଜା ହୋଇଲେ ଯେ ଜଗତେ ॥
ଯେ ପୁଣ୍ୟଭୂମି ଆର୍ଯ୍ୟାବ୍ରତେ । ପୂର୍ବେ ପଚିଶ ତାର ପୁତ୍ରେ ॥
ତାର ପଶ୍ଚିମେ ପଞ୍ଚବିଂଶେ । ଜ୍ୟେଷ୍ଠ ତିନିହେ ମଧ୍ୟଦେଶ ॥
ଇକ୍ଷ୍ୱାକୁ ପିତୃଶ୍ରାଦ୍ଧ ଦିନେ । ବିକୁକ୍ଷ ରାଇ ସନ୍ନିଧାନେ ॥
ବୋଇଲା ବନ ପଶୁଗଣ । ମୋ ପିତୃଶ୍ରାଦ୍ଧ ଅର୍ଥେ ଆଣେ ॥
ତକ୍ଷଣେ ପିତୃ ଆଜ୍ଞାଶିରେ । ଘେନି ପଶିଲା ବନ ଘୋରେ ॥
ଶବର ଗୁଣ ତୁଲେ ଗଲା । ଅନେକ ପଶୁ ବଧ କଲା ॥
ଶ୍ରାଦ୍ଧକୁ ଯୋଗ୍ୟ ଯେତେ ମାଂସ । ତାହାଙ୍କ ମଧ୍ୟେ ଯେକ ଶଶ ॥
ଅରଣ୍ୟେ ପଥଶ୍ରମ ପାଇ । କ୍ଷୁଧାର୍ତ୍ତେ ଚଳି ନ ପାରଇ ॥

ଶଶା ଗୋଟିକ ଗାତ୍ର ପୋଡ଼ି । ଆଗେ ଭକ୍ଷିଲା ଧର୍ମ ଏଡ଼ି ॥
ଶେଷେ ଯେତେକ ପଶୁଥିଲା । ପିତା ସମୀପେ ନେଇ ଦେଲା ॥
ସେ ପୁଣି ବଶିଷ୍ଠଙ୍କୁ ଆଣି । ଆନନ୍ଦେ ବୋଲେ ନୃପମଣି ॥
ଯେ ପଶୁ ମାଂସେ ଶ୍ରାଦ୍ଧକର । ଯେମନ୍ତେ ଶୁଣି ତା ଉତ୍ତର ॥
ବଶିଷ୍ଠେ ରାଜାବାକ୍ୟ ଶୁଣି । ସେ କଥା ଯୋଗବଳେ ଜାଣି ॥
ବୋଇଲେ ରାଜା ମୁଖ ଚାହିଁ । ପ୍ରୋକ୍ଷଣେ ଯୋଗ୍ୟ ଯେ ନୁହଇ ॥
ଦେବତା ପିତୃ ଅର୍ଥେ ମାଂସ । କେମନ୍ତେ ଦେବି ଅବଶେଷ ॥
ତୋର କୁମର କ୍ଷୁଧା ଅର୍ଥେ । ଶଶାଏ ଭକ୍ଷିଲା ବନସ୍ତେ ॥
ବନେ ଭକ୍ଷିଲା ଅଗ୍ରଭାଗ । ଯେ ମାଂସ ଶ୍ରାଦ୍ଧେ ନୋହେ ଯୋଗ୍ୟ ॥
ଯେମନ୍ତେ ଗୁରୁ ବାକ୍ୟ ଶୁଣି । କୋପେ ବୋଇଲେ ନୃପମଣି
ଯେ ପୁତ୍ର ପାପିଷ୍ଠ ପାମର । ଯେହାକୁ ରାଜ୍ୟୁ ଦୂରକର ॥
ତକ୍ଷଣେ ରାଜାର ବଚନେ । ପୁରୁ ବାହାର କଲେ ଜନେ ॥
ସେ ପୁଣି ବିପ୍ରଙ୍କ ଚରଣେ । ସେବା କରଇ ଅନୁକ୍ଷଣେ ॥
ଯୋଗରେ ଦେହ ତ୍ୟାଗ କଲା । ପରମବ୍ରହ୍ମେ ସେ ମିଳିଲା ॥
ବିକୁକ୍ଷି ପିତୃ ମୁଖୁ ପରେ । ପୁଣି ସେ ମିଳିଲା ରାଜ୍ୟରେ ॥
ପୃଥିବୀ ଶାସନ ସେ କଲା । ଯଜ୍ଞେ ହରିଙ୍କୁ ଆରାଧିଲା ॥
ଶଶାଦ ନାମ ତାର ଖ୍ୟାତ । ଜଗତେ ହୋଇଲା ବିଦିତ ॥
ଶଶାଦ ନାମ ପୁରଞ୍ଜୟ । ଦ୍ୱିତୀୟ ନାମ ଇନ୍ଦ୍ରବାହ ॥
ପରୋପକାର ଧର୍ମକଲା । କାକୁସ୍ଥ ନାମେ ସେ ବହିଲା ॥
ଯେମନ୍ତ ଶୁକ ବାକ୍ୟ ଶୁଣି । ବୋଲେ ପରୀକ୍ଷା ନୃପମଣି ॥
କାକୁସ୍ଥ ନାମ ତା କେମନ୍ତେ । ଯେ କଥା କହ ମୁନି ମୋତେ ॥

## ଶ୍ରୀ ଶୁକ ଉବାଚ

ମୁନି ବୋଲନ୍ତି ଶୁଣ ରାୟେ । ଦେବେ ଯେ ଅସୁରଙ୍କ ଭୟେ ॥
ଦେବ ଦାନବ ସତ୍ୟଯୁଗେ । ଯୁଦ୍ଧ ଆରମ୍ଭ କଲେ ରାଗେ ॥
ଗୁରୁଙ୍କୁ ପୁଛିଲେ ଯୁଗତେ । ସଂଗ୍ରାମେ ଜିଣିମି କେମନ୍ତେ ॥
ବୋଇଲେ ଅଙ୍ଗିରା କୁମର । ପୁରଞ୍ଜ ଯୋଦ୍ଧା ପଣେ ବର ॥
ତାର ନାରାଜେ ରିପୁଗଣ । ବେଗେ ଭାଗିଲେ ଘୋରରଣ ॥
ଶୁଣି ବିବୁଧେ ଗୁରବାକ୍ୟେ । ପୁରଞ୍ଜୟ ନିମନ୍ତି ସଙ୍ଗେ ॥
ସେ ଯୋଦ୍ଧାଦେବ ବାକ୍ୟ ଶୁଣି । କପୋଳେ ଦେଇ ବେନି ପାଣି
ବୋଲଇ ଇନ୍ଦ୍ର କନ୍ଧେ ବସି । ସଂଗ୍ରାମ କରିବି ସାହସୀ ॥
ନୋହିଲେ ଯୁଦ୍ଧ ନାହିଁ ମୋର । ଯେମନ୍ତେ ଶୁଣି ତା ଉତ୍ତର ॥
ହୋଉ ବୋଇଲେ ଶୁରଗଣେ । ଇନ୍ଦ୍ର ମିଳିଲା ତତକ୍ଷଣେ ॥
ସଂଗ୍ରାମେ ବୃଷରୂପ ହୋଇ । ପୁରଞ୍ଜୟ ତା କନ୍ଧେ ଥାଇ ॥
ବୃଷ୍ଟି କରନ୍ତି ଦେବ ଗଣେ । ପୁରଞ୍ଜୟ ମିଳିଲା ରଣେ ॥

ଅଜୟ ସେହ୍ନା ଦେହେ ଭରି । ଧନୁ ନାରାଚ ହସ୍ତେ ଧରି ॥
ନିର୍ଭୟେ ଇନ୍ଦ୍ର କନ୍ଧେ ରହି । ତକ୍ଷଣେ ବିଷ୍ଣୁ ତେଜ ପାଇ ॥
ପଶ୍ଚିମ ଦିଗେ ବେଗେ ଗଲା । ଅସୁର ଭୁବନେ ମିଳିଲା ॥
ରୁନ୍ଧିଲା ଦେବଙ୍କ ସମେତେ । ପବନ ନ ବହଇ ପଥେ ॥
ଦେବ ଦାନବ ଘୋର ରଣେ । ହୋଇଲା ଲୋମ ହରଷଣେ ॥
ହସ୍ତରେ ନାନା ଶସ୍ତ୍ର ଧରି । ମିଳିଲେ ସମର ଆବୋରି ॥
ତାହାର ବାଣ ଅଗ୍ନିପ୍ରାୟେ । ପଡ଼ିଲା ଅସୁରଙ୍କ ଦେହେ ॥
ସମରେ ରହି ନ ପାରିଲେ । ପଳାଉ ନିଜପୁରେ ଗଲେ ॥
ଅସୁର ବଳ ରଣେ ଜିଣି । ସମରେ ଧନରତ୍ନ ଆଣି ॥
ଇନ୍ଦ୍ରକୁ ଦେଇ ସର୍ବଧନ । ତୋଷିଲା ବିବୁଧଙ୍କ ମନ ॥
ଇନ୍ଦ୍ରାଦି ଦେବେ ବିଷ୍ଣୁ ବୋଲେ । କାକୁସ୍ଥ ନାମ ତାକୁ ଦେଲେ ॥
ଅନେନା ପୁରଞ୍ଜୟ ସୁତ । ପୃଥୁ ତାହାର ବୀର୍ଯ୍ୟେ ଜାତ ॥
ତାର ତନୟ ବିଶ୍ୱଗନ୍ଧ । ତା ପୁତ୍ର ଚନ୍ଦ୍ରନାମେ ସିଦ୍ଧ ॥
ତା ସୁତ ଯୁବନାଶ୍ୱ ନାମେ । ଶ୍ରୀବସ୍ତ ତାର ତେଜ ଧାମେ ॥
ଶ୍ରୀବସ୍ତିପୁର ଯେ ନିର୍ମାଇ । ସପତ ଦ୍ୱୀପେ ରାଜା ହୋଇ ॥
ତାର କୁମର ବୃହଦଶ୍ୱ । କୁବଳୟାଶ୍ୱ ତାର ବଂଶ ॥
ସେ ରାଜା ଉତଙ୍କ ବିଶ୍ୱାସ । ଧୁନ୍ଧୁର ଯୁଦ୍ଧେ କୁଳନାଶ ॥
ଏକ ବିଂଶ ସହସ୍ର ସୁତ । ତାଠାରୁ ହୋଇଲେ ଜନ୍ମିତ ॥
ରାଜା ଉତଙ୍କର ହିତେ । ପୁତ୍ରଙ୍କୁ ଘେନିଣ ସଂଗତେ ॥
ସେ ଧୁନ୍ଧୁ ସଙ୍ଗେ ଯୁଦ୍ଧ କରି । ଯୁଦ୍ଧେ ତାହାର ପ୍ରାଣହରି ॥
ଧୁନ୍ଧୁ ଅସୁର ଯେଣୁ ବଧି । ତେଣୁ ଧୁନ୍ଧୁମାର ପ୍ରସିଦ୍ଧି ॥
ଧୁନ୍ଧୁ ମୁଖେ ଅଗ୍ନିର ଜ୍ୱାଳା । ପ୍ରଚଣ୍ଡ ଭାବେ ସେ ଜଳିଲା ॥
କୁବଳୟାର ପୁତ୍ରଗଣ । ସେ ତେଜେ ହୋଇଲେ ଦହନ ॥
ରହିଲେ ତିନି ଜଣ ଶେଷେ । ଦୃଢ଼ାଶ୍ୱ କପିଳ ଭଦ୍ରାଶ୍ୱ ॥
ଦୃଢ଼ାଶ୍ୱ ତନୟ ହର୍ଯ୍ୟଶ୍ୱ । ନିକୁମ୍ଭ ତାହାର ଔରସ ॥
ନିକୁମ୍ଭ ପୁତ୍ର ବହୁଳାଶ୍ୱ । ଜଗତେ ଖ୍ୟାତ ତାର ଯଶ ॥
କୃଶାଶ୍ୱ ନାମେ ତାର ସୁତ । ତାର ତନୟ ସେନଜିତ ॥
ତାସୁତ ଯୁବନାଶ୍ୱ ନାମେ । କେବେ ହେ ନ ରହିଲା ଗ୍ରାମେ ॥
ଅପୁତ୍ର ପଣେ ଦୁଃଖମନେ । ପତ୍ନୀ ସମେତେ ଗଲାବନେ ॥
ଶତେକ ପତ୍ନୀ ତାର ତୁଲେ । ଋଷିଙ୍କ ଆଶ୍ରମେ ମିଳିଲେ ॥
ଦେଖି ଶତେକ ତାର ନାରୀ । ମୁନି ସକଳେ ଦୟା କରି ॥
ରାଜାର ପୁତ୍ର ଜନ୍ମ ଅର୍ଥେ । ଯଜ୍ଞ କରାଇଲେ ସମସ୍ତେ ॥
କଳସେ ତୀର୍ଥଜଳ ଭରି । ଗର୍ଭର ଅର୍ଥେ ମନ୍ତ୍ର ବାରି ॥
ଯଜ୍ଞର ଶାଳେ ଘଟ ଥୋଇ । ସକଳେ ନିଦ୍ରାଗତେ ଶୋଇ ॥

ଯେମନ୍ତେ ରାଜା ଯଜ୍ଞଶାଳେ । ଅତି ତୃଷିତ ଅନ୍ତରାଳେ ॥
ସହି ନପାରି ରାତ୍ର ଅନ୍ତେ । ଜଳ କଳସ ଘେନି ହସ୍ତେ ॥
ଦେଖିଲା ସକଳେ ଅଜ୍ଞାନ । ତୃଷିତେ କଲା ଜଳପାନ ॥
ଯେମନ୍ତେ ପାହିଲା ରଜନୀ । ନିଦ୍ରା ତେଜିଲେ ସର୍ବମୁନି ॥
ଉଦୟ କାଳେ ମନ୍ତ୍ର ସ୍ୱରେ । କୁମ୍ଭକୁ ତୋଳି ବେନି କରେ ॥
ଦେଖିଲେ କୁମ୍ଭେ ଜଳ ନାହିଁ । ଚକିତେ ଚଉଦିଗେ ଚାହିଁ ॥
ବୋଲନ୍ତି ପାଇ ମନେ ଭ୍ରମ । କେ ପ୍ରାଣୀ କଲା ଯେଡ଼େ କର୍ମ
ମନ୍ତ୍ରିତ ପୁଂସ ବନ ବାରି । କେ ପାନ କଲା ତୃଷାଭରି ॥
ବୋଲଇ ବେନି କର ଯୋଡ଼ି । ମୁନିଙ୍କ ପାଦତଳେ ପଡ଼ି ॥
ରାଜା ବୋଇଲା ମୋ ଅଜ୍ଞାତେ । ଜଳ ପାଇଲି ତୃଷା ଅର୍ଥେ ॥
ଶୁଣି ବ୍ରାହ୍ମଣେ କୋପ ବହି । ବୋଇଲେ ବିଷ୍ଣୁ ମାୟା ଯେହି ॥
ପ୍ରାଣୀ ଯେ ଦଇବ ଅଧୀନ । ମାୟାର ବଳେ ହରେ ଜ୍ଞାନ ॥
ବୋଇଲେ ରାଜା ମୁଖୁ ଚାହିଁ । ଗର୍ଭ ଧଇଲୁ ଯେବେ ତୁହି ॥
ଯେମନ୍ତେ ଗଲା କେତେକାଳ । ଯେବେ ତୋ ଜୀବନ ସମ୍ଭାଳ
ଯେମନ୍ତେ ପୁତ୍ର ଜନ୍ମକାଳେ । ରାଜା ଉଦରେ ବାହୁବଳେ ॥
ଦକ୍ଷିଣ କୁକ୍ଷି ବିଦାରିଲା । ତକ୍ଷଣେ ଭୂମିରେ ପଡ଼ିଲା ॥
ରାଜା ନ ମଲା ପୁଣ୍ୟବଳେ । ଦେଖନ୍ତି ଉଭାରି ସକଳେ ॥
କାନ୍ଦଇ କ୍ଷୀରପାନ ଅର୍ଥେ । ତା ଦେଖି ଇନ୍ଦ୍ର ଦୟା ଚିତ୍ତେ ॥
ବୋଲଇ ବିପ୍ରଙ୍କୁ ଅନାଇ । ରାଜାର ସ୍ତନଯୁଗ ନାହିଁ ॥
ପୁତ୍ର ଲୋଡ଼ଇ ତାର କ୍ଷୀର । ଯେମନ୍ତେ ବୋଲି ନିଜକର ॥
ଅଙ୍ଗୁଳି ତାହାର ମୁଖେ ଦେଲା । ତକ୍ଷଣେ ତାହାର କ୍ଷୁଧା ଗଲା ॥
ଇନ୍ଦ୍ର ବୋଲଇ ତାକୁ ଚାହିଁ । ତୋହାର ହୋଇଲି ମୁଁ ଧାଇ ॥
ତୁ ଯେ ହୋଇଲୁ ବଳବନ୍ତା । ଏଣୁ ତୋ ନାମ ମାନଧାତା ॥
ତାହାର ତେଜେ ଶତ୍ରୁଗଣ । ଭୟେ ପଳାନ୍ତି ଛାଡ଼ି ରଣ ॥
ଏଣୁ ସେ ନିଜ ତେଜ ଧାମ । ପାଇଲା ତ୍ରସ ଦସ୍ୟୁ ନାମ ॥
ରାବଣ ଆଦି ରିପୁ ଯେତେ । ତ୍ରାସନ୍ତି ସେ ବସିଲେ ରଥେ ॥
ଯେମନ୍ତେ ନାମ ଇନ୍ଦ୍ର ଦେଲା । ଅନେକ କାଳ ରାଜ୍ୟ କଲା ॥
ସେ ପୁଣି ଚକ୍ରବର୍ତ୍ତୀ ହୋଇ । ପାଳଇ ସପ୍ତଦ୍ୱୀପା ମହୀ ॥
ତା ରିପୁ ନାହିଁ ଏ ଶୟଳେ । ବଞ୍ଚିଲା ବିଷ୍ଣୁ ତେଜବଳେ ॥
ଅନେକ ମତେ ଯଜ୍ଞ କଲା । ଦକ୍ଷିଣା ବିପ୍ରଗଣେ ଦେଲା ॥
ଯେ ହରି ସର୍ବ ଦେବମୟେ । ଦେବେ ବସନ୍ତି ଯାର ଦେହେ
ସେ ହରି ପୁଣ୍ୟେ ଯଜ୍ଞ କରି । ସୁଖେ ପାଳିଲା ବସୁନ୍ଧରୀ ॥
ସୂର୍ଯ୍ୟର ତେଜ ଯେତେ ଦୂର । ଯେ ଅବା ତପନ ସଞ୍ଚାର ॥
ମାନ୍ଧାତା ଯେତେ ଦୂରେ ରାଜା । ସର୍ବେ କରନ୍ତି ତାକୁ ପୂଜା ॥
ସେ ପୁଣି ଶଶବିନ୍ଦୁ ଘରେ । କନ୍ୟା ଲଭିଲା ସ୍ୱୟମ୍ବରେ ॥
ସେ କନ୍ୟାକୁ ଇନ୍ଦୁମତୀ ନାମ । ରୂପକେ ହେଉ ଅନ୍ୟନାମ ॥
ତାହାର ଗର୍ଭେ ପୁତ୍ର ତିନି । ଜନ୍ମିଲେ ବିଷ୍ଣୁ ତେଜଘେନି ॥
ପୁରୁକୁତ୍ସ ଯେ ଅମ୍ବରୀଷ । ଯେ ଆଦି ମୁଚୁକୁନ୍ଦ ଶେଷ ॥
ଯେ ଆଦି ପଞ୍ଚାଶ ଦୁହିତା । ଉତ୍ପନ୍ନ କଲା ମାନଧାତା ॥
ସେ କନ୍ୟାଗଣ ବିଭାକାଳେ । ସୌଭରି ମୁନି ଯୋଗବଳେ ॥
ବିବାହ କଲେ କନ୍ୟାଗଣ । ସେ କଥା ଯେକମନେ ଶୁଣ ॥
ସୌଭରି ମୁନି ବୃନ୍ଦାବନେ । କାଳିନ୍ଦୀ କୂଳେ ଯୋଗଧ୍ୟାନେ ॥
ତପ କରନ୍ତି ଦୃଢ଼ଚିତ୍ତେ । ଯେମନ୍ତେ କିଛି ଦିନ ଅନ୍ତେ ॥
ସମାଧି ଭାଜିଲା ଚଞ୍ଚଳେ । ଥିରେ ଚାହିଁଲା ନଦୀ ଜଳେ ॥
ଦେଖିଲେ ମୀନଗଣ ମଧ୍ୟେ । ରୋହିତ ଖେଳଇ ଆନନ୍ଦେ ॥
ବାଳେକ ମୀନ ତା ଶରୀରେ । କ୍ରୀଡ଼ନ୍ତି ପୁଚ୍ଛ ପୃଷ୍ଠ ଶିରେ ॥
ଯେମନ୍ତ ହୋଇ ଦିନେ ଦିନେ । ଖେଳନ୍ତି ମୁନି ସନ୍ନିଧାନେ ॥
ସୌଭରି ମୁନି ତାକୁ ଚାହିଁ । ଲାଳସ ଚିତ୍ତେ ବିଚାରଇ ॥
ଦେଖ ଯେ ରୋହିତର ଭାଗ୍ୟ । କୁଟୁମ୍ବ ମଧ୍ୟେ ସୁଖ ଭୋଗ ॥
ଯେତେ ବିଚାରି ତପ ଛାଡ଼ି । ଗୃହ କରଣେ ଚିତ୍ତ ବଢ଼ି ॥
ମାର୍ଗେ ଚଳନ୍ତି ସେ ବିଚାରି । ବିଭା ନ କଲେ ବ୍ରହ୍ମଚାରୀ ॥
ଗୃହସ୍ଥ ନୋହେଲା ସେ ଭଲେ । ଦାରା ପରିଗ୍ରହ ନ କଲେ ॥
ଯେତେ ବିଚାରି ଦୃଢ଼ଚିତ୍ତେ । ମିଳିଲେ ନୃପତି ଅଗ୍ରତେ ॥
ମୁନି ଆଗମ ରାଜା ଦେଖି । ଉଠିଲେ ଆସନ ଉପେକ୍ଷି ॥
ଅତିଥି ମତେ ପୂଜା କଲା । ଆସନେ ନେଇ ବସାଇଲା ॥
ଅନେକ ଗଉରୋବ କରି । ତା ଦେଖି ମୁନି ସଉଭରି ॥
ବୋଇଲେ ରାଜାମୁଖ ଚାହିଁ । ବିଭା କରାଅ ମୋତେ ତୁହି ॥
ଗୃହେ କଳ୍ପିଲା ମୋର ମନ । କନ୍ୟାଯେ ଦିଅ ମୋତେ ଦାନ
ମୋହରି ସନ୍ତତି ହୋଇଲେ । ସ୍ୱଧର୍ମ ରଖିବୁ ତୁ ଭଲେ ॥
ଏମନ୍ତ ମୁନି ମୁଖୁ ଶୁଣି । ରାଜା ବିଚାରେ ମନେ ଗୁଣି ॥
ଅତିଯେ ବୃଦ୍ଧ ଜର ଜର । ବାତେ କମ୍ପଇ ଯେହା ଶିର ॥
ବୃଦ୍ଧଙ୍କ ମଧ୍ୟେ ଅତି ବୃଦ୍ଧ । ଗୃହ କରଣେ କଲା ସଧ ॥
ମୋର ଦୋହିତା ବଡ଼ ସୁଖୀ । ଯେହାକୁ ଦେଲେ ହେବ ଦୁଃଖୀ
ନ ଦେଲେ ଭଲ ମୋର ନାହିଁ । ଯେତେ ବିଚାରି ମୁନି ଚାହିଁ ॥
ବୋଇଲେ ଶିରେ କର ଦେଇ । ଭୋ ମୁନି ! କହୁଁ ତୋର ତୁହିଁ ॥
କନ୍ୟା ମୋହର ସ୍ୱୟମ୍ବର । ଅନ୍ତଃପୁରକୁ ଆଗୁସାର ॥
ଯେ କନ୍ୟା ତୁମ୍ଭକୁ ବରିବ । ସୁମନେ କରି ପ୍ରିୟଭାବ ॥
ସେ କନ୍ୟା ନିଶ୍ଚେ ଦେବି ମୁହିଁ । ଯେମନ୍ତେ ରାଜା ଆଜ୍ଞା ପାଇ
ମୁନି ଉଠିଲେ ତୋଷ ହୋଇ । ତକ୍ଷଣେ ଅନ୍ତଃପୁରେ ଯାଇ ॥
ଦ୍ୱାରପାଳକୁ ରାଜା ଚାହିଁ । ବୋଇଲା ଘେନି ଯାଅ ତୁହି ॥

ଯେ କନ୍ୟା ବରିବ ଯେ ବର । ଦେବଇ ସତ୍ୟ ଯେ ମୋହର ॥
ଦ୍ୱାରପାଳର ହସ୍ତ ଧରି । ପୁରେ ମିଳିଲେ ସଉଭରି ॥
ମିଳିଲେ କନ୍ୟାଙ୍କ ମନ୍ଦିରେ । ମାୟା ମୋହନ କଳେବରେ ॥
ରୂପେ କନ୍ଦର୍ପ ତେଜ ଗଞ୍ଜେ । ଜଗମୋହନ ତେଜ ପୁଞ୍ଜେ ॥
କନ୍ୟାକୁ ଚାହିଁ ଦ୍ୱାରପାଳ । ଅଳପ ନମିତ କପୋଳ ॥
ବୋଲଇ କନ୍ୟାକୁ ଅନାଇ । ମୁଁ ତୁମ୍ଭ ପିତା ଆଜ୍ଞାପାଇ ॥
ସଙ୍ଗତେ ଆଣିଅଛି ବର । ଯାହାର ଇଚ୍ଛା ତୁମ୍ଭେ ବର ॥
ଯେକଇ କନ୍ୟା ଦେବା ଦାନ । ବହୁତେ ନାହିଁ ପ୍ରୟୋଜନ ॥
କନ୍ୟାଯେ ବର ରୂପ ଚାହିଁ । ନୟନ ପିଚ୍ଛା ନ ଚଳଇ ॥
ସର୍ବେ କରନ୍ତି ତାର ସଂଗ । ଅନଳେ ଯେସନେ ପତଙ୍ଗ ॥
ଯେକ ଆରେକ ଆଗ ହୋଇ । ବୋଲନ୍ତି ମୋର ବର ଯେହି ॥
ମୁଁହି ବରିଲି ଆଗେ ବର । ନିଶ୍ଚୟେ ସ୍ୱାମୀୟେ ମୋହର ॥
ଯେମନ୍ତେ ଯେକୁ ଆରେ ବାଦେ । ମୁନିକି ବରିଲେ ଆନନ୍ଦେ ॥
ତକ୍ଷଣେ ଦ୍ୱାରପାଳ ଗଲା । ନୃପତି ଆଗେ ଜଣାଇଲା ॥
ବୋଲଇ ବିଧାତାର ମାୟା । କେ ଆନ କରିପାରେ ଯେହା ॥
ଦଇବ ବଳ ଆକ୍ରଷଣେ । ସର୍ବେ ବରିଲେ ବରପଣେ ॥
ଶୁଣି ତାହାର ମୁଖୁ ବାଣୀ । ସଭ୍ରମେ ଚିତ୍ତେ ନୃପମଣି ॥
କନ୍ୟା ଆନନ୍ଦେ ଦାନ କଲା । ଅନେକ ଯଉତୁକ ଦେଲା ॥
ପଞ୍ଚାଶ କନ୍ୟା ବିଭାକରି । ପୁରୁ ବାହାର ସଉଭରି ॥
ସଂପଦ ବିଧି ଯୋଗବଳେ । ଗୃହସ୍ଥ ଆଶ୍ରମ ନିଶ୍ଚଳେ ॥
ନାନା ପ୍ରକାରେ ଭୋଗ କଲେ । ଅନେକ ପୁତ୍ର ନାତି ତୁଲେ ॥
ଯୋ ଭୋଗ କଛେ ତାଙ୍କ ମନେ । ବସନ୍ତି ପୁଷ୍ପିତ କାନନେ ॥
ଯେମନ୍ତେ କିଛି କାଳ ଗଲା । ବୈରାଗ୍ୟ ମନେ ଉପୁଜିଲା ॥
ନିଜ କପୋଳେ ହସ୍ତ ମାରି । ତାପେ ବୋଲନ୍ତି ସଉଭରି ॥
ଦଇବ ବଳ ଦେଖ ମୋତେ । ତପ ମୁଁ କଲି ମୋକ୍ଷ ଅର୍ଥେ ॥
ଜଳେ ଅନାଇ ମୀନ ବଶେ । ଜ୍ଞାନ ହରିଲା ସଙ୍ଗଦୋଷେ ॥
ଯେକେ ମୁଁ ଲଭିଲି ଅନେକ । ନିଶ୍ଚୟେ ପଡ଼ିବି ନରକ ॥
ଯେମନ୍ତେ ବିଚାରି ଯେକାନ୍ତେ । ତକ୍ଷଣେ ପଶିଲା ବନସ୍ତେ ॥
ପତ୍ନୀ ସମେତ ତପ ଦାହୀ । ଅନ୍ତେ ଲଭିଲେ ଭାବଗ୍ରାହୀ ॥
ବୋଲଇ ଦାସ ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ସୁଜନେ ଶୁଣ ଏକ ଚିତ୍ତେ । ଯେ ଧର୍ମ ବଂଶାନୁ ଚରିତେ ॥
କହିଲି ଆତ୍ମାହିତେ ବାଣୀ । ଯେଣେ ଭଗତି ତତ୍ତ୍ୱ ଜାଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ସୌଭର୍ଯ୍ୟୁପାଖ୍ୟାନଂ*
*ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଯେବେ ହୋ ପରୀକ୍ଷିତ ଶୁଣ । କହିବା ଅମ୍ବରୀଷ ଗୁଣ ॥
ପିତାମହଙ୍କ ସେବା କଲା । ସେ ଫଳେ ସୁପୁତ୍ର ଲଭିଲା ॥
ତା ନାମ ଯୁବଯଶ୍ୱ ଦେଇ । ପାଳଇ ସପ୍ତଦ୍ୱୀପା ମହୀ ॥
ହାରିତ ତାହାର କୁମର । ଯେ ସର୍ବେ ମାନ୍ଧାତା ପ୍ରବର ॥
ନାଗେନ୍ଦ୍ର ବାକ୍ୟେ ନାଗଯୂଥେ । ଗନ୍ଧର୍ବ ବଳଙ୍କୁ ହାରିଲେ ॥
ଧରଣୀ ପୃଷ୍ଠେ ରାତ୍ର କାଳେ । ପୁରୁକୁସଙ୍କୁ ଘେନିଗଲେ ॥
ସକଳ ଭ୍ରାଥଗଣ ଥାଇ । ନର୍ମଦା କନ୍ୟା ତାକୁ ଦେଇ ॥
ପାତାଳପୁରେ ଘେନିଗଲେ । ଗନ୍ଧର୍ବ ବଳ ଯୁଝାଇଲେ ॥
ସେ ପୁଣି ବିଷ୍ଣୁ ତେଜ କଳା । ଗନ୍ଧର୍ବ ବଳ ବିନାଶିଲା ॥
ମିଳି ସକଳ ନାଗବଳେ । ସନ୍ତୋଷେ ବର ତାକୁ ଦେଲେ
ଯେ ପ୍ରାଣୀ ଶୟନର କାଳେ । ନର୍ମଦା ନାମ ତିନି ବେଳେ ॥
ରାତ୍ର ଦିବସ ସନ୍ଧ୍ୟା ସ୍ମରେ । ସର୍ପଙ୍କ ଭୟୁ ସେ ନିସ୍ତରେ ॥
ଏବେ ହୋ ପୁରୁକୁସ ବଂଶେ । କରିବା ଶୁଣ ତୁ ହରଷେ ॥
ସର୍ବ ସଂପଦ ଗୁଣ ଗ୍ରାମେ । ହୋଇଲା କ୍ରସଦସ୍ୟୁ ନାମେ ॥
ସେ ବିଷ୍ଣୁ ତେଜ ଅନର୍ଗଳା । ଯେ ଅନରଣ୍ୟ ଜାତ କଲା ॥
ହର୍ଯଶ୍ୱ ତାହାର ନନ୍ଦନ । ତହୁ ପ୍ରାରୁଣ ତ୍ରିବଂଧନ ॥
ତାର ତନୟ ସତ୍ୟବ୍ରତ । ତ୍ରିଶଙ୍କୁ ନାମେ ସେ ବିଦିତ ॥
ଗୁରୁ କୌଶିକ ଶାପ୍ୟଘେନି । ଲଭିଲା ଚାଣ୍ଡାଳର ଯୋନି ॥
ବଶିଷ୍ଠ ଶାପ୍ୟ ମହାଘୋରେ । କୌଶିକ ତେଜୁ ହେଲା ପାର ॥
ଶ୍ୱରୀର ଘେନି ସ୍ୱର୍ଗେ ଗଲା । ଉତ୍ତର ଆକାଶେ ବସିଲା ॥
ଜଗତେ ରହିଲା ତା ଯଶ । ଅଦ୍ୟାପି ରାତ୍ର ହୁୟେ ଦୃଶ୍ୟ ॥
ଦେବେ ତାହାକୁ କୋପ କଲେ । ଭୂମିରେ ପଡ଼ ତୁ ବୋଇଲେ ॥
ତକ୍ଷଣେ ଅଧୋମୁଖ ହୋଇ । ପଡ଼ନ୍ତେ କୌଶିକ ଅନାଇ ॥
ସ୍ତମ୍ଭନ କଲେ ବେଦମନ୍ତ୍ରେ । ପୁଣି ବସିଲା ନିଜ ଯନ୍ତ୍ରେ ॥
ତାହାର ସୁତ ହରିଶ୍ଚନ୍ଦ୍ର । ସପଦ ଦ୍ୱୀପେ ସେ ନରେନ୍ଦ୍ର ॥
ତାହାର ଅର୍ଥେ ଅନ୍ୟୋଅନ୍ୟି । ବଶିଷ୍ଠ ବିଶ୍ୱାମିତ୍ର ବେନି ॥
ତାର ନିମିତେ ଯୁଦ୍ଧ କଲେ । ପକ୍ଷୀଙ୍କ ପ୍ରାୟେ ରୂପ ହେଲେ ॥
ସେ ପୁଣି ଅପୁତ୍ରିକ ହୋଇ । ନାରଦ ମୁନିଙ୍କି ଆଣଇ ॥
ସନ୍ତତି ଅର୍ଥେ ପ୍ରଶ୍ନ କଲା । ବିକଳେ ତ୍ରିଶଙ୍କୁର ବଳା ॥
ନାରଦ ମୁନି ତା ପ୍ରସ୍ତାବେ । କହିଲେ ଆତ୍ମା ପ୍ରିୟ ଭାବେ ॥
ତୁ ଯାଇ ବରୁଣ ଚରଣେ । ବିଶ୍ୱାସେ ପଶ ଯା ଶରଣେ ॥
ସେ ତୋତେ ପ୍ରସନ୍ନ ହୋଇଲେ । ସନ୍ତତି ଲଭିବୁ ତୁ ଭଲେ ॥

ଯେମନ୍ତେ ନାରଦ ବଚନେ । ମିଳିଲା ବରୁଣ ଭୁବନେ ॥
ସନ୍ତତି ଅର୍ଥେ ଜଣାଇଲା । ତୋଷେ ବରୁଣ ବରଦେଲା ॥
ପୁରୁଷମେଧ ଯଜ୍ଞ କର । ତା ଶୁଣି ବୋଲେ ନୃପବର ॥
ମନୁଷ୍ୟ ପଶୁ ହିଆଇଲେ । ଯଜ୍ଞ କରିବି ମୁହିଁ ଭଲେ ॥
ବରୁଣ ବର ଦେଲା ହେଉ । ରୋହିତ ସୁତ ଜାତ ତହୁଁ ॥
ବରୁଣ ବୋଲେ ଯଜ୍ଞ କର । ଜନ୍ମିଲା ତୋହର କୁମର ॥
ରୋହିତ ବୋଲେ ଯୋଡ଼ିକର । ଭୋ ତାତ ମୋତେ ପଶୁକର ॥
ନିର୍ଦ୍ଦନ୍ତ ପଶୁ ଅସଂସ୍କାର । ଦନ୍ତ ନିର୍ଗତ ନାହିଁ ତାର ॥
ଦନ୍ତ ନ ଥିଲେ ଯଜ୍ଞ କାହିଁ । ଯେମନ୍ତେ ଦିନାକେତେ ରହି ॥
ତୁଣ୍ଡେ ଜନ୍ମିଲା ତା ଦଶନ । ପିତାଙ୍କୁ ବୋଲଇ ବରୁଣ ॥
ଦନ୍ତ ହୋଇଲାତ ଯେହାର । ସେ ମାଂସେ ମହାଯଜ୍ଞ କର ॥
ଯେମନ୍ତେ ଦେବମୁଖୁ ଶୁଣି । ସେ ହରିଶ୍ଚନ୍ଦ୍ର ମନେ ଗୁଣି ॥
ଦନ୍ତ ସମ୍ପୂର୍ଣ୍ଣେ ପଶୁ ପଶୁଚି । ବରୁଣ ତାହା ଶୁଣି ପୁଛି ॥
ପୁଣି କେତେ ହେ କାଳଗଲା । ସମ୍ପୂର୍ଣ୍ଣେ ଦନ୍ତ ଉପୁଜିଲା ॥
ପିତାଙ୍କୁ କହିଲା ରୋହିତ । ସମ୍ପୂର୍ଣ୍ଣେ ଉଠିଲା ମୋ ଦନ୍ତ ॥
ଯେବେ କି ବିଳମ୍ବ ତୋହର । ବରୁଣ ବୋଲେ ଯଜ୍ଞ କର ॥
ବରୁଣ ଚାହିଁ ରାଜା କହେ । ପ୍ରଥମେ ଦନ୍ତ ଶୁଦ୍ଧ ନୋହେ ॥
ଯେ ଦନ୍ତ ପଡ଼ି ଯେବେ ଉଠେ । ତେବେ ସେ ଯଜ୍ଞ ପଶୁଘଟେ ॥
ଯେମନ୍ତେ କାଳ କିଛି ଅନ୍ତେ । ତୁଣ୍ଡୁ ପଡ଼ିଲା ସର୍ବ ଦନ୍ତେ ॥
ପୁଣି ଉଠିଲେ ଯେକ ତୁଲେ । ବରୁଣ ରାଜା ଚାହିଁ ବୋଲେ ॥
ଭୋ ରାଜା ଯଜ୍ଞ ଯେବେ କର । ଦନ୍ତ ହୋଇଲା ବେନି ବାର ॥
ତା ଶୁଣି ବୋଲେ ନୃପମଣି । ସେ ନୋହେ କୁଳଧର୍ମ ବାଣୀ
କ୍ଷତ୍ରିୟ ବଂଶେ ଯେବେ ଜାତ । ଯାବତ ନୁହଇ ସାମର୍ଥ ॥
ତାବତ ମାଂସ ଶୁଦ୍ଧ ନୋହେ । ଯେମନ୍ତ ବୋଲେ ପୁତ୍ରସ୍ନେହେ
ଯେମନ୍ତ କାଳ ବଞ୍ଚାଇଲା । ତା ଜାଣି ପୁତ୍ର ଭୟ କଲା ॥
ପ୍ରାଣର ରକ୍ଷା ଅର୍ଥେ ଭାଳେ । ଯେମନ୍ତେ ସରସ୍ୱତୀ କୂଳେ ॥
ଧନୁ କମାଣ ଘେନି ହସ୍ତେ । ପଶିଲା ଗହନ ବନସ୍ତେ ॥
ବନେ ବୁଲଇ ଧର୍ମ ଗୁଣି । ଶୁଣିଲା ଅନ୍ତରୀକ୍ଷ ବାଣୀ ॥
ବରୁଣ ପିତା ବନ୍ଦି କଲା । ଯାବତ ଯଜ୍ଞ ନ ପାଇଲା ॥
ଶୁଣି ରୋହିତ କୋପାନଳେ । ଗ୍ରାମକୁ ଆସିବାର ବେଳେ ॥
ଇନ୍ଦ୍ର ମିଳିଲା ଆସି ପଥେ । ବୋଲଇ ରୋହିତ ଅଗ୍ରତେ ॥
ଯଜ୍ଞ ନ କଲା ତୋର ତାତ । କୋପେ ବରୁଣ କଲା ପ୍ରସ୍ତ ॥
ତୋତେ ଗ୍ରାସିବ କୋପ ବହି । ଯେବେ ଅରଣ୍ୟେ ଥାଅ ତୁହି ॥

ଧର୍ମକୁ ଯେବେ ତୋର ମନ । ଧରଣୀ କର ପର୍ଯ୍ୟଟନ ॥
ଅନେକ ପୁଣ୍ୟ ତୀର୍ଥ କର । ଧର୍ମେ ବିଶ୍ୱାସ ଯେବେ ତୋର
ଏମନ୍ତେ ଇନ୍ଦ୍ରର ବଚନେ । ରୋହିତ ତୀର୍ଥ କରେ ବନେ ॥
ପୁଣି ଗ୍ରାମକୁ ଇଚ୍ଛା କରେ । ସେ ଇନ୍ଦ୍ର, ମାର୍ଗେ ବିଘ୍ନ କରେ
ଯେକ ଦ୍ୱିତୀୟ ତ୍ରି ଚତୁର୍ଥେ । ପଞ୍ଚମ ବର୍ଷେ ତାକୁ ପଥେ ॥
ବୃଦ୍ଧ ବ୍ରାହ୍ମଣ ରୂପ ଧରି । ଗ୍ରାମ ଗମନେ ବିଘ୍ନ କରି ॥
ଷଡ଼ ବରଷ ବନେ ଥିଲା । ଅନେକ ତୀର୍ଥ ସେ ଭ୍ରମିଲା ॥
ସପ୍ତ ବରଷ ନିଜ ଗ୍ରାମେ । ମିଳିଲା ଯାଇ ତୀର୍ଥ ଶ୍ରମେ ॥
ଶୁଣିଲା ଅଜୀଗର୍ତ୍ତ ମୁନି । ବିକିବା ଅର୍ଥେ ପୁତ୍ର ଘେନି ॥
ତାହାର ପାଶେ ସେ ମିଳିଲା । ମଧ୍ୟମ ପୁତ୍ରକୁ କିଣିଲା ॥
ସେ ପୁତ୍ର ଶୁନଃଶେଫ ନାମ । ସକଳ ଗୁଣେ ଗୁଣଧାମ ॥
ପିତାର ଅଗ୍ରେ ନେଇ ଦେଲା । ତା ଦେଖି ବରୁଣ ଛାଡ଼ିଲା ॥
ସେ ହରିଶ୍ଚନ୍ଦ୍ର ଆସି ପୁରେ । ଯଜ୍ଞ ଆରମ୍ଭିଲା ସମ୍ଭାରେ ॥
ପୁରୁଷମେଧ ଯଜ୍ଞ ମତେ । ବିଷ୍ଣୁଙ୍କୁ ବରି ବେଦପଥେ ॥
ଆଚାର୍ଯ୍ୟ ବିଶ୍ୱାମିତ୍ର କରି । ଜମଦଗ୍ନିକି ବହ୍ମା ବରି ॥
ବଶିଷ୍ଠ ସୋମ ପାନ କରି । ସମିଧ ହୋତା ତାଙ୍କୁ ବରି ॥
ବରୁଣ ଅର୍ଥେ ଯଜ୍ଞ କଲା । ସକଳ ଦେବଙ୍କୁ ତୋଷିଲା ॥
ସନ୍ତୋଷ ହୋଇ ସୁର ନାଥ । ଦେଲା ସୁବର୍ଣ୍ଣ ମୟେ ରଥ ॥
ଶୁନଃଫେରର କଥା ଯେତେ । ପଛେ କହିବା ତୋ ଅଗ୍ରତେ ॥
ଯେମନ୍ତ ମହାଯଜ୍ଞ ଅନ୍ତେ । ଦକ୍ଷିଣା ଦେଲା ବେଦମନ୍ତେ ॥
ବିଶ୍ୱାମିତ୍ରଙ୍କୁ ଭୂମି ଦେଲା । ସୁବର୍ଣ୍ଣ ରଥେ ବିଜେ କଲା ॥
ରାଜାର ସତ୍ୟଗୁଣ ଚାହିଁ । ସନ୍ତୋଷେ ବିଶ୍ୱାମିତ୍ର ହୋଇ ॥
ନିଷ୍କଳ ଗତି ଶୂନ୍ୟପଥେ । ରାଜା ଜନଙ୍କୁ ଘେନି ସାଥେ ॥
ଥିର ପବନ ତାଙ୍କୁ ଧରେ । ଇଚ୍ଛାରେ ଭ୍ରମନ୍ତି ଅମ୍ବରେ ॥
ତାର ଭଗତି ଭାବ ଘେନି । ସନ୍ତୋଷେ ବିଶ୍ୱାମିତ୍ର ମୁନି ॥
ପରମଜ୍ଞାନ ତାଙ୍କୁ ଦେଲେ । ଆକାଶେ ଥାଅ ତୁ ବୋଇଲେ ॥
ଆକାଶେ ଥାଅ ଦେବ ପ୍ରାୟେ । ଅନ୍ତେ ପଶିବୁ ବିଷ୍ଣୁ ଦେହେ ॥
ବୋଇଲେ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ନବମସ୍କନ୍ଧେ ବିଷ୍ଣୁ ବାଣୀ । ସୁଜନେ ତର ଯେହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସହିଂତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ*
*ହରିଶ୍ଚନ୍ଦ୍ରପାଖ୍ୟାନଂ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ଶ୍ରୀ ଶୁକଉବାଚ

ହରିତ ରୋହିତର ସୁତ । ଚମ୍ପ ତାହାର ତହୁଁ ଜାତ ॥
ଗ୍ରାମ ବସାଇ ନିଜ ନାମେ । ରହିଲା ଚମ୍ପାପୁର ଗ୍ରାମେ ॥
ସୁଦେବ ତାର ସୁତ ହୋଏ । ବିଜୟ ତାହାର ତନଯେ ॥
ଭରୁପ ତାହାର ସନ୍ତତି । ବୃକ ତାହାର ପୁତ୍ର ହନ୍ତି ॥
ବାହୁକ ତାହାର ନନ୍ଦନ । ତା କଥା ଶୁଣ ହୋ ରାଜନ ॥
ଶତ୍ରୁ ପାଡ଼ିତ ବୃଦ୍ଧ ପଣେ । ଡରେ ପଶିଲା ଘୋର ବନେ ॥
ପତ୍ନୀ ସମେତେ ପଳାଇଲା । ଔର୍ବଙ୍କ ଆଶ୍ରମେ ମିଳିଲା ॥
ନମିଲା ମୁନିଙ୍କ ଚରଣେ । ବୃଦ୍ଧ ଶ୍ୱରୀରେ ଘୋର ବନେ ॥
ସ୍ୱଭାବେ ଛାଡ଼ିଲା ଜୀବନ । ମୁନି ହୋଇଲେ ଦୁଃଖମନ ॥
ପଶିଲା ବେଳେ ହୁତାଶନେ । ତାର କାମେନୀ ଦୁଃଖମନେ ॥
ମୁନି ଜାଣିଲେ ତାର ଭାବ । ଉଦରେ ପାଞ୍ଚମାସ ଗର୍ଭ ॥
ବୋଲଇ ଅନଳେ ନ ପଶ । ହୋଇବ ଯେ ରାଜାର ବଂଶ ॥
ମୁନି ବଚନେ ସେ ଅବଳା । ଅନଳ କୁଣ୍ଡେ ନ ପଶିଲା ॥
ଶୁଣ ରାଜନ ମନ ଦେଇ । ତା ଗର୍ଭ କଥା ତୋତେ କହି ॥
ତା ଗର୍ଭ ସଞ୍ଚରଣ କାଳେ । ସପତ୍ନୀ ସାତ ପାଞ୍ଚ ତୁଲେ ॥
ଗରଳ ଦେଇ ଅନ୍ନ ସଙ୍ଗେ । ବିଷ ନ ଲାଗିଲା ତା ଅଙ୍ଗେ ॥
ଗର୍ଭ ରଖିଲେ ଜଗନ୍ନାଥ । ଯେବେ ହୋ ଶୁଣ ପରୀକ୍ଷିତ ॥
ସେ ଗର୍ଭ ପ୍ରସବର କାଳେ । ମୁନି ସକଳେ କୁତୂହଳେ ॥
ବୋଲନ୍ତି ଗରଳ ସମେତେ । ଜନ୍ମ ହୋଇଲା ଯେବେ ଯେଥେ
ଗରଳ ସଙ୍ଗେ ଜନ୍ମ ଯେଣୁ । ସଗର ନାମ ହୋଏ ତେଣୁ ॥
ଯେମନ୍ତେ ମୁନିଙ୍କ ସମେତେ । ସଗର ରାଜା ଦିନାକେତେ ॥
ଦିନକୁ ଦିନ ଅତି ତେଜା । ହୋଇଲା ଚକ୍ରବର୍ତ୍ତୀ ରାଜା ॥
ତାର ତନୁଜ ବାହୁବଳେ । ସାଗର କଲେ ମହୀତଳେ ॥
ପିତା ଶତ୍ରୁକୁ ଯୁଦ୍ଧେ ଜିଣି । ସ୍ୱଗୃହେ ବନ୍ଦିକଲା ଆଣି ॥
ଯେତେ ତାହାର ରିପୁଗ୍ରାମ । ଶୁଣ ହୋ ତାହାଙ୍କର ନାମ ॥
ତାଳଜଙ୍ଘ ଯବନ ଶକ । ହୈହୟ ବର୍ବର ଯେତେକ ॥
ଗୁରୁଙ୍କ ବାକ୍ୟେ ନ ମାଇଲା । ଶୁଣ ଯାହାକୁ ଯାହା କଲା ॥
ମୁଣ୍ଡିତ କେଶ କାର କରି । କଲା କାହାକୁ ଶ୍ମଶ୍ରୁଧାରି ॥
କାହାର କଲା ମୁକ୍ତ କେଶ । ଅର୍ଦ୍ଧ ମୁଣ୍ଡିତ କାର କେଶ ॥
ବସନ କାହାର ଉତୁରି । ବିକୃତ ବେଶ ତାଙ୍କୁ କରି ॥
ଯେମନ୍ତ କରି ନାନା ବେଶ । ସେ ପୁଣି ଗଲେ ନିଜ ଦେଶ ॥
ସେ ପୁଣି ସଞ୍ଚି ନାନା ବିଧି । କଛିଲା ଯଜ୍ଞ ଅଶ୍ୱମେଧି ॥
ଔର୍ବ ମୁନିଙ୍କି ହୋତା କରି । ଯଜ୍ଞେ ପୂଜିଲା ନରହରି ॥
ଉତ୍ତମ ଅଶ୍ୱ ପଶୁକଲା । ସେ ଅଶ୍ୱ ଇନ୍ଦ୍ର ଚୋରାଇଲା ॥
ଷାଠିଯେ ସହସ୍ର କୁମର । ତାଙ୍କୁ ଡରଇ ପୁରନ୍ଦର ॥
କହଇ ମାରିବେ କେମନ୍ତେ । ଯେମନ୍ତେ ଭାଳି ସେ ଗୁପତେ
କପିଳ ମୁନି ପାଦତଳେ । ଅଶ୍ୱ ବାନ୍ଧିଲା ରାତ୍ରିକାଳେ ॥
ଅଶ୍ୱ ନ ଦେଖି ଯଜ୍ଞ ଦ୍ୱାରେ । ସକଳେ ପଶିଲେ ଭିତରେ ॥
ଖୋଳନ୍ତି ନଖେ ଭୂମି ଖଣ୍ଡ । ଭକ୍ଷନ୍ତି ବିସ୍ତାରିଣ ତୁଣ୍ଡ ॥
ଉତ୍ତର ଦିଗେ ଖୋଳିଗଲେ । କପିଳ ଆଶ୍ରମେ ମିଳିଲେ ॥
ଦେଖିଲେ ମୁନିଙ୍କ ଆଶ୍ରମେ । ସେ ଅଶ୍ୱ ଅଛଇ ବନ୍ଧନେ ॥
କପିଳ ମୁନି ମୁଖ ଚାହିଁ । ବୋଲନ୍ତି ଅଶ୍ୱ ଚୋର ଯେହି ॥
ଏହାକୁ ରଖି ନ ଯୋଗାଇ । ଏମନ୍ତେ ଏକମୁଖ ହୋଇ ॥
ଆମ୍ଭଙ୍କୁ ଦେଖି ଚକ୍ଷୁ ବୁଜେ । ଆତ୍ମାକୁ ଦମ୍ଭ ପ୍ରାୟେ ବୁଝେ ॥
ଯେମନ୍ତେ ଘୋର ନାଦ କରି । ଧାଇଁଲେ କରେ ଶସ୍ତ୍ରଧରି ॥
ଭୂମି କମ୍ପଇ ତାଙ୍କ ପାଦେ । ଧ୍ୟାନ ଭାଙ୍ଗିଲା ଘୋର ନାଦେ
ଚାହାନ୍ତେ ଉନ୍ମୀଳ ଲୋଚନେ । ଅନଳ ଉଠିଲା ନୟନେ ॥
ମହତ ଅତିକ୍ରମ ଦୋଷେ । ନୟନ ଅଗ୍ନି ମହାରୋଷେ ॥
ଦେଖନ୍ତି ସ୍ୱର୍ଗେ ଦେବଗଣେ । ଭସ୍ମ ହୋଇଲେ ତତକ୍ଷଣେ ।
ଷାଠି ସହସ୍ର ଯେକୋଉର । ମଲେ ସେ ସଗର କୁମର ॥
କେଶିନୀ ଗର୍ଭେ ଯେକ ସୁତ । ଅସମଞ୍ଜସ ନାମେ ଖ୍ୟାତ ॥
ତାର କୁମର ଅଂଶୁମାନ । ସକଳ ଗୁଣେ ଗୁଣ ଧାମ ॥
ସେ ଥାଇ ପିତାମହ ହିତେ । ସଂଯୋଗ ବଳର ଆୟତେ ॥
ଅସମଞ୍ଜସ ଯୋଗ୍ୟହୀନ । କରେ ନିନ୍ଦିତ ଆଚରଣ ॥
ସେ ପୂର୍ବ ଜନ୍ମେ ଯୋଗୀଥିଲା । ସଙ୍ଗ ଦୋଷରୁ ଭ୍ରଷ୍ଟ ହେଲା ॥
ଯୋଗ ବଳରୁ ଜାତି ସ୍ମର । ଯେ ଜନ୍ମେ ଅଛଇ ତାହାର ॥
ଯେଣୁ ନିନ୍ଦିତ କର୍ମ କରେ । ଜ୍ଞାତିଙ୍କୁ ଅପ୍ରିୟ ଆଚରେ ॥
ଶିଶୁମାନଙ୍କୁ ଧରି ବଳେ । ପକାଏ ସରଯୂ ଜଳରେ ॥
ତାହାର ଦେଖି ମନ୍ଦ ପଣ । ଅଯୋଧ୍ୟାବାସୀ ପ୍ରଜାଗଣ ॥
ସଗରେ ଜଣାଇଲେ ଯାଇ । ଅତି ଦୁଃଖିତ ରାଜା ହୋଇ ॥
ଘରୁ ବାହାର କରି ଦେଲା । ଯେଣୁ ସେ ପ୍ରଜାଙ୍କୁ ପାଡ଼ିଲା ॥
ସେ ପୁଣି ଯୋଗବଳ କଲା । ମୃତ ବାଳକମାନ ଦେଲା ॥
ବାଳକ ପାଇ ତୋଷମନେ । ଅଯୋଧ୍ୟାବାସୀ ପ୍ରଜା ଜନେ ॥
ବିସ୍ମିତ ହୋଇଲେ ସକଳେ । ଅସମଞ୍ଜସ ଯୋଗବଳେ ॥
ତାର ଅଦ୍ଭୁତ କର୍ମ ଦେଖି । ସଗର ହେଲେ ମହାସୁଖୀ ॥
ଯେବେ ହୋ ଶୁଣ ନରନାଥ । ସେ ଅଂଶୁମାନର ଚରିତ ॥
ସଗର ତାଙ୍କ ମୁଖ ଚାହିଁ । ବୋଲଇ ଅଶ୍ୱ ଆଣ ଯାଇ ॥
ଯେମନ୍ତେ ପିତାମହ ବାକ୍ୟେ । ସେ ଅଂଶୁମାନ ଗଲା ଯେବେ ॥
ପିତୃ ବାଞ୍ଛିତ ମାର୍ଗେ ଗଲା । ପାତାଳେ ଅଶ୍ୱକୁ ଦେଖିଲା ॥

ଦେଖିଲା କପିଳ ସମ୍ମୁଖେ । ବାନ୍ଧିଲା ଅଶ୍ୱ ଅତି ସୁଖେ ॥
କପିଳ ପାଦତଳେ ପଡ଼ି । ସେ ଅଂଶୁମାନ କରଯୋଡ଼ି ॥
ଅନେକ ସ୍ତୁତିବାକ୍ୟ ବଳେ । ପୂଜିଲା ଚରଣ କମଳେ ॥
ବୋଇଲା ଶିରେ କର ଦେଇ । ଭୋ ନାଥ କର ମୋତେ ତ୍ରାହି
ଶକ୍ର ବିରଞ୍ଚି ମହାଦେବ । ଯେ କାହିଁ ଜାଣନ୍ତି ତୋ ଭାବ
ତୁ ଜ୍ଞାନ ଘନ ମୋହ ନାଶୁ । ସଂସାରେ ସ୍ୱତେଜ ପ୍ରକାଶୁ ॥
ସନନ୍ଦ ଆଦି ମୁନି ଯେତେ । ବିଶେଷେ ଭାବନ୍ତି ସେ ତୋତେ
ତୋ ରୂପ ଜୀବ ମୋକ୍ଷ ହିତେ । ମୁଁ ତୋତେ ଜାଣିବି କେମନ୍ତେ
ତୋ ମାୟା ଜୀବ ଜ୍ଞାନ ହରେ । ସଂସାରେ ଜନ୍ମମୃତ୍ୟୁ କରେ ॥
ଜୀବର ଜ୍ଞାନ ଦେବା ଅର୍ଥେ । ତୋର ପ୍ରକାଶ ଯେ ଜଗତେ ॥
ଆବିଦ୍ୟା କର୍ମପଥ ଜଡ଼େ । ତୋ ମାୟା ଗହନ ନିବିଡ଼େ ॥
ଜୀବନ ବଂଧନେ ବିଶ୍ୱାସେ । ଦାରା ତନୟ ଗୃହବାସେ ॥
ଯେଣୁ ତୋ ଚରଣ କମଳେ । ତା ଚିତ୍ତ ନରହେ ନିଶ୍ଚଳେ ॥
ଆଜଟି ନିସ୍ତରିଲି ମୁହିଁ । ଭୋ ନାଥ ତୋ ଚରଣ ଚାହିଁ

## ଶ୍ରୀ ଶୁକ ଉବାଚ

ଯେମନ୍ତେ ତାର ସ୍ତୁତି ଶୁଣି । ପ୍ରସନ୍ନ ଚିତ୍ତେ ଚକ୍ରପାଣି ॥
ଅଂଶୁମାନର ମୁଖ ଚାହିଁ । ବୋଲନ୍ତି ଅନୁଗ୍ରହ ବହି ॥

## ଶ୍ରୀ ଭଗବାନ ଉବାଚ

ହେ ପୁତ୍ର ଅଶ୍ୱ ଘେନିଯାଅ । ପିତାମହର ପାଶେ ଦିଅ ॥
ଯେହା ସେ ଯଜ୍ଞେ ପୂଜା କରି । ମୋହ ସଂସାରୁ ଯିବ ତରି ॥
ଯେ ଯେ ତୋହର ପିତୃକୁଳେ । ଭସ୍ମ ହୋଇଲେ କୋପାନଳେ
ଏହାଙ୍କ ମୋକ୍ଷ ଗଙ୍ଗାଜଳେ । ଅନ୍ୟଥା ନାହିଁ ଯେ ଶୟଳେ ॥
ଯେମନ୍ତେ କପିଳ ବଚନେ । ସେ ଅଂଶୁମାନ ତୋଷମନେ ॥
ତକ୍ଷଣେ ଅଶ୍ୱକୁ ଆଣିଲା । ପିତାମହର ପାଶେ ଦେଲା ॥
ସେ ପଶୁ ମାଂସ ଯଜ୍ଞ କରି । ବିଷମ ସଂକଟୁ ନିସ୍ତରି ॥
ଅଂଶୁମାନଙ୍କୁ ରାଜ୍ୟ ଦେଇ । କର୍ମ ବନ୍ଧନୁ ମୋକ୍ଷ ହୋଇ ॥
ଔର୍ବର ବୋଲେ ବନେ ଗଲେ । ଅନ୍ତେ ଗୋବିନ୍ଦକୁ ଲଭିଲା ॥
ବୋଇଲ ବିପ୍ର ଜଗନ୍ନାଥ । ନବମସ୍କନ୍ଧେ ଭାଗବତ ॥
ସୁଜନେ ଶୁଣିମ ଶ୍ରବଣେ । ଯେ ହରି ରସ ଅନୁକ୍ଷଣେ ॥
ଅବିଦ୍ୟା ବଂଧୁ ପାରିହୋଇ । ଅନ୍ତେ ପାଇବ ଭାବଗ୍ରାହୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ସଗରୋପାଖ୍ୟାନଂ*
*ନାମ ଅଷ୍ଟମୋଽଧ୍ୟାୟଃ ।*

# ନବମ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଯେବେ ହୋ ଶୁଣ ନୃପମଣି । କପିଳ ମୁଖୁ ବାକ୍ୟ ଶୁଣି ॥
ସେ ଅଂଶୁମାନ ଘୋର ବନେ । ବସିଲା ନିଶ୍ଚଳ ଆସନେ ॥
ମନ ପବନର ସଂଯମେ । ସକଳେ ଗଙ୍ଗାର ଆଗମେ ॥
ଅନେକ କାଳ ତପ କଲା । ସେ ବନେ ପ୍ରାୟ ଉଚ୍ଛର୍ଗିଲା ॥
ସେ ରୂପେ ଦିଲ୍ଲୀପ ତା ସୁତ । ତାର କୁମର ଭଗୀରଥ ॥
ସେ ତପ କଲେ ଘୋର ବନେ । ବସିଲା ନିଶ୍ଚଳ ଆସନେ ॥
ତାହାର ତପ ବନ୍ଦେ ଭାବି । ସନ୍ତୋଷେ ମିଳିଲା ଜାହ୍ନବୀ ॥
ବୋଲନ୍ତି ପ୍ରସନ୍ନ ବଦନେ । ବର ତୁ ମାଗ ତୋଷ ମନେ ॥
ତକ୍ଷଣେ ଦେଇ ଶିରେ କର । ବୋଲେ ମୋ ପିତୃଙ୍କୁ ଉଦ୍ଧର ॥
କପିଳ ତେଜେ ଦଗ୍ଧ ହୋଇ । ତାହାଙ୍କ ଅନ୍ୟ ଗତି ନାହିଁ ॥
ଶୁଣି ବୋଲନ୍ତି ଭଗବତୀ । କେ ସହି ପାରେ ମୋର ଗତି ॥
ଗଗନୁ ଭୂମିରେ ପଡ଼ନ୍ତେ । ଭୂମି ନାଶିବ ମୋର ଘାତେ ॥
ପାତାଳେ ପଡ଼ିବି ଯେ ମୁହିଁ । ମୋତେ ଧାରଣେ କେହି ନାହିଁ
କିବା ମୁଁ ଭୂମିକି ନ ଗଲେ । କେମନ୍ତେ ତରିବେ ସେ ଭଲେ
ଧାଇବେ ପାପ ତାହା ମୁହିଁ । ଧୋଇବି କାହିଁ ଚିନ୍ତ ତୁହି ॥
ବିଷ୍ଣୁର ଆଜ୍ଞା ପରମାଣେ । ନ ଗଲେ ନାହିଁ ପରତ୍ରାଣେ ॥

## ଶ୍ରୀ ଭଗୀରଥ ଉବାଚ

ସାଧୁ ସନ୍ନ୍ୟାସୀ ଶାନ୍ତ ବନ୍ତ । ବ୍ରହ୍ମିଷ୍ଠ ଶୁଚି ଦୟାବନ୍ତ ॥
ଯେହାଙ୍କ ଅଙ୍ଗ ସଙ୍ଗ ଫଳେ । ପାପ ହରନ୍ତି ଭୂମିତଳେ ॥
ତୁମ୍ଭର ପାପ ବିନାଶନେ । କ୍ଷେମ କି ନୋହିବେ ସେମାନେ ॥
ତେବେ ତା ରୁଦ୍ର ଅବା ସହି । ଯେ ହରି ବିଶ୍ୱଆତ୍ମା ବହି ॥
ରୁଦ୍ରର ଦେହେ ଯେ ଜଗତ । ବସନ ପ୍ରାୟେ ଆତଯାତ ॥
ତୋହର ବେଗ ସହିବାରେ । ଯେ ବିନୁ କେ ଅଛି ଅପରେ ॥
ଗଙ୍ଗା ବୋଇଲେ ଯେଚି ସତ୍ୟ । ତୁ ଯେବେ ସେବ ବିଶ୍ୱନାଥ ॥
ଯେମନ୍ତେ ଗଙ୍ଗା ବାକ୍ୟ ଶୁଣି । ଆନନ୍ଦେ ଗଲା ନୃପମଣୀ ॥
ସେବିଲା ଈଶ୍ୱର ଚରଣେ । ପିତୃଙ୍କ ଉଦ୍ଧାର କାରଣେ ॥
ସେ ଭଗୀରଥ ପୁଣ୍ୟ ବଳେ । ଶିବ ସନ୍ତୋଷ ଅଳ୍ପକାଳେ ॥
ବୋଇଲେ ଧରିବି ମୁଁ ଶିରେ । ଜଟା କଳାପ ଅଭ୍ୟନ୍ତରେ ॥
ଜାହ୍ନବୀ ରୁଦ୍ରର ବଚନେ । ତକ୍ଷଣେ ସ୍ରବିଲା ଗଗନେ ॥
ସ୍ୱଭାବେ ବିଷ୍ଣୁ ପାଦ ଜଳ । ସମ୍ପୂର୍ଣ୍ଣ ଶୁଚି ସୁନିର୍ମଳ ॥
ଜଳେ ପୂରିଲା ଜଟାଭାର । ଧାରାଯେ ତିନ୍ତିଲା ଶରୀର ॥
ରୁଦ୍ର ଶ୍ୱରୀରୁ ଜଳରାଶି । ବହିଲା ଭୂମିତଳେ ଆସି ॥

ଯେ ଗଙ୍ଗାଭୁବନ ପାବେନୀ । ତକ୍ଷଣେ ଭଗୀରଥ ଘେନି ॥
ବସିଲା ବାୟୁ ବେଗେ ରଥେ । ଗଙ୍ଗା ତାହାର ଅନୁପଥେ ॥
ପବିତ୍ର କରି ବେନି ପାଶେ । ଲାଗିଲା ଯେତେ ଯେତେ ଦେଶେ ॥
ଧରଣୀ ବିବରେ ପଶିଲା । କପିଳ ଆଶ୍ରମେ ମିଳିଲା ॥
ସଗର ସୁତେ ଯହିଁ ମିଳି । ଅନଳେ ଯାଇଥିଲେ ଜଳି ॥
ଜଳ ପଶିଲା ତାଙ୍କ ମଧ୍ୟେ । ତକ୍ଷଣେ ପରମ ଆନନ୍ଦେ ॥
ଜ୍ୟୋତି ସ୍ୱରୂପେ ସ୍ୱର୍ଗ ଗଲେ । ଶୂନ୍ୟେ ଦେଖନ୍ତି ଦିଗ ପାଳେ ॥
କପିଳ ମୁନି କ୍ରୋଧାନଳେ । ଦହଇ ଭୁବନ ମଣ୍ଡଳେ ॥
ସେ ଜଳ ସ୍ପରଶନ ମାତ୍ରେ । ଦୁରିତ ବିନାଶଇ ଗାତ୍ରେ ॥
ଅନନ୍ତ ଚରଣେ ସ୍ପରଶେ । ଗଙ୍ଗା ସ୍ମରଣେ ପାପ ନାଶେ ॥
ସେ ଗଙ୍ଗାଜଳେ ଦେଇ ମନ । ଭବୁ ତରିଲେ ମୁନିଜନ ॥
ଯେବେ ହୋ ଶୁଣ ପରୀକ୍ଷିତ । ସମ୍ପୂର୍ଣ୍ଣେ ବଂଶାନୁଚରିତ ॥
ସେ ଭଗୀରଥର ତନୟେ । ସ୍ୱଭାବେ ଶ୍ରୁତ ନାମ ହୋୟେ ॥
ନାଭ ତାହାର ସୁତ ହୋୟେ । ଅଶେଷ ଗୁଣ ଯାର ଦେହେ ॥
ସିନ୍ଧୁଦ୍ୱୀପ ତାର ନନ୍ଦନ । ତହୁଁ ଅୟୁତାୟୁ ଉତ୍ପନ୍ନ ॥
ତା ସୁତ ଋତୁପର୍ଣ୍ଣ ଲେଖା । ନଳର ହୋୟେ ପ୍ରିୟସଖା ॥
ଅକ୍ଷ ବିଦ୍ୟାରେ ଗୁରୁଟାଣ । ପାଳିଲେ ବଚନ ପ୍ରମାଣ ॥
ସେ ବିଦ୍ୟାନନ୍ଦକୁ ଶିଖାଇ । ବନେ ପଶିଲା ତପ ଧାଇ ॥
ତାର କୁମର ସର୍ବକାମ । ସ୍ୱଭାବେ ସର୍ବଗୁଣ ଧାମ ॥
ସୁଦାସ ତାହାର ସନ୍ତତି । ତା ସୁତ ମଦୟନ୍ତୀ ପତି ॥
ତାହାର ମିତ୍ର ସହନାମ । କଳ୍ମାଷପଦ ପୁଣି ନାମ ॥
ବଶିଷ୍ଠ ଗୁରୁ ଶାପ୍ୟ ପାଇ । ବନେ ରାକ୍ଷସ ଦେହ ବହି ॥
ସ୍ୱକର୍ମେ ଅପୁତ୍ର ହୋଇଲା । କୋପେ ବ୍ରାହ୍ମଣୀ ଶାପ୍ୟ ଦେଲା ॥

### ଶ୍ରୀ ରାଜା ଉବାଚ

ଏ କଥା ଶୁକ ମୁଖୁ ଶୁଣି । ବୋଲେ ପରୀକ୍ଷ ନୃପମଣି ॥
ମହାନ୍ତ ସୌଦାସ କେମନ୍ତେ । ରାକ୍ଷସ ହୋଇ ବନପଥେ ॥
କିବା ଅନୀତି ଆଚରିଲା । ଅପୁତ୍ର କି ଗୁଣେ ହୋଇଲା ॥
ଯେ କଥା କହ ମୁନିବର । ମୁଁ ଯେବେ ସେବକ ତୁମ୍ଭର ॥

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ରାଜା ଚାହିଁ । ଶୁଣ ହୋ ସାବଧାନ ହୋଇ ॥
ସୌଦାସ ଚରିତ୍ର ଅଦ୍ଭୁତ । ଭଜିଲା କର୍ମର ଆୟେତ ॥
ବନେ ରାକ୍ଷସ ବେନିଭାଇ । ବୁଲନ୍ତି ନରମାଂସ ଖାଇ ॥
ସୌଦାସ ରାଜା ଶସ୍ତ୍ର ହସ୍ତେ । ବନେ ପଶିଲା ପଶୁ ଅର୍ଥେ ॥
ସେ ବନେ ଥିଲେ ବେନି ଭାଇ । ରାକ୍ଷସ ବ୍ୟାଘ୍ର ରୂପ ହୋଇ ॥
ତହୁଁ ମାଇଲେ ବ୍ୟାଘ୍ର ଯେକ । ପର ଭାବିଲା କର୍ମ ଦେଖ ॥
ରାକ୍ଷସ ଭାଇ ବ୍ୟାଘ୍ର ରୂପେ । ମିଳିଲା ସୌଦାସ ସମ୍ମୁଖେ ॥
ବୋଲଇ ରାଜା ମୁଖ ଚାହିଁ । ତୁ ଯେ ମାଇଲୁ ମୋର ଭାଇ ॥
ଯେବେ ତୁ ନିଜପୁରେ ଚଳ । ମୁଁଇ କରିବି ପ୍ରତି ଫଳ ॥
ଯେମନ୍ତେ ରାଜା ଗୃହେ ଗଲା । ଶୁଣ ହୋ ଅଭିମନ୍ୟୁ ବଳା ॥
ଯେମନ୍ତେ ଗଲା ଦିନ କେତେ । ବଶିଷ୍ଠ ନୃପତି ଅଗ୍ରତେ ॥
ମିଳିଲେ କ୍ଷୁଧାର କଷଣେ । ଆମିଷ ଭୋଜନ କାରଣେ ॥
ବୋଲନ୍ତି ନୃପତି ଅଗ୍ରତେ । ମାଂସ ଭୋଜନ ଦିଅ ମୋତେ
ଯେମନ୍ତେ କହି ମୁନି ଗଲେ । ସନ୍ଧ୍ୟା କରଣେ ଗଙ୍ଗାଜଳେ ॥
ବଶିଷ୍ଠ ଆଗମନ ଚାହିଁ । ସୂପକାରକୁ ସେ ଆଣଇ ॥
ବୋଲନ୍ତି ମାଂସ ପାକ କର । ଭୁଞ୍ଜିବେ ବ୍ରହ୍ମାଙ୍କ କୁମର ॥
ଶୁଣି ସୂପକାର ସମେତେ । ଆମିଷ ରାନ୍ଧିଲେ ତୁରିତେ ॥
ଉତ୍ତମ ପଶୁଙ୍କର ମାଂସ । ଯେଣେ ବଶିଷ୍ଠ ମନ ତୋଷ ॥
ତାହାଙ୍କ ମଧ୍ୟେ ବିପ୍ର ରୂପେ । ରାକ୍ଷସ ଭାଇ ଥିଲେ ଗୋପ୍ୟେ ॥
ମନୁଷ୍ୟ ମାଂସ ପାକ କରି । ସୁବର୍ଣ୍ଣ ପାତ୍ରେ ତାହା ଭରି ॥
ତକ୍ଷଣେ ଅନ୍ତର୍ଦ୍ଧାନେ ଗଲେ । ଯେମନ୍ତେ ବଶିଷ୍ଠ ଅଇଲେ ॥
ଭୋଜନେ ବସିଲେ ଆସନେ । ରାଜା ସମୀପେ ବିଦ୍ୟମାନେ ॥
ଯେମନ୍ତେ ସୂପକାରେ ଗଲେ । ମାଂସ ସୁବର୍ଣ୍ଣ ପାତ୍ରେ ଦେଲେ ॥
ତକ୍ଷଣେ ମନୁଷ୍ୟର ମାଂସ । କରେ ଘେନିଲେ ଏକଗ୍ରାସ ॥
ଆଘ୍ରାଣ ନାସାରନ୍ଧ୍ରେ କଲେ । ତକ୍ଷଣେ ତଳେ ପକାଇଲେ ॥
ରାଜାର ବଦନ ଅନାଇଁ । ବୋଇଲେ କୋପହର ହୋଇ
ମୋତେ ଯେ ଦେଲୁ ନରମାଂସ । ଏ ପାପେ ହୁଅ ତୁ ରାକ୍ଷସ ॥
ଅରଣ୍ୟେ ଦ୍ୱାଦଶ ବରଷ । ରାକ୍ଷସେ ଭକ୍ଷ ନରମାଂସ ॥
ଯେମନ୍ତେ ମୁନି ବାକ୍ୟ ଶୁଣି । କୋପେ କମ୍ପିଲା ନୃପମଣି ॥
ବୋଲେ ମୁଁ ନୋହେ ଜ୍ଞାନଭ୍ରଂଶ । କେମନ୍ତେ ଦେଲି ନରମାଂସ
ନ ବୁଝି ଶାପ୍ୟ ଦେଲେ ଗୁରୁ । କେ ବ୍ରହ୍ମଶାପ୍ୟ ଆନ କରୁ ॥
ମୁଁଇ ଯେହାକୁ ଶାପ୍ୟ ଦେବି । ଏମନ୍ତ ବୁଦ୍ଧି ଚିତ୍ତେ ଭାବି ॥
ଜଳ ଅଞ୍ଜଳି ହସ୍ତେ କଲା । ବଶିଷ୍ଠ ଅଗ୍ରତେ ମିଳିଲା ॥
ରାଜାର କୋପ ଦେଖି ମନେ । ପତ୍ନୀ ମିଳିଲା ସନ୍ନିଧାନେ ॥
ଯାହାର ମଦୟନ୍ତୀ ନାମ । ରୂପେ ସକଳ ଗୁଣଧାମ ।
ବୋଇଲେ ସ୍ୱାମୀ ମୁଖ ଚାହିଁ । ଯେକଥା ତୋତେ ନ ଘଟଇ ॥
ଗୁରୁଙ୍କୁ ଶିଷ୍ୟ ଶାପ୍ୟ ଦେଲେ । ଅଧମ ହୋଇବଟି ଭଲେ ॥
ଯେ କଥା କେବେହେଁ ନକର । ତାର ବଚନେ ନୃପବର ॥
ମନ୍ତ୍ରିତ ଜଳ କୋପ ଭରେ । ସିଞ୍ଚିଲା ଆପଣା ପୟରେ ॥

ତକ୍ଷଣେ ଅଜ୍ଞାନ ହୋଇଲା । କଲ୍ମଷ ପାଦ ବୋଲାଇଲା ॥
କୋପେ ଚାହାଁଇ ଦଶଦିଶେ । ସକଳ ମାଂସ ପ୍ରାୟେ ଦିଶେ ॥
ତକ୍ଷଣେ ରାକ୍ଷାସ ଶରୀରେ । ରାଜା ପଶିଲା ବନଘୋରେ ॥
ବନେ ରାକ୍ଷାସ ଦେହବହି । ଭ୍ରମଇ ନରମାଂସ ଖାଇ ॥
ଯେମନ୍ତେ ଗଲା କେତେ ଦିନ । ଶୁଣ ପରୀକ୍ଷିତ ରାଜନ ॥
ବିପ୍ରର ପତି ପତ୍ନୀ ଦିନେ । ଆସନ୍ତି ଗହନ କାନନେ ॥
ପତ୍ନୀ ଯେ ପିତା ଗୃହେ ଥିଲା । ଯେମନ୍ତେ ଋତୁ ଉପୁଜିଲା ॥
ବିପ୍ର ଯେ ପୁଷ୍ପୋତ୍ସବ ଆଶେ । ପତ୍ନୀ ଅଣାଇ ଗୃହ ବାସେ ॥
ସେ ବନେ ବିଧାତାର ବଳେ । ରାକ୍ଷାସ ନିକଟେ ମିଳିଲେ ॥
ସ୍ୱଭାବେ ନିର୍ଜନ ବନସ୍ତ । ତାହାଙ୍କୁ କେ ହୋଇବ ନାଥ ॥
ସେ ରାଜା ଭୟଙ୍କର ରୂପେ । ମିଳିଲେ ତାହାଙ୍କ ସମୀପେ ॥
ଗର୍ଜନ କରି ମୁଖ ଗ୍ରତେ । ବିପ୍ରଙ୍କୁ ଧରି ବେନି ହସ୍ତେ ॥
ଭକ୍ଷଣେ ତୁଣ୍ଡ ବିସ୍ତାରଇ । ବ୍ରାହ୍ମଣୀ ବୋଲେ ତାକୁ ଚାହିଁ ॥
ଭୋ ନୃପ ଅଧର୍ମ ନ କର । ଇକ୍ଷ୍ୱାକୁ ବଂଶେ ଯଶ କର ॥
ତୁ ନୋହୁ ରାକ୍ଷସ ଶରୀର । ପ୍ରତ୍ୟେକ୍ଷେ ମଦୟନ୍ତୀ ବର ॥
ମୋର ସ୍ୱାମୀଙ୍କୁ ଛାଡ଼ ତୁହି । ପୁଷ୍ପ ଉତ୍ସବ ମୋର ହୋଇ ॥
ସ୍ୱାମୀର ସଂଗେ ସଂଗ କରି । ପୁତ୍ର ସନ୍ତତି ଗର୍ଭେ ଧରି ॥
ରତୀଷ ଭୋଗେ ଶୁଣ ଯାହା । ମୁଖେକି କହିବଇଁ ତାହା ॥
ଦେଖ ମୋହର ଯୁବାରୂପ । ବାରେ ସ୍ୱାମୀଙ୍କୁ ମୋର ରଖ ॥
କନ୍ଦର୍ପ ବାଣେ ମନ ଛନ । ସ୍ୱାମୀ ସଂଗମେ ମୋର ମନ ॥
ସ୍ୱାମ ସଂଗମେ ଭୋଗ ନାହିଁ । ଆଜ ହୋଇବ ଶୁଖ ମହୀ ॥
ତୁ ମୋତେ ନକର ଯେ ଦଣ୍ଡ । ସ୍ୱାମୀ ମରଣେ ହେବି ରାଣ୍ଡ ॥
ସଂସ୍କାର ହୋଇବ ମୋହର । ଦୁର୍ଲଭ ନର କଳେବର ॥
ଦେବେ ବାଞ୍ଛନ୍ତି ଯାହା ଚିତ୍ତେ । ଯେ କର୍ମ କରିବୁ କେମନ୍ତେ ॥
ଦେଖ ପଣ୍ଡିତ ମୋର ସ୍ୱାମୀ । ତପ ସାଧନେ ପଥଶ୍ରମୀ ॥
ଯେ ସର୍ବ ଭୂତେ ଦୟାବହେ । ଦେବେ ବସନ୍ତି ଯେହା ଦେହେ ॥
ଯେହାର ବଧେ ସୃଷ୍ଟି ବଧ । ଯେମନ୍ତେ ଲଭିବୁ ପ୍ରମାଦ ॥
ଯେ କଥା ଯେବେ ମଣୁ ମିଛ । ତୁ ମତେ ଆଗ କର ଭକ୍ଷ ॥
ମୋର ଆଗରେ ସ୍ୱାମୀ ମଲେ । ଜୀବନ ନ ଧରିବି ଭଲେ ॥
ଯେମନ୍ତେ ଅନେକ କହିଲା । ତାହାର ଚରଣେ ପଡ଼ିଲା ॥
କାନ୍ଦଇ ତାର ମୁଖ ଚାହିଁ । ତକ୍ଷଣେ ବ୍ୟାଘ୍ର ପ୍ରାୟେ ହୋଇ ॥
ବଶିଷ୍ଠ ଶାପ୍ୟେ ଜ୍ଞାନ ଗଲା । ତକ୍ଷଣେ ବିପ୍ରକୁ ଭକ୍ଷିଲା ॥
ସ୍ୱାମୀ ମରଣ ଦେଖି କୋପେ । ରାକ୍ଷାସେ ଚାହେଁ ମନଦୁଃଖେ
ବୋଲଇ ଶୁଣ ରେ ପାମର । ସମ୍ପଦ ନାଶିଲୁ ମୋହର ॥
ତୋହର ପତ୍ନୀସଙ୍ଗ କାଳେ । ପ୍ରାଣ ତୁ ଛାଡ଼ ଅନ୍ତରାଳେ ॥
ଯେମନ୍ତେ ଶାପ୍ୟ ତାକୁ ଦେଇ । ପଶିଲା ଅଗ୍ନିକୁଣ୍ଡେ ଯାଇ ॥
ତକ୍ଷଣେ ଜୀବନ ଛାଡ଼ିଲା । ସ୍ୱଧମେ ଭର୍ତ୍ତା ଲୋକେ ଗଲା ॥
ଯେମନ୍ତେ ମୁନି ଶାପ୍ୟ ରୋଷ । ସରିଲା ଦ୍ୱାଦଶ ବରଷ ॥
ଶାପ୍ୟ ମୁକତ ରାଜା ହୋଇ । ମିଳିଲା ଅନ୍ତଃପୁରେ ଯାଇ ॥
ପତ୍ନୀ ଗମନ ଇଚ୍ଛା ଚିନ୍ତି । ତା ଦେଖି ବୋଲେ ମଦୟନ୍ତୀ ॥
ବ୍ରାହ୍ମଣୀ ଶାପ୍ୟ ଦେଲା ତୋତେ । ମୋ ଅଙ୍ଗ ଛୁଇଁବୁ କେମନ୍ତେ
ସ୍ୱୀରି ମୈଥୁନ ସଂଗ ତେଜ । ଜୀବନେ ଅଛି ଯେବେ କାର୍ଯ୍ୟ ॥
ଯେମନ୍ତେ ତାହର ବଚନେ । ରାଜା ବିଚାରେ ଦୁଃଖ ମନେ ॥
କେମନ୍ତେ ହୋଇବ ସନ୍ତତି । ନାନା ଉପାୟ ମନେ ଚିନ୍ତି ॥
ବଶିଷ୍ଠ ସମୀପେ ମିଳିଲା । ମୋ ବଂଶ ରଖ ତୁ ବୋଇଲା ॥
ଯେମନ୍ତେ ରାଜାର ବଚନେ । ତାର କାମିନୀ ଗର୍ଭଧାନେ ॥
ବଶିଷ୍ଠ ସଙ୍ଗେ ସଙ୍ଗ କରି । ଗର୍ଭ ହୋଇଲା ତାର ନାରୀ ॥
ସେ ଗର୍ଭ ସପତ ବରଷେ । ଜନ୍ମ ନୋହିଲା ବୋଲି ରୋଷେ ॥
ଶିଳା ପ୍ରହାର ଗର୍ଭେ ଗଲା । ତକ୍ଷଣେ ପୁତ୍ର ଉପୁଜିଲା ॥
ତା ନାମ ଅଶ୍ମକ ହୋଇଲା । ଯେଣୁ ଅଶ୍ମଘାତ ବାଜିଲା ॥
ବାଲ୍ମୀକ ଅଶ୍ମକ ନନ୍ଦନ । ନାରୀ କବଚ ଯାର ନାମ ॥
ପରଶୁରାମ କ୍ଷୟ ବେଳେ । ସୁଖେ ରଖିଲା କ୍ଷତ୍ରିକୁଳେ ॥
କ୍ଷତ୍ରିକୁଳର ଉଥାପକ । ତେଣୁ ତା ନାମଟି ମୂଳକ ॥
ତାହାର ପୁତ୍ର ଦଶରଥ । ଐଡ଼ ବିଡ଼ି ଯେ ତାର ସୁତ ॥
ତା ତହୁଁ ବିଶ୍ୱସହ ହୋଇ । ସୁଖେ ସେ ପୃଥିବୀ ପାଳଇ ॥
ଖଟ୍ୱାଙ୍ଗ ତାର ଯେ କୁମର । ଯୁଦ୍ଧେ ରୁନ୍ଧିଲା ପୁରନ୍ଦର ॥
ସେ ମହୀତଳେ ଚକ୍ରବର୍ତ୍ତୀ । ଶୁଣ ରାଜନ ତାର ଗତି ॥
ଅସୁର ଯୁଦ୍ଧେ ଦେବ ଗଣେ । ତାହାଙ୍କୁ ବରି ଯୋଦ୍ଧାପଣେ ॥
ସେ ପୁଣି ରିପୁ ଜିଣି ଯୁଦ୍ଧେ । ମେଲାଣି ହେଲା ଦେବମଧେ ॥
ଇନ୍ଦ୍ର ତାହାର ମୁଖ ଚାହିଁ । ବୋଲଇ ଯିବୁ ଆର କାହିଁ ॥
ମୁହୂର୍ତ୍ତେ ଅଛି ତୋ ଜୀବନ । ତା ଶୁଣି ବୋଲଇ ରାଜନ ॥
ମୋହର ସର୍ଗେ କାର୍ଯ୍ୟ ନାହିଁ । କର୍ମ ଭୂମିକି ଯିବି ମୁହିଁ
ଦେବେ ବୋଲନ୍ତି ରାଜା ଚାହିଁ । ଯେ ବର ଇଚ୍ଛା ମାଗ ତୁହି ॥
ରାଜା ବୋଲଇ ପୁରେ ଯାଇ । ବର କଳ୍ପିତ ନ ଇଚ୍ଛଇ ॥
ଯେମନ୍ତ ଇନ୍ଦ୍ର ଆଗେ କହି । ନିଜପୁରେ ମିଳିଲା ଯାଇ ॥
ତକ୍ଷଣେ ଚାହିଁ ନିଜ ପ୍ରଜା । ଭୁଜ ଉଭାରି ବୋଲେ ରାଜା ॥
ମୁହିଁ ଯେ ବ୍ରହ୍ମ କୁଳେ ଯାତ । ବ୍ରାହ୍ମଣ ମୋର ଦଇବତ ॥
ଯେବା ଅଛଇ ମୋର ଧନ । ଦାରା ତନୟ ବଂଧୁଜନ ॥

ମୋ ମତି ଧର୍ମ ବ୍ୟତିରେକୁ । ହରିଙ୍କି ସର୍ବଭୂତେ ଦେଖୁ ॥
ଯେ ତିନି ଭୁବନେ ଈଶ୍ୱର । ଇନ୍ଦ୍ର ଯେ ଦେଲେ ମୋତେ ବର ॥
ଯେ ବର ଯେବେ ସେ ପ୍ରମାଣ । ମୋ ଚିତ୍ତ ଭଜୁ ନାରାୟଣ ॥
ବିଷ୍ଣୁର ମାୟାରେ ଜଗତ । ଦିଶଇ ଇନ୍ଦ୍ରଜାଲ ମତ ॥
ଯେ ମାୟା ଛାଡ଼ି ହରିପାଦେ । ମୋ ଚିତ୍ତ ରଖ ଅପ୍ରମାଦେ ॥
ଯେମନ୍ତେ କହି ନୃପରାଣ । ତକ୍ଷଣେ ଛାଡ଼ିଲା ପରାଣ ॥
ନିସ୍ତାରି ଗଲା ମାୟା ମୋହେ । ପଶିଲା ଗୋବିନ୍ଦର ଦେହେ ॥
ବୋଇଲା ବିପ୍ର ଜଗନ୍ନାଥ । ନବମସ୍କନ୍ଧେ ଭାଗବତେ ॥
ନିର୍ମଳ ବିଷ୍ଣୁର ଚରିତ । ସୁଜନେ ଶୁଣ ଅବିରତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଖଟ୍ୱାଙ୍ଗ ଚରିତଂ*
*ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଯେବେ ହୋ ମହୀପତି । ଯେ ବଂଶେ ଯାହାର ସନ୍ତତି ॥
ଯେ ପାନ୍ତି ଯାର ଅଧିକାରେ । ଶୁଣନ୍ତେ ସର୍ବ ପାପ ହରେ ॥
ଖଟ୍ୱାଙ୍ଗ ଦୀର୍ଘବାହୁ ନାମ । ପୁତ୍ର ହୋଇଲା ଗୁଣଧାମ ॥
ରଘୁ ତାହାର ତହୁଁ ଜାତ । ହୋଇଲା ପୃଥୁଶ୍ରବା ସୁତ ॥
ଅଜ ତାହାର ବୀର୍ଯ୍ୟେ ଜାତ । ତାର କୁମର ଦଶରଥ ॥
ସେ ଦଶରଥ ଘରେ ହରି । ଜନ୍ମିଲେ ନରଦେହ ଧରି ॥
ଚତୁର୍ଦ୍ଧା ରୂପେ ଦେବ କାର୍ଯ୍ୟେ । ଜନ୍ମିଲେ ଦଶରଥ ବୀର୍ଯ୍ୟେ ॥
ରାମ ଲକ୍ଷ୍ମଣ ଶତ୍ରୁଘନ । ଭରତ ତୁଲେ ଚାରିଜଣ ॥
ସେ ରାମ ଚରିତ୍ର ତୁ ସୁଖେ । ଶୁଣିବୁ ଋଷିଙ୍କ ସମ୍ମୁଖେ ॥
ଗୁରୁ ବଚନେ ରାଜ୍ୟ ଛାଡ଼ି । ପଦ୍ମ ଚରଣେ ଭୂମି ମାଡ଼ି ॥
ଲକ୍ଷ୍ମଣ ଜାନକୀ ସମେତେ । ଯେ ଦୁଃଖେ ବଞ୍ଚିଲେ ବନସ୍ତେ ॥
ସୁଗ୍ରୀବ ତୁଲେ ମିତ୍ର କରି । ବିରୂପ କଲେ ସେ ଅସୁରୀ ॥
ପ୍ରିୟା ବିଯୋଗେ ହୋଇ ଅନ୍ଧ । ସମୁଦ୍ରେ କରି ସେତୁ ବନ୍ଧ ॥
ପ୍ରଥମେ ବିଶ୍ୱାମିତ୍ର ଯଜ୍ଞେ । ଯଜ୍ଞ ରକ୍ଷଣେ ଅନୁରାଗେ ॥
ମରୀଚ ଆଦି ନିଶାଚରେ । ରାତ୍ରେ ମିଳିଲେ ରଣଘୋରେ ॥
ଲକ୍ଷଣ ତୁଲେ ତା ସଂଘାରି । ମୁନିଙ୍କ ଯଜ୍ଞ ରକ୍ଷାକରି ॥
ପୁଣି ସେ ସୀତା ସ୍ୱୟମ୍ବରେ । ମିଳିଲେ ବିଦେହ ନଗରେ ॥
ଭାଙ୍ଗିଲେ ଈଶ୍ୱର କୋଦଣ୍ଡ । ବାଳ ଗଜ କି ଇକ୍ଷୁ ଦଣ୍ଡ ॥
ଅଶେଷ ରାଜପୁତ୍ର ଜିଣି । ସୀତାକୁ ସ୍ୱୟମ୍ବରୁ ଆଣି ॥
ଅଯୋଧ୍ୟା ନଗରେ ଆସନ୍ତେ । ମିଳିଲେ ପର୍ଶୁରାମ ପଥେ ॥
ଶ୍ରୀରାମ ମୁଖ ଚାହିଁ ବୋଲେ । ଧନୁ ଭାଙ୍ଗିଲୁ ତୁହି ବଳେ ॥
ମୋ ଧନୁ ବେନିକରେ ବହ । ନୋହିଲେ ସୀତା ମୋତେ ଦିଅ ॥
ଯେମନ୍ତେ ତାର ବାକ୍ୟ ଘୋରେ । ତା ଧନୁ ଧରି ଯେକ କରେ ॥
ତକ୍ଷଣେ ଭୃଗୁପତି ବୋଲେ । ଜଂଘେ ବସାଇ ଗୁଣ ଦେଲେ ॥
ରାମର ଦେଖି ଘୋର ତମ । ପାଦେ ନମିଲେ ପର୍ଶୁରାମ ॥
ପିତାକୁ ଘେନି ନିଜ ପୁରେ । ଆନନ୍ଦେ ଅଯୋଧ୍ୟା ନଗରେ ॥
ସୀତା ଯେ ପତ୍ନୀବଶ ହୋଇ । ଯାହା ବୋଇଲେ କଇକେୟୀ ॥
ମୋ ପୁତ୍ର ରାଜ୍ୟେ ରାଜା ହେଉ । ତୋ ସୁତ ରାମ ବନ ଯାଉ ॥
ସେ ପୁଣି ପିତାର ବଚନେ । ତକ୍ଷଣେ ଚଳିଲେ ବିପିନେ ॥
ବନେ ବୁଲନ୍ତି ବେନି ଭାଇ । ଜନକସୁତା ସଙ୍ଗେ ଥାଇ ॥
ରାବଣଭଗ୍ନୀ ସୁର୍ପଣଖା । ମାୟାରେ ବନେ ଦେଲା ଦେଖା ॥
ଲକ୍ଷଣ ତା କୂଟ ଜାଣିଲେ । ନାସା ଶ୍ରବଣ ତା ଛେଦିଲେ ॥
ତାହାର ଛଳେ ଦୈତଗଣ । ଉଭାରି କଲେ ଘୋର ରଣ ॥
ଖର ଦୂଷଣ ଯେ ତ୍ରିଶିରା । ଯୁଦ୍ଧେ ମିଳିଲେ ମହାବୀରା ॥
ସ୍ୱର୍ପଣଖାର ବଂଧୁଗଣେ । ଯେତେ ମିଳିଲେ ଘୋର ରଣେ ॥
ତାଙ୍କୁ ଛେଦିଲେ ତୀକ୍ଷ୍ଣ ଶରେ । ଅଶେଷ ଜନ ଉପକାରେ ॥
ସହସ୍ର ଚତୁର୍ଦ୍ଦଶ ବଳ । ଛେଦିଲେ ଦଶରଥ ବାଳ ॥
ସୀତାର ରୂପ ଗୁଣ ଗାଥା । ଶୁଣି ରାବଣ ହୃଦେ ବ୍ୟଥା ॥
ଚିତ୍ତ ବାଧିତ କାମ ଶରେ । ରାକ୍ଷସ ପଶେ ଅନ୍ତଃପୁରେ ॥
ମରୀଚ ରାବଣ ଉଦେଶେ । ମିଳିଲା ରଘୁନାଥ ପାଶେ ॥
ଅଦ୍ଭୁତମାୟା ରୂପେ ଆସି । ମିଳିଲା ଗଗନ ଗରାସି ॥
ସୀତା ଉଦ୍ଦେଶ୍ୟେ ତାକୁ ଜାଣି । ତୀକ୍ଷ୍ଣ ନାରାଜେ ଶିରହାଣି ॥
ବରଷା ଋତୁ ଆଗମନେ । ରାମ ପଶିଲେ ଗିରିବନେ ॥
ପଲ୍ଲବେ କୁଟୀର ଭିଆଇ । ସୀତା ସମେତେ ବେନି ଭାଇ ॥
ମିଳିଲା ବିଧାତା ବିଯୋଗ । ବନେ ମିଳିଲା ମାୟାମୃଗ ॥
ବନେ ସୁବର୍ଣ୍ଣ ମୃଗ ଦେଖି । ରାମଙ୍କୁ ବୋଲେ ଚନ୍ଦ୍ରମୁଖୀ ॥
ଭୋ ନାଥ ମୋର କ୍ରୀଡ଼ା ଅର୍ଥେ । ସୁବର୍ଣ୍ଣ ମୃଗ ଦିଅ ମୋତେ ॥
ସେ ରାମ ସ୍ତିରୀ ବଶ ଅର୍ଥେ । ଧନୁ ନାରାଜ ଘେନି ହସ୍ତେ ॥
ଧାଇଲେ ତାର ବଧ ଅର୍ଥେ । ସେ ପଶେ ଗହନ ବନସ୍ତେ ॥
ତାହାକୁ ମାରିବାର ବେଳେ । ଶବଦ କଲା ସେ ବିକଳେ ॥
'ରଖ ଲକ୍ଷ୍ମଣ ହେ' ଶୁଭିଲା । ଜାନକୀ ଲକ୍ଷ୍ମଣେ କହିଲା ॥
ଲକ୍ଷ୍ମଣ ଯାଅ ବେଗେ ହୋଇ । ସ୍ୱାମୀର ମୁଖ ନ ଦେଖଇ ॥
ତକ୍ଷଣେ ଧନୁଧରି ହସ୍ତେ । ମିଳିଲା ରାମର ଅଗ୍ରତେ ॥
ରାବଣ ମିଳି ବୃକ୍ଷମୂଳେ । ସୀତାକୁ ନେଲା ଅନ୍ତରାଳେ ॥

ସୀତା ବିଯୋଗ ଦୁଃଖ ମନେ । ମିଳିଲେ ଋଷ୍ୟମୁକ ବନେ ॥
ରାମ ନେଉଟେ ମୃଗମାରି । ମିଳିଲେ ଆପଣାର ପୁରୀ ॥
ଦେଖିଲେ ସୀତା ଗୃହେ ନାହିଁ । ଚକିତେ ଚଉଦିଗ ଚାହିଁ ॥
ବୋଲନ୍ତି ମୃଗ ଆଣି ଅଛି । କେଣିକି ଗଲା ସେ ମୃଗାକ୍ଷୀ ॥
ନ ଦେଖି କମ୍ପଇ ଶରୀର । ଆକୁଳେ ବୋଲେ ରଘୁବୀର ॥
ଆହା ଜାନକୀ କେଣେ ଗଲା । ମୋତେ ବିଧାତା ଦୁଃଖଦେଲା ॥
ସେ ବନେ ବାଳିକି ସଂହାରି । ସୁଗ୍ରୀବ ତୁଲେ ମିତ୍ର କରି ॥
ଅଙ୍ଗଦ ହନୁମାନ ତୁଲେ । ସମୁଦ୍ର ନିକଟେ ମିଳିଲେ ॥
ପ୍ରିୟା ବିଯୋଗ ଦୁଃଖ ମନ । ଜାଣିଲା ବରୁଣ ରାଜନ ॥
ସ୍ୱଭାବେ ଦୁର୍ଗମ ଗଭୀର । ବୁଲନ୍ତି ମଗର କୁମ୍ଭୀର ॥
ତକ୍ଷଣେ ନିଜରୂପ ଧରି । ରାମଙ୍କୁ ନମସ୍କାର କରି ॥
ଅନେକେ ବାକ୍ୟେ ତୁଷ୍ଟି କଲା । ସେତୁ ବଂଧନେ ମାର୍ଗଦେଲା ॥
ବୋଲଇ ଭାବଭକ୍ତି ବହି । ରାବଣ ବଧ ନାଥ ତୁହି ॥
ସକଳ ରାକ୍ଷସ ସଂହାରି । ବେଗେ ତୁ ଲଭ ନିଜ ନାରୀ ॥
ତୋ ଯଶ ରହୁ ଦଶଦିଶେ । ମୁନିଯେ ଗାଇବେ ହରଷେ ॥
ସୁଗ୍ରୀବ ନୀଳ ହନୁମନ୍ତ । ଅଙ୍ଗଦ ଘେନି କପିଯୂଥ ॥
ଚଳନ୍ତି ରକ୍ଷବଳ ସଙ୍ଗେ । ଲଙ୍କା ଦହନ କର ବେଗେ ॥
ନିକୁମ୍ଭ କୁମ୍ଭ ଇନ୍ଦ୍ରଜିତ । ଧୂମ୍ରାକ୍ଷ ଆଦି ଯେତେ ଯୂଥ ॥
ଯେ ଅଦି ଯେତେ ଘୋର ସୈନ୍ୟ । ସଙ୍ଗତେ ମାର କୁମ୍ଭକର୍ଣ୍ଣ ॥
ଶୂଳ ଖଡ୍‌ଗ ପ୍ରସାରିଷ୍ଟି । ଭୂଷଣ ତିକ୍ଷ୍ଣଶର ବୃଷ୍ଟି ॥
ବ୍ରହ୍ମ ରାକ୍ଷସ ଯେ ସମୂହେ । ତୋ ମୂଳେ ହୋନ୍ତୁ ସର୍ବକ୍ଷୟେ ॥
ସୁଗ୍ରୀବ ଲକ୍ଷ୍ମଣ ସମେତେ । ଗନ୍ଧମାର୍ଦ୍ଦନ ହନୁମନ୍ତେ ॥
ଯେ ଆଦି ରକ୍ଷବଳ ତୁଲେ । ରାବଣ ସଂହାର ତୁ ଭଲେ ॥
ଯେମନ୍ତେ ବରୁଣର ବାଣୀ । ଶୁଣି ଚଳିଲେ ରଘୁମଣି ॥
ସଙ୍ଗତେ ଘେନି କପିବଳ । ଲଙ୍କାରେ ସଂଯୋଗି ଅନଳ ॥
ରାକ୍ଷସ ସଙ୍ଗେ ଯୁଦ୍ଧ କରି । ଅନେକ ବଳ ଯୁଦ୍ଧେ ମାରି ॥
ସୀତା ହରଣ ଦୋଷ ଫଳେ । ସଂଗ୍ରାମେ ସର୍ବ ହତ ଗଲେ ॥
ଦେଖିଣ ବୀରଙ୍କ ମରଣ । ରଥେ ଆରୋହିଲା ରାବଣ ॥
ମାତେଳି ସଙ୍ଗେ ଦିବ୍ୟଯାନେ । ମିଳିଲା ରାମ ସନ୍ନିଧାନେ ॥
ରାମ ରାବଣ ମୁହଁ ଚାହିଁ । କହନ୍ତି କୋପଭର ହୋଇ ॥
ମୋ ନାରୀ ହରିଲୁ ଯେ ତୁହି । ତପ ପ୍ରସାଦେ ଗର୍ବ ବହି ॥
ଆଜ ସରିଲା ତପ ଫଳ । ହେଳେ ଗଞ୍ଜିବି ତୋର ବଳ ॥
ଯେମନ୍ତେ କହି ରଘୁନାଥ । କୋପେ କୋଦଣ୍ଡ ଧରି ହସ୍ତ ॥
ବଜ୍ର ସମାନେ ରାମ ଶରେ । ଭେଦିଲା ରାବଣ ଉପରେ ॥
ରଥୁ ପଡ଼ିଲା ଭୂମିତଳେ । ଦଶବଦନୁ ଶ୍ରୋଣି ଗଳେ ॥
ଭୂମି କମ୍ପିଲା ଥର ହର । ଶବଦ ଶୁଭେ ହାହାକାର ॥
ରାବଣ ହତ ଶୁଣିକର୍ଣ୍ଣେ । ସଭ୍ରମେ ଅନ୍ତଃପୁର ଜନେ ॥
ତକ୍ଷଣେ ମନ୍ଦୋଦରୀ ତୁଲେ । ରାକ୍ଷସୀଗଣେ ଉଭାରିଲେ ॥
ରୋଦନ କଲେ ସେ ବିକଳେ । ଶବଦେ ଭୁବନ ଉଛୁଳେ ॥
ମିଳିଲେ ରଣଭୂମି ମଧ୍ୟେ । ସ୍ୱାମୀ ସମୀପେ ଶୋକନାଦେ ॥
ହୃଦରେ ବେନି କର ତାଡ଼ି । ହା ନାଥ ବୋଲି ଯାଏ ପଡ଼ି ॥
ରାକ୍ଷସ ନାରୀଙ୍କ ରୋଦନ । ପୂରିଲା ଧରଣୀ ଗଗନ ॥
କାନ୍ଦନ୍ତି ସ୍ୱାମୀ କୋଳେ ଧରି । ନାରୀଙ୍କ ତୁଲେ ମନ୍ଦୋଦରୀ ॥
ଭୋ ନାଥ ତୋହର ମରଣେ । ପଶିବୁ କାହାର ଶରଣେ ॥
ଲୋକ ରାବଣ ତୁ ରାବଣ । ଅନାଥ କଲୁ ନାରୀଗଣ ॥
ତୋର ମରଣେ ଲଙ୍କାପୁରୀ । ଯେବେ ହୋଇଲା ହତଶିରୀ ॥
ତୁ ନାଥ କାମବଶ ହୋଇ । ବନେ ହରିଲୁ ବଇଦେହୀ ॥
ସେ ଦୋଷ ତୋତେ ନାଶକଲା । ମରଣ ଦଶା ଭିଆଇଲା ॥
ଆମ୍ଭ ସମେତେ ଲଙ୍କାପୁରୀ । ଅନାଥ କଲୁ ସର୍ବନାରୀ ॥
ଦେହକୁ କଲୁ ଗୃଧ୍ରଗ୍ରାସ । ନରକେ ହୋଇବୁ ପ୍ରବେଶ ॥

## ଶ୍ରୀ ଶୁକ ଉବାଚ

ଯେମନ୍ତେ ସର୍ବ ନାରୀଜନେ । ପ୍ରାଣ ଛାଡ଼ିଲେ ହୁତାଶନେ ॥
ରହିଲା ମନ୍ଦୋଦରୀ ଶେଷ । ଯେବେ ହୋ ଶୁଣ କୁରୁବଂଶ ॥
ରାବଣ ଭାଇ ବିଭୀଷଣ । ଥିଲା ଯେ ରାମରେ ଶରଣ
ତାହାକୁ ଦେଲେ ମନ୍ଦୋଦରୀ । ଲଙ୍କା ଅଧିପ ପଣେ ବରି ॥
ଥୋଇଲେ ପ୍ରଭୁ ରଘୁବୀର । ତୁ ଯେବେ ପ୍ରଭୁ କାର୍ଯ୍ୟକର ॥
ଯେମନ୍ତେ ତାଙ୍କୁ ଆଜ୍ଞାଦେଲେ । ଅଶୋକ ବିପିନେ ପଶିଲେ ॥
ସୀତାଙ୍କୁ ଦେଖି ବେନି ତୋଳେ । ଅଧୋବଦନେ ବୃକ୍ଷମୂଳେ ॥
ରାମ ବିଚ୍ଛେଦ ବ୍ୟାଧି ଜ୍ୱରେ । ସୁମ୍ଳାନ ସୁରଙ୍ଗ ଅଧରେ ॥
ଲୋଚନେ ଅଶ୍ରୁଜଳ ପୂରି । 'ହା ସୀତା !' ବୋଲି କରେ ଧରି ॥
ଜାନକୀ ପ୍ରଭୁ ମୁଖ ଚାହିଁ । ବେଗେ ଉଠିଲେ ଜ୍ଞାନ ପାଇ ॥
ଆଦିତ୍ୟ ଦେଖି ପଦ୍ମଯେହ୍ନେ । ଅନାଇ ଉଲ୍ଲୋଳ ନୟନେ ॥
ରାମର ହସ୍ତେ ହସ୍ତ ଦେଇ । କାନ୍ଦନ୍ତି ଅତି ମାନ ହୋଇ ॥
ଲକ୍ଷ୍ମଣ ହନୁମନ୍ତ ତୁଲେ । ରାମ ବିମାନେ ବିଜେ କଲେ ॥
ବିଭୀଷଣକୁ ଦାଶରଥି । ଲଙ୍କାରେ କଲେ ଅଧିପତି ॥
ବୋଇଲେ ହୁଅ ତୁ ଅମର । ଯେ ଲଙ୍କା କଳ୍ପେ ଭୋଗକର ॥
ବିଭୀଷଣକୁ ରାଜା କରି । ରାମ ବିଜୟେ ନିଜପୁରୀ ॥
ପିତା ଉଦ୍ଦେଶ୍ୟେ ବନ ବାସ । ପୂରିଲା ଚଉଦ ବରଷ ॥
ରାମ ବିଜୟେ ଇନ୍ଦ୍ର ଚାହିଁ । ମାର୍ଗେ କୁସୁମ ବରଷଇ ॥
ଗଗନେ ଦେବେ ପନ୍ତି ପନ୍ତି । ରାମ ବିଜୟେ ଉଚ୍ଚାରନ୍ତି ॥
ରାମ ବିଚ୍ଛେଦ ଦୁଃଖ ମନେ । ଭରଥ ଥିଲା ତପୋବନେ ॥

ରାମ ଚରିତ ଶୁଣି କର୍ଣ୍ଣେ । ଯେବା କହିଲେ ମୁନିଜନେ ॥
କଠୋର ତପବନେ କରି । ବହ୍ମ ଆଚରୀ ରୂପ ଧରି ॥
ଯାବକ ଭକ୍ଷେ ଗୋରୁ ମୂତ୍ରେ । ବକଳ ପିନ୍ଧେ କଟିସୂତ୍ରେ ॥
ପିଙ୍ଗଳ ଜଟାଶିରେ ବହେ । ଶୀତେ ସ୍ଥଣ୍ଡିଳେ ବୀର ଶୋୟେ ॥
ରାମ ପାଦୁକା ଅଗ୍ରେ ସ୍ଥାପି । ନିଶ୍ଚଳ ଚିତ୍ତେ ଧ୍ୟାନରୂପୀ ॥
ସେ ରାମ ମୁନିଗଣ ତୁଲେ । ଭରଥ ଆଶ୍ରମେ ମିଳିଲେ ॥
ତାହାର ହସ୍ତ ରାମଧରି । ଆଶ୍ୱାସ କରି କୋଳ କରି ॥
ରାମ ଲକ୍ଷ୍ମଣ ହନୁମନ୍ତ । ସଙ୍ଗତେ ଘେନାଇ ଭରଥ ॥
ରାମ ପାଦୁକା ଶିରେ ବହେ । ତପସ୍ୱୀ ବେଶ ମନ ମୋହେ ॥
ମିଳିଲେ ଅଯୋଧ୍ୟା ନିକଟେ । ସରଯୂ ନଦୀ ପୂର୍ବତଟେ ॥
ରାମର ଆଗମନ ପଥେ । ମିଳିଲେ ପାତ୍ର ପୁରୋହିତେ ॥
ବେଦ ଶବଦେ ବିପ୍ରଜନେ । ଶଙ୍ଖ ଦୁନ୍ଦୁଭି ବାଦ୍ୟ ସ୍ୱନେ ॥
ଦିବ୍ୟ ବିମାନ ଶ୍ରେଣୀ ପଥେ । ବୀରେ ଧାମନ୍ତି ବେଗେ ପଥେ ॥
ଧ୍ୱଜ ପତାକା ଶୋହେ ସ୍ୱର୍ଣ୍ଣେ । ଉତ୍ତମ ବାଜି ଗଜ ଯାନେ ॥
ଗଣିକା ଯୂଥ ଅଗ୍ରେ ଶୋହେ । ମାର୍ଗେ ଚଳନ୍ତେ ଜନ ମୋହେ ॥
ବିବିଧ ଉପାୟନ ହସ୍ତେ । ଜୟ ଶବଦ କରି ପଥେ ॥
ନାରୀୟେ ଘେନି ଦୀପାବଳି । ପଥେ ଦିଅନ୍ତି ହୁଳହୁଳି ॥
ବିପ୍ରଙ୍କୁ ଦେଖି ରଘୁନାଥ । ଶିରେ ନିବେଶି ବେନି ହସ୍ତ ॥
ବିପ୍ରଙ୍କୁ ନମସ୍କାର କଲେ । ସୀତା ଲକ୍ଷ୍ମଣ ପ୍ରଜାତୁଲେ ॥
ଅଯୋଧ୍ୟାପୁରେ ଜନ ଯେତେ । ରାମ ଆଗମ ଦେଖି ପଥେ ॥
ରାମ ଲକ୍ଷ୍ମଣ ସୀତା ଚାହିଁ । ରଙ୍ଗେ ନାଚନ୍ତି ତୋଷ ହୋଇ ॥
ରାମ ପାଦୁକା ଘେନି ଶିରେ । ବିଞ୍ଚନ୍ତି ଉତ୍ତମ ଚାମରେ ॥
ଭରଥ ଚଳେ ରାମ ପଛେ । ବିବୁଧେ ଦେଖନ୍ତି ପ୍ରତ୍ୟକ୍ଷେ ॥
ସୁଗ୍ରୀବ ବିଭୀଷଣ ବେନି । ଅଞ୍ଜନା ସୁତ ଛତ୍ର ଘେନି ॥
ଶତ୍ରୁଘ୍ନ କରେ ଧନୁଶର । ପଥେ ଦେଖନ୍ତି ସୁରନର ॥
ଜାନକୀ କରେ କମଣ୍ଡଳ । ପୂରିତ ନାନା ତୀର୍ଥଜଳ ॥
ଅଙ୍ଗଦ ହସ୍ତେ ଖଡ଼୍ଗ ବହି । ସୁବର୍ଣ୍ଣ ଶତେ ଚନ୍ଦ୍ର ଯହିଁ ॥
ସଙ୍ଗେ ଚଳନ୍ତି ଯୂଥ ଯୂଥ । ମଧ୍ୟେ ବିଜୟ ରଘୁନାଥ ॥
ତ୍ରିଦଶେ କୁସୁମ ବରଷି । ନକ୍ଷେତ୍ର ଗଣେ ଯେହ୍ନେ ଶଶୀ ॥
ସଂଗତେ ଘେନି ତିନିଭାଇ । ମିଳିଲେ ଅନ୍ତଃପୁରେ ଯାଇ ॥
ନମିଲେ ଗୁରୁପତ୍ନୀ ପାଦେ । କୌଶଲ୍ୟା ଚରଣେ ସାନନ୍ଦେ ॥
ରାମଙ୍କୁ ଦେଖି ମାତୃଗଣ । ଆନନ୍ଦେ କରନ୍ତି କଲ୍ୟାଣ ॥
ପ୍ରାଣଙ୍କୁ ପାଇ ତନୁ ଯେହ୍ନେ । ଉଠଇ ହରଷ ବଦନେ ॥
ଆନନ୍ଦେ ଅଶ୍ରୁଜଳ ନେତ୍ରେ । ସିଞ୍ଚନ୍ତି ଶ୍ରୀରାମର ଗାତ୍ରେ ॥
ରାମର ଶିରେ ଜଟା ଦେଖି । ମନେ ହୋଇଲେ ସର୍ବେ ଦୁଃଖୀ ॥
ତକ୍ଷଣେ ମିଳିଲେ ବ୍ରାହ୍ମଣେ । ବଶିଷ୍ଠ ଆଦି ଗୁରୁ ଗଣେ ॥

ମଣ୍ଡନ କରି ଜଟାଭାର । ଘେନାଇ ନାନା ଉପହାର ॥
ସୁବର୍ଣ୍ଣ କୁମ୍ଭେ ତୀର୍ଥ ଜଳେ । ରାମଙ୍କୁ ଅଭିଷେକ କଲେ ॥
ଉତ୍ତମ ବସ୍ତ୍ର ଅଳଙ୍କାର । ରତ୍ନ ମୁକୁଟ ବାନ୍ଧି ଶିର ॥
ଜାନକୀ ତୁଲେ ଅଭିଷେକେ । ମିଳି ସକଳ ପ୍ରଜାଲୋକେ ॥
ରାମଙ୍କୁ ପାଇ ପ୍ରଜାଜନେ । ସକଳ ହରଷିତ ମନେ ॥
କରନ୍ତି ସ୍ୱଧର୍ମ ଆଚାର । ଯେବେ ହୋ ଶୁଣ କୁରୁବୀର ॥
ତ୍ରେତୟା ବର୍ତ୍ତମାନ କାଳେ । ଯେସନେ ସତ୍ୟଯୁଗ ମିଳେ ॥
ରାମ ହୋଇଲେ ରାଜ୍ୟେ ରାଜା । ସତ୍ୟ ଯୁଗର ପ୍ରାୟେ ପ୍ରଜା ॥
ବନପର୍ବତ ନଦୀ ନଦ । ଦ୍ୱୀପ ବରଷ ସିନ୍ଧୁ ଭେଦ ॥
ପ୍ରଜାଙ୍କୁ କାମଧେନୁ ପ୍ରାୟେ । ସର୍ବେ ହୋଇଲେ ରସମୟେ ॥
ନାଶିଲେ ଆଦି ବ୍ୟାଧି ବ୍ୟଥା । ବୃଦ୍ଧେ ହୋଇଲେ ସମରଥା ॥
ସେ ରାମ ଯେକ ପତ୍ନୀ ବ୍ରତ । ଆଚରେ ରାଜରଷି ମତ ॥
ଆଚରି ଗୃହମେଧି ଧର୍ମ । ଶୁଭେ ସକଳ କ୍ରୀୟା କର୍ମ ॥
ଜାନକୀ ରାମର ଚରଣେ । ସ୍ୱଭାବେ ଖଟେ ଅନୁକ୍ଷଣେ ॥
କହଇ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ଆଦିତ୍ୟ ବଂଶନୁଚରିତେ । ସୁଜନେ ଶୁଣ ଅବିରତେ ॥
ତରିବ ଯେ ଭବଜଳଧି । ଶର୍ବଣେ ଶୁଣ ନିରବଧି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମଚରିତେ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ସେ ରାମ ରାଜ୍ୟେ ହୋଇ ରାଜା । ଆନନ୍ଦେ ପାଳି ଜନ ପ୍ରଜା ॥
ଉତ୍ତମ କଲ୍ପେ ଯଜ୍ଞ କଲେ । ବଶିଷ୍ଠ ସର୍ବମୁନି ତୁଲେ ॥
ବିପ୍ରଙ୍କୁ ଚାରିବେଦେ ବରି । ଦକ୍ଷିଣା ଦେଲେ ଚିତ୍ତ ଭରି ॥
ଭୂମିକି କରି ଚାରି ଭାଗେ । ଦକ୍ଷିଣା ଦେଲେ ଅନୁରାଗେ ॥
ହୋତାଙ୍କୁ ପୂର୍ବଦିଗ ଦେଲେ । ଅଧ୍ୱର୍ଯ୍ୟ ପଶ୍ଚିମେ କଳ୍ପିଲେ ॥
ଉତ୍ତର ଦିଗେ ସାମଗାନେ । ବ୍ରାହ୍ମଣେ ଦକ୍ଷିଣା ପ୍ରଦାନେ ॥
ବ୍ରାହ୍ମଣେ ଦେଲେ ମଧ୍ୟଦେଶ । ଆଚାର୍ଯ୍ୟେ ଦେଲେ ଅବଶେଷ ॥
ସୀତା ସମେତେ ରଘୁପତି । ଆଚରି ଗୃହସ୍ଥଙ୍କ ଗତି ॥
ଅନେକ ବସ୍ତ୍ର ରତ୍ନ ଧନେ । ସନ୍ତୋଷ କରି ସର୍ବଜନେ ॥
ଆଚରି ଗୃହମେଧି ଧର୍ମ । ବେଦେ ବିହିତ ଯେତେ କର୍ମ ॥
ବ୍ରାହ୍ମଣେ ଦେଖି ରାମ କଥା । ରାମ ପାଦେ ଯେ କଲେ ଚିନ୍ତା ॥
ରାମର ନିକଟେ ମିଳିଲେ । ଅନେକ ସ୍ତୁତି ବାକ୍ୟ କଲେ ॥

କହିଲେ ପ୍ରିୟ ଭାବ ବହି । ଭୋନାଥ ତୋର ପୁତ୍ର ନାହିଁ ॥
ଆମ୍ଭେ କହିଲୁ ବେଦ ଧର୍ମେ । ତୋତେ ନ ଜାଣି ମତି ଭ୍ରମେ ॥
ଯେମନ୍ତେ କିଛି ଦିନ ଗଲା । ଶୁଣ ହେ ଗୋବିନ୍ଦର ଲୀଳା ॥
ଦିନେକ ରାମ ରାତ୍ର କାଳେ । ବୁଲନ୍ତେ ନିଜ ଭୃତ୍ୟମେଳେ ॥
ଯଶ ଅଯଶ କେବେ ଚିନ୍ତି । ଯେମନ୍ତେ ପଚାରି ଗୁପତେ ॥
ଶୁଣିଲେ ଯେକ ଗୃହାଶ୍ରମେ । ପତ୍ନୀକି ବୋଲେ ଗୁରୁତମେ ॥
ତୁ ଦୁଷ୍ଟାନାରୀ ଘରୁ ଯାଅ । ମୁଁ ନ ଛୁଇଁବି ତୋର ଦେହ
ଅସତୀ ପର ଗୃହାଶ୍ରମୀ । ମୁଁ ନୋହେ ରାମ ପ୍ରାୟ କାମୀ
ସେ ଯେହ୍ନେ ସୀତାଘେନି ଘରେ । ସାନନ୍ଦେ ଗୃହାଶ୍ରମେ କରେ ॥
ଯେମନ୍ତ ଶୁଣି ତାର ମୁଖେ । ଗୃହେ ମିଳିଲେ ମନଦୁଃଖେ ॥
ଶୁଣି ସେ ଲୋକ ଅପବାଦେ । ଚିନ୍ତା ବସିଲା ରାମ ହୃଦେ ॥
ସୀତାର ଗର୍ଭବାସ ଦେଖି । ତାର ବିଚ୍ଛେଦ ହୋଏ ଦୁଃଖୀ
ଯେ ଲୋକବାଦ ମହାଭୟେ । କରିବି କେବଣ ଉପାୟେ ॥
ଲକ୍ଷ୍ମଣ ରାଇ ରଘୁନାଥ । ତାହାକୁ ଭାଳି ସେ ଯେକାନ୍ତ ॥
ବୋଇଲେ ସୀତାକୁ ବିପିନେ । ନିବାସି ଆସ ତୁ ବହନେ ॥
ତକ୍ଷଣେ ରାମ ଆଜ୍ଞା ପାଇ । ସୀତା ବନସ୍ତେ ଏଲା ଥୋଇ ॥
ସେ ମିଳେ ବାଲ୍ମୀକ ଭୁବନେ । ବେନି କୁମର ଜାତ ବନେ ॥
ବାଲ୍ମୀକ ଜାତ କର୍ମ କଲେ । ପୁତ୍ର ଦୁହିଁଙ୍କ ନାମ ଦେଲେ ॥
ପ୍ରଥମ କୁଶ ନାମେ ଖ୍ୟାତ । ଅନ୍ୟ ଲବ ନାମେ ବିଦିତ ॥
ନିଜ କୁଟୀରେ ଦେଲେ ସ୍ଥାନ । ପୁତ୍ରଙ୍କୁ କରନ୍ତି ପାଳଣ ॥
ଅଙ୍ଗଦ ଚିତ୍ରକେତୁ ଦୁଇ । ଲକ୍ଷ୍ମଣ ବୀର୍ଯ୍ୟେ ଜନ୍ମ ହୋଇ ॥
ତକ୍ଷ ପୁଷ୍କଳ ବେନି ଭାଇ । ଭରତ ପତ୍ନୀ ଗର୍ଭେ ହୋଇ ॥
ସୁବାହୁ ଶ୍ରୁତସେନ ବୀରେ । ହୋଇଲେ ଶତ୍ରୁଘ୍ନ କୁମରେ ॥
ଭରଥ ଦିଗବିଜେ କରି । କୋଟି ଗର୍ନ୍ଧବ ବଳ ମାରି ॥
ଯୁଦ୍ଧେ ପାଇଲା ଧନ ଯେତେ । ଦେଲା ସେ ରାମର ଅଗ୍ରତେ ॥
ଶତ୍ରୁଘ୍ନ ଦିଗ ବିଜେ କରି । ଲବଣ ମଧୁପୁତ୍ର ମାରି ॥
ମଥୁରାପୁରୀ ମଧୁ ବନେ । କିଛି ଥାପିଲା ପ୍ରଜାଜନେ ॥
ଯେମନ୍ତେ କେତେ ଦିନ ଅନ୍ତେ । ରାମ ଚଳିଲେ ସୀତା ପଥେ ॥
ରାମ ଆଗମ ଶୁଣି କର୍ଣ୍ଣେ । ତକ୍ଷଣେ ବରୁଣ ଭୁବନେ ॥
ଜାନକୀ ହୋଇଲେ ପ୍ରବେଶ । ମନେ ଅନେକ କରି ରୋଷ ॥
ସୀତାର ନ ପାଇ ଉଦ୍ଦେଶ୍ୟ । ରାମ ଚଳିଲେ ନିଜ ଦେଶ ॥
ରାମ ଯେ ଜାନକୀ ବିଷାଦେ । ମନ ନ କଢେ ରାଜାପଦେ ॥
ସୀତାର ମୁଖ ଚିନ୍ତି ମନେ । ନିଦ୍ରା ନ ମାଡ଼ଇ ନୟନେ ॥
କଣ୍ଠ କୁଣ୍ଠିତ ଶୋକ ପୂରି । ଚିତ୍ତକୁ ନ ପାରନ୍ତି ଧରି ॥
ସ୍ତିରୀ ପୁରୁଷ ସଙ୍ଗ ଯେହି । କେ ସହେ ନରଦେହ ବହି ॥
ସେ ଦିନୁ ବ୍ରହ୍ମଚର୍ଯ୍ୟ କରି । ରାମ ହୋଇଲେ ବ୍ରହ୍ମଚାରୀ ॥
ବର୍ଷ ସହସ୍ର ତୟୋଦଶେ । ନିରତେ ବ୍ରହ୍ମଚାରୀ ବେଶେ ॥
ଅଖଣ୍ଡ ଅଗ୍ନିହୋତ୍ର କଲେ । ବଶିଷ୍ଠ ଆଦି ମୁନି ତୁଲେ ॥
ଦକ୍ଷିଣା ଦେଇ ତୋଷ ଚିତ୍ତେ । ରାମ ମିଳିଲେ ନିଜ ପଥେ ॥
ସଂସାରେ ଥୋଇ ନିଜ ଯଶ । ହୋଇଲେ ସ୍ୱଧର୍ମେ ପ୍ରବେଶ ॥
ବୋଲନ୍ତି ଶୁକ ବ୍ରହ୍ମଋଷି । ଶୁଣ ରାଜନ କୁରୁବଂଶୀ ॥
ରାମ ଚରିତ ତୋ ଅଗ୍ରତେ । ସଂକ୍ଷେପି କହିଲି ମୁଁ ଯେତେ ॥
ଯେ ଯେହା ଶର୍ବଣେ ଶୁଣନ୍ତି । ସୁର୍ଗମ ସଂକଟୁ ତରନ୍ତି ॥
ବୋଲଇ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ରାମ ଚରିତ ପୁଣ୍ୟ କଥା । ଯେଣେ ଖଣ୍ଡଇ ଭବବ୍ୟଥା ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମ ଚରିତଂ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ମହୀପତି । ଶ୍ରୀରଘୁନାଥର ସନ୍ତତି ॥
ଅତିଥି କୁମର ନନ୍ଦନ । ନିଷଧ ତାହା ଘରେ ଜନ୍ମ ॥
ନଭ ତାହାର ପୁତ୍ର ହୋୟେ । ତା ସୁତ ପୁଣ୍ଡରୀକ କାୟେ ॥
ତା ସୁତ କ୍ଷେମଧନ୍ୱ ନାମ । ରୂପେ ସୁନ୍ଦର ଅନୁପାମ ॥
ତାର ତନୟ ଦେବାନିକ । ତାହାର ପୁତ୍ର ଅନିହକ ॥
ତାର ତନୟ ପରିଯାତ୍ର । ବଳସ୍ଥଳ ଯେ ତାର ସୁତ ॥
ତାର ସନ୍ତତି ବଜ୍ରନାଭ । ଅର୍କର ଶ୍ୱରୀରୁ ସମ୍ଭବ ॥
ସଗଣ ତାହାର ତନୟେ । ବିଧୃତି ତାର ବୀର୍ଯ୍ୟେ ହୋୟେ ॥
ହିରଣ୍ୟନାଭ ତା ସନ୍ତତି । ଯୋଗ ବିଦ୍ୟାରେ ଯାର ଖ୍ୟାତି ॥
ତା ଗୁରୁ ଅଟନ୍ତି ଜୈମିନି । ତା ଶିଷ୍ୟ ଯଜ୍ଞବଳ୍କ୍ୟ ମୁନି ॥
ଅଭ୍ୟାସ ଯାର ଚାରିବେଦ । ତେଜେ ହୃଦୟ ଗ୍ରନ୍ଥ ଭେଦ ॥
ହିରଣ୍ୟନାଭ ତା କୁମର । ଉପନିଷେଦ ବହେ ସାର ॥
ପୁଷ୍ପ ତାହାର ସୁତ ହୋଇ । ସେ ନିତ୍ୟେ ଯଜ୍ଞ ଅଭ୍ୟାସଇ ॥
ତାର କୁମର ଧ୍ରୁବସିନ୍ଧି । ଯା ବଂଶେ ଥାଇ ଅଷ୍ଟନିଧି ॥
ତାର ତନୟ ସୁଦର୍ଶନ । ଯା ସୁତ ହୋୟେ ଅଗ୍ନିବର୍ଣ୍ଣ ॥
ଶୀଘ୍ର ଜନମ ତାହାଠାରୁ । ତାହାର ସୁତ ଅଟେ ମେରୁ ॥
କଳାପ ଗ୍ରାମେ ବସିଧ୍ୟାନେ । ଯୋଗ ସାଧଇ ଯେବା ଜ୍ଞାନେ ॥
ଶୁଣ କହିବା ତୋ ଅଗ୍ରତେ । ଶୁଣ ତୁ ଯେକ ମନ ଚିତ୍ତେ ॥
କଳିର ଅନ୍ତେ ସୂର୍ଯ୍ୟ ବଂଶ । ସେ ପୁଣି କରିବ ପ୍ରକାଶ ॥
ପ୍ରସୁଶ୍ରୁତ ତାର ତନୟେ । ତା ସୁତ ସିନ୍ଧି ନାମ ବହେ ॥

ଅମର୍ଷଣ ଯେ ତାର ସୁତ । ମହସ୍ୱାନ ଯେ ତହୁଁ ଜାତ ॥
ତାର କୁମର ବିଶ୍ୱ ବାହୁ । ତାର ମହିମା କେବା କହୁ ॥
ପ୍ରସେନଜିତ ତାର ପୁତ୍ର । ତକ୍ଷକ ନାମେ ତାର ସୁତ ॥
ବୃହତବଳ ତାର ସୁତ । ଯେ ପିତା ଅର୍ଥେ ରଣେ ହତ ॥
ଇକ୍ଷ୍ୱାକୁ ବଂଶେ ଯେତେ ରାଜା । ଧର୍ମେ ପାଳିଲେ ଜନପ୍ରଜା ॥
ଶୁଣ ପରୀକ୍ଷ କହୁ ଯେବେ । ଭବିଷ୍ୟେ ଯେତେ ଉପୁଜିବେ ॥
ବୃହଦବଳ ପୁତ୍ର ଶୁଣ । ନାମ ହୋଇବ ବୃହଦ୍ରାଣ ॥
ତାର ତନୟ ଉରୁକ୍ରୀୟା । ବସବୃଦ୍ଧ ତାର ତନୟ ॥
ତାର କୁମର ପ୍ରତିବ୍ୟୋମା । ଅଦ୍ଭୁତ ଭାନୁର ମହିମା ॥
ଦିବାକ ତାହାର ସନ୍ତତି । ସେ ହେବ ଯୁଦ୍ଧେ ସେନାପତି
ତାର ହୋଇବ ସହଦେବ । ତହୁଁ ବୃହଦଶ୍ୱ ସମ୍ଭବ ॥
ତାର କୁମର ଭାନୁ ମାନ । ପ୍ରତିକାଶ୍ୱ ତାର ନନ୍ଦନ ॥
ସୁପ୍ରତିକ ତହୁ ସମ୍ଭବ । ତା ପୁତ୍ର ହେବ ମରୁଦେବ ॥
ତାର ନନ୍ଦନ ସୁନକ୍ଷେତ୍ର । ପୁଷ୍କର ହେବ ତାର ପୁତ୍ର ॥
ତାହାର ଅନ୍ତରୀକ୍ଷ ସୁତ । ସୁତପା ତା ପୁତ୍ର ବିଦିତ ॥
ଅମିତ୍ରଜିତ ତା ନନ୍ଦନ । ତତହୁ ବୃହଦ୍ରାଜ ଜନ୍ମ ॥
ତହୁ ବର୍ହି ହେବ ଉଦୟ । ତା ସୁତ ହେବ କୃତଞ୍ଜୟ ॥
ତହୁଁ ଉପୁଜେ ରଣଞ୍ଜୟ । ତା ପୁତ୍ର ନାମଟି ସଂଜୟ ॥
ତାହାର ପୁତ୍ର ଶାକ୍ୟନାମ । ଶୁଦ୍ଧୋଦ ତାହାର ନନ୍ଦନ ॥
ତା ଠାରୁ ଜାତ ଯେ ଲାଙ୍ଗଳ । ପ୍ରସେନଜିତ୍ ତାର ବଳ ॥
ତାହାର ନନ୍ଦନ କ୍ଷୁଦ୍ରକ । ତା ତହୁ ହୋଇବ ରଣକ ॥
ତା ସୁତ ସୁରଥ ହୋଇବ । ସୁମିତ୍ର ପୁତ୍ରେ ଶେଷ ହେବ ॥
ଇକ୍ଷ୍ୱାକୁ ବଂଶେ ରାଜା ଯେତେ । ତୋତେ କହିଲି ଭବିଷ୍ୟତେ ॥
ସୁମିତ୍ର ଅନ୍ତେ କଳିଯୁଗେ । ଯେତେ ନୃପତି ଗଲେ ଭୋଗେ
ବୋଲଇ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ଆଦିତ୍ୟ ବଂଶାନୁ ଚରିତେ । ଯେ ଅବା ଭୂତ ଭବିଷ୍ୟତେ ॥
ତାହାର ଜନ୍ମ ଯେ ସଂସାରେ । ଶୁଣନ୍ତେ ସର୍ବ ପାପ ହରେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ଶ୍ରୀରାମ ବଂଶାନୁକୀର୍ତ୍ତନେ ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ନିମି ଯେ ଇକ୍ଷ୍ୱାକୁର ସୁତ । ତା ବଂଶେ ଯେତେ ରାଜା ଜାତ ॥
ଯେ କର୍ମ କଲେ ଅନୁଭବେ । ଶୁଣ କହିବା ତୋତେ ଯେବେ ॥
ସେ ନିମି ବଶିଷ୍ଠ ସଙ୍ଗତେ । ବସି ଭାଳିଲା ଯଜ୍ଞ ଅର୍ଥେ ॥
ବଶିଷ୍ଠ ମୋର ଯଜ୍ଞ କର । ଋତ୍ୱ୍ୟ ଯେ ଚାରିବେଦୁବର ॥
ବଶିଷ୍ଠ ତାର ମୁଖ ଚାହିଁ । ବୋଇଲେ ସ୍ନେହଭର ହୋଇ ॥
ଇନ୍ଦ୍ର ବରଣ କଲା ମୋତେ । ତୋ ଯଜ୍ଞ କରିବି କେମନ୍ତେ ॥
ମୁ ଆଗେ ଇନ୍ଦ୍ର ଯଜ୍ଞ ସାରି । ତୋ ଯଜ୍ଞେ ଚାରି ବେଦୁ ବରି ॥
ପଛେ କରିବି ଯଜ୍ଞ ତୋର । ସେ ନିମି ନ ଦେଲା ଉତ୍ତର ॥
ବଶିଷ୍ଠ ଇନ୍ଦ୍ର ଯଜ୍ଞେ ଗଲେ । ଅନ୍ୟ ବ୍ରାହ୍ମଣ ନିମି ବୋଲେ ॥
ଯଜ୍ଞ ଆରମ୍ଭିଲେ ହରଷେ । ସଂକଳ୍ପ ସହସ୍ର ବରଷେ ॥
ଯେମନ୍ତେ ଇନ୍ଦ୍ର ଯାଗ ସାରି । ନିମିର ବାକ୍ୟ ସେ ସୁମରି ॥
ସେ ଯଜ୍ଞ କରିବାର ଆଶେ । ବେଗେ ମିଳିଲେ ନିମିପାଶେ ॥
ଯଜ୍ଞ ଆରମ୍ଭ ଦେଖି ତାର । କୋପିଲେ ବ୍ରହ୍ମାର କୁମର ॥
ବୋଇଲେ କୋପଭର ହୋଇ । ମୋତେ ଅବଜ୍ଞା କଲୁ ତୁହି ॥
ତୋର ଜୀବନେ ନାହିଁ କାର୍ଯ୍ୟ । ମରଣ ହେଉ ତୋତେ ଆଜ ॥
ତା ଶୁଣି ନିମି କୋପ ବହି । ବୋଲେ ଜୀବନ ଛାଡ଼ ତୁହି ॥
ତକ୍ଷଣେ ନିମି ଶାପ୍ୟ ଫଳେ । ବଶିଷ୍ଠ ବସିଲେ ନିଶ୍ଚଳେ ॥
ଜୀବନ ଗଲା ଦେହ ଛାଡ଼ି । ତକ୍ଷଣେ ଶୂନ୍ୟମାର୍ଗେ ଉଡ଼ି ॥
ଉର୍ବଶୀ ଗର୍ଭେ ହୋଇ ଜନ୍ମ । ମିତ୍ରା ବରୁଣଙ୍କ ନନ୍ଦନ ॥
ନିମି ଯେ ଯଜ୍ଞଶାଳେ ଥିଲା । ତକ୍ଷଣେ ଜୀବନ ଛାଡ଼ିଲା ॥
ଜୀବନ ଯଜ୍ଞାଶାଳେ ପଶି । ରହିଲା ଯଜ୍ଞସ୍ତମ୍ଭ ଗ୍ରାସି ॥
ନିମି ଶ୍ୱରୀର ବିପ୍ରଜନେ । ବିଚାର କଲେ ଅନୁମାନେ ॥
ତୈଳ ସୁଗନ୍ଧ ଦ୍ରବ୍ୟ ଦେଇ । ନିମି ଶ୍ୱରୀର ତହିଁ ଥୋଇ ॥
ବୋଇଲେ ପୂର୍ଣ୍ଣାହୁତ ବେଳେ । ଶ୍ୱରୀର ଦହିବା ଅନଳେ ॥
ଯେମନ୍ତେ ବୋଲି ଯଜ୍ଞକଲେ । ସମ୍ପୂର୍ଣ୍ଣେ ପୂର୍ଣ୍ଣାହୁତି ଦେଲେ ॥
ଇନ୍ଦ୍ରାଦି ଯେତେ ଦେବେ ଥିଲେ । ବିପ୍ରେ ଯେ ଦକ୍ଷିଣା ପାଇଲେ ॥
ଦେବତା ଋଷି ତୋଷ ମନେ । ବର ଯାଚିଲେ ଯଜମାନେ ॥
ନିମିର ଦେହେ ପଶୁ ପ୍ରାଣ । ଆମ୍ଭେ କରିବା ପରିତ୍ରାଣ ॥
ନିମି ଜୀବନ ସ୍ତମ୍ଭେ ଥିଲା । ଦେବଙ୍କୁ ପ୍ରତିବାକ୍ୟ କଲା ॥
ମୋର ଶ୍ୱରୀରେ କାର୍ଯ୍ୟ ନାହିଁ । ଅସାର ଅନିତ୍ୟ ଯେ ଦେହୀ ॥
ସକଳ ଦୁଃଖ ଯେ ଶ୍ୱରୀରେ । ମରଣ ଭୟେ ନିରନ୍ତରେ ॥
ଜନ୍ମ ମରଣ ରାତ୍ର ଦିନେ । ଅଶେଷ ବ୍ୟାଧି ସନ୍ନିଧାନେ ॥
ମୂତ୍ର ପୁରୀଷ କୃମି ସ୍ଥାନ । ମାୟାରେ ହୋଇ ହତଜ୍ଞାନ ॥
କାମାଦି ଶତ୍ରୁ ମଧ୍ୟେ ରହେ । ନିରତେ ଅହଙ୍କାର ବହେ ॥
ମୃତ୍ୟୁ ସମୁଦ୍ରେ ନିତ୍ୟେ ବୁଡ଼େ । ପୁଣି ପଶଇ ପୁଣି ଛାଡ଼େ ॥
ପୁରୀଷ ଭସ୍ମ କୀଟ ଅନ୍ତେ । ଦୁର୍ଗନ୍ଧ ବହଇ ନିରତେ ॥

ରୋଗଙ୍କ ମନ୍ଦିର ମାତର । ସ୍ୱଭାବେ ଦୁଃଖ ଯେ ଶରୀର ॥
ଯେମନ୍ତେ ନିମିର ବଚନେ । ସର୍ବ ଦେବତା ତୋଷ ମନେ ॥
ବୋଇଲେ ପ୍ରମାଣ ଯେବାଣୀ । ପୁଣି କ୍ଷଣକେ ମନେ ଗୁଣି ॥

## ଦେବଗଣ ଉବାଚ

ବୋଇଲେ ଶୁଣ ନରନାଥ । ଆମ୍ଭର ବର ନୋହୁଁ ବ୍ୟର୍ଥ ॥
ସକଳ ଜନ୍ତୁଙ୍କ ଲୋଚନେ । ବସ ତୁ ନିମି ସର୍ବସ୍ଥାନେ ॥
ନିମିଷ ମତେ ସଂଖ୍ୟାକର । କାଳର ଗଣନା ବେଭାର ॥
ଯମନ୍ତେ ଦେବଙ୍କ ବଚନେ । ବସିଲା ଜନ୍ତୁଙ୍କ ନୟନେ ॥
ଆଧାତ୍ମଗତି ତାର ନିତ୍ୟ । ଯେବେ ହୋ ଶୁଣ କୁରୁନାଥ ॥
ଅରାଜ୍ୟ ଭଯେ ମହାଜନେ । ସକଳେ ବିଚାରିଲେ ମନେ ॥
ଆମ୍ଭେ ଯେ ବେଦ ମନ୍ତ୍ର ସ୍ୱରେ । କୁଶେ ମନ୍ଥିବା ଯେ ଶରୀରେ ॥
ଯେମନ୍ତେ ପୁତ୍ର ଜନ୍ମ ହୋଇ । ନିର୍ଭୟେ ପ୍ରଜାକୁ ପାଳଇ ॥
ଯେମନ୍ତେ ବିଚାରି ମନରେ । ତକ୍ଷଣେ ନିମିର ଶରୀରେ ॥
କୁଶେ ମନ୍ଥିଲେ ବେଦ ସ୍ୱରେ । ତକ୍ଷଣେ ଜନ୍ମିଲା କୁମରେ ॥
ଜନ୍ମନ୍ତେ ଜନକ ହୋଇଲା । ବିଦେହ ନାମ ସେ ପାଇଲା ॥
ମନ୍ଥନେ ମିଥିଳା ତା ନାମ । ବହେ ଅଶେଷ ଗୁଣ ଗ୍ରାମ ॥
ଯେମନ୍ତେ ନିମି ରାଜାବଳା । ମିଥିଳା ପୁରୀ ବସାଇଲା ॥
ତା ପୁତ୍ର ଉଦାବସୁ ନାମ । ନନ୍ଦି ବର୍ଦ୍ଧନ ତା ନନ୍ଦନ ॥
ଶୁକେତ ନାମେ ତାର ସୁତ । ତାର ସନ୍ତତି ଦେବରାତ ॥
ଦେବରାତରୁ ବୃହଦ୍ରଥ । ତା ତହୁଁ ମହାବୀର୍ଯ୍ୟ ଜାତ ॥
ସୁଧୃତି ତାହାର କୁମର । ତା ପୁତ୍ର ଧୃଷ୍ଟକେତୁ ବୀର ॥
ହର୍ଯ୍ୟଶ୍ୱ ତାହାର କୁମର । ମରୁ ତାହର ବଂଶଧର ॥
ପ୍ରତୀପକ ହୋଯେ ନନ୍ଦନ । ତା ସୁତ କୃତରଥ ନାମ ॥
ତାର କୁମର ଦେବମୀଢ଼ । ଯା ଚିତ୍ତ ଯୋଗାଭ୍ୟାସେ ଦୃଢ଼ ॥
ବିସୃତ ତାହାର ସନ୍ତତି । ତାର କୁମର ମହାଧୃତି ॥
ତା ସୁତ କୃତିରାତ ନାମ । ଜୀବେ ଅଶେଷ ଗୁଣଗ୍ରାମ ॥
ତାର ସନ୍ତତି ମହାରୋମ । ରୂପେ ଶଶାଙ୍କ ନୋହେ ସମ ॥
ସୁବର୍ଣ୍ଣ ରୋମାତା ତନୟେ । ତା ତହୁଁ ହ୍ରସ୍ୱ ରୋମାହୋୟେ ॥
ତାର କୁମର ଶୀରଧ୍ୱଜ । ତାର ମହିମା ରାଜ୍ୟେ ରାଜ ॥
ବିପ୍ରେ ଯେ ତାର ଯଜ୍ଞକାଳେ । ମହୀକି ଚଷିଲେ ଲଙ୍ଗଳେ ॥
ଲଙ୍ଗଳ ଅଗ୍ରେ ସୀତା ଜାତ । ଯେଣୁ ସେ ଶିରଧ୍ୱଜଖ୍ୟାତ ॥
ତାର କୁମର କୁଶଧ୍ୱଜ । ଧର୍ମଧ୍ୱଜ ତାର ତନୁଜ ॥
ତା ତହୁଁ ବେନି ପୁତ୍ର ଜାତ । ଶୁଣ ତାହାଙ୍କର ଚରିତ୍ର ॥
ସେ କୃତଧ୍ୱଜ ମିତ୍ରଧ୍ୱଜ । ଶୁଣ ତାହାଙ୍କର ତନୁଜ ॥
କୃତଧ୍ୱଜର କେଶିଧ୍ୱଜ । ଖାଣ୍ଡିକ୍ୟ ଆନର ତନୁଜ ॥
ଖାଣ୍ଡିକ୍ୟ କେଶିଧ୍ୱଜ ବେନି । ସାଧିଲେ ଯୋଗ ବିଦ୍ୟା ଘେନି ॥
କେଶିଧ୍ୱଜର ଠାରୁ ଭୟେ । ପଠାଇ ଗଲା ଆନ ଠାୟେ ॥
କେଶିଧ୍ୱଜର ଭାନୁମାନ । ତାର ତନୟ ଶତଦ୍ୟୁମ୍ନ ॥
ଶୁଚି ନାମରେ ତା ତନୁଜ । ତାର ତନୁଜ ସନଦ୍ୱାଜ ॥
ଉର୍ଦ୍ଧକେତୁ ଯେ ତହୁଁ ଜାତ । ତାହାର ପୁତ୍ର ପୁରୁଦିତ ॥
ଅରିଷ୍ଟ ନିମି ସୁତ ତାର । ଶ୍ରୁତାୟୁ ତାହାର କୁମର ॥
ତାର ତନୟ ସୁପାର୍ଶ୍ୱବ । ତା ସୁତ ଚିତ୍ରରଥ ଲେଖ ॥
କ୍ଷମାଧି ନାମେ ତାର ସୁତ । ତାର ତନୟ ସମରଥ ॥
ତାର ତନୟ ସତ୍ୟରଥ । ଉପଗୁରୁଯେ ତାରସୁତ ॥
ତାହର ପୁତ୍ର ଉପଗୁପ୍ତ । ବିଶ୍ୱନନ୍ତ ଯେ ତାର ସୁତ ॥
ବିଶ୍ୱନନ୍ତର ଯେ ଅପତ୍ୟ । ଯଯୁର୍ବାନ ତାର ଯେ ସୁତ ॥
ପୁତ୍ର ତାହାର ସୁଭାଷଣ । ତହୁଁ ଶ୍ରୁତ ହୋୟେ ଜନମ ॥
ତାହର ପୁତ୍ର ଅଟେ ଜୟ । ବିଜୟ ତାହାର ତନୟ ॥
ଋତୁ ତା ତହୁଁ ଉତପନ୍ନ । ଶୁନକ ତାହର ସନ୍ତାନ ॥
ବୀତହବ୍ୟ ଯେ ତା ସନ୍ତତି । ତାହାର ପୁତ୍ର ଅଟେ ଧୃତି ॥
ତାହାର ପୁତ୍ର ବହୁଳାଶ୍ୱ । ତା ସୁତ କୃତି ମହାଯଶ ॥
ଜନକ ବଂଶେ ରାଜା ଯେତେ । କହିଲୁ ଭୂତ ଭବିଷ୍ୟତେ ॥
ସେ ସର୍ବେ ଯୋଗ ବିଦ୍ୟା ସାଧି । ତରିଲେ ସଂସାର ଜଳଧି ॥
ବୋଇଲେ ବିପ୍ର ଜଗନ୍ନାଥ । ନବମସ୍କନ୍ଧେ ଭାଗବତ ॥
ରବିର ବଂଶେ ରାଜା ଯେତେ । ସେ କଥା ବଂଶାନୁଚରିତେ ॥
ତୋତେ କହିଲି ପ୍ରିୟଭାବେ । ଯେ ସୋମବଂଶ ଶୁଣଯେବେ

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ସୂର୍ଯ୍ୟବଂଶ କୀର୍ତ୍ତନଂ ନାମ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

ଏବେ ହୋ ସୋମବଂଶ ଶୁଣ । ତେବେ ତରିବୁ ତିନିଗୁଣ ॥
ଯେ ବଂଶେ ପୁରୁରବା ଆଦି । ସେ ଭାବେ ଯେ ଅବା ସଂପାଦି ॥
ଯଶ ରହିଲା ରବି ତଳେ । ସର୍ବେ ଚଳିଲେ କାଳବଳେ ॥
ସହସ୍ର ଶିର ଯେ ଅନନ୍ତ । ତା ନାଭିପଦ୍ମୁ ବ୍ରହ୍ମା ଜାତ ॥
ମରୀଚି ଆଦି ସପ୍ତଋଷି । ଧ୍ରୁବ ମଣ୍ଡଳ ରଥେ ବସି ॥
ଭ୍ରମନ୍ତି ଧ୍ରୁବ ଚକ୍ରବଳେ । ଉତ୍ତର ଆକାଶ ମଣ୍ଡଳେ ॥

ତାହାଙ୍କ ମଧ୍ୟେ ଅତ୍ରିମୁନି । ତପ କରନ୍ତି ଯୋଗଘେନି ॥
ତାର ଲୋଚନୁ ଅଶ୍ରୁଜଳେ । ଧ୍ୟାନ କରନ୍ତି ଯୋଗବଳେ ॥
ପୁରୁଷେ ହୋଇଲା ପ୍ରକାଶ । ତେଜେ ଗଞ୍ଜିଲା ଦଶଦିଶ ॥
ଅମୃତମୟେ ମନୋରମ । ତାହାର ନାମ ଦେଲା ସୋମ ॥
ବିପ୍ର ଓଷଧି ଉଡୁଗଣେ । ବ୍ରହ୍ମା ସ୍ଥାପିଲା ରାଜାପଣେ ॥
ସେ ସୋମ ରାଜସୂୟ କରି । ତିନି ଭୁବନେ ଅଧିକାରୀ ॥
ବଳେ ଜିଣିଲା ତିନିପୁର । ଏବେହୋ ଶୁଣ ନୃପବର ॥
ସୁନ୍ଦର ରୂପେ ମତ୍ତ ଗର୍ବେ । ନୃପତି ଲକ୍ଷ୍ମୀର ସ୍ୱଭାବେ ॥
ଏମନ୍ତେ ବୃହସ୍ପତୀ ନାରୀ । ଗଙ୍ଗା ଉଦୁକେ ସ୍ନାନକରି ॥
ରୂପେ ସୁନ୍ଦର ମନୋହର । ସ୍ୱଭାବେ ତାରା ନାମ ତାର ॥
ତାଙ୍କର ରୂପ ଗୁଣ ଚାହିଁ । ଅନଙ୍ଗ ମୋହେ ବାଣ ପାଇ ॥
ସ୍ୱଭାବେ ରତୁ ସ୍ନାନକାଳେ । ସୋମ ହରିଲା ତାକୁବଳେ ॥
ସେକଥା ଶୁଣି ବୃହସ୍ପତୀ । ତାର ହରଣେ ଦୁଃଖମତି ॥
ସୋମର ଘରେ ରାତ୍ରକାଳେ । ଅନେକ ପ୍ରକାରେ ମାଗିଲେ ॥
କେବେ ହେଁ ତାହାକୁ ନଦେଲା । ଅନେକ ଅସମାନ କଲା ॥
ସେ ଗୁରୁଦେବ ମଧ୍ୟେ ଆସି । ଇନ୍ଦ୍ରକୁ କହିଲେ ବିଶ୍ୱାସୀ ॥
ଇନ୍ଦ୍ରର ତୁଲେ ଦେବବଳ । ଚଳନ୍ତେ ଶୁଭେ ମୁଖଗୋଳ ॥
ସେ କଥା ଶୁଣି ଶୁକ୍ର ବାଦେ । ମିଳିଲା ଅସୁରଙ୍କ ମଧ୍ୟେ ॥
ଅସୁର ବଳ ସଙ୍ଗକରି । ଧାଇଁଲା ସୋମ ପକ୍ଷଧରି ॥
ଇନ୍ଦ୍ରର ତୁଲେ ଦେବଗଣ । ଏମନ୍ତେ ଦେବା ସୁରରଣ ॥
ପ୍ରକୋପେ ବଢ଼ିଲା ସଂଗ୍ରାମ । ତାରକାମୟ ଯୁଦ୍ଧ ନାମ ॥
ତାରାର ଅର୍ଥେ ଯୁଦ୍ଧଯେଣୁ । ତାରକାମୟ ନାମ ତେଣୁ ॥
ଦେବ ଅସୁର ଘୋର ରଣେ । ବ୍ରହ୍ମା ମିଳିଲେ ତତକ୍ଷଣେ ॥
ଅନେକ ନିଉଛାଳି କଲେ । ବୃହସ୍ପତୀକି ତାରା ଦେଲେ ॥
ରଣ ନିବାରି ଚାରି ହସ୍ତେ । ମିଳିଲେ ସୋମର ଅଗ୍ରତେ ॥
ସେ ଗୁରୁ ତାରାକୁ ଅନାଇ । ବୋଲନ୍ତି ବ୍ରହ୍ମାମୁଖ ଚାହିଁ ॥
ଭୋ ତାତ ଦେଖ ତୋ ଅଗ୍ରତେ । ଗର୍ଭ ଏ ଧରିଛି ଗୁପତେ ॥
କେମନ୍ତେ ଛୁଇଁବି ଶରୀର । ଏହାରେ କାର୍ଯ୍ୟ ନାହିଁ ମୋର ॥
କାହାର ବୀର୍ଯ୍ୟ ଗର୍ଭେଅଛି । କେମନ୍ତେ ପାରିବି ମୁଁ ଇଚ୍ଛି ॥
ତାହାର ଗର୍ଭ ଚାହିଁ କୋପେ । ଗୁରୁ ବୋଲନ୍ତି ମନ ଦୁଃଖେ ॥
ତୁ ମୋତେ ଛୁଇଁବୁ କେମନ୍ତେ । ଭସ୍ମ କରିବି ଆଜ ତୋତେ ॥
ଏମନ୍ତେ ଶୁଣି ସେ ଉତ୍ତର । କମ୍ପଇ ତାରାର ଶରୀର ॥
ତକ୍ଷଣେ ଗର୍ଭ ପ୍ରସବିଲା । ସୁନ୍ଦରେ ଜଗତ ମୋହିଲା ॥
କାନ୍ଦଇ ପଡ଼ି ଭୂମିଗତେ । ଆଶ୍ଚର୍ଯ୍ୟ ଦେଖନ୍ତି ସମସ୍ତେ ॥
ସୁନ୍ଦର ଦେଖି ତା ବଦନ । କଂପିଲା ବୃହସ୍ପତୀ ମନ ॥
ବୋଲଇ ମୋର ପୁତ୍ର ଏହି । ସୋମ ବୋଲଇ ତାହା ଚାହିଁ ॥
ଦେଖ ଏ ମୋହର କୁମର । ମୋହର ପ୍ରାୟେକ ସୁନ୍ଦର ॥
ଗୁରୁ ବୋଲନ୍ତି ମୋର ସୁତ । ଏମନ୍ତେ ଶୁଭିଲା ଅନର୍ଥ ॥
ସକଳ ମୁନିଗଣେ ଥିଲେ । ତାରାକୁ ବିଶ୍ୱାସେ ପୁଚ୍ଛିଲେ ॥
ତା ଶୁଣି ଅଧୋମୁଖ ହୋଇ । ତାରା ରହିଲା ଲଜ୍ଜ୍ୟାପାଇ ॥
କୁମର ଭୂମିଗତେ ଥାଇ । ବୋଲେ ଜନନୀ ମୁଖ ଚାହିଁ ॥
ନୋହିଲେ ଶାପ ଦେବିତୋତେ । ଲଜ୍ଜ୍ୟା ହୋଇଲା ବଡ଼ମୋତେ ॥
ଦୃବୃତ୍ତି ପଣୟେ ତୋହର । କହ ମୁଁ କାହାର କୁମର ॥
ଏମନ୍ତେ ପୁତ୍ର ବାକ୍ୟ ଶୁଣି । ତାରାକୁ ରାଇ କୁଶପାଣି ॥
ବୋଲନ୍ତି କୋମଳ ବଚନେ । ନିର୍ଭୟେ କରି ତାର ମନେ ॥
ଭୋ ତାରା ଲଜ୍ୟା ଦୂରକର । କହ ଏ କାହାର କୁମର ॥
ତା ଶୁଣି ଅଧୋମୁଖ ହୋଇ । ବୋଲେ ସୋମର ଗର୍ଭ ଏହି ॥
ତକ୍ଷଣେ ସୋମ କୋଳକଲା । ବ୍ରହ୍ମା ତାହାକୁ ନାମଦେଲା ॥
ବୋଧିଲା ରୂପଗୁଣ ଯେଣୁ । ବୁଧ ହୋଇଲା ନାମତେଣୁ ॥
ସେ ବୁଧ ଇଳା କନ୍ୟା ଗର୍ଭେ । ମୁଁ ତୋତେ କହିଅଛି ପୂର୍ବେ ॥
ପୁରୁରବାକୁ ଜନ୍ମକଲା । ଯେକାଳେ ତପ ବଳେ ଥିଲା ॥
ଏବେହୋ ଶୁଣ ନରନାଥ । ସୋମର ବଂଶାନୁଚରିତ ॥
ସୁର ଭୁବନେ ଏକଦିନେ । ଉର୍ବଶୀ ଗନ୍ଧର୍ବ ଗାୟନେ ॥
ମିତ୍ର ବରୁଣକୁ ଜିଣିଲା । ସେ ତାକୁ କୋପେ ଶାପ ଦେଲା
ବୋଇଲା ନରଲୋକେ ଯାଅ । ସ୍ୱର୍ଗ ଭୁବନେ ତୁ ନଥାଅ ॥
ତକ୍ଷଣେ ଅଧୋମୁଖ ହୋଇ । ମିଳିଲା ନରଲୋକେ ଯାଇ ॥
ଗିରି କନ୍ଦର ବନେବୁଲେ । ସ୍ୱାମୀ ନଳଭେ ଅମ୍ୟାତୁଲେ ॥
ଏମନ୍ତେ ଭ୍ରମନ୍ତେ ତରୁଣୀ । ପୁରୁରବାର ବାକ୍ୟଶୁଣି ॥
କନ୍ଦର୍ପ ପ୍ରାୟେ ରୂପ ରାଶି । ତେଜେ ମଞ୍ଜାଇ ରବିଶଶୀ ॥
ଏମନ୍ତେ ତାହାର ସଂଗତେ । ଉର୍ବଶୀ ମିଳିଲା ଏକାନ୍ତେ ॥
ଉତ୍ପଳ ହରଷ ଲୋଚନେ । ପୁରୁରବାର ସନ୍ନିଧାନେ ॥
ସେ ରାଜା ତାର ମୁଖଚାହିଁ । ତକ୍ଷଣେ କାମବଶ ହୋଇ ॥
ଗଭୀର ବାକ୍ୟେ ତାକୁ ବଶେ । ରୋମ ହରଷ ସର୍ବ ଦେହେ ॥
ଆସ ସୁନ୍ଦରୀ ବସ ଯେଥେ । ଭଲା ଅଇଲଟି ବିପଥେ ॥
ମିଳିଲୁ ମୋହର ସଙ୍ଗେତେ । କହ କି କରିବି ମୁଁ ତୋତେ ॥
ମୋ ସଙ୍ଗେ ରମ ତୁ ଏକାନ୍ତେ । ସୁନ୍ଦରୀ ରହ ଦିନାକେତେ ॥

### ଉର୍ବଶୀ ଉବାଚ

ତୋ ରୂପ ଦେଖି ହେ ରାଜନ । ଅନଙ୍ଗେ ବିନ୍ଧିଲା ମୋ ମନ ॥
ତୁ ମୋର ତୁଲେ ସତ୍ୟକର । ନିଶ୍ଚେ ବରିବି ତୋତେ ବର ॥

ଦେଖ ଏ ମେଷପୁତ୍ର ଦୁଇ । ତୁଲେ ଅଛନ୍ତି ବେନିଭାଇ ॥
ଅତ୍ୟନ୍ତ ପ୍ରିୟ ଏ ମୋହର । ଏହାକୁ ଯତ୍ନେ ରକ୍ଷାକର ॥
ଉଲଗ୍ନ ନଦେଖିବି ତୋତେ । ଘୃତ ଆହାର ମୋରନିତ୍ୟେ ॥
ଏ ସତ୍ୟ ପ୍ରତିପାଳୁ ଯେବେ । ତୋ ସଙ୍ଗେ ରହିବି ମୁଁ ତେବେ
ଏମନ୍ତ ତାର ମୁଖୁ ଶୁଣି । ସତ୍ୟ ସେ କଲା ନୃପମଣି ॥
ଉର୍ବଶୀ ରୂପେ ହୋଇ ବଶ । କଲା ସେ ଅନେକ ବିଶ୍ୱାସ ॥
ବିମାନେ ବସି ତା ବିଶ୍ୱାସେ । ଗିରି କାନନେ ନାନା ଦେଶେ ॥
ବାଇଲା ରଥ ଆଦି ବନେ । ରମିଲା ହରଷିତ ମନେ ॥
ଜଳବେହାରେ ନାନା ଦେଶେ । ପଦ୍ମ କୁମୁଦ ଗନ୍ଧବାସେ ॥
ଉର୍ବଶୀ ସଂଗେ ସଂଗ କଲା । ରାତ୍ର ଦିବସ ନ ଜାଣିଲା ॥
ଏବେହୋ ଶୁଣ ରାଜଋଷି । ଇନ୍ଦ୍ର ଯେ ନଦେଖି ଉର୍ବଶୀ ॥
ମିତ୍ର ବରୁଣ ଶାପ ଘୋରେ । ଉର୍ବଶୀ ଅଛି ମଞ୍ଚପୁରେ ॥
ରମଇ ପୁରୁରବା ତୁଲେ । ତା ଶୁଣି ପୁରନ୍ଦର ବୋଲେ ॥
ତୁମ୍ଭେ ହୋ ମର୍ତ୍ତ୍ୟଲୋକେ ଯାଇ । ଉର୍ବଶୀ ଆଣ ବେଗ ହୋଇ ॥
ସ୍ୱର୍ଗ ନ ଶୋହେ ତା ବିହୁନେ । ଚନ୍ଦ୍ର ନଥିଲେ ରାତ୍ର ଯେହ୍ନେ ॥
ତକ୍ଷଣେ ଇନ୍ଦ୍ର ଆଜ୍ଞା ଶିରେ । ଘେନି ସେ ଗଲେ ମର୍ତ୍ତ୍ୟପୁରେ
ମିଳିଲେ ପୁରୁରବା ପୁରେ । ରାତ୍ରେ ନିବିଡ଼ ଅନ୍ଧକାରେ ॥
ତକ୍ଷଣେ ଦେବେ ମାୟା ବଳେ । ଉର୍ବଶୀ ମେଷ ଚୋରାଇଲେ ॥
ସେ ବେନି ମେଷ ଶୂନ୍ୟେ ଯାନ୍ତେ । ଉଚ୍ଚେ ରୋଦନ କଲେ ପଥେ
ତା ଶୁଣି ନିଦ୍ର ଭଙ୍ଗ ହୋଇ । ବିକଳେ ଉର୍ବଶୀ ବୋଲଇ ॥
କାନ୍ଦଇ ଶିରେ କର ଦେଇ । ମୋ ପୁତ୍ର କେ ନେଲା ଚୋରାଇ ॥
ମୁଁ ଏଡ଼େ ହୀନ ଆଶ୍ରେ କଲି । ଏ ପୁରେ ଅନାଥ ହୋଇଲି ॥
ଭ୍ରମିଲି ନପୁଂସକ ତୋଳେ । ପୁତ୍ର ମୋହର କେଣେ ଗଲେ ॥
ଏ ରାଜା ନାରୀଙ୍କର ପ୍ରାୟେ । ଶୋଉଛି ନିଦ୍ରା ସୁଖ ମୋହେ ॥
ଯେସନ ନଂପୁସକ ହୋଇ । ଏମନ୍ତ ଦେଖିଲାତ ନାହିଁ ॥
ଏମନ୍ତେ ରୋଦନ କରନ୍ତେ । ରାଜାର ଶୟନେ ଏକାନ୍ତେ ॥
ଉର୍ବଶୀ କଟୁ ବାକ୍ୟ ଶୁଣି । ନିଦ୍ରା ତେଜିଲା ନୃପମଣି ॥
ବ୍ୟଥିତ ଉର୍ବଶୀ ବଚନେ । ପ୍ରତାପେ କୁଞ୍ଜର ଯେସନେ ॥
ଉଲଗ୍ନେ ରଜା ଥିଲା ଶୋଇ । ଅନ୍ଧାରେ ମୋହଗତ ହୋଇ ॥
ପଥେ ସେ ରେ ରେ କାର ଭଜେ । ମେଷକୁ ଛାଡ଼ିଲେ ଗନ୍ଧର୍ବେ ॥
ମିଳିଲା ଉର୍ବଶୀ ଅଗ୍ରତେ । ମେଷକୁ ଘେନି ବାମହସ୍ତେ ॥
ଗନ୍ଧର୍ବେ ଶୂନ୍ୟ ମାର୍ଗେ ଗଲେ । ବିଜୁଳି ତେଜ ପ୍ରକାଶିଲେ ॥
ରାଜା କଟୀରେ ବସ୍ତ୍ର ନାହିଁ । ଉଲଗ୍ନ ଦେଖି ରୋଷ ବହି ॥
ମେଷକୁ ଘେନି ବେନିହସ୍ତେ । ଉର୍ବଶୀ ଗଲା ଶୂନ୍ୟପଥେ ॥
ସେ ରାଜା ମେଷ ଘେନିକରେ । ଆସି ମିଳିଲା ନିଜପୁରେ ॥
ବୋଇଲେ ନିଅ ତୋ ନନ୍ଦନ । ନ ଜାଣି କଲୁ ଯେ ରୋଦନ ॥
ଶୟନ ସ୍ଥାନେ ପଶିଗଲା । ଖଟେ ଉର୍ବଶୀ ନ ଦେଖିଲା ॥
ଦୀପ ଆଣିଲା ତତକ୍ଷଣେ । ଦେଖେ ଉର୍ବଶୀ ଗଲା କେଣେ ॥
ନ ଦେଖି ମୋହଗତେ ପଡ଼ି । କାନ୍ଦେ ହୃଦୟ କର ତାଡ଼ି ॥
ଉନ୍ମତ୍ତ ପ୍ରାୟେ ମହୀଭ୍ରମେ । ଗିରିକାନନ ଦୂରଗ୍ରାମେ ॥
ଭ୍ରମନ୍ତେ ସତ ପ୍ରାତଃ କାଳେ । ଅଦ୍ଭୁତେ କୁରୁକ୍ଷେତ୍ର ମେଳେ ॥
ଉର୍ବଶୀ ସଖୀ ଜନମେଳେ । ଦେଖିଲା ସରସ୍ୱତୀ କୂଳେ ॥
ରାଜାକୁ ଚାହିଁ ଅଧୋମୁଖୀ । ମନେ ହୋଇଲା ମହାଦୁଃଖୀ ॥
ରାଜା ଉର୍ବଶୀ ମୁଖ ଚାହିଁ । ବୋଲଇ ସ୍ନେହ ଭାବ ବହି ॥
ରାଜାଙ୍କୁ ଦେଖି କୋପ ଭରେ । ଉର୍ବଶୀ ଗଲା କିଛି ଦୂରେ ॥
ପଛେ ଗୋଡ଼ାଇ କାମ ବଶେ । ସେ ରାଜା ବୋଲଇ ବିଶ୍ୱାସେ ॥
ହେ ସଖୀ କ୍ଷଣେ ରହ ରହ । ନ ଛାଡ଼ ମୋହର ସେନେହ ॥
ତୁ ଘୋର କର୍ମ କିମ୍ପା କରୁ । ଭାବ ଅଭାବ ନ ସୁମରୁ ॥
ମୋତେ ନଛାଡ଼ କୋପମନେ । ମୁଁ ଅଛି ତୋହର ବଚନେ ॥
ତୁ ମୋର ସଂଗ ଦୂରକଲେ । ଜୀବନ ଛାଡ଼ିବି ମୁଁ ଭଲେ ॥
ତୋର ବିହୁନେ ମୋ ଶରୀର । ଭକ୍ଷିବେ ଶୃଗାଳ କୁକୁର ॥

## ଉର୍ବଶୀ ଉବାଚ

ଭୋ ରାଜା ଶୁଣ ମୋ ଉତ୍ତର । ସଂସାରେ ସ୍ତିରୀଙ୍କ ବିଚାର ॥
ସ୍ୱଭାବେ ଯେବା ଦୁଷ୍ଟାନାରୀ । ତା ସଙ୍ଗେ ବିଶ୍ୱାସ ନକରି ॥
ବ୍ୟାଘ୍ର ଭାଲୁଙ୍କ ସଂଗେ ନର । ଯେମନ୍ତେ ବିଶ୍ୱାସ ବେଭାର ॥
ନାରୀଙ୍କ ଦେହେ ଯେତେଗୁଣ । ରାଜନ ସାବଧାନେ ଶୁଣ ॥
ନିର୍ଦ୍ଦୟ କପଟ କଷଣ । ସାହସ ଆଦି ଚାରିଗୁଣ ॥
ଅଳପ କ୍ରୋଧେ ପ୍ରାଣ ଦ୍ୟନ୍ତି । ପତି ଭ୍ରତାରେ ନଜାଣନ୍ତି ॥
ଅଜ୍ଞାନ ଭାବେ ଥାନ୍ତି ନିତ୍ୟେ । ବଞ୍ଚନ୍ତି କାମ ଭୋଗଚିତେ ॥
ସ୍ୱଭାବେ ନିତ୍ୟେ କଚ୍ଛକାମୀ । ଇଚ୍ଛନ୍ତି ନବନବ ସ୍ୱାମୀ ॥
ସ୍ତିରୀଙ୍କ ସ୍ୱଭାବ ଯେମନ୍ତ । କିଂପା ତୁ କରୁ ଦୁଃଖଚିତ୍ତ ॥
ଏବେ ତୋ ନିଜପୁରେ ଯାଅ । ଅବଶ୍ୟ କରି ତୋତେ ସ୍ନେହ ॥
ଆସିବି ସମ୍ବତ୍ସର ଅନ୍ତେ । ରମିବି ତୋହର ସଂଗତେ ॥
ଋତୁ ସ୍ନାହାନ ଏକଦିନେ । ରମିବି ତୋର ସନ୍ନିଧାନେ ॥
ଅବଶ୍ୟ ହୋଇବ ସନ୍ତତୀ । ଏବେ ଉପାୟ କର ଚିନ୍ତି ॥
ଗନ୍ଧର୍ବ ଗଣେ ପୂଜା କର । ଏ ତୋତେ ତୋଷେ ଦେବେବର ॥
ଏହାଙ୍କ ପ୍ରସାଦେ ତୁ ମୋତେ । ପାଇବୁ ବରଷକ ଅନ୍ତେ ॥
ଏମନ୍ତ ତାର ବାକ୍ୟ ଶୁଣି । ଆନନ୍ଦ ମନେ ନୃପମଣି ॥

ଗନ୍ଧର୍ବଗଣେ ପୂଜାକଲା । ଅନେକ ବଳିଭୋଜା ଦେଲା ॥
ସ୍ତୁତି ବଚନେ କର ଯୋଡ଼ି । ଚରଣେ ଶତଦଣ୍ଡ କରି ॥
ତାର ଭଗତି ଦେଖି ମନେ । ଗନ୍ଧର୍ବେ ପ୍ରସନ୍ନ ବଦନେ ॥
ମୃତ୍ତିକା ଭାଣ୍ଡେ ଅଗ୍ନିଥୋଇ । ରାଜା ସମୀପେ ଦେଲେ ନେଇ ॥
ବୋଇଲା ଏଥେ ଯଜ୍ଞ କର । ଉର୍ବଶୀ ଆସିବ ତୋପୁର ॥
ଏମନ୍ତେ ଅଗ୍ନି ଭାଣ୍ଡ ଦେଲେ । ଗନ୍ଧର୍ବେ ଉର୍ବଶୀର ତୁଲେ ॥
ଗନ୍ଧର୍ବେ ଗଲେ ଶୂନ୍ୟମାର୍ଗେ । ସେ ଅଗ୍ନି ଘେନି ବନଭାଗେ ॥
ରାତ୍ରେ ବୁଲନ୍ତେ ବୃକ୍ଷ ମୂଳେ । ଥୋଇଲା ନିଶା ଅର୍ଦ୍ଧକାଳେ ॥
ଅଗ୍ନିକି ବୃକ୍ଷ ମୂଳେ ଥୋଇ । ନିଜଘରେ ମିଳିଲା ଯାଇ ॥
ଏମନ୍ତେ ସତ୍ୟ ଯୁଗ ଗଲା । ଶୁଣ ହୋ ଗୋବିନ୍ଦର ଲୀଳା ॥
ତ୍ରେତୟା ଯୁଗ ପ୍ରବେଶନେ । ରାଜା ଉର୍ବଶୀ ସ୍ମରି ମନେ ॥
ଅଗ୍ନି ଉଦ୍ଦେଶ୍ୟେ ବନେଗଲା । ବନେ ଅନଳ ନ ଦେଖିଲା ॥
ଯେ ବୃକ୍ଷ ମୂଳେ ଥୋଇ ଗଲା । ସେ ବୃକ୍ଷ ଅଶ୍ୱତ୍ଥ ହୋଇଲା ॥
ଅଶ୍ୱତ୍ଥ ବୃକ୍ଷଶମୀ ବୃକ୍ଷେ । ରାଜନ ଦେଖିଲା ପ୍ରତ୍ୟକ୍ଷେ ॥
ସେ ବୃକ୍ଷ କାଷ୍ଠ ଘରେ ଆଣି । ଗଢ଼ିଲା ଯଜ୍ଞକୁ ଅରଣି ॥
ଅରଣି ମନ୍ଥି ଯଜ୍ଞ କରି । ନିଗମ ମନ୍ତ୍ରକୁ ଉଚାରି ॥
ଉର୍ବଶୀ ଧ୍ୟାନକରି ମନେ । ଆହୁତି ଦେଲା ହୁତାଶନେ ॥
ଉର୍ବଶୀ ଯଜ୍ଞକାଳେ ଆସି । ରାଜା ଶୟନେ ସ୍ଥାନେବସି ॥
ଯଜ୍ଞ ପୁରୁଷର ପ୍ରସନ୍ନେ । ବିଷ୍ଣୁ ମିଳିଲେ ତାର ସ୍ଥାନେ ॥
ଉର୍ବଶୀ ପୁରୁରବା ସଂଗେ । ପୁତ୍ର ଜନ୍ମିଲେ ରତିରଂଗେ ॥
ଅଗ୍ନିର ବର୍ଣ୍ଣ ପ୍ରାୟ ହୋଇ । ଜନ୍ମ ଲଭିଲେ ଷଡ଼ଭାଇ ॥
ଭକ୍ତର ତୁଲେ ତାର ସୁତେ । ସ୍ୱର୍ଗେ ରହିଲେ ଦିନା କେତେ ॥
ବୋଲଇ ବିପ୍ର ଜଗନ୍ନାଥ । ନବମସ୍କନ୍ଧେ ଭାଗବତ ॥
ବଂଶାନୁଚରିତ ଏ ବାଣୀ । ସୁଜନେ ତର ଏହା ଶୁଣି ॥

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏବେ ହୋ ଶୁଣ ନରନାଥ । ସୋମବଂଶାନୁଚରିତ ॥
ଉର୍ବଶୀ ଗର୍ଭେ ବିଷ୍ଣୁ ତେଜେ । ଜନ୍ମିଲେ ପୁରୁରବା ବୀର୍ଯ୍ୟେ ॥
ସୁନ୍ଦରପଣେ ନାହିଁ ସମ । ଶୁଣ ସେ ଷଡ଼ପୁତ୍ର ନାମ ॥
ଆୟୁ ଶ୍ରୁତାୟୁ ସତ୍ୟେ ଘେନି । ଲୟ ବିଲୟ ଜୟ ତିନି ॥
ଶ୍ରୁତାୟୁ ସୁତ ବସୁମାନ । ତା ସୁତ ଶ୍ରୁତି ଜୟ ନାମ ॥
ଜୟ ତାହାର ବୀର୍ଯ୍ୟେ ଜାତ । ବିଜୟ ଭୀମସେନ ସୁତ ॥
ଭୀମର ପୁତ୍ର ଯହୁଁ ହୋୟେ । ଗଣ୍ଡୁଷେ ତୋଳି ଗଙ୍ଗାପିଏ ॥

ଯହ୍ନୁର ସୁତ ପୁର ନାମ । ବଳାକି ତାର ଗୁଣଧାମ ॥
ବଳାକି ପୁତ୍ର କୁକ୍ଷ ହୋଇ । କୁଶାମ୍ବୁ ତାର ବୀର୍ଯ୍ୟେ ହେହୀ ॥
କୁଶାମ୍ବୁ ସୁତ ଗ୍ୟାଧି ନାମ । ଅତି ସୁନ୍ଦର ଗୁଣ ଧାମ ॥
ତାହାର କନ୍ୟା ସତ୍ୟବତୀ । ତା କଥା ଶୁଣ ହୋ ନୃପତି ॥
ଋଚିକନାମେ ବ୍ରହ୍ମ ଋଷି । କନ୍ୟା ମାଗିଲେ ତାକୁ ଆସି ॥
ଦେଖିଣ ବୃଦ୍ଧ ତା ଶରୀର । ସେ ଗ୍ୟାଧି ନ ବରିଲା ବର ॥
ବୋଲେ ଋଚିକି ମୁଖ ଚାହିଁ । କନ୍ୟା ଲଭିବୁ ଯେବେ ତୁହି ॥
ହୋଇବୁ ମୋର କନ୍ୟା ବର । ତୁ ଏବେ ମୋର ବୋଲକର ॥
ସହସ୍ରେ ଅଶ୍ୱ ମୋତେ ଦିଅ । ଚନ୍ଦ୍ରର ପ୍ରାୟେ ଯାର ଦେହ ॥
ବର୍ଣ୍ଣ ହୋଇବ ଶ୍ୟାମ ବର୍ଣ୍ଣ । ତେବେ ମୁଁ ଦେବି କନ୍ୟା ଧନ
ଏମନ୍ତେ ରାଜାର ବଚନେ । ଋଚିକ ବରୁଣ ଭୁବନେ ॥
ମିଳି ବରୁଣକୁ ମାଗିଲା । ବରୁଣ ସସ୍ରେ ଅଶ୍ୱ ଦେଲା ॥
ସେ ଅଶ୍ୱ ଆଣି ମୁନି ଦେଲେ । ସତ୍ୟବତୀକୁ ବିଭା କଲେ ॥
ଋଚିକ କନ୍ୟା ଋତୁକାଳେ । ବିଚାର କରି ମୁନିମେଳେ ॥
ଯଜ୍ଞ ଆରମ୍ଭେ ସୁତ ଅର୍ଥେ । ଚରୁ ସାଧିଲା ବେଦଗ୍ରନ୍ଥେ ॥
ମାତା ଦୁହିତା ଅର୍ଥେ ବେନି । ଚରୁ ସାଧିଲା ମହାମୁନି ॥
ସେ ଚରୁ ଦେଇ ପତ୍ନୀ ହସ୍ତେ । ଋଚିକ ଗଲେ ସ୍ନାନ ଅର୍ଥେ ॥
ଯେ ଚରୁ କଲା ମହାତମା । ଶୁଣ ହୋ ଋଷିର ମହିମା ॥
ଏକ କ୍ଷତ୍ରିୟ ବିପ୍ର ଏକ । ସେ ଚରୁ ବିପରୀତ ଦେଖ ॥
ସତ୍ୟବତୀର ମୁଖ ଚାହିଁ । ମାତା ବୋଇଲା ଭାବ ବହି ॥
ତୋ ଚରୁ ମୋର ହସ୍ତେ ଦିଅ । ମୋ ଭାବେ ଯେବେ ଅଛି ସ୍ନେହ
ଏମନ୍ତେ ମାତା ମୁଖୁଁ ଶୁଣି । ତକ୍ଷଣେ ରାଜାର ଦୁଲଣୀ ॥
ଆପଣା ଚରୁ ମାତା ହସ୍ତେ । ଦେଲା ସେ ପ୍ରିୟ ଭାବମତେ ॥
ଚରୁ ଭକ୍ଷିଲେ ବେନିମାରୀ । ଏବେ ହୋ ଶୁଣ ଦଣ୍ଡଧାରୀ ॥
ଋଚିକ ସ୍ନାନ ସାରି ଜଳେ । ଗୃହେ ମିଳିଲେ ରାତ୍ର କାଳେ ॥
ମିଳିଲେ ସତ୍ୟବତୀ ସଂଗେ । ପ୍ରଚଣ୍ଡ ତେଜ ତାର ଅଂଗେ ॥
ନିକଟେ ବସି ନ ପାରଇ । ବୋଲଇ ପତ୍ନୀମୁଖ ଚାହିଁ ॥
ତୁ ଘୋର କର୍ମ କିମ୍ପା କଲୁ । ତୋ ଚରୁ ମାତାହସ୍ତେ ଦେଲୁ ॥
ପ୍ରଚଣ୍ଡ ହୋଇବ ତୋ ସୁତ । ତେଜେ ତା କମ୍ପିବ ଜଗତ ॥
ଭ୍ରାତା ହୋଇବ ବ୍ରହ୍ମମୁନି । ସନ୍ତୋଷ ସମଦଶ ଘେନି ॥
ତା ଶୁଣି ସତ୍ୟବତୀ ଭାଳେ । ପଡ଼ିଲା ସ୍ୱାମୀ ପାଦତଳେ ॥
କହେ କପୋଳେ ଦେଇ ହସ୍ତ । ପ୍ରଚଣ୍ଡ ନୋହୁ ମୋର ସୁତ ॥
ଋଚିକି ପତ୍ନୀର ବଚନେ । ଭବିଷ୍ୟ ସୁମରିଲେ ମନେ ॥
ବୋଇଲେ ତୋହର କୁମର । କ୍ଷତ୍ରିୟ ହେଉ ମହାଘୋର ॥

ଏମନ୍ତେ ରଚିକ ବଚନେ । ପୁତ୍ର ଜନ୍ମିଲେ ଧୂମ୍ରବର୍ଣ୍ଣେ ॥
ତାହାର ଯମଦଗ୍ନି ନାମ । ତେଜେ ବିରାଜେ ଅଗ୍ନିସମ ॥
ପୁତ୍ର ପ୍ରସବି ସତ୍ୟବତୀ । ଭଜିଲା ନଦୀଙ୍କର ଗତି ॥
ସେ ନଦୀ ରୂପେ ବହିଗଲା । କୌଶିକନାମେ ପୁଣ୍ୟଜଳା ॥
ରେଣୁକା ରେଣୁର ଦୁହିତା । ପୁଣ୍ୟ ପବିତ୍ର ଶୁଦ୍ଧଚେତା ॥
ଅତି ସୁନ୍ଦରୀ ସୁକୁମାରୀ । ସେ କନ୍ୟା ଯମଦଗ୍ନି ବରି ॥
ତାହାର ଗର୍ଭେ ଭୃଗୁବୀର୍ଯ୍ୟେ । ପୁତ୍ର ଜନ୍ମିଲେ ବିଷ୍ଣୁତେଜେ ॥
ସୁବାସୁ ନାମେ ଯଜ୍ଞ ତୁଲେ । ପରଶୁରାମ ଉପୁଜିଲେ ॥
ସେ ବାସୁଦେବ ଅଂଶେ ଏକ । ହୈହୟ ରାଜା କୁଳାନ୍ତକ ।
ପରଶୁ ଦକ୍ଷ ହସ୍ତେ ଧରି । କୋପେ ବସିଲା ବସୁନ୍ଧରୀ ॥
ତ୍ରିସପ୍ତବାର ସେ ଭ୍ରମିଲା । ଧରଣୀ ବୃତ୍ତିହୀନ କଲା ॥
ଯେ ଦୁଷ୍ଟ କ୍ଷତ୍ରିୟ ରାଜନ । ବ୍ରାହ୍ମଣେ ନକରଇ ମାନ୍ୟ ॥
କ୍ଷତ୍ରିୟ ମଉଗର୍ବେ ଭ୍ରମେ । ଆବୃତ ହୋଇ ରାଜତମେ ॥

## ରାଜା ଉବାଚ

ଭୋ ମୁନି କହ ମୋ ଅଗ୍ରତୋ । ଦୁଷ୍ଟ କ୍ଷତ୍ରିୟ ଏ ଜଗତେ ॥
କ୍ଷତ୍ରିୟ ହୋଇ ଦୟା ବସ । କିମ୍ପା ବିଷ୍ଣୁରେ କରେ ଦୋଷ ॥
ସେ ଦୋଷେ କରେ ଶସ୍ତ୍ର ଧରି । ନିଃଶସ୍ତ୍ର କଲେ ବସୁନ୍ଧରୀ ॥

## ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନିବର । ଶୁଣ ହେ ଉତ୍ତରା କୁମର ॥
ଅର୍ଜୁନ ନାମେ ବୀର ଅଂଶେ । ଜନ୍ମିଲା ହଇହୟ ବଂଶେ ॥
ଦତ୍ତ ଯେ ନାରାୟଣ ଅଂଶେ । ତା ପାଦେ ହୋଇଲା ବିଶ୍ୱାସେ ॥
ଅନେକ ଆରାଧନା କଲା । ସେ ତାକୁ ତୋଷେ ବରଦେଲା ॥
ଭୁଜ ସହସ୍ରେ ତପେ ଧରି । ହୋଇଲା ଅଇଶ୍ୱର୍ଯ୍ୟ ଭରି ॥
ଅଣିମା ଆଦି ଅଷ୍ଟନିଧି । ଲଭିଲା ଅନେକ ପ୍ରସିଦ୍ଧି ॥
ଭ୍ରମିଲା ଏ ତିନି ଭୁବନେ । ପ୍ରଚଣ୍ଡେ ଯେସନେ ପବନେ ॥
ଦିନେକ ସ୍ତ୍ରୀରାଗଣ ସଙ୍ଗେ । ଦିଗ ବିଜୟ କଲା ରଙ୍ଗେ ॥
କାମିନୀ ସଙ୍ଗେ ସଙ୍ଗ ଭୋଳେ । ପଶିଲା ରେବା ନଦୀଜଳେ ॥
ବଇଜୟନ୍ତୀ ମାଳା ଗଳେ । ନାରୀଙ୍କ ସଙ୍ଗେ ଅଙ୍କ ଜଳେ ॥
ଜଳ ନିଷେଧି କ୍ରୀଡ଼ାକାଳେ । ନଦୀ ବାନ୍ଧିଲା ଭୁଜବଳେ ॥
ଭୁଜ ଉପରେ ଭୁଜ ଦେଲା । ନଦୀ ଜଳକୁ ବନ୍ଦି କଲା ॥
ନଦୀ ବଢ଼ିଲା ପ୍ରତିସ୍ରୋତେ । କାମେ ଅଛନ୍ତି ପ୍ରିୟା ଯେତେ ॥
ପର୍ବତ ଯାଦି ଘୋରବନେ । ସ୍ଥଳଗଭୀର ଦେବସ୍ଥାନେ ॥
ପ୍ରଳୟ ପ୍ରାୟେ ଜଳପୂରେ । କାମିନୀ ଗଣ କ୍ରୀଡ଼ାକରେ ॥
ବନ୍ଦି କରିଣ ଲଙ୍କା ନେଲା । ପୌଲସ୍ତି ବୋଲେ ଛାଡ଼ିଦେଲା ॥

ପୁଣି ଅର୍ଜୁନ ଯେକ ଦିନେ । ମୃଗୟା ଗଲା ଘୋରମନେ ॥
ଅନେକ ଅଶ୍ୱବନ୍ଧ ଯେତେ । ରବିର କିରଣ ଦୃଷିତେ ॥
ବୁଲନ୍ତେ ଗିରି ଘୋର ବନେ । ମିଳିଲା ଯମଦଗ୍ନି ସ୍ଥାନେ ॥
ରାଜାଙ୍କୁଦେଖି ମୁନିଜନେ । ବସାଇ ସୁବର୍ଣ୍ଣ ଆସନେ ॥
ପୂଜିଲେ ନାନା ଉପହାରେ । କଳ୍ପିତ ଯଜ୍ଞଧେନୁ କ୍ଷୀରେ ॥
ସର୍ବ ସୁବର୍ଣ୍ଣମଏ ଚାହିଁ । ଯେ କାମ କାମଧେନୁ ଦେହୀ ॥
ଅଦ୍ଭୁତ ଦେଖି ନୃପମଣି । ସଂକୋଚେ ମନେ ମନେ ଗୁଣି ॥
ଭୃତ୍ୟକୁ ରାଇ ଆଜ୍ଞା ଦେଲା । ଯେ ଧେନୁ ଘେନରେ ବୋଇଲା
ମୁନିକି ଅନାଦର କରି । ତକ୍ଷଣେ ଗଲା ଦଣ୍ଡଧାରୀ ॥
ସେ ଧେନୁ ବତ୍ସା ସଙ୍ଗେ ବାନ୍ଧେ । ପଛେ ଚାଲନ୍ତେ ଧେନୁକାନ୍ଦେ ॥
ରାଜା ଚଳିଲେ ନିଜଗ୍ରାମ । ବନେ ଯେ ଥିଲା ପ୍ରଶୁରାମ ॥
ଯଜ୍ଞ ଆହୁତି ଭଙ୍ଗ ଶୁଣି । ଗୃହେ ମିଳିଲା ବୀରମଣି ॥
ବତ୍ସା ସହିତ ଧେନୁ ନେଲା । ପିତାକୁ ଅନାଦର କଲା ॥
ଯେ କଥା ଶୁଣି କୋପଭରେ । ତୀକ୍ଷ୍ଣ ପରଶୁ ଧରି କରେ ॥
କବାଓ୍ୱେ ପିହୀତ ଶରୀର । କାନ୍ଧେ କର୍ଣ୍ଣାବ୍ଧ ତୀକ୍ଷ୍ଣ ଶର ॥
ପଥେ ଧାଇଁଲେ କୋପମନେ । କୁଞ୍ଜର ଦେଖି ସିଂହ ଯେହ୍ନେ
ପରଶୁ ଦକ୍ଷ କରେ ଧରି । ହିରଣ୍ୟ ଚର୍ମ ଦେହେ ଧରି ॥
ସୂର୍ଯ୍ୟର ପ୍ରାଏ ତେଜ ବହେ । କପିଳ ଜଟା ମୁଣ୍ଡେ ଶୋହେ ॥
ପ୍ରଶୁରାମର ଦେଖି ତେଜ । ପଥେ ରହିଲେ ମହାରାଜ ॥
ଶୂନ୍ୟକୁ ଚାହିଁ ଆଜ୍ଞାଦେଲେ । ଅନେକ ଶସ୍ତ୍ର ପ୍ରହାରିଲେ ॥
ଅଶ୍ୱ କୁଞ୍ଜର ସେହ୍ନା ଯେତେ । ଶସ୍ତ୍ର ପେସନ୍ତି ଅପ୍ରମିତେ ॥
ଗଦା ଖଡ୍‌ଗ ଶକ୍ତି ରିଷ୍ଟି । କୋପେ କରନ୍ତି ଶରବୃଷ୍ଟି ॥
ଯୁଝନ୍ତି ଅତି କୋପମନେ । ସମୁଦ୍ରେ ମନ୍ଦର ଯେସନେ ॥
ପରଶୁ କୋଠାର ଯେ ପ୍ରହାରି । ଅର୍ଦ୍ଧ ନିମିଷେ ସର୍ବମାରି ॥
ଭୁଜ କନ୍ଧରୁ ଶିର ଛିଡ଼ି । ସର୍ବେ ପଡ଼ିଲେ ଭୂମି ମାଡ଼ି ॥
ରୁଧିର ନଦୀ ଉଛେ ବହେ । ମାଂସ ଶୋଣିତ ମେଦମୟେ ॥
ମଲେ କ୍ଷେଉଣୀ ସପ୍ତଦଶ । ରହିଲା ସସ୍ରବାହୁ ଶେଷ ॥
ସନ୍ୟ ମରଣେ ବହି ମନୁ । ଧଇଲା ପଞ୍ଚଶତ ଧନୁ ॥
ନାରାଜ ଯେଚି ପଞ୍ଚଶତେ । ରହିଲା ରାମର ସଙ୍ଗତେ ॥
ବୃକ୍ଷରୁ ପତ୍ର ଯେହ୍ନେ ଝଡ଼େ । ରାମ ଉପରେ ଶସ୍ତ୍ରପଡ଼େ ॥
ଦେଖି ତାହାର ବୀରଗତି । ବେଗେ ଧାଇଁଲେ ଭୃଗୁପତି ॥
କୋପରେ ସହସ୍ରେକ ଭୁଜ । ହେଳେ ଛେଦିଲେ ଭୃଗୁରାଜ ॥
ତୀକ୍ଷ୍ଣ କୋଠାରେ ମୁଣ୍ଡ ହାଣି । ଭାରା ଉଧରିଲେ ଧରଣୀ ॥
ପିତା ମରଣ ପୁତ୍ର ଦେଖି । ଭାଜିଲେ ସମର ଉପେକ୍ଷି ॥

ରାମ ସଂହାରି ମହାମନୁ । ଅଗ୍ରତେ ଘେନି ଯଜ୍ଞଧେନୁ ॥
ଆନନ୍ଦ ମନେ ଯଜ୍ଞ ବାଟେ । ମିଳିଲେ ପିତାର ନିକଟେ ॥
ପିତା ସମୀପେ ଧେନୁ ଦେଇ । ଚରଣେ ଗଡ଼ଘାଲି ଶୋଇ ॥
ସଂଗତେ ଘେନି ତିନି ଭ୍ରାତେ । ଯୁଦ୍ଧ କରଣ କଥା ଯେତେ ॥
କହିଲେ ପିତାର ଅଗ୍ରତେ । ତା ଶୁଣି ପିତା ତୋଷଚିତ୍ତେ ॥
ବୋଲନ୍ତି ରାମର ଅଗ୍ରତେ । ଭୋ ପୁତ୍ର ଶୁଣ ଯେକଚିତ୍ତେ ॥
ହେ ରାମ ରାମ ମହାବାହୁ । ଶୁଣ ସୁମନେ ତୋତେ କହୁ ॥
ଶୁଭ ଅଶୁଭ ତୁ ନ ଜାଣି । ପାପ ତୁ କଲୁ ରାଜାହାଣି ॥
ସର୍ବ ଦେବତା ନୃପ ଦେହେ । ଦିଶନ୍ତି ସ୍ୱର୍ଗେ ଜ୍ୟୋତିପ୍ରାୟେ ॥
ଆମ୍ଭେ ଯେ ଜାତିରେ ବ୍ରାହ୍ମଣ । ସ୍ୱଭାବେ କ୍ଷମା ଆଚରଣ ॥
ବ୍ରହ୍ମା ଯେ ସର୍ବ ଦେବ ଗୁରୁଁ । କ୍ଷମା ପୂରିତ ଯେହ୍ନେ ମେରୁ ॥
ତେଣୁ ବସିଲା ସତ୍ୟଲୋକେ । ଅଶେଷ ଲକ୍ଷ୍ମୀଭଙ୍ଗେ ଯେକେ ॥
କ୍ଷମା ଯାହାର ହୃଦେ ରହେ । ବିଷ୍ଣୁ ବସନ୍ତି ତାର ଦେହେ ॥
ଯେଣୁ ଯେ ନୃପ ବଧ କରେ । ଦୁରିତୁଁ କେବେହେଁ ନ ତରେ ॥
ଯେବେ ତୁ ତୀର୍ଥ ସେବାକର । ତୋ ଦେହୁ ପାପ ଯାଉ ଦୂର ॥
ଚିତ୍ତେ ଚିନ୍ତିବୁ ନାରାୟଣ । ଧନ୍ୟେ ତୋ ନାହିଁ ଉଧାରଣ ॥
ବୋଲଇ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ୍ର ॥
ପରଶୁରାମର କାହାଣୀ । ଯେ ନର ଶ୍ରୁତିପଥେ ଶୁଣି ॥
ନରକେ ପଥେ ନାହିଁ ଭ୍ରାନ୍ତି । ସେ ନର ସଂସାରୁ ତରନ୍ତି ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ପଞ୍ଚଦଶୋଽଧ୍ୟାୟଃ ।*

## ଷୋଡ଼ଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏବେ ହେ ଶୁଣ କୁରୁନାଥ । ସେ ଭୃଗୁରାଜାର ଚରିତ୍ର ॥
ପିତା ବଚନେ ବନେ ଗଲେ । ଅନେକ ତୀର୍ଥେ ସ୍ନାନ କଲେ ॥
ପୁଣି ସେ ବରଷକ ଅନ୍ତେ । ଗୃହେ ମିଳିଲେ ଶୁଦ୍ଧଚିତ୍ତେ ॥
ପିତା ଚରଣେ ନମସ୍କାରେ । କରି ରହିଲେ ନିଜପୁରେ ॥
ଇନ୍ଦ୍ର କୁମର ଚିତ୍ରସେନ । ସଙ୍ଗତେ ଘେନି ନାରୀଜନ ॥
ଅପ୍ସରାଗଣ ଘେନି ଜଳେ । କ୍ରୀଡ଼ା କରନ୍ତି କୁତୂହଳେ ॥
ଦଣ୍ଡେ ରହିଲେ ତାହାଦେଖି । ଜଳ ଆନୟନ ଉପେକ୍ଷି ॥
ହୋମର ବେଳ ନ ସୁମରି । ଗନ୍ଧର୍ବେ ଅଙ୍ଗସ୍ନେହ କରି ॥
ପୁଣି କ୍ଷଣକେ ଜ୍ଞାନପାଇ । ତକ୍ଷଣେ ଜଳ କୁମ୍ଭନେଇ ॥
ସ୍ୱାମୀଙ୍କି ଶଙ୍କା ମନେ କଲେ । ତକ୍ଷଣେ ମନ୍ଦିରେ ମିଳିଲେ ॥
ଜଳ କଳସ ଯଜ୍ଞଘରେ । ଥୋଇଲେ ମୁନିଙ୍କ ଗୋଚରେ ॥
ଅଞ୍ଜଳି କରି ବେନି କରେ । ରେଣୁକା ରହେ ଯଜ୍ଞଘରେ ॥
ରେଣୁକା ମୁଖଚାହିଁ ମୁନି । ପ୍ରଚଣ୍ଡ କୋପେ ଯମଦଗ୍ନି ॥
ଜାଣିଲେ ଗନ୍ଧର୍ବର ମେଳେ । ମନ କଳିଲା ଗଙ୍ଗାଜଳେ ॥
ପୁତ୍ରକୁ କୋପେ ମୁନିରାଇ । ବୋଇଲେ ଶିରଚ୍ଛେଦ ନେଇ ॥
ଗନ୍ଧର୍ବ ଦେଖି ଏହା ମନ । କଳିଲା ତା ସଙ୍ଗେ ଗମନ ॥
ସ୍ୱଭାବେ ଦୁଷ୍ଟନାରୀ ଏହି । ଏହର ବଦନ ନ ଚାହିଁ ॥
ସେ ପୁତ୍ର ମାତୃସ୍ନେହ କଲେ । ମାତାର ଶିର ନ ଛେଦିଲେ ॥
ଅଧିକ କୋପଭର ହୋଇ । ବୋଲନ୍ତି ପର୍ଶୁରାମ ଚାହିଁ ॥
ମାତା ସହିତ ତିନିଭାଇ । କୋଠାରେ ଶିରଚ୍ଛେଦ ନେଇ ॥
ସେ ରାମ ପିତାଗୁଣ ଜାଣେ । ତପ ସମାଧି ପରମାଣେ ॥
ତକ୍ଷଣେ ପ୍ରହାରି କୋଠାର । ଛେଦିଲା ମାତା ଭ୍ରାତାଶିର ॥
ତକ୍ଷଣେ ମୁନି ତୋଷ ହୋଇ । ପରଶୁରାମ ମୁଖଚାହିଁ ॥
ବୋଲନ୍ତି ବରଦେବି ତୋତେ । ଯେ ବାଞ୍ଛା କହ ତୋର ଚିତ୍ତେ ॥
ତକ୍ଷଣେ ପିତା ପାଦେ ପୋଡ଼ି । ରାମ ବୋଲନ୍ତି କରଯୋଡ଼ି ॥
ଭୋ ତାତ ବରଦେବୁ ଯେବେ । ଏସର୍ବ ଜୀବନ ପାଇବେ ॥
ଶିର ଲାଗିବ ଯେଝା କନ୍ଧେ । ମନ ଇନ୍ଦ୍ରିୟ ପରିବନ୍ଧେ ॥
ଅସ୍ତୁ ବୋଇଲେ ତପୋଧନ । ସେ ସର୍ବ ପାଇଲେ ଜୀବନ ॥
ନିଦ୍ରିତ ଜନ ନିଦ୍ରା ଅନ୍ତେ । ଶରୀର ସାମାନ୍ୟ ଯେମନ୍ତେ ॥
ପିତାର ତପ ବଳ ଜାଣି । ମାତୃ ଭ୍ରାତାଙ୍କ ମୁଣ୍ଡହାଣି ॥
ଯେମନ୍ତେ କରି ଘୋର କର୍ମ । ରାମ ରଖିଲେ ନିଜ ଧର୍ମ ॥
ରାମର ଅଙ୍ଗସଙ୍ଗ ତୁଲେ । ମରଣ ସମ୍ମୁଖୁ ବଂଚିଲେ ॥
ଭାଇକି ଘେନି ଏକଦିନେ । ରାମ ଯେ ଗଲେ ତପୋବନେ ॥
ତପ ଆରମ୍ଭେ ଯୋଗଧ୍ୟାନେ । ନିଶ୍ଚଳେ ବସିଲେ ଆସନେ ॥
ତାହାଙ୍କ ଧ୍ୟାନ ଦେଖି ବନେ । ପଶୁ ପତଙ୍ଗ କୀଟଜନେ ॥
ଭୟେ ଶବଦ ନ କରନ୍ତି । ଏବେ ହୋ ଶୁଣ ନରପତି ॥
ସହସ୍ର ଅର୍ଜ୍ଜୁନେ କୁମରେ । ପିତାର ମରଣ ସୁମରେ ॥
ଭାଜି ଯେ ଗଲେ ଯେଝାମତେ । ସେ ପୁଣି ମିଳିଲେ ଏକାନ୍ତେ ॥
ମନେ ସୁମରି ଯମଦଗ୍ନି । ସଙ୍ଗେ ଅନେକ ବଳ ଘେନି ॥
ଛିଦ୍ର ଅନ୍ୱେଷଣ ବେଭାରେ । ରାତ୍ରେ ମିଳିଲେ ଅନ୍ଧକାରେ ॥
ହୃଦେ ସୁମରି ଘୋରତମ । ରୁନ୍ଧିଲେ ମୁନିଙ୍କ ଆଶ୍ରମ ॥
ମୁନି ଯେ ଥିଲେ ଯଜ୍ଞଶାଳେ । ବିଷ୍ଣୁଚରଣ ପୂଜା କଲେ ॥

ବଇରୀ ସାଧିବାର ରୋଷେ । ବନ୍ଧନ କଲେ ହୃଦପାଶେ ॥
ରେଣୁକା ରଖ ରଖ ବୋଲେ । ପଡି ତାହାଙ୍କ ପାଦତଳେ ॥
ରେଣୁକା ବଚନ ନ ଶୁଣି । ତୀକ୍ଷ୍ଣ ଖଡ଼୍‌ଗେ ମୁଣ୍ଡ ହାଣି ॥
ତକ୍ଷଣେ ଗଲେ ନିଜପୁରୀ । ଧନ ସମ୍ପଦ ଚୁର କରି ॥
ରେଣୁକା ଦୁଃଖ ଶୋକଭରେ । ରୋଦନ କରେ ଉଚ୍ଚସ୍ୱରେ ॥
ଶିର ହୃଦୟ କର ତାଡ଼ି । କାନ୍ଦଇ ଭୂମିଗତେ ପଡ଼ି ॥
ଉଚ୍ଚେ ଡାକଇ ରାମରାମ । ହେ ସୁତ ଆସ ତୁ ଆଶ୍ରମ ॥
ସଙ୍ଗତେ ଘେନି ତିନିଭାଇ । ଭୋ ପୁତ୍ର ବେଗେ ଆସ ଧାଇଁ ॥
ମାତା ରୋଦନ ବାୟୁବଳେ । ଶୁଭିଲା ରାମ କର୍ଣ୍ଣମୂଳେ ॥
ହେ ରାମ ରାମ ବାଣୀ ଶୁଣି । ସମାଧି ତେଜି ବୀରମଣି ॥
ଭାତୃଙ୍କ ସଙ୍ଗେ ବେଗେ ଧାଇଁ । ମିଳିଲେ ନିଜାଶ୍ରମେ ଯାଇଁ ॥
ଯଜ୍ଞ ତୁ ବନେ ଚାରିଭ୍ରାତ । ଦେଖିଲେ ଯମଦଗ୍ନି ହତ ॥
ପିତାର ଶିରଚ୍ଛେଦ ଦେଖି । ଭାଇଙ୍କ ତୁଳେ ରାମ ଦୁଃଖୀ ॥
ବିମୋହ ଶୋକ ଗରୁତରେ । ରୋଦନ କଲେ ଉଚ୍ଚସ୍ୱରେ ॥
ହେ ତାତ ସାଧୁ ତୁ ଧାର୍ମିକ । ସୁଜ୍ଞାନୀ ପଣ୍ଡିତ ବିବେକ ॥
ଆମ୍ଭଙ୍କୁ ଅରକ୍ଷିତ କରି । ନିଶ୍ଚିନ୍ତେ ଗଲ ସ୍ୱର୍ଗପୁରୀ ॥
ପିତାର ଶିର ନ ଦେଖିଲେ । ଭାଇଙ୍କି ରାଇ ଆଜ୍ଞା ଦେଲେ ॥
ତୁମ୍ଭେ ହୋ ପିତୃ ଯଜ୍ଞକର । ଏମନ୍ତ କହି ବୀରବର ॥
ପରଶୁ ଧରି ଦକ୍ଷକରେ । ଦୁସହ କୋପ ଗରୁତରେ ॥
ସଂକଳ୍ପ କଲେ ଜଳଘେନି । ନିକ୍ଷତ୍ରି କରିବି ମେଦିନୀ ॥
କ୍ଷତ୍ରିୟ ଅନ୍ତ କରିବାରେ । ପଥେ ଧଇଲେ କୋପଭରେ ॥
ମିଳିଲେ ମାହେଶ୍ୱାତୀ ପୁରେ । ଦେଖନ୍ତି ଶୂନ୍ୟପଥେ ସୁରେ ॥
ଅର୍ଜ୍ଜୁନ ବଂଶ ଛେଦିକରି । ସଂଗ୍ରାମେ ମୁଣ୍ଡରୁଣ୍ଡ କରି ॥
ପର୍ବତ ପ୍ରାୟେ ମୁଣ୍ଡ ରାଶି । ଗ୍ରାମେ ସ୍ଥାପିଲେ ଭୃଗୁବଂଶୀ ॥
କ୍ଷତ୍ରିୟ ମରଣେ ସେଥିର । ନଦୀ ବଢ଼ିଲା ଭୟଙ୍କର ॥
ପିତୃ ତର୍ପଣ କରି ବଧି । ନଦୀକୁ ସେତୁବନ୍ଧେ ବାନ୍ଧି ॥
ସ୍ଥାପିଣ ନିକ୍ଷତ୍ର ସେ ଦେଶେ । ପୁଣ ଧାଇଁଲେ ମହାରୋଷେ ॥
ତ୍ରିସପ୍ତବାର ମହୀ ଭ୍ରମି । କ୍ରୋଧେ ହୋଇଲେ ପଥଶ୍ରମୀ ॥
କ୍ଷତ୍ରିୟଗଣ ଧରିଆଣି । କୋଠାର ଧରି ଶିରହାଣି ॥
ରୁଧିର ନବକୁଣ୍ଡ କଲେ । ପିତାଙ୍କୁ ତର୍ପଣେ ତୋଷିଲେ ॥
ସେ କୁରୁକ୍ଷେତ୍ରେ ଯଜ୍ଞ କରି । ବିପ୍ରଙ୍କୁ ଚାରିବେଦେ ବରି ॥
ଦକ୍ଷିଣା ଦେଲେ ବିପ୍ରହସ୍ତେ । ଶୁଣ ରାଜନ କହୁ ତୋତେ ॥
ଶ୍ରୀକରେ ଘେନି ଜଳକୁଶ । ହୋତାଙ୍କୁ ଦେଲେ ପୂର୍ବଦେଶ ॥
ଦକ୍ଷିଣା ବ୍ରହ୍ମା ହସ୍ତେ ଦେଲେ । ପ୍ରତୀତି ଅଧୈର୍ଯ୍ୟ ବରିଲେ ॥
ଉତ୍ତର ଦିଗ ତାର ହସ୍ତେ । ପ୍ରଦାନ କଲେ ସେ ପ୍ରସସ୍ତେ ॥
ବେଦିର ଚାରି ଚାରି କୋଣେ । ଦକ୍ଷିଣା ଦେଲେ ସେ ବ୍ରାହ୍ମଣେ ॥
ଦକ୍ଷିଣା ବରି କ୍ଷତ୍ରି ତୁଳେ । କଶ୍ୟପ ହସ୍ତେ ରାମ ଦେଲେ ॥
ଯେ ଆର୍ଯ୍ୟବତୀ ପୁଣ୍ୟଭୂମି । ଉପଦ୍ରଷ୍ଟଙ୍କୁ ଦେଲେ ସ୍ୱାମୀ ॥
ସଭାପତିକି କରିତୋଷ । ଅପରେ ଦେଲେ ଅବଶେଷ ॥
ଅପରେ ସରସ୍ୱତୀ କୂଳେ । ଯଜ୍ଞବଲ୍କଳ ସ୍ନାନ କଲେ ॥
ସେ ବ୍ରହ୍ମ ନଦୀଜଳେ ପଶି । ରବିର ପ୍ରାୟେ ତେଜ ଦିଶି ॥
ସେ ଯଜ୍ଞ ପୁଣ୍ୟେ ଯମଦଗ୍ନି । ଜ୍ଞାନଲକ୍ଷଣ ସଂଜ୍ଞା ଘେନି ॥
ସପ୍ତଋଷିଙ୍କ ମଧ୍ୟେ ଧାମ । ସଜ୍ଞାନେ ଥାପି ପର୍ଶୁରାମ ॥
ସେ ରାମ କମଳଲୋଚନ । ସ୍ୱଭାବେ ଭୃଗୁର ନନ୍ଦନ ॥
ଭବିଷ୍ୟ ମନ୍ୱନ୍ତର କାଳେ । ବ୍ରହ୍ମା ବିସ୍ତାରେ ଯୋଗବଳେ ॥
ସିଦ୍ଧ ଗନ୍ଧର୍ବ ସ୍ତୁତି କଲେ । ମହୀନ୍ଦ୍ର ପର୍ବତେ ମିଳିଲେ ॥
ଯେମନ୍ତେ ଭୃଗୁବଂଶ ହରି । ନର ଶରୀରେ ଦେହଧରି ॥
ଦୁଷ୍ଟ କ୍ଷତ୍ରିୟେ ନାଶ କରି । ହେଲେ ଧରଣୀ ଭାରା ହରି ॥
ଗ୍ୟାଧିର ବଂଶେ ହୋଇଜନ୍ମ । ସଂସାରେ କଲେ ଯେତେ କର୍ମ ॥
କ୍ଷତ୍ରିୟ କର୍ମ ଏ ଶୟଳେ । ତେଜିଲେ ତପସ୍ୟାର ବଳେ ॥
ବ୍ରହ୍ମା ବଚନେ ଶ୍ରଦ୍ଧା କଲେ । ମହୀନ୍ଦ୍ର ପର୍ବତେ ରହିଲେ ॥
ବିଶ୍ୱାମିତ୍ରର ଶତେ ପୁତ୍ର । ସେ ଯେ ଜନ୍ମିଲେ ସପ୍ତଗୋତ୍ର ॥
ସେ ଗୋତ୍ରେ ମଧୁଚ୍ଛନ୍ଦ ଆଦି । ସର୍ବେ ଜନ୍ମିଲେ ବେଦବାଦୀ ॥
ଶୁନଃଶେଫଙ୍କୁ ପୁତ୍ର କରି । ଭାର୍ଗବ ସଙ୍ଗତେ ବିହରି ॥
ନିଜ ସୁତଙ୍କୁ ରାଇ କରେ । କହିଲେ ନିଗମ ବେଭାରେ ॥
ଯେହାକୁ ପୁତ୍ରକଳ୍ପ କର । ଗୋତ୍ର ବର୍ଦ୍ଧନ ଯେ ତୋହର ॥
ଏ ହରିଶ୍ଚନ୍ଦ୍ର ଯଜ୍ଞ କାଳେ । ପିତା ବିକ୍ରୟ କଲାବେଳେ ॥
ରୋହିତ ପଶୁ ଅର୍ଥେ ଦେଲା । ଯେହାର ମାଂସେ ଯଜ୍ଞ କଲା ॥
ଏହାକୁ ଦେବେ ତୋଷହୋଇ । ତକ୍ଷଣେ ମରଣୁ ଜୀଆଇ ॥
ଗ୍ୟାଧି ପୁତ୍ରଙ୍କ ମେଳେ ଥାଇ । ସେ ଦେବରାଜ ନାମଦେଇ ॥
ସପତ ଗୋତ୍ର ସେ କହିଲା । ଋଷିଙ୍କ ଗୋତ୍ରେ ପ୍ରକାଶିଲା ॥
ସେ ପୁଣ ମନ୍ୱନ୍ତର କାଳେ । ଗୋତ୍ର ସ୍ଥାପିବ ରବିତଳେ ॥
ବୋଲଇ ଦାସ ଜଗନ୍ନାଥ । ନ ବସେ ବଂଶାନୁଚରିତ ॥
ସୁଜନେ ଶୁଣ ତୋଷଚିତ୍ତେ । ଭାଷା ପ୍ରବନ୍ଧେ ଭାଗବତେ ॥
ଭୃଗୁର ବଂଶେ ହୋଇ ଜନ୍ମ । ସେ ହରି କଲେ ଯେତେ କର୍ମ ॥
ଶୁଣନ୍ତେ ସର୍ବ ପାପହରେ । ଅଶେଷ ପାପବନ୍ଧୁ ତରେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ଷୋଡଶୋଽଧ୍ୟାୟଃ ।*

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ବଦାରାୟଣ ଉବାଚ

ଆୟୁ ଯେ ପୁରରବା ସୁତ । ଶୁଣ ଯେ ତାହାର ଚରିତ ॥
ନହୁସ ତାହାର ତନୟେ । ଅପରେ କ୍ଷତ୍ରିବୃଦ୍ଧ ହୁଏ ॥
ଅପରେ ରାଜୀରାଭ ଜାତ । ଅନେନା ଏହି ପଞ୍ଚସୁତ ॥
କ୍ଷତ୍ର ବୃଧର ବଂଶ ଗୁଣ । କହିବା ଥିର ମନେ ଶୁଣ ॥
ସୁହୁତି ଆଦିତୀ ନି ସୁତେ । କାଶ୍ୟ ଯେ କୁସ ଗୃସ୍ତମତେ ॥
ସୁନକସନକଯେ ବେନି । ଜନ୍ମିଲେ ପିତା ତେଜଘେନି ॥
କାଶ୍ୟର କାସି ନାମେ ସୁତ । ରାଷ୍ଟ୍ରତା ତହୁଁ ହେଲା ଜାତ ॥
ତା ସୁତ ଧନ୍ୱନ୍ତରୀ ନାମ । ରୂପେ ଅଶେଷ ଗୁଣେଧାମ ॥
ସେ ଆୟୁର୍ବେଦ ଭିଆଇଲା । ପ୍ରାଣୀଙ୍କ ବ୍ୟାଧି ନାଶ କଲା ॥
ସେ ଯଜ୍ଞଭୋଗ ବିଷ୍ଣୁ ଅଂଶେ । ସ୍ମରଣେ ତାର ଦୁଃଖ ନାଶେ ॥
ତାର ସନ୍ତତି କେତୁମାନ । ଭୀମ ଯେ ତାହାର ନନ୍ଦନ ॥
ତାହାର ବୀର୍ଯ୍ୟେ ଦେବୋଦାସ । ଦୃମନ ତାର ବଂଶେ ଦୃଶ ॥
ତାର କୁମର ପ୍ରତିର୍ଦ୍ଦନ । ଅପର ଶତ୍ରୁଜିତ ନାମ ॥
ତାର କୁମର କେତୁଧ୍ୱଯ । କୁବଳୟ ତାର ତନୁଜ ॥
ଅଳର୍ଦ୍ଦ ତାର ଦେହୁ ଜନ୍ମ । ଶୁଣହୋ ତାର ଘୋରକର୍ମ ॥
ସଷ୍ଠିଯେ ସହଶ୍ର ବରଷେ । ଅଧିକ ସଷ୍ଠିସତ ସେସେ ॥
ଅବନୀ ତଳେ ହୋଇରାଜା । ଧର୍ମେ ପାଳିଲେ ଜନପ୍ରଜା ॥
ସୁନାଥ ସୁକନେ ବେନି । ଜନ୍ମିଲେ ପିତୃତେଜ ଘେନି ॥
ତାର ତନୟ ଧର୍ମକେତୁ । ସତ୍ୟକେତୁ ତାର ପୁତ୍ର ହେତୁ
ଧ୍ୱର୍ଯ କେତୁ ତାର ନନ୍ଦନ । ରୂପେ ଗଞ୍ଜଇ ସେ ମଦନ ॥
ସୁକୁମାର ତାର ତନୁଜ । ଅନେକ ଦିନ କଲା ରାଜ୍ଯ ॥
ଭାର୍ଗଯେ ବେନି ହୋତ୍ରଶୁତ । ତାର ମହିମା ଅପ୍ରମିତ ॥
ତାହାର ନାମେ ଭୃଗୁଭୂମି । ଯମ ନପାରେ ମହୀଭ୍ରମି ॥
ଯେମନ୍ତେ ଯେକା ଦଶ ରାଜା । ଧର୍ମେ ପାଳିଲେ ଜନପ୍ରଜା ॥
ରାଭର ରଭ ନାମେ ସୁତ । ତାର କୁମର ଶୁଚିବ୍ରତ ॥
ଶୁଚିବ୍ରତର ପୁତ୍ର ବେନି । ଜନ୍ମିଲେ ବିଷ୍ଣୁ ତେଜଘେନି ॥
ଯେ ଗୋତ୍ରେ ବ୍ରହ୍ମ ଜ୍ଞାନୀ ସୁତେ । ଜନ୍ମ ଲଭିଲେ ଏ ଜଗତେ ॥
ଏବେ ରାଭର ପୁତ୍ର ଯେତେ । ଭାବେ କହିବା ତୋ ଅଗ୍ରତେ ॥
ତାର କୁମର ପଞ୍ଚଶତ । ତେଜ ପ୍ରବଳ ଅପ୍ରମିତ ॥
ଅସୁରେ ଆସି ଅନ୍ତରାଳେ । ଇନ୍ଦ୍ରକୁ ଉଭାରିଲେ ବଳେ ॥
ଇନ୍ଦ୍ର ଦେବଙ୍କ ତୁଳେ ଆସି । ରାଜାକୁ କହିଲେ ବିଶ୍ୱାସି ॥
ଭୋ ରାଜା ତୋର ପୁତ୍ରଗଣେ । ଜିଣିବେ ଅସୁରଙ୍କ ରଣେ ॥
ମୋତେ କହିଲେ ବୃହସ୍ପତି । ଅନ୍ୟସ୍ତା ନାହିଁ ଜୟ ଗତି ॥
ଏମନ୍ତେ ଆସି ଦେବଯୂଥ । ଘେନାଇ ପଞ୍ଚଶୁତ ସୁତ ॥
ସ୍ୱର୍ଗ ଆବୋରି ଯୁଦ୍ଧକରି । ଅନେକ ଅସୁର ସଂହାରି ॥
ଇନ୍ଦ୍ରର ତୁଳେ ତାର ସୁତେ । ସ୍ୱର୍ଗେ ରହିଲେ ଦିନାକେତେ ॥
ବୋଲଇ ବିପ୍ର ଜଗନ୍ନାଥ । ନବମ ସ୍କନ୍ଧେ ଭାଗବତ ॥
ବଂଶାନୁଚରିତ ଏ ବାଣୀ । ସୁଜନେ ତର ଏହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ*
*ନାମ ସପ୍ତଦଶୋଽଧ୍ୟାୟଃ ।*

## ଅଷ୍ଟାଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ବ୍ରହ୍ମବେତ୍ତା । ନବମେ ରାଜାଙ୍କ ବେବସ୍ତା ॥
ନହୁଷ ବୀର୍ଯ୍ୟେ ଶତେପୁତ୍ରେ । ତାହାଙ୍କ ନାମ କହୁ ତୋତେ ॥
ଯତ୍ରି ଯଯାତି ଯେ ସଞ୍ଜାତି । ଆୟାତ ବ୍ୟୟତ ଯେ ବୃତୀ ॥
ଦେହେ ଇନ୍ଦ୍ରିୟ ଯେହ୍ନେ ମନେ । ଜନ୍ମିଲେ ନହୁଷ ନନ୍ଦନେ
ଯତୀକି ରାଜପଣ ଦେଲା । ସେ ରାଜ୍ୟ ଭୋଗ ନ ଇଛିଲା
ବୋଲଇ ଦୁଃଖମୟ ଏହି । ଏଣେ ମୋହର କାର୍ଯ୍ୟନାହିଁ ॥
ଆତ୍ମା ନଜାଣେ ରାଜାସୁଖେ । କରନ୍ତେ ମନରହେ ଦୁଃଖେ ॥
ଜାଣଇ ପିତାର ଆଚାର । ଋଷିଙ୍କି ବୁହାଇଲା ଭାର ॥
ଇନ୍ଦ୍ରାଣୀ ଅର୍ଥେ ପଥେ ଯାନ୍ତେ । କୋପ ବସିଲା ତାଙ୍କ ଚିତ୍ତେ ॥
ବହି ନପାରି ମହାଭାର । ବୋଇଲେ ହୁଅ ଅଜଗର ॥
ଏମନ୍ତେ ଅଜଗର ମତେ । ନିର୍ଜନ ଗହନ ବନସ୍ତେ ॥
ପଡ଼ି କହିଲା କରି ଶୋକ । ଭୋ ଋଷିଗଣେ ମୋତେ ରଖ
ତାର ବିକଳେ ଋଷିଗଣ । ବୋଇଲେ ଭୋ ରାଜନ ଶୁଣ
ତ୍ରେତୟା ଯୁଗ ଅବଶେଷେ । ଧର୍ମ ନନ୍ଦନ କୁରୁବଂଶେ ॥
ଭୀମକୁ ବନେ ଖୋଜିଯାନ୍ତେ । ଭେଟ ହୋଇବ ତୋ ସଂଗତେ
ଭୀମକୁ ବାନ୍ଧିଥିବୁ ତୁହି । ସେ ପୁଣି ତୋର ପାଶେଯାଇ ॥
ଧର୍ମ କହିବ ତୋତେ ଯେବେ । ତୋର ନିସ୍ତାର ହେବ ତେବେ
ଏମନ୍ତ କହି ମୁନି ଗଲେ । ସେ ପୁଣି ଯୁଧିଷ୍ଠିର ତୁଳେ ॥
ଧର୍ମ ବିଚାର କରି ଭଲେ । ଏକାନ୍ତେ ନହୁଷର ତୁଳେ ॥
ସର୍ପ ଯୋନିରୁ ମୋକ୍ଷହୋଇ । ନିଜ ମନ୍ଦିରେ ମିଳେ ଯାଇ ॥
ସେ କଥା ଯତି ସ୍ମରି ମନେ । ନ ବସେ ନୃପତି ଆସନେ ॥
ଯଯାତି ଭ୍ରାତୃ ଗଣ ତୁଳେ । ରାଜା ହୋଇଲା ପିତୃବୋଲେ ॥

ସକଳ ରାଜ୍ୟେ ହୋଇ ରାଜା । ଧର୍ମେ ପାଳିଲା ଜନପ୍ରଜା ॥
କନ୍ୟା ଦୋହିତା ଦେବଯାନୀ । ଶର୍ମିଷ୍ଠା ବୃଷପର୍ବା ଆଣି ॥
ଯଯାତି ବରି ବରପଣେ । ବିବାହ କଲେ ଶୁଭକ୍ଷଣେ ॥
ଏମନ୍ତେ ମୁନିବାକ୍ୟ ଶୁଣି । ବୋଲେ ପରୀକ୍ଷ ନୃପମଣି ॥
ଭୋ ମୁନି ଅସମ୍ଭବ ବାଣୀ । ସଂଶୟ ଲାଗିଲା ତା ଶୁଣି ॥
ଶୁଦ୍ଧ ସ୍ୱଭାବେ ବ୍ରହ୍ମରଷି । ଜନ୍ମ ସ୍ୱଭାବେ ଭୃଗୁବଂଶୀ ॥
ବ୍ରାହ୍ମଣ କ୍ଷତ୍ରୀୟ କେମନ୍ତେ । ବିବାହ କଲେ ବେଦମତେ ॥
ଏ ପ୍ରତିଲୋମ ପ୍ରାୟେମଣି । ଶୁକ କହନ୍ତି ତାହାଶୁଣି ॥
ଦିନେକ ବୃଷପର୍ବା ଘରେ । ଶର୍ମିଷ୍ଠ କନ୍ୟା ଅନ୍ତେପୁରେ ॥
ସଖୀ ସହସ୍ରେ ଘେନିସଂଗେ । ଜଳ କ୍ରୀଡ଼ନ ଅତିରଂଗେ ॥
ସ୍ୱଭାବେ ନିଦାଘରେ କାଳେ । ଗୁରୁ ଦୁହିତା ସଂଗମେଳେ ॥
କୃତ୍ରିମ ବନମଧେ ମିଳେ । ପୁଷ୍ପିତ ଦ୍ରୁମ ଶୀତ ଜଳେ ॥
ପଦ୍ମ ବନରେ ପୁଷ୍ପଗନ୍ଧେ । ଭ୍ରମର ଗଣ ମକରନ୍ଦେ ॥
ପୁଷ୍ପର ଗନ୍ଧେ ବାୟୁସ୍ପର୍ଶେ । ଶୀତଳ ଲାଗଇ ଶରୀରେ ॥
ସେ ଜଳେ ପଶି ଯେତେକନ୍ୟା । ସ୍ୱଭାବେ କମଳ ଲୋଚନା ॥
ବସ୍ତ୍ର ପାଇଟି ନଦୀକୂଳେ । ଝାସି ପଶିଲେ ଶୀତଜଳେ ॥
କ୍ରୀଡ଼ନ୍ତି ଜଳେ ନାନା ରଂଗେ । ଜଳସିଞ୍ଚନ୍ତି ଅଂଗ ଭଂଗେ ॥
ଏମନ୍ତେ ଉମା ମହେଶ୍ୱର । ଆରୋହୀ ବୃଷଭ ଉପର ॥
ବନେ ଚଳନ୍ତେ ତାଙ୍କୁ ଦେଖି । ବେଗେ ଉଠିଲେ ଶଶିମୁଖୀ ॥
ସକଳେ ଉଠି ତାର ତୁଳେ । ସମ୍ଭ୍ରମେ ବସନ ପିନ୍ଧିଲେ ॥
ଶର୍ମିଷ୍ଠା ସମ୍ଭ୍ରମେ ନଜାଣି । ଦେବଯାନୀର ବସ୍ତ୍ରଆଣି ॥
ସମ୍ଭ୍ରମେ କଲା ପରିଧାନ । ତା ଦେଖି ଦେବଯାନୀ ମନ ॥
କୋପେ କମ୍ପଇ ଥରହର । କଠୋର ବୋଲଇ ଉତ୍ତର ॥
ଦେଖ ଏ ଦାସୀ ମାତ୍ର ହୋଇ । ବସ୍ତ୍ର ପିନ୍ଧିଲା ମୋର ନେଇ ॥
ଅବଜ୍ଞା କରି ମୋ ବସନ । ଯଜ୍ଞର ହବି ଯେହ୍ନେ ଶ୍ୱାନ ॥
ଦେବେ ଯେ ଅତି ତପବଳେ । ବିଷ୍ଣୁ ବଦନୁ ଭୂମିତଳେ ॥
ବ୍ରାହ୍ମଣ କରି ଜାତ କଲେ । ସର୍ବେ ଡରନ୍ତି ତାଙ୍କ ବୋଲେ ॥
ଯଜ୍ଞେ ଭୁଞ୍ଜନ୍ତି ହବିର୍ଭାଗ । ଶିର ବଦନେ ଯା'ର ଭୋଗ ॥
ଗୋବିନ୍ଦ ଯାହାର ବଚନେ । ନିତ୍ୟେ ବସନ୍ତି ସନ୍ନିଧାନେ ॥
ଭୃଗୁର ପରେ ମୋର ତାତ । ଆମ୍ଭର ଶିଷ୍ୟ ଏହା ତାତ ॥
ମୋ ବସ୍ତ୍ର ପିନ୍ଧେ ଗର୍ବମନେ । ଶୂଦ୍ରକୁ ବେଦବାକ୍ୟ ଯେହ୍ନେ ॥
ଏମନ୍ତେ ଦେବଯାନୀ କଥା । ଶୁଣି ଶର୍ମିଷ୍ଠା ମନେ ବ୍ୟଥା ॥
ବୋଲଇ ପୁରୁଷ ବଚନ । ସିଂହକୁ ଶୃଗାଳ ଯେସନ ॥
ଆପଣା ବୃତ୍ତାନ୍ତ ନଜାଣି । ମୋ'ଆଗେ କହୁ କଟୁବାଣୀ ॥
ସ୍ୱଭାବେ ଭିକ୍ଷୁକ ବୋଲାଉ । ଲାଜତୁ ସୁଖେ କି ନପାଉ ॥
ରାଜାର ଦୁହିତା ମୁଁ ହୋଇ । ମୋ ଆଗେ କହୁ ଗର୍ବ ବହି ॥
ଏମେନ୍ତ ବହୁ କୋପକଲା । ସଖୀଙ୍କି ଚାହିଁ ଆଜ୍ଞା ଦେଲା ॥
ମାର ବୋଇଲେ କୋପମନେ । ଶର୍ମିଷ୍ଠା ଧରି ତା ବସନେ ॥
ଓଷ୍ଠ କାମୋଡ଼ି ଅତିକୋପେ । ତା ବସ୍ତ୍ର ପକାଇଲା କୂପେ ॥
ପୁଣି ତାହାର ବସ୍ତ୍ରଧରି । କୂପେ କ୍ଷେପିଲା କୋପକରି ॥
ଗଲା ସେ ଆପଣା ମନ୍ଦିର । ଏବେ ହେ ଶୁଣ ନୃପବର ॥
ଯଯାତି ରାଜା ମୃଗ ଅର୍ଥେ । ଥିଲା ସେ ନିଗମ ବନସ୍ତେ ॥
ତୃଷିତ ଜଳ ଅନ୍ୱେଷଣେ । କୂପେ ମିଳିଲା ତତକ୍ଷଣେ ॥
କୂପେ ଚାହିଁଲା ନୃପମଣି । ଦେଖିଲା ଶୁକ୍ରର ଦୁଲଣୀ ॥
ଉଲଗ୍ନେ ବସ୍ତ୍ର ଖୋଜେ ଜଳେ । ତା ଦେଖି ରାଜା ପଶେ ଜଳେ
ଉତ୍ତରୀ ବସ୍ତ୍ର ତାକୁ ଦେଲା । କନ୍ୟାକୁ ଜଳୁ ଉଦ୍ଧାରିଲା ॥
ଆନନ୍ଦେ ହସ୍ତେ ହସ୍ତ ଧରି । କୂଳେ ସ୍ଥାପିଲା ଦୟାକରି ॥
ସେ କନ୍ୟା ରାଜା ମୁଖଚାହିଁ । ଗଦ୍‌ଗଦେ ପ୍ରେମଭର ହୋଇ ॥
ବୋଲଇ ଶୁଣ ନୃପମଣି । ତୁ ଯେ ଧଇଲୁ ମୋର ପାଣି ॥
ତୁ ଅଟୁ ପର ପୁଣଞ୍ଜୟ । ଶୁଣତୁ ନିଗମ ନିର୍ଣ୍ଣୟ ॥
ଯେ କନ୍ୟା ହସ୍ତେ ହସ୍ତଧରି । ନିଶ୍ଚେ ସେ ତାର ହୁଏ ନାରୀ ॥
ହସ୍ତ ତୁ ଦେଲୁ ମୋରହସ୍ତେ । ମୋ ସ୍ୱାମୀ ଅନ୍ୟ କେ ଜଗତେ
ଏ ଯେ ସମ୍ବନ୍ଧ କନ୍ୟାବର । ନିଶ୍ଚୟେ ସଞ୍ଚିଲା ଈଶ୍ୱର ॥
ମୁଁ କନ୍ୟାଥିଲି କୂପ ଜଳେ । ତୁ ମୋତେ ହସ୍ତଧରି ବଳେ ॥
କୂଳେ ସ୍ଥାପିଲୁ ଦୟାବହି । ତୋ ତହୁଁ ଅନ୍ୟବର କାହିଁ ॥
ଏ ଶାସ୍ତ୍ରମତେ ବିଚାରନ୍ତେ । ବ୍ରାହ୍ମଣେ ନ ବରିବ ମୋତେ ॥
କଚ ଯେ ବୃହସ୍ପତି ବଳା । ସେ ମୋତେ ପୂର୍ବେ ଶାପଦେଲା
ସେ ଶାପ ନୋହିଲା ଅନ୍ତର । ଏଣୁ କ୍ଷତ୍ରିୟ ମୋରବର ॥
ଦଇବ ସଞ୍ଚିତ ଏକଥା । କେ କରି ପାରିବ ଅନ୍ୟଥା ॥
ତାର ବଚନେ ରାଜାଘେନି । ସମ୍ମତ କରି ହୋଇ ତୁନି ॥
ଯଯାତି ନିଜ ପୁରେ ଗଲା । ସେ କନ୍ୟା ମନେ ବିଚାରିଲା ॥
କହିବି ପିତା ଆଗେ ମୁହିଁ । ଯେମନ୍ତେ ବର ଲଭିବଇଁ ॥
ରୋଦନ କରି ମନ ଦୁଃଖେ । କହିଲା ପିତାର ସମ୍ମୁଖେ ॥
ଶର୍ମିଷ୍ଠା ଯେତେ କର୍ମ କଲା । ଯେମନ୍ତେ କୂପେ ପକାଇଲା ॥
ରାଜା ଉଦ୍ଧାରିଲା ଯେମନ୍ତେ । କୂପୁଁ ତୋଳିଲା ଦକ୍ଷ ହସ୍ତେ ॥
ଏ କଥା ଯେମନ୍ତ ବିଧାନେ । କହିଲା ପିତା ସନ୍ନିଧାନେ ॥
ଶୁକ୍ର ଯେ ତାର ବାକ୍ୟ ଶୁଣି । ଭବିଷ୍ୟ କଥା ମନେ ଗୁଣି ॥
ବୋଇଲା ମୁଣ୍ଡେ ଦେଇ ହସ୍ତ । ଧିକ୍ ମୋର ପୌରହିତ୍ୟ ॥

ଏମନ୍ତେ ମନେ କୋପ କରି । ଦୁହିତା କର କରେ ଧରି ॥
ବୃଷପ୍ରଭାର ପୁରେ ଗଲେ । ସେ ବେଗେ ଶୁକ୍ରକୁ ଭେଟିଲେ ॥
ଅନେକ ତୁଷ୍ଟି ମନେ ବହି । ଚରଣେ ଗଡ଼ଘାଲି ଶୋଇ ॥
ଶୁକ୍ରଙ୍କ କ୍ରୋଧ କ୍ଷଣମାତ୍ର । ରହଇ ସଂସାରେ ବିଦିତ ॥
ବୋଇଲେ ତାର ମୁଖ ଚାହିଁ । ଏ କାର୍ଯ୍ୟ ବୁଝି କରତୁହି ॥
ଯଯାତି କୂପୁଁ ଉଦ୍ଧରିଲା । ଏ କନ୍ୟା ହସ୍ତେ ହସ୍ତ ଦେଲା ॥
ମୁଁ ଏବେ ବେଦ ବାକ୍ୟମତେ । ବ୍ରାହ୍ମଣ ବରିବି କେମନ୍ତେ ॥
ଏମନ୍ତେ ବିଚାରିଲା ମନେ । ସନ୍ତୋଷ ଚିତ୍ତେ ବେନି ଜନେ ॥
ଶର୍ମିଷ୍ଠା ଦେବଯାନୀ ତୁଲେ । ଯଯାତି କରେ ବିଭାଦେଲେ ॥
ଶର୍ମିଷ୍ଠା ତୁଲେ ଦିବ୍ୟନାରୀ । ଘେନି ଶତେକ ପରିବାରୀ ॥
ଖଟଇ ଦେବଯାନୀ ମେଳେ । ଯଯାତି ସଂଗେ ଭାବଭୋଳେ
ଶର୍ମିଷ୍ଠା ରୂପ ଗୁଣ ଦେହେ । ଯଯାତି ଦେଖି କାମମୋହେ ॥
ଦେବଯାନୀକି ନସୁମରେ । ଶର୍ମିଷ୍ଠା ବାକ୍ୟ ନିତ୍ୟେ କରେ ॥
ଏ ବେନି କନ୍ୟା ଏକମେଳେ । ରାଜା ଶୟନ ଋତୁ କାଳେ ॥
ସେ ଦେବଯାନୀ କୋପଭରେ । କହିଲା ପିତାର ଆଗରେ ॥
ପିତା ଚରଣ ତଳେ ପଡ଼ି । କାନ୍ଦଇ ବେନିକର ଯୋଡ଼ି ॥
ଶର୍ମିଷ୍ଠା ତୁଲେ ରାଜା ନିତ୍ୟେ । ରାତ୍ର ଦିବସେ ସେ ସଂଗତେ
ତାହାର ବଶ ପ୍ରାୟେ ରହେ । କୋପ ନୟନେ ମୋତେ ଚାହେଁ ॥
ଶର୍ମିଷ୍ଠା ପ୍ରେମ ବନ୍ଧଆଶେ । କେବେହେଁ ନମିଳେ ମୋପାଶେ ॥
ଏମନ୍ତେ ଦୁହିତା ବଚନେ । କୋପ ବସିଲା ଶୁକ୍ରମନେ ॥
ମିଳିଲେ ରାଜାର ସମୀପେ । ଗରୁଡ଼ ଆଗେ ଯେହ୍ନେ ସର୍ପେ ॥
ବୋଲଇ କୋପଭର ହୋଇ । ଅଧର୍ମ ଆଚରିଲୁ ତୁହି ॥
ମୋର ଦୁହିତା କଲୁ ଦୂର । ଶର୍ମିଷ୍ଠା ମନୋହରୀ ତୋର ॥
ତୁ ଏବେ ଜ୍ୱରା ରୂପ ହୁଅ । ଶୟନେ ଦିବାରାତ୍ରି ଥାଅ ॥
ଏମନ୍ତେ ଶାପ ଦେଲେ ମୁନି । ତକ୍ଷଣେ ବୃଦ୍ଧ ଦେହଘେନି ॥
ଯଯାତି ଶୋଇଲା ଶୟନେ । ଉଠି ନପାରେ ରାତ୍ରଦିନେ ॥
ଏମନ୍ତେ ତାର ପାଞ୍ଚ ସୁତ । ବେନି କନ୍ୟାର ଗର୍ଭେ ଜାତ ॥
ହୋଇ ବଢ଼ିଲେ ଦିନେଦିନେ । ପ୍ରଚଣ୍ଡ ତେଜେ ସୂର୍ଯ୍ୟଯେହ୍ନେ
କାନ୍ଦିଣ ଜୀବନ ବିକଳେ । ପଡ଼ି ଭୃଗୁର ପାଦତଳେ ॥
ସ୍ୱଭାବେ ଦୁହିତାର ପତି । ତା ଅର୍ଥେ ଉପାୟ ସେ ଚିନ୍ତି ॥
ପୁତ୍ରକୁ ଜ୍ୱରାରୂପ ଦେଇ । ସଂସାରେ ଭୋଗ କରତୁହି ॥
ସେ ରାଜା ପୁତ୍ରକୁ ଅଣାଇ । ବୋଲଇ ସମୀପେ ବସାଇ ॥
ହେ ପୁତ୍ର ଦେଖ ମୋର ରୂପ । ଗୁରୁଯେ ଦେଲେ ମୋତେ ଶାପ୍ୟ
ବୃଦ୍ଧ ହୋଇଲି ଯୁବାକାଳେ । ଘନ ଯେସନେ ଅନ୍ତରାଳେ ॥

ଦେଖଏ ମନୁଷ୍ୟ ଶରୀର । ବିଷ୍ଣୁର ଭୋଗ ଏ ମନ୍ଦିର ॥
ଇନ୍ଦ୍ରିୟ ଭୋଗେ ଜୀବରହେ । ଯଜ୍ଞ ପୁରୁଷ ବସେ ଦେହେ ॥
ଦେବେ ବାଞ୍ଛନ୍ତି ଯେ ଶରୀର । ନିଷ୍ଫଳ ହୋଇଲା ମୋହର ॥
ଯଦୁକୁ ବୋଲେ ନୃପବର । ତୁ ପୁତ୍ର ମୋର ବୋଲକର ॥
ମୋ ଜରା ଶରୀର ତୁ ନିଅ । ତୋର ବୟସ ମୋତେ ଦିଅ ॥
ଭୋଗ ମୁଁ କରି ଦିନା କେତେ । ପୁଣି ବୟେସ ଦେବି ତୋତେ
ଏମନ୍ତେ ରାଜାର ବଚନେ । ଯଦୁ ବୋଇଲା କୋପମନେ ॥
ଦୁର୍ଲ୍ଲଭ ମନୁଷ୍ୟ ଶରୀର । ବିଷ୍ଣୁର ପୂଜାର ମନ୍ଦିର ॥
ଯଜ୍ଞ ପୁରୁଷ ଏହା ମଧ୍ୟେ । ବିଷୟ ଭୁଞ୍ଜନ୍ତି ଆନନ୍ଦେ ॥
ଦେବେ ନପାନ୍ତି ଯାହାଲଭି । ମୁଁ ଏହା କେମନ୍ତେ ଛାଡ଼ିବି ॥
ଏମନ୍ତ ଯଦୁ ମୁଖୁଁ ଶୁଣି । କୋପେ ବୋଇଲା ନୃପମଣି ॥
ମୋର ବଚନ ତୁ ନ କଲୁ । ରାଜ୍ୟ ଭୋଗକୁ ନ ଛାଡ଼ିଲୁ ॥
ତୋ ବଂଶେ ରାଜା ଯେ ହୋଇବ ।ମୂର୍ଦ୍ଧନା ଫାଟି ପ୍ରାଣ ଯିବ ॥
ଏମନ୍ତେ ଶାପ୍ୟତାକୁ ଦେଇ । ପୁତ୍ରକୁ ଜଣେ ଜଣେ ରାଇ ॥
ତୁର୍ବସୁ ଦ୍ରୁହି ଅନୁ ତିନି । ରାଜା ବଚନେ ହୋଇତୁନି ॥
ପୁରୁ ଯେ ଥିଲା ରାଜା ପଛେ । ତକ୍ଷଣେ ମିଳିଲା ପ୍ରତ୍ୟକ୍ଷେ ॥
କପୋଳେ ବେନିକର ଯୋଡ଼ି । କହେ ନୃପତି ପାଦେ ପଡ଼ି ॥
ଭୋ ତାତ ମୋତେ ଅଜ୍ଞା ଦିଅ । ମୋର ବୟସ ତୁମ୍ଭେ ନିଅ ॥
ତୋ ବୃଦ୍ଧ ରୂପ ଦିଅ ମୋତେ । ମୋ ରୂପେ ବଞ୍ଚ ଦିନା କେତେ ॥
ଏମନ୍ତ କହି ନୃପ ବଳା । ପିତାକୁ ନିଜ ରୂପ ଦେଲା ॥
ନିଷ୍ଫଳେ ରହିଲା ତା ମନ । ଏମନ୍ତ ଗଲା କେତେଦିନ ॥
ପୁତ୍ରକୁ ଜ୍ୱରା ରୂପ ଦେଇ । ରାଜା ହୋଇଲା ଦିବ୍ୟ ଦେହୀ ॥
ଭୋଗ ସେ କଲା ନାନାମତେ । ଇନ୍ଦ୍ରିୟ ଲାଳସା ଆୟତ୍ତେ ॥
ହୋଇଲା ସପ୍ତଦ୍ୱୀପେ ରାଜା । ଧର୍ମେ ପାଳିଲା ଜନପ୍ରଜା ॥
ନିଶ୍ଚିନ୍ତେ ଦେବଯାନୀ ସଂଗେ । ଭୋଗ ସେ କଲା ନାନାରଂଗେ ॥
ଅନେକ ଦାନ ଯଜ୍ଞମନ୍ତେ । ସେବିଲା ବିଷ୍ଣୁ ପାଦଗତେ ॥
ଯେ ହରି ଦେହେ ଏ ଜଗତେ । ଆକାଶେ ଜଳଧର ମତେ ॥
ସେ ହରି ପାଦ ହୃଦେ ଚିନ୍ତି । ବିଷୟ ଭୋଗେ ନରପତି ॥
ଇନ୍ଦ୍ରିୟ ନପାରିଲା ଜିଣି । ବିଷୟ ଭୋଗେ ନୃପମଣି ॥
କହଇ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ ॥
ସୁଜନଜନେ ଏହା ଶୁଣି । ତରିବ ଭବ ତରଙ୍ଗିଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ*
*ନାମ ଅଷ୍ଟାଦଶୋଽଧ୍ୟାୟଃ ।*

## ଊନବିଂଶ ଅଧ୍ୟାୟ

ଯଯାତି ବସି ଏକଦିନେ । ଜ୍ଞାନ ପ୍ରକାଶିଲା ତା ମନେ ॥
ଦେବଯାନୀର ମେଳେ ଥାଇ । ବୋଇଲା ତାର ମୁଖ ଚାହିଁ ॥
ଶୁଣ ସୁନ୍ଦରୀ ତୋ ଅଧୀନ । ବିଷୟରସେ ମୋର ମନ ॥
ପଶିଲା କାମ ଅଧିକାରେ । ଭାସ୍ୱର ଯେହ୍ନେ ଅନ୍ଧକାରେ ॥
ଶୁଣ ଭାର୍ଗବୀ ମୋର କଥା । ପୂର୍ବେ ଯେ ଇତିହାସେ ଗାଥା ॥
ସେ ଛାଗ ପ୍ରାୟେ ତୋରସଂଗେ । ମୁଁ ଯେ ବୁଡ଼ିଲି ପ୍ରେମରଂଗେ
ସପତ ଦ୍ୱୀପେ ରାଜା ହୋଇ । ଅଜ୍ଞାନେ ବଞ୍ଚାଇଲି ଦେହୀ ॥
ଭୂମିରେ ଯେତେ ଶସ୍ୟଥାନ୍ତି । ସୁବର୍ଣ୍ଣ ଯଅ ପଶୁଜାତି ॥
ଯେ ପ୍ରାଣୀ ହୁଏ କାମବଶ । ଏମାନେ କରିବେ ବା କିସ ॥
ବନ୍ଦୀ ପୁରୁଷଙ୍କର ମନ । କେବେହେ ନୋହେ ସଂଯମନ
ନିତ୍ୟେ ଭ୍ରମନ୍ତି କାମ ଭୋଳେ । ଅଗ୍ନି ଯେସନେ ଘୃତିଯୋଗେ ॥
ସକଳ ଭୃତ୍ୟ ସଂଗ ଛାଡ଼ି । ସେ ଆତ୍ମାଭାବେ ସୁଖେବଢ଼ି ॥
ଆତ୍ମାକୁ ଦେଖେ ସର୍ବଦେହେ । ତା ସର୍ବ ଦିଗ ଶୂନ୍ୟମୟେ ॥
ଦୁର୍ମତି ଜନଙ୍କର ମତି । ତୃଷ୍ଣାକୁ ଛାଡ଼ି ନପାରନ୍ତି ॥
ଯେ କରିପାରେ ସର୍ବଭକ୍ଷ । ତୃଷ୍ଣା ବରଣେ ନୁହେଁ ଦକ୍ଷ ॥
ଭଗିନୀ କନ୍ୟା ବନ୍ଧୁମେଳେ । କେବେହେଁ ନଥିବ ନିଷ୍କଳେ
ମନ ଯେ ଇନ୍ଦ୍ରିୟଙ୍କ ଗ୍ରାମ । ବଳେ ତାହାକୁ ନାହିଁ ସମ ॥
ପଣ୍ଡିତ ଜନ ମନ ହରେ । ଏଣୁ ସେ ନାରୀ ସଂଗତରେ ॥
ଦେଖ ମୁଁ ସହସ୍ର ବରଷେ । ନିତ୍ୟେ ରମିଲି କାମବଶେ ॥
ନିରତେ ବିଷୟ ବ୍ୟସନେ । ମନ ହରିଲି ପ୍ରତିଦିନେ ॥
ମୁଁ ଯେବେ ତୃଷ୍ଣା ଦୂରକରି । ବିଷ୍ଣୁ ଚରଣେ ମନଧରି ॥
ନିର୍ମୋହ ହୋଇ ଏକସ୍ଥଳେ । ରହିବି ପଶୁଗଣ ମେଳେ ॥
ଦୃଷ୍ଟି ଶ୍ରୁତିକୁ ମିଥ୍ୟାକରି । ଜ୍ଞାନ ସମସ୍ୟା ଦୂର କରି ॥
ସଂସ୍କୃତିଙ୍କ ଆତ୍ମାର ବିକାଶ । ଏହା ମୁଁ କରି ଆତ୍ମଆଶ ॥
ଏମନ୍ତେ ପ୍ରିୟା ଆଗେ କହି । ପୁରୁକୁ ସମୀପେ ଅନାଇ ॥
ତାର ବୟେସ ତାକୁ ଦେଲା । ବୃଦ୍ଧ ଶରୀର ଆବୋରିଲା ॥
ପୁରୁକୁ ପୁରେ କଲା ରାଜା । ଭଲେ ପାଳିବ ଜନପ୍ରଜା ॥
ଦ୍ରୁହିକୁ ପୂର୍ବ ଦେଶ ଦେଲା । ଅନୁକୁ ଦକ୍ଷିଣେ ସ୍ଥାପିଲା ॥
ତୁର୍ବସୁ ପଶ୍ଚିମେ ବସାଇ । ଏମନ୍ତେ ରାଜ୍ୟ ବାଣ୍ଟିଦେଲା ॥
ଆନନ୍ଦ କରି ସର୍ବଜନେ । ତକ୍ଷଣେ ପଶିଲା ଅରଣ୍ୟେ ॥
ଆତ୍ମାରେ ଆତ୍ମା ଧ୍ୟାନକରି । ଯୋଗ ଅଭ୍ୟାସେ ମନଧରି ॥
ପରମ ବ୍ରହ୍ମେ ସେ ପଶିଲା । ବିଷ୍ଣୁ ମାୟାରୁ ତରିଗଲା ॥
ସେକଥା ଦେବଯାନୀ ଶୁଣି । ସ୍ୱାମୀର ପଥ ମନେଗୁଣି ॥
ସଂସାର ସ୍ୱପ୍ନପ୍ରାୟ ମଣି । ଏମନ୍ତ ଭାଳି ସେ ତରୁଣୀ ॥
ସ୍ୱାମୀର ଅନଳେ ପଶିଲା । ବିଷ୍ଣୁ ମାୟାରୁ ତରିଗଲା ॥
ବ୍ରାହ୍ମଣ ଜଗନ୍ନାଥ କହେ । ସୁଜନେ ଏଣେ କରଲୟେ ॥
ନବମ ସ୍କନ୍ଧେ ଭାଗବତ । ଯେ ଧର୍ମ ବଂଶାନୁଚରିତ ॥
ଭାଷା ପ୍ରବନ୍ଧେ ହରିକଥା । ଶୁଣନ୍ତେ ତୁଟେ ଭବବ୍ୟଥା ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ*
*ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ*
*ନାମ ଊନବିଂଶୋଽଧ୍ୟାୟଃ ।*

## ବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି । ସେ ପୁରୁବଂଶର କାହାଣୀ ॥
ଯେବା ଯେମନ୍ତ କଲେକର୍ମ । ଯେ ବଂଶ ମଧ୍ୟେ ତୋର ଜନ୍ମ॥
ସେ ବଂଶେ ରାଜାଥିଲେ ଯେତେ । ସଂକ୍ଷେପି କହିବି ମୁଁ ତୋତେ
ସେ ପୁତ୍ର ଜନ୍ମେଜୟ ନାମ । ସେ ପୁରୁବଂଶ ଗୁଣଧାମ ॥
ତାହାର ହୋଇଲା ନନ୍ଦନ । ନାମ ତାହାର ପ୍ରାଚିନ୍ୱାନ ॥
ପ୍ରବୀର ତାହାର କୁମର । ମନସ୍ୟୁ ତାର ବଂଶଧର ॥
ତାର ତନୟ ଗୁରୁକ୍ଷଜ । ସମ୍ଯୁ ତା ପୁତ୍ର ମହାଯୋଦ୍ଧା ॥
ତାର କୁମର ବ୍ରହୁଗିବ । ସଂଯାତି ତାହାର ସମ୍ଭବ ॥
ରୌଦ୍ରାଶ ତାହାର ତନୟେ । ତା ତହୁଁ ଦଶ ପୁତ୍ର ହୋୟେ ॥
ଘୃତଚୀ ଅପସରା ଗର୍ଭେ । ପୁତ୍ର ହୋଇଲେ ବହୁଭାବେ ॥
କି ଅବା କରିବା ଉପାମ । ଶୁଣହେ ତାହାଙ୍କର ନାମ ॥
ଋତେୟୁ ରୂପେୟୁ ଏ ବେନି । ସ୍ଥଣ୍ଡିଳେୟୁ କୃତେୟ ଘେନି ॥
ଜଳେୟୁ ସନ୍ନିତେୟୁ ଦୁଇ । ଧର୍ମେୟୁ ସତେୟୁ ବୋଲାଇ ॥
ବ୍ରତେୟୁ ବଳେୟୁ ଏ ଦେଶ । ଅପସରୀ ଗର୍ଭେ ପୁରୁବଂଶ ॥
ବିଷ୍ଣୁର ଅଂଶେ ଜାତ ହୋଇ । ସର୍ବେ ପାଳିଲେ ଏହି ମହୀ ॥
ଋତେୟ ସୁତ ରନ୍ତିନାବ । ତହୁଁ ତିନି ପୁତ୍ର ସମ୍ଭବ ॥
ସୁମତି ଧ୍ରୁବ ପ୍ରତିରଥ । କଣ୍ୱ ଅପ୍ରତିରଥ ସୁତ ॥
ତାର ତନୟ ମେଧାତିଥି । ପ୍ରସନ୍ନ ତାହାର ସନ୍ତତି ॥
କଣ୍ୱର ବଂଶେ ଜାତ ହୋଇ । ସଂସାରେ ବ୍ରାହ୍ମଣ ବୋଲାଇ ॥
ରେଭି ଯେ ସୁମତିର ସୁତ । ଦୁଷ୍ମନ୍ତ ନାମ ତାର ଖ୍ୟାତ ॥
ସୁନ୍ଦରେ ନାହିଁ ଅନ୍ୟସୀମା । ଶୁଣହେ ତାହାର ମହିମା ॥
ଦୁଷ୍ମନ୍ତ ରାଜା ଏକ ଦିନେ । ମୃଗୟା ଅର୍ଥେ ଗଲା ବନେ ॥

କଣ୍ୱର ଆଶ୍ରମେ ମିଳିଲା । ଅଦ୍ଭୁତ କନ୍ୟାଏ ଦେଖିଲା ॥
ନାନା ଭୂଷଣେ ଝଟକନ୍ତି । ରମ୍ଭାର ପ୍ରାୟେ ଦିଶେ କାନ୍ତି ॥
ତାହାକୁ ଦେଖି କାମବଶେ । ସମ୍ଭୋଗ କରିବାର ଆଶେ ॥
ତା ରୂପ ଦେବ ମାୟାମୟୀ । ଦେଖିଣ ମନ ନ ରହଇ ॥
ଅଳପ ବଳ ଘେନି ସଙ୍ଗେ । ଦୁଷ୍ମନ୍ତ ମିଳି ତାର ଆଗେ ॥
ଆନନ୍ଦେ ତାର ଦରଶନେ । ବୋଲଇ ପରିଗ୍ରହ ମନେ ॥
ହାସ୍ୟ ବଚନେ ତାର ପାଶେ । ମଧୁର ବାକ୍ୟେ ମନତୋଷେ ॥
ହେ ଶୁଭ୍ରା କମଳ ନୟନୀ । କହତୁ କାହାର ନନ୍ଦିନୀ ॥
ନିର୍ଜ୍ଜନ ବନେ କିମ୍ପା ଅଛୁ । କହ କାହାକୁ ବର ଇଛୁ ॥
ତୋ ରୂପେ କେବା ଅଛି ସମ । କହ ତୋହର କିସ ନାମ ॥
ନିଶ୍ଚେ ତୁ ରାଜାର ନନ୍ଦିନୀ । ଜାଣିଲି ତୋର ରୂପଘେନି ॥
ମୁଁ ଯେ ପୁରୁର ବଂଶେ ଜାତ । ଅଧର୍ମେ ନ ବଳେ ମୋ ଚିତ୍ତ ॥

## ଶକୁନ୍ତଳା ଉବାଚ

ଶୁଣ ପୁରୁଷ ଚୂଡ଼ାମଣି । ମୁଁ ବିଶ୍ୱାମିତ୍ରଙ୍କ ନନ୍ଦିନୀ ॥
ମେନକା ନାମେ ମୋ ଜନନୀ । ମୋ ଦଇବ କର୍ମଘେନି ॥
ମୋତେ ପକାଇ ଗଲା ବନେ । ପକ୍ଷୀ ଏ ମୋହର ଜୀବନେ ॥
ପାଳିଲେ ମେତେ ସ୍ନେହବହି । ଏ ବନେ ଭକ୍ଷ୍ୟ ଭୋଜ୍ୟ ଦେଇ ॥
ମୁଁ ଯେଣୁ ଶକୁନ୍ତ ଅବଳା । ଏଣୁ ମୋ ନାମ ଶକୁନ୍ତଳା ॥
ଜନ୍ମ ମୋ ଭରଦ୍ୱାଜ କୁଳେ । ମୁଁ ଯେହା ଜାଣି ଯୋଗବଳେ ॥
ତୁ ଯେବେ ମୋହର ବିଶ୍ୱାସ । ଆସ ମୋହର ପାଶେ ବସ ॥
ମୋହର ପୂଜା ଘେନ ତୁହି । ନିବାର ଭକ୍ଷ୍ୟ ଭୋଜ୍ୟ ଖାଇ ॥
ଏମନ୍ତେ ତାର ମଞ୍ଜୁବାଣୀ । ଆନନ୍ଦ ମନେ ରାଜା ଶୁଣି ॥

## ଦୁଷ୍ମନ୍ତ ଉବାଚ

ତୁ ଜାତ କୌଶୀକଙ୍କର ବଂଶେ । ତୋହର ଇଚ୍ଛା ମନ ତୋଷେ ॥
ଯେବେ ବରିବୁ ତୁହିଁ ମୋତେ । ଯେ ମୋର ସତ୍ୟ ବେଦମତେ ॥
ଏମନ୍ତ ସତ୍ୟ ତାକୁ କରି । ଗାନ୍ଧର୍ବ ମତେ କନ୍ୟା ବରି ॥
ସ୍ୱଭାବେ ପଣ୍ଡିତ ରାଜନ । ଜାଣଇ ସକଳ ବିଧାନ ॥
ବିବାହ କରି ତାର ସଙ୍ଗେ । ରାତ୍ର ବଞ୍ଚିଲା ରତି ରଙ୍ଗେ ॥
ଅମୋଘ ବୀର୍ଯ୍ୟ ତା ସ୍ୱଭାବେ । ରହିଲା ଶକୁନ୍ତଳା ଗର୍ଭେ ॥
ପ୍ରଭାତେ ରଜା ଗଲା ପୁରେ । ତକ୍ଷଣେ ଜନ୍ମିଲା କୁମରେ ॥
ସେ ବନେ କଣ୍ୱ ଋଷି ଥିଲେ । ବିଧାନେ ଜାତ କର୍ମକଲେ ॥
ତକ୍ଷଣେ ଉଠି ରାଜବଳା । ସ୍ୱଭାବେ ତେଜ ଅନର୍ଗଳା ॥
ସିଂହକୁ ବାମ ଭୁଜେ ଧରି । କ୍ରୀଡ଼ା କନ୍ଦୁକ ପ୍ରାୟେ କରି ॥
ରଜ୍ଜୁ ନିବେଶି ତାର ଗଳେ । କ୍ରୀଡ଼ା କନ୍ଦୁକ ପ୍ରାୟେ ଖେଳେ ॥
ପୁତ୍ରର ଦେଖି ବାଳ ଲୀଳା । ଅତ୍ୟନ୍ତ ତେଜ ଅନର୍ଗଳା ॥
ବିଷ୍ଣୁର ଅଂଶ ପ୍ରାୟେ ମଣି । ତକ୍ଷଣେ ଋଷିଙ୍କ ଦୁଲଣୀ ॥
ପୁତ୍ରର ହସ୍ତ ଧରି ବେଗେ । ମିଳିଲା ନିଜ ସ୍ୱାମୀ ଆଗେ ॥
ରାଜା ସେ ମାତା ପୁତ୍ର ଦେଖି । ତକ୍ଷଣେ ବୁଜି ବେନି ଆଖି ॥
ମାତା ପୁତ୍ରଙ୍କୁ ନ ଚିହ୍ନିଲା । ଭାବ ନଜାଣି ଉପେକ୍ଷିଲା ॥
ତକ୍ଷଣେ ଆକାଶର ବାଣୀ । କର୍ଣ୍ଣେ ଶୁଣିଲା ନୃପମଣି ॥
ଆତ୍ମାର ରୂପେ ପୁତ୍ରଜାତ । ଏ ନିଶ୍ଚେ ତୋର ଦାରା ସୁତ ॥
ଆକାଶ ବାଣୀ ଶୁଣି କର୍ଣ୍ଣେ । ତକ୍ଷଣେ ରାଜା ତୋଷମନେ ॥
ଆଶ୍ୱାସ କରି ପୁତ୍ର ନାରୀ । ଗୃହେ ସ୍ଥାପିଲା ଦଣ୍ଡଧାରୀ ॥
ଏମନ୍ତେ ଦୁଷ୍ମନ୍ତର ଅନ୍ତେ । ସେ ରାଜା ହୋଇଲା ଜଗତେ ॥
ବିଷ୍ଣୁର ଅବା ଏ ପ୍ରତ୍ୟକ୍ଷେ । ଶରୀରେ ବିଷ୍ଣୁ ତେଜ ଦିଶେ ॥
ଚକ୍ର ଦକ୍ଷିଣ ଭୁଜେ ଦିଶେ । ଚରଣେ କମଳ ପ୍ରକାଶେ ॥
ତାହାକୁ ମିଳି ଋଷିଯୂଥେ । ସିଞ୍ଚିଲେ ଅଭିଷେକ ମତେ ॥
ଅନେକ ଯଜ୍ଞ ଦାନ କଲା । ଧେନୁ କାଞ୍ଚନ ବସ୍ତ ଦେଲା ॥
ଭରତ କର୍ମ କଲା ଯେତେ । ନୋହିବ ଭୂତ ଭବିଷ୍ୟତେ ॥
କିରାତ ହୁନ ଯେ ଯବନ । ପୌଣ୍ଡ୍ରକ କଙ୍କ ରାଜପଣ ॥
ଏ ଆଦି ଅବ୍ରାହ୍ମଣ ଯେତେ । ସବୁ ଛେଦିଲା ଏ ଜଗତେ ॥
ଭରତ କର୍ମ ଶୁଣି ପ୍ରାଣୀ । ତରିବେ ଭବ ତରଙ୍ଗିଣୀ ॥
କହିଲେ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ବିଂଶୋଽଧ୍ୟାୟଃ ।*

## ଏକବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଜ୍ଞାନ ଭାବେ । ଭରତ ବଂଶ ଶୁଣ ଯେବେ ॥
ଯା ଯଶ ଇହ ପର ଲୋକେ । ଦ୍ୱିଜେ କହନ୍ତି ଏକେ ଏକେ ॥
ସ୍ୱଧର୍ମେ ଲଭେ ଧନ ଯେତେ । ନଭୁଞ୍ଜି ଦାନ କରେ ନିତ୍ୟେ ॥
ନିରତେ ଅକିଞ୍ଚନ ପ୍ରିୟ । କୁଟୁମ୍ବେ ନ କରେ ସେନହ ॥
ଶୁଣ ରାଜନେ ଶୁଦ୍ଧମନେ । ତାର ମନ୍ଦିରେ ସେହିଦିନେ ॥
ବିପ୍ରେ ମିଳିଲା ସାୟଂକାଳେ । ତାର ଅତିଥି ପୂଜାବେଳେ ॥
ଆନନ୍ଦେ ଭିକ୍ଷା ତାକୁ ଦେଲା । ଯେମନ୍ତେ ଶୂଦ୍ରେକ ମିଳିଲା ॥

ଯେ ଅବା ଅବଶେଷ ଅନ୍ନ । କୁଟୁମ୍ବ କରନ୍ତେ ଭୋଜନ ॥
ତାହାକୁ ବିଷ୍ଣୁପ୍ରାୟେ ମଣି । ବେଗେ ସେ ଦେଲା ଭିକ୍ଷାଆଣି ॥
ସେ ପୁଣି ଗୃହେ ଭୁଞ୍ଜିଯାନ୍ତେ । ଶବର ଶ୍ୱାନର ସଙ୍ଗତେ ॥
ଘରେ ମିଳିଲା ରାତ୍ରେ ଆସି । ବୋଲଇ ତାର ଦ୍ୱାରେ ବସି ॥
ଭୋ ରାଜା ଭିକ୍ଷା ଦିଅ ମୋତେ । ଭୁଞ୍ଜିବି ଶ୍ୱାନର ସମେତ ॥
ଯେବା କୁଟୁମ୍ବ ଅର୍ଥେ ଥିଲା । ତକ୍ଷଣେ ତାର ହସ୍ତେ ଦେଲା ॥
ଶ୍ୱାନ ସମେତେ ଅନ୍ନ ପାଇ । ସେ ପୁଣି ଯାଚି ତୋଷ ହୋଇ ॥
ବୋଇଲେ ତାର ମୁଖ ଚାହିଁ । ମୋତେ ନଦେଲୁ ଭିକ୍ଷା ତୁହି ॥
ତାର କୁମର ମରୁଦନ । ଅତି ସୁନ୍ଦର ବିଦ୍ୟମାନ ॥
ଉର୍ବଶୀ ଦେଖି ନିଜ ବେଶେ । ତାହାର ରତେ କାମ ବଶେ ॥
ଧରି ନ ପାରିଲା ଆରମ୍ଭେ । ତକ୍ଷଣେ ପଡ଼ି ଯରସ୍ତମ୍ଭେ ॥
ପୁତ୍ର ଦୁହିତା ହୁଏ ଜାତ । ବନେ ହୋଇଲା ଅରକ୍ଷିତ ॥
ଏମନ୍ତେ ପାହିଲା ରଜନୀ । ଶାନ୍ତନୁ ହସ୍ତେ ଧନୁଘେନି ॥
ମୃଗୟା ଅର୍ଥେ ବନେ ଗଲା । ସେ କନ୍ୟା ପୁତ୍ରଙ୍କୁ ଚାହିଁଲା ॥
ମନ ସନ୍ଦେହେ ବିଚାରଇ । ଅଦ୍ଭୁତେ କନ୍ୟା ପୁତ୍ର ଚାହିଁ ॥
କିଏ କାହାର କନ୍ୟା ସୁତେ । ବନେ ଅଛନ୍ତି ଅରକ୍ଷିତେ ॥
ଏମନ୍ତ ଚିନ୍ତେ କୃପାକରି । କନ୍ୟା କୁମର କୋଳେ ଧରି ॥
ମନ୍ଦିରେ ମିଳି ସେ ରାଜନ । କନ୍ୟାକୁମରେ ଦେଲାନାମ ॥
କୃପାର ବଶେ କୃପାନାମ । ଅତିସୁନ୍ଦର ଅନୁପମ ॥
କନ୍ୟାକୁ କୃପୀ ନାମ ଦେଲା । ଦ୍ରୋଣ ତାହାକୁ ବିଭାକଲା ॥
ବୋଲଇ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ ॥
ଶୁଣ ସୁଜନେ ଏକଚିତ୍ତେ । ସଂସାରୁ ତରିବ ଯେମନ୍ତେ ॥
କୃଷ୍ଣ ଚରିତ ଅତିସାର । ଦୁର୍ଲଭ ମନୁଷ୍ୟ ଶରୀର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ଏକବିଂଶୋଽଧ୍ୟାୟଃ ।*

## ଦ୍ୱାବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ମିତ୍ରାୟୁ ଦେବଦାସ ସୁତ । ଖେବନ ତାର ତହୁଁ ଜାତ ॥
ସୁଦାସ ସହଦେବ ବେନି । ଜନ୍ମିଲେ ବିଷ୍ଣୁ ତେଜଘେନି ॥
ସୋମକ ଜନ୍ମକଲା କୃତ । ସୌଦାସ ବଂଶେ ସେ ସମ୍ଭୂତ ॥
ସୋମକ ବୀର୍ଯ୍ୟେ ଶତପୁତ୍ର । ପୃଷତ ତାର ସାନଭ୍ରାତ ॥
ଦ୍ରୁପଦ ତାହାଙ୍କ ନନ୍ଦନ । ତାର ତନୟ ଧୃଷ୍ଟଦ୍ୟୁମ୍ନ ॥
ଦ୍ରୁପଦ କନ୍ୟା ତାଙ୍କ ଘରେ । ସେ ଆଦି ଶକ୍ତି ଜନ୍ମାନ୍ତରେ ॥
ସେ ଧୃଷ୍ଟଦ୍ୟୁମ୍ନଙ୍କର ରେତୁ । ଜନ୍ମ ଲଭିଲା ଧୃଷ୍ଟକେତୁ ॥
ଅଜମୀଢର ସୁତ ଦୁଇ । ରିକ୍ଷ ସମ୍ବରଣ ବୋଲାଇ ॥
ହୋଇଲା ରାଜା କୁରୁଦେଶେ । ଏକଥା ଶୁଣିବୁ ଭବିଷ୍ୟେ ॥
କୁରୁର ପୁତ୍ର ହୋୟେ ବେନି । ପରୀକ୍ଷ ସୁଧେନୁ କ ଦୁଇ ॥
ଜହ୍ନୁ ସହିତେ ବେନିସୁତେ । ବିଷ୍ଣୁର ଅଂଶେ ଯେ ଜଗତେ ॥
ସୁହୋତ୍ର ଧେନୁ ସୁତଜନ୍ମ । ଚେବନ ତାହାର ନନ୍ଦନ ॥
ଚ୍ୟବନ ସୁତକୃତୀ ନାମେ । ବସୁ ତାହାର ବିଦ୍ୟମାନେ ॥
ଜୀବନ ନାହିଁ ତାଙ୍କ ଦେହେ । କେ ଛାଡ଼ି ପାରିବ ତା ସ୍ନେହେ
ନିଶି ପର୍ଯ୍ୟନ୍ତେ କୋଳେ ବହି । ଶ୍ମଶାନେ ପକାଇଲା ନେଇ ॥
ଏମନ୍ତ ଶୁଣ ନରନାଥ । ଜରା ରାକ୍ଷସୀ ଉପଗତ ॥
କ୍ଷୁଧା ବିକଳେ ଦେଖୁ ବନେ । ନୁହଁଇ ଦୁର୍ଗମ ଶ୍ମଶାନେ ॥
ସ୍ୱଭାବେ ନରମାଂସ ଖାଇ । ଶ୍ମଶାନେ ମିଳିଲାକ ଯାଇ ॥
ଆନନ୍ଦେ ବେନି ଖଣ୍ଡ ଧରି । ଚାପନ୍ତେ ବଦନ ବିସ୍ତାରି ॥
ଦେଖି ବାଳକ ବେନିଖଣ୍ଡ । ତେଜେ ବିରାଜେ ମାରକଣ୍ଡ ॥
ବେନି ଫାଳକୁ ଏକକଲା । ସ୍ୱମନ୍ତ୍ରେ ଜୀବନ୍ୟାସ ଦେଲା ॥
ଡାକଇ ଜୀବ ଭାବେଭାବେ । ସେ ବେନି ଖଣ୍ଡ ଏକଭାଗେ ॥
ତକ୍ଷଣେ କୁମର ହୋଇଲା । ସୁନ୍ଦରେ ଜଗତେ ମୋହିଲା ॥
ପୁଣି ସେ ତାର ମୁଖ ଚାହିଁ । ବୋଲଇ ମୁଣ୍ଡେ କର ଦେଇ ॥
ଅଜୟ ହୁଅ ନରଲୋକେ । ଅନେକ ରାଜା ଜିଣି ଏକେ ॥
ଯେ ତୋତେ କରେ ବେନିଫାଳେ । କ୍ଷପିବ ଭୂମି ଅନ୍ତରାଳେ ॥
ଖଣ୍ଡେ ପଡ଼ିବ ସିନ୍ଧୁଜଳେ । ଦହିବ ବଡ଼ବା ଅନଳେ ॥
ତେବେ ପୂରିବ କାଳ ତୋର । ଏବେ ତୁ ଅଜୟ ଅମର ॥
ଏମନ୍ତେ ଅସୁରୀ ସନ୍ଧାନେ । ସେ ଜରାସନ୍ଧ ଅନୁମାନେ ॥
ଅନେକ ରାଜ୍ୟ ଭୋଗ କଲା । ଅନ୍ତେ ଭୀମର ହସ୍ତେ ମେଲା ॥
ତାର କୁମର ସହଦେବ । ତା ବୀର୍ଯ୍ୟେ ଜନ୍ମ ମୃତ୍ରୁସର୍ବ ॥
ଏମନ୍ତେ ବିପ୍ର ମୁଖୁଶୁଣି । ଭୟେ ବୋଲଇ ନୃପମଣି ॥
ରାଜ୍ୟ ମୁଁ ଜ୍ୟେଷ୍ଠ ଭ୍ରାତେ ଦେଇ । ତପ ସାଧିବି ବନେ ରହି ॥
ସଙ୍ଗେ ଘେନାଇ ବିପ୍ରଗଣେ । ଦେବାପି ରାଜ୍ୟେ ସମର୍ପଣେ ॥
ଶାନ୍ତନୁ ଜ୍ୟେଷ୍ଠ ଭ୍ରାତା ପଦେ । ପଡ଼ି କହିଲା ମୋହ ଗତେ ॥
ହେ ଭ୍ରାତ ରାଜ୍ୟେ ହୁଅ ରାଜା । ସୁଖେ ପାଳନ୍ତୁ ଜନପ୍ରଜା ॥
ଦେବାପି ତାର ବୋଲ ଶୁଣି । କହିଲା ଧର୍ମ ପରିମାଣି ॥
କେବୁଁ ବାହାର ହୋଇ ମୁହିଁ । ରାଜ୍ୟେ ମୋ ପ୍ରୟୋଜନ ନାହିଁ

ତକ୍ଷଣେ ନିଗମ ବଚନେ । ଜୀମୂତ ମିଳିଲେ ଗଗନେ ॥
ଗଭୀର ଘୋର ନାଦ କରି । ତକ୍ଷଣେ ବରଷିଲେ ବାରି ॥
ଦେବାପି ମନେ ଜ୍ଞାନଭରି । କଳାପି ପ୍ରାଣ ଆଶ୍ରେକରି ॥
ବିଶ୍ୱସଂସାର କାଳବଳେ । ସୋମ ବଂଶ ବିନାଶ ବଳେ ॥
କଳିର ଥିବ ଅବଶେଷେ । ସେ ପୁଣି ସ୍ଥାପି ସୋମବଂଶ ॥
ରାଜା ହୋଇବ ଦିନାକେତେ । ପ୍ରଜା ପାଳିବ ଧର୍ମ ଚିତ୍ତେ ॥
ସତ୍ୟେ ସ୍ଥାପିବ ସୋମବଂଶ । ଯେ ଅବା ଥିବ ଅବଶେଷେ ॥
ବାହ୍ଲୁକ ବୀର୍ଯ୍ୟେ ସୋମଦତ୍ତ । ଭୁରି ଭୁରିଶ୍ରବା ତା ସୁତ ॥
ବାଣ ଆସନ୍ତେ ଶୂନ୍ୟପଥେ । ସେ ମାତା ଡାକିଲା ଆରତେ ॥
ତକ୍ଷଣେ ବିଷ୍ଣୁ ଗର୍ଭଗତେ । ପଶିଲେ ଚକ୍ରଘେନି ହସ୍ତେ ॥
ବ୍ରହ୍ମଶିରାକୁ ଶେଷକରି । ତୋତେ ଭଜିଲେ ନରହରି ॥
ଏବେ ହୋ କହୁ ତୋ ଅଗ୍ରତେ । ଯେ ଧର୍ମ ହେବ ଭବିଷ୍ୟତେ ॥
ଏ ଯେ ତୋହର ଚାରିସୁତେ । ଜନମଜୟର ସମେତେ ॥
ଏ ସୁତସେନ ଭୀମସେନ । ତାପରେ କନିଷ୍ଠ ଅର୍ଜୁନ ॥
ଏ ଚାରିସୁତ ମିଳି ଏକେ । ତେଜ ପ୍ରତାପ ଅତିରେକେ ॥
ବ୍ରାହ୍ମଣ ଶାପ ତେଜ ଗ୍ରସ୍ତେ । ତକ୍ଷକ ଭକ୍ଷିବ ଯେ ତୋତେ ॥
ସେ କୋପେ ସର୍ପ ଯଜ୍ଞକରି । ତିନିଭୁବନୁ ସର୍ପମାରି ॥
ପୁଣି କରିବ ଅଶ୍ୱମେଧ୍ । ଆଗମ ନିଗମ ସଂପାଦି ॥
ସପତ ଦ୍ୱୀପେ ହୋଇ ରାଜା । ସୁଖେ ପାଳିବ ଜନପ୍ରଜା ॥
ତାର ତନୟ ଶତାନିକ । ହୋଇବ ସୁଜ୍ଞାନୀ ବିବେକ ॥
ଯାଜ୍ଞାବଲକ୍ୟ ଠହୁଁ ବେଦ । ଉପନିଷଦ ସେ ପଢ଼ିବ ॥
ଶୌନକ ଠହୁଁ ଜ୍ଞାନ କ୍ରିୟା । ଶାସ୍ତ୍ର ସାଧିବ ପୁଣ୍ୟଦେହା ॥
କ୍ଷେମକ ପାଇ ସୋମବଂଶେ । ରହିବେ କଳ୍ପଯୁଗ ଶେଷେ ॥
ଏବେ ହୋ ଶୁଣ କୁରୁରାଣ । ମଗଧ ଦେଶ ପରିମାଣ ॥
ମାର୍ଜାର ସହଦେବ ସୁତ । ତା ଠହୁଁ ଶ୍ରୁତଶ୍ରବା ଜାତ ॥
ଆୟତେ ତାହାର ନନ୍ଦନ । ତା ସୁତ ବିରମିତ୍ର ନାମ ॥
ତାର ସନ୍ତତି ବୃହକ୍ଷତ । ସୁମିତ୍ର ନାମେ ତାର ସୁତ ॥
ରାଜା ହୋଇଲେ ଏ ଜଗତେ । ସଂକ୍ଷେପି କହିଲି ମୁଁ ତୋତେ
କହଇ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ ॥
ଯେହରି କଥା ଶୁଣି କର୍ଣ୍ଣେ । ସଂସାରୁ ତର ଜ୍ଞାନୀଜନେ ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ଦ୍ୱାବିଂଶୋଽଧ୍ୟାୟଃ ।*

## ତ୍ରୟୋବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଅନୁର ବଂଶେ ତିନିସୁତ । ଶୁଣ ରାଜନ ପରୀକ୍ଷିତ ॥
ଚକ୍ଷୁ ପରେକ୍ଷୁ ବେନୀସୁତ । ତୃତୀୟ ସଭାନୁ ବିଦିତ ॥
ସଭାନୁପୁତ୍ର କଳନର । ସୃଞ୍ଜୟ ତାହାର କୁମର ॥
ଜନମଜୟ ତାର ସୁତ । ତା ଠହୁଁ ମହାଶାଳ ଜାତ ॥
ସେ ମହାଶାଳ ବୀର୍ଯ୍ୟେଘେନି । ତିତିକ୍ଷୁ ଉଶୀନର ବେନି ॥
ଶିବି ଯେ ବର କୃତଦକ୍ଷ । ଏ ଚାରି କୁମର ପ୍ରତ୍ୟକ୍ଷ ॥
ହୋଇଲେ ଶିବି ବୀର୍ଯ୍ୟେ ଜନ୍ମ । ଅଦ୍ଭୁତ ତାହାଙ୍କର କର୍ମ ॥
ତିତିକ୍ଷୁ ପୁତ୍ର ରକ୍ଷ ଦ୍ରଥ । ଅଦ୍ଭୁତ ତାହାର ଚରିତ୍ର ॥
ରହିଲା ସଂସାର ଉପେକ୍ଷି । ସଂସାର ସ୍ୱପ୍ନ ପ୍ରାୟଦେଖି ॥
ବଳିର ହୋଯେ ଷଡ଼ାତ୍ମଜେ । ଜନ୍ମିଲେ ଦୀର୍ଘତମା ବୀର୍ଯ୍ୟେ ॥
ଅଂଗ ବଂଗ କଳିଙ୍ଗ ତିନି । ଶୁମ୍ଭ ପୁଣ୍ଡ୍ର ଯେ ଓଡ୍ରଘେନି ॥
ଆପଣା ନାମେ ରାଜ୍ୟ କରି । ଅଙ୍ଗ ବଙ୍ଗ କଳିଙ୍ଗପୁରୀ ॥
ଏ ଷଟ ଦେଶେ ହୋଇ ରାଜା । ଧର୍ମେ ପାଳିଲେ ଜନପ୍ରଜା ॥
ଅଂଗ ତନୟ ଖନପାନ । ଦଶରଥ ତାର ନନ୍ଦନ ॥
ସୁଧର୍ମାରଥୀ ଯା'ର ସୁତ । ଶୁଣ ରାଜନ ପରୀକ୍ଷିତ ॥
ଧର୍ମରଥର ବଂଶଚନ୍ଦ୍ର । ରୋମପାଦ ତାହାର ଭ୍ରାତ ॥
ଦଶରଥର ସଖା ସେହି । ଅପୁତ୍ର ତାର ବଂଶ ଚାହିଁ ॥
ଶାନ୍ତା କନ୍ୟାକୁ ଦେଲାନେଇ । ଅତି ଆନନ୍ଦେ ତୋଷହୋଇ ॥
ସେ ପୁଣି ଋଷ୍ୟଶୃଙ୍ଗ ବୋଲେ । ବେଦବିଧି ସଂକଳ୍ପ କଲେ ॥
ପୂର୍ବେ ସେ ରୋମପାଦ ବଂଶେ । ସେ ଦେଶେ ଇନ୍ଦ୍ର ଜଳ ରଖେ॥
ଗଣିକା ନୃତ୍ୟ ଗୀତ ମେଳେ । ଚିତ୍ତ ମଜ୍ଜିଲା ତାର ଭୋଳେ ॥
ଏମନ୍ତେ ଇନ୍ଦ୍ର ବରଷିଲା । ରାଜାର ସନ୍ତତି ହୋଇଲା ॥
ଏମନ୍ତେ ପୁରୁବଂଶ ଯେତେ । କହିଲି ବଂଶାନୁଚରିତେ ॥
ଯହିଁ ଅଶେଷ ନୃପଗଣ । ଏବେ ହେ ଯଦୁ ବଂଶ ଶୁଣ ॥
ଯେ ବଂଶେ ପ୍ରଭୁ ଭାବଗ୍ରାହୀ । ଜନ୍ମିଲେ ବିଷ୍ଣୁରୂପ ବହି ॥
ଏଣୁ ଯଦୁବଂଶ ଶୁଣନ୍ତେ । ପାପନରହେ ହୃଦଗତେ ॥
ଯଦୁ ରାଜାର ଚାରିସୁତେ । ଶୁଣ ତାହାର ନାମଯେତେ ॥
ସହସ୍ରଜିତ ଇନ୍ଦ୍ରଜିତ । କଷ୍ଟୁ ଅନଳ ଏ ବିଦିତ ॥
ଯେ ମହାଳୟ ବେଣୁହୟ । ହୈହୟ ନାମେ ମହାଶୟ ॥
ଧର୍ମ ଯେ ହୈହୟର ସୁତ । ନେତ୍ର ତାହାର ବଂଶେଜାତ ॥
କୁନ୍ତୀ ତାହାର ପୁତ୍ରୀ ହୋୟେ । ସେ ଭଜି କୁନ୍ତୀର ତନୟେ ॥
କୃତାଗ୍ନି କୃତ ବୀଜେବେନି । କୃତକର୍ମାକୁ ତେଜିତେଜି ॥

ଦତ୍ତାତ୍ରୟଙ୍କୁ ସେବାକରି ।ଯୋଗେ ହୋଇଲେ ଅଧିକାରୀ ॥
ସେ କୃତବୀର୍ଯ୍ୟର ମହିମା । କେ କହିପାରେ ଗୁଣସୀମା ॥
ଉଭୟ ବଂଶେ ରାଜା ଯେତେ । ତପସ୍ୟା ଯଜ୍ଞ ଜ୍ଞାନମତେ ॥
ନନା ପ୍ରକାରେ ଯେତେସାଧି । ଅନେକ ସିଦ୍ଧି ଅଷ୍ଟବିଧି ॥
ପଞ୍ଚଶ ସହସ୍ର ବରଷ । ସଂପଦ ଭୁଞ୍ଜିଲା ଅଶେଷ ॥
ତାହାର ସହସ୍ରେ ନନ୍ଦନ । ଯୁଦ୍ଧେ ନିର୍ଜିତ ବଳମାନ ॥
ତାହର ସମୟେ ସଂସାରେ । କେହି ନୋହିଲା ଅଧିକାରେ ॥
ତାହାଙ୍କ ମଧ୍ୟେ ପାଞ୍ଚସୁତ । କ୍ଷତ୍ରିୟ ବଳେସେ ଉଦିତ ॥
ଦୁର୍ଜ୍ଜୟଧ୍ୱଜ ସୁରସେନ । ବୃଷଙ୍କ ମଧୁ ବିଦ୍ୟମାନ ॥
ଉଦିତ ଅଟଇ ପଞ୍ଚମେ । ଅଇରୀ କଂପନ୍ତି ଯା ନାମେ ॥
ଜୟ ଧ୍ୱଜର ପୁତ୍ର ଅଂଶ । ନାମ ତାହାର ତେଜଜଙ୍ଘ ॥
ତାହାଙ୍କ ମଧ୍ୟେ ଜ୍ୟେଷ୍ଠପୁତ୍ର । ନାମ ତାହାର ଦ୍ୱିତୀହୋତ୍ର ॥
ମାଧବ ବିଷ୍ଣୁ ଯେ ଯାଦବ । ଯେ ଜ୍ଞାତି ତୋଷନ୍ତି ମାଧବ ॥
ଗୁଚିକା ନାମେ ଚାର ସୁତ । ତାର କୁମର ପଞ୍ଚଜାତ
ଜ୍ୟାମହା ରାଜ୍ୟ ବଶହୋଇ । କେବେହେଁ ପୁତ୍ର ନଲଭଇ ॥
ସେ ରାଜା ଦିଗ ବିଜେ କରି । ଅନେକ ରିପୁ ରାଜା ମାରି ॥
ନାନା ପ୍ରକାରେ ରିପୁ ଜିଣି । ଅନେକ ଧନରତ୍ନ ଆଣି ॥
କନ୍ୟାଯେ ପାଇ ରୂପରାଶି । ତାହାର ସଂଗେ ରଥେବସି ॥
ମିଳିଲା ଆପଣା ଭୁବନେ । ଅନେକ ବାଦ୍ୟନାଦ ସ୍ୱନେ ॥
ଶୈବ୍ୟା ନାମରେ ତାର ରାଣୀ । ଉତ୍ସବ ବାଦ୍ୟନାଦ ଶୁଣି ॥
ମନ୍ଦିରୁ ହୋଇଲେ ବାହାର । ଭୂଷିତ ନାନା ଅଳଂକାର ॥
ରଥକୁ ଚାହିଁ ବେନିତୋଳେ । କନ୍ୟାଯେ ଅଛି ତାରମେଳେ ॥
ଅତିସୁନ୍ଦର ତାର ତନୁ । ଦେଖି ପାରିଲା ହୃଦେମନ୍ୟୁ ॥
ବୋଇଲା ରାଜା ମୁଖ ଚାହିଁ । ଏ କନ୍ୟା ପାଇଲୁ ତୁ କାହିଁ ॥
ଶୈବ୍ୟା ବଚନ ଶୁଣି ରାୟେ । ହୃଦେ ଘାଇଲା ମହାଭୟେ ॥
ବୋଇଲେ ମଧୁର ଉତ୍ତର । ଏକନ୍ୟା ବଧୂଯେ ତୋହର ॥
ଶୈବ୍ୟା ବୋଇଲା କୋପବହି । ଏ ଜନ୍ମେ ତୋର ପୁତ୍ରନାହିଁ ॥
ଆଣିଲୁ ସପତଣୀ ଅର୍ଥେ । ଏବେ ତୁ ଭଣ୍ଡୁ ମୋ ଅଗ୍ରତେ
ଶୁଣିସେ ଶୈବ୍ୟାର ବଚନ । ମଧୁରେ ବୋଲଇ ରାଜନ ॥
ଏବେ ଯେ ପୁତ୍ର ଉପୁଜିବ । ଏ କନ୍ୟା ସେ ବିଭା ହୋଇବ ॥
ଅନେକ ହୋଇବ ମୋ ବଂଶ । ତା ଶୁଣି ଶୈବ୍ୟା ହେଲାତୋଷ ॥
ଭୁବନେ କଲା ସେ ପ୍ରବେଶ । ଆନନ୍ଦେ ହୋଇ ହସହସ ॥
ଏମନ୍ତେ ଭାବି କର୍ମ ପୂର୍ବେ । ପୁତ୍ର ହୋଇଲା ଶୈବ୍ୟାଗର୍ଭେ ॥
ସୁନ୍ଦରେ ଜଗତ ମୋହିଲା । ବିଦର୍ଭ ନାମ ତାକୁ ଦେଲା ॥
ସେ କନ୍ୟା ପୁତ୍ରେ ବିଭାକଲା । ଶୁଣହେ ଗୋବିନ୍ଦର ଲୀଳା ॥
ବୋଲଇ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ ॥
ସୁଜନ ଜନେ ଏହା ଭଜ । ଏ ଘୋର ସଂସାରୁ ତରିବ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।*

## ଚତୁର୍ବିଂଶ ଅଧ୍ୟାୟ

### ଶ୍ରୀ ଶୁକଉବାଚ

ଶୁଣ ରାଜନ କୁରୁବୀର । ବିଦର୍ଭ ଜ୍ୟାମଘ କୁମର ॥
ଯେ ମହାରାଜା କୁଳଜିଣି । ଯେ କନ୍ୟା ଘରେ ଥିଲାଆଣି ॥
ସେ କନ୍ୟା ବିଦର୍ଭେ ବରିଲା । ତା ଗର୍ଭେ ପୁତ୍ର ଉପୁଜିଲା ॥
ପ୍ରଥମେ କୁଶ କ୍ରଥ ବେନି । ତୃତୀୟେ ରୋମପାଦଘେନି ॥
ପ୍ରଭୁ ଯେ ରୋମପାଦ ସୁତ । କୃତୀ ତାହାର ବୀର୍ଯ୍ୟେଜାତ ॥
ଉଶିକ ତାହାର ନନ୍ଦନ । ତା ତହୁଁ ଚେଦି ଉଦ୍ଭଯାତ ॥
ଚେଦୀର ବଂଶେ ଜନ୍ମହୋଇ । ସ୍ୱଧର୍ମେ ପାଳିଲେ ଏ ମହୀ ॥
କ୍ରଥର ପୁତ୍ର କୁନ୍ତୀ ନାମ । ଧୃଷ୍ଟି ଯେ ତାର ବଂଶଧାମ ॥
ଦଶାହ ତାର ସୁତ ହୋହେ । ସହସ୍ର ରାଜଦଳେବଳେ ॥
ବ୍ୟୋମ ଯେ ତାହାର ସନ୍ତତି । ତା ସୁତ ଜୀମୂତ ବିଧୃତି ॥
ତାର ସନ୍ତତି ଭୀମରଥ । ତାହାର ପୁତ୍ର ନବରଥ ॥
ତା ବଂଶେ ଦଶରଥ ହୋୟେ । ଚକମ୍ଭ ତାହାର ତନୟେ ॥
ଶକୁନି ତାହର ତନୟେ ।ଗୋବିନ୍ଦ ବସେ ତାର ଦେହେ ॥
ତାରା ତନୟ ଦେବରାତ୍ର । ତାର ମହିମା ଅପ୍ରମିତ ॥
ତା ସୁତ ଦେବକ୍ଷତ୍ରି ନାମ । ସୁନ୍ଦର ପଣେ ଗୁଣଧାମ ॥
ମଧୁ ତାହାର ବଂଶେଜାତ । ତା ତହୁଁ କୁରୁବଂଶଖ୍ୟାତ ॥
ସାତ୍ତ୍ୱିକ ସୁତ ସପ୍ତନାମେ । ଏକ ଅନେକ ଗୁଣଗ୍ରାମେ ॥
ମାରୀଚ ମହାଭୁଜ ଦୁଇ । ଭଜମାନର ବୀଜେହୋଇ ॥
କଙ୍କଣ ବୃଷ୍ଣି ବେନିସୁତେ । ଶୁଣ ପରୀକ୍ଷ କହୁତୋତେ ॥
ଦ୍ୱିତୀୟ ପତ୍ନୀ ଗର୍ଭେଜାତ । ହୋଇଲେ ତାର ତିନିସୁତ ।
ଶତଜିତ ସହସ୍ରଜିତ । ଅୟତାଜିତ ତିନି ଭ୍ରାତ ॥
ବଭ୍ରୁ ଯେ ଦେବବୃଦ୍ଧସୁତ । ଶୁଣହୋ ତାହାର ଚରିତ ॥
ସମୀପେ ଯେତେ ଗୁଣ ଗୁଣି । ଅଧିକେ ଦୂର ପରିମାଣି ॥
ମନୁଷ୍ୟ ମଧ୍ୟେ ବହୁ ଶ୍ରେଷ୍ଠ । ଦେବାବୃଦ୍ଧଙ୍କ ଦେବଇଷ୍ଟ ॥
ଏ ଦୁଇ ପୁରୁଷଙ୍କ କୁଳେ । ଯେତେ ତରିଲେ ଭବଜଳେ ॥

କାହାର ବୋଲେ ସଂଖ୍ୟା କରି । ଶୁଣ ମୁଁ କହୁ ଯେତେପାରି ॥
ଷଡ଼ ସହସ୍ର ପଞ୍ଚଷଠି । ଅଧିକେ ଚତୁର୍ଦ୍ଦଶ ଷଷ୍ଠୀ ॥
ଘୋର ସଂସାରୁ ତରିଗଲେ । ନିଷ୍ଟିନ୍ତେ ମିଳିଲେ କୈବଲ୍ୟେ ॥
ଅତି ଧାର୍ମିକ ମହାତେଜ । ଅବଳଙ୍କ ଯେ ମହାଭାଗ ॥
ଯେତେ ଉପୁଜିଲେ ତା ବଂଶେ । ପ୍ରତ୍ୟକ୍ଷେ ନାରାୟଣ ଅଂଶେ ॥
ବୃଷ୍ଣିର ସୁମିତ୍ର ନନ୍ଦନ । ଅପରେ ଯୁଧାଜିତ ନାମ ॥
ତାର ସନ୍ତତି ହୋଯେସିନୀ । ଅନମିତ୍ରକୁ ସଂଗେଘେନି ॥
ପ୍ରସନ୍ନ ଶକ୍ରାଜିତ ନାମ । ହୋଇଲେ ତାର ଗୁଣଧାମ ॥
ବସୁଦେବର ଜନ୍ମକାଳେ । ବାଦ୍ୟ ଶୁଭିଲା ଅନ୍ତରାଳେ ॥
ସ୍ୱଭାବେ ଦେବଙ୍କ ଦୁନ୍ଦୁଭି । ଦିଶ ଆକାଶ ପୁରେ ଶୁଭି ॥
ତେଣୁ ଏ ବିଷ୍ଣୁର ବିଧାନ । ଅନେକ ଦୁନ୍ଦୁଭି ତାନାମ ॥
ପୁଣି ହୋଇଲେ କନ୍ୟାପାଞ୍ଚ । ସୁନ୍ଦର ସ୍ୱରୂପ ସୁସଞ୍ଚ ॥
ପୃଥାର ଶ୍ରୁତଦେବା ବେନି । କୀର୍ତ୍ତି ଯେ ଶ୍ରୁତ ଶ୍ରବାଘେନି ॥
ରାଜାଧି ଦେବୀ ଘେନି ପାଞ୍ଚ । ଏମନ୍ତେ ନାମ ଉଚ୍ଚୈବାଚ ॥
ତାହାର ଘରେ ନରହରି । ଜନ୍ମିଲେ ନର ଦେହ ଧରି ॥
ଉଦ୍ଧରି ଧରଣୀର ଭାର । ଯେ ରୂପ ଦେଖି ଦେବାସୁର ॥
ପଶୁ ମନୁଷ୍ୟ ଆଦି ଯେତେ । ଶରୀର ଧରି ଏ ଜଗତେ ॥
କୀଟ ପତଙ୍ଗ ଆଦି କରି । ଯେ ରୂପ ଦେଖି ଗଲେ ତରି ॥
ତାର ମହିମା କେବା କହି । ପାରିବ ନରଦେହ ବହି ॥
ବୋଲଇ ବିପ୍ର ଜଗନ୍ନାଥ । ନବମେ ବଂଶାନୁଚରିତ ॥
ସୁଜନ ଜନେ ଏହାଶୁଣି । ଭଗତି ହୃଦେ ପରିମାଣି ॥
ଏ ଭବ ଜଳୁ ତରିଯିବ । ଯାହା ନଇଲେ ବ୍ରହ୍ମାଶିବ ॥
ସେ ହରି ଚରିତ୍ର ସୁମର । ତୁମ୍ଭ ଚରଣେ ମୁଁ କିଙ୍କର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ନବମସ୍କନ୍ଧେ ନାମ ଚତୁର୍ବିଂଶୋଽଧ୍ୟାୟଃ ।*

# ଦଶମ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

ବନ୍ଦଇ ଦେବ ଲମ୍ବୋଦର । ପାଶ ଅଙ୍କୁଶ ବେନିକର ॥
ପୃଥୁଳ ଜଠର ସୁନ୍ଦର । ଗଜବଦନ ଗଣେଶ୍ୱର ॥
ଅନାଦିନାଥର ନନ୍ଦନ । ଅମୃତ ପାନେ ତୋଷମନେ ॥
ଯଜ୍ଞ ଆରମ୍ଭେ ତୋର ପୂଜା । ଉତ୍ତରୀ କଣ୍ଠେ ନାଗରାଜା ॥
ଶ୍ୟାମସୁନ୍ଦର ତନୁବର୍ଣ୍ଣ । ଅଶେଷ ବିଘ୍ନ ବିନାଶନ ॥
ତୋର ମହିମା ମୁଖେ କହି । କେ ଅଛି ନରଦେହ ବହି ॥
କର ସୁଦୟା ଗଣନାଥ । କହିବି ଶ୍ରୀକୃଷ୍ଣ ଚରିତ ॥
ନମଇଁ ପ୍ରଭୁ ନରହରି । ହିରଣ୍ୟକଶିପୁ ବିଦାରି ॥
ଉଦୟ ରବି ଜିଣି ତେଜ । ସୁନ୍ଦର ଶୋହେ ଚତୁର୍ଭୁଜ ॥
କୁଣ୍ଡଳ ଶଶୀ ଦିନକର । ନକ୍ଷତ୍ରମାଳା ହୃଦେ ହାର ॥
ବ୍ରହ୍ମାଣ୍ଡ ମାଳମାଳ ହୋଇ । ତୋ ଲୋମମୂଳେ ଛନ୍ତି ରହି ॥
ଧର୍ମପାଳକ ତୁ ଜଗତେ । ଶରୀର ବହୁ ଭୃତ୍ୟ ହିତେ ॥
ଦୁଷ୍ଟ ନିବାରି ସନ୍ଥ ପାଳୁ । ତୁ ନାଥ ପରମ ଦୟାଳୁ ॥
କର ସୁଦୟା ନରହରି । ତୋ ଲୀଳା କହିବି ବିସ୍ତାରି ॥
ପରମ ମଙ୍ଗଳ ତୋ ନାମ । ଶ୍ରବଣେ ଖଣ୍ଡେ ବିଘ୍ନମାନ ॥
ବ୍ୟାସକୁମର ପାଦ ଧରି । କହେ ପରୀକ୍ଷ ଦଣ୍ଡଧାରୀ ॥
ଭୋ ମୁନି ହୋଇବା ସଦୟେ । ମୋ ଚିତ୍ତ ରହୁ ତୋର ପାୟେ ॥
ପାଣ୍ଡବ କୁଳେ ମୋର ଜନ୍ମ । ମୋହର ବନ୍ଧୁ ଭଗବାନ ॥
ଦ୍ରୋଣକୁମର ବାଣତ୍ରାସେ । ମରିବି କହିଗଲେ ବ୍ୟାସେ ॥
ତା ଶୁଣି ଜନନୀ ମୋହର । ଶରଣ ଗଲା ଚକ୍ରଧର ॥
ଗର୍ଭେ ପଡ଼ିଲା ଆସି ବାଣ । ମୋତେ ରଖିଲେ ନାରାୟଣ ॥
ତେଣୁ କୃଷ୍ଣର ମୋ ଶରୀର । କିଣିଲା ସେବକ ମୁଁ ତାର ॥
ତାର ଚରିତ କର୍ଣ୍ଣେ ଶୁଣି । ତରିବି ଭବ ତରଙ୍ଗିଣୀ ॥
ଶ୍ରୀକୃଷ୍ଣ ଲୀଳାର ଚରିତ । ମୁଖ-ପଙ୍କଜୁ ତୋର ଜାତ ॥
କର୍ଣ୍ଣଯୁଗଳେ ପାନ କରି । ହେଲେ ତରିବି ଭବବାରି ॥
ପାଣ୍ଡବେ ଯାହାର ବିଶ୍ୱାସୁଁ । ତରିଲେ କୁରୁବଳ ତ୍ରାସୁଁ ॥
ବତ୍ସାଚରଣେ ଯେହ୍ନେ ଜଳ । ହେଲେ ତରିଲେ କୁରୁବଳ ॥
ଯାହାର ଚରିତ ଗହନ । ଧ୍ୟାନେ ଭାବନ୍ତି ମୁନିଜନ ॥
ଭବସାଗର ପରମାଦ । ବିଷୟା ବିଷକୁ ଏ ଗଦ ॥
ଚାଣ୍ଡାଳୁ ବ୍ରହ୍ମଯାଏ ଲୋକ । କେ ଶୁଣି ହୋଇବ ବିମୁଖ ॥
ଅଶେଷ ଜନ୍ତୁ ଦେହ ବହି । ଯେ କାଳରୂପେ ଛନ୍ତି ରହି ॥
ମାୟା ମନୁଷ୍ୟରୂପେ ଜାତ । ନିବେଦି କଲେ ମୃତାମୃତ ॥
ନବମସ୍କନ୍ଧେ ମୁହିଁ ଶୁଣି । ସେ କଥା ମନେ ମନେ ଗୁଣି ॥
ବିଚାର କଲି ଭ୍ରମ ଚିତ୍ତ । ଭୋ ମୁନି କହିବା ତଦନ୍ତ ॥
ଶ୍ରୀଭାଗବତର ସିଦ୍ଧାନ୍ତ । ଅମୃତ ରସମୟ ଗୀତ ॥
ଯାଦବକୁଳେ ଯଦୁବଂଶେ । ଜନ୍ମ ହୋଇଲେ ଦେବଅଂଶେ ॥
ନୀଳ ଧବଳ ରୂପ ଦୁଇ । ଦେବକୀ ଗର୍ଭେ ଜାତ ହୋଇ ॥
କେମନ୍ତେ ରୋହିଣୀର ସୁତ । ରାମଙ୍କୁ କହନ୍ତି ଜଗତ ॥
ବେନି ଉଦରେ ଏକ ଦେହ । ଭୋ ମୁନି ଫେଡ଼ିବା ସନ୍ଦେହ ॥
କେବଣ ହେତୁ ଭଗବାନ । ଗୁପତେ ଗଲେ ବୃନ୍ଦାବନ ॥
ଭକ୍ତକୁ ତାରିବାର ଆଶେ । ରମିଲେ ବାଳକ ବିଶ୍ୱାସେ ॥
ପୁଣିହିଁ କେତେଦିନେ ହରି । ମିଳିଲେ ମଥୁରା ନଗରୀ ॥
ଜଗତ ଜନଙ୍କର ଗୁରୁ । ଯାର ମହିମା ମହାମେରୁ ॥
କିମ୍ପା ଅନୀତି ଆଚରିଲେ । ସୋଦର ମଉଳା ମାଇଲେ ॥
ଏ କି ତାଙ୍କର ପରମାଣ । ଯାହାଙ୍କ ନାମ ନାରାୟଣ ॥
ମନୁଷ୍ୟ ରୂପେ ହୋଇ ଜନ୍ମ । କେତେ ବରଷ ଭୋଗ କର୍ମ ॥
ଯାଦବ ସଙ୍ଗରେ ବିହରି । କେତେ କଳତ୍ର ଭୋଗକରି ॥
ଏ ଆଦି ଯେତେକ ଚରିତ । ଭୋ ମୁନି କହି ତୋଷ ଚିତ୍ତ ॥
ଦେଖ ମରଣ କାଳ ମୋର । ପ୍ରତ୍ୟକ୍ଷ ତେଜିଲି ଆହାର ॥
ହରି ଚରିତ ସୁଧା ବାରି । ତୋର ବଦନୁପାନ କରି ॥
ଜଗତ ସଂହାରିଣୀ କ୍ଷୁଧା । ସେ ମୋତେ ନ କରଇ ବାଧା ॥
ଶୁଣି ରାଜାର ସାଧୁକଥା । ସେହି ପଣ୍ଡିତ ସାମରଥା ॥
କୃଷ୍ଣଚରଣେ ଦେଇ ଚିତ୍ତ । କହନ୍ତି ଶୁଣ ଭାଗବତ ॥
ସାଧୁଚରିତ ତୋର ବୁଦ୍ଧି । କୃଷ୍ଣ ଚରଣେ ଚିତ୍ତ ଖେଦି ॥
ଗୋବିନ୍ଦେ ତୋର ମନ ଯେତେ । ମୁଁ କହି ପାରିବିକି ତୋତେ ॥
ଗୋବିନ୍ଦ ପ୍ରସଙ୍ଗ ବିଧାନ । ହେଲେ ତାରଇ ତିନି ଜଣ ॥
ଶ୍ରୋତା ବକତା ଯେ ପଚାରି । ଏ ତିନିଜଣେ ଯାନ୍ତି ତରି ॥
ତା ପାଦ ଗଙ୍ଗାଜଳ ଯେହ୍ନେ । ତାରଇ ସ୍ନାନ ପିଣ୍ଡଦାନେ ॥
ନାମ ମାତ୍ରକେ ପାପ ନାଶ । ତେଣୁ ମୋ ଚିତ୍ତ ପରକାଶ ॥

କହିବି କୃଷ୍ଣ ଲୀଳାମାନ । ରାଜନ ହୁଅ ସାବଧାନ ॥
ଅସୁରବଳ ପାଦଭାରେ । ଭୂମି କମ୍ପିଲା ଥରହରେ ॥
ଭାରାରେ ଟଳି ନ ପାରଇ । ଅଧରୁ ରୁଧିର ବହଇ ॥
ଦିନେକ ବିଚାରଇ ବସି । କେ ମୋର ଶରୀର ଅଶ୍ୱାସି ॥
ଛାଡ଼ିବି ସଂସାର ଧାରଣ । ବ୍ରହ୍ମାରେ ପଶିବି ଶରଣ ॥
ମାୟା ସୁରଭୀ ରୂପ ହୋଇ । କାନ୍ଦଇ ଚଉଦିଗ ଚାହିଁ ॥
ବିଧାତା ନିକଟେ ମିଳିଲା । ନିଜ ବେଦନା ଜଣାଇଲା ॥
ବିଧାତା ଶୁଣି ତା ବିକଳ । ସଙ୍ଗେ ଘେନିଲେ ଦେବବଳ ॥
ଶଙ୍କର ହୋଇ ସର୍ବ ଆଗେ । ମିଳିଲେ କ୍ଷୀରସିନ୍ଧୁ ଲାଗେ ॥
ଜଳଧିକୂଳେ ଦେବଗଣ । ଡାକନ୍ତି ରଖ ନାରାୟଣ ॥
ଅନେକ ଧ୍ୟାନ ସ୍ତୁତି କଲେ । ହରି ସନ୍ଦେଶ ନ ପାଇଲେ ॥
ଅନେକ ମତେ କରି ଧ୍ୟାନ । ବ୍ରହ୍ମା ପାଇଲେ ମନେ ଛନ୍ନ ॥
ଅନନ୍ତ ନ ଦେଖି ବିଧାତା । ମନେ ପାଇଲେ ଗୁରୁଚିନ୍ତା ॥
ସମାଧି ବସିଲେ ତକ୍ଷଣେ । ଚିନ୍ତିଲେ ଶ୍ରୀକୃଷ୍ଣ ଚରଣ ॥
ବ୍ରହ୍ମାର ଦେଖିଣ ବିକଳ । କରୁଣା କଲେ ଆଦିମୂଳ ॥
ନିଦ୍ରାର ବେଳେ ନରହରି । ସ୍ୱପନେ କହିଲେ ମୁରାରି ॥
ବ୍ରହ୍ମାଙ୍କୁ ଦିଶିଲା ଏସନ । କହନ୍ତି ପ୍ରଭୁ ଭଗବାନ ॥
ଶୁଣ ବଚନ ମୋର ଧାତା । ମୁଁ ଯେ ଜଗତ ପିତାମାତା ॥
ସକଳ ମୋହର ଭିଆଣ । କେବଳ ଦେଲି ପରମାଣ ॥
ମୋର ବଚନ ଶିରେ ଧରି । ତୁ ଅଛୁ ଜଗତ ଆବୋରି ॥
ବେଦ ବିଚାରେ ସୃଷ୍ଟି ପାଳୁ । ମେଦିନୀ ଭାରେ କିମ୍ପା ଭାଳୁ ॥
ମୁଁ ତାହା ଜାଣଇ ଯେ ସର୍ବ । ନାଶିବି ଅସୁରଙ୍କ ଗର୍ବ ॥
ଏବେ ସକଳ ଦେବେ ଯାଅ । ମର୍ତ୍ତ୍ୟମଣ୍ଡଳେ ଜାତ ହୁଅ ॥
ଯାଦବ ଆଦି ସପ୍ତବଂଶ । କଂସରେ ହୋଇବ ବିଶ୍ୱାସ ॥
ଗୋପୀ ଗୋପାଳ ରୂପ ହୋଇ । ଗୋପେ ଜନ୍ମିବ ଦେହ ବହି ॥
ମୁଁ ଜାତ ବସୁଦେବ ଘରେ । ବଢ଼ିବି ଯାଇ ଗୋପପୁରେ ॥
ଷୋଳ ସହସ୍ର ଗୋପନାରୀ । ରମିବି ବୃନ୍ଦାବନେ ହେରି ॥
ଅନେକ ମାରିବି ଅସୁର । ଖଣ୍ଡିବି ଅବନୀର ଭାର ॥
ଭକ୍ତଜନଙ୍କୁ ଉଦ୍ଧାରିବି । ପୁଣି ମୁଁ ନିଜ ରୂପ ହେବି ॥
ଜଗତ ଜନ ତାରି ମୁଖେ । ପୁଣି ଶୋଇବି ନିଜ ରୂପେ ॥
ଏବେ ହେ ଯାଅ ତୁ ସତ୍ୱର । କହିବୁ ଦେବଙ୍କ ଆଗର ॥
ଶୀଘ୍ରେ ହୁଅନ୍ତୁ ମର୍ତ୍ତ୍ୟେ ଜନ୍ମ । କହି ହୋଇଲେ ଅନ୍ତର୍ଦ୍ଧାନ ॥
ସ୍ୱପନ ତେଡି ବେଦବର । କହିଲେ ଦେବଙ୍କ ଆଗର ॥
ଶୁଣି ସାନନ୍ଦ ଦେବଗଣେ । ନମିଲେ ଧାତାର ଚରଣେ ॥
କହନ୍ତି ଶୁଣ ବେଦବର । ଯାହା କହିଲେ ଚକ୍ରଧର ॥
ଅବନୀ ମଧ୍ୟେ ଦେହ ଧରି । ଗୋପେ ଯାଦବେ ଅବତରି ॥
ହୋଇବୁ ଏ ଆମ୍ଭର ସତ୍ୟ । କି କି କହିଲେ ଜଗନ୍ନାଥ ॥
ସେ କଥା କହ ପ୍ରଜାପତି । ଶୁଣି ନିର୍ମଳ ହେଉ ମତି ॥
ବ୍ରହ୍ମା ବୋଇଲେ ଦେବେ ଶୁଣ । ଯାହା କହିଲେ ନାରାୟଣ ॥
ଯାଦବ ବସୁଦେବ ଘରେ । ଜନ୍ମିବେ ଦେବକୀ ଉଦରେ ॥
ହରିର କଳା ଏ ଅନନ୍ତ । ଆଗେ ହୋଇବେ ଗର୍ଭଗତ ॥
ମାୟାର ଯୋଗବଳେ ହରି । ଦେବକୀ ଗର୍ଭୁ ତାହା ହରି ॥
ରୋହିଣୀ ଗର୍ଭେ ତାହା ଥୋଇ । ଦାସବତ୍ସଳ ଭାବଗ୍ରାହୀ ॥
ଆପଣେ ପ୍ରଭୁ ଜଗନ୍ନାଥ । ଦେବକୀ ଗର୍ଭେ ହେବେ ଜାତ ॥
ଦୁର୍ଗାଙ୍କୁ ଯଶୋଦାର କୋଳେ । ଜାତ କରିବେ ଯୋଗବଳେ ॥
ଏମନ୍ତେ ତାରିବେ ସଂସାର । ଦାସବତ୍ସଳ ଦାମୋଦର ॥
ଶୁଣିଣ ବିଧାତା ବଚନ । ଦେବେ ଆନନ୍ଦ କଲେ ମନ ॥
ଚାହିଁଲେ ଧରଣୀ ବଦନ । କହନ୍ତି ଧନ୍ୟ ତୋ ଜୀବନ ॥
ତୋର ଉପରେ ଚକ୍ରଧାରୀ । ମନୁଷ୍ୟ ଦେହେ ଅବତରି ॥
ନାଶିବେ ତୋର ଦୁଃଖରାଶି । ଆମ୍ଭେ ଦେଖିବୁ ବ୍ରହ୍ମରାଶି ॥
ମହୀ ଆଶ୍ୱାସି ଦେବଗଣ । ଚଳିଲେ ସେ ଯେ ଯାହା ଭୁବନ
ଯେବେ ହୋ ଶୁଣ ମହୀପତି । ଯେମନ୍ତ କଲେ ଦାଶରଥି ॥
ହରି ଚରଣେ ଦେଇ ଚିତ୍ତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମ ସ୍କନ୍ଧେ*
*କ୍ଷୀରାର୍ଣ୍ଣବ ଦର୍ଶନେ ନାମ ପ୍ରଥମୋଽଧ୍ୟାୟଃ ।*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ନମଇଁ ନୃସିଂହ ଚରଣ । କହିବି ବିଷ୍ଣୁର ପୁରାଣ ॥
ଶୁକ ବୋଲନ୍ତି ଶୁଣ ରାୟେ । ମର୍ତ୍ତ୍ୟେ ଜନ୍ମିଲେ ଦେବତାୟେ ॥
ଭୋଜ ବଂଶରେ ଉତପନ୍ନ । ପ୍ରତାପୀ ରାଜା ଶୂରସେନ ॥
ପୂର୍ବେ ମଥୁରା ପୁରେ ଥିଲା । ଅନେକ ନୃପତି ଜିଣିଲା ॥
ତେଣୁ କଟକ ମଧୁପୁରୀ । ଯହିଁ ବିଜୟେ ନରହରି ॥
ସେ ରାଜା ଗୋବିନ୍ଦେ ଭଗତ । ତାହାର ଉଗ୍ରସେନ ସୁତ ॥
ଦେବକ ନାମେ ତାର ଭ୍ରାତ । ତାହାର ଦେବକୀ ଦୋହିତ ॥
ରୂପେ କମଳା ନୋହେ ସରି । ସେ କନ୍ୟା ବସୁଦେବେ ବରି ॥
ମାୟା ଭିଆଣ ପଦ୍ମନାଭ । କରନ୍ତି ବିଭାର ଉଛବ ॥

ବିଭା କରାଇ କନ୍ୟାବର । ଯୁବତୀ ମଙ୍ଗଳ ବେଭାର ॥
ଜନ ବେଭାରେ ସେ ଦେବକ । ଅନେକ ଦିଲା ଯଉତୁକ ॥
ଚତୁର ଶତ ମଉଦିଲା । କଣ୍ଠେ ଲମ୍ବାଇ ରତ୍ନମାଳା ॥
ଅଠର ଶତ ରଥ ଯୁତେ । ଅଶ୍ୱ ସେ ଦିଲା ଅହିବ୍ରତେ ॥
ବେନି ଶତେକ ପରିବାରୀ । ଦିଲା ସେ ଅଳଙ୍କାର ଭରି ॥
ବାଜଇ ବୀର ତୂର ନାଦ । କେ କହୁ ବିଭାର ସମ୍ପଦ ॥
ରଥେ ବସାଇ କନ୍ୟାବର । ନବରୁ ହୋଇଲେ ବାହାର ॥
କୁସୁମ ବରଷନ୍ତି ଘେନି । ମଙ୍ଗଳ କଲେ ବେଦ ଧ୍ୱନି ॥
ଉଗ୍ରସେନର କଂସ ସୁତ । ଦେଖିଣ ହୋଇଲା ଉସତ ॥
ଯାହାର ଭୟେ ଦେବେ ଡରି । ଚାଳନ୍ତେ କମ୍ପେ ବସୁନ୍ଧରୀ ॥
ଦିବ୍ୟ ସୁବର୍ଣ୍ଣ ରଥେ ବସି । ରାଜାୟେ କଂସର ବିଶ୍ୱାସି ॥
ଭଗ୍ନିର ପ୍ରିୟ ବନ୍ଧୁ ପଣେ । ରଥରେ ବସିଲା ଆପଣେ ॥
ଅଶ୍ୱ ଦଉଡ଼ି ଧରି କରେ । ରଥ ବାହାଇ ଧୀରେ ଧୀରେ ॥
ଥୋକାୟେ ଦୂର ପଥ ଗଲା । ଆକାଶୁଁ ଶବଦେ ଶୁଭିଲା ॥
ତା ଶୁଣି ଚାହିଁଲା ଗଗନ । ଶବଦ କହୁଅଛି ଶୂନ୍ୟ ॥
ରେ ରେ ଅସୁର କଂସ ଶୁଣ । ଆପଣେ ନ ଜାଣୁ ମରଣ ॥
ଯାହାର ବହୁଅଛୁ ରଥ । ତୋତେ ମାରିବ ତାର ସୁତ ॥
ଅଷ୍ଟମ ଗର୍ଭେ ଜାତ ହୋଇ । ତୋତେ ମାରି ରଖିବ ମହୀ ॥
ଶୁଣିଣ ଆକାଶ ବଚନ । ରଥରୁ ଓହ୍ଲାଇ ବହନ ॥
କରେ ଉପାଡ଼ି କରବାଳ । ଧଇଲା ଦେବକୀର ଚୂଳ ॥
ବୋଲଇ ଭଲ ଯେ ବିଚାର । କୁମାରୀ କାଲୁଁ ଯାଉ ମାର ॥
ଯେ ମଲେ ମୂଳ ଯାଉ ଖଳ । ଦେବକ ସଙ୍ଗେ କିମ୍ବା ଗୋଳ ॥
ଅଧର ଚାପି କୋପେ ଚାହେଁ । କମ୍ପଇ ଦେବକୀର କାୟେ ॥
କଂସକୁ ବସୁଦେବ ଚାହିଁ । ଭୟେ ଚିନ୍ତଇ ଭାବଗ୍ରାହୀ ॥
କଂସର ଭୁଜ କରେ ଧରି । ବୋଲଇ ଶୁଣ ଦଣ୍ଡଧାରୀ ॥
ତୁ ଅଟୁ ମହତ ପୁରୁଷ । ସଂସାରେ ଅଛି ତୋର ଯଶ ॥
ଧାର୍ମିକ ବୋଲନ୍ତି ସକଳେ । ଦେବକୀ ମାରୁ କିମ୍ପା ବଳେ ॥
ବିଭାର ବେଳେ ଯେଡ଼େ କର୍ମ । କେମନ୍ତେ ସହିବଟି ଧର୍ମ ॥
ଦେହର ସଙ୍ଗେ ମୃତ୍ୟୁ ଜାତ । ନାହିଁ ଯେହାର ଆଦିଅନ୍ତ ॥
ବାଳକ ବୃଦ୍ଧ ଯେ ତରୁଣ । ଅବଶ୍ୟ ହୋଇବ ମରଣ ॥
ଦେହ ବହିଲେ ଯେବେ ମରି । ମରଣ ଛାରେ କିମ୍ପା ଡରି ॥
ଯେ ଜୀବ ମରଣ ନିକଟେ । ବେଗେ ଚିନ୍ତଇ ଅନ୍ୟ ଘଟେ ॥
ଯେହାର କଲା କର୍ମମାନ । ତେଣେ ହୁଅନ୍ତି ସାବଧାନ ॥
କର୍ମର ବଶ ହୋଏ ଜନ୍ତୁ । ଜନ୍ମ ମରଣ କର୍ମ ହେତୁ ॥
ଜୋକ ଯେ ଯେକଇ ଚରଣେ । ଯେସନେ ସଂଚରଇ ତୃଣେ ॥
ଜୀବ ସେ କର୍ମେ ସଂଚରଇ । ଜନ୍ମ ମରଣ ନାମ ଯେହି ॥
ନିଦ୍ରାରେ ଯେସନେ ସ୍ୱପନ । ଦେଖିଣ ପାସୋରଇ ମନ ॥
ଦେହରେ ଥାଇ ଯେତେ କରି । ଜୀବ ଛାଡ଼ିଲେ ତା ପାସୋରି ॥
କରନ୍ତି ପରଲୋକେ ଭୋଗ । ପୁଣି ହିଁ ରଜବୀର୍ଯ୍ୟେ ଯୋଗ ॥
ଜନ୍ମିଣ ପାସୋରଇ ତାହା । ଯେମନ୍ତେ ଅନାଦିର ମାୟା ॥
ଯେକଇ ପୁରୁଷ ମୁରାରି । ସକଳ ଘଟେ ଅଛି ପୂରି ॥
ଶତେକ ଜଳଘଟ ଥୋଇ । ଚାହିଁଲେ ଆକାଶ ଦିଶଇ ॥
ପୁଣିହିଁ କଲେ ଯେକ ଗୋଟି । ତହିଁ ଚାହିଁଲେ ଥାଇ ଘୋଟି ॥
ଆକାଶ ନୁହଇଟି ଭିନ୍ନ । ବିନାଶ ହୋନ୍ତି ଘଟମାନ ॥
ଯେମନ୍ତ ଆତ୍ମାର ବିବେକ । ଯେହା ଜାଣନ୍ତି ଜ୍ଞାନୀ ଲୋକ ॥
ତୁ ଅଟୁ ମହତ ପୁରୁଷ । କିମ୍ପା ବହେଣୀ କରୁ ନାଶ ॥
ଜୀବ ମାରନ୍ତି ଆତ୍ମା ସୁଖେ । ଦେହ ଅନ୍ତରେ ଯାନ୍ତି ଦୁଃଖେ ॥
ଯେ ସାନ ବହେଣୀ ତୋହର । ଯେହାକୁ ରକ୍ଷା କର ବୀର ॥
ଶୁକ ବୋଲନ୍ତି ଶୁଣ ରାୟେ । ଅସୁର ସ୍ୱଭାବେ ନିର୍ଦ୍ଦୟେ ॥
ଧର୍ମ ବଚନ ନ ଶୁଣଇ । ବିଶେଷ ଜ୍ଞାନ ତାର ନାହିଁ ॥
ଭିଣୋଇ ବୋଲ ନ ଶୁଣିଲା । ପୁଣି ହିଁ ହାଣିବି ବୋଇଲା ॥
ଦେଖି ବସୁଦେବ ବିଚାରି । କାନ୍ଦି ସୁମରେ ନରହରି ॥
ପୁଣି ବିଚାରୁ ଅଛି ମନେ । ଦେବକୀ ରଖିବି କେସନେ ॥
କେ ସହୁ ଯେହାର ବିକଳ । ଲାଭ ଦେଇ ରଖିବି ମୂଳ ॥
କି ଅବା ନୋହୁ ମୋର ସୁତ । କଂସ ହୋଇବ ପ୍ରାଣହତ ॥
କିବା ନୋହିବ ମୋ ତନୟେ । ଜାଣନ୍ତି ପ୍ରଭୁ ଦେବରାୟେ ॥
ଯେମନ୍ତ ମନେ ବିଚାରିଲା । କଂସର ମୁଖକୁ ଚାହିଁଲା ॥
ବୋଲଇ ଶୁଣ ବୀର କଂସ । ଛାଡ଼ ତୁ ବହେଣୀର କେଶ ॥
ଯେହାର ସୁତ ତୋତେ ମାରି । ଯେ ତୋର ନୁହଇ ବଇରୀ ॥
ଯେତେ ବାଳକ ଉପୁଜାଇ । ତୋର ନିକଟେ ଦେବି ନେଇ ॥
ତୁ ଅଟୁ ପୁରୁଷ ମହତ । ଯେ ମୋର ତିନିବାର ସତ୍ୟ ॥
ଶୁଣନ୍ତୁ ଦଶଦିଗ ଲୋକେ । ଯେଠାରେ ଅଛନ୍ତି ଯେ ଥୋକେ ॥
ଯେ କଥା ମୋହୋର ପ୍ରମାଣ । ଯେଥକୁ ସାକ୍ଷ ନାରାୟଣ ॥
ବସୁଦେବର ବୋଲ ଶୁଣି । କଂସ ହିଁ ମନେ ମନେ ଗୁଣି ॥
ବିଚାରି ଜାଣିଲା ବିଶ୍ୱାସ । ଛାଡ଼ିଲା ଦେବକୀର କେଶ ॥
ଆନନ୍ଦ ହୋଇ ବେନି ଜନ । ଗଲେ ସେ ଯେ ଯାହା ଭୁବନ ॥
କେତେ ହେଁ ଦିନ ତହିଁ ଗଲା । ଦେବକୀ ଗର୍ଭ ଉପୁଜିଲା ॥
ବରଷ ବରଷକେ ସୁତ । ହୋଇଲା ଯେକଇ ଦୋହିତ ॥

ପ୍ରଥମେ ହୋଇଲା ତନୟେ । ରୂପେ ଶୋଭିତ କାମରାୟେ ॥
ସୁତକୁ ଦେଖି ବସୁଦେବ । ବିକଳେ ଚିନ୍ତଇ ମାଧବ ॥
ଯେ ସୁତ ଦେବଇଁ କେମନ୍ତେ । ସତ୍ୟ ଯେ କରିଛି ଯୁଗତେ ॥
ଦେବକୀ ମୁଖକୁ ଅନାଇଁ । ହା କୃଷ୍ଣ ବୋଲି ଡାକ ଦେଇ ॥
କୋଡ଼ରେ ଘେନିଲା ତନୟେ । ହୋଇଲା ହରଷ ବିସ୍ମୟେ ॥
କଂସର ସଭାରେ ମିଳିଲା । ବାଳକ ତଳେ ଶୁଆଇଲା ॥
ଦେଖି ଚକିତ ସଭାଜନେ । କଂସ ବିଚାରୁଅଛି ମନେ ॥
ଯେ ତ ନୁହଇ ମୋ ବଇରୀ । ଅଷ୍ଟମ ଗର୍ଭ ମୋତେ ମାରି ॥
ଯେହାର ମଣିଲି ମୁ ସତ୍ୟ । ନେଉ ଯେହାର ନିଜ ସୁତ ॥
ହସି ବସୁଦେବକୁ ଚାହିଁ । କହଇ ବିଶ୍ୱାସ କରାଇ ॥
ତୋହୋର ମଣିଲି ମୁ ସତ୍ୟ । ନିଅ ତୋହର ନିଜ ସୁତ ॥
ଶୁଣି ବସୁଦେବ ଚକିତେ । କଂସକୁ ନ ଯାଇ ପରତେ ॥
କ୍ଷଣକ ବିଚାର ସେ କରି । ପୁଣି କୁମର କୋଳେ ଧରି ॥
ବାଟରେ କରଇ ବିଚାର । ଦୁଷ୍ଟ ଦାନବ ଦୁରାଚାର ॥
ଯେବେ ମୁ ନେବି ବାହୁଡ଼ାଇ । ପୁଣି ମାରିବ କଂସ ନେଇ ॥
ଦେବକୀ କଷ୍ଟ ହେବ ବଡ଼ । କିସ କରିବି ମୁହିଁ ରାଢ଼ ॥
ହରି ଭିଆଣ କଲା ଯାହା । ଅବଶ୍ୟ ଭୁଞ୍ଜିବା ନା ତାହା ॥
ଯେମନ୍ତେ ଦୁଃଖେ ସୁଖେ ଯାଇ । ଦେବକୀ ନିକଟେ ମିଳଇ ॥
କୋଡ଼ରେ ଦିଲାକ ତନୟେ । ଦେବକୀ ଆନନ୍ଦ ହୃଦୟେ ॥
ସୁତକୁ ପାଇଣ ଦେବକୀ । ଆନନ୍ଦ କେ ପାରିବ ଲେଖି ॥
ରଜନୀ ହୋଇଲା ପ୍ରବେଶ । ଅନ୍ତଃପୁରେ ମିଳିଲା କଂସ ॥
ଶୀତଳ ମଣୋହି ସାରିଲା । ସୁଖେ ପଲଙ୍କେ ବିଜେକଲା ॥
ତକ୍ଷଣେ ମିଳିଲେ ନାରଦ । ସନ୍ନିଧେ ବସି ଗୀତ ନାଦ ॥
ଦେଖିଣ ତେଜିଲା ଶୟନ । ପ୍ରଲମ୍ବ କଲା ତତକ୍ଷଣ ॥
ନିଜ ଆସନେ ବସାଇଲା । ବିଶ୍ୱାସେ ଚରଣ ଚାପିଲା ॥
ଭଗତି ଦେଖିଣ ନାରଦ । କହନ୍ତି ଶୋକ ଗଦଗଦ ॥
ଶୁଣ ଅସୁର ଚୂଡ଼ାମଣି । ତୋର ମରଣ ମୁହିଁ ଜାଣି ॥
ତୋ ଦୁଃଖ ଦେଖିଣ ବିକଳ । ଦେଖ ନୟନେ ଅଶ୍ରୁଜଳ ॥
ଶୁଣ ଦାନବ ଚୂଡ଼ାମଣି । ତୋର ମରଣ ତଥ୍ୟ ବାଣୀ ॥
ଭୂମିର ଦେଖିଣ ବିକଳ । ଗୁହାରି କଲେ ଦେବବଳ ॥
ବ୍ରହ୍ମାର ବଚନେ ମୁରାରି । ମାୟା ମନୁଷ୍ୟ ରୂପ ଧରି ॥
ତୋତେ ମାରିବେ ସେ ଅନନ୍ତ । ତୁ କିମ୍ପା ହୋଇଲୁ ନିଶ୍ଚିନ୍ତ ॥
ଦେବେ ଉପୁଜିଛନ୍ତି ଅଂଶେ । ଗୋପ ନଗରେ ଭୋଜବଂଶେ ॥
ନନ୍ଦ ଯଶୋଦା ଆଦି ଯେତେ । କହିବି ଯେକେ ଯେକେ କେତେ
ଦେବକୀ ଦେବୀ ବସୁଦେବ । ଯେହାଙ୍କ ତୁଲେଣ ଯାଦବ ॥
ତୋର ସେବକ ଯେତେ ଲୋକ । ଦେବତାମାନେ ଯେଟି ଦେଖ
ଯେମନ୍ତ ନକରୁ ବିଚାର । ନିକଟେ ମରିବୁଟି ବୀର ॥
କଂସକୁ କରାଇ ଉଚ୍ଚାଟ । ନାରଦେ ଗଲେ ଶୂନ୍ୟ ବାଟ ॥
ଦୁଃଖେ ରଜନୀ ବଞ୍ଚାଇଲା । ନିଜ ସଭାରେ ବିଜେକଲା ॥
ଅସୁର ବଳ ଘେନି ସଙ୍ଗେ । ଧାଇଁଲା ପବନହୁଁ ବେଗେ ॥
ଦେବକୀ ମନ୍ଦିରେ ମିଳିଲା । କୋପେ ଅଧର କାମୋଡ଼ିଲା ॥
ତୁ ଅଟୁ ବହେଣୀ ମୋହୋର । ମୋର ମରଣେ ତୋ ବିଚାର ॥
ମୁ ଯେହା ଜାଣିବି କେମନ୍ତେ । ଭିଣୋଇ ବଚନେ ପରତେ ॥
ଯେମନ୍ତେ ବୋଲି କୋପଭରେ । ବାଳକ ଧରି ବେନିକରେ ॥
ବେନି ଚରଣ କରେ ଧରି । ବୁଲାଇ ଅନ୍ତରାଳ କରି ॥
କୋପେ ଅନେକ ଗାଳି ଦିଲା । ଶିଳା ଉପରେ କଚାଡ଼ିଲା ॥
ଦେବକୀ ବସୁଦେବ ଆଣି । ବନ୍ଧନ କଲା ପାଦ ପାଣି ॥
ମାଡ଼ ମରାଇ ମହାରୋଷେ । ପାଦେ ଭରିଲା ଲୋହପାଶେ ॥
ଧନ ସମ୍ପଦ କଲା ଜୁର । ଆଣି ଭରିଲା ବନ୍ଦୀଘର ॥
ସାତ କବାଟ ମହାବଳୀ । ଲୋହ କିଳଣୀ ଅର୍ଗଳି ॥
ପାହାରି ଶତେକ ଜଗାଇ । କହଇ ରୋଷଭର ହୋଇ ॥
ଦେବକୀ ଯେତେ ପ୍ରସବିବ । ମୋହର ଆଗେ ଜଣାଇବ ॥
ଯେ ମୋର ନ କରିବ ବୋଲ । ସେହି ମୋହୋର ଶତ୍ରୁ ଶଲ
ନିଜ ପିଅର ଅଣାଇଲା । ଅନେକ ମାଡ଼ ମରାଇଲା ॥
ଶାଙ୍କୁଳି ଦିଲା ବନ୍ଦୀଘରେ । ଅନେକ ଯାଦବ ସଙ୍ଗରେ ॥
ଅସୁର ସ୍ୱଭାବେଣ କଂସ । ମାଇଲା ଆପଣାର ବଂଶ ॥
କୋପ ସଂହରି ନିଜପୁରେ । ଦଇତ ପଶିଲା ଭିତରେ ॥
କଂସ ଜାଣଇ ଯୋଗବଳେ । ମୁ ଜାତ ଦାନବଙ୍କ କୁଳେ ॥
ଅନେକ ବାର ମୋତେ ମାରି । ମୋକ୍ଷ ନ ଦିଲେ ନରହରି ॥
ଯେବେ ମାରିବେ ଯେବେ ମୋତେ । ଭାଗ୍ୟ ମୋ କେକରିବ ଅନ୍ତେ ॥
ଯେମନ୍ତ ମନେ ବିଚାରିଲା । ଯଦୁଙ୍କ ସଙ୍ଗେ ବାଦ କଲା ॥
ଶୁଣ ସୁଜନେ କୃଷ୍ଣ ଗୀତ । ଗୋବିନ୍ଦ ପାଦେ ଦେଇ ଚିତ୍ତ ॥
ପଣ୍ଡିନେ ନ ଘେନିମା ଦୋଷ । କୃଷ୍ଣ ଚରିତ ସୁଧାରସ ॥
କହଇ ବିପ୍ର ଜଗନ୍ନାଥ । ହରି ଚରଣେ ଦେଇ ଚିତ୍ତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମ ସ୍କନ୍ଧେ*
*ଦେବକୀ ବିବାହ ନାମ ଦ୍ୱିତୀୟୋଽଧ୍ୟାୟ ।*

## ତୃତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ । ଅସୁର କଲା ମହାଭୟେ ॥
ଦୂତ ପେଷିଲା ଚାରିଦିଗେ । ବିଶ୍ୱାସୀ ଦାନବଙ୍କ ଲାଗେ ॥
କଂସର ଘେନି ମିତ୍ରପଣ । ଆସି ମିଳିଲେ ଜଣେ ଜଣ ॥
ଚାଣୁର ତୃଣାବର୍ତ୍ତ ବୀର । ମୁଷ୍ଟିକ ମାଲ ଷଣ୍ଢାସୁର ॥
ଦ୍ୱିବିଦ ନାମେଣ ବାନର । ପ୍ରଳମ୍ୱା ବଛା ବକାସୁର ॥
ପୂତନା ନାମେଣ ରାକ୍ଷସୀ । ଆଗେ ମିଳିଲା ବୀରକେଶୀ ॥
ବେଗେ ମିଳିଲା ବାଣାସୁର । ମୁର ନାରକା ଜାରା ବୀର ॥
ଯେମନ୍ତେ କହିବଇଁ କେତେ । କଂସର ମିତ୍ର ଛନ୍ତି ଯେତେ ॥
ସବୁନ୍ତି ବସାଇ ଆସନେ । କହଇ କଂସ ଖେଦମନେ ॥
ଶୁଣ ସକଳ ବୀରମଣି । ମୋହର କର୍ମଫଳ ବାଣୀ ॥
ନାରଦେ କହିଗଲେ ମୋତେ । ଯଦୁଙ୍କୁ ନ ଯିବୁ ପରତେ ॥
ଯେତେକ ମୋହୋର ବିଶ୍ୱାସ । ଯଦୁଙ୍କୁ ନ ଯିବୁ ପରତେ ॥
ଶୁଣି ଅସୁରେ ପରଜ୍ଜଳି । ଯେସନେ ସମୁଦ୍ର ଉଚ୍ଛୁଳି ॥
ଯଦୁଙ୍କୁ କଲେ କଷ୍ଟମାନ । ଯାହା ରଖିବେ ଭଗବାନ ॥
ଯାଦବେ ଅସୁରଙ୍କ ଡରେ । ପଳାଇଗଲେ ଦେଶାନ୍ତରେ ॥
କେ କୁରୁ ନବରେ ପଶିଲେ । ପଞ୍ଚାଳ ଦେଶେ କେ ଲୁଚିଲେ ॥
ବିଦେହ ନିଷଧ କୋଶଳେ । ପଶିଲେ ଜୀବନ ବିକଳେ ॥
ଯେ ଅବା ଯାଇ ନ ପାରିଲେ । କଂସରେ ଶରଣ ପଶିଲେ ॥
କେହୁ ସେବକ ପଣେ ଦାସ । କାହାକୁ ଦିଲା ଲୋହପାଶ ॥
ଯେମନ୍ତେ ବରଷ ପୂରିଲା । ପୁଣି ଦେବକୀ ପ୍ରସବିଲା ॥
ପାହାରି ଜଣାଇଲା ଯାଇ । ଶୁଣି ଧାଇଁଲା ରୋଷବହି ॥
ଦେବକୀ ନିକଟେ ମିଳିଲା । କୋଳୁଁ ବାଳକ ଛୁଡ଼ିଲା ॥
ବେନି ଚରଣ ଧରି କରେ । ବୁଲାଇ ପିଟିଲା ଶିଳାରେ ॥
ଯେମନ୍ତେ ବରଷେ ବରଷ । ଛ ପୁତ୍ର କଲା କଂସ ନାଶ ॥
କେ କହୁ ଦେବକୀ ବିକଳ । ନିଶି ଦିବସେ ମହାଦୁଃଖ ॥
ଦେଖିଣ ଦେବକୀ ବିକଳ । ଦୟା ବସିଲା ଆଦିମୂଳ ॥
ଅନନ୍ତ ରୂପ ଧରି ହରି । ଦେବକୀ ଗର୍ଭେ ଅବତରି ॥
ଯେ ରୂପେ ଅନନ୍ତ ପ୍ରକାଶ । ଗର୍ଭେ ହୋଇଲା ଅଷ୍ଟମାସ ॥
ଦେବକୀ ନିଜ ଦେହ ଚାହିଁ । ବିକଳେ ନିଶ୍ୱାସ ଛାଡ଼ଇ ॥
କେତେ ପାତକ କଲି ପୂର୍ବେ । ପୁଣି ହୋଇଲା ଆସି ଗର୍ଭେ ॥
କେତେ ସହିବି ଗର୍ଭ କଷ୍ଟ । ବିଧାତା କଲା ମୋତେ ହଟ ॥
ଗର୍ଭେ ଧରିବି ଦଶମାସ । କୋଳେ ଧରିତ ନାହିଁ ଆଶ ॥

ଯେମନ୍ତ ବିଚାରି ବିକଳ । ନୟନୁ ବହେ ଅଶ୍ରୁଜଳ ॥
ଦାସ ବତ୍ସଳ ଭଗବାନ । ଜାଣିଲେ ଦେବକୀର ମନ ॥
ଦୁର୍ଗାଙ୍କୁ ନିକଟେ ବସାଇ । କହନ୍ତି ପ୍ରଭୁ ଭାବଗ୍ରାହୀ ॥
ଅମ୍ୱିକା ଶୁଣ ମୋ ଉତ୍ତର । ବହନ ଯାଅ ମଈପୁର ॥
ମଥୁରା କଂସ ବନ୍ଦୀଘରେ । ମିଳିବୁ ପ୍ରଥମ ପ୍ରହରେ ॥
ବନ୍ଦୀ କରିଛି କଂସରାୟେ । ଯେକ ଶାଙ୍କୁଳି ବେନିପାୟେ ॥
ବସୁଦେବଙ୍କୁ ଯେତେବେଳେ । ଧରି ଆଣିଲା କଂସବଳେ ॥
ତାହାର ପତ୍ନୀ ନନ୍ଦ ଘରେ । ଯାଇ ଲୁଚିଲା କଂସ ଡରେ ॥
ରୋହିଣୀ ନାମେ ବିଦ୍ୟମାନ । ତାହାର ଗର୍ଭ ଅଛି ଶୂନ୍ୟ ॥
ଦେବକୀ ଦେବୀ ନିଦ୍ରାବେଳେ । ଗର୍ଭ ହରିବୁ ଯୋଗବଳେ ॥
ରୋହିଣୀ ଗର୍ଭେ ତାହା ଥୋଇ । ମିଳିବୁ ନନ୍ଦଘରେ ଯାଇ ॥
ଜନ୍ମିବୁ ଯଶୋଦା ଉଦରେ । ମୁ ପୁଣି ଯିବି ମଈପୁରେ ॥
ଦେବକୀ ଗର୍ଭେ ହେବି ଜାତ । ମୋତେ ଘେନିଣ ଯିବ ତାତ ॥
ତୋତେ ଆଣିବ ମୋତେ ଥୋଇ। ଯେକଥା ନ ଜାଣିବେ କେହି
ଯେମନ୍ତ କଂସର ମରଣ । ହସି ବୋଲନ୍ତି ନାରାୟଣ ॥
ଲୋକେ ହୋଇବୁ ତୁହି ଜାତ । ଜଗତେ ହୋଇବୁ ବିଖ୍ୟାତ ॥
ସର୍ବେ କରିବେ ତୋତେ ପୂଜା । ଅନେକ ଦେବେ ବଳି ଭୋଜା
ଭଗତେ ହୋଇବୁ ପ୍ରସନ୍ନ । ଅନେକ ହେବ ତୋର ନାମ ॥
ଜୟା ବିଜୟା ଭଦ୍ରକାଳୀ । କୁମୁଦା ଚଣ୍ଡିକା କଙ୍କାଳି ॥
ଦୁର୍ଗା ଅମ୍ୱିକା ନାରାୟଣୀ । ଯେଙ୍କୁ ଅନେକ ନାମ ଭଣି ॥
ଗ୍ରାମ ଗ୍ରାମକେ କରି ସ୍ଥାନ । ପୂଜନ୍ତେ ହୋଇବୁ ପ୍ରସନ୍ନ ॥
ଅନ୍ତ ମୁ କରିବଇଁ କେତେ । ଅନେକ ନାମ ତୋ ଜଗତେ ॥
ପୂଜା କରିବେ ସର୍ବଜନ । ରାଜା ପରଜା ତପିଜନ ॥
ସ୍ତୁତି ପଠନେ ମନ୍ତ୍ର ଧ୍ୟାନ । ଷୋଡ଼ଶ ଉପଚାର କର୍ମ ॥
ଶୁଣ ବଚନ ଆଦିମାତା । ଦେବକୀ ପେଡ଼ ତୁ ଅବସ୍ଥା ॥
ଦେବକୀ ଗର୍ଭୁଁ ତାହା ଆଣି । ପ୍ରବେଶ କରାଅ ରୋହିଣୀ ॥
ତାହାର ନାମ ସଙ୍କର୍ଷଣ । ଲୋକରେ ହୋଇବ ପ୍ରମାଣ ॥
ବଳେ ନୋହିବେ କେହିସମ । ନାମ ହୋଇବ ବଳରାମ ॥
ଶୁଣି ସାନନ୍ଦ ମନ ହୋଇ । ମଂଚେ ଚଳିଲେ ମହାମାୟୀ ॥
ହରି ଆଦେଶ ଘେନି ଶିରେ । ମିଳିଲେ ମଥୁରା ନଗରେ ॥
ବସୁଦେବର ବନ୍ଦୀଘରେ । ମିଳିଲେ ପ୍ରଥମ ପ୍ରହରେ ॥
ରାତ୍ରେ ଦେବକୀ ନିଦ୍ରାକାଳେ । ଗର୍ଭ ହରିଲେ ଯୋଗବଳେ ॥
ଅନନ୍ତ ଘେନି ମାୟା ବେଗେ । ଭରିଲା ରୋହିଣୀର ଗର୍ଭେ ॥
ମିଳିଲା ନନ୍ଦଘରେ ଯାଇ । କୃଷ୍ଣ ଜନ୍ମକୁ ବାଟ ଚାହିଁ ॥

ଦେବକୀ ଗର୍ଭୁଁ ଯହୁଁ ଗଲା । ଲୋକେ ବୋଇଲେ ଉଭୁଇଲା ॥
ଭଲଟି କଲେ ନାରାୟଣ । ଦେବକୀ ନ ଯାଉ କଷଣ ॥
ଥୋକେ ବୋଇଲେ ଭଲ ଗଲା । କଂସର ଡରେ ପଳାଇଲା ॥
ପୋଡୁ ଯେ ଦେବକୀ ଭିଆଣ । କେ ବୋଲେ କର୍ଣ୍ଣେ ତା ନ ଶୁଣ ॥
ଯେତେ ମଡ଼ଛି ଅଛି କାହିଁ । କେ ବୋଲେ ମୁଖ ତା ନ ଚାହିଁ ॥
କାହିକେ ହୁଅନ୍ତି ବିକଳ । କେ ବୋଲେ ରଖ ଆଦିମୂଳ ॥
ଦେବକୀ ଲୋକରେ କଷଣ । ଜାଣିଲେ ପ୍ରଭୁ ନାରାୟଣ ॥
ତେଜିଲେ ଜଳଧି ଶୟନ । ମଥୁରା ମିଳିଲେ ବହନ ॥
ବସୁଦେବର ଦେହେଁ ଯାଇ । ପଶିଲେ ଜ୍ୟୋତି ରୂପ ହୋଇ ॥
ବିଷ୍ଣୁର ତେଜ ପରଚଣ୍ଡ । ଯେହ୍ନେ ଉଦିତ ମାରତଣ୍ଡ ॥
ଅମର ଗୁରୁ ଲଗ୍ନବେଳେ । ପ୍ରଭୁ କାମିନୀ ଯେକ ମେଳେ ॥
ଜଗତ ମଙ୍ଗଳ ପୁରୁଷ । ଦେବକୀ ଉଦରେ ପ୍ରବେଶ ॥
ଉଦୟ କାଳେ ଯେହ୍ନେ ଶଶୀ । ପୂର୍ବ ଦିଗକୁ ପରକାଶି ॥
କୃଷ୍ଣଙ୍କୁ ଧରିଣ ଉଦର । ଦେବକୀ ଦିଶିଲା ସୁନ୍ଦର ॥
ଅନ୍ଧାର ବନ୍ଦୀଘରେ ତେଜ । ଯେହ୍ନେ ଦିଶଇ ଗ୍ରହରାଜ ॥
ଦେବକୀ ଗର୍ଭବାସ କଥା । ଶୁଣି ପାଇଲା କଂସ ବ୍ୟଥା ॥
ଭୟେ ଚକିତ ମନ ଛନ୍ନ । ମିଳିଲା ଦେବକୀ ଭୁବନ ॥
ସାତ କବାଟ ଫେଡ଼ାଇଲା । ଅନ୍ଧାର ଘରକୁ ଚାହିଁଲା ॥
ଉଦୟେ ହୋଇ ନିଶାକର । ଯେହ୍ନେ ନାଶଇ ତମଘୋର ॥
ଦେଖି ଚକିତ କଂସ ମନେ । ଭାଳି ବୋଲଇ ଦିବ୍ୟ ଜ୍ଞାନେ ॥
ନିଶ୍ଚୟେ ହୋଇଲା ମରଣ । ଯେ ତ ଅନାଦି ନାରାୟଣ ॥
ଗର୍ଭେ ବିଜୟେ ବ୍ରହ୍ମରାଶି । ଯେ ମୋର କାଳଦଣ୍ଡ ଫାଶି ॥
ଜୀବନ ନାଶିବ ମୋହର । ଦେବକୀ ବଢ଼ାଇ ସୁନ୍ଦର ॥
ଯେ ଯେତେ ଗର୍ଭ ପ୍ରସବିଲା । ଯେମନ୍ତ ବେଳେ ନ ଦିଶିଲା ॥
କି ବୁଦ୍ଧି କରିବଇଁ ଆଜ । ମାରିଣ ଲଭିବଇଁ କାର୍ଯ୍ୟ ॥
ହସ୍ତରେ ଅଛି ମୋ ଉପାୟେ । ଛାଡ଼ିଲେ ନ ପାଇବି ଥୟେ ॥
ଦେବକୀ ପକାଇବି ମାରି । ଗର୍ଭ ନାଶିବି ପେଟ ଚିରି ॥
ପୁଣି ବିଚାରୁ ଅଛି ମନେ । ଯେ କର୍ମ କରିବି କେସନେ ॥
ଜୀବନ ପାଇଁ ଯେତେ ପାପ । କରି ପାଇବି ମନେ ତାପ ॥
ଜୀବ ମାରଣେ ସୁଖ ନାହିଁ । ନରକେ ପଡ଼ିବି ନା ଯାଇ ॥
ପାପଙ୍କ ମଧ୍ୟେ ପରମାଦ । ସ୍ତିରୀ ଗର୍ଭିଣୀ ଶିଶୁବଧ ॥
ଯେ ତିନି କର୍ମ ଯେ କରନ୍ତି । ଜୀବନ ଥାଉଁ ସେ ମରନ୍ତି ॥
ଜୀବନ ଛାଡ଼ିବାର କାଳେ । ନିନ୍ଦିତ ବୋଲନ୍ତି ସକଳେ ॥
ଇହ ଲୋକରେ ଅପଯଶ । ମଲେ ନରକେ ପରବେଶ ॥

ଯେମନ୍ତ ମନେ ବିଚାରିଲା । ଖଡ଼ଗ ଘେନି ବାହୁଡ଼ିଲା ॥
ମିଳିଲା ନିଜପୁରେ ଯାଇ । ଭାଳଇ ଚଉଦିଗ ଚାହିଁ ॥
ହରିଙ୍କି କଲା ମହାଭୟେ । କ୍ଷଣ କ୍ଷଣକେ କମ୍ପେ କାୟେ ॥
ଆସନ ଶୟନ ଭୋଜନେ । ସ୍ନାନ ବିହାର ଜଳପାନେ ॥
ଗୋଡ଼ାଇ ଅଛି ଯେହ୍ନେ ହରି । କମ୍ପଇ ମହାଭୟ କରି ॥
ବୃକ୍ଷ କାନନ ଦେଶ ଗିରି । ସବୁ ମଣଇ ନରହରି ॥
ଯେମନ୍ତେ ରଜନୀ ହୋଇଲା । ଘୋର ତିମିରି ପ୍ରକାଶିଲା ॥
ବ୍ରହ୍ମା ଶଙ୍କର ଇନ୍ଦ୍ର ମୂଳେ । ତେତିଶ କୋଟି ଦେବ ବଳେ ॥
ମିଳିଲେ ମଥୁରା ନଗରେ । ଦେବକୀ ଦେବୀ ବନ୍ଦୀଘରେ ॥
ପଳମ୍ବ କଲେ ଜଣେ ଜଣେ । ଶ୍ରୀକୃଷ୍ଣ ଜନନୀ ଚରଣେ ॥
ଗର୍ଭକୁ ଚାହିଁ ଗଙ୍ଗାଧର । ସ୍ତୁତି କରନ୍ତି ବେଦବର ॥
ବାସବ ଆଦି ଦିଗପତି । ଯେ ଯାହା ମତେ କଲେ ସ୍ତୁତି ॥
ଜୟ ଗୋବିନ୍ଦ ଦାମୋଦର । ସତ୍ୟ ବଚନ ସ୍ୱାମୀ ତୋର ॥
ଆବୋରି ଅଛୁ ତିନି ସତ୍ୟ । ଦେହ ଅବନୀ ପରମାର୍ଥ ॥
ସତ୍ୟେ ବ୍ରହ୍ମାଙ୍କୁ କଲୁ ଜାତ । ସତ୍ୟ ସ୍ୱରୂପ ତୁ ଅଚ୍ୟୁତ ॥
ସତ୍ୟେ ତୋହୋର ଆତଯାତ । ଆମ୍ଭେ ଜାଣିଲୁ ତୋର ସତ୍ୟ ॥
ତୋହୋର ସହ୍ଲା ଶୟଳ । ଅସୁର ମାରି ସାଧୁପାଳ ॥
ସଂସାର ମଧ୍ୟେ ଦେହ ବୃକ୍ଷେ । ଯେଥେଁ ତୁ ମିଳିଲୁ ପ୍ରତକ୍ଷେ ॥
ବୃକ୍ଷର ଯେତେ ଗୁଣମାନ । ଶରୀରେ ତୋହୋର ଭିଆଣ ॥
ଯେକଇ ବୃକ୍ଷ ବେନିଫଳ । ଚତୁର ରସ ତିନିମୂଳ ॥
ପଞ୍ଚ ଶିଖଡ଼ ତଳେ ଗଣ୍ଡି । ଆତ୍ମା ଯେହାର ଛଡ଼ ଗୋଟି ॥
ସାତ ବକଳ ଦେହେଁ ଜଡ଼ି । ଅଷ୍ଟମ ଡାଳେ ଛନ୍ତି ବେଢ଼ି ॥
ଗଣ୍ଡି ସ୍ୱଭାବେ ନବ ନେତ୍ର । ବିସ୍ତାର ନିତ୍ୟେ ଦଶପତ୍ର ॥
ଉପରେ ଅଛି ବେନି ପକ୍ଷୀ । ଯେମନ୍ତ ବୃକ୍ଷଦେହେଁ ଲକ୍ଷି ॥
ମୁନି ବୋଲନ୍ତି ରାୟେ ଶୁଣ । ଦେହେଁ କହିବା ବୃକ୍ଷଗୁଣ ॥
ବୃକ୍ଷର ପ୍ରାୟେ ଦେହ ଯେକ । ଫଳ ଯୋଡ଼ିୟେ ଦୁଃଖ ସୁଖ ॥
ତାମସ ରଜ ସତ୍ତ୍ୱଗୁଣ । ଯେହାର ମୂଳଟି ପ୍ରମାଣ ॥
ଧର୍ମ ସମ୍ପଦ କାମ ମୋକ୍ଷ । ଯେ ଚାରି ରସଟି ପ୍ରତକ୍ଷ ॥
ଶବଦ ରୂପ ରସ ଗନ୍ଧ । ସ୍ପରଶ ପଞ୍ଚମୂଳ ଛନ୍ଦ ॥
ଜନ୍ମ ହୋଇଣ ଦେହବହି । ବାଳୁତ ରୂପେଣ ବଢ଼ଇ ॥
ତରୁଣ ବୃଦ୍ଧ ପୁଣ ମୃତ୍ୟୁ । ଯେହାର ଆତ୍ମା ଷଡ଼ ହେତୁ ॥
ଚର୍ମ ଶୋଣିତ ମାଂସ ମେଦ । ହାଡ଼ ମଜ୍ଜାରେ ଧାତୁଛନ୍ଦ ॥
ସପତ ବକଳ ଯେହାର । ମୁନି କହନ୍ତି ଜ୍ଞାନ ସାର ॥
ଭୂ ଜଳ ଅନଳ ସମୀର । ଖ ମନ ବୁଦ୍ଧି ଅହଂକାର ॥

ଯେ ଅଷ୍ଟଡ଼ାଳଟି ଯେହାର । ନବମ ଚକ୍ଷୁ ନବଦ୍ୱାର ॥
ଦଶ ଇନ୍ଦ୍ରିୟ ପତ୍ର ଲେଖି । ଜୀବ ପରମ ବେନି ପକ୍ଷୀ ॥
ଯେମନ୍ତ ବୃକ୍ଷରୂପ ହୋଇ । ଭାରା ସଂହରି ରଖ ମହୀ ॥
ଜଗତ ତୋର ତହୁଁ ଜାତ । ଲୟ ପାଳଣ ଜଗନ୍ନାଥ ॥
ତୋହୋ ମାୟାରେ ମୂର୍ଖଜନ । ଆତ୍ମାକୁ ଦେଖନ୍ତି ସେ ଭିନ୍ନ ॥
ପଣ୍ଡିତେ ବୋଲନ୍ତି ସେ ଯେକ । ମାୟାରେ ଦିଶଇ ଅନେକ ॥
ତୁହି ସଂସାର ଦୁଃଖ ସୁଖେ । ଶରୀର ବହୁ ନାନା ରୂପେ ॥
ସାଧୁକୁ ଦିଶଇ ନିର୍ମଳ । ଖଳ ଲୋଚନେ ଯମକାଳ ॥
ଯେ ତୋର ପାଦେ ପଦ୍ମନାଭ । କରନ୍ତି ଆତ୍ମାଜ୍ଞାନେ ଭାବ ॥
ତୋହୋର ନାମ ନାବ କରି । ହେଳେ ତରନ୍ତି ଭବବାରି ॥
ଭୋ ନାଥ କମଳ ଲୋଚନ । ମାୟାରେ ମୋହୁ ପ୍ରାଣୀମନ ॥
ଯେ ତୋର ନାମ ନ ଭଜନ୍ତି । ମାୟା ପଟଳ ଆବୋରନ୍ତି ॥
ତୀର୍ଥ ସେବନ୍ତି ଦାନ ତପେ । ତରିଲୁଁ ବୋଲୁଥାନ୍ତି ଥୋକେ ॥
କରନ୍ତି ସିଦ୍ଧଙ୍କ ଉପାୟେ । ଭେଦନ୍ତି ବ୍ରହ୍ମଲୋକ ଯାୟେ ॥
ତୋ ପାଦେ ନକରି ଆଦର । ହୃଦେ ବହନ୍ତି ଅହଂକାର ॥
ତହୁଁ ପଡ଼ନ୍ତି ଦେହ ଘେନି । ଜନ୍ମ ହୁଅନ୍ତି ପଶୁ ଯୋନି ॥
ଯେ ତୋର ତହିଁ ମିତ୍ର ପଣେ । ଚିତ୍ତ ଖଟାନ୍ତି ଅନୁକ୍ଷଣେ ॥
ନିର୍ଭୟେ ବୁଲନ୍ତି ସଂସାରେ । ନୃତ୍ୟ କରନ୍ତି ଯମଶିରେ ॥
ସତ୍ୟ ନିର୍ମଳ ଗୁଣ ହେତୁ । ଜଗତ ପାଇଁ ଦେହ ବହୁ ॥
ତପ ସମାଧି ଯୋଗ କ୍ରିୟା । ବେଦେ କହନ୍ତି ମୁନି ଯାହା ॥
ତୋ ଆରାଧନ୍ତୁଁ ନାହିଁ ଆନ । ପୂରିଣ ଅଛୁ ଠୂଳ ଶୂନ୍ୟ ॥
ତୁ ଯେବେ ନୋହିବୁ ଜଗତେ । ଅଜ୍ଞାନ ନାଶିବୁ କେମନ୍ତେ ॥
ଯେ ତୋତେ ଯେମନ୍ତେ ଚିନ୍ତଇ । ଗୁଣେ ପ୍ରକାଶୁ ଦେହବହି ॥
ତୋହୋର ଗୁଣ କର୍ମମାନ । ସଂଖ୍ୟା କେ କରୁ ଭଗବାନ ॥
ମନ ବଚନେ ହେଁ ନ ଜାଣି । କେବଳ ଦେହେଁ ପରିମାଣି ॥
ତୋ ପାଦ ପୂଜାର ବିଧାନ । ଯେଣେ ଯେ ହୋନ୍ତି ସାବଧାନ ॥
ଜନ୍ମ ମରଣ ତାଙ୍କ ନାହିଁ । ଯେମନ୍ତ ପ୍ରଭୁ ଭାବଗ୍ରାହୀ ॥
ତୋହୋର ପାଦରଜ ଦେଇ । ଉଶ୍ୱାସ କର ନାଥ ମହୀ ॥
ସ୍ୱର୍ଗେ ବସିବୁଁ ପଦ୍ମନାଭ । ତହିଁ ଦେଖିବୁଁ ତୋର ପାଦ ॥
ଯେ ତୋର ଦେହବନ୍ତ ପଣ । ଯେବେ ଜାଣିଲୁଁ ନାରାୟଣ ॥
ମନୁଷ୍ୟ ଲୀଳା ଯେ ତୋ ସଧ । ସ୍ୱରୂପ ନ ଜାଣଇ ବେଦ ॥
ମଛ କମଠ ନରସିଂହ । କୋଳ ବାମନ ହୟଗ୍ରୀବ ॥
ରାଜନ ରଷିଙ୍କର ବଂଶେ । ଜନ୍ମ ତୁ ହେଉ ଯୋଗ ଅଂଶେ ॥
ତିନି ଭୁବନେ ଦୁଃଖ ନାଶି । ଆସନ୍ତ ପାଲୁ ବ୍ରହ୍ମରାଶି ॥
ଅବନୀ ଭାରା ଯେବେ ହର । ଭୋ ନାଥ ଶରଣ ତୋହୋର ॥
ଯେମନ୍ତେ ପାହିଲା ରଜନୀ । ଦେବକୀ ମୁଖ ଚାହିଁ ଭଣି ॥
ତୋର ଉଦରେ ଜଗନ୍ନାଥ । ଜଗତ ରଖିବେ ତୋ ସୁଖ ॥
କଂସର ଭୟଛାଡ଼ ଆଇ । ଯାହାର ନାମେ ଦୁଃଖ ନାହିଁ ॥
ଅଗୁଣ ତେଜ ପ୍ରକାଶିଲା । ଦେବଙ୍କୁ ଉଚ୍ଛାଟ ଲାଗିଲା ॥
ବ୍ରହ୍ମା ଶଙ୍କର ଆଦିକରି । ଦେବେ ଚଳିଲେ ନିଜପୁରୀ ॥
ଶ୍ରୀହରି ଚରଣେ ମୋ ଚିତ୍ତ । ସୁଜନ ହିତେ କଲି ଗୀତ ॥
ଦଶମ ସ୍କନ୍ଧେ ଯେହୁ ବାଣୀ । ଶୁଣି ନିର୍ମଳ ହୁଅ ପ୍ରାଣୀ ॥
ପୁରାଣ କଲି ରସ ଗୀତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଶ୍ରୀକୃଷ୍ଣ ଗର୍ଭଗତେ ଦେବସ୍ତୁତି ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନି ହସି । ହରି ଚରିତ ପରଶଂସି ॥
ପରୀକ୍ଷ ମୁଖକୁ ଚାହିଁଲେ । ଆନନ୍ଦେ ଲୋଚନ ବୁଜିଲେ ॥
ସମାଧି ବସି ଯୋଗଧାୟି । କୃଷ୍ଣ ପ୍ରସନ୍ନ ଲେଶ ପାଇ ॥
ପୁଣି କ୍ଷଣକେ ଚକ୍ଷୁ ଫେଇ । ହସି କହନ୍ତି ରାଜା ଚାହିଁ ॥
ଶୁଣ ହୋ ଗୋବିନ୍ଦର ଜନ୍ମ । ଯେଣେ ଛାଡ଼ିବ ମତିଭ୍ରମ ॥
ସୂର୍ଯ୍ୟର ତହୁଁ ଷଡଋତୁ । ପ୍ରକାଶ ହୋଇ ଜନହେତୁ ॥
ଋତୁଙ୍କ ମଧ୍ୟେ ଶ୍ରେଷ୍ଠ ବଳ । ସମ୍ପୂର୍ଣ୍ଣ ବରଷାର କାଳ ॥
ଭାଦ୍ରବ ମାସ କୃଷ୍ଣପକ୍ଷେ । ସକଳ ଗ୍ରହେ ଛନ୍ତି ଉଚ୍ଚେ ॥
ଅଷ୍ଟମୀ ନିଶି ଅର୍ଦ୍ଧଭାଗେ । ରୋହିଣୀ ବୃଷ ଆଦି ଲାଗେ ॥
ବୃଷ ରାଶିରେ ନିଶାକର । ନକ୍ଷତ୍ର ଗ୍ରହେ ବଳିଆର ॥
ଗଭୀର ମେଘ ନାଦ ଘୋଷ । ବର୍ଗ ଉତ୍ତମ ନବ ଅଂଶ ॥
ହେନ ସମୟେ ସୁରରାୟେ । ଆକାଶେ ଉଚ୍ଛବ କରାଏ ॥
ଦୁନ୍ଦୁଭି ବାଦ୍ୟ ନାଦ ଝରା । ରଙ୍ଗେ ନାଚନ୍ତି ଅପକ୍ଷରା ॥
ଦେବେ କରନ୍ତି ପୁଷ୍ପ ବୃଷ୍ଟି । ଖଣ୍ଡିବେ ଗୋବିନ୍ଦ ଅରିଷ୍ଟି ॥
ଇନ୍ଦ୍ର ସେ ପବନ ହକାରି । ବୋଲଇ ଯାଅ ମଧୁପୁରୀ ॥
ତୋହୋର ଗନ୍ଧ ଗୁଣ ଘେନି । ଆନନ୍ଦେ ବହିବୁ ମେଦିନୀ ॥
କଂସର ବନ୍ଦୀଘରେ ଯାଇ । ବହିବୁ ମଳୟ ପୂରୋଇ ॥
ଇନ୍ଦ୍ରର ଆଜ୍ଞା ପାଇ ବେଗେ । ସମୀର ଚଳିଲାକ ଆଗେ ॥
ପବନ ଗଲା ମଧୁପୁରୀ । ବହେ ଅମିଅ ରସଭରି ॥

ନିର୍ମଳ ଦିଶିଲା ଗଗନ । ମହୀ ମଙ୍ଗଳ ବିଦ୍ୟମାନ ॥
ଗ୍ରାମ ପାଟଣା ପୁର ଦେଶ । ମଙ୍ଗଳ ନାଦେ ଗୀତଘୋଷ ॥
ନଦୀୟେ ଉଚ୍ଛୁଳିଲେ ଜଳେ । ପକ୍ଷୀଙ୍କ ନାଦ ବୃକ୍ଷଡ଼ାଳେ ॥
ସ୍ତବକ ପୁଷ୍ପ ବନେ ଫୁଟି । ଗନ୍ଧ ପ୍ରସରଇ ପ୍ରକଟି ॥
ବିପ୍ରେ ମଙ୍ଗଳ ବେଦନାଦ । ଅନଳେ କ୍ଷେପନ୍ତି ସମିଧ ॥
ଆନନ୍ଦ ହେଉଅଛି ମହୀ । କୃଷ୍ଣ ଜନ୍ମିବେ ଦେହ ବହି ॥
ବଥାଇ ଦେବକୀ ଉଦର । ସ୍ୱାମୀକି ବୋଲଇ ଉତ୍ତର ॥
ଭୋ ନାଥ ଚିନ୍ତ ନାରାୟଣ । କେ ସହୁ ଗର୍ଭର କଷଣ ॥
ଶୁଣି ବସୁଦେବ ଉଠିଲା । ଦେବକୀ କଙ୍କାଳ ଧଇଲା ॥
ଆବୋରି ଗୋବିନ୍ଦ ସୁମରି । ଭୟେ ଚିନ୍ତଇ ନରହରି ॥
ଆକାଶେ ଉଦେ ନିଶାକର । ଗୋବିନ୍ଦ ଉଦରୁ ବାହାର ॥
ନୀଳ ଜୀମୂତ ଦେହକାନ୍ତି । ବଳୟ ମଣି ଝଟକନ୍ତି ॥
ପୀତ ବସନ କଟୀ ଶୋହେ । ରୂପେ କୋଟିଏ କାମ ମୋହେ ॥
କଟୀ ମେଖଳା ସୁନାସୂତା । ଉତୁରୀ ସୁବର୍ଣ୍ଣ ପଇତା ॥
କିରୀଟ କୁଣ୍ଡଳ କଙ୍କଣ । ପାଦେ ନୂପୁର ରୁଣଝୁଣ ॥
ଦିଶଇ ଶଙ୍ଖଚକ୍ର ତେଜ । ମର୍କତ ସ୍ତମ୍ଭ ଚାରିଭୁଜ ॥
ଗଦା କମଳ ଶଙ୍ଖଚକ୍ର । ଅଧର ଓଷ୍ଠ ରଙ୍ଗରେଖ ॥
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ । ରତ୍ନ ପାଦୁକା ବେନି ପାୟେ ॥
ଅପୂର୍ବ ରୂପ ଯୋଗେଶ୍ୱର । ଦେବେ ମାନବେ ଆଗୋଚର ॥
ଦେବକୀ ପ୍ରସବିଣ ସୁତ । ଶ୍ରମେ ହୋଇଲା ମୋହଗତ ॥
ପଛେ ଯେ ବସୁଦେବ ଥିଲା । କୃଷ୍ଣ ରୂପକୁ ଅନାଇଲା ॥
ଧୀରେ ଚାହିଁଲା ବସୁଦେବ । ଦେଖିଲା ଅନାଦି ମାଧବ ॥
କ୍ଷଣେ ରହିଲା ସ୍ଥିର ହୋଇ । କୃଷ୍ଣଙ୍କୁ ଦେଖି ବିଚାରଇ ॥
ପୁଣି ହରିଲେ ହରି ଜ୍ଞାନ । ଚକିତେ ବିଚାରଇ ମନ ॥
ଧ୍ୟାନେଣ ଗଙ୍ଗାସ୍ନାନ କଲା । ଏକବ୍ରତେ ଧେନୁ ଉଛର୍ଗିଲା ॥
ଯେ ପୁତ୍ର କଂସ ନ ମାଇଲେ । ଦେବଇଁ ଅଳଙ୍କାର ତୁଲେ ॥
ଯେ ପୁତ୍ର ନ ମଲେ ମୋହର । ପୂଜିବି ବିପ୍ରଙ୍କ ପୟର ॥
ଚାହିଁଲା ଗୋବିନ୍ଦ ମଦନ । ପୁଣି ପାଇଲା ଦିବ୍ୟଜ୍ଞାନ ॥
ଭୟେ କମ୍ପଇ ତା ଶରୀର । ଯେତ ଅନାଦି ଚକ୍ରଧର ॥
ମୋ ଛାର ମନୁଷ୍ୟ ଜୀବନ । କିମ୍ପାଇଁ ହୋଇଲ ପ୍ରସନ୍ନ ॥
କି ବୁଦ୍ଧି କରିବଇଁ ମୁହିଁ । କଂସକୁ ଡର ଯେ ହୁଅଇ ॥
କୃଷ୍ଣ ଚରଣେ ଦେଇ ଶିର । ସଧୀରେ ବୋଲଇ ଉତ୍ତର ॥
ତେଜେ ବିରାଜେ ବନ୍ଦୀଘର । ଟିକେ ହେଁ ନ ଦିଶେ ଅନ୍ଧାର ॥
କର ଅଞ୍ଜଳି ଶିରେ ଦେଇ । ସ୍ତୁତି କରଇ କୃଷ୍ଣ ଚାହିଁ ॥

ବୋଲଇ ବସୁଦେବ ଶୋକେ । ତୁ କିମ୍ପା ଜାତ ମର୍ତ୍ତ୍ୟଲୋକେ ॥
ତୋହୋର ଆଦି ଅନ୍ତ ନାହିଁ । ପ୍ରକୃତି ତୋତେ ନ ଜାଣଇ ॥
କେବଳ ସୂକ୍ଷ୍ମ ରୂପେ ଶୂନ୍ୟ । ମୁନିଙ୍କ ଚିତ୍ତେ ଜ୍ଞାନ ଗମ୍ୟ ॥
ତୋହୋର ମାୟାରେ ଜଗତ । ତୁହି ହୋଇଲୁ ଦେହବନ୍ତ ॥
ମହତ ଆଦି ପଞ୍ଚଭୂତ । ସୃଷ୍ଟି କରନ୍ତି ଆତଯାତ ॥
ହରନ୍ତି ଅନ୍ତକାଳେ ଜୀବ । ନାହିଁ ତାହାଙ୍କର ସମ୍ଭବ ॥
ବୁଦ୍ଧି ଲକ୍ଷଣ ଗୁଣ ଘେନି । ତୋତେ ଚିନ୍ତନ୍ତି ଦିବ୍ୟ ଜ୍ଞାନୀ ॥
କାହିଁ ଦେଖିବେ ଦେହବନ୍ତ । ବାହାର ଭିତରେ ଅନନ୍ତ ॥
ଜଗତ ତୋର ଠହୁଁ ଜାତ । ପୁଣି ପାଳିଣ କରୁ ଅନ୍ତ ॥
ଜଗତ ଉପୁଜିବା ବେଳେ । ଅରୁଣ ହେଉ ଯୋଗବଳେ ॥
ପାଳିବା କାଳେ ଶୁକ୍ଳ ବର୍ଣ୍ଣ । ସଂସାରେ ବୋଲାଉ ତୁ ଧର୍ମ ॥
ସଂହାର କାଳେ କୃଷ୍ଣରୂପ । ତୋହୋ ବିକାରେ ମୋହକଳ୍ପ ॥
ତୁ ଯେବେ ମୋହୋ ଘରେ ନାଥ । ଅଂଶେ ହୋଇଲୁ ଦେହବନ୍ତ ॥
ଜାଣିଲି ଯେତେକ ଅସୁର । ନାଶି କରିବୁ ମହୀ ସ୍ଥିର ॥
ତୋହୋ ଜନମ ମୋହୋ ଘରେ । ଶୁଣିଣ କଂସ କୋପଭରେ ॥
ଛ ପୁତ୍ର ମାଇଲା ମୋହୋର । ତୁ କି ନ ଜାଣୁ ଚକ୍ରଧର ॥
ପାହାରି ମାନେ ଜଗିଛନ୍ତି । ଶୁଣନ୍ତି ବୋଲି କଲି ଭାନ୍ତି ॥
କଂସକୁ କହିବେ ତୁରିତେ । ସେ ଆସି ମାରିବଟି ତୋତେ ॥
ତୋତେ ହେଁ ତୁହି ରକ୍ଷାକର । ମୋ ଛାର ମନୁଷ୍ୟ ମାତର ॥
ଯେମନ୍ତେ ଗଡ଼ଘାଲି ଶୋଇ । କମ୍ପଇ କୃଷ୍ଣ ମୁଖ ଚାହିଁ ॥
ଶୀତଳ ବହଇ ପବନ । ଦେବକୀ ପାଇଲା ଚେତନ ॥
ଚକ୍ଷୁ ଫେଇଣ ଚାହେଁ ଧୀରେ । ଯେହ୍ନେ ଉଦୟେ ଦିନକରେ ॥
ଚାହିଁଲା ପୁତ୍ରର ବଦନ । ଚକିତେ ହୋଇ ଛନଛନ ॥
ଅପୂର୍ବ କାହୁଁ ଯେ ଅଇଲା । ଜଗତେ ନାହିଁ ନା ଦେଖିଲା ॥
ଯେତ ପୁରୁଷଙ୍କ ଉତ୍ତମ । କି ଅବା ପ୍ରଭୁ ଭଗବାନ ॥
ଆନନ୍ଦ ମୂଳ ଜ୍ଞାନମୟେ । ଦେଖି ପାଇଲା ଦେବୀ ଭୟେ ॥
ବିକଳେ ବେନି କରଯୋଡ଼ି । ହା କୃଷ୍ଣ ବୋଲି ପାୟେ ପଡ଼ି ॥
ଚଞ୍ଚଳ ମନ କରି ସ୍ଥିର । ଦେବକୀ ବୋଲଇ ଉତ୍ତର ॥
ଭୋ ନାଥ ନିସ୍ତରିଲି ମୁହିଁ । ତୋହୋର ଆଦିଅନ୍ତ ନାହିଁ ॥
ମନ ବଚନେ ହେଁ ନ ପାଇ । ପ୍ରସନ୍ନ ହୁଅ ମୋତେ ତୁହି ॥
ଜ୍ୟୋତି ସ୍ୱରୂପ ନିରଞ୍ଜନ । ନିର୍ମଳ ଶୂନ୍ୟ ଦିବ୍ୟ ଜ୍ଞାନ ॥
ବେଦେ ଗୋଚର ନୋହେ ଯେହୁ । ଅଧାତ୍ମ ଦୀପ ମହାବାହୁ ॥
ବ୍ରହ୍ମାର ଅନ୍ତେ ମହୀ ନାଶେ । ବ୍ରହ୍ମାଣ୍ଡ ଲୁଚନ୍ତି ଆକାଶେ ॥
ମନର ମୂଳେ ପଞ୍ଚଜନ । ତୋହୋର ଦେହେ ହୋନ୍ତି ଲୀନ ॥

ରବି ଶଶାଙ୍କ ନାହିଁ କେହି । ତୁ ମାତ୍ର ରହୁ ଶେଷ ହୋଇ ॥
ନିମିଷ ଆଦି ଯେହୁ କାଳ । ତୋହର ଚେଷ୍ଟା ଅନ୍ତରାଳ ॥
ଦେଖଇ ପ୍ରାଣୀଙ୍କି ନିରତ । କରଇ କ୍ଷଣେକ୍ଷଣେ ଗ୍ରସ୍ତ ॥
ଶରଣ ତୋର ପାଦେ ଯେହୁ । ମୃତ୍ୟୁ ପାଇବ ସେ ବା କାହୁଁ ॥
ବାହୁଡ଼ି ହୋଏ ସେ ନିରାଶ । ସେ ପ୍ରାଣୀ ରହେ ତୋର ପାଶ ॥
ତୁ ଯେବେ ରଖ ହରି ତୋତେ । କଂସକୁ ନ ଯାଇ ପରତେ ॥
ମୋର ଉଦରୁ ତୋର ଜାତ । ଲୋକେ କରିବେ କାହୁଁ ସତ ॥
ତୋ ରୂପ ନ ଜାଣନ୍ତି କେହି । କଂସକୁ ଡରେ ମୋର ଦେହୀ ॥
ଶୁଣି ବୋଲନ୍ତି ନାରାୟଣ । ଭୋ ମାତା ଶୁଣ ମୋ ବଚନ ॥
ଯେ ବ୍ରହ୍ମା ସୃଷ୍ଟି ଭିଆଇଲା । ତୁମ୍ଭ ଦୁହିଙ୍କି ଜାତ କଲା ॥
ତାର ଆଦେଶ ଘେନି ଶିରେ । ମିଳିଲ ଗହନ ବନରେ ॥
ଅନେକ ଦୁଃଖେ ତପକରି । ଜଳ ପବନ ପତ୍ର ଚରି ॥
ବରଷାକାଳେ ହେମ ଘୃମ । ଶ୍ୱାସ ନିରୋଧ ମହାଶ୍ରମ ॥
ଶତେ ବରଷ ଦେବ ମତେ । ତପ ସାଧିଲ ଦୃଢ଼ ଚିତ୍ତେ ॥
ନିରତେ କଲ ମୋତେ ଧ୍ୟାନ । ମୁ ପୁଣି ହୋଇଲି ପ୍ରସନ୍ନ ॥
ଆନନ୍ଦେ ଯାଚିଲି ମୁ ବର । ଜାଣିଲି ତୁମ୍ଭର ବିଚାର ॥
ମୋହୋ ଉଗତି ହୃଦେ ଲଇ । ଭାଳି ବୋଇଲ ତୁମ୍ଭେ ଦୁଇ ॥
ବୋଇଲ ଶୁଣ ଚକ୍ରଧର । ଆମ୍ଭର ହୋଇବ କୁମର ॥
ମୋହୋର ନାମ ଭାବଗ୍ରାହୀ । ଜନ୍ମିଲି ନିଜ ଦେହ ବହି ॥
ପୁତ୍ର ଲାଳସେ ପାଳି ମୋତେ । ପଶିବ ମୋର ଦେହେ ଅନ୍ତେ ॥
ଦେବଙ୍କ ବଚନେ ମୁ ଜାତ । ଅସୁର କରିବି ନିପାତ ॥
ଯେବେ କହିତ ନାହିଁ ବେଳ । ମୋତେ ଘେନିଣ ବେଗେ ଚଳ ॥
ନନ୍ଦର ଘରେ ମୋତେ ଥୋଇ । କନ୍ୟାକୁ ଆଣ ପାଲଟାଇ ॥
ଯେମନ୍ତ କହି ନରହରି । ନର ବାଳୁତ ରୂପଧରି ॥
ଗୋବିନ୍ଦ ଆଜ୍ଞା ଘେନି ଶିରେ । କୋଳେ ଘେନିଲା ଚକ୍ରଧରେ ॥
ଫିଟିଲା ପାଦର ଶାଙ୍କୁଳି । ପଥ କଢ଼ାଇଲା ବିଜୁଳି ॥
କୋଳେ ଘେନନ୍ତେ ନାରାୟଣ । କପାଟ ଫିଟିଲା ତକ୍ଷଣ ॥
ନିଦ୍ରାୟେ ମୋହିତ ସକଳ । ବୃଷ୍ଟି କରନ୍ତି ମେଘମାଳ ॥
ତିନ୍ତିବା ଦେଖି ଜଗନ୍ନାଥ । ଫଣିଯେ ଡାକିଲା ଅନନ୍ତ ॥
ଯାନ୍ତେଣ କୃଷ୍ଣକଇ ଘେନି । ପଥ ଓଗାଳେ ଉଗ୍ରସେନି ॥
ବୋଲଇ କାହିଁର ରେ ଚୋର । ନିଶାରେ ହୋଇଲୁ ବାହାର ॥
ଶୁଣି କମ୍ପଇ ବସୁଦେବ । ବିପତ୍ତି କଲୁ ହୋ ଦଇବ ॥
ହା କୃଷ୍ଣ ବୋଲିଣ ବିକଳ । ନୟନୁ ବହେ ଅଶ୍ରୁଜଳ ॥
ବୋଲଇ ବସୁଦେବ ତାହିଁ । ପୁତ୍ରକୁ ନେଉଅଛି ମୁହିଁ ॥
ବୋଲଇ ଉଗ୍ରସେନ ବୀର । କାଲି ମାରିବ କଂସାସୁର ॥
ଯେତେ ବାଳକ ତୋର ଜାତ । ସବୁନ୍ତି କରଇ ସେ ହତ ॥
ଶୁଣି ଆରତ ବସୁଦେବ । ବିକଳେ ଚିନ୍ତଇ ମାଧବ ॥
ପିତାର ବିକଳ ଦେଖିଣ । ବୋଲନ୍ତି ପ୍ରଭୁ ନାରାୟଣ ॥
ଯେ କଥା ପ୍ରଘଟ ନ କର । ଆମ୍ଭେ ହୋ ଯିବୁଁ ଗୋପପୁର ॥
ତୁ କି ନ ଜାଣୁ ଉଗ୍ରସେନ । ଆମ୍ଭେ ସେ ଦେବ ଭଗବାନ ॥
ଭାରା ଯେ ନ ସହିଲା ମହୀ । ଯେହୋ ଯେ ବିନାଶିବି ମୁହିଁ ॥
ଶୁଣି ବୋଲଇ ଉଗ୍ରସେନ । ଦେଖାଅ ଶଙ୍ଖ ଚକ୍ର ଚିହ୍ନ ॥
ଭକ୍ତକୁ ଦୟା ଭାବଗ୍ରାହୀ । ଶଙ୍ଖଚକ୍ର ଚିହ୍ନ ଦେଖାଇ ॥
ସ୍ତୁତି କରଇ ଉଗ୍ରସେନ । ଚରଣେ କଲାକ ପ୍ରଣାମ ॥
ଶ୍ରୀମୁଖେ ଆଜ୍ଞା ତାକୁ ଦିଲେ । ନୃପତି ହୋଇବୁ ବୋଇଲେ ॥
ତହୁଁ ଚଳିଲା ବସୁଦେବ । ପଥେ ନ ରହି ଯେକ ଲବ ॥
ନଦୀର ତୀରେ ଯାଇ ମିଳି । ଦେଖିଲା ଯମୁନା ଉଛୁଳି ॥
ଯମର ବହେଣୀ ଯୁଗତେ । ଗଭୀର କେ କରିବ ଅନ୍ତେ ॥
ବହଇ ଅତି ପରଖର । ଫେନରେ ଦିଶେ ଭୟଙ୍କର ॥
ନଦୀରେ ପଶିଲା ବହନ । କାତରେ ମହା ଭୟ ମନ ॥
ନାଶାରେ ପଶନ୍ତେଣ ପାଣି । ଶିରେ ବସାଇ ଚକ୍ରପାଣି ॥
ବୁଡ଼ିଣ ଯାଇ ବସୁଦେବ । ହୃଦେ ଚିନ୍ତଇ ପଦ୍ମନାଭ ॥
ହରିଙ୍କୁ ଦେଖି ଭୟକଲା । ବାଲି ବନ୍ଧରେ ବାଟ ଦିଲା ॥
ଚଳିଲା ନଦୀ ପାର ହୋଇ । କୃଷ୍ଣଙ୍କୁ ହୃଦରେ ଲଗାଇ ॥
ମିଳିଲା ଯାଇ ଗୋପପୁରେ । ତକ୍ଷଣେ ନନ୍ଦର ମନ୍ଦିରେ ॥
ନିଦ୍ରା ମୋହିତ ସର୍ବଜନ । ଭୟେ ଚାହାଁଇ ଛନଛନ ॥
ଅମ୍ବିକା ହୋଇଅଛି ଜାତ । ଜଗତ ନିଦ୍ରାରେ ମୋହିତ ॥
ଯଶୋଦା କୋଳେ କୃଷ୍ଣ ଥୋଇ । କନ୍ୟା ଆଣିଲା ପାଲଟାଇ ॥
ମିଳିଲା ଦେବକୀ ନିକଟେ । ତକ୍ଷଣେ ପଡ଼ିଲେ କପାଟେ ॥
ଲାଗିଲା ଚରଣେ ଶାଙ୍କୁଳି । ଦୁହିତା ପାଡ଼ିଲା ବୋବାଳି ॥
ହରି ଚରିତ ସୁଧାବାଣୀ । ଶୁଣି ନିର୍ମଳ ହୁଅ ପ୍ରାଣୀ ॥
ଶ୍ରୀକୃଷ୍ଣ ଜନ୍ମ ରସଭର । ଶୁଣି ସଂସାରୁ ହୁଅ ପାର ॥
ପରୀକ୍ଷେ କହେ ଶୁକମୁନି । ଗୀତେ ମୁ ବଖାଣିଲି ଆଣି ॥
ପୁରାଣ ଶିରୀ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣଜନ୍ମ, ଗୋକୁଳ ପ୍ରବେଶେ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

ଶୁଣି ସାନନ୍ଦ ମନେ ରାଜା । ମୁନି ଚରଣେ କଲେ ପୂଜା ॥
ଆନନ୍ଦେ ଲୁଠଇ ଧରଣୀ । କୃତାର୍ଥ କୃଷ୍ଣ ଜନ୍ମ ଶୁଣି ॥
ଭଗତି ଦେଖିଣ ତାହାର । କହନ୍ତି ବ୍ୟାସଙ୍କ କୁମର ॥

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ଦଣ୍ଡଧାରୀ । କୁମାରୀ ବାଳ ରାବ କରି ॥
ଶୁଣି ପାହାରି ବେଗେ ଗଲେ । କଂସ ଛାମୁରେ ଜଣାଇଲେ ॥
ଶୁଣି ଅସୁର ଅନ୍ତରାଳ । ବୋଲଇ ପୂରିଲା ମୋ କାଳ ॥
ଶଯ୍ୟା ଉପେଖି ବେଗେ ଉଠି । ଖଡ଼ଗ କଲା ଦୃଢ଼ ମୁଷ୍ଟି ॥
ଧାଇଁଲା ପବନହୁଁ ବେଗେ । ମିଳିଲା ବନ୍ଦୀଘର ଲାଗେ ॥
ପିନ୍ଧିଲା ବସ୍ତ୍ର ଅସମ୍ଭାଳ । ଫିଟିଲା ଦୃଢ଼ ବନ୍ଧ ବାଳ ॥
କପାଟ ଫେଡ଼ାଇ ପଶିଲା । ଦେଖି ଦେବକୀ ଭୟ କଲା ॥
କଂସ କମ୍ପଇ କୋପଭରେ । ରତ୍ନ ମୁକୁଟ କମ୍ପେ ଶିରେ ॥
ଦେଖିଣ କମ୍ପଇ ଦେବକୀ । କାନ୍ଦଇ ଅତି ଦୁଃଖେ ଦୁଃଖୀ
ବୋଲଇ ଶୁଣ ନରନାଥ । ହୋଇଲା ଦୁହିତାଯେ ଜାତ ॥
ତୋର ପୁତ୍ରକୁ ଦେବି ଯେହା । ଆନନ୍ଦେ କରାଇବି ବିଭା ॥
ବହୁତ ଦିଲୁ ଗର୍ଭ କଷ୍ଟ । ପୋଡୁ ନିଲଜ ମୋର ପେଟ ॥
ଜୀବନ ଥିବ କି ମୋହୋର । ମରିବି ହତ୍ୟା ତୋ ଉପର ॥
ଆଉ ବୟସ ମୋର କାହିଁ । ପାରିବି ପୁତ୍ର ଉପୁଜାଇ ॥
ଜୀବନ ହେଉ ମୋର ଧ୍ୱଜ । ଦୁହିତା ଦାନ ଦେଇ ରଖ ॥
ସଙ୍ଖାଳି ହେଉ ବୃଦ୍ଧକାଳେ । ପଡୁଛି ତୋହୋ ପାଦତଳେ ॥
ଶୁଣି ଦାନବ ପରଜଳି । କୋପେ ବୋଲଇ ମହାବଳୀ ॥
ଦେଖିଣ ଚକିତ ଦେବକୀ । ଡରେ ବୁଜିଲା ବେନି ଆଖି ॥
କୋଳରେ ଲୁଚାଇ ଦୋହିତ । ଶରଣ ଗଲି ରଖ ଭ୍ରାତ ॥
କଂସ ବୋଲଇ ଶିର ଝୁଣି । ତୁ ଛାର ମୋହର ବହେଣୀ ॥
ବସୁଦେବର ଦୋଷ ନାହିଁ । ତୁ ମୋତେ ଅଛୁ ବାଟ ଚାହିଁ ॥
ମୋର ମରଣେ ତୋର ସୁଖ । ଦଇବ ଦେଇଅଛି ଦୁଃଖ ॥
ତୁ କାହିଁ ଜାଣୁ ହରିମାୟା । ଅସୁରେ ବଢ଼ାଇ ନିର୍ଦ୍ଦୟା ॥
ନାନା ରୂପେଣ ହୋଇ ଜାତ । ଦଇତ କରଇ ନିପାତ ॥
ବଇଲୋଚନ ବୀର ଥିଲା । ଭାରିଜା ରୂପେ ତା ମାଇଲା ॥
ନାରଦେ କହିଛନ୍ତି ମୋତେ । ଯେ ମୋତେ ମାରିବ ଯୁଗତେ ॥
ଅଷ୍ଟମ ଗର୍ଭ ମୋ ବଇରୀ । ଯେହାର ହସ୍ତେ ମୁହିଁ ମାରି ॥
ଚାହିଁଲା ଅଧର କାମୋଡ଼ି । କୋଡ଼ରୁ ଘେନିଲା ହୁଚୁଡ଼ି ॥
ବେନି ଚରଣ ଧରି କରେ । ବୁଲାଇ ପିଟିଲା ଶିଳାରେ ॥

ଯେ ଦେବୀ ଜଗତ ସଂହାରି । କାହାର ବଳ ତାକୁ ମାରି ॥
କଂସରୁ ହସ୍ତରୁ ନିକିଳି । ଆକାଶେ ଯେସନେ ବିଜୁଳି ॥
ତେଜେ ଦଶଦିଗ ବିରାଜି । ବେନି ଚରଣ ଅଷ୍ଟଭୁଜୀ ॥
କେ କହୁ ଦେବୀ ଆଭରଣ । ଅଙ୍ଗଦ ନୂପୁର କଙ୍କଣ ॥
ଗନ୍ଧ ଚନ୍ଦନ ପୁଷ୍ପମାଳି । ତେତିଶକୋଟି ଦେବେ ମିଳି ॥
ସ୍ତୁତି କରନ୍ତି ସୁର ମୁନି । କଂସକୁ ବୋଲନ୍ତି ଭବାନୀ ।
ରେ କଂସ ଶୁଣ ମୋ ଉତ୍ତର । ତୋର ବଇରୀ ଚକ୍ରଧର ॥
ସେ ତୋତେ କରିବେ ସଂହାର । ଆବର ଯେତେକ ଅସୁର ॥
ତୋହୋର ପାଇଁ ଦେହ ବହି । ଜନ୍ମ ହୋଇଲା ଯହିଁ ତହିଁ ॥
ତୁ ମୋତେ ନ ଜାଣି କଚାଡୁ । ନିୟତ ପଥ କିମ୍ପା ହୁଡୁ ॥
ଦେବେ ତୋହୋର ନିଜ ବୈରୀ । ତାହାଙ୍କ ବୋଲକୁ ତୁ ଡରି ॥
ଛ ପୁତ୍ର ମାଇଲୁ ଯେହାର । ଧର୍ମକୁ ଛାଡ଼ିଲୁ ଅସୁର ॥
ଯେହାକୁ ବନ୍ଦିଘରୁ ଫେଡ଼ । ବେନି ଚରଣ ତଳେ ପଡ଼ ॥
ତୋଷିଣ ନିଅ ନିଜପୁର । ତୋର ବଇରୀ ପୀତାମ୍ବର ॥
କହି ଚଳିଲେ ନିଜସ୍ଥାନ । ଉଚାଟ କରି କଂସମନ ॥
ଯାହା କହିଲେ ଜଗନ୍ମାତ । ଜଗତେ ହୋଇଲା ବିଖ୍ୟାତ ॥
ଦେବୀ ବଚନ କଂସ ଶୁଣି । ବିଚାର କଲା ମନେ ଗୁଣି ॥
ନ ଜାଣି ବିଧାତାର ଗତି । ସୋଦରେ କଲଇଁ ଅନୀତି ॥
ଅନେକ କଲି ମୁହିଁ ଦୋଷ । କେମନ୍ତେ କରିବି ବିଶ୍ୱାସ ॥
କିସ କରିବି ବୋଲି ଭାଳି । ଚରଣୁ ଫେଡ଼ାଇ ଶାଙ୍କୁଳି ॥
ଚାହିଁଲା ଦେବକୀ ବଦନ । କହଇ ମଧୁର ବଚନ ॥
ଦେବକୀ ବସୁଦେବ ଶୁଣ । ତୁମ୍ଭଙ୍କୁ କଲି ଦ୍ରୋହପଣ ॥
ମୁହିଁ ଯେ ସ୍ୱଭାବେ ଅସୁର । ଭଣଜା ମାଇଲି ମୋହୋର ॥
ତୁମ୍ଭଙ୍କୁ ଦେଲି ପୁତ୍ରକଷ୍ଟ । ମୋହୋର ଧର୍ମ କଲି ନଷ୍ଟ ॥
ସଂସାରେ କଲି ଅପଯଶ । ନରକେ ହୋଇବି ପ୍ରବେଶ ॥
ଦେହ ବହିଲେ ନିଶ୍ଚେ ମରି । ସଂସାର ନୁହଇ କାହାରି ॥
ବୃକ୍ଷର ତଳେ ଯେହ୍ନେ ଆସି । ପଥୁକି ବିଶ୍ରାମନ୍ତି ବସି ॥
ପୁଣି ଚଳନ୍ତି ଶ୍ରମ ସାରି । ସେ ବୃକ୍ଷ ନୁହଇ କାହାରି ॥
ତେମନ୍ତ ମାୟା ଯେ ସଂସାର । କେ ପିତା କାହାର କୁମର ॥
ଅର୍ଜିଲା କର୍ମେ ଆତଯାତ । ମାୟା ଭିଆଣ ତାତ ମାତ ॥
ବୁଦ୍ଧି ବିଚାରେ ଯାହାକରି । ଭୁଞ୍ଜନ୍ତି ସେ ଫଳ ଆବୋରି ॥
ଦୋଷ କରିବା ମୋର କ୍ଷମା । ସ୍ୱଭାବେ ମୁହିଁ ଦୁରାତମା ॥
ଯେମନ୍ତ କହି ଶୋକ କରି । ପାଦେ ପଡ଼ିଲା କର ଯୋଡ଼ି ॥
ସୁହୃଦ ପଣ ଦେଖାଇଲା । ଅନେକ ଧନରତ୍ନ ଦିଲା ॥

ନିଜ ମନ୍ଦିରେ ଦିଲା ବାସ । ଅନେକ କରାଇ ବିଶ୍ୱାସ ॥
କଂସ ଭଗତିଭାବ ଦେଖି । ସନ୍ତାପ ଛାଡ଼ିଲା ଦେବକୀ ॥
ସନ୍ତୋଷ ହୋଇ ବସୁଦେବ । ଦିନକୁ ଦିନ ବଢ଼ଭାବ ॥
ଯେମନ୍ତେ ରଜନୀ ପାହିଲା । କଂସ ମନ୍ଦିରେ ବିଜେକଲା ॥
ଅସୁର ଗଣନ୍ତ ବସାଇ । କହଇ ବିଶ୍ୱାସ କରାଇ ॥
ଶୂନ୍ୟେ ଚଣ୍ଡିକା ଯାହା ଭଣି । ସବୁ କହିଲା ପରିମାଣି ॥
କଂସର ଦେଖିଣ କାତର । ଅସୁରେ ବୋଲନ୍ତି ଉତ୍ତର ॥
ଯେମନ୍ତ ଅଛୁ ଯେବେ ଜାଣି । ଯାହା କହିଲେ ନାରାୟଣୀ ॥
ତୋହୋର ଆଜ୍ଞା ଘେନି ଶିରେ । ବୁଲିବୁଁ ସକଳ ଦେଶରେ ॥
ଦିନେକ ଠାରୁ ଯେତେ ବାଳ । ତାହାଙ୍କ ପୂରାଇବୁଁ କାଳ ॥
ଯେତେ ବାଳକ ବସୁନ୍ଧରୀ । ସକଳ ପକାଇବୁଁ ମାରି ॥
ତୁ କିମ୍ପା ଡରୁ ଦେବଗଣେ । ସେବନ୍ତି ତୋହୋର ଚରଣେ ॥
ତୋ ତୁଲେ କେ କରୁ ସଂଗ୍ରାମ । ଦେବେ ନୁହନ୍ତି ସରିସମ ॥
ତୋହୋର ଧନୁଘୋଷ ଦେଖି । ପଳାନ୍ତି ସମର ଉପେଖି ॥
ଜୀବନ ପାଇଁ ଛାଡ଼ି ରଣ । ଦେବେ ପଳାନ୍ତ ବଣେ ବଣ ॥
କେ ପିନ୍ଧି ନ ପାରନ୍ତି ବାସ । କାହାର ଭୟେ ଫିଟେ କେଶ ॥
ନିସତେ ନ ପଳାନ୍ତେ ଯେହୁ । ତାହା ନ ମାରି ଦୟାବହୁ ॥
ଜୀବନ ପାଇଁ ଯାର ଆଶ । ସେ ତୋତେ କରିବଟି କିସ ॥
ତହୁଁ ଅଧିକ ତିନି ଦେବ । ବ୍ରହ୍ମା ଶଙ୍କର ପଦ୍ମନାଭ ॥
ଆତ୍ମାର ସୁଖେଣ ରମନ୍ତି । ଯେହାକୁ ନାହିଁ ତୋର ଭ୍ରାନ୍ତି ॥
ଅଗାଧ କ୍ଷୀର ସିନ୍ଧୁଜଳେ । ଶୟନ ଅନନ୍ତର କୋଳେ ॥
ପାଦେ ଖଟନ୍ତି ବେନି ନାରୀ । ସୁଖେ ଶୟନ ନରହରି ॥
ସେ କାହିଁ ତୋର ତୁଲେ ରଣ । ମିଛ କହିଲେ ଦେବଗଣ ॥
ବ୍ରହ୍ମା ଯେ ଥାଇ ତାର ସୁଖେ । ଚିନ୍ତା କରଇ ତିନିଲୋକେ ॥
ତପହୁଁ ନ ଜାଣଇ ଆନ । ଚିନ୍ତଇ ପ୍ରଭୁ ଭଗବାନ ॥
କୃଷ୍ଣହୁଁ ନ ଜାଣଇ କିଛି । ସେ କିମ୍ପା ତୋର ବାଦ ଇଛି ॥
ଶଙ୍କର ଥାଇ ଭୂତମେଳେ । ଅମ୍ବିକା ଥାଇ ତାର କୋଳେ ॥
ସେ କିମ୍ପା ସମର କରିବ । ନିତ୍ୟେ ଉଦାସୀ ସଦାଶିବ ॥
ଇନ୍ଦ୍ର ତୋ ବଳେ ନୋହେ ସରି । ତୋତେ ତ ଦିଗପାଳେ ଡରି
ଶୂନ୍ୟେ କହିଲା ଦେବୀ ଯାହା । ଅନ୍ୟଥା କେ କରିବ ତାହା ॥
ତୋର ବଇରୀ ଯେବେ ହରି । ସେ ଥାଇ ସର୍ବଘଟେ ପୂରି ॥
କେ ତାହା ପାଇବ ତ୍ରିଲୋକେ । ଶୁଣ କହିବା କଉତୁକେ ॥
ଦେବତାମାନେ ତାର ମୂଳ । ଯେ ଧର୍ମ ଧରିଛି ଶୟଳ ॥
ଦେବେ ତାହାର ତହୁଁ ଜନ୍ମ । ବେଦରୁ ଯେହ୍ନେ ନିତ୍ୟକର୍ମ ॥
ଗୋରୁ ବ୍ରାହ୍ମଣ ଯଜ୍ଞ ଦାନ । ତୀର୍ଥ ଦକ୍ଷିଣା ତପ ଶମ ॥
ତପ କରନ୍ତି ଯେତେ ଲୋକେ । ବିଷ୍ଣୁଙ୍କୁ ପୂଜନ୍ତି ଯେ ଥୋକେ ॥
ଶ୍ରଦ୍ଧା କରନ୍ତି ଯେହୁ ଧର୍ମେ । ଦୟା ବହନ୍ତି ଦୁଃଖୀ ଜନେ ॥
କରନ୍ତି ପରେ ଉପକାର । ଯମଲୋକକୁ ଯାର ଡର ॥
ଯେହାଙ୍କ ଦେହେଁ ଥାଇ ହରି । ଯେ ମଲେ ମରଇ ମୁରାରି ॥
ଯେ ଆମ୍ଭ ଉଚିତ ବେଭାର । ଯେମନ୍ତେ ଶତ୍ରୁ ଯିବ ମାର ॥
ଅଇରି ବାଳ କାଲୁ ମାରି । ନ ମଲେ ଦିନେ ଦିନେ ଡରି ॥
ଦେହରେ ବ୍ୟାଧି ଜନ୍ମକାଳେ । ହେଳା ଯେ କରେ ସୁଖଭୋଳେ ॥
ସେ ଯେହ୍ନେ ନିରତେ ବଢ଼ଇ । ଶତ୍ରୁର ସ୍ୱଭାବଟି ଯେହି ॥
ଆଜ୍ଞା ତୁ ଦିଅ ବେଗକରି । ହରିଙ୍କି ପକାଇବୁ ମାରି ॥
ଅସୁରଙ୍କର ବୋଲ ଶୁଣି । କଂସ ଆନନ୍ଦ ମନେ ଗୁଣି ॥
ଅନେକ କଲା ପରଶଂସା । ହିତ ମଣିଲା ବ୍ରହ୍ମ ହିଂସା ॥
ଦଶ ଜଣକେ ଶାଢ଼ି ଦିଲା । ଅଇରି ସଂହାର ବୋଇଲା ॥
ଅସୁର କଲାକ ବିଶ୍ୱାସ । ଅମୃତ ମଣେ କାଳ ବିଷ ॥
କଂସ ଆଦେଶ ପାଇ ବେଗେ । ଅସୁରେ ଗଲେ ଦଶଦିଗେ ॥
ତକ୍ଷଣେ ହୋଇ କାମରୂପୀ । ପଶିଲେ ବନଗିରି ବ୍ୟାପି ॥
ଗ୍ରାମ ପାଟଣା ପୁର ଦେଶ । ଅନେକ ଶିଶୁ କଲେ ନାଶ ॥
ଦାନବ ବୁଦ୍ଧି ମୂଢ଼ପଣ । ସାଧୁଙ୍କୁ କରନ୍ତି କଷଣ ॥
କଂସ ବଇରୀ ଅଛି କାହିଁ । ନିତ୍ୟେ ଖୋଜନ୍ତି ଭାବଗ୍ରାହୀ ॥
ତାମସ ଗୁଣ ଆଚରିଲେ । ନିକଟେ ମରଣ ଲୋଡ଼ିଲେ ॥
ଆୟୁଷ ବଳ ଯଶ ଧର୍ମ । ଲୋକ ଆଶିଷ ଶୁଭକର୍ମ ॥
ଯେ ଆଦି ସର୍ବନାଶ କରେ । ହିଂସା କରନ୍ତି ଯେହୁ ପରେ ॥
ସୁଜନେ ଶୁଣ ହରି କଥା । ତୁଟିବ ଭବବନ୍ଧ ବ୍ୟଥା ॥
ବ୍ରହ୍ମ ଲୋକରୁ କୀଟ ଯାଏ । ହିଂସେକ ହରିଙ୍କି ନ ପାଏ ॥
ଯେ ହରି ଦୁଃଖୀଙ୍କ ସୋଦର । ହିଂସା ନାଶିବେ ପ୍ରଭୁ ମୋର ॥
କୃଷ୍ଣର ପାଦେ ଦେଇ ଚିତ୍ତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*କଂସୋଦ୍ୟମ ନିରୂପଣଂ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

ବ୍ୟାସ ନନ୍ଦନ ମୁଖୁଁ ଶୁଣି । ଅମୃତ ଭାଗବତ ବାଣୀ ॥
ଆନନ୍ଦେ ପୁଲକିତ ହୋଇ । ମୁନି ଚରଣେ ଶିର ଦେଇ ॥
ଉଠି ଯୋଡ଼ିଣ ବେନି କର । ରାଜନ ବୋଲଇ ଉତ୍ତର ॥

ଭୋ ମୁନି ହୋଇଲି ପବିତ୍ର । ଶୁଣି ଚରିତ ଭାଗବତ ॥
କୃଷ୍ଣଙ୍କୁ ବସୁଦେବ ନେଇ । ଅଇଲା ନନ୍ଦ ଘରେ ଥୋଇ ॥
ତହିଁ କି କଲେ ବନମାଳୀ । ଶୁଣିବି କୃଷ୍ଣ ବାଳକେଳି ॥
କହି ପବିତ୍ର ମୋତେ କର । ସେବଇଁ ଚରଣେ ତୁମ୍ଭର ॥
ଶୁଣି ସାନନ୍ଦ ମୁନିବର । ବୋଲନ୍ତି ଶୁଣ ଦଣ୍ଡଧର ॥

## ଶ୍ରୀ ଶୁକ ଉବାଚ

ନିଦ୍ରା ଜଗତ ମୋହିଥିଲା । କଂସର ହସ୍ତୁଁ ଶୂନ୍ୟେ ଗଲା ॥
ଚେଡି ଚାହିଁଲା ନନ୍ଦରାଣୀ । ଚିଆଇଁ ଉଠି ସୁଲକ୍ଷଣୀ ॥
ଦେଖିଲା ହୋଇଛି ତନୟେ । ନନ୍ଦକୁ କହିଲେ ଥୋକାୟେ ॥
ଶୁଣି ମିଳିଲା ବେଗେ ନନ୍ଦ । ପୁତ୍ରକୁ ଦେଖିଣ ଆନନ୍ଦ ॥
ଯେତେ ଯଶୋଦା ପରିବାରୀ । ରାଇ ଆଣନ୍ତି ନନ୍ଦ ନାରୀ ॥
ବ୍ରାହ୍ମଣେ ମିଳିଲେ ଗହଳ । ଶୁଭିଲା ପୁତ୍ରଜନ୍ମ ଗୋଳ ॥
ନନ୍ଦ ଦେଖିଣ ଦ୍ୱିଜ ଗଣ । ପୂଜିଲା ବିପ୍ରଙ୍କ ଚରଣ ॥
ବେଗେ ହୋଇଲା ଶୁଚିବନ୍ତ । କାଞ୍ଚନ ଆଣିଲା ବହୁତ ॥
ବ୍ରାହ୍ମଣେ କଲେ ବେଦ ଧ୍ୱନି । ମଙ୍ଗଳ ଶୁଭ ବେଳ ଘେନି ॥
କରାଇ ଜାତକର୍ମ ବିଧି । ଦେବତା ପିତୃଙ୍କୁ ଆରାଧି ॥
ବିପ୍ରଙ୍କୁ ଅଳଙ୍କାର କଲା । ବେନି ଲକ୍ଷେକ ଧେନୁ ଦିଲା ॥
ମଣ୍ଡିଣ ବସ୍ତ୍ର ଅଳଙ୍କାର । ଚନ୍ଦନ କୁସୁମ ଚାମର ॥
ତିଳ ପର୍ବତମାନ କରି । ଦିଲା କାଞ୍ଚନ ବସ୍ତ୍ରଭରି ॥
ମଙ୍ଗଳ କଲେ ବେଦ ଚାରି । ରଙ୍ଗେ ନାଚନ୍ତି ଗୋପନାରୀ ॥
ସୂତ ମାଗଧ ନୃତ୍ୟକାର । କରନ୍ତି ମଙ୍ଗଳ ଉଚାର ॥
ବାଜଇ ବୀରତୂର ଭେରୀ । ଆନନ୍ଦେ ମଙ୍ଗଳ ମହୁରୀ ॥
ନନ୍ଦର ଘରେ ପୁତ୍ର ଜାତ । ଚହଳ ଶୁଭେ ଅପ୍ରମିତ ॥
ଗୋପ ନଗରେ ଲୋକ ଯେତେ । ଚିଆଇଁ ଧାଇଁଛନ୍ତି ଥୋକେ ॥
ସୁଖେଣ ପାହିଲା ରଜନୀ । ବାହାର ହୋଇଲେ କାମିନୀ ॥
ଅଗଣା ଖରକି ପୟେରା । ଚନ୍ଦନ ଗୋଳି ଦ୍ୟନ୍ତି ଛେରା ॥
ପିଢ଼ାରେ ସୁବର୍ଣ୍ଣ କଳସ । ତୋରଣା ଲମ୍ୱାନ୍ତି ହରଷ ॥
ଗୋରୁଙ୍କୁ ମଣ୍ଡିଲେ ଗୋପାଳେ । ବସ୍ତ୍ର ଭୂଷଣ ଫୁଲମାଳେ ॥
ବୃଷଭ, ସୁରଭି, ବାଛୁରୀ । ହଳଦୀ ତେଲ ତାଙ୍କୁ ବୋଳି ॥
ଗଉଡ଼େ ଶୁଚିବନ୍ତ ହୋଇ । ଆନନ୍ଦେ ଅଳଙ୍କାର ଲାଇ ॥
ହାର କଙ୍କଣ କର୍ଣ୍ଣଫୁଲ । ନୂପୁର ବାଜେଣି ଅମୂଲ୍ୟ ॥
ଯେମନ୍ତେ ହୋଇ ଅଳଙ୍କାର । ହସ୍ତେ ଘେନିଲେ ଦୂର୍ବାଙ୍କୁର ॥
ଯେକ ଆରକେ ଆଗ ହୋଇ । ମିଳିଲେ ନନ୍ଦଘରେ ଯାଇ ॥
ଗୋପୀୟେ ନିତ୍ୟକର୍ମ ସାରି । ଦେହରେ ଅଳଙ୍କାର ଭରି ॥
ପିନ୍ଧିଲେ ନାନା ବସ୍ତ୍ରମାନ । ଆନନ୍ଦେ ମନ ଛନଛନ ॥
ନନ୍ଦ ରାଣୀକି ଅର୍ଘ୍ୟସ୍ଥାଳୀ । ଘେନି ଚଳିଲେ ଗୋପବାଳୀ ॥
ଯେକ ଆରେକ ଯାନ୍ତି ଜିଣି । ଚରଣେ ନୂପୁର ବାଜେଣି ॥
କେହୁ ଲେଉଟି ନ ଚାହାନ୍ତି । ଆକାଶେ ଯେହ୍ନେ ଗ୍ରହପନ୍ତି ॥
ଚଳନ୍ତି ଶ୍ରବଣେ କୁଣ୍ଡଳ । ନିତମ୍ୱ କୁଚ ହେମମାଳ ॥
ଆକାଶେ ଦେବେ ଛନ୍ତି ଚାହିଁ । ଗୋପୀ ଚଳନ୍ତି ଗୀତ ଗାଇ ॥
ଯାନ୍ତେ ବିରାଜେ ମହୀସ୍ଥଳୀ । କ୍ଷଣ କ୍ଷଣକେ ହୁଳହୁଳୀ ॥
କବରୀ ଫିଟି ଫୁଲମାଳ । ଯାନ୍ତେ ପଡ଼ଇ ପାଦତଳ ॥
ଆନନ୍ଦ କେ ପାରିବ ଲେଖି । ହରିଙ୍କି ଯାଉଛନ୍ତି ଦେଖି ॥
ନନ୍ଦର ମନ୍ଦିରେ ମିଳିଲେ । ମଙ୍ଗଳ ଘୋଷ ନାଦ କଲେ ॥
ଅନ୍ତୁଡ଼ିଶାଳେ ଯାଇ ମିଳି । ହାସ୍ୟ କେ କରନ୍ତି ତମାଳି ॥
ଯଶୋଦା କୋଳେ କୃଷ୍ଣ ଦେଖି । ନିର୍ମଳ କଲେ ଚର୍ମ ଆଖି ॥
ଅକ୍ଷତ ପୁତ୍ର ଶିରେ ଦ୍ୟନ୍ତି । ଆନନ୍ଦେ କଲ୍ୟାଣ କରନ୍ତି ॥
ବୋଲନ୍ତି ଯଶୋଦାକୁ ଚାହିଁ । ଧନ୍ୟ ଜୀବନ ତୋର ଆଇ ॥
ଆମ୍ଭ ଆୟୁଷ ଘେନି କରି । ତୋ ପୁତ୍ର ରଖୁ ନରହରି ॥
ଆମ୍ଭ ଗୋକୁଳ ଯେ ପାଳିବ । ଯେହାକୁ ରଖୁ ସଦାଶିବ ॥
ହଳଦୀ ତେଲ ଘେନି ଥୋକେ । ଲେପନ୍ତି ଯେକକୁ ଆରେକ ॥
ଖେମଟା ବାଦ୍ୟ କରତାଳି । ଆନନ୍ଦେ ନାଚନ୍ତି ଗୁଆଳୀ ॥
ବିଜୟେ ପରମ ମଙ୍ଗଳ । ଆନନ୍ଦମାନଙ୍କର ମୂଳ ॥
ଗୋପାଳେ ଯେକକୁ ଆରକେ । ହଳଦୀ ଲେପୁଛନ୍ତି ଥୋକେ ॥
ଲବଣୀ ଘେନି ମରାମରି । ନାଚନ୍ତି ଯେକୁ ଆରେ ଧରି ॥
ଆନନ୍ଦ ହୋଇ ନନ୍ଦରାୟେ । ଭଣ୍ଡାର ଫେଡ଼ାଇ ଥୋକାୟେ ॥
ଅନେକ ଗୋରୁ ବସ୍ତ୍ର ଦାନ । ତୋଷିଲା ଜଣେ ଜଣେ ମନ ॥
ରୋହିଣୀ ନିକଟେ ମିଳିଲା । ଅନେକ ଧନରତ୍ନ ଦିଲା ॥
ଗୋପୀଙ୍କୁ କରାଇ ହରଷ । ଭୋଜନ ଦିଲା ଛଡ଼ରସ ॥
କଂସର ଆଡ଼ତିଆ ଥିଲା । ନନ୍ଦକୁ କ୍ଷଣେ ନ ଛାଡ଼ିଲା ॥
ଦଇବେ ଆକଟ ଅପାର । ନେବ ସେ ବରଷକ କର ॥
ଗୋପାଳ ମାନନ୍ତ ବସାଇ । ନନ୍ଦ ବୋଲଇ ଶୋକ ହୋଇ ॥
କଂସ ଆକଟ ମୋତେ କରି । ମୁ ଆଜ ଯିବି ମଧୁପୁରୀ ॥
ପୁତ୍ରର ଚିନ୍ତା ତୁମ୍ଭେ କର । କହି ଚଳିଲା ଗୋପବୀର ॥
କଂସର ଛାମୁରେ ମିଳିଲା । ସୁନିଆଁ ଧନ ଗଣିଦିଲା ॥
ଆନନ୍ଦ ହୋଇ ଦଣ୍ଡଧାରୀ । ଧନ ବସନ ଦିଲା ଶାଢ଼ି ॥
ମେଲାଣି ମାଗିଲା ତକ୍ଷଣ । କିଣିଲା ନାନା ଦ୍ରବ୍ୟମାନ ॥
ଗୋପ ନଗରେ ଯେତେ ଲୋଡ଼ା । ତାଙ୍କ ଜନ୍ମିଳ ଆମ୍ବସଢ଼ା ॥

ମନର ଆନନ୍ଦେ କିଣିଲା । ଯେମନ୍ତେ ରଜନୀ ହୋଇଲା ॥
ସାରିଲା ରନ୍ଧନ ଭୋଜନ । ନିରତେ ପୁତ୍ର ତହିଁ ମନ ॥
ନନ୍ଦର ଆଗମନ ଶୁଣି । ବସୁଦେବ ତା ମନେ ଗୁଣି ॥
ମିତ୍ର ସ୍ୱଭାବେ ନନ୍ଦ ମୋର । ତା ଘରେ ଅଛି ମୋ କୁମର ॥
ତାର କୁଶଳ ମୋର ଇଷ୍ଟ । ନ ପୁଣ ଜାଣେ କଂସ ଦୁଷ୍ଟ ॥
ଯେମନ୍ତ ମନେ ବିଚାରିଲା । ନନ୍ଦର ନିକଟେ ମିଳିଲା ॥
ମିତ୍ରର ଆଗମନ ଦେଖି । ଉଠିଲା ଆସନ ଉପେଖି ॥
ଆନନ୍ଦ ହୋଇ କୋଳାକୋଳା। ବସିଲେ ଯାଇ ଯେକ ମେଳ ॥
ପୂର୍ବର କଥାମାନ କହି । ଯେକ ଆରକେ ଭାବ ହୋଇ ॥
ବୋଲଇ ବସୁଦେବ ହସି । ନନ୍ଦ କୁଶଳ ପରଶଂସି ॥
ବୃଦ୍ଧ ବୟସେ ତୋର ପୁତ୍ର । ଶୁଣି ହୋଇଲି କୃତ କୃତ ॥
ମନୁଷ୍ୟ ଜନ୍ମର ଯେ ସାର । ବୋଲନ୍ତି ସଂସାର ବେଭାର ॥
ଦାରା ତନୟ ବନ୍ଧୁଗଣ । ଧନ ସମ୍ପଦ ଯେ କାରଣ ॥
ଯେତେ ନ ଥିଲେ ଦୁଃଖ ପାଇ । ଉଭୟ ଲୋକେ ସୁଖ ନାହିଁ ॥
ଯେ ପୁଣି ନୁହଇ ନା ସତ୍ୟ । ଦର୍ପଣେ ପ୍ରତିମା ଯେମନ୍ତ ॥
ଚିତ୍ର ପ୍ରତିମା ପାୟେ ଠୁଳ । ଯେସନେ ସମୁଦ୍ର ଉଲ୍ଲୋଳ ॥
ଭଲେ ଅଛନ୍ତି ନା ଗୋକୁଳ । ତୃଣ ବୀରୁଧ କନ୍ଦମୂଳ ॥
ଗୋପାଳେ ଅଛନ୍ତି ନା ଭଲେ। ରୋହିଣୀ ଯଶୋଦାର ତୁଲେ ॥
ମୋହୋର ରୋହିଣୀର ସୁତ । ତୁମ୍ଭେ ତାହାର ତାତ ମାତ ॥
ପିତା ବିଛେଦେ ଅରଖିତ । ତୁମ୍ଭର ପାଳିବା ଉଚିତ ॥
କିସ କରିବି ଉପକାର । ଯେତେ ଅନ୍ତରେ ଗୃହମୋର ॥
ଜୀବନ୍ତେ ଯେକୁ ଆରେ ସଖା। ମରଣେ ପରଲୋକେ ଦେଖା ॥
ଯେମନ୍ତେ ମିତ୍ରର ସ୍ୱଭାବ । ଆନନ୍ଦେ କହେ ବସୁଦେବ ॥
ନନ୍ଦ ସେ ବସୁଦେବ ଚାହିଁ । କହଇ ଶୋକଭର ହୋଇ ॥
ଭୋ ମିତ୍ର ବଡ଼ ଯେ ବିକଳ । କହନ୍ତେ ବହେ ଅଶ୍ରୁଜଳ ॥
ଦେବକୀ କଲା କେତେ ପାପ । ଅଳପ ଦିନେ ଯେତେ ତାପ ॥
ପ୍ରସବେ ବରଷେ ବରଷ । ଛ ପୁତ୍ର କଲା କଂସ ନାଶ ॥
ଯେବେ ଦୁହିତାୟେ ହୋଇଲା । କଂସର ହସ୍ତୁଁ ଶୂନ୍ୟେ ଗଲା ॥
ଯେକଥା କର୍ମର ଆୟତ । ଜଗତ କର୍ମେ ଆତଯାତ ॥
ଯେହା ଜାଣନ୍ତି ଜ୍ଞାନୀ ଲୋକ । ତେଣୁ ନ ଲାଗେ ଦୁଃଖସୁଖ ॥
ବୋଲଇ ବସୁଦେବ ଶୋକେ । ଯାହା ଅର୍ଜିଲି ପୂର୍ବଲୋକେ ॥
ସେ କଥା କର୍ମଟି ମୋହୋର । ଭୋ ମିତ୍ର ଯାଅ ବେଗେ ଘର ॥
କଂସ ଆଦେଶ ଘେନି ଶିରେ । ଜଗତେ ବୁଲନ୍ତି ଅସୁରେ ॥
ମାରିବେ ଯେତେ ବାଳପୁଅ । ଭୋ ମିତ୍ର ଦଣ୍ଡେ ହେଁ ନ ରହ ॥
କହି ଚଳିଲା ବସୁଦେବ । ନନ୍ଦର ମନ ଉଦବେଗ ॥
ଶକଟେ ନାନା ଦ୍ରବ୍ୟ ଭରି । ଚିନ୍ତଇ ପ୍ରଭୁ ନରହରି ॥
ବାଜଇ ଶଙ୍ଖ ଭେରୀତୁର । ନଗରୁଁ ହୋଇଲା ବାହାର ॥
କୃଷ୍ଣ ଆଦେଶ ଶିରେ ଘେନି । କହିଲେ ଶୁକ ମହାମୁନି ॥
ପଣ୍ଡିତେ ଶୁଣ ହରି ଲୀଳା । ଯେ ଭବ ସାଗରକୁ ଭେଳା ॥
ଯେ ନାବେ ବସ ଭ୍ରାନ୍ତି ଛାଡ଼ି । ନ ମର ମୋହଜଳେ ବୁଡ଼ି ॥
ସମ୍ପଦ ସ୍ୱପ୍ନ ପ୍ରାୟେ ଦୃଶ୍ୟ । ଯେଣେ ନ କରିବ ବିଶ୍ୱାସ ॥
ନିରତେ ଚିନ୍ତ ନରହରି । ନ ମର ଶୂନ୍ୟ କୋଳ କରି ॥
ଗୋବିନ୍ଦ ନାମ ଜ୍ଞାନରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ନନ୍ଦପୁରେ ଉଚ୍ଛବ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ରାଜା ଆଗେ । ନନ୍ଦ ଚଳିଲା ବେଗେବେଗେ ॥
ବସୁଦେବର ବୋଲ ଶୁଣି । ମନେ ଚିନ୍ତଇ ଚକ୍ରପାଣି ॥
କଂସର ଆଦେଶେ ଅସୁରୀ । ପୂତନା ଚଉଦିଗେ ହେରି ॥
ଗ୍ରାମ ପାଟଣା ଯେକ ଯେକ । ଅନେକ ମାଇଲା ବାଳକ ॥
ବେନି କୁଚରେ ବିଷଭରି । ପିଆଇ ବାଳକ ସଂହାରି ॥
ଯହିଁ ବିଜୟେ ଆଦିମୂଳ । ଯା ନାମ ପରମ ମଙ୍ଗଳ ॥
କି କରି ପାରିବେ ଅସୁରେ । ଯାହାର ନାମେ ଯମ ଡରେ ॥
ପୂତନା ବୁଲି ଚାରିଦିଗେ । ମିଳିଲା ଗୋପପୁର ଲାଗେ ॥
ରଜନୀ ହୋଇଲା ପ୍ରଭାତ । ଜାଣିଲେ ପ୍ରଭୁ ଜଗନ୍ନାଥ ॥
ଅନେକ ଶିଶୁ ଯେ ମାଇଲା । ମୋହୋରେ ନୁହଇ ସହିଲା ॥
ଦୁଷ୍ଟ ମାରଣେ ମୋର ଜନ୍ମ । ଅସୁରୀ କଲା ଯେଡ଼େ କର୍ମ ॥
ଯେମନ୍ତ ହରି ବିଚାରିଲେ । ପୂତନା ମନ ଆକର୍ଷିଲେ ॥
ରାକ୍ଷସୀ ବିଚାରଇ ବସି । ଯେହି ନଗରେ ଯିବି ପଶି ॥
ଆକାଶେ ଉଦେ ଦିନକର । ଅସୁରୀ ମାୟାର ଭଣ୍ଡାର ॥
ମାୟା ମୋହିନୀ ରୂପ ଧରି । ତିନି ଭୁବନେ ନାହିଁ ସରି ॥
ରୂପେ କି ପଟାନ୍ତର ଦେବା । ଦେଖି ଢଳିବେ ସୁରଦେବା ॥
କବରୀ ଭାରେ ଫୁଲମାଳ । ସୁନ୍ଦର ଅଳକା କପୋଳ ॥
ପୃଥୁ ନିତମ୍ବ କୁଚଭାର । ମଝା ସିଂହକୁ ପଟାନ୍ତର ॥
ଝିନ ପତନି ରଙ୍ଗବାସ । ରତ୍ନ ମେଖଳା କଟୀତ୍ରାସ ॥

କର୍ଣ୍ଣେ ଶୋଭିତ ବେନିକାପ । କ୍ଷଣକ୍ଷଣକେ ମୋହେ ରୂପ ॥
ଅଳପ କହଇ ବଚନ । ଅଣ୍ଡିର କୋକିଳ ଯେସନ ॥
ହରିଲା ଗୋପୀଙ୍କର ମନ । ବାଳ ତରୁଣ ବୃଦ୍ଧଜନ ॥
ପଦ୍ମ ଗୋଟିଏ ଘେନି କରେ। ଅସୁରୀ ଚଳଇ ସଧୀରେ ॥
ପୂତନା ରୂପ ଲୋକେ ଦେଖି । ପିଛାଡ଼ି ନ ପାରନ୍ତି ଆଖି ॥
ଗୋଡ଼ାଇ ବୋଲନ୍ତି ଯୁବତୀ । କିଏ ତେଜିଲା ବାରସ୍ୱତି ॥
ଯେମନ୍ତ ଦେଖିଲାତ ନାହିଁ । କେ ବୋଲେ ଅମ୍ବିକା ଅଟଇ ॥
କେ ବୋଲେ ଶୁଣ ମୋ ଉତ୍ତର । କୃଷ୍ଣ ଜନ୍ମିଲେ ନନ୍ଦଘର ॥
କମଳା ଆସୁଅଛି ଦେଖି । ଜଳଧି ଶୟନ ଉପେଖି ॥
କେ ବୋଲେ ଅଟଇ ଯେମନ୍ତ । ପୁରାଣେ ଶୁଣିଲୁ ତଦନ୍ତ ॥
ଯେମନ୍ତେ ଜାଣି ନ ପାରିଲେ । ସଭିଏଁ ପଛେ ଗୋଡ଼ାଇଲେ ॥
ପୂତନା ବୋଲଇ ମଧୁର । ବାଳକ ଅଛି କାହାଘର ॥
ମୋର ବାଳକ ଯେବେ ମଲା। ସ୍ତନ ମୋ ନୁହଇ ଧଇଲା ॥
କାହାର ପୁତ୍ର ଅଛି ମାଏ । ସ୍ତନ ପିଆଇବି ଥୋକାଏ ॥
ଅସୁରୀ ଚାଲଇ ସଧୀରେ । ମିଳିଲା ଯାଇ ନନ୍ଦ ଦ୍ୱାରେ ॥
ଗୋପୀଏ ଗଲେ ଆଗସରି । ଭିତରେ ପଶିଲା ଅସୁରୀ ॥
ଯଶୋଦା ହୋଇଲା ଉସତ । ପୁତ୍ର ମୋ ହେବ ବଳବନ୍ତ ॥
ଯେ ମୋର ଘରେ ଯେବେ ଥାଇ । ନିରତେ ପୁତ୍ରେ କ୍ଷୀର ଦେଇ ॥
ନନ୍ଦର ଛାମୁରେ କହିବି । ଅନେକ ଧନରତ୍ନ ଦେବି ॥
ଯଶୋଦା ଯେମନ୍ତ ବିଚାରି । ପୂତନା ଚାହିଁଲା ମୁରାରି ॥
ବାଳକ ସ୍ୱଭାବେ ଅନନ୍ତ । ନିଦ୍ରାରେ ହୋଇଲେ ଅଚେତ ॥
ଯଶୋଦା ଘେନି ବନମାଳୀ । ପୂତନା କୋଳେ ଦିଲେ ତୋଳି ॥
କୃଷ୍ଣର ନ ଜାଣଇ ବଳ । ଆକର୍ଷି ନେଇ କଲା କୋଳ ॥
କୃଷ୍ଣର ମୁଖେ ଦିଲା ସ୍ତନ । ଗାଢ଼େ ପିଅନ୍ତି ଭଗବାନ ॥
ପଞ୍ଚ ପରାଣ କ୍ଷୀର ସଙ୍ଗେ । ପଶିଲା ଗୋବିନ୍ଦର ଅଙ୍ଗେ ॥
ଜୀବ ଛାଡ଼ିଲା ଗଣ୍ଡିଛନ୍ଦ । ଅସୁରୀ କଲା ଘୋର ନାଦ ॥
ନିଜ ଶରୀର ପ୍ରକାଶିଲା । ଛାଡ଼ ବୋଲିଣ ଡାକ ଦିଲା ॥
ଶବଦେ କମ୍ପିଲା ବ୍ରହ୍ମାଣ୍ଡ । ମାଡ଼ି ପଡ଼ିଲା ଭୂମିଖଣ୍ଡ ॥
କର ଚରଣ ପ୍ରସାରିଲା । ଦେଢ଼ ଯୋଜନ ଆବୋରିଲା ॥
ବୃକ୍ଷ ମନ୍ଦିର ଗୋରୁ ଘର । ଭାଜି ହୋଇଲା ସର୍ବ ଚୂର ॥
ମୁନି କହନ୍ତି ଶୁଣ ରାଯେ । କେ କହୁ ଅସୁରୀର କାଯେ ॥
ଲଙ୍ଗଳ ଈଷ ପ୍ରାୟ ଦନ୍ତ । ନାସିକା ପର୍ବତର ଅନ୍ତ ॥
ଖଣ୍ଡ ପର୍ବତ ସ୍ତନ ବେନି । ଖାଙ୍କର କେଶ ତା ମୂର୍ଦ୍ଧନି ॥
ପିଙ୍ଗଳ ଚକ୍ଷୁର ସ୍ୱରୂପ । ଯେହ୍ନେ ଖୋଳିଲା ଅନ୍ଧକୂପ ॥

ନଦୀର ତୀର ଯେହ୍ନେ ଜଙ୍ଘ । ଭୁଜ ଦିଶଇ ସେତୁ ବନ୍ଧ ॥
ଶୁଖିଲା ହ୍ରଦ କି ଉଦର । ଦେଖି କମ୍ପିଲେ ସୁରନର ॥
ଗୋପରେ ପଡ଼ିଲାକ ହୁରି । ଭୟେ ପଳାନ୍ତି ନରନାରୀ ॥
ପଡ଼ି ଭାଜିଲା କାହା ମୁଣ୍ଡ । କାହାର ଦେହ ଖଣ୍ଡଖଣ୍ଡ ॥
ଦେଖି ଚକିତ ନନ୍ଦରାଣୀ । ଭୟେ ଚିନ୍ତଇ ଚକ୍ରପାଣି ॥
ଘଡ଼ିକେ ହୋଇଲା ସଚେତ । ଉଠି ଲୋଡ଼ଇ ନିଜ ସୁତ ॥
ଗୋପୀଙ୍କି ବୋଲଇ ଉତ୍ତର । କେ ଘେନି ଅଛି ମୋ କୁମର ॥
ବହନ ଆଣ ବେଗେ ଯାଇ । ମରିବି ପୁତ୍ରକୁ ନ ପାଇ ॥
ଦେଖିଣ ଯଶୋଦା ବିକଳ । ଗୋପୀ ଧାମନ୍ତି ଅନ୍ତରାଳ ॥
ଭୟେ ଖୋଜନ୍ତି ଘରଦ୍ୱାରେ । ଦେଖିଲେ ପୂତନା ଉପରେ ॥
ବେନି ପର୍ବତ ମଧ୍ୟେ ରହି । ଯେସନେ ଶଶାଙ୍କ ଦିଶଇ ॥
ପୂତନା ସ୍ତନ ମଧ୍ୟେ ହରି । ଗୋପୀଏ ଯାଇଁ କୋଳକରି ॥
ପୁତ୍ରକୁ ଦେଖିଣ ନୟନେ । ଆନନ୍ଦ ଯଶୋଦାର ମନେ ॥
କୋଳେ ଧରିଣ ଚୁମ୍ବ ଦେଇ । ଘରେ ପଶିଲ ଦେବୀ ଯାଇ ॥
ରୋହିଣୀ ଦେଖିଣ ଉସତ । ଲୋକେ ହୋଇଲେ କୃତ କୃତ ॥
ଗୋପୀ ମିଳିଲେ ବେଗେ ଯାଇଁ । ବୋଲନ୍ତି ଯଶୋଦାକୁ ଚାହିଁ
ଆପଦୁଁ ତରିଲା କୁମର । ତୁ ଯେବେ ରିଷ୍ଟ ଶାନ୍ତି କର ॥
ଶୁଣି ଉସତ ନନ୍ଦରାଣୀ । ପୁତ୍ରକୁ ଘେନିଲା ରୋହିଣୀ ॥
ବେଢ଼ି ବସିଲେ ଗୋପନାରୀ । ଯେତେ ଯଶୋଦା ପରିବାରୀ ॥
ବଛା ଗୋଟିଏ ଆଣି କରି । ତା ଲାଞ୍ଜେ ପୁତ୍ର ଦେହ ଝାଡ଼ି ॥
ଗୋ ମୂତ୍ରେ କରାଇ ସ୍ନାହାନ । ଗୋରଜ କରନ୍ତି ଲେପନ ॥
ଗୋମୟ ଦିଲେ ଠିଆ ଚିତା । ଯେ ପ୍ରଭୁ ଗୋ ବ୍ରାହ୍ମଣ ହିତା ॥
ହସ୍ତରେ ଦୂର୍ବାଙ୍କୁର ଘେନି । କଲ୍ୟାଣ କରନ୍ତି କାମିନୀ ॥
ଦ୍ୱାଦଶ ଅଙ୍ଗନ୍ୟାସ କରି । ଗୋପୀ ବୋଲନ୍ତି ନାମ ଧରି ॥
ଯାହାର ନାହିଁ ଆଦିଅନ୍ତ । ଚରଣ ରଖୁ ସେ ଅନନ୍ତ ॥
ଯଜ୍ଞ ଠାକୁର ଶିରୀରଙ୍ଗ । ରକ୍ଷା କରନ୍ତୁ ବେନି ଜଙ୍ଘ ॥
ଅଚ୍ୟୁତ ରଖୁ କଟୀଭାଗ । ଗର୍ଭ ରଖନ୍ତୁ ପଦ୍ମନାଭ ॥
ହୃଦୟ ରଖୁ ହୟଗ୍ରୀବ । କଣ୍ଠ ତୋ ରଖୁ ବାସୁଦେବ ॥
ଇନ୍ଦ୍ର ତୋ ରଖୁ ବେନି ଭୁଜ । ମୁଖ ତୋ ରଖୁ ଗ୍ରହରାଜ ॥
ଲଲାଟ ରଖୁ ସଦାଶିବ । ଶିଖା ତୋ ରଖନ୍ତୁ କେଶବ ॥
ତୋର ଅଗ୍ରତେ ଚକ୍ରଧର । ପୃଷ୍ଠ ଆବୋରି ଗଦାଧର ॥
ସାରଙ୍ଗଧନୁ ବେନି ପାଖ । କମଳା ରଖୁ ତୋର କାଖ ॥
ଶଙ୍ଖ ତୋ ରଖୁ ଚାରିକୋଣ । ଉପରେ ରଖୁ ନାରାୟଣ ॥
ଗରୁଡ଼ ପଡ଼ି ରଖୁ ତଳେ । ମଧୁସୂଦନ ଅନ୍ତରାଳେ ॥

ଦଶ ଇନ୍ଦ୍ରିୟ ପାଳୁ ମନ । ରଖୁ ଗୋବିନ୍ଦ ପଞ୍ଚପ୍ରାଣ ॥
ଚିତ୍ତ ତୋ ରଖୁ ଦିଗପତି । ମାଧବ ରଖୁ ବୁଦ୍ଧି ମତି ॥
ଖେଳନ୍ତେ ରଖୁ ବନମାଳୀ । ଶୟନେ କୃଷ୍ଣ ପ୍ରତିପାଳି ॥
ଚାଲନ୍ତେ ଭୋଜନେ ଶୟନେ । ରଖନ୍ତୁ ଶ୍ରୀମଧୁସୂଦନେ ॥
ଭୂତ ବେତାଳ ପ୍ରେତ ଜ୍ୱର । ଗ୍ରହ ଡାକିନୀ ନିଶାଚର ॥
ଦୁଷ୍ଟ ସ୍ୱପନ ଗ୍ରହପୀଡ଼ା । ବିଷ୍ଣୁ ନାଶନ୍ତି ସର୍ବ ଅଡ଼ା ॥
ନିର୍ଭୟ କରୁ ନରସିଂହ । ବଜ୍ର ତୋ ହେଉ ସର୍ବଅଙ୍ଗ ॥
ଆମ୍ଭ ଆୟୁଷ ତୋତେ ହେଉ । ତୋ ଯଶ ତିନିପୁରେ ଥାଉ ॥
ନ ଥାଉ ତୋତେ କେ ଜିଣନ୍ତା । ତିନି ଭୁବନେ ସାମରଥା ॥
ଯେମନ୍ତେ ସ୍ନେହରର ହୋଇ । ଯଶୋଦା କୋଳେ ଦିଲେ ନେଇ ॥
ସ୍ତନ ପିଆଇ ନନ୍ଦରାଣୀ । ଭୟେ ଚିନ୍ତଇ ଚକ୍ରପାଣି ॥
ନନ୍ଦ ଯେ ଥିଲା ମଧୁବନେ । ଆସି ମିଳିଲା ରାତ୍ରମାନେ ॥
ଦେଖିଣ ପୂତନା ଶରୀର । ନନ୍ଦ କମ୍ପଇ ଥରହର ॥
ମିତ୍ର ବଚନ ନନ୍ଦ ଶୁଣି । ସୁମରି ଦୃଢ଼ ମନେ ଗୁଣି ॥
ଗୋପାଳ ମାନନ୍ତ ରାଇଲା । ଦହନ କରାଅ ବୋଇଲା ॥
ତକ୍ଷଣେ କରି ଖଣ୍ଡ ଖଣ୍ଡ । ଦହିଲେ ପୂତନାର ପିଣ୍ଡ ॥
ଅନଳେ ଦହନ୍ତେ ଅସୁରୀ । ଗନ୍ଧ ପ୍ରସରଇ କସ୍ତୁରୀ ॥
ଆନନ୍ଦ ହୋଇଣ ସକଳ । ଗନ୍ଧ ଆମୋଦେ ଦିଗପାଳ ॥
ହରି ଭକ୍ଷିଲେ ଯାର କ୍ଷୀର । ସୁଗନ୍ଧ କେତେକ ମାତର ॥
ଅଷ୍ଟାଙ୍ଗ ଯୋଗେ ମୁନିଗଣେ । ସେବନ୍ତି ଯାହାର ଚରଣେ ॥
କ୍ଷୀର ସଙ୍ଗତେ ପଞ୍ଚପ୍ରାଣ । କୃଷ୍ଣ ଶରୀରେ ହେଲା ଲୀନ ॥
ପାମରୀ ସ୍ୱଭାବେ ଅସୁରୀ । ଅନେକ ପାପ ଅଛି କରି ॥
ହତ୍ୟା କହିବା ତାର କେତେ । ଦେହରେ ରୋମ ଅଛି ଯେତେ ॥
ହରିଙ୍କି କୋଳେ ବସାଇଲା । ଶ୍ରୀମୁଖ ଚାହିଁ କ୍ଷୀର ଦିଲା ॥
ନନ୍ଦ ଯଶୋଦା ଦୈବକୀ । ବସୁଦେବର ଯହିଁ ଗତି ॥
ତହିଁକି ପେଷିଲେ ମୁରାରି । ଅସୁରୀ ଗଲା ଅପସରି ॥
ଗୋପୀ ଗୋପାଳ ଯେତେ ଗାଈ । ଯାହାର କ୍ଷୀର କୃଷ୍ଣ ଖାଇ ॥
ବସିଲେ ଯେତେ ଲୋକ କୋଳେ । ସର୍ବେ ତରିବେ ଯେକା ବେଳେ
ଅସୁରୀ ଦହନ କରାଇ । ଘରେ ମିଳିଲେ ନନ୍ଦ ଯାଇ ॥
ପୂତନା ଆଗମନ ଲୋକେ । କହିଲେ ନନ୍ଦ ଆଗେ ଥୋକେ ॥
ଶୁଣି ଗୋପାଳେ ବିସ୍ମୟିଲେ । ସଭିଏଁ କୃଷ୍ଣ ସୁମରିଲେ ॥
ବୋଲନ୍ତି ନନ୍ଦ ଭାଗ୍ୟବନ୍ତ । ଆପଦୁଁ ତରିଲା ବାଳୁତ ॥
ଆମ୍ଭର ଅଛି ପୁଣ୍ୟବଳ । ଗୋବିନ୍ଦ ରଖିବେ ଗୋକୁଳ ॥
ନିଜ ମନ୍ଦିରେ ନନ୍ଦ ମିଳି । କୋଳେ ବସାଇ ବନମାଳୀ ॥
କୃଷ୍ଣର ଶିରେ ଦେଇ କର । ଚୁମ୍ବନ ଦିଲାକ ଅଧର ॥
ବିପ୍ରଙ୍କୁ ରାଇ ଗ୍ରହଶାନ୍ତି । କରାଇ ଚିନ୍ତଇ ଶ୍ରୀପତି ॥
ଆନନ୍ଦେ ହୋଇ କୃତ କୃତ । କହନ୍ତି ବ୍ୟାସଙ୍କର ସୁତ ॥
ଶୁଣ ହୋ କୃଷ୍ଣ ବାଳ କେଳି । ଆନନ୍ଦ ହୋଇ ମନେ ଭାଳି ॥
ପୂତନା ମରଣର ବାଣୀ । କର୍ଣ୍ଣେ ଶୁଣନ୍ତି ଯେତେ ପ୍ରାଣୀ ॥
ଅସୁରୀ ତରିଲା ଯେମନ୍ତେ । ସୁଜନେ ଯିବେ ସେହି ପଥେ ॥
ଭଗତି କର ଦୃଢ଼ ଚିତ୍ତେ । ହରି ଭଗତଙ୍କର ମତେ ॥
ଗୀତ ବିନୋଦ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ପୂତନା ମୋକ୍ଷଣେ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ରାଜା ଉବାଚ

ନମଇଁ କୃଷ୍ଣ ପଦ୍ମପାଦ । ଯେ ମୋର ଜୀବନ ସମ୍ପଦ ॥
ପରୀକ୍ଷ ଶୁଦ୍ଧ ମୁନି ଚାହିଁ । ବୋଲଇ କୃତ କୃତ ହୋଇ ॥
ଗୋପ ନଗରେ ନରହରି । ମାଇଲେ ପୂତନା ଅସୁରୀ ॥
ଦେବଙ୍କ ଭୟ ନିବାରିଲେ । ନିଜ ଶରୀରେ ଠାବ ଦିଲେ ॥
ଯାହାର ନାହିଁ ମିତ୍ର ଐରି । ଚଣ୍ଡାଳୁଁ ବ୍ରହ୍ମ ଆଦିକରି ॥
ସାଧୁଙ୍କୁ ପାଳି ଦୁଷ୍ଟ ନାଶି । ଦୟା ସାଗର ବ୍ରହ୍ମରାଶି ॥
ତାହାର ଯେତେ କର୍ମମାନ । ବାଳକ ଚରିତ ବିଧାନ ॥
ଶୁଣି ଭଜନ୍ତି ଯେତେ ପ୍ରାଣୀ । ତରନ୍ତି ଭବ ତରଙ୍ଗିଣୀ ॥
ମାୟା ମନୁଷ୍ୟ ଅବତାର । ଖଣ୍ଡିବେ ଅବନୀର ଭାର ॥
ଆଦର କଲେ ଗୋପେ ଯାହା। କହିବା ମୋତେ ଯେବେ ଦୟା ॥

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନିବର । ରାଜନ ଶୁଣ ରସଭର ॥
ଶୁଣ କହିବା ହରିକଥା । ଯେଣେ ଛାଡ଼ିବ ଭବ ବ୍ୟଥା ॥
ଅବୃତ୍ତି ଉଠିଆରି ଦିନେ । ଆସି ମିଳିଲେ ଗୋପୀଜନେ ॥
ମଙ୍ଗଳ ବାଦ୍ୟନାଦ କରି । ସ୍ନାହାନ କରାଇ ମୁରାରି ॥
ବ୍ରାହ୍ମଣ ମିଳିଲେ ଥାକାୟେ । ଆଶିଷ ଦିଲେ ମାୟେ ପୋୟେ ॥
ଆନନ୍ଦ ମନେ ନନ୍ଦରାୟେ । ଧେନୁ ବସନ ଦାନ ଦିଏ ॥
ଗୋପୀ ଆନନ୍ଦ ଗୀତସ୍ୱର । ନିଦ୍ରା ମୋହିତ ଚକ୍ରଧର ॥
ଶକଟ ତଳେ ବସ୍ତ୍ର ପାଡ଼ି । ଯଶୋଦା ଶୁଆଇ ମୁରାରି ॥
ନିଦ୍ରା କରାଇ ଗୀତ ଗାଇ । ଗୋପୀଙ୍କି ଦିଲାକ ବଧାଇ ॥

ଅକ୍ଷତ ଦିଲେ ଜଣେ ଜଣ । ପୁତ୍ରକୁ କରନ୍ତି କଲ୍ୟାଣ ॥
ନିଦ୍ରା ଭାଜନ୍ତେ ଭଗବାନ । କାନ୍ଦି ଲୋଡ଼ନ୍ତି ମାତା ସ୍ତନ ॥
ଗୋଳେ ନ ଶୁଣନ୍ତି ଗୁଆଳୀ । କୃଷ୍ଣ କାନ୍ଦନ୍ତି ପାଦଚାଳି ॥
ଶକଟେ ବାଜିଲା ପୟର । ଶବଦ କଲା ମହାଘୋର ॥
ଖଣ୍ଡା ପଡ଼ିଲା ସର୍ବ ଝଡ଼ି । ଦେଖି ଚକିତ ଗୋପନାରୀ ॥
ମଧୁ ତଇଳ ଘୃତ ଭାଣ୍ଡ । ଭାଜି ହୋଇଲା ଖଣ୍ଡଖଣ୍ଡ ॥
ଶବଦ ଶୁଣି ଗୋପୀ ଧାଇଁ । ମିଳିଲେ ନନ୍ଦ ଘରେ ଯାଇଁ ॥
ଦେଖିଲେ ଯଶୋଦା କୁମର । ପଡ଼ିଛି ଶକଟ ଭିତର ॥
ଆଣି ପୁତ୍ରକୁ କୋଳ କଲେ । ଯେକକୁ ଆରେକ କହିଲେ ॥
କି ଯେ ଆପଦ କାହୁଁ ହୋଇ । ଯେମନ୍ତ ଦେଖିଲାତ ନାହିଁ ॥
ଶକଟ ଭାଜିଲା କେମନ୍ତେ । ବୁଝ ହୋ ଯେହାର ତଦନ୍ତେ ॥
ଯଶୋଦା ଦେବୀ ଭାଗ୍ୟବନ୍ତ । ଭଲା ନ ମଲା ତାର ସୁତ ॥
ବାଳ କୁମରେ ତାହା ଶୁଣି । ବୋଲନ୍ତି ଆମ୍ଭେ ଅଛୁଁ ଜାଣି ॥
ଯଶୋଦା ସୁତ ପାଦଘାତେ । ଶକଟ ଭାଜିଲା ଯୁଗତେ ॥
ଶୁଣି ହସିଲେ ବାଳ ବୋଲ । କୃଷ୍ଣର ନ ଜାଣନ୍ତି ବଳ ॥
ରୋଦନ କରନ୍ତେ ମୁରାରି । ଯଶୋଦା କୋଳେ ଦିଲେ ନାରୀ ॥
ଗ୍ରହ ଶଙ୍କିତେ କଲେ ଭ୍ରାନ୍ତି । ବିପ୍ରଙ୍କୁ ଆଣି ଗ୍ରହଶାନ୍ତି ॥
କରାଇ ପିଆଇଲେ ସ୍ତନ । ଆନନ୍ଦ ଯଶୋଦାର ମନ ॥
ଆନ ଶକଟ-ଘରେ କଲା । ଦ୍ରବ୍ୟ ମାନନ୍ତ ସମ୍ଭାଳିଲା ॥
ବ୍ରାହ୍ମଣେ କଲେ ପଞ୍ଚାମୃତ । ଦେଖିଣ ନନ୍ଦ କୃତ କୃତ ॥
ହରଷ ହୋଇ ଦିଲା ଦାନ । ଧେନୁ କାଞ୍ଚନ ବସ୍ତ୍ର ଅନ୍ନ ॥
ସନ୍ତୋଷ ହୋଇ ବିପ୍ରଗଣେ । କଲ୍ୟାଣ କଲେ ତୋଷମନେ ॥
ଆଚରେ ବିଦ୍ୟାଗୁଣେ ତୋଷ । ପରେ ଯେ ନ କରନ୍ତି ରୋଷ ॥
ଯାହା ବୋଲନ୍ତି ସିଦ୍ଧମାନେ । ଅନ୍ୟଥା ନୁହଇ ବଚନେ ॥
କହନ୍ତି ବ୍ୟାସଙ୍କ ନନ୍ଦନ । ଯେମନ୍ତେ ଗଲା କେତେ ଦିନ ॥
କଂସର ଆଜ୍ଞାରେ ଦଇତ । ଗୋପେ ମିଳିଲା ତୃଣାବର୍ତ୍ତ ॥
ତାହା ଜାଣିଲେ ଦଇତାରି । ଯଶୋଦା କୋଳେ ଛନ୍ତି ଧରି ॥
ବିଚାର କଲେ ଚକ୍ରଧର । ଆଜ ସଂହାରିବି ଅସୁର ॥
ଜନନୀ କୋଳେ ହେଲେ ଗରୁ । ଯେହ୍ନେ ଅଚଳ ମହାମେରୁ ॥
ତକ୍ଷଣେ ଥୋଇଲା ଅବନୀ । ବିଚାର କଲା ଭୟ ଘେନି ॥
ବାଳୁତ ଯେଡ଼େ ଗରୁପଣ । ନପୁଣ ପଡ଼ଇ କଷଣ ॥
ତଳେ ଶୁଆଇ ଗଲାଘର । କରଇ ବ୍ୟାପାର ବେଭାର ॥
କଂସର ଆଜ୍ଞା ପରମାଣେ । ଅସୁର ମିଳିଲା ତକ୍ଷଣେ ॥
ଗଗନେ ଘୋର ନାଦ କରି । ଚକ୍ର ପବନ ରୂପ ଧରି ॥

ଦିବସ କଲା ଅନ୍ଧକାର । ଭୂମି କମ୍ପିଲା ଥରହର ॥
ବୃକ୍ଷେ ପଡ଼ିଲେ ମହୀତଳେ । ଧୂଳି ଉଡ଼ିଲେ ଅନ୍ତରାଳେ ॥
ଚକ୍ଷୁ ବୁଜିଲେ ନରନାରୀ । ଦଇତ କୃଷ୍ଣ ନେଲା ହରି ॥
ଚାହିଁ ନ ପାରି ବେନି ଘଡ଼ି । ଚକ୍ର ପବନ ଗଲା ଉଡ଼ି ॥
ପ୍ରକାଶେ ରବିର କିରଣ । ନିର୍ମଳ ଦିଶିଲା ଗଗନ ॥
ଘରୁ ବାହାର ନନ୍ଦରାଣୀ । ପୁତ୍ରକୁ ଲୋଡ଼ଇ ଧରଣୀ ॥
କୃଷ୍ଣ ନ ଦେଖି ହିଆ କୋଡ଼ି । ଧାମଇଁ ପୁଣ ପୁଣ ଲୋଡ଼ି ॥
ଘର ବାହାର ପୁର ଲାଗେ । ବିକଳେ ଲୋଡ଼େ ଚଉଦିଗେ ॥
ଖୋଜି ନ ପାଇ ବନମାଳୀ । ତା ଶୁଣି ମିଳିଲେ ଗୁଆଳୀ ॥
ଖୋଜନ୍ତି ଘରେ ଘରେ ପଶି । କାହିଁ ପାଇବେ ବ୍ରହ୍ମରାଶି ॥
ନ ଦେଖି ପ୍ରଭୁ ଚକ୍ରପାଣି । ମୋହେ ପଡ଼ିଲା ନନ୍ଦରାଣୀ ॥
ଗୋପୀ ଧାଇଲେ ବେଗେ ଯାଇଁ । ବିଞ୍ଚନ୍ତି ମୁଖେ ନୀର ଦେଇ ॥
ଘଡ଼ିକେ ହୋଇଲା ସଚେତ । ଉଠି ଲୋଡ଼ଇ ନିଜସୁତ ॥
କେଶ ବସନ ଅସମ୍ଭାଳ । ପଡ଼େ ଗୋପୀଙ୍କ ପାଦତଳ ॥
କେ କହୁ ଯଶୋଦାର ଶୋକ । ଗୋପୀଯେ ହୋଇଲେ ନିରେଖ ॥
ବିକଳେ ପଡ଼ଇ ଧରଣୀ । ଗୋପୀ କାନ୍ଦନ୍ତି ତାହା ଶୁଣି ॥
ବିକଳ କେ କରିବ ଅନ୍ତ । ଗୋପୀ ହୋଇଲେ ମୋହଗତ ॥
ତାହା ଜାଣିଲେ ଜଗନ୍ନାଥ । ଆକାଶେ ନେଉଛି ଦଇତ ॥
କୃଷ୍ଣ ଚିନ୍ତନ୍ତି ହୃଦଗତେ । ଅସୁର ମାରିବି କେମନ୍ତେ ॥
ଦାସ ବତ୍ସଳ ନନ୍ଦବଳା । ଧଇଲେ ଅସୁରର ଗଳା ॥
କଣ୍ଠେ ଲମ୍ବିଲେ ବନମାଳୀ । ଅସୁର ନ ପାରିଲା ଚଳି ॥
ବ୍ରହ୍ମାଣ୍ଡ କୋଟି କୋଟି ମାନେ । ବସନ୍ତି ଯାର ରୋମ ମୂଳେ ॥
ଅସୁର ଚଳିବ ତା କାହିଁ । ଭାଳଇ ଚଉଦିଗ ଚାହିଁ ॥
ବାଳୁତ ପୁଅ ଯେଡ଼େ ଗରୁ । ପକାଇ ଦେବି ପଡ଼ି ମରୁ ॥
ଧରିଣ କୃଷ୍ଣ ବାମହସ୍ତେ । କଣ୍ଠ ଚାପିଲେ ଜଗନ୍ନାଥେ ॥
ବେନି ଲୋଚନ ଗଲାଫୁଟି । ପ୍ରାଣ ଛାଡ଼ିଲା ତାଳୁ ଫାଟି ॥
ଶବଦ କଲା ମହାଘୋର । ଶୁଣି କମ୍ପିଲେ ତିନିପୁର ॥
ଅସୁର ଘେନି କୃଷ୍ଣ କରେ । ପଡ଼ିଲେ ଶିଳାର ଉପରେ ॥
ଅସୁର ଦେହ ହେଲା ଚୂର । ଗୋପୀ ଦେଖିଲେ ଶିରୀଧର ॥
ଯମର ଘରୁ ଯେହ୍ନେ ଆସି । ଯେକ ଆରକେ ପରଶଂସି ॥
ଶିଳାରୁ ଘେନି ବନମାଳୀ । ଯଶୋଦା କୋଳେ ଦିଲେ ତୋଳି
ଗୋପୀ ଗୋପାଳ ଆଦି ନନ୍ଦ । କୃଷ୍ଣଙ୍କୁ ପାଇଣ ଆନନ୍ଦ ॥
ଗୋପାଳେ ନନ୍ଦଙ୍କୁ ଅନାଇଁ । ବୋଲନ୍ତି ଭାଗ୍ୟବନ୍ତ ତୁହି ॥
କାଳର ମୁଖୁଁ ଉବୁରିଲା । ପୁତ୍ରକୁ ଗୋବିନ୍ଦ ରଖିଲା ॥

ଶୀତଳ ଯଶୋଦାର କୋଳ । ଆପଦୁଁ ତରିଲା ତୋ ବାଳ ॥
ଅରିଷ୍ଟ ଦେଖି ନନ୍ଦ ମନେ । ମାନଇଁ ମିତ୍ରର ବଚନେ ॥
ଦିନେକ ପୁତ୍ର କୋଳେ ଘେନି । କ୍ଷୀର ପିଆଇ ନନ୍ଦରାଣୀ ॥
ସୁସ୍ୱର ନାଦେ ଗୀତ ଗାଇ । କୃଷ୍ଣର ମୁଖକୁ ଅନାଇଁ ॥
ଦେଖିଣ ଦର୍ପଣ ପରାୟେ । ଭୟେ କମ୍ପଇ ଦେବୀ କାୟେ ॥
ଆକାଶ ଆଦି ଦିଗପାଳ । ଗ୍ରହ ନକ୍ଷତ୍ର ମେଘମାଳ ॥
ସପତ ସିନ୍ଧୁ ଲକ୍ଷେ ଗିରି । ନଦୀ କାନନ ଦିଗ ଚାରି ॥
ସ୍ଥାବର ଆଦି ସର୍ବ ଜନ୍ତୁ । ବିଶ୍ୱ ସଂସାରେ ଯେତେ ହେତୁ ॥
ଦେଖି ଚକିତ ମନେ ଚାହିଁ । ହୃଦେ ଚିନ୍ତଇ ଭାବଗ୍ରାହୀ ॥
ସଭୟେ ପୁତ୍ର କୋଳେ ଘେନି । ଘରେ ପଶିଲା ନନ୍ଦରାଣୀ ॥
ଆନନ୍ଦ କେ ପାରିବ କହି । ଯାହାର ସୁତ ଭାବଗ୍ରାହୀ ॥
ନିଦ୍ରା କରାଇ ହୃଷୀକେଶ । ନମଇଁ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ତୃଣାବର୍ତ୍ତ ମୋକ୍ଷଣେ ନାମ ଅଷ୍ଟମୋଽଧ୍ୟାୟଃ ।*

## ନବମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ଅଭିମନ୍ୟୁ କୁମର । କହନ୍ତି ଶୁକ ମୁନିବର ॥
ଗର୍ଗ ନାମରେ ମୁନି ଖ୍ୟାତ । ଯାଦବ କୁଳେ ପୁରୋହିତ ॥
ଧାର୍ମିକ ପଣେ ସମ ନାହିଁ । ଆଣିଲା ବସୁଦେବ ରାଇ ॥
ବସାଇ ପୂଜିଲା ପୟର । ଯେକାନ୍ତେ ବୋଲଇ ଉତ୍ତର ॥
ଭୋ ମୁନି ନନ୍ଦଘରେ ମୋର । ଅଛନ୍ତି ବେନି ଯେ କୁମର ॥
କଂସର ଡରେ ମୁ ଲୁଚାଇ । ଅଛଇ ତୁମ୍ଭଙ୍କୁ ନ କହି ॥
ଯେବେ ଗୋପକୁ ତୁମ୍ଭେ ଯାଅ । ମୋର ପୁତ୍ରଙ୍କୁ ନାମ ଦିଅ ॥
ଯେହା ଜାଣିବ ଯେକା ନନ୍ଦ । ଆନ ଜାଣିଲେ ବଡ଼ ମନ୍ଦ ॥
ବସୁଦେବର ବୋଲ ଶୁଣି । ଗୋପେ ଚଳିଲେ ଗର୍ଗମୁନି ॥
ସାମ ଗାୟନ କରି ଧୀରେ । ମିଳିଲେ ନନ୍ଦର ମନ୍ଦିରେ ॥
ଦେଖି ଆସନୁ ନନ୍ଦ ଉଠି । ଥୋକାୟେ ଅଇଲା ପାଛୋଟି ॥
ବସାଇ ଚରଣ ପଖାଳି । ପୂଜିଲା ଘେନି ଅର୍ଘ୍ୟସ୍ଥାଳୀ ॥
ଆନନ୍ଦ କରାଇଣ ମନ । ବୋଲଇ ମଧୁର ବଚନ ॥
ଭୋ ମୁନି ହୋଇଲି ନିର୍ମଳ । ଘେନି ତୁମ୍ଭର ପାଦଜଳ ॥
ଭୂତ ଭବିଷ ବର୍ତ୍ତମାନ । ଯେଣେ ତୋହର ଦିବ୍ୟଜ୍ଞାନ ॥
ଅନେକ ପୁଣ୍ୟ କରି ଥିଲି । ତେଣୁ ତୋ ଚରଣ ପୂଜିଲି ।
ଅନ୍ତଃପୁରକୁ ମୁନି ନେଇ । ଯେକାନ୍ତେ କହଇ ବସାଇ ॥
ଶୁଣ ପଣ୍ଡିତ ଚୂଡ଼ାମଣି । ମୋ ଘରେ ଅଛଇ ରୋହିଣୀ ॥
ବସୁଦେବର ଯେ ତନୟେ । ଯେବେ ହୋଇଲା ମୋର ପୋୟେ
ନାମ କରଣ ଆଜ ଦିନ । ଭୋ ମୁନି ହୋଇବା ପ୍ରସନ୍ନ ॥
କ୍ଷତ୍ରିୟ ସ୍ୱଭାବ ଯୁଗତେ । ସଂସ୍କାର କର ବେନିସୁତେ ॥
ମୋ ତହୁଁ ନ ଜାଣିବେ କେହି । ଯେକାନ୍ତେ ମନ୍ଦିରେ ବସାଇ ॥
ମୁନି ବୋଲନ୍ତି ନନ୍ଦ ଚାହିଁ । ଯେ କଥା ମୋତେ ନ ଯୋଗାଇ
ମୁଁ ଯଦୁବଂଶେ ପୁରୋହିତ । ଯେକଥା ଜାଣନ୍ତି ଜଗତ ॥
ତୋହୋର ଘରେ କାର୍ଯ୍ୟକଲେ । କଂସ ଜାଣିବ ତାହା ଭଲେ ॥
ବସୁଦେବର ମିତ୍ର ତୁହି । ଯେବେ ଅମ୍ବିକା ଗଲେ କହି ॥
ଦେବକୀ ଅଷ୍ଟମ ଉଦର । ନିଶ୍ଚୟେ ହୋଇଲା କୁମର ॥
କେ ଅବା ଆସିଅଛି ଥୋଇ । କିମ୍ବା ପ୍ରୋହିତ ନାମ ଦେଇ ॥
ଯେମନ୍ତ ବିଚାରି ଅସୁର । ଘେନାଇ ଯିବ ମଧୁପୁର ॥
ନେଇ ମାରିବ ବେନି ବାଳ । ଯେକଥା ଅନର୍ଥର ମୂଳ ॥
ଶୁଣି ବୋଲଇ ନନ୍ଦରାୟେ । ଭୋମୁନି ନାହିଁ ତୋର ଭୟେ ॥
ତୋ ତହୁଁ ନ ଜାଣିବେ ଆନ । ଯେମନ୍ତ ଅଛି ମୋର ସ୍ଥାନ ॥
କହି କରାଇ ଅବଧାନ । ଆଣିଲା ହୋମର ବିଧାନ ॥
ଦ୍ୱିଜ ବେଭାରେ ଶୁଚିବନ୍ତ । ସଂସ୍କାର କଲେ ବେନିସୁତ ॥
ନନ୍ଦକୁ ବୋଲନ୍ତି ବଚନ । ଶୁଣ ହୋ ପୁତ୍ରଙ୍କର ନାମ ॥
ରୋହିଣୀ ସୁତ ଯେ ସୁନ୍ଦର । ଗୁଣେ ଗଞ୍ଜିବ ସୁରନର ॥
ରାମ ଯେହାର ନାମ ହେଉ । ଦେଖ ଆଜାନୁ ବେନି ବାହୁ ॥
ଗୋବିନ୍ଦ ଆଜ୍ଞା ପାଇ ପୂର୍ବେ । ଦୁର୍ଗା ଆକର୍ଷି ଅଛି ଗର୍ଭେ ॥
ତେଣୁ ଯେ ନାମ ସଂକର୍ଷଣ । ଦେଖ ସ୍ୱରୂପ ବିଚକ୍ଷଣ ॥
ଯେ ଯେ ତୋହର ନିଜସୁତ । ଯେହାର ଗୁଣ ଅପ୍ରମିତ ॥
ଯେ ଯେତେ ଜନ୍ମ ମହୀତଳେ । ମୁହିଁ ଜାଣଇ ଯୋଗବଳେ ॥
ଯୁଗକେ ଅନୁ ଆନ ବର୍ଣ୍ଣ । ଆବର ଯେତେ ଗୁଣ କର୍ମ ॥
ନାମ ଯେହାର ଅଛି ଯେତେ । କହିବି ଶୁଣ ଯେକ ଚିତ୍ତେ ॥
ଶ୍ୱେତ ଶୋଣିତ ପୀତ ଶ୍ୟାମ । ଯୁଗକୁ ଯୁଗ ଅନୁପାମ ॥
ଯେବେ ଯେହାର ନାମ କୃଷ୍ଣ । ଅନେକ ମାରିବ ଯେ ଦୁଷ୍ଟ ॥
ପୂର୍ବେ ଯେ ବସୁଦେବ ଘରେ । ଜନ୍ମିଲା ଦେବକୀ ଉଦରେ ॥
ପିତା ସ୍ୱଭାବେ ବସୁଦେବ । ତେଣୁ ଯେ ନାମ ବାସୁଦେବ ॥
ଯେତେକ ନାମଟି ଯେହାର । ଅଳପ ଜାଣେ ବେଦବର ॥
ଯେହା ଚରଣେ ଆଶ୍ରେ କରି । ପ୍ରାଣୀ ତରିବେ ଭବବାରି ॥
ପ୍ରଥମ ଯୁଗେ ଯେହା ଗୁଣ । ଭୋ ନନ୍ଦ ସାବଧାନେ ଶୁଣ ॥

ବେଣୁ ରାଜାର ଅନ୍ତକାଳେ । ଭୂମି ହୋଇଲା ଖଳବଳେ ॥
ଯେହାର ବଳ ଆଶ୍ରେ କରି । ସୁଖେ ବଞ୍ଚିଲେ ନରନାରୀ ॥
ଯେହାର ନାମେ ଯାର ଭାବ । ସେ ପ୍ରାଣୀ ସଂସାରୁ ତରିବ ॥
ଦେଖ ଯେହାର ବର୍ଣ୍ଣ ଚିହ୍ନ । ପ୍ରତକ୍ଷେ ବିଷ୍ଣୁର ସମାନ ॥
ଯେଣେ ବିଶ୍ୱାସ ନନ୍ଦ କର । ତରିବୁ ଭବ ମହାଘୋର ॥
ଯେମନ୍ତ କହି ନନ୍ଦ ଆଗେ । ମଥୁରା ଗଲେ ମୁନି ବେଗେ ॥
ନନ୍ଦ ସନ୍ତୋଷ ମନେ ଶୁଣି । କୃଷ୍ଣଙ୍କୁ ଘେନିଲା ରୋହିଣୀ ॥
ଯଶୋଦା ରାମ ଘେନି କୋଳେ । ସ୍ତନ ପିଆନ୍ତି ସୁଖ ଭୋଳେ ॥
କେତେ ହେଁ ଦିନ ତହିଁ ଗଲା । ଶୁଣ ହୋ ଶ୍ରୀକୃଷ୍ଣର ଲୀଳା ॥
ଦିନେକ ରାମ ଶିରୀଧର । ମନ୍ଦିରୁ ହୋଇଲେ ବାହାର ॥
ଚାଲନ୍ତି ଆଗେ ଗୁଲୁଗୁଞ୍ଚା । କ୍ଷଣ କ୍ଷଣକେ ପଛଘୁଞ୍ଚା ॥
ଚରଣେ ନୂପୁର ବାଜେଣି । କରେ କଙ୍କଣ କଣ୍ଠେ ମଣି ॥
ମିଳନ୍ତି ଗୋପୀଙ୍କ ଅଗଣା । କର୍ଦ୍ଦମେ ପଡ଼ି ହୋନ୍ତି ବଣା ॥
ଚରଣ ରୁଣୁଝୁଣୁ ନାଦେ । ଗୋବିନ୍ଦ ଖେଳନ୍ତି ଆନନ୍ଦେ ॥
ଦେଖି ଧାମନ୍ତି ବେନି ମାୟେ । ରାମକୃଷ୍ଣର ପଙ୍କ କାୟେ ॥
କାଖେ ବସାଇ ଘରେ ଆଣି । ପଙ୍କ ଧୁଅନ୍ତି ବାସପାଣି ॥
ଝିନ ବସନେ ପୋଛି ଦେହ । କ୍ଷଣ କ୍ଷଣକେ ମାୟା ମୋହ ॥
ବେନି ବାଳକ କୋଳେ ଧରି । ସ୍ତନ ପିଆନ୍ତି ପେଟଭରି ॥
ତୁଣ୍ଡରେ ଦୁଇ ଦୁଇ ଦନ୍ତ । ଦେଖିଣ ଯଶୋଦା ଉସତ ॥
ରୋହିଣୀ ଦେଖିଣ ସାନନ୍ଦ । ପୁତ୍ରଙ୍କୁ କୋଳ କଲା ନନ୍ଦ ॥
ଦିନକୁ ଦିନ ବଳିଆର । ବଢ଼ନ୍ତି ରାମ ଦାମୋଦର ॥
ଅଧିକ ବାଳକର ମେଳେ । ଗୋପୀୟେ କରୁଥାନ୍ତି କୋଳେ ॥
ଖେଳନ୍ତି ଗୃହଦାଣ୍ଡ ରାକ୍ଷେ । ବାଛୁରୀ ମାନଙ୍କର ପଛେ ॥
ଉଠନ୍ତି ବଛାଙ୍କ ଉପରେ । ଧୂଳି ଧୂସର କଳେବରେ ॥
ବଛାୟେ ପଳାବନ୍ତି ଉଠି । ଲାଙ୍ଗୁଡ଼ ଧରନ୍ତି ସାଉଁଟି ॥
ପୁଣି ପଳାନ୍ତେ କରଛାଡ଼ି । ତଳେ ପଡ଼ନ୍ତି ମୁଖମାଡ଼ି ॥
ତୁଣ୍ଡରୁ ଗଳଇ ରୁଧିର । କାନ୍ଦନ୍ତି ବ୍ରହ୍ମାଣ୍ଡ ଠାକୁର ॥
ଘରୁ ବାହାର ହୋଇ ଗୋପୀ । କୃଷ୍ଣଙ୍କୁ ଚାହାନ୍ତି ନିରୋପି ॥
କୋଳ କରନ୍ତି ଧୂଳି ଝାଡ଼ି । ଘରେ ଶୁଆନ୍ତି ବସ୍ତ୍ର ପାଡ଼ି ॥
କ୍ଷଣକେ ହୁଅନ୍ତି ବାହାର । କ୍ଷଣ କ୍ଷଣକେ ଅପସର ॥
ଗୋପୀ ଧରନ୍ତି ଯାଇଁ କୋଳେ । ଚୁମ୍ବନ ଦ୍ୟନ୍ତି କୁତୂହଳେ ॥
ନନ୍ଦର ଘରେ ଦ୍ୟନ୍ତି ନେଇ । କହନ୍ତି ଯଶୋଦାକୁ ଚାହିଁ ॥
ଯେ ତୋର କେବଣ ବିଚାର । ପୁତ୍ର ନ ଥୋଉ କିମ୍ବା ଘର ॥
ଯେକା ବାଳକ ନ ସମ୍ଭାଳୁ । ଆପଦ ପଡ଼ିଲେ ଯେ ଭାଳୁ ॥

ଶୁଣି ଯଶୋଦା କୃଷ୍ଣ ଘେନି । ରାମକୁ ସମ୍ଭାଳେ ରୋହିଣୀ ॥
ଦିନକୁ ଦିନ ଅପ୍ରମିତ । ଘରେ ନ ରହନ୍ତି ଅନନ୍ତ ॥
ଗୋରୁଙ୍କ ଶିଙ୍ଗ ଧରି ନାଚେ । ବୁଲନ୍ତି ଅଗ୍ନି କାଛେ କାଛେ ॥
ଡେରିଲା ଖଣ୍ଡାକୁ ଚାଳନ୍ତି । ଶ୍ୱାନର ତୁଣ୍ଡେ ହସ୍ତ ଦ୍ୟନ୍ତି ॥
ପଡ଼ି ଲୋଟନ୍ତି ଜଳ କୁଣ୍ଡେ । ହସ୍ତ ଭରନ୍ତି ସର୍ପ ତୁଣ୍ଡେ ॥
କଣ୍ଟା ଉପରେ ଗଡ଼ିଯାନ୍ତି । ମଞ୍ଜାରୀ ପୁଅଙ୍କୁ ଧରନ୍ତି ॥
ଖେଳନ୍ତି ଅତି ବଳିଆର । ଗୋକୁଳେ ରାମ ଦାମୋଦର ॥
ନିତ୍ୟେ ପୁତ୍ରଙ୍କୁ ଧରିଆଣି । ଫୁଟନ୍ତି ଯଶୋଦା ରୋହିଣୀ ॥
ବ୍ୟାପର ନ ପାରନ୍ତି କରି । ପୁଣି ଆଣନ୍ତି କୋଳେ ଧରି ॥
ଦଣ୍ଡେ ନ ରହନ୍ତି ମନ୍ଦିରେ । ବୁଲନ୍ତି ଗୋପୀଙ୍କର ଘରେ ॥
ତୁଲ ବୟସୀ ଗୋପବାଳେ । ଖେଳନ୍ତି ରାମକୃଷ୍ଣ ମେଳେ ॥
ଭାଙ୍ଗନ୍ତି କାହା ଘୃତ ଭାଣ୍ଡ । ବସ୍ତ୍ର କରନ୍ତି ଖଣ୍ଡ ଖଣ୍ଡ ॥
କାହାର ପିଆନ୍ତି ବାଛୁରୀ । ଲବଣୀ ଖାନ୍ତି ଚୋରିକରି ॥
କନ୍ଦାନ୍ତି ଦୋଳିର କୁମର । ପାଣି ଢାଳନ୍ତି କା ଉପର ॥
ସହି ନ ପାରି ଗୋପ ଲୋକେ । ମିଳିଲେ ନନ୍ଦ ଘରେ ଥୋକେ
ଗୋପୀ କହନ୍ତି ଆଗ ବଢ଼ି । ଯଶୋଦା ପାଦତଳେ ପଡ଼ି ॥
ସମ୍ଭାଳ ତୋର ଘର ଦ୍ୱାର । ଆମ୍ଭେ ନ ଥିବୁଁ ଗୋପପୁର ॥
ସହିବୁ ଦୋଷ ଆଉ କେତେ । ଶୁଣ କରମ କଲା ଯେତେ ॥
ଜୀବିକା ବୁଡ଼ିଲା ଆମ୍ଭର । ବାଛୁରୀ ମେଲେ ତୋ କୁମର ॥
ଘରେ ନ ଥାଉଁ ଯେତେବେଳେ । ଚୋରି କରଇ ଅବହେଳେ ॥
ଶିକା ଦଉଡ଼ି ଛିନି ଦାନ୍ତେ । ଲବଣୀ ଲେପୁଥାଇ କାନ୍ଥେ ॥
ବସ୍ତ୍ର ଚିରଇ ଘରେ ପଶି । ସିନ୍ଧି ଖୋଳଇ ଲୁଚି ବସି ॥
ଖୋଜିଣ ଦୁଧ ସର ଖାଇ । କାହାର ଭାଣ୍ଡରେ ମୂତଇ ॥
ଖାଇ ନପାରେ ଯାର ଘର । ଭାଣ୍ଡ ଭାଙ୍ଗଇ ତୋ କୁମର ॥
କିଛି ନ ପାଇ ଯାର ଘରେ । ଉଠଇ ଦୋଳିର ଉପରେ ॥
ପୁଅ କନ୍ଦାଇ ପାଦଚାଳି । ଗୋଡ଼ାଇ ଗଲେ ଦେଇ ଗାଳି ॥
ଯେକ ଗୋପୀୟେ କୋପଭରେ । କହଇ ଯଶୋଦା ଆଗରେ ॥
ଯମୁନା ଗଲାବେଳେ ମୋର । ଦ୍ୱାରେ ମଳିଲା ତୋ କୁମର ॥
କପାଟ ଫେଡ଼ିଲା ମୋହୋର । ଘରେ ପଶିଲା ଯେହ୍ନେ ଚୋର ॥
ତା ଦେଖି ବାହୁଡ଼ିଲି ମୁହିଁ । ଜଳା କବାଟି ବାଟେ ଚାହିଁ ॥
ଶିକାରେ ଅଛି ମୋର ସର । ଗମ୍ଭୀରି ବଢ଼ାଇ ଅନ୍ଧାର ॥
କିଛି ନପାଇ ମୋର ଘରେ । ପଶିଲା ଗମ୍ଭୀରି ଭିତରେ ॥
କି ମନ୍ତ୍ର ଜାଣଇଁ ତୋ ପୁଅ । କୋଟିୟେ ସୂର୍ଯ୍ୟ ଯେହ୍ନେ ଦେହ
ଅନ୍ଧାର ଗଲା ମୋର କେଣେ । ପୁଣି ଚାହାଁଇ ଯେଣେ ତେଣେ ॥

ଦେଖିଲା ଶିକା ଅଛି ଉଚ୍ଚେ । ହସ୍ତ ନ ପାଇଲା ସୁସଞ୍ଚେ ॥
ରୋଳ ଆଣିଲା ଧାତିକାରେ । ଉଠିଲା ତଥିର ଉପରେ ॥
ସବୁ ଖାଇଲା ମୋର ସର । ତୁଣ୍ଡ ମୋ ନଇଲା ଉତ୍ତର ॥
ପୁଣି ଗୋପୀଏ ହୋଇ ଆଗେ । କୋପେ କହଇ ବେଗେ ବେଗେ
ତୋ ମାତ ଗଲି ନୀର ଆଣି । ତୋ ସୁତ ଖାଇଲା ଲବଣୀ ॥
ଆସି ହୋଇଲି ବେଗେ ଘରେ । ବସିଛି ପିଢ଼ାର ଉପରେ ॥
ଗୋଇଲା ଗଲୁ ଯେତେବେଳେ । ତୋ ଘରେ ପଶୁଥିଲା ଚୋର ॥
ମୁଁ ଯେବେ ବସିଅଛି ଜଗି । ଖାଇବି ଆନ ଘରେ ମାଗି ॥
ଘରେ ପଶିଲି ବେଗେ ମୁହିଁ । ଚାହିଁଲି ଗଲାକି ପଳାଇ ॥
ପୁଣି ଗୋପୀଏ ଆଗ ସରି । ବୋଲଇ ଶୁଣ ନନ୍ଦନାରୀ ॥
ଦିନେକ ମୋର ଘରେ ଗଲା । କର ଅଞ୍ଜଳି ପ୍ରସାରିଲା ॥
ବୋଇଲା ଫୁଟିଲି ମୁ ପଥେ । ଲବଣୀ ଦିଅ ମୋର ହସ୍ତେ ॥
ହସ୍ତ ପୂରୋଇ ଦିଅ ସର । ତୋ ଘରେ ନ ପଶିବ ଚୋର ॥
ଶୁଣି ଉସତ ହେଲି ମୁହିଁ । ସର ଲୋଚିଏ ଦିଲି ନେଇ ॥
ହସ୍ତ ନ ପୂରିଲା ତାହାର । ବୋଲଇ ଆଣ ଧାତିକାର ॥
ପୁଣି ଥୋକାଏ ଦିଲି ନେଇ । ଦେଖିଲି ହସ୍ତ ନ ପୂରଇ ॥
ଯେତେକ ଘରେ ଥିଲା ମୋର । ଦୁଧ ଲବଣୀ ଘୃତ ସର ॥
ସବୁ ଢାଳିଲି ବେଗେ ନେଇ । ଦେଖିଲି ହସ୍ତ ନ ପୂରଇ ॥
ପାଶ ପଡ଼ିଶା ଯେତେ ଘର । ସବୁ ଆଣିଲେ ଦୁଧସର ॥
ତେବେ ହେଁ କର ନ ପୂରିଲା । ପୁଣି ହିଁ ଆଣଲୋ ବୋଇଲା ॥
ଦେଖି ମୁ ହୋଇଲ ଚକିତ । ଯେକା ଗ୍ରାସକେ କଲା ଗ୍ରସ୍ତ ॥
ହସ୍ତ ବୋଳିଲା ମୋର ମୁଣ୍ଡେ । ପଳାଇଗଲା ଦାଣ୍ଡେ ଦାଣ୍ଡେ ॥
ଗୋପୀଙ୍କ ବୋଲ ଶୁଣି ଶୁଣି । କୋପେ ବୋଲନ୍ତି ନନ୍ଦରାଣୀ ॥
କୃଷ୍ଣର ଧରିଛନ୍ତି କର । ଭୟେ କାନ୍ଦନ୍ତି ଚକ୍ରଧର ॥
ଯଶୋଦା ବୋଇଲେ ଲୋ ଶୁଣ । ଜାଣିଲି ପୁତ୍ର ଦୁଷ୍ଟପଣ ॥
ତୁମ୍ଭର ମଣିଲି ସଦୟେ । ଦିଲଟି ଲବଣୀ ମେଞ୍ଚାଏ ॥
ଯେତେକେ ବୁଡ଼ିଲା ତୋ ଘର । ଭଣ୍ଡିଲ ମୋହୋର ଛାମୁର ॥
ବାଳୁତ ପୁଅ ହସ୍ତେ କାହିଁ । ଶତେ ନଉଠି ନ ଅଣ୍ଟଇ ॥
ଯେ ଛାର ତୁମ୍ଭର ପ୍ରମାଣ । ଯେଥକୁ ସାକ୍ଷ ନାରାୟଣ ॥
ଦାସ ବଚ୍ଛଳ ଭଗବାନ । ଚାହିଁଲେ ଗୋପୀଙ୍କ ବଦନ ॥
ମଉନେ ହୋଇ ହସହସ । ମନ ମୋହିଲେ ହୃଷୀକେଶ ॥
ଯେମନ୍ତେ ପ୍ରଭୁ ପୀତବାସ । ଗୋପୀ ହୋଇଲେ ତାର ବଶ ॥
ତକ୍ଷଣେ ସ୍ନେହଭର ହୋଇ । ଗୋପୀଏ ଯେକୁ ଆରେ ଚାହିଁ ।
ନମିଲେ ଯଶୋଦା ପୟରେ । ହରଷେ ଗଲେ ଯେଝା ଘରେ ॥

ଶୁଣ ପରୀକ୍ଷ ମହୀପାଳ । ବାଳକ ଲୀଳା ନନ୍ଦ ବାଳ ॥
ଦିନେକ ରାମ ବନମାଳୀ । ବାଳକ ମେଳେ ଗଲେ ଖେଳି ॥
ସାନନ୍ଦେ କ୍ରୀଡ଼ାରସେ ଫୁଟି । ତୁଣ୍ଡେ ଭରିଲେ କୃଷ୍ଣ ମାଟି ॥
ରାମ ଧାଇଁଲେ ଦେଖି ଖରେ । କହିଲେ ଯଶୋଦା ଛାମୁରେ ॥
ଶୁଣ ଜନନୀ ମୋ ଉତ୍ତର । ମାଟି ଭକ୍ଷିଲା ତୋ କୁମର ॥
ଯାଇଁ ଧଇଲି ବେନିହସ୍ତ । ମାରଇ ବୋଲି ଭୟ ଚିତ୍ତ ॥
ବେଗେ ମୁ ଛଡ଼ାଇଲି ହସ୍ତ । ମୋ ଅଙ୍ଗେ ମାଇଲା ବହୁତ ॥
ଶୁଣି ଯଶୋଦା ବେଗେ ଧାଇଁ । ଧଇଲେ କୃଷ୍ଣ କର ଯାଇଁ ॥
କୋପ ନୟନେ ଦେବୀ ଚାହେଁ । ଭୟେ କମ୍ପନ୍ତି ଦେବରାୟେ ॥
ଯଶୋଦା କୋପେ ପରଜଳି । ଛାଟ ଉଞ୍ଚାଇ ଦେଇ ଗାଳି ॥
ସର ଲବଣୀ ତୁ ପକାଉ । କାହାର ବୋଲେ ମାଟି ଖାଉ ॥
ଆଜ ମାରିବି ତୋତେ ଘରେ । କହିବି ପିତାର ଆଗରେ ॥
ପୋଏ କହିଲେ ଶୁଣ ମାଏ । ଭକ୍ଷିଲା ମୃତ୍ତିକା ମୁଠାଏ ॥
ଶୁଣି ଯଶୋଦା ପରଜଳି । କୃଷ୍ଣଙ୍କୁ କୋପେ ଦ୍ୟନ୍ତି ଗାଳି ॥
ପଣନ୍ତେ ବାନ୍ଧିଛନ୍ତି ହସ୍ତ । ଭୟେ କମ୍ପନ୍ତି ଗୋପୀନାଥ ॥
ଛାଟ ଆଣିଲା ବେଗ କରି । କାନ୍ଦି କହନ୍ତି ନରହରି ॥
ଯେହାଙ୍କ ଘରେ ମୁ ଗୋ ଯାଇ । ଲବଣୀ ଭକ୍ଷଇ ଚୋରାଇ ॥
ସେ ଘେନି କହୁଛନ୍ତି ମିଛ । ତୁଣ୍ଡ ମୋ ଦେଖ ଗୋ ପ୍ରତ୍ୟକ୍ଷ ॥
ବଳଦେବ ହିଁ ମୋତେ ରୁଷି । ତୋ ଆଗେ କହିଲେ ସେ ଆସି ॥
ମୋ ତୁଣ୍ଡେ ଥିବ ଯେବେ ମାଟି । ତେବେ ହେଁ ସିନା ଛାଟ ପିଟି
ହସ୍ତରୁ ଛାଟ ବେଗେ ପକା । ମାଏ ବୋଇଲେ ତୁଣ୍ଡ ଦେଖା ॥
ଶୁଣି ସାନନ୍ଦ ଚକ୍ରଧର । ବିସ୍ତାରି ଦେଖାନ୍ତି ଅଧର ॥
ତକ୍ଷଣେ ବେନି ପାଟି ଧରି । ତୁଣ୍ଡେ ଚାହିଁଲେ ନନ୍ଦନାରୀ ॥
ଦେଖଇ ଅଶେଷ ବ୍ରହ୍ମାଣ୍ଡ । ଆକାଶ ମହୀ ନବଖଣ୍ଡ ॥
ସ୍ଥଳ ସାଗର ମହୀଧର । ଶଶୀ ନକ୍ଷତ୍ର ଦିବାକର ॥
ଦିଶ ଆକାଶ ଅନ୍ତରାଳ । ଗ୍ରହ ପବନ ମେଘମାଳ ॥
ସ୍ଥାବର ଆଦି ସର୍ବଜନ୍ତୁ । ବିଶ୍ୱ ସଂସାରେ ଯେତେହେତୁ ॥
ନଗ୍ର ପାଟଣା ଗଡ଼ ଗ୍ରାମ । ନଦୀ ପର୍ବତ ଘୋରବନ ॥
ମଥୁରାପୁର ଆଦି କରି । ଗୋପ ନଗର ନର ନାରୀ ॥
ବାଳକମେଳେ ନନ୍ଦଦ୍ୱାରେ । କୃଷ୍ଣଙ୍କୁ ଧରିଛନ୍ତି କରେ ॥
ରୋହିଣୀ ଛନ୍ତି ରାମଘେନି । ସ୍ତୁତି କରନ୍ତି ସୁରମୁନି ॥
ଦେଖି ଚକିତ ନନ୍ଦରାଣୀ । ମୂର୍ଚ୍ଛିତେ ପଡ଼ିଲା ଧରଣୀ ॥
ପୁଣି କ୍ଷଣକେ ପାଇ ଜ୍ଞାନ । ବୋଲଇ ଦେଖିଲି ସ୍ୱପନ ॥
କେଉଁ ଦେବତା ମାୟାକଲା । ମୋହୋର ମନକୁ ମୋହିଲା ॥

କି ଅବା ହୋଇଲଇଁ ବାଇ । ଜ୍ଞାନ ହାରିଲି ଗର୍ଭ ଚାହିଁ ॥
ଜଗତ ଦେଖିଲଇ ଗର୍ଭ । ଯେ କି ଅନାଦି ପଦ୍ମନାଭ ॥
ସିଦ୍ଧ ପୁରୁଷ କିବା ଜାତ । ଯେହାକୁ ବୋଲଇ ମୁ ସୁତ ॥
କିବା ଡାକିନୀ ମାୟାକଳା । ଗର୍ଭେ ତ ଯେମନ୍ତେ ଦିଶିଲା ॥
ନ ପୁଣ ପଡ଼ଇ ଆପଦ । ଶୋକେ ଯଶୋଦା ଗଦଗଦ ॥
ଯେତ ନୁହଇ ଭଲ ଚିହ୍ନ । ମୋହୋର ମନ ଛନଛନ ॥
ଯେତେ ବିଚାରି କଲା ଭୟେ । ମାୟା ମୋହିଲେ ଦେବରାୟେ ॥
ତକ୍ଷଣେ ପୁତ୍ର କଲା କୋଳ । ନମଇଁ ଦଶଦିଗ ପାଳ ॥
ଜୟ ଚଣ୍ଡିକା ଗୋ ମଙ୍ଗଳା । ରଖ ମୋ ଯେକଇର ବଳା ।
ଗଜ ବଦନ କ୍ଷେତ୍ରପାଳ । ପୁତ୍ରକୁ ରଖ ସର୍ବକାଳ ॥
ନମଇଁ ଗୋବିନ୍ଦର ପାୟେ । ରିଷ୍ଟ ଖଣ୍ଡିବା ମୋ ତନୟେ ॥
ଯେମନ୍ତ ବୋଲି କୃଷ୍ଣ ଘେନି । ଘରେ ମିଳିଲା ନନ୍ଦରାଣୀ ॥
ଗୋରଜ କୃଷ୍ଣ ଅଙ୍ଗେ ବୋଳି । ଅନେକ କଲା ନିଉଛାଳି ॥
ଗୋପୀଙ୍କି କଲା ସନମାନ । ବ୍ରାହ୍ମଣେ ଦିଲା ମିଷ୍ଟ ଅନ୍ନ ॥
ସ୍ତନ ପିଆଇ କୋଳେ ଧରି । ନିଦ୍ରା କରାଇଲା ମୁରାରି ॥
ବୋଲେ ପରୀକ୍ଷ ଶୁକ ଚାହିଁ । ତୋହରେ ନିସ୍ତରିଲି ମୁହିଁ ॥
ନନ୍ଦ ଯଶୋଦାଙ୍କର ତପ । ଭୋ ମୁନି କହିବା ସ୍ୱରୂପ ॥
ଯାହାର ନାମ ହୃଦେ ଘେନି । ସଂସାରୁ ତରୁଛନ୍ତି ପ୍ରାଣୀ ॥
ତପେ ବିଧାତା ନ ଦେଖଇ । ଯା ନାମ ଈଶ୍ୱର ଜପଇ ॥
ଦେବେ ନ ଜାଣନ୍ତି ଯାହାକୁ । କେମନ୍ତେ ପ୍ରସନ୍ନ ନନ୍ଦକୁ ॥
ଯଶୋଦା କଲା କେତେ ଭାଗ୍ୟ । ତାହାର କୋଳେ ପଦ୍ମନାଭ ॥
ଗର୍ଭେ ଧଇଲା ଦଶମାସ । ଦେବକୀ ହୋଇଲା ନିରାଶ ॥
କହିବା ମୋତେ ମୁନିବର । ନିର୍ମଳ ହେଉ ମୋ ଶରୀର ॥
ମୁନି କହନ୍ତି ତାହା ଶୁଣି । ହରି ଚରିତ ମନେ ଗୁଣି ॥
ଶୁଣ ରାଜନ କୃଷ୍ଣକଥା । ସୃଷ୍ଟିର ଆଦିକାଳେ ଧାତା ॥
ଅଷ୍ଟବସୁଙ୍କୁ ଜାତ କଲା । ଜଣ ଜଣକେ ନାମ ଦିଲା ॥
ପୁତ୍ରଙ୍କ ମଧ୍ୟେ ସାଧୁ ଧୀର । ଦ୍ରୋଣବସୁ ନାମ ଯାହାର ॥
ପତ୍ନୀର ନାମ ତାର ଧାରା । ତୁଲ ନୁହଇ ଅପସରା ॥
ପୁତ୍ରବଧୂକୁ ରାଇ ଧୀର । ଆଦେଶ ଦିଲା ବେଦବର ॥
ବେଦ ପ୍ରମାଣେ ସୃଷ୍ଟିକର । ସଂସାର ହୋଇବ ତୁମ୍ଭର ॥
ଶୁଣି ଯୋଡ଼ିଲେ ବେନିକର । ମଧୁର କହନ୍ତି ଉତ୍ତର ॥
ବୋଲନ୍ତି ଶିରେ କର ଦେଇ । ଭୋ ତାତ ଯେଣେ କାର୍ଯ୍ୟ ନାହିଁ ॥
ଆମ୍ଭର ଚିତ୍ତ ଅପ୍ରମାଦେ । ଭଗତି ଥିବ କୃଷ୍ଣପାଦେ ॥
ତେବେ କରିବୁଁ ତୋ ବଚନ । ଭୋ ତାତ ହୋଇବା ପ୍ରସନ୍ନ ॥
ସନ୍ତୋଷ ହେଲେ ପ୍ରଜାପତି । ଗୋବିନ୍ଦେ ହେଉ ତୁମ୍ଭ ମତି ॥
ବ୍ରହ୍ମା ଆଦେଶ ଶିରେ ଘେନି । ଜନ୍ମ ହୋଇଲେ ମର୍ତ୍ତ୍ୟଭୂମି ॥
କୃଷ୍ଣଙ୍କୁ ତପବଳେ ପାଇ । ପାଳନ୍ତି ପିତାମାତା ହୋଇ ॥
ଶୁଣ ସୁଜନେ ହରିବାଣୀ । ନିର୍ମଳ ହୁଅ ଯେହାଶୁଣି ॥
ପୁରାଣ ଗୀତବନ୍ଧେ କଲି । ରାମକୃଷ୍ଣର ବାଳ କେଳି ॥
ଯେଥକୁ ହୁଅ ଦୃଢ଼ ଚିତ୍ତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଶ୍ରୀକୃଷ୍ଣ ବାଳକ୍ରୀଡ଼ାୟାଂ ମୃତ୍ତିକାଭକ୍ଷଣେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

### ଶ୍ରୀ ଶୁକଉବାଚ

ନମଇଁ ପ୍ରଭୁ ବନମାଳୀ । ସୁଖ ସାଗର ବାଳ କେଳି ॥
ଦିନେକ ଦେବୀ ଯଶୋବନ୍ତୀ । ସେବକୀମାନେ ହକାରନ୍ତି ॥
ଆସି ମିଳିଲେ ପରିବାରୀ । ନମନ୍ତି ଦେବୀ ପାଦଧରି ॥
ଯଶୋଦା ବୋଲନ୍ତି ଉତ୍ତର । ଘର ବ୍ୟାପାର ତୁମ୍ଭେ କର ॥
ଆଜ ଦଧି ମନ୍ଥିବି ମୁହିଁ । ଲବଣୀ କେତେ ଜାଣିବଇଁ ॥
ଏମନ୍ତ ବୋଲେ ଆଜ୍ଞା ଦିଲେ । ମନ୍ଥନ ଦଣ୍ଡ ଅଣାଇଲେ ॥
ଯୋଶଦା ହୋଇଲେକ ସଜ । ଯାହାର ଦେବ ସୁତରାଜ ॥
ପିନ୍ଧି ସୁରଙ୍ଗ ପାଟ ଶାଢ଼ି । ରତ୍ନ ମେଖଳା ଅଛି ଜଡ଼ି ॥
ପୃଥୁଳ କଟିଭାଗ ଯୁତେ । ସୁବର୍ଣ୍ଣ ଚୁଡ଼ି ବେନି ହସ୍ତେ ॥
ବେନି ସ୍ତନରୁ କ୍ଷୀର ଝରେ । ନୂପୁର ବାଜଇ ପୟରେ ॥
ହୃଦୟେ ହାର କର୍ଣ୍ଣେ କାପ । ଶିରେ ସୀମନ୍ତି ଦିବ୍ୟରୂପ ॥
ଖୁଆ ଦଉଡ଼ି ଧରି କରେ । ବାମ ଦକ୍ଷିଣେ ଟାଣେ ଧୀରେ ॥
ଦଉଡ଼ି ଟାଣିମାର ଘାୟେ । ବସ୍ତ୍ର ନରହେ ଦେବୀ କାୟେ ॥
କବରୀ ଭାର ଫିଟି ତଳେ । ଫୁଲ ପଡ଼ନ୍ତି ମାଳେ ମାଳେ ॥
ହୃଦେ କମ୍ପନ୍ତି ପୟୋଧର । କଙ୍କଣ ନାଦ ବେନି କର ॥
ମୁଖେ ଶୋଭିତ ଶ୍ରମ ଝାଳ । ରଙ୍ଗ ଅଧର ସୁକୋମଳ ॥
ଦଧି ମନ୍ଥଇ ମନ ତୋଷେ । କୃଷ୍ଣ ମିଳିଲେ ତାର ପାଶେ ॥
କ୍ଷୀର ପିଇବା ଆଶେ ହରି । ଜନନୀ ବସ୍ତ୍ର କରେ ଧରି ॥
ଦେଖି ଯଶୋଦା କୋପଭର । ବୋଲନ୍ତି କୃଷ୍ଣଙ୍କୁ ଉତ୍ତର ॥
ଯା ତୁ ନ ଧର ଯେତେବେଳେ । ପଛେ ଘେନିବି ତୋତେ କୋଳେ ॥
ଶୁଣି କାନ୍ଦନ୍ତି ବନମାଳୀ । ଦେଖି ଯଶୋଦା ଦେଇ ଗାଳି ॥
କୃଷ୍ଣଙ୍କୁ କରାବନ୍ତି ତୁନି । ସୁସ୍ୱରେ କଲା ଗୀତ ଧ୍ୱନି ॥

କୋକିଳ ସ୍ୱର ଜିଣି ଗୀତ । ପୁଣି କାନ୍ଦନ୍ତି ଗୋପୀନାଥ ॥
ବାଳୁତ କାଳୁଁ କୃଷ୍ଣ ବାଣୀ । ସୁମରି ଗାଏ ନନ୍ଦରାଣୀ ॥
ତକ୍ଷଣେ ଉଠି ଜଗନ୍ନାଥେ । ଖୁଆ ଧଇଲେ ବାମହସ୍ତେ ॥
ଯଶୋଦା ନ ପାରିଲା ଚାଳି । କୋଳେ ଧଇଲା ବନମାଳୀ ॥
ସ୍ତନ ପିଆଇ ତୋଷ ମନ । ଶ୍ରୀମୁଖେ ଦିଲାକ ଚୁମ୍ବନ ॥
ଚୁଲିରେ ବସିଥିଲା କ୍ଷୀର । ଚାହିଁଲେ ପ୍ରଭୁ ଚକ୍ରଧର ॥
ତକ୍ଷଣେ ପଡ଼ିଲା ଉତୁରି । ଦେଖି ଧାଇଁଲା ନନ୍ଦନାରୀ ॥
କୃଷ୍ଣଙ୍କୁ ପକାଇଲା ତଳେ । ଅଜ୍ଞାନ ମାୟା ମୋହବଳେ ॥
ଧାମଙ୍କ କରେ ଜଳ ଘେନି । ପଡ଼ି କାନ୍ଦନ୍ତି ଅନ୍ତର୍ଯ୍ୟାମୀ ॥
କୋପ ବସିଲା ଚକ୍ରଧର । ଦନ୍ତେ କାମୋଡ଼ିଲେ ଅଧର ॥
ଉଠିଲେ ଭବ ସୁଖ ଦାତା । ଘରୁ ଆଣିଲେ ଶିଳ ପୁତା ॥
ପିଟିଲେ ଦଧିର ଉପର । ଭାଜି ହୋଇଲା ଶତ ଚୂର ॥
ପଳାଇ ଗଲେ ଖର ତରେ । ପଶିଲେ ଗମ୍ଭାରି ଭିତରେ ॥
ଘରେ ଲବଣୀ ଥିଲା ଯେତେ । ସବୁ ଖାଇଲେ ବେନି ହସ୍ତେ ॥
କ୍ଷୀର ଉତାରି ଗୋପବାଳୀ । ପୁଣି ମନ୍ଥନ ସ୍ଥାନେ ମିଳି ॥
ଦେଖି ଚକିତ ଗାଲେ ହସ୍ତ । ଯେଡ଼େ କରମ କଲା ସୁତ ॥
ବାଳୁତ କାଳୁଁ ଯେଡ଼େ କୋପୀ । ସତ କହିଲେ ମୋତେ ଗୋପୀ
ତାହାଙ୍କୁ ନିନ୍ଦିଲି ମୁଁ କୋପେ । ଯେବେତ ବୁଝିଲି ସ୍ୱରୂପେ ॥
ଆଜ କରିବି ପ୍ରତିଫଳ । ଗୋପୀୟେ ପାଡ଼ନ୍ତି ଚହଳ ॥
କହୁଁ କହୁଁ ବଢ଼ିଲା କୋପ । ଯଷ୍ଟି ପ୍ରହାରେ ଯେହ୍ନେ ସର୍ପ ॥
ଛାଟ ଖୋଷିଲା ପଛଭାଗେ । ମିଳିଲା ଗମ୍ଭାରିର ଲାଗେ ॥
ଦ୍ୱାରେ ଚାହାଁଇ ଦେବୀ ଧୀରେ । ଦେଖିଲା ପ୍ରଭୁ ଗଦାଧରେ ॥
ରୋଳ ଉପରେ ଗୋପୀନାଥ । ଶିକା ଧରିଣ ବାମହସ୍ତ ॥
ମଞ୍ଜାରୀ ସାତ ପାଞ୍ଚ ତୁଲେ । ଲବଣୀ ଖାନ୍ତି କୁତୂହଳେ ॥
ଦେଖି ମାତାଙ୍କୁ ଭାବଗ୍ରାହୀ । ରୋଳୁଁ ପଡ଼ିଲେ ବେଗେ ଡେଇଁ ॥
କୃଷ୍ଣ ପଳାନ୍ତି ଭୟ ଘେନି । ପଛେ ଗୋଡ଼ାନ୍ତି ନନ୍ଦରାଣୀ ॥
ଯାହାର ନାହିଁ ଆଦି ଅନ୍ତ । ଧ୍ୟାନେ ଚିନ୍ତନ୍ତି ମୁନି ସନ୍ଥ ॥
ତାହାଙ୍କୁ ପୁତ୍ର ପ୍ରାୟେ ମଣି । ପଛେ ଧାମଙ୍କ ଗୋପାଳୁଣୀ ॥
ପୃଥୁ ନିତମ୍ବ ଗରୁଭରେ । ଗୋଡ଼ାଇ ନ ପାରଇ ଖରେ ॥
ପୁଣି ଗୋଡ଼ାଇ ପୁଣି ଉଠି । ପୟକେ ଉଠି ଘୃମେ ଫୁଟି ॥
କେଶ ଫିଟିଲା ଅସମ୍ଭାଳେ । ଫୁଲେ ପଡ଼ିଲେ ଫିଟିତଳେ ॥
ଯାହାର ଆଦି ଅନ୍ତ ନାହିଁ । ଯଶୋଦା ପାଇବ ତା କାହିଁ ॥
ଲେଉଟି ଚାହେଁ ଆଦିମୂଳ । ଯଶୋଦା ଫୁଟିଣ ବିକଳ ॥
ମନେ ବିଚାରି ଭାବଗ୍ରାହୀ । ମାତା ବିଷୟେ ଦୟାବହି ॥

ଯେବେ ମୁଁ ଯିବଇଁ ପଳାଇ । କେ ମୋତେ ପାରିବ ଗୋଡ଼ାଇ ।
ଯେତେ ବିଚାରି ଦୟାନିଧି । ରଜ୍ଜୁରେ ହୋଇବଇଁ ବାନ୍ଧି ॥
ଦେଖିଣ ଯଶୋଦା ବିକଳ । ରହିଲେ ପ୍ରଭୁ ଆଦିମୂଳ ॥
ଧାଇଁ ଧଇଲା ବେନି କରେ । ଛାଟ ଉଞ୍ଚାଇ କୋପଭରେ ॥
ଭୟେ କାନ୍ଦନ୍ତି ଚକ୍ରଧର । ଚକ୍ଷୁ ଘଷନ୍ତି ବାମ କର ॥
କୃଷ୍ଣ ବିକଳ ଦେଖି ମାତା । ଛାଟ ପକାଇ କଲା ଚିନ୍ତା ॥
ବୋଲଇ ବାନ୍ଧିବି ଯେହାରେ । ବ୍ୟାପାର କରୁଥିବି ଘରେ ॥
ରୋଳେ ଖଟାଇଥିବି ନିତି । ଯେଣେ ନଥିବ ମୋର ଭ୍ରାନ୍ତି ॥
ଯେତେ ବିଚାର ପରିମଳ । ଘରୁ ଆଣିଲା ବେଗେ ରୋଳ ॥
ଦଉଡ଼ି ଘେନି ଅଛି ହସ୍ତେ । ଦେଖି କାନ୍ଦନ୍ତି ଗୋପୀନାଥେ ॥
ଅଣ୍ଟାରେ ଯୋଖିଲାକ ନେଇ । ବେନି ଆଙ୍ଗୁଳ ନ ଅଣ୍ଟଇ ॥
ପୁଣି ଯୋଖିଲା ଖଣ୍ଡଦୁଇ । ବେନି ଆଙ୍ଗୁଳ ନ ଅଣ୍ଟଇ ॥
ଘରେ ଯେତେକ ରଜ୍ଜୁଥିଲା । ସମସ୍ତ ଘରୁ ଅଣାଇଲା ॥
ତାହା ଯୋଖିଲା ବେଗେନେଇ । ଦେଖିଲା ପୁଣି ନ ଅଣ୍ଟଇ ॥
କର ଚରଣ ବେନିଯୋଖି । ଦେଖି ଚକିତ ଗୋପ ଗୋପୀ ॥
ଗୋପୀ ହସନ୍ତି ତାହା ଚାହିଁ । ସମସ୍ତେ ମୁଖେ ବସ୍ତ୍ର ଦେଇ ॥
ଯେକ ଆରେକ କରତାଳି । ମାରନ୍ତି ହୋଇ କୁତୂହଳୀ ॥
ବୋଲନ୍ତି ପରିହାସ ବାଣୀ । ଦଉଡ଼ି ନ ପାରିଲୁ ଆଣି ॥
ରାଣୀ ବୋଲାଉ ଗୋପପୁରେ । ବାନ୍ଧି ନ ପାରିଲୁ କୁମରେ ॥
ଦଉଡ଼ି ନମିଳିଲା ତୋତେ । ବାଳକ ବାନ୍ଧିବୁ କେମନ୍ତେ ॥
ଶୁଣି ଯଶୋଦା ଲାଜ ପାଇ । ରହିଲା ଭୂମିକି ଅନାଇଁ ॥
ଝାଳରେ ହେଲା ଜର ଜର । କାତରେ କମ୍ପଇ ଶରୀର ॥
କେଶ ବସନ ଅସମ୍ଭାଳ । ଖୋଷାରୁ ଖସେ ଫୁଲମାଳ ॥
ଯଶୋଦା ଶ୍ରମ ଦେଖି ହରି । ନିଜ ବନ୍ଧନେ ଦୟାକରି ॥
ତକ୍ଷଣେ ଦଉଡ଼ି ଅଣ୍ଟିଲା । କୃଷ୍ଣଙ୍କୁ ରୋଳେ ସେ ବାନ୍ଧିଲା ॥
ଯେ ହରି ତିନି ପୁର ଛନ୍ତି । ସଂସାରେ ହୋଇଅଛି ବନ୍ଦି ॥
ତାହା ବାନ୍ଧିଲା ନନ୍ଦ ନାରୀ । ପୂର୍ବେ ଅନେକ ତପ କରି ॥
ମାତାକୁ ଯେତେ ଦୟା କଲେ । ବ୍ରହ୍ମା ଶଙ୍କର ନ ପାଇଲେ ॥
କମଳା ସେବେ ପଦ୍ମପାଦ । ସେହି ନ ପାରିଲା ପ୍ରସାଦ ॥
ଭଗତ ଜନେ ଯେତେ ଦୟା । ଜ୍ଞାନୀ ପାଇବେ କାହିଁ ତାହା ॥
ଜନନୀ ବାନ୍ଧିଗଲା ରୋଳେ । ଯାମଳା ଅର୍ଜୁନର ତଳେ ॥
କୃଷ୍ଣ ଚାହିଁଲେ ବୃକ୍ଷ ଦୁଇ । ବିଚାର କଲେ ଭାବଗ୍ରାହୀ ॥
ନାରଦ ତହୁଁ ଶାପ ପାଇ । ଅନେକ କାଳ ଛନ୍ତି ରହି ॥
ସେ ମୁନି ବୋଲିଛନ୍ତି ଯାହା । ଅବଶ୍ୟ କରିବି ମୁ ତାହା ॥

ଯେତେ ବିଚାରି ବନମାଳୀ । ରୋଳ ଟାଣିଲେ ପାଦ ଚାଳି ॥
ମିଳିଲେ ବେନି ବୃକ୍ଷମୂଳେ । ଟେକି ଚାହାନ୍ତି ବେନି ଡୋଳେ ॥
ସେ ହରି ଚରଣ ପଙ୍କଜ । ସୁଜନ ଜନେ ଚିତ୍ତେ ଭଜ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣର ବାଳକ ଚରିତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଦଧିମନ୍ଥନେ ଦାମୋଦର ପ୍ରାଦୁର୍ଭାବେ ନାମ ଦଶମୋଽଧ୍ୟାୟଃ ॥*

## ଯେକାଦଶ ଅଧ୍ୟାୟ

### ପରୀକ୍ଷିତ ଉବାଚ

ଶୁକ ବଚନ ଶୁଣି ରାୟେ । ପଡ଼ଇ ମୁନିଙ୍କର ପାୟେ ॥
ମନ ଆନନ୍ଦେ ନୃପବର । ମୁନିଙ୍କି ବୋଲଇ ଉତ୍ତର ॥
ଭୋ ମୁନି କୁବେର କୁମରେ । ବୃକ୍ଷ ହୋଇଲେ ଗୋପପୁରେ ॥
କି ଦୋଷ କଲେ ନାରଦଙ୍କୁ । ଶାପ ପାଇଲେ କେଉଁ ପାପୁଁ ॥
ତାହାଙ୍କ ଦେହେ ନାହିଁ ରୋଷ। ବିଶେଷ ଗୋବିନ୍ଦର ଦାସ ॥
କେତେ ଅନୀତି ଆଚରିଲେ । ନିର୍ଗୁଣ ମୁନିଙ୍କି ଚାଳିଲେ ॥
ତେଣୁ ହୋଇଲେ ବୃକ୍ଷ ଦୁଇ । ଗୋପ ନଗରେ ବେନି ଭାଇ ॥
ସେ କଥା କହ ମୁନିବର । ନିର୍ମଳ ହେଉ ମୋ ଶରୀର ॥

### ଶ୍ରୀ ଶୁକ ଉବାଚ

ମୁନି କହନ୍ତି ତାହା ଶୁଣି । ହରି ଚରିତ ମନେ ଗୁଣି ॥
ନଳ କୁବେର ମଣିଗ୍ରୀବ । ତପେ ତୋଷିଲେ ସଦାଶିବ ॥
ପ୍ରସନ୍ନ ହୋଇ ଉମାକାନ୍ତ । ବର ଯାଚିଲେ ବିଶ୍ୱନାଥ ॥
ଶୁଣି ସାନନ୍ଦ ବେନି ଭାଇ । କହନ୍ତି ଶିରେ କର ଦେଇ ॥
ଆନ ସମ୍ପଦେ କାର୍ଯ୍ୟ ନାହିଁ । ଶୁଣିମା ତ୍ରୈଲୋକ୍ୟ ଗୋସାଇଁ ॥
ଶତେକ ଯକ୍ଷ ଅପକ୍ଷରୀ । ଆମ୍ଭେ ରମିବୁଁ ଭୋଗ କରି ॥
ଅସ୍ତୁ ବୋଇଲେ ଶୂଳପାଣି । ଦଇବ ମିଳାଇଲା ଆଣି ॥
କନ୍ୟା ଶତେକ ଘେନି ସଙ୍ଗେ। ମିଳିଲେ ଗଙ୍ଗାନଦୀ ଲାଗେ ॥
ଦଇବେ ନିଦାଘର କାଳ । ତେଇଁ ପଡ଼ିଲେ ଗଙ୍ଗାଜଳ ॥
ବାରୁଣୀ ମଦ୍ୟ କଲେ ପାନ । ଭୋଳେ ହୋଇଲେ ହତଜ୍ଞାନ ॥
ବସ୍ତ୍ର ପାଲଟି ବୃକ୍ଷମୂଳେ । କନ୍ୟାଯେ ପଶିଗଲେ ଜଳେ ॥
କରନ୍ତି ନାନାରଙ୍ଗେ କେଳି । ହାସ ପରିହାସ ଉମାଳି ॥
ଯେମନ୍ତ ସମୟେ ନାରଦ । ଯାନ୍ତେ କରନ୍ତି ବୀଣାବାଦ୍ୟ ॥
ଆଶ୍ରମ ନାମେ ବଦରିକା । ତହିଁକି ଯାଉଛନ୍ତି ଯେକା ॥
ହରି ଭଗତି ଧ୍ୟାନ ଲଇ । ନାଚନ୍ତି ବୀଣାବାଦ୍ୟ ବାଇ ॥

କନ୍ୟାଯେ ଦେଖି ମୁନି ବରେ। ବସ୍ତ୍ର ପିନ୍ଧିଲେ ଉଠି ତୀରେ ॥
ଭୟେ କମ୍ପନ୍ତି ଥରହର । ନ ପୁଣ କୋପେ ମୁନିବର ॥
ଲୁଚିଲେ ବୃକ୍ଷଙ୍କର ପଛେ । ନାରଦ ଦେଖନ୍ତି ପ୍ରତ୍ୟକ୍ଷେ ॥
ଜଳେ କ୍ରୀଡ଼ନ୍ତି ବେନି ଭାଇ । ଦେଖିଲେ କନ୍ୟାମାନେ ନାହିଁ ॥
ଭୋଳେ ଚାହାନ୍ତି ଚଉଦିଗେ । ବସ୍ତ୍ର ହିଁ ନାହିଁ କଟି ଭାଗେ ॥
ମଦେ ଅରୁଣ ବେନି ଆଖି । ମୁନିଙ୍କି ଚାହାନ୍ତି ନିରେଖି ॥
ଦେଖି ନାରଦ ମୁନିବର । ବୀଣା ଶବଦ କଲେ ସ୍ଥିର ॥
କୂଳେ ରହିଲେ ଆଡ଼େ ହୋଇ । ଦୟାରେ ବିଚାରନ୍ତି ରହି ॥
ଯେ ବେନି କୁବେର ନନ୍ଦନ । ମଦେ ହୋଇଲେ ଜ୍ଞାନଶୂନ୍ୟ ॥
ଦଇବ କଲା ଯାଙ୍କୁ ନାଶ । ତେଣୁ ହୋଇଲେ ବୁଦ୍ଧି ଧ୍ୱଂସ ॥
ସ୍ୱଭାବେ ରଜଗୁଣ ଛନ୍ଦେ । ଅଜ୍ଞାନ ହେଲେ ମୋହବନ୍ଧେ ॥
କେ ଯେହା ପାରୁ ଆନ କରି । ଯାବତ ଦେହ ଥିବ ଧରି ॥
ବହୁତ ଥାଇ ଯାର ଧନ । ବନ୍ଧୁରେ ଶ୍ରେଷ୍ଠ ସେହୁ ଜନ ॥
ପର ରମଣୀ ଯେହୁ ହରେ । ଯେ ପ୍ରାଣୀ ମଦ୍ୟ ପାନ କରେ ॥
ଜୁଆ ଖେଳନ୍ତି ଭୋଳ ହୋଇ। ଚୋରୀ କରନ୍ତି ଲୋଭ ବହି ॥
ଯେକ ଆରେକ ହିଂସା ବହି । ନରକେ ପଡୁଛନ୍ତି ଯାଇ ॥
ମାଂସ ଭକ୍ଷଣେ ପଶୁମାରେ । ଯେ ଦୟା ଧର୍ମ ନ ବିଚାରେ ॥
ଦେହକୁ ବୋଲନ୍ତି ମୋହୋର। ପାପକୁ ନାହିଁ ଯାର ଡର ॥
ଅଜ୍ଞାନ ମୋହେ ହୋନ୍ତି ହତ । ନରକେ ଥାନ୍ତି ଅବିରତ ॥
ଦେହରୁ ପ୍ରାଣ ଗଲେ ଛାଡ଼ି । ରହଇ ମୃତ ପିଣ୍ଡ ପଡ଼ି ॥
ଭୂ ଦେବ ନର ଦେବ ହେଲେ । ଅନ୍ତେ ଯେ ନାଶ ଲଭେ ଭଲେ ॥
କୃମି ବିଷ୍ଠା ବା ଭସ୍ମ ନାମ । ବହଇ ଯେଥେ ନାହିଁ ଭ୍ରମ ॥
ସେ ଦେହ ପାଇଁ ମାରେ ଜନ୍ତୁ। ଅଜ୍ଞାନ ପଣର ଯେ ହେତୁ ॥
ଜ୍ଞାନୀ ନୁହନ୍ତି ଯେଣେ ଭ୍ରମ । ଜନ୍ମ ମରଣ ପଥଶ୍ରମ ॥
ଯେ ଦେହ ଅଟଇ କାହାର । ମାତା ପିତା ବା ବନ୍ଧୁଙ୍କର ॥
ଅଥବା ବଳ ଅଛି ଯାର । ତାହାର ଯେଥେ ଅଧିକାର ॥
ନିଜର ନୋହେ ଯେହି ଦେହ । ବୁଝିବା ଅଟଇ ସନ୍ଦେହ ॥
ଜନ୍ମି ଅବ୍ୟକ୍ତ ବସ୍ତୁରୁହିଁ । ଲୋପ ହୁଅଇ ପୁଣତହିଁ ॥
ଐଶ୍ୱର୍ଯ୍ୟେ ଭୋଳ ମନ ଯାର । ଦାରିଦ୍ର୍ୟ ତାର ପ୍ରତିକାର ॥
ଦରିଦ୍ର ପଣେ ଦୁଃଖ ପାଇ । ଆତ୍ମାକୁ ଜଗତେ ଦେଖଇ ॥
ସମ ମଣଇ ଦୁଃଖ ସୁଖେ । ସେ ପ୍ରାଣୀ ନାରାୟଣ ରଖେ ॥
କଣ୍ଟା ନ ବହେ ତାର ପାଦେ । ସୁଖେ ବଞ୍ଚଇ ଅପ୍ରମାଦେ ॥
ଦୁଷ୍ଟ ନ ଜାଣେ ପରମାର୍ଥ । ଜନ୍ତୁ ମାରଣେ ସାମରଥ ॥
ଯାହର ଦେହେ କ୍ଷତ ହୋଇ । ସେ ଜାଣେ ଦୁଃଖ ସୁଖ ଦୁଇ ॥

ଯେତେ ବିଚାରି ମୁନିବର । ଚଞ୍ଚଳ ମନ କଲେ ସ୍ଥିର ॥
ବୋଲନ୍ତି ଦୟାଭାବ ଚିତ୍ତେ । ନାଶ ଯେ ଯିବେ ଯେହି ମତେ ॥
ଯେବେ ତରିବେ ବେନିଭାଇ । ଭୋଳ ହୋଇଲେ ମଦ୍ୟଖାଇ ॥
ଦେହକୁ ନ ଜାଣନ୍ତି ଭୋଳେ । ବୃକ୍ଷ ହୋଇବେ ଯେକ ତୁଲେ ॥
କୋପେ ବୋଇଲନ୍ତି ମୁନିବର । ଶୁଣ ହୋ କୁବେର କୁମର ॥
ଅର୍ଜ୍ଜୁନ ବୃକ୍ଷରୂପ ହୋଇ । ଗୋପେ ଜନ୍ମିବ ବେନି ଭାଇ ॥
ଶତେ ବରଷ ଦେବମତେ । କୃଷ୍ଣେ ଭେଟିବ ଶାପଅନ୍ତେ ॥
ଭଗତି ହୋଇ କୃଷ୍ଣପାଦେ । ଶାପୁଁ ତରିବ ଅପ୍ରମାଦେ ॥
ଯେମନ୍ତ ବୋଲି ମୁନିଗଲେ । ସେ ଦିନୁ ବୃକ୍ଷ ଯେ ହୋଇଲେ ॥
ଶୁଣ ରାଜନ ହରିବାଣୀ । ରୋଳ ଟାଣିଲେ ଚକ୍ରପାଣି ॥
ବୃକ୍ଷ ଧଇଲେ ବେନି ହସ୍ତ । ମନେ ଚିନ୍ତନ୍ତି ଗୋପୀନାଥ ॥
ନାରଦ ବଚନ ମୋହର । କରିବା ଉଚିତ ବେଭାର ॥
ଦାସ ବତ୍ସଳ ବ୍ରହ୍ମରାଶି । ବୃକ୍ଷଙ୍କ ମଧ୍ୟେ ଗଲେ ପଶି ॥
ରୋଳ ଲାଗିଲା ବେନି ବୃକ୍ଷେ । ଗୋବିନ୍ଦ ଟାଣିଲେ ପ୍ରତକ୍ଷେ ॥
ଉପୁଡ଼ି ଗଲେ ବେନି ମୂଳେ । ପଡ଼ି କମ୍ପିଲେ ପତ୍ର ଡାଳେ ॥
ଶବଦ ମେଘ ଘଡ଼ଘଡ଼ି । ପଡ଼ିଲେ କୃଷ୍ଣ ଦେହେ ମାଡ଼ି ॥
ଦେହ ଲାଗନ୍ତେ ଭାବଗ୍ରାହୀ । ବାହାର ହେଲେ ବେନିଭାଇ ॥
ରୂପେ କି ଦେବା ପଟାନ୍ତର । ଜିଣନ୍ତି ଶଶୀ ଦିବାକର ॥
କୃଷ୍ଣଙ୍କୁ ଦେଖି ବେନିଭାଇ । ଚରଣେ ଦିଲେ ଶିର ନେଇ ॥
କର ନିବେଶି କୃଷ୍ଣ ପାଦେ । ବୋଲନ୍ତି ଶୋକ ଗଦଗଦେ ॥
କୃଷ୍ଣ ପରମାନନ୍ଦ ହରି । ପରମ ପୁରୁଷ ମୁରାରି ॥
ଲୀଳାୟେ କରି ବିଶ୍ୱମାୟା । ଭଗତ ଜନେ କରୁ ଦୟା ॥
ତୋହର ରୂପ ଗୁଣ ଯେତେ । ବିପ୍ରେ ଜାଣନ୍ତି ବେଦମତେ ॥
ପୃଥିବୀ ଆଦି ପଞ୍ଚ ଭୂତ । ମନ ଇନ୍ଦ୍ରିୟ ଆତ୍ମାତତ୍ତ୍ୱ ॥
କାଳ ସ୍ୱଭାବେ ଜନ୍ମ ମୃତ୍ୟୁ । ଜୀବ ପରମ ଆତ୍ମା ହେତୁ ॥
ଭଗତ ଜନ ନିସ୍ତାରଣେ । ଶରୀର ବହୁ ତୁ କାରଣେ ॥
ନାମ ତୋ ପରମ ମଙ୍ଗଳ । ତ୍ରାହି କରିବା ଆଦିମୂଳ ॥
ଅଷ୍ଟାଙ୍ଗ ଯୋଗ ଧ୍ୟାୟେ କରି । ଯାହା ଚିନ୍ତନ୍ତି ବ୍ରହ୍ମଚାରୀ ॥
ନାରଦ ଭେଟିବାର ଫଳେ । ତୋତେ ଦେଖିଲୁ ଚର୍ମଡୋଳେ ॥
ଚକ୍ଷୁ ଶ୍ରବଣ ବୁଦ୍ଧି ଶିର । ମନ ବଚନ ବେନି କର ॥
ତୋହୋର ପାଦେ ନିତ୍ୟେ ଥାଉ । ତୋ ନାମ ଧରି ଦିନ ଯାଉ ॥
ଅନେକ ଜନ୍ମେ ତପ କରି । ତୋତେ ଦେଖିଲୁ ଦଇତାରି ॥
ତୋର ସେବକ ମିତ୍ର ପଣେ । ଖଟିବୁ ତାହାଙ୍କ ଚରଣେ ॥
ଯେମନ୍ତେ ବେନି କର ଯୋଡ଼ି । ଆଜ୍ଞା ମାଗିଲେ ପାୟେ ପଡ଼ି ॥

ହସି ବୋଲନ୍ତି ଭାବଗ୍ରାହୀ । ସାଧୁଙ୍କ ସଙ୍ଗ ଫଳ ଯେହି ॥
ନାରଦ ଭେଟିବାର ଫଳୁଁ । ହେଲେ ତରିଲେ ଭବ ଜଳୁଁ ॥
ମୋହୋର ପାଦେ ଯାର ମନ । ମୋ ନାମ କରନ୍ତି କୀର୍ତ୍ତନ ॥
ପରେ କରନ୍ତି ଦୟା ଚିତ୍ତ । ମାୟାରେ ନୁହନ୍ତି ମୋହିତ ॥
ଯେହାଙ୍କ ଦର୍ଶନ ଯେ ପାଇ । ପାପ ତାହାଙ୍କୁ ନ ଲାଗଇ ॥
ଶୁଣ ହେ କୁବେର କୁମର । ଆନନ୍ଦ ହୋଇ ଯାଅ ଘର ॥
ଭଗତି ହେଉ ମୋର ପାଦେ । ମୋତେ ପାଇବ ଅପ୍ରମାଦେ ॥
କୃଷ୍ଣ ବଚନ ଶିରେ ଧରି । ଉତ୍ତର ଦିଗେ ଗଲେ ଚଳି ॥
ସେ ହରି ଚରଣେ ବିଶ୍ୱାସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମ ସ୍କନ୍ଧେ*
*ଯାମଳାର୍ଜ୍ଜୁନଭଞ୍ଜନେ ନାମ ଯେକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ
### ଶ୍ରୀ ଶୁକ ଉବାଚ

ହରି ଚରଣେ ଚିତ୍ତ ଦେଇ । ମୁନି ବୋଲନ୍ତି ରାଜା ଚାହିଁ ॥
ଶୁଣ ପରୀକ୍ଷ ମହୀପାଳ । ଗୋପରେ ଶୁଭିଲା ଚହଳ ॥
ଭାଜିଣ ବେନି ବୃକ୍ଷେ ପଡ଼ି । ଶୁଭିଲା ମେଘ ଘଡ଼ଘଡ଼ି ॥
ଭୟେ କମ୍ପିଲେ ଥରହର । ଗୋପାଳେ ହୋଇଲେ ବାହାର ॥
ବୋଲନ୍ତି ଯେକୁ ଆରେ ଚାହିଁ । କି ଯେ ଶବଦ କାହୁଁ ହୋଇ ॥
ନିର୍ଘାତ ଶୁଭିଲାକ ଗୋଳ । ଗଗନେ ନାହିଁ ମେଘମାଳ ॥
କାହୁଁ ଯେ ଶବଦ ଶୁଭିଲା । ଶୁଣିଲେ ଅର୍ଜ୍ଜୁନ ଭାଜିଲା ॥
ଗୋପାଳେ ମିଳିଲେ ସକଳ । ଯାମଳା ଅର୍ଜ୍ଜୁନର ତଳ ॥
ବୋଲନ୍ତି ଭାଜିଲା କେମନ୍ତେ । ପବନ ନାହିଁ ବଳବନ୍ତେ ॥
ଶସ୍ତ୍ରେ ଛେଦିଲା ନାହିଁ କେହି । ଭିତରେ ମଞ୍ଜ ଯେ ନଖାଇ ॥
କିମ୍ବା ପଡ଼ିଲା ମହୀତଳେ । ବେନି ଅର୍ଜ୍ଜୁନ ଯେକାବେଳେ ॥
ଡାଳ ଫେଡ଼ନ୍ତି ଯେକେ ଯେକେ। ଦେଖିଲେ ପଡ଼ିଛି ବାଳକେ ॥
ଚକିତ ହୋଇ କଲେ ଗୋଳ । ବନ୍ଧନ ହୋଇଅଛି ରୋଳ ॥
କେ ନାରୀ କଲା ଯେଡ଼େ କର୍ମ । ଚିହ୍ନିଲେ ଯଶୋଦା ନନ୍ଦନ
ବାଳକେ ବୃକ୍ଷ ତଳେ ଥିଲେ । ଗୋପାଳ ମାନଙ୍କୁ କହିଲେ ॥
ଯଶୋଦା ରୋଳେ ବାନ୍ଧିଗଲା । ତଳେ ତା ପୁତ୍ର କାନ୍ଦୁଥିଲା ॥
ବେନି ବୃକ୍ଷରେ ଗଲା ପଶି । ରୋଳ ଟାଣିଲା ତଳେ ବସି ॥
ବୃକ୍ଷେ ପଡ଼ିଲେ ବେଗେ ଭାଙ୍ଗି । ଯେହାର ଦେହ ଯହୁଁ ଲାଗି ॥
ବେନି ପୁରୁଷ ଯେହି ବୃକ୍ଷେ । ବାହାର ହୋଇଲେ ପ୍ରତ୍ୟକ୍ଷେ ॥

ତେବେ ଗଞ୍ଜନ୍ତି ନିଶାକର । ଯେହାର ପାଦେ ଦେଇ ଶିର ॥
କି କି ବୋଇଲେ ତା ନଜାଣି । ଉତ୍ତରେ ଗଲେ ଯେହିକ୍ଷଣି ॥
ଶୁଣି ହସିଲେ ଗୋପଲୋକେ । ବୋଲନ୍ତି ଯେକକୁ ଆରକେ ॥
ବାଳବଚନ କାହିଁ ସତ । ମାୟା ମୋହିଲେ ଗୋପୀନାଥ ॥
ବନ୍ଧନ କଟୀ ଭାଗୁଁ ଫେଇ । ନନ୍ଦର କୋଳେ ଦିଲେ ନେଇ ॥
ଶୁଣି ମିଳିଲେ ଗୋପନାରୀ । କୃଷ୍ଣଙ୍କୁ ଯାଇ କୋଳ କରି ॥
ଗ୍ରହ ଶଙ୍କିତେ ବ୍ରଜବାଳୀ । କୃଷ୍ଣଙ୍କୁ କଲେ ନିଉଛାଳି ॥
ଆନନ୍ଦ କଲେ ଗୀତ ଗାଇ । କୃଷ୍ଣ ନାଚନ୍ତି ତାଳିବାଇ ॥
ଗୋପୀ ବୋଲନ୍ତି କୃଷ୍ଣ ଶୁଣ । ଘର ଭିତରୁ ଆଣ ମାଣ ॥
ପାଣୋଇ କଠାଉ ମଶୁଣି । ଆଣ ତୁ ଦୁଧର ଦୁହୁଁଣୀ ॥
ଶୁଣି ଗୋବିନ୍ଦ ଘରେ ଯାଇ । ଆଣନ୍ତି କନ୍ଧେ ମୁଣ୍ଡେ ବହି ॥
ଥୋଇ କରନ୍ତି ବାହୁକ୍ଷେପ । ଆହୁରି ଆଣିବଇଁ ଦେଖ ॥
ଭଗତ ଜନଙ୍କର ଫଳ । ଦେଖାଉଛନ୍ତି ଆଦିମୂଳ ॥
ଭଗତ ଜନେ ନିତ୍ୟେ ଦେଖା । ଗୋପେ ଆଇଲା କୋଳି ବିକା ॥
ଡାକଇ କୋଳି କୋଳି ବାଣୀ । କର୍ଣ୍ଣେ ଶୁଣିଲେ ଚକ୍ରପାଣି ॥
ବସନ ନାହିଁ କଟୀଭାଗେ । ମିଳିଲେ ଧାନରାଶି ଲାଗେ ॥
ଧାନ ଅଞ୍ଜଳି ପେଟେ ଦେଇ । ବେଗେ ଧାଇଁଲେ ଭାବଗ୍ରାହୀ ॥
ମିଳିଲେ କୋଳିବିକା ଲାଗେ । ମାଣ ପଡ଼ିଲା ଦେଖି ବେଗେ ॥
କୃଷ୍ଣର ଦୃଷ୍ଟି ଅଛି ଫଳେ । ଧାନ ପଡ଼ିଲା ସବୁ ତଳେ ॥
ତକ୍ଷଣେ ଝାଡ଼ି ବେନି କର । ଅଞ୍ଜଳି କଲେ ଦାମୋଦର ॥
ଫଳ ପୂରୋଇ ଦିଲା କର । ବୋଲନ୍ତି ପ୍ରଭୁ ଚକ୍ରଧର ॥
ଭାଣ୍ଡେ ତୋ ଅଛି କେତେ ଫଳ । ଟେକି ଚାହିଁଲେ ଆଦିମୂଳ ॥
ରତ୍ନ ହୋଇଲା ତତକ୍ଷଣେ । ଗୋବିନ୍ଦ ଆଜ୍ଞା ପରମାଣେ ॥
ଯେବେ ହୋ ଶୁଣ ନରନାଥ । କୃଷ୍ଣର ବାଳକ ଚରିତ ॥
ଗୋକୁଳ ମଧ୍ୟେ ଅଛି ନଦୀ । ବହଇ ବୃନ୍ଦାବନ ଭେଦି ॥
ସେ ନଦୀ ତୀରେ ଯେକ ଦିନେ । ରାମ ଗୋବିନ୍ଦ ତୋଷମନେ ॥
ଗୋପ ବାଳକ ଗଣମେଳେ । ଖେଳନ୍ତି ନାନା କୁତୂହଳେ ॥
ଉଛୁର ଦେଖିଣ ରୋହିଣୀ । ଚଞ୍ଚଳେ ଗଲା ପୁତ୍ରଆଣି ॥
ଡାକନ୍ତି ମଧୁର ବଚନେ । ଗୋବିନ୍ଦ ନ ଶୁଣନ୍ତି କର୍ଣ୍ଣେ ॥
କୋପେ ରୋହିଣୀ ବାହୁଡ଼ିଲା । ଯଶୋଦା ଛାମୁରେ କହିଲା ॥
ଶୁଣି ଯଶୋଦା ଗଲେ ଖରେ । କୃଷ୍ଣ ଦେଖିଲେ ନଦୀ ତୀରେ ॥
ସୁତ ଜନନୀ ମାୟା ମୋହେ । କୁଚ ଯୁଗଳୁ କ୍ଷୀର ବୋହେ ॥
କୃଷ୍ଣ କମଳମୁଖ ଚାହିଁ । ଡାକଇ ଅଙ୍ଗୁଳି ଦେଖାଇ ॥
ଆସ ମୋ ତାତ ପିଅ ସ୍ତନ । ଶ୍ରମେ ଆକୁଳ ତୋ ବଦନ ॥

ଭୋଜନ ହୋଇଲା ଉଛୁର । ଲୁଚି ମୁ ଯାଇ ତୋ ଅଧର ॥
ହେ ରାମ ଆସ କୃଷ୍ଣଘେନି । ବହୁତ ଦେବଇଁ ଲବଣୀ ॥
ପିତା ଭୋଜନ ବେଳ ହୋଇ । ସଙ୍ଗେ ଭୁଞ୍ଜିବ ବେନିଭାଇ ॥
ବାଳକେ ଯାନ୍ତୁ ଯେଝାଘର । ଦେହ ତୋ ଧୂଳିରେ ଧୂସର ॥
ଜନ୍ମ ନକ୍ଷତ୍ର ଆଜତୋର । ବିପ୍ରଙ୍କୁ ଗୋରୁ ଦାନ କର ॥
ଦେଖ ବାଳକେ ତୋର ସଙ୍ଗେ । ବିବିଧ ଅଳଙ୍କାର ଅଙ୍ଗେ ॥
ସ୍ନାନ ଭୋଜନ ବେଗେ କର । ଦେବଇଁ ନାନା ଅଳଙ୍କାର ॥
ଯେମନ୍ତ ବୋଲି ନନ୍ଦରାଣୀ । କରେ ଧଇଲା ଚକ୍ରପାଣି ॥
ରାମକୁ କାଖରେ ବସାଇ । ଘରେ ମିଳିଲା ଦେବୀ ଯାଇ ॥
କରାଇ ସ୍ନାହନ ଭୋଜନ । ରଞ୍ଜିଲା ରାମକୃଷ୍ଣ ମନ ॥
ଅସ୍ତ ହୋଇଲେ ଦିବାକର । ଗୋପାଳେ କରନ୍ତି ବିଚାର ॥
ଯେକ ଆରେକ ଅବହେଳେ । ନନ୍ଦର ଦ୍ୱାରେ ମେଳ ହେଲେ ॥
ବସିଲେ ନନ୍ଦ ଉପନନ୍ଦ । ମଧ୍ୟେ ଅନନ୍ତ ଆଦିକନ୍ଦ ॥
ଗଉଡ଼େ କରନ୍ତି ବିଚାର । ଶୁଭ ନଦେଖୁଁ ଗୋପପୁର ॥
କହ କି କରିବା ଉପାୟେ । ପୁତ୍ରଙ୍କୁ ଉପୁଜିଲା ଭୟେ ॥
ଶୁଣି ଉଠିଲେ ଉପନନ୍ଦ । ଯାହାର ଜୀବନ ଗୋବିନ୍ଦ ॥
ଜ୍ଞାନ ବୟସ ବୃଦ୍ଧପଣେ । ଗୋପଙ୍କୁ କହଇ କାରଣେ ॥
ଶିରେ ଯୋଡ଼ିଲା ବେନିକର । ଯୁଗତେ ବୋଲଇ ଉତ୍ତର ॥
ଚାଲ ନଥିବା ଯେ ନଗରେ । ଘର କରିବା ଆନ ଠାରେ ॥
ଅନେକ ପଡ଼ିଲା ପ୍ରମାଦ । ପୁତ୍ର ସେ ଆମ୍ଭର ସମ୍ପଦ ॥
ଦେଖ ଯଶୋଦା ପୁତ୍ର ସଙ୍ଗେ । ଆମ୍ଭ ବାଳକେ ନାଶ ଯିବେ ॥
ଅଳପ ଦିନେ ବହୁଭୟେ । ଆପଦ ପଡ଼ିଲା ଥୋକାୟେ ॥
ତୋର କୁମର ଦେଖ ନନ୍ଦ । କେତେ ବଞ୍ଚିଲା ପରମାଦ ॥
ପୂତନା ମୁଖୁଁ ଅଛି ତରି । ଶୂନ୍ୟେ ଦଇତ ନେଲା ହରି ॥
ଶକଟ ଉପରେ ପଡ଼ିଲା । ସେ ବେଳେ ଗୋବିନ୍ଦ ରଖିଲା ॥
ଯେବେ ତରିଲା ପରମାଦ । ଯାମଳା ଅର୍ଜ୍ଜୁନ ଆପଦ ॥
ଚାଲ ନଥିବା ଯେ ନଗରେ । ଯଶୋଦା ଥାଉ ଯେକା ଘରେ ॥
ଯେବେ ଯେ ଗ୍ରାମ ନଛାଡ଼ିବ । ଯେକା ପୁତ୍ରକୁ ନପାଇବ ॥
ଚାଲ ଆପଦ ନୋହୁ ଯିବା । ତେବେ ସେ ପୁତ୍ରଙ୍କୁ ପାଇବା ॥
ସକଳେ ଦୃଢ଼ କର ମନେ । ଘର କରିବା ବୃନ୍ଦାବନେ ॥
ବହୁତ ଫଳ କନ୍ଦମୂଳ । ନିର୍ମଳ ଯମୁନାର ଜଳ ॥
ପର୍ବତ ନାମେ ଗୋବର୍ଦ୍ଧନ । ଗୋରୁଙ୍କୁ ଅଛି ଜଳ ତୃଣ ॥
ଗୋପୀ ଗୋପାଳେ ରମ୍ୟ ପାଇ । ବହୁତ କ୍ଷୀର ଦେବେ ଗାଈ ॥
କାଲି ପ୍ରଭାତେ ହୁଅ ସଜ । ଭାର ଶକଟ ବେଗେ ସାଜ ॥

ଗୋଧନ ଚଳିଯାନ୍ତୁ ଆଗେ । ଗୋପୀ ବାଳକ ଧନସଙ୍ଗେ ॥
ଶୁଣି ମଣିଲେ ଗୋପ ହିତ । ନିଜ ଭୁବନେ ଉପଗତ ॥
ଯେଝାର ଘେନି ପରିଚ୍ଛଦ । ଯାନ୍ତେ କରନ୍ତି ଶିଙ୍ଗାନାଦ ॥
ନନ୍ଦ ଯଶୋଦା ଯେକମେଳେ। ରୋହିଣୀ ପୁତ୍ର ଘେନି କୋଳେ ॥
ପଛେ ଚାଲନ୍ତି ଗୋପୀଯୂଥ । ଗାବନ୍ତି ନାନା ରଙ୍ଗେ ଗୀତ ॥
ଶକଟମାନେ ଯାନ୍ତି ଖର । ଧୂଳିରେ ଛନ୍ନ ଦିବାକର ॥
ମିଳିଲେ ବୃନ୍ଦାବନେ ଯାଇ । କୃଷ୍ଣ ଚରିତ ଗୀତଗାଇ ॥
ଗୋପାଳେ ଧନୁଶର ଘେନି । ନାନା ଶବଦେ ବେଣୁ ଧ୍ୱନି ॥
ଯାଇ ଦେଖିଲେ ବୃନ୍ଦାବନ । ଆନନ୍ଦ ଗୋପୀଙ୍କର ମନ ॥
ଯେ ବନେ ବିଜେ ଗୋପୀନାଥ । ସର୍ବଦା ବହଇ ବସନ୍ତ ॥
ସୀମା ଆବୋରି ଗୋପପୁର । ଯେଝାରେ ତୋଳିଲେ ନବର ॥
ଗ୍ରାମର ମଧ୍ୟେ ନନ୍ଦଘର । ଯହିଁ ବିଜୟେ ଚକ୍ରଧର ॥
କୃଷ୍ଣ ଦେଖିଲେ ଗୋବର୍ଦ୍ଧନ । ଯମୁନା ନଦୀ ବୃନ୍ଦାବନ ॥
ଦେଖି ଆନନ୍ଦ ବେନିଭାଇ । ବୋଲନ୍ତି ନନ୍ଦକୁ ବସାଇ ॥
ଯେତେ ଅଛନ୍ତି ବଚ୍ଛା ଘରେ । ଆମ୍ଭେ ରଖିବୁ ନଦୀ ତୀରେ ॥
ଭୋ ତାତ ନାହିଁ ତୁ ନ କର । ବଚ୍ଛା ରଖିବୁ ଆମ୍ଭେ ତୋର ॥
ନନ୍ଦ ଆନନ୍ଦ ମନେ କହି । କାଲିହୁଁ ବଚ୍ଛା ରଖ ନେଇ ॥
ପିତାର ବଚନେ ମୁରାରି । ଆନନ୍ଦେ ଚରାନ୍ତି ବାଛୁରୀ ॥
ଗ୍ରାମ ନିକଟେ ଥାନ୍ତି ନିତ୍ୟେ । ବନେ ନଯାନ୍ତି ଭୟ ଚିତ୍ତେ ॥
ବ୍ୟାଘ୍ର ଭଲ୍ଲୁକ ସିଂହ ତ୍ରାସେ । ବଚ୍ଛା ରଖନ୍ତି ଗ୍ରାମ ପାଶେ ॥
ଗୋପାଳ ପୋୟେ ଥାନ୍ତି ସଙ୍ଗେ । ଖେଳନ୍ତି ନାନା ରଙ୍ଗ ଭଙ୍ଗେ ॥
କ୍ଷଣେକ୍ଷଣକେ ବେଣୁ ନାଦ । କେ କହୁ କୃଷ୍ଣର ଆନନ୍ଦ ॥
ଯେକ ଆରେକ ଭୁଜଧରି । ଯୁଝନ୍ତି ବାହାନାଦ କରି ॥
ବେଲ ଅୟେଁଳା କଣ୍ଟା ହୋଳେ । ତୋଳି ଆଣନ୍ତି ବୃକ୍ଷୁଁ ବାଳେ ॥
ଯେକ ଆରକେ ମରାମରି । ସାକ୍ଷୀ କେ କରନ୍ତି ମୁରାରି ॥
ନାନା ପକ୍ଷୀଙ୍କ ନାଦ ଶୁଣି । ପୋୟେ ନାଚନ୍ତି ତାହା ଭଣି ॥
ଦିନେ ଯମୁନା ତୀରେ ହରି । ଆନନ୍ଦେ ଚରାନ୍ତି ବାଛୁରୀ ॥
କଂସ ଆଦେଶେ ବଚ୍ଛାସୁର । ଆସି ମିଳିଲା ଧାଡିକାର ॥
କୃଷ୍ଣର ମୁଖକୁ ଚାହିଁଲା । ବାଛୁରୀ ରୂପେକ ଧଇଲା ॥
ବଚ୍ଛା ଗହଳେ ପଶିଅଛି । ରାମକୁ ଦେଖାନ୍ତି ଶ୍ରୀବଚ୍ଛି ॥
ଦେଖ ଦଇତ ବଚ୍ଛା ପାଶେ । ଆମ୍ଭଙ୍କୁ ମାରିବାର ଆଶେ ॥
ମାୟା ବାଛୁରୀ ରୂପ ହୋଇ । କହି ହସନ୍ତି ଭାବଗ୍ରାହୀ ॥
ଅସୁର ବିଚାରଇ ମନେ । କୃଷ୍ଣଙ୍କୁ ମାରିବି କେସନେ ॥
ନିକଟେ ମିଳିଲେ ମୋହୋର । ପାଦେ କରିବି ଶତେ ଚୂର ॥

ତାହା ଜାଣିଲେ ନାରାୟଣ । ମୋହିଲେ କୁମାରଙ୍କ ମନ ॥
କଇଥ ବୃକ୍ଷ ଦେଖି ପୋୟେ । ରାମକୁ କହିଲେ ଥୋକାୟେ ॥
ଯେ ଫଳ ଦିଶଇ ସୁସଞ୍ଚ । ହସ୍ତ ନପାଇ ବଡ଼ ଉଚ୍ଚ ॥
ତୁ ରାମ ଅତି ବଳିଆର । ଫଳ ଥୋକାୟେ ଯେଥୁଁ ପାଡ଼ ॥
ଶୁଣି ସାନନ୍ଦ ବନମାଳୀ । ବଚ୍ଛା ନିକଟେ ଯାଇ ମିଳି ॥
ବେନି ଚରଣ ଧରିକରେ । ବୁଲାଇ ପିଟିଲେ ବୃକ୍ଷରେ ॥
କରେ ବୁଲାନ୍ତେ ଗଲାପ୍ରାଣ । ଗୋବିନ୍ଦେ ପଶିଲା ତକ୍ଷଣ ॥
ଦେବେ ଚକିତ ଦେଖି ତାହା । ବ୍ରହ୍ମାଙ୍କୁ ଲାଗିଲା ଉଛାହା ॥
ଅସୁର ଦେହ ଲାଗିକରି । ଫଳ ପଡ଼ିଲେ ସବୁ ଝଡ଼ି ॥
ବାଳକେ ଦେଖିଣ ଚକିତ । ବୋଲନ୍ତି ଧନ୍ୟ ଗୋପୀନାଥ ॥
ଆନନ୍ଦେ ଦେବତାୟେ ତୁଷ୍ଟି । କୃଷ୍ଣଙ୍କୁ କଲେ ପୁଷ୍ପବୃଷ୍ଟି ॥
ଯେମନ୍ତେ ରାମ ବନମାଳୀ । ବଚ୍ଛା ରଖନ୍ତେ ନାନାକେଳି ॥
ସକାଳୁ ଦଧି ଗୁଡ଼ ଅନ୍ନ । ଭୁଞ୍ଜନ୍ତି ରାମ ଭଗବାନ ॥
ନିତ୍ୟେ ଯମୁନା ତୀରେ ଯାଇ । ବଚ୍ଛା ରଖନ୍ତି ବେନିଭାଇ ॥
ବାଳକେ ଯେଝା ବଚ୍ଛା ଘେନି । ଚରାନ୍ତି କରି ବେଣୁ ଧ୍ୱନି ॥
ନିଦାଘ ଘର୍ମ ଜର ଜରେ । ମିଳିଲେ ଯାଇ ନଦୀତୀରେ ॥
ବଚ୍ଛାଙ୍କୁ ପିଆଇ ବହନ । ସକଳେ କଲେ ଜଳପାନ ॥
କଂସର ମିତ୍ର ବକାସୁର । ସଧୀରେ ନିହାରଇ ନୀର ॥
କୃଷ୍ଣଙ୍କୁ ଦେଖି କାମରୂପୀ । କ୍ଷଣକ୍ଷଣକେ ଦେହବ୍ୟାପୀ ॥
ନିଜ ସ୍ୱଭାବେ ମହାକାୟେ । ଦେଖି ଡରିଲେ ଗୋପପୋୟେ ॥
ଯେ ବନେ ଯେଡ଼େ ବକ ଥାଇ। କହନ୍ତି ରାମକୁ ଦେଖାଇ ॥
ଗୋପାଳ ପୋୟେ ପରଶଂସି । ପର୍ବତ ଖଣ୍ଡ ପ୍ରାୟେ ଦିଶି ॥
ତ୍ରାସେ ଉଠିଲେ ଦେଗେ ତୀର । ଦେଖି ଧାଇଁଲା ବକାସୁର ॥
ଘୋର ଶବଦ ବେଗେକଲା । ତକ୍ଷଣେ କୃଷ୍ଣଙ୍କୁ ଗିଳିଲା ॥
କୃଷ୍ଣ ନଦେଖି ଗୋପବାଳେ । ଢଳି ପଡ଼ିଲେ ମହୀତଳେ ॥
ଉଠିଣ କରନ୍ତି ରୋଦନ । ଚକିତେ ଚାହିଁ ଛନଛନ ॥
ବକର ତାଳୁ ମୂଳେ ଥାଇ । ତାହା ଜାଣିଲେ ଭାବଗ୍ରାହୀ ॥
ଦାସ ବଚ୍ଛଳ ନରହରି । ବେଗେ ଅନଳ ରୂପଧରି ॥
ତପତଫାଳ ଯେହ୍ନେ ତେଜ । ତାଳୁ ଦହିଲେ ଦେବରାଜ ॥
ତକ୍ଷଣେ ଘୋର ନାଦ କରି । କୃଷ୍ଣଙ୍କୁ ପକାଇ ଉଦ୍‌ଗାରି ॥
ଧୀରେ ଚାହିଁଲା ବକାସୁର । ପୁଣି ଧାଇଁଲା ରୋଷଭର ॥
କୃଷ୍ଣର ଦେହେ କ୍ଷତ ନାହିଁ । ଅସୁର ମନେ ବିଚାରଇ ॥
ଯେ ବଡ଼ ସୁକୁମାର ପିଣ୍ଡ । ଥଣ୍ଟେ କରିବି ଖଣ୍ଡ ଖଣ୍ଡ ॥
ବିସ୍ତାରି ବେନିପାଟି ତୋଳି । ବେଗେ ଧାଇଁଲା ମହାବଳୀ ॥

ଶୂନ୍ୟେ ଦେଖନ୍ତି ଦେବଗଣ । ଆଗ ହୋଇଲେ ନାରାୟଣ ॥
କରେ ଧଇଲେ ବେନିପାଟି । ଅସୁର ନପାରିଲା ଉଠି ॥
ବାଳକ ମେଳେ ଶିରୀହରି । ଚିରିଲେ ବେନିଫାଳ କରି ॥
ଦେଖି ମିଳିଲେ ସ୍ୱର୍ଗଲୋକେ । କୁସୁମ ବରଷନ୍ତି ଥୋକେ ॥
ଦୁନ୍ଦୁଭି ବାଦ୍ୟ ନାଦ କରି । ରଙ୍ଗେ ନାଚନ୍ତି ଅପସରୀ ॥
ବାଳକେ ଦେଖିଣ ଚକିତ । ମାୟା ମୋହିଲେ ଗୋପୀନାଥ ॥
ତକ୍ଷଣେ ଆଲିଙ୍ଗନ କରି । ଗୋପକୁ ଆଣିଲେ ବାଛୁରୀ ॥
ପୋୟେ କହିଲେ ଯେଝା ଘରେ। ପୁଣି ମିଳିଲେ ନନ୍ଦ ଦ୍ୱାରେ ॥
ବକର ତୁଣ୍ଡୁ ଉବୁରିଲା । ଭାଗ୍ୟ ଯଶୋଦାର ଦିଶିଲା ॥
ଚକିତ ହୋଇ ଗୋପଗୋପୀ । କୃଷ୍ଣଙ୍କୁ ଚାହାନ୍ତି ନିରୋପି ॥
ବୋଲନ୍ତି ଧର୍ମ ତିନିଲୋକେ । ସତ୍ୟ ବେଭାର ଜନମୁଖେ ॥
ନିର୍ଦ୍ଦୋଷୀ ପ୍ରାଣୀ ହିଂସାକରି । ଆପଣେ ଯାଉଛନ୍ତି ମରି ॥
ଯେ ପୋୟେ ବାଳକ ସ୍ୱଭାବ । ଯେହାଙ୍କୁ ହିଂସନ୍ତି ଦାନବ ॥
ତେଣୁ ହୁଅନ୍ତି ମୃତ୍ୟୁସଙ୍ଗ । ଅନଳେ ଯେସନେ ପତଙ୍ଗ ॥
ପଣ୍ଡିତ ଜନଙ୍କର କଥା । କାଳେ ହେଁ ନୁହଇ ଅନ୍ୟଥା ॥
ଯାହା କହିଲେ ଗର୍ଗଋଷି । କୃଷ୍ଣ କଥାକୁ ପରଶଂସି ॥
ସେକଥା ହୋଇଲା ପ୍ରମାଣ । ଯେହାକୁ ରଖେ ନାରାୟଣ ॥
ଆପାଦ ଦେଖି ନନ୍ଦରାୟେ । ଶାନ୍ତି ଯେ କରନ୍ତି ଥୋକାୟେ ॥
ଗୋପେ ଗୋବିନ୍ଦ ଅଙ୍ଗସଙ୍ଗେ। ତରିଲେ ଭବଜଳୁଁ ରଙ୍ଗେ ॥
ସେ ହରି ଚରଣେ ବିଶ୍ୱାସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ବୃନ୍ଦାବନ ଗମନେ ବଛା ବକାସୁର ବଧେ ନାମ ଦ୍ୱାଦଶୋଽଧ୍ୟାୟ ।*

## ତ୍ରୟୋଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସମୁନି ଶିଷ୍ୟ । ଶୁଣ ରାଜନ କୃଷ୍ଣ ରସ ॥
ଗୋପ ନଗରେ ଶିରୀରଙ୍ଗ । ଖେଳନ୍ତି କୁମାରଙ୍କ ସଙ୍ଗ ॥
ଦିନ ହରନ୍ତି ବୃନ୍ଦାବନେ । ଘରେ ମିଳନ୍ତି ରାତ୍ରମାନେ ॥
ଯେମନ୍ତେ ବୃନ୍ଦାବନ କେଳି । ରାମ ଗୋବିନ୍ଦ ବନମାଳୀ ॥
ଦିନେକ ପ୍ରଭୁ ଦେବରାଜା । ରାତ୍ରହୁଁ ଉପେଖିଲେ ଶଯ୍ୟା ॥
ରଜନୀ ଅଛି ବେନିଘଡ଼ି । ନିଦ୍ରା ଉପେଖିଲେ ମୁରାରି ॥
ଜନନୀ ରାଇ ବନମାଳୀ । ପୟରେ କଲେ ନିଉଛାଳି ॥
ଆଜ ନ ଭୁଞ୍ଜିବି ମୁ ଘରେ । ଅନ୍ନ ପୁଡ଼ାୟେ ଦିଅ ମୋରେ ॥
ଦଇବେ ନିଦାଘର କାଳ । ଖରା ଲାଗନ୍ତେ ବହେ ଝାଳ ॥
ଶୀତଳ ବେଳେଁ ଯିବୁ ବନ । ଅନ୍ନ ତୁ ଦିଅ ଗୋ ବହନ ॥
ଶୁଣି ସାନନ୍ଦ ନନ୍ଦରାଣୀ । ଅନ୍ନ ବାଡ଼ିଲେ ଘରୁ ଆଣି ॥
ବେଳ କରଡ଼ି ଲୁଣ ଦଧି । ପୁଡ଼ା ଗୋଟିୟେ ଦିଲେ ବାନ୍ଧି ॥
ଶିକାରେ ଘେନି ଅନ୍ନ ପୁଡ଼ା । ବେତ କାହାଳି ପାଦ ଯୋଡ଼ା ॥
ଛନ୍ଦ ଦଉଡ଼ି କନ୍ଧେ ଘେନି । ଗୋବିନ୍ଦ କଲେ ଶିଙ୍ଗା ଧ୍ୱନି ॥
ଗୋପ କୁମରେ ଥିଲେ ଶୋଇ । କର୍ଣ୍ଣେ ପଶିଲା ନାଦ ଯାଇ ॥
ଯେଝାର ନାମ ଧରି ଡାକି । ବାଳକେ ଶୟନ ଉପେଖି ॥
ନନ୍ଦର ଦ୍ୱାରେ ଯାଇ ମିଳି । ଦେଖିଲେ ପ୍ରଭୁ ବନମାଳୀ ॥
ଦେଖି ବୋଲନ୍ତି ଦେବରାଜ । ଯେହି ସ୍ୱଭାବେ ହୁଅ ସଜ ॥
ଶୁଣି ମିଳିଲେ ଯେଝାଘରେ । ଅନ୍ନ ଘେନିଲେ ବାମକରେ ॥
ବେଣୁ କଠାଉ ଶିଙ୍ଗା ବେତ । ବାଛୁରୀ ଫେଡ଼ିଲେ ସମସ୍ତ ॥
ମୁରଲୀ ବଜାଇ ତୁରିତେ । ବାହାର ହେଲେ ଯେଝାମତେ ॥
ଅନ୍ତ କରିବି କେତେ ମୁହିଁ । ବାଛୁରୀ ଗଣିତା ନ ଯାଇ ॥
ଯେଝାର ବଛା ଯୂଥ ଯୂଥ । ପଛେ ଚାଳନ୍ତି ଗୋପୀନାଥ ॥
ସକଳେ ଯେକଗୁଣ୍ଠ ହୋଇ । ନାଚନ୍ତି ଗାଇ ତୁରୀ ବାଇ ॥
ଖେମଟା ବେଣୁ କରତାଳି । ମଧ୍ୟେ ନାଚନ୍ତି ବନମାଳୀ ॥
ମଣି ମୁକୁତା କର୍ଣ୍ଣଫୁଲ । ନୂପୁର କଙ୍କଣ ଅମୂଲ୍ୟ ॥
କଟୀ ମେଖଳା ରତ୍ନ ଛନ୍ଦି । ଶିରେ ଗୁଞ୍ଜୁରା ମାଳ ବାନ୍ଧି ॥
ମୟୂର ପୁଚ୍ଛ ଚୂଳ ଶିଖ । କର୍ଣ୍ଣେ ଖୋଷିଲେ ନୀଳପୁଷ୍ପ ॥
ରଙ୍ଗ ମୃତ୍ତିକା ଦେହେ ବୋଳି । ପଇତା ଛନ୍ଦେ ପୁଷ୍ପମାଳି ॥
କଙ୍କଣ ନୂପୁର ଶବଦେ । ନାଚନ୍ତି ଯେକୁ ଆରେ ବାଦେ ॥
କେ କାହା ଅନ୍ନ ପୁଡ଼ା ବଳେ। ନେଇ ଲୁଚାନ୍ତି ବୃକ୍ଷତଳେ ॥
କେ କାନ୍ଦି କୃଷ୍ଣଙ୍କୁ କହନ୍ତି । ଆଜ୍ଞା ପ୍ରମାଣେ ଆଣି ଦ୍ୟନ୍ତି ॥
ଯେକ ଆରକେ ପୀଡ଼ କରି । ଗୋଡ଼ାଇ ଛୁଅନ୍ତି ମୁରାରି ॥
କେ କାହା ନାମ ଧରି ବେଗେ । ଦୂରୁ ଡାକନ୍ତି ବେଣୁ ନାଦେ ॥
ଶୁକ କୋକିଳ ନାଦ ଶୁଣି । ଗୋପକୁମରେ ତାହା ଭଣି ॥
ପକ୍ଷୀ ଉଡ଼ନ୍ତେ ଛାୟା ଦେଖି । ଧାମନ୍ତି ବାଛୁରୀ ଉପେଖି ॥
ଦେଖି ମୟୂର ହଂସ ଚାଲି । ପୋୟେ ଚାଲନ୍ତି ପେଲାପେଲି ॥
ବକଙ୍କ ସଙ୍ଗେ ଯାଇ ବସି । ଭେକଙ୍କ ତୁଲେ ଯାନ୍ତି ଭାସି ॥
ବାନର ପୁଅଙ୍କୁ ଧରନ୍ତି । ଖେଳାଇ ପୁଣି ଛାଡ଼ି ଦ୍ୟନ୍ତି ॥
ସେ ଯାଇ ଉଠନ୍ତି ବୃକ୍ଷରେ । ପଲ୍ଲବେ ଲୁଚନ୍ତି କାତରେ ॥
ପୋୟେ କରନ୍ତି ସେହି ମତ । ଡାକନ୍ତି ଆସ ଗୋପୀନାଥ ॥
ଆପଣା ଛାଇ ଦେଖି ଜଳେ । ହସନ୍ତା ନାନା କୁତୂହଳେ ॥

କାନନେ ପ୍ରତିନାଦ ଶୁଣି । ହସନ୍ତି ନାନା ଗାଳି ଭଣି ॥
ଯେମନ୍ତେ ଗୋବିନ୍ଦର ମେଳେ । ବାଳକେ ନାନା କୁତୂହଳେ ॥
ଅନେକ ଜନ୍ମେ ତପ କରି । ନିକଟେ ପାଇଲେ ମୁରାରି ॥
କେ କହୁ ତାହାଙ୍କର ଫଳ । ବେଦ ନ ଜାଣେ ଆଦିମୂଳ ॥
ଅନେକ ଜପ ଯଜ୍ଞ ବନ୍ଦି । ମନ ପବନ ହୃଦେ ଛନ୍ଦି ॥
ଜ୍ଞାନୀ ଚିନ୍ତନ୍ତି ଯୋଗବଳେ । ସେ ଖେଳେ ଗୋପାଳଙ୍କ ମେଳେ ॥
ମନୁଷ୍ୟ ଦେହ ମଞ୍ଚେ ବହି । କେ ପାରୁ ତାଙ୍କ ପୁଣ୍ୟ କହି ॥
ଯାହାର ପାଦରଜ ପାଇ । ଆନନ୍ଦେ ଶଙ୍କର ନାଚଇ ॥
ସେହି ଗୋପାଳ ସଙ୍ଗେ ଜଣେ । ଯା ନାମ ଚାରିବେଦ ଭଣେ ॥
ଯେମନ୍ତେ ଶୁଣ ନରନାଥ । ଅଘା ନାମେଣ ସେ ଦଇତ ॥
କଂସର ମିତ୍ରପଣ ହୋଇ । ମିଳିଲା ବୃନ୍ଦାବନେ ଯାଇ ॥
ବୃକ୍ଷର ଉହାଡ଼େ ରହିଲା । ଗୋପାଳ ପୁଅଙ୍କୁ ଚାହିଁଲା ॥
ମଧ୍ୟେ ଦେଖିଲା ଭଗବାନ । ହୃଦରେ ଶ୍ରୀବତ୍ସର ଚିହ୍ନ ॥
ବୋଲଇ ଯେ ମୋର ବଇରୀ । ବେନି ସୋଦର ଅଛି ମାରି ॥
କଂସକୁ କରିବ ଯେ ନାଶ । ଯାଦବେ ଯେହାର ବିଶ୍ୱାସ ॥
ନିଶ୍ଚୟେ ରିପୁ ଯେ ମୋହର । ମାରିଛି ବେନି ସହୋଦର ॥
ପୂତନା ବହେଣୀ ମୋହୋର । ମୋ ଜ୍ୟେଷ୍ଠ ଭ୍ରାତ ବକାସୁର ॥
ସୋଦରେ ଜଳତିଳ ଦେଇ । ଆଜ ଉଦ୍ଧରିବଇଁ ମୁହିଁ ॥
ଯେତେ ବାଛୁରୀ ଗୋପପୋୟେ । ମୋତେ ଦିଶନ୍ତି ତିଳପ୍ରାୟେ ॥
ଜିହ୍ୱା ମୋହୋର ତମ୍ବାପାତ୍ରି । କୁଶ ହୋଇବ ଦନ୍ତପନ୍ତି ॥
ଖର ନିଶ୍ୱାସ ମନ୍ତ୍ର ସ୍ୱରେ । ତର୍ପଣ କରିବି ଉଦରେ ॥
ଗୋପେ ମିଳିବି ରାତ୍ରେ ଯାଇ । ଗିଳିବି ଯେତେ ଜନ୍ତୁ ଥାଇ ॥
ତେବେ ହୋଇବ ମନ ସ୍ଥିର । ଆକାଶେ ବସିବେ ସୋଦର ॥
ପୁଣି ବିଚାରୁଅଛି ରହି । ଗୋକୁଳେ ମୋର କାର୍ଯ୍ୟ ନାହିଁ ॥
ବାଳକ ବାଛୁରୀ ସଙ୍ଗତେ । ଯେ ବନେ ଗିଳିବି ଯୁଗତେ ॥
ପୁଅଙ୍କୁ ନ ପାଇଲେ ମାୟେ । ଭାଳିଣ ମରିବେ ଥୋକାୟେ ॥
ଯେମନ୍ତେ ସାଧିବି ବଇରୀ । ଗିଳିବି ସର୍ପରୂପ ଧରି ॥
ବିଚାର କଲା ଯେହିମନ୍ତି । ଅସୁର ଅତି ବଳବନ୍ତି ॥
ଯାହାର ନାମେ ଦେବେ ଡରି । ଗଗନେ ପଡୁଥାଇ ହୁରି ॥
ଅମୃତ ଖାନ୍ତି ଦେବଗଣ । ଚିନ୍ତନ୍ତି ଅସୁର ମରଣ ॥
ଯେବେ ମରିବ ଅଘାସୁର । ଆକାଶ ହୋଇବ ନିସ୍ତାର ॥
ବ୍ରହ୍ମା ଡରଇ ନିରନ୍ତରେ । ଶୂନ୍ୟେ କମ୍ପନ୍ତି ସାତପୁରେ ॥
ଅଘାର ନାମେ ଥରହର । ଭୟେ କମ୍ପନ୍ତି ସୁନାଶୀର ॥
ହୋଇଲା ଅଜଗର ରୂପୀ । ବେନି ଯୋଜନ ଦେହବ୍ୟାପି ॥
ପୂର୍ବ ଦିଗକୁ ମୁଖ କଲା । ସ୍ୱଭାବେ ତୁଣ୍ଡ ବିସ୍ତାରିଲା ॥
ଉପର ପାଟି କଲା ମେଘେ । ଅଧର ଓଷ୍ଠ ମହୀଭାଗେ ॥
ଜିହ୍ୱା ବୁଲାଇ ଅନ୍ତରାଳ । ଦନ୍ତ ପର୍ବତ ଶୃଙ୍ଗମାଳ ॥
ତୁଣ୍ଡ ଦିଶଇ ଅନ୍ଧକାର । ବିଷ ପବନ ଖରତର ॥
ପଶ୍ଚିମଦିଗେ ଯାନ୍ତି ଚଳି । ଗୋରୁ ଗୋପାଳ ବନମାଳୀ ॥
ମାୟା ଦଇତ ମୁଖଲାଗେ । ପୋୟେ ମିଳିଲେ ଆସିବେଗେ ॥
ଖର ପବନ ବହେ ଶ୍ୱାସ । ଦେହେ ଲାଗନ୍ତେ ବଡ଼ ତ୍ରାସ ॥
ଚକିତେ ଚଉଦିଗେ ଚାହିଁ । ବୋଲନ୍ତି ଯେକୁ ଆରେ ରହି ॥
କି ଯେ ଭାଜିଲା ଗିରିଖଣ୍ଡ । ବିସ୍ତାର କରିଅଛି ତୁଣ୍ଡ ॥
କେ ବୋଲେ ମେଘ କାମରୂପୀ । ଭୂମି ଗଗନ ଅଛି ବ୍ୟାପି ॥
କେ ବୋଲେ ସର୍ପ ଯେ ସ୍ୱରୂପ । ଅରୁଣ ବେନିପାଟି ଦେଖ ॥
ଆମିଷ ପ୍ରାୟେ ପୂତି ଗନ୍ଧ । ରୁକ୍ଷ ପବନ ମନ୍ଦମନ୍ଦ ॥
କେ ବୋଲେ ପୋଡୁଅଛି ବନ । ଜନ୍ତୁଯେ ହୋଇଲେ ଦହନ ॥
ତେଣୁ ଆମିଷ ଗନ୍ଧ ଦେଖ । ଯେହାକୁ ଭଲେ ହେଁ ନିରେଖ ॥
ବାମ ଦକ୍ଷିଣେ ଜିହ୍ୱା ଚାଳି । ଚାଞ୍ଚିଲା ବାଟ ପ୍ରାୟେ ଝଳି ॥
ଜାଣିଲୁ ସର୍ପ ଯେ ଶରୀର । ମରଣ ହୋଇଲା ଆମ୍ଭର ॥
ଥୋକେ ବୋଲନ୍ତି କିମ୍ପା ଡର । ଆମ୍ଭର କୃଷ୍ଣ ବଳିଆର ॥
ଯେବେ ଯେ ଆମ୍ଭଙ୍କୁ ଗିଳିବ । ବକର ପ୍ରାୟେ ନାଶ ଯିବ ॥
ହସିଲେ କରତାଳି ମାରି । ଆଡ଼େଣ ଅଡ଼ାନ୍ତି ବାଛୁରୀ ॥
କେବୋଲେ ଆଗେ ହୋ ନ ପଶ । ନିକଟେ ନାହିଁ ପୀତବାସ ॥
ଚାହିଁଲେ ହରି ବଡ଼ ଦୂରେ । ଡାକନ୍ତି କୃଷ୍ଣ ଆସ ଖରେ ॥
ଦୂରୁ ଡାକନ୍ତି ଚକ୍ରଧର । ନ ପଶ ସର୍ପର ଉଦର ॥
ବହନ ପଶିଲେ ସକଳେ । ଯେତେ ବାଛୁରୀ ଗୋପବାଳେ ॥
ଡାକନ୍ତି ରହ ରହ ପୋୟେ । କୃଷ୍ଣ ଧାଇଁଲେ ମାୟାମୋହେ ॥
ତୁଣ୍ଡ ନିକଟେ ଚକ୍ରଧର । ଦେଖି ବିଚାରଇ ଅସୁର ॥
ଯେହାର ନାମ ବାସୁଦେବ । ଯେ ସେ କଂସକୁ ସଂହାରିବ ॥
ଗର୍ଭେ ପଶିଲେ ମୋର ଯେତେ । ବଇରୀ ନୁହନ୍ତି ବାଳୁତେ ॥
ଯେ ମୋର ସୋଦର ସଂହାରି । ବିଶେଷେ କଂସର ବଇରୀ ॥
ଗର୍ଭେ ପଶିବ ଯେତେବେଳେ । ପାଟି ପାଡ଼ିବି ଅବହେଳେ ॥
ହରି ଜାଣନ୍ତି ତାର ମନ । ବିଚାର କଲେ ଭଗବାନ ॥
ଯେବେ ନ ପଶିବଇଁ ମୁହିଁ । ବଛା ବାଳକ ମୋର କାହିଁ ॥
ଅସୁର ଉଦର ଅନଳେ । ତୃଣ ପ୍ରାୟେକ ଗୋପବାଳେ ॥
କି ବୁଦ୍ଧି କରିବଇଁ ଆଜ । ହେଳାୟେ ହରାଇବି କାର୍ଯ୍ୟ ॥
କେମନ୍ତେ ମାରିବି ଅସୁର । ବାଳକେ ହୋଇବେ ବାହାର ॥

କୃଷ୍ଣ ଚାହିଁଲେ ସ୍ଥିର ଦୃଷ୍ଟି । ଅସୁର ନ ପାଡ଼ଇ ପାଟି ॥
ଦେବେ ଦେଖନ୍ତି ଶୂନ୍ୟେ ଥାଇ । ତୁଣ୍ଡେ ପଶିଲେ ଭାବଗ୍ରାହୀ ॥
ଦେବେ କରନ୍ତି ହାହାକାର । ପାଟି ପଡ଼ିଲା ଅଘାସୁର ॥
ଅସୁର ହୋଇଲା ଆନନ୍ଦ । ସାଧୁଙ୍କୁ ଲାଗିଲା ବିଷାଦ ॥
ସର୍ପ ଉଦରେ ଭଗବାନ । ଜାଣିଲେ ଦେବତାଙ୍କ ମନ ॥
ଦାସ ବତ୍ସଳ ନନ୍ଦବଳା । ରୁନ୍ଧିଲେ ଦାନବର ଗଳା ॥
ଗିଳି ନ ପାରିଲା ଅନନ୍ତ । ପବନ କଲା ଗର୍ଭଗତ ॥
ପ୍ରାଣ ହୋଇଲା ଛଟପଟ । କୃଷ୍ଣ ରହିଲେ କଣ୍ଠତଟ ॥
ଆକୁଳ ହୋଇ ମହାକାୟେ । କଣ୍ଠେ ବଢ଼ିଲେ ଦେବରାୟେ ॥
ବଢ଼ନ୍ତେ ଗୋବିନ୍ଦ ଶରୀର । ତାଳୁ ଫାଟିଲା ଧାଡିକାର ॥
ପ୍ରାଣ ଗମିଲା ଶୂନ୍ୟପଥେ । କୃଷ୍ଣ ପଶିଲେ ଗର୍ଭଗତେ ॥
ଚାହିଁଲେ ଅମୃତ ନୟନ । ସକଳେ ପାଇଲେ ଜୀବନ ॥
ଉପରେ ଦେଖି ତାଳୁଦ୍ୱାର । ଗୋପାଳେ ହୋଇଲେ ବାହାର ॥
ଆଗେ ବାଛୁରୀ କଲେ ପାରି । ଗର୍ଭେ ରହିଲେ ନରହରି ॥
ଦେଖିଲେ ଗର୍ଭେ କେହି ନାହିଁ । ବାହାର ହେଲେ ଭାବଗ୍ରାହୀ ॥
ଅଘା ଜୀବନ ଶୂନ୍ୟେ ଗଲା । ପୁଣି ଲେଉଟି ଅନାଇଲା ॥
ତଲୁଁ ବାହାର ବ୍ରହ୍ମରାଶି । କଳା ମେଘରୁ ଯେହ୍ନେ ଶଶୀ ॥
ଜୀବନ ଲେଉଟିଲା ବେଗେ । ତେଜ ବିରାଜେ ଦଶଦିଗେ ॥
ସ୍ୱର୍ଗେ ଦେଖନ୍ତି ଦେବତାୟେ । ପଶିଲା ଗୋବିନ୍ଦର ଦେହେ ॥
ଦେଖି ଚକିତ ତିନିପୁର । ଦେବେ କରନ୍ତି ଜୟକାର ॥
କୁସୁମ ବରଷନ୍ତି ଆଣି । ବ୍ରାହ୍ମଣେ ତୋଷେ ସ୍ତୁତି ଭଣି ॥
ନାଚନ୍ତି ଅପକ୍ଷରା ବୃନ୍ଦ । ଗନ୍ଧର୍ବେ ବାଦ୍ୟ ଗୀତ ନାଦ ॥
ଆକାଶେ କଲେ ଜୟେଜୟେ । ଶୁଭିଲା ବ୍ରହ୍ମଲୋକ ଯାଏ ॥
ବ୍ରହ୍ମାର ସମାଧି ଭାଜିଲା । ବିମାନେ ବସି ବିଜେକଲା ॥
କୃଷ୍ଣଙ୍କୁ ଦେଖି ବୃନ୍ଦାବନେ । ସ୍ତୁତି କରଇ ତୋଷମନେ ॥
ହରି ମହିମା ବେଗେ ଦେଖି । ତୋଷେ ବୁଜିଲା ଅଷ୍ଟଆଖି ॥
କୃଷ୍ଣ ମହିମା ମନେ ଗୁଣି । ଚତୁର ମୁଖେ ବେଦଭଣି ॥
ରାଜନ ଶୁଣ ସାବଧାନେ । ସନ୍ଦେହ ନ କର ତୁ ମନେ ॥
ମନୁଷ୍ୟ ଦେହେ ଅବତାର । ପଞ୍ଚବରଷ ଚକ୍ରଧର ॥
ଯେଡ଼େ ଦଇତ ସଂହାରିଲା । ଗୋପ ଗୋବତ୍ସଙ୍କୁ ତାରିଲା ॥
ଯେମନ୍ତ ନ କର ବିଚାର । ଦେହେ ପଶିଲା ଅଘାସୁର ॥
ମିତ୍ର ଅରି ନାହିଁ ଯାର । ଭାବକୁ ଥାଇ ନିକଟର ॥
ଯାହାର ପାଦ ପୂଜାକରି । ହେଲେ ତରନ୍ତି ଭବବାରି ॥
ଗୋପୀ ଗୋପାଳ ତାର ସଙ୍ଗେ । ତରିବେ ଭବଜଳୁ ରଙ୍ଗେ ॥
ଯେ କଥାମାନ କଉତୁକେ । ପୋଏେ କହିଲେ ବରଷକେ ॥
ଆଜ ମାଇଲେ ସର୍ପ ହରି । ଶୁଣି ବିଷାଦ ନରନାରୀ ॥
ଯମୁନାତୀରେ ଅଘା ନାଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଅଘାସୁର ମୋକ୍ଷଣେ ନାମ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଅଘା ଦଇତ ନାଶ ଶୁଣି । ପରୀକ୍ଷ ମନେ ମନେ ଗୁଣି ॥
ହରି ଚରିତ ଅଗୋଚର । ଦେଖି ଚକିତ ବେଦବର ॥
ସନ୍ଦେହ ବାକ୍ୟ ଶୁଣି ରାୟେ । ନମଇଁ ଶୁକ ମୁନି ପାୟେ ॥
ହେ ମୁନି ନିଗୃହୀତ ଚେତା । ହରି ଭଗତେ ବଳବନ୍ତା ॥
ସନ୍ଦେହ ଫେଡ଼ିବା ମୋହୋର । ମାୟାକି କଲେ ଚକ୍ରଧର ॥
ସର୍ପର ଗର୍ଭୁ ଦାମୋଦର । ତାରିଲେ ବାଛୁରୀ କୁମର ॥
ମାତାଙ୍କ ଆଗେ ଗୋପସୁତେ । କହିଲେ ବରଷକ ଅନ୍ତେ ॥
ସର୍ପ ଆମ୍ଭଙ୍କୁ ଗିଳିଥିଲା । ଆଜ ଗୋ ଶ୍ରୀକୃଷ୍ଣ ରଖିଲା ॥
ଯେକଥା ସନ୍ଦେହ ତ ମୋତେ । ଭୋ ମୁନି ନ ଯାଇ ପରତେ ॥
ବରଷେ ଥିଲେ ପୋଏେ କାହିଁ । କିବା ମୋହିଲେ ଭାବଗ୍ରାହୀ ॥
ଯେକଥା ମୋତେ କଉତୁକ । କାହିଁ ବଞ୍ଚିଲେ ବରଷକ ॥
ମୋର ଜୀବନ ଆଜସୁଖ । ତୋ ବାଣୀ ଶୁଣି ଗଲାଦୁଃଖ ॥
କ୍ଷତ୍ରିୟ ଅଂଶେ ମୁହିଁ ଜାତ । ଧନ୍ୟ ମୋହୋର ତାତ ମାତ ॥
ହରି ଚରିତ ସୁଧାଜଳ । ତୋ ମୁଖୁଁ ଗଳୁଛି ନିର୍ମଳ ॥
ସେ ଜଳେ ଧୋଇ ମୋର ଚିତ୍ତ । ମରଣେ ହୋଇବି ନିଶ୍ଚିନ୍ତ ॥
ଶୁଣି ପରୀକ୍ଷବାଣୀ କର୍ଣ୍ଣେ । ମୁନି ବସିଲେ ଯୋଗଧ୍ୟାନେ ॥
ଆନନ୍ଦେ ପୁଲକିତ ହୋଇ । ଗୋବିନ୍ଦ ପାଦେ ଚିତ୍ତ ଦେଇ ॥
ବେନି ଲୋଚନୁ ବହେ ନୀର । ବୋଲନ୍ତି ଶୁଣ ନୃପବର ॥

### ଶ୍ରୀ ଶୁକ ଉବାଚ

ହରି ସେବକ ଶିରୋମଣି । ଶୁଣ ହୋ ଭାଗବତ ବାଣୀ ॥
ସାଧୁଙ୍କ ମଧ୍ୟେ ତୁହି ସାଧୁ । ତରିବୁ ଭବ ପରମାଦୁଁ ॥
ଯେତେ କହିଲି ଭାଗବତ । ତୋଷ ନୋହିଲା ତୋର ଚିତ୍ତ ॥
ସାଧୁ ଜନଙ୍କର ଯେ ଗତି । ଯେସନେ ବିଟପ ଯୁବତୀ ॥
ସ୍ୱାମୀ ସେବାରେ ଥାଇ ମନ । ବିଟପେ କରିଥାଇ ଧ୍ୟାନ ॥
ସଂସାରେ ଥାଇ ଯେ ଯେମନ୍ତ । ନିକଟେ ପାଇ ସେ ଅନନ୍ତ ॥

ଯେବେ ତୁ ଶୁଣ ସ୍ଥିର ହୋଇ । ଭାବ ଲୋକଙ୍କୁ ଯେହା କହି ॥
ମରଣୁ ଚରି ଗୋପବାଳେ । ମିଳିଲେ ଯମୁନାର କୂଳେ ॥
ନିର୍ମଳ ଦେଖି ବାଲିକୁଦ । ଶ୍ରୀକୃଷ୍ଣ ହୋଇଲେ ଆନନ୍ଦ ॥
ଗୋପ କୁମରଙ୍କୁ ଅନାଇଁ । ବୋଇଲନ୍ତି ପ୍ରଭୁ ଭାବଗ୍ରାହୀ ॥
ଦେଖ ସୁସଞ୍ଚ ବାଲିକୁଦ । ଚାହାଁନ୍ତେ କରଇ ଆନନ୍ଦ ॥
ନିର୍ମଳ ବାଲି ନଦୀ ତୀର । ଶୀତଳ ବହଇ ସମୀର ॥
ନାନା କୁସୁମ ଜଳସ୍ଥଳ । ସୁବାସ ଗନ୍ଧ ପରିମଳ ॥
ଶୁକ କୋକିଳ ନାଦ ଘେନି । ଭ୍ରମରେ ମନୋହର ଧ୍ୱନି ॥
ନବ ପଲ୍ଲବ ତରୁଗଣ । ମୟୂର କଣ୍ଠ ନାଦ ଶୁଣ ॥
ଯେଠାରେ ହୁଅ ଯେକ ମେଳ । ବୋଲନ୍ତି ପ୍ରଭୁ ଆଦିମୂଳ ॥
ବଛା କରନ୍ତୁ ଜଳପାନ । ସକଳେ କରିବା ସ୍ନାହାନ ॥
ଦେଖ କୋମଳ ଘାସ ତୀରେ । ବାଛୁରୀ ଚରନ୍ତୁ ସଧୀରେ ॥
ଅନ୍ନ ଭୋଜନ ଆସି କର । ପଞ୍ଚ ପରାଣ ହେଉ ସ୍ଥିର ॥
ମରଣୁ ଉବୁରିଲ ଆଜ । ପେଟ ପୂରାଇ ଅନ୍ନ ଭୁଞ୍ଜ ॥
ବେଳ ହିଁ ହୋଇଲା ଉଛୁର । ଭୋଖେ ମୋ ଦେହ ଥରହର ॥
ତୁମ୍ଭ ମନକୁ ଯୋଗାଇବ । ହସି ବୋଲନ୍ତି ପଦ୍ମନାଭ ॥
କୃଷ୍ଣଙ୍କ ବୋଲ ଶୁଣି ପୋଯେ । ଆନନ୍ଦ ହୋଇଲେ ଥୋକାଯେ ॥
ଚାହିଁଲେ କୃଷ୍ଣଙ୍କୁ ଆନନ୍ଦେ । ଅନ୍ନ ଥୋଇଲେ ବାଲିକୁଦେ ॥
ବଛାଙ୍କୁ ଜଳ ପିଆଇଲେ । କୋମଳ ଘାସେ ଛାଡ଼ିଦିଲେ ॥
ଗୋପଳେ ସାରିଲେ ସ୍ନାହାନ । ସନ୍ତୋଷେ କଲେ ଜଳପାନ ॥
ତୀରେ ଉଠିଲେ ଧାଡିକାରେ । ଅନ୍ନ ଫେଡ଼ିଲେ ଯେ ଯାହାରେ ॥
କେ ବୃକ୍ଷୁଁ ପତ୍ର ତୋଳିଆଣି । ବିଷ୍ଣୁ ସୁମରି ସିଞ୍ଚେ ପାଣି ॥
ପାଷାଣ ଆଣନ୍ତି କେ ଯାଇ । ଅନ୍ନ ବାଢ଼ନ୍ତି ତାହା ଥୋଇ ॥
ବସ୍ତ୍ର ପାଡ଼ନ୍ତି ପୀତ ନୀଳ । କେ ବୃକ୍ଷୁଁ ଆଣନ୍ତି ବକଳ ॥
ଯେ ଯାହା ମତେ ଅନ୍ନ ଫେଇ । କୃଷ୍ଣ ବୋଲନ୍ତି ତାହା ଚାହିଁ ॥
ଅନ୍ନ ଦେଖାଅ ସବୁ ମୋତେ । ବ୍ୟଞ୍ଜନ ଆଣିଅଛ କେତେ ॥
ଶୁଣି ସାନନ୍ଦ ମନେ ପୋଯେ । ମଧ୍ୟେ ବସିଲେ ଦେବରାୟେ ॥
ଯେ ଯାହା ଅନ୍ନପୁଡ଼ା ଫେଡ଼ି । ଦେଖାନ୍ତି ବେନିକର ଯୋଡ଼ି ॥
ଦେଖ ଗୋବିନ୍ଦ ମୋର ଭାତ । ବ୍ୟଞ୍ଜନ ଆଣିଛି ବହୁତ ॥
ବଗଡ଼ା ଭାତ କେ ଆଣିଲା । ବେଲ କରଡ଼ି ଲୁଣ ଅଁଳା ॥
କେ ବୋଲେ ଦଧି ଅନ୍ନ ମୋର । ନିର୍ମଳ ଦେଖ ଚକ୍ରଧର ॥
କେ ବୋଲେ ତୁଚ୍ଛା ଅନ୍ନ ମୋର । ଭୁଞ୍ଜିବି ପଛେ ଗୋଳି ନୀର ॥
ଯେମନ୍ତେ ଅନ୍ନ ଦେଖାଇଲେ । ବେଢ଼ି ଗୋବିନ୍ଦଙ୍କୁ ବସିଲେ ॥
କୃଷ୍ଣର ଗୋଷ୍ଠୀ ପଦ୍ମ ପ୍ରାୟେ । ସ୍ୱର୍ଗେ ଦେଖନ୍ତି ଦେବତାୟେ ॥

ଶ୍ରୀକୃଷ୍ଣ ଭୁଞ୍ଜିବାର ଆଶେ । ତେଣୁ ଖୋଷିଲେ ପୀତବାସେ ॥
କାଖେ ଯାକିଲେ ଶିଙ୍ଗା ବେତ । ଅନ୍ନ ପୁଡ଼ାୟେ ବାମହସ୍ତ ॥
ଅଙ୍ଗୁଳି ସନ୍ଧିରେ ଅର୍ପଣା । ହୃଦେ ଲମ୍ବଇ ବନମାଳା ॥
ବିବିଧ ମତେ ପରିହାସ । ଗୋପ କୁମର ହସହସ ॥
ଯଜ୍ଞ-ଭୋଗତା ବାଳକେଳି । ଦେଖନ୍ତି ସ୍ୱର୍ଗଲୋକେ ମିଳି ॥
ମଧ୍ୟେ ବସାଇ ପୀତବାସ । ବାଳକେ ହୁଅନ୍ତି ହରଷ ॥
ଆନନ୍ଦ ଗୋପାଳଙ୍କ ମନ । ହରଷେ କରନ୍ତି ଭୋଜନ ॥
ବ୍ରହ୍ମା ଯେ ଦେଖୁଥିଲେ ଶୂନ୍ୟେ । ଆସି ମିଳିଲେ ବୃନ୍ଦାବନେ ॥
ଦେଖିଣ ଗୋବିନ୍ଦର ଗତି । ମନେ ଚିନ୍ତଇ ବେଦପତି ॥
ଅଳପ ଦିନେ ଭଗବାନ । ଗୋକୁଳେ ପଡ଼ି ହେଲେ ଭ୍ରମ ॥
ଆତ୍ମାକୁ ନ ଜାଣଇ କିଛି । ଗୋପାଳ-ମେଳେ ଭୁଞ୍ଜୁ ଅଛି ॥
ଯେହାକୁ ମାୟା ମୁଁ କରିବି । ବଛା ବାଳକ ହରି ନେବି ॥
ଦେଖିବି ଯେହାର ବିକଳ । କେମନ୍ତେ ରଖିବ ଗୋକୁଳ ॥
ଯେମନ୍ତ ବିଚାରଇ ବସି । ଅନ୍ନ ଭୁଞ୍ଜନ୍ତି ବ୍ରହ୍ମରାଶି ॥
କୋମଳ ତୃଣ ଚରି ଚରି । ଗହନେ ପଶିଲେ ବାଛୁରୀ ॥
ମାୟାରେ ବ୍ରହ୍ମ ତାହା ହରି । ଥୋଇଲା କମଣ୍ଡଳେ ଭରି ॥
ଗୋପାଳେ ବଛା ନ ଦେଖିଲେ । ଅନ୍ନ ଭୋଜନ ଉପେଖିଲେ ॥
ଚକିତେ ଚଉଦିଗେ ଚାହିଁ । ବୋଲନ୍ତି କୃଷ୍ଣଙ୍କୁ ଅନାଇଁ ॥
ନିକଟେ ବଛା ନ ଦିଶଇ । ଯେଝାରେ ଆଣିବୁଁ ଅଡ଼ାଇ ॥
ଶୁଣି ବୋଲନ୍ତି କୃଷ୍ଣ ହସି । ମୁହିଁ ଆଣିବି ବନେ ପଶି ॥
ସୁଖେ ଭୋଜନ ତୁମ୍ଭେ କର । କହି ଉଠିଲେ ଚକ୍ରଧର ॥
ପଞ୍ଚ ଗରାସ ତୁଣ୍ଡେ ଭରି । ଅନ୍ନ ପୁଡ଼ାୟେ ହସ୍ତେ କରି ॥
ଗିରି କାନନ ନଦୀ ତୀରେ । ଲୋଡ଼ନ୍ତି ଘୁମ ଜରଜରେ ॥
କୃଷ୍ଣ ନଦେଖି ବେଦପତି । ମିଳିଲା କୁମରଙ୍କ କତି ॥
ମାୟାର ବଳେ ଜ୍ଞାନ ହରି । ପୁଅଙ୍କୁ କମଣ୍ଡଳେ ଭରି ॥
ବୃନ୍ଦାବନକୁ ଅନାଇଲା । ନିଜ ଭୁବନେ ବିଜେ କଲା ॥
ବଛା ନପାଇ ବନମାଳୀ । ଭୋଜନ ସ୍ଥାନେ ଯାଇଁମିଳି ॥
ଦେଖିଲେ ଗୋପ ପୋଯେ ନାହିଁ । ଜାଣିଲେ ପ୍ରଭୁ ଭାବଗ୍ରାହୀ ॥
ବିଧାତା ମୋତେ ମାୟା କରି । ବଛା ବାଳକ ନେଲା ହରି ॥
ଗୋପୀ ବ୍ରହ୍ମାଙ୍କ ତୋଷ ପାଇଁ । ଚିତ୍ତେ ବିଚାରି ଭାବଗ୍ରାହୀ ॥
ମାୟା ରଚିଲେ ନରହରି । ବଛା ବାଳକ ରୂପଧରି ॥
ଯେତେ ବାଛୁରୀ ଗୋପ ପୋଯେ । ଜାତ ହୋଇଲେ କୃଷ୍ଣଦେହେ ॥
ଯାହାର ଯେମନ୍ତ ସ୍ୱଭାବ । ମାୟା ଭିଆଣ ପଦ୍ମନାଭ ॥
ବିବିଧ ବର୍ଣ୍ଣେ କାଛ ପିନ୍ଧି । ଗୁଞ୍ଜା ମୟୂର ପୁଚ୍ଛ ବାନ୍ଧି ॥

ବେଣୁ କଠାଉ ଶିଙ୍ଗା ବେତ । ଯାହାର ସ୍ୱରୂପ ଯେମନ୍ତ ॥
କର ପଲ୍ଲବ ଶିକା ଡାଳି । କଣ୍ଠେ ମୁକୁତା ବିଦମାଳି ॥
ବଚନ କହନ୍ତି ଯେମନ୍ତ । ମଧ ବାମନ ଉଚ ସଞ୍ଚ ॥
ଓଁକାରୁ ଯେହ୍ନେ ବେଦ କ୍ଷରି । ସର୍ବ ସ୍ୱରୂପ ନରହରି ॥
ବେଳ ହୋଇଲା ଅସ୍ତକାଳ । ଗୋପେ ମିଳିଲେ ନନ୍ଦବାଳ ॥
ବାଛୁରୀ ରୂପେ ଆଗ ହୋଇ । ଆତ୍ମାକୁ ଆପଣେ ଅଡ଼ାଇ ॥
ପ୍ରବେଶ ଗୋପପୁର ଲାଗେ । ପୋୟେ ନାଚନ୍ତି ନାନାରଙ୍ଗେ ॥
ମୁରଲୀ ଶୁଣି ଗୋପନାରୀ । ପାଛୋଟି ଗଲେ ଆଗ ସରି ॥
ପୁତ୍ରଙ୍କୁ ଦେଖି ସ୍ନେହଭରେ । ହୃଦେ ଚାପିଲେ ତୋଳି କରେ ॥
ଆନନ୍ଦ କେ ପାରିବ କହି । ସ୍ତନ ପିଆନ୍ତି ଚୁମ୍ବ ଦେଇ ॥
ଗୋବତ୍ସ ଗଲେ ଯେଝା ଘରେ । ଗୋପୀ ମିଳିଲେ ନିଜପୁରେ ॥
ପୁତ୍ରଙ୍କୁ ମାଜଣା କରାଇ । ଦଧି ଲବଣୀ ଅନ୍ନ ଦେଇ ॥
ଯେଝାରେ କରାଇ ସ୍ନାହାନ । ଆନନ୍ଦ ଗୋପୀଙ୍କର ମନ ॥
ରାତ୍ରେ ଅଇଲେ ବନୁ ଗାଈ । ହୁଂକାର ନାଦେ ବେଗେ ଧାଇଁ ॥
କୋଳେ ଆବୋରି ବଛା ଲେହି । ସ୍ତନ ପିଆନ୍ତି ସ୍ନେହ ବହି
ଗୋପିନୀ ଜନଙ୍କର ଭାଗ୍ୟ । କୋଳେ ଧଇଲେ ପଦ୍ମନାଭ ॥
ପୂର୍ବେ ଅଛନ୍ତି ତପ କରି । ସ୍ତନ ପିଆନ୍ତି ନରହରି ॥
ଭାଗ୍ୟ କେ କହୁ ତାହାଙ୍କର । ଯାହା ନ ପାଇଲେ ଶଙ୍କର ॥
ଯେକଥା ନ ଜାଣନ୍ତି କେହି । ମାୟା ଭିଆଣ ଭାବଗ୍ରାହୀ ॥
ନିତ୍ୟେ ଚରାନ୍ତି ବଛା ବନେ । ଗୋପେ ମିଳନ୍ତି ରାତ୍ରମାନେ ॥
ଯେମନ୍ତେ ପୂରିଲା ବରଷ । ଶୁଣ ରାଜନ କୃଷ୍ଣରସ ॥
ଦିନେକ ରାମ ଘେନି ସଙ୍ଗେ । ବନେ ମିଳିଲେ ଶିରୀରଙ୍ଗେ ॥
ପର୍ବତ ନାମେ ଗୋବର୍ଦ୍ଧନ । କାଳିନ୍ଦୀ ତୀରେ ଘୋରବନ ॥
ଗୋପ କୁମର ଘେନି ହରି । ସେ ବନେ ଚରାନ୍ତି ବାଛୁରୀ ॥
ପର୍ବତେ ଗାଈ ଚରୁଥିଲେ । ତଳେ ବଛାଙ୍କୁ ଅନାଇଲେ ॥
ଦେଖି ଧାଇଁଲେ ଅତି ଖରେ । ତଳେ ମିଳିଲେ ସ୍ନେହଭରେ ॥
ସ୍ତନ ପିଆନ୍ତି ଦେହ ଲେହି । ହୁଂକାର ନାଦେ ସର୍ବ ଗାଈ ॥
ଗୋପାଳେ ଥିଲେ ଗିରି ଶିଖେ । ତଳେ ମିଳିଲେ ଅତି ଦୁଃଖେ ॥
ନିଜ ବାଳକ ଦେଖି ତଳେ । ସ୍ନେହ କରନ୍ତି କାଖକୋଳେ ॥
ଚୁମ୍ବନ ଦେଇ ହୃଦେ ଚାପି । ସ୍ନେହେ ବୁଜିଲେ ବେନି ଆଖି ॥
ଗୋରୁ ଗୋପୀଙ୍କ ସ୍ନେହଭର । ଦେଖନ୍ତି ରୋହିଣୀ କୁମର ॥
ବୋଲନ୍ତି ବୃକ୍ଷ ତଳେ ରହି । ଯେମନ୍ତ ଦେଖିଲାତ ନାହିଁ ॥
ପୂର୍ବହୁଁ ସ୍ନେହ ଅତି ଅନ୍ତ । ଯେକଥା ବୁଝିବା କେମନ୍ତ ॥
ରାମ ଚାହିଁଲେ ଯୋଗବଳେ । ଯେତେ ବାଛୁରୀ ଗୋପବାଳେ ॥
ଦିଶନ୍ତି ଚାରି ଚାରି ଭୁଜ । କୋଟିୟେ କାମ ଜିଣି ତେଜ ॥
ପୀତ ବସନ କଟୀ ମାଝେ । ମଣି କୁଣ୍ଡଳ ରବି ଗଞ୍ଜେ ॥
ଦେଖି ଚକିତ ହଳଧର । କୃଷ୍ଣଙ୍କୁ କହନ୍ତି ମଧୁର ॥
ଦେବତା ଋଷି ଯେ ନୁହନ୍ତି । ତୋହୋର ପ୍ରାୟେତ ଦିଶନ୍ତି ॥
ନିଜ ବାଳକ ବଛାକ କାହିଁ । ତୋ ତହୁଁ ଆନ ନ ଦିଶଇ ॥
ମାୟା କି କରିଅଛୁ ମୋତେ । କେମନ୍ତେ ଯିବଙ୍କ ପରତେ ॥
ହସି ବୋଲନ୍ତି ନନ୍ଦବଳା । ବ୍ରହ୍ମା କଷଣ ମୋତେ କଲା ॥
ଅନ୍ନ ଭୋଜନ ଦେଖି ମୋର । ହରିଲା ବାଛୁରୀ କୁମର ॥
ଯେମାନ ଭିଆଇଲି ମୁହିଁ । ଶୁଣିମା ସାବଧାନ ହୋଇ ॥
ଶୁଣି ସାନନ୍ଦ ବଳରାମ । କୃଷ୍ଣଙ୍କୁ ଦିଅନ୍ତି ଚୁମ୍ବନ ॥
ଗୋପେ ମିଳିଲେ ରାତ୍ରକାଳେ । ଶୟନ ଯଶୋଦାର କୋଳେ ॥
ରଜନୀ ହୋଇଲା ପ୍ରଭାତ । ବନେ ଚଳିଲେ ଗୋପୀନାଥ ॥
ବ୍ରହ୍ମା ଯେ ବଛା ହରିନେଲା । ମଞ୍ଚକୁ ବରଷେ ହୋଇଲା ॥
ବିଧାତା ବିଚାରଇ ମନେ । କୃଷ୍ଣ ଭେଟିବି ବୃନ୍ଦାବନେ ॥
କେମନ୍ତ କଲେ ଦାମୋଦର । ଆଜ ଦେଖିବି ଗୋପପୁର ॥
ବ୍ରହ୍ମା ବିଚାରି ଯେହା ମନେ । ବେଗେ ମିଳିଲେ ବୃନ୍ଦାବନେ ॥
ଦେଖଇ ଯମୁନାର କୂଳେ । କୃଷ୍ଣ ଗୋବତ୍ସ ଗୋପମେଳେ ॥
ମୁରଲୀ ବାଇ ନାନା ଛନ୍ଦେ । ବାଳକେ ନାଚନ୍ତି ଆନନ୍ଦେ ॥
ନିଶ୍ଚିନ୍ତେ ଚରାନ୍ତି ବାଛୁରୀ । ମଧେ ବିଜୟେ ନରହରି ॥
ଦେଖି ଚକିତ ପ୍ରଜାପତି । ବନେ ଚାହାଁଇ ଚଉକତି ॥
ଚକିତେ ହୋଇ ଛନଛନ । ବିଧାତା ବିଚାରଇ ମନ ॥
ବଛା ବାଳକ ମୁ ଯେ ନେଇ । ମାୟା ଶୟନେ ଅଛି ଥୋଇ ॥
ଯେହାଙ୍କୁ କାହୁଁ ଯେ ଆଣିଲା । ଯେମନ୍ତ ବୋଲି ବାହୁଡ଼ିଲା ॥
ଦେଖିଲା ନିଜପୁରେ ଯାଇ । ବଛା ବାଳକେ ଛନ୍ତି ଶୋଇ ॥
ପୁଣି ମିଳିଲା ନଦୀ ତୀରେ । ବାଳକେ ଅଛନ୍ତି ସେଠାରେ ॥
ଆନନ୍ଦେ ଚରାନ୍ତି ବାଛୁରୀ । ନାଚନ୍ତି ବେଣୁନାଦ କରି ॥
ଉଭୟ ସଙ୍କଟେ ବିଧାତା । ମନେ ପାଇଲା ଗରୁ ଚିନ୍ତା ॥
ପୁଣି ଦେଖିଲା ଯାଇ ଘରେ । ଆସି ମିଳିଲା ନଦୀ ତୀରେ ॥
ବିଧାତା ବିଚାରି ଚକିତ । ବୋଲଇ ଯେତ ବିପରୀତ ॥
ମୋହୋର ଭୁବନେ ଅଛନ୍ତି । ଯେବେ ତ ଯେ ବନେ ଚରନ୍ତି ॥
ଯେମାନେ କାହୁଁ ଭିଆଇଲା । ମୋତେ ତ ସନ୍ଦେହ ଲାଗିଲା ॥
କି ବୁଦ୍ଧି କରିବଙ୍କ ଆଜ । ମୋତେ ହୋଇଲା ବଡ଼ ଲାଜ ॥
ଯେବେ ମୁ ଦେବି ବଛା ଆଣି । କୋପ କରିବେ ଚକ୍ରପାଣି ॥
କିବା ମୋହୋର ବଡ଼ପଣ । ହାସ୍ୟ କରିବେ ଦେବଗଣ ॥

କରିବି କେଉଣ ଉପାୟେ । ନ ପୁଣ କୋପେ ଦେବରାୟେ ॥
ମୋହୋର ନୁହଇ ସଞ୍ଚିଲା । ଆନ କି ବ୍ରହ୍ମାୟେ ହୋଇଲା ॥
ବାଛୁରୀ ବାଳକ ଭିଆଇ । ଗୋବିନ୍ଦ ଅଛି କି ଲୁଚାଇ ॥
ଯେମନ୍ତ ବିଚାରଇ ମନ । ମାୟା ମୋହିଲେ ଭଗବାନ ॥
ନିଜ ମାୟାରେ ଆତ୍ମା ଜଡ଼ି । ପଡ଼ିଲା ମହୀତଳେ ବୁଡ଼ି ॥
ପୁଣି ଉଠିଲା ବେଦବର । ଭୟେ କମ୍ପଇ ଥରହର ॥
ଘୋର ଅନ୍ଧାର ରାତ୍ର ମାନେ । କୁହୁଡ଼ି ଦିଶଇ ଯେସନେ ॥
ଦିବସେ ଜୁଳୁଜୁଳା ପୋକ । ପ୍ରକାଶି ପାରେ କି ଆଲୋକ ॥
କ୍ଷଣକେ ହୋଇଲା ଅଚେତ । ପୁଣି ଚାହାଁଇ ଭୟ ଚିତ୍ତ ॥
ଯେତେ ବାଛୁରୀ ଗୋପବାଳେ । ବ୍ରହ୍ମାଙ୍କୁ ଦିଶନ୍ତି ସକଳେ ॥
ନୀଳ ଜଳଦ ତନୁକାନ୍ତି । ପୀତ ବସନ ଝଟକନ୍ତି ॥
ଶ୍ରବଣେ କୁଣ୍ଡଳ ବିରାଜେ । ରବିମଣ୍ଡଳ ତେଜ ଗଞ୍ଜେ ॥
ଶ୍ରୀବତ୍ସ ଚିହ୍ନ କଣ୍ଠେ ମଣି । କଟୀରେ ରତ୍ନ ଓଡିଆଣୀ ॥
ମର୍କତ ସ୍ତମ୍ଭ ଭୁଜ ଚାରି । ଶଙ୍ଖ କମଳ ଗଦାଧାରୀ ॥
ଦକ୍ଷିଣ କରେ ଚକ୍ର ଶୋହେ । ରୂପେ କୋଟିୟେ କାମ ମୋହେ
କରେ କଙ୍କଣ ହୃଦେ ହାର । ଚରଣେ ବାଜଇ ନୂପୁର ॥
କୋମଳ ତୁଳସୀର ମାଳ । କଣ୍ଠୁ ଲମ୍ବଇ ପାଦତଳ ॥
ବିକଚ କମଳ ଲୋଚନ । ଅଧର ବିମ୍ବଫଳ ବର୍ଣ୍ଣ ॥
ଯାର ମହିମା ପରିମାଣି । ବେଦ ପୁରାଣ ହେଁ ନ ଜାଣି ॥
ସ୍ତୁତି କରନ୍ତି ସୁରମୁନି । ପାଦେ ଖଟନ୍ତି ପଦ୍ମଯୋନି ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ବ୍ରହ୍ମାୟେ ସେବନ୍ତି ପୟର ॥
ପୂଜନ୍ତି ନାନା ଉପହାରେ । ନୃତ୍ୟ ଖଟଣି ଗୀତସ୍ୱରେ ॥
ଆତ୍ମାରୁ ବ୍ରହ୍ମଲୋକ ଯାୟେ । ବ୍ରହ୍ମାଣ୍ଡେ ଯେତେକ ଉପାୟେ ॥
ପଞ୍ଚ ଇନ୍ଦ୍ରିୟ ପଞ୍ଚଭୂତ । ଯେ ଅଧିଷ୍ଠାତା ଦଇବତ ॥
ବୁଦ୍ଧିଚେତନା ଅହଂକାର । ଯେତେ ଯେ ମନର ବିଚାର ॥
ଯେତେ ବିଷୟ ନିଜରୂପେ । ଖଟନ୍ତି ବ୍ରହ୍ମାଙ୍କ ସମୀପେ ॥
ଅଣିମା ଆଦି ଅଷ୍ଟନିଧି । କାଳ ସ୍ୱଭାବ କର୍ମ ସିଦ୍ଧି ॥
ସୃଷ୍ଟି କରନ୍ତି ଅପ୍ରମିତ । ଚଞ୍ଚଳ ବ୍ରହ୍ମାଙ୍କର ଚିତ୍ତ ॥
ଖଟନ୍ତି ଗୋବିନ୍ଦ ପୟର । ଦେଖି ଚକିତ ବେଦବର ॥
କୋଟି ଅନ୍ତରେ ତୁଲ୍ୟ ନୋହେ । ସ୍ୱରୂପ ବ୍ରହ୍ମାଙ୍କର ପ୍ରାୟେ ॥
ଯେମନ୍ତ କୃଷ୍ଣ ମାୟା ଦେଖି । ଭୟେ ବୁଜିଲା ଅଷ୍ଟ ଆଖି ॥
ଯେସନେ ଦେବୀ ପୂଜା ଆଗେ । କାଷ୍ଠ ପିତୁଳି ଥୋଇ ରଙ୍ଗେ ॥
ତେସନ ହୋଇ ବେଦବର । ରହିଲା ଗୋବିନ୍ଦ ଛାମୁର ॥
ବେଦେ ଗୋଚର ନୋହେ ଯେହୁ । ମହା ମହିମା ମହାବାହୁ ॥
ପ୍ରମାଣି ନ ପାଇଲା ଅନ୍ତ । ବ୍ରହ୍ମା ହୋଇଲା ମୂରୁଛିତ ॥
କଣ୍ଠେ ହୋଇଲା ପଞ୍ଚପ୍ରାଣ । ଜାଣିଲେ କମଳା ରମଣ ॥
ବ୍ରହ୍ମାଙ୍କୁ କୃଷ୍ଣ ଦୟାକଲେ । ମାୟା ପଟଳ ଉହାଡ଼ିଲେ ॥
ଜ୍ଞାନ ପାଇଲା ପ୍ରଜାପତି । ଉଠି ଚାହାଁଇ ଚଉକତି ॥
ଦେଖିଲା ବୃନ୍ଦାବନ ଲାଗେ । ଲକ୍ଷ୍ମୀ ବିଜୟେ ଚାରିଦିଗେ ॥
ବନପଶୁଙ୍କ ହିଂସା ନାହିଁ । ଚରନ୍ତି ମିତ୍ର ପ୍ରାୟେ ହୋଇ ॥
ଦେଖଇ କଦମ୍ବର ତଳେ । କୃଷ୍ଣ ନାଚନ୍ତି କୁତୂହଳେ ॥
ପୁଣି ଦେଖିଲା କେହି ନାହିଁ । ଘଡ଼ିକେ ଚଉଦିଗ ଚାହିଁ ॥
ସଭୟେ ହୋଇ ଛନଛନ । ବିକଳେ ବୁଜିଲା ନୟନ ॥
ଘଡ଼ିକେ ପୁଣି ଅନାଇଲା । ଦେଖଇ ଗୋବିନ୍ଦର ଲୀଳା ॥
ବାମ କରରେ ଅନ୍ନ ଘେନି । ବଛା ଖୋଜନ୍ତି ବନେ ଭ୍ରମି ॥
ଦେଖିଣ ରଥୁଁ ଓହ୍ଲାଇଲା । କୃଷ୍ଣର ନିକଟେ ମିଳିଲା ॥
ପାଦେ ପଡ଼ିଲା ବେଦବର । ଅବନୀ ଦିଶିଲା ସୁନ୍ଦର ॥
ନୀଳ ପାଷାଣ ତଳେ ଥୋଇ । ସୁବର୍ଣ୍ଣ ଯେମନ୍ତ ଦିଶଇ ॥
ଚାରି ମୁକୁର ଶିରେ ଥିଲା । କୃଷ୍ଣର ଚରଣେ ଲାଗିଲା ॥
ବେନି ଚରଣେ କର ଦେଇ । ଭୟେ ବୋଲଇ ତ୍ରାହିତ୍ରାହି ॥
ପୂଜଇ ଗୋବିନ୍ଦ ପୟର । ବିବିଧ ଅର୍ଘ୍ୟ ଉପହାର ॥
ପାଦ ଧୋଇଲା ଚକ୍ଷୁ ଲୋୟେ । ମନ ନିବେଶି କୃଷ୍ଣ ପାୟେ ॥
ଶତେକ ବେଳ ପାଦେ ପଡ଼ି । ଉଠିଲା ବେନିକର ଯୋଡ଼ି ॥
ସ୍ତୁତି କରଇ ଚାରିବେଦେ । ଆନନ୍ଦ ଶୋକ ଗଦଗଦେ ॥
ସେ ହରି ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନବଳେ ॥
ବଛା ହରଣ ଶୁଣ ଛାନ୍ଦ । ଯେଣେ ଛାଡ଼ିବ ମୋହ ଫାନ୍ଦ ॥
ଶ୍ରୀକୃଷ୍ଣ ପାଦେ ଦେଇ ଚିତ୍ତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ବ୍ରହ୍ମା ବଛାହରଣେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ମହୀପତି । ବ୍ରହ୍ମାର ମନୁ ଗଲା ଭ୍ରାନ୍ତି ॥
ସଭୟେ ବେନିକର ଯୋଡ଼ି । କ୍ଷଣ କ୍ଷଣକେ ପାୟେ ପଡ଼ି ॥
କୃଷ୍ଣ ଚରଣେ ଦେଇ ଶିର । ସ୍ତୁତି କରଇ ବେଦବର ॥
ନମଇଁ ଜଗତ ଠାକୁର । ତୋର ମାୟାରେ ଯେ ସଂସାର ॥
ତନୁ ଯେ ନୀଳ ଘନ ତ୍ରାସ । ବିଜୁଳି ପ୍ରାୟେ ପୀତବାସ ॥

ଗୁଞ୍ଜା ଅଳକା ଶିଖି ପୁଚ୍ଛ । ଯେଣେ ନିର୍ମଳ ଚୂଳ ସଞ୍ଚ ॥
ଅଳପ ସ୍ମିତ ରଙ୍ଗ ମୁଖ । ଚିନ୍ତିଲେ ଖଣ୍ଡେ ଭବଦୁଃଖ ॥
ବନମାଳାୟେ ଲମ୍ବେ ଉରେ । ଅନ୍ନ ପୁଡ଼ାୟେ ବାମକରେ ॥
ବେତ ମୁରଲୀ ଶିଙ୍ଗା କର । କମଳା ସେବଇ ପୟର ॥
ଯେ ଯେତେ ବାଛୁରୀ କୁମର । ତୋହୋର ଶରୀରୁ ବାହାର ॥
ତୋ ଅବତାର ମୋର ହିତେ । ସୁଖ ସ୍ୱରୂପ ଅବିରତେ ॥
ଇଚ୍ଛାରେ ହୋଇଅଛୁ ଜାତ । ନିର୍ମାଣ ନୋହେ ପଞ୍ଚଭୂତ ॥
ଯେ ଦେହ ମହିମା ନ ଜାଣି । ବେଦ ପୁରାଣେ ପରିମାଣି ॥
ଜ୍ଞାନର ପଥ ଛାଡ଼ି ଥୋକେ । ତୋତେ ନମନ୍ତି ସନ୍ଥ ଲୋକେ ॥
ସାଧୁଜନଙ୍କ ମୁଖୁଁ ଶୁଣି । ତୋର ମହିମା ହୃଦେ ଗୁଣି ॥
ମନ ବଚନ କରି ଯେକ । ହେଲେ ଜିଣନ୍ତି ତିନିଲୋକ ॥
ତୋର ଚରଣ ଭାବ ଛାଡ଼ି । ଯେ ଯାନ୍ତି ଯୋଗପଥ ଛାଡ଼ି ॥
ମନ ବଚନ ହୃଦେ ଛନ୍ଦି । ତପେ ଇନ୍ଦ୍ରିୟବଳ ରୁନ୍ଧି ॥
ଯେତେ କରନ୍ତି ଦେହ ଶ୍ରମ । ତୋର ମାୟାରେ ହୋନ୍ତି ଭ୍ରମ ॥
କେବଳ ଲାଭ ଦେହ ପ୍ରାସ । ସେ ପ୍ରାଣୀ ହୁଅନ୍ତି ନିରାଶ ॥
ତଣ୍ଡୁଳ ଆଶେ ତୁଷ କୁଟି । ଝାଡ଼ି ଯେସନେ ପ୍ରାଣୀ ଫୁଟି ॥
ନିରାଶ ହୋଇ ବେନିପଥ । ପଶୁ ଯୋନିରେ ହୋନ୍ତି ଜାତ ॥
ତୋତେ ନ ପାଇ ନରହରି । ଭ୍ରମନ୍ତି ତୋ ମାୟା ଆବୋରି ॥
ପୂର୍ବେ ବହୁତ ମୁନି ଜନେ । ସେବନ୍ତି ତୋହୋର ଚରଣେ ॥
ନିଜ କରମ ଫଳ ଭୁଞ୍ଜି । ଭଗତି ଯେକୁ ଆରେ ହେଜି ॥
ପାଇଲେ ତୋ ପରମ ପଦ । ଖଣ୍ଡିଲେ ବିଷୟ ବିଷାଦ ॥
ନିର୍ମଳ ଆତ୍ମା ମୁନିଗଣେ । ତୋର ମହିମା ପରିମାଣେ ॥
ତୋର ବିକାର ନ ପାଇଲେ । ଭଗତି ହେଜି ତରିଗଲେ ॥
ନିର୍ଗୁଣ ଆତ୍ମା ଗୁଣବନ୍ତ । ତୋର ମହିମା ଗୋପୀନାଥ ॥
ବ୍ରହ୍ମାଣ୍ଡେ ଦେହବନ୍ତ ହୋଇ । ତୋ ଗୁଣ କେ ପାରିବ କହି ॥
ଭୂମିରେ ରେଣୁ କୁଝଟିକା । ଆକାଶେ ନକ୍ଷତ୍ର ମାଳିକା , ॥
ଯେ ତିନି ଗଣି କେ ସାମର୍ଥ । ଲୋକେ ଅଛନ୍ତି ଯେ ଜଗତ ॥
ତୋର ମହିମା ଗୁଣ ଗୁଣି । ସଂସାରେ ଅଛଇ କେ ପ୍ରାଣୀ ॥
ଯାହାକୁ କରୁ ତୁ ସଦୟେ । ସେ ନ ପଡ଼ଇ ମାୟା ମୋୟେ ॥
ତୋର ଭଗତି ହୃଦେ ଭଜି । ଅର୍ଜିଲା କର୍ମଫଳ ଭୁଞ୍ଜି ॥
ଚିତ୍ତ ନିବେଶି ତୋର ପାଦେ । ଭାଗୀ ହୁଅନ୍ତି ମୋକ୍ଷ ପଦେ ॥
ଅଜ୍ଞାନ ପଣ ଦେଖ ମୋର । ତୋତେ ଭଣ୍ଡିଲି ଗଦାଧର ॥
ମାୟାବୀ ମାନଙ୍କର ଶ୍ରେଷ୍ଠ । ତୋତେ ମୁ କଲି ମାୟା ହଟ ॥
ଅନଳ ପର୍ବତର ତଳେ । କଣାୟେ ଖୋଜିଲି ମୁଁ ଭୋଳେ

ଅଳପ ଲୋକେ ଅଧିକାର । ତୁ କିମ୍ପା ଦିଲୁ ଦାମୋଦର ॥
ବ୍ରହ୍ମା ବୋଇଲା ମୋର ଗର୍ବ । ତୋତେ ଭଣ୍ଡିଲି ପଦ୍ମନାଭ ॥
ଯେଣୁ ହୋଇଲି ଅପରାଧୀ । ତୁ ନାଥ କରୁଣା ବାରିଧି ॥
ଯେ ଅପରାଧ କ୍ଷମାକର । ଭୋ ନାଥ ଶରଣ ତୋହୋର ॥
ମୁହିଁ ତ ଜଗତେ ଅନାଥ । ତୋର ମହିମା ଜଗନ୍ନାଥ ॥
ମୁ ତୋର ଯେତେକ ଅନ୍ତର । ତୁ କି ନ ଜାଣୁ ଚକ୍ରଧର ॥
ଅବନୀ ଆଦି ପଞ୍ଚଭୂତେ । ଚେତନା ବୁଦ୍ଧି ଅହଂକୃତେ ॥
ଜୀବ ପରମ ଭାବ ଦେଇ । ବ୍ରହ୍ମାଣ୍ଡ କରୁ ଭାବଗ୍ରାହୀ ॥
ବ୍ରହ୍ମାଣ୍ଡ ତୋର ରୋମ ମୂଳେ । ଉଡୁ ଅଛନ୍ତି ଅନ୍ତରାଳେ ॥
ଜଳାକବାଟି ବାଟେ ଯେହ୍ନେ । ରେଣୁୟେ ଉଡୁଥାନ୍ତି ଶୂନ୍ୟେ ॥
ତହୁଁ ବ୍ରହ୍ମାଣ୍ଡଙ୍କ ଭିତରେ । ସପତ ରଙ୍ଗର ଶରୀରେ ॥
ଅଛଇ ଜୀବଆତ୍ମା ଧରି । ତୋ ମାୟାପଟଳ ଆବୋରି ॥
ଯେତେ ଅନ୍ତର ତୋର ମୋର । ତୋତେ ଭଣ୍ଡିଲି ମାୟାଧର ॥
ଗର୍ଭ ଭିତରେ ସୁତ ଥାଇ । ସେ ଯେହ୍ନେ ପାଦ ପ୍ରହାରଇ ॥
ତା ଅପରାଧ ଚିତ୍ତେ ଘେନି । କୋପ କି କରଇ ଜନନୀ ॥
ତୋ ନାଭି କମଳୁ ମୁ ଜାତ । ତୋତେ ଭଣ୍ଡିଲି ଜଗନ୍ନାଥ ॥
ତୋହୋର ଉଦରେ ପଶିଲି । ଅଶେଷ ବ୍ରହ୍ମାଣ୍ଡ ଦେଖିଲି ॥
ଜଳଧି ଶୟନର କାଳେ । ଯେକଥା ଜାଣନ୍ତି ସକଳେ ॥
ନଭ ଅବନୀ ଜଳ ବ୍ୟାପୀ । ତୁ ନାଥ ନାରାୟଣ ରୂପୀ ॥
ପ୍ରଳୟ ଜଳେ ଥିଲୁ ଶୋଇ । ସେ ରୂପ ଦେଖିଲଇଁ ମୁହିଁ ॥
ଦେଖି ସାନନ୍ଦ ମୋର ମନ । ତୁ କି ନଜାଣୁ ଭଗବାନ ॥
ମିଥ୍ୟା ନୁହଇ ନା ସେ କଥା । ତୋତେ ହେଁ ସାକ୍ଷୀ ତୋର ମାତା
ଗୋପାଳ କୁମରଙ୍କ ମେଳେ । ମାଟି ଭକ୍ଷିଲୁ ଯେତେବେଳେ ॥
ଯଶୋଦା ଦେଖିଲା ତୋ ତୁଣ୍ଡ । ଉଦରେ ଅଶେଷ ବ୍ରହ୍ମାଣ୍ଡ ॥
ବାହାର ଭିତରେଣ ପୂରି । ତୋ ମାୟା ଅଛି ଯେ ଆବୋରି ॥
ଯେବେ ଯେ ବୃନ୍ଦାବନେ ମୋତେ । ମାୟା ନ କଲୁ କେତେ କେତେ
ପ୍ରଥମେ ଦେଖିଲଇଁ ଯେକ । କ୍ଷଣକେ ହୋଇଲୁ ଅନେକ ॥
ଯେତେ ବାଛୁରୀ ଗୋପ ପୋୟେ । ଦିଶିଲେ ତୋହୋର ପରାୟେ
ନୀଳ ଶରୀର ଚାରିକର । ବ୍ରହ୍ମାୟେ ଖଟନ୍ତି ପୟର ॥
ସୃଷ୍ଟିର ଆଗେ ମୋତେ କରି । ସଂଖାଳି ଦିଲୁ ବେଦ ଚାରି ॥
ଜଗତ କରାଇ ଭିଆଣ । ତୁ ତାହା ପାଳୁ ନାରାୟଣ ॥
ଶଙ୍କର ରୂପେ କରୁ ଅନ୍ତ । ଯେଣୁ ତୁ ବୋଲଉ ଅନନ୍ତ ॥
ଦେବ ବ୍ରହ୍ମାଣ୍ଡ ଋଷି ପଶୁ । ଯେଣେ ଶରୀର ତୁ ପ୍ରକାଶୁ ॥
ଦୁଷ୍ଟ ନିବାରି ସନ୍ଥପାଳୁ । ଦୟାରେ ଧର୍ମ ତୁ ସମ୍ଭାଳୁ ॥

କାହୁଁ ଅଇଲି କଳି କିସ । ଅନ୍ତେ ହୋଇବି କାହିଁ ଶେଷ ॥
ଯେ ତିନି ଭ୍ରାନ୍ତି ତୋର ମାୟା । କେ ଜାଣିପାରେ ପ୍ରଭୁ ଯେହା ॥
ଯୋଗେଶ୍ୱରଙ୍କୁ ଆଗୋଚର । ଭୋ ନାଥ ମହିମା ତୋହୋର ॥
ତେଣୁ ତୋ ମାୟାରେ ଜଗତ । ତୋ ତହୁଁ ହୋନ୍ତି ଆତଯାତ ॥
ବିଜୁଳି ଝଟକ ଯେସନ । ମେଘରେ ଦିଶି ହୋନ୍ତି ଲୀନ ॥
ତୁ ନାଥ ପୁରୁଷ ପୁରାଣ । ଜ୍ୟୋତି ଅନନ୍ତ ଆଦି ଶୂନ୍ୟ ॥
ନିୟତ ସୁଖ ନିରଞ୍ଜନ । ମୋକ୍ଷ-ଉପାଧି ସୁଧାପୂର୍ଣ୍ଣ ॥
ସକଳ ଜନ୍ତୁ ମଧ୍ୟେ ତୁହି । ବିହରୁ ଆତ୍ମା ରୂପ ହୋଇ ॥
ସୂର୍ଯ୍ୟର ତହୁଁ ଦେବସାର । ତୋତେ ଯେ କରନ୍ତି ବିଚାର ॥
ଭବ ଜଳଧି ସେ ତରନ୍ତି । ମାୟା ପଟଳେ ନ ପଡ଼ନ୍ତି ॥
ଆତ୍ମାକୁ ଆତ୍ମା ଗୁଣେ ଜାଣି । ଚିନ୍ତା କରନ୍ତି ଯେତେ ପ୍ରାଣୀ ॥
ଅଜ୍ଞାନ ଭାବେ ଜ୍ଞାନ ନାଶ । ରଜ୍ଜୁରେ ଯେହ୍ନେ ସର୍ପତ୍ରାସ ॥
ଜୀବର ବନ୍ଧ ମୋକ୍ଷ ଦୁଇ । ଅଜ୍ଞାନ ଭାବୁ ଜାତ ହୋଇ ॥
ତୋହୋର ତହୁଁ ବିଚାରଣେ । ଆଦିତ୍ୟେ ଦିବାରାତ୍ର ଯେହ୍ନେ ॥
ତୋତେ ନ ଜାଣନ୍ତି ଯେ ଚିନ୍ତି । ଆତ୍ମାକୁ ବାହାରେ ଲୋଡ଼ନ୍ତି ॥
ଶ୍ରମ ସେ ଲାଭ ତାହାଙ୍କର । ନାହିଁ ତୋ ଭିତର ବାହାର ॥
ଯେ ତୋତେ ଶରୀରେ ଲୋଡ଼ନ୍ତି । ସୂକ୍ଷ୍ମ ସ୍ୱରୂପେ ଜ୍ଞାନ ଚିନ୍ତି ॥
ଅଜ୍ଞାନ ନାଶେ ତାହାଙ୍କର । ଭବସାଗରୁ ହୋନ୍ତି ପାର ॥
ଯେ ଜ୍ଞାନୀଜନଙ୍କର ମତ । ତୋହୋର ଦୟାରେ ଅନନ୍ତ ॥
ନିକଟେ ସର୍ପ ଯାର ଥାଇ । ସେ କି ଆନକୁ ପାରେ ଚାହିଁ ॥
ସର୍ପର ପ୍ରାୟେ ତୋ ସମୀପେ । ଜ୍ଞାନୀୟେ ଜାଗରିତ ଆପେ ॥
ତୋର ଦୟାରେ ତୋତେ ଜାଣି । ଭାବି ତରିନ୍ତି ସାଧୁପ୍ରାଣୀ ॥
ତୋ ଅନୁଗ୍ରହ ଯାକୁ ନାହିଁ । ବ୍ରହ୍ମାଣ୍ଡେ ଲୋଡ଼ିଲେ ନ ପାଇ ॥
କେତେ କହିବି ସ୍ୱାମୀ ତୋତେ । ଯେମନ୍ତ ଆଜ୍ଞା ଦିଅ ମୋତେ ॥
ନାନା ଯୋନିରେ ଜାତ କରି । ତୋର ସେବକ ମଧ୍ୟେ ଭରି ॥
ଅପ୍ରାଧ କ୍ଷମା କର ମୋତେ । ତୋ ପାଦେ ସେବଇ ଯେମନ୍ତେ ॥
ଗୋପେ ଅଛନ୍ତି ଯେତେ ଜନ୍ତୁ । କେ ତାଙ୍କ ପୁଣ୍ୟ କରୁ ହେତୁ ॥
ହୋଇଣ ବାଛୁରୀ କୁମର । ସ୍ତନ ପିଇଲୁ ତାହାଙ୍କର ॥
ତୋ ମନ ରଞ୍ଜିଲେ ଅନନ୍ତ । ଯଜ୍ଞେ ନୋହିଲେ ସାମରଥ ॥
ନନ୍ଦ ଗୋପାଳ ବ୍ରଜଲୋକ । ଅନେକ କରିଛନ୍ତି ତପ ॥
ତୁ ନାଥ ମିତ୍ର ତାହାଙ୍କର । ବ୍ରହ୍ମା ଶଙ୍କରେ ଅଗୋଚର ॥
ତୋ ପାଦପଦ୍ମର ଅମୃତ । ତେଣେ ଲୋଭିତ ଯାର ଚିତ୍ତ ॥
ମନ ଭ୍ରମରେ କରି ପାନ । ତେଜିବି ଭବମାୟା ଭ୍ରମ ॥
କାଷ୍ଠ ପାଷାଣ ତୃଣ ହୋଇ । ଗୋକୁଳେ ପଡ଼ିଥିବି ମୁହିଁ ॥
ଗୋପୀଜନଙ୍କ ପାଦଧୂଳି । ଦେହେ ମୁ ହେଉଥିବି ବୋଳି ॥
ଦେବେ ନ ପାନ୍ତି ଯାହା ଖୋଜି । ଗୋପୀୟେ ମିତ୍ରପଣେ ଭଜି ॥
ପୂତନା କରି ଶତ୍ରୁ ପଣ । ତୋ ଦେହେ ପଶିଲା ତକ୍ଷଣ ॥
ଯେଣୁ ତୋ ନାହିଁ ମିତ୍ର ଐରି । ଜଗଜୀବନ ନରହରି ॥
ତୋହୋର ପାଦେ ଗୋପୀନାଥ । ଶରଣ ନ ପଶେ ଯାବତ ॥
ତାବତ କାମ କ୍ରୋଧ ବଳେ । ଡକା କରନ୍ତି ଅବହେଳେ ॥
ଗୃହ ହିଁ ହୋଇ ବନ୍ଦିଘର । ମୋହ ଶାଙ୍କୁଳି ଯେ ପୟର ॥
ଦାରା ତନୟ ଧନ ହୁଡ଼ି । ଦୁଃଖ ସଙ୍କଟେ ଥାଇ ପଡ଼ି ॥

## ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ । ବ୍ରହ୍ମା ଛାଡ଼ିଲା ମନୁ ଭୟେ ॥
ପାଦେ ପଡ଼ିଲା ତିନିବାର । ବାହୁଡ଼ି ଗଲା ନିଜପୁର ॥
ବଛା ବାଳକ ଆଣି ଦିଲା । ବିକଳେ କୃଷ୍ଣଙ୍କୁ ଚାହିଁଲା ॥
ବ୍ରହ୍ମାର ମୁଖକୁ ଅନାଇଁ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥
ହସି ବୋଇଲେ ଚକ୍ରଧର । ବିଧାତା ଯାଅ ନିଜପୁର ॥
ବ୍ରହ୍ମାଣ୍ଡ ପାଳ ସୁଖେ ଯାଇ । ମୋହୋର ପାଦେ ଚିତ୍ତ ଦେଇ ॥
ଗୋବିନ୍ଦ ଆଜ୍ଞା ଘେନି ଶିରେ । ବ୍ରହ୍ମା ଚଳିଲା ନିଜପୁରେ ॥
ମାୟା ମୋହିଲେ ଦେବରାୟେ । ଭୋଜନ କରୁଛନ୍ତି ପୋୟେ ॥
କୃଷ୍ଣ ଆଣିଲେ ବଛା ଲୋଡ଼ି । ଅନ୍ନ ପୁଡ଼ାୟେ ହସ୍ତେ ଧରି ॥
ଥୋକାୟେ ତୁଣ୍ଡେ ଅଛି ଭାତ । ପୋୟେ ଦେଖିଲେ ଗୋପୀନାଥ ॥
କୃଷ୍ଣର ଅଙ୍ଗୁ ବହେ ଝାଳ । ବୋଲନ୍ତି ଆସ ନନ୍ଦବାଳ ॥
ତିନି ଗରାସ ଅନ୍ନ ଖାଇ । ଲୋଡ଼ି ଆଣିଲୁ ବଛା ଯାଇ ॥
ଅସ ତୋହୋର ଠାବେ ବସ । ଶୁଣି ଗୋବିନ୍ଦ ହସ ହସ ॥
ଅନ୍ନ ଭୁଞ୍ଜନ୍ତି କୃଷ୍ଣ ବସି । ଗୋପାଳ ପୋୟେ ପରଶଂସି ॥
ଭୋଜନ ସାରି ଜଳେ ଯାଇ । କର ଚରଣ ମୁଖ ଧୋଇ ॥
ବେଳ ହୋଇଲା ଅବସାନ । ଗୋପେ ଚଳିଲେ ଭଗବାନ ॥
ବାଟେ ଅଘାର ଦେହ ଚାହିଁ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥
ନିତ୍ୟେ ଖେଳିବା ଯେଥେ ପଶି । ଶୁଣି ଗୋପାଳ ପୋୟେ ହସି ॥
ଗ୍ରାମ ନିକଟେ ପୋୟେ ଯାଇ । ଅତି ଆନନ୍ଦେ ବେଣୁ ବାଇ ॥
ମୟୂର ପୁଛ ଚୂଳମାଳ । ଗୁଞ୍ଜୁରା ପାଟି ରଙ୍ଗ ଡାଳ ॥
ଗୋରଜ ଶୋହେ କୃଷ୍ଣ ଦେହେ । ବେଢ଼ି ନାଚନ୍ତି ଗୋପ ପୋୟେ ॥
ଗୋପୀଙ୍କ ନୟନ ଆନନ୍ଦ । ଉଦୟେ ପୂର୍ଣ୍ଣମୀର ଚାନ୍ଦ ॥
ପୋୟେ ମିଳିଲେ ଯେଝାଘରେ । କହିଲେ ମାତାଙ୍କ ଛାମୁରେ ॥
ସର୍ପ ଆମ୍ଭଙ୍କୁ ଆଜ ଗିଳି । ରକ୍ଷା ଗୋ କଲେ ବନମାଳୀ ॥
ସର୍ପ ଯେ ପାଟି ପାଡ଼ିଥିଲା । କୃଷ୍ଣ ତା ତାଲୁ ବିଦାରିଲା ॥

ସେ ବାଟେ ହୋଇଲୁଁ ବାହାର । ପଛେ ଗୋ ଥିଲେ ଦାମୋଦର
ଶୁଣି ସାନନ୍ଦ ଗୋପନାରୀ । ଭୟେ ବୋଲନ୍ତି ହରି ହରି ॥

## ପରୀକ୍ଷିତ ଉବାଚ

ଶୁଣି ପରୀକ୍ଷ ନୃପବର । ଶୁକଙ୍କୁ ବୋଲନ୍ତି ଉତ୍ତର ॥
ଭୋ ମୁନି ନିଜସୁତ ପାଇ । କେମନ୍ତ କଲେ ଗୋପ ଗୋଈ ॥
ମାୟା ବାଳକେ ଭାବଯେତେ । ନିଜ ବାଳକେ କଲେ କେତେ ॥
ଯେଣେ ତ ମୋହୋର ସନ୍ଦେହ । ଭ୍ରାନ୍ତି ମୋ ଯାଉ ମୁନି କହ

## ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ । ଜଗତ ଅଛି ମାୟା ମାହେ ॥
ଆତ୍ମାକୁ ନ କରନ୍ତି ଚିନ୍ତା । ବିଷୟ ଜଡ଼େ ବଳବନ୍ତା ॥
ସୁତ କଳତ୍ର ଧନେ ରତ । ସ୍ନେହେ ଜଡ଼ିତ ଅବିରତ ॥
ଯେଣୁ ପୁତ୍ରଙ୍କୁ ବଡ଼ ଦୟା । ବିଶେଷେ ଗୋବିନ୍ଦର ମାୟା ॥
ପୂର୍ବହୁଁ ଅତି ସ୍ନେହଭର । କୃଷ୍ଣ ପାଳନ୍ତି ଗୋପପୁର ॥
ସେ ହରି ପାଦେ ଦେଇ ମନ । ନିରତେ କରନ୍ତି ଯେ ଧ୍ୟାନ ॥
ବିପଦ ପଦେ ନାହିଁ ଭ୍ରାନ୍ତି । ଭବସାଗରୁ ତରି ଯାନ୍ତି ॥
କୁମାର କାଳେ ବନମାଳୀ । ଯେମନ୍ତ କଲେ ବାଳ କେଳି ॥
ଷଡ଼ ବରଷ ହୋଏ ଯେବେ । ଯେତେ କରିବେ ବାଳଭାବେ ॥
ଯେଣେ ତୁ ହୁଅ ସାବଧାନ । ଖଣ୍ଡିବ ମୋହ ଜଡ଼ ଭ୍ରମ ॥
ବାଳକ ବିପ୍ର ଜଗନ୍ନାଥ । ଗୀତେ ଗାଇଲା ଭାଗବତ ॥
ପଣ୍ଡିତେ ନ ଘେନିମା ଦୋଷ । ହରି ଚରିତ ସୁଧାରସ ॥
କୃଷ୍ଣ ସବୁରି ଦେହେ ଥାଇ । ଯାହାକୁ ଯେମନ୍ତ ବୁଝାଇ ॥
କେ କରି ପାରିବ ତା ଆନ । ଚିତ୍ତକୁ ସାକ୍ଷୀ ଭଗବାନ ॥
ମୋ ମନ ମୋହିଲେ ମୁରାରି । ପୁରାଣ ଅର୍ଥେ ଗୀତ କରି ॥
ଯେଣୁ ମୋହୋର ଜ୍ଞାନ ନାହିଁ । ବାଳୁତ ଜନ ପ୍ରାୟେ ହୋଇ
ସୁଜନେ ଯେଣେ ମନଦେଇ । ଭେଟ ପାଇବ ଭାବଗ୍ରାହୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ବ୍ରହ୍ମସ୍ତୁତି ନାମ ପଞ୍ଚଦଶୋଽଧ୍ୟାୟଃ ।*

## ଷୋଡ଼ଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଯେବେ ହୋ ଶୁଣ ନରନାଥ । ହରିର ବାଳକ ଚରିତ ॥
ଷଡ଼ବରଷେ ନରହରି । କାନନେ ଚରାନ୍ତି ବାଛୁରୀ ॥
ଦିନକୁ ଦିନ ବଳିଆର । ଗାଈ ରଖିଲେ ଦାମୋଦର ॥
ରୋହିଣୀସୁତ ଘେନି ସଙ୍ଗେ । ବନେ ଖେଳନ୍ତି ନାନାରଙ୍ଗେ ॥
ଦିନେକ କୃଷ୍ଣ ବେଣୁ ନାଦେ । ବାଳକେ ମିଳିଲେ ଆନନ୍ଦେ ॥
କୃଷ୍ଣଙ୍କୁ ବେଢ଼ି ଗୋପବାଳେ । ବେଣୁ ବଜାନ୍ତି କୁତୂହଳେ ॥
ଆଗେ ଅଡ଼ାଇ ବଛା ଗାଈ । ମିଳିଲେ ବୃନ୍ଦାବନେ ଯାଇ ॥
କୋମଳ ଘାସ ନାନାଫୁଲ । କୋକିଳ ଶବଦ ଅମୂଲ୍ୟ ॥
ମୟୂର ନାଦ ଭୃଙ୍ଗମେଳେ । ଗନ୍ଧ କୁସୁମ ଜଳସ୍ଥଳେ ॥
ସ୍ୱଭାବେ ମନ୍ଦ ଗନ୍ଧ ଶୀତ । କୋମଳ ବହଇ ମରୁତ ॥
ପଦ୍ମ କୁମୁଦ ଗନ୍ଧ ଘେନି । ଆନନ୍ଦେ ବିରାଜେ ଅବନୀ ॥
ଦେଖି ସାନନ୍ଦ ଶିରୀରଙ୍ଗ । ବାଳକ ମେଳେ ରାମ ସଙ୍ଗ ॥
ଫଳ କୁସୁମ ତରୁଗଣେ । ଲାଗନ୍ତି ରାମର ଚରଣେ ॥
ଦେଖି ହସିଲେ ଦାମୋଦର । ରାମଙ୍କୁ କହନ୍ତି ମଧୁର ॥
ଭୋ ସ୍ୱାମୀ ଦେଖ ତରୁଗଣ । ନମନ୍ତି ତୁମ୍ଭର ଚରଣ ॥
ଦେବେ ନ ପାନ୍ତି ଯାହା ଖୋଜି । ଯେ ତୋତେ ତରୁରୂପେ ଭଜି ॥
ତରିବେ ଭବବନ୍ଧୁ ତାପୁଁ । ବୃକ୍ଷ ହୋଇଲେ କେଉଁ ପାପୁଁ ॥
ଯେ ଯେ ଭ୍ରମର ପକ୍ଷୀଗଣ । ନାଦେ ଖଟନ୍ତି ତୋ ଚରଣ ॥
ଦେବେ ଗୁପତେ ବନଚାରୀ । ତୋତେ ଖଟନ୍ତି ଧ୍ୟାନକରି ॥
ପକ୍ଷୀ ସ୍ୱରୂପେ ମୁନିଗଣ । ମନ ନିରୋପି ତୋ ଚରଣ ॥
ଦେଖ ଯେ ମୟୂରଙ୍କ ନୃତ୍ୟ । ମୃଗ ଶୂକର ଯୂଥ ଯୂଥ ॥
ଗୋପୀଙ୍କ ପ୍ରାୟେ ଛନ୍ତି ଚାହିଁ । ଦେଖନ୍ତି ନୟନ ପୂରୋଇ ॥
ଦେଖ ଗଭୀର ଶୁକ ନାଦ । ଶୁଣନ୍ତେ ଖଣ୍ଡେ ମନଖେଦ ॥
ସାଧୁଜନଙ୍କ ପ୍ରାୟେ ହୋଇ । ଭାବନ୍ତି ତୋ ମୁଖ ଅନାଇଁ ॥
ଯେ ପୁଣ୍ୟବନ୍ତ ମହୀଧର । ଲାଗୁଛି ତୋହୋର ପୟର ॥
ତୋ ନଖ ଲାଗି ବୃକ୍ଷଲତା । ପୁଣ୍ୟେ ହୋଇଲେ ବଳବନ୍ତା ॥
ନଦୀ ପର୍ବତ ଖଗ ମୃଗ । ନିଶ୍ଚେ ହୋଇଲେ ମୋକ୍ଷ ଯୋଗ ॥
ଯେମନ୍ତେ ରାମଙ୍କୁ ଦେଖାଇ । ମିଳିଲେ ନଦୀକୂଳେ ଯାଇ ॥
ଗାଈ ଚରାନ୍ତି ବେଣୁ ବାଇ । ଆନନ୍ଦ କେ ପାରିବ କହି ॥
ଗୋପାଳ ପୋୟେ ଗୀତ ନାଦେ । ଶ୍ରୀକୃଷ୍ଣ ନାଚନ୍ତି ଆନନ୍ଦେ ॥
ଗୋପ କୁମରେ ପରଶଂସି । ମୁରଲୀ ନାଦେ ବ୍ରହ୍ମରାଶି ॥
ହଂସର ନାଦ ଶୁଣି ଡାକି । ନାଚନ୍ତି ମୟୂରନ୍ତ ଦେଖି ॥
ଶୁକ କୋକିଳ ନାଦ ଶୁଣି । ମୁରଲୀ ନାଦେ ତାହା ଭଣି ॥
ପଶୁଙ୍କୁ ଡାକନ୍ତି ସୁସ୍ୱରେ । ଗଭୀର ମେଘନାଦ ଧୀରେ ॥
ପକ୍ଷୀଙ୍କ ନାଦ ଶୁଣି ଡାକି । ଆସନ୍ତି ଜୀବନ୍ତ ନିରୋପି ॥
ବେଳ ହୋଇଲା ବଳିଆର । ଫୁଟିଲେ ରୋହିଣୀ କୁମର ॥
ରାମର ଶ୍ରମ ଅନୁସରି । ବୃକ୍ଷରେ ଉଠିଲେ ମୁରାରି ॥

କୋମଳ ପତ୍ର ବୃକ୍ଷୁଁ ଆଣି । ଶଯ୍ୟା ପାଡ଼ିଲେ ଚକ୍ରପାଣି ॥
ତହିଁ ଶୁଆଇ ଜଳଧର । ପାଦ ଚାପନ୍ତି ଧୀର ଧୀର ॥
ଗୋପାଳ ପୋୟେ ନୃତ୍ୟକରି । ମନ ତୋଷନ୍ତି ହଳଧାରୀ ॥
ଯୁଦ୍ଧ କରନ୍ତି ନାନାରଙ୍ଗେ । ବେଣୁ ବଜାନ୍ତି କୃଷ୍ଣସଙ୍ଗେ ॥
ଉଠିଲେ ରାମ ପରଶଂସି । ହସ୍ତ ଧଇଲେ ବ୍ରହ୍ମରାଶି ॥
କୃଷ୍ଣ କରନ୍ତି ରଙ୍ଗେ ନୃତ୍ୟ । ଗୋପାଳେ ବେଣୁ ନାଦ ଗୀତ ॥
କୃଷ୍ଣର ଶ୍ରମ ଦେଖି ପୋୟେ । ପଲ୍ଲବ ଆଣିଲେ ଥୋକାୟେ ॥
ବୃକ୍ଷର ମୂଳେ ଶଯ୍ୟା କରି । ତହିଁ ଶୁଆଇଲେ ମୁରାରି ॥
ଜାନୁରେ ଦେଇ ସୀମସ୍ଥାନ । କେ ବସି ଚାପନ୍ତି ଚରଣ ॥
ପତ୍ର ବିଞ୍ଚଣା ଘେନି ବିଞ୍ଚି । କେ ପାଣି କୃଷ୍ଣ ଦେହେ ସିଞ୍ଚି ॥
ସୁସ୍ୱରେ କଲେ ଗୀତରସ । ଯେଣେ ହୋଇବ ମନ ତୋଷ ॥
ଯେମନ୍ତେ ଗୋପାଳଙ୍କ ସଙ୍ଗେ । କୃଷ୍ଣ କ୍ରୀଡ଼ନ୍ତି ନାନାରଙ୍ଗେ ॥
ସୁଦାମ ନାମେ ଗୋପସୁତ । କୃଷ୍ଣର ମିତ୍ର ସେ ଯୁଗତ ॥
ସୁବଳ ସ୍ତୋକକୃଷ୍ଣ ଆଦି । ଯେମନ୍ତେ ନାମ ପରସିଦ୍ଧି ॥
ରାମ ଗୋବିନ୍ଦ ମୁଖ ଚାହିଁ । କହନ୍ତି ଶିରେ କର ଦେଇ ॥
ଭୋ ରାମ ଶୁଣ ସାବଧାନ । ଆଗେ ଯେ ଦିଶେ ତାଳବନ ॥
ସୁପକ୍ୱ ଫଳ ରସମୟେ । ଦେଖି ଲୋଭିତ ଦେବତାୟେ ॥
ପାଚିଣ ପଡ଼ିଛନ୍ତି ତଳେ । ପୁରୁଷ ପ୍ରମାଣ ବହଳେ ॥
ବୃକ୍ଷେ ଅଛନ୍ତି ଅପ୍ରମିତ । ଗନ୍ଧେ ଲୋଭିତ ଆମ୍ଭ ଚିତ୍ତ ॥
ପୂର୍ବେ ଯେ ଫଳ ଲୋକେ ଖାଇ । ଯେ କାଳେ ନପାରନ୍ତି ଯାଇ ॥
ଧେନୁକା ନାମେ ମହାସୁର । ଯେ ତାଳବନେ ତାର ଘର ॥
ବନ୍ଧୁ ବାନ୍ଧବ ଅପ୍ରମିତ । ସେ ବନେ ବସଇ ନିଶ୍ଚିନ୍ତ ॥
ତାହାର ଭୟେ ଲୋକେ ଡରି । ତିନି ଯୋଜନେ ପଡ଼େ ଦୂରି ॥
ଦେବେ ଡରନ୍ତି ତାର ନାଁୟେ । ପ୍ରଚଣ୍ଡ ନ ବହଇ ବାୟେ ॥
ତୁ ନାଥ କରୁ ଯେବେ ଦୟେ । ସେ ଫଳ ଖାଇବୁଁ ଥୋକାୟେ ॥
ଗୋପପୁତ୍ରଙ୍କୁ ନେବୁଁ ବହି । ଶୁଣି ହସନ୍ତି ବେନି ଭାଇ ॥
ବୋଇଲେ କଡ଼ାଅ ହୋ ପଥ । ଆଗ ହୋଇଲେ ଗୋପୀନାଥ ॥
ତା ଦେଖି ରୋହିଣୀ କୁମର । ଧାଇଁଲେ ପବନହୁଁ ଖର ॥
ବେଗେ ପଶିଲେ ତାଳବନେ । ଗୋପାଳେ ମିଳିଲେ ବହନେ ॥
ରୋହିଣୀସୁତ ରୋଷଭରେ । ବୃକ୍ଷ ଧଇଲେ ବେନି କରେ ॥
ଫଳ ପାଡ଼ିଲେ ବୃକ୍ଷ ଚାଳି । ଘୋର ଶବଦେ ମହାବଳୀ ॥
ବୃକ୍ଷକୁ ବୃକ୍ଷ ଦେହ ଲାଗି । ସକଳେ ପଡୁଛନ୍ତି ଭାଙ୍ଗି ॥
ଫଳ ପଡ଼ିଲେ ତଳେ ଝଡ଼ି । ଶବ୍ଦ ମେଘ ଘଡ଼ଘଡ଼ି ॥
ଶୁଣି ଧେନୁକା ପରଜନ୍ତି । ବେଗେ ଧାଇଁଲା ମହାବଳୀ ॥
ଭାଜିଲା ଦେଖି ତାଳବନ । ଅସୁର କଲା ଘୋର ସ୍ୱନ ॥
ଶବଦେ ଅବନୀ କମ୍ପିଲା । ରାମର ନିକଟେ ମିଳିଲା ॥
ବେନି ଚରଣ ଟେକି ବେଗେ । ପିଟିଲା ହଳଧର ଅଙ୍ଗେ ॥
କ୍ଷଣକେ ପଛଘୁଞ୍ଚା ଦେଇ । ପୁଣି ମାଇଲା ପାଦ ନେଇ ॥
ଗର୍ଦ୍ଦଭ ସ୍ୱଭାବ ଶବଦ । କରଇ ମାରି ବେନିପାଦ ॥
ଅନନ୍ତ କୋପ ଗୁରୁତର । ଆକର୍ଷି ଧଇଲେ ପୟର ॥
ବେନି ଚରଣ ଯେକ କରେ । ବୁଲାଇ ପିଟିଲେ ବୃକ୍ଷରେ ॥
କରେ ବୁଲାନ୍ତେ ହଳଧର । ଜୀବନ ଛାଡ଼ିଲା ଅସୁର ॥
ତାଳଙ୍କ ସଙ୍ଗେ ମୃତପିଣ୍ଡ । ମାଡ଼ି ପଡ଼ିଲା ଭୂମିଖଣ୍ଡ ॥
ତାର କୁଟୁମ୍ବ ବନ୍ଧୁ ଯେତେ । ରାକ୍ଷସ ବଳ ଅପ୍ରମିତେ ॥
ଧାଇଁଲେ ଅତି ଖରତରେ । ମିଳିଲେ ରାମର ଛାମୁରେ ॥
କୁତ୍ସିତ ଘୋର ନାଦ କରି । ମାରନ୍ତି ପାଦ ଚାରି ଚାରି ॥
ଦେଖି ଧାଇଁଲେ ହଳଧର । ମଙ୍ଗଳ ଧ୍ୱନି ସୁର ପୁର ॥
ପଛ ଚରଣ କରେ ଧରି । ବୁଲାଇ ଅନ୍ତରାଳ କରି ॥
ଯେକ ଆରକେ ପ୍ରହାରିଲେ । ନିମିଷ ମାତ୍ରେ ସଂହାରିଲେ ॥
ଅସୁରଙ୍କର ଦେହ ସଙ୍ଗେ । ତାଳ ପଡ଼ିଲେ ଭୂମିଭାଗେ ॥
ମେଘ ଆକାଶେ ଯେହ୍ନେ ଢାଙ୍କି । ଅସୁର ଦେହ ବନେ ବ୍ୟାପି ॥
ଦେଖି ସାନନ୍ଦ ଦେବତାୟେ । ସ୍ୱର୍ଗେ କରନ୍ତି ଜୟେଜୟେ ॥
ପୁଷ୍ପ ବରଷି ଦେବତାୟେ । ନିର୍ଭୟ ହୋଇଲେ ଥୋକାୟେ ॥
ତାଳ ଭୁଞ୍ଜିଲେ ଗୋପ ପୋୟେ । ଘରକୁ ଆଣିଲେ ଥୋକାୟେ ॥
ସେ ଦିନୁ ଗୋପ ନର ନାରୀ । ନିର୍ଭୟେ ତାଳ ଭୋଗକରି ॥
ସେ ବନେ ଚରାଇଲେ ଗାଈ । ନିଶ୍ଚିନ୍ତେ ବେଣୁ ଶିଙ୍ଗା ବାଇ ॥
ଦିନ ଅନ୍ତରେ ଗୋପେ ପଶି । ଗୋପୀୟେ କୃଷ୍ଣଙ୍କୁ ପ୍ରଶଂସି ॥
ଗୋପ ବାଳକ ମଧ୍ୟେ ଥାଇ । ରଙ୍ଗେ ନାଚନ୍ତି ବେନି ଭାଇ ॥
ଗୋରଜ ଭୂଷଣ ଶରୀରେ । ଗୁଞ୍ଜା ମୟୂରପୁଚ୍ଛ ଶିରେ ॥
ହୃଦେ ଲମ୍ବଇ ବନମାଳ । କରେ ସୁରଙ୍ଗ ତାଳ ଫଳ ॥
ଗୋପୀୟେ ରାମକୃଷ୍ଣ ଦେଖି । ନିର୍ମଳ କଲେ ଚର୍ମ ଆଖି ॥
କୃଷ୍ଣ ଚାହିଁଲେ ରସଭରେ । ମିଳିଲେ ଯଶୋଦା ମନ୍ଦିରେ ॥
ଆନନ୍ଦେ ଯଶୋଦା ରୋହିଣୀ । କୋଳେ ବସାନ୍ତି ପୁତ୍ର ଆଣି ॥
ପୁତ୍ରକୁ ମାଜଣା କରାଇ । ସର ଲବଣୀ ଅନ୍ନ ଦେଇ ॥
ଶେଯେ ଶୁଆଇ ପୁତ୍ର ବେନି । ସୁସ୍ୱରେ କଲେ ଗୀତ ଧ୍ୱନି ॥
ଯେମନ୍ତେ ବଞ୍ଚିଲେ ରଜନୀ । ପରୀକ୍ଷେ କହେ ଶୁକମୁନି ॥
ରଜନୀ ହୋଇଲା ପ୍ରଭାତ । ବନେ ଚଳିଲେ ଗୋପୀନାଥ ॥
ଗୋପ କୁମରେ ଗାଈ ଘେନି । ଯାନ୍ତେ କରନ୍ତି ବେଣୁ ଧ୍ୱନି ॥

ଘରେ ରହିଲେ ହଳଧର । କୃଷ୍ଣ ମିଳିଲେ ନଦୀ ତୀର ॥
ଗୋରୁ ଚରାନ୍ତି ବନେ ପଶି । ରବି କିରଣ ପରକାଶି ॥
ତୃଷିତେ ନ ପାରନ୍ତି ଚଳି । କାଳିନ୍ଦୀ ହ୍ରଦେ ଯାଇ ମିଳି ॥
ସକଳେ କଲେ ଜଳ ପାନ । ତକ୍ଷଣେ ଛାଡ଼ିଲେ ଜୀବନ ॥
ଗୋରୁ ଗୋପାଳ ପୋଯେ ମରି । ଦେଖି ଚକିତ ନରହରି ॥
ଜଳକୁ ଗୋବିନ୍ଦ ଅନାଇଁ । ବିଚାର କଲେ ଭାବଗ୍ରାହୀ ॥
ଗରୁଡ଼ ପକ୍ଷୀରାଜ ବାଦେ । କାଳୀୟ ଅଛି କାଳି ହଦେ ॥
ତାହାର ବିଷେ ଜଳ ନାଶ । ଜନ୍ତୁୟେ ନ କରନ୍ତି ଗ୍ରାସ ॥
ଯେ ଜଳ ବୃନ୍ଦାବନେ ଥିଲେ । ପ୍ରାଣ ପାଇବ କେହ୍ନୁ ଭଲେ ॥
ଭାରା ନିବାରେ ମୋର ଜାତ । ଜନ୍ତୁୟେ ହୋଇଲେ ଅନାଥ ॥
ନିର୍ବିଷ କରିବଇଁ ଆଜ । ଯେଣେ ମୋହୋର ବଡ଼ କାର୍ଯ୍ୟ॥
ଯେତେ ବିଚାରି ଭାବଗ୍ରାହୀ । ଅମୃତ ନୟନେ ଅନାଇଁ ॥
ଗୋପ ବାଳକ ଗୋରୁ ସଙ୍ଗେ । ଜୀବନ ଦିଲେ ଶିରୀରଙ୍ଗେ ॥
ଗୋରୁ ଗୋପାଳ ଘେନି ହରି । ଗୋପେ ମିଳିଲେ ଦିନ ହେରି ॥
ସେ ହରି ଚରଣ ପଙ୍କଜେ । ଭ୍ରସଳ ଚିତ୍ତ ମୋ ସହଜେ ॥
କୃଷ୍ଣର ଲୀଳା ଭାଗବତ । ଗୀତେ ଗାଇଲା ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଧେନୁକାସୁର ବଧେ ନାମ ଷୋଡ଼ଶୋଽଧ୍ୟାୟଃ ॥*

## ସପ୍ତଦଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ କୃଷ୍ଣ କଥା । ଯେଣେ ଛାଡ଼ିବ ଭବ ବ୍ୟଥା ॥
ରଜନୀ ହୋଇଲା ପ୍ରଭାତ । ବନେ ଚଳିଲେ ଗୋପୀନାଥ ॥
ଗୋପ ଗୋବଛା ସଙ୍ଗେ ଘେନି । ସୁସ୍ୱରେ କଲେ ବେଣୁ ଧ୍ୱନି ॥
ଯେଉଁଠାରେ ବନପୁଷ୍ପ ତୋଳି । କାଳିନ୍ଦୀ ହ୍ରଦେ ଯାଇ ମିଳି ॥
ତୀରେ କଦମ୍ବ ତରୁ ବନ । ଦେଖି ବାଳକେ ତୋଷ ମନ ॥
ବୃକ୍ଷେ ଉଠିଲେ ଧାଡିକାରେ । ଗାଈ ଚରାନ୍ତି ତୀରେ ତୀରେ ॥
ବିଚାର କଲେ ଯଦୁ ସାଇଁ । କାଳିନ୍ଦୀ ଜଳକୁ ଅନାଇଁ ॥
ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର । ବିଷେ ଦୂଷିତ ପୁଣ୍ୟ ନୀର ॥
ଯେ ଜଳେ କାଳୀୟ ନ ଥିବ। ଜଳ ପିଅନ୍ତୁ ସର୍ବଜୀବ ॥
ଯେମନ୍ତ ମନେ ବିଚାରିଲେ । କଦମ୍ବ ବୃକ୍ଷରେ ଉଠିଲେ ॥
ଅତି ଶିଖର ଡାଳେ ଯାଇ । ଖେଳନ୍ତି ଜଳୁ ଅନାଇଁ ॥
ଶୁଣି ପରୀକ୍ଷ ମନ ତୋଷେ । ମୁନିଙ୍କି ବୋଲନ୍ତି ହରଷେ ॥
ଅଗାଧ ଜଳେ ହୃଷୀକେଶ । ସର୍ପକୁ ଦିଲେ ପରବାସ ॥
ଅନେକ ଯୁଗ ଜଳେ ଥିଲା । କୃଷ୍ଣେ କି ଅପରାଧ କଲା ॥
ହରିର ମହିମା ଅଶେଷ । କଂସର ନିମନ୍ତେ ପ୍ରକାଶ ॥
ମାୟା ମନୁଷ୍ୟ ଅବତାର । ଗୁପତେ ଅଛି ନନ୍ଦଘର ॥
ତାର ଚରିତ କର୍ଣ୍ଣେ ଶୁଣି । ଅମୃତ ରସମୟେ ବାଣୀ ॥
ସାଧବ ପ୍ରାଣୀଙ୍କର ମତେ । କେ ଛାଡ଼ି ପାରିବ ତା ଚିତ୍ତେ ॥
ବୋଲନ୍ତି ବ୍ୟାସଙ୍କ ନନ୍ଦନ । ରାଜନ ହୁଅ ସାବଧାନ ॥
ଭାରା ନିବାରଣେ ମୁରାରି । ମନୁଷ୍ୟ ଦେହେ ଅବତରି ॥
ଦୁଷ୍ଟ ନିବାରି ସନ୍ଥ ପାଳି । ଦୟାସାଗର ବନମାଳୀ ॥
କାଳୀୟ ବିଷେ ଜଳ ନାଶ । ଜନ୍ତୁୟେ ନ କରନ୍ତି ଗ୍ରାସ ॥
ଗରଳ ଯୋଗ ଜଳବାୟେ । ପକ୍ଷୀୟେ ନ ଉଡ଼ନ୍ତି ଭୟେ ॥
ବିଷମ ଗରଳ ଲହରୀ । ଜଳ ପିଅନ୍ତେ ଜନ୍ତୁ ମରି ॥
ଦାସବତ୍ସଳ ହୃଷୀକେଶ । ଗାଢ଼େ ପିନ୍ଧିଲେ ପୀତବାସ ॥
ଆନନ୍ଦେ ବାହାସ୍ଫୋଟ ମାରି । କଦମ୍ବ ଡାଳ କରେ ଧରି ॥
ଜଳେ ପଡ଼ିଲେ କୃଷ୍ଣ ଡେଇଁ । ସ୍ୱର୍ଗେ ଦେଖନ୍ତି ଦେବେ ରହି ॥
ଜଳ ଉଛୁଳିଲାକ ବେଗେ । ଶତେକ ଧନୁ ଚାରିଦିଗେ ॥
ହରିର ବଳ ଅପ୍ରମିତ । ଯାହାର ମହିମା ଅନନ୍ତ ॥
ଖେଳନ୍ତି ବେନିଭୁଜ ତାଡ଼ି । ଶବଦ ମେଘ ଘଡ଼ ଘଡ଼ି ॥
କାଳୀୟ ଶୁଣିଲା ପାତାଳେ । କିସ ଶବଦ ମୋର ଜଳେ ॥
ଦେଖିବ ବୋଲି ବିଜେ କଲା। ସହସ୍ରେ ଫଣା ଉଭାରିଲା ॥
ନୟନେ ଦେଖିଲା ମାଧବ । କୋପେ କମ୍ପଇ ଚକ୍ଷୁଶ୍ରବ ॥
ନୀଳ ଜୀମୂତ ଦେହକାନ୍ତି । ମଣି କଙ୍କଣ ଝଟକନ୍ତି ॥
ଶ୍ରୀବତ୍ସ ଚିହ୍ନ ପୀତବାସ । ରଙ୍ଗ ଅଧରେ ମନ୍ଦହାସ ॥
ନିଶ୍ଚିନ୍ତେ ଖେଳନ୍ତି ମୁରାରି । ସର୍ପ ଧାଇଁଲା କୋପକରି ॥
କୋମଳ ଚରଣେ ଦଂଶିଲା । ଦେହ ନିବିଡ଼େ ବନ୍ଦି କଲା ॥
ଗୋପାଳେ ବୃକ୍ଷଶିଖେ ଥିଲେ । ଜଳେ କୃଷ୍ଣଙ୍କୁ ଅନାଇଲେ ॥
କାଳୀୟ କରିଛି ବନ୍ଧନ । ଗରଳ ବହଇ ବଦନ ॥
ନାଗରେ ବନ୍ଧନ ଶରୀର । ଦେଖି କମ୍ପନ୍ତି ଥରହର ॥
ମନ ବଚନ କୃଷ୍ଣ ଦେହେ । ଢଳି ପଡ଼ିଲେ ଶୋକ ମୋହେ ॥
କାନ୍ଦନ୍ତି କୃଷ୍ଣଙ୍କୁ ଅନାଇଁ । ବିକଳେ କେ ପାରିବ କହି ॥
ହୃଦେ ତାଡ଼ନ୍ତି ବେନି ପାଣି । ମୂର୍ଚ୍ଛିତେ ପଡ଼ିଲେ ଧରଣୀ ॥
ଗୋରୁୟେ କୃଷ୍ଣଙ୍କୁ ଅନାଇଁ । କାନ୍ଦନ୍ତି ଚଉଦିଗ ଚାହିଁ ॥
କୃଷ୍ଣର ଦେହେ ଚକ୍ଷୁ ଦେଇ । ଚିତ୍ର ପ୍ରତିମା ପ୍ରାୟେ ହୋଇ ॥
ବଛାୟେ କାନ୍ଦିଣ ବିକଳ । ଆବୋରି କଦମ୍ବର ମୂଳ ॥

ଗୋକୁଳେ ଦିଶିଲା ଅରିଷ୍ଟି । ରୁଧିର ସଙ୍ଗେ ଜଳ ବୃଷ୍ଟି ॥
ଭୂମି କମ୍ପଇ ଥରହର । ଦିବସେ ଘୋର ଅନ୍ଧକାର ॥
ଗଗନେ ଶୁଭେ ଘୋର ନାଦ । ତ୍ରିବିଧ ରିଷ୍ଟ ପରମାଦ ॥
ଦେଖି ଗୋପାଳେ ଖରତର । ମିଳିଲେ ନନ୍ଦର ମନ୍ଦିର ॥
ବୋଲନ୍ତି କାହିଁ ତୋ କୁମର । ରିଷ୍ଟ ପଡ଼ିଲା ଗୋପପୁର ॥
ଶୁଣି ଯଶୋଦା ଥରହର । ରାମର ଧରିଅଛି କର ॥
ନନ୍ଦ ବୋଇଲା ପୁତ୍ର କାହିଁ । ବନେ ଯେ ଘେନିଗଲା ଗାଈ ॥
ଅନନ୍ତ ଅଛି ମୋର ଘରେ । ରିଷ୍ଟ ପଡ଼ିଲା ଗୋପପୁରେ ॥
କି ବୁଦ୍ଧି କରିବଇଁ ମୁହିଁ । କେମନ୍ତେ ପୁତ୍ର ମୁଖ ଚାହିଁ ॥
ଯଶୋଦା ଶୁଣି ମୋହମାନ । ଧରଣୀ ପଡ଼ି ଅଚେତନ ॥
ଶୁଣି କାନ୍ଦନ୍ତି ଗୋପନାରୀ । ଚହଳ ଚଉଦିଗ ପୂରି ॥
ସକଳେ ରାମ ଘେନି ସଙ୍ଗେ । ମିଳିଲେ ବୃନ୍ଦାବନ ଲାଗେ ॥
କୃଷ୍ଣ ଚରଣ ଚିହ୍ନ ଚାହିଁ । ଚାଲନ୍ତି ଅଙ୍ଗୁଳି ଦେଖାଇ ॥
କାଳିନ୍ଦୀ ନିକଟେ ମିଳିଲେ । ଗୋପ ଗୋ ବଛାଙ୍କୁ ଚାହିଁଲେ ॥
ଜଳେ ଦେଖିଲେ ଦାମୋଦର । ନାଗରେ ବନ୍ଧନ ଶରୀର ॥
ବିଷ ଅନଳେ ଅଚେତନ । ଗରଳ ବହଇ ବଦନ ॥
ଦେଖି କାନ୍ଦନ୍ତି ଉଚ୍ଚସ୍ୱରେ । ଗୋରୁ ଗୋପାଳ ତୀରେ ତୀରେ
ବିକଳେ ହୋଇ ମୂରୁଛିତ । ନିର୍ଜୀବ ହୋଇ ଭୂମିଗତ ॥
ଗୋପୀଙ୍କ ଚକ୍ଷୁ କୃଷ୍ଣ ଦେହେ । କାନ୍ଦନ୍ତି ଅତି ମାୟା ମୋହେ ॥
ପ୍ରଳୟ ମଣିଲେ ଜଗତ । କୃଷ୍ଣର ଦେହେ ସର୍ପାଘାତ ॥
ଯଶୋଦା ଦେଖି ମୋହଗତ । ଗୋପୀ ହୋଇଲେ ଭୂମିଗତ ॥
ସୁତକୁ ଚାହିଁ ଅଚେତନ । ନନ୍ଦର ଦେହେ ନାହିଁ ଜ୍ଞାନ ॥
ବାଳୁତ କାଳୁ ଯେତେ ଗୁଣ । କାନ୍ଦଇ କହି ପୁଣ ପୁଣ ॥
ଜଳେ ପଶନ୍ତେ କୃଷ୍ଣ ମାତ । ଗୋପୀ ଧଇଲେ ପାଦହସ୍ତ ॥
ନିଶ୍ଚୟେ ଦେଖି ହଳଧର । ଆବୋରି କାଳିନ୍ଦୀର ତୀର ॥
ରାମ ବୋଲନ୍ତି ରହ ରହ । ଦେଖିବା ଶ୍ରୀକୃଷ୍ଣର ଦେହ ॥
ଗୋକୁଳ ମନ ଜାଣି ହରି । କାଳୀୟ ଅଛି ବନ୍ଦି କରି ॥
କୃଷ୍ଣର ଦେହ ଲାଗି ଲାଗି । ସର୍ପର ଗଣ୍ଠିଛନ୍ଦ ଭାଙ୍ଗି ॥
ତକ୍ଷଣେ କୃଷ୍ଣଙ୍କୁ ଛାଡ଼ିଲା । ସମ୍ଭାଳି ନପାରି ବୁଡ଼ିଲା ॥
ଉଠିଲା ଖଣ୍ଡେ ଦୂରେ ଯାଇ । ଗର୍ଜଇ କୃଷ୍ଣଙ୍କୁ ଅନାଇଁ ॥
ଫଣା ସହସ୍ରେ ଉଭାରିଲା । ଗରଳ ଅଗ୍ନି ଉଦ୍ଗାରିଲା ॥
ଜିହ୍ୱା ବୁଲାଇ ଅନ୍ତରାଳେ । ନାଗ କୋଟିୟେ ଛନ୍ତି ମେଳେ ॥
ନାଦ କରନ୍ତି ଫୁ ଫୁ କାର । ଗରଳ ଦୃଷ୍ଟି ନିରନ୍ତର ॥
କୋପେ କୃଷ୍ଣଙ୍କୁ ଗୋଡ଼ାଇଲା । ଶବଦେ ବ୍ରହ୍ମାଣ୍ଡେ କମ୍ପିଲା ॥
ମାୟା ମନୁଷ୍ୟ ଅବତାର । ତୀରେ ଦେଖନ୍ତି ସୁର ନର ॥
ସର୍ପକୁ ଚାହିଁ ନରହରି । ବୁଡ଼ିଲେ ସର୍ପେ ମାୟାକରି ॥
କାଳୀୟ ଖୋଜିଲା ଅନେକ । ଗଭୀର ଜଳ ଦୀର୍ଘପାଖ ॥
ଲୋଡ଼ି ନ ପାଇ ଦାମୋଦର । ପୁଣି ଟେକିଲା ନିଜ ଶିର ॥
କୃଷ୍ଣଙ୍କୁ ଦେଖିଲା ନିକଟେ । ଗୋପୀ ଗୋପାଳ ଜଳ ତଟେ ॥
ଦେଖି ପଳାନ୍ତି ଚକ୍ରଧର । ଘୂରିଲେ ମଣ୍ଡଳ ଆକାର ॥
ସର୍ପ ଗୋଡ଼ାଇ ନ ପାରିଲା । ଫୁଟିଣ ଗରଳ ଛାଡ଼ିଲା ॥
କୃଷ୍ଣର ଅବସର ଚାହିଁ । ଗର୍ଜଇ ରସନା ବୁଲାଇ ॥
ଦଂଶଇ ପୁଣ ପୁଣ ପାୟେ । ଗରଳ ଛାଡ଼େ କୃଷ୍ଣ ଦେହେ ॥
ଗୋବିନ୍ଦ କୋପ ଗରୁତର । ଉଠିଲେ କାଳୀୟ ଉପର ॥
ସର୍ପର ମୁଣ୍ଡେ ମଣିଥିଲା । ଶ୍ରୀକୃଷ୍ଣ ଚରଣେ ଲାଗିଲା ॥
ମଣିର ତେଜ ରଙ୍ଗବର୍ଣ୍ଣ । ସୁନ୍ଦର ଶ୍ରୀହରି ଚରଣ ॥
ତ୍ରିଭଙ୍ଗୀ ଛନ୍ଦେ ଉଭାହୋଇ । ନାଚନ୍ତି ଗୋପାଳଙ୍କୁ ଚାହିଁ ॥
କୃଷ୍ଣର ନୃତ୍ୟ ଦେବେ ଚାହିଁ । ମିଳିଲେ ବୃନ୍ଦାବନେ ଯାଇ ॥
ତାଣ୍ଡବ ରସେ ଗୀତ ଗାଇ । ଗନ୍ଧର୍ବେ ବେଣୁ ବୀଣା ବାଇ ॥
କୁସୁମ ବରଷିଲେ ଆଣି । ଯେ ଯାହା ମତେ ସ୍ତୁତି ଭଣି ॥
ଶୁଣି ସାନନ୍ଦ ବନମାଳୀ । ନୃତ୍ୟ କରନ୍ତି ପାଦଚାଳି ॥
ପ୍ରାଣ ହୋଇଲା କଣ୍ଠାଗ୍ରତ । ସହସ୍ରେ ଫଣା ମୂରୁଛିତ ॥
ଯେବଣ ଫଣା ଉଚ୍ଚେ ଥାଇ । ବେଗେ ଉଠନ୍ତି କୃଷ୍ଣ ଯାଇ ॥
ରୋଷେ ନାଚନ୍ତି ପାଦ ଚାଳି । ରୁଧିର ସର୍ପ ମୁଖୁଁ ଗଳି ॥
କାଳୀୟ ମନେ ବିଚାରିଲା । ନିଶ୍ଚୟେ ମରଣ ହୋଇଲା ॥
ହରିଙ୍କି ପଶିବି ଶରଣ । ଡାକିଲା ରଖ ନରାୟଣ ॥
କାଳୀୟ ଶିରେ କୃଷ୍ଣ ଥାଇ । ଜାଣିଲେ ପ୍ରଭୁ ଭାବଗ୍ରାହୀ ॥
ଦାସ ବତ୍ସଳ ପୀତବାସ । କ୍ଷଣେ ହୋଇଲେ ଉଶ୍ୱାସ ॥
କାଳୀୟ ଜୀବନ ପାଇଲା । ଗୋବିନ୍ଦ ମୁଖକୁ ଚାହିଁଲା ॥
ସଭୟେ ନ ପାରଇ ଚାହିଁ । ଭୟେ କମ୍ପଇ ତାର ଦେହୀ ॥
ଶତେକ ପତ୍ନୀ ତାର ଥିଲେ । ସ୍ୱାମୀର ମରଣ ଜାଣିଲେ ॥
ହରି ମହିମା ସେ ଜାଣନ୍ତି । ନାମ ଜପନ୍ତି ନିତି ନିତି ॥
ସୁତ ଦୁହିତା ଆଗକରି । କରେ ଘେନିଲେ ଅର୍ଘ୍ୟସ୍ଥାଳୀ ॥
ଗନ୍ଧ ଚନ୍ଦନ ନାନା ମଣି । ନିର୍ମଳ ପଦ୍ମମାଳ ଘେନି ॥
କୃଷ୍ଣର ନିକଟେ ମିଳିଲେ । ବାଳକ ତଳେ ଶୁଆଇଲେ ॥
ପାଦେ ପଡ଼ିଲେ ସର୍ବବାଳୀ । ଆନନ୍ଦେ ଦେଖନ୍ତି ମୁରାରି ॥
କେଶ ବସନ ଅସମ୍ଭାଳ । ନୟନୁ ବହେ ଅଶ୍ରୁଜଳ ॥
ଉଠି କରନ୍ତି ଜୟେ ଜୟେ । ସ୍ୱର୍ଗେ ଦେଖନ୍ତି ଦେବତାୟେ ॥

ବୋଲନ୍ତି ଶରଣ ତୋହୋର । ତ୍ରାହି କରିବା ଚକ୍ରଧର ॥
ସର୍ପକୁ ଦଣ୍ଡିବା ଉଚିତ । ଭାରା ନିବାରେ ତୋର ଜାତ ॥
ତୋହୋର ରିପୁ ମିତ୍ର ନାହିଁ । ତୋର ଭିଆଣ ସର୍ବଦେହୀ ॥
ଭଗତି କରନ୍ତି ଯେ ତୋତେ । ଯେ ଅବା ଭଜେ ଶତ୍ରୁ ମତେ ॥
ଦୁହିଙ୍କି ଦେଉ ଯେକଗତି । ଦୟାସାଗର ଦାଶରଥି ॥
ଆମ୍ଭକୁ କଲୁ ଅନୁଗ୍ରହ । ହେଲେ ନାଶିଲୁ ଦ୍ୱନ୍ଦ୍ୱ ମୋହ ॥
ସର୍ପ ହୋଇଲା ପାପକାରୀ । ତୋତେ ପାଇଲା ନରହରି ॥
ଯେହାରେ ତରିଲୁଁ ସକଳେ । ବନ୍ଧୁବାନ୍ଧବ ନାଗବଳେ ॥
କେତେ ଯେ ପୂର୍ବେ ତପ କଲା । ଅନେକ ଅନ୍ନଦାନ ଦିଲା ॥
ଜଳ ଦେଉଳ ନାନା ମତେ । ଜନ୍ତୁଙ୍କୁ ଦୟା ହୃଦଗତେ ॥
ତୋ ନାମ ଭଜି ଯେ ଆନନ୍ଦ । ତେଣୁ ପାଇଲା ପଦ୍ମପାଦ ॥
କେତେ ବା ତପ ଅଛି କରି । ତୋ ପାଦ ରେଣୁ ଶିରେ ଧରି ॥
ତାହା ପାଇବ ବୋଲି ପୁଣି । ତପ କରଇ କମଳିନୀ ॥
ତୋ ପାଦରଜ ପାଇ ଜନେ । ଅଧିକ ନ ବାଞ୍ଛନ୍ତି ମନେ ॥
ସ୍ୱର୍ଗ ଭୋଗକୁ ତୁଚ୍ଛ କରି । ବ୍ରହ୍ମାପଦକୁ ନ ବିଚାରି ॥
ନକରି ରାଜପଣେ ସଧ । ଯୋଗ ସମାଧି ଦେହ ସିଦ୍ଧ ॥
ଯେଣେ ନୁହଇ ସାବଧାନ । ତୋ ପାଦେ ଥାଇ ଯାର ମନ ॥
ଦୁର୍ଲଭ ଅଟୁ ଦୁଷ୍ଟ ଚିତ୍ତେ । ଯେ ତୋତେ ଦାଇଲା କେମନ୍ତେ
ତମ ଗୁଣରେ ଅଛି ଭେଦି । ବିଶେଷ ସର୍ପ ପରମାଦୀ ॥
ତୋତେ ଯେ ନିକଟେ ପାଇଲା । ଯେଣୁ ଅନେକ ପୁଣ୍ୟ କଲା ॥
ନିର୍ଗୁଣ ଆତ୍ମା ଗୁଣବନ୍ତ । ନମଇଁ ପ୍ରଭୁ ଭଗବନ୍ତେ ॥
ପଞ୍ଚଭୂତଙ୍କ ଆତ୍ମା ତୁହି । ତୋହୋର ଆଦିଅନ୍ତ ନାହିଁ ॥
ଜ୍ଞାନ ବିଜ୍ଞାନ ଦାତା ହେଉ । ତ୍ରିଗୁଣ ମାୟାରୂପ ବହୁ ॥
ସୃଷ୍ଟି ପାଳଣ କରୁ ଅନ୍ତ । ତୁ କାଳରୂପୀ ଗୋପୀନାଥ ॥
ଅନନ୍ତରୂପ ସୂକ୍ଷ୍ମମୟେ । ତ୍ରିଗୁଣ ଭେଦୁ ନିଜ ଦେହେ ॥
ନିଗମମତେ ମାୟାକରି । ଜଗତେ ହେଉ ରୂପଧାରୀ ॥
ତୋ ହୋଇ ଦେହେ ତିନିଲୋକେ । କର୍ମ ଭୁଞ୍ଜନ୍ତି ଦୁଃଖସୁଖେ ॥
ଯେ ସାଧୁମତେ ତୋତେ ଭଜେ । ସେ ତୋର ଦିଲାଫଳ ଭୁଞ୍ଜେ ॥
ଯେ ତୋତେ ନ ଭଜନ୍ତି ଜନେ । ସେ ପ୍ରାଣୀ ତରିବେ କେସନେ
ଆମ୍ଭର ସ୍ୱାମୀ ଯେକାବେଳେ । ଦ୍ରୋହ ଯେ କଲା ପାଦତଳେ ॥
ଯେ ଦୋଷ ସହିବା ମୁରାରି । ଆମ୍ଭେ ତୋହୋର ପରିବାରୀ ॥
ପ୍ରାଣ ଛାଡ଼ିବ ଯେହିକ୍ଷଣି । ତୁ କି ନ ଜାଣୁ ଚକ୍ରପାଣି ॥
ଆମ୍ଭକୁ ସ୍ୱାମୀ ଦିଅ ଦାନ । ତୋର ଶରଣ ଭଗବାନ ॥
ଯେବେ କରିବୁଁ କିସ କହ । ବିଚାର କରି ଆଜ୍ଞା ଦିଅ ॥

ପରୀକ୍ଷେ ଶୁକମୁନି କହେ । ଶୁଣି ହସନ୍ତି ଦେବରାୟେ ॥
ନାଗକାମିନୀ ସ୍ତୁତି ଦେଖି । ଦୟା ବଳିଲା ପଦ୍ମଆଖି ॥
ପାଦ ପ୍ରହାର ଛାଡ଼ି କରି । ଉଶ୍ୱାସ ହୋଇଲେ ମୁରାରି ॥
କାଳୀୟ ଜୀବନ ପାଇଲା । କୃଷ୍ଣର ମୁଖକୁ ଚାହିଁଲା ॥
ସଭୟେ ଶୋକ ଗଦ ଗଦେ । ପୁଣି ପଡ଼ଇ ପଦ୍ମପାଦେ ॥
ତୁ ମୋତେ କଲୁ ସର୍ପେ ଜାତ । ସ୍ୱଭାବ ଛାଡ଼ିବି କେମନ୍ତ ॥
ତାମସ ଗୁଣେ ଜାତ କରି । ଗରଳେ କଲୁ ଅଧିକାରୀ ॥
ଯେଣୁ ମୁ କ୍ରୋଧଭର ହୋଇ । ସ୍ୱଭାବ ଛାଡ଼ି ନ ପାରଇ ॥
ତୋହର ମାୟା ଜାଣୁ ତୁହି । ଭୋ ନାଥ ରଖ ଭାବଗ୍ରାହୀ ॥
ମୁ ତୋତେ କଲି ଅପରାଧ । ବିଚାରି ଦଣ୍ଡ ପଦ୍ମନାଭ ॥
ଯେ ତୋର ଇଚ୍ଛା ମୋତେ କର । ତୋରେ ଶରଣ ଚକ୍ରଧର ॥
ସର୍ପ ବିକଳ କର୍ଣ୍ଣେ ଶୁଣି । ଦୟା ସାଗର ଚକ୍ରପାଣି ॥
ବୋଲନ୍ତି ସର୍ପ ମୁଖ ଚାହିଁ । କାଳିନ୍ଦୀ ଜଳେ ନ ଥା ତୁହି ॥
ବନ୍ଧୁ ବାନ୍ଧବ ଘେନି ସଙ୍ଗେ । ସମୁଦ୍ରେ ପଶ ଯାଇ ବେଗେ ॥
ଜଳଧି ଦ୍ୱୀପ ମଧଗତେ । ଗରୁଡ଼ ଭୟ ନାହିଁ ତୋତେ ॥
ମୋହୋର ପାଦ ତୋର ଶିରେ । ଲାଗିଲା ସହସ୍ର ଫଣାରେ ॥
ଗରୁଡ଼ ଦେଖି ନିସ୍ତରିବ । ତୋହୋର ଚରଣେ ପଡ଼ିବ ॥
ନିର୍ଭୟ ହୋଇ ବେଗେ ଯାଅ । ମୋର ଭଗତି ହୃଦେ ବହ ॥
ଯେ ଜଳ ଅମୃତ ମୁ କରି । ଗରଳ ଦୂରେ ପରିହରି ॥
ଯେ ବନେ ଯେତେ ବନଚାରୀ । ଆନନ୍ଦେ ଜଳ ପାନକରି ॥
ସୁଖେ ବଞ୍ଚିବେ ସର୍ବ ଜୀବେ । ଯେ ବନେ ନିଶ୍ଚିନ୍ତେ ରହିବେ ॥
ଶୁଣ କାଳୀୟ ମୋ ଉତ୍ତର । କହଇ ତୋତେ ଦୟାଭର ॥
ତୋର ମୋହୋର ଯେ ଚରିତ । ଯେ ସୁମରିବେ ଅବିରତ ॥
ସର୍ପ ବିଘାତେ ନାହିଁ ବାଧା । ଯେ ମୋତେ ସୁମରେ ତ୍ରିସନ୍ଧ୍ୟା ॥
ଯେ ଜଳେ ସ୍ନାହାନ କରିବେ । ପିତୃ ତର୍ପଣ ପିଣ୍ଡ ଦେବେ ॥
ଆହାର ତେଜି ଉପବାସେ । ଜାଗର ଦେଇ ନଦୀ ପାଶେ ॥
ମୋ ନାମେ ରଜନୀ ବଞ୍ଚିବେ । ସକଳ ପାପୁଁ ସେ ତରିବେ ॥
ହରି ଆଦେଶ ଘେନି ଶିରେ । ତୀରେ ଉଠିଲା ଧାଡିକାରେ ॥
କୁଟୁମ୍ବ ଘେନିଣ ସଙ୍ଗରେ । ପୂଜିଲା ଗୋବିନ୍ଦ ପୟରେ ॥
ଗନ୍ଧ ଚନ୍ଦନ ରଙ୍ଗ ବାସ । ଅମୂଲ୍ୟ ରତ୍ନମଣି ତ୍ରାସ ॥
କମଳ ମାଳ କଣ୍ଠେ ଦେଇ । ନାରୀ ଆନନ୍ଦେ ଗୀତ ଗାଇ ॥
କୁଟୁମ୍ବ ଘେନି ପ୍ରଦକ୍ଷିଣ । କାଳୀୟ କଲା ପୁଣ ପୁଣ ॥
ଉତ୍ତର ଦିଗକୁ ଚାହିଁଲା । ଗୋବିନ୍ଦ ଆଦେଶେ ଚଳିଲା ॥
ସେ ଦିନୁ ଜଳପାନ କରି । ଆନନ୍ଦ ଗୋପ ନରନାରୀ ॥

ସେ ହରି ଚରଣ କମଳେ । ମନ ମୋ ରହୁ ରସ ଭୋଳେ ॥
ସୁଜନ ଜନେ ଯେଣେ ରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*କାଳୀୟ ମୋକ୍ଷଣେ ନାମ ସପ୍ତଦଶୋଽଧ୍ୟାୟ ।*

## ଅଷ୍ଟାଦଶ ଅଧ୍ୟାୟ

### ପରୀକ୍ଷିତ ଉବାଚ

ବୋଲନ୍ତି ଅଭିମନ୍ୟୁ ସୁତ । ଭୋ ମୁନି କହ ଭାଗବତ ॥
କେବଣ ହେତୁ କାଳୀ ସର୍ପ । ଛାଡ଼ିଲା ରମଣକ ଦ୍ୱୀପ ॥
ଗରୁଡ଼େ କରି ଅପରାଧ । ପଶି ସେ ଥିଲା କାଳୀ ହ୍ରଦ ॥
ହରି ଚରଣ ଧରି ଶିରେ । ଆନନ୍ଦେ ଗଲା ନିଜ ପୁରେ ॥
ଯେ କଥା କହ ମୁନି ମତେ । ସଂସାରୁ ତରିବି ଯେମନ୍ତେ ॥

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନି ତୋଷେ । ଗୋବିନ୍ଦ ଚରଣ ବିଶ୍ୱାସେ ॥
ଶୁଣ ହୋ କାଳୀୟର କଥା । ତୁ ମୋକ୍ଷପଦେ ବଳବନ୍ତା ॥
ବ୍ରହ୍ମା ଯେ ସଂସାର ଭିଆଇ । ଯେ ଯାହା ମତେ ସ୍ଥାନ ଦେଇ ॥
କାଳୀୟ ଆଦି ଯେତେ ସର୍ପ । ଥୋଇଲା ରମଣକ ଦ୍ୱୀପ ॥
ନିର୍ଭୟ ହୋଇଥାନ୍ତି ତହିଁ । ଗରୁଡ଼େ ବଳିଭୋଜ୍ୟ ଦେଇ ॥
ବନ ଗହନ ବୃକ୍ଷେ ମୂଳ । ଗରୁଡ଼ ପୂଜନ୍ତି ସକଳ ॥
ମାସକେ ନାନା ଉପହାର । ପାଳି ପଡ଼ଇ ଯାହା ଘର ॥
ସେ ବଳିଭୋଜ୍ୟ ଦେଇ ତୋଷେ । ପୂଜନ୍ତି ଜୀବନର ଆଶେ ॥
ଯେମନ୍ତେ କାଳୀୟର ଘରେ । ପାଳି ପଡ଼ିଲା ଯେକ ବାରେ ॥
ନାଗେ କହିଲେ ଯାଇ ବେଗେ । ପାଳି ପଡ଼ିଲା ତୋର ଭାଗେ ॥
ଶୁଣି କାଳୀୟ ତୋଷ ଚିତ୍ତେ । ସଞ୍ଚା ସେ କଲା ନାନାମତେ ॥
ଦର୍ପେ ନାଗଙ୍କର ରାଜା । ଅନେକ କଲା ବଳିଭୋଜ୍ୟା ॥
ବୃକ୍ଷର ମୂଳେ ନେଇ ଥୋଇ । ଅନେକ ବାଦ୍ୟନାଦ ବାଇ ॥
କାଳୀୟ ବିଚାରଇ ଦେଖି । ଗରୁଡ଼ ବୋଲି କେଡ଼େ ପକ୍ଷୀ ॥
ଯେତେକ ଭୋଜ୍ୟ ତାରେ ଦେବି । ତେବେ ସେ ନିର୍ଭୟ ହୋଇବି ॥
ଯେ ବଡ଼ ଇଚ୍ଛା ମୋତେ ହୋଇ। ବାସୁକି ମୋର ସାନ ଭାଇ ॥
ଯେକ ଫଣାରେ ମହୀ ଧରି । ମୁ କିମ୍ପା ଗରୁଡ଼କୁ ଡରି ॥
ଆଜ ଗଞ୍ଜିବି ତାର ବଳ । ନିର୍ଭୟ ହେଉ ନାଗକୁଳ ॥
କେ ଅବା ନ ଜାଣନ୍ତି ମୋତେ । ବ୍ରହ୍ମାଣ୍ଡ ମଧ୍ୟେ ଛନ୍ତି ଯେତେ ॥
ଯେମନ୍ତ ବିଚାରିଲା ମନେ । ସବୁ ଖାଇଲା ଦୁଷ୍ଟ ପଣେ ॥
ଯାଆରେ ବୋଲି ଆଜ୍ଞା ଦିଲା । ଆପଣେ ବନସ୍ତେ ରହିଲା ॥
ସହସ୍ରେ ଫଣା ଫୁ ଫୁ କରି । ବଦନେ ଅନଳ ଉଦ୍‌ଗାରି ॥
ଯେମନ୍ତେ ରଜନୀ ହୋଇଲା । ଗରୁଡ଼ ପକ୍ଷୀ ବିଜେ କଲା ॥
ଗଗନ ପୂରିଲା ଶବଦେ । କାନନେ ମିଳିଲା ଆନନ୍ଦେ ॥
ବୃକ୍ଷମୂଳକୁ ଦିଲା ଚାହିଁ । ଦେଖିଲା ବଳିଭୋଜ୍ୟ ନାହିଁ ॥
ମନେ ପାଇଲା ଗୁରୁ ତାପ । ମିଳିଲା କାଳୀୟ ସମୀପ ॥
କୋପେ ଚାହିଁଲା ଖଗନାଥ । ଆବୋରି କାଳୀୟର ପଥ ॥
ଗର୍ବେ ଗରୁଡ଼ କୋପଭରେ । କାଳୀୟ ମିଳିଲା ଛାମୁରେ ॥
ସହସ୍ରେ ଫଣା ମେଘ ପ୍ରାୟେ । ଦଂଶିଲା ଗରୁଡ଼ର ଦେହେ ॥
ଅର୍ଦ୍ଧ ଯୋଜନ ଘୁଞ୍ଚିଗଲା । ପୁଣି ହିଁ ଆଗେ ଓଗାଳିଲା ॥
ବିନତୀ ସୁତ ଦେଖି ଧାଇଁ । ଚାପୋଡ଼େ ପ୍ରହାରିଲା ନେଇ ॥
ହରିଙ୍କି ବହଇ ଯେ କନ୍ଧେ । ତାହାର କାହିଁ ପରମାଦେ ॥
ଗରୁଡ଼ ପକ୍ଷୀ ଘାତପାଇ । କାଳୀୟ ମୂର୍ଚ୍ଛାଗତ ଯାଇ ॥
ଘଡ଼ିକେ ଜୀବନ ପାଇଲା । ପବନୁ ବେଗେ ପଳାଇଲା ॥
କାଳିନ୍ଦୀ ହ୍ରଦେ ପଶିଗଲା । ପାତାଳ ବିବରେ ଲୁଚିଲା ॥
କାଳୀୟ ଜାଣଇ ତଦନ୍ତ । ଗରୁଡ଼ ନ ପଶଇ ଯେଥ ॥
ନିର୍ଭୟେ ବନ୍ଧୁଜନ ସଙ୍ଗେ । ଜଳେ ରହିଲା ନବରଙ୍ଗେ ॥
ଗରୁଡ଼ ବାହୁଡ଼ିଲା ଦେଖି । ନିଜ ଭୁବନେ ବିଜେ କଲା ॥
ଶୁଣି ସାନନ୍ଦ ମହୀପତି । ମୁନିଙ୍କି ଚାହିଁ ତୋଷ ମତି ॥

### ପରୀକ୍ଷିତ ଉବାଚ

ବୋଲଇ ନିସ୍ତରିଲି ମୁହିଁ । ତୋର ବଚନେ ମନ ଦେଇ ॥
ଭୋ ମୁନି ଅସମ୍ଭବ କଥା । ଗରୁଡ଼ ମହା ବଳବନ୍ତା ॥
ଗୋବିନ୍ଦ ଯାହାର ଠାକୁର । କେ ତାର ତୁଲେ ବଳିଆର ॥
କାଳିନ୍ଦୀ ଜଳେ ନ ପଶିଲା । ମୋତେ ତ ସନ୍ଦେହ ଲାଗିଲା ॥

### ଶ୍ରୀ ଶୁକ ଉବାଚ

ହସି ବୋଲନ୍ତି ବ୍ୟାସ ସୁତ । ଶୁଣ ହେ ନୃପତି ତଦନ୍ତ ॥
ପୂର୍ବେ ସେ ନଦୀ ତୀର ବନେ । ତପ କରନ୍ତି ମୁନିଜନେ ॥
ସୌଭରି ନାମେ ବ୍ରହ୍ମଋଷି । ତପ କରନ୍ତି କୂଳେ ବସି ॥
ମୁନି ନିକଟେ ମଛଗଣେ । କୂଳେ ଚରନ୍ତି ଅନୁକ୍ଷଣେ ॥
ବିଶ୍ୱାସ ଭାବେ ନିତିନିତି । ମୁନିଙ୍କି ନ କରନ୍ତି ଭ୍ରାନ୍ତି ॥
ଦିନେକ ପ୍ରଭାତର କାଳେ । ଆସି ମିଳିଲେ ମାଛ ବାଳେ ॥
ରୋହିତ ନାମେ ମଛରାଜ । ଖେଳଇ ଉଭାରିଣ ଲାଞ୍ଜ ॥
ବାଳକ ମଧ୍ୟେ କ୍ରୀଡ଼ା କରି । ଦେଖନ୍ତି ମୁନି ସଉଭରି ॥
ଯେମନ୍ତେ ଗରୁଡ଼ ମିଳିଲା । କାଳିନ୍ଦୀ ଜଳେ ଅନାଇଲା ॥

ଆହାର ମନେ ଲୋଡୁଥିଲା । ତକ୍ଷଣେ ଜଳେ ଓହ୍ଲାଇଲା ॥
ନିଷ୍ଠଳେ ନିହାରଇ ମାଛ । ମୁନି ତା ଦେଖିଲେ ପ୍ରତକ୍ଷ ॥
ମୁନି ବୋଲନ୍ତି ରହ ରହ । ଯେ ମାନେ ଅଟନ୍ତି ମୋ ଦେହ ॥
ଗରୁଡ଼ ନ ଶୁଣିଲା କର୍ଣ୍ଣେ । ରୋହିତ ଗିଳିଲା ବହନେ ॥
ଦେଖି ଚକିତ ମୁନିବର । କୋପେ କମ୍ପିଲେ ଗୁରୁତର ॥
ବୋଲନ୍ତି ହରିଙ୍କି ଯେ ବହି । ଯେହାକୁ କୋପ ନ ଯୋଗାଇ ॥
ମୁହିଁ କରିଲେ ଯେହା ନାଶ । କୋପ କରିବେ ପୀତବାସ ॥
ଯେମନ୍ତେ ମନ ସ୍ଥିର କରି । କୋପେଣ ବୋଲନ୍ତି ସୌଭରି ॥
ରେ ରେ ଗରୁଡ଼ ଏଡ଼େ ଗର୍ବ । ମୋତେ ଦେଖାଇଲୁ ସ୍ୱଭାବ ॥
ମୋହର ମନେ କଲୁ ତାପ । ଉଚିତେ ଘେନ ମୋର ଶାପ ॥
କାଳିନ୍ଦୀ ହ୍ରଦେ ନ ପଶିବୁ । ଜୀବନେ ଯେତେ କାଳ ଥିବୁ ॥
ଯେବେ ପଶିବୁ ଦୁଷ୍ଟପଣେ । ଭସ୍ମ ହୋଇବୁ ତତକ୍ଷଣେ ॥
ଶୁଣି ପଳାଇ ଖଗପତି । ମିଳିଲା ନାରାୟଣ କତି ॥
ତାହା କାଳୀୟ ଥିଲା ଜାଣି । ଲୁଚିଲା ମନେ ମନେ ଗୁଣି ॥
ଶୁଣ ପରୀକ୍ଷ ଧଣ୍ଡଧାରୀ । କୂଳେ ବିଜୟେ ନରହରି ॥
କୃଷ୍ଣର ଦେଖିଣ ବଦନ । ଆନନ୍ଦ ଯଶୋଦାର ମନ ॥
ଗୋପୀ ଗୋପାଳ ବେଗେ ଧାଇଁ । କୋଳ କରନ୍ତି ଚୁମ୍ବ ଦେଇ ॥
ହରିଙ୍କି ପାଇ ତୋଷ ଚିତ୍ତେ । ଚିନ୍ତା ଛାଡ଼ିଲେ ହୃଦ ଗତେ ॥
କୃଷ୍ଣଙ୍କୁ ଦେଖି ହଳଧର । କୋଳ କରନ୍ତି ସହୋଦର ॥
ଗାଈ ଗୋବଛା ଦେଖି ତୋଷେ । ବିପ୍ରେ ମିଳିଲେ ନନ୍ଦପାଶେ ॥
ବୋଲନ୍ତି ଭାଗ୍ୟବନ୍ତ ତୁହି । ଯେମନ୍ତେ ଦେଖିଲା ତ ନାହିଁ ॥
ଯେତେ ଆପଦୁଁ ପୁତ୍ର ତରି । ନିଶ୍ଚୟେ ରଖିଲେ ମୁରାରି ॥
ପୂର୍ବେ ଯାହାର ପୁଣ୍ୟ ଥାଇ । ସକଳ ଦୁଃଖୁ ସେ ତରଇ ॥
କାଳୀୟ ବିଷଜାଳ ବାୟେ । ପକ୍ଷୀଏ ନ ଉଡ଼ନ୍ତି ଭୟେ ॥
କଲ୍ୟାଣ ହେଉ ତୋ କୁମର । କହି ଚଳିଲେ ବିପ୍ରବର ॥
ଯେମନ୍ତେ ହୋଇଲା ରଜନୀ । ଗୋପାଳେ ରାମକୃଷ୍ଣ ଘେନି ॥
ଗୋପକୁ ଯାଇ ନ ପାରିଲେ । ରଜନୀ ବଞ୍ଚିବା ବୋଇଲେ ॥
କ୍ଷୁଧା ପିପାସା ଦୁଃଖ ଭରେ । ଶୋଇଲେ କାଳିନ୍ଦୀର ତୀରେ ॥
ଯେମନ୍ତେ ଶୁଣ ମହୀପତି । ଅଗ୍ନି ବେଢ଼ିଲା ଚଉକତି ॥
ଦଇବେ ନିଦାଘର କାଳ । ବନ ଦହଇ ଅନ୍ତରାଳ ॥
ପ୍ରଳୟ ଜଳ ପ୍ରାୟେ ଧାଇଁ । ବେଢ଼ିଲା ଗୋପାଳଙ୍କୁ ଯାଇ ॥
ନିଦ୍ରାରେ ନ ଜାଣନ୍ତି କେହି । ରଜନୀ ଅର୍ଦ୍ଧେ ଅଛି ହୋଇ ॥
ଯେମନ୍ତେ ଗୋପାଳେ ଦେଖିଲେ। ବେଗେ ଶୟନ ଉପେଖିଲେ ॥
ଅଗ୍ନି ଜଳଇ ପରଖର । ପବନ ଯୋଗେ ବଳିଆର ॥
ଦେଖି ଗୋପାଳେ ଖରତରେ । ପଶିଲେ କାଳିନ୍ଦୀ ଭିତରେ ॥
ଡାକନ୍ତି ରଖ ନାରାୟଣ । ଗୋକୁଳେ ତୋହୋର ଶରଣ ॥
କୃଷ୍ଣ ତୁ ସଂକଟୁ ତାରିଲୁ । ତୁ ନାଥ ପରମ ଦୟାଳୁ ॥
ଯେବେ ଆପଦୁଁ ରଖ ତୁହି । ଅନାଥ ହୋଇଲୁଁ ଗୋସାଇଁ ॥
ଗାଈ ଗୋପାଳ ଗୋପୀ କାନ୍ଦି । ଅନଳ ଆଣିଲା ନିରୋଧି ॥
ଗୋକୁଳ କଷ୍ଟ ଦେଖି ହରି । ଅନନ୍ତ ମାୟା ଯୋଗ କରି ॥
ଦାସ ବତ୍ସଳ ଗୋପୀନାଥ । ଅନଳ କଲେ ଗର୍ଭଗତ ॥
ମାୟାରେ ଜଳଧର ଆସି । ବୃଷ୍ଟି କରନ୍ତି ବନେ ପଶି ॥
ତକ୍ଷଣେ ଅନଳ ଲିଭିଲା । ରବି କିରଣ ପ୍ରକାଶିଲା ॥
ଶୁଭେ ପାହିଲା ଘୋର ନିଶି । ନିର୍ମଳ ଦଶ ଦିଗ ଦିଶି ॥
ଯେ ହରି ମହିମା ଅନନ୍ତ । ଅନନ୍ତ ଶକ୍ତି ଗୁଣେ ଯୁତ ॥
ଗୋପୀ ଗୋପାଳ ରକ୍ଷା କରି । ଗୋପେ ମିଳିଲେ ନରହରି ॥
ସେ ହରି ଚରଣାର ବିନ୍ଦେ । ମୋ ମନ ଭ୍ରମର ଆନନ୍ଦେ ॥
ନିଷ୍ଠିନ୍ତେ ମକରନ୍ଦ ରସ । ସେବଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମ ସ୍କନ୍ଧେ*
*ଦାବାଗ୍ନି ନିବାରଣେ ନାମ ଅଷ୍ଟାଦଶୋଽଧ୍ୟାୟଃ ।*

## ଊନବିଂଶ ଅଧ୍ୟାୟ

### ଶ୍ରୀ ଶୁକଉବାଚ

ଯେବେ ହୋ ଶୁଣ ନରନାଥ । ଅମୃତ କୃଷ୍ଣର ଚରିତ ॥
ଗୋପାଳେ ବୃନ୍ଦାବନେ ଥିଲେ । ସୁଖେ ରଜନୀ ବଞ୍ଚାଇଲେ ॥
ରାମ ଗୋବିନ୍ଦ ଘେନି ସଙ୍ଗେ । ମିଳିଲେ ଗୋପପୁର ଲାଗେ ॥
ଯେଝା ମନ୍ଦିରେ ଗୋପେ ଯାଇ । କହନ୍ତି ବୃତ୍ତାନ୍ତ ବସାଇ ॥
କୃଷ୍ଣର ଯେତେ କର୍ମମାନ । ଶୁଣି ହୋଇଲେ ତୋଷ ମନ ॥
ମାୟା ଗୋପାଳ ରୂପ ହୋଇ । କ୍ରୀଡ଼ା କରନ୍ତି ବେନିଭାଇ ॥
ଯେମନ୍ତେ ଶୁଣ ପରୀକ୍ଷିତ । ସ୍ୱଭାବେ ସରିଲା ବସନ୍ତ ॥
ନିଦାଘ କାଳ ଆଗମନ । ଘ୍ରମେ ତାପିତ ସର୍ବଜନ ॥
ସର୍ବଦା ବସନ୍ତ ପବନ । ସଧୀରେ ବହେ ବୃନ୍ଦାବନ ॥
ବସନ୍ତ ନୁହେଁ ନା ଦୁର୍ଲଭ । ଯେ ବନେ ଶ୍ରୀରାଧା ମାଧବ ॥
ଅରୁଣ ତେଜ ନ ଲାଗଇ । ଯହିଁ ବିଜୟେ ଭାବଗ୍ରାହୀ ॥
ସ୍ୱଭାବେ କୁସୁମିତ ବନ । ମୃଗ ମୟୂର ପକ୍ଷୀସ୍ୱନ ॥
ତାଣ୍ଡବ ରସେ ସୁଖେ ହରି । ବୃନ୍ଦାବନରେ କ୍ରୀଡ଼ା କରି ॥
ବାଳକେ ରାମକୃଷ୍ଣ ମେଳେ । ଯୁଦ୍ଧ କରନ୍ତି ବାହୁବଳେ ॥

କୃଷ୍ଣର ନୃତ୍ୟ ଦେଖି ପୋୟେ । ରାମଙ୍କୁ ବେଢ଼ିଲେ ଥୋକାୟେ ॥
ଖେମଟା ରସେ ଗୀତଗାଇ । କେ ଧାଇଁ ଶିଙ୍ଗା ନାଦ ବାଇ ॥
ଚାଳ ମୁରଲୀ ଗାଇଲୁ ର । ନାଚନ୍ତି ବ୍ରହ୍ମାଣ୍ଡ ଠାକୁର ॥
ନୃତ୍ୟର ଅନ୍ତେ ପରଶଂସା । ପୋୟେ କରନ୍ତି ଗୀତରସା ॥
ଆକାଶ ତେଜି ସୁରଗଣେ । ବେଗେ ମିଳିଲେ ବୃନ୍ଦାବନେ ॥
ମାୟା ବାଳକ ରୂପ ହୋଇ । ସ୍ତୁତି କରନ୍ତି କୃଷ୍ଣ ଚାହିଁ ॥
କୃଷ୍ଣର ସଙ୍ଗେ ନୃତ୍ୟ କରି । ବୁଲନ୍ତି ବୃନ୍ଦାବନେ ହେରି ॥
ଘୂରାଇ ଯେଙ୍କୁ ଆରେ ଧରି । ଡାକନ୍ତି ବାହାନାଦ କରି ॥
କୃଷ୍ଣ ଉଠିକେ ଉଚ୍ଚ ବୃକ୍ଷେ । ଫଳ ତୋଳିଲେ ନାନା ଶିଖେ ॥
ପୋୟେ ଆଣିଲେ ଯେଝାମତେ । ଅମର ଲୋକେ ଯୂଥ ଯୂଥେ ॥
ଯେକ ଆରକେ ମରାମରି । ଯୁଦ୍ଧ କରନ୍ତି ପଦଚାଳି ॥
କେ ପଛେ ଥାଇ ଚକ୍ଷୁ ବୁଜି । ନାମ ଧରନ୍ତି ମନେ ହେଜି ॥
ମୃଗର ପ୍ରାୟେ ହୋଇ ଧାଇଁ । ପକ୍ଷୀଙ୍କ ପ୍ରାୟେ କେ ଉଡ଼ଇ ॥
ଭେକର ପ୍ରାୟେ କେ ଡିଅନ୍ତି । ଚାଲନ୍ତି ଯେହ୍ନେ ହଂସ ପନ୍ତି ॥
ବସ୍ତ୍ର ବାନ୍ଧନ୍ତି ବୃକ୍ଷ ଡାଳେ । ଦୋଳି ବସନ୍ତି କୁତୂହଳେ ॥
ପର୍ବତ କୁଞ୍ଜ ନଦୀକୂଳେ । ଖେଳନ୍ତି ଗୋପେ କୃଷ୍ଣ ମେଳେ ॥
ଗାଈ ଚରାଇ ବେଣୁ ବାଇ । ବନେ ଖେଳନ୍ତି ବେନି ଭାଇ ॥
ଯେମନ୍ତେ କଂସର ଅସୁର । ବନେ ମିଳିଲା ନଦୀ ତୀର ॥
ପ୍ରଳମ୍ବ ନାମେ ମହାବଳୀ । ଲୁଚି ଦେଖଇ କୃଷ୍ଣ କେଳି ॥
କ୍ଷଣକେ ସହି ନ ପାରିଲା । ଗୋପାଳ ରୂପେକ ଧରିଲା ॥
ଅସୁର ବିଚାରଇ ମନେ । ଯେହାଙ୍କୁ ମାରିବି କେସନେ ॥
ଗୋପାଳ ମେଳେ ଥିବି ବସି । ମୋର ନିକଟେ ଯେବେ ଆସି ॥
ମୁଣ୍ଡ ମୋଡ଼ିବି ଧରି କରେ । କହିବି କଂସର ଛାମୁରେ ॥
ଯେମନ୍ତେ ବିଚାରଇ ମନେ । ଲତାରେ ଥାଇ ବୃନ୍ଦାବନେ ॥
ତାହା ଜାଣିଲେ ଭାବଗ୍ରାହୀ । ବୋଲନ୍ତି ଗୋପାଳଙ୍କୁ ଚାହିଁ ॥
ବାଳକେ ଶୁଣ ମୋ ଉତ୍ତର । ମୁହିଁ ଜାଣଇଁ ଖେଡ଼ ସାର ॥
ରାଜା ପରଜା ଖେଡ଼ ଅଛି । ଆସ ଖେଳିବା ବଳ ଆଞ୍ଜି ॥
ଶୁଣି ସାନନ୍ଦ ମନେ ହସି । ରୁଣ୍ଡ ହୋଇଲେ ପୋୟେ ଆସି ॥
ରାମ ଗୋବିନ୍ଦ କରି ରାଜା । ସକଳେ ହୋଇଲେ ପରଜା ॥
ଅଧେ ହୋଇଲେ ରାମ ସଂଗେ । ଥୋକେ ହୋଇଲେ କୃଷ୍ଣ ଭାଗେ ॥
କୃଷ୍ଣ ବୋଇଲେ ଦୁଇ ଦୁଇ । ବଳ କଷିବା ଯୁଦ୍ଧ ବିହି ॥
ଖେଡ଼ ପାଞ୍ଚିଲେ ଗୋପ ପୋୟେ । ମାୟା ଭିଆଣେ ଦେବରାୟେ
ଜଣ ଜଣକେ ନାମ ଧରି । ଯୁଦ୍ଧେ ପେଷିଲେ ନରହରି ॥
ସୁଦାମ ନାମେ ଗୋପବାଳେ । ଯୁଝିଲା ଗୋବିନ୍ଦର ତୁଲେ ॥
ପ୍ରଳମ୍ବାସୁର ତୁଲେ ରାମ । ବୃଷଭ ତୁଲେ ଭଦ୍ରସେନ ॥
ଯେତେ ଭିଆଇ ଭାବଗ୍ରାହୀ । ବୋଇଲେ ଗୋପାଳଙ୍କୁ ଚାହିଁ ॥
ପୀଢ଼ କରିବା ଯୁଦ୍ଧ କରି । ସଂଗ୍ରାମେ ଯେ ଯାହାକୁ ହାରି ॥
ଭାଣ୍ଡୀର ବଟତଳେ ନେଇ । ଥୋଇବ କନ୍ଧରେ ବସାଇ ॥
ହେଉ ବୋଇଲେ ଗୋପବାଳେ । ଯୁଝନ୍ତି ଯେ ଯାହାର ମେଳେ ॥
ହାରିଲେ କନ୍ଧ କରି ନେଇ । ବେଗେଣ ବଟତଳେ ଥୋଇ ॥
ଯେମନ୍ତେ ପ୍ରଭୁ ଦଇତାରି । ସୁଦାମ ତୁଲେ ଯୁଦ୍ଧ କରି ॥
ଯୁଦ୍ଧେ ହାରିଲେ ନରହରି । ବଟେ ଛାଡ଼ିଲେ କନ୍ଧେ କରି ॥
ପ୍ରଳମ୍ବାସୁର ରାମ ସଙ୍ଗେ । ପଡ଼ିଲା ପଞ୍ଝା ପଞ୍ଝ ରଙ୍ଗେ ॥
ଯୁଦ୍ଧ କରନ୍ତି ଗୁରୁତର । ରାମଙ୍କୁ ହାରିଲା ଅସୁର ॥
ତକ୍ଷଣେ ବସାଇଲା କନ୍ଧେ । ମନେ ବିଚାରଇ ଆନନ୍ଦେ ॥
ଯେହାଙ୍କୁ ବଟଯାୟେ ନେଇ । ଘେନି ପଳାଇ ଯିବି ମୁହିଁ ॥
ମୁଣ୍ଡ ମୋଡ଼ିବି ବନେ ପଶି । ପୁଣି ମିଳିବି ଯେଥେ ଆସି ॥
କୃଷ୍ଣ ପଡ଼ିବ ଯେତେବେଳେ । ତକ୍ଷଣେ ନେବି ଅନ୍ତରାଳେ ॥
କଂସ ଛାମୁରେ ଦେବି ନେଇ । ନିଶ୍ଚିନ୍ତେ ଭୁଞ୍ଜିବ ସେ ମହୀ ॥
ଯେତେ ବିଚାରି ମହାସୁର । କନ୍ଧେ ବସାଇ ହଳଧର ॥
ଭାଣ୍ଡୀର ବଟ ଗଲା ଜିଣି । ତାହା ଜାଣିଲେ ହଳପାଣି ॥
କୋଟିୟେ ମେରୁ ଯେହ୍ନେ ଭାର । ଚଳି ନ ପାରିଲା ଅସୁର ॥
ତକ୍ଷଣେ ନିଜ ରୂପ ଧରି । ଅସୁର ଗଗନେ ସଞ୍ଚରି ॥
ନିର୍ମଳ ମେଘ ଦେହ କାନ୍ତି । ରତ୍ନ ଭୂଷଣ ଝଟକନ୍ତି ॥
ସ୍ୱଭାବେ ନାନା ଅଳଂକାର । ତେଜେ ବିରାଜିଲା ଅସୁର ॥
କି ଅବା ଦେବା ପଟାନ୍ତର । ଯାହାର କନ୍ଧେ ହଳଧର ॥
ବିଜୁଳି ଘେନି କଳାମେଘେ । ଯେସନେ ଶଶାଙ୍କର ଲାଗେ ॥
ଗଗନେ ଯାଉଅଛି କ୍ଷେପି । ରାମ ଡରିଲେ ତାହା ଦେଖି ॥
ଭ୍ରୂକୁଟି କୁଟିଳ ପ୍ରପଞ୍ଚ । ବିକଟ ଦନ୍ତ ତୀକ୍ଷ୍ଣ ଉଚ୍ଚ ॥
ସୁବର୍ଣ୍ଣ ତେଜ ଦେହ ଝଳି । ନୀଳ ଜଳଦେ କି ବିଜୁଳି ॥
ତକ୍ଷଣେ ପ୍ରଭୁ ହଳଧର । ଜାଣିଲେ ନିଶ୍ଚୟେ ଅସୁର ॥
ମୁଷ୍ଟିୟେ ପ୍ରହାରିଲେ ମୁଣ୍ଡେ । ବଜ୍ର ଯେସନେ ଗିରିଖଣ୍ଡେ ॥
ମୁଣ୍ଡ ହୋଇଲା ଶତେ ଚୂର । ଶବଦ କଲା ମହା ଘୋର ॥
ରୁଧିର ନିକିଳିଲା ମୁଖେ । ପଡ଼ିଲା ଗୋବର୍ଦ୍ଧନ ପାଖେ ॥
ଦେଖି ଚକିତ ଗୋପପୋୟେ । ସ୍ୱର୍ଗେ ଯେ ଥିଲେ ଦେବତାୟେ ॥
ସକଳେ ସାଧୁ ସାଧୁ ଭଣି । ପୁଷ୍ପ ସିଞ୍ଚିଲେ ଦେବେ ଆଣି ॥
ବଳଦେବଙ୍କୁ ଧରି କୋଳେ । ଚୁମ୍ବନ ଦ୍ୟନ୍ତି ଗୋପବାଳେ ॥
ଅବନୀ ହୋଇଲା ଆନନ୍ଦ । ବାଳ ମୂରତି ଆଦିକନ୍ଦ ॥
ସେ ରାମ ଚରଣେ ବିଶ୍ୱାସ । ଶରଣ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ପ୍ରଳମ୍ବାସୁର ବଧେ ନାମ ଊନବିଂଶୋଽଧ୍ୟାୟ ।*

## ବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ ନନ୍ଦନ । ରାଜନ ହୁଅ ସାବଧାନ ॥
ଖେଳନ୍ତି ରାମ ଶିରୀ ହରି । ଗୋରୁଯେ ଗଲେ ବନେ ଚରି ॥
ଚରନ୍ତେ ତୃଣ ଲୋଭ ପାଇ । ମିଳିଲେ ଗିରିକୁଞ୍ଜେ ଯାଇ ॥
ଅଜା ମହିଷୀ ଗୋରୁ ସଙ୍ଗେ । ପ୍ରବେଶ କୁଞ୍ଜ ବନ ଲାଗେ ॥
ଅନଳ ଆବୋରିଲା ଆସି । କୁଞ୍ଜ ଗହନେ ଛନ୍ତି ପଶି ॥
ବିକଳେ ଚଉଦିଗ ଚାହିଁ । କାନ୍ଦନ୍ତି କୃଷ୍ଣ ମନେ ଧାୟି ॥
ପୋୟେ ଯେ ଥିଲେ କୃଷ୍ଣସଙ୍ଗେ । ଖେଳୁଁ ଚାହିଁଲେ ଚଉଦିଗେ ॥
ବିକଳେ ଖେଦମନ ହୋଇ । ଲୋଡ଼ନ୍ତି ବନେ ବନେ ଯାଇ ॥
ଗୋରୁଙ୍କ ଖୋଜ ଅନୁସରି । ଡାକନ୍ତି ଗାଈ ନାମ ଧରି ॥
ଗାଈଙ୍କି ନ ଦେଖି ବିକଳ । ପଛେ ଗୋଡ଼ାନ୍ତି ଆଦିମୂଳ ॥
ପଥ ନ ପାଇ କୁଞ୍ଜବନେ । ପୋୟେ କାନ୍ଦନ୍ତି ଦୁଃଖ ମନେ ॥
ତୃଷିତ ହୋଇ ବାହୁଡ଼ିଲେ । କୃଷ୍ଣର ନିକଟେ ମିଳିଲେ ॥
ପୁଅଙ୍କ ଦୁଃଖ ଦେଖି ହରି । ବୃକ୍ଷେ ଉଠିଲେ ଦଉଡାରି ॥
ନୀଳ ଜୀମୂତ ଦେହ ଝଳି । ପୀତ ବସନ ବନମାଳୀ ॥
ଯେଝାର ନାମ ଶୁଣି କର୍ଣ୍ଣେ । ହୁଂକାର କଲେ ତୋଷମନେ ॥
ଯେମନ୍ତେ ବେଢ଼ିଲା ଅନଳ । ଯେସନେ ପ୍ରଳୟର କାଳ ॥
ପବନ ବେଗେ ଖରତର । ପ୍ରଚଣ୍ଡ ଧୂମ ମହାଘୋର ॥
ଅନଳ ଦେଖି ଗୋପବାଳେ । କୃଷ୍ଣଙ୍କୁ ଡାକନ୍ତି ବିକଳେ ॥
ହେ ରାମକୃଷ୍ଣ ଦେଖ ବେଗେ । ଅଗ୍ନି ବଢ଼ିଲା ଚଉଦିଗେ ॥
ଆମ୍ଭେ ତୋହର ବନ୍ଧୁବଳ । ତୋହୋର ଶରଣ ଗୋକୁଳ ॥
ମୁନି ବୋଲନ୍ତି ଶୁଣ ରାୟେ । ଗୋକୁଳେ କଲେ କୃଷ୍ଣଜୟେ ॥
ବୋଲନ୍ତି ଶୁଣ ଗୋପ ସୁତେ । ଚକ୍ଷୁନ୍ତ ବୁଜ ଯେଝାମତେ ॥
ଶୁଣି ଲୋଚନେ କର ଦେଇ । ବୋଲନ୍ତି କୃଷ୍ଣ ତ୍ରାହିତ୍ରାହି ॥
ଗୋବିନ୍ଦ ମାୟା ଯୋଗବଳେ । ଅଗ୍ନି ଗିଳିଲେ କଣ୍ଠନାଳେ ॥
ଗୋପ କୁମରେ ବେଗେ ଧାଇଁ । ମିଳିଲେ ବଟମୂଳେ ଯାଇ ॥
ଭାଣ୍ଡୀର ତଳେ ଚକ୍ଷୁ ଫେଇ । ସଭିଯେଁ ଚଉଦିଗେ ଚାହିଁ ॥
ଗୋରୁଯେ ମିଳିଲେ ତକ୍ଷଣ । ରଙ୍ଗେ ନାଚନ୍ତି ନାରାୟଣ ॥
ହରିଙ୍କି ଚାହିଁ ଗୋପ ପୋୟେ । ଗୁପତେ ଭାଳନ୍ତି ଥୋକାଏ ॥
କିଯେ କେବଣ ଦେବତାଯେ । ଜାତ ହୋଇଛି ନରଦେହେ ॥
ଅନେକ ସଂକଟୁ ତାରିଲା । ଯଶୋଦା ଦେବୀ ଭାଗ୍ୟ କଲା ॥
ଯେମନ୍ତେ ରବି ଅସ୍ତକାଳେ । ଗୋବିନ୍ଦ ଘେନି ଗୋପ ବାଳେ ॥
ଗୋପେ ହୋଇଲେ ପରବେଶ । ବେଣୁ ଶବଦେ ଗୀତରସ ॥
ଗୋପୀଯେ ନ ଦେଖି ମୁରାରି । ଯୁଗ ମଣନ୍ତି ଯେକ ଘଡ଼ି ॥
ପରମାନନ୍ଦ ମୁଖ ଚାହିଁ । ଚିନ୍ତା ଛାଡ଼ିଲେ ତୋଷ ହୋଇ ॥
ସୁଜନେ ହରିପାଦେ ଚିନ୍ତ । ସଂସାରେ ନୁହ ମୂଢ଼ ମତ ॥
ସମ୍ପଦ ସ୍ୱପନ ପରାୟେ । ଚିଆଇଁ ଚିନ୍ତ ଦେବରାୟେ ॥
ନିସ୍ତାର ହୋଇବ ଯେମନ୍ତ । ଭଣଇ ବିପ୍ର ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ଦାବାଗ୍ନି ଭକ୍ଷଣେ ନାମ ବିଂଶୋଽଧ୍ୟାୟଃ ।*

## ଯେକବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ହରି ରସ । ଦୁ ଅଟୁ ଗୋବିନ୍ଦର ଦାସ ॥
ହରି ମହିମା ଶୁଣି କର୍ଣ୍ଣେ । ଗୋପୀ ଗୋପାଳ ତୋଷମନେ ॥
ରାମକୃଷ୍ଣଙ୍କୁ ପରଶଂସି । କି ଯେ ଦେବତା ମଧ୍ୟେ ଆସି ॥
ନୋହିଲେ ଯେଡ଼େ କର୍ମ କାହିଁ । ବିଷମ ସଙ୍କଟୁ ତାରଇ ॥
ଯେମନ୍ତେ ଗ୍ରୀଷ୍ମକାଳ ଗଲା । ବରଷା ଋତୁ ପ୍ରସରିଲା ॥
ସକଳ ଋତୁଙ୍କର ସାର । ଶସ୍ୟ ସମ୍ପଦ ମଣ୍ଡପୁର ॥
ମେଘେ ମିଳିଲେ ଶୂନ୍ୟପଥେ । ବିଜୁଳି ଶବଦ ସଙ୍ଗତେ ॥
ଭୂମି ସାଗର ଶୂନ୍ୟ ବ୍ୟାପି । ନୀଳ ଜୀମୂତ ବିଶ୍ୱରୂପୀ ॥
ଗଗନେ ମେଘାଚ୍ଛନ୍ନ ହୋଇ । ଜ୍ୟୋତି ପ୍ରକାଶ ନ ଦିଶଇ ॥
ସଗୁଣେ ବ୍ରହ୍ମ ପରକାଶ । ଯେସନେ ନିବିଡ଼ ଆକାଶ ॥
ଭୂମିର ରସ ଅଷ୍ଟମାସ । ଆଦିତ୍ୟ କରିଥିଲା ଗ୍ରାସ ॥
ତେଙ୍କେ ଅବନୀ ଦୁଃଖ ଚାହିଁ । ଜଳ ଛାଡ଼ିଲା ତୋଷ ହୋଇ ॥
ଘୋର ଶବଦେ ମେଘମାଳ । ଗର୍ଜଣ ବରଷନ୍ତି ଜଳ ॥
ପୃଥିବୀ ରବିବର ତରାସେ । ତାପିତ ଥିଲା ଅଷ୍ଟମାସେ ॥
ଜଳ ପାଇଲା ତୋଷ ଚିତ୍ତେ । ତପସ୍ୱୀ ଜନଙ୍କର ମତେ ॥
ତପର ଫଳ ଯେହ୍ନେ ପାଇ । ଭୁଞ୍ଜନ୍ତି ଆବୋରିଣ ଦେହୀ ॥
ଖଦ୍ୟୋତ କୀଟ ନିଶାମୁଖେ । ଜଗତ ଆବୋରନ୍ତି ସୁଖେ ॥
ପାଷାଣ୍ଡେ ଯେହ୍ନେ କଳିଯୁଗେ । ବେଦ ନିନ୍ଦନ୍ତି ଯୋଗମାର୍ଗେ ॥
ମଣ୍ଡୁକେ ମେଘନାଦ ଶୁଣି । ଗର୍ଜନ୍ତି ଆବୋରିଣ ପାଣି ॥
ରଜନୀ ଅନ୍ତେ ବିପ୍ରଜନେ । ହରିଙ୍କି ଚିନ୍ତନ୍ତି ଯେସନେ ॥
ଅଳପ ନଦୀଯେ ପୂରିଲେ । ଲହରୀ ମତେ ଉଛୁଳିଲେ ॥
ପୁଣି ଶୁଖନ୍ତି ଜଳ ଅନ୍ତେ । ନିର୍ମଳ ଯୋଗୀଙ୍କର ମତେ ॥
ଶସ୍ୟ ସମ୍ପଦ ମହୀ ଦିଶି । ଯେ ଯାହାମତେ ଗୁଣରାଶି ॥

ଛତ୍ରୁୟେ ଛତ୍ରପ୍ରାୟେ ହୋଇ । ରାଜାଙ୍କ ପ୍ରାୟେ ଦିଶେ ମହୀ ॥
ଶସ୍ୟ ସମ୍ପଦ କ୍ଷେତ୍ରମାନ । ଦେଖି ଆନନ୍ଦ କୃଷିଜନେ ॥
ଦରିଦ୍ରଙ୍କର ଦୁଃଖ ନାଶେ । ତାପ କେ ପାଇଲେ ବିଶେଷେ ॥
ଜନ୍ତୁୟେ ଯେତେ ଜଳସ୍ଥଳେ । ଜଳ ଭକ୍ଷିଲେ କୁତୂହଳେ ॥
ଦିନକୁ ଦିନ ପୁଷ୍ଟ ହୋଇ । ହରିସେବକ ପ୍ରାୟେ ଦେହୀ ॥
ସମୁଦ୍ର ନଦୀଙ୍କର ମେଳେ । କ୍ଷୋଭ ପାଇଲା ପୂର୍ଣ୍ଣଜଳେ ॥
ଅଳପ ଯୋଗୀଙ୍କର ଚିତ୍ତ । ଯେହ୍ନେ ଚଞ୍ଚଳ ଗୁଣ ଗ୍ରସ୍ତ ॥
ପର୍ବତେ ଜଳଧାରା ଘାୟେ । ଛିଡ଼ନ୍ତେ ନ କରନ୍ତି ଭୟେ ॥
କୃଷ୍ଣ ଆଶ୍ରିତ ପ୍ରାଣୀ ଯେହ୍ନେ । ଦୁଃଖିତ ନୁହନ୍ତି ବ୍ୟସନେ ॥
ପଥେ ହୋଇଲେ ତୃଣ ଢାଙ୍କି । ଚରଣେ ଦିଲେ ମନଭ୍ରାନ୍ତି ॥
ବ୍ରାହ୍ମଣେ ବେଦ ପାସୋରିଲେ । ଯେମନ୍ତ ହୋନ୍ତି ପଚାରିଲେ ॥
ଜଗତ ବନ୍ଧୁ ମେଘମାଳେ । ବିଜୁଳି ନ ରହେ ନିଶ୍ଚଳେ ॥
ଗୁଣୀ ପୁରୁଷଙ୍କର ମେଳେ । ବିଟପୀ ଯେହ୍ନେ ମନ ଟଳେ ॥
ଶବଦ ତୁଲେ ଇନ୍ଦ୍ରଚାପ । ଗଗନେ ଶ୍ୱେତ ପୀତ ରୂପ ॥
ତୃତୀୟ ଗୁଣେ ହୋଇ ଯୁତ । ନିର୍ଗୁଣ ପୁରୁଷ ଯେମନ୍ତ ॥
ଚନ୍ଦ୍ର ନ ଦିଶେ ମେଘାଚ୍ଛନ୍ନେ । ମିଥ୍ୟା ବଚନେ ସତ୍ୟ ଯେହ୍ନେ ॥
ମୟୂରେ ଗିରିପୃଷ୍ଠେ ଥାଇ । ନୃତ୍ୟ କରନ୍ତି ମେଘ ଚାହିଁ ॥
ଅତିଥି ଦେଖି ବିଷ୍ଣୁଜନେ । ଯେସନେ ତୋଷ ହୋନ୍ତି ମନେ ॥
ବୃକ୍ଷଙ୍କ ମୂଳେ ଜଳରାଶି । ଫଳ ପଲ୍ଲବ ପରଶଂସି ॥
ତପର ଅନ୍ତେ ଫଳ ପାଇ । ତପସ୍ୱୀ ଯେହ୍ନେ ତୁଷ୍ଟ ହୋଇ ॥
ଜଳ କୁକୁଟ ରାଜହଂସ । ପଙ୍କ କଣ୍ଟକେ କଲେ ବାସ ॥
ବରଷା ଦେଖି ନରନାରୀ । ଯେସନେ ଗୃହବାସ କରି ॥
ଜଳପ୍ରବାହେ ବନ୍ଧ ଭାଙ୍ଗି । ଯେହ୍ନେ ପାଷାଣ୍ଡେ ବେଦ ନିନ୍ଦି ॥
ପବନ ଯୋଗେ ମେଘ ବଢ଼ି । ଅମୃତ ପ୍ରାୟେ ଜଳଛାଡ଼ି ॥
ବିପ୍ରଙ୍କ ବୋଲେ ମହୀପାଳେ । ଯେହ୍ନେ ଦିଅନ୍ତି ଦାନ କାଳେ ॥
ବରଷା କାଳେ ବନ ଭୂଇଁ । ଖଜୁର ଜମ୍ବୁକ ପାଚଇ ॥
ଗୋରୁ ଗୋପାଳ ସଙ୍ଗେ ଘେନି । ବନେ ବିଜୟେ ଅନ୍ତର୍ଯ୍ୟାମୀ ॥
ଗାଈୟେ ସ୍ତନ ଭରା ହୋଇ । କର୍ଦ୍ଦମେ ନ ପାରନ୍ତି ଯାଇ ॥
କୃଷ୍ଣର ଡାକ ଶୁଣି କର୍ଣ୍ଣେ । ନିକଟେ ମିଳିଲେ ବହନେ ॥
ବନସ୍ତେ ଯେତେ ଜନ୍ତୁ ଥିଲେ । ଗିରି କନ୍ଦରେ ଆଶ୍ରେ କଲେ ॥
ସକଳ ବୃକ୍ଷେ ମଧୁ ସ୍ରବ । ବରଷା ଋତୁର ସ୍ୱଭାବ ॥
ଗାଈ ଚରାନ୍ତି କୃଷ୍ଣ ବାଳ । ଭକ୍ଷନ୍ତି ଫଳ କନ୍ଦମୂଳ ॥
ବସନ୍ତି ବୃକ୍ଷଙ୍କର ତଳେ । ଦିନ ହରନ୍ତି ବୃଷ୍ଟି ବେଳେ ॥
ଦଧି ଅନ୍ନ ହିଁ ଘରୁ ଆଣି । ଜଳ ନିକଟେ ଚକ୍ରପାଣି ॥

ଗୋପାଳ ମେଳେ ବେନିଭାଇ । ଭୁଞ୍ଜନ୍ତି ପାଷାଣରେ ଥୋଇ ॥
କୋମଳ ଘାସେ ପଶୁ ଗଣେ । ଚୋବାନ୍ତି ମୁଦ୍ରିତ ଲୋଚନେ ॥
ବରଷା କାଳ ଦେଖି ହସି । ଆପଣା ତେଜ ପରଶଂସି ॥
ବନେ ବୁଲନ୍ତି ନନ୍ଦ ବାଳ । ପ୍ରବେଶ ଶରଦର କାଳ ॥
ଶୁକଳ ମେଘ ଶୂନ୍ୟେ ଦିଶି । ନିଷ୍ଠୁର ପବନ ପ୍ରକାଶି ॥
ଭୂମିରେ ଯେତେ ଜଳ ଥିଲେ । ଶିଶିର ସମୂହେ ଶୁଖିଲେ ॥
ଭ୍ରଷ୍ଟ ଯୋଗୀଙ୍କ ଚିତ୍ତ ଯେହ୍ନେ । ପୁଣି ନିଶ୍ଚଳ ଯୋଗଧ୍ୟାନେ ॥
ଶରଦ ଭୟେ ମେଘ ଗଲା । ଆକାଶ ନିର୍ମଳ ଦିଶିଲା ॥
ନାନା ଜୀବଙ୍କ ଗହଳ । ଜଳୁଁ ହରିଲା ପଙ୍କ ମଳ ॥
ହରି ଭଗତି ବଳେ ଯେହ୍ନେ । ପାତକ ନ ଲାଗଇ ମନେ ॥
ସକଳ ଜଳ ଛାଡ଼ି ମେଘେ । ଶୁଭ୍ର ଦିଶିଲେ ଶୂନ୍ୟ ମାର୍ଗେ ॥
ସଂସାର ମୋହ ଛାଡ଼ି ଜନେ । ଯେହ୍ନେ ଦିଶନ୍ତି ଯୋଗ ଧ୍ୟାନେ ॥
ପର୍ବତେ ଯେତେ ଜଳ ଥିଲେ । ସଞ୍ଚରି ଭୂମିରେ ପଡ଼ିଲେ ॥
ଜ୍ଞାନ ଅମୃତେ ତୋଷ ହୋଇ । ଶିଷ୍ୟକୁ ଗୁରୁ ଯେହ୍ନେ କହି ॥
ଅଳପ ଜଳେ ଜନ୍ତୁ ଥାଇ । ରବି କିରଣ ଭୟ ପାଇ ॥
ଜୀବନ ଦିନୁ ଦିନ କ୍ଷୀଣ । ଦରିଦ୍ର କୁଟୁମ୍ବ ଯେସନ ॥
ଗଭୀର ଜଳେ ମୀନ ଥିଲେ । ଶିଶିର ବୃଷ୍ଟି ନ ଜାଣିଲେ ॥
ଜଳେ ରମନ୍ତି ତୋଷ ଚିତ୍ତେ । ଅଜ୍ଞାନୀ ଜନଙ୍କର ମତେ ॥
ଭୂମିରେ ପଙ୍କ ଧୀରେ ଧୀରେ । ଶୁଖିଲେ ଶରଦ ଶିଶିରେ ॥
ଯେସନେ ଯୋଗ ଲୟ ପାଇ । ଅଜ୍ଞାନ ଭାବ କ୍ଷୟ ଯାଇ ॥
ଶରଦ ଗୁଣ ମର୍ମ ଭେଦି । ନିଶ୍ଚଳ ହୋଇଲା ଜଳଧି ॥
ବେଦ ବେଦାନ୍ତେ ପାଇ ତତ୍ତ୍ୱ । ଯେସନେ ଜ୍ଞାନୀଙ୍କର ମତ ॥
କୃଷକେ ମିଳି ଧାନ୍ୟ ଖେତେ । ଜଳ ବାନ୍ଧିଲେ ଦୃଢ଼ ଚିତ୍ତେ ॥
ଯୋଗୀୟେ ପବନର ବଳେ । ଯେହ୍ନେ ସାଧନ୍ତି ଇଷ୍ଟକାଳେ ॥
ଶରଦ ରବି ତେଜ ଲାଗି । ଜନ୍ତୁୟେ ହୋନ୍ତି ଦୁଃଖଭାଗୀ ॥
ରଜନୀ ନାଥ ତାହା ହରି । ଯେହ୍ନେ ଗୋବିନ୍ଦ ବ୍ରଜନାରୀ ॥
ନିର୍ମଳ ଦିଶେ ଶୂନ୍ୟପଥ । ଗ୍ରହ ନକ୍ଷତ୍ର ନିଶାନାଥ ॥
ଶବଦ ବ୍ରହ୍ମ ଜାଣି ଯେହ୍ନେ । ସାଧୁପୁରୁଷଙ୍କର ମନେ ॥
ନକ୍ଷତ୍ରଗଣ ମଧ୍ୟେ ଶଶୀ । ଅଖଣ୍ଡ ମଣ୍ଡଳ ପ୍ରକାଶି ॥
ଯାଦବ ଭୋଜବଂଶ ମଧ୍ୟେ । ଗୋବିନ୍ଦ ଯେସନେ ଆନନ୍ଦେ ॥
ଚନ୍ଦ୍ର କୁମୁଦ ଜଳରାଶି । ପବନ ପ୍ରସରଇ ନିଶି ॥
ଗାଈ ହରିଣୀ ପକ୍ଷୀ ନାରୀ । ଶରଦ ଋତୁ ମଧ୍ୟେ ଚାରି ॥
ଇଚ୍ଛା କରନ୍ତି ସ୍ୱାମୀ ସଙ୍ଗ । ମାୟା ଭିଆଣ ଶିରୀରଙ୍ଗ ॥
କୁମୁଦ ବିନା ଜଳ ଫୁଲେ । ଆନନ୍ଦ ଆଦିତ୍ୟର ତୁଲେ ॥

ରାଜାର ତେଜ ପରଶଂସି । ପ୍ରଜାଯେ ଚୋରେ ଅବିଶ୍ୱାସୀ ॥
ପୁର ପାଟଣା ଗ୍ରାମ ଭୂଇଁ । ଇନ୍ଦ୍ର ଉଚ୍ଛବ ବିରାଜଇ ॥
କୃଷ୍ଣର ମାୟା ଶସ୍ୟରାଶି । ଦେଖି ମାନବେ ପରଶଂସି ॥
ଋଷି ନୃପତି ବଣିଜାରେ । ପ୍ରବାସ କଲେ ଯେ ଯାହାରେ ॥
ବରଷେ ଉପବାସ କରି । ଯେହ୍ନେ ଭୁଞ୍ଜନ୍ତି ବ୍ରହ୍ମଚାରୀ ॥
ମୁନି କହନ୍ତି ରାଜା ଆଗେ । ବାଳକ ଲୀଳା ରସ ଭାବେ ॥
ଶରଦ କାଳେ ବନଚାରୀ । ଦାସ ବଚ୍ଛଳ ନରହରି ॥
ସୁଜନେ ଭାବ କୃଷ୍ଣ ନିତ୍ୟ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ବରଷା ଶରଦକାଳ ବର୍ଣ୍ଣନେ ନାମ ଯେକବିଂଶୋଽଧ୍ୟାୟଃ ।*

## ଦ୍ୱାବିଂଶ ଅଧ୍ୟାୟ
### ଶ୍ରୀ ଶୁକ ଉବାଚ

ଶରଦ କାଳର ସ୍ୱଭାବେ । ଗୋବିନ୍ଦ ବୃନ୍ଦାବନ ଲାଗେ ॥
ନଦୀ ପୋଖରୀ ଜଳରାଶି । ସୁଗନ୍ଧ ବନ ପରଶଂସି ॥
ନବ କୁସୁମ ତରୁ ଡାଳେ । ଶୁକ କୋକିଳ ଭରସଳେ ॥
ବନ ଗହନ ଗିରିତଳେ । ଗାଈ ଚରାନ୍ତି ଗୋପବାଳେ ॥
ଆନନ୍ଦେ ବେଣୁନାଦ କରି । ଗୋପେ ଗୋବିନ୍ଦ ହଳଧାରୀ ॥
କୃଷ୍ଣ ମୁରଲୀ ନାଦ ଶୁଣି । ଗୋପୀଯେ ଯେକୁ ଆରେ ଭଣି ॥
କୃଷ୍ଣଲୀଳାରେ ମନ ଦେଇ । ଅନଙ୍ଗ ଚିତ୍ତେ ଖେଦପାଇ ॥
ମନ ନିବେଶି କୃଷ୍ଣ ପାଦେ । ଗୋପୀଯେ କହନ୍ତି ଆନନ୍ଦେ ॥
ଶୁଣ ଗୋ ସଖୀ କୃଷ୍ଣକଥା । କାନନେ ଯେବେଣ ବ୍ୟବସ୍ଥା ॥
ମୟୂର ପୁଚ୍ଛ ନୀଳ ଦେହେ । କର୍ଣ୍ଣିକା ପୁଷ୍ପ କର୍ଣ୍ଣେ ଶୋହେ ॥
ପୀତ ବସନ କଟୀ ତଟେ । ଲମ୍ୱଇ ବନମାଳା କଣ୍ଠେ ॥
ନଟବରଙ୍କ ବେଶ ହୋଇ । ମଧୁରେ ବେଣୁନାଦ ବାଇ ॥
ଆନନ୍ଦେ ପଶୁଗଣ ସଙ୍ଗେ । ମିଳିଲେ ବୃନ୍ଦାବନ ଲାଗେ ॥
ମୁରଲୀ ନାଦ ଶୁଣି ବନେ । ଭୋ ସଖୀ ହୁଅ ସାବଧାନେ ॥
ଗୋପାଳ ମେଳେ ନନ୍ଦ ସୁତ । ଗୋରୁଙ୍କୁ ଚରାନ୍ତି ନିଶ୍ଚିନ୍ତ ॥
ଚକ୍ଷୁ ବହନ୍ତି ଯେତେ ପ୍ରାଣୀ । କେ ପାରୁ ତାଙ୍କ ପୁଣ୍ୟ ଗଣି ॥
ଗୋପାଳ ମେଳେ କୃଷ୍ଣ ଦେଖି । ନିର୍ମଳ କଲେ ଚର୍ମ ଆଖି ॥
ଚୂତ ପଲ୍ଲବ ଶିଖୀପୁଚ୍ଛ । କଟୀରେ ନୀଳ ପୀତ କାଛ ॥
ହୃଦେ କୁମୁଦ ପଦ୍ମମାଳ । ରଙ୍ଗ ମୃତ୍ତିକା ଶ୍ରମ ଝାଳ ॥
ଗୋପାଳ ମେଳେ ବେନି ଭାଇ । କି ପଟାନ୍ତର ଦେବି ମୁହିଁ ॥
ରଙ୍ଗ ସଭାର ତଳେ ସାର । ଯେହ୍ନେ ଯୋଡ଼ିଯେ ନୃତ୍ୟକାର ॥
ଦେଖ ଗୋ ମୁରଲୀର ଭାଗ୍ୟ । ଅଧିକ କୃଷ୍ଣର ସୁହାଗ ॥
ଅନେକ ଜନ୍ମେ ପୁଣ୍ୟ ଦାହି । କୃଷ୍ଣର ଓଷ୍ଠପୁଟେ ଥାଇ ॥
ସବୁ ଖାଇଲା ସୁଧାରସ । ଗୋପୀଙ୍କି ନାହିଁ ଅବଶେଷ ॥
ଗୋପୀଙ୍କ ଠାରେ ଗର୍ବ ବହେ । ସୁହୃଦ ସପତଣୀ ପ୍ରାୟେ ॥
ନଦୀଯେ ହୋଇ ସ୍ଥିର ଗତି । ବୃକ୍ଷେ ଅଶ୍ରୁ ଜଳ ସ୍ରବନ୍ତି ॥
ଭୂମି ଆନନ୍ଦ ବୃନ୍ଦାବନେ । ଗୋବିନ୍ଦ ପଦ୍ମପାଦ ଚିହ୍ନେ ॥
କୃଷ୍ଣ ମୁରଲୀ ନାଦ ଚାହିଁ । ଜନ୍ତୁଙ୍କୁ କିଛି ନ ସ୍ଫୁରଇ ॥
ମୃଗ ମୟୂର ପଶୁ ଯେତେ । ଗିରି କନ୍ଦରେ ଯୂଥେ ଯୂଥେ ॥
ଧନ୍ୟ ଯେ ହରିଣ-ଯୁବତୀ । ବେଣୁ ଶୁଣନ୍ତି କୃଷ୍ଣ କତି ॥
ଆବୋରି କୃଷ୍ଣ ମୃଗ-ସାର । ନୟନେ ଦ୍ୟନ୍ତି ଉପହାର ॥
ଦେବ କାମିନୀ ଶୂନ୍ୟେ ଥାଇ । କୃଷ୍ଣ ମୁରଲୀ ନାଦ ଚାହିଁ ॥
ବନିତା ଚକ୍ଷୁର ଆନନ୍ଦ । ଶୁଣି ମୋହନ ବେଣୁ ନାଦ ॥
ବିମାନେ ଥାଇ ମୋହ ମନ । ଫିଟିଲା କବରୀ ବସନ ॥
ଗୋରୁଯେ କୃଷ୍ଣଗୀତ ଶୁଣି । ଚଳି ନ ପାରନ୍ତି ଧରଣୀ ॥
ତୁଣ୍ଡେ କବଳ ସ୍ଥିର କରି । ବେଣୁ ଶୁଣନ୍ତି କର୍ଣ୍ଣ ପୂରି ॥
ବଛାଯେ ସ୍ତନେ ମୁଖ ଦେଇ । ବେଣୁ ଶୁଣନ୍ତି ସ୍ଥିର ହୋଇ ॥
ପକ୍ଷୀଯେ ମୁନିଙ୍କର ତୁଲେ । ଧ୍ୟାନ କରନ୍ତି ବୃକ୍ଷଡାଳେ ॥
ନଦୀଯେ ଶୁଣି ବେଣୁ ଗୀତ । ଅନଙ୍ଗ ବାଣେ ମୂର୍ଚ୍ଛିତ ॥
ଊର୍ମି କପଟ-ଭୁଜ ଟେକି । କୋଳ କରିବେ ବନମାଳୀ ॥
କମଳ ଉପହାର ଦେଇ । ମୋହେ ସେ ନ ପାରନ୍ତି ଯାଇ ॥
ଇନ୍ଦ୍ର ଯେ ଦେଖୁଥିଲା ରହି । ମୁରଲୀ ନାଦେ ଚିତ୍ତ ଦେଇ ॥
ରାମ ଗୋବିନ୍ଦ ଗୋପ ମେଳେ । ଫୁଟିଲେ ଶ୍ରମ ଘର୍ମ ଝାଳେ ॥
ଦଇବେ ଗୋବିନ୍ଦର ମିତ୍ର । ଉପରେ କଲା ମେଘଛତ୍ର ॥
ଶବରୀ ନାରୀ ବନେ ଧନ୍ୟ । ଶୁଣ ଗୋ ତାହାଙ୍କର ପୁଣ୍ୟ ॥
ଲକ୍ଷ୍ମୀର ସ୍ତନ ମଧ୍ୟେ ଲୀନ । କୁଙ୍କୁମ ଅଗର ଚନ୍ଦନ ॥
କୃଷ୍ଣର ପାଦଯୁଗେ ଥିଲା । କୋମଳ ଘାସେ ଗୋ ଲାଗିଲା ॥
କୃଷ୍ଣର ଶୁଣି ବେଣୁ ସ୍ୱନ । ହୋଇଲେ ଅନଙ୍ଗେ ଅଜ୍ଞାନ ॥
କୁଙ୍କୁମ ତୃଣ ମଧୁ ତୋଳି । ସ୍ତନ ବଦନେ ତାହା ବୋଳି ॥
ବେଗେ ଛାଡ଼ିଲେ ମନ ତାପ । ଦେଖନ୍ତି ରାମ କୃଷ୍ଣ ରୂପ ॥
ଦେଖ ଗୋ ଗିରି ଗୋବର୍ଦ୍ଧନ । ପୂର୍ବେ ଅନେକ କଲା ପୁଣ୍ୟ ॥
ହରି ସେବକ ଶିରୋମଣି । କୋମଳ ତୃଣ କନ୍ଦ ପାଣି ॥
ଯେମାନ ଘେନି ସେ ଆନନ୍ଦେ । ପୂଜିଲା ଗୋବିନ୍ଦର ପାଦେ ॥
ଗୋରୁ ଗୋପାଳ ଘେନି ସଙ୍ଗେ । ବେଣୁ ବଜାନ୍ତି ନାନାରଙ୍ଗେ ॥

ପ୍ରାଣୀଙ୍କି କଲେ ବିପରୀତ । ମୋହିତ ଦେଖିଲୁ ସମସ୍ତ ॥
ଶୁଣ ରାଜନ ନିତ୍ୟେ ନିତ୍ୟେ । ଗୋପୀ କହନ୍ତି ଖେଦ ଚିତ୍ତେ ॥
ହରିର ପାଦେ ମନ ଦେଇ । ଦିନ ହରନ୍ତି ମୁଖ ଚାହିଁ ॥
ଗୋବିନ୍ଦ ମୁରଲୀର ନାଦ । ଶୁଣନ୍ତେ ଖଣ୍ଡଇ ବିଷାଦ ॥
ସୁଜନେ ଶୁଣ ବେଣୁ ଗୀତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଗୋପିକା ମୁରଲୀ ବନ୍ଦନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।*

## ତ୍ରୟୋବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର । ଶୁଣ ରାଜନ ରସଭର ॥
ଶରଦ ଋତୁ ବହିଗଲା । ହେମନ୍ତ ତେଜ ପ୍ରକାଶିଲା ॥
କୃଷ୍ଣ ଆନନ୍ଦେ ଗୋପପୁରୀ । ଯେତେ ଉପୁଜିଲେ କୁମାରୀ ॥
କୃଷ୍ଣ ଭଜନ ପୁଣ୍ୟ ଫଳେ । ରମିଲେ ବୃନ୍ଦାବନ ସ୍ଥଳେ ॥
ତୁଲ୍ୟ ବୟସୀ ନବ ବେଶେ । ଖେଳନ୍ତି ନାନା ଖେଳରସେ ॥
ହେମନ୍ତ ଦେଖିଣ ଉସତ । ସଂକଳ୍ପ କଲେ ନବବ୍ରତ ॥
ହବିଷ ଭୁଞ୍ଜି ଯେକବାରେ । ଦୁର୍ଗା ପୂଜନ୍ତି ନଦୀତୀରେ ॥
ଅଳପ ରାତ୍ର ଥାଇ ନିତ୍ୟେ । ଯମୁନା ଯାନ୍ତି ତୋଷ ଚିତ୍ତେ ॥
ସ୍ନାନ କରନ୍ତି ଶୀତ ଜଳେ । ବାଲୁକା ସ୍ଥାପି ନଦୀକୂଳେ ॥
ପୂଜନ୍ତି ନାନାଦ୍ରବ୍ୟ ଘେନି । ଜୟ ଶବଦ ଗୀତ ଧ୍ୱନି ॥
ପୂଜାର ଅନ୍ତେ ପାୟେ ପଡ଼ି । ଗୁପତେ କରନ୍ତି ଗୁହାରି ॥
ଭୋ ମାତ ଶଙ୍କର ଯୁବତୀ । ନନ୍ଦ କୁମର ଦିଅ ପତି ॥
ଅଧିକ ବରେ କାର୍ଯ୍ୟ ନାହିଁ । ପ୍ରସନ୍ନ ହୁଅ ମୋତେ ତୁହି ॥
ଷୋଳ ସହସ୍ର ଗୋପନାରୀ । ବର ଇଛିଲେ ନରହରି ॥
ଯେକ ଆରକେ ନ ଜାଣନ୍ତି । ମନେ ବରିଲେ ଶିରୀପତି ॥
ବୋଲନ୍ତି କୃଷ୍ଣ ବର ହେଉ । ତାର ଭକ୍ତିରେ ଦିନ ଯାଉ ॥
କୃଷ୍ଣ ରମଣ ଭାବ ଆଶେ । ତପ ସାଧିଲେ ଯେକ ମାସେ ॥
ରାତ୍ରହୁଁ ଉଠି ଗୀତ ଗାଇ । ଚାଲନ୍ତି ଯୂଥ ଯୂଥ ହୋଇ ॥
ଯେକ ଆରକେ ଭୁଜ କନ୍ଧେ । ହରି ଭାବନ୍ତି ଗୀତ ନାଦେ ॥
ବିବିଧ ମତେ ପରିହାସେ । ମିଳିଲେ ଯମୁନାର ପାଶେ ॥
ବସ୍ତ୍ର ପାଲଟି କୂଳେ ଥୋଇ । ଜଳେ ପଶିଲେ ଗୀତ ଗାଇ ॥
ଆନନ୍ଦ କେ କରିବ ଅନ୍ତ । ଯାହା ରମିବେ ଗୋପୀନାଥ ॥
ଯେକ ଆରକେ ଜଳ ଫିଙ୍ଗି । ଜଳେ ବୁଡ଼ନ୍ତି ଗୋଡ଼ ଛନ୍ଦି ॥
ବୁଡ଼ନ୍ତି ଯେକୁ ଆରେ ଧରି । ମୁଖେ ସିଞ୍ଚନ୍ତି ଫୁ ଫୁ କରି ॥
ଆନନ୍ଦେ ହାସ ପରିହାସ । ଜାଣିଲେ ପ୍ରଭୁ ପୀତବାସ ॥
ଗୋପ ବାଳକ ଘେନି ସଙ୍ଗେ । ମିଳିଲେ ନଦୀ ତୀରେ ରଙ୍ଗେ ॥
କୂଳ ଦେଖିଲେ ବସ୍ତ୍ର ରାଶି । ପବନେ କହନ୍ତି ବିଶ୍ୱାସୀ ॥
ଶୁଣ ପବନ ମୋର ବାଣୀ । ବସ୍ତ୍ର ତୁ ଥୁଅ ବୃକ୍ଷେ ଆଣି ॥
ତକ୍ଷଣେ ପ୍ରଭୁ ଦାମୋଦର । ଉଠିଲେ କଦମ୍ବ ବୃକ୍ଷର ॥
ବସ୍ତ୍ର ଯେ ନଦୀ ତୀରେ ଥିଲା । ପବନ ଯୋଗେ ଉଡ଼ିଗଲା ॥
କଦମ୍ବ ବୃକ୍ଷେ ଯାଇ ପଡ଼ି । ଦେଖି ହସନ୍ତି ନରହରି ॥
ଗୋପାଳେ ଉଠି ବୃକ୍ଷଡ଼ାଳେ । ବସ୍ତ୍ର ବାନ୍ଧିଲେ ମାଳେ ମାଳେ ॥
ବାଳକେ ବୃକ୍ଷଡ଼ାଳେ ଥାଇ । ନାଚନ୍ତି କରତାଳି ଦେଇ ॥
ମୁରଲୀ ଧ୍ୱନି ଉଚ୍ଚ ସ୍ୱର । ମଧ୍ୟେ ବିଜୟେ ଦାମୋଦର ॥
ଗୋପୀ ଯେ ଥିଲେ ଜଳମଧ୍ୟେ । କର୍ଣ୍ଣେ ଶୁଣିଲେ ବେଣୁ ନାଦେ
ସଂଭ୍ରମେ ଛାଡ଼ି ଜଳ କେଳି । ବୃକ୍ଷକୁ ଚାହାନ୍ତି ନିରୋଳି ॥
ବୋଲନ୍ତି ବୃକ୍ଷେ କିସ କିସ । ଦେଖ ଗୋ ଦଇବ ଭବିଷ ॥
ଯେଠାକୁ କେମନ୍ତେ ଅଇଲା । ବାଳକ ମେଳେ ନନ୍ଦବଳା ॥
କେ ବୋଲେ ଯେ ବନେ ନ ଥାଇ । ଆଜ ଅଇଲା କାହିଁ ପାଇଁ ॥
କେ ବୋଲେ ଭଲ ଗୋ ହୋଇଲା । ଆଜ ଅଇଲା କାହିଁ ପାଇଁ ॥
କେ ବୋଲେ ଭଲ ଗୋ ହୋଇଲା । ବ୍ରତ ଗୋ ଆଜହୁଁ ସରିଲା
କେ ବୋଲେ ଦେଖ ବୃକ୍ଷ ଡାଳେ । ଅନେକ ଉଡ଼ଇ ଚିରାଳେ
କୂଳକୁ ଚାହିଁ କେ ବୋଲନ୍ତି । ମରଣ ହୋଇଲା ଯେ ଘାନ୍ତି ॥
ପାଲଟା ବସ୍ତ୍ର କୂଳେ ନାହିଁ । ଚକିତେ ଚଉଦିଗେ ଚାହିଁ ॥
ବୋଲନ୍ତି ବସ୍ତ୍ର କେଣେ ଗଲା । ଯେଡ଼େ ଯେ ପବନ ବହିଲା ॥
ଉଡ଼ି କେବଣ ଦିଗେ ଗଲା । ଲାଜ ତ ମରଣୁ ବଳିଲା ॥
କିସ କରିବା ଆଜ ଜଳେ । କନ୍ୟାୟେ ଭାଳନ୍ତି ବିକଳେ ॥
ଦାସ ବତ୍ସଳ ଭାବଗ୍ରାହୀ । କହନ୍ତି ଗୋପୀଙ୍କି ଅନାଇଁ ॥
ପବନ ଉଡ଼ାଇଣ ନେଲା । ବସ୍ତ୍ର ଗୋ ବନେ ପଡ଼ିଥିଲା ॥
ଗୁଣ୍ଡାଇ ବସ୍ତ୍ର ଆମ୍ଭେ ଆଣି । ବୃକ୍ଷେ ବାନ୍ଧିଲୁ ଯେହି କ୍ଷଣି ॥
ଯେ ଯେବେ ତୁମ୍ଭର ହୋଇଲା । ଆମ୍ଭର ଯଶ ଉପୁଜିଲା ॥
ଯେ ଯାହା ବସ୍ତ୍ର ଆସି ନିଅ । ଶୀତଳ ଜଳେ ଗୋ ନ ଥାଅ ॥
ଶୁଣି ଚକିତ ଗୋପବାଳୀ । ବୋଲନ୍ତି ପଡ଼ିଲୁ ପଞ୍ଝାଳି ॥
ଯେକ ଆରେକ ମୁଖ ଚାହିଁ । ବୋଲନ୍ତି ଗାଲେ ହସ୍ତଦେଇ ॥
କେମନ୍ତେ ଉଠି ଯିବୁଁ ଆଜ । ମରଣୁ ବଳିଲା ଗୋ ଲାଜ ॥
କୃଷ୍ଣର ମୁଖକୁ ଅନାଇଁ । ବୋଲନ୍ତି କୋପଭର ହୋଇ ॥
ତୁ ଅଟୁ ଯଶୋଦା କୁମର । ପିଅର ନନ୍ଦ ମହାଖୁଡ଼ ॥

ଜାଣିଲୁ ତୋର ବଡ଼ପଣ । ଆମ୍ଭର ବସ୍ତ୍ର ବେଗେ ଆଣ ॥
ପକାଇ ଦିଅ ବେଗ କରି । ବୃକ୍ଷୁ ପାଲଟା ଆମ୍ଭ ଶାଢ଼ି ॥
ଏଡ଼େ ନିଲଜ ପଣ ତୋର । କେବେ ଶିଖିଲୁ ଦାମୋଦର ॥
ଶୁଣି ବୋଲନ୍ତି ଚକ୍ରଧର । ଯେ ବଡ଼ ଅନୀତି ବେଭାର ॥
ଯେ ପ୍ରାଣୀ ପର ଉପକାରୀ । ତାହାକୁ ପଥେ ନେଇ ମାରି ॥
ପବନ ନେଉଥିଲା ବଳେ । ଆଣି ବାନ୍ଧିଲୁ ବୃକ୍ଷ ଡାଳେ ॥
ତହିଁର ଫଳ ମୁ ପାଇଲି । ବସ୍ତ୍ର ଯେ ତୁମ୍ଭଙ୍କୁ ଯାଚିଲି ॥
ମୁ ତ ନ କଲି ପରିହାସ । ତୁମ୍ଭେ ତ ମୋହୋର ବିଶ୍ୱାସ ॥
ଯେବେ ହେଁ ବସ୍ତ୍ର ଆସି ନିଅ । କିମ୍ବା ନ ଜାଣି ଗାଳି ଦିଅ ॥
ମୋହୋର ଦେହେ ମିଥ୍ୟା ନାହିଁ । ହସି ବୋଲନ୍ତି ଭାବଗ୍ରାହୀ ॥
ଶୁଣି ସାନନ୍ଦ ମନ ହୋଇ । ବୋଲନ୍ତି କୃଷ୍ଣ ମୁଖ ଚାହିଁ ॥
ତୁ ଅଟୁ ଗୋପପୁର ସାର । ବନ୍ଧୁ ବାନ୍ଧବ ଆମ୍ଭେ ତୋର ॥
ବସ୍ତ୍ର ପକାଇ ଦିଅ ତଳେ । ପଡୁଛୁ ତୋର ପାଦତଳେ ॥
ଶ୍ୟାମ ସୁନ୍ଦର ତୋ ଚରଣେ । ସେବା କରିବୁଁ ଦାସୀ ପଣେ ॥
ତୁ ଯେବେ ନ ଦେବୁ ପକାଇ । କହିବୁଁ କଂସ ଆଗେ ଯାଇ ॥
ଶୁଣି ବୋଲନ୍ତି ଯଦୁପତି । ତୁମ୍ଭେ ଯେ ବାଳକ ଯୁବତୀ ॥
ଯେବେ କର ଗୋ ମୋ ଉତ୍ତର । ନ ଜାଣି କିମ୍ବା କୋପକର ॥
ଯେ ଯାହା ବସ୍ତ୍ର ବାଛି ନିଅ । ନ ଦିଲେ ରାଜା ଆଗେ କହ ॥
କଂସକୁ କିମ୍ବା ଯେଡ଼େ ଡର । ସୋଦର ମଉଳା ମୋହର ॥
ତାହାକୁ ମୋର ଭୟ ନାହିଁ । ଅନ୍ୟାୟ ନ କଲି ନା ମୁହିଁ ॥
ବସ୍ତ୍ର ପବନ ନେଉଥିଲା । ଆଣିଲା ଦୋଷ ମୋ ହୋଇଲା ॥
ଯେ କଥା ତୁମ୍ଭଙ୍କୁ ଯୋଗାଇ । ଧର୍ମ ହିଁ ଅଛି ନା ଅନାଇଁ ॥
କୃଷ୍ଣ ମୋହନ କଥା ଶୁଣି । କନ୍ୟାଏ ମନେ ମନେ ଗୁଣି ॥
କଣ୍ଠ ପ୍ରମାଣେ ଜଳେ ଥାଇ । ଶୀତେ କମ୍ପନ୍ତି କୃଷ୍ଣ ଚାହିଁ ॥
ହରିଙ୍କି ଜିଣି ନ ପାରିଲେ । ନିର୍ଭୟେ ଲଜ୍ଜା ଉପେଖିଲେ ॥
ଯୋନି ଆଚ୍ଛାଦି ବାମ କରେ । ତୀରେ ଉଠିଲେ ଲାଜ ଭରେ ॥
ଦୟା ସାଗର ଭାବଗ୍ରାହୀ । କୃଷ୍ଣର ଡାଳୁ ବସ୍ତ୍ର ଫେଇ ॥
ପାଲଟା ବସ୍ତ୍ର କରି କନ୍ଧେ । ବୃକ୍ଷୁଁ ଓହ୍ଲାଇଲେ ଆନନ୍ଦେ ॥
ଗୋପୀଙ୍କ ଶୁଦ୍ଧ ଭାବ ଚାହିଁ । ହସି ବୋଲନ୍ତି ଭାବଗ୍ରାହୀ ॥
ବିବସ୍ତ୍ର ହେବା କି ଉଚିତ । ବିଶେଷ କରିଅଛ ବ୍ରତ ॥
ଯେ ବଡ଼ ଅପରାଧ ହୋଇ । ନରକେ ପଡ଼ିବଟି ଯାଇ ॥
ଯେ ଦୋଷ ନ ଥାଉ ତୁମ୍ଭର । ଦେବତା କର ନମସ୍କାର ॥
ଶୁଣି ଚକିତ ଗୋପବାଳୀ । ମୁଖ ପୋଚିଣ ମନେ ଭାଳି ॥
କପାଳେ ଦେଇ ଯେକକର । ନମିଲେ ଦେବତା ପୟର ॥

ଦେଖି ବୋଲନ୍ତି ଯଦୁପତି । ଯେ ବଡ଼ ତୁମ୍ଭର ଅନୀତି ॥
ଶାସ୍ତ୍ର ଶୁଣିଲା ତୁମ୍ଭ ନାହିଁ । ମୁ ଯାହା ଅଳପ ଜାଣଇ ॥
ଶୁଣ ଗୋ ନାରୀ ଯେକ ଚିତ୍ତେ । ବିପ୍ରେ କରନ୍ତି ବେଦମତେ ॥
ଯେ ଦେବଗୁରୁ ଯେକ କରେ । ନମନ୍ତି ଅଜ୍ଞାନ ବେଭାରେ ॥
ଛେଦି ପକାଇ ଯେବେ କର । ସେ ଅପରାଧୁ ହୋଇପାର ॥
ନୋହିଲେ ଯେତେ ଜନ୍ମ ହୋଇ । କର ଯୁଗଳ ତା ନ ଥାଇ ॥
ଶୁଣି କୁମାରୀ ରସ ଭର । କପାଳେ ଦେଇ ବେନି କର ॥
ଦେବତା ଓଳଗିଲେ ରହି । ଦେଖି ସାନନ୍ଦ ଭାବଗ୍ରାହୀ ॥
ନିର୍ମଳ ଚିତ୍ତ ତାହାଙ୍କର । ଜାଣିଲେ ପ୍ରଭୁ ଦାମୋଦର ॥
ଗୋପୀଙ୍କ ଭାବେ ତୋଷ ହୋଇ । ଯେ ଯାହା ବସ୍ତ୍ର ଦିଲେ ନେଇ
ଗୋପୀଏ ପିନ୍ଧି ନିଜ ବାସ । ଆନନ୍ଦ ମନେ ହସ ହସ ॥
ଦେବତା ପୂଜାର ବିଧାନେ । କୃଷ୍ଣଙ୍କୁ ବରିଛନ୍ତି ମନେ ॥
କୃଷ୍ଣଙ୍କୁ ଚାହିଁ ନ ପାରନ୍ତି । ଲାଜେ ରହିଲେ ମଥା ପୋତି ॥
ଜାଣିଲେ ପ୍ରଭୁ ନାରାୟଣ । ଗୋପୀଙ୍କି ବୋଲନ୍ତି ବଚନ ॥
ହସି ବୋଲନ୍ତି ଜନାର୍ଦ୍ଦନ । ମୁହିଁ ଜାଣିଲି ତୁମ୍ଭ ମନ ॥
ଯାହା ମାଗିଲ ଦିଅଁ ପୂଜି । ସେକଥା ଅଛଇ ମୁ ହେଜି ॥
ମୁହିଁ କରିବି ତାହା ସତ୍ୟ । ବୋଲନ୍ତି ପ୍ରଭୁ ଜଗନ୍ନାଥ ॥
ମୋହୋର ତହିଁ ଯାର ଚିତ୍ତ । ବିଶ୍ୱାସ ପାଇ ଅବିରତ ॥
ଜନ୍ମ ମରଣ ତାର ନାହିଁ । ଭାଜିଲା ଧ୍ୟାନ ପ୍ରାୟେ ହୋଇ ॥
ଯେ ବୃନ୍ଦାବନେ ରାତ୍ରେ ଥାଇ । ତୁମ୍ଭଙ୍କୁ ରମିବଇଁ ମୁହିଁ ॥
ସଂକଳ୍ପ କଲ ବ୍ରତ କରି । ହସି ବୋଲନ୍ତି ନରହରି ॥
ଯେମନ୍ତେ କୃଷ୍ଣ ଆଜ୍ଞା ପାଇ । କନ୍ୟାଏ ଗଲେ ତୋଷ ହୋଇ ॥
ଗୋବିନ୍ଦ ପାଦେ ଚିତ୍ତ ଥୋଇ । ମିଳିଲେ ନିଜ ଘରେ ଯାଇ ॥
ଗୋପାଳ ମେଳେ ଦାମୋଦର । ଗାଈ ଚରାଇ ଗଲେ ଦୂର ॥
ନିଦାଘ ରବି ତେଜ ଲାଗି । ପୋଏ ହୋଇଲେ ଦୁଃଖଭାଗୀ ॥
ଚରାନ୍ତି ଗୋରୁ ଗୋପ ମେଳେ । ଶୀତଳ ଛାୟା ବୃକ୍ଷ ତଳେ ॥
ବୃକ୍ଷକୁ ଚାହିଁ ଦାମୋଦର । କହନ୍ତି ଗୋପଙ୍କ ଆଗର ॥
ହେ ସ୍ତୋକକୃଷ୍ଣ ମିତ୍ର ମୋର । ସୁଦାମ ଅର୍ଜ୍ଜୁନ କୁମର ॥
ଋଷ ବିଶାଳ ଦେବପ୍ରସ୍ଥ । ଦେଖ ଯେ ବୃକ୍ଷଙ୍କ ମହତ୍ତ୍ୱ ॥
ପରେ କରନ୍ତି ଉପକାର । ସୁଜନ ଜନଙ୍କ ବେଭାର ॥
ଶୀତ ବରଷା ଘର୍ମ ଦୁଃଖ । ସହି ଆମ୍ଭଙ୍କୁ ଦ୍ୟନ୍ତି ସୁଖ ॥
ଧନ୍ୟ ଜୀବନ ଯେହାଙ୍କର । ଜୀବିକା ହୋନ୍ତି ପ୍ରାଣୀଙ୍କର ॥
ସୁଜନ ଘରେ ଯେସନ୍ତେ ଯାଇ । ଅତିଥି ନିରାଶ ନୁହଇ ॥
ପତ୍ର କୁସୁମ ଫଳ ଛାଇ । ମୂଳ ବକଳ ଦାରୁ ହୋଇ ॥

ଖାର ଅଙ୍ଗାର ଭସ୍ମ ଅଠା । ଗୃହକୁ ସାଜି ବାଡ଼ କଣ୍ଟା ॥
ଯେତେ ପ୍ରକାରେ ସେବା କରି । ନିତ୍ୟେ ଯେ ପର ଉପକାରୀ ॥
ଯେହାଙ୍କ ପ୍ରାୟେ ଯେବେ ହୋଇ । ସଂସାର ମୋହ ଜଡ଼େ ଥାଇ
ମନ ବଚନେ ଧ୍ୟାନ କରି । ଯେ ପରେ ହୋନ୍ତି ଉପକାରୀ ॥
ଦିନ ହରନ୍ତି ଦୁଃଖ ସୁଖେ । ସେ ଧନ୍ୟ ଇହ ପରଲୋକେ ॥
ପୁଷ୍ପ ପଲ୍ଲବ ଦଳ ଫଳେ । ତରୁଙ୍କ ନବଶାଖା ତଳେ ॥
ଗୋରୁ ଗୋପାଳ ଘେନି ସଙ୍ଗେ । ମିଳିଲେ ଯମୁନାର ଲାଗେ ॥
ଶୀତଳ ଜଳ ପାନ କରି । ବୃକ୍ଷର ତଳେ ନରହରି ॥
କୃଷ୍ଣଙ୍କୁ ଚାହିଁ ଗୋପବାଳେ । କହନ୍ତି କ୍ଷୁଧାର ବିକଳେ ॥
ସେ ରାମକୃଷ୍ଣ ପାଦେ ଚିତ୍ତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ବସ୍ତ୍ରହରଣେ ନାମ ତ୍ରୟୋବିଂଶୋଽଧ୍ୟାୟ ।*

## ଚତୁର୍ବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ପରୀକ୍ଷ ଚାହିଁ ଶୁକ ମୁନି । କହନ୍ତି ହରି ଭାବ ଘେନି ॥
ବାଳକେ କୃଷ୍ଣଙ୍କୁ ଅନାଇଁ । କହନ୍ତି ଶିରେ କର ଦେଇ ॥
ହେ ରାମକୃଷ୍ଣ କର ତ୍ରାହି । କ୍ଷୁଧାୟେ କମ୍ପୁଅଛି ଦେହୀ ॥
ଆଣି ନ ପାରିଲୁ ଯେ ଅନ୍ନ । ରାତ୍ର ହୁଁ ଦିଲ ବେଣୁ ସ୍ୱନ ॥
ଘର ହୋଇଲା ଦୂରପଥ । ଆଜ ତ ହୋଇଲୁ ଅନାଥ ॥
ବାଳକ ବୋଲ ଶୁଣି କର୍ଣ୍ଣେ । ଗୋବିନ୍ଦ ବିଚାରନ୍ତି ମନେ ॥
ଅନେକ ଜନ୍ମେ ଦୁଃଖପାଇ । ବ୍ରାହ୍ମଣୀ ଛନ୍ତି ମୋତେ ଧ୍ୟାୟି ॥
ତାହାଙ୍କୁ ନିସ୍ତାରିବି ଆଜ । ଯେଣେ ମୋହୋର ବଡ଼ କାର୍ଯ୍ୟ ॥
ଗୋପଙ୍କ ମୁଖ ଚାହିଁ ହସି । ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥
ଯେ ଯେ ଦିଶଇ ଧୂମ୍ର ବର୍ଣ୍ଣ । ନିକଟେ ଅଶୋକ ବିପିନ ॥
ଯଜ୍ଞା କରନ୍ତି ବିପ୍ରେ ରହି । ତହିଁ କି ଯାଅ ବେଗ ହୋଇ ॥
ବେଦ ପୁରାଣ ଯୋଗ ଦୀକ୍ଷା । ଯଜ୍ଞ କରନ୍ତି ସ୍ୱର୍ଗ ଇଚ୍ଛା ॥
ଧନ ବସନ ଅନ୍ନ ଭୋଜା । ଅତିଥି କରୁଥାନ୍ତି ପୂଜା ॥
ଅତିଥି ମତେ ତୁମ୍ଭେ ଯାଅ । ମୋର ମାଗିଲା ବୋଲି କହ ॥
ରାମ ଅଛନ୍ତି କୃଷ୍ଣ ସଙ୍ଗେ । ଅନ୍ନ ପୁଡ଼ାୟେ ଦିଅ ବେଗେ ॥
ଶୁଣି ସାନନ୍ଦ ମନ ହୋଇ । ଯଜ୍ଞେ ମିଳିଲେ ପୋୟେ ଯାଇ
କପାଳେ ଦେଇ ବେନି କର । ନମିଲେ ବିପ୍ରଙ୍କ ପୟର ॥
ଉଠିଲେ ଶିରେ କର ଦେଇ । କହନ୍ତି ବିପ୍ରଙ୍କୁ ଅନାଇଁ ॥
ଶୁଣିମା ସାବଧାନ ହୋଇ । ବନେ ଅଛନ୍ତି ବେନିଭାଇ ॥
ରାମ ଗୋବିନ୍ଦ ଗୋପମେଳେ । ଫୁଟିଲେ କ୍ଷୁଧାର ବିକଳେ ॥
ଅଶୋକ ବୃକ୍ଷ ତଳେ ଥାଇ । ଆମ୍ଭଙ୍କୁ ଦିଲେ ପଠିଆଇ ॥
ଅନ୍ନ ପୁଡ଼ାୟେ ସ୍ୱାମୀ ଦେବ । ଭୁଞ୍ଜିବେ ଶ୍ରୀରାମ ମାଧବ ॥
ଘରୁ ଆଣନ୍ତି ପ୍ରତି ଦିନେ । ବନେ ଭୁଞ୍ଜନ୍ତି ତୋଷମନେ ॥
ରାତ୍ର ହୁଁ ବନେ ଆଗ ସରି । ଆଜଟି ଅଇଲେ ପାସୋରି ॥
ଯେଠାକୁ ଦୂର ଗୋପପୁର । ଯିବାକୁ ହୋଇଲା ଉଛୁର ॥
ଆମ୍ଭଙ୍କୁ ରାଇ ଯେଥେ ପେଷି । ବୃକ୍ଷର ତଳେ ଛନ୍ତି ବସି ॥
ତାହାଙ୍କୁ କରିବା ସେନେହ । ଅନ୍ନ ପୁଡ଼ାୟେ ତୁମ୍ଭେ ଦିଅ ॥
ଯଜ୍ଞର ସ୍ୱଭାବ ଯେମନ୍ତ । ଅତିଥି ପୂଜା କରି ଯେଥ ॥
ବ୍ରାହ୍ମଣେ ଶୁଣି ନ ଶୁଣିଲେ । ମନ ଚଞ୍ଚଳ ଯଜ୍ଞ କାଳେ ॥
ହରିର ମାୟାଚକ୍ରେ ପଡ଼ି । ଅଳପ କର୍ମେ ପୁଣ୍ୟ ଲୋଡ଼ି ॥
ମନ ବୁଡ଼ାଇଛନ୍ତି ଯଜ୍ଞେ । ବ୍ରାହ୍ମଣ ଯଜ୍ଞର ସ୍ୱଭାବେ ॥
ଯେ ହରି ଦେଶ କାଳ ପାତ୍ର । ଦ୍ୱିଜାଦି ଧର୍ମ ଦଇବତ ॥
ଯଜ୍ଞର ଦାତା ଆଦିକରି । ସର୍ବ ସମ୍ପଦ ନରହରି ॥
ପରମ ବ୍ରହ୍ମ ନ ଚିହ୍ନିଲେ । ମନୁଷ୍ୟ ବୁଦ୍ଧି ଆଚରିଲେ ॥
ଦେବା ନ ଦେବା ନ ବୋଇଲେ । ଗୋପାଳେ ନିରାଶ ହୋଇଲେ
ଘଡ଼ିୟେ ଥାଇ ଦୁଃଖ ସୁଖେ । ପୁଣି ମିଳିଲେ କୃଷ୍ଣ ପାଶେ ॥
ବୋଲନ୍ତି ଶିରେ କର ଦେଇ । ଅନ୍ନ ମାଗିଲୁ ଆମ୍ଭେ ଯାଇ ॥
ତୋ କଥା ଶୁଣି ନ ଶୁଣିଲେ । ଦେବା ନ ଦେବା ନ ବୋଇଲେ
ଆମ୍ଭେ ଅଇଲୁ ଦୁଃଖ ପାଇ । ଶୁଣି ହସନ୍ତି ବେନି ଭାଇ ॥
ବୋଲନ୍ତି ଶୁଣ ଗୋପ ପୋୟେ । ଯାଅ ବ୍ରାହ୍ମଣୀ ଘର ଯାୟେ ॥
ବ୍ରାହ୍ମଣୀମାନେ ଛନ୍ତି ଘରେ । ମୋତେ ଜାଣନ୍ତି ତତପରେ ॥
ମୋ ଭାବ ନିତ୍ୟେ ସେ ଚିନ୍ତନ୍ତି । ମୋହୋର ଦର୍ଶନ ଇଛନ୍ତି ॥
ତାହାଙ୍କୁ ଅନ୍ନ ମାଗ ଯାଇ । ଭୁଞ୍ଜିବା ଉଦର ପୂରୋଇ ॥
ବାଳକେ ଦୟା ସେ କରନ୍ତି । ଅତିଥି ପୂଜା ସେ ଜାଣନ୍ତି ॥
ନାନା ବ୍ୟଞ୍ଜନ ସେ ଆଣିବେ । ବାହୁଡ଼ି ଯାଅ ତୁମ୍ଭେ ଯେବେ ॥
ଗୋବିନ୍ଦ ଆଜ୍ଞା ଘେନି ଶିରେ । ପୋୟେ ମିଳିଲେ ବିପ୍ରଘରେ ॥
ବ୍ରାହ୍ମଣୀମାନେ ଛନ୍ତି ବସି । ଅଲେଖ ତିଳକ ପ୍ରକାଶି ॥
ସ୍ତିରୀ ସ୍ୱଭାବେ ଅଳଙ୍କାର । ମଙ୍ଗଳ ନାଦେ ଗୀତ ସ୍ୱର ॥
ହରିର ନାମ ତୁଣ୍ଡେ ଗାଇ । ପୋୟେ ମିଳିଲେ ବେଗେ ଯାଇ
ଚରଣେ ଗଡ଼ଘାଲି ଶୋଇ । କହନ୍ତି ଶିରେ କର ଦେଇ ॥
ଶୁଣିମା ସାବଧାନ ମାୟେ । ଅମ୍ଭେ ସକଳ ଗୋପ ପୋୟେ ॥
ରାମ ଗୋବିନ୍ଦ ଆମ୍ଭ ତୁଲେ । ବନରେ ରାଇ ରଖିଥିଲେ ॥

କ୍ଷୁଧା ଅନଳେ ଦୁଃଖ ଶ୍ରମେ । ବିଜୟେ ଅଶୋକ ବିପିନେ ॥
ଆମ୍ଭଙ୍କୁ ରାଇ ବେନି ଭାଇ । ଯେଥକୁ ଦିଲେ ପଠିଆଇ ॥
ଅନ୍ନ ପୁଡ଼ାୟେ ତୁମ୍ଭେ ଦେବ । ଭୁଞ୍ଜିବେ ଶ୍ରୀରାମ ମାଧବ ॥
ବହନ ଦିଅ ମାୟେ ଅନ୍ନ । ତେବେ ସେ ପାଇବେ ଜୀବନ ॥
ଆମ୍ଭର ଦେଖୁଅଛ ଦେହ । ଦେବା ନ ଦେବା ବେଗେ କହ ॥
ଶୁଣି ଉପତ ବିପ୍ର ନାରୀ । ସକଳ ଚରଚା ପାସୋରି ॥
ଆନନ୍ଦେ ପୁଲକିତ ହୋଇ । ନୟନୁ ଅଶ୍ରୁ ଜଳ ବହି ॥
କୃଷ୍ଣର ନାମ ଜପୁଛନ୍ତି । ଫିଟିଲା ଭବବନ୍ଧ ଭ୍ରାନ୍ତି ॥
ତକ୍ଷଣେ ଶୁଚିବନ୍ତ ହୋଇ । ଘରେ ପଶିଲେ ନାରୀ ଯାଇ ॥
ଅନ୍ନ ବ୍ୟଞ୍ଜନ ଷଡ଼ରସ । ଆନନ୍ଦେ ବାଢ଼ନ୍ତି ବିଶେଷ ॥
ବିବିଧ ପାତ୍ରେ ଅନ୍ନ ଘେନି । ବାହାର ହୋଇଲେ କାମିନୀ ॥
ଆନନ୍ଦେ ଦିଲେ ହୁଳହୁଳି । ଯେସନେ ସମୁଦ୍ର ଉଚ୍ଛୁଳି ॥
ସମ୍ପଦ ତୁଚ୍ଛ ପ୍ରାୟେ କରି । ଯେକ ଆରକେ ଆଗସରି ॥
ବିପ୍ରେ ଯେ ଯଜ୍ଞଶାଳେ ଥିଲେ । ଗୋଡ଼ାଇ ଆଗେ ଓଗାଳିଲେ ॥
ବୋଲନ୍ତି କୋପଭର ହୋଇ । କେ ତୁମ୍ଭେ କରାଇଲା ବାଇ ॥
ଗୋପାଳେ ବନେ ବେଣୁବାଇ । ବୁଲନ୍ତି ଗାଈଙ୍କି ଚରାଇ ॥
ତାଙ୍କ ନିକଟେ ତୁମ୍ଭେ ଗଲେ । ଆଉ କି ଥିବ ଜାତି କୁଳେ ॥
ଭଲେ ବାହୁଡ଼ି ଯାଅ ଘର । ଗଉଡ଼େ ବନେ ବଳିଆର ॥
ବ୍ରାହ୍ମଣୀ ନ ଶୁଣିଲେ ତାହା । କୃଷ୍ଣରେ ବଳିଛି ଉଛାହା ॥
ଗହଳେ ଗଲେ ପେଲାପେଲି । ସ୍ୱାମୀଙ୍କି ପକାଇଲେ ଠେଲି ॥
ସମୁଦ୍ରେ ଆସନ୍ତେ ଲହରୀ । ତା ବାଲିବନ୍ଧେ କି ଆବୋରି ॥
ବ୍ରାହ୍ମଣେ ଧରି ନ ପାରିଲେ । ଯଜ୍ଞଶାଳକୁ ବାହୁଡ଼ିଲେ ॥
ଯେକ ବ୍ରାହ୍ମଣୀ କ୍ଷୀଣ ଦେହୀ । ଗହଳେ ନ ପାରିଲା ଯାଇ ॥
ଦରିଦ୍ର ପଣେ ଦୁଃଖ ପାଇ । ଅନ୍ନ ବସନ ନ ମିଳଇ ॥
କୃଷ୍ଣ ହୁଁ ନ ଜାଣଇ ଆନ । ମନ ବଚନେ ନିତ୍ୟ ଧ୍ୟାନ ॥
ଅନେକ ଜନ୍ମେ ଦୁଃଖ ପାଇ । ତାହା ଜାଣନ୍ତି ଭାବଗ୍ରାହୀ ॥
ତାହାର ସ୍ୱାମୀ ଧରି କରେ । ନେଇ ବାନ୍ଧିଲା ନିଜ ଘରେ ॥
ଦ୍ୱାରେ କବାଟ ଗଲା କିଳି । ଯଜ୍ଞର ସ୍ଥାନେ ଯାଇ ମିଳି ॥
ବ୍ରାହ୍ମଣୀ ହୋଇଲା ମୂର୍ଚ୍ଛିତ । କୃଷ୍ଣର ପାଦେ ଦେଇ ଚିତ୍ତ ॥
ପୁଣି କ୍ଷଣକେ ଜ୍ଞାନ ପାଇ । କାନ୍ଦଇ କୃଷ୍ଣ ତ୍ରାହି ତ୍ରାହି ॥
ଗଲେ ଯେ ବିପ୍ର ନାରୀମାନେ । ମିଳିଲେ ଅଶୋକ ବିପିନେ ॥
ବୃକ୍ଷର ତଳେ ଗୋପମେଳେ । କୃଷ୍ଣ ଦେଖିଲେ ଚର୍ମ ଡୋଳେ ॥
ଶ୍ୟାମଳ ମେଘ ପ୍ରାୟ ଦେହୀ । ପୀତ ବସନ ଝଟକଇ ॥
କଙ୍କଣ କୁଣ୍ଡଳ ବିରାଜେ । ରୂପେ କୋଟିୟେ କାମ ଗଞ୍ଜେ ॥

ରଙ୍ଗ ମୃତ୍ତିକା ଦେହେ ବୋଳି । ମୟୂର ପୁଚ୍ଛ ଗୁଞ୍ଜମାଳି ॥
ପାଦେ କଠାଉ ରଙ୍ଗସାର । ସୁଦାମ କନ୍ଧେ ବାମ କର ॥
ଦକ୍ଷିଣ କରେ ପଦ୍ମ ଘେନି । ଧୀରେ ଘୂରାନ୍ତି ଅନ୍ତର୍ଯ୍ୟାମୀ ॥
ଯେସନେ ନଟବର ବେଶ । ରଙ୍ଗ ଅଧରେ ମନ୍ଦ ହାସ ॥
ଶ୍ରବଣେ ମଲ୍ଲିକା ଉତ୍ପଳ । ସୁନ୍ଦର ଅଳକା କପୋଳ ॥
ବ୍ରାହ୍ମଣ ନାରୀ କୃଷ୍ଣ ଦେଖି । ପିଛାଡ଼ି ନ ପାରନ୍ତି ଆଖି ॥
ଦେହ ତିନ୍ତିଲା ଅଶ୍ରୁ ଜଳେ । ଅନ୍ନ ଥୋଇଲେ କାଖୁଁ ତଳେ ॥
ଆନନ୍ଦ ଦେଖିଣ ପତଙ୍ଗ । ଯେସନେ ହୋନ୍ତି ଉଦବେଗ ॥
ବୋଲନ୍ତି କରିବା ଗୋ କୋଳ । ଜୀବନ ହୋଇବ ସୁଫଳ ॥
ଥୋକେ ବୋଲନ୍ତି ଯେ ନୁହଇ । ବ୍ରାହ୍ମଣେ ନ ଦେବେଟି ଯାଇ ॥
ପରପୁରୁଷ କୋଳ କଲେ । ବିପ୍ରେ ଦଣ୍ଡିବେ ଘରେ ଗଲେ ॥
ଯେମନ୍ତେ ବିଚାରନ୍ତି ରହି । କୃଷ୍ଣର ମୁଖ ଚକ୍ଷୁ ଦେଇ ॥
ଆତ୍ମା ହୋଇଲା ମୋହଗତ । ପଞ୍ଚପରାଣ କଣ୍ଠାଗତ ॥
ଚକ୍ଷୁ ବୁଜିଲେ ଭାବଭରେ । କୃଷ୍ଣଙ୍କୁ ଦେଖିଲେ ଭିତରେ ॥
ହୃଦରେ ଦେଖି ନାରାୟଣ । ନିବିଡ଼େ କଲେ ଆଲିଙ୍ଗନ ॥
ତାପ ଛାଡ଼ିଲେ ବିପ୍ରନାରୀ । ଜନ୍ମ ମରଣ ଆଦି କରି ॥
ଜ୍ଞାନକୁ ପାଇ ଦିନେ ଦିନେ । ତାପ ଛାଡ଼ଇ ଯେହ୍ନେ ମନେ ॥
ପୁଣି କ୍ଷଣକେ ଚକ୍ଷୁ ଫେଇ । ଦେଖନ୍ତି ପ୍ରଭୁ ଭାବଗ୍ରାହୀ ॥
ଚିତ୍ର ପ୍ରତିମା ପ୍ରାୟେ ହୋଇ । ମନ ବୁଡ଼ିଲା କୃଷ୍ଣ ତହିଁ ॥
ଜାଣିଲେ ପ୍ରଭୁ ଭଗବାନ । ବୋଲନ୍ତି ମଧୁର ବଚନ ॥
ଭଲେ ଅଇଲଟିକି ପଥେ । ମୋ ରୂପ ଦେଖିବା ନିମନ୍ତେ ॥
ତୁମ୍ଭର ପାଦରେଣୁ ଶିରେ । ଘେନି ସଂସାରୁ ପ୍ରାଣୀ ତରେ ॥
ବସ ଯେ ବୃକ୍ଷତଳେ ଆଇ । ମୋତେ ଅଇଲ ଅନ୍ନ ଦେଇ ॥
ଆଜ ପବିତ୍ର ମୋର ଦେହୀ । ହୋଇବ ଯଜ୍ଞ ଅନ୍ନ ଖାଇ ॥
ତୁମ୍ଭଙ୍କୁ କି କରିବି ସେବା । ବିଚାରି ମୋତେ ଆଜ୍ଞା ଦେବା ॥
ପଣ୍ଡିତେ ଆତ୍ମଜ୍ଞାନ ପାଇ । ଧ୍ୟାନେ ଚିନ୍ତନ୍ତି ମୋର ଦେହୀ ॥
ତୁମ୍ଭର ସ୍ୱାମୀସେବା ପ୍ରାୟେ । ଜ୍ଞାନୀ କରନ୍ତି ମୋତେ ଲୟେ ॥
ଯେବେ ଦେଖିଲ ମୋ ଶରୀର । ନିଜ ମନ୍ଦିରେ ବିଜେ କର ॥
ତୁମ୍ଭର ସ୍ୱାମୀ ପାଦେ ସେବ । ତେବେ ସେ ସଂସାରୁ ତରିବ ॥
ବେଗେ ଘରକୁ ଯାଅ ଆଇ । ପୂର୍ଣ୍ଣ ଆହୁତି ବେଳ ହୋଇ ॥
ତୁମ୍ଭଙ୍କୁ ଘେନି ବିପ୍ରବରେ । ପୁଣ୍ୟ ସାଧିବେ ନିଜ ଘରେ ॥
ଶୁଣି ଗୋବିନ୍ଦ ମୁଖୁଁବାଣୀ । ବିକଳେ ବୋଲନ୍ତି ବ୍ରାହ୍ମଣୀ ॥
ଭୋ ନାଥ କମଳଲୋଚନ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
ତୋହର ଆଦିଅନ୍ତ ନାହିଁ । ଯେମନ୍ତ ବୋଲୁ କାହିଁ ପାଇଁ ॥

ଆମ୍ଭେ ଛାଡ଼ିଲୁ ମୋହ ଫାଶି । ତୋହୋର ପାଦ ତଳେ ଆସି ॥
ତୋହୋର ଚରଣ ତୁଳସୀ । କବରୀ ଭାରେ ଥିବୁ ଖୋଷି ॥
ଖଟିବୁ ପଦ୍ମପାଦ ତଳେ । ଅନେକ ଜନ୍ମ ପୁଣ୍ୟ ଥିଲେ ॥
ସ୍ୱାମୀ ତନୟ ବନ୍ଧୁ ପୁରୀ । ତେଜିଲୁ ତୃଣ ପ୍ରାୟ କରି ॥
ଅଷ୍ଟାଙ୍ଗ ଯୋଗ ଲୟେ ବସି । ତୋ ରୂପ ଚିନ୍ତନ୍ତି ସନ୍ନ୍ୟାସୀ ॥
ତାହା ପାଇଲୁ ପୁଣ୍ୟବଳେ । ଭୋ ନାଥ ରଖ ପାଦତଳେ ॥
ଭ୍ରଷ୍ଟ କୁଟୁମ୍ବେ କାର୍ଯ୍ୟ ନାହିଁ । ବଞ୍ଚିବୁ ତୋ ମୁଖ ଅନାଇଁ ॥
ଯେଠାରୁ ଯେବେ ଆମ୍ଭେ ଯିବୁ । ଘରେ ତ ପଶି ନ ପାରିବୁ ॥
ବନ୍ଧୁ ପିଅର ପୁତ୍ର ପତି । ଯେମାନେ ବୋଲିବେ ଅନୀତି ॥
ସଂସାରେ ନ ବୋଲିବେ ଭଲ । ବିଚାରି କହ ଆଦିମୂଳ ॥
ଉଭୟ କୂଳ ନ ପାଇଲୁ । ଯେବେ ନିଶ୍ଚୟେ ନାଶ ଗଲୁ ॥
କିସ କରିବୁ ଘରେ ଯାଇ । ତୋ ତହୁଁ ଅନ୍ୟଗତି ନାହିଁ ॥
ହସି ବୋଲନ୍ତି ଭଗବାନ । ଯେମନ୍ତେ ନ ବିଚାର ମନ ॥
ମୋହୋର ପାଦେ ଚିତ୍ତ ଦେଇ । ଚାଣ୍ଡାଳ ଘରେ ଯେବେ ଥାଇ ॥
ସଂସାରେ ତାର ପାଦ ପୂଜି । ମୋହୋର ନାମ ହୃଦେ ହେଜି ॥
ତୁମ୍ଭଙ୍କୁ ଦେଖି ସ୍ୱାମୀ ଗଣେ । ଖଟିବେ ତୁମ୍ଭର ଚରଣେ ॥
ତୁମ୍ଭଙ୍କୁ ଲୋଚନେ ଯେ ଚାହିଁ । ଜନ୍ମ ମରଣ ତାଙ୍କ ନାହିଁ ॥
ମୋର ମହିମା ଶୁଣ ନାରୀ । ଯେ ମୋତେ ନିକଟେ ଆବୋରି ॥
ମୋତେ ପାଇବା ଆଶେ ଜଗି । ପଡ଼ନ୍ତି ମାୟାମୋହ ଲାଗି ॥
ମୋହୋର ଆଦି ଅନ୍ତ ନାହିଁ । ପ୍ରାଣୀ ପାଇବେ ମୋତେ କାହିଁ ॥
ଯେ ମୋତେ ଦୂରେ ଥାଇ ଚିନ୍ତି । ସେ ମୋତେ ନିକଟେ ଦେଖନ୍ତି
ମନ ବଚନ ଦ୍ୟନ୍ତି ମୋତେ । ମୁ ଥାଇ ତାଙ୍କ ହୃଦଗତେ ॥
ଯାଅ ମନ୍ଦିରେ ବେଗେ ମାୟେ । ଚିତ୍ତ ନିବେଶି ମୋର ପାୟେ ॥
ସଂସାର ସୁଖ ଭୋଗ କରି । ଅନ୍ତେ ପାଇବ ନରହରି ॥
ମୋହୋର ପାଦେ ମନ ଥାଉ । ମୋ ନାମ ଧରି ଦିନ ଯାଉ ॥
ଯେ କଥା ଶୁଣି ବିପ୍ର ନାରୀ । କୃଷ୍ଣ ବଚନ ଚିତ୍ତେ ଧରି ॥
ହରଷ ବିସ୍ମୟେ ଆରତ । ଯେବେ ହୋ ଶୁଣ ନରନାଥ ॥
କୃଷ୍ଣ ବଚନେ ଛାଡ଼ି ଭ୍ରାନ୍ତି । ପାଦେ ପଡ଼ିଲେ ବିପ୍ର ସତୀ ॥
ଚରଣ ରେଣୁ ଘେନି ଶିରେ । ବ୍ରାହ୍ମଣୀ ଗଲେ ନିଜ ପୁରେ ॥
କୃଷ୍ଣର ପାଦେ ମନଦେଇ । ଆନନ୍ଦ କେ ପାରିବ କହି ॥
ମଙ୍ଗଳ ହୁଳହୁଳି ନାଦେ । କର ନିବେଶି କନ୍ଧେ କନ୍ଧେ ॥
ମଙ୍ଗଳ ନାଦେ ଗୀତ ଗାଇ । ନାଚନ୍ତି କୃଷ୍ଣଭାବ ଲଇ ॥
ରାଜନ ଶୁଣ ପରିମାଣି । ମନ୍ଦିରେ ଥିଲା ଯେ ବ୍ରାହ୍ମଣୀ ॥
ଶୁଣିଲା ହୁଳହୁଳି ନାଦ । ବ୍ରାହ୍ମଣୀମାନଙ୍କ ଆନନ୍ଦ ॥
ଆତ୍ମାକୁ କହେ ରୋଷ ବହି । ନିଲଜ ଅଛୁ କାହିଁପାଇଁ ॥
ତୁ ଛାର ଅଟୁ ବଡ଼ ପାପୀ । ଗୋବିନ୍ଦ ନ ପାରିଲୁ ଦେଖି ॥
ଯାହାର ନାମ ହୃଦେ ଧରି । ଶଙ୍କର ନିତ୍ୟେ ବ୍ରହ୍ମଚାରୀ ॥
ତୁ ଛାର ଅଟୁ ବଡ଼ ହୀନ । ବ୍ରାହ୍ମଣୀମାନେ ବଡ଼ ଧନ୍ୟ ॥
କୃଷ୍ଣଙ୍କୁ ଦେଖିଲେ ନୟନେ । ଆଜ୍ଞା ଶୁଣିଲେ ବେନି କର୍ଣ୍ଣେ ॥
କିସ ପାଇବୁ ମୋ ଶରୀରେ । ଦରିଦ୍ର ଦୁଃଖୀ ନିରନ୍ତରେ ॥
ହେ କୃଷ୍ଣ ପରମ ମଙ୍ଗଳ । ଦାସ ବତ୍ସଳ ଆଦିମୂଳ ॥
ମୁଁ ଛାର କୋଟିକେ ଅନ୍ତର । କାହିଁ ପାଇବି ତୋ ପୟର ॥
ମୁଣ୍ଡ ପାଡ଼ିଲା ସ୍ତମ୍ଭେ නେଇ । ପ୍ରାଣ ଛାଡ଼ିଲା ନିଜ ଦେହୀ ॥
କୃଷ୍ଣର ପାଦେ ମନ ଥିଲା । ତୁଣ୍ଡରେ ନାମ ଉଚ୍ଚାରିଲା ॥
ତକ୍ଷଣେ ଦିବ୍ୟରୂପ ହୋଇ । ପଶିଲା କୃଷ୍ଣଦେହେ ଯାଇ ॥
ଭଗତବନ୍ଧୁ ଭାବଗ୍ରାହୀ । ବୋଲନ୍ତି ଗୋପାଳଙ୍କୁ ଚାହିଁ ॥
ଅନ୍ନ ଭୋଜନ କର ବସି । ଆନନ୍ଦେ ନିଜ ଆତ୍ମା ତୋଷି ॥
ଶୁଣି ସାନନ୍ଦ ଗୋପ ପୋୟେ । ସଙ୍ଗେ ଭୁଞ୍ଜିଲେ ଦେବରାୟେ ॥
ବ୍ରାହ୍ମଣେ ନିଜ ନାରୀ ଚାହିଁ । ତୋଷ ହୋଇଲେ ଯଜ୍ଞ ଦାହି ॥
ଯେମନ୍ତ ଲୀଳା ବନମାଳୀ । ଗୋପ ଗୋପାଳ ମଧ୍ୟେ କେଳି ॥
ଅନନ୍ତ ପ୍ରଭୁ ଆଦିମୂଳ । ଗୋପେ ମିଳିଲେ ବାଳମେଳ ॥
ବ୍ରାହ୍ମଣେ ନିଜ ନାରୀ ଦେଖି । କୃଷ୍ଣର ଭାବ ଉପଲକ୍ଷି ॥
ବେଦ ପୁରାଣେ ପରିମାଣି । ନିଶ୍ଚେ ଜାଣିଲେ ଚକ୍ରପାଣି ॥
ଭଗତି ଦେଖି ନାରୀଙ୍କର । ମନେ ପାଇଲେ ଖେଦଭର ॥
ବୋଲନ୍ତି ଆତ୍ମା ନିନ୍ଦାକରି । ଜଣ ଜଣକେ ନାମ ଧରି ॥
ହରିଙ୍କି କଲୁ ଅପରାଧ । ଧିକ ଆମ୍ଭର ବ୍ରହ୍ମ ପଦ ॥
ବେଦ ପୁରାଣ ଯେତେ ପଢୁ । ଧିକ ଆମ୍ଭର ଆତ୍ମା ପୋଡୁ ॥
ବେଦପୁରାଣ କ୍ରିୟା ଲଇ । ଯେ ହରିଭାବ ନ ଜାଣଇ ॥
ଧିକ ତାହାର ଜନ୍ମ କର୍ମ । ଅନେକ ମତେ ହୋଇ ଭ୍ରମ ॥
କୃଷ୍ଣର ମାୟା ଆଗୋଚର । ଭ୍ରମନ୍ତି ବ୍ରହ୍ମା ଶିବ ସୁର ॥
ଜଗତ ଗୁରୁପଣେ ଥାଇ । ବ୍ରାହ୍ମଣ ନାମ ଆମ୍ଭେ ବହି ॥
ନାରୀଙ୍କି ନୋହିଲୁ ଭାଜନ । ଯେହାଙ୍କ ନାହିଁ ବିଦ୍ୟାକର୍ମ ॥
କେମନ୍ତେ କୃଷ୍ଣଙ୍କୁ ଜାଣିଲେ । ପୂର୍ବେ ଯେ କେତେ ତପ କଲେ ॥
ଆମ୍ଭର ଦେଖ କର୍ମଫଳ । ଅନ୍ନ ମାଗିଲେ ଆଦିମୂଳ ॥
ଯଜ୍ଞେ ପୂଜିବୁଁ ଯାର ପାଦ । ପ୍ରତକ୍ଷେ ମିଳିଲେ ଗୋବିନ୍ଦ ॥
ତାହାଙ୍କୁ ନ ଜାଣିଲୁ ମୋହେ । ଜୀବନ ଅଛି କିମ୍ବା ଦେହେ ॥
ଯେ ହରି ଦେଶ କାଳ ପାତ୍ର । ମଙ୍ଗଳ ଦିବ୍ୟ ଦେବତନ୍ତ୍ର ॥
ବିପ୍ର ଅନଳ ଦେବଗଣ । ଯଜ୍ଞ କରଣ ଯଜମାନ ॥

ସକଳ ପ୍ରଭୁ ଭଗବାନ । ନ ଜାଣି ହୋଇଲୁ ଅଜ୍ଞାନ ॥
କମଳା ଥାଇ ପାଦ ତଳେ । ବହନ ନିରୋପି ନିଷ୍ଠଳେ ॥
ଚଞ୍ଚଳା ଦୋଷ ଭୟେ ସେବି । ଭାବି ନ ପାଇଲା ମାଧବୀ ॥
ଅନାଦି ପ୍ରଭୁ ଯୋଗେଶ୍ୱର । ଗୁପତେ ଅଛି ନନ୍ଦଘର ॥
ଜାଣି ନ ପାରିଲୁ ସକଳେ । କୃଷ୍ଣର ମାୟା ଯୋଗ ବଳେ ॥
ତୋହୋର ମାୟାଚକ୍ରେ ଭ୍ରମି । ଆମ୍ଭେ ବୋଲାଉ ନିତ୍ୟ କର୍ମୀ ॥
ଅନେକ କଲୁ ଅପରାଧ । ତ୍ରାହି କରିବା ପଦ୍ମନାଭ ॥
ଯେମନ୍ତ ବୋଲି ଗୋଡ଼ାଇଲେ । ବନେ ଅନେକ ଦୂର ଗଲେ ॥
କୃଷ୍ଣ ନ ଦେଖି ଘୋରବନେ । ବ୍ରାହ୍ମଣେ ବିଚାରନ୍ତି ମନେ ॥
ଗୋବିନ୍ଦ ଅଛି ନନ୍ଦ ଘରେ । ଜାତ ହୋଇଲେ ମଧୁପୁରେ ॥
ଆମ୍ଭେ ନ ଯିବା ଗୋପପୁର । ନ ପୁଣ ଜାଣେ କଂସାସୁର ॥
ମଥୁରା ଯେତେବେଳେ ଯିବେ । କୃଷ୍ଣ କଂସକୁ ସଂହାରିବେ ॥
କୃଷ୍ଣ ଦେଖିବୁ ରାମ ତୁଲେ । ଯେମନ୍ତ ବୋଲି ବାହୁଡ଼ିଲେ ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ବିପ୍ର ପତ୍ନୀ ମୋକ୍ଷଣେ ନାମ ଚତୁର୍ବିଂଶୋଽଧ୍ୟାୟଃ ।*

## ପଞ୍ଚବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଚୂଡ଼ାମଣି । ଗୋପ ନଗରେ ଚକ୍ରପାଣି ॥
ରୋହିଣୀ ନନ୍ଦନର ତୁଲେ । ଦିନ ହରନ୍ତି ଗୋପମେଳେ ॥
ଗୋପାଳେ ବସି ଯେକ ଦିନେ । ଇନ୍ଦ୍ର ଉଛବର ବିଧାନେ ॥
ସକଳେ ବିଚାରନ୍ତି ବସି । ମଧ୍ୟେ ବିଜୟେ ବ୍ରହ୍ମରାଶି ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ଜାଣନ୍ତି ଗୋପଙ୍କ ବିଚାର ॥
ଲୋକ ବେଭାରେ ଭାବଗ୍ରାହୀ । ବୋଲନ୍ତି ନନ୍ଦ ମୁଖ ଚାହିଁ ॥
ବୃଦ୍ଧ ଗୋପାଳେ ଛନ୍ତି ଯେତେ । ବିଶ୍ୱାସ କରି ଯେଝା ମତେ ॥
ଭୋ ତାତ କେବଣ ଉଛବ । ଯେହାର ଫଳେ ଉଦବେଗେ ॥
ତୁମ୍ଭ ବିଚାର ଯଜ୍ଞମତେ । ଉଦ୍ଦେଶ୍ୟ ଜାଣିମା ଯୁଗତେ ॥
କେବଣ ମତେ ସାଧ କରି । ଯଜ୍ଞ କରନ୍ତି ନରନାରୀ ॥
ଯେ ଯଜ୍ଞକଲେ ହୋଏ କିସ । ହସି କହନ୍ତି ହୃଷୀକେଶ ॥
ଭୋ ତାତ ହୋଇବା ପ୍ରସନ୍ନ । ଯେ ସେ ପୂଜାର ବିଧାନ ॥
ଗୁପତ ନ କର ପିଅର । କହ ସାଧୁଜନଙ୍କ ବେଭାର ॥
ଭାବ ସେବକେ ପୂଜା କହି । ବିଶେଷେ ପୁତ୍ର ମୁ ଅଟଇ ॥

ସମଦରଶୀ ଯାର ଚିତ୍ତ । ନାହିଁ ତାହାର ରିପୁ ମିତ୍ର ॥
ସଂସାର ଚକ୍ରେ ଥାଇ ଜନ୍ତୁ । ଇଚ୍ଛନ୍ତି ନାନା କର୍ମ ହେତୁ ॥
ଜାଣି ନ ଜାଣି ଫଳ ଆଶେ । କର୍ମ ସାଧନ୍ତି ମନ ତୋଷେ ॥
ଦଇବ ମୋତେ ଫଳ ହୋଇ । ଯେ ଯାହା କର୍ମବଳେ ପାଇ ॥
ବେଦ ପୁରାଣ କ୍ରିୟାଘେନି । କର୍ମ ସାଧନ୍ତି ବିପ୍ର ମୁନି ॥
ତୁମ୍ଭେ ସାଧିବ ଲୋକମତେ । ବିଚାରି କହ ତାତ ମୋତେ ॥
କୃଷ୍ଣ ବଚନ ନନ୍ଦ ଶୁଣି । କୋଳେ ବସାଇ ଚକ୍ରପାଣି ॥
ବୋଲଇ ଶୁଣ ଦାମୋଦର । ପୂଜା କରିବୁ ସୁରେଶ୍ୱର ॥
ତାହାର ଆତ୍ମା ମେଘମାଳ । ଅମୃତ ବରଷନ୍ତି ଜଳ ॥
ମେଦିନୀ ଜଳଯୋଗ ପାଇ । ଅନେକ ଶସ୍ୟ ଉପୁଜଇ ॥
ଜୀବିକା ହୋଇ ପ୍ରାଣୀଙ୍କର । ତେବେ ସେ ବର୍ତ୍ତନ୍ତି ସଂସାର ॥
ଶସ୍ୟ ସମ୍ପଦ ଘେନି ଜନେ । ଯଜ୍ଞ କରନ୍ତି ତୋଷ ମନେ ॥
ନାନା ଦେବତା ଯଜ୍ଞେ ଦାହି । ପୂଜି ଅନେକ ଫଳ ପାଇ ॥
ଯେମନ୍ତେ ଯେ ଯାହାର ମତେ । ଇନ୍ଦ୍ରଙ୍କୁ ପୂଜନ୍ତି ଜଗତେ
ଯେ ଯାହା ମତେ ନାନା ଯାଗ । କରି ଲଭନ୍ତି ତିନିବର୍ଗ ॥
ଇଷ୍ଟ ଦେବତା ଶୁଭ କାଳେ । ପୂଜା କରନ୍ତି ମହୀତଳେ ॥
ଯେ ନର ଲୋଭ ବଶ ହୋଇ । ଇଷ୍ଟଦେବତା ନ ପୂଜଇ ॥
ତାହାର ନାହିଁ ସୁଖ ଲେଶ । ଆପଦେ ହୋନ୍ତି ପରବେଶ ॥
ନନ୍ଦ ବଚନ କୃଷ୍ଣ ଶୁଣି । ବୃଦ୍ଧ ଗୋପାଳେ ତାହା ଭଣି ॥
ଇନ୍ଦ୍ର ବିଷୟେ କୋପକରି । ନନ୍ଦକୁ ବୋଲନ୍ତି ମୁରାରି ॥
କୃଷ୍ଣ ବୋଲନ୍ତି ଶୁଣ ତାତ । ଜଗତ କର୍ମେ ଆତଯାତ ॥
ଯେ ଜୀବ ଆତ୍ମା କର୍ମ ଘେନି । ଗତ ଆଗତ ପଥଶ୍ରମୀ ॥
କର୍ମର ମତେ ଦୁଃଖ ସୁଖ । ଜନ୍ମ ମରଣ ହୋଏ ଦେଖ ॥
କର୍ମଟି ଦୁଃଖ ସୁଖ ଦାତା । ବିଶ୍ୱ ସଂସାରେ ବଳବନ୍ତା ॥
କର୍ମ ହୁଁ ନାହିଁ ଅନ୍ୟ ଦେବ । ଭୋ ତାତ କର୍ମପାଦେ ସେବ ॥
କର୍ମ ଭୁଞ୍ଜନ୍ତି ପ୍ରାଣୀଙ୍କର । ଇନ୍ଦ୍ରତ ନୁହଇ ଠାକୁର ॥
ସ୍ୱଭାବେ ଜୀବ ଆତଯାତ । ସ୍ୱଭାବେ ସଞ୍ଚଳା ଜଗତ ॥
କର୍ମର ବଳେ ନାନା ଯୋନି । ଜାତ ହୁଅନ୍ତି କର୍ମ ଘେନି ॥
କର୍ମ ସେ ଶତ୍ରୁ ମିତ୍ର ହୋଇ । ଗୁରୁଙ୍କ ପ୍ରାୟେ ଦୀକ୍ଷା ଦେଇ ॥
ସକଳେ କର୍ମ ସେବା କର । ବୋଲନ୍ତି ପ୍ରଭୁ ଦାମୋଦର ॥
ଯେ ପ୍ରାଣୀ ନିଜ କର୍ମ ଛାଡ଼ି । ଅନ୍ୟ ଜୀବିକା ଲୋଭେ ଲୋଡ଼ି ॥
ଦୁର୍ଗମ ପଥ ଆବୋରନ୍ତି । ଯେସନେ ବିଟପ-ଯୁବତୀ ॥
ଭୋ ତାତ ଶୁଣ କର୍ମ କଥା । ବେଦ ପୁରାଣର ବ୍ୟବସ୍ଥା ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ । ଯେ ଯାହା ମତେ ବୃତ୍ତି ଭିନ୍ନ ॥

ବେଦ ବିଚାରି ଷଟକର୍ମ । ବ୍ରାହ୍ମଣ ଜନର ଯେ ଧର୍ମ ॥
ଭୂମି ପାଳଣ ଶୂରବନ୍ତ । ଦାନ ସନ୍ତୋଷ କ୍ଷତ୍ରି ବୃତ୍ତ ॥
କୃଷି ବାଣିଜ୍ୟ ଗୋରୁ ବୃତ୍ତି । ବୈଶ୍ୟ ଜନଙ୍କର ଯେ ଗତି ॥
ବ୍ରାହ୍ମଣ ପାଦେ ସେବା କରି । ଶୂଦ୍ରେ ହୋଇବେ ସୁଖଚାରୀ ॥
ଯେ ଚାରିବର୍ଣ୍ଣର ବେଭାର । ବୈଶ୍ୟଙ୍କ ମତଟି ଆମ୍ଭର ॥
ଭୋ ତାତ ଶୁଣ ଆଦିଅନ୍ତ । ଯେମନ୍ତ କହଇ ବେଦାନ୍ତ ॥
ସୃଷ୍ଟିର କାଳେ ନାରାୟଣ । ଆଗେ ସୃଜିଲା ତିନିଗୁଣ ॥
ରଜଗୁଣରୁ ବ୍ରହ୍ମା ହୋଇ । ସତ୍ୱ ଗୁଣକୁ ବିଷ୍ଣୁ ପାଇ ॥
ରୁଦ୍ରଙ୍କୁ ଦିଲେ ତମଗୁଣ । ସୃଷ୍ଟିର ସଂହାର କାରଣ ॥
ବ୍ରହ୍ମା ଭିଆଣ ମେଘମାଳ । ସଂସାରେ ବରଷନ୍ତି ଜଳ ॥
ଜନ୍ତୁ ଜୀବିକା ତେଣୁ ହୋଇ । ଇନ୍ଦ୍ରେ ତ ପ୍ରୟୋଜନ ନାହିଁ ॥
ଇନ୍ଦ୍ର ସେ ତପେ ବଡ଼ ପଣ । ଜଗତ ବିଷ୍ଣୁର ଭିଆଣ ॥
ଗ୍ରାମ ପାଟଣା ଦେଶପୁରେ । ଇନ୍ଦ୍ରକୁ ପୂଜିବେ ବେଭାରେ ॥
ବନ ଗହନେ ଆମ୍ଭ ଘର । ଗୋରୁ ଚରାଉ ନଦୀତୀର ॥
ନିର୍ଝର ଜଳ ପାନ କରି । ଆମ୍ଭ ଦେବତା ବନଗିରି ॥
ତୁମ୍ଭର ଯଜ୍ଞ ଯେବେ ସତ୍ୟ । କହଇ ଶୁଣିମା ତଦନ୍ତ ॥
ଗୋରୁ ବ୍ରାହ୍ମଣ ପ୍ରୀତି ଫଳେ । ଯଜ୍ଞ କରିବା ଗିରିତଳେ ॥
ପୂଜିବା ଗୋବର୍ଦ୍ଧନ ଶିର । ଯେ ଇନ୍ଦ୍ର ଯଜ୍ଞର ବେଭାର ॥
ଦ୍ୱିଗୁଣ କରି ବଳି ଭୋଜା । ସୁଖେ କରିବା ଗିରି ପୂଜା ॥
ନାନା ବ୍ୟଞ୍ଜନ ଷଡ଼ରସ । ପିଷ୍ଟକ ପ୍ରପାନ ପାୟସ ॥
ଗୋରସ ରସ ସରପୁଳି । ନାନା ପିଷ୍ଟକେ ଖଣ୍ଡ ବୋଳି ॥
ଅନଳ ପୂଜା ହୋମ କରି । ଋତ୍ୱିଜ ଚାରିବେଦୁଁ ବରି ॥
ପୂର୍ଣ୍ଣ ଆହୁତି ଯଜ୍ଞ ଅନ୍ତେ । ଦକ୍ଷିଣା ଦିଅ ନାନା ମତେ ॥
ଗୋରୁ କାଞ୍ଚନ ତିଳ ଅନ୍ନ । ଅତିଥି ପୂଜାର ବିଧାନ ॥
ଯେ ଯାହା ମତେ ତୋଷ କରି । ସୁଖେ ଭୁଞ୍ଜିବେ ନରନାରୀ ॥
କୋମଳ ତୃଣ ଅନ୍ନ ସଙ୍ଗେ । ଗୋରୁଙ୍କୁ ଭୁଞ୍ଜାଇବା ରଙ୍ଗେ ॥
ପର୍ବତେ ବଳିଭୋଜା ଦେଇ । ସକଳେ ଅଳଙ୍କାର ଲାଇ ॥
ଗିରି କରିବା ପ୍ରଦକ୍ଷିଣ । ଆରାଧି ଅନଳ ବ୍ରାହ୍ମଣ ॥
ମୋହୋର ମତେ ଯେ ଯୋଗାଇ । କୃଷ୍ଣ କହନ୍ତି ନନ୍ଦ ଚାହିଁ ॥
ମୁନି କହନ୍ତି ରାଜା ଆଗେ । ଶୁଣି ଗୋପାଳେ ଉଦବେଗେ ॥
କୃଷ୍ଣ ବଚନ ପ୍ରତିପାଳି । ନନ୍ଦକୁ ଘେନି ମଧ୍ୟେ ଭାଳି ॥
କୃଷ୍ଣ ବଚନ ପରଶଂସି । ମିଳିଲେ ଯେଝାଘରେ ଆସି ॥
ଦ୍ୱିଗୁଣେ ସମ୍ଭାରନ୍ତ ଘେନି । କରନ୍ତି ନାନା ବାଦ୍ୟ ଧ୍ୱନି ॥
ପର୍ବତ ତଳେ ଯାଇ ମିଳି । କାମିନୀ ଦ୍ୟନ୍ତି ହୁଳହୁଳି ॥

ଯଜ୍ଞ ଆରମ୍ଭି ଗିରି ତଳେ । ପୂଜିଲେ ବ୍ରାହ୍ମଣ ଅନଳେ ॥
ବିବିଧ ମତେ ଦିଲେ ଦାନ । କାଞ୍ଚନ ବସ୍ତ୍ର ଧେନୁ ଅନ୍ନ ॥
ଦେବ ଅତିଥି ତୋଷ କରି । ଭୋଜନ କଲେ ନରନାରୀ ॥
ବିବିଧ ଅଳଙ୍କାର ଲାଇ । ଗୋରୁ ବ୍ରାହ୍ମଣ ମଧ୍ୟେ ଥାଇ ॥
ପର୍ବତ କଲେ ପ୍ରଦକ୍ଷିଣ । ଗୋରୁଙ୍କୁ ଦିଲେ ଜଳତୃଣ ॥
ଶକଟ ମଣ୍ଡିଲେ ଗୋପାଳେ । ଦିବ୍ୟ ବସନ ରତ୍ନମାଳେ ॥
ବାଳକ କୋଳେ ଘେନି ନାରୀ । ନନ୍ଦ ଯଶୋଦା ଆଦିକରି ॥
ରୋହିଣୀ ଯଶୋଦାର ମେଳେ । ରାମ ଗୋବିନ୍ଦ ଘେନି କୋଳେ
ଶଙ୍ଖ ମହୁରୀ ବାଦ୍ୟ ଭେରୀ । ମୁରଲୀ ନାଦେ ଗୀତ ସ୍ଫୁରି ॥
ବୁଲନ୍ତି ଗିରି ଚାରିଦିଗେ । କୃଷ୍ଣ ଆନନ୍ଦ ବଳ ଯୋଗେ ॥
ଗୋବିନ୍ଦ ମାୟା ଯୋଗ ବଳେ । ପର୍ବତ ଶିଖେ ବିଜେ କଲେ ॥
ଯଶୋଦା କୋଳେ ଛନ୍ତି ବସି । ଗୋପ ଗୋପାଳଙ୍କୁ ଆଶ୍ୱାସି ॥
ପର୍ବତ ଶିଖେ ବିଶ୍ୱରୂପୀ । ଟେକି ଚାହାନ୍ତି ଗୋପ ଗୋପୀ ॥
ବେନି ଯୋଜନ ଲମ୍ବ ଭୁଜ । ଶିରେ ଲାଗିଲା ଗ୍ରହରାଜ ॥
ଶ୍ୟାମ ସୁନ୍ଦର ତନୁ ବର୍ଣ୍ଣ । ଗୋପକୁ ଚାହିଁ ସାବଧାନ ॥
ବୋଲନ୍ତି ହୋଇଲି ମୁ ତୋଷ । ଆନନ୍ଦେ ପୁରୁ ତୁମ୍ଭ ଆଶ ॥
ନିଶ୍ଚିନ୍ତ ହୋଇ ଥାଅ ବନେ । ମୋହୋର ପୂଜାର ବିଧାନେ ॥
ସକଳ ଖଣ୍ଡିବି ଆପଦ । ଗୋକୁଳ ହୋଇବ ଆନନ୍ଦ ॥
ତଳେ ଲମ୍ୱାଇ ବେନିଭୁଜ । ବଳି ଭୁଞ୍ଜିଲେ ଗିରିରାଜ ॥
ଗୋପୀ ଗୋପାଳଙ୍କୁ ଅନାଇଁ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥
ଦେଖ ହୋ ପର୍ବତ ମହିମା । ଯଜ୍ଞର ବଳେ ପୁଣ୍ୟକର୍ମା ॥
ପ୍ରସନ୍ନ ହୋଇଲେଟି ଆଜ । କିସ କରିବେ ଦେବରାଜ ॥
ଯେତେକ କାଳ କରି ପୂଜା । ଦିଅ ଯେ ବନେ ବଳିଭୋଜା ॥
ଯେମନ୍ତ ଦିଅଁ ଅଛି କାହିଁ । ହସ୍ତ ପ୍ରସାରି ବଳି ଖାଇ ॥
ଇନ୍ଦ୍ରର ବର୍ଣ୍ଣ ଚିହ୍ନ ନାହିଁ । ନ ଜାଣି ପୂଜ ବାଇ ହୋଇ ॥
ଯେମନ୍ତ ନ ଦେଖିଲ ଦିନେ । ବଳି ଭୁଞ୍ଜାଇ ତୋଷ ମନେ ॥
ଯେବେ ତୁମ୍ଭର ଚିନ୍ତା ନାହିଁ । ନିର୍ଭୟେ ଥାଅ ଯେହା ଧ୍ୟାୟି ॥
ଯେ ଆମ୍ଭ ପୂରୋଇବ ଆଶ । ହସି ବୋଲନ୍ତି ପୀତବାସ ॥
ଯେହାକୁ କର ନମସ୍କାର । ଯେ ଆମ୍ଭ ଜୀବନ ଠାକୁର ॥
ଯେହାଙ୍କୁ ଅବଜ୍ଞା ଯେ କରି । ପଡ଼ିବେ ନରକ ଆବୋରି ॥
ଯେମନ୍ତ ବୋଲି ବନମାଳୀ । ଆପଣେ ନିଲେ ନିଉଛାଳି ॥
ଦେଖି ଆନନ୍ଦ ଗୋପ ଗୋପୀ । ନମିଲେ ପର୍ବତ ନିରୋପି ॥
ବୋଲନ୍ତି ଆମ୍ଭେ ଭାଗ୍ୟବନ୍ତ । ପ୍ରତକ୍ଷେ ଦେଖିଲୁ ପର୍ବତ ॥
କଲ୍ୟାଣ ହେଉ ନନ୍ଦବାଳ । ଯେ ଆମ୍ଭ ରଖିବ ଗୋକୁଳ ॥

ଯେମନ୍ତ ପୂଜା ବିଧି କଲେ । ଗୋପେ ମିଳିଲେ ରାତ୍ର କାଳେ ॥
କୃଷ୍ଣଚରିତ ପରଶଂସି । ମିଳିଲେ ନିଜଘରେ ଆସି ॥
ସେ ହରିଚରଣେ ବିଶ୍ୱାସ । ଭଣଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଇନ୍ଦ୍ରପୂଜା ଭଞ୍ଜନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।*

## ଷଡ଼ବିଂଶ ଅଧ୍ୟାୟ

### ଶ୍ରୀ ଶୁକଉବାଚ

ପରୀକ୍ଷ ମୁଖକୁ ଅନାଇଁ । ମୁନି କହନ୍ତି ତୋଷ ହୋଇ ॥
ରାଜନ ଶୁଣ ପରିମାଣି । ସ୍ୱର୍ଗେ ଜାଣିଲା ବଜ୍ରପାଣି ॥
କୃଷ୍ଣର ଦେଖି ଦୁଷ୍ଟପଣ । କୋପେ କମ୍ପିଲା ସୁରରାଣ ॥
କହଇ ଦେବନ୍ତ ବସାଇ । ମେଘ ପବନକୁ ଅନାଇଁ ॥
ଶୁଣ ପବନ ମେଘମାନେ । ପୂଜା ମୋ ଭାଙ୍ଗିଲେ ଗୋପାଳେ ॥
ଯଶୋଦା ସୁତ କୃଷ୍ଣ ବୋଲେ । ଗୋପାଳେ କଲେ ଅବହେଳେ ॥
ବାଳକ କୃଷ୍ଣ ବୋଲି ନାମ । ତାହାର ବୋଲେ ଯେଡ଼େ କର୍ମ ॥
ମନୁଷ୍ୟ ହୋଇ ବଳିଆର । ପୂଜା ଭାଙ୍ଗିଲେ ଗୋପେ ମୋର ॥
ଗଉଡ଼େ କୃଷ୍ଣ ସଙ୍ଗେ ଭୋଳ । ମୁ ଆଜ ପୂରୋଇବି କାଳ ॥
ଯେ ଅପମାନ କେବା ସହି । ଆକାଶେ ଇନ୍ଦ୍ରପଦ ବହି ॥
ସମ୍ପଦ ମଉଗର୍ବ ଅନ୍ଧେ । ସିନ୍ଧୁ ତରିବେ ବାଲିବନ୍ଧେ ॥
ଦଦରା ନାବେ ଯେହ୍ନେ ବସି । ସମୁଦ୍ର ତରଣେ ସାହସୀ ॥
ତେମନ୍ତ ମଣିଲେ ଗୋପାଳେ । ନନ୍ଦ ବାଳକ-ପୁଅ ବୋଲେ ॥
ବାଳକ ସପତ ବରଷ । ତା ବୋଲେ ହୋଇଲେ ବିଶ୍ୱାସ ॥
ବାଳୁତ ପ୍ରାୟେ ଖେଳୁଥାଇ । ପାଠ ପଠନ ନ ଜାଣଇ ॥
ଗୋରୁ ଚରାଇ ବନେ ବନ । ବାଇଙ୍କ ପ୍ରାୟେ ବେଣୁ ସ୍ୱନ ॥
ପଣ୍ଡିତ ପ୍ରାୟେ ତାକୁ ମଣି । ମୋହୋର ମହିମା ନ ଜାଣି ॥
ଯେଡ଼େ ଅନୀତି ଆଚରିଲେ । ଆଜ ସଂଗ୍ରାମ୍ଭ କୃଷ୍ଣ ତୁଲେ ॥
ଜାଣିମା କୃଷ୍ଣ ଆଶ୍ରେ କରି । କେମନ୍ତେ ଥିବେ ଗୋପପୁରୀ ॥
ଗୋରୁ ଗୋପାଳ କୃଷ୍ଣ ଆଦି । ଯେ ମୋର ଯଜ୍ଞ ଭଗ୍ନେ ବାଦୀ ॥
ଯେହାଙ୍କୁ କରି ବେଗେ ନାଶ । ଆବୋରି ବୃନ୍ଦାବନ ଦେଶ ॥
ତୁମ୍ଭେ ପ୍ରଳୟ ଚାରି ମେଘେ । ଗୋପ ନଗରେ ଯାଅ ବେଗେ ॥
ଶୁଣ ପବନ ଅଣଚାଶ । ଅଠର ଖଣ୍ଡ ମେଘ ମିଶ ॥
ବିଜୁଳି ଘୋର ନାଦ ଘେନି । ଶବଦେ କମ୍ପାଅ ମେଦିନୀ ॥
ବଜ୍ର ପାଷାଣ ସଙ୍ଗେ ବାରି । ବରଷ ଘୋର ନାଦ କରି ॥
ମୁଁ ପୁଣି ତୁମ୍ଭ ପଛେ ଥାଇ । ଐରାବତକୁ ଆରୋହି ॥
ବଜ୍ର ମାରିବି ନିରନ୍ତରେ । ଅନଳ ଜ୍ୟୋତି ପରଖରେ ॥
ନନ୍ଦ ସମ୍ପଦ କରି ନାଶ । ତେବେ ସେ ମୋର ମନ ତୋଷ ॥
ରିପୁ ନ ସାଧନ୍ତି ଯେ ପ୍ରାଣୀ । ତାହାଙ୍କୁ ଜୀବନ୍ତେ ନ ଗଣି ॥
ଶୁକ କହନ୍ତି ରାଜା ଆଗେ । ଇନ୍ଦ୍ରର ବୋଲେ ଚାରିମେଘେ ॥
ଅଠର ଖଣ୍ଡ ମେଘ ତୁଲେ । ପବନ ଘେନି ଚଳିଗଲେ ॥
ଗୋପ ନଗରେ ସୀମା ଯେତେ । ରୁନ୍ଧିଲେ ଦିଗ ଶୂନ୍ୟପଥେ ॥
ବିଜୁଳି ନାଦେ ଖରତର । ଦିବସେ କଲେ ଅନ୍ଧକାର ॥
ପବନ ଘୋର ନାଦ କରି । ଶବଦେ କମ୍ପେ ବସୁନ୍ଧରୀ ॥
ପାଷାଣ ସ୍ତମ୍ଭ ପ୍ରାୟେ ଜଳ । ଧାରା ବରଷନ୍ତି ଗହଳ ॥
ଜଳର ସଙ୍ଗେ ଶିଳା ପଡ଼ି । ଶବଦ ମେଘ ଘଡ଼ଘଡ଼ି ॥
ଦଣ୍ଡକେ ଉଛୁଳିଲା ମହୀ । ସ୍ଥଳ ଗଭୀର ନ ଦିଶଇ ॥
ଶୀତ ପବନ ସଙ୍ଗେ ବାରି । କମ୍ପନ୍ତି ଗୋପ ନରନାରୀ ॥
ଗୋପାଳେ ଦେଖି ବିପରୀତ । ବୋଇଲେ ହୋଇଲୁ ଅନାଥ ॥
ଯଶୋଦା ନନ୍ଦନର ବୋଲେ । ବିବାଦ କଲୁ ଇନ୍ଦ୍ର ତୁଲେ ॥
ବାଳ ବଚନ ସତ୍ୟ କରି । ଅନାଥ ହେଲୁ ଗୋପପୁରୀ ॥
କାହାରେ ପଶିବୁ ଶରଣ । ଅକାଳେ ହୋଇଲା ମରଣ ॥
ଅନାଥ ହୋଇଲୁ ଗୋକୁଳ । ଡାକନ୍ତି ରଖ ଆଦିମୂଳ ॥
ହେ କୃଷ୍ଣ ତୋର ବୋଲ କରି । ନିଶ୍ଚେ ବୁଡ଼ିଲା ଗୋପପୁରୀ ॥
ଗୋରୁଯେ ଶୀତ ଜଳେ କମ୍ପି । କୃଷ୍ଣଙ୍କୁ ଚାହାନ୍ତି ନିରୋପି ॥
ଲାଞ୍ଜ ଆଛାଦି ମୁଖ ପାଶେ । ମିଳିଲେ ଗୋବିନ୍ଦର ଆଶେ ॥
ବୃଦ୍ଧ ଗୋପାଳେ ଥରହର । ଡାକନ୍ତି ରଖ ଦାମୋଦର ॥
ତୋର ଶରଣ ଗୋପପୁର । ତୁ ନାଥ ଆମ୍ଭ ବଳିଆର ॥
ଥୋକେ ବୋଲନ୍ତି ବାଇପଣେ । ଯଜ୍ଞ ଭାଙ୍ଗିଲୁ ଅକାରଣେ ॥
ଯେ କାହିଁ ରଖିବ ଗୋକୁଳ । ମନୁଷ୍ୟ ଜନ୍ମ ନନ୍ଦବାଳ ॥
ସକଳେ ହୋଇଲୁ ନିରେଖ । ଡାକନ୍ତି ନାରାୟଣ ରଖ ॥
ମଧୁସୂଦନ ଚକ୍ରଧର । ଅନାଦି ଧର୍ମ ନିରାକାର ॥
ତୋର ଶରଣୁ ଅନ୍ୟ ନାହିଁ । ରଖ ଗୋକୁଳ ଭାବଗ୍ରାହୀ ॥
ଇନ୍ଦ୍ରର ହୋଇଲୁ ବଇରୀ । ବୁଡ଼ିଲା ଗୋପପୁର ଶିରୀ ॥
ଯେମନ୍ତେ ହୋଇଲେ ନିରାଶ । ଛାଡ଼ିଲେ ଜୀବନର ଆଶ ॥
ଗୋପର ଦେଖିଣ ବିକଳ । ହସି ବୋଇଲେ ଆଦିମୂଳ ॥
ଯେ ଅପରତୁ ବରଷଣ । ପ୍ରଚଣ୍ଡ ପବନ ପାଷାଣ ॥
ବରଷା ଋତୁ ଯେ ନୁହଇ । ଇନ୍ଦ୍ର ବରଷେ କୋପ ବହି ॥
ବାସବ ମୋତେ ନ ଜାଣଇ । ମନୁଷ୍ୟ ପ୍ରାୟେକ ମଣଇ ॥

ମୋହୋର ଜୀବନ ଗୋକୁଳ । ଯେହାକୁ କରଇ ବିକଳ ॥
ମୋତେ ଯେ କଲା ଯେଡ଼େ କର୍ମା ଭୋଳେ ହୋଇଲା ମତିଭ୍ରମ ॥
ପୂର୍ବେ ଯେ ତପ ଅଛି ଦାହି । ମୋହୋର ପାଦେ ଚିତ୍ତ ଦେଇ ॥
କେମନ୍ତେ ନାଶିବି ସମ୍ପଦ । ମୋହୋର ଦିଲା ଇନ୍ଦ୍ରପଦ ॥
ଯେହାର ଗର୍ବ ଆଜ ନାଶି । ପୁଣି ମୁ ସ୍ଥାପିବି ବିଶ୍ୱାସି ॥
ମୋହୋର ଭାବ ଯେ ଜାଣଇ । ତାହାର ଦେହେ ଗର୍ବ ନାହିଁ ॥
ଗର୍ବ ଗଞ୍ଜନ ବାନା ମୋର । ଦୁଷ୍ଟ ଦଳଣେ ଅବତାର ॥
ମୋର ସମ୍ପଦ ଗୋପପୁରୀ । ମୁହିଁ ସେ ଗୋପପୁର ଶିରୀ ॥
ମୋତେ ମାରିବ ବୋଲି କୋପେ । ଇନ୍ଦ୍ର ହିଁ ଆସିଅଛି ଗୋପେ ॥
ହସ୍ତୀର କନ୍ଧେ ଶକ୍ର ଥାଇ । ବଜ୍ର ମାରଇ ମୋତେ ଚାହିଁ ॥
ଆଜ ମୁ ରଖିବି ଗୋକୁଳ । କେ ସହୁ ଗୋରୁଙ୍କ ବିକଳ ॥
ଯେମନ୍ତ ବିଚାରି ଅନନ୍ତ । ବଢ଼ାଇ ଦିଲେ ବାମ ହସ୍ତ ॥
ପର୍ବତ ଥିଲା ନଦୀତୀରେ । ଗୋବିନ୍ଦ ଉପାଡ଼ିଲେ କରେ ॥
ଛତ୍ର ପ୍ରାୟେକ ଗିରି ଟୋଳି । ଡାକନ୍ତି ପ୍ରଭୁ ବନମାଳୀ ॥
ହେ ତାତ ମାତ ଗୋପବାଳେ । ବହନ ପଶ ଗିରିତଳେ ॥
ଗୋରୁ ଗୋପାଳ ଆଦିକରି । ସର୍ବ ସମ୍ପଦ ନରନାରୀ ॥
ନିର୍ଭୟେ ହୋଇ ତୁମ୍ଭେ ପଶ । ମନେ ନ କର କିଛି ତ୍ରାସ ॥
ହସି ବୋଲନ୍ତି ପୀତବାସ । ତୁମ୍ଭେ ଯେ ମୋହର ବିଶ୍ୱାସ ॥
ମୋହୋର କରେ ଗିରି ଥିବ । ତୁମ୍ଭ ଉପରେ ନ ପଡ଼ିବ ॥
ପୁଷ୍ପ ହୁଁ ଉଶ୍ୱାସଟି ମୋତେ । ତୁମ୍ଭେ ସେ ନ ଯା ଅପରତେ ॥
ତୁମ୍ଭର ହିତେ ଗିରିବର । ଦେଖ ଟୋଳିଲି ବାମକର ॥
ତୁମ୍ଭର ମଲେ ହତ୍ୟା ମୋର । କହନ୍ତି ପ୍ରଭୁ ଦାମୋଦର ॥
ମୋହୋର ବୋଲେ ଯଜ୍ଞ ଭଙ୍ଗି । ଯେବେ ହୋଇଲେ ଇନ୍ଦ୍ରେ ଗଞ୍ଜି ॥
ଆଜ ମୁ ରଖିବି ତୁମ୍ଭଙ୍କୁ । କିପାଇଁ ଡର ବାସବକୁ ॥
ନିର୍ଭୟେ ହୋଇ ତୁମ୍ଭେ ପଶ । ପର୍ବତ ବଢ଼ାଇ ଉଶ୍ୱାସ ॥
କୃଷ୍ଣ ବଚନେ ସୁଖଭୋଳେ । ପଶିଲେ ପର୍ବତର ତଳେ ॥
ଯାହାର ଘରେ ଯେତେ ଦ୍ରବ୍ୟ । ପଶିଲେ ସଙ୍ଗେ ଘେନି ସର୍ବ ॥
ଗିରି ଗର୍ଭରେ ଗଲେ ପଶି । ଗୋବିନ୍ଦ ବଚନେ ବିଶ୍ୱାସି ॥
ଦାସ ବତ୍ସଳ ବନମାଳୀ । ପୁଷ୍ପର ପ୍ରାୟେ ଗିରିଟୋଳି ॥
ବାମ ଅଙ୍ଗୁଳି ଅଗ୍ରଭାଗେ । ଗୋବିନ୍ଦ ବସାଇଲେ ରଙ୍ଗେ ॥
ଅଙ୍ଗୁଳି ଅଗ୍ରେ ଗିରି ଦେଖି । ଭୟେ ବୁଜିଲେ ବେନି ଆଖି ॥
ଗୋପୀୟେ ଗୋରୁଙ୍କର ମେଳେ । ଅନାଇଁ କାନ୍ଦନ୍ତି ବିକଳେ ॥
ବୋଲନ୍ତି ଯେବେ ନାଶ ଗଲୁ । ଗିରି ଗର୍ଭରେ ପ୍ରାଣ ଦିଲୁ ॥
ସାତ ବରଷ ପୁଅ କରେ । ପର୍ବତ ଅଙ୍ଗୁଳି ଉପରେ ॥

ଯେ କେତେବେଳ ଧରିଥିବ । ପବନ ବଳେ ହେଁ ପଡ଼ିବ ॥
କୋପ କରିଛି ଇନ୍ଦ୍ରରାଜା । ଆମ୍ଭେ ନ ଦିଲୁ ବଳିଭୋଜା ॥
ନନ୍ଦର ସୁତ ଆମ୍ଭ କାଜ । ତା ବୋଲେ ନାଶିଲୁ ସକଳ ॥
ଯେମନ୍ତେ ପର୍ବତକୁ ଚାହିଁ । କୃଷ୍ଣ ଅଙ୍ଗୁଳିକି ଅନାଇଁ ॥
ସମସ୍ତେ ଚକ୍ଷୁ ଯେକ ମେଳେ । ଥୋଇଲେ କୃଷ୍ଣ କର ସ୍ଥଳେ ॥
କ୍ଷୁଧା ପିପାସେ ନାହିଁ ମନ । ନିମିଷେ କଲେ ସାତଦିନ ॥
କୃଷ୍ଣର ମାୟା ଯୋଗବଳେ । ରାତ୍ର ଦିବସ ନ ଜାଣିଲେ ॥
ଇନ୍ଦ୍ର ଯେ ଶୂନ୍ୟେ ରହିଥିଲା । ସପତ ଦିନ ବରଷିଲା ॥
ପ୍ରଳୟକାରୀ ମେଘମାଳ । ଫୁଟିଣ ହୋଇଲେ ନିର୍ଜଳ ॥
ପବନ ଚଳି ନ ପାରିଲେ । ଅଳପ ଅଳପ ବୋହିଲେ ॥
ବିଜୁଳି ମେଘେ ଲୀନ ଗଲା । ଶବଦ ନିଷ୍ଫଳ ହୋଇଲା ॥
ଇନ୍ଦ୍ରର କରେ ଶସ୍ତ୍ର ନାହିଁ । ବୋଲଇ ମେଘକୁ ଅନାଇଁ ॥
ଆଉ କି ଗର୍ବ ଅଛି ମୋର । ଗିରି ଟୋଳିଲେ ଦାମୋଦର ॥
ସମ୍ପଦ ସରିଲା ମୋହର । ଆସ ହୋ ଯିବା ନିଜପୁର ॥
ଯେମନ୍ତ ବୋଲି ବାହୁଡ଼ିଲା । ନିଜ ଭୁବନେ ବିଜେ କଲା ॥
କୃଷ୍ଣ ଯେ ଥିଲେ ଗିରିଟୋଳି । ଜାଣିଲେ ପ୍ରଭୁ ବନମାଳୀ ॥
ବୋଲନ୍ତି ଗୋପକୁ ଅନାଇଁ । ବାହାର ହୁଅ ବେଗ ହୋଇ ॥
ଗଗନ ନିର୍ମଳ ଦିଶିଲା । ରବି କିରଣ ପ୍ରକାଶିଲା ॥
ସକଳ ଜଳ ନଦୀ ମାର୍ଗେ । ପଶିଲେ ସମୁଦ୍ରର ଗର୍ଭେ ॥
ପବନ ବହିଲା ଉଶ୍ୱାସ । ଦିଶିଲା ବନ ଗିରି ଦେଶ ॥
ଯେବେ ବାହାର ହୁଅ ବେଗେ । ନିର୍ମଳ ବନ ଭୂମି ଭାଗେ ॥
ପର୍ବତ ଧରି ନ ପାରଇ । ପଡ଼ିଲେ ମୋର ଦୋଷ ନାହିଁ ॥
ଶୁଣି ଗୋପାଳେ ଥରହର । ବାହାର ହୋଇଲେ ସଧୀର ॥
ଯେ ଯାହା ନାନାଦ୍ରବ୍ୟ ଲଇ । ବୃଦ୍ଧ ଗୋପାଳ ଧନ ଗାଈ ॥
ବାହାର ହୋଇଲେ ସକଳେ । କୃଷ୍ଣ ଚାହିଁଲେ ଗିରିତଳେ ॥
ଦେଖିଲେ ଗର୍ଭେ କେହି ନାହିଁ । ଗୋପ ଗୋପାଳ ବଛା ଗାଈ ॥
ପରମାନନ୍ଦ ତୋଷ ମନେ । ଗିରି ସ୍ଥାପିଲେ ନିଜସ୍ଥାନେ ॥
ଦେଖନ୍ତି ସ୍ୱର୍ଗେ ଦେବତାୟେ । ଶୂନ୍ୟେ କରନ୍ତି ଜୟେ ଜୟେ ॥
ସ୍ଥାନେ ନିବେଶି ନିଜ ଗିରି । ମିଳିଲେ ଗୋପେ ନରହରି ॥
କୃଷ୍ଣଙ୍କୁ ଦେଖି ଗୋପ ବାଳେ । ଧରନ୍ତି ଜଣେ ଜଣେ କୋଳେ ॥
ଦଧି ଅକ୍ଷତ ଜଳ ଘେନି । କୃଷ୍ଣଙ୍କୁ ସିଞ୍ଚନ୍ତି କାମିନୀ ॥
ନନ୍ଦ ରୋହିଣୀ ଯଶୋବନ୍ତୀ । କୃଷ୍ଣେ ଆଲିଙ୍ଗନ କରନ୍ତି ॥
ଆଶିଷ ଦିଲେ ସ୍ନେହ ଭରେ । ଗୋରଜ ଲେପି କଳେବରେ ॥
ଆକାଶେ ଥାଇ ଦେବନାରୀ । ସିଦ୍ଧ ଚାରଣେ ସ୍ତୁତି କରି ॥

କଲେ ଦୁନ୍ଦୁଭି ବାଦ୍ୟ ନାଦ । ଗନ୍ଧର୍ବେ ମଙ୍ଗଳ ଶବଦ ॥
ପୁଷ୍ପ ବରଷି ସ୍ତୁତି କରି । ରଙ୍ଗେ ନାଚନ୍ତି ଅପସରୀ ॥
ଦିନକୁ ଦିନ ଅତିରସ । ଗୋକୁଳେ ରାମ ହୃଷୀକେଶ ॥
କୃଷ୍ଣ ମହିମା ଶୁଣି କର୍ଣ୍ଣେ । ଆନନ୍ଦ ଗୋପୀଙ୍କର ମନେ ॥
ହରି ମହିମା ହୃଦେ ଧରି । ଦିନ ବଞ୍ଚନ୍ତି ଗୋପନାରୀ ॥
ସେ ଗିରିଧର ପଦ୍ମପାଦେ । ମୋ ମନ ନିଶ୍ଚଳ ଆନନ୍ଦେ ॥
ଚରଣ କମଳେ ମୋ ଆଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମ ସ୍କନ୍ଧେ ଗୋବର୍ଦ୍ଧନ ଗିରି ଧାରଣେ ଇନ୍ଦ୍ର ଗର୍ବ ଗଞ୍ଜନେ ନାମ ଷଡ଼ବିଂଶୋଽଧ୍ୟାୟଃ ।*

## ସପ୍ତବିଂଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁଣ ପାଣ୍ଡବ ଚୂଡ଼ାମଣି । ନନ୍ଦ ନନ୍ଦନ କର୍ମ ଶୁଣି ॥
ଗୋପୀ ଗୋପାଳ ରୁଣ୍ଡ ହୋଇ । କହନ୍ତି ନନ୍ଦକୁ ବସାଇ ॥
ମନୁଷ୍ୟ ନୋହେ ତୋ ବାଳକ । ଯେହାର କର୍ମମାନ ଦେଖ ॥
କେଉଁ ଦେବତା ଗୋପ୍ୟ ହୋଇ । ଜନ୍ମ ହୋଇଲା ଦେହ ବହି ॥
ଆମ୍ଭର ବଂଶେ ଜାତ ହୋଇ । ଯେମନ୍ତ ଦେଖିଲା ତ ନାହିଁ ॥
ସାତବରଷ ତୋର ବଳା । ହସ୍ତକେ ଗିରିଯେ ତୋଳିଲା ॥
ନଳିନୀ ଯେହ୍ନେ ଗଜ କରେ । ପର୍ବତ ତୋଳିଲା ସଧୀରେ ॥
ତିନିଦିନର ତୋର ସୁତ । ପୂତନା ପ୍ରାଣ କଲା ହତ ॥
ଅବୁଡ଼ି ଉଠିଆରି ଦିନ । ଶକଟ ଭାଙ୍ଗିଲା ଚରଣ ॥
ଦିନେକ ଦ୍ୱାରେ ବସିଥିଲା । ତୃଣାବର୍ତ୍ତକ ହରିନେଲା ॥
ଗଗନେ ନେଇଣ ମାଇଲା । ଶିଳାରେ ପଡ଼ି ଉବୁରିଲା ॥
ଦଧି ମନ୍ଥନ ବେଳେ ଧରି । ରୋଳେ ବାନ୍ଧିଲା ତୋର ନାରୀ ॥
ବାଳକ ମେଳେ ପଶିଗଲା । ଯାମଳା ଅର୍ଜ୍ଜୁନ ଭାଙ୍ଗିଲା ॥
ବଛା ଦଇତ ବାଳ କାଳେ । ମାଇଲା କୁମାରଙ୍କ ମେଳେ ॥
ଯେହାକୁ ବକ ଗିଳୁଥିଲା । ବେନି ଫାଳ କରି ଚିରିଲା ॥
ଧେନୁକା ତାଳ ବନେ ନାଶି । ତାଳ ଆଣିଲା ମନ ତୋଷି ॥
ପ୍ରଳମ୍ବା ଯୁଦ୍ଧେ ମରାଇଲା । ଗୋକୁଳ ଅନଳୁ ତାରିଲା ॥
ଜାଣ ନା କାଳୀୟର କଥା । ତାରେ କେ ଅଛି ସାମରଥା ॥
ହେଳେ ଗଞ୍ଜିଲା ତାର ବଳ । ଅମୃତ କଲା ବିଷ ଜଳ ॥
ଲୋଚନେ ତାର ମୁଖ ଚାହିଁ । ଗୋପୀ ଗୋପାଳ ହେଉ ବାଇ ॥
ଆମ୍ଭର ବଡ଼ଭ ମୁହାଁସ । ବାଳକେ ନ ଛାଡ଼ନ୍ତି ପାଶ ॥
ଯେବେ ତୋଳିଲା ଗିରିବର । ସାତ ବରଷ ତୋ କୁମର ॥
ଆମ୍ଭେ ପାଇଲୁ ବଡ଼ ଶଙ୍କା । ନନ୍ଦ ତୁ ବନେ ଥାଅ ଯେକା ॥
କି ଯେ ଅସୁର ତୋର କୁଳେ । ଆମ୍ଭଙ୍କୁ ଗିଳିବ ଯେ ବଳେ ॥
ପଳାଇ ଯିବୁ ତୋର ପୁରୁ । ତୋର ପୁତ୍ରକୁ ଆମ୍ଭେ ଡରୁ ॥
ନନ୍ଦ ବୋଇଲା ତାହା ଶୁଣି । ଗୋପ ବଚନ ପରିମାଣି ॥
ଶୁଣିମା ସାବଧାନ ହୋଇ । ଗର୍ଗ ଅଛନ୍ତି ମୋତେ କହି ॥
ପୁତ୍ରଙ୍କ ନାମ-କର୍ମ କାଳେ । ମୋତେ କହିଲେ ଯେକ ମେଳେ
ବୋଇଲେ ତୋର ପୁତ୍ର କଥା । ଜାଣଇ ଜନ୍ମର ବାରତା ॥
ଯେ ଚାରିଯୁଗେ ଚାରିବର୍ଣ୍ଣ । ଶୁକ୍ଳ ଶୋଣିତ ପୀତ ଶ୍ୟାମ ॥
ପୂର୍ବେ ଯେ ବସୁଦେବ ଘରେ । ଜନ୍ମିଲା ଦେବକୀ ଉଦରେ ॥
ଯେହାର ନାମ ବାସୁଦେବ । ବିଦିତେ ବୋଲନ୍ତି ମାଧବ ॥
ଯେହାର ନାମ ଗୁଣ ଯେତେ । ମୁହିଁ ଜାଣଇ ଯୋଗମତେ ॥
ଗୋକୁଳ ତାରିବ ଯେ ଭଲେ । ସୁଖେ ବଞ୍ଚିବା ଦିନ ତୁଲେ ॥
ପୂର୍ବେ ସାଧବ ଦୁଷ୍ଟ ଭୟେ । ତରିଲେ ଯେହା ପାଦ ଧ୍ୟାୟେ ॥
ଯେହାର ପାଦେ ପ୍ରୀତି କରି । ହେଳେ ତରିବ ଭବବାରି ॥
ହେ ନନ୍ଦ ଶୁଣ ମୋ ବଚନ । ମନୁଷ୍ୟ ନୋହେ ତୋ ନନ୍ଦନ ॥
ଦେଖ ଯେହାର ବର୍ଣ୍ଣ ଚିହ୍ନ । ପ୍ରତକ୍ଷେ ବିଷ୍ଣୁର ସମାନ ॥
ଯେମନ୍ତ କହିଗଲେ ମୁନି । ତାହାଙ୍କ ବୋଲ ଶିରେ ଘେନି ॥
ମଣିଲି ନାରାୟଣ ପ୍ରାୟେ । ତୁମ୍ଭେ ନ କର ମନେ ଭୟେ ॥
ଯେମନ୍ତ ନନ୍ଦ ବୋଲ ଶୁଣି । ଗର୍ଗ ବଚନ ମନେ ଗୁଣି ॥
ଭୟ ଛାଡ଼ିଲେ କୃଷ୍ଣ ଚାହିଁ । ନନ୍ଦ ବଚନ ପରିଣାଇଁ ॥
ଆନନ୍ଦେ ଆଲିଙ୍ଗନ କରି । ମାୟା ମୋହିଲେ ନରହରି ॥
ଗୋପାଳେ ହୋଇଲେ ହରଷ । କୃଷ୍ଣ ଅନାଇଁ ହସହସ ॥
ଆନନ୍ଦେ ଶିରେ କର ଦେଇ । ବୋଲନ୍ତି କୃଷ୍ଣ ତ୍ରାହି ତ୍ରାହି ॥
ବାସବ ତ୍ରାସୁଁ ଯେ ତାରିଲା । ପର୍ବତ କରେ ଉପାଡ଼ିଲା ॥
ସେ ଆମ୍ଭ ରଖୁ ସର୍ବକାଳେ । ଗୋରୁ ଗୋପାଳ ଯେକା ମେଳେ
ଶରଣ ଗଲୁ ତୋର ପାଦେ । ଗୋପାଳେ ବୋଇନ୍ତି ଆନନ୍ଦେ ॥
କହଇ ଦାସ ଜଗନ୍ନାଥ । ଗୀତ ବିନୋଦେ ଭାଗବତ ॥
ହରି ଚରିତ ସୁଧା ବାରି । ଶ୍ରୁତି ଯୁଗଳେ ପାନ କରି ॥
ଆନନ୍ଦ ହୋଇ କର ଲୟେ । ହେଳେ ତାରିବେ ଦେବରାୟେ ॥
ସୁଜନ ଜନେ ଯେଣେ ରସ । ମୁ ତୁମ୍ଭ ଚରଣର ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଗୋପଶଙ୍କା ଖଣ୍ଡନେ ନାମ ସପ୍ତବିଂଶୋଽଧ୍ୟାୟଃ ।*

## ଅଷ୍ଟାବିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବ୍ୟାସ ନନ୍ଦନ ହରଷିତ । ବୋଲନ୍ତି ଶୁଣ ନରନାଥ ॥
କୃଷ୍ଣଙ୍କୁ କରି ଅପରାଧ । ଇନ୍ଦ୍ର ପାଇଲା ମନେ ଖେଦ ॥
ଭାଳଇ ମନର ବିଷାଦେ । ଦ୍ରୋହ ଯେ କଲି ପଦ୍ମପାଦେ ॥
ଅଜ୍ଞାନେ ହୋଇଲି ମୁ ବାଇ । ଆଉ ସମ୍ପଦ ମୋର କାହିଁ ॥
ନିଶ୍ଚୟେ ହୋଇଲା ମରଣ । କାହାରେ ପଶିବି ଶରଣ ॥
ଯାହାର ମହିମା ଅନନ୍ତ । ଉଦରେ ଅଛଇ ଜଗତ ॥
ତାରେ ବଇରୀପଣ ହୋଇ । କେ ଅବା ଥିବ ଦେହ ବହି ॥
କି ବୁଦ୍ଧି କରିବଇଁ ଆଜ । ଭୟେ କମ୍ପଇ ଦେବରାଜ ॥
ସୁରଭି ଇନ୍ଦ୍ରପୁରେ ଥିଲା । ଇନ୍ଦ୍ରର ରୋଦନ ଶୁଣିଲା ॥
ବୋଲଇ ଇନ୍ଦ୍ରମୁଖ ଚାହିଁ । ରୋଦନ କରୁ କାହିଁ ପାଇଁ ॥
କୃଷ୍ଣରେ କଲୁ ଅପରାଧ । ଯେ ତୋତେ ଦେଇଛି ସମ୍ପଦ ॥
ଅଜ୍ଞାନ ମୋହ ବୁଦ୍ଧିବଳେ । ଦ୍ରୋହ ଯେ କଲୁ ପାଦତଳେ ॥
ମହିମା ନ ଜାଣୁ ତାହାର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ଦାସ ବତ୍ସଳ ପାଦ ଯୁଗେ । ଶରଣ ପଶ ଯାଇ ବେଗେ ॥
ତୋତେ ରକ୍ଷକ କେହି ନାହିଁ । ବିଶ୍ୱ ସଂସାରେ ଦେହ ବହି ॥
ଶୋକ ସଂହାରି ସୁର ରାୟେ । ଶରଣ ପଶ କୃଷ୍ଣ ପାୟେ ॥
ମୋହୋର ପଛେ ଥାଅ ତୁହି । କୃଷ୍ଣଙ୍କୁ ଭେଟାଇବି ମୁହିଁ ॥
ସ୍ତୁତି କରିବି ତୋର ପାଇଁ । ତାହାର ନାମ ଭାବଗ୍ରାହୀ ॥
ଚରଣେ ପଶିଲେ ଶରଣ । ତୋଷ ହୋଇବେ ନାରାୟଣ ॥
ଯେମନ୍ତ କହି ଲୋକମାତ । ଘେନି ଚଳିଲେ ସୁରନାଥ ॥
ମିଳିଲେ ବୃନ୍ଦାବନେ ଯାଇ । ଜାଣିଲେ ପ୍ରଭୁ ଭାବଗ୍ରାହୀ ॥
ଗୋରୁ ଚରାଇ ଥିଲେ ବନେ । ଗୋପାଳ ମେଳେ ବେଣୁସ୍ୱନେ ॥
ଘୋର ଗହନେ ପଶିଗଲେ । ଗୋପାଳ ପୋୟେ ନ ଜାଣିଲେ ॥
ଇନ୍ଦ୍ର ସୁରଭି ଯହିଁ ଛନ୍ତି । ଜାଣିଲେ ପ୍ରଭୁ ଦାଶରଥି ॥
ମିଳିଲେ ସୁରଭିର ଲାଗେ । ଇନ୍ଦ୍ର ହିଁ ଅଛି ପଛଭାଗେ ॥
ଦେଖି ସୁରଭି ତୋଷ ଚିତ୍ତେ । ପ୍ରଣମ୍ୟ କଲା ପାଦ ଗତେ ॥
ସ୍ତୁତି କରଇ କୃଷ୍ଣ ଚାହିଁ । ବୋଲଇ ଶିରେ କର ଦେଇ ॥
ଭୋ ନାଥ ଶୁଣ ପଦ୍ମନାଭ । ଇନ୍ଦ୍ର ଯେ କଲା ଅପରାଧ ॥
ସମ୍ପଦ ଦେଇଅଛୁ ତାରେ । ଯେବେ ଶରଣ ଗଲା ତୋରେ ॥
ଲୁଚିଣ ଅଛି ମୋର ପଛେ । ଭୋ ନାଥ ଦେଖିବା ପ୍ରତକ୍ଷେ ॥
ଶୁଣି ଚାହିଁଲେ କୃଷ୍ଣ ଧୀରେ । ବାସବ ପଡ଼ିଲା ପୟରେ ॥
ଭୟେ କମ୍ପଇ ତାର ଦେହୀ । ବଦନୁ ବାକ୍ୟ ନ ସ୍ଫୁରଇ ॥
ପୁଣି ଉଠିଲା ଭୟ ଚିତ୍ତେ । କର ଅଞ୍ଜଳି ଦେଇ ମାଥେ ॥
ଶିର ନିବେଶି ପଦ୍ମ ପାଦେ । ବୋଲଇ ଶୋକ ଗଦଗଦେ ॥
ଭୋ ନାଥ ଆଦି ନିରଞ୍ଜନ । ଜ୍ୟୋତିପ୍ରକାଶ ମହାଶୂନ୍ୟ ॥
ଗୁଣ ପ୍ରକାଶ ତୋର ନାହିଁ । ଭଗତ ହିତେ ଦେହ ବହି ॥
ମାୟା ମୋହିତ ଭବଜଳେ । ତୋର ବିହାର ଯୋଗବଳେ ॥
ଲୋଭର ମୂଳେ ଷଡ଼ ବୈରି । ତୋହର ମହିମା ଆବୋରି ॥
ଜଗତେ ହୋନ୍ତି ଆତ ଯାତ । ତୋହୋର ମାୟାରେ ଅନନ୍ତ ॥
ତୁହି ସେ ମାୟାକୁ ଆବୋରି । ଶରୀର ବହୁ ନରହରି ॥
ଦୁଷ୍ଟଙ୍କୁ ଦଣ୍ଡିବାର ଆଶେ । ଭଗତ ରଖୁ ତୁ ବିଶ୍ୱାସେ ॥
ଜଗତ ଜନନୀ ପିଅର । ତୁ ଦଣ୍ଡଧର ଦାମୋଦର ॥
ତୋହୋର ସମ୍ପଦ ଆବୋରି । ଯେ ଗର୍ବ କରନ୍ତି ମୁରାରି ॥
ତାହାଙ୍କ ଗର୍ବ ନାଶିବାରେ । ତୁ ଜାତ ହେଉ ଯେ ସଂସାରେ ॥
ମୋହୋର ପ୍ରାୟେ ଜ୍ଞାନ ହାରି । ଯେ ତୋର ସମ୍ପଦ ଆବୋରି
ଦୁଷ୍ଟ ଦଳଣ ଦେଖି ତୋତେ । ଦେବେ ଡରନ୍ତି ଭୟ ଚିତ୍ତେ ॥
ପୁଣି ଭଜନ୍ତି ସାଧୁ ଚିତ୍ତେ । ଖଳ ନାଶନ ଦେଖି ତୋତେ ॥
ଯେବେ ମୁ କଲି ଅପରାଧ । ଭୋ ନାଥ ରଖ ପଦ୍ମପାଦ ॥
ଯେ ଅପରାଧ କ୍ଷମାକର । ଭୋନାଥ ଶରଣ ତୋହୋର ॥
ଅଜ୍ଞାନ ମତେ ଭୋଗପାଇ । ଭୋଳ ହୋଇଲି ଭାବଗ୍ରାହୀ ॥
ଭାରା ନିବାରେ ତୋର ଜାତ । ତୋହୋର ସଞ୍ଚିଲା ଜଗତ ॥
ଅସୁର ବଳ ନାଶ କର । ସାଧୁଙ୍କୁ ରଖ ଦାମୋଦର ॥
ନମଇଁ ବସୁଦେବ ସୁତ । ଯାଦବ ବଂଶ ଦଇବତ ॥
ସିଦ୍ଧ ମୂରତି ଦିବ୍ୟଜ୍ଞାନ । ଇଛାୟେ ହେଉ ନାନାବର୍ଣ୍ଣ ॥
ସକଳ ବୀଜ ଆଦିପିତା । ନମଇଁ କଇବଲ୍ୟ ଦାତା ॥
ତୁ ଦିଲୁ ଇନ୍ଦ୍ରପଦ ମୋତେ । ଦ୍ରୋହ ଚିନ୍ତିଲି ପ୍ରଭୁ ତୋତେ ॥
ଅଳପ ଲୋକ ମୁ ସ୍ୱଭାବେ । ମୋତେ ଥୋଇଲୁ ଇନ୍ଦ୍ରପଦେ ॥
ମୁଁ ଛାର ନୁହଇ ଭାଜନ । ତୁ କି ନ ଜାଣୁ ଭଗବାନ ॥
ଅଳପ ଲୋକେ ସୁଖ ଦିଲେ । ଆବୋରି ନ ପାରଇ ଭଲେ ॥
ଯେବେ ହୋଇଲି ଅପରାଧୀ । ତୁ ନାଥ କରୁଣା ବାରିଧି ॥
ତୋର ଚରଣୁ ନାହିଁ ଆନ । ଶରଣ ରଖ ଭଗବାନ ॥
ଶୁକ ବୋଲନ୍ତି ଶୁଣ ରାୟେ । କମ୍ପଇ ବାସବର କାୟେ ॥
ଦାସ ବତ୍ସଳ ଭାବଗ୍ରାହୀ । ବୋଲନ୍ତି ଇନ୍ଦ୍ରମୁଖ ଚାହିଁ ॥
ମେଘ ଗମ୍ଭୀର ପ୍ରାୟେ ବାଣୀ । ବୋଲନ୍ତି ପ୍ରଭୁ ଚକ୍ରପାଣି ॥
ଶୁଣ ହୋ ତ୍ରିଦଶର ନାଥ । ତୋର ଦେଖିଲୁ ଦୁଷ୍ଟ ଚିତ୍ତ ॥
ମୋର ସମ୍ପଦେ ଅନ୍ଧ ହୋଇ । ମୋତେ ନ ଜାଣୁ ଗର୍ବ ବହି ॥
ତୋତେ ମୋ ଅଛଇ ସଦୟେ । ତେଣୁଟି ଦେଖାଇଲି ଭୟେ ॥
ଭାଙ୍ଗିଲି ତୋର ଯଜ୍ଞକର୍ମ । ତୁ ଯେ ହୋଇଲୁ ମତିଭ୍ରମ ॥

ଛାଡ଼ିଲୁ ମୋର ପାଦଚିନ୍ତା । ସମ୍ପଦେ ହୋଇଲୁ ଅଚେତା ॥
ଯେ ମୋ ସମ୍ପଦେ ଅନ୍ଧ ହୋଇ । ସେ ଅପରାଧେ ଦଣ୍ଡପାଇ ॥
ଯାହାକୁ କରଇ ସଦୟେ । ସମ୍ପଦ ନାଶଇ ଥୋକାୟେ ॥
ପୁଣି ଜାଣଇ ଯେବେ ମୋତେ । ନାମ ଜପଇ ହୃଦଗତେ ॥
ମୋହୋର ଭାବେ ଯେ ପଶଇ । ଜନ୍ମ ମରଣ ତାର ନାହିଁ ॥
ଯେବେ ତୁ ନିଜପୁରେ ଯାଅ । ମୋହୋର ପାଦେ ଚିତ୍ତ ଦିଅ ॥
ମୋହୋର ଆଜ୍ଞା ଘେନି ଶିରେ । ଗର୍ବ ନ ଥାଉ ତୋ ଶରୀରେ ॥
ଇନ୍ଦ୍ରକୁ ଦେଖି ତୋଷ ଚିତ୍ତ । ସୁରଭୀ ନମଇଁ ଅଚ୍ୟୁତ ॥
ତକ୍ଷଣେ ଲକ୍ଷେ ରୂପ ହୋଇ । ସ୍ତୁତି କରଇ କୃଷ୍ଣ ଚାହିଁ ॥
ହେ କୃଷ୍ଣ ତୁ ପରମ ଯୋଗୀ । ବିଶ୍ୱ ସଂସାରେ ବିଶ୍ୱଭୋଗୀ ॥
ତୁ ଆମ୍ଭ ପାଳକ ଗୋପାଳ । ନମଇଁ ପ୍ରଭୁ ଆଦିମୂଳ ॥
ଆମ୍ଭର ଇନ୍ଦ୍ର ଅଟୁ ତୁହି । ତୋ ପାଦୁଁ ଅନ୍ୟ ଗତି ନାହିଁ ॥
ଗୋରୁ ସାଧବ ଦେବଙ୍କର । ତୁ ନାଥ ଶରଣ ସୋଦର ॥
ବ୍ରହ୍ମାର ବଚନେ ମୁ ତୋତେ । ପୂଜିବି ଅଭିଷେକ ମତେ ॥
ତୁ ନାଥ ଗୋରୁଙ୍କର ଇନ୍ଦ୍ର । ନାମ ମୁ ଦେବଇଁ ଗୋବିନ୍ଦ ॥
ତକ୍ଷଣେ ଇନ୍ଦ୍ର ଚଳିଗଲା । ମେଘମାନଙ୍କୁ ହକାରିଲା ॥
ଐରାବତ ଦିଗପାଳେ । ପାରିଜାତକ ଗଙ୍ଗାଜଳେ ॥
ବ୍ରାହ୍ମଣେ ମିଳି ବେଦନାଦେ । ଜଳ ସିଞ୍ଚିଲେ କୃଷ୍ଣପାଦେ ॥
ସୁରଭୀ କ୍ଷୀର ବରଷିଲା । ଗୋବିନ୍ଦ ନାମ ଦେଇଗଲା ॥
ନାରଦ ଆଦି ବିଦ୍ୟାଧର । ତୁମ୍ବୁରୁ ଚାରଣ କିନ୍ନର ॥
ଗୀତ ବିନୋଦେ ନୃତ୍ୟ ରଙ୍ଗେ । ଦୁନ୍ଦୁଭି ବାଦ୍ୟ ନାଦ ସଙ୍ଗେ ॥
ପୁଷ୍ପ ବରଷି ସ୍ତୁତି ଭଣି । ସୁନ୍ଦର ଦିଶଇ ଧରଣୀ ॥
ଇନ୍ଦ୍ର ସୁରଭୀ ପୟୋଜଳେ । ଆନନ୍ଦ ହୋଇଲେ ସକଳେ ॥
ମେଦିନୀ କ୍ଷୀର ନୀର ପାଇ । ବରଷାକାଳ ପ୍ରାୟେ ହୋଇ ॥
ସରସ ହୋଇ ମହୀରୁହେ । ମଧୁ ବରଷିଲେ ଥୋକାୟେ ॥
ଶସ୍ୟ ହୋଇଲା ଅକର୍ଷଣେ । ମଣିୟେ ଉପୁଜିଲେ ବଣେ ॥
ଗୋବିନ୍ଦ ନାମ ଶୁଣି କର୍ଣ୍ଣେ । ହିଂସା ଛାଡ଼ିଲେ ପଶୁଗଣେ ॥
ଗୋବିନ୍ଦ ଆଜ୍ଞା ଘେନି ଶିରେ । ବେଗେ ଚଳିଲେ ନିଜପୁରେ
ସୁରଭୀ ଗଲା ତୋଷ ହୋଇ । ହୃଦେ ଗୋବିନ୍ଦ ପାଦ ଧ୍ୟାୟି ॥
ସୁଜନେ ଗୋବିନ୍ଦର ପାଦେ । ଚିତ୍ତକୁ ମଜ୍ଜାଅ ଆନନ୍ଦେ ॥
ବୋଲଇ ଦାସ ଜଗନ୍ନାଥ । ଗୋବିନ୍ଦ ପାଦେ ଦେଇ ଚିତ୍ତ ॥
ଗୋବିନ୍ଦ ନାମ ଭେଳାକରି । ହେଳେ ତରିବ ଭବବାରି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଇନ୍ଦ୍ରସ୍ତୁତି କରଣେ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।*

## ଊନତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ରାଜଋଷି । ନନ୍ଦ ଯେ କଲା ଯେକାଦଶୀ ॥
ପୂଜା କରାଇ ଚକ୍ରଧର । ରାତ୍ରେ ହୋଇଲା ଉଜାଗର ॥
ଉଚ୍ଛୁର ପାରଣାର ବେଳା । ଯମୁନା ରାତ୍ର ଥାଉଁ ଗଲା ॥
ବରୁଣ ରାଜା ତାହା ଜାଣି । ଦୂତ ପେଶିଲା ପରିମାଣି ॥
ବୋଇଲା ଆଣ ହୋ ନନ୍ଦକୁ । ଯେଠାରେ ଦେଖିବା କୃଷ୍ଣଙ୍କୁ ॥
ଆଜ୍ଞା ପ୍ରମାଣେ ଦୂତେ ଗଲେ । କାଳିନ୍ଦୀ ଜଳେ ଲୁଚି ଥିଲେ ॥
ନନ୍ଦ ପଶିଲା ଯାଇ ଜଳେ । ବିଷ୍ଣୁ ସୁମରି ସ୍ନାନ କାଳେ ॥
ନନ୍ଦକୁ ଧରି ବେନି କରେ । ମିଳିଲେ ବରୁଣ ଛାମୁରେ ॥
ଦେଖି ବରୁଣ ତୋଷହୋଇ । ନନ୍ଦକୁ ଆସନେ ବସାଇ ॥
ବୋଲଇ ନିସ୍ତରିଲି ଆଜ । ଯେବେ ଦେଖିବି ଦେବରାଜ ॥
ନନ୍ଦକୁ ନ ଦେଖି ଗୋପାଳେ । କାଳିନ୍ଦୀ ନିକଟେ ମିଳିଲେ ॥
ଚିଳ ବସନ ଦେଖି କୂଳେ । ଖୋଜନ୍ତି ଯାଇ ଜଳସ୍ଥଳେ ॥
ନ ଦେଖି ଅତି ଶୋକଭରେ । କହିଲେ ଗୋବିନ୍ଦ ଛାମୁରେ ॥
ଶୁଣି ଚକିତ ଭାବଗ୍ରାହୀ । ବୋଲନ୍ତି ରାମଙ୍କୁ ଅନାଇଁ ॥
ନନ୍ଦକୁ ନେଇଛି ବରୁଣ । ପୂଜିବ ମୋହୋର ଚରଣ ॥
ତୁ ସ୍ୱାମୀ ଥାଅ ନିଜପୁର । କହି ଚଳିଲେ ଦାମୋଦର ॥
ବରୁଣ ପୁରେ ଦଇତାରି । ମିଳିଲେ ନିଜରୂପ ଧରି ॥
ଦେଖି ସାନନ୍ଦ ଜଳରାଜା । କୃଷ୍ଣ ଚରଣେ କଲା ପୂଜା ॥
ବିବିଧ ନାନା ଉପହାର । ଜାଣଇ ପୂଜାର ବେଭାର ॥
ପୂଜି ପଡ଼ିଲା କୃଷ୍ଣପାଦେ । ବୋଲଇ ଶୋକ ଗଦ ଗଦେ ॥
ଆଜ ଜୀବନ ମୋର ଧନ୍ୟ । ଦେଖିଲି ପ୍ରଭୁ ନିରଞ୍ଜନ ॥
ପୁତ୍ର କୁଟୁମ୍ବ ଘରଦ୍ୱାର । ସୁଫଳ ହୋଇଲା ମୋହୋର ॥
ଯାହାର ପାଦରଜ ପାଇ । ଜନ୍ମ ମରଣ ଭୟ ନାହିଁ ॥
ବ୍ରହ୍ମାଶଙ୍କର ଯାର ନିତ୍ୟେ । ନାମ ଜପନ୍ତି ହୃଦଗତେ ॥
ତୋହୋର ପାଦେ ଧ୍ୟାନେ କରି । ସୁଖେ ତରନ୍ତି ଭବବାରି
ଭୋ ନାଥ ଗର୍ବ ମୁହିଁ କଲି । ତୋର ପିତାଙ୍କୁ ଅଣାଇଲି ॥
ତୋତେ ଦେଖିବାରେ ମୋ ସଧ । ଭୋ ନାଥ କଲି ଅପରାଧ ॥
କ୍ଷମା ସାଗର ନରହରି । ଶରଣ ସୋଦର ମୁରାରି ॥
ଯେମନ୍ତି କହି ଜଳପତି । ନନ୍ଦକୁ ଆଣିଲା ତଡ଼ତି ॥
ବୋଲଇ ଶିରେ ଦେଇ କର । ଭୋ ନାଥ ନିଅ ତୋ ପିଅର ॥
ବରୁଣ ଭାବ ହୃଦେ ଘେନି । ଦାସ ବତ୍ସଳ ଅନ୍ତର୍ଯ୍ୟାମୀ ॥
ନନ୍ଦର କର ଧରି ହସ୍ତ । ଗୋପେ ମିଳିଲେ ଗୋପୀନାଥ ॥

ଗୋପାଳେ ଦେଖିଣ ହରଷ । ଆସି ମିଳିଲେ ନନ୍ଦ ପାଶ ॥
ବୋଲନ୍ତି ବରୁଣ ଯେ ନେଲା । କୃଷ୍ଣଙ୍କୁ ଦେଖି ଛାଡ଼ି ଦିଲା ॥
ନୋହିଲେ ମରନ୍ତା ପିଅର । ଭାଗ୍ୟ ଦିଶିଲା ଗୋପପୁର ॥
ନନ୍ଦ ଆନନ୍ଦ ମନ ହୋଇ । ବୋଲଇ ଗୋପାଳଙ୍କୁ ଚାହିଁ ॥
ଦେଖିଲି ବରୁଣ ଭୁବନ । ନିର୍ମଳ ହୋଇଲା ନୟନ ॥
ଗୋପେ ବୋଲନ୍ତି ତାହା ଶୁଣି । ନନ୍ଦ ବଚନ ମନେ ଗୁଣି ॥
ତୁ ଭାଗ୍ୟବନ୍ତ ଗୋପ ବୀର । ଯାର କୁମର ଦାମୋଦର ॥
ଆମ୍ଭେ ଦେଖିବୁ ତାହା କାହିଁ । ମଞ୍ଚେ ମାନବ ଦେହ ବହି ॥
ଆମ୍ଭର ଗତି ତୋ କୁମର । ଗୋକୁଳ ଶରଣ ତାହାର ॥
ଗୋପଙ୍କ ମନ କୃଷ୍ଣ ଜାଣି । ମାୟା ମୋହିଲେ ଚକ୍ରପାଣି ॥
ବୋଲନ୍ତି ଜୀବର ବେଭାର । ଭ୍ରମନ୍ତି ମାୟା ଜଡ଼ ଘୋର ॥
ଆପଣା ଗତି ନ ଜାଣଇ । ନାନା ଯୋନିରେ ଦେହ ବହି ॥
ଗୋପେ ମୋ ସଙ୍ଗେ ଭାବ କଲେ । ଯେହ୍ନଙ୍କୁ ଦେଖାଇବି ଭଲେ ॥
ତକ୍ଷଣେ ଦେଖାଇଲେ ନେଇ । ବରୁଣ ପୁର ଭାବଗ୍ରାହୀ ॥
ପୁଣି ଦେଖାଇ ନିଜପୁର । ଯେ ବଇକୁଣ୍ଠର ବେଭାର ॥
ଅନନ୍ତ ସତ୍ୟ ଜ୍ଞାନ ଜ୍ୟୋତି । ବ୍ରହ୍ମା ଶଙ୍କର ଯାହା ଚିନ୍ତି ॥
ଗୋପୀ ଗୋପାଳେ କରି ଦୟା । ମାୟାରେ ଦେଖାଇଲେ ତାହା ॥
ମାୟା ଛାଡ଼ିଲେ ଭଗବାନ । ଗୋପାଳେ ପାଇଲେ ଚେତନ ॥
ଶୁଣ ପରୀକ୍ଷ ପୁଣ୍ୟ ଦେହା । ଅକ୍ରୁର ଦେଖିବଟି ଯାହା ॥
ଚେତନା ପାଇଲେ ଗୋପାଳେ । ଆନନ୍ଦେ କୃଷ୍ଣ କରି କୋଳେ ॥
ହରି ମହିମା ଗୋପେ ଦେଖି । ଆନନ୍ଦେ ନୟନ ନିରେଖି ॥
ଚକିତେ ନିଜ ଘରେ ଯାଇ । କହନ୍ତି ଗୋପୀଙ୍କି ବସାଇ ॥
ସେ ଗୋପୀ ଗୋପାଳଙ୍କ ପାୟେ । ସୁଜନ ଜନ କର ଲୟେ ॥
କୃଷ୍ଣ ଚରଣେ ଅବିରତ । ନମଇଁ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ନନ୍ଦମୋକ୍ଷଣେ ନାମ ଊନତ୍ରିଂଶୋଽଧ୍ୟାୟଃ ।*

## ତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନରନାଥ । କୃଷ୍ଣ ଚରିତ ଭାଗବତ ॥
ଗୋବିନ୍ଦେ ବିଚାରନ୍ତି ମନେ । ଆଜ ରମିବା ବୃନ୍ଦାବନେ ॥
ଷୋଳସହସ୍ର ଗୋପନାରୀ । ମୋତେ ବରିଲେ ତପକରି ॥
ମୁ ତାଙ୍କ ପୂରୋଇବି ଆଶ । ସେ ମୋର ଭଗତ ବିଶ୍ୱାସ ॥
ଅନେକ ଜନ୍ମେ ତପ କରି । ଯେବେ ହୋଇଲେ ଗୋପ ନାରୀ ॥
ରମିଣ ଦେବି ନିଜପୁର । ଆଜ ମୁ କରିବି ନିସ୍ତାର ॥
ଯେତେ ବିଚାରି ବନମାଳୀ । ଘେନିଲେ ବିରହ ମୁରଲୀ ॥
ସ୍ୱଭବେ ଶରଦର କାଳ । ପବନ ବହେ ପରିମଳ ॥
ଗଗନେ ପ୍ରକାଶିଲା ଶଶୀ । ନିର୍ମଳ ବିରାଜଇ ନିଶି ॥
ଫୁଟିଲେ ଜଳସ୍ଥଳେ ଫୁଲ । ସୁଗନ୍ଧ ଶୀତଳ ଅମୂଲ୍ୟ ॥
ଚନ୍ଦ୍ର ମଣ୍ଡଳ ଅଖଣ୍ଡିତ । ଦେଖି ଉସତ ଗୋପୀନାଥ ॥
ଲକ୍ଷ୍ମୀର ମୁଖ ପ୍ରାୟେ ଦିଶି । କିରଣେ ଦଶ ଦିଗ ତୋଷି ॥
କାଳିନ୍ଦୀ କୂଳେ ବ୍ରହ୍ମରାଶି । କଦମ୍ବ ତରୁ ମୂଳେ ବସି ॥
ରଜନୀ ଚିରକାଳ କଲେ । ମାୟାପଟଳ ପ୍ରକାଶିଲେ ॥
ବୋଇଲେ ହୁଅ ବ୍ରହ୍ମନିଶି । ସହସ୍ର ଯୁଗେ ଯାହା ଘୋଷି ॥
ତ୍ରିଭଙ୍ଗୀ ଛନ୍ଦେ ଉଭାହୋଇ । ମୁରଲୀ ଅଧର ଲଗାଇ ॥
ଗୋପୀଙ୍କ ନାମ ଧରି ଧୀରେ । ମୁରଲୀ ଡାକଇ ସୁସ୍ୱରେ ॥
ଗୋପୀଏ ଥିଲେ ଗୋପ ପୁରେ । ନାଦ ଶୁଣିଲେ ଯେଝାଘରେ ॥
ଦଣ୍ଡେ ଶୁଣିଲେ ସ୍ଥିର କରି । ବେଣୁ ଡାକଇ ନାମ ଧରି ॥
ଶୁଣି ହୋଇଲେ ଛନ ଛନ । ବ୍ୟାପାରେ ନ ଲାଗଇ ମନ ॥
କର ଚରଣ ନ ଚଳଇ । ମଦନେ କମ୍ପୁଅଛି ଦେହୀ ॥
ନାଦେ ମୋହିଲେ ବନମାଳୀ । ଷୋଳ ସହସ୍ର ଗୋପବାଳୀ ॥
ଯେକକୁ ଆରେକ ଲୁଚାଇ । ଧାଇଁଲେ ଅସମ୍ଭାଳ ହୋଇ ॥
ବୋଲନ୍ତି ନ ପୁଣ ଯେ ଜାଣି । ମୋତେ ହୋଇବ ସପତଣୀ ॥
ଆଗେ ମୁ ଯିବି ବୃନ୍ଦାବନ । ରମିବି ନନ୍ଦର ନନ୍ଦନ ॥
ଦେଖିବି ନୟନ ପୂରୋଇ । ମୋହୋର ନାମେ ବେଣୁ ବାଇ ॥
କିମ୍ବା ଡାକଇ ରାତ୍ର କାଳେ । ଉଭାରି କଦମ୍ବର ମୂଳେ ॥
ଜଳକ୍ରୀଡ଼ାର ବେଳେ ଗଲା । ଆମ୍ଭର ବସ୍ତ୍ର ଚୋରିକଲା ॥
ତାର ବଚନେ ଲଜ୍ଜା ଛାଡ଼ି । ଆଣି ପିନ୍ଧିଲୁ ଯେଝା ଶାଢ଼ି ॥
ଆମ୍ଭର ଶୁଦ୍ଧମନ ଜାଣି । ହସି ବୋଇଲେ ଚକ୍ରପାଣି ॥
ଦେବତା ପୂଜି ନଦୀ ତୀରେ । ମନେ ଯେ ବରିଅଛ ବରେ ॥
ସେକଥା ସୁମରିଲେ ଆଜ । ଆମ୍ଭର ଛଡ଼ାଇବେ ଲାଜ ॥
ପତିତ ନୟ ଛନ୍ତି କୋଳେ । କେମନ୍ତେ ଯିବୁଁ ରାତ୍ର କାଳେ ॥
ନଗଲେ ନରହେ ଜୀବନ । କାଳ ହୋଇଲା ବେଣୁ ସ୍ୱନ ॥
ଯେମନ୍ତେ ହୋଇଲେ ବାହାର । ମଦନ କମ୍ପଇ ଶରୀର ॥
କେ ଗୋପୀ ଦୁହୁଁ ଥିଲା ଗାଈ । ବାଛୁରୀ ବାନ୍ଧି ଛନ୍ଦ ଦେଇ ॥
ମୁରଲୀ ଶୁଣି କର୍ଣ୍ଣ ମୂଳେ । ଦୁହୁଁଣୀ ପକାଇଲା ତଳେ ॥
କୃଷ୍ଣର ଧ୍ୱନି ଶୁଣି ବେଗେ । ଧାଇଁଲା ବୃନ୍ଦାବନ ଲାଗେ ॥

କେ ବସି କାତୁଥିଲା ସର । ମୁରଲୀ ଶୁଣିଲା ସୁସ୍ୱର ॥
ଡାକଇ ତାର ନାମ ଧରି । ବେଗେ ଧାଇଁଲା ଗୋପନାରୀ ॥
କେ କରୁଥିଲା ଦଧି ଯୋଗ । ଶୁଣି ଧାଇଁଲା ବେଗବେଗ ॥
କେ ଦୁଧ ଚୁଲିରେ ବସାଇ । ମୁରଲୀ ଶୁଣି ଗଲା ଧାଇଁ ॥
କେ କୋଳେ ବାଳକ ବସାଇ । ଦୁଧ ପିଆଇ ଗୀତ ଗାଇ ॥
କର୍ଣ୍ଣେ ଶୁଣିଲା ବେଣୁ ଧ୍ୱନି । ଡାକଇ ତାର ନାମ ଘେନି ॥
ବାଳକ ପକାଇଲା ତଳେ । ଧାଇଁଲା ମଦନ ବିକଳେ ॥
ସ୍ୱାମୀ ଶୟନ ସ୍ଥାନେ ଥାଇ । କେ ଗୋପୀ ଚରଣ ଚାପଇ ॥
ମୁରଲୀ ତାର ନାମ ଧରି । ଡାକଇ ଆସ ବେଗ କରି ॥
ପତି ଚରଣ ଥୋଇ ତଳେ । ବେଗେ ଧାଇଁଲା କାମ ଭୋଳେ ॥
କେ ବସି ଭୁଞ୍ଜୁଥିଲା ଅନ୍ନ । କର୍ଣ୍ଣ ଶୁଣିଲା ବେଣୁସ୍ୱନ ॥
ବୋଲଇ ଆସ ତୁହି ବେଗେ । କୃଷ୍ଣଙ୍କୁ ଦେଖ ବନଭାଗେ ॥
ଶୁଣି ଭୋଜନ ଉପେଖିଲା । ହସ୍ତ ପଖାଳି ନ ପାରିଲା ॥
ବେଗେ ଧାଇଁଲା ବୃନ୍ଦାବନ । ଯେଣେ ବାଜଇ ବେଣୁସ୍ୱନ ॥
କେ ବସି ଲିପୁଥିଲା ଘର । ମୁରଲୀ ଶୁଣିଲା ସୁସ୍ୱର ॥
ବୋଲଇ ଆସ ବୃନ୍ଦାବନେ । ହରିଙ୍କି ରମ ଘୋରବନେ ॥
ଶୁଣି ବ୍ୟାପାର ଉପେଖିଲା । ବେଗେ ସେ ବୃନ୍ଦାବନ ଗଲା ॥
କେ ବସିଥିଲା ନିଜଘରେ । ଅଞ୍ଜନ ପାତ୍ର ଘେନି କରେ ॥
ଯେକ ଲୋଚନେ ରଞ୍ଜିଥିଲା । ତା ନାମେ ମୁରଲୀ ଡାକିଲା ॥
ଧାମଇଁ ରସଭର ହୋଇ । କଜ୍ଜ୍ୱଳ ପାତ୍ର କରେ ଲଇ ॥
କେ ଗୋପୀ ବସ୍ତ୍ର ତଳେ ଥୋଇ । କୁଙ୍କୁମ ଶରୀରେ ଲେପଇ ॥
କର୍ଣ୍ଣେ ଶୁଣିଲା ବେଣୁ ଧ୍ୱନି । ଉଠିଲା କରେ ବସ୍ତ୍ର ଘେନି ॥
ଜ୍ଞାନ ହାରିଲା କାମ ଭୋଳେ । ପିନ୍ଧିଲା କନ୍ଧର ଅଞ୍ଚଳେ ॥
ଯେମନ୍ତେ କହିବଇଁ କେତେ । ଷୋଳସହସ୍ର ଯେଝା ମତେ ॥
କାହାର ସ୍ୱାମୀ ବଳବନ୍ତ । ଆଗରେ ଓଗାଳିଲେ ପଥ ॥
କାହାର ପୁତ୍ର ଗୋଡ଼ାଇଲା । ଶଶୁର ଖୁଡୁତା ମଉଳା ॥
ଭାଇ ଭଣଜା ଇଷ୍ଟ ମିତ୍ର । ଆଗରେ ଓଗାଳିଲେ ପଥ ॥
ବୋଲନ୍ତି ଗୋପୀଙ୍କି ଅନାଇଁ । ଯେକଥା ଉଚିତ ନୁହଇ ॥
ରଜନୀ କାଳେ ଯାଅ ବନ । ଲଜ୍ଜା କି ଛାଡ଼ିଲା ବଦନ ॥
ଶୁଣି ବୋଲନ୍ତି ଗୋପୀ ବାଳୀ । ବନେ ବିଜୟେ ବନମାଳୀ ॥
ଦେଖ ତ ଶୁଭୁଅଛି ନାଦ । ମୁରଲୀ ବଢ଼ାଇ ଆନନ୍ଦ ॥
କ୍ଷଣେ ମୁରଲୀ ନାଦ ଶୁଣି । ଆମ୍ଭେ ଆସିବୁ ଯେହିକ୍ଷଣି ॥
ଦାସ ବତ୍ସଳ ଭଗବାନ । ମୋହିଲେ ଗୋପାଳଙ୍କ ମନ ॥
ତୁଣ୍ଡରୁ ନଇଲା ଉତ୍ତର । ବାହୁଡ଼ି ଗଲେ ଯେଝାଘର ॥

ଯେକ ଗୋପୀୟେ କ୍ଷୀଣ ହୋଇ । ବେଗେ ସେ ନ ପାରିଲା ଯାଇ
ତାହାର ସ୍ୱାମୀ କର ଧରି । ଘରେ ଆଣିଲା ନିଜ ନାରୀ ॥
ଗମ୍ଭୀରି ଭିତରେ ବାନ୍ଧିଲା । ଅନେକ ମାଡ଼ ହିଁ ମାଇଲା ॥
ଦ୍ୱାରେ କବାଟ ଗଲା କିଳି । ବିକଳେ କାନ୍ଦଇ ଗୁଆଳୀ ॥
ମୁରଲୀ ତାର ତାର ନାମ ଧରି । ଡାକଇ ଆସ ବେଗ କରି ॥
ସେ ଗୋପୀ ବନ୍ଧନରେ ପଡ଼ି । କାନ୍ଦଇ ସ୍ତମ୍ଭେ ମୁଣ୍ଡକୋଡ଼ି ॥
କୃଷ୍ଣର ଦେହେ ଦେଇ ମନ । କ୍ଷଣ କ୍ଷଣକେ ଅଚେତନ ॥
ସହି ନପାରି ତାପ ଭରେ । ବେନି ଲୋଚନ କଲା ସ୍ଥିରେ ॥
ଧ୍ୟାନେ ଦେଖିଲା ଭଗବାନ । ନିର୍ଭରେ କଲା ଆଲିଙ୍ଗନ ॥
ଡାକିଇ କୃଷ୍ଣ ତ୍ରାହି ତ୍ରାହି । ପ୍ରାଣ ଛାଡ଼ିଲା ଚୁମ୍ବ ଦେଇ ॥
ସହି ନ ପାରି କାମ ଭରେ । ପଶିଲା ଗୋବିନ୍ଦ ଶରୀରେ ॥
ଶୁଣି ପରୀକ୍ଷ ଦଣ୍ଡଧାରୀ । ମୁନି ଚରଣ ତଳେ ପଡ଼ି ॥
ବୋଲଇ ହୋଇ କୃତକୃତ । ଶୁଣି ଚରିତ ଭାଗବତ ॥
ଭୋ ମୁନି ହୋଇଲି ଚକିତ । ତୁମ୍ଭେ କହିଲ ବିପରୀତ ॥
ପର ପୁରୁଷେ ଚିତ୍ତ ଦିଲା । ସେ କିମ୍ପା କୃଷ୍ଣଙ୍କୁ ପାଇଲା ॥
ଶୁଣି ହସିଲେ ମୁନିବର । ବୋଲନ୍ତି ଶୁଣ ଦଣ୍ଡଧର ॥
ପୂର୍ବେ ମୁ କହିଅଛି ତୋତେ । ପୁରାଣ ଶିରୀ ଭାଗବତେ ॥
କୃଷ୍ଣଙ୍କୁ କରି ଶତ୍ରୁବଳ । ମୋକ୍ଷ ହୋଇଲା ଶିଶୁପାଳ ॥
ତାହାଙ୍କୁ ପ୍ରିୟ ପଣେ ସେବି । କିମ୍ପା ନୋହିବେ ମୋକ୍ଷ ଭାଗୀ ॥
ଭଗତ ତାରିବାର ଆଶେ । ବହୁ ପ୍ରକାଶି ଅଛି ଅଂଶେ ॥
ନିର୍ଗୁଣ ହୋଇ ଗୁଣବନ୍ତ । ଦାସ ବତ୍ସଳ ଗୋପୀନାଥ ॥
ତାହାର ନାହିଁ କାମ କ୍ରୋଧ । ସୁହୃଦେ ଯେକଇ ସ୍ୱଭାବ ॥
ଯାହାର ମନ ହୋଏ ଲୟେ । ସେ ପ୍ରାଣୀ ପଶେ କୃଷ୍ଣ ଦେହେ ॥
ଯେଣେ ତୁ ସନ୍ଦେହ ନ କର । ମହା ମହିମା ଯୋଗେଶ୍ୱର ॥
ଯେଣେ ନ କର ଖେଦ ଚିତ୍ତ । କହଇ ଶୁଣ ଭାଗବତ ॥
ଗୋପୀ ଯେ ଗଲେ ରାତ୍ରକାଳେ । ମିଳିଲେ କଦମ୍ବର ତଳେ ॥
ଷୋଳ ସହସ୍ର ଗୋପବାଳୀ । ଦେଖିଲେ ପ୍ରଭୁ ବନମାଳୀ ॥
ନାନା କୁସୁମେ ପରିମଳ । ହୃଦେ ଲମ୍ବଇ ବନମାଳ ॥
ଗୁଞ୍ଜୁରା କଙ୍କଣ ତାଲୁ ଚୂଳ । ଶ୍ରବଣେ ମକର କୁଣ୍ଡଳ ॥
ନୂପୁର କଙ୍କଣ ବିରାଜେ । ରତ୍ନ ମେଖଳା କଟୀ ସାଜେ ॥
ପୀତ ବସନ ବେଣୁଧର । ନିବିଡ଼ ସୁରଙ୍ଗ ଅଧର ॥
କୋଟିୟେ କାମ ନୋହେ ସରି । ଦେଖି ଚକିତ ବ୍ରଜନାରୀ ॥
ଅନଳ ଦେଖିଣ ପତଙ୍ଗ । ଯେହ୍ନେ ଧାମନ୍ତି ଉଦବେଗ ॥
ବେଢ଼ିଲେ ଶତପୁର ହୋଇ । କମନ୍ତି କୃଷ୍ଣଙ୍କୁ ଅନାଇଁ ॥

ଗୋପୀଙ୍କି ଦେଖି ବନମାଳୀ । ବଦନୁ ଥୋଇଲେ ମୁରଲୀ ॥
କୋମଳ ଗଭୀର ବଚନ । କହନ୍ତି ପ୍ରଭୁ ଭଗବାନ ॥
ଶୁଣ ଗୋ ବ୍ରଜବଧୂ ଜନେ । ତୁମ୍ଭ ଅଇଲ କିମ୍ପା ବନେ ॥
ଗୋପର କହ ଭଲ କଥା । ମୋ ନନ୍ଦ ଯଶୋଦା ବାରତା ॥
ଗୋପେ କି ଆପଦ ପଡ଼ିଲା । ମୋତେ ତ ସନ୍ଦେହ ଲାଗିଲା ॥
ଗୋରୁ ଗୋପାଳ ନେଲେ ବାନ୍ଧି । ତୁମ୍ଭେ ଅଇଲ ବନେ କାନ୍ଦି ॥
ସର୍ବ ସମ୍ପଦ କଲେ ଚୂର । କି ଅବା ମିଳିଲେ ଅସୁର ॥
ଯେମନ୍ତ ପ୍ରାୟେ ମୁ ମଣଇ । କିମ୍ପା ଅଇଲ ବନେ ଧାଇଁ ॥
ଭଲେ ଅଇଲ ମୋ ନିକଟେ । ବଣା ନୋହିଲ ବଣ ବାଟେ ॥
ରଜନୀ ହେଉଛି ଉଚ୍ଛୁର । ବନ ଗହନ କୁଞ୍ଜ ଘୋର ॥
ବ୍ୟାଘ୍ର ଭଲ୍ଲୁକ ବନ ଜୀବେ । ତୁମ୍ଭଙ୍କୁ ଦେଖିଲେ ଖାଇବେ ॥
ସ୍ୱଭାବେ ସ୍ତିରୀ ଜନ୍ମ ହୋଇ । ବନେ ତୁମ୍ଭର ଭୟ ନାହିଁ ॥
ନିଶ୍ଚେ ହୋଇବ ଆଜ ନାଶ । ମରଣ କଲଟି ବିଶ୍ୱାସ ॥
ଯାଅ ନ ଥାଅ ବନ ଘୋରେ । ତୁମ୍ଭଙ୍କୁ ଲୋଡୁଥିବେ ଘରେ ॥
ମାତା ପିଅର ପୁତ୍ର ଭାଇ । ଲୋଡୁ ଅଛନ୍ତି ନାମ ଗାଇ ॥
ଯେ ଯାହା ସ୍ୱାମୀ କୋପ ଚିତ୍ତେ । ଖୋଜନ୍ତି ଘରଦ୍ୱାର ପଥେ ॥
ନ ପାଇ କରିବେଟି ରୋଷ । ତୁମ୍ଭେ ହୋଇବ ଜାତି ନାଶ ॥
ବନ୍ଧୁ ବାନ୍ଧବ ତୁମ୍ଭ ଘରେ । ଅନ୍ନ ନ କରିବେ ଆହାରେ ॥
ଜଳ ହିଁ ନ କରିବେ ପାନ । ତୁମ୍ଭେ ହୋଇବ ଜାତିହୀନ ॥
ନ ଜାଣି ଯେବେ ଗୋ ଅଇଲ । ବହନ କର ମୋର ବୋଲ ॥
ଦେଖ ଯେ ବନ ପରିମଳ । ନାନା କୁସୁମେ ନଦୀଜଳ ॥
ମଳୟ ପବନ ଶୀତଳ । ତରୁ ପଲ୍ଲବେ ଭୃଙ୍ଗମେଳ ॥
ବହନ ଯାଅ ଗୋପପୁର । ନିଜ ପତିଙ୍କି ସେବାକର ॥
ଗାଈଙ୍କ ଗୋଡ଼େ ବନ୍ଧା ବାନ୍ଧି । ତୁମ୍ଭେ ଯେ ଦୁହୁଁ ଥିଲ ଛନ୍ଦି ॥
ସ୍ତନ ନ ପାଇଣ ବାଛୁରୀ । କାନ୍ଦନ୍ତି ହେମ୍ବା ରାବି କରି ॥
ବାଳକ ଧରିଥିଲ କୋଳେ । ପକାଇ ଅଇଲ ଯେ ତଳେ ॥
ଓଷ୍ଠ ଛିଡ଼ିଲା ଦନ୍ତ ପାଟି । କାନ୍ଦନ୍ତି ତୁଣ୍ଡେ ଭରି ମାଟି ॥
ବହନ ନିଜ ଘର ଯାଅ । ସ୍ତନ ପିଆଇ ଗାଇ ଦୁହଁ ॥
ଯେବେ ଅଇଲ ବେଣୁ ନାଦେ । ମୋ ରୂପ ଦେଖିବାର ସାଧେ ॥
ଯେବେ ଦେଖିଲ ମୋର ଦେହ । ଯାଅ ଗୋ ଦଣ୍ଡେ ହେଁ ନ ରହ
ସ୍ୱାମୀଙ୍କ ସଙ୍ଗେ ପ୍ରୀତି କର । ଉଚିତ ଧର୍ମ ଗୋ ତୁମ୍ଭର ॥
ସ୍ୱାମୀର ଯେତେ ଇଷ୍ଟମାନ । ବାଳ-ତନୟ ବନ୍ଧୁଜନ ॥
ଯେ ନିତ୍ୟକର୍ମ ଗୋ ତୁମ୍ଭର । ପୁଣି ବୋଲନ୍ତି ବେଣୁଧର ॥
ପୂର୍ବେ ଅର୍ଜିଲା କମ ଇଇ । ଯେ ଯାହା ସ୍ୱାମୀ ଗୋ ମିଳଇ ॥

ସେ ଯେବେ ହୋଏ ଅସୁନ୍ଦର । ଦୁଃଖୀ ଦରିଦ୍ର ବ୍ୟାଧିକର ॥
ତାହାଙ୍କୁ ନ କରିବ ସାନ । ସେ ବିଷ୍ଣୁଦେବଙ୍କ ସମାନ ॥
ତାହାଙ୍କ ପାଦେ ଯେକ ଚିତ୍ତେ । ସେବା କରିବ ଅବିରତେ ॥
ଯେ ମାୟା ସଂସାର ବେଭାର । ଯାହା ସଞ୍ଚିଲା ବେଦବର ॥
ଯେହା ଯେ ନ କରନ୍ତି ଭଲେ । ନରକେ ଯାନ୍ତି ଅନ୍ତକାଳେ ॥
ପର ପୁରୁଷେ ମନ ଦେଇ । ଯେ ନାରୀ ରମେ ଦେହ ବହି ॥
ତାହାଙ୍କୁ ନାହିଁ ସୁଖ ଲେଶ । ନରକେ ହୋନ୍ତି ପରବେଶ ॥
ନିନ୍ଦିତ ହୋନ୍ତି ବେନି ଲୋକେ । ନିରାଶ ହୋନ୍ତି ସ୍ୱାମୀ ସୁଖେ ॥
ବିଧବା ହୋନ୍ତି ଜନ୍ମ ସାତ । ଯେ ନାରୀ ସ୍ୱାମୀ ଅଭଗତ ॥
ମୋତେ ଅଇଲ ଯେବେ ଦେଖି । ଯେତେକେ ପୂରିଲାନି ଆଖି ॥
ଯେ ମୋତେ ଦୂରେ ଥାଇ ଚିନ୍ତି । ମନ ବଚନ ମୋତେ ଦ୍ୟନ୍ତି ॥
ବେଗେ ହୁଅନ୍ତି ଭବୁଁ ପାର । ଖଣ୍ଡଇ ଭ୍ରମ ତାହାଙ୍କର ॥
ଯେ ମୋର ନିକଟେ ରହଇ । ସେ ପ୍ରାଣୀ ମୋତେ ନ ଭଜଇ ॥
ମାୟାରେ ହୋଇ ଛନଛନ । ବିଷୟା ଜଡ଼େ ଥାଇ ମନ ॥
ସେ ମୋତେ ପାଇବେ କେମନ୍ତେ । ହସି ବୋଲନ୍ତି ଗୋପୀନାଥେ ॥
ମୁନି ବୋଲନ୍ତି ରାୟେ ଶୁଣ । ଯାହା କହିଲେ ନାରାୟଣ ॥
ଗୋପୀୟେ କୃଷ୍ଣ କଥା ଶୁଣି । ଚିନ୍ତା ବିକଳେ ମନେ ଗୁଣି ॥
ବଜ୍ର ପଡ଼ିଲା ଯେହ୍ନେ ଶିର । ବଦନୁ ନଇଲା ଉତ୍ତର ॥
ନିଶ୍ୱାସ ବହେ ଖରତର । ଶୁଖିଲା ସୁରଙ୍ଗ ଅଧର ॥
ଦଶନେ ଅଧର କାମୋଡ଼ି । କର ଯୁଗଳ ଶିରେ ତାଡ଼ି ॥
ଚରଣ ଅଙ୍ଗୁଳିର ଅଗ୍ରେ । ଭୂମି ଚିରନ୍ତି କାମ ବ୍ୟଗ୍ରେ ॥
କମ୍ପଇ ବିକଳେ ଶରୀର । ବେନି ଲୋଚନୁ ବହେ ନୀର ॥
ଅଞ୍ଜନ କୁଙ୍କୁମର ସଙ୍ଗେ । ଲୁହ ପଡ଼ଇ କୁଚ ଯୁଗେ ॥
ଦୁଃଖ ସାଗରେ ନିମଜ୍ଜିଲେ । ସମସ୍ତେ ଲୋଚନ ବୁଜିଲେ ॥
ହୋଇଲେ ମୃତପିଣ୍ଡ ପ୍ରାୟେ । ଦେଖନ୍ତି ପ୍ରଭୁ ଦେବରାୟେ ॥
କୃଷ୍ଣ ନିଷ୍ଠୁର ବାକ୍ୟ ଶୁଣି । ଧର୍ମ ଅଧର୍ମ ମନେ ଗୁଣି ॥
ଯାହାର ପାଇଁ ଗୃହବାସ । ଛାଡ଼ିଲୁ ଜୀବନର ଆଶ ॥
ତାର ନିଷ୍ଠୁର କଥା ପାଇ । ଜୀବନ ଦଣ୍ଡେ ନ ରହଇ ॥
ବେନି ଲୋଚନ ଘଷି କରେ । କୃଷ୍ଣଙ୍କୁ ଚାହିଁଲେ ସଧୀରେ ॥
ପାଦେ ପଡ଼ିଲେ ଯେକା ବେଳେ । କହନ୍ତି ଜୀବନ ବିକଳେ ॥
ଶିର ଲଗାଇ ପଦ୍ମପାଦେ । କହନ୍ତି ଶୋକ ଗଦ ଗଦେ ॥
ଭୋ ନାଥ ପ୍ରଭୁ ଭାବଗ୍ରାହୀ । ଯେମନ୍ତେ ବୋଲୁ କାହିଁ ପାଇଁ ॥
ତୁ ନୋହୁ ଯଶୋଦା ନନ୍ଦନ । ଅନାଦି ଜ୍ୟୋତି ନିରଞ୍ଜନ ॥
ଆମ୍ଭେ ଅଭାଗୀ ଦୁଃଖୀ ନାରୀ । ଆଉ କି ଯିବୁ ଗୋପପୁରୀ ॥

ଛାଡ଼ିଲୁ ବିଷୟା ବିଷାଦ । ପାଇ ତୋହୋର ପଦ୍ମପାଦ ॥
ଆମ୍ଭନ୍ତ ତେଜୁ କାହିଁ ପାଇଁ । ତୋ ତହୁଁ ଅନ୍ୟଗତି ନାହିଁ ॥
ତୋ ପାଦ ପଙ୍କଜର ମୂଳେ । ଜ୍ଞାନୀ ଚିନ୍ତନ୍ତି ଅନ୍ତକାଳେ ॥
ସେ ପାଦପଦ୍ମ ଆମ୍ଭେ ପାଇ । କାହିଁକି ଯିବୁ ଭାବଗ୍ରାହୀ ॥
ତୋହୋର ପାଇଁ ଦାମୋଦର । ଛାଡ଼ିଲୁ ପତି ସୁତ ଘର ॥
ଭଜନ୍ତି ଯେ ତୋହୋର ନାମ । ତାହାଙ୍କୁ ନାହିଁ ଦୁଃଖ ଶ୍ରମ ॥
ଆମ୍ଭେ ତୋ ପାଦେ ଚିତ୍ତ ଦେଇ । ନିରାଶ ହୋଇଲୁ ଗୋସାଇଁ ॥
ଉଭୟେ ନ ପାଇଲୁ କୂଳ । ତୁ ଯେ ବୋଲାଉ ଆଦିମୂଳ ॥
ଧର୍ମ ଦେବତାଙ୍କର ଗୁରୁ । ତୋର ମହିମା ମହାମେରୁ ॥
ଯାହା ବୋଇଲୁ ବେଦମତେ । ଭୋ ନାଥ ଶୁଣ ଯେକ ଚିତ୍ତେ ॥
ଯେ ଯେ ତୋହୋର ସାଧୁପଣ । ସେବିବୁଁ ସ୍ୱାମୀଙ୍କ ଚରଣ ॥
ଯେକଥା ଉଚିତ ଆମ୍ଭର । ଭୋ ନାଥ ଶୁଣ ବେଦସାର ॥
ତୁ ଯେ ସକଳ ପ୍ରାଣୀଙ୍କର । ଦେହ ଜୀବନର ଠାକୁର ॥
ଯେ ପ୍ରାଣୀ ତୋହୋରେ ଭଜଇ । ତାହାର ଜନ୍ମ ବନ୍ଧ ନାହିଁ ॥
ଅନେକ ପୁଣ୍ୟ କରିଥିଲେ । ତୋ ନାମ ଧରି ଅନ୍ତକାଳେ ॥
ଅଭୟ ବ୍ରହ୍ମେ ସେ ପଶନ୍ତି । ଆମ୍ଭର ନାହିଁ ମନେ ଭ୍ରାନ୍ତି ॥
ଆଉ କି ଗୋପପୁର ଯିବୁଁ । ପତି ତନୟ ଆବୋରିବୁଁ ॥
ଆମ୍ଭର ତେଣେ ନାହିଁ ଆଶା । ତୋ ନାମ କରିଛୁଁ ଭରସା ॥
ମନ କି ନ ଜାଣୁ ଆମ୍ଭର । ଆଶା ବିଶ୍ରାମ ବାନା ତୋର ॥
କାଳିନ୍ଦୀ ତୀରେ ବ୍ରତ କରି । ପୂଜିଲୁ ଶଙ୍କର ଗଉରୀ ॥
ବର ମାଗିଲୁ ଆମ୍ଭେ ଯାହା । ଭୋ ନାଥ ନ ଜାଣୁ କି ତାହା ॥
ଆମ୍ଭର ବସ୍ତ୍ର ଚୋରି କରି । ତୁ ଯେ ବୋଇଲୁ ନରହରି ॥
ରମିବି ବୃନ୍ଦାବନେ ମୁହିଁ । ନିୟମ କଲୁ ବେଣୁ ଛୁଇଁ ॥
ଆମ୍ଭର ସାକ୍ଷ ଯେ ମୁରଲୀ । କିମ୍ପା ପାସୋରୁ ବନମାଳୀ ॥
ତୋହୋର ଯେବେ ଦୟା ନାହିଁ । କିମ୍ପା ରାଇଲୁ ବେଣୁବାଇ ॥
ଆମ୍ଭର ମନ ନିଜ ଘରେ । ବୁଡ଼ାଇଥିଲୁ ମୁହାଁସରେ ॥
ଶ୍ରବଣେ ମୁରଲୀ ଶୁଭିଲା । କର ଚରଣ ନ ଚଳିଲା ॥
ଜୀବନ ହରିଲୁ ଆମ୍ଭର । ଯେବେ ତ କହିଲୁ ନିଷ୍ଠୁର ॥
ଭୋନାଥ କର ପ୍ରାଣ ରକ୍ଷା । ଆମ୍ଭେ ପାଇଲୁ ବେଣୁ ଦୀକ୍ଷା ॥
ତୁମ୍ଭ ଅଧର ସୁଧାରସ । ଆମ୍ଭର ମୁଖରେ ବରଷ ॥
ଜୀବନ ରଖ ନନ୍ଦବାଳ । ଆମ୍ଭର ପୂରିଲାଟି କାଳ ॥
କ୍ରୋଟ ଅନଳ ପ୍ରାୟେ ହୋଇ । କାମ ଅନଳ ହୃଦ ଦହି ॥
ଲିଭାଅ ମୁଖୁ ରସଦେଇ । ଦାସ ବତ୍ସଳ ଭାବଗ୍ରାହୀ ॥
ଯେବେ ନ ରଖୁ ବନମାଳୀ । ମରିବୁଁ ସକଳ ଗୁଆଳୀ ॥
ହତ୍ୟା ହୋଇବ ତୋର କନ୍ଧେ । ଶୁଣି ହସନ୍ତି ଆଦିକନ୍ଦେ ॥
ଗୋପୀ ବୋଲନ୍ତି କୃଷ୍ଣ ଚାହିଁ । ପୂତନା ପ୍ରାଣ ଅଛୁ ଖାଇ ॥
ତୁ କାହିଁ ରଖିବୁ ଆମ୍ଭନ୍ତ । ନିଶ୍ଚୟେ ହୋଇଲୁ ଅନାଥ ॥
ମରିବୁଁ ତୋହୋର ଉପରେ । ଜୀବନ ନ ରହେ ଶରୀରେ ॥
ଭୋନାଥ ତୋହୋର ପୟରେ । କମଳା ସେବେ ନିରନ୍ତରେ ॥
ଆମ୍ଭର ପ୍ରିୟ ଅଟୁ ତୁହି । ଆଶା ନ ଛେଦ ଭାବଗ୍ରାହୀ ॥
ତୋହୋର ପାଦର ତୁଳସୀ । ମାଳା କରିବୁ ବ୍ରହ୍ମରାଶି ॥
କବରୀ ଭାର ସଜକରି । ତୋ ପାଦେ ସେବିବୁ ମୁରାରି ॥
ତୋହୋର ପାଦ ଦୃଢ଼ ଚିତ୍ତେ । ମୁନିଯେ ଖୋଜୁଥାନ୍ତି ନିତ୍ୟେ ॥
ସେ ପାଦେ ପଶିଲୁଁ ଶରଣ । ଜୀବନ ରଖ ନାରାୟଣ ॥
ତୋର ଚରଣେ ନରହରି । ସ୍ତନେ ବଦନେ ଶିରେ ଧରି ॥
ଆମ୍ଭର ତାପ ହୃଦୁଁ ଯିବ । ଶରଣ ରଖ ପଦ୍ମନାଭ ॥
ତୋର ସୁନ୍ଦର ମୁଖ ଦେଖି । ପିଛାଡ଼ି ନ ପାରୁ ଯେ ଆଖି ॥
ତୋହୋର ରୂପ ହୃଦେ ଗୁଣି । ବ୍ରହ୍ମାଣ୍ଡେ ଯେତେକ ତରୁଣୀ ॥
କେ ଦେହ ଧରିବ ନିର୍ଭରେ । ଶୁଣିଲା ନାହିଁ ତିନିପୁରେ ॥
ତୋହୋର ରୂପ ଦେଖି ବନେ । ପୁଲକ ହୋନ୍ତି ତରୁ ଗଣେ ॥
ବୋଲନ୍ତି ଶୁକ ମୁନିବର । ଶୁଣ ହୋ କୃଷ୍ଣ ରସ ସାର ॥
ଗୋପୀଙ୍କି ଦେଖିଣ ବିକଳ । ଦୟା ବସିଲା ଆଦିମୂଳ ॥
ଆନନ୍ଦେ ବେନିଭୁଜ ତୋଳି । ଆସ ବୋଇଲେ ବନମାଳୀ ॥
ତକ୍ଷଣେ ପାଇଲେ ଜୀବନ । ହରଷ ଗୋପୀଙ୍କର ମନ ॥
କୃଷ୍ଣଙ୍କୁ ବେଢ଼ିଲେ ଯୁବତୀ । ଗଗନେ ଯେହ୍ନେ ଗ୍ରହପନ୍ତି ॥
ଗୋପୀଯେ ତୋଷ ମନ ହୋଇ । ପୁଷ୍ପ ତୋଳନ୍ତି ବନେ ଯାଇ ॥
ମାଳା ଗୁନ୍ଥିଲେ ଯତ୍ନ କରି । ବର ବରିଲେ ନରହରି ॥
କାଳିନ୍ଦୀ ବାଲିକୁଦେ ଯାଇ । ଗୋପୀଙ୍କ ମଧେ ଭାବଗ୍ରାହୀ ॥
ମାୟାର ଯୋଗବଳେ ହରି । ଷୋଳ ସହସ୍ର ରୂପ ଧରି ॥
ହୋଇଲେ ବେନି ବେନି ଜନ । ଗୋପୀ ରମିଲେ ଭଗବାନ ॥
ରତି ପଣ୍ଡିତ ବଳବନ୍ତ । ତୋଷିଲେ ଗୋପୀଙ୍କର ଚିତ୍ତ ॥
କୃଷ୍ଣ ରମଣ ରସ ପାଇ । ଗୋପୀ ବୋଲନ୍ତି ଗର୍ବ ବହି ॥
ଆମ୍ଭର ପ୍ରାୟେ ଭାଗ୍ୟବନ୍ତ । ନାହିଁ ନୋହିବ ଯେ ଜଗତ ॥
ରମିଲୁ ଅନାଦି ପୁରୁଷ । ଆମ୍ଭରେ ହୋଇଲେ ହରଷ ॥
କୃଷ୍ଣ ଭଗତି ଆମ୍ଭ ପ୍ରାୟେ । ସ୍ୱର୍ଗେ ନୋହିବେ ଦେବତାୟେ ॥
ଯେମନ୍ତ ଗର୍ବ ମନେ କରି । ତାହା ଜାଣିଲେ ନରହରି ॥
ଗୋପୀଙ୍କ ଭାବ ଜାଣିମାରେ । ମାୟା ମୋହିଲେ ନଦୀ ତୀରେ ॥
ଗୋପୀଯେ ବୃନ୍ଦାବତୀ ନାମେ । ଥିଲା ସେ କୃଷ୍ଣ ସନ୍ନିଧାନେ ॥

ପୂର୍ବେ ସେ ତପ ଅଛି କରି । ଗୋବିନ୍ଦ ତାର ଭୁଜ ଧରି ॥
ଛନ୍ଦିଲେ ଗୋପୀଙ୍କର ମନ । କୃଷ୍ଣ ହୋଇଲେ ଅନ୍ତର୍ଦ୍ଧାନ ॥
ବୋଲଇ ଦାସ ଜଗନ୍ନାଥ । ବନେ ନିରୋପି କୃଷ୍ଣପଥ ॥
ମୋହୋର ମନ ଗୋଡ଼ାଇଲା । କୃଷ୍ଣଙ୍କୁ ଭେଟ ନ ପାଇଲା ॥
ବାହୁଡ଼ି ହୋଇଲା ନିରାଶ । ସୁଜନେ ବୃନ୍ଦାବନେ ପଶ ॥
ମୁ ଅବା ହରିଙ୍କି ଅନାଇଁ । କାହିଁ ପାଇବି ଭାବଗ୍ରାହୀ ॥
ପାମର ହୀନ ମୋର ବୁଦ୍ଧି । କୃଷ୍ଣ ଚରଣେ ଚିତ୍ତ ଖେଦି ॥
ମୋଛାର ପାଇବଙ୍ଗଁ କାହିଁ । ଯାହାର ଆଦିଅନ୍ତ ନାହିଁ ॥
ସୁଜନ ଜନଙ୍କର ହିତେ । କହଇ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନେ ନାମ ତ୍ରିଂଶୋଽଧ୍ୟାୟଃ ।*

## ଯେକତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ତୋଷ ମନେ । କୃଷ୍ଣ ଯେ ଗଲେ ଅନ୍ତର୍ଦ୍ଧାନେ ॥
ଗୋପ ଯୁବତୀ ନନ୍ଦୀକୂଳେ । ଘଡ଼ିକେ ଜାଣିଲେ ସକଳେ ॥
କୃଷ୍ଣ ନ ଦେଖି ବନ ଘୋରେ। ଭୟେ ଡରିଲେ ସେ କାତରେ ॥
କମ୍ପନ୍ତି ଚଉଦିଗ ଚାହିଁ । ରଜନୀ ଅର୍ଦ୍ଧ ଅଛି ହୋଇ ॥
କୃଷ୍ଣର ମାୟା ଘେନି ମେଘେ । ମିଳିଲେ ଶଶାଙ୍କର ଲାଗେ ॥
ଦେଖି ବିକଳ ଗୋପ ନାରୀ । ଡାକନ୍ତି କୃଷ୍ଣ ନାମ ଧରି ॥
ଭୋ ନାଥ ଆସ ତୁ ବହନ । ମେଘ ଆଚ୍ଛାଦିଲା ଗଗନ ॥
ବିଶେଷେ ଯମୁନାର ତୀରେ । ମେଘ ଅନ୍ଧାର ବନ ଘୋରେ ॥
ଅନାଥ କରି ଗଲୁ କାହିଁ । ଅନ୍ଧାରେ ପଥ ନ ଦିଶଇ ॥
ଯେମନ୍ତେ କରନ୍ତି ରୋଦନ । କ୍ଷଣ କ୍ଷଣକେ ଅଚେତନ ॥
ଚିନ୍ତା ସାଗର ମହାଘୋରେ । ରୋଦନ କଲେ ଉଚ୍ଚ ସ୍ୱରେ ॥
ବାତୁଳ ପ୍ରାୟେ ହୋଇ କାନ୍ଦି । ଯେକ ଆରକେ ଛନ୍ଦାଛନ୍ଦି ॥
କୃଷ୍ଣର ଗତି ଅନୁରାଗ । ଅଳପ ହାସ୍ୟ ମୁଖ ରଙ୍ଗ ॥
ମଧୁର ଚାହିଁବାର ଆଶେ । ମନ ନିବେଶି କୃଷ୍ଣପାଶେ ॥
ବାଲୁତ କାଳୁଁ ଯେତେ କଲା । ସୁମରି ଗୋବିନ୍ଦର ଲୀଳା ॥
ଚିତ୍ତ ନିବେଶି କୃଷ୍ଣ ଦେହେ । ଗୋପୀ ପଡ଼ିଲେ ଶୋକ ମୋହେ॥
ପୁଣି ଉଠିଲେ ପ୍ରାଣ ପାଇ । କହନ୍ତି ବାଇ ପ୍ରାୟେ ହୋଇ ॥
କେ ବୋଲେ ମୁହିଁ ନାରାୟଣ । ସେବ ଲୋ ମୋହୋର ଚରଣ ॥
କେ ବୋଲେ ମୁହିଁ ନନ୍ଦ ବାଳ । ଦେଖ ମୋ ଶିରେ ଗୁଞ୍ଜମାଳ ॥
ପୁଣି ଗୋପୀଯେ ଆଗସରି । ବୋଲଇ ଦେଖିଲି ମୁରାରି ॥
କାଣଇ ଯେହିପଥେ ଗଲା । ମୁରଲୀ ଘେନି ନନ୍ଦ ବଳା ॥
ପୁଣି ଉଠିଲେ ଧାଡିକାରେ । ପଶିଲେ ଲତା ବନଘୋରେ ॥
ଖୋଜନ୍ତି ପଶି ବନେ ବନ । ଡାକନ୍ତି ଆସ ନନ୍ଦ ନାନ ॥
ବାତୁଳଙ୍କର ପ୍ରାୟେ ହୋଇ । ପୁଛନ୍ତି ଆକାଶ ଅନାଇଁ ॥
ବୋଲନ୍ତି ଚାହିଁ ତରୁଗଣ । ତୁମ୍ଭେ ଦେଖିଲ ନାରାୟଣ ॥
କ୍ରୋଟ ଭିତରେ ଥୋଇଅଛ । ଯେ କଥା ଅଟଇ ପ୍ରତକ୍ଷ ॥
ଅଶ୍ୱତ୍ଥ ବଟ ଶାଳ ବୃକ୍ଷେ । ତୁମ୍ଭେ କି ଦେଖିଲ ପ୍ରତକ୍ଷେ ॥
ମଧୁର ହାସ୍ୟେ ଆମ୍ଭ ମନ । ବାନ୍ଧିଣ ନେଲେ ନନ୍ଦନାନ ॥
ହେ କୁରୁବେଲି ନାଗେଶ୍ୱର । ଚମ୍ପା ବକୁଳ କଣେଅର ॥
ତୁମ୍ଭ ପୀରତି ଘେନି ଚିତ୍ତେ । ଗୋବିନ୍ଦ ଗଲେ କି ଯେ ପଥେ॥
ତୁ ଯେ ତୁଳସୀ ହରିପ୍ରିୟା । ଲୁଚାଇ କରିଅଛୁ ମାୟା ॥
ଗୋବିନ୍ଦ ହୃଦେ ଲମ୍ବିଥାଉ । ଆମ୍ଭେ ପଚାରିଲେ ନ କହୁ ॥
ଆମ୍ଭେ ତୋ କଥା ଭଲେ ଜାଣି । ତୁ ଯେ ଆମ୍ଭର ସପତଣୀ ॥
ମାଳତୀ ମଲ୍ଲୀ ଜାଇ ଯୂଇ । ତୁମ୍ଭେ ଦେଖିଲ ଭାବଗ୍ରାହୀ ॥
କୃଷ୍ଣର ନଖ-କ୍ଷତ ଲାଗି । ନ ପୁଣ ହୋଇଛ ସୁହାଗୀ ॥
ହେ ଚୂତ ପିଆଳ ପଣସ । ଅସନ ବିଦାର ଜମ୍ବୁଶ ॥
ବେଲ ବକୁଳ ଲିମ୍ବ ଯୂଥେ । ଗୋବିନ୍ଦ ଗଲେ କି ଯେ ପଥେ॥
ତୁମ୍ଭେ ଯେ ଯମୁନାର ତୀରେ । ହୋଇଛ ପର ଉପକାରେ ॥
କହ ଶ୍ରୀକୃଷ୍ଣ ଗଲେ କାହିଁ । ମରିବୁଁ ତା ମୁଖ ନ ଚାହିଁ ॥
ଯାନ୍ତେ ଦେଖିଲେ ବନ ଦେଶେ । ଅବନୀ ନ ଦିଶଇ ଘାସେ ॥
ତାହାଙ୍କୁ ଚାହିଁ ଗୋପ ନାରୀ । ବୋଲନ୍ତି ଦେଖିଲା ଯେ ହରି ॥
ଯେଣେ ଯେ ଗଲେ କୃଷ୍ଣ ଧାଇଁ । ତା ପାଦ ଲାଗି ଯେହା ଦେହୀ॥
ପୁଲକ ହୋଇଅଛି ଦେଖ । ଆମ୍ଭେ ସେ ହୋଇଲୁ ନିରେଖ ॥
ହରିଣୀ ଯୂଥକୁ ଅନାଇଁ । କହନ୍ତି ଶୋକଭର ହୋଇ ॥
ଆମ୍ଭେ ଜାଣିଲୁଁ ସତ୍ୟ ଆଜ । ତୁମ୍ଭେ ଦେଖିଲ ଦେବରାଜ ॥
ହରି ଚରଣ ଯୁଗ ଦେଖି । ନିର୍ମଳ କରିଅଛ ଆଖି ॥
ଯେକ ଗୋପୀଯେ ପଛେ ଥାଇ । ବୋଲଇ ଗୋପୀଙ୍କି ଅନାଇଁ ॥
ବହନ ଆଣିଲା ସାଉଁଟି । ଦେଖାଇ କୁନ୍ଦମାଳ ଗୋଟି ॥
ଯେ ନାରୀ କୃଷ୍ଣ ଘେନିଗଲା । ଯେ ମାଳ ତାର ହୃଦେ ଥିଲା ॥
କୃଷ୍ଣର ଆଲିଙ୍ଗନ କାଳେ । ଛିଡ଼ି ଗୋ ପଡ଼ିଅଛି ତଳେ ॥
ତେଣୁ ସୁଗନ୍ଧ ଗୋ ଯେହାର । ଯେବେ ପାଇବା ଦାମୋଦର ॥
ପ୍ରିୟାର କନ୍ଧେ ଦେଇ ହସ୍ତ । ଯେ ପଥେ ଗଲେ ଗୋପୀନାଥ॥
ପଦ୍ମ ଗୋଟିଯେ ଘେନିକରେ । ବୃକ୍ଷଙ୍କ ଫଳ ପୁଷ୍ପ ଭରେ ॥

ପଶି ଯେ ଗଲେ ଯେହି ବାଟେ । ଦେଖିଣ ଚାହାନ୍ତି ଉଚ୍ଚାଟେ ॥
ପୁଣି ବୋଲନ୍ତି ବୃକ୍ଷ ଚାହିଁ । ମାଳତୀ ତାର ଦେହେ ଥାଇ ॥
ପୁଲକ ହୋଇ ତା ଉପର । ଯେଣୁ ଲାଗିଲା କୃଷ୍ଣ କର ॥
ଯେମନ୍ତେ ହୋଇ ଉନମତ୍ତ । କୃଷ୍ଣର ପାଦେ ଦେଇ ଚିତ୍ତ ॥
ଯେକ ଗୋପୀଯେ ଆଗ ସରି । କୋଳେ ଚାପିଲା ଗୋପ ନାରୀ ॥
ତାହାର କୁଚେ ମୁଖ ଦେଇ । ନିର୍ଭରେ ଦିଲାକ ପକାଇ ॥
ବୋଲଇ ମୁହିଁ ନାରାୟଣ । ଶୋଷିଲି ପୂତନା ପରାଣ ॥
ମୋତେ ଲୋ ଭଜ ଗୋପ ନାରୀ । ଚାପଇ କରେ କର ଧରି ॥
ଯେକ ଗୋପୀଯେ ପଛେ ଥିଲା । ପୟର ଛନ୍ଦି ପକାଇଲା ॥
ବୋଲଇ ମୁହିଁ ଦାମୋଦର । ପାଦେ ଶକଟା କଲି ଚୂର ॥
ଯେକ ଗୋପୀଯେ କରି କାନ୍ଧେ । ପକାଇ ବୋଲଇ ଆନନ୍ଦେ ॥
ଦେଖ ମାଇଲି ତୃଣାବର୍ତ୍ତ । ମୁ ସେ ଲୋ ଯଶୋଦାର ସୁତ ॥
କେ ଗୋପୀ ନଦୀ ପଙ୍କେ ପଶି । ନାଚେ କିଙ୍କିଣୀ ନାଦ ଘୋଷି ॥
ବୋଲଇ ମୋତେ ସେବା କର । ମୁ ସେ ଲୋ ଯଶୋଦା କୁମର ॥
ଯେକ ଗୋପୀଯେ ଧରି କରେ । ବୁଲାଇ ପିଟିଲା ବୃକ୍ଷରେ ॥
ବୋଲଇ ମୁହିଁ ଦାମୋଦର । ଦେଖ ମାଇଲି ବଛାସୁର ॥
ଆର ଗୋପୀଯେ ବୃକ୍ଷଡ଼ାଳେ । ଧରି ଚିରିଲା ବେନିଫାଳେ ॥
ବୋଲେ ମୁ ଯଶୋଦା କୁମର । ଦେଖ ଚିରିଲି ବକାସୁର ॥
କେ ବୃକ୍ଷଡ଼ାଳେ ମୁଖ ଦେଇ । ଗୀତ ସ୍ୱସୁରେ ବେଣୁବାଇ ॥
ଯେକର କନ୍ଧେ ଦେଇ ହସ୍ତ । ଚାଲଇ ଯେହ୍ନେ ଗୋପୀନାଥ ॥
ବୋଲଇ ମୁହିଁ ବେଣୁଧର । ଦେଖ ଲୋ ଚାଲଇ ସୁନ୍ଦର ॥
ପୁଣି ଗୋପୀଯେ ଆଗ ସରି । ବୋଲଇ ହୃଦେ ହସ୍ତ ମାରି ॥
ଇନ୍ଦ୍ର ଛାରକୁ କିମ୍ପା ଡର । ଆଜ ଟୋକିବି ଗିରିବର ॥
କେତେ ଲୋ ବରଷିବ ଆଜ । ବଜ୍ର ପାଷାଣ ଦେବରାଜ ॥
ଶାଢ଼ି ପାଲଟି ବାମ କରେ । ଟୋକିଲା ଅଙ୍ଗୁଳି ଉପରେ ॥
ଯେକ ଗୋପୀଯେ ବେଗେ ଧାଇଁ । ଆରେକ ଶିରେ ପାଦ ଦେଇ ॥
ବୋଲଇ ପଳାଅ କାଳୀୟ । କାଳିନ୍ଦୀ ଭିତରେ ନ ରହ ॥
ଖଳ ନାଶନ ବାନା ମୋର । ଅମୃତ କରିବଇଁ ନୀର ॥
କେ ଗୋପୀ ଡାକଇ ସୁସ୍ୱରେ । ନୟନ ବୁଜି ଧାତିକାରେ ॥
ଅନଳ ନିବାରିବି ମୁହିଁ । ବସ ଲୋ ମୁଖେ କର ଦେଇ ॥
କେ ଗୋପୀ ଫୁଲମାଳ ଘେନି । କୋପେ ବୋଲଇ ଶିରଝୁଣି ॥
ଲବଣୀ ଖାଉ ତୁ ଚୋରାଇ । ରୋଳେ ବାନ୍ଧିବି ତୋତେ ନେଇ ॥
ଯେମନ୍ତେ ଗୋପୀ ବାଇପଣେ । ରାତ୍ରେ ବୁଲନ୍ତି ବଣେ ବଣେ ॥
ଯାଉଁ ଦେଖିଲେ ବାଲିକୁଦ । ପଡ଼ିଛି ଗୋବିନ୍ଦର ପାଦ ॥
ଚିହ୍ନିଲେ କୃଷ୍ଣପାଦ ବୋଲି । ଗୋପୀ ଧାଇଁଲେ ପେଲା ପେଲି ॥

ଧ୍ୱଜ ଅଙ୍କୁଶ ପଦ୍ମ ଚିହ୍ନ । ଦେଖି ସାନନ୍ଦ କଲେ ମନ ॥
କୃଷ୍ଣର ପାଦ ଅନୁସରି । ବନେ ଚାଲନ୍ତି ଗୋପ ନାରୀ ॥
ପୁଣି କେତେହେଁ ଦୂର ଯାଇ । ବୋଲନ୍ତି କୃଷ୍ଣପାଦ ଚାହିଁ ॥
ଦେଖ ଗୋ ଚରଣ ଉପର । ପଡ଼ିଛି କାହାର ପୟର ॥
ଯାହାକୁ କୃଷ୍ଣ ଘେନିଗଲା । ସେ ତାର ପଛେ ଯାଉଥିଲା ॥
ଧନ୍ୟ ଗୋ ତାହାର ଜୀବନ । ମୋହିଲା ଯଶୋଦା ନନ୍ଦନ ॥
ତାହାର ପାଦ ବର୍ଣ୍ଣ ଚିହ୍ନ । ଦହଇ ଆମ୍ଭର ଜୀବନ ॥
ଯେକାନ୍ତେ କୃଷ୍ଣଙ୍କୁ ରମିଲା । କେତେ ଗୋ ତପ କରିଥିଲା ॥
ପୁଣି ନ ଦେଖିଲେ ପୟର । ଗହଳେ ଅଛି ତୃଣାଙ୍କର ॥
ପୁଣି କ୍ଷଣକେ ପାଦ ଦେଖି । ଗୋପୀଯେ ଚାହାନ୍ତି ନିରେଖି ॥
ଦେଖ ଗୋ କୃଷ୍ଣର ପୟର । ଅଧିକ ଦିଶଇ ସୁନ୍ଦର ॥
କୃଷ୍ଣ ଯାହାକୁ ନେଉଥିଲା । ଯେଠାରେ କବରୀ ଖସିଲା ॥
ପାଦ ଉପରେ ତାକୁ ଟୋକି । ଦେଖ ଗୋ ଫୁଲ ଅଛି ପଡ଼ି ॥
ରମଣ କଲା ତାର ତୁଲେ । କଥା ଥୋଇଲା ମହୀତଳେ ॥
ଦେଖ କାମିନୀ ଦୁଷ୍ଟପଣ । ବଶ ଗୋ କଲା ନାରାୟଣ ॥
ଶୁଣ ପରୀକ୍ଷ ରସ କେଳି । ଯାହାକୁ ନେଲେ ବନମାଳୀ ॥
ସେ ଗୋପୀ କୃଷ୍ଣପଛେ ଥାଇ । ଗରବ ମନେ ବିଚାରଇ ॥
ମୁ ସେ ମୋହିଲି ହରି ଚିତ୍ତ । ମୋ ତହୁଁ ନାହିଁ ଭାଗ୍ୟବନ୍ତ ॥
ତାହା ଜାଣିଲେ ଭାବଗ୍ରାହୀ । ଗର୍ବ ବହିଲା ଯେହା ଦେହୀ ॥
ମାୟା ମୋହିଲେ ଗୋପୀମନ । କୃଷ୍ଣଙ୍କୁ ବୋଲଇ ବଚନ ॥
ଭୋ ନାଥ ନ ପାରଇ ଯାଇ । ନିଅ ତୁ କନ୍ଧରେ ବସାଇ ॥
ମୋହୋରେ ଅଛି ଯେବେ ମନ । ବିଶେଷ ଘୋର କୁଞ୍ଜବନ ॥
ମୁ ଯେବେ ନ ପାରଇ ଚାଲି । ଶୁଣି ହସିଲେ ବନମାଳୀ ॥
ବୋଇଲେ ବସ ମୋର କନ୍ଧେ । କୃଷ୍ଣ ବସିଲେ ବାଲିକୁଦେ ॥
ଦେଖି ଗୋପିକା ତୋଷ ହୋଇ । ବସିଲା କୃଷ୍ଣ କନ୍ଧେ ଯାଇ ॥
ଉଠିଲେ ପ୍ରଭୁ ଚକ୍ରଧର । କାମିନୀ ଧରିଅଛି ଶିର ॥
କେତେ ହେଁ ଦୂର କୃଷ୍ଣ ଯାଇ । ଅନ୍ତର ହେଲେ ଭାବଗ୍ରାହୀ ॥
ଗୋପୀ ପଡ଼ିଲା ମୁଖ ମାଡ଼ି । ରୁଧିର ଗଳେ ଓଷ୍ଠ ଛିଡ଼ି ॥
ଦଣ୍ଡେ ହୋଇଲା ମୂରୁଛିତ । ଉଠି ଲୋଡ଼ଇ ଗୋପୀନାଥ ॥
ସେ କାହିଁ ପାଇବ ମୁରାରି । ଗର୍ବ ଗଞ୍ଜନ ନରହରି ॥
ବିକଳେ ଚଉଦିଗ ଚାହିଁ । କାନ୍ଦଇ ଶିରେ କରଦେଇ ॥
ଆସ-ବହନ ଗୋପୀନାଥ । ଅନ୍ଧାରେ ନ ଦିଶଇ ପଥ ॥
ମୋତେ ନିଶ୍ଚୟେ ନାଶ କଲୁ । ଗୋପୀଙ୍କ ସଙ୍ଗ ଛଡ଼ାଇଲୁ ॥
କି ଦୋଷ କଲି ମୁ ତୋହୋରେ । ନିର୍ବାସି ଗଲୁ ବନ ଘୋରେ ॥
ଯେମନ୍ତେ କାନ୍ଦଇ ତରୁଣୀ । କୃଷ୍ଣ ହସନ୍ତି ତାହା ଶୁଣି ॥

ଗୋପୀୟେ ଯାଉଥିଲେ ବନେ । ତାର ରୋଦନ ଶୁଣି କର୍ଣ୍ଣେ ॥
ନିକଟେ ମିଳିଲେ ତାହାର । ବୋଲନ୍ତି ଧରି ବେନି କର ॥
ସଚେତ କରି ପଚାରିଲେ । ବୋଇଲେ ଥିଲୁ କୃଷ୍ଣ ତୁଲେ ॥
ତୋତେ ପକାଇ ଘୋରବନେ । ଗୋବିନ୍ଦ ଗଲେ କୋପ ମନେ ॥
ଯେଡ଼େ ନିଷ୍ଠୁର ତାର ଦେହୀ । ପୂତନା ପ୍ରାଣ ଅଛି ଖାଇ ॥
ଅନେକ ହତ୍ୟା ଅଛି କରି । ଯେବେ ଖାଇବ ଗୋପନାରୀ ॥
କାହିଁକି ଯିବୁଁ ଘୋର ବନେ । ଅଇଲୁଁ ତାର ବେଣୁ ସ୍ୱନେ ॥
ଛାଡ଼ିଲୁ ସୁତ ଗୃହ କାନ୍ତ । ଯେ ବନେ ହୋଇଲୁଁ ଅନାଥ ॥
ଯେମନ୍ତେ ପଥ ଅନୁସରି । କାନ୍ଦନ୍ତି କୃଷ୍ଣ ନାମ ଧରି ॥
କାନନେ ପଶିଲେ ସକଳେ । ଷୋଳ ସହସ୍ର ଯେକାବେଳେ ॥
ବୃକ୍ଷ ଗହଳ ଛାୟା ଦେଖି । ଅନ୍ଧାର ପ୍ରାୟେ ଉପଲକ୍ଷି ॥
ଭୟେ ବାହୁଡ଼ିଲେ ସକଳେ । ପୁଣି ମିଳିଲେ ନଦୀକୂଳେ ॥
ମନ ନିବେଶି କୃଷ୍ଣପାଦେ । କାନ୍ଦନ୍ତି ଶୋକ ଗଦ ଗଦେ ॥
ଦେହ ସଂସାର ପାସୋରିଲେ । ମରଣ ପଥ ଆବୋରିଲେ ॥
କୃଷ୍ଣ ଚରଣେ ମନ ଦେଇ । କାନ୍ଦନ୍ତି ଶୋକ ଭର ହୋଇ ॥
ସେ ଗୋପୀ ଗୋବିନ୍ଦର ପାୟେ । ସୁଜନ ଜନଙ୍କର ଲୟେ ॥
ହରି ଚରିତ ଭାଗବତ । ଅମୃତ ରସ ମୟେ ଗୀତ ॥
ଯେଣେ କରିବା ମନ ତୋଷ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ ଶ୍ରୀକୃଷ୍ଣନ୍ୱେଷଣେ ଗୋପିକାବିଳାପୋ ନାମ ଏକତ୍ରିଂଶୋଽଧ୍ୟାୟଃ ।*

## ଦ୍ୱାତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଗୋପୀୟେ ବସି ବାଲିକୁଦେ । କାନ୍ଦନ୍ତି ଶୋକ ଗଦ ଗଦେ ॥
ଭୋ ନାଥ ଯଶୋଦା କୁମର । ତୋ ଜନ୍ମ କାଲୁଁ ଗୋପପୁର ॥
ଦରିଦ୍ର ଦୁଃଖୀ ତ ନ ଜାଣି । ଆମ୍ଭର ଘରେ କମଳିନୀ ॥
ଅନେକ ହୋଇଲା ସମ୍ପଦ । କେ କହୁ ଆମ୍ଭର ଆନନ୍ଦ ॥
ଆମ୍ଭ ଜୀବନ ଅଟୁ ତୁହି । ତୋ ତହୁଁ ଅନ୍ୟ ଗତି ନାହିଁ ॥
ତୋର ସମ୍ପଦ ଭୋଗ କରି । ତୋ ମୁଖ ଚାହିଁ ଦିନ ହରି ॥
ମୁରଲୀ ନାଦେ ଅଣାଇଲୁ । ମୁଖୁଁ ଅମିଅ ରସ ଦିଲୁ ॥
ଘୋର ଗହନ ବନେ ଥୋଇ । ଅନାଥ କରିଗଲୁ କାହିଁ ॥
ଯେବେ ଦେଖାଅ ପଦ୍ମମୁଖ । ବାରେ ଜୀବନ ଆମ୍ଭ ରଖ ॥
ତୋହୋରେ ଆମ୍ଭେ ବ୍ରଜନାରୀ । ଯେ ବନେ ତୋତେ ଅନୁସରି
ଆମ୍ଭର ଆରତ ବିନାଶୁ । କୋଟିୟେ କାମ ପ୍ରାୟେ ଦିଶୁ ॥
ତୋର ସେବକ ଆମ୍ଭେମାନେ । ତୋ ମୁଖ ନ ଦେଖି ନୟନେ ॥
ପଥ ନ ଦିଶେ ରାତ୍ର କାଳେ । ବୁଡ଼ାଇ ଗଲୁ ଶୋକ ଜଳେ ॥
ଭୋ ନାଥ କମଳ ଲୋଚନ । ଦେଖାଅ ନିର୍ମଳ ବଦନ ॥
ତୋ ମୁଖ କମଳର ତେଜେ । ପଦ୍ମ-କୁମୁଦ-ଲକ୍ଷ୍ମୀ ଗଞ୍ଜେ ॥
ସେ ଧନେ କିଣିଲୁ ଆମ୍ଭନ୍ତ । ଯେ ବନେ କଲୁ ତୁ ଅନାଥ ॥
ସୁରତି ନାଥ ତୁ ଆମ୍ଭର । କିଣିଲା ଦାସୀ ଆମ୍ଭେ ତୋର ॥
ଯାହାକୁ କିଣି ଧନ ଦେଇ । କେ ତାହା ଛାଡ଼େ ଭାଗଗ୍ରାହୀ ॥
ସେ କି ନୁହଇ ତାର ବଧ । ବେଦ ପୁରାଣେ ହୋଇ ବାଦ ॥
ଅନେକ ଦୁଃଖୁଁ ଅଛୁ ରଖି । ଯେବେ ତ କଲୁ ନିରିମାଖି ॥
ବିଷ ଉଦକ ଅଘାସୁର । ଇନ୍ଦ୍ର ବରଷା ମହାଘୋର ॥
ବନ ଅନଳ ଷଣ୍ଢ ମୁଖୁ । ତୁ ନାଥ ରଖିଛୁ ଆମ୍ଭଙ୍କୁ ॥
ତୋହୋର ପାଦେ ଆଶ୍ରେ କରି । ଜନ୍ମ ମରଣକୁ ନ ଡରି ॥
ତୁ ନୋହୁ ଯଶୋଦା କୁମର । ଜୀବନ ଅଟୁ ପ୍ରାଣୀଙ୍କର ॥
ସକଳ ଜନ୍ତୁ ହୃଦେ ଥାଇ । ଅନ୍ତର ଜାଣୁ ଭାବଗ୍ରାହୀ ॥
ତୋତେ ଚିନ୍ତିଲା ବେଦବର । ନାଶିଲୁ ଅବନୀର ଭାର ॥
ତେଣୁ ଯାଦବ କୁଳେ ଜାତ । ତୋହୋର ନାହିଁ ଆଦି ଅନ୍ତ ॥
ଭୋ ବୃଷ୍ଣିବଂଶ ଚୂଡ଼ାମଣି । ଆମ୍ଭର ଶିରେ ଦିଅ ପାଣି ॥
ତୋହୋର କର ବ୍ରହ୍ମରାଶି । ଜନ୍ମ ମରଣ ଭୟ ନାଶି ॥
ପଦ୍ମ ହୁଁ ଅତି ସୁକୁମାର । କମଳା ବରିଅଛି ବର ॥
ତୋହୋର ପଦ୍ମପାଦ ଦୁଇ । ବନେ ଗୋରୁଙ୍କ ପଛେ ଥାଇ ॥
ପ୍ରାଣୀଙ୍କ ଦେହୁଁ ପାପ ନାଶେ । ଜଳଧି ତନୟା ବିଳାସେ ॥
ସହସ୍ରେ ଫଣା କାଳୀୟର । ସୁନ୍ଦର କଲା ଚିତ୍ରକାର ॥
ଆମ୍ଭର କୁଚେ ତା ଲଗାଅ । କାମ ଅନଳକୁ ଲିଭାଅ ॥
ତୋହୋର ମଧୁର ବଚନ । ହୃଦେ ଭାବନ୍ତି ମୁନିଜନ ॥
ଆମ୍ଭେ ତୋହୋର ପରିବାରୀ । ମୂର୍ଚ୍ଛିତ ହୋଇଲୁ ମୁରାରି ॥
ତୋର ଅଧର ରସ ଦେଇ । ଜୀବନ ରଖ ଭାବଗ୍ରାହୀ ॥
ତୋର ଚରିତ ସୁଧାବାରି । ସ୍ତୁତି କରନ୍ତି ବ୍ରହ୍ମଚାରୀ ॥
ଜନ୍ମ ମରଣ ତାପ ନାଶେ । ଦୁରିତମାନ ଦେହୁ ଧ୍ୱଂସେ ॥
ମଙ୍ଗଳ କରେ ଶ୍ରୁତିପଥେ । ଶିବ ଜପଇ ଅବିରତେ ॥
ଯେଣେ ଯେ ହୋନ୍ତି ଉନମତ୍ତା । ସେ ନର ଚଉବର୍ଗ ଦାତା ॥
ତୋହୋର ହସିତ ବଦନ । କୋମଳ ମଧୁର ବଚନ ॥
ଧ୍ୟାନ ମଙ୍ଗଳ ବନ ରୂପ । ଯେକାନ୍ତ କଥା ହୃଦେ ତାପ ॥
କପଟ ପ୍ରାୟେ ତୋର ଗତି । ଆମ୍ଭର ମନ ଯେ ଦହନ୍ତି ॥
ତୁ ନାଥ ଗୋରୁଙ୍କର ମେଳେ । କାନନେ ଯାଇ ଯେତେବେଳେ ॥
କୋମଳ ପଦ୍ମପାଦ ଚାହିଁ । ଆମ୍ଭର ହୃଦୟ ଦହଇ ॥

କଣ୍ଟା ପାଷାଣ ତୃଣ ଲାଗି । ନ ପୁଣ ହୋଇ ଦୁଃଖ ଭାଗୀ ॥
ଯେବେ ଲୋଚନେ ଦେଖୁତାହା । ତେବେ ସେ ସ୍ଥିର ହୋଏ ହିଆ
ବନୁ ଯେ ଆସୁ ଦିନ ଅନ୍ତେ । ବାହାର ହୋଇ ଦେଖୁଁ ପଥେ ॥
କପୋଳେ କୁଟିଳ କୁନ୍ତଳ । ହୃଦେ ଲମ୍ବଇ ବନମାଳ ॥
ଗୋରଜ ଦେଖି ତୋର ଦେହେ । ଆମ୍ଭ ଜୀବନ କାମ ଦହେ ॥
ତୋର ଅଭୟ ପଦ୍ମପାଦ । ଶରଣଜନଙ୍କ ସମ୍ପଦ ॥
କମଳା ଦଣ୍ଡେ ନ ଛାଡ଼ଇ । ଆପଦ କାଳେ ଯାହା ଧାୟି ॥
ଅନେକ ସୁଖ ପ୍ରସରଇ । ରଖ ଆମ୍ଭଙ୍କୁ ହସ୍ତ ଦେଇ ॥
ତୋର ଅଧରୁ ସୁଧାରସ । ଦେଇ ଆମ୍ଭର ମନ ତୋଷ ॥
ସୁରତି ପଣେ ବଳିଆର । ଶୋକ ନାଶନ ପ୍ରାଣୀଙ୍କର ॥
ସୁସ୍ୱରେ ବେଣୁନାଦ ସ୍ଫୁରେ । ଜନ୍ମ ମରଣ ତାପ ହରେ ॥
ଗୋରୁ ଚରାଇ ଯାଉ ବନେ । ତୋ ମୁଖ ନ ଦେଖି ନୟନେ ॥
ନିମିଷ ଯୁଗ ପ୍ରାୟେ ମଣୁ । ଗୁରୁ ଗଉରବ ନ ଜାଣୁ ॥
ତୁ ଯେତେବେଳେ ଗୋପେ ପଶୁ । ପଥେ ମୁରଲୀ ନାଦ ଘୋଷୁ ॥
କୁଟିଳ କୁନ୍ତଳ ବଦନ । ଦେଖି ନ ଚଳଇ ନୟନ ॥
ପତି ତନୟ ବନ୍ଧୁ ଭାଇ । ଆମ୍ଭେ ଲଘିଲୁ ତୋର ପାଇଁ ॥
ସୁସ୍ୱରେ ବାଉ ବେଣୁଗୀତ । ଆମ୍ଭେ ହୋଇଲୁ ମୂରୁଛିତ ॥
ରାତ୍ରେ ଆଣିଲୁ ଘୋର ବନେ । ଆମ୍ଭନ୍ତ ତେଜିଲୁ କେସନେ ॥
ଯେଡ଼େ ନିର୍ଦ୍ଦୟା ତୋର ଚିତ୍ତ । ବିଶ୍ୱାସି ନାଶିଲୁ ଆମ୍ଭନ୍ତ ॥
ଶୁଣି ତୋ ଯେକାନ୍ତ ବଚନ । ହୃଦୟ ଦହଇ ମଦନ ॥
ଅଳପ ହାସ୍ୟ ମୁଖ ଦେଖି । ପିଛାଡ଼ି ନ ପାରୁ ଯେ ଆଖି ॥
ତୋହୋର ଶ୍ରୀମୁଖ ଅନାଇଁ । ଆମ୍ଭର ମନ ନ ରହଇ ॥
ଆମ୍ଭ ଆରତ ଖଣ୍ଡି ବାରେ । ତୋହୋର ଜନ୍ମ ଗୋପପୁରେ ॥
ସୁଫଳ କରଇ ସଂସାର । ହେଲେ ଗଞ୍ଜଇ ତମ ଘୋର ॥
ତୋ ପାଦୁଁ ଅନ୍ୟ ଗତି ନାହିଁ । ନିରାଶ ନକର ଗୋସାଇଁ ॥
ଯେବଣ ପାଦ ଆମ୍ଭେ ଧରି । ସ୍ତନରେ ଚାପୁ ଗୋପନାରୀ ॥
କର୍କଶ ସ୍ତନ ଯେ ଆମ୍ଭରି । ପ୍ରାସ କରଇ ବୋଲି ଡରି ॥
ସେ ପାଦ ଘେନି ତୃଣଙ୍କୁରେ । ଯେବେ ଚାଲିଲୁ କୁଞ୍ଜ ଘୋରେ ॥
ନ ପୁଣ କ୍ଷତ ହୋଏ ପାଦ । ମନରେ ପାଉଛୁଁ ବିଷାଦ ॥
ତୋହରେ ଦାସ ଜଗନ୍ନାଥ । ସେ ପାଦେ ରଖ ଗୋପୀନାଥ ॥
ବୁଡ଼ିଲି ଘୋର ଭବ ଜଳେ । ଉଦ୍ଧରି ଥୁଅ ନେଇ କୂଳେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ*
*ଗୋପୀ ଗୀତଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟଃ ।*

## ତ୍ରୟତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାମୁନି । ଶୁଣ ରାଜନ ଚୂଡ଼ାମଣି ॥
ଯେମନ୍ତେ ବନେ ଗୋପନାରୀ । କାନ୍ଦନ୍ତି କୃଷ୍ଣନାମ ଧରି ॥
ଜୀବନ କୃଷ୍ଣ ପାଦେ ଦେଇ । ଦିଶ ଆକାଶ ନ ଦିଶଇ ॥
ଶରଣ ରକ୍ଷଣ ଗୋପାଳ । ଦେଖନ୍ତି ଗୋପୀଙ୍କ ବିକଳ ॥
ଭାବକୁ ନିକଟ ମୁରାରି । ଗର୍ବ ଯେ କଲେ ଗୋପନାରୀ ॥
ବନେ ଅନେକ ଦୁଃଖ ଦେଇ । ତୋଷ ହୋଇଲେ ଭାବଗ୍ରାହୀ ॥
ଯେସନେ ଚଞ୍ଚଳ ବିଜୁଳି । ଗୋପୀଙ୍କ ମଧ୍ୟେ ଆସି ମିଳି ॥
ନୀଳ ଶରୀର ପୀତବାସ । ମୁଖ ପଙ୍କଜେ ମନ୍ଦ ହାସ ॥
କଣ୍ଠେ ଲମ୍ବଇ ବନମାଳ । ସୁନ୍ଦର ମଦନ ଗୋପାଳ ॥
ଭୁଜ ବିସ୍ତାରି ନରହରି । ଡାକନ୍ତି ଆସ ଗୋପନାରୀ ॥
ଗୋପୀ ଚାହିଁଲେ ତାହା ଶୁଣି । ମଧ୍ୟେ ବିଜୟେ ଚକ୍ରପାଣି ॥
ଜୀବନ ପାଇଲେ ସକଳେ । ଗୋପୀ ଉଠିଲେ ଯେକା ବେଳେ ॥
ପତଙ୍ଗେ ଅନଳ ଅନାଇଁ । ଯେହ୍ନେ ପଡ଼ନ୍ତି ବେଗେ ହୋଇ ॥
ବହନ ବେଢ଼ିଲେ ମୁରାରି । ଧନ୍ୟ ଜୀବନ ବ୍ରଜନାରୀ ॥
ଅଙ୍ଗୁଳି ଛନ୍ଦନ୍ତି କେ କରେ । ଚରଣ ଭିଡ଼ିଲେ ନିର୍ଭରେ ॥
ପଣନ୍ତେ ବାନ୍ଧି ବନମାଳୀ । ଆନନ୍ଦେ ଦିଲେ ହୁଳହୁଳି ॥
କେ କୁଚଭରେ ଆଲିଙ୍ଗନ । କେ ମୁଖେ ଦିଅନ୍ତି ଚୁମ୍ବନ ॥
କେ ଗୋପୀ ଅଧରେ ଅଧର । ତାମ୍ବୁଳ କରନ୍ତି ଆହାର ॥
କେ ବେନି ହସ୍ତେ ପାଦ ତୋଳି । ସ୍ତନେ ଚାପଇ ଗୋପବାଳୀ ॥
କୋ ଗୋପୀ ହୃଦେ କର ଯାକି । କଟାକ୍ଷ କରି ଚାହେଁ ଆଖି ॥
କେ ଦୂରୁ ଚାହେଁ କୋପକରି । ସୁରଙ୍ଗ ଅଧର କାମୋଡ଼ି ॥
କେ ଯାଇ ନ ପାରେ ଗହଳେ । ଧୀରେ ଚାହାଁଇ ବେନି ତୋଳେ
ଚକ୍ଷୁ ବୁଜିଲା ରସ ଭରେ । ଗୋବିନ୍ଦ ଦେଖିଲା ଭିତରେ ॥
ଅଣ୍ଟାଳି କଲା ଆଲିଙ୍ଗନ । ତାପ ଛାଡ଼ିଲା ଖେଦମନ ॥
କେ ରୂପ ଦେଖି ଚକ୍ଷୁ ବୁଜି । ପୁଲକ କଲା ରୋମରାଜି ॥
ଆନନ୍ଦ ମନେ ଧ୍ୟାନ କଲା । ଯୋଗୀଙ୍କ ପ୍ରାୟେ ସେ ରହିଲା ॥
କୃଷ୍ଣର ଦର୍ଶନେ ଆନନ୍ଦ । ଛାଡ଼ିଲେ ଚିନ୍ତା ମନ ଖେଦ ॥
ବ୍ରହ୍ମ ସମାଧି ଯେହ୍ନେ ଜନେ । ନିଶ୍ଚଳ ହୋନ୍ତି ଯୋଗ ଧ୍ୟାନେ ॥
ତକ୍ଷଣେ ଉଠିଲେ ମୁରାରି । ଆବୋରିଛନ୍ତି ବ୍ରଜନାରୀ ॥
ବ୍ରହ୍ମା ଯେସନେ ଗୁଣବନ୍ତ । ଅଧିକ ରୂପ ଗୋପୀନାଥ ॥
ଗୋପୀଙ୍କି ଘେନି ବନମାଳୀ । ଯମୁନା ବାଲିକୁଦେ ମିଳି ॥
କୁନ୍ଦ ମନ୍ଦାର ଫୁଲ ଗନ୍ଧ । ବିକାଶି ଭ୍ରମର ସମ୍ପଦ ॥

ଶରଦ ଚନ୍ଦ୍ର ଯେହ୍ନେ ଝଳି । ନିର୍ମଳ ବିରାଜଇ ବାଲି ॥
କୃଷ୍ଣର ପାଇ ଅଙ୍ଗସଙ୍ଗ । ତାପ ଛାଡ଼ିଲେ ଗୋପୀବୃନ୍ଦ ॥
ବ୍ରହ୍ମ ବିଚାରି ଜ୍ଞାନ ପାଇ । ଯେହ୍ନେ ପଣ୍ଡିତେ ତୋଷ ହୋଇ॥
ପାଲଟି ପିନ୍ଧିଲେ ବସନ । କୃଷ୍ଣ ବସାଇଲେ ଆସନ ॥
ଯାହାକୁ ହୃଦେ ଯୋଗୀ ଜନେ । ବସାନ୍ତି କଳ୍ପିତ ଆସନେ ॥
ଗୋପୀଙ୍କ ଭାବ ହୃଦେ ଧରି । ମଧ୍ୟେ ବିଜୟେ ନରହରି ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । ରୂପେ କି ଦେବା ପଟାନ୍ତର ॥
କୃଷ୍ଣ ବସାଇ ଗୋପୀଜନେ । ଚାହାନ୍ତି କଟାକ୍ଷ ନୟନେ ॥
ହରିର ବେନିଭୁଜ ଧରି । କୋପେ ବୋଲନ୍ତି ବ୍ରଜନାରୀ ॥
ବୋଲନ୍ତି ଶୁଣ ପ୍ରାଣନାଥ । ଆମ୍ଭେ ଦେଖିଲୁଁ ବିପରୀତ ॥
ଯାହାକୁ ଭାବେ ଯେ ଭଜଇ । ସେ କିମ୍ବା ତାହାକୁ ଛାଡ଼ଇ ॥
ଭୋ ନାଥ ତୋହୋର ପରାୟେ । ଭାବେ ନ ଭଜନ୍ତି ଥୋକାୟେ
ସେ ବେନିକୂଳ ନ ରଖନ୍ତି । ଭୋ ନାଥ ଫେଡ଼ ମନ ଭ୍ରାନ୍ତି ॥
ଶୁଣି ବୋଲନ୍ତି କୃଷ୍ଣ ହସି । ବରଜ ଯୁବତୀ ଆଶ୍ୱାସି ॥
ଶୁଣ ସକଳ ଗୋପନାରୀ । ଯେ ଯାହା ଭାବେ ପ୍ରୀତିକରି ॥
ଯେକ ଆରକେ ଉପକାରେ । ଭଜନ୍ତି ସଂସାର ବେଭାରେ ॥
ତହିଁ ସୁହୃଦ ପଣ ନାହିଁ । ଭାବ ନ ଦେଖିଲେ ଛାଡ଼ଇ ॥
ଭାବ ନ ଦେଖି ଯେ ଭଜଇ । ତାତ ଜନନୀ ପ୍ରାୟେ ହୋଇ ॥
ତାହାକୁ ବୋଲି ବଡ଼ ଜଣ । ସେ ପାଇ ବିଷ୍ଣୁର ଚରଣ ॥
ଥୋକେ ଭଗତ ନ ଭଜନ୍ତି । ଆତ୍ମା ବଡ଼ିମା ପ୍ରକାଶନ୍ତି ॥
ସେ ଗୁରୁଦ୍ରୋହ ପାପ ପାଇ । ଉଭୟ ଲୋକେ ସୁଖ ନାହିଁ ॥
ଶୁଣ ଗୁଆଳୀ ସାବଧାନେ । ମୋତେ ଭଜନ୍ତି ଯେତେ ଜନେ॥
ତାହାକୁ ଭଜୁଥାଇ ମୁହିଁ । ମୁହିଁ ସେ ଭଗତି ଜାଣଇଁ ॥
ମୋତେ ଭଗତି ଯେ କରନ୍ତି । ନିଷ୍କଳ ହୋଇ ତାଙ୍କ ମତି ॥
ଦରିଦ୍ର ଯେହ୍ନେ ଧନ ପାଇ । ପ୍ରାଣୁ ଅଧିକ ସମ୍ଭାଳଇ ॥
ପୁଣି ହରାଇ ସେହୁ ଧନ । ବିଷାଦ ହୋଇ ତାର ମନ ॥
ଭାଳଇ ଧନେ ମନ ଦେଇ । କ୍ଷୁଧା ତୃଷାହିଁ ନ ଲାଗଇ ॥
ତେମନ୍ତ ହୋଇ ମୋରେ ଲୋକେ । ଭଗତି କରୁଥାନ୍ତି ଥୋକେ ॥
ତୁମ୍ଭେ ତେମନ୍ତ ପ୍ରାୟେ ହୋଇ । ମୋହୋର ପାଦେ ଚିତ୍ତ ଦେଇ
ଲୋକ ବେଭାର ବେଦମତ । ଛାଡ଼ି ଭଜିଲ ଅବିରତ ॥
ପଛେ ମୁ ଥାଇ ତୁମ୍ଭ ତୁଳେ । ଭଗତି ଜାଣିଲଇଁ ଭଲେ ॥
ମୋତେ ନ କର ତୁମ୍ଭେ ରୋଷ । ମୁଁ ତୁମ୍ଭ ପୂରୋଇବି ଆଶ ॥
ତୁମ୍ଭର ଭାବ ମୁ ଜାଣଇ । ଛନ୍ଦ କୁଟିଳ ମାୟା ନାହିଁ ॥
ଅନେକ କାଳେ ହେଁ ତୁମ୍ଭର । ଶୁଝି ନ ପାରି ଉପକାର ॥
ମୋହର ମାୟାର ଶାଙ୍କୁଳି । ଭାବେ କାଟିଲ ଗୋପବାଳୀ ॥
ତୁମ୍ଭର ଜନ୍ମବନ୍ଧ ନାହିଁ । ମୋତେ କିଣିଲ ଭାବଦେଇ ॥
ମୋର ଭଗତି ଯେ ଲୋଡ଼ନ୍ତି । ସେ ମୋର ପଥ ଆବୋରନ୍ତି ॥
ମୁହିଁ ଠାକୁର ତାହାଙ୍କର । ସୁଜନ ଜନଙ୍କ ବେଭାର ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ସେବକର ମୁ ଭୃତ୍ୟ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ*
*ଶ୍ରୀକୃଷ୍ଣ ବିଜୟେ ନାମ ତ୍ରୟତ୍ରିଂଶୋଽଧ୍ୟାୟଃ ।*

## ଚତୁଃତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ ତନୁଜ । ଶୁଣ ପରୀକ୍ଷ ମହାରାଜ ॥
ଗୋପୀୟେ କୃଷ୍ଣ ବୋଲ ଶୁଣି । ଚିନ୍ତା ଛାଡ଼ିଲେ ମନେ ଗୁଣି ॥
ସେ ବାଲିକୁଦେ ହୃଷୀକେଶ । ଆରମ୍ଭ କଲେ କେଳି ରସ ॥
ଯେକର କର ଆରେ ଧରି । ରାସ ଉଛବେ ବ୍ରଜନାରୀ ॥
ଅନନ୍ତ ମାୟାଯୋଗ କରି । ଷୋଳ ସହସ୍ର ରୂପ ଧରି ॥
ଗୋପୀକେ ଗୋବିନ୍ଦ ଗୋଟିୟେ । ଦେଖନ୍ତି ସ୍ୱର୍ଗେ ଦେବତାୟେ
କେ କଣ୍ଠତଟେ ଭିଡ଼ି ରୋଷେ । ଚୁମ୍ବନ ଦିଅନ୍ତି ହରଷେ ॥
କୃଷ୍ଣର ଦେଖି କ୍ରୀଡ଼ାରସ । ତ୍ରିଦଶେ ହୋଇଲେ ହରଷ ॥
ଗନ୍ଧର୍ବ ଯକ୍ଷ ଅପକ୍ଷରୀ । ବିମାନେ ଗଗନେ ସଞ୍ଚରି ॥
ଦେଖନ୍ତି ଗୋବିନ୍ଦର କେଳି । ସପତ ସ୍ୱର୍ଗଲୋକ ମିଳି ॥
ଦୁନ୍ଦୁଭି ନାଦ ଗୀତ ସ୍ୱରେ । କୁସୁମ ବରଷନ୍ତି ଧୀରେ ॥
ଗନ୍ଧର୍ବେ ଅପକ୍ଷରା ମେଳେ । ନୃତ୍ୟ କରନ୍ତି ରସ ଭୋଳେ ॥
ହରି ବିନୋଦେ ବ୍ରଜନାରୀ । ଆନନ୍ଦେ ବୃନ୍ଦାବନେ ପୂରି ॥
ବଳୟ ନୂପୁର ଶବଦେ । କିଙ୍କିଣୀ ତାଳ ଗୀତ ନାଦେ ॥
କେହି ନ ଶୁଣନ୍ତି ଚହଲେ । କୃଷ୍ଣର ମାୟା ଯୋଗ ବଳେ ॥
ନୀଳ ପର୍ବତ ମଧ୍ୟେ ହରି । ଯେସନେ ସୁବର୍ଣ୍ଣ ପାଚେରି ॥
ଗୋପୀଙ୍କ ମଧ୍ୟେ ଶିରୀରଙ୍ଗ । ସୁନ୍ଦର କୋଟିୟେ ଅନଙ୍ଗ ॥
ନୃତ୍ୟ କରନ୍ତି ଗୋପ ନାରୀ । ଗୀତେ ମୋହିଲେ ନରହରି ॥
ପାଦ ବିନ୍ୟାସି ରଙ୍ଗଭଙ୍ଗେ । ଭ୍ରୂକୁଟି କୁଟିଳ ଅନଙ୍ଗେ ॥
କୁଚ ମଣ୍ଡଳୁଁ ବସ୍ତ୍ର ଚଳି । ନାଚନ୍ତି ଦେଇ କରତାଳି ॥
ମୁଖେ ଶୋହଇ ଶ୍ରମ ଝାଳ । କବରୀ ଖସି ଫୁଲମାଳ ॥
ବସ୍ତ୍ର ପଡ଼ଇ ଫିଟି ତଳେ । କଟୀ ମେଖଳା ଅସମ୍ଭାଳେ ॥
ବିଜୁଳି ଯେହ୍ନେ ନୀଳ ମେଘେ । ଦିଶନ୍ତି ଗୋବିନ୍ଦର ଲାଗେ ॥

ଯେକ ଗୋପୀଯେ ନୃତ୍ୟ ରସେ । ଆଳାପ କଲା ଗୀତ ତୋଷେ ॥
କୃଷ୍ଣର ଅତି ପ୍ରିୟମାନ । ଶବଦ ଆବୋରିଲା ବନ ॥
ଯେକ ଗୋପୀଯେ କୃଷ୍ଣ ସଙ୍ଗେ । ଆଳାପ କଲା ଗୀତ ରଙ୍ଗେ ॥
ଷଡ଼ଜ ଆଦି ପଞ୍ଚସ୍ୱର । ମୋହିଲା କମଳାର ବର ॥
ସେ ନାଦ ଘେନି ଆର ଗୋପୀ । ଆଳାପ କଲାକ ନିରୋପି ॥
ଧ୍ରୁବ ଶବଦେ ବିଶ୍ରାମିଲା । ଶୁଣି ହସନ୍ତି ନନ୍ଦବଳା ॥
କେ ପରିଗ୍ରହ ପାଶେ ଥାଇ । ଭୁଜେ ଆଲିଙ୍ଗନ କରଇ ॥
କୃଷ୍ଣର କନ୍ଧେ ଦେଇ ହସ୍ତ । ଶ୍ଳଥ ହୋଇଲା ଝିନ ବସ୍ତ୍ର ॥
କବରୀ ଫିଟି ଫୁଲମାଳେ । ଅବନୀ ପଡ଼ିଲେ ଗହଳେ ॥
କୃଷ୍ଣର ଭୁଜ ଧରି ଗୋପୀ । ଆଘ୍ରାଣ କଲା ଶ୍ୱାସ କ୍ଷେପି ॥
ଚନ୍ଦନେ ସାମଳିଲା ହୋଇ । ଉତ୍ପଳ ପ୍ରାୟେକ ବାସଇ ॥
ଆଘ୍ରାଣ କରି ନାସା ଦ୍ୱାରେ । ରୋମାଞ୍ଚ ହୋଇଲା ଶରୀରେ ॥
କେ ଗୋପୀ ନାଟ ଶ୍ରମ ପାଇ । ଗୋବିନ୍ଦ କର୍ଣ୍ଣମୂଳେ ଯାଇ ॥
କୁଣ୍ଡଳ ତଟେ ମୁଖ ଦିଲା । ଚୁମ୍ବନେ ତାମ୍ବୁଳ ପାଇଲା ॥
କେ ଭୁଜ ଧରି କୁଚେ ଚାପି । କେ ମୁଖ ଚାହାନ୍ତି ନିରୋପି ॥
କଟୀ ମେଖଳା କ୍ଷୁଦ୍ର ଘଣ୍ଟି । ଶବଦ କରି ନୃତ୍ୟେ ଫୁଟି ॥
ଗୋବିନ୍ଦ କର ଦେଇ ଶିରେ । ଶ୍ରମ ଛାଡ଼ିଲା ସୁଖ ଭରେ ॥
କୃଷ୍ଣଙ୍କୁ କାନ୍ତ ପଣେ ପାଇ । ଗୋପୀ ରମିଲେ ତୋଷ ହୋଇ ॥
ହରିର କଣ୍ଠେ ଭୁଜ ଦେଇ । ତୋଷେ ରମିଲେ ଗୀତ ଗାଇ ॥
ନୀଳ ଉତ୍ପଳ ଗୋପୀ କର୍ଣ୍ଣେ । ଅଳକା କପୋଳର ଶ୍ରମେ ॥
ବଳୟ ନୂପୁର ଶବଦେ । ଗୋବିନ୍ଦ ନାଚନ୍ତି ଆନନ୍ଦେ ॥
ଭ୍ରମର ରଙ୍ଗେ, ନୃତ୍ୟ କରି । ରାସ ଉଛବେ ବ୍ରଜନାରୀ ॥
କବରୀ ଫିଟି ଫୁଲମାଳ । କଟୀ ମେଖଳା ଅସମ୍ଭାଳ ॥
ଯେମନ୍ତେ ନାନାରସ ବନ୍ଧେ । ଗୋବିନ୍ଦ ରମିଲେ ଆନନ୍ଦେ ॥
କୁବେର ଯେହ୍ନେ ଗିରି ଶିଖେ । କିନ୍ନରୀ ରମେ ଆତ୍ମସୁଖେ ॥
କୃଷ୍ଣର ଅଙ୍ଗ ସଙ୍ଗ ଲାଗି । ଗୋପୀ ହୋଇଲେ ଶ୍ରମ ଭାଗୀ ॥
କେଶ ବସନ ସ୍ତନ ବାସ । ପୁଷ୍ପ ଆଭରଣ ବିଶେଷ ॥
କୃଷ୍ଣର କ୍ରୀଡ଼ାରସ ଦେଖି । ତ୍ରିଦଶ ବଧୂଜନେ ସୁଖୀ ॥
ନକ୍ଷତ୍ରଗଣ ଚନ୍ଦ୍ର ସଙ୍ଗେ । ସକଳେ ପଡ଼ିଲେ ଅନଙ୍ଗେ ॥
ଗୋପୀକେ କୃଷ୍ଣରୂପ ହୋଇ । ଲୀଳା ବିନୋଦେ ଭାବଗ୍ରାହୀ ॥
ଯାହାର ନାହିଁ ରୂପରେଖ । ଗୋପୀଙ୍କି ଦିଲେ ଆତ୍ମ ସୁଖ ॥
ଗୋପୀଙ୍କ ମୁଖଶ୍ରମ ଚାହିଁ । ପୋଛନ୍ତି କରେ ଭାବଗ୍ରାହୀ ॥
ଯେଣ୍ଟାରେ ଅଳଙ୍କାର ଭରି । ଗୋପୀ ଚାହାନ୍ତି ନରହରି ॥
କୃଷ୍ଣର ଗୁଣ କର୍ମ ମୁଖେ । କହନ୍ତି ଯେକକୁ ଆରକେ ॥

ବ୍ରଜ କାମିନୀ ଘେନି ସଙ୍ଗେ । ସ୍ତନ କୁଙ୍କୁମ ପଙ୍କ ଅଙ୍ଗେ ॥
ପଶିଲେ କାଳିନ୍ଦୀ ଭିତରେ । ଗନ୍ଧର୍ବେ ଗାବନ୍ତି ସୁସ୍ୱରେ ॥
କରିଣୀ ଯୂଥେ ଗଜ ଯେହ୍ନେ । ଗୋପୀଙ୍କ ଶ୍ରମ ଜାଣି ମନେ ॥
ଗୋବିନ୍ଦ ଦେହେ ଗୋପ ନାରୀ । ଜଳ ସିଞ୍ଚନ୍ତି କରେ ଧରି ॥
କଟାକ୍ଷେ ଚାହାନ୍ତି ଶ୍ରମୁଖ । ଖଣ୍ଡିଲେ ଜନ୍ମ-ବନ୍ଧ ଦୁଃଖ ॥
ବିମାନେ ଥାଇ ଦେବ ନାରୀ । ପୁଷ୍ପ ବରଷି ସ୍ତୁତି କରି ॥
ଗଜେନ୍ଦ୍ର ପ୍ରାୟେ ରଙ୍ଗମେଳେ । ଲୀଳା ବିନୋଦ ନଦୀଜଳେ ॥
ଚନ୍ଦ୍ରକିରଣ ବନଭୂମି । ସୁନ୍ଦର ପ୍ରକାଶେ ଯାମିନୀ ॥
ଗୋପ ଅବଳାଗଣ ସଙ୍ଗେ । ହରି ରମିଲେ ଆତ୍ମାରଙ୍ଗେ ॥
ଯାହାର ନାହିଁ ରସ ଚ୍ୟୁତ । ଅଚ୍ୟୁତ ନାମ ଆଦିଅନ୍ତ ॥
ଶୁଣି ଅଭିମନ୍ୟୁ ନନ୍ଦନ । ଚାହିଁଲା ଶୁକଙ୍କ ବଦନ ॥
ସଭୟେ କହଇ ମଧୁର । ଚରଣେ ଦେଇ ବେନି କର ॥
ଭୋ ମୁନି ଅସମ୍ଭବ ବାଣୀ । ସଂଶୟ ଲାଗିଲା ତ ଶୁଣି ॥
ମନୁଷ୍ୟ ଅଂଶେ ଜାତ ହୋଇ । ଅଶେଷ ବ୍ରହ୍ମାଣ୍ଡ ଗୋସାଇଁ ॥
ଅଧର୍ମ ନାଶିବାର ଆଶେ । ଜନ୍ମ ହୋଇଲେ ଯଦୁ ବଂଶେ ॥
ଧର୍ମ ପାଳକ ନରହରି । ସେ କିମ୍ପା ଅଧର୍ମ ଆଚରି ॥
ଜଗତଜନ ଗୁରୁ ପିତା । ନିତ୍ୟ ଅନିତ୍ୟ ଇଷ୍ଟଦାତା ॥
ଯା ନାମ ମୁକତି ପସରା । ସେ କିମ୍ପା କଲେ ପର ପରା ॥
ନିଜ ମହିମା ଆତ୍ମାରତ । ସେ କିମ୍ପା କଲେ ବିପରୀତ ॥
କି ଅଭିପ୍ରାୟେ ନ ଜାଣଇଁ । ସଂଶୟ ଛେଦ ମୋ ଗୋସାଇଁ ॥
ରାଜା ବଚନ ଶୁଣି ମୁନି । କହନ୍ତି କୃଷ୍ଣଭାବ ଘେନି ॥
ଶୁଣ ରାଜନ ଭାଗବତ । ଯେ ବଡ଼ ଲୋକଙ୍କର ମତ ॥
ଯେହାଙ୍କ କର୍ମ ବିପରୀତ । ଯେଣୁ ଯେ ତେଜେ ବଳବନ୍ତ ॥
ତେଣୁଟି ଦୋଷଗୁଣ ନାହିଁ । ଅଗ୍ନି ଯେସନେ ସର୍ବ ଖାଇ ॥
ଯେହାଙ୍କ ମତ ଯେ ଆଚରି । ମନ ବଚନ ଦେହ ଧରି ॥
ଯେବେ କରିବେ ମୂଢ଼ ପଣେ । ନାଶ ହୋଇବେ ତତକ୍ଷଣେ ॥
ଜଳଧି ମନ୍ଥନର ବିଷ । ରୁଦ୍ର ହୁଁ ଆନେ ନୋହେ ଗ୍ରାସ ॥
ଯେହାଙ୍କ ବଚନ ହିଁ ସତ୍ୟ । ଅନ୍ୟ ନ କରନ୍ତି ଯେମନ୍ତ ॥
ଯେ ବୁଦ୍ଧିବନ୍ତ ସାଧୁ ନର । ସେ ନ କରିବେ ଯେ ବେଭାର ॥
ଈଶ୍ୱର ଆଦିଙ୍କର ମତ । ଅଳପ ଜନେ ବିପରୀତ ॥
ପଶୁ ମନୁଷ୍ୟ ଦେବଙ୍କର । ଯେମନ୍ତ ନୁହଇ ଆଚାର ॥
ଯାହାର ଦେହ ବନ୍ଧ ନାହିଁ । ଶୁଭ ଅଶୁଭ ନ ଲାଗଇ ॥
ଯାହର ପାଦପଦ୍ମ ଧୂଳି । ଆନନ୍ଦ ହୋଇ ଶିରେ ବୋଳି ॥
ନିଷ୍କଳେ ଯୋଗେ ଶ୍ରମ କରି । କର୍ମ ନାଶନ୍ତି ବ୍ରହ୍ମଚାରୀ ॥

ଯାହର ବନ୍ଧ ମୋକ୍ଷ ନାହିଁ । ଇଚ୍ଛା ସମ୍ପଦେ ଯାର ଦେହୀ ॥
ଗୋପୀ ଗୋପାଳ ଆଦି କରି । ଯେ ଜନ ଜୀବନ ଆବୋରି ॥
ଭଗତ ଜନ ତାରିବାରେ । ଯେ ଜାତ ମନୁଷ୍ୟ ଶରୀରେ ॥
ତାର ଚରିତ ମନେ ଚିନ୍ତି । ଭଗତି ପଥ ଆବୋରନ୍ତି ॥
ଗୋପେ ଗୋବିନ୍ଦ ମାୟା ମୋହି । କୋପ ନ କଲେ ଗୋପୀ ଚାହିଁ ॥
ପାଶେ ଅଛନ୍ତି ପ୍ରାୟେ ମଣି । ଗୋପାଳେ ଦେଖନ୍ତି ତରୁଣୀ ॥
ଯେମନ୍ତେ ରଜନୀ ପାହିଲା । ଅରୁଣ ତେଜ ପ୍ରକାଶିଲା ॥
କୃଷ୍ଣର ଅଙ୍ଗ ସଙ୍ଗ ପାଇ । ଗୋପୀଏ ଗଲେ ତୋଷ ହୋଇ ॥
କୃଷ୍ଣର ପାଦେ ଦେଇ ମନ । ମିଳିଲେ ଯେ ଯାହା ଭୁବନ ॥
ଗୋପୀ ଗୋବିନ୍ଦ କେଳି ବନେ । ଯେଣେ ଯେ ହେନ୍ତି ସାବଧାନେ ॥
ଭଗତି ହୃଦେ ପରିମାଣି । ଯେଣେ ଭେଟିବ ଚକ୍ରପାଣି ॥
ସକଳ ଦୁଃସହରୁ ତରେ । ସେ ନ ପଡ଼ଇ ମାୟାଘୋରେ ॥
ବୋଲଇ ଦାସ ଜଗନ୍ନାଥ । ରାସ ଉଛବ ଭାଗବତ ॥
ସୁଜନ ଜନେ ଯେହା ଚିନ୍ତି । ଯେଣେ ଛାଡ଼ିବ ମନ ଭ୍ରାନ୍ତି ॥
ଭଗତି ହୋଇବ ତୁମ୍ଭର । ଯେଣେ ତରିବ ମାୟା ଘୋର ॥
ମୋ ଛାର ହୀନ ମୂଢ଼ପଣ । ସେବଇ ତୁମ୍ଭର ଚରଣ ॥
ମୋହୋର ନ ଘେନିମା ଦୋଷ । ଯାହା କହିଲେ ପୀତବାସ ॥
କେ ତାହା କରିବଟି ଆନ । ସବୁରି ପ୍ରଭୁ ଭଗବାନ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାସକ୍ରୀଡ଼ାୟାଂ ଗୋପିକା ପୂର୍ଣ୍ଣକାମୋ ନାମ ଚତୁଃତ୍ରିଂଶୋଽଧ୍ୟାୟଃ ।*

## ପଞ୍ଚତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ପୁଣ୍ୟକର୍ମା । ଶୁଣ ହୋ କୃଷ୍ଣର ମହିମା ॥
ଦିନେକ ନନ୍ଦ ଆଦି ଗୋପେ । ତୀର୍ଥ ଉଛବ କଉତୁକେ ।
ଅମ୍ବିକା ପୂଜାର ବିଧାନେ । ଗୋପୀ ଗୋପାଳ ତୋଷ ମନେ ।
ଶକଟେ ନାନା ଦ୍ରବ୍ୟ ଭରି । ଗୋପୁ ବାହାର ନରନାରୀ ।
କାନନେ ମିଳିଲେ ସକଳେ । ନିର୍ମଳ ସରସ୍ୱତୀ କୂଳେ ।
ଗୋପାଳେ ନିତ୍ୟକର୍ମ ସାରି । ପୂଜିଲେ ଶଙ୍କର ଗଉରୀ ।
ବିବିଧ ନାନା ଉପହାର । ତୋଷିଲେ ଭବାନୀ ଶଙ୍କର ।
ଗୋରୁ କାଞ୍ଚନ ମିଷ୍ଟ ଅନ୍ନ । ଶିବ ସନ୍ତୋଷେ ଦିଲେ ଦାନ ।
ବୋଲନ୍ତି ଦେବ ତ୍ରିଲୋଚନ । ଆମ୍ଭରେ ହୋଇବା ପ୍ରସନ୍ନ ।
ଆନନ୍ଦେ ବଞ୍ଚିଲେ ଦିବସ । ନୃତ୍ୟ ଖଟଣି ଗୀତରସ ।
ବ୍ରତ ଆଚରି ଶୁଚିବନ୍ତେ । ସେ ବନେ ଶୋଇଲେ ନିଶ୍ଚିନ୍ତେ ॥
ନନ୍ଦୋପନନ୍ଦ ଆଦି କରି । ଗୋପରେ ଯେତେ ନରନାରୀ ॥
ରଜନୀ ଘୋର ଅନ୍ଧକାର । ଯଶୋଦା କୋଳେ ଦାମୋଦର ॥
ଘୋର ଗହନ ଅର୍ଦ୍ଧନିଶି । ସର୍ପେ ମିଳିଲା ବେଗେ ଆସି ॥
କେହି ନ ଦେଖିଲେ ନୟନେ । ମିଳିଲା ନନ୍ଦର ଶୟନେ ॥
ମୁଖ ବିସ୍ତାରି ମହାକାୟେ । କୋପେ ଗିଳିଲା କଣ୍ଠ ଯାଏ ॥
ସର୍ପ ଉଦରେ ଥାଇ ନନ୍ଦ । ବିକଳେ ଡାକଇ ଗୋବିନ୍ଦ ॥
ହେ କୃଷ୍ଣ ସର୍ପ ବଳିଆର । ଗିଳିଲା ମୋହୋର ଶରୀର ॥
ବହନ ଆସ ବେନିଭାଇ । ପିତା ତୁମ୍ଭର ନାଶ ଯାଇ ॥
ନନ୍ଦର ଦେଖିଣ ବିକଳ । ଗୋପାଳେ ପାଡ଼ନ୍ତି ଚହଳ ॥
ଉଠି ଧାଇଁଲେ ଧାଡିକାରେ । ପୋଡ଼ିଲା କାଷ୍ଠ ଘେନି କରେ ॥
ସର୍ପ ଉପରେ ନେଇ ପିଟି । ନନ୍ଦ ଶରୀର ଅଛି ଘୋଟି ॥
କୃଷ୍ଣ ଧାଇଁଲେ ତାହା ଶୁଣି । ନିଦ୍ରା ଉପେକ୍ଷି ଚକ୍ରପାଣି ॥
ସର୍ପକୁ ଦେଖି କୋପଭରେ । ପାଦ ପ୍ରହାରିଲେ ଉପରେ ॥
କୃଷ୍ଣର ଲାଗିଣ ପୟର । ପ୍ରାଣ ଛାଡ଼ିଲା ଅଜଗର ॥
ତକ୍ଷଣେ ନିଜ ରୂପ ହୋଇ । ତେଜେ ବିରାଜେ ବନଭୂଇଁ ॥
ଦିବ୍ୟ ପୁରୁଷ ଅବତାର । ତୁଲ୍ୟ ନୁହଇ ବିଦ୍ୟାଧର ॥
ଗଞ୍ଜିଲା ଦଶ ଦିଗ ଦେହେ । ପଡ଼ିଲା କୃଷ୍ଣ ପଦ୍ମପାୟେ ॥
ଦେଖି ତାହାର ଦିବ୍ୟ ରୂପ । ହସି ବୋଇଲେ ପଦ୍ମମୁଖ ॥
ବିବିଧ ରତ୍ନମାଳା ଦେଖ । ଶରଦଚନ୍ଦ୍ର ପ୍ରାୟେ ମୁଖ ॥
ବିବିଧ ଆଭରଣ ଦେହେ । ଶିର ଦେଇଛି କୃଷ୍ଣ ପାୟେ ॥
ବୋଲନ୍ତି ଦେବକୀ ନନ୍ଦନ । କୋମଳ ଗଭୀର ବଚନ ॥
ଯେତ ଅଟଇ ବିପରୀତ । ସର୍ପ ଉଦରୁ ତୋର ଜାତ ॥
ତୋ ରୂପ ପଟାନ୍ତର ନାହିଁ । କିପାଇଁ ଥିଲୁ ସର୍ପ ହୋଇ ॥
କହ ଯେ କେବଣ ବେଭାର । ଶୁଣି ତ ଶରଧା ମୋହୋର ॥
ସଂସାରେ ତୋର ରୂପ ଦେଖି । ଚଞ୍ଚଳ ନ କରିବେ ଆଖି ॥
ଯେ ଗତି ପାଇଲୁ କେମନ୍ତେ । ସର୍ପ ଶରୀର ବିପରୀତେ ॥
କୃଷ୍ଣ ବଚନ ଶୁଣି ଧୀରେ । କର ଅଞ୍ଜଳି ଦିଲା ଶିରେ ॥
ବେନି ଲୋଚନୁ ବହେ ନୀର । ବୋଲଇ ଶୁଣ ଦାମୋଦର ॥
ଭୋ ନାଥ ଶୁଣିମା ଅନନ୍ତ । ଇନ୍ଦ୍ର ଦେବତାର ମୁ ସୁତ ॥
ଅତି ସୁନ୍ଦର ରୂପ ଦେଖି । ପିତା ମୋ ନାମ ଉପଲକ୍ଷି ॥
ରୂପେ ମୋହିଲି ଦେବପୁର । ସୁଦରଶନ ନାମ ମୋର ॥
ଶୁଣିମା ପ୍ରଭୁ ଦାଶରଥି । ଗର୍ବେ ହୋଇଲି ମୂଢ଼ମତି ॥
ଦିନେକ ବସି ମୁହିଁ ରଥେ । ବିଜୟେ କଲି ସ୍ୱର୍ଗ ପଥେ ॥

ଅଙ୍ଗିରା ଋଷିଙ୍କର ବାଳେ । ଖେଳନ୍ତି କଚ୍ଛ ବୃକ୍ଷ ତଳେ ॥
ଦଇବେ ଋଷିଙ୍କ କୁମର । ତପ ସାଧନେ ଅସୁନ୍ଦର ॥
ତାହାଙ୍କୁ ବୋଇଲି ଧିକାରି । ଯେ ଦେହ କିମ୍ପା ଅଛ ଧରି ॥
ଦେଖ ମୋହୋର ଦିବ୍ୟ ରୂପ । ଶ୍ରମେ ଯେ ସାଧୁ ଅଛ ତପ ॥
ଶୁଣି ଚାହିଁଲେ କୋପ ହୋଇ । ବୋଇଲେ ସର୍ପ ହୁଅ ତୁହି ॥
କୁତ୍ସିତ ଅଜଗର ରୂପୀ । ବନ ଗହନେ ହୁଅ ଦୁଃଖୀ ॥
ଗରବ ବହିଲୁ ଯେ ମନେ । ସର୍ପ ତୁ ହୁଅ ବୃନ୍ଦାବନେ ॥
ଶୁଣି ଯୋଡ଼ିଲେ ବେନିକର । ଭୟେ କମ୍ପଇ ମୋ ଶରୀର ॥
ପଡ଼ିଲି ତାଙ୍କ ପାଦତଳେ । କାନ୍ଦିଣ ଜୀବନ ବିକଳେ ॥
ମୋର ବିକଳ ଦେଖି ମନେ । ଦୟା ବସିଲା ମୁନି ଜନେ ॥
ବୋଇଲେ ଯାଅ ମର୍ତ୍ତପୁର । ଜାତରେ ହୁଅ ଅଜଗର ॥
ମଥୁରା ବୃନ୍ଦାବନ ଲାଗେ । ଗୋବର୍ଦ୍ଧନର ପୂର୍ବ ଭାଗେ ॥
ଶାରଦା ନଦୀର ଉତ୍ତରେ । ଥାଅ ତୁ କୁଞ୍ଜବନ ଘୋରେ ॥
ଭାରା ନିବାରଣେ ମୁରାରି । ମନୁଷ୍ୟ ଦେହେ ଅବତରି ॥
ଗୋପାଳ ମେଳେ ଯାତ୍ରା ଛଳେ । ଭେଟିବୁ ସରସ୍ୱତୀ କୂଳେ ॥
ନନ୍ଦକୁ ଗିଳିବୁ ତୁ ଯାଇ । ଦେଖି ଧାଇଁବେ ଭାବଗ୍ରାହୀ ॥
ତୋର ଉପରେ ଶିରୀଧର । କୋପେ ପ୍ରହାରିବେ ପୟର ॥
ତେବେ ହୋଇବୁ ଶାପୁଁ ପାର । ପୁଣି ପାଇବୁ ନିଜ ପୁର ॥
ତେଣୁ ହୋଇଲି ଅଜଗର । ତୁ ହରି ମୋତେ କଲୁ ପାର ॥
ତୁ ଯେ ଜଗତ ଜନ ବନ୍ଧୁ । ମୋତେ ଉଦ୍ଧର ଦୟାସିନ୍ଧୁ ॥
ତୋହୋର ଲାଗିଣ ପୟର । ହୋଇଲି ବ୍ରହ୍ମ ଶାପୁଁ ପାର ॥
ଭୋ ନାଥ ଶରଣ ତୋହୋର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ଯେବେ ମୁ ହୋଇଲି ମୁକତ । ମେଲାଣି ଦିଅ ଗୋପୀନାଥ ॥
ତୋହୋର ନାମ କର୍ଣ୍ଣେ ଶୁଣି । ତରନ୍ତି ଭବଜଳୁ ପୁଣି ॥
ଜନ ଜୀବନ ଆଦିକରି । ପବିତ୍ର ହୋନ୍ତି ନରନାରୀ ॥
ତୋହୋର ପାଦଲାଗି ମୁହିଁ । ନିସ୍ତାର ହୋଇଲି ଗୋସାଇଁ ॥
ସୁଦରଶନ ଯେତେ କହି । ପୟରେ ଦିଲା ଶିର ନେଇ ॥
କୃଷ୍ଣଙ୍କୁ ପ୍ରଦକ୍ଷିଣ କଲା । ତକ୍ଷଣେ ଗଗନେ ପଶିଲା ॥
ନନ୍ଦକୁ ରଖିଲେ ଗୋବିନ୍ଦ । ଗୋପାଳେ ଦେଖିଣ ଆନନ୍ଦ ॥
କୃଷ୍ଣ ମହିମା ଗୁଣ ଦେଖି । ଭୟ ଛାଡ଼ିଲେ ଗୋପ ଗୋପୀ ॥
ସୁଖେ ପାହିଲା ଘୋର ନିଶି । ରବି କିରଣ ପରକାଶି ॥
ଦେବ ନିୟମ ପୂଜା ସାରି । ଗୋପେ ଚଳିଲେ ନରନାରୀ ॥
ଗୋପାଳେ ସକଳ ସମ୍ଭାର । ଘେନି ଚଳିଲେ ନରନାରୀ ॥
ଯାନ୍ତେ କହନ୍ତି କୃଷ୍ଣ କଥା । ଛାଡ଼ିଲେ ମନ ଦୁଃଖ ଚିନ୍ତା ॥
ଇନ୍ଦ୍ର କୁମର କୃଷ୍ଣ ତାରି । ଗୋପେ ବିଜୟେ ନରହରି ॥
କହଇ ଦାସ ଜଗନ୍ନାଥ । ହରି ଚରିତ ଭାଗବତ ॥
ପରୀକ୍ଷେ ଶୁକମୁନି କହେ । ସୁଜନେ କର ଯେଣେ ଜୟେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବିଜୟେ ସୁଦରଶନ ମୋକ୍ଷଣଂ ନାମ ପଞ୍ଚତ୍ରିଂଶୋଽଧ୍ୟାୟଃ ।*

## ଷଟତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକଉବାଚ

ଯେବେ ହୋ ଶୁଣ ନରନାଥ । ହରି ଚରିତ ଭାଗବତ ॥
ଦିନେକ ପ୍ରଭୁ ନରହରି । ସଙ୍ଗେ ଘେନିଲେ ଗୋପ ନାରୀ ॥
ବଳଦେବଙ୍କୁ ଘେନି ସଙ୍ଗେ । ମିଳିଲେ ବୃନ୍ଦାବନ ଲାଗେ ॥
ଶୀତଳ ବସନ୍ତର ବାୟେ । ବନେ ବିଜୟେ ଦେବରାୟେ ॥
ଶଶାଙ୍କ କିରଣେ ରଜନୀ । ସୁନ୍ଦର ଦିଶେ ବନଭୂମି ॥
ରାମ ଗୋବିନ୍ଦ ଗୋପନାରୀ । ବିବିଧ ମତେ ବନଚାରୀ ॥
ମଧ୍ୟେ ବିଜୟେ ହଳଧର । ଗୋପୀ ସାନନ୍ଦେ ଗୀତସ୍ୱର ॥
କୃଷ୍ଣ କରନ୍ତି ଗୀତନାଦ । ହରିଲେ କାମିନୀ ବିଷାଦ ॥
କୁନ୍ଦ ମଲ୍ଲିକା ଗନ୍ଧସାର । ଶୀତଳ ବହଇ ସମୀର ॥
ଗୋବିନ୍ଦ ଗୀତ ଶୁଣି କର୍ଣ୍ଣେ । ମୂର୍ଚ୍ଛିତ ହୋଇ ପଶୁ ଗଣେ ॥
ପୁଲକ ହୋଇ ବୃକ୍ଷ ପନ୍ତି । ସ୍ୱର୍ଗେ ଦେବତା କଲେ ସ୍ତୁତି ॥
ଶୁଣି ଗୋବିନ୍ଦ ଗୀତନାଦ । ଗୋପୀ ପାଇଲେ ମନେଖେଦ ॥
କଟୀ ମେଖଳା ଝିନ ବାସ । କବରୀ ହୋଇଲା ଉଶ୍ୱାସ ॥
ମଦନ ଭୋଳେ ଗୀତ ଗାଇ । ଗୋପୀ ମୋହିଲେ ଭାବଗ୍ରାହୀ ॥
ଯେମନ୍ତେ ଶୁଣ ନରନାଥ । ସର୍ପେ ହୋଇଲା ଉପଗତ ॥
ପୂର୍ବେ ସେ କୁବେର କୁମର । ଶାପେ ହୋଇଲା ଶଙ୍ଖଚୂଡ଼ ॥
ଦେଖନ୍ତି ରାମ ବନମାଳୀ । ଗୋପୀଙ୍କ ମଧ୍ୟେ ବେଗେ ମିଳି ॥
ଉତ୍ତର ଦିଗେ ଫୁ ଫୁ କରି । ଦେଖି ପଳାନ୍ତି ବ୍ରଜ ନାରୀ ॥
ଡାକନ୍ତି କୃଷ୍ଣ ରାମ ରଖ । ଯେ ବନେ ହୋଇଲୁ ନିରେଖ ॥
ଶାର୍ଦ୍ଦୂଳ ଦେଖି ଗୋରୁପଲ । ଯେହ୍ନେ ଧାମନ୍ତି ଅନ୍ତରାଳ ॥
ଶୁଣି ଧାଇଁଲେ ବେନିଭାଇ । ନ ଡର ବୋଲି ଡାକ ଦେଇ ॥
କରେ ଉପାଡ଼ି ବେନି ଶାଳ । ମିଳିଲେ ଗୋପୀଙ୍କର ମେଳ ॥
ଯମର ଦୂତ ପ୍ରାୟେ ହୋଇ । ଦେଖି ଶଙ୍ଖଚୂଡ଼ ପଳାଇ ॥
ଗୋପୀ କାମିନୀ ମଧ୍ୟେ ଥିଲା । ଜୀବନ ଭୟେ ପଳାଇଲା ॥
ତାହାର ଶିରେ ମଣି ଚାହିଁ । ବେଗେ ଧାଇଁଲେ ଭାବଗ୍ରାହୀ ॥

ପଛେ ରହିଲେ ହଳଧାରୀ । ଗୋପ ଯୁବତୀଙ୍କି ଆବୋରି ॥
ପଛେ ଗୋଡ଼ାନ୍ତେ ନାରାୟଣ । ସର୍ପ ହୋଇଲା ବଳକ୍ଷୀଣ ॥
ମୁଷ୍ଟି ପ୍ରହାରି ସର୍ପ ଶିରେ । ମଣି ଘେନିଲେ କୃଷ୍ଣ କରେ ॥
ଗୋବିନ୍ଦ ମୁଷ୍ଟି ଶିରେ ଲାଗି । ସର୍ପ ହୋଇଲା ମୋକ୍ଷଭାଗୀ ॥
ଗୋବିନ୍ଦ ମଣି ଘେନି କରେ । ମିଳିଲେ ରାମର ଛାମୁରେ ॥
ରାମର ହସ୍ତେ ମଣି ଦେଇ । ପ୍ରଳୟ କଲେ ଭାବଗ୍ରାହୀ ॥
ସେ ରାମକୃଷ୍ଣ ପାଦଗତେ । ନମଇଁ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବିଜୟେ ଶଙ୍ଖଚୂଡ଼ ମୋକ୍ଷଣେ ନାମ ଷଟ୍‌ତ୍ରିଂଶୋଽଧ୍ୟାୟଃ ।*

## ସପ୍ତତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ଦଣ୍ଡଧାରୀ । ଗୋପରେ ଯେତେ ନରନାରୀ ॥
କୃଷ୍ଣ ମହିମା ବନେ ଚାହିଁ । କହନ୍ତି ଯଶୋଦା ବସାଇ ॥
ଶୁଣ ଗୋ ନନ୍ଦର ଘରଣୀ । ତୋ ସୁତ କୃଷ୍ଣର କାହାଣୀ ॥
ଯମୁନା କଦମ୍ବର ମୂଳେ । ବେଣୁ ବଜାନ୍ତି କୁତୂହଳେ ॥
ବାମ କପୋଳେ ବାମ ଭୁଜେ । ପୀତବସନ କଟୀ ମାଝେ ॥
ଚକ୍ଷୁ ନଚାଇ ଚାହିଁ ଧୀରେ । ମୁରଲୀ ଲଗାଇ ଅଧରେ ॥
ଆଙ୍ଗୁଳି ବେଣୁ ଦ୍ୱାରେ ଦେଇ । ତ୍ରିଭଙ୍ଗି ଛନ୍ଦେ ଉଭା ହୋଇ ॥
ଆକାଶେ ସିଦ୍ଧଗଣ ତୁଳେ । ଦେବ କାମିନୀ ମୋହଗଲେ ॥
ଲଜ୍ଜା ଛାଡ଼ିଲେ କାମ ଭୋଳେ । କେଶ ବସନ ଅସମ୍ଭାଳେ ॥
ଶୁଣ ଗୋ ବେଣୁଧର ମାତା । ତୋର କୁମର ଚିତ୍ରକଥା ॥
ହୃଦେ ଲମ୍ବାଇ ବନମାଳା । ଅଳପ ହସଇ ତୋ ବଳା ॥
ବେଣୁ ବଜାଇ ସେ ଯତନେ । ଆରତ ହୋନ୍ତି ପଶୁଗଣେ ॥
ଗୋରୁ ମହିଷୀ ମୃଗ ଯୂଥ । ଶୁଣି ତୋ ସୁତ ବେଣୁ ଗୀତ ॥
ତୃଣ କବଳ ଉପେକ୍ଷିଲେ । ମୁରଲୀ ନାଦେ ଚିତ୍ତ ଦିଲେ ॥
ବଛାୟେ ମୁଖେ ଦେଇ ସ୍ତନ । ଶୁଣନ୍ତି ମୁଦ୍ରିତ ଲୋଚନ ॥
ଚିତ୍ର ପ୍ରତିମା ପ୍ରାୟେ ହୋଇ । ଜନ୍ତୁଙ୍କ ଚକ୍ଷୁ ନ ଚଳଇ ॥
ସ୍ତବକ ପୁଷ୍ପ ଶିଖିପୁଚ୍ଛ । ଅଙ୍ଗ ଭୂଷଣ ମାଳ କାଚ୍ଛ ॥
ଆମ୍ଭ କୁମର ଘେନି ସଙ୍ଗେ । ଗୋରୁଙ୍କୁ ଚରାନ୍ତି ସୁରଙ୍ଗେ ॥
ନଦୀୟେ ବହୁଥିଲେ ବନେ । ଶୁଣି ତୋ ସୁତ ବେଣୁସ୍ୱନେ ॥
ପବନ ବହେ ସ୍ଥିର ହୋଇ । ତା ପାଦରଜେ ଚିତ୍ତ ଦେଇ ॥
ପବନ ଆଣିବ ଉଡ଼ାଇ । ଆମ୍ଭେ ତରିବୁଁ ରେଣୁ ପାଇ ॥
ଚଞ୍ଚଳ ଉଚ୍ଚାଣି ଲହରୀ । ଅଳପ ଧୀରେ ବହେ ବାରି ॥
ଆମ୍ଭ ବାଳକ ସଙ୍ଗେ ଥାଇ । ଆଦି ପୁରୁଷ ପ୍ରାୟେ ହୋଇ ॥
ଗିରି ନିକଟେ ପଶୁ ଗଣେ । ଚରନ୍ତି ତୃଣ ତୋଷ ମନେ ॥
ଗୋରୁଙ୍କ ନାମ ବେଣୁ ସ୍ୱନେ । ଡାକଇ ମଧୁର ବଚନେ ॥
ଲତାୟେ ତରୁକୁ ଆବୋରି । ଫଳ ପଲ୍ଲବ ପୁଷ୍ପ ଭରି ॥
ଲୋଟନ୍ତି ଚାମର ପରାୟେ । କହନ୍ତି ସୁଶୀତଳ ବାୟେ ॥
ବୃକ୍ଷେ ହୋଇଲେ ପୁଲକିତ । ଶୁଣି ତା ମୁରଲୀ ସଙ୍ଗୀତ ॥
ମଧୁ ବରଷିଲେ ଗହଳ । ଯେହ୍ନେ ନୟନେ ଅଶ୍ରୁଜଳ ॥
ସୁନ୍ଦରବର ତୋ କୁମର । ତୁଳସୀ ମାଳା ଲୁଳେ ଉର ॥
ଗନ୍ଧେ ଭ୍ରମର ନ ଛାଡ଼ନ୍ତି । ବେଣୁ ଶବଦେ ଆବୋରନ୍ତି ॥
ନଦୀ ତଡ଼ାଗ ଜଳେ ଥାଇ । ହଂସ ସାରସେ ଗୀତ ଗାଇ ॥
ମନ ନିରୋପି ବେଣୁ ସ୍ୱନେ । ମୁଦ୍ରିତ ହୋଇଲେ ଲୋଚନେ
ନାନା କୁସୁମେ ବେଶ ହୋଇ । ରୋହିଣୀ ସୁତ ସଙ୍ଗେ ଥାଇ ॥
ପର୍ବତ ପାଶେ ତୋର ବଳା । ଶବଦେ ବ୍ରହ୍ମାଣ୍ଡ ମୋହିଲା ॥
ଇନ୍ଦ୍ର ବଚନେ ମେଘମାଳେ । ସୁନ୍ଦର ଗଗନ ମଣ୍ଡଳେ ॥
ମିତ୍ରର ଶ୍ରମ ବନେ ଚାହିଁ । ମେଘେ ଟେକିଲେ ଛତ୍ର ହୋଇ
ଗୋପେ ବିବିଧ ରସେ ପୂରି । ଶିଖାଇ ବେଣୁ ନାଦ ଧରି ॥
ସପତ ସ୍ୱରେ ବେଣୁ ବାଇ । ବାଙ୍କ ନୟନେ ରଙ୍ଗେ ଚାହିଁ ॥
ତୋର ନନ୍ଦନ ବେଣୁ ସ୍ୱନେ । ବ୍ରହ୍ମା ଶଙ୍କର ଇନ୍ଦ୍ର ବନେ ॥
ମୁନିଙ୍କ ସଙ୍ଗେ ଦେବବୃନ୍ଦେ । ମୋହେ ହୋଇଲେ ବେଣୁନାଦେ ॥
ଅପୂର୍ବ ଶୁଣ କୃଷ୍ଣ ମାୟେ । ଧ୍ୱଜ ଅଙ୍କୁଶ ବଜ୍ର ପାୟେ ॥
ଚିତ୍ରିତ କଲା ବନଭୂଇଁ । ମତ୍ତ ମାତଙ୍ଗ ପ୍ରାୟେ ହୋଇ ॥
ତାର ଚାଲିବା ଦେଖି ମାୟେ । ଚଳି ଯେ ନ ପାରି ଭୋ ଡ଼ାୟେ ॥
ବୃକ୍ଷଙ୍କର ଗତି ଆମ୍ଭେ ଭଜୁ । ଚାହି ନ ପାରି ଚକ୍ଷୁ ବୁଜୁ ॥
ମଦନ ଶରେ ହୋଇ ଭୋଳ । ଫିଟଇ କବରୀ ଅଞ୍ଚଳ ॥
ମଣି ଗୁଞ୍ଜୁରା ଶିରେ ଧରି । ଗାଈଙ୍କ ପଛେ ବନଚାରୀ ॥
ତୁଳସୀ ମାଳ ଶୋହେ ହୃଦେ । ଭୁଜ ଗୋପାଳ ପୁଅ କନ୍ଧେ ॥
ମଧୁର ରସେ ବେଣୁ ବାଇ । ଚାଳଇ ଚଉଦିଗ ଚାହିଁ ॥
କୃଷ୍ଣ ହରିଣୀ ଗଣେ ଧାଇଁ । ବେଣୁ ଶବଦେ ଚିତ୍ତ ଦେଇ ॥
ଛାଡିଣ ସୁତ ଘର-ବାସ । କ୍ଷଣେ ଛାଡନ୍ତି ତା ପାଶ ॥
ସକଳ ଗୁଣଙ୍କର ସିନ୍ଧୁ । ମୁଖ ଦିଶଇ ପୂର୍ଣ୍ଣ ଇନ୍ଦୁ ॥
ଉତୁରୀ ଛନ୍ଦେ କୁନ୍ଦମାଳ । ସଙ୍ଗତେ ଗୋରୁ ଗୋପବାଳ ॥
କାଳିନ୍ଦୀ ତଟେ ତୋ କୁମର । ହୃଦୟେ ଭେଦିଲା ଆମ୍ଭର ॥
ପବନ ଯୋଗେ ବୃକ୍ଷଡ଼ାଳେ । ଲାଗନ୍ତି ତାର ପାଦ ତଳେ ॥

ତ୍ରିଦଶେ ବାଦ୍ୟନାଦ କରି । ସ୍ତୁତି କରନ୍ତି ବ୍ରହ୍ମଚାରୀ ॥
ବିବିଧ ଅଙ୍ଗ ଭଙ୍ଗ ତାର । କେ କହୁ ମହିମା ତାହାର ॥
ଗୋକୁଳ ବିକଳେ କୁମର । କରେ ତୋଳିଲା ଗିରିବର ॥
ବ୍ରହ୍ମାଶଙ୍କର ଆଦି କରି । ବଳିଲେ ତାର ପାଦ ଧରି ॥
ଗୋଧନ ଘେନି ଦିନ ଅନ୍ତେ । ଗୋପେ ଯେ ଆସନ୍ତି ଉସତେ ॥
ଗୋଧୂଳି ଭୂଷଣ ଶରୀର । ଜୀବନ ଦହେ ଗୋ ଆମ୍ଭର ॥
ଗୋପ ବାଳକ ଇଷ୍ଟଦାତା । ଦେବକୀ ଦେବୀ ଯାର ମାତା ॥
ନକ୍ଷତ୍ର ପ୍ରାୟେ ଗୋପ ବାଳ । ତୋ ସୁତ ଶଶାଙ୍କ ମଣ୍ଡଳ ॥
ବେନି ଲୋଚନ ମତ୍ତ ଭୋଳେ । ନାଚେ ଗୋପାଳ ଫୁଅ ମେଳେ ॥
ଗୋରୁଙ୍କ ଧୂଳି ମୁଖେ ମିଶି । ବଦରୀ ଫଳ ପ୍ରାୟେ ଦିଶି ॥
ରତ୍ନ କୁଣ୍ଡଳ କର୍ଣ୍ଣେ ଶୋହେ । ରୂପେ କୋଟିଏ କାମ ମୋହେ ॥
ଚାଲଇ ମତ୍ତଗଜ ଛନ୍ଦ । ମୁଖ ତା ପୂର୍ଣ୍ଣମୀର ଚାନ୍ଦ ॥
ଆମ୍ଭେ ଗୋ ଚାହିଁ ତାର ମୁଖ । ଖଣ୍ଡି ବିରହ ଦିନ ତାପ ॥
ଯେମନ୍ତେ କୃଷ୍ଣଲୀଳା କହି । ନନ୍ଦ ଘରଣୀ ଆଗେ ଯାଇ ॥
ଗୋପୀୟେ କୃଷ୍ଣ ପାଦେ ଚିତ୍ତ । ଦିନକୁ ଦିନ ଅବିରତ ॥
ଛାଡ଼ିଲେ ଭବ ବନ୍ଧ ଭ୍ରମ । କୃଷ୍ଣ ହୁଁ ନ ଜାଣନ୍ତି ଆନ ॥
ସେ ଗୋପ ଗୋପୀଙ୍କ ପୟରେ । ମନ ମୋ ଥାଉ ନିରନ୍ତରେ ॥
ନାମ ମୋହୋର ଜଗନ୍ନାଥ । ଭଗତି ଛାଡ଼ି ଅରଖିତ ॥
ବ୍ରାହ୍ମଣ କୁଳେ ଜନ୍ମ ହୋଇ । ହରି ଭଗତି ମୋର ନାହିଁ ॥
ସୁଜନ ଜନେ ହରି ପଥେ । ସେବକ କରିନିଅ ମୋତେ ॥
ବିବିଧ ମୋହ ଜଡ଼େ ଥାଇ । କୃଷ୍ଣ ଚରିତ୍ରେ ମନ କାହିଁ ॥
ପୁରାଣ ଶିରୀ ଭାଗବତ । ବାଇଙ୍କ ପ୍ରାୟେ କଲି ଗୀତ ॥
ପଣ୍ଡିତେ ନ କରିବା ହାସ୍ୟ । ତୁମ୍ଭ ଚରଣେ ମୁହିଁ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଗୋପିକା ଯୁଗ୍ମଗୀତ ବର୍ଣ୍ଣନଂ ନାମ ସପ୍ତତ୍ରିଂଶୋଽଧ୍ୟାୟଃ ।*

## ଅଷ୍ଟତ୍ରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ । ଗୋପେ ଅସୁର ଉପଗତ ॥
ଅରିଷ୍ଟ ନାମେ ଷଣ୍ଢାରୂପୀ । ମିଳିଲା ଘୋର ବନେ ବ୍ୟାପୀ ॥
ବୃଷଭ ରୂପୀ ମହାକାୟେ । ଅବନୀ ଖୋଳୁଅଛି ପାୟେ ॥
ଗର୍ଜ୍ଜଇ ଘୋର ନାଦ କରି । ପାଦେ କମ୍ପଇ ବସୁନ୍ଧରୀ ।
ଲାଞ୍ଜ ଉଭାରି ବେଗେ ଧାଇଁ । ଖୋଳଇ ଶିଙ୍ଗେ ଉଚ୍ଚ ଭୂଇଁ ।
ଚକ୍ଷୁ ବୁଲାଇ ପୁଣ ଚାହିଁ । ଅଳପ ଅଳପ ମୂତଇ ।
ଶୁଣି ତାହାର ଘୋର ନାଦ । ଗୋରୁ ମନୁଷ୍ୟଙ୍କର ଗର୍ଭ ॥
ପତନ ହୋଇ ମହୀତଳେ । ଦେବେ ଡରନ୍ତି ସ୍ୱର୍ଗ ଆଳେ ॥
ପିଠି ଉପରେ ଝଣ୍ଟା ଦେଖି । ପର୍ବତ ପ୍ରାୟେ ଉପଲକ୍ଷି ।
ମେଘେ ବସନ୍ତି ତା ଉପରେ । ଶୃଙ୍ଗ ଯୁଗଳ ତୀକ୍ଷ୍ଣ ଶିରେ ॥
ଗୋରୁ ଗୋପାଳ ଦେଖି ଡରେ । ପଳାଇଗଲେ ବନ ଘୋରେ ॥
ପଡ଼ିଲା ଗୋପପୁରେ ହୁରି । ଡାକନ୍ତି କୃଷ୍ଣ ନାମ ଧରି ॥
ରଖ ଗୋକୁଳ ଦାମୋଦର । ଆମ୍ଭେ ଯେ ଶରଣ ତୋହୋର ॥
ବିକଳ ଦେଖିଣ ଗୋକୁଳ । ଧାଇଁଲେ ପ୍ରଭୁ ଆଦିମୂଳ ॥
ଆନନ୍ଦେ ତୋଳି ବେନି ଭୁଜ । ଡାକନ୍ତି ପ୍ରଭୁ ଦେବରାଜ ॥
ଭୟ ନକର ତୁମ୍ଭେ କେହି । ଅସୁର ସଂହାରିବି ମୁହିଁ ॥
ଯେମନ୍ତ ବୋଲି ନରହରି । ଡାକିଲେ ଷଣ୍ଢାକୁ ଆବୋରି ॥
ରେ ରେ ଅସୁର ଆଗୁସାର । କିମ୍ପା ଡରାଉ ଗୋପପୁର ॥
ଦୁଷ୍ଟ ଦଳଣ ବାନା ମୋର । ଆଜି ପେଷିବି ଯମପୁର ॥
ଧାଇଁଲେ ବାହା ନାଦ କରି । ସ୍ୱର୍ଗେ ଦେଖନ୍ତି ଦେବନାରୀ ॥
ଗୋବିନ୍ଦ କଲେ କରତାଳ । ଶୁଣି ଅସୁର ଅନ୍ତରାଳ ॥
ପଛେ ଅଛନ୍ତି ଭାବଗ୍ରାହୀ । ବାଳକ କନ୍ଧେ ହସ୍ତ ଦେଇ ॥
କୃଷ୍ଣର ଶୁଣି କରତାଳି । କୋପେ ଅସୁର ପରଜଳି ।
ଖୁରେ ଖୋଳଇ ମହୀସ୍ଥଳ । ଲାଞ୍ଜ ବୁଲାଇ ଅନ୍ତରାଳ ॥
ମେଘେ ଉଡ଼ିଲେ ଲାଞ୍ଜବାୟେ । ନିଶ୍ୱାସ ଖରତର ବହେ ॥
ଆଗେ ଉଭାରି ଶୃଙ୍ଗ ଦୁଇ । ଚକ୍ଷୁ ବୁଜିଲା କୃଷ୍ଣ ଚାହିଁ ॥
ବେଗେ ଧାଇଁଲା ଧାତିକାରେ । ବଜ୍ର ଯେସନେ ଇନ୍ଦ୍ର କରେ ॥
ଆଗ ହୋଇଲେ ଭାବଗ୍ରାହୀ । କରେ ଧଇଲେ ଶୃଙ୍ଗ ଦୁଇ ॥
ଅସୁର ନ ପାରିଲା ଯାଇ । ପଛକୁ ଦିଲେ ହାବୋଡ଼ାଇ ॥
ଅସୁର ପାଇ ମହାତ୍ରାସେ । ପଡ଼ିଲା ଭୋଡ଼ା ଅଠାଇଶେ ।
ଯେହ୍ନେ ଉଭାରି ବେନିରାଜ । ଉଭା ହୋଇଲେ ଦେବରାଜ ॥
ଦଇତ ମୂର୍ଚ୍ଛାଗତ ହୋଇ । ପୁଣି ଉଠିଲା ଜ୍ଞାନ ପାଇ ।
ଧାଇଁଲା ପବନହୁଁ ଖର । ଶୃଙ୍ଗ ଧଇଲେ ଚକ୍ରଧର ॥
ଅସୁର ଦେହେ ପାଦ ଦେଇ । ତଳେ ପାଡ଼ିଲେ ବେଗେ ନେଇ
ପଛ ଚରଣ ପାଦେ ଚାପି । ମୁଣ୍ଡ ମୋଡ଼ିଲେ ବିଶ୍ୱରୂପୀ ।
ଓଦା ବସନ ପ୍ରାୟେ ମୋଡ଼ି । ତାହାର ଦେହୁ ଶୃଙ୍ଗ ତାଡ଼ି ।
ଅଧରୁ ଗଳଇ ରୁଧିର । ବେଗେ ଛାଡ଼ିଲା ମୂତ୍ର ମଳ ।
ଚାରି ଚରଣ ପ୍ରସାରିଲା । ଗୋବିନ୍ଦ ମୁଖକୁ ଚାହିଁଲା ।
ପ୍ରାଣ ଛାଡ଼ିଲା ମହାବଳୀ । ଦେଖନ୍ତି ସ୍ୱର୍ଗଲୋକ ମିଳି ।

ଦେବ କରନ୍ତି ପୁଷ୍ପ ବୃଷ୍ଟି । କୃଷ୍ଣ ନାଶିଲେ ଗୋପ ରିଷ୍ଟି ॥
ଯେମନ୍ତେ ଅସୁର ନିବାରି । ଉଶ୍ୱାସ କଲେ ଗୋପ ପୁରୀ ॥
ଗୋପୀ ଗୋପାଳ ନନ୍ଦମେଳେ । ସ୍ତୁତି କରନ୍ତି ପାଦ ତଳେ ॥
ଗୋପୀଏ ଚାହାନ୍ତି ଶ୍ରୀମୁଖ । ଖଣ୍ଡିଲେ ଜନ୍ମବନ୍ଧ ଦୁଃଖ ॥
କୃଷ୍ଣ ଚରଣେ ଦେଇ ଚିତ୍ତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଷଣ୍ଢାସୁର ମୋକ୍ଷଣେ ନାମ ଅଷ୍ଟତ୍ରିଂଶୋଽଧ୍ୟାୟଃ ।*

## ଊନଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପମଣି । ସ୍ୱର୍ଗେ ଶୁଭିଲା ଜୟେ ବାଣୀ ॥
ଆକାଶେ ଥିଲେ ଯେ ନାରଦ । ଜାଣିଲେ ଷଣ୍ଢାସୁର ବଧ ॥
ଆନନ୍ଦ ମନେ ଦେବ ଋଷି । କୃଷ୍ଣ ମହିମା ପରଶଂସି ॥
ମଥୁରା ନଗରେ ମିଳିଲେ । କଂସ ରାଜାର ସଭାତଳେ ॥
ଦେଖି ଉଠିଲା ଭୋଜ ବୀର । ନମଇଁ ମୁନିଙ୍କ ପୟର ॥
ଆନନ୍ଦେ ଶିରେ କର ଦେଇ । ଆସନେ ବସାଇଲା ନେଇ ॥
ସ୍ୱଭାବେ ଭୋଜବଂଶେ ରାଜା । ମୁନି ଚରଣେ କଲା ପୂଜା ॥
କୁଶଳ ବାରତା ପଚାରି । ବିଶ୍ୱାସ କରି ପାଦ ଧରି ॥
କଂସ ଭଗତିଯେ ନାରଦ । କହନ୍ତି ପାଇ ମନେ ଖେଦ ॥
ତୁ ରାଜା ମୋହରି ବିଶ୍ୱାସ । ହେଲେ ହୋଇବୁ ପ୍ରାଣନାଶ ॥
ତୋତେ ମୋହୋର ଚିତ୍ତେଦୟା । ପୂର୍ବେ ମୁଁ କହିଗଲି ଯାହା ॥
ତୁ ରାଜା ନ ଶୁଣିଲୁ କର୍ଣ୍ଣେ । ଯେବେ ମରିବୁ ଅଳ୍ପଦିନେ ॥
ଶୁଣ କହଇ ମନ ଖେଦ । ମୁଖେ ମୋ ନ ସ୍ଫୁରଇ ବେଦ
ଦେବତାମାନେ ତୋ ବଇରୀ । ତୋର ମରଣେ କୂଟ କରି ॥
ଗୋପେ ଯାଦବ ଅବତାର । ଦେବକୀ ବସୁଦେବ ଘର ॥
ହରିଙ୍କି କରାଇଲେ ଜନ୍ମ । ଭିଣୋଇ କଲା ଯେଡ଼େ କର୍ମ ॥
ଅଷ୍ଟମ ଗର୍ଭେ ଯେହା ନାରୀ । ରାତ୍ରେ ପ୍ରସବିଲା ମୁରାରି ॥
ତୋର ଭିଣୋଇ ତାହା ନେଇ । ନନ୍ଦର ଘରେ ଦିଲା ଥୋଇ ॥
କନ୍ୟାଏ ଥିଲା ତାର ଘରେ । ତାହା କଚାଡ଼ିଲୁ ଶିଳାରେ ॥
ତୋହୋର ହସ୍ତୁଁ ଶୂନ୍ୟେ ଗଲା । ତେବେ ହେଁ ଜ୍ଞାନ ତୋ ନୋହିଲା
ରୋହିଣୀ ବସୁଦେବ ନାରୀ । ପଳାଇଗଲା ତୋତେ ଡରି ॥
ତାହାର ଗର୍ଭ ହୋଇଥିଲା । ସେହି କ୍ରମରେ ପ୍ରସବିଲା ॥
ହରିର ଅଂଶେ ଅବତାର । ସେ ତୋତେ ମାରିବ ଅସୁର ॥
ରାମ ଗୋବିନ୍ଦ ବେନି ଭାଇ । ବଢ଼ିଲେ ଗୋପପୁରେ ଥାଇ ॥
ବସୁଦେବର ମିତ୍ର ନନ୍ଦ । ସେ ତୋତେ କଲା ଯେଡ଼େ ଛନ୍ଦ ॥
ପୂତନା ଆଦି ଷଣ୍ଢା ଯାଏ । ସବୁ ମାଇଲେ ବେନି ପୋଏ ॥
ଇନ୍ଦ୍ରର ଦର୍ପ କଲେ ଚୂର । ହସ୍ତେ ତୋଳିଲେ ଗିରିବର ॥
କାଳୀୟ ଥିଲା କାଳି ହ୍ରଦେ । ପଳାଇଗଲା ତାର ବାଦେ ॥
କେତେ କହିବି ଗୁଣ ତାର । ଦେବ ମାନବେ ଅଗୋଚର ॥
ଶୁଣି ଅସୁର ଥରହର । କାତରେ କମ୍ପଇ ଶରୀର ॥
ଖଡ଼ଗ ଧରି ବେନି କରେ । ବେଗେ ଉଠିଲା କୋପଭରେ ॥
ବସୁଦେବକୁ ଅଣାଇଲା । ଅନେକ ମାଡ଼ ମରାଇଲା ॥
ହାଣିମ ବୋଲି କୋପଭର । ନାରଦ ଧଇଲେ ତା କର ॥
ନାରଦ ବଚନେ ବିଶ୍ୱାସ । ପାଦେ ଭରିଲା ଲୋହ ଫାଶ ॥
ଧନ ସମ୍ପଦ ଜୁର କଲା । ବଳି ମନ୍ଦିରେ ଧରାଇଲା ॥
କଂସକୁ କହି ବ୍ରହ୍ମସୁତ । ଆକାଶେ ଚଳିଲେ ତୁରିତ ॥
ମୁନି ଅନ୍ତରେ ଭୋଜରାୟେ । ଭାଳଇ ଜୀବନର ଭୟେ ॥
କେଶୀ ଦଇତକୁ ଅଣାଇ । କହଇ ବିଶ୍ୱାସ କରାଇ ॥
ତୁ ମୋର ଭ୍ରାତ ସହୋଦର । ବହନ ଯାଅ ଗୋପପୁର ॥
ବସୁଦେବର ପୁତ୍ର ଦୁଇ । ରାମ ଗୋବିନ୍ଦ ବେନି ଭାଇ ॥
ବହନ କର ପ୍ରାଣ ନାଶ । ଦେବି ସମ୍ପଦ ଗ୍ରାମ ଦେଶ ॥
ତେବେ ସେ ଜୀବନ ମୋହର । ଭୋ ଭ୍ରାତ ବିଳମ୍ବ ନ କର ॥
କଂସର ଆଜ୍ଞା ଘେନି ଶିରେ । କେଶୀ ଚଳିଲା ଗୋପପୁରେ ॥
ଚାଣୁର ମୁଷ୍ଟିକେର ମେଳେ । ଦର୍ପିଷ୍ଠ ମହା ବଳିଆରେ ॥
ଗଜ କୁବଳୟା ମାହୁନ୍ତ । ପାତ୍ର ସାମନ୍ତ ଇଷ୍ଟ ମିତ୍ର ॥
ଅଣାଇ କହଇ ଅସୁର । ଜଣ ଜଣକେ ଧରି କର ॥
ଭୋ ବୀର ମୁଷ୍ଟିକେ ଚାଣୁର । କହି ଯେ ଗଲେ ମୁନିବର ॥
ବସୁଦେବର ପୁତ୍ର ଦୁଇ । ଗୋପଯେ ଅଇଲା ଲୁଚାଇ ॥
ଗୁପତେ ନାନ୍ଦ ଘରେ ଥାଇ । ବଢ଼ିଲେ ଅତିବଳ ହୋଇ ॥
ଯେତେ ଅସୁର ମୋର ଗଲେ । ଗୋପରେ ଥାଇ ସଂହାରିଲେ ॥
ଦିନକୁ ଦିନ ବଳିଆର । କେମନ୍ତେ କରିବା ସଂହାର ॥
ତାହାଙ୍କୁ ଅଣାଇବି ଧରି । ଯେଥେ ମାରିବି କୂଟ କରି ॥
ମାଲ ବିନ୍ଧାଣେ ନିବାରିବ । ତେବେ ସେ ମୋହେରେ ପାଇବ
ଦେବଇଁ ସମ୍ପଦ ବହୁତ । ଗଜ ତୁରଙ୍ଗ ଯୂଥ ଯୂଥ ॥
ଶୁଣ ହୋ ପାତ୍ର ମନ୍ତ୍ରୀ ମୋର । ମଞ୍ଚ କରାଇବ ଅପାର ॥
ତୁମ୍ଭେ ସକଳେ ଦେଖୁଥିବ । ବେନି ଭାଇଙ୍କି ଅଣାଇବ ॥

ଦେବକୀ ବସୁଦେବ ଆସି । ମଞ୍ଚା ଉପରେ ଥିବେ ବସି ॥
ତୁମ୍ଭେ କରିବ ମାଳପଣ । ଦେଖିବେ ପୁତ୍ରଙ୍କ ମରଣ ॥
ମାହୁନ୍ତ ଥିବ ରଙ୍ଗ ଦ୍ୱାରେ । ବସି କୁବଳୟା ଉପରେ ॥
ଦନ୍ତେ ଗୁନ୍ଥାଇ ବେନି ଭାଇ । କରିବୁ ସଭା ତଳେ ନେଇ ॥
ଅନେକ ଧନରତ୍ନ ଦେବି । ମୋହୋର ମିତ୍ର ହିଁ କରିବି ॥
ସମସ୍ତେ ଶୁଣ ମୋର ଉତ୍ତର । ତୁମ୍ଭେ ଭିଆଅ ଧନୁଘର ॥
ଶୁକଳ ଚତୁର୍ଦ୍ଦଶୀ ଦିନେ । ପୂଜା କରିବ ରାତ୍ରମାନେ ॥
ଛେଳି ମଇଁଷି ପୋଢ଼ୋ ବୋଦା । କ୍ଷେତ୍ରପାଳଙ୍କୁ କରପୂଜା ॥
ଘୋଷଣ ଦିଅ ଚାରି ଦିଗେ । ଗ୍ରାମ ପାଟଣା ବନଭାଗେ ॥
ରାଜା ପରଜା ରଙ୍କ ଦୁଃଖୀ । ଆସିବେ ଧନୁଯାତ୍ରା ଦେଖି ॥
ଦେବଇଁ ଧନରତ୍ନ ଅନ୍ନ । ତୁଳା ପୁରୁଷ ଆଦି ଦାନ ॥
ଯେମନ୍ତ କହି କଂସ ଗଲା । ଭିତର ପୁରେ ବିଜେ କଲା ॥
ଅକ୍ରୂର ନାମେ ମନ୍ତ୍ରୀବର । ଯାଦବ ବଂଶେ ବଳିଆର ॥
ବସୁଦେବର ସହୋଦର । ତାହାଙ୍କୁ ବୋଲନ୍ତି ମଧୁର ॥
ଅକ୍ରୂର କରେ ହସ୍ତ ଦେଇ । କହଇ ଯେକାନ୍ତେ ବସାଇ ॥
ଭୋ ମିତ୍ର ଶୁଣ ମୋ ଉତ୍ତର । ବିଶ୍ୱାସ ଅଟୁ ଯେବେ ମୋର ॥
ଇଷ୍ଟ ବଇଦେ ସତ୍ୟ କହି । ଯେକଥା ପୁରାଣେ ଅଛଇ ॥
ତୋ ତହୁଁ ନାହିଁ ମୋର ହିତ । ତୁ ମୋର ପ୍ରାଣ ପଞ୍ଚଭୂତ ॥
ତୋହୋର ବଳେ ଆଜ ମୁହିଁ । ଶତ୍ରୁ ସଂହାରିତ ଲୋଡ଼ଇ ॥
ଯେସନେ ବସ୍ତୁ ଆଶ୍ରେ କରି । ଦେବେ ହୁଅନ୍ତି ସୁଖଚାରୀ ॥
ନନ୍ଦ ଗୋକୁଳେ ବେଗେ ଯାଅ । ମୋହୋର ହିତେ ଯେବେ ଥାଅ ॥
ତୁମ୍ଭର ବଳେ ମୁ ନିଶ୍ଚିନ୍ତ । ଭୋ ମିତ୍ର କହିଲିଟି ସତ୍ୟ ॥
ବସୁଦେବର ପୁତ୍ର ଦୁଇ । ରାମ ଗୋବିନ୍ଦ ବେନି ଭାଇ ॥
ଥୋଇ ଅଇଲା ନନ୍ଦଘରେ । ଲୁଚାଇ ବସୁଦେବ ଡରେ ॥
ତୁ ବେଗେ ରଥ ଘେନି ଯାଅ । ମୋର ଛାମୁରେ ଆଣିଦିଅ ॥
ଦେବକୀ ଯେତେବେଳେ ବିଭା । ଦେବେ କହିଲେ ମୋତେ ଯାହା ॥
ସେ କଥା ହୋଇଲା ଯୁଗତେ । ନାରଦେ କହିଗଲେ ମୋତେ ॥
ମୋତେ ମାରିବେ ବେନିଭାଇ । ଯେ କଥା ଉଚିତ ଅଟଇ ॥
ଗୋକୁଳେ ଥାଇ ବଳିଆର । ଅନେକ ମାଇଲେ ଅସୁର ॥
ବାଳୁତ କାଳୁଁ ତାଙ୍କୁ ଧରି । ବେଗେ ମୁ ପକାଇବି ମାରି ॥
ତେବେ ମୋହୋର ମନ ସ୍ଥିର । ଭୋ ମିତ୍ର ଧରୁ ଅଛି କର ॥
ନନ୍ଦ ଯଶୋଦାଙ୍କର ସଙ୍ଗେ । ଘେନାଇ ଆସ ଯାଇ ବେଗେ ॥
ଗୋରସ ଅଣା ଶତେଭାର । ଧନୁ ଉଚ୍ଛବ ଯାତ୍ରା ମୋର ॥
ଅଣାଇ ମଥୁରା ନଗରେ । ବଳି କରିବି ବନ୍ଦି ଘରେ ॥
ରାମ ଗୋବିନ୍ଦ ଅଣାଇବି । ହସ୍ତୀର ହସ୍ତେ ମରାଇବି ॥
ଯେବେ ଉବୁରିବେ ସେଠାରୁ । ମାଲେ ଅଛନ୍ତି ମହାମେରୁ ॥
ଯେହାଙ୍କ ହସ୍ତେ ମରାଇବି । ତେବେ ସେ ଜୀବନ ରଖିବି ॥
ନନ୍ଦ ଯଶୋଦା ବସୁଦେବ । ଦେବକୀ ଯେତେକ ଯାଦବ ॥
ଯେହାଙ୍କୁ ପେଷି ଯମପୁର । ତେବେ ସେ ଜୀବନ ମୋହୋର ॥
ଉଗ୍ରସେନଙ୍କୁ ଧରିଆଣି । ଯେଠାରେ ପକାଇବି ହାଣି ॥
ମୋର ମରଣ ସେ ଲୋଡ଼ଇ । ତାହାଙ୍କୁ ବିଶ୍ୱାସ ନୁହଇ ॥
ମୋର ବଇରୀ ଛନ୍ତି ଯେତେ । ଭୋ ମିତ୍ର ମାରିବି ଯେମନ୍ତେ ॥
ତେବେ ସେ ମହୀ ଅକଣ୍ଟକେ । ଭୋଗ କରିବି ମିତ୍ରଯେକେଁ ॥
ଶଶୁର ଜରାସନ୍ଧ ମୋର । ସଙ୍ଗାତ ଦ୍ୱିବିଦ ବାନର ॥
ଆବର ନାରକା ଅସୁର । ବଡ଼ ସୁହୃଦ ବାଣାସୁର ॥
ଯେ ମୋର କଛେ ବଳିଆର । ମୋତେ ଡରଇ ସୁନାସୀର ॥
ଭୋ ମିତ୍ର ଯାଅ ବେଗ ହୋଇ । ଧନୁ ଉଛବ ଯାତ୍ରା କରି ॥
ବହନ ଆଣ ବେନିଭାଇ । ମିତ୍ର ମୋହୋର ଯେବେ ତୁହି ॥
ଯେମନ୍ତେ କଂସ ବୋଲ ଶୁଣି । ଅକ୍ରୂର ମନେ ମନେ ଗୁଣି ॥
ବୋଲଇ ଶୁଣ ନରନାଥ । ଯେ କଥା ତୋହୋର ଉଚିତ ॥
ଶତ୍ରୁକୁ ବୁଦ୍ଧିବଳେ ମାରି । ତେବେ ଜୀବନ ସୁଖେ ଧରି ॥
ବୋଲଇ ଶୁଣ ନୃପବର । ଦଇବ ବଳ ବଳିଆର ॥
ଯେଝା କରମ ଫଳାଫଳେ । ଭୋଗ କରନ୍ତି ମହୀତଳେ ॥
ମଝେ ମାନବ ଦେହ ବହି । ଲାଭ ଅଲାଭ ନ ଜାଣଇ ॥
ଯେ ଯାହା ପୂର୍ବେ ଥାଇ କରି । ଭୁଞ୍ଜଇ ସେ ଫଳ ଆବୋରି ॥
ଶୋକ ହରଷ ବେନି ପଥେ । ଗମନ୍ତି କର୍ମର ଆୟତେ ॥
ତୋହୋର ଆଜ୍ଞା ଶିରେ ଘେନି । ଭୋ ରଜା ଯିବି ଯେହିକ୍ଷଣି ॥
ଶୁଣି ହରଷ ଭୋଜରାଜା । ଅକ୍ରୂର ମିତ୍ର କଲା ପୂଜା ॥
କଂସ ପଶିଲା ଅନ୍ତଃପୁର । ଅକ୍ରୂର ହୋଇଲା ବାହାର ॥
ମିଳିଲା ନିଜପୁରେ ଯାଇ । ଗୋବିନ୍ଦ ପାଦେ ଚିତ୍ତ ଦେଇ ॥
କହଇ ଦାସ ଜଗନ୍ନାଥ । ଅକ୍ରୂର ସଜ କଲା ରଥ ॥
ସେ ରଥ ପଛେ ଯାଇ ଧୀରେ । ମନ ମୋ ଯିବ ଗୋପପୁରେ ॥
ସୁଜନ ଆସ ସଙ୍ଗ ମେଳେ । କୃଷ୍ଣ ଦେଖିବା ବେନି ଡୋଳେ ॥
ଅକ୍ରୂର ରଥେ ମନ ଥୋଇ । ସଂସାର ଦୁଃଖେ ଧ୍ୱଂସି ନୋହି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଅକ୍ରୂର ସଂପ୍ରେଷଣେ ନାମ ଊନଚତ୍ୱାରିଂଶୋଽଧ୍ୟାୟଃ ॥*

## ଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ କୃଷ୍ଣ ଲୀଳା । କେଶୀ ଯେ ବୃନ୍ଦାବନେ ଗଲା
ରଜନୀ ହୋଇଲା ପ୍ରଭାତ । ଗଗନେ ଉଦେ ଛାୟାକାନ୍ତ ॥
ଅଶ୍ୱ ଗୋଟିଯେ ରୂପ ଧରି । ଦେଖି ଗଗନେ ଦେବେ ଡରି ॥
ପବନ୍ନୁ ବେଗବନ୍ତ ହୋଇ । କୋପେ ଖୋଳଇ ଖୁରେ ମହୀ
ଲାଞ୍ଜ ଲାଡ଼ଇ କନ୍ଧେ ଧରି । ଗଗନେ ପଡୁଅଛି ହୁରି ॥
ବିମାନେ ବସି ଦେବତାଯେ । ଉଡ଼ିଣ ଗଲେ ଲାଞ୍ଜ ବାଯେ ॥
ଗୋରୁଯେ ପଳାଇଲେ ଛନେ । ପଶିଲେ ଘୋର କୁଞ୍ଜ ବନେ ॥
ଉଡ଼ିଲେ ବୃକ୍ଷ ଘରେ ଶୂନ୍ୟେ । କେଶୀର ନିଶ୍ୱାସ ପବନେ ॥
ଶବଦ ଶୁଣି ମହା ଘୋର । ଗୋବିନ୍ଦ ହୋଇଲେ ବାହାର ॥
ଦେଖିଲେ ଗୋପର ବିକଳ । ଶୂନ୍ୟେ ପଳାନ୍ତି ମେଘ ମାଳ ॥
ଦେବ ଗଗନ ଗଲେ ଛାଡ଼ି । ଶୁଣି ଦଇତ ଘୋର ରଡ଼ି ॥
ଦେଖିଲେ ମଦନ ଗୋପାଳ । ଅସୁର ତେଜ ଅନର୍ଗଳ ॥
କଂସ ଆଦେଶ ମହାବଳୀ । ଲୋଡ଼ଇ ରାମ ବନମାଳୀ ॥
ଅସୁର ବିଚାରଇ ମନେ । କୃଷ୍ଣଙ୍କୁ ଦେଖିବ କେସନେ ॥
ଲୁଚାଇ ଅଛି ବସୁଦେବ । ମୋହୋର ଡରେ ପଳାଇବ ॥
ମୁଖ ବିସ୍ତାରି ବେଗେ ଧାଇଁ । ବେଗେ ଗିଳିବି ବେନି ଭାଇ ॥
ଯେତେ ବିଚାରିଣ ଆନନ୍ଦେ । ମିଳିଲା ଗୋପପୁର ମଧ୍ୟେ ॥
ଗୋପ ବାଳକ ମଧ୍ୟେ ଥାଇ । ଦେଖିଲେ ପ୍ରଭୁ ଭାବଗ୍ରାହୀ ॥
ଗୋପ କୁମର କନ୍ଧେ ହସ୍ତ । ଆଗ ହୋଇଲେ ଗୋପୀନାଥ ॥
ଗୋବିନ୍ଦ କଲେ ଶିଙ୍ଗାନାଦ । କେଶୀ ପାଇଲା ମନେ ଖେଦ
ମୁଖ ବିସ୍ତାରି କୋପ ଭରେ । ଧାଇଁଲା ପବନହୁଁ ଖରେ ॥
ମୁଖେ କି ପିଉଛି ଆକାଶ । ମିଳିଲା ଗୋବିନ୍ଦର ପାଶ ॥
ଉଞ୍ଚାଇ ପଛ ବେନିପାଦେ । ପିଟିଲା ଗୋବିନ୍ଦର ହୃଦେ ॥
ଗୋବିନ୍ଦ ବଞ୍ଚାଇଲେ ତାହା । ବଜ୍ରହୁଁ ଆଣ୍ଟ ଯାର ହିଆ ॥
ଚରଣ ଧରି ବାମ କରେ । ପକାଇ ଦିଲେ କୋପଭରେ ॥
ଗରୁଡ଼ ଯେହ୍ନେ ନାଗ ଧରି । ପକାଇ ରହଇ ଆବୋରି ॥
ପୁଣି କ୍ଷଣକେ ଜ୍ଞାନ ପାଇ । କେଶୀ ଧାଇଁଲା ରୋଷ ବହି ॥
ବିସ୍ତାରି ଦେଖି ତାର ତୁଣ୍ଡ । କୃଷ୍ଣ ଭରିଲେ ଭୁଜ ଦଣ୍ଡ ॥
ସର୍ପ ପଶଇ ଯେହ୍ନେ ବିଳେ । ଦେଖି ହସନ୍ତି ଗୋପବାଳେ ॥
ଦଇତ କାମୋଡ଼ିଲା କର । ଦନ୍ତ ଝଡ଼ିଲା ତା ଅଧର ॥
ତପତ ଫାଳ ପ୍ରାୟେ କର । ଗିଳି ନ ପାରିଲା ଅସୁର ॥
କେଶୀ ଉଦରେ କୃଷ୍ଣ କର । ବଢ଼ିଲା ଯେହ୍ନେ ଗିରିବର ॥
ଗର୍ଭ ମନ୍ଥିଲେ ବାହୁଦଣ୍ଡେ । ଖୁଆ ଯେସନେ ଦଧି ଭାଣ୍ଡେ ॥
ନିରୋଧ ହୋଇ କଣ୍ଠଦ୍ୱାର । ବିସ୍ତାର କଲା ଚାରି ଖୁର ॥
ବେଗେ ଛାଡ଼ିଲା ମଳମୂତ୍ର । ପଡ଼ି ହୋଇଲା ମୂରୁଛିତ ॥
ବେନି ଲୋଚନ କଲା ସ୍ଥିର । ଜୀବନ ଛାଡ଼ିଲା ଅସୁର ॥
ଦେଖନ୍ତି ସ୍ୱର୍ଗେ ଦେବତାଯେ । ପଶିଲା ଗୋବିନ୍ଦର ଦେହେ ॥
ପାଚିଲା ଫୁଟି ପ୍ରାୟେ ହୋଇ । ଅସୁର ପଡ଼ିଲା ମିଳାଇ ॥
ତାହାର ଗର୍ଭୁ ଦାମୋଦର । ଫେଡ଼ି ଆଣିଲେ ନିଜ କର ॥
ଦେଖି ଆନନ୍ଦ ଦେବତାଯେ । ସ୍ୱର୍ଗେ ଶୁଭିଲା ଜୟେଜୟେ ॥
ପୁଷ୍ପ ବରଷିଲେ ଗହଳ । ସ୍ତୁତି କରନ୍ତି ଦେବବଳ ॥
କେଶୀ ମରଣ ଦେଖି ହସି । ଆସି ମିଳିଲେ ବ୍ରହ୍ମ ଋଷି ॥
ଯେକାନ୍ତେ ଦେଖି ନରହରି । ସ୍ତୁତି କରନ୍ତି ପାୟେ ପଡ଼ି ॥
ଉଠି ଗୋବିନ୍ଦ ମୁଖ ଚାହିଁ । ବୋଲନ୍ତି ଶିରେ କର ଦେଇ ॥
ଭୋ କୃଷ୍ଣ ପ୍ରଭୁ ଯୋଗେଶ୍ୱର । ଯାଦବ ବଂଶର ଠାକୁର ॥
ଅଶେଷ ଜନ୍ତୁ ହୃଦଗତେ । ଜ୍ଞାନୀ ଚିନ୍ତନ୍ତି ଯୋଗମତେ ॥
ଜ୍ୟୋତି ସ୍ୱରୂପ ନିରଞ୍ଜନ । ସକଳ ଆତ୍ମାରେ ଅଭିନ୍ନ ॥
ମନ ବୁଦ୍ଧିରେ ଅଗୋଚର । ମହାପୁରୁଷ ତୁ ଈଶ୍ୱର ॥
ତୋହୋର ମାୟାକୁ ଆବୋରି । ଶରୀର ଧରୁ ନରହରି ॥
ସଂସାର କରୁ ତୁ ଭିଆଣ । ସୃଷ୍ଟି ପାଳନ ସଂହାରଣ ॥
ଭାରା ନିବାରେ ଦେହ ବହି । ସାଧୁଙ୍କୁ ରଖୁ ଭାବଗ୍ରାହୀ ॥
ଲୀଳାରେ ମାଇଲୁ ଅସୁର । ଦେଖି ଡରନ୍ତି ସୁର ନର ॥
ଦେବେ ନ ରହନ୍ତି ଆକାଶେ । କେଶୀ ଦଇତ ଭୟେ ତ୍ରାସେ ॥
ଭୋ ନାଥ ଶୁଣ ଚକ୍ରଧର । ମାରିବୁ ମୁଷ୍ଟିକେ ଚାଣୁର ॥
ଧନୁ ଭାଙ୍ଗିବୁ ବାମ କରେ । ହସ୍ତୀ ମାରିବୁ ରଙ୍ଗ ଦ୍ୱାରେ ॥
କଂସ ମାରିବୁ ଚାରିଦିନେ । ରାଜ୍ୟ ନିବେଶି ଉଗ୍ରସେନେ ॥
କଂସର ଅଷ୍ଟମଲ୍ଲ ନାଶି । ଯାଦବ ବଂଶକୁ ଆଶ୍ୱାସି ॥
କାଳ ଦମନ ଶଙ୍ଖାସୁର । ସୁର ନାରକା ବେଗେ ମାର ॥
ଇନ୍ଦ୍ର ଭୁବନୁ ପାରିଜାତ । ବଳେ ଆଣିବୁ ଗୋପୀନାଥ ॥
ବୀର ରାଜାଙ୍କ କନ୍ୟା ଆଣି । ବିଭା ହୋଇବୁ ଚକ୍ରପାଣି ॥
ଜରାସନ୍ଧର ଭୟେ ଯାଇ । ସମୁଦ୍ରେ ଦ୍ୱାରକା ଭିଆଇ ॥
ନୃଗରାଜାଙ୍କୁ ଦେବୁ ସୁଖ । ନାଶିବୁ କୃକଳାସ ରୂପ ॥
ତୋହୋର ପୁରେ ଶକ୍ରାଜିତ । ତୋତେ ବରିବ ଗୋପୀନାଥ ॥
ସତ୍ୟଭାମାର ତୁଲେ ମଣି । ତୋହୋର ପାଦେ ଦେବ ଆଣି
ଯମର ପୁରୁ ପୁତ୍ର ଆଣି । ତୋଷିବୁ ଗୁରୁଙ୍କ ଘରଣୀ ॥
ଘୋର ଦଇତ ପୁଣ୍ଡରୀକ । ତାହାକୁ ଦେବୁ ଆତ୍ମାରୂପ ॥

ଦହନ କରି କାଶୀପୁର । ଯୁଦ୍ଧେ ମାରିବୁ ଦନ୍ତବକ୍ର ॥
ପାଣ୍ଡବ ଯଜ୍ଞ ସଭାକାଳେ । ଚକ୍ରେ ଛେଦିବୁ ଶିଶୁପାଳେ ॥
ଦ୍ୱାରକାପୁରେ ବନମାଳୀ । ଯେତେ କରିବୁ ସୁଖ କେଳି ॥
ମୁ ତାହା ଦେଖିବି ନୟନେ । ପୁରାଣେ ଶୁଣିଅଛି କର୍ଣ୍ଣେ ॥
ଅର୍ଜୁନ ରଥେ ତୁ ସାରଥି । ମୁ ପୁଣି ଥିବି ତୋର କତି ॥
ଅନେକ ରାଜା ସୈନ୍ୟବଳ । ସଂହାର କରିବୁ ସକଳ ॥
ଶୁଦ୍ଧ ବିବେକ ନିରଞ୍ଜନ । ଆଦି ଅନାଦି ଠୂଳ ଶୂନ୍ୟ ॥
ଅଶେଷ ପୁଣ୍ୟ ଫଳ ଦାତା । ତୁମ୍ଭେ ଜଗତ ପିତାମାତା ॥
ଆପଣା ତେଜେ ମାୟା କରି । ଗୁଣ ପ୍ରକାଶ ନରହରି ॥
ମନୁଷ୍ୟ ରୂପେ ଅବତାର । ଯାଦବ ବଂଶର ଠାକୁର ॥
ଯେମନ୍ତେ ବ୍ରହ୍ମାର ନନ୍ଦନ । ଆନନ୍ଦେ କଲେ ସାମଗାନ ॥
ଗୋବିନ୍ଦ ଆଜ୍ଞା ଶିରେ ଘେନି । ଗଲେ ନାରଦ ମହାମୁନି ॥
ଯେମନ୍ତେ ଅସୁର ସଂହାରି । ଗୋପେ ବିଜୟେ ନରହରି ॥
ଯେବେ ହୋ ଶୁଣ ନରନାଥ । କୃଷ୍ଣର ଲୀଳା ଭାଗବତ ॥
ଦିନେକ ପ୍ରଭୁ ଭଗବାନ । ବାଳକ ମେଳେ ଗଲେ ବନ ॥
ଗିରି କନ୍ଦର ଘୋରବନେ । ଗାଈ ଚରାନ୍ତି ତୋଷ ମନେ ॥
ହସି ବୋଇଲେ ଦାମୋଦର । ଯେମନ୍ତ ଖେଡ଼ ଅଛି ମୋର ॥
ଥୋକାୟେ ହୁଅ ତୁମ୍ଭେ ଚୋର । ଥୋକାୟେ ହୁଅ ରାତ୍ରପାଳ ॥
ଖେଳିବା କଦମ୍ବର ତଳେ । ଯେମନ୍ତ ବୋଇଲେ ଗୋପାଳେ ॥
ଥୋକାୟେ ହୁଅ ପଶୁଗଣ । ଛଗଳ ମହିଷୀ ହରିଣ ॥
ଥୋକାୟେ ହୁଅ ଦଣ୍ଡୁଆସି । କହି ହସନ୍ତି ବ୍ରହ୍ମରାଶି ॥
ତକ୍ଷଣେ କରି ସନମତ । ସେୟେ ହୋଇଲେ ଯୂଥ ଯୂଥ ॥
ଥୋକେ ହୋଇଲେ ଘରବାସୀ । ଚୋର ଜଗନ୍ତି ଦଣ୍ଡୁ ଆସି ॥
ଯେମନ୍ତେ ଚୋର ଲୀଳା କରି । ଖେଳନ୍ତି ବନେ ନରହରି ॥
ଶୁଣ ରାଜନ ପରୀକ୍ଷିତ । ଅସୁର ମିଳିଲା ତୁରିତ ॥
ମୟ ଦଇତର କୁମର । ତାହାର ନାମ ବ୍ୟୋମାସୁର ॥
ମାୟା ଗୋପାଳ ରୂପ ହୋଇ । ଅନେକ ନେଲାନି ଚୋରାଇ ॥
ଗିରି କ୍ରୋଟରେ ଲୁଚାଇଲା । ଦ୍ୱାରେ ପାଷାଣ ଆଛାଦିଲା ॥
ପୁଣି ଚୋରାଇ ନେଇ ଭରି । ଦ୍ୱାର ତାଙ୍କର ଆଣ୍ଡ କରି ॥
ଯେମନ୍ତେ ନେଲା ବେଳ ଦଶ । ରହିଲା ସାତପାଞ୍ଚ ଶେଷ ॥
ଗୋପ କୁମରଙ୍କୁ ଅନାଇଁ । ଜାଣିଲେ ପ୍ରଭୁ ଭାବଗ୍ରାହୀ ॥
ଦଇତ ମୋତେ ମାୟା କଲା । ମୋର ବାଳକ ଚୋରାଇଲା ॥
ଭଲ ତ କଲି ଖେଡ଼ ରସ । ମୋର ଗୋପାଳେ ଗଲେ ନାଶ ॥
ଦଇତ ନେଇ ଗିରିବରେ । ଲୁଚାଇ ଡାକି ଅଛି ଦ୍ୱାରେ ॥
କୃଷ୍ଣ ଧଇଁଲେ ଧାତିକାରେ । ମିଳିଲେ ପର୍ବତର ଦ୍ୱାରେ ॥
ବେନି ବାଳକ ଯାକି କାଖେ । ଦଇତ ଯାଇ ଗିରିପାଖେ ॥
ତାହାର କେଶ ବାମକରେ । କୃଷ୍ଣ ଧଇଲେ ଧାତିକାରେ ॥
ତକ୍ଷଣେ ନିଜରୂପ ହୋଇ । ପଳାଇ ଲୋଡ଼ଇ ଛଡ଼ାଇ ॥
କୃଷ୍ଣ ଧଇଲେ ତାର ହସ୍ତ । ଘୂରାଇ ପକାଇଲେ ପଥ ॥
ପଶୁଙ୍କ ପ୍ରାୟେ ମୁଣ୍ଡ ମୋଡ଼ି । ଅସୁର କଲା ଘୋର ରଡ଼ି ॥
ତକ୍ଷଣେ ଛାଡ଼ିଲା ଜୀବନ । କୃଷ୍ଣର ଦେହେ ହେଲା ଲୀନ ॥
ପର୍ବତ କ୍ରୋଟ ଦ୍ୱାରେ ଯାଇ । ଦ୍ୱାର ଫେଡ଼ିଲେ ଭାବଗ୍ରାହୀ ॥
ଗୋପ ବାଳକୁ ଆଣିଲେ । ଦେବେ କୁସୁମ ବରଷିଲେ ॥
ଆନନ୍ଦେ ଘେନି ନିଜ ବାଳ । ଗୋପେ ମିଳିଲେ ଆଦିମୂଳ ॥
ଯେବେ ସରିଲା ବାଳକେଳି । ବନେ ବିହାର ବନମାଳୀ ॥
ତାରିଲେ ଗୋପେ ନରନାରୀ । ଭଗତ ବନ୍ଧୁ ନରହରି ॥
ଭଗତ ଜନ ତାରିବାରେ । ଗୋରୁ ଚରାନ୍ତି ବନଘୋରେ ॥
ବାଳକ ରୂପେ ଅବତାର । ବଢ଼ିଲେ ନନ୍ଦର ମନ୍ଦିର ॥
ମଥୁରାପୁର ନରନାରୀ । ପୂର୍ବେ ଅଛନ୍ତି ତପକରି ॥
ନୟନେ ଦେଖି କୃଷ୍ଣ ମୁଖ । ଖଣ୍ଡିବେ ଜନ୍ମ କୋଟି ଦୁଃଖ ॥
ସୁଜନ ଜନେ ଶୁଣ ଧୀରେ । ହରି ଚରିତ କର୍ଣ୍ଣଦ୍ୱାରେ ॥
ରାମ ଗୋବିନ୍ଦ ବାଳକେଳି । ଗୁନ୍ଥି ଲମ୍ବାଅ କଣ୍ଠେ ମାଳି ॥
ଚିତ୍ତ ନିରୋପି କୃଷ୍ଣ ପାୟେ । ନ ବୁଡ଼ ଭବଜଳ ମୋହେ ॥
କହଇ ବିପ୍ର ଜଗନ୍ନାଥ । ଗୀତ ବିନୋଦେ ଭାଗବତ ॥
ଭଗତ ଜନେ ଯେହା ଗାଇ । କୃଷ୍ଣ ଲୀଳାରେ ମନଦେଇ ॥
ହୋଇବ ଭବ ଜଳୁଁ ପାର । ଯେଣେ ବିଶ୍ୱାସ ପଣ କର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*କେଶୀ ବ୍ୟୋମାସୁର ବଧେ ନାମ ଚତ୍ୱାରିଂଶୋଽଧ୍ୟାୟଃ ।*

## ଏକଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କ କୁମର । ଶୁଣ ପରୀକ୍ଷ ନୃପବର ॥
ଯେଣେ ତୁ ହୋଇବୁ ନିସ୍ତାରି । ହେଳେ ତରିବୁ ଭବବାରି ॥
କଂସ ଆଦେଶ ଘେନି ଶିରେ । ଅକ୍ରୂର ବସିଲା ରଥରେ ॥
ଅରୁଣ ତେଜ ପ୍ରକାଶିଲା । ଦିଗ ଆନନ୍ଦେ ବିଜେ କଲା ॥
ବ୍ରାହ୍ମଣ ଉଠି ରାତ୍ରଅନ୍ତେ । ସ୍ତୁତି କରନ୍ତି ବେଦମତେ ॥
ମଙ୍ଗଳ ସ୍ୱରେ ବେଦ ଧ୍ୱନି । ଚଳିଲେ ତପେ ବନେ ମୁନି ॥

ମନେ ସୁମରନ୍ତି ମୁରାରି । ଯେ ଯାହା ମତେ ସ୍ତୁତି କରି ॥
ମଳିଣ ହୋଇ ତାରାଗଣ । ନିର୍ମଳ ଦିଶିଲା ଗଗନ ॥
ଉତ୍ତର ଦିଗେ ବଳିଆର । ପବନ ବହଇ ମଧୁର ॥
ଶଙ୍ଖ ଶବଦ ତାନ ଗୋଳେ । ଅମର ଗୁରୁ ଲଗ୍ନ ବେଳେ ॥
ଅଶ୍ୱ ଯୋଚିଲା ରଥଦଣ୍ଡେ । ମଙ୍ଗଳ ମଥୁରାର ଦାଣ୍ଡେ ॥
ଅକ୍ରୂର ହରଷ ବଦନ । ମନେ ଚିନ୍ତଇ ଭଗବାନ ॥
ଚିନ୍ତଇ ପ୍ରଭୁ ଆଦିମୂଳ । ଆନନ୍ଦେ ବହେ ଅଶ୍ରୁଜଳ ॥
ପଦ୍ମଲୋଚନ ପାଦତଳେ । ଭାବଇ ମନ୍ତ୍ରୀ ଯୋଗବଳେ ॥
ମନ ନିବେଶି କୃଷ୍ଣ ପାଦେ । ବୋଲଇ ଶୋକ ଗଦଗଦେ ॥
ପୂର୍ବେ କି କରିଅଛି ପୁଣ୍ୟ । ତପ ସାଧନେ ଯଜ୍ଞ ଧର୍ମ ॥
ଦେବ ବ୍ରାହ୍ମଣ ଦୁଃଖୀ ଯେତେ । ଧନ ବା ଦିଲି ଅପ୍ରମିତେ ॥
କି ଅବା ତପ ଅଛି କରି । ଦେଖିବି ପ୍ରଭୁ ନରହରି ॥
ଦୁର୍ଲଭ ପ୍ରାୟେ ମୁ ମଣଇଁ । କୃଷ୍ଣ ଭେଟିବି ଅବା କାହିଁ ॥
ବେଦ ପଠନେ ଶୂଦ୍ର ଜନେ । ଦୁର୍ଲଭ ଚରିତ ଯେସନେ ॥
ଗୋବିନ୍ଦ ଦରଶନ ମୋତେ । କେମନ୍ତେ ଯିବଇଁ ପରତେ ॥
ଭବ ସାଗରେ ଦେହ ଧରି । କୋଟିକେ ଗୋଟିଏ ନିସ୍ତରି ॥
ଯେମନ୍ତେ ଦୁଃଖ ମୋ ଦହନ । ଧନ୍ୟ ହୋଇବ ଦେହ ଜନ୍ମ ॥
ଯେ ପାଦପଦ୍ମ ଯୋଗୀ ଜନେ । ହୃଦେ ଲଗାନ୍ତି ଅବଧାନେ ॥
ତହିଁ ଲାଗିବ ମୋର ଶିର । ଧନ୍ୟରେ ଜୀବନ ମୋହୋର ॥
ମୋହୋରେ କଂସ ଦୟା କରି । ଯେଣେ ଦେଖିବି ନରହରି ॥
ଅଶେଷ ଜନ୍ମ ଘୋର ତମ । ଆଜ ଛାଡ଼ିବ ମାୟା ଭ୍ରମ ॥
ପାଦଯୁଗଳ ନଖ ତେଜ । ଦେଖି ତରିବି ଦେବରାଜ ॥
ବ୍ରହ୍ମା ଶଙ୍କର ଆଦି ଦେବେ । ଚିନ୍ତା କରନ୍ତି ପାଦଯୁଗେ ॥
ଗୋପକୁମର ମେଳେ ବନେ । ଗୋରୁ ଚରାନ୍ତି ଅବଧାନେ ॥
ଗୋପୀଙ୍କ କୁଚ ଯୁଗେ ଥାଇ । କୁଙ୍କୁମ ଲାଗିଅଛି ଯହିଁ ॥
ନନ୍ଦ ମନ୍ଦିରେ ତାହା ଦେଖି । ନିର୍ମଳ ହେଉ ଚର୍ମ ଆଖି ॥
ଅଶେଷ ତୀର୍ଥଙ୍କର ଘର । ସେବନ୍ତି ସୁର ବ୍ରହ୍ମା ନର ॥
କଳ୍ପ ବୃକ୍ଷର ପ୍ରାୟେ ହୋଇ । ସକଳ ବାଞ୍ଛାଫଳ ଦେଇ ॥
ସକଳ ସମ୍ପଦର ସାର । ସେବକ ଜନ ସୁଖ ଘର ॥
କଳ୍ପ ବୃକ୍ଷର ପ୍ରାୟେ ହୋଇ । ସକଳ ବାଞ୍ଛାଫଳ ଦେଇ ॥
ସକଳ ସମ୍ପଦର ସାର । ସେବକ ଜନ ସୁଖ ଘର ॥
ଜନ୍ମ ମରଣ ପଥ ଦୁଇ । ଯେଣେ ସେ ଅଜ୍ଞାନେ ଭ୍ରମଇ ॥
ତାହାଙ୍କ ବିଶ୍ରାମ ମନ୍ଦିର । ଭବ ନିଦାଘ ଛତ୍ର ସାର ॥
ଦେଖିବି ସୁନ୍ଦର କପୋଳ । ନାସା ଶ୍ରବଣ ବେନି ଡୋଳ ॥
ଅଳପ ହାସ୍ୟ ମୁଖ ରଙ୍ଗ । ଅଳକ କପୋଳ ସୁରଙ୍ଗ ॥
ଶୁଭ ଲକ୍ଷଣ ଆଜ ଦିନେ । ଶୃଗାଳ ଯାଉଅଛି ବାମେ ॥
ଭାରା ନିବାରଣେ ମୁରାରି । ମଞ୍ଚେ ଅଛନ୍ତି ଦେହ ଧରି ॥
ଅତି ସୁନ୍ଦର ଦେଖି ରୂପ । ଖଣ୍ଡିବି ନୟନର ତାପ ॥
ଯାହାର ନାମ ଭାବଗ୍ରାହୀ । କାର୍ଯ୍ୟ କାରଣ ଯାର ନାହିଁ ॥
ସେ ରୂପ ପୂରୋଇ ଲୋଚନ । ତେଜିବି ଭବମାୟା ଭ୍ରମ ॥
ଯେ ଆତ୍ମା ମାୟା ଯୋଗ କରି । ଗୋପେ ଗୋପାଳ ବନେ ହେରି ॥
ଯାହାର ଗୁଣ କର୍ମ ଘେନି । ଦିନ ହରନ୍ତି ବ୍ରହ୍ମା ମୁନି ॥
ପ୍ରାଣ ଧରନ୍ତି ଯତସତେ । ପବିତ୍ର କରନ୍ତି ଜଗତେ ॥
ତେଣେ ଯାହାର ଚିତ୍ତ ନାହିଁ । ପଶୁଙ୍କ ପ୍ରାୟେ ସେ ଜୀଅଇ ॥
ଅଂଶେ ମାନବ ଦେହ ମତେ । ଯାଦବ ବଂଶ ଦେବ ହିତେ ॥
ସକଳ ଜନ୍ତୁ ହୃଦେ ଥାଇ । ଭାବ ଅଭାବ ସେ ଜାଣଇ ॥
ମୁ ଯେ ଚରଣ ତଳେ ପଡ଼ି । ଶିରେ ଅଞ୍ଜଳି ଥିବି ଯୋଡ଼ି ॥
ଅଳପ ହସି ବାଙ୍କେ ଚାହିଁ । ମୋତେ ଦେଖିବେ ଭାବଗ୍ରାହୀ
ତକ୍ଷଣେ ହୋଇବି ନିର୍ମଳ । ଖଣ୍ଡିବି ଦୂରିତ ସକଳ ॥
ଅତି ଉସତ ସୁଖପାଇ । ବୋଲିବି କୃଷ୍ଣ ତ୍ରାହି ତ୍ରାହି ॥
ମୁଁ ତାର ଜ୍ଞାତି ସହୋଦର । ସୁହୃଦ ପଣେହେଁ ବେଭାର ॥
ମୋହୋର ବେନିଭୁଜ ଧରି । ତୋଳିବେ ରାମ ଦଇତାରି ॥
ପବିତ୍ର ହୋଇବଇଁ ମୁହିଁ । ତୀର୍ଥ କୋଟିଏ ଫଳ ପାଇ ॥
ନିକଟେ ଦେଖି ବ୍ରହ୍ମରାଶି । ଛେଦିବି କାଳଦଣ୍ଡ ଫାଶି ॥
କୃଷ୍ଣର ଅଙ୍ଗ ସଙ୍ଗ ପାଇ । ଚାହିଁବି ଶିରେ କର ଦେଇ ॥
ଦାସ ବତ୍ସଳ ନରହରି । ମୋତେ ଡାକିବେ ନାମଧରି ॥
ତେବେ ସେ ଜନ୍ମ ସୁଖ ମୋର । ସଂସାର ପ୍ରାଣୀଙ୍କର ସାର ॥
ଯାହାର ନାହିଁ ମିତ୍ର ବୈରି । ପ୍ରିୟ ଉଦାସ ଆଦି କରି ॥
ତଥାପି ଭଗତ ଜନନ୍ତ । ଭଜଇ ସୁହୃଦର ମତ ॥
ରୋହିଣୀ ସୁତ ଦେଖି ମୋତେ । ବେଗେ କରିବେ କୋଳଗତେ ॥
ଘରକୁ ନେଇ ମୋର ପାଶେ । ବସିବେ ସୁହୃଦ ବିଶ୍ୱାସେ ॥
ବନ୍ଧୁ କୁଶଳ ପଚାରିବେ । ଜନ୍ମ ମରଣ ମୋ ନାଶିବେ ॥
କଂସ ବିଚାରି ଅଛି ଯାହା । ଗୋବିନ୍ଦ ଜାଣନ୍ତି ନା ତାହା ॥
ରଥ ବାହଇ ଖରତର । ଯେମନ୍ତେ କରଇ ବିଚାର ॥
ଯା ନାମ ପରମ ମଙ୍ଗଳ । ମହତ ଗତି ଆଦି ମୂଳ ॥
କମଳା ମନୋହର ରୂପ । ଦେଖି ତରିବି ଭବ କୂପ ॥
ଯେ ଉଷାକାଳ ଶୁଭ ମୋତେ । ମଙ୍ଗଳ ମଥୁରାର ପଥେ ॥
କୃଷ୍ଣଙ୍କୁ ଦେଖି ବୃନ୍ଦାବନେ । ରଥୁଁ ଓହ୍ଲାଇବି ବହନେ ॥
ରାମ ଗୋବିନ୍ଦ ପଦ୍ମପାଦେ । ପଡ଼ିବି ମୋକ୍ଷ ଫଳ ସଧେ ॥
ଯୋଗୀ ଚିନ୍ତନ୍ତି ଧ୍ୟାନବଳେ । ଦେଖିବି ଗୋପାଳଙ୍କ ମେଳେ

ପାଦେ ପଡ଼ିବି ଯେତେବେଳେ । କୃଷ୍ଣ ଧଣିବେ ମୋତେ କୋଳେ ॥
ଶିରେ ମୋ ଦେବେ ପଦ୍ମକର । ନାଶିବେ ଦୁଃଖ ମହାଘୋର ॥
କାଳ ଭୁଜଙ୍ଗ ଭୟ ନାହିଁ । ଯେ ନର ଶରଣ ପଶଇ ॥
ସେ ପଦ୍ମକର ରଖେ ତାରେ । ପଶଇ ବେଗେ ମୋକ୍ଷ ଘରେ ॥
ଯେବଣ କରେ ଦାନ ଦେଇ । ବଳି ପାତାଳେ ଭୋଗ ପାଇ ॥
ଭଜଇ କୃଷ୍ଣ ପଦ୍ମପାଦ । ସ୍ୱର୍ଗେ ପାଇବ ଇନ୍ଦ୍ରପଦ ॥
ରାସ ଉଛବ ବୃନ୍ଦାବନେ । ଯେବଣ ଭୁଜ ଗୋପୀଜନେ ॥
ସୁନ୍ଦର କୁଚ ଯୁଗେ ଦିଲେ । କାମ ଅନଳ ନିବାରିଲେ ॥
କଂସର ଦୂତ ବୋଲି ମୋତେ । କୋପ ନ କରି କୃଷ୍ଣ ଚିତ୍ତେ ॥
ସେ ତାହା ଅଛଇ ନା ଜାଣି । ଯାହାର ନାମ ଅନ୍ତର୍ଯ୍ୟାମୀ ॥
ଅସ୍ତ ହୋଇଲେ ଦିନକର । ଗୋକୁଳେ ମିଳିଲା ଅକ୍ରୂର ॥
ବାଟେ ଦେଖିଲା ବାଲିକୁଦ । ପଡ଼ିଛି ଗୋବିନ୍ଦର ପାଦ ॥
ଧ୍ୱଜ ଅଙ୍କୁଶ ପଦ୍ମ ଚିହ୍ନ । ଦେଖି ସାନନ୍ଦ କଲା ମନ ॥
ପୁଲକ କଲା ରୋମ ରାଜି । ଅଶ୍ରୁ ଗଳଇ ଚକ୍ଷୁ ବୁଜି ॥
ରଥୁଁ ପଡ଼ିଲା ବେଗେ ଡେଇଁ । ବୋଲଇ କୃଷ୍ଣ ତ୍ରାହି ତ୍ରାହି ॥
ପାଦ ପଙ୍କଜ ଚିହ୍ନ ଧୂଳି । ଅକ୍ରୂର ଶିରେ ବେଗେ ବୋଳି
ଲୋଟଇ ପାଦ ଚିହ୍ନ ପରେ । ତାଡଇ ବେନି ଭୁଜ ଶିରେ ॥
ଅକ୍ରୂର ଥାଇ ନିଜ ଘରେ । ଯାହା ଶୁଣଇ କର୍ଣ୍ଣ ଦ୍ୱାରେ ॥
ତାହାର ପାଦଚିହ୍ନ ପାଇ । ଉଠିଣ ଆନନ୍ଦେ ନାଚଇ ॥
ଆନନ୍ଦ ସାଗରେ ବୁଡ଼ିଲା । ଦେହ ଅବନୀ ପାସୋରିଲା ॥
ଯେମନ୍ତେ ଖଣ୍ଡେ ଦୂର ଯାଇ । ଅକ୍ରୂର ରଥୁଁ ଦିଲା ଚାହିଁ ॥
ଦେଖିଲା ଗୋପାଳଙ୍କ ମେଳେ । ଗୋରୁୟେ ଅଛନ୍ତି ଗହଳେ ॥
ଗାଈ ଦୁହନ୍ତି ଗୋପ ପୋୟେ । ଶବଦ ସମୁଦ୍ର ପରାୟେ ॥
କ୍ଷୀର ଢାଳନ୍ତି ଭାଣ୍ଡେ ନେଇ । ପୁଣି ଦୁହନ୍ତି ଗୀତ ଗାଇ ॥
ଯେ ଯାହା ଅନୁରୂପେ ରୂପ । ଦିଶନ୍ତି ଯେକଇ ସ୍ୱରୂପ ॥
କଙ୍କଣ ନୂପୁର ବାଜେଣି । ବିବିଧ ଛନ୍ଦେ କାଛ ଟାଣି ॥
ମୟୂର ପୁଚ୍ଛ ଗୁଞ୍ଜ ଶିରେ । ସୁରଙ୍ଗ ପାଦୁକା ପୟରେ ॥
ଗୋରୁଙ୍କ ଲାଞ୍ଜ ଧୂଳି ସଙ୍ଗେ । ଭୂଷଣ ଗୋପାଳଙ୍କ ଅଙ୍ଗେ ॥
ଛନ୍ଦ ଦଉଡ଼ି ଧରି କରେ । ବାଛରୀ ଛନ୍ଦନ୍ତି ସଧୀରେ ॥
ଶ୍ରବଣେ ଶୋହଇ କୁଣ୍ଡଳ । କଣ୍ଠେ ଲମ୍ବଇ ବନମାଳ ॥
ଅକ୍ରୂର ଦେଖି ବିଚାରଇ । ରାମ ଗୋବିନ୍ଦ ନ ଚିହ୍ନଇ ॥
ସର୍ବେ ଦିଶନ୍ତି ଯେକମତେ । ମୁଁ ଅବା ଜାଣିବି କେମନ୍ତେ ॥
ଦାସ ବଚ୍ଛଳ ଭଗବାନ । ଜାଣିଲେ ଅକ୍ରୂରର ମନ ॥
ତକ୍ଷଣେ ଦିବ୍ୟ ରୂପ ହୋଇ । ଗାଈ ଦୁହନ୍ତି ବେନିଭାଇ ॥
ଧବଳ ବର୍ଣ୍ଣ ରାମ କାୟେ । କୋଟିଏ ଚନ୍ଦ୍ର ସମ ନୋହେ ॥

ନୀଳ ବସନ କଟିପରେ । ରଙ୍ଗ ବସନ ପାଗ ଶିରେ ॥
ଶିରେ ସପତ ନାଗଫେଣୀ । କରେ କଙ୍କଣ କଣ୍ଠେ ମଣି ॥
କର୍ଣ୍ଣେ କୁଣ୍ଡଳ ରତ୍ନସାର । ନିବିଡ଼ ସୁରଙ୍ଗ ଅଧର ॥
କୃଷ୍ଣ ଦେଖିଲେ ବାମ ମାଖେ । ଗୁଞ୍ଜ ମୟୂର ପୁଚ୍ଛ ଦିଶେ ॥
ନୀଳ ଜୀମୂତ ଜନ୍ମ ଶୋହେ । କୋଟିଯେ କାମ ତୁଲ୍ୟ ନୋହେ
ଶ୍ରବଣ ମକର କୁଣ୍ଡଳ । ହୃଦେ ଲମ୍ବଇ ବନମାଳ ॥
ଶ୍ରୀବଚ୍ଛ ଚିହ୍ନ ପୀତବାସ । ରଙ୍ଗ ଅଧରେ ମନ୍ଦହାସ ॥
ରତ୍ନ କଠାଉ ପାଦଯୁଗେ । ମଣି ମେଖଳା କଟି ଭାଗେ ॥
କ୍ଷୀର କଣିକା ନୀଳ ଦେହେ । ଦିଶନ୍ତି ନକ୍ଷତ୍ର ପରାୟେ ॥
ଲୋଚନ ପଦ୍ମ ପ୍ରାୟେ ଦିଶି । ମହା ମହିମା ବ୍ରହ୍ମରାଶି ॥
ଅକ୍ରୂର ମନେ ବିଚାରଇ । ଦେଖିଲି ପ୍ରଭୁ ଭାବଗ୍ରାହୀ ॥
ଯେ ସେ ରୋହିଣୀ ସୁତ ରାମ । ସୁନ୍ଦର ପଣେ ନାହିଁ ସମ ॥
ଆଜାନୁ ଭୁଜ ବଳିଆର । ମଝା ସିଂହକୁ ପଟାନ୍ତର ॥
ବିକ୍ରମ ସିଂହ ପ୍ରାୟେ ହୋଇ । ଯେ ସେ ଗୋବିନ୍ଦ ବେନିଭାଇ
ସ୍ୱଭାବେ ବୟସ କିଶୋର । ଅଟନ୍ତି ବେନି ସହୋଦର ॥
ଗନ୍ଧ ଚନ୍ଦନ ଦେହେ ବୋଳି । କପୋଳ ଶୋହେ ଗୋରୁ ଧୂଳି
ପ୍ରଧାନ ପୁରୁଷ ଯେ ବେନି । ସଂସାର ପିଅର ଜନନୀ ॥
ଅବନୀ ଭାରାର ଉଶ୍ୱାସେ । ଜନ୍ମ ହୋଇଲେ ନିଜ ଅଂଶେ
ଦଶ ଦିଗର ତମ ନାଶି । ନିଜ ସ୍ୱରୂପେ ବ୍ରହ୍ମରାଶି ॥
ମର୍କତ ସ୍ତମ୍ଭ ଚାରିପାଶେ । ରତ୍ନ ପାଚେରି ପ୍ରାୟେ ଦିଶେ ॥
ରଥୁଁ ଓହ୍ଲାଇଲା ଅକ୍ରୂର । ଧୀରେ ଚାହାଁଇ ସ୍ନେହଭର ॥
ଗୋବିନ୍ଦ ନିକଟେ ମିଳିଲା । ସଭୟେ ଲୋଚନ ବୁଜିଲା ॥
ଅଭୟ ପାଦେ ଶିର ଦେଇ । ପଡ଼ିଲା ଦଣ୍ଡ ପ୍ରାୟେ ହୋଇ ॥
ନୟନ ଯୁଗୁଁ ବହେ ନୀର । କଣ୍ଠ ହୋଇଲା ଶୋକଭର ॥
କହି ନ ପାରି ଆତ୍ମା ନାମ । ମନେ ବୋଲଇ ହରିନାମ ॥
ପୁଣି ଉଠିଲା ଭାବ ଭରେ । ପଡ଼ିଲା ରାମର ପୟରେ ॥
ଦେଖି ସାନନ୍ଦ ବେନିଭାଇ । ଉଠିଲେ ଅକ୍ରୂରକୁ ଚାହିଁ ॥
ଧରି ଅକ୍ରୂର ବେନି ଭୁଜ । ଟେକିଲେ ପ୍ରଭୁ ଦେବରାଜ ॥
ଚାପିଲେ ହୃଦରେ ଲଗାଇ । ଅକ୍ରୂର ବୋଲେ ତ୍ରାହି ତ୍ରାହି ॥
ପୁଣି ପଡ଼ଇ ପାଦତଳେ । ରାମ ଧଇଲେ ଯାଇ କୋଳେ
ଅକ୍ରୂର ମୁଖେ ନୀରଦେଇ । ବସ୍ତ୍ରେ ପୋଛିଲେ ଭାବଗ୍ରାହୀ ॥
ଶାନ୍ତି କରାଇ ସହୋଦର । କନ୍ଧେ ଚାପିଲେ ବେନିକର ॥
ରାମ ଗୋବିନ୍ଦ କନ୍ଧେ କର । ସଧୀରେ ଚାଲଇ ଅକ୍ରୂର ॥
ଆନନ୍ଦ ସାଗରେ ବୁଡ଼ିଲା । ରାତ୍ର ଦିବସ ନ ଜାଣିଲା ॥
ଅକ୍ରୂର ଘେନି ବେନିଭାଇ । ମିଳିଲେ ନନ୍ଦ ଘରେ ଯାଇ ॥

ଆସନ ଦେଇ ଦାମୋଦର । ପୂଜନ୍ତି ଅକ୍ରୁର ପୟର ॥
ପାଦ ଧୋଇଲେ ଚକ୍ରଧର । ବିଞ୍ଚନ୍ତି ରୋହିଣୀ କୁମର ॥
ସ୍ୱଭାବେ ଖୁଡ଼ୁତା ଅକ୍ରୁର । ବନ୍ଧୁଜନଙ୍କର ବେଭାର ॥
ମଧୁର କୋମଳ ବଚନ । ତୋଷିଲେ ଅକ୍ରୁରର ମନ ॥
ପବିତ୍ର ଅନ୍ନ ବାସପାଣି । ଗୋବିନ୍ଦ ପରଷନ୍ତି ଆଣି ॥
ଦଧି ଅଧାମ ଘୃତସର । ଦିଅନ୍ତି ରୋହିଣୀ କୁମର ॥
ମୁଖ ପଖାଳି ବାସ ଗୁଆ । ଗୋବିନ୍ଦ ଭୁଞ୍ଜାନ୍ତି ବିଡ଼ିଆ ॥
ଗନ୍ଧ ଚନ୍ଦନ ଫୁଲମାଳ । ଦେଇ ବସିଲେ ପାଦତଳ ॥
ଅକ୍ରୁର ଦେହୁଁ ଶ୍ରମ ଗଲା । ଜାଣିଲେ ପ୍ରଭୁ ନନ୍ଦ ବଳା ॥
ଅକ୍ରୁର ପାଦେ କର ଦେଇ । ଧୀରେ ଚାପନ୍ତି ଭାବଗ୍ରାହୀ ॥
ନନ୍ଦକୁ ନିଦ୍ରା ମୋହ କରି । ଯେକାନ୍ତେ ପୁଛନ୍ତି ମୁରାରି ॥
ଭୋ ତାତ କହିବା କୁଶଳ । ଭଲେ କି ଛନ୍ତି ଯଦୁ କୁଳ ॥
ମୋର ଜନନୀ ଅଛି ଭଲେ । ମୋର ବିଛେଦ ତାର ତୁଲେ ॥
ମାତା ପାଇଲା ବଡ଼ ଦୁଃଖ । ମୋର ଜୀବନ ହେଉ ଧିକ ॥
ମୋହୋର ବାଦେ ତାର ପୋୟେ । କଂସ କଚାଡ଼ିଲା ନିର୍ଦ୍ଦୟେ ॥
ଜୀବନ୍ତେ ଅଛିଟିକି ଘରେ । ଭୋ ତାତ କହ ମୋ ଆଗରେ
କି ଆର ପଚାରିବି ମୁହିଁ । ଜୀବନ ଡରେ ଗୋପେ ଥାଇ
ଯାବତ ଅଛି ଭୋଜପତି । ତୁମ୍ଭର କାହିଁ ଭଲଗତି ॥
ପଶୁ ମାରଣ ରସେ ଯେହ୍ନେ । ବଳିରେ ଥାନ୍ତି ପଶୁଗଣେ ॥
କଂସ ଜୀବନ ଯେବେ ଥାଇ । ତୁମ୍ଭର ସୁଖ ଲେଶ ନାହିଁ ॥
ସୋଦର ବହେଣୀର ପୋୟେ । ଯେ କଂସ ମାଇଲା ନିର୍ଦ୍ଦୟେ ॥
କି ତାର କହିବି ବିଚାର । ସ୍ୱଭାବେ ଅଟଇ ଅସୁର ॥
ଯେମନ୍ତେ ବିଶ୍ୱାସି ପଚାରି । ଅକ୍ରୁର ପାଦ କରେ ଧରି ॥
ନୟନୁ ବହେ ଅଶ୍ରୁଜଳ । ଅକ୍ରୁର ଦେଖିଣ ବିକଳ ॥
ଉଠି ଗୋବିନ୍ଦ ଧରି କୋଳେ । ମୁଖ ଧୋଇଲା ବାସଜଳେ ॥
ଛାଡ଼ିଲା ଆପଣାର ଶ୍ରମ । କହଇ ମଧୁର ବଚନ ॥
ପିତା ଜନନୀଙ୍କର କଥା । ଶୁଣି ପାଇଲେ ମନେ ବ୍ୟଥା ॥
ଯେକାନ୍ତେ ରାମ ଶିରୀଧର । କୁଶଳ କହଇ ଅକ୍ରୁର ॥
ଥିଲା ଯେ ଦାସ ଜଗନ୍ନାଥ । ଶିରେ ନିବେଶି ବେନିହସ୍ତ ॥
ସୁଜନ ଜନ ପଛେ ଥାଇ । ରାମ ଗୋବିନ୍ଦ ମୁଖ ଚାହିଁ ॥
ଛାଡ଼ିଲା ଭବବନ୍ଧ ତ୍ରାସ । ଗୀତେ ଗାଇଲା କୃଷ୍ଣରସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଅକ୍ରୁର ଶ୍ରୀକୃଷ୍ଣ ଦର୍ଶନେ ନାମ ଯେକଚତ୍ୱାରିଂଶୋଽଧ୍ୟାୟଃ ।*

# ଦ୍ୱିଚତ୍ୱାରିଂଶ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର । ଶୁଣ ପରୀକ୍ଷ ନୃପବର ॥
ପଲଙ୍କେ ବସାଇ ଅକ୍ରୁର । କୃଷ୍ଣ ଯେ ଧଇଲେ ପୟର ॥
ଯାହା ବିଚାରୁଥିଲା ପଥେ । କୃଷ୍ଣ ପୂଜିଲେ ସେହିମତେ ॥
ଯାହାର ନାମ ପଦ୍ମନାଭ । ତାହାକୁ କିସ ବା ଅପୂର୍ବ ॥
ଶୀତଳ ମଣୋହି କରାଇ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥
ବନ୍ଧୁ ବିଷୟେ ରାଜା କଂସ । ଯେମନ୍ତେ କରିଛି ବିଶ୍ୱାସ ॥
କୃଷ୍ଣ ବୋଲନ୍ତି ଶୁଣ ତାତ । ଭଲେ ଆଇଲଟିକି ପଥ ॥
ବନ୍ଧୁ କୁଶଳ ଅଛ ଜାଣି । ଭୋ ତାତ କହ ପରିମାଣି ॥
ଯାବତ କୁଳବ୍ୟାଧି ହୋଇ । କଂସ ମାତୁଳ ମୋ ଅଛଇ ॥
ତାବତ ସୁଖ କାହିଁ ଆର । ବନ୍ଧୁ ବାନ୍ଧବ ଯେତେ ମୋର ॥
ବଡ଼ ହୋଇଲା ଦୁଃଖ ଭାର । ତାତ ଜନନୀଙ୍କ ମୋହୋର ॥
ପୁତ୍ର ମାରଣେ ମୋର ବାଦେ । ଲୋହ ଶାଙ୍କୁଳି ବେନିପାଦେ ॥
ଆଜ ମୋହୋର ଭାଗ୍ୟ ଦେଖ । ଦେଖିଲି ବନ୍ଧୁଜନ ମୁଖ ॥
ଭୋ ତାତ ତୋହୋର ଆଗମ । ଆଇଲୁ କେବଣ କାରଣ ॥
କପଟ ନ କର ତୁ ମୋତେ । କହ ସଦୟେ ତୋଷ ଚିତ୍ତେ ॥
କୃଷ୍ଣ ବଚନ କର୍ଣ୍ଣେ ଶୁଣି । ଅକ୍ରୁର କହେ ସାଧୁବାଣୀ ॥
ଯାଦବ ବଂଶେ ଯାହା କଲା । ବସୁଦେବକୁ ହାଣୁଥିଲା ॥
ଧନୁ ଉଛବ ଯାତ୍ରା ଛଳେ । ଗୋପେ ପେଷିଲା ମୋତେ ବଳେ
ତୋହୋର ଜନ୍ମ ଆମ୍ଭଘରେ । ନାରଦ କହିଲେ ଛାମୁରେ ॥
ଶୁଣି ଯେତକ କଷ୍ଟ ଦିଲା । ଭୋ ନାଥ ନୁହଇ ସହିଲା ॥
କିସ କହିବି ଆର ମୁହିଁ । ତୁ କି ନ ଜାଣୁ ଭାବଗ୍ରାହୀ ॥
ଅକ୍ରୁର ବୋଲ କୃଷ୍ଣ ଶୁଣି । ହସନ୍ତି ରାମ ଚକ୍ରପାଣି ॥
ନନ୍ଦକୁ ରାଇ ବେନିଭାଇ । କହନ୍ତି ଅକ୍ରୁର ବସାଇ ॥
ନନ୍ଦକୁ ବୋଲଇ ଅକ୍ରୁର । ମଥୁରା ଯିବା ସଜକର ॥
ଧନୁ ଉଛବ ମଧୁପୁର । ଗୋରସ ଘେନ ଶତେ ଭାର ॥
ସର ଲବଣୀ ଆଦି କରି । ଗୋପରେ ଯେତେ ନରନାରୀ
ବହନ ସାଜ ରାତ୍ର ଥାଉଁ । କଂସ ରାଜାର କୋପ ନୋହୁ ॥
ଶକଟେ ନାନା ଦ୍ରବ୍ୟ ଭରି । ଆଗ ହୁଅନ୍ତୁ ନର ନାରୀ ॥
ରାଜା ହକରା ଚାରିଦିଗେ । ଲୋକେ ମିଳିଲେ ଧନୁ ଯଜ୍ଞେ ॥
ଯେ ଯାହା ମତେ ପୂଜା କରି । ତୋଷ କରିବେ ଦଣ୍ଡଧାରୀ ॥
ରାଜନ ହୋଇ ସାବଧାନ । ଯେ ଯାହା ମତେ ଦେବ ଦାନ ॥
ଧନ ବସନ ଅଳଙ୍କାର । ଅନେକ କରିଛି ସମ୍ଭାର ॥

ଯେମନ୍ତ କହି ରାଜାଦୂତ । ନନ୍ଦକୁ ଦିଲକ ଶ୍ରୀମୁଖ ॥
ନନ୍ଦ ଉଠିଣ ଘେନି କରେ । ଶ୍ରୀମୁଖ ଲଗାଇଲା ଶିରେ ॥
ଶୁଣି ସାନନ୍ଦ ଗୋପବୀର । ଘୋଷଣ ଦିଲା ଗୋପପୁର ॥
ଗୋପାଳେ ବେଗେ ହୁଅ ସଜ । ଆଜ୍ଞା ଦେଇଛି ଭୋଜରାଜ ॥
ଧନୁ ଉଚ୍ଛବ ମଧୁପୁର । ଗୋରସ ଘେନ ଶତେଭାର ॥
ଯେ ଯାହା ମତେ ବେଗେ ଯାଅ । ରାତ୍ର ହୁଁ ଦଣ୍ଡେ ହେଁ ନରହ ॥
ବିଳମ୍ବ ନ କର ଥୋକାୟେ । କୋପ କରିବ କଂସ ରାୟେ ॥
ରାମ ଗୋବିନ୍ଦ ନନ୍ଦ ସଙ୍ଗେ । ରଥେ ମଥୁରା ଯିବେ ବେଗେ ॥
ରାଜାଙ୍କୁ କରିବେ ଦର୍ଶନ । ଦେଖିବେ ଧନୁ ଯାତ୍ରାମାନ ॥
ରାତ୍ରହୁଁ ଯାଅ ବେଗ କରି । ଶକଟେ ଘୃତ ସର ଭରି ॥
ଗୋପରେ ଶୁଭିଲା ଘୋଷଣ । ମଥୁରା ଯିବେ ନାରାୟଣ ॥
ରାଜାଙ୍କୁ ଦର୍ଶନ କରିବେ । ମଥୁରା କଟକେ ରହିବେ ॥
ବନ୍ଦୀ କରିବ ମଧୁପୁରେ । ଲୁଚି ଯେ ଅଛି ନନ୍ଦ ଘରେ ॥
ଶୁଣି ଗୋପାଳେ ଛନ ଛନ । ବିକଳ ଗୋପୀଙ୍କର ମନ ॥
ଯେକ ଆରକେ ମୁଖ ଚାହିଁ । କହନ୍ତି ବାଇ ପ୍ରାୟେ ହୋଇ ॥
ଶୁଣ ଗୋ ସଖୀ ବିପରୀତ । ଆସି ଯେ ଅଛି କଂସଦୂତ ॥
ନନ୍ଦ ଗୋବିନ୍ଦ ଆଦି କରି । ମଥୁରା ଘେନିଯିବ ଧରି ॥
ନେଇ ମାରିବ ବେନି ଭାଇ । ଆମ୍ଭର ନେବ ଗୋରୁଗାଈ ॥
କେ ବୋଲେ ନୁହଇ ଯେମନ୍ତ । ମଥୁରା ହୋଇଅଛି ଯାତ ॥
ଯାତ୍ରାକୁ ଯିବେ ବେନିଭାଇ । ରଥ ଦେଇଛି ପଠିଆଇ ॥
ରାଜା ନିଯୋଗ ଆବୋରିବେ । ମଥୁରା ନଗରେ ରହିବେ ॥
ନନ୍ଦ ଯଶୋଦା ଆଦି କରି । ଗୋପରେ ଯେତେ ନରନାରୀ ॥
ଗୋରସ ଦେବେ ରାଜା ଆଗେ । ଯାତ୍ରା ଦେଖିବେ ନାନାରଙ୍ଗେ ॥
ପୁଣି ଆସିବେ ଗୋପପୁର । ରହିବେ ରାମ ଦାମୋଦର ॥
ଶୁଣି ହୁଅନ୍ତି ଶୋକ ଚିତ୍ତ । ଥୋକେ ବୋଲନ୍ତି ଯେହି ମତ ॥
କି ବୁଦ୍ଧି କରିବା ଗୋ ଯେବେ । କୃଷ୍ଣ ମଥୁରା ଯେବେ ଯିବେ ॥
କେମନ୍ତେ ବଞ୍ଚିବା ଗୋ ଦିନ । କୃଷ୍ଣ ଯେ ଆମ୍ଭର ଜୀବନ ॥
କହି କାତର କମ୍ପେ କାୟେ । ମୂର୍ଚ୍ଛିତ ହୋଇଲେ ଥୋକାୟେ ॥
ଶିଶିରେ ଯେହ୍ନେ ପଦ୍ମବନ । କ୍ଷଣକେ କରଇ ଦହନ ॥
କାହାର ମୁଖ ଗଲା ଶୁଖି । ଭାବେ ବୁଜିଲେ ବେନି ଆଖି ॥
କାହାର ଫିଟିଲା ଅଞ୍ଚଳ । କଟି ମେଖଳା ରତ୍ନସାର ॥
କେ ପଡ଼ି କାନ୍ଦଇ ଧରଣୀ । ଦେହ ଅବନୀ ହିଁ ନ ଜାଣି ॥
ହା କୃଷ୍ଣ ବୋଲି ମୋହେ ପଡ଼ି । କେ ଶିରେ ବେନି କର ତାଡ଼ି ।
ଶିରେ କେ ମାରଇ ପଥର । ଆହା ଗୋବିନ୍ଦ ହଳଧର ॥

କେ ବୋଲେ ଜାଣିମାଟି ଆଜି । ମୋର ମହିମା ତୁମ୍ଭେ ବୁଝି ॥
ଅକ୍ରୂର ସଂହାରିବି ମୁହିଁ । ରାମ ଗୋବିନ୍ଦଙ୍କୁ ଗୁହାଇ ॥
କଂସ କି କରିବ ମୋହର । ଆମ୍ଭର କୃଷ୍ଣ ବଳିଆର ॥
ଦେଖିଲଟିକି ଚକ୍ଷୁଦ୍ୱାରେ । ଗିରି ତୋଳିଲା ବାମ କରେ ॥
ପୂତନା ଆଦି କେଶୀ ଯାୟେ । ଗୋବିନ୍ଦ କଲା ଗୋ ନିର୍ଭୟେ
ଯାହାର ଭୁଜ ଆଶ୍ରେ କରି । ସୁଖରେ ଗୋପରେ ବିହରି ॥
ଅକ୍ରୂର ମାରିବା ଗୋ ଆସ । କି କରି ପାରିବ ସେ କଂସ ॥
ଆଜ ଗୋବିନ୍ଦ ଘେନି ଗଲେ । ଆମ୍ଭେ ମାରିବୁ ଯେକା ବେଳେ ॥
କି କରୁଥିବା ଗୋପପୁରେ । କୃଷ୍ଣ ସେ ଜୀବନ ଆମ୍ଭର ॥
ରାମ ଗୋବିନ୍ଦ ଅନୁରାଗ । ଅଳ୍ପ ହସିତ ମୁଖ ରଙ୍ଗ ॥
ହୃଦେ ସୁମରି ଲୁହ ବହି । ଚିତ୍ର ପ୍ରତିମା ପ୍ରାୟେ ହୋଇ ॥
ସୁନ୍ଦର ଚାଲିବାର ଠାଣି । ଯେମନ୍ତ କହେ ମୃଦୁ ବାଣୀ ॥
ଅଳ୍ପ ହସି ବାଙ୍କେ ଚାହିଁ । କଟାକ୍ଷେ ଜଗତ ମୋହୋଇ ॥
ଯେତେ ସଙ୍କଟୁ ଅଛି ତାରି । ଅସୁର ଯେତେ ଅଛି ମାରି ॥
ଯେଣେ ନିରୋପି ଶୋକ ମନ । କୃଷ୍ଣ ବିଯୋଗେ ଛନ ଛନ ॥
ସକଳେ ହୋଇ ଯେକ ଗୁଣ୍ଡ । ଶୋକ ଗହଳ ଗୋପଦାଣ୍ଡ ॥
କାନ୍ଦନ୍ତି ଦଇବ ସୁମରି । ବିଚ୍ଛେଦ ଦୁଃଖ ଗୋପନାରୀ ॥
ତୁ ହୋ ଦଇବ ବଡ଼ ମନ୍ଦ । ଗୋପ ନଗରେ କଲୁ ଛନ୍ଦ ॥
ସଂଯୋଗ କଲୁ କୃଷ୍ଣ ସଙ୍ଗେ । ଯେବେ ତ ବଞ୍ଚିଲୁ ବିଯୋଗେ ॥
ଆମ୍ଭର ନ ପୂରିଲା ଆଶ । ଅଳପେ କଲୁ ତୁ ନିରାଶ ॥
ନିଷ୍ଠୁର ସ୍ୱଭାବ ତୋ ହିଆ । ଆମ୍ଭରେ ନାହିଁ ତୋର ଦୟା ॥
ବାଳକ ପ୍ରାୟେ ତୋର କର୍ମ । କେମନ୍ତେ ସହିବଟି ଧର୍ମ ॥
ନୀଳ କୁନ୍ତଳ ଚାରୁ ମୁଖ । ଦେଖିଲେ ଛାଡ଼େ ମନ ଦୁଃଖ ॥
ମଧୁର ହାସ୍ୟ ନାସା ରେଖ । ଦେଖିଲେ ପାଉ ମନେ ସୁଖ ॥
ସେ ସୁଖ ନେଉ ଅଛୁ ଦୂର । ଅସାଧୁ କର୍ମ ଯେ ତୋହୋର ॥
ଯେମନ୍ତେ ଅକ୍ରୂରକୁ ଚାହିଁ । ବୋଲନ୍ତି କୋପଭର ହୋଇ ॥
ତୁ ଯେବେ ଅକ୍ରୂର ବୋଲାଉ । କ୍ରୂର ସ୍ୱଭାବ କିପାଁ ବହୁ ॥
ଆମ୍ଭର ଚକ୍ଷୁ ବନମାଳୀ । ତୁ ତାହା ନେଉଅଛୁ ଖୋଳି ॥
ନନ୍ଦ କୁମର କୃଷ୍ଣ ସଙ୍ଗେ । ସୁହୃଦ କଲୁ ପ୍ରିୟ ଭାବେ ॥
ଛାଡ଼ିଲୁ ସୁତ ଧନ ଘର । ଲାଜ ସ୍ୱଭାବ ବନ୍ଧୁ ବର ॥
ପୀରତି କରିଅଛୁ ନୂଆ । ଅକ୍ରୂର ନ ଛଡ଼ାଅ ଯେହା ॥
ମଥୁରା ନାରୀଙ୍କର ଭାଗ୍ୟ । ଶତେ ଜନ୍ମେ କେ ପାଇବ ॥
ଆଜ ପାହିଲା ସୁଖେ ନିଶି । ଦେଖିବେ କୃଷ୍ଣ ଦ୍ୱାରେ ବସି ॥
ନଗ୍ରେ ପଶନ୍ତେ ବେନି ଭାଇ । ବାମ ଦକ୍ଷିଣେ ଯିବେ ଚାହିଁ ॥

କଟାକ୍ଷେ ଚାହିଁ କୃଷ୍ଣ ମୁଖ । ଛାଡ଼ିବେ କୋଟି ଜନ୍ମ ଦୁଃଖ ॥
କୃଷ୍ଣ ସୁରଙ୍ଗ ମୁଖରସ । ନୟନ ପାନେ ହୋଇ ତୋଷ ॥
ଗୁରୁ ଗଉରବ ନ ଗଣି । ଦାଣ୍ଡେ ଦେଖିବେ ଚକ୍ରପାଣି ॥
ମଥୁରାପୁର ନାରୀଗଣ । ଚାହିଁ ମୋହିବେ ନାରାୟଣ ॥
ମଧୁର ହାସ୍ୟେ କୃଷ୍ଣ ମନ । ପଣନ୍ତେ ବାନ୍ଧିବେ ବହନ ॥
ଗୋବିନ୍ଦ ରତି ରସେ ଜିତା । ଛାଡ଼ିବେ ଗୋପପୁର ଚିନ୍ତା ॥
ଭୁଲାଇ କୃଷ୍ଣ ହଳଧାରୀ । ଛାଡ଼ି ନ ଦେବେ ଗୋପପୁରୀ ॥
ଯାଦବ ଆଦି ସାତ ବଂଶ । ତାହାଙ୍କ ପୁଣ୍ୟ ଗୋ ଅଶେଷ ॥
ଆଜ ପାଇବେ ତପ ଫଳ । ଦେଖିବେ ମଦନ ଗୋପାଳ ॥
ଆମ୍ଭର ପୂର୍ବ ପାପ ପୁଣ୍ୟ । ଅକ୍ରୂର ହୋଇଲା ଦାରୁଣ ॥
ଆମ୍ଭର ଦୁଃଖ ନ ଜାଣଇ । ମଥୁରା ନେବ ଭାବଗ୍ରାହୀ ॥
ଦେହରୁ ପ୍ରାଣ ନେବ ହରି । ଆଜ ମରିବୁଁ ଗୋପନାରୀ ॥
ଦେଖ ଗୋପାଳେ ବଡ଼ ମନ୍ଦ । ବିଚାର ନ କରଇ ନନ୍ଦ ॥
ଅକ୍ରୂର ବୋଲେ ପଠିଆଇ । ପୁଅଙ୍କ ଭଲ ନ ଜାଣଇ ॥
ଯଶୋଦା ନ ଜାଣଇ ଯେହା । କେମନ୍ତେ ଧରିବଟି ହିଆ ॥
ଗଉଡ଼େ ବାଇ ପ୍ରାୟେ ହୋଇ । ସଜ ହୁଅନ୍ତି ଆଗ ହୋଇ ॥
ଦଇବ ହୋଇଲା ବଇରୀ । ଆଜୁଁ ବୁଡ଼ିଲା ଗୋପଶିରୀ ॥
ଆସ ଗୋ ନିବାରିବା ପଥ । ଅକ୍ରୂର କେଡ଼େ ବଳବନ୍ତ ॥
ରଥ କରିବା ଖଣ୍ଡ ଖଣ୍ଡ । ଛେଦିବା ଅକ୍ରୂରର ମୁଣ୍ଡ ॥
କି କରି ପାରିବେ ଗୋପାଳେ । ରଥ ଭାଙ୍ଗିବା ଆମ୍ଭେ ବଳେ ॥
ଶୁଣି ଗୋ କଂସ କଲେ ରୋଷ । ଆମ୍ଭେ ନ ଥିବା ତା'ର ଦେଶ
ଅର୍ଦ୍ଧ ନିମିଷ କୃଷ୍ଣ ସଙ୍ଗ । ଛାଡ଼ି ମଣିବୁଁ ଶତେଯୁଗ ॥
ଆମ୍ଭର ଦୁଃଖର ସୋଦର । ଦଇବ କଲା ଯେତେ ଦୂର ॥
ଆମ୍ଭର ରାସ କେଳି ରସ । ଜାଣୁ ନା ବୃନ୍ଦାବନ ଦେଶ ॥
ନିମିଷେ ନ ପାଇ ମୁରାରି । କେମନ୍ତ କରୁ ଗୋପନାରୀ ॥
ତକ୍ଷଣେ ପାଇ ବ୍ରହ୍ମରାଶି । ନିମିଷ କରୁ ଘୋର ନିଶି ॥
ତାହାର ଗୁଣ ମନେ ଶୁଣି । ଯେବେ ମରିବୁଁ ଗୋପାଳୁଣୀ ॥
ଗୋରୁ ଚରାଉଥାଇ ବନେ । ଗୋପେ ଆସି ରାତ୍ରମାନେ ॥
ପଥେ ଗୋ ତାର ମୁଖ ଦେଖି । ପିଛାଡ଼ି ନ ପାରୁ ଯେ ଆଖି ॥
କଟାକ୍ଷ କରି ବେଣୁ ବାଇ । ଜୀବନ ପାଉ ତାହା ଚାହିଁ ॥
ଯେବେ ମଥୁରାପୁର ଗଲେ । କେମନ୍ତେ ବଞ୍ଚିବା ଗୋ ଭଲେ
ଯେମନ୍ତ ହୋଇ ଗୋପନାରୀ । କୃଷ୍ଣ ବିଚ୍ଛେଦେ ତନୁ ଘାରି ॥
ଲଜ୍ଜା ଛାଡ଼ିଲେ ଗୋପ ଦାଣ୍ଡେ । ତାଡ଼ନ୍ତି ବେନିଭୁଜ ମୁଣ୍ଡେ ॥
ବିକଳେ ବୁଜିଲେ ନୟନ । କାନ୍ଦନ୍ତି ଧରି କୃଷ୍ଣ ନାମ ॥
ମୁକୁନ୍ଦ ଦାମୋଦର ହରି । ମାଧବ କୃଷ୍ଣ ଦଇତାରି ॥
ଜୀବନ ଗଲାଟି ଆମ୍ଭର । ମଥୁରା ନା ଯା ଦାମୋଦର ॥
ତୋତେ ନ ପାଇ ଭାବଗ୍ରାହୀ । ଦିନ ବଞ୍ଚିବୁଁ କାହା ଚାହିଁ ॥
ଆଜୁଁ ଆମ୍ଭର ଚକ୍ଷୁ ଗଲା । ଜୀବନ ଥାଉଁ ଥାଉଁ ମଲା ॥
ଗୋପୀଙ୍କ ରୋଦନ ଶୁଣିଣ । ଅକ୍ରୂର କୋପକଲା ମନ ॥
ବୋଲଇ ନନ୍ଦ ମୁଖ ଚାହିଁ । ଲେଉଟି ଯିବି ଆଜ ମୁହିଁ ॥
ଜାଣୁନା କଂସର ମହିମା । ନଥିବୁ ଗୋପପୁର ସୀମା ॥
ଲେଉଟିଗଲେ ଆଜ ମୁହିଁ । ଜୀବନେ ପାରିବି କି ରହି ॥
ଦଣ୍ଡ ହେଁ ନକର ଉଛୁର । କୁଶଳ ଅଛି ଯେବେ ତୋର ॥
ରାମ ଗୋବିନ୍ଦ ମୋତେ ଦେଇ । ନ ଯାଇ ବନେ ଥାଅ ତୁହି ॥
ଯଶୋଦା ଅକ୍ରୂରକୁ ଚାହିଁ । କାନ୍ଦଇ କୃଷ୍ଣ କୋଳେ ଲଇଁ ॥
ରୋହିଣୀ ଘେନି ହଳଧର । ରୋଦନ କଲେ ଉଚ୍ଚସ୍ୱର ॥
ବଜ୍ର ପଡ଼ିଲା ଶିରେ ଜାଣି । କହନ୍ତି ଯଶୋଦା ରୋହିଣୀ ॥
ଦଇବ କଲା ବିପରୀତ । କାହାକୁ ସମର୍ପିବୁ ସୁତ ॥
ଜୀବନ ଥିବ ଆଉ କାହିଁ । ମରିବୁଁ ପୁତ୍ରଙ୍କୁ ନପାଇ ॥
ଯଶୋଦା କୃଷ୍ଣମୁଖ ଚାହିଁ । କାନ୍ଦଇ ମୁଖେ ଚୁମ୍ବ ଦେଇ ॥
ତୁ କୃଷ୍ଣ ଗଲେ ମଧୁପୁରୀ । ଜୀବନ ନ ପାରିବି ଧରି ॥
ଗୋରୁ ଚରାଇ ଯେତେବେଳେ । କାନନେ ଯାଉ ଗୋପ ମେଳେ
ଦଣ୍ଡେ ମୁ ନ ଦେଖିଲେ ତୋତେ । ନିମିଷ ହୋଇ ଯୁଗ ଶତେ ॥
ପୁଛଇ ଜଣେ ଜଣେ ମୁହିଁ । ପୁତ୍ର ମୋ କେ ଦେଖଲ କାହିଁ
କ୍ଷତ ହରିଣୀ ପ୍ରାୟେ ହୋଇ । ରବି କିରଣ ଚାହୁଁ ଥାଇ ॥
ବେଳ ତ ହୋଇଲା ଉଛୁର । କୃଷ୍ଣ ନଇଲା କିମ୍ପା ଘର ॥
ଅନ୍ନ ଭୋଜନ ମୋତେ ପିତା । ତୋତେ ନ ଦେଖି ମୋର ଚିନ୍ତା
ନିମିଷ ଯୁଗ ପ୍ରାୟେ ହୋଇ । ଘର ବାହାର ନ ରୁଚଇ ॥
ତୋର ବଦନ ଯେତେବେଳେ । ଦେଖଇ ନୟନ ଯୁଗଳେ ॥
ତେବେ ମୋ ଜୀବନ ପଶଇ । ସର ଲବଣୀ ତୋତେ ଦେଇ ॥
ଯେବେ ତୁ ମଧୁପୁର ଗଲେ । ମୁହିଁ ଯିବଇଁ ତୋର ତୁଲେ ॥
ପୁଣି ରାମଙ୍କୁ କୋଳ କରି । ଶୋକେ ବୋଲଇ ନନ୍ଦନାରୀ ॥
ତୁ ରାମ ବନେ ବଳିଆର । କୃଷ୍ଣ ଯେ ନୁହଇ ଚତୁର ॥
ସଙ୍ଗ ତୁ ନ ଛାଡ଼ିବୁ ଦଣ୍ଡେ । ଗହଳ ମଥୁରାର ଦାଣ୍ଡେ ॥
ଯେମନ୍ତେ କହି ନନ୍ଦରାଣୀ । ବେନି ଲୋଚନୁ ବହେ ପାଣି ॥
ଅକ୍ରୂର କୋପେ ପରଜଳି । ରୋଷେ ନନ୍ଦକୁ ଦେଇ ଗାଳି ॥
କୃଷ୍ଣ ସାରିଲେ ନିତ୍ୟ କର୍ମ । ସଜ ହୋଇଲେ ବଳରାମ ॥
ଗୋପୀଙ୍କ ରୋଦନ ଗହଳ । ଗୋପରେ ଶୁଭୁଅଛି ଗୋଳ ॥

ପ୍ରଳୟ ସିନ୍ଧୁ ପ୍ରାୟେ ମଣି । ବୋଲନ୍ତି ରାମ ଚକ୍ରପାଣି ॥
ଗୋପାଳେ ଆଗେ ଆଗୁଁସାର । ଗୋରସ ଶକଟ ସମ୍ଭାର ॥
ଅକ୍ରୂର ନିତ୍ୟକର୍ମ ସାରି । ରଥେ ତୋଳିଲେ ରାମହରି ॥
ମଙ୍ଗଳ ବାଦ୍ୟ ନାଦ ଧ୍ୱନି । ଆନନ୍ଦ ହେଉଛି ମେଦିନୀ ॥
ଆକାଶେ ଥାଇ ଦେବଲୋକେ । କୁସୁମ ବରଷନ୍ତି ଥୋକେ ॥
ଦିଗେ ଦିଶିଲେ ପରିମଳ । ପବନ ବହଇ ଶୀତଳ ॥
ରଥେ ସମୀର ଅନୁକୂଳ । ଶୂନ୍ୟେ ମିଳିଲେ ମେଘମାଳ ॥
ଗଗନେ ଦୁନ୍ଦୁଭି ଶବଦ । ମଙ୍ଗଳ କଲେ ଗୀତ ନାଦ ॥
ଦେଖନ୍ତି ଦଶ ଦିଗପାଳେ । ବାହାର ହୋଇଲେ ଗୋପାଳେ
ଶକଟେ ଯାନ୍ତି ଯୂଥଯୂଥ । ଗୋରସ ଭାର ଅପ୍ରମିତ ॥
ମଙ୍ଗଳ ଶୁଭିଲା ମହୁରି । ମଧ୍ୟେ ବିଜୟେ ନରହରି ॥
ଗୋପୀ ଓଗାଳୁଛନ୍ତି ପଥ । କାହିଁକି ଯିବୁ ଗୋପୀନାଥ ॥
ଆମ୍ଭ ଜୀବନ ହସ୍ତେ ଘେନି । ମଥୁରା ଯାଅ ଭାଇ ବେନି ॥
ଯେଡ଼େ ନିର୍ଦ୍ଦୟା ତୋର ହିଆ । ଆମ୍ଭରେ ଛାଡ଼ିଲୁ ତୁ ଦୟା ॥
ଯେବେ ଅକ୍ରୂର ତୋତେ ଧରି । ନେଉଛି ମଥୁରା ନଗରୀ ॥
ଅମ୍ଭେ ସକଳେ ତୋର ସଙ୍ଗେ । ଥିବୁଁ ତୋ ରଥ ଲାଗେ ଲାଗେ ॥
କଂସର ମୁଖେ ତୋତେ ଦେଇ । ଘରେ ରହିବୁଁ କିସ ପାଇଁ ॥
ଆମ୍ଭେ ସମସ୍ତେ ପରିବାରୀ । କୋପ ନକର ବନମାଳୀ ॥
କାକ-ର ପ୍ରାୟେ ଭୋଗ୍ୟକରି । ଯେବେ ପକାଇଲୁ ବିଛିରି ॥
ଶୁଣି ବୋଲନ୍ତି ଦାମୋଦର । କୋମଳ ଗଭୀର ଉତ୍ତର ॥
ଶୁଣ ଗୋ ସଖୀଜନେ ମୋର । ରାଜାର ଆକଟ ଅପାର ॥
ଦେଖ ଆମ୍ଭଙ୍କୁ ରଥେ ଭରି । ଅକ୍ରୂର ନେଉଅଛି ଧରି ॥
ଧନୁ ଉତ୍ସବ ରଙ୍ଗସଭା । ଅମ୍ଭେ ଗୋ ନୟନେ ଦେଖିବ ॥
ରାଜା ହୋଇବ ବଡ଼ ତୋଷ । ଆମ୍ଭଙ୍କୁ ଦେବ ଗ୍ରାମ ଦେଶ ॥
ଚାରିଦିଗରୁ ଲୋକେ ଆସି । ରଙ୍ଗସଭାରେ ଥିବେ ବସି ॥
ଅନେକ ଦିଗୁଁ ନରନାରୀ । ଅଣାଇଁ ଅଛି ଦଣ୍ଡଧାରୀ ॥
ଉତ୍ସବ ଦେଖି ତୋଷ ମନେ । ଅମ୍ଭେ ଆସିବୁଁ ଚାରିଦିନେ ॥
ତୁମ୍ଭେ ଗୋ ଯାଅ ଯେଝାଘରେ । ମନ ନିବେଶି ମୋ ପୟରେ ॥
ଅକ୍ରୂର ଶୁଣି କୋପଭରେ । ରଥ ବାହାଇ ଧାଡିକାରେ ॥
ଗୋପୀୟେ ପାଡ଼ନ୍ତି ବୋବାଳି । ବାଳିରେ ନ ପାରନ୍ତି ଚାଲି ॥
ହା ହା ଗୋବିନ୍ଦ ନନ୍ଦସୁତ । ବୋଲି ହୋଇଲେ ମୂର୍ଚ୍ଛିତ ॥
କଦଳୀ ଯେହ୍ନେ ମହାବାତେ । ପଡ଼ିଲେ ଗୋପନାରୀ ପଥେ ॥
ଗୋପୀ ବିକଳ କୃଷ୍ଣ ଚାହିଁ । ରାମର କୋଳେ ଭାବଗ୍ରାହୀ ॥
ସୁଦାମ ନାମେ ଗୋପବାଳ । ତାରେ ବିଶ୍ୱାସ ନନ୍ଦବାଳ ॥

ତାହାଙ୍କୁ ନିକଟେ ବସାଇ । କହିଲେ ବିଶ୍ୱାସ କରାଇ ॥
ଗୋପୀଙ୍କି କହ ତୁ ବହନେ । ଆମ୍ଭେ ଆସିବୁଁ ଚାରିଦିନେ ॥
ଧନୁ ଉତ୍ସବ ମୁ ଦେଖିବି । ରାଜାର ମନ ମୁ ତୋଷିବି ॥
ମଥୁରା ନ ରହିବି ଦଣ୍ଡେ । ତୁମ୍ଭେ ଗୋ ଜଗିଥିବ ଦାଣ୍ଡେ ॥
ମୋତେ ଦେଖିବ ରାତ୍ରମାନେ । ନନ୍ଦର ଘରେ ଚାରିଦିନେ ॥
ମୋହୋର ସତ୍ୟ ଯେ ବଚନ । ଯେଥକୁ ସାକ୍ଷ ନିରଞ୍ଜନ ॥
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ । ଗୋପୀଙ୍କି କହିଲା ମଣାଇଁ ॥
ଶୁଣି ଗୋପୀୟେ ଛନ ଛନ । ଦଣ୍ଡେ ହେଁ ନ ରହଇ ମନ ॥
ରଥକୁ ଚାହାନ୍ତି ନିରୋପି । ଚିତ୍ର ପ୍ରତିମା ପ୍ରାୟେ ଗୋପୀ ॥
କେ ବୃକ୍ଷେ ଉଠିଣ ବହନ । ରଥରେ ନିବେଶି ନୟନ ॥
ପିଢ଼ାରେ ଉଠି କେ ଦେଖନ୍ତି । ବୃକ୍ଷେ ଆରୋହୀ କେ ଡାକନ୍ତି ॥
କେ ଉଚ୍ଚ ଶିଖେ ଥାଇ ଡାକି । ରଥ ପାତାଙ୍ଗେ ଦେଇ ଆଖି ॥
କେ ବୋଲେ ଯିବା ଧାଡିକାରେ । କୃଷ୍ଣ ଭେଟିବା ନଦୀ ତୀରେ ॥
ଶୁଣି ଗୋବିନ୍ଦର ବିଶ୍ୱାସ । ଗୋପୀୟେ ହୋଇଲେ ନିରାଶ ॥
ନିଶ୍ୱାସ ଛାଡ଼ି ଖେଦ ଭରେ । ଜୀବନ ନ ରହେ ଶରୀରେ ॥
ଗୁରୁ ଗଉରବ ନ ଜାଣି । ରାତ୍ର ଦିବସ ହିଁ ନ ଗଣି ॥
ଜୀବନ ଦେଇ କୃଷ୍ଣ ପାଦେ । ଗୋପୀୟେ ରହିଁଲେ ବିଷାଦେ
ଅକ୍ରୂର ତୋଷମନ ହୋଇ । ବନ ଗହନେ ରଥ ବାହି ॥
ପବନୁ ବେଗେ ରଥ ଗଲା । କାଳିନ୍ଦୀ ନିକଟେ ମିଳିଲା ॥
ରଥୁ ଓହ୍ଲାଇ ବେନି ଭାଇ । ଜଳ ପିଇଲେ ତୋଷ ହୋଇ ॥
ନିର୍ମଳ କାଳିନ୍ଦୀର ଜଳ । ସ୍ୱଭାବେ ଶୀତଳ ପାଚଳ ॥
ଶିର ବଦନେ ଜଳ ସିଞ୍ଚି । କର ଯୁଗଳେ ମୁଖ ବିଞ୍ଚି ॥
ବୃକ୍ଷର ମୂଳେ ନେଇ ରଥ । ବସିଲେ ରାମ ଗୋପୀନାଥ ॥
ଅକ୍ରୂର ବେନି କର ଯୋଡ଼ି । କହଇ କୃଷ୍ଣ ପାଦେ ପଡ଼ି ॥
ଭୋ ନାଥ ହୋଇବା ପ୍ରସନ୍ନ । ଯମୁନା କରିବି ସ୍ନାହାନ ॥
ଉଠି ତୋହୋର ମୁଖ ଚାହିଁ । ପବିତ୍ର ହେବ ମୋର ଦେହୀ ॥
ବୋଲନ୍ତି ପ୍ରଭୁ ଭଗବାନ । ଯା ବେଗେ କର ତୁ ସ୍ନାହାନ ॥
ବହନ ଯିବା ମଧୁପୁର । ଅକ୍ରୂର ନ କର ଉଚ୍ଛୁର ॥
ଶୁଣି ଓହ୍ଲାଇ ରଥୁଁ ଧୀରେ । ପଶିଲା କାଳିନ୍ଦୀ ଭିତରେ ॥
ବୁଡ଼ିଲା ମାଧବ ସୁମରି । ଦେଖଇ ଜଳେ ନରହରି ॥
ଯେସନ କୂଳେ ଗଲା ଚାହିଁ । ଦେଖଇ ଜଳ ମଧ୍ୟେ ସେହି ॥
ଦେଖି ଚକିତ ମନ ହୋଇ । ବୋଲଇ ଅଇଲେ ପଳାଇ ॥
କଂସର ଡରେ ରଥେ ବସି । ବେନି ସୋଦର ଜଳେ ପଶି ॥
ପଳାଇ ଯିବେ ଗୋପପୁର । ମୋତେ ମାରିବ କଂସାସୁର ॥

କି ବୁଦ୍ଧି କରିବଇଁ ମୁହିଁ । କୂଳେ ଯେ ଅଇଲି ବସାଇ ॥
ଗଉଡ଼େ ଗଲେ କି ପଳାଇ । ଉଠି କୂଳକୁ ଦିଲା ଚାହିଁ ॥
ଦେଖଇ ବୃକ୍ଷତଳେ ରଥ । ଅଛନ୍ତି ରାମ ଗୋପୀନାଥ ॥
ଚକିତ ହୋଇଲା ଅକ୍ରୁର । ଭୟେ କମ୍ପଇ ଥରହର ॥
ବୋଲଇ ଜଳେ ଆନ କିସ । ମୁହିଁ ଯେ ଦେଖିଲି ସଂକାଶ ॥
ମିଥ୍ୟା ନୁହଇ ନା ସେ ଜଳେ । ପୁଣି ବୁଡ଼ିଲା ଆର ବେଳେ ॥
ଦେଖଇ ରତ୍ନମୟେ ପୁର । ସୁବର୍ଣ୍ଣ ବିମାନ ଉପର ॥
ସୁରଙ୍ଗ ରତ୍ନ ସିଂହାସନ । ଶୀତଳ ବହଇ ପବନ ॥
ଅନନ୍ତ ରୂପ ହଳଧର । କୋଟିଯେ ଚନ୍ଦ୍ର ପଟାନ୍ତର ॥
ସହସ୍ର ଫଣା ମଣିଶିର । କଟି ଦୁକୂଳ ନୀଳାମ୍ବର ॥
ରୂପେ ଶୋଭିତ ଶିବଗିରି । କୋଟିଯେ କାମ ନୋହେ ସର ॥
ମଣି କୁଣ୍ଡଳ ବନମାଳ । ସୁନ୍ଦର ଅଳକ କପୋଳ ॥
କଟି ମେଖଳା ରତ୍ନସାର । ନିବିଡ଼ ସୁରଙ୍ଗ ଅଧର ॥
ହାର କେୟୂର ଝଟକନ୍ତି । ଯେହ୍ନେ ଗଗନେ ଗ୍ରହପନ୍ତି ॥
ଅନନ୍ତ କୋଳେ ବନମାଳୀ । ନୀଳ ଜୀମୂତ ଦେହ ଝଳି ॥
ପୀତ ବସନ ବନମାଳ । ଶ୍ରବଣେ ମକର କୁଣ୍ଡଳ ॥
ସୁନ୍ଦର ନୀଳ ଭୁଜ ଚାରି । ଶଙ୍ଖ କମଳ ଚକ୍ରଧାରୀ ॥
ବିକଚ କମଳ ଲୋଚନ । ସୁନ୍ଦର ହୃଷ୍ଟିତ ବଦନ ॥
ଅନଙ୍ଗ ରୂପ ଭୂରୁ ରେଖା । କପୋଳ ସୁନ୍ଦର ନାସିକା ॥
ରଙ୍ଗ ଅଧରେ ମନ୍ଦ ହାସ । କର୍ଣ୍ଣେ କୁଣ୍ଡଳ ରବି ତ୍ରାସ ॥
ଦୀର୍ଘ ସେ ଭୁଜ ଜାନୁ ଯାଏ । ଦିଶେ ମର୍କତ ସ୍ତମ୍ଭ ପ୍ରାୟେ ॥
ତୁଙ୍ଗ ହୃଦୟେ ଶ୍ରୀନିବାସେ । ଶ୍ରୀବତ୍ସ ଚିହ୍ନ ବାମ ପାଶେ ॥
ଦକ୍ଷିଣାବର୍ତ୍ତ କମ୍ବୁ-ଗ୍ରୀବ । ପେଟ ତ୍ରିବଳୀ ପଦ୍ମନାଭ ॥
ନାଭି ଗଭୀର ମଝା-କ୍ଷୀର । କୃଶାଳ କଟି ରତ୍ନ ଦାମ ॥
ନିତମ୍ବ ହସ୍ତୀକୁମ୍ଭ ଜାଣି । କଟି ମେଖଳା ରତ୍ନ ମଣି ॥
ଉଲଟ ରମ୍ଭା ଜାନୁ ଯୁଗ । ଗୁଲ୍‌ଫ ଯୁଗଳ ସଞ୍ଚ ତୁଙ୍ଗ ॥
ମାଣିକ୍ୟ ପ୍ରାୟେ ନଖ ପନ୍ତି । ଅଙ୍ଗୁଳି ଅଗ୍ରେ ଝଟକନ୍ତି ॥
ନବ ପଲ୍ଲବ ପ୍ରାୟେ ଝଳି । କୋମଳ ଦିଶଇ ଅଙ୍ଗୁଳି ॥
କମଳ କୋଷ ପ୍ରାୟେ ହୋଇ । ପାଦ ପଙ୍କଜ ବିରାଜଇ ॥
ଅମୂଲ୍ୟ ରତ୍ନମୟେ ରାଶି । ବିବିଧ ଅଳଙ୍କାର ମିଶି ॥
ଶିରେ ମୁକୁଟ ହୃଦେ ହାର । କଟି ମେଖଳା ରତ୍ନସାର ॥
ଉତ୍ତରୀ ଯଜ୍ଞ ସୂତ୍ର କନ୍ଧେ । କୁଣ୍ଡଳ ବେନି କର୍ଣ୍ଣ ମାଝେ ॥
ହିରଣ୍ମୟ ତେଜରାଶି । ଚତୁର ଭୁଜ ପରକାଶି ॥
ଚକ୍ର କମଳ ଗଦା ଶଙ୍ଖ । ଗଣ୍ଡ ଯୁଗଳେ ରାହୁରେଖ ॥
ଶ୍ରୀବତ୍ସ ଚିହ୍ନ ଶୋହେ ହୃଦେ । ବନମାଳାଯେ ନବରଙ୍ଗେ ॥
ସୁନନ୍ଦ ଆଦି ବ୍ରହ୍ମମୁନି । କରେ ଚାମର ଛନ୍ତି ଘେନି ॥
ସନକ ମେଳେ ଋଷି ଗଣେ । ଖଟନ୍ତି ଅଭୟ ଚରଣେ ॥
ବ୍ରହ୍ମା ଶଙ୍କର ଇନ୍ଦ୍ର ଘେନି । ସ୍ତୁତି କିରନ୍ତ ସୁରମୁନି ॥
କିନ୍ନରୀ ତୁମ୍ବୁରୁ ନାରଦ । ବୀଣା ଶବଦେ ଗୀତ ନାଦ ॥
ଭଗତ ପ୍ରହ୍ଲାଦ ଆଦି । ଧ୍ରୁବ ଭୁଷଣ୍ଡ ବେଦବାଦୀ ॥
ନିର୍ମଳ ବାଣୀ ଯେଝାମତେ । ସ୍ତୁତି କରନ୍ତି ଅବିରତେ ॥
କମଳା ଆଦି ଅଷ୍ଟଦେବୀ । ଧୀରେ ଚରଣେ ଛନ୍ତି ସେବି ॥
ଯେମନ୍ତେ କୃଷ୍ଣରୂପ ଜଳେ । ଦେଖି ଅକ୍ରୁର ବେନି ଡୋଳେ ॥
ରୋମାଞ୍ଚ କଲାକ ଶରୀର । ଅଶ୍ରୁ ଗଳଇ ନିରନ୍ତର ॥
ଆନନ୍ଦେ କଣ୍ଠ ଗଦଗଦ । ମୁଖେ ସ୍ଫୁରିଲା ଚାରିବେଦ ॥
ପାଦେ ପଡ଼ିଲା ବେଗ ହୋଇ । ଉଠିଲା ଶିରେ କରଦେଇ ॥
ସଭୟେ ବୁଜିଲା ଲୋଚନ । ପୁଣି ଚାହାଁଇ ଛନଛନ ॥
ଆନନ୍ଦ ସାଗରେ ବୁଡ଼ିଲା । କର ଅଞ୍ଜଳି ଶିରେ ଦିଲା ॥
ଭୟେ କମ୍ପଇ ତାର ଦେହୀ । ସ୍ତୁତି କରଇ କୃଷ୍ଣ ଚାହିଁ ॥
କହଇ ଜଗନ୍ନାଥ ଦାସ । ଗୋବିନ୍ଦ ଚରଣେ ବିଶ୍ୱାସ ॥
କାଳିନ୍ଦୀ ଜଳେ ଦେଇ ଚିତ୍ତ । ସୁଜନେ ଚିନ୍ତ କୃଷ୍ଣପଥ ॥
ଜନ୍ମ ମରଣ ଭୟ ନାଶ । କୃଷ୍ଣ ଚରଣେ ହୁଅ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ମଥୁରାଗମନେ ଅକ୍ରୁର ନିସ୍ତାରଣେ ନାମ ଦ୍ୱିଚତ୍ୱାରିଂଶୋଽଧ୍ୟାୟଃ ।*

## ତ୍ରିଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଅକ୍ରୁର ଶିରେ କର ଦେଇ । ବୋଲଇ କୃଷ୍ଣଙ୍କୁ ଅନାଇଁ ॥
ନମଇଁ ଅନାଦି ପୁରୁଷ । ଅଖିଳ ଜ୍ୟୋତି ପରକାଶ ॥
ମାୟାର ହେତୁ ନାରାୟଣ । ନିର୍ଗୁଣ ପୁରୁଷ ପୁରାଣ ॥
ଅଭୟ ବ୍ରହ୍ମ ନିରାକାର । ବ୍ରହ୍ମା ତୋ ନାଭିରୁ ବାହାର ॥
ଯାହାର ତହୁଁ ଯେ ଜଗତ । ଲୋକେ ହୁଅନ୍ତି ଆତଯାତ ॥
ପୃଥିବୀ ଉଦକ ଅନଳ । ପବନ ଆକାଶ ମଣ୍ଡଳ ॥
ମହତ ଆଦି ପଞ୍ଚଭୂତେ । ମନ ଇନ୍ଦ୍ରିୟ ଜୀବମତେ ॥
ଇନ୍ଦ୍ରିୟ ଅର୍ଥେ ସୁରଗଣ । ତୋହୋରେ ଜଗତ ଭିଆଣ ॥
ଯେମାନେ ତୋହୋର ଶରୀର । ତୁ ଆଦି ଧର୍ମ ନିରାକାର ॥
ତୋର ସ୍ୱରୂପ ନ ଜାଣଇ । ବ୍ରହ୍ମାଣ୍ଡ ତୋର ଦେହେ ଥାଇ ॥

ତୋହୋର ରୂପ ନ ଜାଣନ୍ତି । ନିର୍ଗୁଣେ ବ୍ରହ୍ମ ଜଡ଼ ହୋନ୍ତି ॥
ସନକ ଆଦି ଯୋଗୀ ଜନେ । ପୂଜନ୍ତି ତୋହୋର ଚରଣେ ॥
ମହାପୁରୁଷ ଧ୍ୟାନ ରୂପ । ଜୀବ ସଂସାର ଦେହ ତାପ ॥
କର୍ମଯୋଗୀଯେ ବେଦପଥେ । ତୋତେ ପୂଜନ୍ତି ଯଜ୍ଞ ମତେ ॥
ଅଖିଳ କର୍ମ ଦେଇ ତୋତେ । ଜ୍ଞାନୀ ସେବନ୍ତି ଜ୍ଞାନମତେ ॥
ନିଷ୍କଳ ସମାଧି ଯେସନ । ତୋର ଚରଣେ ଧ୍ୟାନ ଗମ୍ୟ ॥
ବେଦ ପୂଜନ୍ତି ନାନା ମତେ । ତୋର ଭଗତି ତୋର ପଥେ ॥
ଅନେକ ରୂପେ ଯେକ ରୂପୀ । ତୋତେ ଜାଣନ୍ତି ସେ ନିରୋପି
ଶିବପୁରାଣର ଉକତେ । ଯେ ତୋତେ ସେବେ ଶିବ ମତେ ॥
ଅନେକ ଋଷିଙ୍କର ମତେ । ଶଙ୍କର ପୂଜୁଥାନ୍ତି ତୋତେ ॥
ତୁ ନାଥ ସର୍ବ ଦେବମୟେ । ସର୍ବେ ଭଜନ୍ତି ତୋର ପାୟେ ॥
ନାନା ଦେବଙ୍କୁ ଯେ ଭଜନ୍ତି । ସେ ଭିନେ ବିଧି ଆଚରନ୍ତି ॥
ଅନେକ କର୍ମଯୋଗେ ଭ୍ରମି । ଫୁଟିଣ ହୋନ୍ତି ପଥଶ୍ରମୀ ॥
ନଦୀ ପୂରନ୍ତି ବୃଷ୍ଟିଜଳେ । ସମୁଦ୍ରେ ହୋନ୍ତି ଯେକ ମେଳେ
ସର୍ବ ଦେବତା ସେହି ମତେ । ଭଜନ୍ତି ତୋର ପାଦଗତେ ॥
ତୋର ପ୍ରକୃତି ତହୁଁ ଜାତ । ତାମସ ରଜ ଗୁଣ ସତ୍ତ୍ୱ ॥
ଇନ୍ଦ୍ରିୟବଳେ ଗୁଣ ଛନ୍ଦି । ଜନ୍ତୁଯେ ମାୟାଜଡ଼େ ବନ୍ଦୀ ॥
ତୋତେ ପାଇବେ ଅବା କାହିଁ । ତୋହୋର ଆଦି ଅନ୍ତ ନାହିଁ ॥
ନମଇଁ ପ୍ରଭୁ ଜ୍ଞାନ ଆଖି । ସକଳ ବୁଦ୍ଧିଙ୍କର ସାକ୍ଷୀ ॥
ଦେବ ମନୁଷ୍ୟ ପଶୁ ଆଦି । ତୁ ମାୟାବଳେ ଅଛୁ ଛନ୍ଦି ॥
ଅନଳ ତୋର ମୁଖୁଁ ଜାତ । ଚରଣୁ ଅବନୀ ସମ୍ଭୂତ ॥
ଆଦିତ୍ୟ ତୋହୋର ନୟନ । ନାସାରୁ ପ୍ରକାଶେ ପବନ ॥
ଶ୍ରବଣୁ ତୋର ଦଶ ଦିଶ । ଶିର ତୋହୋର ସ୍ୱର୍ଗ ଦେଶ ॥
ଭୁଜ ତୋ ଦଶ ଦିଗପାଳ । ଉଦର ବଡ଼ବା ଅନଳ ॥
ପାଞ୍ଚ ପବନ ତୋର ପ୍ରାଣ । ବୃକ୍ଷ ଓଷଧି ରୋମଗଣ ॥
ମେଘ ତୋହୋର କେଶ ଶିର । ତୋ ଅସ୍ଥି ନଖ ଗିରିବର ॥
ନିମିଷ ହୋନ୍ତି ଦିବାରାତି । ତୋର ବୃଷଣ ପ୍ରଜାପତି ॥
ତେଜ ତୋହୋର ଦେବରାଜ । ଯେ ବୃଷ୍ଟି ବଶେ ତୋର ବୀର୍ଯ୍ୟ
ଅବ୍ୟୟ ପୂର୍ଣ୍ଣ ନିରଞ୍ଜନ । ତୋ ଦେହେ ଚଉଦ ଭୁବନ ॥
ବାସବ ଆଦି ଦେବଗଣେ । ସ୍ଥାବର ଆଦି ଚାରି ବର୍ଣ୍ଣେ ॥
ବ୍ରହ୍ମାଣ୍ଡ ତୋହୋର ଶରୀରେ । ମଶା ଯେସନେ ଉଦୁମ୍ବରେ ॥
ମନର ଆଦିଅନ୍ତ ରୂପୀ । ଜଗତେ ଅଛୁ ନାଥ ବ୍ୟାପୀ ॥
ସଂସାର ଲୀଳାଯେ ଶରୀର । ଭୋ ନାଥ ଯେତେ ରୂପ ତୋର
ତେଣୁ ମୋହୋର ଶୁଦ୍ଧ ଚିତ୍ତ । ତୋ ଯଶ ଭାବନ୍ତି ଜଗତ ॥
ନମଇଁ ମଛ ରୂପ ଧାରୀ । ପ୍ରଳୟ ଉଦକ ବିହାରୀ ॥
ହୟ ଶିରସ ତୋ ଶରୀର । ମଧୁ କୈଟଭଙ୍କୁ ସଂହାର ॥
କମଠ ରୂପୀ କଳେବର । ନମଇଁ ଶଙ୍ଖ ଚକ୍ରଧର ॥
ନମୋ ଗୋବିନ୍ଦ ଦାମୋଦର । ଗିରି ଟୋକିଲୁ ବାମ କର ॥
ବରାହ ରୂପେ ମହୀ ଧରି । ନମଇଁ ପ୍ରଭୁ ଦଇତାରି ॥
ସିଂହ ମୂରତି ବିଧୁସାର । ନାଶିଲୁ ହିରଣ୍ୟ ଅସୁର ॥
ବାମନ ରୂପେ ବଳି ଚାପି । ନମଇଁ ତ୍ରିବିକ୍ରମ ରୂପୀ ॥
ଦୁଷ୍ଟ କ୍ଷତ୍ରୀୟ ନିବାରଣ । ନମସ୍ତେ ପ୍ରଭୁ ଭୃଗୁରାଣ ॥
ଜାନକୀ ଛଳେ ଦାଶରଥି । କୋପେ ନାଶିଲୁ ଲଙ୍କପତି ॥
ନମସ୍ତେ ବସୁଦେବ ସୁତ । ରୋହିଣୀ ସୁତ ବଳବନ୍ତ ॥
ରୁକ୍ମିଣୀ ଦେବୀର ତୁ ପତି । ନମସ୍ତେ ପ୍ରଭୁ ଭୋଜପତି ॥
ବଉଦ୍ଧ ରୂପୀ ଶୁଦ୍ଧକର୍ମା । ଅସୁର ଦଳଣ ତୋ ବାନା ॥
ମ୍ଳେଚ୍ଛ କ୍ଷତ୍ରୀୟ ବଳବନ୍ତ । କଳକି ରୂପେ ସାମରଥ ॥
ତୋହୋର ମାୟାରେ ଜଗତ । ଅଜ୍ଞାନେ ହୋନ୍ତି ଆତ ଯାତ ॥
ପର ଆପଣା ବୋଲି ବୁଡ଼ି । ଭ୍ରମନ୍ତି ମାୟାଚକ୍ରେ ପଡ଼ି ॥
ମୋହୋର ଆତ୍ମା ପୁତ୍ର ଘର । ଦାରା ସମ୍ପଦ ବନ୍ଧୁ ମୋର ॥
ସ୍ୱପନ ପ୍ରାୟେ ଯେ ଜଗତେ । ଆବୋରିଛନ୍ତି ମୋହ ଚିତ୍ତେ ॥
ଅନିତ୍ୟ ସଂସାର ସାଗରେ । ମୁ ଯେ ବୁଡ଼ିଲି ଦୁଃଖ ଭରେ ॥
ଶୀତଳ ଜଳ ଛାଡ଼ି ମୁହିଁ । ମୃଗ ତୃଷାରେ ଅଛି ଧାୟି ॥
ତୃଷିତ ହୋଇଲି ଅପାର । ତୋତେ ନ ଜାଣି ଚକ୍ରଧର ॥
ମନକୁ ନ ପାରିଲି ଧରି । ତୁ ମୋତେ ରଖ ନରହରି ॥
ତୋହୋର ଚରଣ କମଳେ । ଶରଣ ରଖ ମୋତେ ବେଳେ ॥
ଅଭୟ ଚରଣେ ତୋହୋର । ଅଜ୍ଞାନୀ ଜନେ ଅଗୋଚର ॥
ସଂସାର ତୁଟଇ ଯାହାର । ସେ ତୋତେ କରଇ ବିଚାର ॥
ଜ୍ଞାନ ବିଜ୍ଞାନ ମାତ୍ରା ରୂପୀ । ସର୍ବ ସମ୍ପଦ ମାୟାବ୍ୟାପୀ ॥
ପ୍ରଧାନ ପୁରୁଷ ବିଧାତା । ଅନନ୍ତ ରୂପେ ବଳବନ୍ତା ॥
ଇନ୍ଦ୍ରିୟମାନଙ୍କ ଈଶ୍ୱର । ଭୋନାଥ ଶରଣ ତୋହୋର ॥
କହଇ ଦାସ ଜଗନ୍ନାଥ । ଅକ୍ରୂର ଜଳେ ଦେଖି ରଥ ॥
ଆନନ୍ଦେ କଲା ଯେତେ ସ୍ତୁତି । ସୁଜନେ ଯେଣେ ଦିଅ ମତି ॥
କର୍ମ ବାସନା ହେଉ କ୍ଷୟେ । ତାରନ୍ତୁ ପ୍ରଭୁ ଦେବରାୟେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*ଅକ୍ରୂର ସ୍ତୁତି ନାମ ତ୍ରିଚତ୍ୱାରିଂଶୋଽଧ୍ୟାୟଃ ।*

## ଚତୁଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ହୋ ଅଭିମନ୍ୟୁ ବଳା । ଅକ୍ରୂର ଜଳେ ସ୍ତୁତି କଲା ॥
ପୁଣି ଚରଣ ତଳେ ଶୋଇ । ବୋଲଇ କୃଷ୍ଣ ତ୍ରାହି ତ୍ରାହି ॥
ଭଗତବନ୍ଧୁ ଭଗବାନ । ଜଳେ ହୋଇଲେ ଅନ୍ତର୍ଦ୍ଧାନ ॥
ଯେସନେ ନଟବର ଗତି । ପ୍ରସ୍ତାବ ସାଦୃଶେ ଭଜନ୍ତି ॥
ଅକ୍ରୂରେ ଦେଖାଇ ଶରୀର । ତକ୍ଷଣେ ହୋଇଲେ ଅନ୍ତର ॥
ଅକ୍ରୂର ଥିଲା ପାୟ ପଡ଼ି । ପୁଣି ଉଠିଲା କର ଯୋଡ଼ି ॥
ଦେଖିଲା କେହି ନାହିଁ ଜଳେ । ଉଠି ଚାହିଁଲା ନଦୀକୂଳେ ॥
ବୃକ୍ଷର ମୂଳେ ରଥେ ଥାଇ । ଡାକନ୍ତି ପ୍ରଭୁ ଭାବଗ୍ରାହୀ ॥
ଅକ୍ରୂର ଦେଖି ତୋଷମନ । ବେଗେ ସାରିଲା ନିତ୍ୟକର୍ମ ॥
ଆସି ମିଳିଲା ରଥ ତଳେ । ପଡ଼ିଲା କୃଷ୍ଣ ପାଦ ତଳେ ॥
ହସି ବୋଲନ୍ତି ଦାମୋଦର । ଜଳେ ତ ବିଳମ୍ବ ତୋହର ॥
ମଥୁରା ଯିବା କେତେବେଳେ । କିସ ଦେଖିଲୁ ତୁହି ଜଳେ ॥
ଯାହା ଦେଖିଲୁ କହ ମୋତେ । ତେବେ ସେ ଯିବଇଁ ପରତେ ॥
ଅକ୍ରୂର ଶିରେ କର ଦେଇ । କହଇ ଶ୍ରୀମୁଖକୁ ଚାହିଁ ॥
ଜଳେ ଦେଖିଲି ମୁହିଁ ଯାହା । ଭୋ ନାଥ ନ ଜାଣୁ କି ତାହା ॥
ମୋତେ ପଚାରୁ ମାୟା କରି । ଭଗତ ସୋଦର ମୁରାରି ॥
ତୋହୋର ତହୁଁ ଅନ୍ୟ ନାହିଁ । ଜଳେ ଦେଖିଲି ତୋତେ ମୁହିଁ ॥
କୃଷ୍ଣ ବୋଲନ୍ତି ଶୁଣି ତାହା । ଅକ୍ରୂର ବେଗେ ରଥ ବାହା ॥
ତକ୍ଷଣେ କୃଷ୍ଣ ଆଜ୍ଞା ପାଇ । ରଥେ ବସିଲା ବେଗେ ଯାଇ ॥
ରଥ ବାହାଇ ତୋଷ ହୋଇ । ଗୋବିନ୍ଦ ପାଦେ ଚିତ୍ତ ଦେଇ ॥
ଆଦିତ୍ୟ ତେଜ ଅବସାନେ । ମିଳିଲେ ମଥୁରା ଭୁବନେ ॥
ପଥେ ଯେ ଥିଲେ ନର ନାରୀ । ରଥେ ଦେଖିଲେ ରାମହରି ॥
ଦେଖି ଅପୂର୍ବ ରୂପ ଦୁଇ । ନୟନ ପାଦ ନ ଚଳଇ ॥
ଗ୍ରାମେ ପ୍ରବେଶ ଭଗବାନ । ଦେଖି ସାନନ୍ଦ କୃଷ୍ଣ ମନ ॥
ବୋଲନ୍ତି ପ୍ରଭୁ ଗୋପୀନାଥ । ଅକ୍ରୂର ଦଣ୍ଡେ ରୁହା ରଥ ॥
ପଛେ ଅଛନ୍ତି ଗୋପବାଳ । ଯେଠାରେ ହେବା ଯେକ ମେଳ ॥
ଗୋରସ ଅଛି କେତେକର । ରାଜାର ଉଚିତ ଭଣ୍ଡାର ॥
ସକଳ ଯେକରୁଣ୍ଡ ହୋଇ । ମିଳିବୁଁ ରାଜା ଆଗେ ଯାଇ ॥
ତୋତେ ହୋଇବ ପରରୋଷ । ପାଇବୁ ଶାଢ଼ି ଗ୍ରାମ ଦେଶ ॥
ଯେମନ୍ତ ବୋଲୁ ବୋଲୁ ପଥେ । ଗୋପାଳେ ମିଳିଲେ ତୁରିତେ ॥
ଦେଖି ସାନନ୍ଦ ଭାବଗ୍ରାହୀ । ବୋଲନ୍ତି ଅକ୍ରୂରକୁ ଚାହିଁ ॥
ରଥୁଁ ଓହ୍ଲାଇ ଦାମୋଦର । ଅକ୍ରୂର କନ୍ଧେ ଦେଇ କର ॥
କୋମଳ ଗଭୀର ବଚନ । ଆଶ୍ୱାସି ଅକ୍ରୂରର ମନ ॥
ଭୋ ତାତ ରଥ ଘେନି ଯାଅ । କଂସର ଛାମୁରେ ଜଣାଅ ॥
ବୋଲ ଅଇଲେ ବେନି ଭାଇ । ଅଇଲି ତୋଟାରେ ବସାଇ ॥
ସକଳେ ହୋଇ ଯେକ ମେଳ । ପଛେ ଅଛନ୍ତି ଯେତେ ବାଳ ॥
ଧନ ଗୋରସ ଆଦି କରି । ଶକଟେ ଯେତେ ଛନ୍ତି ଭରି ॥
ସକଳେ ହୋଇ ଯେକ ସ୍ଥାନ । କାଲି କରିବେ ଦରଶନ ॥
ଯେମନ୍ତେ କହି ତା ଛାମୁର । ଅକ୍ରୂର ଯାଅ ନିଜ ଘର ॥
ଆମ୍ଭେ ଦେଖିବୁ ମଧୁପୁର । କେମନ୍ତ ଦିଶଇ ସୁନ୍ଦର ॥
ଅକ୍ରୂର ଶିରେ କର ଦେଇ । ବୋଲଇ କୃଷ୍ଣମୁଖ ଚାହିଁ ॥
ଯେକଥା ନୁହଇ ଉଚିତ । ତୁ କି ନଜାଣୁ ଗୋପୀନାଥ ।
ତୁମ୍ଭ ତୁହିଁକି ଛାଡ଼ିକରି । ଜୀବନ ପାରିବି କି ଧରି ॥
ଭୋ ନାଥ ଆସ ମୋର ଘର । ବାନ୍ଧବ ଯେବେ ମୁହିଁ ତୋର ॥
ସୁଫଳ କର ମୋର ଘର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ନନ୍ଦ ଯଶୋଦା ଆଦିକରି । ସଙ୍ଗେ ଅଛନ୍ତି ଗୋପଶିରୀ ॥
ସବୁନ୍ତି ଘେନି ମୋର ଘର । ବିଜୟେ କର ଚକ୍ରଧର ॥
ତୋହୋର ପାଦରଜ ନୀର । ପବିତ୍ର କରୁ ମୋର ଘର ॥
ପିଅଇ ଅଗ୍ନି ଦଇବତ । ଯାହା ଇଛନ୍ତି ହୃଦଗତ ॥
ବଳି ଯେ ଧୋଇ ତୋର ପାଦ । ପାଇଲା ଅଶେଷ ସମ୍ପଦ ॥
ଯଶ ରହିଲା ତିନିଲୋକେ । ଭଗତି କଲା ଯେକ ଯେକେ ॥
ଗଙ୍ଗ ତୋ ଚରଣୁ ବାହାର । ପବିତ୍ର କଲା ତିନିପୁର ॥
ଶଙ୍କର ବହିଅଛି ଶିରେ । ସଗର ପୁତ୍ରେ ସ୍ୱର୍ଗେ ଗଲେ ॥
ତୁ ଦେବଦେବ ଜନାର୍ଦ୍ଦନ । ପୁଣ୍ୟ ଶ୍ରବଣ କୀରିତନ ॥
ଯଦୁ ଉତ୍ତମ ଗୁଣବନ୍ତ । ନମଇଁ ପ୍ରଭୁ ଜଗନ୍ନାଥ ॥
ଶୁଣି ବୋଲନ୍ତି ଚକ୍ରଧର । ଅକ୍ରୂର କନ୍ଧେ ଦେଇ କର ॥
ଶୁଣ ଅକ୍ରୂର ମୋ ବଚନ । ମନେ ନ ବିଚାର ତୁ ଆନ ॥
ଯିବଇଁ ତୋହୋର ମନ୍ଦିର । ସଙ୍ଗେ ମୁ ଘେନି ହଳଧର ॥
ଆଗେ ମୁଁ କଂସ ଦର୍ପ ଧ୍ୱଂସି । ବନ୍ଧୁବାନ୍ଧବ ମାତା ତୋଷି ॥
ପଛେ ମୁଁ ଯିବି ତୋର ପୁର । ଯେ ସତ୍ୟ ବଚନ ମୋହୋର ॥
କୃଷ୍ଣ ମୋହନ କଥା ଶୁଣି । ଅକ୍ରୂର ଗଲା ରଥ ଘେନି ॥
କଂସର ଆଗେ ଜଣାଇଲା । କୃଷ୍ଣଙ୍କୁ ଆଣିଲି ବୋଇଲା ॥
ନନ୍ଦ ଯଶୋଦା ରାମ ସଙ୍ଗେ । ଗୋରସ ଗୋପାଳ ସଂଯୋଗେ ॥
ରୁଣ୍ଡ ହୋଇଲେ ଗଡ଼ଦ୍ୱାରେ । ଆଜକ ରହିବେ ତୋଟାରେ ॥
କାଲି କରିବେ ଦରଶନ । ଶୁଣି ସାନନ୍ଦ କଂସ ମନ ॥
ଆନନ୍ଦ ହୋଇ ଭୋଜ ବୀର । ଅକ୍ରୂରେ ଦିଲା ଉପହାର ॥

ରତ୍ନ ବସନ ଅଳଙ୍କାର । ମେଲାଣି ପାଇଲା ଅକ୍ରୂର ॥
କଂସକୁ କରି ତୋଷ ମନ । ମିଳିଲା ଆପଣା ଭୁବନ ॥
କୃଷ୍ଣ ଯେ ଥିଲେ ଉପବନେ । ଗୋପାଳେ ମିଳିଲେ ବହନେ ॥
ନନ୍ଦ ଯଶୋଦା ଆଦି ଯେତେ । ଗୋରସ ଶକଟ ସହିତେ ॥
ତୋଟାରେ ହୋଇ ଯେକ ଗୁଣ୍ଡ । ଆବୋରି ମଥୁରାର ଦାଣ୍ଡ ॥
ବିବିଧ ମତେ ସାଜି ଘର । ନାନା ପ୍ରକାରେ ଉପହାର ॥
କରନ୍ତି ରନ୍ଧନ ଭୋଜନ । ହରଷ ଗୋପାଳଙ୍କ ମନ ॥
ଭୋଜନ ସାରି ବେନିଭାଇ । ଗୋପାଳ ପୁଅଙ୍କୁ ଅନାଇଁ ॥
ବୋଲନ୍ତି ହୋଇ ହସ ହସ । ଆମ୍ଭେ ମଥୁରା ଯିବା ଆସ ॥
ବେଳ ହୋଇଲା ଅବସାନ । ବୁଲି ହୋ ଆସିବା ବହନ ॥
ଦେଖିବା ରାଜାର କଟକ । କେମନ୍ତ ଦିଶଇ ଛଟକ ॥
ଭିଆଇ ଯାତ୍ରା ଧନୁଘର । କେମନ୍ତ କରିଛି ବିଚାର ॥
ଅକ୍ରୂର ହସ୍ତେ ଦେଇ ରଥ । ଆମ୍ଭଙ୍କୁ ଅଣାଇଲା ଯେଥ ॥
ଯେବେ କି କରିବ ଆମ୍ଭନ୍ତ । ହୋଇଲୁଁ ତାହାର ଆୟତ ॥
ଆସ ହୋ ଯିବା ମଧୁପୁରୀ । ଆଗ ହୋଇଲେ ହଳଧାରୀ ॥
ଗୋପକୁମରେ କୃଷ୍ଣସଙ୍ଗେ । ମିଳିଲେ ଗଡ଼ଦ୍ୱାର ଲାଗେ ॥
ଦେଖିଲେ ସ୍ଫଟିକ ନିର୍ମିତ । ଉଚ୍ଚ ପୁରୁଷ ପାଞ୍ଚ ସାତ ॥
ବେନି କବାଟ ହେମମୟେ । ଲୋହର କିଳଣୀ ଯୋଡ଼ାୟେ ॥
ତୋରଣା ବେନି ବୃକ୍ଷେ ବାନ୍ଧି । ବିବିଧ ଫଳ ଡାଳ ଛନ୍ଦି ॥
ତମ୍ଭାର ପାଚେରି ବହଳ । ଖଣା ଗଭୀର ଶୁଦ୍ଧ ଜଳ ॥
ଭିତରେ ନାନା ବୃକ୍ଷ ମାନ । ଦେଖି ସାନନ୍ଦ କୃଷ୍ଣ ମନ ॥
ଅଟ୍ଟାଳି ଉପରେ ସୁନ୍ଦର । ସୁନା କଳସ ଧ୍ୱଜ ସାର ॥
ପାରୁଆ ଗଣ ନାଦ କରି । ଝିଙ୍କ କୋକିଳ ଶୁକ ସାରୀ ॥
ଗଜ ତୁରଙ୍ଗ ଶାଳ ପାଖେ । ବରାହ ମୃଗ ଝାଙ୍କେ ଝାଙ୍କେ ॥
ବକ୍ର କୁଟିଳ ଦ୍ୱାରେ ପଶି । ଦେଖି ଆନନ୍ଦେ ପରଶଂସି ॥
ତହୁଁ ପଶିଲେ ପୁରେ ଯାଇ । ପୋୟେ ଚାହାନ୍ତି ତୋଷହୋଇ ॥
ଦେଖିଲେ ରାଜମାର୍ଗେ ହେରି । ଚନ୍ଦନ ଛେରାୟେ ପୟେରି ॥
ତଣ୍ଡୁଳ ପୁଷ୍ପାଙ୍କୁର ସଙ୍ଗେ । ନାରୀୟେ ପୂଜନ୍ତି ସୁରଙ୍ଗେ ॥
ଯେ ଯାହା ଦ୍ୱାରେ ପୂର୍ଣ୍ଣକୁମ୍ଭ । ଦଧି ଅକ୍ଷତ ବସ୍ତ୍ର ଦର୍ଭ ॥
ଫଳ ପଲ୍ଲବ ଦୀପାବଳୀ । ଶଙ୍ଖ ମଙ୍ଗଳ-ଗୀତ ଝଳି ॥
ରମ୍ଭା ଆବୋରି ବେନି ବୃକ୍ଷେ । ତୋରଣା ନୀଳଧ୍ୱଜ ଉଚ୍ଚେ ॥
ଢାଙ୍କିଣ ଶତେ ପାଟଶାଳି । ଉପରେ ଚାନ୍ଦୁଆନ୍ତ ବେଢ଼ି ॥
ବସୁଦେବର ବେନିସୁତେ । ଗୋପାଳ ମେଳେ ରାଜପଥେ ॥
ଦେଖି ଆନନ୍ଦ ନରନାରୀ । ପଡ଼ିଲା ରାଜପଥେ ହୁରି ॥

ନାନା ପସରା ହାଟବାଟେ । କାମିନୀ ଧାମନ୍ତି ଉଚ୍ଚାଟେ ॥
ବୃକ୍ଷ ଅଟ୍ଟାଳୀ ଆରୋହନ୍ତି । ପିଢ଼ାରେ ଉଠି କେ ଦେଖନ୍ତି ॥
କେ ନାରୀ ଚିତ୍ତ ଅଣାୟତ । ବସ୍ତ୍ର ପିନ୍ଧିଲେ ବିପରୀତ ॥
ଅଙ୍ଗ ଭୂଷଣ ଅନୁ ଆନ । ଅଞ୍ଜନ ଯେକଇ ନୟନ ॥
ବଳୟ ଭରି ବାମ ହସ୍ତେ । କବରୀ ପିଟିଅଛି ମାଥେ ॥
କେ ଭୁଞ୍ଜୁଥିଲା ଦଧି ଭାତ । ଧାଇଁଲା ନ ପଖାଳି ହସ୍ତ ॥
ତୈଳ ଅଧେଁଲା ଘେନି ଶିରେ । କେ ଅବା ଥିଲେ ଜଳ ତୀରେ ॥
ସ୍ନାହାନ ଉପେଖି ବହନ । ଧାଇଁଲେ ଶୁଣି ବାଦ୍ୟ ସ୍ୱନ ॥
ଶୋଇଲା ଲୋକକୁ ଚିଆଇଁ । ଆସ ଗୋ ଯିବା ବୋଲି ଧାଇଁ
କାହାର ବାଳକ ପକାଇ । ଧାମନ୍ତି କୃଷ୍ଣେ ମନ ଦେଇ ମନ ॥
ଦେଖିଣ ବସୁଦେବ ସୁତ । ନିର୍ମଳ କଲେ ଚର୍ମ ନେତ୍ର ॥
ମଥୁରା ସ୍ତିରୀଙ୍କର ମନ । ମୋହିଲେ ପ୍ରଭୁ ଭଗବାନ ॥
ଲଳିତ ଗତି ଦିବ୍ୟ ବେଶ । ରଙ୍ଗ ଅଧରେ ମନ୍ଦ ହାସ ॥
ଯାହାର ଜନ୍ମ କର୍ମ ପଥେ । ବାରଣ ଶୁଣୁଥିଲେ ନିତ୍ୟେ ॥
ଦେଖିଲେ ନୟନ ପୂରୋଇ । ଗୋବିନ୍ଦ ସୁଧାରସ ପାଇ ॥
ଆନନ୍ଦେ ଲୋଚନ ବୁଜିଲେ । ଭିତରେ ଗୋବିନ୍ଦ ଦେଖିଲେ ॥
ହୃଦରେ କରି ଆଲିଙ୍ଗନ । କରି ଛାଡ଼ିଲେ ଖେଦମନ ॥
ବୃଦ୍ଧ ଅଟ୍ଟାଳୀ ଗୃହେ ଥାଇ । ଆନନ୍ଦ ଲୋଚନେ ଅନାଇଁ ॥
ହରଷେ କୁସୁମ ଅଞ୍ଜଳି । ଦେଇ କରନ୍ତି ହୁଳହୁଳି ॥
ବ୍ରାହ୍ମଣେ ଆସି ରାଜଦାଣ୍ଡେ । କର ଅଞ୍ଜଳି ଦେଇ ମୁଣ୍ଡେ ॥
ଦଧି ଅକ୍ଷତ ଗଙ୍ଗାନୀର । କୁସୁମ ଗନ୍ଧ ଉପହାର ॥
ଆନନ୍ଦେ କୃଷ୍ଣ ବଳରାମ । ବ୍ରାହ୍ମଣେ ପୂଜି ତୋଷମନ ॥
ମଥୁରାପୁର ଲୋକେ ମିଳି । ଦେଖିଲେ ରାମ ବନମାଳୀ ॥
ବୋଲନ୍ତି ଗୋପାଳଙ୍କ ଭାଗ୍ୟ । ଶତେ ଜନମେ କେ ପାଇବ ॥
ଅନେକ ଜନ୍ମେ ତପ କରି । ଗୋପରେ ଯେତେ ନର ନାରୀ ॥
ଗାଇ ମଇଁଷି ବନଭାଗେ । ଦିନ ବଞ୍ଚିଲେ କୃଷ୍ଣସଙ୍ଗେ ॥
ରାମ ଗୋବିନ୍ଦ ମୁଖ ଚାହିଁ । ଜନ୍ମ ମରଣ ତାଙ୍କ ନାହିଁ ॥
ଯେମନ୍ତ ବୋଲୁ ବୋଲୁ ଲୋକେ । ରଜକ ମିଳିଲା କଟକେ ।
ଭାଇ ସୋଦର ବନ୍ଧୁ ତାର । ଘେନାଇ ରାଜା ମଢ଼ିଆଳ ॥
ଆଗେ ବାଜଇ ଶଙ୍ଖ ଧ୍ୱନି । ଚାଲଇ ମଢ଼ିଆଳ ଘେନି ॥
ଦେଖିଣ ପଚାରିଲେ ହରି । ଲୋକେ କହିଲେ ରଜକାରି ॥
ନିତ୍ୟେ ଯେ ମଢ଼ିଆଳ ନେଇ । ଯମୁନା ନଦୀରେ ଧୁଅଇ ॥
ଯେ ନେଇ ଦେବ ଗନ୍ତାଘରେ । ଭୋଜ ନୃପତିର ଛାମୁରେ ॥
ଶୁଣି ଗୋବିନ୍ଦ ତୋଷ ହୋଇ । ଡାକନ୍ତି ରହ ରହ ଭାଇ ॥

ଆଗେ ଓଗାଳି ହଳଧର । ପାୟେ ବେଢ଼ିଲେ ଧାଡିକାର ॥
ରଜକ ମୁଖ ଚାହିଁ ହସି । ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥
ଦେଖିବା ରାଜା ମଡ଼ିଆଳ । ବସ୍ତ୍ର ତୁ ଥୁଅ ବେଗେ ତଳ ॥
ଆମ୍ଭେ ହୋ ବସୁଦେବ ସୁତେ । ଗୋପରେ ଥିଲୁ ଦିନା କେତେ
ଦେଖିବା କେମନ୍ତ ସୁନ୍ଦର । କଂସ ରାଜାର ମଡ଼ିଆଳ ॥
ଯେବେ ତୁ ନ ଦେବୁ ଦେଖାଇ । ଆମ୍ଭଙ୍କୁ ଦିଅ ବସ୍ତ୍ର ଦୁଇ ॥
ନୀଳ ଧବଳ ଦେହ ଚାହିଁ । ଆମ୍ଭ ଉଚିତେ ବସ୍ତ୍ର ଦିଅ ॥
ଆମ୍ଭେଟି ରାଜାର ଭଣଜା । ବସ୍ତ୍ର ତୁ ଦେଇ କହ ରାଜା ॥
ଶୁଣି ନୃପତି ହେବ ତୋଷ । ସଂସାରେ ଥିବ ତୋର ଯଶ ॥
ରଜକ ଛଦ୍ମମେଣ କାଳ । ନ ଶୁଣି ରାମକୃଷ୍ଣ ବୋଲ ॥
ପୁଣି ଚାଲଇ ପହଲାଇ । ଆଗ ହୋଇଲେ ଭାବଗ୍ରାହୀ ॥
ମିଳିଲେ ରୋହିଣୀର ବଳା । ଦେଖି ରଜକ କୋପ କଲା ॥
ଦଇବେ ରାଜାର ସେବକ । ରଜକ ସ୍ୱଭାବେ ମୂରୁଖ ॥
ବୋଲଇ ନିଷ୍ଠୁର ବଚନ । ତୁମ୍ଭେ ଯେ ଅଟ ଜାତି ହୀନ ॥
ତମ୍ଭର କୁଳମୂଳ ନାହିଁ । ବନେ ଚରାଉ ଥାଆ ଗାଈ ॥
ଗଉଡ଼ ଜାତି ବନ ଲୋକ । ଶୃଗାଳ ପ୍ରାୟେ ତୁମ୍ଭ ମୁଖ ॥
ବାଇଳ ପ୍ରାୟେ ଗାଈ ଘେନି । ବଜାଉଥାଅ ବେଣୁ ଧ୍ୱନି ॥
ଯେଡ଼େ ଭରସା ଗର୍ବ ବହ । ରାଜା ମଡ଼ିଆଳ ରୁହାଅ ॥
ନିଜଙ୍କ ଲୋକେ ବୋଲି ଭଲା । ଜୀବନ ଜୀଉଁ ଜୀଉଁ ମଲା ॥
ତୁମ୍ଭର ତପ ପୂର୍ବେ ନାହିଁ । ଗଉଡ଼େ ଅଛ ଜାତ ହୋଇ ॥
ଜୀବନେ ଅଛି ଯେବେ ଆଶ । ପଳାଇ ଯାଅ ନିଜ ଦେଶ ॥
ରଜାର ଲୋକେ ଯେହା ଶୁଣି । ସବୁନ୍ତି ପକାଇବେ ହାଣି ॥
ତୁମ୍ଭେ ନ ମାଗ ମଡ଼ିଆଳ । ତୁମ୍ଭର ପୂରିବଟି କାଳ ॥
କଂସହିଁ ଅଛିଟି ଅଣାଇ । ଆଜ ମାରିବ ବେନି ଭାଇ ॥
ହୋଇବ ଦଶ ଦିଗେ ବଳି । ଶୁଣି କୋପିଲେ ବନମାଳୀ ॥
ଚାପୋଡ଼େ ମାରି ବାମକର । ଛେଦିଲେ ରଜକର ଶିର ॥
ତାହାର ସଙ୍ଗେ ଯେତେ ଥିଲେ । ବସ୍ତ୍ର ପକାଇ ପଳାଇଲେ ॥
ରଜକ ଭୂମିରେ ପଡ଼ିଲା । ଜୀବନ ଗୋବିନ୍ଦେ ପଶିଲା ॥
ହସି ବୋଇଲନ୍ତି ଭଗବାନ । ବସ୍ତ୍ର ହୋ ଘେନ ତୋଷମନ ॥
ରାମ ଫେଡ଼ିଲେ ବସ୍ତ୍ର ପେଡ଼ା । ବାଛିଲେ ମଡ଼ିଆଳ ଯୋଡ଼ା ॥
ବାଛି ଘେନିଲେ ପୀତନୀଳ । ସୁନ୍ଦର ରାଜା ମଡ଼ିଆଳ ॥
ଗୋପାଳ ପୋୟେ ତୋଷଚିତ୍ତେ । ବସ୍ତ୍ର ପିନ୍ଧିଲେ ଯେଝାମତେ ॥
ଯେତେ ମଡ଼ିଆଳ ଉବୁରି । ପକାଇ ଗଲେ କୂଢ଼ କରି ॥
କନ୍ଧେ ପକାଇ ମଡ଼ିଆଳ । ଚାଲନ୍ତି ବସୁଦେବ ବାଳ ॥
ଥିଲା ଯେ କଂସ ବେଶକାରୀ । ଆଗ ହୋଇଲା କରଯୋଡ଼ି ॥
ବୋଲଇ ଶିରେ କର ଦେଇ । ରାଜାର ଗନ୍ତାଇତ ମୁହିଁ ॥
ବୋଇଲା ପିନ୍ଧାଇବି ରଙ୍ଗେ । କାଛେଣୀ ନାନା ପରିବନ୍ଧେ ॥
ଶୁଣି ସାନନ୍ଦ ଗୋପୀନାଥ । ବସନ ଦିଲେ ତାର ହସ୍ତ ॥
ତକ୍ଷଣେ ପିନ୍ଧାଇଲେ କାଛି । ରାମକୃଷ୍ଣର ବଳ ଆଛି ॥
ବିବିଧ ନାନା ଅଳଙ୍କାର । ସ୍ୱଭାବେ ଦିଶଇ ସୁନ୍ଦର ॥
ବସ୍ତ୍ର ପିନ୍ଧିଲେ ପୀତ ନୀଳ । ଉଛବ ଯେହ୍ନେ ପର୍ବ କାଳ ॥
ବାଳକ ହସ୍ତୀ ବେଶ କରି । ଯେସନେ ଆନନ୍ଦେ ଉଭାରି ॥
ରାମ ଗୋବିନ୍ଦ ସେହି ମତେ । ଦିଶନ୍ତି ମଥୁରାରେ ପଥେ ॥
ଗୋବିନ୍ଦ ଗନ୍ତାଇତ ଚାହିଁ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ।
ସମ୍ପଦ ହେଉ ତୋ ଅନେକ । ବହୁତ ପୁତ୍ର ନାତି ଦେଖ ॥
ବଳ ତୋହୋର ଦେହେ ଥାଉ । ମୋହୋର ପାଦେ ଚିତ୍ତ ରହୁ ॥
ଅନ୍ତେ ପାଇବୁ ମୋତେ ତୁହି । କହି ଚଳିଲେ ଭାବଗ୍ରାହୀ ॥
ଚାଲନ୍ତି ମଥୁରାରେ ହେରି । ଗୋପାଳ ପୋୟେ ରାମ ହରି ॥
ସୁଦାମ ନାମେ ମାଳାକାର । କୃଷ୍ଣ ମିଳିଲେ ତାର ଘର ॥
ନାନା କୁସୁମେ ପରିମଳ । ପବନ ବହଇ ଶୀତଳ ॥
ମାଳୀର ଦ୍ୱାରେ ଉଭା ହୋଇ । ଡାକନ୍ତି ପ୍ରଭୁ ଭାବଗ୍ରାହୀ ॥
କୋମଳ ଗଭୀର ବଚନ । ସୁଦାମା ଶୁଣି ତୋଷ ମନ ॥
ବାହାର ହୋଇଲା ବହନ । ଦେଖିଲା ରାମ ଭଗବାନ ॥
ତକ୍ଷଣେ ଗଡ଼ଘାଳି ଶୋଇ । ବୋଲଇ ନିସ୍ତରିଲି ମୁହିଁ ॥
ପତ୍ନୀ ଆଣିଲା ନୀର ଝରି । ପାଦ ଧୋଇଲା ଶିରେ ଧରି ॥
ପାଦ ଉଦକ ଘେନି କରେ । ସିଞ୍ଚିଲା ନେଇ ଘରଦ୍ୱାରେ ॥
ପତି ପତ୍ନୀ ସେ ଜଳ ଖାଇ । ନାଚନ୍ତି ଶିରେ କର ଦେଇ ॥
ଆନନ୍ଦ ସାଗରେ ବୁଡ଼ିଲା । ଗୋବିନ୍ଦ ଚରଣେ ପୂଜିଲା ॥
ଅର୍ଘ୍ୟ ଆଚମନ ଯେତେକ । ଗନ୍ଧ ଚନ୍ଦନ ଧୂପ ଦୀପ ॥
ରୋହିଣୀ ସୁତ ରାମ ସଙ୍ଗେ । ପୂଜିଲା ଗୋପାଳଙ୍କୁ ରଙ୍ଗେ ॥
ପୂଜାର ଅନ୍ତେ ପାୟେ ପଡ଼ି । ବୋଲଇ ଶିରେ କର ଯୋଡ଼ି ॥
ବୋଲଇ ଧନ୍ୟ ମୋର ଜନ୍ମ । ପବିତ୍ର ହୋଇଲା ଜୀବନ ॥
ପବିତ୍ର ହୋଇଲା ମୋ କୁଳ । ଦେଖିଲି ପ୍ରଭୁ ଆଦିମୂଳ ॥
ପିତୃଦେବତା ଋଷି ଯେତେ । ତୋଷ ହୋଇଲେ ଆଜି ମୋତେ ॥
ଦେଖିଲି ପୁରୁଷ ପୁରାଣ । ଅନାଦି ପରମ କାରଣ ॥
ଅବନୀ ଭାରାର ଉଶ୍ୱାସେ । ଦେହ ବହିଲେ ନର ଅଂଶେ ॥
ଅସୁର ନାଶନ ଯେ ରୂପ । ସାଧୁଙ୍କୁ ଦିଲା ଆତ୍ମାସୁଖ ॥
ତୁମ୍ଭେ ଜଗତ ପିତାମାତ । ନାହିଁ ତୁମ୍ଭର ଆଦି ଅନ୍ତ ॥

ସକଳ ଜନ୍ତୁଙ୍କ ଜୀବନ । ପାଳଣ ହେତୁ ନିରଞ୍ଜନ ॥
ଭାବ କରନ୍ତି ପ୍ରାଣୀ ଯେତେ । ତାହାଙ୍କୁ ଭାବୁ ଯେକ ଚିତ୍ତେ ॥
ଭୋ ନାଥ ଆଜ୍ଞା ମୋତେ କର । କିମ୍ପା ଅଇଲ ମୋର ଘର ॥
ତୋହୋର ଆଜ୍ଞା ଶିରେ ଘେନି । ତରନ୍ତି ଭବଜଳୁଁ ପ୍ରାଣୀ ॥
ଯେମନ୍ତ ବୋଲି ତୋଷମନେ । ପଶିଲା ଆପଣା ଭୁବନେ ॥
ସୁଗନ୍ଧ କୁସୁମର ଗଭା । ସୁନ୍ଦର ଦିଶୁଅଛି ଶୋଭା ॥
କୃଷ୍ଣ ନିକଟେ ଦିଲା ନେଇ । ରାମ ଗୋବିନ୍ଦ ବେନି ଭାଇ ॥
ତା ତହୁଁ ଘେନି ମାଳ ଦୁଇ । ସୁନ୍ଦର ସୁରଙ୍ଗ ଦିଶଇ ॥
ସୁଦାମା ଚାହାଁଇ ଆନନ୍ଦେ । ଲମ୍ବାଇ ରାମ କୃଷ୍ଣ ହୃଦେ ॥
ଚୂଳେ ବାନ୍ଧିଲେ ବେନି ଗଭା । ଦିଶନ୍ତି ରାମକୃଷ୍ଣ ଶୋଭା ॥
ତ୍ରିମୁଣ୍ଡି କଣ୍ଠେ ଗଭା ଦେଇ । ବୋଲଇ କୃଷ୍ଣ ତ୍ରାହି ତ୍ରାହି ॥
ସୁଦାମା ମୁଖ ଚାହିଁ ହରି । ବୋଲନ୍ତି ରାମ କର ଧରି ॥
ବର ତୁ ମାଗ ତୋଷ ମନେ । ଭଗତି କଲୁ ଯେତେ ମାନେ ॥
ମାଳୀ ବୋଇଲେ ଯୋଡ଼ି କର । ଶୁଣିମା ପ୍ରଭୁ ଦାମୋଦର ॥
ସର୍ବ ସମ୍ପଦ ଅଟୁ ହରି । ଦିଅ ତୁ ଭଗତି ବିଚାରି ॥
ମୋର ସମ୍ପଦେ କାର୍ଯ୍ୟ ନାହିଁ । ଶୁଣିମା ପ୍ରଭୁ ଭାବଗ୍ରାହୀ ॥
ତୋର ଭଗତ ଯେତେ ଜନ । ସେବିବି ତାହାଙ୍କ ଚରଣ ॥
ପ୍ରାଣୀଙ୍କି ହେଉ ମୋର ଦୟା । ଭୋ ନାଥ ଦିଅ ମୋତେ ଯେହା ॥
ଶୁଣି ସାନନ୍ଦ ମହାବାହୁ । ବୋଇଲେ ଯେହି ବର ହେଉ ।
ମାଳୀର ମନ ତୋଷ କରି । ଧନ ଆୟୁଷ ଯଶ ଶିରୀ ॥
ଦେଇ ଚଳିଲେ ଦାମୋଦର । ଗୋପକୁମରେ ହଳଧର ॥
କହଇ ଦାସ ଜଗନ୍ନାଥ । ଗୋବିନ୍ଦ ମଥୁରାର ପଥ ॥
ଯେବେ ହୋଇବ ମହୀ ସ୍ଥିର । ଅସୁର କରିବେ ସଂହାର ॥
ଭଗତ ଜନେ ଶୁଣି ଯେହା । ଖଣ୍ଡିବେ ଘୋର ଜଡ଼ମାୟା ॥
ଯେଣେ ହରିଙ୍କି ଧ୍ୟାନ କର । ତୁମ୍ଭ ଚରଣେ ମୁ କିଙ୍କର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ରାମକୃଷ୍ଣ ମଥୁରା ପ୍ରବେଶ ରଜକ ମାଳୀ ମୋକ୍ଷଣେ ନାମ ଚତୁଚତ୍ୱାଂରିଶୋଽଧ୍ୟାୟଃ ।*

## ପଞ୍ଚଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ବ୍ରହ୍ମଋଷି । ଶୁଣ ରାଜନ କୁରୁବଂଶୀ ॥
ସେଠାରୁ ଗଲେ ବନମାଳୀ । ଦେଖନ୍ତି ପୁରଲୋକେ ମିଳି ॥
ଚାଲନ୍ତେ ପ୍ରଭୁ ଦେବରାଜା । ନିକଟେ ଦେଖିଲେ କୁବୁଜା ॥
ସୁଗନ୍ଧ ପେଡ଼ି ଘେନି କାଖେ । ପଥେ ଚାଲଇ ତିନି ବାଙ୍କେ ॥
ମୁଖ ତା ଦିଶଇ ସୁନ୍ଦର । କଟାକ୍ଷେ ଚାହାଁଇ ମଧୁର ॥
ଗନ୍ଧ ଚନ୍ଦନ ନିତ୍ୟେ ନେଇ । କଂସର ଛାମୁରେ ଭେଟଇ ॥
ତାର ଚନ୍ଦନ ଦେଖି କଂସ । ଅନେକ ପାଇ ମନେ ତୋଷ ॥
ଯେମନ୍ତେ କୃଷ୍ଣଙ୍କୁ ଦେଖିଲା । ସଭୟେ ପଥ ଉପେଖିଲା ॥
ଭୟେ ସେ ଗଲା ଆଡ଼େ ହୋଇ । ଦେଖନ୍ତି ରାମକୃଷ୍ଣ ଦୁଇ ॥
କୃଷ୍ଣ ମିଳିଲେ ତାର ପାଖେ । ବୋଲନ୍ତି କିସ ତୋର କାଖେ
ଚନ୍ଦନ ପ୍ରାୟେ ତ ବାସଇ । କାହାକୁ ଦେବୁ ଯେହା ନେଇ
କହ ତୋହୋର ନାମ କିସ । ଦିଶୁଛୁ ଯେମନ୍ତ ଭବିଷ ॥
କାହାର ପତ୍ନୀ ତୁ ବୋଲଉ । ପିଠିରେ ତିନି କୁଜ ବହୁ ॥
କର୍ମେ ତୁ ହୋଇଲୁ ଯେମନ୍ତ । ଭୟ ନ କରି କହ ସତ୍ୟ ॥
ଆମ୍ଭେ ଗୋ ଅଟୁ ସହୋଦର । ରୋହିଣୀ ସୁତ ହଳଧର ॥
ଦେଖ ଆମ୍ଭର ଦେହ ଶୂନ୍ୟ । ଥୋକାୟେ ଦେବୁ କି ଚନ୍ଦନ ॥
ଆମ୍ଭେ ହୋଇବୁଁ ତୋଷ ମନ । ପାଇବୁ ପରଲୋକେ ଧର୍ମ ॥
ରାଜା ହୋଇବ ମନେ ତୋଷ । ଜଗତେ ଥିବ ତୋର ଯଶ ॥
କୁବୁଜୀ କୃଷ୍ଣ ବୋଲ ଶୁଣି । କହଇ ମଧୁ ରସବାଣୀ ॥
ତୁ ଅଟୁ ଜଗତ ସୋଦର । ଦାସୀ ମୁ ହୋଇବି ତୋହୋର
କଂସର ଅଟଇ ନିଯୋଗୀ । କରଇ ଦେହେ ଗନ୍ଧ ଲାଗି ॥
ସ୍ୱାମୀ ତନୟ ମୋର ନାହିଁ । ଜନ୍ମୁ ହୁଁ କୁବୁଜୀ ଅଟଇ ॥
ବିରୂପ ଦେଖି ମୋର ଶୋଭା । କେହି ନୋହିଲେ ମୋତେ ବିଭା ॥
ଜାତି ମୋହୋର ହାଟୁଆରି । ଜୀବିକା କଂସ ସେବା କରି ॥
ମୋର ଚନ୍ଦନେ ହୋଇ ତୋଷ । ଦେଇଛି ମୋତେ ତିନି ଦେଶ ॥
ଅନେକ ଧନରତ୍ନ ମୋର । ଜୀବନ ହୋଇଲା ଅସାର ॥
ନିଷ୍ଫଳ ହୋଇଲା ମୋ ଦେହୀ । ପୂର୍ବେ ମୁ ଅର୍ଜି ଅଛି ଯାହି ॥
ତୋ ରୂପ ଦେଖି ମୋର ମନ । ନିର୍ମଳ ହୋଇଲା ନୟନ ॥
ରାଜାର ଗନ୍ଧ ଯେ ଅଟଇ । ତୁମ୍ଭ ଦୁହିଙ୍କି ଯେ ଯୋଗାଇ ॥
ଥୋକାୟେ ଦେବି ଗନ୍ଧ ତୋତେ । କୋପ କରିବ କଂସ ମୋତେ
ତାହାକୁ ନାହିଁ ମୋର ଡର । ତୁମ୍ଭେ ମୋହୋର ବଳିଆର ॥
ଯେମନ୍ତ ବୋଲି ଗନ୍ଧ ଫେଇ । ଲେପିଲା କୃଷ୍ଣ ଅଙ୍ଗେ ନେଇ
ନାଭିରୁ ଶିରଯାଏ ବୋଳି । ଆନନ୍ଦେ ଦେଇ ହୁଳହୁଳି ॥
କପାଳେ ଦିଲା ଠିଆ ଚିତା । ହୃଦରେ ଲମ୍ବାଇ ମୁକୁତା ॥
ରାମକୁ କଲା ସେହି ମତ । ଦେଖି ହସତ ଗୋପୀନାଥ ॥
ଦୟାସାଗର ଦାମୋଦର । ଧଇଲେ କୁବୁଜୀର କର ॥

ବେନି ଚରଣେ ପାଦଦେଇ । ଓଷ୍ଠରେ ଅଙ୍ଗୁଳି ଲଗାଇ ॥
ଅଳପ କରି ଦିଲେ ଟେକି । ପୋଯେ ହସନ୍ତି ତାହା ଦେଖି ॥
କର ଲାଗନ୍ତେ ଚକ୍ରଧର । ତକ୍ଷଣେ ହୋଇଲା ସୁନ୍ଦର ॥
ତିନି କୁବୁଜ କେଣେ ଗଲା । ରୂପେଣ ଅନଙ୍ଗ ମୋହିଲା ॥
ହୋଇଲା ଅପୂର୍ବ କାମିନୀ । ଦେଖି ଢଳିବେ ସୁର ମୁନି ॥
ଜଗତେ ନାହିଁ ପଟାନ୍ତର । ଦିଶଇ ଅତି ସୁକୁମାର ॥
ଦେଖି ଚକିତ ଦେବତାଯେ । କୃଷ୍ଣହୁଁ ଅନ୍ୟ ନ ଯୋଗାଯେ ॥
କୁବୁଜୀ ନିଜ ରୂପ ଚାହିଁ । କୃଷ୍ଣଙ୍କୁ ଦେଖି ବିଚାରଇ ॥
ଯେ ତ ଅନାଦି ବିଶ୍ୱକର୍ମା । ଜଗତେ ନାହିଁ ନା ଉପମା ॥
ଯେହାରେ ହୋଇଲି ସୁନ୍ଦର । ଯେ ସେ ମୋହୋର ନିଜ ବର ॥
ଅନେକ ଅଛି ମୋର ଭାଗ୍ୟ । ଦଇବ କରିଛି ସଂଯୋଗ ॥
ଯେମନ୍ତ କୁବୁଜୀ ବିଚାରି । କୃଷ୍ଣର ଧଇଲା ଉତୁରୀ ॥
ଲାଜ ହିଁ ନ କଲା ରାମକୁ । ବୋଇଲା ଆସ ମୋ ଘରକୁ ॥
ମୋର ମନ୍ଦିର ଆଜ ରହି । କାଲି ଭେଟିବ କଂସ ଯାଇ ॥
ତୁ ମୋତେ କଲୁ ଯେଡ଼େ ରୂପ । ଭୋ ନାଥ ନ କରିବା କୋପ
ଯେ ଦେହ ଆନେ ନୋହେ ଭୋଗ । ଅନଙ୍ଗେ କରିଛି ସଂଯୋଗ ॥
ତୁ ମୋତେ ଗଲେ ଆଜ ଛାଡ଼ି । ବଜ୍ର ପଡ଼ିବ ଶିରେ ମାଡ଼ି ॥
ଜୀବନ ରଖ ମୋର ଆଜ । ଶୁଣି ପାଇଲେ କୃଷ୍ଣ ଲାଜ ॥
ଗୋପକୁମରଙ୍କୁ ଅନାଇଁ । ବୋଇଲେ କୁବୁଜୀ ଗୁହାଇ ॥
ଆମ୍ଭେ ଗୋ ଥିଲୁ ଗୋପପୁରୀ । କଂସ ଅଣାଇ ଅଛି ଧରି ॥
କାଲି ଭେଟିବୁଁ ନୃପବର । ଛାମୁରେ ଦେଇ ଘୃତ ସର ॥
ଯେବେ ଅଛନ୍ତି ସଙ୍ଗେ ଯେତେ । ଦଣ୍ଡେ ହେଁ ନ ଛାଡ଼ନ୍ତି ମୋତେ
ମୋହୋର ଜ୍ୟେଷ୍ଠ ହଳଧର । ଦେଖ ମୋ ଧରିଛନ୍ତି କର ॥
ରାଜା ମେଲାଣି ଘେନି ଶିରେ । ଯେହାଙ୍କୁ ପେଷି ଗୋପପୁରେ ॥
ସଙ୍ଗେ ନ ଥିବେ ହଳଧର । ନିଶ୍ଚୟେ ଯିବି ତୋର ପୁର ॥
ଯେମନ୍ତେ ପ୍ରଭୁ ଭଗବାନ । ତୋଷିଲେ କୁବୁଜୀର ମନ ॥
କୁବୁଜୀ ବେନିକର ଯୋଡ଼ି । ପୁଣି କହଇ ପାଦେ ପଡ଼ି ॥
ମୁ ଯାଇ ମଣ୍ଡୁ ଅଛି ଘର । ବହୁତ ବିଳମ୍ବ ନ କର ॥
ମୁ ତୋତେ ନ ପାଇଲେ ଦେଖି । ଉପାଡ଼ି ପକାଇବି ଆଖି ॥
ମନ ମୋ ଅଛି ତୋହୋ ତହିଁ । ଉଛୁର ନ କର ଗୋସାଇଁ ॥
ଉତୁରୀ ଛାଡ଼ିଲା କୁବୁଜା । କୃଷ୍ଣ ବୋଇଲେ ଘର ଯା ଯା ॥
ଗୋବିନ୍ଦ ପାଦେ ଚିତ୍ତ ଦେଇ । କୁବୁଜା ଗଲା ତୋଷ ହୋଇ ॥
ଥିଲା ଯେ ବିପ୍ର ଜଗନ୍ନାଥ । ଗୋଡ଼ାଇଥିଲା କୃଷ୍ଣ ପଥ ॥
ଗୋବିନ୍ଦ ଯାନ୍ତେ ଆଗସରି । ପଡ଼ିଲା ରାଜପଥେ ହୁରି ॥

ବାଟେ ଯେ ଥିଲେ ବଣିଜାରେ । ପସରା ଘେନି ଯେ ଯାହାରେ ॥
ରାମ ଗୋବିନ୍ଦ ମୁଖ ଦେଖି । ନିର୍ମଳ କଲେ ଚର୍ମ ଆଖି ॥
ଯେଝାରେ ଘେନି ଉପହାର । ପୁଷ୍ପ ତାମ୍ବୁଳ ଗନ୍ଧସାର ॥
ଗୋପାଳ କୁମାରଙ୍କ ମେଳେ । ପୂଜିଲେ ବାସୁଦେବ ଭୋଳେ ॥
କାମିନୀ ଚାହିଁ କୃଷ୍ଣ ମୁଖ । କନ୍ଦର୍ପ ବାଣେ ମନ ଦୁଃଖ ॥
କୃଷ୍ଣର ଦେହେ ଦେଇ ଡୋଳ । କେଶ ବସନ ଅସମ୍ଭାଳ ॥
ମଥୁରାପୁର ନର ନାରୀ । ଦାଣ୍ଡରେ ହୁଅନ୍ତି ଉଭାରି ॥
ରାଜାର ଧନୁ ଘର କାହିଁ । ଆମ୍ଭଙ୍କୁ ଦେଖାଅନି ନେଇ ॥
ଲୋକେ ହୋଇଲେ ଆଗୁସାର । ପଛେ ଗୋବିନ୍ଦ ହଳଧର ॥
ଗୋପ କୁମରେ ଗଲେ ଆଗେ । ମିଳିଲେ ଧନୁଘର ଲାଗେ ॥
ଦେଖିଲେ ରାଜା ଧନୁଘର । ଉଚ୍ଛବ ମଣ୍ଡଣି ବେଭାର ॥
ଧ୍ୱଜ ପାତାଙ୍ଗ କେରା କେରା । ତୋରଣା ମୁକୁତାର ଝରା ॥
ଚାନ୍ଦୁଆ ଟାଣି ଖମ୍ବେ ଫୁଲ । ଚିତ୍ର ବିଚିତ୍ର ମଣ୍ଡି ତାଳ ॥
ସପତ ସ୍ତମ୍ଭେ ଧନୁ ଡେରି । ବାଜଇ ମଙ୍ଗଳ ମହୁରି ॥
ସୁବର୍ଣ୍ଣ ଘଣ୍ଟି ବେନି ହୁଳେ । ଲମ୍ବେ ମୁକୁତା ରତ୍ନମାଳେ ॥
ବିବିଧ ଚାମର ମଣ୍ଡଣି । ଇନ୍ଦ୍ରଧନୁର ପ୍ରାୟେ ମଣି ॥
ବାଜଇ ବୀରତ୍ୱର ନାଦ । କେ କହୁ ଧନୁର ସମ୍ପଦ ॥
ଅନେକ ଦେଶ ରାଜା ଗଣେ । ମିଳିଲେ କଂସର ଭୁବନେ ॥
ଧନୁ ଦେଖନ୍ତି ନରନାରୀ । ଯେଝାରେ ଅଳଙ୍କାର ଭରି ॥
ଆନନ୍ଦ ହୋଇ ଯୂଥଯୂଥ । ଗହଳ ଧନୁଘର ପଥ ॥
କାମିନୀ ଦ୍ୟନ୍ତି ହୁଳହୁଳି । ମିଳିଲେ ରାମ ବନମାଳୀ ॥
ପାହାରି ଧନୁଘରେ ଥାଇ । ଭିତରେ ନ ଦେନ୍ତି ସମ୍ଭାଇ ॥
କୃଷ୍ଣ ବୋଇଲେ ଛାଡ଼ ଦ୍ୱାର । ଆମ୍ଭେ ଦେଖିବୁ ଧନୁଘର ॥
ଶୁଣି ପାହାରି ପରଜଳି । ରାମକୃଷ୍ଣଙ୍କୁ ଦେଇ ଗାଳି ॥
ତୁମ୍ଭେ ହୋ ସହଜେ ଗୋପାଳ । ରାଜ୍ୟେ କି କରିଅଛି ଗୋଳ ॥
ତୁମ୍ଭଙ୍କୁ ରାଜା ଆଜ୍ଞା ନାହିଁ । ଦ୍ୱାର ଛାଡ଼ିବୁ କାହିଁ ପାଇଁ ॥
ରାଜାର ଆଗେ ଜଣାଇଲେ । ତେବେ ପଶିବ ତୁମ୍ଭେ ଭଲେ
ଶୁଣି ବୋଇଲେ ଦାମୋଦର । ଆମ୍ଭର ପାଇଁ ଧନୁଘର ॥
ରାଜା ଅକ୍ରୂର ପଠିଆଇ । ଆମ୍ଭଙ୍କୁ ଅଛଇ ଅଣାଇ ॥
ଆମ୍ଭର ପାଇଁଟି ଉଚ୍ଛବ । ହସି ବୋଲନ୍ତି ପଦ୍ମନାଭ ॥
ପାହାରି ନ ଛାଡ଼ନ୍ତି ଦ୍ୱାର । ଆଗ ହୋଇଲେ ହଳଧର ॥
ଦେଖି ବେଢ଼ିଲେ ଆସି ଲୋକେ । କୋପେ ଯାକିଲେ ବାମପାଖେ
ଭୁଜ ଉପାଡ଼ି ପକାଇଲେ । ଦେଖି ଥୋକାଯେ ପଳାଇଲେ
ପଶିଲେ ରାମ ଦାମୋଦର । ଗୋପକୁମରେ ବଳିଆର ॥

ଗୋବିନ୍ଦ ପଶି ଅତି ଖରେ । ଧନୁ ଧଇଲେ ବାମ କରେ ॥
ଇନ୍ଦ୍ରର ଧନୁ ପ୍ରାୟେ ଶୋଭା । ରାମ ବୋଇଲେ ଗୁଣ ଦେବା ॥
ଧନୁରେ ଅଛି କେତେ ବଳ । ଗୁଣ ଘେନିଲେ ନନ୍ଦବାଳ ॥
ଗୋବିନ୍ଦ ପାଦେ ଧନୁ ତାଡ଼ି । ଗୁଣ ବସାଇ ଜାନୁ ପାଡ଼ି ॥
ତୋଳିଲେ ବାମ ଭୁଜେ ହରି । ଧନୁ ଟଙ୍କାର ନାଦ କରି ॥
ଦକ୍ଷିଣ କର୍ଣ୍ଣଯାଏ ଟାଣି । ବଳ ଆଞ୍ଚିଲେ ଚକ୍ରପାଣି ॥
ଶବଦ କଲାକ ପ୍ରଚଣ୍ଡ । ଧନୁ ହୋଇଲା ବେନିଖଣ୍ଡ ॥
ଶୁଭିଲା ବ୍ରହ୍ମଲୋକ ଯାଏ । ଶୁଣି ପାଇଲା କଂସ ଭୟେ ॥
ପାହାରି ଥିଲେ ଯେ ପଳାଇ । ଅଇଲେ ଧନୁଭଗ୍ନ ଚାହିଁ ॥
ମାରନ୍ତି ନାନା ଶସ୍ତ୍ର ଘେନି । ଚହଲେ କମ୍ପଇ ମେଦିନୀ ॥
ଦେଖି ଧାଇଁଲେ ହଳଧର । ଭାଙ୍ଗିଲା ଧନୁ ଧରି କର ॥
ବୁଲାଇ ପିଟିଲେ ଉପରେ । ପାହାରି ଗଲେ ଯମପୁରେ ॥
ରାଜାର ଯେତେ ବଳ ଥିଲେ । ରାମର ହସ୍ତେ ପ୍ରାଣ ଦିଲେ ॥
ଦେଖିଣ ଅନନ୍ତ ମୂରତି । ଭୟେ କମ୍ପଇ ସୁରପତି ॥
କମ୍ପିଲେ ଦଶଦିଗ ପାଳେ । ଚହଳ ଆକାଶ ମଣ୍ଡଳେ ॥
ନିମିଷ ମାତ୍ରେ ଧନୁ ଭାଞ୍ଜି । କଂସର ବଳ ଦର୍ପ ଗଞ୍ଜି ॥
ଗୋବିନ୍ଦ ହୋଇଲେ ବାହାର । ଗୋପକୁମରେ ହଳଧର ॥
ଦେଖିଲେ ରବି ଅସ୍ତ ଗଲା । ହସି ବୋଇଲେ ନନ୍ଦବଳା ॥
ଚାଲ ହୋ ଯିବା ନିଜ ସ୍ଥାନ । କାଲି କରିବା ଦରଶନ ॥
ଯେମନ୍ତ ବୋଲି ବାହୁଡ଼ିଲେ । ମଥୁରା ତୋଟାରେ ମିଳିଲେ ॥
କହନ୍ତି ଶୁକ ମୁନିବର । ଶୁଣ ରାଜନ ରସଭର ॥
ଅକ୍ରୂର ମୁଖ ଚାହିଁ କୋପେ । ଯାହା ବୋଇଲେ ନାରୀ ଗୋପେ
ବୋଇଲେ ମଥୁରା ଭୁବନେ । ଭାଗ୍ୟ ସେ କଲେ ନାରୀ ଗଣେ
ଦେଖିଣ ରାମକୃଷ୍ଣ ମୁଖ । ଖଣ୍ଡିବେ କୋଟି ଜନ୍ମ ଦୁଃଖ ॥
ସେ କଥା ହୋଇଲା ସ୍ୱରୂପ । ଖଣ୍ଡିଲେ କୋଟି ଜନ୍ମ ପାପ ॥
ଗୋପାଳେ ଦେଖି ମଧୁପୁର । କହନ୍ତି ଯଶୋଦା ଆଗର ॥
ଆମ୍ଭେ ଯେ କୃଷ୍ଣ ସଙ୍ଗେ ଥାଇ । ମଥୁରା ଦେଖିଲୁ ଗୋସାଇଁ ॥
ନିର୍ମଳ ହୋଇଲା ନୟନ । ତୋର ଜୀବନ ବଡ଼ ଧନ୍ୟ ॥
ଯଶୋଦା ଘେନି ବେନି ସୁତ । କୋଳେ ବସାଇ ତୋଷ ଚିତ୍ତ ॥
ଚୁମ୍ବନ ଦେଇ ନନ୍ଦରାୟେ । ପାଶେ ବସିଲେ ବେନି ପୋୟେ ।
ସ୍ନାହାନ କରାଇ ହରଷ । ଭୁଞ୍ଜନ୍ତି ରାମ ହୃଷୀକେଶ ॥
ମୁଖ ପଖାଳି ବାସଗୁଆ । କର୍ପୂର ତାମ୍ବୁଳ ବିଡ଼ିଆ ॥
ଗନ୍ଧ ଚନ୍ଦନ ଅଙ୍ଗେ ବୋଳି । ବସିଲେ ରାମ ବନମାଳୀ ॥
ଚାମର ଘେନି ଗୋପସୁତେ । ବିଞ୍ଚନ୍ତି ନାନା ବାଦ୍ୟ ଗୀତେ ॥

ପୁଷ୍ପ ବରଷି ସ୍ତୁତି କରି । ଶୋଇଲେ ରାମ ନରହରି ॥
ବୋଲନ୍ତି ଶୁଣ ନୃପବର । ଶୁଣ ପରୀକ୍ଷ ନୃପବର ॥
ରଜନୀ ହୋଇଲା ଅପାର । ଶୁଣ ହୋ କଂସର ବିଚାର ॥
ଧନୁର ଭଗ୍ନ ନାଦ ଶୁଣି । କୃଷ୍ଣର କଥା ମନେ ଗୁଣି ॥
ରଜକ ପେଷି ଯମପୁର । ମୋହୋର ବସ୍ତ୍ର କଲେ ଚୁର ॥
କୁବୁଜୀ ଗନ୍ଧ ବଳେ ନେଇ । ସୁନ୍ଦର କଲେ ତାର ଦେହୀ ॥
ଯେବେ ଭାଙ୍ଗିଲେ ଧନୁ ମୋର । ବାଳକେ ଯେଡ଼େ ବଳିଆର ॥
ନନ୍ଦର ଘରେ ବାଳ କାଳେ । ଯେତେ ଅସୁର ମୋର ଗଲେ
ସବୁ ମାଇଲେ ବେନି ଭାଇ । ବନେ ଚରାଉଥାନ୍ତି ଗାଈ ॥
ଯେବେ ମୁ କରିବି କେମନ୍ତ । ଅଛନ୍ତି ମାଲ ଯେ ମାହୁନ୍ତ ॥
ଗଜ ମୋ ଅଛି କୁବଳୟା । ନ ଜାଣି ବିଧାତାର ମାୟା ॥
କେମନ୍ତେ ରଖିବି ଜୀବନ । ଯେମନ୍ତ ଭାଳି ଛନ ଛନ ॥
ନିଦ୍ରା ନ ମାଡ଼ଇ ନୟନେ । ଭାଳଇ ଅତି ଭୟ ମନେ ॥
ପୁଣି କ୍ଷଣକେ ନିଦ୍ରା ମୋହି । ସଭୟେ ଉଠି ପୁଣ ଚାହିଁ ॥
ଦେଖିଲା ସ୍ୱପ୍ନ ନାନାବର୍ଣ୍ଣ । ମରଣ ହେତୁଙ୍କର ଚିହ୍ନ ॥
ସୁବର୍ଣ୍ଣ କାନ୍ଥେ ଦେହ ଛାଇ । ଦେଖଇ ମୁଣ୍ଡ ତାର ନାହିଁ ॥
ଦର୍ପଣ ଆଦିତ୍ୟର ଜ୍ୟୋତି । ରାତ୍ରେ ଦେଖଇ ଭୋଜପତି ॥
ଦୀପେ ଦଶନ୍ତି ଦୁଇ ଦୁଇ । ଚନ୍ଦ୍ର ହିଁ ତେମନ୍ତ ଦିଶଇ ॥
ଛାୟାରେ ଦେହ ଛିଦ୍ରମୟେ । ନିଶ୍ୱାସ ବାଜେ ଶଙ୍ଖପ୍ରାୟେ ॥
ସୁବର୍ଣ୍ଣ ପ୍ରତିମାୟେ ବୃକ୍ଷେ । କଂସକୁ ଦିଶନ୍ତି ପ୍ରତକ୍ଷେ ॥
ବୃକ୍ଷର ଡାଳେ ପଶୁଗଣ । ବରାହ ଶୂକର ହରିଣ ॥
ମୃତପିଣ୍ଡକୁ କରି କୋଳ । ସାନନ୍ଦେ ଗୀତନାଦ ରୋଳ ॥
ଗର୍ଦ୍ଦଭ କନ୍ଧେ ଚଢ଼ିଯାନ୍ତେ । ବିଷ ଭକ୍ଷଇ ଲୋହ ପାତ୍ରେ ॥
ତଇଳ ଘଷି ଦିଗମ୍ବର । ହୃଦରେ ରଙ୍ଗପୁଷ୍ପ ମାଳ ॥
ଦକ୍ଷିଣ ଦିଗେ ଯାନ୍ତି ଧାଇଁ । ଚୂଳ ବନ୍ଧନ ଶିରେ ନାହିଁ ॥
ଯେମନ୍ତେ ଦେଖଇ ସ୍ୱପନ । କ୍ଷଣ କ୍ଷଣକେ ମୋହମାନ ॥
ଯେମନ୍ତେ ପାହିଲା ରଜନୀ । କଂସ ଭାଳଇ ଭୟ ଘେନି ॥
ଯେମନ୍ତ ଦେଖିଲି ସ୍ୱପନ । ନିଶ୍ଚୟେ ହୋଇଲା ମରଣ ॥
କଂସ ଜାଣଇଁ ଯୋଗ ବଳେ । ଗୋବିନ୍ଦ ମାରିଅଛି ବେଳେ ॥
ସେ ବେଳେ ନୋହିଲି ମୁ ମୋକ୍ଷ । ଯେବେ ମୁ ଦେଖିବି ପ୍ରତକ୍ଷ ॥
ଉଦେ ହୋଇଲା ଦିନକର । କଂସ ହିଁ ହୋଇଲା ବାହାର ॥
ରଙ୍ଗସଭାରେ ବିଜେ କଲା । ରାଜା ଗଣଙ୍କୁ ଅଣାଇଲା ॥
ଆସି ଯେ ଥିଲେ ରାଜା ଗଣେ । କଂସ ଡାକିଲା ଜଣେ ଜଣେ ॥
ଅସୁର ଜରାସନ୍ଧ ମୂଳେ । ମୁର ନାରକା ଶିଶୁପାଳେ ॥

ବଜ୍ରକବଚ ବାଣାସୁର । ପୁଣ୍ଡ୍ରକ ଶାଲ୍ୱ ଦନ୍ତବକ୍ର ॥
ଯୋଜନବାହୁ ବଜ୍ରନାଭ । ଯେ ଆଦି ଯେତେକ ଦାନବ ॥
ନୃପ କଳିଙ୍ଗ ଭଦ୍ରସେନ । ବିଦେହ ନିଷେଧ ରାଜନ ॥
ବିବିଧ ମତେ ବସ୍ତ୍ର ଦେଇ । ଉପରେ ଚାନ୍ଦୁଆ ଟଣାଇ ॥
ରାଜା ଗୋଟିକେ ଯେକ ମଞ୍ଚା । ସକଳ କରିଅଛି ସଞ୍ଚା ॥
ରାଜା ପୂଜିଲା ଜଣେ ଜଣେ । ଚନ୍ଦନ କୁସୁମ ବସନେ ॥
ବିବିଧ ମତେ ଭୋଗ ଦେଇ । କହଇ ରାଜାଙ୍କୁ ଅନାଇଁ ॥
ତୁମ୍ଭ ସକଳ ବନ୍ଧୁମାନେ । କହଇ ଶୁଣ ସାବଧାନେ ॥
ବସୁଦେବର ପୁତ୍ର ଦୁଇ । ବଢ଼ିଲେ ଗୋପପୁରେ ଯାଇ ॥
ଭିଣୋଇ କଲା ଯେଡ଼େ ଛନ୍ଦ । ମୋତେ ହେଁ ନ ଗଣିଲା ନନ୍ଦ ॥
ଅନେକ ବଳ ମୋର ଥିଲେ । ରାମ ଗୋବିନ୍ଦ ସଂହାରିଲେ ॥
ବଳେ ହେଁ ଧନୁ ମୋ ଭାଙ୍ଗିଲେ । ପାହାରିମାନଙ୍କୁ ମାଇଲେ ॥
ରଜକ ମାରି ବସ୍ତ୍ର ଲୁଟ । ଗନ୍ଧ ଛଡ଼ାଇ ନେଲେ ମୋର ॥
ଗୋପାଳେ ମେଳିଯେ ଭିଆଇ । ମୋତେ ମାରିବେ ବେନି ଭାଇ
ଯେବେ ମୁ ଅଣାଇଲି ଧରି । ତାତ ଜନନୀ ଆଦି କରି ॥
ହସ୍ତୀର ହସ୍ତେ ମରାଇବି । ଯେମନ୍ତେ ଶତ୍ରୁ ସଂହାରିବି ॥
ଯେବେ ସେଠାରୁ ଉବୁରିବେ । ମାଲଙ୍କ ହସ୍ତେ ପ୍ରାଣ ଦେବେ ॥
ମଞ୍ଚାରେ ବସି ପିତାମାତା । ଦେଖିବେ ପୁତ୍ରଙ୍କ ମରନ୍ତା ॥
ତୁମ୍ଭେ ସକଳେ ଦେଖୁଥିବ । ମୋହୋର ଶତ୍ରୁ ନାଶ ଯିବ ॥
ଯେମନ୍ତ ବୋଲି ଭୋଜସାଇଁ । ରାଜାଙ୍କୁ ମଞ୍ଚାରେ ବସାଇ ॥
ବାଜଇ ବୀରତୂର ନାଦ । କେ କହୁ କଂସର ସମ୍ପଦ ॥
ଚାଣୂର ମୁଷ୍ଟିକର ମୂଳେ । ଶଲ ତୋଶଲ ଚାରିମାଲେ ॥
ଯେହାଙ୍କ ତୁଲେ ଶତେମାଲ । ଅଣାଇ କହେ ଭୋଜପାଳ ॥
ତୁମ୍ଭର ବଳେ ମୋ ଭରସା । ଆଜ ପୂରାଅ ମୋର ଆଶା ॥
ନନ୍ଦ ଯଶୋଦାଙ୍କୁ ଅଣାଇ । ଗୋରସ ଭଣ୍ଡାରେ ଥୁଆଇ ॥
ମଞ୍ଚା ଉପରେ ବସାଇଲା । ସମର ଦେଖିବ ବୋଇଲା ॥
ବସୁଦେବର ପୁତ୍ର ଦୁଇ । ଘରେ ଲୁଚାଇଥିଲୁ ତୁହି ॥
ବସୁଦେବର ମିତ୍ର ପଣୁ । ତୋହୋର ଦୋଷ ନାହିଁ ତେଣୁ
ବନ୍ଧୁର ହିତ କଲୁ ଯେବେ । ପୁତ୍ର ମରଣ ଦେଖ ଯେବେ ॥
ନନ୍ଦଙ୍କୁ ମଞ୍ଚାରେ ବସାଇ । ବୋଲଇ ପାତ୍ର ମନ୍ତ୍ରୀ ରାଇ ॥
ତୁମ୍ଭେ ହୋ ଥିବ ମୋର ପାଖେ । ମଞ୍ଚାରେ ବସିଥିବ ସୁଖେ ॥
ଆପଣେ ମଞ୍ଚାରେ ବସିଲା । ଦୂତଙ୍କୁ ଯାଅରେ ବୋଇଲା ॥
ବେଗେରେ ଯାଅ ମଧୁବନ । ରାମକୃଷ୍ଣଙ୍କୁ ଧରିଆଣ ॥
କଂସର ଆଜ୍ଞା ଘେନି ଶିରେ । ଦୂତେ ଚଳିଲେ ଧାଡିକାରେ ॥
କହଇ ବିପ୍ର ଜଗନ୍ନାଥ । ଭେଟିଲେ ରାମ ଗୋପୀନାଥ ॥
ସେ ରାମକୃଷ୍ଣର ଚରଣେ । ସୁଜନେ ଚିନ୍ତ ଅନୁକ୍ଷଣେ ॥
କୃଷ୍ଣ ଚରଣେ ମନ ଦେଇ । ସଂସାରୁ ତର ଯେହା ଗାଇ ॥
ଯେଣେ ହୋଇବ ଭବୁ ପାର । ସବୁରି ପ୍ରଭୁ ଦାମୋଦର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*କୁବୁଜା କୁବ୍ଜ ସୁନ୍ଦର କରଣେ ରଙ୍ଗସଭା ବର୍ଣ୍ଣନେ ନାମ*
*ପଞ୍ଚଚତ୍ୱାରିଂଶୋଽଧ୍ୟାୟଃ ।*

## ଷଟ୍‌ଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବୋଲନ୍ତି ଶୁକ ମୁନିବର । ସାନନ୍ଦେ ଶୁଣ କୁରୁବୀର ॥
ରାମ ଗୋବିନ୍ଦ ମଧୁବନେ । ଭେଟିଲେ କଂସ ଦୂତମାନେ ॥
ନିକଟେ ଦୂତଙ୍କୁ ରୁହାଇ । ସ୍ନାହାନ କଲେ ବେନିଭାଇ ॥
ଭୋଜନ କଲେ ଦୁଧ ସର । ଆନନ୍ଦେ ନାନା ଉପହାର ॥
ବିବିଧ ନାନା ରତ୍ନମାଳ । ବସ୍ତ୍ର ପିନ୍ଧିଲେ ପୀତ ନୀଳ ॥
ଦୁନ୍ଦୁଭି ବାଦ୍ୟ ଗୀତ ଶୁଣି । ଆନନ୍ଦେ କୃଷ୍ଣ ହଳପାଣି ॥
ଗୋପାଳ ପୋୟେ ସଜ ହୋଇ । ମଧ୍ୟେ ବିଜୟେ ବେନିଭାଇ ॥
ମଥୁରା ନଗରେ ପଶିଲେ । କଂସର ଦୂତ ଆଗେ ଗଲେ ॥
ରାମ ଗୋବିନ୍ଦ ଦେଖି ପଥେ । ଲୋକେ ମିଳିଲେ ଯୂଥେ ଯୂଥେ ॥
ଯେକ ଆରକେ ଆଗ ହୋଇ । କାମିନୀଗଣେ ଛନ୍ତି ଧାଇଁ ।
ସକଳେ ଘରଦ୍ୱାର ଛାଡ଼ି । ଧାମନ୍ତି ରାଜପଥ ମାଡ଼ି ॥
ସ୍ତିରୀ ପୁରୁଷ ବାଳ ବୃଦ୍ଧେ । ଗୋବିନ୍ଦ ଦେଖିବାର ସଧେ ॥
ଆଗେ ଧାମନ୍ତି ବଳବନ୍ତ । ଗହଳ ମଥୁରାର ପଥ ॥
ଅନଳ ଦେଖିଣ ପତଙ୍ଗେ । ଯେହ୍ନେ ଧାମନ୍ତି ଉଦବେଗେ ॥
ରାମ ଗୋବିନ୍ଦ ମୁଖ ଚାହିଁ । ନୟନ ପିଛା ନ ଚଳଇ ॥
ଦେହ ସଂସାର ପାସୋରିଲେ । ଆନନ୍ଦ ସାଗରେ ବୁଡ଼ିଲେ ॥
ସ୍ୱର୍ଗେ ଦେଖନ୍ତି ଦେବତାୟେ । ରାମ ଗୋବିନ୍ଦର ବିଜୟେ ॥
କାମିନୀ ଦ୍ୟନ୍ତି ହୁଳହୁଳି । ଦେଖନ୍ତି ଦିଗପାଳେ ମିଳି ॥
ପବନ ବହଇ ଶୀତଳ । ଶୂନ୍ୟେ ମିଳିଲେ ମେଘ ମାଳ ॥
ଜନ ଗହଳ ରାଜପଥେ । ଗୋବିନ୍ଦ ଦେଖନ୍ତି ଉସତେ ॥
କହନ୍ତି ଯେକୁ ଆରେ ଚାହିଁ । କନ୍ଧେ ହୃଦରେ ହସ୍ତ ଦେଇ ॥
ଦେଖ ଗୋ କଂସର ନିର୍ଦୟେ । କି ଦୋଷ କଲେ ବାଳ ପୋୟେ
ଯେ ଲୁଚିଥିଲେ ନନ୍ଦଘରେ । ସୋଦର ମଉଳାର ଡରେ ॥

କି ଦୋଷ କଲେ ଯେ ତାହାର । ଦୁଷ୍ଟ ଦାନବ ଦୁରାଚାର ॥
ଯେହାକୁ ଆଣିଅଛି ଧରି । ନେଇ ମାରିବ ଘରେ ଭରି ॥
କେମନ୍ତ ସହିବଟି ଧର୍ମ । ଯେହାଙ୍କୁ କଲା ଯେଡ଼େ କର୍ମ ॥
ଯେ ପୋଯେ ଗୋପପୁରେ ଥିଲେ । କି ଅପରାଧ ତାରେ କଲେ ॥
ଯେହାଙ୍କୁ କରି ପ୍ରାଣନାଶ । ଭୁଞ୍ଜିବ ଗୋପପୁର ଦେଶ ॥
ଯେହାଙ୍କ କଷ୍ଟ ଦେଖିବାରେ । ଚାଲ ନ ଥିବା ଯେ ନଗରେ ॥
ହୃଦୟ ଧରିବା କେମନ୍ତେ । ଯେହାଙ୍କୁ ନ ଦେଖିଲେ ପଥେ ॥
ଯେମନ୍ତ କହି ନରନାରୀ । ବିକଳେ ଚାହାଁନ୍ତି ମୁରାରି ॥
ହୃଦୟେ ବିଚାରି ବିକଳ । ନୟନୁ ବହେ ଅଶ୍ରୁଜଳ ॥
କୃଷ୍ଣ ଗୋପାଳ ହଳଧର । ମିଳିଲେ କଂସ ରଙ୍ଗଦ୍ୱାର ॥
ଦେଖିଲେ ଦ୍ୱାରେ ଅଛି ଗଜ । ମାହୁନ୍ତ ହୋଇଅଛି ସଜ ॥
କୃଷ୍ଣଙ୍କୁ ଦେଖିଣ ମାହୁନ୍ତ । ଆକର୍ଷି ଗଜ ବଳବନ୍ତ ॥
ଦ୍ୱାର ଆବୋରିଲା ବହନ । ମାରିବା ପ୍ରାୟେ କୋପମନ ॥
ସ୍ୱଭାବେ ମତ୍ତ କରୀବର । ତେଜେ ପ୍ରଚଣ୍ଡ ମହାଘୋର ॥
ତାହା ଜାଣିଲେ ଭାବଗ୍ରାହୀ । ଗୋପାଳ ପୁଅଙ୍କୁ ଅନାଇଂ ॥
ଦୃଢ଼େ ବାନ୍ଧିଲେ ତାଲୁ ଚୂଳ । ସୁନ୍ଦର ଅଳକା କପୋଳ ॥
ବସନ ବାନ୍ଧି ଆଣ୍ଟ କରି । ସଜ ହୋଇଲେ ହଳଧାରୀ ॥
ମାହୁନ୍ତ କୋପଭର ହୋଇ । ଅଳପ ଅଳପ ଚିପଇ ॥
ଦେଖି ଗୋବିନ୍ଦ ଆଗ ହୋଇ । ବୋଇଲେ ଆଡ଼େ ହୁଅ ଭାଇ ॥
ଶୁଣ ମାହୁନ୍ତ ମୋ ଉତ୍ତର । ଆମ୍ଭଙ୍କୁ ଛାଡ଼ ରଙ୍ଗଦ୍ୱାର ॥
ରାଜା ଆମ୍ଭଙ୍କୁ କୋପମନ । ବେଗେ କରିବୁ ଦରଶନ ॥
ଦ୍ୱାର ତୁ ଛାଡ଼ ବେଗ ହୋଇ । ଉଚ୍ଛୁର ବେଳ ନ ଯୋଗାଇ ॥
ଶୁଣି ମାହୁନ୍ତ କୋପ କଲା । କୃଷ୍ଣର ଡାକ ନ ଶୁଣିଲା ॥
ହସ୍ତୀର କୁମ୍ଭେ ଦେଇ କର । ଦନ୍ତ କରାଇଲା ଉଭାର ॥
କୃଷ୍ଣ ବୋଲନ୍ତି ମାହୁନ୍ତକୁ । ମାରିବା ପ୍ରାୟେ ତ ସଳଖୁ ॥
ଜୀବନେ ଅଛି ଯେବେ କାର୍ଯ୍ୟ । ହସ୍ତୀକି ଦ୍ୱାରୁ ନିଅ ଆଜ ॥
ନୋହିଲେ ଯିବୁ ଯମପୁର । ହସ୍ତୀ ହିଁ ସଙ୍ଗତେ ତୋହର ॥
ଶୁଣି ମାହୁନ୍ତ ପରଜଳି । ହସ୍ତୀ ଚିପିଲା ପାଦ ଚାଳି ॥
କୃଷ୍ଣଙ୍କୁ ଦେଖି ଗଜ ଧାଇଁ । କାଳ ଭୁଜଙ୍ଗ ପ୍ରାୟେ ହୋଇ ॥
ପବନୁ ଧାଇଁ ଗଜ ଖରେ । ଜବ ପିଟିଲା କୃଷ୍ଣ ଶିରେ ॥
କେଶ ଧଇଲା ଧାଡିକାରେ । ଛଡ଼ାଇ ଗଲେ ଦାମୋଦରେ ॥
ଗୋବିନ୍ଦ ମାୟାଯୋଗ ବଳେ । ରହିଲେ ହସ୍ତୀ ପେଟ ତଳେ ॥
ହସ୍ତୀ ଚାହାଁଇ ଚଉଦିଗେ । କୋପେ ଗର୍ଜଇ ଘୋର ନାଦେ
ଆଘ୍ରାଣେ କୃଷ୍ଣବାସ ପାଇ । ପୁଣି ଧଇଲା କରେ ନେଇ ॥
ପୁଣି ଛଡ଼ାଇ ତାର କର । ପଛେ ମିଳିଲେ ମାୟାଧର ॥
ହସ୍ତୀର ଲାଞ୍ଜ କରେ ଧରି । ପଛକୁ ଆଣିଲେ ଓଟାରି ॥
ପଚାଶ ଧନୁ ଯାଏ ଟାଣି । ରହିଲେ ପ୍ରଭୁ ଚକ୍ରପାଣି ॥
ସର୍ପର ଲାଞ୍ଜ ଯେହ୍ନେ ଧରି । ଗରୁଡ଼ ଯେସନେ ଉଭାରି ॥
ଲାଙ୍ଗୁଡ଼ ଧରି ବନମାଳୀ । ବାମ ଦକ୍ଷିଣ ପାଖେ ଚାଳି ॥
ଗଜ ଚାହିଁଇ ଚଉପାଶେ । କୃଷ୍ଣଙ୍କୁ ଧରିବାର ଆଶେ ॥
ବଛାଙ୍କ ଲାଞ୍ଜ ପୋଯେ ଧରି । ଯେସନେ ହୋନ୍ତି ଘୂରାଘୂରି ॥
ଲାଙ୍ଗୁଡ଼ ଛାଡ଼ି ଅତି ଖରେ । ଆଗ ହୋଇଲେ କୋପଭରେ ॥
ଚାପୋଡ଼େ ମାରି ହସ୍ତୀ ମୁଣ୍ଡେ । କୃଷ୍ଣ ପଳାନ୍ତି ରାଜଦାଣ୍ଡେ ॥
ଦେଖି ଧାଇଁଲା କରୀବର । ପ୍ରଚଣ୍ଡ କୋପେ ଗୁରୁତର ॥
ଦେଖନ୍ତି ପୁର ନର ନାରୀ । ଭୟେ ପଳାନ୍ତି ନରହରି ॥
ଶିରେ ଲାଗଇ ଥୋରହସ୍ତ । ଲୋକେ ଦେଖନ୍ତି ରାଜପଥ ॥
ପାଦ ଲାଗନ୍ତେ ଧୂଳି ଉଡ଼ି । କୃଷ୍ଣ ପଡ଼ିଲେ ମୁଖମାଡ଼ି ॥
ତକ୍ଷଣେ ହୋଇଲେ ଅନ୍ତର । ମାହୁନ୍ତ ବୋଲେ ମାର ମାର ॥
କୃଷ୍ଣ ପଡ଼ିଲା ପ୍ରାୟେ ମଣି । ଗଜ ମାଇଲା ଦନ୍ତ ଆଣି ॥
ଲୋକେ ହୋଇଲେ ହତପ୍ରାଣ । ଡାକନ୍ତି ରଖ ନାରାୟଣ ॥
ଯେଡ଼େ କରମ କଂସ କଲା । କେ ବୋଲେ ଜୀଉ ଜୀଉ ମଲା ॥
ଚାଲ ନ ଥିବା ଯେହା ଦେଶେ । କଂସକୁ ଗାଳି ଦ୍ୟନ୍ତି ରୋଷେ ॥
ଯେମନ୍ତ ବୋଲୁ ବୋଲୁ ଜନେ । ଗୋବିନ୍ଦ ମିଳିଲେ ବହନେ ॥
ନୀଳ ଜୀମୂତ ଦେହ ଝଳି । ଝାଳ ଗଳଇ ଲାଗି ଧୂଳି ॥
ଡାକନ୍ତି ଟୋଳି ବାମ କର । ହସ୍ତୀରେ ସମ୍ଭାଳ ତୋହୋର ॥
ଦେଖି ଚକିତ ନରନାରୀ । ଚାପୋଡ଼େ ମାଇଲେ ମୁରାରି ॥
ପଛେ ଯେ ଥିଲେ ହଳଧର । ହସ୍ତୀକି ମାଇଲେ ପୟର ॥
ଧାମଇଁ ପଛକୁ ଅନାଇଁ । ପୁଣି ମାଇଲେ କୃଷ୍ଣ ନେଇ ॥
ଗଜ ଅନାଇଁ ଆଗ ପଛ । ମାହୁନ୍ତ ଚିପଇ ପ୍ରତକ୍ଷ ॥
ନ ଯାଇ ଆଗ ପଛ ଡରେ । ଗର୍ଜଇ ଅଚି କୋପଭରେ ॥
ମାହୁନ୍ତ ପୁଣି ହିଁ ଚିପଇ । ଦେଖି ପଳାନ୍ତି ବେନିଭାଇ ॥
ଦେଖିଣ ଗଜ କୋପ ଭରେ । ଧାଇଁଲା ପବନ ହୁଁ ଖରେ ॥
କୃଷ୍ଣର ଶିରେ ଦିଲା କର । ବେଗେ ଧାଇଁଲେ ଚକ୍ରଧର ॥
ଗୋବିନ୍ଦ ମାୟାଯୋଗ ବଳେ । ବୁଲାଇ ପକାଇଲେ ତଳେ ॥
ତଳେ ପଡ଼ନ୍ତେ ପ୍ରାଣ ଗଲା । ତକ୍ଷଣେ ଗୋବିନ୍ଦେ ପଶିଲା ॥
ଚରଣ ଦେଇ ଗଜମୁଣ୍ଡେ । ଦନ୍ତ ଧଇଲେ ଭୁଜଦଣ୍ଡେ ॥
ବେଗେ ଉପାଡ଼ି ବାମ କରେ । ପିଟିଲେ ମାହୁନ୍ତ ଉପରେ ॥
ରାମ ଗୋବିନ୍ଦ ବେନିଭାଇ । କନ୍ଧେ ଘେନିଲେ ଦନ୍ତ ଦୁଇ ॥

ରୁଧିର ଭୂଷଣ ଶରୀର । ଧୂଳିରେ ଝାଳ ଜର ଜର ॥
ମୁଖ ପଙ୍କଜେ ଝାଳ ଶୋଭା । କି ଅବା ପଟାନ୍ତର ଦେବା ॥
ଗୋପ କୁମରେ ଯାନ୍ତି ଠେଲି । ପଶିଲେ ରଙ୍ଗଦ୍ୱାରେ ପେଲି ॥
କନ୍ଧେ ପକାଇ ଗଜଦନ୍ତ । ମିଳିଲେ ରାମ ଗୋପୀନାଥ ॥
ଲୋକେ ପଶିଲେ ବଳିଆରେ । କେ ବେଗେ ଉଠିଲେ ବୃକ୍ଷରେ ॥
ଜଗତୀ ଅଟାଳୀ ଆରୋହି । ଦେଖନ୍ତି ରାମକୃଷ୍ଣ ଦୁଇ ॥
ରଙ୍ଗ ସଭାରେ ଯେତେ ଲୋକେ । କେତେ କହିବି ଯେକେ ଯେକେ ॥
ମାଳେ ଯେ ଥିଲେ ସଭା ତଳେ । ରାମକୃଷ୍ଣଙ୍କୁ ଅନାଇଲେ ॥
ବଜ୍ର ପଡ଼ିଲା ପ୍ରାୟେ ଦେଖି । ଭୟେ ବୁଜିଲେ ବେନି ଆଖି ॥
ଯେତେ ଅଛନ୍ତି ପୁର ନର । ତାହାଙ୍କୁ ଦିଶନ୍ତି ସୁନ୍ଦର ॥
କାମିନୀ ଲୋଚନେ ଅନଙ୍ଗ । ଗୋପାଳ ଜନଙ୍କ ବାନ୍ଧବ ॥
ଅସୁର ନୃପତିଙ୍କି କାଳ । ମାତାପିତାଙ୍କୁ ବେନି ବାଳ ॥
କଂସକୁ ଦିଶେ ଯମ ପ୍ରାୟେ । ଜ୍ଞାନୀଜନଙ୍କୁ ଗୁଣମୟେ ॥
ଯୋଗୀଙ୍କି ଯେହ୍ନେ ଜ୍ଞାନତତ୍ତ୍ୱ । ବୃଷ୍ଣିବଂଶକୁ ଦଇବତ ॥
ସଭାର ତଳେ ବେନି ଭାଇ । ଆକାଶେ ଛନ୍ତି ଦେବେ ଚାହିଁ ॥
ବ୍ରହ୍ମା ଶଙ୍କର ଇନ୍ଦ୍ରମୂଳେ । ତେତିଶ କୋଟି ଦେବବଳେ ॥
ଶୂନ୍ୟେ ଦେଖନ୍ତି ରାମହରି । ଗନ୍ଧର୍ବଗଣେ ବିଦ୍ୟାଧରୀ ॥
କଂସ ଚାହିଁଲା ବେନିଭାଇ । ଭୟେ କମ୍ପଇ ତା ଦେହୀ ॥
ଗଜ ମାହୁନ୍ତ ଦ୍ୱାରେ ମାରି । ଦନ୍ତ ଅଛନ୍ତି କନ୍ଧେ କରି ॥
ନିଶ୍ଚୟେ ମରଣ ହୋଇଲା । ଯେମନ୍ତ ମନେ ବିଚାରିଲା ॥
କମ୍ପଇ କାତରେ ଶରୀର । ବଦନୁ ନ ଫୁରେ ଉତ୍ତର ॥
ରଙ୍ଗ ସଭାର ତଳେ ଥାଇ । ରାମ ଗୋବିନ୍ଦ ବେନିଭାଇ ॥
ଚିତ୍ର ବିଚିତ୍ର ବେଶ ହୋଇ । ଯେସନେ ନଟବର ଦୁଇ ॥
ଦେଖନ୍ତା ପ୍ରାଣୀଙ୍କର ମନ । ମୋହିଲେ ପ୍ରଭୁ ଭଗବାନ ॥
ମଞ୍ଚାରେ ଯେତେ ରାଜାଗଣେ । ଗ୍ରାମ ପାଟଣା ପୁରଜନେ ॥
ହରଷ ବଶେ ଚକ୍ଷୁ ଦେଇ । ଦେଖନ୍ତି ରାମକୃଷ୍ଣ ଦୁଇ ॥
ଚକୋର ଚନ୍ଦ୍ର ଦେଖି ଯେହ୍ନେ । ତେସନେ ପିବନ୍ତି ନୟନେ ॥
ତୋଷ ହୋଇଲେ ମୁଖ ଚାହିଁ । ତାହାନ୍ତେ ପିଛା ନ ଚଳଇ ॥
ପିଇବା ପ୍ରାୟେ ଚକ୍ଷୁ ଦ୍ୱାରେ । ଜିହ୍ୱା କି ଲେହିବେ ଶରୀରେ ॥
ଆଘ୍ରାଣ କରି ନାସା ଦ୍ୱାରେ । ଆଣି ଭିଡ଼ିଲେ ବେନି କରେ ॥
ଯେମନ୍ତେ ହୋଇ ଉଦବେଗ । ଅଗ୍ନିରେ ଯେସନେ ପତଙ୍ଗ ॥
ଯେମନ୍ତ ଶୁଣୁଥିଲେ କର୍ଣ୍ଣେ । ପ୍ରତକ୍ଷେ ଦେଖିଲେ ନୟନେ ॥
କୃଷ୍ଣର ରୂପ ଗୁଣ ମାନ । ଦେଖି ପାଇଲେ ଦିବ୍ୟଜ୍ଞାନ ॥
ଯେକକୁ ଆରେକ ଅନାଇଁ । ବୋଇଲନ୍ତି ଅଙ୍ଗୁଳି ଦେଖାଇ ॥
ଯେ ବେନି ବସୁଦେବ ସୁତ । ଭାରା ନିବାରିବାର ମତ ॥
ବିଷ୍ଣୁର ଅଂଶେ ଜାତ ହୋଇ । ନୀଳ ଧବଳ ରୂପ ଦୁଇ ॥
ଦେଖ ଯେ କୃଷ୍ଣ ଦେହ କଳା । ଦେବକୀ ଗର୍ଭେ ଉପୁଜିଲା ॥
ଯେହାକୁ ବସୁଦେବ ନେଇ । ଗୋପରେ ଥଇଲା ଲୁଚାଇ ॥
ବଢ଼ିଲେ ନନ୍ଦର ଭୁବନେ । ଯେହି ବାଳକ ତିନି ଦିନେ ॥
ଶୋଷିଲେ ପୂତନାର ପ୍ରାଣ । ଭାଙ୍ଗିଲେ ଯାମଳା ଅର୍ଜୁନ ॥
ପାଦେ ଶକଟ କଲେ ଚୂର । ନାଶିଲେ ତୃଣାବର୍ତ୍ତ ବୀର ॥
ଅଘା ଧେନୁକା କେଶୀ ବକ । ବଛା ମାୟାବୀ ଷଣ୍ଢ ରୂପ ॥
କାଳୀୟ ଘଉଡ଼ିଲା ବଳେ । ଅମୃତ କଲା ବିଷଜଳେ ॥
ଗୋରୁ ମଇଁଷି ଗୋପ ଶିରୀ । ବନ ଅନଳୁ ଅଛି ତାରି ॥
ଇନ୍ଦ୍ରର ଦର୍ପ କଲା ଚୂର । କରେ ତୋଳିଲା ଗିରିବର ॥
ସପ୍ତ ଦିବସ ବରଷିଲା । ଯେହାର କରେ ଗିରିଥିଲା ॥
ଗୋପୀୟେ ଚାହିଁ ଯେହା ମୁଖ । ଖଣ୍ଡିଲେ ଜନ୍ମ ବନ୍ଧ ଦୁଃଖ ॥
ଯାଦବ ବଂଶ ଯେ ରଖିବ । ଅବନୀ ଭାର ଉଶ୍ୱାସିବ ॥
ଦେଖ ଯେ ରୋହିଣୀ କୁମର । କୋଟିୟେ ଚନ୍ଦ୍ର ପଟାନ୍ତର ॥
ଆଗେ ହୋଇଲା ଗୋପେ ଜାତ । ଯେହାର ବଳ ଅପ୍ରମିତ ॥
ପ୍ରଳମ୍ବ ଯୁଦ୍ଧେ ନାଶ କଲା । ବଛା ଧେନୁକା ସଂହାରିଲା ॥
ଯେମନ୍ତ କହୁଁ କହୁଁ ଜନେ । ବାଜଇ ବୀର ତୂର ମାନେ ॥
ମାଳେ ଯେ ଥିଲେ ସଭା ତଳେ । କୃଷ୍ଣର ନିକଟେ ମିଳିଲେ ॥
ଚାଣୁର ବୀର ଆଗ ହୋଇ । ବୋଲଇ କୃଷ୍ଣମୁଖ ଚାହିଁ ॥
ତୁ ପରା ଥିଲୁ ନନ୍ଦ ଘରେ । ରୋହିଣୀ ସୁତ ସଙ୍ଗତରେ ॥
ତୁମ୍ଭେ ଯେ ରାମ ବନମାଳୀ । ବୋଲାଅ ବାହୁଯୁଦ୍ଧେ ବଳୀ ॥
ରାଜା ତୁମ୍ଭର କଥା ଶୁଣି । ଯୁଦ୍ଧର ପାଇଁ ଅଛି ଆଣି ॥
ଦେଖିବେ ଯୁଦ୍ଧ କଉତୁକ । ରାଜାୟେ ଅଛନ୍ତି ଅନେକ ॥
ପ୍ରଜାୟେ ରାଜାଙ୍କୁ ଅନାଇଁ । ସୁଖେ ଭୁଞ୍ଜନ୍ତି ମଞ୍ଚ ଭୂଇଁ ॥
ବସନ୍ତି ରଜାର ସମୀପେ । ଧନ୍ୟ ବୋଲନ୍ତି ଇହ ଲୋକେ ॥
ରାଜାର ନୁହନ୍ତି ଯେ ପ୍ରିୟ । ତାହାଙ୍କ ସୁଖ କାହିଁ କହ ॥
ତୁମ୍ଭେ ଯେ ଗୋପାଳଙ୍କ ମେଳେ । ଗୋରୁ ଚରାଅ ନଦୀ କୂଳେ ॥
ଦେହରେ ଘଷି ରଙ୍ଗମାଟି । ଲଲାଟେ ଗୁଞ୍ଜରାର ପାଟି ॥
ଯେକ ଆରକେ ବନ୍ଧୁ ବଳେ । ମାଲ ବିନ୍ଧାଣ କୁତୂହଳେ ॥
ବାଳକ କାଳୁଁ ସାଧୁ ଅଛ । ଯେବେ ତ ଦିଶୁଛ ପ୍ରତକ୍ଷ ॥
ତେଣୁ ତୁମ୍ଭର ସଙ୍ଗେ ଆମ୍ଭେ । ରାଜା ତୋଷିବା ରଣ ରଙ୍ଗେ ॥
ଯେତେ ଅଛନ୍ତି ରାଜାଗଣେ । ଗ୍ରାମ ପାଟଣା ପୁରଜନେ ॥
ସକଳେ ହୋଇବେ ପ୍ରସନ୍ନ । ତୋଷିବା କଂସ ରାଜା ମନ ॥
ମାଲଙ୍କ ହିଂସା ବୋଲ ଶୁଣି । କହନ୍ତି ପ୍ରଭୁ ଚକ୍ରପାଣି ॥
ଉଚିତ ବାଣୀ ଦେଶ କାଳ । କହନ୍ତି ମଦନ ଗୋପାଳ ॥

ଯୁଦ୍ଧ ହିଁ ଇଷ୍ଟ ଆପଣାର । କହନ୍ତି ମନୁଷ୍ୟ ବେଭାର ॥
ଶୁଣ ଚାଣୂର ବୀର ମଣି । ଉଚିତ ପ୍ରସ୍ତାବ ତୋ ବାଣୀ ॥
ସ୍ୱଭାବେ ଆମେ ବନଲୋକ । ନ ଜାଣୁ ଆତ୍ମା ଦୁଃଖ ସୁଖ ॥
ଧନ ଗୋରସ ଦେଇ ଖଟୁ । ରାଜା ଭଣଜା ଆମ୍ଭେ ଅଟୁ ॥
ଅଳପ କରଇ ସଦୟେ । ଆମ୍ଭ ମଉଳା କଂସରାୟେ ॥
ବାଳୁତ ପୁଅଙ୍କର ମେଳେ । ଖେଳୁଁ କାନନ ନଦୀ କୂଳେ ॥
ନାନା ଭିଆଣେ ଖେଡ଼ ଖେଳି । ବନସ୍ତେ ଚରାଉଁ ବାଛୁରୀ ॥
ପୁଅଙ୍କ ଖେଡ଼ର ଉଚିତ । ଆମ୍ଭର ଯୁଦ୍ଧ ସେହି ମତ ॥
ଯେତ ନୁହଇ ଖେଡ଼ମୟେ । ତୁମ୍ଭେ ତ ପର୍ବତ ପରାୟେ ॥
ତୁମ୍ଭର ପ୍ରାୟେ ଯେବେ ହୋଇ । ତେବେ ସେ ସମର ଯୋଗାଇ ॥
ବାଳକ ଆମ୍ଭେ ବାଳ ମେଳେ । ଯୁଦ୍ଧ ହିଁ କରୁ କୁତୂହଳେ ॥
ତୁମ୍ଭର ତୁଲେ ଯଦ୍ଧ କାହିଁ । ଯେକଥା ଉଚିତ ନୁହଇ ॥
ଅଧର୍ମ ହୋଇବଟି ଭଲେ । ତୁମ୍ଭେ ଯୁଝିଲେ ଆମ୍ଭେ ତୁଲେ ॥
ସଭାକୁ ହୋଇବ ଧିକାର । ତା ଶୁଣି ହସଇ ଚାଣୁର ॥
ବୋଲଇ ଗରିଷ୍ଠ ବଚନ । କରାଇ କଂସ ସାବଧାନ ॥
ତୁମ୍ଭେ ଯେ ବାଳକ ବୋଲାଅ । କହି ତ ଲାଜ ହିଁ ନ ପାଅ ॥
ବାଳ କୁମର ନୁହ ଯୁବା । ତୁମ୍ଭର ମହିମା କହିବା ॥
ଯେ ଯେ ତୋହୋର ଜ୍ୟେଷ୍ଠ । ବଳେ ତ ନାହିଁ ସରିସମ ॥
ସହସ୍ରେ ମତ୍ତଗଜ ଦେହା । ବଳ ବହଇ କୁବଳୟା ॥
ତାହାକୁ ଲୀଳାୟେ ମାଇଲ । ଇଷିତେ ଦନ୍ତ ଉପାଡ଼ିଲ ॥
ରଜକ ଶିର ଛେଦି କରେ । ଧନୁ ଭାଙ୍ଗିଲ ବାମ କରେ ॥
ତୁମ୍ଭ ମହିମା ସର୍ବ ଜନେ । ଭଲେ ଜାଣନ୍ତି ସାବଧାନେ ॥
ଯେମନ୍ତ ନ କହନି ଆର । ମୁଷ୍ଟିକ ବୋଇଲାରେ ଧର ॥
ଅଧର କାମୋଡ଼ି ଚାଣୁର । ବୋଇଲା ରାମକୁ ତୁ ଧର ॥
କୃଷ୍ଣର ସଙ୍ଗେ ଯୁଦ୍ଧ ମୋର । ଯେ ଯେ ବୋଲାଇ ବଳିଆର ॥
ମୁଷ୍ଟିକ ରାମ ଆଗେ ରହି । କୋପେ ଅଧର କାମୋଡ଼ଇ ॥
କହଇ ବିପ୍ର ଜଗନ୍ନାଥ । ଚାଣୁର ଧରି ଗୋପୀନାଥ ॥
ମୁଷ୍ଟିକ ରାମକୁ ଧଇଲା । ସେଠାରେ ମନ ମୋ ରହିଲା ॥
ଦେଖ ହୋ ଗୋବିନ୍ଦର ରଣ । ସୁଜନେ ପଶିବା ଶରଣ ॥
ବାଳକ ସଙ୍ଗେ ଯୁଦ୍ଧ କରି । ଦେଖନ୍ତି ପୁର ନରନାରୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ*
*କୁବଳୟାବଧ, ରଜକବଧ ବିଜୟେ ମାଲ୍ଲଯୁଦ୍ଧ ଆରମ୍ଭେ*
*ନାମ ଷଟ୍‌ଚତ୍ୱାରିଂଶୋଽଧ୍ୟାୟଃ ॥*

## ସପ୍ତଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଦିବ୍ୟରସ । କଂସ ହିଁ ହେଉଛି ହରଷ ॥
ରାମ ମୁଷ୍ଟିକ ଧରାଧରି । ଚାଣୂର ସଙ୍ଗେ ନରହରି ॥
ହସ୍ତ ଚରଣ ଛନ୍ଦାଛନ୍ଦି । ଗଜକୁ ଗଜ ଯେହ୍ନେ ବନ୍ଦୀ ॥
ଯେକ ଆରକେ ବଳିଆର । ଆତ୍ମାକୁ କଲେ ଅହଂକାର ॥
ମୁଷ୍ଟିକି ମୁଷ୍ଟି ପରିତାଳ । ଦେହୁଁ ଗଳଇ ଶ୍ରମ ଝାଳ ॥
ଜାନୁରେ ଜାନୁ ପରି ବନ୍ଧ । କୋପେ କରନ୍ତି ବୀର ନାଦ ॥
ମୁଣ୍ଡକୁ ମୁଣ୍ଡ ମରା ମରି । ହୃଦରେ ହୃଦୟ ଉଭାରି ॥
ଧରି ଘୂରାଇ ପୁଣି ଛାଡ଼ି । ପୁଣ ବସନ୍ତି ବେଗେ ମାଡ଼ି ॥
ପୁଣି ଛଡ଼ାଇ ପଛ ଘୁଞ୍ଚି । ଧରନ୍ତି ବେଗେ ବଳ ଆଞ୍ଚି ॥
ଯେକ ଆରକେ ଧରି ବେଗେ । ଗର୍ଜି ପଡ଼ନ୍ତି ଭୂମିଭାଗେ ॥
ପେଲି ପକାଇ ପୁଣ ଉଠି । ହୃଦେ ତାଡ଼ନ୍ତି ବଜ୍ରମୁଷ୍ଟି ॥
ପୁଣି ଧରନ୍ତି ତଳେ ପାଡ଼ି । ମୁଣ୍ଡକୁ ମୁଣ୍ଡ କୋଡ଼ା କୋଡ଼ି ॥
ରୁଧିର ବହେ ତନୁ ଫୁଟି । ଦେହକୁ ଦେହ ପିଟାପିଟି ॥
ପର୍ବତ ପ୍ରାୟେ ବେନି ମାଲେ । ଯୁଝନ୍ତି ରାମକୃଷ୍ଣ ତୁଲେ ॥
ବାଳକ ରାମକୃଷ୍ଣ ଦୁଇ । ମାଲଙ୍କ ସଙ୍ଗତେ ଯୁଝାଇ ॥
କେମନ୍ତେ ଦେଖୁଅଛ ଯେହା । ହୃଦରେ ନ ବସଇ ଦୟା ॥
ମରାଇ ବାଳୁତ ପୁଅଙ୍କୁ । ଧର୍ମ କି ସହିବ ଯେହାଙ୍କୁ ॥
ସଭାରେ ବସି ବଡ଼ଲୋକେ । ଅଧର୍ମ କରୁଛନ୍ତି ଥୋକେ ॥
ସକଳେ କଂସ ପ୍ରିୟକାରୀ । ଧର୍ମ ଅଧର୍ମ ନ ବିଚାରି ॥
ଯୁଦ୍ଧେ ବାଳକ ବଳିଆର । ଯେହା ନ କରନ୍ତି ବିଚାର ॥
ପର୍ବତ ପ୍ରାୟେ ଭୟଙ୍କର । ବଜ୍ର ଶରୀର ଯେହାଙ୍କର ॥
ଯେ ବାଳପୁଅଙ୍କୁ ଅନାଥ । ଅତିହିଁ ସୁକୁମାର ଦେହ ॥
ଯେହା ସଭାରେ ଧର୍ମ ନାହିଁ । ଯେଠାରେ ଥାଇ ନ ଯୋଗାଇ ॥
ମୁନିୟେ କହିଛନ୍ତି ପୂର୍ବେ । ବେଦ ପୁରାଣର ପ୍ରସ୍ତାବେ ॥
ଅଧର୍ମ କୂଟ ଛନ୍ଦ ଯହିଁ । ପଣ୍ଡିତେ ନ ବସିବ ତହିଁ ॥
ସଭାର ଦୋଷ ଯେ ଜାଣନ୍ତି । ବିଚାରି ପ୍ରବେଶ ନୁହନ୍ତି ॥
ଜାଣି ନ ଜାଣି ପକ୍ଷ କହି । ନରକେ ପଡ଼ନ୍ତି ସେ ଯାଇ ॥
ଯେମନ୍ତେ ରାମକୃଷ୍ଣ ତୁଲେ । ସମର କରୁଛନ୍ତି ମାଲେ ॥
ଯେକ ଆରେକ ଛିଦ୍ର ଚାକି । ନିଷ୍ଫଳ କରୁଛନ୍ତି ଆଖି ॥
ରାମ ଗୋବିନ୍ଦ ଲୋକେ ଚାହିଁ । କହନ୍ତି ଅଙ୍ଗୁଳି ଦେଖାଇ ॥
ଦେଖ ଯେ କୃଷ୍ଣର ବଦନ । ଗଳୁଛି ଝାଳ କଣା ମାନ ॥
ଫୁଟିଲା ପଦ୍ମକୋଷ ରାଶି । ଜଳ ସିଞ୍ଚିଲା ପ୍ରାୟେ ଦିଶି ॥

ଦେଖ ଯେ ରାମର ବଦନ । ତମ୍ଭାର ପ୍ରାୟେକ ଲୋଚନ ॥
ଧନ୍ୟ ସେ ବ୍ରଜଭୂମି ଦେଶ । ପୁଣ୍ୟସେ କଲାକ ଅଶେଷ ॥
ମାୟା ମନୁଷ୍ୟ ରୂପ ଧରି । ଯହିଁ ବୁଲନ୍ତି ରାମହରି ॥
ଚିତ୍ର ବିଚିତ୍ର ବନମାଳେ । ଗୋପାଳ ପୁଅଙ୍କର ମେଳେ ॥
ଗାଈ ଚରାଇ ବେଣୁ ସ୍ୱନେ । ପାଦେ ଚାଲନ୍ତି ବନେ ବନେ ॥
ଧ୍ୱଜ ଅଙ୍କୁଶ ଚିହ୍ନ ପାଦେ । ଶଙ୍କର ପୂଜଇ ଆନନ୍ଦେ ॥
ନନ୍ଦର ବ୍ରଜେ ଗୋପନାରୀ । ଅନେକ ତପ ଛନ୍ତି କରି ॥
ଅପୂର୍ବ ମୁଖ ଯେହାଙ୍କର । ଦେଖି ତେଜିଲେ ଘରଦ୍ୱାର ॥
ପିବନ୍ତି ଚକ୍ଷୁଦ୍ୱାରେ ରୂପ । ଅଜ୍ଞାନୀ ଜନେ ଯେ ଦୁରାପ
ମୋହନ ବଦନ ନୟନେ । ଲୋଚନ ଡୋଳା ଅବଧାନେ ॥
ଧନ୍ୟ ତାହାଙ୍କର ଜୀବନ । କୃଷ୍ଣହୁଁ ଆନେ ନାହିଁ ମନ ॥
ଗୋରୁ ଚରାଇ ବୃନ୍ଦାବନେ । ଯେ ଯେ ଆସନ୍ତି ରାତ୍ର ମାନେ
ଯିବାର ବେଳେ ବେଣୁ ଗୀତ । ଶୁଣି ହୁଅନ୍ତି ମୂରୁଛିତ ॥
ଘରୁ ବାହାର ହୋଇ ଦେଖି । ନିର୍ମଳ କରୁଥାନ୍ତି ଆଖି ॥
ଯେମନ୍ତ ବୋଲୁଁ ବୋଲୁଁ ଜନେ । କୋପ ବସିଲା କୃଷ୍ଣ ମନେ
ମଞ୍ଚାରେ ବସି ପିତାମାତା । ତାଡ଼ନ୍ତି ନିଜ ଶିରେ ହସ୍ତ ॥
ଦଣ୍ଡବ କରିଅଛି ଯେହା । ଆମ୍ଭରେ ନାହିଁ ତାର ଦୟା ॥
ନନ୍ଦର ଘରେ ଲୁଚାଇଲୁ । ଯେବେ କଂସର ମୁଖେ ଦିଲୁ ॥
ବିଧାତା କିରିଛି କଷଣ । ଦେଖିବୁ ପୁତ୍ରଙ୍କ ମରଣ ॥
ଦେବକୀ ପୁତ୍ର ମୁଖ ଚାହିଁ । ବେନି ଲୋଚନୁ ଲୁହ ବହି ॥
ବୁଡ଼ିଲା ଶୋକ ମାୟା ଜଳେ । ଧରିଛି ବସୁଦେବ କୋଳେ ॥
ମନୁଷ୍ୟ ପଣେ କଲେ ଭ୍ରାନ୍ତି । ପୁତ୍ରଙ୍କ ବଳ ନ ଜାଣନ୍ତି ॥
ମାଲଙ୍କ ତୁଲେ ବେନି ବାଳେ । ଯୁଦ୍ଧ କରନ୍ତି କୋପାନଳେ ॥
କୃଷ୍ଣର ମୁଷ୍ଟି ବଜ୍ର ପ୍ରାୟେ । କମ୍ପଇ ଚାଣୂରର କାୟେ ॥
ମୂର୍ଚ୍ଛିତ ହୋଇ ମହାବଳୀ । ମୁଖରୁ ରୁଧିର ନିକିଳି ॥
ପୁଣି ଉଠିଲା ଜ୍ଞାନ ପାଇ । ଧାଇଁଲା ମୁଷ୍ଟିରେ ଉଞ୍ଚାଇ ॥
କୃଷ୍ଣର ହୃଦରେ ପ୍ରହାରି । ଗର୍ଜଇ ମହା ନାଦ କରି ॥
ଚାଣୂର ମୁଷ୍ଟି କୃଷ୍ଣ ହୃଦେ । ଗୋବିନ୍ଦ ନ ଟଳିଲେ ପାଦେ ॥
ପୁଇମଣ୍ଡାୟେ କରେ ଧରି । ଗଜ ଶରୀରେ ଯେହ୍ନେ ମାରି ॥
ଚାଣୂର କର କୃଷ୍ଣ ଧରି । ଘୂରାଇ ଅନ୍ତରାଳ କରି ॥
ଭୂମିରେ ପାଡ଼ିଲେ ତକ୍ଷଣ । ଚାଣୂର ଛାଡ଼ିଲା ଜୀବନ ॥
ଇନ୍ଦ୍ରର ଧ୍ୱଜ ପ୍ରାୟେ ପଡ଼ି । ଗୋବିନ୍ଦ କଲେ ଘୋର ରଡ଼ି ॥
ଉଠିଲେ ଚାଣୂର ଉପରେ । ଅଳପ କେଶ ଧରି କରେ ॥
କୃଷ୍ଣଙ୍କୁ ଚାହିଁ ବଳରାମ । ଦେହେ ବସିଲା ଗରୁ ତମ ॥

ବଜ୍ର ମୁଷ୍ଟିୟେ କୋପଭରେ । ମାଇଲେ ମୁଷ୍ଟିକର ଶିରେ ॥
ମୁଖରୁ ରୁଧିର ଗଳଇ । ପଡ଼ିଲା ମୃତପିଣ୍ଡ ହୋଇ ॥
ପବନ ଘାତେ ମହା ବୃକ୍ଷ । ଯେସନେ ପଡ଼ଇ ପ୍ରତକ୍ଷ ॥
ମାଲେକ କୂଟ ନାମେ ଥିଲା । ରାମର ନିକଟେ ମିଳିଲା ॥
ବାମ ମୁଷ୍ଟିରେ ମୁଣ୍ଡ ଚୂରି । ପଡ଼ିଲା ଘୋରନାଦ କରି ॥
ଶଲ ତୋଶଲ ମାଲ ଦୁଇ । ମିଳିଲେ କୃଷ୍ଣ ପାଶେ ଯାଇ ॥
ପାଦ ପ୍ରହାରନ୍ତେ ମୁରାରି । ମାଲେ ପଡ଼ିଲେ ନାଦ କରି ॥
ପାଶେ ଯେ ଶତେ ମାଲ ଥିଲେ । ରଣ ଉପେଖି ପଳାଇଲେ ॥
ମାଲେ ପାଳନ୍ତେ ବେନିଭାଇ । ଡାକନ୍ତି ରହ ରହ ଭାଇ ॥
ଗୋପ କୁମରେ ଥିଲେ ସଙ୍ଗେ । ମିଳିଲେ ରାମକୃଷ୍ଣ ଆଗେ ॥
ମାଲ ବିନ୍ଧାଣ ଗରୁତର । ଭୂମି କମ୍ପଇ ଥରହର ॥
କୃଷ୍ଣର ମାଲଯୁଦ୍ଧ ଦେଖି । ଅସୁରେ ଚାହାନ୍ତି ନିରେଖି ॥
କୃତାନ୍ତ ପ୍ରାୟେ ରୂପ ଦେଖି । ଭୟେ ବୁଜିଲେ ବେନି ଆଖି ॥
କଂସର କମ୍ପଇ ଶରୀର । ଦେଖି ହରଷ ସୁର ନର ॥
ବୋଲନ୍ତି କୃଷ୍ଣ ସାଧୁ ସାଧୁ । ତରିଲେ ମାଲଙ୍କ ପ୍ରମାଦୁଁ ॥
କୃଷ୍ଣର ଚରଣେ ନୂପୁର । ଚାଲନ୍ତେ ବାଜଇ ସୁନ୍ଦର ॥
ବାଜଇ ବୀରତୂର ଧ୍ୱନି । ସ୍ତୁତି କରନ୍ତି ସୁର ମୁନି ॥
ପଡ଼ି ଅଛନ୍ତି ଚାରିମାଲେ । ସକଳେ ଭୟେ ପଳାଇଲେ ॥
ଦେଖିଣ ଉଗ୍ରସେନ ବଳା । ବାଦ୍ୟ ଶବଦ ଗୁହାଇଲା ॥
କୋପେ ବୋଲଇ ଶିର ଝୁଣି । କରେ ଖଡ଼ଗ ଅଛି ଘେନି ॥
ବସୁଦେବର ପୁତ୍ର ଦୁଇ । ରାଜ୍ୟ ବାହାରେ ଥୁଅ ନେଇ ॥
ନନ୍ଦ ସମ୍ପଦ ଗୋପପୁର । ବହନ କରୁଯାଇ ଜୁର ॥
ନନ୍ଦ ବସୁଦେବଙ୍କୁ ନିଅ । ଶିର ଛେଦିଣ ଶୂଳି ଦିଅ ॥
ଦେବକୀ ଉଗ୍ରସେନ ମୂଳେ । ଚାରିହେଁ ବସିଥିବେ ଶୂଳେ ॥
ରାମକୃଷ୍ଣଙ୍କୁ ଧରି ନେଇ । ତାହାଙ୍କ ମରଣ ଦେଖାଇ ॥
ଶିର ଛେଦିବ ଯେ ତାଙ୍କର । ତେବେ ସେ ଶତ୍ରୁ ଯିବ ମୋର ॥
ଯେତେ ଗୋପାଳ ପୁଅ ସଙ୍ଗେ । ହାଣି ପକାଅ ନେଇ ବେଗେ ॥
ଯେମନ୍ତ କଂସ ମୁଖୁଁ ଶୁଣି । କୋପେ ଚାହିଁଲେ ଚକ୍ରପାଣି ॥
କଂସର ମଞ୍ଚାରେ ଉଠିଲେ । ସ୍ୱର୍ଗେ ଦେବତା ଦେଖୁଥିଲେ ॥
ଦେଖି କରନ୍ତି ଜୟେ ଜୟେ । ଅବନୀ ହୋଇଲା ନିର୍ଭୟେ ॥
କୃଷ୍ଣଙ୍କୁ ଦେଖି କଂସ ଉଠି । ଖଡ଼ଗ କଲା ଦୃଢ଼ ମୁଷ୍ଟି ॥
ଉଞ୍ଚାଇ ଗୋବିନ୍ଦ ଉପରେ । ଧାଇଁ ପଡ଼ିଲା ରୋଷଭରେ ॥
ସଞ୍ଚାଣ ପ୍ରାୟେ ଧାତିକାରେ । କେଶ ଧଇଲେ କୃଷ୍ଣ କରେ ॥
ଅସୁର ନ ପାରିଲା ଟଳି । କୃଷ୍ଣଙ୍କୁ ଚାହିଁଲା ନିରୋଳି ॥
ଚକ୍ଷୁର ବାଟେ ପ୍ରାଣ ଗଲା । ତକ୍ଷଣେ ଗୋବିନ୍ଦେ ପଶିଲା ॥

ନାଗ ଆବୋରି ଖଗପତି । ତେସନ ଗୋବିନ୍ଦର ଗତି ॥
ରତ୍ନ ମୁକୁଟ କଂସ ଶିରେ । କୃଷ୍ଣ ଝିଙ୍କିଲେ ରୋଷଭରେ ॥
କଂସକୁ ଧରି ବାମ କରେ । ଗୋବିନ୍ଦ ମଞ୍ଚାର ଉପରେ ॥
ଜଗତ ସ୍ୱାମୀ ଯୋଗବଳେ । ପାଡ଼ିଲେ ରଙ୍ଗସଭା ତଳେ ॥
କଂସ ଉପରେ ଦାମୋଦର । ମେଦିନୀ ଦିଶିଲା ସୁନ୍ଦର ॥
ଯେତେ ଅସୁର ରାଜା ଥିଲେ । କୃଷ୍ଣଙ୍କୁ ଦେଖି ପଳାଇଲେ ॥
ସମସ୍ତ ଲୋକେ ଛନ୍ତି ଚାହିଁ । ବିକ୍ରମ ସିଂହ ପ୍ରାୟେ ହୋଇ ॥
କଂସର କେଶ ଧରି କରେ । କୃଷ୍ଣ ଟାଣିଲେ କୋପଭରେ ॥
ରଙ୍ଗସଭାର ତଳେ ଥାଇ । ମୃତପିଣ୍ଡକୁ ଘୋଷରାଇ ॥
ଉତ୍ତାନ କରି ପକାଇଲେ । ଗୋପ ବାଳକେ ଡେଙ୍ଗିଗଲେ
ଦେଖି ସାନନ୍ଦ ପୁରଜନ । ମଥୁରା ନାରୀଙ୍କର ମନ ॥
ଆକାଶେ କୁସୁମ ବରଷି । ନିର୍ମଳ ଦଶଦିଗ ଦିଶି ॥
ପବନ ବହଇ ଶୀତଳ । ନିର୍ଭୟେ ଜଳଇ ଅନଳ ॥
ଆକାଶ ଦିଶଇ ସୁନ୍ଦର । ଖଣ୍ଡିଲା ଅବନୀର ଭାର ॥
ଜୟ ଶବଦ ଶୂନ୍ୟେ ପୂରି । ନୃତ୍ୟ କରନ୍ତି ଅପସରୀ ॥
ଗୀତ ବିନୋଦେ ବିଦ୍ୟାଧରେ । ଦୁନ୍ଦୁଭି ବଜାଇ ସୁସ୍ୱରେ ॥
ଲୋକେ କରନ୍ତି ହାହାକାର । କେ ବୋଲେ ପଡ଼ିଲା ଅସୁର ॥
ଦଇବେ କଂସ ଅବିରତେ । କୃଷ୍ଣଙ୍କୁ ଭୟ କରି ଚିତ୍ତେ ॥
ଜଳ ପିବନ୍ତେ କମ୍ପେ ଦେହୀ । ଭୋଜନ କରନ୍ତେ ଡରଇ ॥
ଭୟେ ନ ସ୍ଫୁରଇ ବଚନ । ନିଦ୍ରା ନ ମାଡ଼େ ରାତ୍ର ଦିନ ॥
ଯାହାରେ ଡରୁଥାଇ ନିତ୍ୟେ । ତାହାକୁ ଦେଖିଲା ପ୍ରତକ୍ଷେ ॥
ଦେହେ ପଶିଲା କଂସରାୟେ । ଖଣ୍ଡିଲା ଜନ୍ମ ମୃତ୍ୟୁ ଭୟେ ॥
ନିର୍ମଳ ଯୋଗୀଙ୍କି ଦୁର୍ଲ୍ଲଭ । କଂସକୁ ହୋଇଲା ସୁଲଭ ॥
କଂସର ଅଷ୍ଟଭ୍ରାତ ଥିଲେ । ମିଳିଲେ ରାମକୃଷ୍ଣ ତୁଲେ ॥
କଙ୍କ ନ୍ୟଗ୍ରୋଧ ଆଦି କରି । ଧାଇଁଲେ ଖଡ଼ଗ ଉଭାରି ॥
ଭାଇ ମରଣେ କ୍ରୋଧ ପାଇ । ବେଢ଼ିଲେ ଗୋବିନ୍ଦଙ୍କୁ ଯାଇ ॥
ଦେଖି ଧାଇଁଲେ ହଳଧର । ବୁଲାଇ ଲୋହର ମୁଦଗର ॥
ସିଂହ ଯେସନେ ହସ୍ତୀଯୂଥେ । ପିଟନ୍ତି ଅତି ବଳବନ୍ତେ ॥
ପଡ଼ିଲେ ଅଷ୍ଟ ମହାବୀର । ମୁଖରୁ ଗଳଇ ରୁଧିର ॥
ଦେଖି ସାନନ୍ଦ ଦେବଗଣ । ବଳଦେବଙ୍କ ବୀରପଣ ॥
ପୁଷ୍ପ ବରଷି ସ୍ତୁତି କରି- । ଜୟ ଶବଦ ନର ନାରୀ ॥
କଂସର ଅଷ୍ଟମଲ୍ଲ ମୂଳେ । ଯେତେ କାମିନୀ ଘରେ ଥିଲେ ॥
ବାହାର ହୋଇଲେ ବିକଳେ । କାନ୍ଦନ୍ତି ସ୍ୱାମୀ ଧରି କୋଳେ ॥
ମୁଣ୍ଡ ହୃଦୟେ କର ତାଡ଼ି । ଗଡ଼ନ୍ତି ମହୀତଳେ ପଡ଼ି ॥
ହା ନାଥ ପ୍ରିୟ ମହୀପତି । ଅନାଥ ହୋଇଲୁଁ ଯୁବତୀ ॥

ଭୋ ନାଥ ମରଣେ ତୋହୋର । ମଥୁରା ନ ଦିଶେ ସୁନ୍ଦର ॥
ତୋର ବିଯୋଗେ ମଧୁପୁରୀ । ଯେବେ ହୋଇଲା ହତଶିରୀ ॥
ତୁ ନାଥ ପ୍ରାଣୀଙ୍କର ତୁଲେ । ଦ୍ରୋହ ଚିନ୍ତିଲୁ ସର୍ବକାଳେ ॥
ଅସୁର ବୁଦ୍ଧି ତୋର ମନ୍ଦ । ସାଧୁଙ୍କ ସଙ୍ଗେ କଲୁ ବାଦ ॥
ଧର୍ମକୁ ନିଶ୍ଚୟେ ଛାଡ଼ିଲୁ । ବାଳକ ହସ୍ତେ ପ୍ରାଣ ଦିଲୁ ॥
ପ୍ରାଣୀଙ୍କ ହୃଦୟେ ଅନନ୍ତ । ଜଗତ ଯାର ତହୁଁ ଜାତ ॥
ବ୍ରହ୍ମାଣ୍ଡ ଠାକୁର ମୁରାରି । ମାରଇ ପ୍ରାଣୀ ହିଂସାକାରୀ ॥
ତାହାର ସଙ୍ଗେ ବାଦ କଲୁ । ଇତର ପ୍ରାୟେ ତୁ ମଣିଲୁ ॥
ସୃଷ୍ଟି ପାଳଣ ଯାର ବାନା । ଭଗତ ଜନ ବନ୍ଧୁ ସେହ୍ନା ॥
ସଂସାରେ ଧର୍ମ ରୂପ ହୋଇ । ଭାବ ଅଭାବ ସେ ଘେନଇ ॥
ତାର ମହିମା ତୁ ନ ଜାଣି । ଦ୍ରୋହ ଚିନ୍ତିଲୁ ଚକ୍ରପାଣି ॥
ମରିବା ଉଚିତ ତୋହୋର । ଅନାଥ କଲୁ ମଧୁପୁର ॥
କହନ୍ତି ବ୍ୟାସଙ୍କ ନନ୍ଦନ । ଗୋବିନ୍ଦ ଶୁଣିଲେ ରୋଦନ ॥
ଛାଡ଼ିଲେ କଂସ କୋପମନ । ଦୟାସାଗର ଭଗବାନ ॥
ରାଜ କାମିନୀ ମଧ୍ୟେ ଯାଇ । ବିଜୟେ ବ୍ରହ୍ମାଣ୍ଡ ଗୋସାଇଁ ॥
ଲୋକ ବେଭାରେ ନରହରି । ଲୋଚନୁ ବହେ ଅଶ୍ରୁ ବାରି ॥
କାନ୍ଦନ୍ତି ମାଇଁଙ୍କର ମେଳେ । ଗୋବିନ୍ଦ ମାୟା ଯୋଗ ବଳେ
ବୋଲନ୍ତି ମୋର କର୍ମ ମନ୍ଦ । ଦଇବ କରିଅଛି ଛନ୍ଦ ॥
ଜାତ ହୋଇଲି ବନ୍ଦୀଘରେ । ସୋଦର ମଉଳାର ଡରେ ॥
ଗଉଡ଼ ପଣେ ଦିନ ନେଇ । ମୋହୋର କୁଳମୂଳ ନାହିଁ ॥
ଦିବସେ ନ ରହଇ ଘରେ । ଅନ୍ନ ପୁଡ଼ାୟେ ବାମ କରେ ॥
ବନେ ଭୁଞ୍ଜଇ ଯେକା ବେଳେ । ନିଦ୍ରା ନ ମାଡ଼େ ରାତ୍ରକାଳେ ॥
ରାତ୍ର ପାହିଲେ ଯାଇ ବନ । ଯେମନ୍ତେ ପୋଷଇ ଜୀବନ ॥
ଯେତେ ପଡ଼ିଲା ମୋତେ ରିଷ୍ଟ । ସୁମରି କହି କେତେ କଷ୍ଟ ॥
ମୁ ମୋର ଦୁଃଖ ସୁଖେ ଥାଇ । ମଉଳା ତାହା ନ ଜାଣଇ ॥
ମାଇଲା ମୋର ଛଡ଼ ଭାଇ । ପିତାମାତାଙ୍କୁ ଦୁଃଖ ଦେଇ ॥
ମୋତେ ମାରିବ ବିଚାରିଲା । ଅକ୍ରୂର ହସ୍ତେ ଅଣାଇଲା ॥
ଧନୁଯାତ୍ରାୟେ ମିଛେ କଲା । ଦ୍ୱାରେ ଗୋ ହସ୍ତୀୟେ ଥୋଇଲା ॥
ଦଇବେ ତହୁଁ ଉବୁରିଲି । ମାମୁଙ୍କ ଛାମୁରେ ମିଳିଲି ॥
ତେବେ ହେଁ ଦୟା ଗୋ ନ କଲା । ମାଇଙ୍କ ସଙ୍ଗେ ଯୁଝାଇଲା ॥
ତାହୁଁ ଜିଣିଲି କର୍ମବଳେ । ଯାଇ ମିଳିଲି ମଞ୍ଚା ତଳେ ॥
ବୋଇଲା କୋପଭର ହୋଇ । ଡେଙ୍ଗୁରି ଦିଅ ବେନିଭାଇ ॥
ବସୁଦେବଙ୍କୁ ନନ୍ଦ ସଙ୍ଗେ । ହାଣି ପକାଅ ନେଇ ବେଗେ ॥
ଦେବକୀ ସଙ୍ଗେ ଉଗ୍ରସେନ । ଶୂଳରେ ବସାଅ ବହନ ॥
ନନ୍ଦ ସମ୍ପଦ ଲୁଟ କର । ରାମ ଗୋବିନ୍ଦ ବେଗେ ମାର ॥

ତା ଶୁଣି ଉଠିଲି ମଞ୍ଚାରେ । କୋପ ଗୋ ତୋଷ କରିବାରେ ॥
ପାଦେ ପଡ଼ିଲି ମୁହିଁ ଯାଇ । ଧାଇଁଲା ଖଡ଼୍‌ଗ ଉଞ୍ଚାଇ ॥
ତା ଦେଖି ହୋଇଲି ବିକଳ । ବେଗେ ଧଇଲା ମୋର ବାଳ ॥
ମଞ୍ଚାରୁ ଦିଲା ଫୋପୋଡ଼ାଇ । ତଳେ ଗୋ ପଡୁଥିଲି ମୁହିଁ ॥
ବିକଳେ ଧଇଲି ପୟର । ପଡ଼ିଲା ମୋହୋର ଉପର ॥
ଭୂମିରେ ପଡ଼ି ମାମୁ ମଲା । ମୋତେ ଗୋ ଦଇବ ରଖିଲା ॥
ମୋହର କର୍ମେ ନାହିଁ ଭୋଗ । ରାଜା ଭଣଜା ପଣେ ଯୋଗ ॥
ଅରଜି ଥିଲି ଯାହା ପୂର୍ବେ । ଫଳିଲା ଆସି ମୋତେ ଯେବେ ॥
ମାୟା ସଂସାର ଯେହ୍ନିମତେ । ଜନମ ମରଣ ବେନି ପଥେ ॥
ପ୍ରାଣୀ ହୁଅନ୍ତି ଆତଯାତ । କର୍ମର ଫଳ ସେ ପ୍ରାପତ ॥
ପଥିକୀ ପଥ ଶ୍ରମ ପାଇ । ବସନ୍ତି ବୃକ୍ଷତଳେ ଯାଇ ॥
ଶ୍ରମ ସରିଲେ ଯେଝାମତେ । ଚଳନ୍ତି ବୃକ୍ଷ ଛାଡ଼ି ପଥେ ॥
ତେମନ୍ତ ପ୍ରାୟେ ଜନ୍ତୁ ମିଳି । ମାୟା ସଂସାରେ ବିଷ୍ଣୁ କେଳି ॥
ଯେଣେ ଯେ ନ କରନ୍ତି ଖେଦ । ତାହାଙ୍କୁ ନ ଲାଗେ ପ୍ରମାଦ ॥
ତୁମ୍ଭେ ଗୋ ଅର୍ଜି ଅଛ ଯାହା । ଯେବେ ସେ ଭୁଞ୍ଜିବନା ତାହା ॥
ଯେମନ୍ତ ବୋଲି ଭଗବାନ । ମୋହିଲେ ମାଇଁଙ୍କର ମନ ॥
ଆଶ୍ୱାସ କରି କଂସ ନାରୀ । ବଦନ ପୋଛିଲେ ମୁରାରି ॥
ଜଣ ଜଣକେ ବୋଧ କଲେ । ଅନଳେ କଂସ ପୋଡ଼ାଇଲେ ॥
ରାମ ଗୋବିନ୍ଦ ବେନିଭାଇ । ପିତାମାତାଙ୍କୁ ଦୃଷ୍ଟି ଦେଇ ॥
ନୟନୁ ଅଶ୍ରୁ ଜଳ ବହି । ମଞ୍ଚା ଉପରେ ବେନିଭାଇ ॥
ପାଦରୁ ଶାଙ୍କୁଳି ଫେଡ଼ାଇ । ହରଷେ ରାମକୃଷ୍ଣ ଚାହିଁ ॥
ଦେବକୀ ବସୁଦେବ ପାଦେ । ପଡ଼ିଲେ ଶୋକ ଗଦ ଗଦେ ॥
ଦେଖି ଚକିତ ପିତାମାତ । ତୋଳି ବସାଇ ଗୋପୀନାଥ ॥
ଭୟେ କମ୍ପନ୍ତି ଥର ହର । ବୋଇଲନ୍ତି ଶରଣ ତୋହୋର ॥
ଅନାଦି ନାଥ ନିରଞ୍ଜନ । ଆମ୍ଭର ଦୋଷ ତୁ ନ ଘେନ ॥
ପୁତ୍ର ପ୍ରାୟେକ ତୋତେ ମଣି । ଦ୍ରୋହ ଚିନ୍ତିଲୁ ଚକ୍ରପାଣି ॥
ଯେ ଦୋଷ ନ ଧର ଆମ୍ଭର । ଭୋ ନାଥ ରଖ ଦାମୋଦର ॥
ଯେମନ୍ତ ବୋଲି କମ୍ପେ କାୟେ । ଚକ୍ଷୁ ବୁଜିଲେ ମହାଭୟେ ॥
ବୋଇଲନ୍ତି ଶୁକ ମୁନିବର । ଜାଣିଲେ ପ୍ରଭୁ ଗଦାଧର ॥
ବଳଦେବଙ୍କୁ ଅନାଇଲେ । ବୋଇଲନ୍ତି ଜ୍ଞାନ ଯେ ପାଇଲେ ॥
ଆମ୍ଭଙ୍କୁ ଚିହ୍ନିଲେ ଯେ ଆଜ । କେମନ୍ତେ ହେବ ଦେବ କାର୍ଯ୍ୟ ॥
ଯେମନ୍ତ ବୋଲି ବିଚାରିଲେ । ବିଷ୍ଣୁର ମାୟା ପ୍ରକାଶିଲେ ॥
ପିତାମାତାଙ୍କ ଦେହେ ଯାଇ । ପଶିଲେ ଶୋକମୋହ ହୋଇ
ସେ ମାୟାଧର ପାଦ ଗତେ । ଭଜଇ ବିପ୍ର ଜଗନ୍ନାଥେ ॥
କଂସ ଦାନବ ସଂହାରିଲେ । ଅବନୀ ଭାରା ନିବାରିଲେ ॥
ଭଗତଜନଙ୍କର ବନ୍ଧୁ । ନାମ କରୁଣାମୟେ ସିନ୍ଧୁ ॥
ଯେଣେ ନିବେଶି କୃଷ୍ଣେ ମନ । ଶରଣ ପଶ ଭଗବାନ ॥
ବୁଡ଼ି ନ ମର ଭବ ଜଳେ । କୃଷ୍ଣ ସୁମରି ଉଠ କୂଳେ ॥
ବ୍ରାହ୍ମଣ କୁଳେ ଜାତ ହୋଇ । ବିଷ୍ଣୁ ବାସନା ମୋର ନାହିଁ ॥
ସ୍ୱପନେ କହିଲେ ମୁରାରି । ପୁରାଣ ଗୀତ ନାଦ କରି ॥
ଯେଣୁ ମୋହୋର ଭୟେ ନାହିଁ । ସୁଜନେ ତର ଯେହା ଗାଇ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ମଲ୍ଲଯୁଦ୍ଧେ*
*କଂସ ସଂହାରଣେ ନାମ ସପ୍ତଚତ୍ୱାରିଂଶୋଽଧ୍ୟାୟଃ ।*

## ଅଷ୍ଟଚତ୍ୱାରିଂଶ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ନୃପବାର । କହନ୍ତି ବ୍ୟାସଙ୍କ କୁମର ॥
ଜଗତବନ୍ଧୁ ଜନାର୍ଦ୍ଦନ । ମୋହିଲେ ମାତାପିତା ମନ ॥
ରାମର ମୁଖକୁ ଚାହିଁଲେ । ବିଷ୍ଣୁର ମାୟା ପ୍ରକାଶିଲେ ॥
ଅଶେଷ ଜୀବଜନ୍ତୁ ଦେହେ । ଅଛନ୍ତି ଯାର ମାୟା ମୋହେ ॥
ତାତ ଜନନୀ ପାଦ ତଳେ । ରାମ ଗୋବିନ୍ଦ ଯେକ ମେଳେ ॥
ନିବେଶି ପୁଣ ପୁଣ ପାଦେ । ଉଞ୍ଜି କରନ୍ତି ଶୋକନାଦେ ॥
ହେ ତାତ ମାତ ଶୁଣ ମୋର । ଦଇବ ବଳ ବଳିଆର ॥
ତାତ ଜନନୀ ଉପକାର । ଶୁଝି କେ ପାରିବ କୁମର ॥
ଗର୍ଭେ ବହନ୍ତି ଦୁଃଖ ସହି । ପୁଣି ପାଳନ୍ତି କ୍ଷୀର ଦେଇ ॥
ମାତାର ପୋଷଣେ ଜୀଅଇ । ତାହାରେ କଷଣେ ଦିଅଇ ॥
ତାହାର ପ୍ରତି ଉପକାରେ । ଶତେ ବରଷେ କେହୁ ପାରେ ॥
ସେ ତାତ ଜନନୀ ଅନ୍ତେ । ବେଗେ ମିଳନ୍ତି ଯମ ଦୂତେ ॥
କର ଚରଣ ବାନ୍ଧି କୋପେ । ଘେନାଇ ଯାନ୍ତି ପରଲୋକେ ॥
ନିରାଶ ପଥେ ସେ ବିକଳେ । କାନ୍ଦଇ କ୍ଷୁଧାର ଆକୁଳେ ॥
ତାର ବିକଳ ଦେଖି ପଥେ । କୋପେ ବୋଲନ୍ତି ଯମ ଦୂତେ ॥
ପିତାମାତାଙ୍କୁ ଦୁଃଖ ଦେଇ । ଜୀବନ ପୋଷିଲୁ ଯେ ତୁହି ॥
ଯେ ଅବା ପୁଣ୍ୟ ଥିଲା ତୋର । ଯେ ପାପେ ହୋଇଲା ଅନ୍ତର ॥
ଯେବେ ଖାଇବୁ ଆର କିସ । ଯେମନ୍ତ ବୋଲି ତାର ମାଂସ ॥
କାଟିଣ ତାର ମୁଖେ ଦେନ୍ତି । ନିର୍ଦ୍ଦୟେ ଯଷ୍ଟି ପ୍ରହାରନ୍ତି ॥
ଭୋ ତାତ ଶୁଣ ଯେକ ଚିତ୍ତେ । ବିପ୍ରେ କହନ୍ତି ବେଦ ମତେ ॥
ପିତାମାତାଙ୍କ ବୃଦ୍ଧ କାଳେ । ନିଜ ଭାରିଯା ଶିଶୁ ମେଳେ ॥
ଗୋରୁ ବ୍ରାହ୍ମଣ ଗୁରୁଜନ । ଯେହାଙ୍କୁ ନ ଦେଇ ଭୋଜନ ॥

ଯେ ପ୍ରାଣୀ ଆତ୍ମାକୁ ପୋଷନ୍ତି । ଜୀବନ ଥାଉ ସେ ମରନ୍ତି ॥
କଂସର ଡରେ ଗୋପେ ଥାଇ । ଦୁଃଖେ ବଞ୍ଚିଲୁ ବେନି ଭାଇ ॥
ତୁମ୍ଭ ସେବାରେ ନାହିଁ ମନ । ନିଷ୍ଫଳେ ଗଲା ଯେତେ ଦିନ ॥
ସେ ଦୋଷ କ୍ଷମାକର ତାତ । ଆମ୍ଭେ ହୋଇଲୁ ପରାୟତ ॥
ଯେମନ୍ତ କହି ଦାମୋଦର । ମନ ମୋହିଲେ ତାହାଙ୍କର ॥
କୃଷ୍ଣ ବଚନେ ମାତା ପିତା । ଛାଡ଼ିଲେ ମନ ଦୁଃଖ ଚିନ୍ତା ॥
ଅତି ଆନନ୍ଦେ ବେନି ଜନ । ପୁତ୍ରଙ୍କୁ ଦିଅନ୍ତି ଚୁମ୍ବନ ॥
କୋଳେ ବସାଇ ହୃଦେ ଭିଡ଼ି । ବେନି ଲୋଚନୁ ବହେ ବାରି ॥
ବୁଡ଼ିଲେ ମାୟାମୋହ ଜଳେ । କଣ୍ଠ ନ ସ୍ଫୁରେ ଅଶ୍ରୁ ଜଳେ ॥
ଯେମନ୍ତେ ପ୍ରଭୁ ବ୍ରହ୍ମରାଶି । ତାତ ଜନନୀ ମନ ତୋଷି ॥
ଉଗ୍ରସେନଙ୍କୁ ଅଣାଇଲେ । ରାଜା ଆସନେ ବସାଇଲେ ॥
ବୋଲନ୍ତି ପ୍ରଭୁ ଦେବରାଜା । ଆମ୍ଭେ ସକଳେ ତୋର ପ୍ରଜା ॥
ତୁ ଭୋଜବଂଶେ ନୃପବର । ଆମ୍ଭେ ଖଟିବୁ ତୋ ପୟର ॥
ଯଯାତି ନାମେ ମହାନୃପ । ଯଦୁଙ୍କୁ ଦେଇଅଛି ଶାପ ॥
ଯେଣୁ ଯଦୁଙ୍କୁ ପାଟ ନାହିଁ । ରାଜା ହୋଇଲେ କ୍ଷୟ ଯାଇ ॥
ତୁ ଆମ୍ଭ ବୋଲେ ନୃପବର । ବହିବୁ ରାଜ୍ୟ ମହାଭାର ॥
ଯେମନ୍ତ କହି ବନମାଳୀ । ଆପଣେ କଲେ ନିଉଛାଳି ॥
ସୁବର୍ଣ୍ଣ କୁମ୍ଭେ ଗଙ୍ଗାନୀର । ଦଧି ଅକ୍ଷତ ଗନ୍ଧସାର ॥
ଗୋବିନ୍ଦ ତୋଳି ବେନିକରେ । ଢାଳିଲେ ଉଗ୍ରସେନ ଶିରେ ॥
ନାନା ଉଛବେ ଅଭିଷେକ । ସ୍ୱର୍ଗେ ଦେଖନ୍ତି ଦେବଲୋକ ॥
ବାଜଇ ବୀରତୂର ନାଦ । ମଥୁରା ହୋଇଲା ଆନନ୍ଦ ॥
ଉଗ୍ରସେନଙ୍କୁ ରାଜା କରି । କୃଷ୍ଣ କହନ୍ତି କରଯୋଡ଼ି ॥
ଭ୍ରାନ୍ତି ତୁ ନକର ମନରେ । ତୋ ରିପୁ ନାହିଁ ଯେ ସଂସାରେ ॥
ମୁହିଁ ତୋହୋର ଆଜ୍ଞାକାରୀ । କେ ତୋତେ ହୋଇବ ବଇରୀ ॥
ମହେନ୍ଦ୍ର ଆଦି ଦିଗପାଳେ । ଖଟିବେ ତୋର ପାଦତଳେ ॥
ମଣ୍ଡରାଜାଙ୍କୁ ନାହିଁ ଡର । ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର ॥
ଯେମନ୍ତେ ରାଜାପଦ ଦେଇ । ରାମ ଗୋବିନ୍ଦ ବେନିଭାଇ ॥
ଯେତେ ଡଗର ଥିଲେ ଦେଶେ । ଅଣାଇ କହନ୍ତି ବିଶ୍ୱାସେ ॥
ତୁମ୍ଭେ ହୋ ଯାଅ ଚାରିଦିଗେ । ମୋହୋର ଆଜ୍ଞାଘେନି ବେଗେ
ଯାଦବ ଆଦି ସାତବଂଶ । ଯେ ଅବା ଅଛନ୍ତି ଯେ ଦେଶ ॥
ନିର୍ଭୟେ ହୋଇ ବେଗେ ଆସ । ଗୋବିନ୍ଦ ତୁମ୍ଭରେ ବିଶ୍ୱାସ ॥
ଯେମନ୍ତ ବୋଲି ଆଜ୍ଞା ଦିଲେ । ବନ୍ଧୁ ବାନ୍ଧବ ଅଣାଇଲେ ॥
ଜଣ ଜଣକେ ତୋଷ କରି । ଦାସ ବସ୍ଛଳ ନରହରି ॥
ଯେଝାର ପୁରେ ଦିଲେ ବାସ । ଧନ ସମ୍ପଦ ଗ୍ରାମ ଦେଶ ॥
ଯାଦବେ କୃଷ୍ଣର ବିଶ୍ୱାସେ । ଗୃହେ ମିଳିଲେ ମନ ତୋଷେ
ରାତ୍ର ଦିବସ କୃଷ୍ଣ ମୁଖ । ଦେଖି ଲଭିଲେ କୋଟିସୁଖ ॥
ବୃଦ୍ଧ ବାଳକେ ଦୁଃଖ ନାହିଁ । ସକଳେ ଯୁବା ପ୍ରାୟେ ହୋଇ
କୃଷ୍ଣର ଅପୂର୍ବ ବଦନ । ଦେଖି ହୋଇଲେ ତୋଷ ମନ
ସେ କୃଷ୍ଣ ଚରଣେ ବିଶ୍ୱାସ । ଭଣଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦଶମସ୍କନ୍ଧେ ମାତାପିତାଦର୍ଶନେ ଉଗ୍ରସେନ ରାଜାକରଣେ ନାମ ଅଷ୍ଟଚତ୍ୱାରିଂଶୋଽଧ୍ୟାୟଃ ।*

## ଊନପଞ୍ଚାଶତ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କର ସୁତ । ଶୁଣ ପରୀକ୍ଷ ନରନାଥ ॥
ରାମ ଗୋବିନ୍ଦ ଯେକ ମେଳେ । ନନ୍ଦର ନିକଟେ ମିଳିଲେ ॥
କର ଅଞ୍ଜଳି ଦେଇ ଶିରେ । ନମନ୍ତି ଯଶୋଦା ପୟରେ ॥
ନନ୍ଦ ଚରଣେ ପରିମାଣି । ଅଶେଷ ଜନ୍ତୁ ଅନ୍ତର୍ଯ୍ୟାମୀ ॥
ରାମ ଗୋବିନ୍ଦ ମାୟାବଳେ । ବସିଲେ ବେନି ଜନ କୋଳେ ॥
ବେନି ବାଳେକ କରେ ଜାକି । ସ୍ନେହେ ବୁଜିଲେ ବେନି ଆକ୍ଷି
ଆନନ୍ଦେ ଅଶ୍ରୁଜଳ ବହେ । ରାମଗୋବିନ୍ଦ ମୁଖ ଚାହେଁ ॥
ନନ୍ଦକୁ କହି ଦେବରାୟେ । ବୋଲନ୍ତି ଶୁଣ ତାତ ମାୟେ ॥
ଆମ୍ଭେ ତୁମ୍ଭର ବେନି ପୋୟେ । ଆମ୍ଭନ୍ତ ପାଳିଲ ସେନେହେ ॥
ଅନାଥ ବାଳକଙ୍କୁ ଆଣି । ଧର୍ମେ ପାଳନ୍ତି ଯେଉଁ ପ୍ରାଣୀ ॥
ସେ ଧର୍ମ ପିଅର ଜନନୀ । ବୋଲନ୍ତି ବେଦ ମତେ ମୁନି ॥
ଭୋ ତାତ ଯାଅ ଗୋପପୁର । ବନ୍ଧୁ ବାନ୍ଧବେ ଘେନି ତୋର ॥
ମୁଁ ଏଥେ ରହି ଦିନା କେତେ । ବନ୍ଧୁ ବାନ୍ଧବେ ମୋର ଯେତେ
ତାହାଙ୍କୁ ନିଷ୍କଳ କରାଇ । ଯେ ଯାହା ଗୃହେ ବାସୁ ଦେଇ
ପଛେ ମୁଁ ଯିବି ଗୋପପୁର । ଭୋ ତାତ ବିଳମ୍ବ ନକର ॥
ଯେମନ୍ତ କହି ଭାବଗ୍ରାହୀ । ନନ୍ଦର କରେ କର ଦେଇ ॥
କଂସର ଯେତେକ ଭଣ୍ଡାର । ନନ୍ଦକୁ ଦେଲେ ଦାମୋଦର ॥
ବୋଇଲେ ଗୋପେ ହୁଅ ରାଜା । ଆନନ୍ଦେ ପାଳି ଜନ ପ୍ରଜା ॥
ନନ୍ଦ ଯଶୋଦାଙ୍କର ମନ । ମୋହିଲେ ପ୍ରଭୁ ଭଗବାନ ॥
ରାମ ଗୋବିନ୍ଦ ଘେନି କୋଳେ । ଚୁମ୍ବନ ଦେଲେ ସୁଖ ଭୋଳେ
ଯେତେ ବାଳକ କୃଷ୍ଣ ସଙ୍ଗେ । ଗୋପେ ବଢ଼ିଲେ ନାନାରଙ୍ଗେ ॥
ବୋଲନ୍ତି କୃଷ୍ଣ ମୁଖ ଚାହିଁ । ବିକଳେ ଶିରେ କର ଦେଇ ॥
ହେ ରାମ କୃଷ୍ଣ ତୁମ୍ଭ ସଂଗେ । ବନେ ବଞ୍ଚିଲୁ ନାନାରଙ୍ଗେ ॥

ଯେବେ ଛାଡୁଛ କିସ ପାଇଁ । ବଞ୍ଚିବୁ କାହାକୁ ସେ ଚାହିଁ ॥
ନିରାଶ ନକର ଗୋସାଇଁ । ତୋ ବିନୁ ଆନ ଗତି ନାହିଁ ॥
ଶୁଣି ବୋଇଲେ ବେନି ଭାଇ । ମୋହନ ନୟନେ ଅନାଇଁ ॥
ଗୋପାଳ ଯାଅ ନିଜ ଘରେ । ମନ ନିବେଶି ମୋ ପୟର ॥
ଆମ୍ଭର ମନ ତୁମ୍ଭ ତହିଁ । ନିକଟେ ଯିବୁ ବେନି ଭାଇ ॥
ଯେମନ୍ତ ଜଣେ ଜଣେ ତୋଷି । ଗୋପାଳ ପୁତ୍ରକୁ ଆଶ୍ୱାସି ॥
କୃଷ୍ଣର ଆଜ୍ଞା ନନ୍ଦ ଲୟି । କାନ୍ଦଇ ପୁଣ ପୁଣ ଚାହିଁ ॥
ଯଶୋଦା କୃଷ୍ଣ ମୁଖ ଚାହିଁ । କୋଳେ ବସାଇ ଚୁମ୍ବ ଦେଇ॥
ମନ ନିବେଶି କୃଷ୍ଣ ପାଦେ । କାନ୍ଦଇ ଶୋକ ଗଦ ଗଦେ ॥
ବାଜଇ ବୀରତୂରୀ ନାଦ । ଘେନାଇ ସକଳ ସମ୍ପଦ ॥
ନନ୍ଦ ଚଳିଲେ ଗୋପପୁର । ଶୁଣ ରାଜନ କୁରୁବୀର ॥
ଯେବେ କୃଷ୍ଣର ଦେଖ ଭାବ । ପୁତ୍ରକୁ ପାଇ ବସୁଦେବ ॥
ଦ୍ୱିଜ ସଙ୍ଗତେ ପୁରୋହିତ । ଅଣାଇ କହଇ ଉଚିତ ॥
ଯେ ଯେ ମୋହୋର ବେନିବାଳେ । ଗୋପୁ ଅଇଲେ ଯେତେ ବେଳେ ॥
ଯେହାଙ୍କ କ୍ରିୟା କର୍ମ ନାହିଁ । ସଂସ୍କାର କର ବେନି ଭାଇ ॥
ବସୁଦେବର ବୋଲ ଶୁଣି । ବ୍ରାହ୍ମଣେ ରାମ କୃଷ୍ଣ ଆଣି ॥
କଲେ ଯେ ବେଦ କ୍ରିୟା କର୍ମ । କୁଳ ଉଚିତ ଯଥା ଧର୍ମ ॥
ଆନନ୍ଦ ହୋଇ ବସୁଦେବ । କରାଇ ନାନା ମହୋତ୍ସବ ॥
ଅୟୁତେ ଧେନୁ ବତ୍ସା ମୂଳେ । ମଣ୍ଡିଲା ଅଳଙ୍କାର ତୁଲେ ॥
କୃଷ୍ଣର ଜନ୍ମକାଳେ ଯାହା । ମନେ କହିଲା ପୁଣ୍ୟ ଦେହା ॥
ବିପ୍ରଙ୍କୁ ଦେଲା ମନ ତୋଷେ । କଲ୍ୟାଣ କଲେ ସେ ହରଷେ ॥
ବସାଇ ରାମକୃଷ୍ଣ ଦୁଇ । ଆନନ୍ଦ ମନେ ବେଦ କହି ॥
ଗାୟତ୍ରୀ ମନ୍ତ୍ର ବେଦ କର୍ମ । କୁଳ ଉଚିତ ଯଶ ଧର୍ମ ॥
କରାଇ ଗଲେ ବିପ୍ର ଜନ । କୃତାର୍ଥ ବସୁଦେବ ମନ ॥
ଯେ ହରି ସର୍ବ ବିଦ୍ୟା ହେତୁ । ଜ୍ଞାନ ପବିତ୍ର ମୂଳ ତତ୍ତ୍ୱ ॥
ମନୁଷ୍ୟ ଜନ ଯହୁଁ ହୋନ୍ତି । ତେଣୁ ହୋଇଲେ ବିଦ୍ୟାର୍ଥୀ ॥
ଗୋବିନ୍ଦ ବିଚାରନ୍ତି ତହିଁ । ବିଦ୍ୟା ପଢ଼ିବା ଆମ୍ଭେ କାହିଁ ॥
ଶୁଣି ବୋଇଲେ ହଳଧର । ଅବନ୍ତୀ ରାଜ୍ୟେ ବିପ୍ରଘର ॥
କାଶ୍ୟପ ଗୋତ୍ରେ ବିଦ୍ୟମାନ । ତାହାଙ୍କ ଶାନ୍ଦିପନୀ ନାମ ॥
ଯେମନ୍ତେ ଭାଳି ଅନୁମତେ । ବିଜୟ କଲେ ବିଦ୍ୟା ଅର୍ଥେ ॥
ରାମ ଗୋବିନ୍ଦ ଯୋଗବଳେ । ଅବନ୍ତୀ ନର୍ଗେ ଯାଇ ହେଲେ॥
ନିତି ଘେନନ୍ତି ଗୁରୁଦୀକ୍ଷା । ପାଠ ପଠନେ କଲେ ଇଚ୍ଛା ॥
ପୂଜନ୍ତି ଗୁରଙ୍କ ଚରଣ । ଦେବତା ପ୍ରାୟେ ଆଚରଣ ॥
ସେବନ୍ତି ଗୁରୁଭାବ ଜାଣି । ଧର୍ମ ପାଳଣ ଚକ୍ରପାଣି ॥

ଭଗତି ଦେଖି କୃଷ୍ଣ ରାମ । ଗୁରୁ ଆନନ୍ଦେ ତୋଷ ମନ ॥
ପଢ଼ାନ୍ତି ବ୍ରହ୍ମ ବିଦ୍ୟା ସାର । ସକଳ ଶାସ୍ତ୍ର ନିତ୍ୟାଚାର ॥
କହିଲେ ଧନୁର୍ବେଦ ରଙ୍ଗେ । ସାଂଖ୍ୟ ମୀମାଂସା ନ୍ୟାୟ ସଂଗେ ॥
ଉପାଧି ଦଣ୍ଡ ତର୍କ ବିଦ୍ୟା । ଯେ ରାଜନୀତି ସର୍ବସିଦ୍ଧା ॥
ଯେ ହରି ସର୍ବ ଶାସ୍ତ୍ର ମୟେ । କୋଟି ବ୍ରହ୍ମାଣ୍ଡ ଯାର ଦେହେ॥
ଗୁରଙ୍କ ମୁଖୁ ଶୁଣି ବେଳେ । ସକଳ ବିଦ୍ୟା ଅବହେଳେ ॥
ରାମ ଗୋବିନ୍ଦ ମନ ତୋଷେ । ଚାରି ଦିବସ ବେନି ମାସେ ॥
ପଢ଼ି ଆନନ୍ଦ ବେନି ଭାଇ । ବୋଲନ୍ତି ଶିରେ କର ଦେଇ ॥
ଭୋ ବିପ୍ର ଯେବେ ଆଜ୍ଞା ହୋଇ । ଗୁରୁ ଦକ୍ଷିଣା ଆମ୍ଭେ ଦେଇ ॥
ତୋଷିବୁ ତୁମ୍ଭର ପୟର । ମେଲାଣି ଦିଅ ଯିବୁଁ ଘର ॥
ଶୁଣି ଆନନ୍ଦ ବିପ୍ରବର । କହିଲେ ପତ୍ନୀର ଆଗର ॥
ଶୁଣ ଭାବିନୀ ଚିତ୍ର କଥା । ରାମ ଗୋବିନ୍ଦର ବ୍ୟବସ୍ଥା ॥
ସକଳ ଶାସ୍ତ୍ର ଆମ୍ଭ ପାଶେ । ସବୁ ପଢ଼ିଲେ ବେନି ମାସେ ॥
କେ କହୁ ତାହାଙ୍କ ମହିମା । ସକଳ ଗୁଣେ ବିଶ୍ୱକର୍ମା ॥
ନୁହନ୍ତି ମନୁଷ୍ୟ ଶରୀର । କି ଅବା ରବି ସୁନାସୀର ॥
ଗୁରୁ ଦକ୍ଷିଣା ସେ ଯାଚନ୍ତି । କହତୁ ତୁଟୁ ମନଭ୍ରାନ୍ତି ॥
ଶୁଣି ସାନନ୍ଦ ବିପ୍ର ନାରୀ । କହନ୍ତି ବେନି କର ଧରି ॥
ଭୋ ନାଥ ଶୁଣ ମୋର ବାଣୀ । ଆମ୍ଭର ଘରେ କମଳଣୀ ॥
ଅନେକ ସମ୍ପଦ ଆମ୍ଭର । ଜୀବନ ହୋଇଲା ଅସାର ॥
ସନ୍ତତି ନାହିଁ ଆମ୍ଭ ଘରେ । କି ସୁଖ ସଂସାର ବେଭାରେ ॥
ଆମ୍ଭର ପୁତ୍ର ଗୋଟି ଥିଲା । ପ୍ରଭାସ ତୀର୍ଥେ ବୁଡିଗଲା ॥
ସେ ପୁତ୍ର ଆଣି ଯେବେ ଦ୍ୟନ୍ତେ । ତେବେ ସେ ଜୀବନ ରଖନ୍ତେ॥
ଆନ ସମ୍ପଦେ କାର୍ଯ୍ୟ ନାହିଁ । ଶୁଣି ଆନନ୍ଦ ଦ୍ୱିଜ ହୋଇ ॥
ରାମ ଗୋବିନ୍ଦ ମୁଖ ଚାହିଁ । ବୋଲନ୍ତି ଶୁଣ ବେନି ଭାଇ ॥
ପ୍ରଭାସ ତୀର୍ଥେ ମୋ କୁମର । ମରିଛି ଦ୍ୱାଦଶ ବତ୍ସର ॥
ଯେବେ ପାରିବ ତାହା ଦେଇ । ତେବେ ଦକ୍ଷିଣା ମୋର ହୋଇ॥
ହୋଇବ କୃତାର୍ଥ ଜୀବନ । ତୁମ୍ଭେ ପାଇବ ଯଶ ଧର୍ମ ॥
ଶୁଣି ସାନନ୍ଦ ବେନି ଭାଇ । ରଥେ ବସିଲେ ତୋଷ ହୋଇ॥
ଗୋବିନ୍ଦ ମାୟା ଯୋଗବଳେ । ମିଳିଲେ ବାରାନିଧି କୂଳେ ॥
ରଥୁ ଓହ୍ଲାନ୍ତି ନନ୍ଦ ବଳା । ତକ୍ଷଣେ ବରୁଣ ମିଳିଲା ॥
ଜଳୁଁ ବାହାର ବେଗେ ହୋଇ । କର ଆଞ୍ଜୁଳି ଶିରେ ଦେଇ ॥
ବୋଲାଇ ଶୁଣ ନାରାୟଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
କିମ୍ପା ଅଇଲ ମୋର ପୁର । ଶୁଣି ବୋଲନ୍ତି ଚକ୍ରଧର ॥
ଆମ୍ଭର ଗୁରପୁତ୍ର ନେଇ । ଲୁଚାଇ ଥୋଇଅଛ କାହିଁ ॥

ଆମ୍ଭେ ତୋଷିବୁ ଗୁରନାରୀ । ବରୁଣ ଆଣ ବେଗ କରି ॥

## ବରୁଣ ଉବାଚ

ଶୁଣି ବରୁଣ ମହା ଭୟେ । ପଡ଼ିଲା କୃଷ୍ଣ ପଦ୍ମ ପାୟେ ॥
ଭୋ ନାଥ ଗୁର ପୁତ୍ର କାହିଁ । ତୁ କି ନ ମଣୁ ଭାବଗ୍ରାହୀ ॥
ମୋର ଭିତରେ ଶଙ୍ଖାସୁର । ତୁ ଯେ ମାଇଲୁ ଚକ୍ରଧର ॥
ବ୍ରହ୍ମାଙ୍କ ଦେଲୁ ବେଦ ନେଇ । ତାହାର ପୁତ୍ରେକ ଅଛଇ ॥
ନାମ ତାହାର ପଞ୍ଚଜନ । ମାୟାବୀ ଅସୁର ନନ୍ଦନ ॥
ସେ ଅବା ନେଇଅଛି ଧରି । ଶୁଣ ସାନନ୍ଦ ନରହରି ॥
ବଳଦେବଙ୍କୁ କୂଳେ ଥୋଇ । ଜଳେ ପଶିଲେ କୃଷ୍ଣ ଯାଇ ॥
ଅଗାଦ ଜଳେ ଭାବଗ୍ରାହୀ । ଧଇଲେ ଅସୁରକୁ ଯାଇ ॥
ମୁଷ୍ଟି ପ୍ରହାରିଲେ ପ୍ରଚଣ୍ଡ । ଶଙ୍ଖ ହୋଇଲା ବେନିଖଣ୍ଡ ॥
ତାର ଓଦରୁ ଭଗବାନ । ଖୋଜିଲେ ଗୁରୁଙ୍କ ନନ୍ଦନ ॥
ଖୋଜି ନ ପାଇ ଶିରୀରଙ୍ଗ । ତାର ଓଦରୁ ଲାଭି ଶଙ୍ଖ ॥
ଘେନି ବାହାର ବ୍ରହ୍ମରାଶି । ରାମର ସଙ୍ଗେ ରଥେ ବସି ॥
ଭୋ ସ୍ୱାମୀ ଯିବା ଯମପୁର । ଶୁଣି ସାନନ୍ଦ ହଳଧର ॥
ଗୁରୁ ବାଳକ ଯେଥିଁ ନାହିଁ । ଏମନ୍ତ ବୋଲି ରଥ ବାହି ॥
ଯାନ୍ତେ କରନ୍ତି ଶଙ୍ଖନାଦ । ଖଣ୍ଡିଲେ ଘୋର ପାପ ବନ୍ଧ ॥
ଯମର ଗଡ଼ ଦ୍ୱାରେ ଯାଇଁ । ଗୋବିନ୍ଦ ଶଙ୍ଖନାଦ ବାଇ ॥
ଯମ ଯାତନା ଘୋର ନର୍କେ । ନିବାସି ଥିଲେ ଯେତେ ଲୋକେ ॥
କୃଷ୍ଣର ଶୁଣି ଶଙ୍ଖନାଦ । ଖଣ୍ଡିଲେ ଘୋର ପାପ ବନ୍ଧ ॥
ହୋଇଲେ ଚାରି ଚାରି ଭୁଜ । ଶଙ୍ଖ କମଳ ଚକ୍ର ତେଜ ॥
ବିଷ୍ଣୁର ତେଜ କାନ୍ତି ଚିହ୍ନ । ତକ୍ଷଣେ ଉଠିଲେ ଗଗନ ॥
ଯମର ପୁରେ ପଡ଼େ ହୁରି । ଶଙ୍ଖ ଶବଦ ଘନ ସ୍ଫୁରି ॥
ଯମକୁ କହିଲେ ଯେକାନ୍ତେ । ବିଜୟ କଲେ ଜଗନ୍ନାଥେ ॥
ତୋର ସମ୍ପଦ ଆଜ ଗଲା । ତା ଶୁଣି ଯମ ଭୟ କଲା ॥
ଚିତ୍ର ଗୁପତ କର ଧରି । ବେଗେଁ ଭେଟିଲା ନରହରି ॥
କୃଷ୍ଣ ଚରଣ ତଳେ ପଡ଼ି । ଯମ ବୋଇଲା କରଯୋଡ଼ି ॥
ଭୋ ନାଥ ନିସ୍ତରିଲି ମୁହିଁ । ବିଜୟେ କଲୁ କାହିଁ ପାଇଁ ॥

## ଶ୍ରୀ ଭଗବାନ ଉବାଚ

କୋପେ ବୋଲନ୍ତି ଶିରୀଅଙ୍ଗ । ଗୁରଙ୍କ ପୁତ୍ର ଆଣ ବେଗ ॥
ତାର ମରଣ କାଳ ଜାଣି । ତୋହର ଦୂତେ ଛନ୍ତି ଆଣି ॥
ମୋର ବଚନେ ଆଣ ତୁହି । ଆନ କେ ପାରିବଟି ନେଇ ॥
ଶୁଣି ସାନନ୍ଦ ଜନ୍ତୁ ନାଥ । କୃଷ୍ଣଙ୍କୁ ଦେଲା ଗୁରୁ ପୁତ୍ର ॥
ଗୁର ବାଳକ କରେ ଧରି । ରଥେ ଉଠିଲେ ନରହରି ॥
ଅବନ୍ତୀ ପୁରେ ବନମାଳୀ । ଗୁରୁ ମନ୍ଦିରେ ଯାଇଁ ମିଳି ॥
ରଥୁଁ ଓହ୍ଲାଇ ଦାମୋଦର । ଗୁରୁ କୁମର ଧରି କର ॥
ଭିତରେ ପଶି ବେନି ଭାଇ । ଗୁରୁ କାମେନୀ କୋଳେ ଦେଇଁ ॥
ପୁତ୍ରକୁ ଦେଇ ପ୍ରଦକ୍ଷିଣ । ହସି ବୋଲନ୍ତି ନାରାୟଣ ॥
ତୁମ୍ଭର ପୁତ୍ର ମାୟେ ନିଅ । ଦକ୍ଷିଣା ଦେବୁଁ ଆଜ୍ଞା ଦିଅ ॥
ଶୁଣି ଉଠିଲେ ଗୁରୁନାରୀ । ରାମ ଗୋବିନ୍ଦ କର ଧରି ॥
କଲ୍ୟାଣ କରି ଚୁମ୍ବ ଦେଇ । ବେଢାରେ ନିଉଛାଳି ଯାଇଁ ॥
ଆର ସମ୍ପଦେ କାର୍ଯ୍ୟ ନାହିଁ । କୃତାର୍ଥ କଲ ପୁତ୍ର ଦେଇ ॥
ଯେମନ୍ତ କହି ବେନି ଜନେ । କୃଷ୍ଣଙ୍କୁ ଚାହାନ୍ତି ନୟନେ ॥
ଲୋଚନୁ ଅଶ୍ରୁ ଜଳ ବହେ । କୃଷ୍ଣ ମୋହିଲେ ମାୟା ମୋହେ ॥
ତକ୍ଷଣେ ହୋଇ ତୋଷ ମନ । କୃଷ୍ଣଙ୍କୁ କରନ୍ତି କଲ୍ୟାଣ ॥
ଯାଅ ମଥୁରା ବେନି ଭାଇ । ଅକ୍ଷୟ ହୁଅ ତୁମ୍ଭେ ଦୁଇ ॥
ଯେତେ ପଢ଼ିଲ ମୋର ଠହୁଁ । ଅକ୍ଷୟ ହୋଇ ହୃଦେ ଥାଉ ॥
ମୋର ଆୟୁଷ ଅଛି ଯେତେ । ତୁମ୍ଭଙ୍କୁ ହେଉ ପରାପତେ ॥
ତକ୍ଷଣେ ଗୁରୁ ଆଜ୍ଞା ପାଇ । ରଥେ ବସିଲେ ବେନି ଭାଇ ॥
ମନ ନିବେଶି ବିପ୍ର ପାଦେ । ମଥୁରା ଗଲେ ଅପ୍ରମାଦେ ॥
ଯେବେ ହୋ ଶୁଣ ନୃପବର । କୃଷ୍ଣ ମିଳିଲେ ମଧୁପୁର ॥
ହରି ଆଗମେ ସେ ଆନନ୍ଦ । ଆସି ମିଳିଲେ ଯଦୁ ବୃନ୍ଦ ॥
ଦେଖି ସାନନ୍ଦ ଭାଇ ବେନି । ହରଷ ପିଅର ଜନନୀ ॥
ଗୁର କାମେନୀ ପୁତ୍ର ପାଇ । ଆନନ୍ଦ କେ ପାରିବ କହି ॥
ବେନି ଥନରୁ କ୍ଷୀର ଝରେ । କ୍ଷୀର ପିଆନ୍ତି ସ୍ନେହ ଭରେ ॥
କେ କହୁ ଗୁରଙ୍କ ଆନନ୍ଦ । ଯାହାର ଶିଷ୍ୟ ଆଦିକନ୍ଦ ॥
କହଇ ଦାସ ଜଗନ୍ନାଥ । ହର ଚରିତ ସୁଧାରସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ*
*ବୈୟାସିକ୍ୟାଂ ଦଶମସ୍କନ୍ଧେ ରାମହରି ବିଦ୍ୟାପଠନେ*
*ଗୁରୁପୁତ୍ର ପ୍ରଦନେ ନାମ ଉନପଞ୍ଚାଶତ୍ ଅଧ୍ୟାୟଃ ॥*

## ପଞ୍ଚାଶତ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଶୁଣ ପାଣ୍ଡବ ଚୂଡ଼ାମଣି । ମଥୁରା ପୁରେ ଚକ୍ରପାଣି ॥
ସଂହାରି ଗଜ ମାଲ କଂସ । ଯଦୁକୁ ଦେଲେ ନିଜ ଦେଶ ॥
ସକଳ ବେଦ ବିଦ୍ୟା ପୁଣି । ଯମର ଘରୁ ପୁତ୍ର ଆଣି ॥
ଗୁରୁଙ୍କୁ କରି ସନମାନ । ମିଳିଲେ ମଥୁରା ଭୁବନ ॥

ଦୟା ସାଗର ନରହରି । ମନେ ସୁମରି ଗୋପନାରୀ ॥
ଆନନ୍ଦେ ରଜନୀ ପାହିଲା । ରବି କିରଣ ପ୍ରକାଶିଲା ॥
ଉଦ୍ଧବେ ରାଇ ନରହରି । ଆନନ୍ଦେ କରେ କର ଧରି ॥
ତୁ ଦେବ ଗୁରୁଙ୍କର ଶିଷ । ଜ୍ଞାନପେ ଅତ୍ୟନ୍ତ ଭବିଷ୍ୟ ॥
ତୁ ଦେବ ଜନଙ୍କର ସାର । ଯାଦବ କୁଳେ ମନ୍ତ୍ରୀବର ॥
ସୁମିତ୍ର ଅଟୁ ତୁ ମୋହର । କହଇ ଶୁଣ ମୋ ଉତ୍ତର ॥
ଏକାନ୍ତେ ଭଜୁଥାଉ ତୁହି । ତୋହର ମିତ୍ର ମୁଁ ଜାଣଇ ॥
ମୋହର ପ୍ରିୟ ଅଟୁ ଯେବେ । ଗୋପ ନବରେ ଯାଅ ତେବେ ॥
ଅକ୍ରୂର ଯେତେବେଳେ ମୋତେ । ରଥେ ବସାଇ ଗୋପ ପଥେ ॥
ଆଣିମାବେଳେ ଗୋପନାରୀ । ମୋହର ରଥ ଛନ୍ତି ଧରି ॥
ତାହାଙ୍କୁ କହିଲି ବିଶ୍ୱାସେ । ଉଛବ ଦେଖିବାର ଆଶେ ॥
ତୁମ୍ଭେ ଗୋ ରହ ତୋଷମନେ । ଆମ୍ଭେ ଆସିବୁ ଚାରିଦିନେ ॥
ତେଣୁ ସେ ତାହାଙ୍କ ଭରସା । ଅଛନ୍ତି ଜୀବନର ଆଶା ॥
ମୋତେ ନ ପାଇ ଖେଦ ମନେ । ଜୀବନ ଦହଇ ମଦନେ ॥
ନିମିଷ ଯୁଗ ପ୍ରାୟେ ମଣି । ଅଛନ୍ତି ଗୋପର ତରୁଣୀ ॥
ତୁ ମୋର ଆଜ୍ଞା ଘେନି ଯାଅ । ଗୋପ କାମେନୀ ମଧ୍ୟେ କହ ॥
ଗୋପୀଙ୍କ ମନ ମୋର ତହିଁ । ଦଇବେ ଜୀବନ ଅଟଇ ॥
ଦେହ ବେଭାର ମୋର ଅର୍ଥେ । ଛାଡ଼ି ଭଜିଲେ ଏକ ଚିତ୍ତେ ॥
ଇଷ୍ଟ ଦେବତା ତାଙ୍କ ମୁହିଁ । ମୋ ବିନୁ ଆନ ଗତି ନାହିଁ ॥
ଯେ ଲୋକ ଧର୍ମ ଛାଡ଼ି ମୋତେ । ଭଜଇ ଭଗତଙ୍କ ମତେ ॥
ତାହାକୁ ବହଇ ମୁଁ ହୃଦେ । ପଶନ୍ତି ମୋ ପରମ ପଦେ ॥
ପ୍ରିୟ ଜନଙ୍କ ପ୍ରିୟ ମୁହିଁ । ଦଇବେ ଦୂରେ ଅଛି ରହି ॥
ନିତ୍ୟେ ସୁମରି ମୋର ଗତି । କ୍ଷଣ କ୍ଷଣକେ ମୋହ ଯାନ୍ତି ॥
ବିଯୋଗ ବିରହେ କାତର । ମନ ନିବେଶି ମୋ ପୟର ॥
ଦେହ ଧରନ୍ତି ଅତି କଷ୍ଟେ । ପଞ୍ଚ ପରାଣ କଣ୍ଠାଗ୍ରତେ ॥
କୃଷ୍ଣ ଆସିବେ ଗୋପପୁର । ଏଣେ ଭରସା ତାହାଙ୍କର ॥
ଯେମନ୍ତେ କୃଷ୍ଣର ଆଦେଶେ । ଘେନି ଉଦ୍ଧବ ମନ ତୋଷେ ॥

## ଶ୍ରୀ ଶୁକ ଉବାଚ

ଆନନ୍ଦେ ବସିଲା ବିମାନେ । ତକ୍ଷଣେ ଗଲା ବୃନ୍ଦାବନେ ॥
ଦିବସ ଅନ୍ତେ ଗୋପେ ମିଳି । ଗଗନେ ଉଡ଼େ ଗୋରୁ ଧୂଳି ॥
ଆକାଶେ ରବି ଅସ୍ତ ଗଲା । ଉଦ୍ଧବ ଗୋପରେ ମିଳିଲା ॥
ଗୋପେ ପଶନ୍ତେ ଗୋରୁଙ୍କର । ଧୂଳିରେ ଛନ୍ନ ଦିବାକର ॥
ଗୋରୁଙ୍କ ଗୁଣ୍ଡ ଦେଖି ତୋଷେ । ଗର୍ଜିଣ ଧାଉଁଛନ୍ତି ବୃଷେ ॥
ଗାଈଙ୍କ ଥନ ଭାରା ଭରେ । ବଛାକୁ ରାବନ୍ତି ହୁଙ୍କାରେ ॥
ବାଛୁରୀ ଧାମନ୍ତି ଗହଳ । ଯେସନେ ସିନ୍ଧୁର ଚହଳ ॥
ଗୋରୁ ଦୁହନ ରାବ ସଂଗେ । ସିନ୍ଧୁର ଘୋଷ ଯେହ୍ନେ ରଙ୍ଗେ ॥
ରାମ ଗୋବିନ୍ଦର ଚରିତ । ମୁରଲୀ ନାଦେ ଶୁଭେ ଗୀତ ॥
ଗୋପୀ ଗୋପାଳେ ରୂପ ବନ୍ତେ । ସୁନ୍ଦର ଘର ଦ୍ୱାର ପଥେ ॥
ଅଗ୍ନି ଅତିଥି ବିପ୍ରଜନେ । ଗୋରୁ ଦେବତା ପିତୃଗଣେ ॥
ଧୂପ ପ୍ରଦୀପ ପୁଷ୍ପ ସାର । ସୁନ୍ଦର ଗୋପାଳଙ୍କ ପୁର ॥
ପୁଷ୍ପିତ ବନ ଚାରି ଦିଗେ । ପକ୍ଷୀ ଭ୍ରମର ନାଦ ଯୋଗେ ॥
ପଦ୍ମ କୁସୁମ ଜଳରାଶି । ହଂସ ସାରସ ପରଶଂସି ॥
ଅତି ସୁନ୍ଦର ଗୋପପୁର । କି ଅବା ଦେବା ପଟାନ୍ତର ॥
ନନ୍ଦର ମନ୍ଦିରେ ଉତ୍ସବ । ଆନନ୍ଦେ ମିଳିଲା ଉଦ୍ଧବ ॥
ନନ୍ଦ ଉଠିଲା ବେଗେ ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
ଜାଣିଲା କୃଷ୍ଣର ଏ ଦୂତ । ନନ୍ଦ ହୋଇଲା କୃତ କୃତ ॥
କୃଷ୍ଣର ପ୍ରାୟେ ତାକୁ ମଣି । ପୂଜିଲା ଘେନି ଅର୍ଘ୍ୟ ପାଣି ॥
ଦଧି ସାକର କ୍ଷୀର ଅନ୍ନ । ଭୁଞ୍ଜି ଉଦ୍ଧବ ତୋଷମନ ॥
କର୍ପୂର ମୁଖ ବାସ ଦେଇ । ପଲଙ୍କେ ବସାଇଲା ନେଇ ॥
ସୁଖେ ବସାଇ କୃଷ୍ଣ ଦୂତ । ଆନନ୍ଦେ ନନ୍ଦ କୃତକୃତ ॥
ଉଦ୍ଧବ ପାଦେ ଦେଇ କର । ମୁଖେ ବୋଲଇ ଗୋପ ବୀର ॥
ତୁ ଭାଗ୍ୟବନ୍ତ ଯଦୁବୀର । ମିତ୍ର ଯେ ବସୁଦେବ ମୋର ॥
ତାର କୁଶଳ ମୋର ଇଷ୍ଟ । ନିଶ୍ଚୟେ ମଲା କଂସ ଦୁଷ୍ଟ ॥
ଯେ କରେ ସାଧୁଙ୍କୁ କଷଣ । ତାହା ସଂହାରେ ନାରାୟଣ ॥
କଂସର ସଂକଟୁ ତରିଲା । ବଂଧୁ ବାନ୍ଧବେ ଆବୋରିଲା ॥
ଉଦ୍ଧବ ଶୁଣ ମୋ ଉତ୍ତର । ଏ କଥା ଭାଗ୍ୟଟି ଆମ୍ଭର ॥
ତୁ ଯେ ଗୋବିନ୍ଦର ବିଶ୍ୱାସ । ଦଣ୍ଡେ ନ ଛାଡୁ ତାର ପାଶ ॥
କୃଷ୍ଣକୁ ମୋର ମାୟା ମୋହ । ତାର କୁଶଳ ମୋତେ କହ ॥
ଯଶୋଦା ଜନନୀ ତାହାର । ସୁହୃଦେ ଧର୍ମର କୁମର ॥
ଗୋରୁ ଗୋପାଳ ଗୋପପୁର । ସେ କୃଷ୍ଣ ଜୀବନ ଆମ୍ଭର ॥
ଯେ ବୃନ୍ଦାବନ ଗୋବର୍ଦ୍ଧନ । ଯମୁନା ଜଳ ରମ୍ୟ ସ୍ଥାନ ॥
ଉଦ୍ଧବ ସେବୁ ତୋ ଚରଣ । ସେ କୃଷ୍ଣ କରେ କି ସ୍ମରଣ ॥
ବନ୍ଧୁ ବାନ୍ଧବ ଦେଖିବାରେ । ଆସିବ କୃଷ୍ଣ ଗୋପପୁରେ ॥
ନିଶ୍ଚୟେ ସତ କି ଉଦ୍ଧବ । ମାୟା ନ କର ତୁ ସାଧବ ॥
କେବେ ଦେଖିବୁ ତା ବଦନ । ସୁନ୍ଦର ନାଶା ଚକ୍ଷୁକର୍ଣ୍ଣ ॥
ଲଳିତ ସ୍ମିତ ରଙ୍ଗ ମୁଖ । ଦେଖିଲେ ଖଣ୍ଡେ ଭବଦୁଃଖ ॥
ଦାବା ଅନଳ ମୁଖୁଁ ତାରି । ଇନ୍ଦ୍ରର ତ୍ରାସେ ଗିରିଧରି ॥
ବୃଷଭ ଆଘା ମଣି ଚୂଡ଼ । ଅତି ସଙ୍କଟ ମୃତ୍ୟୁ ଗାଢ଼ ॥

ଅନେକ ମାରିଣ ଦୁର୍ଜନ । ସଂକଟୁ ତାରଅଛି ପୁଣ ॥
ଅପାଙ୍ଗ କଟାକ୍ଷ ଲୋଚନ । ସୁନ୍ଦର ହର୍ଷିତ ବଦନ ॥
ମେଘ ଗଭୀର ମୃଦୁ ବାଣୀ । ତାହାର ଲୀଳା ମନେ ଗୁଣି ॥
ଆମ୍ଭର କ୍ରିୟା କର୍ମ ଗଲା । ସୁମରି ଗୋବିନ୍ଦର ଲୀଳା ॥
ନଦୀ ପର୍ବତ ବନଭୂମି । ଗୋବିନ୍ଦ ପାଦଚିହ୍ନ ଚିହ୍ନି ॥
ଯହିଁ ଯେମନ୍ତ କର୍ମ କଲା । ଆମ୍ଭ ମନରୁ ସେ ନ ଗଲା ॥
ଚିତ୍ତ ନଗୁହେ ହୃଦ ଗତେ । ଜୀବନ ଧରିବୁ କେମନ୍ତେ ॥
ଗାର୍ଗ ବଚନ ମନେ ଗୁଣି । ନିଶ୍ଚୟ ଅଛଇ ମୁଁ ଜାଣି ॥
ଯଦୁବଂଶର ସୁଖ ହିତେ । କେଉଁ ଦେବତା ଭୂମି ଗତେ ॥
ଉଭୟ ରୂପ ଅବତାର । ଜୀବନ ହରିଲା ଆମ୍ଭର ॥
ଦଶ ସହସ୍ର ମତ୍ତଗଜ । ବଳ ବହଇ ଭୋଜରାଜ ॥
ଚାଣୂର ମୁଷ୍ଟିକ କେମନ୍ତ । ଗଜ କୁବଳୟା ମାହୁନ୍ତ ॥
ଯେହାକୁ ଲୀଳାଏ ସଂହାରି । ପଶୁକୁ ଯେସନେ କେଶରୀ ॥
କଂସର ଯେଉଁ ଯାତ୍ରା ଧନୁ । ଉଦ୍ଧବ ଭଲ ତୁହି ଜାଣୁ ॥
ସ୍ୱଭାବେ ଉଚ୍ଚ ତିନି ତାଳ । ବଜ୍ର ହୁଁ ଆଣ୍ଟ ତାର ବଳ ॥
ସେ ଧନୁ କଲା ବେନି ଖଣ୍ଡ । ହସ୍ତୀ ଯେସନ ଇକ୍ଷୁ ଦଣ୍ଡ ॥
ବରଷା ଦେଖି ଗୋପପୁର । ତୋଳିଲା କରେ ଗିରିବର ॥
ସପତ ଦିନ ବରଷିଲା । ତାହାର କରେ ଗିରି ଥିଲା ॥
ପ୍ରଳମ୍ୱ ଧେନୁକା ଦଈତ । ଷଣ୍ଢା ଅସୁର ତୃଣାବର୍ତ୍ତ ॥
ବକା ମାୟାବୀ ବଳବନ୍ତ । ଦେବ ଦାନବେ ଯେ ଅଜିତ ॥
ଯେହାକୁ ହେଳେ ନିବାରିଲା । ଲୀଳା ମାତ୍ରକେ ମୋର ବଳା ॥

## ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ରାୟେ ଶୁଣ । ନନ୍ଦ ସୁମରି କୃଷ୍ଣ ଗୁଣ ॥
ସୁତ ଲାଳସେ ଦ୍ରୁତ ଚିତ୍ତ । କାନ୍ଦଇ ପ୍ରାଣ କଣ୍ଠାଗତ ॥
କଣ୍ଠ କୁଣ୍ଠିତ ଶୋକ ନାଦେ । ପଡ଼ଇ କୃଷ୍ଣଦୂତ ପାଦେ ॥
ପ୍ରେମ ଆନନ୍ଦ ହୃଦେ ଘେନି । ବିକଳେ ନନ୍ଦେ ହୋଏ ତୁନି ॥
ନନ୍ଦ ବଖାଣେ କୃଷ୍ଣ କଥା । ଶୁଣି ଯଶୋଦା ମନେ ବ୍ୟଥା ॥
ପୁତ୍ରର ଗୁଣକ୍ରମ ମାନ । ଶୁଣି ହୋଇଲା ହତଜ୍ଞାନ ॥
କ୍ଷୀର ସ୍ରବଇ ପୟୋଧର । କାନ୍ଦଇ ଶୋକେ ଗୁରୁତର ॥
ଯେମନ୍ତ ସ୍ନେହଭର ଦେଖି । ଉଦ୍ଧବ ମନେ ଉପଲକ୍ଷି ॥
ନନ୍ଦ ଯଶୋଦାଙ୍କର ଭାଗ୍ୟ । କୃଷ୍ଣ ବିଷୟେ ଅନୁରାଗ ॥
ଦେଖି ଉଦ୍ଧବ ମନେ ଗୁଣି । ଆନନ୍ଦେ କହେ ମୃଦୁ ବାଣୀ ॥

## ଉଦ୍ଧବ ଉବାଚ

ବୋଲଇ ଶୁଣ ନନ୍ଦରାୟେ । ଜ୍ଞାନ ନ ହରା ମାୟାମୋହେ ॥
ଏ ମହୀତଳେ ଯେତେ ଜନ । ତାହାଙ୍କ ମଧ୍ୟେ ତୁମ୍ଭେ ଧନ୍ୟ ॥
ଏତେ ଭଗତି ଯୋଗ ସାର । ଗୋବିନ୍ଦ ବିଷୟେ ତୁମ୍ଭର ॥
କେବଳ ରାମ ଶିରୀଧର । ଜଗତ ଜନଙ୍କ ପିଅର ॥
ଜୀବର ଜୀବନ ମୁରାରୀ । ପ୍ରକୃତି ମାୟା ରୂପେ ଧରି ॥
ପଞ୍ଚ ଭୂତଙ୍କ ଜ୍ଞାନ ଘେନି । ପୁରାଣ ପୁରୁଷ ଏ ବେନି ॥
ଜୀବ ଜ୍ଞାନର ଏ ଈଶ୍ୱର । ବିଷ୍ଣୁ ମାୟାକୁ ଅଗୋଚର ॥
ପ୍ରାଣ ବିଯୋଗ କାଳେ ଜନ । ତାହାଙ୍କ ପାଦେ ଦେଇ ମନ ॥
ଅର୍ଜିଲା ଶୁଭା ଶୁଭ କର୍ମ । ତକ୍ଷଣେ ହୁଅଇ ଦହନ ॥
କୋଟିଏ ସୂର୍ଯ୍ୟ ରୂପ ହୋଇ । ପରମ ବ୍ରହ୍ମ ସେ ମିଶଇ ॥
ଭାରା ନିବାରେ ସେ ଅନନ୍ତ । ମନୁଷେ ହୋଇଅଛି ଜାତ ॥
ଅଖିଳ ଲୋକ ଆତ୍ମା ହରି । ସୃଷ୍ଟି ପାଳଣେ ଦେହ ଧରି ॥
ତୁମ୍ଭର ଭାବ କୃଷ୍ଣ ତହିଁ । ଯେମନ୍ତ ଦେଖିଲାତ ନାହିଁ ॥
ମନୁଷ କର୍ମ ସାଧ୍ୟ ଯେତେ । ତୁମ୍ଭେ ନ କଲ ଆନେ କେତେ॥
ଖେଦ ନ କର ତୁମ୍ଭେ ହୃଦେ । କୃଷ୍ଣ ପାଇବ ଅପ୍ରମାଦେ ॥
ସେ ହରି ସର୍ବ ଭୂତ ଦେହେ । ନିବାସ ଆଦିତ୍ୟର ପ୍ରାୟେ ॥
ତୁମ୍ଭର ପ୍ରିୟ ସେ ମାଧବ । ନିକଟେ ଗୋପକୁ ଆସିବ ॥
କଂସ ସଂହାରି ସଭା ମଧ୍ୟେ । ସକଳ ଜନ ସୁଖ ସାଧେ ॥
ସେ କଂସ ଜଗତରେ ଖଳ । ଭୟ କରନ୍ତି ଯଦୁ ବଳ ॥
ତାହାକୁ ମାରି ନରହରି । ଯାହା ବୋଇଲେ ହସ୍ତଧରି ॥
ସେ କଥା କରିବେ ତୁମ୍ଭର । ସତ୍ୟ ବଚନ ଏ ମୋହର ॥
କୃଷ୍ଣ ଆସିବେ ଗୋପ ପୁର । ବିଳମ୍ୱେ ବିମୁଖ ନ କର ॥
ସେ ହରି ସର୍ବ ଭୂତ ଦେହେ । ନିବାସ ଆଦିତ୍ୟର ପ୍ରାୟେ ॥
ତାହାର ପ୍ରିୟ ରିପୁ ନାହିଁ । ଉତ୍ତମ ଅଧମ ନୁହଇ ॥
ସମ ବିଷମ ନାହିଁ ଯାର । ଭାବକୁ ଥାଇ ନିକଟର ॥
ନାହିଁ ତାହାର ପିତାମାତା । ଦାରା ତନୟ ବନ୍ଧୁ ସୁତା ॥
ପର ଆପଣା ଯାର ନାହିଁ । ତାହାର ଦେହ ଜନ୍ମ କାହିଁ ॥
ତ୍ରିବିଧ କ୍ରିୟା ନାହିଁ ଯାର । ଭାବକୁ ଥାଇ ନିକଟର ॥
ଦେବ ମାନବ ପଶୁ ଯୋନି । ଯାହାର ଯୋଗମାୟା ଘେନି ॥
ଯେ ଜନ୍ତୁ ଆତଯାତ ହୋନ୍ତି । କଲ୍ଲୋଳେ ଜଳେ ଯେହ୍ନେ ଥାନ୍ତି
କେବଳ କ୍ରୀଡ଼ା ରଙ୍ଗ ମତେ । ସାଧୁକୁ ରଖିବା ନିମିତ୍ତେ ॥
ସଂସାରେ ବହଇ ଶରୀର । ଧରମ ପାଳେ ଗିରିଧର ॥
ନିଃଗୁଣ ହୋଇ ଗୁଣେ ମିଶେ । ଜଗତ ପାଳିବାର ଆଶେ ॥
ସ୍ୱଭାବେ ଚେଷ୍ଟା ଯାର ନାହିଁ । ତ୍ରିଗୁଣେ ପ୍ରତିମା ନଚାଇ ॥
ସୃଜଇ ପାଳଇ ଜଗତ । ଅନନ୍ତ କରିଥାଇ ଅନ୍ତ ॥

ଭ୍ରମନ୍ତା ପ୍ରାଣୀଙ୍କର ଯେହ୍ନେ । ସଂସାର ଭ୍ରମୁଥାଇ ଛନେ ॥
ସେ ଯେହ୍ନେ ସଚ ପ୍ରାୟେ ମଣି । ଆପଣା ଭ୍ରମକୁ ନ ଜାଣି ॥
ଚିତ୍ତରେ ମାୟା ଭ୍ରମ ଲଇ । ବୋଲଇ ବୁଲୁଅଛି ମହୀ ॥
ଯେଟି ସାତ୍ୱିକ ଅହଂକାର । ମାୟା ଭିଆଣ ଯେ ହରିର ॥
ତୁମ୍ଭେ ଯେ ବୋଲ ଚକ୍ରଧର । ନିଶ୍ଚୟେ ଆମ୍ଭର କୁମାର ॥
ସକଳ ପ୍ରାଣୀ ତାଙ୍କ ସୁତ । ତାତ ଜନନୀ ସେ ଅନନ୍ତ ॥
ସକଳ ଜୀବ ଆତ୍ମା ହରି । ମାୟାର ବଳେ ଛନ୍ତିଧରି ॥
ଏଣୁଟି ଈଶ୍ୱର ବୋଲାଇ । ଜନ୍ମ ମରଣ ଯାର ନାହିଁ ॥
ଯେତେ ହୋ ନନ୍ଦ ଦେଖୁ ତୁହି । ଭୂତ ଭବିଷ୍ୟ ଯେତେ ହୋଇ ॥
ଥାବର ଚର ଏ ଜଗତ । ଯେତେ ଯେ ଅଛପ ବହୁତ ॥
ହରିହୁଁ ନୁହଁଇ ନା ଆନ । ସକଳ ପ୍ରଭୁ ଭଗବାନ ॥
ଉଦ୍ଧବ କହୁ ନନ୍ଦ ଆଗେ । ରଜନୀ ପୁହାଇଲେ ରଙ୍ଗେ ॥
ଗୋପୀୟେ ନିଦ୍ରା ଗତେ ଥିଲେ । ଶୟନ ତେଜିଣ ଉଠିଲେ ॥
ଉଠି ଜାଳିଲେ ଦୀପ ପନ୍ତି । ଦଧି ମନ୍ଥନେ ଦୃଢ଼ ମତି ॥
ବାସୁ ମାର୍ଜନେ ଛଡ଼ା ଦେଇ । ସୁଗନ୍ଧ ଜଳେ ମୁଖ ଧୋଇ ॥
ସ୍ୱଭାବେ ନାନା ଅଳଙ୍କାର । ଭୂଷଣେ ମଣି ରତ୍ନସାର ॥
ଦୀପର ତେଜ ପ୍ରକାଶନ୍ତି । ଗଗନେ ଯେହ୍ନେ ଗ୍ରହ ପନ୍ତି ॥
ଖୁଆ ଦଉଡ଼ି ଧରି କରେ । ଦଧି ମନ୍ଥନ୍ତି ଧୀରେ ଧୀରେ ॥
କରେ କଙ୍କଣ ପଟ ଶୋହେ । ହୃଦୟେ ହାର ଜନ ମୋହେ ॥
ସ୍ତନ ନିତମ୍ବ ହାରମାଳ । କୁଣ୍ଡଳ ଅଳକା କପୋଳ ॥
ଚଳନ୍ତି ମନ୍ଥନର ବେଳେ । ରଙ୍ଗ କୁମୁଦ ପ୍ରାୟେ ଦୋଳେ ॥
ପଦ୍ମ ଲୋଚନ ନାମ ଧରି । ଉଚ୍ଚେ ଡାକନ୍ତି ଗୋପନାରୀ ॥
ଦଧି ମନ୍ଥନର ଶବଦ । ସ୍ୱର୍ଗେ ପୂରିଲା ଗୀତନାଦ ॥
ସକଳ ମଙ୍ଗଳ ସେ ହରି । ଶୁଭିଲା ଦଶଦିଗ ପୂରି ॥
ଦଧି ମନ୍ଥନ ଗୀତନାଦ । ଶୁଣିଣ ଦେବତା ପ୍ରମୋଦ ॥
ଦେବେ ବୋଲନ୍ତି ନିସ୍ତରିଲୁ । ନାମ ଭକ୍ତ ମୁଖୁଁ ଶୁଣିଲୁ ॥
ଯେମନ୍ତେ ରଜନୀ ପାହିଲା । ରବି କିରଣ ପ୍ରକାଶିଲା ॥
ମନ୍ଥନ ସାରି ଗୋପୀ ସୁଖେ । କୁମ୍ଭ ଘେନିଲେ ନିଜ କାଖେ ॥
ଯମୁନା ଯାଉଁ ଯାଉଁ ଧୀରେ । ରଥ ଦେଖିଲେ ନନ୍ଦଦ୍ୱାରେ ॥
ସୁବର୍ଣ୍ଣ ରଥ ରତ୍ନମୟେ । ଯୋଚିଲା ଅଛି ଚାରି ହୟେ ॥
ଧ୍ୱଜ ଶୋଭିତ ମଣିସାର । ଦେଖିଣ କରନ୍ତି ବିଚାର ॥
କିୟେ କାହାର ଦେଖ ରଥ । ଆବୋରି ଅଛି ରାଜପଥ ॥
ଇନ୍ଦ୍ର ବିମାନ ପ୍ରାୟ ଦିଶେ । ଗୋପୀ ମିଳିଲେ ଯାଇଁ ଆଶେ
ବୋଲନ୍ତି ଅକ୍ରୂର ଅଇଲା । ଯେ କୃଷ୍ଣ ମଧୁପୁର ନେଲା ॥
ଥୋକେ କହନ୍ତି ମଲା କଂସ । ଅକ୍ରୂର ତାହାର ବିଶ୍ୱାସ ॥
ଆମ୍ଭର ଶ୍ରୋଣି ମାଂସ ନେବ । କଂସକୁ କ୍ରିୟା ପିଣ୍ଡ ଦେବ ॥
ଯେମନ୍ତ କହୁଁ ଗୋପନାରୀ । ଉଦ୍ଧବ ନିତ୍ୟକର୍ମ ସାରି ॥
ଆସି ମିଳିଲା ନିଜ ରଥେ । ଗୋପୀ ଦେଖନ୍ତି ରାଜପଥେ ॥
ବୋଲଇ ଦାସ ଜଗନ୍ନାଥ । ଗୋପୀ ବେଢ଼ିଲେ ଯାଇଁ ରଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଗୋପ ସମ୍ଭାଷଣେ ଗୋପିକା ଶ୍ରବଣେ ନନ୍ଦ ଯଶୋଦ ବୋଧନେ ନାମ ପଞ୍ଚାଶତ୍ ଅଧ୍ୟାୟଃ ।*

## ଏକ ପଞ୍ଚାଶତ୍ ଅଧ୍ୟାୟ

ବୋଲନ୍ତି ଶୁକ ମୁନିବର । ଶୁଣ ପରୀକ୍ଷ ଦଣ୍ଡଧର ॥
ଉଦ୍ଧବ ଦେଖି ଗୋପ ଗୋପୀ । ବଦନ ଚାହାନ୍ତି ନିରୋପି ॥
ଦଇବେ କୃଷ୍ଣ ଅନୁଚର । ରୂପେ ଗଞ୍ଜଇ ସୁର ନର ॥
ଆଜାନୁ ଲମ୍ବେ ବେନି ଭୁଜ । କମଳ ପ୍ରାୟେ ଚକ୍ଷୁ ତେଜ ॥
ପୀତବସନ କଟି ମୂଳେ । କମଳମାଳ ଉରସ୍ଥଳେ ॥
କର୍ଣ୍ଣେ କୁଣ୍ଡଳ ବେନି ଶୋହେ । ରୂପେ କନ୍ଦର୍ପ ସରି ନୋହେ ॥
ଦେଖି ବିସ୍ମୟେ ଗୋପୀଜନ । ଚକିତେ ବିଚାରନ୍ତି ମନ ॥
ଦେଖ ସୁନ୍ଦର କର ଯେହୁ । କେ ବୋଲେ ଅଇଲାଏ କାହୁଁ
କୃଷ୍ଣ ଭୂଷଣ ଯେହା ଦେହେ । କେ ବୋଲେ ଦିଶେ କୃଷ୍ଣ ପ୍ରାୟେ ॥
ଯେମନ୍ତେ ଦେଖି ଗୋପନାରୀ । ଉଦ୍ଧବ ରଥକୁ ଆବୋରି ॥
ଜାଣିଲେ କୃଷ୍ଣର ଏ ଦୂତ । ଆମ୍ଭର ପାଇଁ ଉପଗତ ॥
ଗୋପୀଙ୍କି ଦେଖି ସ୍ନେହଭାବ । ରଥୁ ଓହ୍ଲାଇଲା ଉଦ୍ଧବ ॥
ଗୋପୀଙ୍କ ମଧ୍ୟେ ହସ ହସ । ସମସ୍ତେ ହୋଇଲେ ହରଷ ॥
ଆନନ୍ଦେ କୃଷ୍ଣ ଦୂତ ନେଇ । ପୂଜିଲେ ନାନା ଦ୍ରବନେଇ ॥
ଯେମନ୍ତେ କୃଷ୍ଣ ଦୂତ ସଂଗେ । ଗୋପ କାମେନୀ ଖେଦ ଯୁଗେ ॥
କ୍ଷଣକ୍ଷଣକେ ଶୋକ ମୋହେ । ନୟନୁ ଅଶ୍ରୁ ଜଳ ବୁହେ ॥
ବୋଲନ୍ତି ଶୁଣ କୃଷ୍ଣଦୂତ । ତୁ ଅଟୁ ବଡ଼ ଭାଗ୍ୟବନ୍ତ ॥
ଜାଣିଲୁ ଉଦ୍ଧବ ତୋ ନାମ । ତୋରେ ବିଶ୍ୱାସ ଭଗବାନ ॥
ତାହାଙ୍କ ଅଙ୍ଗ ସଙ୍ଗ ତୁହି । ତୋତେ ପେଶିଲେ ଆମ୍ଭପାଇଁ
ପିତାମାତାଙ୍କ ପ୍ରିୟଭାବେ । ଉଦ୍ଧବ ଆସିଅଛୁ ଯେବେ ॥
ସେ କୃଷ୍ଣ କିମ୍ପା ସୁମରିବ । ଆମ୍ଭର ଘେନିଗଲା ଜୀବ ॥
ସ୍ନେହାନୁବନ୍ଧ ବନ୍ଧୁଙ୍କର । ବାନ୍ଧଇ ମୁନି ସୁର ନର ॥
କାହାରି ବୋଲେ ଛାଡ଼ି ନୋହେ । ବନ୍ଧୁ ବିଶ୍ୱାସ ମାୟା ମୋହେ ॥

ଉଦ୍ଧବ ଶୁଣ ଆମ୍ଭ ବାଣୀ । ନାଶିଲେ ଗୋପର ତରୁଣୀ ॥
ସେ ଅବା ସର୍ବଭାବ ଜାଣି । ଭାବେ ଭଜନ୍ତି ଯେତେ ପ୍ରାଣୀ
ଯାବତ ଥାଇ ଅର୍ଥଲାଭ । ତାବତ ଥାଇ ପ୍ରିୟଭାବ ॥
ପରପୁରୁଷେ ପ୍ରିୟ ହୋଇ । ଯେ ନାରୀଜୀବନ ବହଇ ॥
ତାହାର ନାହିଁ ସ୍ନେହ ଚିତ୍ତ । ଧନରେ ପ୍ରିୟ ଅବିରତ ॥
କୁସୁମେ ଯେସନ ଭ୍ରମର । ଉଦ୍ଧବ ଶୁଣ ମୋ ଉତ୍ତର ॥
ପୁଷ୍ପ ମକରନ୍ଦ ପିବନ୍ତି । ସ୍ୱଭାବେ ପୁଣି ଉଡ଼ିଯାନ୍ତି ॥
ଶୁଣ ଉଦ୍ଧବ ବେଦସାର । ସ୍ୱଭାବେ ସଂସାର ବେଭାର ॥
ସୁନ୍ଦର ପୁରୁଷ ନିଧନ । ଗଣିକା ଛାଡ଼ଇ ଯେସନ ॥
ରାଜାକୁ ଅଭାଜନ ଦେଖି । ପ୍ରଜାଏ ଛାଡ଼ି ହୋନ୍ତି ଦୁଃଖୀ ॥
ବିଦ୍ୟାପାଇଲେ ଶିଷ୍ୟ ଯେହ୍ନେ । ଛାଡ଼ିଣ ଯାନ୍ତି ଗୁରୁଜନେ ॥
ଦକ୍ଷିଣା ପାଇ ବିପ୍ର ଯେହ୍ନେ । ଯେହ୍ନେ ତେଜନ୍ତି ଯଜମାନେ ॥
ଫଳ ସରିଲେ ବୃକ୍ଷ ଛାଡ଼ି । ପକ୍ଷୀଏ ଯେହ୍ନେ ଯାନ୍ତି ଉଡ଼ି ॥
ଅତିଥି ଭିକ୍ଷା ଅନ୍ନ ପାଇଁ । ତକ୍ଷଣେ ଗୃହ ଛାଡ଼ିଯାଇ ॥
ପୋଡ଼ିଲା ବଣେ ପଶୁଗଣେ । ଛାଡ଼ି ପଳାନ୍ତି ଅନ୍ୟବଣେ ॥
ପର ପୁରୁଷେ ପରନାରୀ । ତକ୍ଷଣେ ରମଣ ପାସୋରି ॥
ତେମନ୍ତ କଲା ବନମାଳୀ । ଛାଡ଼ି ସକଳେ ଗୋପବାଳୀ ॥
ଯେମନ୍ତ କହି ଗୋପନାରୀ । ବେନି ଲୋଚନୁ ବହେ ବାରି
ମନ ବଚନ ଦେହ ଜ୍ଞାନ । ଛାଡ଼ି କୃଷ୍ଣରେ ଦେଇ ମନ ॥
ବାତୁଳ ହୋଇ ଉଚ୍ଚ ସ୍ୱର । ଛାଡ଼ିଣ ଲୋକର ବେଭାର ॥
କୃଷ୍ଣର ଲୀଳା କ୍ରମମାନ । ସୁମରି କରନ୍ତି ରୋଦନ ॥
ଲଜ୍ଜା ଛାଡ଼ିଲେ ଗୋପଦାଣ୍ଡେ । ବଜ୍ର ପଡ଼ିଲା ଯେହ୍ନେ ମୁଣ୍ଡେ ॥
ବାଲ୍ୟକାଳୁ ଯେତେ କଲା । ସୁମରି ଗୋବିନ୍ଦର ଲୀଳା ॥
ପଡ଼ି ସଙ୍କଟ ଶୋକ ଜଳେ । ବୁଡ଼ିଣ କାନ୍ଦନ୍ତି ବିକଳେ ॥
ଉଦ୍ଧବ ପାଦତଳେ ପଡ଼ି । ବାତୁଳ ପ୍ରାୟ ଗୋପନାରୀ ॥
ଯେମନ୍ତେ ଶୁଣ ନରପତି । ଗୋପୀଏ ନାମ ବୃନ୍ଦାବତୀ ॥
ଗହଳେ ଯାଇ ନ ପାରିଲା । ଅଳପ ନିକଟେ ବସିଲା ॥
ଗୋବିନ୍ଦ ଦେହେ ମନ ଦେଇ । ଚକ୍ଷୁ ବୁଜିଲା ଭାବ ଲଇ ॥
ଶ୍ରମେ ଚରଣ ପ୍ରସାରିଲା । ଶୁଣ ରାଜନ ତାର ଲୀଳା ॥
ଭ୍ରମର ଉଡୁଥିଲା ଶୂନ୍ୟେ । ବସିଲା ତାହାର ଚରଣେ ॥
ଅଙ୍ଗୁଳି ଅଗ୍ରେ ଧ୍ୱନି କରି । ଶୁଣି ଚାହିଁଲା ଗୋପନାରୀ ॥
କୃଷ୍ଣର ଦୂତ ପ୍ରାୟ ମଣି । ଚରଣେ ମାଇଲା ତରୁଣୀ ॥
ପଡ଼ିଲା ଖଣ୍ଡେଦୂର ଯାଇ । କୋପେ ବୋଲଇ ତାରେ ଚାହିଁ ॥
ଶୁଣ ମଧୁପ ମୋ ବଚନ । ତୋର ଠାକୁର ଜନାର୍ଦ୍ଦନ ॥
କି ତବ ବାନ୍ଧେବ ତୁ ଅଟୁ । ମୋର ଚରଣେ କିମ୍ପା ଖଟୁ ॥
ମଥୁରା ନଗରେ ତରୁଣୀ । ନିଶ୍ଚେ ମୋହିଲେ ଚକ୍ରପାଣି ॥
ସେ ଯେ ଆମ୍ଭର ସପତଣୀ । ଯେ କଥା ତ୍ରିଭୁବନେ ଜାଣି ॥
ତୁ ଅବା ସେକଥା ନ ଜାଣି । ଚରଣେ ଲାଗୁ ପୁଣ ପୁଣି ॥
ସୁନ୍ଦର ମଧୁପୁର ନାରୀ । ରାତ୍ରେ ରମିଲା ନରହରି ॥
ଚନ୍ଦନ କୁଙ୍କୁମର ସଙ୍ଗେ । କୁସୁମ ମାଳ ତାର ଅଙ୍ଗେ ॥
କୃଷ୍ଣର ଦେହେ ଲାଗିଥିଲା । ରାତ୍ର ପାହିଲେ ପକାଇଲା ॥
ତୁହି ଯେ ଥିଲୁ ତାର ପାଶେ । ପୁଷ୍ପେ ବସିଲୁ ଗନ୍ଧ ଆଶେ ॥
ମଧୁ ଚୁମ୍ବନ କଲୁ ସୁଖେ । କୁସୁମ ରେଣୁ ଅଛି ମୁଖେ ॥
ତେଣୁ ତୋହର ଲାଜନାହିଁ । ଚରଣେ ଲାଗୁ କାହିଁପାଇଁ ॥
କୃଷ୍ଣରେ ନାହିଁ ମୋର କାର୍ଯ୍ୟ । ତାହାରେ ହୋଇଲୁ ନିଲଜ ॥
ହରି ସନ୍ଦେଶ ଯେବେ ଘେନି । ଅଇଲୁ ହୋଇ ପଥଶ୍ରମି ॥
ତାର ସନ୍ଦେଶ କାର୍ଯ ନାହିଁ । କହତୁ କୃଷ୍ଣ ଆଗେ ଯାଇ ॥
ମଥୁରା ନାରୀଙ୍କି ପ୍ରସନ୍ନ । ପ୍ରସାଦ ଦେଇ ରଞ୍ଜୁମନ ॥
ଯାଦୁ ସଭାରେ ତା ପ୍ରସନ୍ନ । ହାସେ ଜାଣନ୍ତି ସବୁଜନ ॥
ତୋହର ଦୂତ ଅଟୁ ତୁହି । ତୋହର ମୁଖେ ଲାଜନାହିଁ ॥
ମୋର ବଚନ ଯେ ଭ୍ରସଳ । ଶୁଣିଲେ ହୋଇବୁ ବିକଳ ॥
ଯମୁନା କଦମ୍ବର ତଳେ । ରାତ୍ରେ ବସିଲା କାମ ଭୋଳେ
ଗଭୀରେ ବେଣୁ ନାଦ କଲା । ଆମ୍ଭର ଜୀବନ ହରିଲା ॥
ସଂସାର ଛାଡ଼ି ତା ନିକଟେ । ମିଳିଲୁ ଯମୁନାର ତଟେ ॥
ଅନେକ କରାଇ କର୍ଷଣ । ପ୍ରସନେ କଲା ଆଲିଙ୍ଗନ ॥
ଯେ ରସେ ଜଗତ ମୋହିଲା । ଆମ୍ଭର ମୁଖେ ଚୁମ୍ବଦେଲା ॥
ବଳେ ଅଧର ପାନଦେଇ । ମଥୁରା ଗଲା ସେ ପଳାଇ ॥
ତୁ ଯେହ୍ନେ ପୁଷ୍ପେ ମଧୁଖାଇ । ନିବିଡ଼େ ଆଲିଙ୍ଗନ ଦେଇ ॥
ପଳାଉ ନ ସମ୍ଭାଳୁ ତାହା । ତେମନ୍ତ କୃଷ୍ଣର ସେନେହା ॥
ତାହାର ପାଦେ ଅବିରତେ । କମଳା ଖଟଇ କେମନ୍ତେ ॥
ମାୟା ମୋହନ କଥାକହି । ଲକ୍ଷ୍ମୀର ମନ ସେ ବାନ୍ଧଇ ॥
ଦୃଷ୍ଟି ହରଇ କାମ ଭୋଳେ । ତେଣୁ କମଳା ତାର କୋଳେ ॥
କିମ୍ପାଇ ଗର୍ଜୁ ମୋର ପାଶେ । ଗୋବିନ୍ଦ ଗାଉ ତୁ ହରଷେ ॥
ଆମ୍ଭର ନାହିଁ ଘରଦ୍ୱାର । କି ତୋତେ ଦେବା ଉପହାର ॥
ସେ ତୋତେ ଇଷ୍ଟଫଳ ଦେବେ । ବେଗେ ମଥୁରା ଯାଅ ଯେବେ
ତିନି ଭୁବନେ ଯେ ଅଟନ୍ତି । ସୁଗୁଣ ସୁନ୍ଦର ଯୁବତୀ ॥
ମଥୁରା ନାରୀଙ୍କର ଆଗେ । ତାର ପ୍ରସଙ୍ଗ କହ ବେଗେ ॥
ତାହାଙ୍କ ମନେ ଯହିଁ ଭ୍ରାନ୍ତି । କୃଷ୍ଣର ପ୍ରିୟ ସେ ଅଟନ୍ତି ॥

ଦୁର୍ଲ୍ଲଭ ନୁହନ୍ତି ନା ତାର । କୋଟିଏ କାମରୂପ ଯାର ॥
କପଟି ସୁନ୍ଦର ବଦନ । ହାସ କଟାକ୍ଷେ ମୋହେ ମନ ॥
ତାହାର ପାଦରଜ ଆଶେ । କମଳା ଖଟିଥାଇ ପାଶେ ॥
ଆମ୍ଭେ ଖୋଜିବୁ କାହିଁ ଅନ୍ତ । ତାହାର ମହିମା ଅନନ୍ତ ॥
ତଥାପି ଶୁଣ ହୋ ଭ୍ରମର । କୃଷ୍ଣ ଯେ କରୁଣା ସାଗର ॥
ଦରିଦ୍ର ଲୋକେ ତାର ଦୟା । ଯାହାକୁ ବୋଲି ପୁଣ୍ୟଦେହା ॥
ତୁ ମୋର ଛାଡ଼ ହୋ ଚରଣ । ଜାଣିଲି ତୋର ଦୂତପଣ ॥
ମୁକୁନ୍ଦ ବୋଲେ ଚାଟୁ ବାଣୀ । ମୋହର ଆଗେ ଗୁଣୁ ପୁଣି ॥
ବୋଧିବା ପ୍ରାୟେ ତୋ ଭରସା । ଯେଥେ ନ ପୂରେ ତୋର ଆଶା
ଯା ତୁ ନକହ ପୁଣ ପୁଣ । ଶୁଣ କହିବି ତାର ଗୁଣ ॥
ପତି ତନୟ ଇଷ୍ଟ ଭାଇ । ଆମ୍ଭେ ଛାଡ଼ିଲୁ ତାର ପାଇଁ ॥
ତାହାର କଳା କର୍ମମାନ । ତହିଁ ବୁଡ଼ିଲା ଆମ୍ଭ ମନ ॥
ହରିଙ୍କି କଲୁ ବଡ଼ ସ୍ନେହ । ଶୁଣହୋ ତାହାର ନିର୍ଦ୍ଦୟ ॥
ବ୍ୟାଧ ଯେସନେ ମୃଗ ମାରି । ସଂସାର ପାଇଁ ଦେହ ଧରି ॥
ତାହାର ନାଦ ଶୁଣି କାନେ । ମୋହେ ମିଳନ୍ତି ପଶୁଗଣେ ॥
ତାହାର ବାଣେ କ୍ଷତ ହୋଇ । ବିକଳେ ବନସ୍ତେ ପଳାଇ ॥
ରୁଧିର ଲେଖି କଳେବର । ଜୀବନ ଛାଡ଼ଇ ତାହାର ॥
ତେମନ୍ତ କରି ନନ୍ଦବାଳା । ଆମ୍ଭର ଦେହେ ନଖ ଦେଲା ॥
ବ୍ୟାପାର କରଣେ ତା ଦେଖି । ବିକଳେ ବୁଜୁ ବେନି ଆଖି ॥
ଜୀବନ ତାର ଦେହ ରହି । କର ଚରଣ ନ ଚଳଇ ॥
ଅନଙ୍ଗ ରୂପ ଦାମୋଦର । ତୁହି ଯେ ଉପମନ୍ତ୍ରୀ ତାର ॥
କେମନ୍ତ କହ ଆନକଥା । କୃଷ୍ଣ ସନ୍ଦେଶ ମନବ୍ୟଥା ॥
ଯେମନ୍ତେ ଭ୍ରମରକୁ ଚାହିଁ । ପୁଣି ବୋଲଇ ଭ୍ରମ ପାଇ ॥
ଗୋବିନ୍ଦ ସଖା ଅଟୁ ତୁହି । ପୁଣି ଅଇଲୁ କାହିଁ ପାଇଁ ॥
ପ୍ରିୟେ ପେଷିଲେ ମୋର ପାଇଁ । ମାଗ ତୁ କିସ ଦେବି ମୁହିଁ ॥
ସାଧୁ ଜୀବନ ତୋର ଧନ୍ୟ । ମୋହର ଅଟୁ ବଡ଼ ମାନ୍ୟ ॥
ଏ ଗୋପପୁରେ ଅଛି ମୁହିଁ । କେମନ୍ତେ ଘେନିଯିବୁ ତୁହି ॥
ଛାଡ଼ି ନପାରି ଯାର ସଙ୍ଗ । ଲକ୍ଷ୍ମୀ ବସଇ ସର୍ବ ଅଙ୍ଗ ॥
ଏ କଥା କହ ତଥ୍ୟ କରି । ବାତୁଳେ ବୋଲେ ଗୋପନାରୀ
ଶୁଣ ଭ୍ରମର ମୋ ଉତ୍ତର । କୃଷ୍ଣ ଯେ ଗଲେ ମଧୁପୁର ॥
କୁଶଳ ଅଛିଟିକି କୃଷ୍ଣ । ତା ଭାଇ ଜ୍ୟେଷ୍ଠ ବଳରାମ ॥
ପିତା ଜନନୀ ଗୋପବାଳେ । କୃଷ୍ଣ କି ସୁମରଇ ଭଲେ ॥
ଆମ୍ଭର କଥା କୃଷ୍ଣ ମୁଖେ । ଭ୍ରମର ଶୁଣିଲୁ କି ସୁଖେ ॥
କୃଷ୍ଣର ଭୁଜ ଦଣ୍ଡ ଦୁଇ । ଅଗରୁ ପ୍ରାୟେକ ବାସଇ ॥
ଉରେ ବହିବୁ ତାହା ଯେବେ । ଆମ୍ଭର ପ୍ରିୟ ହେବେ ତେବେ
କହନ୍ତି ବ୍ୟାସଙ୍କ ନନ୍ଦନ । ରାଜନ ଶୁଣ ସାବଧାନ ॥
କୃଷ୍ଣର ତହିଁ ଦୃଢ଼ଭାବ । ଗୋପୀଙ୍କି ଦେଖିଲା ଉଦ୍ଧବ ॥
ହରିର ଆଜ୍ଞା ଗୋପୀମଧ୍ୟେ । ଉଦ୍ଧବ କହଇ ଆନନ୍ଦେ ॥
ଶୁଣ ଗୋ ସର୍ବ ଗୋପୀଜନ । ତୁମ୍ଭ ଜୀବନ ବଡ଼ ଧନ୍ୟ ॥
ସକଳ ଲୋକେ ତୁମ୍ଭ ପୂଜା । କି ପଟାନ୍ତର ଦେବପୂଜା ॥
ଗୋବିନ୍ଦ ପାଦେ ଯାର ମନ । ନିଶ୍ଚଳେ ହୋଇଲ ନିମଗ୍ନ ॥
ତପ ସାଧନ ଦାନ ବ୍ରତ । ହୋମ ତର୍ପଣ ଧ୍ୟାନ ଜପ ॥
ପ୍ରାଣ ସଂଯମ ଯୋଗ ମତେ । ଆବର ଶ୍ରେୟ କର୍ମ ଯେତେ ॥
ବିଷ୍ଣୁ ଭଗତି ଏ ସାଧନ । ଯେଣୁ ନିର୍ମଳ ତୁମ୍ଭ ମନ ॥
ଗୋବିନ୍ଦ ଭାବେ ତୁମ୍ଭ ଚିତ୍ତ । ନିବିଡ଼ ନିତ୍ୟେ ଉପଗତ ॥
ବିଷ୍ଣୁରେ ଭଗତି ତୁମ୍ଭର । ମୁନି ମନୁଷେ ଅଗୋଚର ॥
ମନୁଷ ଜନ୍ମେ ତୁମ୍ଭ ଭାବ । ବ୍ରହ୍ମାଣ୍ଡ ମଧ୍ୟେ କେ ପାଇବ ॥
ପତି, ତନୟ ଦେହ ଭାବ । ସ୍ୱଜନ ଭୁବନ ବାନ୍ଧବ ॥
ଛାଡ଼ି ଭଜିଲ କୃଷ୍ଣପାଦେ । ଦୁଃଖୁ ତରିଲ ଅପ୍ରମାଦେ ॥
ଯେକାନ୍ତେ ଭାବ କୃଷ୍ଣ ତହିଁ । ଦେବେ ପାଇବେ ତାହା କାହିଁ
ତୁମ୍ଭର ହରି ଭାବ ଦେଖି । ନିର୍ମଳ କଲି ଚମ ଆଖି ॥
ଶୁଣି ଗୋବିନ୍ଦ ଆଜ୍ଞାଧୀରେ । କହିବା ତୁମ୍ଭର ଛାମୁରେ ॥
ତୁମ୍ଭ ଭଗତି ଭାବ ଯେତେ । କହିବି କହିଛନ୍ତି ମୋତେ ॥
ଉଦ୍ଧବ କୃଷ୍ଣର ବଚନ । କହଇ କରି ସାବଧାନ ॥
କୃଷ୍ଣ ବୋଇଲେ ଗୋପୀଜନେ । ତୁମ୍ଭେ ଯେ ଦୁଃଖ କର ମନେ
ତୁମ୍ଭ ବିଯୋଗ ମୋର ନାହିଁ । ପ୍ରାଣୀଙ୍କ ପ୍ରାଣ ମୁଁ ଅଟଇ ॥
ପ୍ରାଣୀଙ୍କ ଦେହେ ପଞ୍ଚଭୂତ । ଯେହ୍ନେ ଜଡ଼ିତ ଅବିରତ ॥
ମନରେ ସଙ୍ଗେ ପ୍ରାଣ ବୁଦ୍ଧି । ଦଶେ ଇନ୍ଦ୍ରିୟ ଗୁଣେ ଛନ୍ଦି ॥
ମୋହୋର ଆତ୍ମା ଭାବ ଦେଇ । ସୃଜଇ ପାଳି ସଂହାରଇ ॥
ମୋହୋର ମାୟା ଅନୁଭବ । ଭୂତ ଇନ୍ଦ୍ରିୟ ଗୁଣଦିବ୍ୟ ॥
ଏ ଜୀବ ଆତ୍ମା ସଙ୍ଗେ ମନ । ବିବେକ ବୁଦ୍ଧି ଚଇତନ ॥
ସୁଷୁପ୍ତି ନିଦ୍ରା ଜାଗର । ମନର ବୃତ୍ତି ଏ ବେଭାର ॥
ଇନ୍ଦ୍ରିୟ ଅର୍ଥେ ଯେଣେ ଧାୟି । ସପନ ସତ ପ୍ରାୟ ହୋଇ ॥
ନିଦ୍ରା ବିଯୋଗ ପୁରୁଷଙ୍କୁ । ଏ ମାୟା ନଲାଗେ ତାହାଙ୍କୁ ॥
ଏ ଭାବେ ଯାର ଜ୍ଞାନ ହୋଇ । ସଂସାର ତାକୁ ନ ଲାଗଇ ॥
ବେଦ ବେଦାନ୍ତର ଏ ଅର୍ଥ । ମୁନିଙ୍କ ସାଂଖ୍ୟ ଯୋଗେ ମତ ॥
ସନ୍ନ୍ୟାସ ଧର୍ମ ତପ ସତ୍ୟ । ପଠନ ସାଧନ ସମସ୍ତ ॥
ଯେଣେ ସକଳ ତୀର୍ଥ ସାଧି । ଜଳଧି ମଧ୍ୟେ ଯେହ୍ନେ ନଦୀ ॥

ତୁମ୍ଭଙ୍କୁ ମୋର ମାୟା ନାହିଁ । ତେଣୁ ରହଲି ଦୂର ହୋଇ ॥
ତୁମ୍ଭ ନୟନ ମନ ସଙ୍ଗେ । ମୋହୋର ଚିତ୍ତ ଅନୁରାଗେ ॥
ଯାହାର ସ୍ୱାମୀ ଥାଇ ଦୂରେ । ପ୍ରିୟାର ମନ ତା ସାଙ୍ଗରେ ॥
ମନ ନିରତେ ପ୍ରିୟା ଚିନ୍ତି । ଭାବ ହୃଦରୁ ନ ଛାଡ଼ନ୍ତି ॥
ଚକ୍ଷୁ ଗୋଚରେ ସ୍ୱାମୀ ଥିଲେ । ମନ ତା ନରହେ ନିଶ୍ଚଳେ ॥
ମୋହୋର ତହିଁ ଦେଇ ମନ । ଛାଡ଼ି ସକଳ ମାୟାଭ୍ରମ ॥
ନିରତେ ମୋ ନାମ ସ୍ମରଣ । ମୋ ଦେହେ ପାଇବ କାରଣ ॥
ଏ ବୃନ୍ଦାବନେ ମୋର ସଙ୍ଗେ । ଯେ ଗୋପୀ ରାସକ୍ରୀଡ଼ା ରଙ୍ଗେ
ଯାଇ ନପାରି ସ୍ୱାମୀ ବଳେ । ପ୍ରାଣ ଛାଡ଼ିଲା ଧ୍ୟାନ ବଳେ ॥
ଆକାଶେ ଦେବେ ଛନ୍ତି ଚାହିଁ । ଦେହେ ପଶିଲା ବେଗେ ଯାଇଁ
କହନ୍ତି ଶୁକ ମହାମୁନି । ଗୋପୀଏ କୃଷ୍ଣକଥା ଶୁଣି ॥
ଉଦ୍ଧବ ମୁଖକୁ ଅନାଇଁ । କହନ୍ତି କୃଷ୍ଣ ଭାବ ଲଇ ॥
ଆମ୍ଭର ଭାଗ୍ୟଟି ଉଦ୍ଧବ । କଂସ ସଙ୍ଘାରିଲେ ମାଧବ ॥
ଅଷ୍ଟମ ମାଲ ସଙ୍ଗେ ମଲା । ଯଦୁଙ୍କୁ କଷ୍ଟ ଦେଉଥିଲା ॥
ସକଳ ଅର୍ଥ ସାଧ କରି । ସୁଖେ ଅଛନ୍ତି ରାମହରି ॥
ଆମ୍ଭର କଥା ତାଙ୍କ ଆଗେ । ଗୋବିନ୍ଦ କହେ କି ପ୍ରସଙ୍ଗେ ॥
ତାହାଙ୍କ ଅନୁଭାବ ଘେନି । ଛାଡ଼ିଲା ଗୋପର କାମେନୀ ॥
ଏ ବୃନ୍ଦାବନେ ରାତ୍ର କାଳେ । କୁନ୍ଦ କୁମୁଦ ପରିମଳେ ॥
ନୂପୁର କଙ୍କଣ ଶବଦେ । ନାଚୁ ଯେ ଥିଲା ଗୋପ ମଧେ
ଆମ୍ଭରି ସଙ୍ଗେ ରମୁଥାଇ । ତାହାକି କୃଷ୍ଣ ସୁମରଇ ॥
ହୃଦୟ କଥା ତୋତେ କହୁ । ତାହାର ପାଦେ ହୃଦ ବହୁ ॥
ଆମ୍ଭର ଦେଖୁଅଛ ଦୁଃଖ । ଗୋକୁଳ ଶୋକଜଳ ରଖ ॥
ଉଦ୍ଧବ କହ ତୁହି ସତ । ଗୋପେ କି ଆସିବେ ଅନନ୍ତ ॥
ତାହା ବିରହେ ଆମ୍ଭ ଦେହ । ଦହଇ ପ୍ରତକ୍ଷେ ତୁ ଚାହଁ ॥
ଆଶ୍ୱାସ କରି ବେନି କରେ । ଜୀବନ ଦେବକି ଆମ୍ଭରେ ॥
ବରଷା ଜଳ ପାଇ ଯେହ୍ନେ । ଜୀବନ ପାନ୍ତି ଶସ୍ୟମାନେ ॥
କଂସକୁ ମାରି ରାଜ୍ୟ ପାଇ । ରାଜା ହୋଇଲେ କୃଷ୍ଣ ତହିଁ ॥
ରାଜାଙ୍କ କନ୍ୟା ହୋଇ ବିଭା । ଯାଦବ ବଂଶ ମଧେ ଶୋଭା ॥
ସେ କାହୁଁ ଗୋପକୁ ଆସିବ । ଯେମନ୍ତୁ ନଦେଖୁ ଉଦ୍ଧବ ॥
ସ୍ୱଭାବେ ଆମ୍ଭେ ବନଚାରୀ । ଲକ୍ଷ୍ମୀ ଯାହାର ପରିଚାରୀ ॥
ସେ ପୁରନାରୀଙ୍କ ଆୟତ । ତାର ବଚନ କାହିଁ ସତ ॥
ପିଙ୍ଗଳା ନାମେ ଥିଲା ବେଶ୍ୟା । ତାହାକୁ ନ ଲାଗିଲା ଆଶା ॥
ନିଷ୍କାମେ ହୋଇଲା ସେ ସୁଖୀ । ଆମ୍ଭେ ଗୋକୁଳ ନାରୀ ଦୁଃଖୀ।
ଗୋବିନ୍ଦ ନୀଳା ରସ ପାଇ । ଗୋପୀଙ୍କ ମନତୋଷ ହୋଇ ॥

ଯେତେ ଦିବସ ନନ୍ଦପୁରେ । ଉଦ୍ଧବ ରହିଲେ ନିର୍ଭରେ ॥
କୃଷ୍ଣର କଥା ରସ ମଧେ । ଗୋପୀ ବଞ୍ଚିଲେ କ୍ଷଣ ପ୍ରାୟେ ॥
ନଦୀ କାନନ ଗିରି ତଟେ । କୁସୁମ ତରୁଙ୍କ ନିକଟେ ॥
ଉଦ୍ଧବ ଘେନି ଗୋପନାରୀ । ଦେଖାନ୍ତି କରେ କର ଧରି ॥
ଦେଖ ଉଦ୍ଧବ କୃଷ୍ଣ ନୀଳା । ଯହିଁ ଯେମନ୍ତ କର୍ମ କଲା ॥
ଗୋପୀଙ୍କ ଦେଖି କୃଷ୍ଣଭାବ । ଆନନ୍ଦେ ବୋଲଇ ଉଦ୍ଧବ ॥
ଗୋପୀଙ୍କ ପାଦ ତଳେ ପଡ଼ି । ଉଦ୍ଧବ କହେ କର ଯୋଡ଼ି ॥
ଏ ଗୋପୀମାନଙ୍କର ଜନ୍ମ । ଏ ମହୀତଳେ ବଡ଼ ଧନ୍ୟ ॥
ଦେବେ ନ ଜାଣନ୍ତି ଯାହାକୁ । ଏ ଗୋପୀ ପାଇଲେ ତାହାକୁ ॥
ରସ ଉତ୍ସବେ ଏ କାମେନୀ । କୃଷ୍ଣ ଚରଣ କରେ ଘେନି ॥
ଥନ ବଦନ କରେ ଚାପି । ଛାଡ଼ିଲେ ତିନି ତାପ ଗୋପୀ ॥
ଯେହାଙ୍କ ପାଦରଜ ମୁହିଁ । ନିରତେ କପାଳେ ଘେନାଇଁ ॥
ଯେ କୃଷ୍ଣନାମ ଶୁଣି ଗୀତେ । ପବିତ୍ର ହୁଅନ୍ତି ଜଗତେ ॥
ସେ କୃଷ୍ଣ ପାଦେ ଏତେ ସ୍ନେହ । ଛାଡ଼ି ନ ପାରି ମାୟା ମୋହ ॥
କେମନ୍ତେ ଛାଡ଼ିବେ ମୁରାରି । ବ୍ରହ୍ମାଦି ଛନ୍ତି ଆଶ୍ରେ କରି ॥
ଧନ୍ୟ ଯେହାଙ୍କର ଜୀବନ । ଏ ମୋର ଜୀବନ ହିଁ ଧନ୍ୟ ॥
ପୁଣି ବୋଲନ୍ତି ଗୋପନାରୀ । ଉଦ୍ଧବ କରେ କର ଧରି ॥
ନଦୀ ପର୍ବତ ବନ ଦେଶେ । ଗାବଇ ବେଣୁ ନାଦଘୋଷେ ॥
ରାମର ତୁଳେ ଯାହା କଲା । ଅନେକ ବୃନ୍ଦାବନ ନୀଳା ॥
ସେ କଥା ମନେ ମନେ ଗୁଣି । ମଦନ ଦହେ ପୁଣପୁଣି ॥
ଦେଖଯେ ପଦଚିହ୍ନ ଛାୟା । କେମନ୍ତେ ପାସୋରିବୁ ତାହା ॥
ଲଳିତ ଗତି ହାସ ରଙ୍ଗେ । କୃଷ୍ଣ ଯେ ନାଚୁଥାଇ ରଙ୍ଗେ ॥
ମଧୁର ବଚନ ମୋହନ । କେମନ୍ତେ ପାସୋରିବୁ ମନ ॥
ହେ ନାଥ ରମାନାଥ ହରି । ଆରତ ଭଞ୍ଜନ ମୁରାରି ॥
ଆମ୍ଭର ଦେଖୁଅଛୁ ଦୁଃଖ । ଗୋକୁଳ ଶୋକ ଜଳୁ ରଖ ॥
କହନ୍ତି ଶୁକ ବ୍ରହ୍ମଚାରୀ । ତାପ ଛାଡ଼ିଲେ ଗୋପନାରୀ ॥
କୃଷ୍ଣ ସନ୍ଦେଶ ମନ ଥିର । ପୂଜିଲେ ଉଦ୍ଧବ ପୟର ॥
କୃଷ୍ଣର ପାଦ ମନେ ଧରି । ଉଦ୍ଧବ ସଙ୍ଗେ ଗୋପନାରୀ ॥
କେତେ ହେଁ ଦିନେ ଗୋପୀନାଥ । ଗୋକୁଳ କରିବେ ପବିତ୍ର ॥
କେତେ ହେଁ ଦିନେ ଗୋପେ ରହି । ଗୋପୀଙ୍କି ବୋଧବାକ୍ୟ କହି
ଯେମନ୍ତେ ହୃଦେ ଭରି ଭାବ । ମଥୁରା ଗମିଲେ ଉଦ୍ଧବ ॥
ଗୋପୀଙ୍କି ଆଜ୍ଞା ମାଗି ଧୀରେ । ନନ୍ଦ ଯାଶୋଦାଙ୍କ ପୟରେ ॥
ଗୋପକୁ ଆଲିଙ୍ଗନ ଦେଇ । ରଥେ ବସିଲେ ତୋଷ ନୋହି
ଗୋପାଳେ ନନ୍ଦ ଆଦିକରି । ହାତରେ ନାନା ଦ୍ରବ୍ୟ ଧରି ॥

ଉଦ୍ଧବ ପାଶେ ନନ୍ଦ ଆଗେ । ବୋଲନ୍ତି ଅଶ୍ରୁ ଗଦ ଗଦେ ॥
ଆମ୍ଭର ମନ ବାଞ୍ଛା ଯେତେ । ସଙ୍କଳ୍ପ କରି ହୃଦଗତେ ॥
ସେ ସବୁ କୃଷ୍ଣ ପାଦେ ହେଉ । ତା ନାମ ଧରି ଦିନ ଯାଉ ॥
ଆମ୍ଭର ଚିତ୍ତ ତାର ପାଦେ । ନିରତେ ରହୁ ଅପ୍ରମାଦେ ॥
ଆମ୍ଭେ ଯେ କର୍ମ ମାର୍ଗେ ଭ୍ରମି । ଫୁଟି ହୋଇଲୁ ପଥଶ୍ରମୀ ॥
ଈଶ୍ୱର ମାୟାମନ୍ତେ ପଡ଼ି । ଜନ୍ମ ମରଣ ପଥେ ଜଡ଼ି ॥
ଶୁଦ୍ଧ ଚୈତନ୍ୟ ଜ୍ଞାନଭେଦେ । ଗତି ପାଇବୁ କୃଷ୍ଣପାଦେ ॥
କହନ୍ତି ବ୍ୟାସଙ୍କର ସୁତ । ଉଦ୍ଧବ ଗୋବିନ୍ଦର ଦୂତ ॥
ନମିଣ ଗୋପୀଙ୍କର ପାଦେ । ମଥୁରା ଗଲା ଅପ୍ରମାଦେ ॥
ଗୋପୀ ଗୋପାଳ ଭାବଘେନି । କୃଷ୍ଣଙ୍କୁ କହେ ପୁଣପୁଣି ॥
ବସୁଦେବର ପାଶେ ନେଇ । ଆନନ୍ଦେ ରାମଙ୍କୁ ବସାଇ ॥
ଗୋପୀଙ୍କ ଉପହାର ଦ୍ରବ । ନିକଟେ ଥୋଇଲା ଉଦ୍ଧବ ॥
ବୋଇଲା ଦାସ ଜଗନ୍ନାଥ । ଗୀତ ବିନୋଦ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ*
*ବୈୟାସିକ୍ୟାଂ ଦଶମସ୍କନ୍ଧେ ଉଦ୍ଧବ ଗୋପିକା ପ୍ରବୋଧନେ*
*ମଥୁରା ଗମ୍ୟନଂ ନାମ ଏକପଞ୍ଚାଶତ୍ ଅଧ୍ୟାୟଃ ॥*

## ଦ୍ୱିପଞ୍ଚଶତ୍ ଅଧ୍ୟାୟ

ବୋଇଲନ୍ତି ବ୍ୟାସଙ୍କ ନନ୍ଦନ । ଗୋବିନ୍ଦ ପାଦେ ଦେଇ ମନ
ଯେବେ ହୋ ଶୁଣ ନରନାଥ । ଭଗତିବତ୍ସଳ ଅନନ୍ତ ॥
ମଥୁରା ଦାଣ୍ଡେ ଗନ୍ଧ ଘେନି । କୁବୁଜା ନାମେଣ କାମେନୀ ॥
କୃଷ୍ଣଙ୍କୁ ମାଗିଅଛ ବର । ଭୋ ନାଥ ଯିବୁ ମୋର ଘର ॥
ତାହାର ଭାବ ହୃଦେ ଲଇ । କରୁଣାସିନ୍ଧୁ ଭାବଗ୍ରାହୀ ॥
ଉଦ୍ଧବ ସଙ୍ଗେ ହୃଷୀକେଶ । କୁବୁଜା ଭୁବନ ପ୍ରବେଶ ॥
ଗୋବିନ୍ଦ ଆଗମନ ଆଶେ । ଗୃହ ମଣ୍ଡଇ ମନ ତୋଷେ ॥
ସୁନ୍ଦର ଗୃହ ଉପହାର । କି ଅବା ଦେବା ପଟାନ୍ତର ॥
ସୁଗନ୍ଧ ଧୂପ ଦୀପବାସ । ଅମୂଲ୍ୟ ରତ୍ନମଣି ତ୍ରାସ ॥
ଗନ୍ଧ ଚନ୍ଦନ ପରିମଳ । ପବନ ବହଇ ଶୀତଳ ॥
କାମ ଉପାୟେ ସନ୍ଦୀପନ । ଦେଖି ମୋହନ ହୋଇ ମନ ॥
ମୁକୁତା ପ୍ରବାଳ ଖଞ୍ଜାଣି । ଉପରେ ଚନ୍ଦ୍ରାତପ ଟାଣି ॥
ରତ୍ନପଲଙ୍କେ ଶେଯ ପଡ଼ା । ରଙ୍ଗପାଦୁକା ସୁନାପିଢ଼ା ॥
ସୁଗନ୍ଧ ଧୂପ ଥୋଇ ତଳେ । ଉପରେ ଲମ୍ବେ ଫୁଲମାଳେ ॥
କୃଷ୍ଣ ଆଗମେ ପଥ ଚାହିଁ । କୁବୁଜା ଦେହେ ଜ୍ଞାନ ନାହିଁ ॥
ନିମିଷେ ଯୁଗ ପ୍ରାୟ ମଣି । ରଜନୀ ଦିବସ ନ ଜାଣି ॥
ହରିଙ୍କି ନିଜ ଦ୍ୱାରେ ଦେଖି । ସମ୍ଭ୍ରମେ ଆସନ ଉପେକ୍ଷି ॥
ସଙ୍ଗତେ ଘେନି ସଖଗଣ । ପୂଜଇ ଗୋବିନ୍ଦ ଚରଣ ॥
ରତ୍ନପାଦୁକା ତଳେ ଥୋଇ । ଅଧରେ ମଧୁରସ ଦେଇ ॥
ଯେମନ୍ତେ କୃଷ୍ଣଙ୍କୁ ପୂଜିଲା । ଉଦ୍ଧବ ନିକଟେ ମିଳିଲା ॥
ବିବିଧ ଦେଇ ଉପହାରେ । ପୂଜିଲା ଉଦ୍ଧବ ପୟରେ ॥
ରତ୍ନ ଆସନ ତଳେ ଥୋଇ । କୁବୁଜା ଗଲା ତୋଷ ହୋଇ ॥
କୁବୁଜା ହରଷ ବଦନ । ଚରଣେ ଚାଳିଲା ଆସନ ॥
ଯେକାଳେ ଭୂମିରେ ବସିଲା । କୃଷ୍ଣ ଚରଣେ ମନଦେଲା ॥
କୁବୁଜା ଗୃହ ମଧ୍ୟେ ଯାଇ । କୃଷ୍ଣଙ୍କୁ ପଲ୍ୟଙ୍କେ ବସାଇ ॥
ତାହାର ଭାବେ ବଶ ହରି । ରତ୍ନ ପଲ୍ୟଙ୍କେ ବିଜେ କରି ॥
ଅଶେଷ ବ୍ରହ୍ମାଣ୍ଡ ଠାକୁର । କପଟେ ମନିଷ ଶରୀର ॥
କୁବୁଜା କୁଙ୍କୁମ ଲେପିଣ । ତକ୍ଷଣେ ସାରିଲା ସ୍ନାହାନ ॥
ଝିନ ବସନ ରଙ୍ଗସାର । ସ୍ୱଭାବେ ନାଶ ଅନ୍ଧକାର ॥
ହୃଦେ ଚନ୍ଦନ କଣ୍ଠେ ହାର । ତାମ୍ବୁଳେ ସୁରଙ୍ଗ ଅଧର ॥
ସୁସ୍ୱାଦୁ ରସ ପାନକଲା । ଗୋବିନ୍ଦ ନିକଟେ ମିଳିଲା ॥
ହାସବଦନ କାମଗତି । କଟାକ୍ଷେ ମୋହିଲା ଶ୍ରୀପତି ॥
କୁବୁଜା ଦେଖି ବନମାଳୀ । ଡାକନ୍ତି ବେନିଭୁଜ ଟେକି ॥
ନବ ସଙ୍ଗମେ ଲଜ୍ଜା ପାଇ । କୁବୁଜା ନପାରଇ ଯାଇ ॥
ସଙ୍କୁଚେ ଗମନେ ସଧୀରେ । ରତ୍ନ କଙ୍କଣ ବେନି କରେ ॥
ଗୋବିନ୍ଦ ଭୁଜେ ଭୁଜଦେଇ । ପଲ୍ୟଙ୍କେ ବସାଇଲେ ନେଇ ॥
କୁବୁଜା ଘେନି କୃଷ୍ଣ କୋଳେ । ଗନ୍ଧ ଲେପନ ପୁଣ୍ୟଫଳେ ॥
ରମିଲେ କମଳାର ବର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
କୁବୁଜା କାମ ଭୋଳେ ଭାରି । କୃଷ୍ଣ ଚରଣ କରେ ଧରି ॥
କୁଚ ହୃଦୟ ଚକ୍ଷୁ ଭରେ । ଆଘ୍ରାଣ କଲା ନାସାଦ୍ୱାରେ ॥
ଯେତେ କଲୁଷ ହୃଦେ ଥିଲା । ଗୋବିନ୍ଦ ଚରଣେ ମାଜିଲା ॥
ନିର୍ଭୟ ବେନି ଭୁଜ ଟେକି । ହୃଦେ ଲଗାଇ ବନମାଳୀ ॥
ଆନନ୍ଦ ରୂପ ଭଗବାନ । ନିବିଡ଼େ କଲା ଆଲିଙ୍ଗନ ॥
ଜନ୍ମ ସଞ୍ଚିଲା ଗୃହ ପାପ । ହୃଦୁ ଛାଡ଼ିଲା ତିନିତାପ ॥
ଏ ହରି କଇବଲ୍ୟ ନାଥ । ଖୋଜି ନ ପାନ୍ତି ମୁନି ସନ୍ଥ ॥
ତାଙ୍କୁ କୁବୁଜା ଧରି କୋଳେ । ଗନ୍ଧ ଲେପଇ ପୁଣ୍ୟ ବଳେ ॥
ଦେଖ ସୁଭାଗ୍ୟ ଫଳ ତାର । କୃଷ୍ଣଙ୍କୁ ମାଗିଲାଏବର ॥
ହେ ନାଥ ରହ କିଛି ଦିନ । ତୋଷ ନୋହିଲା ମୋର ମନ
ପଦ୍ମ ନୟନ ତୋର ସଂଗେ । କ୍ରୀଡ଼ା କରିବି ନାନା ରଙ୍ଗେ ॥

ମୁନି କହନ୍ତି ରାଜା ଆଗ । ଦେଖ ହୋ କୁବୁଜାର ଭାଗ୍ୟ ॥
ଶୁଣି ସାନନ୍ଦ ଗୋପୀନାଥେ । ତହିଁ ରହିଲେ ଦିନା କେତେ ॥
ତାହାକୁ କାମ ମାତ୍ର ବର । ଦେଇ ଚଳିଲେ ଦାମୋଦର ॥
ଅଶେଷ ସୁଖ ଭୋଗ ଦେଇ । ଉଦ୍ଧବ ସଙ୍ଗେ ଭାବଗ୍ରାହୀ ॥
ପ୍ରବେଶ ଆପଣା ମନ୍ଦିର । ଶୁଣ ହେ କୁବୁଜା ବେଭାର ॥
ଦୁଲ୍ଲଭ ଯାର ପଦସେବା । ଲୋଡ଼ି ନପାନ୍ତି ସୁରଦେବା ॥
ତାହାକୁ ତପ ଫଳେ ପାଇ । ବିଷୟା ସୁଖ ଯେ ଲୋଡ଼ଇ ॥
କୁତ୍ସିତ ବୁଦ୍ଧି ବୋଲି ତାରେ । ପଡ଼ଇ ଦୁଃଖ ଅନ୍ଧକାରେ ॥
ଅଜ୍ଞାନ ବିପ୍ର ଜଗନ୍ନାଥ । କାହିଁ ପାଇବ କୃଷ୍ଣପଥ ॥
ଶୁଣ ହୋ ଅଭିମନ୍ୟୁ ସୁତ । ମଥୁରାପୁରେ ଯଦୁନାଥ ॥
ରଜନୀ ହୋଇଲା ପ୍ରଭାତ । ମନେ ଚିନ୍ତିଲା ଗୋପୀନାଥ ॥
କହିତ କାର୍ଯ୍ୟ ଉପଦେଶ । ପଣ୍ଡୁ ତନୟଙ୍କ ବିଶ୍ୱାସ ॥
ଅକ୍ରୂର ହିତ ମନେ ଗୁଣି । ରାମ ଉଦ୍ଧବ ସଙ୍ଗେ ଘେନି ॥
ମିଳିଲେ ଅକ୍ରୂର ମନ୍ଦିର । ଶୁଣ ରାଜନ ଜ୍ଞାନସାର ॥
ପାରୁଶେ ଦେଖି ବନ୍ଧୁଜନ । ଅକ୍ରୂର ହରଷ ବଦନ ॥
ଆନନ୍ଦ କୃଷ୍ଣ ସଂଗ ପାଇ । ନିବିଡ଼େ ଆଲିଙ୍ଗନ ଦେଇ ॥
ପୁଲକେ ଅଶ୍ରୁଜଳ ବହେ । ପ୍ରଣମ୍ୟ ହେଲା କୃଷ୍ଣ ପାୟେ ॥
ରାମର ପାଦେ ପୁଣ ପଡ଼ି । ଉଦ୍ଧବ କରେ ହୃଦେ ଭିଡ଼ି ॥
ରାମ ଗୋବିନ୍ଦ ବନ୍ଧୁପଣେ । ନମିଲେ ଅକ୍ରୂର ଚରଣେ ॥
ଅକ୍ରୂର ନିଜ ଘରେ ନେଇ । ଉତ୍ତମ ଆସନେ ବସାଇ ॥
ଜାଣଇ ପୂଜାର ବିଧାନ । ଆନନ୍ଦ ମନେ ଛନ୍ନ ଛନ୍ନ ॥
ସୁବର୍ଣ୍ଣ ପାତ୍ରେ ଜଳ ଲଇ । ରାମ ଗୋବିନ୍ଦ ପାଦଧୋଇ ॥
ପାଦ ଉଦକ ଶିରେ ଘେନି । ଭାବେ ବୁଜିଲା ଚକ୍ଷୁ ବେନି ॥
ଦିବ୍ୟବସନ ଗନ୍ଧମାଳ । ପୂଜିଲା ମଦନ ଗୋପାଳ ॥
ମଣି ମୁକୁତା ହାର ସଙ୍ଗେ । ମଣ୍ଡିଲା ଗୋବିନ୍ଦର ଅଙ୍ଗେ ॥
ରାମଙ୍କୁ ଦେଲା ଅଳଙ୍କାର । ଭାବେ ଯୋଡ଼ିଲା ବେନି କର
ଖଟେ ବସାଇ ଦାମୋଦର । ଚରଣ ଚାପଇ ଅକ୍ରୂର ॥
ରାମ ପାଦରେ ହାତ ଦେଇ । ବିଶ୍ୱାସେ ଅକ୍ରୂର ବୋଲଇ ॥
ଭୋ ନାଥ ପ୍ରଭୁ ନାରାୟଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
ପାପିଷ୍ଠ କଂସ ଯେବେ ମଲା । ଆମ୍ଭର କୁଳେ ଭାଗ୍ୟ ଥିଲା ॥
ଯାହାର ତ୍ରାସେ ଯଦୁବଂଶ । ନିଶ୍ଚୟେ ହେଉଥିଲେ ନାଶ ॥
ତାହାକୁ ହେଳେ ନାଶ କଲ । ବୁଡ଼ିଲା କୁଳ ଉଧାରିଲ ॥
ଏ କୁଳ ଯେବେ ସେ ବଢ଼ିବ । ଅବନୀ ମଧ୍ୟେ ଯଶ ଥିବ ॥
ତୁମ୍ଭେ ଯେ ପ୍ରକୃତି ପୁରୁଷ । ଲୀଳାୟେ ସଂସାର ପ୍ରବେଶ ॥
ଜଗତେ ନାନାରୂପ ହୋଇ । ତୁମ୍ଭ ଶରୀର ପ୍ରକାଶଇ ॥
ଯେଣୁ ଜଗତ ମୟେ ନାମ । କି ଅବା କରିବା ଉପାମ ॥
ପର ଅପର ବିଚାରଣେ । ତୋ ବିନୁ ନାହିଁ ଆନ ଜଣେ ॥
ତୁମ୍ଭେ ଏ ସଂସାର ଭିଆଇ । ଜୀବ ପରମ ରୂପ ହୋଇ ॥
ଆତ୍ମାର ତେଜ ବଳ ତୁମ୍ଭେ । ପ୍ରବେଶ କ୍ରୀଡ଼ା ଅନୁରମ୍ଭେ ॥
ନାନା ପ୍ରକାରେ ରୂପହୋଇ । ଏକଥା ନିଗମ ଜାଣଇ ॥
ସଚରାଚର ଭୂତ ଯୋନି । ଶବଦ ଆଦି ଗୁଣ ଘେନି ॥
ବହୁ ପ୍ରକାରେ ପ୍ରକାଶନ୍ତି । ତୁମ୍ଭ ମହିମା ନ ଜାଣନ୍ତି ॥
ଯେମନ୍ତେ ପ୍ରକାଶ ତୁମ୍ଭର । କେବଳ ଜ୍ଞାନମାତ୍ର ସାର ॥
ପ୍ରପଞ୍ଚ ମାୟାରୂପ ଧରି । ଏ ମାୟା ସଂସାରେ ବିହରି ॥
ତୁ ପୁଣ ତୋହର ଆୟତ୍ତ । ମାୟାରେ ଭ୍ରମଇ ଜଗତ ॥
ସୃଷ୍ଟି ପାଳଣ ସଂହାରଣ । ରଜ ତାମସ ସତ୍ତ୍ୱଗୁଣ ॥
ଏ ଗୁଣେ ତୋର ଭେଦ ନାହିଁ । ତୋର ବଚନ ହେତୁ ତୁହି ॥
ତୋ ମାୟାଜାଲେ ତ୍ରିଭୁବନ । ବାନ୍ଧି ହୋଇଛି ଜନାର୍ଦ୍ଦନ ॥
ଉପାଧି ତନୁରୂପ ଯାର । ଜନ୍ମ ମରଣେ ରୂପ ତାର ॥
ତରଙ୍ଗ ଯେହ୍ନେ ନାଶ ଯାଇ । ନିଶ୍ଚଳ ଭାବେ ଜଳଥାଇ ॥
ଗୁଣ ବେଭାରେ ଯାର ଭେଦ । ତାହାର ଦୁଃଖ ସୁଖ ଖେଦ ॥
ଅଭେଦ ଆତ୍ମା ତୁ ପ୍ରତକ୍ଷ । ତୋହର ନାହିଁ ବନ୍ଧ ମୋକ୍ଷ ॥
ନାହିଁ ତୋହର ଭିନ୍ନ ଭାବ । ଯେଣୁ ମହିମା କେ କହିବ ॥
ତୋହ ବଚନେ ଶ୍ରୁତିଗଣ । ସଂସାର ହିତେ ସେ କାରଣ ॥
ପାଷାଣ୍ଡ ନିଜ ବାହୁବଳେ । ବେଦ ନିନ୍ଦନ୍ତି ଯେତେବେଳେ
ତୁ ନାଥ ସତ୍ତ୍ୱଗୁଣ ଭଜୁ । ପାଷାଣ୍ଡ ଗର୍ବ ହେଳେ ଗଞ୍ଜୁ ॥
ଯେମନ୍ତେ ପ୍ରଭୁ ନରହରି । ଯାଦବ ବଂଶେ ଅବତରି ॥
ବସୁଦେବର ଘରେ ନାଥ । ଅନ୍ତେ ହୋଇଲୁ ଦେହବନ୍ତ ॥
ଅବନୀ ଭାରା ନିବାରଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
ଅସୁର ବଳ କରି ନାଶ । ଥୋଇଲୁ ଯଦୁକୁଳେ ଯଶ ॥
ଯେମନ୍ତେ ମହିମା ତୁମ୍ଭର । ବିଜୟେ କଲ ମୋର ଘର ॥
ଦେବତା ଋଷି ଭୂତ ରୂପ । ତୁ ନାଥ ସକଳ ସ୍ୱରୂପ ॥
ତୁ ଯହିଁ ହୋଇବୁ ପ୍ରବେଶ । ସେ ଧନ୍ୟ ପୁଣ୍ୟ ଗୃହବାସ ॥
ତୋହୋର ଚରଣ ଉଦକ । ପବିତ୍ର କଲ ତିନିଲୋକ ॥
କଉଁ ପଣ୍ଡିତ ତୋ ଚରଣ । ଛାଡ଼ି ସେବିବ ଅନ୍ୟଜଣ ॥
ଭଗତ ଜନ ବନ୍ଧୁତୁହି । ଜଗତ ହିତେ ତୋର ଦେହୀ ॥
ତୁ ଜୀବ ଆତ୍ମା ତତ୍ତ୍ୱଜାଣୁ । ସୁର ଅସୁର ପରିମାଣୁ ॥
ଭଗତି ଅନୁରୂପେ ଫଳ । ଦେଉ ତୁ କରୁଣା ବତ୍ସଳ ॥
ଭାବକୁ ଆତ୍ମା ଦେଉ ତୁହି । ବୁଦ୍ଧିବିନାଶ ତୋର ନାହିଁ ॥
ଆମ୍ଭେ ସକଳ ହତଜ୍ଞାନ । କେବଳ ଭାଗ୍ୟ ଜନାର୍ଦ୍ଦନ ॥

ତୋତେ ପାଇଲୁଁ ପୁଣ୍ୟଫଳେ । ଚାହିଁ ନପାରୁ ଚର୍ମଡ଼ୋଳେ ॥
ସକଳ ସିଦ୍ଧି ସୁରପତି । ଚିହ୍ନି ନ ପାରନ୍ତି ତୋ ଗତି ॥
ପୁତ୍ର କଳତ୍ର ଧନମିତ୍ର । ଗୃହ ମନ୍ଦିର ବୃତି ଛତ୍ର ॥
ଯେମନ୍ତ ତୋହ ମୋହ ଫାନ୍ଦେ । ବନ୍ଧନ ଅଛି ଆମ୍ଭ ପାଦେ ॥
ତୋହୋର ଅଛି ଯେବେ ଦୟା । ଭୋ ନାଥ ବେଗେ ଛେଦ ତାହା ॥
ଯେମନ୍ତ ଅକ୍ରୂରର ବାଣୀ । ଶୁଣି ହରଷ ଚକ୍ରପାଣି ॥
ମୋହିଲେ ଅକ୍ରୂରର ମନ । କୋମଳ ଗଭୀର ବଚନ ॥
କହନ୍ତି ପ୍ରଭୁ ଭାବଗ୍ରାହୀ । ମାୟା ମୋହନ କଥା ଯେହି ॥
ତୁ ଆମ୍ଭ ଗୁରୁ ପିତାମାତ । ବାନ୍ଧବେ ମଧ୍ୟେ ତୁ ପୂଜିତ ॥
ଆମ୍ଭେ ତୋହୋର ପୁତ୍ର ହୋଇ । ତୋର ପୋଷଣେ ଆମ୍ଭଦେହୀ ॥
ତୁମ୍ଭର ପାଦେ ସେବା କରି । ତେବେ ସେ ଥିବୁ ଦେହ ଧରି ॥
ଆତ୍ମାର ହିତ ସିଦ୍ଧି ଅର୍ଥେ । ଦେବ ଦାନବ ଯେକ ମତେ ॥
ହସି କହନ୍ତି ଭାବଗ୍ରାହୀ । ସାଧୁଜନଙ୍କ ମତ ଯେହି ॥
ମନୁଷ ଆଦି ଯେତେଛନ୍ତି । ଅନେକ ଧର୍ମ ଆଚରନ୍ତି ॥
ଦେବତା ପୂଜି ତୀର୍ଥସ୍ଥାନ । କହନ୍ତି ବହୁ ଧର୍ମମାନ ॥
ଯେତେ ପୂଜିତ ତୀର୍ଥଗଣ । ଦେବତା ମୃତ୍ତିକା ପାଷାଣ ॥
ଯେହାଙ୍କୁ ସେ ଭାବୁଥିଲେ ନିତି । ଅନେକ କାଳେ ଫଳ ଦ୍ୟନ୍ତି ॥
ସାଧୁଙ୍କ ଦରଶନ ମାତ୍ରେ । ଦୁରିତ ନ ରହଇ ଗାତ୍ରେ ॥
ତୁ ବନ୍ଧୁ ମଧ୍ୟେ ଶ୍ରେଷ୍ଠମୋର । ମୋହୋର ବୋଲ ଯେବେ କର ॥
ହସ୍ତିନା ପୁର ଯାଅ ବେଗେ । କହଇ କଥା ତୋର ଆଗେ ॥
ପଣ୍ଡୁରାଜାର ପାଣ୍ଡୁସୁତ । ପିତା ମରଣେ ଅରକ୍ଷିତ ॥
ଅଛନ୍ତି ଧୃତରାଷ୍ଟ୍ର ପୁରେ । ବନ୍ଦୀ ଯେମନ୍ତ ବନ୍ଦୀ ଘରେ ॥
ଅମ୍ବିକା ପୁତ୍ର ଚକ୍ଷୁହୀନ । ତାହାର ପୁତ୍ର ଦୁର୍ଯ୍ୟୋଧନ ॥
ଶତେକ ପୁତ୍ର ମଧ୍ୟେ ଶ୍ରେଷ୍ଠ । କର୍କଶ ଭାବେ ମହାଦୁଷ୍ଟ ॥
ରାଜା ତାହାର ବଶହୋଇ । ସମେ ନଦେଖି ପାଣ୍ଡୁଭାଇ ॥
ତୁ ଯେବେ ଯାଅ ମୋର ବୋଲେ । ତାଙ୍କ କୁଶଳ ବୁଝ ଭଲେ ॥
ଭୋ ତାତ ଯାଅ ବେଗ ହୋଇ । କହି ଉଠିଲେ ବେନିଭାଇ ॥
ଉଦ୍ଧବ ସଙ୍ଗେ ବନମାଳୀ । ନିଜ ଭୁବନେ ଯାଇ ମିଳି ॥
ସେ ରାମକୃଷ୍ଣ ପାଦଯୁଗେ । ଚିତ୍ତ ମୋ ରହୁ ଧ୍ୟାନଯୋଗେ ॥
ବୋଲଇ ଦାସ ଜଗନ୍ନାଥ । ସୁଜନେ ହିତେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ କୁବ୍ଜା ମନୋରଥପୂର୍ଣ୍ଣେ ଶ୍ରୀକୃଷ୍ଣ ଅକ୍ରୂର ହସ୍ତିନା ପ୍ରେରଣା ନାମ ଦ୍ୱିପଞ୍ଚାଶତ୍ ଅଧ୍ୟାୟଃ ।*

## ତ୍ରିପଞ୍ଚାଶତ୍ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ମୁନି ବୋଲନ୍ତି ପରୀକ୍ଷିତ । ରାଜନ ଶୁଣ ଯେକ ଚିତ୍ତ ॥
ଗୋବିନ୍ଦ ଆଜ୍ଞା ପରମାଣେ । ଅକ୍ରୂର ଗଲା ତତକ୍ଷଣେ ॥
ମିଳିଲା ହସ୍ତିନା ମଣ୍ଡଳେ । ବନ୍ଧୁବାନ୍ଧବ ଲୋକମେଳେ ॥
ପ୍ରବେଶ ଅକ୍ରୂର ହରଷ । ଦେଖଇ କୁରୁବର ଯଶ ॥
ଭୀଷ୍ମ ବିଦୁର ସଙ୍ଗେ ନୃପ । ଗାନ୍ଧାରୀ କୁନ୍ତୀ ଦ୍ରୋଣ କୃପ ॥
ରବି କୁମର ଦୁର୍ଯ୍ୟୋଧନ । ଦ୍ରୋଣ ନନ୍ଦନ ଦୁଃଶାସନ ॥
ପଣ୍ଡୁର ପଞ୍ଚପୁତ୍ର ଦେଖି । ଅଶ୍ରୁ ପୂରିତ କଲା ଆଖି ॥
ଅକ୍ରୂର ଦେଖି ଜଣେ ଜଣ । ଆନନ୍ଦେ କରେ ଆଲିଙ୍ଗନ ॥
ବନ୍ଧୁ କୁଶଳ ପଚାରିଲେ । ଆନନ୍ଦେ ଅକ୍ରୂରର ତୁଲେ ॥
ଅକ୍ରୂର ବିଚାରଇ ମନେ । ବିଶ୍ୱାସି ଯିବି ମୁଁ କେସନେ ॥
ସ୍ୱାମୀ ମରଣେ ଅଶ୍ରୁମୁଖୀ । ପଞ୍ଚବାଳକ ଘେନି ଦୁଃଖୀ ॥
କୁନ୍ତୀ ଯେ ଅଛି ଏହା ଘରେ । କି ଅବା ବିଚାରେ ମନରେ ॥
ନିତ୍ୟେ ଏ ଖଳ ବୃତ୍ତିହୀନ । ଅନ୍ଧ ସ୍ୱଭାବେ ହତଜ୍ଞାନ ॥
ଶତେ କୁମର ପଞ୍ଚମେଳେ । ଏ କାହିଁ ଦେଖିବ କୁଶଳେ ॥
ପଞ୍ଚପୁତ୍ରଙ୍କ ଗୁଣ ଯେତେ । ଅନ୍ଧ ନ ସହେ ହୃଦଗତେ ॥
ତେଜ ପ୍ରତାପ ବୀର୍ଯ୍ୟ ଗୁଣ । ରାଜନ ନୀତି ଷଡ଼ଗୁଣ ॥
ଏ ଆଦିପୁତ୍ର ଅନୁରାଗ । ଦେଖନ୍ତେ ପାଇ ଉଦବେଗ ॥
ମାରିବା ପାଇଁ ବିଚାରିଲେ । କପଟେ ବିଷଲଡୁ ଦେଲେ ॥
ଏ ଆଦି ଯେତେକ ବେଭାର । ଏକାନ୍ତେ କହିଲେ ବିଦୁର ॥
ଏକାନ୍ତେ କୁନ୍ତୀଙ୍କି ପଚାରି । କହନ୍ତେ ଏହା ଚକ୍ଷୁ ପୂରି ॥
କୁନ୍ତୀ କହିଲେ ସେହିମତେ । ଶୁଣି ଅକ୍ରୂର ଦୁଃଖଚିତ୍ତେ ॥
କୁନ୍ତୀ ଅକ୍ରୂର ମୁଖଚାହିଁ । ବୋଲଇ ଶୋକଭର ହୋଇ ॥
କାନ୍ଦନ୍ତେ ଅଧର କମ୍ପାଇ । ଯାବତ କଷ୍ଟ ସୁମରଇ ॥
ହେ ଭ୍ରାତ ଶୁଣ ମୋ ଉତ୍ତର । ତାତ ଜନନୀ ଯେ ମୋହୋର
ଭାଇ ଭଗିନୀ ପୁତ୍ର ନାରୀ । ସଖା ସୁହୃଦ ଆଦିକରି ॥
ଯେତେକ ଛନ୍ତି ସହୋଦର । ଚିନ୍ତା କରନ୍ତି କି ମୋହୋର ॥
ସ୍ୱାମୀ ମରଣେ ଦୁଃଖପାଇ । ପଞ୍ଚବାଳକେ କୋଳେ ଲଇ ॥
ଚିନ୍ତା କରନ୍ତିଟିକି ମୋତେ । ମୁଁ ତାହା ନ ଯାଇ ପରତେ ॥
ଅର୍ଜିଲା କର୍ମ ଏ ମୋହର । କିସ କରିବେ ସହୋଦର ॥
ମୋହୋର ଭ୍ରାତ ବସୁଦେବ । ତାହାର ପୁତ୍ର ପଦ୍ମନାଭ ॥
ସେ କୃଷ୍ଣ ଶରଣ ସୋଦର । ଭଗତବନ୍ଧୁ ବାନା ଯାର ॥
ପିତୃ ଭଗିନୀ ସୁତ କଥା । ସେ ନାଥ କରନ୍ତି କି ଚିନ୍ତା ॥

ପଦ୍ମଲୋଚନ ହଳଧର । ତାଙ୍କ ଶରଣ ମୋ କୁମର ॥
ଶତ୍ରୁଙ୍କ ମଧ୍ୟେ ମୋର ବାସ । କୁରୁ କୁଟୁମ୍ବେ ଅବିଶ୍ୱାସ ॥
ଶାର୍ଦ୍ଦୁଳ ମଧ୍ୟେ ମୃଗଥାଇ । ସେ ଯେହ୍ନେ ପଥ ନ ଜାଣଇ
ମୋର ବାଳକେ ପିତୃହୀନ । ଯେମନ୍ତେ ମୋହୋର ଜୀବନ
ସେ ହରି ମୋର ଘରେ ଆସି । କୋମଳ ବଚନେ ଆଶ୍ୱାସି ॥
ଶାନ୍ତି କରିବେ ମୋର ପ୍ରାଣ । ତା ପାଦେ ପଶିଲି ଶରଣ ॥
ହେ କୃଷ୍ଣ ମହା ଯୋଗେଶ୍ୱର । ବିଶ୍ୱପାଳକ ଦାମୋଦର ॥
ପଞ୍ଚବାଳକ ସଙ୍ଗେ ଘେନି । ମୁଁ ତୋର ଚରଣେ ପ୍ରଣାମି ॥
ମୃତ୍ୟୁ ସଂସାରେ ଭୟ ଜନ । ଭାଳଇ ପାଇ ଖେଦ ମନ ॥
ପଶଇ ଯାଇଁ ତୋର ପାଦେ । ତେବେ ବଞ୍ଚଇ ଅପ୍ରମାଦେ ॥
ତେ ପାଦୁ ଅନ୍ୟ ଗତିନାହିଁ । ଏମନ୍ତ ପ୍ରାୟ ମୁଁ ମଣଇ ॥
ନମୋ ଶ୍ରୀକୃଷ୍ଣ ଶୁଦ୍ଧଦେହୀ । ଜୀବ ପରମ ଆତ୍ମା ତୁହି ॥
ଯୋଗ ସ୍ୱରୂପେ ଯୋଗେଶ୍ୱର । ଭୋ ନାଥ ଶରଣ ମୁଁ ତୋର ॥
ଯେମନ୍ତେ ସ୍ୱଜନ ସୁମରି । କୃଷ୍ଣ ଚରଣ ଧ୍ୟାନ କରି ॥
କାନ୍ଦେ ଅକ୍ରୂର ମୁଖଚାହିଁ । ପରୀକ୍ଷ ତୋର ପିତାମହୀ ॥

## ଶ୍ରୀ ଶୁକ ଉବାଚ

ପାଣ୍ଡବ ଜନନୀ ରୋଦନ । ଶୁଣି ଅକ୍ରୂର ଖେଦ ମନ ॥
ନିକଟେ ବସିଲା ଅକ୍ରୂର । ବୋଲଇ ହୋଇ ଚିନ୍ତାଭର ॥
ଭୋ ମାତ ସାବଧାନେ ଶୁଣ । ତୋହର ପୁତ୍ରଙ୍କର ଗୁଣ ॥
ଧର୍ମ ପବନ ସୁନାସୀର । ବିବୁଧ ଅଶ୍ୱିନୀ କୁମାର ॥
ଏହାଙ୍କ ଅଂଶେ ଜାତ ହୋଇ । ଭାରା ନିବାରେ ପାଞ୍ଚ ଭାଇ ॥
ଅନାଦି ବିଷ୍ଣୁ ଯାର ବନ୍ଧୁ । ଏହା ନ ବୁଝି କିମ୍ପା କାନ୍ଦୁ ॥
ଏମନ୍ତ କହି କଲେ ଶାନ୍ତି । ଶୁଣି ହରଷ ମନ କୁନ୍ତୀ ॥
ଅକ୍ରୂର ବିଚାରଇ ଚିତ୍ତେ । ଏବେ ରହିଲି ଦିନାକେତେ ॥
ବୁଝିଲି ରାଜାର ବେଭାର । ଏବେ ମୁଁ ଯିବି ନିଜପୁର ॥
ଏମନ୍ତ ମନେ ବିଚାରଇ । ବିଦୁର ହସ୍ତେ ହସ୍ତ ଦେଇ ॥
ତକ୍ଷଣେ ବିଦୁର ଅକ୍ରୂର । ମିଳିଲେ ରାଜାର ମନ୍ଦିର ॥
ପୁତ୍ର ଲାଳସେ କୁରୁପତି । ବିଷମ ଦମ୍ଭ ତାର ମତି ॥
ବନ୍ଧୁ ସୁହୃଦ ମଧ୍ୟେ ରହି । ଅକ୍ରୂର ବୋଲେ ଅନ୍ଧ ଚାହିଁ ॥
ରାମ ଗୋବିନ୍ଦଙ୍କ ବଚନେ । ଅକ୍ରୂର କହେ ଶୁଦ୍ଧ ମନେ ॥
ତୁ କୁରୁବଂଶ ବିଦ୍ୟମାନ । ବିଚିତ୍ର ବୀର୍ଯ୍ୟର ନନ୍ଦନ ॥
ପଣ୍ଡୁ ରାଜାର ଅନ୍ତଃକାଳେ । ରାଜା ହୋଇଲୁ କୁରୁକୁଳେ ॥
ଧର୍ମପାଳିଣ କର ମହୀ । ପରଜା ହିତେ ଚିତ୍ତ ଦେଇ ॥
ଶତେକ ପୁତ୍ର ଅଛି ତୋର । ଏ ପଞ୍ଚ ପଣ୍ଡୁର କୁମର ॥

ଏହାଙ୍କୁ ଦେଖ ସମ କରି । ଏବେ ପାଇବ ଯଶ ଶିରୀ ॥
ଏହା ନ କରି ମୂଢ଼ ପ୍ରାୟେ । ଯେବେ ବୁଡ଼ିବୁ ଲୋଭ ମୋହେ ॥
ଅଧର୍ମ କରି ଇହ ଲୋକେ । ଅନ୍ତେ ତୁ ପଡ଼ିବୁ ନରକେ ॥
ଏ ଯେ ପଣ୍ଡୁର ପାଞ୍ଚ ପୋୟେ । ତୋହର ଶତେକ ତନୟେ ॥
ଏବେ ସମାନ ଚିତ୍ତ କର । ତୋତେ ରଖିବେ ଦାମୋଦର ॥
ଏ ଭବଜଳ ମଧ୍ୟେ ଜନେ । ନିତ୍ୟେ ନ ଥାନ୍ତି ଏକସ୍ଥାନେ ॥
ନିଜ ଶରୀର ନରହଇ । ପୁତ୍ର କଳତ୍ର ଆଉ କାହିଁ ॥
ଏ ଜୀବ ଆତ୍ମା ଏକ ହୋଇ । ନାନା ଯୋନିରେ ଦେହ ବହି
କର୍ମ ବିପାକ ସହେ ଦେହ । ନିତ୍ୟେ କଳ୍ପିତ ମାୟାମୋହ ॥
ଭଞ୍ଜଇ ଦୁଃଖସୁଖ ଫଳେ । ଏକା ଭ୍ରମଇ ଅନ୍ତରାଳେ ॥
ଅଧର୍ମ ସଞ୍ଚଇ ଯେ ଧନ । ତାର ବିପାକେ ଭୁଞ୍ଜେ ଆନ ॥
ଅଧର୍ମେ ମାର୍ଗେ ମୂଢ଼ ପ୍ରାଣୀ । ଧନ ସଞ୍ଚଇ ଗୃହେ ଆଣି ॥
ପୁତ୍ର କଳତ୍ର ବନ୍ଧୁ ହୋଇ । ସଞ୍ଚିଲା ଧନ ତାର ନେଇ ॥
ଯେ ଯାହା ମତେ ଯାନ୍ତି ବେଗେ । ଦୁଷ୍କୃତ ରହେ ତାର ଅଙ୍ଗେ ॥
ମୋର କୁଟୁମ୍ବ ବୋଲି ମୋହେ । ଅଧର୍ମ କରେ ନିଜ ଦେହେ ॥
ଧନ ସଞ୍ଚୟ କରି ପୋଷେ । ସେ କାହିଁ ଥିବ ତାର ପାଶେ ॥
ବିଷ୍ଣୁର ମାୟା ବଳେ ଭ୍ରାନ୍ତି । ଅନାଥ କରି ଛାଡ଼ି ଯାନ୍ତି ॥
ଧନଜୀବନ ଦାରାସୁତ । ଆବର ଆପଣାର ପଥ ॥
ଯେମନ୍ତେ ମାୟାକୁ ଆବୋରି । ଯେ ବୋଲେ ମୋହରି ମୋହରି
ତାହାକୁ ବୋଲି ଅପଣ୍ଡିତ । ସଞ୍ଚିଲା ପାପେ ହୋଇ ଗ୍ରସ୍ତ ॥
ପଡ଼ଇ ଅନ୍ଧକାର ତମେ । ମହା ନରକେ ଅତିକ୍ରମେ ॥
ସ୍ୱଧର୍ମ ଛାଡ଼ିଲେ ଏମନ୍ତ । ଏ ବେଦ ପୁରାଣଙ୍କ ମତ ॥
ସ୍ୱପନ ପ୍ରାଏ ଏ ଜଗତେ । ଭ୍ରମଇ ମାୟା ମନୋରଥେ ॥
ତୁ ମହାପୁରୁଷଙ୍କ ଅଂଶ । କିମ୍ପାଇ ହେଉ ବୁଦ୍ଧିଭ୍ରଂଶ ॥
ମାୟାକୁ ଆତ୍ମାଜ୍ଞାନ ଭେଦି । ଚଞ୍ଚଳ ଇନ୍ଦ୍ରିୟ ନିରୋଧି ॥
ସମ ଦୃଷ୍ଟିରେ ଶାନ୍ତି ଭଜ । ତୁ କୁରୁବଂଶେ ମହାରାଜ ॥

## ଧୃତରାଷ୍ଟ୍ର ଉବାଚ

ଏମନ୍ତେ ଅକ୍ରୂରର ବାଣୀ । ବୋଲଇ ଧୃତରାଷ୍ଟ୍ର ଶୁଣି ॥
ଅକ୍ରୂର କହୁଅଛୁ ଯେତେ । ଅମୃତ ପ୍ରାୟ ମଣି ଚିତ୍ତେ ॥
ମନୁଷ୍ୟ ପାଇ ସୁଧାରସ । ପିବନ୍ତେ ନୋହେ ମନତୋଷ ॥
ତୋର ବଚନ ସେହିମତ । ଦେଖ ଚଞ୍ଚଳ ମୋର ଚିତ୍ତ ॥
ତୋ ବାଣୀ ନ ରହେ ମୋ ମନେ । ମେଘେ ବିଜୁଳି ତେଜ ଯେହ୍ନେ ॥
ପୁତ୍ରାନୁରାଗେ ମୋର ଚିତ୍ତ । ଈଶ୍ୱର ମାୟାରେ ମୋହିତ ॥
ଯେମନ୍ତ ଗୋବିନ୍ଦର ମାୟା । ଅନ୍ୟଥା କେ କରିବ ତାହା ॥

ଅବନୀ ଭାରେ ଭାବଗ୍ରାହୀ । ଯାଦବ ବଂଶେ ଜାତ ହୋଇ ॥
ଏକଥା ତାହାର ଭିଆଣ । ଅକ୍ରୂର ଥରେ ମନେ ଶୁଣ ॥
ବିଷ୍ଣୁର ମାୟାର ମହିମା । କେ ଜାଣି ପାରେ ଗୁଣ ସୀମା ॥
ସେ ମାୟା ବନ୍ଧେ ଗୁଣ ତିନି । ଆପଣେ ଭ୍ରମେ ନାନା ଯୋନି
ଜୀବନ ରୂପେ ତହିଁ ପଶି । ଭୁଞ୍ଜଇ କର୍ମଫଳ ବସି ॥
ଭିନ୍ନେ ପରମ ରୂପେ ଥାଇ । କରଇ କର୍ମ ନ ଲାଗଇ ॥
ଏମନ୍ତେ ମହିମା ତାହାର । ମୁଁ କିସ କରିବି ପାମର ॥
ତାହାର କ୍ରୀଡ଼ା ଏ ଜଗତ । କେ ଜାଣିପାରେ ତାର ଅନ୍ତ ॥
ସଂସାର ଚକ୍ରଗତି ହରି । ମାୟାର ବନ୍ଧେ ଅଛି ଧରି ॥
ତାହାଙ୍କୁ ମୋର ନମସ୍କାର । ଛାମୁରେ କହ ଯା ଅକ୍ରୂର ॥

### ଶ୍ରୀ ଶୁକ ଉବାଚ

ଯେମନ୍ତ ରାଜାର ବଚନ । ଅକ୍ରୂର ଶୁଣି ତୋଷ ମନ ॥
ବନ୍ଧୁବାନ୍ଧବ ପାଦେ ଲାଗି । କର ପ୍ରସାରି ଆଜ୍ଞାମାଗି ॥
ମଥୁରା ଗଲା ତତକ୍ଷଣେ । ଭେଟିଲା ଗୋବିନ୍ଦ ଚରଣେ ॥
ରାମର ପାଦେ ହସ୍ତଦେଇ । ବନ୍ଧୁ କୁଶଳ କଥା କହି ॥
ପଣ୍ଡୁ ବାଳକେ ରାଜା ଚିତ୍ତ । ବକ୍ର ବେଭାରେ ବିପରୀତ ॥
ଶୁଣି ହସନ୍ତି ଭଗବାନ । ଅକ୍ରୂର ମୁଖେ ଅବଧାନେ ॥
ସେ ରାମକୃଷ୍ଣ ପାଦଗତେ । ନମଇଁ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଅକ୍ରୂର ହସ୍ତିନା ଗମନେ ସମାଚାର ଶ୍ରବଣେ ପୁନରାଗମନେ ନାମ ତ୍ରିପଞ୍ଚାଶତ୍ ଅଧାୟଃ ।*

## ଚତୁଃପଞ୍ଚାଶତ୍ ଅଧାୟ

### ଶ୍ରୀ ଶୁକ ଉବାଚ

ଯେବେ ହୋ ଶୁଣ ନରନାଥ । ରାମ ଗୋବିନ୍ଦଙ୍କ ଚରିତ ॥
କୃଷ୍ଣ ଯେ କଂସକୁ ମାଇଲେ । ତାହାର ବେନି ନାରୀ ଥିଲେ ॥
ହେତି ପ୍ରହେତି ନାମ ଦୁଇ । ସ୍ୱାମୀ ମରଣେ ଦୁଃଖ ପାଇ ॥
ବିଧବା କଷ୍ଟ ଗୁରୁଚିନ୍ତା । ଜରାସନ୍ଧର ସେ ଦୁହିତା ॥
କାନ୍ଦି କହିଲେ ପିତା ଆଗେ । ନିଜ ଜନନୀ ଘେନି ହାତେ ॥
ଭୋ ନାଥ ବସୁଦେବ ପୋଏ । ଆମ୍ଭର ସ୍ୱାମୀ କଲେ କ୍ଷୟ ॥
କେମନ୍ତେ ବଞ୍ଚିବୁଟି ଦିନ । ଆମ୍ଭର କର୍ମ ବଡ଼ ହୀନ ॥
ବେନି ଦୁହିତା ବାକ୍ୟ ଶୁଣି । କୋପେ ବୋଲଇ ନୃପମଣି ॥
ଯାଦବେ ବଂଶେ କୃଷ୍ଣରାମ । ଈଷିତେ କଲେ ଏଡ଼େ କର୍ମ ॥
ଭୂମିରେ ଯଦୁବଂଶ ଥିଲେ । ଆମ୍ଭ କୁଶଳ କାହିଁ ଭଲେ ॥
ରାମ ଗୋବିନ୍ଦ ଆଜ ମାରି । ଏ ଭୂମି ଅଯାଦବ କରି ॥
ତେବେ ଜୀବନ ମୋର ଥିର । କୋପେ ବୋଲଇ ନୃପବର ॥
ତେରଶ କ୍ଷଉଣି ତା ସଙ୍ଗେ । ବଳ ସାଜିଲା ଚତୁରଙ୍ଗେ ॥
ଶବଦେ କମ୍ପେ ମହୀସ୍ଥଳୀ । ବାହାର ହୋଏ ମହାବଳୀ ॥
ରଜନୀ ଅଛି ବେନି ଘଡ଼ି । ମଥୁରା ପୁରେ ଯାଇଁ ବେଢ଼ି ॥
ରୁନ୍ଧିଲା ଦଶ ଦିଗ ପଥ । ଯଛିଦ୍ରେ ନ ବହେ ମରୁତ ॥
କୃଷ୍ଣ ଦେଖିଲେ ତାର ବଳ । ଯେସନେ ସମୁଦ୍ର ଉଲ୍ଲୋଳ ॥
ପ୍ରଳୟ କାଳେ ଜଳରାଶି । ଭୂମି ଗଗନେ ଯେହ୍ନେ ଗ୍ରାସୀ ।
ଦେଖି ମଥୁରାପୁର ଜନ । ଡାକନ୍ତି ରଖ ଭଗବାନ ॥
ନିଶ୍ଚୟେ ଆଜ ଗଲୁ ନାଶ । ଛାଡ଼ିଲୁ ଜୀବନର ଆଶ ॥
କାନ୍ଦନ୍ତି ଦଇବ ସୁମରି । କେ ବୋଲେ ରଖ ନରହରି ॥
ଯେମନ୍ତେ ମଥୁରାର ପ୍ରାଣୀ । ଦେଖି ଭାଳନ୍ତି ଚକ୍ରପାଣି ॥
ଭୂମିର ଭାରା ଖଣ୍ଡିବାରେ । ମୋ ଜନ୍ମ ମନୁଷ ଶରୀରେ ॥
ବ୍ରହ୍ମା ଶଙ୍କର ବୋଲେ ମୁହିଁ । ଯାଦବ ବଂଶ ଦେହ ବହି ॥
ନାଶିବି ଅବନୀର ଭାର । ଏଣେ ସେ ପ୍ରୟୋଜନ ମୋର
ଏ ବଳ ସଂହାରଣ କରି । କିଞ୍ଚିତେ ଭୂମି ଭାରା ହରି ॥
ଜରାସନ୍ଧର ତୁଲେ ରଖ । ଦେଖି ଗଗନେ ଦେବଗଣ ॥
ଆନନ୍ଦେ ହୋଇବେ ହରଷ । ସଂସାରେ ଥିବ ମୋର ଯଶ ॥
ପୃଥୀରେ ଯେତେ ନରପତି । ଶୁଣି ପାଇବେ ମତେ ଭ୍ରାନ୍ତି ॥
ତେଇଶ କ୍ଷଉଣୀ ତା ବଳ । ଭାରେ ଧରଣୀ ଟଳମଳ ॥
ଜରା ଜୀବନ ମାତ୍ର ଥୋଇ । ଏ ବଳ ସଂହାରିବି ମୁହିଁ ॥
ମୁଣ୍ଡ ନୁଆଁଇ ଅବହେଳେ । ଗଳାଇ ଦେବି ଜାନୁତଳେ ॥
ଏ ଅପମାନେ କ୍ରୋଧ ମାନି । ପୁଣି ଆସିବ ଦଳ ଘେନି ॥
ଏମନ୍ତେ ଅଷ୍ଟଦଶ ବାର । ଏହାର ତୁଲେ ରଣ ମୋର ॥
ଏଣୁ ଏ ଅବନୀର ଭାର । ଥୋକାଏ ହୋଇବେ ସଂହାର
ଦୁଷ୍ଟ ଦାନବ ବଳ ନାଶି । ସାଧବଜନଙ୍କୁ ଆଶ୍ୱାସି ॥
ଅଧର୍ମ ନାଶି ଧର୍ମ ଥୋଇ । ଏହି ନିମିତ୍ତେ ମୋର ଦେହୀ ॥
ଯେମନ୍ତେ ଚିନ୍ତେ ପରମାଣି । ଚାହିଁଲେ ପ୍ରଭୁ ଚକ୍ରପାଣି ॥
ଗଗନମାର୍ଗୁଁ ବେନିରଥ । କୃଷ୍ଣ ସମୀପେ ଉପଗତ ॥
ଆଦିତ୍ୟ ପ୍ରାୟେ ତେଜ ଦିଶି । ବେନି ସାରଥି ଛନ୍ତି ବସି ॥
ଦେବ ଆୟୁଧ ବାଣ ଦୀକ୍ଷା । ଶର କୋଦଣ୍ଡ ଦେହ ରକ୍ଷା ॥
ବିଷ୍ଣୁର ନିଜ ଶସ୍ତ୍ରମାନ । ଦେଖି ସାନନ୍ଦ କୃଷ୍ଣମନ ॥
ରାମର ବଦନକୁ ଚାହିଁ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥

ଭୋ ରାମ ଦେଖ ଜରାସନ୍ଧ । ଦୁଷ୍ଟ ସ୍ୱଭାବେ ବଡ଼ ମନ୍ଦ ॥
ଏହାର ବଳ ନାଶ କରି । ମଥୁରା ଜନଙ୍କୁ ଉଦ୍ଧାରି ॥
କେବଳ ଜରାସନ୍ଧ ଥିବ । ଅନେକ ବଳ ମରାଇବ ॥
ଏହାରେ କରିବା ସଂହାର । ଯୁଝିବା ଅଷ୍ଟାଦଶ ବାର ॥
ଏବେ ଏ ରଥେ ବିଜେ କର । ତେଇଶି କ୍ଷଉଣୀ ସଂହାର ॥
ଏ ଯେ ତୁମ୍ଭର ନିଜ ରଥ । ହଳ ମୂଷଳ ନାନା ଶସ୍ତ୍ର ॥
ଜରାସନ୍ଧର ବଳ ଦେଖି । ଯାଦବ ହୋଇଲେ ନିରେଖି ॥
ମେଦିନୀ ଭାରା ଖଣ୍ଡିବାରେ । ଆମ୍ଭର ଜନ୍ମ ମର୍ତ୍ତ୍ୟ ପୁରେ ॥
ଏତେ ବିଚାରି ବେନି ଭାଇ । ରଥେ ବସିଲେ ବେଗେ ଯାଇ
ସମର ସଜ ବୀର ମତେ । ବିବିଧ ଶସ୍ତ୍ର ଘେନି ହସ୍ତେ ॥
କଂସର ଥିଲା ଯେତେ ବଳ । ଅଣାଇ ମଦନ ଗୋପାଳ ॥
ଶଙ୍ଖ ଶବଦ କଲେ ହରି । ଶୁଭିଲା ଦଶ ଦିଗ ପୂରି ॥
ଦାରୁକ ନନ୍ଦିଘୋଷ ରଥେ । ଅଶ୍ୱ ଦଉଡ଼ି ଧରି ହସ୍ତେ ॥
ଶୁଣି ଗୋବିନ୍ଦ ଶଙ୍ଖ ଧ୍ୱନି । ଜୟ ଶବଦ ସୁରମୁନି ॥
ପୁଷ୍ପ ବରଷି ସ୍ତୁତି କରି । ରଥେ ଦେଖିଲେ ରାମ ହରି ॥
ଶଙ୍ଖ ଶବଦ ଘୋଷ ଶୁଣି । ବଳ ଯେ ତେଇଶ କ୍ଷଉଣୀ ॥
ହୃଦୟ କମ୍ପିଲା ବିକଳେ । ଶସ୍ତ୍ର ପଡ଼ିଲା ହସ୍ତୁ ତଳେ ॥
ଜରା ଧାମଇଁ ଏକ ରଥେ । ଆବୋରି ଗୋବିନ୍ଦର ପଥେ ॥
କୃଷ୍ଣଙ୍କୁ ଦେଖି ମହାବଳୀ । ବୋଲଇ ବାମଭୁଜ ତୋଳି ॥
ତୁ କୃଷ୍ଣ ପୁରୁଷ ଅଧମ । ତୁ କାହିଁ ଜାଣିବୁ ସଂଗ୍ରାମ ॥
ବାଳକ ହୋଇ ରଣେ ସଜ । ମୁଖେ ନପାଉ କିମ୍ପା ଲାଜ ॥
ତୋହର ସଙ୍ଗେ ଯୁଦ୍ଧ କଲେ । ଲୋକେ ହସିବେ ମୋତେ ଭଲେ
ଗୁପତେ ବନ୍ଧୁ କଲୁ ନାଶ । ତୋର ମାତୁଳ ରାଜା କଂସ ॥
ତୋହର ବଦନ ନ ଦେଖି । ପଳା ତୁ ସଂଗ୍ରାମ ଉପେକ୍ଷି ॥
ହେ ରାମ ତୁ ଯେ ବଳୀୟାର । ସଂଗ୍ରାମେ ଯେବେ ଇଛା ତୋର
ହୃଦୟ ସ୍ଥିର କରି ବେଗେ । ସଂଗ୍ରାମ କରି ମୋର ସଙ୍ଗେ ॥
ମୋହର ବାଣେ ପ୍ରାଣ ଦେଇ । ଗଗନ ପଥେ ଯାଅ ତୁହି ॥
କି ଅବା କର ମୋତେ ନାଶ । ସଂସାରେ ଥିବ ତୋର ଯଶ ॥

### ଶ୍ରୀ ଭଗବାନ ଉବାଚ

ଜରାସନ୍ଧର ବୋଲ ଶୁଣି । ଆଗ ହୋଇଲେ ଚକ୍ରପାଣି ॥
କୋମଳ ଗଭୀର ବଚନ । ଚାହିଁଲେ ଜରାର ବଦନ ॥
ଶୁଣ ମଗଧ ମହୀପତି । କହଇ ଏଥିର ଯୁଗତି ॥
ଶଉର୍ଯ୍ୟ ବଳ ଯାର ଥାଇ । ସଂଗ୍ରାମ ମଧ୍ୟେ ସେ ଦେଖାଇ ॥
ଆତ୍ମ ପ୍ରଶଂସା ଆତ୍ମ ମୁଖେ । ଯେ ପ୍ରାଣୀ କହୁଥାନ୍ତି ସୁଖେ ॥
ଯଶ ନ ରହେ ତିନିଲୋକେ । ମରଣେ ପଡ଼ନ୍ତି ନରକେ ॥
ଆପଣା ମରଣ ନଜାଣୁ । ମୁଖେ ଅଶୁଭ କଥା ଭଣୁ ॥
ମରଣ କାଳେ ତୋର ବାଣୀ । ଆମ୍ଭର କର୍ଣ୍ଣେ ତା ନ ଶୁଣି ॥

### ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ । କୋପ ବସିଲା ପର ଦେହେ ॥
ଦନ୍ତେ ଅଧର କାମୋଡ଼ିଲା । କୃଷ୍ଣଙ୍କୁ ମାଗରେ ବୋଇଲା ॥
ତକ୍ଷଣେ ରଥ ଗଜଯୂଥ । ରୁନ୍ଧିଲେ ରାମ କୃଷ୍ଣ ରଥ ॥
ପବନ ରେଣୁ ଘେନି ଯେହ୍ନେ । ଆଦିତ୍ୟ ଆଚ୍ଛାଦେ ଗଗନେ ॥
ମଥୁରାପୁର ନର ନାରୀ । ଆରୋହୀ ଅଟ୍ଟାଳୀ ପାଚେରି ॥
କେ ବୃକ୍ଷେ ଉଠି ଦୃଷ୍ଟିଦେଇ । ରାମ ଗୋବିନ୍ଦରଥ ଚାହିଁ ॥
ସଂଗ୍ରାମେ ନ ଦିଶିଲା ରଥ । ପଡ଼ି ହୋଇଲେ ମୂର୍ଚ୍ଛିତ ॥
କାନ୍ଦନ୍ତି କୃଷ୍ଣ ନାମ ଧରି । ତାହା ଜାଣିଲେ ନରହରି ॥
ଜାରା ସଇନୀ ମେଘ ପ୍ରାୟେ । ବାଣ ବରଷେ କୃଷ୍ଣଦେହେ ॥
ମୂର୍ଚ୍ଛିତ ଦେଖି ନର ରାୟେ । ସାରଙ୍ଗ ଧନୁ କରେ ଯାଏ ॥
ଗୋବିନ୍ଦ କଲେ ଗୁଣଘୋଷ । ଶବଦ ଶୁଭେ ଦଶଦିଶ ॥
କନ୍ଧେ ଯେ ଥିଲା ବେନିତୂଣ । ତହୁଁ କାଢ଼ିଲେ ତୀକ୍ଷ୍ଣବାଣ ॥
ଗୁଣେ ବସାଇ ଦେବରାୟେ । ଧନୁ ଟାଣିଲେ କର୍ଣ୍ଣ ଯାଏ ॥
ଅଦ୍ଭୁତ ଚକ୍ର ପ୍ରାୟେ ଦିଶେ । ତେଜେ ସକଳ ଦିଗ ଗ୍ରାସେ ॥
ମନ୍ତ୍ର ଉଚ୍ଚାରି କୋଟି କୋଟି । ଗୋବିନ୍ଦ କଲେ ଶରବୃଷ୍ଟି ॥
ରଥଗୁଞ୍ଜର ବାଜୀ ନର । ବାଣେ ଛେଦିଲେ ଚକ୍ରଧର ॥
ଅନଳ ଗତି ପ୍ରାୟେ ବାଣ । କୃଷ୍ଣ ବିନ୍ଧନ୍ତି ପୁଣ ପୁଣ ॥
କୃଷ୍ଣର ବାଣ ନିରନ୍ତରେ । ପଡ଼ିଲା ଗଜବାଜୀ ଶିରେ ॥
ରଥ ପାଦାନ୍ତି ମୁଣ୍ଡ ଛିଡ଼ି । ପଡ଼ିଲେ ରଣଭୂମି ମାଡ଼ି ॥
ଧ୍ୱଜ ସାରଥି ତୁଳେ ରଥ । ରଣେ ପଡ଼ିଲେ ଯୂଥ ଯୂଥ ॥
ପାଦାନ୍ତି ରଣେ ଛନ୍ତି ପଡ଼ି । କା ଭୁଜ କାନ୍ଧୁ ଛିଡ଼ି ପଡ଼ି ॥
ଆନନ୍ଦେ ଶୁକମୁନି କହେ । ଶୁଣ ପରୀକ୍ଷ କୁରୁ ରାୟେ ॥
ନରଗୁଞ୍ଜର ଦେହ ଛିଡ଼ି । ରୋଧିର ନଦୀ ବେଗେ ବଢ଼ି
ଶତ ସହସ୍ର ଧାରା ପୂରି । ବିଷମ ତରଙ୍ଗ ଲହରୀ ॥
ଗଭୀର ଘୋର ଗ୍ରାହାଗଣ । ରାଜନେ ସାବଧାନ ଶୁଣ ॥
ଭୁଜେ ଭାସନ୍ତି ସର୍ପ ପ୍ରାୟେ । ପୁରୁଷ ଶିର କୂର୍ମ ହୋଏ ॥
ଗହଳେ ହସ୍ତୀ ଦେହ ଭାସି । ନଦୀର କୁଦ ପ୍ରାୟେ ଦିଶି ॥
କୁମ୍ଭୀର ପ୍ରାୟେ କୋଟି କୋଟି । ତୁରଙ୍ଗ ଦେହ ଯାନ୍ତି ଲୋଟି ॥
ମୀନଙ୍କ ପ୍ରାୟେ କରସ୍ଥଳ । ନାଳେ ଭାସନ୍ତି ଯେହ୍ନେ ଦଳ ॥
ତରଙ୍ଗ ପ୍ରାୟେ ଧନୁ ପୁଣ । ଆୟୁଧ ଯେହ୍ନେ ବୃକ୍ଷ ତୃଣ ॥

ଖଡ଼ଗ ଚର୍ମ ଉର୍ମିମାଳ । ଘୋର ଗଭୀର ଅନ୍ତରାଳ ॥
ମଣିଏ ଭେକ ପ୍ରାୟ ଦିଶି । ରୁଧିର ଜଳେ ଯାନ୍ତି ଭାସି ॥
ବାଲୁକା ପ୍ରାୟେ କ୍ଷୁଦ୍ର ମଣି । ଶୁଣ ରାଜନ ଶୁଦ୍ଧ ବାଣୀ ॥
ରୁଧିର ଜଳ ନଦୀଗଣେ । ବହିଲେ ଗୋବିନ୍ଦ ଚରଣେ ॥
ଦେଖି ହସନ୍ତି ଦେବରାୟେ । ସ୍ୱର୍ଗେ ଶୁଭିଲା ଜୟେ ଜୟେ ॥
ମୂଷଳ ଘାତେ ହଳଧର । ଅନେକ ରଥ କଲେ ଚୂର ॥
ଦେଖି ତାହାଙ୍କ ବଳରାୟେ । ଘୋର ପ୍ରଳୟ ସିନ୍ଧୁ ପ୍ରାୟେ ॥
କାହାର ବଳେ ତାହା ସାଧି । ଦୁର୍ଗମ ଦୁସ୍ତର ଜଳଧି ॥
ବାସୁଦେବର ବେନି ପୋଏ । କିଞ୍ଚିତ ମାତ୍ରେ କଲେ ଜୟେ ॥
ଜଗତେ ବୀରଶ୍ୱର ପତି । କିଞ୍ଚିତେ ମାତ୍ରେ ସଂହାରନ୍ତି ॥
ସ୍ଥିତି ପାଳନ ସଂହାରଣ । ଏ ତିନି ଭୁବନ କାରଣ ॥
ଲୀଳା ମାତ୍ରକେ ନରହରି । ଅନନ୍ତ ନାନା ରୂପ ଧରି ॥
ସେ ମାୟାଧର ଯେତେ କୃତ୍ୟ । ମନୁଷ୍ୟ ଲୋକେ ବିପରୀତ ॥
ଯେମନ୍ତେ ରିପୁ କଲା ନାଶ । ରହିଲା ଜରାସନ୍ଧ ଶେଷ ॥
ଯେହ୍ନେ ଚାହିଁଲ ନରମଣି । ଦେଖେ ରୁଧିର ତରଙ୍ଗିଣୀ ॥
ରକତ ସିନ୍ଧୁ ଦଶ ଦିଶେ । ଦେଖଇ କେହି ନାହିଁ ପାଶେ
ରାମ ଗୋବିନ୍ଦ ବେନି ରଥେ । ଶାରଙ୍ଗ ଧନୁ ହଳ ହସ୍ତେ ॥
ଯେସନେ ନଟବର ଦୁଇ । ସଂଗ୍ରାମ ମଧ୍ୟେ ବେନିଭାଇ ॥
ଦୁର୍ଗମ ବଳ କରି ନାଶ । ରଙ୍ଗ ଅଧରେ ମନ୍ଦହାସ ॥
ସଂଗ୍ରାମ ମଧ୍ୟେ ମହୀପତି । ଯେସନେ ଯୂଥ ଉଷ୍ଣ ହସ୍ତୀ ॥
ଦେଖି ଧାଇଁଲେ ହଳଧର । ମୂଷଳେ ରଥ କଲେ ଚୂର ॥
କେଶ ଧଇଲେ ବାମହସ୍ତେ । କୋପେ ଚାପିଲେ ଭୂମି ଗତେ ॥
ଗଜକୁ ସିଂଘ ଯେହ୍ନେ ମାଡ଼ି । ରାଜା ଛାଡ଼ିଲା ଘୋର ରଡ଼ି ॥
ଦେଖ ତାହାର କର୍ମଫଳ । ଦେହେ ନାଶିଲା ସର୍ବ ବଳ ॥
ବେଗେ ବରୁଣ ପାଂଶଘେନି । ବନ୍ଧନ କଲେ ହଳପାଣି ॥
ଦେଖି ଧାଇଁଲେ ଦେବ ହରି । ତାର ବନ୍ଧନ ଦେଲେ ଫେଡ଼ି ॥
ବୋଇଲନ୍ତି ଶୁଣ ଦେବରାଜ । ଏହାରେ ଅଛି ବଡ଼ କାର୍ଯ୍ୟ ॥
ଯେମନ୍ତ ବୋଲି ସୁଖଭୋଳେ । ଗଳାଇଦେଲେ ଜାନୁତଳେ ॥
ଜୀବନ ଘେନି ପଳାଇଲା । ଡରେ ଅନେକ ଦୂର ଗଲା ॥
ସ୍ୱଭାବେ ବୀର ମଧ୍ୟେ ଶ୍ରେଷ୍ଠ । କର୍ମେ ପାଇଲା ବଡ଼ କଷ୍ଟ ॥
ପଥେ ବସିଲା ଲାଜ ପାଇ । ଭାଳଇ ଚଉଦିଗ ଚାହିଁ ॥
ଏ ଭୂମି ଭୋଗ ମହୀତଳେ । ଭୁଞ୍ଜାଇ ବେନି ଭୁଜ ବଳେ ॥
ମୁଁ ଏବେ ଘୋର ତପ କରି । ପୂଜିବି ଶଙ୍କର ଗଉରୀ ॥
ଈଶ୍ୱର ଠହୁଁ ବରପାଇ । ଯଦୁଙ୍କୁ ସଂହାରିବି ମୁହିଁ ॥
ରାମ ଗୋବିନ୍ଦ ମୋ ବଇରୀ । ନିଶ୍ଚେ ମାରିବି ତପ କରି ॥
ଯେମନ୍ତ ବିଚାରଇ ମନେ । ଆସି ମିଳିଲେ ବନ୍ଧୁ ଜନେ ॥
ବୋଲନ୍ତି ରାଜା ମୁଖ ଚାହିଁ । ବିମନା ହେଉ କାହିଁପାଇଁ ॥
ଅର୍ଜିଲା କର୍ମବନ୍ଧ ଫଳେ । ରଣେ ହାରିଲୁ ଏକାବେଳେ ॥
ଯଦୁଙ୍କ ହାଥେ ପରାଭବ । ଏକଥା ସର୍ଜିଲା ଦଇବ ॥
କ୍ଷତ୍ରିୟ ଧର୍ମ ମହୀତଳେ । ଯଶ ଅଯଶ ଯୁଦ୍ଧକାଳେ ॥
ଯେମନ୍ତେ ଚିତ୍ତ ବୋଧ କରି । ରଥେ ତୋଳିଲେ ହସ୍ତ ଧରି ॥
ପଛେ ଗୋଡ଼ାନ୍ତି ବନ୍ଧୁ ଜନେ । ରାଜା ଚାଲିଲା ଦୁଃଖମନେ ॥
ଲାଜେ ନ ଦିଶେ ଦଶ ଦିଶ । ରାତ୍ରେ ମିଳିଲା ନିଜ ଦେଶ ॥
ଏବେ ହୋ ଶୁଣ ନୃପମଣି । ସଂଗ୍ରାମେ କୃଷ୍ଣ ହଳପାଣି ॥
ଉଗ୍ରସେନର ଯେତେ ବଳ । ରଖିଲେ ମଦନ ଗୋପାଳ ॥
ସକଳେ ବିଷ୍ଣୁ ତେଜ ମୟେ । କ୍ଷତ ନୋହିଲା ତାଙ୍କ ଦେହେ ॥
ରିପୁ ସଂହାରି ଭାବଗ୍ରାହୀ । ବିଜୟେ ନିଜ ପୁରେ ଯାଇ ॥
ଦେବେ କରନ୍ତି ଜୟ ଧ୍ୱନି । ସ୍ତୁତି କରନ୍ତି ସୁର ମୁନି ॥
ପୁଷ୍ପ ବରଷି ଜଳ ସଙ୍ଗେ । ନାଚନ୍ତି ସୁର ନାରୀ ରଙ୍ଗେ ॥
ମଥୁରାପୁର ନର ନାରୀ । ମିଳିଲେ କରେ ଅର୍ଘ୍ୟଧରି ॥
ଶୁଭମଙ୍ଗଳ ଘଟାବାଣୀ । ବିପ୍ରେ ପଢ଼ନ୍ତି ବେଦଧ୍ୱନି ॥
ଶଙ୍ଖ ଦୁନ୍ଦୁଭି ବାଦ୍ୟଘୋଷ । ଗୋବିନ୍ଦ ମଥୁରା ପ୍ରବେଶ ॥
ଚନ୍ଦନ ଛରା ମାର୍ଗେ ଦେଇ । ଉପରେ ତୋରଣା ଲମ୍ଵାଇ ॥
ଦଧି ଅକ୍ଷତ ପୂର୍ଣ୍ଣ କୁମ୍ଭ । କରନ୍ତି ମଙ୍ଗଳ ଆରମ୍ଭ ॥
ନାନା କୁସୁମ ଘେନି ନାରୀ । ପଥେ ବୁଣନ୍ତି ସ୍ତୁତି କରି ॥
ରାମ ଗୋବିନ୍ଦ ବେନିଭାଇ । ହରଷ ନୟନେ ଅନାଇଁ ॥
ମିଳିଲା ଆପଣା ଭୁବନ । ସକଳ ସୈନ୍ୟ ଉଗ୍ରସେନ ॥
ଯୁଦ୍ଧେ ଜିଣିଲା ଧନ ଆଣି । ବୋଲନ୍ତି ପ୍ରଭୁ ଚକ୍ରପାଣି ॥
ରାଜନ ଜିଣିଲୁ ସମର । ଏ ଧନ ଭଣ୍ଡାର ତୋହର ॥
ଉଗ୍ରସେନକୁ ଧନ ଦେଇ । ପୁରେ ମିଳିଲେ କୃଷ୍ଣ ଯାଇ ॥
କହନ୍ତି ବ୍ୟାସଙ୍କ ତନୟେ । ଶୁଣ ସୁମନେ କୁରୁ ରାୟେ ॥
ସପତଦଶ ବାର ଆଣି । ତା ବଳ ତେଇଶ କ୍ଷଉଣୀ ॥
ଗୋବିନ୍ଦ ସଙ୍ଗେ ଯୁଦ୍ଧ କଲା । ମଗଧ ବାରେ ନ ଜିଣିଲା ॥
ବିଷ୍ଣୁର ତେଜେ ଯଦୁ ବଳ । ଯୁଦ୍ଧେ ଜିଣନ୍ତି ସର୍ବକାଳ ॥
ଅଭେଦ ତାହାଙ୍କ ଶରୀର । ଏବେ ହୋ ଶୁଣ ନୃପବର ॥
ଜରାସନ୍ଧର ଯେତେ କୃତ୍ୟ । ତୋତେ କହିଲି ଭାଗବତ ॥
ସପତଦଶ ବାର ହାରି । ପୁଣି ସାଜିଲା ଦଣ୍ଡଧାରୀ ॥
ବ୍ରହ୍ମାନନ୍ଦନ ତାହା ଶୁଣି । ଭାଳନ୍ତି ମନେ ପରିମାଣି ॥

କାଳ ଯବନ ବୀର ଥିଲେ । ଯଦୁ କୁଶଳ କାହିଁ ଭଲେ ॥
ଆଜ କରିବି ଦେବ କାର୍ଯ୍ୟ । ଗଞ୍ଜିବି ଯବନର ଗର୍ବ ॥
ଏତେ ବିଚାର ଶୂନ୍ୟ ବାଟେ । ମିଳିଲେ ଯବନ ନିକଟେ ॥
ଦେଖି ସାନନ୍ଦ ନୃପବର । ପୂଜିଲା ମୁନିଙ୍କ ପୟର ॥
କର ଯୁଗଳ ଦେଇ ଶିରେ । ନମିଲା ନାରଦ ପୟରେ ॥
କାଳ ଯବନ ମୁଖ ଚାହିଁ । ମୁନି କହନ୍ତି ଖେଦ ପାଇ ॥
ଯାଦବ ବଂଶେ ମହାବଳୀ । ଅନନ୍ତ ରାମ ବନମାଳୀ ॥
ଜରାସନ୍ଧର ଯେତେ ବଳ । ମାଇଲେ ସପ୍ତଦଶ ବଳ ॥
ତାହାଙ୍କ ସଙ୍ଗେ ଯୁଦ୍ଧ କରି । ତିନିଭୁବନେ ନାହିଁ ସରି ॥
ତୁ ଯେ ବୋଲାଉ ବଳୀୟାର । ଯଦୁଙ୍କ ସଙ୍ଗେ ଯୁଦ୍ଧ କର ॥
ଜରା ହିଁ ସାଧିଅଛି ଯୁଦ୍ଧେ । ପାରିଲେ ସାଜ ଏହି ମଧେ ॥
ଆସ ମୋହର ସଙ୍ଗେ ତୁହି । କୃଷ୍ଣଙ୍କୁ ଭେଟାଇବି ନେଇ ॥
କୃଷ୍ଣର ଗୁଣ ରୂପ କହି । ନାରଦ ଗଲେ ଆଗହୋଇ ॥
କାଳ ଯମନ ଶୁଣି ତାହା । ଯୁଦ୍ଧକୁ ବଳିଲା ଉତ୍ସାହା ॥
ଯବନ ବଳ ତିନିକୋଟି । ସାଜିଲା ବନଗିରି ଘୋଟି ॥
ରଜନୀ ଅନ୍ତେ ଯଦୁପୁରୀ । ରୁନ୍ଧିଲା ତିନିପୁର କରି ॥
ଯବନ ବଳ ଦେଖି ହରି । କହନ୍ତି ରାମ କର ଧରି ॥
ଦେଖ ଯାଦବ ବଳ କଷ୍ଟ । ଦଇବ କଲା ଆଣି ହଟ ॥
ମାଗଧ ଆସୁଅଛି ଯେବେ । ଏବେ ଯାଦବ ନାଶଯିବେ ॥
ଏହାର ତୁଲେ ଯୁଦ୍ଧ କରି । ରହିଲେ ସମର ଆବୋରି ॥
ଏମନ୍ତେ ମାଗଧ ଆସିବ । ଯଦୁକୁ ପ୍ରାଣେ ସଂହାରିବ ॥
ଧନଜୀବନ ବନ୍ଦି କରି । ଘେନାଇ ଯିବ ନିଜ ପୁରୀ ॥
ନିର୍ଜ୍ଜନେ ଦୁର୍ଗେକ ଭିଆଇ । ଧନ କୁଟୁମ୍ବେ ତହିଁ ଥୋଇ ॥
ତେବେ କରିବା ରଣ ରଙ୍ଗ । ଯେମନ୍ତ କରି ଶିରୀରଙ୍ଗ ॥
ଜଳଧି କୂଳେ କୃଷ୍ଣ ଯାଇ । ବୋଲନ୍ତି ବରୁଣକୁ ତହିଁ ॥
ସମୁଦ୍ର ମଧ୍ୟେ ଛାଡ଼ ସ୍ଥାନ । ମୁଁ ଏଥେଁ କରିବି ବିଶ୍ରାମ ॥
ଶୁଣି ଗୋବିନ୍ଦର ବଚନ । ଛାଡ଼ିଲା ଦ୍ୱାଦଶ ଯୋଜନ ॥
ଗୋବିନ୍ଦ ବିଶ୍ୱକର୍ମା ରାଇ । ବୋଲନ୍ତି ତାର ମୁଖ ଚାହିଁ ॥
ଦ୍ୱାରକା ନାମେ କର ପୁର । ଦେବ ଦାନବେ ଅଗୋଚର ॥
ମଥୁରାପୁର ପ୍ରାୟେ କର । ଯାହାର ଯେମନ୍ତ ମନ୍ଦିର ॥
ଗୋବିନ୍ଦ ଆଜ୍ଞା ପରମାଣେ । ନିର୍ମାଣ କଲା ତତକ୍ଷଣେ ॥
ଦେବତା ଦୁର୍ଗ ଚିତ୍ରମାନ । ଦେଖିଲେ ମୋହ ପ୍ରାଣୀ ମନ ॥
ଅତି ସୁସଞ୍ଚ ଉଚ୍ଚସାର । ମେଢ଼ ଅଟ୍ଟାଳୀ ପୁରଦ୍ୱାର ॥
ହେମ ରଜତ ତାମ୍ର ଦୁଇ । ନାନା ପ୍ରକାରେ ଶୋଭାପାଇ ॥
ମଣି ମର୍କତ ପଦ୍ମରାଗ । ନୀଳ ଲୋହିତ ପୀତ ରଙ୍ଗ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ । ଯେ ଯାହା ବସ୍ତ ଭିନ୍ନ ଭିନ୍ନ ॥
ସୁଧର୍ମା ସଭା ପାରିଜାତ । ଆଣି ସ୍ଥାପିଲା ଶଚୀକାନ୍ତ ॥
ଯହିଁ ବସିଲେ ମତ୍ୟ ଜନେ । ଦିଶନ୍ତି ଦେବତା ସମାନେ ॥
ବରୁଣ ଅଶ୍ୱ ଶ୍ୟାମ ବର୍ଣ୍ଣେ । ମନପବନ ସମାଗମେ ॥
ଯେମନ୍ତେ ଅଶ୍ୱ ଆଣି ଦିଲା । ଗୋବିନ୍ଦ ଚରଣେ ପୂଜିଲା ॥
ବାସବ ଆଦି ଦିଗପତି । ନିଯୋଗେ ପୂଜିଲେ ଶ୍ରୀପତି ॥
ଗୋବିନ୍ଦ ମାୟା ଯୋଗ କରି । ରାତ୍ରେ ମଥୁରାପୁର ଶିରୀ ॥
ଦ୍ୱାରକା ଦୁର୍ଗ ମଧ୍ୟେ ଥୋଇ । ମିଳିଲେ ରାମ ସଙ୍ଗେ ଯାଇ ॥
ରଜନୀ ହୋଇଲା ପ୍ରଭାତ । ବାହାର ହେଲେ ଗୋପୀନାଥ ॥
କମଳା ମାଳ କଣ୍ଠେ ଲାଇ । ଭୁଜ ଯୁଗଳେ ଶସ୍ତ୍ର ନାହିଁ ॥
ସେ ହରିପାଦେ ଦେଇ ଚିତ୍ତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଜରାସନ୍ଧେ ଯୁଦ୍ଧେ କାଳଯବନ ଗମନେ ଦ୍ୱାରିକା ସୃଜନେ ନାମ ଚତୁଃପଞ୍ଚଶତତଃଧ୍ୟାୟଃ ।*

## ପଞ୍ଚ ପଞ୍ଚାଶତ୍ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ॥
ମଥୁରା ଗଡ଼ ଦ୍ୱାର ମଧ୍ୟେ । କୃଷ୍ଣ ବିଜୟେ ପଦ୍ମପାଦେ ॥
ଉଦୟ ଗିରି ମଧ୍ୟେ ଆସି । ଯେହ୍ନେ ବିରାଜେ ପୂର୍ବ ଶଶି ॥
ଅତି ସୁନ୍ଦର ଶ୍ୟାମଦେହୀ । ପୀତ ବସନ ବିରାଜଇ ॥
ଶ୍ରୀବତ୍ସ ଲକ୍ଷଣ ସୁନ୍ଦର । କୌସ୍ତୁଭମଣି କଣ୍ଠେ ହାର ॥
ଆଜାନୁ ଲମ୍ବେ ଚାରିଭୁଜ । ଅରୁଣ ପଦ୍ମ ଚକ୍ଷୁତେଜ ॥
ନିତ୍ୟ ଆନନ୍ଦ ହାସମୁଖ । ସୁନ୍ଦର କପୋଳ ସୁରେଖ ॥
କର୍ଣ୍ଣେ ମକରାକାର ହୋଇ । ରତ୍ନ କୁଣ୍ଡଳ ବିରାଜଇ ॥
କୋଟି କନ୍ଦର୍ପ ରୂପ ସାର । ରୂପକୁ ନାହିଁ ପଟାନ୍ତର ॥
କାଳ ଯବନ କୃଷ୍ଣ ଚାହିଁ । ନାରଦ ବାକ୍ୟ ମନେ ହୋଇ ॥
ବୋଲଇ ବାସୁଦେବ ଏହି । ଶ୍ରୀବତ୍ସ ଚିହ୍ନ ହୃଦେ ବହି ॥
ଆଜାନୁ ଲମ୍ବେ ବେନି ଭୁଜ । କମଳ ନୟନ ବିରାଜ ॥
ବନମାଳଯେ ଲମ୍ବେ ଉର । ଅପୂର୍ବ ଭୁବନ ସୁନ୍ଦର ॥
ନାରଦ କହିଛନ୍ତି ଯେତେ । ଚିହ୍ନ ଦେଖିଲି ଏହା ଗାତ୍ରେ ॥
କୃଷ୍ଣହୁଁ ନୋହଇ ଏ ଆନ । ରୂପେ ମୋହିଲା ମୋର ମନ ॥

ଏହାର କରେ ଶସ୍ତ୍ର ନାହିଁ । ଚରଣେ ଚାଲୁଅଛି ମହୀ ॥
ମୁଁ କିମ୍ପା କରେ ଶସ୍ତ୍ର ଧରି । ଏହାର ସଙ୍ଗେ ଯୁଦ୍ଧ କରି ॥
ନିନ୍ଦା ପାଇବି ଇହ ଲୋକେ । ମରଣେ ପଡ଼ିବି ନରକେ ॥
ମୁହିଁ ହୋଇବି ନି ଆୟୁଧ । ତେବେ ଯେହାର ତୁଲେ ଯୁଧ ॥
ଏମନ୍ତ ଅସୁର ବିଚାରି । ତାହା ଜାଣିଲେ ନରହରି ॥
ମାୟାରେ ମୋହି ତାର ମନ । ବେଗେ ଧାଇଁଲେ ଭଗବାନ ॥
କାଳଯବନ ବିଚାରଇ । ନିଶ୍ଚୟ ଯିବ ଏ ପଳାଇ ॥
ଯୁଧ୍ୟ ନଦେଖି ତ ଭଜିଲା । ଯେମନ୍ତ ବୋଲି ଗୋଡ଼ାଇଲା ॥
ଯେ ହରି ଯୋଗୀଙ୍କି ଦୁର୍ଲ୍ଲଭ । ତାହାଙ୍କୁ ମଣଇ ସୁଲଭ ॥
ଜିଣିମ ବୋଲି କୃଷ୍ଣ ପଛେ । ଯମନ ଧାଇଁଲା ପ୍ରତକ୍ଷେ ॥
ହାତ ନ ଲାଗେ କୃଷ୍ଣ ଦେହେ । ପାଦ ବାଜଇ ବେନି ପାୟେ ॥
ଯେକାନ୍ତେ ଦୂରପଥ ନେଇ । ବନ ଗହନେ ଭାବଗ୍ରାହୀ ॥
କୃଷ୍ଣଙ୍କୁ ଗୋଡ଼ାଇ ଯବନ । ବୋଲଇ ପୁରୁଷ ବଚନ ॥
ଯାଦବ କୁଳେ ଜାତ ହୋଇ । ଡରେ ପଳାଉ କାହିଁପାଇଁ ॥
ଉଚିତ ନୁହଁଇ ତୋ ଯଶ । ଲୋକେ କରିବେ ଉପହାସ ॥
ନିନ୍ଦଇ ଗୋବିନ୍ଦ ମହିମା । ଯେଣୁ ହୋଇଲା କ୍ଷୀଣ କର୍ମା ॥
ଏମନ୍ତ ବାକ୍ୟେ ଦେଇ ଗାଳି । ବନ ଗହନେ ଯାଇ ମିଳି ॥
ପଶିଲେ ପର୍ବତ ଭିତରେ । ଯବନ ଘେନି ଅନ୍ଧକାରେ ॥
ହରି ହୋଇଲେ ଅନ୍ତର୍ଦ୍ଧାନ । ଭିତରେ ପଶିଲା ଯବନ ॥
ଚାହାଁଇ ଚଉଦିଗେ କୋପେ । ପୁରୁଷେ ଦେଖିଲା ସମୀପେ ॥
ନୟନେ ନିଦ୍ରାଗତ ହୋଇ । ଉତ୍ତାନମତେ ଅଛି ଶୋଇ ॥
ଦେଖି ବୋଲଇ କ୍ରୋଧ ମନେ । ନିନ୍ଦିତ ପୁରୁଷ ବଚନେ ॥
ଯେତେ ଯୋଜନ ମତେ ଆଣି । ମୋହୋର ମହିମା ନ ଜାଣି ॥
ସାଧୁଙ୍କ ପ୍ରାୟେ ଅଛୁଶୋଇ । ଯେକଥା ଉଚିତ ନୁହଇ ॥
ମରଣକାଳେ ନିଦ୍ରା ଗଲେ । କାଳ କି ବଞ୍ଚାଇବ ଭଲେ ॥
ଯେମନ୍ତେ ବୋଲି ଘୋର ନାଦେ । ହୃଦେ ମାଇଲା ନେଇ ପାଦେ ॥
ବଜ୍ର ସମାନେ ପାଦ ବାଜି । ତାହାର ନିଦ୍ରା ବେଗେ ଭାଜି ॥
ଉଠି ବସିଲା ମହାବଳୀ । ଚାହାଁଇ ନୟନ ନିରୋଳି ॥
ବେନି ପାରୁଶେ ଆଗ ପଛେ । ଯବନ ଦେଖିଲା ପ୍ରତକ୍ଷେ ॥
କୋପେ କମ୍ପଇ ତାର ଦେହୀ । ନୟନେ ଅନଳ ଜଳଇ ॥
ଅଗ୍ନି ଉଠିଲା ମହାଘୋରେ । ପଡ଼ିଲା ଯବନ ଶରୀରେ ॥
ଦେଖନ୍ତି ପ୍ରଭୁ ନାରାୟଣ । ଭସ୍ମ ହୋଇଲା ତତକ୍ଷଣ ॥

## ରାଜା ଉବାଚ

ଶୁଣି ପରୀକ୍ଷ ପଚାରଇ । ବ୍ୟାସ କୁମର ମୁଖ ଚାହିଁ ॥
ଭୋ ମୁନି ଶୟନ ପୁରୁଷ । କହ ତାହାର ନାମ କିସ ॥
ତାହର ପୁଣି ଏତେ ବଳ । ତାହାର ନୟନେ ଅନଳ ॥
କାଳ ଯବନ ଭସ୍ମ ଗଲା । ଏ ତପ କେମନ୍ତେ ସାଧିଲା ॥
ନିଦ୍ରାରେ ଗିରି ମଧ୍ୟେ ଶୋଇ । କହ ସେ ପୂର୍ବେ ଥିଲା କାହିଁ ॥

## ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ ନନ୍ଦନ । ଶୁଣହୋ ତାହାର ଜନମ ॥
ଇକ୍ଷ୍ୱାକୁ ବଂଶେ ତାର ଜାତ । ମାନଧାତାର ନିଜ ସୁତ ॥
ରୂପେ କି ଦେବା ଅନୁପାମ । ତାହାର ମୁଚୁକୁନ୍ଦ ନାମ ॥
ବିପ୍ର ସେବକ ସତ୍ୟବାଦୀ । ସକଳ ଗୁଣେ ଗୁଣନିଧି ॥
ତାହାକୁ ସୁରଗଣେ ଆସି । କହିଲେ ବଚନେ ଆଶ୍ୱାସି ॥
ତୋର ଶରଣ ନୃପବର । ଆମେ ଛାଡ଼ିଲୁ ସ୍ୱର୍ଗପୁର ॥
ହାରିଲୁ ଅସୁରଙ୍କୁ ରଣେ । ପଶିଲୁ ତୋହୋରେ ଶରଣେ ॥
ତୁ ଯେବେ କର ପ୍ରତିକାର । ବେଗେ ଅସୁର ବଳ ମାର ॥
ଯେମନ୍ତେ କହି ଦେବବୃନ୍ଦ । ଘେନାଇଁ ଗଲେ ମୁଚୁକୁନ୍ଦ ॥
ଗଗନ ପଥେ ଦେବଗଣ । ଅସୁର ତୁଲେ କଲେ ରଣ ॥
ମୁଚୁକୁନ୍ଦର ତୀକ୍ଷ୍ଣ ବାଣେ । ଅସୁର ପଳାଇଲେ ରଣେ ॥
ଅନେକ ଗଲେ ପ୍ରାଣେ ନାଶ । ରହିଲେ ସାତ ପାଞ୍ଚ ଶେଷ ॥
ଦେଖିଣ ମୁଚୁକୁନ୍ଦ ଗତି । ଦେବତାଗଣ ବୃହସ୍ପତି ॥
ବୋଲନ୍ତି ଚାହିଁ ମୁଚୁକୁନ୍ଦ । ତୋହରେ ହୋଇଲୁ ଆନନ୍ଦ ॥
ତୋ ଯଶ ପର ଉପକାର । ତୋହୋରେ ହୋଇଲୁ ଆନନ୍ଦ
ଅସୁର ତ୍ରାସ ଗଲା ଦୂର । ତୁ ଆଉ ନ କର ସମର ॥
ତୁ ମଞ୍ଚପୁର ନୃପବର । ତୋତେ ଆଣିଲୁ ଯେତେ ଦୂର
ନିର୍ଣ୍ଣିନ୍ତେ ରାଜ୍ୟେ ତୋର ଥିଲୁ । ଯୁଦ୍ଧେ ଅନେକ କାଳ ନେଲୁ ॥
ତୋର କଳତ୍ର ବନ୍ଧୁ ସୁତ । କାଳର ବଳେ ଗଲେ ହତ ॥
ପ୍ରଜାଏ ଯେତେ ତୋର ଥିଲେ । କାଳେ ସକଳେ ନାଶ ଗଲେ ॥
ବଳୀଙ୍କ ମଧ୍ୟେ କାଳ ବଳୀ । ଜନ୍ତୁଙ୍କ କର୍ମ ବଳେ ମିଳି ॥
ଈଶ୍ୱର ଭାବେ ଖେଳେ କାଳ । ପଶୁଙ୍କୁ ଯେହ୍ନେ ପଶୁପାଳ ॥
କିସ କରିବୁ ନର ଲୋକେ । ପଡ଼ିବୁ ପୁତ୍ର ଦାରା ଶୋକେ ॥
ଭୋ ରାଜା ! ଛାଡ଼ ମନୁଚିନ୍ତା । ତୋତେ ହୋଇଲୁ ବରଦାତା ॥
ଧନ ସମ୍ପଦ କାମ ଯେତେ । ମାଗ ତୁ ଦେବୁ ଅପ୍ରମିତେ ॥
ମୋକ୍ଷକୁ ନୋହୁ ଅଧିକାରୀ । ମୋକ୍ଷର ଦାତା ନରହରି ॥
ଦେବଙ୍କ ବାକ୍ୟ ଶୁଣି କର୍ଣ୍ଣେ । ଚିନ୍ତଇ ମୁଚୁକୁନ୍ଦ ମନେ ॥
ଦେବଙ୍କୁ କରି ନମସ୍କାର । ବୋଲଇ ଯୋଡ଼ି ବେନିକର ॥
ଯେବେ ମୋହୋର ମୋକ୍ଷ ନାହିଁ । ବର ମାଗିବି କାହିଁ ପାଇଁ ॥

ନିଦ୍ରା ମୋହିତ ମୋର ଦେହୀ । ଶୋଇବି ବରେ କାର୍ଯ୍ୟ ନାହିଁ ॥
ଶୁଣି ସାନନ୍ଦ ଦେବ ଗଣେ । ମିଳିଲେ ଦୁର୍ଗମ କାନନେ ॥
ଗିରି କନ୍ଦରେ ଶଯ୍ୟା କରି । ତହିଁ ଶୁଆଇ ଦଣ୍ଡଧାରୀ ॥
ବୋଲନ୍ତି ଇନ୍ଦ୍ର ଆଦି ଦେବ । ତୋହୋର ନିଦ୍ରା ଯେ ଭାଙ୍ଗିବ ।
ତୋର ନୟନ ଅଗ୍ନିବାଣେ । ଭସ୍ମ ହୋଇବ ତତକ୍ଷଣେ ॥
ଯେମନ୍ତ କହି ଦେବ ଗଲେ । କୃଷ୍ଣ ଜାଣନ୍ତି ତାହା ଭଲେ ॥
ଯବନ ମରାଇଲେ ନେଇ । ଶୁଣ ରାଜନ ଚିତ୍ତ ଦେଇ ॥
କାଳ ଯବନ ଭସ୍ମ ଗଲା । ଶୁଣ ହୋ ଗୋବିନ୍ଦର ନୀଳା ॥
କୃଷ୍ଣ ଶରୀର ତେଜ ରାଶି । ଗିରି କନ୍ଦର ତମ ନାଶି ॥
ଚକିତେ ଚାହିଁ ନୃପବର । ଦେଖିଲେ ବ୍ରହ୍ମାଣ୍ଡ ଠାକୁର ॥
ନୀଳ ଜୀମୂତ ତନୁ ବର୍ଣ୍ଣ । ପୀତ ବସନ ପରିଧାନ ॥
ଶ୍ରୀବତ୍ସ ଚିହ୍ନ ମଣି କଣ୍ଠେ । ରତ୍ନମେଖଳା କଟି ତଟେ ॥
ସୁନ୍ଦର ବନମାଳା ସାଜେ । ନିଜ ଆୟୁଧ ଚାରି ଭୁଜେ ॥
ପ୍ରସନ୍ନ ବଦନ ଗୋପାଳ । ଶ୍ରବଣେ ମକର କୁଣ୍ଡଳ ॥
ଅତି ସୁନ୍ଦର ହାସମୁଖ । ତିଳ କୁସୁମ ନାସାରେଖ ॥
ମୁଖରୁ ପାଦଯାଏ ଦେଖି । ବିକ୍ରମ ସିଂଘ ଉପଲକ୍ଷି ॥
ଯେମନ୍ତ କୃଷ୍ଣ ଦେହ ତେଜ । ଦେଖି ଚକିତ ମହାରାଜ ॥
ଗୋବିନ୍ଦ ଦେଖି ହରଷିତ । ଶଙ୍କିତେ ଯୋଡ଼ି ବେନିହାତ ॥
କୃଷ୍ଣ ବଦନ ଅରବିନ୍ଦ । ଚାହିଁ ବୋଲଇ ମୁଚୁକୁନ୍ଦ ॥
କହତୁ କାହାର ନନ୍ଦନ । କୁଳପ୍ରବର ନିଜ ନାମ ॥
ଯେମନ୍ତ ଦେଖିଲା ତ ନାହିଁ । ଗିରି କନ୍ଦରେ ଥିଲୁ କାହିଁ ॥
କୋମଳ ପ୍ରାୟେ ତୋ ଚରଣେ । କିମ୍ପାଇ ବୁଲୁ କଣ୍ଟା ବଣେ ॥
ତପସ୍ୱୀ ମାନଙ୍କର ତେଜ । କି ଅବା ପ୍ରଭୁ ଦେବରାଜ ॥
ସୂର୍ଯ୍ୟ ଶଶାଙ୍କ ଅଖଣ୍ଡଳ । କି ଅବା କଉଁ ଦିଗପାଳ ॥
ବିଷ୍ଣୁ ଶଙ୍କର ପଦ୍ମଯୋନି । ଯେ ବେଦ ଦେବତାୟେ ତିନି
ଯେ ତିନି ମଧ ଯେକ ତୁହି । ଗୋବିନ୍ଦ ପ୍ରାୟେ ମୁଁ ମଣଇ ॥
ତୋହୋର ତେଜ ତମ ଗଲା । ପ୍ରଦୀପ ପ୍ରାୟେ ପ୍ରକାଶିଲା ॥
ସତ ବଚନ କହ ମୋତେ । ମୁଁ ତୋତେ ଜାଣିମି କେମନ୍ତେ
ଶ୍ରବଣେ ଯେବେ ମୁହିଁ ପାତ୍ର । କହ ତୋ ଜନ୍ମ, କର୍ମ, ଗୋତ୍ର
ମୋହୋର କଥା ଶୁଣ ତୁହି । ଇକ୍ଷ୍ୱାକୁ ବଂଶେ ଜାତ ହୋଇ ॥
ମାନଧାତାର ମୁଁ ନନ୍ଦନ । ମୋହୋର ମୁଚୁକୁନ୍ଦ ନାମ ॥
ଚିର ଉନିଦ୍ର ଶ୍ରମ ପାଇ । ନିର୍ଜନେ ନିଦ୍ରାଗତ ହୋଇ ॥
ନିଦ୍ରା ଭାଙ୍ଗିଲା କେ ମୋହାର । ଭସ୍ମ ହୋଇଲା ତା ଶରୀର ॥
ଯେବେ ମୁଁ ତୋର ରୂପ ଦେଖି । ଚାହାନ୍ତେ ପୂରେ ବେନି ଆଖି ॥
ଦେଖି ତୋହର ନିଜ ତେଜ । ହତହୋଇଲା ବଳ ବୀର୍ଯ୍ୟ ॥
ଯେମନ୍ତେ ରାଜା ମୁଖୁ ଶୁଣି । ବୋଲନ୍ତି ପ୍ରଭୁ ଚକ୍ରପାଣି ॥
ଗମ୍ଭୀର ମେଘ ପ୍ରାୟେ ଘୋଷ । ରଙ୍ଗ ଅଧରେ ମନ୍ଦହାସ ॥

## ଶ୍ରୀ ଭଗବାନ ଉବାଚ

ମୋହୋର ଜନ୍ମ କର୍ମ ଗତି । ସହସ୍ର ସଂଖ୍ୟାରେ ଅଛନ୍ତି ॥
ନାମହିଁ ମୋର ଅଛି ଯେତେ । କେ ଜାଣି ପାରିବ ଜଗତେ ॥
ଭୂମିରେ ରେଣୁ ଅଛି ଯେତେ । ସଂଖ୍ୟା କେ କରିବ ଜଗତେ ॥
ଯେମାନ ଗଣି ଅବା ପାରି । ଅନେକ ଜନ୍ମ ଦେହ ଧରି ॥
ମୋହୋର ଜନ୍ମ କର୍ମ ମାନ । ଗଣି ନ ପାରେ କେହି ଜନ ॥
ମୋ ଜନ୍ମ କର୍ମ ଅଛି ଯେତେ । ତ୍ରିକାଳ ବ୍ୟାପୀ ଯେ ଜଗତେ ॥
ପରମ ଋଷି ଯେତେ ଛନ୍ତି । ସଂଖ୍ୟା ସେ କରି ନ ପାରନ୍ତି ॥
ଯେବେ ମୁଁ କହୁଅଛି ତୋତେ । ରାଜନ ଶୁଣ ଯେକ ଚିତ୍ତେ ॥
ବ୍ରହ୍ମା ଶଙ୍କର ଦେବତାଇଁ । ଖିର ନିଧିର ତଟେ ରହି ॥
ସ୍ତୁତି ଯେ କଲେ ମୋ ଚରଣେ । ଅବନୀ ଭାରା ନିବାରଣେ ॥
ଅସୁର ବଳ କରି ନାଶ । ସାଧୁଙ୍କୁ କରିବି ଉଶ୍ୱାସ ॥
ଯେବେ ମୁଁ ବସୁଦେବ ଘରେ । ଜନ୍ମିଲି ଦେବକୀ ଓଦରେ ॥
ବସୁଦେବର ପୁତ୍ର ଭାବ । ତେଣୁ ମୋ ନାମ ବାସୁଦେବ ॥
କସଂକୁ ସଂଘାରିଲି ମୁହିଁ । ଖେଳିଲି ବୃନ୍ଦାବନ ଭୂଇଁ ॥
ପ୍ରଳମ୍ବ ଆଦି ଯେ ଦାନବେ । ମୁଁ ଯେ ମାଇଲି ବାଳ ଭାବେ
କାଳ ଯବନ ମୁଁ ଆଣିଲି । ତୋର ନୟନେ ସଂଘାରିଲି ॥
ତୋତେ ମୋ ଅନୁଗ୍ରହ ଚିତ୍ତେ । ମିଳିଲେ ତୋହୋର ଅଗ୍ରତେ ॥
ପୂର୍ବେ ତୁ ଘୋର ତପ କରି । ମନ ପବନ ହୃଦେ ଧରି ॥
ମୋତେ ଦେଖିବୁ ବୋଲି ଚିତ୍ତେ । ତେଣୁ ଦର୍ଶନ ଦେଲି ତୋତେ
ଭକ୍ତ ବତ୍ସଳ ମୋର ନାମ । ବର ତୁ ମାଗ ଇଚ୍ଛା କାମ ॥
ଯାହା ମାଗିବୁ ଦୃଢ଼ଚିତ୍ତେ । ପ୍ରସନ୍ନେ ଦେବି ମୁହିଁ ତୋତେ
ମୋରେ ଶରଣ ଯେ ପଶନ୍ତି । ସଂସାରେ ନାହିଁ ତାଙ୍କ ଭ୍ରାନ୍ତି ॥

## ମୁଚୁକୁନ୍ଦ ଉବାଚ

ଏମନ୍ତେ କୃଷ୍ଣର ବଚନେ । ଆନନ୍ଦେ ପୁଲକିତ ମନେ ॥
ପ୍ରଣାମ କଲା ପୁଣ ପୁଣି । ନିଷ୍ଠେ ଜାଣିଲା ଚକ୍ରପାଣି ॥
ଆନନ୍ଦେ ବେନି କର ଯୋଡ଼ି । କହଇ କୃଷ୍ଣପାଦେ ପଡ଼ି ॥
ଭୋ ନାଥ ତୋର ମାୟାବଳେ । ମୋହିତ ଜନ ଏ ଶୟଳେ ॥
ଅନର୍ଥେ ଅର୍ଥ ପ୍ରାୟେ ମଣେ । ନ ଭଜି ତୋହର ଚରଣେ ॥
ଦୁଃଖ ଗହନେ ସୁଖ ଆସେ । ପଡ଼ଇ ଦାରାସୁତ ପାଶେ ॥
ମୈଥୁନ ସୁଖେ ଦିନ ବଞ୍ଚେ । ଦୁର୍ଜନ ଧନ ନିତ୍ୟ ସଞ୍ଚେ ॥

ଅନେକ ଜନ୍ମେ ପୁଣ୍ୟ ଫଳେ । ମନୁଷ ଦେହ ମହୀତଳେ ॥
ଇନ୍ଦ୍ରିୟ ସୁଖେ ଦେଇ ମତି । ତୋର ଚରଣ ନ ଭଜନ୍ତି ॥
ପଡ଼ନ୍ତି ଅନ୍ଧ ଗୃହ କୂପେ । ପଶୁ ଯେସନ ତୃଣ ସୁଖେ ॥
ଶୁଣହୋ ମଦନ ଗୋପାଳ । ନିଷ୍ୟନ୍ଦେ ଗଲା ମୋର କାଳ ॥
ରାଜ ସମ୍ପଦେ ଭୋଳ ହୋଇ । ଆତ୍ମାର ଗତି ନ ଜାଣଇ ॥
ଦେହାଭିମାନ ବୁଦ୍ଧିବଳେ । ସୁତ କଳତ୍ର ମୋହ ଜାଳେ ॥
ଦୁରିତ ଚିନ୍ତା ପଥେ ସଜ । ତୋତେ ନ ଭଜେ ଦେବରାଜ
ମୃତ୍ତିକା ଘଟ ମଧ୍ୟେ ଥାଇ । ବୋଲଇ ନର ଦେହ ମୁହିଁ ॥
ରଥ କୁଞ୍ଜର ଅଶ୍ୱ ଯୂଥେ । ପାଦାନ୍ତି ବଳ ଅପ୍ରମିତେ ॥
ଖେଳଇ ଯେ ମହୀମଣ୍ଡଳେ । ତୋତେ ନ ଜାଣି ମତି ଭଳେ
ଦୁମଦ ପ୍ରାୟେ ଯେ ସଂସାରେ । ପଶି ଗହନ ଚିନ୍ତା ଘୋରେ ॥
ବିଷୟ ସୁଖେ ଲୋଭ ବଢ଼ି । ତୋ ପାଦପଦ୍ମ ଚିନ୍ତା ଛାଡ଼ି ॥
ପଡ଼ନ୍ତି ତୋର ମାୟା ବଳେ । ତୁ ତାହା ନାଶୁ ଅବହେଳେ ॥
ଗ୍ରାସଇ ତୋର କାଳରୂପ । ଇନ୍ଦୁରେ ଯେହ୍ନେ କାଳସର୍ପ ॥
ଆପେ ସୁବର୍ଣ୍ଣମୟେ ରଥେ । ଗୁଞ୍ଜର କନ୍ଧେ ନାନା ପଥେ ॥
ନରଦେବତା ନାମ ବହି । ଭ୍ରମଇ ମଦେ ଭୋଳ ହୋଇ ॥
ସେ ଦେହ ତାର ଅନ୍ତ କାଳ । କରଇ ଭସ୍ମ ହିଂ କବଳ ॥
ଶୁଣ ପୁରୁଷ ଚୂଡ଼ାମଣି । ମୋର ଅଶେଷ ଜନ୍ମବାଣୀ ॥
ସଂଗ୍ରାମେ ଦଶ ଦିଗ ବାହି । ଅଦ୍ଭୁତ ବିଗ୍ରହ ବୋଲାଇ ॥
ଉତ୍ତମ ସିଂହାସନେ ପୂଜା । ଶିରେ ନମନ୍ତି ସବୁରାଜା ॥
ଯେମନ୍ତେ ପ୍ରାଣୀଙ୍କି ଉଧାରି । ନାରୀଙ୍କି କ୍ରୀଡ଼ା ମାତ୍ର କରି ॥
ମୈଥୁନ ସୁଖେ ଗୃହମଧ୍ୟେ । କ୍ରୀଡ଼ା କଉତୁକ ଆନନ୍ଦେ ॥
ନିବୃତ୍ତି ସୁଖ ମହାଶ୍ରମେ । ତପ ଆରାଧି ନାନା କର୍ମେ ॥
ଦେବତା ବରଦାନ କାଳେ । ପୁଣ ମାଗଇ ସୁଖଭୋଳେ ॥
କହଇ ସୁଖ ଭୋଗ ଦୀକ୍ଷା । ପରମ ସୁଖେ ନାହିଁ ବାଞ୍ଛା ॥
ଜନ୍ମମରଣ ବେନି ପଥେ । ଯେ ପ୍ରାଣୀ ଭ୍ରମୁଥାଇ ନିତ୍ୟେ ॥
ତାହାର ଯେବେ ଭାଗ୍ୟଥାଇ । ସାଧୁ ସଙ୍ଗତେ ସେ ମିଳଇ ॥
ସତ୍‌ସଙ୍ଗେ ହୋଇ ପାପନାଶ । ନିର୍ମଳ ପ୍ରକାଶଇ ଯଶ ॥
ପରମବ୍ରହ୍ମ ତୋର ପାଦେ । ଯେ ପ୍ରାଣୀ ଭଜନ୍ତି ଆନନ୍ଦେ ॥
ତୋ ରୂପେ ଶୁଣେ ଦେଇ ମତି । ତୁଟଇ ଉଦ୍‌ଭୟ ଭ୍ରାନ୍ତି ॥
ଭୋନାଥ ଜାଣିଲି ମୁଁ ତୋତେ । ତୋହର ଅନୁଗ୍ରହ ମୋତେ ॥
ରାଜ ସମ୍ପଦ ବନ୍ଧ ଫାଶ । ଯେବେ ହୋଇଲା ମୋର ନାଶ
ଅଖଣ୍ଡ ଅବନୀ ମଣ୍ଡଳେ । ଅଶେଷ ଭୋଗ ମହୀତଳେ ॥
ଛାଡ଼ି ଭଜନ୍ତି ତୋ ଚରଣେ । ଯେକା ବୁଲନ୍ତି ବଣେ ବଣେ ॥

ଅଶେଷ ଘୋର ତପ କରି । ଯାହା ଭଜନ୍ତି ବ୍ରହ୍ମଚାରୀ ॥
ଭୋ ନାଥ ପରମ ମଙ୍ଗଳ । ଅନାଦି ଧର୍ମ ଆଦିମୂଳ ॥
ତୋହର ଅଭୟ ଚରଣ । ନିତ୍ୟେ ସେବିବି ନାରାୟଣ ॥
ଯେ ବର ଦିଅ ମତେ ତୁହି । ଆନ ସମ୍ପଦେ କାର୍ଯ୍ୟ ନାହିଁ ॥
ଭୋ ନାଥ କଇବଲ୍ୟ ଦାତା । ଅନାଥ ଜନ ପିତାମାତା ॥
ତୋହର ଦରଶନ ପାଇ । ଆତ୍ମାର ବଦ୍ଧ ଯେ ମାଗଇ ॥
ତାହାରେ ବୋଲି ଅପଣ୍ଡିତ । ତୋହ ମାୟାରେ ଜ୍ଞାନ ହତ
ଭୋ ନାଥ ଜଗତ ଈଶ୍ୱର । ତୁ ଯେ ଯାଚିଲୁ ମତେ ବର ॥
ତ୍ରିଗୁଣ ବନ୍ଧ ମୋହ ପାଶ । ସେ ବରେ ନାହିଁ ମୋର ଆଶ
ନିର୍ଗୁଣ ନିରଞ୍ଜନ ପର । କେବଳ ଆତ୍ମାଜ୍ଞାନ ସାର ॥
ଯେମନ୍ତ ପୁରୁଷର ପାଦେ । ଶରଣ ଗଲି ଅପ୍ରମାଦେ ॥
ଯେ ଭବସିନ୍ଧୁ ମଧ୍ୟେ ମୁହିଁ । ଅଶେଷ ଜନ୍ମ ଦୁଃଖ ପାଇ ॥
ବାସନା ବଳେ କରି ପାପ । ସୁମରି ପଛେ ଅନୁତାପ ॥
ସେ ପାପେ ପୀଡ଼ିତ ଜୀବନ । ଭ୍ରମଇ ଦୁଃଖ ପଥେ ଶ୍ରମ ॥
ଛଡ଼ ଅରରି ସଂଗେ ଭ୍ରମି । ନିରାଶ ପଥେ ମହାଶ୍ରମୀ ॥
ତୃଷିତେ ଜଳପାନ ଚିନ୍ତି । କେବେହେଁ ନୋହେ ଆତ୍ମାଶାନ୍ତି ॥
ସେ ଜଳ ତୋହ ପାଦେ ଥାଇ । ସେ ଶ୍ରମ ତାପ ନିବାରଇ ॥
ଅଭୟ ସତ ସୁଖ ଘର । ଭୋ ନାଥ ଶରଣ ତୋହର ॥
ଆପଦ କାଳେ ସୁଖ ଦେଇ । ସେ ପାଦ କରୁ ମତେ ତ୍ରାହି ॥

## ଶ୍ରୀ ଭଗବାନ ଉବାଚ

ଯେମନ୍ତେ ରାଜା ବାକ୍ୟ ଶୁଣି । କୃଷ୍ଣ କହନ୍ତି ମୃଦୁବାଣୀ ॥
ଭୋ ମହାଭାଗ ଚକ୍ରବର୍ତ୍ତୀ । ନିର୍ମଳ ନିଶ୍ଚଳ ତୋ ମତି ॥
ବରେ ମୋହିଲି ତୋହ ଚିତ୍ତ । ଲୋଭେ ନୋହିଲା ଅବିଭୂତ ॥
ଯେମନ୍ତ ବୁଦ୍ଧି ଯେବେ ତୋର । ନିଶ୍ଚେ ତରିବୁ ତମ ଘୋର ॥
ଭଗତ ଜନଙ୍କର ଚିତ୍ତ । ସମ୍ପଦେ ନୋହେ ମୋହଗତ ॥
ଅଷ୍ଟାଙ୍ଗଯୋଗ ଲୟେ କରି । ମନ ସଂଯୋଗେ ବ୍ରହ୍ମଚାରୀ ॥
ମୋର ଭଗତି ନ ଜାଣନ୍ତି । ତାହାଙ୍କ ଚିତ୍ତେ କାହିଁ ଶାନ୍ତି ॥
କର୍ମ ବାସନା ରଜ୍ଜୁ ବନ୍ଧେ । ଭବେ ଭ୍ରମନ୍ତି ଯେହ୍ନେ ଅନ୍ଧେ ॥
ମୋହର ପାଦେ ଚିତ୍ତ ଦେଇ । ଯେବେ ତୁ ସୁଖେ ଭ୍ରମ ମହୀ ॥
ନିଶ୍ଚଳ ହୋଉ ଅପ୍ରମାଦେ । ତୋହ ଭଗତି ମୋର ପଦେ ॥
ହେଉ ବୋଇଲେ ଚକ୍ରପାଣି । ଯେବେ ହୋ ଶୁଣ ନୃପମଣି ॥
କ୍ଷତ୍ରିୟ ଧର୍ମେ ହୋଇ ଜାତ । ଜୀବ ମାରିଲୁ ଅପ୍ରମିତ ॥
ମୃଗୟା କରି ମାଂସ ଖାଇ । ଯେ ଜନ୍ମେ ତୋହ ଗତି ନାହିଁ ॥
ମୋହର ପଦେ ଆଶ୍ରା କର । ସାଧ ତୁ ତପ ମହାଘୋର ॥

ତେବେ ହୋଇବ ପାପ କ୍ଷୟେ । ଭେଦିବୁ ବ୍ରହ୍ମଲୋକ ଯାଏ ॥
ପାପର ଅନ୍ତେ ଏ ସଂସାରେ । ଜନ୍ମିବୁ ବ୍ରାହ୍ମଣୀ ଓଦରେ ॥
ସୁହୃଦେ ଥାଇ ସର୍ବ ଭୂତେ । ତୁ ମୋତେ ଚିନ୍ତିବୁ ଜଗତେ ॥
ତେବେ ପାଇବୁ ମୋ ଚରଣ । ହସି ବୋଲନ୍ତି ନାରାୟଣ ॥
ସେ ନାରାୟଣ ପାଦଗତେ । ନିମଇ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ କାଳଯବନ ବିନାଶନେ ମୁଚୁକୁନ୍ଦ ଦର୍ଶନ ପାବନେ ନାମ ପଞ୍ଚାଶତୋଽଧ୍ୟାୟଃ ।*

## ଷଟ୍ ପଞ୍ଚାଶତ୍ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ଶୁଣ ରାୟେ । ଏମନ୍ତ କୃଷ୍ଣ ଅନୁଗ୍ରହେ ॥
ଆନନ୍ଦେ ଶୋକ ଗଦ ଗଦେ । ପ୍ରଣାମ କଲା କୃଷ୍ଣ ପାଦେ ॥
ଶିରେ ନିବେଶି ପଦ୍ମପାଦ । ବାହାର ହୋଇ ମୁଚୁକୁନ୍ଦ ॥
ଦେଖିଲା ସ୍ଥାବର ଜଙ୍ଗମ । ଦୁର୍ଗମ ବନ ଗିରି ଗ୍ରାମ ॥
ପଶୁଙ୍କୁ ଚାହିଁ ବିଚାରଇ । ଏମନ୍ତ ଦେଖିଲା ତ ନାହିଁ ॥
ଅଳପ ପ୍ରାୟେତ ଦିଶନ୍ତି । ଏମନ୍ତ କଲା ମନେ ଭ୍ରାନ୍ତି ॥
ପୁଣି କ୍ଷଣକେ ଅନୁରାଗ । କି ଯେ ହୋଇଲା କଳିଯୁଗ ॥
ନିଦ୍ରାରେ ତିନିଯୁଗ ଗଲା । ଏମନ୍ତ ବୋଲି ଓହ୍ଲାଇଲା ॥
ଉତ୍ତର ଦିଗେ ନୃପବର । ଗଲା ଅନେକ ପଥ ଦୂର ॥
ସର୍ବ ସଂଶୟ ସଙ୍ଗ ଛାଡ଼ି । ତପ ସାଧନେ ଚିତ୍ତବାଡ଼ି ॥
ସମାଦି କରି କୃଷ୍ଣ ପାଦେ । ମନ ନିବେଶି ଅପ୍ରମାଦେ ॥
ଗନ୍ଧମାଦନ ମଧ୍ୟେ ଗଲା । ବଦ୍ରିକା ଆଶ୍ରମେ ମିଳିଲା ॥
ନର ନାରାୟଣ ଆଶ୍ରମ । ସୁଖ ପବିତ୍ର ପୁଣ୍ୟଧାମ ॥
ସମାଦି ବଳେ ତପକରି । ମନ ପବନ ହୃଦେ ଧରି ॥
ସକଳ ଦୁଃଖେ ଦେହ ସହି । ସମଦରଶୀ ଶୁଦ୍ଧ ଦେହୀ ॥
ହରି ଆରାଧି ଯୋଗ ବଳେ । ବସିଲା ଆସନ ନିଶ୍ଚଳେ ॥
ଏବେ ହୋ ଶୁଣ ନୃପବର । ମାୟା ମନୁଷ ଚକ୍ରଧର ॥
କପଟେ ମରାଇ ଯବନ । ମିଳିଲେ ମଥୁରା ଭୁବନ ॥
ଯବନ ବଳେ ତିନି କୋଟି । ମଥୁରାପୁର ଥିଲେ ଘୋଟି ॥
ତାହାଙ୍କୁ ମାରି ଭଗବାନ । ଯୁଦ୍ଧେ ପାଇଲେ ଯେତେ ଧନ ॥
ଗୋରୁ ମଇଁଷି ବନମାଳୀ । ଧନ ଦ୍ୱାରକା ପୁରେ ଚାଳି ॥
ବିଚାରି କାର୍ଯ୍ୟ ଅନୁବନ୍ଧ । ଆସି ମିଳିଲା ଜାରାସନ୍ଧ ॥
ତେଇଶି ଅକ୍ଷୌହିଣୀ ବଳ । ଶୁଭଇ ମୁଖ ରାବ ଗୋଳ ॥
ସନ୍ୟର ଦେଖି ବ୍ୟଗ୍ର ଗତି । ଭାଳନ୍ତି ରାମ ଯଦୁପତି ॥
ଚାଲ ଯେ ନଗରେ ନଥିବା । ପଳାଇ ପର୍ବତେ ଲୁଚିବା ॥
ମନରେ ଚେଷ୍ଟା ଆଶ୍ରେକରି । ଛାଡ଼ି ମଥୁରା ପୁର ଶିରୀ ॥
ଅଭୟଦାତା ଭୟ ପାଇ । ପାଦେ ପଳାନ୍ତି ବେନି ଭାଇ ॥
ଆକ୍ରୋଷି ଅନେକ ଯୋଜନ । ପଶିଲେ ଗହନ କାନନ ॥
ଭାଙ୍ଗିଲା ଦେଖି କୃଷ୍ଣ ରାମ । ପଛେ ଧାମନ୍ତି ଜରା ସନ୍ୟ ॥
ରଥକୁ ତାର ଘେନି ସଙ୍ଗେ । ପଥେ ହସଇ ନାନା ରଙ୍ଗେ ॥
ଆଜ କିଣିମା କରି ରଣ । ନ ଜାଣି ଈଶ୍ୱର ପ୍ରମାଣ ॥
ବନେ ଅନେକ ଦୂର ଯାଇ । ଶ୍ରମ ତାହାଙ୍କୁ ନ ଲାଗଇ ॥
ଏକ ଆରକେ ଧରି କରେ । ଉଠିଲେ ପର୍ବତ ଶିଖରେ ॥
ନିତ୍ୟେ ବରଷେ ସୁନାସୀର । ପ୍ରବରଷଣ ନାମ ତାର ॥
ଉଠନ୍ତେ ପର୍ବତ ଉପରେ । ରାଜା ଦେଖିଲା ତାହା ଦୂରେ ॥
ଅଧିକ ଭେଡ଼ାୟେ ନ ଗଲା । ପର୍ବତ ବେଢ଼ରେ ବୋଇଲା ॥
ବେଢ଼ି ପର୍ବତ ଚାରି ଦିଗେ । ଅନଳ ଲଗାଇଲା ବେଗେ ॥
ଦହନ କରି ଗିରି ବର । ଜାଣିଲା ରିପୁ ଗଲା ମୋର ॥
ଅନଳ ଯୋଗେ ମହୀଧର । ତାପିଲା ଅତି ପର ଖର ॥
ତକ୍ଷଣେ ରାମ ନରହରି । ଗଗନ ଗତି ଅନୁସରି ॥
ପର୍ବତ ଶୃଙ୍ଗ ଅତି ତୀଖ । ଉଚେ ଯୋଜନ ଏକାଦଶ ॥
ରାମ ଗୋବିନ୍ଦ ବାହୁ ବଳେ । ଡେଇଁ ପଡ଼ିଲେ ଭୂମି ତଳେ ॥
ବଳ ସହିତେ ଜାରା ଥିଲା । ରାମ ଗୋବିନ୍ଦ ନ ଦେଖିଲା ॥
ଲୁଚି ପଳାଇ ବେନି ଭାଇ । ମିଳିଲେ ନିଜ ପୁରେ ଯାଇ ॥
ଜଳଧି ପାରୁଶେ ଯା ଘର । ଦେବ ମାନବେ ଅଗୋଚର ॥
ମିଛକୁ ସତ ପ୍ରାୟେ ମଣି । ମନ ଆନନ୍ଦେ ନୃପମଣି ॥
ବୋଲଇ ନିଜ ସନ୍ୟ ଚାହିଁ । ପର୍ବତେ ମଲେ ବେନିଭାଇ ॥
ଭସ୍ମ ହୋଇଲେ ଅଗ୍ନିଯୋଗେ । ଚାଲ ବାହୁଡ଼ି ଯିବା ବେଗେ ॥
ବନ ଆକ୍ରୋଷି ମହାବଳୀ । ନିଜ ଭୁବନେ ଯାଇ ମିଳି ॥
ସଂଗ୍ରାମ ଜିଣି ଜୟବାଦ୍ୟ । ବଜାଇ ହୋଇଲେ ଆନନ୍ଦ ॥
ଏବେ ହେ ଶୁଣ ନରନାଥ । ଆନର୍ତ୍ତ ପତି ରଇବତ ॥
ରେବତୀ ନାମେ କନ୍ୟା ଥିଲା । ବଳରାମଙ୍କୁ ବିଭା ଦେଲା ॥
ବ୍ରହ୍ମା ବଚନେ ଦେଲା ଆଣି । ନବମ ସ୍କନ୍ଧେ ଅଛୁ ଶୁଣି ॥
ଭୀଷ୍ମକ ନାମେ ମହାରାଜା । ରୁକ୍ମିଣୀ ତାହାର ତନୁଜା ॥
ଅଂଶେ କମଳା ଅବତାର । କୁଣ୍ଡୀ ନଗ୍ରରେ ନୃପବର ॥
ରୁକ୍ମିଣୀ ବିଭାର ବେଭାର । ହରି ହରିଲେ ସୟମ୍ବରେ ॥

ରାଜା ଏ ଥିଲେ ଯେ ପ୍ରତକ୍ଷେ । ଆବୋରି ଶୁଶୁପାଳ ପକ୍ଷେ ॥
ଶାଲ୍ୱ ମାଗଧ ଆଦି ଯେତେ । ବଳଯେ ଥିଲେ ଅପ୍ରମିତେ ॥
ତାହାଙ୍କ ଗର୍ବ କଲେ ଚୂର । ପଥେ ଦେଖିଲେ ସୁର ନର ॥
ଅମୃତ ଯେହ୍ନେ ଖଗେଶ୍ୱର । କନ୍ୟା ହରିଲେ ଦାମୋଦର ॥
ଗମିଲେ ରୁକ୍ମିଣୀକୁ ଘେନି । ରଖନ୍ତା ନୋହିଲେ ସଜନୀ ॥

## ରାଜା ଉବାଚ

ତା ଶୁଣି ଅଭିମନ୍ୟୁ ବଳା । ଶୁକ ମୁନିଙ୍କି ପଚାରିଲା ॥
ଭୋ ମୁନି ଭୀଷ୍ମକ ନନ୍ଦନୀ । ରୁକ୍ମିଣୀ ରୁଚିର ବଦନୀ ॥
କେମନ୍ତେ ପ୍ରଭୁ ନରହରି । ରାକ୍ଷସ ମଧ୍ୟେ ବିଭା କରି ॥
ଶୁଣି ଚକିତ ମୋର ଚିତ୍ତ । ଦଇତ ବଳ ଅପ୍ରମିତ ॥
କେମନ୍ତେ ଶିଶୁପାଳ ଆଦି । ପଥେ ତାହାଙ୍କ ବଳ ଛେଦି ॥
ଏକଇ ରଥେ ଚକ୍ରପାଣି । କେମନ୍ତେ ହରିଲେ ରୁକ୍ମିଣୀ ॥
ଏ କଥା କହ ମୋର ଆଗେ । ମୁଁ ପୁଚ୍ଛେ ତୁମ୍ଭ ପାଦଯୁଗେ ॥
କୃଷ୍ଣର କଥା ପୁଣ୍ୟମୟ । କର୍ଣ୍ଣ ଲୋଚନେ ସୁଧା ପ୍ରାୟ ॥
ଅଖିଳ ଜନ ପାପ ନାଶେ । ପରମ ବ୍ରହ୍ମ ପରକାଶେ ॥
କାହାର ଚିତ୍ତ ଶୁଣି ହୋଇ । ସନ୍ତୋଷ ନୋହିବ ଉତ୍ସାହୀ ॥
ନବୀନ ବସ୍ତ୍ର ପାଇ ଯେହ୍ନେ । ଆଦରେ ଆବୋରନ୍ତି ଜନେ ॥
କୃଷ୍ଣ ଚରିତ ସେହି ମତ । ଭୋ ମୁନି କହ ଭାଗବତ ॥
ଶୁଣି ସନ୍ତୋଷ ମନ ହୋଇ । ମୁନି କହନ୍ତି ରାଜା ଚାହିଁ ॥

## ଶ୍ରୀ ଶୁକ ଉବାଚ

ଭୀଷ୍ମକ ନାମେ ମହୀନାଥ । ବିଦର୍ଭ ନଗରେ ସମ୍ଭୂତ ॥
ତାହାର ତହୁଁ ଭୀମ ଜାତ । ଏକ ଦୋହିତା ପାଞ୍ଚ ସୁତ ॥
ରୁକ୍ମଣ ଅଗ୍ର ରୁକ୍ମରଥ । ଏ ବେନି ବଳେ ଅପ୍ରମିତ ॥
ପୁଣ ହୋଇଲା ରୁକ୍ମ ବାହୁ । ତାର ପ୍ରତାପ କେହ୍ନୁ କହୁ ॥
ଚତୁର୍ଥ ପୁତ୍ର ରୁକ୍ମକେଶ । ପଞ୍ଚମେ ରୁକ୍ମିଣୀ ବିଶେଷ ॥
ଯେହାଙ୍କ ଶେଷ କନ୍ୟା ଜାତ । ସୁସାଧୁ କମଳା ସମ୍ଭୂତ ॥
ରୁକ୍ମିଣୀ ନାମେ ବିଦ୍ୟମାନ । ଯାହା ରମିବେ ଭଗବାନ ॥
ଦ୍ୱାରକାପୁର ଲୋକ ଆସି । କହନ୍ତି ତାର ଆଗେ ବସି ॥
କୃଷ୍ଣର ଗୁଣ କର୍ମବାଣୀ । ଗୃହେ ଆଗତ ମୁଖୁଁ ଶୁଣି ॥
ନିରତେ କୃଷ୍ଣ କଥା ଶୁଣି । ରୁକ୍ମଣୀ ମନେ ମନେ ଗୁଣି ॥
ଆତ୍ମା ସାଦୃଶେ ଶୁଣି ବର । ମନେ ବରିଲା ଚକ୍ରଧର ॥
ଗୋବିନ୍ଦ ତାହା ମନେ ଜାଣି । ସଂକଳ୍ପେ ବରିଲେ ରୁକ୍ମିଣୀ ॥
ଆତ୍ମା ସାଦୃଶେ ବର ବରି । ଅଂଶେ କମଳା ଦେହ ଧରି ॥
ବନ୍ଧୁ ବାନ୍ଧବଙ୍କର ମତେ । ଦୁହିତା ବିବାହ ଉଚିତେ ॥
ଭୀଷ୍ମକ କୃଷ୍ଣକୁ ବରିଲା । ଶୁଣି ରୁକ୍ମଣ କୋପ କଲା ॥
ଅନେକ ନିନ୍ଦା ବାକ୍ୟ କରି । ଶିଶୁପାଳକୁ ଗଲା ବରି ॥
ଶିଶୁପାଳକୁ ଦେବା ଶୁଣି । ଚକିତେ ଭାଳଇ ରୁକ୍ମିଣୀ ॥
ବିକଳ ଚିତ୍ତେ ବିଚାରିଲା । ବୃଦ୍ଧ ବ୍ରାହ୍ମଣ ହକାରିଲା ॥
ବିଶ୍ୱାସ ବାକ୍ୟ ତାଙ୍କୁ କହି । ଚରଣେ ବେନି କର ଦେଇ ॥
ବୋଲଇ ଶୁଣ ଦ୍ୱିଜ ମଣି । ଦ୍ୱାରକା ଯାଅ ଏହିକ୍ଷଣି ॥
ଯେବେ ଆଣିବୁ ଚକ୍ରଧର । ତେବେ ସେ ଜୀବନ ମୋହର
ଅଧିକ କହିବଇଁ କେତେ । କୃଷ୍ଣ ଜାଣନ୍ତି ଏହା ଚିତ୍ତେ ॥
କନ୍ୟା ବଚନେ ବିପ୍ର ଗଲା । ଦ୍ୱାରକା ଭୁବନେ ମିଳିଲା ॥
ଦ୍ୱାରେ ଯେ ଦ୍ୱାରପାଳ ଥିଲା । କୃଷ୍ଣଙ୍କୁ ନେଇ ଭେଟାଇଲା ॥
ସୁବର୍ଣ୍ଣ ସିଂହାସନେ ହରି । ଯାଦବେ ଅଛନ୍ତି ଆବୋରି ॥
ଖଟନ୍ତି ଦଶଦିଗ ପାଳେ । ବିପ୍ର ଦେଖିଲା ଚର୍ମ ଡୋଳେ ॥
ଭକ୍ତ ବତ୍ସଳ ନରହରି । ବୃଦ୍ଧ ବ୍ରାହ୍ମଣ କର ଧରି ॥
ନେଇ ଆସନେ ବସାଇଲେ । ଅନେକ ମତେ ପୂଜା କଲେ ॥
ବିଷ୍ଣୁଙ୍କୁ ଯେହ୍ନେ ଦେବଗଣ । ବିଶ୍ୱାସେ ପୂଜନ୍ତି ଚରଣ ॥
କୃଷ୍ଣ ପୂଜିଲେ ସେହି ମତେ । ଶୁଣ ରାଜନ ଏକ ଚିତ୍ତେ ॥
ବିପ୍ରଙ୍କୁ କରାଇ ଭୋଜନ । ପାଶେ ବସିଲେ ଜନାର୍ଦ୍ଦନ ॥
ବିଶ୍ରାମ ଦେଖି ନର ହରି । ବିପ୍ର ଚରଣ କରେ ଧରି ॥
ପାଦ ଚାପନ୍ତି ଭଗବାନ । ବିପ୍ର ଚରଣୁ ଗଲା ଶ୍ରମ ॥
ଆସନେ ବସାଇ ବ୍ରାହ୍ମଣ । ପୁଚ୍ଛନ୍ତି କମଳା ରମଣ ॥
ଭୋ ବିପ୍ରବର ତୋର ଧର୍ମେ । ବେଦ ଉଚିତ କାର୍ଯ୍ୟ କର୍ମେ ॥
ସେ କର୍ମେ ବଞ୍ଚିଟିକି ସୁଖେ । ସନ୍ତୋଷ ଚିତ୍ତେ ଗୃହ ଦୁଃଖେ ॥
ଧର୍ମେ ପ୍ରାପତ ଯେତେ ଧନ । ତେଣେ ସନ୍ତୋଷ ଯାର ମନ ॥
ଦୁଃଖେ ହେଁ ନ ଛାଡ଼ଇ ଧର୍ମ । ସେ ଧର୍ମ ବିପ୍ରକାମ୍ୟ କର୍ମ ॥
ଅଖିଳ କାମ୍ୟ ଫଳ ଦେଇ । ଯେ ବିପ୍ର ସ୍ୱଧର୍ମରେ ଥାଇ ॥
ବହୁତ ଥାଇ ଯାର ଧନ । ହେଳା କରଇ ନିଜ କର୍ମ ॥
ନିରତେ ଚିତ୍ତ ଅସନ୍ତୋଷ । ତାହାର ଲୋକେ ନାହିଁ ଯଶ ॥
ଦରିଦ୍ର ପଣେ ଦୁଃଖ ସହି । ନିଜ ଧର୍ମକୁ ନ ଛାଡ଼ଇ ॥
ସେ ବିପ୍ରବର ମୋର ସଙ୍ଗ । ତରଇ ସଂସାର ତରଙ୍ଗ ॥
ସ୍ୱଧର୍ମ ଭାବେ ଯେ ସନ୍ତୋଷ । ଅଧର୍ମେ ନ କରନ୍ତି ଆଶ ॥
ସାଧୁ ସ୍ୱଭାବ ତାଙ୍କ ମତେ । ସୁହୃଦ ହୋଇ ସର୍ବଭୂତେ ॥
ହୃଦେ ନ ବହେ ଅଳଙ୍କାର । ସମଦରଶୀ ଚିତ୍ତ ଯାର ॥
ତାହାକୁ ମୋର ନମସ୍କାର । ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର ॥
ଭୋ ବିପ୍ର କୁଶଳ ତୁମ୍ଭର । କହ କଲ୍ୟାଣ କ୍ଷମା ସାର ॥

ରାଜାଏ ବସନ୍ତି ଜଗତେ । ପ୍ରଜା ପାଳନେ ଧର୍ମ ଚିତ୍ତେ ॥
ଯାହାର ରାଜ୍ୟେ ପ୍ରଜାଜନ । ସୁଖେ ବଞ୍ଚନ୍ତି ରାତ୍ରଦିନ ॥
ସେ ରାଜା ମୋର ବଡ଼ ପ୍ରିୟ । ଭୋ ବିପ୍ର ଆଗମନ କହ ।
କେବଣ କାର୍ଯ୍ୟେ ଉପଗତ । ଏଡ଼େ ଦୁର୍ଗମ ଜିଣିପଥ ॥
ଗୁପତ ନୋହେ ଯେବେ ବାଣୀ । ଭୋ ବିପ୍ର କହ ଏହିକ୍ଷଣି ॥
ମୁଁ ଅବା କି କହିବି ତୋତେ । ସଂଶୟ ଛାଡ଼ି କହ ମୋତେ ॥
ଯେମନ୍ତେ କୃଷ୍ଣ ବୋଲ ଶୁଣି । ବ୍ରାହ୍ମଣ କହେ ସାଧୁବାଣୀ ॥
ରୁକ୍ମିଣୀ କହିଛନ୍ତି ଯାହା । ଭୋ ନାଥ ଶୁଣ ଚଉବାହା ॥
ହେ କୃଷ୍ଣ ଭୁବନ ସୁନ୍ଦର । ଶୁଣିଲି ଗୁଣ କର୍ମ ତୋର ॥
ତୋହର ଗୁଣ କର୍ମ ଯଶ । ଯାହାର ଶ୍ରବଣେ ପ୍ରବେଶ ॥
ହରଇ କୋଟି ଜନ୍ମ ପାପ । ଅଧ୍ୟାତ୍ମ ଆଦି ତିନି ତାପ ॥
ଚକ୍ଷୁ ବହନ୍ତି ଯେତେ ପ୍ରାଣୀ । ତୋହର ରୂପ ପରିମାଣି ॥
ଅଖିଳ ଅର୍ଥ ଭାବ ବଳେ । ଲଭନ୍ତି ଦେଖି ଚର୍ମ ଡୋଳେ ॥
ସେ ରୂପ କର୍ଣ୍ଣ ପଥେ ଶୁଣି । ମୋହର ଚିତ୍ତ ଚକ୍ରପାଣି ॥
ଲାଜ ଉପେକ୍ଷି ତୋ ଶରଣ । ପଶିଲି ଅଭୟ ଚରଣ ॥
କେଉଁ ଯୁବତୀ ଦେହ ବହି । ଉତ୍ତମ କୁଳେ ଜନ୍ମହୋଇ ॥
ଶୀଳ ସ୍ୱରୂପ ବିଦ୍ୟା କୁଳ । ଦ୍ରବିଣ ଆତ୍ମା ଯଥା ତୁଲ ॥
ସୁଧୀର ସାଧୁ କୁଳବତୀ । ତୋହର ପ୍ରାୟେ ଥାଉ ପତି ॥
ବିବାହ କାଳେ କନ୍ୟା ହୋଇ । ପିତା ଜନନୀ କୋଳେ ଥାଇ ॥
ହେ ନରସିଂହ ପୂର୍ଣ୍ଣ କାମ । ନର ଲୋଚନ ଅଭିରାମ ॥
ଶ୍ରବଣେ ଶୁଣି ତୋର ଭାବ । ସେ କିମ୍ବା ଅନ୍ୟକୁ ବରିବ ॥
ଏବେ ବରିଲି ତୋତେ ମୁହିଁ । ମନ ଜୀବନ ତନୁ ଦେଇ ॥
ତୋହର ଅର୍ଥେ ମୋ ଶରୀର । ବିଚାରି ମୋତେ ତ୍ରାହି କର ॥
ତୁ ନାଥ ବୀରଙ୍କର ବୀର । ମୁଁ ତୋ ଆଶିଷ ଉପହାର ॥
ନିକଟେ ଶିଶୁପାଳ ଆସି । ନଉଣୁ ତୋର ବଳି ଗ୍ରାସି ॥
ସିଂହର ବଳି ତଳେ ଚାହିଁ । ଶୃଗାଳ ଯେସନେ ଧାମଇଁ ॥
ମୁଁ ଯେବେ ପୂର୍ବ ଜନ୍ମେ ତୋତେ । ତପ ଆରାଧି ନାନା ମତେ
ଗୁରୁ ଦେବତା ବିପ୍ର ପୂଜି । ନିରତେ ବିଷ୍ଣୁ ପାଦେ ଭଜି ॥
ଏ ଯେବେ ପ୍ରମାଣ ମୋହର । ବେଗେ ଆସିବ ଚକ୍ରଧର ॥
ମୋହର ହସ୍ତ ବେଗେ ଧରି । ଦଇବ ଏହି ଯୋଗ କରି ॥
ଦମ ଘୋଷର ପୁତ୍ର ଆଦି । ଯେତେ ଅଛନ୍ତି ଅପରାଧୀ ॥
ଏମାନେ ନ ପାଇବେ ମୋତେ । ପ୍ରମାଣ ଯେବେ ବେଦ ପଥେ
ରାତ୍ର ପାହିଲେ ଅଧିବାସ । ହୋଇବ ମଙ୍ଗଳ ଦିବସ ॥
ତୁ ନାଥ ବସି ନନ୍ଦିଘୋଷେ । ଘେନାଇ ନିଜ ବଳ ପାଶେ ॥
ମଙ୍ଗଳ କାଳେ ଗୋପ୍ୟ ହୋଇ । ଆସିବ ନ ଜାଣିବେ କେହି ॥
ଗୁପତେ ଗ୍ରାମ ମଧ୍ୟେ ଥାଇ । ମୋର ଗମନ ବାଟ ଚାହିଁ ॥
ସଂଗ୍ରାମେ ରାଜା ଶିଶୁପାଳ । ମୋର ପିତାର ଯେତେ ବଳ ॥
ଏହାଙ୍କ ଗର୍ବ ନାଶ କରି । ତୁ ମୋତେ ବଳେ ନିଅ ହରି ॥
ରାକ୍ଷସ ମୁଖରୁ ଉଦ୍ଧର । କିଣିଲା ସେବକୀ ମୁଁ ତୋର ॥
ତୁ ନାଥ ଭାଳୁ ଯେବେ ଚିତ୍ତେ । ମୁଁ ତୋତେ ଆଣିବି କେମନ୍ତେ
ରାଜାର ଅନ୍ତଃପୁରେ ଥାଉ । ତୋତେ ମୁଁ ପାଇବଇଁ କାହୁଁ ॥
ତହିଁକି କହିବି ଉପାୟେ । ଶୁଣିମା ପ୍ରଭୁଦେବ ରାୟେ ॥
ଆମ୍ଭର ଅଛି କୁଳାଚାର । କନ୍ୟାକୁ କରନ୍ତି ବାହାର ॥
ଭବାନୀ ପୂଜା ଅନୁମତେ । ଅମ୍ବିକା ଗୃହ ଗ୍ରାମ ପ୍ରାନ୍ତେ ॥
ପୂଜା ଉତ୍ସବେ ମୁହିଁ ଯିବି । ଭବାନୀ ଚରଣ ପୂଜିବି ॥
ପଥେ ଆସିବା ବେଳେ ମୋତେ । ରାଜାଏ ଦେଖିବେ ସମସ୍ତେ ॥
ଥିବି ମୁଁ ସ୍ତିରୀଙ୍କର ମେଳେ । ସେଠାରୁ ନିଅ ମୋତେ ବଳେ
ଯାହାର ପାଦପଦ୍ମ ଧୂଳି । ମହତ ଜନ ଶିରେ ବୋଳି ॥
ନୀଳ ଲୋହିତ କରେ ଆଶ । ଏଣେ ନୋହିବ ତମ ନାଶ ॥
ସେ ପାଦ ପ୍ରସାଦ ମୁଁ ଏବେ । ଲଭିଣ ନ ପାଇବି ଯେବେ ॥
ବ୍ରତେ ଶୁଖାଇ ପଞ୍ଚ ପ୍ରାଣ । ନିଶ୍ଚେ ଛାଡ଼ିବି ମୋ ପରାଣ ॥
ଏ ସତ୍ୟ ବଚନ ମୋହର । ତୁ କି ନ ଜାଣୁ ଗଦାଧର ॥
ବ୍ରହ୍ମାଣ କୃଷ୍ଣ ମୁଖ ଚାହିଁ । କନ୍ୟା ସନ୍ଦେଶ କଥା କହି ॥
ବୋଲଇ ଯୋଡ଼ି ବେନିକର । ଯେ ତୋର ଇଚ୍ଛା ତାହା କର ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ଧଇଲେ ବିପ୍ରହସ୍ତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ରୁକ୍ମଣୀ ସନ୍ଦେଶ କଥନେ ନାମ ଷଟ୍ ପଞ୍ଚାଶତୋଽଧ୍ୟାୟଃ ।*

## ସପ୍ତ ପଞ୍ଚାଶତ୍ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବିଦର୍ଭ ନନ୍ଦିନୀର ବାଣୀ । ଗୋବିନ୍ଦ ବିପ୍ର ମୁଖୁ ଶୁଣି ॥
ବ୍ରାହ୍ମଣ ହସ୍ତ ବେଗେ ଧରି । ହସି ବୋଲନ୍ତି ନରହରି ॥
ସେ କନ୍ୟା ସର୍ବଗୁଣ ଦେହୀ । ମୋ ବିନୁ ଆନ ନ ଜାଣଇ ॥
ମୋହୋର ମନ ସେହି ମତ । ରାତ୍ରେ ନୋହଇ ନିଦ୍ରାଗତ ॥
ଜାଣଇ ତାର ଜ୍ୟେଷ୍ଠ ଭାଇ । ମୋର ବିଭାରେ ରିପୁ ହୋଇ ॥
ଅନେକ ନିନ୍ଦା ମୋତେ କଲା । ଶିଶୁପାଳକୁ ସେ ବରିଲା ॥

ମୁଁ ଯେ ଆଣିବି ତାହା ହରି । ସଂଗ୍ରାମେ ରିପୁ ବଳ ମାରି ॥
ସେ କନ୍ୟା ଆନନ୍ଦିତ ଦେହୀ । ଅନଳ ଶିକ୍ଷା ପ୍ରାୟେ ହୋଇ ॥
ମୋହର ପଦେ ଧ୍ୟାନ କରି । ହୃଦୟେ ଅଛି ମୋତେ ବରି ॥
ଯେମନ୍ତ ବିଚାରି ଗୋପାଳ । ଜାଣିଲେ ବିଭା ଲଗ୍ନ ବେଳ ॥
ଦାରୁକି ରାଇ ଦାମୋଦର । ବୋଇଲେ ରଥ ସଜ କର ॥
ଶୁଣି ଦାରୁକ ଯାଇ ବେଗେ । ଅଶ୍ୱ ଯୋଚିଲା ରଥ ଯୁଗେ ॥
ଶୈବ୍ୟ ସୁଗ୍ରୀବ ମେଘ ପୁଷ୍ପ । ଯୋଚିଲା ବଳାହକ ଅଶ୍ୱ ॥
ଗୋବିନ୍ଦ ନିକଟେ ମିଳିଲା । କର ଅଞ୍ଜୋଳି ଶିରେ ଦେଲା
ତକ୍ଷଣେ ବିପ୍ର କର ଧରି । ରଥେ ବସିଲେ ନରହରି ॥
ଦାରୁକ ରଥ ବାହେ ବଳେ । ଶୂନ୍ୟେ ଗମିଲା ରାତ୍ରି କାଳେ ॥
କୁଣ୍ଡି ନଗରେ ଏକ ରାତ୍ରେ । ମିଳିଲେ ଅଳପ ପ୍ରଭାତେ ॥
ଭୀଷ୍ମକ ପୁତ୍ର ବଶ ହୋଇ । ଶିଶୁପାଳକୁ ଦେବା ପାଇଁ ॥
ମଙ୍ଗଳ କାର୍ଯ୍ୟେ ଦେଇ ଚିତ୍ତ । ପୁର ମଣ୍ଡିଲା ନରନାଥ ॥
ମାର୍ଜନ କଲେ ନାନା ପଥେ । ଚନ୍ଦନ ସିଞ୍ଚି ରାଜପଥେ ॥
ଚିତ୍ର ପତାକା ମାନ ଦେଇ । ପଲ୍ଲବ ତୋରଣା ଲମ୍ବାଇ ॥
ଯେମନ୍ତେ ଅଳଙ୍କାର ଭରି । ରାଜ୍ୟରେ ଯେତେ ନର ନାରୀ
ଗନ୍ଧ ଚନ୍ଦନ ପୁଷ୍ପସାର । ବିବିଧ ନାନା ଉପହାର ॥
ନାରୀ ପୁରୁଷେ ସଜ ହୋଇ । ଗୃହେ ଅଗୁରୁ ଧୂପ ଦେଇ ॥
ମଙ୍ଗଳ ସାଧେ ବିପ୍ରଜନ । ରାଜା କରାଇଲା ଭୋଜନ ॥
ଯୁବତୀ ଗଣେ ଗୀତ ଘୋଷ । ଦ୍ୱିଜେ କରନ୍ତି ଅଧିବାସ ॥
ମଙ୍ଗଳ ଗୀତେ ବଧୂ ଜନ । କନ୍ୟାକୁ କରାବନ୍ତି ସ୍ନାନ ॥
କୁଙ୍କୁମ ବସ୍ତ୍ର ଅଳଙ୍କାର । ମଙ୍ଗଳ ସୂତ୍ର ବାନ୍ଧି କର ॥
ଉତ୍ତମ ଅଳଙ୍କାର ଦେଇ । ମଙ୍ଗଳ ନାଦେ ଗୀତ ଗାଇ ॥
ବ୍ରାହ୍ମଣେ ବେଦ ମନ୍ତ୍ରେ ଦୀକ୍ଷା । କନ୍ୟାକୁ କରାଇଲେ ରକ୍ଷା ॥
ଗୋଚର ଗ୍ରହଶାନ୍ତି ଅର୍ଥେ । ଅଥର୍ବ ବେଦ ପୁରୋହିତେ ॥
ହୋମେ କରାଇ ଗ୍ରହଶାନ୍ତି । ଆନନ୍ଦ ମନ ମହୀପତି ॥
ହେମର କ୍ଷତ ବସ୍ତ୍ର ତିଳ । ଗୁଡ଼ ମିଶ୍ରିତ ନାନା ଫଳ ॥
ସୁବର୍ଣ୍ଣ ଶୃଙ୍ଗ ଧେନୁ ଦେଇ । ବିପ୍ରଙ୍କୁ ସନ୍ତୋଷ କରାଇ ॥
ବେଦ ଆଗର ପଥ ଭେଦ । ରାଜା ଜାଣଇ ସର୍ବ ସାଧ ॥
ଯେମନ୍ତେ ରାଜା ଦମଘୋଷ । ଉଚ୍ଛବ କଲା ନିଜ ଦେଶ ॥
ପୁତ୍ରୀର ଶୁଭ ଅର୍ଥେ ରାଜା । ପିତୃ ଦେବତା କଲା ପୂଜା ॥
ମଙ୍ଗଳ ସୂତ୍ର ବାନ୍ଧି ହାଥେ । ବସିଲା ଶିଶୁପାଳ ରଥେ ॥
ମତ୍ତ ଗୁଞ୍ଜର ଅଶ୍ୱ ରଥୀ । ପାଦାନ୍ତି ତୁଲେ ନବ କୋଟି ॥
ଘେନାଇ ଚତୁରଙ୍ଗ ବଳ । ବାଜଇ ବାଦ୍ୟ ସୁମଙ୍ଗଳ ॥

କୁଣ୍ଡି ନଗରେ ବେଗେ ଗଲା । ହରଷେ ଦମଘୋଷ ବଳା ॥
ଭୀଷ୍ମକ ଆସି କିଛି ଦୂର । ପ୍ରବେଶ କଲା ନିଜ ପୁର ॥
ଉତ୍ତମ ଗୃହେ ବାସ ଦେଇ । ପୂଜିଲା ଆସନେ ବସାଇ ॥
ଶିଶୁପାଳର ପକ୍ଷ ହୋଇ । ରାଜାଏ ମିଳୁଛନ୍ତି ଯାଇଁ ॥
ଶାଲ୍ୱ ସହିତେ ମଘନାଥ । ବିକଟ ଦନ୍ତ ବିଦ୍ୟୁରଥ ॥
ପୁଣ୍ଡରିକାଦି ଯେତେ ଥିଲେ । ସହସ୍ର ସଂଖ୍ୟାରେ ମିଳିଲେ ॥
ସ୍ୱଭାବେ କୃଷ୍ଣର ବଇରୀ । ଶିଶୁପାଳର ହିତକାରୀ ॥
ବୋଲନ୍ତି ରାମକୃଷ୍ଣ ଆସି । ଗୁପତେ ସଭା ମଧ୍ୟେ ବସି ॥
ସେ ପୁଣ କନ୍ୟା ଘେନି ଯାନ୍ତି । ଯେମନ୍ତେ ଭାଳି କଲେ ଭ୍ରାନ୍ତି ॥
ମିଳିଲେ ଦଣ୍ଡ ସଜ କରି । ଯୁଦ୍ଧେ ମାରିବା ରାମ ହରି ॥
ଶିଶୁପାଳକୁ କନ୍ୟା ଦେଇ । ଧରଣୀ ମଧ୍ୟେ ଯଶ ଥୋଇ ॥
ଯେମନ୍ତେ ଭାଳି ଦୃଢ଼ କଲେ । ବିଦର୍ଭ ନଗରେ ମିଳିଲେ ॥
ଯେ ଯାହା ଅଙ୍ଗ ବଳ ଘେନି । ଶବଦେ କମ୍ପାଇ ମେଦିନୀ ॥
ଏକଥା ଶୁଣି ବଳରାମ । ବିପକ୍ଷ ନୃପତି ଆଗମ ॥
କୃଷ୍ଣ ଯେ ଗଲେ ଏକା ରଥେ । ନ ପୁଣ ଗୋଳ ହୋଏ ପଥେ
ଯେମନ୍ତେ ମନେ ଶଙ୍କା କରି । ସଜ ହୋଇଲେ ହଳଧାରୀ ॥
ଅନେକ ବଳ ଘେନି ପାଶେ । ଧାଇଁଲେ ଭ୍ରାଥ ସ୍ନେହ ଆଶେ
ଯେମନ୍ତେ ଶୁଣ ନୃପମଣି । ମନରେ ବିଚାରେ ରୁକ୍ମିଣୀ ॥
କୃଷ୍ଣ ଆଗମେ ଆଶ କରି । ଜୀବନ ନ ପାରଇ ଧରି ॥
ନ ଦେଖି ବ୍ରାହ୍ମଣ ଆଗମ । କାତରେ କମ୍ପଇ ନୟନ ॥
କାନ୍ଦଇ ଦଇବ ସୁମରି । ଧରଣୀ ଗତେ ଶିର କରି ॥
ରାତ୍ରି ପାହିଲେ ବିଭାଘର । କିମ୍ପା ନଇଲେ ଚକ୍ରଧର ॥
ବ୍ରାହ୍ମଣ ନଇଲା ମୋହର । କେମନ୍ତେ ଧରିବି ଶରୀର ॥
ସେ ହରି ପୁଣ୍ୟେ ସୁଖ ନିଧି । ମୁଁ ଅବା ପାପୀ ଅପରାଧୀ ॥
ନିନ୍ଦିତ କର୍ମ ଦେଖି ମୋର । କୋପ ବା କଲେ ଦାମୋଦର
ବିବାହ ଅର୍ଥେ ତ ନଇଲେ । ଦଇବ ମୋତେ ମାୟା କଲେ
ଈଶ୍ୱର ସେବା ମୋର ନାହିଁ । କୃଷ୍ଣ ପାଇବି ଅବା କାହିଁ ॥
ମୋ ଠାରେ ବିମୁଖ ଭବାନୀ । ଅନେକ ଅପରାଧ ଘେନି ॥
ଯେମନ୍ତେ କୃଷ୍ଣର ଆଗମେ । ନିଶ୍ଚଳେ ଧ୍ୟାନ କଲା ମନେ ॥
ଅଶ୍ରୁ ପୂରିତ ବେନି ତୋଳେ । ନିରାଶେ ରହିଲା ନିଶ୍ଚଳେ ॥
କୃଷ୍ଣ ଆଗମେ ମନ ଦେଲା । ଯେମନ୍ତେ ଶୁଭ ପ୍ରକାଶିଲା ॥
ସ୍ଫୁରିତ ବାମ ନେତ୍ର ତାର । ଜାନୁ କମ୍ପଇ ଥରଥର ॥
କୃଷ୍ଣ ଆଗମେ ମନ ଦେଲା । ଯେମନ୍ତେ ଶୁଭ ପ୍ରକାଶିଲା ॥
ସ୍ଫୁରିତ ବାମ ନେତ୍ର ତାର । ଜାନୁ କମ୍ପଇ ଥରଥର ॥

କୃଷ୍ଣ ଯେ ଯାଉଥିଲେ ପଥେ । ବ୍ରାହ୍ମଣ ଘେନି ଏକାରଥେ ॥
ବୋଲନ୍ତି ବିପ୍ର ମୁଖ ଚାହିଁ । ରୁକ୍ମିଣୀ ଆଗେ କହ ଯାଇ ॥
ଅଇଲୁ ବୋଲି ବେଗେ କହ । ନ ଦେଖି ଛାଡ଼ିବଟି ଦେହ ॥
କରିଯା ଅଛିଟି ଭରସା । ତେଜି ତା ଜୀବନର ଆଶା ॥
ଗୋବିନ୍ଦ ବାଣୀ ଶୁଣି କର୍ଣ୍ଣେ । ବ୍ରାହ୍ମଣ ଗଲା ତୋଷମନେ ॥
ରାଜାର ଭୁବନେ ପଶିଲା । ରୁକ୍ମିଣୀ ପାରୁଶେ ଭେଟିଲା ॥
ନୟନେ ଦେଖି ବିପ୍ରବର । ଚଞ୍ଚଳ ମନ କଲା ଥିର ॥
ବ୍ରାହ୍ମଣ ହରଷ ବଦନ । ରୁକ୍ମିଣୀ ଦେଖି ତୋଷ ମନ ॥
ଶୁଭ ଲକ୍ଷଣ ଦେଖି ତାର । ଚରଣେ କଲା ନମସ୍କାର ॥
ବେନି ଚରଣେ କର ଦେଇ । ପୁଚ୍ଛଇ ବିପ୍ରମୁଖ ଚାହିଁ ॥
ବ୍ରାହ୍ମଣ କହେ ଶୁଣ ବାଣୀ । ବିଜୟ କଲେ ଚକ୍ରପାଣି ॥
ସତ୍ୟବଚନ ମୋତେ କହି । କୃଷ୍ଣ ଅଇଲେ ତୋତେ ନେଇ
ଲଭିବୁ କମଳାର ବର । ଧନ୍ୟ ଗୋ ଜୀବନ ତୋହର ॥
କୃଷ୍ଣ ଆଗମ କଥା ଶୁଣି । ଆନନ୍ଦ ସାଗରେ ତରୁଣୀ ॥
ବୁଡ଼ି ହୋଇଲା ଛନ ଛନ । ନିକଟେ ନ ଦେଖଇ ଜନ ॥
ଆନ କାହାରେ ନ ଗଣଇ । ବ୍ରାହ୍ମଣ ଚରଣେ ପୂଜଇ ॥
ଯେମନ୍ତେ ଶୁଣ ନରନାଥ । କୃଷ୍ଣ ଅଇଲେ ଏକା ରଥ ॥
ଅଇଲେ ରାମ ଗୋପୀନାଥ । ଦୂତେ ଦେଖିଲେ ଦେବରଥ ॥
ରାମର ସଙ୍ଗେ ଯଦୁବଳ । ଶୁଣିଲେ ମୁଖରାବ ଗୋଳ ॥
ବେଗେ ଭୀଷ୍ମକ ଆଗେ ଯାଇ । କହନ୍ତି ଶିରେ କର ଦେଇ ॥
ଶୁଣ ବିଦର୍ଭ ମହୀପାଳ । ଶୁଣିଲୁ ମୁଖରାବ ଗୋଳ ॥
ରାମ ଗୋବିନ୍ଦ ସେନା ଘେନି । ରାଜ୍ୟେ ପଶିଲେ ଏହିକ୍ଷଣି ॥
ଅନେକ ବଳ ତାଙ୍କ ସଙ୍ଗେ । ବିବାହ ଦେଖିବାର ରଙ୍ଗେ ॥
ସଙ୍ଗେ ଅଇଲେ ବେନି ଭାଇ । କହିଲୁ ଆମ୍ଭ ଦୋଷ ନାହିଁ ॥
ଶୁଣି ସଂଭ୍ରମେ ନୃପବର । ଘେନାଇ ନାନା ଉପହାର ॥
ସୁବର୍ଣ୍ଣ ପାତ୍ରେ ମଧୁରସ । ନୀଳ ଦୁକୂଳ ପୀତବାସ ॥
ବିବିଧ ଉପହାର ଘେନି । ଭାବେ ପୂଜିଲା ଭାଇ ବେନି ॥
ଉତ୍ତମ ଗୃହେ ଦେଲା ସ୍ଥାନ । ପୂଜିଲା ଯେ ବିଧି ବିଧାନ ॥
ରାଜାଏ ଆସିଥିଲେ ଯେତେ । ପୂଜିଲା ଯଥା ବିଧି ମତେ ॥
କୃଷ୍ଣ ଆଗମ କଥା ଶୁଣି । ବିଦର୍ଭ ପୁରେ ଯେତେ ପ୍ରାଣୀ ॥
ସକଳେ ନିଜ ଘରଛାଡ଼ି । ଧାଇଁଲେ ରାଜପଥେ ମାଡ଼ି ॥
କୃଷ୍ଣଙ୍କୁ ଦେଖି ବେନି ନେତ୍ରେ । ଅଞ୍ଜଳି କରି କର ପାତ୍ରେ ॥
ଗୋବିନ୍ଦ ମୁଖ ପଦ୍ମରସ । ପିଅନ୍ତେ ନୋହେ ମନ ତୋଷ
ଆନନ୍ଦେ ବୋଲନ୍ତି ଯୁବତୀ । ରୁକ୍ମଣୀର ସାଦୃଶେ ଏ ପତି ॥

କନ୍ୟାର ସାଦୃଶେ ଏ ବର । ତୁଲ୍ୟ ହିଁ ନାହିଁ ତିନିପୁର ॥
ଆମ୍ଭର ପୁଣ୍ୟଫଳ ଯେତେ । ତେଣେ ଈଶ୍ୱର ତୋଷ ଚିତ୍ତେ ॥
ପ୍ରସନ୍ନ ହୋଉ ଶୂଳଧର । ରୁକ୍ମଣୀ ଲଭୁ ଏହି ବର ॥
ଯେମନ୍ତେ ବୋଲୁ ବୋଲୁ ଜନେ । ଶୁଭିଲା ନାନା ବାଦ୍ୟମାନେ
ରୁକ୍ମଣୀ ଘେନି ବିପ୍ରନାରୀ । ସାଥେ ଅନେକ ପରିବାରୀ ॥
ଆବୋରି ଚତୁରଙ୍ଗ ବଳ । ଶୂନ୍ୟେ ଦେଖନ୍ତି ଦିଗପାଳ ॥
ବୀରେ ଆବୋରି ଚଉପାଶ । କରନ୍ତି ରିପୁବଳ ତ୍ରାସ ॥
ବେନି ଚରଣେ ଚଳେ ପଥେ । ଅମ୍ବିକା ପୂଜିବା ନିମନ୍ତେ ॥
କୃଷ୍ଣ ଚରଣେ ମନ ଦେଇ । ଚାଲଇ ଚଉଦିଗ ଚାହିଁ ॥
ସ୍ତିରୀଙ୍କ ସଙ୍ଗେ ଗଲେ ପଥେ । କଥା ନ କହି ମୌନ ବ୍ରତେ ॥
ମୃଦଙ୍ଗ ଶଙ୍ଖ ନାଦ ତୂରୀ । ଶୁଭଇ ଦଶ ଦିଗ ପୂରି ॥
ସୂତ ମାଗଧ ସ୍ତୁତି କରେ । ବାଦ୍ୟ ଶବଦ ଗୀତ ସ୍ୱରେ ॥
ରାଜପୁରୁଷେ ଆଗ ସରି । ଚଳନ୍ତି ନାନା ଶସ୍ତ୍ରଧରି ॥
ଶତ ସହସ୍ର ପରିବାରୀ । ଅଛନ୍ତି ବେଶ୍ୟା ଆଦିକରି ॥
କନ୍ୟା ଆବୋରି ଯୂଥ ଯୂଥ । ସୁନ୍ଦର ଦିଶେ ରାଜପଥ ॥
ସୁଗନ୍ଧ ପୁଷ୍ପ ରତ୍ନ ରଙ୍ଗେ । ବ୍ରାହ୍ମଣ ନାରୀ କନ୍ୟା ସଙ୍ଗେ ॥
ଦେବୀ ଭୁବନେ ଯାଇ ମିଳି । କାମେନୀ ଦ୍ୟନ୍ତି ହୁଳ ହୁଳି ॥
କର ଚରଣ ମୁଖ ଧୋଇ । ରୁକ୍ମଣୀ ହସ୍ତେ ପୁଷ୍ପ ଦେଇ ॥
ଦେବୀ ଅଗ୍ରତେ ଦେଇ କରି । ପାଶେ ବସିଲେ ବିପ୍ରନାରୀ ॥
ବୟସେ ଅଧିକ ଅଟନ୍ତି । ସକଳ ରୀତି ସେ ଜାଣନ୍ତି ॥
କନ୍ୟାର ସ୍ୱାମୀ ହିତ ଅର୍ଥେ । ପୂଜା କରାଇ ନାନା ମତେ ॥
ବୋଇଲେ କର ନମସ୍କାର । ଯେ ମନ ଇଚ୍ଛା ମାଗ ବର ॥
ଆପଣା ସ୍ୱାମୀ ହିତ ଅର୍ଥେ । ବର ତୁ ମାଗ ଶୁଦ୍ଧ ଚିତ୍ତେ ॥
ଶୁଣି ରୁକ୍ମଣୀ କର ଯୋଡ଼ି । କହେ ଅମ୍ବିକା ପାଦେ ପଡ଼ି ॥
ନମଇଁ ଅମ୍ବିକାର ପାଦେ । ସକଳ ସୁଖ ବର-ପ୍ରଦେ ॥
ପୁତ୍ର କଳତ୍ର ସୁଖ ଘେନି । ଈଶ୍ୱର ହେଉ ବରଦାନୀ ॥
ଭୋ ମାତ ତୋହୋର ପ୍ରସାଦେ । ବର ମାଗଇ ଅପ୍ରମାଦେ ॥
କୃଷ୍ଣ ମୋହାର ପତି ହେଉ । ତା ପାଦ ସେବି ଦିନ ଯାଉ ॥
ପବିତ୍ର ଜଳ ଦୂର୍ବା କ୍ଷତ । ବସ୍ତ୍ର ଭୂଷଣ ସାଧୁକୃତ ॥
ଅନେକ ଉପହାର ଦେଇ । ଧୂପ ଦୀପନ୍ତ ତଳେ ଥୋଇ ॥
ବ୍ରାହ୍ମଣ-ନାରୀ ସୁଲକ୍ଷଣୀ । ଦେବୀ ପ୍ରସାଦ ଦେଲେ ଆଣି ॥
ପ୍ରସାଦ ଘେନି କନ୍ୟା ହସ୍ତେ । ନାରୀଙ୍କି ଦେଲା ନାନାମତେ ॥
ଶେଷେ ଘେନିଲା ନିଜ କରେ । ନମିଲା ନାରୀଙ୍କ ପୟରେ ॥
ମଣ୍ଡନ ବ୍ରତ ଗଲା ଦୂର । ମନ୍ଦିରୁ ହୋଇଲା ବାହାର ॥

ସଖୀଏ ବାମ ପାଶେ ଥିଲେ । ତାହାର କରେ କର ଦେଲେ ॥
ରତ୍ନ ମୁଦ୍ରିକା ବିରାଜଇ । ଚଞ୍ଚଳେ ଚଉଦିଗେ ଚାହିଁ ॥
ଅଂଶେ କମଳା ଅବତାର । ରୂପେ କି ଦେବା ପଟାନ୍ତର ॥
ବିବାହ ଯାତ୍ରା ଛଳେ ଆସି । ଅନେକ ବୀରେ ଥିଲେ ବସି ॥
ଯେମନ୍ତେ ରୁକ୍ମଣୀ ବଦନ । ଦେଖି ହୋଇଲେ ହତଜ୍ଞାନ ॥
କି ଏ ଈଶ୍ୱରୀ ଦେବୀ ମାୟା । ବୀର ମୋହିନୀ ରୂପ ଏହା ॥
ଦଇବ ଭିଆଇଲା ରାମା । ଜଗ ମୋହିନୀ ରୂପଧାମା ॥
ରତ୍ନ କୁଣ୍ଡଳ କର୍ଣ୍ଣେ ଶୋହେ । ରୂପେ ଭୁବନ ଜନ ମୋହେ ॥
ନବ ଯୁବତୀଙ୍କ ଉପାମ । କଟି ମେଖଳା ରତ୍ନ ଦାମ ॥
ଗଣ୍ଡ ଯୁଗଳ ଝଟକଇ । ନୟନ ଖଞ୍ଜନେ ଗଞ୍ଜଇ ॥
ହୃଦୟଭେଦୀ ବେନି ସ୍ତନ । କୁନ୍ତଳେ ଶଙ୍କିତ ନୟନ ॥
ଅଳପ ହାସ ମୁଖରଙ୍ଗ । ବନ୍ଧୂଳୀ ପୁଷ୍ପ କିଏ ବିମ୍ବ ॥
କୁନ୍ଦ କଳିକା ଦନ୍ତ ପନ୍ତି । ଯେହ୍ନେ ସିନ୍ଦୂରେ ଗଜମୋତି ॥
ରାଜହଂସର ପ୍ରାୟେ ଧୀରେ । ଚାଳଇ ଚରଣ ମନ୍ଥରେ ॥
ରୁକ୍ମଣୀ ରୂପ ଦେଖି ବୀରେ । ଜ୍ଞାନ ହାରିଲେ କାମ ଜରେ
ଗଜ ତୁରଙ୍ଗ ରଥେ ଥାଇ । କନ୍ୟାର ମୁଖକୁ ଅନାଇଁ ॥
ହସ୍ତୁ ପଡ଼ିଲା ଶସ୍ତ୍ର ଝଡ଼ି । ଅଜ୍ଞାନ ହୋଇ ତଳେ ପଡ଼ି ॥
ଯେମନ୍ତେ ଦେବୀ ଯାତ୍ରା ଛଳେ । ଚାଳଇ ଯୁବତୀଙ୍କ ମେଳେ ॥
ଏ ରୂପେ ନିଜ ଦେହ କାନ୍ତି । ଦେଖାଇ ଲୋଡ଼ଇ ଶ୍ରୀପତି ॥
ଗଗନେ ଦେଖାଇ ବଦନ । ଚିନ୍ତଇ କମଳ ଲୋଚନ ॥
କେତେହେଁ ଦୂର ପୁଣ ଯାଇ । ବିକଳେ ଦଶ ଦିଗ ଚାହିଁ ॥
ରାଜାଙ୍କୁ ଚାହାଁନ୍ତେ ସଧୀରେ । ଶୂନ୍ୟେ ଦେଖିଲେ ଚକ୍ରଧରେ ॥
ଅଗ୍ରତେ ଅନଳକୁ ଚାହିଁ । ପତଙ୍ଗ ଯେହ୍ନେ ପଡ଼େ ଧାଇଁ ॥
ଗଗନେ ଦେଖି କୃଷ୍ଣ ରଥ । ବେଗେ ତୋଳିଲା ବେନିହସ୍ତ
ରଥେ ଉଠିଲା ପ୍ରାୟେ ମଣି । କରେ ଧଇଲେ ଚକ୍ରପାଣି ॥
ଆକ୍ରୋଷି ବସାଇଲେ କୋଳେ । ଶୂନ୍ୟେ ଦେଖନ୍ତି ଦିଗପାଳେ ॥
ସକଳ ଦୃଷ୍ଟି କୃଷ୍ଣ ରଥେ । ଦେଖି ରୁକ୍ମଣୀ କୃଷ୍ଣ ସାଥେ ॥
ଗରୁଡ଼ ଧ୍ୱଜ ରଥେ ଆଣି । କୋଳେ ବସାଇ କମଳଣୀ ॥
କ୍ଷତ୍ରିୟ ବଳ ତୁଚ୍ଛକରି । ଶାରଙ୍ଗ ଧନୁ କରେ ଧରି ॥
ବିଜୟ କଲେ ଦାମୋଦର । ସଙ୍ଗେ ସାତ୍ୟକି ହଳଧର ॥
ଯାଦବ ବଳ ଅପ୍ରମିତ । ଗହଳେ ନ ଦଶଇ ପଥ ॥
ଶୃଗାଳ ମଧ୍ୟୁ ମାଂସ ଭାଗ । ବଳେ ହରଇ ଯେହ୍ନେ ସିଂଘ ॥
ଦେଖି ଚକିତ ସର୍ବଜନ । ଥିଲେ ଯେ ଅନେକ ରାଜନ ॥
ଏକ ଆରେକ ମୁଖ ଚାହିଁ । ବଦନୁ ବାକ୍ୟ ନ ସ୍ଫୁରଇ ॥

ଶୁଭଇ ନେଲା ନେଲା ବାଣୀ । ଚହଲେ କମ୍ପଇ ଧରଣୀ ॥
ଘଡ଼ିକେ ଜାଣିଲେ ସକଳେ । ଗୋବିନ୍ଦ କନ୍ୟା ନେଲେ ବଳେ
କୃଷ୍ଣର ରିପୁ ରାଜା ଯେତେ । ବିବିଧ ଶସ୍ତ୍ର ଘେନି ହସ୍ତେ ॥
ଶିଶୁପାଳର ସଭାତଳେ । ପ୍ରତିଜ୍ଞା କରୁଛନ୍ତି ବଳେ ॥
ଆମ୍ଭେ ଆଣିବୁ ବିଭାକରି । ସଂଗ୍ରାମେ ରାମକୃଷ୍ଣ ମାରି ॥
ଏବେ ହୋଇଲା ଯଶ ନାଶ । ସଭ୍ରମେ ଛାଡ଼ିଲେ ନିଶ୍ୱାସ ॥
ବୋଲନ୍ତି ଅଧର କାମୋଡ଼ି । ଆପଣା କର ମୁଣ୍ଡେ ତାଡ଼ି ॥
ଆମ୍ଭର ଧନୁ ଧିକ୍ ହୋଇ । ଗୃଧ ଶୃଗାଳ ମାଂସ ଖାଇ ॥
ଗୋପାଳେ ନେଲେ କନ୍ୟା ହରି । ଆମ୍ଭର ମଧ୍ୟୁ ବଳ କରି ॥
ସିଂଘର ଭାଗ ମୃଗ ନେଲା । ଯେମନ୍ତେ ଶବଦ ଶୁଭିଲା ॥
ବୋଲଇ ଦାସ ଜଗନ୍ନାଥ । ସଜ ହୋଇଲେ ଯୂଥ ଯୂଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିତାୟାଂ*
*ବୈୟସିକ୍ୟାଂ ଦଶମସ୍କନ୍ଧେ ରୁକ୍ମଣୀହରଣେ ନାମ*
*ସପ୍ତପଞ୍ଚାଶତୋଽଧ୍ୟାୟଃ ।*

## ଅଷ୍ଟ ପଞ୍ଚାଶତ୍ ଅଧ୍ୟାୟ

ଶୁକ କହନ୍ତି ରାଜା ଆଗେ । ଯେମନ୍ତ କରି ଚାରି ଦିଗେ ॥
ଯେ ଯାହା ବାହାନ ଆରୋହୀ । ଅଙ୍ଗପେ ସାଞ୍ଜୁ ସେହ୍ନା ଲଇ ॥
ସମସ୍ତ ସେନା ଆଗ କରି । ଧାଇଲେ କରେ ଅସ୍ତ୍ର ଧରି ॥
ବୋଲନ୍ତି ମାର ମାର ବାଣୀ । ଯାଦବ ବଳ ତାହା ଶୁଣି ॥
ଥିଲେ ଯେ ରାମ କୃଷ୍ଣ ପାଖେ । ଆବୋରି ରହିଲେ ସମ୍ମୁଖେ ॥
କୋପେ କରନ୍ତି ଗୁଣଘୋଷ । ଶବଦେ କମ୍ପେ ଦଶଦିଶ ॥
ଅଶ୍ୱ ଗୁଞ୍ଜର ରଥେ ଥାଇ । ନିଜ କୋଦଣ୍ଡେ ଗୁଣଦେଇ ॥
ଶର ବରଷେ ମେଘ ପ୍ରାୟେ । ପଡ଼ଇ ଯାଦବଙ୍କ ଦେହେ ॥
ଗିରି ଶୃଙ୍ଗରେ ଯେହ୍ନେ ଘନେ । ବୃଷ୍ଟି କରନ୍ତି ବୃକ୍ଷ ବନେ ॥
ଯାଦବ ବଳେ ଶର ବୃଷ୍ଟି । ଦେଖି ରୁକ୍ମିଣୀ ଭୟେ ଦୃଷ୍ଟି ॥
ଲଜ୍ଜାଏ କୁଞ୍ଚିତ ଲୋଚନ । ଚାହିଁଲା କୃଷ୍ଣର ବଦନ ॥
ବାଣ ବରଷଣ ଅନାଇ । କମ୍ପଇ କୃଷ୍ଣ କୋଳେ ଥାଇ ।
ହାସ ବଦନେ ଭାବଗ୍ରାହୀ । ବୋଲନ୍ତି କନ୍ୟା ମୁଖ ଚାହିଁ ॥
କିମ୍ପା ସୁନ୍ଦରୀ ପାଉ ତ୍ରାସ । ହେଲେ ତୋ ରିପୁ ଯିବ ନାଶ
ମୋର ବଚନ ଶୁଣ ଏବେ । ଅଜେୟ ଅଟନ୍ତି ଯାଦବେ ॥
ଯେମନ୍ତ ବୋଲୁ ବୋଲୁ ଭାବେ । ସଂଗ୍ରାମେ ଧାଇଁଲେ ଯାଦବେ
ଗଜ ସଂକରଷଣ ଆଦି । ଯାଦବ ବଳେ ଯେ ପ୍ରସିଦ୍ଧି ॥

କରନ୍ତି ବାଣ ବୃଷ୍ଟ ଘୋର । ଦିବସେ ଘୋର ଅନ୍ଧକାର ॥
ତୀକ୍ଷ୍ଣ ନାରାଚେ ସଂଘାରିଲେ । ରଥ ଗୁଞ୍ଜର ରଥୀ ତୁଲେ ॥
ନିରନ୍ତେ ମନ୍ତ୍ର ବଳ ଦୀକ୍ଷା । ଯାଦବ ରଣେ ଜୟ ଶିକ୍ଷା ॥
ରିପୁଙ୍କ ଶର କୋଟି କୋଟି । ଛିଡ଼ି ପଡ଼ିଲା ମହୀଲୋଟି ॥
ପାଗ ସହିତ ମୁଣ୍ଡମାଳ । ଲୁଟନ୍ତି କିରୀଟୀ କୁଣ୍ଡଳ ॥
ଗଦା ଖଡ଼ଗ ବାଣ ହାଥେ । ଛିଡ଼ି ପଡ଼ିଲେ ଭୂମି ଗତେ ॥
ହସ୍ତ ହୃଦୟ ଜାନୁ ଛାଡ଼ି । ପଡ଼ିଲେ ରଣଭୂମି ମାଡ଼ି ॥
ଦେଖି ଯାଦବ ବଳ ତେଜ । ରଣେ ଭାଙ୍ଗିଲେ ସର୍ବରାଜ ॥
ମଗଧ ପତି ଅଗ୍ରତରେ । ମିଳିଲେ ବିଦର୍ଭ ନଗରେ ॥
ଦେଖିଲେ ନବ ବେଦି ମଧ୍ୟେ । ବରହିଁ ଅଛି କନ୍ୟା ସାଧେ ॥
ଦାରା ହରଣ ଦୁଃଖ ଶୋକେ । ଧୂଳି ପଡ଼ିଛି ତାର ମୁଖେ ॥
ଆତୁରେ ଶୁଖିଛି ଅଧର । ସୁନ୍ଦର ପଣ ଗଲା ଦୂର ॥
ଭାଙ୍ଗିଲା ବିବାହର ଆଶ । ଲାଜେ ଚାହାଁଇ ଦଶ ଦିଶ ॥
ବଚନ ନ ସ୍ଫୁରଇ ମୁଖେ । ରାଜାୟେ ବସି ତାର ପାଶେ ॥
ବୋଲନ୍ତି ଶୁଣ ରାଜ ସିଂଘ । ମନୁ ନ କର ସୁଖଭଙ୍ଗ ॥
ବିମନ ନୋହ ବେଗେ ତୁହି । ଶୁଣ ତୁ ଆମ୍ଭେ ଯାହା କହି ॥
ଅର୍ଜ୍ଜିଲ କର୍ମେ ଭୋଗ ପାଇ । ଏହାର ପ୍ରିୟାପ୍ରିୟ ନାହିଁ ॥
ଏ ଦେହ ଈଶ୍ୱର ଆୟତ୍ତ । ସ୍ୱ କର୍ମ ପଥେ ଆତଯାତ ॥
କାଷ୍ଠ ପିତୁଳା ହସ୍ତେ ଲଇ । କୁହୁକ ଯେମନ୍ତେ ଲଗାଇ ॥
ପ୍ରତିମା ନାଚେ ସେହି ମତେ । ଯେମନ୍ତେ କୁହୁକ ଆୟତ୍ତେ ॥
ଈଶ୍ୱର କଳାଟି ଏ ଦେହୀ । ଏହାର ସୁଖ ଦୁଃଖ ନାହିଁ ॥
ଜରା କହଇ ଧୀର କରି । ଭଗ୍ନୀଜ ଅଟୁ ତୁ ମୋହରି ॥
ଶୁଣ ମୋହର ମୁଖୁ ବାଣୀ । ବଳ ମୋ ତେଇଶ କ୍ଷଉଣୀ ॥
ସପତ ଦଶ ବାର ହାରି । ବଳେ ଜିଣିଲି ରାମ ହରି ॥
ଏହା ମୁଁ ଅନୁଭବ କରି । ଜୟ ଅଜୟ ନ ସୁମରି ॥
ହରଷ ସୁଖେ ନାହିଁ ଇଚ୍ଛା । ନିଜ କରମ ଫଳ ଦୀକ୍ଷା ॥
କର୍ମେ ଜୀବନ ଆତଯାତ । କାଳର କ୍ରୀଡ଼ା ଏ ଜଗତ ॥
ଦେଖ ଏ କାଳର ମହିମା । ଆମ୍ଭେ ସକଳେ ବୀରସୀମା ॥
ହାରିଲୁ ନିଜ କର୍ମ ଫଳେ । ଯାଦବେ ସମରେ ଜିଣିଲେ ॥
ରିପୁଙ୍କ କାଳ ବଳୀୟାର । ଯଶେ ଆମ୍ଭର କି ବିଚାର ॥
ଆମ୍ଭର ଯଶ ପୁଣ୍ୟ କାଳେ । ରିପୁ ଜିଣିବା ଅବହେଳେ ॥
ଏମନ୍ତ ପ୍ରବୋଧ ବଚନେ । ହରଷ କରି ତାର ମନେ ॥
ନିଜ ନଗରେ ତାକୁ ନେଇ । ଅନେକ ପ୍ରବୋଧନା ଦେଇ ॥
ରାଜାୟେ ଦୁଃଖ ସୁଖ ମନେ । ଗଲେ ସେ ଯେ ଯାହା ଭୁବନେ ॥

ରୁକ୍ମ ଯେ କୃଷ୍ଣର ବଇରୀ । ଶିଶୁପାଳକୁ ଥିଲା ବରି ॥
କନ୍ୟା ଗୋବିନ୍ଦ ହରି ନେଲେ । ରାଜାଙ୍କ ଗର୍ବ ନାଶ କଲେ ॥
ମଗଧ ଆଦି ମହୀପାଳେ । ଯେ ଯାହା ଗୃହେ ଯିବା ବେଳେ
ରାଜାଙ୍କ ଗୋଷ୍ଠୀ ମଧ୍ୟେ ଥାଇ । ପ୍ରତିଜ୍ଞା କଲା ଗର୍ବ ବହି ॥
ଅଭେଦ ସେନା ସାଥେ ଘେନି । ପିଠାର ବଳ ଅକ୍ଷୌହିଣୀ ॥
ସଙ୍ଗତେ ଘେନି ମହାବୀର । ରାଜାଙ୍କୁ ବୋଲଇ ଉତ୍ତର ॥
ତୁମ୍ଭେତ ହୋଇଲ ନିରେଖ । ମୋର ମହିମା ଆଜ ଦେଖ ॥
ସଂଗ୍ରାମେ ରାମ କୃଷ୍ଣ ମାରି । ବନ୍ଦିରୁ ରୁକ୍ମିଣୀ ଉଦ୍ଧରି ॥
ଆଜି ଆଣିବି ବାହୁ ବଳେ । ଯଶ ଥୋଇବି ମହୀତଳେ ॥
ଯେହା ମୁଁ କରି ନ ପାରିଲେ । ନଗରେ ନ ପଶିବି ଭଲେ ॥
ସତ୍ୟ ବଚନ ଏ ମୋହର । ନଗରୁ ହୋଇଲା ବାହାର ॥
ରଥେ ବସିଲା ବେଗେ ଯାଇ । ବୋଲେ ସାରଥୀ ମୁଖ ଚାହିଁ ॥
ରଥ ତୁ ବାହ ବେଗ କରି । ଯହିଁ ଅଛନ୍ତି ରାମ ହରି ॥
ରାମ ଗୋବିନ୍ଦେ ଯୁଦ୍ଧେ ମାରି । ରୁକ୍ମଣୀ ଆଣିବି ଉଦ୍ଧରି ॥
ତୀକ୍ଷ୍ଣ ନାରାଚ ଦେଖ ମୋର । ହେଳେ ଜିଣିବି ସୁରନର ॥
ଗୋପାଳେ ବଡ଼ ବଳୀୟାର । ଆଜ କରିବି ଗର୍ବ ଚୂର ॥
ବଳେ ହରିଲା ମୋ ବହେଣୀ । ଆଜି ଆଣିବି ଶିର ହାଣି ॥
ମୋତେ ଦେଖାଇ ବଳ ଗର୍ବ । ଅଜାତି ଗଉଡ଼ ସ୍ୱଭାବ ॥
ଯେମନ୍ତ ଗର୍ବ ମନେ ବହି । ହରି ମହିମା ନ ଜାଣଇ ॥
ବଳେ ଧାଇଁଲା ଯେକା ରଥେ । ଡାକଇ ରହ ରହ ପଥେ ॥
ଗୁଣେ ବସାଇ ତୀକ୍ଷ୍ଣବାଣ । ଶ୍ରବଣ ଯାଏ ଟାଣି ପୁଣ ॥
ବିନ୍ଧିଲା ଗୋବିନ୍ଦ ଉପରେ । ଡାକଇ କୁତ୍ସିତ ବେଢାରେ ॥
ଯାଦବ କୁଳ ପାଂଶୁ ତୁହି । ମୋର ସଂଗ୍ରାମେ ଯିବୁ କାହିଁ ॥
କ୍ଷଣକେ ରହ ରଥ ମଧ୍ୟେ । ରୁକ୍ମଣୀ ହରିଲୁ ଯେ ସଧେ ॥
କାକ ଯେସନେ ମାୟାକରି । ଯଜ୍ଞର ପିଣ୍ଡ ନେବା ହରି ॥
ମନ୍ଦ ମାୟାବୀ କୂଟ ବୁଦ୍ଧି । ଗୋପାଳ ହୀନ ନଷ୍ଟ ବୁଦ୍ଧି ॥
ଆଜ ମୁଁ ତୋର ଶିର ହାଣି । ଯାବତ ନ ଛାଡୁ ରୁକ୍ମଣୀ ॥
ଶୁଣି ହସିଲେ ଦାମୋଦର । ଶାରଙ୍ଗ ଧନୁ ଧରି କର ॥
ଇଷିତେ ବଡ଼ ବାଣ ବିନ୍ଧି । ତାହାର ହାତୁ ଧନୁ ଛେଦି ॥
ପୁଣି ବିନ୍ଧିଲେ ଅଷ୍ଟବାଣ । ଜଗତ ପତି ନାରାୟଣ ॥
ରଥର ଚାରି ଅଶ୍ୱ ହାଣି । ପୁଣି ବିନ୍ଧିଲେ ବାଣ ତିନି ॥
ରଥ ସାରଥୀ ମୁଣ୍ଡ କାଟି । ତିନି ନାରାଚେ ଧ୍ୱଜ ଲୋଟି ॥
ପୁଣ ରୁକ୍ମଣ ମହାମନୁ । ହସ୍ତେ ଘେନିଲା ଆର ଧନୁ ॥
ଗୁଣ ଟଙ୍କାର ନାଦ କରି । ସେ ଧନୁ କାଟିଲେ ମୁରାରି ॥

ପୁଣ ଘେନିଲା ଆଉ ବେଢ଼େ । କୃଷ୍ଣ କାଟିଲେ ତାହା ହେଳେ ॥
ପରିଘ ଖଣ୍ଡ ଶୂଳ ଚର୍ମ । ଶକ୍ତି ତୋମର ତୀକ୍ଷ୍ଣ ମୁନ ॥
ଯେଉଁ ଆୟୁଧ କର ଧରି । ସବୁ ଛେଦିଲେ ନରହରି ॥
ତକ୍ଷଣେ ରଥୁ ଓହ୍ଲାଇଲା । କୋପ ଖଡ଼ଗ ହସ୍ତେ ନେଲା ॥
କୃଷ୍ଣକୁ ମାରିବାର ଆଶେ । ଡେଇଁ ବସିଲେ ନନ୍ଦିଘୋଷେ ॥
କୋପେ ଗର୍ଜଇ କୃଷ୍ଣପାଶେ । ଅଧର କାମୋଡ଼ି ଆକ୍ରୋଶେ ॥
ପତଙ୍ଗେ ଯେସନେ ପାବକେ । ଡେଇଁ ପଡ଼ିଲା ଅତି ସୁଖେ ॥
ଦେଖି ଗୋବିନ୍ଦ ବେଗେ ଉଠି । ତିଳ ପ୍ରମାଣେ କେଶ କାଟି ॥
କୋପେ ଉଳ୍ଗୁଡ଼ି ଅସିବର । କୃଷ୍ଣ ଧଇଲେ ରୁକ୍ମ ଶିର ॥
କୃଷ୍ଣର ମୁଖେ କୋପ ଦେଖି । ଭୟେ କମ୍ପଇ ଶଶୀମୁଖୀ ॥
ଭ୍ରାତର ପ୍ରାଣ ନାଶ ଜାଣି । ଚରଣେ ପଡ଼ିଲେ ରୁକ୍ମିଣୀ ॥
କାତରେ କରଇ କାରୁଣ୍ୟ । ଭୋ ନାଥ ଯୋଗେଶ୍ୱର ଶୁଣ ॥
ଅନନ୍ତ ମହିମା ତୋହର । ଦେବର ପରେ ଦେବବର ॥
ଜଗତ ପତି ନାରାୟଣ । ମୁଁ ତୋର ଚରଣେ ଶରଣ ॥
ନ ମାର ମୋର ଜ୍ୟେଷ୍ଠ ଭ୍ରାତ । ପରମାନନ୍ଦ ଜଗନ୍ନାଥ ॥
ଶୁକ ବୋଲନ୍ତି ଶୁଣ ରାୟେ । ଦୟା ବସିଲା କୃଷ୍ଣ ଦେହେ ॥
ଚାହିଁଲେ ରୁକ୍ମିଣୀ ଶରୀର । ଭୟେ କମ୍ପଇ ଥରହର ॥
ଶୋକେ ଶୁଖିଲା ବେନି ଓଷ୍ଠ । ବାକ୍ୟ ନ ସ୍ଫୁରେ ରୁନ୍ଧେ କଣ୍ଠ ॥
କାତରେ କଣ୍ଠ ହେମମାଳ । ପଡ଼ିଲା କୃଷ୍ଣ ପାଦତଳ ॥
ଏମନ୍ତ ଦେଖି କନ୍ୟା ଦୁଃଖ । କରୁଣ କଲେ ପଦ୍ମମୁଖ ॥
ଆକ୍ରୋଷି ଧରି ତାର କର । ବସ୍ତ୍ରେ ବାନ୍ଧିଲେ ଦାମୋଦର ॥
ବିମାନ ସ୍ତମ୍ଭେ ନେଇ ବାନ୍ଧି । ବେନି ଚରଣ କର ଛନ୍ଦି ॥
ତୀକ୍ଷ୍ଣ ନାରାଚେ ହୃଷିକେଶ । ବିରୂପ କରି ତାର ବେଶ ॥
ପଞ୍ଚ ପ୍ରକାରେ କେଶ ଦାଢ଼ି । କୋପେ କାଟିଲେ ତଳେ ପାଡ଼ି ॥
ସଙ୍ଗେ ଯେ ଯଦୁବଳ ଥିଲେ । ରୁକ୍ମଣ ସୈନକୁ ବେଢ଼ିଲେ ॥
ତକ୍ଷଣେ କଲେ ସର୍ବନାଶ । ଅଳପ ରହିଲେ ଅବଶେଷ ॥
ନଳିନୀ ବନେ ଗଜ ପଶି । କ୍ଷଣକେ ଯେହ୍ନେ ଯାନ୍ତି ଧ୍ୱଂସି ॥
ସୈନ୍ୟ ହୋଇଲେ ବଳକ୍ଷୀଣ । ବନ୍ଧନେ ପଡ଼ିଲା ରୁକ୍ମଣ ॥
ରଥ ନିକଟେ ରାମ ଯାଇ । ବୋଲନ୍ତି କୃଷ୍ଣ ମୁଖ ଚାହିଁ ॥
ବନ୍ଧନ ଫେଡ଼ିଲେ ବହନ । ଚାହିଁଲେ ରୁକ୍ମଣ ବଦନ ॥
ବିରୂପ ଦେଖି ତାର ଦେହୀ । ରାମ ବୋଲନ୍ତି କୃଷ୍ଣ ଚାହିଁ ॥
ହେ କୃଷ୍ଣ କଲୁ ଦୁଷ୍ଟ ପଣ । ଆପଣା ବନ୍ଧୁର କଷଣ ॥
ଅସାଧୁ କର୍ମ ଏ ତୋହର । ନିନ୍ଦା କରିବେ ତିନିପୁର ॥
ବିରୂପ କଲୁ କେଶ ବେଶ । ନାଶିଲୁ ସୁହୃଦ ବିଶ୍ୱାସ ॥
ନ ଜାଣି କଲୁ ଯେତେ କାର୍ଯ୍ୟ । ମରଣୁ ଆଗଳ ଏ ଲାଜ ॥

ଏମନ୍ତ କହି ବଳରାମ । ଚାହିଁଲେ ରୁକ୍ମିଣୀ ବଦନ ॥
ବୋଲନ୍ତି ରେବତୀ ରମଣ । କୋମଳ ଗଭୀର ବଚନ ॥
ଜ୍ୟେଷ୍ଠ ଭ୍ରାତର ରୂପ ଦେଖି । କିମ୍ପାଇ ହେଉ ମନଦୁଃଖୀ ॥
ଆମ୍ଭକୁ ନିନ୍ଦା ତୁ ନକର । ଦଇବ ବଳ ବଳୀୟାର ॥
କର୍ମ ସେ ସୁଖ ଦୁଃଖ ଦେଇ । ପୂର୍ବର କୃତ ସେ ଭୁଞ୍ଜଇ ॥
କୃଷ୍ଣକୁ ଚାହିଁ ହଳଧର । କହନ୍ତି ସଂସାର ବେଭାର ॥
ମରଣ ତୁଲ୍ୟ ଦୋଷ ଯେବେ । ବନ୍ଧୁ କରଇ ମୂଢ଼ ଭାବେ ॥
ତାହାକୁ ସାଦ ନ କରିବ । ଆପଣା ଦୋଷେ ନାଶ ଯିବ ॥
ତାହାର ଲାଜେ ସେ ମରଇ । ପୁଣ କହନ୍ତି କନ୍ୟା ଚାହିଁ ॥
କ୍ଷତ୍ରୀୟ ଧର୍ମର ଏ ଗତି । ନିର୍ମାଣ କଲା ପ୍ରଜାପତି ॥
ଅତି ଦାରୁଣ ତମ ଘୋରେ । ଭାଇକି ଭାଇ ବଳେ ମାରେ ॥
ପୁଣି ଗୋବିନ୍ଦ ମୁଖ ଚାହିଁ । କହନ୍ତି ସ୍ୱଧର୍ମ ଦେଖାଇ ॥
ରାଜ୍ୟ ଧରଣୀ ଧର୍ମ ଆଶେ । ଲଜ୍ଜାଭିମାନ ତେଜ ନାଶେ ॥
ଆପଣା ଅର୍ଥେ ମତ୍ତ ହୋଇ । ପ୍ରାଣୀ ପୀଡ଼ନ୍ତି ଗର୍ବ ବହି ॥
ତୋର ବିଷମ ବୁଦ୍ଧି ଚିତ୍ତେ । ମୁହିଁ ଦେଖିଲି ସର୍ବଭୂତେ ॥
ଶତ୍ରୁର ଅମଙ୍ଗଳ ଦେଖି । ଆପଣା ଚିତ୍ତେ ହେଉ ସୁଖୀ ॥
ସୁହୃଦ ସୁଖେ ମୂର୍ଖପ୍ରାୟେ । ଆତ୍ମାକୁ ଆପଣେ ନର୍ଦ୍ଦୟେ ॥
ଦେବ ମାୟାର ବଳେ ଜନ । ଆତ୍ମାରେ କଳ୍ପଇ ଅଜ୍ଞାନ ॥
ଆତ୍ମାକୁ ଭେଦ ଯେ କରନ୍ତି । ଭେଦେ ସେ ଶତ୍ରୁ ମିତ୍ର ହୋନ୍ତି ॥
ସମସ୍ତ ଦେହେ ଆତ୍ମା ଏକ । ଅଜ୍ଞାନୀ ଜନଙ୍କୁ ଅନେକ ॥
ଅଜ୍ଞାନ ମତେ ଯେ ଭାବନ୍ତି । ଯେହ୍ନେ ଗଗନେ ଦିଶେ ଜ୍ୟୋତି ॥
ଜନ୍ମ ମରଣ ଜନ୍ତୁ ଦେହୀ । ଦିବ୍ୟ ଜୀବନ ପୁଣ ବହି ॥
ଆତ୍ମାର ଜଡ଼ ମୋହ ହୋଇ । ଜନ୍ମ ମରଣ ଭ୍ରମୁଥାଇ ॥
ଆତ୍ମା ନିର୍ଗୁଣ ନିରଞ୍ଜନ । ସଂଯୋଗ ବିଯୋଗ ଏ ଭିନ୍ନ ॥
ଆଦି କାରଣ ମାୟା ଜାଣୁ । ଦୃଷ୍ଟ ରୂପକୁ ଯେହ୍ନେ ଭାନୁ ॥
ଜନ୍ମ ମରଣ ଷଡ଼ଗୁଣ । ପିଣ୍ଡର ଆଦି ଏ କାରଣ ॥
ଆତ୍ମାର ବିକାର ନୁହନ୍ତି । କଳା ଏ ଯେହ୍ନେ ଚନ୍ଦ୍ରକାନ୍ତି ॥
ବରଣ କଳାକ ମରଣ । ବିଚାରେ ସଂସାର ନିର୍ବାଣ ॥
ଶୟନ ପୁରୁଷ ଯେସନେ । ଆତ୍ମାରେ ବସେ ଫଳମନେ ॥
ବାସନା ବଳେ ଉନମତ୍ତ । ଏଣୁ ଅଜ୍ଞାନ ଶୋକ ଜାତ ॥
ଆତ୍ମାରେ ଶୋକେ ମୋହ ଗ୍ରସ୍ତେ । ଏଣୁ ଭ୍ରମନ୍ତି ଏ ଜଗତେ ॥
ଏ ମାୟା ତତ୍ତ୍ୱ ଜ୍ଞାନେ ହରି । ନିର୍ମଳ ଚିତ୍ତ ଜ୍ଞାନେ ଧରି ॥
ସଂସାର ଭ୍ରମ ପ୍ରାୟ ଦେଖି । ଶୋକ ସଂହର ପଦ୍ମମୁଖୀ ॥
ଶୁକ କହନ୍ତି ରାମ ବାଣୀ । ଆଦରେ ଶୁଣିଲା ରୁକ୍ମିଣୀ ॥
ବିମନ ଛାଡ଼ି ଜ୍ଞାନ ପାଇ । ଶୋକ ଛାଡ଼ିଲା ରାମ ଚାହିଁ ॥

କହନ୍ତି ଶୁକମୁନି ତୋଷେ । ରୁକ୍ମ ଯେ ଥିଲା ନନ୍ଦିଘୋଷେ ॥
କେବଳ ଅବଶେଷ ପ୍ରାଣ । ରଥୁ ଓହ୍ଲାଇଲା ରୁକ୍ମଣ ॥
ନିଃଶେଷ ବଳ ହତ ଗର୍ବ । ହରି ଗଞ୍ଜିଲେ ତାର ଗର୍ବ ॥
ସଂକଳ୍ପ ଭଙ୍ଗେ ପଳାଇଲା । କୁଣ୍ଡି ନଗ୍ରରେ ନ ପଶିଲା ॥
ହରିଙ୍କି ମାରିଗଲା କାଳେ । ପ୍ରତିଜ୍ଞା କରିଥିଲା ବଳେ ॥
ଆଜ ଗୋବିନ୍ଦ ମୁଣ୍ଡ ହାଣି । ଆଣି ନ ପାରିଲେ ରୁକ୍ମିଣୀ ॥
କୁଣ୍ଡିନଗରେ ନ ପଶିବି । ଜୀବନେ ଯେତେ କାଳ ଥିବି ॥
ଯେମନ୍ତେ ପଶି ଘୋରବନେ । ବୃକ୍ଷ କାଟଇ କୋପମନେ ॥
ନିବାସ କଲା ବନ୍ଧୁ ଗ୍ରାମ । ନଗର ଭୋଜକୁଟ ନାମ ॥
ତହିଁ ରହିଲା ଗୃହ କରି । କୃଷ୍ଣ ବଇରୀ ମନେ ଧରି ॥
ରୁକ୍ମଣୀ ଘେନି ଭଗବାନ । ପ୍ରବେଶ ଦ୍ୱାରକା ଭୁବନ ॥
ସମରେ ଜିଣି ସର୍ବ ରାଜା । ଯାଦବେ କଲେ ପାଦ ପୂଜା ॥
ସ୍ତୁତି କରନ୍ତି ସୁର ନର । ଆନନ୍ଦ ଦ୍ୱାରାବତୀ ପୁର ॥
ଗୋବିନ୍ଦ ବିବାହ ଉସବେ । ପୁର ମଣ୍ଡିଲେ ନାନାଭାବେ ॥
ଉସବ କଲେ ସର୍ବପୁରେ । ବାଦ୍ୟ ବାଜଇ ପଞ୍ଚ ସ୍ୱରେ ॥
ଦ୍ୱାରିକା ପୁର ନରନାରୀ । ବିବିଧ ଅଳଙ୍କାର ଭରି ॥
କୃଷ୍ଣ ବିଭାରେ ଉନମତ୍ତ । କାମେନୀ କଲେ ନୃତ୍ୟଗୀତ ॥
ମଙ୍ଗଳ ଦ୍ୱାରକା ନଗର । କି ଅବା ଦେବା ପଟାନ୍ତର ॥
ଧ୍ୱଜତୋରଣ ହେମମାଳ । ପୂର୍ଣ୍ଣ କଳସ ସୁମଙ୍ଗଳ ॥
ଅଗର ଧୂପ ଦିପାବଳୀ । ପଥେ ସଞ୍ଚନ୍ତି ଗନ୍ଧଗୋଳି ॥
ବନ୍ଧୁ ବେଭାରେ ରାଜଗଣେ । ଆସି ମିଳିଲେ ଜଣେ ଜଣେ ॥
କୁଞ୍ଜର ମଦ ବୃଷ୍ଟି କଲେ । ବନ୍ଧୁ ସ୍ୱଭାବେ ମହୀପାଳେ ॥
ମାର୍ଜନା କଲେ ଦାଣ୍ଡ ପଥ । ଦ୍ୱାରେ ସ୍ଥାପିଲେ ରମ୍ଭା ବୃକ୍ଷ ॥
କୁରୁ ସଞ୍ଜୟ ଆଦି ରାଜ । ବିଦର୍ଭ ଯଦୁ କୁନ୍ତଭୋଜ ॥
ଏକ ଆରେକ ମତ୍ତ ହୋଇ । ଆନନ୍ଦ କେ ପାରିବ କହି ॥
ରୁକ୍ମିଣୀ ହରଣର ବାଣୀ । ଭରତ ଖଣ୍ଡ ରାଜାଶୁଣି ॥
ରାଜକୁମାରେ ଯେତେ ଛନ୍ତି । ସଭୟେ କଲେ ମନେ ଭ୍ରାନ୍ତି ॥
ଦ୍ୱାରକା ପୁରେ ଯେତେ ନର । କେ କହୁ ତପ ତାହାଙ୍କର ॥
ଆନନ୍ଦ କଲେ ପୁରେ ପୁର । ନୟନେ ଦେଖି କନ୍ୟାବର ॥
ଲକ୍ଷ୍ମୀ ମାଧବ ବିଭା କାଳେ । ବାନ୍ଧବେ ଯଉତୁକ ଦେଲେ ॥
ସେ ବର କନ୍ୟା ପାଦଗତେ । ନମଇ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ରୁକ୍ମିଣୀ ବିବାହେ ନାମ ଅଷ୍ଟ ପଞ୍ଚାଶତୋଽଧ୍ୟାୟଃ ।*

## ଊନଷଷ୍ଠିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କର ଶିଷ୍ୟ । କନ୍ଦର୍ପ ବାସୁଦେବ ଅଂଶ ॥
ପୁର୍ବେ ଦେବଙ୍କ କାର୍ଯ୍ୟେ ଗଲା । ଈଶ୍ୱର ତପ ଭଗ୍ନ କଲା ॥
ଘୋର ସମାଦି ଭଗ୍ନକାଳେ । କଠୋର ନୟନ ଅନଳେ ॥
ଶରୀର କଲା ଭସ୍ମଯୋଗ । ତେଣୁ ସେ ବୋଲାଇ ଅନଙ୍ଗ ॥
କୃଷ୍ଣର ବୀର୍ଯ୍ୟେ ଜାତ ହୋଇ । ପୁଣ ପାଇଲା ନିଜ ଦେହୀ ॥
ତାହାରି ପତ୍ନୀ ନାମ ରତି । ମାୟା ସଂଯୋଗ ମାୟାବତୀ ॥
କାମ ଦେବର ଭସ୍ମକାଳେ । ଈଶ୍ୱର ନେଲା ତାକୁ ବେଳେ ॥
ଅସୁର ଘରେ କାମବତୀ । ମାୟା ମୋହିନୀ ମାୟାବତୀ ॥
ମାୟା କନ୍ୟାଏ ଜାତ କରେ । ଶମ୍ବର ଭୋଗକରେ ତାରେ ॥
ଦିନ ହରଇ ତହିଁ ଥାଇ । ଏ କଥା ନ ଜାଣନ୍ତି କେହି ॥
ଯେମନ୍ତେ ଶୁଣ ନରନାଥ । ଶମ୍ବର ପୁରେ ବ୍ରହ୍ମସୁତ ॥
ରାତ୍ରେ ମିଳିଲେ ତାର ପାଶେ । କହନ୍ତି ସୁହୃଦ ବିଶ୍ୱାସେ ॥
ବୋଲନ୍ତି ଅସୁରକୁ ଚାହିଁ । ନିଶ୍ଚିନ୍ତ ହେଉ କାହିଁପାଇଁ ॥
କନ୍ଦର୍ପ ତୋହର ବଇରୀ । ତାହାର ଜନ୍ମ ଯଦୁପୁରୀ ॥
ତୁ ଯାଇ ବେଗେ କର ନାଶ । ସେ ତୋର ମରଣେ ବିଶ୍ୱାସ ॥
ନିଶ୍ଚେ ମରିବୁ ତାର ହସ୍ତେ । କହି ଚଳିଲେ ଶୂନ୍ୟପଥେ ॥
ନାରଦ ବଚନେ ଅସୁର । ପଶିଲା ଦ୍ୱାରକା ନଗର ॥
କୃଷ୍ଣର ଅନ୍ତଃପୁରେ ଯାଇଁ । ଯହିଁ ରୁକ୍ମିଣୀ ଅଛି ଶୋଇ ॥
ପଶିଲା ମାୟାରୂପ ଧରି. । ସୂତିକା ଘରୁ ପୁତ୍ର ହରି ॥
ଗଗନ ମାର୍ଗେ ଘେନିଯାନ୍ତେ । ମନେ ଭାଳଇ ଶୂନ୍ୟପଥେ ॥
ଏ ଯେବେ ମୋହର ବଇରୀ । ମୁଁ କିମ୍ପା ଏହା କୋଳେ ଧରି ।
ଯେମନ୍ତ ମନେ ବିଚାରିଲା । ସମୁଦ୍ର ମଧ୍ୟେ ପକାଇଲା ॥
ଆହାର ପ୍ରାୟ ମଣି ଭାବ । ତକ୍ଷଣେ ଗିଳିଲା ରାଘବ ॥
କୃଷ୍ଣର ବଳବୀର୍ଯ୍ୟ ଯୋଗେ । ଭସ୍ମ ନୋହିଲା ମୀନ ଗର୍ଭେ ॥
ରାଘବ ମୀନଗଣ ମେଳେ । ବନ୍ଦି ପଡ଼ିଲା ମହାଜାଳେ ॥
ଧୀବର ଗଣେ ତାହାପାଇ । ଶମ୍ବର ଆଗେ ଦେଲେ ନେଇ ॥
ଅସୁର ମୀନ ଦେଖି ହସି । ସେବକେ ବୋଲଇ ବିଶ୍ୱାସୀ ॥
ରତିର ପାଶେ ନେଇ ଦିଅ । ରନ୍ଧନ କର ବୋଲି କହ ॥
ତକ୍ଷଣେ ମୀନ ଘେନି କରେ । ସେବକେ ପଶିଲେ ଭିତରେ ॥
ମୀନ କାଟନ୍ତେ ସୂପକାରେ । ବାଳକ ଦେଖିଲା ଭିତରେ ॥
ତକ୍ଷଣେ ପୁତ୍ର କୋଳେ ଲଇ । ଶମ୍ବର କୋଳେ ନେଲେ ଦେଇ ॥
ଦେଖି ଆନନ୍ଦ ମହାବୀର । ବୋଲଇ ଶୁଣ ସୂପକାର ॥

ଦଇବେ ପୁତ୍ର ମୋର ନାହିଁ । ରତି ସମୀପେ ଦିଅ ନେଇ ॥
ଏ ମୋର ହୋଇଲା କୁମାର । ତକ୍ଷଣେ ଗଲା ସୂପକାର ॥
ରତିର କୋଳେ ନେଇ ଦେଲେ । ଭୋ ମାତ ପାଳ ଏହା ଭଲେ ।
ଦେଖି ସାନନ୍ଦ ମାୟାବତୀ । ପୁତ୍ର ପାଳନେ କଲାମତି ॥
ଦିନକୁ ଦିନ କୃଷ୍ଣ ବୀର୍ଯ୍ୟ । ବଢ଼ଇ ଅପ୍ରମିତ ତେଜ ॥
ଯେମନ୍ତେ ଗଲା କେତେ ଦିନ । ମିଳିଲେ ବ୍ରହ୍ମାର ନନ୍ଦନ ॥
ଅସୁର ଅନ୍ତଃପୁରେ ପଶି । ରତିକି କହିଲେ ବିଶ୍ୱାସି ॥
ଆଦି କାରଣ କଥା କହି । ବୋଇଲେ ତୋର ସ୍ୱାମୀ ଏହି ॥
ଅନଙ୍ଗ କୃଷ୍ଣ ବୀର୍ଯ୍ୟେ ଜାତ । ସୂତିକା ଘରୁ ଏ ଦଇତ ॥
ହରି ଆଣନ୍ତେ ବାହୁବଳେ । ପଥେ କ୍ଷେପିଲା ମହାଜଳେ ॥
ଆହାର ପ୍ରାୟେ ମଣି ମୀନ । ଗିଳିଲା କୃଷ୍ଣର ନନ୍ଦନ ॥
ବନ୍ଦି ପଡ଼ିଲା ମହା ଜାଲେ । ଦଇବ ଦେଲା ତୋତେ ଭଲେ ॥
ଏହା ତୁ ପାଳ ଚିତ୍ତ ଦେଇ । ଶମ୍ବର ସଂହାରିବ ଏହି ॥
ବିମାନେ ତୋତେ କୋଳକରି । ବିଜୟେ ଦ୍ୱାରକା ନଗରୀ ॥
ଭଜିବୁ ତୋର ନିଜ ନାଥ । କହି ଚଳିଲେ ବ୍ରହ୍ମାସୁତ ॥
ସେ କାମନାରୀ ମାୟାବତୀ । ସ୍ୱାମୀ ସଂଗମ ମନେ ଚିନ୍ତି ॥
ଅସୁର ବୋଲେ ପାକଶାଳେ । ଦଇବ ସୂପକାର ମେଳେ ॥
ରନ୍ଧନ କରି ଷଡ଼ରସ । ଶମ୍ବର କରି ମନ ତୋଷ ॥
ଯେମନ୍ତ ଶୁଣ ନରନାଥ । ଦିନକୁ ଦିନ କୃଷ୍ଣ ସୁତ ॥
ଶୁକ୍ଳ ପକ୍ଷେ ଚନ୍ଦ୍ର ଯେହ୍ନେ । ତେଜେ ବଢ଼ଇ ଦିନେ ଦିନେ
ନିଜ ସ୍ୱାମୀକୁ ଶିଶୁ ଦେଖି । ଯତ୍ନେ ପାଳଇ ଶଶୀମୁଖୀ ॥
କଟାକ୍ଷ ଲୋଚନେ ଅନାଇ । ଭାବେ କାମିନୀ ପ୍ରାୟହୋଇ ॥
ଅଳପ ଦିନେ ଯୁବା ଦେହ । ଦେଖି କମେନୀ ମନେ ମୋହ ॥
ଭସ୍ମ ଅଙ୍କୁର ସେ ମଦନ । ବିଶେଷ କୃଷ୍ଣର ନନ୍ଦନ ॥
ଲୋଚନ ଦିଶେ ପଦ୍ମତେଜ । ଲମ୍ବ ସୁନ୍ଦର ବେନିଭୁଜ ॥
ଅତି ସୁନ୍ଦର ରୂପଦେଖି । ଅନଙ୍ଗ ହାସ୍ୟ ଚନ୍ଦ୍ରମୁଖୀ ॥
ମିଳିଲା କୃଷ୍ଣସୁତ ପାଶେ । ସକାମେ ରତିରଙ୍ଗ ଆଶେ ॥
ଦେଖି ତାହାର ବିପରୀତ । ଭୟେ ଉଠିଲା କୃଷ୍ଣସୁତ ॥
ସଭ୍ରମେ ତାର ମୁଖ ଚାହିଁ । ବୋଲଇ ଶିରେ କରଦେଇ ॥
ତୁ ଯେ ମୋହର ନିଜ ମାତ । ଏବେ ଦେଖିଲି ବିପରୀତ ॥
ମାତାର ସ୍ନେହ ଦୂରକରି । କାମିନୀ ଭାବ ତୁ ଆଚରି ॥
କହ କେବଣ ବିପରୀତ । ଭୟେ ଉଠିଲା କୃଷ୍ଣସୁତ ॥
ଶୁଣି ବୋଲଇ ମାୟାବତୀ । ତୁ ନାଥ ମୋର ନିଜ ପତି ॥
ରୁଦ୍ର ନୟନେ ଭସ୍ମ ହୋଇ । ଅନଙ୍ଗ ନାମ ତୁ ଯେ ବହି ॥
କେତେହେଁ କାଳେ ନିଜ ତେଜେ । ଜାତ ହୋଇଲୁ କୃଷ୍ଣ ବୀର୍ଯ୍ୟେ

ନାରଦ ମୁଖୁଁ ତୋର ବାଣୀ । ନିଜ ମରଣ ତଥ୍ୟ ଜାଣି ॥
ମାୟା ଅସୁରେ ବେଗେ ଗଲା । ଦ୍ୱାରକା ନଗରେ ମିଳିଲା ॥
ସୂତିକାଘରୁ ତୋତେ ଆଣି । ଆତ୍ମା ବଇରୀ ପ୍ରାୟେ ମଣି ॥
ଲବଣ ଜଳେ ପକାଇଲା । ତୋତେ ଯେ ମୀନ ଗିଳିଥିଲା
ସେ ମୀନ ଅସୁର ନିକଟେ । ଧୀବର ନେଇ ଦେଲା ଭେଟେ
ବ୍ରାହ୍ମଣ ଆଣି ପାକଶାଳେ । ଶସ୍ତ୍ରେ ଯେ ଛେଦିବାର ବେଳେ
ମୀନ ଓଦରୁ ତୋତେ ପାଇ । ପାଳଇ ସୁତ ସ୍ନେହେ ମୁହିଁ ॥
ନାରଦେ କହିଗଲେ ଏବେ । ତେଣୁ ଭଜଇ ପତ୍ନୀ ଭାବେ ॥
ମୋହର ନିଜ ନାମ ରତି । ତୁ ସେ ମୋହୋର ନିଜ ପତି
ଦୁର୍ଦ୍ଦର ରିପୁ ଏ ତୋହର । ଏହାର ପ୍ରାଣବେଗେ ହର ॥
ଅନେକ ମାୟା ଶାସ୍ତ୍ର ଜାଣେ । ଦେବେ ଡରନ୍ତି ଏହା ରଣେ ॥
ମୋହର ମାୟା ଅଛି ଯେତେ । ଅସୁର ନ ଜାଣଇ ତୋତେ ॥
ମାୟାରେ ବଞ୍ଚାଇ ଅସୁର । ବଞ୍ଚଇ ଶମ୍ବର ନଗର ॥
ମାୟା ମୋହରେ ଶସ୍ତ୍ରଭେଦି । ବେଗେ ଏହାର ଶିର ଛେଦି ॥
ବିମାନେ ବସି ନାଥ ଏବେ । ଚାଲ ଦ୍ୱାରକା ଯିବା ବେଗେ ॥
ତୋର ଜନନୀ ବଡ଼ ଦୁଃଖୀ । ରୁକ୍ମିଣୀ ଦେବୀ ଚନ୍ଦ୍ରମୁଖୀ ॥
ଓଦରେ ବହି ଦଶମାସ । ପ୍ରସବେ ଆସିଲା ରାକ୍ଷସ ॥
କୁରରୀ ପ୍ରାୟେ ପୁତ୍ରଶୋକେ । ଦିନ ବଞ୍ଚଇ ଅତି ଦୁଃଖେ ॥
ଆକୁଳ ପୁତ୍ର ଶୋକେ ହୋଇ । ମୃତ ବସିକା ଯେହ୍ନେ ପାଇ ॥
ଏମନ୍ତ କହି ତାର ପାଶେ । ମୋହନୀ ବିଦ୍ୟା ଦେଲା ତୋଷେ ॥
ସକଳ ବିଦ୍ୟା ଯେତେ ଜାଣି । ସ୍ୱାମୀକି କହିଲା ତରୁଣୀ ॥
କୃଷ୍ଣ ନନ୍ଦନ ଶୁଣି ତାହା । ଅଭ୍ୟାସ କଲା ମୋହମାୟା ॥
ଏମନ୍ତେ ପାହିଲା ରଜନୀ । କନ୍ଦର୍ପ କରେ ଗଦା ଘେନି ॥
ଶମ୍ବର ସଭାତଳେ ମିଳି । ଯୁଦ୍ଧେ ଡାକଇ ମହାବଳୀ ॥
ଅନେକ ନିନ୍ଦାବାକ୍ୟ ମତ । କହନ୍ତେ କଳି କଲା ଜାତ ॥
ଅତି ନିନ୍ଦିତ କଥା ଶୁଣି । ବେଗେ ଉଠିଲା ଶିର ଝୁଣି ॥
ଶମ୍ବର କହେ ବଳଦର୍ପ । ପାଦ ପ୍ରହାରେ ଯେହ୍ନେ ସର୍ପ ॥
ବଜ୍ର ସମାନେ ଗଦାକର । ଶମ୍ବର ହୋଇଲା ବାହାର ॥
ରୋଷେ ବଦନ ତମ୍ବା ପ୍ରାୟେ । ପିଟିଲା ପ୍ରଦ୍ୟୁମ୍ନର ଦେହେ ॥
କୋପେ ଛାଡ଼ିଲା ଘୋର ରଡ଼ି । ଯେସନେ ମେଘ ଘଡ଼ଘଡ଼ି ॥
କୃଷ୍ଣ ନନ୍ଦନ ଗଦା ବେଗେ । କୋପେ ବୁଲାଇ ଦଶ ଦିଗେ ॥
ଶମ୍ବର ଗଦା କଲା ଚୂର । କୋପେ ଡାକିଲା ମହାଘୋର ॥
କନ୍ଦର୍ପ କରେ ଗଦା ଦେଖି । ଅସୁର ସଂଗ୍ରାମ ଉପେକ୍ଷି ॥
ଗଗନ ମାର୍ଗେ ଆଶ୍ରାକରି । ଅନେକ ମାୟାଶସ୍ତ୍ର ଧରି ॥
ଶର ବରଷା ମହାଘୋର । ବଡ଼ ସେ ମାୟାବୀ ଅସୁର ॥

ବାଣ ବରଷା ପୀଡ଼ା ପାଇ । କନ୍ଦର୍ପ ଚଉଦିଗେ ଚାହିଁ ॥
ନିଜ ମୋହନ ବିଦ୍ୟାସତ । ଶମ୍ବର ମାୟା କଲା ହତ ॥
ପୁଣି ଅସୁର ଶୂନ୍ୟଦେହା । ପ୍ରକାଶ କଲା ନାନା ମାୟା ॥
ପିଶାଚ ଗନ୍ଧର୍ବ ଗୁହାଇ । କହଇ ରୋଷଭର ହୋଇ ॥
ଉଡ଼ଙ୍ଗ ରାକ୍ଷସ ଶୋଷକ । ଶତ ସହସ୍ର ଅପ୍ରମିତ ॥
ତାହାରେ ଜାଣି କୃଷ୍ଣସୁତ । ନିଜ ମାୟାରେ କଲା ହତ ॥
ନିଜ ଖଡ଼ଗ କରେ ଧରି । ପ୍ରଦ୍ୟୁମ୍ନ ଗଗନେ ସଞ୍ଚରି ॥
ଶମ୍ବର କେଶ ବାମକରେ । ଧରି କାଟିଲା ତାର ଶିରେ ॥
ମୁଣ୍ଡ ପଡ଼ିଲା ଭୂମିତଳେ । ସୁନ୍ଦର କିରୀଟୀ କୁଣ୍ଡଳେ ॥
ତମ୍ବାର ପ୍ରାୟେ ଦାଡ଼ିମୁଖ । ଦେଖନ୍ତି ସ୍ୱର୍ଗେ ଦେବଲୋକ ॥
ଆନନ୍ଦେ କୁସୁମ ବରଷି । କାମର ବିକ୍ରମ ପ୍ରଶଂସି ॥
ଅସୁର ମାରି କୃଷ୍ଣବଳା । ସୁବର୍ଣ୍ଣରଥେ ବିଜେ କଲା ॥
କୋଳେ ବସାଇ ମାୟାବତୀ । ବେଗେ ମିଳିଲା ଦ୍ୱାରାବତୀ ॥
ଗଗନ ମାର୍ଗେ କୃଷ୍ଣପୁରେ । ବିମାନ ପଶିଲା ଭିତରେ ॥
ବିଜୁଳି ମେଘ ସଙ୍ଗେ ଯେହ୍ନେ । ଦେଖି ଚକିତ ସର୍ବଜନେ ॥
କୃଷ୍ଣ ଭୁବନେ ଯେତେ ନାରୀ । ରୁକ୍ମିଣୀ ଦେବୀ ଆଦିକରି ॥
ଅପୂର୍ବ କୃଷ୍ଣର ନନ୍ଦନ । ଚାହାନ୍ତି ନିଶ୍ଚଳ ଲୋଚନ ॥
ନୀଳ ଜୀମୂତ ପ୍ରାୟ ଦେହୀ । ପୀତ ବସନ ବିରାଜଇ ॥
ପଦ୍ମଲୋଚନ ଦୀର୍ଘବାହୁ । ବୋଲନ୍ତି ଆଇଲା ଏ କାହୁଁ ॥
ଅଳପ ହାସ ମୁଖ ଶୋହେ । ରୂପେ କାମିନୀ ମନ ମୋହେ॥
ନୀଳ କୁନ୍ତଳ ଭୂରୁ ତେଜେ । ସୁନ୍ଦର ପଦ୍ମମୁଖ ସାଜେ ॥
କୃଷ୍ଣର ପ୍ରାୟେ ତାକୁ ମଣି । ସଭୟେ ଚିହ୍ନିଲେ ତରୁଣୀ ॥
ପୁଣି କ୍ଷଣକେ ସ୍ଥିରେ ଚାହିଁ । ଜାଣିଲି କୃଷ୍ଣ ଏ ନୋହଇ ॥
ପୁଣି ମିଳିଲେ ତାର ପାଶେ । ନିଶ୍ଚୟ ଜାଣିବାର ଆଶେ ॥
ସ୍ଥିରେ ଚାହାନ୍ତି ସର୍ବେ ରହି । ମଦନେ ତନୁ ନ ଚଳଇ ॥
କାମିନୀ ରତ୍ନ ତାର କୋଳେ । ଦେଖି ଭାଳନ୍ତି କାମ ଭୋଳେ
ରୁକ୍ମିଣୀ ନିଜ ପୁତ୍ର ଚାହିଁ । ବିତର୍କେ ମନେ ବିଚାରଇ ॥
ପ୍ରସବକାଳେ ମୋ କୁମର । ଶୟନପୁରୁ ନେଲା ଚୋର ॥
ପୁତ୍ର ସୁମରି ଶୋକ ମନେ । କ୍ଷୀର ସ୍ରବଇ ବେନିସ୍ତନେ ॥
କାହୁଁ ଅଇଲା ଏ କୁମର । ମନୁଷ୍ୟ ରୂପ କଳେବର ॥
କୃଷ୍ଣର ଚିହ୍ନ ଏହା ଦେହେ । ଦିଶଇ ଇନ୍ଦ୍ରନୀଳ ପ୍ରାୟେ ॥
କେଉଁ ଯୁବତୀ ଗର୍ଭେ ଥିଲା । ଅପୂର୍ବ କାହୁଁ ଏ ଅଇଲା ॥
ଯୁବତୀ ଅଛି ଏହା କୋଳେ । ଲଭିଲା ପୂର୍ବ ତପଫଳେ ॥
ମୋର ବାଳକ ନଷ୍ଟଗଲା । ସୂତିକାପୁରୁ କେ ହରିଲା ॥
ଜୀବନ୍ତେ ଥିବ ଯହିଁ ତହିଁ । ଏହାର ତୁଲ୍ୟ ରୂପବହି ॥
ଦେହେ ସକଳ ଚିହ୍ନ ବହି । କୃଷ୍ଣ ପ୍ରାୟେତ ଏ ଦିଶଇ ॥
ଆକୃତି ଅବୟବ ଯେହ୍ନେ । ସୁନ୍ଦର ସ୍ୱର ବୀରପଣେ ॥
ସେ ପୁତ୍ର ହୁଏ ଅବା ଭାବେ । ଯାହା ଧଇଲି ମୁହିଁ ଗର୍ଭେ ॥
ମୋହର ଚିତ୍ତ ଏହା ତହିଁ । ବାମ ନୟନ ମୋ ସ୍ଫୁରଇ ॥
ପୁଲକି କମ୍ପେ ବାମଭୁଜ । ଏହାର ଦେହେ କୃଷ୍ଣତେଜ ॥
ରୁକ୍ମିଣୀ ଏମନ୍ତ ବିଚାରି । ବିଜୟ କଲେ ନରହରି ॥
ଦେବକୀ ବସୁଦେବ ସଙ୍ଗେ । କୃଷ୍ଣ ମିଳିଲେ ସୁତ ଆଗେ ॥
ଗୋବିନ୍ଦ ସର୍ବ ତାହା ଶୁଣି । ବାଳକ ଦେଖି ହେଲେ ତୁନି ॥
ଯେମନ୍ତେ ଶୁଣ ନରନାଥ । ବ୍ରହ୍ମାନନ୍ଦନ ଉପଗତ ॥
ଦେଖିଣ ସଂଶୟ ଆନନ୍ଦ । ସକଳ କହିଲେ ନାରଦ ॥
ଶୁଣି ନାରଦ ମୁଖୁ ବାଣୀ । ଗୋବିନ୍ଦ ପୁରେ ଯେତେ ପ୍ରାଣୀ ॥
ତରୁଣ ବାଳବୃଦ୍ଧ ସଙ୍ଗେ । ଉଚ୍ଛବ କଲେ ନାନାରଙ୍ଗେ ॥
ଦେଖ ରୁକ୍ମିଣୀ ପୁଣ୍ୟରାଶି । ଯମର ଘରୁ ପୁତ୍ର ଆସି ॥
ମୋହିଲା ଦ୍ୱାରକା ଭୁବନ । ବାଳ ତରୁଣ ବୃଦ୍ଧଜନ ॥
କୋଳେ କାମିନୀ ସୁକୁମାରୀ । ରୂପେ ଭୁବନେ ନାହିଁ ସରି ॥
ଦେବକୀ ଦେବୀ ବସୁଦେବ । ଥିଲେ ଯେ ଶ୍ରୀରାମ ମାଧବ ॥
ଯଦୁ ନଗରେ ନାରୀଯେତେ । ମିଳିଲେ ଦୂର୍ବାଙ୍କୁର ହସ୍ତେ ॥
ଅକ୍ଷତ ଦେଇ ପୁତ୍ର ଶିରେ । ମଙ୍ଗଳ କଲେ ଉଚ୍ଚ ସ୍ୱରେ ॥
ରୁକ୍ମିଣୀ ପୁତ୍ର ଧରି କୋଳେ । ଚୁମ୍ବନ ଦେଲେ ସୁଖ ଭୋଳେ
ସଙ୍ଗେ ସକଳ ପରିବାରୀ । ଆନନ୍ଦେ ବଧୂ କୋଳେ ଧରି ॥
ଯଦୁ ନଗରେ ଯେତେ ଜନ । ଶୁଣି ସାନନ୍ଦ କଲେ ମନ ॥
ରୁକ୍ମିଣୀ ଦେବୀ ପୁଣ୍ୟ ଦେଖ । ମରଣୁ ଅଇଲା ବାଳକ ॥
ଶୁକ କହନ୍ତି ଶୁଣ ନୃପ । ମାତାଏ ଦେଖି ପୁତ୍ର ରୂପ ॥
କୃଷ୍ଣର ପ୍ରାୟ ମଣି ତାହା । ଅନଙ୍ଗେ ବଳିଲା ଉତ୍ସାହା ॥
ସ୍ୱଭାବେ କାମ କୃଷ୍ଣ ପ୍ରାୟେ । ସର୍ବ ଲକ୍ଷଣ ଅଛି ଦେହେ ॥
ଅନ୍ୟ ଭୁବନ ନାରୀ ଯେତେ । ତାହାକୁ ଦେଖି ହୃଦଗତେ ॥
କାମେ ହୋଇଲେ ଉନମତ୍ତା । ଚିତ୍ର ନୋହିଲା ସେହୁ କଥା ॥
ବୋଲଇ ଦାସ ଜଗନ୍ନାଥ । ରୁକ୍ମିଣୀ ତନୟ ପ୍ରାପତ ॥
ସୁଜନେ ଶୁଣ ଶ୍ରୁତିପଥେ । ସଂସାରୁ ତରିବ ଯେମନ୍ତେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଶମ୍ବରସୁର ବଧେ ରୁକ୍ମିଣୀ ତନୟ ପ୍ରାପ୍ତୌ ନାମ ଊନଷଷ୍ଟିତୋଽଧ୍ୟାୟଃ ।*

## ଷଷ୍ଟିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମହାମୁନି । ଶୁଣ ରାଜନ ଚୂଡ଼ାମଣି ।
ଯଦୁନଗରେ ଶକ୍ରାଜିତ । କୃଷ୍ଣଙ୍କୁ କଲା ଦ୍ରୋହଚିତ୍ତ ।
ନିଜ ଦୋହିତା ସତ୍ୟଭାମା । ଅଂଶେ ସମ୍ଭୂତ କି ଏ ରାମା ।
ଅମୂଲ୍ୟ ସ୍ୟମନ୍ତକ ମଣି । ନିଜ ଦୋହିତା ସଙ୍ଗେ ଆଣି ।
କୃଷ୍ଣ ଚରଣେ ଦେଲା ନେଇ । ଆତ୍ମାର ଅପ୍ରାଧ ଛଡ଼ାଇ ।
ଯେମନ୍ତେ ଶୁକ ବୋଲ ଶୁଣି । ପରୀକ୍ଷ କହେ ସାଧୁବାଣୀ ।

### ରାଜା ଉବାଚ

କହ କେମନ୍ତ ଶକ୍ରାଜିତ । କୃଷ୍ଣ ବିଜୟେ ବିପରୀତ ।
କାହୁଁ ଆଣିଲା ରତ୍ନମଣି । କୃଷ୍ଣେ ଦୋହିତା ଦେଲା ଆଣି ।
କି ଅବା କଲା ଯଦୁପୁରେ । ସ୍ୱଜନ ବାନ୍ଧବ ବେଭାରେ ।
ଶୁଣି ବୋଇଲନ୍ତି ବ୍ୟାସସୁତ । ଶୁଣ ରାଜନ ଏକ ଚିତ୍ତ ।
ଅନେକ ତପେ ଶକ୍ରାଜିତ । ସୂର୍ଯ୍ୟର ସଙ୍ଗେ ହେଲା ମିତ୍ର ।
ପ୍ରସନ୍ନ ଚିତ୍ତେ ପଦ୍ମପାଣି । ଆପଣା କଣ୍ଠୁ ରତ୍ନମଣି ।
ଶକ୍ରାଜିତର କଣ୍ଠେ ଦେଇ । ତପନ ଗଲେ ତୋଷ ହୋଇ ।
ଯେମନ୍ତେ ମଣି କଣ୍ଠେ ଭରି । ଆନନ୍ଦେ ଯାନ୍ତେ ନିଜ ପୁରୀ ।
ପଥେ ଆସନ୍ତେ ଶକ୍ରାଜିତ । ଦିଶଇ ଦ୍ବିତୀୟ ଆଦିତ୍ୟ ।
ମଣିର ତେଜ ତାର ଦେହୀ । ଜନ ନୟନ ନୋହେ ଚାହିଁ ।
ଚାହିଁଲେ ଚକ୍ଷୁ ତେଜ ନାଶେ । କେହି ନ ରହେ ତାର ପାଶେ ।
ଦେଖି ସକଳେ ପଳାଇଲେ । ଗୋବିନ୍ଦ ନିକଟେ ମିଳିଲେ ।
ଅଭୟ ପଦ୍ମପାୟେ ପଡ଼ି । କହନ୍ତି ବେନି କର ଯୋଡ଼ି ।
ଅକ୍ଷ ଖେଳଣେ ଭଗବାନ । ଜନ ବଚନେ ସାବଧାନ ।
ଜନେ କହନ୍ତି ଯୋଡ଼ି କର । ଭୋ ନାଥ ଶୁଣ ଚକ୍ରଧର ।
ପଦ୍ମ ଲୋଚନ ନାରାୟଣ । ଅନାଦି ପରମ କାରଣ ।
ଭୋ ନାଥ ତୋର ପଦ୍ମପାଦେ । ଦ୍ରଶନେ ରବି କଲା ସଧେ ।
ଗଗନେ ଅଛି ଦେହ ଧରି । ମଞ୍ଚେ ପ୍ରତକ୍ଷେ ଦେହ ଧରି ।
ତାହାର ତେଜ ଭଗବାନ । ଚାହିଁଲେ ଖଣ୍ଡଇ ନୟନ ।
ତୁ ନାଥ ଜଗତ ଠାକୁର । ସକଳେ ତୋହୋର କିଙ୍କର ।
ଦେବେ ତୋହୋର ପଦ୍ମପାଦେ । ସେବନ୍ତି ମୋକ୍ଷ ଫଳ ସଧେ ।
ଏ ଯଦୁକୁଳେ ତୁ ସମ୍ଭୂତ । ଶୁଣି ସାନନ୍ଦ ଛାୟାକାନ୍ତ ।
ଦେଖିବ ତୋହୋର ଚରଣ । ତୁ ଯେ ଅନାଦି ନାରାୟଣ ।
ବୋଇଲନ୍ତି ଶୁକ ମହାମୁନି । ବକ୍ରବଚନ କୃଷ୍ଣ ଶୁଣି ।
ପଦ୍ମ ଲୋଚନ ଚାହିଁ ହସି । କହନ୍ତି ସ୍ୱଜନ ଆଶ୍ୱାସି ।

### ଶ୍ରୀ ଶୁକ ଉବାଚ

ସେ ନୋହେ ପ୍ରଭୁ ଦିନନାଥ । ବର ଲଭିଲା ଶକ୍ରାଜିତ ।
ତପେ ଆଦିତ୍ୟ ସେବା କରି । ଆସଇ ମଣି କଣ୍ଠେ ଭରି ।
ମଣି କିରଣ ରବି ପ୍ରାୟେ । ତୁମ୍ଭେ ନ କର ମନେ ଭୟେ ।
ଯେମନ୍ତେ କହି ଭଗବାନ । ଅକ୍ଷ କ୍ରୀଡ଼ାରେ ଦେଲେ ମନ ।
ଯେମନ୍ତେ ଶକ୍ରାଜିତ ଗଲା । ନିଜ ଭୁବନେ ବିଜେ କଲା ।
ନିତ୍ୟେ ଉତ୍ସବ ତାର ଘରେ । ଦେବ ମନ୍ଦିର ବିପ୍ର ବରେ ।
ମଣି ନିବେଶି ବିପ୍ର କରେ । ଆନନ୍ଦେ ପଶିଲା ଭିତରେ ।
ମଣି ତାହାର ଦେବ ଘରେ । ପୂଜା କରନ୍ତି ବିପ୍ରବରେ ।
ଶୁଣ ରାଜନ ସାଧୁ ବାଣୀ । ତାର ଭୁବନେ ରତ୍ନ ମଣି ।
ସୁବର୍ଣ୍ଣ ଅଷ୍ଟ ଭାର ନିତି । ମଣି ଶରୀରୁ ଉତପତି ।
ଦୁର୍ଭିକ୍ଷ ମାରି ଭୟ ନାହିଁ । ଅଶୁଭ ଫଳ ନ ଲାଗଇ ।
ସର୍ପ ବିଘାତ ଆଦି ରୋଗ । ନୁହନ୍ତି ଭୁବନେ ସଂଯୋଗ ।
ନିତ୍ୟେ ପୂଜନ୍ତି ରତ୍ନମଣି । ତହିଁ ନ ଥାନ୍ତି ମାୟା ପ୍ରାଣୀ ।
ଯେମନ୍ତେ ଗଲା ଦିନାକେତେ । ଶୁଣ ରାଜନ ଯେକ ଚିତ୍ତେ ।
ଦିନେକ ପ୍ରଭୁ ଜଗନ୍ନାଥ । ଗୃହେ ଅଣାଇ ଶକ୍ରାଜିତ ।
ବୋଇଲେ ପ୍ରଭୁ ଚକ୍ରପାଣି । ଉଗ୍ରେସନଙ୍କୁ ଦିଅ ମଣି ।
ଯେହୁ ଭଣ୍ଡାରେ ନାହିଁ ଧନ । ମଣି ଏ ପୂଜୁ କିଛୁ ଦିନ ।
ଯେମନ୍ତେ ଗୋବିନ୍ଦ ବଚନେ । ଭାଳଇ ଶକ୍ରାଜିତ ମନେ ।
ଦିନକୁ ଦିନ ଅଷ୍ଟଭାର । ସୁବର୍ଣ୍ଣ ଭଣ୍ଡାରେ ମୋହୋର ।
କେମନ୍ତେ ଦେବି ରତ୍ନମଣି । ଯେମନ୍ତ ଭାଳି ହୋଏ ତୁନି ।
ଅର୍ଥ କାମୁକ ଧନ ଆଶେ । ପଡ଼ିଲା ଗୃହ ମୋହଫାଶେ ।
ଦେବା ନ ଦେବା ନ ବୋଇଲା । କୃଷ୍ଣର ଅଜ୍ଞା ଭ୍ରଷ୍ଟ କଲା ।
ନିରାଶ କରି ଚକ୍ରଧର । ମିଳିଲା ଆପଣା ମନ୍ଦିର ।
ଯେମନ୍ତେ ଶୁଣ ନରନାଥ । ପ୍ରସନ୍ନ ନାମେ ତାର ଭ୍ରାଥ ।
ସେ ରତ୍ନମଣି କଣ୍ଠେ ଭରି । ଅଶ୍ୱ ଉପରେ ବିଜେ କରି ।
ମୃଗୟା ଗଲା ସୁଖ ମନେ । ପଶିଲା ଘୋର କୁଞ୍ଜ ବନେ ।
ଗହନ ବନେ ସିଂଘ ଥିଲା । ପ୍ରସନ୍ନ ଦେଖି ଓଗାଳିଲା ।
ଅଶ୍ୱ ସହିତ ତାକୁ ମାରି । ସେ ମଣି ସିଂଘ କଣ୍ଠେ ଭରି ।
ପର୍ବତ ନିକଟେ ମିଳିଲା । ତହିଁ ଜାମ୍ବେବ ବୀର ଥିଲା ।
ଭାଲୁର ରୂପ ସେ ସ୍ୱଭାବେ । ଧାଇଁଲା ସିଂଘ ଦେଖି ବେଗେ ।
କର ପ୍ରହାରେ ମୁଣ୍ଡ କାଟି । ସିଂଘ ପଡ଼ିଲା ଭୂମି ଲୋଟି ।
ସେ ମଣି ଘେନି ଅତି ଖରେ । ପଶିଲା ପାତାଳ ବିମ୍ବରେ ।
ନିଜ ଭୁବନେ ବୀର ଯାଇ । ସେ ମଣି ପୁତ୍ର କଣ୍ଠେ ଦେଇ ।

ଧାତ୍ରୀ ଖେଳାଇ ତାର ସୁତ । ଯେବେ ହୋ ଶୁଣ ନରନାଥ ॥
ପ୍ରସନ୍ନ ନ ଦେଖି ନୟନେ । ଭାଳଇ ଶକ୍ରାଜିତ ମନେ ॥
ମୃଗୟା ଗଲା ମୋର ଭ୍ରାଥ । ଗୃହେ ନୋହିଲା ଉପଗତ ॥
ବନେ କି ପଡ଼ିଲା ଆପଦ । କି ଅବା ହୋଇଲା ପ୍ରମାଦ ॥
ଯେମନ୍ତେ କରଇ ରୋଦନ । ବିକଳେ ବିଚାରଇ ମନ ॥
କୃଷ୍ଣ ମାଗିଲେ ମୋତେ ମଣି । ନ ଦେଇ ମୁଁ ଯେ ହେଲି ତୁନି ॥
ସେ ଅବା ମୋତେ ମାୟା କଲା । ପ୍ରସନ୍ନ ମାରି ମଣି ନେଲା ॥
ସେ କଥା ଶୁଣି ସର୍ବଜନେ । ମିଳି କହନ୍ତି କାନେ କାନେ ॥
ଗୋବିନ୍ଦ କଲେ ଏଡେ କର୍ମ । ଲୋକରେ ଶୁଭିଲା ଅଧର୍ମ ॥
ବିଷମ ଲୋକ ଅପବାଦ । ଶୁଣି ପାଇଲେ କୃଷ୍ଣ ଖେଦ ॥
ବୋଲନ୍ତି ମୋର ଅପମାନ । ମୁଁ ଯେବେ କରିବି ମାର୍ଜନ ॥
ସଙ୍ଗତେ ଘେନି ସର୍ବଜନ । ବନେ ପଶିଲେ ଭଗବାନ ॥
ବନେ ଖୋଜନ୍ତି ବନମାଳୀ । ପ୍ରସନ୍ନ ହତ ସ୍ଥାନେ ମିଳି ॥
ଅଶ୍ୱ ସହିତେ ଅଛି ପଡ଼ି । ଦେଖି ଚକିତ ବନମାଳୀ ॥
ବୋଲନ୍ତି ମଲା ଏ କେମନ୍ତେ । ଦେଖିଲେ ସିଂଘ ପାଦ ପାତେ ॥
ପାଦ ନିରୋପି ସର୍ବଜନେ । ଥୋକାଏ ଗଲେ ଘୋର ବନେ
ଗିରି କନ୍ଦରେ ନାରାୟଣ । ଦେଖିଲେ ସିଂଘର ମରଣ ॥
ଚକିତେ ପ୍ରଭୁ ନରହରି । ସିଂଘ ମରଣ ଅନୁସରି ॥
ଦେଖିଲେ ଭାଲୁର ଚରଣ । ସମ୍ଭ୍ରମେ ମିଳି ସର୍ବଜନ ॥
ଭାଲୁର ପାଦଚିହ୍ନ ଚାହିଁ । ଚଳନ୍ତି ଅଙ୍ଗୁଳି ଦେଖାଇ ॥
ପୁଣି କେତେହେଁ ଦୂର ଗଲେ । ଚରଣ ପଡ଼ିଅଛି ବିଳେ ॥
ସେ ବିଳ ଘୋର ଅନ୍ଧକାର । ଦେଖି ଚକିତ ଦାମୋଦର ॥
ତୁମ୍ଭେ ସକଳ ପ୍ରଜାଜନେ । ଏଠାରେ ଥିବ ସାବଧାନେ ॥
ଅଯଶ ଲୋକ ଅପବାଦେ । ମୁହିଁ ପଶିବି ବିଳ ମଧେ ॥
ଯେମନ୍ତ କହି ଭାବଗ୍ରାହୀ । ବିଳେ ପଶିଲେ କୃଷ୍ଣ ଯାଇଁ ॥
ଅନ୍ଧାର ପଥେ ଦଇତ୍ୟାରି । ଜାମ୍ବବ ପୁରେ ବିଜେ କରି ॥
ତାହାର ପୁତ୍ର କଣ୍ଠେ ମଣି । ଦୂରୁ ଦେଖିଲେ ଚକ୍ରପାଣି ॥
ବେଗେ ମିଳିଲେ ତାର ପାଶେ । ସେ ରତ୍ନ ଲଭିବାର ଆଶେ ॥
ଧାଇ ଯେ ପୁତ୍ର ସଙ୍ଗେ ଥିଲା । ଅପୂର୍ବ ରୂପ ସେ ଦେଖିଲା ॥
ମନୁଷ ଦେଖି ଭୟେ କରି । ସମ୍ଭ୍ରମେ ପୁତ୍ରେ କୋଳ କରି ॥
ଭୟେ ଡାକିଲା ଉଚ୍ଚ ସ୍ୱରେ । ଜାମ୍ବବ ଥିଲା ଯେ ଭିତରେ ॥
ଶୁଣି ଧାଇଁଲା ମହାବଳୀ । ବେଗେ ବାଳକ ସ୍ଥାନେ ମିଳି ॥
ଦେଖିଲା ପ୍ରଭୁ ଭଗବାନ । ହୃଦୟେ ଶ୍ରୀବତ୍ସର ଚିହ୍ନ ॥
ଜାମ୍ବବ ନିଜ ନାଥ ଚାହିଁ । ମାୟାରେ ଚିହ୍ନି ନ ପାରଇ ॥
ଇତର ଲୋକ ପ୍ରାୟେ ମଣି । କୋପେ ଧାଇଁଲା ବୀରମଣି ॥
ଭାଲୁର ସ୍ୱଭାବ ଯୁଗତ । ବେଗେ ଧଇଲା କୃଷ୍ଣ ହସ୍ତ ॥
ହରି ମହିମା ନ ଜାଣିଲା । ଇତର ପ୍ରାୟେ ସେ ମଣିଲା ॥
ତକ୍ଷଣେ ପାଦେ ପାଦଛନ୍ଦି । ଭୁଜ ଯୁଗଳ ହୃଦେ ବାନ୍ଧି ॥
ବିଷମ ମାଲ ଯୁଦ୍ଧ ଘୋର । ଜିଣିବା ଆଶେ ବଳୀୟାର ॥
ଜିଣି ନ ପାରି ମାଳ ଯୁଦ୍ଧେ । ସମର କରନ୍ତି ଆୟୁଧେ ॥
ବୃକ୍ଷ ପାଷାଣ ହସ୍ତେ ଧରି । ପିଟନ୍ତି ଘୋର ନାଦ କରି ॥
ଆମିଷ ଅର୍ଥେ ଯେହ୍ନେ ଖଗ । କୋପେ କରନ୍ତି ରଣରଙ୍ଗ ॥
ଯେମନ୍ତେ ଅଷ୍ଟାଦଶ ଦିନ । ସମର କଲେ ବେନି ଜନ ॥
ବୃକ୍ଷ ପାଷାଣ ରେଣୁ ହେଲା । ଅନେକ କଳି ଉପୁଜିଲା ॥
ମୁଷ୍ଟି ପ୍ରହାରି ଭୁଜେ ଭିଡି । ଶବଦ ମେଘ ଘଡ଼ଘଡ଼ି ॥
ନିରତେ କରନ୍ତି ସମର । ଶୁଣ ରାଜନ କୁରୁବୀର ॥
ଛିନ୍ନ ହୋଇଲା ବଳ ଗାତ୍ର । ବିସ୍ମୟେ ହୋଇ ମୁରଛିତ ॥
କୃଷ୍ଣର ମୁଷ୍ଟି ହୃଦେ ବାଜି । ଜାମ୍ବବ ଦର୍ପ ହେଲା ଗଞ୍ଜି ॥
ଚାହିଁଲା କୃଷ୍ଣର ବଦନ । ତକ୍ଷଣେ ପାଇ ଦିବ୍ୟଜ୍ଞାନ ॥
ତାହାନ୍ତେ ପାପ କ୍ଷୟ ଗଲା । ନିର୍ମଳ ଜ୍ଞାନ ପ୍ରକାଶିଲା ॥
ବୋଲଇ କୃଷ୍ଣ ମୁଖ ଚାହିଁ । ଭୋ ନାଥ କର ମୋତେ ତ୍ରାହି
ତୁ ସର୍ବ ଜନ୍ତୁଙ୍କର ତେଜ । ମାୟା ପୁରୁଷ ଦେବରାଜ ॥
ପୁରାଣ ପୁରୁଷ ଅନାଦି । ସଂସାର ମାୟାବଳେ ଛନ୍ଦି ॥
ସ୍ୱଭାବେ ବିଷ୍ଣୁ ତୁ ଈଶ୍ୱର । ମହା ମହିମା ଯୋଗେଶ୍ୱର ॥
ବ୍ରହ୍ମାଦି ଯେତେ ସୃଷ୍ଟିପାଳ । ତାହାଙ୍କ ସ୍ୱାମୀ ତୁ ଗୋପାଳ ॥
ଏ ସୃଷ୍ଟି ଅନ୍ତେ ତୋତେ ଦେହେ । ପଶଇ ପ୍ରମାଣୁ ପରାୟେ ॥
ଈଷିତ ଦନଳ ବଦନ । ଦେଖି ଜଳଧି ଭୟ ମନ ॥
ଖଳ ନାଶନ ବାନା ତୋର । ପରମ ଆତ୍ମା ଯୋଗେଶ୍ୱର ॥
ଘୋର ଗହନ ଗ୍ରାହାଗଣ । ଦେଖି ଜଳଧି ଭୀତ ମନ ॥
ଘୋର ଗଭୀର ଗରଜନ । କ୍ଷୋଭିତ ଲଭି ଅନୁକ୍ଷଣ ॥
ତୋହୋର ଚରଣେ ପଡ଼ିଲା । ଗମନେ ମାର୍ଗ ତୋତେ ଦେଲା
ପର୍ବତେ ସେତୁବନ୍ଧ କରି । ଘୋର ସୋମୋଦ୍ର ହେଳେ ତରି
ଲଙ୍କା ବହିଲୁ ଘୋର ଦୃଷ୍ଟି । ରାବଣ ଦଶମୁଣ୍ଡ କାଟି ॥
ରାବଣପୁର ମହୀସ୍ଥଳୀ । ଯୁଦ୍ଧେ ଜିଣିଲୁ ବନମାଳୀ ॥
ଯେମନ୍ତ ମହିମା ଯାହାର । ଭୋ ନାଥ ଶରଣ ତୋହୋର ॥
ଗୋବିନ୍ଦ ଶୁଣି ତା ବଚନ । ଜାଣିଲେ ପ୍ରଭୁ ଭଗବାନ ॥
ଶୁକ ବୋଲନ୍ତି ଶୁଣ ରାୟେ । ଦୟା ବସିଲା କୃଷ୍ଣ ଦେହେ ॥
ଜାମ୍ବବ ଶିରେ ଦେଇ କର । ଆଶ୍ୱାସ କଲେ ଚକ୍ରଧର ॥

ପରମ ଦୟା ମନେ ଭରି । କହନ୍ତି ତାର କର ଧରି ॥
ମେଘ ଗଭୀର ପ୍ରାୟେ ବାଣୀ । କହନ୍ତି ପ୍ରଭୁ ଚକ୍ରପାଣି ॥
ଏ ମଣି ହେତୁ ତୋର ବିଳେ । ପଶିଲି ଅପବାଦ ଛଳେ ॥
ଦୁର୍ଜନ ଜନ ଅପବାଦ । ମିଥ୍ୟା ବଚନେ ମନ ଖେଦ ॥
ଏ ମଣି ଯଦୁପୁରେ ନେବି । ଆତ୍ମାର ସଂଶୟ ନାଶିବି ॥
ଜାମ୍ବବ କୃଷ୍ଣ ବାକ୍ୟ ଶୁଣି । ଆନନ୍ଦ ମନେ ପରିମାଣି ॥
କୃଷ୍ଣ ଅଇଲେ ମୋର ଘର । କି ଅବା ଦେବି ଉପହାର ॥
ମୋର ଦୋହିତା ଜମ୍ବୁବତୀ । ତାର ସାଦୃଶେ କୃଷ୍ଣପତି ॥
ଯେମନ୍ତେ ମନେ ବିଚାରିଲା । କନ୍ୟାର କଣ୍ଠେ ମଣି ଦିଲା ॥
ଗୋବିନ୍ଦ ପାଦ ତଳେ ନେଇ । ବୋଲଇ ଶିରେ କର ଦେଇ ॥
ଭୋ ନାଥ ପରମ ପୁରୁଷ । ମୋହୋର ନ ଘେନିମା ଦୋଷ
ଅନେକ କଲି ଅପରାଧ । ନ ଚିହ୍ନି ତୋର ପଦ୍ମପାଦ ॥
ଯେମନ୍ତେ ଶୁଣ ହୋ ରାଜନ । ଦ୍ୱାରେ ଯେ ଥିଲେ ସର୍ବଜନ ॥
ନିରତେ ବିଳ ଦ୍ୱାରେ ରହି । କୃଷ୍ଣ ଆଗମେ ମନ ଦେଇ ॥
ବଞ୍ଚିଲେ ଦ୍ୱାଦଶ ଦିବସ । ନ ଦେଖି ହୋଇଲେ ନିରାଶ ॥
ବାହୁଡ଼ି ଗଲେ ଦୁଃଖମନେ । କହିଲେ କୃଷ୍ଣର ଭୁବନେ ॥
ଶୁଣି ଦେବକୀ ବସୁଦେବ । ଏ ଆଦି ସକଳ ଯାଦବ ॥
ରୁକ୍ମିଣୀ ଆଦି ବନ୍ଧୁଜନ । ଶୁଣି ହୋଇଲେ ହତଜ୍ଞାନ ॥
ମିଳି ସୁହୃଦ ବନ୍ଧୁ ଜନ । ବିକଳେ କରନ୍ତି ରୋଦନ ॥
ନ ଦେଖି ଅଭୟ ଚରଣ । ସଂକଳ୍ପ କରନ୍ତି ମରଣ ॥
ନ ଦେଖି ପ୍ରଭୁ ନରହରି । ଜୀବନ ନ ପାରନ୍ତି ଧରି ॥
ଦ୍ୱାରକାପୁରେ ଜଣେ ଯାଇ । କହନ୍ତି ଶକ୍ରାଜିତ ଚାହିଁ ॥
ତୋହର ଯୋଗୁଁ ଯଦୁପୁରୀ । ଆଜ ହୋଇଲା ହତଶିରୀ ॥
ଯେମନ୍ତେ ଦୁଃଖ ସୁଖ ମନ । ମିଳିଲେ ଭବାନୀ ଭୁବନେ ॥
କୃଷ୍ଣଙ୍କୁ ଲଭିବାର ଆଶେ । ସ୍ତୁତି କରନ୍ତି ଦେବୀ ପାଶେ ॥
ନମୋ ଜଗତ ଆଦି ମାତ । ଯାଦବେ ହୋଇଲୁ ଅନାଥ ॥
ଦୁର୍ଗମ ଦୁଃଖ ନାଶିବାରେ । ଦୁର୍ଗା ବୋଲାଉ ତିନିପୁରେ ॥
ତୋ ପାଦେ ପଶିଲୁ ଶରଣ । ଦେଖାଅ ଗୋବିନ୍ଦ ଚରଣ ॥
ଯଦୁଙ୍କ ଦୁଃଖ ଶୋକ ଜାଣି । ଶୂନ୍ୟେ ବୋଲନ୍ତି ଠାକୁରାଣୀ ॥
ନରେ ନ କର ତୁମ୍ଭେ ଶୋକ । ଦେଖିବ ଶ୍ରୀକୃଷ୍ଣ ଶ୍ରୀମୁଖ ॥
ଯେମନ୍ତ କହୁଁ କହୁଁ ଜନେ । ଗୋବିନ୍ଦ ମିଳିଲେ ଭୁବନେ ॥
କନ୍ୟା ସହିତେ ଭଗବାନ । ଘେନାଇଁ ଅମୂଲ୍ୟ ରତନ ॥
ହରଷ କରି ପୁର ନର । ବିଜୟେ କଲେ ନିଜ ପୁର ॥
ଦେଖି ସାନନ୍ଦ ସର୍ବ ଜନେ । ମିଳିଲେ କୃଷ୍ଣ ଦରଶନେ ॥
ମଲା ପୁରୁଷ ଯେହ୍ନେ ଆସି । ଚାହାଁନ୍ତି କୃଷ୍ଣ ରୂପ ରାଶି ॥
କନ୍ୟା ସହିତେ ଦାମୋଦର । ବିଜୟେ କଲେ ନିଜ ପୁର ॥
ତକ୍ଷଣେ ଶକ୍ରାଜିତ ଆଣି । କହନ୍ତି ପ୍ରଭୁ ଚକ୍ରପାଣି ॥
ଉଗ୍ରସେନର ସଭା ମଧ୍ୟେ । କୃଷ୍ଣ କହନ୍ତି ମନ ଖେଦେ ॥
ମଣି ଆଣିଲେ ଯେତେ ଦୁଃଖେ । କହିଲେ ଆପଣା ଶ୍ରୀମୁଖେ ॥
ମଣି ତାହାର ହସ୍ତେ ଦେଇ । ପୁରେ ପଶିଲେ କୃଷ୍ଣ ଯାଇଁ ॥
ସଭାରୁ ଶକ୍ରାଜିତ ମଣି । ସଭୟେ ବେନି କରେ ଘେନି
ଅତି ବ୍ରୀଡ଼ିତ ଅଧୋମୁଖେ । ପଥେ ଚଳଇ ମନ ଦୁଃଖେ ॥
ମନେ ବାଧିଲା ଅନୁତାପ । କୃଷ୍ଣ ଚରଣେ କଲା ପାପ ॥
ଦିନକୁ ଦିନ ମନ ଖେଦ । ଭାଳଇ କୃଷ୍ଣ ଅପରାଧ ॥
ନିରତେ ଭାଳଇ ବିଷାଦେ । ଦ୍ରୋହ ଚିନ୍ତିଲି ପଦ୍ମପାଦେ ॥
କେମନ୍ତେ ଆତ୍ମ ଦୋଷ ଯିବ । ଗୋବିନ୍ଦ ପ୍ରସାଦ ହୋଇବ ॥
ଲୋକେ ବୋଲିବେ ମୋତେ ଭଲ । ତେବେ ଯେ ଯିବ ଆତ୍ମା ଶଲ
ବିଚାର ନାହିଁ ମୋର ତହିଁ । ସ୍ୱଭାବେ କ୍ଷିଦ୍ର ମୁଁ ଅଟଇ ॥
ଅଜ୍ଞାନ ମୂଢ଼ ଧନ ଲୋଭି । ଆପଣା ପାପେ ପରାଭବି ॥
ପୁତ୍ର କାଞ୍ଚନେ ଲୋଭ ମୋରେ । ଅଯଶ କଲି ତିନିପୁରେ ॥
ଏ ଯେ ଦୋହିତା ଅଛି ମୋର । ଅମୂଲ୍ୟ କନ୍ୟା ରତ୍ନସାର ॥
ଏ ମଣି ଯେହା କଣ୍ଠେ ଦେଇ । କୃଷ୍ଣଙ୍କୁ ସମର୍ପିବି ନେଇ ॥
ଏ ସେ ଉପାୟ ମୋର ଭଲ । ଏ କନ୍ୟା ରତ୍ନ ମଣି ତୁଲ ॥
ସେ ହରି କମଳାର ପତି । ଆନେ ନୋହଇ ତାର ଶାନ୍ତି ॥
ଯେମନ୍ତ ନିଜ ମନେ ଚନ୍ତି । ଛାଡ଼ିଲା ମନ ଖେଦ ଭ୍ରାନ୍ତି ॥
ଯେମନ୍ତ ମନେ ବିଚାରିଲା । ଦୋହିତା ଅଳଙ୍କାର କଲା ॥
ମଣି କନ୍ୟାର କଣ୍ଠେ ଦେଇ । ମିଳିଲା କୃଷ୍ଣ ପାଶେ ଯାଇ ॥
ଆଞ୍ଜୋଳି କରି ବେନି କର । କୃଷ୍ଣଙ୍କୁ କହଇ ମଧୁର ॥
ତୁ ନାଥ ଜଗତ ଠାକୁର । ମୁହିଁ ତୋ ଚରଣେ କିଙ୍କର ॥
ସତ୍ୟଭାମାକୁ ତୋତେ ଦେଇ । ଶରଣ ପଶିଲିଟି ମୁହିଁ ॥
ଯେମନ୍ତ ତାର ବାକ୍ୟ ଶୁଣି । ଦୟା ସାଗର ଚକ୍ରପାଣି ॥
ଆନନ୍ଦ ମନେ ଦେବ ଦେବା । ସତ୍ୟଭାମାକୁ ହେଲେ ବିଭା ॥
ଅଂଶେ ମାଧବୀ ଅବତାର । କି ଅବା ଦେବା ପଟାନ୍ତର ॥
ବିଭାର ଅନ୍ତେ ଚକ୍ରପାଣି । ସେ ରତ୍ନ ମଣି ହାଥେ ଘେନି ॥
ଶକ୍ରାଜିତର ମୁଖ ଚାହିଁ । ବୋଲନ୍ତି ମଣି ନିଅ ତୁହି ॥
ସୂର୍ଯ୍ୟର କଣ୍ଠୁ ଅବତରି । କେ ତାହା ପାରିବଟି ଧରି ॥
ରବି ଭଗତି ତପ ଫଳେ । ତୁ ଯେହା ଧରିପାରୁ ବଳେ ॥
ସେ ମଣି ପ୍ରସାଦରୁ କରି । ବିଭା ହୋଇଲି ବେନି ନାରୀ ॥

ପଦ ପଦକେ ଯେ ଅମୃତ । ସୁଜନେ ଚିନ୍ତ ଅନୁବ୍ରତ ।
ସୁଜନେ ଏଣେ କର ଆଶ । ହେଳେ ତରିବ ମୋହ ପାଶ ।
ବୋଲଇ ଦାସ ଜଗନ୍ନାଥ । ଗୀତ ବିନୋଦେ ଭାଗବତ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ସ୍ୟମନ୍ତକମଣି ହରଣେ ଜମ୍ବୁବତୀ ସତ୍ୟଭାମା ବିବାହେ ନାମ ଷଷ୍ଠିତମୋଽଧ୍ୟାୟଃ ।*

## ଏକଷଷ୍ଠିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଆନନ୍ଦେ କୃଷ୍ଣଭାବ ଘେନି । କହନ୍ତି ଶୁକ ମହାମୁନି ।
ଶୁଣ ପରୀକ୍ଷ ନରନାଥ । ଦ୍ୱାରକା ପୁରେ ବୀପରିତ ।
କୁରୁ ନଗରୁ ଦୂତ ବେଗେ । କହିଳା ରାମ କୃଷ୍ଣ ଆଗେ ।
ଜାଣନ୍ତି ପ୍ରଭୁ ଦେବରାୟେ । ଭଲେ ଅଛନ୍ତି ପଞ୍ଚୁ ପୋଏ ।
ଯତୁର ଘରେ ପଞ୍ଚଭ୍ରାଥ । ଜନନୀ ତୁଲେ ଗଲେ ହତ ।
ଶୁଣି ବିକଳ ବାସୁଦେବ । ଭୁବନେ ଯେତେକ ଯାଦବ ।
ବିକଳେ କରନ୍ତି ରୋଦନ । ରାମ ଗୋବିନ୍ଦ ଦୁଃଖ ମନ ।
ଶୋକ ନିବାରି ବେନି ଭାଇ । ରଥେ ବସିଲେ ବେଗେ ଯାଇଁ ।
କୁଳ ବେଭାରେ ଧର୍ମ କରି । କୁରୁ ନଗରେ ରାମ ହରି ।
ଭୀଷ୍ମ ବିଦୁର କୃପ ମୂଳେ । ଗାନ୍ଧାରୀ ଦ୍ରୋଣ ଶଲ୍ୟ ତୁଲେ ।
ଲୋକ ବେଭାରେ ବେନି ଭାଇ । କହନ୍ତି ମନେ ଦୁଃଖ ବହି ।
ପ୍ରେତ ଉଚିତ କ୍ରିୟା ସାରି । ଛନ୍ଦଂମେ ମାୟା ମୋହ ହରି ।
ବନ୍ଧୁଙ୍କ ମୁଖ ଚାହିଁ ଭଣି । ପଦ୍ମଲୋଚନ ହଳ ପାଣି ।
ଦେଖ ଏ ସଂସାର ବେଭାର । ଭ୍ରମନ୍ତି ଦେବାସୁର ନର ।
ଭବ ସଂସାରେ ଏହିମତେ । ସକଳେ ଯିବା ଶୂନ୍ୟପଥେ ।
ଏମନ୍ତ ବାକ୍ୟେ ବୋଧ କହି । ବାନ୍ଧବ ମେଳେ ବେନି ଭାଇ
କହିଲେ ସଂସାର ବେଭାର । ଏବେ ହୋ ଶୁଣ ନୃପବର ।
ଦ୍ୱାରକାପୁରେ ତିନିଜଣ । ବିଚାର କରୁ ଏକ ମନ ।
ଗଗନେ ଅସ୍ତ ଗଲା ଭାନୁ । ଅକ୍ରୂର ତୁଲେ ଶତ ଧନୁ ।
କୃତବର୍ମାଙ୍କୁ ରାଇ ଧିରେ । ବିଚାର କଲେ ଏକ ସ୍ୱରେଁ ।
ଦେଖ ଏ ପାପୀ ଶକ୍ରାଜିତ । ଅନ୍ୟାୟେ କଲା ବିପରୀତ ।
ସତ୍ୟଭାମାକୁ ଦେବା ପାଇଁ । ବରିଲା ସତ୍ୟ ବାକ୍ୟ ଦେଇ ।
ଏବେ ଆମ୍ଭଙ୍କୁ ନିନ୍ଦା କଲା । କନ୍ୟା ଗୋବିନ୍ଦେ ସମର୍ପିଲା ।
ଦୁଷ୍ଟ ଦୁର୍ଜନ ମନ୍ଦ ଭାଗ । ପ୍ରସନ୍ନ ପଥକୁ ଏ ଯୋଗ୍ୟ ।
ଏହାର ଠହୁଁ ଦିବ୍ୟମଣି । କେମନ୍ତେ ପାରି ଆମ୍ଭେ ଆଣି ।
ଅକ୍ରୂର ବୋଲେ ତାହା ଶୁଣି । ଜୀବନ୍ତେ ନ ଦେବ ଏ ମଣି ।
ଏମନ୍ତ ବୋଲି ବିଚାରିଲେ । ନିଜ ମନ୍ଦିରେ ରାତ୍ରେ ଗଲେ ।
ନିଜ ସଦନେ ଶତ ଧେନୁ । କୋପେ କମ୍ପଇ ତାର ତନୁ ।
ବସ୍ତ୍ର ପିନ୍ଧିଲା ଅତି ଗାଢ଼େ । କରେ ଘେନିଲା ଯମ ଦାଢ଼େ ।
ରାତ୍ରେ ମିଳିଲା ତାର ପୁରେ । ଶକ୍ରାଜିତର ଶଯ୍ୟାଘରେ ।
ଦଇବେ କ୍ଷୀଣ ତା ଜୀବନ । ଯାହା ରାଖିଲେ ଭଗବାନ ।
ନିକଟେ ଥିଲେ ଯେ କାମେନୀ । ସଭୟେ କଲେ ଗୋଳଧ୍ୱନି ।
ଅନାଥ ପ୍ରାୟେ ଶୋକ କରି । ତାହାର କର କରେ ଧରି ।
ସ୍ତିରୀଙ୍କି କରି ଅବହେଳା । ଛେଦିଲା ଶକ୍ରାଜିତ ଗଳା ।
ପଶୁର ପ୍ରାଏ ବଧ କରି । ଘରେ ପଶିଣ ଶସ୍ତ୍ର ଧରି ।
ନିଜ ଭୁବନେ ବେଗେ ଗଲା । ଏମନ୍ତେ ରଜନୀ ପାହିଲା ।
ଶୁଣ ରାଜନ ଶୁଦ୍ଧ କର୍ମା । ପୀତା ମରଣେ ସତ୍ୟଭାମା ।
ଶୋକେ ବିଳାପେ ଉଚ୍ଚେ ରଡ଼ି । ଭୁଜ ଯୁଗଳ ଶିରେ ତାଡ଼ି ।
ହା ହା ପିଅର ବୋଲି ମୋହେ । ଜୀବନ ନ ରହଇ ଦେହେ ।
ମୃଦୁ ଶ୍ୱରୀରେ ଗନ୍ଧ ଲେପି । ତରଳ ଦ୍ରୋଣି ମଧ୍ୟେ ସ୍ଥାପି ।
କାନ୍ଦଇ ବିଚିତ୍ର ବିଳାପେ । ପିତା ମରଣେ ମନ ତାପେ ।
ଦହନ କରାଇ ନ ଦେଇ । ଶୋକେ କମ୍ପିତ ତାରଦେହୀ ।
ପିତା ବିଯୋଗେ ଶୋକ ତ୍ରାସେ । କୋପେ ଗମିଲା କୁରୁଦେଶେ
ପିତା ବିଯୋଗେ ଶୋକେ ମହୀ । ଚଳନ୍ତେ ପଥ ନ ଦିଶଇ
କୃଷ୍ଣ ଜାଣନ୍ତି ତାହା ଭଲେ । ହସ୍ତିନାପୁରେ ରାମ ତୁଲେ ।
ଏମନ୍ତେ ସତ୍ୟଭାମା ଯାଇ । କହନ୍ତି ଶୋକେ କୃଷ୍ଣ ଚାହିଁ ।
ଭୋ ନାଥ ଶତଧନୁ ତୋର । ବଧିଲା ମୋହୋର ପିଅର ।
ପଶୁଙ୍କ ପ୍ରାୟେ ବଧ କରି । ଘରେ ପଶିଲା ଶସ୍ତ୍ର ଧରି ।
ଅନାଥ ମୋହୋର ଜୀବନ । ଏମନ୍ତେ କରଇ ରୋଦନ ।
ଅମୂଲ୍ୟ ମଣି ଘେନି କରେ । ପଳାଇଗଲା ଅନ୍ଧକାରେ ।
ଶୁଣି ଚକିତ ଦାମୋଦର । ବେନି ଲୋଚନେ ଅଶ୍ରୁ ଭର ।
ସତ୍ୟଭାମାର ମୁଖ ଚାହିଁ । ରୋଦନ କଲେ ବେନି ଭାଇ ।
କପଟେ କୁରୁବଳ ମଧ୍ୟେ । ଗୋବିନ୍ଦ କହିଲେ ବିଷାଦେ ।
ସତ୍ୟଭାମାକୁ ଆଗ କରି । ରଥେ ବସିଲେ ରାମ ହରି ।
କୃଷ୍ଣ କହନ୍ତି କୋପ ଭରେ । ଦାରୁକ ରଥ ବାହ ଖରେ ।
ଶତଧନୁର ଶିର ହାଣି । ଆଜ ଆଣିବି ରତ୍ନମଣି ।
ଏମନ୍ତେ ଶୁଣ ହୋ ରାଜନ । ରାମ ଗୋବିନ୍ଦ ଆଗମନ ।
ସଭୟେ ଶତଧନୁ ଶୁଣି । କରେ ଘେନିଲା ରତ୍ନମଣି ।

କୃତବର୍ମାର ପୁରେ ପଶି । ବିଶ୍ୱାସେ କହେ ପାଶେ ବସି ॥
ଶକ୍ରାଜିତର ଶିର ହାଣି । ମୁଁ ଯେ ଆଣିଲି ରତ୍ନ ମଣି ॥
ତୁମ୍ଭ ବଚନେ ମତିଭ୍ରମ । ନ ଜାଣି କଲି ଏଡ଼େ କର୍ମ ॥
ମୋତେ ମାରିବେ ଚକ୍ରଧର । ତୁ ଏବେ ମୋତେ ରକ୍ଷା କର ॥
ଏମନ୍ତେ କୃତବର୍ମା ଶୁଣି । ଭୟେ ବୋଲଇ ସାଧୁବାଣୀ ॥
ରାମ କୃଷ୍ଣର ଦ୍ରୋହ କରି । କେ ଅବା ଥିବ ଦେହ ଧରି ॥
ତାହାର କୋପେ କଂସ ମଲା । ସର୍ବ ସମ୍ପଦ ନାଶ ଗଲା ॥
ସପତ ଦଶ ବାର ଦ୍ୱନ୍ଦ୍ୱ । ଯୁଦ୍ଧେ ହାରିଲା ଜରାସନ୍ଧ ॥
ତାର ବଇରୀ ହୋଇ ବଳେ । କେ ଅବା ଥିବ ରବି ତଳେ ॥
ଏମନ୍ତେ ଶୁଣି ତା ବଚନ । ମିଳିଲା ଅକ୍ରୂର ଭୁବନ ॥
ପଡ଼ିଲା ତାର ପାଦ ତଳେ । ବୋଲଇ ଜୀବନ ବିକଳେ ॥
ମୋତେ କୋପିଲେ ଚକ୍ରଧର । ମୁଁ ଏବେ ଶରଣ ତୋହୋର ॥
ତୋହୋର ବୋଲେ କଲି ଏହା । ତୁ ଏବେ ମୋତେ ହୁଅ ଶାହା
ଶୁଣି ବୋଲଇ ଦାନପତି । ଯେ ଜାଣେ ଗୋବିନ୍ଦର ଗତି ॥
ଯେ ରାମ କୃଷ୍ଣଙ୍କ ନଜାଣ । ଶରଣ ପଶ ତା ଚରଣ ॥
ଯେ ବିଶ୍ୱ ମାୟା ଲୀଳା କରି । ସ୍ରିଜଇ ପାଳଇ ସଂହରି ॥
ତାର ମହିମା କିବା କହି । ମାୟା ସଂସାରେ ଦେହ ବହି ॥
ଜାଣୁ ତା ବାଳକ ବୟସେ । କି କି ନକଲା ଗୋପ ଦେଶେ
ଇନ୍ଦ୍ରର ତୁଲେ ବାଦ କଲା । ହସ୍ତକେ ପର୍ବତ ଧଇଲା ॥
ବାଳକ କରେ ଛତୁ ଯେହ୍ନେ । ଦେଖି ଚକିତ ସର୍ବ ଜନେ ॥
ଯେ କୃଷ୍ଣ ଜଗତ କାରଣ । ଅଦ୍ଭୁତ କରେ କର୍ମ ଗୁଣ ॥
ଅନନ୍ତ ବୀଜ କୂଟ ହରି । ଯେ ଆତ୍ମା ବିଶ୍ୱରୂପ ଧରି ॥
ତାହାଙ୍କୁ ମୋର ନମସ୍କାର । ଏମନ୍ତେ କହିଲା ଅକ୍ରୂର ॥
ତା ଶୁଣି ଶତଧନୁ ଭୟେ । ବୋଲଇ ପଡ଼ି ତାର ପାଏ ॥
ଏ ମଣି ଥାଉ ତୋର ତହିଁ । ମୋର ଜୀବନେ ଆଶା ନାହିଁ
ନିଶ୍ଚେ ମାରିବେ ଚକ୍ରଧର । ଅର୍ଜ୍ଜିଲା କର୍ମ ଏ ମୋହୋର ॥
ମଣି ଅକ୍ରୂର କରେ ଦେଇ । ପଶିଲା ଅଶ୍ୱଶାଳେ ଯାଇ ॥
ଯେ ଅଶ୍ୱ ଗମେ ପାଦ ବଳେ । ଶତେ ଯୋଜନ ଅବହେଳେ ॥
ସେ ଅଶ୍ୱେ ବସି ବେଗେ ଧାଇଁ । ଉତ୍ତର ଦିଗେ ସେ ପଳାଇ ॥
ଏମନ୍ତେ ଶୁଣ ନୃପମଣି । ରାମ ଗୋବିନ୍ଦ ତାହା ଶୁଣି ॥
ଦାରୁକ ବେଗେ ରଥ ବାହି । ପଛେ ଧାଇଁଲେ ବେନି ଭାଇ
ସେ ଶତଧନୁ ଗୁରୁ ଦ୍ରୋହୀ । ଧର୍ମ ଅଧର୍ମ ନ ଜାଣଇଁ ॥
ଅଶ୍ୱ ଗମନ୍ତେ ମହାବଳୀ । ମିଥିଳା ଉପବନେ ମିଳି ॥
ଅଶ୍ୱ ପଡ଼ିଲା ମୁଖ ମାଡ଼ି । ତକ୍ଷଣେ ପ୍ରାଣ ଗଲା ଛାଡ଼ି ॥
ଅଶ୍ୱ ଉପେକ୍ଷି ମହାବୀର । ପାଦେ ପଳାଇ ଅତି ଖର ॥
ଗୋବିନ୍ଦ ଦେଖି ତା ବଦନ । ରଥ ଉପେକ୍ଷିଲେ ବହନ ॥
କୋପ ନୟନେ ନରହରି । ଧାଇଁଲେ କରେ ଶସ୍ତ୍ର ଧରି ॥
ଦେଖି ଗୋବିନ୍ଦ କୋପମନୁ । ଭୟେ ଧାଇଁଲା ଶତଧନୁ ॥
ପାୟେ ପକାନ୍ତେ କମ୍ପେ କାୟେ । ଚକ୍ର ପେଷିଲେ ଦେବରାୟେ ॥
କୃଷ୍ଣର ଚକ୍ର ତୀକ୍ଷ୍ଣ ଧାର । କାଟିଲା ଶତଧନୁ ଶିର ॥
ଶିର ପଡ଼ିଲା ଜଳ ତଟେ । ଗୋବିନ୍ଦ ମିଳିଲେ ନିକଟେ ॥
ତାହାର ବସ୍ତ୍ରେ ମଣି ଖୋଜି । ନ ପାଇ ମନେ କୃଷ୍ଣ ହେଜି ॥
ମଣି କାହାର ହସ୍ତେ ଦେଇ । ଡରେ ଏ ଅଇଲା ପଳାଇ ॥
ଏମନ୍ତ ବୋଲି ବାହୁଡ଼ିଲେ । ରାମର ନିକଟେ ମିଳିଲେ ॥
ବୋଲନ୍ତି ପ୍ରଭୁ ଗୋପୀନାଥ । ଭୋ ଦେବ ଶୁଣ ବିପରୀତ ॥
ମୁଁ ଯେ ମାଇଲି ଶତଧନୁ । ଗୁରୁ ସେ ହତବାଦ ଯେଣୁ ॥
ମଣି ତାହାର ତହିଁ ନାହିଁ । କହନ୍ତି ରାମ ମୁଖ ଚାହିଁ ॥
ଶୁଣି ବୋଲନ୍ତି ହଳଧର । କୋମଳ ବଚନ ଗଭୀର ॥
ଏ ମଣି ଅଛି ତୋ ଭୁବନେ । ସନ୍ଦେହ ନ କର ତୁ ମନେ ॥
କାହାର କରେ ମଣି ଥୋଇ । ଭୟେ ଏ ଅଇଲା ପଳାଇ ॥
ମଣି ଉଦ୍ଦେଶ୍ୟେ ଯାଅ ଘର । ମୁଁ ଯିବି ଜନେକ ନଗର ॥
ପ୍ରିୟ ସୁହୃଦ ସେ ମୋହୋର । ଦେଖିବି ତାହାର ବେଭାର ॥
ଏମନ୍ତ କହି ହଳଧାରୀ । ଜନେକ ପୁରେ ବିଜେ କରି ॥
ରାମ ଆଗମ ଦେଖି ରାଜା । ସମ୍ଭ୍ରମେ କଲା ପାଦ ପୂଜା ॥
ଜନେକ ପୂଜନ୍ତେ ଚରଣ । ସନ୍ତୋଷେ ରେବତୀ ରମଣ ॥
କେତେହେଁ ଦିନ ତହିଁ ରହି । ଜନେକ ପ୍ରିୟ ଭାବ ବହି ॥
ହସ୍ତିନାପୁରେ ଦୁର୍ଯ୍ୟୋଧନ । ଶୁଣିଲା ରାମ ଆଗମନ ॥
ମନ ଆନନ୍ଦେ ଅନ୍ଧ ସୁତ । ମିଥିଳା ପୁରେ ଉପଗତ ॥
ମିଳିଲା ହଳଧର ପାଶେ । ଅନେକ ଭଗତି ବିଶ୍ୱାସେ ॥
ଗଦା ସାଗ୍ରାମେ ଘୋର ଦୀକ୍ଷା । ରାମର ତହୁଁ କଲା ଶିକ୍ଷା ॥
ଗୋବିନ୍ଦ ବସି ନନ୍ଦିଘୋଷେ । ପ୍ରବେଶ ହେଲେ ନିଜ ଦେଶେ
ଶତଧନୁର ଶିରହାଣି । ତା ତହୁଁ ନ ପାଇଲେ ମଣି ॥
ସକଳ ପ୍ରିୟା ଆଗେ କହି । ମାୟା ଭିଆଣ ଭାବଗ୍ରାହୀ ॥
ବନ୍ଧୁବାନ୍ଧବ ସଂଗେ ମିଳି । ବାନ୍ଧବ ପ୍ରିୟେ ବନବାଳୀ ॥
ମଲା ଯେ ଶତଧନୁ ବୀର । ପ୍ରେତ ଉଚିତ କ୍ରିୟା ତାର ॥
କୃଷ୍ଣ କରାଇଲେ ସ୍ୱଭାବେ । ଶୁଣ ପରୀକ୍ଷ ରାୟେ ଏବେ ॥
ଶତଧନୁର ବଧ ଶୁଣି । ଅକ୍ରୂର ଭୟେ ମନେ ଗୁଣି ॥
କୃତବର୍ମାର ତୁଲେ ଭାଳି । ନିଶ୍ଚେ ମାରିବେ ବନମାଳୀ ॥

ଏମନ୍ତେ ଭାଳି ମନେ ଛନେ । ପଳାଇ ଗଲେ ବେନି ଜନେ ॥
ଅକ୍ରୂର ଯେଣୁ ପଳାଇଲା । ଶୁଣ ରାଜନ କୃଷ୍ଣ ଲୀଳା ॥
ଦ୍ୱାରକାପୁରେ ଅରି ପାତ । ଦେଖି ଚକିତ ଯଦୁନାଥ ॥
ଅଦ୍ଭୁତ ଦେଖିଲେ ପ୍ରତ୍ୟକ୍ଷେ । ଭୂମି ଗଗନ ଅନ୍ତରୀକ୍ଷେ ॥
ପ୍ରାଣୀଙ୍କ ଦେହେ ବ୍ୟାଧି ଜାତ । ମନ ଉଚ୍ଚାଟ ରିଷ୍ଟ ଯାତ ॥
ମନ ଉଚ୍ଚାଟ ରିଷ୍ଟ ଘୋର । ଦିଗେ ଦିଶନ୍ତି ଅନ୍ଧକାର ॥
ଘୋର ଅପାଦ ଆଗମନେ । ଭାଳି ବୋଲନ୍ତି ବୃଦ୍ଧଜନେ ॥
ଅକ୍ରୂର ପଳାଇଲା ଡରେ । ଆପଦ ଦିଶେ ଯଦୁପୁରେ ॥
ଅକ୍ରୂର ଥିଲେ କାହିଁ ରିଷ୍ଟି । ରୁଧିର ସଂଗେ ଜଳବୃଷ୍ଟି ॥
ଅନେକ ଅକ୍ରୂରର ଗୁଣ । ତୁମ୍ଭେ ହୋ ସାବଧାନେ ଶୁଣ ॥
ପୂର୍ବେ ଯେ ଥିଲା କାଶୀ ରାଜା । ସୁଖେ ପାଳଇ ଜନପ୍ରଜା ॥
ଏମନ୍ତେ ଇନ୍ଦ୍ର ତା ଭୁବନେ । ବୃଷ୍ଟି ନ କଲା କୋପମନେ ॥
ଅନ୍ନ ନ ପାଇ କ୍ଷୁଧା ଭୟେ । ଅନେକ ଜନ୍ତୁ ଗଲେ କ୍ଷୟେ ॥
ସଂଗତେ ଘେନି ଜନ ପ୍ରଜା । ଭୟେ ଭାଳଇ କାଶୀରାଜା ॥
ବିଚାରି କଲେ ଯେକ ଭାଗ । ସଫଳ ନାମେ ସେ ଯାଦବ ॥
ପୂର୍ବେ ଅନେକ ତପ କଲା । ଇନ୍ଦ୍ର ତାହାକୁ ବର ଦିଲା ॥
ସେ ଯହିଁ ଥାଇ ଦେହ ବହି । ସେ ଦେଶେ ଇନ୍ଦ୍ର ବରଷଇ ॥
ଏମନ୍ତ ଭାଳି ସର୍ବେ ବସି । ସଫଳ ଆଣିଲେ ବିଶ୍ୱାସି ॥
କନ୍ୟାଏ ଥିଲା ତାର ଘରେ । ଅତି ସୁନ୍ଦର ସୁକୁମାରେ ॥
ଶୁଣ କନ୍ୟାର ଜନ୍ମ ବାଣୀ । ଆମ୍ଭେ ଯେ ପୂର୍ବେ ଅଛୁ ଶୁଣି ॥
ଜନନୀ ଗର୍ଭେ ଚିର ବାସ । ରହିଲା ଦ୍ୱାଦଶ ବରଷ ॥
ଜାତ ନୋହିଲା ଯେତେବେଳେ । ନୃପତି ଭାଳଇ ବିକଳେ ॥
ଦିନେକ ପତ୍ନୀ ଗର୍ଭେ ଚାହିଁ । କହେ ବିକଳ ଭାବ ବହି ॥
ଭୋ ଗର୍ଭ ଶୁଣ ମୋ ଉତ୍ତର । ହେଲେ ନାଶିଲୁ ମୋର ଘର ॥
କହ ତୁ କେବଣ କାରଣ । ଏ ବଡ଼ କର୍ମର କଷଣ ॥
ଏ ମହାରାଜା ବାକ୍ୟ ଶୁଣି । ଗର୍ଭ କହଇ ମୃଦୁ ବାଣୀ ॥
ଭୋ ତାତ ଶୁଣ ମୋ ବଚନ । ଏ ଗର୍ଭ ଜନ୍ମ ସୁବିଧାନ ॥
ଉତ୍ତମ ଧେନୁ ପ୍ରତିଦିନେ । ପ୍ରଦାନ କର ମହାଜନେ ॥
ଏମନ୍ତ ଦ୍ୱାଦଶ ବରଷ । ମୁଁ ଜନ୍ମ ହୋଇବି ଅବଶ୍ୟ ॥
ତକ୍ଷଣେ ସେ ଗର୍ଭ ବଚନ । ନୃପତି ଶୁଣି ତୋଷମନ ॥
ନିରତେ କଲା ସେହିମତ । ଧେନୁ ସେ ଦେଲା ଅପ୍ରମିତ ॥
ଏମନ୍ତେ କନ୍ୟା ଜାତ ହୋଇ । କାଶୀ ନଗରେ ଥିଲା ରହି ॥
ସେ କନ୍ୟା ସଫଳରେ ବରି । ବିବାହ ଦେଲା ଦଣ୍ଡଧାରୀ ॥
ଯେଣୁ ତା ଦେଶେ ଶସ୍ୟ ନାଶ । ନିର୍ଜ୍ଜଳେ ଦ୍ୱାଦଶ ବରଷ ॥

ଏମନ୍ତେ ରାଜା ଦୁଃଖ ଜାଣି । ସଫଳ ଚିନ୍ତେ ବଜ୍ରପାଣି ॥
ତକ୍ଷଣେ ମିଳି ମେଘମାଳେ । ଆନନ୍ଦେ ବରଷିଲେ ଜଳେ ॥
ତାର କୁମର ଦାନପତି । ଏମନ୍ତେ ଅକ୍ରୂରର ଗତି ॥
ସେ ମହାଭାଗ ଯହିଁ ଥାଇ । ରିଷ୍ଟ ଅରିଷ୍ଟ ଭୟ ନାହିଁ ॥
ଏମନ୍ତେ ପ୍ରଭୁ କମ୍ବୁପାଣି । ଆନନ୍ଦେ ବୃଦ୍ଧ ବାକ୍ୟ ଶୁଣି ॥
କାଶୀନଗରେ ଦୂତପେଶି । ଅକ୍ରୂର ଆଣିଲେ ବିଶ୍ୱାସି ॥
ପାଶେ ବସାଇ ଦାମୋଦର । ବିଶ୍ୱାସେ କହନ୍ତି ମଧୁର ॥
ଯେ କୃଷ୍ଣ ଜଗତ ଜୀବନ । ଜାଣନ୍ତି ପ୍ରାଣୀଙ୍କର ମନ ॥
ଆଶ୍ୱାସି ବସାଇ ଅକ୍ରୂର । ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର ॥
ଶୁଣ ଅକ୍ରୂର ମୋର ବାଣୀ । ତୋ ଠହିଁ ସ୍ୟମନ୍ତକ ମଣି ॥
ଥୋଇ ଯେ ଶତଧନ୍ୱ ଗଲା । ଦଇବେ ପ୍ରାଣ ସେ ହାରିଲା ॥
ସେ ମଣି ସଙ୍କଟୁ ଉଦ୍ଧରି । ବିବାହ ହେଲି ବେନି ନାରୀ ॥
ସେ ମଣି ଉଚିତେ ମୋହର । ଶ୍ୱଶୁର ଦିଲା ଉପହାର ॥
ଶକ୍ରାଜିତର ପୁତ୍ର ନାହିଁ । ଦୁହିତା ସତ୍ୟଭାମା ହୋଇ ॥
ମରଣେ ପ୍ରେତକ୍ରିୟା ସାରି । ଦୁର୍ଗମ ନରକୁ ଉଦ୍ଧରି ॥
ତାର ଦୋହିତ ମଣି ନେବ । ଏମନ୍ତେ ଶାସ୍ତ୍ରର ସ୍ୱଭାବ ॥
ଶକ୍ରାଜିତର ତପ ବଳେ । ରବି ତାହାକୁ ମଣି ଦିଲେ ॥
ନିର୍ମଳ ଲୋକେ ତାହା ଧରି । ଆନ କେ ପାରିବ ଆବୋରି ॥
ତୁ ପୁଣ୍ୟକ୍ରିୟା ଶୁଦ୍ଧବନ୍ତ । ତୁ ସେ ଧାରଣେ ସାମରଥ ॥
ରାମ ମୋହୋର ଜ୍ୟେଷ୍ଠଭାଇ । ତାହାଙ୍କ ଚିତ୍ତ ଶୁଦ୍ଧ ନାହିଁ ॥
ବନ୍ଧୁ ବାନ୍ଧବ ଯେତେ ମୋର । ଚିତ୍ତେ ସଂଶୟ ତାହାଙ୍କର ॥
ଏ ସଭା ମଧ୍ୟେ ମଣି ତୁହିଁ । ଦେଖାଅ ମୋର ଭାବ ବହି ॥
ଏହାଙ୍କ ଦେହୁ ଯାଉ ଭ୍ରାନ୍ତି । ତେବେ ମୋହୋର ଚିତ୍ତ ଶାନ୍ତି
ଏ ମଣି କାଶୀପୁରେ ନେଇ । ଅନେକ ଯଜ୍ଞ କଲୁ ତୁହିଁ ॥
ସୁବର୍ଣ୍ଣ ବେଦୀ ଦିବ୍ୟପୁର । ଦେଖି ମୋହିତ ସୁର ନର ॥
ଏମନ୍ତ କୃଷ୍ଣ ମୁଖୁ ଶୁଣି । ତୋଷେ ଅକ୍ରୂର ନୃପମଣି ॥
ବସ୍ତ୍ରେ ଲୁଚାଇ ଥିଲା କାଛେ । ସଭାରେ ଥୋଇଲେ ପ୍ରତକ୍ଷେ ॥
ସୂର୍ଯ୍ୟକିରଣ ପ୍ରାୟେ ଦେଖି । ଜନେ ବୁଜିଲେ ଭୟେ ଆଖି ॥
ଏମନ୍ତେ ମଣି ଦେଖାଇଲେ । ଆତ୍ମାର ଦୃବାଦ ନାଶିଲେ ॥
ଗୋବିନ୍ଦ କରେ ଘେନି ମଣି । ଅକ୍ରୂର ମୁଖ ଚାହିଁ ଭଣି ॥
ତୁ ପୁଣ୍ୟକର୍ମା ସାଧୁଜନ । ଯେ ମଣି ଧାରଣେ ଭାଜନ ॥
ଏ ମଣି ଥାଉ ତୋର ଠହିଁ । ଏମନ୍ତେ କହି ଭାବଗ୍ରାହୀ ॥
ନିଜ ଭୁବନେ ବିଜେ କଲେ । ଲୋକ ଅଯଶ ବିନାଶିଲେ ॥
ଏବେ ହୋ ଶୁଣ ନରନାଥ । ତୁ ସାଧୁ ପୁଣ୍ୟ ଭାଗ୍ୟବନ୍ତ ॥

ମଣି ହରଣ ସାଧୁବାଣୀ । କର୍ଣ୍ଣେ ଶୁଣନ୍ତି ଯେଉଁ ପ୍ରାଣୀ ।
ହରଇ ଦୁଃଖ ଅପବାଦ । ଏ ଆଦି ଯେତେ ମନ ଖେଦ ।
ଦୁଷ୍ଟ ସ୍ୱପନ ଗ୍ରହପତି । ଶ୍ରବଣେ ପଠନେ ନାଶନ୍ତି ।
ପଠନେ ହୋଏ ପାପ ନାଶ । ନିର୍ମଳ ଜ୍ଞାନ ପରକାଶ ।
ସର୍ବ ମଙ୍ଗଳ ଉପଗତ । କହିଲା ଦାସ ଜଗନ୍ନାଥ ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ସ୍ୟମନ୍ତକମଣି ହରଣେ ନାମ ଏକଷଷ୍ଟିତମୋଽଧ୍ୟାୟଃ ।*

## ଦ୍ୱିଷଷ୍ଟିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏବେ ହେ ଶୁଣ ମହୀପତି । ଅଶେଷ ଗୋବିନ୍ଦର ଗତି ।
ଅଜ୍ଞାତ ମୋର ବନବାସେ । ଥିଲେ ଯେ ବିରାଟର ଦେଶେ ।
ବରଷେ ବଞ୍ଚି ତା ଭୁବନେ । ବିଖ୍ୟାତ ପଣ୍ଡୁର ନନ୍ଦନେ ।
ଇନ୍ଦ୍ର ପ୍ରସ୍ଥେ ଛନ୍ତି ରହି । ସେ କଥା ଶୁଣି ଭାବଗ୍ରାହୀ ।
ଦାରୁକ ସାଜି ନନ୍ଦିଘୋଷେ । ସୁହୃଦ ଭୃତ୍ୟ ଘେନି ପାଶେ ।
ଇନ୍ଦ୍ର ପ୍ରସ୍ଥେ ବନମାଳୀ । ଧର୍ମ ନନ୍ଦନ ପୁରେ ମିଳି ।
ଦେଖି ସାନନ୍ଦ ପଞ୍ଚଜନେ । ଚାହାଁନ୍ତି ନିଶ୍ଚଳ ନୟନେ ।
ବେଗେ ଉଠିଲେ ପଞ୍ଚଭାଇ । କି ଉପଲକ୍ଷ ଦେବ ତହିଁ ।
ଜୀବନ ଗଲା ପିଣ୍ଡ ଯେହ୍ନେ । ପୁଣି ଉଠଇ ବିଦ୍ୟମାନେ ।
ଦେଖି ଅଖିଳ ଯୋଗେଶ୍ୱର । ନୟନ ପିଂଛା କଲେ ସ୍ଥିର ।
ରୋମ ହରଷେ କମ୍ପେ ଦେହୀ । ନୟନ ଯୁଗୁଁ ଅଶ୍ରୁ ବହି ।
ଗୋବିନ୍ଦ ଜଣେ ଜଣ ଧରି । ହୃଦେ ଲଗାଇ କୋଳ କରି ।
ପଦ୍ମଲୋଚନ ସଙ୍ଗ ପାଇ । ପବିତ୍ର କଲେ ପଞ୍ଚଦେହୀ ।
ଧର୍ମନନ୍ଦନ ଭୀମ ପାଦେ । ଗୋବିନ୍ଦ ନମିଲେ ଆନନ୍ଦେ ।
ପାର୍ଥକୁ କଲେ ଆଲିଙ୍ଗନ । ନକୁଳ ଆଦି ବେନିଜନ ।
ମାଦ୍ରୀ କୁମର ସହଦେବ । ବନ୍ଦିଲେ ଗୋବିନ୍ଦର ପାଦ ।
ଆନନ୍ଦେ କଲେ ନମସ୍କାର । ଯେସନେ ସଂସାର ବେଭାର ।
କୃଷ୍ଣଙ୍କୁ ଆସନେ ବସାଇ । ଭାବେ ପୂଜିଲେ ପଞ୍ଚଭାଇ ।
ଦ୍ରୌପଦୀ ଥିଲେ ପୁରମଧ୍ୟେ । କୃଷ୍ଣ ଆଗମନ ଆନନ୍ଦେ ।
ନମୋଢ଼ା କନ୍ୟା ଲଜ୍ଜାଭରେ । କୃଷ୍ଣଙ୍କୁ ନମିଲେ ଅନ୍ତରେ ।
ବେଗେ ମିଳିଲା କୃଷ୍ଣ ଆଗେ । ଦ୍ରୌପଦୀ ତୁଲେ ଅନୁରାଗେ ।
ସାତ୍ୟକି କରେ କର ଧରି । କୃଷ୍ଣର ପାୟେ ସେବା କରି ।
କୁନ୍ତୀ ଯେ ଥିଲେ ପୁର ଦେଶେ । ହା କୃଷ୍ଣ ବୋଲି ସ୍ନେହ ବଶେ ।
ବେଗେ ମିଳିଲେ କୃଷ୍ଣ ଆଗେ । ଦ୍ରୌପଦୀ ତୁଲେ ଅନୁରାଗେ ।
ଆନନ୍ଦେ ପାଣ୍ଡବ ଜନନୀ । ହସ୍ତରେ ଉପାୟନ ଘେନି ।
ବନ୍ଧୁ କୁଶଳ ପ୍ରଶ୍ନ କରି । ଦ୍ରୌପଦୀ କର କରେ ଧରି ।
କୃଷ୍ଣର ମୁଖ ପଦ୍ମ ଚାହିଁ । କହନ୍ତେ ଅଶ୍ରୁଜଳ ବହି ।
ଯେମନ୍ତେ କଲେ ବନବାସ । ଭ୍ରମି ପାଇଲେ ବହୁକ୍ଲେଶ ।
ତାହା ସୁମରି କୁନ୍ତୀ ରୋଦେ । ମନ ନିବେଶି କୃଷ୍ଣ କାନ୍ଧେ ।
ହେ କୃଷ୍ଣ ତବ ଦରଶନ । କୃତାର୍ଥ ହେଲା ମୋ ଜୀବନ ।
ହସ୍ତୀନାପୁରେ ଦୁଃଖ ସହି । ସ୍ୱାମୀ ମରଣେ ଅଛି ରହି ।
ତୁ ନାଥ ଅକ୍ରୂରଙ୍କୁ ପେଷି । ମୋର ପୁତ୍ରଙ୍କୁ ତୁ ଆଶ୍ୱାସି ।
ସେ ଦିନୁ ଦୁଃଖ ମୋ ଦହନ । ଯେବେ ଦେଖିଲି ତୋ ବଦନ ।
ତୁ କୃଷ୍ଣ ସଂସାରର ସାର । ପର ଅପର ନାହିଁ ତୋର ।
ତଥାପି ଯେ ତୋତେ ଲୋଡ଼ଇ । ତାହାର ହୃଦେ ଥାଉ ତୁହିଁ ।
ଅଶେଷ ଦୁଃଖ କରୁ ନାଶ । ଯେ ପ୍ରାଣୀ ତୋ ପାଦେ ବିଶ୍ୱାସ ॥
ଧର୍ମନନ୍ଦନ କୃଷ୍ଣେ ଚାହିଁ । ବୋଲନ୍ତି ପ୍ରିୟଭାବ ବହି ।
ଆମ୍ଭେ ଅନେକ ଭାଗ୍ୟ ଫଳେ । ତୋତେ ଦେଖିଲୁ ଚର୍ମ ଡୋଳେ ।
ଭୋ ନାଥ ମହିମା ତୋହୋର । ଯୋଗେଶ୍ୱରଙ୍କୁ ଅଗୋଚର ।
ଆମେ କୁତ୍ସିତ ବୁଦ୍ଧିହୀନ । ପାଇଲୁ ତବ ଦରଶନ ।
ଏମନ୍ତେ ଧର୍ମ ସୁତ ବାଣୀ । ଶୁଣି ପ୍ରତକ୍ଷେ ଚକ୍ରପାଣି ।
ଇନ୍ଦ୍ର ପ୍ରସ୍ଥେ ଯେତେ ଜନ । ଦେଖନ୍ତି ଶ୍ରୀକୃଷ୍ଣ ବଦନ ।
ଚର୍ମ ଲୋଚନ କଲେ ସାଧୁ । ତରିଲେ ଘୋର ପରମାଦୁ ।
ଏମନ୍ତେ ଶୁଣ ନରନାଥ । ଦିନେକ ଧନୁ ଧରି ପାର୍ଥ ।
ପିତୃ ଦିବସ ଆଗମନେ । ମିଳିଲା ହରଷ ବଦନେ ।
ଧର୍ମ ନନ୍ଦନ ଆଜ୍ଞାମତେ । ବସିଲା କପିଧ୍ୱଜ ରଥେ ।
ଅର୍ଜ୍ଜୁନ କରେ ଧନୁର ଘେନି । କନ୍ଧେ ଶୋଭିତ ତୂଣ ବେନି ।
ଦାରୁକ ତୁଲେ ନନ୍ଦିଘୋଷେ । ଗୋବିନ୍ଦ ବସିଲେ ହରଷେ ।
ଗହନେ ବନେ ନରହରି । ଅନେକ ମୃଗ ବଧ କରି ।
ଅର୍ଜ୍ଜୁନ କରେ ତୀକ୍ଷ୍ଣ ବାଣ । ଦିଗ ଆବୋରି ନାରାୟଣ ।
ବରାହ ମହିଷୀ ହରିଣ । ଶଶକ ଶଲ ବରହିଣ ।
ଶରଭ ମୃଗାଦି ଶଡ଼ିଙ୍ଗ । ପିତୃଯଜ୍ଞକୁ ଯେବା ଯୋଗ୍ୟ ।
ରାଜସେବକେ ତାହା ବହି । ପାଣ୍ଡବ ପୁରେ ଦେଲେ ନେଇ ।
ତୃଷିତ ହୋଇ ବୀର ପାର୍ଥ । ଯମୁନା ଜଳେ ଉପଗତ ।
ସଂଗତେ ପ୍ରଭୁ ଭଗବାନ । ତୃଷିତେ କଲେ ଜଳପାନ ।
ମୁଖ ନୟନେ ଜଳ ଦେଇ । ସନ୍ତୋଷ ଚଉଦିଗେ ଚାହିଁ ।
ଯମୁନା ଜଳେ ବାଲିକୁଦେ । କନ୍ୟାଏ ବସି ତାର ମଧ୍ୟେ ।

ତପ କରଇ ସୂର୍ଯ୍ୟ ଚାହିଁ । ତା ରୂପେ ପଟାନ୍ତର ନାହିଁ ॥
ଅତି ସୁସଞ୍ଚ ଚାରୁ ବେଶ । ରୂପେ ମୋହିଲା ବନ ଦେଶ ॥
ଦେଖି ଚକିତ ଭଗବାନ । ଚାହିଁଲେ ଅର୍ଜୁନ ବଦନ ॥
ବୋଲନ୍ତି ଦେଖ ରୂପ ରାଶି । କାଳିନ୍ଦୀ ବାଲିକୂଦେ ବସି ॥
ତପ କରଇ କିସ ସଧେ । ନିଦାଘେ ଘୋର ବନମଧେ ॥
କୃଷ୍ଣ ବଚନେ ପଣ୍ଡୁ ବଳା । କନ୍ୟା ସମୀପେ ପ୍ରବେଶିଲା ॥
ପୁଛଇ କନ୍ୟା ମୁଖ ଚାହିଁ । ତୋ ରୂପେ ପଟାନ୍ତର ନାହିଁ ॥
କାହାର ଦୋହିତା ବୋଲଉ । କିମ୍ପାଇ ଏଡ଼େ ଦୁଃଖ ସହୁ ॥
କାହୁଁ ଅଇଲୁ ଘୋର ବନେ । ତପ ଆଚରି ଶୁଦ୍ଧ ମନେ ॥
କେବଣ ଫଳେ ତପ ଦୀକ୍ଷା । କିବା ତୋ ମନେ କରୁ ବାଞ୍ଛା ॥
କହ ନ କରି ମନେ ଭ୍ରାନ୍ତି । କାହାକୁ ଇଚ୍ଛୁ ନିଜ ପତି ॥
ଶୁଣି ଅର୍ଜୁନ ବାଣୀ କର୍ଣ୍ଣେ । କାଳିନ୍ଦୀ କହେ ଶୁଦ୍ଧମନେ ॥
ଅନ୍ଧାରେ ଜ୍ୟୋତି ରୂପ ଧରି । ପ୍ରାଣୀ ନୟନେ ଯେ ବିସ୍ତାରି ॥
ରଥେ ଗମଇଁ ଅନ୍ତରୀକ୍ଷେ । ମୁଁ ତାର ଦୋହିତା ପ୍ରତକ୍ଷେ ॥
ସେ ତାତ ଆଜ୍ଞା ପରମାଣେ । କଠୋର ତପ ଆଚରଣେ ॥
ନିଷ୍ଠୁର ଘୋର ତପ ଦୀକ୍ଷା । ମନେ କଳ୍ପଇ କାନ୍ତ ଇଚ୍ଛା ॥
ବିଷ୍ଣୁଙ୍କୁ ତପେ ତୋଷ କରି । ହୋଇବି ତାଙ୍କ ମନୋହାରୀ ॥
ଅନାଥ ନାଥ ଦାମୋଦର । ସେ କୃଷ୍ଣ ହେଉ ମୋର ବର ॥
କମଳାକାନ୍ତ ଭଗବାନ । ଦୁର୍ଗମ ଦୁରିତ ଭଞ୍ଜନ ॥
ଅଶେଷ ଜୀବ ସୁଖ ଦାତା । ତାରେ ବରିଲା ମୋର ପିତା ॥
କାଳିନ୍ଦୀ ନାମଟି ମୋହୋର । ମୋର ପିଅର ଦିବାକର ॥
ଯାବତ ନ ପାଇବି ହରି । ତନୁ ତେଜିବି ତପ କରି ॥
ମୋହାର ସତ୍ୟ ଏ ବଚନ । ଶୁଣି ଅର୍ଜୁନ ତୋଷ ମନ ॥
ବେଗେ ମିଳିଲା କୃଷ୍ଣ ପାଶେ । କହିଲା ଆନନ୍ଦ ବିଶ୍ୱାସେ ॥
ଭୋ ନାଥ ତୋର ପାଦ ଇଚ୍ଛା । କାଳିନ୍ଦୀ କରେ ତପ ଦୀକ୍ଷା ॥
ଅତି ନିଷ୍ଠୁର ତପ ତାର । ଶୁଣି ସାନନ୍ଦ ଦାମୋଦର ॥
ଯମୁନା କୂଳେ ଯାଇଁ ମିଳି । ଭଗତ ବଂଧୁ ବନମାଳୀ ॥
ବୋଲନ୍ତି କନ୍ୟା ମୁଖ ଚାହିଁ । ତପ ତୁ କରୁ ଯହିଁ ପାଇଁ ॥
ସେ କଥା ହୋଇଲା ସୁଫଳ । ଏମନ୍ତ ବୋଲି କଲେ କୋଳ ॥
ରଥେ ବସାଇ ଭଗବାନ । ଆଣିଲେ ପାଣ୍ଡବ ଭୁବନ ॥
ତକ୍ଷଣେ ବିଶ୍ୱକର୍ମା ରାଇ । ବିଶ୍ୱାସ ବାକ୍ୟ ତାକୁ କହି ॥
ଦେବ ଦାନବେ ଅଗୋଚର । ନିର୍ମିତ କର ଏକ ପୁର ॥
ଗୋବିନ୍ଦ ଆଜ୍ଞା ପରମାଣେ । ନିର୍ମିତ କଲା ତତକ୍ଷଣେ ॥
ସେ ପୁରେ କନ୍ୟା କୃଷ୍ଣ ଥୋଇ । ଧର୍ମ ନନ୍ଦନ ପ୍ରିୟ ବହି ॥
ଏମନ୍ତେ ଗଲା କେତେ ଦିନ । ଶୁଣ ରାଜନ ସାବଧାନ ॥
ଅଗ୍ନିପୁରୁଷ କର ଯୋଡ଼ି । କହଇ କୃଷ୍ଣ ପାଦେ ପଡ଼ି ॥
ସମୁଦ୍ର ରାଜା ଯଜ୍ଞେ ମୁହିଁ । ରୋଗୀ ହୋଇଲି ଘୃତ ଖାଇ ॥
ଭୋ ନାଥ ରଖ ମୋ ଜୀବନ । ଦେଇ ଔଷଧି ରସ ମାନ ॥
ଶୁଣି ଭଗତ ବନ୍ଧୁ ହରି । ଅର୍ଜୁନ କରେ କର ଧରି ॥
ଦାରୁକ କଲା ରଥ ସଜ । ଅର୍ଜୁନ ଘେନି ଦେବରାଜ ॥
ଅନଳ ସଂଗେ ବନମାଳୀ । ଖାଣ୍ଡବ ବନେ ବେଗେ ମିଳି ॥
ତକ୍ଷଣେ ରୁନ୍ଧି ଦଶଦିଗ । କାନନେ ଅଗ୍ନି କଲେ ଯୋଗ ॥
ସର୍ବ ଔଷଧି ବନମଧେ । ଅନଳ ଭକ୍ଷିଲା ଆନନ୍ଦେ ॥
ତକ୍ଷଣେ ବ୍ୟାଧି ଗଲା ନାଶ । ଅନଳ ହୋଇଲା ସନ୍ତୋଷ ॥
ଅଗ୍ନି ଶରୀରୁ ବ୍ୟାଧିଗଲା । ଅର୍ଜୁନେ ଧନୁର୍ବାଣ ଦେଲା ॥
ଶ୍ୱେତ କୁଞ୍ଜର ଶ୍ୱେତ ରଥେ । ଅଭେଦ କପଚ ସହିତେ ॥
ଅକ୍ଷୟ ତ୍ରୋଣ ବେନି ଦିଲା । ମୟ ଦାନବ ବନେ ଥିଲା ॥
ଅଗ୍ନି ଦହନ କାଳେ ବନେ । ପଶିଲା ଅର୍ଜୁନ ଶରଣେ ॥
ଜୀବନ ପାଇ ତୋଷ ହୋଇ । ମାୟାର ସଭାଏ ତିଆଇ ॥
ସନ୍ତୋଷେ ଅର୍ଜୁନଙ୍କୁ ଦିଲା । ଶୁଣ ହୋ ଗୋବିନ୍ଦର ଲୀଳା ॥
ଯହିଁ ରାଜୁସି ଯଜ୍ଞ କାଳେ । ଅନ୍ଧ ନନ୍ଦନ ନୃପମେଳେ ॥
ବସିଲା ବେଳେ ହତଶ୍ରମ । ହୋଇଲା ଜଳ ସ୍ଥଳେ ଭ୍ରମ ॥
ସେ ଭାବ ଘେନି ବନମାଳୀ । ଇନ୍ଦ୍ର ପ୍ରସସ୍ଥେ ଯାଇ ମିଳି ॥
ଧର୍ମ ନନ୍ଦନ ମୁଖ ଚାହିଁ । କହନ୍ତି ପ୍ରିୟ ଭାବ ବହି ॥
ମେଲାଣି ଦେଲେ ଯିବୁ ଘର । ତୁମ୍ଭେ ତ ଜୀବନ ମୋହର ॥
ଏମନ୍ତ କହି ଭଗବାନ । ସଂଗତେ ଘେନି ପରିଜନ ॥
ଦ୍ୱାରକା ପୁରେ ଗଲେ ହରି । ଏବେ ହୋ ଶୁଣ ଦଣ୍ଡଧାରୀ ॥
ଉତ୍ତରାୟଣ ପୁଣ୍ୟ କାଳେ । ଶୁଭ ନକ୍ଷତ୍ର ଯୋଗମେଳେ ॥
କାଳିନ୍ଦୀ କନ୍ୟା ବିଭା କଲେ । ଉତ୍ତମ ଶୁଭ ଲଗ୍ନବେଳେ ॥
ଉତ୍ତମ କନ୍ୟା ବର ଦେଖି । ଯାଦବେ ଧନ୍ୟ କଲେ ଆଖି ॥
କାଳିନ୍ଦୀ ବିଭାର ବିଧାନ । ଯେ କରେ ଶ୍ରବଣେ କୀର୍ତ୍ତନ ॥
ଦୁରିତ ଦୁଃଖ ଭୟ ନାଶେ । ଅନ୍ତେ ରହନ୍ତି କୃଷ୍ଣ ପାଶେ ॥
ସେ ହରି ପାଦେ ମନ ଦେଇ । ସୁଜନେ ତର ଏହା ଗାଇ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରଣେ ଦେଇ ଚିତ୍ତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ଦଶମସ୍କନ୍ଧେ ଅଗ୍ନି ବ୍ୟାଧି ଖଣ୍ଡନେ କାଳିନ୍ଦୀ କନ୍ୟା ବିବାହେ ନାମ ଦ୍ୱିଷଷ୍ଠିତମୋଽଧ୍ୟାୟଃ ।*

## ତ୍ରିଷଷ୍ଟିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ସନ୍ତୋଷେ ଶୁକମୁନି କହେ । ଶୁଣ ରାଜନ କୁରୁରାୟେ ॥
ଏବେ ହୋ ଶୁଣ କୁରୁନାଥ । କୃଷ୍ଣର ଲୀଳା ଭାଗବତ ॥
ଅବନ୍ତୀପୁରେ ବେନୀ ଭାଇ । ବିନ୍ଦାନୁ ବିନ୍ଦା ନାମ ବହି ॥
ଦୁର୍ଯ୍ୟୋଧନର ଯେ ବିଶ୍ୱାସେ । ପ୍ରଜାପାଳଇ ଧର୍ମେ ଦେଶେ ॥
କନ୍ୟାଏ ମିତ୍ରବିନ୍ଦା ସାର । ଭଗ୍ନୀଏ ଥିଲା ତାହାଙ୍କର ॥
ତାହାର ସ୍ୱୟମ୍ବର କାଳେ । ମିଳିଲେ ନୃପତି ସକଳେ ॥
ଗୋବିନ୍ଦ ଗଲେ ତାହା ଶୁଣି । ସଙ୍ଗତେ ଯଦୁବଳ ଘେନି ॥
କନ୍ୟାର ସ୍ୱୟମ୍ବର କାଳେ । ବେଢ଼ିଣ ନୃପତି ସକଳେ ॥
ସେ କନ୍ୟା କୃଷ୍ଣଙ୍କୁ ବରିଲା । ଅନେକ ଗୋଳ ଉପୁଜିଲା ॥
ସେ ବେନି ଭାଇ ରାଜାମେନେ । କନ୍ୟା କୃଷ୍ଣଙ୍କୁ ସମର୍ପିଲେ ॥
ନବମସ୍କନ୍ଧେ ମୁହିଁ ତୋତେ । କହିଛି ବଂଶାନୁଚରିତେ ॥
ସୁରଯାଦବ ଘରେ ଜାତ । ଥିଲେ ଯେ ଏ ପଞ୍ଚ ଦୋହିତ ॥
ସେ ପଞ୍ଚଭଗ୍ନୀ ମଧ୍ୟେ ସାର । ବେଦାଦିଦେବୀ ନାମେ ଯାର ॥
ତାର କୁମାରୀ ଅନୁପାମ । ସୁନ୍ଦରୀ ମିତ୍ରବିନ୍ଦା ନାମ ॥
ତାହାର ସ୍ୱୟମ୍ବର କାଳେ । କୃଷ୍ଣ ହରିଲେ ତାକୁ ବଳେ ॥
ଦେଖନ୍ତି ରାଜପୁତ୍ରେ ମିଳି । ରଥେ ବସାଇ ବନମାଳୀ ॥
କୃଷ୍ଣର ଭଗ୍ନୀ ସେ ଯୁଗତେ । ଜନ ବେଭାର କୁଳମତେ ॥
ଏବେ ହୋ ଶୁଣ ନୃପମଣି । ଯେମନ୍ତେ କଲେ ଚକ୍ରପାଣି ॥
କୋଶଳ ଦେଶେ ନରନାଥ । ଧାର୍ମିକ ନାମେ ଲଗ୍ନାଦିତ ॥
ତାର ଦୋହିତା ସତ୍ୟା ନାମ । ଶୁଭ୍ର ସୁନ୍ଦରୀ ଅନୁପାମ ॥
ନୃପତି ତାର ସ୍ୱୟମ୍ବରେ । ନିୟମ କଲା ଗରୁତରେ ॥
ସପ୍ତଗୋବୃଷ ପୁରେ ଥୋଇ । ବୋଲେ ସାରଥି ମୁଖ ଚାହିଁ ॥
ଘୋଷଣ ଚାରିଦିଗେ ଦିଅ । ଏମନ୍ତ ବାକ୍ୟ ମୋର କହ ॥
ସପ୍ତଗୋବୃଷ ଏକ ତୁଳେ । ବନ୍ଧନ କରିବ ଯେ ଭଲେ ॥
ଏ କନ୍ୟା ହୋଇବ ତାହାର । ଏ ସତ୍ୟ ବଚନ ମୋହୋର ॥
ଏମନ୍ତ ଶୁଣି ତାର ପୁରେ । ମିଳିଲେ ନୃପତି କୁମରେ ॥
ସପତବୃଷ ମୁଖ ଚାହିଁ । ସନ୍ନିଧେ ନପାରନ୍ତି ଯାଇ ॥
ଆଘ୍ରାଣେ ବୀର ବାସ ପାଇ । କୁଟିଳ ନୟନ ଅନାଇ ॥
ଜଳଦ ପ୍ରାଏ ନାଦ କରି । ଖୁରେ ଖୋଳନ୍ତି ବସୁନ୍ଧରୀ ॥
ବିଷମ ତୀକ୍ଷ୍ଣ ଶୃଙ୍ଗ ଖୁର । ଦେଖି ଭାବିଲେ ସର୍ବବୀର ॥
ବୃଷ ବନ୍ଧନେ କନ୍ୟା ଲାଭ । ଏମନ୍ତ ଶୁଣି ପଦ୍ମଲାଭ ॥
ହରଷେ ମଦନ ଗୋପାଳ । ସଙ୍ଗତେ ଘେନି ଯଦୁବଳ ॥
ମିଳିଲେ କୋଶଳ ଭୁବନେ । ଦେଖି ନୃପତି ତୋଷ ମନେ ॥
ସୁଗନ୍ଧ ପୁଷ୍ପ ଉପହାର । ପୂଜିଲା ଗୋବିନ୍ଦ ପୟର ॥
ସୁବର୍ଣ୍ଣ ଆସନେ ବସାଇ । ବୋଲଇ କୃଷ୍ଣ ମୁଖ ଚାହିଁ ॥
ଆଜ ଜୀବନ ମୋର ଧନ୍ୟ । ଦେଖିଲି ପ୍ରଭୁ ଭଗବାନ ॥
ସିଦ୍ଧ ମୁନିଙ୍କି ଆଗୋଚର । ଅଶେଷ ବ୍ରହ୍ମାଣ୍ଡ ଠାକୁର ॥
ସୃଷ୍ଟି ପାଳଣ ସଂହାରଣ । ତୁ ଆଦି ପରମ କାରଣ ॥
ଏମନ୍ତେ କୃଷ୍ଣଙ୍କୁ ପୂଜିଲା । ଦୋହିତା ତାର ପଛେ ଥିଲା ॥
ରାଜକୁମାରୀ କୃଷ୍ଣେ ଚାହିଁ । ଆନନ୍ଦ ଚିତ୍ତେ ବିଚାରଇ ॥
ପୂର୍ବେ ମୋହୋର ତପ ଯେବେ । ସାଧିଲା ଅଛି ଶୁଦ୍ଧ ଭାବେ ॥
ଅଗ୍ନି ଦେବତା ହୋଇ ତୋଷ । ସମ୍ପୂର୍ଣ୍ଣ କରନ୍ତୁ ମୋ ଆଶ ॥
ଯେ ହରି ପଦ୍ମପାଦ ଧୂଳି । ବ୍ରହ୍ମା ଶଙ୍କର ଶିରେ ବୋଳି ॥
ବାସବ ଆଦି ଦେବତାଏ । ନମନ୍ତି ଯାର ପଦ୍ମପାଏ ॥
ଶ୍ୱେତ ଶ୍ରୋଣୀତ ପୀତ ଦେହୀ । ଲୀଳାଏ ନା ନା ରୂପ ବହି ॥
ଅଧର୍ମ ନାଶି ଧର୍ମ ସ୍ଥାପି । ନିର୍ମଳ ସୂକ୍ଷ୍ମ ଶୂନ୍ୟ ବ୍ୟାପୀ ॥
ସେ ହରି ମୋର ପୁଣ୍ୟ ଫଳେ । ତୋଷ ହୁଅନ୍ତୁ ରବି ତଳେ ॥
ଅଶେଷ ବ୍ରହ୍ମାଣ୍ଡର ଗତି । ସେ ମୋର ହୋନ୍ତୁ ନିଜ ପତି
ଏମନ୍ତେ ଶୁଦ୍ଧ ଭାବ ବହି । ରାଜା ବୋଲଇ କୃଷ୍ଣ ଚାହିଁ ॥
ଭୋ ନାଥ ଜଗତ ଈଶ୍ୱର । ଅନାଦି ଧର୍ମ ନିରାକାର ॥
ପରମ ଆତ୍ମାନନ୍ଦ ତୁହି । ଜଗତ ମୟ ପୁଣ୍ୟ ଦେହୀ ॥
ଜଗତ ମୋହନ ତୋ ରୂପ । ସ୍ୱଭାବେ ମୁହିଁ ଯେ ଅଳପ ॥
ଭୋ ନାଥ ଶରଣ ସୋଦର । କିମର୍ଥେ ବିଜେ ମୋର ପୁର ॥
ରାଜାବଚନ ଶୁଣି ହସି । ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥
ଆନନ୍ଦେ ବସି ତା ଆସନେ । ଜଳଦ ଗମ୍ଭୀର ବଚନେ ॥
ଶୁଣ ରାଜନ ଚୂଡ଼ାମଣି । କ୍ଷତ୍ରିୟ ଜନ୍ମର ଯେ ବାଣୀ ॥
ଭିକ୍ଷା ଗ୍ରହଣେ ନିନ୍ଦା ପାଇ । ଉଭୟ ଲୋକେ ସୁଖ ନାହିଁ ॥
ତଥାପି ତୋର ଭାବ ଲଇ । କନ୍ୟା ମାଗିବା ଆଶେ ମୁହିଁ ॥
ମିଳିଲି ତୋହୋର ଭୁବନେ । ବିଦିତ କଥା ସର୍ବ ଜନେ ॥
ଆମ୍ଭର କୁଳ ଧର୍ମ ଏହି । ବିଭା ନକରୁ ଧନ ଦେଇ ॥
କୃଷ୍ଣ ବଚନ ରାଜା ଶୁଣି । ବୋଲଇ ହୃଦେ ପରିମାଣି ॥
ଭୋ ନାଥ ଶୁଣ ଦାମୋଦର । କନ୍ୟା ଉଚିତେ ତୁମ୍ଭେ ବର ॥
ସକଳ ଗୁଣ ତୋର ତହିଁ । ତୋ ଅଙ୍ଗେ କମଳା ବସଇ ॥
ଏ ଯଦୁବଂଶେ ତୁ ସୁନ୍ଦର । ଶୁଣ ଗୋବିନ୍ଦ ମୋ ବିଚାର ॥
ରାଜାଙ୍କ ବଳ ଜାଣିମାରେ । ସତ୍ୟ ମୁଁ କଲି ସ୍ୱୟମ୍ବରେ ॥
ସପ୍ତବୃଷଭ ମହାବଳୀ । ମୋହର ପୁରେ ବନମାଳୀ ॥
ଶୃଙ୍ଗ ଯୁଗଳ ତୀକ୍ଷ୍ଣ ଧାର । ଦୁଷ୍ଟ ଦୁର୍ଦ୍ଦମ ମହାଘୋର ॥

ଦେଖିଣ ତାହାଙ୍କ ବଦନ । ଭାଙ୍ଗିଲେ ନୃପତି ନନ୍ଦନ ॥
ସଂକଳ୍ପ କରିଅଛି ମୁହିଁ । ଘୋଷଣ ଚଉଦିଗେ ଦେଇ ॥
ଏ ସପ୍ତବୃଷ ବନ୍ଦୀ କଲେ । ତାହାକୁ କନ୍ୟା ଦେବି ଭଲେ ॥
ସତ୍ୟ ବଚନ ଏ ମୋହର । ଭୋ ନାଥ ଶୁଣ ଦାମୋଦର ॥
ବନ୍ଧନ କର ତୁମ୍ଭେ ଏହା । ନିଶ୍ଚୟେ କନ୍ୟା ଦେବି ବିଭା ॥
ଏମନ୍ତେ ରାଜା ବାକ୍ୟ ଶୁଣି । ଈଷିତ ହାସ୍ୟେ ଚକ୍ରପାଣି ॥
କନ୍ୟାର ହୃଦୟ ଜାଣିଲେ । ଗୋବିନ୍ଦ ମାୟା ପ୍ରକାଶିଲେ ॥
ତକ୍ଷଣେ ସପ୍ତ ରୂପ ହୋଇ । ମାୟାରେ ନ ଦେଖିଲେ କେହି ॥
ମାୟା ଗୋବିନ୍ଦ ସାତ ରୂପ । କନ୍ୟାଙ୍କୁ ଦେଖାନ୍ତି ସ୍ୱରୂପ ॥
ଜନେ ଦେଖନ୍ତି କୌତୂହଳେ । କୃଷ୍ଣ ବାନ୍ଧିଲେ ଏକାବେଳେ ॥
ଦାମିନୀ କୃତେ ସପ୍ତ ଷଣ୍ଢେ । ଘେନି ବିଜୟେ କୃଷ୍ଣ ଦାଣ୍ଡେ ॥
ଏକର ରଜ୍ଜୁ ସାତ କାନ୍ଧେ । ଗୋବିନ୍ଦ ବାନ୍ଧିଲେ ଆନନ୍ଦେ ॥
କାଷ୍ଠ ପିତୁଳି ବାନ୍ଧି ହସ୍ତେ । ବାଳକେ ଖେଳନ୍ତି ଯେମନ୍ତେ ॥
ଦେଖି ହରଷ ସର୍ବ ଜନ । ଆନନ୍ଦ କୋଶଳ ରାଜନ ॥
ତକ୍ଷଣେ ମିଳି ମହାଜନେ । ଉତ୍ସବ ରାଜାର ଭୁବନେ ॥
ବେଦ ଉଚିତ କର୍ମ ଘେନି । ମଙ୍ଗଳେ ମିଳିଲେ କାମିନୀ ॥
ବର କନ୍ୟାଙ୍କୁ କରି ଶୋଭା । ଆନନ୍ଦେ କରାଇଲେ ବିଭା ॥
ରାଜ କାମିନୀ ମିଳି ଧୀରେ । ଅକ୍ଷତ ଦିଲେ କୃଷ୍ଣ ଶିରେ ॥
ଦୁହିତା ରୂପେ ବର ଦେଖି । ନିର୍ମଳ କଲେ ଚର୍ମ ଆଖି ॥
ଗୀତ ମଙ୍ଗଳ ଶଙ୍ଖ ଭେରୀ । ଅନେକ ବାଦ୍ୟ ନାଦ କରି ॥
ବିପ୍ର ଆଶିଷ ଶିରେ ଦେଇ । ଆନନ୍ଦ କେ ପାରିବ କହି ॥
କୋଶଳ ପୁର ନର ନାରୀ । ଅନେକ ଅଳଙ୍କାର ଭରି ॥
ବିବିଧ ବସ୍ତ୍ର ପରିଧାନ । ସୁବାସ ଗନ୍ଧ ପୁଷ୍ପମାନ ॥
ସୁବେଶ ହୋଇ ସୁ ମଙ୍ଗଳେ । ବିଭାଏ ମିଳିଲେ ସକଳେ ॥
ସେ ବରକନ୍ୟା ମୁଖ ଚାହିଁ । ଆନନ୍ଦେ ପୂର୍ଣ୍ଣ କଲେ ଦେହୀ ॥
ଯୁବା ବାଳକ ବୃଦ୍ଧ ଜନ । ଦେଖି ଅନଙ୍ଗେ ଖେଦ ମନ ॥
ଦିବ୍ୟ ବସନ ଗନ୍ଧ ମାଳେ । ବିଭାଏ ମିଳିଲେ ସକଳେ ॥
କୋଶଳ ରାଜା ସୁ ବିବେକ । ଅନେକ ଦେଲା ଯଉତୁକ ॥
ଦଶ ଅୟୁତେ ଧେନୁ ଦିଲା । ଶୁଣ ହେ ଅଭିମନ୍ୟୁ ବଳା ॥
ତିନି ସହସ୍ର ପରିବାରୀ । ଅନେକ ଅଳଙ୍କାର ଭରି ॥
ଦୋହିତା ହିତେ ନୃପମଣି । କୃଷ୍ଣେ ସମର୍ପି ଦେଲା ଆଣି ॥
ନବ ସହସ୍ର ମତ୍ତ ହସ୍ତୀ । ଆନନ୍ଦେ ଦେଲା ମହୀପତି ॥
ସୁବର୍ଣ୍ଣ ରଥ ନବ ଲକ୍ଷ । ହରିଙ୍କି ଦେଲାକ ପ୍ରତକ୍ଷ ॥
ଆନନ୍ଦ ମନେ ସେ ନରେନ୍ଦ୍ର । ତୁରଙ୍ଗ ଦିଲା ନବ ବୃନ୍ଦ ॥
ନବଣ ଖର୍ବ ବଳ ଦେଇ । ବର କନ୍ୟାଙ୍କୁ ରଥେ ଥୋଇ ॥
ସଙ୍ଗତେ ନିଜ ବଳ ଘେନି । ବଜାଇ ବୀରତୂର ଧ୍ୱନି ॥
ଆନନ୍ଦେ ଅଶ୍ରୁଜଳ ବହି । ପାଛୋଟି କେତେ ଦୂର ଯାଇ ॥
କୃଷ୍ଣଙ୍କୁ ମାଗି ଅନୁଯାନ । ମିଳିଲେ ଆପଣା ଭୁବନ ॥
ଗୋବିନ୍ଦ ଦ୍ୱାରକାର ପଥେ । ବସି ଗମନ୍ତେ ନିଜ ରଥେ ॥
ଅନେକ ନୃପତି କୁମରେ । ଥିଲେ ଯେ କନ୍ୟା ସ୍ୱୟମ୍ବରେ ।
ସପ୍ତବୃଷର ଯୁଦ୍ଧେ ହାରି । କନ୍ୟାଙ୍କୁ ଚିତ୍ତେ ଛନ୍ତି ବରି ॥
କନ୍ୟାକୁ ବଳେ ନେବୁ ଆଜ । କିସ କରିବେ ଯଦୁ ଭୋଜ ॥
ଏମନ୍ତ ଭାଳି ସୁ ବିଚାରେ । ପଥେ ଧାଇଁଲେ ଅତି ଖରେ ॥
ଜଳଦ ପ୍ରାୟେ ବାଣ ବିନ୍ଧି । ବେଗେ ଯାଦବ ବଳ ରୁନ୍ଧି ॥
ଅର୍ଜ୍ଜୁନ ଥିଲା କୃଷ୍ଣ ସଙ୍ଗେ । ଦେଖି ଧାଇଁଲା ଅତି ବେଗେ ।
ଗାଣ୍ଡିବ ଧନୁ ଗୁଣ ଦେଇ । ରଣ ସାଜିଲେ ରଥେ ଥାଇ ॥
ଅନେକ ରଥ ଗଜ ଛେଦି । ବୃଷ୍ଟି କରଇ ମେଘ ଛାଦି ॥
ଶର ବରଷା ମହାଘୋର । ଦେଖି ଭାଙ୍ଗିଲେ ନୃପବର ॥
ଯୁଦ୍ଧେ ହାରିଲେ ନୃପ କେହ୍ନେ । କେଶରୀ ମୁଖେ ମୃଗ ଯେହ୍ନେ ।
କନ୍ୟା ସମେତେ ଭଗବାନ । ମିଳିଲେ ଦ୍ୱାରକା ଭୁବନ ॥
ଯଦୁ କୁମୁଦ ନିଶାକର । ପୁରେ ମିଳିଲେ କନ୍ୟାବର ॥
ଲକ୍ଷ୍ମୀର ଅଂଶେ କନ୍ୟା ସଂଗେ । କୃଷ୍ଣ ରମିଲେ ସୁଖ ରଙ୍ଗେ ॥
ଅନାଦି ପ୍ରଭୁ ଯଦୁନାଥ । ଦେବକୀ ଦେବୀ ଯାର ମାତ ॥
ଏବେ ହୋ ଶୁଣ ନରପତି । ଦ୍ୱାରକା ପୁରେ ଶୁଭକୀର୍ତ୍ତି ॥
ତାର ଦୋହିତା ଭଦ୍ରା ନାମ । ରୂପେଣ କମଳା ଉପାମ ॥
ପିତୃ ଭଗ୍ନୀର ସୁତ ସେହି । ଭ୍ରାଥ ବିଚ୍ଛେଦ କନ୍ୟା ଦେଇ ॥
ସକଳ ବନ୍ଧୁ ଜନ ମିଳି । ବିବାହ କଲେ ବନମାଳୀ ॥
ମିତ୍ରାଧିପତିର ଦୁଲଣୀ । ଲକ୍ଷ୍ମୀ ଦେବୀଟି ତା ଭଉଣୀ ॥
ତାହାର ସ୍ୱୟମ୍ବର କାଳେ । କୃଷ୍ଣ ହରିଲେ ତାକୁ ବଳେ ॥
ଦୁର୍ଗମ ଲାଖ ବନେ ବିନ୍ଧି । ସମରେ ରିପୁ ବଳ ଛେଦି ॥
ଦେବଙ୍କ ମଧ୍ୟେ ରୂପରାଶି । ଗରୁଡ଼ ଯେହ୍ନେ ଖଗରାଶି ॥
ଏବେ ତୁ ଶୁଣ ନୃପମଣି । ନାରକାପୁରୁ ଚକ୍ରପାଣି ॥
ଷୋଳସହସ୍ର ଶତେ ନାରୀ । ଆଣିଲେ ଘୋର ଯୁଦ୍ଧ କରି ॥
ଅନେକ ମାଇଲେ ଅସୁର । ଦୁଷ୍ଟ ଦଳନ ଦାମୋଦର ॥
ସେ ହରିପାଦେ ଅବିରତେ । ସଜ୍ଜାନୀ ଚିନ୍ତ ଧ୍ୟାନମତେ ॥
ତୁଟିବ ମୋହ ଜଳ ପାଶ । ନମଇଁ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ମିତ୍ରାବୃନ୍ଦା ଭଦ୍ରାଲକ୍ଷଣା କନ୍ୟା ବିବାହୋ ନାମ ତ୍ରିଷଷ୍ଟିତମୋଽଧ୍ୟାୟଃ ।*

## ଚତୁଃଷଷ୍ଠିତମ ଅଧ୍ୟାୟ

### ପରୀକ୍ଷିତ ଉବାଚ

କୃଷ୍ଣ ସେବକ ଭାଗ୍ୟବନ୍ତ । କୁରୁନନ୍ଦନ ପରୀକ୍ଷିତ ॥
ବ୍ୟାସ କୁମର ମୁଖ ଚାହିଁ । କହଇ ଶିରେ କର ଦେଇ ॥
ଭୋ ମୁନି କେମନ୍ତେ ଅନନ୍ତ । ନାରକାସୁର କଲେ ହତ ॥
ଆଣିଲେ ଅନେକ ସୁନ୍ଦରୀ । ସୁର ଦାନବ ପ୍ରାଣ ହାରି ॥
ଶାରଙ୍ଗ ଧନୁ ଯାର କର । ମହାମହିମା ଯୋଗେଶ୍ୱର ॥
ଅବନୀ ଭାରା ନିବାରଣ । ନିର୍ଗୁଣ ପରମ କାରଣ ॥
କହ କେମନ୍ତେ ନରହରି । କନ୍ୟା ଆଣିଲେ ଶତ୍ରୁ ମାରି ॥
କେମନ୍ତେ ନାରକା ଅସୁର । ରଣେ ଜିଣିଲା ତିନିପୁର ॥
କାହୁଁ ଆଣିଲା କନ୍ୟାହରି । ନିଜ ଭୁବନେ ଥିଲା ଭରି ॥
ଶୁକ କହନ୍ତି ତାହା ଶୁଣି । କୃଷ୍ଣ ମହିମା ମନେ ଗୁଣି ॥
ଶୁଣି ପରୀକ୍ଷ ମହୀପାଳ । ସ୍ୱର୍ଗ ଭୁବନେ ଆଖଣ୍ଡଳ ॥
ନାରକା ସୁର ଭୟ ଗ୍ରାସୀ । ଯଦୁ ନଗରେ ରାତ୍ରେ ଆସି ॥
ମିଳିଲେ ଗୋବିନ୍ଦର ପାଶେ । ଏକାନ୍ତେ କହନ୍ତି ବିଶ୍ୱାସେ ॥
ଭୋ ନାଥ ଦୁଷ୍ଟ ନିବାରଣ । ଅନାଦି ପରମ କାରଣ ॥
ଅଦିତି ମୋହୋର ଜନନୀ । ସେ ପୁଣି ଦକ୍ଷର ନନ୍ଦିନୀ ॥
ଅମୃତ ଦିବ୍ୟମଣି ବେନି । କର୍ଣ୍ଣେ କୁଣ୍ଡଳ ଥିଲା ଘେନି ॥
ନାରକାସୁର ମୋର ପୁରେ । ପଶିଲା ମହାଯୁଦ୍ଧ ଘୋରେ ॥
ମାତା କୁଣ୍ଡଳ କର୍ଣ୍ଣୁ ନିଲା । ସ୍ୱର୍ଗେ ବରୁଣ ଛତ୍ର ଥିଲା ॥
ମୋତେ ଘଉଡ଼ି ବାହୁବଳେ । ଛତ୍ର ହରିଲା ମୋର ହେଳେ ॥
ମନ୍ଦର ଗିରି ଶିଖ ମୂଳେ । ମଣି ପର୍ବତ ମହୀ ଜଳେ ॥
ରାଜାଙ୍କ କନ୍ୟା ବିଭା ଛଳେ । ହରି ଆଣିଲା ବାହୁବଳେ ॥
ପୁରେ ନିରୋଧି ସନ୍ୟବଳେ । ବିଭା କରିବ ଏକା ବେଳେ ॥
ତାର ମହିମା ଶୁଣି କର୍ଣ୍ଣେ । ତିନି ଭୁବନେ ଯେତେ ଜନେ
ବଦନେ ନସ୍ଫୁରେ ବଚନ । ସକଳେ ହୋଇ ଭୟେ ମନ ॥
ତାହାର ଡ଼ରେ ଦାମୋଦର । ଭାଙ୍ଗିଲା ଅମର ନଗର ॥
ହରିଲା ମୋର ଅଧିକାର । ତୁ ନାଥ ଶରଣ ସୋଦର ॥
ବାସବ ବାକ୍ୟ ଶୁଣି କର୍ଣ୍ଣେ । ଗୋବିନ୍ଦ ହୃଷିତ ବଦନେ ॥
ବାସବ ଯାଅ ନିଜ ପୁର । ମୁହିଁ କରିବି ପ୍ରତିକାର ॥
କୃଷ୍ଣ ବଚନେ ଇନ୍ଦ୍ର ଗଲା । ଏମନ୍ତେ ରଜନୀ ପାହିଲା ॥
ସତ୍ୟଭାମାକୁ କରେ ଧରି । ଗୋବିନ୍ଦ ଗରୁଡ଼ ସୁମରି ॥
ଧ୍ୟାନେ ଜାଣିଲା ଖଗେଶ୍ୱର । ମିଳିଲା ଦ୍ୱାରକା ନଗର ॥
କୃଷ୍ଣେ ନିକଟେ ମିଳେ ଆସି । ଗୋବିନ୍ଦ ତାର କନ୍ଧେ ବସି ॥
ସତ୍ୟଭାମାକୁ କୋଳେ ଘେନି । କେଶବ କଲେ ଶଙ୍ଖ ଧ୍ୱନି ॥
ଦେଖନ୍ତି ଦଶଦିଗପାଳେ । ଗରୁଡ଼ ଉଡ଼େ ଅନ୍ତରାଳେ ॥
ପ୍ରାଗ ଜ୍ୟୋତିଷପୁର ନାସେ । ମିଳିଲେ ନାରକାର ପାଶେ ॥
ଶତେ ଯୋଜନ ଗ୍ରାମସ୍ଥଳୀ । ଦେଖି ହସନ୍ତି ବନମାଳୀ ॥
ଶୁଣ ରାଜନ ତା ମହିମା । ଦୁର୍ଗମ ଦାନେବର ସୀମା ॥
ଗିରି ଦୁର୍ଗମ ଚାରିପାଶେ । ବାଣ କମାଣ ଶଶୀ ରୋଷେ ॥
ବାଣ ଅନ୍ତରେ ଜଳ ଖଣା । ଦେଖିଣ ଦେବେ ହୋନ୍ତି ବଣା
ଗଭୀର କେ କହୁ ପ୍ରମାଣ । ଘୋର ଗଭୀର ଗ୍ରାହାଗଣ ॥
ସେ ଦୁର୍ଗ ଅନ୍ତରେ ଅନଳ । ଉଠେ ଚଳର ତିନି ତାଳ ॥
ଅଗ୍ନି ଅନ୍ତରେ ସମୀରଣ । ପ୍ରଚଣ୍ଡ ବହଇ ପବନ ॥
ରିପୁ ପଡ଼ିଲେ ଯାନ୍ତି ଉଡ଼ି । ପଡ଼ନ୍ତି ଅଗ୍ନି ଜଳ ମାଡ଼ି ॥
ତାର ଅନ୍ତର ସୁରପାଶୀ । ନୀଳ ଜୀମୂତ ପ୍ରାୟେ ଦିଶି ॥
ଏମନ୍ତ ଦୁଗ୍ରମ ଭିଆଇ । ନିଶ୍ଚିନ୍ତ ମଧ୍ୟେ ଅଛି ରହି ॥
ହେଲେ ଜିଣିଲା ସୁର ନର । ଦେଖି ହରଷେ ଚକ୍ରଧର ॥
ଗଦା ପ୍ରହାରେ ଦାମୋଦର । ଗିରି ଦୁର୍ଗମ କଲେ ଚୂର ॥
ବାଣ କମାଣ ଗଦାଧରି । ତୀକ୍ଷ୍ଣ ନାରାଚେ ଚୂର କରି ॥
ଜଳ ଅନଳ ସମୀରଣ । ଚକ୍ରେ ଶୋଷିଲେ ନାରାୟଣ ॥
ଖଡ଼ଗେ ଧରି ବ୍ରହ୍ମରାଶି । ବେଗେ ଛେଦିଲେ ସୁରପାଶୀ ॥
ଶଙ୍ଖ ଶବଦ କଲେ ହରି । ଶୁଭିଲା ଦଶ ଦଶ ପୂରି ॥
ଯେ ଦୁର୍ଗ କାନନ ଆବୋରି । ବୀରେ ଯେ ଥିଲେ ଶସ୍ତ୍ର ଧରି ।
ହୃଦୟ କମ୍ପିଲା ବିକଳେ । ଶସ୍ତ୍ର ପଡ଼ିଲା ହସ୍ତୁ ତଳେ ॥
ଗୋବିନ୍ଦ ବସି ଖଗେଶ୍ୱରେ । ମିଳିଲେ ନାରକାର ଦ୍ୱାରେ ॥
ଶିଳା ପାଚେରି ଚାରିଦିଗେ । ଦେଖି ଗୋବିନ୍ଦ ଅତି ବେଗେ ।
ଗଦା ପ୍ରହାରେ ଚୂର୍ଣ୍ଣ କରି । ଶବଦ କମ୍ପେ ବସୁନ୍ଧରୀ ॥
କୃଷ୍ଣର ଶୁଣି ଶଙ୍ଖ ନାଦ । ଅସୁର ପାଇ ମନେ ଖେଦ ॥
ଯୁଗାନ୍ତ ବଜ୍ର ପ୍ରାୟେ ମଣି । ସୁର ଦାନବ ତାହା ଶୁଣି ॥
ପର୍ବତ ପ୍ରାୟେ ପଞ୍ଚ ଶିର । ନିଦ୍ରା ବିୟୋଗେ ମହାବୀର ॥
ଭିତରପୁରେ ଶୋଇଥିଲା । ଶବଦ ଶୁଣି ବିଜେ କଲା ॥
ତ୍ରିଶୂଳ ଅଛି ତାର କରେ । କିବା ଉପମା ଦେବା ତାରେ ॥
ପ୍ରଳୟକାଳେ ଦିନକର । ଅନଳେ ଜ୍ୟୋତି ମହାଘୋର ॥
ଏମନ୍ତ ପ୍ରାୟେ ବୀର ଦିଶି । ଧାଇଁଲା ତ୍ରିଭୁବନ ଗ୍ରାସି ॥
ଗିଳିବା ପ୍ରାୟ ପଞ୍ଚଭୂତ । ପଞ୍ଚ ବଦନ ବିପରୀତ ॥
କୃଷ୍ଣ ଦେଖନ୍ତି ତାର ବେଗ । ଗରୁଡ଼ ମୁଖେ ଯେହ୍ନେ ନାଗ ॥
ଧାମଙ୍କ ମରଣ ନ ଜାଣି । ଦେଖି ହସନ୍ତି ଚକ୍ରପାଣି ॥

ତ୍ରିଶୂଳ ଘେନି ଅତି ବେଗେ । ପିଟିଲା ଗରୁଡ଼ର ଅଙ୍ଗେ ॥
ଶବଦ କଲା ପଞ୍ଚ ତୁଣ୍ଡେ । ପୂରିଲା ଅଶେଷ ବ୍ରହ୍ମାଣ୍ଡେ ॥
ତ୍ରିଶୂଳ ଦେଖି ନାରାୟଣ । ବେଗେ ବିନ୍ଧିଲେ ତୀକ୍ଷ୍ଣ ବାଣ ॥
ତକ୍ଷଣେ କରି ଚାରିଖଣ୍ଡ । ଚାହିଁଲେ ଅସୁରର ମୁଣ୍ଡ ॥
କୃଷ୍ଣ ବିନ୍ଧିଲେ ପଞ୍ଚବାଣ । ଅସୁର କୋପେ ଗରୁ ଟାଣ ॥
ଗଦାଏ ଥିଲା ବାମ କରେ । ପିଟିଲା ଗୋବିନ୍ଦ ଉପରେ ॥
ତକ୍ଷଣେ ମଦନ ଗୋପାଳ । ଗଦାକୁ ଗଦା ପରିତାଳ ॥
ଦାନେବ ଗଦା ଚୂର୍ଣ୍ଣ କରି । ଶଙ୍ଖ ଶବଦ ବେଗେ ପୂରି ॥
ନିଶସ୍ତ୍ର ହୋଇ ସେ ଦନୁଜ । ବେଗେ ତୋଳିଲା ବେନି ଭୁଜ ॥
ଧାଇଁଲା ଘୋର ନାଦ କରି । ପାଦେ କମ୍ପଇ ବସୁନ୍ଧରୀ ॥
ସ୍ୱର୍ଗେ ଦେଖନ୍ତି ଦେବେ ମିଳି । ଚକ୍ର ପେଶନ୍ତି ବନମାଳୀ ॥
ତକ୍ଷଣେ ହୋଇ ବେନି ଖଣ୍ଡ । ଜଳେ ପଡ଼ିଲା ମୃତ୍ୟୁ ପିଣ୍ଡ ॥
ବାସବ ବଜ୍ରେ ହୋଇ ଭଙ୍ଗ । ଯେହ୍ନେ ପଡ଼ଇ ଗିରି ଶୃଙ୍ଗ ॥
ସାତ କୁମର ତାର ଥିଲେ । ପିତାର ମରଣ ଜାଣିଲେ ॥
ପିତୃ ବଇରୀ ମାରିବାରେ । ଧାଇଁଲେ ପବନହୁଁ ଖରେ ॥
ଅତି ଗହନ ଘୋରତମ । ଶୁଣ ହୋ ତାହାଙ୍କର ନାମ ॥
ତାମ୍ର ଅନ୍ତରୀକ୍ଷ ଶ୍ରବଣ । ଚତୁର୍ଥ ବିଭାବସୁ ନାମ ॥
ପଞ୍ଚମେ ବସୁ ମହାବୀର । ଷଷ୍ଠମେ ନଭସ୍ୱ ନଶ୍ୱର ॥
ପୁଣି ଶ୍ରବଣ ଯାର ନାମ । ଯେମନ୍ତେ ଧାଇଁଲେ ସପ୍ତମ ॥
କରେ ବିବିଧ ଶସ୍ତ୍ର ଘେନି । ସାଜିଲା ନାରକା ସଇନି ॥
ଯୂଥପତିଙ୍କି କରି ଆଗେ । ନାରକାସୁର ବେନି ଭାଗେ ॥
ଆବୋରି ଧାଇଁଲେ ସମରେ । ପୃଥ୍ୱୀ କମ୍ପଇ ପାଦ ଭରେ ॥
ବାଣ ଖଡ଼ଗ ଗଦା ରିଷ୍ଟି । ଶୂଳ ତ୍ରିଶୂଳ ଲୌହଯଷ୍ଟି ॥
ରବି କିରଣ ପ୍ରାୟେ ଦିଶି । ଭୂମି ଗଗନ ତେଜରାଶି ॥
ବାଣ ବରଷା ମେଘ ପ୍ରାୟେ । ବିନ୍ଧିଲେ ଗୋବିନ୍ଦର ଦେହେ ॥
ଦେଖି କେଶବ ଅତି ଖରେ । ଶାରଙ୍ଗ ଧନୁ ଧରି କରେ ॥
କୃଷ୍ଣ ବିନ୍ଧିଲେ ଗରୁ ଟାଣ । ଅନଳ ପ୍ରାୟେ ତୀକ୍ଷ୍ଣ ବାଣ ॥
ଅସୁରଙ୍କର ଶସ୍ତ୍ର ପାଶେ । ରବି ଯେମନ୍ତେ ତମ ନାଶେ ॥
ତିଳ ପ୍ରମାଣେ ଶସ୍ତ୍ର କାଟି । ଗୋବିନ୍ଦ କଲେ ଖର ବୃଷ୍ଟି ॥
ଅସୁରଙ୍କର ସେନା ଫୁଟି । ଭୁଜ ଚରଣ ଶିରେ ତୁଟି ॥
ତକ୍ଷଣେ ପଡ଼ିଲେ ସକଳେ । ମେଦିନୀ ନ ଦିଶେ ଗହଳେ ॥
କୃଷ୍ଣର ବାଣ ତୀକ୍ଷ୍ଣ ଫଳ । ଧ୍ୱଂସିଲା ଚତୁରଙ୍ଗ ବଳ ॥
ନାରକାସୁର ତାହା ଦେଖି । ଧାଇଁଲା ସଂଗ୍ରାମ ଉପେକ୍ଷି ॥
ଷଷ୍ଟି ସହସ୍ର ଗଜ ଯୂଥ । ଜଳଧି ମନ୍ଥନୁ ସମ୍ଭୂତ ॥
ବରଷା ପ୍ରାୟେ ମଦଗଳି । ଦିଶନ୍ତି କରୀବରେ ଝଳି ॥
ଅଙ୍କୁଷ ମାହୁନ୍ତଙ୍କ କରେ । ଝଲକେ ରବି ପଟାନ୍ତରେ ॥
ନାରକାସୁର ଗଜ ମଧ୍ୟେ । ବେଗେ ଧାଇଁଲା ଘୋରନାଦେ ॥
ଉଚ୍ଚ ଗୁଞ୍ଜରେ ଭୂମିସୁତ । ନୟନେ ଦେଖିଲା ଅନନ୍ତ ॥
ସୁବର୍ଣ୍ଣ ପ୍ରାୟେ ପକ୍ଷୀରାଜ । ଶୂନ୍ୟେ ଉଡ଼ଇ ମହାତେଜ ॥
ତାହାର କନ୍ଧେ ନରହରି । ସତ୍ୟଭାମାକୁ କୋଳେ ଧରି ॥
ଉର୍ଦ୍ଧ୍ୱେ ଉଦିତ ଭୁଜ ଚାରି । କୋଦଣ୍ଡ ଶଙ୍ଖ ଗଦା ଧରି ॥
କୋଟି ଆଦିତ୍ୟ ତେଜ ପରେ । ଚକ୍ର ଶୋହଇ ଦକ୍ଷ କରେ ॥
ବନମାଳାଏ ଲମ୍ବେ ଉରେ । କିବା ଉପମା ଦେବା ତାରେ ॥
ନୀଳ ଜୀମୂତ ଶୂନ୍ୟେ ମିଳି । ନିରତେ ପ୍ରସରେ ବିଜୁଳି ॥
ରବି ଉପରେ ଯେହ୍ନେ ଥାଇ । ଗଗନେ ମଧ୍ୟେ ବିରାଜଇ ॥
ଏମନ୍ତେ କୃଷ୍ଣ ମୁଖ ଚାହିଁ । ନାରକାସୁର କୋପ ବହି ॥
ଶକ୍ତିଏ ଥିଲା କରେ ଘେନି । ତାହାର ନାମ ଶତଘନୀ ॥
ପ୍ରହାର କଲେ ଅବିରତ । ରିପୁ ନାଶଇ ଶତ ଶତ ॥
କୃଷ୍ଣ ଉପରେ ପ୍ରହାରିଲା । ପ୍ରତକ୍ଷେ ଘୋର ନାଦ କଲା ॥
ଯେତେ ମାହୁନ୍ତ ସଙ୍ଗେ ଥିଲେ । କୃଷ୍ଣଙ୍କୁ ଶସ୍ତ୍ର ପ୍ରହାରିଲେ ॥
ଶକ୍ତି ପଡ଼ନ୍ତେ କୃଷ୍ଣ ଚାହିଁ । ନାରାଚ ଗୁଣରେ ବସାଇ ॥
ନିରତେ ବିନ୍ଧି ତୀକ୍ଷ୍ଣ ଶର । ଶକ୍ତି ସମୂହ କଲେ ଚୂର ॥
ନାରକାସୁରକୁ ଅନାଇ । ନାରାଚେ ପେଷି ଭାବଗ୍ରାହୀ ॥
ବଜ୍ର ଶବଦ ପ୍ରାୟେ ବାଣ । କୃଷ୍ଣ ବିନ୍ଧନ୍ତି ପୁଣ ପୁଣ ॥
ବଳ ପଡ଼ିଲେ ମହୀଲୋଟି । ଜାନୁ ହୃଦୟ ଶିର ତୁଟି ॥
ରଥ ଗୁଞ୍ଜର ଅଶ୍ୱ ଯେତେ । ଛିଡ଼ି ପଡ଼ିଲେ ଭୂମି ଗତେ ॥
ଶସ୍ତ୍ର ସହିତେ ରିପୁପିଣ୍ଡ । ଛିଡ଼ି ପଡ଼ିଲେ ତିନି ଖଣ୍ଡ ॥
ଗରୁଡ଼ ନଖ ଚଞ୍ଚୁ ଘାତେ । ଗଜ ପଡ଼ିଲେ ଯୂଥେ ଯୂଥେ ॥
ପଳାଇ ନିଜପୁରେ ଆସି । କେତେହେଁ ଜଳେ ପଡ଼ି ଭାସି ॥
ଯୁଦ୍ଧ କରନ୍ତି ମହୀସୁତ । ଗୁଞ୍ଜରେ ହୋଇଲେ ଅନାଥ ॥
ଗରୁଡ଼ ବାତେ ସୈନ୍ୟ ଗଲା । ଦେଖି ନାରକା କୋପ କଲା ॥
ପୁଣି ଶକ୍ତିଏ କରେ ଧରି । ଗର୍ଜଇ ଘୋର ନାଦ କରି ॥
ବଳ ଭାଙ୍ଗଇ ତାର ଘାଏ । କୋପେ ପିଟିଲା କୃଷ୍ଣ ଦେହେ ॥
ଶକ୍ତି ପ୍ରହାରେ ଭଗବାନ । ଗରୁଡ଼େ ନିଶ୍ଚଳେ ଆସନ ॥
ଫୁଲ ମଣ୍ଡାଏ କରେ ଧରି । ଯେହ୍ନେ ଗୁଞ୍ଜର ଦେହେ ମାରି ॥
ଶକ୍ତି କୃଷ୍ଣର ଦେହେ ବାଜି । ପଡ଼ିଲା ଭୂମି ଗତେ ଭାଜି ॥
ତ୍ରିଶୂଳ ଘେନି ଭୂମି ସୁତ । ମିଳିଲା କୃଷ୍ଣର ଅଗ୍ରତ ॥
ନିଷ୍ଫଳ ଉଦ୍ୟମ ତାହାର । ଶୂନ୍ୟେ ଦେଖନ୍ତି ସୁରନର ॥
ଚକ୍ର ପେଷିଲେ ଦାମୋଦର । କାଟିଲେ ନାରକାର ଶିର ॥

ଗଜ ଉପରେ ବସିଥିଲା । ସୁନ୍ଦର ଧରଣୀର ବଳା ॥
ଅମୂଲ୍ୟ କିରୀଟୀ ବିରାଜେ । କର୍ଣ୍ଣେ କୁଣ୍ଡଳ ବେନି ସାଜେ ॥
ଛିଡ଼ି ପଡ଼ିଲା କନ୍ଧ ଶିର । ଅବନୀ ଦିଶିଲା ସୁନ୍ଦର ॥
ହା ହା ଶବଦ ଅନ୍ତପୁରେ । ଶୁଭିଲା ନାରକା ନଗରେ ॥
ଦେବ ସମୂହେ ବ୍ରହ୍ମ ଋଷି । ସ୍ୱର୍ଗେ ଯେ ଦେଖୁଥିଲେ ବସି ॥
ଜୟ ଶବଦ ଧ୍ୱନି ଧାରେ । ପୁଷ୍ପ ସିଞ୍ଚିଲେ କୃଷ୍ଣ ଶିରେ ॥
ଭୂମି ନାରକା ପୁରେ ଥିଲା । ପୁତ୍ରର ମରଣ ଶୁଣିଲା ॥
ସର୍ବ ସମ୍ପଦ ସଙ୍ଗେ ଘେନି । କୃଷ୍ଣଙ୍କୁ ଭେଟିଲା ଅବନୀ ॥
ହିରଣ୍ୟ ରତ୍ନମୟେ ଠୁଳ । ଘେନାଇ ଅମୃତ କୁଣ୍ଡଳ ॥
ବରୁଣ ଛତ୍ର ମଣି ଶିର । ବନମାଳାଏ ଧରି କର ॥
କୃଷ୍ଣ ସମୀପେ ନେଇ ଦିଲା । ସଭୟେ ଚରଣ ପୂଜିଲା ॥
ଭୁଜ ଯୁଗଳ ଦେଇ ଶିରେ । ସ୍ତୁତି କରଇ ଶୋକ ଭରେ ॥
ଭୂମି ବୋଲଇ ଯୋଡ଼ି କର । ତୁ ନାଥ ଦେବଙ୍କର ବର ॥
ଶଙ୍ଖ କମଳ ଗଦା ହସ୍ତେ । ଦେବାଧିଦେବ ନମୋଽସ୍ତୁତେ ॥
ଯେ ତୋତେ ଯେମନ୍ତ ଲୋଡ଼ଇ । ସେ ଅନୁରୂପେ ତୋତେ ପାଇ ॥
ପରମ ଆତ୍ମା ଆଦି ମୂଳ । ନମସ୍ତେ ପରମ ମଙ୍ଗଳ ॥
ପଙ୍କଜ ଲାଭ ପଦ୍ମମାଳୀ । ପଦ୍ମଲୋଚନ ଶୁଦ୍ଧଶାଳୀ ॥
ପଙ୍କଜ ନିଧିଙ୍କ ପୟର । ଭୋ ନାଥ ଶରଣ ତୋହର ॥
ନମସ୍ତେ ପ୍ରଭୁ ଭଗବାନ । ବିଷ୍ଣୁ ବାସୁଦେବ ବିଧାନ ॥
ଆଦି ପୁରୁଷ ବୀଜ ଆଦି । ସୁପୁଣ୍ୟେ ବୋଲି ପରସିଦ୍ଧି ॥
ଜଗତ ଜନ୍ମ କରୁ ତୁହି । ଜନ୍ମମରଣ ତୋର ନାହିଁ ॥
ବ୍ରହ୍ମସ୍ୱରୂପ ନମୋନମଃ । ଅନନ୍ତ ଶକ୍ତି ଅନୁପାମ ॥
ପର ଅପର ଭୂତ ଆତ୍ମା । ପରମା ନନ୍ଦ ଯେ ମହାତ୍ମା ॥
ଯେ ସୃଷ୍ଟି ଉପୁଜିବା ବେଳେ । ତୁ ରଜଗୁଣ ହେଉ ବଳେ ॥
ନିରୋଧ କାଳେ ତମୋ ଗୁଣ । ଆନନ୍ଦେ ବହ ନାରାୟଣ ॥
ସନ୍ଥ ପାଳଣ ଧର୍ମ ସୁଖେ । ସତ୍ୟଗୁଣକୁ ଭଜୁ ସୁଖେ ॥
ପ୍ରଧାନ ପୁରୁଷ ତୁ କାଳ । ପରମ ଆତ୍ମାନନ୍ଦ ବାଳ ॥
ମୋ ଆଦି ସଳିଳ ଅନଳ । ଶମୀର ଆକାଶ ମଣ୍ଡଳ ॥
ଶବ୍ଦ ସ୍ପରଶ ରୂପ ରସ । ଗନ୍ଧ ଇନ୍ଦ୍ରିୟ ଏକାଦଶ ॥
ଇନ୍ଦ୍ରପାଳକ ଦେବ ଗଣ । ତୁ ଆଦି ପରମ କାରଣ ॥
ଅନ୍ତଃସ୍ମରଣ ଭୂତ ଆଦି । ସଚରାଚରେ ସର୍ବସିଦ୍ଧି ॥
ଏ ମାୟା ତୋର ଦେହେ ଭ୍ରମି । ତୁ ଏକ ତତ୍ତ୍ୱ ବିଷ୍ଣୁ ବ୍ରହ୍ମି ॥
ତୁ ମୋର ନାଶିଲୁ ତନୁଜ । ଏ ତୋର ପୁତ୍ର ଦେବରାଜ ॥
ଏହାର ପୁତ୍ର ଅଛି ଏକ । ଭୋ ନାଥ ହୋଇଲା ନିରେଖ ॥
ତୋ ପାଦପଦ୍ମେ ଅଛି ଶୋଇ । ଭୁଜ ଯୁଗଳ ଶିରେ ଦେଇ ॥
ଏହାକୁ ରଖ ଗୋପୀନାଥ । ଶିରେ ନିବେଶି ପଦ୍ମହସ୍ତ ॥
ଶୁକ କହନ୍ତି ରାଜା ଚାହିଁ । ଭୂମି ବଚନେ ଭାବଗ୍ରାହୀ ॥
ନାରକା ପୁତ୍ରକୁ ଆଣିଲେ । ଅଭୟ ହସ୍ତ ଶିରେ ଦେଲେ ॥
ବାଳେକ ଘେନି ବ୍ରହ୍ମରାଶି । ନାରକାପୁର ମଧ୍ୟେ ପଶି ॥
ରାଜା କରାଇ ଯଦୁନାଥ । ନାମ ତା ଦେଲେ ଭଗଦତ୍ତ ॥
ତକ୍ଷଣେ ଅନ୍ତଃପୁରେ ପଶି । ସେବକ ଜନଙ୍କୁ ଆଶ୍ୱାସି ॥
ଦେଖିଲେ ରାଜ କନ୍ୟା ଯୂଥ । ଷୋଳ ସହସ୍ର ଏକ ଶତ ॥
କୃଷ୍ଣଙ୍କୁ ଦେଖନ୍ତେ ସର୍ବନାରୀ । ଏକ ଆରେକ ଆଗଭରି ॥
ଚର୍ମ ଲୋଚନେ କୃଷ୍ଣ ଦେଖି । ପିଛାଡ଼ି ନପାରନ୍ତି ଆଖି ॥
ଚିତ୍ତ ଜଡ଼ିତ କାମ ବାଣେ । ଚଳି ନପାରନ୍ତି ଚରଣେ ॥
ନିଶ୍ଚଳେ ଚାହଁନ୍ତି ଯୁବତୀ । ଦଇବେ ସମ୍ପାଦିଲେ ପତି ॥
ବୋଲନ୍ତି କୃଷ୍ଣ ପତି ହେଉ । ଦଇବ ଏହି ବର ଦେଉ ॥
ଏମନ୍ତେ ଶୁଦ୍ଧ ଭାବ ଶୁଦ୍ଧେ । କହିଲେ ହୃଦୟ ଆନନ୍ଦେ ॥
କନ୍ୟାଙ୍କୁ ଦେଖି ବ୍ରହ୍ମରାଶି । ଦ୍ୱାରକାପୁରେ ତାହା ପେଶି ॥
କନ୍ୟା ସମେତେ ଭଗବାନ । ନରଗୁଞ୍ଜର ମହାଜନ ॥
ଅଶ୍ୱ ସୁବର୍ଣ୍ଣ ଧାନ୍ୟରାଶି । ଦ୍ୱାରକାପୁରେ ତାହା ପେଶି ॥
ଥିଲେ ଯେ ଅନେକ ଗୁଞ୍ଜର । ନାରକା ଅସୁରର ପୁର ॥
ଅଇରାବତ କୁଳେ ଜାତ । ସ୍ୱଭାବେ ଚାରି ଚାରି ଦାନ୍ତ ॥
ମତ୍ତ ଗଳଇ ପରିପାଟି । ଏମନ୍ତ ଥିଲେ ଚଉଷଠି ॥
ଗମନେ ଅତି ବଳୀୟାର । ସ୍ୱଭାବେ ଦିଶନ୍ତି ପାଣ୍ଡୁର ॥
ତାହାକୁ ଦେବକୀ ନନ୍ଦନ । ଚଳାଇ ଦ୍ୱାରକା ଭୁବନ ॥
ଗରୁଡ଼େ ବସି ଦାମୋଦର । ତକ୍ଷଣେ ଗଲେ ସ୍ୱର୍ଗପୁର ॥
ଅଦିତି ହସ୍ତେ ଭାବଗ୍ରାହୀ । ରତ୍ନକୁଣ୍ଡଳ ଦିଲେ ନେଇ ॥
ଦେଖି ଅଦିତି ତୋଷ ହୋଇ । କୃଷ୍ଣଙ୍କୁ ଆସନେ ବସାଇ ॥
ଶଚୀ ସହିତେ ସୁରରାୟେ । ପୂଜିଲା ଗୋବିନ୍ଦର ପାୟେ ॥
ଗୋବିନ୍ଦ ସମୀପେ ଅଦିତି । ଅନେକ କଲା ଦିବ୍ୟ ସ୍ତୁତି ॥
ସନ୍ତୋଷେ ପ୍ରଭୁ ଦେବରାୟେ । ମେଲାଣି ମାଗି ମାତା ପୋଏ ॥
ସନ୍ତୋଷ କରି ଦେବ ବୃନ୍ଦେ । ଦ୍ୱାରିକା ବିଜୟେ ଆନନ୍ଦେ ॥
ସଙ୍ଗେ ସୁନ୍ଦରୀ ସତ୍ୟବତୀ । ବୋଲନ୍ତି ଶୁଣ ଯଦୁପତି ॥
ଦେଖ ସୁନ୍ଦର ପାରିଜାତ । ଗନ୍ଧେ ଲୋଭିତ ମୋର ଚିତ୍ତ ॥
ସିନ୍ଧୁ ମନ୍ଥନୁ ଏ ପ୍ରକାଶ । ପୁଷ୍ପ ସୁବର୍ଣ୍ଣ ପ୍ରାୟେ ଦୃଶ ॥
ଏ ପୁଷ୍ପ ନରଲୋକେ ନାହିଁ । ମୋର ମନ୍ଦିରେ ନେବି ମୁହିଁ ॥
ଭୋ ନାଥ ଘେନ ପାରିଜାତ । ସତ୍ୟବଚନେ ଗୋପୀନାଥ ॥
ବୃକ୍ଷ ଉପାଡ଼ି ଅତି ଖରେ । ଥୋଇଲେ ଗରୁଡ଼ ଉପରେ ॥
ଜନ ରକ୍ଷକ ଯେତେ ଥିଲେ । ଗୋବିନ୍ଦ ତୁଳେ ଯୁଦ୍ଧ କଲେ ॥

ବାସେବ ଆଦି ଦିଗପାଳେ । ଆବୋରି ଆକାଶ ମଣ୍ଡଳେ ॥
କୃଷ୍ଣର ତୁଲେ କଲେ ରଣ । ଜ୍ଞାନ ବିନାଶେ ଦେବ ଗଣ ॥
ବିଷ୍ଣୁ ମାୟାରେ ଭୋଳ ହୋଇ । ଅଧିକେ ତମଗୁଣ ବହି ॥
ଯାହାର ପଦ୍ମପାଦେ ନିତି । ମୁକୁଟ ଶିରେ ସେ ନମନ୍ତି ॥
ସେ ହରି ମହିମା ନ ଜାଣି । ମନୁଷ୍ୟ ପ୍ରାୟେ ତାଙ୍କୁ ମଣି ॥
ଏ ଅପରାଧ ତାହାଙ୍କର । ଏବେ ହୋ ଶୁଣ ନୃପବର ॥
ଦେବଙ୍କ ବଳ ବଳେ ହରି । ଶୁଣ କୌରବ ଦଣ୍ଡଧାରୀ ॥
ଅଶେଷ ଦୁଃଖ ନିବାରଣ । ଦ୍ୱାରକା ବିଜେ ନାରାୟଣ ॥
ସତ୍ୟଭାମାର ପୁରେ ଆଣି । ଆନନ୍ଦେ ପ୍ରଭୁ ଚକ୍ରପାଣୀ ॥
ସ୍ଥାପିଲେ ପାରିଜାତ ବନ । ଗନ୍ଧେ ମୋହିତ ସର୍ବେ ଜନ ॥
ତାହାର ଛାୟା ଲାଗି ଦେହେ । ବୃଦ୍ଧେ ଦିଶନ୍ତି ଯୁବା ପ୍ରାୟେ ॥
ଆବର ଗୁଣ ଅଛି ଯେତେ । କହିପାରିବି ମୁହି କେତେ ॥
ଏବେ ତୁ ଶୁଣ କୁରୁବୀର । ଦ୍ୱାରକାପୁରେ ଦାମୋଦର ॥
ନାରକାପୁର କନ୍ୟା ଆଣି । ଏକ ସମୂହେ ଚକ୍ରପାଣି ॥
ନାନା ଭୁବନେ କନ୍ୟା ଥାଇ । ତାବତ ରୂପ କୃଷ୍ଣ ବହି ॥
କନ୍ୟାଙ୍କ ପୁରୁ ଯଦୁବୀର । ଦଣ୍ଡେହେଁ ନୁହଁନ୍ତି ବାହାର ॥
ତ୍ରିଗୁଣ ହୋଏ ଯହିଁ ଲୀନ । ନାମ ଯାହାର ନିରଞ୍ଜନ ॥
ଇତର ଜନ ପ୍ରାୟେ ହୋଇ । ଯୁବତୀ ଗଣ ମଧ୍ୟେ ଥାଇ ॥
ରମିଲେ ବ୍ରହ୍ମାଣ୍ଡ ଠାକୁର । ଶୁଣ ମହିମା ତାହାଙ୍କର ॥
ବ୍ରହ୍ମାଦି ମୁନି ଯାଇ ପଥେ । ବିବେକ ନୋହିଲେ ସମର୍ଥେ ॥
ସେ ହରି ସଙ୍ଗେ ସେ କାମିନୀ । ରମିଲେ ନା ନା ଭାବ ଘେନି ॥
ଦାସୀ ସହସ୍ର ଘେନି ସଙ୍ଗେ । ସେବନ୍ତି କୃଷ୍ଣ ପାଦେ ରଙ୍ଗେ ॥
ସେ ମାୟାଧର ପାଦ ଗତେ । ସୁଜନେ ଚିନ୍ତ ଅବିରତେ ॥
ଖଣ୍ଡିବ ଘୋର ମାୟା ପାଶ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ନାରକାସୁର ବଧ ପାରିଜାତ ହରଣେ ନାମ ଚତୁଃଷଷ୍ଠିତମୋଽଧ୍ୟାୟ ।*

## ପଞ୍ଚଷଷ୍ଠିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ବିରାଟ ସୁତା ସୁତ ପାଶେ । ଗୋବିନ୍ଦ ଭଗତ ବଶ୍ୱାସେ ॥
ବ୍ୟାସକୁମର ତତ୍ତ୍ୱଜ୍ଞାନୀ । କହନ୍ତି ପ୍ରଭୁ ଭାବ ଘେନି ॥
ଏବେ ହୋ ଶୁଣ ନରନାଥ । ହରି ଚରିତ ଭାଗବତ ॥
ଦ୍ୱାରକାପୁରେ ଏକ ଦିନେ । ରୁକ୍ମିଣୀ ଏକାନ୍ତ ଭୁବନେ ॥
ଯେ ହରି ତ୍ରିଗୁଣେ ଉଦିତ । ପଲ୍ୟଙ୍କ ମଧ୍ୟେ ନିଦ୍ରାଗତ ॥
ଯେ ବିଶ୍ୱ ମାୟାଲୀଳା କରି । ସ୍ତ୍ରିଜଇ ପାଳଇ ସଂହରି ॥
ସ୍ୱଧର୍ମ ପାଳିବାର ଆଶେ । ତାହାର ଜନ୍ମ ଯଦୁବଂଶେ ॥
ତାର ନିକଟେ ସର୍ବ ଘେନି । ମିଳିଲେ ଭୀଷ୍ମକ ନନ୍ଦିନୀ ॥
ଦିବ୍ୟ ବ୍ୟଜନ ସଙ୍ଗେ ଘେନି । ସଙ୍ଗେ ଅନେକ ସେ କାମିନୀ ।
କୃଷ୍ଣ ଅଛନ୍ତି ଯେ ଭୁବନେ । କି ପଟାନ୍ତର ଦେବା ଅନ୍ୟେ ॥
ଉପରେ ଚନ୍ଦ୍ରାତପ ଟାଣି । ମୁକୁତା ପନ୍ତି ଯେ ଝଂଜଣି ॥
ରତ୍ନ ପ୍ରଦୀପ ଚାରିପାଖେ । ମଲ୍ଲିକା ମାଳା ଛନ୍ତି ରେଖେ ॥
ମଧୁପ ମକରନ୍ଦ ପାଶେ । ନାଦେ ଭ୍ରମନ୍ତି ପୁଷ୍ପରସେ ॥
ଜଳା କବାଟି ରନ୍ଧ୍ରେ ଯାଇ । ଚନ୍ଦ୍ରକିରଣ ପ୍ରକାଶଇ ॥
ଆବୋରି ପାରିଜାତ ବନ । ସୁଗନ୍ଧ ବହଇ ପବନ ॥
ଅଗର ଧୂପ ଜାଳି ଉର୍ଦ୍ଧ୍ୱେ । ପ୍ରକାଶେ ଦଶଦିଗ ଗନ୍ଧେ ॥
ଶୁଦ୍ଧ ସୁବର୍ଣ୍ଣ ପାଟ ବସ୍ତ୍ରେ । ଶେଯ୍ୟା ଶେଯାନ୍ତି ଅତି ବେଗେ
ପୁଷ୍ପ ପାଖୁଡ଼ା ଶେଯେ ମିଶେ । ଗୋରସ ଫେନ ପ୍ରାୟେ ଦିଶେ
ସଖୀର କନ୍ଧେ ଅସ୍ତ ଦେଇ । ଶୁଭ୍ର ଚାମର କରେ ଲଇଁ ॥
ଯେ ହରି ଜଗତର ଗତି । ରୁକ୍ମିଣୀ ଦେବୀ ନିଜ ପତି ॥
ଚାମର ବିଞ୍ଚି କରେ ସେବା । ଯାହା ନପାନ୍ତି ସୁର ଦେବା ॥
ନିର୍ମଳ ନାନା ରତ୍ନପନ୍ତି । ରୁକ୍ମିଣୀ ଦେହେ ଝଟକନ୍ତି ॥
ସଖୀର କରେ ବାମ କର । ଦକ୍ଷିଣେ ବିଞ୍ଚଇ ଚାମର ॥
ବସ୍ତ୍ର ସହିତେ ହୃଦେ ଥାଇ । କୁଚ ଯୁଗଳ ବିରାଜଇ ॥
କୁଙ୍କୁମାଙ୍କିତ ଶ୍ରୋଣୀଧାର । କଟିମେଖଳା ରତ୍ନସାର ॥
ତୁଙ୍ଗ ନିତମ୍ବ ବେନି ଶୋହେ । ରୂପେ ଜଗତ ଜନ ମୋହେ ॥
କୃଷ୍ଣ ହୁଁ ନ ଜାଣଇ ଆନ । ମନ ବଚନେ ସାବଧାନ ॥
ଲୀଳା ମନୁଷ୍ୟ ରୂପଧରି । ସେ ରୂପେ ରୂପ ଅନୁସରି ॥
କର୍ଣ୍ଣ କୁଣ୍ଡଳେ ରବି ତ୍ରାସ । ସଲ୍ଲଜ ମୁଖେ ମନ୍ଦ ହାସ ॥
କଣ୍ଠେ ଅମୂଲ୍ୟ ହାର ଶୋହେ । ନୀଳ କୁଣ୍ଡଳ ଜନମୋହେ ॥
ଏମନ୍ତ ଦେଖି ତା ବଦନ । ବୋଲନ୍ତି ଦେବକୀ ନନ୍ଦନ ॥
ହେ ରାଜପୁତ୍ରୀ ମୋ ବଚନ । ଶୁଣ ସୁଚିତ୍ତେ ସାବଧାନ ॥
ଅନେକ ନୃପତି କୁମାରେ । ମିଳିଲେ ତୋର ସ୍ୱୟମ୍ବରେ ॥
ଅଶେଷ ଗୁଣ ତାହାଙ୍କର । ସୁର ସୁନ୍ଦର ବଳୀୟାର ॥
ତୋର ପିଅର ଜ୍ୟେଷ୍ଠ ଭାଇ । ଶିଶୁପାଳକୁ ସେ ଅଣାଇ ॥
ତୋହର ରୂପେ ଲୋଭ ବହି । ମିଳିଲେ ରାଜପୁତ୍ରେ ଯାଇଁ ॥
ରଣେ ଦୁର୍ମଦ ମହାବୀର । ଅନେକ ବଳ ତାହାଙ୍କର ॥
ତାହାଙ୍କୁ ଅବଜ୍ଞା ତୁ କରି । ମୁଁ ତାକୁ କେଉଁଗୁଣେ ବରି ॥

କି ଗୁଣେ ବରିଲୁ ତୁ ମୋତେ । ସନ୍ଦେଶ ଦେଲୁ ବିପ୍ର ହସ୍ତେ ॥

ରାଜାଙ୍କ ଡରେ ମୁଁ ପଳାଇ । ଜଳଧି ମଧ୍ୟେ ଅଛି ରହି ॥

ବଳିଷ୍ଠ ରାଜଗୁଣେ ବାଦ । ଆମ୍ଭେ ନ ବହୁ ପରମାଦ ॥

ଯଯାତି ଶାପ୍ୟ ପୂର୍ବେ ପାଇଁ । ନୃପ ଆସନ ମୋର ନାହିଁ ॥

ଅଜ୍ଞାତ ମାର୍ଗେ ଯାଇ ପଥ । ସ୍ୱଭାବେ ନାହିଁ ଲୋକମତ ॥

ତାହାକୁ ସ୍ୱାମୀ ପଣେ ବରି । ସୁଖୀ ହୋଇବ କାହିଁ ନାରୀ ॥

ସ୍ୱଭାବେ ଅକିଞ୍ଚନ ମୁହିଁ । ଦରିଦ୍ର ପ୍ରିୟ ମୁଁ ବୋଲାଇ ॥

ଯେଣୁ ସମ୍ପଦ ଇଚ୍ଛା ଲୋକେ । ମୋତେ ନ ଭଜନ୍ତି ବିମୁଖେ ॥

ଶୁଣ ସୁନ୍ଦରୀ ଶାସ୍ତ୍ର ବାଣୀ । ବେଦ ଆଗମ ପରମାଣି ॥

ବରକନ୍ୟାର ବିଭା କାଳେ । ସ୍ୱୟଂ ସମ୍ପଦ କୁଳ ତୁଲେ ॥

ସେ ବିଭାମିତ୍ର ପଣେ ସମ । ନକରି ଉତ୍ତମ ମଧମ ॥

ନଜାଣି କଲୁ ଏଡ଼େ କର୍ମ । କେ ତୋତେ କଲା ମତି ଭ୍ରମ

ମୋତେ ବରିଲୁ କିସ ଦେଖି । ଶୁଭ୍ର ସୁନ୍ଦରୀ ଚନ୍ଦ୍ରମୁଖୀ ॥

ଦେଖ ନିର୍ଗୁଣ ଦେହ ମୋର । ଭିକ୍ଷୁକ ଜନେ ମୋ ସୋଦର ॥

ଏବେ ଏମନ୍ତ ତୁହି କର । ଆତ୍ମାର ଅନରୂପେ ବର ॥

ଉତ୍ତମ ରାଜପୁତ୍ର ଦେଖି । ହେ ନାରୀ ଜନ୍ମ କର ସୁଖୀ ॥

ଯେ ତୋର ଭୋଗ ଇଚ୍ଛା ସୁଖେ । ଲଭିବୁ ଇହ ପରଲୋକେ ॥

ତୋହୋର ବର ଶିଶୁପାଳ । ବେଗେ ତାହାର ପୁରେ ଚଳ ॥

ଶାଲ୍ୱ ମଗଧ ବକ୍ରଦାଢ଼ । ଏ ଆଦି ଯେତେ ନୃପରାଜ ॥

ମୋତେ ହିଂସନ୍ତି ଗର୍ବ ବହି । ରୁକ୍ମ ଯେ ତୋର ଜ୍ୟେଷ୍ଠଭାଇ

ଏ ଆଦି ବୀର ଛନ୍ତି ଯେତେ । ଏହାର ମଧ୍ୟେ ଅବିରତେ ॥

ତୋର ବିଚାରେ ସ୍ୱାମୀ ବର । ବୋଲନ୍ତି ପ୍ରଭୁ ଦାମୋଦର ॥

ଶୁଣ ସୁନ୍ଦରୀ ମନ ସ୍ଥିରେ । ତାହାଙ୍କ ଗର୍ବ ନାଶିବାରେ ॥

ବଳେ ଆଣିଲି ତୋତେ ମୁହିଁ । ଅସାଧୁ ଗର୍ବ ନସହଇ ॥

ଉଦାସୀ ଜନ ମୁଁ ବୋଲାଇ । ଦାରା ସମ୍ପଦେ କାର୍ଯ୍ୟ ନାହିଁ ॥

ଆତ୍ମାର ପୁଣ୍ୟ ଲଭେ ମତି । ଗୃହେ ଯେସନେ ଦୀପ ଜ୍ୟୋତି

ଶୁକ କହନ୍ତି ଶୁଣ ରାୟେ । ଏମନ୍ତେ ପ୍ରଭୁ ଦେବରାୟେ ॥

ଆତ୍ମା ସଦୃଶେ ପ୍ରିୟ ନାରୀ । ଲୀଳା ମନୁଷ୍ୟ ରୂପ ଧରି ॥

କୂଟ ବଚନେ ଦେହ ଧରି । ସଭୟେ ବାକ୍ୟ ନରହରି ॥

ଏମନ୍ତେ କୃଷ୍ଣ ବାକ୍ୟ ଶୁଣି । ଚକିତ ଚାହିଁଲେ ରୁକ୍ମିଣୀ ॥

ତ୍ରୈଲୋକ୍ୟ ପତି ଆତ୍ମନାଥ । କୃଷ୍ଣର କଥା ବିପରୀତ ॥

ଅପୂର୍ବ ଅଶ୍ରୁତ ବଚନ । ଶୁଣି ହାରିଲା ଦେବୀ ଜ୍ଞାନ ॥

ଭୟେ କମ୍ପିଲେ ଥରହର । ହୃଦୟ ଚିନ୍ତା ଶୋକ ଭର ॥

ସେ ପାଦ ଆଙ୍ଗୁଳିର ଅଗ୍ରେ । ଶୋକେ ଖୋଳଇ ଭୂମି ଭାଗେ

ଅଞ୍ଜନ ଶୋଭିତ ଲୋଚନେ । ଅଶ୍ରୁ ବହଇ ଖେଦ ମନେ ॥

ହୃଦେ ପଡ଼ିଲା ଜଳଧାରେ । କୁଙ୍କୁମ ଲେପି କୁଚଭାରେ ॥

ଅଧୋବଦନ ମୁଖେ ଚାହିଁ । କଣ୍ଠେ ବଚନ ନ ସ୍ଫୁରଇ ॥

ସେ ଦୁଃଖ ଭୟ ଶୋକ ଭରେ । ବୁଦ୍ଧି ଭ୍ରମି ତା ଖେଦ ଭରେ ॥

ବଳୟ ବେନି ହସ୍ତେ ଥିଲେ । ଶୀତଳ ହୋଇ ଏକ ତୁଲେ ॥

ବିଞ୍ଚଣୀ ଦେବୀ ହସ୍ତେ ଥିଲା । ତକ୍ଷଣେ ଭୂମିରେ ପଡ଼ିଲା ॥

ରମ୍ଭା ଯେସନେ ଘୋର ବାତେ । ମୂର୍ଚ୍ଛିତେ ପଡ଼େ ଭୂମି ଗତେ ॥

କେଶ ବସନ ଅସମ୍ଭାଳ । ନୟନୁ ବହେ ଅଶ୍ରୁଜଳ ॥

ପଡ଼ିଲା ମୃତ ପିଣ୍ଡ ପ୍ରାୟେ । ଦେଖନ୍ତି ପ୍ରଭୁ ଦେବରାୟେ ॥

ପ୍ରିୟାର ପ୍ରେମଭାବ ଚିହ୍ନି । ଗୋବିନ୍ଦ ମନେ ବିଚାରନ୍ତି ॥

ହାସ୍ୟ ମୁଁ କଲି ଭାବ ବହି । ତେଣେ ଏହାର ଜ୍ଞାନ ନାହିଁ

ଏମନ୍ତ ଚିହ୍ନି ଭାବଗ୍ରାହୀ । ପ୍ରିୟା ବିଷୟେ ଭାବ ବହି ॥

ମନେ ସୁମରି ଅନୁତାପ । ତକ୍ଷଣେ ହୋଇ ବିଶ୍ୱରୂପ ॥

ପଲଙ୍କୁ ଉଠି ଦେବରାଜ । ଚାରୁ ସୁନ୍ଦର ଚତୁର୍ଭୁଜ ॥

ଭୂମିରୁ ତୋଳି ବେନି ଭୁଜେ । ଦେବାଧି ଦେବଙ୍କର ରାଜ୍ୟେ ॥

ମୁଖ ମାର୍ଜନ ପଦ୍ମ କରେ । ଅଶ୍ରୁ ପୋଛିଲେ ପୟୋଭରେ ॥

ଶ୍ରୀଭୁଜେ କଲେ ଆଲିଙ୍ଗନ । କୃଷ୍ଣ ଜାଣନ୍ତି ତାର ମନ ॥

ମନ ବଚନ ଦେହେ ଦେଇ । କୃଷ୍ଣ ହୁଁ ଆନ ନ ଜାଣଇ ॥

ସାଧୁ ବଚନେ ଚକ୍ରପାଣି । ଶାନ୍ତି କରାଇ କମଳିଣୀ ॥

ହରି ଜାଣିଲେ ତାଙ୍କ ମନ । ହାସ୍ୟକୁ ନୁହଁଇ ଭାଜନ ॥

ସଚେତ କରି ନିଜ ନାରୀ । ହସି ବୋଲନ୍ତି ନରହରି ॥

ବୋଲନ୍ତି ପ୍ରଭୁ ଦାମୋଦର । କୋମଳ ବଚନ ଗଭୀର ॥

ଶୁଣ ବିଦର୍ଭ ରାଜସୁତେ । ମୁହିଁ ଜାଣଇ ହୃଦଗତେ ॥

ମୋ ତହୁଁ ନାହିଁ ଅନ୍ୟଗତି । ମୁହିଁ ତୋହର ନିଜପତି ॥

ମନେ ନକର ମୋତେ ରୋଷ । ଶୁଣ ମୁଁ କହଇ ବିଶ୍ୱାସ ॥

ହାସ୍ୟ ମୁଁ କଲି ତୋର ପାଶେ । ତୋ ଚିତ୍ତ ଜାଣିବାର ଆଶେ ॥

ତୋହର କୋପିତ ବଚନ । ଭ୍ରୁକୁଟି କୁଟିଳ ବଦନ ॥

ଦେଖିବା ପାଇଁ କହି ଏହା । ତୁ ପୁଣି ନ ଜାଣିଲୁ ତାହା ॥

ଯେ ପ୍ରାଣୀ ଥାଇ ଗୃହ ବାସେ । ପ୍ରିୟା ସଂଯୋଗ ହାସ ରସେ ॥

ଦିନ ହରଇ ପ୍ରିୟ ଭାବ । ବିଷୟ ସୁଖେ ଏହି ଲାଭ ॥

ଶୁଣ ପରୀକ୍ଷ ମହୀପତି । ମୋହନ ବାକ୍ୟେ ତୋର ମତି

ଶାନ୍ତି କରାଇ ତାର ମନ । ମୋହିଲେ ପ୍ରଭୁ ଭଗବାନ ॥

ଦେଖି ରୁକ୍ମିଣୀ କୃଷ୍ଣ ଭାବ । ଛାଡ଼ିଲା ଚିନ୍ତା ପରାଭବ ॥

ଗୋବିନ୍ଦ ପଦ୍ମମୁଖ ଚାହିଁ । କଟାକ୍ଷ ନୟନେ ଅନାଇଁ ॥

ପୁରୁଷ ବର ପାଦେ ଧାଇ । କହେ କମଳା ମୁଖ ଚାହିଁ ॥
ରୁକ୍ମିଣୀ କହଇ ମଧୁର । ଭୋ ନାଥ ଶୁଣ ଦାମୋଦର ॥
ଅମଳ କମଳ ଲୋଚନ । ତୋହର ସତ୍ୟ ଏ ବଚନ ॥
ଅନାଦି ପ୍ରଭୁ ନିରଞ୍ଜନ । ମୁଁ ତୋତେ ନୋହଇ ଭାର୍ଜନ
ନିଜ ମହିମା ରୂପ ବହୁ । ତ୍ରିଗୁଣ ଅତୀତ ବୋଲାଉ ॥
ଗୁଣ ପ୍ରକୃତ ଅଙ୍ଗ ହୋଇ । ତୋର ମରଣ ତଳେ ଥାଇ ॥
ଏତେ ଅନ୍ତର ତୋର ମୋର । ତୁ ନୋହୁ ପ୍ରକୃତି ଗୋଚର ॥
ବୋଲ ଯେ ରାଜ ଭୟେ ମୁହିଁ । ସମୋଦ୍ର ମଧ୍ୟେ ଅଛି ରହି ॥
ଏକଥା ପ୍ରମାଣ ମୋହର । ତେଣୁ ତ୍ରିଗୁଣେ ଅଗୋଚର ॥
ଗୁଣ ଦୋଷକୁ ଭୟ କରି । ପ୍ରଳୟେ ବ୍ରହ୍ମରୂପ ଧରି ॥
ଆତ୍ମା ସ୍ୱରୂପ ମାତ୍ର ଲକ୍ଷେ । ସମୁଦ୍ରେ ଶୋଉ ତୁ ପ୍ରତକ୍ଷେ ॥
ଇନ୍ଦ୍ରିୟ ଗଣେ ତୋର ବାଦ । ଏମନ୍ତେ କହୁଛନ୍ତି ବେଦ ॥
ତୋର ସେବକ ଯେତେ ପ୍ରାଣୀ । ସମ୍ପଦ ତୃଣ ପ୍ରାୟେ ମଣି ॥
ତୋ ପାଦ ପଦ୍ମ ମକରନ୍ଦ । ତୋତେ ସେବନ୍ତି ମୁନିବୃନ୍ଦ ॥
ଅଭେଦ ତାହାଙ୍କର ଗତି । ନୃପ ସୁତାଏ ନ ଜାଣନ୍ତି ॥
ତୋର ମହିମା ଇହ ଲୋକେ । ଗୋଚର କେ କରୁ ଅନେକେ
ତୋର ସେବକ ଯେତେ ଜନ । ତୋ ତହୁଁ ନ ଜାଣନ୍ତି ଆନ ॥
ବୋଲୁ ଯେ ଅକିଞ୍ଚନ ମୁହିଁ । ଯେଣେ ତୋ ତହୁଁ ଆନ ନାହିଁ
ବ୍ରହ୍ମାଦି ମୁନି ଯହିଁ ଥାନ୍ତି । ସେ ତୋ ମହିମା ନ ଜାଣନ୍ତି ॥
ପୂଜନ୍ତି ତୋହର ଚରଣ । ତୁ ଆଦି ପରମ କାରଣ ॥
ଇନ୍ଦ୍ରିୟ ଅର୍ଥେ ତୋଷ ସେହୁ । ସେ ତୋତେ ପାଇବେ ବା କାହୁଁ ॥
ଅର୍ଥ ସମ୍ପଦେ ଅନ୍ଧ ପ୍ରାଣୀ । ସେ ତୋତେ କେବେ ହେଁ ନଜାଣି ॥
ତୋର ମାୟାରେ ମୂର୍ଖ ଲୋକ । ନିକଟେ ନିଶ୍ଚିନ୍ତ ଅନନ୍ତ ॥
ଦେବେ ଭୁଞ୍ଜନ୍ତି ଯଜ୍ଞେ ବଳି । ସେ ତୋର ପାଦେ ବନମାଳୀ ॥
ପୂଜା କରନ୍ତି ବଳି ଦେଇ । ତାହାଙ୍କ ଇଷ୍ଟ ତେଣୁ ତୁହି ॥
ତୁ ସର୍ବ ପୁରୁଷାର୍ଥ ଫଳ । ପରମ ଆତ୍ମା ଆଦି ମୂଳ ॥
ଯଜ୍ଞ ଲଭିବା ଇଚ୍ଛା କରି । ସଂସାର ଛାଡ଼ି ବ୍ରହ୍ମଚାରୀ ॥
ତାହାଙ୍କୁ ହେଉ ତୁ ସୁଲଭ । ସଂସାର ଜନଙ୍କୁ ଦୁର୍ଲଭ ॥
ସନ୍ନ୍ୟାସ ଜନଙ୍କର ହୃଦେ । ତୁ ନାଥ ଭଗତ ସୁହୃଦେ ॥
ଭାବିତ ଆତ୍ମା ରୂପେ ଥାଉ । ଭାବକୁ ଆତ୍ମପଦ ଦେଉ ॥
ଏଣୁ ବରିଲି ତୋତେ ମୁହିଁ । ତୋ ତହୁଁ ଅନ୍ୟବର ନାହିଁ ॥
ତୋର ଭ୍ରୂଲତା ଭୃଙ୍ଗମାଳ । ବରଙ୍କ ମଧ୍ୟେ ମହାବଳ ॥
ସେ କାଳ ବଳେ ହୋଇ ହତ । ଭବ ବିରଞ୍ଚ ସୁରନାଥ ॥
ଉଡ଼ନ୍ତି ଧୂଳି ପ୍ରାୟେ ହୋଇ । ଅନ୍ୟ କେ ଅଛି ଦେହ ବହି ॥

ଶାରଙ୍ଗ ଧନୁର ଶବଦେ । ରାଜାଙ୍କୁ ଜିଣୁ ଅପ୍ରମାଦେ ॥
ହରି ଆଣିଲୁ ମୋତେ ବଳେ । ସିଂହ ଯେସନେ ବାହୁ ବଳେ
ପଶୁଙ୍କ ମଧ୍ୟେ ମହାବେଗ । ଆକ୍ରୋଷି ଭୁଂଜନ୍ତି ସ୍ୱଭାଗ ॥
ସେ ରାଜଭୟେ ନାରାୟଣ । ପଶିଲୁ ସମୁଦ୍ରେ ଶରଣ ॥
ସତ୍ୟ ବଚନ ଏ ତୋହର । ଯେଣୁ ବଢ଼ିଲୁ ଗୋପପୁର ॥
ତୋ ପାଦ ଲଭିବାର ଆଶେ । ବିତର୍କ ବୁଦ୍ଧି ମୋର ପାଶେ ॥
ଋଷଭ ସୁତ ଯେ ଅନେକ । ଲଘୁଷ ପରାଶ ଶାଲୁକ ॥
ଚିତ୍ତ ନିବେଶି ରାଜ ସୁଖେ । ବନେ ପେଷିଲେ ଘୋର ଦୁଃଖେ
କଷ୍ଟରେ ଯୋଗ କରି ସାଧ । ଲଭିଲେ ତୋର ପଦ୍ମପାଦ ॥
ତୋ ପାଦ ସରୋଜର ଗନ୍ଧ । ପୁଣ୍ୟ ପବିତ୍ର ମକରନ୍ଦ ॥
ଆଘ୍ରାଣ ନାସା ରନ୍ଧ୍ରେ କରି । କେ ନାରୀ ଆନ ବର ବରି ॥
ତୁ ନାଥ ଜଗତ ଈଶ୍ୱର । ସକଳ ଆତ୍ମା ଯେ ତୋହର ॥
ବିବାହ କାଳେ ଏ ସଂସାର । ତୋତେ ବରିଲି ମୁହିଁ ବର ॥
ତୋ ମାୟା ବଳେ ଅନ୍ୟ ଜନ । ତୋର ଜଗତେ ଭଗବାନ ॥
ଇନ୍ଦ୍ରିୟ ଅର୍ଥେ ଲୋଭ ସୁଖେ । ନିର୍ବନ୍ଧ ଗୃହ ଅନ୍ଧ କୂପେ ॥
ଗୋରୁ ଗନ୍ଧର୍ବ ଶ୍ୱାନ ପ୍ରାୟେ । ଅଶ୍ୱ ବିଡ଼ାଳ ଭୂତ ଦେହେ ॥
ସେବନ୍ତି ନାରୀଙ୍କ ଚରଣ । ସେ ହେତୁ ତାହାଙ୍କ ମରଣ ॥
ତୋର ମହିମା ଦାମୋଦର । ନ ଶୁଣେ କର୍ଣ୍ଣ ଦ୍ୱାର ଯାର ॥
ଭବ ବିରଞ୍ଚ ଆଦି ସଭା । ମଧ୍ୟେ ତୋହର କଥା ଶୋଭା ॥
କୁନ୍ତଳ ନଖ ଚର୍ମ ଦାଢ଼ି । ଦେହ ଉପରେ ଛନ୍ତି ବେଢ଼ି ॥
ରୋଧିର ମାଂସେ ଅଛି ଅସ୍ଥି । ଶିରୀ ନିର୍ବନ୍ଧେ ଦେହ ସ୍ଥିତି ॥
ଅନ୍ତରେ ମଳ କୃମି ଘାତ । କଫ ହୃଦୟ ମହାବାତ ॥
ଏତେ ନିର୍ମିତ ଯାର ଦେହୀ । ଜୀବନ୍ତେ ମୃତ ପିଣ୍ଡ ସେହି ॥
ତାହାଙ୍କୁ ସ୍ୱାମୀ ପଣେ ବରି । ଜୀବନ ବହେ ଦୁଷ୍ଟ ନାରୀ ॥
ତୋର ଚରଣ ମକରନ୍ଦ । ଆଘ୍ରାଣ ନକଲା ଯେ ଗନ୍ଧ ॥
ସ୍ୱଭାବେ ଆତ୍ମତତ୍ତ୍ୱ ତୁହିଁ । ପର ଅପର ତୋର ନାହିଁ ॥
ତୁ ଯେବେ ରଜୋଗୁଣ ମଧ୍ୟେ । ମୋତେ ଦେଖିଲୁ ଅନୁବନ୍ଧେ ॥
ଏ ବର ନିତ୍ୟ ମୋତେ ହେଉ । ତୋ ପାଦ ସେବି ଦିନ ଯାଉ ॥
ଭୋ ନାଥ ତୋର ବାକ୍ୟ ମୁହିଁ । କପଟ ପ୍ରାୟେ ନ ମଣଇ ॥
ଅମ୍ବିକା କନ୍ୟା ଚିତ୍ତ ଯେହ୍ନେ । ଭୀଷ୍ମକୁ ନ ବରିଲା ଅନ୍ୟେ ॥
ଦୁଷ୍ଟ ଯୁବତୀଙ୍କର ମନ । ଭଜଇ ଅଭିନବ ଜନ ॥
ଅସତ୍ୟ ବ୍ୟଭିଚାରୀ ଏହି । ପଣ୍ଡିତେ ନବରିଲେ ତାହି ॥
ଯେ ନର ତାହାଙ୍କୁ ବିଶ୍ୱାସ । ଉଭୟ ଲୋକେ କରେ ନାଶ ॥
ଏମନ୍ତେ ପତ୍ନୀ ବାକ୍ୟ ଶୁଣି । ହସି ବୋଲନ୍ତି ପଦ୍ମପାଣି ॥

ତୁ ସାଧୁଗୁଣେ ଅନୁପାମ । ମୋହର ଆତ୍ମା ଅଭିରାମ ॥
ଶୁଣିବା ପାଇଁ ତୋ ବଚନ । ମୁଁ ତୋତେ କଲି ମନ ଛନ୍ନ ॥
ମୋର ଉଦ୍ଦେଶ୍ୟ ତୋର ବାଣୀ । ଏ ଶୁଦ୍ଧ ସତ୍ୟ ପରିମାଣି ॥
ଯେବେ ମୁଁ ହୋଇଲି ପ୍ରସନ୍ନ । ବର ତୁ ମାଗ ତୋଷ ମନ ॥
ଯେ ଚୋର ମାଗ ଇଚ୍ଛା ବର । ହସି ବୋଲନ୍ତି ଦାମୋଦର ॥
ଏମନ୍ତ ପ୍ରିୟ ତୁ ମୋହର । ସକଳ ସମ୍ପଦ ତୋହର ॥
ତୋହର ଇଷ୍ଟ ପତିବ୍ରତ । ମୁହିଁ ଜାଣିଲି ଆଜ ସତ୍ୟ ॥
ଅନେକ କଲି ଉପାଳମ୍ଭ । ତୋହର ମତି ବଡ଼ ଦମ୍ଭ ॥
ଭ୍ରଷ୍ଟ ନୋହିଲା ମୋର ପାଦୁଁ । ଚରିବୁ ସକଳ ପ୍ରମାଦୁଁ ॥
ଯେ ପ୍ରାଣୀ ବ୍ରହ୍ମଚାରୀ ମତେ । ତପ ସାଧନ୍ତି ଶୁଦ୍ଧ ଚିତ୍ତେ ॥
ତପର କାମ ଫଳ ବଶ । ବର ମାଗନ୍ତି ଗୃହ ବାସ ॥
ସେ ତୋତେ ପାଇବେଟି କାହିଁ । ଅଭୟ ବରଦାତା ମୁହିଁ ॥
ମୋହର ମାୟା ବଳେ ଏହି । ହସି କହନ୍ତି ଭାବଗ୍ରାହୀ ॥
ମୋକ୍ଷ ଭଣ୍ଡାର ମୋତେ ପାଇ । ଯେ ପ୍ରାଣୀ ସର୍ବଦା ବାଞ୍ଛଇ ॥
ସେ ମନ୍ଦଭାଗୀ ଦୁଃଖୀ ହୋଇ । ନରକେ ପଡୁଥାନ୍ତି ଯାଇଁ ॥
ତୁ ମୋର ଗୃହ ଠାକୁରାଣୀ । ମୋର ମହିମା ପରିମାଣି ॥
ଭବ ମୋଚନ ମୂର୍ତ୍ତି ତୋର । ଖର ସମୋଦ୍ରେ ଅଗୋଚର ॥
ସେ ଭାବ କଲୁ ମୋତେ ତୁହିଁ । ସ୍ୱଭାବେ ସ୍ତିରୀଜନ୍ମ ହୋଇ ॥
ତୋହର ପ୍ରାୟେ ଗୃହେ ସ୍ତିରୀ । ନାହିଁ ନୋହିବ ମୋର ପୁରୀ ॥
ତୋର ବିବାହ କାଳେ ଆସି । ଲକ୍ଷେ ନୃପତି ଥିଲେ ବସି ॥
ତାହାଙ୍କୁ ତୁଚ୍ଛଭାବ ବହି । ବିପ୍ରେ ପେଷିଲୁ ମୋର ତହିଁ ॥
ମୁଁ ପୁଣି ହରି ଆଣି ତୋତେ । ତୋହର ଭାଇ ଏକ ରଥେ ॥
ଘୋର ସମର ମୋରେ କଲା । ସ୍ୱଭାବେ ବନ୍ଧନେ ପଡ଼ିଲା ॥
ବିରୂପ ରୂପ ତାକୁ କଲି । ସହସ୍ରେ ଚୂଳ ତା କାଟିଲି ॥
ବିଭା ମଙ୍ଗଳ ପର୍ବ କାଳେ । ବନ୍ଧୁ ବାନ୍ଧବ ଗୋଷ୍ଠୀ ମେଳେ
ଅକ୍ଷ କ୍ରୀଡ଼ାର କାଳେ ବଳେ । ଦୁଷ୍ଟ ରାଜନ ସଙ୍ଗ ମେଳେ ॥
ବଳଦେବଙ୍କୁ ଗାଳି ଦେଲା । ସେ କାଳେ ଭ୍ରାଥ ତୋର ମଲା ॥
ଏ ବେନି ଗୁରୁ ଅପରାଧ । ଉଭୟ ସଙ୍କଟ ପ୍ରମାଦ ।
ଦୁର୍ଜ୍ଜୟ ଦୁଃଖ ତାପ ଏହି । କାହାର ବୋଲେ ଏହା ସହି ॥
କିଛି ନବୋଲି ସୁଖଗତେ । ନିଷ୍ଠେ ଜାଣିଲୁ ଏବେ ମୋତେ ॥
ବିପ୍ରକୁ ମୋର ତହିଁ ପେଷି । ଯୁଗ ମଣିଲୁ ଏକ ନିଶି ॥
ଜଗତ ଦେଖି ଶୂନ୍ୟ ପ୍ରାୟେ । ଅନଳ କଲୁ ନିଜ ଦେହେଁ ॥
ମରିବା ପ୍ରାୟେ କଲୁ ଯୋଗ । ଏ ଦେହେଁ ଅନ୍ୟ ନାହିଁ ଭୋଗ ॥
ସେ ଭାବ ଘେନି ହୃଦ ଗତେ । ବଳେ ଆଣିଲି ମୁହିଁ ତୋତେ ।

ଶୁକ କହନ୍ତି ନୃପ ଶୁଣ । ଏମନ୍ତ କହି ନାରାୟଣ ॥
ନିଜ ମହିମା ମାୟା ରତି । ରୁକ୍ମିଣୀ ଲଭିଲେ ଶ୍ରୀପତି ॥
ଏମନ୍ତେ ଲକ୍ଷ୍ମୀ ନାରାୟଣ । ଏ ବଡ଼ ଲୋକେ ବିଡ଼ମ୍ବଣ ॥
ଅଷ୍ଟ ଅଧିକେ ଏକ ଶତେ । ଷୋଳସହସ୍ର ଛନ୍ତି ଯେତେ ॥
ତାହାଙ୍କ ଗୃହେ ନରହରି । ମାୟାରେ ତୁଲ୍ୟ ରୂପ ଧରି ॥
ଗୃହସ୍ଥ ଧର୍ମେ ଭୋଗ୍ୟକରି । ନିର୍ଗୁଣ ଆତ୍ମା ନରହରି ॥
ସେ ଲକ୍ଷ୍ମୀ ନାରାୟଣ ପାଦେ । ମୋ ମନ ରହୁ ଅପ୍ରମାଦେ ॥
ଏକାନ୍ତ ଲକ୍ଷ୍ମୀ ନାରାୟଣ । ଶୁଣନ୍ତେ ଦୁଃଖ ନିବାରଣ ॥
କହିଲା ବିପ୍ର ଜଗନ୍ନାଥ । ଚିତ୍ତେ ନିରୋପି ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ଦଶମସ୍କନ୍ଧେ ଲକ୍ଷ୍ମୀ ନାରାୟଣ ଏକାନ୍ତ ବର୍ଣ୍ଣନେ ନାମ ପଞ୍ଚଷଷ୍ଠିତମୋଽଧ୍ୟାୟଃ ।*

## ଷଷ୍ଟଷଷ୍ଠିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ କୁମର । ଶୁଣ ରାଜନ କୁରୁବୀର ॥
କୃଷ୍ଣ ହରିଲେ ଯେତେ ନାରୀ । ରୁକ୍ମିଣୀ ଦେବୀ ଆଦି କରି ॥
ତାହାଙ୍କ ଗର୍ଭେ ଯେତେ ସୁତ । ହୋଇଲେ କୃଷ୍ଣ ବୀର୍ଯ୍ୟେ ଜାତ ॥
ହରିର ବଂଶ ସଂଖ୍ୟା କରି । କେ ପାରେ ନର ଦେହ ଧରି ॥
ପ୍ରଦ୍ୟୁମ୍ନ ଆଦି ପୁତ୍ର ଯେତେ । ପ୍ରଧାନେ କହିବଇଁ କେତେ ॥
କନ୍ୟାକେ ଦଶ ଦଶ ସୁତ । ଅନ୍ତରେ ଏକଇ ଦୋହିତ ॥
କୃଷ୍ଣର ପ୍ରାୟେ ରୂପ ଗୁଣ । ଏବେ ହୋ ସାବଧାନେ ଶୁଣ ॥
କନ୍ୟାଏ କୃଷ୍ଣର ଭଗତେ । ଚରଣେ ସେବନ୍ତି ନିରତେ ॥
ତାହାଙ୍କ ପୁରୁ ଦାମୋଦର । କ୍ଷଣେ ହେଁ ନୁହଁନ୍ତି ବାହାର ॥
ଦେଖି ଗୋବିନ୍ଦ ସ୍ନେହ ଭାବ । ଆତ୍ମାକୁ ମଣିଲେ ସୁଲଭ ॥
କୃଷ୍ଣ ମହିମା ନ ଜାଣନ୍ତି । ସ୍ୱାମୀର ପ୍ରାୟେକ ମଣନ୍ତି ॥
କାହିଁ ଜାଣିମେ କୃଷ୍ଣ ଭାବ । ଯେ ବ୍ରହ୍ମା ଶଙ୍କରେ ଦୁର୍ଲଭ ॥
ସ୍ୱଭାବେ ଜଗତେ ମୋହନୀ । ବିଶେଷେ କୃଷ୍ଣର କାମିନୀ ॥
କୃଷ୍ଣର ମାୟା ରସ ଭର । ଭ୍ରମନ୍ତି ବ୍ରହ୍ମା ଶିବ ସୁର ॥
ଚାରୁ କୋମଳ କୋଷ ବର୍ଣ୍ଣ । ନିର୍ମଳ କମଳ ଲୋଚନ ॥
ବିସ୍ତାର ଭୁଜ ନେତ୍ର ବେନି । ପ୍ରେମ ସହିତେ ରସ ଘେନି ॥
ସ୍ୱକାମ ଦୃଷ୍ଟି ରମ୍ୟ ବାଣୀ । ଏ ଭାବେ ମୋହିଲେ ତରୁଣୀ
ଯୁବତୀ ଭାବେ କୃଷ୍ଣ ମନ । ମୋହିତେ ନୋହିଲେ ଭାଜନ

ଯେ ହରି ସର୍ବ ପରିପୂର୍ଣ୍ଣ । ରୂପ ଅରୂପ ନିରଞ୍ଜନ ॥
ଯୁବତୀ ଭାବେ ଅନୁମାନ । ସ୍ୱକାମେ ଆଳସ ଆନନ ॥
କଟାକ୍ଷ ଦୃଷ୍ଟି ପ୍ରେମ ଭାବ । ଯେତେ ନିର୍ମିତ ସେ ଦୁର୍ଲ୍ଲଭ ॥
ଅନଙ୍ଗ ବାଣ ପ୍ରାୟେବାଣୀ । ଏମନ୍ତେ କୃଷ୍ଣର ତରୁଣୀ ॥
ଷୋଳ ସହସ୍ରେ ପରିହାସେ । କୃଷ୍ଣ ରଂଜିତ ପ୍ରେମ ଆଶେ ॥
ରଂଜନେ ନୋହିଲେ ଭାର୍ଜନ । ଏଣେ ନଘଟେ ଅନୁମାନ ॥
ରମା ରମଣ ଯଦୁନାଥ । ତାହାକୁ ପାଇ ଆତ୍ମାକାନ୍ତ ॥
ବ୍ରହ୍ମାଦି ମୁନି ପଶୁପତି । ଯାହାର ମାର୍ଗେ ମୋହ ହୋନ୍ତି ॥
ସେ ହରି ସଂଗତେ ଯୁବତୀ । ଆନନ୍ଦେ ଏକାନ୍ତେ ରମନ୍ତି ॥
ନବ ସଙ୍ଗମେ ପ୍ରିୟ ଭାବ । ନିତ୍ୟେ ବର୍ଦ୍ଧିତ ଅନୁରାଗ ॥
ସେବନ୍ତି କୃଷ୍ଣର ଚରଣେ । ଯୁବତୀ ଭାବ ଆଚରଣେ ॥
କୃଷ୍ଣର ଆଗମନ ଦେଖି । ଉଠନ୍ତି ଆସନ ଉପେକ୍ଷି ॥
କେତେହେଁ ଦୂର ବେଗେ ଯାଇ । କୃଷ୍ଣର ହସ୍ତେ ହସ୍ତ ଦେଇ ॥
ସ୍ୱକାମ ଆଳସେ ତରୁଣୀ । କୃଷ୍ଣଙ୍କୁ ନିଜ ଘରେ ଆଣି ॥
ସୁବର୍ଣ୍ଣ ଆସନେ ବସାଇ । ବେନି ଚରଣ ହସ୍ତେ ଧୋଇ ॥
ସୁଗନ୍ଧ ଲେପି କୃଷ୍ଣ ଅଙ୍ଗେ । ବ୍ୟଜନେ ବିଞ୍ଚନ୍ତି ସୁରଙ୍ଗେ ॥
ବିଶ୍ରାମ କରି ନିଜ ପତି । ସୁଗନ୍ଧ ପୁଷ୍ପ ନିଯୋଯନ୍ତି ॥
କେଶ ମାର୍ଜନ ସୁଖେଁ ଜନେ । ସେବାଦି ସ୍ନାହାନ ଭୋଜନେ ॥
ଏମନ୍ତେ କୃଷ୍ଣର ଚରଣେ । ସେବା କରନ୍ତି ଅନୁକ୍ଷଣେ ॥
କନ୍ୟାକେ ଶତେ ଶତେ ନାରୀ । ପାଦେ ଖଟନ୍ତି ପରିବାରୀ ॥
ତଥାପି ସ୍ୱାମୀର ଚରଣେ । ସେବନ୍ତି ସେବକୀ ପ୍ରମାଣେ ॥
ଏବେ ହୋ ଶୁଣ ନରପତି । କୃଷ୍ଣର ଯେତେକ ଯୁବତୀ ॥
ତାହାଙ୍କ ମଧ୍ୟେ ଅଷ୍ଟନାରୀ । ରୁକ୍ମିଣୀ ଦେବୀ ଆଦି କରି ॥
ଏକ କନ୍ୟାକେ ଦଶସୁତ । ଏହାଙ୍କ ଉଦରେ ସମ୍ଭୂତ ॥
ଷୋଳ ସହସ୍ର ଏକ ଶତେ । ପୂର୍ବେ ମୁଁ କହିଅଛି ତୋତେ ॥
ତାହାଙ୍କ ଗର୍ଭେ ଏହି ମତେ । ଏକ କନ୍ୟାକେ ଦଶସୁତେ ॥
ଜନ୍ମ ହୋଇଲେ କୃଷ୍ଣ ବୀର୍ଯ୍ୟେ । କି ପଟାନ୍ତର ଦେବି ତେଜେ ॥
ସର୍ବେ ଦିଶନ୍ତି କୃଷ୍ଣ ରୂପ । ଏବେ ହୋ ଶୁଣ ମହାନୃପ ॥
ହରିର ବଂଶ ଅନୁକ୍ରମେ । କେ କହୁ ସୁର ଦେହେ ଜନ୍ମେ ॥
ଅଷ୍ଟ କନ୍ୟାର ପୁତ୍ର ଯେତେ । ପ୍ରାଧାନ୍ୟେ କହିବି ମୁଁ ତୋତେ ॥
ପ୍ରଦ୍ୟୁମ୍ନ ଚାରୁଦେଷ୍ଣ ଆଦି । ସୁଚାରୁ ଦକ୍ଷ ଏ ପ୍ରସିଦ୍ଧି ॥
ଚତୁର୍ଥ ପୁତ୍ର ଚାରୁ ଦେହ । ଏହାର ବଳିନ ହୃଦୟ ॥
ସୁଚାରୁ ଚାରୁ ଗୁପ୍ତ ବେନି । ଅଷ୍ଟମ ଭଦ୍ର ଚାରୁ ଘେନି ॥
ଚାରୁ ଚନ୍ଦ୍ର ବିରୁସେ ନାମ । ସୁଚାରୁ ସତ୍ୟ ଏ ଦଶମ ॥
ରୁକ୍ମିଣୀ ଗର୍ଭୁ ଏ ସମ୍ଭୂତ । କୃଷ୍ଣର ପ୍ରାଏ ନେତ୍ର ଗାତ୍ର ॥
ଭାନୁ ସ୍ୱଭାନୁ ସ୍ୱର୍ଗଭାନୁ । ପ୍ରଭାନୁ ଭାନୁ ଚନ୍ଦ୍ରଭାନୁ ॥
ଶ୍ରୀ ଭାନୁ ପ୍ରତି ଭାନୁ ଶେଷ । କୃତ ବୃହଦ୍ଭ ଭାନୁ ସୁତ ॥
ସତ୍ୟଭାମାର ଏତେ ସୁତ । ଏବେ ହୋ ଶୁଣ ନରନାଥ ॥
ଋକ୍ଷ ନନ୍ଦିନୀ ଜାମ୍ବବତୀ । ଶୁଣ ତୁ ତାହାଙ୍କ ସନ୍ତତି ॥
ଶାମ୍ବ ସୁମିତ୍ର ରିପୁଜିତ । ସହସ୍ରଜିତ ସେ ଚତୁର୍ଥ ॥
ସହସ୍ରଜିତ ସେ ଚତୁର୍ଥ । ବିଜୟ ମିତ୍ରକେତୁ ରେଖ ॥
ବସୁମାନ ଦ୍ରବିଡ଼ କେତୁ । ପିତୃ ସମେତ ସୃଷ୍ଟି ହେତୁ ॥
ସତ୍ୟାର ପୁତ୍ୟ ଶୁଣ ଏବେ । ତୋତେ କହିବା ପ୍ରିୟ ଭାବେ ॥
ସୁଚାରୁ ଚନ୍ଦ୍ର ଅଶ୍ୱସେନ । ଚିତ୍ର ପୂର୍ବେକ ବୃଷଭାନ ॥
ଶ୍ରୀମାନ୍ ଆତ୍ମାଶଙ୍କୁ ବସୁ । କୁମ୍ଭ ଦଶମ ଅବଶେଷୁ ॥
ସାଧୁ ସୁନ୍ଦର ଶୁକ କବି । ବୃଷଭ ନାମ ଅନୁଭବି ॥
ବିରସ ବାହୁ ଭଦ୍ର ଏକ । ଅଷ୍ଟମ ଶାନ୍ତି ନାମ ଲେଖ ॥
ଦରସ ପୂର୍ଣ୍ଣ ମାସ ଶେଷ । କାଳନ୍ଦୀ ସୁତ ଏହୁ ଦଶ ॥
ସୋମ କୁମର ପ୍ରଦୋଦକ । ପୁତ୍ରବାନ ସିଂହ ପଞ୍ଚକ ॥
ବଳ ପ୍ରବଳ ଊର୍ଦ୍ଧ୍ୱଗତି । ଏ ଦଶ ଲକ୍ଷ୍ମଣା ସନ୍ତତି ॥
ଶକ୍ତି ସହିତେ ଅକ୍ଷୋବଳ । ଅପରାଜିତ ଅରିବଳ ॥
ଏହାଙ୍କ ମହିମା ଏମନ୍ତ । ଶୁଣ ହୋ ମିତ୍ର ବିନ୍ଦା ସୁତ ॥
ବକ ଅଭିକ ନୀଳଗୃଧ । ବର୍ଦ୍ଧନ ଆହ୍ଲାଦ ପ୍ରସିଦ୍ଧ ॥
ମହିମା ପାବକ ଅନଳ । ଶୁଦ୍ଧ ସହିତେ ଦଶବାଳ ॥
ସଂଗ୍ରାମଜିତ ବୃହତ୍ସେନ । ସୁର ପ୍ରହୋରି ସମଦଶ ॥
ଜୟ ଶୁଭଦ୍ର ଭଦ୍ରନନ୍ଦ । ଭଦ୍ରାର ସନ୍ତତି ଏ ବୃନ୍ଦ ॥
ଆତ୍ମା ଆୟସ ସତ୍ୟ ଏକ । ରିଷ୍ଟ ମାନପନ୍ଦ୍ର ତପ୍ତକ ॥
ଗତି ସୁରତି ରଣସାର । ସୁନ୍ଦର ରୋହିଣୀ କୁମର ॥
ଏମନ୍ତେ ଅଷ୍ଟପାଟ ରାଣୀ । ଷୋଳ ସହସ୍ର ମଧ୍ୟେ ଗଣି ॥
ଏମନ୍ତେ କୃଷ୍ଣପଟ୍ଟୀ ଯେତେ । ପୁତ୍ର ପଉତ୍ରୀ ଅପ୍ରମିତେ ॥
ଅନଙ୍ଗ ଅନରୂପେ ଜାତ । ପ୍ରଦ୍ୟୁମ୍ନ ରୁକ୍ମିଣୀର ସୁତ ॥
ରୁକ୍ମ କୁମାରୀ ରୁକ୍ମବତୀ । ସାଧୁ ଲକ୍ଷଣ ଶୁଦ୍ଧ ମତି ॥
ତାହାଙ୍କୁ ସ୍ୱୟମ୍ବର ମଧ୍ୟେ । ପ୍ରଦ୍ୟୁମ୍ନ ହରିଲେ ବିବାଦେ ॥
ରାଜାଙ୍କ ବଳଦର୍ପ ହରି । ତେଣୁ ପ୍ରଦ୍ୟୁମ୍ନ ବିଭା କରି ॥
ରୁକ୍ମର ଦୋହିତା ଉପାମ । ତାହାର ରୁକ୍ମଣୀ ଯେ ନାମ ॥
ସେ କନ୍ୟାଗର୍ଭେ ପୁତ୍ର ଜାତ । ତା ନାମ ଅନିରୁଦ୍ଧ ଖ୍ୟାତ ॥
ପ୍ରଦ୍ୟୁମ୍ନ ସୁତ ଅନିରୁଦ୍ଧ । ତା ବିଭା କାଳେ ରୁକ୍ମବଧ ॥
ଏମନ୍ତ ପରୀକ୍ଷିତ ଶୁଣି । ସାନନ୍ଦ ମନେ ପରିମାଣି ॥

ବୋଲଇ ମଧୁର ବଚନ । ଭୋ ମୁନି ସଂଶୟ ମୋ ମନ ॥
ଏ ବଡ଼ କଉତୁକ ବାଣୀ । ସନ୍ଦେହ ଲାଗିଲା ତ ପୁଣି ॥
ରୁକ୍ମ ଯେ କୃଷ୍ଣର ବଇରୀ । ସଂଗ୍ରାମ କାଳେ ଅଛି ହାରି ॥
କେମନ୍ତେ କୃଷ୍ଣ ପୁତ୍ର ବରି । ବିବାହ ଦିଲା ସେ କୁମାରୀ ॥
ଯେ ନିତ୍ୟବିଧି ମୋହେ ଗାଢ଼େ । କୃଷ୍ଣ ମରଣ ଛିଦ୍ର ଲୋଡ଼େ ॥
ମାରିବା ଅର୍ଥେ କରେ ରୋଷ । ସେ କାହିଁ ବିବାହେ ବିଶ୍ୱାସ ॥
ଉଭୟେ ବଇରୀ ବିରୋଧ । କେମନ୍ତେ ବିବାହ ସମ୍ବନ୍ଧ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ଏ କଥା ନଘଟଇ ମନେ ॥
ବଇରୀ ଭାବେ ଭଲ କାହିଁ । ଉତ୍ତମ ଲୋକେ ଛନ୍ତି କହି ॥
କହନ୍ତି ଶୁକ ମୁନିବର । ଶୁଣ ସେ ରୁକ୍ମଣୀ ବେଭାର ॥
କୃଷ୍ଣର ଠହିଁ ଅପମାନେ । ବଇରୀ ଭାବ ଅନୁକ୍ଷଣେ ॥
ତଥାପି ଭଗିନୀର ସୁତ । ଭଣଜା ଭାବେ ବରପାତ୍ର ॥
କୁଳ ବେଭାରେ ସୁବିଦିତେ । ଦିଲା ସେ ଭଗ୍ନୀ ପ୍ରିୟ ଅର୍ଥେ ॥
ରୁକ୍ମ ପୁତ୍ରର କନ୍ୟା ଥିଲା । ଅନିରୁଦ୍ଧରେ ବିଭା ଦେଲା ॥
କୃଷ୍ଣର ଶତ୍ରୁ ସେ ଯୁଗତେ । ଦିଲା ସେ ଭଗ୍ନୀପ୍ରିୟ ଅର୍ଥେ ॥
ଅଧର୍ମ ଶାସ୍ତ୍ର ଏ ବିଚାରେ । ତଥାପି ଦିଲା ସ୍ନେହଭରେ ॥
ତାର ବିବାହ କାଳେ ହରି । ରାମ ରୁକ୍ମିଣୀ ଆଦି କରି ॥
ପ୍ରଦ୍ୟୁମ୍ନ ଶାମ ଆଦି ଯେତେ । ଯାଦବ ସଇନି ସଙ୍ଗତେ ॥
ବିବାହ ଉତ୍ସବ ସମ୍ପରେ । ମିଳିଲେ ଭୋଜ କଟକରେ ॥
ବିବାହ କରି ତାର ପୁରେ । ଯେମନ୍ତ ବାନ୍ଧବ ବେଭାରେ ॥
ଏମନ୍ତେ ଶୁଣ ନରନାଥ । ତାର ବିବାହେ ବିପରୀତ ॥
ଉତ୍ସବ ଅନ୍ତେ ଏକ ଦିନେ । ବିବାହେ ଥିଲେ ଯେ ରାଜନେ
କଳିଙ୍ଗ ଆଦି ରଜା ଯେତେ । ବିଚାର କରିଣ ଏକାନ୍ତେ ॥
ଆଜ ସଭାର ମଧ୍ୟେ ବସି । ରୋହିଣୀ ନନ୍ଦନେ ବିଶ୍ୱାସି ॥
ଆନନ୍ଦ ପଶାଖେଳ କରି । ଛନ୍ଦେ ଜିଣିମା ହଳଧାରୀ ॥
ଖେଡ଼ ନ ଜାଣେ ବଳରାମ । ଜିଣିମା ଧନ ରାଜ ଗ୍ରାମ ॥
ରକ୍ମଣ ସଂଗେ ଖେଳାଇବା । ଆମ୍ଭେ ନିକଟେ ବସିଥିବା ॥
ଏମନ୍ତେ ଭାଳି ଖେଡ଼ କଲେ । କପଟେ ରାମଙ୍କୁ ଆଣିଲେ ॥
ସଭାର ମଧ୍ୟେ ଖେଡ଼ କରି । ଆନନ୍ଦେ ଖେଡ଼େ ହଳଧାରୀ ॥
ପ୍ରଥମେ କଲେ ଲକ୍ଷ ପଣ । ଯେମନ୍ତେ ଖେଡ଼ର ଭିଆଣ ॥
ରାମ ପାଡ଼ିଲେ ପଶାଦାନ । ଜିଣିଲା ଭୀଷ୍ମେକ ନନ୍ଦନ ॥
ପାଶେ ଯେ ଥିଲେ ଦନ୍ତବକ୍ର । ସ୍ୱଭାବେ କରିଅଛି ଚକ୍ର ॥
ହସିଲା ରାମ ମୁଖ ଚାହିଁ । ବିକଟ ଦଶନ ଦେଖାଇ ॥
ଖେଡ଼ର ସ୍ୱଭାବ ଏମନ୍ତ । କୋପ ନ କରି ହଳହସ୍ତ ॥
ଲକ୍ଷକୁ ଦଶଗୁଣ କରି । ପୁଣ ପାଡ଼ିରେ ହଳଧାରୀ ॥
ସେ ବେଳ ହଳଧର ଜିଣି । ରକ୍ମ ବୋଇଲା ତାହା ଶୁଣି ॥
ମୁହିଁ ଜିଣିଲି ଏତେ ଧନ । ଭୋ ରାମ ପୁଛ ସର୍ବ ଜନ ॥
ଏମନ୍ତେ କହି କୋପ କଲା । ରାମର କୋପ ଉପୁଜିଲା ॥
ଜଳାଧି ଯେହ୍ନେ ପୂର୍ବକାଳେ । ଉଛୁଳେ ବହୁତ କଲ୍ଲୋଳେ ॥
ସ୍ୱଭାବେ ଅରୁଣ ଲୋଚନ । ବୋଲନ୍ତି ରୋହିଣୀ ନନ୍ଦନ ॥
ଏବେ ମୋହର ଶଏ ପଣ । ପାଡ଼ିଲେ ଶତକୋଟି ଗୁଣ ॥
ଏତେକ ସୁବର୍ଣ୍ଣ ମୋହର । କୋପେ ବୋଲନ୍ତି ହଳଧର ॥
ଏମନ୍ତେ ଖେଡ଼ ପାଡ଼ କରି । ଦାନ ପାଡ଼ିଲେ ହଳଧାରୀ ॥
ଧର୍ମେ ଜିଣିଲେ ଶଂକର୍ଷଣ । ଜିଣିଲି ବୋଇଲା ରକ୍ମଣ ॥
ଏ ବେଳ ଜିଣିଲିଟି ମୁହିଁ । ପଚାର ସଭା ମଧ୍ୟେ ତୁହିଁ ॥
ବିକଟ ଦନ୍ତ ତାହା ଶୁଣି । ବୋଲଇ ମୁହିଁ ଅଛି ଜାଣି ॥
ଏ ବେଳେ ଜିଣିଲା ରୁକ୍ମଣ । ସୁବର୍ଣ୍ଣ ଯେତେ ପାଡ଼ ପୁଣ ॥
ରୋହିଣୀ ସୁତ ତାହା ଶୁଣି । କପାଳ କଣ୍ଟି ହେଲେ ତୁନି ॥
ଏମନ୍ତେ ଅନ୍ତରୀକ୍ଷ ବାଣୀ । ଡାକିଲା ରାମ ଏହା ଜିଣି ॥
କପଟ କହଇ ରୁକ୍ମଣ । ଏମନ୍ତ ଆକାଶ ବଚନ ॥
ଧର୍ମ ବଚନ ନିନ୍ଦା କରି । ରକ୍ମ ବୋଲଇ କୋପ କରି ॥
ଏମନ୍ତ ଜାଣିଲା ତ ନାହିଁ । ଜିଣିଲି ସଭା ମଧ୍ୟେ ମୁହିଁ ॥
କୃଷ୍ଣ ରାଜନ ତାହା ଶୁଣି । ବୋଲନ୍ତି ଆମ୍ଭେ ଅଛୁ ଜାଣି ॥
ଶୁଣି ରକ୍ମଣ କଲା ହାସ । ଆକ୍ରୋଷି ହୋଇ କୋପେ ଶ୍ୱାସ
ତୁମ୍ଭେ ଜାଣିବ ଖେଡ଼ କାହିଁ । ବନେ ଗୋପାଳ ମେଳେ ଥାଇ
ସ୍ୱଭାବେ ତୁମ୍ଭେ ବନ ଲୋକ । ନ ଜାଣ ପଶା କଉତୁକ ॥
ଗୋରୁ ଚରାଉ ଗଲା ଦିନ । ତୁମ୍ଭର ଏଡ଼େ କାହିଁ ଜ୍ଞାନ ॥
ଖେଡ଼ ଜାଣନ୍ତି ରାଜ ସୁତେ । ସଂଗ୍ରାମ ଜୟ ସେହି ମତେ ॥
ପଶା ଖେଳିଲା ତୁମ୍ଭ ନାହିଁ । ରକ୍ମ ବୋଇଲା ରାମ ଚାହିଁ ॥
ଏମନ୍ତେ ରକ୍ମର ବଚନ । ଶୁଣି ହସନ୍ତି ସଭାଜନ ॥
ରାମ କୋପିଲେ ତାହା ଶୁଣି । ପରିଘ ଶସ୍ତ୍ର କରେ ଧରି ।
ରକ୍ମଣ ମୁଣ୍ଡେ ଘୋର ନାଦେ । ପ୍ରହାର କଲେ ସଭା ମଧ୍ୟେ ॥
ତଳେ ଯେ ଥିଲା ପଶାକାଠି । ରାମ ଘେନିଲେ କୋପଦୃଷ୍ଟି ।
ଦଶନ ପଦ ଘେନି ମୁଖେ । ପିଟିଲେ ଦନ୍ତବକ୍ର ମୁଖେ ।
ବକ୍ର ସମାନେ ପଶାକାଠି । ବାଜିଝଡ଼ିଲା ଦନ୍ତପାଟି ।
ଯେ ଦନ୍ତେ ରାମଙ୍କୁ ହସିଲା । ସେ ଭାଂଜି ଭୂମିରେ ପଡ଼ିଲା ।
ରୁଧିର ଗଳେ ତାର ତୁଣ୍ଡେ । ଗୋଳ ଶୁଭିଲା ରାଜ ଦାଣ୍ଡେ ।
ରାମର ରାସ କ୍ରୀଡ଼ା କାଳେ । ଦୁଷ୍ଟେ ଯେ ଥିଲେ ସଭା ସ୍ଥଳେ

ରାମର ଶସ୍ତ୍ର ଖଣ୍ଡ ଖଣ୍ଡ । ଛିଡ଼ିଲା ଭୁଜ ଉରୁମୁଣ୍ଡ ॥
ଅଙ୍ଗେ ରୁଧିର ରଙ୍ଗ ବେଶେ । ପଳାଇ ଗଲେ ନିଜ ଦେଶେ ॥
ରୁକ୍ମଣ ହତ କୃଷ୍ଣ ଦେଖି । ଭାବେ ବୁଜିଲେ ବେନି ଆଖି
ରାମ ରୁକ୍ମଣ ସ୍ନେହ ଭଙ୍ଗ । ଭୟେ ମଉନେ ଶିରୀ ରଙ୍ଗ ॥
ତକ୍ଷଣେ ପ୍ରଭୁ ଭଗବାନ । ଆରୋହୀ ନନ୍ଦିଘୋଷ ଯାନ ॥
ବର କନ୍ୟାକୁ ଘେନି ଆଗେ । ଦ୍ୱାରକା ବିଜେ ଶିରୀ ରଙ୍ଗେ ॥
ଯାଦବ ରାମ ଆଦି ଯେତେ । ମିଳିଲେ କୃଷ୍ଣ ଅନୁପଥେ ॥
ସେ ରାମ କୃଷ୍ଣ ପାଦଗତେ । ନମଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଦଶମସ୍କନ୍ଧେ ଅନିରୁଦ୍ଧ ବିବାହେ ଅକ୍ଷକ୍ରୀଡ଼ାୟାଂ*
*ରୁକ୍ମବଧେ ନାମ ଷଷ୍ଠଷଷ୍ଠିତମୋଽଧ୍ୟାୟଃ ।*

## ସପ୍ତ ଷଷ୍ଠିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ଶୁକ ମୁନିବର । ଶୁଣ ପରୀକ୍ଷ ଦଣ୍ଡଧର ॥
ଶ୍ରୋଣୀତ ପୁରେ ମହାବୀର । ଦନୁଜ ବଳିର କୁମର ॥
ଶତେ କୁମର ମଧ୍ୟେ ଜ୍ୟେଷ୍ଠ । ତମ ସ୍ୱଭାବେ ମହାଦୁଷ୍ଟ ॥
ପୂର୍ବେ ଈଶ୍ୱର ତପଧାୟି । ବରେ ସହସ୍ରେ ଭୁଜ ପାଇ ॥
ନିଜ ସହସ୍ର ଭୁଜ ବଳେ । ଯୁଦ୍ଧେ ଭ୍ରମିଲା ମହୀତଳେ ॥
ଦେଖି ତାହାର ଭୁଜ ତେଜ । ଯୁଦ୍ଧେ ଭାଂଜିଲେ ସର୍ବରାଜ ॥
ଯୁଦ୍ଧ ନ ପାଇ ମନତାପେ । ମିଳିଲା ଈଶ୍ୱର ସମୀପେ ॥
ମୃଦଙ୍ଗ ପଞ୍ଚଶତ କାନ୍ଧେ । ଦିବ୍ୟ ତାଣ୍ଡବ ଅନୁବନ୍ଧେ ॥
ତୋଷିଲା ଭବାନୀ ଶଙ୍କର । ପ୍ରସନ୍ନ ହୋଇ ଶୂଳଧର ॥
ବୋଇଲେ ବର ମାଗ ତୁହିଁ । ତୋର ପ୍ରସନ୍ନ ଆଜ ମୁହିଁ ॥
ଶୁଣି ସଂଭ୍ରମେ ମହାବୀର । ରତ୍ନ ମୁକୁଟ ଅଛି ଶିର ॥
ସେ ଶିରେ ହର ପାଦେ ପଡ଼ି । ବୋଲଇ ବେନି କର ଯୋଡ଼ି
ନମଇଁ ପ୍ରଭୁର ଚରଣ । ଅନାଦି ପରମ କାରଣ ॥
ତୁ ନାଥ ସର୍ବଲୋକେ ଗୁରୁ । ଭଗତ ଜନଙ୍କୁ ନିସ୍ତାରୁ ॥
ଅପୂର୍ଣ୍ଣ ବାସନା ଯେତେ ଜନ । ତୁମ୍ଭେ ତାହାଙ୍କ କଳ୍ପବନ ॥
ସର୍ବ ସମ୍ପଦ ପାର ଦେଇ । ଭଗତ ଯେମନ୍ତ ଲୋଡ଼ାଇ ॥
ସହସ୍ରେ ଦିଲୁ ମୋତେ କର । କେବଳ ଭାରା ଏ ମୋହୋର
ଅପ୍ରିୟୋଜନେ ଭୁଜ ବହି । ସଂଗ୍ରାମେ ସୁଖ ମୋର ନାହିଁ ॥
ସମର ଅର୍ଥେ ତିନିଲୋକେ । ମୋ ତୁଲେ ଖୋଜି ଏକେ ଏକେ ॥
ମୋ ତୁଲେ ନ ମିଳିଲେ କେହି । ତୁ ମାତ୍ର ଅଛୁ ଶେଷ ହୋଇ ॥
ସମରେ ଭୁଜ ଦଣ୍ଡବଳେ । ଭ୍ରମିଲି ଅବନୀ ମଣ୍ଡଳେ ॥
ଅଇରାବତ ଆଦି ନାଗେ । ଥିଲେ ଯେ ଅଷ୍ଟଦିଗ ଭାଗେ ॥
ତାଙ୍କର ତୁଲେ ମୁଁ ଆନନ୍ଦେ । ସମର କରିବାର ସଧେ ॥
ପର୍ବତେ ପିଟିଲି ମୁଁ କର । ତକ୍ଷଣେ ଗିରି ହେଲା ଚୂର ॥
ଦେଖି ମୋହର ଭୁଜ ତେଜ । ଭୟେ ଭାଂଜିଲେ ସର୍ବରାଜ ॥
ଏମନ୍ତ ଶୁଣି ତା ବଚନ । କୋପ ନୟନେ ତ୍ରିଲୋଚନ ॥
ବୋଇଲେ ଶୁଣ ବାଣା ବୀର । ରଥେ ଯେ ଧ୍ୱଜ ଅଛି ତୋର ॥
ତାର ପତାକା ଯେତେବେଳେ । ଛିଡ଼ି ପଡ଼ିବ ମହୀତଳେ ॥
ଏ ଭୁଜ ଗର୍ବ ନାଶିବାରେ । ରିପୁ ମିଳିବ ତୋର ପୁରେ ॥
ସେ ବେଳେ ମୋର ତୁଲେ ରଣ । କରିବୁ ଶୁଣ ମୂଢ଼ ପଣ ॥
ଏମନ୍ତେ ହରବାକ୍ୟ ଶୁଣି । ଆନନ୍ଦ ମନେ ବୀରମଣି ॥
ନିତ୍ୟେ ଚିନ୍ତଇ ଶମ୍ଭୁକଥା । କେମନ୍ତେ ଯିବ ଭୁଜ ବ୍ୟଥା ॥
ଚିନ୍ତଇ ନିଜ ବୀର୍ଯ୍ୟେ ନାଶ । କୁମତି ବୃଦ୍ଧି କାଳଫାଶ ॥
ଶୁଣ ରାଜନ ଚିତ୍ରକଥା । ଓଷା ନାମେଶ ତା ଦୋହିତା ॥
ଅତି ସୁନ୍ଦର ରୂପ ରାଶି । କିବା କହିବା ପରସଂଶି ॥
ତାହାର କନ୍ୟା କାଳେ ଜାଣି । ନିରୋଧ ନିବେଶି ପାହାରି ॥
ନରକିନ୍ନରେ ଅଗୋଚର । ଏମନ୍ତ କରି କନ୍ୟାପୁର ॥
ଉତ୍ତମ କୁଳେ ବର ବରି । ବିବାହ ଦେବି ଏ କୁମାରୀ ॥
ଏମନ୍ତେ ଥୋଇ ଯତ୍ନ କରି । ଏବେ ହୋ ଶୁଣ ଦଣ୍ଡଧାରୀ ॥
ସେ କନ୍ୟା ରାତ୍ରେ ନିଦ୍ରାକାଳେ । ସପ୍ନେ ରମିଲା କାନ୍ତ କୋଳେ ॥
ମଦନ ସୁତ ତୁଲେ ରମି । ପ୍ରଳାପେ କଲା ଶଙ୍ଖ ଧ୍ୱନି ॥
ହେ କାନ୍ତ କାହିଁ ଗଲୁ ଛାଡ଼ି । ଶୋକସାଗରେ ମୋତେ ଏଡ଼ି ॥
ନ ଦେଖି ଛାଡ଼ିବି ଜୀବନ । ଦେଖାଅ ସୁନ୍ଦର ଜୀବନ ॥
ଏମନ୍ତ ନିଦ୍ରା ଭୋଳେ ବାଣୀ । ଉଠିଲେ ସଖୀଜନେ ଶୁଣି ॥
ସଚେତ କରିଣ ବଦନ । ଚିଆଁଇ ବୋଲନ୍ତି ବଚନ ॥
ବାଣାସୁରର ମନ୍ତ୍ରୀବର । କୁଭାଣ୍ଡ ବୋଲି ନାମ ତାର ॥
ତାର ଦୋହିତା ଚିତ୍ରରେଖା । କନ୍ୟା ତୁଲେ ଅଛି ସେ ଏକା ॥
ଅନ୍ତରେ ଅଛନ୍ତି କାମେନୀ । କନ୍ୟାକୁ ଚିତ୍ର ରେଖା ଘେନି ॥
ଶୁଣ ସୁନ୍ଦରୀ ମୋର ବାଣୀ । ତୋର ପିୟର ନୃପମଣି ॥
ବିଭା ନଦେଲା ତୋତେ ବରେ । ଥୋଇଲା ବନ୍ଦୀ ପ୍ରାୟେ ଘରେ ॥
କାନ୍ତ ତୋହୋର ସଙ୍ଗେ ନାହିଁ । ପ୍ରଳାପ କରୁ କାହିଁ ପାଇଁ ॥
ଏତ ନୋହଇ ଭଲ ଚିହ୍ନ । ଶୁଣିବେ ଦ୍ୱାରପାଳ ମାନ ॥
କହିବେ ତୋର ପିତା ଆଗେ । କଷ୍ଟ ହୋଇବ ମୋର ଭାଗ୍ୟେ ॥

ତାର ବଚନ କର୍ଣ୍ଣେ ଶୁଣି । ଉଷା ବୋଲଇ ମୃଦୁ ବାଣୀ ॥
ସ୍ୱପ୍ନେ ମୁଁ ଦେଖିଲି ପୁରୁଷ । ଅତି ସୁନ୍ଦର ତାର ବେଶ ॥
ଶ୍ୟାମଳ କମଳ ଲୋଚନ । ସୁନ୍ଦର ଶଶାଙ୍କ ବଦନ ॥
ସେ ମୋର ଚୁମ୍ବିଲା ବଦନ । ନିବିଡ଼େ ଦେଇ ଆଲିଙ୍ଗନ ॥
ଶୋକ ସାଗରେ ମୋତେ ଥୋଇ । ତକ୍ଷଣେ ଗଲା ସେ ପଳାଇ ॥
ଯେବେ ନଦେଖି ତା ବଦନ । ନିଶ୍ଚୟେ ଛାଡ଼ିବି ଜୀବନ ॥
ଏମନ୍ତ କନ୍ୟା ବୋଲ ଶୁଣି । ସେ ଚିତ୍ରରେଖା ମନେ ଗୁଣି ॥
ହରଷେ ଧରି କନ୍ୟା କର । ବୋଲଇ ଚିତ୍ତ କର ସ୍ଥିର ॥
ମୋହୋର ସିଦ୍ଧ ବିଦ୍ୟା ଅଛି । ପ୍ରତକ୍ଷେ ଦେଖ କମଳାକ୍ଷି ॥
ଚିତ୍ରେ ଲେଖିବି ସର୍ବ ଜନ । ତୋହୋର କାନ୍ତ ଭଲେ ଚିହ୍ନ ॥
ତାହାକୁ ଦେବି ତୋତେ ଆଣି । ଶୋକ ନକର ସୁଲକ୍ଷଣୀ ॥
ଏମନ୍ତ କହି ଚନ୍ଦ୍ରମୁଖୀ । ଚିତ୍ରେ ତ୍ରୈଲୋକ୍ୟ ଜନ ଲେଖି ॥
ଦେବ ଗନ୍ଧର୍ବ ସିଦ୍ଧ ଗଣ । ପୁରୁଷ କିନ୍ନର ଚାରଣ ॥
ଅସୁର ବିଦ୍ୟାଧର ଯକ୍ଷ । ଦାନେବ ମାନେବ ପ୍ରତକ୍ଷ ॥
ମନୁଷ୍ୟ ମଧ୍ୟେ ବିଷ୍ଣୁ ବଂଶେ । ଦେବେ ଉପୁଜିଛନ୍ତି ଅଂଶେ ॥
ବସୁଦେବଙ୍କୁ ପତ୍ରେ ଲେଖି । ଦେଖି ବୋଲଇ ଚନ୍ଦ୍ରମୁଖୀ ॥
ପୁଣି ଲେଖିଲା କୃଷ୍ଣ ରାମ । ଯେ ରୂପେ ନାହିଁ ଅନୁପମ ॥
ମଦନ କୃଷ୍ଣ ପାଶେ ଲେଖି । ତା ଦେଖି ଉଷା ଅଧୋମୁଖୀ ॥
ପ୍ରଦ୍ୟୁମ୍ନ ପୁତ୍ର ଅନିରୁଦ୍ଧ । ଦେଖନ୍ତେ ଉଷା କଲା ସଧ ॥
ସ୍ୱକାମେ ଦୃଷ୍ଟି ସ୍ଥିରେ ଦେଇ । ଲଜ୍ଜାଏ ଅଧୋମୁଖୀ ହୋଇ ॥
ବୋଲଇ ଚିତ୍ରରେଖା ଚାହିଁ । ଭୋ ସଖୀ ସେ ପୁରୁଷ ଏହି ॥
ଆନନ୍ଦେ ହରଷ ବଦନ । ସଖୀ ଜାଣିଲା ତାର ମନ ॥
ସିଦ୍ଧ ଯୋଗିନୀ ଯୋଗବଳେ । ଉଡ଼ିଲା ଗଗନ ମଣ୍ଡଳେ ॥
ଏମନ୍ତେ ପ୍ରକାଶିଲା ନିଶି । ବେଗେ ଦ୍ୱାରକାପୁରେ ପଶି ॥
ଅନିରୁଦ୍ଧର ନିଦ୍ରାକାଳେ । ହରିଲା ମାୟାଯୋଗ ବଳେ ॥
ଶଯ୍ୟା ସହିତେ ଶୂନ୍ୟପଥେ । ଘେନାଇ ଚଳିଲା ତୁରିତେ ॥
ଗଗନ ମାର୍ଗେ ଅତି ଖରେ । ପ୍ରବେଶ ଶ୍ରୋଣୀତ ନଗରେ ॥
ଉଷା ଶୟନେ ଦରଶନ । କରାଇ ସଖୀ ତୋଷମନ ॥
ଉଷା ପୂଜିଲା ବୀରପାଦ । ଛାଡ଼ିଲା ମନର ବିଷାଦ ॥
ସୁନ୍ଦର ବର ଦେଖି ହସି । ରମିଲା ହୃଦୟ ବିଶ୍ୱାସି ॥
ଏକାନ୍ତପୁର ମଧ୍ୟେ ଥାଇ । ଯହିଁ ପୁରୁଷ ତେଜ ନାହିଁ ॥
ପୁଷ୍ପ ଚନ୍ଦନ ନା ନା ରୂପେ । ଭୋଜନ ଆସନ ସମୀପେ ॥
ଏକ ବସନ ବେନି ଦେହେ । ସେବା ସୁବାକ୍ୟେ ପ୍ରେମ ମୋହେ ॥
ପୂଜିତ କୃଷ୍ଣ ସୁତ ବଳା । ରତି ପଣ୍ଡିତ କାମ କଳା ॥
ଗୁପତେ କନ୍ୟାପୁରେ ଥାଇ । ଅଧିକ ସ୍ନେହ ହୃଦେ ବହି ॥
ରାତ୍ର ଦିବସ ନ ଜାଣିଲା । ଏମନ୍ତେ କେତେଦିନ ଗଲା ॥
ଓଷାର ପ୍ରିୟ ପ୍ରେମ ଲାଭେ । ଯତୀନ୍ଦ୍ର ଇନ୍ଦ୍ରିୟ ସ୍ୱଭାବେ ॥
ଏମନ୍ତେ ଶୁଣ ମହିପତି । କନ୍ୟାର ଶୁଣ ଦୁଷ୍ଟମତି ॥
ଯଦୁକୁମର ସଂଗେ ରମି । ନିଜ୍ଜଳ ପଣେ ସେ ଅଗ୍ରଣୀ ॥
କନ୍ୟାର ଦୁଷ୍ଟ ଆଚରଣ । ଦେଖି ଡରିଲେ ଦ୍ୱାରୀ ଗଣ ॥
ତକ୍ଷଣେ ନୃପନାଥ ଆଗେ । କହିଲେ କର ଯୋଡ଼ି ବେଗେ ॥
ଶୁଣ ରାଜନ ଚୂଡ଼ାମଣି । ଦେଖିଲୁ ତୋହୋର ଦୁଲେଣୀ ॥
କୁଳ ଦୂଷଣ କନ୍ୟାଗୁଣ । ରାଜନ ସାବଧାନେ ଶୁଣ ॥
କନ୍ୟାର ଦ୍ୱାରେ ଆମ୍ଭେ ଥାଇ । ଦଣ୍ଡେ ହେଁ ଅବକାଶ ନାହିଁ ॥
ଶଶୀ ତପନ ଶୂନ୍ୟେ ଯାନ୍ତି । କନ୍ୟାକୁ କେହି ନ ଦେଖନ୍ତି ॥
ପୁରୁଷ ଦୃଷ୍ଟି ନାହିଁ ଯହିଁ । ତପନ ତେଜ ନ ଲାଗଇ ॥
ପରେ ଦୂଷୀତ କନ୍ୟା ଦେଖି । ଅଇଲୁ ଭୁବନ ଉପେକ୍ଷି ॥
ଯେ ତୋର ଇଚ୍ଛା ଏବେ କର । ଏଥକୁ ସାକ୍ଷ୍ୟ ଦିନକର ॥
ଆମ୍ଭେ ଜାଣିମୁ ଏହା କାହିଁ । କହିଲୁ ଆମ୍ଭ ଦୋଷ ନାହିଁ ॥
ଶୁଣି ଚକିତ ନୃପବର । କାତରେ କମ୍ପଇ ଶ୍ୱରୀର ॥
ଶୁଣି ନଚଳଇ ଚରଣ । ଦୂଷଣ ଦୋହିତା କଷଣ ॥
ବାଣ କୋଦଣ୍ଡ ଧରି କରେ । ବେଗେ ମିଳିଲା କନ୍ୟାବରେ ॥
ଦେଖିଲା ମଦନ ତନୁଜ । ଆଜାନୁ ଲମ୍ବେ ବେନି ଭୁଜ ॥
ପୀତାଙ୍ଗ ବସ୍ତ୍ର ହୃଦେ ହାର । ଅଶେଷ ଭୁବନ ସୁନ୍ଦର ॥
ଶ୍ୟାମ ସୁନ୍ଦର ପଦ୍ମନେତ୍ର । ଅଳକା କପୋଳେ ବିଚିତ୍ର ॥
କର୍ଣ୍ଣେ କୁଣ୍ଡଳ ବେନି ଶୋହେ । ସୁନ୍ଦର ରୂପେ ଜନ ମୋହେ ॥
ଅଧର ଶୋହେ ମନ୍ଦହାସେ । ସୁରତୀ ଦେଖି କନ୍ୟା ପାଶେ ॥
ପଶା ଖେଳନ ପ୍ରିୟା ସଙ୍ଗେ । କୁଚ କୁଙ୍କୁମ ସର୍ବ ଅଙ୍ଗେ ॥
ମଲ୍ଲିକାମାଳ ପୁଷ୍ପ ହୃଦେ । ହାଦୋଳେ ବେନି ଭୁଜ ମଧ୍ୟେ ॥
ଏମନ୍ତେ କନ୍ୟାର ସମୀପେ । ଦେଖି ବାଳେକ ମହାକୋପେ ॥
ଚକିତେ ଚଉଦିଗେ ଚାହିଁ । କୋପେ କୋଦଣ୍ଡ ହସ୍ତେ ଲଇଁ ॥
ଅନେକ ବୀର ତାର ସଂଗେ । ଦ୍ୱାର ରୁନ୍ଧିଲେ ଅତି ବେଗେ ॥
ଦେଖି ତାହାର ସୈନ୍ୟବଳ । ସଭ୍ରମେ ପ୍ରଦ୍ୟୁମ୍ନର ବାଳ ॥
କରେ ପରିଘ ଶସ୍ତ୍ର ଧରି । ଉଠିଲା ଘୋର ନାଦ କରି ॥
କନ୍ୟାର ଆଗେ ହୋଇ ଉଭା । କୃତାନ୍ତ ପ୍ରାୟେ ଦିଶେ ଶୋଭା ॥
ଧରିବା ଆଶେ ଚାରି ଦିଗେ । ବୀରେ ଯେ ଥିଲେ ଦ୍ୱାର ଭାଗେ ॥
ପରିଘ ପ୍ରହାରେ ବିନାଶେ । ସିଂହ ଯେସନେ ପଶୁ ନାଶେ ॥
ପରିଘ ଘାତ ବଜ୍ର ପ୍ରାୟେ । ଜୀବନ ନାଶିଲେ ଥୋକାଏ ॥

କାହାର ଭୁଜ ମୁଣ୍ଡ ଛିଡ଼ି । ପଳାଇଗଲେ ରଣ ଛାଡ଼ି ॥
ଦେଖିଣ ଅନିରୁଦ୍ଧ ଗତି । ନାଗବନ୍ଧନେ ମହାରଥୀ ॥
ବଳି ନନ୍ଦନ ବେଗେ ବାନ୍ଧେ । ବନ୍ଧନ ଦେଖି ଓଷା କାନ୍ଦେ ॥
କହଇ ବିପ୍ର ଜଗନ୍ନାଥ । ନାଗ ବନ୍ଧନେ କାମସୁତ ॥
ରାଜନ ସାବଧାନେ ଶୁଣ । କୃଷ୍ଣ ଉଦ୍ଧରିବେ କ୍ଷଣ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଉଷାହରଣେ ଅନିରୁଦ୍ଧ ବନ୍ଧନେ ନାମ ସପ୍ତଷଷ୍ଠିତମୋଽଧ୍ୟାୟଃ ।*

## ଅଷ୍ଟଷଷ୍ଠିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ଭାଗବତ । ଦ୍ୱାରିକାପୁରେ ଉପଗତ ॥
ନ ଦେଖି ଅତି ଶୋକ ଭରେ । ଲୋଡ଼ନ୍ତି ଗ୍ରାମ ବନ ପୁରେ ॥
ନ ଦେଖି ହୋଇଲେ ନିରାଶ । ଏମନ୍ତେ ଗଲା ଚାରିମାସ ॥
ବ୍ରହ୍ମାନନ୍ଦନ ଏକଦିନେ । ମିଳିଲେ ଦ୍ୱାରକା ଭୁବନେ ॥
ରାମ ଗୋବିନ୍ଦ ପାଶେ ବସି । ମୁନି କହନ୍ତି ମନ୍ଦ ହସି ॥
ଶୁଣ ଗୋବିନ୍ଦ ହଳଧର । ଦୁର୍ମତୀ ପଦ୍ମନ କୁମର ॥
ଶ୍ରୋଣୀତ ପୁରେ କନ୍ୟାଛଳେ । ବନ୍ଧନ ନିଜ କର୍ମଫଳେ ॥
ବଳିର ପୁତ୍ର ବାଣାସୁର । ଦୁର୍ଜ୍ଜୟ ଦୁଷ୍ଟ ଦୁରାଚାର ॥
ତାର ସହସ୍ର ଭୁଜବଳେ । ଦୁର୍ଜ୍ଜୟେ ଏ ମହୀ ମଣ୍ଡଳେ ॥
ଈଶ୍ୱର ବରେ ଭୁଜ ପାଇ । ତାହାକୁ ରଣେ ବୀର ନାହିଁ ॥
ଦେଖି ଡରନ୍ତି ସର୍ବ ଜନ । ଅଜୟେ ଏ ତିନି ଭୁବନ ॥
ଏମନ୍ତ କହି କୃଷ୍ଣ ଆଗେ । ନାରଦ ଗଲେ ଶୂନ୍ୟମାର୍ଗେ ॥
କୃଷ୍ଣ ଆଦେଶେ ଉଗ୍ରସେନ । ସାଜିଲା ଯଦୁ ଭୋଜ ସନ୍ୟ ॥
ପଦ୍ମନ ଯୁଯୁଧାନ ଗଦ । ଶାମ ସାରଣ ଉପନନ୍ଦ ॥
ଭଦ୍ର ସୁନନ୍ଦ ଆଦି ବେଗେ । ସାଜିଲେ ରାମ କୃଷ୍ଣ ସଂଗେ ॥
ଦ୍ୱାଦଶ କ୍ଷେଉଣୀ ସେ ଘେନି । ଶବଦେ କମ୍ପଇ ମେଦିନୀ ॥
ମୁଖ ଶବଦେ ଦିଗ ପୁରେ । ମିଳିଲେ ଶ୍ରୋଣୀତ ନଗରେ ॥
ଦୁର୍ଜ୍ଜୟ ଭୋଜ ଯଦୁବୀର । ଭାଙ୍ଗିଲେ ବନ ଦିଗ ପୁର ॥
ପାଚେରି ଅଟ୍ଟାଳୀ ଗୋପୁର । ଭାଂଜି ହୋଇଲା ସତେ ଚୂର ॥
ଗହନ ଘୋରନାଦ ଶୁଣି । ବଳି ନନ୍ଦନ ତାହା ଜାଣି ॥
ଦୁଷ୍ଟ ସ୍ୱଭାବ ଅତି ରୋଷେ । ବେଗେ ମିଳିଲା ରୁଦ୍ରପାଶେ ॥
ସଂଭ୍ରମେ ରୁଦ୍ରପାଦେ ପଡ଼ି । ବୋଇଲ ଶିରେ କର ଯୋଡ଼ି ॥
ଭୋ ନାଥ ଅମ୍ବିକା ରମଣ । ମୋ ପୁରେ କନ୍ୟାର କଷଣ ॥
ନିର୍ଭୟେ ପଦ୍ମନ କୁମର । ବଳେ ହରିଲା କନ୍ୟା ମୋର ॥
ବନ୍ଧନ କରି ନାଗପାଶେ । ତା ଶୁଣି କୃଷ୍ଣ ମହାରୋଷେ ॥
ବଳେ ମୋହୋର ଘରେ ଆସି । ରବି ଯେସନେ ତମ ନାଶି ॥
ଭାଙ୍ଗିଲେ ମୋର ଗଡ଼ ଗ୍ରାମ । ଶୁଣି ଶଙ୍କର ଗରୁତମ ॥
ବିଶେଷେ କନ୍ୟାର ଦୂଷଣ । ଶୁଣି ସାଜିଲେ ରୁଦ୍ରଗଣ ॥
ତକ୍ଷଣେ ବଳିର ନନ୍ଦନ । ମିଳିଲା ଆପଣା ଭୁବନ ॥
କୃଷ୍ଣର ବଳ ପରିମାଣି । ନିଜ ଦ୍ୱାଦଶ ଅକ୍ଷୋହିଣୀ ॥
ସଙ୍ଗତେ ଘେନି ମହାସୁର । ନବରୁ ହୋଇଲା ବାହାର ॥
ଦେଖି ତାହାର ଅଗ୍ରସାର । ତକ୍ଷଣେ ମିଳିଲେ ଶଙ୍କର ॥
ସଙ୍ଗେ କାର୍ତ୍ତିକ ଗଣନାଥ । ଅନେକ ରଥୀ ବୀର ଯୂଥ ॥
ନନ୍ଦୀ ବୃଷଭେ ବସି ହର । ମିଳିଲେ ଯହିଁ ଚକ୍ରଧର ॥
ଶଙ୍କର ଗଣ ଅପ୍ରମିତ । ରଣେ ଆବୋରି ଯୂଥ ଯୂଥ ॥
ମାରନ୍ତି ନାନା ଶସ୍ତ୍ର ଧରି । ଶବଦେ କମ୍ପଇ ଧରଣୀ ॥
ଶୂନ୍ୟେ ଦେଖନ୍ତି ଦିଗପାଳେ । କୃଷ୍ଣ ଶଙ୍କର ରଣ ମେଳେ ॥
ଦୁର୍ଲ୍ଲଭ ହରି ହର ରଣ । ଶୁଣନ୍ତେ ରୋମ ହରଷଣ ॥
ଅଦ୍ଭୁତ ଶୁଣେ ଘୋରନାଦ । ଶୁଣ ହୋ ସଂଗ୍ରାମ ପ୍ରମାଦ ॥
କୃଷ୍ଣ ଶଙ୍କର ଘୋର ରଣ । କାର୍ତ୍ତିକ ରୁକ୍ମିଣୀ ନନ୍ଦନ ॥
ବାଣାର ମନ୍ତ୍ରୀ ବେନି ଜନ । ନାମ କୁଭାଣ୍ଡ କୂପକର୍ଣ୍ଣ ॥
କୁଭାଣ୍ଡ ତୁଲେ ହଳଧର । ସମ୍ମୁଖେ କୂପକର୍ଣ୍ଣ ବୀର ॥
ବାଣାକୁମର ଶାମ ବେନି । ଯୁଦ୍ଧ କରନ୍ତି ସନ୍ୟ ଘେନି ॥
ସାତ୍ୟକି ତୁଲେ ଘୋର ରଣ । କେ କହୁ ତାହାଙ୍କ ପ୍ରମାଣ ॥
ସହସ୍ରେବେନି ବେନି ଭୁଜ । ଯେଣୁ ସାତ୍ୟକି ବିଷ୍ଣୁ ତେଜ ॥
ଦେଖି ଅଦ୍ଭୁତ ଘୋର ରଣ । ଶୂନେ ମିଳିଲେ ଦେବଗଣ ॥
ବ୍ରହ୍ମାର ତୁଲେ ଆଖଣ୍ଡଳ । ସିଦ୍ଧ ଚାରଣ ମୁନିକୁଳ ॥
ଗନ୍ଧର୍ବ ଅପସରୀ ଯକ୍ଷ । ବିମାନେ ମିଳିଲେ ପ୍ରତକ୍ଷ ॥
ଗୋବିନ୍ଦ ଦେଖି ରୁଦ୍ରଗଣ । ନିଜ କୋଦଣ୍ଡେ ଦେଇ ଗୁଣ ॥
ଭୂତ ପ୍ରମଥ ଗୁହ୍ୟଗଣ । ଗ୍ରହ ଡାକିନୀ ଯାତୁଧାନ ॥
ବେତାଳ ଆଦି ବିନାୟକ । କୋଟରୀ ରେବତୀ ଅନ୍ତକ ॥
ଜ୍ୟେଷ୍ଠ ପୁତୁନୀ ଆଦି ଯେତେ । ପ୍ରେତ ମାତୃକା ଗଣ ଯୂଥେ ॥
ପିଶାଚ କୁଷ୍ମାଣ୍ଡେଙ୍କ ବୀର । ବ୍ରହ୍ମ ରାକ୍ଷସ ମହାଘୋର ॥
ଏ ଆଦି କହିବଙ୍କି କେତେ । ରୁଦ୍ରର ବଳ ଛନ୍ତି ଯେତେ ॥
ଶାରଙ୍ଗ ଧନୁର୍ବାଣ ଭେଦି । ନିମିଷ ମାତ୍ରେ ତାହା ଛେଦି ॥
ତା ଦେଖି ରୁଦ୍ର କୋପ ଭରେ । ନିଜ କୋଦଣ୍ଡ ଧରି କରେ ॥

ତକ୍ଷଣେ ଦଶଦିଗ ରୁନ୍ଧି । କୃଷ୍ଣ ଉପରେ ବାଣ ବିନ୍ଧି ॥
ରୁଦ୍ର ନାରାଚ ଦେଖି ହରି । ଗୁଣ ଟଙ୍କାରି ନାଦ କରି ॥
ବାଣକୁ ବାଣ ପଡ଼ି ତାଳ । ଛେଦିଲେ ମଦନ ଗୋପାଳ ॥
ରୁଦ୍ର ନାରାଚ କାଟେ ହରି । ତିଳ ପ୍ରମାଣେ ଛେଦି ହରି ॥
ଲୀଳା ମାତ୍ରକେ ବାଣ ଗଲା । ତା ଦେଖି ରୁଦ୍ର କୋପ କଲା ॥
ଦହିବା ପ୍ରାୟେ ତିନିପୁର । ଶୁଣେ ବସାଇ ରୁଦ୍ରଶର ॥
ଆକର୍ଣ୍ଣ ଯାଏ ଗୁଣ ଟାଣି । ଦେଖି ହସନ୍ତି ଚକ୍ରପାଣି ॥
ବିଷ୍ଣୁ ସହସ୍ରେ ତାହା ଛେଦି । ପର୍ବତ ବାଣ ରୁଦ୍ର ବିନ୍ଧି ॥
ବଜ୍ର ପ୍ରହାରେ ଯଦୁନାଥ । ରୁଦ୍ର ପର୍ବତ କଲେ ହତ ॥
ହର ପେଷିଲେ ମେଘମାଳ । ପବନ ଶରେ ନନ୍ଦବାଳ ॥
ମେଘ ସମୂହ ଯେଣୁ ନାଶେ । ଶଙ୍କର ଅନଳ ବରଷେ ॥
ଗୋବିନ୍ଦ ଜଳ ବୃଷ୍ଟି କରି । ତକ୍ଷଣେ ଅନଳ ନିବାରି ॥
ଦେଖି ଶଙ୍କର କୋପଚିତ୍ତ । ବେଗେ ପେଷିଲେ ପଶୁପତ୍ର ॥
କୃଷ୍ଣ ପେଷିଲେ ଚକ୍ର ବେଗେ । ପଡ଼ିଲା ପଶୁପତ୍ର ଅଗେ ॥
ତକ୍ଷଣେ କଲା ଭସ୍ମାସାର । ଯୁଦ୍ଧେ ଦେଖନ୍ତି ସୁର ନର ॥
ରୁଦ୍ର ଶ୍ୱରୀରେ ଗୋପୀନାଥ । ଅନେକ ଶସ୍ତ୍ର କଲେ ଘାତ ॥
ପୁଣି ମୋହନା ଶସ୍ତ୍ର ଧରି । ଶଙ୍କର ଦେହେ କୃଷ୍ଣ ମାରି ॥
କ୍ଷଣକେ ଅମ୍ବିକା ରମଣ । ମୋହେ ତେଜିଲେ ଘୋର ରଣ ॥
ପଞ୍ଚପରାଣ କଣ୍ଠାଗ୍ରତେ । ବୃଷଭୁ ପଡ଼ି ଭୂମିଗତେ ॥
ରୁଦ୍ରଙ୍କୁ କରାଇ ମୋହନ । ଚାହିଁଲେ ଦେବକୀ ନନ୍ଦନ ॥
ବାଣାସୁରର ବଳ ଦେଖି । କାର୍ମୁକ କଲେ ଊର୍ଦ୍ଧ୍ୱମୁଖୀ ॥
ଗଦା ଖଡ଼ଗ ଘାତେ ହରି । ଦ୍ୱାଦଶ ଅକ୍ଷୋହିଣୀ ମାରି ॥
ଗୋବିନ୍ଦ କଲେ ଶଙ୍ଖ ଧ୍ୱନି । ଶବଦେ କମ୍ପଇ ମେଦନୀ ॥
କାର୍ତ୍ତିକ ପ୍ରଦ୍ୟୁମ୍ନର ତୁଲେ । ଘୋର ସମର ବେନି କଲେ ॥
ପଦ୍ମନ ବାଣେ ମୋହ ଗଲା । ମୟୂର ଘେନି ପଳାଇଲା ॥
କୁଭାଣ୍ଡ କୂପକର୍ଣ୍ଣ ବେନି । ରାମର ତୁଲେ ଧନୁ ଘେନି ॥
ଯୁଦ୍ଧେ କରନ୍ତେ ଗରୁତର । ଦେଖି କୋପିଲେ ହଳଧର ॥
ମୂଷଳ ଘେନି ବେଗେ ପିଟି । ପଡ଼ିଲେ ବେନି ବୀରେ ଲୋଟି ॥
ଅପରେ ଯେତେ ବୀର ଥିଲେ । ସମର ଛାଡ଼ି ପଳାଇଲେ ॥
ସାତ୍ୟକି ତୁଲେ ବାଣାସୁର । ନିବିଡ଼େ କରନ୍ତି ସମର ॥
ସାତ୍ୟକି ତୁଲେ ରଣ ସମ । ଯୁଦ୍ଧେ ନ ପାରି ବାଣା ଭ୍ରମ ॥
ଦେଖଇ ନିଜ ସନ୍ୟ ନାହିଁ । ସଂଭ୍ରମେ ଦଶଦିଗ ଚାହିଁ ॥
ନ ଦେଖି ବଳିର କୁମର । କୋପ ବଢ଼ିଲା ଗରୁତର ॥
ସାତ୍ୟକି ସଙ୍ଗ ରଣ ଛାଡ଼ି । ଧାଇଁଲା ରଣ ଭୂମି ମାଡ଼ି ॥
କୃଷ୍ଣ ନିକଟେ ରଥ ନେଇ । ନିଜ ଧନୁରେ ଗୁଣ ଦେଇ ॥
ଆକ୍ରୋଷି ଧନୁ ପଞ୍ଚଶତ । ଅସୁର ବଳ ଅପ୍ରମିତ ॥
ଗୁଣକେ ବେନି ବେନି ବାଣ । କୋପେ ବିନ୍ଧିଲା ଗରୁ ଟାଣ ॥
ରଣେ ଦୁର୍ଗମ ଅତି ଖରେ । ବିନ୍ଧିଲା ଗୋବିନ୍ଦ ଉପରେ ॥
ଦେଖି ତାହାର ବାଣ ବୃଷ୍ଟି । ଗୋବିନ୍ଦ କଲେ ଦୃଢ଼ ମୁଷ୍ଟି ॥
ଏକ ସନ୍ଧାନେ ଦେବରାଜ । ବିନ୍ଧିଲେ ସହସ୍ରେ ନାରାଜ ॥
ଶରକୁ ଶର ମୁଖେ ବାଜି । ଅସୁର ବାଣ ଗଲା ଭାଜି ॥
ତକ୍ଷଣେ ତିନି ଶରେ ହରି । ରଥ ସାରଥି ଅଶ୍ୱ ମାରି ॥
ବାଣା ହୋଇଲା ଭୂମିପାଦ । ଗୋବିନ୍ଦ କଲେ ଶଙ୍ଖନାଦ ॥
ତାର ଜନନୀ ପୁରେ ଥିଲା । ପୁତ୍ରର ମରଣ ଜାଣିଲା ॥
ସିଦ୍ଧ ଯୋଗିନୀ ସେ ଯୁଗତେ । ସଂଗ୍ରାମେ ମିଳିଲା ତୁରିତେ ॥
କୃଷ୍ଣର ନିକଟେ ମିଳିଲା । କ୍ରୋଟ ବିରୂପ ପ୍ରକାଶିଲା ॥
କେଶ ମୁକୁଳା ମୁଣ୍ଡେ ଚାଳେ । ଫିଟି ପଡ଼ିଲା ବସ୍ତ୍ର ତଳେ ॥
ବିବସ୍ତ୍ର ଦେଖିଣ ଶରୀର । ବିଷ୍ଣୁ ସୁମରି ଗଦାଧର ॥
ଅଧୋବଦନେ ନାରାୟଣ । ବିରଥି ହୋଇଥିଲା ବାଣ ॥
ବେଗେ ପଳାଇ ପୁରେ ପଶି । ଭୋଜନେ ଶରୀର ଆଶ୍ୱାସି ॥
ଭିତରେ ହୋଇଲା ନିଶ୍ଚିନ୍ତ । ଏମନ୍ତେ ଶୁଣ ନରନାଥ ॥
ରୁଦ୍ର ଯେ ପଡ଼ିଥିଲେ ମୋହେ । ଜ୍ଞାନ ବସିଲା ନିଜ ଦେହେ ॥
ଉଠି ସମ୍ଭାଳି କଳେବର । ଶ୍ୱରୀରୁ ଜନ୍ମ କଲେ ଜ୍ୱର ॥
ବୋଇଲେ କୃଷ୍ଣ ମାର ଯାଇ । ଧାଇଁଲା ରୁଦ୍ର ଆଜ୍ଞା ପାଇ ॥
ସ୍ୱଭାବେ ତ୍ରିଶିର ତ୍ରିପାଦ । ଚଳନ୍ତେ କଲା ଘୋର ନାଦ ॥
ଶବଦେ ଭୁବନ କମ୍ପିଲା । ବିଷ୍ଣୁର ନିକଟେ ମିଳିଲା ॥
ଅଦ୍ଭୁତ ଦେଖି ତାର ରୂପ । ଅଳପ ହାସ୍ୟେ ପଦ୍ମମୁଖ ॥
କୃଷ୍ଣ ଆଦେଶେ ବିଷ୍ଣୁଜ୍ୱର । ଶରୀରୁ ହୋଇଲା ବାହାର ॥
ଏ ବେନି ଜ୍ୱର ଏକ ମେଳେ । ସ୍ୱର୍ଗେ ଦେଖନ୍ତି ଦିଗପାଳେ ॥
କୋପେ ଯୁଝିଲେ ବେନି ଜ୍ୱର । ଶବଦେ କମ୍ପେ ତିନି ପୁର ॥
ବଜ୍ର ଶବଦେ ଘୋର ନାଦେ । ସମର କଲେ ବାହୁ ଯୁଦ୍ଧେ ॥
ବିଷ୍ଣୁର ତେଜ ମହାଘୋର । ଦେଖି ଭାଜିଲା ଶିବ ଜ୍ୱର ॥
ପଳାଇଗଲା ଅନ୍ତରୀକ୍ଷେ । ଗୋଡ଼ାଇ ବିଷ୍ଣୁ ଜ୍ୱର ପଛେ ॥
ଭ୍ରମିଲା ଦଶଦିଗ ତ୍ରାସେ । କେହି ନୋହିଲେଣ ବିଶ୍ୱାସେ ॥
ଚଉଦ ଭୁବନେ ପଶିଲା । ବାରଣ କେହି ନରଖିଲା ॥
ବିଷ୍ଣୁ ବାଇରୀ କେ ବିଶ୍ୱାସ । ଜୀବନେ ଅଛି ଯାର ଆଶ ॥
ନିରାଶେ ରୁଦ୍ର ଜ୍ୱର ଧାଇଁ । ମିଳିଲା କୃଷ୍ଣ ପାଶେ ଯାଇ ॥
ଭୟେ ରାବନ୍ତ ଘୋର ନାଦେ । ଶରଣ ଗଲା କୃଷ୍ଣ ପାଦେ ॥

ଆଗତେ କୃଷ୍ଣ ପାଦେ ଯାଇ । କର ଯୁଗଳ ଶିରେ ଦେଇ ॥
ସଭୟେ ଯୋଡ଼ି ବେନି କର । ସ୍ତୁତି କରଇ ଶିବ ଜ୍ୱର ॥
ନମଇଁ ପ୍ରଭୁ ଭାବଗ୍ରାହୀ । ଅନନ୍ତ ଶକ୍ତି ଅଟ ତୁହି ॥
ପରମ ଈଶ୍ୱର ତୁ ହରି । ଜଗତ ଆତ୍ମା ରୂପେ ପୂରି ॥
ତୋହର ନାହିଁ ଆଦି ଅନ୍ତ । କେବଳ ଆତ୍ମା ଜ୍ଞାନ ତତ୍ତ୍ୱ ॥
ସୃଷ୍ଟି ପାଳଣ ସଂହାରଣ । ତୁ ନାଥ ପରମ କାରଣ ॥
ଯେତେ ହେଁ ବ୍ରହ୍ମଲିଙ୍ଗ ମତ । ବେଦାନ୍ତେ ବୋଲନ୍ତି ପ୍ରଶାନ୍ତ ॥
କାଳ ଦଇବ କର୍ମ ଜୀବ । ଏମନ୍ତେ ପଞ୍ଚସ୍ୱର ଭାବ ॥
ତୁ ଦେବ କ୍ଷତ୍ର ପଣ ଆତ୍ମା । ବିକାରେ ପଞ୍ଚହ ମହିମା ॥
ଏ ଦୋଷ ଗୁଣ ଏକ କରି । ତୋ ମାୟା ଜୀବ ରୂପ ଧରି ॥
ଅଙ୍କୁରେ ଫଳଇ ବ୍ରହ୍ମାଣ୍ଡ । ଏଣେ ବିଳଗ ତୋର ପିଣ୍ଡ ॥
ଲୀଳାଏ ଉତପନ୍ନ ହୋଇ । ଭୋ ନାଥ ଭାବେ ବହୁ ଦେହୀ ॥
ଦେବତା ସାଧୁ ଲୋକ ଧର୍ମ । ଯଜ୍ଞାଦି ଯେତେ ଶୁଭ କର୍ମ ॥
ଏ ଆଦି ଯେତେ ଧର୍ମ ତତ୍ତ୍ୱ । ଏହାଙ୍କ ରକ୍ଷଣେ ତୁ ହେତୁ ॥
ତୋହର ତେଜ ରକ୍ଷିଜ୍ୱର । ଦୁଃସହ ଘୋର ଭୟଙ୍କର ॥
ତୋହର ତେଜେ ଦୁଃଖୀ ହୋଇ । ବ୍ରହ୍ମାଣ୍ଡେ ଭ୍ରମି ଶ୍ରମ ପାଇ ॥
ତୋ ପାଦେ ପଶିଲି ଶରଣ । ତୁ ମୋତେ ରଖ ନାରାୟଣ ॥
ଯାବତ ଜୀବ ତୋର ପାଦେ । ଶରଣ ନପଶେ ପ୍ରମାଦେ ॥
ତାବତ ତାପତ୍ରୟେ ଦୁଃଖୀ । କର୍ମ ବନ୍ଧନେ ଉପଲକ୍ଷି ॥
ଏମନ୍ତ ଜ୍ୱର ବାକ୍ୟ ଶୁଣି । ହରଷ ଚିତ୍ତେ ଯଦୁମଣି ॥
ତ୍ରିଶିର ଶୁଣ ମୋ ବଚନ । ମୁଁ ତୋତେ ହୋଇଲି ପ୍ରସନ୍ନ ॥
ତୋତେ ମୋ ଜ୍ୱର ଭୟେ ନାହିଁ । ପ୍ରସନ୍ନେ କହିଲହିଁ ମୁହିଁ ॥
ତୋହର ମୋହର ସମ୍ପଦ । ଶୁଣନ୍ତେ ଖଣ୍ଡିବ ପ୍ରମାଦ ॥
ଜ୍ୱର ନଲାଗୁ ତା ଶରୀର । ସୁସତ୍ୟ ବଚନ ମୋହୋର ॥
ଏମନ୍ତେ କୃଷ୍ଣ ମୁଖୁ ଶୁଣି । ଜ୍ୱର ନମିଲା ଚକ୍ରପାଣି ॥
ଆନନ୍ଦେ ଗଲା ଶିବ ଜ୍ୱର । ଏବେ ହୋ ଶୁଣ ନୃପବର ॥
ବାଣା ଯେ ନିଜ ପୁରେ ଥିଲା । ପୁଣି ସଂଗ୍ରାମେ ବିଜେ କଲା ॥
ରଥେ ବସିଲା କୋପ ଭରେ । ଅଧା ସହସ୍ର ଧନୁ କରେ ॥
ସହସ୍ରେ ଭୁଜେ ମହାରୋଷେ । ବାଣ ବରଷେ ଦଶଦିଶେ ॥
ଆୟୁଧ ନା ନା ରୂପ ଧରି । ମିଳିଲା ଯହିଁ ନରହରି ॥
ବାଣ ବରଷେ ମହାଘୋର । ଯେହ୍ନେଣ ଗଗନୁ ଜଳଧାର ॥
ଦେଖି ତାହାର ବାଣ ବୃଷ୍ଟି । କୃଷ୍ଣ ଚାହିଁଲେ ଉର୍ଦ୍ଧ୍ୱ ଦୃଷ୍ଟି ॥
ସୁଦରଶନ ଘେନି ହସ୍ତେ । ଆସନ୍ତେ ପ୍ରହାରିଲେ ପଥେ ॥
ବାଣ ବରଷେ ଅତି ବେଗେ । କୋପେ ଛେଦିଲେ ଶୂନ୍ୟ ମାର୍ଗେ ॥

ବଜ୍ର ଶବଦ ପ୍ରାୟେ ପୂରି । କୋଟି ତପନ ରୂପ ଧରି ॥
ପଡ଼ିଲା ବାଣାସୁର କନ୍ଧେ । ଭୁଜ ଛେଦଇ ଘୋର ନାଦେ ॥
ବାମ ଦକ୍ଷିଣେ ବେଗେ ପଡ଼େ । ବୃକ୍ଷରୁ ପତ୍ର ଯେହ୍ନେ ଝଡ଼େ ॥
ବାଣାର ଭୁଜ ନାଶ ଦେଖି । ଶଙ୍କର ସମର ଉପେକ୍ଷି ॥
ମିଳିଲେ ଗୋବିନ୍ଦ ନିକଟେ । ଦେବେ ଦେଖିଲେ ଶୂନ୍ୟ ବାଟେ ॥
ଭଗତ ବନ୍ଧୁ ଭୂତନାଥ । ଶିରେ ନିବେଶି ପଦ୍ମହସ୍ତ ॥
ବୋଲନ୍ତି ଚକ୍ରଯୁଧେ ଚାହିଁ । ତୁ ନାଥ ସର୍ବ ଭୂତ ଦେହୀ ॥
ଅଶେଷ ପରମ କାରଣ । ତୁ ବ୍ରହ୍ମପୁରୁଷ ପ୍ରମାଣ ॥
ପରମ ଜ୍ୟୋତି ରୂପ ତୋର । ଚର୍ମ ଲୋଚନେ ଅଗୋଚର ॥
ନିର୍ମଳ ଆତ୍ମା ଯୋଗୀ ଜନେ । ତୋତେ ଭାବନ୍ତି ଶୁଦ୍ଧ ମନେ ॥
ତୋତେ ଦେଖନ୍ତି ଶୂନ୍ୟ ମୟେ । ତୁ ଆତ୍ମା ରୂପେ ସର୍ବ ଦେହେ ॥
ତୋହର ନାଭୀ ଅନ୍ତରୀକ୍ଷ । ବଦନୁ ଅନଳ ପ୍ରତକ୍ଷ ॥
ଆପ ତୋହୋର ରେତସାର । ଗଗନେ ଘେନି ତୋର ଶିର ॥
ଦିଗେ ଯେ ତୋହୋର ଶ୍ରବଣ । ଏ ବସୁମତୀ ତୋ ଚରଣ ॥
ତୋହର ମନ ନିଶାକର । ରବି ତୋ ନୟନୁ ବାହାର ॥
ମୁଁ ତୋର ଆତ୍ମାର ନିକଟ । ସର୍ବ ଜଳଧି ତୋର ପେଟ ॥
ତୋହର ଭୁଜ ଆଖଣ୍ଡଳ । ତୋ ତନୁ ରୁଦ୍ର ଦ୍ରୁମ ମାଳ ॥
ଜୀମୂତ ଗଣେ ତୋର କେଶ । ବିରଞ୍ଚି ସୁମତି ପ୍ରକାଶ ॥
ତୋର ବୃଷଣ ପ୍ରଜାପତି । ତେଣୁ ନଲାଗେ ତୋର ଗତି ॥
ଧର୍ମ ତୋ ହୃଦରୁ ପ୍ରକାଶ । ଯେଣୁ ତୁ ବିରାଟ ପୁରୁଷ ॥
ଜଗତେ ତୋର ଅବତାର । ଧର୍ମ ରକ୍ଷଣ ଚକ୍ରଧର ॥
ଜଗତ ହିତେ ତୋର ଦେହୀ । ତୋ ମାୟା ନ ଜାଣନ୍ତି କେହି ॥
ତୋ ଅନୁଭବେ ଆମ୍ଭେ ଥାଇ । ଏ ସପ୍ତଭୁବନ ଭିଆଇ ॥
ସ୍ଥିତି ପାଳଣ ସଂହାରଣ । ତୋର ଆଜ୍ଞାରେ ନାରାୟଣ ॥
ଆଦି ପୁରୁଷ ନାଥ ତୁହି । ଦ୍ୱିତୀୟ ଭାବ ତୋର ନାହିଁ ॥
ଜ୍ଞାନ ପ୍ରକାଶ ସୂକ୍ଷ୍ମ ଜ୍ୟୋତି । ହେତୁ ଅହେତୁ ତୁ ଶ୍ରୀପତି ॥
ପ୍ରକାଶ ହେଉ ଯଥାବିଧି । ତୋ ମାୟା ସକଳ ପ୍ରସିଦ୍ଧି ॥
ସୂର୍ଯ୍ୟର ତହୁଁ ଛାୟା ଜାତ । ଛାୟାରେ ଛନ୍ନ ଛାୟାକାନ୍ତ ॥
ଛାୟାର ବଳେ ନାନା ରୂପ । ତୋର ଭିଆଣ ମାୟା କଳ୍ପ ॥
ତୋ ଗୁଣେ ନୋହୁ ତୁ ବିଶ୍ୱାସ । ରବି ଯେସନେ ସ୍ୱ ପ୍ରକାଶ ॥
ଆତ୍ମା ପ୍ରକାଶେ ଗୁଣ ନାଶେ । ତପନ ଯେସନେ ଆକାଶେ ॥
ତୁ ନାଥ ନିତ୍ୟ ଶୁଦ୍ଧ ଜ୍ଞାନ । ମହା ମହିମା ଭଗବାନ ॥
ତୋର ମାୟାରେ ବୁଦ୍ଧି ନାଶି । ଆମ୍ଭର ଗଳେ ମୋହ ଫାଶି ॥
ପୁତ୍ର କଳତ୍ର ଗୃହ ଧନେ । ବନ୍ଧନ ତୋହର ବଚନେ ॥

ଦୁଃଖ ସାଗରେ ମୂଢ଼ ମତୀ । ବୁଡ଼ନ୍ତି ପୁଣ ପ୍ରକାଶନ୍ତି ॥
ଏମନ୍ତେ କରୁଥାନ୍ତି କେଳି । ତୋର ମାୟାରେ ବନମାଳୀ ॥
ମନୁଷ ଦେହ ପଦ୍ମନାଭ । ନିଶ୍ଚୟେ ଦେବଙ୍କୁ ଦୁର୍ଲଭ ॥
ଏ ଦେହ ପାଇ ଜ୍ଞାନ ହାରି । ତୋତେ ନ ଜାଣେ ଦଇତାରି ॥
ଭାବ ତୋ ଚରଣ ନ ସଞ୍ଚେ । ସେ ଦୁଃଖୀ ନିଜ ଆତ୍ମା ବଞ୍ଚେ ॥
ଆତ୍ମା ଈଶ୍ୱର ପ୍ରିୟ ତୁହି । ଯେ ପ୍ରାଣୀ ତୋତେ ପାସୋରଇ ॥
ଇନ୍ଦ୍ରିୟ ଅର୍ଥେ ବିପରୀତ । ହସ୍ତରୁ ପକାଇ ଅମୃତ ॥
ବିଷ ଭକ୍ଷଇ ସ୍ୱାଦୁମଣି । ତୋ ମାୟାଗୁଣେ ଚକ୍ରପାଣି ॥
ମୁହିଁ ବିରଞ୍ଚି ମୁନି ଦେବା । ନିର୍ମଳ ଚିତ୍ତେ ତୋତେ ସେବା ॥
ଜନ୍ତୁ ସଂସାରେ ଦେହ ବହି । ଜୀବନ ଇଷ୍ଟ ଦାତା ତୁହିଁ ॥
ସ୍ଥିତି ପାଦଣ ଅନ୍ତ ହେତୁ । ସମ ପ୍ରଶାନ୍ତ ମିତ୍ରକେତୁ ॥
ତୁ ଆତ୍ମା ଦେବତା ତ୍ରେଲୋକ୍ୟ । ତୋ ତହୁଁ ନାହିଁ ଅନ୍ୟ ଏକ ॥
ତୁ ଏ ଜଗତ ଆତ୍ମା କେତୁ । ଜନ୍ମ ମରଣ ବନ୍ଧି ହେତୁ ॥
ତୋତେ ଭଜିଲେ ନରନାରୀ । ତୋ ମାୟା ବନ୍ଧନୁ ନିସ୍ତରି ॥
ଏ ବାଣାସୁର ଭକ୍ତ ମୋର । ପ୍ରିୟ ସୁହୃଦ ଅନୁଚର ॥
ଏହାର ତପେ ତୋଷ ହୋଇ । ଅଭୟ ବର ଦେଇ ଛଇଁ ॥
ସେ ବର ପ୍ରତିପାଳ ତୁହି । ମୋ ଭାବେ ତୋଷ ଯାକୁ ହୋଇ ॥
ଅସୁରପତି ପ୍ରହରାଜ । ବଞ୍ଚିଲା ଅନେକ ପ୍ରମାଦ ॥
ତୋର ପ୍ରସାଦେ ଭାବଗ୍ରାହୀ । ମୋର ସେବକ ରଖ ତୁହି ॥
ଏମନ୍ତେ ଶମ୍ଭୁବାକ୍ୟ ଶୁଣି । ହସି ବୋଇଲେ ଚକ୍ରପାଣି ॥
ଭୋ ଦେବ ତୋହର ବଚନ । ଅବଶ୍ୟ କରିବି ପାଳଣ ॥
ଯେମନ୍ତ ଆଜ୍ଞା ଦେବୁ ମୋତେ । କରିବି ତୋର ଅନୁମତେ ॥
ଏ ମୋର ହସ୍ତେ ନ ମରଇ । ମର୍ମେ ଜାଣଇ ଏହା ମୁହିଁ ॥
ମୋର ଭଗତ ପ୍ରହ୍ଲାଦ । ତାକୁ ନଲାଗେ ପରମାଦ ॥
ତାର କୁମର ବୈରୋଚନ । ବଳି ତାହାର ବୀର୍ଯ୍ୟେ ଜନ୍ମ ॥
ବଳିର ପୁତ୍ର ବାଣାସୁର । ଏଣୁ ସେ ଅବଧ୍ୟ ମୋହର ॥
ପ୍ରହ୍ଲାଦର ବଂଶ ଯେଣୁ । ଏହାକୁ ନମାରଇ ତେଣୁ ॥
ପୂର୍ବେ ମୁଁ ଅଛି ବରଦେଇ । ତୋ ବଂଶ ନମାରିବି ମୁହିଁ ॥
ଏହାର ଗର୍ବ ନାଶିବାରେ । ଚକ୍ର ପେଷିଲି କୋପ ଭରେ ॥
ସହସ୍ରେ ଭୁଜ ଛେଦି କରି । ଦ୍ୱାଦଶ ଅକ୍ଷୌହିଣୀ ମାରି ॥
ଭୁଜ ସହିତ ଭୂମି ଭାର । ବିନାଶ ଅର୍ଥେ ଅବତାର ॥
ଏବେ ମୁଁ କଲି ଦେବକାର୍ଯ୍ୟ । ଥାଉ ଏହାର ଚାରିଭୁଜ ॥
ଅଜରାମର ପ୍ରାଣ ହେଉ । ତୋର ସେବକ ସୁଖେ ଥାଉ ॥
ଅଭୟ ହେଉ ଏ ଅସୁର । ଏମନ୍ତେ କୃଷ୍ଣ ଦିଲେ ବର ॥
ଏମନ୍ତ କୃଷ୍ଣ ମୁଖୁ ଶୁଣି । ଅସୁର ନାମେ ଚକ୍ରପାଣି ॥
ବଜାଇ ବାଦ୍ୟ ନାନା ରଙ୍ଗେ । ଉଷାକୁ ଅନିରୁଦ୍ଧ ସଂଗେ ॥
କନ୍ୟା ସହିତେ ସଜ କଲା । କୃଷ୍ଣ ନିକଟେ ଆଣି ଦିଲା ॥
ଯାଦବ ବଳ ମଧ୍ୟେ ହରି । ବର କନ୍ୟାଙ୍କୁ ରଥେ ଭରି ॥
ରୁଦ୍ରଙ୍କୁ କରି ନମସ୍କାର । ଦ୍ୱାରକା ବିଜେ ଦାମୋଦର ॥
କୃଷ୍ଣ ବିଜୟେ ଯଦୁପୁରୀ । ବାଜଇ ମଙ୍ଗଳ ମହୁରୀ ॥
ଦିବ୍ୟ ବସନ ଅଳଙ୍କାର । ସୁବେଶ କରି କନ୍ୟାବର ॥
ଅଧିକେ ଅଳଙ୍କାର ଭରି । ମଙ୍ଗଳେ ଗାବନ୍ତି ସୁନ୍ଦରୀ ॥
ତୋରଣା ବାନ୍ଧି ଉଚ୍ଚ ବୃକ୍ଷେ । ମାର୍ଜ୍ଜନା କଲେ ଦାଣ୍ଡ ରାକ୍ଷେ ॥
ମଙ୍ଗଳ ଦ୍ରବ୍ୟ କରେ ଘେନି । ଆନନ୍ଦେ ମିଳିଲେ କାମେନୀ ॥
ଶଙ୍ଖ ଦୁନ୍ଦୁଭି ବାଦ୍ୟ ସ୍ୱରେ । ଆଶିଷ କଲେ କନ୍ୟାବରେ ॥
ଆନନ୍ଦେ ନୃତ୍ୟ ଗୀତ ନାଦ । ବିଜୟେ ଦ୍ୱାରକା ସମ୍ପଦ ॥
ଏମନ୍ତେ ହରିହର ରଣ । ଯେ କରେ ପଠନ ଶ୍ରବଣ ॥
ପ୍ରଭାତ କାଳେ ପ୍ରତିଦିନେ । ଯେ ନର ଚିନ୍ତେ ଶୁଦ୍ଧ ମନେ ॥
ତାହାକୁ ନାହିଁ ପରାଭବ । ନିରତେ ରଖନ୍ତି ମାଧବ ॥
କହିଲା ବିପ୍ର ଜଗନ୍ନାଥ । ସୁଜନେ ହିତେ ଭାଗବତ ॥
କୃଷ୍ଣ ମଙ୍ଗଳ ଶୁଦ୍ଧବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ଦଶମସ୍କନ୍ଧେ ଅନିରୁଦ୍ଧ ଉଷା ହରଣେ ନାମ ଅଷ୍ଟଷଷ୍ଟିତମୋଽଧ୍ୟାୟ ।*

## ଊନସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନେ ସାବଧାନେ । ଦ୍ୱାରକାପୁରେ ଏକ ଦିନେ ॥
ଯଦୁକୁମର ଛନ୍ତି ଯେତେ । କହିବି ଏକେ ଏକେ କେତେ ॥
ପଦ୍ମନ ଶାମ୍ବ ଆଦି ମିଳି । ବନେ କରନ୍ତି ନାନା କେଳି ॥
ଅନେକ ବେଳ କ୍ରୀଡ଼ା କରି । ତୃଷିତେ ଲୋଡ଼ୁଛନ୍ତି ବାରି ॥
ଏମନ୍ତେ ଜଳପାନ ସଧେ । କୂପେ ଦେଖିଲେ ବନ ମଧ୍ୟେ ॥
ସଂଭ୍ରମେ କୂପ ତଟେ ମିଳି । ଚାହାଁନ୍ତି ନୟନ ନିରୋଳି ॥
ବୃକ୍ଷ ଗହନ ଅନ୍ଧକାରେ । ଅଦ୍ଭୁତ ଜନ୍ତୁ ତା ଭିତରେ ॥
ଦିଶଇ ପର୍ବତ ସକାଶ । ଦେଖି ଚିହ୍ନିଲେ କୃକଳାସ ॥
ବିସ୍ମିତେ ମୁଖେ ମୁଖ ଚାହିଁ । ବୋଲନ୍ତି ଅଙ୍ଗୁଳି ଦେଖାଇ ॥
ଦଣ୍ଡେ ବିଚାରି ଯତ୍ନ କରି । ବୋଲନ୍ତି ଦେଖିବା ଉଦ୍ଧରି ॥

ଏତେ ବିଚାରି ଦୟା ବହି । ଲାଙ୍ଗୁଡ଼େ ଦଉଡ଼ି ଲଗାଇ ॥
ବୃକ୍ଷ ବକଳ ଚର୍ମ ଫାଶେ । ନିବିଡ଼େ ବାନ୍ଧିଲେ ବିଶ୍ୱାସେ ॥
ଟାଣନ୍ତେ ଧରି ଜଣେ ଜଣ । ନଚଳେ ତାହାର ଚରଣ ॥
ଦେଖି ଚକିତ କୃଷ୍ଣ ବାଳେ । ସର୍ବେ ଟାଣିଲେ ଏକାବେଳେ ॥
ତିଳେ ନ ଚଳେ କୃକଳାସ । ଟାଣି ପାଇଲେ ବହୁତ୍ରାସ ॥
ପୁଣ ଟାଣନ୍ତି ବାହୁବଳେ । କେବେହେଁ ଚରଣ ନଚଳେ ॥
ଏମନ୍ତେ ବହୁ କ୍ଲେଶ ପାଇ । ଏକ ଆରେକ ମୁଖ ଚାହିଁ ॥
ବୋଲନ୍ତି ଦେଖ ବିପରୀତ । ଆମ୍ଭର ବଳ ପ୍ରାଣ ହତ ॥
ଟାଣନ୍ତେ ତିଳେ ନ ଚଳିଲା । ଲଜ୍ଜା ତ ମରଣୁ ବଳିଲା ॥
କୃଷ୍ଣର ବୀର୍ଯେ ଆମ୍ଭେ ଜନ୍ମ । ଉପହାସିବେ ସର୍ବ ଜନ ॥
ରିପୁ ହସିବେ ଏହା ଶୁଣି । କିବା ବୋଲିବେ ଚକ୍ରପାଣି ॥
ରୋହିଣୀସୁତ ଶୁଣି ଏହା । ଆମ୍ଭରେ ହୋଇବେ ନିର୍ଦ୍ଦୟା ॥
ପୁରେ ହସିବେ ବଧୂଜନେ । ଏମନ୍ତ ଭାବି ଭୟମନେ ॥
ନିରାଶେ କୃଷ୍ଣପାଶେ ଯାଇ । ବୋଲନ୍ତି ଶିରେ କର ଦେଇ ॥
ଭୋ ନାଥ ଶୁଣ ସାବଧାନେ । ଅଦ୍ଭୁତ କଥା ଉପବନେ ॥
ବନ ଗହନେ ଅନ୍ଧ କୂପ । ତା ମଧ୍ୟେ କୃକଳାସ ରୂପ ॥
ପର୍ବତ ପ୍ରାୟ ତ ଶରୀର । ନଚଳେ ଅତି ଗୁରୁତର ॥
ଉଧରି ନ ପାରିଲୁ ବଳେ । ଟାଣନ୍ତେ ନ ଚଳଇ ତିଳେ ॥
ଏ ବଡ଼ ଲଜ୍ଜା ବିପରୀତ । ଶୁଣି ହସିଲେ ଯଦୁନାଥ ॥
ବୋଲନ୍ତି ଚାଲ ଯିବା ବନେ । ପୁତ୍ରେ ଧାଇଁଲେ ତୋଷ ମନେ ॥
ଏମନ୍ତେ ଘୋର ବନେ ଯାଇ । କୂପେ ଚାହିଁଲେ ଭାବଗ୍ରାହୀ ॥
ଦେଖିଲେ ଘୋର ଅନ୍ଧକାର । ନିର୍ଜ୍ଜଳ ତୃଣ ମହାଘୋର ॥
ଅଦ୍ଭୁତ କୃକଳାସ କାୟେ । ଦିଶଇ ଗିରିଶୃଙ୍ଗ ପ୍ରାୟେ ॥
ଅଧୋବଦନେ ଉର୍ଦ୍ଧ୍ୱେ ଲାଞ୍ଜ । ଦେଖି ଚକିତ ଯଦୁରାଜ ॥
ଦୟାସାଗର ନରହରି । ତା ଲାଞ୍ଜ ବାମ କରେ ଧରି ॥
କୂପୁଁ ଉଦ୍ଧରି ଦାମୋଦରେ । ମାଳୀ ଯେସନେ ମାଳାଧରେ ॥
କୂଳେ ରଖନ୍ତେ ହୃଷୀକେଶ । ପ୍ରାଣ ଛାଡ଼ିଲା କୃକଳାସ ॥
ଯେଣୁ ଲାଗିଲା କୃଷ୍ଣ କର । ପାଇଲା ସୁଦିବ୍ୟ ଶରୀର ॥
ଉଦୟଗିରି ମଧ୍ୟେ ଶଶୀ । ଯେସନେ ଗଗନେ ପ୍ରକାଶି ॥
ଶୁଦ୍ଧ ସୁବର୍ଣ୍ଣ ଦେହ ଝଳି । ଜଳଦ ମଧ୍ୟେ କି ବିଜୁଳି ॥
ଦିବ୍ୟ ବସନ ରତ୍ନମାଳା । ଦେଖି ଚକିତ ନନ୍ଦ ବଳା ॥
ତାହା ଜାଣନ୍ତି କୃଷ୍ଣ ସୁଖେ । ବିଖ୍ୟାତ ଅର୍ଥେ ନରଲୋକେ ॥
ତାର ବଦନ ଚାହିଁ ହସି । ପୁଚ୍ଛନ୍ତି ପ୍ରଭୁ ବ୍ରହ୍ମରାଶି ॥
ତୁ ମହାଭାଗ୍ୟ ପୁଣ୍ୟ ଦେହୀ । ଦେବତା ପ୍ରାୟେ ମୁଁ ମଣଇ ॥
କହତୁ କେବଣ ପୁରୁଷ । କିମ୍ପା ହୋଇଲୁ କୃକଳାସ ॥
ଏ ପାପେ ପଶି ଭୋଗକରି । ଶରୀର ଅନ୍ଧକୂପେ ଭରି ॥
ଏ କୂପେ ଅଛୁ କେତେକାଳ । କହ ନକରି ଅବହେଳ ॥
ତୁ ତ ନୋହୁନା ପାପୀ ଜନ । କହତୁ କେବଣ ବିଧାନ ॥
ଶୁଣି ତା ଯେବେ ଯୋଗ୍ୟ ମୁହିଁ । କହ ନିର୍ଭୟ ଚିତ୍ତ ହୋଇ ॥
ଏମନ୍ତେ କୃଷ୍ଣ ବୋଲ ଶୁଣି । ଆନନ୍ଦେ କହ ନୃପମଣି ॥
ଶିରେ ମୁକୁଟ ରବି ପ୍ରାୟେ । ନମଇ ଗୋବିନ୍ଦର ପାୟେ ॥
ଭୋ ନାଥ ନୃଗ ରାଜା ମୁହିଁ । ଇକ୍ଷ୍ୱାକୁ ବଂଶେ ଜାତ ହୋଇ ॥
ଜଗତ ମଧ୍ୟେ ଯେତେ ଦାନୀ । ତାହାଙ୍କ ଅଗ୍ରେ ମୋତେ ମାନି ॥
ତୁ ତାହା କର୍ଣ୍ଣେ ଅଛୁ ଶୁଣି । ମୁଁ କି କହିବି ପରିମାଣି ॥
ସର୍ବ ଭୂତଙ୍କ ଆତ୍ମା ତୁହିଁ । ଅଶେଷ ଜ୍ଞାନ ତୋର ତହିଁ ॥
ତୁ ନାଥ ଭଲେ ଏହା ଜାଣୁ । କେବଳ ମୋତେ ପରମାଣୁ ॥
ତଥାପି ତୋର ଆଜ୍ଞା ଶିରେ । ଘେନି କହିବି ତୋ ଛାମୁରେ ॥
ଭୋ ନାଥ ଶୁଣ ସାବଧାନ । ଅନେକ ଦେଲି ଗୋରୁଦାନ ॥
ସଂଖ୍ୟା କରିବି ମୁହିଁ କେତେ । ଶୁଣ ଉପମା କହି ତୋତେ ॥
ଭୂମିରେ ଅଛି ଯେତେ ବାଲି । ଗଗନେ ଉଦେ ତାରାବଳୀ ॥
ବରଷା ଯେତେ ଧାରା ହୋଇ । ଏହି ପ୍ରମାଣେ ଦେଲି ଗାଈ ॥
କ୍ଷୀର ସମ୍ପୂର୍ଣ୍ଣେ ରୂପକାନ୍ତି । ସାଧୁ ତରୁଣୀ ବତ୍ସାବନ୍ତି ॥
ସୁନ୍ଦର ଶୁକ ପୀକବର୍ଣ୍ଣ । ସୁବର୍ଣ୍ଣ ଶୃଙ୍ଗ ଗୁଣ ପୂର୍ଣ୍ଣ ॥
ଉଚିତ ଧନେ ଏହା କିଣି । କ୍ଷୁରେ ରଜତ ପରିମାଣି ॥
ଦୋହନ ଅର୍ଥେ କାଂଶପାତ୍ରେ । ବସ୍ତ୍ର କୁସୁମ ମାଳା ଗାତ୍ରେ ॥
ଗନ୍ଧ ଚନ୍ଦନ ମାଳେ ସାଜି । ସଉର୍ଯ୍ୟେ ବିପ୍ର ପାଦେ ପୂଜି ॥
ବରିଲି ଯେମନ୍ତ ବ୍ରାହ୍ମଣ । ଭୋ ନାଥ ସାବଧାନେ ଶୁଣ ॥
ଯୁବା ସୁଗୁଣ ସାଧୁ ଶୀଳ । ଦରିଦ୍ର କୁଟୁମ୍ବ ଗହଳ ॥
ଉତ୍ତମ ବ୍ରହ୍ମ ବ୍ରତ ଦୀକ୍ଷା । ବେଦାଧ୍ୟୟନ ମନ୍ତ୍ରଶିକ୍ଷା ॥
ଏମନ୍ତେ ବିପ୍ର ସାବଧାନ । ସୁପୁଣ୍ୟ କାଳେ ଦେଲି ଦାନ ॥
ଅଧିକେ ଦେଇଅଛି ଯେତେ । ଶୁଣ କହିବି ତୋ ଅଗ୍ରତେ ॥
ଗୋ ଚର୍ମ ଅର୍ଥେ ଭୂମି ଦାନ । ସୁବର୍ଣ୍ଣ ଶୁଦ୍ଧ ଆୟତନ ॥
ଗଜ ତୁରଙ୍ଗ କନ୍ୟା ଦାସୀ । ତିଳ ପର୍ବତ ଧନ ରାଶି ॥
ବିପୁଳ ଗୃହ ସୁଖ ଶଯ୍ୟା । ବସ୍ତ୍ର ଭୂଷଣ ବଳି ଭୋଜ୍ୟା ॥
ଯଜ୍ଞ ସୁବର୍ଣ୍ଣ ରଥ ଯେତେ । ସଂଖ୍ୟା ତା କହିବି ମୁଁ କେତେ ॥
ଦେବ ମନ୍ଦିର ଜଳ ଅନ୍ନ । ସୁମିଷ୍ଟେ ପବିତ୍ର ଭୋଜନ ॥
ଏମନ୍ତେ ନାନା ଦାନ କରି । କିଞ୍ଚିତ ପାପ ମୁଁ ଆଚରି ॥
ବ୍ରାହ୍ମଣ ଧେନୁ ମୋର ଗୋଷ୍ଠେ । ବଳେ ପଶିଲା ସଙ୍ଗ ଭ୍ରଷ୍ଟେ ॥

ଅଜ୍ଞାନେ ରଜନୀ ପ୍ରଭାତେ । ଦାନ ମୁଁ ଦେଲି ବିପ୍ରହସ୍ତେ ॥
ବ୍ରାହ୍ମଣ ଧେନୁ ଘେନି ଯାନ୍ତେ । ବିପ୍ର ଭେଟିଲା ରାଜପଥେ ॥
ତାହାର ଧେନୁ ଚିହ୍ନି ବଳେ । ତକ୍ଷଣେ ଧଇଲା ଲାଙ୍ଗୁଳେ ॥
ବୋଲଇ ମୋର ଧେନୁ ଏହି । ହଜିଲା ଲୋଡୁଥିଲି ମୁହିଁ ॥
ଶୁଣି ବ୍ରାହ୍ମଣ କୋପଭରେ । ବୋଲଇ ପୁରୁଷ ଉତ୍ତରେ ॥
ପ୍ରତକ୍ଷେ ଘେନି ଅଛି ଦାନ । ଏବେ ବଳିଲା ଅନୁମାନ ॥
ତିଳ ତୁଳସୀ କୁଶ ହସ୍ତେ । ଜଳହିଁ ଦେଖତୁ ପ୍ରତକ୍ଷେ ॥
ଏ ଧେନୁ କେମନ୍ତ ତୋହର । ଶୁଣି ବୋଲଇ ବିପ୍ରବର ॥
ଧେନୁ ଶରୀରେ ମୋର ଲେଖ । ତୋହର ଚକ୍ଷୁ ଥିଲେ ଦେଖ ॥
ଏମନ୍ତ ବୋଲି ଶୃଙ୍ଗ ଧରି । ନିଜ ଭୁବନେ ଅନୁସରି ॥
ବ୍ରାହ୍ମଣ ଧରେ ଲାଙ୍ଗ ଧେନୁ । ଏମନ୍ତେ ଉପୁଜିଲା ମନ୍ୟୁ ॥
କଳି ଭିଆଇ ପଥେ ବାଦେ । ପ୍ରହାର କଲେ ହସ୍ତେ ପାଦେ ॥
ଏମନ୍ତେ ଉଚ୍ଚ ବାଚ ହୋଇ । ମିଳିଲେ ମୋର ପୁର ଯାଇ ॥
ବ୍ରାହ୍ମଣେ ମୋର ମୁଖ ଚାହିଁ । ବୋଇଲେ କୋପ ଭର ହୋଇ ॥
ତୁ ମୋର ହସ୍ତେ ଧେନୁ ଦେଇ । ଏବେ ହରିଲୁ ତୁ କିପାଇଁ ॥
ଉତ୍ସର୍ଗ ଦାନ ଯେହୁ ହରେ । ଅନ୍ତେ ନରକ ଭୋଗ କରେ ॥
ଯେ ବିପ୍ର ପ୍ରତିଗ୍ରହ ଆଗେ । ସେହୁ ପଡ଼ଇ ଦୁଃଖ ଭାଗେ ॥
ଏମନ୍ତ ବିପ୍ରବାକ୍ୟ ଶୁଣି । ବଜ୍ର ପଡ଼ିଲା ପ୍ରାୟେ ମଣି ॥
ମନେ ପାଇଲି ଗରୁ ଭୟେ । କାତରେ କମ୍ପେ ମୋର କାୟେ ॥
ଉଭୟ ସଙ୍କଟେ ମୁଁ ପଡ଼ି । କର ଯୁଗଳ ଶିରେ ଯୋଡ଼ି ॥
ବେନି ବିପ୍ରଙ୍କ ପାଦେ ଗଡେ । ପ୍ରବୋଧ କଲି ନା ନା ମତେ ॥
ଲକ୍ଷେକ ଧେନୁ କଛି କରି । ବୋଇଲି ବିପ୍ର ପାଦ ଧରି ॥
ଭୋ ବିପ୍ର ଲକ୍ଷେ ଧେନୁ ନିଅ । ଏହାଙ୍କ ଧେନୁ ତୁମ୍ଭେ ଦିଅ ॥
ନ ଜାଣି କଲି ଏଡ଼େ କର୍ମ । ହେ ବିପ୍ର ମୋର ରଖ ଧର୍ମ ॥
ନରକ ପଥୁଁ ରଖ ମୋତେ । ଏ ଧେନୁ ଦିଅ ଅନୁମତେ ॥
ଶୁଣି ବୋଇଲେ ପ୍ରତିଗ୍ରାହୀ । ଲକ୍ଷେକେ ମୋର କାର୍ଯ୍ୟ ନାହିଁ ॥
ଏମନ୍ତ ବୋଲି ବିପ୍ର ଗଲା । ସେ ଧେନୁ ପ୍ରତିଗ୍ରାହୀ ନେଲା ॥
ଅଧିକ ନେଲା ଏକ ଧେନୁ । ତା ଦେଖି ବିପ୍ର ହେଲା ମନ୍ୟୁ ॥
ବୋଇଲି ଲକ୍ଷେ ନିଅ ତୁହି । ଶୁଣି କୋପିଲା ମତେ ଚାହିଁ ॥
ବୋଇଲା ପୌରୁଷ ବଚନ । ନିନ୍ଦା ତୁ କଲୁ ମହାଜନ ॥
କୋପେ ଚଳିଲା ନିଜ ଘର । ନିତ୍ୟେ ଆସଇ ମୋର ପୁର ॥
ପ୍ରତି ଦିବସେ ବୋଧ କରି । ବୋଇଲି ବିପ୍ର ପାଦ ଧରି ॥
କୋପେ ନ ଶୁଣେ ମୋ ବଚନ । ଏମନ୍ତେ ଗଲା କେତେ ଦିନ ॥
କାଳେ ମୁଁ ଛାଡ଼ିଲି ଜୀବନ । ଏମନ୍ତେ ଶୁଣ ଭଗବାନ ॥

ମରଣ କାଳେ ଯମଦୂତେ । ମିଳିଲେ ମୋହର ଅଗ୍ରତେ ॥
ବନ୍ଧନ କରି ମୋର ଦେହୀ । ଯମ ନିକଟେ ଦେଲେ ନେଇ ॥
ତକ୍ଷଣେ ରବିର ନନ୍ଦନ । ଅନେକ କଲା ମୋତେ ମାନ୍ୟ ॥
ପୁଣ୍ୟ ପାତେକ ବିଚାରିଲା । ଆନନ୍ଦେ ମୋତେ ଆଜ୍ଞା ଦେଲା ॥
ଶୁଣ ରାଜନ ପୁଣ୍ୟବନ୍ତ । କେ କରୁ ତୋର ପୁଣ୍ୟ ଅନ୍ତ ॥
କିଞ୍ଚିତ ପାପ ଅଛି ତୋର । ଯେ ଇଚ୍ଛା ଆଗେ ଭୋଗ କର ॥
ଶୁଭ ଅଶୁଭ ଫଳ ଦୁଇ । ନିଶ୍ଚୟ ଭୋଗ ସେ କରଇ ॥
ବ୍ରହ୍ମା ଶଙ୍କର ଦେହ ଧରି । ଅନ୍ୟସ୍ଥା ନ ପାରନ୍ତି କରି ॥
ଏମନ୍ତେ ଯମବାକ୍ୟ ଶୁଣି । ଆପଣା ଚିତ୍ତ ପରିମାଣି ॥
ଅନନ୍ତ ଅଛି ପୁଣ୍ୟ ରାଶି । କିଞ୍ଚିତ ପାତକ ପ୍ରକାଶି ॥
ଆଗେ ଭୁଞ୍ଜିବି ପୁଣ୍ୟ ମୋର । ଯେ ଦୁଃଖ ଘୋର ଭୟଙ୍କର ॥
ବ୍ରହ୍ମସ୍ୱ ପାପ ମହାଘୋର । ଏହାକୁ କୃକଳାସ କର ॥
ବନ ଗହନ ଅନ୍ଧକୂପେ । ଅନେକ କାଳ ଥାଉ ଦୁଃଖେ ॥
ଏମନ୍ତେ ବୋଲୁ ବୋଲୁ ଯମ । ଦେଖିଲି କୃକଳାସ ଜନ୍ମ ॥
ଆତ୍ମା ସଂଯୋଗ କାଳେ ମୁହିଁ । ଡାକିଲି କର ମୋତେ ତ୍ରାହି ॥
ତା ଶୁଣି ଯମ ଦୟା କଲା । ପ୍ରସନ୍ନ ମୁଖେ ଆଜ୍ଞା ଦିଲା ॥
ଏ ପାପ ଅନ୍ତେ ମହୀପାଳ । ଭେଟିବୁ ପ୍ରଭୁ ଆଦି ମୂଳ ॥
ସେ କୃଷ୍ଣକର ଲାଗି ତୁହି । ତକ୍ଷଣେ ଦିବ୍ୟ ରୂପ ହୋଇ ॥
ସ୍ୱର୍ଗେ ବସିବୁ ପୁଣ୍ୟବଳେ । ନିଜ ସୁକୃତ ତପ ଫଳେ ॥
ଭୋ ନାଥ ତୋର ଆଜ୍ଞା ବଳେ । କହିଲି ତୋର ପାଦ ତଳେ ॥
ବିପ୍ର ସେବକେ ସମମତି । ତୋହର ପାଦେ ଚିତ୍ତ ବୃତ୍ତି ॥
ଏଣୁ ତୋହର ଦରଶନ । ନିରତେ ଚିନ୍ତଇ ମୋ ମନ ॥
ଜାତ ସୁମରି ଦୁଃଖ ସହି । ଏ ଅନ୍ଧକୂପେ କୀଟ ହୋଇ ॥
ଏ ପାପୁଁ ଉଦ୍ଧରିଲୁ ମୋତେ । କି ପୁଣ୍ୟେ ଦେଖିଲି ମୁଁ ତୋତେ ॥
ଭୋ ନାଥ ଶରଣ ତୋହର । ଯୋଗେଶ୍ୱରଙ୍କୁ ଅଗୋଚର ॥
ନିଜ ଅର୍ଜ୍ଜୁନ ଦୂତ ବନ୍ଧେ । ପାପ ପଟଳ ଅନୁବନ୍ଧେ ॥
ମୁଁ ଅନ୍ଧ କୂପ ମଧ୍ୟେ ଥାଇ । ଅନେକ କାଳ ଦୁଃଖ ସହି ॥
ପାଇଲି ତୁମ୍ଭ ଦରଶନ । ଭୋ ନାଥ ରଖ ଭଗବାନ ॥
ଯାର ପ୍ରସନ୍ନେ ବନ୍ଧ ମୋକ୍ଷ । ସେ ମୋତେ ହୋଇଲା ପ୍ରତକ୍ଷ ॥
ତୁ ଦେବ ଦେବ ଜଗନ୍ନାଥ । ସୁହୃଦ ଆତ୍ମା ଦଇବତ ॥
ତୁ ଦେବ ପୁରୁଷ ଉତ୍ତମ । ତୁ ହୃଷୀକେଶ ନାରାୟଣ ॥
ଅବ୍ୟୟ ଅଚ୍ୟୁତ ପ୍ରକାଶ । ତୋର ସ୍ମରଣେ ପୁଣ୍ୟ ଯଶ ॥
ଏବେ ତୁ ଆଜ୍ଞା ଦିଅ ମୋତେ । ନିଶ୍ଚିନ୍ତେ ଯିବି ଶୂନ୍ୟ ପଥେ ॥
ଯହିଁ ମୁଁ ଥିବି ଦେହ ବହି । ତୋର ଶରଣ ଭାବଗ୍ରାହୀ ॥

ତୋ ପାଦେ ମୋର ମନ ଥିବ । ଯାହା ନ ପାନ୍ତି ବ୍ରହ୍ମାଶିବ ॥
ନମସ୍ତେ ସର୍ବଭୂତ ଦେହୀ । ବ୍ରହ୍ମ ଅନନ୍ତ ଶକ୍ତି ତୁହିଁ ॥
ଶ୍ରୀକୃଷ୍ଣ ବସୁଦେବ ସୁତ । ତୁ ଯୋଗୀ ଯୋଗ ପଞ୍ଚଭୂତ ॥
ଏମନ୍ତ କହି ନୃପ ରଜା । କୃଷ୍ଣ ଚରଣେ କଲା ପୂଜା ॥
କିରୀଟୀ ଅଛି ଶିରମଧେ । ମିଳିଲା କୃଷ୍ଣ ପଦ୍ମ ପାଦେ ॥
ତକ୍ଷଣେ ବସି ସ୍ୱର୍ଗ ପଥେ । ବିଜୟ କଲା ପୁଣ୍ୟ ପଥେ ॥
ଦେଖନ୍ତି ଦିଗପାଳେ ମିଳି । ଜଳଦେ ଯେସନେ ବିଜୁଳି ॥
ରାଜା ଗମିଲା ସ୍ୱର୍ଗ ପୁରେ । ଗୋବିନ୍ଦ ଅନ୍ଧକୂପ ଦ୍ୱାରେ ॥
ସକଳେ ଚାହିଁ ଜନାର୍ଦ୍ଦନ । ବୋଲନ୍ତି ନିଗମ ବଚନ ॥
କ୍ଷତ୍ରୀୟ ଧର୍ମ ଶିକ୍ଷା ବାଣୀ । ଯେ ଧର୍ମ ଶାସ୍ତ୍ରେ ପରିମାଣି ॥
ବିପ୍ର ବତ୍ସଳ ଦାମୋଦର । ବୋଲନ୍ତି ଶୁଣି ସର୍ବ ବୀର ॥
ଦେଖି ଦୁର୍ଜ୍ଜୟ ବ୍ରହ୍ମଧନ । ଅନଳେ ନୋହଇ ଦହନ ॥
ରାଜ୍ୟ ଈଶ୍ୱର ରାଜା ହୋଇ । କେ ଯାଇ ପାରିବ ତା ଖାଇ ॥
ଗରଳ ହଳାହଳ ବିଷ । ମୁଁ ତାହା ମଣଇ ଉଶ୍ୱାସ ॥
ତାହାକୁ ପ୍ରତିକାର ଥାଇ । ତାର ଭକ୍ଷିଲେ ଭୟ ନାହିଁ ॥
ବ୍ରହ୍ମସ୍ୱ ମହାବିଷ ହୋଇ । ତାର ନିର୍ବସେ କ୍ରିୟା ନାହିଁ ॥
ବିଷ ଭକ୍ଷିଲେ ପ୍ରାଣୀ ମରେ । ଜଳ ଅନଳେ ଶାନ୍ତି କରେ ॥
ଯେ ବନ ଦହଇ ଅନଳ । ରକ୍ଷା କରଇ ଆଦି ମୂଳ ॥
ବ୍ରହ୍ମସ୍ୱ ଅଗ୍ନି ଏ ସଂସାରେ । ସମୂଳେ ବଂଶ ନାଶ କରେ ॥
ବ୍ରହ୍ମସ୍ୱ ଅଗ୍ନି ତେଜ ଯେତେ । କେ ଜାଣି ପାରିବ ଜଗତେ ॥
ବ୍ରାହ୍ମଣ ଧନ ଯେବେ ଗ୍ରାସେ । ତକ୍ଷଣେ ଅନଳ ପ୍ରକାଶେ ॥
ତାତ ଜନନୀ ବେନି ବଂଶ । ଉଭୟ କୁଳ କରେ ନାଶ ॥
ଆତ୍ମା ସହିତେ କରେ ନାଶ । ଏ କଥା ବେଦରେ ପ୍ରକାଶ ॥
ବ୍ରାହ୍ମଣ ଧନ ଯେହୁ ହରେ । ପଡ଼େ ନରକ ମହା ଘୋରେ ॥
କ୍ଷତ୍ରିୟ ରାଜପଣ ପାଇ । ଆତ୍ମାର ଗତି ନ ଜାଣଇ ॥
ବ୍ରାହ୍ମଣ ଧନ ସ୍ୱାଦ ମଣି । ବଳେ ହରନ୍ତି ଯେତେ ପ୍ରାଣୀ ॥
ନରକ ସୁଖ ପ୍ରାୟେ ମଣି । ପଡ଼ନ୍ତି ଜଗତ ରଙ୍ଗଣୀ ॥
ବ୍ରାହ୍ମଣ ବୃତ୍ତି ଯେବେ ବଳେ । କ୍ଷତ୍ରିୟ ହରେ ବାହୁବଳେ ॥
ଅନ୍ନ ନ ପାଇ ବିପ୍ରଜନ । ବିକଳେ କରନ୍ତି ରୋଦନ ॥
ବିପ୍ର ରୋଦନ ଜଳେ ପଡ଼ି । ଭୂମିରେ ଯେତେ ରେଣୁ ଜଡ଼ି ॥
ତାବତ କଳ୍ପ ମହାଘୋରେ । ନରକେ ପଡ଼ଇ ନିର୍ଭରେ ॥
ପାଶ ଅଙ୍କୁଶ ନାହିଁ ପାଶେ । ସୁଖେ ପଡ଼ଇ କୁମ୍ଭି ପଙ୍କେ ॥
ଆପଣା ଦତ୍ତ ପରବୃତ୍ତି । ଯେ ପ୍ରାଣ ଅଜ୍ଞାନେ ହରନ୍ତି ॥
ଷାଠିଏ ସହସ୍ର ବରଷ । ବିଷ୍ଠାରେ କୃମିରୂପେ ବାସ ॥
ମୋର ବିଷୟେ ଯେତେ ଜନ । ବଳେ ଯେ ଆଣେ ବ୍ରହ୍ମଧନ ॥
ତାର ଜୀବନେ କାହିଁ ଭଲେ । ଭୋଗ ବିଷୟ ସମତୁଲେ ॥
ସେ ପ୍ରାଣୀ ମୋତେ ଭୟଙ୍କର । ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର ॥
ମୋହୋର ବଂଶେ ଯେତେ ଜନ । ବିପ୍ରେ ନୋହିବ ଅଭିମାନ ॥
ବ୍ରାହ୍ମଣେ କଲେ ଅପରାଧ । ତେବେ ବନ୍ଦିବ ତାଙ୍କ ପାଦ ॥
ମାରେ ଯେ ଶାନ୍ତିରେ ସହିବ । କେବେହେଁ କ୍ରୋଧ ନ କରିବ
ମୁହିଁ ଯେମନ୍ତେ ବିପ୍ର ପାଦେ । ସର୍ବଦା ନମଇଁ ଆନନ୍ଦେ ॥
ତୁମ୍ଭେ ନାଶିବ ସେହିମତେ । ଅନ୍ୟଥା ନ ଦଣ୍ଡିବ ହସ୍ତେ ॥
ଅପହରଣେ ବ୍ରହ୍ମଧନ । ନରକେ ନିଶ୍ଚୟ ପତନ ॥
ଅଜ୍ଞାନେ ନୃପରାଜା ହରି । ଏତେ ନରକେ ଭୋଗକରି ॥
ଯେଣୁଟି ପୂର୍ବେ ପୁଣ୍ୟ ଥିଲା । ମୋହର ହସ୍ତେ ମୋକ୍ଷ ହେଲା
ଦେଖିଲି ତୁମ୍ଭେ ମୋର ଆଗେ । କହି ଚଳିଲା ଶୂନ୍ୟ ମାର୍ଗେ ॥
ଏମନ୍ତ କହି ନିଜ ଜନେ । ଗୋବିନ୍ଦ ମିଳିଲେ ଭୁବନେ ॥
ଯାର ନାମେଣ ପାପଲୀନ । ତକ୍ଷଣେ କରଇ ଦହନ ॥
ଶୁଣ ହୋ ଅଭିମନ୍ୟୁ ବାଳ । ସାଧୁଙ୍କ ଦରଶନ ଫଳ ॥
ନୃପ ନରକୁ ପାର ଗଲା । ଦେବ ଭୁବନେ ବିଜେ କଲା ॥
ସାଧୁଙ୍କ ସଂଗେ ଦରଶନ । ଯେ କରେ ଶ୍ରବଣ କୀର୍ତ୍ତନ ॥
ସ୍ତୁତି ବଚନ ଅଙ୍ଗସଙ୍ଗ । ପବିତ୍ର କରେ ନିଜ ଅଙ୍ଗ ॥
ଲଭେ କୋଟିଏ ତୀର୍ଥ ଫଳ । ଯେ କରେ ସାଧୁ ସଂଗ ମେଳ
ତୁ ଏହା ଜାଣି ସାଧୁମେଳେ । ଏ କାଳ ବନ୍ଧୁ ସୁଖ ଭୋଳେ ॥
ବ୍ରାହ୍ମଣ ଧନ ତୁ ନ ହର । ଅମୃତେ ଯେବେ ଇଚ୍ଛା ତୋର
ବୋଲଇ ବିପ୍ର ଜଗନ୍ନାଥ । ନିବେଶି କୃଷ୍ଣପାଦେ ଚିତ୍ତ ॥
ଭବ ଜଳଧି ମଧେ ଥାଇ । ଭାବ ଅଭାବ ନ ଜାଣଇ ॥
ସୁଜନେ କୃଷ୍ଣ ପାଦେ ରସ । ତୁମ୍ଭ ଚରଣେ ମୁଁ ବିଶ୍ୱାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମଂହସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ନୃପରାଜା ମୋକ୍ଷଣେ ନାମ ଊନସପ୍ତତିତମୋଽଧ୍ୟାୟଃ ।*

## ସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଏବେ ହୋ ଶୁଣ କୁରୁ ବୀର । ଦ୍ୱାରକାପୁରେ ହଳଧର ॥
ସୁହୃଦ ଦରଶନ ସଧେ । ବିଜୟେ ତାଳଧ୍ୱଜ ମଧେ ॥
ନିଜ ସେବକ ସଙ୍ଗ ମେଳେ । ମିଳିଲେ ନନ୍ଦର ଗୋକୁଳେ ॥

ରାମର ଆଗମନ ଶୁଣି । ଗୋପାଳେ ଗୋପର ତରୁଣୀ ॥
ମିଳିଲେ ନନ୍ଦର ମନ୍ଦିରେ । ମଙ୍ଗଳ ଦ୍ରବ୍ୟ ଘେନି କରେ ॥
ଆନନ୍ଦେ ରୋହିଣୀ ନନ୍ଦନ । ଗୋପଙ୍କୁ କଲେ ଆଲିଙ୍ଗନ ॥
ଗୋପୀ ମିଳିଲେ ଭାବ ଭରି । ରାମ ଚରଣ ହୃଦେ ଧରି ॥
ଶିର ବନ୍ଦନେ ନମି ପାଦ । ଛାଡ଼ିଲେ ଚିନ୍ତା ମନ ଖେଦ ॥
ହରଷେ ରେବତୀ ରମଣ । ବନ୍ଦିଲେ ନନ୍ଦର ଚରଣ ॥
ଯଶୋଦା ପାଦ ତଳେ ପଡ଼ି । ଶୋକ ବଦନେ କର ଯୋଡ଼ି ॥
ନନ୍ଦ ଯଶୋଦା ସୁଖ ଭୋଳେ । ରାମଙ୍କୁ ବସାଇଲେ କୋଳେ ॥
ଚିର ବିଚ୍ଛେଦ ହୃଦେ ଜାଳି । ଅଶ୍ରୁ ଗଳିତ ବେନି ଆଖି ॥
ବଦନୁ ନସ୍ପୁରେ ବଚନ । ନିବିଡ଼େ କଲେ ଆଲିଙ୍ଗନ ॥
ବୋଇଲେ ଶୋକ ଭର ହୋଇ । ଜଗତେଶ୍ୱର ତୁମ୍ଭେ ଦୁଇ ॥
ନିରାଶ କଲ ମୋର ଘର । ମୁଁ ଏବେ ଶରଣ ତୋହୋର ॥
ଗୋପ ନଗରେ ବନ୍ଧୁ ଯେତେ । ମିଳିଲେ ରାମର ନିକଟେ ॥
ରାମ ନମିଲେ ଜଣେ ଜଣେ । ଗୋପାଳ ବୃଦ୍ଧଙ୍କ ଚରଣେ ॥
ତୁଲ୍ୟ ବୟସୀ ଗୋପଜନେ । ସଙ୍ଗେ ଯେ ଥିଲେ ବୃନ୍ଦାବନେ ॥
ରାମଙ୍କୁ ଦେଖି ସ୍ନେହ ଭରେ । କୋଳ କରନ୍ତି ସ୍ନେହ ଭରେ ॥
ସ୍ନେହ ବାନ୍ଧବେ ବନ୍ଧୁ ସଙ୍ଗେ । ରାମ ଯେ ଥିଲେ ନାନା ରଙ୍ଗେ ॥
ନିବିଡ଼େ ଭିଡ଼ି ନିଜ କରେ । ବୁଡ଼ିଲେ ଆନନ୍ଦ ସାଗରେ ॥
ଏମନ୍ତେ ଜଣେ ଜଣେ କୋଳେ । କରି ବସିଲେ ଏକ ମେଳେ ॥
କ୍ଷୀର ପାଏସ ମଧୁରସେ । ରାମଙ୍କୁ ଭୁଞ୍ଜାଇ ସନ୍ତୋଷେ ॥
ବିଶ୍ରାମ କରାଇ ଗୋପାଳେ । ବସି ପୁଛନ୍ତି ଏକମେଳେ ॥
ନେତ୍ରେ ପୂରିତ ଅଶ୍ରୁ ଜଳ । ପୁଚ୍ଛନ୍ତି ବନ୍ଧୁଙ୍କ କୁଶଳ ॥
କୃଷ୍ଣ ଚରଣେ ମନ ଦେଇ । ସଂଭ୍ରମେ ନ ପାରନ୍ତି କହି ॥
ବିଷୟ ସୁଖ ନ ଜାଣନ୍ତି । କୃଷ୍ଣ କୁଶଳ ପଚାରନ୍ତି ॥
ହେ ରାମ କମଳ ଲୋଚନ । କହ ତୁ ଯାଉ ଖେଦ ମନ ॥
କୃଷ୍ଣ ଯେ ଗଲେ ମଧୁବନ । ତାହାର ସଙ୍ଗେ ଆମ୍ଭ ମନ ॥
ବନ୍ଦୀ ହୋଇଲା ପ୍ରେମ ଭୋଳେ । ଏବେ ନ ଦେଖି ଚର୍ମ ଡୋଳେ ॥
ପୁତ୍ର କଳତ୍ର ଧନ ପାଇ । ଆମ୍ଭ ସ୍ମରଣ ତାର ନାହିଁ ॥
ଆମ୍ଭର ଭାଗ୍ୟେ ମଲା କଂସ । ନିଶ୍ଚିନ୍ତ କରି ଯଦୁବଂଶ ॥
ସକଳ ରିପୁବଳ ମାରି । ଦ୍ୱାରକାପୁର ଆଶ୍ରେ କରି ॥
ସୁଖେ ଯେ ଛନ୍ତି ଯଦୁନାଥ । ଏଣୁଟି ଆମ୍ଭେ ଭାଗ୍ୟବନ୍ତ ॥
ଗୋପୀଏ ରାମଙ୍କୁ ଅନାଇଁ । ବୋଇଲେ ସ୍ନେହ ଭର ହୋଇ ॥
ଭୋ ରାମ କହ କୃଷ୍ଣ କଥା । ଯେଣେ ଖଣ୍ଡିବ ମନ ବ୍ୟଥା ॥
ଭଲେ କି ଛନ୍ତି ପଦ୍ମନାଭ । ମଥୁରା ନାରୀଙ୍କ ବଲ୍ଲଭ ॥
ମାତା ଯଶୋଦା ନନ୍ଦ ପିତା । ଏହାଙ୍କୁ କରନ୍ତି କି ଚିନ୍ତା ॥
ଆମ୍ଭେ ଯେ ତାଙ୍କୁ ଭଲେ ଜାଣି । ସୁହୃଦ ଭାବ ପରିମାଣି ॥
ତା ଅର୍ଥେ ଯେତେ ଆମ୍ଭ ଦୁଃଖ । କହିବା ଶୁଣ ଚନ୍ଦ୍ରମୁଖ ॥
ମାତା ପିଅର ବନ୍ଧୁଜନ । ପତି ତନୟ ଗୁରୁ ମାନ୍ୟ ॥
ତାହାର ଅର୍ଥେ ଆମେ ଛାଡ଼ି । ନିରତେ ପ୍ରିୟ ଭାବ ବହି ॥
ସକଳ ଛାଡ଼ି ତା ବିଶ୍ୱାସେ । ହୋଇଲୁ କଲୁ ସେ ନିରାଶେ ॥
କ୍ଷଣକେ ଛାଡ଼ି ଆମ୍ଭ ଭାବ । ନିର୍ଦ୍ଦୟା ହୋଇଲେ ମାଧବ ॥
ମଥୁରାପୁର ବନ୍ଧୁଜନ । ମଧୁର ତାହାଙ୍କ ବଚନ ॥
କ୍ଷଣେ ସୁହୃଦ କୁରୁ ଗତି । କେମନ୍ତେ ବିଶ୍ୱାସ କରନ୍ତି ॥
ତାହାର ଆତ୍ମା ତାର ନୋହେ । ଭଗତ ଜନ ତାକୁ ମୋହେ ॥
କୃତଘ୍ନ ଭାବ ଦୁଷ୍ଟ ଗତି । ମଥୁରା ନାରୀ ନ ଜାଣନ୍ତି ॥
ତାହାର ବିଚିତ୍ର ବଦନ । ହୃଷିତେ ଅନଙ୍ଗ ଖେଦନ ॥
ଦେଖି ହୁଅନ୍ତି ମୋହ ଗତ । ଅନଙ୍ଗ ବାଣେ ଜଡ଼େ ଚିତ୍ତ ॥
କେତେ କହିବି ତାଙ୍କ ଗୁଣ । ବୋଇଲେ ସଖୀ ଗଣେ ଶୁଣ ॥
ତାହାର କଥା କିଂପା କହ । ଶୁଣନ୍ତେ ଦହେ ପ୍ରାଣ ଦେହ ॥
ଆମ୍ଭେ ଯେ ନାହୁଁ ତାର ସଙ୍ଗେ । ଏତେ ଦିବସ ନା ନା ରଙ୍ଗେ ॥
ସେ ଆମ୍ଭ ସଙ୍ଗେ ପୁଣ ନାହିଁ । କାଳ କି ଅଛି ସ୍ଥିର ହୋଇ ॥
ଏମନ୍ତେ ସ୍ନେହ ଭର ହୋଇ । କୃଷ୍ଣର ରୂପେ ମନ ଦେଇ ॥
କୃଷ୍ଣର ହୃଷିତ ବଦନ । ମୋହନ ଗଭୀର ବଚନ ॥
କଟାକ୍ଷ ଦୃଷ୍ଟି ବକ୍ର ଗତି । ପ୍ରେମ ଆଲିଙ୍ଗନ ସ୍ମରନ୍ତି ॥
କାନ୍ଦନ୍ତି କୃଷ୍ଣ ଭାବ ଲଇ । ଶଙ୍କରଷଣ ତାହା ଚାହିଁ ॥
କୃଷ୍ଣ ସନ୍ଦେଶ କଥାମାନ । କହି ତୋଷିଲେ ତାଙ୍କ ମନ ॥
ନା ନା ବିଶ୍ୱାସ ଗୁଣି ରାମ । ଗୋପୀଙ୍କ ଚିତ୍ତ କଲେ ସମ ॥
ସେ ରାମ ଗୋପୀଙ୍କ ବିଶ୍ୱାସ । ଗୋପେ ରମିଲେ ବେନି ମାସ ॥
ମଧୁ ମାଧବ ମାସ ବେନି । ଗୋପୀଙ୍କ ପ୍ରିୟ ଭାବ ଘେନି ॥
ସେ ରାମ ମାୟା ଯୋଗ ବଳେ । ଗୋପ କାମିନୀ ସଙ୍ଗ ମେଳେ ॥
ନିତ୍ୟେ କ୍ରୀଡ଼ନ୍ତି ନିଶି ଯୋଗେ । ଗୋପ ଯୁବତୀ ଘେନି ସଂଗେ ॥
ବିସ୍ତାରି ଯୋଗମାୟା ଗତି । ଯମୁନା କୂଳେ ଯଦୁପତି ॥
ଚନ୍ଦ୍ର କିରଣ ବୃନ୍ଦାବନ । ସୁଗନ୍ଧ ବହଇ ପବନ ॥
କାମେନୀ ଗଣ ମଧେ ବସି । ତାର ମଣ୍ଡଳେ ଯେହ୍ନେ ଶଶୀ ॥
ଏମନ୍ତେ ପରୀକ୍ଷିତ ଶୁଣ । ଜଳାଧିପତି ଯେ ବରୁଣ ॥
ବାରୁଣୀ ନାମେ ତା ନନ୍ଦିନୀ । ରାମର ପ୍ରିୟଭାବ ଘେନି ॥
ବରୁଣ ବିଶ୍ୱାସ ବଚନେ । ଗୋପେ ମିଳିଲା ବୃନ୍ଦାବନେ ॥
ବୃକ୍ଷ କ୍ରୋଟରୁ ସୁଧା ରୂପେ । ପଡ଼ିଲା ରାମର ସମୀପେ ॥

ତାର ସୁଗନ୍ଧେ ବନ ବାସେ । ରାମ ମିଳିଲେ ତାର ପାଶେ ॥
ଗୋପୀ ସହିତେ ବଳରାମ । ଆନନ୍ଦେ କରି ମଧୁପାନ ॥
ବାରୁଣୀ ପାନେ ଭୋଳ ହୋଇ । ଗୋପୀଏ ରାମ ଯଶ ଗାଇ ॥
ବୁଲନ୍ତି ନାନା ବୃକ୍ଷ ମୂଳେ । ବାରୁଣୀ ପାନ ମତ୍ତ ଭୋଳେ ॥
ମଦେ ମୁଦ୍ରିତ ବେନି ଆଖି । ମତ୍ତ କୁଞ୍ଜର ପ୍ରାୟେ ଦେଖି ॥
ଦେଖିଣ ଶ୍ରବଣେ କୁଣ୍ଡଳ । ହୃଦେ ଶୋଭିତ ବନମାଳ ॥
ମୁଖ ମଣ୍ଡଳେ ମନ୍ଦହାସ । ଝାଳେ ଜଡ଼ିତ ନିଜ ବାସ ॥
ରବି କିରଣେ ଶ୍ରମ ପାଇ । ବୋଲନ୍ତି ଯମୁନାକୁ ଚାହିଁ ॥
ଆସ କାଳିନ୍ଦୀ ମୋର ପାଶ । ତୋ ଜଳେ ଶ୍ରମ କରି ନାଶ ॥
ତୋ ଜଳେ କରି ଅବଗାହ । ଶ୍ରମ ନ ରହୁ ମୋର ଦେହ ॥
ଯମୁନା ରାମ ବାକ୍ୟ ଶୁଣି । ମଦିରାମତ୍ତ ପ୍ରାୟେ ମଣି ॥
ଅବଜ୍ଞା କରି ରାମବାଣୀ । ତରଳେ ବହେ ତରଙ୍ଗିନୀ ॥
ତା ଦେଖି ରାମ କୋପ ଭରେ । ତୀକ୍ଷ୍ଣ ଲଙ୍ଗଳ ଧରି କରେ ॥
କାଳିନ୍ଦୀ ମଧ୍ୟେ ହଳ ସ୍ଥାପି । କୋପେ ବୋଲନ୍ତି ବିଶ୍ୱରୂପୀ ॥
କେହ୍ନେ ପାପିଷ୍ଠ ଗର୍ବ ତୋର । ଅବଜ୍ଞା କରୁ ବାକ୍ୟ ମୋର ॥
ତୁ ମୋତେ କଲୁ ଅବହେଳ । ଆଜ କରିବି ପ୍ରତିଫଳ ॥
ଲଙ୍ଗଳ ଅଗ୍ରେ ତୋତେ ଧରି । କାଟିବି ଶତେ ଖଣ୍ଡ କରି ॥
ନିଶ୍ଚୟେ ଯିବୁ ଆଜ ବହି । ଆଜ୍ଞା ଭାଂଗିଲୁ ଗର୍ବ ବହି ॥
ଏମନ୍ତ ରାମ ବାକ୍ୟ ଶୁଣି । ଭୟେ ବୋଲଇ ତରଙ୍ଗିଣୀ ॥
ଲହରୀ ବ୍ୟାଜେ ବେନି କରେ । ନମିଲା ରାମର ପୟରେ ॥
କୋମଳ ଉପହାର ମୁଖେ । ରାମଙ୍କୁ ବୋଲେ ମନ ଦୁଃଖେ ॥
ହେ ରାମ ରାମ ମହାଭୁଜ । ମୁହିଁ ଜାଣଇ ତା'ର ତେଜ ॥
ତୋହୋର ଏକ ଅଂଶେ ମହୀ । ମୁକୁଟ ଶିଖେ ଅଛି ରହି ॥
ଜଗତ ପତି ମହୀଧର । ଭୋ ନାଥ ଶରଣ ତୋହୋର ॥
ତୋର ମହିମା ଭଗବାନ । ନ ଜାଣି କଲି ଅବଜ୍ଞାନ ॥
ପଶିଲି ତୋହରେ ଶରଣ । ସୁନ୍ଦର ଅଭୟ ଚରଣ ॥
ତୁ ନାଥ ଭଗତ ବତ୍ସଳ । ଶରଣ ରଖ ଆଦିମୂଳ ॥
ଏମନ୍ତେ ନଦୀ ବାକ୍ୟ ଶୁଣି । ହଳ ସଂହରି ହଳପାଣି ॥
ସକଳ ଗୋପ ନାରୀ ମେଳେ । ପଶିଲେ ଯମୁନାର ଜଳେ ॥
କରଣୀ ମଧ୍ୟେ ଗଜବର । ଯେମନ୍ତ ଦିଶଇ ସୁନ୍ଦର ॥
ନିଶ୍ଚିନ୍ତେ ଜଳ କ୍ରୀଡ଼ା ସାରି । କୂଳେ ମିଳିଲେ ହଳଧାରୀ ॥
ତକ୍ଷଣେ ରବିର ନନ୍ଦିନୀ । ନିର୍ମଳ ନୀଳ ବସ୍ତ୍ର ଘେନି ॥
ରାମ ସମୀପେ ଦେଲା ଆଣି । ଭୂଷଣ ନାନା ରତ୍ନମଣି ॥
ନୀଳ କମଳ ମାଳା ଗଳେ । ଦେଇ ନମିଲା ପାଦ ତଳେ ॥
ନୀଳ ବସନ ଅନୁପାମ । ଆନନ୍ଦେ ପିନ୍ଧି ବଳରାମ ॥
ଭୂଷଣ ନାନା ରତ୍ନକୂଳ । ହୃଦେ ଲମ୍ୱଇ ବନମାଳ ॥
ଗନ୍ଧ ଚନ୍ଦନ ହୃଦେ ଲେପି । ଇନ୍ଦ୍ର ବରଣ ପ୍ରାୟେ ଲଖି ॥
ଶୁଣ ହେ ଅଭିମନ୍ୟୁ ସୁତ । ଯମୁନା ଜଳେ ରାମ କୃତ ॥
ଅଦ୍ୟାପି ବୃନ୍ଦାବନ ଦେଶେ । ଯମୁନା ବହେ ବକ୍ର ପାଶେ ॥
ଅନନ୍ତ ବଳ ବଳରାମ । ତାର ଚରିତ ଅନୁପାମ ॥
ଯମୁନା ତଟେ ବୃନ୍ଦାବନେ । ଏବେ ହୋ ଶୁଣ ସାବଧାନେ ॥
ଏମନ୍ତେ କରି କ୍ରୀଡ଼ା ରସ । ରାମ ରହିଲେ ବେନି ମାସ ॥
ଦିବା ରଜନୀ ବେନି ମାସେ । ଗୋପୀଏ ବୃନ୍ଦାବନ ଦେଶେ ॥
ରାମର ପ୍ରିୟ ଭାବେ ମିଶି । ଜାଣନ୍ତି ଗଲା ଏକ ନିଶି ॥
ସେ ରାମ ପାଦପଦ୍ମ ମୂଳେ । ସୁଜନେ ଚିନ୍ତ ଧ୍ୟାନ ବଳେ ॥
ଅନନ୍ତ ଚରିତ ଅମୃତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିଂକ୍ୟାଂ ଦଶମସ୍କନ୍ଧେ ରାମ ଗୋପପୁର ଗମନେ ଯମୁନା ଆକର୍ଷଣେ ନାମ ସପ୍ତତିତମୋଽଧ୍ୟାୟଃ ।*

## ଏକ ସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଆନନ୍ଦ ମନେ ବ୍ୟାସ ସୁତ । ବୋଲନ୍ତି ଶୁଣ ପରୀକ୍ଷିତ ॥
ଗୋପେ ଯେ ଗଲେ ହଳହସ୍ତ । ଏବେ ହୋ ଶୁଣ ଭାଗବତ ॥
ପୌଣ୍ଡ୍ରକ ନାମେ ନୃପବର । କରୁଷ ଦେଶେ ତାର ଘର ॥
କୃଷ୍ଣର ଜନ୍ମ କର୍ମ ଶୁଣି । ନିରତେ ମନେ ପରିମାଣି ॥
ନିର୍ଗୁଣ ଜନ୍ମ ଯେବେ ଅଂଶେ । ଜନ୍ମ ହୋଇଲେ ଯଦୁବଂଶେ ॥
କେମନ୍ତେ ଦେଖିବି ଲୋଚନେ । ନିତ୍ୟେ ଭାବଇ ଶୁଦ୍ଧ ମନେ ॥
ଏତେ ବିଚାରି ଦୁଷ୍ଟ ମନ । ବିବାଦେ ବହେ କୃଷ୍ଣ ଚିହ୍ନ ॥
ବୋଲଇ ମୁହିଁ ବାସୁଦେବ । ମୋର ଚରଣେ ତୁମ୍ଭେ ସେବ
ନିଜ ଜନଙ୍କୁ ପାଶେ ରାଇ । ବୋଲଇ ବିଶ୍ୱାସ କରାଇ ॥
ତୁମ୍ଭେ ଯେ ପ୍ରଜା ଜନେ ମୋର । ଦେଖ ମୋହର କଳେବର ॥
ମୁହିଁଟି ଦେବ ଜନାର୍ଦ୍ଦନ । ଦେଖ ମୋହର ବର୍ଣ୍ଣଚିହ୍ନ ॥
ଏମନ୍ତେ ପ୍ରଜା ମଧ୍ୟେ କହି । କୃଷ୍ଣର ପ୍ରାୟ ସଜ ହୋଇ ॥
କହଇ କୃଷ୍ଣର ସ୍ୱଭାବ । ବୋଲଇ ମୁହିଁ ବାସୁଦେବ ॥
ଯେ ମୋତେ ନ ବୋଲିବ ହରି । ତାହାକୁ ପକାଇବି ମାରି ॥
ଧନ ଜୀବନ ନେବି ବଳେ । ତା ଶୁଣି ପ୍ରଜାଏ ବିକଳେ ॥

ବୋଇଲନ୍ତି ତୁମ୍ଭେ ନାରାୟଣ । ଅନାଦି ପରମ କାରଣ ॥
ତୋହର ଅଂଶେ ସୁର ଦେବା । ତୋର ଚରଣେ ଆମ୍ଭ ସେବା ॥
ଏମନ୍ତେ ପ୍ରଜା ତାର ପୁରେ । ବିଶ୍ୱାସେ ସେବନ୍ତି ପୟରେ ॥
ନାମ ଜପନ୍ତି ଚାର ନିତି । ନିରତେ ଚରଣେ ସେବନ୍ତି ॥
ଏମନ୍ତେ କେତେ ଦିନ ଗଲା । ସେ ରାଜା ମନେ ବିଚାରିଲା ॥
ନିଷୟେ ମୁହିଁ ଜଗଦୀଶ । ସକଳ ଦେହେଁ ମୁଁ ପ୍ରକାଶ ॥
ଏତେ ବିଚାରି ଦୂତ ରାଇ । ତାହାର ହସ୍ତେ ଲେଖା ଦେଇ ॥
ବୋଇଲ ଯାଅ ଯଦୁପୁର । କହିବୁ କୃଷ୍ଣର ଛାମୁର ॥
ଜଗତେ ମୋର ଅବତାର । ନାଶିବି ଅବନୀର ଭାର ॥
ମୁଁ ବ୍ରହ୍ମ ପରମ କାରଣ । ଅନାଦି ପ୍ରଭୁ ନାରାୟଣ ॥
ମୋହୋର ଅଛି ଚାରି କର । ମୁହିଁଟି ଶଙ୍ଖ ଚକ୍ରଧର ॥
ଗଦା କମଳ ଭୁଜ ଘେନି । ଶ୍ରୀବତ୍ସ ଚିହ୍ନ କଣ୍ଠେ ମଣି ॥
ମୋ ଠାରୁଁ ନାହିଁ ପରେ କେହି । ମୁହିଁ ସକଳ ଜୀବ ଦେହୀ ॥
ପ୍ରାଣୀଙ୍କି ଦୟାବହି ଚିତ୍ତେ । ମୋହର ଜନ୍ମ ଏ ଜଗତେ ॥
ନାଶିବି ଅବନୀର ଭାର । ତୁ ବେଗେ ଚିହ୍ନ ଛାଡ଼ ମୋର
ମିଛେ ଯେ ବୋଲୁ କୃଷ୍ଣ ମୁହିଁ । ଏ କଥା ମୁହିଁ ଯେ ଜାଣଇ ॥
ଏବେ ତୁ ମୋର ଚିହ୍ନ ଏଡ଼ି । ମୋର ଚରଣେ କର ଯୋଡ଼ି ॥
ଶରଣ ପଶ ଆସି ବେଗେ । ତୋର ଜୀବନ ମୋର ଭାଗେ
ଯେବେ ନ ପଶିବୁ ଶରଣ । ମୋହର ତୁଲେ କର ରଣ ॥
ଜିଣିଲେ ବାସୁଦେବ ତୁହି । ତୁ ମଲେ ମୁହିଁ ନିଜ ଦେହୀ ॥
ଏମନ୍ତେ କହି ଦୂତ ଆଗେ । ବୋଲେ ଦ୍ୱାରକା ଯାଅ ବେଗେ
ତାହାର ଆଜ୍ଞା ଘେନି ଶିରେ । ଦୂତ ମିଳିଲା ଯଦୁପୁରେ ॥
କୃଷ୍ଣର ସଭାତଳେ ଯାଇ । ବୋଲଇ ଶିରେ କର ଦେଇ ॥
ଲେଖା ପ୍ରମାଣେ ତାର ବାଣୀ । ଗୋବିନ୍ଦ ସଭା ମଧ୍ୟେ ଶୁଣି ॥
ଅଳପ ହାସେ ଭଗବାନ । ଦୂତ ବଚନେ ସାବଧାନ ॥
ଶୁଣି ହସିଲେ ଉଗ୍ରସେନ । ସଭାର ମଧ୍ୟେ ଯେତେ ଜନ ॥
ଏକ ଆରେକ ମୁଖ ଚାହିଁ । ହସନ୍ତି ବସ୍ତ୍ରେ ମୁଖ ଦେଇ ॥
ଦୂତକୁ ଚାହିଁ ଚକ୍ରପାଣି । ବୋଲଇ ପରିହାସ ବାଣୀ ॥
ହେ ଦୂତେ ଶୁଣ ମୋ ବଚନ । ମୋହୋର ବାସୁଦେବ ଚିହ୍ନ ॥
ମୁଁ ତା ବଚନ ଉପଲକ୍ଷି । ନିଶ୍ଚେ ଛାଡ଼ିବି ତାକୁ ଦେଖି ॥
ମୋହୋର ଚିହ୍ନ ବେଶ ହୋଇ । ବୀର ଶଯ୍ୟାର ମଧ୍ୟେ ଶୋଇ ॥
କାକ ଶୃଗାଳଙ୍କ ଚରଣେ । ନିଶ୍ଚିନ୍ତେ ଥିବ ସେ ଶରଣେ ॥
କୃଷ୍ଣ ବଚନେ ଦୂତ ଗଲା । ପୌଣ୍ଡ୍ରକ ନିକଟେ କହିଲା ॥
ଦାରୁକ ରାଇ ଦାମୋଦର । ବୋଇଲେ ରଥ ସଜ କର ॥
ତକ୍ଷଣେ ସାଜି ନନ୍ଦିଘୋଷ । ମିଳିଲା ଗୋବିନ୍ଦର ପାଶ ॥
ରଥେ ବିଜୟେ ନରହରି । ଶଙ୍ଖ ଶବଦେ ଦିଗ ପୂରି ॥
ପୌଣ୍ଡ୍ରକ ଦେଖେ ବନମାଳୀ । ନିମିଷ ମାତ୍ରେ ଗଲେ ଚଳି ॥
କୃଷ୍ଣର ଆଗମନ ଶୁଣି । ପୌଣ୍ଡ୍ରକ ବେନି ଅକ୍ଷୌହିଣୀ ॥
ସାଜି ମିଳିଲା କୃଷ୍ଣ ପାଶେ । ସଂଗ୍ରାମେ ଜିଣିବାର ଆଶେ ॥
ତାହାର ମିତ୍ର କାଶୀ ରାଜ । ସେହି ତାହାର ତୁଲେ ସଜ ॥
କୃଷ୍ଣର ତୁଲେ ରଣ ଜାଣି । ସାଜିଲା ତିନି ଅକ୍ଷୌହିଣୀ ॥
କୃଷ୍ଣଙ୍କୁ ଦେଖି ମହାରାଗେ । ବେଗେ ଗୁନ୍ଧିଲା ଚାରିଦିଗେ ॥
କୃଷ୍ଣ ଚାହାନ୍ତି ରଣ ମଧ୍ୟେ । ପୌଣ୍ଡ୍ରକ ଦେଖିବାର ସଧେ ॥
ବାଜଇ ବୀର ତୂର ସ୍ୱନ । ରଣେ ପୌଣ୍ଡ୍ରକ ଆଗମନ ॥
କୃଷ୍ଣ ଦେଖିଲେ ତାର ରଥ । ରତ୍ନ ଭୂଷଣ ଅପ୍ରମିତ ॥
ରଥର ପରେ ପକ୍ଷୀରାଜ । ଧ୍ୱଜ ପତାକା ଅତି ତେଜ ॥
ବିମାନ ମଧ୍ୟେ ତା ଶ୍ୱରୀର । ଦେଖିଲେ କମଳାର ବର ॥
ବିସ୍ତାର ଶୋହେ ଭୁଜ ଚାରି । ଶଙ୍ଖ କମଳ ଗଦା ଧରି ॥
ଶାରଙ୍ଗ ଧନୁ ଧରି କରେ । ଶ୍ରୀବତ୍ସ ଚିହ୍ନ ତା ହୃଦରେ ॥
କଣ୍ଠେ ଲମ୍ବଇ ରତ୍ନମଣୀ । ରବି କିରଣ ପ୍ରାୟେ ଜାଣି ॥
ହୃଦେ ଲମ୍ବଇ ବନମାଳ । ଶ୍ରବଣେ ମକର କୁଣ୍ଡଳ ॥
ପୀତ ବସନ ରତ୍ନେ ଝଳି । ନୀଳ ଜୀମୂତେ କି ବିଜୁଳି ॥
ଅମୂଲ୍ୟ କିରୀଟୀ ବିରାଜେ । ରତ୍ନମେଖଳା କଟି ମାଝେ ॥
ତାର କପଟ ବେଶ ଦେଖି । ଆତ୍ମାର ପ୍ରାୟେ ଉପଲେକ୍ଷି ॥
ନଟର ପ୍ରାୟେ ବେଶ ଧରି । ଦେଖି ହସିଲେ ନରହରି ॥
କୃଷ୍ଣଙ୍କୁ ଦେଖି ରିପୁ ଗଣ । ଉଭାରି ଆରମ୍ଭିଲେ ରଣ ॥
ଶୂନ ପରିଘ ଗଦାରିଷ୍ଟି । ପାଶ ତୋମୋର ଲୋହଯଷ୍ଟି ॥
ଅସି ଖଡ଼ଗ ଆଦି ଯେତେ । ପ୍ରହାର କଲା ଅପ୍ରମିତେ ॥
ପୌଣ୍ଡ୍ରକ କାଶୀରାଜା ବଳ । ଦେଖିଲେ ମଦନ ଗୋପାଳ ॥
ପାଦାନ୍ତି ରଥ ଗଜ ବାଜି । ଏମନ୍ତେ ଚତୁରାଙ୍ଗ ସାଜି ॥
ଗଦା ଖଡ଼ଗ ଚକ୍ରବାଣ । କୋପେ ପ୍ରହାରି ନାରାୟଣ ॥
ବେଗେ ନାଶିଲେ ରିପୁବଳ । ଯେସନେ ଯୁଗାନ୍ତେ ଅନଳ ॥
ରୁଦ୍ର ନୟନୁ ଜାତ ହୋଇ । ଏ ତିନି ଭୁବନ ନାଶଇ ॥
କୃଷ୍ଣ ସଂଗ୍ରାମେ ରଣ ଭୂଇଁ । କି ପଟାନ୍ତର ଦେବି ମୁହିଁ ॥
ରଥ ତୁରଙ୍ଗ ହସ୍ତୀ ଖର । ଓଟ ପାଦାନ୍ତି ମହାଘୋର ॥
ଚକ୍ର ପ୍ରହାରେଣ ଖଣ୍ଡିତ । ଜଳ ସଦୃସେଣ ଶ୍ରୋଣୀତ ॥
ଉଛୁଳି ବହେ ରଣ ମଧ୍ୟେ । ଗଗନେ ଦେଖନ୍ତି ବିବୁଧେ ॥
ବ୍ରହ୍ମା ଦିବସ ଅନ୍ତେ ମହୀ. । ପ୍ରଳୟ ଜଳେ ଦେହେ ଦହୀ ॥

ଈଶ୍ୱର କ୍ରୀଡ଼ା ସ୍ଥାନ ପ୍ରାୟେ । ରକତେ ରଣ ଭୂମି ଶୋହେ ॥
ପୌଣ୍ଡ୍ରକ ଅଛି ଏକ ରଥେ । ଉଭାରି ଗୋବିନ୍ଦ ଅଗ୍ରତେ ॥
ସମରେ ତାର ମୁଖ ଚାହିଁ । ହସି ବୋଲନ୍ତି ଭାବଗ୍ରାହୀ ॥
ହେ ପୁଣ୍ଡରିକ ତୋର ଦୂତ । ମୋର ଆଗେ କହିଲା ଯେମନ୍ତ
ତୋହୋର ଚିହ୍ନ ବନମାନ । ଛାଡ଼ିଲି ତୁ ଏବେ ସମ୍ଭାଳ ।
ମିଛେ ମୁଁ ଧରି ତୋର ବେଶ । ବିଷ୍ଣୁ ବୋଲାଇ ପଞ୍ଚଦଶ ॥
ଯେବେ ହାରିବି ତୋତେ ରଣେ । ଛାଡ଼ି ପଶିବି ତୋ ଚରଣେ ॥
ଏମନ୍ତ କହି ଦାମୋଦର । ବେଗେ ବିନ୍ଧିଲେ ତୀକ୍ଷ୍ଣ ଶର ॥
ବିରଥୀ କରି ତାର ଶିର । ଚକ୍ରେ ଛେଦିଲେ ଚକ୍ରଧର ॥
ବାସେବ ବଜ୍ରେ କ୍ଷୀର୍ଣ୍ଣ ହୋଇ । ପର୍ବତ ଯେମନ୍ତ ଦିଶଇ ॥
କାଶୀ ରାଜାର ଦେଖି ରଥ । ବେଗେ ମିଳିଲେ ଗୋପୀନାଥ
ନିଜ କୋଦଣ୍ଡେ ଦେଇ ଗୁଣ । ସନ୍ଧାନ କଲେ ତୀକ୍ଷ୍ଣବାଣ ॥
କାଶୀ ରାଜାର ଶିରକାଟି । ନାରାଜ ଗଲା ଶୁନ୍ୟେ ଘୋଟି ॥
ଦିଗ ପୂରିଲା ଘୋର ନାଦେ । ପଡ଼ିଲା କାଶୀପୁର ମଧ୍ୟେ ॥
ରାଜାର ଦ୍ୱାରେ ଦେଖି ମୁଣ୍ଡ । ଲୋକେ ହୋଇଲେ ଆସି ଗୁଣ୍ଡ
ପବନ ବଳେ ଛିଡ଼ି ପାଂଶ । ଯେହ୍ନେ ଦିଶଇ ପଦ୍ମକୋଷ ॥
ଏମନ୍ତେ ଶୁଣ ଦଣ୍ଡଧାରୀ । ପଞ୍ଚମ କ୍ଷେଉଣୀ ସଂହାରି ॥
ପୌଣ୍ଡ୍ରକ କାଶୀରାଜା ତୁଲେ । ରଣେ ଗୋବିନ୍ଦ ସଂହାରିଲେ ॥
ଦେଖି ସାନନ୍ଦ ଦେବ ଗଣେ । ରିପୁ ନାସିଲେ ନାରାୟଣେ ॥
ଦ୍ୱାରକା ବିଜେ ଲକ୍ଷ୍ମୀକାନ୍ତ । ଏବେ ହୋ ଶୁଣ ନରନାଥ ॥
ପୌଣ୍ଡ୍ରକ ଗୋବିନ୍ଦର ଭାବ । ନିରତେ କରି ଅନୁଭବ ॥
ମରଣେ ଚାହିଁ କୃଷ୍ଣରୂପ । ଖଣ୍ଡିଲେ ଭୟ ଭବ ଦୁଃଖ ॥
କାଶୀ ରାଜାର ମୁଣ୍ଡ ଦେଖି । ଲୋକେ ବୋଲନ୍ତି ଉପଲକ୍ଷି ॥
କିଯେ କାହାର ଦେଖ ଶିର । ଛିଡ଼ି ପଡ଼ିଲା ରାଜା ଦ୍ୱାର ॥
ଏମନ୍ତେ କରନ୍ତେ ବିଚାର । ଚିହ୍ନିଲେ କାଶୀ ରାଜା ଶିର ॥
ସମରେ କୃଷ୍ଣ କଲେ ନାଶ । ଶୁଣି ପାଇଲେ ମନେ ତ୍ରାସ ॥
ତାହାର ଯେତେକ ତରୁଣୀ । ସ୍ୱାମୀ ମରଣ କଥା ଶୁଣି ॥
ବନ୍ଧୁ ବାନ୍ଧବ ଜନ ମିଳି । କାନ୍ଦନ୍ତେ ଭୁବନ ଉଛୁଳି ॥
କାନ୍ଦନ୍ତି ହା ହା ନାଥ ବାଣୀ । ଗୋଳ ପ୍ରଳୟ ପ୍ରାୟେ ଶୁଣି ॥
ତାର କୁମର ସୁଦକ୍ଷିଣ । ଶୋକ ନିବାରି ବନ୍ଧୁଗଣ ॥
ପିତାର ପ୍ରେତକ୍ରିୟା ସାରି । ସଂକଳ୍ପ କଲା କୋପଭରି ॥
ପିତା ବଇରୀ ଯେବେ ମାରି । ତେବେ ସେ ଥିବି ଦେହ ଧରି
ଏମନ୍ତେ ମନ ସ୍ଥିର କରି । ସେବିଲା ଶଙ୍କର ଗଉରୀ ॥
ସମାଧି ବସି ଯୋଗବଳେ । ତୋଷିଲା ଶଙ୍କରେ ନିଷ୍ଠଳେ ॥

ପ୍ରସନ୍ନ ହୋଇ ଶୂଳଧର । ବୋଇଲେ ବେଗେ ମାଗ ବର
ଭଗ୍ନ ସମାଧି ସୁଦକ୍ଷିଣ । ବନ୍ଦିଲା ଈଶ୍ୱର ଚରଣ ॥
ବୋଲଇ ଶିରେ ଦେଇ କର । ପିତୃ ବଇରୀ ଅଛି ମୋର ॥
ତାହାକୁ କରିବି ମୁଁ ହତ । ଏ ବର ଦିଅ ଉମାକାନ୍ତ ॥
ଶୁଣି ବୋଇଲେ ଦେବହର । ତୁ ଏବେ ଅଗ୍ନି ପୂଜା କର ॥
ବିବିଧ ସବିଧେଣ କରି । ବିପ୍ର ବଚନ ମନେ ଧରି ॥
ଆଗମ ନିଗମ ବଚନେ । ଅନଳ ପୂଜ ଏକ ମନେ ॥
ରତ୍ୱିଜ କରିବୁ ବରଣ । ମାରଣେ ବେଦ ଅଥର୍ବଣ ॥
ଆଭିଚାରକ ବେଦନାଦେ । ଆହୁତି ଦିଅ କୁଣ୍ଡ ମଧ୍ୟେ ॥
ଅଗ୍ନି ପୁରୁଷ ଜାତ ହୋଇ । ପର ଅପର ତାର ନାହିଁ ॥
ମାରିବୁ ରିପୁ ଯେ ତୋହୋର । ବ୍ରାହ୍ମଣ ସେବା ନାହିଁ ଯାର ॥
ଏମନ୍ତ ରୁଦ୍ରବାକ୍ୟ ଶୁଣି । ଯଜ୍ଞ ଆରମ୍ଭେ ନୃପମଣି ॥
କୃଷ୍ଣଙ୍କୁ ଅଭିଚାର ମନ୍ତ୍ରେ । ଆହୁତି ଦିଲା ଅହିବ୍ରତେ ॥
କୁବୁଦ୍ଧି ପଣ ଦେଖ ତାର । କୃଷ୍ଣଙ୍କୁ ଚିନ୍ତେ ଅବିଚାର ॥
ଅଗ୍ନି ପୁରୁଷ କୁଣ୍ଡ ମଧ୍ୟେ । ଜନ୍ମ ହୋଇଲା ଘୋର ନାଦେ
ଅତି ଭୀଷଣ ରୂପବନ୍ତ । ତା ରୂପ ଶୁଣ ନରନାଥ ॥
ତପତ ତମ୍ବା ପ୍ରାୟେ ଶିଖା । ସମନାସିକ ପିଙ୍ଗ ରେଖା ॥
ନକ୍ଷତ୍ର ପ୍ରାୟ ରୂପ ତାର । ଲୋଚନ ବଚନ ଗଭୀର ॥
ଅଙ୍ଗାର ଉଦ୍‌ଗାର ତୁଣ୍ଡେ । ବିକଟ ଦଶନ ପ୍ରଚଣ୍ଡେ ॥
ଭ୍ରୂକୁଟି କୁଟିଳ କଠୋର । ତୁଣ୍ଡ ଗଭୀର ଅନ୍ଧକାର ॥
ଜିହ୍ୱା ବୁଲାଇ ବେନି କଳେ । ଯେସନେ ବିଜୁଳି ଚଞ୍ଚଳେ ॥
ଉଲଗ୍ନ ଶରୀର କରାଳ । ହସ୍ତେ କମ୍ପଇଁ ତୀକ୍ଷ୍ଣ ଶୂଳ ॥
ଚଳଇ କରି ଘୋର ନାଦ । ତାଳ ପ୍ରମାଣେ ବେନି ପାଦ ॥
କୋପେ ଧାମଇଁ ଶୂଳହସ୍ତେ । ଅବନି କମ୍ପେ ତାଳ ଘାତେ ॥
ଶଙ୍କର ଭୂତଗଣ ସଙ୍ଗେ । ଦ୍ୱାରକା ଗଲା ଅତି ବେଗେ ॥
ତାହାର ତେଜେ ଦହେ ଦିଶ । ସୁ ଧୂମେ ପୂରିଲା ଆକାଶ ॥
ଏମନ୍ତେ ବହ୍ନିର ଆଗମ । ଧୂମ୍ର ବ୍ୟାପିତେ ଘୋରତମ ॥
ଭୟେ କମ୍ପନ୍ତି ଛନ୍ନ ଛନ୍ନ । ଦ୍ୱାରକାପୁରେ ଯେତେ ଜନ ॥
ଭୟେ ଭାଙ୍ଗିଲେ ଚାରି ଦିଗେ । ବନ ଦହନେ ଯେହ୍ନେ ମୃଗେ
ପଶା ଖେଳନ୍ତେ ଭଗବାନ । ଏମନ୍ତେ ମିଳି ସର୍ବ ଜନ ॥
ବୋଲନ୍ତି କୃଷ୍ଣ ମୁଖ ଚାହିଁ । ଭୋ ନାଥ କର ଜନ ତ୍ରାହି ॥
ତ୍ରୈଲୋକ୍ୟ ନାଥ ତୋର ପୁର । ଅନଳ ଦହନ୍ତୁ ଭଙ୍କର ॥
ଏମନ୍ତେ ସୁଜନ ବିକଳ । ଦେଖି ବୋଲନ୍ତି ଆଦି ମୂଳ ॥
ଶରଣ ବଂଧୁ ବନମାଳୀ । ବୋଲନ୍ତି ବେନି ଭୁଜ ଟୋଳି

ଭୟ ନକର ତୁମ୍ଭେ କେହି । ଅନଳ ସଂହାରିବି ମୁହିଁ ॥
ଯେ ହରି ଅଶେଷ ଶରୀରେ । ବିଦିତ ଅନ୍ତର ବାହାରେ ॥
ସୁଜନ ଶୁଭାଶୁଭ ଜାଣେ । ଏମନ୍ତେ ନିଗମ ବଖାଣେ ॥
ରୁଦ୍ର ଅନଳ କୃଷ୍ଣ ଜାଣି । ଚକ୍ର ସୁମରି ଚକ୍ରପାଣି ॥
ଚକ୍ର ଗୋବିନ୍ଦ ପାଶେ ଥିଲା । କୃଷ୍ଣର ମନ ସେ ଜାଣିଲା ॥
କୋଟି ଆଦିତ୍ୟ ତେଜ ନାଶେ । ପ୍ରଳୟ ଅନଳ ପ୍ରକାଶେ ॥
ଭୂମି ଗଗନେ ତେଜ ବ୍ୟାପି । ବିଷ୍ଣୁର ତେଜ ବିଶ୍ୱ ବ୍ୟାପି ॥
କୃତୀ ହା ଅଗ୍ନି ଅଙ୍ଗେ ପଡ଼ି । ଶବଦ ଶୁଭେ ଘଡ଼ଘଡ଼ି ॥
ଚକ୍ର ସଂଯୋଗେ ଅଗ୍ନି ନାଶ । ଭସ୍ମ ପଡ଼ିଲା ଦଶ ଦିଶ ॥
ଘୋର ଅନଳ ନାଶି ଖରେ । ବେଗେ ମିଳିଲା କାଶୀପୁରେ ॥
ଯକ୍ଷର ସ୍ଥାନେ ଯାଇଁ ମିଳି । କୋଟି କିରଣ ତେଜ ଝଳି ॥
ଋତ୍ୱିଜ ସଙ୍ଗେ ସୁଦକ୍ଷିଣ । ଦହନ କଲା ତତକ୍ଷଣ ॥
ପ୍ରଚଣ୍ଡ ତେଜ ମହାଘୋର । କୋପେ ଦହିଲା କାଶୀପୁର ॥
ନରଗୁଞ୍ଜର ଅଶ୍ୱରଥ । ଭସ୍ମ ହୋଇଲେ ଯୂଥ ଯୂଥ ॥
ସକଳ ଗୁଣ କାଶୀପୁରେ । କିବା ଉପମା ଦେବା ତାରେ ॥
ଦହନ କଲା ଅତି ଖରେ । ବିଷ୍ଣୁର ତେଜ ମହାଘୋରେ ॥
ଦେଖି ଅଖିଳ ଜନ ତ୍ରାସେ । ପୁଣି ମିଳିଲା କୃଷ୍ଣପାଶେ ॥
ବୋଲନ୍ତି ଶୁକ ମୁନିବର । ଶୁଣ ସୁମନେ କୁରୁବୀର ॥
କୃଷ୍ଣ ବିକ୍ରମ ରସବାଣୀ । ଯେ ଏହା ଜନ ମଧ୍ୟେ ଶୁଣି ॥
ଯେ ଅବା ଶ୍ରବଣେ ଶୁଣନ୍ତି । ସକଳ ପାପୁଁ ସେ ତରନ୍ତି ॥
ଶୁଣାଇ ଶୁଣେ ଯେ ଭଜନ । ତାର ଭଗତି କି ବର୍ଣ୍ଣନ ॥
ସୁଜନେ ଶୁଣ କୃଷ୍ଣରସ । ଭଣଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ପୌଣ୍ଡ୍ର କାଶୀରାଜାବଧୋ ନାମ ଏକ ସପ୍ତତିତମୋଽଧ୍ୟାୟଃ ।*

## ଦ୍ୱିସପ୍ତତିତମ ଅଧ୍ୟାୟ

### ରାଜନ ଉବାଚ

ଶୁକ ଚରଣେ ଚିତ୍ତ ଦେଇ । ଭାବେ ପରୀକ୍ଷ ପଚାରଇ ॥
ଭୋ ମୁନି ପ୍ରଭୁ କାମପାଳ । ସୁନ୍ଦର ବୀର ବାହୁ ବଳ ॥
ଯମୁନା କରଷଣ କରି । ବନେ ରମିଲେ ଗୋପନାରୀ ॥
ତୁମ୍ଭ ବଦନୁ ସୁଧାବାଣୀ । କୃଷ୍ଣ ଚରିତ କର୍ଣ୍ଣେ ଶୁଣି ॥
ନିର୍ମଳ କରି ପ୍ରାଣ ଦେହ । ରାମ ଚରିତ ମୋତେ କହ ॥
ଅନନ୍ତ ଅପ୍ରମିତ ତେଜ । ଯେ ରୂପେ କୃଷ୍ଣର ଅଗ୍ରଜ ॥
କହନ୍ତି ବ୍ୟାସଙ୍କର ସୁତ । ଶୁଣ ହୋ ରାମର ଚରିତ ॥
ନାରକା କୃଷ୍ଣ ହସ୍ତେ ମଲା । ତାର ସହୃଦ ସଖା ଥିଲା ॥
ଦେବ ଦାନବେ ଆଗୋଚର । ଦ୍ୱିବିଦ ନାମେଣ ବାନର ॥
ବାଳି ସୁଗ୍ରୀବ ମିତ୍ର ସେହି । ମହୀନ୍ଦ୍ର ତାର ଜ୍ୟେଷ୍ଠ ଭାଇ ॥
ସୁଝିବା ଅର୍ଥେ ମିତ୍ର ଋଣ । ଇଛଇ କୃଷ୍ଣ ସଙ୍ଗେ ରଣ ॥
ଦେଖି ପାଇଲେ ଦେବେ ତ୍ରାସ । କରଇ ଜନ ପ୍ରଜା ନାଶ ॥
ଗ୍ରାମ ପାଟଣା ପୁରେ ଯାଇଁ । ଲାଙ୍ଗୁଡ଼େ ଅନଳ ଲଗାଇ ॥
ଦୁର୍ଗମ ବନ ଦେଶ ଗ୍ରାମ । କରଇ ବାନର ଦହନ ॥
ଧାମଇଁ ଶିଳା ବୃକ୍ଷ ଘେନି । ଶବଦେ କମ୍ପଇ ମେଦିନୀ ॥
ପ୍ରଚଣ୍ଡ ଘୋର ନାଦ କରି । ଭାଙ୍ଗଇ ପୁର ଗ୍ରାମ ଗିରି ॥
ମିଳିଲା ଦ୍ୱାରାବତୀ ପୁରୀ । ଲୋଡ଼ଇ ମିତ୍ର ଶତ୍ରୁ ମାରି ॥
ସମୁଦ୍ରେ ମଧ୍ୟେ କୋପାନଳ । ସିଞ୍ଚଇ ବେନି ଭୁଜେ ଜଳ ॥
ସମୁଦ୍ର କୂଳେ ଦେଶ ଯେତେ । ଜଳେ ଭାସିଲେ ଅପ୍ରମିତେ ॥
ଅୟୁତ ମତ୍ତ ଗଜ ବଳ । ସିଞ୍ଚଇ ରାତ୍ର ଦିନ ଜଳ ॥
ଭାଙ୍ଗଇ ଶସ୍ୟ ଫଳ ଦ୍ରୁମ । ନାଶଇ ମୁନିଙ୍କ ଆଶ୍ରମ ॥
ମନିଙ୍କ ଯଜ୍ଞ କୁଣ୍ଡେ ଯାଇଁ । ଆନନ୍ଦ ଦେଖି ରୋଷ ବହି ॥
ଭାଙ୍ଗଇ ଯଜ୍ଞର ମଣ୍ଡଳ । ଅନଳେ କ୍ଷେପେ ମୂତ୍ର ମଳ ॥
ସ୍ତିରୀ ପୁରୁଷ ହସ୍ତ ଧରି । ଗିରି କନ୍ଦର ମଧ୍ୟେ ଭରି ॥
ଦ୍ୱାର ରୁନ୍ଧଇ ଶିଳା ଦେଇ । କୁମ୍ଭାର କୀଟ ପ୍ରାୟ ହୋଇ ॥
ଏମନ୍ତେ ଦେଶ ନାଶ କରି । ଦୂଷଣ କଲା କୁଳ ସ୍ତିରୀ ॥
ରଜନୀ କାଳେ ଏକ ଦିନେ । ରୈବତ ଗିରି ଘୋରବନେ ॥
ସୁସ୍ୱର ନାଦ ଗୀତ ଶୁଣି । କୋପେ ଧାଇଁଲା ବୀର ମଣି ॥
ଗିରି ଶିଖରେ ବେଗେ ଉଠି । ଲୁଚି ଚାହିଁଇ ସ୍ଥିର ଦୃଷ୍ଟି ॥
କାମିନୀଗଣ ମଧ୍ୟେ ରାମ । ଯଦୁ ସୁନ୍ଦର ଅନୁପମ ॥
ବିବିଧ ଅଳଙ୍କାର ଶୋହେ । କୁସୁମମାଳା ଜନ ମୋହେ ॥
ବାରୁଣୀପାନେ ମତ୍ତ ହୋଇ । କାମିନୀ ମିଳି ଗୀତ ଗାଇ ॥
ମଦେ ଅରୁଣ ଚକ୍ଷୁ ଦୁଇ । କି ପଟାନ୍ତର ଦେବି ମୁହିଁ ॥
କରଣୀ ଯୂଥ ମଧ୍ୟେ ପଶି । ମତ୍ତ ଗୁଞ୍ଜର ଯେହ୍ନେ ଦିଶି ॥
ଦୁଷ୍ଟ ବାନର ବାହୁବଳେ । ବୃକ୍ଷେ ଉଠିଲା କୋପାନଳେ ॥
ଡାଳ କମ୍ପାଇ ଚାଳେ ପାଦ । କରଇ କିଳିକିଳା ନାଦ ॥
ତକ୍ଷଣେ ବୃକ୍ଷ ଶିଖେ ଯାଇ । ଗର୍ଜଇ ବଦନ ଦେଖାଇ ॥
ଦେଖି ତାହାର ଦୁଷ୍ଟପଣ । ଭୟେ ଚାହିଁଲେ ସ୍ତିରୀଗଣ ॥
କରାଳ ମୁଖ ତାର ବେଶ । ଦେଖି କାମିନୀ କଲେ ତ୍ରାସ ॥

ଦେଖି ବାନର କୋପମନେ । ଭ୍ରୂକୁଟି କୁଟିଳ ଲୋଚନେ ॥
କପି ସ୍ୱଭାବେ କରି ନାଦ । ନାରୀଙ୍କି ଦେଖାଇଲା ଗୁଦ ॥
ଏମନ୍ତେ ତାର ଦୁଷ୍ଟପଣ । ଦେଖିଲେ ରେବତୀ ରମଣ ॥
ପାଷାଣ ଖଣ୍ଡେ ଧରି କରେ । ପିଟିଲେ ବାନର ଉପରେ ॥
ବେଗେ ବାନର କୋପ ବହି । ଡେଇଁ ପଡ଼ିଲା ମଧ୍ୟେ ଯାଇଁ ॥
ବାରୁଣୀ କୁମ୍ଭ ଘେନି କରେ । ଡାକିଲା ରାମର ଉପରେ ॥
ରାମକୁ ଚାହିଁ କୋପ ମନ । ଘୂରାଇ ଅରୁଣ ଲୋଚନ ॥
ଲାଙ୍ଗୁଡ଼ ନିଜ ମୁଖେ ଭରି । ରାମର ବସ୍ତ୍ର ବେଗେ ଚିରି ॥
କଦର୍ଥ କରି ହଳଧର । ମଦ୍ୟ କଳସ କଲା ଚୂର ॥
ରାମଙ୍କୁ ମଣି ତୁଚ୍ଛ ପ୍ରାୟେ । ଓଷ୍ଠ କାମୋଡ଼ି ରୋଷେ ଚାହେଁ ॥
ଦୁଷ୍ଟର କର୍ମ ଦେଖି ତାର । ଜାଣିଲେ ରୋହିଣୀ କୁମର ॥
ଅନେକ ଜନ କରି ନାଶ । ଆସି ମିଳିଲା ମୋର ପାଶ ॥
ଏ ଦୁଷ୍ଟ କପି ପ୍ରାଣେ ଥିଲେ । ଆଉ କି ପ୍ରଜା ଥିବେ ଭଲେ ॥
ଏମନ୍ତ ହୃଦରେ ବିଚାରି । ହଳ ମୂଷଳ କରେ ଧରି ॥
କୋପିତ ରୋହିଣୀ ନନ୍ଦନ । ରିପୁ ମାରଣେ ସାବଧାନ ॥
ଦେଖି ବାନର କୋପ କଲା । ହୁଙ୍କାରେ ବୃକ୍ଷ ଉପାଡ଼ିଲା ॥
କରେ ବୁଲାଇ କୋପଭରେ । ପିଟିଲା ରାମର ଉପରେ ॥
ମୁଣ୍ଡେ ପଡ଼ନ୍ତେ ମହାଦ୍ରୁମ । ଅଚଳ ପ୍ରାୟେ ରହି ରାମ ॥
ମୂଷଳଘାତେ ହଳଧର । ତାହାର ବୃକ୍ଷ କଲେ ଚୂର ॥
ପୁଣି ଘୂରାଇ ବାହୁଦଣ୍ଡେ । ପିଟିଲେ କପିରାଜ ମୁଣ୍ଡେ ॥
ଘୋର ପ୍ରହାରେ ମୁଣ୍ଡ ତୁଟି । ରୁଧିର ଗଳେ ଦନ୍ତ ଫାଟି ॥
କିବା ଉପମା ଦେବା ତାରେ । ରୁଧିର ଧାରା ତା ଶରୀରେ ॥
ପର୍ବତ ଯେହ୍ନେ ଧାତୁ ଜଳ । ରଙ୍ଗେ ବିରାଜ ବୃଷ୍ଟି କାଳ ॥
ତେଡ଼େ ପ୍ରହାରେ ନ ମରିଣ । ଯୁଗଳ ବୃକ୍ଷ ଧରି ପୁଣ ॥
ବଳେ ଭ୍ରମାଇ ବୃକ୍ଷ ଦୁଇ । ରାମର ଉପରେ ପିଟଇ ॥
ବୃକ୍ଷ ପଡ଼ନ୍ତେ ହଳଧର । ମୂଷଳ କଲେ ଶତେ ଚୂର ॥
ପୁଣି ଉପାଡ଼ି ବୃକ୍ଷ ଦୁଇ । କୋପେ ଧାଇଁଲା ନାଦ ଦେଇ
ପୁଣି ମୂଷଳେ ଚୂର୍ଣ୍ଣ କରି । ଦେଖି ବାନର କୋପ ଭରି ॥
ପୁଣି ଉପାଡ଼ି ବୃକ୍ଷ ଆଣି । ବଜ୍ର ଶବଦ ପ୍ରାୟେ ମଣି ॥
ଏମନ୍ତେ ପୁଣ ପୁଣ ପିଟି । ବୃକ୍ଷ ପଡ଼ିଲେ ମହୀଲୋଟି ॥
ଏମନ୍ତେ କପି କୋପମନ । ନିବୃକ୍ଷ କଲା ଘୋର ବନ ॥
ବୃକ୍ଷ ନ ପାଇ କୋପଭରେ । ପାଷାଣ ଘେନି ବେଗେ କରେ
ପାଷାଣ କଲା ଘୋର ବୃଷ୍ଟି । ଧାମଇ ତୋଳି ବେନି ମୁଷ୍ଟି ॥
ପ୍ରହାର କରି ରାମ ହୃଦେ । ପୁଣି ଗର୍ଜ୍ଜଇ ଘୋର ନାଦେ ॥
ତକ୍ଷଣେ ରାମ କୋପ ଭରେ । ହଳ ମୂଷଳ ଘେନି କରେ ॥
ପାଷାଣ ବୃଷ୍ଟି କଲେ ଚୂର । ଲୀଳା ମାତ୍ରକେ ହଳଧର ॥
ପାଷାଣ ବୃଷ୍ଟି ନାଶ ଗଲା । ଦେଖି ବାନର କୋପ କଲା ॥
କୋପେ ବାନର ବିଶ୍ୱ କାୟେ । ମୁଷ୍ଟି ତୋଳିଲା ବଜ୍ର ପ୍ରାୟେ ॥
ପିଟିଲା ହଳଧର ହୃଦେ । ଲାଙ୍ଗୁଳ ଚାଳି ଘୋର ନାଦେ ॥
ରାମ ତାହାର ଗର୍ବ ଦେଖି । ମଦେ ଅରୁଣ ବେନି ଆଖି ॥
ହଳ ମୂଷଳ ଏକ ବାରେ । ଶୂନ୍ୟେ ବୁଲାଇ ବେନି କରେ ॥
ପ୍ରହାର କଲେ ତାର ଶିର । ତକ୍ଷଣେ ହେଲା ଶତେ ଚୂର ॥
ରୁଧିର ବହେ ଶତ ଧାର । ଜୀବନ ଛାଡ଼ିଲା ବାନର ॥
ଭୂମିରେ ପଡ଼ିଲା ଶରୀର । ଶବଦ ଶୁଭେ ମହାଘୋର ॥
ଗିରି କମ୍ପିଲା ବିନା ବାୟେ । ପବନ ଚଳେ ନାବ ପ୍ରାୟେ ॥
ଦେଖି ଗଗନେ ଦେବଗଣ । ବନ୍ଦିଲେ ରାମର ଚରଣ ॥
ଜୟ ଶବଦ ଶୂନ୍ୟେ ପୂରି । ନମୋ ଶବଦେ ସ୍ତୁତି କରି ॥
ଆନନ୍ଦ ହୋଇ ସୁର କୁଳ । ପୁଷ୍ପ ବରଷିଲେ ଗହଳ ॥
ସାଧୁ ଶବଦ ନାଦ କରି । ରଙ୍ଗେ ନାଚନ୍ତି ଅପସରୀ ॥
ଏମନ୍ତେ ବାନର ବିନାଶି । ସାଧୁ ଶବଦେ ଜନେ ଘୋଷି ॥
ପୁରେ ପ୍ରବେଶ ହଳଧର । ସୁନ୍ଦର ଦିଶେ ଯଦୁପୁର ॥
ରେ ରାମ ଚରଣେ ବିଶ୍ୱାସ । ନମଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଦ୍ୱିବିଦ ବାନର ବଧେ ନାମ ଦ୍ୱିସପ୍ତତିତମୋଽଧ୍ୟାୟଃ ।*

## ତ୍ରିସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କ ନନ୍ଦନ । ଶୁଣ ହୋ ରାମର ବିକ୍ରମ ॥
ଥିଲା ଯେ ଦୁର୍ଯ୍ୟୋଧନ ରାଜା । ଲକ୍ଷଣା ତାହାର ତନୁଜା ॥
ତାହାର ସ୍ୱୟମ୍ବର କାଳେ । କୃଷ୍ଣ ନନ୍ଦନ ଯାଇଁ ବଳେ ॥
ଶାମ୍ବ ସୁନ୍ଦର ବଳବନ୍ତ । ସୁନ୍ଦର ଜାମ୍ବବତୀ ସୁତ ॥
ଦେଖି ତାହାର ଦୁଷ୍ଟପଣ । କୋପେ ବୋଲଇ କୁରୁରାଣ ॥
ଦେଖ ଏ ଦୃମିନିତ ବଳା । ଆମ୍ଭର କୁଳେ ଦେଲା କଳା ॥
ଆମ୍ଭକୁ କରି କଦର୍ଥନ । ବଳେ ହରିଲା କନ୍ୟା ଧନ ॥
ଆମ୍ଭ ବିଚାରେ ଦେବା କାହିଁ । ଏମନ୍ତ କହି କୋପ ବହି ॥
ଏହାକୁ ବଳି କର ଯେବେ । କି କରି ପାରିବେ ଯାଦବେ ॥

ଆମ୍ଭର ହେଲା ରାଜପଣେ । ରାଜ୍ୟ ଭୁଞ୍ଜନ୍ତି ଦୁଷ୍ଟ ପଣେ ॥
ଏହାର ପାଇଁ ଯେବେ ଛଳେ । ଯାଦବେ ଆସି ବାହୁବଳେ ॥
ଆମ୍ଭର ତୁଳେ ଯୁଦ୍ଧ କରି । ହେଲେ ସଂଗ୍ରାମେ ଯିବେ ହାରି ॥
ବିମୁଖେ ନ କରିବେ ରଣ । ଯୋଗ ସଂଯୋଗେ ଯେତେ ପ୍ରାଣ ॥
ଏମନ୍ତେ କରି ଏକ ମନ । ଭୂରି ଶ୍ରବାଦି ଶଲ୍ୟ କର୍ଣ୍ଣ ॥
ଦୁର୍ଜ୍ଜୟ ଦୁଃଶା ଦୁର୍ଯ୍ୟୋଧନ । ଆରାଧି ଅନ୍ଧର ନନ୍ଦନ ॥
ଭୀଷ୍ମ ଦ୍ରୋଣଙ୍କ ଆଜ୍ଞା ପାଇ । ସକଳ ବୀରେ ସଜ ହୋଇ ॥
ଏକ ଆରେକ ମହାଦମ୍ଭ । ଶାମ୍ବକୁ ଧାରଣେ ଆରମ୍ଭ ॥
କୁରୁ ଧାଇଁଲେ ମନଦୁଃଖେ । ମିଳିଲେ ଶାମର ସମ୍ମୁଖେ ॥
ଦେଖି ତାହାଙ୍କ ଦୁଷ୍ଟ ଚିତ୍ତ । କୃଷ୍ଣ ନନ୍ଦନ ସାମରଥ ॥
ନିଜ କୋଦଣ୍ଡେ ଗୁଣ ଦେଇ । ରହିଲା ସିଂହ ପ୍ରାୟେ ହୋଇ ॥
ବେଗେ ମିଳିଲେ କୁରୁବୀର । ଶୁଭଇ ମୁଖ ରାବ ଗୋଳ ॥
ଡାକନ୍ତି ଧର ଧର ବାଣୀ । ସିନ୍ଧୁ ଶବଦ ପ୍ରାୟେ ମଣି ॥
ଶାମ୍ବକୁ ଜିଣିବାର ଆଶେ ।ବେଗେ ମିଳିଲେ ତାର ପାଖେ ॥
ରୁନ୍ଧି ତାହାର ଦିଗ କୋଣ । କର୍ଣ୍ଣ ସହିତ ଘୋର ରଣ ॥
ସ୍ୱଭାବେ ସର୍ବେ ଧନୁର୍ଦ୍ଧର । ଖର ବରଷା ମହାଘୋର ॥
କରି ରୁନ୍ଧିଲେ ଦଶଦିଶେ । ତା ଦେଖି ଶାମ୍ବ ମହା ରୋଷେ ॥
ଘାତେ ନକମ୍ପେ ତା ଶରୀର । ନିର୍ଭୟେ କୃଷ୍ଣର କୁମର ॥
କ୍ଷୁଦ୍ର ମୃଗଙ୍କ ମଧ୍ୟେ ଥାଇ । କେଶରୀ ଯେମନ୍ତ ଦିଶଇ ॥
ଶାମ୍ବ କରଇ ଧନୁ ଘୋଷ । ଶବଦେ କମ୍ପେ ରଣ ଦେଶ ॥
କର୍ଣ୍ଣ ସହିତେ ଷଡ଼ରଥୀ । ଶାମ୍ବକୁ ବାଣ ବରଷନ୍ତି ॥
ଦେଖି କୋପିତ କୃଷ୍ଣସୁତ । ବାଣ ବରଷେ ଅପ୍ରମିତ ॥
କର୍ଣ୍ଣକୁ ପଞ୍ଚବାଣ ବିନ୍ଧି । ରଥ ସାରଥି ଅଶ୍ୱ ଛେଦି ॥
ଷଡ଼ରଥିଙ୍କୁ ଏହିମତେ । ବାଣ ବିନ୍ଧିଲେ ଅପ୍ରମିତେ ॥
ଦେଖି ତାହାର କ୍ଷତ୍ରିପଣ । କୁରୁଙ୍କ ସଙ୍ଗେ ଘୋର ରଣ ॥
ସାଧୁ ଶବଦ ଉଚ୍ଚ ନାଦେ । ଶୁଭିଲା କୁରୁବଳ ମଧ୍ୟେ ॥
ଶାମ୍ବ ଉପରେ କୁରୁବୀରେ । ତୀକ୍ଷ୍ଣ ନାରାଚ କୋପଭରେ ॥
ବିନ୍ଧି ସାରଥି କଲେ ନାଶ । ଛେଦିଲେ ଅଶ୍ୱଙ୍କର ପାଶ ॥
ରଥକୁ କଲେ ଖଣ୍ଡ ଖଣ୍ଡ । ଛେଦିଲେ ହସ୍ତର କୋଦଣ୍ଡ ॥
ବିରଥୀ କରି ତାକୁ ବଳେ । ବନ୍ଧନ କରି ଅବହେଳେ ॥
କନ୍ୟା ସହିତେ ତାକୁ ଧରି । ମିଳିଲେ ହସ୍ତିନା ନଗରୀ ॥
କଠୋରେ କୃଷ୍ଣ ସୁତ ଜିଣି । ସମରେ ତୃଣ ପ୍ରାୟେ ମଣି ॥
ନିର୍ଭୟେ ହୋଇଲେ ନିଶ୍ଚିନ୍ତ । ଏବେ ହୋ ଶୁଣ ନରନାଥ ॥
ବ୍ରହ୍ମା ନନ୍ଦନ ତାହା ଜାଣି । ରାମ ବିକ୍ରମ ପରିମାଣି ॥
ମିଳିଲେ ଦ୍ୱାରକା ଭୁବନେ । ରାମ ଗୋବିନ୍ଦ ସନ୍ନିଧାନେ ॥
ଉଗ୍ରସେନର ସଭାମଧ୍ୟେ । କହେ ନାରଦ ମନ ଖେଦେ ॥
ଶୁଣ ହୋ ଭୋଜ ନୃପବର । କୁରୁ ରାଜାର ଅବିଚାର ॥
ତାର କନ୍ୟାର ସ୍ୱୟମ୍ବରେ । ଶାମ୍ବ ଯେ ଥିଲା ତାର ପୁରେ ॥
କନ୍ୟା ବରିଲା ଅନୁମତେ । ଦେଖି କୌରବେ କୋପଚିତ୍ତେ
କୂଟ ସଂଗ୍ରାମେ ତାକୁ ଧରି । ପଶିଲେ ହସ୍ତିନା ନଗରୀ ॥
ଏମନ୍ତ କହି କୃଷ୍ଣ ଆଗେ । ନାରଦ ଗଲେ ଶୂନ୍ୟମାର୍ଗେ ॥
ଏମନ୍ତ ମୁନିବାକ୍ୟ ଶୁଣି । ସମରେ ସଜ ଚକ୍ରପାଣି ॥
ପୁତ୍ର ବନ୍ଧନ ଶୁଣି ରୋଷେ । ଦୟା କରାଇଲେ ବିଶ୍ୱାସେ ॥
ବୋଲନ୍ତି ରଥ ସାଜ ବେଗେ । ତା ଶୁଣି ସାଜିଲେ ଯାଦବେ ॥
ଉଗ୍ରସେନର ଆଜ୍ଞା ପାଇ । ବୀରେ ଚଳିଲେ ସଜ ହୋଇ
କେ କହୁ କୃଷ୍ଣର ସଇନି । ଚଳନ୍ତେ କମ୍ପଇ ଧରଣୀ ॥
ବାଜଇ ବୀର ତୂର ଶୂନ । ରଣେ ଗମନ ଉଗ୍ରସେନ ॥
ଦେଖି ଗୋବିନ୍ଦର ଆଗମ । ବୋଲନ୍ତି ପ୍ରଭୁ ବଳରାମ ॥
ଏ ତ ନୁହଁଇ ଭଲ କଥା । ବନ୍ଧୁରେ ବିରୋଧ ବ୍ୟବସ୍ଥା ॥
ସେ ଅବା ନ ଜାଣି ଆଚରି । ଆମ୍ଭେ କେମନ୍ତେ ବାଦ କରି ॥
ତୁମ୍ଭେ ନ କର ମନେ ରୋଷ । ମୁହିଁ ତାହାଙ୍କର ବିଶ୍ୱାସ ॥
ଆଜ ହସ୍ତିନା ଯିବି ମୁହିଁ । ଉଭୟ କୁଳେ ଭାବ ବହି ॥
ତୁମ୍ଭେ ନ କର ଆଗମନ । ଶୁଣି ସନ୍ତୋଷେ ଭଗବାନ ॥
ଏମନ୍ତେ ପ୍ରଭୁ ବଳରାମ । ଯାଦବ ବଳ କରି ସମ ॥
କୁରୁ ଯାଦବ ହିତ ଚିନ୍ତି । କଳି ନିବାରି ଯଦୁପତି ॥
ଆନନ୍ଦେ ରେବତୀ ରମଣ । କଳି କଳୁଷ ନିବାରଣ ॥
ଉତ୍ତମ ବିପ୍ର ଘେନି ସଙ୍ଗେ । କୁଳ ବୃଦ୍ଧଙ୍କୁ ରାଇ ବେଗେ ॥
ରଥେ ବସିଲେ ତୋଷମନେ । ନକ୍ଷତ୍ର ମଧ୍ୟେ ଚନ୍ଦ୍ର ଯେହ୍ନେ ॥
ମିଳିଲେ ହସ୍ତିନା ଭୁବନେ । ଦୁର୍ଯ୍ୟୋଧନର ଉପବନେ ॥
ଉଦ୍ଧବ କୁରୁସଭା ମଧ୍ୟେ । ନମିଲା ଧୃତରାଷ୍ଟ୍ର ପାଦେ ॥
ଭୀଷ୍ମ ଦ୍ରୋଣଙ୍କ ପାଦେ ନମି । ସ୍ମିତ ବଚନ କହେ ବାଣୀ ॥
ଦୁର୍ଯ୍ୟୋଧନଙ୍କୁ କରି ସମ । କହିଲା ରାମର ଆଗମ ॥
ରାମର ଶୁଣି ଆଗମନ । ଉଷତ ହୋଇ ଭୀଷ୍ମ ଦ୍ରୋଣ ॥
ମଙ୍ଗଳ ଦ୍ରବ୍ୟ ଘେନି କରେ । ମିଳିଲେ ରାମର ଛାମୁରେ ॥
ବନ୍ଧୁ ବାନ୍ଧବ ଗୁଣ ହେଜି । ରାମଙ୍କୁ ଷଡ଼ଅର୍ଘେ ପୂଜି ॥
କହନ୍ତି ମଧୁର ବଚନ । ଆନନ୍ଦ କଲେ ରାମ ମନ ॥
କୁରୁଙ୍କ ମଧ୍ୟେ ଧୀର ମତି । ରାମ ମହିମା ନ ଜାଣନ୍ତି ॥
ଭାବେ ନମିଲେ ରାମ ପାଦେ । ବନ୍ଧୁ କୁଶଳ ପ୍ରୀତିବାଦେ ॥

ରାମହିଁ କଲେ ଯଥାବିଧି । ଯେ ବନ୍ଧୁ କୁଶଳ ପ୍ରସିଦ୍ଧି ॥
କୁରୁଙ୍କ ମଧ୍ୟେ ହଳପାଣି । କହନ୍ତି ପ୍ରିୟଭାବ ବାଣୀ ॥
ରାଜାଧିରାଜ ଉଗ୍ରସେନ । ଯେମନ୍ତ ବୋଲିଛି ବଚନ ॥
ବେଗେ କରିବ ସେହିମତ । ଆମ୍ଭ କୁଶଳ ଧର୍ମ ହିତ ॥
ତୁମ୍ଭେ ଉତ୍ତମ ଶସ୍ତ୍ର ଧରି । ଧର୍ମର ପଥ ନଷ୍ଟ କରି ॥
କପଟ ଯୁଦ୍ଧେ କୃଷ୍ଣ ସୁତ । ଧରି ମଣିଲେ କୃତ କୃତ ॥
ଏ ଅପରାଧ ଆମ୍ଭେ ସହି । ବନ୍ଧୁ କୁଶଳ ଯେଣୁ ବହି ॥
ଏମନ୍ତେ ଶୁଣି ରାମ କଥା । ସ୍ୱଭାବେ ସର୍ବ ମହାରଥା ॥
ଆମ୍ଭର ତୁଲ୍ୟ ପ୍ରାୟେ ମଣି । ବଳଦେବଙ୍କ ମୁଖୁଁ ଶୁଣି ॥
ବଦନ ଚାହିଁ ଏକେ ଏକେ । କୋପେ ବୋଲନ୍ତି ମନଦୁଃଖେ ॥
ଦେଖ ହୋ ଚିତ୍ର କାଳଗତି । ଯାହା କହିଲେ ଯଦୁପତି ॥
ଚର୍ମ ପାଦୁକା ଗର୍ବ ବହି । ଶିର ମୁକୁଟ ଶିଖେ ଯାଇଁ ॥
ଥିବାକୁ କରଇ ବିଚାର । ଏମନ୍ତ ଗର୍ବ ଏହାଙ୍କର ॥
ଏହାଙ୍କୁ ଆମ୍ଭେ ବନ୍ଧୁପଣେ । ରାଜ୍ୟେ ସ୍ଥାପିଲୁ ସିଂହାସନେ ॥
ନୋହନ୍ତି ରାଜପଣେ ଯୋଗ୍ୟ । ଆମ୍ଭର ଦେଲା ବଇଭୋଗ ॥
ଭୁଞ୍ଜି ମଣନ୍ତି ଆତ୍ମ ଗୁରୁ । ଯେଣୁ ଉପେକ୍ଷା ଆମ୍ଭେ କରୁ ॥
ଏହାର ରାଜ୍ୟ ନେବା ବଳେ । ଗର୍ବ ଯେ କଲେ ମତିଭୋଳେ ॥
ରାଜାଯେ ନୋହନ୍ତି ଭାଜନ । ସର୍ପକୁ ଯେହ୍ନେ କ୍ଷୀରପାନ ॥
କ୍ଷୀର ସଂଯୋଗେ ବହେ ବିଷ । ଦାତାକୁ କରେ ପ୍ରାଣ ନାଶ ॥
ଯାହାର ଦେଲା ଅନ୍ନ ଖାଇ । ସର୍ପର ପ୍ରାୟେ ଗର୍ବ ବହି ॥
ଆମ୍ଭକୁ ଆଜ୍ଞା ତୋଳି ଦ୍ୟନ୍ତି । ଅଳପ ପ୍ରାୟେ ସେ ମଣନ୍ତି ॥
ଦେଖ ଆମ୍ଭର ତୁଲେ ବାଦେ । ଇନ୍ଦ୍ର ନ ରହେ ରଣ ମଧ୍ୟେ ॥
ସିଂହ ସମ୍ମୁଖେ ଯେହ୍ନେ ମେଷ । ଭୟେ ଛାଡ଼ଇ ସର୍ବ ଦ୍ୱେଷ ॥
କହନ୍ତି ଶୁକ ମୁନିବର । ଶୁଣ ହେ କୁରୁଙ୍କ ବେଭାର ॥
ଉତ୍ତମ ଧନେ ବନ୍ଧୁଜନେ । ଗର୍ବ ବହିଲେ ଦୁଷ୍ଟମନେ ॥
ଏମନ୍ତେ କହି ଦୁଷ୍ଟବାଣୀ । ଶୁଣି କୋପିଲେ ହଳପାଣି ॥
କୋପେ ଅନଳ ପ୍ରାୟେ ଦିଶି । ବୋଲନ୍ତି ପୁଣ ପୁଣ ହସି ॥
ଦେଖ ଏ ସଂସାର ବେଭାର । ସମ୍ପଦ ବଢ଼ଇ ଯାହାର ॥
ଅସାଧୁପଣ ଆଚରନ୍ତି । ଆତ୍ମାର ଶାନ୍ତି ନ ଇଛନ୍ତି ॥
ତାଙ୍କ ପ୍ରସନ୍ନେ ଦଣ୍ଡହସ୍ତ । ପଶୁଙ୍କ ଲାଙ୍ଗୁଡ଼ ଯେମନ୍ତ ॥
ଏ ବଡ଼ ଖେଦ ମୋର ମନେ । ଉଗ୍ରସେନର ଆଗମନେ ॥
ଯଦୁଙ୍କ ତୁଲେ ନାରାୟଣ । ଏହାଙ୍କ ତୁଲେ ଇଚ୍ଛି ରଣ ॥
ନଗରୁ ହୋଇଲେ ବାହାର । ମୁଁ ଏହା ନକରି ବିଚାର ॥
ଏହାଙ୍କ ପ୍ରିୟଭାବ ବହି । ଅଇଲି ନିବର୍ତ୍ତାଇ ମୁହିଁ ॥
ତହିଁର ଫଳ ଏବେ ମୋତେ । ଦଇବେ ଫଳିଲା ଉଚିତେ ॥
ଏ ଯେ ସ୍ୱଭାବେ ମନ୍ଦମତି । କଳହ ଖଳ କୁରୁପତି ॥
ଦେଖ ଅବଜ୍ଞା ମୋତେ କଲେ । ଦୁଷ୍ଟ ବଚନେ ନିନ୍ଦା ବୋଲେ ॥
ଭୋଜ ଅନ୍ଧକ ବିଷ୍ଣୁ ବଂଶ । ଯାହାର ପୁତ୍ର ବୀର କଂସ ॥
ଯାଦବ କୁଳର ଈଶ୍ୱର । କୃଷ୍ଣ ଯାହାର ଅନୁଚର ॥
ସେ କାହିଁ ରାଜାପଣେ ସାଜେ । ଦେବେ ଖଟନ୍ତି ତା ସମାଜେ ॥
ବାସବ ଆଦି ଦିଗପାଳେ । ସେବନ୍ତି ଯାର ପାଦତଳେ ॥
ସୁଧର୍ମା ସଭା ଯାର ଦ୍ୱାରେ । ପାରିଜାତକ ପୁରେପୁରେ ॥
ମଞ୍ଚେ କରଇ ସ୍ୱର୍ଗଭୋଗ । ସେ ନୋହେ ରାଜପଣେ ଯୋଗ୍ୟ ॥
ପଦ୍ମସମ୍ଭବ କମଳଣୀ । ସ୍ୱଭାବେ ଜଗତ ଜନନୀ ॥
ସେ ଯାର ସେବଇ ଚରଣେ । ସେ କାହିଁ ଯୋଗ୍ୟ ରାଜପଣେ ॥
ଯାହାର ପାଦପଦ୍ମ ରଜ । ଅଖିଳ ଜନଙ୍କ ସମାର୍ଯ୍ୟ ॥
ପବିତ୍ର କରେ ମୁନି ସନ୍ଥ । ଏଣୁ ସେ ତୀର୍ଥଙ୍କର ତୀର୍ଥ ॥
ବ୍ରହ୍ମା ଶଙ୍କର ଆଦି ମୁହିଁ । ଯାହାର କଳାରୂପ ବହି ॥
ଲକ୍ଷ୍ମୀ ସହିତେ ଆଜ୍ଞା ବହି । ତାହାର ନୃପାସନ କାହିଁ ॥
କୁରୁଙ୍କ ଭୋଗ ଆମ୍ଭେ ଖାଇ । ଧରଣୀ ମଧ୍ୟେ ଦେହ ବହି ॥
ଆମ୍ଭେ ସକଳେ ଉପାନହ । କୌରବେ ହୋନ୍ତି ଶିର ଦେହ ॥
କାହାର ବଳେ ଏହା ସହି । ରୁଧିର ମାଂସ ଦେହ ବହି ॥
ଦେଖ କୌରବ କୁଳମତ । ସମ୍ପଦେ ହୋଇ ଆଣାୟତ ॥
ମାନ୍ୟେ ଅଟନ୍ତି ଗର୍ବ ବହି । କେ ଏହା ସହୁ ପ୍ରଭୁ ହୋଇ ॥
ଆଜ କରିବି ପ୍ରତିଫଳ । ଏମନ୍ତ ବୋଲି ତୀକ୍ଷ୍ଣ ହଳ ॥
ତକ୍ଷଣେ ଘେନି ବାମହସ୍ତେ । ବୋଲନ୍ତି ରାମ କୋପଚିତ୍ତେ ॥
ଆଜ ମୁଁ ଏହାଙ୍କୁ ସଂହାରି । ପୃଥିବୀ ନିଷ୍କୌରବ କରି ॥
ତେବେ ମୁଁ ଯିବି ନିଜ ପୁର । ସତ୍ୟ ବଚନ ଏ ମୋହୋର ॥
ଏମନ୍ତେ କହି କୋପେ ଉଠି । ଧଇଲେ ଦୃଢ଼େ ହଳ ମୁଷ୍ଟି ॥
ରାମର କୋପ ଗୁରୁତର । ତେବେ କି ଦହେ ତିନିପୁର ॥
ଲଙ୍ଗଳେ ହସ୍ତିନା ଉପାଡ଼ି । ଶବଦ ଶୁଭେ ଘଡ଼ଘଡ଼ି ॥
ଦକ୍ଷିଣ ଭୁଜେ ସଉନନ୍ଦ । ଶୂନ୍ୟେ ଦେଖନ୍ତି ଦେବବୃନ୍ଦ ॥
ନଗ୍ର ଉପାଡ଼ି ଗଙ୍ଗା ଜଳେ । କୌରବେ ପଶନ୍ତୁ ପାତାଳେ ॥
ଏମନ୍ତ ବୋଲି ହଳଧରେ । ହସ୍ତିନା ଉପାଡ଼ିଲେ କରେ ॥
ସମୁଦ୍ରେ ନାବ ପ୍ରାୟେ ଘୂରି । କମ୍ପାଇ ହସ୍ତିନା ନଗରୀ ॥
ପଡ଼ିବା ପ୍ରାୟେ ଗଙ୍ଗାଜଳେ । ଦେଖିଣ କୌରବ ବିକଳେ ॥
କୁଟୁମ୍ବ ତୁଲେ କଣ୍ଠନାଦେ । ଶରଣ ଗଲେ ରାମପାଦେ ॥
ଡାକନ୍ତି ଜୀବନ ବିକଳେ । ଭୋ ରାମ ରଖ ପାଦତଳେ ॥

ଆମ୍ଭେ ଯେ ସ୍ୱଭାବେ ନିରେଖ । ତୋର କୁମର ବଧୂ ରଖ ॥
କୁମର ସଙ୍ଗେ କନ୍ୟା ନେଇ । ରାମ ଚରଣ ତଳେ ଯାଇ ॥
ଏ କନ୍ୟା ଦେଇ ତୋ ଶରଣେ । ପଶିଲୁ ଅଭୟ ଚରଣେ ॥
ହେ ରାମ ତୋହୋର ମହିମା । ବେଦ ନଜାଣେ ଆଦି ସୀମା ॥
ମୂଢ଼ ଅଜ୍ଞାନ ଆମେ ହୋଉ । ତୋ ଭାବ ଜାଣିବୁଟି କାହୁଁ ॥
ଆମ୍ଭେ କୁବୁଦ୍ଧି ଅପରାଧି । ତୁ ନାଥ କରୁଣା ବରାଧି ॥
ଆଦି ଈଶ୍ୱର ଭଗବାନ । ଆମ୍ଭର ଅପ୍ରାଧ ନ ଘେନ ॥
ସୃଷ୍ଟି ପାଳଣ ସଂହାରଣ । ତୋହୋର କ୍ରୀଡ଼ା ଏ କରଣ ॥
ତୁ ଆଦି ହେତୁ ନିରାଶ୍ରୟ । ନିର୍ଲେପ ଏକ ତୁ ଅବ୍ୟୟ ॥
ତୋହୋର କ୍ରୀଡ଼ାର କନ୍ଦୁକ । ସ୍ୱଭାବେ ହୋନ୍ତି ତିନିଲୋକ ॥
ଏ ଭୂମି ମଣ୍ଡଳ ତୋ ଶିରେ । ଲୀଳା ମାତ୍ରକେ ବହୁ ସ୍ଥିରେ ॥
ପାଳନ କରୁ ତୁ ସଂହାରୁ । ଏଣୁ ତୁ ଶେଷ ରୂପ ଧରୁ ॥
ଯେ କୋପ ତୋର ଦେହେ ଜାତ । ଏଟ ଅଖିଳ ସିଦ୍ଧ ଅର୍ଥ ॥
ହିଂସା ବଚ୍ଛଳ ହୋଏ ଯେଣୁ । ପାଳଣ ହେତୁ ତୋର ତେଣୁ ॥
ସ୍ଥିତି ପାଳଣ ବ୍ୟଗ୍ର ହୋଇ । ତୁ ନାଥ ସର୍ବ ଗୁଣ ବହି ॥
ସଂସାର ମଧ୍ୟେ ତୋର ଲୀଳା । ଯେସନେ ବାଳକଙ୍କ ଖେଳା ॥
ନମସ୍ତେ ସର୍ବଭୂତ ପ୍ରାଣ । ଜୀବନ ଶକ୍ତି ତୁ ଧାରଣ ॥
ଅବ୍ୟୟ ବୋଲଇ ଜଗତେ । ଭୋ ନାଥ ତୋର ଅନୁମତେ ॥
ତୁ ବିଶ୍ୱକର୍ମା ଜ୍ଞାନ ସାର । ଭୋ ନାଥ ତୋତେ ନମସ୍କାର ॥
ତୋର ଚରଣେ ଆମ୍ଭେ ବଳେ । ଶରଣ ପଶିଲୁ ନିଷ୍ଠଳେ ॥
ଶୁକ ବୋଲନ୍ତି ରାୟେ ଶୁଣ । ଭଗତ ବନ୍ଧୁ ଶଙ୍କର୍ଷଣ ॥
କୁରୁଙ୍କ ଦୁଃଖ ଭୟ ଚାହିଁ । ପ୍ରସନ୍ନ ଭାବେ ଦୟାବହି ॥
ହଳ ସଂହାରି ହଳଧର । ବୋଇଲେ ନାହିଁ ତୁମ୍ଭ ଭୟ ॥
ନିର୍ଭୟ ହୋଇ କୁରୁଜନ । ତକ୍ଷଣେ ରାଜା ଦୁର୍ଯ୍ୟୋଧନ ॥
କନ୍ୟା ସମେତ କୃଷ୍ଣସୁତ । ସମର୍ପି ରାମର ଅଗ୍ରତ ॥
ଅନେକ ଯଉତୁକ ଦେଲା । ଶୁଣହୋ ଅଭିମନ୍ୟୁ ବଳା ॥
ନିଗୂଢ଼ ତୀକ୍ଷ୍ଣ ମତ୍ତ ଦନ୍ତ । କୁଞ୍ଜର ଦେଲା ବେନି ଲକ୍ଷ ॥
ଅଶ୍ୱ ହିଁ ଦେଲାକ ଅୟୁତ । ଶତ ସହସ୍ର ସୁନା ରଥ ॥
ରଥେ ଦିଶନ୍ତି ରବି ତେଜ । ପୁଣି ଆନନ୍ଦେ କୁରୁରାଜ ॥
ଦୁହିତା ହିତେ ନରପତି । ସହସ୍ରେ ଦେଲାକ ଯୁବତୀ ॥
ଅମୂଲ୍ୟ ରତ୍ନ କଣ୍ଠେ ଭରି । ଦେଲା ସେବକୀ ସଜ କରି ॥
ଏମନ୍ତେ କନ୍ୟା ଆଦି ଯେତେ । ରାମ ଘେନାଇ ତୋଷ ଚିତ୍ତେ ॥
ଆନନ୍ଦେ ରାମ ସଙ୍ଗ ମେଳେ । କେତେ ହେଁ ଦୂର କୁରୁବଳେ ॥
ରାମଙ୍କୁ କରି ପ୍ରଦକ୍ଷିଣ । ମିଳିଲେ ହସ୍ତିନା ଭୁବନ ॥
ଶଙ୍କରଷଣ ତୋଷ ଚିତ୍ତେ । ମିଳିଲେ ଦ୍ୱାରାବତୀ ପଥେ ॥
ପୁରେ ପ୍ରବେଶ ହଳଧର । ଦେଖି ମିଳିଲେ ଯଦୁବୀର ॥
ବନ୍ଧୁବାନ୍ଧବ ତୋଷଚିତ୍ତେ । ଆନନ୍ଦେ ରାମର ଅଗ୍ରତେ ॥
କନ୍ୟା ସହିତେ କୃଷ୍ଣ ସୁତ । ସଙ୍ଗେ ସମ୍ପଦ ଅପ୍ରମିତ ॥
ଦେଖି ହରଷ ସର୍ବଜନ । ସଭାର ମଧ୍ୟେ ବଳରାମ ॥
କୁରୁଙ୍କ କୃତ କର୍ମ କହି । କୃଷ୍ଣର ପ୍ରିୟ ଭାବ ବହି ॥
କହନ୍ତି ବ୍ୟାସଙ୍କ ନନ୍ଦନ । ଶୁଣ ରାଜନ ଏକ ମନ ॥
ଅଦ୍ୟାପି ରାମର ଚରିତ । ହସ୍ତିନା ନଗରେ ବିଦିତ ॥
ରାମ ବିକ୍ରମ ଯଶ ଅଛି । ପୁର ଦକ୍ଷିଣ ଭାଗେ ଲକ୍ଷି ॥
ଉତ୍ତର ଦିଗେ ନୀର ଦିଶେ । ଯେହ୍ନେ ଜାହ୍ନବୀ ଜଳ ମିଶେ ॥
ଏମନ୍ତ ରାମର ମହିମା । କେ କହିପାରେ ଅନ୍ତସୀମା ॥
ସେ ରାମ ପାଦେ ଦେଇ ଚିତ୍ତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଶାମ୍ବକୁମାର ଲକ୍ଷଣା ହରଣେ ନାମ ତ୍ରିସପ୍ତତିତମୋଽଧ୍ୟାୟଃ ।*

## ଚତୁଃସପ୍ତତିତମ ଅଧ୍ୟାୟ

ଯେବେହୋ ଶୁଣ ନରନାଥ । କୃଷ୍ଣ ଚରିତ ଭାଗବତ ॥
ରଣେ ନାରକାସୁର ମାରି । କୃଷ୍ଣ ଆଣିଲେ ଯେତେ ନାରୀ ॥
ଷୋଳ ସହସ୍ର ଶତାଧିକ । ଗୃହେ ନିବେଶି ଏକ ଏକ ॥
ଯେକେ ଅନେକ ନାରୀ ବରି । ବିବାହ କଲେ ନରହରି ॥
ଯେକେ ଅନେକ ନାରୀ ରମେ । ଯେତେ ବିଚାରି ମନଭ୍ରମେ ॥
ଦେଖିବା ବୋଲି କଲେ ସଧ । ଦ୍ୱାରକା ମିଳିଲେ ନାରଦ ॥
ସ୍ୱଭାବେ ଗୋବିନ୍ଦର ପୁର । କି ଅବା ଦେବା ପଟାନ୍ତର ॥
ପୁଷ୍ପିତ ଉପବନ ମଧ୍ୟେ । ଭ୍ରମର କୁଳ ପକ୍ଷୀ ନାଦେ ॥
ନୀଳ କୁସୁମ ପଦ୍ମସାର । ସୁଗନ୍ଧ କୁସୁମ କହ୍ଲାର ॥
ହଂସ ସାରସ ନାଦେ ମିଶି । ସୁନ୍ଦର ଜଳମୟ ରାଶି ॥
ଶୁଭ୍ର ପ୍ରାସାଦ ନବଲକ୍ଷ । ସ୍ଫଟିକ ରଜତ ପ୍ରତ୍ୟକ୍ଷ ॥
ମହା ମର୍କତ ତେଜକାନ୍ତି । ରତ୍ନ ସୁବର୍ଣ୍ଣ ଝଟକନ୍ତି ॥
ଯେକାନ୍ତ ମାର୍ଗ ଚତୁଷ୍ପଥ । ହାଟ ପାଟଣା ସଭାଯୂଥ ॥
ଦେବତା ଗୃହ ଯଜ୍ଞଶାଳ । ଦିଶନ୍ତି ଯେହ୍ନେ ମେଘମାଳ ॥
ଅଗଣା ରାଜମାର୍ଗ ପଥ । ମାର୍ଜିତ ଚନ୍ଦନେ ସଞ୍ଚିତ ॥

ଚିତ୍ରେ ନିର୍ମିତ ରତ୍ନକାନ୍ତୁ । ଧ୍ୱଜ ପତାକା ଚନ୍ଦ୍ରାତପ ॥
ଯେଣୁ ନ ଲାଗେ ରବିତେଜ । ଯହିଁ ବିଜୟେ ଦେବରାଜ ॥
ଯାଦବ ପୁର ଅତିଶୋଭା । କିସ ଉପମା ଦେବି ଅବା ॥
କୃଷ୍ଣର ଅନ୍ତଃପୁର ଦ୍ୱାରେ । ଦେବେ ଖଟନ୍ତି ନିରନ୍ତରେ ॥
ବିଶ୍ୱକର୍ମାର ଶିଳ୍ପୀ ଗୁଣ । ସଞ୍ଚଇ ଯେ ପୁର ନିର୍ମାଣ ॥
ଷୋଳ ସହସ୍ର କୃଷ୍ଣ ନାରୀ । ଯେ ପୁରେ ଗୃହବାସ କରି ॥
କୃଷ୍ଣ ରମନ୍ତି ମନ ସୁଖେ । କେ କହୁ ତାଙ୍କ ପୁଣ୍ୟମୁଖେ ॥
ବ୍ରହ୍ମାନନ୍ଦନ ଏକାନ୍ତରେ । ମିଳିଲେ କୃଷ୍ଣ ଅନ୍ତପୁରେ ॥
ବିଦ୍ରୁମ ସ୍ତମ୍ଭମାନ ଶୋହେ । ଚଳଇ ଇନ୍ଦ୍ରନୀଳ ପ୍ରାୟେ ॥
ପଟଳ ଶୋହେ ବଇଦୂର୍ଯ୍ୟ । ସମ୍ପୂର୍ଣ୍ଣ ଇନ୍ଦ୍ରନୀଳ ତେଜ ॥
ଯେଣେ ଗଞ୍ଜଇ ସର୍ବଜ୍ୟୋତି । ତମେ ଯେସନେ ତାରାପନ୍ତି ॥
ମୁକୁତା ଦାମେ ଚନ୍ଦ୍ରାତପ । ଯେ ବିଶ୍ୱକର୍ମାର ସ୍ୱରୂପ ॥
ଆସନ ପଲଙ୍କ ସହିତେ । ନିର୍ମିତ କରୀବର ଦନ୍ତେ ॥
ଖଞ୍ଜିତ ପଦ୍ମରାଗ ପନ୍ତି । ଦେଖନ୍ତେ ମନରେ ହରନ୍ତି ॥
କୃଷ୍ଣ କାମିନୀଙ୍କର ପାଶେ । ସେବକୀ ସେବନ୍ତି ବିଶ୍ୱାସେ ॥
ତାହାଙ୍କ କଣ୍ଠେ ରତ୍ନମଣି । ରବି କିରଣ ପ୍ରାୟେ ଜାଣି ॥
ବିବିଧ ବସ୍ତ୍ର ପରିଧାନ । ଦେଖନ୍ତି ଉଦିତ ମଦନ ॥
ରୂପ ବୟସେ ସୁଘଟଣ । ବିବିଧ ରତ୍ନେ ଆଭରଣ ॥
ମଣି କୁଣ୍ଡଳ ଶୋହେ କର୍ଣ୍ଣେ । କୃଷ୍ଣ କାମିନୀ ଅବଧାନେ ॥
ଜଳନ୍ତି ରତ୍ନ ଦୀପ ପନ୍ତି । ଗୃହ ଅନ୍ଧକାର ହରନ୍ତି ॥
ଚିତ୍ର ଜଗତୀ ଶିଖେ ଥାଇଁ । ଅଗୁରୁ ଧୂପ ଧୂମ ଚାହିଁ ॥
ଜଳଦ ପ୍ରାୟେ ମଣିମାନେ । ନାଚନ୍ତି ଆକାଶ ଭୁବନେ ॥
ଯେମନ୍ତ ପୁରେ କୃଷ୍ଣନାରୀ । ସମାନ ବୟଃ ଗୁଣଧାରୀ ॥
ସେବନ୍ତି କୃଷ୍ଣର ଚରଣେ । ନିଜ ମନ୍ଦିରେ ଜଣେ ଜଣେ ॥
ଦାସୀ ସହସ୍ର ମେଳେ ଥାଇଁ । ସେବା କରନ୍ତି ଭାବଗ୍ରାହୀ ॥
ଯେମନ୍ତେ ରୁକ୍ମିଣୀ ଭୁବନେ । ନାରଦ ମୁନି ସାବଧାନେ ॥
ମିଳିଲେ କୃଷ୍ଣପାଶେ ଯାଇ । ଦେଖି ଉଠିଲେ ଭାବଗ୍ରାହୀ ॥
ବ୍ରାହ୍ମଣ ଦେବ ଯାର ନାମ । ସକଳ ଗୁଣେ ଅନୁପମ ॥
ଯାହାର ଚରଣ ଉଦକ । ହରଇ ତୀର୍ଥଙ୍କର ପାପ ॥
ପୁରାଣ ପୁରୁଷ ମୁରାରି । କହନ୍ତି ଋଷିପାଦ ଧରି ॥
ହସି ବୋଲନ୍ତି ଭାବଗ୍ରାହୀ । ନିଯୋଗ ମୋତେ ଆଜ୍ଞା ହୋଇ ॥
ନାରଦ କୃଷ୍ଣ ମୁଖ ଚାହିଁ । ବୋଲନ୍ତି କରେ କର ନେଇ ॥
ଭୋନାଥ ଶୁଣ ନାରାୟଣ । ଅଖିଳ ବ୍ରହ୍ମାଣ୍ଡ କାରଣ ॥
ସକଳ ଜନେ ତୋର ପ୍ରୀତି । ଖଳ ଦଣ୍ଡନେ ବକ୍ରଗତି ॥
ସାଧୁଙ୍କୁ ନିସ୍ତାରିବା ଅର୍ଥେ । ତୋ ଅବତାର ଯେ ଜଗତେ ॥
ସୃଷ୍ଟି ରକ୍ଷଣେ ଚକ୍ରଧର । ତୋହର ଯେତେ ଅବତାର ॥
ନିଗମେ ତୋର ଗୁଣ ଗାଇ । ଭଲେ ଜାଣଇ ଯେହା ମୁହିଁ ॥
ଦେଖିଲି ତୋ ଚରଣ ଯୁଗ । ଯହୁଁ ଜନ୍ମଇ ଅପବର୍ଗ ॥
ଅଗାଧ ବ୍ରହ୍ମବୋଧ ଆଦି । ଯାହା ଚିନ୍ତନ୍ତି ଅନ୍ତର୍ହୃଦୀ ॥
ସଂସାର କୂପମଧ୍ୟେ ପଡ଼ି । ଜନ୍ତୁୟେ ମାୟା ଜଳେ ବୁଡ଼ି ॥
ସେ ପାଦ ଧ୍ୟାୟି ଯେ ଜଗତେ । ମୁଁ ଯେ ବୁଲିଲି ଅବିରତେ ॥
ସେ ପାଦ ଚିନ୍ତି ମୋର ହୃଦେ । ନିରନ୍ତେ ଥାଉ ଅପ୍ରମାଦେ ॥
ତୋତେ ଅଇଲି ଦେଖି ମୁହିଁ । ଏମନ୍ତେ ଶିରେ କରଦେଇ ॥
ନାରଦ ଗଲେ ସ୍ନେହ ଭରେ । ପୁଣି ମିଳିଲେ ଅନ୍ୟପୁରେ ॥
କୃଷ୍ଣର ମାୟା ଯୋଗ ମତ । ବୁଝିବା ଅର୍ଥେ ବ୍ରହ୍ମସୁତ ॥
ସତ୍ୟଭାମାର ପୁରେ ଯାଇ । ମିଳିଲେ ବୀଣା ବାଦ୍ୟ ବାଇ ॥
ଉଦ୍ଧବ ସଙ୍ଗେ ଯଦୁପତି । ଅକ୍ଷ ଖେଳଣେ ଦୃଢ଼ମତି ॥
ପ୍ରିୟା ସହିତେ ଦାମୋଦର । ଦେଖିଲେ ବ୍ରହ୍ମାର କୁମର ॥
ନାରଦ ଆଗମନ ଦେଖି । ଗୋବିନ୍ଦ ଆସନ ଉପେକ୍ଷି ॥
ପ୍ରିୟା ସହିତେ ନରହରି । ଉଦ୍ଧବ କର କରେ ଧରି ॥
ପୂଜିଲେ ନାରଦ ଚରଣ । ବିପ୍ର ବତ୍ସଳ ନାରାୟଣ ॥
ଆସନ ଆଦି ଉପଚାରେ । ଗୃହସ୍ଥ ଆଶ୍ରମ ବେଭାରେ ॥
ପୂଜି କପୋଳେ ଦେଇ କର । ପୁଚ୍ଛନ୍ତି ପ୍ରଭୁ ଦାମୋଦର ॥
କେଣେ ଆଗମନ ତୁମ୍ଭର । ପବିତ୍ର କଲ ମୋର ପୁର ॥
ତୁମ୍ଭେ ସକଳ ଗୁଣେ ପୂର୍ଣ୍ଣ । ସ୍ୱଭାବେ ମୁହିଁ କ୍ଷୁଦ୍ରଜନ ॥
କି ଅବା କରିବି ମୁଁ ସେବା । ବିଚାରି ମୋତେ ଆଜ୍ଞା ଦେବା
କହ କି ଅର୍ଥେ ଆଗମନ । ପବିତ୍ର କଲ ମୋର ଜନ୍ମ ॥
ସୁଫଳ ହେଉ ଆଜ୍ଞାବହି । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥
ଶୁଣି ନାରଦ ମହାମୁନି । କିଛି ନ ବୋଲି ହୋୟେ ତୁନି
ତକ୍ଷଣେ ଉଠି ବ୍ରହ୍ମାସୁତ । ଅନ୍ୟ ଭୁବନେ ଉପଗତ ॥
ତହିଁ ଦେଖିଲେ ନରହରି । କୋଳେ ବାଳକଛନ୍ତି ଧରି ॥
ଶିଶୁ ପାଳନେ ଭଗବାନ । ଦେଖି ନାରଦ ଆଗମନ ॥
ସମ୍ଭ୍ରମେ ପ୍ରଭୁ ଦେବରାଜା । ପୂର୍ବ ପ୍ରାୟେକ କଲେ ପୂଜା ॥
ନାରଦମୁନି ସୁଖ ଭରେ । ପୁଣି ମିଳିଲେ ଅନ୍ୟପୁରେ ॥
ତହିଁ ଦେଖିଲେ ଭଗବାନ । ସ୍ନାନ ନିମନ୍ତେ ଆଗମନ ॥
ପୁଣି ଦେଖିଲେ ଅନ୍ୟପୁରେ । କୃଷ୍ଣ ଅଛନ୍ତି ଯଜ୍ଞଦ୍ୱାରେ ॥
ଅଗ୍ନି ପୂଜନେ ପଞ୍ଚମୁଖେ । ବ୍ରହ୍ମାନନ୍ଦନ ଦେଖି ସୁଖେ ॥

ଅନ୍ୟ ଭୁବନେ ପୁଣି ମିଳି । ଦେଖିଲେ ପ୍ରଭୁ ବନମାଳୀ ॥
ବିପ୍ରେ ଭୁଞ୍ଜାଇ ମିଷ୍ଟ ଅନ୍ନ । ଶେଷ ଭୁଞ୍ଜନ୍ତି ତୋଷ ମନ ॥
ତକ୍ଷଣେ ଅନ୍ୟ ପୁରେ ପଶି । କୃଷ୍ଣ ଦେଖିଲେ ବ୍ରହ୍ମ ଋଷି ॥
ଗୋବିନ୍ଦ ସନ୍ଧ୍ୟା ଉପାସନେ । ଗାୟତ୍ରୀ ଜପନ୍ତି ମଉନେ ॥
ପୁଣି ଦେଖିଲେ ଅନ୍ୟପୁରେ । ଶର ସାଧନେ ଯେ ସଧରେ ॥
ଆରୋହୀ ରଥ ଅଶ୍ୱ ଗଜେ । ନାନା ଭୁବନେ ନାନା ସଜେ ॥
ଯେମନ୍ତେ ଦେଖି ବ୍ରହ୍ମଋଷି । ପୁଣି ହିଁ ଅନ୍ୟପୁରେ ପଶି ॥
ତହିଁ ଦେଖିଲେ ଭଗବାନ । ପଲ୍ୟଙ୍କ ଉପରେ ଶୟନ ॥
ସ୍ତୁତି କରନ୍ତି ବନ୍ଦୀଜନେ । ଦେଖି ଚକିଲେ ତୋଷ ମନେ ॥
ଦେଖନ୍ତି ଅନ୍ୟପୁରେ ଯାଇ । ଉଦ୍ଧବ ନିକଟେ ବସାଇ ॥
ମନ୍ତ୍ରଣା ମନ୍ତ୍ରିଗଣ ସଙ୍ଗେ । ଦେଖି ନାରଦ ଭାବରଙ୍ଗେ ॥
ପୁଣି ମିଳିଲେ ଅନ୍ୟପୁରେ । ଦେଖନ୍ତି ଜଳର ଭିତରେ ॥
ବେଶ୍ୟା ଯୁବତୀ ଗଣ ସଙ୍ଗେ । ଜଳେ ଖେଳନ୍ତି ନାନା ରଙ୍ଗେ ॥
ତକ୍ଷଣେ ବ୍ରହ୍ମାର କୁମର । ପୁଣି ମିଳିଲେ ଅନ୍ୟପୁର ॥
ତହିଁ ଦେଖନ୍ତି ନାରାୟଣ । ମଙ୍ଗଳ ପୁରାଣ ଶ୍ରବଣ ॥
କେବଣ ଠାରେ ହାସ ମୁଖେ । ପ୍ରିୟା ବଦନ ଚାହିଁ ସୁଖେ ॥
କେବଣ ସ୍ଥାନେ ଚିନ୍ତେ ଧର୍ମ । ଅନ୍ୟ ଭୁବନେ ଚିନ୍ତି କାମ ॥
ଧ୍ୟାନ ସମାଧି ଅନ୍ୟସ୍ଥାନେ । ବ୍ରହ୍ମ ଚିନ୍ତନ୍ତି ସ୍ଥିରମନେ ॥
କେବଣ ସ୍ଥାନେ ଗୁରୁପୂଜା । ସ୍ୱକାମ ଭୋଗ କରି ତ୍ୟଜ୍ୟା ॥
କେବଣ ସ୍ଥାନେ ଯଦୁପତି । ସନ୍ଧି ବିଗ୍ରହ ରାଜନୀତି ॥
ଚିନ୍ତନ୍ତି ରାମ ଅନୁମତେ । ଯେ ଅବତାର ଜନ ହିତେ ॥
କେବଣ ପୁରେ ନରହରି । ଦୁହିତା ଅଳଙ୍କାର କରି ॥
ସ୍ୱାମୀର ଭୁବନେ ପେଷନ୍ତି । ପୁତ୍ରର ପତ୍ନୀକି ଆଣନ୍ତି ॥
ଅନ୍ୟ ଭୁବନେ ନନ୍ଦବାଳ । ପୁତ୍ର ଦୁହିତାଙ୍କ ମଙ୍ଗଳ ॥
ବିଚାରି କରନ୍ତି ଉତ୍ସବ । ଦେଖି ନାରଦ ନାମ ଭାବ ॥
ଅଦ୍ଭୁତ କର୍ମ ନର ଲୋକେ । ଅନ୍ୟ ଭୁବନେ ମିଳି ସୁଖେ ॥
ତହିଁ ଦେଖିଲେ ନାରାୟଣ । ଯଜ୍ଞେ ପୂଜନ୍ତି ଦେବଗଣ ॥
କେବଣ ପୁରେ ଜଳଦାନ । କୂପ ତଡ଼ାଗେ ଅବଧାନ ॥
ମଣ୍ଡପ ଦେବତା ମନ୍ଦିରେ । ଯେ ଧର୍ମ ପୁରୁଷ ବେଭାରେ ॥
ପୁଣି ଦେଖିଲେ ଅନ୍ୟପୁରେ । କୃଷ୍ଣ ମୃଗୟା ଅନୁସାରେ ॥
ଆରୋହୀ ଅଶ୍ୱ ସଇନ୍ଧବ । ବନେ ମାରନ୍ତି ନାନା ଜୀବ ॥
ପବିତ୍ର ପଶୁ କରି ହତ । ନିଜ ଭୁବନେ ଉପଗତ ॥
ଯେମନ୍ତ ପତ୍ନୀପୁର ମଧ୍ୟେ । ନାରଦ ବୁଲନ୍ତି ଆନନ୍ଦେ ॥
ପୁଣି ଦେଖିଲେ ଭଗବାନ । କୃଷ୍ଣ ମାୟାରୂପେ ଛିନ୍ନ ॥
ଭ୍ରମନ୍ତି ନାରୀଙ୍କ ଭୁବନେ । ସିରୀ ଚରିତ ଅବଧାନେ ॥
ଦେଖି ଚକିତ ବ୍ରହ୍ମଋଷି । କୃଷ୍ଣ ବଦନ ଚାହିଁ ହସି ॥
ମନୁଷ୍ୟ ଲୀଳା ଅବତାର । ଭୋନାଥ ଦେଖିଲି ତୋହର ॥
ମାୟାବୀ ଦେବେ ଅଗୋଚର । ଭୋ ନାଥ ମହିମା ତୋହର ॥
ଜଗଦୀଶ୍ୱର ତୁ ଜଗତ । ତୋ ପାଦପଦ୍ମ ସେବା ଅର୍ଥ ॥
ତୋହର ଯଶ ଯେତେଦୂରେ । ମୁଁ ତାହା ପାଇ ନିରନ୍ତରେ ॥
ତୋ ଯଶ ଅଖିଳ ପାବିନୀ । ତେଣୁ ବୁଲଇ ଦେହ ଘେନି ॥
ସଂସାର ହିତେ ଧର୍ମ କଥା । ମୁହିଁ ଯେ ଧର୍ମର ବକତା ॥
କର୍ତ୍ତା ବିକର୍ତ୍ତା ମୁଁ ବୋଲଇ । ସ୍ୱଧର୍ମ ଜଗତେ କରଇ ॥
ଧର୍ମ ପାଳନେ ମୁଁ ଜଗତେ । ଶରୀର ଧରି ନାନା ମତେ ॥
ବୁଲଇ ହୋଇ ରୂପଭେଦ । ମନେ ନକର ପୁତ୍ର ଖେଦ ॥
ଯେମନ୍ତ ଗୃହ ନିଜ ଧର୍ମ । ଗୋବିନ୍ଦ କୃତ୍ୟ ଯେତେ କର୍ମ ॥
ଯେକ ସ୍ୱରୂପ ନରହରି । ସର୍ବ କାମିନୀ ପୁରେ ପୂରି ॥
ଅନନ୍ତ ମାୟା ଯୋଗରାଶି । ଦେଖି ସାନନ୍ଦ ଦେବ ଋଷି ॥
ଆନନ୍ଦେ ପାଇ କଉତୁକ । ବିସ୍ମିତ ସୁଜ୍ଞାନୀ ବିବେକ ॥
କୃଷ୍ଣର ଗୃହ ମେଧି କର୍ମ । ଯେ ନିତ୍ୟ ଧର୍ମ ଅର୍ଥ କାମ ॥
ଦେଖି ଚକିତ ଭାବ ବହି । ତକ୍ଷଣେ କୃଷ୍ଣ ଆଜ୍ଞାପାଇ ॥
କୃଷ୍ଣ ଚରିତ ମନେ ସ୍ମରି । ଗଲେ ନାରଦ ବ୍ରହ୍ମଚାରୀ ॥
ଯେମନ୍ତେ ମନୁଷ୍ୟର କର୍ମ । ଯେ ନିତ୍ୟ ଧର୍ମ ଅର୍ଥ କାମ ॥
ଯେ ଅନୁମତେ ଦେହବହି । ସଂସାର ହିତେ ଭାବଗ୍ରାହୀ ॥
ଷୋଳ ସହସ୍ର ନାରୀ ମଧ୍ୟେ । ରସିଲେ ନାନା ଅନୁବନ୍ଧେ ॥
ସୃଷ୍ଟି ପାଳନ ସଂହାରଣ । ଯେ ହରି ପରମ କାରଣ ॥
ଅଦ୍ଭୁତ କର୍ମ କଲେ ଯେତେ । ଗୃହସ୍ଥ ଆଶ୍ରମ ଭକତେ ॥
ଯେ ଯେହା ଶୁଣି ଭାବ ବହେ । ଭକତ ଜନମଧ୍ୟେ କହେ ॥
କୃଷ୍ଣ ଚରଣେ ପାଇ ଭାବ । ସେ ପ୍ରାଣୀ ଲଭେ ଅପବର୍ଗ ॥
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ମହିମା ଭାଗବତ ॥
ଗୋବିନ୍ଦ ମାୟା ଯୋଗବାଣୀ । ଶୁଣି ସାନନ୍ଦ ନୃପମଣି ॥
ଶୁକ ଚରଣେ ଶିର ଦିଲା । ସାନନ୍ଦେ ଅଭିମନ୍ୟୁ ବଳା ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମ ସ୍କନ୍ଧେ ଶ୍ରୀକୃଷ୍ଣ ମାୟା ଦର୍ଶନେ ନାମ ଚତୁଃସପ୍ତତିତମୋଽଧ୍ୟାୟଃ ।*

## ପଞ୍ଚସପ୍ତତିତମ ଅଧ୍ୟାୟ

ଯେବେହୋ ଶୁଣ ନରପତି । କୃଷ୍ଣର ଯେତେକ ଯୁବତୀ ॥
ରଜନୀ ପ୍ରଭାତ ନିକଟେ । ଗୃହୀତ ନିଜ ପତି କଣ୍ଠେ ॥
କୃଷ୍ଣର ବିରହ କାତରେ । ଭାବେ ଅନେକ ସ୍ନେହ ଭରେ ॥
କୁକୁଟ ନାଦ ଶୁଣି କର୍ଣ୍ଣେ । ତାହାଙ୍କୁ ଅତି ଦୁଃଖ ମନେ ॥
କମ୍ପନ୍ତି ବିରହ ବିଷାଦେ । ନିବିଡ଼େ ଭିଡ଼ି ସ୍ୱାମୀ ହୃଦେ ॥
କୋକିଳ ଆଦି ପକ୍ଷୀଗଣ । ନାଦେ ବୋଲନ୍ତି ନାରାୟଣ ॥
ବନ୍ଦୀମାଗଧ ପ୍ରାୟେ ହୋଇ । ବିଶ୍ୱ ସଂସାରେ ଜନ ମୋହି ॥
ସ୍ୱଭାବେ ପାରିଜାତ ବନ । ସୁଗନ୍ଧ ବହଇ ପବନ ॥
ଅତି ସୁନ୍ଦର ସୁମୋହିତ । ରୁକ୍ମିଣୀ କୃଷ୍ଣ ଭାବ ଚିତ୍ତ ॥
କୃଷ୍ଣ ଆଲିଙ୍ଗନ ବିଷାଦେ । ପଶିଲା ବେନିଭୁଜ ମଧେ ॥
ପ୍ରକାଶେ ଅରୁଣ କିରଣ । ଶଯ୍ୟାରୁ ଉଠି ନାରାୟଣ ॥
ପବିତ୍ର ଜଳେ ମୁଖ ଧୋଇ । ଚିତ୍ତେ ପରମ ପଦଧ୍ୟାୟି ॥
ଆତ୍ମାକୁ ଆତ୍ମାଜ୍ଞାନେ ଚିନ୍ତି । ଯେ ଯେକଭାବେ ସତ୍ୟ ଜ୍ୟୋତି
ଅବ୍ୟୟସ୍ଥିତି ବିଶ୍ୱରୂପୀ । ବ୍ରହ୍ମାଣ୍ଡ ମଧେ ଅଛି ବ୍ୟାପୀ ॥
ରୂପ ବର୍ଜିତ ନିରଞ୍ଜନ । ନିତ୍ୟ କଳୁଷ ନିବାରଣ ॥
ଯେମନ୍ତ ବ୍ରହ୍ମଯାର ନାମ । ତ୍ରିଗୁଣ ମାୟା ହେତୁ ଧାମ ॥
ଜଗତ ଯାହାର ପ୍ରଚେଶେ । ମୁକୁର ବିମ୍ବ ପ୍ରାୟେ ଦିଶେ ॥
ଯେମନ୍ତେ ପ୍ରଭୁ ନରହରି । ନିର୍ମଳ ଜଳେ ସ୍ନାନକରି ॥
କ୍ରିୟା କଳାପ ଯଥାବିଧି । ପବିତ୍ର ପୀତ ବସ୍ତ୍ର ପିନ୍ଧି ॥
ସନ୍ଧ୍ୟା ତର୍ପଣ ଆଦି କର୍ମ । ଅନେକ ପୂଜା ବିଧି ଧର୍ମ ॥
ମଉନେ ବେଦମନ୍ତ୍ର ଜପି । ତର୍ପଣ ବିଧି ଆଗ ସ୍ଥାପି ॥
ରବି ପ୍ରମୁଖେ ନନ୍ଦବଳା । ଜଳେ ତୋଷିଲେ ଆତ୍ମକଳା ॥
ଦେବତା ଋଷି ପିତୃଗଣେ । ଗୋବିନ୍ଦ ପୂଜିଲେ ତର୍ପଣେ ॥
ବୃଦ୍ଧ ବାଳକେ ବୋଧ ଦେଇ । ବିପ୍ରଙ୍କୁ ଆସନେ ବସାଇ ॥
ସୁବର୍ଣ୍ଣ ଶୃଙ୍ଗ ଧେନୁହରି । ମଣ୍ଡିଲେ ଅଳଙ୍କାର ଭରି ॥
ମୁକୁତା ମାଳେ ପୁଷ୍ପପନ୍ତି । ସାଧୁ ସୁବତ୍ସା ରୂପବତୀ ॥
କ୍ଷୀର ସମ୍ପୂର୍ଣ୍ଣ ପୀନ ସ୍ତନୀ । ଦେହ ଭୂଷିତ ବସ୍ତ୍ର ଘେନି ॥
ରଜତ ଖୁରା ପାଦେ ଭରି । ପାଟ ବସନେ ଚିଳ ପୂରି ॥
ନିର୍ମଳ କୃଷ୍ଣାଜିନ ଅଙ୍ଗେ । ବେଦ ବିହିତ ବିଧି ସଙ୍ଗେ ॥
ବିପ୍ରଙ୍କୁ କରି ଅଳଂକୃତ । ଧେନୁ ସମର୍ପି ଯୂଥ ଯୂଥ ॥
ଏମନ୍ତ କୃଷ୍ଣ ପ୍ରତିଦିନେ । ବିପ୍ରେ ତୋଷନ୍ତି ଧେନୁ ଦାନେ
ଗୋ ବିପ୍ର ବୃଦ୍ଧ ଗୁରୁଗଣେ । ଦେବତା ଆଦି ସର୍ବଜନେ ॥
ଯେତେ ବିଷୟ ଆତ୍ମା ଭୂତ । ତାହାଙ୍କୁ ନମି ଗୋପୀନାଥ ॥
ଜଗତ ଗୁରୁ ଭଗବାନ । ମଙ୍ଗଳ ଦ୍ରବ୍ୟ ଦରଶନ ॥
ସ୍ୱଭାବେ ଜଗତ ସୁନ୍ଦର । ଭୂଷଣ ନାନା ଅଳଙ୍କାର ॥
ପୀତ ବସନ ଅନୁପମ । ଶ୍ରୀବତ୍ସ କଉସ୍ତୁଭ ଧାମ ॥
ଦିବ୍ୟ କୁସୁମ ଗନ୍ଧମାଳ । ଶୋଭେ ସୁନ୍ଦର ବକ୍ଷସ୍ଥଳ ॥
ଘୃତ ଦର୍ପଣେ ମୁଖଚାହିଁ । ଗୋରୁ ବ୍ରାହ୍ମଣ ପାଦଛୁଇଁ ॥
ପ୍ରକୃତି ଅଂଶେ ପୁରବାସୀ । ଧନେ ତାହାଙ୍କ ମନ ତୋଷି ॥
ବ୍ରାହ୍ମଣ ଆଦି ଚାରି ବର୍ଣ୍ଣେ । କୃଷ୍ଣ ପୂଜିଲେ ଅବଧାନେ ॥
ପ୍ରବୋଧ କରି ପୁରଜନ । ଆନନ୍ଦ କଲେ ସର୍ବମନ ॥
କୁସୁମ ତାମ୍ବୁଳ ସୁଗନ୍ଧ । ବିଭାଗ କରି ଆଦିକନ୍ଦ ॥
ବିପ୍ରଙ୍କୁ ଦେଇ ଅଗ୍ରଭାଗ । ଦାରା ପ୍ରକୃତି ଅନୁରାଗ ॥
ସକଳ ଜନେ ସୁଖଦେଇ । ଭୋଜନ କଲେ ଭାବଗ୍ରାହୀ ॥
ଯାତ୍ରା ଉତ୍ସବେ ପଦ୍ମମୁଖ । ତକ୍ଷଣେ ମିଳିଲା ଦାରୁକ ॥
ଅଦ୍ଭୁତ ରଥ ସଜ କରି । ରଥେ ଯୋଚିଲା ଅଶ୍ୱ ଚାରି ॥
ସୁଗ୍ରୀବ ଆଦି ଚାରିଯାନ । ସୁନ୍ଦର ଗୋବିନ୍ଦ ବିମାନ ॥
କାଞ୍ଚନ ରଜ୍ଜୁ ଅଶ୍ୱ ଯୁଗେ । ସାଜି ମିଳିଲା କୃଷ୍ଣ ଆଗେ ॥
ଦାରୁକ କରେ ଦେଇ ହସ୍ତ । ରଥେ ବିଜୟ ଯଦୁନାଥ ॥
ସାତ୍ୟକି ଉଦ୍ଧବ ବିଶ୍ୱାସେ । ବସିଲେ କୃଷ୍ଣ ବେନି ପାଶେ ॥
କି ଅବା ଦେବା ପଟାନ୍ତର । ଶୁଣ ସୁମନେ କୁରୁବୀର ॥
ଉଦୟ ଗିରି ଶିଖାଗ୍ରତେ । ରବି ଯେସନେ ନିଜ ରଥେ ॥
ଉଗ୍ରସେନର ସଭାମଧେ । ଯାଇ ମିଳିଲେ ଆଦିକନ୍ଦେ ॥
ବେନି ଜନଙ୍କ ହସ୍ତଧରି । ସଭାରେ ବିଜେ କଲେ ହରି ॥
ବାମ ଦକ୍ଷିଣେ ବେନି ବୀର । ମଧେ ବିଜୟେ ଦାମୋଦର ॥
ଉଦୟ ଗିରି ଶିଖ ଅଗ୍ରେ । ରବି ଯେମନ୍ତ ବେନି ଅଙ୍ଗେ ॥
ହାସ୍ୟ କରନ୍ତି ନାରାୟଣ । ସକଳ ବଂଧୁ ଆଭରଣ ॥
ସ୍ନେହ ଲାଳସେ ଅପସରି । ପୁରୁ ବାହାର ନରହରି ॥
ଯାଦବ ବଳେ ଇନ୍ଦ୍ର ସଭା । କିରଣ ଯେହ୍ନେ ରବି ପ୍ରଭା ॥
ସୁଧର୍ମା ମଧେ ତୋଷମନେ । ଗୋବିନ୍ଦ କାଞ୍ଚନ ଆସନେ ॥
ମନୁଷ୍ୟ ସୁଧର୍ମା ପ୍ରଦେଶେ । ତକ୍ଷଣେ ଷଡ଼ ଭ୍ରମ ନାଶେ ॥
କୃଷ୍ଣ ପ୍ରବେଶ ଇନ୍ଦ୍ର ସଭା । ଅଧିକେ ଦଶ ଦିଗ ଶୋଭା ॥
ଯଦୁ ବୀରଙ୍କ ମଧେ ବସି । ତାରା ମଣ୍ଡଳେ ଯେହ୍ନେ ଶଶୀ ॥
ଯେ ଉପମନ୍ତ୍ରୀଗଣ ପାଶେ । ନାନା ପ୍ରବନ୍ଧ ପରିହାସେ ॥
କୃଷ୍ଣ ସମ୍ମୁଖେ ସୁଖେ ବସି । କଥା ପ୍ରସ୍ତାବେମନ ତୋଷି ॥
ନଟ ନର୍ତ୍ତକୀ ଆଦି ଯେତେ । ମିଳିଲେ ନାନା ବାଦ୍ୟ ହସ୍ତେ ॥
ନୃତ୍ୟ ତାଣ୍ଡବ ଗୀତ ସ୍ୱନ । ସୁତ ମାଗଧ ବିଦୁଜନ ॥

କୃଷ୍ଣେ କରାଇ ସାବଧାନ । କରନ୍ତି ନୃତ୍ୟ ଗୀତ ମାନ ॥
ବ୍ରାହ୍ମଣେ ଶୁଦ୍ଧ ବେଦ ନାଦେ । ଶାସ୍ତ୍ର ଆଗମ ଅନୁବାଦେ ॥
ପୁରାଣ ପ୍ରବନ୍ଧ ପ୍ରମାଣେ । ପୂର୍ବେ ଯେ ଥିଲେ ରାଜାଗଣେ ॥
ତାହାଙ୍କ ପୁଣ୍ୟ ଯଶଥାଇ । କହନ୍ତି କୃଷ୍ଣ ମୁଖ ଚାହିଁ ॥
ଏବେ ହୋ ଶୁଣ ନରନାଥ । ସଭାର ତଳେ ରାଜଦୂତ ॥
କୃଷ୍ଣ ଆଦେଶେ ଦ୍ୱାରପାଳେ । ପ୍ରବେଶ କଲେ ସଭାତଳେ ॥
ଅଦୃଷ୍ଟ ପୂର୍ବେ ସେ ପୁରୁଷ । ଗୋବିନ୍ଦ ସମୀପେ ପ୍ରବେଶ ॥
ଦୂର ଆଗମେ ପଥ ଶ୍ରମି । ସେ ଦୂତ କୃଷ୍ଣ ପାଦେ ନମି ॥
କର ଅଞ୍ଜଳି ଦେଇ ମୁଣ୍ଡେ । ରାଜ ନିଯୋଗ ଉଠେ ତୁଣ୍ଡେ ॥
ଜରାସନ୍ଧର ବନ୍ଦିଘରେ । ନିବିଡ଼ ଦୁଃଖ ଶୋକ ଭରେ ॥
ତାର ଦିଗବିଜୟ କାଳେ । ଯେ ନ ମିଳିଲେ ପାଦତଳେ ॥
ତାହାଙ୍କୁ ନିଜ ଭୁଜବଳେ । ବନ୍ଧନ କଲା ଏକ ମେଳେ ॥
ବେନି ସହସ୍ର ଅଷ୍ଟସୁତ । ରାଜା ନିରୋଧେ ସଙ୍କଟିତ ॥
ଅନେକ ଦୁଃଖ ଶୋକପାଇ । ଦୂତର ହସ୍ତେ ଲେଖା ଦେଇ ॥
ହେ କୃଷ୍ଣ କୃଷ୍ଣ ମହାବାହୁ । ଶରଣ ତୋର ପାଦେ ଯେହୁ ॥
ତାହାର ଦୁଃଖ କରୁନାଶ । ତୁ ନାଥ ଭକତ ବିଶ୍ୱାସ ॥
ପ୍ରସନ୍ନେ ଭୟ ନାଶୁ ଯେଣୁ । ଆମ୍ଭେ ତୋ ପଦ୍ମପାଦେ ତେଣୁ ॥
ବିଭିନ୍ନ ବୁଦ୍ଧି ଭବ ଭୟେ । ଶରଣ ଗଲୁ ତୋର ପାୟେ ॥
ଭୋ ନାଥ ଶୁଣ ଭାବଗ୍ରାହୀ । ଆମ୍ଭେ ସେ ରାଜ୍ୟ ଭୋଗ ପାଇ ॥
ଶ୍ରୀମଦେ ଦୃଷ୍ଟି କଲୁ ନାଶ । ଯେ ଭୂମି ଜୟେ କରି ଆଶ ॥
ଯେକ ଆରେକ ଯୁଦ୍ଧବଳେ । ପ୍ରଜା ନାଶିଲୁ ମତି ଭୋଳେ ॥
ଅତି ନିର୍ଦ୍ଦୟ କର୍ମ କରି । ଅଗ୍ରେ ମରଣ ନ ବିଚାରି ॥
ଯେ ଜୀବଲୋକେ ତୋ ସଂସାରେ । ବିକ୍ରମ ଚକ୍ର ନିରନ୍ତରେ ॥
ତୋହର ମାୟା ଚକ୍ରେ ପଡ଼ି । କୁଶଳ କର୍ମ ପଥ ଛୁଡ଼ି ॥
ତାର ଜୀବିତ ଆତ୍ମା ତୁହି । ନିମିଷେ ନାଶୁ ମାୟା ବହି ॥
ଏଣୁ ତୋ ନାମ ଅବିନାଶ । ନମସ୍ତେ ଅନାଦି ପୁରୁଷ ॥
ତୁହି ଜଗତେ ମାୟାଧର । ନିଜ କଳାୟେ ଅବତାର ॥
ଆଦି ପୁରୁଷ ତୁ ଦୟାଳୁ । ଖଳ ବିନାଶି ସାଧୁ ପାଳୁ ॥
କେବଳ ଜନ ତୋ ବଚନ । ନ କରି ନିଜ ଅଭିମାନ ॥
କିବା କରଇ ମନ ଇଚ୍ଛା । ତାର କି ପୂରେ ମନୋବାଞ୍ଛା ॥
ସ୍ୱପ୍ନ ସ୍ୱକାଶ ନୃପ ସୁଖ । ପର ଆୟତେ ନିତ୍ୟେ ଦୁଃଖ ॥
ଯେ ପଶୁପିଣ୍ଡେ ଯେହା ବହି । ଯେଣୁ ଆମ୍ଭର ଜ୍ଞାନ ନାହିଁ ॥
ତୁ ଆତ୍ମା ଲଭ୍ୟ ନରହରି । ତୋ ପାଦେ ଅନାଦର କରି ॥
ତୋତେ ନ ଚିନ୍ତି କ୍ଳେଶପାଇ । ତୋହର ମାୟା ଜଡ଼େ ଥାଇ ॥
ତୋର ଚରଣେ ଚକ୍ରଧର । ପ୍ରଣମ୍ୟ ଜନ ଶୋକ ହର ॥
ଯେ ଜରାସନ୍ଧ ଧୂମକେତୁ । ଆମ୍ଭର କର୍ମନାଶ ହେତୁ ॥
ଯେହୁ ବନ୍ଧନୁ ରକ୍ଷାକର । ଭୋ ନାଥ ଶରଣ ତୋହର ॥
ଯେ ଦୁରାଚାର ଅତି ଖଳ । ଅତ୍ୟନ୍ତ ମତ୍ତନାଗ ବଳ ॥
ଯେକେ ଅନେକ ଅଛି ଧରି । ପଶୁଙ୍କୁ ଯେସନେ କେଶରୀ ॥
ଯେ ଜରାସନ୍ଧ ତୋର ମେଳେ । ଯୁଦ୍ଧେ ନ ଜିଣି ବାହୁବଳେ ॥
ତେଇଶ କ୍ଷଉଣୀ ତା ସାଜି । ସପତ ଦଶବାର ଭାଜି ॥
ତୋର ମାୟାରେ ଚକ୍ରପାଣି । ବଳେ ଜିଣିଲା ପ୍ରାୟ ମଣି ॥
ମାୟା ମନୁଷ୍ୟ ରୂପ ତୁହି । ତୋତେ ଜିଣିବ ଗର୍ବ ବହି ॥
ତୋହର ପ୍ରଜା କରେ ନାଶ । ଆମ୍ଭେ ନ ଜାଣୁ ତୋ ବିଶ୍ୱାସ ॥
ଯେ ତୋର ଇଚ୍ଛା ଯେବେ କର । ଆମ୍ଭେ ତୋ ଚରଣେ କିଙ୍କର ॥
ଯେମନ୍ତେ ଦୁଃଖୀ ନୃପବରେ । ବନ୍ଧନ ମଗଧ ଦେଶରେ ॥
ଇଚ୍ଛନ୍ତି ତବ ଦରଶନ । ଭୋ ନାଥ ହୁଅ ତୁ ପ୍ରସନ୍ନ ॥
ନିଶ୍ଚୟେ ହୋଇଲା ମରଣ । ତୋ ପାଦେ ପଶିଲୁ ଶରଣ ॥
ପରମ ଦୁଃଖୁଁ କର ତ୍ରାହି । ଭୋ ନାଥ ରଖ ଭାବଗ୍ରାହୀ ॥
ଯେମନ୍ତେ କହୁ ରାଜଦୂତ । ଆସି ମିଳିଲେ ବ୍ରହ୍ମସୁତ ॥
ଅତି ସୁନ୍ଦର ରୂପକାନ୍ତି । ରବି କିରଣ ପ୍ରାୟେ ଜ୍ୟୋତି ॥
ପିଙ୍ଗଳ ଜଟା ଶୋଭେ ଶିରେ । ମିଳିଲେ ଗୋବିନ୍ଦ ସଭାରେ ॥
ନାରଦ ଦେଖି ଭଗବାନ । ତକ୍ଷଣେ ତେଜିଲେ ଆସନ ॥
ଈଶ୍ୱର ସର୍ବ ଲୋକନାଥ । ନାରଦ ପାଦେ ପ୍ରଣମିତ ॥
ସଭାର ମଧ୍ୟେ ଲୋକ ଯେତେ । ନମିଲେ ଅନୁଗ୍ରହ ଚିତ୍ତେ ॥
ଆନନ୍ଦେ କମଳା ରମଣ । ପୂଜିଲେ ନାରଦ ଚରଣ ॥
ସୁବର୍ଣ୍ଣ ଆସନେ ବସାଇ । କୋମଳ ବାକ୍ୟେ ଭାବଗ୍ରାହୀ ॥
ନାରଦ ମନ କରି ତୋଷ । ପ୍ରସନ୍ନେ ଭକତ ବିଶ୍ୱାସ ॥
ବୋଇଲେ ଶୁଣ ବ୍ରହ୍ମସୁତ । ଆଜ ମୁଁ ଲଭିଲି ସୁକୃତ ॥
ଯେ ତିନିପୁରେ ଲୋକ ଯେତେ । ତୁ ଥାଉ ତାହାଙ୍କ ସଙ୍ଗତେ
ତାହାଙ୍କ ସତତ ବିପାକେ । ତୋର ଭ୍ରମଣ କଉତୁକେ ॥
ନିର୍ଗୁଣ ଗତି ଗୁଣଗ୍ରାମ । ମିତ୍ର ଅମିତ୍ର ତୋର ସମ ॥
ଈଶ୍ୱର ନିର୍ମାଣ ଜଗତେ । ନ ଘଟେ ତୋର ଅବିହିତେ ॥
ବାରୁଣାବନ୍ତ ପଣ୍ଡୁ ସୁତେ । ଅଛନ୍ତି ନିଜ ଜନ ହିତେ ॥
କି ଅବା କରନ୍ତି ବିଚାର । ତୁମ୍ଭେ ସୁହୃଦ ତାହାଙ୍କର ॥
ମୋହର ମନ ତାଙ୍କ ଠହିଁ । ତେଣୁ ପୁଚ୍ଛଇ ଭାବ ବହି ॥
କୃଷ୍ଣ ବଚନେ ବ୍ରହ୍ମସୁତ । ଶୁଣି ଯୋଡ଼ିଲେ ବେନି ହସ୍ତ ॥
ଭୋ ନାଥ ନିଜ ମାୟା ତୋର । ବ୍ରହ୍ମା ଶଙ୍କରେ ଅଗୋଚର ॥

ବିଶ୍ୱ ସର୍ଜିତ ଯେତେ ଜନ । ମାୟାରେ ମୋହୁ ତାଙ୍କ ମନ ॥
ପ୍ରାଣୀଙ୍କ ଦେହେ ଚରି ତୁହି । ଅଗ୍ନିର ପ୍ରାୟ ଗୋପ୍ୟ ହୋଇ ॥
ଅଦ୍ଭୁତ ନୋହଇ ଯେ ମୋତେ । ତେଣୁ ଭାଷଇ ତୋତେ ଚିତ୍ତେ ॥
ତୋର ମହିମା କେହୁ ଜାଣେ । ଆଗମ ନିଗମ ପ୍ରମାଣେ ॥
ତୋ ମାୟାବଳେ ଯେ ଜଗତ । ସୃଜି ପାଳନ କରୁ ଅନ୍ତ ॥
ତେଣୁ ତୁ ସତ୍ୟ ଆତ୍ମାଗତେ । ନିଜ ସ୍ୱଭାବ ଯେ ଜଗତେ ॥
ତୋ ରୂପ ଆତ୍ମା ବିଲକ୍ଷଣ । ଏଣୁ ନମଇଁ ତୋ ଚରଣ ॥
ଜୀବରେ ସଞ୍ଚରିଣ ନାଶୁ । ଅନର୍ଥ ଶରୀର ପ୍ରକାଶୁ ॥
ଲୀଳା ବିସ୍ତାର ରୂପ ତୋର । ଦୀପେ ଯେସନେ ଅନ୍ଧକାର ॥
ନାଶଇ ନିଜ ତେଜ ପଣେ । ତେଣୁ ମୁଁ ତୋହର ଶରଣେ ॥
ପଶିଲୁ ଛାଡ଼ି ଭବଭ୍ରାନ୍ତି । ଯେଣୁ ତୁ ଅଗତିର ଗତି ॥
ତଥାପି ତୋହର ପ୍ରସନ୍ନ । ଯେ ନରଲୋକ ବିଡ଼ମ୍ବନ ॥
ତଥାପି ଶୁଣ ଶୁଦ୍ଧ ଚେତା । କହିବି ପାଣ୍ଡବଙ୍କ କଥା ॥
ପିତୃ ଭଗିନୀ ସୁତ ତୋର । ସେ ରାଜାନାମ ଯୁଧିଷ୍ଠିର ॥
ବିଶ୍ୱାସ ଭକ୍ତ ସେ ତୋହର । ଶୁଣତୁ ତାହାଙ୍କ ବିଚାର ॥
ଦୁସ୍ତର ରାଜସୂୟ ଯଜ୍ଞେ । ପୂଜିବେ ତୋର ପାଦଯୁଗେ ॥
ପରମ ଇଷ୍ଟ ତାର କାମ । ଆଜ୍ଞାତୁ ଦିଅ ଶୁଦ୍ଧଧର୍ମ ॥
ସେ ରାଜସୂୟ ଯଜ୍ଞଘରେ । ଯେତେକ ଲୋକ ତିନିପୁରେ ॥
ତୋ ରୂପ ଦେଖିବାର ସଧେ । ଗଗନୁ ଆସିବେ ବିବୁଧେ ॥
ଯେତେ ରାଜନ ଯଶକାରୀ । ତୋତେ ଦେଖିବେ ନରହରି ॥
ତୋ ନାମ ଶ୍ରବଣ କୀର୍ତ୍ତନ । ନିଶ୍ଚଳ ଚିତ୍ତେ ଯୋଗ ଧ୍ୟାନ ॥
ଅନ୍ୟ ଜନଙ୍କୁ ଶୁଦ୍ଧ କରେ । ଯେ ନର ଶରଣ ତୋହରେ ॥
ତୁ ବ୍ରହ୍ମ ପରମ କାରଣ । ମୁଁ କି ଅଧିକ ବିଚାରଣ ॥
ଯାର ବିସ୍ତୃତି ଶ୍ରୁତି ପଥ । ନିର୍ମଳ କରେ ଗୋପୀନାଥ ॥
ତୋ ପାଦୋଦକ ପାପହରେ । ଶରୀର ବହୁ ଅଭ୍ୟନ୍ତରେ ॥
ବଚନ ଶାସ୍ତ୍ର ପଥ ହୋଇ । ବିଧି ନିଷେଧ ପଥ ଦୁଇ ॥
କାଳ ଅନଳ ଜଳେ ଭ୍ରମି । ହତ ବିଭୂତି ମହାଶ୍ରମୀ ॥
ତୋହର ଚରଣ ସ୍ମରଣେ । ଜୀବନ ବହେ ସେ ବିଶ୍ୱାସେ ॥
ସେ ପାଦପଦ୍ମ ମହାବାହୁ । ଆମ୍ଭଙ୍କୁ ଚଉବର୍ଗ ଦେଉ ॥
ଭୋ ନାଥ ଭୁବନ ମଙ୍ଗଳ । ତୋହର ଯଶ ସୁନିର୍ମଳ ॥
ବିଖ୍ୟାତ ଯେ ତିନି ଭୁବନେ । ଭଲେ ଜାଣନ୍ତି ସର୍ବଜନେ ॥
ସୁର ଭୁବନ ମନ୍ଦାକିନୀ । ପୁଣି ସେ ନିଜ ପୁର ଘେନି ॥
ପାତାଳ ପୁରେ ଭୋଗବତୀ । ଗଙ୍ଗା ଯେ ମଞ୍ଚପୁରେ ସ୍ଥିତି ॥
ତୋ ପାଦ ଜଳର ମହିମା । କେ ଜାଣିପାରେ ତୋର ସୀମା ॥
ପବିତ୍ର କରେ ବିଶ୍ୱଜନ । ତୁ ନାଥ ଜଗତ ମୋହନ ॥
ଯେମନ୍ତ ସଭା ଆତ୍ମପକ୍ଷେ । ଗୋବିନ୍ଦ ବିଚାରି ପ୍ରତ୍ୟେକ୍ଷେ ॥
ଜାଣିବା ପାଇଁ ସର୍ବଜନ । ଉଦ୍ଧବେ ଚାହିଁ ଭଗବାନ ॥
କୋମଳ ବଚନ ଗଭୀର । ବୋଲନ୍ତି ପ୍ରଭୁ ଦାମୋଦର ॥
ଚକ୍ଷୁ ସ୍ୱରୂପ ତୁହି ବୀର । ତତ୍ତ୍ୱଜ୍ଞ ପ୍ରିୟବନ୍ଧୁ ମୋର ॥
ସମୟ ପ୍ରସ୍ତାବଟି ଯେହି । ମୁଁ କି କରିବି କହ ତୁହି ॥
ଯେମନ୍ତେ କୃଷ୍ଣ ବାକ୍ୟ ଶୁଣି । ଉଦ୍ଧବ ମନେ ମନେ ଗୁଣି ॥
ସର୍ବଜ୍ଞ ଜଗତ ଜୀବନ । ଅଲଙ୍ଘ୍ୟ ଯେହାର ବଚନ ॥
ଯେମନ୍ତ ଚିନ୍ତି ଶିରେ ବହି । କହେ ଗୋବିନ୍ଦ ମୁଖ ଚାହିଁ ॥
ସେ ହରି ଚରଣ କମଳେ । ମନ ମୋ ରହୁ ଧ୍ୟାନବଳେ ॥
ଅନାଥ ନାଥ ଜଗନ୍ନାଥ । ସଂସାର ହିତେ ଭଗବାନ ॥
ସୁଜନ ପଦ ଶିରେ ଧରି । କହିଲି ଗୀତ ନାଦ କରି ॥
କହଇ ଦାସ ଜଗନ୍ନାଥ । ଗୀତ ବିନୋଦେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ରାଜଦୂତ ଗମନେ ନାରଦ କଥନେ ଉଦ୍ଧବ ପ୍ରଶ୍ନ ନାମ ପଞ୍ଚ ସପ୍ତତିତମୋଽଧ୍ୟାୟଃ ।*

## ଷଟ୍‌ସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ରାୟେ ଶୁଣ । ସଭାର ମଧ୍ୟେ ନାରାୟଣ ॥
ଉଦ୍ଧବେ ପଚାରିଲେ ଯାହା । ଶୁଣତୁ ଯେକ ମନେ ତାହା ॥
ଉଦ୍ଧବ ଯଦୁସଭା ମଧ୍ୟେ । ନାରଦ ବାକ୍ୟେ ଅନୁବାଦେ ॥
ସଭାଜନଙ୍କ ମତ ଜାଣି । ଶ୍ରୀକୃଷ୍ଣ ମୁଖ ଚାହିଁ ଭଣି ॥
ରାଜାଙ୍କ ଦୂତର ବଚନ । କାର୍ଯ୍ୟରେ ହୋଇ ସାବଧାନ ॥
ସର୍ବଜ୍ଞପଣ ଅଛି ତାର । ଯାଦବ କୁଳ ମନ୍ତ୍ରୀବର ॥
ପବିତ୍ର ମଧୁର ବଚନେ । ହରଷ କରି ସର୍ବମନେ ॥
କୃଷ୍ଣ ସମ୍ମୁଖେ ଯୋଡ଼ିକର । ବୋଲେ ଉଦ୍ଧବ ମନ୍ତ୍ରିବର ॥
ଭୋ ନାଥ ଶୁଣ ଭଗବାନ । ସଂସାର ହିତେ ତୋର ଜନ୍ମ ॥
ନାରଦ ମୁନି ଯାହା କହି । ତୁ ତାହା ଜାଣୁ ଭାବଗ୍ରାହୀ ॥
ପିତୃ ଭଗିନୀ ସୁତକର୍ମ । ଶରଣ ରକ୍ଷଣ ଯେ ଧର୍ମ ॥
ପଣ୍ଡୁ ନନ୍ଦନ ଅନୁରାଗେ । ଉତ୍ସବ ରାଜସ୍ୱୟ ଯଜ୍ଞେ ॥
ହୋଇବ ଜରାସନ୍ଧ ହତ । ଯେ କାର୍ଯ୍ୟ ମୋର ବେନି ମତ
ଯେଣେ ଆମ୍ଭର ବଡ଼ ଲାଭ । ହୋଇବ ଶୁଣ ପଦ୍ମନାଭ ॥

ତୋହର ଯଶ ମଞ୍ଚେ ଥିବ । ରାଜାଙ୍କ ଦୁଃଖ ନାଶ ଯିବ ॥
ଭୋନାଥ ଶୁଣ ନାରାୟଣ । ଜରାସନ୍ଧର ବୀରପଣ ॥
ଦଶ ସହସ୍ର ମତ୍ତହସ୍ତୀ । ବଳ ବହଇ ସେ ନୃପତି ॥
ଯେଣୁ ବିଷମ କର୍ମ ତାର । କ୍ଷତ୍ରୀଙ୍କ ମଧ୍ୟେ ବଳୀୟାର ॥
କେହି ନୁହନ୍ତି ଯୁଦ୍ଧେ ସମ । ସମରେ ପାରେ ଅବା ଭୀମ ॥
ଅବଶ୍ୟ ଭୀମ ମାଲ ଯୁଦ୍ଧେ । ମାରିବ ଘୋର ରଣ ମଧ୍ୟେ ॥
ସୈନ୍ୟ ତା ତେଇଶ କ୍ଷଉଣୀ । କେ ପାରେ ରଣେ ତାକୁ ଜିଣି ॥
ଭିକ୍ଷୁକ ବ୍ରାହ୍ମଣ ବଚନ । ସର୍ବଥା ନ କରେ ସେ ଆନ ॥
ଯେଣୁ ବ୍ରାହ୍ମଣ ବେଶ ହୋଇ । ଭୀମ ଅର୍ଜୁନ ସଙ୍ଗେ ନେଇ ॥
ଭିକ୍ଷୁ ରୂପରେ ଯଜ୍ଞ ଦ୍ୱାରେ । ମାଗିବ ବ୍ରାହ୍ମଣ ବେଭାରେ ॥
ସତ୍ୟ କରାଇ ଦାନ କାଳେ । ଭୀମ ମାରିବ ତାଙ୍କୁ ବଳେ ॥
କେବଳ ସାକ୍ଷୀପ୍ରାୟ ହୋଇ । ସମର ମଧ୍ୟେ ଥିବୁ ତୁହି ॥
ତୋର ମହିମା ନ ଜାଣନ୍ତି । ଶିବ ବିରଞ୍ଚି ପ୍ରଜାପତି ॥
ରାଜା ଯେ ବନ୍ଦୀ ମୋକ୍ଷ ହୋଇ । ଆନନ୍ଦେ ନିଜ ପୁରେ ଯାଇ ॥
କାମିନୀ ମଧ୍ୟେ ତୋର ଯଶ । କହି ହୋଇବେ ମନ ତୋଷ ॥
ଆତ୍ମାର ବନ୍ଦୀ ବିମୋକ୍ଷଣ । ସେ ଜରାସନ୍ଧର ମୋକ୍ଷଣ ॥
ନନ୍ଦ ଗୋକୁଳେ ଗୋପୀଗଣ । ତୋ ଯଶ କରନ୍ତି ସ୍ମରଣ ॥
ଗଜ କୁମ୍ଭୀର ମୋକ୍ଷ କଥା । ରାବଣ ଘରୁ ଆଣି ସୀତା ॥
କଂସର ବନ୍ଧନୁ ନିସ୍ତାରି । ତୋହର ପିତା ଗର୍ଭଧାରୀ ॥
ମୁନି ବ୍ରାହ୍ମଣ ଅନୁମତେ । ଆମ୍ଭ ତୋହର ବନ୍ଧୁ ଯେତେ ॥
ନିରତେ ତୋର ଯଶଗାଇ । ତୋର ଭଜନେ ବହୁ ଦେହୀ ॥
ଭୋ ନାଥ ଜରାସନ୍ଧ ମଲେ । ରାଜାଯେ ନିସ୍ତରିବେ ଭଲେ ॥
ହୋଇବ ଯୁଧିଷ୍ଠିର ଯଜ୍ଞ । ଆମ୍ଭର ଯେବେ ଅଛି ଭାଗ୍ୟ ॥
ଯେମନ୍ତେ ଉଦ୍ଧବ ବଚନ । ଶୁଣି ଗୋବିନ୍ଦ ତୋଷମନ ॥
ବ୍ରହ୍ମାନନ୍ଦନେ ଯଦୁବୃନ୍ଦେ । ଉଦ୍ଧବ ଚାହିଁ ସାଧୁବୃନ୍ଦେ ॥
ଉଦ୍ଧବେ କରନ୍ତି କଲ୍ୟାଣ । ଯେବେ ହୋ ପରୀକ୍ଷିତ ଶୁଣ ॥
ତକ୍ଷଣେ ପ୍ରଭୁ ଦେବରାଜ । ଇନ୍ଦ୍ର ପ୍ରସସ୍ଥେ ବିଜେ ସଜ ॥
ସାତ୍ୟକି ଦାରୁକ ବଦନ । ହରଷେ ଚାହିଁ ଭଗବାନ ॥
ବୋଇଲେ ରଥ ସଜ କର । ଗୁରୁଙ୍କୁ କରି ନମସ୍କାର ॥
କୃଷ୍ଣର ଯେତେକ କାମିନୀ । ପୁତ୍ର ସମ୍ପଦ ସଙ୍ଗେ ଘେନି ॥
କୃଷ୍ଣ ବଚନେ ସଜ ହୋନ୍ତି । ବିବୁଧେ ଗଗନେ ଦେଖନ୍ତି ॥
ଦାରୁକ ସାଜି ଦେବରଥ । ମିଳିଲା ଗୋବିନ୍ଦ ଅଗ୍ରତ ॥
ଗରୁଡ଼ ଧ୍ୱଜ ରଥେ ହରି । ଶଙ୍ଖ ଶବଦେ ବିଜେ କରି ॥
ଏଣେ ସେ ଚତୁରଙ୍ଗ ବଳ । ଚଳନ୍ତେ ଶୁଭେ ମୁଖ ଗୋଳ ॥
ମୃଦଙ୍ଗ ଆଦି ବାଦ୍ୟଘୋଷ । ପୂରେ ଗଗନ ଭୂମି ଦେଶ ॥
ନର କୁଞ୍ଜର ଅଶ୍ୱ ରଥେ । ସୁବର୍ଣ୍ଣ ଶିବିକା ସହିତେ ॥
କୃଷ୍ଣର ଅନୁପଥେ ଯାନ୍ତି । ଯେହ୍ନେ ଗଗନେ ତାରା ପନ୍ତି ॥
ଦିବ୍ୟ ବସନ ପରିଧାନ । କୁସୁମ ସୁଗନ୍ଧ ଲେପନ ॥
କୋଳେ ବସାଇ ସୁତ ସୁତା । କୃଷ୍ଣ କାମିନୀ ପତିବ୍ରତା ॥
ଖଡ଼ଗ ଚର୍ମ ଧନୁ ହସ୍ତେ । ବୀର ଆବୋରି ଯୂଥେ ଯୂଥେ
ଓଟ ମହିଷି ଗୋରୁ ନର । ଗର୍ଦ୍ଦଭଙ୍କେ ଅଶ୍ୱ ଉପର ॥
ହସ୍ତୀ ଉପରେ ଘର କରି । ଆନନ୍ଦେ ଯାନ୍ତି ପରିବାରୀ ॥
ବିଚିତ୍ର ଚିତ୍ରେ ତମ୍ବୁଘର । ଶକଟ କମଳ ଅମର ॥
ଯେ ଆଦି ନାନା ଉପହାର । ଚନ୍ଦନେ ଶୋହେ ମଞ୍ଚପୁର ॥
ଗମନ୍ତି କୃଷ୍ଣର ସଇନୀ । ପଳୟ ସିନ୍ଧୁପାୟ ମଣି ॥
ଉତ୍ତମ ଧ୍ୱଜ ଛତ୍ରପାଟ । ଚାମର କନକ କିରୀଟ ॥
ବିବିଧ ବ୍ରହ୍ମ ଶସ୍ତ୍ର ସାଜେ । ଝଲକ ରବି ରଶ୍ମି ତେଜେ ॥
ଘୋର ଶବଦ କରଷଣେ । ଜଳଧି ଯେସନେ ଗ୍ରହଣେ ॥
ବିଷମ କଲ୍ଲୋଳ ସଙ୍କୁଳ । ବିରାଜେ ଯଦୁ ଭୋଜ ବଳ ॥
କୃଷ୍ଣ ଆଦେଶ ବ୍ରହ୍ମାସୁତ । ନିଜ ଭୁବନେ ଉପଗତ ॥
ହରି ଚରଣେ ନମସ୍କାରି । ହୃଦେ ଗୋବିନ୍ଦ ଭାବ ଭରି ॥
ମୁକୁନ୍ଦ ଦରଶନ ଫଳେ । ଚଞ୍ଚଳ ଇନ୍ଦ୍ରିୟ ନିଶ୍ଚଳେ ॥
ଗଗନ ମାର୍ଗେ ମୁନି ଗଲେ । ଦୂତ ଯେ ଥିଲା କୃଷ୍ଣ ତୁଲେ ॥
ରାଜାଙ୍କ ଦୁଃଖ କୃଷ୍ଣ ଜାଣି । ଦୂତ ବଦନ ଚାହିଁ ଭଣି ॥
ହେ ଦୂତ କହ ଯାଇ ବେଗେ । ବନ୍ଧନ ନୃପତିଙ୍କ ଆଗେ ॥
ଭୟ ନକର ତୁମ୍ଭେ କେହି । ନାଶିବି ଜରାସନ୍ଧ ମୁହିଁ ॥
ଆଜ୍ଞା ପ୍ରମାଣେ ଦୂତ ଗଲା । ରାଜାଙ୍କୁ ସନ୍ଦେଶ କହିଲା ॥
ଦୂତ ବଚନ ଶୁଣି କର୍ଣ୍ଣେ । ରାଜାଯେ ନିଗୂଢ଼ ବନ୍ଧନେ ॥
କୃଷ୍ଣର ଦର୍ଶନେ ଉତ୍ସୁକ । ଛାଡ଼ିଲେ ଘୋର ବନ୍ଦୀ ଦୁଃଖ ॥
କୃଷ୍ଣ ଚରଣେ ମନ ଦେଇ । ରାତ୍ର ଦିବସ ବାଟ ଚାହିଁ ॥
ଗୋବିନ୍ଦ ବସି ନିଜ ରଥେ । ଗମନ କଲେ ରାଜପଥେ ॥
ଆବର୍ତ୍ତ ସଉବୀର ପୁରୀ । ମରୁ ଭୁବନ ବେଗେ ତରି ॥
ତକ୍ଷଣେ କୁରୁକ୍ଷେତ୍ର ଜିଣି । ବନପର୍ବତ ତରଙ୍ଗିଣୀ ॥
ବିବିଧ ପୁର ଗ୍ରାମ ଦେଶ । ବନ ଗହନ ଜିଣି ଦେଶ ॥
ଦୃଷ ଦବଣ ସରସ୍ୱତୀ । ପଥ ଲଙ୍ଘିଲେ ଯଦୁପତି ॥
ପାଞ୍ଚାଳ ମତ୍ସ ଦେଶ ଜିଣି । ଇନ୍ଦ୍ର ପ୍ରସସ୍ଥେ ଚକ୍ରପାଣି ॥
ମିଳି କରନ୍ତି ଶଙ୍ଖନାଦ । ଖଣ୍ଡିଲେ ସଂସାର ବିଷାଦ ॥
ଶଙ୍ଖ ଶବଦ ଶୁଣି କର୍ଣ୍ଣେ । ଧର୍ମନନ୍ଦନ ତୋଷ ମନେ ॥

ଗୁରୁସୁହୃଦ ଘେନି ସଙ୍ଗେ । ଶ୍ରୀକୃଷ୍ଣ ଦ୍ରଶନ ଆନନ୍ଦେ ॥
ଗୀତ ଶବଦେ ନାନା ବାଦ୍ୟ । ବିପ୍ର ମଙ୍ଗଳ ବେଦ ନାଦ ॥
କୁସୁମ ବୃଷ୍ଟି ପଥେ କରି । ଶବଦ ଶୁଭେ ହରିହରି ॥
ମିଳିଲେ କୃଷ୍ଣ ପାଶେ ଯାଇ । କିବା ଉପମା ଦେବି ମୁହିଁ ॥
ପ୍ରାଣ ଆଗମେ ମୃତ ଦେହୀ । ଯେହ୍ନେ ଉଠଇ ଜ୍ଞାନ ପାଇ ॥
ନିଶ୍ଚଳ ଚିତ୍ତେ କୃଷ୍ଣ ଦେଖି । ନିର୍ମଳ କଲେ ଚର୍ମ ଆଖି ॥
ଗୋବିନ୍ଦ ସ୍ନେହ ହୃଦେ ବହି । ଅନେକ ଦିନେ ଭେଟପାଇ ॥
ହୃଦେ ଲଗାଇ ପୁନଃ ପୁନଃ । ନିବିଡ଼େ କଲେ ଆଲିଙ୍ଗନ ॥
କମଳା ଥାଇ ଯାର ଦେହେ । ସେ ଦେହ ପାଇ ସ୍ନେହ ମୋହେ
ନିର୍ମଳ ହୋଇ କମ୍ପେ ଦେହ । ନୟନ ଯୁଗୁଁ ବହେ ଲୁହ ॥
ହରଷେ ତନୁ ରୋହ କଲା । ଲୋକ ବେଭାର ପାସୋରିଲା॥
ଗୋବିନ୍ଦ ଅର୍ଜୁନଙ୍କୁ କୋଳେ । ବସାଇ ଅତି ରଙ୍ଗ ଭୋଳେ ॥
ନକୁଳ ସହଦେବ ଦୁଇ । କୃଷ୍ଣ ଚରଣେ ଶିର ଦେଇ ॥
ପ୍ରଣମ୍ୟ କଲେ ଜଣେ ଜଣେ । ସଙ୍ଗେ ଯେ ଥିଲେ ବିପ୍ର ଗଣେ
ତାହାଙ୍କ ପାଦେ ଦେଇ କର । ନମିଲେ ବ୍ରହ୍ମାଣ୍ଡ ଠାକୁର ॥
କୁଳ ବୃଦ୍ଧଙ୍କ ମୁଖ ଚାହିଁ । କପୋଳେ ବେନି କର ଦେଇ
ଯେ ଯାହା ମତେ ମାନ୍ୟକରି । ଅର୍ଜୁନ କରେ କର ଧରି ॥
କୁରୁ ସଞ୍ଜୟ କଇକୟ । ଗୋବିନ୍ଦ ଦେଖି ସ୍ନେହ ମୋହ
ସୂତ ମାଗଧ ଭୃତ୍ୟଗଣ । ଗନ୍ଧର୍ବ ଉପମନ୍ତ୍ରୀ ପଣ ॥
ମୃଦଙ୍ଗ ପଟହ ଶବଦ । ବିବିଧ ବେଣୁ ବୀଣା ନାଦ ॥
ବ୍ରାହ୍ମଣେ କୃଷ୍ଣ ମୁଖ ଚାହିଁ । ସ୍ତୁତି କରନ୍ତି ବେଦଧ୍ୟାୟି ॥
ଗୋବିନ୍ଦ ଆଗେ ରସଭରି । ନୃତ୍ୟ କରନ୍ତି ଅପସରୀ ॥
ସୁହୃଦ ପଣେ ସ୍ତୁତି ଭରି । ପୁଣ୍ୟ ପୁରୁଷ ଶିଖାମଣି ॥
ଯେମନ୍ତେ ପ୍ରଭୁ ବନମାଳୀ । ଧର୍ମନନ୍ଦନ ପୁରେ ମିଳି ॥
କୁଞ୍ଜର ମଦଗନ୍ଧ ପାଣି । ସଞ୍ଚିତ ସୁନ୍ଦର ଧରଣୀ ॥
ଚିତ୍ର ପତାକା ଧ୍ୱଜ ସ୍ତମ୍ଭ । ପତ୍ର ତୋରଣ ପୂର୍ଣ୍ଣକୁମ୍ଭ ॥
ବିବିଧ ଅଳଙ୍କାର ଘେନି । ସୁନ୍ଦର ପୁରୁଷ କାମେନୀ ॥
ସେବନ୍ତି ନାନା ଉପଚାରେ । ଚଞ୍ଚଳ ଚିତ୍ତ ପୁରଦ୍ୱାରେ ॥
ମାଣିକ୍ୟ ଦୀପ ଜାଳି ରନ୍ଧ୍ରେ । ପ୍ରକାଶେ ନାନା ପରିବନ୍ଧେ ॥
ଅଗର ଧୂପ ଗନ୍ଧ ବାସେ । ସୁଧର୍ମ ଦିଶେ ଦଶ ଦିଶେ ॥
ନାନା ପତାକା ଚାରିପାଶେ । ସୁନ୍ଦର ସୁବର୍ଣ୍ଣ କଳସେ ॥
ରଜତ ଗିରିଶୃଙ୍ଗ ପ୍ରାୟେ । ଧର୍ମ ନନ୍ଦନ ଗୃହ ଶୋହେ ॥
ଆନନ୍ଦ ମନେ ହୃଷୀକେଶ । ପାଣ୍ଡବ ଭୁବନେ ପ୍ରବେଶ ॥
କୃଷ୍ଣ ଆଗମ କର୍ଣ୍ଣେଶୁଣି । ସେପୁରେ ଯେତେକ ତରୁଣୀ ॥

ନର ଲୋଚନ ପାନ ପାତ୍ରେ । ଭାବେ ହର୍ଷିତ ବେନି ନେତ୍ରେ
ଦେଖିବା ଅର୍ଥେ ଭାବସୁଖେ । ଧାଇଁଲେ ଆନନ୍ଦ ଉତ୍ସୁକେ ॥
କେଶ ବସନ ଅସମ୍ଭାଳେ । ଚରଣ ନ ରହେ ନିଷ୍ଠଳେ ॥
ତକ୍ଷଣେ ତେଜିଲେ ବସତି । ଶଯ୍ୟାରେ ଛାଡ଼ି ନିଜ ପତି ॥
କୃଷ୍ଣଙ୍କୁ ଦେଖିବାର ସଧେ । ଧାଇଁଲେ ରାଜପଥ ମଧ୍ୟେ ॥
ନାନା ସୁବାଦ୍ୟେ ଦିଗ ପୂରେ । କେ ଯାଇ ଉଠେ ଉଚ୍ଚଘରେ ॥
ବୃକ୍ଷ ଅଟ୍ଟାଳୀ କେ ପାଚେରି । ଆରୋହୀ ଲଜ୍ଜ୍ୟା ଦୂରକରି ॥
ନିଜ ଯୁବତୀ ଗଣ ଯୂଥେ । କୃଷ୍ଣଙ୍କୁ ଦେଖି ଦିବ୍ୟ ରଥେ ॥
କୃଷ୍ଣ ସୁନ୍ଦର ରୂପ ଦେଖି । ନିର୍ମଳ କଲେ ଚର୍ମ ଆଖି ॥
କୃଷ୍ଣର ସ୍ନେହବଶ ହୋଇ । ଉତ୍ଫୁଲ୍ଲ ନୟନେ ଅନାଇ ॥
କୃଷ୍ଣ କାମିନୀ ମଧ୍ୟେ ବସି । ତାରା ପଟଳେ ଯେହ୍ନେ ଶଶୀ॥
ବୋଲନ୍ତି ଏକୁ ଆରେ ଚାହିଁ । ଆମ୍ଭେ ଗୋ କି କରିବା ସହୀ॥
ଦେଖ ଯେ ପୁରୁଷ ଉତ୍ତମ । ରୂପେ ଗଞ୍ଜଇ କୋଟିକାମ ॥
ସୁନ୍ଦର ମୁଖେ ମନ୍ଦହାସ । ଜୀବନେ ବାନ୍ଧେ କାମ ପାଶ ॥
ସୁରେଖ ଦେଖ ଭୂରୁଭଙ୍ଗ । ଲୋଚନେ ବିସ୍ତାରେ ଅନଙ୍ଗ ॥
ଯେମନ୍ତ ଭାବୁ ନାରୀମାନେ । ଆସି ମିଳିଲେ ପୁରଜନେ ॥
ମଙ୍ଗଳ ଦ୍ରବ୍ୟ ଭୁଜଦଣ୍ଡେ । କୃଷ୍ଣ ଭେଟିଲେ ରାଜଦାଣ୍ଡେ ॥
କୃଷ୍ଣଙ୍କୁ ନମି ଅଶ୍ରୁ ମୁଖେ । ତରିଲେ ଜନ୍ମ ବନ୍ଧ ଦୁଃଖେ ॥
ରାଜାର ଅନ୍ତଃ ପୁରଜନେ । କୃଷ୍ଣଙ୍କୁ ଉତ୍ଫୁଲ୍ଲ ନୟନେ ॥
ଅଭିଗମନ ଅନୁସରି । କୃଷ୍ଣଙ୍କୁ ରାଜପୁରେ ଭରି ॥
ଉତ୍ସବ କେବା ପରିମାଣି । କୃଷ୍ଣ ଆଗମ କୋନ୍ତି ଶୁଣି ॥
ଯେ ହରି ତ୍ରିଭୁବନ ନାଥ । ଲୋକ ବେଭାରେ ଭ୍ରାତାସୁତ ॥
ନିଜ ପଲଙ୍କୁ ଉଠିବେଗେ । ଦ୍ରୌପଦୀ ବନ୍ଧୁ ଘେନି ସଙ୍ଗେ॥
କୋଳେ ବସାଇ ଭଗବାନ । ଆନନ୍ଦେ କଲେ ଆଲିଙ୍ଗନ ॥
ଗୋବିନ୍ଦ ଆଣି ନିଜ ଘରେ । ଧର୍ମନନ୍ଦନର ଆଗରେ ॥
ଆନନ୍ଦ ସିନ୍ଧୁଜଳେ ବୁଡ଼ି । ପୂଜାର କର୍ମପଥ ହୁଡ଼ି ॥
ପିତୃ ଭଗିନୀ ଗୁରୁନାରୀ । ଚରଣେ ବନ୍ଦିଲେ ମୁରାରି ॥
ସୁଭଦ୍ରା ଦ୍ରୌପଦୀର ସଙ୍ଗେ । ନମିଲେ କୃଷ୍ଣ ପାଦଯୁଗେ ॥
ଦ୍ରୁପଦ ସୁତା ତୋଷମନେ । ମିଳିଲା କୁନ୍ତୀର ଭବନେ ॥
ପୂଜିଲା ଯଥା ଅନୁମତେ । ଯେସନେ ପୂର୍ବର ଭକତେ ॥
ରୁକ୍ମିଣୀ ସଖା ସତ୍ୟବତୀ । ଭଦ୍ରା କାଳିନ୍ଦୀ ଜମ୍ବୁବତୀ ॥
ଯେ ଆଦି ଯେତେ କୃଷ୍ଣନାରୀ । ପୂଜିଲେ ଅଳଙ୍କାର ଭରି ॥
ଯେମନ୍ତେ ଧର୍ମର ନନ୍ଦନ । ସୁଖେ ନିବେଶି ଜନାର୍ଦ୍ଦନ ॥
ସକଳ ଜନ ତୁଲେ ହରି । ନିତ୍ୟେ ନୂତନେ ପୂଜାକରି ॥

ପୂର୍ବେ ଅର୍ଜ୍ଜୁନ ତୁଲେ ହରି । ଖାଣ୍ଡବ ବନ ହତ କରି ॥
ଭାବେଣ ରହି ହୃଷୀକେଶୀ । ଅଗ୍ନି ଦେବତା ମନେ ତୋଷି ॥
ଅଗ୍ନିକି କଲି ଉପକାର । ମୟ ଦଇତ କଲେ ପାର ॥
ତାର ନିର୍ମିତ ମାୟାସଭା । କିବା ଉପମା ଆମ୍ଭେ ଦବା ॥
ସେ ସଭାମଧେ କେତେ ମାସ । ଭାବେ ରହିଲେ ହୃଷୀକେଶ ॥
ଅର୍ଜ୍ଜୁନ ତୁଲେ ନାରାୟଣ । ସଙ୍ଗତେ ଘେନି ବୀରଗଣ ॥
ରଥ ଆରୋହୀ ଭଗବାନ । ନିତ୍ୟେ ଭ୍ରମନ୍ତି ଦେଶବନ ॥
ସେ ହରିଚରଣ ପଙ୍କଜେ । ବ୍ରାହ୍ମଣ ଜଗନ୍ନାଥ ଭଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମ ସ୍କନ୍ଧେ ଶ୍ରୀକୃଷ୍ଣ ଇନ୍ଦ୍ରପ୍ରସ୍ଥ ପ୍ରବେଶେ ନାମ ଷଟ୍‌ସପ୍ତତିତମୋଽଧ୍ୟାୟଃ ।*

## ସପ୍ତସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଶୁଦ୍ଧ ମନେ । ଇନ୍ଦ୍ର ପ୍ରସସ୍ଥେ ଏକ ଦିନେ ॥
ସଭାର ମଧେ ଧର୍ମ ସୁତ । ସଙ୍ଗତେ ଛନ୍ତି ଚାରି ଭ୍ରାଥ ॥
ସୁସାଧୁ ବ୍ରହ୍ମଋଷି ଜନ । ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ॥
ବୃନ୍ଦେ ଅଛନ୍ତି ପୂଜାଭାବ । ସୁଜ୍ଞାନୀ ସମ୍ପଦ ବାନ୍ଧବ ॥
ଯେହାକୁ କରି ସାବଧାନ । ଚାହିଁଲେ କୃଷ୍ଣର ବଦନ ॥
ସଭାରେ ଯୋଡ଼ି ବେନି କର । କୃଷ୍ଣଙ୍କୁ ବୋଲେ ନୃପବର ॥
ଭୋ ଦେବ ଶୁଣ ସାବଧାନେ । ଯଜ୍ଞ ରାଜସୂୟ ବିଧାନେ ॥
ତୋର ବିଭୂତି ଦେବଗଣ । ପବିତ୍ର ପରମ କାରଣ ॥
ତାହାକୁ ତୋର ପାଦଗତେ । ପୂଜିବି ମହାଯଜ୍ଞ ମତେ ॥
ଯେଣୁ ମୋହର ମନ ଖେଦ । କରତୁ ସଯଜ୍ଞ ସମ୍ପଦ ॥
ତୋର ଚରଣେ ଅବିରତେ । ଯେ ପ୍ରାଣୀ ଚିନ୍ତେ ଶୁଦ୍ଧଚିତ୍ତେ ॥
ନିଷ୍କଳ ମନେ କରି ଧ୍ୟାନ । ସୁଖେ ଶୁଣନ୍ତି ତୋର ନାମ ॥
ସେବନ୍ତି ଉପବାସ ବ୍ରତେ । ଦେବ ବଚନ ଶାସ୍ତ୍ର ମତେ ॥
ସେ ତୋତେ କରନ୍ତି ପ୍ରଣାମ । ତୁ ଅପବର୍ଗର କାରଣ ॥
ତୁ ଦେବ ଦେବଙ୍କର ହରି । ଯେ ତୋର ପାଦେ ସେବାକରି ॥
ସେବାର ଫଳ ଯେତେ ଲାଭ । ଉଭୟ ଲୋକେ ଅନୁଭବ ॥
ଯେ ସଭାଲୋକର ସପକ୍ଷେ । ତୁ ଯେବେ ଦେଖାଅ ପ୍ରତ୍ୟକ୍ଷେ ॥
ଯେ ତୋତେ ଭଜେ ଦୃଢ଼ଚିତ୍ତେ । ଯେ ଅବା ନ ଭଜନ୍ତି ତୋତେ ॥
ଯେ ବେନି ଜନଙ୍କର ଗତି । ପ୍ରକାଶ କର ଦାଶରଥି ॥
କୁରୁପାଣ୍ଡବ ସଭାମଧେ । ଯେ ଲୋକ ଦେଖନ୍ତୁ ଆନନ୍ଦେ ॥
ତୁ ଯେ ନିର୍ଗୁଣ ବ୍ରହ୍ମସାର । ମିତ୍ର ବଇରୀ ଯହିଁ ତୋର ॥
ଯେ ସର୍ବଭୂତେ ତୋରବାସ । ଯେଣୁ ବୋଲାଉ ସମଦୃଶ ॥
ସମ୍ମୁଖେ ଅନୁଭବ ସମ । ସେବକେ ହେଉ ସୁରଦ୍ରୁମ ॥
ସେବାର ଅନୁରୂପେ ହିତ । ଯେଣୁ ତୋ ନାମ ବିପରୀତ ॥
ଯେମନ୍ତ ଧର୍ମସୁତ ବାଣୀ । ଗୋବିନ୍ଦ ସଭାମଧେ ଶୁଣି ॥
ଯେମନ୍ତ ବୋଲି ଭାବଗ୍ରାହୀ । ବୋଲନ୍ତି ରାଜା ମୁଖ ଚାହିଁ ॥
ଶୁଣ ହେ ଶତ୍ରୁଙ୍କ ଶରଣ । ତୋହର ଉତ୍ତମ ପ୍ରମାଣ ॥
ତୋହର ଯଶ ପୁଣ୍ୟବାଣୀ । ଭଲେ ଭୁବନ ଲୋକ ଜାଣି ॥
କଲ୍ୟାଣବାଣୀ ଅନୁମତେ । ସୁଜନେ ସୁମରିବେ ନିତ୍ୟେ ॥
ଶୁଣ ଯେ ଯଜ୍ଞର ମହିମା । ଅଧିକେ କି ଦେବା ଉପମା ॥
ଋଷି ଦେବତା ପିତୃଗଣେ । ଯେ ଯଜ୍ଞ ପୁଣ୍ୟର ତର୍ପଣେ ॥
ସୁହୃଦି ଆଦି ଯେତେ ଜନ୍ତୁ । ଯେଣେ ତାହାଙ୍କ ସୁଖ ହେତୁ ॥
ସମରେ ସର୍ବ ନୃପ ଜିଣି । ତୁ ବଶ କରୁ ଯେ ଧରଣୀ ॥
ସର୍ବ ସମ୍ଭାର ବସୁଧର । ସୁଖେ ତୁ ମହାଯଜ୍ଞ କର ॥
ଯେ ଜଣେ ହୋଇ ଚାରିଭ୍ରାଥ । ଦିଗପାଳଙ୍କ ଅଂଶେ ଜାତ ॥
ମୁହିଁ ଦୁର୍ଜ୍ଜୟ ସୁରପୁରେ । ଭାବେ ଖଟିବି ତୋ ପୟରେ ॥
ଯେବେ ତୁ ଶୁଣ ଭୋ ରାଜନ । ମୋର ସେବକ ଯେତେ ଜନ ॥
ତାହାଙ୍କ ଇହ ପରଲୋକେ । କେ ଜାଣିପାରେ ପୁଣ୍ୟଶ୍ଳୋକେ ॥
ତେଜ ଐଶ୍ୱର୍ଯ୍ୟ ଯଶ ଶିରୀ । ନାନା ବିଭୂତି ଆଦି କରି ॥
କେହି ନପାରେ ତାକୁ ଜିଣି । ମୋର ଶରଣ ଯେତେ ପ୍ରାଣୀ ॥
ଦେବେ ନ ପାରନ୍ତି ତାହାଙ୍କୁ । କି ଭୟ ମନୁଷ୍ୟ ରାଜାଙ୍କୁ ॥
ଭାବେ କହନ୍ତି ବ୍ୟାସସୁତ । ଶୁଣ ସୁମନେ ପରୀକ୍ଷିତ ॥
ଯେମନ୍ତେ କୃଷ୍ଣ ବାକ୍ୟ ଶୁଣି । ଆନନ୍ଦମନେ ନୃପମଣି ॥
ଚାରି ଦିଗକୁ ଚାରିଭାଇ । ପେଷିଲେ କୃଷ୍ଣ ଆଜ୍ଞାପାଇ ॥
ତକ୍ଷଣେ ବିଷ୍ଣୁ ତେଜରାଶି । ବେଗେ ତାହାଙ୍କ ଦେହେ ମିଶି ॥
ଦିଶନ୍ତି ବିଷ୍ଣୁ ତେଜକାନ୍ତି । ଯେବେହୋ ଶୁଣ ନରପତି ॥
ଦକ୍ଷିଣ ଦିଗେ ସହଦେବ । ତକ୍ଷଣେ ପେଷିଲେ ମାଧବ ॥
ସୃଞ୍ଜୟ ଜନ ସଙ୍ଗେ ଲଇ । ବୋଲନ୍ତି ନକୁଳକୁ ଚାହିଁ ॥
ପଶ୍ଚିମ ଦିଗେ ତୁମ୍ଭେ ଚଳ । ସଙ୍ଗେ ଘେନାଇ ଅଙ୍ଗ ବଳ ॥
ଅର୍ଜ୍ଜୁନ ମୁଖ ଚାହିଁ କରି । ବୋଲନ୍ତି କରେ କର ଧରି ॥
ଉତ୍ତର ଦିଗେ ଚଳ ତୁହିଁ । ମୋହୋର ନିଜ ଭାବବହି ॥
ପୁଣି ଅନାଇଁ ବୃକୋଦର । ବୋଇଲେ ବ୍ରହ୍ମାଣ୍ଡ ଠାକୁର ॥
ମଦ୍ର ରାଜାର ବଳ ସଙ୍ଗେ । ଘେନି ତୁ ଯାଅ ପୂର୍ବ ଭାଗେ ॥

ମଦ୍ରକ କେକେୟ ଯେବନ । ସଙ୍ଗେ ଘେନାଇ ବେଗେ ଚଳ
ବୋଲନ୍ତି ପ୍ରଭୁ ନାରାୟଣ । ରାଜାଙ୍କୁ କରି ନିମନ୍ତ୍ରଣ ॥
ରାଜାଙ୍କୁ ବିଷ୍ଣୁ ତେଜେ ଜିଣି । ଧନ ସମ୍ପଦ ବେଗେ ଆଣି ॥
ବହନ ଆଣ ଚାରିଭାଇ । ଯଜ୍ଞ ସମ୍ଭର ସଙ୍ଗେ ଲଇ ॥
ଗୋବିନ୍ଦ ଆଜ୍ଞା ପରମାଣେ । ଗଲେ ସେ ରାଜା ନିମନ୍ତ୍ରେଣ ॥
ଚାରିଦିଗକୁ ଚାରିଭାଇ । ଅଇଲେ ରାଜାଙ୍କୁ ଘେନାଇ ॥
ଧର୍ମନନ୍ଦନ ପାଶେ ଥିଲେ । କୃଷ୍ଣର ଛାମୁରେ କହିଲେ ॥
ଭୋ ନାଥ ଶୁଣିମା ଗୋବିନ୍ଦ । ଘୋର ଦୁର୍ଜ୍ଜୟ ଜରାସନ୍ଧ ॥
ତାହାକୁ ନ ପାରିଲୁ ଜିଣି । ଶୁଣି ଚକିତ ଚକ୍ରପାଣି ॥
କୃଷ୍ଣଙ୍କୁ ମନେ କରିଧ୍ୟାନ । ତକ୍ଷଣେ ଜାଣି ଭଗବାନ ॥
ଉଦ୍ଧବ ବାକ୍ୟ ସୁମରଣ । କରି ଉଠିଲେ ନାରାୟଣ ॥
ଭୀମ ଅର୍ଜ୍ଜୁନ ତୁଳେ ହରି । ତକ୍ଷଣେ ବିପ୍ର ରୂପଧରି ॥
ମିଳିଲେ ଯାଇଁ ଗିରିବରେ । ଦୁର୍ଗମ ଜରାସନ୍ଧ ପୁରେ ॥
ଅତିଥି ଦ୍ୱାରେ ତାର ପୁରେ । ମିଳିଲେ ଭିକ୍ଷୁକ ବେଭାରେ ॥
ଗୃହସ୍ଥ ଧର୍ମେ ଭିକ୍ଷୁ ପୂଜା । ବ୍ରାହ୍ମଣେ ଜରାସନ୍ଧ ରାଜା ॥
ତାର ସମୀପେ ଭଗବାନ । ସୁସ୍ୱରେ କଲେ ସାମ ସ୍ୱନ ॥
କ୍ଷତ୍ରିୟ ଧର୍ମେ ଜନ୍ମ ହୋଇ । ଛନ୍ଦେ ବ୍ରାହ୍ମଣ ରୂପ ବହି ॥
କୃଷ୍ଣର ବେଦନାଦ ଶୁଣି । ମନେ ବିଚାରେ ନୃପମଣି ॥
ଯେତ ଅପୂର୍ବ ଦ୍ୱିଜବରେ । ମିଳିଲେ ମୋହର ନବରେ ॥
ଆଜ ଜୀବନ ମୋର ଧନ୍ୟ । ଉତ୍ତମ ବିପ୍ରେ ଦେବି ଦାନ ॥
ଯେମନ୍ତ ମନେ ବିଚାରିଲା । କୃଷ୍ଣର ନିକଟେ ମିଳିଲା ॥
ତାର ବଦନ ଚାହିଁ ହରି । କହନ୍ତି ଅଞ୍ଜଳି ପ୍ରସାରି ॥
ଶୁଣ ଧାର୍ମିକ ନୃପବର । ଅନେକ ଦୂରେ ଆମ୍ଭଘର ॥
ତୋର ମହିମା ଶୁଣି କର୍ଣ୍ଣେ । ଆମ୍ଭେ ଅଇଲୁ ପଥଶ୍ରମେ ॥
ତୋର କୁଶଳ ହେଉସୁଖେ । ଯାହା ମାଗିବୁ ଆମ୍ଭେ ମୁଖେ ॥
ସନ୍ତୋଷେ ଦେବୁ ନୃପବର । ଯେ ଧର୍ମେ ବିଳମ୍ବ ନକର ॥
ତୁ ପୁଣ୍ୟବନ୍ତ ଶିରୋମଣି । ଆମ୍ଭେ ଅଇଲୁ ଯଶଶୁଣି ॥
ଯେ ଦୁଃଖେ ସଂସାର ତାରଣ । ଇଚ୍ଛା କରଇ ଜାରାପ୍ରାଣ ॥
ତା ଦେହ ଭେଦି ନାହିଁ କେହି । ଦୁର୍ଲ୍ଲଭ ମାଗିଲେ ସେପାଇ ॥
ଆସାଧୁ ବୁଦ୍ଧି ଯେତେ ନର । କିଅବା କାର୍ଯ୍ୟ ତାହାଙ୍କର ॥
ଜାଣି ନଜାଣି ସୁଖ ଲୋଭେ । କର୍ମ କରଇ ପଶୁଭାବେ ॥
ବିପାକ ଫଳେ ବିପରୀତ । ବୋଲନ୍ତି ପ୍ରଭୁ ଗୋପୀନାଥ ॥
ନିର୍ମଳ ଜ୍ଞାନ ଯାର ଦେହୀ । ଅଦେହ ବସ୍ତୁ ତାର ନାହିଁ ॥
ପ୍ରାଣୀର ହିତେ ସର୍ବ ଦେଇ । ତାହାକୁ ବୋଲି ଗୁଣଗ୍ରାହୀ ॥

ସମଦରଶୀ ଚିତ୍ତ ଯାର । ମିତ୍ର ଅଇରି ନାହିଁ ତାର ॥
ଯେ ପ୍ରାଣୀ ବିଷୟେ ସଂଚାରେ । ନିର୍ମଳ ବିଷୟ ସଂସାରେ ॥
ପୁଣ୍ୟ ପୁରୁଷେ ଯାହା ଗାଇ । ତାହା ନ ସଞ୍ଚେ ଦେହ ବହି ॥
ନିଷ୍ଫଳ ତାହାର ଜୀବନ । ନିନ୍ଦା କରନ୍ତି ସର୍ବଜନ ॥
ତା ସୁଖ ନାହିଁ ତିନି ଲୋକେ । ଜୀବନ ବହେ ଦୁଃଖସୁଖେ ॥
ପୁଣ୍ୟ ପରୁଷ ପୁଣ୍ୟକାଳେ । ଥିଲେ ଯେ ଯେ ମହୀ ମଣ୍ଡଳେ
ଯେ ହରିଶ୍ଚନ୍ଦ୍ର ନରପତି । କରନ୍ତି ବେଦ ଲକ୍ଷ ବୃତ୍ତି ॥
ଶିବି ନୃପତି ଭାଗ୍ୟବନ୍ତ । ବଳି ଯେ ବୈରୋଚନ ସୁତ ॥
ବ୍ୟାଧ କପୋତ ଆଦିଯେତେ । ଅଧ୍ରୁବ ଦେହ ଧ୍ରୁବ ପଥେ ॥
ଗମିଲେ ପୁଣ୍ୟଫଳ ସୁଖେ । ଯଶ ରହିଲା ତିନିଲୋକେ ॥
ଯେମନ୍ତେ କୃଷ୍ଣ ବାକ୍ୟ ଶୁଣି । ବିପ୍ରଙ୍କୁ ଚାହିଁ ନୃପମଣି ॥
ଶର ଆକୃତେ ପରିମାଣ । ହସ୍ତ କର୍କଶ ଧନୁର୍ଗୁଣେ ॥
ଦେଖି କରଇ ବିଚାରଣ । ଯେ ନିଶ୍ଚେ ନୋହନ୍ତି ବ୍ରାହ୍ମଣ ॥
ପୂର୍ବେ ଏହାଙ୍କୁ ଅଛି ଦେଖି । ଯେମନ୍ତେ ମନେ ଉପଲେଖି ॥
ପୁଣି ବିଚାରେ ଶୁଦ୍ଧ ମନେ । ଅତିଥି ଲଙ୍ଘିବି କେସନେ ॥
ବ୍ରାହ୍ମଣ ରୂପେ ହୋଇ ଛନ୍ନ । ଯେବେ କ୍ଷତ୍ରିୟ ମାଗେ ଦାନ ॥
ଯେହାଙ୍କୁ ନାହିଁ ମୋର ଭ୍ରାନ୍ତି । ମୋହୋର ଦ୍ୱାରେ ଯେ ଅତିଥି
ଯେହାଙ୍କୁ ନିଶ୍ଚେ ଦେବି ଦାନ । ଯେବେ ମାଗିବେ ମୋ ଜୀବନ
ବଳି ରାଜନ ଯଜ୍ଞ କାଳେ । ବିଷ୍ଣୁ ମିଳିଲେ ବିପ୍ରଛଳେ ॥
ତିନି ଚରଣ ମହୀ ଦେଲା । ତା ଯଶ ସଂସାରେ ରହିଲା ॥
ବିଷ୍ଣୁ ନାଶିଲେ ତାର ଦୁଃଖ । ଭୁଞ୍ଜି ନିଶ୍ଚିନ୍ତେ ନିଜ ସୁଖ ॥
ମନ୍ତ୍ରୀ ବଚନ ନ ଶୁଣିଲା । ଯେ ଗୁଣ ପୂର୍ବ ଭାଗ୍ୟ ଥିଲା ॥
କ୍ଷତ୍ରିୟ କୁଳେ ଜାତ ହୋଇ । ବ୍ରାହ୍ମଣ ହିତ ଯେ ନ ବହି ॥
ଧନ ଜୀବନ ଧିକ ତାର । ନିର୍ମଳ ଯଶ ନାହି ଯାର ॥
ଯେମନ୍ତ କରି ଅନୁମାନ । ନିଶ୍ଚଳେ ବୋଇଲେ ବଚନ ॥
ଭୋ ବିପ୍ରବର ମାଗ ଦାନ । ଦେବଙ୍କ ସତ୍ୟ ମୋ ବଚନ ॥
ଯେ ଧର୍ମ ବିଳମ୍ବ ନକର । ମାଗିଲେ ଦେବି ଆତ୍ମଶିର ॥
ଶୁଣି ତାହାର ସତ୍ୟବାଣୀ । ବୋଲନ୍ତି ପ୍ରଭୁ ଚକ୍ରପାଣି ॥
ତୁ ପୁଣ୍ୟ ଯଶ ନୃପମଣି । ଅଇଲୁ ତୋର ଯଶ ଶୁଣି ॥
ଆମ୍ଭଙ୍କୁ ଯୁଦ୍ଧ ଦିଅ ଦାନ । ଅନ୍ୟଥା ନାହିଁ ପ୍ରୟୋଜନ ॥
ଶସ୍ତ୍ର ସମରେ ନାହିଁ ସଧ । ଆମ୍ଭଙ୍କୁ ଦିଅ ମାଲ ଯୁଦ୍ଧ ॥
ଯେବେ ତୋ ଧର୍ମ ଉତ୍କଟ । ଆମ୍ଭେ କହିବୁ ଗୁଣତତ୍ତ୍ୱ ॥
କ୍ଷତ୍ରିୟ ଜନ୍ମ ଆମ୍ଭେ ତିନି । ଯେଣୁ ତୁ ନ ପାରିଲୁ ଚିହ୍ନି ॥
ତା ଶୁଣି ଚକିତ ରାଜନ । ଚାହିଁ କରଇ ଅନୁମାନ ॥

କିଯେ ଗନ୍ଧର୍ବ ବିଦ୍ୟାଧର । ମନୁଷ୍ୟ ରାକ୍ଷସ କିନ୍ନର ॥
ବ୍ରାହ୍ମଣ କାହିଁ ଏଡ଼େ ତେଜ । କର୍କଶ ଧନୁର୍ଗୁଣେ ଭୁଜ ॥
ନିଶ୍ଚେ କ୍ଷତ୍ରିୟ ଡିମ୍ବିରୂପ । ତା ଜାଣି କଲେ ପଦ୍ମମୁଖ ॥
ଦେଖ ଯେ ବୀର ବୃକୋଦର । ବାମେଟି ଅର୍ଜ୍ଜୁନ ଏହାର ॥
ତୁ ମୋର ମାତୁଳଙ୍କ ଭ୍ରାତ । ମୁଁ କୃଷ୍ଣ ବସୁଦେବ ସୁତ ॥
ବଳେ ଜିଣିଲୁ ମୋତେ ତୁହି । ତା ଶୁଣି କୃଷ୍ଣ ମୁଖ ଚାହିଁ ॥
ତୁ ମୋର ରିପୁ ମହାବଳ । ଜିଣିଛୁ ସପ୍ତଦଶ ବେଳ ॥
ଉଠି ବସିଲା ଜରାସନ୍ଧ । ବୋଲଇ ତୁମ୍ଭେ ମୂଳମନ୍ଦ ॥
କୋପେ ବୋଲାଇ କୃଷ୍ଣେଚାହିଁ । ସତ୍ୟ ଯେ କରିଅଛି ମୁହିଁ ॥
ସଂଗ୍ରାମ ମୋହର ଉଚିତ । ତୁ ପୁଣି ସଂଗ୍ରାମେ ନିସତ ॥
ପଳାଇ ଗଲୁ ମୋର ଭୟେ । ଯେବେ ଭ୍ରମିଲୁ କୁଟମୋହେ ॥
ମଥୁରା ଛାଡ଼ି ଜଳେ ପଶି । ଯେବେ ଛନ୍ଦିଲୁ ମୋତେ ଆସି
ସମୁଦ୍ରେ ପଶିଲୁ ଶରଣ । ତୋହୋର ତୁଳେ କାହିଁ ରଣ ॥
ଯେ ଯେ ଅର୍ଜ୍ଜୁନ ସଖା ତୋର । ଯେ ତୁଲ୍ୟ ବୟସ ମୋହୋର
ଯେହାର ଦେହେ ନାହିଁ ବଳ । ଯେ କାହିଁ ମୋର ସମତୁଲ ॥
ମୋହର ତୁଲ୍ୟ ବଳ ଭୀମ । ଯେ ଜାଣେ ବାହୁ ଯୁଦ୍ଧସମ ॥
ଯେମନ୍ତ କହି କୋପ ଭରେ । ବେଗେ ମଳିଲା ନିଜପୁରେ ॥
ବୁଲାଇ ବେନି ଗଦା ହସ୍ତେ । ମଳିଲା କୃଷ୍ଣର ଅଗ୍ରତେ ॥
ଗଦାଯେ ଭୀମହସ୍ତେ ଦେଲା । ସମର କରତୁ ବୋଇଲା ॥
ଆପଣେ ନିଜ ଗଦାଧରି । ରଣେ ପଶିଲା ଆଗସରି ॥
ସମରେ ଭୀମ ଜରାସନ୍ଧ । ଶୂନ୍ୟେ ଦେଖନ୍ତି ଦେବବୃନ୍ଦ ॥
ଅନ୍ତରେ ନିଜବଳ ଆଞ୍ଚି । ଗଦା ସମରେ ଗଦା ପାଞ୍ଚି ॥
ରଣେ ଦୁର୍ମଦ ବେନିବୀର । ଘୂରାଇ କରନ୍ତି ସମର ॥
ଶବଦ ଯେହ୍ନେ ଘଡ଼ଘଡ଼ି । ଗଦା ଶୁଭଇ ଅଙ୍ଗେ ପଡ଼ି ॥
ବାମ ଦକ୍ଷିଣ ପାଦ ଟାକି । କୋପେ ପିଟନ୍ତି ଭୁଜତୋଳି ॥
ସମର ଗଜ ଯୁଦ୍ଧ ପ୍ରାୟେ । ଗଦ ପିଟନ୍ତି ବେନି ଦେହେ ॥
ଶୁଭଇ ଋଟଋଟ ନାଦ । ଗଜେ ଯେସନେ ଗଜଯୁଦ୍ଧ ॥
ଯେମନ୍ତ ବେନି ଗଦାଘେନି । ଅଙ୍ଗେ ପ୍ରହାର ଅନ୍ୟୋଅନି ॥
ପିଟନ୍ତି ଭୁଜ ଯୁଗେ ବେଗେ । ଗଦାଯେ ବାଜି ତାଙ୍କ ଅଙ୍ଗେ ॥
କଟି ଜଘନେ ଉରୁକନ୍ଧେ । ବଜ୍ର ଶବଦ ଘୋର ନାଦେ ॥
ଭାଜି ପଡ଼ିଲେ ମହୀତଳେ । ହସ୍ତୀ ସଂଗ୍ରାମ ଯେହ୍ନେବଳେ ॥
ଯେ ବେନି ଗଦା ଯହୁଁ ଗଲା । ଅନେକ କୋପ ଉପୁଜିଲା ॥
ମୁଷ୍ଟି ଉଟାଇ ମହାକୋପେ । ପ୍ରହାର କରନ୍ତି ସମୀପେ ॥
ଶୁଭଇ ବଜ୍ର ଘଡ଼ ଘଡ଼ି । ପୁଣି ପ୍ରହାରନ୍ତି ଚାପୋଡ଼ି ॥

ଯେମନ୍ତେ ବଢ଼ିଲା ସଂଗ୍ରାମ । ଦଇବେ ବେନି ବୀରସମ ॥
ଯେମନ୍ତେ ସମର ବଢ଼ିଲା । ସପତ ବିଂଶ ଦିନଗଲା ॥
ଯେମନ୍ତେ ରଜନୀ ପ୍ରବେଶ । କୃଷ୍ଣ ଯେ ଥିଲେ ଭୀମ ପାଶ ॥
କୃଷ୍ଣ ଙ୍କ ଭୀମ ଚାହିଁ । କହିଲେ ଅଙ୍ଗୁଳି ଦେଖାଇ ॥
ଯେହାକୁ ନ ପାରିବି ମୁହିଁ । ଉପାୟ ଥିଲେ କର ତୁହି ॥
ଭୀମ ବଚନେ ନାରାୟଣ । ଚିନ୍ତିଲେ ଜରାର ମରଣ ॥
ଜରା ରାକ୍ଷସୀ ଜନ୍ମକାଳେ । ସନ୍ଧାନ କରି ବେନି ଫାଳେ ॥
ବୋଇଲା ହୁଅତୁ ଅଜୟେ । ଯେ ଜାଣି ପାରିବ ଉପାୟ ॥
ଯେ ତୋତେ ଚିରି ବେନି ଫାଳେ । ଖଣ୍ଡେ ଫିଙ୍ଗିବ ଅନ୍ତରାଳେ
ଖଣ୍ଡେ ଫିଙ୍ଗିବ ସିନ୍ଧୁ ଜଳେ । ଦହିବ ବଡ଼ବା ଅନଳେ ॥
ତେବେ ସେ ତୋହର ମରଣ । ଯେକଥା ଜାଣି ନାରାୟଣ ॥
ଭୀମ ଶ୍ୱରୀରେ ନରହରି । ତକ୍ଷଣେ ନିଜ ତେଜ ଭରି ॥
ଶତ୍ରୁର ମରଣ ଉପାୟେ । ତୃଣ ଉପାଡ଼ି ଦେବରାୟେ ॥
ଭୀମ ଦେଖାଇ ନରହରି । ଚିରିଲେ ବେନି ଫାଳକରି ॥
ତକ୍ଷଣେ ଚାହିଁ ବୃକୋଦର । ଶବଦ କଲା ମହାଘୋର ॥
ଉତ୍ତାଳେ ପଡ଼ିଥିଲା ଭୀମ । ଦେହେ ବସିଲା ଗରୁତମ ॥
ଜାରାକୁ ପକାଇଲା ତଳେ । ତକ୍ଷଣେ ଉଠି ମହାବଳେ ॥
ବିଷ୍ଣୁର ତେଜେ ଘୋର ନାଦେ । ଧଇଲା ଶତ୍ରୁବେନି ପାଦେ ॥
ଆକର୍ଷି ପାଦେ ପାଦ ମାଡ଼ି । ଆଉ ଚରଣେ ହସ୍ତ ତାଡ଼ି ॥
ଦେଖନ୍ତି ପ୍ରଭୁ ଦାମୋଦର । ବେଗେ ଫାଡ଼ିଲା ମଳଦ୍ୱାର ॥
ହୁଂକାର ନାଦେ ମହାବଳ । ତକ୍ଷଣେ କଲା ବେନିଫାଳ ॥
ଦେବେ ଦେଖନ୍ତି ତା ପ୍ରତ୍ୟକ୍ଷେ । ଖଣ୍ଡେ ଫିଙ୍ଗିଲା ଅନ୍ତରୀକ୍ଷେ ॥
ଆଉ ଖଣ୍ଡକୁ ଭୂମିଗତେ । ପଡ଼ିଲା ଗୋବିନ୍ଦ ଅଗ୍ରତେ ॥
ଗଜ ଯେସନେ ବୃକ୍ଷଡ଼ାଳେ । ଲୀଳାୟେ କରି ବେନି ଫାଳେ
ଯେକଇ ଚରଣ ବୃଷଣ । ଶରୀରେ କରି ଓଷ୍ଠ ସ୍ତନ ॥
ଯେକଇ ଅଛି ଭୁଜଧରି । ଯେହ୍ନେ କରତେ ଶିର ଚିରି ॥
ଯେକଇ ନାସା ପୁଟକର୍ଣ୍ଣ । ଚକ୍ଷୁ କପୋଳ ଦେଖିଜନ ॥
ଶୁଭଇ ହା ହା କାର ବାଣୀ । ଭୀମ ଉଠିଲା ତାହା ଶୁଣି ॥
ଜରାସନ୍ଧର ପାଦଧରି । ବୁଲାଇ ଅନ୍ତରୀକ୍ଷ କରି ॥
ବଡ଼ବାନଳେ ପକାଇଲା । ଯେମନ୍ତେ ଶତ୍ରୁ ନାଶଗଲା ॥
ତକ୍ଷଣେ ପାର୍ଥ ଜଗନ୍ନାଥ । ଧଇଲେ ବୃକୋଦର ହସ୍ତ ॥
ଜୟ ଶବଦେ ନରହରି । ଭୀମକୁ ଆଲିଙ୍ଗନ କରି ॥
ଜରାସନ୍ଧର ପୁତ୍ରଆଣି । ନୃପ ଆସନେ ଚକ୍ରପାଣି ॥
ବସାଇ ନିଜ ଜନ ମଧ୍ୟେ । କୃଷ୍ଣ ସଞ୍ଚିଲେ ନୃପପଦେ ॥

ବନ୍ଧନେ ଯେତେ ରାଜାଛନ୍ତି । ତାହାଙ୍କୁ ସୁମରି ଶ୍ରୀପତି ॥
ପର୍ବତ ଦ୍ରୋଣୀ ମଧଗତେ । ଗୋବିନ୍ଦ ଗଲେ ପାଦଗତେ ॥
ସେ ହରି ଚରଣ ବିଶ୍ୱାସେ । ଶରଣ ଜଗନ୍ନାଥ ଦାସେ ॥
ରାଜାଙ୍କ କ୍ଳେଶ ଭାବ ଜାଣି । ମୁକତ କଲେ ଚକ୍ରପାଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବିଜୟେ ଜରାସନ୍ଧ ବଧେ ନାମ ସପ୍ତସପ୍ତତିତମୋଽଧ୍ୟାୟଃ ।*

## ଅଷ୍ଟସପ୍ତତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ ବୋଲନ୍ତି ରାୟେ ଶୁଣ । ରିପୁ ସଂହାରି ନାରାୟଣ ॥
ଗିରି ଗର୍ଭରେ ବନମାଳୀ । ରାଜା ନିରୋଧ ସ୍ଥାନେ ମିଳି ॥
ରାଜା ନିରୋଧେ ଦୁଃଖ ସହି । ଯେତେ ନୃପତି ଛନ୍ତି ରହି ॥
ଶୁଣହୋ ଅଭିମନ୍ୟୁ ସୁତ । ବେନି ଅୟୁତ ଅଷ୍ଟଶତ ॥
ଦିଗ ବିଜୟେ ରାଜାସୁତ । ଲୀଳାୟେ ଜିଣି ନୃପ ଯୂଥ ॥
ବନ୍ଧନ କରିଅଛି ବଳେ । ସର୍ବ ନୃପତି ଯେକ ମେଳେ ॥
ମଳିଣ ବସ୍ତ୍ର ପରିଧାନ । ବିରସେ ଶୁଖିଛି ବଦନ ॥
କ୍ଷୁଧାୟେ କମ୍ପଇ ଶରୀର । ବନ୍ଦୀ ଭୁବନ ଅନ୍ଧକାର ॥
ଅସ୍ଥି ଚର୍ମରେ ଅବଶେଷ । ସ୍ୱଜନ ସଙ୍ଗେ ନ ସମ୍ଭାଷ ॥
ଦ୍ୱାରକୁ ଚାହାନ୍ତି ନିରୋଳି । ବିଜୟ କଲେ ବନମାଳୀ ॥
ପୂର୍ବ ପର୍ବତେ ରବି ଯେହ୍ନେ । କିରଣ ପ୍ରକାଶେ ଗଗନେ ॥
ଶରୀର ଶ୍ୟାମ ଘନ ପ୍ରାୟେ । ପୀତ ବସନ ଜନ ମୋହେଁ ॥
ଶ୍ରୀବତ୍ସ ଚିହ୍ନ ହୃଦେ ସାଜେ । ରତ୍ନମେଖଳା କଟି ମାଝେ ॥
ଆଜାନୁଲମ୍ବେ ଚାରିଭୁଜ । ଶଙ୍ଖ କମଳ ଚକ୍ରତେଜ ॥
ପଦ୍ମ ପ୍ରଭାବ ପ୍ରାୟେ ହୋଇ । ରଙ୍ଗନୟନ ବିରାଜଇ ॥
ସୁନ୍ଦର ଶ୍ରୀମୁଖ ମଣ୍ଡଳ । ଶ୍ରବଣେ ମକର କୁଣ୍ଡଳ ॥
ହାର କିରଟୀ ରତ୍ନମୟେ । କରେ କଙ୍କଣ ଜନ ମୋହେ ॥
କଣ୍ଠେ ବିରାଜେ ରତ୍ନମଣି । ରବି କିରଣ ପ୍ରାୟେ ଜାଣି ॥
ହୃଦେ ଲମ୍ବଇ ବନମାଳ । ମୋହନ ମଦନ ଗୋପାଳ ॥
ଦେଖି ସକଳ ନୃପମଣି । ଅମୃତ ନିଧି ପ୍ରାୟେ ଜାଣି ॥
ପିଇବା ପ୍ରାୟେ ଚକ୍ଷୁପାତ୍ରେ । ଜିହ୍ୱା କେଲେହୁଛନ୍ତି ଗାତ୍ରେ ॥
ଆଘ୍ରାଣ କରି ନାରାରନ୍ଧ୍ରେ । ହୃଦେ ଭିଡ଼ିଲେ ବାହୁବନ୍ଧେ ॥
ଯେମନ୍ତ ଭାବେ ନୃପବର । ନମିଲେ କୃଷ୍ଣର ପୟେର ॥
କିରଟୀ ମୁଷ୍ଟି ଶିରେ ଧରି । ପ୍ରଣମ୍ୟ କରି ପାଦେ ପଡ଼ି ॥
ଲଭିଲେ କୃଷ୍ଣ ଦରଶନ । ଧ୍ୱଂସ ହୋଇଲା ରବିଶ୍ରମ ॥
କର ଅଞ୍ଜଳି ଶିରେ ଦେଇ । ବୋଲନ୍ତି କୃଷ୍ଣମୁଖ ଚାହିଁ ॥
ନମସ୍ତେ ଦେବଦେବ ବର । ପ୍ରସନ୍ନ ଜନ ଦୁଃଖ ହର ॥
ଅବ୍ୟୟ ପୁରୁଷ ଉତ୍ତମ । ପ୍ରସନ୍ନ ଜନଙ୍କ ଜୀବନ ॥
ଘୋର ସଂସାର ଅନ୍ଧ କୂପେ । ଆମ୍ଭେ ମଜ୍ଜିଲୁ ଅତି ଦୁଃଖେ ॥
ଅନାଥ ନାଥ ତୋ ମହିମା । ଆମ୍ଭେ ନ ଜାଣୁ ଗୁଣ ସୀମା ॥
ତୋହୋର ଗତି ଚକ୍ରଧର । ନ ଜାଣେ ଶିବ ବେଦବର ॥
ଦୁର୍ଲ୍ଲଭ ଯେହୁଟି ସଂସାରେ । ଶୁଣ କହିବୁ ତୋ ଛାମୁରେ ॥
ଯେ ଯେ ମଗଧ ଜରାସନ୍ଧ । ଆମ୍ଭର ତୁଲେ କରି ଦ୍ୱନ୍ଦ୍ୱ ॥
ଯେ ତୋର ଅନୁଗ୍ରହେ ହରି । ଆମ୍ଭଙ୍କୁ ବଳେ ବନ୍ଦୀ କରି ॥
ଥୋଇଲା ଧରି ଯେ ପର୍ବତେ । ତୋ ରୂପ ଦେଖିବାର୍ ଅର୍ଥେ ॥
ଯେ ଆମ୍ଭ ରାଜ୍ୟ ଭ୍ରଷ୍ଟକଲା । ଯେଣୁ ତୋହର ଆଜ୍ଞା ଥିଲା
ଯେ ରାଜ୍ୟ ଅର୍ଥେ ମତ୍ତହୋଇ । ତାହାର ଶ୍ରେୟ ଲାଭ ନାହିଁ ॥
ତୋର ମାୟାରେ ହୋଇ ମତ୍ତ । ମିଥ୍ୟା ସମ୍ପଦେ ମଣେ ସତ୍ୟ ॥
ଅଜ୍ଞାନ ଅନ୍ଧେ ହୋଇ ଭୋଳ । ମୃଗ ତୃଷ୍ଣାକୁ ମଣେ ଜଳ ॥
ନିବିଡ଼ ମାୟାର ଆକାରେ । ଅବସ୍ତୁ ବସ୍ତୁର ବିଚାରେ ॥
ଆମ୍ଭେ ସକଳେ ପୂର୍ବଦେହେ । ଶ୍ରୀମଦ ନଷ୍ଟ ବୁଦ୍ଧି ମୋହେ ॥
ଯେ ଭୂମି ଜିଣିମାର ଆଶେ । ଘୋର ସଙ୍କଟ ରଣ ତ୍ରାସେ ॥
ଯେକ ଆରେକ ରିପୁଗଣେ । ପ୍ରଜା ନାଶିଲୁ ଅନୁକ୍ଷଣେ ॥
ଅତି ନିର୍ଦ୍ଦୟା କର୍ମକଲୁ । ତୋର ମହିମା ପାସୋରିଲୁ ॥
ନିକଟେ ନ ଦେଖୁ ମରଣ । ବୁଦ୍ଧି ଦୁମଦ କରଷଣ ॥
ତୁ ପୁଣି କାଳରୂପେ ହରି । ବଳେ ଚାପିଲୁ ଆମ୍ଭଶିରୀ ॥
ଯେ ପୁଣି ତୋର ଅନୁଗ୍ରହ । ଆମ୍ଭର ଗଲା ଦୁଷ୍ଟମୋହ ॥
ଯେବେ ସୁମରି ତୋ ଶରଣ । ପଶିଲୁ ଅଭୟ ଚରଣ ॥
ଯେ ମୃଗତୃଷ୍ଣା ପ୍ରାୟ ରାଜ୍ୟ । ଯେଣେ ଆମ୍ଭର ନାହିଁ କାର୍ଯ୍ୟ ॥
ଛିଦ୍ର ରଞ୍ଜକ ଘଟ ପ୍ରାୟେ । ନିତ୍ୟ ପତନ ମୟ କାୟେ ॥
ସର୍ବ ଲୋକଙ୍କ ମୂଳଭୂମି । ନିତ୍ୟେ ଅନିତ୍ୟ ପଥ ଶ୍ରମି ॥
ଯେଣେ ଆମ୍ଭର କାର୍ଯ୍ୟ ନାହିଁ । ଶୁଣିମା ପ୍ରଭୁ ଭାବଗ୍ରାହୀ ॥
କର୍ମ କଷଣ ସଙ୍ଗ ମେଳେ । ଚର୍ମ ଲୋଚନ କ୍ରିୟା ଫଳେ ॥
ଯେଣେ ଆମ୍ଭର କାର୍ଯ୍ୟ ନାହିଁ । ଯେମନ୍ତ ଆଜ୍ଞା ଦିଅ ତୁହି ॥
ତୋପାଦ ପଦ୍ମ ଅବିରତେ । ନିରତେ ଥାଉ ଆମ୍ଭ ଚିତ୍ତେ ॥
ତୋର ସ୍ମରଣ ଆମ୍ଭ ମନ । ଦଣ୍ଡେ ନ ଛାଡୁ ଭଗବାନ ॥
ସଂସାର ଭ୍ରମଣ ଆମ୍ଭର । ବେଗେ ନିବାର ଚକ୍ରଧର ॥

ଶ୍ରୀକୃଷ୍ଣ ବାସୁଦେବ ହରି । ପରମ ଆତ୍ମା ତୁ ମୁରାରି ॥
ପ୍ରଣତ ଜନ କ୍ଳେଶ ହର । ନମୋ ଗୋବିନ୍ଦ ଦାମୋଦର ॥
ଯେମନ୍ତ ପ୍ରଭୁ ଚକ୍ରପାଣି । ରାଜାଙ୍କ ସ୍ତୁତିବାକ୍ୟ ଶୁଣି ॥
ଶରଣ କରୁଣା ସାଗର । କୋମଳ ବଚନ ଗଭୀର ॥
ରାଜାଙ୍କ ମୁଖ ଚାହିଁ ହସି । ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥
ତୁମ୍ଭର ଭକତି ନିଷ୍ଠରେ । ଆଜହୁଁ ମୋ ପାଦ କମଳେ ॥
ହେଉ ବୋଲଇଲେ ଭଗବାନ । ଯେ ମୋର ନିଶ୍ଚୟ ବଚନ ॥
ତୁମ୍ଭେ କହିଲ ସତ୍ୟବାଣୀ । ମୁହିଁ ସନ୍ତୋଷ ତାହା ଶୁଣି ॥
ମନୁଷ୍ୟ ମଧ୍ୟେ ଥାଇ ଯେତେ । ସମ୍ପଦ ଅଇଶ୍ୱର୍ଯ୍ୟ ମତେ ॥
ଗର୍ବ କହନ୍ତି ଯେ ଆମ୍ଭଙ୍କୁ । ନିଶ୍ଚେ ମୁଁ ନାଶଇ ତାହାଙ୍କୁ ॥
ସହସ୍ରାର୍ଜ୍ଜୁନ ନାମେ ରାଜା । ନୃପ ନହୁଷ ତପ ତେଜା ॥
ଅଙ୍ଗ ନୃପତି ସୁତବେନ । ନାରକାସୁର ଦଶାନନ ॥
ଦେବ ଦାନବ କୁଳେ ଯେତେ । ଥିଲେ ଯେ ଅଇଶ୍ୱର୍ଯ୍ୟମତେ ॥
ତାହାଙ୍କୁ କରି ସ୍ଥାନ ଭ୍ରଷ୍ଟ । ଯେଣୁ ହୋଇଲେ ବୁଦ୍ଧିନଷ୍ଟ ॥
ତୁମ୍ଭେ ସକଳ ଯେହା ଜାଣି । ଯେ ଦେହ ମିଥ୍ୟା ପ୍ରାୟ ମଣି ॥
ଯଜ୍ଞେ ପୂଜିବ ମୋ ଚରଣ । ପାଳିବ ନିଜ ପ୍ରଜାଗଣ ॥
ଧର୍ମେ ସେବିବ ରାତ୍ରଦିନେ । ନିଜ ସମ୍ପତ୍ତି ଅବଧାନେ ॥
ଦୁର୍ଗତି ବିଭବ ବିମୁଖେ । ଜନ୍ମେ ସଞ୍ଚିତ ଦୁଃଖ ସୁଖେ ॥
ଗତଆଗତ ଭବାଭବ । କର୍ମ କଷଣ ହାନିଲାଭ ॥
ଯେତେ ଗହନେ ତୁମ୍ଭେ ଥାଇଁ । ମୋର ଚରଣ ଚିତ୍ତ ନେଇଁ ॥
ମାୟା ସଂସାର ମଧ୍ୟେ ଭ୍ରମ । କେବେହେଁ ନୋହୁ ତୁମ୍ଭଶ୍ରମ ॥
ଯେ ଦେହ ଆଜି ମୋର ଯେତେ । ନ ଲାଗୁ ତୁମ୍ଭ ଶୁଦ୍ଧ ଚିତ୍ତେ
ନିରତେ ହୋଉ ଆତ୍ମଜ୍ଞାନ । ନିଶ୍ଚଳେ ଚିତ୍ତେ ମୋର ଧ୍ୟାନ ॥
ପବିତ୍ର କରି ବ୍ରହ୍ମ ପଥେ । ପଶିବ ମୋର ଦେହେ ଅନ୍ତେ ॥
କହନ୍ତି ବ୍ୟାସଙ୍କର ସୁତ । ଯେବେହୋ ଶୁଣ ପରୀକ୍ଷିତ ॥
ଭଗତ ବନ୍ଧୁ ଭଗବାନ । ରାଜାଙ୍କୁ ଦେଇ ଦିବ୍ୟଜ୍ଞାନ ॥
ତାହାଙ୍କ ଅଭିଷେକ ଅର୍ଥେ । ନାରୀପୁରୁଷ ଶତେ ଶତେ ॥
ମାର୍ଜ୍ଜନା ସାରି ସର୍ବରାଜା । ଗୋବିନ୍ଦ କରାଇଲେ ପୂଜା ॥
ଜରାସନ୍ଧର ପୁତ୍ର ହସ୍ତେ । ଭାବେ ଗୋବିନ୍ଦ ଅନୁମତେ ॥
ରାଜା ଉଚିତେ ଅଳଙ୍କାର । ପୁଷ୍ପ ଚନ୍ଦନ ବସ୍ତ୍ର ସାର ॥
ରତ୍ନ ମୁକୁଟ ଶିରେ ଖଞ୍ଜି । ସୁରସ ଅନ୍ନ ଜଳ ଭୁଞ୍ଜି ॥
ନାନା ପ୍ରକାରେ ରାଜ୍ୟ ଭୋଗ । ତାମ୍ବୁଳ ଆଦି ନାନା ଯୋଗ ॥
କର୍ଣ୍ଣକୁ କୁଣ୍ଡଳ ସମ୍ଭରି । ହାର କେୟୂର ହୃଦେ ଭରି ॥
ବନ୍ଧନ ଦୁଃଖୁଁ ମୋକ୍ଷପାଇ । କିବା ଉପମା ଦେବି ମୁହିଁ ॥
ବରଷା କାଳ ଅନ୍ତେ ଯେହ୍ନେ । ଗ୍ରହେ ବିରାଜନ୍ତି ଗଗନେ ॥
ବସାଇ ରତ୍ନମୟ ଯାନେ । ଗୋବିନ୍ଦ କମଳ ବଚନେ ॥
ଯେବେ ହୋ ନିଜପୁରେ ଯିବ । ଯଜ୍ଞର ଆରମ୍ଭେ ଆସିବ ॥
ଯେମନ୍ତ କୃଷ୍ଣ ପରସାଦୁଁ । ରାଜାଏ ବହିଲେ ଅପ୍ରମାଦୁଁ ॥
କୃଷ୍ଣର ପାଦେ ଦେଇ ମନ । ଗଲେ ଯେ ଯାହାର ଭୁବନ ॥
ଯେମନ୍ତେ କୃଷ୍ଣ ପଦ୍ମପାଦେ । ରାଜାଏ ବନ୍ଦିଲେ ଆନନ୍ଦେ ॥
ଭୀମ ଅର୍ଜ୍ଜୁନ ବନମାଳୀ । ଇନ୍ଦ୍ର ପ୍ରସସ୍ଥେ ଯାଇ ମିଳି ॥
ହରଷ କରି ବନ୍ଧୁଜନେ । ମିଳିଲେ ଆପଣା ଭୁବନେ ॥
ଗୋବିନ୍ଦ ଆଜ୍ଞା ଘେନି ଶିରେ । ସଙ୍ଗେ ରହିଲେ ନିଜପୁରେ ॥
ଯେମନ୍ତେ ଜରାସନ୍ଧ ନାରୀ । ଭୀମ ଅର୍ଜ୍ଜୁନ ତୁଳେ ହରି ॥
ଜରାନନ୍ଦନ ସହଦେବ । ଆନନ୍ଦେ ପୂଜିଲା ମାଧବ ॥
କୃଷ୍ଣଙ୍କୁ କରି ଅନୁଧ୍ୟାନ । ମିଳିଲା ଆପଣା ଭୁବନ ॥
ଖଳଜନଙ୍କ ମନେ ଦୁଃଖ । ସୁଖ ନିବେଶି ପଦ୍ମମୁଖ ॥
ଇନ୍ଦ୍ର ପ୍ରସସ୍ଥେ ରାଜାଗଣ । ଶୁଣିଲେ ମଗଧ ମରଣ ॥
ନିଶ୍ଚିନ୍ତେ ଧର୍ମପୁତ୍ର କାର୍ଯ୍ୟ । ସୁଖେ ବଞ୍ଚିଲେ ଦେବରାଜ ॥
ହରଷେ ଧର୍ମଜ୍ଞ କୁମର । ସଙ୍ଗତେ ଘେନି ସହୋଦର ॥
ବନ୍ଧୁବାନ୍ଧବ ପ୍ରଜାଜନ । କୃଷ୍ଣଙ୍କୁ କଲେ ଅନୁଯାନ ॥
ଭୀମ ଅର୍ଜ୍ଜୁନ ନାରାୟଣ । ବନ୍ଦିଲେ ରାଜାଙ୍କ ଚରଣ ॥
ଯେମନ୍ତେ ଜରାନାଶ ଗଲା । ସଂକ୍ଷେପି କହେ ନନ୍ଦବଳା ॥
ବସିଲେ ଧର୍ମସୁତ ପାଶେ । ଶୁଣ ନୃପତି ମନତୋଷେ ॥
ହରଷେ ରୋମ ତନୁ ତୁଟେ । ବାକ୍ୟ ନସ୍ଫୁରେ କଣ୍ଠ ତଟେ ॥
ସେ ହରିଚରଣ ପଙ୍କଜେ । ନମଇଁ ଜଗନ୍ନାଥ ଦ୍ୱିଜେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଜରାସନ୍ଧବଧେ ଓ ରଜା ମୋକ୍ଷଣେ ନାମ ଅଷ୍ଟସପ୍ତତିତମୋଽଧ୍ୟାୟ ।*

## ଯେକୋନାଶୀତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଯେବେହୋ ଶୁଣ ନୃପମଣି । ଜରାସନ୍ଧର ନାମ ଶୁଣି ॥
କୃଷ୍ଣମହିମା ଅନୁଭବ । ଆତ୍ମା କଳ୍ପିତ ରାଜ୍ୟ ଲାଭ ॥
ବୋଲଇ ଅତି ପ୍ରିୟମନେ । କୋମଳ ଗଭୀର ବଚନେ ॥
ବ୍ରହ୍ମା ଶଙ୍କର ଆଦିଯେତେ । ଦେବେ ଅଛନ୍ତି ଯେ ଜଗତେ ॥
ତୋର ଦୁର୍ଲ୍ଲଭ ଆଜ୍ଞାପାଇ । ଶିରେ ବହନ୍ତି ତୋଷ ହୋଇ ॥

ଯେମନ୍ତେ ପ୍ରଭୁ ମହାବାହୁ । ତୁ ଯେବେ ମୋର ଆଜ୍ଞା ବହୁ ।।
ଯେ ବଡ଼ ବିଡ଼ମ୍ବଣ କର୍ମ । ତୁ ଆଦି ନିରଞ୍ଜନ ଧର୍ମ ।।
ଯେ କଥା ଅଦିତି ଅନନ୍ତ । ପରମଆତ୍ମା ତୁ ଅଚ୍ୟୁତ ।।
ତୁ ସର୍ବଜୀବ ଭୂତଦେହୀ । କର୍ମ ବନ୍ଧନ ତୋର ନାହିଁ ।।
ପ୍ରବେଶ ହୋଉ ସର୍ବଜନେ । ଆଦିତ୍ୟ ଯେସନେ ଗଗନେ ।।
ଗୁଣ ଗ୍ରାହୀତ ତୁ ଅଶ୍ରୁତ । ଯେ ପ୍ରାଣୀ ତୋହର ଭଗତ ।।
ତାହାଙ୍କ ଚିତ୍ତରେ ନାହିଁ ଭ୍ରାନ୍ତି । ମୁହିଁ ମୋହର ନ ଖେଳନ୍ତି ।।
ମୁହିଁ ଯେ ମୋହର ଶ୍ୱରୀର । ଯେମନ୍ତ ଜ୍ଞାନୀଙ୍କ ବେଭାର ।।
ଯେ ତୋର ମାୟାର ବିକାର । କେଜାଣେ ପଶୁଙ୍କ ବିଚାର ।।
ବୋଲନ୍ତି ଶୁକ ମହାଯତି । ଶୁଣ ରାଜନ କୁରୁପତି ।।
ଧର୍ମ ନନ୍ଦନ ଯଜ୍ଞକାଳେ । କହି ଗୋବିନ୍ଦ ପାଦତଳେ ।।
ଧର୍ମ ନନ୍ଦନ ତୁଲେ ହରି । ଋତ୍ୱିଜ ଚାରି ବେଦୁ ବରି ।।
ଶ୍ରୀବେଦ ବ୍ୟାସ ଭରଦ୍ୱାଜ । ସୁମନ୍ତ ଗଉତମ ଦ୍ୱିଜ ।।
ଦେବଳ ବଶିଷ୍ଠ ଚ୍ୟବନ । ପ୍ରଚଣ୍ଡ ମହାତେଜ ବର୍ଣ୍ଣ ।।
ସୁପୁଣ୍ୟ ମଇତ୍ରେୟ ଋଷି । ଯେ ଆଦି ଯେତେ ଭୃଗୁମଂଶି ।।
ଯେ ବିଶ୍ୱାମିତ୍ର ବାସୁଦେବ । ସୁମନ୍ତ ଜୟ ମୁନି ଶିବ ।।
କ୍ରତୁ ଶଇଲ୍ୟ ପରାଶର । ଗାର୍ଗ ଗୌତୁମ କଚ୍ଛନୀର ।।
ବୈଶମ୍ପାୟନ ମୁନିବର । କଶ୍ୟପ ବ୍ରହ୍ମାଙ୍କ କୁମର ।।
ଧୌମ୍ୟ ଭାର୍ଗବ ପର୍ଶୁରାମ । ଅସୁର ବୀତିହୋତ୍ର ଧର୍ମ ।।
କିମଧୁସକ ବୀରସେନ । ଯେ ଆଦି ମୁନିନ୍ତ ବରଣ ।।
ପ୍ରଣାଇ ନାନା ମୁନିଗଣ । ଆଦ୍ୟରେ ପୂଜି ଭୀଷ୍ମଦ୍ରୋଣ ।।
କୃଷ୍ଣ ସହିତେ କୁରୁନାଥ । ସଙ୍ଗେ ଘେନାଇ ଭ୍ରାଥସୁତ ।।
କୃଷ୍ଣର ବନ୍ଧୁ ଆଦି ଯେତେ । ମିଳିଲେ ଆଖଣ୍ଡଳ ପଥେ ।।
କ୍ଷତ୍ରିୟ ଆଦି ଚାରିବର୍ଣ୍ଣ । ଯଜ୍ଞ ଉତ୍ସବେ ଆଗମନ ।।
ଭୂମିରେ ଯେତେ ନୃପଗଣ । ଯଜ୍ଞ ମଙ୍ଗଳେ ନିମନ୍ତ୍ରଣ ।।
ପ୍ରକୃତି ସଙ୍ଗତେ ମିଳିଲେ । ଧର୍ମ ନନ୍ଦନ ଯଜ୍ଞ କାଳେ ।।
ବ୍ରାହ୍ମଣେ ସୁବର୍ଣ୍ଣ ନାଙ୍ଗଳେ । ଉତ୍ତମ ଶୁଭଲଗ୍ନ ବେଳେ ।।
କରନ୍ତି ଭୂମି କରଷଣ । ଶୁଭ ମଙ୍ଗଳ ଉଚ୍ଚାରିଣ ।।
ଯଥା ଉଚିତ ବେଦ ମତେ । ଦୀକ୍ଷାରେ କରି ଧର୍ମ ସୁତେ ।।
ଶ୍ରୀଫଳ କୁଶୋଦକ ହସ୍ତେ । ବିପ୍ର ବରିଲେ ବେଦମତେ ।।
ସବୁ ସୁବର୍ଣ୍ଣ ପରିଚ୍ଛଦ । କେ କରୁ ଯଜ୍ଞର ସମ୍ପଦ ।।
ପୂର୍ବେ ବରୁଣ ଯଜ୍ଞେ ଯେହ୍ନେ । ଧରଣୀ ପୂଜିଲା ସୁବର୍ଣ୍ଣେ ।।
ବାସେବ ଆଦି ଦିଗପାଳେ । ଭବ ବିରଞ୍ଚି ସିଦ୍ଧମେଳେ ।।
ଗନ୍ଧର୍ବ ବିଦ୍ୟାଧର ନାଗ । ମୁନି ଯକ୍ଷ ରାକ୍ଷସ ଭାଗ ।।

ସିଦ୍ଧ କିନ୍ନର ଚାରଣଗଣ । ପିତୃ ସହିତେ ନୃପଗଣ ।।
ଧର୍ମ ନନ୍ଦନ ଯଜ୍ଞେ ଆସି । ସମ୍ପଦ ଦେଖି ପରଶଂସି ।।
କୃଷ୍ଣ ଭଗତ ଯେତେ ନର । କିବା ସମ୍ପଦ ତାଙ୍କୁ ଦୂର ।।
ନାନା ସମ୍ପଦ ସୁଖସୀମା । ଏ ସର୍ବ କୃଷ୍ଣର ମହିମା ।।
ରାଜାର ପୁରୋହିତ ଯେତେ । ଶୁଦ୍ଧ ଶରୀରେ ବେଦମତେ ।।
ରାଜୁସୀ ଯଜ୍ଞ କର୍ମବିଧି । କରାଇ ସକଳ ପ୍ରସିଦ୍ଧି ।।
ବରୁଣ ଯଜ୍ଞେ ଦେବଗଣେ । ଯେମନ୍ତେ ଥିଲେ ନିମନ୍ତ୍ରଣେ ।।
ଯଜ୍ଞ ଆରମ୍ଭି ପାଞ୍ଚଦିନ । ଧର୍ମନନ୍ଦନ ଶୁଦ୍ଧମନ ।।
ଯଜ୍ଞକ ସଭାସଦ ଆଦି । ପାଦେ ପୂଜନ ଅର୍ଘ୍ୟବିଧି ।।
ଘେନି ମିଳିଲେ ସଭାତଳେ । ବନ୍ଧୁ ବାନ୍ଧବ ଭ୍ରାଥ ମେଳେ ।।
ରାଜୁସୀ ମହାଯଜ୍ଞ ସଭା । ଅଛନ୍ତି ମୁନି ସୁର ଦେବା ।।
ଧର୍ମନନ୍ଦନ ସଭା ଚାହିଁ । ସଂଶୟ ମନେ ବିଚାରଇ ।।
ଯେ ଅର୍ଘ୍ୟ ଦେବି କାହାପାଦେ । ଭାଳଇ ସଂଶୟ ପ୍ରମାଦେ ।।
ମୁହୂର୍ତ୍ତେ ରହି ଦୃଢ଼ଭାବ । ତା ଦେଖି ବୋଲେ ସହଦେବ
କର ଅଞ୍ଜଳି ଶିରେ ଦେଇ । କଲେ ସୁଜନ ମୁଖ ଚାହିଁ ।।
ଜାଣତ ଗୋବିନ୍ଦ ମହିମା । ସର୍ବଜ୍ଞ ଶୁଣ ଯେକ ସୀମା ।।
ଶୁଣ ରାଜନ ଚୂଡ଼ାମଣି । ମୋର ଉଚିତ ଧର୍ମବାଣୀ ।।
ଯେ ମହାସଭା ମଧଗତ । ଅର୍ଘ୍ୟକୁ ପାତ୍ର ଯେ ଅଚ୍ୟୁତ ।।
ଯେ ହରି ସର୍ବ ଦେବମୟେ । ସର୍ବେ ଅଛନ୍ତି ଯେହା ଦେହେ
ଯେ କୃଷ୍ଣ ଦେଶକାଳପାତ୍ର । ଧନଜୀବନ ଦେଇ ମନ୍ତ୍ର ।।
ଯଜ୍ଞ ପୁରୁଷ ଯେହୁ ହରି । ଅଗ୍ନି ଆହୁତି ମନ୍ତ୍ରଧରି ।।
ଯେହାର ଦେହେ ସାଂଖଯୋଗ । ଯତି ଭୁଞ୍ଜଇ ହର୍ବିଭୋଗ ।।
ଯେକ ଯେ ଆଦିତ୍ୟ ମହିମା । ଯେ ମାୟା ସୃଷ୍ଟିରେ ଆତ୍ମା ।।
ଯେହାର ମାୟା ତିନିଗୁଣ । ସୃଷ୍ଟିପାଳନ ସଂହାରଣ ।।
କରାଇ ଆତ୍ମା ଯୋଗବଳେ । ଲୀଳା ବିହରେ ମୋକ୍ଷ ତୁଲେ
ବିବିଧ କର୍ମ ଦାତା ଯେହି । କର୍ମର ଫଳ ଏ ବୋଲାଇ ।।
ଯେହାର ଭ୍ରୂଭଙ୍ଗିମା ଭାବେ । ଜଗତ ପ୍ରକାଶ ସ୍ୱଭାବେ ।।
ଥାନ୍ତି ଯେହାର ପାଦଯୁଗେ । ଧର୍ମାର୍ଥ କାମ ମୋକ୍ଷସଙ୍ଗେ ।।
ଯେଣୁ ପୂଜିବା ତାରପାଦେ । ସମସ୍ତେ ଥିବା ଅପ୍ରମାଦେ ।।
ଯେଣୁ ଯେହାର ବିଷ୍ଣୁପାଦେ । ସେବନ୍ତୁ ପରମ ଆନନ୍ଦେ ।।
ସର୍ବଭୂତଙ୍କ ପିଣ୍ଡ ପ୍ରାଣ । ଯେଣୁଟି ହୋଇବେ ତର୍ପଣ ।।
ଯେଣୁ ଯେ ସର୍ବଭୂତ ଦେହୀ । ଭେଦ ଅଭେଦ ଯାର ନାହିଁ ।।
ଯେହାର ପାଦେ ମହାଅର୍ଘ୍ୟ । ଦେଇତୁ ଲଭ ଚତୁର୍ବର୍ଗ ।।
ଯେଣୁ ଯେହାଙ୍କୁ ଅର୍ଘ୍ୟ ଦେଲେ । ବ୍ରହ୍ମାଣ୍ଡ ପୂଜିବ ଯେ ଭଲେ ।।

ସର୍ବ ଆତ୍ମାଙ୍କ ଆତ୍ମା ଭୂତ । ପ୍ରଭୁ ଆନନ୍ଦ ଦଇବତ ॥
ଯେହାଙ୍କୁ କର୍ମଫଳ ଦେଇ । ଅନ୍ତେ ଅନନ୍ତ ଯୋଗପାଇ ॥
ଯେମନ୍ତ କୃଷ୍ଣର ସ୍ୱଭାବ । ଜାଣି କହିଲା ସହଦେବ ॥
ଶୁଣି ସହଦେବ ବଚନ । ସଭାର ମଧ୍ୟେ ଯେତେ ଜନ ॥
ସର୍ବେ କରନ୍ତି ସାଧୁବାଣୀ । ଧର୍ମନନ୍ଦନ ତାହା ଶୁଣି ॥
ପ୍ରଣମ୍ୟ ପ୍ରିୟଭାବେ ଭୋଳ । ଗୋବିନ୍ଦ ପାଦେ ଅର୍ଘ୍ୟଜଳ ॥
ବେଦ ବଚନେ ଅର୍ଘ୍ୟଢ଼ାଳି । ପାଦ ଉଦକ ଶିରେ ବୋଳି ॥
ପତ୍ନୀ ସହିତେ ଭ୍ରାତୃଗଣ । ପୂଜିଲେ ଗୋବିନ୍ଦ ଚରଣ ॥
ଜ୍ଞାତି କୁଟୁମ୍ବ ବନ୍ଧୁଯେତେ । ନମିଲେ କୃଷ୍ଣ ପାଦଗତେ ॥
ନାନା ଭୂଷଣ ହସ୍ତେ ଘେନି । ଉତ୍ତମ ପୀତ ବସ୍ତ୍ର ଘେନି ॥
ଆନନ୍ଦେ କୃଷ୍ଣ ପାଦେ ପୂଜି । ଅଶ୍ରୁ ପୂରିତ ଚକ୍ଷୁ ବୁଜି ॥
କୃଷ୍ଣକୁ ନପାରନ୍ତି ଚାହିଁ । ରୋମ ପୁଲକେ ସର୍ବଦେହୀ ॥
ଯେମନ୍ତେ ସଭାଜନେ ଚାହିଁ । କର ଅଞ୍ଜଳି ଶିରେ ଦେଇ ॥
ଶୁଭିଲା ଜୟ ଜୟ ବାଣୀ । ନମୋ ଶବଦେ ସ୍ତୁତି ଭଣି ॥
ଦେବେ କରନ୍ତି ପୁଷ୍ପ ବୃଷ୍ଟି । ତା ଦେଖି ଶିଶୁପାଳ ଉଠି ॥
କୋପେ ଅଧର କାମୁଡ଼ିଲା । କୃଷ୍ଣର ନିକଟେ ମିଳିଲା ॥
କୃଷ୍ଣର ଗୁଣ କର୍ମତେଜ । କହଇ ତୋଳି ବେନିଭୁଜ ॥
ସଭା ରାଜାଙ୍କୁ କୋପମନେ । ବୋଲଇ ପରୁଷ ବଚନେ ॥
ଦେଖଯେ ଦୁରାଶୟ କାଳ । ଈଶ୍ୱର ଚେଷ୍ଟା ଅନ୍ତରାଳ ॥
ଯେ ସତ୍ୟବତୀ ସୁତବାଣୀ । ଭବିଲି ଯାହା ପରମାଣି ॥
ବୃଦ୍ଧ ବଚନ ମହୀସ୍ଥଳେ । ଭାଙ୍ଗିବେ ବାଳକର ବୋଲେ ॥
ଯେ କଥା ହୋଇଲା ପ୍ରତ୍ୟକ୍ଷେ । ଯେ ସଭାଜନଙ୍କ ସମ୍ମୁଖେ ॥
ହେ ସଭାଜନେ ମୋ ବଚନ । ଶ୍ରବଣେ ହୁଅ ସାବଧାନ ॥
ପାତ୍ର ଅପାତ୍ର ବେନିମତେ । କୁଶଳ ଜାଣନା ସମସ୍ତେ ॥
ବାଳ ବଚନ କିମ୍ପାକର । ଯେ ବଡ଼ ଅନ୍ୟାୟ ତୁମ୍ଭର ॥
ସଭାରେ ବସି ମତିଭ୍ରମ । କେମନ୍ତେ କର ଯେଡ଼େ କର୍ମ
ଦେଖ ଯେ ସଭା ମଧଗତେ । ଉତ୍ତମ ପାତ୍ରଛନ୍ତି ଯେତେ ॥
ତପସ୍ୱୀ ବିଦ୍ୟାବନ୍ତ ଧୀର । ଜ୍ଞାନ ବିଧୂତି କଳେବର ॥
ଦେଖ ଉତ୍ତମ ଋଷିଗଣ । ଦେବେ ପୂଜନ୍ତି ଯା ଚରଣ ॥
ଯେ ଆଦି ଯେତେ ନୃପବର । କେ କହୁ ଗୁଣ ତାହାଙ୍କର ॥
ଯେ ମହାଜନ ମାନ ଯେଡ଼ି । ବାଳ ବଚନେ ତୁମ୍ଭେ ପଡ଼ି ॥
ସଭାରେ ମହା ମହାବଳି । ଯେକକୁ ଯେକ କେବାକଳି ॥
ଯେ ସହଦେବର ସମ୍ବାଦେ । ନେଇ ଢାଳିଲ କାକ ପାଦେ ॥
ଦେଖ ଯେ ନନ୍ଦପୁଅ ଶିଶୁ । ବ୍ରଜ କାମିନୀ କୁଳପାଂଶୁ ॥
ଯେହାଙ୍କୁ କେମନ୍ତେ ପୂଜିଲ । ବେଦ ବଚନ ନ ବୁଝିଲ ॥
ଯେ ନୋହେ ଚାରିବର୍ଣ୍ଣ ମଧ୍ୟେ । ଆଶ୍ରମ ଶ୍ରମ ଅନୁବାଦେ ॥
ଯେ ଥାଇ ଆପଣାର ମତେ । ଜଗତେ ଜାଣନ୍ତି ସମସ୍ତେ ॥
ଯେହାର କୁଳବର୍ଣ୍ଣ ନାହିଁ । କେମନ୍ତେ ବଳୀ ଯୋଗ୍ୟ ଯେହି ॥
ପୂର୍ବେ ଯଯାତି ଶାପ ଫଳେ । ନୃପ ଆସନ ନାହିଁ କୁଳେ ॥
ନିଶ୍ଚୟେ ନାହିଁ ଜାତି କୁଳେ । ନିତ୍ୟେ ଯେ ମଧୁପାନେ ଭୋଳେ ॥
ଯେତ ନୁହଇ ତୁମ୍ଭ ଭଲ । ଏହାକୁ କେମନ୍ତେ ପୂଜିଲ ॥
ଦେଖ ଯେ ପୁଣ୍ୟ ଭୂମିଛାଡ଼ି । ଋଷି ବ୍ରାହ୍ମଣ ସଙ୍ଗ ଯେଡ଼ି ॥
ସମୁଦ୍ର ମଧ୍ୟେ ଗୃହ କରି । ଜୀବନ ଅତିକଷ୍ଟେ ଧରି ॥
ନିତ୍ୟେ ବଧନ୍ତି ଜନପ୍ରଜା । କେମନ୍ତେ କଲ ଯେହା ପୂଜା ॥
କେତେ କହିବି ଅବିଗୁଣ । ଯେ ନୁହେଁ ତୁମ୍ଭର ପ୍ରମାଣ ॥
ଅଧିକ ଗୁଣ ଦୋଷ ଯେତେ । ଲୋକେ ଜାଣନ୍ତି ଯେ ଜଗତେ ॥
ଯେମନ୍ତ କହି ମନ୍ଦବାଣୀ । କୋପେ କହନ୍ତି ଶିର ଝୁଣି ॥
ବିଷ୍ଣୁ ନିନ୍ଦିତ ଦୁଷ୍ଟ ବାଣୀ । ଗୋବିନ୍ଦ ସଭା ମଧ୍ୟେ ଶୁଣି ॥
ଚାହିଁଲେ ଦୃଷତ ବଦନେ । ଶୃଗାଳ ବାକ୍ୟେ ସିଂହଯେହ୍ନେ ॥
ଯେମନ୍ତେ ଶିଶୁପାଳ ବାଣୀ । ଯେ ମହାସଭା ଜନେ ଶୁଣି ॥
ଦୁସହ ବଚନ ତାହାର । ଶୁଣି ଉଠିଲେ କୋପଭର ॥
ଅଙ୍ଗୁଳି ଦେଇ କର୍ଣ୍ଣଦ୍ୱାରେ । ପଶିଲେ ଯେ ଯାହା ମନ୍ଦିରେ ॥
ଚଳନ୍ତି ଅତିକୋପ ମତି । ଶିଶୁପାଳକୁ ଶାପ୍ୟ ଦ୍ୟନ୍ତି ॥
ବୋଲନ୍ତି କୋପଭର ହୋଇ । ଧର୍ମ ବଚନେ ମନଦେଇ ॥
ବିଷ୍ଣୁ ନିନ୍ଦିତ ବାକ୍ୟ ଶୁଣି । ବିଷ୍ଣୁ ଭଗତ ଯେତେ ପ୍ରାଣୀ ॥
ସେ ସ୍ଥାନ ଛାଡ଼ି ଯେ ନ ଯାନ୍ତି । ନିଶ୍ଚୟ ନରକେ ପଡ଼ନ୍ତି ॥
ଯେମନ୍ତେ ସଭାମଧ୍ୟେ ଗୋଳ । ପୂରିଲା ଦିଗ ଅନ୍ତରାଳ ॥
ଶୁଣି ପାଣ୍ଡବେ କୋପ ଭରି । ଧଇଁଲେ ଧନୁ କରେ ଧରି ॥
ମତ୍ସ୍ୟ କେକୟ ଯେ ସୃଞ୍ଜୟ । ଶସ୍ତ୍ର ଆୟୁଧେ ବ୍ରହ୍ମଦେହ ॥
ବୋଲନ୍ତି ମାର ଶିଶୁପାଳ । ନିଷ୍ଟେ ପୂରିଲା ତାର କାଳ ॥
ଯେମନ୍ତ ବୋଲି ମହାରୋଷେ । ମିଳିଲେ ଶିଶୁପାଳ ପାଶେ ॥
ଦେଖି ସମ୍ଭ୍ରମେ ଶିଶୁପାଳ । ସ୍ୱଭାବେ ଦୁଷ୍ଟ ମହାବଳ ॥
ଖଡ଼୍ଗ ଚର୍ମ ହସ୍ତେ ଧରି । ରହିଲା ସମର ଆବୋରି ॥
ବିଷ୍ଣୁର ପକ୍ଷ ଯେତେଜନ । ତାହାଙ୍କୁ କରଇ ଭର୍ତ୍ସଣ ॥
ରୋଷେ ଗର୍ଜଇ ଘୋରନାଦେ । ଧର୍ମ ନନ୍ଦନ ସଭାମଧ୍ୟେ ॥
ଦେଖି ତାହାର ବୀରପଣ । ଗୋବିନ୍ଦ ଆବୋରିଲେ ରଣ ॥
ପାଣ୍ଡବ ବଳ ପୃଷ୍ଠଭାଗେ । ମିଳିଲେ ଶିଶୁପାଳ ଆଗେ ॥
ଘୂରାଇ ଚକ୍ର ଦାମୋଦର । ଛେଦିଲେ ଶିଶୁପାଳ ଶିର ॥

ଶିର କମଳେ ରତ୍ନକୋଟି । ପଡ଼ିଲା ମହୀତଳେ ଲୋଟି ॥
ଦେଖି ତାହାର ରତ୍ନଶିର । ଜନେ କରନ୍ତି ହାହାକାର ॥
ଶୁଭଇ ମୁଖ ରାଗଗୋଳ । ଶୁଣି ସମ୍ଭ୍ରମେ ମହୀ ପାଳ ॥
ଶିଶୁପାଳର ପକ୍ଷଥିଲେ । ମରଣ ଡ଼ରେ ପଳାଇଲେ ॥
ଶିଶୁପାଳର ମୃତପିଣ୍ଡ । ଚକ୍ରେ ହୋଇଣ ବେନିଖଣ୍ଡ ॥
ପଡ଼ିଲା ମହା ସଭାତଳେ । ଶୂନେ ଦେଖନ୍ତି ଦିଗପାଳେ ॥
ତାର ଶ୍ୱରୀରୁ ଦିବ୍ୟଜ୍ୟୋତି । ଶଶୀ ତପନଙ୍କୁ ନିନ୍ଦନ୍ତି ॥
ଦେଖି ବିବୁଧେ କଲେ ଜୟେ । ପଶିଲା ଗୋବିନ୍ଦର ଦେହେ ॥
ପୂର୍ବେ ଯେ ବିଷ୍ଣୁ ଦ୍ୱାରପାଳ । ବ୍ରାହ୍ମଣେ କରି ଅବହେଳ ॥
ତୃତୀୟ ଜନ୍ମେ କର୍ମବଳେ । ଭ୍ରମିଲା ଅବନୀ ମଣ୍ଡଳେ ॥
କୃଷ୍ଣେ ବଇରଭାବ ଘେନି । ତିନି ଜନମ ବେନି ଭାଇ ॥
ଆଦି ଅସୁର ମହାବପୁ । ଜନ୍ମିଲା ହିରଣ୍ୟ କଶିପୁ ॥
ଅନୁଜ ହିରଣାକ୍ଷ ବୀର । ପୁଣି ଜନ୍ମିଲେ ସହୋଦର ॥
ବିଶ୍ରବା ମୁନିକୁଳେ ଯାଇ । ରାକ୍ଷସୀ ଗର୍ଭେ ଜନ୍ମହୋଇ ॥
ରାବଣ କୁମ୍ଭକର୍ଣ୍ଣ ନାମ । ସମରେ ନାହିଁ ସରିସମ ॥
ପୁଣି ଜନ୍ମିଲେ ଚେଦିଦେଶେ । କ୍ଷତ୍ରିୟ ଦଶଘୋଷ ଅଂଶେ ॥
ଦନ୍ତ ବିକଟ ଶିଶୁପାଳ । ସମରେ ଅତି ମହାବଳ ॥
ପୂର୍ବେ ନୃସିଂହ ରୂପେ ହରି । ହିରଣ୍ୟ କଶିପୁ ବିଦାରି ॥
ତେଜ ପ୍ରଚଣ୍ଡ ଘୋରତମ । ପୁଣି ଜନ୍ମିଲେ ରଘୁରାମ ॥
ଜାନକୀ ଛଳେ ଧନୁଧରି । ନାଶିଲେ ରାବଣର ଶିରୀ ॥
ଯେବେ ବଇରୀ ଅନୁବନ୍ଧ । ଚକ୍ରେ ଛେଦନ କଟିକନ୍ଧ ॥
ନିର୍ମଳ ରୂପେ ବେନିଭାଇ । ବ୍ରହ୍ମାଣ୍ଡ ଶାପୁଁ ପାର ହୋଇ ॥
ମିଳିଲେ ଗୋବିନ୍ଦ ଭୁବନେ । ଯେବେହୋ ଶୁଣ ସାଧୁ ଜନେ ॥
ଭାବେ ଅଭାବେ ନାରାୟଣ । କରନ୍ତି ଯେକଇ କାରଣ ॥
ଶିଶୁପାଳର ପ୍ରାଣ ନାଶେ । ଅବଳା ଭାରାର ଉଶ୍ୱାସେ ॥
ନିର୍ମଳ ଦଶ ଦିଗ ଦିଶେ । ଧର୍ମ ନନ୍ଦନ କୃଷ୍ଣ ପାଶେ ॥
ଋତ୍ୱିକ ବିପ୍ରଗଣ ଯେତେ । ଥିଲେ ଯେ ସଭା ଅନୁମତେ ॥
ଦକ୍ଷିଣା ଦେଇ ଧର୍ମସୁତ । ଯଜ୍ଞର ଅନ୍ତେ ଅବଧୂତ ॥
ଆନନ୍ଦେ ଭାଗୀରଥି ଜଳେ । ସ୍ନାହାନ କରି ନୃପମେଳେ ॥
ଯେମନ୍ତେ ଧର୍ମସୁତ ଯଜ୍ଞେ । ସମ୍ପାଦି କୃଷ୍ଣ ଅନୁରାଗେ ॥
ହୋଇଲେ ରାଜ୍ୟେ ଏକରାଜା । ନୃପତି କଲେ ପାଦ ପୂଜା ॥
ଯେମନ୍ତେ କୃଷ୍ଣ ସୁଖଭରେ । କେତେହେଁ ମାସ ତା ନବରେ ॥
ରହି ରମିଲେ ତାଙ୍କ ମନ । ପୁଣି ଦ୍ୱାରକା ଆଗମନ ॥
ନିଜ କୁଟୁମ୍ବ ତୁଲେ ଯୁକ୍ତ । ଆନନ୍ଦେ ଦେବକୀର ସୁତ ॥
ନିଜ ଭୁବନେ ଗଲେ ହରି । ଶିଶୁପାଳକୁ ମୋକ୍ଷ କରି ॥
ସୁର ଅସୁର ନରଲୋକେ । ଯଜ୍ଞେ ଯେ ଥିଲେ ମହାସୁଖେ ॥
କୃଷ୍ଣ ମହିମା ସ୍ତୁତିକରି । ଆନନ୍ଦେ ଗଲେ ନିଜପୁରୀ ॥
ଅନ୍ଧ ନନ୍ଦନ ଦୁଃଖମନେ । ମିଳିଲେ ହସ୍ତିନା ଭୁବନେ ॥
ବଇରୀ ଅନୁବନ୍ଧ ଦେହେ । ପାଣ୍ଡବ ସମ୍ପଦ ନ ସହେ ॥
ଯେ ମହାଯଜ୍ଞ ଯଶବାଣୀ । ଯେ ଯେହା ସାବଧାନେ ଶୁଣି ॥
କୃଷ୍ଣର ମହିମା ପ୍ରତ୍ୟକ୍ଷ । ଜୟ ବିଜୟ ବେନିମୋକ୍ଷ ॥
ସକଳ ପାପୁଁ ସେ ତରନ୍ତି । ତୁଟଇ ଭବ ବନ୍ଧଭ୍ରାନ୍ତି ॥
କୃଷ୍ଣ ବିଜୟେ ଭାଗବତ । କହିଲେ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ଦଶମସ୍କନ୍ଧେ ରାଜସୂୟଯଜ୍ଞେ ଶିଶୁପାଳ ମୋକ୍ଷଣେ ନାମ ଯେକୋନାଶୀତୋମଽଧ୍ୟାୟଃ ।*

## ଅଶୀତିତମ ଅଧ୍ୟାୟ

### ଶ୍ରୀ ପରୀକ୍ଷିତ ଉବାଚ

ବୋଲନ୍ତି ନୃପ ପରୀକ୍ଷିତ । ଶୁକ ଚରଣେ ଦେଇ ହସ୍ତ ॥
ଭୋମୁନି କୃଷ୍ଣର ଚରିତ । ଶୁଣି ହୋଇଲି କୃତ୍ୟକୃତ୍ୟ ॥
ଯେ ମହାଯଜ୍ଞେ ଯେତେ ଥିଲେ । କୃଷ୍ଣ ମହିମା ସେ ଦେଖିଲେ ॥
ଆନନ୍ଦେ ଗଲେ ନିଜ ପୁରେ । ପ୍ରଶଂସି ଧର୍ମର କୁମରେ ॥
ଅନ୍ଧ ନନ୍ଦନ ଦୁର୍ଯ୍ୟୋଧନ । ସେ କିମ୍ପା କଲେ ଦୁଃଖମନ ॥
ଯେଣୁ ସଂଶୟ ମୋର ଚିତ୍ତ । ଭୋ ମୁନି କରିବା ତଦନ୍ତ ॥
ଯେମନ୍ତେ ରାଜା ବାକ୍ୟ ଶୁଣି । ଶୁକ କହନ୍ତି ମନେ ଗୁଣି ॥
ବୋଲନ୍ତି ଶୁଣ କୁରୁବୀର । ତୋ ପିତାମହ ଯୁଧିଷ୍ଠିର ॥
ବନ୍ଧୁବାନ୍ଧବ ତା ଭୁବନେ । ଯଜ୍ଞ ସଭାର ପ୍ରୟୋଜନେ ॥
ଯେ ଯାହାମତେ କାର୍ଯ୍ୟ କଲେ । ଧର୍ମନନ୍ଦନ କୃଷ୍ଣ ବୋଲେ ॥
ଯଜ୍ଞର ପାକଶାଳେ ଭୀମ । ଧନେ ଅଧିଷ୍ଟ ଦୁର୍ଯ୍ୟୋଧନ ॥
ସଭାଜନଙ୍କ ପୂଜାଭାବ । ଅର୍ଥ ସାଧନେ ସହଦେବ ॥
ନକୁଳ ଦ୍ରବ୍ୟ ସମ୍ପାଦନେ । ଦେବକୀ ନନ୍ଦନ ବଚନେ ॥
ବିପ୍ର ଚରଣେ ସମାର୍ଜନ । କରନ୍ତି ନନ୍ଦର ନନ୍ଦନ ॥
ଦ୍ରୋପଦ ରାଜାର ଦୁଲଣୀ । ସେ ଯଜ୍ଞ ଅନ୍ନ ପରଶୁଣୀ ॥
ଦାନେ ଅଧିଷ୍ଟ ବୀରକର୍ଣ୍ଣ । ଧ୍ୟାନେ ତୋଷିଲା ବିପ୍ରମନ ॥
ବିକର୍ଣ୍ଣ ବୀର ଯଯୁଧାନ । ବିଦୁର ଅନ୍ଧର ନନ୍ଦନ ॥
ଭୂରୁଯେ ବାହ୍ଲିକ ନନ୍ଦନ । ଯେ ଆଦି ବୀର ଯଦୁମାନ ॥

ଧର୍ମନନ୍ଦନ ଅନୁବାଦେ । ଯଜ୍ଞର ନାନା କର୍ମ ସାଧେ ॥
ପଣ୍ଡୁକୁମର ପ୍ରିୟ ହିତେ । ଥିଲେ ସନ୍ତୋଷ ଭାବ ଚିତ୍ତେ ॥
ଋତ୍ୱିଜ ଆଦି ସଭାସଦ । ସୁମିତ୍ର ବାନ୍ଧବ ସୁହୃଦ ॥
ଜ୍ଞାତ କୁଟୁମ୍ବ ଆଦି ଯେତେ । ବନ୍ଧୁ ବାନ୍ଧବଙ୍କ ସହିତେ ॥
ରାଜସୂୀ ଯଜ୍ଞ ସଭାସଦ । ସୁମିତ୍ର ବାନ୍ଧବ ସୁହୃଦ ॥
ଶିଶୁପାଳର ପଞ୍ଚ ପ୍ରାଣ । ପଶିଲା ଗୋବିନ୍ଦ ଦେହେଣ ॥
ଯେମନ୍ତେ ମହାଯଜ୍ଞ କରି । ଧର୍ମନନ୍ଦନ ଦଣ୍ଡଧାରୀ ॥
ଉତ୍ସବ ବାଦ୍ୟ ନାଦ ଭୋଳେ । ଯଜ୍ଞ ଅଦ୍ଭୁତ ସଭାକାଳେ ॥
ମିଳିଲା ସକଳ ସମ୍ପଦ । ଶଙ୍ଖ ଶବଦ ଭେରୀ ନାଦ ॥
ଦେବ ଗନ୍ଧର୍ବ ଋଷିଗଣ । କରନ୍ତି ପୁଷ୍ପ ବରଷଣ ॥
ଜାହ୍ନବୀ ଜଳେ ନରନାରୀ । ନାନା ଭୂଷଣେ ଦେହେ ଧରି ॥
ଗନ୍ଧ ଚନ୍ଦନ ଗଙ୍ଗାଜଳେ । ଦେହେ ସିଞ୍ଚନ୍ତି ଭୁଜବଳେ ॥
କ୍ରୀଡ଼ନ୍ତି ନାନା ରସଭାବେ । ସୁବର୍ଣ୍ଣ ଜଳ ଯନ୍ତ୍ର ନାବେ ॥
ତଇଳ ଘୃତ ଗନ୍ଧୋ ଦୀପେ । ହରିଦ୍ରା କୁସୁମ ସୁପକ୍ୱେ ॥
ପୁରୁଷ ନାରୀଙ୍କର ସୁଖେ । ଲେପନ୍ତି ସିଞ୍ଚନ୍ତ ସୁମୁଖେ ॥
ରାଜା କାମିନୀ ରାଜପଥେ । ବିଜୟ କଲେ ଯୂଥେ ଯୂଥେ ॥
ପାଶେ ଆବୃତ ନାରୀନରେ । ବେଗେ ମିଳିଲେ ଗଙ୍ଗାତୀରେ ॥
ଦେବ କାମିନୀ ପ୍ରାୟେମିଳି । କରନ୍ତି ଗଙ୍ଗାଜଳେ କେଳି ॥
କୃଷ୍ଣ କାମିନୀ ପରିହାସେ । ସିଞ୍ଚନ୍ତି ମୁଖକେଶ ପାଶେ ॥
ସକଳେ ଜଳରେ କ୍ରୀଡ଼ନ୍ତି । ଯେହ୍ନେ ଗଗନେ ତାରାପନ୍ତି ॥
ଭୀମ ଅର୍ଜ୍ଜୁନ ଆଦିଯେତେ । ସର୍ବ କାମିନୀ ମଧଗତେ ॥
ଜଳ ସିଞ୍ଚନ୍ତି ବେନିହସ୍ତେ । ସ୍ତନବଦନ ଉର ଗାତ୍ରେ ॥
ପ୍ରକାଶ ଜାନୁ କଟି ସ୍ତନ । ଓଦା ବସନେ କି ସୁବର୍ଣ୍ଣ ॥
ଦେଖି କାମୁକ ଦୁଷ୍ଟଜନେ । ଅନଙ୍ଗ ବାଣେ ମନଛନ୍ନେ ॥
ବଦନେ ମନ୍ଦହାସ ଦେଖି । ମୋହେ ବୁଜିଲେ ବେନି ଆଖି ॥
ଯେମନ୍ତେ ଅବଭୃତ ସ୍ନାନେ । ଆନନ୍ଦ କରି ସର୍ବ ଜନେ ॥
କୂଳେ ବିଜୟ ସର୍ବରାଜ । ଉଦୟ ରବିଜିଣି ତେଜ ॥
ନାନା ସୁବର୍ଣ୍ଣ ଅଳଙ୍କୃତ । ଅଶ୍ୱ ଆରୋହୀ ଧର୍ମସୁତ ॥
ମୋହେ ଆବୃତ ନାରୀଜନେ । କ୍ରିୟା କଳାପେ ଯଜ୍ଞ ଯେହ୍ନେ ॥
ଦ୍ରୌପଦୀ ଘେନି ରାଜା କୋଳେ । ମନ୍ତ୍ର ପବିତ୍ର ଗଙ୍ଗାଜଳେ ॥
ବାଜଇ ବୀରତୂରୀ ଭେରୀ । ସ୍ୱରାଜ୍ୟେ ଅଭିଷେକ କରି ॥
ସୁଗନ୍ଧ କୁସୁମ ବରଷେ । ଦୁନ୍ଦୁଭି ଶୁଭଇ ଆକାଶେ ॥
ବ୍ରାହ୍ମଣ ଆଦି ଚାରି ବର୍ଣ୍ଣ । ଅପରେ ଚତୁର୍ଥ ଆଶ୍ରମ ॥
ରାଜାର ଅବଭୃତ କାଳେ । ସକଳେ ସ୍ନାନ ଗଙ୍ଗାଜଳେ ॥
ନିର୍ମଳ କଲେ ଦେହ ମନ । ଯେ ଜଳେ କଳୁଷ ଦହନ ॥
ବିଶେଷେ ଚାହିଁ କୃଷ୍ଣ ମୁଖ । ଛାଡ଼ିଲେ ଭବବନ୍ଧ ଦୁଃଖ ॥
ଉତ୍ତମ ବସ୍ତ୍ର ମହାଧନ । ଆଣଇ ପଣ୍ଡୁର ନନ୍ଦନ ॥
ଯଜ୍ଞେ ବରୁଣ ବ୍ରହ୍ମାଆଦି । ଯେ ଅବାଥିଲେ ମନ୍ତ୍ରବାଦୀ ॥
ବନ୍ଧୁ, ବାନ୍ଧବ ଜ୍ଞାତି ଜନେ । ମିତ୍ର ସୁହୃଦ ଅଭିମାନେ ॥
କୃଷ୍ଣ ବଚନେ ପୂଜାକରି । ଧନେ ତୋଷିଲେ ଦଣ୍ଡଧାରୀ ॥
ମଣି କୁଣ୍ଡଳ ପାଗଶିରେ । ନାନା ଭୂଷଣ ରତ୍ନହାରେ ॥
ନାରୀ ପୁରୁଷେ ବିରାଜନ୍ତି । ଯେହ୍ନେ ଗଗନେ ଗ୍ରହପନ୍ତି ॥
କୃଷ୍ଣ ପାଣ୍ଡବ ଅନୁଯାନେ । ଗଲେ ସେ ଯେ ଯାହା ଭୁବନେ ॥
ସେ ରାଜା ଗୋବିନ୍ଦର ଦାସ । ସେ ମହାଯଜ୍ଞ ତାର ଯଶ ॥
ଆନନ୍ଦେ କୃଷ୍ଣମୁଖ ଚାହିଁ । ସୁଖେ ଚଳନ୍ତି ଗୀତଗାଇ ॥
ଶୁଣି ସନ୍ତୋଷ ନୁହେଁ ମନ । ମନୁଷ୍ୟ ଯେହ୍ନେ ସୁଧାପାନ ॥
ଧର୍ମନନ୍ଦନ ବନ୍ଧୁଗଣ । ପ୍ରେମ ବଚନେ ଜଣେଜଣ ॥
ଦେବକୀ ନନ୍ଦନ ସମେତେ । ଭାବେ ରହିଲେ ଦିନାକେତେ ॥
ପ୍ରତେକ୍ଷେ ପ୍ରଭୁ ଭଗବାନ । ପାଶେ ବସାଇ ଉଗ୍ରସେନ ॥
ପ୍ରଦ୍ୟୁମ୍ନ ଆଦି ଯେତେ ସୁତ । ପ୍ରଭୃତି କୁଟୁମ୍ବ ସହିତ ॥
ମେଲାଣି ନେଇ ନିଜପୁରେ । କୃଷ୍ଣ ରହିଲେ ନିଜଘରେ ॥
ଯେମନ୍ତ ପଣ୍ଡୁର ନନ୍ଦନ । ହୋଇଲା ମନୋରଥ ପୂର୍ଣ୍ଣ ॥
କୃଷ୍ଣ ଚରଣ ଭେଳା କଲା । ଯଜ୍ଞ ଜଳଧି ସେ ତରିଲା ॥
ଯେବେ ତୁ ଶୁଣହୋ ରାଜନ । ଦିନେକ ରାଜା ଦୁର୍ଯ୍ୟୋଧନ ॥
ଧର୍ମନନ୍ଦନଙ୍କର ପୁରେ । ପଶିଲା ବାନ୍ଧବ ବେଭାରେ ॥
ଦେଖି ସମ୍ପଦ ଅଗୋଚର । ତୁଳାଇ ନୋହେ ତିନିପୁର ॥
ଯଜ୍ଞେ ଗୋବିନ୍ଦର ମହିମା । କେ କହି ପାରେ ଗୁଣସୀମା ॥
ଯାହାର ଆଜ୍ଞା କୃଷ୍ଣବହେ । ତାର ସମ୍ପଦ କେବା କହେ ॥
ସୁର ଅସୁର ନରଶିରୀ । ଯାର ଭୁବନେ ଅଛି ପୂରି ॥
ବ୍ରହ୍ମା ସହିତେ ଭୋଗଚିତ୍ତେ । ନାନା ପ୍ରକାରେ ଅପ୍ରମିତେ ॥
ଦ୍ରୋପଦ ରାଜାର ନନ୍ଦିନୀ । ସର୍ବ ସମ୍ପଦ ସଙ୍ଗେ ଘେନି ॥
ସେବଇ ଯୁଧିଷ୍ଠିର ପାଦେ । କୃଷ୍ଣ ପ୍ରସନ୍ନ ଅପ୍ରମାଦେ ॥
ତା ଦେଖି ରାଜା ଦୁର୍ଯ୍ୟୋଧନ । ଅନ୍ତରେ ଦହଇ ଜୀବନ ॥
ଯହିଁ ଗୋବିନ୍ଦ ନାରାୟଣ । କନକ ନୂପୁର ଚରଣ ॥
ଚାଲନ୍ତେ ମଧୁର ବାଜେଣି । ଶୁଭଇ କେଳି ହାସଧ୍ୱନି ॥
ବାହୁଡ଼ି ହରଷ ବିଷାଦେ । ପୁଣି ମିଳିଲା ସଭାମଧ୍ୟେ ॥
ସେ ପ୍ରଭୁ ହସ୍ତେ ବେତ ଘେନି । ଧର୍ମପଥକୁ ଯେଣୁ ଘେନି ॥
ସେ ସଭାମଧ୍ୟେ ଧର୍ମସୁତ । ସଙ୍ଗେ ଅଛନ୍ତି ଚାରିଭ୍ରାଥ ॥

ରତ୍ନ ମୁକୁଟ ଅଛି ଶିରେ । ହସ୍ତ ନିବେଶି ମନ୍ତ୍ରୀକରେ ॥
ରୋଷେ କମ୍ପଇ ତା ଶରୀର । ଯେମନ୍ତେ ଶୁଣ ନୃପବର ॥
ଦୁଷ୍ଟ ନିମନ୍ତେ ମାୟା ସଭା । ଯହିଁ ଭ୍ରମନ୍ତି ସୁରଦେବା ॥
କୃଷ୍ଣ ମାୟା ଅନ୍ତରାଳ । କ୍ଷଣକେ ଦିଶେ ଜଳସ୍ଥଳ ॥
ସ୍ଥଳକୁ ଜଳ ପ୍ରାୟେ ମଣି । ବସ୍ତ୍ର ଟେକିଲା କରେ ଆଣି ॥
ଜଳକୁ ସ୍ଥଳ ପ୍ରାୟେ ବୁଝି । କୋପେ ବସିଲା ଚକ୍ଷୁବୁଜି ॥
ଜଳେ ହୋଇଲା ସ୍ଥଳଭ୍ରାନ୍ତି । ମୟ ମାୟାରେ ମୋହଗତି ॥
ଜଳେ ପଡ଼ନ୍ତି କୁରୁପତି । ତା ଦେଖି ହସିଲା ମାରୁତି ॥
ଦ୍ରୌପଦୀ ଆଦି ଯେତେନାରୀ । ସର୍ବେ ହସିଲେ ହାସ୍ୟକରି ॥
ଯେତେ ନୃପତି ଥିଲେ ବସି । ବସ୍ତ୍ର ଆଚ୍ଛାଦି ମୁଖେହସି ॥
ଚକ୍ଷୁ ଚାଳିଲେ ଚକ୍ରଧର । ପରେ ସମସ୍ତେ ହାସ୍ୟକର ॥
ଯେମନ୍ତେ ସଭା ସର୍ବଜନେ । ହସିଲେ ବିଷ୍ଣୁର ବଚନେ ॥
ଦେହ ସମ୍ଭାଳି କୁରୁନାଥ । ଉଠିଲେ ଧରି ହସ୍ତେ ହସ୍ତ ॥
ଅଧୋ ବଦନେ କୋପ ଭରି । ଦୁଃଶାସନର ହସ୍ତଧରି ॥
ଜନେ କରନ୍ତି ହାହାକାର । ହସ୍ତିନା ଗଲା ନୃପବର ॥
ତା ଦେଖି ଧର୍ମର ନନ୍ଦନ । ସଂଭ୍ରମେ କଲେ ଦୁଃଖମନ ॥
ପଣ୍ଡୁନନ୍ଦନ ଭାବଘେନି । ଜାଣି ଗୋବିନ୍ଦ ହେଲେ ତୁନି ॥
ଅଶେଷ ଅବନୀର ଭାର । ଯେ ହରି କରିବେ ସଂହାର ॥
ଯାହାର ମାୟାରେ ମୋହିତ । ବ୍ରହ୍ମାଶଙ୍କର ଯେ ଜଗତ ॥
ଶୁଣ ପରୀକ୍ଷ ଶୁଦ୍ଧ ଚିତ୍ତେ । ତୁ ଯାହା ପଚାରିଲୁ ମୋତେ ॥
ରାଜସୂୟ ଯଜ୍ଞର ବରଣ । ଦୁର୍ଯ୍ୟୋଧନର ଦୂଷପଣ ॥
ବୋଇଲେ ଦାସ ଜଗନ୍ନାଥ । କୃଷ୍ଣ ବିଷୟେ ଭାଗବତ ॥
ରାଜସୂୟ ଯଜ୍ଞେ ମହାବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
ଗୋବିନ୍ଦ ପାଦେ କର ଭାବ । ଯେବେ ଯେ ସଂସାରୁ ତରିବା ॥
ଜଗତ ହିତେ କୃଷ୍ଣ ବାଣୀ । ଗୀତ ମୁଁ ବଖାଣିଲି ଆଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଦୁର୍ଯ୍ୟୋଧନ ଅପମାନେ ନାମ ଅଶୀତିତମୋଽଧ୍ୟାୟଃ ।*

## ଏକାଶିତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ମନ ଆନନ୍ଦେ ବ୍ୟାସସୁତ । ବୋଲନ୍ତି ଶୁଣ ପରୀକ୍ଷିତ ॥
ଅଦ୍ଭୁତ କୃଷ୍ଣ କର୍ମବାଣୀ । ଶୁଣି ସଂସାରୁ ତରପ୍ରାଣୀ ॥
କ୍ରୀଡ଼ା ମନୁଷ୍ୟ ଅବତାର । ଦେବ ମାନବେ ଅଗୋଚର ॥
ଯେମନ୍ତେ ପ୍ରଭୁ ଗୋପୀନାଥ । ଶଉଭ ପତି କଲେ ହତ ॥
ଧର୍ମ ନନ୍ଦନ ଯଜ୍ଞକାଳେ । ଶିଶୁପାଳକୁ ସଂହାରିଲେ ॥
ତାହାର ସଖା ଶାଲ୍ୱନାମ । ମିତ୍ରମରଣେ ବହି ତମ ॥
ପୂର୍ବେ ରୁକ୍ମିଣୀ ବିଭାକାଳେ । ଥିଲା ନୃପତି ସଙ୍ଗ ମେଳେ ॥
କୃଷ୍ଣଙ୍କୁ ହାରି ଯୁଦ୍ଧ ବଳେ । ପ୍ରତିଜ୍ଞା କଲା ନୃପ ମେଳେ ॥
ବୋଇଲା କୋପିତ ଅଧରେ । ନିଜ ଧନୁକୁ ଧରି କରେ ॥
ଯାଦବ ବିହୀନ ଧରଣୀ । କହିବି ସତ୍ୟ ମୋର ବାଣୀ ॥
ତୁମ୍ଭେ ସକଳ ନୃପବର । ଦେଖ ମୋହର ପୁରୁଷକାର ॥
ଯେମନ୍ତେ ମୂଢ଼ ଗର୍ବ ବହି । ମିଳିଲା ଘୋର ବନେ ଯାଇଁ ॥
ନଦୀ ପୁଳିନେ ତପକରି । ସେବିଲା ଶଙ୍କର ଗଉରୀ ॥
ରଜନୀ କାଳେ ପାଂଶୁ ମୁଷ୍ଟି । ଆହାରେ ପ୍ରାଣ କଲେ ପୁଷ୍ଟି ॥
ଯେମନ୍ତେ ବରଷକ ଅନ୍ତେ । ଗଉରୀ କାନ୍ତ ତୋଷ ଚିତ୍ତେ ॥
ଭବାନୀ ଅଙ୍ଗେ ଦେଇ କର । ବୋଇଲେ ବେଗେ ମାଗବର
ଶୁଣି ନୃପତି ଜ୍ଞାନ ପାଇ । କପୋଳେ ବେନି କର ଦେଇ ॥
ବୋଇଲେ ଶୁଣ ବିଶ୍ୱନାଥ । ତୋର ସୃଷ୍ଟିତ ଯେ ଜଗତ ॥
ବିବିଧ ଅସୁର ମନୁଷ୍ୟ । ଗନ୍ଧର୍ବ କିନ୍ନର ରାକ୍ଷସ ॥
ଯେ ଆଦି ଅଷ୍ଟ ଦିଗପାଳେ । ଭୂବି ପାତାଳେ ଅନ୍ତରାଳେ ॥
କେହି ନ ପାରୁ ମୋତେ ଜିଣି । ବିମାନ ଦିଅ ଶୂଳପାଣି ॥
ମାୟା ବିମାନ ଦିଅ ମୋତେ । ସେ ପୁଣି ମୋହର ଆୟତ୍ତେ ॥
ରୂପ ଅରୂପ ସ୍ଥୂଳସୂକ୍ଷ୍ମେ । ଯେଣୁ ପ୍ରମାଣେ ଅନ୍ତରୀକ୍ଷେ ॥
ଯହିଁ କରିବି ମୋର ମନ । ସେ ପୁରେ ପଶିବ ବିମାନ ॥
ଦୃଶ୍ୟ ଅଦୃଶ୍ୟ ମହାଘୋର । ବିଷ୍ଣୁ ଯାଦବେ ଭୟଙ୍କର ॥
ଯେ ବର ଦିଅ ବିଶ୍ୱନାଥ । ଶୁଣି ସଂଭ୍ରମେ ଉମାକାନ୍ତ ॥
ମୟ ଦାନବେ ସୁମରଣେ । କରନ୍ତେ ଅମ୍ବିକା ରମଣେ ॥
ତକ୍ଷଣେ ପରପୁରଞ୍ଜୟ । ବେଗେ ମିଳିଲା ବୀରମୟ ॥
ନଦୀ ପୁଳିନ ଘୋରବନେ । ନମିଲା ଈଶ୍ୱର ଚରଣେ ॥
ପ୍ରସନ୍ନେ ପ୍ରଭୁ ଉମାକାନ୍ତ । ବୋଇଲେ ଧରି ତାର ହସ୍ତ ॥
ମାୟା ବିମାନ ବେଗେ କର । ଦେବ ମାନବେ ଅଗୋଚର ॥
ଯେହାର ମନ ଅନୁମତେ । କହି ଚଳିଲେ ବିଶ୍ୱନାଥେ ॥
ତକ୍ଷଣେ ରୁଦ୍ର ଆଜ୍ଞା ପାଇ । ଅଦ୍ଭୁତ ବିମାନ ଭିଆଇ ॥
ଆନନ୍ଦେ ପ୍ରଜାପତି ବଳା । ଶାଲ୍ୱ ସମୀପେ ଆଣିଦେଲା ॥
ମାୟାବିମାନ କାମ ରୂପୀ । ପ୍ରକାଶେ ଘୋରତମ ବ୍ୟାପି ॥
ଯେଣୁ କେ ତାକୁ ରଣେ ଜିଣି । ଯେବେ ହୋ ଶୁଣ ନୃପମଣି ॥

ଶାଲ୍ୱର ବରେ ପାଇ ରଥ । ନିଜ ଭୁବନେ ଉପଗତ ॥
କୃଷ୍ଣ ବଇରୀ ମନେ ପୁଣି । ସାଜିଲା ନିଜ ଅକ୍ଷୌହିଣୀ ॥
କୋପେ ବସିଲା ମାୟାରଥେ । ଦ୍ୱାରକା ଗଲା ସେ ତୁରିତେ ॥
ରଜନୀ ମଧ୍ୟେ ନରପତି । ବେଗେ ପଶିଲା ଦ୍ୱାରାବତୀ ॥
ଭାଙ୍ଗାଇ ବନ ଉପବନ । ଉତ୍ତମ ପୁର ପ୍ରଜାମାନ ॥
ଦ୍ୱାର ଅଟାଳୀ କ୍ରୀଡ଼ାପୁର । ଅନଳେ କଲା ଭସ୍ମସାର ॥
ଶର ବରଷନ୍ତି ଗହଳେ । ଯେହ୍ନେ ଗଗନେ ମେଘମାଳେ
ବୃକ୍ଷ ପାଷାଣ ବଜ୍ର ବାରି । ଦିବସେ ଅନ୍ଧକାର କରି ॥
ପ୍ରଚଣ୍ଡ ବହେ ଚକ୍ରବାତ । ଧୂଳିରେ ଦଶଦିଗ ଗ୍ରସ୍ତ ॥
ଯେମନ୍ତ ମାୟାରଥେ ବୀର । ଦ୍ୱାରକା ପୁର କଲା ଜୁର ॥
ଅସୁର ତେଜେ ଯଦୁପୁରୀ । ତକ୍ଷଣେ ହୁଏ ହତଶିରୀ ॥
ପୂର୍ବେ ଅନ୍ଧକ ଯୁଦ୍ଧକାଳେ । ଯେହ୍ନେ ଅଦ୍ଭୁତ ମହୀସ୍ଥଳେ ॥
ଦେଖି ଉତ୍ପାତ ଭୟଘୋର । ତକ୍ଷଣେ ରୁକ୍ମିଣୀ କୁମର ॥
ବିମାନେ ବସି ମହାବଳୀ । ଡାକଇ ବେନିଭୁଜ ଟେକି ॥
ଭୟ ନକର ତୁମ୍ଭେ କେହି । ଯେ ମାୟା ସଂହାରିବି ମୁହିଁ ॥
ଯେମନ୍ତ କହି ରାଜପଥେ । ବେଗେ ଧାଇଁଲା ଯେକା ରଥେ ॥
ଦେଖି ତାହାର ବୀରପଣ । ସଙ୍ଗେ ମିଳିଲେ ଯଦୁଗଣ ॥
ସାତ୍ୟକି ପରିବେଷ୍ଟି ଶାମ । ଅକ୍ରୂର ଯଦୁଙ୍କ ଉତ୍ତମ ॥
ଅଜୟ ହୃଦିକ ନନ୍ଦନ । ଶୁକ ସାରଣ ଅନୁପମ ॥
ଗଦ ଶଙ୍କରଷଣ ଆଦି । ଯାଦବ ମଧ୍ୟେ ଯେ ପ୍ରସିଦ୍ଧି ॥
ଯେ ଆଦି ଯେତେ ଧନୁର୍ଦ୍ଧର । ଦୁର୍ଜ୍ଜୟ କୃଷ୍ଣର କୁମର ॥
ରଥ ଗଜନ୍ତ ଯୂଥପତି । ଘୋଟକ କୁଞ୍ଜର ପଦାତି ॥
ଶାଲ୍ୱ ସହିତେ ଯଦୁବଳ । ଶୁଭଇ ସୁସନ୍ତ୍ରମେ ଗୋଳ ॥
କୋପେ କରନ୍ତି ଗୁଣ ଘୋଷ । ଶବଦେ କମ୍ପେ ଦଶଦିଶ ॥
ଉଭାରି କରନ୍ତି ସମର । ଘୋର ଗହନ ଅନ୍ଧକାର ॥
ଅବନୀ ଅର୍ଥେ ଭୁଜବଳେ । ଦେବ ଅସୁର ପୂର୍ବକାଳେ ॥
ଯେମନ୍ତ ପ୍ରବର୍ତ୍ତିଲା ରଣ । ଅଦ୍ଭୁତ ରୋମ ହରଷଣ ॥
ଶାଲ୍ୱ ଉପୁଜି ମାୟା ଯେତେ । ନାନା ପ୍ରପଞ୍ଚ ଅପ୍ରମିତେ ॥
ପ୍ରକାଶି ଥିଲା ପୁରମଧ୍ୟେ । ଶାଲ୍ୱ ଯାଦବ ଘୋର ଯୁଦ୍ଧେ ॥
ରୁକ୍ମିଣୀ ସୁତ ଦେଖି ତାହା । ଶସ୍ତ୍ରେ ଛେଦିଲା ଘୋର ମାୟା ॥
ରଜନୀ ଅନ୍ତେ ରବିତ୍ରାସ । ଯେହ୍ନେ ଅନ୍ଧାର କରେ ନାଶ ॥
ସୁବର୍ଣ୍ଣ ପୁର ଲୋମ ସୁଖ । ବିଚିତ୍ର ସୁରଙ୍ଗ ସୁରେଖ ॥
ଗୁଣେ ବସାଇ ମହାରୋଷ । ବାଣ ପେଷିଲା ଏକବିଂଶ ॥
ଶାଲ୍ୱର ସେନାପତି ଅଙ୍ଗେ । ଅଶ୍ୱ ବିମାନ ଧ୍ୱଜ ସଙ୍ଗେ ॥

ତକ୍ଷଣେ କରି ହତପ୍ରାଣ । ପୁଣି ବିନ୍ଧିଲା ଗରୁଟାଣ ॥
ଶାଲ୍ୱ ଉପରେ କୃଷ୍ଣବଳା । ଶତେ ନାରାଚ ପ୍ରହାରିଲା ॥
ଅପରେ ଯେତେ ସୈନ୍ୟଲୋକ । ତାହାକୁ ପେଷି ଯେକ ଯେକ ॥
ରଥ ସାରଥିଙ୍କ ଉପରେ । ଦଶ ନାରାଚ କୋପଭରେ ॥
ଅଶ୍ୱକୁ ବିନ୍ଧି ତିନିଶର । ଶବଦ କଲା ମହାଘୋର ॥
ରୁକ୍ମିଣୀ ସୁତ କର୍ମଦେଖି । ସକଳ ସଂଗ୍ରାମ ଉପେକ୍ଷି ॥
ପର ଅପର ବୀରେ ଶୁଣି । କହନ୍ତି ସାଧୁ ସାଧୁବାଣୀ ॥
ମୟ ନିର୍ମିତ ମାୟାରଥ । ତାର ମହିମା ଅପ୍ରମିତ ॥
ନିଜ ସଇନ୍ୟେ ଥାଇ ଯେକ । ଶତ୍ରୁକୁ ଦିଶଇ ଅନେକ ॥
ରୂପ ଅରୂପ ଅନ୍ଧକାର । ଦେବ ମାନବେ ଅଗୋଚର ॥
ସମ୍ମୁଖେ ଦିଶେ ମହୀସ୍ଥଳେ । ଚାହିଁଲେ ଉଡ଼େ ଅନ୍ତରାଳେ ॥
ଭ୍ରମେ କୁରାଳ ଚକ୍ରସମ । ଯେମନ୍ତେ ଦେଖି ତା ବିମାନ ॥
ତକ୍ଷଣେ କୃଷ୍ଣର ନନ୍ଦନ । କୋଦଣ୍ଡ ଉଭାରି ବହନ ॥
ପବନ ଯୋଗେ ଯେହ୍ନେମେଘ । ଉଡ଼ିଣ ଯାନ୍ତି ଦଶଦିଗ ॥
ଯହିଁ ଦେଖନ୍ତି ତାର ରଥ । କୃଷ୍ଣ କୁମର ଯୂଥଯୂଥ ॥
ଧନୁ ଆକ୍ରୋଷୀ ପୁଣ ପୁଣ । କରନ୍ତି ଶର ବରଷଣ ॥
ଅଗ୍ନି ଆଦିତ୍ୟ ପ୍ରାୟେ ଦିଶି । ପଡ଼ନ୍ତି ରିପୁବଳ ତ୍ରାସି ॥
ବାଣ ଶବଦ ସର୍ପ ପ୍ରାୟେ । ଭେଦିଲା ଅସୁରଙ୍କ କାୟେ ॥
ରୁଧିର ବୃଷ୍ଟି ରଣ ମଧ୍ୟେ । ଯେସନେ ଦେବାସୁର ଯୁଦ୍ଧେ ।
ଯଦୁବୀରଙ୍କ ବାଣଘାଏ । ରଥେ ପଡ଼ିଲା ଶାଲ୍ୱ ମୋହେ ॥
ମାୟା ବିମାନ ଶୂନ୍ୟପଥେ । କୃଷ୍ଣ କୁମରେ ଭୂମିଗତେ ॥
ଉଭୟ ବଳୁଁ ଶରବୃଷ୍ଟି । ରୁଧିର ଗଳେ ତନୁ ଫୁଟି ॥
କ୍ଷତ୍ରିୟ ଧର୍ମ ମହାଘୋର । କେହି ନ ଛାଡ଼ନ୍ତି ସମର ॥
ଉଭୟ ଲୋକ ଜୟ ଇଚ୍ଛା । ସାତ୍ୟକି ଗୁରୁ ବାଣ ଦୀକ୍ଷା ॥
ଦ୍ୟୁମାନ ନାମେ ମହାବଳୀ । ରୁକ୍ମିଣୀ ସୁତ ସଙ୍ଗେ ମିଳି ॥
ପୂର୍ବେ ତାହାର ବାଣଘାତେ । ପଡ଼ି ଯେ ଥିଲା ମୋହଗତେ ॥
ଶାଲ୍ୱର ମନ୍ତ୍ରୀ ଯେ ଯୁଗତେ । ବିଷମ ଲୌହ ଗଦାହସ୍ତେ ॥
ଚନ୍ଦ୍ର ସମୀପେ ଯେହ୍ନେ ରାହୁ । ହୁଙ୍କାର ଟେକି ମହାବାହୁ ॥
ରୁକ୍ମିଣୀ ସୁତ ବକ୍ଷସ୍ଥଳେ । ପ୍ରହାର କଲା କୋପାନଳେ ॥
ଗର୍ଜ୍ଜିଇ କରି ମହାରୋଷ । ଶବଦେ କମ୍ପେ ଦଶଦିଶ ॥
ଗଦା ପ୍ରହାରେ କୃଷ୍ଣବଳା । ବିମାନେ ପଡ଼ି ମୋହଗଲା ॥
ଦେଖି ତାହାର ମୋହଗତ । ତକ୍ଷଣେ ଦାରୁକର ସୁତ ॥
ସଂଗ୍ରାମ ଛାଡ଼ି ରଥବାହି । ଯୁଦ୍ଧର ଧର୍ମ ସେ ଜାଣଇ ॥
ସଂଗ୍ରାମ ତେଜି ରଥ ନେଲା । ଅର୍ଦ୍ଧ ଯୋଜନେ ଉଭାରିଲା ॥

ପ୍ରଦ୍ୟୁମ୍ନ ପଡ଼ିଥିଲା ମୋହେ । ଶୀତ ପବନ ଲାଗି ଦେହେ ॥
ତକ୍ଷଣେ ପାଇଣ ଚେତନ । ଚାହିଁଲା ସାରଥି ବଦନ ॥
ବୋଲଇ କୋପଭର ହୋଇ । ଯେମନ୍ତ ଦେଖିଲାତ ନାହିଁ ॥
ଅସାଧୁ କର୍ମ କିମ୍ପା କଲୁ । ସଂଗ୍ରାମ ଛାଡ଼ି ପଳାଇଲୁ ॥
ଯାଦବ କୁଳେ ହୋଇ ଜାତ । ସଂଗ୍ରାମେ ନୁହନ୍ତି ନିସତ ॥
ତୁ ଦୁରାଚାର ମତିଭ୍ରମ । ନଜାଣି କଲୁ ଯେଡ଼େ କର୍ମ ॥
ତୋର ସାରଥି ପଣେ ମୁହିଁ । ସଂଗ୍ରାମେ ନପୁଂସକ ହୋଇ ॥
ସଂଗ୍ରାମୁ ପଳାଇଲୁ ଯେକ । ମୋର ଜୀବନ ହେଉ ଧିକ ॥
କେମନ୍ତେ କୃଷ୍ଣ ପାଶେ ଯାଇ । ବଦନ ଦେଖାଇବି ମୁହିଁ ॥
ରାମର ବଦନ କେମନ୍ତେ । ଚାହିଁବି ସଂଗ୍ରାମ ନିସତେ ॥
କିବା କହିବି କୃଷ୍ଣ ପାଶେ । ପଳାଇ ଜୀବନର ଆଶେ ॥
ସଂଗ୍ରାମେ ମୋର ବୀରପଣ । ହସିବେ ଭାଉଜ ମାନନ୍ତ ॥
ପୁରେ ହସିବେ ବନ୍ଧୁଜନେ । ବସନ ଆଚ୍ଛାଦି ବଦନେ ॥
ତୁ ଧନ୍ୟ ମୋହର ସାରଥି । ଭଜିଲୁ ନପୁଂସକ ଗତି ॥
କିମ୍ପା ଛାଡ଼ିଲୁ ରଣଭୂମି । ଅର୍ଦ୍ଧ ଯୋଜନ ପଥକ୍ରମି ॥
କହ ନକର ମନେ ଭ୍ରାନ୍ତି । ତା ଶୁଣି ବୋଲଇ ସାରଥି ॥
ଶୁଣ ହେ କୃଷ୍ଣର କୁମର । ସଂଗ୍ରାମେ ଧର୍ମ ଯେ ମୋହର ॥
ରଥୀର ମୋହଗତି ଦେଖି । ସାରଥି ସମର ଉପେକ୍ଷି ॥
କେତେ ହେଁ ଦୂରେ ରଥଧରି । ରଥୀ ଜୀବନ ଥିର କରି ॥
ପୁଣି ସମରେ ବାହି ରଥ । ଯେ ଧର୍ମ ସାରଥିର ମତ ॥
ଯେହା ଯେ ନ ଜାଣି ରହନ୍ତି । ରଥି ସାରଥି ପ୍ରାଣଦ୍ୟନ୍ତି ॥
ସ୍ୱର୍ଗେ ବସଇ ରଥୀ ଯେକେ । ସାରଥି ପଡ଼ଇ ନରକେ ॥
ଯେଣୁ ମୁଁ କଲି ନିଜଧର୍ମ । ଯେଣୁ ତୁ ଗଦାଘାତେ ଭ୍ରମ ॥
କହିଲା ଦାସ ଜଗନ୍ନାଥ । ସାରଥି ବାକ୍ୟେ କୃଷ୍ଣ ସୁତ ॥
ବୋଲଇ ବେଗେ ବାହାରଥ । ଆଜ ନାଶିବି ରିପୁ ଯୂଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଶାଲ୍ୱଯୁଦ୍ଧେ ପ୍ରଦ୍ୟୁମ୍ନ ମୋହଗତେ ନାମ ଏକୋଶୀତିତମୋଽଧ୍ୟାୟଃ*

## ଦ୍ୱଶୀତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ରାଜା ଆଗେ । କୃଷ୍ଣ ନନ୍ଦନ ଅତି ବେଗେ ॥
ଦୃଷ୍ଟିତେ ରଥୁଁ ଅବତରି । ସନ୍ତୋଷେ ଜଳପାନ କରି ॥
କର ଚରଣ କଳେବରେ । ଜଳ ସିଞ୍ଚିଲା ସୁଖଭରେ ॥
ହରଷ ହୋଇ ବୀରବର । ଧନୁ ଧଇଲା ବାମ କର ॥
ମୀନକେତନେ ବିଜେ କଲା । ସାରଥି ମୁଖକୁ ଚାହିଁଲା ॥
ବୋଇଲା ସାରଥିକି ଚାହିଁ । ବେଗେ ତୁ ନିଅ ରଥ ବାହି ॥
ଦ୍ୟୁମାନ ମୁଖେ ରଥ କର । ତା ତୁଲେ ସମର ମୋହର ॥
ଶୁଣି ଦାରୁକସୁତ ବେଗେ । ମିଳିଲା ଦ୍ୟୁମାନର ଆଗେ ॥
ଅସୁର ମାୟା ଅପ୍ରମିତ । ଯାଦବ ବଳ କରେ ହତ ॥
ପ୍ରଦ୍ୟୁମ୍ନ ଅତି ମହାରୋଷେ । ହୁଙ୍କାର କରି ଗୁଣ ଘୋଷେ ॥
ସନ୍ଧାନ କଲା ଅଷ୍ଟଶର । କେ କହୁ ମହିମା ତାହାର ॥
ଛିଡ଼ି ପଡ଼ିଲା ଘୋର ରଣେ । ରଥୁଁ ତୁରଙ୍ଗ ଚାରିବର୍ଣେ ॥
ସାରଥି ଯେକ ବାଣେ ମଲା । ବେନି ନାରାଚେ ଧ୍ୱଜଗଲା ॥
ଯେକ ନାରାଚେ ଛେଦି ଶିର । ବିମାନ କଲା ଶତେଚୂର ॥
ଗଦ ସାତ୍ୟକି ଶାମ୍ୱଆଦି । ତୀକ୍ଷ୍ଣ ନାରାଚ ବେଗେ ବିନ୍ଧି ॥
ଶାଲ୍ୱ ସଇନ୍ୟ କଲେ ନାଶ । ନାରଚେ ନଦିଶେ ଆକାଶ ॥
ଶିର ଛେଦିଲେ ବାହୁବଳେ । ପଡ଼ିଲା ବାରାନିଧି ଜଳେ ॥
ଯେମନ୍ତେ ଶାଲ୍ୱ ଯଦୁବଳେ । ଯୁଦ୍ଧ ବଢ଼ିଲା କୋପାନଳେ ॥
ଯୁଦ୍ଧ କରନ୍ତେ କୃଷ୍ଣବଳା । ତ୍ରିଦିବା ରାତ୍ରି ହେଲେ ଗଲା ॥
ଯେବେ ହୋ ଶୁଣ ପରୀକ୍ଷିତ । ଇନ୍ଦ୍ର ପ୍ରସସ୍ଥେ ଯଦୁନାଥ ॥
ଥିଲେ ଯେ ରାଜା ଯଜ୍ଞକାଳେ । ଚକ୍ରେ ସଂହାରି ଶିଶୁପାଳେ ॥
ଭୀମର ହସ୍ତେ ଜରାମାରି । ଯଜ୍ଞ ଆରମ୍ଭ ସବୁସାରି ॥
କୁରୁବୃନ୍ଦଙ୍କୁ ଆଜ୍ଞାମାଗି । ପିତୃଭଗିନୀ ପାଦେ ଲାଗି ॥
ମୁନିକି କରି ନମସ୍କାର । ଗୋବିନ୍ଦ ହୋଇଲେ ବାହାର ॥
ଦେଖିଲେ ଅନ୍ଧକାର ଦିଶ । ନିର୍ଘାତେ କମ୍ପଇ ଆକାଶ ॥
ଭୂମି ଗଗନ ଅନ୍ତରୀକ୍ଷେ । ଉତ୍ପାତ ଦିଶଇ ପ୍ରତ୍ୟକ୍ଷେ ॥
ଘୋର ନିର୍ମିତ ରିଷ୍ଟଚାହିଁ । ମନେ ଭାଳନ୍ତି ଭାବଗ୍ରାହୀ ॥
ବନ୍ଧୁ ବାନ୍ଧବେ ମୋର ସଙ୍ଗେ । ସୁଖେ ବସନ୍ତି ମନରଙ୍ଗେ ॥
ଦୁଷ୍ଟ ସ୍ୱଭାବେ ମହାବଳ । ମୁଁ ଯେ ନାଶିଲି ଶିଶୁପାଳ ॥
ତାହାର ପକ୍ଷ ରାଜା ଯେତେ । ସକଳେ ମିଳି କୋପ ଚିତ୍ତେ ॥
ନିର୍ଘେଁ ନାଶିଲେ ମୋରପୁର । ତେଣୁ ଯେ ରିଷ୍ଟ ମହାଘୋର ॥
ଶ୍ରୀକୃଷ୍ଣ ଯେମନ୍ତ ବିଚାରି । ବେଗେ ମିଳିଲେ ନିଜପୁରୀ ॥
ଦେଖିଲେ ପ୍ରଜାଙ୍କ କଷଣ । ପୁତ୍ରେ କରନ୍ତି ଘୋର ରଣ ॥
ନିଜ କୁଟୁମ୍ବ ରକ୍ଷାକରି । ପୁରେ ରହିଲେ ହଳଧାରୀ ॥
ରାମଙ୍କୁ ରଖି ନିଜପୁରେ । ଗୋବିନ୍ଦ ସାଜିଲେ ସମରେ ॥
ଦାରୁକେ ଚାହିଁ ବନମାଳୀ । ବୋଲନ୍ତି ବେନି ଭୁଜତୋଳି ॥

ତୁ ଯେବେ ସାରଥି ମୋହର । ଶାଲ୍ୱ ନିକଟେ ରଥକର ।
ଚିତ୍ତେ ନକର ତୁହି ତ୍ରାସ । ଜାଣତୁ ଶାଲ୍ୱ ଗଲାନାଶ ।
ଯେମନ୍ତେ କୃଷ୍ଣ ଆଜ୍ଞାପାଇ । ଦାରୁକ ବେଗେ ରଥବହି ।
ଗରୁଡ଼ ବସେ ରଥ ଶିଖେ । ସ୍ୱର୍ଗେ ଦେଖନ୍ତି ଦେବ ଲୋକେ
ଉଭୟ ବଳ ମଧ୍ୟେ ରଥ । ଶାଲ୍ୱ ଦେଖିଲା ଯଦୁନାଥ ।
ସ୍ୱଭାବେ ହତବଳ ପ୍ରାଣ । ମାୟା ପ୍ରକାଶେ ଗରୁବାଣ ।
ଦେଖି ଦାରୁକ ଦାମୋଦର । କୋପେ ଗର୍ଜିଲ ମହାବୀର ।
ଶକ୍ତିଯେ ଥିଲା ତାର ହସ୍ତେ । କୋପେ ପେଷିଲା ଶୂନ୍ୟପଥେ
ରବି କିରଣ ପ୍ରାୟେଦିଶି । କୃଷ୍ଣ ଉପରେ ଦେଲାପେଷି ।
ଶକ୍ତି ଶବଦେ ଦିଗପୂରି । ଦେଖି ଗୋବିନ୍ଦ ଧନୁଧରି ।
ତୀକ୍ଷ୍ଣ ନାରାଚେ ଦାମୋଦର । ଶକ୍ତିକି କଲେ ଶତଚୂର ।
ଆକାଶେ ଭ୍ରମେ ମାୟାରଥ । ଶାଲ୍ୱଯେ ବିମାନେ ଗୁପତ ।
ଦେହ ନ ଦିଶେ ଅନ୍ଧକାରେ । ଚାହିଁ ଗୋବିନ୍ଦ କୋପଭରେ ।
ଶର ବରଷେ ଯଦୁନାଥ । ଗଗନେ ଯେହ୍ନେ ଛାୟାକାନ୍ତ ।
ଦହଇ ନିଜ ରଶ୍ମିଜାଳେ । କୃଷ୍ଣ ନାରାଚ ଅନ୍ତରାଳେ ।
ନିମିଷ ମାତ୍ରେ କୋଟି କୋଟି । ବିଷ୍ଣୁ ନାରାଚ ଶୂନ୍ୟେଘୋଟି ।
ଦେଖି ଚକିତ ମହାବୀର । ଲୋହ ଧନୁଯେ ଧରି କର ।
ମାୟା ପ୍ରକାଶି ଗରୁବାଣ । କୋପେ ବିନ୍ଧିଲା ତୀକ୍ଷ୍ଣବାଣ ।
କୃଷ୍ଣର ବାମ କର ମୁଷ୍ଟି । ଧନୁ ସହିତେ ବାଣଫୁଟି ।
ହସ୍ତୁଁ ପଡ଼ିଲା ଧନୁତଳେ । ଦେଖି ଚକିତ ଦିଗପାଳେ ।
କରନ୍ତି ହାହାକାର ବାଣୀ । ଶାଲ୍ୱ ବୋଇଲା ତାହା ଶୁଣି ।
ରେ ମୂଢ଼ ଶୁଣ ମୋରବାଣୀ । ମୋ ଭ୍ରାଥା ବରିଲା ରୁକ୍ମିଣୀ ।
ଶୁଭ ମଙ୍ଗଳ ଶୁଭବେଳେ । ସେ କନ୍ୟା ନେଉଥିଲୁ ବଳେ
ଅଜୟ ବୋଲାଉ ଜଗତେ । ଆଜ ପଡ଼ିଲୁ ମୋ ଅଗ୍ରତେ ।
ସଭାର ମଧ୍ୟେ ଅବିଶ୍ୱାସ । ଶିଶୁପାଳକୁ କଲୁନାଶ ।
ଯେବେ ପଡ଼ିଲୁ ମୋର ମୁଖେ । ସଂଗ୍ରାମ କର ଆତ୍ମା ସୁଖେ ।
ଦେଖ ମୋ ନାରାଚ ପ୍ରଚଣ୍ଡ । ଯେଣେ କାଟିବି ତୋର ମୁଣ୍ଡ ।
ଯେମନ୍ତେ ତାର ବାକ୍ୟ ଶୁଣି । ହସି ବୋଲନ୍ତି ଚକ୍ରପାଣି ।
ଶୁଣ ହୋ ଶାଲ୍ୱ ମହାବୀର । ଯେ କଥା ଉଚିତ ତୋହର ।
ତୋ ପଞ୍ଚପ୍ରାଣ କଣ୍ଠତଟେ । ଯମକୁ ନ ଦେଖୁ ନିକଟେ ।
ମରଣ କାଳେ ଯେହ୍ନେ ପ୍ରାଣୀ । ଗରୁ ଗଉରବ ନ ମଣି ।
ପ୍ରଳାପ କରେ ରୋଗ ତାପେ । କୃତାନ୍ତ ସେବକ ସମୀପେ ।
ଯେ ଯାହା ବୀର ପଣବଳେ । ସର୍ବେ ଦେଖନ୍ତି ଯୁଦ୍ଧକାଳେ ।
ଆତ୍ମପ୍ରଶଂସା ଯେ କରନ୍ତି । ସେ ପ୍ରାଣୀ ନରକେ ପଡ଼ନ୍ତି ।
ଯେମନ୍ତେ କହୁଁ କହୁଁ ହରି । ଦକ୍ଷିଣ ଭୁଜେ ଗଦାଧରି ।
ଉଠି ତାହାର ରଥଦାଣ୍ଡେ । ଗଦା ପ୍ରହାର କଲେ ମୁଣ୍ଡେ ।
ଶବଦ ଶୁଭେ ମହାଘୋର । ବଦନୁ ଗଳଇ ରୁଧିର ।
ଦେଖନ୍ତି ପ୍ରଭୁ ଭଗବାନ । ଶାଲ୍ୱ ହୋଇଲା ଅନ୍ତର୍ଦ୍ଧାନ ।
କୃଷ୍ଣ ଚାହାନ୍ତି ଦଶଦିଗେ । ବିଷମ ମାୟାର ପ୍ରକାଶେ ।
ଯେମନ୍ତେ ଗଲା ଦଣ୍ଡଚାରି । ମାୟା ପୁରୁଷ ରୂପଧରି ।
ବେଗେ ମିଳିଲା କୃଷ୍ଣ ପାଶେ । ଚରଣେ ନମଇଁ ବିଶ୍ୱାସେ ।
ବୋଲଇ ଶିରେ ଦେଇ ହସ୍ତ । ଦେବକୀ ଦେବୀର ମୁଁ ଦୂତ ।
କଣ୍ଠ କୁଣ୍ଠିତ ବାକ୍ୟ କହେ । ବେନି ଲୋଚନୁ ଲୁହବହେ ।
ହେ କୃଷ୍ଣ କୃଷ୍ଣ ମହାଭୁଜ । ମହାପୁରୁଷ ବିଶ୍ୱତେଜ ।
ଆଜ ଉଦିତ ଘୋର ନିଶି । ଶାଲ୍ୱ ଦ୍ୱାରକା ପୁରେ ଆସି ।
ଯୁଦ୍ଧେ ଯାଦବ ବଳ ମାରି । ବସୁଦେବଙ୍କୁ ନେଲା ହରି ।
ପୁରେ କାନ୍ଦନ୍ତି ବଧୂଜନେ । ପଶୁକୁ ପଶୁ ମାରେ ଯେହ୍ନେ ।
ପିତୃବତ୍ସଳ ନାଥ ତୁହି । କହିଲି ମୋର ଦୋଷ ନାହିଁ ।
ଯେମନ୍ତ ମାୟାଦୂତ ବାଣୀ । ଶୁଣି ମୋହିତ ଚକ୍ରପାଣି ।
ପିତାର ସ୍ନେହବଶେ ଗ୍ରସ୍ତ । ବିଭ୍ରମ ମନେ ମୋହଗତ ।
ଇତର ଜନ ପ୍ରାୟେ ଭାଳି । ମନେ ଚିନ୍ତନ୍ତି ବନମାଳୀ ।
ଯେତ ବିଷମ ବିପରୀତ । ଯେ ପୁଣି ପେଷିଛନ୍ତି ଦୂତ ।
ଯହିଁ ରକ୍ଷକ ହଳଧର । ଦେବ ଦାନବେ ଆଗୋଚର ।
ତାହାଙ୍କୁ ଜିଣିଲା କେମନ୍ତେ । ବିଧି ହୋଇଲା ବାମ ମୋତେ ।
ଯେ ଶାଲ୍ୱ କୀଟ ପ୍ରାୟେ ମୋତେ । ରାମଙ୍କୁ ଜିଣିଲା କେମନ୍ତେ ।
ଯେତେ ବିଚାରି ନରହରି । ଭାଳନ୍ତି ହସ୍ତେ ଗଦାଧରି ।
ଭୂମି ପ୍ରଚଣ୍ଡେ ଘୋରବାୟେ । ଦିଗେ ଦିଶନ୍ତି ଧୂମ୍ରମୟେ ।
ଦେଖନ୍ତି ପ୍ରଭୁ ଭଗବାନ । ଗଗନୁଁ ପ୍ରକାଶେ ବିମାନ ।
ରବିକି ରାହୁ ଯେହ୍ନେ ଗ୍ରାସେ । ଶାଲ୍ୱ ମିଳିଲା କୃଷ୍ଣ ପାଶେ ।
ବସୁଦେବର କେଶଧରି । ଝିଙ୍କଇ ଘୋର ନାଦ କରି ।
କୃଷ୍ଣଙ୍କୁ ଚାହିଁ ତୋଷମନେ । ବୋଲଇ ପୁରୁଷ ବଚନେ ।
ଦେଖ ତୋ ପିତା ଯେ ଅଧମ । ଯେହାର ବୀର୍ଯ୍ୟେ ତୋରଜନ୍ମ
ଯେହାର ଅର୍ଥେ ଦେହ ବନ୍ଧୁ । ଶ୍ରୀ ବାସୁଦେବ ତୁ ବୋଲାଉ ।
ଯେବେତୁ ବୋଲାଉ ସମର୍ଥ । ଆଜ ମରଣୁ ରଖ ତାତ ।
ଯେମନ୍ତ କରଇ ଭ୍ରସନ । ଦୁଃସହ ନିଷ୍ଠୁର ବଚନ ।
ଆକର୍ଷି ବସୁଦେବ ପାଣି । ନିଜ ଖଡ଼ଗେ ଶିରହାଣି ।
କୃଷ୍ଣ ରଥକୁ ପିଙ୍ଗିଦେଲା । ବିମାନେ ଗଗନେ ପଶିଲା ।
ପିତାବଦନ ଦେଖି ହରି । ମୁହୂର୍ତ୍ତ ମାତ୍ର ଶୋକକରି ।

ସ୍ୱଜନ ଅନୁସଙ୍ଗ ଦୋଷେ । ନିଜ ପ୍ରକୃତି ମାୟାଗ୍ରାସେ ।
ଶୁଦ୍ଧସ୍ୱଭାବ ନିରଞ୍ଜନ । ନୋହେ ପ୍ରପଞ୍ଚ ଠୁଳ ଶୂନ୍ୟ ।
ମହତ ଗତି ଜ୍ଞାନ ଗୁରୁ । କେବା ମହିମା ଅନ୍ତଃକରୁ ।
ତକ୍ଷଣେ ପ୍ରଭୁ ଭଗବାନ । ନିଜ ସ୍ୱରୂପେ ଅବଧାନ ।
ଜ୍ଞାନ ପ୍ରକାଶେ ମାୟାନାଶ । ସୁଜ୍ଞାନେ ଜ୍ଞାନ ପରକାଶ ।
ଜାଣିଲେ ନିଜ ମାୟାବଳେ । ଶାଲ୍ୱ ଯୁଝଇ ମୋରଦୁଳେ ।
ଯେମନ୍ତ ବୋଲି କୃଷ୍ଣ ଚାହିଁ । ଦେଖିଲେ ରଥେ କେହି ନାହିଁ ॥
ନ ଦିଶେ ପିତା ଛିନ୍ନ ଶିର । ଦୂତ ହିଁ ହୋଇଲା ଅନ୍ତର ।
ସ୍ୱପ୍ନ ଯେସନେ ନିଦ୍ରାବୋଧେ । ଶ୍ରୀକୃଷ୍ଣ ଚାହାନ୍ତି ଆନନ୍ଦେ ।
ଘୋର ଅନ୍ଧାର ରିପୁଜନ । ଗଗନେ ଦେଖି ଭଗବାନ ।
ରିପୁ ମାରଣେ ଅବଧାନ । ଶୁଣହେ ପରୀକ୍ଷ ରାଜନ ।
ବେଦ ବଚନେ ଋଷିଗଣେ । ଚିନ୍ତନ୍ତି ଯାହାର ଚରଣେ ।
ନାନା ପ୍ରକାରେ ଅନୁମାନେ । ଅବିଦ୍ୟା ବିରୋଧ ବଚନେ ।
ସ୍ମରଣ କରି ନାମହୃଦେ । ତରନ୍ତି ସଂସାରୁ ପ୍ରମାଦେ ।
ତା ହୃଦେ କାହିଁ କାମ ମୋହ । ଅଜ୍ଞାନ ଜାତ ସ୍ନେହଭୟ ।
ଅଖଣ୍ଡ ବିଜ୍ଞାନ ଯାହାର । ଜ୍ଞାନ ବିଜ୍ଞାନର ଈଶ୍ୱର ।
ଯା ପାଦ ପଦ୍ମ ସେବାଫଳେ । ନିଶ୍ଚଳ ଆତ୍ମଜ୍ଞାନ ଫଳେ ।
ଅଜ୍ଞାନ ଅବିଦ୍ୟା ଜାଣନ୍ତି । ଜନ୍ମ ମରଣ ନାହିଁ ଭ୍ରାନ୍ତି ।
ଲଭନ୍ତି ଆତ୍ମାନନ୍ଦ ହରି । ସକଳ ବିଷାଦ ପାସୋରି ।
ଯାର ସେବକ ଯେ ଜଗତେ । ମୋହ ନ ଯାନ୍ତି ମାୟାଗ୍ରସ୍ତେ ।
ତାହାର ମାୟାମୋହ କାହିଁ । ଯେବେହୁ ଶୁଣ ଚିତ୍ତ ଦେଇ ।
ଶାଲ୍ୱ ଗଗନ ପଥେ ଥାଇଁ । କୃଷ୍ଣଙ୍କୁ ବାଣ ବରଷଇ ।
ଦେଖି ତାହାର ରଥ ଶୂନ୍ୟେ । ଗୋବିନ୍ଦ ତୀକ୍ଷ୍ଣବାଣ ମୁନେ ।
ତାହାର ଶସ୍ତ୍ର କଲେ ନାଶ । ତମ ଯେସନେ ରବିତ୍ରାସ ।
ଚର୍ମ ଖଡ଼୍‌ଗ ଧନୁଦଣ୍ଡ । ତକ୍ଷଣେ କଲେ ଖଣ୍ଡଖଣ୍ଡ ।
ମାୟାର ଶିରୋମଣି ହରି । ଗଦା ପ୍ରହାରେ ରଥ ଚୂରି ।
ଗୋବିନ୍ଦ ହସ୍ତେ ଗଦାବେଗେ । ମାୟା ବିମାନ ଶୂନ୍ୟ ମାର୍ଗେ ।
ଶବଦ ଶୁଭଇ ପ୍ରଚଣ୍ଡ । ଭାଜି ହୋଇଲା ଶତଖଣ୍ଡ ।
ଆକାଶେ ଦେଖନ୍ତି ବିବୁଧେ । ପଡ଼ିଲା ସିନ୍ଧୁଜଳ ମଧ୍ୟେ ।
ବିମାନ ପଡ଼ି ଅନ୍ତରାଳେ । ଶାଲ୍ୱ ମିଳିଲା ମହୀତଳେ ।
ଦକ୍ଷିଣ କରେ ଗଦା ଘେନି । ଧାମନ୍ତେ କମ୍ପଇ ମେଦିନୀ ।
ଦେଖି ଗୋବିନ୍ଦ ଆଗସରି । ଅଭେଦ ବାଣ କରେ ଧରି ।
ଅଦ୍ଭୁତେ ଚକ୍ର କରେ ତୋଳି । ବେଗେ ଧାଇଁଲେ ବନମାଳୀ ।
ଶାଲ୍ୱର ପ୍ରାଣ ନାଶିବାରେ । ସୁଦରଶନ ଧରି କରେ ।

ରବି ରବିର ପ୍ରାୟ ତେଜ । ଶୋହେ ଶ୍ରୀକୃଷ୍ଣ ଦକ୍ଷଭୁଜ ।
ତାହାର ତେଜେ କମ୍ପେ ମହୀ । କି ପଟାନ୍ତର ଦେବି ମୁହିଁ ।
ଉଦୟ ଗିରି ସୂର୍ଯ୍ୟ ଯୋଗେ । ଯେହ୍ନେ ବିରାଜେ ସର୍ବଦିଗେ ।
ଚକ୍ର ପ୍ରହାରେ ଦାମୋଦର । ଦୂରୁ ଛେଦିଲେ ତାର ଶିର ।
ମୁଣ୍ଡ ପଡ଼ିଲା ମହୀତଳେ । ବିରାଜେ କିରୀଟ କୁଣ୍ଡଳେ ।
ବାସବ ବଜ୍ରେ ଛତ୍ର ଯେହ୍ନେ । ହାହା ଶବଦ ପୁରଜନେ ।
ଶାଲ୍ୱ ଜୀବନ ତେଜରାଶି । ତକ୍ଷଣେ କୃଷ୍ଣ ଦେହେ ପଶି ।
ବିଜୁଳି ଯେହ୍ନେ କଳାମେଘେ । ଦେବେ ଦେଖନ୍ତି ଶୂନ୍ୟମାର୍ଗେ ।
ଯେମନ୍ତେ ଶାଲ୍ୱ ନାଶଗଲା । ଅବନୀ ଉଶ୍ୱାସ ହୋଇଲା ।
ତାହାର ସଖା ଦନ୍ତବକ୍ର । ଗୋବିନ୍ଦେ ହୋଇ ରିପୁଚକ୍ର ।
ମିଳିଲା ଗୋବିନ୍ଦ ଅଗ୍ରତ । ହୃଦେ ସୁମରି ଭ୍ରାତୃହତ ।
କହଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରିତ ଭାଗବତ ।
ଭାରା ହରଣେ କୃଷ୍ଣ କଥା । ଶୁଣନ୍ତେ ଖଣ୍ଡେ ଭବବ୍ୟଥା ।

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଦଶମସ୍କନ୍ଧେ ଶାଲ୍ୱ ରାଜାବଧୋ*
*ନାମ ଦ୍ୱଶୀତିତମୋଽଧ୍ୟାୟଃ ।*

## ତ୍ର୍ୟଶୀତିତମ ଅଧ୍ୟାୟ

ବୋଲନ୍ତି ବ୍ୟାସଙ୍କ ନନ୍ଦନ । ରାଜନ ହୁଅ ସାବଧାନ ।
ମଲେ ଯେ ଶାଲ୍ୱ ଶିଶୁପାଳ । ଯୁଦ୍ଧେ ପୌଣ୍ଡ୍ରକ ମହାବଳ ।
ତାହାର ସଖା ଦନ୍ତ ବକ୍ର । କୃଷ୍ଣେ ସାଜିଲା ରିପୁ ଚକ୍ର ।
ସୁହୃଦଧର୍ମ ପରଲୋକେ । ଦେଖାଇ ଯୁଦ୍ଧେ ଗଲେ ଏକେ ।
ଏକ ପାଦାନ୍ତି କୋପକରି । ଦକ୍ଷିଣ ଭୁଜେ ଗଦାଧରି ।
ଧରଣୀ କମ୍ପେ ପାଦଭରେ । ମିଳିଲା କୃଷ୍ଣର ଛାମୁରେ ।
ଦେଖି ତାହାର ମହାକାୟ । ସତ୍ୱରେ ପ୍ରଭୁ ଦେବରାୟ ।
ରଥୁଁ ଓହ୍ଲାଇ ପାଦଗତେ । ଧାଇଁଲେ ଗଦା ଘେନି ହସ୍ତେ ।
ସମୁଦ୍ର ଯେହ୍ନେ ଲଂଘେ ତୀର । କୃଷ୍ଣ ମିଳିଲେ ତା ଛାମୁର ।
କୃଷ୍ଣଙ୍କୁ ଦେଖି ଗଦା ତୋଳି । କୋପେ ବୋଇଲେ ମହାବଳୀ ।
ଆଜ ମୋହର ଭାଗ୍ୟରାଶି, । ତୁ ମୋର ଦୃଷ୍ଟି ପଥେ ଆସି ।
ପଡ଼ିଲୁ ଆଜ ଯିବୁ କାହିଁ । ରେ ଦୁଷ୍ଟ ତୋ ମୁଖ ନଚାହିଁ ।
ମୋର ମାତୁଳ ପୁତ୍ର ତୁହି । ମାଇଲୁ ତୁ ମୋ ମିତ୍ର ଦ୍ରୋହୀ ।
ଧିକ ତୋହର ଶସ୍ତ୍ରଦୀକ୍ଷା । ମୋର ମାରଣେ ତୋର ଇଚ୍ଛା ।
ଯେ ବଜ୍ର ତୁଲ୍ୟ ଗଦାଘାତେ । ଆଜ ପେଷିବି ଯମ ପଥେ ।
ତୋହର ତୁଲେ କରି ରଣ । ଆଜ ଶୁଝିବି ଭ୍ରାତୃଋଣ ।

ତୁ ବନ୍ଧୁ ରିପୁ ମୋ ବଇରୀ । ମୁଁ ଆଜ ରଣେ ତୋତେ ମାରି
ନିଶ୍ଚିନ୍ତେ ହୋଇବି ଆନନ୍ଦ । ବ୍ୟାଧିକି ଯେସନେ ଔଷଧ ॥
ରୋଗ ନଗଲେ ଦେହ ମରେ । ବ୍ୟାଧି ଚିକିତ୍ସା ଯେନ କରେ ॥
ଯେମନ୍ତେ କଟୁବାକ୍ୟ ବୋଲି । ଦକ୍ଷିଣ ହସ୍ତେ ଗଦାତୋଳି ॥
ପିଟିଲା ଗୋବିନ୍ଦର ମୁଣ୍ଡେ । ଘୋର ଶବଦ କରି ତୁଣ୍ଡେ ॥
ଗଦା ପ୍ରହାରେ ରଣ ମଧ୍ୟେ । ଗୋବିନ୍ଦ ନଚଳିଲେ ପାଦେ ॥
ବିଷମ ଗଦାଘାତ ସହି । ତକ୍ଷଣେ ପ୍ରଭୁ ଭାବଗ୍ରାହୀ ॥
କୌମୋଦୀ ଗଦା ଘେନି ବେଗେ । କୋପେ ବୁଲାନ୍ତି ଶୂନ୍ୟମାର୍ଗେ
ହୁଙ୍କାର କରି ବାହୁବଳେ । ପିଟିଲେ ତାର ବକ୍ଷ ସ୍ଥଳେ ॥
ଗଦା ପ୍ରହାରେ ହୃଦ ଫାଟି । ପଡ଼ିଲା ମହୀତଳେ ଲୋଟି ॥
ତୁଣ୍ଡରୁ ଗଳଇ ରୁଧିର । ଜନେ କରନ୍ତେ ହାହାକାର ॥
ପ୍ରସାରି କେଶ ପାଦକର । ରଣେ ପଡ଼ିଲା ମହାବୀର ॥
ତାର ଶରୀରୁ ରଶ୍ମିତେଜ । ଯେହ୍ନେ ଉଦିତ ଗ୍ରହରାଜ ॥
ପଶିଲା କୃଷ୍ଣ ଦେହମଧ୍ୟେ । ଗଗନେ ଦେଖନ୍ତି ବିବୁଧେ ॥
ଯେସନେ ଶିଶୁପାଳ ବଧେ । ଧର୍ମ ନନ୍ଦନ ସଭା ମଧ୍ୟେ ॥
ଦେଖିଣ ଦନ୍ତବକ୍ର ହତ । ତାର ସାନୁଜ ବିଦୁରଥ ॥
ଭ୍ରାତୃ ମରଣେ କୋପେ ତାପି । ରୋଷେ ବଦନ ଓଷ୍ଠ ଚାପି ॥
ଖଡ଼ଗ ଚର୍ମ କରେ ଧରି । କୃଷ୍ଣଙ୍କୁ ସମରେ ଉଭାରି ॥
ନିଷ୍ଠୁର ବାକ୍ୟ କହେ ତୁଣ୍ଡେ । ବଜ୍ର ପ୍ରହାରେ ଯେହ୍ନେ ମୁଣ୍ଡେ
ଦେଖି ତାହାର ବ୍ୟଗ୍ରଗତି । ଚକ୍ର ପେଷିଲେ ଯଦୁପତି ॥
ବେଗେ ଛେଦିଲେ ତା କପାଳ । ବିରାଜେ କିରୀଟ କୁଣ୍ଡଳ ॥
ଶିର ପଡ଼ିଲା ଭୂମିଗତେ । ପ୍ରାଣ ପଶିଲା ଗୋପୀନାଥେ ॥
ଯେମନ୍ତେ ଶାଲ୍ୱ ଶିଶୁପାଳ । ସଂହାରି ମଦନ ଗୋପାଳ ॥
ଦନ୍ତ ବିକଟ ବିଦୂରଥ । କୃଷ୍ଣର ହସ୍ତେ ହୋଇ ହତ ॥
ଦେଖିଲେ ଅଭୟ ଚରଣେ । ଯେ ଅବା ମଲେ କୃଷ୍ଣରଣେ ॥
ମୁନି କହନ୍ତି ଜୟବାଣୀ । ପୁଷ୍ପ ବରଷି ସ୍ତୁତି ଭଣି ॥
ଦୁନ୍ଦୁଭି ବାଜେ ସୁରଲୋକେ । ନାରୀ ନାଚନ୍ତି କଉତୁକେ ॥
ଯକ୍ଷ କିନ୍ନର ବିଦ୍ୟାଧରେ । ଗନ୍ଧର୍ବ ଗାବନ୍ତି ସୁସ୍ୱରେ ॥
କୃଷ୍ଣ ବିଜୟ କଉତୁକ । ଆନନ୍ଦ ସୁର ନର ଲୋକ ॥
ଯାଦବ ବଳ ସଙ୍ଗେ ହରି । ପ୍ରବେଶ ଦ୍ୱାରାବତୀ ପୁରୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ଦଶମସ୍କନ୍ଧେ ଦନ୍ତବକ୍ର ବିଦୂରଥବଧେ ନାମ ତ୍ର୍ୟଶୀତିତମୋଽଧ୍ୟାୟଃ ।*

## ଚତୁରଶୀତିତମ ଅଧ୍ୟାୟ

ଶୁଣ ହୋ ଅଭିମନ୍ୟୁ ସୁତ । କୃଷ୍ଣ ମହିମା ଭାଗବତ ॥
ଯେମନ୍ତେ ପ୍ରଭୁ ନରହରି । ମନୁଷ୍ୟ ରୂପେ ଅବତରି ॥
ସ୍ୱଭାବେ ମାୟା ଅପ୍ରମିତ । ତେଣୁ ସେ ବୋଲାଇ ଅନନ୍ତ ॥
ତାହାଙ୍କୁ ପୀଡ଼ନ୍ତେ ଅସୁରେ । ବିନାଶ ହୁଅନ୍ତି ସମରେ ॥
ଯେ ପଶୁ ଦୁଷ୍ଟଙ୍କର ମତ । ଯେ ପୁଣି ନୁହେଁ ପରମାର୍ଥ ॥
ଯେବେ ହୋ ଶୁଣ ନୃପମଣି । ଦ୍ୱାରକାପୁରେ ହଳପାଣି ॥
କୁରୁ ପାଣ୍ଡବ ଘୋର ତମ । ଶୁଣିଲେ ଯୁଦ୍ଧର ଉଦ୍ୟମ ॥
ମଧ୍ୟସ୍ଥ ପଣେ ହଳପତି । ଜମିଲେ ତୀର୍ଥ କାର୍ଯ୍ୟମତି ॥
ସ୍ନାନ ସାରି ସେ ରାମହ୍ରଦେ । ଦେବତା ପିତୃଙ୍କ ଆନନ୍ଦେ ॥
ଜଳ ତର୍ପଣେ ତୋଷିମନ । ବ୍ରାହ୍ମଣେ ଦେଲେ ମହାଦାନ ॥
ବସନ୍ତି ସରସ୍ୱତୀ ତୀରେ । ସଙ୍ଗେ ସ୍ୱଜନ ବିପ୍ରବରେ ॥
ପୃଥୁ ଉଦକ ବିନ୍ଦୁସର । ଯେ ବେନି ତୀର୍ଥେ ହଳଧର ॥
ପିତୃ ଦେବତା ବିପ୍ରେ ପୂଜି । ଅତିଥି ଜନେ ଭାବେ ଭଜି ॥
ସୁଦରଶନ ସୁବିଶାଳ । ଯେ ବେନି ତୀର୍ଥେ କାମପାଳ
ଆନନ୍ଦେ ସାରି ନିତ୍ୟକର୍ମ । ବ୍ରହ୍ମାର ତୀର୍ଥେ ଆଗମନ ॥
ପୁଣି ଚଳିଲେ ଚକ୍ରତୀର୍ଥେ । ସୁପ୍ରାଚୀ ସରସ୍ୱତୀ ପଥେ ॥
ଯମୁନା ସ୍ନାନ ସାରି ଧୀରେ । ପୁଣି ମିଳିଲେ ଗଙ୍ଗାତୀରେ ॥
ତହୁଁ ଚଳିଲେ ଶୁଦ୍ଧ ମନେ । ମିଳିଲେ ନୈମିଷ ଅରଣ୍ୟେ ॥
ଷଷ୍ଟି ସହସ୍ର ବ୍ରହ୍ମଋଷି । ତପ କରନ୍ତି ଯଜ୍ଞେ ବସି ॥
ରାମଙ୍କୁ ମୁନିଜନେ ଦେଖି । ତକ୍ଷଣେ ଆସନ ଉପେକ୍ଷି ॥
ପାଛୋଟି ଯାଇ କିଛି ଦୂରେ । ପୂଜିଲେ ଅତିଥି ବେଭାରେ ॥
ଆଦରେ ଆସି ତୋଷମନେ । ରାମଙ୍କୁ ବସାଇ ଆସନେ ॥
ସ୍ତୁତି କରନ୍ତି ମୁନିଗଣ । ଯେମନ୍ତେ ରୋମ ହରଷଣ ॥
ବ୍ୟାସଙ୍କ ଶିଷ୍ୟ ସେ ଯୁକତେ । ଆସନେ ରାମଙ୍କ ଅଗ୍ରତେ ॥
ବସି କହନ୍ତି କୃଷ୍ଣକଥା । ଦେଖି ପାଇଲେ ରାମବ୍ୟଥା ॥
ମନେ ଭାବନ୍ତି କୋପଚିତ୍ତେ । ଯେତ ଅବଜ୍ଞା କଲାମୋତେ ॥
ଯେ ଶୂଦ୍ର ହୋଇ ବିପ୍ର ମଧ୍ୟେ । ଧର୍ମାଦି ଶିକ୍ଷା ଅନୁବାଦେ ॥
ଗୁରୁଙ୍କ ପ୍ରାୟ ଗର୍ବ କଲା । ମୋତେ ଆସନ ନ ତେଜିଲା ॥
କେମନ୍ତେ ଧର୍ମ ବିପ୍ରଜନେ । କହେ ଅନୁବାଦ ବଚନେ ॥
ଯେ ବଡ଼ ମୋତେ ବିପରୀତ । ସ୍ୱଭାବେ ଅନୁଲୋମେ ଜାତ ॥
ଯେଣୁ ଯେ ବ୍ୟାସଙ୍କର ଶିଷ୍ୟ । ଜାଣଇ ଯେ ଭୂତ ଭବିଷ୍ୟ ॥
ପୁରାଣ ଇତିହାସ ଆଦି । ଯେ ସର୍ବ ଧର୍ମଶାସ୍ତ୍ରବାଦୀ ॥
କେବଳ ଆତ୍ମାକୁ ନ ଜାଣେ । ତପ ବିଦିତ ପରିମାଣେ ॥

ତମ୍ଭେ ଯେ ପଣ୍ଡିତ ବୋଲାଇ । ମୋତେ ନଜାଣେ ଗର୍ବବହି ॥
ନଷ୍ଟ ଦାମ୍ଭିକ ଦୁରାଚାର । ସ୍ୱଭାବେ ଗର୍ବ ଯେହାଙ୍କର ॥
ଯେହାଙ୍କ ଧର୍ମ ବିଦ୍ୟା ଯେତେ । ନିଶ୍ଚେଁ ନୁହନ୍ତି ପରମାର୍ଥେ ॥
ମୋ ଅବତାର ଯେ ଜଗତେ । ଯେହାଙ୍କୁ ଦଣ୍ଡିବାର ଅର୍ଥେ ॥
ଯେମନ୍ତେ ହୃଦୟେ ବିଚାରି । ଅତ୍ୟନ୍ତ ଦ୍ୱନ୍ଦ୍ୱ ମନେଧରି ॥
ଯେ ରାମ ଆତ୍ମଗୁଣେ ରତ । ବିଧାତା ଫଳ ବିପରୀତ ॥
ହସ୍ତେ ଯେ ଥିଲା କୁଶ ମୁଷ୍ଟି । ତାମସ ଗୁଣେ କୋପଦୃଷ୍ଟି ॥
କୁଶାଗ୍ରେ ଘେନି ଗୁରୁ କୋପେ । ମିଳିଲେ ତାହାଙ୍କ ସମୀପେ ॥
ଶିର ଛେଦିଲେ କୋପମନେ । ହାହା ଶବଦ ବିପ୍ରଜନେ ॥
ଶଙ୍କରଷଣ ମୁଖ ଚାହିଁ । ବୋଲନ୍ତି ଶିରେ କର ଦେଇ ॥
ଭୋନାଥ ଜଗତ କାରଣ । ଯେ ବଡ଼ ଅଧର୍ମ କରଣ ॥
ଆଗମ ନିଗମ ଯେ ବାଦ । ପ୍ରତ୍ୟକ୍ଷ କଲ ବ୍ରହ୍ମ ବଧ ॥
ଭୋ ନାଥ ମହାଯଜ୍ଞ ଅର୍ଥେ । ଯେହାଙ୍କୁ ଅଣାଇ ସମସ୍ତେ ॥
ବ୍ରହ୍ମା ଆସନେ ବସାଇଲୁ । ବଳ ଆୟୁଷ ବିସ୍ତାରିଲୁ ॥
ସ୍ଥାପିଲୁ କରି ଅଭିମତ । ଯାବତ ଯଜ୍ଞ ସମାପତ ॥
ତୁ ଯେବେ କଲୁ ଯେଡ଼େ କର୍ମ । ଯେତ ଆଚାରେ ମତିଭ୍ରମ ॥
ତୁ ଯୋଗେଶ୍ୱର ଭଗବାନ । ପାଳୁ ତୁ ନିଗମ ବଚନ ॥
ଲୋକ ଗହଣେ ତୁମ୍ଭେ କର । ଯେ ବ୍ରହ୍ମ ବଧ ପ୍ରତିକାର ॥
ଶୁଣି ଚକିତ ହଳଧର । ବୋଲନ୍ତି ଯୋଡ଼ି ବେନି କର ॥
ନମସ୍ତେ ବ୍ରହ୍ମ ଋଷିଗଣ । କହ ଯେ ତରିବା କାରଣ ॥
ଲୋକ ଗହଣେ ଯଥାବିଧି । ପ୍ରଥମେ କଲ ଯେ ପ୍ରସିଦ୍ଧି ॥
କହ କି କରିବି ଉପାୟ । ଯେମନ୍ତେ ହତ୍ୟା ଯିବ କ୍ଷୟ ॥
ମୁଁ ପୁଣି ତୁମ୍ଭ ଯଜ୍ଞ ଅର୍ଥେ । ସାଧିବି ନିଜ ଯୋଗ ମତେ ॥
ଯେହାଙ୍କୁ ଜୀଆଇବି ମୁହିଁ । ବଳ ଐଶ୍ୱର୍ଯ୍ୟ ବୁଦ୍ଧି ଦେଇ ॥
ସ୍ଥାପିବି ଯେ ମୋହର ସତ୍ୟ । ଯାବତ ଯଜ୍ଞ ସମାପତ ॥
ଯେମନ୍ତ ରାମବାକ୍ୟ ଶୁଣି । ବିପ୍ରେ ବୋଲନ୍ତି ମନେ ଗୁଣି ॥
ଭୋ ନାଥ ଶୁଣ ହଳଧର । ଯେ ସତ୍ୟ ବଚନ ତୋହର ॥
ମରଣେ ନୋହିବ ଏ ଗ୍ରସ୍ତ । ଆମ୍ଭର ବଚନ ଯେମନ୍ତ ॥
ଯଜ୍ଞେ ଯେଥିବ ଆମ୍ଭମାନେ । ଧର୍ମ ସଂଶୟ ଗ୍ରସ୍ତକାଳେ ॥
ବିପ୍ରଙ୍କ ବାକ୍ୟ ସାଧୁବାଣୀ । ରାମ ବୋଲନ୍ତି ତାହାଶୁଣି ॥
ଆତ୍ମାରୁ ଆତ୍ମା ଯେ ସମ୍ଭବ । ଯେ ବେଦ ବାକ୍ୟ ଅନୁଭବ ॥
ଯେହାର ପୁତ୍ରକୁ ବସାଇ । ବଳ ଆୟୁଷ ଜ୍ଞାନ ଦେଇ ॥
ପିତାହୁଁ ହୋଇ ପୁଣ୍ୟକାର । ଯେମନ୍ତ କହି ହଳଧର ॥
ତାର ପିତାକୁ ସାବଧାନେ । ବସାଇ ବ୍ରହ୍ମାର ଆସନେ ॥
ବୋଇଲେ ହୁଅ ଜ୍ଞାନନିଧି । ତାତୁଁ ଅଧିକ ହୋଉ ବୁଦ୍ଧି ॥
ଯେମନ୍ତେ ସ୍ଥାପି ତାର ସୁତ । ବୋଲନ୍ତି ରେବତୀର କାନ୍ତ ॥
ଯେବେ କରିବା କିସ କହ । ବିଚାରି ମୋତେ ଆଜ୍ଞା ଦିଅ ॥
ଶୁଣି ସାନନ୍ଦେ ମୁନିଗଣ । ବୋଲନ୍ତି ଶୁଣ ଶଙ୍କର୍ଷଣ ॥
ଇଲ୍ୱକ ନାମେ ମହାସୁର । ବେଲାଳ ତାହାର କୁମର ॥
ନିତ୍ୟେ ପାର୍ବଣ ଯୋଗେ ଆସେ । ଆମ୍ଭର ଯଜ୍ଞ କର୍ମନାଶେ ॥
ସେ ଦୁରାଚାର ନାଶ ଗଲେ । ଯଜ୍ଞ କରିବୁ ଆମ୍ଭେ ଭଲେ ॥
ଶଶୀ ପ୍ରଳୟ ନିଶି ଜାଣି । ତିଥି ଦିବସ ଥାଇଁ ଗଣି ॥
ରାତ୍ରେ ମିଳଇ ଯଜ୍ଞଶାଳେ । ରାକ୍ଷସ ମହାଯୋଗ ବଳେ ॥
ପୂୟ ଶୋଣିତ ମଳ ମୂତ୍ର । ନିକ୍ଷେପ କରେ ଅପ୍ରମିତ ॥
ତାହାର ପ୍ରାଣ କଲେ ହତ । ଆମ୍ଭଙ୍କୁ କରିବ ନିଶ୍ଚିନ୍ତ ॥
ଭାରତଭୂମି ଯେତେ ପୁରୀ । ତାହା ତୁ ପ୍ରଦକ୍ଷିଣ କରି ॥
ଯେମନ୍ତେ ଦ୍ୱାଦଶ ବରଷ । ଭ୍ରମିବ ପୁର ଗ୍ରାମ ଦେଶ ॥
ଯେମନ୍ତେ ହତ୍ୟା ଯିବନାଶ । ନିର୍ମଳେ ନିଜପୁରେ ଆସ ॥
ଅସୁର ଆଗମନ ଚାହିଁ । ଯଜ୍ଞେ ରହିଲେ ତୋଷହୋଇ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ବଳଭଦ୍ର ବ୍ରହ୍ମହତ୍ୟା ବିଷାଦେ ନାମ ଚତୁରଶୀତିତମୋଽଧ୍ୟାୟଃ ।*

## ପଞ୍ଚାଶୀତମ ଅଧ୍ୟାୟ

ଶୁକ କହନ୍ତି ରାଜା ଆଗେ । ଅସୁର ମିଳି ଯଜ୍ଞ ଭାଗେ ॥
ଶଶୀ ତପନ ସଙ୍ଗେ ମେଳେ । ଚଣ୍ଡ ଶବଦ ରାତ୍ରି କାଳେ ॥
ଧୂଳି ପୂରିଲା ଦଶ ଦିଶେ । କୁତ୍ସିତ ପୂତି ଗନ୍ଧ ବାସେ ॥
ବେଲାଳ ବୀର ମହାରୋଷେ । ଆତ୍ମାଦି ଅମେଧ ବରଷେ ॥
ଯଜ୍ଞ ନାଶନେ ମହାବୀର । ମାୟା ପ୍ରକାଶେ ଅନ୍ଧକାର ॥
ଭୟେ ଚାହାନ୍ତି ବ୍ରହ୍ମମୁନି । ମିଳିଲା ହସ୍ତେ ଶୂଳଘେନି ॥
ଘୋର ପ୍ରଚଣ୍ଡ ମୟାକାୟେ । ଓଷ୍ଠ କାମୁଡ଼ି ରୋଷେ ଧାଏଁ ॥
ଅଞ୍ଜନ ଖଣ୍ଡ ପ୍ରାୟେ ଦିଶେ । ତାର ବଦନ ଚାରି ପାଶେ ॥
ତପତ ତମ୍ବା ପ୍ରାୟ ଦାଢ଼ି । ବଦନ ଶୁଭେ ଘୋରରଡ଼ି ॥
ବିକଟ ଦନ୍ତ ଦାଢ଼ି ମୁଖେ । ଭ୍ରୂକୁଟି କୁଟିଳ ସୁରେଖେ ॥
ଦେଖି ତାହାର ଦୁଷ୍ଟମତି । ହଳ ମୂଷଳ ହଳପତି ॥
ହସ୍ତ ପାତିଲେ ଶୂନ୍ୟମାର୍ଗେ । ହଳ ମିଳିଲା ଆସି ବେଗେ ॥
ଘୋର ଦାନବ ନିବାରଣ । ମୂଷଳ ମିଳିଲା ତକ୍ଷଣ ॥

ଗଗନେ ଦେଖି ତା ଶରୀର । ଲଙ୍ଗଳ ଅଗ୍ରେ ନୀଳାମ୍ବର ॥
ଆକର୍ଷୀ ଆଣି ଯଜ୍ଞକୁଣ୍ଡେ । ମୂଷଳ ପ୍ରହାରିଲେ ମୁଣ୍ଡେ ॥
ତକ୍ଷଣେ ହୋଇ ଶତେଖଣ୍ଡ । ତଳେ ପଡ଼ିଲା ମୃତ ପିଣ୍ଡ ॥
ରୁଧିର ଗଳେ ତା ବଦନେ । ପ୍ରାଣ ଛାଡ଼ିଲା ଘୋର ସ୍ୱନେ ॥
ବାସବ ବଜ୍ରେ ଯେହ୍ନେ ଗିରି । ଶବଦ ଦଶଦିଗେ ପୂରି ॥
ଅବନୀ ହୋଇଲା ଉଶ୍ୱାସ । ବ୍ରାହ୍ମଣ ମିଳି ରାମ ପାଶ ॥
ଆଶିଷ କରନ୍ତି ଆନନ୍ଦେ । ନିଗମ ବାକ୍ୟ ଅନୁବାଦେ ॥
ପୁଷ୍ପ ବରଷି ସ୍ତୁତି ଭଣି । ସୁନ୍ଦର ଦିଶଇ ଧରଣୀ ॥
ରାମ ପୂଜିଲେ ମହାଜନେ । ପୁତ୍ର ବିନାଶେ ଇନ୍ଦ୍ର ଯେହ୍ନେ ॥
ନାନା କୁସୁମ ପରିମଳ । ହୃଦେ ନିବେଶି ପୁଷ୍ପମାଳ ॥
ନୀଳ ଦୁକୂଳ ରତ୍ନମଣି । ପୂଜିଲେ ଅଳଙ୍କାର ଘେନି ॥
ଗଙ୍ଗା ଯମୁନାର ସଙ୍ଗମେ । ପ୍ରୟାଗ ଜଳେ ଶୁଦ୍ଧ ମନେ ॥
ରାମ ସାରିଲେ ନିତ୍ୟ କର୍ମ । ପିତୃ ଦେବଙ୍କୁ ଜଳ ଧର୍ମ ॥
ପୁଣ୍ୟ ଆଶ୍ରମେ ତହୁଁଗଲେ । ବ୍ରହ୍ମ ଋଷିଙ୍କ ସଙ୍ଗ ମେଳେ ॥
ବ୍ରାହ୍ମଣେ କରି ଅନୁଦାନ । ହରଷ ରୋହିଣୀ ନନ୍ଦନ ॥
ସ୍ନାନ ସାରିଲେ ବିପ୍ରମେଳେ । ପିତୃ ଦେବତା ତୋଷିଜଳେ ॥
ସରଯୂ ଅନୁବ୍ରତେ ଚଳି । ବେଣୀ ପ୍ରୟାଗେ ଯାଇ ମିଳି ॥
ମିଳିଲେ ମହେନ୍ଦ୍ର ଅଚଳେ । ତହିଁ ଭେଟିଲେ ଭୃଗୁବାଳେ ॥
ଯେ ଯୋଗୀ ଜନେ ଶୁଦ୍ଧଧାମ । ପ୍ରେମାଙ୍ଗ ଆଲିଙ୍ଗନେ ରାମ ॥
ତାହାକୁ କରି ନମସ୍କାର । ଗମନ କଲେ ହଳଧର ॥
ବ୍ୟଙ୍କଟନାଥ ଦରଶନ । ଆନନ୍ଦେ ରୋହିଣୀ ନନ୍ଦନ ॥
ତହୁଁ ଚଳିଲେ ତପୋନ୍ନଷୀ । ପୁଣି ମିଳିଲେ କାସକୃଟି ॥
କାଞ୍ଚି କାବେରୀ ତହୁଁ ଗଲେ । ଯୋଗୀଜନଙ୍କ ସଙ୍ଗମେଳେ ॥
ଶ୍ରୀରଙ୍ଗ ତୀର୍ଥ ତହୁଁ କରି । ନିତ୍ୟ ସନ୍ଧାନ ଯହୁଁ ହରି ॥
ଋଷଭଗିରି ବିଷ୍ଣୁସ୍ଥାନ । ତହୁଁ ଚଳିଲେ ମଧୁବନ ॥
ଦକ୍ଷିଣ ପଦେ ଅପ୍ରମାଦେ । ରାମ ଗମିଲେ ସେତୁବନ୍ଧେ ॥
ଦୁରିତ ଦହେ ଦରଶନେ । ଶ୍ରୀରାମ ପୂଜି ତୋଷମନେ ॥
ରଘୁନାଥଙ୍କ ପ୍ରୀତି ଅର୍ଥେ । ଧେନୁ ଉତ୍ସର୍ଗିଲେ ଅୟୁତେ ॥
ତହୁଁ ଆନନ୍ଦେ କାମପାଳ । ମିଳିଲେ ପୂର୍ଣ୍ଣାକୃତି ମାଳ ॥
ତହୁଁ ଚଳିଲେ ତାମ୍ର ପର୍ଣ୍ଣୀ । ସଙ୍ଗେ ଅନେକ ବିପ୍ର ଘେନି ॥
ମଳୟ କୁଳାଞ୍ଚଳ ଦେଶେ । ମିଳି ଅଗସ୍ତି ମୁନି ପାଶେ ॥
ଚରଣେ କରି ନମସ୍କାର । ଆଶିଷ ଘେନି ତାହାଙ୍କର ॥
ଦକ୍ଷିଣ ସିନ୍ଧୁ ତୀରେ ମିଳି । ରାମ ଦେଖିଲେ ଭଦ୍ରକାଳୀ ॥
ଦୁର୍ଗା ନିକଟେ କୁମ୍ଭମାସେ । ରାମ ରହିଲେ ମନତୋଷେ ॥
ଉତ୍ତମ ପଞ୍ଚ ହ୍ରଦସର । ତହିଁ ମିଳିଲେ ହଳଧର ॥
ଯହିଁ ଗୋବିନ୍ଦ ସନ୍ନିହିତ । ତହିଁ ଉତ୍ସର୍ଗି ଧେନୁଶତ ॥
ତହୁଁ ଆନନ୍ଦେ ବଳରାମ । କେରଳ ନଗ୍ରରେ ଆଗମ ॥
ଅଗ୍ନି କଣେକ ଲିଙ୍ଗ ଦେଖି । ପୁଣି ଭେଟିଲେ ଜ୍ୱାଳାମୁଖୀ ॥
ଗୋକର୍ଣ୍ଣ ତୀର୍ଥେ ମହାସ୍ଥାନେ । ଯହିଁ ଧୂର୍ଜଟୀ ସନ୍ନିଧାନେ ॥
ତହୁଁ ଭେଟିଲେ ବାର୍ଯ୍ୟାଦେବୀ । ବ୍ୟାସ ନନ୍ଦନ ପାଦସେବି ॥
ତହୁଁ ଗମନ ପୂର୍ବ ମୁଖେ । ମିଳିଲେ ତୀର୍ଥ ପିଣ୍ଡାଅର୍କେ ॥
ଅଗ୍ନି ଗାୟତ୍ରୀ ବିଧାଷ୍ଟମୀ ।. ଯଜ୍ଞ କରିଣ ପୁଣ୍ୟ ଭୂମି ॥
ତହୁଁ ଗମନ ରେବା ତୀରେ । ପ୍ରବେଶ ମହେଶ୍ୱରୀ ପୁରେ ॥
ସ୍ନାହାନ ସାରି ଧେନୁ ତୀର୍ଥେ । ଧେନୁ ଉତ୍ସର୍ଗି ଶିବ ଅର୍ଥେ ॥
ସନ୍ତୋଷେ ରୋହିଣୀ ନନ୍ଦନ । ପୁଣି ପ୍ରଭାସେ ଆଗମନ ॥
ବନ୍ଦିଲେ ବିପ୍ରଙ୍କ ଚରଣ । ଶୁକ ବୋଲନ୍ତି ରାୟେଶୁଣ ॥
କୁରୁ ପାଣ୍ଡବ ଯୁଦ୍ଧବାଣୀ । ବିପ୍ରଙ୍କ ମୁଖୁ ରାମ ଶୁଣି ॥
ଅନେକ ରାଜା ଗଲେ ନାଶ । ବଳ କ୍ଷଉଣି ଅଷ୍ଟାଦଶ ॥
ଶୁଣି ସାନନ୍ଦେ ହଳଧର । ବୋଇଲେ ଗଲା ଭୂମିଭାର ॥
ସୁଜନେ ନାହିଁ ଦୁଷ୍ଟବାଧା । ସଂଗ୍ରାମେ ହସ୍ତେ ଧରିଗଦା ॥
ସେ ଯେ ଯୁଝନ୍ତି ବେନିଜନ । ଦୁର୍ଜ୍ଜୟ ଭୀମ ଦୁର୍ଯ୍ୟୋଧନ ॥
ବିଷମ ଶୁଣି ଗଦା ଯୁଦ୍ଧେ । ରାମ ମିଳିଲେ ରଣ ମଧ୍ୟେ ॥
ରାମଙ୍କୁ ଦେଖି ଧର୍ମ ସୁତ । ସଙ୍ଗେ ଅଛନ୍ତି ତିନିଭ୍ରାତ ॥
କୃଷ୍ଣ ଅଛନ୍ତି ତାଙ୍କ ମେଳେ । ତା ଦେଖି ରାମ ସୁଖଭୋଳେ ॥
କୃଷ୍ଣଙ୍କୁ ଆଲିଙ୍ଗନ କରି । ଧର୍ମ ନନ୍ଦନ କରେ ଧରି ॥
ଗୋବିନ୍ଦ ରାମ ପାଦେ ନମି । କିଛି ନବୋଲି ହେଲେ ତୁନି ॥
ରାମ ଚାହିଁଲେ ବେନି ବୀର । ଗଦା ସଂଗ୍ରାମେ ମହାଘୋର ॥
ବାରିବା ଅର୍ଥେ ବିଚାରିଲେ । ଜାଣି ଗୋବିନ୍ଦ ମାୟାକଲେ ॥
ଦେଖି ମଣ୍ଡଳ ଗଦା ଗତି । ବୋଲନ୍ତି ରେବତୀର ପତି ॥
ଶୁଣ ହେ ଭୀମ ଦୁର୍ଯ୍ୟୋଧନ । ଗଦା ସମରେ ତୁମ୍ଭେ ସମ ॥
ଉତ୍ତମ ଶିକ୍ଷା ଦୁର୍ଯ୍ୟୋଧନ । ବଳେ ଅଧିକ ଭୀମ ସେନ ॥
ଯେଣେ ସଂଗ୍ରାମେ ଫଳନାହିଁ । ସଂଗ୍ରାମ ଛାଡ଼ ତୁମ୍ଭେ ଦୁଇ ॥
ଗଦା ପ୍ରହାରେ ଦୃଢ଼ ମତି । ରାମର ବାକ୍ୟ ନ ଶୁଣନ୍ତି ॥
ବଧ ବଇରୀ ସୁମରନ୍ତି । ଘୋର ଶବଦେ ପ୍ରହାରନ୍ତି ॥
ରାମ ଦେଖିଲେ ତାଙ୍କ ମତି । ଆନନ୍ଦେ ଗଲେ ଦ୍ୱାରାବତୀ ॥
ନମିଲେ ରୋହିଣୀ ନନ୍ଦନ । ଦେଖି ଆନନ୍ଦ ଉଗ୍ରସେନ ॥
ବନ୍ଧୁବାନ୍ଧବ ପୁତ୍ରବଳ । କରନ୍ତି ଜଣେ ଜଣେ କୋଳ ॥
ଯେମନ୍ତେ ରହି ଦିନାକେତେ । ମିଳିଲେ ନଇମିଷ ତୀର୍ଥେ ॥

ଯଜ୍ଞେ ଯେ ଥିଲେ ମୁନି ଜନେ । ତକ୍ଷଣେ ରାମର ବଚନେ ॥
ରାମଙ୍କୁ କରାଇଲେ ଯଜ୍ଞ । ନିବୃତ୍ତି କ୍ରିୟା ଅନୁରାଗ ॥
ସନ୍ତୋଷେ ରୋହିଣୀ ନନ୍ଦନ । ମୁନିଙ୍କୁ ଦେଲେ ଦିବ୍ୟଜ୍ଞାନ ॥
ଯାହାର ମାୟା ବଳେ ବଶ । ରବିର ପ୍ରାୟ ଦୃଶା ଦୃଶ ॥
ସଙ୍ଗତେ ଘେନି ନିଜ ନାରୀ । ଯେ ଅପଭୃଥେ ସ୍ନାନ କରି ॥
ସହୃଦ ବନ୍ଧୁ ସଙ୍ଗେ ଥାଇ । ଶଶାଙ୍କ ପ୍ରାୟେ ବିରାଜଇ ॥
ଯେ ଆଦି ଯେତେ କର୍ମଗୁଣ । ରାଜନ ଯେକ ମନେ ଶୁଣ ॥
ମାୟା ମନୁଷ୍ୟ ଅବତାର । କେ କହୁ ମହିମା ତାହାର ॥
ଯେ ରାମ କର୍ମ ଯେ ଶୁଣନ୍ତି । ମାୟା ଗହନେ ନ ପଡ଼ନ୍ତି ॥
ଉଭୟ ସନ୍ଧ୍ୟାକାଳେ ଶୁଣି । ବିଷ୍ଣୁ ସେବକ ଯେତେ ପ୍ରାଣୀ ॥
ଲଭନ୍ତି ବିଷ୍ଣୁର ସଙ୍ଗତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ବଳଦେବ ତୀର୍ଥଯାତ୍ରା ଗମନେ ନାମ ପଞ୍ଚଶୀତିତମୋଽଧ୍ୟାୟଃ ।*

## ଷଡ଼ଶୀତମ ଅଧ୍ୟାୟ

### ରାଜା ଉବାଚ

ଶୁକ ଚରଣେ ଦେଇକର । ବୋଲେ ପରୀକ୍ଷ ନୃପବର ॥
ଭୋମୁନି ଆନନ୍ଦ ଚରିତ । ଶୁଣି ମୁଁ ହୋଇଲି କୃତାର୍ଥ ॥
ମହତ ମୁକୁନ୍ଦର ବାଣୀ । ଆତ୍ମା ପବିତ୍ର ହେଲା ଶୁଣି ॥
ଅପରେ କର୍ମ କଲେ ଯେତେ । ଅନନ୍ତ ବଳ ଅପ୍ରମିତେ ॥
ମାୟା ମନୁଷ୍ୟ ରୂପଧରି । ଦେବ ଅଦ୍ଭୁତ କର୍ମ କରି ॥
ଅଧର୍ମ ନାଶି ଧର୍ମ ରକ୍ଷା । ସୁଯଶ ସ୍ଥାପି ଗୁରୁଦୀକ୍ଷା ॥
ହରିଲେ ଧରଣୀର ଭାର । ବ୍ରହ୍ମାଶଙ୍କରେ ଅଗୋଚର ॥
ଆବର କର୍ମ କଲେ ଯେତେ । ଭୋମୁନି କହ ଦୟା ଚିତ୍ତେ ॥
କର୍ମ ସଂକଳ୍ପ ମୂଢ଼ମନ । ବିଷ୍ଣୁ ମାୟାରେ ହୋଇ ଛନ୍ନ ॥
ଯନ୍ତ୍ରିତ ହୋଇ ମାୟାପାଶ । ଦୁର୍ଲ୍ଲଭ କର୍ମ କରେ ନାଶ ॥
କୃଷ୍ଣର ଗୁଣ ଶୁଦ୍ଧମନେ । ନିରତେ ଗୁଣେ ଯେ ବଦନେ ।
ତାହାକୁ ବୋଲି ବାକ୍ୟସାର । ଅନ୍ୟ ପ୍ରଳାପେ ଅନ୍ଧକାର ॥
ଯେ ହସ୍ତେ କରେ ବିଷ୍ଣୁକର୍ମ । ତାହାକୁ ବୋଲି ହସ୍ତଧର୍ମ ॥
ସ୍ଥିର ଜଙ୍ଗମ ମଧ୍ୟେ ହରି । ଅନ୍ତର ବାହ୍ୟ ଅଛି ପୂରି ॥
ଯେ କରେ ଯେକ ଭାବେ କର୍ମ । ତାହାକୁ ବୋଲି ଶୁଦ୍ଧମନ ॥
କୃଷ୍ଣର ଗୁଣକର୍ମ ବାଣୀ । ଯେ କର୍ଣ୍ଣ ନିରନ୍ତରେ ଶୁଣି ॥
ତାହାକୁ କର୍ଣ୍ଣବୋଲି ଲେଖି । ଅନ୍ୟଥା ଭୂମିବିଳେ ଦେଖି ॥
ସ୍ଥାବର ଆଦି ଯେତେ ଦେହୀ । ତାହାଙ୍କ ମଧ୍ୟେ ବିଷ୍ଣୁଥାଇ ॥
ଯେ ଜାଣଇ କରେ ନମସ୍କାର । ନିଶ୍ଚେ ତାହାକୁ ବୋଲି ଶିର ॥
କୃଷ୍ଣର ରୂପ ଯେ ଲୋଚନ । ନିରତେ କରେ ଦରଶନ ॥
ସେ ଚକ୍ଷୁ ଚକ୍ଷୁରେ ଯେ ଲେଖା । ଅନ୍ୟଥା ମୟୂର ଚନ୍ଦ୍ରିକା ॥
ବିଷ୍ଣୁ ସେବକ ଯେତେ ଲୋକ । ତାହାଙ୍କ ଚରଣ ଉଦକ ॥
ଯାହାର ଶିରେ ସେ ଲାଗଇ । ସେ ପ୍ରାଣୀ ଧନ୍ୟ ପୁଣ୍ୟ ଦେହୀ ॥
ଯେମନ୍ତ ଶୁଣି ରାଜା ମୁଖେ । ଶୁକ ଲୋଚନ ବୁଝି ସୁଖେ ॥
କୃଷ୍ଣ ଚରଣେ ମନଦେଇ । କହନ୍ତି ରାଜା ମୁଖ ଚାହିଁ ॥

### ଶ୍ରୀ ଶୁକ ଉବାଚ

ଶୁଣ ହେ ଅଭିମନ୍ୟୁ ବଳା । ପୂର୍ବେ ଦରିଦ୍ର ବିପ୍ରଥିଲା ॥
ବିଦ୍ୟା ପଠନେ ଗୁରୁଘରେ । ଗୋବିନ୍ଦ ଅବନ୍ତୀ ନଗରେ ॥
ତାହାର ସଙ୍ଗେ ହେଲେ ମିତ୍ର । ଯେକଥା ଇହଲୋକେ ଚିତ୍ର ॥
ସେ ବିପ୍ର ବେଦନାଦ ମଧ୍ୟେ । ଉତ୍ତମ ଇନ୍ଦ୍ରିଗଣ ସାଧେ ॥
ଗୃହସ୍ଥ ଆଶ୍ରମେ ବସାଇ । ସ୍ୱଧର୍ମେ ଯେତେ ଲାଭପାଇ ॥
ସେ ଧନେ ପୋଷଇ ଜୀବନ । ନିରତେ କୃଷ୍ଣ ପାଦେ ଧ୍ୟାନ ॥
କୁତ୍ସିତ ବସ୍ତ୍ର ପରିଧାନ । ନିରତେ କ୍ଷୁଧାନଳେ ଛନ୍ନ ॥
ତାର କମିନୀ ପତିବ୍ରତା । ନିରତେ ସ୍ୱାମୀପଦେ ଚିନ୍ତା ॥
ଯେମନ୍ତେ ମହାଦୁଃଖ ସହି । ବୋଲେ ଦରିଦ୍ର ମୁଖ ଚାହିଁ ॥
ଭୋନାଥ ସଂସାରର ସାର । ଦୁର୍ଲ୍ଲଭ ମନୁଷ୍ୟ ଶରୀର ॥
ପୂର୍ବେ ସଞ୍ଚିଲା କର୍ମକାହିଁ । ଦରିଦ୍ର ପଣେ ଦେହ ବହି ॥
ଆହାରେ ହୋଇଲି ନିରାଶ । ଧିକ ଆମ୍ଭର ଗୃହବାସ ।
ପୂର୍ବେ ନଦେଇ ବିପ୍ର ହସ୍ତେ । ଯେବେ ପାଇଲୁ କେଉଁମତେ ।
ଦାରିଦ୍ର୍ୟେ ବଞ୍ଚିଲୁ ଜୀବନ । ଭୋନାଥ ଶୁଣ ମୋ ବଚନ ।
ତୁମ୍ଭେ ଯେ ବୋଲୁଥାଅ ନିତ୍ୟେ । ମୁଁ ମିତ୍ର କୃଷ୍ଣର ସଙ୍ଗତେ ।
ସେ ହରି ବ୍ରାହ୍ମଣ ବତ୍ସଳ । କରୁଣା ସିନ୍ଧୁ ଆଦିମୂଳ ।
ଅନାଥ ଜନ ନିସ୍ତାରଣ । ଶରଣ ପରମ କାରଣ ।
ସାଧୁଜନଙ୍କ ନିଜପତି । ନିଶ୍ଚେ ଅଛନ୍ତି ଦ୍ୱାରାବତୀ ॥
ତାଙ୍କ ନିକଟେ ତୁମ୍ଭେ ଯାଅ । ତାଙ୍କ ନିକଟେ ତୁମ୍ଭେଯାଅ ।
ମିତ୍ର କାମିନୀ ଦୁଃଖଶୁଣି । ଦୟା ସାଗର ଚକ୍ରପାଣି ।
ଅନେକ ଧନ ତୁମ୍ଭ ହସ୍ତେ । ଦେବେ ସେ ମିତ୍ରଭାବ ଅର୍ଥେ ।
ତାହାଙ୍କ ପାଦପଦ୍ମ ଚିତ୍ତେ । ଯେ ପ୍ରାଣୀ ଚିନ୍ତେ ଅବିରତେ ।
ତାହାକୁ ଆତ୍ମପଦ ଦେଇ । ଯେ ତତ୍ତ୍ୱ ବେଦେ ଅଛି କହି ।
ଯେ ଅବା ଭୋଗ ଅର୍ଥ ସେବେ । ଧର୍ମାଦି ଚତୁର୍ବର୍ଗ ଲଭେ ।

ଯେମନ୍ତ ମହିମା ଯାହାର । ଭୋଳାନାଥ ବିଳମ୍ବ ନକର ॥
ଯେମନ୍ତେ ଶୁଣି ତା ବଚନ । ବ୍ରାହ୍ମଣ ବିଚାରଇ ମନ ॥
ଯେତ ପରମ ଭାଗ୍ୟ ମୋର । ଦେଖିବି ପ୍ରଭୁ ଦାମୋଦର ॥
ବ୍ରାହ୍ମଣ ବତ୍ସଳ ଅନନ୍ତ । ସ୍ୱଭାବେ ମୁହିଁ ତାଙ୍କ ମିତ୍ର ॥
ପ୍ରାଣୀର ଭାବ ସେ ଜାଣଇ । ଯେଣୁ ସକଳ ହୃଦେ ଥାଇ ॥
କମଳା ସେବେ ଯା ଚରଣ । ମୁଁ ତାରେ ପଶିବି ଶରଣ ॥
ପତ୍ନୀ ବଚନେ ଆଗମନ । ଗୋବିନ୍ଦ ମୋତେ ଦେବେ ଧନ
ମିତ୍ର ଅନ୍ତରି ନାହିଁ ଯାର । ଭାବକୁ ବଶ ଆତ୍ମା ତାର ॥
ଯେମନ୍ତ କରି ଅନୁମାନ । ପତ୍ନୀକି ବୋଲଇ ବଚନ ॥
ମିତ୍ର ଭୁବନେ ଯିବି ମୁହିଁ । ଭେଟିବି କିବା ବସ୍ତୁଦେଇ ॥
ବନ୍ଧୁ ସୁହୃଦେ ଉପଗତେ । ଯେ ପ୍ରାଣୀ ଗମେ ଶୂନ୍ୟହସ୍ତେ
ଭାବ ନରହେ ବେନି ମଧ୍ୟେ । ନିନ୍ଦିତ ଶାସ୍ତ୍ର ଅନୁବାଦେ ॥
ଯେ ଅବା ଅଛି ମୋର ଘରେ । ଆଣ କଲ୍ୟାଣି ଉପହାରେ ॥
ଯିବଇଁ ମିତ୍ର ଦରଶନେ । ଯେମନ୍ତ ସ୍ୱାମୀର ବଚନେ ॥
ବିପ୍ରଙ୍କ ଘରେ ଭିକ୍ଷାକରି । ପୃଥୁ ତଣ୍ଡୁଳ ମୁଷ୍ଟିଚାରି ॥
ଖଣ୍ଡିତ ବସ୍ତ୍ରେ ବାନ୍ଧିଧୀରେ । ତକ୍ଷଣେ ଦେଲା ବିପ୍ରକରେ ॥
ପୃଥକ ଘେନି ଉପାୟନ । ବିପ୍ର ଦ୍ୱାରକା ଆଗମନ ॥
ପଥେ ଚିନ୍ତଇ ବିପ୍ରମନେ । କୃଷ୍ଣଙ୍କୁ ଭେଟିବି କେସନେ ॥
ଦାରିଦ୍ର୍ୟ ଦୁଃଖ ଯେ ମୋହର । ସେ ହରି ବ୍ରହ୍ମାଣ୍ଡ ଠାକୁର ॥
ସେ ପ୍ରଭୁ ସଂସାର ସାଗର । ମୁହିଁ ଦୁଃଖିତ ଦୁରାଚାର ॥
ଯାଦବ ବଳ ଗୋଷ୍ଠୀକରି । ବସି ଯେ ଥିବେ ଦେବହରି ॥
ଘୋର ଗହନ ବନ ଜିଣି । ଚଳଇ ଦିବସ ରଜନୀ ॥
ଅନେକ ପାଇ ପଥଶ୍ରମ । ମିଳିଲା ଦ୍ୱାରକା ଭୁବନ ॥
କୃଷ୍ଣ ଆଶ୍ରମ ପଦ୍ମପୁର । କି ଅବା ଦେବା ପଟାନ୍ତର ॥
ଯହିଁ ଗୋବିନ୍ଦ ଗୃହାଶ୍ରମୀ । ଷୋଳ ସହସ୍ର ନାରୀ ରମି ॥
ସେ ପୁରେ ବିପ୍ର ପରବେଶେ । ଜୀବ ଯେସନେ ବ୍ରହ୍ମେ ମିଶେ
ମିଳିଲା ରୁକ୍ମିଣୀ ମନ୍ଦିର । ଯହିଁ ବିଜୟ ଚକ୍ରଧର ॥
ବିପ୍ର ମିଳିଲା ସେ ଭୁବନେ । ଭକତ ବନ୍ଧୁ ଦରଶନେ ॥
ଗୋବିନ୍ଦ ବିପ୍ର ମୁଖ ଦେଖି । ଉଠିଲେ ଆସନ ଉପେକ୍ଷି ॥
ପ୍ରିୟା ସଙ୍ଗତ ଛାଡ଼ି ହରି । ବିପ୍ରଙ୍କୁ ଆଲିଙ୍ଗନ କରି ॥
ଭକତ ବନ୍ଧୁ ଦାମୋଦର । ହୃଦେ ଲଗାଇ ବିପ୍ରବର ॥
ଆନନ୍ଦେ ପୁଣ ପୁଣ କୋଳ । ନୟନୁଁ ବହେ ଅଶ୍ରୁଜଳ ॥
ନିଜ ପଲଙ୍କେ ଭାବଗ୍ରାହୀ । ଆନନ୍ଦେ ବିପ୍ରଙ୍କୁ ବସାଇ ॥
ସୁଗନ୍ଧ ଜଳେ ପାଦ ଧୋଇ । ଶେଷ ଉଦକ ଶିରେ ଲଇ ॥
ଯା ପାଦ ଜଳ ସୁରନଦୀ । ପବିତ୍ର ଜଗତେ ପ୍ରସିଦ୍ଧି ॥
ଯା ନାମେ ସର୍ବ ପାପହରେ । ସେ ବିପ୍ରପାଦ ବହେ ଶିରେ ॥
ଶ୍ରୀକରେ ଘେନି ଚତୁଃସମ । ସୌରଭ ଗନ୍ଧ ମନୋରମ ॥
ଆନନ୍ଦେ ବିପ୍ର ଅଙ୍ଗ ବୋଳି । ଭଗତ ବନ୍ଧୁ ବନମାଳୀ ॥
ଅଗର ଧୂପ ଦେଇ ପାଶେ । ପାଦ ପୋଛନ୍ତି ପୀତବାସେ ॥
କର୍ପୂର ବାସେ ଦୀପପନ୍ତି । ଆନନ୍ଦେ ଜାଣି ଯଦୁପତି ॥
ଚରଣ ପୂଜି ଷଡ଼ ଅର୍ଘ୍ୟେ । ତାମ୍ବୁଳ ଦେଲେ ଅନୁରାଗେ ॥
କୁଶଳ ସ୍ନେହେ ଭଗବାନ । ମିତ୍ରେ ପୁଛନ୍ତି ତୋଷମନ ॥
କୁତ୍ସିତ ବସ୍ତ୍ର ଦ୍ୱିଜବର । ଦୁଃଖ ମଳିନ କଳେବର ॥
କ୍ଷୁଧା ଅନଳେ କଷ୍ଟେ କାୟେ । ଶିରା ଦିଶନ୍ତେ ସର୍ବ ଦେହେ ॥
ଦିବ୍ୟ ଚାମର କରେ ଘେନି । ବିଞ୍ଚନ୍ତି ଭୀଷ୍ମକ ନନ୍ଦିନୀ ॥
କୃଷ୍ଣର ଅନ୍ତଃପୁର ନାରୀ । ବିପ୍ରଙ୍କୁ ଦେଖନ୍ତି ଉଭାରି ॥
କୃଷ୍ଣର ସେବା ଅନୁମାନେ । ଦେଖନ୍ତି ବିସ୍ମିତ ବଦନେ ॥
ଯେକ ଆରେକ ମୁଖଚାହିଁ । ବୋଲନ୍ତି ହସ୍ତେ ହସ୍ତଦେଇ ॥
ଦେଖ ଯେହାର ତପଃଫଳ । ଯାର ସେବକ ନନ୍ଦବାଳ ॥
ଯେମନ୍ତେ କାହିଁ ନ ଦେଖିଲା । ପୂର୍ବେ ଯେ କେତେ ତପକଲା
ରୂପେ ଦିଶଇ ବିପରୀତ । ଯେହ୍ନେ ଶାଖର ଅଦଭୂତ ॥
ଦେଖ ଯେ ଅଧମ ନିର୍ଦ୍ଧନ । ଇହ ସଂସାରେ କ୍ରିୟାହୀନ ॥
ଯେହାର ଦେହେ ନନ୍ଦବଳା । ଶ୍ରୀଭୁଜେ ଆଲିଙ୍ଗନ କଲା ॥
ଲକ୍ଷ୍ମୀ ସଙ୍ଗତ ଶଯ୍ୟା ତେଜି । ଆନନ୍ଦେ ବେନି ଚକ୍ଷୁବୁଜି ॥
ଆନନ୍ଦେ ତୋଳି ବେନିଭୁଜେ । ଯେମନ୍ତେ ବଳଭଦ୍ର ବିଜେ ॥
ଯେମନ୍ତେ ବୋଲି ପୁରଜନେ । ଗୋବିନ୍ଦ ଗଭୀର ବଚନେ ॥
ଗୁରୁଭବନେ ବାଳ କାଳେ । ଥିଲେ ଯେ ବିଦ୍ୟାସଙ୍ଗ ମେଳେ
ସେକଥା ଗୋବିନ୍ଦ ସୁମରି । କହନ୍ତି ବିପ୍ରପାଦ ଧରି ॥
ଲଳିତ ଗତି ଦାମୋଦର । ବୋଲନ୍ତି ଶୁଣ ବିପ୍ରବର ॥
ଗୁରୁ ଦକ୍ଷିଣା ଆମ୍ଭେ ଦେଇ । ଘରେ ମିଳିଲୁ ବେନିଭାଇ ॥
ତୁମ୍ଭେ ଯେ ବିଦ୍ୟା ସମାପତେ । ନିଜ ଭୁବନେ ଉପଗତେ ॥
ଉତ୍ତମ କୁଳେ କନ୍ୟାବରି । ବିଭା ହୋଇଲ ଯେକ ନାରୀ ॥
ତାହା ମୁଁ ନମଣଇ ସତ । ଦେଖି ତୁମ୍ଭର କ୍ଷିନ୍ନ ଗାତ୍ର ॥
ଗୃହର କର୍ମକାମ ଭୋଗ । ତୁମ୍ଭର ମନ ବଇରାଗ ॥
ନିର୍ଲ୍ଲୋଭ ପ୍ରାୟ ମୁଁ ମଣଇ । ବୋଲନ୍ତି ପ୍ରଭୁ ଭାବଗ୍ରାହୀ ॥
ଥୋକାୟେ ଲୋକ ଯେ ସଂସାରେ । କର୍ମ ସାଧନ୍ତି ନିରନ୍ତରେ ॥
କର୍ମେ ନୁହନ୍ତି ହତଚେତା । ସଂସାର ଗୃହେ ମୋହ ଯଥା ॥
ଭୋମିତ୍ର ଗୁରୁଘରେ ଯାଇ । ବିଦ୍ୟା ପଢ଼ିଲୁ ବେନି ଭାଇ ॥

ତୁମ୍ଭ ସହିତ ଶିଶୁମେଳେ । ଯେ ଅବା ଲୀଳା ବାଳକାଳେ
ଗୁରୁ କହିଲେ ଧର୍ମସାର । ଯେଣେ ନଲାଗେ ଯେ ସଂସାର
ଯେ ଗୁରୁ ପୂର୍ବ କର୍ମ ଫଳେ । ଆମ୍ଭେ ଲଭିଲୁ ମହାସ୍ଥଳେ ॥
ଆଶ୍ରମୀ ଜନ କାମ ପୂରୁ । ମୁଁ ଯେହ୍ନେ ଜ୍ଞାନଦାତା ଗୁରୁ ॥
ଯେ ପ୍ରାଣୀ ବର୍ଣ୍ଣ ଶ୍ରମ ମଧ୍ୟେ । ପଣ୍ଡିତ ଶାସ୍ତ୍ର ଅନୁବାଦେ ॥
ମୋର ବଚନ ଉପଦେଶେ । ସଂସାରୁ ତରନ୍ତି ବିଶ୍ୱାସେ ॥
ଯଜ୍ଞ ସମାଧି ତପ ଶାନ୍ତି । ଯେ ମାର୍ଗେ ଯେ ମୋତେ ସେବନ୍ତି ॥
ତାହାକୁ ନୋହି ଯେତେ ତୋଷ । ଗୁରୁ ଭଗତ ମୋ ବିଶ୍ୱାସ ॥
ଭୋ ବିପ୍ର ଶୁଣ ମିତ୍ର ମୋର । ସ୍ମରଣ ଅଛିକି ତୁମ୍ଭର ॥
ଆମ୍ଭେ ଯେ ଗୁରୁଗୃହେ ଥାଇ । ଗୁରୁକାମିନୀ ଆଜ୍ଞା ପାଇ ॥
ଗୁରୁଙ୍କ ଅନ୍ନ ସିଦ୍ଧ ଅର୍ଥେ । ଅରଣ୍ୟେ ପଶିଲୁ ସମସ୍ତେ ॥
ଶୁଷ୍କ ଇନ୍ଧନ ଆଣିବାରେ । ମିଳିଲୁ ଗହନ ବନରେ ॥
ଯେମନ୍ତେ ଅଣ ଋତୁକାଳେ । ଗଗନେ ମିଳି ମେଘମାଳେ ॥
ଦିବସେ କରି ଅନ୍ଧକାର । ବାତାବରଷା ମହାଘୋର ॥
ନିଷ୍ଠୁର ବଜ୍ରାଘାତ ତ୍ରାସ । ବନେ ନ ଦିଶେ ଦଶଦିଶ ॥
ତକ୍ଷଣେ ରବି ଅସ୍ତଗଲା । ଘୋର ତିମିର ପ୍ରକାଶିଲା ॥
ଶୁଷ୍କ ଇନ୍ଧନ ଘେନି କରେ । ଆମ୍ଭେ ପଶିଲୁ ବନ ଘୋରେ ॥
ଜଳେ ପୂରିଲା ବନଭୂଇଁ । ସ୍ଥଳ ଗଭୀର ନ ଦିଶଇ ॥
ଜଳ ପବନ ଦେହେ ବାଜି । ଆମ୍ଭେ ବୁଲିଲୁ ସ୍ଥାନ ଖୋଜି ॥
ଯେକ ଆରେକ ହସ୍ତଧରି । ଦିଗ ନପାଇ ଠାବ କରି ॥
କାତରେ ଉଠି ବୃକ୍ଷ ଡାଳେ । ରାତ୍ରେ ବଞ୍ଚିଲୁ ସଙ୍ଗମେଳେ ॥
ଯେମନ୍ତେ ରଜନୀ ପାହିଲା । ରବି କିରଣ ପ୍ରକାଶିଲା ॥
ଗୁରୁ କାମିନୀ ଗୁରୁମେଳେ । ଆମ୍ଭଙ୍କୁ ଖୋଜି ପ୍ରାତଃକାଳେ ॥
ଡାକନ୍ତି ମୁଖେ ନାମଧରି । ଖୋଜନ୍ତି ଘୋର ବନେ ହେରି
ଶବଦ ଶୁଣି ଘୋର ବନେ । ଆମ୍ଭେ ମିଳିଲୁ ତୋଷମନେ ॥
ଆମ୍ଭର ଶୁଖିଛି ବଦନ । ଦେଖି ହୋଇଲେ ସୁପ୍ରସନ୍ନ ॥
ହେ ଶିଶୁପୁତ୍ର ମୋର ଅର୍ଥେ । ଅଇଲ ଗହନ ବନସ୍ତେ ॥
ଦୁର୍ଲ୍ଲଭ ଜନ୍ମ ଯେ ଜଗତେ । ଏହା ନମଣି ମୋର ଅର୍ଥେ ॥
ଦୁଃଖେ ଭ୍ରମିଲ ଘୋରବନ । ମୁଁ ଆଜ ହୋଇଲି ପ୍ରସନ୍ନ ॥
ଯେତେ ତୁମ୍ଭର ମନୋରଥ । ମୋର କଲ୍ୟାଣ ହେଉସ୍ୱାର୍ଥ ॥
ତୁମ୍ଭର ବିଦ୍ୟା ବେନି ଲୋକେ । ଅକ୍ଷୟ ହୋଇଥାଉ ସୁଖେ ॥
ଯେମନ୍ତ କଲେ ସେ କଲ୍ୟାଣ । କୃଷ୍ଣ ବୋଲନ୍ତି ମିତ୍ର ଶୁଣ ॥
ଯେମନ୍ତେ ନାନା କଉତୁକେ । ବଞ୍ଚିଲୁ ଗୁରୁଗୃହେ ସୁଖେ ॥
ଗୁରୁ ପ୍ରସନ୍ନେ ବିଦ୍ୟାଜାଣି । ବ୍ରାହ୍ମଣ ବୋଲେ ତାହା ଶୁଣି ॥

ତୁ ନାଥ ଦେବଙ୍କର ଗୁରୁ । ବିପାକ ଫଳତୁ ବିଚାରୁ ॥
ଗୁରୁ ଭୁବନେ ତୋର ମେଳେ । ଯେବେ ମୁଁ ଥିଲି ବାଳକାଳେ
ତୋ ସଙ୍ଗ ପାଇ ପୁଣ୍ୟକାମ । ତାକୁ ନଲାଗେ ଭବଭ୍ରମ ॥
ସର୍ବ ସମ୍ପଦ ଯେ ଶରୀରେ । ତୋ ସଙ୍ଗେ ଗୁରୁଙ୍କ ନବରେ ॥
ମୁଁ ଥିଲି ବୋଲିବେ କେ ଜନ । ବଡ଼ ଯେ ଶାସ୍ତ୍ର ବିଡ଼ମ୍ବନ ॥
କୃଷ୍ଣ ପ୍ରସନ୍ନେ ଭାଗବତ । କହିଲା ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ କୃଷ୍ଣ ଦାମୋଦର ଦାରିଦ୍ର୍ୟ ନାଶନେ ନାମ ଷଡ଼ଶୀତିତମୋଽଧ୍ୟାୟଃ ।*

## ସପ୍ତଶୀତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଯେମନ୍ତେ ହରି ପାଦେ ଧାୟି । ପରୀକ୍ଷ ଆଗେ ଶୁକ କହି ॥
ଗୋବିନ୍ଦ ମିତ୍ର ଅଙ୍ଗ ସଙ୍ଗେ । ବିବିଧ କଥା ଭାବ ରଙ୍ଗେ ॥
ଯେ ହରି ସର୍ବଭୂତଗାମୀ । ଯାହାର ନାମ ଅନ୍ତର୍ଯ୍ୟାମୀ ॥
ମିତ୍ର ବଦନ ଚାହିଁ ହସି । ବୋଲନ୍ତି ପ୍ରଭୁ ବ୍ରହ୍ମରାଶି ॥
ବିପ୍ର ବତ୍ସଳ ଚକ୍ରପାଣି । ଯାର କଟାକ୍ଷେ କମଳିନୀ ॥
ମିତ୍ରର ଶ୍ରମ ଅଙ୍ଗ ଚାହିଁ । ହସି ବୋଲନ୍ତି ଭାବଗ୍ରାହୀ ॥
ଭୋ ମିତ୍ର ମୋର ପ୍ରାଣସଖା । କିସ ଆଣିଛ ମୋତେ ଦେଖା ॥
ମୋର ଭକତ ପ୍ରାଣୀ ଯେବେ । ମୋତେ ପୂଜଇ ମୋର ଭାବେ ।
ସେ ଅଣୁ ମାତ୍ର ଯେବେ ଦେଇ । ମୁଁ ତାହା ବହୁତ ମଣଇ ॥
ଯେ ମୋର ଭାବ ନ ଜାଣନ୍ତି । ପର୍ବତ ପ୍ରାୟେ ଧନଦ୍ୟନ୍ତି ॥
ସେ ମୋତେ ଦିଶେ ତୁଚ୍ଛପ୍ରାୟେ । ବୋଲନ୍ତି ପ୍ରଭୁ ଦେବରାୟେ ॥
ପତ୍ର କୁସୁମ ଫଳପାଣି । ଯେ ମୋତେ ଭାବେ ଦ୍ୟନ୍ତି ଆଣି
ତାର ଭକତି ଭାବ ଲଇ । ମୁଖ ବିସ୍ତାରି ମୁଁ ଭୁଞ୍ଜଇ ॥
ଯେମନ୍ତ କହି ଲକ୍ଷ୍ମୀକାନ୍ତ । ଭାବେ ପାତିଲେ ବେନି ହସ୍ତ
ଦେଖି ଚକିତ ବିପ୍ରବର । ଅନ୍ତରେ କରଇ ବିଚାର ॥
ମୋର ଅର୍ଜିତ କର୍ମଫଳ । ଆଣିଛି ପୃଥୁକ ତଣ୍ଡୁଳ ॥
କେମନ୍ତେ ଦେବି ମିତ୍ର କରେ । ହାସ୍ୟ କରିବେ ଅନ୍ତଃପୁରେ ॥
ଯେମନ୍ତ ଭାବି ଲଜ୍ଜାମୁଖେ । ବିପ୍ର ରହିଲା ଅଧୋମୁଖେ ॥
ତା ଦେଖି କମଳାର ବର । ହୃଦରେ କରନ୍ତି ବିଚାର ॥
ଯେ ବିପ୍ର ପତ୍ନୀର ବଚନେ । ମିଳିଲା ମୋହର ଭୁବନେ ॥
ଦରିଦ୍ର ପଣେ ଦୁଃଖପାଇ । ଅର୍ଜିଲା କର୍ମ ନ ଜାଣଇ ॥

ଯେହାର ପୂର୍ବ ଜନ୍ମ ଯେତେ । ନିଷ୍କାମେ ଭଜିଅଛି ମୋତେ ॥
ସାକାମେ ମୋତେ ନଭଜଇ । ଯେବେ ପାଇବ ଭୋଗ କାହିଁ
ପତ୍ନୀ ବଚନେ ଭୋଗ ଅର୍ଥେ । ଆସି ମିଳିଲା ମୋ ଅଗ୍ରତେ ॥
ପତି ଦେବତା ବାକ୍ୟ ଅର୍ଥେ । ମୋହର ବନ୍ଧୁ ଗୁଣ ହିତେ ॥
ଦେବି ସମ୍ପଦ ସୁଖ ଭୋଗ । ବ୍ରହ୍ମାଣ୍ଡ ମଧ୍ୟେ ଯେ ଦୁର୍ଲ୍ଲଭ ॥
ଯେତେ ବିଚାରି ନରହରି । ବିପ୍ରର ଛିନ୍ନ ବସ୍ତ୍ର ଧରି ॥
କି ବସ୍ତୁ ବୋଲି ଆଦିମୂଳ । ଘେନିଲେ ପୃଥୁକ ତଣ୍ଡୁଳ ॥
ଛନ୍ନ ବସ୍ତ୍ରର ମଧ୍ଯୁ ଫେଇ । କୃଷ୍ଣ ବୋଲନ୍ତି କରେ ନେଇ ॥
ଭୋମିତ୍ର ତୁମ୍ଭ ଉପହାର । ଯେ ମୋର ପ୍ରାଣ ପ୍ରତିକାର ॥
ତୁମ୍ଭର ପୃଥୁକ ତଣ୍ଡୁଳ । ଅଶେଷ ଭୁବନ ମଣ୍ଡଳ ॥
ମୋହର ଜୀବନ ସମେତେ । ପବିତ୍ର କଲ ଆଜ ମୋତେ ॥
ଯେମନ୍ତ କହି ନରହରି । ବେନି ଲୋଚନ୍ନୁ ବହେବାରି ॥
ଗୋବିନ୍ଦ ମିତ୍ର ପ୍ରିୟ ଅର୍ଥେ । ପୃଥୁ ତଣ୍ଡୁଳ ଘେନି ହସ୍ତେ ॥
ବୋଲନ୍ତି ଜଗତ ଜନନୀ । ପୃଥୁକ ମୁଷ୍ଟି କରେ ଘେନି ॥
ଭୋନାଥ ପ୍ରଭୁ ଭଗବାନ । ଯେ ମୁଷ୍ଟି ନକର ଭୋଜନ ॥
ତୋର ସନ୍ତୋଷେ ନାରାୟଣ । ଉଭୟ ଲୋକର କାରଣ ॥
ମୁଷ୍ଟିକେ ଦେଲେ ସର୍ବସୁଖ । କେବଳ ମାତ୍ର ମୋତେ ରଖ ॥
ଯେମନ୍ତେ କହି ଅନୁବାଦେ । ପଶିଲେ ଗୋବିନ୍ଦର ହୃଦେ ॥
ଯେମନ୍ତେ ରବି ଅସ୍ତଗଲା । ଶୁଣ ହୋ ଅଭିମନ୍ୟୁ ବଳା ॥
ଗୋବିନ୍ଦ ତୁଲେ ବିପ୍ରତୋଷେ । ମଣୋହି କଲା ଷଡ଼ ରସେ ॥
ରତ୍ନ ପଲଙ୍କେ କୃଷ୍ଣ ମେଳେ । ରଜନୀ ବଞ୍ଚିସୁଖ କୋଳେ ॥
ଅଙ୍ଗ ନିବେଶି କୃଷ୍ଣ ଦେହେ । ମଣିଲେ ସ୍ୱର୍ଗ ଭୋଗ ପ୍ରାୟେ ॥
ଯେମନ୍ତେ ପାହିଲା ରଜନୀ । ଗୋବିନ୍ଦ ଝିନବସ୍ତ୍ର ଘେନି ॥
ବିପ୍ରେ କରାଇ ପରିଧାନ । ପାଲଟି କୁତ୍ସିତ ବସନ ॥
ଆନନ୍ଦେ ଆଲିଙ୍ଗନ କରି । ଭାବେ ବ୍ରାହ୍ମଣ ପାଦ ଧରି ॥
ଅନୁଗମନ କିଛି ଦୂରେ । ବିପ୍ରେ ପେଷିଲେ ନିଜପୁରେ ॥
ଯେମନ୍ତେ ଶୁଣ ନୃପବର । ବିପ୍ର ଚଳଇ ନିଜପୁର ॥
କିଛି ନ ଦେଲେ ନାରାୟଣ । ଲାଜେ ନ ମାଗିଲା ବ୍ରାହ୍ମଣ ॥
ପଥେ ଗମଇ ସ୍ଥିର ପାଦେ । କୃଷ୍ଣର ଦର୍ଶନ ଆନନ୍ଦେ ॥
ଲଜ୍ଜା ଜଡ଼ିତ ଅଧୋ ମୁଖେ । ପଥେ ବିଚାରେ ମନୋରଥେ ॥
ଯେ ମୋ ଅର୍ଜିତ କର୍ମଗୁଣ । ବିପ୍ର ବତ୍ସଳ ନାରାୟଣ ॥
ଅତି ଦରିଦ୍ର ମୁଁ ପାମର । ସେ ହରି କରୁଣା ସାଗର ॥
କମଳା ବସେ ଯେଉଁ ହୃଦେ । ସେ ହୃଦେ ପରମ ଆନନ୍ଦେ ॥
ଲଗାଇ ମୋତେ ତୋଷମନ । ନିବିଡ଼େ କଲେ ଆଲିଙ୍ଗନ ॥

ଅତି ଦରିଦ୍ର ପ୍ରାଣୀ ମୁହିଁ । କୋଟି ବ୍ରହ୍ମାଣ୍ଡ ନାଥ କାହିଁ ॥
ବ୍ରାହ୍ମଣ ବୋଲି ଦୟାକଲେ । ଶ୍ରୀଭୁଜେ ଆଲିଙ୍ଗନ ଦେଲେ ॥
ଲକ୍ଷ୍ମୀ ପଲଙ୍କେ ମୋତେ ନେଇ । ଭ୍ରାତାର ପ୍ରାୟେ ସ୍ଥାନଦେଇ ॥
ଚାମର ଧରି ନିଜ କରେ । ଲକ୍ଷ୍ମୀ ବିଞ୍ଚିଲେ ମୋତେ ଧୀରେ
ମିତ୍ର ସୁହୃଦ ବନ୍ଧୁବର୍ଗେ । ମୋତେ ପୂଜିଲେ ଷଡ଼ଅର୍ଘ୍ୟେ॥
ଯେ ହରି ଜଗତ ଦୁର୍ଲ୍ଲଭ । ସେ ମୋତେ ହୋଇଲେ ସୁଲଭ
ବିପ୍ର ଦେବତା ସେ ଯୁଗତେ । ଯେଣୁ ପୂଜିଲେ କୃଷ୍ଣ ମୋତେ
ଭୂମି ଗଗନର ସାନ୍ତଳ । ସ୍ୱର୍ଗାପବର୍ଗ ବେନି ଫଳ ॥
ସର୍ବ ସମ୍ପଦର କାରଣ । ଯାହାର ଅଭୟ ଚରଣ ॥
ସେ ମୋର ମିତ୍ର ନରହରି । ହୃଦରେ ଯେମନ୍ତ ବିଚାରି ॥
ଦୁଃଖୀ ଦରିଦ୍ର ଯେ ବ୍ରାହ୍ମଣ । ଯେହାକୁ ଯେବେ ଦେବା ଧନ
ଧନ ସମ୍ପଦେ ବଢ଼େ ଆଶ । ସେ କାହିଁ କୃଷ୍ଣରେ ବିଶ୍ୱାସ ॥
ଧନ ପ୍ରାପତେ ମତ୍ତ ହୋଇ । ମୋର ସ୍ମରଣ ଆଉ କାହିଁ ॥
ତାହାର ଯେତେ ମୋତେ ଦୟା । ମୁଁ ପାପୀ ନ ଜାଣଇ ତାହା ॥
ଯେଣୁ ନଦେଲେ ମୋତେ ଧନ । ଧନ୍ୟରେ ମୋହର ଜୀବନ ॥
ଆତ୍ମାରେ ଯେମନ୍ତ ବିଚାରି । ବିପ୍ର ମିଳିଲା ନିଜପୁରୀ ॥
ନାନା ବିଚିତ୍ର ଗୃହ ପୁର । କି ଅବା ଦେବା ପଟାନ୍ତର ॥
ବିବିଧ ଜଳାଶୟ ରାଶି । ପୁଷ୍ପ ସୁଗନ୍ଧ ବାୟୁ ମିଶି ॥
ନାରୀ ପୁରୁଷ ନବରଙ୍ଗେ । ବିବିଧ ଅଳଙ୍କାର ଅଙ୍ଗେ ॥
ଯେମନ୍ତ ଦେଖି ବିପ୍ରବର । ହୃଦରେ କରଇ ବିଚାର ॥
କିଯେ କାହାର ଦିବ୍ୟପୁର । ଅବନୀ ମଧ୍ୟେ ଅଗୋଚର ॥
ମୋର କୁଟିର ଏହି ସ୍ଥାନେ । ଯେମନ୍ତେ ବିଚାରଇ ମନେ ॥
ଦରିଦ୍ର ପତ୍ନୀ ମୋର କାହିଁ । କି ଅବା ପଥ ହୁଡ଼ିଲଇଁ ॥
ଭ୍ରମେ ଭ୍ରମିଲି ଅନ୍ୟ ସ୍ଥାନେ । ଯେମନ୍ତେ ବିଚାରଇ ମନେ ॥
ଭୟେ ବୁଜଇ ବେନି ଆଖି । ପୁଣି ଭାଳଇ ଭୟେ ଦେଖି ॥
ଯେମନ୍ତେ ଶୁଣ ନୃପବର । ନବରୁ ପତ୍ନୀ ଯେ ବାହାର ॥
ଅମର ପ୍ରଭା ନରନାରୀ । ବିବିଧ ପାତ୍ର କରେ ଧରି ॥
ମଙ୍ଗଳ ବାଦ୍ୟ ନାଦଗୀତ । ଅଖିଳ ସମ୍ପଦ ବହୁତ ॥
ଆଗେ ଶତେକ ପରିବାରୀ । କରେ ଚାମର ବସ୍ତ୍ରଧରି ॥
ମଙ୍ଗଳ ଗୀତ ନାଦବାଣୀ । ମଧ୍ୟେ ବିଜୟ ତା ଘରଣୀ ॥
ରୂପେ କି ଦେବା ପଟାନ୍ତର । ଅପୂର୍ବ ବେଶ ମନୋହର ॥
ପତି ଆଗମେ ସେ ଆନନ୍ଦ । ସଙ୍ଗେ ସୁନ୍ଦରୀ ନାରୀବୃନ୍ଦ ॥
ଭବନୁ ହୋଇଲା ବାହାର । ରୂପେ ମୋହଇ ସୁରନର ॥
ବିପ୍ରକାମିନୀ ପତିବ୍ରତା । ଜଗତେ ଯାର ପୁଣ୍ୟକଥା ॥

ବୋଲନ୍ତେ ଅଇଲେଣି ପତି । ସ୍ୱାମୀ ଚରଣ କରେ ଧରି ॥
ଭାବେ ପୂଜଇ ପୁଣ ପୁଣ । ଅନ୍ତରେ କଲା ଆଲିଙ୍ଗନ ॥
ବ୍ରାହ୍ମଣ ନିଜ ନାରୀ ଚାହିଁ । ଚକିତ ଚିତ୍ତେ ବିଚାରଇ ॥
ସ୍ତମ୍ଭେ ଦିଶନ୍ତି ରତ୍ନରାଶି । ଇନ୍ଦ୍ରଭୁବନ ପ୍ରାୟଦିଶି ॥
ଗୋ କ୍ଷୀର ବର୍ଣ୍ଣ ପ୍ରାୟକାନ୍ତି । ଶଯ୍ୟା ପଲଙ୍କ ବିରାଜନ୍ତି ॥
ରତ୍ନ ପଲ୍ୟଙ୍କେ ହେମ ଦଣ୍ଡେ । ନିର୍ମିତ ହସ୍ତୀ ଦନ୍ତଖଣ୍ଡେ ॥
ଶ୍ୱେତ ଚାମର ରତ୍ନକାନ୍ତି । ମୁକୁତା ମାଳା ବିରାଜନ୍ତି ॥
ନାନା ଆସନେ ରତ୍ନମୟେ । ଅତି କୋମଳ ଲାଗେ ପ୍ରାୟେ॥
ପୃଥୁକ ମୁଷ୍ଟି ନେଲି ମୁହିଁ । ଭାବେ ଘେନିଲେ ଭାବଗ୍ରାହୀ ॥
ମୁଠିଏ ଭୁଞ୍ଜି ତୋଷ ଚିତ୍ତେ । ଲକ୍ଷ୍ମୀ ଧଇଲେ ବେଗେ ହସ୍ତେ॥
ତେଣୁ ସମ୍ପଦ ଯେ ମୋହର । ଯେତେ ବିଚାରି ବିପ୍ରବର ॥
ବୋଲଇ ହୋଇ କୃତକୃତ୍ୟ । କପୋଳେ ଦେଇ ବେନିହସ୍ତ॥
କୃଷ୍ଣ ଚରଣେ ମୋର ଚିତ୍ତ । ନିଶ୍ଚଳେ ରହୁ ଅବିରତ ॥
ମିତ୍ର ସୁହୃଦ ଦାସପଣେ । ଖଟିବି ଅଭୟ ଚରଣେ ॥
ଅଶେଷ ଯୋନି ମଧ୍ୟେ ଜାତ । ହୋଇ ଭଜିବି ଅବିରତ ॥
ଯାର ଭଗତି ଶ୍ରୁତିପର । ବ୍ରହ୍ମା ଶଙ୍କର ଅଗୋଚର ॥
ମୋର ଭଗତି ଭାବଘେନି । ଧନ ନ ଦେଲେ ଅନ୍ତର୍ଯ୍ୟାମୀ ॥
ଯେମନ୍ତ ଭାବି ବିପ୍ରଚିତ୍ତେ । ସମ୍ପଦେ ରହିଲା ନିଶ୍ଚିନ୍ତେ ॥
ଭ୍ରମର ପ୍ରାୟେ ଭୋଗକରି । ଅନ୍ତେ ପାଇଲା ନରହରି ॥
ସେ ହରି ଚରଣ କମଳେ । ମୋହର ମନ ମୁନିଶ୍ଚଳେ ॥
କୃଷ୍ଣ ଚରଣେ କରିଆଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଦରିଦ୍ର ଦାମୋଦର ନିସ୍ତାରଣ ନାମ ସପ୍ତାଶୀତିତମୋଽଧ୍ୟାୟଃ ।*

## ଅଷ୍ଟାଶୀତିତମ ଅଧ୍ୟାୟ

### ପରୀକ୍ଷିତ ଉବାଚ

ପ୍ରେମ ଆନନ୍ଦେ କୁରୁବୀର । ପଡ଼ୁଛ ମୁନିଙ୍କ ପୟର ॥
ଧରଣୀ ଭାରା ନିବାରଣ । ଅନାଦି ପରମ କାରଣ ॥
ଅନନ୍ତ ରୂପେ ନରହରି । ମନୁଷ୍ୟ ଅଂଶେ ଅବତରି ॥
ଆନନ୍ଦେ ଦ୍ୱାରାବତୀ ପୁରେ । ବିହରେ ନର କଳେବରେ ॥
ବିଦ୍ୟା ଜ୍ୟୋତିଷ ଅନୁମାନେ । ବିଚାରି ଋଷିଙ୍କ ବଚନେ ॥
ଜ୍ୟୋତିଷ କୃଷ୍ଣ ପାଶେ ଯାଇ । ବୋଇଲେ ଶିରେ କରଦେଇ॥
ଭୋନାଥ ଶୁଣ ସାବଧାନେ । ମକର ପଞ୍ଚଦଶ ଦିନେ ॥
ତୃତୀୟ ମୁହୂର୍ତ୍ତ ପ୍ରବେଶ । ସିଂହିକା ସୁତ ରବିଗ୍ରାସ ॥
ଦିବସେ ପ୍ରକାଶିବ ନିଶି । ପ୍ରଳୟ କାଳ ପ୍ରାୟ ଦିଶି ॥
ଯେମନ୍ତ ଦୈବଜ୍ଞ ବାଣୀ । ଗୋବିନ୍ଦ ସାବଧାନେ ଶୁଣି ॥
ଘୋଷଣା କଲେ ନିଜପୁରେ । ତୀର୍ଥ ଗମନ ଅନୁସାରେ ॥
ଗୋବିନ୍ଦ ନନ୍ଦିଘୋଷ ରଥେ । ବିଜୟ କଲେ ରାଜପଥେ ॥
ଶ୍ରୀକୃଷ୍ଣ ଯାନ୍ତେ କୁରୁକ୍ଷେତ୍ରେ । ସଜ ହୋଇଲେ ଜ୍ଞାତଗୋତ୍ରେ।
ଦେବକୀ ବାସୁଦେବ ଘେନି । କୃଷ୍ଣର ଯେତେକ କାମିନୀ ॥
ପ୍ରଦ୍ୟୁମ୍ନ ଆଦି ପୁତ୍ର ଯେତେ । କହିବି ଯେକ ଯେକ କେତେ
ଗଦ ଶାରଣ ଶାମ୍ବ ଶୁକ । ସୁମିତ୍ର ଜୟବୀର ବାଦ ॥
କୃତ ବର୍ମାର ତୁଲେ ଯୁଦ୍ଧ । ଭାବେ ରହିଲା ଅନିରୁଦ୍ଧ ॥
ଯେମନ୍ତେ ଗଲେ ଯୂଥେ ଯୂଥେ । ଆରୋହୀ ଅଶ୍ୱ ଗଜରଥେ ॥
ନିଜ କଳତ୍ର ଘେନି ସଙ୍ଗେ । ମିଳିଲେ କୁରୁକ୍ଷେତ୍ର ରଙ୍ଗେ ॥
ଇନ୍ଦ୍ର କି ମନର ଆନନ୍ଦେ । ଯେସନେ ଘେନି ଦେବବୃନ୍ଦେ
ଭାରତଭୂମି ରାଜା ଯେତେ । ପୁତ୍ର କଳତ୍ର ଧନ୍ୟୁକ୍ତେ ॥
ଯେମନ୍ତେ ଯେତେ ଚାରିଦିଶେ । ପ୍ରବେଶ କୁରୁକ୍ଷେତ୍ର ଦେଶେ ॥
ଜ୍ଞାନ ଅଜ୍ଞାନ ଶାପ ଯେତେ । ଦାନେ ଖଣ୍ଡିବେ ରାହୁ ଗ୍ରସ୍ତେ ॥
ସୁତୀର୍ଥେ ସ୍ନାନ ଦାନ ଫଳେ । ପାପୁଁ ତରିଲେ ପୁଣ୍ୟ ବଳେ ॥
ଯେତେ ବିଚାରି ପୁଣ୍ୟେଧାୟି । ମିଳିଲେ କୁରୁକ୍ଷେତ୍ରେ ଯାଇଁ ॥
ଗଗନେ ଗ୍ରସ୍ତ ଦିବାକର । ଦିବସ ଦିଶେ ଅନ୍ଧକାର ॥
ଲୋଚନେ ଦେଖି ରବିଗ୍ରାସ । ସକଳେ ହୋଇଲେ ହରଷ ॥
ଯେମନ୍ତେ ରାହୁ ଗ୍ରସ୍ତକାଳେ । ପ୍ରଜାୟେ ବସି ପୁଣ୍ୟଜଳେ ॥
କରନ୍ତି ସ୍ନାନ ଦାନ ବିଧି । ବେଦ ବଚନେ ଯେ ପ୍ରସିଦ୍ଧି ॥
ଗୋବିନ୍ଦ ଉପହାର ଭୋଳେ । ହରଷେ ପଶି ତୀର୍ଥଜଳେ ॥
ବିପ୍ରଙ୍କୁ ବରି ଭଗବାନ । ଦେଲେ ସୁବତ୍ସା ଧେନୁଦାନ ॥
ବିବିଧ ଅଳଙ୍କାର ଭରି । କୋଟିଏ ଧେନୁଦାନ କରି ॥
ଆନନ୍ଦ ମନେ ଭଗବାନ । ଅନ୍ନ ସୁବର୍ଣ୍ଣ ବସ୍ତ୍ରଦାନ ॥
ବିବିଧ ମତେ ଦାନ ଦେଇ । ତୀରେ ବସିଲେ କୃଷ୍ଣଯାଇ ॥
ଯେମନ୍ତେ ଜଳେ ରାମତୀର୍ଥେ । ଦାନ ସ୍ନାହାନ ଯେଝା ମତେ ॥
କରନ୍ତି ନିଗମ ବେଭାର । ଯେବେ ହୋ ଶୁଣ କୁରୁବୀର ॥
ତ୍ରେତୟା ଯୁଗେ ଭୃଗୁରାମ । କ୍ଷତ୍ରିଙ୍କି ବଧି ଘୋରତମ ॥
ଦିଗ ବିଜୟେ ପର୍ଶୁପାଣି । ରାଜାଙ୍କୁ କୁରୁକ୍ଷେତ୍ରେ ଆଣି ॥
କୋପେ ଛେଦିଲେ ତାଙ୍କ ମୁଣ୍ଡ । ରୁଧିର କରି ସାତକୁଣ୍ଡ ॥
ରୁଧିର କୁଣ୍ଡେ ସ୍ନାନକରି । ପିତାଙ୍କୁ ତର୍ପଣେ ଉଦ୍ଧରି ॥

ତେଣୁ ହୋଇଲା ତୀର୍ଥକଳ୍ପ । ସ୍ନାନେ ହରଇ ସର୍ବପାପ ॥
ସେ କୁଣ୍ଡେ ପଶି ସର୍ବଜନ । ସ୍ନାନ ହରାଇ ସର୍ବପାପ ॥
ବିଷ୍ଣୁ ସନ୍ତୋଷେ ପୂଜାକରି । ଆନନ୍ଦେ ଯେତେ ନରନାରୀ ॥
ଯାଦବ ବଳ ସେହିମତେ । ସ୍ନାନ ସାରିଲେ ଯେଝାମତେ ॥
ଭୋଜନ ସାରି ସଙ୍ଗମେଳେ । ବସିଲେ ନାନା ବୃକ୍ଷମୂଳେ ॥
ଯେମନ୍ତ କହିବି ମୁଁ କେତେ । କୃଷ୍ଣର ପତ୍ନୀ ସୁତ ଯେତେ ॥
ବୃକ୍ଷଙ୍କ ମୂଳେ ବିରାଜନ୍ତି । ଗଗନେ ଯେହ୍ନେ ତାରାପନ୍ତି ॥
ଯେମନ୍ତେ ରାମ ହ୍ରଦ ତଟେ । ରାମ ଗୋବିନ୍ଦ ନିକଟେ ॥
କୃଷ୍ଣର ଦର୍ଶନ ଆନନ୍ଦେ । ଆସି ମିଳିଲେ ବନ୍ଧୁବୃନ୍ଦେ ॥
ମତ୍ସ କଚ୍ଛପ କଉଶଲ୍ୟ । ବିଦର୍ଭ ଆଦି କୁରୁବଳ ॥
ସଞ୍ଜୟ କାମ୍ବୋଜ କୈକେୟ । ମଦ୍ର ନୃପତି ଗବେଶୟ ॥
କେରଳ ଆଦି ନୃପ ଯେତେ । କହିବି ଯେକ ଯେକ କେତେ ॥
ସୁହୃଦ ବନ୍ଧୁ ମିତ୍ର ଜନ । ଅପରେ ଅନେକ ରାଜନ ॥
ନନ୍ଦ ଯଶୋଦା ଆଦିକରି । ଗୋପରେ ଯେତେ ନରନାରୀ ॥
ଗୋପୀୟେ କୃଷ୍ଣ ରୂପଦେଖି । ଅଶ୍ରୁ ଗଳଇ ବେନି ଆଖି ॥
ଫୁଟିଲା ପଦ୍ମ ପ୍ରାୟେନେତ୍ର । ନୀଳ କୁଟିଳ ଦୃଷ୍ଟିଚକ୍ର ॥
କି ଅବା ଦେବା ପଟାନ୍ତର । ଯାହା ରମିଲେ ଦାମୋଦର ॥
ଲୋଚନେ କରି ମନଧ୍ୟାନ । ଅନ୍ତରେ କରି ଆଲିଙ୍ଗନ ॥
ପୁଲକ କଲେ ରୋମରାଜି । ପ୍ରେମ ଆନନ୍ଦେ ଚକ୍ଷୁବୁଜି ॥
କଣ୍ଠେ କଣ୍ଠିତ ମଞ୍ଜୁବାଣୀ । ତା ଦେଖି କୃଷ୍ଣର ତରୁଣୀ ॥
ସୁହୃଦ ଭାବେ ଯେକମେଳ । କରନ୍ତି ଜଣେ ଜଣେ କୋଳ ॥
ସୁଖ ବେଷ୍ଟିତ ମନ୍ଦହାସେ । ଦୃଢ଼େ ଯନ୍ତ୍ରିତ ସ୍ନେହପାଶେ ॥
ନିବିଡ଼ କୁଙ୍କୁମ ଲେପନ । ଭାବେ ଲଗାନ୍ତି ସ୍ତନେ ସ୍ତନ ॥
ଭୁଜେ କରନ୍ତି କୋଳାକୋଳ । ଅଶ୍ରୁ ପୂରିତ ବେନି ଡୋଳ ॥
ଏହି ପ୍ରକାରେ ବନ୍ଧୁଜନେ । ଯେ ବିଧି ଯଥା ଅନୁମାନେ ॥
ବଚନ ଆଶିଷ କରନ୍ତି । କୁଳ କୁଶଳ ପଚାରନ୍ତି ॥
ଯେକ ଆରେକ କହିକଥା । ଆନନ୍ଦେ କହି କୃଷ୍ଣଗାଥା ॥
କୃଷ୍ଣ ଭକତି ହୃଦେ ଘେନି । ମିଳିଲେ ପାଣ୍ଡବ ଜନନୀ ॥
ଭାତୃ ଭଗିନୀ ଜନ ସ୍ଥାନ । ପୁତ୍ର ପଉତ୍ର ଅନୁପାମ ॥
ତାତ ଜନନୀ ମୁଖ ଚାହିଁ । ଭାତୃ କାମିନୀ ମଧ୍ୟେ ଥାଇ ॥
ଅନାଇ ଗୋବିନ୍ଦ ଶ୍ରୀମୁଖ । ଛାଡ଼ିଲେ ଦୁଃଖ ମୋହ ସୁଖ ॥
ବସୁଦେବର ମୁଖ ଚାହିଁ । ବୋଲଇ ଶୋକ ଭର ହୋଇ ॥
ଭୋତାତ ଯେମୋହର ଜନ୍ମ । ମନୁଷ୍ୟ ମଧ୍ୟେ ହୀନକର୍ମ ॥
ଯେତେ ଆପଦ ମୋତେ ହୋଇ । ମୋ ତହୁଁ ଆନ କେବା ସହି ॥
ଯେତେ ଆପଦ ନ ସୁମରି । ଅଭାଗ୍ୟ ଜୀବନ ମୋହରି ॥

ସୁହୃଦ ଜ୍ଞାତି ପୁତ୍ରଭାଇ । ପିତା ଜନନୀ ଯାର ଥାଇ ॥
ଆପଦେ ନ କରନ୍ତି ଚିନ୍ତା । ତାହାକୁ ବାମଟି ବିଧାତା ॥
ଯେମନ୍ତ କର୍ମ ମୋ ସ୍ୱଭାବ । ତା ଶୁଣି ବୋଲେ ବାସୁଦେବ ॥
ଶୁଣ ଗୋ ମାତ ମୋ ବଚନ । ଆମ୍ଭଙ୍କୁ ନକର ନିନ୍ଦନ ॥
ଦେଖ ସଂସାର ଯେତେ ଲୋକ । ଈଶ୍ୱର କ୍ରୀଡ଼ାର କନ୍ଦୁକ ॥
ଈଶ୍ୱର ଯନ୍ତ୍ର ମଧ୍ୟେ ପଡ଼େ । କାର୍ଯ୍ୟ କାରଣ ପଥ ହୁଡ଼େ ॥
ଈଶ୍ୱର ଆଜ୍ଞା ଅନୁମତେ । ପ୍ରାଣୀ ଭଜନ୍ତି ନାନାପଥେ ॥
କଂସ ପ୍ରତାପେ ଆମ୍ଭେ ତାପି । ବୁଲିଲୁଁ ବନଦେଶ ବ୍ୟାପି ॥
ପୁଣି ମିଳିଲୁଁ ନିଜଦେଶେ । ଯେ ସବୁ ଈଶ୍ୱର ଆଦେଶେ ॥
କହନ୍ତି ବ୍ୟାସଙ୍କ ନନ୍ଦନ । ଶ୍ରୀ ବାସୁଦେବ ଉଗ୍ରସେନ ॥
ଯାଦବେ ମାନ୍ୟ ଗଉରବେ । ପୂଜିଲେ ନୃପତିଙ୍କୁ ଭାବେ ॥
ରାଜାୟେ କୃଷ୍ଣ ଦରଶନେ । ବସିଲେ ପୂଜିତ ସୁମନେ ॥
ବିରାଟ ପତ୍ନୀ ସୁତାସୁତ । ଗୋବିନ୍ଦ ସମୀପେ ଆଗତ ॥
ଜାହ୍ନବୀ ସୁତ ଦ୍ରୋଣଗୁରୁ । ଅମ୍ବିକା ପୁତ୍ର ମହାମେରୁ ॥
ଗାନ୍ଧାରୀ ଘେନି ପୁତ୍ରଶତ । ଦୌପଦୀ ତୁଲେ ପଣ୍ଡୁସୁତ ॥
ଶକୁନି ସଞ୍ଜୟ ବିଦୁର । ଯେ ଆଦି ଯେତେ ଅନୁଚର ॥
ବିରାଟ ତୁଲେ କୋନ୍ତ ଭୋଜ । ଭୀଷ୍ମକ ଲଗ୍ନାଜିତ ରାଜ ॥
ଦ୍ରୁପଦ ପୁରୁଜିତ ବେନି । ମିଳିଲେ ଧୃଷ୍ଟକେତୁ ଘେନି ॥
କାଶୀ ନୃପତି ଦଶଘୋଷ । ବିଶାଳ ମିଥିଳାର ଈଶ ॥
ମଦ୍ରକ କଇକେୟ ଭାନୁ । ସଙ୍ଗେ ନୃପତି ଯୁଦ୍ଧମନ୍ୟୁ ॥
ସୁଧର୍ମା ବାହାଲିକ ତୁଲେ । ମିଳିଲେ ଯୁଧିଷ୍ଠିର ମେଳେ ॥
ଷୋଳ ସହସ୍ର ଶତେ ନାରୀ । ସମସ୍ତେ ଦେଖି ନରହରି ॥
ଦେଖି ବିସ୍ମିତ ନୃପଗଣେ । ନମିଲେ କୃଷ୍ଣର ଚରଣେ ॥
ରାମ ଗୋବିନ୍ଦ ତୋଷମନେ । ରାଜାଙ୍କୁ ବସାଇ ଆସନେ ॥
ହେ ଭୋଜପତେ ତୁମ୍ଭଜନ୍ମ । ସଂସାର ମଧ୍ୟେ ବଡ଼ଧର୍ମ ॥
ନାନା ପ୍ରକାରେ ପୂଜା ବିଧି । ପୂଜିଲେ ବେଭାର ପ୍ରସିଦ୍ଧି ॥
ଆନନ୍ଦେ ସର୍ବ ନୃପବର । ଯଦୁଙ୍କୁ ବୋଲନ୍ତି ଉତ୍ତର ॥
ଯେ ହରି ଯୋଗୀଙ୍କୁ ଦୁର୍ଲ୍ଲଭ । ତୁମ୍ଭଙ୍କୁ ହୋଇଲେ ସୁଲଭ ॥
ଦୃଷ୍ଟି ଗୋଚରେ କୃଷ୍ଣ ଦେଖି । ନିର୍ମଳ କର ତୁମ୍ଭ ଆଖି ॥
ପାଦ ଉଦକ ସୁରଧୁନି । ପବିତ୍ର କର ପୁର ତିନି ॥
ସକଳ ଶାସ୍ତ୍ରେ ଯାର ବାଣୀ । ଜଗତ ତରେ ତାହା ଶୁଣି ॥
କାଳ ଅନଳ ଯେ ଧରଣୀ । ଭାବେ ଭଜିତ ପ୍ରାୟେମଣି ॥
ଯେ ତାଙ୍କ ଚରଣ ପରଶେ । ତାହାର ପାପ ତାପ ନାଶେ ॥
ଯେମନ୍ତ ପ୍ରଭୁ ମହାବାହୁ । ତୁମ୍ଭଙ୍କୁ ଚତୁର୍ବର୍ଗ ଦେଉ ॥
ତୁମ୍ଭ ଦର୍ଶନ ହାସ୍ୟରସ । ଅନୁଗମନ ପରିହାସ ॥

ଯଜ୍ଞ ସମ୍ଭବ ପିଣ୍ଡଦାନ । ନାନା ସମ୍ପଦ ଅବଧାନ ॥
ନରକ ପଥେ ଗୃହ ବାସେ । ସେ ହରି ନିତ୍ୟେ ତୁମ୍ଭ ପାଶେ ॥
ସ୍ୱର୍ଗାପବର୍ଗ ବାଞ୍ଛା ନାହିଁ । ଯାହା ପାଇଲ ତପି ସାଇଁ ॥
ଯେମନ୍ତ ରାଜାଙ୍କ ବଚନ । ଶୁଣି ହରଷ ଉଗ୍ରସେନ ॥
ବୋଲନ୍ତି ବ୍ୟାସଙ୍କର ବଳା । ନନ୍ଦ ଯେ କୁରୁକ୍ଷେତ୍ରେ ଥିଲା ॥
ନିଜ ଗୋକୁଳ ଆଗମନେ । ମିଳିଲା କୃଷ୍ଣ ସନ୍ନିଧାନେ ॥
ନନ୍ଦକୁ ଦେଖି ଯଦୁଗଣ । ଉଠିଣ ତେଜିଲେ ଆସନ ॥
ପିଣ୍ଡ ଯେସନେ ପ୍ରାଣ ପାଇ । ଉଠି ଆନନ୍ଦେ ସମ୍ଭାଷଇ ॥
ନନ୍ଦକୁ ଦେଖି ନୃପବରେ । ହୃଦେ ଭିଡ଼ନ୍ତି ସ୍ନେହଭରେ ॥
ଆନନ୍ଦେ ଉଠି ବସୁଦେବ । ନନ୍ଦର ପ୍ରିୟ ମିତ୍ରଭାବ ॥
ନନ୍ଦକୁ ଆଲିଙ୍ଗନ କରି । ବେନି ଲୋଚନୁ ବହେ ବାରି
କଂସର କୃତ୍ୟ କ୍ଲେଶ ଯେତେ । ସବୁ ସୁମରି ଶୋକ ଚିତ୍ତେ ॥
କୃଷ୍ଣଙ୍କୁ ଘେନି ରାତ୍ରକାଳେ । ଯେମନ୍ତେ ଥୋଇଲା ଗୋକୁଳେ
ତାହା ସୁମରି ଅତି ସ୍ନେହେ । ଚିତ୍ତ ଜଡ଼ିତ ମାୟା ମୋହେ ॥
ପାଶେ ଯେ ଥିଲେ ରାମହରି । ନନ୍ଦ ଯଶୋଦା ପାଦଧରି ॥
ନମିଲେ ଅତି ଶୋକ ଭୋଳେ । ବସିଲେ ବେନିଜନ କୋଳେ
ହୃଦେ ନିରୋପି ଦିବ୍ୟଜ୍ଞାନେ । ଦୁଃଖ ଛାଡ଼ିଲେ ସୁଖମନେ ॥
ଦେବକୀ ରୋହିଣୀ ଆନନ୍ଦେ । ଭାବେ ଲଗାଇ ହୃଦେ ହୃଦେ ॥
ହୃଦରେ କରି ଆଲିଙ୍ଗନ । ବଦନୁ ନସ୍ଫୁରେ ବଚନ ॥
ଯଶୋଦା ଦେବୀ ଭୁଜଧରି । ହୃଦେ ଲଗାଇ ନରହରି ॥
ପ୍ରାଣ ମନ୍ଦିରେ ସ୍ନେହଭରି । ନିବିଡ଼େ ଆଲିଙ୍ଗନ କରି ॥
ପରମ ଆତ୍ମା ନିଜସୁଖ । ଲଭି ଛାଡ଼ିଲେ ମନୋଦୁଃଖ ॥
ନନ୍ଦ ରାମଙ୍କୁ କଲେକୋଳ । ନୟନୁ ବହେ ଅଶ୍ରୁଜଳ ॥
ବୋଲନ୍ତି ଯଶୋଦାଙ୍କୁ ଚାହିଁ । କିସ ଉପମା ଦେବି ମୁହିଁ ॥
ଇନ୍ଦ୍ର ପଦବୀ ସୁଖ ଭଜି । କେ ପାରେ ତୁମ୍ଭ ଋଣ ଶୁଝି ॥
ବେନି ବାଳକ ସଙ୍ଗତରେ । ପ୍ରାଣ ପୋଷିଲ ତୁମ୍ଭ ଘରେ ॥
ରାମ ଗୋବିନ୍ଦ ଭାଇବେନି । ତୁମେ ଯେ ପିଅର ଜନନୀ ॥
ପାଳିଲ ପୁତ୍ରହୁଁ ଅଧିକେ । ତୁମ୍ଭେ ଯେ ଧନ୍ୟ ତିନିଲୋକେ
ପୋଷିଲ ପୁତ୍ର ସ୍ନେହ ଘେନି । ଅନ୍ଧ ଯେସନେ ଚକ୍ଷୁଘେନି ॥
ପଥେ ନଥିଲେ ଚକ୍ଷୁବେନି । ଯେମନ୍ତେ ନଚଳଇ ପ୍ରାଣୀ ॥
କି ଅବା ସଂସାର ବେଭାର । ତୁମ୍ଭର ନାହିଁ ପରାପର ॥
ଯେମନ୍ତେ ଯଶୋଦାର ତୁଳେ । ରୋହିଣୀ ଦେବକୀ ବସିଲେ ॥
ଶୁଣ ରାଜନ ଚୂଡ଼ାମଣି । ଆନନ୍ଦେ ଗୋପାଳ ତରୁଣୀ ॥
କୃଷ୍ଣଙ୍କୁ ଦେଖି ସୁଖଭୋଳେ । ନିରୋପି ନୟନ ନିଷ୍ଚଳେ ॥
ଲଜ୍ଜା ଉପେକ୍ଷି ଗୋପୀବୃନ୍ଦ । କୃଷ୍ଣର ଦର୍ଶନେ ଆନନ୍ଦ ॥
କୃଷ୍ଣର ବଦନ ଦେଖନ୍ତି । ଚକ୍ଷୁ ପଲକ ନ ଢାଳନ୍ତି ॥
ଚାହାନ୍ତି କୃଷ୍ଣ ସର୍ବଅଙ୍ଗ । ଅଗ୍ନିକି ଯେସନେ ପତଙ୍ଗ ॥
କୃଷ୍ଣର ରୂପ ପ୍ରିୟଭାବେ । ହୃଦେ ଭରିଲେ ଦୃଷ୍ଟି ମାର୍ଗେ ॥
ଆନନ୍ଦ ରୂପ ଭଗବାନ । ଅନ୍ତରେ କଲେ ଆଲିଙ୍ଗନ ॥
ଲଭିଲେ ନିଜ ପ୍ରିୟ ଭାବ । ଯେ ହରି ଲକ୍ଷ୍ମୀଙ୍କୁ ଦୁର୍ଲ୍ଲଭ ॥
ଗୋପୀଙ୍କ ଭାବ ଜାଣିହରି । ଅନନ୍ତ ଯୋଗ ମାୟାକରି ॥
କେହି ନ ଦେଖେ ରୂପ ଡୋଳେ । ମିଳିଲେ ଗୋପୀଙ୍କର ମେଳେ ॥
ପଚାରି ଗୋପୀଙ୍କ କୁଶଳ । କରନ୍ତି ଜଣେ, ଜଣେ କୋଳ
ବୋଲନ୍ତି ଜଗତ ଜୀବନ । କୋମଳ ଗଭୀର ବଚନ ॥
ଶୁଣ ଗୋ ସଖୀ ଗଣେ ମୋର । ମୁଁ ଯେ ରହିଲି ମଧୁପୁର ॥
ଆଇଲି ନିଜ କର୍ମ ଆଶେ । ଭାରା ନିବାରଣ ଉଶ୍ୱାସେ ॥
ଅନେକ ଦିନୁ ନାହିଁ ଦେଖା । ମୁହିଁ ଯେ ତୁମ୍ଭ ନିଜ ସଖା ॥
ଈଶ୍ୱର ମାୟା ଯେ ସଂସାର । ସଂଯୋଗ ବିଯୋଗ ତାହାର ॥
ପବନେ ଯେହ୍ନେ ମେଘମାଳା । ଧରଣୀ ରେଣୁ ଶୁଷ୍କ ତୁଳା ॥
କରଇ ସଂଯୋଗ ବିଯୋଗ । ଯେମନ୍ତେ ଈଶ୍ୱର ସଂଯୋଗ ॥
ମୋହରେ ଭାବ ଯେ କରନ୍ତି । ମୋ ତହୁଁ ଭିନ୍ନ ସେ ନୁହନ୍ତି ॥
ତୁମ୍ଭର ଭାଗ୍ୟ ଯେ ସଂସାରେ । ଭାବେ ଭଜିଲ ମୋ ପୟରେ ॥
ମୁହିଁ ସମସ୍ତ ପ୍ରାଣୀଙ୍କର । ଆବୋରି ଭିତର ବାହାର ॥
କରଇ ସୃଷ୍ଟି ଆଦି ଅନ୍ତ । ଯେହ୍ନେ ଜଡ଼ିତ ପଞ୍ଚଭୂତ ॥
ଉଭୟ ମହିମା ମୋହର । ଜ୍ଞାନୀ ଜନଙ୍କୁ ଆଗୋଚର ॥
ଯେମନ୍ତେ ପ୍ରଭୁ ଭଗବାନ । ଗୋପୀଙ୍କୁ କହି ତତ୍ତ୍ୱଜ୍ଞାନ ॥
ଗୋପୀଏ କୃଷ୍ଣର ବଚନେ । ଶୁଣି ପାଇଲେ ଦିବ୍ୟଜ୍ଞାନେ ॥
ନିର୍ଲ୍ଲୋଭେ କୃଷ୍ଣରୂପ ଚାହିଁ । ବୋଲନ୍ତି ଶିରେ କର ଦେଇ ॥
ଭୋନାଥ ଶୁଣ ପଦ୍ମନାଭ । ଲଭିଲୁ ତୋ ଚରଣ ଭାବ ॥
ତୋହର ଚରଣେ ଆଶ୍ରିତ । ଯୋଗୀଙ୍କ ହୃଦ ମଧ୍ୟେ ସ୍ଥିତ ॥
ଅଜ୍ଞାନ ମାୟାର ପ୍ରବୋଧ । ଭୋନାଥ ତୋର ପଦ୍ମପାଦ ॥
ସଂସାର ଅନ୍ଧକାର କୂପେ । ପ୍ରାଣୀ ଜଡ଼ନ୍ତି ତିନି ତପେ ॥
ତୋ ପାଦ ପଦ୍ମ ଚକ୍ରପାଣି । ତାହାର ତାରଣେ ନିଶ୍ରୁଣି ॥
ଯେମନ୍ତେ ଗୋପୀଙ୍କୁ ନିସ୍ତାରି । ନିଜ ଆସନେ ବିଜେ କରି ॥
ସେ ହରି ଚରଣ କମଳେ । ମନ ମୋ ରହୁ ଧ୍ୟାନବଳେ ॥
ପାଇ ନ ପାଇ କଲି ଆଶ । ବୋଲଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ଶ୍ରୀକୃଷ୍ଣ ବିଜୟେ ତୀର୍ଥ ଯାତ୍ରାୟାଂ ଗୋପିକା ନିସ୍ତାରଣେ ନାମ ଅଷ୍ଟାଶୀତିତମୋଽଧ୍ୟାୟଃ ।*

## ଯେକୋନ ନବତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ।।
ଅଖିଳ ଜନ ଗୁରୁ ହରି । ବ୍ରଜ କାମିନୀ ବୋଧକରି ।।
ଧର୍ମନନ୍ଦନ ତୁଳେ ଯେତେ । ସୁହୃଦ ବାନ୍ଧବ ସହିତେ ।।
ତାହାଙ୍କୁ ଚାହିଁ ନନ୍ଦବାଳ । ହରଷେ ପୁଛନ୍ତି କୁଶଳ ।।
ବନ୍ଧୁ କୁଶଳ ପ୍ରଶ୍ନ କରେ । ଆନନ୍ଦେ ମନକୁ ମୋହିଲେ ।।
କୃଷ୍ଣ ବଚନ ଶୁଣି କର୍ଣ୍ଣେ । ଆନନ୍ଦ ମନେ ବନ୍ଧୁଜନେ ।।
କୃଷ୍ଣର ପାଦ ପଦ୍ମେ ଚାହିଁ । ତାହାଙ୍କ ଦେହେ ପାପ ନାହିଁ ।।
ବୋଲନ୍ତି ସ୍ନେହ ଗଦ ଗଦେ । ଚିତ୍ତ ନିବେଶି ପଦ୍ମପାଦେ ।।
ଭୋନାଥ ଶୁଣ ହୃଷୀକେଶ । ତୋ ମାୟା କର ପରକାଶ ।।
ମହତ ମୁଖୁଁ ଝରେ ନିତି । ଯେ କର୍ଣ୍ଣ ପୁଟେ ତା ଶୁଣନ୍ତି ।।
ନିତ୍ୟେ ପିଅନ୍ତି ମୋଦଭରି । ଯେଣେ ଅଜ୍ଞାନ ମାର୍ଗହରି ।।
ତାର ଅଶୁଭ ଫଳ କାହିଁ । ପୁଣି ବୋଲନ୍ତି କୃଷ୍ଣଚାହିଁ ।।
ଭୋ ନାଥ ଶୁଣ ପୂର୍ଣ୍ଣକାମ । ନିର୍ମଳେ ତୋର ଆତ୍ମାଧାମ ।।
ମାୟା ଅଙ୍କୁର ତୁ ପ୍ରକାଶ । ଯାର ସ୍ମରଣେ ପାପନାଶ ।।
ଆନନ୍ଦ ସୁଖ ସିନ୍ଧୁନାଦ । ଅଖଣ୍ଡ ଅକୁଣ୍ଠିତ ଭାବ ।।
କାଳ ପୂରିତ ମାୟାଗତି । ନିଗମେ ଯହିଁ ବିଶ୍ରାମନ୍ତି ।।
ସ୍ୱରୂପେ ଥାଇ ଜନହିତେ । ତୁ ଦେହ ବହୁ ଯେ ଜଗତେ ।।
ନିଜ ପରମହଂସ ଗତି । ଆମ୍ଭର ତୋର ପାଦେମତି ।।
ବୋଲନ୍ତି ବ୍ୟାସଙ୍କ ନନ୍ଦନ । ଶୁଣ ହେ ପରୀକ୍ଷ ରାଜନ ।।
ଯେମନ୍ତେ ଜନେ ସ୍ତୁତିଭଣି । ଉତ୍ତମ ଜନ ଶିଖାମଣି ।।
ସମୀପେ ଦେଖି ନରହରି । ହୃଦେ ଆନନ୍ଦ କୁରୁନାରୀ ।।
ଆନନ୍ଦେ ବସି ମନସୁଖେ । କହନ୍ତି କୃଷ୍ଣକଥା ମୁଖେ ।।
ଯେକ ଆରେକ ମୁଖଚାହିଁ । ତ୍ରୈଲୋକ୍ୟତରେ ଯାହାଗାଇ ।।
କୃଷ୍ଣ କାମିନୀ ଗୁଣେ ଚାହିଁ । ଦ୍ରୌପଦୀ ହରଷେ ବୋଲଇ ।।
ହେ ବଇଦର୍ଭି ଭଦ୍ରଶୀଳେ । ହେ ଜାମ୍ବବତୀ କଉଶଲ୍ୟେ ।।
ହେ ସତ୍ୟଭାମା ରବିସୁତେ । ସତ୍ୟା ରୋହିଣୀ ଭଦ୍ରା ଯେତେ ।।
କେମନ୍ତେ କୃଷ୍ଣଙ୍କୁ ବରିଲ । ଯେ ଭବ ମାୟା ନିସ୍ତରିଲ ।।
କେମନ୍ତେ କୃଷ୍ଣ ତୁମ୍ଭବର । କହିବ ମୋହର ଆଗର ।।
ଯେମନ୍ତେ ଦ୍ରୌପଦୀ ବଚନେ । ରୁକ୍ମିଣୀ କହେ ତୋଷମନେ ।।
ରୁକ୍ମଣ ମୋର ଜ୍ୟେଷ୍ଠଭାଇ । ଶିଶୁପାଳକୁ ଦେବାପାଇଁ ।।
ମଙ୍ଗଳ ଲଗ୍ନେ ବରବରି । ରାଜାୟେ ଶସ୍ତ୍ରମାନ ଧରି ।।
ମୋତେ ଆବୋରି ରାଜପଥେ । ସୈନ୍ୟ ଧାମନ୍ତି ଯୂଥେ ଯୂଥେ ।।
ଯେମନ୍ତେ ପ୍ରଭୁ ଚକ୍ରପାଣି । ଦୁର୍ଜୟ ବୀର ଶିଖାମଣି ।।
ମୋତେ ହରିଲେ ଯେକା ରଥେ । ସିଂହ ଯେସନେ ପଶୁ ଯୂଥେ ।।
ତାର ଆଶ୍ରିତ ପଦ୍ମପାଦେ । ମୋ ଚିତ୍ତ ସେହୁ ଅପ୍ରମାଦେ ।।
କହି ହରଷ କୃଷ୍ଣବାମା । ପୁଣି ବୋଲଇ ସତ୍ୟଭାମା ।।
ମୋର ପିଅର ଶକ୍ରାଜିତ । ବନେ ଶୁଣିଲା ଭ୍ରାତହତ ।।
ମନେ ବିଚାରି ପୁଣିପୁଣି । କୃଷ୍ଣ ମାଗିଲେ ମୋତେମଣି ।।
ମୁଁ ଯେ ନଦେଲି ଲୋଭ ବଶେ । ତେଣୁ ଗୋବିନ୍ଦ ଅବିଶ୍ୱାସେ ।।
ମୋ ଭ୍ରାତା ବନେ ସଂହାରିଲା । ଯେମନ୍ତେ ଅପବାଦ ଦେଲା ।।
ସେ ଅପବାଦ ମାର୍ଜିବାରେ । କୃଷ୍ଣ ମିଳିଲା ବନଘୋରେ ।।
ଋକ୍ଷ ଜାମ୍ବବ ଯୁଦ୍ଧେ ଜିଣି । ମଣି ଆଣିଲେ ଚକ୍ରପାଣି ।।
ପିତା ମୋ କଣ୍ଠେ ମଣିଦେଲା । କୃଷ୍ଣ ଚରଣେ ସମର୍ପିଲା ।।
ଯେଣୁ ମୁଁ କୃଷ୍ଣର ଯୁବତୀ । ତା ଶୁଣି ବୋଲେ ଜାମ୍ବବତୀ ।।
ଯେ ମଣି ହେତୁ ନରହରି । ମୋ ତାତ ତୁଲେ ଯୁଦ୍ଧକରି ।।
ତ୍ରିନବ ଦିନ ମୟାଘୋର । ଯୁଦ୍ଧେ ହାରିଲା ତାତ ମୋର ।।
ଗାଢ଼ ପ୍ରହାରେ ତନୁକ୍ଷୀଣ । ପ୍ରତକ୍ଷ ଜାଣି ବିଷ୍ଣୁ ଚିହ୍ନ ।।
ଜାଣିଲା ଯେ ମୋ ନିଜନାଥ । ରଘୁନନ୍ଦନ ସୀତାକାନ୍ତ ।।
ନିଜ ଅପରାଧ ବିଚାରି । ମଣି ମୋହର କଣ୍ଠେ ଭରି ।।
ଗୋବିନ୍ଦ ପାଦେ ଦେଲା ଆଣି । ଯେଣୁ ମୁଁ କୃଷ୍ଣର ଘରଣୀ ।।
ଯେ କଥା ଜଗତେ ପ୍ରସିଦ୍ଧି । ତା ଶୁଣି ବୋଲଇ କାଳିନ୍ଦୀ ।।
ପିତା ବଚନେ ଘୋର ବନେ । ତପ କଲଇ ଶୁଦ୍ଧମନେ ।।
ଅଭୟ ପାଦ ସେବା ଆଶେ । ତା ଜାଣି କୃଷ୍ଣ ମୋର ପାଶେ ।।
କୃଷ୍ଣ ଅର୍ଜ୍ଜୁନ ବେନି ଜନେ । ମିଳିଲେ ନିର୍ଜନ କାନନେ ।।
ଯେଣୁ ମୋ ବର ଚକ୍ରପାଣି । ଭଦ୍ରା ବୋଲଇ ତାହାଶୁଣି ।।
ଅର୍ଜ୍ଜୁନ ପେଷି ମୋତେ ଆଣି । ବିଭା ହୋଇଲେ ଚକ୍ରପାଣି ।।
ଶୁଣ ଗୋ ଦ୍ରୁପଦ କୁମାରୀ । ମୋ ପିତା ସ୍ୱୟଂବର କରି ।।
ଅନେକ ଥିଲେ ରାଜାଗଣେ । କେତେ କହିବି ଜଣେ ଜଣେ
ମୋତେ ହରିଲେ ଯେକା ରଥେ । ସିଂହ ଯେସନେ ଶ୍ୱାନ ଯୂଥେ ।।
ହରିଙ୍କି ନିଜ ଭାବବଳେ । ମୋ ଭ୍ରାତୃଗଣ ମୋର ଛଳେ ।।
କୃଷ୍ଣର ତୁଲେ କଲେ ରଣ । ତାହାଙ୍କୁ ଜିଣି ତତକ୍ଷଣ ।।
ମୋତେ ଆଣିଲେ ଶ୍ରୀନିବାସେ । ନିଜ ଚରଣ ସେବା ଆଶେ ।।
ସେ ପାଦ ପଦ୍ମେ ମୋର ସେବା । ହେଉ ଯେମନ୍ତ ଆଜ୍ଞା ଦେବା ।।
ନିବର୍ତ୍ତି ଭଦ୍ରାର ବଚନେ । ସତ୍ୟା ବୋଲଇ ତୋଷମନେ ।।
ମୋ ପିତା ଭୁବନେ ପ୍ରଚଣ୍ଡ । ଥିଲେ ଗୋ ବୃଷ ସପ୍ତ ଷଣ୍ଢ ।।
ଅତି ସୁତୀକ୍ଷ୍ଣ ଶୃଙ୍ଗ କ୍ଷୁର । ଦେଖି ଡରନ୍ତି ସୁରନର ।।

ତାହାଙ୍କୁ ନିଜ ପୁରେ ଥୋଇ । ଘୋଷଣା ଚାରିଦିଗେ ଦେଇ ॥
ରାଜାଙ୍କ ବଳ ପରୀକ୍ଷାର୍ଥେ । ରତ୍ନେ ଖଚିତ କଲାମୋତେ ॥
ଯେ ସପ୍ତଷଣ୍ଢ ଏକକାଳେ । ଯେ ବାନ୍ଧିପାରେ ବାହୁବଳେ ॥
ଯେ କନ୍ୟା ହୋଇବ ତାହାର । ଯେ ସତ୍ୟ ବଚନ ମୋହର ॥
ତା ଶୁଣି ନୃପତି କୁମରେ । ମିଳିଲେ ମୋ ପିତା ରାଜ୍ୟରେ
ଭୟେ ଭାଜିଲେ ସର୍ବ ନୃପେ । ବୃଷ ନିବାନ୍ଧି ମନସ୍ତାପେ ॥
ଯେମନ୍ତେ ପ୍ରଭୁ ବନମାଳୀ । ବେଗେ ମୋ ପିତାପୁରେ ମିଳି
ସେ ସପ୍ତବୃଷ ଏକାବେଳେ । ବନ୍ଧନ କଲେ ବାହୁବଳେ ॥
ଛାଗ ବାଳକ ରାଜପଥେ । ବାଳକ ବାନ୍ଧନ୍ତି ଯେମନ୍ତେ ॥
ଯେମନ୍ତେ ବୃଷ ବନ୍ଦିକରି । ମୋତେ ଲଭିଲେ ନରହରି ॥
ସମରେ ନୃପତିଙ୍କି ଜିଣି । ଦ୍ୱାରିକା ନେଲେ ଚକ୍ରପାଣି ॥
ସେ ହରି ଅଭୟ ଚରଣେ । ମୋ ଚିତ୍ତ ସେହୁ ଅନୁକ୍ଷଣେ ॥
ତାର ଶରଣେ ନାହିଁ ବାଧା । ତା ଶୁଣି ବୋଲେ ମିତ୍ରବିନ୍ଦା ॥
ମୋ ପିତା ମାତୁଳ କୁମର । ଚିତ୍ତେ ବରିଲା ମୋତେ ବର ॥
କୃଷ୍ଣଙ୍କୁ ଆଣି ନିଜପୁରେ । ବିବାହ ଦେଲେ ସହୋଦରେ ॥
ଶୁଣ ଦ୍ରୌପଦୀ ମନଦେଇ । ମୋହର ଚିତ୍ତ କୃଷ୍ଣ ତହିଁ ॥
ବଳ ଅକ୍ଷୌହିଣୀ ସହିତେ । ସଖୀ ସମେତେ ଦେଲେ ମୋତେ ॥
ସେ ହରି ପାଦ ମୋର କର୍ମେ । ସ୍ମରଣ ହେଉ ଜନ୍ମେ ଜନ୍ମେ ॥
ଯେ ଭବ ମଧ୍ୟେ ମୋର ଜନ୍ମ । ଅର୍ଜିତ କର୍ମେ ପାଇ ଶ୍ରମ ॥
ସେ କୃଷ୍ଣ ପାଦେ ସେବା ହେଉ । ଯେ ମୋର ଭବଭ୍ରମ ଯାଉ ॥
ଯେମନ୍ତେ ଶୁଣି ସର୍ବବାଣୀ । ଲକ୍ଷଣା କହେ ପରିମାଣି ॥
ଶୁଣ ମୋ ଧର୍ମସୁତ ରାଣୀ । ମୋର ବିବାହ କର୍ମବାଣୀ ॥
ନାରଦ ମୁନି ଶୁଦ୍ଧଚେତା । କୃଷ୍ଣର ଜନ୍ମ କର୍ମକଥା ॥
ନିତ୍ୟେ କହନ୍ତି ପିତା ପାଶେ । ତା ଶୁଣି ମନ ମୋ ବିଶ୍ୱାସେ
ଯାହାର ପାଦେ ଲୋଭକରି । ଲକ୍ଷ୍ମୀ ଯେ ଭୁଜେ ଅଛି ଧରି ॥
ଲୋକପାଳଙ୍କୁ କରି ଦୂର । ସେବଇ କୃଷ୍ଣର ପୟର ॥
ମୋ ପାଦେ ରହିଲା ଗୋ ଚିତ୍ତ । କ୍ଷଣ କ୍ଷଣକେ ମୋହ ଜାତ ॥
ମନ ବଚନ କୃଷ୍ଣ ପାଦେ । କଣ୍ଠ ମୋ ଶୋକ ଗଦଗଦେ ॥
ମୋର ପିଅର ହୃଦସେନ । କ୍ଷଣକେ ଜାଣିଲା ମୋ ମନ ॥
ସ୍ୱଭାବେ ଦୁହିତା ବତ୍ସଳ । ପୁଣ୍ୟ ପବିତ୍ର ଯାର କୁଳ ॥
ଉପାୟ କଲା ମୋର ଅର୍ଥେ । ଶୁଣ କହିବି ଯେକ ଚିତ୍ତେ ॥
ଭୋ ଦେବୀ ତୋର ସ୍ୱୟମ୍ବରେ । ଯେମନ୍ତେ ଦ୍ରୁପଦ ନଗରେ ॥
ଲାଖ ଭିଆଣ ପାର୍ଥ ଛଳେ । ମତ୍ସ୍ୟ ସଂକାଶ କୁମ୍ଭଜଳେ ॥
ବସ୍ତ୍ର ଆଚ୍ଛାଦି ଦଶ ଦିଶେ । ଧନୁ ସ୍ଥାପିଲା କୁମ୍ଭ ପାଶେ ॥
ତା ଶୁଣି ନୃପତି କୁମରେ । ମିଳିଲେ ମୋ ପିତା ନଗରେ ॥
ଜାଣନ୍ତି ଅସ୍ତ୍ରଶସ୍ତ୍ର ତତ୍ତ୍ୱ । ସ୍ୱଗୁରୁ ତୁଲେ ଉପଗତ ॥
ଚାରି ଦିଗରେ ଯେତେ ରାଜା । ଦେଖି ମୋ ପିତାକଲା ପୂଜା ॥
ପୂଜିଲା ନାନା ଉପହାରେ । ଯାହାକୁ ଯେମନ୍ତ ବେଭାରେ ॥
ସକଳେ ମିଳି ଲାଖତଳେ । ଧନୁ ସନ୍ଧାନ ବାହୁ ବଳେ ॥
କେ ଧନୁ ନ ପାରନ୍ତି ଟୋକି । କା ମୁଖୁଁ ରୁଧିର ନିକଳି ॥
କେ ଗୁଣଦେଇ ନ ପାରନ୍ତି । କେ ଛାଡ଼ି ଭୂମିରେ ପଡ଼ନ୍ତି ॥
କେ ଧନୁ ହୁଳେ ଗୁଣତାଡ଼ି । ପଡ଼ନ୍ତି ଧନୁ ହୃଦେ ମାଡ଼ି ॥
ମାଗଧ ଆଦିବୀର ଯେତେ । ଧନୁସାଧନ ଅନୁମତେ ॥
ଥିଲେ ଯେ ଭୀଷ୍ମ ଦୁର୍ଯ୍ୟୋଧନ । ରବି ନନ୍ଦନ ବୀରକର୍ଣ୍ଣ ।
ମୀନର ନ ଦେଖିଲେ ସ୍ଥାନ । ତା ଦେଖି ଉଠିଲା ଅର୍ଜ୍ଜୁନ ॥
ଧନୁ ଆମଣ୍ଡି ଦୃଢ଼ମୁଷ୍ଟି । ଉର୍ଦ୍ଧ୍ୱେ ନାରାଚ ଅଧୋଦୃଷ୍ଟି ॥
ମତ୍ସ୍ୟ ଆଭାସ ଦେଖି ଜଳେ । ବାଣ ଛାଡ଼ିଲା ଅନ୍ତରାଳେ ॥
ମତ୍ସ୍ୟ ନ ଲାଗି ବାଣଗଲା । ଲାଜେ ଅର୍ଜ୍ଜୁନ ବାହୁଡ଼ିଲା ॥
ଯେମନ୍ତେ ସକଳ ରାଜନ । ଲାଜେ ନିବୃତ୍ତେ ଅନ୍ତରାଳେ ॥
ମାନୀଙ୍କ ମାନ ଭଙ୍ଗ ଡରେ । କେହି ନ ମିଳିଲେ ଧନୁର୍ଦ୍ଧରେ
ଯେମନ୍ତେ କମଳ ଲୋଚନ । ଧନୁମନ୍ଦିରେ ଆଗମନ ॥
ଲୀଳାୟେ ବାମକରେ ଧରି । ଗୁଣ ଟଙ୍କାରେ ନାଦକରି ॥
ମତ୍ସ୍ୟକୁ ଚାହିଁ କୁମ୍ଭ ଜଳେ । ବାଣ ଛାଡ଼ିଲେ ବାହୁବଳେ ॥
ନାରାଚ ତେଜେ ମୀନଗୋଟି । ତଳେ ପଡ଼ିଲା ଚକ୍ରକାଟି ॥
ତାହାନ୍ତେ ଅଭରି ସକଳେ । ବିବୁଧେ ଗଗନ ମଣ୍ଡଳେ ॥
ଦୁନ୍ଦୁଭି ବାଦ୍ୟନାଦ କଲେ । ଜୟ ଶବଦ ମହୀତଳେ ॥
ହରଷେ ଭୋଜ ସୁରଗଣେ । ଆନନ୍ଦ ସବୁରିଙ୍କ ମନ ॥
ଶୁଣ ପାଞ୍ଚାଳି ଶୁଦ୍ଧଚିତ୍ତେ । ତହିଁ ମୁଁ ମିଳିଲି ଯେମନ୍ତେ ॥
ଗଭୀର ନୂପୁର ଶବଦେ । ସ୍ୱର୍ଣ୍ଣ ପାହୁଡ଼ ବେନିପାଦେ ॥
କରେ ନିର୍ମାଣ ରତ୍ନମାଳ । ମୋହନ ଭୁବନ ମଣ୍ଡଳ ॥
ବିବିଧ ପାଟ ବସ୍ତ୍ର ପିନ୍ଧି । କବରୀ ଭାରେ ପୁଷ୍ପବାନ୍ଧି ॥
ଅଳପେ ଲାଜେ ମନ୍ଦହାସେ । ମୁଖ ଚାହିଁଣ ରଙ୍ଗରସେ ॥
ନିକଟେ ଦେଖି ବନମାଳୀ । ଲଜ୍ଜାକୁ ଛାଡ଼ି ମୁଖତୋଳି ॥
ନୀଳ କୁନ୍ତଳ ମୋ କପୋଳେ । ରତ୍ନକୁଣ୍ଡଳ ଖଣ୍ଡସ୍ଥଳେ ॥
ଶଶୀର ପ୍ରାୟେ ମୁଖ ସାଜେ । କଟାକ୍ଷ ଲୋଚନ ବିରାଜେ ॥
ଦେଖନ୍ତି ସକଳ ରାଜନ । ନିର୍ମଳ ବିଶାଳ ଲୋଚନ ॥
ଭୋ ସଖୀ ଦୂର କରି ଲାଜ । ଧୀରେ ତୋଳିଲି ବେନିଭୁଜ ॥
କୃଷ୍ଣର ଦେହେ ଚିତ୍ତମୋର । ରଙ୍ଗେ ଦେଖନ୍ତି ସୁରନର ॥

ଶଙ୍ଖ ଶବଦ ଜୟନାଦେ । ମାଳ ମୁଁ ଦେଲି କୃଷ୍ଣହୃଦେ ॥
ମୃଦଙ୍ଗ ପଟହ ଶବଦ । ଶୁଭେ ଦୁନ୍ଦୁଭି ବାଦ୍ୟନାଦ ॥
ରଙ୍ଗେ ନାଚନ୍ତି ନାରୀଜନେ । ଗୀତ ସୁସ୍ୱର ନାଦସ୍ୱନେ ॥
ଯେମନ୍ତ କୃଷ୍ଣ ମୁଁ ବରି । ରାଜାଏ ଦେଖି ଯୁଦ୍ଧକରି ॥
ମୋ ରୂପ ଦେଖି ଅସମ୍ଭାଳ । ଯୁଦ୍ଧ ଆରମ୍ଭି କଲେ ଗୋଳ ॥
ତା ଦେଖି ପ୍ରଭୁ ବନମାଳୀ । ଉତ୍ତମ ରଥେ ମୋତେ ତୋଳି
ସନ୍ନିଧେ ଦେଖି ରଣସଜ୍ଜ । ରଥେ ହୋଇଲେ ଚତୁର୍ଭୁଜ ॥
ଚାରି ତୁରଙ୍ଗ ରତ୍ନଯୁତ । ଶାରଙ୍ଗ ଧନୁଧରି ହସ୍ତ ॥
ରତ୍ନ ବିମାନ ଜନମୋହେ । ଦାରୁକ ବିଷ୍ଣୁ ତେଜ ବହେ ॥
ଦେଖନ୍ତି ସର୍ବ ରାଜାଗଣ । ଯୁଦ୍ଧେ ଜିଣିଲେ ନାରାୟଣ ॥
ଶୁଣ ପାଞ୍ଚାଳି ଯେକ ମେଳେ । ମୃଗଙ୍କ ମଧ୍ୟେ ସିଂହ ଯେହ୍ନେ ॥
ଅନେକ ରାଜା ରାଜପଥେ । ରୁନ୍ଧିଲେ ଅତିବଳ ବନ୍ତେ ॥
ସଜ୍ଜିତ ହୋଇ ଧନୁ ଧରି । ରହିଲେ କୃଷ୍ଣଙ୍କୁ ଆବୋରି ॥
ସିଂହ ଯେସନେ ଗଜଯୂଥେ । ମାଇଲେ ରାଜା ରାଜପଥେ ॥
କୃଷ୍ଣ ଶାରଙ୍ଗ ଧନୁର୍ବାଣେ । ରଣେ ପଡ଼ିଲେ ରାଜାଗଣେ ॥
ବାହୁ ଚରଣ କନ୍ଧ ଛିଡ଼ି । ପଡ଼ିଲେ ରଣଭୂମି ମାଡ଼ି ॥
ଥୋକାଏ ପ୍ରାଣର ବିଶ୍ୱାସେ । ପଳାଇଗଲେ ନିଜଦେଶେ ॥
ସମର ଜିଣି ବନମାଳୀ । ବିଜୟ କଲେ କୁଶସ୍ଥଳୀ ॥
ଅତି ସୁନ୍ଦର ଅଳଂକୃତ । ଧ୍ୱଜ ଅଙ୍କୁଶ ନାନାଚିତ୍ର ॥
ନାନା ତୋରଣ ରଥଶୋହେ । ଦେଖନ୍ତେ ଜନମନ ମୋହେ ॥
ସେ କୁଶସ୍ଥଳୀ ଦିବାଭୂମି । ଆତ୍ମା ସ୍ୱଇଛେ ଯହିଁ ଜନ୍ମି ॥
ପିତା ମୋହର ବିଭା କାଳେ । ବନ୍ଧୁ ବାନ୍ଧବ ଜ୍ଞାତି ମେଳେ ॥
ପୂଜିଲା ନାନା ଉପହାରେ । ଅନ୍ନ ଭୋଜନ ସୁବେଭାରେ ॥
ଅନେକ ଦାସଦାସୀ ଧନ । ବାଜୀ କୁଞ୍ଜର ବହୁ ସୈନ୍ୟ ॥
ବିବିଧ ଧନ ବସ୍ତ୍ର ଆଣି । ନେଲାକ ସର୍ବ ପରିମାଣି ॥
କୃଷ୍ଣଙ୍କୁ ଯଉତୁକ ଦେଲା । ଅନେକ ଭକ୍ତି ଭାବକଲା ॥
ଯେ ହରି ନିଜ ଧର୍ମକର୍ମ । ମହାମହିମା ପୁଣ୍ୟକାମ ॥
ସେ ହରି ପାଦ ପଦ୍ମତଳେ । ମୋ ନିଜ ସଖୀ ସଙ୍ଗମେଳେ ॥
ତାହାର ଗୃହବାସ ସଙ୍ଗେ । ନିର୍ଭୀକ ଚିତ୍ତ ଅନୁରାଗେ ॥
ତାର ସେବାରେ ଚିତ୍ତ ରହୁ । ତା ପାଦ ସେବି ଦିନ ଯାଉ ॥
ଯେମନ୍ତ ଲକ୍ଷଣା ବଚନେ । ଷୋଳ ସହସ୍ର ନାରୀଜନେ ॥
ଶତ ଅଧିକ ସେ ସ୍ୱଭାବେ । ହସି କହନ୍ତି ପ୍ରୟଭାବେ ॥
ଭୂମି ନନ୍ଦନ ମହାବୀର । ଦୁର୍ଜ୍ଜୟ ନାରକା ଅସୁର ॥
ଦିଗବିଜୟେ ବୀରମଣି । ଅନେକ ରାଜକନ୍ୟା ଆଣି ॥
ନିଜ ଭୁବନେ ଥିଲା ଭରି । ସମରେ କୃଷ୍ଣ ତାକୁ ମାରି ॥
ଆମ୍ଭଙ୍କୁ ବନ୍ଦୀ ମୋକ୍ଷକରି । ଆଣିଲେ ପ୍ରଭୁ ଦଇତାରି ॥
ଘୋର ସଂସାର ମାୟାଦ୍ୱନ୍ଦ୍ୱ । ଧ୍ୟାନେ ଛେଦଇ ଯାର ପାଦ ॥
ସେ ହରି ଆତ୍ମ ଚିତ୍ତ ଜାଣି । ଉଦ୍ଧରି ନିଜପୁରେ ଆଣି ॥
ଆମ୍ଭେ ତାହାର ନିଜ ଦାସୀ । ଅଭୟ ପାଦ ପଦ୍ମେ ପଶି ॥
ସ୍ୱଭାବେ ଆତ୍ମାରାମ ସେହି । ତାହାର ଆଦି ଅନ୍ତନାହିଁ ॥
ଶୁଣ ସାଧବୀ ଆମ୍ଭବାଣୀ । ଚିତ୍ତେ ଯେମନ୍ତ ପରିମାଣି ॥
ଶାମ୍ରାଜ୍ଞ ସୁର ରାଜଭୋଗ । ଶୁଦ୍ଧ ସୁରମ୍ୟ ସାଧଯୋଗ ॥
ବିଚିତ୍ର ବହୁଲୋକେ ଶୋଭା । ସ୍ୱର୍ଗାଦି ବଇକୁଣ୍ଠ କିବା ॥
ଯେଣେ ଆମ୍ଭର ନାହିଁ ଇଚ୍ଛା । ଅଭୟ ପାଦ ପଦ୍ମେ ଦୀକ୍ଷା ॥
ଶ୍ରୀକୃଷ୍ଣ ପାଦ ପଦ୍ମ ଧୂଳି । କୁଚ କୁଙ୍କୁମେ ଆମ୍ଭେ ବୋଳି
ତେଣୁ ସୁଗନ୍ଧ ଅତି ସ୍ଥୁରେ । ନିତ୍ୟେ ବହିବୁ ଆମ୍ଭେ ଶିରେ ॥
ଯେ ପାଦ ସମ୍ପାଦନ ନିତି । ବାଞ୍ଛନ୍ତି ଗୋପାଳ ଯୁବତୀ ॥
ସେ ପାଦ ପଦ୍ମ ଆମ୍ଭ ଚିତ୍ତେ । ସ୍ମରଣ ହେଉ ଅବିରତେ ॥
କୃଷ୍ଣ ମହିମା ଅଗୋଚର । ମୁଁ କୀଟ ଗୋଟିକେ ଅନ୍ତର ॥
ଯେଣେ ହୋଇଲି ଅପରାଧୀ । ଯେହ୍ନେ ଗଗନେ ଲାଖବିନ୍ଧି ॥
ସୁଜନେ ଶୁଣ ହରି ରସ । ମୁଁ ତୁମ୍ଭ ଚରଣର ଦାସ ॥
ବୋଇଲେ ଦାସ ଜଗନ୍ନାଥ । ଗୀତ ବିନୋଦେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିତାୟାଂ ବୈୟାସିକ୍ୟାଂ ଦଶମସ୍କନ୍ଧେ ରାହୁଗ୍ରସ୍ତେ ତୀର୍ଥଯାତ୍ରାୟାଂ ଶ୍ରୀକୃଷ୍ଣ ବିନୋଦେ ଦ୍ରୌପଦୀ କୃଷ୍ଣ ବଧୂକଥନେ ନାମ ଯେକୋନନବତିତମୋଽଧ୍ୟାୟଃ ।*

## ଦ୍ୱିନବତିତମ ଅଧ୍ୟାୟ

ଶୁକ ସନ୍ନିଧେ ଯୋଡ଼ିହସ୍ତ । ଆନନ୍ଦେ ବୋଲେ ପରୀକ୍ଷିତ ॥

### ପରୀକ୍ଷିତ ଉବାଚ

ରାମ ଗୋବିନ୍ଦଙ୍କ ଭଗିନୀ । ସୁଭଦ୍ରା ନାମେଣ କାମିନୀ ॥
କେମନ୍ତେ ଅର୍ଜ୍ଜୁନ ତା ପାଇ । ସେ ଯେ ମୋହର ପିତାମହୀ ॥

### ଶ୍ରୀ ଶୁକ ଉବାଚ

କହନ୍ତି ବ୍ୟାସଙ୍କର ସୁତ । ଶୁଣ ରାଜନ ପରୀକ୍ଷିତ ॥
ଅର୍ଜ୍ଜୁନ ତୀର୍ଥଯାତ୍ରା ଛଳେ । ଭ୍ରମଇଁ ଅବନୀମଣ୍ଡଳେ ॥
ପ୍ରଭାସତୀର୍ଥେ ଏକଦିନେ । ଅର୍ଜ୍ଜୁନ ରହି ତୋଷମନେ ॥
ଶୁଣିଲା ଦ୍ୱାରକାର ବାଣୀ । ନିଜ ମାତୁଳର ନନ୍ଦିନୀ ॥

ସଙ୍କରଷଣ ଅନୁମତେ । ଦୁର୍ଯ୍ୟୋଧନଙ୍କୁ ଦେବା ଅର୍ଥେ ॥
କାହାରି ନାହିଁ ସନମତ । ଶୁଣି ବିଚାରେ ମନେ ପାର୍ଥ ॥
ସୁଭଦ୍ରା ଲଭିବାର ଆଶେ । ତକ୍ଷଣେ ବ୍ରହ୍ମଚାରୀ ବେଶେ ॥
ମାୟାତ୍ରିଦଣ୍ଡୀ ରୂପ ଧରି । ମିଳିଲା ଦ୍ୱାରକାନଗରୀ ॥
ଆପଣା କାର୍ଯ୍ୟ ସିଦ୍ଧି ଆଶେ । ରହି ବରଷା ଚାରିମାସେ ॥
ଯାଦବେ ନିତ୍ୟେ ଅନ୍ନ ଦ୍ୟନ୍ତି । ଏ କଥା ରାମ ନ ଜାଣନ୍ତି ॥
ଦିନେକ କୃଷ୍ଣ ହଳପାଣି । ଅତିଥି ନିଜ ଘରେ ଆଣି ॥
ଶରଧା ଚିତ୍ତେ ଭିକ୍ଷା ଦେଲେ । ହରଷେ ଅର୍ଜୁନ ଭୁଞ୍ଜିଲେ ॥
ଅନ୍ନ ଭୋଜନେ ବୀରମଣି । ଦେଖି ବସୁଦେବ ଦୁଲଣୀ ॥
ବୀରମୋହିନୀ ରୂପ ତା'ର । ଭୁବନେ ନାହିଁ ପଟାନ୍ତର ॥
ଅପାଙ୍ଗ ଲୋଚନେ ଅନାଇଁ । ହୃଦେ ଅନଙ୍ଗ ଭାବ ବହି ॥
ସ୍ୱଭାବେ ଅର୍ଜୁନ ସୁନ୍ଦର । ରୂପେ କାମିନୀ ମନୋହର ॥
ସୁଭଦ୍ରା ଦେଖି ତା' ବଦନ । ସମ୍ଭ୍ରମେ ପୀଡ଼ିତ ମଦନ ॥
ଏକେ ତ କୃଷ୍ଣର ଭଗିନୀ । ରୂପେ ମୋହଇ ପୁର ତିନି ॥
ସବ୍ରୀଡ଼ହାସେ ମୁଖ ଶୋହେ । କଟାକ୍ଷେ ମୁନିଜନ ମୋହେ ॥
ଅର୍ଜୁନ ଦେଖି ଅଭିରାମ । ଚିତ୍ତ ମୋହିତ କୋଟିକାମ ॥
ସୁଭଦ୍ରାରୂପେ ମନ ଦେଇ । ଅର୍ଜୁନ ବସି ବିଚାରଇ ॥
କେମନ୍ତେ ଲଭିବି ଏ ନାରୀ । ନିରତେ ଛିଦ୍ର ଅନୁସରି ॥
ଏମନ୍ତେ ଦେବଯାତ୍ରା କାଳେ । ବନ୍ଧୁବାନ୍ଧବ ଜ୍ଞାତିମେଳେ ॥
ଉତ୍ତମରଥେ କନ୍ୟା ଘେନି । ମଙ୍ଗଳକରଣେ କାମିନୀ ॥
ଦ୍ୱାରକାପୁର ଦୁର୍ଗ ମଧ୍ୟେ । ଚଳନ୍ତି ନୃତ୍ୟ ଗୀତ ବାଦ୍ୟେ ॥
ପିତାମାତାଙ୍କ ଶୁଦ୍ଧଚିତ୍ତେ । କୃଷ୍ଣର ଭାବ ଅନୁମତେ ॥
ଅର୍ଜୁନ ଦେବଯାତ୍ରା ଛଳେ । କନ୍ୟା ହରିଲା ବାହୁବଳେ ॥
ଆପଣେ ନିଜ ରଥେ ବସି । ଧନୁ ଟଙ୍କାରେ ଗୁଣ ଘୋଷି ॥
କନ୍ୟା ଆବୋରି ଥିଲେ ଯେତେ । ନାନା ଆୟୁଧ ଧରି ହସ୍ତେ ॥
ତାହାଙ୍କ ଗର୍ବ ନାଶ କରି । ସ୍ୱଭାଗ ଯେସନେ କେଶରୀ ॥
ପଶୁଙ୍କ ମଧ୍ୟୁ ହରେ ଯେହ୍ନେ । ତା'ଦେଖି ରାମ କୋପମନେ ॥
ଯେହ୍ନେ ପୂର୍ଣ୍ଣିମା ନିଶାକାଳେ । ସମୁଦ୍ର ଉଚ୍ଛୁଳେ ଉଲ୍ଲୋଳେ ॥
ରାମର କୋପ ଦେଖି ହରି । ବାନ୍ଧବ ସଙ୍ଗତେ ବିଚାରି ॥
ବୃଦ୍ଧଙ୍କ ସଙ୍ଗେ ବିଚାରିଲେ । ରାମର କୋପ ଶାନ୍ତି କଲେ ॥
କୃଷ୍ଣ ବଚନେ ହଳପାଣି । ଅନେକ ରତ୍ନବସ୍ତ୍ର ଆଣି ॥
ବରକନ୍ୟାର ବିଭାକାଳେ । ଅନେକ ଯଉତୁକ ଦେଲେ ॥
ଅମୂଲ୍ୟରତ୍ନ ବସ୍ତ୍ର ଧନ । ଅଶ୍ୱ କୁଞ୍ଜର ଦାସୀଜନ ॥
ଘେନି ଆନନ୍ଦେ କନ୍ୟା ବର । ମଙ୍ଗଳେ ଗଲେ ନିଜ ପୁର ॥

ବନ୍ଧୁବାନ୍ଧବ ଯେତେଜନ । ଗଲେ ସେ ଯେ ଯାହା ଭୁବନ ॥
କହନ୍ତି ବ୍ୟାସଙ୍କର ସୁତ । କୃଷ୍ଣମଙ୍ଗଳ ଭାଗବତ ॥
କୃଷ୍ଣର ସଖା ପୂର୍ବକାଳେ । ଥିଲା ଯେ ବିଦେହମଣ୍ଡଳେ ॥
କୃଷ୍ଣର ଅତି ପ୍ରିୟଭାବ । ନାମ ତାହାର ଶ୍ରୁତଦେବ ॥
ଏକାନ୍ତ ହରିଭାବ ଭୋଳେ । ସମ୍ପୂର୍ଣ୍ଣ ହୃଦୟ ନିଷ୍କଳେ ॥
ଯୋଗେ ଇନ୍ଦ୍ରିୟ ବଳ ଜିଣି । ଜଗତଆତ୍ମା ପରିମାଣି ॥
ମିଥିଳାପୁରେ ଗୃହାଶ୍ରମୀ । ବ୍ରାହ୍ମଣଭାବେ ନିତ୍ୟକର୍ମୀ ॥
ଧନ ଅର୍ଜନେ ନାହିଁ ଚିତ୍ତ । କେବଳ ପ୍ରାଣ ବୃତ୍ତି ମାତ୍ର ॥
ଅଧର୍ମମାର୍ଗେ ମନେ ଭୀତି । କ୍ରିୟାକଳାପ କରେ ନିତି ॥
ଏମନ୍ତେ ବହୁଳାଶ୍ୱ ନାମ । ମିଥିଳାନଗରେ ରାଜନ ॥
ସେ ବେନିଜନ ହରିଭାବେ । ଜିତଇନ୍ଦ୍ରିୟ ସେ ସ୍ୱଭାବେ ॥
ତାହାଙ୍କ ଭାବ ଘେନି ହୃଦେ । ଗୋବିନ୍ଦ ପରମଆନନ୍ଦେ ॥
ଭକତଭାବେ ବଶ ହରି । ଉଦ୍ଧବ ସଙ୍ଗେ ଦଇତ୍ୟାରି ॥
ଦାରୁକ ରଥ କଲା ଆଣି । ମୁନିଙ୍କ ସଙ୍ଗେ ଚକ୍ରପାଣି ॥
ରଥ ଆରୋହୀ ହୃଷୀକେଶ । ମିଥିଳାନଗରେ ପ୍ରବେଶ ॥
ନାରଦ ବାମଦେବ ଅତ୍ରି । ବ୍ୟାସ ପରଶୁରାମ ଯତି ॥
ଅସିତ ଦେବଳ ଅରୁଣି । ଦେବଙ୍କଗୁରୁ ଶୁକମୁନି ॥
କଣ୍ୱ ମଇତ୍ରେୟ ଚ୍ୟବନ । ଏ ଆଦି ବ୍ରହ୍ମଋଷିଗଣ ॥
ମିଳିଲେ ସକଳେ ହେଁ ଆସି । ଦେଖି ଗୋବିନ୍ଦ ରୂପରାଶି ॥
ଶୁଣି ଗୋବିନ୍ଦ ଆଗମନ । ମିଥିଳାପଥେ ଯେତେ ଜନ ॥
ବିବିଧ ଅର୍ଘ୍ୟପାତ୍ର କରେ । ମିଳିଲେ କୃଷ୍ଣର ଛାମୁରେ ॥
ଆଦିତ୍ୟ ଉଦୟ ନିକଟେ । ଯେହ୍ନେ ବ୍ରାହ୍ମଣେ ଜଳଘାଟେ ॥
ତେହ୍ନେ ଦିଶନ୍ତି ଶୀରିବସ୍ତ୍ର । ଅନନ୍ତ ରୂପ କି ପ୍ରତ୍ୟକ୍ଷ ॥
ଧନୁତୂଣୀର କମ୍ବୁ ଚକ୍ର । ଗଦା କମଳ ପଦ୍ମନେତ୍ର ॥
ଦେଖିଣ ଆନନ୍ଦ ସବୁରି । ମଙ୍ଗଳ ଶବଦ ଉଚାରି ॥
ଆନର୍ତ୍ତ ଧନ୍ୱ ଯେ ଜାଙ୍ଗଳ । କୁରୁ କଙ୍କ ମତ୍ସ୍ୟ ପାଞ୍ଚାଳ ॥
କୈକୟ ମଧୁ କୁନ୍ତୀ ଆଦି । କୋଶଳଦେଶ ଯେ ପ୍ରସିଦ୍ଧି ॥
ଏ ଆଦି ଯେତେ ଜନପଦେ । କୃଷ୍ଣର ବଦନ ଆନନ୍ଦେ ॥
ପିବନ୍ତି ଚକ୍ଷୁରନ୍ଧ୍ରେ ଭରି । ଅଶେଷ ତପେ ନରନାରୀ ॥
ତାହାଙ୍କ ତପସିଦ୍ଧ କରି । ଭକତବନ୍ଧୁ ନରହରି ॥
ଦିଗପୂରିତ ନିଜ ଯଶ । ତାହାଙ୍କ ମୁଖୁଁ ହୃଷୀକେଶ ॥
ଅଶୁଭନାଶନ ମଙ୍ଗଳ । ଶୁଣି ସାନନ୍ଦ ନନ୍ଦବାଳ ॥
ସର୍ବକୁଶଳ ସ୍ନେହଭରେ । ପ୍ରବେଶ ମିଥିଳାନଗରେ ॥
ମିଥିଳା ପୁର ନରନାରୀ । କୃଷ୍ଣ ଆଗମ ଅନୁସରି ॥

ମଙ୍ଗଳ ଦ୍ରବ୍ୟ ଘେନି କରେ । ମିଳିଲେ କୃଷ୍ଣର ଛାମୁରେ ॥
ଗୋବିନ୍ଦମୁଖ ଦେଖି ଜନେ । ପ୍ରଫୁଲ୍ଲ ନିଶ୍ଚଳ ନୟନେ ॥
କରଅଞ୍ଜଳି ଦେଇ ଶିରେ । ରୋମପୁଳକ କଳେବରେ ॥
ସକଳେ ମୁନିଗଣ ମେଳେ । ନମିଲେ କୃଷ୍ଣ ପାଦତଳେ ॥
ଜନକ ଶ୍ରୁତଦେବ ବେନି । ହୃଦେ ଗୋବିନ୍ଦ ଭାବ ଘେନି ॥
ବୋଇନ୍ତି ଆମ୍ଭ ଅନୁଗ୍ରହେ । ବିଜୟ କଲେ ଦେବରାୟେ ॥
ଏମନ୍ତେ ପରମ ଆନନ୍ଦେ । ପ୍ରଣାମ କଲେ କୃଷ୍ଣପାଦେ ॥
ମୁନି ସମେତେ ନାରାୟଣ । ଅତିଥି କଲେ ନିମନ୍ତ୍ରଣ ॥
କୃଷ୍ଣଙ୍କୁ ଆସନେ ବସାଇ । ପୂଜିଲେ ଷଡ଼ଅର୍ଘ୍ୟ ଦେଇ ॥
ସେ ବେନିଜନଙ୍କର ମନ । ଜାଣନ୍ତି ଜଗତଜୀବନ ॥
ଭାବରେ ବନ୍ଧୁ ଦାମୋଦର । ମନରେ କରନ୍ତି ବିଚାର ॥
ଦୁହିଁଙ୍କ ଘରେ ମୁହିଁ ରହି । ଚିତ୍ତ ଆନନ୍ଦେ ବୋଧ ଦେଇ ॥
ତେବେ ମୁଁ ଯିବି ନିଜ ପୁର । ଏତେ ବିଚାରି ଚକ୍ରଧର ॥
ଜନକ ଗୃହେ ଭଗବାନ । ମୁନିଙ୍କି ଘେନି ଆଗମନ ॥
ଆନନ୍ଦମନେ ମହାରାଜା । ମୁନିଙ୍କି କଲେ ପାଦପୂଜା ॥
ହରଷ ତନୁ ରୋମମୂଳ । ନୟନୁ ବହେ ଅଶ୍ରୁଜଳ ॥
ପଖାଳି ମୁନିଙ୍କର ପାଦ । ଆନନ୍ଦେ କଣ୍ଠ ଗଦଗଦ ॥
ବିଶ୍ୱପବିତ୍ର ପାଦଜଳ । କୁଟୁମ୍ବ ସଙ୍ଗେ ଘେନି ଶିର ॥
ମୁନିଙ୍କ ଚରଣ ସମୀପେ । ପୁଷ୍ପଚନ୍ଦନ ଧୂପ ଦୀପେ ॥
ଅର୍ଘ୍ୟ ଗୋ ବୃଷ ଆଦି ଦେଇ । ମଧୁର ସ୍ୱରେ ବାକ୍ୟ କହି ॥
ଆତ୍ମଦରଶୀ ମୁନିଗଣେ । ଆନନ୍ଦେ ବସିଲେ ଆସନେ ॥
କୃଷ୍ଣଙ୍କୁ ପଲ୍ୟଙ୍କେ ବସାଇ । ବେନିଚରଣ କୋଳେ ଲଇଁ ॥
ପାଦମର୍ଦ୍ଦଇ ମନସୁଖେ । କହେ କୋମଳ ବାଣୀ ମୁଖେ ॥
ଭୋ ନାଥ ସର୍ବପ୍ରାଣୀଙ୍କର । ତୁ ଆତ୍ମାସାକ୍ଷୀ ଦାମୋଦର ॥
ତୋର ଚରଣ ଚକ୍ଷୁଦ୍ୱାରେ । ଦେଖିଲି ମନୁଷ୍ୟ ଶରୀରେ ॥
ତୋହର କର୍ମ ଶୁଣି କର୍ଣ୍ଣେ । ପ୍ରତ୍ୟେକ୍ଷେ ଦେଖିଲି ନୟନେ ॥
ତୋ ପାଦରଜ ଜଗନ୍ମାତା । ଲଭିବା ପାଇଁ କରେ ଚିନ୍ତା ॥
ଏହା ଯେ ଚିତ୍ତେ ଭଲେ ଜାଣି । ସଂସାରୁ ତରଇ ସେ ପ୍ରାଣୀ ॥
ସମଦରଶୀ ଚିତ୍ତ ଯା'ର । ଶାନ୍ତ ନିଷ୍କାମ ମୁନିଙ୍କର ॥
ମରଣେ ଦେଉ ଆତ୍ମପଦ । ଆଗମ ନିଗମେ ପ୍ରସିଦ୍ଧ ॥
ସଂସାର ପ୍ରାଣୀଙ୍କର ମଧ୍ୟେ । ତୁ ନାଥ ଭୂମିଭରା ସାଧେ ॥
ଯାଦବବଂଶେ ହୋଇ ଜାତ । ତୋ ଯଶ ଜଗତେ ବିଦିତ ॥
ତୋ ପାଦରେଣୁ ପାପ ନାଶେ । ନିର୍ମଳ ସୁଜ୍ଞାନ ପ୍ରକାଶେ ॥
ନମସ୍ତେ ପ୍ରଭୁ ଭଗବାନ । ତୁ କୃଷ୍ଣ ବଇକୁଣ୍ଠଧାମ ॥
ତୁ ନର ନାରାୟଣ ରୂପୀ । ଅଶେଷ ପ୍ରାଣୀ ହିତେ ତପୀ ॥
ଭୋ ନାଥ ଘେନି ମୁନିଜନ । ମୋ ଗୃହେ ରହ କିଛିଦିନ ॥
ତୋ ପାଦରଜେ ମୋର କୂଳ । ପବିତ୍ର ହେଉ ଆଦିମୂଳ ॥
ଏମନ୍ତ ରାଜା ବାକ୍ୟ ଶୁଣି । ମନ ଆନନ୍ଦେ ଆଦିମୂଳ ॥
ମିଥିଳା ନରନାରୀଙ୍କର । ପ୍ରୀତି କାରଣେ ଚକ୍ରଧର ॥
ରହିଲେ କେତେଦିନ ତହିଁ । ଜନକ ପ୍ରିୟଭାବ ବହି ॥
ଆନନ୍ଦମନେ ହୃଷୀକେଶ । ଶ୍ରୁତଦେବ ଗୃହେ ପ୍ରବେଶ ॥
ସ୍ୱଗୃହେ ଗୋବିନ୍ଦ ଆଗମେ । ଦେଖି ଶ୍ରୁତଦେବ ବିଭ୍ରମେ ॥
ନମି ଗୋବିନ୍ଦେ ଶୁଦ୍ଧଚିତ୍ତେ । ଉତ୍ତରୀ ତୋଳି ବେନି ହସ୍ତେ ॥
ଭାବେ ସୁମନେ ନୃତ୍ୟ କରି । ଆନନ୍ଦେ ବୋଲେ ହରିହରି ॥
ଶ୍ରୀକୃଷ୍ଣ ପାଦପଦ୍ମ ବେନି । ପୂଜିଲା ପ୍ରିୟଭାବ ଘେନି ॥
ସଙ୍ଗତେ ଘେନି ନିଜ ନାରୀ । ଶ୍ରୀକୃଷ୍ଣପାଦ କରେ ଧରି ॥
ପଖାଳି ଶୀତଳ ଉଦକେ । ଉଦକ ଘେନିଲା ମସ୍ତକେ ॥
ଜଳ ସିଞ୍ଚିଲା ନେଇ ଘରେ । ଯେ ଜଳେ ମନୋରଥ ପୂରେ ॥
ସକଳ ଫଳ ଥାଇ ଯହିଁ । ସେ ପାଦ ପୂଜେ ଭାବ ବହି ॥
ସୁଗନ୍ଧତୃଣ ବାସ ଜଳେ । ଶ୍ୟାମତୁଳସୀ ପଦ୍ମତଳେ ॥
ଯେ ଅବା ଥିଲା ତା ମନ୍ଦିରେ । ଅର୍ପିଲା ସର୍ବ ଉପହାରେ ॥
ବିତର୍କେ ବିଚାରଇ ଚିତ୍ତେ । ପୂର୍ବେ ମୁଁ ପୁଣ୍ୟ କଲି କେତେ ॥
ସେ ପୁଣ୍ୟେ ଲଭିଲି ଏ ଗତି । ମୋର ମନ୍ଦିରେ ଯଦୁପତି ॥
ଯାହାର ପାଦରଇ-ନୀର । ସକଳ ତୀର୍ଥଙ୍କର ଘର ॥
ଆତ୍ମାନିକେତ ମୁନିମେଳେ । ଗୋବିନ୍ଦ ମୋ' ଗୃହମଣ୍ଡଳେ ॥
ଏମନ୍ତେ କୃଷ୍ଣଙ୍କୁ ବସାଇ । କରଅଞ୍ଜଳି ଶିରେ ଦେଇ ॥
ସୁତ କଳତ୍ର ବନ୍ଧୁ ଘେନି । ଚାପଇ କୃଷ୍ଣପାଦ ବେନି ॥
ବୋଲଇ କୋମଳ ବଚନ । ପାଦପଙ୍କଜେ ଦେଇ ମନ ॥
ଆଜ ଯେ ଧନ୍ୟ ମୋର ବଂଶ । ଦେଖିଲି ପରମପୁରୁଷ ॥
ଯେ ହରି ଜଗତ ଭିଆଇ । ଖେଳଇ ସର୍ବରୂପ ହୋଇ ॥
ନିଦ୍ରିତ ପୁରୁଷ ଯେମନ୍ତେ । ସ୍ୱପ୍ନ ଦେଖଇ ନାନାମତେ ॥
ଚିଆଇଁ ପୁଣି ଚିତ୍ତେ ଧାୟେ । ସେ କଥା ମଣେ ସତ୍ୟ ପ୍ରାୟେ ॥
ତୋ ନାମ ଶୁଣନ୍ତି ଯେ କର୍ଣ୍ଣେ । ନିରତେ ଗୁଣନ୍ତି ବଦନେ ॥
ନିଶ୍ଚଳ ଧ୍ୟାନେ ମନେ ଚିନ୍ତି । ତୋର ପ୍ରତିମା ଯେ ପୂଜନ୍ତି ॥
ବିଷୟସଙ୍ଗ ଦୂର କରି । ତୋତେ ଭାବନ୍ତି ହୃଦେ ଧରି ॥
ତାହାଙ୍କ ହୃଦେ ତୁ ଗୋବିନ୍ଦ । ପ୍ରକାଶୁ ଜଳେ ଯେହ୍ନେ ଚନ୍ଦ୍ର ॥
କର୍ମେ ଚଞ୍ଚଳ ଯା'ର ଚିତ୍ତ । ତାହାକୁ ଦୂର ତୁ ଅଚ୍ୟୁତ ॥
ହୃଦରେ ଥାଇ ଦୂର ହେଉ । ତୋତେ ପାଇବେ ସେ ବା କାହୁଁ ॥

ତୋ ଗୁଣ ଯେହ୍ନୁ ଗୁଣେ ରଟେ । ତୁ ଥାଉ ତାହାର ନିକଟେ ॥
ଆତ୍ମାର ଶକ୍ତି ଅଗୋଚର । ଭୋ ନାଥ ମହିମା ତୋହର ॥
ନମସ୍ତେ ପ୍ରଭୁ ନିରଞ୍ଜନ । ଅଧ୍ୟାତ୍ମଜ୍ଞାନୀଙ୍କ ଜୀବନ ॥
ଅଜ୍ଞାନୀ ଦେହବନ୍ତଙ୍କର । ମୃତ୍ୟୁ ସ୍ୱରୂପ ତୁ ନିକର ॥
ସ୍ୱଭାବେ ଦେହ ତୋ'ର ନାହିଁ । ମାୟାରେ ବନ୍ଧୁ ସର୍ବଦେହୀ ॥
କାରଣ ସଙ୍ଗେ ଅକାରଣ । ଉଭୟଲିଙ୍ଗ ତୁ ଧାରଣ ॥
ମାୟା ଆବୃତେ ଶୁଦ୍ଧଦୃଷ୍ଟି । ଏଣୁ ତୋ ନାନା ରୂପ ସୃଷ୍ଟି ॥
ମୁଁ ତୋର ଭୃତ୍ୟଙ୍କ କିଙ୍କର । ସୁହୃଦ କୋଟିକେ ଅନ୍ତର ॥
ମୁଁ ତୋର କି କରିବି ସେବା । ବିଚାରି ମୋତେ ଆଜ୍ଞା ଦେବା ॥
ଦୃଷ୍ଟିଗୋଚର ଯା'ର ତୁହି । ତାହାର କ୍ଳେଶ ଆଉ କାହିଁ ॥
କହନ୍ତି ଶୁକ ମହାମୁନି । ଶ୍ରୁତଦେବର ବାକ୍ୟ ଶୁଣି ॥
ପ୍ରାଣୀଙ୍କ ଆରତଭଞ୍ଜନ । ହରଷେ ପ୍ରଭୁ ଭଗବାନ ॥
ବ୍ରାହ୍ମଣ ହସ୍ତ କରେ ଧରି । ହସି ବୋଲନ୍ତି ନରହରି ॥
ତୋତେ ପ୍ରସନ୍ନ ମନ ମୋର । ତେଣୁ ଅଇଲି ତୋର ଘର ॥
ଏ ମୁନିଜନଙ୍କ ମହିମା । କେ କହିପାରେ ଗୁଣସୀମା ॥
ଏହାଙ୍କ ପାଦରଜ ଶିରେ । ଘେନି ସଂସାରୁ ପ୍ରାଣୀ ତରେ ॥
ଦେବତାକ୍ଷେତ୍ର ତୀର୍ଥଜନେ । ଦର୍ଶନ ସଂସାରୁ ପ୍ରାଣୀ ତରେ ॥
ଦେବତାକ୍ଷେତ୍ର ତୀର୍ଥଜନେ । ଦର୍ଶନ-ସ୍ପର୍ଶନ-ଅର୍ଚ୍ଚନେ ॥
ଶୁଦ୍ଧ କରନ୍ତି ଚିରକାଳେ । ଯେ ଯାହା କର୍ମ ଫଳାଫଳେ ॥
ସାଧୁଙ୍କ ଦରଶନ ମାତ୍ରେ । ଦୁରିତ ନ ରହଇ ଗାତ୍ରେ ॥
ସକଳ ପ୍ରାଣୀ ମଧ୍ୟେ ସାର । ବ୍ରାହ୍ମଣ ଶରୀର ଯାହାର ॥
ସନ୍ତୋଷ ତପ ବିଦ୍ୟାଫଳେ । କ୍ରିୟା କଳାପ ଯୋଗବଳେ ॥
ବ୍ରାହ୍ମଣ ସର୍ବଦେବମୟ । ସେ ମୋର ଦେହଟି ନିଶ୍ଚୟ ॥
ଚତୁରଭୁଜ ମୋର ଦେହୀ । ଏହା ମୁଁ ପ୍ରିୟ ନ ମଣଇଁ ॥
ବ୍ରାହ୍ମଣ ଗୁରୁ ଚାରିବର୍ଣ୍ଣେ । ମୋହର ସ୍ୱରୂପ ଅଭିନ୍ନେ ॥
ତାହା ନ ଜାଣି ମୂଢ଼ଜନେ । ପ୍ରତିମା ପୂଜେ ଦୃଢ଼ମନେ ॥
ଏ ଚରାଚର ବିଶ୍ୱ ମଧ୍ୟେ । ଦେଖନ୍ତି ଯେ ମୋତେ ଅଭେଦେ ॥
ଏ ବିପ୍ରବରେ ଶ୍ରଦ୍ଧା ବହି । ସ୍ୱଧର୍ମଭାବେ ପୂଜ ତୁହି ॥
ଏହାଙ୍କୁ ସେବା କର ନିତ୍ୟେ । ମୋ ଭାବ ପାଇବୁ ଯେମନ୍ତେ ॥
ବିପ୍ରସେବନେ ମୋତେ ପାଇ । ଅନ୍ୟଥା କୋଟି ଯଜ୍ଞେ ନୋହି ॥
ଶୁକ କହନ୍ତି ଶୁଦ୍ଧମନେ । ଏମନ୍ତ ବିଷ୍ଣୁର ବଚନେ ॥
ବିପ୍ରଙ୍କୁ ପୂଜି ନିତି ନିତି । ଲଭିଲେ ଅପବର୍ଗ ଗତି ॥
ଏମନ୍ତେ ପ୍ରଭୁ ଭଗବାନ । ମିଥିଳା ରହି କେତେଦିନ ॥
ତାହାଙ୍କୁ ନିଜ ଜ୍ଞାନ ଦେଇ । ଦ୍ୱାରକା ବିଜେ ଭାବଗ୍ରାହୀ ॥
ସେ ହରିପାଦେ ଦେଇ ଚିତ୍ତ । କହଇ ଦାସ ଜଗନ୍ନାଥ ॥
ସୁଜନେ କୃଷ୍ଣପାଦେ ସେବ । ସଂସାର-ସାଗରୁ ତରିବ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଶ୍ରୁତଦେବ ଅନୁଗ୍ରହୋ ନାମ ଦ୍ୱିନବିତିତମ ଅଧ୍ୟାୟଃ ॥*

## ତ୍ରିନବିତିତମ ଅଧ୍ୟାୟ

ସୁଭଦ୍ରା-ତନୟ-କୁମର । କୃଷ୍ଣସେବକ ମଧ୍ୟେ ସାର ॥
ପ୍ରଣାମ କରି ଶୁକ ପାଦେ । ବୋଲେ ଆନନ୍ଦ ଗଦଗଦେ ॥

### ପରୀକ୍ଷିତ ଉବାଚ

ଭୋ ମୁନି ତୁମ୍ଭର ମହିମା । କେ କହିପାରେ ଗୁଣସୀମା ॥
କୃଷ୍ଣସେବକ ମଧ୍ୟେ ବର । ମୁଁ ତୁମ୍ଭ ଚରଣେ କିଙ୍କର ॥
ପାଣ୍ଡବ କୁଳେ ଜାତ ହୋଇ । ସ୍ୱଭାବେ ଭାଗ୍ୟବନ୍ତ ମୁହିଁ ॥
ତୁମ୍ଭର ମୁଖୁଁ କୃଷ୍ଣବାଣୀ । ନିରତେ ଶ୍ରୁତିପଥେ ଶୁଣି ॥
ଅନେକ ଜନ୍ମ ତପଫଳେ । ଜନ୍ମିଲି ଭାରତମଣ୍ଡଳେ ॥
ଦେଖ ମୋହର ଜନ୍ମକାଳେ । ଚରଣ ଦେଇ ଗଙ୍ଗାଜଳେ ॥
ବ୍ରହ୍ମ ବିଚାର ତୁମ୍ଭ ତୁଲେ । କଲି ଆନନ୍ଦ ସୁଖ ଭୋଳେ ॥
ବିଶ୍ୱସଂସାର ମଧ୍ୟେ ହରି । ଜନ୍ମିଲେ ଯେତେ ରୂପ ଧରି ॥
ମୀନ କମଠ ଆଦି ରୂପ । ଧରି ନାଶିଲେ ମହୀତାପ ॥
ଯେ ଏହା ଶୁଣେ କର୍ଣ୍ଣଦ୍ୱାରେ । ନ ବୁଡ଼େ ସଂସାର ସାଗରେ ॥
ହରି ମହିମା ତୁମ୍ଭେ ଯେତେ । ମୋତେ କହିଲ ଭାଗବତେ ॥
ସଂସାର-ବୃକ୍ଷ-ମୂଳ-କନ୍ଦ । ଅନାଦି ପୁରୁଷ ଗୋବିନ୍ଦ ॥
ନିଜ ସ୍ୱରୂପେ ବ୍ରହ୍ମରାଶି । ଏକ ଅନେକ ରୂପେ ଦିଶି ॥
ବସଇ ସର୍ବଜୀବ ଦେହେ । ବିଷୟ-ମାୟା-ଜଡ଼ ମୋହେ ॥
କର୍ମ କରଇ ତେଜ ବହି । କାର୍ଯ୍ୟକାରଣେ ନ ଲାଗଇ ॥
ଏଣୁ ତା ନିଜ ରୂପ ଭାବ । ସଂସାରେ କେ ଅବା କହିବ ॥
ବେଦ-ବେଦାନ୍ତ କେବା ଜାଣୁ । ସେ ନୋହେ ଅଣୁ ପରମାଣୁ ॥
ନାଭିକମଳୁ ବ୍ରହ୍ମ ଜାତ । ସେ ଖୋଜି ନ ପାଇଲା ଅନ୍ତ ॥
ତା'ର ନିଃଶ୍ୱାସୁଁ ବେଦ ଜନ୍ମି । ତ୍ରିଗୁଣ ମାୟାଚକ୍ରେ ଭ୍ରମି ॥
କେମନ୍ତେ ବିଷ୍ଣୁଙ୍କୁ ଜାଣନ୍ତି । ଏ ମୋର ମନେ ବଡ଼ ଭ୍ରାନ୍ତି ॥
ସ୍ୱଭାବେ ବିଷ୍ଣୁ ନିରଞ୍ଜନ । ନୋହେ ପ୍ରକାଶ ସ୍ଥୂଳ ଶୂନ୍ୟ ॥
ଏ କଥା କହ ମୁନିବର । ନିର୍ମଳ ହେଉ ମୋ ଶରୀର ॥
ଏମନ୍ତ ପରୀକ୍ଷିତ ବାଣୀ । ଶୁକ ବୋଲନ୍ତି ତାହା ଶୁଣି ॥

## ଶ୍ରୀ ଶୁକ ଉବାଚ

ତୁ ପୁଣ୍ୟବନ୍ତ ନୃପବର । ଚଞ୍ଚଳ ମନ ସ୍ଥିର କର ॥
ଜଗତ ଈଶ୍ୱର ମୁରାରି । ସଂସାର ମାୟାଯୋଗେ କରି ॥
ଭିଆଇ ସୂକ୍ଷ୍ମରୂପେ ଜୀବ । ସ୍ଥାବର ଆଦି ଦେହୀ ସର୍ବ ॥
ଆଗେ ଭିଆଣ କଲା ମନ । ଅହଙ୍କାର ବୁଦ୍ଧି ଚେତନ ॥
କର୍ମର ଅର୍ଥେ ଇନ୍ଦ୍ରିଗଣ । ସର୍ଜିଲା ଆଦି ନାରାୟଣ ॥
କର୍ମରୁ ବାସନା ସମ୍ଭୂତ । ତେଣୁଟି ବନ୍ଧ ଏ ଜଗତ ॥
କର୍ମ ବାସନା ରଜ୍ଜୁ ବଳେ । ପ୍ରାଣୀ ଭ୍ରମନ୍ତି ଏ ଶୟଳେ ॥
ଏଣୁ ସେ ଇହ ପରଲୋକେ । ଫଳ ଭୁଞ୍ଜଇ ଦୁଃଖେ ସୁଖେ ॥
ଏ ଘେନି କର୍ମର ଭିଆଣ । ପ୍ରବୃତ୍ତି ନିବୃତ୍ତି କାରଣ ॥
ଦେହ ଧାରଣା ଦଶପ୍ରାଣ । ଭିତରେ ବାହାରେ ପ୍ରମାଣ ॥
ଏମନ୍ତ ସର୍ଜି ବିଶ୍ୱକାୟା । କେ ଜାଣିପାରେ ଗୁଣସୀମା ॥
ବେଦ କେମନ୍ତେ ତାହା ଜାଣି । କହେ ମହିମା ପରିମାଣି ॥
ବୁଦ୍ଧି ଇନ୍ଦ୍ରିୟ ପ୍ରାୟ ମନ । ଏହାଙ୍କ ବିଷୟ ପ୍ରମାଣ ॥
ଯେ ରୂପେ ହୋଇବ ପ୍ରବେଶ । ତହିଁକି ଦେବ ଉପଦେଶ ॥
ବିଧାତା ଆଦି ଯେତେ ମୁନି । ବେଦରୁ ବ୍ରହ୍ମଭାଗ ଘେନି ॥
ସେ ବ୍ରହ୍ମଜ୍ଞାନକୁ ଶ୍ରବଣ । ଆଦର କରନ୍ତି ଧାରଣ ॥
ବେଦ ବଚନେ ବ୍ରହ୍ମ ଜାଣି । ଭବସାଗରୁ ତରେ ପ୍ରାଣୀ ॥
ବେଦୁଁ ପରମ ଗତି ପା'ନ୍ତି । ଉପନିଷଦ ଭାଗ ଚିନ୍ତି ॥
ଶୁଣ ପାଣ୍ଡବ ଚୂଡ଼ାମଣି । ଯେମନ୍ତେ ବେଦୁଁ ବ୍ରହ୍ମ ଜାଣି ॥
ପୁଣ୍ୟ ଆଶ୍ରମ ବଦରିକା । ଯହିଁ ଗୋବିନ୍ଦ ବେନି ସଖା ॥
ସେ ନର ନାରାୟଣ ରୂପେ । ସାଧନ୍ତି ଜନ୍ମସୁଖ ତପେ ॥
ଭାରତ ମଧ୍ୟେ ଯେତେ ଜନ୍ତୁ । ଏହାଙ୍କ ତପ ତାଙ୍କ ହେତୁ ॥
କଳାପ ଗ୍ରାମେ ଯଜ୍ଞବାଟେ । ମୁନିଏ ଅଛନ୍ତି ନିକଟେ ॥
ତହିଁ ନାରଦ ମହାମୁନି । ମିଳିଲେ ବିଷ୍ଣୁଭାବ ଘେନି ॥
ସେ ମୁନି ବିଷ୍ଣୁର ସ୍ୱରୂପ । ଜୀବନମୁକ୍ତ ଜ୍ଞାନଦୀପ ॥
ନିରତେ ଜନ ଉପକାରେ । ଭ୍ରମନ୍ତି ଚତୁର୍ଦ୍ଦଶପୁରେ ॥
ବୀଣାଶବଦ କରେ ବାଇ । ମିଳିଲେ ବିଷ୍ଣୁ ପାଶେ ଯାଇ ॥
ଚରଣେ ଦେଇ ବେନିକର । ନମିଲେ ବ୍ରହ୍ମାଙ୍କ କୁମର ॥
କହନ୍ତି ଶୁକ ମୁନିବର । ଶୁଣ ପରୀକ୍ଷ ନୃପବର ॥
ବିଷ୍ଣୁ ନାରଦଙ୍କ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ବୋଲି ନାରଦ ମହାଋଷି । ବିଷ୍ଣୁ ଚରଣତଳେ ବସି ॥
ନମଇଁ ପ୍ରଭୁ ନାରାୟଣ । ତୁମ୍ଭର ଅଭୟଚରଣ ॥
କହନ୍ତି ନାରାୟଣ ଋଷି । ନାରଦ ବାକ୍ୟ ପରଶଂସି ॥

## ନାରାୟଣ ଉବାଚ

ଶୁଣ ନାରଦ ଶୁଦ୍ଧଚେତା । ଜନଲୋକ ସମ୍ବାଦ କଥା ॥
ବ୍ରହ୍ମା ମନରୁ ଜାତ ହୋଇ । ସନକ ଆଦି ଚାରିଭାଇ ॥
ଯୋଗ ସାଧନେ ଊର୍ଦ୍ଧ୍ୱରେତା । ବ୍ରହ୍ମବିଚାରେ ସେ ବକତା ॥
ସମାନ ବୁଦ୍ଧି ଚାରିଭାଇ । ଶ୍ରୋତା ବକତା ହୋଇ ତହିଁ ॥
ତାହାଙ୍କ ମଧ୍ୟେ ବିଚାରଣ । ଯେ ବ୍ରହ୍ମ ପରମକାରଣ ॥
ସେ ବ୍ରହ୍ମବିଚାର ସୂଚକେ । ତୁମ୍ଭେ ନ ଥିଲେ ଜନଲୋକେ ॥
ଅଗାଧ ଜଳେ ଶ୍ୱେତଦୀପେ । ବିଷ୍ଣୁ ଶୟନ ମହାସର୍ପେ ॥
ଦେଖିବା ପାଇଁ ତୁମ୍ଭେ ଗଲ । ସେ ଘେନି ସେ ଲୋକେ ନ ଥିଲ ॥
ତୁମ୍ଭ ଗଲାରେ ପ୍ରଶ୍ନ ହୋଇ । ଶୁଣିଲି ଜନ ଲୋକ ମୁହିଁ ॥

## ନାରଦ ଉବାଚ

ମୁନି ବୋଲନ୍ତି ନାରାୟଣ । ଗହନ ବ୍ରହ୍ମ ବିଚାରଣ ॥
ମନ ବଚନେ ନୋହେ ଧରି । ବେଦ କି ପାରେ ଅନ୍ତଃ କରି ॥
ସମାନଜ୍ଞାନୀ ଚାରିମୁନି । ଶ୍ରୋତା ବକତା ଭାବ ଘେନି ॥
ବ୍ରହ୍ମ ସମ୍ବାଦ କଲେ ଯାହା । ଭୋ ନାଥ ମୋତେ କହ ତାହା ॥

## ନାରାୟଣ ଉବାଚ

କହନ୍ତି ପ୍ରଭୁ ନାରାୟଣ । ନାରଦ ସାବଧାନେ ଶୁଣ ॥
ବ୍ରହ୍ମାର ସେ ଚାରି କୁମର । ମହାମହିମା ତାହାଙ୍କର ॥
ସନନ୍ଦ ମୁନି ମୁଖ ଚାହିଁ । ବ୍ରହ୍ମ ପୁଛିଲେ ତିନିଭାଇ ॥
ମୁନିଏ ବାଳଖିଲ୍ୟା ଆଦି । ଅନେକ ଥିଲେ ବ୍ରହ୍ମବାଦୀ ॥
ସନନ୍ଦ କହେ ଶୁଦ୍ଧମନେ । ବ୍ରାହ୍ମଣେ ଶୁଣ ସାବଧାନେ ॥
ପୁରାଣ ପୁରୁଷ ମୁରାରି । ମାୟାର ବଳେ ସୃଷ୍ଟି କରି ॥
ପାଳନ ଧର୍ମରୂପେ କଲା । ପୁଣି ପ୍ରଳୟେ ସଂହାରିଲା ॥
ସେ ମାୟା ନିଜ ଦେହେ ଧରି । ଜଳ ଶୟନେ ନରହରି ॥
ବିଷ୍ଣୁ ରଜନୀ ପ୍ରକାଶିଲା । କେ ଜାଣେ କେତେକାଳ ଗଲା ॥
ପ୍ରବୋଧ କାଳେ ସେ ପୁରୁଷ । ଅଳସେ ଛାଡ଼ିଲା ନିଶ୍ୱାସ ॥
ଶୁଭିଲା ପ୍ରଚଣ୍ଡ ଶବଦ । ତହୁଁ ଜନ୍ମିଲେ ତିନିବେଦ ॥
ଦୁର୍ଗମ ଅନ୍ଧକାର ଦେଖି । ଭୟେ ବୁଜିଲେ ବେନି ଆଖି ॥
ବିଷ୍ଣୁର ତେଜ ସେ ବହନ୍ତି । ବିଷ୍ଣୁ ଭେଟିଲେ ଯିବ ଭ୍ରାନ୍ତି ॥
ଏତେ ବିଚାର ମନେ ଘେନି । ସ୍ତୁତି କରନ୍ତି ବେଦ ତିନି ॥
ମାଗଧେ ରଜନୀର ଅନ୍ତେ । ରାଜାଙ୍କୁ ଡାକନ୍ତି ଯେମନ୍ତେ ॥

## ବେଦଗଣ ଉବାଚ

ପ୍ରଥମେ ଜୟ ଜୟ ସ୍ତୁତି । ନିର୍ଗୁଣ ନିଗମେ ବୋଲନ୍ତି ॥
ଜୟ ଅଜିତ ଆଦିକନ୍ଦ । ନିର୍ଲେପ ପରମ ଆନନ୍ଦ ॥

ଜୟ ମଙ୍ଗଳ ଜଗନ୍ନାଥ । ଏ ଜୀବ ତୋ'ର ତହୁଁ ଜାତ ॥
ସ୍ଥାବର ଆଦି ଚାରି ମୂଳେ । ବନ୍ଧନ ବାସନାର ବଳେ ॥
ତୋର ମାୟାରେ ଭ୍ରମ ପାଇ । ନାନା ଯୋନିରେ ଜାତ ହୋଇ ॥
ଭ୍ରମନ୍ତି ତୋ' ଭାବ ନ ପାଇ । ତାହାଙ୍କ ମାୟା ଛେଦ ତୁହି ॥
ସେ ମାୟା ପ୍ରକାଶିବୁ କେତେ । ଗୁଣ ଯେ ଭଜେ ଦୋଷ ଅର୍ଥେ ॥
ତୁ ଆତ୍ମାଗୁଣେ ନରହରି । ଅଷ୍ଟମ ନିଧି ଯୋଗଧାରୀ ॥
ଉପାଧି ଭେଦେ ନୋହୁଁ ସଙ୍ଗ । ସଲିଳେ ଯେସନେ ତରଙ୍ଗ ॥
ପରମ ଆତ୍ମା ରୂପେ ବସୁ । ଜୀବର ଶକ୍ତି ତୁ ପ୍ରକାଶୁ ॥
ତୋ'ମାୟା ତରିବାର ଆଶେ । ବୈରାଗ ଜ୍ଞାନ ସେ ଅଭ୍ୟାସେ ॥
ନାନାପ୍ରକାରେ ବୁଦ୍ଧି କରି । ତୋ'ମାୟା ନ ପାରନ୍ତି ତରି ॥
ଏଣୁ ଜୀବର ଘୋର ମାୟା । ତୁଟଇ ଯାକୁ କରୁ ଦୟା ॥
ଅନାଦିମାୟା ସୃଷ୍ଟି କାଳେ । ତୁ ସେ ମାୟାର ସଙ୍ଗମେଳେ ॥
ଜୀବ ପରମ ରୂପ ଧରି । ତୋହର କ୍ରୀଡ଼ା ନରହରି ॥
ଅନନ୍ତ ଶକ୍ତି ତୋର ମାୟା । କେ ଜାଣିପାରେ ନାଥ ତାହା ॥
ଆଦି ଅନ୍ତ ନାହିଁ ତୋହର । ଏ ଘେନି କେ କରୁ ଗୋଚର ॥
ଦ୍ୱିତୀୟେ ବୃହଦୁପଲବ୍ଧ । ଭାବେ ବୋଲନ୍ତି ତିନି ବେଦ॥
ତୁ ନାଥ ପରମଆନନ୍ଦ । ସଂସାର ମୂଳ ଆଦିକନ୍ଦ ॥
ତୁ ବୋଲୁ ବେଦ ଯେ ଅନାଦି । ସର୍ବେ ପାରନ୍ତି ଏ ସମ୍ପାଦି ॥
ବାସବ ଆଦି ଦେବଗଣ । ଏ ତେବେ ଯଜ୍ଞରେ ବରଣ ॥
କର୍ମ କରଣ ଶୁଭାଶୁଭ । ମୋକ୍ଷାଦି ଦିଅନ୍ତି ଏ ସର୍ବ ॥
ତହିଁ କି କହିବୁ ତୋ ଆଗେ । ପବନ ଯୋଗେ ଜଳବିମ୍ୱେ ॥
କରିବା ଯେତେ ନିରାକାର । ଅଶେଷ ଶେଷ ନାହିଁ ତୋର ॥
ସୃଷ୍ଟି ସମ୍ଭୂତ ତୋ'ର ତହୁଁ । ତୁ ବ୍ରହ୍ମ ବିକାର ଯେ ନୋହୁ ॥
ଘଟାଦି ମୃତ୍ତିକା ଯେସନେ । ଉଦୟ ଅସ୍ତ ଅନୁମାନେ ॥
ବାସବ ଆଦି ଏ ଜଗତେ । ତୋହର ସଞ୍ଚଳା ଜଗତେ ॥
ଏ ଘେନି ଋଷିଗଣ ଯେତେ । ମନବଚନ ଦେଇ ତୋତେ ॥
ସମର୍ପି ତୋ ପାଦ କମଳେ । ତୋ ମାୟା ନିସ୍ତରନ୍ତି ହେଳେ ॥
ଦିଗପାଳଙ୍କ ପୂଜା ଘେନି । ଯଜ୍ଞେ କି ନ ତରିବେ ମୁନି ॥
କାଷ୍ଠ ତୃଣ ଅବା ପାଷାଣ । ଏଣେ ଯେ ଚାଳନ୍ତି ଚରଣ ॥
ବାଳକ ଦୃଷ୍ଟି ଦିଶେ ଭ୍ରାନ୍ତି । ଜାଣିଲେ ଭୂମିରେ ସେ ଥା'ନ୍ତି ॥
ତୃତୀୟେ ଇତି ବେଦେ ବାଣୀ। ଭାବେ ବୋଲନ୍ତି ପରିମାଣି ॥
ତ୍ରି ଅଧିପତି ତୋର ନାମ । କହିବୁଁ ଶୁଣ ସାବଧାନ ॥
ତ୍ରିଗୁଣ ମାୟାଯନ୍ତ୍ର କରି । ମୃଗୀ ନଚାଉ ନରହରି ॥
ଏଣୁ ତୋ ତ୍ରିଅଧିପ ନାମ । ଶୁଣ କହିବୁଁ ଗୁଣ ଗ୍ରାମ ॥

ଆଦ୍ୟେ ଯେ ମୃଗ ଅନ୍ୱେଷଣ । ତାହାର ଅର୍ଥଟି ଭ୍ରମଣ ॥
ସେ ଭ୍ରମ ଅଛି ଯାର ତହିଁ । ଏ ଘେନି ମୃଗୀ ସେ ବୋଲାଇ ॥
ଅଶେଷ ଯୋନି ମଧ୍ୟେ ଥାଇ । ଜୀବ ଭ୍ରମଇ ଦେହ ବହି ॥
ଏଣୁ ଏ ଜୀବ ମୃଗୀ ନାମ । ଯେଣୁ ନିରତେ ତା'ର ଭ୍ରମର ॥
ତ୍ରିଗୁଣ-ସତ୍ତ୍ୱ ରଜ ତମ । ଏମନ୍ତ ଯନ୍ତ୍ର ଅନୁମାନ ॥
ନାନା ବିଷୟ ବିଦ୍ୟମାନେ । ଜୀବ ନାଚଇ ସାବଧାନେ ॥
ଏଣୁ ତ୍ରିଅଧିପ ବୋଲାଉ । ଯେ ଯନ୍ତ୍ରେ ଜୀବକୁ ନଚାଉ ॥
ଏମନ୍ତେ ବେଦ ଅନୁମାନି । ପୁଣି ବୋଲନ୍ତି ଭାବ ଘେନି ॥
ସଂସାରେ ସୁପଣ୍ଡିତ ପ୍ରାଣୀ । ତୋ'ଅନୁମାନେ ତୋତେ ଜାଣି॥
ତୋ'କଥା ଅମୃତ ସାଗର । ଅଶେଷ ପାପ ଯହିଁ ଦୂର ॥
ସେ ଜଳେ ମନ ବୁଡ଼ାଇଲେ । ନ ଲାଗେ ତାପତ୍ରୟ ଭଲେ ॥
ତୋ ନାମ ମହିମା ଏମନ୍ତ । ତୋ'ରୂପ କେ କରିବ ଅନ୍ତ ॥
ଯୋଗୀଏ ବସି ଯୋଗାସନେ । ଅଖଣ୍ଡାନନ୍ଦ ରୂପ ଧ୍ୟାନେ ॥
ଅନ୍ତଃ କରଣେ ତାହା ଧରି । ତେଜି କାମାଦି ଷଡ଼ ଅରି ॥
ଗର୍ଭ ଜନ୍ମ ବାଳ କିଶୋର । ତରୁଣ ବୃଦ୍ଧ ଦେହାନ୍ତର ॥
ଏ ସପ୍ତଦଶା ଜିଣି କରି । ମାୟା ସଂସାର ଯା'ନ୍ତି ତରି ॥
ଚତୁର୍ଥେ ଈଶ୍ୱରର ସ୍ତୁତି । ନିର୍ମଳ ନିଗମେ ବୋଲନ୍ତି ॥
ଭୋ ନାଥ କମ୍ବୁଚକ୍ରପାଣୀ । ତୋତେ ଯେ ନ ଭଜନ୍ତି ପ୍ରାଣୀ ॥
ଶରୀର ବହି ଏ ଶୟନେ । ପ୍ରାଣ ଧରନ୍ତି ସୁଖ ଭୋଳେ ॥
ତାଙ୍କ ଜୀବନ ଅକାରଣ । ଭୋ ନାଥ ଶୁଣ ନାରାୟଣ ॥
କର୍ମକାରକ ଯନ୍ତ୍ର ବଳେ । ଭାତିଏ ଗର୍ଜୁଥାନ୍ତି ଶାଳେ ॥
ଛାଡ଼ିଲେ ନ ଥାଇ ପବନ । ତେମନ୍ତ ତାହାଙ୍କ ଜୀବନ ॥
ମହତ ଅହଙ୍କାର ମନ । ଗଗନ ଆବର ପବନ ॥
ଜଳ ଅନଳ ସଙ୍ଗେ ମହୀ । ତୋ ଅନୁଗ୍ରହେ ଜଡ଼ ହୋଇ ॥
ବ୍ରହ୍ମାଣ୍ଡ ହୋଏ ଦେହଧାରୀ । ତୁ ନାଥ ଜୀବରୂପ ଧରି ॥
ପଞ୍ଚଶରୀରେ ତୋର ବାସ । ଯାହାକୁ ବୋଲି ପଞ୍ଚକୋଷ ॥
ଅନ୍ନ ଯେ ପ୍ରାଣ ଆର ମନ । ବିଜ୍ଞାନ ଆନନ୍ଦ ଏ ନାମ ॥
ଏ ପଞ୍ଚପୁରେ ତୁ ଯେ ପଶି । ଜ୍ୟୋତିସ୍ୱରୂପ ପରକାଶି ॥
ଏହାଙ୍କ ତୁଲେ ଲଗ୍ନ ନୋହୁ । ଯେଣୁ ନିର୍ଲେପ ରୂପ ବହୁ ॥
ଏଣୁ ତୋ ଚରଣ କମଳେ । ଯେ ନ ଭଜନ୍ତି ସୁଖଭୋଳେ ॥
ତୁ ନାଥ ତାହାଙ୍କୁ ଦୁର୍ଲ୍ଲଭ । ସେ ପ୍ରାଣୀ ଲଭେ ପରାଭାବ ॥
ଉଦର ପଞ୍ଚମରେ ସ୍ତୁତି । ବେଦେ ବାସୁଦେବ ବୋଲନ୍ତି ॥
ଶୁଣ ହେ ପରମ କାରଣ । ଋଷିଙ୍କ ମାର୍ଗ ବିଚାରଣ ॥
ସ୍ଥୂଳ ଦୃଷ୍ଟିରେ ତୋତେ ଚିନ୍ତି । ସୂକ୍ଷ୍ମ ସ୍ୱରୂପ ନ ଜାଣନ୍ତି ॥

ଗୁରୁଙ୍କ ଉପଦେଶ ଶୁଣି । ଉଦରେ ବ୍ରହ୍ମ ପରିମାଣି ॥
କୁମ୍ଭକ କର୍ମେ ବାୟୁ ପୂରି । ନାଭିଚକ୍ରକୁ ଧ୍ୟାନ କରି ॥
ଉଦର ଚକ୍ରେ ଦୃଷ୍ଟିସ୍ଥିରେ । ଚିନ୍ତନ୍ତି ପବନ ନିଷ୍ଠଳେ ॥
ଚକ୍ର ପବନେ ସୂକ୍ଷ୍ମ ରେଣୁ । ନୟନେ ଆଚ୍ଛାଦେଇ ତେଣୁ ॥
ତାହାକୁ ଅନ୍ଧ ବୋଲି ଜାଣି । ସେ ତୋତେ କାହିଁ ପରିମାଣି ॥
ସେ ନାଭିଚକ୍ର ଊର୍ଦ୍ଧ୍ୱଗତେ । ଦଶ ଅଙ୍ଗଳି ପରିମିତେ ॥
ସହସ୍ର ସଂଖ୍ୟ ଦ୍ୱିସପ୍ତତି । ନାଡ଼ୀଏ ଅଧ ଊର୍ଦ୍ଧ୍ୱେଛନ୍ତି ॥
ଏହାଙ୍କ ଦେହେ ପ୍ରାଣ ବହେ । ଦେହ ଆବେରି ବସ୍ତ୍ର ପ୍ରାୟେ ॥
ଏ ନାଡ଼ୀମାନଙ୍କର ମୂଳ । ନାମ ତା ହୃଦୟ କମଳ ॥
ଆରୁଣି ବଂଶେ ଯେତେ ମୁନି । ତାହାଙ୍କ ଗୁରୁ ଶିକ୍ଷା ଘେନି ॥
ସେ ତୋତେ ସୂକ୍ଷ୍ମରୂପେ ଚିନ୍ତି । ହୃଦୟେ ଧ୍ୟାନ ସେ କରନ୍ତି ॥
ଭୋ ନାଥ ସୂକ୍ଷ୍ମର ମହିମା । ଆମ୍ଭେ କରିବୁ ଗୁଣ ସୀମା ॥
ତୀକ୍ଷ୍ଣ ଶସ୍ତ୍ରରେ ବାଳ ଅଗ୍ର । ଚିରି କରିବ ଦଶଭାଗ ॥
ତାହାକୁ ପୁଣି ସହସ୍ରକେ । ଚିରି ଗଣିବ ଏକେ ଏକେ ॥
ତହିଁର ଏକ ଭାଗ ସମ । ସୂକ୍ଷ୍ମ ବୋଲାଇ ତାର ନାମ ॥
ତହିଁ ଯାହାର ମନ ରହେ । ତା ତହୁଁ ଅଧିକ ବୋଲାଏ ॥
ଏ ଦୁଇ ଚକ୍ର ଭେଦ କଲେ । ସୁଷୁମ୍ନା ରନ୍ଧ୍ରେ ଯୋଗବଳେ ॥
ମୃଣାଳସୂତ୍ର ରନ୍ଧ୍ର ପଥେ । ମନ ପବନ ଊର୍ଦ୍ଧ୍ୱଗତେ ॥
ଶିର କମଳେ ଯେବେ ମିଶେ । ତୋ ରୂପ ତାହାକୁ ପ୍ରକାଶେ ॥
ଛାଡ଼ଇ ଭବ ଭୟ ଭ୍ରାନ୍ତି । ସେ ଯମ ମୁଖେ ନ ପଡ଼ନ୍ତି ॥
ସ୍ୱକୃତ ବିଚିତ୍ର ଷଷ୍ଠମ । ବେଦେ ବୋଲନ୍ତି ଗୁଣଗ୍ରାମ ॥
ତୋର ସର୍ଜିଲା ନାନା ଯୋନି । ତୁ ତହିଁ ଜୀବରୂପ ଘେନି ॥
ବାସନା ବଳେ ଉଚ୍ଚ ନୀଚ । ଏଣୁ ଟି ତୋ ରୂପ ପ୍ରପଞ୍ଚ ॥
ଅଣୁ ପ୍ରମାଣେ ସୂକ୍ଷ୍ମ ସ୍ଥୂଳେ । ରୂପ ପ୍ରକାଶୁ ମାୟା ବଳେ ॥
କାଷ୍ଠ ପ୍ରମାଣେ ଅଗ୍ନି ଯେହ୍ନେ । ଜ୍ୟୋତି ପ୍ରକାଶେ ସ୍ଥୂଳେ ଶୂନ୍ୟେ ॥
ଏ ନାନା ଜ୍ୟୋତି ଯେତେବେଳେ । ବିନାଶ ହୋନ୍ତି କର୍ମ ବଳେ ॥
ତୁ ଏକା ରହୁ ଅବସାନେ । ଘଟ ବିନାଶେ ଚନ୍ଦ୍ର ଯେହ୍ନେ ॥
ଏମନ୍ତ କରି ଅନୁମାନ । ଯା'ର ପ୍ରକାଶେ ଦିବ୍ୟଜ୍ଞାନ ॥
ଚୈତନ୍ୟ ସତ୍ୟ ତାହାଙ୍କର । ସେ ତୋତେ କରନ୍ତି ବିଚାର ॥
ତୋର ବିହାର ଆତ୍ମ ସୁଖେ । ପ୍ରକାଶ ଇହ ପରଲୋକେ ॥
ମିଥ୍ୟା ପ୍ରକାଶ ଏହା ଜାଣି । ଆତ୍ମସ୍ୱରୂପ ପରିମାଣି ॥
ଏ ସର୍ବ ଛାଡ଼ି ତୋ' ଶରଣେ । ପଶନ୍ତି ଅଭୟ ଚରଣେ ॥
ତୋ ରୂପ ଏକରସେ ରସି । ପରମ କ୍ଷେମ ଧାମେ ମିଶି ॥
ସ୍ୱକୃତ ସ୍ତୁତି ସପତମେ । ବିଷ୍ଣୁଙ୍କୁ ବୋଲନ୍ତି ନିଗମେ ॥

ଅନନ୍ତ ପ୍ରଭୁ ହେ ଅଚ୍ୟୁତ । ତୋର ସଂଚିଲା ଏ ଜଗତ ॥
ମାୟାରେ ଭିଆଇ ବ୍ରହ୍ମାଣ୍ଡ । ଅଶେଷ ରୂପେ କରୁ ପିଣ୍ଡ ॥
ପୁଣି ଏ ପ୍ରପଞ୍ଚେ ପ୍ରକାଶ । ବାସନା ଅନ୍ତେ ହୋଇ ନାଶ ॥
କର୍ମ ନଥିଲେ ଜୀବ କାହୁଁ । ତୁହି ସେ ଅବଶେଷେ ରହୁ ॥
ପ୍ରାଣୀର ବାହ୍ୟ ଅନ୍ତେ ଥାଉ । ସ୍ୱଭାବେ ପଞ୍ଚକୋଷ ବହୁ ॥
ଘଟକୁ ଥୋଇ ଯେହ୍ନେ ନୀର । ପୂରଇ ଭିତର ବାହାର ॥
ଅଶେଷ ଦେହେ ନାରାୟଣ । ଏ ପିଣ୍ଡ ତୋହର ଭିଆଣ ॥
ଏ ପିଣ୍ଡ ବାହ୍ୟ ଅଭ୍ୟନ୍ତରେ । ତୋ ତହୁଁ କେ ଅଛି ଅପରେ ॥
ସ୍ୱକର୍ମେ ଯେତେ ଦେହ ଜାତ । ତୋ' ଅଂଶ ତା'ର ମଧ୍ୟଗତ ॥
କର୍ମରେ ଯେ ଫଳ ଉପୁଜେ । ତୋ ଅଂଶ ଦେହ ମଧ୍ୟେ ଭୁଞ୍ଜେ ॥
ଜୀବର ଏହି ଗତି ଜାଣି । ତୋ ପାଦେ ଭଜନ୍ତି ଯେ ପ୍ରାଣୀ ॥
ଜୀବର ବଳ ଅଳ୍ପ ପ୍ରାୟେ । ସକଳ ଶକ୍ତି ତୋର ପାୟେ ॥
ତେଣୁ ସକଳ ତ୍ୟାଗ କରି । ତୋ ପାଦ ଚିନ୍ତେ ବ୍ରହ୍ମଚାରୀ ॥
ବେଦରୁ ଯେତେ କର୍ମ ଫଳେ । ସେ ଥା'ନ୍ତି ତୋ ଚରଣ ତଳେ ॥
ଏଣୁ ତୋ ପାଦେ ଯା'ର ଆଶ । ନ ଲାଗେ ଭବ-ବନ୍ଧ-ପ୍ରାସ ॥
ବେଦଙ୍କ ସ୍ତୁତି ଯେ ଅଷ୍ଟମ । ବୋଲନ୍ତି ଯେ ଦୁରବଗମ ॥
କେହି ତା' ତତ୍ତ୍ୱ ନ ଜାଣଇ । ତାହା ତୁ ଜଣାଇବା ପାଇଁ ॥
ନାନା ଯୋନିରେ ରୂପ ତୋର । ତୁ ଏକ ବାହାର ଭିତର ॥
ଅମୃତସିନ୍ଧୁ ତୋ'ର ନାମ । ଅବଗାହନେ ନାଶେ ଶ୍ରମ ॥
ପରମଜ୍ଞାନୀ ତାହା ଜାଣି । ତୋ ନାମ ଜଳେ ପରମାଣି ॥
ନିରତେ ଅବଗାହ କରି । ଶ୍ରମ ଛାଡ଼ନ୍ତି ନାମ ଧରି ॥
ସଂସାର ମତେ ବେଦ ଧର୍ମ । ସାଧି ଲଭନ୍ତି ପ୍ରାଣୀ ଶ୍ରମ ॥
ତୋ' ନାମ ସୁଧାଜଳେ ବୁଡ଼ି । ଜ୍ଞାନ ସାଧନା ଶ୍ରମ ଛାଡ଼ି ॥
ମୋକ୍ଷକୁ ନ କରି ସେ ଇଚ୍ଛା । ତୋ ନାମ ତତ୍ତ୍ୱେ କରି ଦୀକ୍ଷା ॥
ତୋ'ନାମ ସ୍ୱର୍ଗ-ଅପବର୍ଗ । ତେଣୁ ଛାଡ଼ିଲେ ଜ୍ଞାନମାର୍ଗ ॥
ଭକ୍ତିରେ ତୋ ନାମ ଆବୋରି । ବେଗେ ତରିଲେ ଭବବାରି ॥
ତୋ' ନାମ ସୁଧା ସିନ୍ଧୁଜଳେ । ହଂସର ପ୍ରାୟ ଜ୍ଞାନୀ ଭୋଳେ ॥
ବୁଡ଼ି ଉଠନ୍ତି ପୁଣ ପୁଣି । ତୋ' ନାମ ଉଚ୍ଚସ୍ୱରେ ଭଣି ॥
ନିତ୍ୟେ ସୁମରି ତୋ ଚରଣ । ତାହାଙ୍କୁ ନ ଲାଗେ ମରଣ ॥
ସଂସାର ଛାଡ଼ି ସୁଖଭୋଳେ । ଯେ ଥାଇ ତା'ଙ୍କ ସଙ୍ଗ ମେଳେ ॥
ତୋତେ ଜାଣନ୍ତି ସତସଙ୍ଗେ । ନ ଲାଗେ ଭବଦୁଃଖ ଅଙ୍ଗେ ॥
ଦ୍ୱଦନୁପଥ ଯେ ନବମ । କୃଷ୍ଣଙ୍କୁ ବୋଲନ୍ତି ନିଗମ ॥
ଶୁଣ ହେ କମଳାର ବର । ଯେତେ ଏ ଜନ୍ତୁଙ୍କ ଶରୀର ॥
ତୋହର ଅନୁପଥ ଏହି । ଯେଣୁ ଏହାଙ୍କ ପଥେ ତୁହି ॥

ଜୀବ ପରମ ରୂପ ଧରି । ତୋ' ଭୋଗ କ୍ରୀଡ଼ା ଅନୁସରି ॥
ଏଣୁ ତୋ ଅନୁପଥ ଏହି । କୁଳାୟ ନାମ ଏ ବୋଲାଇ ॥
ତୁ ନୋହୁ ଲଗ୍ନ ଏ ଶରୀରେ । ନଳିନୀ ଥାଇ ଯେହ୍ନେ ନୀରେ ॥
ତୋର ମହିମା ଯେ ନ ଜାଣି । ଦେହକୁ ସତ୍ୟ ପ୍ରାୟ ପ୍ରାୟ ମଣି ॥
ପ୍ରିୟ ସୁହୃଦ ବନ୍ଧୁ ପ୍ରାୟ । ପ୍ରୀତି କରନ୍ତି ମୃତ ଦେହେ ॥
ତୋତେ ନ ଭଜେ ସୁଖଭୋଳେ । ବାଳକ ଯେହ୍ନେ ମାତା କୋଳେ ॥
ମାତାର ପ୍ରାୟ ହିତ ତୁହି । ଅଜ୍ଞାତ ତୋତ ନ ଜାଣଇ ॥
ତୁ ଆତ୍ମାହିତ ପ୍ରିୟବନ୍ଧୁ । ନିର୍ବାଣ ଦାତା ସୁଖସିନ୍ଧୁ ॥
ଏ ବିପରୀତ କିବା କହି । ଦେହ ଘେନିଣ ଭ୍ରମେ ମହୀ ॥
ଦେହକୁ ମଣିଥାଇ ସତ୍ୟ । ଅନିତ୍ୟ ଜଳବିମ୍ବ ବତ ॥
ଏଣେ ଯାହାର ପ୍ରୀତି ହୋଇ । ଅସାଧୁଜନ ମଧେ ସେହି ॥
ଉତ୍ତମ ନାବ ଥାଉଁ କୂଳେ । ସେ ଯେ ନ ତରେ ଭବଜଳେ ॥
କୁଦେହ ଘେନି ଭବେ ଭ୍ରମି । ଜନ୍ମ ମରଣ ପଥେ ଶ୍ରମି ॥
ତାହାକୁ ବୋଲି ଆତ୍ମାହନ । ନିଷ୍ଫଳ ତାହାଙ୍କ ଜୀବନ ॥
ନିଭୃତ ମରୁଦ୍ଦଶ ସ୍ତୁତି । ନିଗମେ ନିର୍ଭରେ ବୋଲନ୍ତି ॥
ଅଷ୍ଟାଙ୍ଗଯୋଗେ ମୁନିଜନେ । ବସି ନିର୍ଜନ ଘୋର ବନେ ॥
ଇନ୍ଦ୍ରିୟଗଣ କରି ବନ୍ଦୀ । ମନ ପବନ ହୃଦେ ଛନ୍ଦି ॥
ଯାହା ଲଭିବା ଅର୍ଥେ ଚିତ୍ତେ । ଚିନ୍ତା କରନ୍ତି ଅବିରତେ ॥
ଯେ ତୋତେ ଶତ୍ରୁପଣେ ଚିନ୍ତି । ସେ ପୁଣି ତୋ ଦେହେ ପଶନ୍ତି ॥
ଭୋ ନାଥ ତୋର ଯେତେ ଗଣ । ଆଉ କହିବୁଁ କିଛି ଶୁଣ ॥
ଗୋପନଗରେ ନାରୀଜନେ । କୁବୁଜୀ ଆଦି ମଧୁବନେ ॥
ସେ ତୋରେ ପରିଗ୍ରହ ହୋଇ । ଚୁମ୍ବନ ଆଲିଙ୍ଗନ ଦେଇ ॥
ଭୋ ନାଥ ତୋର ବେନିକର । ଉରଗଇନ୍ଦ୍ର ପଟାନ୍ତର ॥
ସେ ଭୁଜେ ଆଲିଙ୍ଗନ ପାଇ । ମନ ବଚନ ତୋତେ ଦେଇ ॥
କାମିନୀ ରୂପେ ଭାବଭୋଳେ । ସେ ତୋତେ ଭଜିଲେ ନିଷ୍ଠଳେ ॥
ଆମ୍ଭେ ସକଳ ବେଦବୃନ୍ଦେ । ଭାବେ ପଶିବୁଁ ସେହି ପାଦେ ॥
ଯେଣୁ ତୋ ରିପୁ ମିତ୍ର ନାହିଁ । ସମଦରଶୀ ତେଣୁ ତୁହି ॥
ପ୍ରପଞ୍ଚେ ଉଚ୍ଚ ନୀଚ ଯୋନି । ତୁ ବହୁ ଲୀଳାଭାବ ଘେନି ॥
ଏ ଯେ ତୋହର ପଦ୍ମପାଦ । ସ୍ରବଇ ସୁଧା ମକରନ୍ଦ ॥
ସେ ପାଦେ ଆମ୍ଭ ବୁଦ୍ଧି ମତି । ପ୍ରେମ ଭକ୍ତିରେ ଭଜୁ ନିତି ॥
'କ' ଇହ ଏକାଦଶ ବାଣୀ । ବେଦେ ବୋଲନ୍ତି ପରିମାଣି ॥
ତୁ ନାଥ କରୁଣାଜଳଧି । ସର୍ବବିଷୟ ପୂର୍ବସିଦ୍ଧି ॥
ତୋ ଠହୁଁ ସୃଷ୍ଟି ଆଦିକାଳେ । ପ୍ରାଣୀ ଉପୁଜେ ମାୟାବଳେ ॥
ଉପୁଜି ପ୍ରଳୟ ହୁଅନ୍ତି । ଏ ଘେନି ତୋତେ ନ ଜାଣନ୍ତି ॥
ତୋହର ନାହିଁ ମୋହ ଦ୍ୱନ୍ଦ୍ୱ । ଏଣୁ ବୋଲାଉ ଆଦିକନ୍ଦ ॥
ବିଧାତା ଜାତ ତୋର ଠହୁଁ । ନିଗମ ଜାତ ଯାର ଦେହୁଁ ॥
ତୋ ଠହୁଁ ଦେବାସୁର ଜାତ । ତାପତ୍ରୟାଦି ଏ ଜଗତ ॥
ବ୍ରହ୍ମା ସୃଷ୍ଟିରେ ଜାତ ଯେତେ । ଏ ଘେନି କେ ଜାଣିବ ତୋତେ ॥
ତୋହର ଆଶ୍ରେ ଏ ଜଗତ । ସୃଷ୍ଟି ପ୍ରଳୟ ତୋର ମତ ॥
ସୃଷ୍ଟି ସଂହାରି ଯୋଗବଳେ । ଶୟନ କରୁ ମହାଜଳେ ॥
ସେ କାଳେ ପ୍ରାଣୀ ଯେବେ ଥା'ନ୍ତେ । ତୋ'ରୂପ ନୟନେ ଦେଖନ୍ତେ ॥
ଅବନୀ ଆଦି ପଞ୍ଚଭୂତ । ମହତ ଆଦି ତିନିତତ୍ତ୍ୱ ॥
ଅସତ୍ୟ ସତ୍ୟ ଏ ବୋଲାନ୍ତି । ଏ କାହୁଁ ତୋ ରୂପ ଜାଣନ୍ତି ॥
ତୋର ମହିମା ଜ୍ଞାନୀଜନେ । ଦୁର୍ଲ୍ଲଭ ଗଗନ ଯେସନେ ॥
ବ୍ରହ୍ମ ବିଚାରି ଶାସ୍ତ୍ରଭାବେ । ବେଦ ବିଚାରି ତୋର ଲାଭେ ॥
ସକଳେ ଯା'ନ୍ତି ଉପହାସେ । ଭକତ ରହେ ତୋର ପାଶେ ॥
'ଜନି ଅସତ' ଏ ଦ୍ୱାଦଶ । ବେଦେ ବୋଲନ୍ତି ହରିଯଶ ॥
ବଇଶେଷିକ ଶାସ୍ତ୍ରପଥ । ତୋତେ ବିଚାରେ ନାମମାତ୍ର ॥
ବିନାଶ ଏକବିଂଶ ଦୁଃଖ । ମୋକ୍ଷ ବୋଲନ୍ତି ନୈୟାୟିକ ॥
ସତ ଅସତ ମାର୍ଗେ ଚିହ୍ନି । ମିଥ୍ୟା ଏ ଜଗତ ବୋଲନ୍ତି ॥
ବ୍ରହ୍ମ ଯେ ବିଦ୍ୟମାନ ସତ୍ୟ । ବିଚାରେ ପାତଞ୍ଜଳି ମତ ॥
ସାଂଖ୍ୟଯୋଗୀଙ୍କ ବିଚାରଣା । ଜଗତ ଆତ୍ମକଳପଣା ॥
କର୍ମ ବେତ୍ତାର ମୀମାଂସକେ । ଜଗତ ସତ୍ୟ ତାଙ୍କ ଲେଖେ ॥
ଏ ଭ୍ରାନ୍ତି ଶାସ୍ତ୍ରମାର୍ଗେ ଭ୍ରମି । ବିବାଦେ ହୋନ୍ତି ପଥଶ୍ରମୀ ॥
ଭ୍ରମେ ଭ୍ରମନ୍ତି ବହୁଶ୍ରମେ । କାହୁଁ ଜାଣିବେ ନିଜ ଭ୍ରମେ ॥
ଯେଣୁ ଏ ଜୀବ ଗଣମୟେ । ଏଣୁ ବିଚାର ଭେଦ ରହେ ॥
ଅଜ୍ଞାନେ ତୋ ଭେଦ ବିଚାରି । ତୁ ସଙ୍ଗୀ ନୋହୁନା କାହାରି ॥
'ସଦିବମନ' ତ୍ରୟୋଦଶେ । ଶ୍ରୁତି ବୋଲନ୍ତି ହୃଷୀକେଶେ ॥
ପ୍ରପଞ୍ଚ ତ୍ରିଗୁଣେ ଜଗତ । ଜାଣିଲେ ନିଷ୍ଟେ ନୋହେ ସତ୍ୟ ॥
ମନ ବିକାସ ମାତ୍ର ଏହି । ଅସତ୍ୟ ସତ୍ୟ ଆଭାସଇ ॥
ତୁ ଏଥି ଅଧିପତି ଯେଣୁ । ଅଭାସେ ସତ୍ୟ ପ୍ରାୟ ତେଣୁ ॥
ଅସତ୍ୟ ସତ୍ୟ ପ୍ରାୟ ଦିଶି । ଛାୟା ଦର୍ପଣେ ଯେହ୍ନେ ଶଶୀ ॥
ଜୀବର ଜନ୍ମ ତୋର ଠହିଁ । ବ୍ୟାପିଲୁ ଜଗତକୁ ମୋହି ॥
କାରଣ କାର୍ଯ୍ୟ ନୋହେ ଭିନ୍ନ । ଶୁଣ କହିବା ଅନୁମାନ ॥
ସୁବର୍ଣ୍ଣେ କାର୍ଯ୍ୟ ଯାର ପଡ଼େ । କୁଣ୍ଡଳ ଆଦି କମ ଗଢ଼େ ॥
ପୁଣି ଅନଳେ ପାକ କଲେ । ସୁବର୍ଣ୍ଣ ହୋଇ ଏକଠୁଳେ ॥
ନାମ ବିକାର ନାଶ ଯା'ନ୍ତି । ଏଣୁ ଜଗତେ ଭେଦ ଭ୍ରାନ୍ତି ॥
ଏ ଘେନି ଶାସ୍ତ୍ର ଅନୁମାନ । ତୋ ଠହୁଁ ସୃଷ୍ଟି ନୋହେ ଭିନ୍ନ ॥

ଚତୁରଦଶେ 'ଚଵପରି' । ବେଦେ ବୋଲନ୍ତି ଶୁଣ ହରି ॥
ଯେଣୁ ତୋ ସର୍ବଭୂତେ ବାସ । ଏ ଘେନି ପ୍ରାଣୀ ତୋ ବିଶ୍ୱାସ ॥
ଏହା ଯେ ଜାଣି ତୋତେ ଭାବେ । ସେ ନ ପଡ଼ନ୍ତି ପରାଭବେ ॥
ଚରଣ ମୃତ୍ୟୁଶିରେ ଦ୍ୟନ୍ତି । ପରମପଦେ ସେ ପଶନ୍ତି ॥
ତୋ ଭାବ ନ ଜାଣନ୍ତି ଯେହୁ । ତରିବେ ଭବସିନ୍ଧୁ କାହୁଁ ॥
ପଣ୍ଡିତପଣେ ଶାସ୍ତ୍ରବାଦେ । ଭାବ ନ କରି ତୋର ପାଦେ ॥
ସ୍ୱକର୍ମପାଶେ ପାଦ ଛନ୍ଦି । ବେଦବଚନେ ହୋନ୍ତି ବନ୍ଦୀ ॥
ପଶୁପାଳଙ୍କ ଘରେ ଯେହ୍ନେ । ବନ୍ଧନେ ଥା'ନ୍ତି ପଶୁମାନେ ॥
ତେସନ ଏ ଭବବନ୍ଧନେ । ଜୀବ-ବନ୍ଦୀ ବେଦବଚନେ ॥
ଏଣୁ ସଂସାରେ ଯେତେ ଜନ୍ତୁ । ତୋ ବାକ୍ୟବନ୍ଧ କରି ହେତୁ ॥
ଏ ଘେନି ତୋ ପାଦକମଳେ । ଯେ ଭାବ କରେ ପ୍ରୀତି ଭୋଳେ ॥
ସଂସାର ତାରି ସେ ତରନ୍ତି । ମରଣେ ନାହିଁ ତା'ଙ୍କ ଭ୍ରାନ୍ତି ॥
ତୋତେ ନ ଜାଣି ଧର୍ମ ଚିନ୍ତି । ଯଜ୍ଞ ଦାନ ତୀର୍ଥେ ଭଜନ୍ତି ॥
ଆତ୍ମାକୁ ନିସ୍ତାରି ନ ପାରେ । ତା'ବୋଲେ ସଂସାର କି ତରେ ॥
ତୋର ବିମୁଖ ଶାସ୍ତ୍ରେ ଭ୍ରମି । ଜନ୍ମମରଣେ ପଥଶ୍ରମୀ ॥
'ତ୍ୱମକରଣ' ପଞ୍ଚଦଶେ । ବେଦେ ବୋଲନ୍ତି ଉପଦେଶେ ॥
ଭୋ ନାଥ ତୋହର ଜଗତେ । କର୍ମ କରନ୍ତି ପ୍ରାଣୀ ଯେତେ ॥
ତୁ ତାହା ନ କରୁ ଗ୍ରହଣ । ଏଣୁ ତୋ ନାମ ଅକାରଣ ॥
କର୍ମକରଣ ତୋର ନାହିଁ । ସ୍ୱଭାବେ ନିରଞ୍ଜନ ତୁହି ॥
ତଥାପି ସର୍ବ ଜନ୍ତୁ ଦେହେ । ତୋ ଅଂଶ ଅଛି ଜୀବ ପ୍ରାୟେ ॥
ପ୍ରାଣୀର ରସନା ଲୋଚନ । ଶ୍ରବଣ ନାସା ଚର୍ମ ଘେନ ॥
ଜ୍ଞାନଇନ୍ଦ୍ରିୟ ଏ ବୋଲାନ୍ତି । ମନର ସଙ୍ଗେ ବିହରନ୍ତି ॥
ପାଦ ବଚନ ଭୁଜ ଲିଙ୍ଗ । ମୂଳକମଳ ଦ୍ୱାର ସଙ୍ଗ ॥
କର୍ମଇନ୍ଦ୍ରିୟ ଏ ବୋଲାନ୍ତି । କର୍ମକରଣେ ଥା'ନ୍ତି ନିତି ॥
ଅଗ୍ନି ବାସବ ଲକ୍ଷ୍ମୀକାନ୍ତ । ମିତ୍ରାବରୁଣ ପ୍ରଜାନାଥ ॥
ଏ ପଞ୍ଚଦେବ ବସି ରଥେ । ତୋତେ ସେବନ୍ତି ଅବିରତେ ॥
ତୁ ନାଥ ଭୂତଆତ୍ମାଦେହୀ । ଏହାଙ୍କ ଶକ୍ତି ବହୁ ତୁହି ॥
ବାସବ ଆଦି ବେଦଧାମ । ବହନ୍ତି ଅନିମିଷ ନାମ ॥
ବିଧାତା ଆଦି ସର୍ବଦେବା । ତୋର ଚରଣେ ତା'ଙ୍କ ସେବା ॥
ମାନବେ ତାହାଙ୍କୁ ସେବନ୍ତି । ତାହାଙ୍କ ବଳି ସେ ଭୁଞ୍ଜନ୍ତି ॥
ଅଜର ଅମର ନିର୍ଭୟେ । ତଥାପି ତୋର ପଦ୍ମପାୟେ ॥
ପୂଜନ୍ତି ଅତି ଭୟମନେ । ଖଣ୍ଡମଣ୍ଡଳପତି ଯେହ୍ନେ ॥
ପ୍ରଜାଙ୍କ ଠହୁଁ କର ନ୍ୟନ୍ତି । ରାଜାଙ୍କ ଚରଣେ ସେବନ୍ତି ॥
ଅଧିକ ଧନ ମାନ ଦ୍ୟନ୍ତି । ନିରତେ ଚରଣେ ଖଟନ୍ତି ॥

ଏମନ୍ତେ ଦେବେ ତୋର ପାଶେ । ଖଟନ୍ତି ଭକତି ବିଶ୍ୱାସେ ॥
ଷୋଡ଼ଶ ସ୍ତୁତି 'ସ୍ଥିରଚର' । ଶୁଣ ହେ ବ୍ରହ୍ମାଣ୍ଡଠାକୁର ॥
ତୋହର କ୍ରୀଡ଼ା ନାନାରଙ୍ଗେ । ଇଚ୍ଛାରେ ମାୟା ଘେନି ସଙ୍ଗେ ॥
ଦର୍ପଣ ଘେନି ଯେହ୍ନେ ହସ୍ତ । ଚାହିଁଲେ ଛାୟା ହୋଏ ଜାତ ॥
ସ୍ଥାବର ଆଦି ଏ ଜଗତେ । ତୋ ଠହିଁ ଜୀବ ସେହିମତେ ॥
ତୁ ପୁଣି ତାଙ୍କ ମଧ୍ୟେ ଥାଉ । କର୍ମକରଣେ ଶିକ୍ଷା ଦେଉ ॥
ସେ କର୍ମଫଳେ ନୋହୁ ସଙ୍ଗ । ଦର୍ପଣେ ଯେହ୍ନେ ଛାୟା ଅଙ୍ଗ ॥
ଦେହ ବେଭାର କରୁଥାଇ । ସେ ଯେହ୍ନେ ତାକୁ ନ ଲାଗଇ ॥
ମାୟାକୁ ଥାଉ ଅତି ଦୂରେ । ଆଦିତ୍ୟ ଯେସନେ ଅମ୍ବରେ ॥
ମାୟା ବିସ୍ତାରି ମାୟାକାରୀ । ଯେହ୍ନେ ସଂସାର ମନ ହରି ॥
ମୋହନ କରେ ସଂସାରକୁ । ସେ ଯେହ୍ନେ ନ ଲାଗେ ତାହାକୁ ॥
ଏମନ୍ତ ତୋହର ମହିମା । କେ ଜାଣି ପାରେ ଗୁଣ ସୀମା ॥
ଜଗତେ ହେଉ ସାକ୍ଷୀରୂପ । ମନ୍ଦିରେ ଯେସନେ ପ୍ରଦୀପ ॥
ଏ ସର୍ବଜୀବ କ୍ରୀଡ଼ା ଅନ୍ତେ । ପଶନ୍ତି ତୋର ଗର୍ଭବତେ ॥
ପୁଣି ଯେମନ୍ତେ ଜାତ ହୋନ୍ତି । ଶୁଣ କହିବା ତା'ଙ୍କ ଗତି ॥
ଦେହକୁ ପାଇ ମାୟା ଗ୍ରସ୍ତେ । କର୍ମ କରନ୍ତି ଅବିରତେ ॥
ତେଣୁ ସେ ଜନ୍ମ ମୃତ ହୋନ୍ତି । ବାସନାରଜ୍ଜୁ ବନ୍ଧେ ଥା'ନ୍ତି ॥
କର୍ମ ତାହାଙ୍କୁ ସୃଷ୍ଟିକାଳେ । ଧରଇ ନିଜ ଭୁଜବଳେ ॥
ଅଶେଷ ଯୋନି ମଧ୍ୟେ ଭରି । ବିହରେ ନାନାରୂପ ଧରି ॥
ଦେହକୁ ଧରି କର୍ମବଳେ । ଭୁଞ୍ଜନ୍ତି ଦୁଃଖସୁଖ ଫଳେ ॥
ତୋ ଦେହେ ପ୍ରାଣୀ ଏ ଜଗତେ । ମିଳନ୍ତି କର୍ମର ଆୟତ୍ତେ ॥
ତୋହର ରିପୁ ମିତ୍ର ନାହିଁ । ଏ ଘେନି କର୍ମ ନ ଲାଗଇ ॥
କର୍ମେ ପ୍ରପଞ୍ଚ ଏ ଜଗତ । ଏହାର ଫଳ ବୀପରିତ ॥
ଦୁଃଖୀ ଦରିଦ୍ର ବ୍ୟାଧିବନ୍ତ । ଥୋକାଏ ସୁଖୀ ଧନବନ୍ତ ॥
ଏ ଦୁଃଖସୁଖ ତୋର ନାହିଁ । କର୍ମକରତା ସେ ଭୁଞ୍ଜଇ ॥
ଗଗନେ ଯେତେ ଦିଗ ପୂରି । ଶୂନ୍ୟ ରୂପେ ସର୍ବ ଆବୋରି ॥
ଏଣୁ ନ ଜାଣେ ତୋତେ ପ୍ରାଣୀ । ମନ ବଚନେ ପରିମାଣି ॥
'ଅପରିମିତ' ସପ୍ତଦଶ । ବେଦେ କହନ୍ତି ଜ୍ଞାନରସ ॥
ନାନା ଯୋନିରେ ଜୀବ ଯେତେ । ଅନନ୍ତ ହୋନ୍ତି ଅପ୍ରମିତେ ॥
କର୍ମ ସରିଲେ ପୁଣ ଯା'ନ୍ତି । ଏଣୁ ଏ ଅଧ୍ରୁବ ବୋଲାନ୍ତି ॥
ଏହାଙ୍କ ଦଣ୍ଡକ ତୁ ଯେବେ । ତୋ ଠହୁଁ ଦଣ୍ଡ କେ ପାଇବେ ॥
ଏମନ୍ତେ ନ ଘଟେ ବିଚାର । ସକଳ ଜୀବ ତୋ ଶରୀର ॥
ତୁ ଥାଉ ଏହାଙ୍କ ଜୀବନେ । ଅନଳ କାଷ୍ଠ ସଙ୍ଗେ ଯେହ୍ନେ ॥
ତୋତେ ଜାଣଇ ଯେବା କହେ । ଅଜ୍ଞାନୀ ମିଥ୍ୟାଭାବ ବହେ ॥

ଉପାଧି ଲିଙ୍ଗ ଏ ଶରୀର । ଜନ୍ମ ମରଣ ହୋଏ ତୋର ॥
ତା ମଲେ ନ ମରେ ଜୀବନ । ଘଟ ବିଯୋଗ ଯେହ୍ନେ ଶୂନ୍ୟ ॥
ତେଣୁ ତୋ ଅଂଶ ଏହି ଜୀବ । ସେ କାହିଁ ତୋତେ ବା ଜାଣିବ ॥
ଅଷ୍ଟାଦଶରେ 'ନ ଘଟତ' । ବେଦେ ବୋଲନ୍ତି ଜ୍ଞାନତତ୍ତ୍ୱ ॥
ପ୍ରକୃତି ପୁରୁଷ ଏ ବେନି । ଜଗତ ପିଅର ଜନନୀ ॥
ସ୍ୱଭାବେ ଅଜ ନାମ ବହି । ଯେଣୁ ଏହାଙ୍କ ଜନ୍ମ ନାହିଁ ॥
କେବେ ହେଁ ନୁହନ୍ତି ଏ ଭିନ୍ନ । ଏଣୁ ନ ଘଟେ ଅନୁମାନ ॥
ଏହାଙ୍କ ତହୁଁ ଜାତ ଜୀବ । ଜଳୁ ଯେସନେ ଜଳବିମ୍ବ ॥
ନିଷ୍ଚଳ ଜଳବାୟୁ ଯୋଗେ । ଯେମନ୍ତେ ଉଛୁଳେ ତରଙ୍ଗେ ॥
ବେନି ତରଙ୍ଗ ଅଙ୍ଗଘାତେ । ବିମ୍ବ ଉପୁଜନ୍ତି ଯେମନ୍ତେ ॥
ଜଳେ ପବନେ ସେ ନ ଥା'ନ୍ତି । ବେନି ସଂଯୋଗେ ଜାତ ହୋନ୍ତି ॥
ବିବିଧ ନାମ ରୂପ ବହି । କ୍ରୀଡ଼ନ୍ତି ଜଳମଧ୍ୟେ ଥାଇ ॥
କର୍ମର ଅନ୍ତେ ତୋ ଶରୀରେ । ପଶନ୍ତି ଯେମନ୍ତ ବେଭାରେ ॥
ସକଳ ନଦୀଜଳ ବେଗେ । ଯେମନ୍ତେ ପଶନ୍ତି ଅର୍ଣ୍ଣବେ ॥
ମଧୁକରଙ୍କ ଗୃହବାସେ । ଯେହ୍ନେ ପଶନ୍ତି ପୁଷ୍ପରସେ ॥
ଊନବିଂଶ 'ନୃଷୁତବ' । ବେଦେ କହନ୍ତି ବିଷ୍ଣୁଭାବ ॥
ତୋ ମାୟା ଭ୍ରମ ଜୀବ ଦେହେ । ତେଣୁ ଅଜ୍ଞାନେ ଥା'ନ୍ତି ମୋହେ ॥
ଏଣୁ ପଣ୍ଡିତେ ଏହା ଜାଣି । ତୋ ଭାବ ମନେ ପରିମାଣି ॥
ତୋ' ପାଦପଦ୍ମ ମଧୁ ଲୋଭେ । ପଶିଲେ ଉନମତ୍ତ ଭାବେ ॥
ତାହାକୁ ନାହିଁ କାଳ ଡ଼ର । ତୋ ପଦ୍ମପାଦେ ଆଶା ଯା'ର ॥
ତ୍ରିନେମିକାଳ ତୋ ଭ୍ରୂଭଙ୍ଗ । ରୂପ ଅରୂପ ଯା'ର ଅଙ୍ଗ ॥
ହିମ ଶୀତଳ ଘର୍ମ ବୃଷ୍ଟି । ଏ ଆଦି ଯେତେ ନାନା ରିଷ୍ଟି ॥
ତାହାକୁ ନ ଲାଗନ୍ତି କେହି । ତୋ ନାମ ଯା'ର ହୃଦେ ଥାଇ ॥
ବିଜିତ ହୃଷୀକ ବିଂଶତି । ବେଦେ ବୋଲନ୍ତି ଦିବ୍ୟ ସ୍ତୁତି ॥
ମୁନିଏ ଯୋଗ ଧ୍ୟାନ ସାଧି । ମନ ପବନ ହୃଦେ ରୁନ୍ଧି ॥
ଯେତେ ସେ କରନ୍ତି ଉପାୟେ । ମନତରଙ୍ଗ ସ୍ଥିର ନୋହେ ॥
ସ୍ୱଭାବେ ଅଦମ୍ୟ ସେ ଯେଣୁ । ରୁନ୍ଧି ନ ପାରେ ପ୍ରାଣୀ ତେଣୁ ॥
ନାନା ପ୍ରକାରେ ଖେଦ ପାଇ । ମନ ନ ପାରନ୍ତି ରୁହାଇ ॥
ଗୁରୁପାଦେ ଆଶ୍ରେ ନ କରି । ସାଧନା ଶ୍ରମେ ଯା'ନ୍ତି ମରି ॥
ବୋଇତେ ବସି ବଣିକାରେ । ଯେସନେ ଭାସନ୍ତି ସାଗରେ ॥
ନାନାପ୍ରକାରେ ବାହୁଥାନ୍ତି । କେବେହେଁ କୂଳେ ନ ଲାଗନ୍ତି ॥
ଯାବତ ନାହିଁ କର୍ଣ୍ଣଧାର । କାହିଁ ଲଭିବେ ସିନ୍ଧୁପାର ॥
ପବନ ରୁନ୍ଧି ଇନ୍ଦ୍ରି ଜିଣି । ଗୁରୁ ଉପଦେଶ ନ ମଣି ॥
ଚଞ୍ଚଳ ମନ କାହୁଁ ସ୍ଥିର । ଯାବତ ସଂଶୟ ଶରୀର ॥

ନିଷ୍ଚଳ ନିର୍ମଳ ତୋ'ପାଦେ । ତୋ' ରୂପ ଗୁଣ ଅନୁବାଦେ ॥
ନିତ୍ୟେ ଯେ ଚିନ୍ତେ ଧ୍ୟାନବଳେ । ତା ମନ ରହଇ ନିଷ୍ଚଳେ ॥
ସ୍ୱଜନ ସୁତ ଏକବିଂଶେ । ବେଦେ ବୋଲନ୍ତି ବିଷ୍ଣୁ ପାଶେ ॥
ସ୍ୱଜନ ସୁତ ଦାରା ଧନ । ଗୃହ ମେଦିନୀ ସୁଖାସନ ॥
ତୋ ପାଦ ହୃଦେ ଯାର ଥାଇ । ଏଣେ ତା' ପ୍ରୟୋଜନ ନାହିଁ ॥
ତୋତେ ଯେ ନ ଭଜନ୍ତି ଚିତ୍ତେ । ତାହାଙ୍କ ମନ ଅବିରତେ ॥
ଲୋଭ ଲାଳସେ ମୋହେ ଜଡ଼ି । ବିପଦପଦେ ଥା'ନ୍ତି ପଡ଼ି ॥
ସକଳ ଦୁଃଖ ଯହିଁ ଥା'ନ୍ତି । ଅମୃତ ପ୍ରାୟ ତା ମଣନ୍ତି ॥
ସକଳ ସୁଖ ତୋର ପାଦେ । ତହିଁ ଯେ ବିଶ୍ରମେ ଆନନ୍ଦେ ॥
ଏ ମାୟା ତାକୁ ତୁଚ୍ଛ ହୋଏ । ପର୍ବତଶିଖ ଭୂମି ପ୍ରାୟେ ॥
ତୋ ପାଦ ଆଶ୍ରେ ଯେ ନ କରି । ମୈଥୁନ ସୁଖ ମନେ ଧରି ॥
ତେଣୁ ଏ ସଂସାର ସାଗରେ । ବୁଡ଼ନ୍ତି ଦୁଃଖ ମହାଘୋରେ ॥
କ୍ଷଣେ ହେଁ ନ ପାରନ୍ତି ତରି । ତୋ ବିଶ୍ୱମାୟାକୁ ଆବୋରି ॥
ସଂସାର ଅସାର ପ୍ରତ୍ୟକ୍ଷେ । ସାର ଯେସନେ ରମ୍ଭାବୃକ୍ଷେ ॥
ତୋ ନାମ ସଂସାରରେ ସାର । ନ ଭଜି କେ ହୋଇବ ପାର ॥
'ଭୁବିପୁରୁପୁଣ୍ୟ' ଦ୍ୱାବିଂଶେ । ବେଦେ କହନ୍ତି ମହାତୋଷେ ॥
ଭୂମିରେ ଯେତେ ତୀର୍ଥ ଛନ୍ତି । ମୁନିଏଁ ତହିଁ ବିଶ୍ରମନ୍ତି ॥
ମଦ ମତ୍ସର ଅହଙ୍କାର । ହୃଦୟେ ନାହିଁ ତାହାଙ୍କର ॥
ତୋ ପାଦ ହୃଦୟେ ବହନ୍ତି । ସଂସାରେ ନାହିଁ ତା'ଙ୍କ ଭୀତି ॥
ତାଙ୍କ ଚରଣ-ନୀର ସଙ୍ଗେ । ପାପ ନ ରହେ ପ୍ରାଣୀ ଅଙ୍ଗେ ॥
ସୁପୁଣ୍ୟତୀର୍ଥ ସାଧୁ ସଙ୍ଗେ । ନିତ୍ୟେ ଭ୍ରମନ୍ତି ଅନୁରାଗେ ॥
ଏଣୁ ତୋ ପାଦ ଆଶ୍ରେ କରି । ଯେ ପ୍ରାଣୀ ଚିତ୍ତ ସ୍ଥିର କରି ॥
ପରମଆତ୍ମା ସୁଖସୀମା । ଶୁଣିମା ତାହାଙ୍କ ମହିମା ॥
ବିବେକ ଶାନ୍ତି କ୍ଷମା ଧୀର । ଏ ଚାରି ପୁରୁଷଙ୍କ ସାର ॥
ଏହା ହରଇ ଗୃହଦ୍ୱନ୍ଦ୍ୱ । ଅଜ୍ଞାନୀଜନଙ୍କ ଆନନ୍ଦ ॥
ଯେ ତୋତେ ଚିନ୍ତେ ଅବିରତେ । ଗୃହ ନ ଲାଗେ ତା'ର ଚିତ୍ତେ ॥
ତା'ଙ୍କ ମହିମା ଏ ବ୍ରହ୍ମାଣ୍ଡେ । କେ କହିପାରେ ଏକ ତୁଣ୍ଡେ ॥
ତ୍ରୟବିଂଶତି 'ସତ ଇଦଂ' । ଯାହା କହିଲେ ତିନିବେଦ ॥
ଭୋ ଦେବ ପରମପୁରୁଷ । ସଂସାର ତୋ ତହୁଁ ପ୍ରକାଶ ॥
ଏ ସତ୍ୟ ନୋହେ ସତ୍ୟବାଦେ । ବିଚାର ତର୍କ ଅନୁବାଦେ ॥
କାର୍ଯ୍ୟ କାରଣ ପ୍ରାୟେ ଯେଣୁ । କହିବା ଅନୁମାନେ ତେଣୁ ॥
ମୁକୁତା ସିପେ କରି ଭ୍ରାନ୍ତି । ରଜତ ପ୍ରାୟ ତା' ମଣନ୍ତି ॥
ପୁଣି ବିଚାରେ ସେ ଯେମନ୍ତ । ମୁକୁତା ସିପ ହୋଏ ସତ୍ୟ ॥
ମାୟା ପ୍ରକାଶ ତୋ ବ୍ରହ୍ମାଣ୍ଡେ । ସର୍ପ ଯେସନେ ରଜ୍ଜୁଖଣ୍ଡେ ॥

କାର୍ଯ୍ୟ କାରଣ ମାୟାଲକ୍ଷି । ତୁ ପରମାତ୍ମା ଏତେ ସାକ୍ଷୀ ॥
ସାକ୍ଷୀ ସ୍ୱରୂପେ ରହେ ଆତ୍ମା । ଏହା ତ ମାନନ୍ତି ମହାତ୍ମା ॥
ସ୍ୱର୍ଗାଦିଫଳ ବେଦ କହି । ଏ ଘେନି ପ୍ରାଣୀ କର୍ମଦାହି ॥
ଏଣୁ ସଂସାର ସତ୍ୟ ଦିଶେ । କର୍ମ ସାଧନ୍ତି ମନତୋଷେ ॥
ଭବପ୍ରବଞ୍ଚ ବ୍ୟବହାରେ । ଚିତ୍ତ ବୁଡ଼ାଇ ଥା'ନ୍ତି ଧୀରେ ॥
ବେଦବାଦୀଏ ତା'ଙ୍କ ମନ । ଶିକ୍ଷା ଦେଇ ବେଦ ବଚନ ॥
କର୍ମର ଫଳ ସତ୍ୟ ପ୍ରାୟେ । ବିଷୟ ତାପ ଭ୍ରମେ ମୋହେ ॥
ଏ ଘେନି କର୍ମ କରି ଦେହେ । ଭ୍ରମନ୍ତି ତବ ମାୟାମୋହେ ॥
ପୂର୍ବ ଲୋକଙ୍କ କର୍ମ ଦେଖି । ଅପର ଲୋକେ ତାହା ଶିଖି ॥
ଭୋ ନାଥ ବେଦ ତୋ ବଚନ । ପୁଷ୍ପର ପ୍ରାୟ ଅନୁମାନ ॥
ପୁଷ୍ପରେ ଥାଇ ସର୍ବଗନ୍ଧ । ଭ୍ରମର ଲଭେ ମକରନ୍ଦ ॥
ବେଦବଚନେ ପୁଷ୍ପ ପ୍ରାୟେ । କର୍ଣ୍ଣେ ଶୁଣନ୍ତେ ଚିତ୍ତଧାୟେ ॥
ସର୍ବେ ବୋଲନ୍ତି ସାଧୁ ସାଧୁ । କେହି ନ ଲଭେ ପୁଷ୍ପମଧୁ ॥
ପ୍ରାଣୀଙ୍କି କର୍ମ ସେ କରାଏ । ଅନ୍ଧକୁ ଅନ୍ଧ ଯେହ୍ନେ ବାହେ ॥
'ନ ଯଦିଦଂ' ଯେ ଚତୁର୍ବିଂଶ । ଶୁଣ କହିବା ତା ଉଦ୍ଦେଶ୍ୟ ॥
ଏ ସୃଷ୍ଟି ପୂର୍ବେ ଥିଲା କାହିଁ । ପୁଣି ଏ ଅନ୍ତେ ଥିବ କାହିଁ ॥
ଏଣୁ ଏହାର ସତ୍ତା ନାହିଁ । ଶାସ୍ତ୍ର ମାର୍ଗରେ ଏହା କହି ॥
ତୋ ଠହୁଁ ବିରାଟ ପୁରୁଷ । ଏ ମିଥ୍ୟା ସଂସାରେ ପ୍ରକାଶ ॥
ବ୍ରହ୍ମ ନିର୍ମାତା ଏକ ତୁହି । ତୋ ଅଙ୍ଗେ ସତ୍ୟ ଆଭାସଇ ॥
ଏ ନାନା ଦ୍ରବ୍ୟମାନ ଯେତେ । ଆମ୍ଭେ ଜାଣିଲୁ ଏବେ ତଥ୍ୟେ ॥
ମୃତ୍ତିକା ଆଦି ଧାତୁ ଯେତେ । ଏ ଯେତେ ଘଟ ବସ୍ତ୍ର ପାତ୍ରେ ॥
ଜଗତ ତୁଲେ ଏ ଶୟନ । ପୁଣ କହିବୁ ଅନୁମାନ ॥
ଯାହାର ଠହୁଁ ସେ ଘଟନ । ବିଚାରେ ତହୁଁ ନୋହେ ଆନ ॥
ନାମ ମାତ୍ରକେ ଭେଦ ରହେ । ଏ ଅନୁମାନ ବେଦ କହେ ॥
କାରୁଣ କାର୍ଯ୍ୟେ ଭିନ୍ନେ ଥା'ନ୍ତି । ଅନ୍ତେ କାରଣେ ସେ ମିଶନ୍ତି ॥
ଜଗତ କାରଣ ଯେ ତୁହି । କାର୍ଯ୍ୟେ ଭିନ୍ନ ପ୍ରାୟ ଦିଶଇ ॥
ଜଗତ ନାମମାତ୍ରେ ଭିନ୍ନ । ସୃଷ୍ଟି ଅନ୍ତେ ତୋ ହୃଦେ ଲୀନ ॥
ତୁ ସତ୍ୟ ଭବମଧ୍ୟେ ହରି । କେ ତୋ ମହିମା କହିପାରି ॥
ମନ ବିଳାସ ମାତ୍ର ଏହି । ଅଜ୍ଞାନେ ପ୍ରତ୍ୟକ୍ଷ ଦିଶଇ ॥
'ସଯଦ' ପଞ୍ଚବିଂଶ ସ୍ତୁତି । ବେଦ କହନ୍ତି ଭାବ ଚିନ୍ତି ॥
ତୁ ମହାମହିମ ଅନନ୍ତ । ଆଗମ ନିମନ୍ତେ ତୋ ଅନ୍ତ ॥
କେହି ନ ଜାଣେ ଅନୁମାନେ । ନିର୍ମଳ ଚିତ୍ତେ ଶୁଦ୍ଧଜ୍ଞାନେ ॥
ମିଥ୍ୟା ପ୍ରପଞ୍ଚ ଏ ଜଗତେ । ଜୀବ କି ଜାଣିପାରେ ଚିତ୍ତେ ॥
ବେଦବଚନେ ନିତ୍ୟେ ଭ୍ରମି । ଜନ୍ମମରଣ ପଥେ ଶ୍ରମୀ ॥
ଜୀବକୁ ମାୟାବନ୍ଧେ ଧରି । କ୍ରୀଡ଼ଇ ସଂସାରେ ବିହରି ॥

ଗୁଣ ଇନ୍ଦ୍ରିୟ ଦେହମେଳେ । ଭ୍ରମେ ତୋ' ମାୟା ଯୋଗବଳେ ॥
ଦେହାଦି ଧର୍ମ ଯେ ଭଜନ୍ତି । ସେ କାହିଁ ତୋ ଭାବ ଜାଣନ୍ତି ॥
'ଅପେତଭଗ' ସେ ବୋଲାଇ । ତେଣୁ ସଂସାର ନ ଛାଡ଼ଇ ॥
ତାପେ ତାପିତ ଏ ଶୟଳେ । ମରଇ ଅନ୍ତେ କର୍ମବଳେ ॥
ପୁରୁଣା ଚର୍ମ ଯେହ୍ନେ ସର୍ପ । ଛାଡ଼ଇ ପାଇ ନିଜ ରୂପ ॥
ଏ ମାୟା ଯେବେ ଛାଡୁ ତୁହି । ଜୀବ ସ୍ୱରୂପେ ବିରାଜଇ ॥
ଅପରିମିତଭଗ ଯେଣୁ । ନିତ୍ୟେ ପ୍ରାପତ ସୁଖ ତେଣୁ ॥
'ଯଦିନସମ୍' ଷଡ଼ବିଂଶେ । ନିଗମେ ବୋଲନ୍ତି ହରଷେ ॥
ଅଶେଷ ବାସନା ଦଉଡ଼ି । ସେ ଅଜଗର ରୂପେ ଜଡ଼ି ॥
ତହୁଁ ସଞ୍ଚରେ କାମବୃକ୍ଷ । ପତ୍ର ପୁଷ୍ପ ଫଳ ପ୍ରତ୍ୟକ୍ଷ ॥
ଜୀବ ତା ସୁଖେ ଭୋଗ କରେ । ପଶୁ ଯେସନେ ପତ୍ର ଚରେ ॥
ସେ କାମବୃକ୍ଷ ଅବିରତେ । ସୁଖେ ବଢ଼ଇ ହୃଦଗତେ ॥
ତାହାକୁ ବଳେ ଛଳେ ଭିଡ଼ି । କେହି ନ ପାରନ୍ତି ଉପାଡ଼ି ॥
ବୁଲନ୍ତି ନାନା ତପଫଳେ । ଯୋଗ ସମାଧି ତୀର୍ଥ ଛଳେ ॥
ଅତି କଠୋରେ ସେ ଭ୍ରମନ୍ତି । ହୃଦଗୁ ନ ତୁଟଇ ଭ୍ରାନ୍ତି ॥
ବିବିଧମତେ ଦୁଃଖ ପାଇ । ତାହାଙ୍କୁ ଅତି ଦୂର ତୁହି ॥
ନିତ୍ୟେ ସେ କାମଭୋଗ ଚିନ୍ତି । ଏ ଘେନି ତୋତେ ପାସୋରନ୍ତି ॥
ଅସାଧୁପଣ ତାହାଙ୍କର । ଶୁଣ ହେ କମଳାରବର ॥
ଅମୂଲ୍ୟମଣି କଣ୍ଠେ ଧରି । ମନ ବିଷୟ ଜଡ଼େ ଭରି ॥
ଯାବତ ସୁମରଣ ନାହିଁ । ପ୍ରାପତ ନୋହେ କଣ୍ଠେ ଥାଇ ॥
ମଣିର ପ୍ରାୟ କଣ୍ଠତଟେ । ତୁ ଥାଉ ପ୍ରାଣୀଙ୍କ ନିକଟେ ॥
ନିତ୍ୟେ ତୋ ମାୟା ମୋହ ଚିନ୍ତି । ଏ ଘେନି ତୋତେ ନ ଜାଣନ୍ତି ॥
ଯୋଗୀ ବୋଲାଇ ଜ୍ଞାନପଥେ । ବିଷୟରସ ଅବିରତେ ॥
ନିରତେ ଇନ୍ଦ୍ରିୟ ପୋଷଣେ । ଧନ ସଞ୍ଚୟ କରଷଣେ ॥
ଉଭୟ ଲୋକ ତା'ର ନାହିଁ । ତୋତେ ପାଇବେ ଅବା କାହିଁ ॥
ଯାବତ ତୋ ଚରଣ ତଳେ । ଚିତ୍ତ ନ ରହଇ ନିଶ୍ଚଳେ ॥
ସପ୍ତବିଂଶେ 'ତ୍ୱଦବଗମୀ' । ବେଦେ ବୋଲନ୍ତି ଶୁଣ ସ୍ୱାମୀ ॥
ଭୋ ନାଥ ତୋତେ ଯେ ଜାଣନ୍ତି । ତାଙ୍କ ମହିମା କେବା ଚିନ୍ତି ॥
ପ୍ରାଣୀଙ୍କ ଚିତ୍ତ ତୋ ଚରଣେ । ଆଶ୍ରିତ ଥାଇ ଅନୁକ୍ଷଣେ ॥
ଯେ ଯାହା କର୍ମଫଳ ଘେନି । ଫଳଇ ଦୁଃଖ ସୁଖ ବେନି ॥
ଏ ବେନିଫଳଙ୍କର ରସ । ନିଶ୍ଚେ ନ ଜାଣେ ତୋର ଦାସ ॥
ଦେହାଭିମାନୀ ପ୍ରାଣୀଙ୍କର । ବିଧି ନିଷେଧ ଅନୁଚର ॥
ତାହାଙ୍କ ନିନ୍ଦା ସ୍ତୁତି ବାଣୀ । ତୋର ସେବକ ତାହା ଶୁଣି ॥
ଚିତ୍ତେ ନ କରନ୍ତି ବିଚାର । ଏମନ୍ତ ମହିମା ତୁମର ॥
ଯୁଗାନୁଯୁଗ ତୋ ଶରୀର । ମତ୍ସ୍ୟାଦି ନାନା ଅବତାର ॥

ତୋହର ଗୁଣ କର୍ମ ଯେତେ । ଯେ ପ୍ରାଣୀ ଶୁଣେ କର୍ଣ୍ଣପଥେ ॥
ତୁଷେ ଭାଷନ୍ତି ଅନୁକ୍ଷଣେ । ଚିନ୍ତନ୍ତି ତୋହର ଚରଣେ ॥
ତୁ ନାଥ ଅପବର୍ଗ ଗତି । ଅନ୍ତ ତୋ ଚରଣେ ପଶନ୍ତି ॥
ଅଷ୍ଟବିଂଶତି ପୂର୍ଣ୍ଣସ୍ତୁତି । ବୋଲନ୍ତି ଦ୍ୟୁପତୟ ଶ୍ରୁତି ॥
ବେଦେ ବୋଲନ୍ତି ହେ ଅନନ୍ତ । ନିତ୍ୟେ ତୋହର ଆଦିଅନ୍ତ ॥
ମନ ବଚନ ବହୁ ଚିନ୍ତି । ବ୍ରହ୍ମାଦି ଦେବେ ନ ଜାଣନ୍ତି ॥
ତୋ ରୂପ ତୁହି ନ ପ୍ରମାଣୁ । କେ ତାହା ଦେହ ବହି ଜାଣୁ ॥
ତୁ ଅବା ବୋଲୁ ମୋ ମହିମା । ମୁଁ କିମ୍ବା ନ ଜାଣଇ ସୀମା ॥
ସର୍ବଜ୍ଞ ପଣ କି ମୋ ନାହିଁ । କହିବୁଁ ଶୁଣ ଭାବଗ୍ରାହୀ ॥
ସ୍ୱଭାବେ ଶୂନ୍ୟ ଅପ୍ରମିତ । କେ ଜାଣେ ତୋର ଆଦି ଅନ୍ତ ॥
ଉଦୟ ଅସ୍ତ ନାହିଁ ଯା'ର । ଏଣୁ ତୁ ତୋତେ ଅଗୋଚର ॥
ଏଣୁ ଆମ୍ଭର ଅନୁମତେ । ସର୍ବଜ୍ଞ ବୋଲିବୁ କେମନ୍ତେ ॥
ଶଶାର ମୁଣ୍ଡେ ଶୃଙ୍ଗ ଜାତ । ବନ୍ଧ୍ୟା କି ପ୍ରସବିବ ସୁତ ॥
ଏ ବେନି ନ ଜାଣନ୍ତି ଯେହୁ । ସର୍ବଜ୍ଞ ବୋଲାଇବେ କାହୁଁ ॥
ତୋ ଆଦି ଅନ୍ତ ମଧ ତୁହି । କହିବୁଁ ଶୁଣ ମନଦେଇ ॥
ଏକ ଆରକେ ଦଶଗୁଣ । ବ୍ରହ୍ମାଣ୍ଡ ସପ୍ତ ଆବରଣ ॥
ଏମନ୍ତେ ଅଶେଷ ବ୍ରହ୍ମାଣ୍ଡ । ଆଶ୍ରେ କରନ୍ତି ତୋର ପିଣ୍ଡ ॥
ଭ୍ରମନ୍ତି କାଳଚକ୍ର ବଳେ । ଧୂଳି ଯେସନେ ଅନ୍ତରାଳେ ॥
ସେ ରେଣୁ ମଧ୍ୟେ ପ୍ରାଣୀ ଥାଇ । ତୋ ରୂପ ପ୍ରମାଣିବ କାହିଁ ॥
ବେଦେ ବୋଲନ୍ତି ବିଶ୍ୱମଧେ । ଆମ୍ଭେ ହୋ ଭ୍ରମୁ ମାୟାବନ୍ଧେ ॥
ତୋର ମହିମା ଅଛି ଯେତେ । ଆମ୍ଭେ ତା ଜାଣିବୁ କେମନ୍ତେ ॥
ସଗୁଣ ନିର୍ଗୁଣର ସୀମା । ଭୋ ନାଥ ତୋହର ମହିମା ॥
ବିଧିନିଷେଧ ବାଦ କରି । ତୋର ମହିମା କେ ବିଚାରି ॥
ବିଧି ନିଷେଧ ହିଁ ନ ଜାଣେ । ପ୍ରଣମେ ତୋହର ଚରଣେ ॥
ବେଦେ ବୋଲନ୍ତି ଆମ୍ଭ ଚିତ୍ତେ । ତୋର ମହିମା ଅନୁମତେ ॥
ସୃଷ୍ଟି ସଂହାରି ତୋ ଶରଣେ । ପଶିଲୁଁ ଅଭୟ ଚରଣେ ॥
ନିରତେ ତୋର ପଦ୍ମପାଦେ । ଥିବୁଁ ସର୍ବଦା ସୁଖ ସଧେ ॥
ଏମନ୍ତେ ବେଦଙ୍କ ବଚନ । ଶୁଣି ବୋଲନ୍ତି ନାରାୟଣ ॥
ଏମନ୍ତେ ବ୍ରହ୍ମାର ନନ୍ଦନ । ସନନ୍ଦ ତହୁଁ ଆତ୍ମଜ୍ଞାନ ॥
ଶୁଣି ସାନନ୍ଦ ତିନି ଭାଇ । ଚରଣଯୁଗେ ଶିର ଦେଇ ॥
ପୂଜିଲେ ସନନ୍ଦ ଚରଣ । କହନ୍ତି ପ୍ରଭୁ ନାରାୟଣ ॥

## ନାରାୟଣ ଉବାଚ

ଶୁଣ ନାରଦ ମୁନିଙ୍କର । ସେ ଚାରି ବ୍ରହ୍ମାର କୁମର ॥
ବ୍ରହ୍ମ ସମାଧି ସଙ୍ଗ ପାଇ । ନିରତେ ଆତ୍ମାନନ୍ଦ ଧାୟି ॥
ଆଗମ ପୁରାଣ ବଖାଣି । ଉପନିଷଦେ ବ୍ରହ୍ମ ଜାଣି ॥
ତୁ ବିପ୍ରବର ଜ୍ଞାନବଳେ । ନିରତେ ଭ୍ରମି ଭୂମଣ୍ଡଳେ ॥
ନିର୍ମଳ ଚିତ୍ତେ ଜ୍ଞାନ ଜାଣୁ । ଜୀବନ ମୁକତି ପ୍ରମାଣୁ ॥
ଏ ତତ୍ତ୍ୱଜ୍ଞାନେ ଯାର ଚିତ୍ତ । ଆନନ୍ଦ ବଢ଼େ ଅବିରତ ॥
ସଂସାର ବାସନାରୁ ତରେ । ନ ବୁଡ଼େ ଭବ ମହାଘୋରେ ॥

## ଶ୍ରୀ ଶୁକ ଉବାଚ

କହିଲେ ନରନାରାୟଣ । ପ୍ରସ୍ତାବେ ବ୍ରହ୍ମର କାରଣ ॥
ଏ ଦୁଇଜନଙ୍କ ସମ୍ବାଦ । ଯେତେ କହିଲେ ତିନି ବେଦ ॥
ଶୁକ କହନ୍ତି ଅନୁରାଗେ । ବେଦ ଉପନିଷଦ ଭାଗେ ॥
ଶୁଣି ସାନନ୍ଦ ମୁନିବର । ନମିଲେ ବିଷ୍ଣୁର ପୟର ॥
ଗୋବିନ୍ଦ ଯଶ ଗାଇ ତୁଣ୍ଡେ । ଆନନ୍ଦେ ଗଲେ ସେ ବ୍ରହ୍ମାଣ୍ଡେ ॥
ଶୁଣ ହୋ ଅଭିମନ୍ୟୁସୁତ । ମୋ ଜନ୍ମ କର୍ମର ଚରିତ ॥
ଯଜ୍ଞର ଅର୍ଥେ ପରାଶର । ଅଗ୍ନିମନ୍ଥନେ ତତପର ॥
ମନ୍ତ୍ର ଉଚ୍ଚାରନ୍ତି ଆନନ୍ଦେ । ଏମନ୍ତେ ଅଗ୍ନିକୁଣ୍ଡ ମଧେ ॥
ସେ ବୀର୍ଯ୍ୟ ଅଙ୍କୁରୁ ମୁଁ ଜାତ । ତେଣୁ ମୁଁ ଅଯୋନି ସମ୍ଭୂତ ॥
ଏ ଘେନି ବ୍ୟାସ ମୋର ତାତ । ତା'ଙ୍କ ଆଶ୍ରମେ ଉପଗତ ॥
ନାରଦ ଋଷି ଆଗମନ । ଅଭିଗମନ ତତପରେ ॥
ଉତ୍ତମ ଆସନେ ବସାଇ । ପାଦ ପୂଜିଲେ ଅର୍ଘ୍ୟ ଦେଇ ॥
ବ୍ୟାସଙ୍କୁ କହିଲେ ନାରଦ । ନର ନାରାୟଣ ସମ୍ବାଦ ॥
ତୁ ଯାହା ପଚାରିଲୁ ମୋତେ । ବ୍ରହ୍ମ ସମ୍ବାଦ ଭାବ ଚିତ୍ତେ ॥
ବୋଲୁ ଯେ ନିର୍ବିକାର ବ୍ରହ୍ମ । କେମନ୍ତେ ଜାଣନ୍ତି ନିଗମ ॥
ତାହା ତ କହିଲି ମୁଁ ତୋତେ । ଏବେ ହୋ ଶୁଣ ଏକଚିତ୍ତେ ॥
ଯେ ହରି ଜଗତ ଭିଆଇ । ଆଦ୍ୟନ୍ତ ସାକ୍ଷୀରୂପ ହୋଇ ॥
ପ୍ରକୃତି ପୁରୁଷହୁଁ ଦୂର । ବ୍ରହ୍ମାଣ୍ଡ ଯା'ର ଖେଳଘର ॥
ବ୍ରହ୍ମାଣ୍ଡେ ପଶି ଆତ୍ମାଅଂଶେ । ଜୀବକୁ ପାଳଇ ଆଶ୍ୱାସେ ॥
ନିଜ ସେବକେ ମୋକ୍ଷ ଦେଇ । ନିତ୍ୟେ ଭକତ ପାଶେ ଥାଇ ॥
ତୋ ରୂପ ଜୀବରେ ନିରେଖି । ମାୟା ଛାଡ଼ଇ ତାହା ଦେଖି ॥
ତୁ ଯେ ବୋଇଲୁ ଏ ଜଗତେ । ଜୀବନମୁକ୍ତ ଛନ୍ତି ଯେତେ ॥
ଶରୀରବନ୍ଧ ତା'ଙ୍କ ଦେଖି । ମାୟା କେମନ୍ତେ ତା ଉପେକ୍ଷି ॥
ଶୁଣ ଯାହାକୁ କୃଷ୍ଣ ଦୟା । ତାହାକୁ ନ ଲାଗଇ ମାୟା ॥
ଆତ୍ମାର ଜ୍ଞାନ ନିତ୍ୟେ ବଢ଼େ । ଦେହାଦି ଧର୍ମକୁ ସେ ଛାଡ଼େ ॥
ଯେମନ୍ତେ ନିଦ୍ରାଗତ ପ୍ରାଣୀ । ଦେହାଦି ଧର୍ମ ହିଁ ନ ଜାଣି ॥
ଆତ୍ମାରେ ଜଗତ ଦେଖଇ । ଦେହାଦି ଧର୍ମ ନ ଲାଗଇ ॥
ସମସ୍ତ ପ୍ରଣୀ ଦୃଷ୍ଟି ତାକୁ । ତା ଦୃଷ୍ଟି ନ ଥାଇ ଦେହକୁ ॥

ସେ ହରି ନିରଞ୍ଜନ ରୂପ । କେବଳ ସାକ୍ଷୀ ଏ ସ୍ୱରୂପ ॥
ଅଭୟଦାତାର ଚରଣ । ନିରତେ କର ସୁମରଣ ॥
ଯା'ରୂପ ନିରନ୍ତର ଲୋଡ଼ି । ମନ ବଚନ ହିଁ ବାହୁଡ଼ି ॥
ଅଧିକ କି କହିବି ମୁହିଁ । ପରୀକ୍ଷ ଭାଗ୍ୟବନ୍ତ ତୁହି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ନାରଦନାରାୟଣ ସମ୍ବାଦେ ବେଦସ୍ତୁତିର୍ନାମ ତ୍ରିନବତିତମ୍ ଅଧ୍ୟାୟଃ ॥*

## ଚତୁଃନବତିତମ ଅଧ୍ୟାୟ

ପରୀକ୍ଷ ଶୁକମୁଖ ଚାହିଁ । ବୋଲଇ ଶିରେ କର ଦେଇ ॥

### ପରୀକ୍ଷିତ ଉବାଚ

ଭୋ ମୁନି ସଂଶୟ ମୋ ମନେ । ଛେଦନ କର ସୁପ୍ରସନ୍ନେ ॥
ଦେବ ଅସୁର ନର ମଧ୍ୟେ । ଯେ ସେବା କରେ ରୁଦ୍ରପାଦେ ॥
ତାହାଙ୍କ ଘରେ କମଳିନୀ । ସକଳ ନିଧି ସଙ୍ଗେ ଘେନି ॥
ଖଟଇ ଭୃତ୍ୟପ୍ରାୟ ହୋଇ । ଅନେକ ସୁଖ ସେ ଭୁଞ୍ଜଇ ॥
ଅଜେୟ ସର୍ବଲୋକ ହୋନ୍ତି । ଏଣୁ ବିଷ୍ଣୁଙ୍କୁ ନ ଭଜନ୍ତି ॥
କମଳାକାନ୍ତ ଯେ ମୁରାରି । ପ୍ରାଣୀ ତାହାଙ୍କୁ ସେବା କରି ॥
ସକଳ ଦୁଃଖେ ହୋନ୍ତି ଦୁଃଖୀ । ସ୍ୱଜନେ ତାହାଙ୍କୁ ଉପେକ୍ଷି ॥
ଜଗତ ଅନାଦର ଭୟେ । ବନେ ପଶଇ ଦୁଃଖ ଦେହେ ॥
ସେ ହରିହର ଏକମତ । ଭକତେ କିମ୍ପା ବିପରୀତ ॥
ଏଣୁ ସଂଶୟ ଚିତ୍ତ ମୋର । କହି ନିର୍ମଳ ମୋତେ କର ॥
ଶୁଣି ସାନନ୍ଦ ବ୍ୟାସସୁତ । ବୋଲନ୍ତି ଶୁଣ ନରନାଥ ॥

### ଶ୍ରୀ ଶୁକ ଉବାଚ

ଶିବ ଯେ ନିତ୍ୟ ଶକ୍ତିଯୁକ୍ତ । ତ୍ରିଲିଙ୍ଗ ତ୍ରିଗୁଣ ସମ୍ଭୂତ ॥
ସାତ୍ତ୍ୱିକ ରାଜସ ତାମସ । ତ୍ରିଧା ଅହଙ୍କାର ପ୍ରକାଶ ॥
ତେଣୁ ବିକାରେ ହୋନ୍ତି ଜାତ । ବ୍ରହ୍ମାଣ୍ଡେ ଏ ଷୋଡ଼ଶତତ୍ତ୍ୱ ॥
ଏଥୁ ଏ ବିଭୂତିଙ୍କ ଗତି । ଅଧିଦୈବତେ ଆବୋରନ୍ତି ॥
ଏ ଜୀବ ଆତ୍ମାରୂପ ଧରି । ବିଭୂତିରସ ଭୋଗ କରି ॥
ଏଣୁ ଭକତଜନ ଲାଭେ । ବିଭୂତି ଈଶ୍ୱର ଯେ ଭାବେ ॥
ଭକତେ ଦେଇ ସୁଖଫଳ । ଏବେ ହୋ ଶୁଣ ମହୀପାଳ ॥
ନିର୍ଗୁଣ ନିରଞ୍ଜନ ହରି । ପ୍ରକୃତି ନ ପାରେ ଆବୋରି ॥
ଏ ସୃଷ୍ଟିପାଳକ ସ୍ୱରୂପେ । ସବୁ ଦେଖଇ ସାକ୍ଷୀରୂପେ ॥
ସେ ହରି ପାଦେ ଯେ ଶରଣ । ତାକୁ ନ ଲାଗେ ତିନିଗୁଣ ॥
ଏଣୁ ନିର୍ଗୁଣ ମୋକ୍ଷ ରୂପେ । ରହନ୍ତି ବିଷ୍ଣୁର ସମୀପେ ॥
ଏ ଭବଜଳୁ ହୋନ୍ତି ପାର । ଏବେ ହୋ ଶୁଣ ନୃପବର ॥
ତୋ ପିତାମହ ଯୁଧିଷ୍ଠିର । ବିଖ୍ୟାତ ଧର୍ମର କୁମର ॥
ରାଜସୂୟଯଜ୍ଞ ସମାପତେ । ଆନନ୍ଦେ କୃଷ୍ଣର ଅଗ୍ରତେ ॥
ଧର୍ମପ୍ରସଙ୍ଗ କରୁଥିଲା । ଏ କଥା କୃଷ୍ଣଙ୍କୁ ପୁଚ୍ଛିଲା ॥
ଯେ ହରି ଜନଙ୍କର ହିତେ । ମନୁଷ୍ୟ ରୂପ ଏ ଜଗତେ ॥
ଧର୍ମନନ୍ଦନ ପ୍ରଶ୍ନ ଶୁଣି । କହିଲେ ପ୍ରଭୁ ଚକ୍ରପାଣି ॥

### ଶ୍ରୀ ଭଗବାନ ଉବାଚ

ଯାହାକୁ ଚିତ୍ତେ ଦୟା ମୋର । ସମ୍ପଦ ହରଇ ତାହାର ॥
ନିର୍ଦ୍ଧନ ଦେଖି ବନ୍ଧୁଜନେ । ତାକୁ ଛାଡ଼ନ୍ତି ଦୁଃଖମନେ ॥
ତା'ର ସଂସାରେ ଇଛା ନୋହେ । ବନେ ଭ୍ରମିଣ ଦୁଃଖ ସହେ ॥
ମୋର ଭକତ ମିତ୍ରପଣେ । ମୋତେ ଭଜଇ ଅନୁକ୍ଷଣେ ॥
ତାହାର କର୍ମନାଶ କାଳେ । ମୋର ଭକତିଭାବ ବଳେ ॥
ପରମବ୍ରହ୍ମ ସୂକ୍ଷ୍ମରୂପ । ସଚ୍ଚିଦାନନ୍ଦ ମୁଁ ନିର୍ଲେପ ॥
ଏମନ୍ତ ରୂପେ ମୋତେ ଧ୍ୟାୟି । ପଶଇ ମୋର ଦେହେ ଯାଇ ॥
ଏହାକୁ ନ ଲାଗେ ସଂସାର । ଏମନ୍ତ ମହିମା ମୋହର ॥
ଏଣୁ ସଂସାରେ ଇଚ୍ଛା ଯା'ର । ସେ ମୋତେ ନ କରେ ଆଦର ॥
ରାଜସମ୍ପଦ ଭୋଗ ଇଚ୍ଛା । କରଇ ନାନାମତେ ଦୀକ୍ଷା ॥
ଅଳପ ତପେ ତୋଷ ହୋନ୍ତି । ବେଗେ ବାଞ୍ଛିତ ଫଳ ଦ୍ୟନ୍ତି ॥
ଏମନ୍ତ ଦେବତାଙ୍କୁ ସେବି । ସୁଖ ସମ୍ପଦ ଅନୁଭବି ॥
କାଳେ ଲଭନ୍ତି ମହାଦୁଃଖ । କହି ହସନ୍ତି ପଦ୍ମମୁଖ ॥
ଏମନ୍ତ କୃଷ୍ଣର ବଚନ । କହିଲେ ବ୍ୟାସଙ୍କ ନନ୍ଦନ ॥
ପୁଣି ବୋଲନ୍ତି ଶୁଦ୍ଧଚିତ୍ତେ । ତିନି ଦେବତା ଏ ଜଗତେ ॥
ଶାପ ପ୍ରସାଦର ଈଶ୍ୱର । ବ୍ରହ୍ମା ଗୋବିନ୍ଦ ଶୂଳଧର ॥
ଶାପ ପ୍ରସାଦ ତତକ୍ଷଣେ । ଭକତେ ଦ୍ୟନ୍ତି ବେନି ଜଣେ ॥
ଚତୁରାନନ ପଶୁପତି । ଏମନ୍ତେ ନୋହେ କୃଷ୍ଣଗତି ॥
ଏବେ ତୁ ଶୁଣ ତୋଷମନେ । ପୂର୍ବେ ପଣ୍ଡିତ ମହାଜନେ ॥
କହିଲେ ଇତିହାସ ବାଣୀ । ତାହାଙ୍କ ମୁଖୁ ମୁହିଁ ଶୁଣି ॥
ଜାଣଇ ଈଶ୍ୱର ବେଭାର । ଶୁଣ କହିବା ତୋ ଛାମୁର ॥
ବୃକାସୁରକୁ ପୂର୍ବକାଳେ । ଈଶ୍ୱର ତା'ର ତପଫଳେ ॥
ପ୍ରସନ୍ନ ହୋଇ ବର ଦେଲେ । ବିଷମ ସଙ୍କଟେ ପଡ଼ିଲେ ॥
ଶକୁନି ନାମେ ମହସୁର । ଘୋର ଦୁର୍ଗମ ବଳୀୟାର ॥
ମହାବଳିଷ୍ଠ ତା କୁମର । ନାମ ତାହାର ବୃକାସୁର ॥
ସୁର ଅସୁରେ ସେ ଅଜିତ । ଶୁଣ ତାହାର ବିପରୀତ ॥

ମୃଗୟା ଅର୍ଥେ ଏକଦିନେ । ପଥେ ଚଳଇ ଘୋରବନେ ॥
ଚିନ୍ତଇ ପଶୁଙ୍କ ପ୍ରମାଦ । ଏମନ୍ତେ ଭେଟିଲା ନାରଦ ॥
ପ୍ରଣାମ କରି ପାଦଯୁଗେ । କହଇ ନାରଦଙ୍କ ଆଗେ ॥
ଭୋ. ମୁନିବର ଏ ଜଗତେ । ଦେବେ ଅଛନ୍ତି ନାନାମତେ ॥
ଭକତଜନ ତପଫଳେ । କେ ବର ଦ୍ୟନ୍ତି ଅଳ୍ପକାଳେ ॥
ତୁମ୍ଭର ମୁଖୁଁ ମୁହିଁ ଶୁଣି । ସେବା କରିବି ତଥ୍ୟ ଜାଣି ॥
ଶୁଣି ବୋଲନ୍ତି ବ୍ରହ୍ମଋଷି । ଅସୁର ବଚନ ପ୍ରଶଂସି ॥
ସାଧୁ ବିଚାର ଏ ତୋହର । ଈଶ୍ୱର ପାଦେ ସେବାକର ॥
ଚତୁରାନନ ଭଗବାନ । ଏହାଙ୍କ ତପେ ମହାବିଘ୍ନ ॥
ତାହାଙ୍କ ତପସ୍ୟା କଠୋର । ଅନେକ କାଳେ ଦ୍ୟନ୍ତି ବର ॥
ତୋହର ଭୋଗେ ଯେବେ ଇଚ୍ଛା । ବେଗେ ତୁ କର ହରଦୀକ୍ଷା ॥
ପୂବେ ରାବଣ ବାଣାସୁର । ତାଣ୍ଡବେ ସେବି ଶୂଳଧର ॥
ଅନେକମତେ କଲେ ଭାବ । ପ୍ରସନ୍ନ ହୋଇ ସଦାଶିବ ॥
ଅତୁଳ ଅଇଶ୍ୱର୍ଯ୍ୟ ଦେଲେ । କାଳେ ସେ ସଙ୍କଟ ଲଭିଲେ ॥
ଏମନ୍ତ କହି ଗଲେ ମୁନି । ବୃକଦାନବ ତାହା ଶୁଣି ॥
ହିମକେଦାର କୁଣ୍ଡେ ଯାଇ । ଅନଳ ଜାଳି ତପ ଦାହି ॥
ପରଶୁ ଘେନି ଦୃଢ଼ମୁଷ୍ଟି । ନଜ ଶରୀରୁ ମାଂସ କାଟି ॥
ଘୃତେ ବୁଡ଼ାଇ ମନ୍ତ୍ର ତୋଳି । ଅନଳେ କ୍ଷେପେ ସ୍ୱାହା ବୋଲି ॥
ଅଗ୍ନି ବଦନେ ରୁଦ୍ରେ ଧାୟି । ଶରୀରୁ ସର୍ବ ମାଂସ ଦେଇ ॥
ଅତି କଠୋର ତପ କଲା । ରୁଦ୍ର ଦର୍ଶନ ନ ପାଇଲା ॥
ମନେ ବିଚାରେ ମହାସୁର । ଆଜି କାଟିବି ନିଜ ଶିର ॥
ପୂର୍ଣ୍ଣଆହୁତି କୁଣ୍ଡେ ଦେବି । ଏମନ୍ତ ଦୃଢ଼ମନେ ଭାବି ॥
କେଦାରକୁଣ୍ଡ ଜଳ ଶିରେ । ଆଣି ସିଞ୍ଚିଲା ବେନି କରେ ॥
ହର ସୁମରି ଶସ୍ତ୍ର ଧରି । ଅନଳକୁଣ୍ଡେ ମୁଣ୍ଡ କରି ॥
ପରଶୁ ପ୍ରହାରନ୍ତେ କନ୍ଧେ । ତକ୍ଷଣେ ଶଙ୍କର ଆନନ୍ଦେ ॥
ସେ କୁଣ୍ଡୁ ହୋଇଲେ ବାହାର । ଅନଳ ପ୍ରାୟ ପଞ୍ଚଶିର ॥
ସଙ୍ଗେ ସୁନ୍ଦରୀ ନିଜ ନାରୀ । ଭୁଜେ ଅସୁର କର ଧରି ॥
ବୋଇଲେ ହୋଇଲି ମୁଁ ତୋଷ । ତୋହର ପୂରାଇବି ଆଶ ॥
ଈଶ୍ୱର କର ଦେହେ ଲାଗି । ଅସୁର ହୋଏ ସୁଖଭାଗୀ ॥
ତକ୍ଷଣେ ନିଜ ଦେହ ପାଇ । ତେଜେ ସୁନ୍ଦର ବିରାଜଇ ॥
ଦେଖି ତାହାର ଦିବ୍ୟ ତେଜ । ବୋଲନ୍ତି ପ୍ରଭୁ ଦେବରାଜ ॥
ତପେ ପ୍ରସନ୍ନ ମୁହିଁ ତୋତେ । ବର ତୁ ମାଗ ଦୃଢ଼ଚିତ୍ତେ ॥
ତୋର ଦୁର୍ଲ୍ଲଭ ତପଘୋର । ଯେ ତୋର ଇଚ୍ଛା ମାଗ ବର ॥
ଈଶ୍ୱର ଆଜ୍ଞା ପରମାଣେ । ଅସୁର ନମିଲା ଚରଣେ ॥

ଉଠି ଯୋଡ଼ିଣ ବେନି କର । ବୋଇଲ ଶୁଣ ଶୂଳଧର ॥
ମୁଁ ଯାର ମୁଣ୍ଡେ ଦେବି କର । ଭସ୍ମ ହୋଇବ ତା ଶରୀର ॥
ଏମନ୍ତ ଅସୁର ବଚନେ । ଦୁଃଖ ବିଚାରି ରୁଦ୍ର ମନେ ॥
ହେଉ ବୋଇଲେ ତ୍ରିଲୋଚନ। ସର୍ପକୁ ଯେହ୍ନେ କ୍ଷୀରପାନ ॥
ବିଷ ବର୍ଦ୍ଧନ ମାତ୍ର ଲାଭ । ଦାତାର କାହିଁ ସୁଖଭାବ ॥
ଏମନ୍ତେ ରୁଦ୍ର ବର ପାଇ । ଅସୁର ନିଷ୍ଠେ ଅନାଇଁ ॥
ଈଶ୍ୱର ବାମଭୁଜ ଧରି । ବିରାଜେ ତ୍ରିପୁରାସୁନ୍ଦରୀ ॥
ଜଗନ୍ମୋହିନୀ ରୂପ ଚାହିଁ । ଅସୁର ମନେ ବିଚାରଇ ॥
ଏ ରୂପ ଅତି ଅଗୋଚର । ଭୁବନେ ନାହିଁ ପଟାନ୍ତର ॥
ତପର ଫଳମାତ୍ର ଏହୁ । ଏ କନ୍ୟା ମୋତେ ଭୋଗ ହେଉ ॥
ଈଶ୍ୱର ମୁଣ୍ଡେ ହସ୍ତ ଦେଇ । ଏ କନ୍ୟା ଘେନି ଯିବି ମୁହିଁ ॥
ବର ପ୍ରତ୍ୟକ୍ଷ ଅନୁମାନ । ବିଡ଼ିବା ଈଶ୍ୱର ବଚନ ॥
ଏମନ୍ତ ମନେ ବିଚାରିଲା । ଈଶ୍ୱର ନିକଟେ ମିଳିଲା ॥
ତାହା ଜାଣିଲେ ଶୂଳଧର । ଅସୁର ତୋଳେ ବାମକର ॥
ଈଶ୍ୱର ମୁଣ୍ଡେ ଦେବ ହସ୍ତ । ତା' ଦେଖି ବେଗେ ଉମାକାନ୍ତ ॥
ରୁଦ୍ର ପଳାଇଲେ ପ୍ରତ୍ୟେକ୍ଷେ । ଅସୁର ଗୋଡ଼ାଇଲା ପଛେ ॥
ସ୍ୱଭାବେ ରୁଦ୍ର ମହାବଳ । ଧାଇଁଲେ ଅବନୀ ମଣ୍ଡଳ ॥
ପଛକୁ ଚାହିଁ ଶିବ ଭୟେ । ଅସୁର ଲାଗେ ପାୟେ ପାୟେ ॥
ଦେଖି ବିକଳେ ଭୂମି ଛାଡ଼ି । ଶିବ ଧାଇଁଲେ ଶୂନ୍ୟ ମାଡ଼ି ॥
ସଙ୍ଗେ ଉଡ଼ିଲା ମହାସୁର । ଦେଖି ଡରିଲେ ସୁର ନର ॥
ରୁଦ୍ର ଧାମନ୍ତେ ଅନ୍ତରାଳେ । ଡାକନ୍ତି ରଖ ଦିଗପାଳେ ॥
ହରବଚନ ଶୁଣି କର୍ଣ୍ଣେ । ତ୍ରିଦଶେ ରହିଲେ ମଉନେ ॥
ନ ଶୁଣି ଦେବଙ୍କ ଉତ୍ତର । ଭୟେ ପଳାନ୍ତି ଦେବ ହର ॥
ପୁଣି ଚାହାନ୍ତି ପଛ ଭରେ । ଅସୁରକର ଲାଗେ ଶିରେ ॥
ଏମନ୍ତେ ରୁଦ୍ର ପଳାଇଲେ । ଭୂର୍ଲୋକ ଭୁବର୍ଲୋକେ ଗଲେ ॥
ସ୍ୱର୍ଲୋକ ମହର୍ଲୋକ ଜିଣି । ଜନଲୋକରେ ଶୂଳପାଣି ॥
ଡାକନ୍ତି ରଖ ମୁନିଜନେ । ବିଲୋଳ ବିକୃତ ବଚନେ ॥
ମୁନି ଯେ ଥିଲେ ତପଲୋକେ । ବାକ୍ୟ ନ ସ୍ଫୁରେ ତାଙ୍କ ମୁଖେ ॥
ତହୁଁ ମିଳିଲେ ବ୍ରହ୍ମଲୋକେ । ମାୟା ଅସୁର ପଛେ ଡାକେ ॥
ତା ଶୁଣି ରୁଦ୍ର ଭୟଚିତ୍ତେ । ଧାଇଁଲେ ବଇକୁଣ୍ଠ ପଥେ ॥
ଭୟେ କାତର ଶୂଳଧର । ଡାକନ୍ତି ରଖ ଚକ୍ରଧର ॥
ତୁ ନିରଞ୍ଜନ ନାରାୟଣ । ରଖ ମୋହର ପଞ୍ଚପ୍ରାଣ ॥
ଶରଣ ପଶିଲି ତୋ ପାଦେ । ଡାକନ୍ତି ଶୋକ ଗଦଗଦେ ॥
ହେ ଦେବ ଦେବଙ୍କ ଈଶ୍ୱର । ମୋର ଜୀବନ ରକ୍ଷା କର ॥

ଭୟ କାତରେ ତୋ ଶରଣେ । ପଶିଲି ଅଭୟ ଚରଣେ ।।
ଦୁଷ୍ଟ ଦାନବ ପରାଭବେ । ହେ ଗଦାଗ୍ରଜ ତୋତେ ଭାବେ ।।
ଏକଇ ଆତ୍ମା ତୋର ମୋର । ଏଣୁ ଏ ଅଶେଷ ସଂସାର ।।
ତୋହର ମାୟା କେବା ଜାଣି । ଅଶେଷ ଭୁବନେ ପ୍ରମାଣି ।।
ଏ ମାୟା ମୋହର ସର୍ଜନ । ଏଣେ ଅଶେଷ ତ୍ରିଭୁବନ ।।
ଯେ ମନ୍ଦ ଦୁଷ୍ଟ ମୂଢ଼ଜନେ । ତୁ ନାଥ ତାହାଙ୍କ ମାର୍ଜନେ ।।
ଜଗତେ ହେଉ ଅବତାର । ତୋ ପାଦନୀର ଗଙ୍ଗାଜଳ ।।
ଗୋବିନ୍ଦ ହେ ଗୋକୁଳ ପତି । ଶରଣ ରଖ ଦାଶରଥି ।।
ଭୋ ନାଥ ପ୍ରଭୁ ଚକ୍ରପାଣି । ଚତୁରାନନ ସ୍ତୁତି ଭଣି ।।
ତୁ ନାଥ ମୀନରୂପ ହେଲେ । ଧରି ପଶିଲୁ ସିନ୍ଧୁଜଳେ ।।
ତକ୍ଷଣେ ମାରି ଶଙ୍ଖାସୁର । ବେଦ ଉଦ୍ଧରି ଚକ୍ରଧର ।।
ତ୍ରୈଲୋକ୍ୟ-ଲୋକ କଲୁ ରକ୍ଷା । କରୁଣା କର ତୋର ଇଚ୍ଛା ।।
ତୋର ସଞ୍ଚିଲା ଏ ଜଗତ । ତୋହର ମାୟାରେ ମୋହିତ ।।
ତାହାଙ୍କୁ ସ୍ୱର୍ଗ ମୋକ୍ଷ ଦାନ । ଦେଇ କରାଉ ମହୀୟାନ ।।
ସଚରାଚର ମହୀସ୍ଥଳ । ଲୀଳାରେ କଲୁ ଆଦିମୂଳ ।।
ଗୋପୀ ବିନୋଦ ପରିପୂର୍ଣ୍ଣ । ଭୋ ନାଥ ତୋର ବେଣୁସ୍ୱନ ।।
କୋମଳ ଗଭୀର ଶବଦେ । ଗିରିକାନନ ପୂରେ ନାଦେ ।।
ଗୋପାଳବୃନ୍ଦ ରକ୍ଷା ଅର୍ଥେ । ଗିରି ଟେକିଲୁ ବାମହସ୍ତେ ।।
ଏଣୁ ତୋ ନାମ ଗିରିଧର । ମୋର ଜୀବନ ରକ୍ଷାକର ।।
ଏମନ୍ତ ସ୍ତୁତି ରୁଦ୍ର ଭଣି । ଡାକନ୍ତି ରଖ ଚକ୍ରପାଣି ।।
ମିଳିଲେ ବଇକୁଣ୍ଠ ଦ୍ୱାରେ । କି ପଟାନ୍ତର ଦେବା ତାରେ ।।
ପରମଯୋଗୀଙ୍କର ମନ । ଯୋଗରେ ହୋଇ ଯହିଁ ଲୀନ ।।
ପରମବ୍ରହ୍ମ ଜ୍ୟୋତି ରୂପେ । ଯାହାର ତେଜ ବିଶ୍ୱବ୍ୟାପେ ।।
ଯହିଁ ଅଶେଷ ଲୋକଗତି । ଜନଜୀବନ ରମାପତି ।।
ଶିବ ବିକଳ କର୍ଣ୍ଣେ ଶୁଣି । ତକ୍ଷଣେ ପ୍ରଭୁ ଚକ୍ରପାଣି ।।
ମାୟାବଟୁକ ରୂପ ଧରି । ପଥେ ମିଳିଲେ ନରହରି ।।
ଚର୍ମମେଖଳା କଟିତଟରେ । ତ୍ରିଦଣ୍ଡ କମଣ୍ଡଳୁ କରେ ।।
କଣ୍ଠେ ଲମ୍ବଇ ଅକ୍ଷମାଳ । ମାୟା-ମୂରତି ଆଦିମୂଳ ।।
ଅନଳ ପ୍ରାୟେ ତେଜ ଦିଶି । ପଥେ ମିଳିଲେ କୃଷ୍ଣ ଆସି ।।
କଲ୍ୟାଣ କରି କୁଶହସ୍ତେ । ବିନୋଇ ବାକ୍ୟ ନାନାମତେ ।।
ବୋଇଲେ ପ୍ରଭୁ ଭଗବାନ । କୋମଳ ଗଭୀର ବଚନ ।।

## ଶ୍ରୀ ଭଗବାନ ଉବାଚ

ଶକୁନି ପୁତ୍ର ତୁହି ଏକ । ତୋହର ନାମ ପରା ବୃକ ।।
ତୁ ଅତିଦୁଃଖେ ଶ୍ରାନ୍ତ ହୋଇ । ଗଗନେ କିମ୍ପା ଅଛୁ ଧାଇଁ ।।
ତୋର ସୁନ୍ଦର ନିଜ ତନୁ । ଅଖିଳ ଫଳ କାମଧେନୁ ।।
ଆତ୍ମାରେ ଅତି ଶ୍ରମ କରି । ହୃଦରେ ମହାକୋପ ଭରି ।।
କିମ୍ବା ଗଗନେ ପାଉ ଶ୍ରମ । ମୋ ଆଗେ କ୍ଷଣେ ତୁ ବିଶ୍ରମ ।।
କହ କି ଅର୍ଥେ ତୋ ଗମନ । ଶୁଣିତେ ଶ୍ରଦ୍ଧା ମୋର ମନ ।।
ପ୍ରାଣୀ ଯେ ଆପଣାର ହିତେ । କର୍ମ ସାଧନ୍ତି ଅବିରତେ ।।
କହ କେବଣ କଥା ତୋର । ହସି ବୋଲନ୍ତି ମାୟାଧର ।।
ବୋଲନ୍ତି ଶୁକ ମହାମୁନି । ଏମନ୍ତ କୃଷ୍ଣକଥା ଶୁଣି ।।
କୃଷ୍ଣର ବାଣୀ ସୁଧାସମ । ଶୁଣି ଛାଡ଼ିଲା ପଥ ଶ୍ରମ ।।
କୃଷ୍ଣର କହିଲା ସର୍ବକଥା । ଈଶ୍ୱର ତପସ୍ୟା ବ୍ୟବସ୍ଥା ।।
ଶୁଣି ହସିଲେ ଭଗବାନ । କହନ୍ତି ମୋହନ ବଚନ ।।
ରୁଦ୍ର ବୋଇଲେ ତୋତେ ଯାହା । ସତ ନ କରୁ ଅମ୍ଭେ ତାହା ।।
ଦକ୍ଷ ଯେ ପ୍ରଜାପତି ଥିଲା । କୋପେ ରୁଦ୍ରକୁ ଶାପ ଦେଲା ।।
ସେ ଶାପ ପାଇ ଦେବ ହର । କ୍ରୋଧ ବହିଲେ ନିରନ୍ତର ।।
ତେଣୁ ଦୁରାତ୍ମା ପଦ ପାଇ । ପ୍ରେତ ପିଶାଚ ମଧ୍ୟେ ଥାଇ ।।
ଭୂତ ବେତାଳ ପ୍ରେତଗଣେ । ଭ୍ରମଇ ଶମଶାନ ସ୍ଥାନେ ।।
ତା'ର ବଚନେ ପ୍ରତେ କାହିଁ । ଭଲେ ଜାଣଇଁ ଏହା ମୁହିଁ ।।
ତୋର ବିଚାରେ ଯେବେ ରୁଚୋ ଏଠାରେ ବୁଝ ତୁ ପ୍ରତ୍ୟକ୍ଷେ ।।
ଆପଣା ମୁଣ୍ଡେ ଦିଅ କର । କିଛି ହିଁ ନୋହିବ ତୋହର ।।
ତୋତେ ଭଣ୍ଡିଲା ଯେଣୁ ମିଛେ । ତେଣୁ ସେ ପଳାଏ ପ୍ରତ୍ୟକ୍ଷେ ।।
ତୁ ତାହା ବାକ୍ୟ ସତ୍ୟ କରି । ଗଗନେ ଭ୍ରମୁ ଅନୁସରି ।।
ଏମନ୍ତ ଗୋବିନ୍ଦର ବାଣୀ । ଅସୁର ଚିତ୍ତେ ପରିମାଣି ।।
ବିଷ୍ଣୁମାୟାରେ ମୋହ ଗଲା । ଆପଣା ମୁଣ୍ଡେ ହସ୍ତ ଦେଲା ।।
ତକ୍ଷଣେ ହୋଇ ଭସ୍ମରାଶି । ଗଗନେ ଉଡ଼ି ଦିଗେ ମିଶି ।।
ବଜ୍ରପ୍ରହାରେ ଗିରି ଯେହ୍ନେ । ବିବୁଧେ ଦେଖନ୍ତି ଗଗନେ ।।
କରନ୍ତି ଜୟ ଜୟ ବାଣୀ । ନାମ ଶବଦେ ସ୍ତୁତି ଭଣି ।।
ସାଧୁଶବଦ ଦଶଦିଶେ । ଆକାଶୁଁ କୁସୁମ ବରଷେ ।।
ପାପିଷ୍ଠ ବୃକାସୁର ନାଶେ । ରୁଦ୍ର ମିଳିଲେ କୃଷ୍ଣ ପାଶେ ।।
ପିତୃ ଦେବତା ଋଷିଗଣ । ସଙ୍ଗତେ ଅମ୍ବିକାରମଣ ।।
ଅସୁର ସଂକଟୁ ନିସ୍ତରି । ହରିଙ୍କି ଆଲିଙ୍ଗନ କରି ।।
ଗୋବିନ୍ଦ ହରମୁଖ ଚାହିଁ । ବୋଲନ୍ତି କରେ କର ଦେଇ ।।
ହେ ଦେବ ଦେବଙ୍କ ଈଶ୍ୱର । ତୋ ଅପରାଧୀ ଏ ଅସୁର ।।
ଅର୍ଜିତ କର୍ମେ ଗଲା ନାଶ । ଏ ସତ୍ୟ ଧର୍ମର ବିଶ୍ୱାସ ।।
ଦେବହେଳନ ଯେ କରନ୍ତି । ସ୍ୱକର୍ମ ଫଳ ସେ ଭୁଞ୍ଜନ୍ତି ।।
ଏମନ୍ତେ କୃଷ୍ଣର ବଚନେ । ଗଲେ ସେ ଯେ ଯାହା ଭୁବନେ।।

କହନ୍ତି ଶୁକ ମହାମୁନି । ଶୁଣ ରାଜନ ଚୂଡ଼ାମଣି ॥
ଗିରୀଶ ମୋକ୍ଷ ଯେ ଶୁଣନ୍ତି । ସର୍ବ ସଙ୍କଟୁ ନିସ୍ତରନ୍ତି ॥
ହରି ମହିମା ଦୃଢ଼ ଚିତ୍ତେ । ସୁଜନେ ଶୁଣ ଭାଗବତେ ॥
ସୁଜନେ ଏଣେ କର ଚିତ୍ତ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ରୁଦ୍ରମୋକ୍ଷଣଂ ନାମ ଚତୁର୍ନବତିତମ ଅଧ୍ୟାୟ ॥*

## ପଞ୍ଚନବତିତମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ । କୃଷ୍ଣ ମହିମା ଭାଗବତ ॥
ପୂର୍ବେ ସେ ସରସ୍ୱତୀ ତୀରେ । ମିଳି ସକଳ ମୁନିବରେ ॥
ଯଜ୍ଞ କରିବା ଅନୁମତେ । ବିଚାର କଲେ ସର୍ବଶାସ୍ତ୍ରେ ॥
ଜଗତେ ଦେବଦେବ ତିନି । ବିଷ୍ଣୁ ଶଙ୍କର ପଦ୍ମଯୋନି ॥
ଏ ତିନି ମଧ୍ୟେ ଯେ ପ୍ରଧାନ । ସେ ଆମ୍ଭ ଯଜ୍ଞରେ ବରଣ ॥
ଏମନ୍ତେ କରି ସନମତ । ଭୃଗୁ ନାମେଣ ବ୍ରହ୍ମାସୁତ ॥
ଏ ତିନି ଦେବତା କଳନେ । ତାହାଙ୍କୁ ପେଶି ଦୂତପଣେ ॥
ବୋଇଲେ ବଚନ ବିଶ୍ୱାସ । ତିନି ଦେବଙ୍କୁ ବରି ଆସି ॥
ଋଷିଙ୍କ ଆଜ୍ଞା ବଚନ ବିଶ୍ୱାସ । ଭୃଗୁ ଚଳିଲେ ଶୂନ୍ୟମାର୍ଗେ ॥
ବ୍ରହ୍ମାର ସଭା ମଧ୍ୟେ ଯାଇ । ଭୃଗୁ ମିଳିଲେ ଛଳ ବହି ॥
ବ୍ରହ୍ମାଙ୍କୁ ଛଳିବାର ଆଶେ । ଅବଜ୍ଞା କରି ବସି ପାଶେ ॥
ବ୍ରହ୍ମାଙ୍କୁ ପ୍ରଣାମ ନ କଲେ । ସ୍ତୁତି ବଚନ ନ ବୋଇଲେ ॥
ତା'ଦେଖି ବ୍ରହ୍ମ ମହାକୋପି । ଗାଢ଼େ ଦଶନେ ଓଷ୍ଠ ଚାପି ॥
ବୋଲନ୍ତି ଜ୍ୟେଷ୍ଠପୁତ୍ର ଏହି । ଏ ମୋତେ ଅବଜ୍ଞା ସେ ବହି ॥
ପୁଣି ବିଚାରି ଦିବ୍ୟଜ୍ଞାନେ । ପୁତ୍ରଙ୍କୁ ନାଶିବା କେସନେ ॥
ଏହାକୁ କଲେ ଆଜ ନାଶ । ମୋତେ ହୋଇବ ଅପଯଶ ॥
ଏତେ ବିଚାରି ଦୁଷ୍ଟମନ । ତକ୍ଷଣେ ବ୍ରହ୍ମା କଲେ ଶମ ॥
ଅନଳ ଯେହ୍ନେ ଜଳ ପାଇ । ଲିଭଇ କୁଣ୍ଡ ମଧ୍ୟେ ଥାଇ ॥
ଭୃଗୁକୁ ପୁତ୍ରଭାବ ଘେନି । ଶାନ୍ତ ହୋଇଲେ କୁଶପାଣି ॥
ତାହା ଜାଣିଲେ ବ୍ରହ୍ମାସୁତ । କପୋଳେ ଦେଇ ବେନି ହସ୍ତ ॥
ପ୍ରଣମି ବ୍ରହ୍ମାଙ୍କ ଚରଣେ । ଭୃଗୁ ଚଳିଲେ ତତକ୍ଷଣେ ॥
ପଥେ ଚଳନ୍ତେ ମନତୋଷେ । ମିଳିଲେ କଇଳାସ ଦେଶେ ॥
ରୁଦ୍ର ଉଠିଲେ ଭୃଗୁ ଚାହିଁ । ବୋଲନ୍ତି ଏ ମୋ ଜ୍ୟେଷ୍ଠଭାଇ ॥
ଧାଇଁଲେ ଆଲିଙ୍ଗନ ଆଶେ । ଭୃଗୁ ଚଳିଲେ ବାମ ପାଶେ ॥
ତା ଦେଖି ରୁଦ୍ର କୋପଭରେ । ବେଗେ ତ୍ରିଶୂଳ ଧାରି କରେ ॥
ଧାଇଁଲେ ଅରୁଣଲୋଚନେ । ଦହିବା ପ୍ରାୟ ତ୍ରିଭୁବନେ ॥
ତା ଦେଖି ଭୃଗୁ କରଯୋଡ଼ି । ବେଗେ ଶଙ୍କର ପାଦେ ପଡ଼ି ॥
ଅନେକ ସ୍ତୁତିବାକ୍ୟ ଭଣି । ଶାନ୍ତ କରାଇ ଶୂଳପାଣି ॥
ଅନେକ ମତେ ଭାବ କଲେ । ତକ୍ଷଣେ ବଇକୁଣ୍ଠ ଗଲେ ॥
ଦ୍ୱାରେ ପଶନ୍ତେ ବ୍ରହ୍ମାସୂତ । ଶୁଣିଲେ ବିଷ୍ଣୁ ନିଦ୍ରାଗତ ॥
ମୁହୂର୍ତ୍ତେ ରହି ଅବକାଶେ । ତକ୍ଷଣେ ଭୃଗୁ ମହାରୋଷେ ॥
ବିଷ୍ଣୁ ଶୟନସ୍ଥାନେ ମିଳି । ନିଦ୍ରା ଅଚେତ ବନମାଳୀ ॥
ଉତ୍ତାନ ଶୟନେ ଆନନ୍ଦେ । ତା'ଦେଖି ଭୃଗୁ ମହା କ୍ରୋଧେ ॥
ବ୍ରାହ୍ମଣପଣେ ଗର୍ବ ବହି । ପାଦେ ମାଇଲେ ହୃଦେ ନେଇ ॥
କୋପେ ଗର୍ଜନ୍ତି ଗୁରୁତର । ଶୁଣି ଉଠିଲେ ଚକ୍ରଧର ॥
ଲକ୍ଷ୍ମୀର କରେ ଧରି ମୁଷ୍ଟି । ପଲ୍ୟଙ୍କୁ କୃଷ୍ଣ ବେଗେ ଉଠି ॥
ବିପ୍ରଚରଣେ ତଳେ ପଡ଼ି । ବୋଲନ୍ତି ବେନିକର ଯୋଡ଼ି ॥
ଭୋ ବିପ୍ର ତୋର ଆଗମନ । ଆଜ ଶରୀର ମୋର ଧନ୍ୟ ॥
ଭୋ ବିପ୍ର ବସ ଏ ଆସନେ । ଅପ୍ରାଧ କଲି ମୁଁ ଅଜ୍ଞାନେ ॥
ଏ ଅପରାଧ କ୍ଷମା କର । କୋମଳ ଚରଣ ତୁମ୍ଭର ॥
କଠୋର ହୃଦୟେ ବାଜିଲା । ମୋ ମନେ କଷ୍ଟ ଉପୁଜିଲା ॥
ନପୁଣ ବଥାଇ ଚରଣ । ଏମନ୍ତ ବୋଲି ନାରାୟଣ ॥
ବିପ୍ରଚରଣ ଜଳେ ଧୋଇ । ପାଦଉଦକ ଶିରେ ଲଇଁ ॥
ଆଜ ଶରୀର ମୋର ଧନ୍ୟ । ପବିତ୍ର ହୋଇଲା ଜୀବନ ॥
ଏ ବିଶ୍ୱ ସଂସାର ସମେତେ । ଲୋକପାଳକ ଛନ୍ତି ଯେତେ ॥
ଆଜ ପବିତ୍ର ଏ ସକଳେ । ତୋ ପାଦରଜ ତୀର୍ଥଜଳେ ॥
ଭୋ ବିପ୍ରବର ମୋର ହୃଦେ । କମଳା ବସଇ ଆନନ୍ଦେ ॥
ଆଜ ପବିତ୍ର ମୋର ଘର । ଧନ୍ୟ ଏ ଜୀବ ମୋହର ॥
ଅତି ଆଦରେ ନାରାୟଣ । ପୂଜିଲେ ଭୃଗୁର ଚରଣ ॥
ମଧୁର ବାକ୍ୟେ ଲକ୍ଷ୍ମୀପତି । ବ୍ରାହ୍ମଣ ମନ କଲେ ଶାନ୍ତି ॥
ବିଷ୍ଣୁ ମହିମା ଗୁଣ ଦେଖି । ଭୃଗୁ ବୁଜିଲେ ବେନି ଆଖି ॥
କଣ୍ଠକୁଣ୍ଠିତ ମନ୍ଦସ୍ୱର । ରୋମପଲକ କଳେବର ॥
ବିଷ୍ଣୁର ଭାବ ହୃଦେ ବହି । ଭୃଗୁ ଚଳିଲେ ତୋଷ ହୋଇ ॥
ଏମନ୍ତେ ବିଷ୍ଣୁଭାବ ଭୋଳେ । ମିଳିଲେ ସରସ୍ୱତୀ କୂଳେ ॥
ବ୍ରହ୍ମଋଷିଙ୍କ ମଧ୍ୟେ ଯାଇ । ବୋଲନ୍ତି ଶିରେ କର ଦେଇ ॥
ବ୍ରାହ୍ମଣ କହେ ସର୍ବକଥା । ଯାହାର ଯେମନ୍ତ ବ୍ୟବସ୍ଥା ॥
ଭୃଗୁବଚନ ବିପ୍ରେ ଶୁଣି । ବିଷ୍ଣୁ ମହିମା ପରିମାଣି ॥

ଯେ ହରି ଜଗତଠାକୁର । ମିତ୍ର ଅରି ନାହିଁ ଯା'ର ॥
ତା'ର ସ୍ମରଣେ ମନ ଶାନ୍ତି । ନ ଲାଗେ ଭବବନ୍ଧ ଭ୍ରାନ୍ତି ॥
ଯା'ର ଚିନ୍ତନେ ଧର୍ମଜ୍ଞାନ । ଶୁଚି ନିଷ୍ଠାମେ ଯୋଗ କ୍ଷେମ ॥
ନିର୍ମଳ ଯଶ ବିକାଶଇ । ଯା'ର ସ୍ମରଣେ ପାପ ନାହିଁ ॥
ମୁନି ସନ୍ନ୍ୟାସୀ ଶାନ୍ତନର । ସମଦରଶୀ ଚିତ୍ତ ଯା'ର ॥
ଯେ ଅବା ଅକିଞ୍ଚନ ଜନ । ତାହାଙ୍କ ଗତି ଭଗବାନ ॥
ଯା ପ୍ରିୟରୂପ ସତ୍ତ୍ୱଗୁଣ । ଯା ଇଷ୍ଟ ଦେବତା ବ୍ରାହ୍ମଣ ॥
ତାହାକୁ ଯଜ୍ଞେ ପୂଜା କରି । ସକଳ ଦୁଃଖ ଅପହରି ॥
ତ୍ରିଗୁଣେ ତିନି ରୂପ ତାର । ରାକ୍ଷସ ଅସୁର ଯେ ସୁର ॥
ଯେ ରୂପ ସତ୍ତ୍ୱଗୁଣମୟ । ତହୁଁ ମିଳିଲା ସର୍ବଶ୍ରେୟ ॥
ନିର୍ମଳ ଚିତ୍ତେ ମୁନିଗଣେ । କାନନେ ନିଶ୍ଚଳେ ଆସନେ ॥
ଗୋବିନ୍ଦପାଦେ ଧ୍ୟାନ କରି । ହେଳେ ତରିଲେ ଭବବାରି ॥
ବୋଲଇ ବିପ୍ର ଜଗନ୍ନାଥ । କୃଷ୍ଣ ମହିମା ବ୍ୟାସସୁତ ॥
ଯାହା କହିଲେ ରାଜା ଆଗେ । ସୁଜନେ ଚିନ୍ତ ସେହି ମାର୍ଗେ ॥
ପୁରାଣ ଭାଗବତ ବାଣୀ । କେ କହିପାରେ ପରିମାଣି ॥
କୃଷ୍ଣ ସକଳ ପ୍ରାଣୀ ଦେହେ । ଦୃଶ୍ୟଅଦୃଶ୍ୟେ ଜ୍ଞାନମୋହେ ॥
ନିର୍ଲେପ ସାକ୍ଷୀରୂପ ହୋଇ । ଯାହାକୁ ଯେତେ ଜ୍ଞାନ ଦେଇ ॥
ସକଳ ଜନ୍ତୁ ଚିତ୍ତଗତେ । ଗତ ଆଗତ କର୍ମପଥେ ॥
ଭ୍ରମଣ ଦୁଃଖ କରେ ଦୂର । ଯେବେ ଭଜଇ ତା ପୟର ॥
ଶୁଣ ରାଜନ ସାବଧାନେ । ବ୍ରାହ୍ମଣ ଦ୍ୱାରକା ଭୁବନେ ॥
ସେ ବିପ୍ର ଦ୍ୱାରକା ବସତି । ପତ୍ନୀର ଗର୍ଭେ ତା ସନ୍ତତି ॥
ଗର୍ଭପ୍ରସବ କାଳେ ତା'ର । ଯେତେ ଉପୁଜିଲେ କୁମର ॥
ଗର୍ଭରେ ଦଶମାସ ଥା'ନ୍ତି । ଭୂମିରେ ପଡ଼ିଲେ ମରନ୍ତି ॥
ସେ ମୃତପିଣ୍ଡ କୋଳେ ଧରି । ବିପ୍ର ବିକଳେ ଶୋକ କରି ॥
କୃଷ୍ଣର ଦ୍ୱାରେ ନେଇ ଥୋଇ । ବିପ୍ର ବୋଲଇ କୋପ ବହି ॥
ବ୍ରହ୍ମହିଂସକ ଯଦୁବଂଶ । ଶଠ ହୃଦୟ ଅବିଶ୍ୱାସ ॥
ନିର୍ଦ୍ଦୟ ବୁଦ୍ଧି ଦୁରାଚାର । ଦୁଃଶୀଳ ପାପିଷ୍ଠ ପାମର ॥
ଗର୍ବିତ ବିଷୟ ବିଳାସେ । ଏମନ୍ତ ରାଜା କର୍ମଦୋଷେ ॥
ଦଣ୍ଡେ ନ ଥାଇ ଏହା ଦେଶେ । ଏମନ୍ତ ବୋଲି ମହାରୋଷେ ॥
ମୋ ପୁତ୍ର ଜନ୍ମକାଳେ ମଲା । ଏମନ୍ତ ବୋଲି ଶୋକ କଲା ॥
ପୁଣି ବୋଲଇ ଖେଦଚିତ୍ତେ । ଏ ଦୁଷ୍ଟକାଳ ବିପରୀତେ ॥
ହିଂସା ବେଭାର ନରରାୟ । ଦୁଃଶୀଳ ଅଜିତ ଇନ୍ଦ୍ରିୟ ॥
ଏମନ୍ତ ନରପତି ଦେଶେ । ଯେ ପ୍ରଜା ରହନ୍ତି ବିଶ୍ୱାସେ ॥
ଦୁଃଖୀ ଦରିଦ୍ର ହୋନ୍ତି ନିତ୍ୟେ । ମରନ୍ତି କାଳ ଅପ୍ରାପତେ ॥
ଏମନ୍ତେ ବାଳକ ପକାଇ । ବିପ୍ର କାନ୍ଦଇ ଗୃହେ ଚାହିଁ ॥
ଏମନ୍ତେ ପ୍ରତି ସମୟରେ । ପୁତ୍ର ମରନ୍ତେ ବିପ୍ରଘରେ ॥
ପୁଣି ପକାଇ ରାଜଦ୍ୱାରେ । ବିପ୍ର କାନ୍ଦଇ ଉଚ୍ଚସ୍ୱରେ ॥
ନିତ୍ୟେ ନିନ୍ଦଇ କୃଷ୍ଣ ରାମ । ବିପ୍ର ସ୍ୱଭାବେ ଗରୁତମ ॥
ଏକ ଦ୍ୱିତୀୟ ବୋଲି ଗଣେ । ତୃତୀୟ ଚତୁର୍ଥ ପ୍ରମାଣେ ॥
କୃଷ୍ଣର ଦ୍ୱାରେ ପୁତ୍ର ଥୋଇ । କୋପେ ଅନେକ ଗାଳି ଦେଇ ॥
ଏମନ୍ତେ ନବ ପୁତ୍ର ମଲା । ଶୁଣ ହୋ ଶ୍ରୀକୃଷ୍ଣର ଲୀଳା ॥
ଅର୍ଜୁନ ଥିଲା ନିଜ ଦେଶେ । ଏ କଥା ଶୁଣି ସେ ବିଶ୍ୱାସେ ॥
ମିଳିଲା ରାଜଦ୍ୱାରେ ଆସି । ଦେଖିଲା ବିପ୍ର ଅଛି ବସି ॥
ମୃତବାଳକ ଧରି କୋଳେ । କାନ୍ଦଇ ଜୀବନ ବିକଳେ ॥
ନିନ୍ଦଇ ରାମ ବନମାଳୀ । ଗର୍ଜଇ କୋପେ ଦେଇ ଗାଳି ॥
ବିଷ୍ଣୁନିନ୍ଦନ ବାକ୍ୟ ଶୁଣି । କୋପେ ଚାହିଁଲା ବୀରମଣି ॥
ବ୍ରାହ୍ମଣ ବୋଲି ଭୟ ପାଇ । କର ଅଞ୍ଜଳି ଶିରେ ଦେଇ ॥
ବୋଲଇ ଶୁଣ ବିପ୍ରବର । ଏ କୋପ ଶୋକ ତୁ ସଂହର ॥
ତୋହର ରାଜ୍ୟେ ବିପ୍ରବର । ବୀର କି ନାହିଁ ଧନୁର୍ଦ୍ଧର ॥
ବ୍ରାହ୍ମଣ ପ୍ରାୟ ଯଜ୍ଞ କରି । କିବା ବୁଲନ୍ତି ପେଟ ଭରି ॥
ଧନ ତନୟ ଦାରାଯୁତେ । ଯହିଁ ବ୍ରାହ୍ମଣ ଶୋକଚିତ୍ତେ ॥
ଜନ ପରଜା ଯହିଁ ଦୁଃଖୀ । ପଣ୍ଡିତ ଜନେ ନିରମାଖି ॥
ସେ ରାଜା ରାଜକୁଳେ ହୀନ । ଧିକ ତ ତାହାର ଜୀବନ ॥
ଜନ ପରଜା ନ ରଖନ୍ତି । ନଟଙ୍କ ପ୍ରାୟ ସେ ଜୀଅନ୍ତି ॥
ଏବେ ହୋ ବିପ୍ରବର ଶୁଣ । ଦେଖ ମୋହର ବୀରପଣ ॥
ଧନୁ ଗାଣ୍ଡିବେ ଗୁଣ ଦେଇ । ତୋ ରିପୁ ସଂହାରିବି ମୁହିଁ ॥
ରଖିବି ତୋହର ବାଳକ । ମୋର ପ୍ରତିଜ୍ଞା ଏବେ ଦେଖ ॥
ପ୍ରସବକାଳେ ତୋର ଘରେ । ମୁଁ ଧନୁ ଧରିଥିବି କରେ ॥
ରଖିବି ତୋହର କୁମର । ସତ୍ୟବଚନ ଏ ମୋହର ॥
ଦେଖ ମୋହର ଧନୁଦୀକ୍ଷା । ଯେବେ ନ ପାରେ କରି ରକ୍ଷା ॥
ଅନଳେ ଛାଡ଼ିବି ମୁଁ ପ୍ରାଣ । ତା'ଶୁଣି ବୋଲଇ ବ୍ରାହ୍ମଣ ॥
ସଙ୍କରଷଣ ଦାମୋଦର । ପ୍ରଦ୍ୟୁମ୍ନ ରୁକ୍ମିଣୀକୁମର ॥
ଶାମ୍ବକୁମର ଅନିରୁଦ୍ଧ । ଧନୁ ସଂଗ୍ରାମେ ମହାଯୋଦ୍ଧ ॥
ଏ ସର୍ବେ ମୋ ପୁତ୍ର ରକ୍ଷଣେ । କ୍ଷମ ନୋହିଲେ କେହି ଜଣେ ॥
କି ଅର୍ଥେ ରଖିବି ମୁଁ ଆଶା । ଦେଖାଇ କରୁଛୁ ଭରସା ॥
ଏଣେ ମୋହର ପ୍ରତେ ନାହିଁ । ତୋ ବୀରପଣ ମୁଁ ଜାଣଇ ॥
ଶୁଣି ଅର୍ଜୁନ କୋପଭରେ । ଶ୍ରୀ ଜଗନ୍ନାଥ ଭରସାରେ ॥
ବୋଲଇ ଧନୁ ଧରି କର । ଭୋ ବିପ୍ର ସତ୍ୟ ଏ ମୋହର ॥
ଭୋ ବିପ୍ର ଶୁଣ ମୋ ବଚନ । ମୁଁ ନୋହେ ରୋହିଣୀନନ୍ଦନ ॥
କୃଷ୍ଣ ପ୍ରଦ୍ୟୁମ୍ନ ନୋହେ ମୁହିଁ । ଅର୍ଜୁନ ନାମ ମୁଁ ବୋଲାଇ ॥

ଦେଖ ଗାଣ୍ଡିବଧନୁ ମୋର । ରଣେ ମୁଁ ତୋଷିଲି ଈଶ୍ୱର ॥
ଅକ୍ଷୟ ତୂଣ ମୋର ହସ୍ତେ । ଏ କଥା ବିଦିତ ଜଗତେ ॥
ମୃତ୍ୟୁଦେବତା ରଣେ ଜିଣି । ତୋର ବାଳକ ଦେବି ଆଣି ॥
ନ ଦେଲେ ଛାଡ଼ିବି ଜୀବନ । ଶୁଣି ସାନନ୍ଦ ବିପ୍ରମନ ॥
ମୃତବାଳକ ରାଜଦ୍ୱାରେ । ଥୋଇ ଚଳିଲା ନିଜ ପୁରେ ॥
ଶୋକ ହରଷ ଖେଦଛନ୍ତେ । ଅର୍ଜୁନ ତେଜ ଗୁଣ ମନେ ॥
ଏମନ୍ତେ ସମ୍ୱସର ପରେ । ବିପ୍ର କାମିନୀ ନିଜ ଘରେ ॥
ଗର୍ଭ ହୋଇଲା ଦଶମାସ । ଦେଖି ବ୍ରାହ୍ମଣ ମନେ ତ୍ରାସ ॥
ବିକଳେ ଅର୍ଜୁନ ସୁମରି । ଉଚ୍ଚେ ଡାକଇ ନାମ ଧରି ॥
ହେ ବୀରମଣି ରକ୍ଷାକର । ମରଣ ମୁଖୁଁ ମୋ କୁମର ॥
ଶୁଣି ଅର୍ଜୁନ ବେଗେ ଧାଇଁ । ମିଳିଲା ବିପ୍ରଦ୍ୱାରେ ଯାଇ ॥
କର ଚରଣ ମୁଖ ଧୋଇ । ତକ୍ଷଣେ ଶୁଚିମନ୍ତ ହୋଇ ॥
ହର ଗଉରୀ ପାଦ ଚିନ୍ତି । ନମଇଁ ପୁଣପୁଣ କ୍ଷିତି ॥
ଗାଣ୍ଡିବେ ଗୁଣ ଦେଇ କରେ । ମନ୍ତ୍ର ସୁମରି ବିପ୍ରଘରେ ॥
ଗୁନ୍ଥିଲା ନାନାଶସ୍ତ୍ର ଯୋଗେ । ବିପ୍ରଭୁବନ ଦଶଦିଗେ ॥
ପଞ୍ଜୁରୀ ମଧ୍ୟେ ଯେହ୍ନେ ପକ୍ଷୀ । ବିପ୍ରଭୁବନ ତେହ୍ନେ ଲକ୍ଷି ॥
ଏମନ୍ତେ ଜନ୍ମିଲା ନନ୍ଦନ । ଅର୍ଜୁନ ଶୁଣିଲା ରୋଦନ ॥
ଭୂମି ସ୍ପରଶେ ଶୂନ୍ୟେ ଗଲା । ବାଳକ କେହି ନ ଦେଖିଲା ॥
ତକ୍ଷଣେ ବିପ୍ର କୋପଭରେ । ମିଳିଲା ଅର୍ଜୁନ ଛାମୁରେ ॥
ବୋଲଇ ପୁରୁଷ ବଚନ । ଧିକ ଅର୍ଜୁନ ତୋ ଜୀବନ ॥
ତୋହର ନପୁଂସକ ବାଣୀ । ମୁହିଁ ପାପିଷ୍ଠ ତାହା ଶୁଣି ॥
ନ ଜାଣି ହୋଇଲି ହରଷ । ଏବେ ମୁଁ ନିଷ୍ଚୟେ ନିରାଶ ॥
ମୃତବାଳକ ଧରି କୋଳେ । ଦଣ୍ଡେ ଦେଖଇ ବେନିଡ଼ୋଳେ ॥
ଏବେ ମୋ ପୁତ୍ର ଗଲା କେଣେ । ଧନ୍ୟ ଅର୍ଜୁନ ବୀରପଣେ ॥
ରୁକ୍ମିଣୀପୁତ୍ର ମହାଯୋଦ୍ଧ । ତାହାର ପୁତ୍ର ଅନିରୁଦ୍ଧ ॥
ସଙ୍କରଷଣ ଜଗନ୍ନାଥ । ଏ ଯହି ନେହିଲେ ସମର୍ଥ ॥
କାହାର ବଳ ରକ୍ଷା କରି । ମର୍ତ୍ତେ ମାନବ ଦେହ ଧରି ॥
ଧିକ ତୋହର ମିଥ୍ୟା ବାଣୀ । ପ୍ରତିଜ୍ଞା କଲୁ ତୁ ନ ଜାଣି ॥
ଧିକ ଗାଣ୍ଡିବ ଧନୁ ତୋର । ବିବିଧ ଶସ୍ତ୍ର ଉପହାର ॥
ଦଇବେ ହତକର୍ମ ତୋର । କୁମତି ପାପିଷ୍ଠ ପାମର ॥
ମୁଖେ ଯେ କହୁ ଗର୍ବବାଣୀ । ଆପଣାବଳ ତୁ ନ ଜାଣି ॥
ଏମନ୍ତ ବିପ୍ର କୋପବାଣୀ । ଅର୍ଜୁନ ସାବଧାନେ ଶୁଣି ॥
ବିବିଧ ମତେ ବିଧି କରି । ଗାଣ୍ଡିବ ଧନୁ କରେ ଧରି ॥
ମିଳିଲା ଯମର ଭୁବନେ । ରବିକୁମାର ସନ୍ନିଧାନେ ॥
ତାହାର ପୁରେ ବିପ୍ରସୁତ । ଅର୍ଜୁନ ଖୋଜିଲା ବହୁତ ॥

ନ ପାଇ ମନ ଦୁଃଖ କରି । ପୁଣି ମିଳିଲା ଇନ୍ଦ୍ରପୁରୀ ॥
ତହିଁ ନ ପାଇ ବିପ୍ରସୁତ । ଅଗ୍ନିଭୁବନେ ଉପଗତ ॥
ନ ପାଇ ନଇଋତ ଦେଶେ । କୋପେ ମିଳିଲା ସୋମ ପାଶେ ॥
ତହିଁ ନ ପାଇ ବିପ୍ରବଳା । ବରୁଣ ନଗରେ ମିଳିଲା ॥
ତହିଁ ନ ପାଇ ବେଗେ ଯାଇ । କୁବେର ଭୁବନେ ଖୋଜଇ ॥
ନ ଦେଖି ବିପ୍ରବର ସୁତ । ବିସ୍ମୟେ ଭାଳି ବୀର ପାର୍ଥ ॥
ତକ୍ଷଣେ ନିଜ ବିଦ୍ୟାବଳେ । ଖୋଜିଲା ସପତ ପାତାଳେ ॥
ନ ପାଇ ନାଗଲୋକ ତଳେ । ପୁଣି ଉଠିଲା ଅନ୍ତରାଳେ ॥
ଉର୍ଦ୍ଧ୍ୱେ ସପତଲୋକେ ଗଲା । ବିପ୍ରବାଳକ ନ ଦେଖିଲା ॥
ଧନୁ ଖଡ଼ଗ ଧରି କରେ । ପୁଣି ମିଳିଲା ବିପ୍ରବରେ ॥
ପ୍ରତିଜ୍ଞା ଭଙ୍ଗେ ବୀରମଣି । ଅଗ୍ନି ଜାଳିଲା ବେଗେ ଆଣି ॥
ଅନଳ ଜଳଇ ପ୍ରଚଣ୍ଡେ । ଲୋକଗହଳ ରାଜଦାଣ୍ଡେ ॥
ଗୋବିନ୍ଦ ଶୁଣି ନିଜ ପୁରେ । ମିଳିଲେ ଅର୍ଜୁନ ଛାମୁରେ ॥
ସୁହୃଦ ଭାବେ ନରହରି । ବୋଲନ୍ତି ବେନିକର ଧରି ॥
ଦେଖ ଏ ମନୁଷ୍ୟ ଶରୀର । ଦେବ ଦୁର୍ଲ୍ଲଭ ସୁଖସାର ॥
ଯେ ଦେହେ ଚଉବର୍ଗ ସାଧି । ଏ ତ ନୁହଇ ଅପରାଧୀ ॥
ଏ ଦେହ ନାଶିବୁ କେମନ୍ତେ । ସତ୍ୟବଚନ ଭଙ୍ଗ ଅର୍ଥେ ॥
ମୁଁ ତୋତେ ଦେଖାଇବି ନେଇ । ବିପ୍ର ବାଳକ ଦଶଭାଇ ॥
ଆତ୍ମାକୁ ଆପଣେ ନ ମାର । ଶୁଣ ପାଣ୍ଡବ ବୀରବର ॥
ତୋର ମହିମା ଏ ଜଗତେ । ମୁହିଁ ସ୍ଥାପିବି ଦୃଢ଼ମତେ ॥
ଯାବତ ଥିବ ଏ ମେଦିନୀ । ତୋର ନିର୍ମଳ ଯଶ ଘେନି ॥
ଏମନ୍ତ ଅର୍ଜୁନକୁ କହି । ଦାରୁକ କୃଷ୍ଣ ଆଜ୍ଞାପାଇ ॥
ଉତ୍ତମ ଅଶ୍ୱେ ସାଜି ରଥ । ଦାରୁକ ଉଭା ଯୋଡ଼ି ହସ୍ତ ॥
ତକ୍ଷଣେ ପ୍ରଭୁ ଚକ୍ରଧର । ଧରି ଅର୍ଜୁନ ବାମକର ॥
ରଥେ ବିଜୟ ନରହରି । ଆନନ୍ଦେ ଶଙ୍ଖନାଦ କରି ॥
ପଶ୍ଚିମଦିଗେ ରଥ ବାହି । ଚଳନ୍ତେ ନ ଦେଖିଲେ କେହି ॥
ସପତସିନ୍ଧୁ ସପ୍ତଦୀପ । ବେଗେ ଲଂଘିଲେ ବିଶ୍ୱରୂପ ॥
ଗିରି କାନନ ଭୂମି ଜିଣି । ଅର୍ଜୁନ ସଙ୍ଗେ ଚକ୍ରପାଣି ॥
ଜିଣିଲେ ଲୋକାଲୋକ ଦେଶ । ଘୋର ଅନ୍ଧକାରେ ପ୍ରବେଶ ॥
ରଥେ ଯୋଚିଲା ଅଶ୍ୱ ଚାରି । ଅନ୍ଧାରେ ପଥ ନ ବିଚାରି ॥
ଦିଗ ନ ଜାଣି ଭ୍ରମଗତି । ତା ଦେଖି କମଳାର ପତି ॥
ଚକ୍ର ଯେ ଥିଲା କୃଷ୍ଣଭୁଜେ । ସହସ୍ର ଆଦିତ୍ୟର ତେଜେ ॥
ଅଗ୍ରେ ପେଷିଲେ ଚକ୍ରଧର । ଖଣ୍ଡିଲା ଘୋର ଅନ୍ଧକାର ॥
ରାମ କୋଦଣ୍ଡବାଣ ଯେହ୍ନେ । ତେଜ ବିରାଜେ ରିପୁ ସୈନ୍ୟ ॥
ଚକ୍ରର ପଥ ତମ ଗଞ୍ଜେ । ନିଜ ପରମ ଜ୍ୟୋତି ତେଜେ ॥

ତମ ନାଶିଲେ କୃଷ୍ଣ ପଥେ । ଦେଖି ଅର୍ଜ୍ଜୁନ ଭୟଚିତ୍ତେ ॥
ହସ୍ତେ ବୁଜିଲା ବେନି ଆଖି । ପଥେ ଅଦ୍ଭୁତ କର୍ମ ଦେଖି ॥
ଏମନ୍ତେ ଗଲେ ତମ ଜିଣି । ରଥେ ଅର୍ଜ୍ଜୁନ ଚକ୍ରପାଣି ॥
ଦିଶିଲା ଜଳପୂର୍ଣ୍ଣ ଦେଶ । ତକ୍ଷଣେ ସମୁଦ୍ରେ ପ୍ରବେଶ ॥
ପବନ ଯୋଗେ ଊର୍ମିଗଣ । ଦିଶନ୍ତି ସ୍ୱରୂପେ ଭୀଷଣ ॥
ସେ ଜଳମଧ୍ୟେ ଯାଇ ପଶି । ଦେଖିଲେ ଦିବ୍ୟ ତେଜରାଶି ॥
ଦିବ୍ୟଭୁବନ ବିରାଜଇ । କିବା ଉପମା ଦେବି ମୁହିଁ ॥
ସହସ୍ର ମଣିସ୍ତମ୍ଭ ସାଜେ । ସୁନ୍ଦର ଅଧିକେ ବିରାଜେ ॥
ମଧ୍ୟେ ସୁବର୍ଣ୍ଣ ସିଂହାସନ । ଦେଖି ନିଶ୍ଚଳ କଲେ ମନ ॥
ଅନନ୍ତ ମହାଯୋଗେଶ୍ୱର । ଅଦ୍ଭୁତ ରୂପ ଭୟଙ୍କର ॥
ଫଣାସହସ୍ରେ ମିଶି ସାଜେ । ଅମୂଲ୍ୟ ରତନ ବିରାଜେ ॥
ଦ୍ୱିଗୁଣେ ବିରାଜଇ ଜ୍ୟୋତି । ଉତ୍କଟ ଲୋଚନେ ଦିଶନ୍ତି ॥
ବେନି ସହସ୍ର ଜିହ୍ୱା ଶୋହେ । ସୁନ୍ଦର ଶିବଗିରି ପ୍ରାୟେ ॥
ତାର ଉପରେ ଦିବ୍ୟରୂପେ । ସୁଖ ଆସନେ ମହାସର୍ପେ ॥
ମହାନୁଭବ ଅନୁପମ । ସୁନ୍ଦର ପୁରୁଷଉତ୍ତମ ॥
ନୀଳଜୀମୂତ ଦେହକାନ୍ତି । ପୀତବସନ ବିରାଜନ୍ତି ॥
ପ୍ରସନ୍ନ ବଦନ ସୁନ୍ଦର । ବେନିଲୋଚନ ଶୋଭାକର ॥
କିରୀଟ ରବିକୋଟି ଗଞ୍ଜେ । ଅମୂଲ୍ୟ ମଣିଗଣ ପୁଞ୍ଜେ ॥
କପୋଳେ କୁଟିଳ କୁନ୍ତଳ । ଶ୍ରବଣେ ମକରକୁଣ୍ଡଳ ॥
ଆଜାନୁଲମ୍ବେ ଚାରି ଭୁଜ । କଣ୍ଠେ କୌସ୍ତୁଭମଣି ତେଜ ॥
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ । ବନମାଳାଏ ଜନ ମୋହେ ॥
ନନ୍ଦସୁନନ୍ଦ ଆଦି ଦେବା । କରନ୍ତି ପଦ୍ମପାଦେ ସେବା ॥
ଶଙ୍ଖ କମଳ ଚକ୍ର ଗଦା । ଯେ ଶୋହେ ଚତୁର୍ଭୁଜେ ସଦା ॥
ନିଜ ମୂରତି ଧରି ପାଶେ । ଖଟନ୍ତି ଭକତି ବିଶ୍ୱାସେ ॥
କମଳା ଆଦି ଅଷ୍ଟଦେବୀ । ବାମ ଦକ୍ଷିଣେ ଛନ୍ତି ସେବି ॥
ବ୍ରହ୍ମା ଶଙ୍କର ଆଦି ଯେତେ । ଅଷ୍ଟଲୋକପାଳ ସହିତେ ॥
ବ୍ରହ୍ମାଦି ଦେବଙ୍କର ଗତି । ଦେଖି ସମ୍ଭ୍ରମେ ଯଦୁପତି ॥
ପରମଆତ୍ମା ପାଦଯୁଗେ । କୃଷ୍ଣ ବନ୍ଦିଲେ ଅନୁରାଗେ ॥
କୃଷ୍ଣଙ୍କୁ ଦେଖି ବିଷ୍ଣୁ ତୋଷେ । ବୋଲନ୍ତି ପରମ ହରଷେ ॥
ତୁମ୍ଭେ ଯେ ନରନାରାୟଣ । ସଂସାର ପରମକାରଣ ॥
ଭାରା ନିବାରେ ଦେବବାଣୀ । କ୍ଷୀର ଜଳଧିତଟେ ଶୁଣି ॥
ଆତ୍ମାରୁ ତୁମ୍ଭଙ୍କୁ ଭିଆଇ । ମର୍ତ୍ତ୍ୟେ ମନୁଷ୍ୟ ଦେହ ଦେଇ ॥
ତୁମ୍ଭଙ୍କୁ କରି ଅବତାର । ଖଣ୍ଡିଲ ଅବନୀର ଭାର ॥
ସଂସାର ଇନ୍ଦ୍ରିୟ ଲାଳସେ । ଏବେ ହେଁ ନ ମିଳିଲ ପାଶେ ॥
ଏଣୁ ମୁଁ ଚିତ୍ତେ କୋପକରି । ଆଣିଲି ବିପ୍ରସୁତ ହରି ॥
ଦେଖିବା ପାଇଁ ରୂପ ତୁମ୍ଭ । ହସି କହନ୍ତି ପଦ୍ମନାଭ ॥
ଏବେ ହୋ ବିଳମ୍ବ ନ କର । ଏମନ୍ତ ଏହି ଚକ୍ରଧର ॥
ବିଷ୍ଣୁର ପଛେ ବିପ୍ରସୁତେ । ଥିଲେ ଯେ ଅଭୟ ନିଶ୍ଚିନ୍ତେ ॥
କୃଷ୍ଣ ଅର୍ଜ୍ଜୁନ ପାଶେ ଯାଇ । ମିଳିଲେ ବିପ୍ର ଦଶ ଭାଇ ॥
ଦେଖି ସାନନ୍ଦ ଚକ୍ରପାଣି । ଅର୍ଜ୍ଜୁନ ତୁଲେ ତା'ଙ୍କୁ ଆଣି ॥
ରଥେ ବସାଇ ଦାମୋଦର । ସେଠାରୁ ହୋଇଲେ ବାହାର ॥
ବିଷ୍ଣୁଙ୍କୁ କରି ନମସ୍କାର । ଆସି ମିଳିଲେ ନିଜ ପୁର ॥
ବ୍ରାହ୍ମଣ ଦ୍ୱାରେ ପୁତ୍ର ଦେଇ । ପାଦେ ନମିଲେ ଭାବଗ୍ରାହୀ ॥
ବୋଲନ୍ତି ନିଅ ତୋର ସୁତ । ତୁ ମୋତେ ନିନ୍ଦିଲୁ ବହୁତ ॥
ଦଶ ବାଳକ ନିଅ ଗଣି । ସମ୍ଭାଳ ବୋଲେ ଚକ୍ରପାଣି ॥
ଅର୍ଜ୍ଜୁନ କର କରେ ଧରି । ମିଳିଲେ ନିଜ ପୁରେ ହରି ॥
କୃଷ୍ଣ ଅଦ୍ଭୁତ କର୍ମ ଦେଖି । ଅର୍ଜ୍ଜୁନ ମନେ ଉପଲକ୍ଷି ॥
ବିଷ୍ଣୁ ପରମଧାମ ଚିନ୍ତି । ନର ସ୍ୱଭାବେ କଲା ଭୀତି ॥
ଚତୁରବର୍ଗ ଦାତା ହରି । କପଟେ ନରରୂପ ଧରି ॥
ପ୍ରାଣୀଙ୍କୁ କରେ ଅନୁକମ୍ପା । ଏତେ ବିଚାରି କଲା ଶଙ୍କା ॥
କହନ୍ତି ଶୁକ ମୁନିବର । ଶୁଣ ପରୀକ୍ଷ ଦଣ୍ଡଧର ॥
ଏ ଆଦି ଯେତେ କର୍ମ ହରି । କଲେ ମନୁଷ୍ୟ ଦେହ ଧରି ॥
ନାନା ବିଷୟ ଭୋଗ ଭୁଞ୍ଜି । ଦେବମାନବ ମନ ରଞ୍ଜି ॥
କ୍ଷତ୍ରିୟ ଧର୍ମର ଉଚିତେ । ବ୍ରାହ୍ମଣ ବାକ୍ୟେ ବେଦମତେ ॥
ଅନେକ କଲେ ଯଜ୍ଞଦାନ । ଯେ ବେଦ ଆଗମ ବିଧାନ ॥
ଯଜ୍ଞ ଭୋଜନେ ତୋଷ ହୋଇ । ଯେମନ୍ତେ ଇନ୍ଦ୍ର ବରଷଇ ॥
ଅଶେଷ ସୁଖ ସେହିମତେ । କୃଷ୍ଣ ବରଷିଲେ ଜଗତେ ॥
ବ୍ରାହ୍ମଣ ଆଦି ପ୍ରଜା ଯେତେ । ସର୍ବ ସମ୍ପଦ ନାନାମତେ ॥
ଯାଦବବଂଶେ ହୋଇ ଜାତ । ସଙ୍ଗତେ ଘେନି ପଣ୍ଡୁସୁତ ॥
ନିମିତ୍ତ ମାତ୍ର ତାଙ୍କୁ କରି । ଭାରା ନାଶିଲେ ନରହରି ॥
ଅଧର୍ମ ନାଶି ଧର୍ମ ପାଳି । ଜଗତନାଥ ବନମାଳୀ ॥
ସେ କୃଷ୍ଣ ଚରଣ କମଳେ । ସୁଜନେ ଚିନ୍ତ ଧ୍ୟାନବଳେ ॥
ମାୟ ସଂସାର ନୁହଁ ରତ । ଛାଡ଼ି ଅମୃତ ଭାଗବତ ॥
ଏ ସୁଖନାବ ହେଲେ ଛାଡ଼ି । ନ ମର ଭବଜଳେ ବୁଡ଼ି ॥
କୃଷ୍ଣଚରଣେ କରି ଆଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଦ୍ୱିଜକୁମାର ଆନୟନଂ ନାମ ପଞ୍ଚନବତିତମ ଅଧ୍ୟାୟଃ ॥*

## ଷଡ଼ନବତିତମ ଅଧ୍ୟାୟ

ବ୍ୟାସନନ୍ଦନ ତୋଷମନେ । ପୁଣି କହନ୍ତି କୃଷ୍ଣଧ୍ୟାନେ ॥

### ଶୁକ ଉବାଚ

ବୋଲନ୍ତି ଶୁଣି ନରନାଥ । କୃଷ୍ଣଚରିତ ଭାଗବତ ॥
ସକଳ ସୁଖ ଭୋଗ ପୂର୍ଣ୍ଣେ । ଗୋବିନ୍ଦ ଦ୍ୱାରକାଭୁବନେ ॥
ଅଖଣ୍ଡ କଳା ଯେହ୍ନେ ଶଶୀ । ନିର୍ମଳ ଆକାଶେ ପ୍ରକାଶି ॥
ଯଦୁକୁମୁଦବନ ଦେଶେ । ସୁଖେ ପ୍ରକାଶେ ମନ ତୋଷେ ॥
ଯହିଁ ଅମୂଲ୍ୟମଣି ପୁଞ୍ଜେ । ତପନତେଜ ହେଲେ ଗଞ୍ଜେ ॥
ସର୍ବସମ୍ପଦ ସୁଖଘରେ । କମଳା ସେବେ ନିରନ୍ତରେ ॥
ନିଜ ଯୁବତୀ ସୁଖମତେ । ଷୋଳସହସ୍ର ଏକଶତେ ॥
ଅଷ୍ଟମହିଷୀ ଅଙ୍ଗସଙ୍ଗେ । ଦିନ ହରନ୍ତି ଭାବରଙ୍ଗେ ॥
କନ୍ଦୁକ ଆଦି କ୍ରୀଡ଼ାରସେ । ସେବନ୍ତି କୃଷ୍ଣ ମନତୋଷେ ॥
ଅଦ୍ଭୁତ ଦ୍ୱାରାବତୀପୁର । ଦେବମାନବେ ଅଗୋଚର ॥
ସୁଗନ୍ଧହସ୍ତୀ ମଦ ଜଳେ । ଶୁଭସୁନ୍ଦର ମହୀତଳେ ॥
ଯହିଁ ଯାଦବେ ଯୂଥଯୂଥ । ଦିଶନ୍ତି ନାନା ଅଳଙ୍କୃତ ॥
ମାର୍ଗେ ଉଜ୍ଜ୍ୱଳ ରଥପନ୍ତି । ନକ୍ଷତ୍ର ପ୍ରାୟ ବିରାଜନ୍ତି ॥
ନାନା ଉଦ୍ୟାନେ ବନରାଶି । ପୁଷ୍ପପଲ୍ଲବେ ପରକାଶି ॥
ଭୃଙ୍ଗ ବିହଙ୍ଗ ଅନୁବାଦେ । ମନ ହରନ୍ତି ମୃଦୁନାଦେ ॥
ତିନି ଭୁବନେ ଅଗୋଚର । କୃଷ୍ଣଭୁବନ ମନୋହର ॥
ଏମନ୍ତ ପୁରେ ନରହରି । ଷୋଳସହସ୍ର ଶତେ ନାରୀ ॥
ମାୟାମନୁଷ୍ୟ ରୂପ ହୋଇ । ନିତ୍ୟେ ତାହାଙ୍କ ପୁରେ ଥାଇ ॥
ତୋଷନ୍ତି ନାରୀଙ୍କର ମନ । ଇତର ପୁରୁଷ ଯେସନ ॥
ନିଦାଘ କାଳେ ଶୀତଜଳେ । ନାନାକୁସୁମ ପରିମଳେ ॥
ବିବିଧ ଜଳାଶୟ ମାନ । ସୁଗନ୍ଧେ ପ୍ରସାରେ ପବନ ॥
କୁସୁମରଜ ଜଳେ ମିଶେ । ଶୁକ କୋକିଳ ନାଦ ଘୋଷେ ॥
ଏମନ୍ତେ ନାନାଜଳେ ହରି । ସଙ୍ଗେ ସୁନ୍ଦରୀ ମନୋହରୀ ॥
କନ୍ୟାଙ୍କ ସଙ୍ଗେ ବନମାଳୀ । କରନ୍ତି ନାନାରଙ୍ଗେ କେଳି ॥
ନାରୀଙ୍କ ଆଲିଙ୍ଗନ କାଳେ । କୁଚକୁଙ୍କୁମ ବକ୍ଷସ୍ଥଳେ ॥
ଦେବେ ଆବୋରି ଦଶଦିଶେ । ନାନା ସୁବାଦ୍ୟ ଗୀତରସେ ॥
ସୂତ ମାଗଧ ମହୀତଳେ । ବୀଣାଦି ବାଦ୍ୟ କୁତୂହଳେ ॥
କାମିନୀ ଜଳ ଘେନି କରେ । ହସି ସିଞ୍ଚନ୍ତି କୃଷ୍ଣଶିରେ ॥
କୁବେର ଯେହ୍ନେ ପକ୍ଷୀ ମେଳେ । ବିରାଜେ ଜଳକ୍ରୀଡ଼ା ସ୍ଥଳେ ॥
ଜଳେ କୃଷ୍ଣର ନାରୀଜନ । ହୃଦରେ ଜଡ଼ିତ ବସନ ॥
କୃଷ୍ଣ ସିଚନ୍ତି କରେ ନୀର । ଦିଶଇ ହୃଦୟ ବିକାର ॥
କାଞ୍ଚନ ପ୍ରାୟ କୁଚ ବର୍ଣ୍ଣେ । ଦିଶନ୍ତି ଆରଦ୍ର ବସନେ ॥
ଓଦା ବସନେ ଉରୁଦେଶ । ଅଧିକେ କରଇ ପ୍ରକାଶ ॥
କବରୀ ମଧେ ପୁଷ୍ପଭାର । ହରଷେ ବରଷନ୍ତି ନୀର ॥
କୃଷ୍ଣଙ୍କୁ ଜିଣଇବାର ଆଶେ । ଅଧିକେ ସିଞ୍ଚନ୍ତି ହରଷେ ॥
ମୁଖ କି କନ୍ଦର୍ପ ଲହରୀ । ଜଳ ସିଞ୍ଚନ୍ତି ସର୍ବନାରୀ ॥
ସିଞ୍ଚନ୍ତି ପୁଣପୁଣ ଅଙ୍ଗେ । କାମ ବିକାର ନାନାରଙ୍ଗେ ॥
କରିଣୀ ମଧେ ଯେହ୍ନେ ଗଜ । ନାରୀଙ୍କ ମଧେ ଦେବରାଜ ॥
ନାନା ପ୍ରକାରେ କ୍ରୀଡ଼ାରସ । କରି ପିନ୍ଧିଲେ ପୀତବାସ ॥
ଉତ୍ସବ ଗୀତବାଦ୍ୟ ରୋଳେ । ଦେବମାନବ ସୁଖ ଭୋଳେ ॥
ତୀରେ ବିଜୟ ବନମାଳୀ । ନାରୀଙ୍କ କର କରେ ଧରି ॥
ନଟ ନର୍ତ୍ତକୀଗଣ ଚାହିଁ । ଆନନ୍ଦମନେ ଭାବଗ୍ରାହୀ ॥
ଅନେକ ବସ୍ତ୍ର ଅଳଙ୍କାର । ତାହାଙ୍କୁ ଦେଲେ ଦାମୋଦର ॥
କନ୍ୟାଏ ନାନା ରତ୍ନବାସ । ନଟଙ୍କୁ ଦେଲେ ହୋଇ ତୋଷ ॥
ଏମନ୍ତେ କ୍ରୀଡ଼ାରସେ ହରି । ଜଗମୋହନ ରୂପ ଧରି ॥
ହରିଲେ ନାରୀଙ୍କର ମନ । ବୁଦ୍ଧି ଅହଙ୍କାର ଚେତନ ॥
କନ୍ୟାଏ ନିଜ ପୁରେ ଯାଇ । କୃଷ୍ଣବଦନେ ମନ ଥୋଇ ॥
ନିମିଷେ ନ ଦେଖି ମୁରାରି । ଜୀବନ ନ ପାରନ୍ତି ଧରି ॥
ଚିନ୍ତନ୍ତି ସ୍ୱଗୃହେ ତରୁଣୀ । ଜଡ଼ ଉନ୍ମତ୍ତ ପ୍ରାୟ ବାଣୀ ॥
ଯେମନ୍ତ କଲେ ବିପରୀତ । କହିବା ଶୁଣ ପରୀକ୍ଷିତ ॥
ବୃକ୍ଷରେ ପକ୍ଷୀଗଣ ଚାହିଁ । ବୋଲନ୍ତି ବାଇ ପ୍ରାୟ ହୋଇ ॥
କୁରରୀ ଆମ୍ଭବାଣୀ ଶୁଣ । କିଂପା ଉନ୍ନିଦ୍ର ତୋ ନୟନ ॥
ଏ ରାତ୍ରକାଳେ ସର୍ବଜନ । ନିଦ୍ରା ମୋହିତେ ଅଚେତନ ॥
ଆମ୍ଭ ଜୀବନ ଗୋପୀନାଥ । ଦେଖ ନିଶ୍ଚିନ୍ତେ ନିଦ୍ରାଗତ ॥
ତା'ର ନିବିଡ଼ ଆଲିଙ୍ଗନ । ତେଣେ ଯନ୍ତ୍ରିତ ଆମ୍ଭ ମନ ॥
ଲୋଚନେ ନିଦ୍ରା ନ ମାଡ଼ଇ । ତୁ ଯେ ଆମ୍ଭର ପ୍ରାୟ ହୋଇ ॥
ଦେଖିଲୁ କଟାକ୍ଷ ନୟନ । ତେଣୁ ଚଞ୍ଚଳ ତୋର ମନ ॥
ପୁଣି ବୋଲନ୍ତି ଭ୍ରମ ପାଇ । ଚକ୍ରବାକୀର ମୁଖ ଚାହିଁ ॥
ଏ ରାତ୍ରକାଳେ ସ୍ୱାମୀ ସଙ୍ଗ । ନ ଲଭି ଦୁଃଖିତ ତୋ ଅଙ୍ଗ ॥
ଅତି କାରୁଣ୍ୟେ କିମ୍ପା କାନ୍ଦୁ । ଦେଖ ଆମ୍ଭର ପ୍ରାଣବନ୍ଧୁ ॥
ନିଦ୍ରିତେ ନ ପାଇଲୁ ସଙ୍ଗ । ଯେମନ୍ତେ ତୋର ସଙ୍ଗଭଙ୍ଗ ॥
କିମ୍ପାଇ ଆମ୍ଭ ମୁଖ ଚାହୁଁ । କି ଅବା ତେଣେ ତୋଷ ହେଉ ॥
ଆମ୍ଭେ ଯେ ଗୋବିନ୍ଦର ଦାସୀ । ତା ପାଦପଦ୍ମର ତୁଳସୀ ॥
କବରୀ ଭାର ସଜ କରି । କଣ୍ଠେ ଜୀବନ ଅଛୁ ଧରି ॥
ସେମାନେ ଇଚ୍ଛା କରୁ ଯେବେ । ଦେବୁ ଯେ ତୋତେ ପ୍ରିୟଭାବେ ॥

କବରୀଭାର ସଜ କର । ସେବ ତୋହର ନିଜ ବର ॥
ପୁଣି ସମୁଦ୍ରକୁ ଅନାଇଁ । ବୋଲନ୍ତି କୃଷ୍ଣଭାବ ବହି ॥
ହେ ନଦୀକାନ୍ତ ହେ ସମୁଦ୍ର । ତୁ କିମ୍ପା ଏ ରାତ୍ରେ ଉନ୍ନିଦ୍ର ॥
ନିଦ୍ରା ନ ଯାଇ ନାଦ କରୁ । ତୁ କୃଷ୍ଣକଥା କି ସୁମରୁ ॥
ତା'ର ନୟନ ବାଣେ ଛନ୍ନ । ଯେମନ୍ତ ଆମ୍ଭର ଜୀବନ ॥
ସେ ଦୋଷ ତୋତେ କି ବାଧିଲା । ନିଶ୍ଚେ ଜାଣିଲୁ କୃଷ୍ଣଲୀଳା ॥
ପୁଣି ସେ ଚନ୍ଦ୍ରକୁ ଅନାଇଁ । ବୋଲନ୍ତି ପ୍ରିୟଭାବ ବହି ॥
କୁମୁଦବନ୍ଧୁ ତୁ ବୋଲାଉ । ମୃଗଲାଞ୍ଛନ ହୃଦେ ବହୁ ॥
ପୂର୍ବେ ଅର୍ଜିଲା କର୍ମଭୋଗ । ଏଣୁ ତୋ ଦେହ କ୍ଷୟ ରୋଗ ॥
ନିଜ କରମେ କ୍ଷୀଣ ହେଉ । ତୁ କିଂପା ରାତ୍ରେ ଉଦେ ନୋହୁ ॥
ଆମ୍ଭେ ଯେ କୃଷ୍ଣର ତରୁଣୀ । ତା'ର ମୋହନ କଥା ଶୁଣି ॥
ଆତ୍ମା ନ ସୁମରି ଯେମନ୍ତେ । ତେମନ୍ତେ ଦେଖିଲୁ ଯେ ତୋତେ ॥
ତୋର ଗୋବିନ୍ଦଭାବେ ମନ । ତେଣୁ କି ହୋଇଲୁ ମଉନ ॥
ମଳୟାନିଳ ଦେଖି ଭ୍ରମେ । ବିଶ୍ୱାସେ ବୋଲନ୍ତି ପବନେ ॥
ଶୁଣ ତୁ କୃଷ୍ଣବାକ୍ୟବନ୍ଧ । ଭୁବନେ ବହୁ ମନ୍ଦମନ୍ଦ ॥
କୃଷ୍ଣଲୀଳାରେ କରୁ ଆଶା । ଯେ ଭାବେ ଆମ୍ଭର ଭରସା ॥
ଆମ୍ଭକୁ ଚାହିଁ ମେଘମାଳା । ଛଳେ କହନ୍ତି କୃଷ୍ଣଲୀଳା ॥
ବୋଇଲନ୍ତି ମେଘକୁ ଅନାଇଁ । କୃଷ୍ଣର ମିତ୍ର ଅଟୁ ତୁହି ॥
ନିଶ୍ଚେ ତୁ କରୁ କୃଷ୍ଣେ ଧ୍ୟାନ । ଯା ହୃଦେ ଶ୍ରୀବତ୍ସର ଚିହ୍ନ ॥
ଆମ୍ଭର ପ୍ରାୟ ପ୍ରେମବନ୍ଧେ । ଚିନ୍ତା ତୁ କରୁ କୃଷ୍ଣପାଦେ ॥
ହୃଦେ ନିବିଡ଼ ପ୍ରେମଭରେ । ଆମ୍ଭେ ଯେମନ୍ତ ଚକ୍ଷୁଦ୍ୱାରେ ॥
ନିତ୍ୟେ ଲୋତକ କୁଚେ ସିଞ୍ଚୁ । ତୋତେ ତେମନ୍ତ ପ୍ରାୟ ପାଞ୍ଚୁ ॥
ତୋ ହୃଦେ କୃଷ୍ଣପ୍ରେମ ଭରା । ତେଣୁ ତୁ ସିଞ୍ଚୁ ଜଳଧାରା ॥
ସୁମରି ପୁଣ ପୁଣ ସୁଖ । ତାଙ୍କ ପ୍ରସଙ୍ଗ ମହାଦୁଃଖ ॥
କୋକିଳନାଦ କର୍ଣ୍ଣେ ଶୁଣି । ବୋଲନ୍ତି କୃଷ୍ଣର ତରୁଣୀ ॥
ଶୁଣ କୋକିଳ ଆମ୍ଭ ବାଣୀ । ଆମ୍ଭେ ତୋହର ଭାବ ଜାଣି ॥
ତେଣୁ ତୁ ଦୁଃଖୀ ଆମ୍ଭ ଦୁଃଖେ । କୋମଳବାଣୀ କହୁ ମୁଖେ ॥
କିସ କରିବୁ କହ ତୋର । ତୁ ଆମ୍ଭ ଜୀବନ ସୋଦର ॥
ପର୍ବତଶୃଙ୍ଗ ଚାହିଁ ପୁଣି । ବୋଲନ୍ତି କୃଷ୍ଣର ତରୁଣୀ ॥
ତୁ ମହୀଧର ବଡ଼ ଧନ୍ୟ । ନ ଚଳୁ ନ ବୋଲୁ ବଚନ ॥
ଉଦାର ବୁଦ୍ଧି ତୋର ଜାଣି । ଗୁପତେ ଚିନ୍ତୁ ଚକ୍ରପାଣି ॥
ଆମ୍ଭେ ଗୋବିନ୍ଦପାଦ ଯେହ୍ନେ । କୁଚେ ଲଗାଉ ସାବଧାନେ ॥
ତୁହି ତେମନ୍ତ କରୁ ଆଶ । ତେଣୁ ତୁ ଆମ୍ଭର ବିଶ୍ୱାସ ॥
ନିକଟେ ନଦୀସ୍ରୋତ ଦେଖି । ଭାବେ ବୋଲନ୍ତି ଚନ୍ଦ୍ରମୁଖୀ ॥
ପ୍ରିୟବିଯୋଗେ ସଖୀ ତୋର । ଶୁଖିଲା ବେନି ତଟୁଁ ନୀର ॥
କମଳ ଉପହାର କରୁ । ସ୍ୱାମୀର ସଙ୍ଗ ତୁ ସୁମରୁ ॥
ଦେଖ ଆମ୍ଭର ମନ ଛନ୍ନ । ନ ଦେଖି କୃଷ୍ଣର ବଦନ ॥
ଦୁଃଖ ହୃଦୟେ ଦିନ ବଞ୍ଚୁ । ଆମ୍ଭର ପ୍ରାୟ ତୋତେ ପାଞ୍ଚୁ ॥
ପୁଣି ଚାହାନ୍ତି ଦଶଦିଶେ । ଦେଖିଲେ ରାଜହଂସ ପାଶେ ॥
କୃଷ୍ଣର ଦୂତ ପ୍ରାୟ ମଣି । ବୋଲନ୍ତି ପ୍ରିୟଭାବେ ବାଣୀ ॥
ଭଲେ ଅଇଲୁ ହଂସ ପଥେ । ଆମ୍ଭର ପ୍ରିୟ ଘେନି ଚିତ୍ତେ ॥
ଆସ ତୁ କ୍ଷୀର କର ପାନ । ଆମ୍ଭ ସମୀପେ ତୋ ଆସନ ॥
ବସି ତୁ କହ କୃଷ୍ଣକଥା । ତୋ ତହିଁ ବିଶ୍ୱାସ ବ୍ୟବସ୍ଥା ॥
ଜାଣିଲୁ ଦୂତ ବୋଲି ତୋତେ । ଶ୍ରମ ପାଇଲୁ ଆସି ପଥେ ॥
ଭଲେ କି ଛନ୍ତି ଦାମୋଦର । କହ ତୁ କପଟ ନ କର ॥
କପଟ ହୃଦୟ ତାହାର । ଚଞ୍ଚଳ ସୁହୃଦ ବେଭାର ॥
ଆମ୍ଭର ଭାବ କି ସୁମରେ । ଏ ମାୟା ସଂସାର ସାଗରେ ॥
କିବା କରିବୁ ଯିବୁ ନାହିଁ । ତା ତହୁଁ ଆନଗତି ନାହିଁ ॥
ଅମୃତ ବଚନ ତାହାର । ଶୁଣି ଶ୍ରବଣ ସୁଖକର ॥
ସକାମ କରେ ଆମ୍ଭ ମନ । ତା ଭାବ ଛାଡ଼ିବୁ କେସନ ॥
ଏମନ୍ତେ କୃଷ୍ଣର କାମିନୀ । ଚିତ୍ତେ ନିର୍ମଳ ଭାବ ଘେନି ॥
ଯୋଗେଶ୍ୱରଙ୍କୁ ଅଗୋଚର । ଅଭୟ ଚରଣ ଯାହାର ॥
ସେ ହରିପାଦେ ଭାବ କଲେ । ଜନ୍ମ ମରଣୁଁ ନିସ୍ତରିଲେ ॥
ପରମପଦେ ତାଙ୍କ ଗତି । ଏବେ ହୋ ଶୁଣ ନରପତି ॥
ସେ ହରିଗୁଣ ଶ୍ରୁତିପଥେ । ପଶି କାମିନୀଗଣ ଚିତ୍ତେ ॥
ବଳେ କରଇ କାମମୟେ । ଯେ ଭାବେ ବସି ନିତ୍ୟେ ଧାୟେ ॥
ତା ରୂପ ଚକ୍ଷୁଦ୍ୱାରେ ଦେଖି । କାମିନୀ କେ ନୋହିବେ ସୁଖୀ ॥
ତାହାଙ୍କୁ ସ୍ୱାମୀପଣେ ପାଇ । ପାଦେ ସେବନ୍ତି ଗୃହେ ଥାଇ ॥
ତାହାଙ୍କ ତପ କେ ବର୍ଣ୍ଣିବ । ଯାହା ବାଞ୍ଛନ୍ତି ବ୍ରହ୍ମା ଶିବ ॥
ଏମନ୍ତ ପ୍ରଭୁ ବନମାଳୀ । ବେଦ ଉଚିତେ ଧର୍ମ ପାଳି ॥
ଗୃହସ୍ଥିଧର୍ମ ଅନୁମତେ । ଚତୁରବର୍ଗ ସିଦ୍ଧି ଅର୍ଥେ ॥
ଷୋଳସହସ୍ର ଶତେ ନାରୀ । ଗୃହେ ରମିଲେ ନରହରି ॥
ନାରୀଙ୍କ ମଧ୍ୟେ ଅଷ୍ଟଦେବୀ । କମଳା ଅଂଶେ କୃଷ୍ଣ ସେବି ॥
ଏ ଆଦି ସକଳ ଯୁବତୀ । ଗୋବିନ୍ଦ ଗୃହେ ପୁତ୍ରବତୀ ॥
କନ୍ୟାକେ ଦଶଦଶ ସୁତ । ଏକ ଦୁହିତା ହୋଏ ଜାତ ॥
ପୁତ୍ରଙ୍କ ମଧ୍ୟେ ସାଧୁ ଧୀର । ଉତ୍ତମ ଅଷ୍ଟାଦଶ ବୀର ॥
ସୁଯୋଦ୍ଧା ରଥୀ ଅନୁପମ । ଶୁଣ ତୁ ପୁତ୍ରଙ୍କର ନାମ ॥
ପ୍ରଦ୍ୟୁମ୍ନ ଦୀପ୍ତିମାନ ଭାନୁ । ଶାମ୍ବ ମଧୁ ଯେ ବୃହଦ୍‌ଭାନୁ ॥

ଚିତ୍ରଭାନୁ ବୃକ ଅରୁଣ । ଚିତ୍ରବାହୁ ଯେ ସୁନନ୍ଦନ ॥
ପୁଷ୍କର ବେଦବାହୁ ବେନି । ଚଉଦ ଶ୍ରୁତଦେବ ଘେନି ॥
ବିରୂପ କବି ଯେ ନ୍ୟଗ୍ରୋଧ । ପ୍ରଦ୍ୟୁମ୍ନ ପୁତ୍ର ଅନିରୁଦ୍ଧ ॥
ଏହାଙ୍କ ମଧେ ଜ୍ୟେଷ୍ଠଭ୍ରାତ । ଉତ୍ତମ ରୁକ୍ମିଣୀର ସୁତ ॥
କୃଷ୍ଣର ପ୍ରାୟେକ ଦିଶଇ । ରୁକ୍ମୀ ଯେ ରୁକ୍ମିଣୀର ଭାଇ ॥
ତାର ଦୁହିତା ତାକୁ ଦେଲା । ତାହାର ଅନିରୁଦ୍ଧ ବଳା ॥
ରୁକ୍ମୀପୁତ୍ର ନାରୀ ଉଦରେ । କନ୍ୟାଏ ଥିଲା ତାର ପୁରେ ॥
ପ୍ରଦ୍ୟୁମ୍ନ ପୁତ୍ରେ ତାହା ବରି । ବିଭା କରାଇଲେ ମୁରାରି ॥
ବଜ୍ର ତାହାର ତହୁଁ ଜାତ । ଏବେ ହୋ ଶୁଣ ପରୀକ୍ଷିତ ॥
ମୂଷଳ ଅବିଶେଷ ସେହୁ । ତା'ର କୁମର ପ୍ରତିବାହୁ ॥
ସୁବାହୁ ତା ତହୁଁ ଜନମ । ତା'ର କୁମର ଶାନ୍ତ ସେନ ॥
ତାହାର ଶତସେନ ବଳା । ସେଠାରୁ ଯଦୁବଂଶ ଗଲା ॥
ସେ ଯଦୁବଂଶେ ମହୀତଳେ । ଯେତେ କୁମର ଉପୁଜିଲେ ॥
ଏ ବଂଶେ ଯେତେକ ସନ୍ତତି । ନିର୍ଦ୍ଧନ ଅପୁତ୍ରୀ ନୁହନ୍ତି ॥
ଅକାଳେ ନୁହଁନ୍ତି ବିନାଶ । ନାହିଁ ପାପିଷ୍ଠ ଅଳ୍ପାୟୁଷ ॥
ଏ ହରିବଂଶର ମହିମା । କେ କହିପାରେ ଗୁଣସୀମା ॥
ଯେତେ ବାଳକ ଉପୁଜିଲେ । କେ ଗଣିପାରେ ତାହା ଭଲେ ॥
ଶୁଣ ତା କହିବା ପ୍ରକଟି । ଅଠାଶୀସହସ୍ର ତିନିକୋଟି ॥
ଏତେ ଆଚାର୍ଯ୍ୟ ବିଦ୍ୟାଗୁରୁ । ଏଣୁ କେ ସଂଖ୍ୟା କରିପାରୁ ॥
ଅୟୁତ ନିୟୁତ ପ୍ରମାଣି । କେ ପାରୁ ହରିବଂଶ ଗଣି ।
ପୂର୍ବେ ଯେ ଦେବାସୁର ରଣେ । ଯେ ଅବା ମଲେ ଯାତୁଧାନେ ॥
ପୁଣି ମନୁଷ୍ୟ ଦେହ ବହି । ଅଶେଷ ମହୀତଳେ ହୋଇ ॥
ତାହାଙ୍କ ସଂହାରଣ ଅର୍ଥେ । ବିଷ୍ଣୁର ଅଂଶ ଏ ଜଗତେ ॥
ମନୁଷ୍ୟେ ହୋଇ ଅବତାର । ହରିଲେ ଅବନୀର ଭାର ॥
ଦେବେ ସକଳେ ଆଜ୍ଞା ପାଇ । ଯାଦବବଂଶେ ଜାତ ହୋଇ ॥
ଏକ ଉତ୍ତର ଶତବଂଶ । ଧରଣୀ ମଧେ କଲେ ନାଶ ॥
ଯାଦବବଂଶେ ହୋଇ ଜନ୍ମ । ଯହିଁ ସେ କଲେ ଯେତେ କର୍ମ ॥
ଆସନ ଶୟନ ଭୋଜନ । ଯଦୁଙ୍କ ତୁଲେ ଭଗବାନ ॥
ଏମନ୍ତେ ଦ୍ୱାରାବତୀପୁର । ସର୍ବସମ୍ପଦ ସୁଖସାର ॥
ଅଖଣ୍ଡସୁଖ ଭୋଗ କରେ । ଦ୍ୱାରକାପୁରବାସୀ ନରେ ॥
ଏମନ୍ତେ ସାତବଂଶ ଜନ । ସ୍ୱଧର୍ମେ ବଞ୍ଚନ୍ତି ସେଦିନ ॥
ଯହିଁ ସେ ରାମ କୃଷ୍ଣ ବେନି । ସୁକୃତକର୍ମ ଅବଧାନୀ ॥
ସକଳତୀର୍ଥ ଯଦୁକୁଳ । ଯହିଁ ବିଜୟ ଆଦିମୂଳ ॥
ପାଦଉଦକ ଗଙ୍ଗାନୀର । କମଳା ସେବେ ନିରନ୍ତର ॥
ଯା'ନାମ ସର୍ବଦେବ ଘୋଷେ । ଶ୍ରବଣେ ଅମଙ୍ଗଳ ନାଶେ ॥
ମନୁଷ୍ୟଭାବେ କର୍ମ କରି । ଅନ୍ତେ ସକଳ ଦେହେ ଭରି ॥
ଯାହାର କାଳଚକ୍ର ହସ୍ତେ । କେ ଜାଣି ପାରେ ତା ଜଗତେ ॥
ଦେବକୀ ଗର୍ଭେ ଅବତରି । ତେଜେ ଧରଣୀଭାରା ହରି ॥
ସ୍ଥାବର ଆଦି ଯେତେ ଜନ୍ମ । ଖଣ୍ଡିଲେ ତାହାଙ୍କର ନାମ ॥
ଶ୍ରୀମୁଖ ଚାହିଁ ଗୋପନାରୀ । କାମ ଗରଳ ସେ ନିବାରି ॥
ସେ ହରି କଲେ କର୍ମ ଯେତେ । ସଂକ୍ଷେପେ କହିଲି ମୁଁ ତୋତେ ॥
ଏ କଥା କର୍ଣ୍ଣେ ଯେ ଶୁଣନ୍ତି । ଆନନ୍ଦେ ହୃଦୟେ ଗୁଣନ୍ତି ॥
ଜନ୍ମ ମରଣ ତା'ଙ୍କ ନାହିଁ । ଯେ ନିତ୍ୟେ କୃଷ୍ଣଲୀଳା ଗାଇ ॥
ଅମୃତ ଭାଗବତ ବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥
ବୋଲଇ ଦାସ ଜଗନ୍ନାଥ । ସୁଜନ ହିତେ ଭାଗବତ ॥
ଦଶମେ କୃଷ୍ଣର ମହିମା । ଯାହା ନ ଜାଣେ ଶିବ ବ୍ରହ୍ମା ॥
ସେ ହରି ଆଜ୍ଞା ଶିରେ ବହି । ଗୀତେ ପାରିଲି ଯାହା କହି ॥
ପ୍ରାକୃତ ଭାଷା ଏ ପ୍ରବନ୍ଧ । ଫିଟେ ଅନ୍ଧାର-ଭବବନ୍ଧ ॥
ମୁଁ ଛାର ହୀନ ମୂଢ଼ମତି । କୃଷ୍ଣଚରଣେ ହେଉ ମତି ॥
ଦଶମସ୍କନ୍ଧ ପୁଣ୍ୟବାଣୀ । ଶୁଣି ସଂସାରୁ ତର ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ଦଶମସ୍କନ୍ଧେ ଉତ୍ତରାର୍ଦ୍ଧେ ଶ୍ରୀକୃଷ୍ଣ ଚରିତ ଅନୁବର୍ଣ୍ଣନଂ*
*ନାମ ଷର୍ଣ୍ଣବତିତମ ଅଧ୍ୟାୟଃ ॥*

# ଏକାଦଶ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ॥
ଲୀଳା ବିଧୃତ କଳେବର । ଦେବ ମାନବେ ଅଗୋଚର ॥
ମାୟା ସଂସାର ତାର ଲୀଳା । ତା ନାମ ଭବତଳେ ଭେଳା ॥
କରୁଣା କଟାକ୍ଷ ପ୍ରକାଶେ । ଭଗତ ଜନ ଦୁଃଖ ନାଶେ ॥
ସେ ହରି ଚରଣ ବିଶ୍ୱାସେ । ଶ୍ରୀଭାଗବତ ଏକଦଶେ ॥
ଏ ଭାଗବତ ଧର୍ମ କଥା । ହେଳେ ଖଣ୍ଡଇ ଭବ ବ୍ୟଥା ॥
ଉଦ୍ଧବ ନିସ୍ତାରଣ ବାଣୀ । ଯାହା କହିଲେ ଚକ୍ରପାଣି ॥
ସେ କଥା ପ୍ରବନ୍ଧେ ପ୍ରକାଶ । ଆରମ୍ଭେ ଜଗନ୍ନାଥ ଦାସ ॥
ବ୍ୟାସ ନନ୍ଦନ ମୁଖୁ ଶୁଣି । ନିର୍ମଳ ଭାଗବତ ବାଣୀ ॥
ସାଧୁ ସଙ୍ଗମ ଗଙ୍ଗାତୀରେ । ଶୁକ ଚରଣ ଧରି କରେ ॥
ଆନନ୍ଦେ କରି ଅଶ୍ରୁପାତ । ବୋଲଇ ଅଭିମନ୍ୟୁ ସୁତ ॥
ଭୋ ମୁନି ନମେ ତୋ ପୟରେ । ମୋତେ ଉଦ୍ଧାର ଏ ସଂସାର
ଦେବଙ୍କ ବାକ୍ୟେ ସେ ମୁରାରି । ଅଂଶେ ମନୁଷ୍ୟ ଦେହ ଧରି
ଦୁର୍ଜ୍ଜୟ ଦୁଷ୍ଟ ଗଣ ମାରି । ଅବନୀ ଭାରା ଅପହରି ॥
ଲାବଣ୍ୟ ରୂପେ ଜନମୋହି । ପ୍ରାଣୀ ନୟନେ ସୁଖ ଦେଇ ॥
ସେ ରୂପ କରି ଅନ୍ତର୍ଦ୍ଧାନ । ହରିଲେ ପ୍ରାଣୀଙ୍କର ମନ ॥
କୃଷ୍ଣ ବଦନୁ ମଞ୍ଜୁବାଣୀ । ଯେ ଅବା କର୍ଣ୍ଣେ ଥିଲେ ଶୁଣି ॥
ତେଣେ ତାହାଙ୍କ ମତି ହରି । ନିଜ ଭୁବନେ ବିଜେ କରି ॥
କୃଷ୍ଣର ପାଦ ପଦ୍ମଚିହ୍ନ । ସୁନ୍ଦର ମନ୍ଥର ଗମନ ॥
ସେ ପାଦ ଦେଖୁଥିଲେ ଜନ । ସେ ପାଦ ପଦ୍ମେ ଦେଇ ମନ ॥
ସେ ରୂପେ ତାଙ୍କ ମନ ହରି । ଅନ୍ତର ହୋଇଲେ ମୁରାରି ॥
କୁରୁ ପାଣ୍ଡବେ ମଧ୍ୟେ ହରି । ମାୟା କବଳେ ଭେଦ କରି ॥
କପଟ ପାଶା ବନବାସ । ଆକ୍ରିଷି ଦ୍ରୁପଦୀର କେଶ ॥
ଭୀମକୁ ବିଷଲଡୁ ଦେଇ । ଜତୁର ଘରେ ଅଗ୍ନିଦାହି ॥

ଏ ଆଦି ଯେତେ କଷ୍ଟମାନ । ପାଣ୍ଡବେ କଲା ଦୁର୍ଯ୍ୟୋଧନ ॥
ସେ ଅପମାନେ ମାନବହି । ସଙ୍ଗତେ ଘେନି ପାଞ୍ଚଭାଇ ॥
ନିମିତ୍ତ କରି ତାଙ୍କୁ ହରି । ଅନେକ ଅକ୍ଷୌହିଣୀ ମାରି ॥
ଭାରା ନିବାରି ଭଗବାନ । ଅନ୍ତେ ଚଳିଲେ ନିଜ ଥାନ ॥

## ପରୀକ୍ଷିତ ଉବାଚ

ଅଖଣ୍ଡ ଯଦୁବଂଶ କୋପେ । କିମ୍ବା ହରିଲେ ବିପ୍ର ଶାପେ ॥
ତାହାର ମାୟାଯୋଗ ବାଦେ । ଈଶ୍ୱର ଖେଳେ ବନ ମଧ୍ୟେ ॥
ସେ ବ୍ରହ୍ମ ଶାପେ ନରହରି । ହେଳେ ପାରଇ ଆନ କରି ॥
ସର୍ବ ସମ୍ପଦ ନିଜ ପୁରୀ । ମାୟାର ବଳେ ତା ସଂହରି ॥
କଳି ଭିଆଇ ନିଜ ବଂଶେ । ସଂହାରି ବିଶ୍ରାମିଲେ ଶେଷେ ॥
ଅନଳ ବନୁ ଜାତ ହୋଇ । ଯେସନ୍ତେ ଲିଭଇ ବନ ଦହି ॥
ସେ ଯଦୁ ବଂଶ ମହୀସ୍ଥଳେ । ଜୟ ନୁହଁନ୍ତି ରିପୁ ବଳେ ॥
ସେବନ୍ତି ଗୁରୁ ବିପ୍ରପାଦେ । ଭେଦ ନୁହଁନ୍ତି ବେଦବାଦେ ॥
କିମ୍ବା ଗୋବିନ୍ଦ ସଂହାରିଲେ । ନିଜ ଭୁବନେ ବିଜେ କଲେ ॥
କୃଷ୍ଣର ଯଶ ଗୁଣ ଯେତେ । ସଂସାରେ ଶୁଣ ତାହା ଚିତ୍ତେ ॥
ପ୍ରାଣୀ ତରନ୍ତି ତମ ଘୋର । ଏମନ୍ତ ମହିମା ଯାହାର ॥
ଭୋ ମୁନି କହ ତୋଷମନେ । ଏମନ୍ତ ରାଜାର ବଚନେ ॥

## ଶ୍ରୀ ଶୁକ ଉବାଚ

ବୋଲନ୍ତି ବ୍ୟାସଙ୍କର ସୁତ । ଶୁଣ ହେ କୃଷ୍ଣର ଚରିତ ॥
ଜନ ମୋହନ ମାୟାଧର । ପ୍ରକାଶ ନର କଳେବର ॥
ନାନା ବିଚିତ୍ର କର୍ମ କରି । କନ୍ଦଳେ ନିଜ ବଂଶ ମାରି ॥
କେବଳ ସାଧ ଏ ବେଭାର । ଶୁଣ ସୁମନେ ନୃପବର ॥
କଳି କଳୁଷ ନିବାରଣ । ସଂସାରେ ସ୍ଥାପି ନାମ ଗୁଣ ॥
ଏବେ ଗୋବିନ୍ଦ କଲେ ଯେତେ । କହିବା ଶୁଣ ଏକ ଚିତ୍ତେ ॥
ଯାଦବ ବଂଶ ନାଶ ଅର୍ଥେ । ଗୋବିନ୍ଦ ବିଚାରିଲେ ଚିତ୍ତେ ॥
ବିପ୍ରେ ଯେ ଥିଲେ ନିଜ ଦେଶେ । କୃଷ୍ଣର ଦ୍ରଶନ ଲାଳସେ ॥
ବିଶ୍ୱାମିତ୍ରଙ୍କୁ ଆଗ କରି । ଶ୍ରୀ ବାମଦେବ ବ୍ରହ୍ମଚାରୀ ॥
ଭୃଗୁ ଅଙ୍ଗିରା ଷଡ଼ଈଶ । ବଶିଷ୍ଠ ନାରଦ ବିଶେଷ ॥
ମିଳିଲେ ପୁଣ୍ଡରିକ ତୀର୍ଥେ । ଶ୍ରମେ ଗମନ୍ତି ବନପଥେ ॥
ଏମନ୍ତେ କୃଷ୍ଣର କୁମରେ । ଆନ୍‌ନ୍ଦେ ସମୋଦ୍ରର ତୀରେ ॥
ସକଳେ ଏକ ଥାନେ ମିଳି । ରଙ୍ଗେ କରନ୍ତି ନାନା କେଳି ॥
ଶାମ୍ବକୁ ନାରୀ ବେଶ କରି । ଅନେକ ଅଳଙ୍କାର ଭରି ॥
ପ୍ରସବ ଗର୍ଭ ପ୍ରାୟ କରି । ଉଦରେ ଲୋହ ପାତ୍ର ଭରି ॥
ଚାଇଇ ଚରଣ ମନ୍ଥର । ଶ୍ରମେ ଘର୍ମିତ କଳେବର ॥

ମୁନିକି ଦେଖି ଲଜ୍ୟା ପାଇ । ଅନ୍ତରେ ଅଧୋମୁଖ ହୋଇ ॥
ରହିଲା ଲତା ଅଭ୍ୟନ୍ତରେ । ଏମନ୍ତେ କୃଷ୍ଣର କୁମରେ ॥
ମୁନି ସମୀପେ ଯାଇ ଧୀରେ । କର ଅଞ୍ଜୋଳି ଦେଇ ଶିରେ ॥

## ଶାମ୍ବର ନାରୀ ବେଶ

କୋମଳ ମଧୁର ବଚନେ । ବୋଲନ୍ତି ଶୁଣ ବିପ୍ରଜନେ ॥
ବଧୂ ଯାଦବ ନାରୀ ଏହି । ଅନେକ ଦିନୁ ଗର୍ଭ ବହି ॥
ପ୍ରସବ ନୋହେ କି କାରଣେ । କହିଲୁ ତୁମ୍ଭର ଚରଣେ ॥
ଚଳି ନ ପାରେ ଶ୍ରମ ଭରେ । ଲାଜେ ନ ରହେ ତୁମ୍ଭ ଆଗେ॥
ତୁମ୍ଭେ ସର୍ବଜ୍ଞ ଜନ ସାର । କି ଗର୍ଭ ହୋଇବ ଏହାର ॥
ପୁତ୍ର ଦୋହିତା କିବା ଜାତ । ମାୟା ନ କରି କହ ସତ ॥
ଶୁଣି ପୁତ୍ରଙ୍କର ବଚନ । କୋପେ ବୋଇଲେ ମୁନି ଜନ
ଏ ନାରୀ ଗର୍ଭ ବାସ ବାଣୀ । ଆମ୍ଭେ ଜାଣିଲୁ ପରିମାଣି ॥
ଏହାର ଗର୍ଭେ ଅଛି ବାଳ । ନିଷ୍ଠୁର ଲୋହର ମୁଷଳ ॥
ଆଜ ଏ ଗର୍ଭ ପ୍ରସରିବ । ତୁମ୍ଭର ବଂଶ ବିନାଶିବ ॥
କୁଳ ସମୂଳେ କରି ନାଶ । ଭୂମିରେ ଯେତେ ଯଦୁବଂଶ ॥
ଏମନ୍ତେ କହିଗଲେ ମୁନି । କୃଷ୍ଣ କୁମରେ ତାହା ଶୁଣି ॥
ବଜ୍ର ପଡ଼ିଲା ଜାଣ ମୁଣ୍ଡେ । ଶାମ୍ବକୁ ଆଣି ରାଜ ଦାଣ୍ଡେ ॥
ତକ୍ଷଣେ ଲୋହ ପାତ୍ର ଫେଇ । ପେଟେ ଖୋଜନ୍ତି ହସ୍ତଦେଇ ॥
କର୍କଶ ପିଙ୍ଗଳ ପିଚ୍ଛିଳ । ଦେଖିଲେ ଲୋହର ମୁଷଳ ॥
ଗର୍ଭୁ ପଡ଼ନ୍ତେ ବଜ୍ର ପ୍ରାୟେ । ଦେଖି କମ୍ପିଲେ ମହାଭୟେ ॥
ଲୌହ ମୁଷଳ ତେଜ ଭରେ । ଚକ୍ଷୁ ବୁଜିଲେ ଯେ ଯାହାରେ ॥
ବୋଲନ୍ତି କଲୁ ମନ୍ଦ କର୍ମ । କିବା ବୋଲିବେ କୃଷ୍ଣ ରାମ ॥
ଏମନ୍ତେ ଗୋବିନ୍ଦର ସୁତେ । ଲୋହ ମୁଷଳ ଟୋଳି ହସ୍ତେ ॥
ଉଗ୍ରସେନର ସଭା ସ୍ଥଳେ । ମିଳିଲେ ହୃଦୟ ବିକଳେ ॥
ଲୋହ ମୁଷଳ ତଳେ ଥୋଇ । କହନ୍ତି ସଭା ମୁଖ ଚାହିଁ ॥
ଆମ୍ଭର କ୍ରୀଡ଼ା କଉତୁକେ । ଖେଳନ୍ତେ ତୀର୍ଥ ପିଣ୍ଡାରିକେ ॥
ଶାମ୍ବକୁ ନାରୀ ବେଶ କରି । ଉଦରେ ଲୋହ ପାତ୍ର ଭରି ॥
ମୁନିକୁ ପଚାରିଲୁ ଭାବେ । ଏ ଗର୍ଭ ପ୍ରସବ ପ୍ରସ୍ତାବେ ॥
ଶୁଣି କୋପିଲେ ମୁନିବ୍ରହ୍ମେ । ବନ ଗହନ ପଥ ସର୍ମେ ॥
ବୋଇଲେ ଗର୍ଭେ ଅଛି ବାଳ । ନିଷ୍ଠୁର ଲୌହର ମୁଷଳ ॥
ଭୂମିରେ ଯଦୁ ବଂଶ ଯେତେ । ଏ ଲୌହେ ମରିବେ ସମସ୍ତେ॥
ନିର୍ମଳ କରି ଯଦୁ କୁଳ । ଏ ଜାତ ଲୌହର ମୁଷଳ ॥
ତକ୍ଷଣେ ଗର୍ଭ ଫେଇ ଦେଖି । ଭୟେ ବୁଜିଲୁ ଆମ୍ଭେ ଆଖି ॥
ଏମନ୍ତ କହି ସଭା ମଧ୍ୟେ । କୁମରେ ବସିଲେ ବିଷାଦେ ॥
ଶୁଣି ସକଳ ସଭାଜନେ । କହନ୍ତି ଦୁଃଖିତ ବଦନେ ॥
ନିଷ୍ଠୁର ବିପ୍ର କୋପାନଳ । ଜଳଇ ଭୁବନ ମଣ୍ଡଳ ॥
କେ ତାହା ଅନିଷ୍ଟା କରିବ । ବ୍ରହ୍ମା ଶଙ୍କର ବାସୁଦେବ ॥
ଶୁଣି ସକଳ ପୁରଜନ । ବଦନୁ ନ ସ୍ଫୁରେ ବଚନ ॥
ତା ଦେଖି ରାଜା ଉଗ୍ରସେନ । ଭୀମକୁ ବୋଲଇ ବଚନ ॥
ଏ ଲୋହ ଗିରି ଶିଖେ ନେଇ। ଘଷ ସମୋଦ୍ର ଜଳଦେଇ ॥
ନିଃଶେଷ କରି ଲୋହ ଘଷ । ଯେମନ୍ତେ ନ ରହଇ ଶେଷ ॥
ତକ୍ଷଣେ ରାଜା ଆଜ୍ଞା ପାଇଁ । ମୁଷଳ ଘେନି ବେଗେ ଯାଇ ॥

### (ଭୀମଙ୍କର ଲୋହ ମୁଷଳ ପର୍ବତରେ ଘଷିବା)

ପର୍ବତେ ସମୋଦ୍ର ଜଳେ । ଲୋହ ଘଷନ୍ତି ଭୁଜବଳେ ॥
ଘଷନ୍ତେ ଲୋହ ଚୂର୍ଣ୍ଣଶିଳେ । ପଡ଼ନ୍ତେ ସମୋଦ୍ର ଜଳେ ॥
ଅନେକ ଦିନ ଘଷି ରୋଷେ । ଅଳପ ରହେ ଅବଶେଷେ ॥
ଅଙ୍ଗୁଳି ଛିଡ଼େ ଘରଷଣେ । ନିଷ୍ଠୁର ନିଃଶେଷ କାରଣେ ॥
ନ ପାରି ପକାଇଲେ ଜଳେ । ଘୋର ଗହନ ମୀନ ମେଳେ ॥
ଲୋହ ପଡ଼ନ୍ତେ ଘୋର ପାଣି । ଆହାର ପ୍ରାୟେ ତାହା ମଣି ॥
ମୀନ ଗିଳିଲା ଅତି ବେଗେ । ସେ ମୀନ ମତ୍ସ୍ୟଗଣ ସଙ୍ଗେ ॥
ଚରନ୍ତେ ସମୋଦ୍ର କୂଳେ । ଜାଲେ ପଡ଼ିଲା ରାତ୍ର କାଳେ ॥
ଧୀବର ନେଇ ମୀନ ଏକା । ଜରା ଶବର ଦେଲା ଦେଖା ॥
ମୀନ କାଟନ୍ତେ ତାର ଘରେ । ଲୋହ ଦେଖିଲା ତା ଉଦରେ ॥
କର୍କଶ ପିଙ୍ଗଳ ପ୍ରଚଣ୍ଡ । ଯେହ୍ନେ ଉଜ୍ଜ୍ୱଳ ମାରତଣ୍ଡ ॥
ଦେଖି ଶବର ତୋଷ ହୋଇ । ନାରାଚ୍ କଲା ଲୋହ ଦେଇ ॥
ବାର୍ଣ୍ଣର ମୂଳେ ତୀକ୍ଷ୍ଣ ଫଳ । ତେଜେ କି ଜଳଇ ଅନଳ ॥
ଯେ ଲୋହ ଚୂର୍ଣ୍ଣ ପଡ଼ି ଜଳେ । ଭାସିଲା ସମୋଦ୍ର ଉଲୋଳେ
ତୀର ଲାଗନ୍ତେ ଲୋହ ଚୂର୍ଣ୍ଣ । ଜନ୍ମିଲା ଏରକାର ବନ ॥
ତୀକ୍ଷ୍ଣ ତ୍ରିଶିର ସେ ପ୍ରଭାବେ । ଯେଣେ ଯାଦବେ ନାଶଯିବେ॥
ସେ କାଳରୂପୀ ଭଗବାନ । ଜାଣଇ ସକଳ ବିଧାନ ॥
ଖେଳଇ ମାୟାମୟ କଳ୍ପେ । ସେ ପ୍ରଭୁ ଡରେ ବିପ୍ରଶାପେ ॥
କୁଳ ବିନାଶ ହେତୁ କରି । ଅବନୀ ଭାରା ହେଲେ ହରି ॥
ନିଜ ଭୁବନେ ଅବଧାନ । ନିର୍ଲେପ ପ୍ରଭୁ ଭଗବାନ ॥
ବୋଇଇ ବିପ୍ର ଜଗନ୍ନାଥ । ଶ୍ରୀ ଏକାଦଶ ଭାଗବତ ॥
ଜାହ୍ନବୀ ତୀରେ ରାଜା ଆଗେ । ଶୁକ କହିଲେ ଅନୁରାଗେ ॥
ପୁରାଣ ଭାଗବତ ବାଣୀ । ସୁଜନେ ତର ଏହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟସିକ୍ୟାଂ ଏକାଦଶସ୍କନ୍ଧେ ବିପ୍ର ଶାପ କଥନଂ ନାମ ପ୍ରଥମୋଽଧ୍ୟାୟଃ*

## ଦ୍ୱିତୀୟ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁଣ ପରୀକ୍ଷ ମନ ଥିରେ । ଅଦ୍ଭୁତ ଦ୍ୱାରକା ନଗରେ ॥
ଗୋବିନ୍ଦ ଭୁଜ ଦଣ୍ଡବଳେ । ଯାଦବେ ଥାନ୍ତି ସୁଖ ଭୋଳେ ॥
ବାସବ ଆଦି ଦେବ ଗଣେ । ଯହିଁ ସେବନ୍ତି ଅନୁକ୍ଷଣେ ॥
ଯହିଁ ନାରଦ ଥାନ୍ତି ନିତ୍ୟେ । କୃଷ୍ଣ ମହିମା ଭାବ ଚିତ୍ତେ ॥
ମଞ୍ଚେ ମନୁଷ୍ୟ ଦେହ ଧରି । କେ କୃଷ୍ଣ ଭାବ ପରିହରି ॥
ଭବ ବିରଞ୍ଚି ଯାକୁ ଚିନ୍ତେ । ପାଦ ସେବନ୍ତି ଅନୁବ୍ରତେ ॥
ନାରଦ ମୁନି ଏକ ଦିନେ । ଗଲେ ବସୁଦେବ ଭୁବନେ ॥
ପବିତ୍ର ଜଳେ ପାଦ ଧୋଇ । ଆସନେ ବସାଇଲେ ନେଇ ॥
ଚରଣେ କରି ନମସ୍କାର । ଭାବେ ବୋଲଇ ଯଦୁବୀର ॥

### ଶ୍ରୀ ବସୁଦେବ ଉବାଚ

ଧନ୍ୟ ଜୀବନ ଆଜ ମୋର । ଦେଖିଲି ଚରଣ ତୁମ୍ଭର ॥
ତୁମ୍ଭେ ଯେ ଲୋକ ପରିତ୍ରାଣେ । ବ୍ରହ୍ମାଣ୍ଡ ବୁଲ ଅନୁକ୍ଷଣେ ॥
ପିତାମାତାଙ୍କ ଆଗମନ । ପୁତ୍ରଙ୍କୁ କଲ୍ୟାଣ ଯେସନ ॥
ବିଷ୍ଣୁ ଭଗତ ଜନ ଦେଖି । ନିର୍ମଳ ହୋଏ ଚର୍ମ ଆଖି ॥
ଜନ୍ତୁଙ୍କୁ ଦେବଙ୍କ ଚରିତ । ସାଧଇ ଦୁଃଖ ସୁଖ ଅର୍ଥ ॥
ସେ ହରି ଚରିତ ପ୍ରସାଦ । ସାଧୁଙ୍କୁ ନ କରେ ବିଷାଦ ॥
ଯେଣୁ ଭଗତ ଜନ ନିତ୍ୟେ । ଭାବେ ଭଜନ୍ତି ପ୍ରାଣୀ ହିତେ ॥
ମନିଷ୍ୟମାନେ ଭୋଗଚିନ୍ତି । ଅନ୍ୟ ଦେବତାଙ୍କୁ ପୂଜନ୍ତି ॥
ଦେବେ ତାହାଙ୍କୁ ସେ ପ୍ରକାରେ । ଭଜନ୍ତି ଭକ୍ତି ଅନୁସାରେ ॥
ସଦ୍ଭାବେ ଦେବେ ଛାୟାରତ । ବସନ୍ତି କର୍ମର ଆଏତ ॥
ଯେଣୁ ସେ କର୍ମ ଅନୁସାରେ । ପ୍ରାଣୀଙ୍କି ତୋଷୁଥାନ୍ତି ନରେ ॥
ସେ ଫଳ କର୍ମ ଅନୁମତେ । ପ୍ରାଣୀଙ୍କୁ ଭୁଞ୍ଜନ୍ତି ଜଗତେ ॥
ବିଷ୍ଣୁ ଭଗତି ପ୍ରାଣୀଙ୍କର । ଜଗତେ ନାହିଁ ନିଜ ଘର ॥
ଦୟା କରନ୍ତି ସର୍ବଲୋକେ । ଦିନ ହରନ୍ତି ଦୁଃଖ ସୁଖେ ॥
ଆଜି ମୁଁ ଦେଖି ତୁମ୍ଭ ପାଦ । ଲଭିଲି ସକଳ ସମ୍ପଦ ॥
ତଥାପି ବଇଷ୍ଣବ ଧର୍ମ । ବିଷ୍ଣୁର ଅର୍ଥେ ଯେତେ କର୍ମ ॥
ତାହା ଶୁଣିତେ ମୋର ଇଚ୍ଛା । ପୁଚ୍ଛଇ କହ ଧର୍ମ ଦୀକ୍ଷା ॥
ଯାହାର କଥନ ଶ୍ରବଣ । ସକଳ ଭୟ ନିବାରଣ ॥
ପୂର୍ବେ ମୁଁ ତପ ଯୋଗ ବଳେ । ସେବିଲି ବିଷ୍ଣୁ ପାଦତଳେ ॥
ବିଷ୍ଣୁ ଯାଚିଲେ ମୋତେ ବର । ମୋର ଅଦୃଷ୍ଟେ ବଳୀୟାର ॥
ମୋକ୍ଷ ନ ମାଗି ପୁତ୍ରକାମେ । ପଡ଼ିଲି ମୋହ ଜଡ଼ ଭ୍ରମେ ॥
ଏବେ ଉପାୟ ତୁମ୍ଭେ କର । ଯେମନ୍ତେ ତୁଟେ ଭ୍ରମ ମୋର ॥
ବସୁଦେବର ବାକ୍ୟ ଶୁଣି । ମନସାନନ୍ଦେ ବ୍ରହ୍ମମୁନି ॥

### ନାରଦ ଉବାଚ

ବୋଲନ୍ତି ଶୁଣ ଯଦୁବୀର । ଧନ୍ୟ ହୋ ଜୀବନ ତୁମ୍ଭର ॥
ତୋ ଚିତ୍ତ ଭଗବତ ଧର୍ମେ । କହିଲା ପୂର୍ବ ପୁଣ୍ୟ କର୍ମେ ॥
ଶୁଣ ହେ ଧର୍ମର ମହିମା । କେ ଜାଣିପାରେ ଗୁଣ ସୀମା ॥
ଯେବେ ଶର୍ବଣେ ଏହାଶୁଣି । ମନ ବଚନେ ପରିମାଣି ॥
ଯଦ୍ୟପି ଗୁରୁ ବିପ୍ର ଦ୍ରୋହୀ । ଅନ୍ୟ ପଠିତ ଯେବେ ହୋଇ ॥
ତାର ଶ୍ରବଣେ ଯେବେ ପଶେ । ସର୍ବ କଳୁଷ ହେଲେ ନାଶେ ॥
ଧନ୍ୟ ଯାଦବ ତୋ ଜୀବନ । କୃଷ୍ଣେ ନିବେଶିଲୁ ମୋ ମନ ॥
କୃଷ୍ଣର ଶର୍ବଣ କୀର୍ତ୍ତନ । ଅଶେଷ ଦୁରିତ ଦହନ ॥
ଶୁଣ କହିବା ସାବଧାନେ । ଯେ ଇତିହାସ୍ୟ ପୁରାତନେ ॥
ପୂର୍ବେ ହୋ ବିଦେହ ମଣ୍ଡଳେ । ନିମି ରାଜାର ଯଜ୍ଞ କାଳେ ॥
ଦିବ୍ୟ ପୁରୁଷ ନବ ଋଷି । ମିଳିଲେ ଯଜ୍ଞ ଶାଳେ ଆସି ॥
ସେ ନବ ଋଷି ମହାଜନ । ଶୁଣ ହୋ ତାହାଙ୍କ ବିଧାନ ॥
ବ୍ରହ୍ମାର ଶରୀରୁ ସମ୍ଭବ । ଯେ ମନୁ ନାମ ସ୍ୱାୟମ୍ଭୁବ ॥
ତାର ତନୁଜ ପ୍ରିୟବ୍ରତ । ସୁଗୁଣ ସାଧୁ ଶୁଚିବନ୍ତ ॥
ପ୍ରିୟବ୍ରତର ପୁତ୍ର ଦୁଇ । ଅଗ୍ନିଧ ଅଗ୍ନିବାହୁ ହୋଇ ॥
ଅଗ୍ନିଧ ସୁତ ଲାଭି ନାମ । ସୁନ୍ଦର ସର୍ବ ଗୁଣଧାମ ॥
ଋଷଭ ତାହାଙ୍କ କୁମର । ସେ ବିଷ୍ଣୁ ଅଂଶେ ଅବତାର ॥
ତାର ମହିମା ଗୁଣ ଯେତେ । ଅନ୍ତକେ କରିବ ଜଗତେ ॥
ଅଶେଷ ମହିମା ତାହାର । ଭରଥ ତାହାର କୁମର ॥
ଶତେ ପୁତ୍ରରେ ଜ୍ୟେଷ୍ଠ ସେହି । ଅପରେ ଅନେଶତ ଭାଇ ॥
ସକଳେ ବେଦ ବିଦ୍ୟାସାର । ପବିତ୍ର ପୁଣ୍ୟ କଳେବର ॥
ଭରଥ ଥାଇ ପୁଣ୍ୟ କର୍ମେ । ଭାରତ ଭୂମି ଯାର ନାମେ ॥
ଭୁବନେ ରାଜ ଭୋଗ ଭୁଞ୍ଜି । ବନେ ପଶିଲା ରାଜ୍ୟତେଜି ॥
ତପେ ତୋଷିଲା ଭାବଗ୍ରାହୀ । ଜାତିସ୍ମର ସେ ଜାତ ହୋଇ ॥
ଏମନ୍ତେ ତିନି ଜନ୍ମ ଅନ୍ତେ । ପଶିଲା କୃଷ୍ଣ ପାଦ ଗତେ ॥
ଅଶେଷ ଦୁଃଖ ନାଶ ଗଲା । ଜନ୍ମ ମରଣ ନିସ୍ତରିଲା ॥
ଆଉ ଯେ ଅନେଶତ ଭାଇ । ତାଙ୍କ ମହିମା ଶୁଣ କହି ॥
ତାହାଙ୍କ ମଧ ନବ ସୁତ । ସାଧୁ ସୁଗୁଣ ବଳମନ୍ତ ॥
ହୋଇଲେ ନବ ଦ୍ୱୀପେ ରାଜା । ସୁଖେ ପାଳିଲେ ଜନ ପ୍ରଜା ॥
ଏକ ଅଧିକ ନବସୁତେ । ବେଦ ଅଭ୍ୟାସି ଦୃଢ଼ ଚିତ୍ତେ ॥
ତପେ ଆରାଧି ନାରାୟଣ । ଜଗତେ ହୋଇଲେ ବ୍ରାହ୍ମଣ ॥
ଶେଷେ ଯେ ନବସୁତ ଥିଲେ । ନିର୍ଗୁଣ ଯୋଗ ଅଭ୍ୟାସିଲେ ॥

ସେ ଆତ୍ମଜ୍ଞାନୀ ସାଧୁ ଧୀର । ଜଟା ବିଭୂତି ଦିଗମ୍ବର ॥
ମିତ୍ର ଅଇରି ପକ୍ଷ ସମ । ଶୁଣ ହୋ ତାହାଙ୍କର ନାମ ॥
କବି ହବିର ଅନ୍ତରୀକ୍ଷ । ଏ ତିନି ଜ୍ଞାନୀ ଧ୍ୟାନେ ଦକ୍ଷ ॥
ପ୍ରବୁଦ୍ଧ ସୁଂପିପ୍ଳାୟନ । ଷଷ୍ଠେ ଅବିରହୋତ୍ର ନାମ ॥
ଦ୍ରୁମିଳ ଚର୍ମସ ଏ ଦୁଇ । କର ଭାଜନ ନବଭାଇ ॥
ଏହାଙ୍କ ମନ କୃଷ୍ଣ ଦେହେ । କପଟେ ଥାନ୍ତି ଏକ ସ୍ନେହେ ॥
ଦେଖନ୍ତି ସର୍ବ ଜୀବ ଦେହେ । ଏକ ଗୋବିନ୍ଦୁ ଭିନ୍ନ ନୋହେ ॥
ଯେ ଅବ୍ୟାହିତ ଇଷ୍ଟ ଗତି । ଏମନ୍ତେ ନବ ବିପ୍ରେଥାନ୍ତି ॥
ସିଦ୍ଧ ଗନ୍ଧର୍ବ ସୁର ମେଳେ । ଯକ୍ଷ ରାକ୍ଷସ ରସାତଳେ ॥
ଏ ଆଦି ନାନା ଦେଶ ପୁରେ । ଭ୍ରମନ୍ତି ନବ ସହୋଦରେ ॥
ଶିବ ସୁରଭି ଲୋକେ ଥାନ୍ତି । ବ୍ରହ୍ମାର ଭୁବନେ ମିଳନ୍ତି ॥
ଏମନ୍ତେ ନିମି ଯଜ୍ଞ ଶାଳେ । ମିଳିଲେ ନବ ସହୋଦରେ ॥
ତାହାଙ୍କୁ ଯଜ୍ଞ ଶାଳେ ଦେଖି । ଜନକ ଆସନ ଉପେକ୍ଷି ॥
ଦେଖିଲା ଦିବ୍ୟ ତେଜମୟେ । ରବି ଶଶାଙ୍କ ସମ ନୁହେଁ ॥
ଅଗ୍ନି ଯେ କୁଣ୍ଡ ମଧ୍ୟେ ଥିଲା । ବିପ୍ରଙ୍କ ସଙ୍ଗତେ ଉଠିଲା ॥
ଆନନ୍ଦ ମନେ ନୃପବର । ପୂଜିଲା ମୁନିଙ୍କ ପୟର ॥
ପ୍ରନାମ କରି ତାଙ୍କ ପାଦେ । ଆସନେ ବସାଇ ଆନନ୍ଦେ ॥
କର ଯୁଗଳ ଶିରେ ଦେଇ । ବୋଲଇ ନିସ୍ତରିଲି ମୁହିଁ ॥
ତୁମ୍ଭ ଚରଣ ଯୁଗ ଦେଖି । ନିର୍ମଳ କଲି ଚର୍ମ ଆଖି ॥

## ନିମି ଉବାଚ

ତୁମ୍ଭେ ଯେ ନବ ବିପ୍ରବର । ନିଚୟେ କୃଷ୍ଣ ଅନୁଚର ॥
ସଂସାରେ ତୁମ୍ଭର ଭ୍ରମଣ । ଅଶେଷ ଲୋକ ପରିତ୍ରାଣ ॥
ଏ ଯେ ମନୁଷ୍ୟ କଳେବର । ଦୁର୍ଲ୍ଲଭ କ୍ଷଣିକ ଭଙ୍ଗୁର ॥
ତଥାପି ମନୁଷ୍ୟ ଶରୀରେ । ଯେ ଭଜେ ଗୋବିନ୍ଦ ପୟରେ ॥
ତାହାଙ୍କୁ ଦେଖନ୍ତି ଯେ ପ୍ରାଣୀ । ତରନ୍ତି ଭବ ତରଙ୍ଗିଣୀ ॥
କ୍ଷଣେ ନିମିଷେ ଲବ ଲେଶେ । ଯେ ବସେ ସାଧୁଜନ ପାଶେ ॥
ଚିତ୍ତେ ଚିନ୍ତଇ ବିଷ୍ଣୁଭାବ । ତାହାଙ୍କୁ ବୋଲି ନିଧି ଲାଭ ॥
ସେ ଲାଭ ତୁମ୍ଭର ବଚନ । ମୁଁ ଯେବେ ଶୁଣିତେ ଭାଜନ ॥
ସେ ଧର୍ମ ଆଚରି ଯେ ପ୍ରାଣୀ । ଚିତ୍ତେ ଚିନ୍ତଇ ଚକ୍ରପାଣି ॥
ସେ ହରି ତାଙ୍କ ବଶେ ଥାଇ । ଏ ମାୟା ତାଙ୍କୁ ନ ଲାଗଇ ॥

## ନାରଦ ଉବାଚ

ଏମନ୍ତେ ନିମି ବାକ୍ୟ ଶୁଣି । ବୋଲନ୍ତି ନବ ମହାମୁନି ॥
ଶୁଣ ରାଜନ ଏକ ଚିତ୍ତେ । ଯାହା କହିବୁ ଭାଗବତେ ॥

## କବି ଉବାଚ

କବି ବୋଲନ୍ତି ରାୟେ ଶୁଣ । ଯେ ଧର୍ମେ ଚିତ୍ତ ମୋ ନିର୍ଗୁଣ ॥
ନାନା ପ୍ରକାରେ ହରି ପାଦେ । ଯାହାର ଚିତ୍ତ ଅପ୍ରମାଦେ ॥
ଭଜଇ ଜାଣି ବିଷ୍ଣୁ ମାୟା । ସେ ହରି ତାରେ କରେ ଦୟା ॥
ସକଳ ମଙ୍ଗଳ କାରଣ । ବିଷ୍ଣୁର ଅଭୟ ଚରଣ ॥
ଅଶେଷ ଦୁଃଖ ନାଶ କରେ । ନିତ୍ୟ ଯେ ବିଷ୍ଣୁ ନାମ ଧରେ ॥
ଦେଇ ସମ୍ପଦ ଦାରାସୁତ । ଏଣେ ମୋହିତ ଯାର ସୁତ ॥
କାମ ସଂକଳ୍ପ ଦିନେଦିନେ । ବଢ଼ଇ ବିଷୟ ଚିନ୍ତନେ ॥
ମୟାରେ ମନ ଅଗୋଚର । ଭ୍ରମଇ ଅଶେଷ ପ୍ରକାର ॥
ବିଷ୍ଣୁର ଅଭୟ ଚରଣ । ଅଶେଷ ଦୁଃଖ ନିବାରଣ ॥
ହରି ଚରଣ ସେବା ଅର୍ଥେ । ନାନା ଉପାୟେ ବେଦ ପଥେ ॥
ଭାବେ ଅଭାବ ମନେ ଗୁଣୀ । ସୁଖେ ତରନ୍ତି ତାହା ଶୁଣି ॥
ଏ ଭାଗବତ ଧର୍ମସାର । ଏ ଧର୍ମେ ଲଭେ ଚକ୍ରଧର ॥
ଏଣେ ଯେ ଚିନ୍ତେ କୃଷ୍ଣପାଦ । ତାହାକୁ ନ ପଡ଼େ ପ୍ରମାଦ ॥
ହୃଦେ ଗୋବିନ୍ଦ ପଦଲାୟି । ନୟନ ବୁଜି ତେବେ ଧାୟି ॥
ପଥ ନ ଜାଣି ଯେବେ ବୁଡ଼େ । ସେ ପ୍ରାଣୀ କେବେହେଁ ନପଡ଼େ
ବେଦ ବଚନ ଧର୍ମଶାସ୍ତ୍ର । ଏ ବେନି ବିପ୍ରଙ୍କର ନେତ୍ର ॥
ଏକ ନ ଥିଲେ କାଣ ହୋଇ । ବେନି ଅଭାବେ ଅନ୍ଧ ସେହି ॥
ଏମନ୍ତ ବିପ୍ର ଯେବେ ଚିନ୍ତେ । ବିଷ୍ଣୁଙ୍କୁ ଭଜେ ଅବିରତେ ॥
ତାହାର ଅମଙ୍ଗଳ ନାହିଁ । ସକଳ ପାପୁଁ ସେ ତରଇ ॥
ଏ ଧର୍ମ ଭାଗବତ ମତ । ଈଶ୍ୱର ବଚନ ନିର୍ମିତ ॥
ଏହା ଯେ ନ କରଇ ପ୍ରାଣୀ । ଧର୍ମ ସଂଶୟ ମନେ ଗୁଣୀ ॥
ମନ ବଚନ ଦେହେ ଚିନ୍ତି । ଯେ ଅନ୍ୟ ଧର୍ମ ଆଚରନ୍ତି ॥
ଜୀବର ସୁଧର୍ମ ଏ ଭାବ । ହରି ଚରଣେ ସମର୍ପିବ ॥
ଏଣେ ସମସ୍ତ ଜ୍ଞାନ ପାଇ । ଅଜ୍ଞାନତମ ନାଶ ଯାଇ ॥
ଏ ଭାଗବତ ଧର୍ମଗୁଣ । ଈଶ୍ୱର ବଚନ ପ୍ରମାଣ ॥
ଶୁଣ ବିଦେହ ମହୀପତି । ଯେ ହରି ଭାବ ନ ଜାଣନ୍ତି ॥
ନାନା ପ୍ରକାରେ ତପ କରେ । ସେ ପ୍ରାଣୀ ସଂସାରୁ ନ ତରେ ॥
ହରି ବିମୁଖ ପ୍ରାଣୀ ଯେତେ । ସେ ଥାନ୍ତି ପଶୁଙ୍କ ସଙ୍ଗତେ ॥
ତାହାଙ୍କୁ ମୋହେ ଦେବମାୟା । ବିଷୟା ରସେ ବଡ଼ ସ୍ନେହା ॥
ଦେହକୁ ବସ୍ତୁ ପ୍ରାୟ ମଣେ । ବଇରୀ ମିତ୍ର ପରିମାଣେ ॥
ଭ୍ରମନ୍ତି ଶୋକ ମୋହ ପଥେ । ଅଜ୍ଞାନ ବୁଦ୍ଧି ଭ୍ରର୍ମ ଅର୍ଥେ ॥
ତେଣୁ ସଂସାର ମୋହେ ଜଡ଼ି । ଦୁଃଖ ସଂକଟେ ଥାନ୍ତି ପଡ଼ି ॥
ଯାର ମାୟାରେ ଏତେ ଗତି । ଏ ଭାବ ବୁଦ୍ଧ ଜନେ ଚିନ୍ତି ॥

କୃଷ୍ଣ ଭଜନ୍ତି ଏକ ମନେ । ନିର୍ମଳ ଧ୍ୟାନ ତତ୍ତ୍ୱ ଜ୍ଞାନେ ॥
ମନେ ଭାବନ୍ତି ଜ୍ଞାନ ଲାଭେ । ଯେମନ୍ତେ ଗୁରୁଶିଷ୍ୟ ଭାବେ ॥
ଜୀବ ଅଜ୍ଞାନ ଭାବ ଦେଖ । ଦୁଃଖକୁ ମଣେ ମହାସୁଖ ॥
ଯେସନେ ସ୍ୱପ୍ନ ମନୋରଥେ । ଭ୍ରମଇ ନିଦ୍ରାର ଆୟେତେ ॥
ମଣଇ ସତ୍ୟ ପ୍ରାୟେ ତାହା । ନିଦ୍ରା ବୋଧନେ ସର୍ବମାୟା ॥
ଏ ମନ କୃଷ୍ଣ ପାଦେ ଦେଲେ । ଏ ମାୟା ନ ଲାଗଇ ଭଲେ
ଦୁର୍ଗମ ପଥ ଏ ଭଜନ । ଭୟେ ଭାଜିଲେ ଯୋଗୀଜନ ॥
ଏବେ କହିବା ଶୁଣ ରାୟେ । ଯେ ହରି ଭଜନ ଉପାୟେ ॥
କୃଷ୍ଣର ଜନ୍ମ କର୍ମ ଯେତେ । ନାନା ପ୍ରକାରେ ଏ ଜଗତେ ॥
ସ୍ମରଣ ସର୍ବଣ ମଙ୍ଗଳ । ତାରଇ ଭୁବନ ମଣ୍ଡଳ ॥
ଯେ ନାମ ଭାବେ ଚିତ୍ତ ଜଡ଼ି । ସବୁରେ ଲାଜ ଭୟ ଏଡ଼ି ॥
ଭାବି ଡାକିବ ନାମ ଗୁଣ । ଶୁଭିବ ସକଳ ଶର୍ବଣ ॥
ଆନନ୍ଦେ ତୋଳି ବେନିକର । କଣ୍ଠ ଗର୍ଜନ ଉଚ୍ଚସ୍ୱର ॥
ଉନ୍ମତ୍ତ ପ୍ରାୟେ ନୃତ୍ୟକରେ । ଲୋକ ବେଭାର ପରିହରେ ॥
ଗଗନ ସମୀରଣ ଜ୍ୟୋତି । ଯେବା ସଲିଳ ଚିତା ଧରି ॥
ଦିଗ ସହିତ ଯେବା ଦ୍ରୁମ । ପର୍ବତ ସାଗର ସଙ୍ଗମ ॥
ଯେ ସର୍ବ କୃଷ୍ଣର ଶରୀର । ଜନ୍ତୁଙ୍କ ବାହ୍ୟ ଅଭ୍ୟନ୍ତର ॥
ନିଚଏ ଜାଣି ଏକ ଚିତ୍ତେ । ପ୍ରନାମ କରୁଥିବେ ନିତ୍ୟେ ॥
ଅମୃତ ବିନୟ ବଚନ । କହି ତୋଷିବ ପ୍ରାଣୀମନ ॥
ଏ ଭାବେ ଲଭେ କୃଷ୍ଣପାଦ । ହରଇ ବିଷୟ ବିଷାଦ ॥
ପୂର୍ବ ତପ ଫଳେ ଏ ଭାବେ । ଭ୍ରତ ମଣ୍ଡଳେ ଜନ୍ମ ଲଭେ ॥
ନିର୍ମଳ ଜ୍ଞାନ ହୃଦ ଗତେ । ଯେବେ ସେବଇ ଏକ ଚିତ୍ତେ ॥
ଦୁର୍ଲ୍ଲଭ କର୍ମ ଏ ବଚନ । ଯେ କରେ ଶର୍ବଣ କ୍ରୀତ୍ତନ ॥
ଅନେକ ଜନ୍ମେ ଏହା ସାଧି । ନିଗମ ବାକ୍ୟ ଏ ପ୍ରସିଦ୍ଧି ॥
ଶୁଣ ରାଜନ ପୁଣ୍ୟ ଦେହୀ । ସୁହୃଦ ଶିକ୍ଷେ ଏହା କହି ॥
ଯେ ଭକ୍ତି ଯୋଗ ପ୍ରାଣୀଙ୍କର । ଶର୍ବଣ କୀର୍ତ୍ତନ ଗୋଚର ॥
ଏଣେ ଯେ ତତ୍ତ୍ୱ ଜ୍ଞାନ ସ୍ୱରେ । ବିଷୟ ରସ ନ ସୁମରେ ॥
ବଢ଼ଇ ଦିନେ ଦିନେ ଜ୍ଞାନ । ଜନ୍ତୁଙ୍କ ଭୋଜନ ଯେସନ ॥
ଅନ୍ନ ଭୋଜନେ ପ୍ରତି ଗ୍ରାସ । କ୍ଷୁଧା ପିପାସା ହୁଏ ନାଶ ॥
ସନ୍ତୋଷେ ତୁଷ୍ଟି ପୁଷ୍ଟି ଲଭେ । ନିଦ୍ରା ଆସନ ସୁଖ ଲାଭେ ॥
କୃଷ୍ଣ ଭଜନ ଏହି ମତେ । ଜ୍ଞାନୀ ସାଧନ୍ତି ଏ ଜଗତେ ॥
ଜନ୍ମଇ ବିଷୟ ବୈରାଗ । ମାୟା ଜଡ଼ିତ ସୁଖ ତ୍ୟାଗ ॥
ଅଜ୍ଞାନ ହରେ ଦିବ୍ୟଜ୍ଞାନେ । ଏ ଅନୁଭବ ଅଭ୍ୟାସଣେ ॥
ଆନନ୍ଦ ରସ ପାଇ ନିତି । ଚିତ୍ତେ ପ୍ରବେଶ ହୋଏ ଶାନ୍ତି ॥
ଶାନ୍ତି ଭଜଇ ରସ ଭରେ । ତ୍ରିତୟେ ତାପୁ ସେ ନିସ୍ତରେ ॥
ଏମନ୍ତ କବିର ବଚନ । ବିଦେହ ଶୁଣି ତୋଷମନ ॥
ସୁଖ ସଂକଳ୍ପେ କୃତକୃତ । ବୋଲଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧ ନିମିନବେ ବିପ୍ର ସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ

### ରାଜା ଉବାଚ

ଏମନ୍ତ ବିଦେହ ବଚନ । ମନେ ବିଚାରି ତତ୍ତ୍ୱଜ୍ଞାନ ॥
ଆନନ୍ଦେ ଶିରେ କରଦେଇ । ବୋଲଇ ନିସ୍ତରିଲ ମୁହିଁ ॥
ତୁମ୍ଭେ ନିର୍ମଳ ଯୋଗୀଗଣ । କହିବା ଭଗତ ଲକ୍ଷଣ ॥
କି ରୂପେ ଭଜନ୍ତି ଜଗତେ । କୃଷ୍ଣ ଭଜନ ଅନୁମତେ ॥
କିବା କହନ୍ତି ବାକ୍ୟସାର । କେ ଧର୍ମ କରନ୍ତି ଆଚାର ॥
ତାହାକୁ ଜାଣିବା କେମନ୍ତେ । କହ ସୁଦୟା ଚିତ୍ତେ ମୋତେ ॥

### କବି ଉବାଚ

ହବିରହୋତ୍ର ତାହା ଶୁଣି । ବୋଲନ୍ତି ଶୁଣ ନୃପମଣି ॥
କୃଷ୍ଣ ଭଜନ ଏ ସଂସାର । ପ୍ରଚରେ ତ୍ରିବିଧ ପ୍ରକାର ॥
ଉତ୍ତମ ମଧମ ପ୍ରାକୃତ । ଯାହାର ଲକ୍ଷଣ ଯେମନ୍ତ ॥
ତାହା କହିବା ଶୁଣ ଏବେ । ରାଜନ ପଚାରିଲୁ ଯେବେ ॥
ସକଳ ଦେହେ ନାରାୟେଣ । ବସନ୍ତି ଅନାଦି କାରଣ ॥
ସେ ନାରାୟେଣ ଦେହ ଯେତେ । ବସନ୍ତି ଭାବ ଅନୁମତେ ॥
ସେ ଭାବେ ଦୃଢ଼ ଯାର ମନ । ସେ ପ୍ରାଣୀ ଭଗତ ଉତ୍ତମ ॥
ଜନ୍ମ ମରଣ ଯାର ମନ । ନ ମଣେ କ୍ରିୟା ଅଭିମାନ ॥
ସଜାତି କୁଳଧର୍ମ ବର୍ଣ୍ଣ । ଯେ ଅହଂକାରେ ନୋହେ ଛନ୍ନ ॥
ଉତ୍ତମ ଲକ୍ଷଣ ତା ଜାଣି । ଭଗତ ମଧ୍ୟେ ପରିମାଣି ॥
ଯାହାର ସୁତ ବିତ ଦେହେ । ପରମ ଆତ୍ମା ବୁଦ୍ଧି ନୋହେ ॥
ସକଳ ଜୀବେ ସମବୁଦ୍ଧି । ଉତ୍ତମ ଭାବେ ଏ ପ୍ରସିଦ୍ଧି ॥
କେବେ ହେଁ ନୁହେଁ ଜ୍ଞାନ ହ୍ରାସ । ସେ ପ୍ରାଣୀ ନାରାୟଣ ଅଂଶ ॥
ସିଦ୍ଧ ଯୋଗୀନ୍ଦ୍ର ମୁନି ଗଣେ । ଚିନ୍ତନ୍ତି ଯେ ହରି ଚରଣେ ॥
ଭବ ବିରଞ୍ଚି ଯାର ପାଦେ । ଧ୍ୟାନେ ଚିନ୍ତନ୍ତି ଅପ୍ରମାଦେ ॥
ସେ ପାଦ ପଦ୍ମେ ନିତ୍ୟେ ଚିନ୍ତି । ଲବ ନିମିଷେ ନ ଛାଡ଼ନ୍ତି ॥
ନୁହନ୍ତି ମାୟାରେ ମୋହିତ । ସେ ପ୍ରାଣୀ ମହା ଭାଗ୍ୟବନ୍ତ ॥

ବିଷ୍ଣୁ ଭଗତ ସେ ପ୍ରଧାନ । ତା ଦେଖି ନିସ୍ତରନ୍ତି ଜନ ॥
କୃଷ୍ଣର ପାଦ ଲଖପନ୍ତି । ଚନ୍ଦ୍ରକିରଣ ପ୍ରାୟ ଜୋତି ॥
ସେ ଯାର ହୃଦରେ ପ୍ରକାଶେ । ଅଶେଷ ଘୋର ତମ ନାଶେ ॥
ଏ ଭକ୍ତ ଉତ୍ତମ ଲକ୍ଷଣ । ମଧ୍ୟମ ଭାବକ ହୁ ଶୁଣ ॥
ହରିର ପାଦେ ଆଶ୍ରେ କରେ । ଭକ୍ତି ସମ୍ଭୃତ ବୁଦ୍ଧି ଧରେ ॥
ସଂସାର ମଧ୍ୟେ ଯେତେ ଜନ । ସର୍ବତ୍ର ହୃଦେ ଭଗବାନ ॥
ସତ ଅସତ କ୍ରୀଡ଼ା କରି । ଏ ଭାବ ହେତୁ ନ ବିଚାରି ॥
ଅସଦ ସୁଖ ବୋଲି ଜାଣି । ତାରି ଆସନ ପରିମାଣି ॥
ସ୍ୱ ପ୍ରଜ୍ଞା ଭାବେ ଦୟା କରେ । ଏହୁ ପଣ୍ଡିତ ହେତୁ ଧରେ ॥
ଯେ ପ୍ରିୟା ପ୍ରିୟ ଶତ୍ରୁମିତ୍ର । ଏ ସର୍ବ କୃଷ୍ଣର ଚରିତ ॥
ଏହା ନବୁଝି ଅହଂକାରେ । ମିତ୍ର ବଇରୀ କ୍ଷେମ କରେ ॥
ମାତ୍ର ନ ଧରେ ଗୁଣ ଦୋଷ । ଘେନି ଆପଣା ଶ୍ରେଷ୍ଠ ଅଂଶ ॥
କର୍ମ କରଇ ବିଧିମତେ । ଫଳ ଆକାଂକ୍ଷା କରି ଚିତ୍ତେ ॥
ପରେ କହଇ ଦୁଇମତ । ଆପଣା ନାହିଁ ସେ କର୍ତ୍ତୃତ୍ୱ ॥
ପ୍ରତିଷ୍ଠା ଗୁଣେ କରେ ଶ୍ରମ । ଏଣୁ ସେ ବୋଲାଇ ମଧ୍ୟମ ॥
ପ୍ରାକୃତ ଭାବ ଏବେ ଶୁଣ । ଯେବେ ପୂଜଇ ନାରାୟେଣ ॥
କେବଳ ଲୌକିକର ମତେ । ଶ୍ରଦ୍ଧା ନଥାଇ ଅନ୍ତର୍ଗତେ ॥
ନ ସେବେ ବିଷ୍ଣୁର ଭଗତ । ଇତର ଦେଖେ ସର୍ବମତ ॥
ମନରେ ଅହଂକାର ଭରି । ଦଣ୍ଡେ ବିଚାରେ ଭକ୍ତିକରି ॥
ଏହା ପ୍ରାକୃତ ବୋଲି କହି । ତଥାପି ଭକ୍ତ ସେ ବୋଲାଇ ॥
ଯେ ରୂପେ ଯେଉଁଜନ ଭଜେ । ହରି ତା ହୃଦୟ ନ ତେଜେ ॥
ଚିତ୍ତେ ଚିନ୍ତନ୍ତେ କ୍ଷଣ ମାତ୍ର । ହରଇ ଅଶେଷ ଦୁରିତ ॥
ସେ ହରି ପାଦ ହୃଦେ ଧରି । ଭଗତ ଦୁସ୍ତରୁ ନିସ୍ତରି ॥
ଶୁଣ ବିଦେହ ମହୀପତି । ତ୍ରିବିଧ ବୈଷ୍ଣବଙ୍କ ରୀତି ॥
ଶ୍ରୀ ଏକାଦଶ ଭାଗବତ । କହଇ ବିପ୍ର ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୟାସିକ୍ୟାଂ ଏକାଦଶସ୍କନ୍ଧେ ତ୍ରିବିଧ ବୈଷ୍ଣବ କଥନଂ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ନିମି ଉବାଚ

ବୋଲନ୍ତି ନମି ପୁଣ୍ୟଦେହା । ଜଗମୋହନ ବିଷ୍ଣୁମାୟା ॥
କି ରୂପେ ସଂସାର ପ୍ରଚରେ । ପ୍ରାଣୀ ତା କେମନ୍ତେ ନିସ୍ତରେ ॥
ଗୋବିନ୍ଦ କଥା ସୁଧା ପାନ । ଶୁଣି ସନ୍ତୋଷ ନୋହେ ମନ ॥
ବିଷ୍ଣୁର ମାୟାରେ ମୁଁ ଭ୍ରମି । ଜନ୍ମ ମରଣ ପଥ ଶ୍ରମି ॥
ତାପେ ତାପିତ ମୋର ଦେହ । ଅମୃତ ପାନ ମୋତେ କହ ॥
ହରି କଥନେ ମୋତେ ରକ୍ଷ । ତା ଶୁଣି ବୋଲେ ଅନ୍ତରୀକ୍ଷ ॥

### ଅନ୍ତରୀକ୍ଷ ଉବାଚ

ଶୁଣ ରାଜନ ଶୁଦ୍ଧ ଚେତା । ଯେ ବିଷ୍ଣୁ ମାୟାର ବେବସ୍ଥା ॥
କେ ଜାଣି ପାରେ ତା ସଂସାରେ । ଶୁଣ କହିବା କିଛୁ ତୋରେ ॥
ଅନାଦି ପୁରୁଷ ଅନନ୍ତ । ଯେମନ୍ତେ ସ୍ରିଜିଲେ ଜଗତ ॥
ନିର୍ଲେପ ପ୍ରଭୁ ନାରାଏଣ । ମାୟାର ପରମ କାରଣ ॥
ସଂସାରେ କ୍ରୀଡ଼ା ଇଚ୍ଛା କରି । ଭାବେ ଈଶ୍ୱର ରୂପ ଧରି ॥
ଈଶ୍ୱର ତେଜେ ଅନ୍ତରାଳ । ତକ୍ଷଣେ ଉପୁଜିଲା କାଳ ॥
କାଳ ଶରୀରୁ ଆତ୍ମା ଜାତ । ସେ ନୋହେ ବିଷ୍ଣୁ ମାୟା ଗ୍ରସ୍ତ ॥
ଆତ୍ମା ସରୂପ ଆଶ୍ରେ କରି । ଜୀବ ଉପୁଜେ ମାୟାଧରି ॥
ସେ ଜୀବ ଈଶ୍ୱର ଆଏତ । ତ୍ରିଗୁଣ ମାୟାରେ ଜଡ଼ିତ ॥
ସେ ମାୟା ଜୀବ ଦେହେ ଥାଇ । ପ୍ରକୃତି ରୂପେ ସମ୍ଭବଇ ॥
ସେ ପୁଣ ରମେ ଆତ୍ମା ଆଦି । ଜଗତ କାରଣ ପ୍ରସିଦ୍ଧି ॥
ସେ ମାୟା ଜୀବକୁ ଅନାଇ । ଈଶ୍ୱର ବସେ କ୍ଷୋଭପାଇ ॥
ଯେସନେ ଜଳ ବିମ୍ବ ଜଳେ । ରୂପ ପ୍ରକାଶେ ବାୟୁ ବଳେ ॥
ସେ ରୂପେ ବିରାଟ ପୁରୁଷ । ଈଶ୍ୱର ମାୟାରେ ପ୍ରବେଶ ॥
ତାହାର ମଧ୍ୟେ ଲିଙ୍ଗ ରୂପେ । ଜୀବ ଭ୍ରମଇ ମାୟା କଳ୍ପେ ॥
ଜୀବ ବିଷୟ ଭୋଗ ଅର୍ଥେ । ନାନା ପ୍ରପଞ୍ଚ ଏ ଜଗତେ ॥
ସୃଷ୍ଟି କରଇ ଭଗବାନ । ଯେ ମାୟା ପ୍ରକାଶ ବିଧାନ ॥
ପ୍ରବେଶ ହୁଏ ତାର ମଧ୍ୟେ । ବେଦ ବିହିତ ଅନୁବାଦେ ॥
ବସଇ ଜୀବର ସମୀପେ । ନିଲେପ ଅନ୍ତର୍ଯ୍ୟାମୀ ରୂପେ ॥
ଜୀବକୁ ଭୁଞ୍ଜାଇ ଭୁଞ୍ଜଇ । ଅନ୍ତରେ ସାକ୍ଷ ରୂପେ ଥାଇ ॥
କରେ କରାଏ ସର୍ବ କର୍ମ । ଯେ ବିଧି ବେଦ ନିଜ ଧର୍ମ ॥
ସଙ୍ଗ ନୁହଇ କର୍ମ ଫଳେ । ନଳିନୀ ଦଳ ଯେହ୍ନେ ଜଳେ ॥
ଜୀବ ଈଶ୍ୱରେ ବଶ୍ୟ ହୋଇ । ଇନ୍ଦ୍ରିୟ ଅର୍ଥେ ଭୋଗ ପାଇ ॥
ଦେହକୁ କରେ ଅହଂକାର । ବୋଲଇ ସର୍ବ କର୍ମ ମୋର ॥
ଏଣୁ ଏ ଈଶ୍ୱର ଅଧୀନେ । ପଡ଼ଇ ସଂସାର ବନ୍ଧନେ ॥
ବୋଲଇ କରୁଅଛି ମୁହିଁ । ମୋ ତହୁଁ କର୍ତ୍ତା ଭିନେ ନାହିଁ ॥
ଦେହ ବନ୍ଧନେ ହୋଏ ଭ୍ରମ । କରଇ ନାନା ମତେ କର୍ମ ॥
ଦେହ ବିଯୋଗେ କର୍ମ ଘେନି । ଜନ୍ମ ଲଭଇ ନାନା ଯୋନି ॥
ଅଶେଷ ଦେହ କର୍ମ ଭୁଞ୍ଜେ । ଦୁର୍ଗମ ଦୁଃଖ ସୁଖ ବୁଝେ ॥
ଯାବତ ମାୟା ନୋହେ ହତ । ତାବତ ଦୁଃଖ ସୁଖ ଗ୍ରସ୍ତ ॥

ଭବ ବନ୍ଧନେ ଏହି ମତେ । ଭ୍ରମଇ ଦୁଃଖ ସୁଖ ଅର୍ଥେ ॥
ଯେ ମାୟା ବିଷ୍ଣୁର ବିଧାନ । ଶୁଣ ହୋ ବିଦେହ ରାଜନ ॥
ଯେ ନିରାକାର ଆଦିକନ୍ଦ । ନିର୍ଗୁଣ ନିତ୍ୟ ସଦାନନ୍ଦ ॥
ପ୍ରଳୟ କାଳେ ତେଜ ରାଶି । ବେଗେ ବ୍ରହ୍ମାଣ୍ଡ ମଧ୍ୟେ ପଶି ॥
ଅନାଦି ନିଧାନ ସେ ହରି । ସୃଷ୍ଟି ପ୍ରଳୟ ଅଧିକାରୀ ॥
ଶତେ ବରଷ ବେଦମତେ । ଜଳନ ବରଷେ ଜଗତେ ॥
ଦ୍ୱାଦଶ ସୂର୍ଯ୍ୟ ଶୂନ୍ୟେ ରହେ । ତିନି ଭୁବନେ ତେଜ ଦହେ ॥
ଅନନ୍ତ ମୁଖୁଁ ଅଗ୍ନି ଜାତ । ଦହଇ ପାତାଳ ସମସ୍ତ ॥
ଦହନ ଅନ୍ତେ ମେଘମାଳେ । ମିଳନ୍ତି ଗଗନ ମଣ୍ଡଳେ ॥
ସମ୍ବର୍ତ୍ତ ନାମ ସେ ବହନ୍ତି । ଶତେ ବରଷ ବରଷନ୍ତି ॥
ଧାରା ବରଷେ ଘୋର ବାୟେ । ପ୍ରମାଣ ହସ୍ତୀ ଶୁଣ୍ଢ ପ୍ରାୟେ ॥
ଜଳ ବିହୁନେ ସୃଷ୍ଟି ନାଶ । ତା ଦେଖି ବିରାଟ ପୁରୁଷ ॥
ତକ୍ଷଣେ ଛାଡ଼ି ତ୍ରିଭୁବନ । ବ୍ରହ୍ମ ଶରୀରେ ହୋଏ ଲୀଣ ॥
ଭୂତ ବିକାରେ ପଞ୍ଚଗୁଣ । ତ୍ରିଗୁଣ ଅହଂକାର ପୁଣ ॥
ମହତ ଦେହେ ବିଶ୍ରମଇ । ପ୍ରଳୟ ନ ପାରଇ ସହି ॥
ସେ ବୃନ୍ଦ ମାୟା ଅବଧାନ । ପ୍ରକୃତି ଦେହେ ହୋଏ ଲୀଣ ॥
ପ୍ରକୃତି ପ୍ରଳୟର ତ୍ରାସେ । ମିଳଇ ଈଶ୍ୱରର ପାଶେ ॥
ଏ ମାୟା ଜଗତ ମୋହେନୀ । ଖେଳଇ ଜୀବ ଆତ୍ମାଘେନି ॥
ଏ ବିଷ୍ଣୁମାୟାର କାରଣ । ସୃଷ୍ଟି ପାଳଣ ସଂହାରଣ ॥

## ରାଜନ ଉବାଚ

ଏମନ୍ତେ ଅନ୍ତରୀକ୍ଷ ବାଣୀ । ଜନକ ବୋଲେ ତାହା ଶୁଣି ॥
ଦୁର୍ବୋଧ ଈଶ୍ୱରର ମାୟା । ମୂଢ଼ କେମନ୍ତେ ଜାଣେ ତାହା ॥
ସେ ମାୟା ନିସ୍ତାର ଯେମନ୍ତେ । ଉପାୟେ ଥିଲେ କହ ମୋତେ ॥

## ପ୍ରବୋଧ ଉବାଚ

ପବୃଦ୍ଧ ବୋଲେ ଶୁଣ ରାୟେ । କହିବା ଯେ ଅବା ଉପାୟେ
ଦୁଃଖ ବିନାଶ ସୁଖ ପାଇ । ଭୁଞ୍ଜେ ଅଖଣ୍ଡ ତନୁ ବହି ॥
ଏମନ୍ତେ ଥାଇ ଗୃହ ବାସେ । କର୍ମ କରଇ ଫଳ ଆଶେ ॥
କାମିନୀ ସଙ୍ଗେ କରେ ଭାବ । କେବଳ ଦୁଃଖ ମାତ୍ର ଲାଭ ॥
ମରଣ ପଥ ହେତୁ ଧନ । ତାର ଅର୍ଜନେ ନିତ୍ୟମନ ॥
ଅନେକ ଶ୍ରମେ ତା ସଞ୍ଚଇ । ନିଶି ଦିବସେ ମନ ଦେଇ ॥
ନିରନ୍ତେ ହୃଦୟ ନିର୍ଦ୍ଦୟ । ଏଣୁଟି ଧନ ଦୁଃଖମୟ ॥
ଦୁଃଖେ ସଞ୍ଚିତ ଯେତେ ଧନ । ସେ ନୋହେ ସୁଖେ ପ୍ରୟୋଜନ ॥
ସୁତ ତନୟ ଦାରା ଦାସ । ଏ ସର୍ବ ବିଜୁଳି ପ୍ରକାଶ ॥
ଏହାଙ୍କ ସ୍ନେହେ ବନ୍ଦୀ ହୋଇ । ପୋଷଇ ଦୁଃଖ ଭାର ବହି ॥

ଏ ପୁଣି ଯାନ୍ତି କର୍ମେ ମତେ । ଶୋକ ସନ୍ତାପ ଦେଇ ଚିତ୍ତେ ॥
ଏହାଙ୍କ ସଙ୍ଗେ ଫଳ ଏହି । ଏ ଭାବେ ମୂଢ଼ ନ ଜାଣଇ ॥
ଉଭୟ ଲୋକ କରେ ନାଶ । ଏହି କାରଣେ ଗୃହବାସ ॥
ଭୁଞ୍ଜଇ ନିଜ କର୍ମ ଫଳ । ସେ ପୁଣି ନୋହଇ ନିଚଳ ॥
ଗୃହୀ ସଭାବେ ପୁଣ୍ୟ କରି । ସର୍ଗେ ବସଇ ଦେହଧରି ॥
କର୍ମେ ସେ ଭୋଗେ ଖୀନ ହୋଇ । କର୍ମ ସରିଲେ ଭୋଗ କାହିଁ
ପୁଣି ପଡ଼ନ୍ତି ଘୋର ତମେ । ଗତ ଆଗତ ପଥ ଶ୍ରମେ ॥
ଏ କଥା ବୁଝି ଗୁରୁପାଦେ । ଆଶ୍ରେ କରିବ ଅପ୍ରମାଦେ ॥
ଉତ୍ତମ ଗୁରୁ ଆଶ୍ରେ କରି । ଗୁରୁ ବଚନ ମନେ ଧରି ॥
ଯେ ଗୁରୁ ଜାଣେ ବେଦ ତତ୍ତ୍ୱ । ନିର୍ଗୁଣ ଆତ୍ମଜ୍ଞାନେ ରତ ॥
ସମ ଦରଶୀ ସତ୍ୟସାର । ତପ କଷନ ସହେ ଧୀର ॥
ନିରତେ ଥାଇ ପର ହିତେ । ଈଶ୍ୱର ମାୟା ଜାଣି ଚିତ୍ତେ ॥
ଏମନ୍ତେ ଗୁରୁପାଦେ ଭଜି । ହିଂସା କପଟ ଦୂରେ ତେଜି ॥
ସେବା କରିବ ଦୃଢ଼ଚିତ୍ତେ । ଯେ ଗୁରୁ ଶିଷ୍ୟଭାବ ମତେ ॥
ପ୍ରଥମେ ବିଷୟ ଅସଙ୍ଗୀ । ପ୍ରେମ ପୁଲକେ ତନୁ ଭଙ୍ଗୀ ॥
ମନ ନଦେବ ଅନ୍ୟ ସଙ୍ଗେ । ଚିତ୍ତ ନିବେଶି ଗୁରୁଅଙ୍ଗେ ॥
ସାଧୁ ସଙ୍ଗମ ସେବା ନିତ୍ୟେ । ଜନ୍ତୁଙ୍କୁ ଦୟା ହୃଦ ଗତେ ॥
ନିରନ୍ତେ ପ୍ରେମ ମିତ୍ର ଭାବ । ଏ ଆଦି ଯତନେ ଶିଖିବ ॥
ଶଉଚ ତପ ତ୍ୟାଗ ଗୁଣ । ମଉନ ବେଦ ଅଭ୍ୟାସଣ ॥
ଅହିଂସା ସତ୍ୟ ଦମ ଶମ । ଏ ବ୍ରହ୍ମଚର୍ଯ୍ୟ ଆଦି କର୍ମ ॥
ଜଗତ ବିଷ୍ଣୁ ଭାବେ ଚାହିଁ । ଉଦାସ ମତେ ଦେହ ବହି ॥
ନିର୍ଲେପ ପ୍ରଭୁ ସଙ୍ଗେ ଥିବ । ସଭାବ କର୍ମ ହିଁ କରିବ ॥
ଗୃହ ଆରମ୍ଭ ଗୃହୀ ମେଳେ । ନପଶି ରହିବ ନିରୋଳେ ॥
କର୍ମେ ଈଶ୍ୱର ଯାହା ଦେବ । ସେ ଭାବେ ଓଦର ପୋଷିବ ॥
ପରମ ଶାସ୍ତ୍ର ଭାଗବତେ । ଅଭ୍ୟାସ କରୁଥିବ ନିତ୍ୟେ ॥
ଯେ ଅନ୍ୟ ଶାସ୍ତ୍ରେ ଗୁଣ ଦୋଷ । ମୁଖେ ନ କରିବ ପ୍ରକାଶ ॥
ମନ ବଚନ ଯେଣେ ଦମି । ସେ ଶାସ୍ତ୍ରେ ହୋଉ ଥିବ ଶ୍ରମି ॥
ସତ୍ୟ କହିବ ନିତ୍ୟ ତୁଣ୍ଡେ । କେବେ ହେଁ ନଥିବ ପାଷାଣ୍ଡେ ॥
କୃଷ୍ଣର ଜନ୍ମ କର୍ମ ଗୁଣ । ନିରନ୍ତେ ଶର୍ବଣ ଗାୟନ ॥
ଦେହ ସଭାବେ ଯେତେ କର୍ମ । ବେଦ ବଚନ କୁଳଧର୍ମ ॥
ସକଳ କୃଷ୍ଣେ ସମର୍ପିବ । ନିଷ୍କାମ ରୂପେ ସୁଖେ ଥିବ ॥
ସଧର୍ମେ କରି ଯଜ୍ଞ ଦାନ । ଯେ ବସ୍ତୁ ପ୍ରିୟ ଆତ୍ମାମନ ॥
ଯେ ଅବା ସୁତ ଦାରାଧନ । କୃଷ୍ଣେ କରିବ ସମର୍ପଣ ॥
ସର୍ବ ସମ୍ପଦ କୃଷ୍ଣେ ଦେଇ । ଉଦାସୀ ଭାବେ ଦେହ ବହି ॥

ଯତ୍ନ କରିବ ଦୃଢ଼ ବନ୍ଧେ । କୃଷ୍ଣ ସନ୍ତୋଷ ଭାବ ଶ୍ରଦ୍ଧେ ॥
ଗୁରୁବଚନ ଶିରେ ଧରି । ସୁସାଧୁ ସଙ୍ଗ ସେବା କରି ॥
କୃଷ୍ଣର କଥା ଅନ୍ୟୋଅନେ । ନିରନ୍ତେ କଥନ ଶର୍ବଣେ ॥
ସେବା କରିବ ବିଷ୍ଣୁଜନେ । ପବିତ୍ର ବିନୟ ବଚନେ ॥
କୃଷ୍ଣ ଚରିତ ସାଧୁଜନେ । ଶର୍ବଣ ସ୍ମରଣ କୀର୍ତ୍ତନେ ॥
ନିର୍ମଳ କୃଷ୍ଣର ଚରିତ । ଯେ ନାମେ ଜଗତ ପବିତ୍ର ॥
କ୍ଷଣେ ବଞ୍ଚିବ ଅନୁବାଦେ । ବିଷ୍ଣୁ ଭଗତି ଜନମଧ୍ୟେ ॥
କଣ୍ଠ କଣ୍ଠିତ ଜଡ଼ ମତି । ଦେହ ପୁଲକ ରୋମପନ୍ତି ॥
ଚିତ୍ତେ ଗୋବିନ୍ଦ ନାମ ସ୍ମରେ । ରୋଦନ କରେ ଉଚ୍ଚ ସ୍ୱରେ ॥
କ୍ଷଣେ ହସଇ କ୍ଷଣେ ନାଚେ । ଘନ ଗର୍ଜନ କରେ ଉଚ୍ଚେ ॥
କ୍ଷଣକେ ଗାଏ ଗୁଣ ଗାଥା । କହଇ ଅଲୌକିକ କଥା ॥
କ୍ଷଣକେ କୃଷ୍ଣ ଗୁଣ ଗୁଣି । ଚକ୍ଷୁ ସଂହାରି ହୋଏ ତୁନି ॥
ଏ ନାନା ଧର୍ମ ଭାବ ଶିକ୍ଷା । ଗୁରୁ ସେବନେ ପାଇ ଦୀକ୍ଷା ॥
ନିଶ୍ଚିତ ଚିତ୍ତେ କୃଷ୍ଣ ପାଦେ । ଭଗତି ଲଭେ ଅପ୍ରମାଦେ ॥
ସେ ନାରାୟଣ ପରାୟଣ । ଏମନ୍ତ ଅବିଦ୍ୟା ହରଣ ॥

## ରାଜା ଉବାଚ

ଏମନ୍ତେ ଶୁଣି କୃଷ୍ଣ ରସ । ଜନକ ହୋଏ ମନତୋଷ ॥
ବୋଲଇ ମୁନି ଗଣ ଚାହିଁ । ଆନନ୍ଦେ ଶିରେ କର ଦେଇ ॥
ଅନାଦି ପ୍ରଭୁ ନାରାଏଣ । ସଂସାର ପରମ କାରଣ ॥
ଏକେ ଅନେକ ରୂପ ଧରି । ସଂସାରେ ଖେଳେ ନରହରି ॥
ତୁମ୍ଭେ କେ ମୋତେ ଦୟା ବହ । ସେ ନାରାୟଣ ରୂପ କହ ॥

## ପିପ୍‌ପଳାୟନ ଉବାଚ

ଦେଖି ରାଜାର ସାଧୁପଣ । ପିପ୍‌ପଳାୟନବୋଲେ ଶୁଣ ॥
ସେ ନାରାୟଣ ବର୍ଣ୍ଣ ଚିନ୍ୟ । କେ ମୁଖେ କହିତେ ଭାର୍ଜନ ॥
ସେ ମାୟା ସଂସାର କାରଣ । ସୃଷ୍ଟି ପାଳଣ ସଂହାରଣ ॥
ହେତୁ ଅହେତୁ ସେ ବୋଲାଏ । ସ୍ୱପ୍ନ ଜାଗ୍ରତେ ଭେଦ ନୋହେ
ସୁଷୁପ୍ତି ବୋଧେ ହେ ନ ଜାଣି । ବାହ୍ୟ ଅନ୍ତର ପରିମାଣି ॥
ଦେହ ଇନ୍ଦ୍ରିୟ ପ୍ରାଣ ମନ । ଏ ଚାରି ଅନ୍ତରେ କାରଣ ॥
ଯେଣେ ଇନ୍ଦ୍ରିୟ ସଞ୍ଚରନ୍ତି । ତାହାର ଆଶ୍ରୟେ ଜୀଅନ୍ତି ॥
ବ୍ରହ୍ମାଣ୍ଡ କୋଟି କୋଟି ମତେ । ଘଟଣା କରେ ନିଜ ଗାତ୍ରେ ॥
ଭୂତ ଭବିଷ୍ୟ ବ୍ରତମାନେ । ସର୍ଜ୍ଜଇ କଇ ଅନୁମାନେ ॥
ସମ୍ପୂର୍ଣ୍ଣେ ସର୍ବ ଜୀବେ ବସେ । କାହାରି ସାଙ୍ଗେ ସେ ନ ମିଶେ॥
ମନ ବଚନ ଯାର ଦେହେ । ପଶି ନ ପାରନ୍ତି ଉପାୟେ ॥
ନୟନେ ଯାହା ନ ଦେଖଇ । ଇନ୍ଦ୍ରିୟ ଗଣେ ଭେଦ କାହିଁ ॥

ଆବର ମନ ବୁଦ୍ଧି ପ୍ରାଣ । ଯା ଆହ୍ଲାଦେ ହୋନ୍ତି ତ୍ରାଣ ॥
ସେ ପୁଣି ନ ପାରନ୍ତି ଚିହ୍ନି । ଅନେକ ଦୂରେ ସେ ରହନ୍ତି ॥
ପବନେ ଦଶଦିଗେ ଯାନ୍ତି । ପୁଣି ଅନଳେ ନ ମିଶନ୍ତି ॥
କୋଟି ବ୍ରହ୍ମାଣ୍ଡ ଏହି ମତେ । ଯାହାର ଦେହେ ହୋନ୍ତି ନିତ୍ୟେ॥
ଏମନ ମହିମା ଯାହାର । ତାହାକୁ କେ କରୁ ଗୋଚର ॥
ଶବଦ ବ୍ରହ୍ମ ଥାଇ ଦୂରେ । ସେ ପୁଣି ବୁଦ୍ଧି ଅନୁସାରେ ॥
ନାନା ପ୍ରପଞ୍ଚ ଏ ଜଗତେ । ବିଧି ନିଷେଧ ବେନି ପଥେ ॥
ଜଗତେ ଭ୍ରମାଇ ଭ୍ରମଇ । ସେ ତାକୁ ତତ୍ତ୍ୱେ ନ ଜାଣଇ ॥
ପ୍ରଥମେ ଏକ ବ୍ରହ୍ମ ଥିଲା । ଦ୍ୱିତୀୟେ ପ୍ରକୃତି ହୋଇଲା ॥
ପ୍ରକୃତି ତହୁଁ ସୁତ ଜାତ । ଯାହାକୁ ବୋଲି ବୁଦ୍ଧି ତତ୍ତ୍ୱ ॥
ତାର ଶରୀରୁ ଜୀବ ଜାତ । ସେ ଜୀବ କର୍ମର ଆୟତ ॥
ସେ ବ୍ରହ୍ମ ଥାଇ ଏକ ସରେ । ମାୟାରେ ନାନା ଶକ୍ତିଧରେ ॥
ଖେଳଇ ବ୍ରହ୍ମ ରୂପ ଧରି । ସୁଖ ଅନଳେ ମୋହ ଭରି ॥
ତୁମ୍ଭେ ଯେ ବୋଲ ବ୍ରହ୍ମ ଏକ । ସେ ପୁଣି ପ୍ରକାଶେ ଅନେକ ॥
କ୍ରୀଡ଼ାର ଅନ୍ତେ ସର୍ବନାଶେ । ଏକାନ୍ତେ ରହେ ଅବଶେଷେ ॥
କିମ୍ବା ନୋହଇ ବ୍ରହ୍ମବଧ । ଆଗମ ନିଗମେ ପ୍ରମାଦ ॥
ଏମନ୍ତ କରୁ ଯେବେ ମନ । ଶୁଣ କହିବା ସାବଧାନ ॥
ନିତ୍ୟ ନିର୍ଗୁଣ ଭଗବାନ । ସେ ନୋହେ ଆଦି ଅବସାନ ॥
ଯାହାର କ୍ଷୟ ବୃଦ୍ଧି ନାହିଁ । ଅଳପ ବହୁତ ନୋହଇ ॥
ଯେ ନିତ୍ୟ ଏକ ରୂପେ ଥାଇ । ଆଧି ଉପାଧି ଯାର ନାହିଁ ॥
ନିତ୍ୟ ଆନନ୍ଦମୟ ସାକ୍ଷୀ । ସଂସାରେ ଏତେ ମାତ୍ର ଲକ୍ଷି ॥
ମନର କଳ୍ପଣା ଜଗତେ । ଯେ ରୂପେ ଦେଖ ନାନା ମତେ॥
କୀଟ ପତଙ୍ଗ ତରୁ ଗଣେ । ବସଇ ଶରୀର ପ୍ରମାଣେ ॥
ସମେ ବସଇ ସର୍ବଦେହେ । ସ୍ଥୂଳ ନୟନ ଭେଦ ନୋହେ ॥
ଏ ରୂପେ ବ୍ରହ୍ମ ପରିମାଣି । ଯାହା ନୟନେ ଦେଖି ଶୁଣି ॥
ମନେ ଗୋଚରେ କରି ଯେତେ । ସତ୍ୟ ନୁହନ୍ତି ଏ ଜଗତେ ॥
ସେ ନାରାୟଣ ପଦ୍ମ ପାଦ । ହରଇ ବିଷୟ ବିଷାଦ ॥
ସେ ପାଦ ଯାର ଦୟା କରେ । ଭଗତି ଜନ୍ମେ ତା ହୃଦରେ ॥
ଘୋର କଳୁଷ ବେଗେ ଧ୍ୱଂସେ । ନିର୍ମଳ ହୃଦୟ ପ୍ରକାଶେ ॥
ଦ୍ରପଣେ ପ୍ରତିବିମ୍ବ ଯେହ୍ନେ । ବ୍ରହ୍ମ ପ୍ରବେଶ ତାର ମନେ ॥
ଏମନ୍ତ ରୂପ ନାରାଏଣ । ତୁ ଏବେ ସାବଧାନେ ଶୁଣ ॥

## ରାଜା ଉବାଚ

ଏ କଥା ମୁନି ମୁଖୁ ଶୁଣି । ହୃଦେ ସାନନ୍ଦ ନୃପମଣି ॥
ଜନକ ଶୋକ ଗଦ ଗଦେ । ଆନନ୍ଦେ ନମେ ମୁନିପାଦେ ॥
ବୋଲଇ ଶିରେ ଦେଇ କର । କୋମଳ ବଚନ ଗମ୍ଭୀର ॥

ଭୋ ମୁନି କହ ବ୍ରହ୍ମ ଯୋଗ । ଯେଣେ ଖଣ୍ଡଇ ଭବରୋଗ ॥
ଯେ କର୍ମ ସର୍ବ କର୍ମ ନାଶେ । ପରମ ବ୍ରହ୍ମ ପରକାଶେ ॥
ଜୀବ ନିସ୍ତରେ ଯାହା କରି । ଅନ୍ତେ ଲଭଇ ନରହରି ॥
ସେ ଯୋଗ କରି ମୁନି ଗଣେ । ନମଇଁ ତୁମ୍ଭର ଚରଣେ ॥
ଯେ କଥା ପୂର୍ବେ ପିତା ଆଗେ । ମୁଁ ଯେ ପୁଚ୍ଛିଲି ପୁତ୍ରଭାବେ ॥
ସେ ମୋତେ ନଦେଲେ ଉତ୍ତର । ଏବେ ସୁଦୟା ତୁମ୍ଭେ କର ॥

## ଅବିହୋତ୍ର ଉବାଚ

ଅବିରହୋତ୍ର ତାହା ଶୁଣି । ବୋଲଇ ଶୁଣ ନୃପମଣି ॥
ଯେ କର୍ମ ଅକର୍ମ ବିକର୍ମ । ଏ ତିନି କହନ୍ତି ନିଗମ ॥
ଈଶ୍ୱର ବାକ୍ୟ ତିନି ବେଦ । ବ୍ରହ୍ମା ଶଙ୍କରେ ନୋହେ ଭେଦ ॥
ଏଣୁ ମୋହିତ ସର୍ବଜନ । ନବୁଝି ବେଦର ବଚନ ॥
ପରମ ସୁଖ ଧର୍ମ କହେ । ପୁତ୍ରକୁ ଯେହ୍ନେ ବାପ ମାଏ ॥
ଔଷଧ କଟୁ ତିକ୍ତ ଆଣି । କହନ୍ତି ନାନା ଚାଟୁବାଣୀ ॥
ମଧୁର ବସ୍ତୁ ଥୋଇ ତଳେ । ଲୋଭେ ଭୁଞ୍ଜାନ୍ତି ତାକୁ ବଳେ ॥
ତେଣେ ହରଇ ତାର ରୋଗ । ଆନନ୍ଦେ କରେ ସୁଖ ଭୋଗ ॥
ବେଦ ବଚନ ଏହି ମତେ । ଧର୍ମ କହନ୍ତି ଜନହିତେ ॥
କହନ୍ତି ନାନାମତେ ବାଣୀ । କର୍ମର ଫଳ ପରିମାଣି ॥
ସେ ଫଳ ଲୋଭେ କରେ କର୍ମ । କର୍ମେ ଖଣ୍ଡଇ ତାର ଭ୍ରମ ॥
ଏ ହେତୁ କର୍ମ ବୋଲି ଜାଣ । ଏହେତୁ ନିଗମ ପ୍ରମାଣ ॥
ଯେ ନ କରନ୍ତି ବେଦ ବାଣୀ । ନାନା ପ୍ରକାରେ ଧର୍ମ ଶୁଣି ॥
କରନ୍ତି ମୁଖେ ବାକ୍ୟ ରତି । ସେ ପ୍ରାଣୀ ନରକେ ପଡ଼ନ୍ତି ॥
ଏହା ଅକର୍ମ ବୋଲି ଜାଣି । ବିକର୍ମ ଶୁଣ ନୃପମଣି ॥
ଭେଦ କରନ୍ତେ ବେଦ ପଥେ । ପାଷାଣ୍ଡ ବାଦ ଅନୁମତେ ॥
ପାଷାଣ୍ଡ ଗୁରୁ ବାକ୍ୟମତେ । ନିନ୍ଦନ୍ତି ବେଦ ବାକ୍ୟ ନିତ୍ୟେ ॥
ଉଭୟ ଲୋକ ତାର ନାହିଁ । ନିରାଶେ ଥାନ୍ତି ଦୁଃଖ ସହି ॥
ଯେ ଧର୍ମ କହେ ବେଦ ମତେ । ଆନନ୍ଦେ ଧରି ତାହା ଚିତ୍ତେ ॥
କର୍ମେ ସମ୍ପାଦି କର୍ମଫଳ । ଯେ ଭାବେ ହୃଦୟ ନିର୍ମଳ ॥
ସେ ଫଳ କୃଷ୍ଣ ପାଦେ ଦେଇ । ଚିତ୍ତେ ଭଗତି ଭାବବହି ॥
ତାହାକୁ ବୋଲି ମହାମତି । ଦୁର୍ଲଭ ଭକ୍ତି ସେ ଲଭନ୍ତି ॥
ଏମନ୍ତେ ଈଶ୍ୱରର ବାଣୀ । ବ୍ରହ୍ମା ବଚନେ ପରିମାଣି ॥
ବେଦ ଧରନ୍ତି ଶ୍ରୁତି ଫଳ । ଏ ଆଦି ଧର୍ମ ବୃକ୍ଷ ଫଳ ॥
ଏଣୁ ଏ ବେଦ ମାର୍ଗେ ତରି । ଏକାନ୍ତେ ବିଷ୍ଣୁ ଆଶ୍ରେ କରି ॥
ଗୁରୁ ବଚନ ପରମାଣେ । ବିଷ୍ଣୁ ଭଗତି ତୀକ୍ଷ୍ଣ ବାଣେ ॥
ଯେଣେ ହୋ ମାୟା ଜାଲ ଛେଦେ । ଚିତ ସଂଶୟ ଗ୍ରନ୍ଥ ଭେଦେ ॥
ନିଭ୍ରମେ ସଂସାରେ ଭ୍ରମନ୍ତି । ବିଷ୍ଣୁ ମାୟାରୁ ସେ ତରନ୍ତି ॥
ଏ ବୋଲେ ଶୁଣ ନରନାଥ । ଭକ୍ତି ଲକ୍ଷଣ ପରମାର୍ଥ ॥
ଗୁରୁ ବଚନ ଧରି ଶିରେ । ଈଶ୍ୱର ରୂପ ଅନୁସାରେ ॥
ପ୍ରତିମା କରି ନାନା ମତେ । ଯେ ବିଧି ବିଧାନ ଉକତେ ॥
ଦାରୁ ପାଷାଣ ଧାତୁ ମୟେ । ଲେପ ଲେଖନ ଯେତେ ହୋୟେ ॥
ଏ ଆଦି ଯେତେ ଅନୁମାନେ । ଆଗମ ନିଗମ ବିଧାନେ ॥
ଯେ ରୂପ ଦେଖି ରହେ ମନ । ଭାବେ ଭଜନ୍ତି ସାଧୁଜନ ॥
ଏମନ୍ତ ପ୍ରତିମା କରାଇ । ଉତ୍ତମ ଶୁଭ ରାଜ୍ୟେ ଥାଇ ॥
ନିର୍ମଳ ଜଳ ନଦୀ କୂଳେ । ନିରୂପି ଦ୍ରବ୍ୟ ଭୂମି ସ୍ଥଳେ ॥
ନିର୍ମଳ କଳ୍ପିତ ଆସନେ । ଥାପି ବସିବ ଶୁଦ୍ଧ ମନେ ॥
ଏ ଆଦି ନିଗମ ବଚନେ । ଯେବା ମିଳିବ ବ୍ରତମାନେ ॥
ପ୍ରଥମେ ପବନ ନିରୋଧି । ଯେ ବିଧିମତେ ଭୂମି ଶୁଦ୍ଧି ॥
ପଞ୍ଚାଶ ବର୍ଣ୍ଣେ ଦେହ ନାଶ । ଶ୍ରୀ ଗୁରୁବଚନେ ପ୍ରକାଶ ॥
ବାମ ପାରୁଶେ ଗୁରୁ ଥୋଇ । ଦକ୍ଷିଣେ-ଆଚାର୍ଯ୍ୟେ ବସାଇ ॥
ଏ ବେନି କରି ନମସ୍କାର । ଗଙ୍ଗା ଯମୁନା ଗଣେଶ୍ୱର ॥
ଏହାଙ୍କୁ ନମସ୍କାର ଅନ୍ତେ । ବାକ୍ୟ ଅକ୍ଷତ ଘେନି ହସ୍ତେ ॥
କରିବ ଦଶ ଦିଗ ରକ୍ଷା । ଦିଗ ବନ୍ଧନ ମନ୍ତ୍ର ଦୀକ୍ଷା ॥
ପୂଜାର ଉପହାର ଭାବେ । ଯେବା ମଳିବ ଯଥା ଲାଭେ ॥
ପ୍ରଥମେ ଅର୍ଘ୍ୟଜଳ କରି । ଶଙ୍ଖେ ଅକ୍ଷତ ପୁଷ୍ପଭରି ॥
ଅର୍ଘ୍ୟ ମେଦିନୀ ସର୍ବଦ୍ରବ୍ୟ । ଜଳରେ ପ୍ରୋକ୍ଷଣ କରିବ ॥
ଆଧାର ଶକ୍ତି ଆଦି ଧାନେ । ପୂଜିବ ନିଚଳା ଆସନେ ॥
ହୃଦୟ ପଦ୍ମେ ଅଧିଷ୍ଠାନେ । ପୁଷ୍ପେ ପୂଜିବ ମତଧାନେ ॥
ଧର୍ମାଦି ଚତୁର ଚରଣେ । ପାଶେ ଅଧର୍ମ ଚାରିଗଣେ ॥
ମଧ୍ୟେ କମଳଦଳ ଯେତେ । କର୍ଣ୍ଣିକା କେଶର ସହିତେ ॥
ସମନ୍ତେ ରବି ସୋମାନଳ । ପୂଜିବ ତୃତୀୟ ମଣ୍ଡଳ ॥
ସତ୍ୟ ଦ୍ୱିଗୁଣ ନ୍ୟାସ କରି । ମଧ୍ୟେ ପୂଜିବ ଆତ୍ମାଚାରି ॥
ଚତୁର ଆତ୍ମା ଶକ୍ତି ନବ । ପୂର୍ବାଦି ଧାନେ ତା ପୂଜିବ ॥
କେଶର ମୂଳେ ମନ୍ତ୍ର ସ୍ମରି । ଧାନେ ପୂଜିବ ମୁଦ୍ରାଧରି ॥
ପ୍ରତିମା ଦେହେ ନିଜ ଅଙ୍ଗେ । ନ୍ୟାସ କରିବ ମନ୍ତ୍ରଭାଗେ ॥
ହୃଦୟେ ମନ୍ତ୍ର ନ୍ୟାସ କରି । ଧାନେ ପୂଜିବ ନରହରି ॥
ଅର୍ଘ୍ୟ ଚନ୍ଦନ ପୁଷ୍ପ୍ୟଶୁଦ୍ଧି । ଆସନ ଆଚମନ ବିଧି ॥
ଧୂପ ଦୀପ ଯେ ପୂଜା ପ୍ରାଣ । ଭୋଜନ ଦ୍ରବ୍ୟ ସମର୍ପଣ ॥
ଅଙ୍ଗି ଉପାଙ୍ଗି ଆଦି ଯେତେ । ପୂଜିବ ପାରୁଷଦ ଦମତେ ॥
ବସ୍ତ୍ର ଭୂଷଣ ଆଦି ଯେତେ । ମନେ ସୁମରି ଶୁଦ୍ଧ ଚିତ୍ତେ ॥

ଏମନ୍ତେ ପୂଜି ନରହରି । ପ୍ରଣାମ ଦଣ୍ଡବତ କରି ॥
ବିଷ୍ଣୁଙ୍କୁ ପୂଜି ପୁଣ ପଛେ । ଈଶ୍ୱର ପୂଜିବ ପ୍ରତ୍ୟକ୍ଷେ ॥
ଧ୍ୟାନେ କୃଷ୍ଣଙ୍କୁ ଶିରେ ଧରି । ମନ୍ତ୍ର ହୃଦୟ ପଦ୍ମେ ଭରି ॥
ଏମନ୍ତେ ନିତ୍ୟ ପୂଜା କରି । ଦୃଢ଼ ଭଗତି ହୃଦେ ଧରି ॥
ପ୍ରତିମାନ ପାଇବ ଯେବେ । ଶୁଣ କହିବା ପୂଜାଭାବେ ॥
ସୂର୍ଯ୍ୟେ ଅନଳେ କିବାଜଳେ । ଅଥବା ହୃଦୟ କମଳେ ॥
ଯେବେ ନ ପାରେ ଏତେ ମତ । ଗୃହେ ଯେ ଅତିଥି ଆଗତ ॥
ତାହାଙ୍କୁ ବିଷ୍ଣୁ ପ୍ରାୟେ ମଣି । ପୂଜିବ ଦେଇ ଅନ୍ନ ପାଣି ॥
ମୁଖ ପ୍ରସରେ ନିରବଧି । ହେଲେ ଲଭନ୍ତି ସର୍ବସିଦ୍ଧି ॥
ଏ ଭାବେ ଈଶ୍ୱରର ବାଣୀ । ଯେ ଏହା ଏକାଦଶେ ଶୁଣି ॥
କୃଷ୍ଣେ କରନ୍ତି ଦୃଢ଼ ଚିତ୍ତ । ନୋହନ୍ତି ମାୟାରେ ମୋହିତ ॥
ଖଣ୍ଡଇ ଭବବନ୍ଧ ପାଶ । କହଇ ଜଗନ୍ନାଥ ଦାସ ॥
ନିର୍ମଳ ଭାଗବତ ବାଣୀ । ଶୁଣି ତରିବେ ଭବୁ ପ୍ରାଣୀ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ କର୍ମଯୋଗ କଥନେ ପୂଜାବିଧି ବର୍ଣ୍ଣନଂ ନାମ ଚତୁର୍ଥୋଽଧ୍ୟାୟଃ ।*

## ପଞ୍ଚମ ଅଧ୍ୟାୟ

### ରାଜା ଉବାଚ

ଏମନ୍ତେ କର୍ମଯୋଗ ଶୁଣି । ରାଜା ବୋଇଲେ ମନେ ଗୁଣି ॥
ନିର୍ଗୁଣ ନିରଞ୍ଜନ ହରି । ଧରଣୀ ଛଳେ ଦେହ ଧରି ॥
ଯେ କର୍ମ କରେ ତ୍ରିଭୁବନେ । ଯେ ଅବା ତାର ଜଡ଼ଥାନେ ॥
ସେ କଥା କହ ମୁନିଗଣେ । ସନ୍ତୋଷ ହଉ ମୋ ଶ୍ରବଣେ ॥
ଏମନ୍ତେ ରାଜା ସାଧୁ କଥା । ଶୁଣି ଦ୍ରବିଡ଼ ଶୁଦ୍ଧଚେତା ॥
ରୋମ ପୁଲକ କରି ତନୁ । ଅଶ୍ରୁ ଗଳଇ ତା ନୟନୁ ॥

### ଦ୍ରବିଡ଼ ଉବାଚ

ବୋଲନ୍ତି ଶୁଣ ନରନାଥ । ଅଶେଷ କୃଷ୍ଣର ଚରିତ ॥
କେ ତାହା ଅନୁଭବ କରି । ମୁଖେ କହିବ ଚିତ୍ତେ ଧରି ॥
ବାଳକ ବୁଦ୍ଧି ସମହୀନ । ଜଗତେ ଅଛି କେବା ଜନ ॥
ପଣ୍ଡିତ ପଣେ ଗର୍ବ କହି । ହୃଦରେ ଅହଂକାର ବହି ॥
କଥନେ କୃଷ୍ଣ ଗୁଣ ବଳେ । କେ ଅଛି ଅବନୀ ମଣ୍ଡଳେ ॥
ମୃତ୍ତିକା ଖଣ୍ଡ ଚୂର୍ଣ୍ଣ କରି । ଯେ ଗଣି ପାରେ ମନେ ଧରି ॥
ସେ କାହିଁ କୃଷ୍ଣର ମହିମା । ମୁଖେ କହିବ ଗୁଣ ସୀମା ॥
ବ୍ରହ୍ମାଣ୍ଡ ରଚ୍ଚି ପଞ୍ଚଭୂତେ । ଅଶେଷ ତାର ହୃଦ ଗତେ ॥
ପଶେ ବିରାଟ ରୂପଧରି । ଆଦି ଅନନ୍ତ ନରହରି ॥
ସୃଷ୍ଟି ପାଳିଣ ଅନ୍ତ କରେ । ମାୟାରେ ବହୁ ଶକ୍ତି ଧରେ ॥
ପ୍ରଥମେ ରଜୋଗୁଣ ଧରେ । ବିଧାତା ରୂପେ ଅବତରେ ॥
ସୃଷ୍ଟି କରଇ ନାନା ରୂପେ । ବେଦ ବିଧାନ ବେଦ କଳ୍ପେ ॥
ପାଳଇ ଯଜ୍ଞ ପତି ରୂପେ । ଜୀବ ଖେଳଇ ମାୟାକଳ୍ପେ ॥
ଈଶ୍ୱର ରୂପ ତମୋ ଗୁଣେ । ଦହଇ ସୃଷ୍ଟି ସଂହାରଣେ ॥
ଯେ ଗୁଣମୟ ନିରାକାର । ଏଣୁ ତୃତୀୟ ରୂପ ତାର ॥
ପୂର୍ବେ ଯେ ଦକ୍ଷ ପ୍ରଜାପତି । ତାର କୁମାରୀ ନାମ ସତୀ ॥
ଧର୍ମର ପତ୍ନୀ ସେ ଯୁଗତେ । ବିଷ୍ଣୁ ଯାହାର ଗର୍ଭ ଗତେ ॥
ଅରୂପ ହୋଇ ରୂପ ରାଶି । ସେ ନର ନାରାୟଣ ଋଷି ॥
ତପ ଆରାଧି ଯୋଗ ବଳେ । ବସିଲେ ବଦରିକା ସ୍ଥଳେ ॥
କଳ୍ପେ ପର୍ଯ୍ୟନ୍ତ ତପ କରି । ମନ ପବନ ହୃଦେ ଧରି ॥
ଦେଖି ତାହାର ତପ ଘୋର । ସର୍ଗେ କମ୍ପିଲେ ପୁରନ୍ଦର ॥
ମନେ ବିଚାରେ ସୁନାଶୀର । ନିଶ୍ଚେ ଘେନିମ ମୋର ପୁର ॥
ମୋ ପଦ ହରିବ ଏ ବଳେ । ଏମନ୍ତ ଭାଳି ସେ ବିକଳେ ॥
ବିଚାରି ବେଦଙ୍କ ଅଗ୍ରତେ । ତପ ସାଧିବ ବିଘ୍ନ ଅର୍ଥେ ॥
ଉପାୟେ କରି ଶଚୀପତି । ଯେଣୁ ସଭାବେ ମନ୍ଦମତି ॥
କନ୍ଦର୍ପ ରାଇ ପୁରନ୍ଦର । ବୋଲଇ ଚଳମୃତ୍ୟୁ ପୁର ॥
ବସନ୍ତ ପବନଙ୍କୁ ଚାହିଁ । ବୋଲଇ ସଙ୍ଗେ ଚଳ ତୁହି ॥
ଯେ ଗତି ତୋର ମଦ ଗନ୍ଧ । ଘେନାଇଁ ଅପସରା ବୃନ୍ଦ ॥
କୋକିଳ ଧ୍ୱନି ଗୀତ ସ୍ୱନେ । ନୃତ୍ୟ କରିବ ବିଦ୍ୟମାନେ ॥
ନାନା ପ୍ରକାରେ ମନହରି । ତପ ସମାଦି ଭଗ୍ନକରି ॥
ବେଗେ ଆସିବ ସର୍ଗ ଥାନେ । ଏମନ୍ତ ଇନ୍ଦ୍ରର ବଚନେ ॥
ମଧୁର ଧ୍ୱନି ଗୀତ ସ୍ୱନେ । ମିଳିଲେ ନାରାୟଣ ଥାନେ ॥
ବସନ୍ତେ ପୁଷ୍ପିତ କାନନ । ଦେଖନ୍ତେ ପ୍ରାଣୀ ଜନ ମନ ॥
କନ୍ଦର୍ପ ନାରାୟଣ ଚାହିଁ । ପୁଷ୍ପ କୋଦଣ୍ଡେ ଗୁଣଦେଇ ॥
ପଞ୍ଚ ନାରାଚ ଅତି ତମେ । ବିନ୍ଧିଲା ବିଷ୍ଣୁଙ୍କୁ ମରମେ ॥
ଲଳିତ ବହଇ ବସନ୍ତ । ଗମ୍ଭୀର ନାଦେ ଶୁଭେ ଗୀତ ॥
ଦେଖି ତାହାଙ୍କର ଉପାୟେ । ଧ୍ୟାନେ ଜାଣିଲେ ଦେବରାୟେ ॥
ଇନ୍ଦ୍ରିୟେ ଭୟେ କରି ଚିତ୍ତେ । ମୋର ସମାଦି ଭଗ୍ନ ଅର୍ଥେ ॥
ଏହାଙ୍କୁ ପେଶି ଉଦ୍‌ବେଗେ । ମନ ବିଷାଦେ ଅଛି ସର୍ଗେ ॥
ଏତେ ବିଚାରି ନାରାଏଣ । ବୋଇଲେ ଇନ୍ଦ୍ର ଗଣେ ଶୁଣ ॥
ରଙ୍ଗ ଅଧରେ ମନ୍ଦ ହସି । ତାହାଙ୍କୁ ବୋଇଲେ ବିଶ୍ୱାସି ॥

ଭୟେ ନ କର ତୁମ୍ଭ ଚିତ୍ତେ । ମୋର ସମାଧି ଭଗ୍ନ ଅର୍ଥେ ॥
ମୋହର ତପ ଭଗ୍ନ କର । ଇନ୍ଦ୍ରକୁ ଯେବେ ତୁମ୍ଭେ ଡର ॥
ଆଜ ତୁମ୍ଭର ଆଗମନ । ଧନ୍ୟ ମଙ୍ଗଳ ମୋର ଥାନ ॥
ଏମନ୍ତ କହି ଭଗବାନ । ତକ୍ଷଣେ ହୋଇଲେ ମଉନ ॥
ତା ଦେଖି ଇନ୍ଦ୍ର ଗଣେ ଡରେ । ନମିଲେ ବିଷ୍ଣୁର ପୟରେ ॥
ଭୟେ କମ୍ପନ୍ତି ମୁଖ ଚାହିଁ । ବୋଲନ୍ତି ଶୁଣ ଭାବଗ୍ରାହୀ ॥
ଏ ଯେ ବିଚିତ୍ର କଥା ତୋର । ତୁ ବ୍ରହ୍ମ ପ୍ରଭୁ ନିରାକାର ॥
ନିର୍ଗୁଣ ନିର୍ବିକଳ୍ପ ଦେହୀ । ପ୍ରକୃତି ତୋତେ ନ ଜାଣଇ ॥
ତୋହର ଅଭୟ ଚରଣେ । ସେବନ୍ତି ଆତ୍ମଜ୍ଞାନୀ ଗଣେ ॥
ଯୋଗୀଙ୍କ ହୃଦୟ କମଳେ । ତୋହର ଆସନ ନିଚଳେ ॥
ତୁମ୍ଭ ଚରଣେ ଯେ ସେବନ୍ତି । ତାହାଙ୍କୁ ବିଘ୍ନ ଦେବେ ଚିନ୍ତି ॥
ବୋଲନ୍ତି ସଂସାର ଯେ ତ୍ୟାଗୀ । ଯେ ତ ହୋଇବ ମୋକ୍ଷ ଭାଗୀ ॥
ଏଣୁ ଡରନ୍ତି ଦେବ ଗଣ । କରନ୍ତି ବିଘ୍ନ ଆଚରଣ ॥
ଯେ ଅନ୍ୟ ଦେବତା ଭଜନ୍ତି । ତାହାଙ୍କୁ ବିଘ୍ନ ନ କରନ୍ତି ॥
ସମସ୍ତେ ମିଳି ଅଗ୍ନି କୁଣ୍ଡେ । ଘୃତ ସମିଧ ଭକ୍ଷି ତୁଣ୍ଡେ ॥
ଯଜ୍ଞ ଭୋଜନେ ସୁଖେ ଥାନ୍ତି । ତାହାଙ୍କୁ ଦୟା ସେ କରନ୍ତି ॥
ଯେ ତୋର ଚରଣେ ସେବନ୍ତି। ସକଳ ଧର୍ମ ସେ ଲଭନ୍ତି ॥
ଏକାନ୍ତ ହିତେ ସୁଖେ ଥାଇ । ଅନ୍ୟ ଦେବଙ୍କୁ ନ ଗଣଇ ॥
ତେଣୁ ସେ ଦେବେ କୋପଭରେ । ବିଘ୍ନ ଆଚରନ୍ତି ତାହାରେ ॥
ଯେ ତୁମ୍ଭ ଚରଣେ କିଙ୍କର । ତାହାଙ୍କୁ ତୁମ୍ଭେ ରକ୍ଷାକର ॥
ବିଘ୍ନ ତାହାର ପାଦ ନମେ । ଅନ୍ୟ ସଂସାରେ ଯାଇ ଭ୍ରମେ ॥
କ୍ଷୁଧା ପିପାସା ଶୀତ ଜ୍ୱର । ଦୁର୍ଜୟ ଶୋକ ଭୟଙ୍କର ॥
ମଦନ ଲୋଭ ଆଦି ଆମ୍ଭେ । ଥାଉଁ ନିରତେ ପ୍ରାଣୀ ସଙ୍ଗେ ॥
ବିଘ୍ନ ଆଚରୁ ଶତ୍ରୁ ପଣେ । ଯେ ଧର୍ମ କରେ ଅନୁକ୍ଷଣେ ॥
ଆମ୍ଭ ମହିମା ସେହି ମତ । ଯେ ପ୍ରାଣୀ ତୁମ୍ଭର ଭଗତ ॥
ତାହାଙ୍କୁ ଦେଖି ଆମ୍ଭେ ଡରି । ସେ ପ୍ରାଣୀ ଭବୁ ଯାନ୍ତି ତରି ॥
ବାଲୁରୀ ଖୋଳେ ଜଳେ ଥିଲେ । ତାହା ଯେମନ୍ତେ ଲଂଘି ହେଲେ ॥
ଯେ ତୋର ତପ ଆଚରନ୍ତି । ତାହାଙ୍କୁ ଆମ୍ଭେ ବିଘ୍ନ ଚିନ୍ତି ॥
କଷ୍ଟୋର ତପ କରିନାଶ । ଯେ ହନ୍ତି କାମ ଲୋଭେ ବଶ ॥
ଛାଡ଼ନ୍ତି ତପ ଧର୍ମ ଭୟେ । ପଡ଼ନ୍ତି ବିଷ୍ଣୁ ମାୟା ମୋହେ ॥
ଏମନ୍ତ କହି ଇନ୍ଦ୍ର ଗଣେ । ବିଷ୍ଣୁ ସମୀପେ ତତକ୍ଷଣେ ॥
ଅଦ୍ଭୁତ ନାରୀ ରୂପ ରାଶି । ବିଜୁଳି ଯେହ୍ନେ ମେଘୁଖସି ॥
ସେବଇ ନାରାଏଣ ପାଶେ । ତା ଦେଖି ଇନ୍ଦ୍ରଗଣେ ତ୍ରାସେ ॥
କମ୍ପନ୍ତି ଜୀବନ କାତରେ । ନୟନ ବୁଜି ବେନି କରେ ॥

ସେ ରୂପ ରାଶି ଦେହେ ଗନ୍ଧେ । ଆଘ୍ରାଣ କରି ନାସା ରନ୍ଧ୍ରେ ॥
ହରିଲା ତାହାଙ୍କର ମନ । ରୂପକୁ ଚାହିଁ ହତଜ୍ଞାନ ॥
ମୋହେ ପଡ଼ନ୍ତି ମହୀତଳେ । କନ୍ୟାର ରୂପ ଗନ୍ଧ ବଳେ ॥
ତାଦେଖି ପ୍ରଭୁ ବ୍ରହ୍ମରାଶି । ରଙ୍ଗ ଅଧରେ ମନ୍ଦ ହସି ॥
ବୋଲନ୍ତି ଦେବଗଣେ ଚାହିଁ । ଭୟେ ନକର ତୁମ୍ଭେ କେହି ॥
ମୋର ନିକଟେ କନ୍ୟା ଯେତେ । ଅଛନ୍ତି ସେବା ଅନୁମତେ ॥
ତୁମ୍ଭେ ତାହାଙ୍କୁ ସେବା କର । କନ୍ୟା ଗୋଟିଏ ମାଗ ବର ॥
ସେ ଯେବେ ଦିଏ ଏକ ନାରୀ । ତା ଘେନି ଚଳ ସର୍ଗପୁରୀ ॥
ସେ ହୋଉ ସର୍ଗେ ଅଳଙ୍କାର । ରୂପେଣ ମୋହୁ ସୁନାଶୀର ॥
ତକ୍ଷଣେ ଆଜ୍ଞା ଶିରେ ଘେନି । କନ୍ୟାଙ୍କ ପାଦେ ସର୍ବେନମି ॥
କନ୍ୟାଏ ଲଭି ତାଙ୍କ ମଧେ । ସର୍ଗେ ଚଳିଲେ ଅପ୍ରମାଦେ ॥
ଇନ୍ଦ୍ର ସମୀପେ ଦେଲେ ନେଇ । ଉର୍ବଶୀ ନାମ ସେ ବୋଲାଇ ॥
ଦେଖି ସାନନ୍ଦ ସୁନାଶୀର । ରୂପେ ମୋହିଲା ପୁରନ୍ଦର ॥
ପ୍ରଣାମ କରି ଶଚିନାଥ । କହିଲେ ସକଳ ବୃତ୍ତାନ୍ତ ॥
ଇନ୍ଦ୍ର ଆନନ୍ଦ ତାହା ଶୁଣି । ଜାଣିଲେ ନିଶ୍ଚେ ଚକ୍ରପାଣି ॥
ବିସ୍ମୟେ ହୋଇ ଇନ୍ଦ୍ର ମନେ । ରହିଲା ହୃଦୟ ସଙ୍କନେ ॥
ଏବେ ଏହା ଶୁଣ ନରେଶର । ବିଷ୍ଣୁର ଅଂଶେ ଅବତାର ॥
ପରମ ହଂସ ରୂପ ହୋଇ । ଅଶେଷ ଜ୍ଞାନ ପୁଣ୍ୟ ଦେହୀ ॥
ଯେ ଅବା କଲା ଏ ଜଗତେ । ତୁ ଏବେ ଶୁଣ ଏକ ଚିତ୍ତେ ॥
ଦ୍ୱିତୀୟେ ଦତ୍ତାତ୍ରେୟ ହୋଇ । ଜ୍ଞାନ ମଙ୍ଗଳ ପୂର୍ଣ୍ଣଦେହୀ ॥
ବ୍ରହ୍ମାର ମୁଖୁଁ ଅବତରି । ଚତୁଃ ସନକ ରୂପ ଧରି ॥
ପୁଣି ଋଷଭ ଅବତାର । ଆମ୍ଭେ ହୋ ତାହାର କୁମର ॥
ସେ ପୁଣି ହୋଏ ହୟଗ୍ରିବ । ଯେ ରୂପେ ବେଦ ଉଦ୍ଧରିବ ॥
ମଧୁ କଇଟବ ସଂହାରି । ବ୍ରହ୍ମାଙ୍କୁ ସଙ୍କଟୁ ଉଦ୍ଧରି ॥
ପଞ୍ଚମେ ମୀନ ରୂପ ହୋଇ । ଧରଣୀ ନାବ ଶୃଙ୍ଗେ ବହି ॥
ପ୍ରଳୟ ଜଳେ ଶଙ୍ଖାମାରି । ସେ ରୂପେ ନିଗମ ଉଦ୍ଧରି ॥
ସୃଷ୍ଟି ପ୍ରଳୟ ଜଳେ ଭାସି । ଭୂମି ପାତାଳେ ଥିଲେ ପଶି ॥
ଶୂକର ରୂପେ ପଦ୍ମ କଳ୍ପେ । ଭୂମି ତୋଳିଲେ ଦନ୍ତୋ ଶିଷୋ॥
ଇନ୍ଦ୍ର ସମ୍ପଦ ଲାଭ ଅର୍ଥେ । ଦେବ ଦାନବ ଅନୁମତେ ॥
ଗମ୍ଭୀର କ୍ଷୀର ସିନ୍ଧୁ ମଧେ । ମନ୍ଦର ଆଣି ସୁଖ ସାଧେ ॥
ଜଳେ ପକାନ୍ତେ ମହାଗିରି । ହରିତା କୂର୍ମ ରୂପେଧରି ॥
ଅମୃତ ଆଦି ନାନା ଦ୍ରବ୍ୟ । ଇନ୍ଦ୍ରକୁ ଦିଲେ ହରିସର୍ବ ॥
ଗଜ କୁମ୍ଭୀର ଯୁଦ୍ଧ କାଳେ । ସେ ହରି ରୂପ ଅନ୍ତରାଳେ ॥
ଚକ୍ରେ କୁମ୍ଭୀର ମୁଣ୍ଡହାଣି । ଗଜ ମୋକ୍ଷଣ ଚକ୍ରପାଣି ॥
କଶ୍ୟପ ଋଷି ଯଜ୍ଞ ମେଳା । ଷାଠି ସହସ୍ର ବାଳଖିଲା ॥

ନିତ୍ୟ ଗମନ୍ତେ ବନ ଦାଣ୍ଡେ । କାଷ୍ଠ ବହନ୍ତି କାନ୍ଧି ମୁଣ୍ଡେ ॥
ଦିନେକ ଧରି ଏକ ଡାଳେ । ଷାଠି ସହସ୍ର ବାଳ ମେଳେ ॥
ବହି ଆଣନ୍ତେ ବାହୁ ବଳେ । ପଡ଼ିଲେ ବଛା ପାଦ ତଳେ ॥
ସମସ୍ତେ ହୋଇ ଏକ ମୁଖ । ଡାକନ୍ତି ନାରାୟଣ ରଖ ॥
ଦେଖିଣ ତାହାଙ୍କ ବିକଳ । ଦୟା ସାଗର ଆଦିମୂଳ ॥
ତକ୍ଷଣେ ନିଜ ରୂପ ଧରି । ବିପ୍ରଙ୍କୁ ସଙ୍କଟୁ ଉଦ୍ଧାରି ॥
ଦେବ ଅସୁର ଯୁଦ୍ଧ କାଳେ । ବାସବ ନିଜ ଭୁଜ ବଳେ ॥
ବଜ୍ରେ ଛେଦିଲା ବୃତ୍ରା କନ୍ଧ । ତେଣୁ ଲଭିଲା ବ୍ରହ୍ମବଧ ॥
ବିଚାରି କଲା ମନେ ଦୁଃଖ । ଡାକିଲା ନାରାଏଣ ରଖ ॥
ତକ୍ଷଣେ ବ୍ରହ୍ମ ରୂପ ଧରି । ଇନ୍ଦ୍ରଙ୍କୁ ସଙ୍କଟୁ ଉଦ୍ଧରି ॥
ଆଦି ଅସୁର ପଦ୍ମକକ୍ଷେ । ନାଶିଲେ ନରସିଂହ ରୂପେ ॥
ଦୟା ସାଗର ଦାମୋଦର । ଆନନ୍ଦ କଲେ ତିନିପୁର ॥
ଅଦ୍ଭୁତ ବାମନ ଶରୀରେ । ମିଳିଲେ ବଳି ଯଜ୍ଞ ଘରେ ॥
ସେ ରୂପେ ମୋହି ତାର ମନ । ଦାନେ ହରିଲେ ତ୍ରିଭୁବନ ॥
ପାଦେ ତାହାର ଶିର ଚାପି । ପାତାଳ ପୁରେ ନେଇ ଥାପି ॥
ଇନ୍ଦ୍ରର ମନ କଲେ ଶୁଭ । ସୁଖେ ସେ ଭୁଞ୍ଜଇ ଦୁର୍ଲଭ ॥
ସେ ପୁଣ ଭୃଗୁ ବଂଶେ ହରି । ପରଶୁରାମ ରୂପ ଧରି ॥
ଏକ ବିଂଶତିବାର କୋପେ । ଅବନୀ ଭ୍ରମି ବିଶ୍ୱରୂପେ ॥
କ୍ଷତ୍ରିୟ କୁଳ ସହାରଣ । କଲେ ଅନାଦି ନାରାଏଣ ॥
ରାବଣ ରାମ ରୂପେ ମାରି । ଜାନକୀ ସଙ୍କଟୁ ଉଦ୍ଧରି ॥
ଧରଣୀ ମଧ୍ୟେ ଯଶ ଥୋଇ । ସଂସାରୁ ତରେ ଯାହା ଗାଇ ॥
ପୁଣଇ ଅନ୍ତେ ଅବତାର । ହଳ ମୁଷଳ ଧରି କର ॥
ଘୋର ଦାନବ ଦର୍ପ ହରି । ସୁଖେ ସ୍ଥାପିଲେ ବସୁନ୍ଧରୀ ॥
ପ୍ରବୁଧ ବୁଦ୍ଧ ଅବତାର । ଜ୍ଞାନ ବିସ୍ତାର ଯେ ସଂସାର ॥
ଅଶ୍ୱ ଆରୋହୀ କଳ୍କୀ ରୂପେ । ମ୍ଳେଚ୍ଛ ସଂହାର ମହାକୋପେ ॥
ଏମନ୍ତ ନାନା ରୂପ ଧରି । ସେ ହରି ଜଗତେ ବିହରି ॥
କେ ତାର ଗୁଣ କର୍ମ ସୁଖେ । ସଖ୍ୟ କରିବ ଶତକକ୍ଷେ ॥
ଯେ ଅବା କହିଲି ସକ୍ଷେପେ । ରାଜନ ତୋହର ସମୀପେ ॥
ନାରଦ ବସୁଦେବ ମେଳେ । ଶୁକ ପରୀକ୍ଷ ଗଙ୍ଗାଜଳେ ॥
ଏ ଷଡ଼ ପ୍ରଶ୍ନେ ଏକାଦଶ । କହଇ ଜଗନ୍ନାଥ ଦାସ ॥
ଶ୍ରୀ ଭାଗବତ ଧର୍ମକଥା । ଶୁଣି ଛାଡ଼ିବ ମନବ୍ୟଥା ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ନିମି ନବ ବିପ୍ର ସମ୍ବାଦ ବର୍ଣ୍ଣନେ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

### ବିଦେହ ଉବାଚ

ବୋଲନ୍ତି ବିଦେହ ରାଜନ । ଭୋ ମୁନି ଶୁଣ ମୋ ବଚନ ॥
ଏ ଭୂମି ମଧ୍ୟେ ଦୁଷ୍ଟଲୋକେ । ହରିଙ୍କି ନ ଭଜନ୍ତି ଥୋକେ ॥
କାମ କଳ୍ମଷ ଲୋଭେ ଜଡ଼ି । ଅଜ୍ଞାନ ମୋହେ ଥାନ୍ତି ପଡ଼ି ॥
ଧର୍ମ ଅଧର୍ମ ନ ଜାଣନ୍ତି । ଅନ୍ତେ ଲଭନ୍ତି କେଉ ଗତି ॥
ଏ ବଡ଼ ସଂଶୟ ମୋ ହୃଦେ । ଛେଦ କଳ୍ମଷ ବେଦବାଦେ ॥

### ଚମସ ଉବାଚ

ଚମସ ଶୁଣି ତା ବଚନ । କହନ୍ତି ସଭା ବିଦ୍ୟମାନ ॥
ବିଷ୍ଣୁର ଭୁଜ ମୁଖୁ ଉରୁ । ଉଭୟ ପାଦ ପଙ୍କଜରୁ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ । ଜନ୍ମିଲେ ସଭାବ ତ୍ରିଗୁଣେ ॥
ଏଣୁ ଏ ବିଷ୍ଣୁ ପିତାମାତା । ଗୁରୁ ବାନ୍ଧବେ ଇଷ୍ଟଦାତା ॥
ଏମନ୍ତ ସ୍ୱାମୀ ସେବା ତେଜି । ଲୋଭ ଯେ ଅନ୍ୟ ଦେବ ଭଜି ॥
ସେ ପ୍ରାଣୀ ପତିତ ପାମର । ଅନ୍ତେ ପଡ଼ଇ ତମ ଘୋର ॥
ବଦନ ଥାଉଁ ହରି ବାଣୀ । ମୁଖେ ଯେ ନ ବୋଲନ୍ତି ପୁଣି ॥
ନାମ ନ ଶୁଣନ୍ତି ଶର୍ବଣେ । ଯେ ଥାନ୍ତି ପାପ ଆଚରଣେ ॥
ସ୍ତ୍ରୀ ଶୁଦ୍ର ଆଦି ମତେ ନରେ । ଯେ ଥାନ୍ତି ନିନ୍ଦିତ ଆଚରେ ॥
ସେ ଯେବେ ସାଧୁଙ୍କୁ ଦେଖନ୍ତି । କଳ୍ମଷ ପଙ୍କୁ ନିସ୍ତରନ୍ତି ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟ ଜନ । ସଭାବେ ଧନ୍ୟ ତିନି ବର୍ଣ୍ଣ ॥
ବିଷ୍ଣୁଚରଣ ସନ୍ନିଧାନେ । ଯେ ଥାନ୍ତି ନିଗମ ବଚନେ ॥
ବ୍ରାହ୍ମଣ ବେଦ ପଢ଼େ ବଳେ । କୁଳ ସମ୍ପଦ ଧନ ଛଳେ ॥
ମଣଇ କରି ଅହଂକାର । କାନ୍ଧେ ବହଇ ବେଦ ଭାର ॥
ଧର୍ମ ଅଧର୍ମ ମାର୍ଗ ବହି । ଆତ୍ମକୁ ପଣ୍ଡିତ ବୋଲାଇ ॥
ସଭାର ମଧ୍ୟେ ଚାଟୁକହି । ହସି ହସାଇ ଜନ ମୋହି ॥
ଏ ଭାବେ ରଜୋଗୁଣ ଖଣ୍ଡେ । ସଂକଳ୍ପ କରି କର୍ମ କାଣ୍ଡେ ॥
ଧନ ତନୟେ ସୁଖ ଆଶେ । ଶରୀର ଅନ୍ତେ ନର୍କେ ବସେ ॥
ଅଳପ କାର୍ଯ୍ୟେ କ୍ରୋଧ ବହି । କାଳ ଭୁଜଙ୍ଗ ପ୍ରାୟେ ହୋଇ ॥
ସଭାବେ କାମ କ୍ରୋଧ ବଳେ । ନିତ୍ୟେ ଅସାଧୁ ସଙ୍ଗମେଳେ ॥
ଏଣୁ ଏ ବିପ୍ର ଆଦି ବର୍ଣ୍ଣେ । ପାପୀ ହୃଦୟ ମତ ହୀନେ ॥
ବିଷ୍ଣୁ ଜନଙ୍କୁ ଦେଖି ପାଶେ । ନିନ୍ଦା କରନ୍ତି ଉପହାସେ ॥
ହସି ବୋଲନ୍ତି ହାସ୍ୟ ବାଣୀ । ନିକଟେ କୃଷ୍ଣ କଥା ଶୁଣି ॥
ଗୃହ ଗୃହିଣୀ ଅଙ୍ଗ ସଙ୍ଗେ । ଚିତ୍ତ ବୁଡ଼ାଇ ପ୍ରେମ ଭାଗେ ॥
ଆଶା ବନ୍ଧନେ ଧନ ସଞ୍ଚେ । ମାୟା ସଂକଳ୍ପ କାଳ ବଞ୍ଚେ ॥

ପିଣ୍ଡ ପରାଣ ତୁଷ୍ଟ ମାତ୍ରେ । ପଶୁ ହିଂସନ୍ତି ହିଂସା ଶାସ୍ତ୍ରେ ॥
ବେଦ ଉଦେସେ ଯନ୍ତୁ ମାରି । ପୂଜନ୍ତି ନାନା ଯଜ୍ଞ କରି ॥
ଦାନ ଦକ୍ଷିଣ ବିଧି ହୀନେ । କୁକର୍ମ କରନ୍ତି ଅଜ୍ଞାନେ ॥
ପଶୁ ମାରଣେ ପାପ ଯେତେ । ଜାଣି ନ ଜାଣନ୍ତି ଅଗ୍ରତେ ॥
ଶ୍ରୀମଦ କୁଳ ମଦ ଭାବେ । ସଂଭୋଗ ଅଇଶ୍ୱର୍ଯ୍ୟ ଲାଭେ ॥
ଦାନ ପଠନ ବିଦ୍ୟା ବଳେ । ସମ୍ପଦ ଦେଖନ୍ତି ନିଚଳେ ॥
ସକଳ ମଦେ ଅନ୍ଧ ହୋନ୍ତି । ସାଧୁ ଅସାଧୁ ନ ଜାଣନ୍ତି ॥
ବିଷ୍ଣୁ ବୈଷ୍ଣବ ଜନ ଚାହିଁ । ନିନ୍ଦା କରନ୍ତି ଗର୍ବ ବହି ॥
ଯେ ଭାବେ ସର୍ବ ନାଶ କରେ । ନରକେ ପଡ଼ନ୍ତି ନିଭରେ ॥
ସକଳ ଜୀବ ମଧ୍ୟେ ହରି । ବସେ ଅନନ୍ତ ଶକ୍ତି ଧରି ॥
ବିଷ୍ଣୁରେ ମାୟା ମାତ୍ର ଭିରି । ଏହା ପାମରେ ନ ବୁଝନ୍ତି ॥
ଯାର ମହିମା ବେଦ ଭଣେ । ଯୋଗୀନ୍ଦ୍ର ଯେ ହରି ଚରଣେ ॥
ନିତ୍ୟେ ନିର୍ମଳ ଚିତ୍ତେ ଚିନ୍ତି । ଜ୍ଞାନ ଧାରଣେ ନ ଦେଖନ୍ତି ॥
ଯେ ହରି ନ ଭଜନ୍ତି ଚିତ୍ତେ । କୁ ବୁଦ୍ଧି ଭାବ ଅବିରତେ ॥
କୁତ୍ସିତ କଥା ରତ ନିତ୍ୟେ । ନାନ କୁପଥ ମନୋରଥେ ॥
ମନ ଭ୍ରମାଇ ଭ୍ରମୁ ଥାନ୍ତି । ଦୁଃଖ ଦୁର୍ଗମ ପଥ ଚିନ୍ତି ॥
ନାରୀ ସେବନ ମାଂସ ମଦ । ଲୋକ ବେଭାର ଅନୁବାଦ ॥
ବେଦ ନ କହେ ଯାହାମୁଖେ । ପାପୀ ତା କରେ ଆତ୍ମସୁଖେ ॥
ଧର୍ମ ଅଧର୍ମ ବେନି ପଥେ । ବେଦ କହନ୍ତି ଯାହା ନିତ୍ୟେ ॥
ଆଦି ଈଶ୍ୱର ଆଜ୍ଞା ଏହୁ । ଏଥୁ ଅଧିକ କେବା କହୁ ॥
ଯେବେ ଏପଥ ଛାଡ଼ି ବନେ । କର୍ମ କରନ୍ତି ଆତ୍ମା ଭୋଳେ ॥
ବିଭା ସଂଯୋଗ ଅନୁବନ୍ଧେ । ନାରୀ ସେବନ୍ତି କାମସାଧେ ॥
ଛାଡ଼ି ନପାରି ହୀନ ଚିତ୍ତେ । ସେବନ୍ତି ମଦ ମାଂସ ନିତ୍ୟେ ॥
ପଶୁ ମାରନ୍ତି ଯଜ୍ଞ ଲକ୍ଷ୍ୟେ । ଯେ ବେଦ ବିଧି ପିତୃପକ୍ଷେ ॥
ଏ ବେନି ବେଦ ବିଧିବାଣୀ । ନିତ୍ୟେ ଅସତ୍ୟ ପରିମାଣି ॥
ତେବେ କରିବ ଧର୍ମ ଯେତେ । ଯେ ବେଦ ବିଧି ଅନୁମତେ ॥
ବିଧି ନିଷେଧ ଯେ ପ୍ରସିଦ୍ଧି । ଏହା ନ ଜାଣେ ପଶୁ ବୁଦ୍ଧି ॥
ଧନ ସଞ୍ଚିଲେ ଧର୍ମ କରି । ଧର୍ମେ ପ୍ରାପତ ନରହରି ॥
ଧନ ଅର୍ଜନ୍ତେ ଦେହ ଭରେ । ଶରଣ ସକୁଷ୍ଟ ନିସ୍ତରେ ॥
ଯଦ୍ୟପି ଯଜ୍ଞର ବିଧାନ । ମାଂସ ଭକ୍ଷଣ ସୁରାପାନ ॥
ତଥାପି ସୁରା ବେଦ ମତେ । ଆଘ୍ରାଣ କରି ନାସାଗ୍ରତେ ॥
କେବେ ହେଁ ନ କରିବ ପାନ । ଯେ ବିଧି ବେଦର ବିଧାନ ॥
କେବଳ ଯଜ୍ଞେ ପଶୁବଧ । ଅନ୍ୟତ ବଧେ ପରମାଦ ॥

ନାରୀ ସଙ୍ଗମ ରତୁ ଅନ୍ତେ । କେବଳ ପୁତ୍ର ଜନ୍ମ ଅର୍ଥେ ॥
ଅନ୍ୟଥା ରତି ସୁଖ ଅର୍ଥେ । ସଙ୍ଗ ନ କରିବ ଏକାନ୍ତେ ॥
ଜୀବର ସଧର୍ମ ଏ ବାଣୀ । ସକଳ ବେଦ ବାକ୍ୟେଭଣି ॥
ଏହା ନବୁଝି ମୂର୍ଖ ପ୍ରାଣୀ । ଦୁଃଖକୁ ସୁଖ ପରିମାଣି ॥
କରନ୍ତି ଜ୍ଞାନ ହୀନ କର୍ମ । ଏଣୁ ସଂସାର ହୋନ୍ତି ଭ୍ରମ ॥
ମୂର୍ଖ ସଭାବେ ମୂଢ଼ ପ୍ରାଣୀ । ଆତ୍ମାକୁ ପଣ୍ଡିତ ବଖାଣି ॥
କେବଳ ଦେବତା ବିଶ୍ୱାସେ । ନଜାଣି ଯଜ୍ଞେ ପଶୁହିଂସେ ॥
ପଶୁଏ ଥାନ୍ତି ପଶୁମେଳେ । ତାର ଜୀବନ ଅନ୍ତଃକାଳେ ॥
ଧରି ଭକ୍ଷନ୍ତି ତାର ମାଂସ । କେବଳ ଅସ୍ଥି ରହେ ଶେଷ ॥
ଯାହାକୁ ମାରି ସୁଖ ଭୋଳେ । ସେ ତାକୁ ହିଂସେ ଅନ୍ତକାଳେ ॥
ଏଣୁ ପଣ୍ଡିତ ଜନ ମଧ୍ୟେ । ତାପ ଲଭିଛି ପ୍ରାଣୀ ବଧେ ॥
ସକଳ ଜୀବେ ନରହରି । ବସଇ ଆତ୍ମା ରୂପ ଧରି ॥
ସମେ ବସଇ ସର୍ବ ଦେହେ । ମୂଢ଼ ନଜାଣେ ମାୟାମୋହେ ॥
ସଭାବେ ମୃତ୍ୟୁ କଳେବର । ଦେହକୁ ବୋଲଇ ମୋହର ॥
ସୁଖାନୁଭାବେ ପଶୁ ମାରେ । କେବଳ ବିଷ୍ଣୁ ଦ୍ରୋହ କରେ ॥
ଦୁଷ୍ଟ ପଣ୍ଡିତ ବୋଲି ତାରେ । ପଡ଼େ ନରକ ଅନ୍ଧକାରେ ॥
ପଣ୍ଡିତ ପଣେ ବାଦ ଚିନ୍ତି । ଦମ୍ଭେ ନବୁଝେ ମୋକ୍ଷ ଗତି ॥
ବଞ୍ଚିତ ହୁଏ କୃଷ୍ଣ ନାମ । ସଞ୍ଚଇ ଧର୍ମ ଅର୍ଥ କାମ ॥
କରଇ ନାନା କର୍ମ ନିତ୍ୟେ । ତିଳେ ନ ରହେ ସ୍ଥିର ଚିତ୍ତେ ॥
କର୍ମେ ହରଇ ପ୍ରାଣୀ ପ୍ରାଣ । କେବଳ ନୋହେ ପରିତ୍ରାଣ ॥
ଚିତ୍ତେ ନ ବହେ ଦୟା ଶାନ୍ତି । ତାହାକୁ ବୋଲି ଆତ୍ମଘାତୀ ॥
ପାଷାଣ ଭାବେ ଅନୁମାନି । ଆତ୍ମାକୁ ମଣେ ତତ୍ତ୍ୱଜ୍ଞାନୀ ॥
ମନ କଳ୍ପଇ ଯେତେ ଫଳେ । ଦଇବ ହରେ ତାହା ବଳେ ॥
ନିନ୍ଦିତ ଇହ ପର ଲୋକେ । ନିତ୍ୟେ ବଞ୍ଚଇ ଦୁଃଖ ସୁଖେ ॥
ଦୁଃଖେ ସଞ୍ଚିତ ଦାରାସୁତ । ସର୍ବ ସମ୍ପଦ ପଶୁ ଭୃତ୍ୟ ॥
ଏ ସର୍ବ ଛାଡ଼ି ଅନ୍ତକାଳେ । ଚଳଇ ପାପ ପୁଣ୍ୟବଳେ ॥
ନରକେ ପଡ଼ି ଦୁଃଖ ଭୁଞ୍ଜେ । ଯମ ଯାତନା ଘୋର ପୁଞ୍ଜେ ॥
ହରି ବିମୁଖ ଯେହୁ ପ୍ରାଣୀ । ନ ତରେ ଭବ ତରଙ୍ଗିଣୀ ॥
ଏମନ୍ତ ମୁନି ବାକ୍ୟ ଶୁଣି । ରାଜା ବୋଲଇ ମନେଗୁଣି ॥

### ବିଦେହ ଉବାଚ

ଭୋ ମୁନି ପ୍ରଭୁ ଭଗବାନ । ଯୁଗାନୁସାରେ ବହେ ନାମ ॥
କର୍ମ ହିଁ ଯୁଗ ଅନୁସାରେ । ଭଗତ ଭଜନ ପ୍ରକାରେ ॥
କେବଣ ଯୁଗେ କଉଁ.ରୂପେ । ଶରୀର ଧରେ ମୋହ କହେ ॥
ଜୀବ ଉଦ୍ଧରେ ଚକ୍ରପାଣି । କର ଭାଜନ ତାହାଶୁଣି ॥

## କରଭାଜନ ଉବାଚ

ବୋଲଇ ଶୁଣ ନରନାଥ । ଅଶେଷ ବିଷ୍ଣୁର ଚରିତ ॥
କଳି କଳୁଷ ସଂହାରଣ । ଯେ କରେ ଶ୍ରବଣ କୀର୍ତନ ॥
ଏ ରୂପେ ଧରେ ଯେ ସଭାବେ । ତ୍ରେତା ଦ୍ୱାପର କଳିଯୁଗେ ॥
ଇଚ୍ଛା ବେହାରେ ଅବତାରେ । ସ୍ୱଭାବେ ନାନାରୂପ ଧରେ ॥
ବିଧି ବିଧାନେ ନାନା ମତେ । ଯେ ରୂପ ପୂଜନ୍ତି ଜଗତେ ॥
ଯେ ଯୁଗେ ଯେବା ଅବତାର । ଯେ ନାମ ବର୍ଣ୍ଣ ଦାମୋଦର ॥
ସୁଖେ ବିହରେ ନାନା ଲୋକେ । ଶୁଣ କହିବା ଏକୁ ଏକେ ॥
ପ୍ରଥମେ ଶୁକ୍ଳ ବର୍ଣ୍ଣ ଦେହେ । ଜଟା କଳାପ ମୁଣ୍ଡେ ବହେ ॥
ଦେହ ଉଭାରୀ ଅକ୍ଷ ମାଳ । ପିନ୍ଧଇ ବୃକ୍ଷର ବକଳ ॥
ଉଦଣ୍ଡ ବହେ ଭୁଜ ଚାରି । ତ୍ରିଦଣ୍ଡ କମଣ୍ଡଳୁଧାରୀ ॥
ଏମନ୍ତ ରୂପ ଭଗବାନ । ଦେଖି ପୂଜନ୍ତି ସାଧୁଜନ ॥
ସେ ପ୍ରାଣୀ ସର୍ବ ଜୀବହିତ । ଶୁଚି ପବିତ୍ର ଶ୍ରାନ୍ତ କାନ୍ତ ॥
ତପ ଆଚରି ଶମ ଦମେ । ପ୍ରାଣ ସଂଯମି ମହାଶ୍ରମେ ॥
ଭଜନ୍ତି ସେ ହରି ଚରଣେ । ନିଗମ ଧର୍ମ ଆଚରଣେ ॥
ବୈକୁଣ୍ଠ ସମ୍ପୂର୍ଣ୍ଣ ଲକ୍ଷଣ । ଧର୍ମ ସରୂପ ନାରାଏଣ ॥
ଜୀବ ପୁରୁଷ ଭଗବାନ । ପରମ ତତ୍ତ୍ୱ ବ୍ରହ୍ମଜ୍ଞାନ ॥
ଏ ରୂପ ଧରେ ସତ୍ୟଯୁଗେ । ଭଗତ ଜନ ଅନୁରାଗେ ॥
ଶୋଣିତ ବର୍ଣ୍ଣ ତ୍ରେତାଯୁଗେ । ବିଷ୍ଣୁ ସମ୍ଭୂତ ଭୂମି ଭାଗେ ॥
ସୁନ୍ଦର ଚତୁର୍ଭୁଜ ଧରେ । ସୁବର୍ଣ୍ଣ ବର୍ଣ୍ଣ କେଶ ଶିରେ ॥
ପବିତ୍ର ମେଖଳା ଉତୁରୀ । ଦ୍ୱିଭୁଜେ ଶ୍ରୁବ ସୂତ ଧରି ॥
ଯଜ୍ଞ ମୂରତି ଦାମୋଦର । ସର୍ବ ଦେବତା କଳେବର ॥
ଅଶେଷ ଭୁବନ ଈଶ୍ୱର । ଅଜ୍ଞାନୀ ଜନେ ଅଗୋଚର ॥
ସେ ରୂପ ଦେଖି ବିପ୍ରଗଣେ । ନିଗମ ପଥ ଆଚରଣେ ॥
ଯଜ୍ଞେ ପୂଜନ୍ତି ଭଗବାନ । ଯେ ଯଜ୍ଞ ବେଦର ବିଧାନ ॥
ଯେ ଯଜ୍ଞ ବିଷ୍ଣୁ ପୃଶ୍ନି ଗର୍ଭ । ସଭାବେ ନାମ ସର୍ବଦେବ ॥
ସେ ଉରୁ କର୍ମ ବୃକ୍ଷାକପି । ଏମନ୍ତ ବୋଲି ନାମ ଜପି ॥
ଦ୍ୱାପର ଯୁଗେ ଶ୍ୟାମ ବର୍ଣ୍ଣ । ପୀତ ବସନ ପରିଧାନ ॥
ନିଜ ଆୟୁଧ ନିଜ କରେ । ଶ୍ରୀବତ୍ସ କଥଉ ଉଭରେ ॥
ଏ ଆଦି ଲକ୍ଷଣେ ଲକ୍ଷିତ । ଅଶେଷ ଭୁବନେ ପୂରିତ ॥
କାମକୁ ନିନ୍ଦେ କଳେବର । ସମ୍ପଦ ରାଜ ରାଜେଶ୍ୱର ॥
ସେ ରୂପ ଦେଖି ମୁନିଜନେ । ପୂଜନ୍ତି ମନ୍ତ୍ର ତନ୍ତ୍ର ଧ୍ୟାନେ ॥
ସେ ସର୍ବଦେବ ମୟେ ହରି । ପୂର୍ଣ୍ଣ ଶବଦେ ତୁଷ୍ଟି କରି ॥
ଶ୍ରୀ ବାସୁଦେବ ନମସ୍ତୁତେ । ସଙ୍କରଷଣ ବୋଲି ତୋତେ ॥
ପ୍ରଦ୍ୟୁମ୍ନ ଅନିରୁଦ୍ଧ ତୁହି । ଚତୁଃରୂପ ଏକଦେହୀ ॥
ନମସ୍ତେ ପ୍ରଭୁ ଜଗନ୍ନାଥ । ଯାର ଶରୀରୁ ଏ ଜଗତ ॥
ତୁ ବିଶ୍ୱନାଥ ବିଶ୍ୱପତି । ମହା ପୁରୁଷ ସର୍ବସ୍ଥିତି ॥
ଦ୍ୱାପର ଯୁଗେ ଏହି ମତେ । ବିଷ୍ଣୁଙ୍କୁ ଭଜନ୍ତି ଜଗତେ ॥
ଦ୍ୱାପର ଯୁଗ ଶେଷ କାଳେ । କଳି ଆଗମ ଅନ୍ତରାଳେ ॥
ରୂପ ପ୍ରକାଶି ଚକ୍ରପାଣି । ଯେ ରୂପେ ଇନ୍ଦ୍ର ନୀଳମଣି ॥
କୃଷ୍ଣ ମୂରତି ଭଗବାନ । କେବଳ ନାମ ସଂକୀର୍ତ୍ତନ ॥
କୃଷ୍ଣର ରୂପ ଗୁଣ ଯେତେ । ଧ୍ୟାନେ ନିରୋପି ଶୁଦ୍ଧ ଚିତ୍ତେ ॥
ପ୍ରତିମା କରି ନାନା ରୂପେ । କୃଷ୍ଣ ପୂଜନ୍ତି ଯଜ୍ଞ କଳ୍ପେ ॥
ଅଙ୍ଗ ଉପାଙ୍ଗ ମନ୍ତ୍ର ତନ୍ତ୍ରେ । ବିଷ୍ଣୁର ପାରିଷଦ ଯେତେ ॥
ସକଳ ପୂଜି ସାବଧାନେ । ସ୍ତୁତି କରିବ ଏ ବଚନେ ॥
ହେ ମହା ପୁରୁଷ ମୁକୁନ୍ଦ । ବନ୍ଦୁ ତୋ ଚରଣାରବିନ୍ଦ ॥
ମୁନି କରନ୍ତି ଯାର ଧ୍ୟାନ । ହରାଇ ପରାଭବ ମାନ ॥
ଅଭୀଷ୍ଟ ଫଳ କାମ ଧେନୁ । ତୀର୍ଥ ନିବାସ ପାଦରେଣୁ ॥
ଭବ ବିରଞ୍ଚି ଯାକୁ ଚିତ୍ତେ । ତୁଷ୍ଟି କରନ୍ତି ଅବିରତେ ॥
ଶରଣ ଜନକୁ ତାରଣ । ଭୃତ୍ୟ ଆରତ ନିବାରଣ ॥
ପ୍ରପନ୍ନ ଜନ ଯେ ପାଳଇ । ଏ ଭବ କାଳେ ନାବ ହୋଇ ॥
ଯେ ରାଜଲକ୍ଷ୍ମୀ ଦେବଗଣେ । ଧ୍ୟାନେ ବାଞ୍ଛନ୍ତି ଅନୁକ୍ଷଣେ ॥
ମନୁଷ୍ୟ ଦେହ ମର୍ତ୍ତ୍ୟେ ଧରି । କେ ଅବା କୃରେ ପରିହରି ॥
ପିତା ବଚନ ଶିରେ ଧରି । ସେ ରାଜ୍ୟ ଦୂରେ ପରିହରି ॥
ଧର୍ମିଷ୍ଠ ପଣେ ପଶି ବନେ । ଯନ୍ତ୍ରିତ ପ୍ରିୟାର ବଚନେ ॥
ଧାଇଁଲା ମାୟା ମୃଗ ଅର୍ଥେ । ବନ ଗହନ ଘୋର ପଥେ ॥
ସେ ପାଦେ ମୋର ନମସ୍କାର । ଧ୍ୟାନେ ଖଣ୍ଡଇ ତମ ଘୋର ॥
ଯୁଗକୁ ଯୁଗ ଏହି ମତେ । ପରମାନନ୍ଦ ଏ ଜଗତେ ॥
ଧରଣୀ ମଧ୍ୟେ ଅବତରି । ଭ୍ରମଇ ନାନା ରୂପ ଧରି ॥
ସେ ରୂପେ ପୂଜି ନରନାରୀ । ମାୟା ସଂସାରୁ ଯାନ୍ତି ତରି ॥
ଯେ ପ୍ରାଣୀ ପଣ୍ଡିତ ବୋଲାଇ । ଗୁଣଜ୍ଞ ସର୍ବ ଶାସ୍ତ୍ର ଗ୍ରାହୀ ॥
ସକଳ ଶାସ୍ତ୍ର ଅନୁମାନେ । ନିର୍ମଳ ଚିତ୍ତେ ମହାଜନେ ॥
ବେଦ ବିଚାର ବ୍ରହ୍ମ ଭାବ । ବୋଲନ୍ତି ଧନ୍ୟ କଳିଯୁଗ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ । କରିଣ ନାମ ସଂକୀର୍ତ୍ତନ ॥
କଳି କଳୁଷେ ଦୁଷ୍ଟ ଚିତ୍ତେ । ଗୃହ କାରଣେ ଅବିରତେ ॥
ନାନା ସଂକଟୁ ଯେବେ ଥିବେ । ସଂସାରେ ଭ୍ରାନ୍ତି ନ କରିବେ ॥
ଯେ ଅବା ଥିବେ ଯେଉଁ ବେଶେ । ନବ ନିମିଷ କ୍ଷଣଲେଶେ ॥
କୃଷ୍ଣର ନାମ ଉଚ୍ଚେ ଗାଇ । ରୋମ ପୁଲକ ତନୁବହି ॥

ନୟନୁ ବହେ ଅଶ୍ରୁଜଳ । ଲଭିବେ କୋଟି ତୀର୍ଥ ଫଳ ॥
ଏମନ୍ତ ଲାଭ ଏ ଜଗତେ । କୃଷ୍ଣ ଭଜନ ନାନାମତେ ॥
ନିରନ୍ତେ ମୁଖେ ଉଚ୍ଚାରିବେ । ଅଶେଷ ପାପୁଁ ନିସ୍ତରିବେ ॥
ପ୍ରଜାଏ ସତ୍ୟ ଯୁଗ ଜାଣି । ଭବିଷ୍ୟ ମତେ ପରିମାଣି ॥
ଚିରେ କଳ୍ପଇ ସୁଖ ଭୋଗେ । ଆମ୍ଭେ ଜନ୍ମିବୁ କଳିଯୁଗେ ॥
ବ୍ରାହ୍ମଣ ଆଦି ଚାରି ବର୍ଣ୍ଣ । କରିବେ ନାମ ସଂକୀର୍ତ୍ତନ ॥
ତାହାଙ୍କ ମଧ୍ୟେ ଆମ୍ଭେ ଥାଇ । ତୁଣ୍ଡେ ଗୋବିନ୍ଦ ନାମ ଗାଇ ॥
ଭଗତ ମୁଖୁଁ କୃଷ୍ଣ ଶୁଣି । ତରିବୁ ଭବ ତରଙ୍ଗିଣୀ ॥
ଗୋବିନ୍ଦ ଚରଣାରବିନ୍ଦ । ସ୍ୱାଦ ସୁଗନ୍ଧ ମକରନ୍ଦ ॥
ମନ ଭ୍ରମର କରି ପାନ । ଯେ ଅବା ଥିବେ ସାଧୁଜନ ॥
ତାହାଙ୍କ ମଧ୍ୟେ ମିତ୍ର ଗଣେ । ସେବିବୁଁ କୃଷ୍ଣର ଚରଣେ ॥
ଏମନ୍ତ ଚିରେ କରି ଆଶା । କଳିକି କରନ୍ତି ପ୍ରଶଂସା ॥
ମୁଖେ ଧରନ୍ତି କୃଷ୍ଣ ନାମ । ଶର୍ବଣ ମାର୍ଗେ ଭଗବାନ ॥
ପ୍ରବେଶ କରି ହୃଦ ମଧ୍ୟେ । ଜନ୍ମ ମରଣ ପଥ ଛେଦେ ॥
ଏମନ୍ତେ ନବ ଋଷି ଗଣେ । ରାଜାଙ୍କୁ କହି ଜଣେ ଜଣେ ॥
କହିଲେ ଭାଗବତ ଧର୍ମ । ଯେ ରୂପେ ବିଷ୍ଣୁ ସେବାକର୍ମ ॥
ଶୁଣି ସାନନ୍ଦ ଦଣ୍ଡଧାରୀ । ଲୋମ ପୁଲକ ତନୁ ଘାରି ॥
ଲୋଚନୁ ଅଶ୍ରୁଜଳ ଝରେ । ନିର୍ମଳ ବାହ୍ୟ ଅଭ୍ୟନ୍ତରେ ॥
ମୁନିଙ୍କ ଚରଣେ ପୂଜିଲା । ଆନନ୍ଦେ ଲୋଚନ ବୁଜିଲା ॥
ତକ୍ଷଣେ ସଭା ବିଦ୍ୟମାନେ । ମୁନି ଯେ ଗଲେ ଅନ୍ତର୍ଦ୍ଧାନେ ॥
ଯେ ଧର୍ମ କରିଗଲେ ମୁନି । ନିମି ହୃଦୟେ ତାହାଘେନି ॥
ଭାବି ହୋଇଲା ଭବୁଁ ପାର । ଏବେ ହୋ ଶୁଣ ନୃପବର ॥
ତୁ ଏବେ ଏହି ଧର୍ମ କରି । ଅନ୍ତେ ଲଭିବୁ ନରହରି ॥
ଧନ୍ୟ ଏ ତୋହର ଜୀବନ । ଯାହାର ପୁତ୍ର ଭଗବାନ ॥
ଲଭିଲୁ ପୂର୍ବ ତପଫଳେ । ଏଣୁ ତୋ ଯଶ ମହୀତଳେ ॥
ବିଖ୍ୟାତ ତିନି ଭୁବନରେ । ଯେ ଯଶ ଗାଇ ପ୍ରାଣୀ ତରେ ॥
ଆସନ ଭୋଜନ ଶୟନେ । ନିରତେ ଦେଖୁ ତୁ ନୟନେ ॥
ଏ ମୋର ପୁତ୍ର ବୋଲି ଭାଳେ । ଚୁମ୍ବନ ଦେଇ ଧରୁ କୋଳେ ॥
ବ୍ରହ୍ମକୁ କରୁ ଆଲିଙ୍ଗନ । ଏଣୁ ତୁ ତ୍ରିଭୁବନେ ଧନ୍ୟ ॥
ଦନ୍ତ ବିକଟ ବିଦ୍ୟୁରଥ । ଶାଲ୍ୟ ସହିତେ ଚନ୍ଦ୍ରରଥ ॥
କଂସ ମଗଧ ଆଦି ଯେତେ । ଦୃଷ୍ଟେ ଯେ ଥିଲେ ଭୂମିଗତେ ॥
କୃଷ୍ଣେ ବଇରୀ ଭାବ ବହି । ପଶିଲେ କୃଷ୍ଣ ଦେହେ ଯାଇ ॥
ସେ ହରି ଚରଣ କମଳେ । ଯେ ଚିତ୍ତେ ପ୍ରେମଭାବ ଭୋଳେ ॥
ତାହାର ଗତି କେବା ଜାଣି । ବ୍ରହ୍ମ ଶଙ୍କରେ ପରିମାଣି ॥

କୃଷ୍ଣଙ୍କୁ ପୁତ୍ର ତୁ ନ ମଣ । ସେ ଯେ ଅନାଦି ନାରାୟଣ ॥
ଆଦି ପୁରୁଷ ତୋର ଘରେ । ମାୟା ମନୁଷ୍ୟ ଅବତାରେ ॥
ହେଳେ ଅସୁର ବଳ ମାରି । ଆପଦୁଁ ଧରଣୀ ଉଦ୍ଧରି ॥
ସ୍ୱଭାବେ ଜନ୍ମ ଯାର ନାହିଁ । ମନ ବଚନେ ଭେଦ କାହିଁ ॥
ସେ ହରି ଦେବକୀ ଉଦରେ । ଜନ୍ମ ଲଭିଲେ ତୋର ଘରେ ॥
ତୋ ଯଶ ଜଗତେ ବିସ୍ତାରି । ସେ ପୁଣି ଯିବେ ନିଜପୁରୀ ॥

## ଶ୍ରୀ ଶୁକ ଉବାଚ

ଏମନ୍ତ ନାରଦଙ୍କ ବାଣୀ । ଦେବକୀ ବସୁଦେବ ଶୁଣି ॥
ତନୁ ପୁଲକ ରୋମ ରାଜି । ଅଶ୍ରୁ ଚଞ୍ଚଳେ ଚକ୍ଷୁ ବୁଜି ॥
କୃଷ୍ଣଙ୍କୁ ପୁତ୍ର ଭାବେ ମାନି । କିଛି ନ ବୋଲି ହେଲେ ତୁନି ॥
ବୋଲନ୍ତି ଶୁକ ମୁନିବର । ସେ ନବ ଋଷଭ କୁମର ॥
ନିମିର ଯଜ୍ଞ ଶାଳେ ଥାଇ । ଯା ଇତିହାସ୍ୟେ ଗଲେ କହି ॥
ଧ୍ୟାନେ ଗୁପତ ପୁରାତନ । ବିଶେଷ ନାରଦ ବଚନ ॥
ଯେ ଏହା ଶ୍ରବଣେ ଶୁଣନ୍ତି । କି ଅବା ବଦନେ ଗୁଣନ୍ତି ॥
ସକଳ ପାପ ପଙ୍କୁ ତରି । ଅନ୍ତେ ଲଭନ୍ତି ନରହରି ॥
କହଇ ବିପ୍ର ଜଗନ୍ନାଥ । ସଂସାର ହିତେ ଭାଗବତ ॥
ହରି ଚରିତ ଗୀତ ବନ୍ଧେ । ସଂକ୍ଷେପେ ଏକାଦଶ ସ୍କନ୍ଧେ ॥
ଅମୃତ ରସମୟ ଗୀତ । ଶୁଣନ୍ତେ ଜଗତ ପବିତ୍ର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଭକ୍ତିଯୋଗକଥନେ ବର୍ଣ୍ଣ ଭେଦ ବର୍ଣ୍ଣନଂ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ

## ଶ୍ରୀ ଶୁକ ଉବାଚ

ଆନନ୍ଦେ ପରୀକ୍ଷିତ ଆଗେ । ଶୁକ କହନ୍ତି ଅନୁରାଗେ ॥
ବ୍ରହ୍ମା ଶଙ୍କର ପୁରନ୍ଦର । ସଙ୍ଗତେ ଚନ୍ଦ୍ର ଦିବାକର ॥
କୋବେର ପବନ ବରୁଣ । ଗନ୍ଧର୍ବ କିନ୍ନର ଚାରଣ ॥
ସୁସିଦ୍ଧ ସିଦ୍ଧ ରୁଦ୍ରଗଣ । ଦ୍ୱାଦଶ ବିଶ୍ୱଦେବତା ପୁଣ ॥
ପିତୃ ଗୁହ୍ୟକ କରି ଆଦି । ଯକ୍ଷ ରାକ୍ଷାସେ ଯେ ପ୍ରସିଦ୍ଧି ॥
ନାଗଙ୍କ ତୁଲେ ବିଦ୍ୟାଧରେ । ଏ ଆଦି ଯେତେ ଅନୁଚରେ ॥
ମିଳିଲେ ଚଢ଼ି ନିଜାସନେ । ଦ୍ୱାରକା କୃଷ୍ଣ ଦରଶନେ ॥
ମନିଷ୍ୟ ଦେହେ ଶିରୀ ହରି । ଦେବକୀ ଗର୍ଭୁ ଅବତରି ॥
ନିର୍ଗୁଣ ବ୍ରହ୍ମ ଜନ ହିତେ । ଯଶ ବିସ୍ତାରି ଏ ଜଗତେ ॥

ଯେ ଯଶେ କଳମଳ ହରେ । ଯାର ସ୍ମରଣେ ପ୍ରାଣୀ ତରେ ॥
ତାହାଙ୍କ ଦରଶନ ଅର୍ଥେ । ରାତ୍ରେ ମିଳିଲେ ଶୂନ୍ୟପଥେ ॥
ଦେଖିଲେ ଦ୍ୱାରକା ମଣ୍ଡଳ । ଯହିଁ ବିଜୟେ ଆଦିମୂଳ ॥
ଭୁବନ ମଣ୍ଡଳ ଶ୍ରୀମୁଖ । ଦେଖିଲେ ଖଣ୍ଡେ ଭବଦୁଃଖ ॥
ଦ୍ୱାରକା ପୁରେ ସର୍ବସିଦ୍ଧି । ଯହିଁ ସେବନ୍ତି ଅଷ୍ଟନିଧି ॥
ସର୍ବ ସମ୍ପଦ ମୂଳ ଥାନ । ଦେଖିଲେ ହରେ ପ୍ରାଣୀମନ ॥
ସକଳ ଭୁବନ ଉପମା । କେ ମୁଖେ କହୁ ଗୁଣ ସୀମା ॥
ଆକାଶେ ଦେବେ ରଥେ ଥାଇ । ଜୟ ଶବଦେ ଗୀତ ଗାଇ ॥
ନନ୍ଦନ ବନୁ ପୁଷ୍ପ ଆଣି । ପ୍ରୋକ୍ଷଣ କରି ଗଙ୍ଗାପାଣି ॥
ମଲ୍ଲିକା ଜାତି ପରିଜାତ । ବିଚିତ୍ରମାଳା ଅପ୍ରମିତ ॥
ବୃଷ୍ଟି କରନ୍ତି କୃଷ୍ଣ ଦେହେ । ସୁଗନ୍ଧ ଜଳାଧାରା ପ୍ରାୟେ ॥
ପୁଷ୍ପେ ଆଚ୍ଛାଦି ଯଦୁକୁଳ । ଯେସନେ ସମୁଦ୍ର ଉଲୋଳ ॥
ସକଳ ଦେବେ ଏକମେଳେ । ଜୟ ଶବଦ ମୁଖ ଭୋଳେ ॥
କପୋଳେ ବେନି କର ଦେଇ । ବୋଲନ୍ତି କୃଷ୍ଣପାଦ ଚାହିଁ ॥
ନମୋ ଗୋବିନ୍ଦ ହେ ଅଚ୍ୟୁତ । ତୁ ନାଥ ପ୍ରାଣୀ ପଞ୍ଚଭୂତ ॥
ତୋହର ଅଭୟ ଚରଣ । ଅଶେଷ ଜନ୍ତୁଙ୍କ ଶରଣ ॥
ସର୍ବ ଇନ୍ଦ୍ରିୟ ବୁଦ୍ଧିମନ । ପ୍ରାଣାଦି ଏ ଦଶ ଭୁବନ ॥
ଏ ଆଦି ବିଷୟ ସମ୍ଭଳେ । ଶରଣ ତୋର ପାଦ ମୂଳେ ॥
ସେ ପଦ୍ମ ପାଦ ସୁଖେ ପୂଜି । ମୁନିଏ ଭକ୍ତି ଭାବେ ଭଜି ॥
ଆରୂଢ଼ ଯୋଗୀ ଯୋଗବଳେ । ନିଚଳ ହୃଦୟ କମଳେ ॥
ଆରୋପୀ ଅଭୟ ଚରଣ । ନିଚିନ୍ତେ ପଶିଲୁ ଶରଣ ॥
ଅଶେଷ ଜନ୍ତୁ ହୃଦଗତେ । କର୍ମ ବାସନାର ଯୁଗତେ ॥
ନିମିଷେ ଧ୍ୟାନ ତା ସଙ୍ଗରେ । ରବି ଯେସନ ଅନ୍ଧକାରେ ॥
ଭବ ଜଳଧି ସୁଖ ନାଦ । ତୋର ଚରଣ ପଦ୍ମନାଭ ॥
ଆମ୍ଭେ ସକଳ ଦେବଗଣ । ତୋ ପାଦେ ପଶିଲୁ ଶରଣ ॥
ତୁ ନାଥ ଜଗତ ଜୀବନ । ଅଶେଷ ଭୁବନ ପାବନ ॥
ତୁ ନାଥ ରଜ ଗୁଣଧାରୀ । ବିଧାତା ରୂପେ ସୃଷ୍ଟି କରି ॥
ସାତ୍ତ୍ୱିକେ ବିଷ୍ଣୁ ରୂପ ହୋଇ । ପାଳଣ କରୁ ନାଥ ତୁହି ॥
ତମେ ସହାରୁ ଅନ୍ତଃକାଳେ । ତୋ ନୀଳା ମାୟା ଯୋଗବଳେ ॥
ସୃଷ୍ଟି ପାଳଣ ସଂହାରଣ । କର୍ମେ ସେ ସଂସାର କାରଣ ॥
ସଭାବେ ତୁମେ ସର୍ବଦେହୀ । ତୁ ଭୁଞ୍ଜୁ ପ୍ରାଣୀଙ୍କୁ ଭୁଞ୍ଜାଇ ॥
ସେ ଦୋଷେ ନ ଲାଗଇ ତୋରେ । ନଳିନୀ ଦଳ ଯେହ୍ନେ ନୀରେ ॥
ତୁ ପୂର୍ଣ୍ଣ ସମସ୍ତ ଠାବରେ । ଶରଣ ଗଲି ତୋ ପୟରେ ॥
ତୁ ନାଥ ସର୍ବତ୍ର ସମାନ । ନିୟତ ସୁଖ ତୋର ଥାନ ॥

ଏଣୁ ତୁ ସଂସାରେ ଦୁର୍ଲଭ । ତେଣୁ ନ ଲାଗେ ଶୁଭାଶୁଭ ॥
ବିବିଧ ତପ ବ୍ରତ ଦାନ । ଯୋଗ ସମାଦି ତତ୍ତ୍ୱଜ୍ଞାନ ॥
ଏ ଆଦି ସକଳ ସାଧନ । ସାଧି ପବିତ୍ର ନୋହେ ମନ ॥
ତୋହର ନାମ ଯଶ ଗୁଣ । ଯେ କରେ ଶର୍ବଣ କ୍ରୀତନ ॥
ଶ୍ରଦ୍ଧା ଭଗତି ଶୁଦ୍ଧ ଚିତ୍ତେ । ତୋ ରୂପ ଧ୍ୟାନ ଅନ୍ତର୍ଗତେ ॥
ସର୍ବ ଦେବଙ୍କ ମୁକ୍ଷ୍ୟ ଜ୍ଞାନ । ସନ୍ଥଜନଙ୍କ ମୁକ୍ଷ୍ୟ ଧ୍ୟାନ ॥
ତୋର ଚରିତ ସୁଧାପାନ । ନିରତେ ପିବେ ଯାରମନ ॥
ସେ ପ୍ରାଣ ଭବୁ ଯାନ୍ତି ତରି । ବିପ୍ର ନ ତରେ କର୍ମ କରି ॥
ଭକ୍ତିରେ ପ୍ରିୟେ ନାହିଁ ଯାର । ସେ କାହିଁ ଜାଣେ ତୋ ପୟର ॥
ତୁ ନାଥ ଦେବକୀର ବଳା । ତୋର ହୃଦୟେ ବନମାଳା ॥
ସଭାବେ ପ୍ରଦୋଷିତ ହୋଇ । ଦେଖି କମଳା ନ ସହଇ ॥
ମଣଇ ସପତଣୀ ପ୍ରାୟେ । ଯେଣୁ ଲମ୍ୱଇ ତୋରଦେହେ ॥
ତଥାପି ଦେଖି ତୋ ବଦନ । ସପତ୍ନୀ ଭାବ ଛାଡ଼ି ମନ ॥
ମନ ନିବେଶି ତୋ ପୟରେ । କମଳମାଳେ ପୂଜା କରେ ॥
ଯେଣୁ ଅଭୟ ପଦ୍ମପାଦ । ହରଇ ବିଷୟ ବିଷାଦ ॥
ତୋହର ତ୍ରିବିକ୍ରମ ରୂପେ । ଆମ୍ଭେ ଯେ ଦେଖିଲୁ ସମୀପେ ॥
ତୋ ନାଭି କମଳୁ ପ୍ରତ୍ୟକ୍ଷେ । ଚରଣ ଗଲା ଅନ୍ତରୀକ୍ଷେ ॥
କେ କରିପାରେ ତାହାହେତୁ । ଅଦ୍ଭୁତ ଯେହ୍ନେ ଧୂର୍ମକେତୁ ॥
ବ୍ରହ୍ମାଣ୍ଡେ ଚରଣ ବାଜିଲା । ଶବଦେ ପ୍ରକୃତି କମ୍ପିଲା ॥
ବ୍ରହ୍ମାଣ୍ଡ ଫାଟି ପାଦବଳେ । ଗଙ୍ଗା ପଡ଼ିଲା ଅନ୍ତରାଳେ ॥
ତିନି ଭୁବନେ ଜଳ ରାଶି । ଧ୍ୱଜ ପତାକା ପ୍ରାୟଦିଶି ॥
ଅସୁର କୁଳେ ଭୟଙ୍କର । ଆମ୍ଭର ଦୁଃଖ ପରିହର ॥
ସୁଜନ ସୁଖ ଭୋଗ ଅର୍ଥେ । ଖଳକୁ ଦୃଢ଼ନ ପ୍ରାପତେ ॥
ସେ ପାଦ ପଦ୍ମେ ଭଗବାନ । ପବିତ୍ର କର ଆମ୍ଭ ମନ ॥
ସେ ପାଦ ଭବ ସିନ୍ଧୁ ସେତୁ । ଅଶୁଭ ନାମ ଧୂର୍ମକେତୁ ॥
ଅଶେଷ ଲୋକେ ଜ୍ଞାନଗୁରୁ । ଆମ୍ଭର ମଙ୍ଗଳ ବିସ୍ତାରୁ ॥
ଭୋ ନାଥ ତୋହର ମହିମା । କେ କହିପାରେ ଗୁଣସୀମା ॥
ନାସିକା ରନ୍ଧ୍ରେ ରନ୍ଧୁ ଭେଦି । ଯେହ୍ନେ ବୃଷଭ ଦୃଢ଼େ ବାନ୍ଧି ॥
ସେ ଯେହ୍ନେ ବନ୍ଦିଶାଳେ ଥାନ୍ତି । ଅନ୍ୟୋନ୍ୟେ ହିଂସା ନ ବହନ୍ତି ॥
ବ୍ରହ୍ମାଦି ଦେବେ ସେହିମତେ । ଯନ୍ତ୍ରିତ ତୋହର ଆୟେତେ ॥
ତୁ କାଳ ରୂପୀ ଦାମୋଦର । ପ୍ରକୃତି ପୁରୁଷର ପର ॥
ଯେଣୁ ତୁ ପୁରୁଷ ପୁରାଣ । ତୋହର ଅଭୟ ଚରଣ ॥
ଅଭୟ ବର ଦୀକ୍ଷା ଗୁରୁ । ଆମ୍ଭର ମଙ୍ଗଳ ବିସ୍ତାରୁ ॥
ସୃଷ୍ଟି ପାଳନ ସଂହାରଣ । ତୁ ନାଥ ପରମ କାରଣ ॥

ତୁ ନାଥ କାଳ ରୂପଧାରୀ । ପ୍ରକୃତି ପୁରୁଷ ସଂହାରି ॥
ଏ ବେନି ତୋର ତହୁଁ ଜାତ । ପ୍ରଥମେ କରନ୍ତି ଜଗତ ॥
ପ୍ରକୃତି ପୁରୁଷ ବିକାରେ । ବିଶ୍ୱ ଅଙ୍କୁର ଗର୍ଭେ ଧରେ ॥
ତହୁଁ ମହତ ହେମ ମୟେ । ବ୍ରହ୍ମାଣ୍ଡ କରଇ ଉଦୟେ ॥
ପ୍ରକୃତି ଆଦି ପଞ୍ଚଭୂତ । ମନ ଅହଂକାର ଏ ସାତ ॥
ଏଣୁ ସପତ ଆହରଣ । ବ୍ରହ୍ମାଣ୍ଡ କରଇ ଭିଆଣ ॥
ତୋର ଭିତରେ ଏ ସଂସାର । ରଞ୍ଜନା ଚର୍ତୁଦିଗ ପୁର ॥
ଆବର ଆଦି ଚାରିବର୍ଣ୍ଣ । ମଧ୍ୟେ ବିରାଜେ ତ୍ରିଭୁବନ ॥
ଭୋ ନାଥ ତୋର ମାୟାବଳେ । ତ୍ରିଗୁଣ ଘଟଣ ଶୟଳେ ॥
ଜୀବନ ରୂପ ତୁମ୍ଭେ ଧର । ସର୍ବ ବିଷୟ ଭୋଗ୍ୟ କର ॥
ନିତ୍ୟ ପ୍ରକାଶ ନିତ୍ୟଦେହୀ । ବିଷୟ ବାଧ ନ ଲାଗଇ ॥
ଷୋଳ ସହସ୍ର ତୋର ମଣୀ । ତୋ ମନ ନ ପାରିଲେ ଜାଣି ॥
ବିବିଧ କାମ ପୁଷ୍ପ ଶରେ । କଟାକ୍ଷ ଭୃଭଙ୍ଗୀ ପ୍ରକାରେ ॥
ଏଣୁ ଅଚ୍ୟୁତ ତୋର ନାମ । ନିର୍ଲେପ ନିତ୍ୟ ସୁଖ ଧାମ ॥
ତୋର ଅମୃତ କଥାମୟୀ । ସଂସାରେ ନଦୀ ରୂପେ ବହି ॥
ତୋ ପାଦୁ ନୀର ସୁରନଦୀ । ବହେ ବ୍ରହ୍ମାଣ୍ଡ ମଧ୍ୟେ ଭେଦି ॥
ବଳେ ତ୍ରୈଲୋକ୍ୟ ପାପ ହରେ । ଯେ ମୁଖେ ଗଙ୍ଗା ନାମ ଧରେ ॥
ଏ ଦୁଇ ନଦୀ ମଧ୍ୟେ ସ୍ନାନ । ଯେ କରେ ଧନ୍ୟ ତା ଜୀବନ ॥
ନିଜ ଭୁବନେ ବସି ପ୍ରାଣୀ । ଯେ ନିତ୍ୟ ତୁମ୍ଭ କଥା ଶୁଣି ॥
ନିର୍ମଳ କରେ ବୁଦ୍ଧିମନ । ସେ କରେ ପଞ୍ଚାମୃତେ ସ୍ନାନ ॥
ଯେ ଅବା ପଶି ଗଙ୍ଗାଜଳେ । ସ୍ନାନ କରନ୍ତି ସୁଖ ଭୋଳେ ॥
ତୋଷେ କରନ୍ତି ଜଳପାନ । ତୁଣ୍ଡେ ଉଚ୍ଚାରି ତୋର ନାମ ॥
ଏମନ୍ତେ ବେନି ନଦୀ ମଧ୍ୟେ । ଯେ ସ୍ନାନ କରନ୍ତି ଆନନ୍ଦେ ॥
ଧରନ୍ତି ଦୁଃଖେ ସୁଖେ ଦେହୀ । ତୋ ମାୟା ତାକୁ ନ ଲାଗଇ ॥
ଏମନ୍ତେ ନାନା ତୁଷ୍ଟି ଭଣି । ଦେବେ ନମିଲେ ଚକ୍ରପାଣି ॥
ଶୂନ୍ୟେ ମଣ୍ଡଳେ ରଥେ ଥାଇ । କପାଳେ ବେନି କର ଦେଇ ॥
ଭୟ ସଂକିତ ପ୍ରଜାପତି । ବୋଇଲେ ଶୁଣ ଦାଶରଥି ॥
ବାସେବ ଆଦି ଦିଗପାଳେ । ନମିଲେ ତୋର ପାଦତଳେ ॥
ତାହାଙ୍କ ବୋଲ ତୁମ୍ଭେ କରି । ଦେବକୀ ଗର୍ଭେ ଅବତରି ॥
ବିନାଶି ଅନେକ ଅସୁର । ହରିଲ ଅବନୀର ଭାର ॥
ହେ ଦେବ ଦେବ ଜଗନ୍ନାଥ । ହେ ହୃଷୀକେଶ ପରମାର୍ଥ ॥
ଗୋବିନ୍ଦ କୃଷ୍ଣ ଦାମୋଦର । ହରିଲ ଅବନୀର ଭାର ॥
ଦେବଙ୍କ ବାକ୍ୟେ ଉପଦେଶ । ଅବନୀ ଭାରା ଅବଶେଷେ ॥
ଦୁଷ୍ଟ ସଂହାରି ସାଧୁ ଛନ୍ଦେ । ଧର୍ମ ଆରୋପିଲେ ନିଚଳେ ॥
ଧରଣୀ ସଂକଟୁ ଉଦ୍ଧାରି । ସୁଯଶ ଚର୍ତୁଦିଗେ ପୂରି ॥
ଯାଦବ ମଧ୍ୟେ ଦେହ ଧରି । ମର୍ତ୍ତ୍ୟେ ଅଦ୍ଭୁତ କର୍ମକରି ॥
ସମ୍ଭବି ଭୁବନ ମଣ୍ଡଳେ । ଯେ ଅବା କଳେ କ୍ଷିତି ତଳେ ॥
ସେ କଳି କଳୁଷ ନାଶନ । ଯେ ମୁଖେ କରିବେ କ୍ରୀର୍ତ୍ତନ ॥
ସେ ଜନ ମଧ୍ୟେ ପୁଣ୍ୟ ଦେହା । ତାକୁ ନ ଲାଗେ ବିଷ୍ଣୁମାୟା ॥
ତୁ ନାଥ ବସୁଦେବ ଘରେ । ଜନ୍ମିଲୁ ଦେବକୀ ଉଦରେ ॥
ଶତ ଅଧିକ ପଞ୍ଚବିଂଶ । ତୁମ୍ଭର ପୂରିଲା ବରଷ ॥
ମନୁଷ୍ୟ ଭୋଗ ପୂର୍ଣ୍ଣ ହୋଇ । ଆଉତ ପ୍ରୟୋଜନ ନାହିଁ ॥
ଯାଦବ ବଂଶ ମହୀତଳେ । ମରିବେ ବିପ୍ର ଶାପ ବଳେ ॥
ତୁ ନାଥ ଜ୍ଞାନ ଧ୍ୟାନ ଦୀକ୍ଷା । ଯେବେ ତୁମର ହୋୟେ ଇଚ୍ଛା ॥
ଆମ୍ଭର ବାକ୍ୟ ଅନୁସରି । ଭୋ ନାଥ ଚଳ ନିଜପୁରୀ ॥
ଆମ୍ଭେ ଯେ ତୁମ୍ଭର କିଙ୍କର । ତୁ ନାଥ ଜୀବନ ଆମ୍ଭର ॥
ତୋର ଦେହରେ ଆଜ୍ଞା ଦୀକ୍ଷା । ଶରଣ ଗଲୁ କର ରକ୍ଷା ॥
ବ୍ରହ୍ମା ବଚନେ ଅବଧାନେ । ହସିଲେ ଦେବକୀ ନନ୍ଦନେ ॥

## ଶ୍ରୀ ଭଗବାନ ଉବାଚ

ଗମ୍ଭୀର ନାଦେ ଦାମୋଦର । ବୋଇଲେ ଶୁଣ ବେଦବର ॥
ତୁମ୍ଭ ବଚନେ ଅବତରି । ମର୍ତ୍ତ୍ୟେ ମାନୁଷ୍ୟ ଦେହଧରି ॥
ଅବନୀ ଭାର କଳି ଶେଷ । କେବଳ ନୋହିଲା ଉଶ୍ୱାସ ॥
ଏ ଯଦୁ କୁଳ ବାହୁବଳେ । ବ୍ରହ୍ମାଣ୍ଡ ଆଚ୍ଛାଦିବେ ହେଳେ ॥
ଏହାକୁ ସଂହାର ନ କରି । ଯେବେ ମୁଁ ଯିବି ନିଜପୁରୀ ॥
ତେବେ ଯାଦବ ବଳ ତ୍ରାସେ । ଲୋକ ନାଶିବେ ଦଶଦିଶେ ॥
ମୁଁ ଯେ ସଂହାରି ଦୁଷ୍ଟବଳ । ଧରଣୀ ନ କଲି କୁଶଳ ॥
ଏବେ ମୁଁ ନିଜ ବଂଶ ମାରି । ଧରଣୀ ସଙ୍କଟୁ ଉଦ୍ଧରି ॥
ତେବେ ମୁଁ ଯିବି ନିଜ ଥାନେ । ଏମନ୍ତ କୃଷ୍ଣର ବଚନେ ॥
ବ୍ରହ୍ମାଦି ସର୍ବ ଦେବଗଣେ । ନମିଲେ ଗୋବିନ୍ଦ ଚରଣେ ॥
କୃଷ୍ଣ ବଚନ ମନେ ଧରି । ଗଲେ ଯେ ଯାହା ନିଜପୁରୀ ॥

## ଶ୍ରୀ ଶୁକ ଉବାଚ

ଏବେ ହୋ ଶୁଣ ମହୀପତି । ଅଦ୍ଭୁତ ଗୋବିନ୍ଦର ଗତି ॥
ଭୂମି ଗଗନ ଅଷ୍ଟାଦଶେ । ଘୋର ଅଦ୍ଭୁତ ଯଦୁବଂଶେ ॥
ଅଦ୍ଭୁତ ଦିଶେ ନିରନ୍ତର । ଦ୍ୱାରକା ବାହ୍ୟ ଅଭ୍ୟନ୍ତର ॥
ଦେଖି ଚକିତ ଚକ୍ରପାଣି । ପୁଚ୍ଛନ୍ତି ବୁଧଜନେ ଆଣି ॥

## ଶ୍ରୀ ଭଗବାନ ଉବାଚ

ଦେଖ ଉତ୍ପାତ ଘୋର ନାଦ । କି ଅବା ପଡ଼ିବ ପ୍ରମାଦ ॥
ବ୍ରାହ୍ମଣ ଶାପ କୋପାନଳ । ନିଶ୍ଚେ ଦହିବ ଯଦୁକୁଳ ॥
ଯେ ବିପ୍ର ଶାପ କ୍ଷୟ ଅର୍ଥେ । ଉପାୟେ ନ ଦେଖିଲା ପଥେ ॥
ଏଣୁ ଦ୍ୱାରକା ପୁରେ ବାସ । ଆମ୍ଭର ନୋହଇ ବିଶ୍ୱାସ ॥

ପ୍ରଭାସ ତୀର୍ଥେ ଚାଲ ଯିବା । ଯହିଁ ସକଳ ତୀର୍ଥ ସେବା ॥
ଦଣ୍ଡେ ହେଁ ବିଳମ୍ବ ନକର । ଦେଖ ଉତ୍ପାତ ଭୟଙ୍କର ॥
ପୁଣି ବୋଲନ୍ତି ଚକ୍ରପାଣି । ଆମ୍ଭେ ପୁରାଣେ ଅଛୁ ଶୁଣି ॥
ବ୍ରାହ୍ମଣ ଶାପେ ଯଦୁ ଅଙ୍ଗେ । ଜନ୍ମିଲା ରାଜ ଯକ୍ଷ୍ମା ରୋଗେ ॥
ସେ ପୁଣି ବ୍ରହ୍ମ ବାକ୍ୟ ଗଲା । ପ୍ରଭାସ ତୀର୍ଥେସ୍ନାନ କଲା ॥
ତକ୍ଷଣେ ହୋଇଲା ନିରୋଗ । ଅଧିକେ ବିରାଜଇ ତେଜ ॥
ଆମ୍ଭେ ସେ ତ୍ରୀର୍ଥେ କରିସ୍ନାନ । ବ୍ରାହ୍ମଣେ ଦେବା ମହାଦାନ ॥
ପିତୃ ତୋଷିବା ପିଣ୍ଡ ଦାନେ । ବିପ୍ରେ ଭୁଞ୍ଜାଇ ମିଷ୍ଟ ଅନ୍ନେ ॥
ଅମୂଲ୍ୟଧନ ବିପ୍ରେଦେଇ । ବାକ୍ୟ କହିବା ଚାଟୁଆଇ ॥
ମନ ସନ୍ତୋଷେ ଧନ ଦେବା । ନିରନ୍ତେ ଚରଣ ସେବିବା ॥
ଧନ ବସନ ସେବା ଫଳେ । କେବା ଅସାଧ ମହୀତଳେ ॥
ବିପ୍ରଙ୍କ ମନ ତୋଷ କରି । ଆମ୍ଭେ ବା ବିପ୍ର ଶାପୁଁ ତରି ॥
ଦାନେ ସକଳ ତୋଷ କରି । ନାବେ ଯେସନେ ସିନ୍ଧୁ ତରି ॥

### ଶ୍ରୀ ଶୁକ ଉବାଚ

ଏମନ୍ତେ କୃଷ୍ଣ ବାକ୍ୟ ଶୁଣି । ସକଳ ବୁଧ ମନେଗୁଣି ॥
କୃଷ୍ଣର ବାକ୍ୟ ସତ୍ୟକରି । ତ୍ରୀର୍ଥ ଗମନ ମନେ ଧରି ॥
ରଥ ଶକଟ ଗଜବାଦୀ । ଯେ ଯାହା ଅନୁମତେ ସାଜି ॥
ଧନୁ ଖଡ଼ଗ ଆଦି କରି । ସମସ୍ତ ଅସ୍ତ୍ରଶସ୍ତ୍ର ଧରି ॥
ସଜ ହୋଇଲେ ତୋଷମନେ । ଗୋବିନ୍ଦ ତ୍ରୀର୍ଥ ଅନୁମାନେ ॥
ଉଦ୍ଧବ ଦେଖି ତାହାମନେ । ଜାଣିଲା କୃଷ୍ଣର ବଚନେ ॥
ଉତ୍ପାତ ଭୟଙ୍କର ଚାହିଁ । ଚକିତ ଚିତ୍ତେ ବିଚାରଇ ॥
ବ୍ରାହ୍ମଣ ଶାପ୍ୟେ ଯଦୁବଂଶ । ଅବଶ୍ୟ ଏବେ ଯିବେନାଶ ॥
ମାୟାର ଯୋଗେ କୃଷ୍ଣରାମ । ନିଶ୍ଚୟ ଯିବେ ନିଜ ଧାମ ॥
ଉଦ୍ଧବ ଏମନ୍ତ ବିଚାରି । ବେନି ନୟନୁ ବହେ ବାରି ॥
କାନ୍ଦି କୃଷ୍ଣର ସନ୍ନିଧାନେ । ଗୁପତ ଆତ୍ମା ବିଦ୍ୟମାନେ ॥

### ଉଦ୍ଧବ ଉବାଚ

କୃଷ୍ଣ ଚରଣ ଧରି କରେ । ଉଦ୍ଧବ କହେ ଶୋକ ଭରେ ॥
ହେ ଦେବ ଦେବ ନିରଞ୍ଜନ । ହେ ପୁଣ୍ୟ ଶର୍ବଣ କ୍ରୀର୍ତ୍ତନ ॥
କୁଳ କି ସଂହାରିବୁ ତୁହି । ଏମନ୍ତ ପ୍ରାୟେ ମୁଁ ମଣଇ ॥
ତୁ ଯେ ବୋଲାଉ ଭଗବାନ । ନ କରୁ ବ୍ରହ୍ମଶାପ ଆନ ॥
ତୁ କାଳରୂପୀ ମାୟାଧର । ଏ ରୂପ କରିବୁ ଅନ୍ତର ॥
ଏ ନର ଲୋକେ ଛାଡ଼ି ହରି । ନିଶ୍ଚୟେ ଯିବୁ ନିଜ ପୁରୀ ॥
ତୋହାର ଅଭୟ ଚରଣ । ପରମ ମଙ୍ଗଳ କଲ୍ୟାଣ ॥
ସେ ପାଦେ ମୋର ମନ ଜଡି । ତିଳେ ହେଁ ନ ପାରଇ ଛାଡ଼ି ॥
ସେ ପାଦେ ପଶିଲି ଶରଣ । ମୋତେ ନଛାଡ଼ ନାରାୟଣ ॥
ତୋର ଚରିତ ସୁଧାପାନ । ଯେ କରେ ଶର୍ବଣ କ୍ରୀର୍ତ୍ତନ ॥
ଭାବେ ଅମୃତ ପାନ କରି । ସକଳ କର୍ମ ଯେ ପାସୋରି ॥
ମାର୍ଜନ ସୁଗନ୍ଧ ଲେପନେ । ଆସନ ଭୋଜନ ଶୟନେ ॥
ସଙ୍ଗ ନଛାଡ଼ ପ୍ରଭୁମୋତେ । ଏବେ ମୁଁ ଦେଖିଲି ଯେ ତୋତେ ॥
କେମନ୍ତେ ଧରିବି ଜୀବନ । ହୋଇବ ଦଶଦିଶ ଶୂନ୍ୟ ॥
ତୋହର ଅଙ୍ଗ ଉପହାର । ଶରୀରେ ଭୂଷଣ ମୋହର ॥
ଗନ୍ଧ ଚନ୍ଦନ ମାଳ ଯେତେ । ଭୁଞ୍ଜଇ ତୋର ଭୋଗ ଅନ୍ତେ ॥
ତୋର ନିର୍ମାଲ୍ୟ ନିତ୍ୟେ ଥାଇ । ତୋ ରୂପ ନୟନେ ଦେଖଇ ॥
ତୁ ଯେ ମୋହର ପ୍ରାଣବନ୍ଧୁ । ଉଦ୍ଧାର ତୋର ମାୟାସିନ୍ଧୁ ॥
ତୁ ନାଥ ଶରଣ ସୋଦର । ତୋର ସଙ୍ଗତେ ମୋତେକର ॥
ଯେ ପ୍ରାଣୀ ଦିଗମ୍ବର ହୋଇ । ଭ୍ରମେ ସନ୍ୟାସ ଦେହବହି ॥
ଇନ୍ଦ୍ରିୟଗଣ ଦୃଢ଼େ ଛନ୍ଦି । ମନପବନ ହୃଦେ ରୁନ୍ଧି ॥
ବ୍ରହ୍ମ ଚିନ୍ତଇ ଅବିରତେ । ନି ଅହଂକାର ଶୁଦ୍ଧଚିତ୍ତେ ॥
ଅଷ୍ଟାଙ୍ଗ ଯୋଗ ଭୋଗେ ଚିନ୍ତି । ଲମ୍ଭନ୍ତି ବ୍ରହ୍ମଜ୍ଞାନ ମତି ॥
ତୋର ଅମୃତ ରସବାଣୀ । ନିରନ୍ତେ ଶର୍ବଣେ ଯେ ଶୁଣି ॥
ତୋର ସେବକ ଯାର ବନ୍ଧୁ । ହେଳେ ସେ ତରେ ଭବସିନ୍ଧୁ ॥
ତୋହର ପାଦେ ଯାର ମନ । ସେ ପ୍ରାଣୀ ଭଗତ ଉତ୍ତମ ॥
ଏମନ୍ତେ ଉଦ୍ଧବ ବଚନେ । ନିବେଦି କୃଷ୍ଣ ସନ୍ନିଧାନେ ॥
ଉଦ୍ଧବ କହେ ପୁଣ ପୁଣ । ସ୍ୱାମୀର ଯେତେ ଭାବଗୁଣ ॥
ଏକାଦଶମ ଭାଗବତ । ଶୁକ କହନ୍ତି ବ୍ରହ୍ମତତ୍ତ୍ୱ ॥
ଅମୃତ ରସମୟ ବାଣୀ । ଶୁଣି ତରିବେ ସର୍ବପ୍ରାଣୀ ॥
ସିଦ୍ଧ ସଙ୍ଗତ ମନୋରଥ । କହଇ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଦେବସ୍ତୁତି ବର୍ଣ୍ଣନେ ଉଦ୍ଧବ ବିଜ୍ଞାପୋନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

ହସି କହନ୍ତି ପଦ୍ମନାଭ । ଶୁଣ ହେ ଭଗତ ଉଦ୍ଧବ ॥
ହେତୁ କାରଣ ତୁହି ଜାଣି । ଯେତେ କହିଲୁ ପରିମାଣି ॥
ବ୍ରହ୍ମା ଶଙ୍କର ଆଦି ଦେବେ । ମୋର ନିକଟେ ଆସି ଏବେ ॥
ଅନେକ ସ୍ତୁତି କଲେ ପାଶେ । ବୈକୁଣ୍ଠ ଗମନ ବିଶ୍ୱାସେ ॥

ମୁଁ ଏବେ ଦେବ କାର୍ଯ୍ୟ କରି । ମେଦିନୀ ଭାରେ ଅବତରି ॥
ଏବେ ତ ପ୍ରୟୋଜନ ନାହିଁ । ନିଜ ଭୁବନେ ଯିବି ମୁହିଁ ॥
ବ୍ରହ୍ମା ବଚନେ ଇଚ୍ଛା ମୋର । ଏଣୁ ମନିଷ୍ୟ ଅବତାର ॥
ଏବେ ତୁ ଶୁଣ ମୋ ବିଶ୍ୱାସେ। ଆଜହୁ ସପତ ଦିବସେ ॥
ଏ ଯେତେ ମୋର ଯଦୁବଂଶ । ଘୋର କନ୍ଦଳେ ଯିବେ ନାଶ ॥
ସପତ ଦିନ ରାତ୍ର କାଳେ । ପ୍ରଚଣ୍ଡ ସମୋଦ୍ର ଉଲ୍ଲୋଳେ ॥
ଏ ଯଦୁପୁରୀ ସିନ୍ଧୁ ଜଳେ । ବୁଡ଼ି ପଡ଼ିବ ରସାତଳେ ॥
ମୋର ନିବାସ ମାତ୍ର ଥିବ । ଜଳେ ଦ୍ୱାରକା ନାଶଯିବ ॥
ମୁଁ ପୁଣି ଯିବି ନିଜ ପୁରୀ । ଭୂମି ଦିଶିବ ହତଶିରୀ ॥
ଲୋକେ ହୋଇବେ ଖଳବଳ । ନାଶିବେ ଭୁବନ ମଣ୍ଡଳ ॥
ଶୁଣି ମୋହର ତନୁ ତ୍ୟାଗ । ଘୋର କନ୍ଦଳ କଳିଯୁଗ ॥
ବ୍ରହ୍ମାଣ୍ଡ ମଧ୍ୟେ ବଳେ ପଶି । ଭୂମି ଗଗନେ ତେଜ ରାଶି ॥
ହରିବେ ସର୍ବ ଯନ୍ତୁ ମନ । ତୁ ଏବେ ଶୁଣ ମୋ ବଚନ ॥
ଦଣ୍ଡେ ନ ରହ ମୋର ସଙ୍ଗେ। ଅରଣ୍ୟେ ପଶ ଯାଇ ବେଗେ ॥
ଏ ଘୋର କଳିଯୁଗ ଗତି । ଲୋକେ ହୋଇବେ ଦୁଷ୍ଟ ମତି॥
ହିଂସା ବହିବେ ଏକ ଏକେ । ସର୍ବେ ଭୁଞ୍ଜିବେ ଦୁଃଖ ସୁଖେ ॥
ଆଗମେ କରିବେ ଗମନ । ନିନ୍ଦିବେ ନିଗମ ବଚନ ॥
ଏଣୁ ହୋଇବେ ଅନ୍ଧ ଆଖୀ । ପାପେ ସକଳ ଜୀବେନାଶ ॥
ତୁ ଏବେ ଛାଡ଼ ସୁତ ବିତ୍ତ । ଦାରା ସେବନ ପ୍ରେମ ଚିତ୍ତ ॥
ସକଳ କର୍ମ ଦୂର କରି । ମୋର ଚରଣ ଚିତ୍ତେ ଧରି ॥
ପୃଥିବୀ କରି ପ୍ରଜଟନ । ଅସତ୍ୟ ଦେଖ ତ୍ରିଭୁବନ ॥
ଦୃଷ୍ଟି ଶର୍ବଣ ବାକ୍ୟମଣେ । ଯେତେ ବିଚାର ଅବଧାନେ ॥
ଏସର୍ବ ମାୟାର ସଞ୍ଚାର । ଏଣେ ତୁ ବିଶ୍ୱାସ ନ କର ॥
ବିବିଧ ମତେ ଚିତ୍ତ ଭ୍ରର୍ମେ । ଅନ୍ଧ ଯେସନେ ଘୋରତମେ ॥
ସଂସାରେ ଭେଦ ବୁଦ୍ଧି କରେ। ଦୋଷ ଅଦୋଷ ନ ବିଚାରେ ॥
ଅକର୍ମ କର୍ମ ବୋଲି ମଣେ । ବିକର୍ମ ବିଧି ବିଚାରଣେ ॥
ଏଣୁ ମଣଇ ଗୁଣଦୋଷ । ଭେଦ ବେଭାରେ ବୁଦ୍ଧି ଭ୍ରଂସ॥
ବେଦ ବଚନ ଏହି ମତେ । କର୍ମାଣୁସାରେ ନିଜ ପଥେ ॥
ନିୟତ କର୍ମ ନ କରଇ । ବିକର୍ମେ ଗୁଣ ଦୋଷ ବହି ॥
ନିଷେଧ କର୍ମ ବୋଲି ତାରେ । ଯେଣୁ ପଡ଼ଇ ଏ ସଂସାରେ ॥
ଏହାକୁ ସୁମନେ ବିଚାର । ଚଞ୍ଚଳ ଚିତ୍ତଥିର କର ॥
ସର୍ବ ଇନ୍ଦ୍ରିୟ ମନ ବୁଦ୍ଧି । ନିଜ କମଳେ ଦିଅ ବନ୍ଧି ॥
ଆତ୍ମାକୁ ଦେଖ ସର୍ବମୟେ । ବିବେକ ସୁଜ୍ଞାନ ଉଦୟେ ॥
ସମାଦି ବସି ଯୋଗ ଧ୍ୟାନେ । ଆତ୍ମାକୁ ଦେଖ ଆତ୍ମାଜ୍ଞାନେ ॥
ଏଣେ ସନ୍ତୋଷ ମନେ ଧ୍ୟାୟ । ଖଣ୍ଡିବୁ ସକଳ ସଂଶୟ ॥
ଯାର ହୃଦୟ ଦୋଷ ଗୁଣ । ଭେଦ ନକରେ ବିଚାରଣ ॥
ସକଳ ସମାନ ଦେଖଇ । ବିଧି ନିଷେଧ ତାର କାହିଁ ॥
ବାଳକ ବାଳିକା ସଙ୍ଗତେ । ଅଜ୍ଞାନେ ଖେଳଇ ଯେମନ୍ତେ ॥
ବାଳ ସଭାବ ଗୁଣ ବହି । ସଙ୍ଗ ଅସଙ୍ଗ ନ ଜାଣଇ ॥
ବିତର୍କ ଜ୍ଞାନୀ ଏହି ମତେ । କ୍ରୀଡ଼ା କରଇ ଏ ଜଗତେ ॥
ସକଳ ଦେଖଇ ସମାନ । ଏଣୁ ନକରେ ବସ୍ତୁଜ୍ଞାନ ॥
ତୁ ଏବେ ସର୍ବପ୍ରାଣୀ ହିତେ । ନିରନ୍ତେ ଥାଅ ଶାନ୍ତି ଚିତ୍ତେ ॥
ନିରନ୍ତେ ଜ୍ଞାନେ ମନ ଦେଇ । ମନ ନିଶ୍ଚଳ ରଖ ତୁହି ॥
ସଂସାର ଦେଖ ମୋ ସ୍ୱରୂପେ । ଗଞ୍ଜି ନୋହିବୁ ଭବ କୂପେ ॥

## ଶ୍ରୀ ଶୁକ ଉବାଚ

ଏମନ୍ତେ କୃଷ୍ଣର ବଚନ । ଶୁଣି ଉଦ୍ଧବ ଖେଦ ମନ ॥
ପ୍ରନାମ କରି କୃଷ୍ଣ ପାଦେ । ବୋଲଇ ଶୋକ ଗଦଗଦେ ॥

## ଶ୍ରୀ ଉଦ୍ଧବ ଉବାଚ

ହେ ମହାଯୋଗୀ ଯୋଗେଶ୍ୱର । ଦୁର୍ଲ୍ଲଭ ବଚନ ତୁମ୍ଭର ॥
ନ ପଶେ ମୋହର ହୃଦୟେ । ନଳିନୀ ଜଳେ ଜଳ ପ୍ରାୟେ ॥
ତୁମ୍ଭେ କହିବ ତ୍ୟାଗ ଗୁଣ । ଯେ ଧର୍ମ ସନ୍ୟାସ ଲକ୍ଷଣ ॥
କାମ ଜଡ଼ିତ ମୋର ମନେ । ବିଷୟ ବିଷୟା ଗହନେ ॥
ତୋର ଭଗତି ନାହିଁ ଚିତ୍ତେ । ମନକୁ ଚିହ୍ନିବି କେମନ୍ତେ ॥
ତୋର ସ୍ମରଣ ଯାର ଦୂରେ । କି ରୂପେ ତ୍ୟାଗ ତା ସଂସାରେ॥
ଯେ କିଛି ତୋହର ଚରଣେ । ମୁହିଁ ପ୍ରଜ୍ଞଇ ମୂଢ଼ ପଣେ ॥
ମୁଁ ମୂଢ଼ ମାୟା ଜଡ଼ ମତି । ଭୋ ନାଥ ଶୁଣ ଯଦୁପତି ॥
ମୁହିଁ ମୋହର ଏ ଶରୀର । ସକଳ ସଂସାର ମୋହର ॥
ମୋହେ ଜଡ଼ିତ ମୋର ଚିତ୍ତ । ଏଣୁ ମୁଁ କୈବଲେ ବଚିତ ॥
ଏ ସତ୍ୟ ସୁତ ଦାରାଧନ । ମୋ ମନ କରେ ନିତ୍ୟ ଧ୍ୟାନ॥
ମାୟା ସଂକଟ ଘୋରେ ଜଡ଼ି । ଭବ ବନ୍ଧନେ ଅଛି ପଡ଼ି ॥
ଏ ମୋର ମୋହ ଜାଲ ଫାଶ। କିଣ୍ଥିତେ ଛେଦ ହୃଷୀକେଶ ॥
ନିଚୟ କରି ତୋର ଦାସ । କହ ତୋ ମାର୍ଗ ଉପଦେଶ ॥
ତୁ ଆତ୍ମା ସତ୍ୟ ନିତ୍ୟ ନିଧି । ଚଉଦ ଭୁବନ ପ୍ରସିଦ୍ଧି ॥
ତୁ ବ୍ରହ୍ମ ଜ୍ଞାନ ଗୁରୁ ଦାତା । ତୋ ବିନୁ ନାହିଁ ନା ବକତା ॥
ନାନା ପ୍ରପଞ୍ଚ ବେଦ ବାଦେ । କେ ଅଛି ସୁର ସଭାମଧେ ॥
ବ୍ରହ୍ମାଦି ଦେବଗଣ ଯେତେ । ତୋହର ମାୟା ବିମୋହିତେ ॥
ବିଷୟ ଧ୍ୟାନ ଅବିରତ । ଏଣୁ ତୋ ମାର୍ଗରେ ବଚିତ ॥
ସେ ଯେବେ ତତ୍ତ୍ୱ ଅବଧାରୀ । କେ ମାୟା ନପାରିଲେ ତରି ॥

ଅଶେଷ ମହିମା ତୋହର । ସର୍ବଜ୍ଞ ଜଗତ ଈଶ୍ୱର ॥
ଯେଣୁ ତୁ ଅଷ୍ଟ ନିଧିଧାରୀ । ତେଣୁ ତୁ ସର୍ବ ଅଧିକାରୀ ॥
ଅକୁଣ୍ଠ ବିକୁଣ୍ଠ ମହିମା । ବେଦ ନଜାଣେ ତୋର ସୀମା ॥
ହେ ଜଗନ୍ନାଥ ନରାଏଣ । ତୋ ପାଦେ ପଶିଲି ଶରଣ ॥
ତୋ ନାମ ଦୁରିତ ଦହନ । ପାପ ମୋ କରିବି ମୋଚନ ॥

## ଶ୍ରୀ ଭଗବାନ ଉବାଚ

ଉଦ୍ଧବ ବାକ୍ୟେ ଯଦୁମଣି । ମନ ହୃଦୟ ତାର ଜାଣି ॥
ବୋଲନ୍ତି କମଳ ଲୋଚନ । ଉଦ୍ଧବ ଶୁଣ ମୋ ବଚନ ॥
ଯେ ପ୍ରାଣୀ ଲୋକ ତତ୍ତ୍ୱଜାଣି । ମୋର ମହିମା ପରିମାଣି ॥
ବିତକେ ଭ୍ରମିଇ ସଂସାରେ । ଆତ୍ମାକୁ ଆପଣେ ଉଦ୍ଧରେ ॥
ସୁମତି ଆତ୍ମା ଗୁରୁ ପଣେ । ଆତ୍ମାକୁ ବୁଝାଇ ଆପଣେ ॥
ଆତ୍ମାକୁ କରେ ଆତ୍ମା ଜ୍ଞାନେ । କେବଳ ଚିତ୍ତେ ଅନୁମାନେ ॥
ଆତ୍ମା କୁଶଳେ ସବସିଦ୍ଧି । ତରଇ ସଂସାର ଜଳଧି ॥
ଜ୍ଞାନ ବୁଝଇ ଧୀର ପଣେ । ଆତ୍ମା ସମାଦି ଅଭ୍ୟାସଣେ ॥
ଆତ୍ମାକୁ ଦେଖ ସବଭୂତେ । ନିଲେପ ସର୍ବଶକ୍ତି ଯୁକ୍ତେ ॥
ଏବେ ତା କହିବା ବିଶ୍ୱାସେ । ଯେ ପୁରାତନ ଇତିହାସ୍ୟେ ॥
ଯଦୁ ରାଜନ ଅବଧୂତ । ଏ ବେନି ଜନଙ୍କ ଚରିତ ॥
ବ୍ରାହ୍ମଣ ଅବଧୂତ ରୂପେ । ମିଳିଲେ ନୃପତି ସମୀପେ ॥
ଏ ସର୍ବ ଭୂତେ ଦୟାପର । ନିର୍ମଳ ନିତ୍ୟ ଏ ଶରୀର ॥
ଦେଖି ତାହାର ଦିବ୍ୟ ଗତି । ବିଶ୍ୱାସେ ପୁଛଇ ନୃପତି ॥

## ରାଜା ଉବାଚ

ଭୋ ମୁନି ନମୁ ତୋ ଚରଣେ । ଏକାନ୍ତେ ଭର୍ମୁ କି କାରଣେ ॥
ଦୃଷ୍ଟି ଶର୍ବଣ ଦେହ ବହି । ନ ଦେଖି ନଶୁଣୁ କିପାଇଁ ॥
ଏ ସର୍ବଲୋକ ଭବ କୂପେ । ନିତ୍ୟ ଦଗଧ ନାନାତପେ ॥
ଏହାଙ୍କ ମଧ୍ୟେ ତୁମ୍ଭେ ଥାଇ । ସାଧୁ ସୁନ୍ଦର ଦେହ ବହି ॥
କିମ୍ବା ସଂସାର ତାପ ତୋତେ । ନବାଧେ ସନ୍ଦେହ ମୋ ଚିତ୍ତେ ॥
ଯେସନେ ଗଙ୍ଗାଜଳେ ହସ୍ତୀ । ଅଙ୍ଗକୁ ନଲାଗେ ତପତି ॥
ସେହି ପ୍ରକାରେ ତୋ ଶରୀର । ମୋହ ମନକୁ ଅଗୋଚର ॥
କହ ଯେବଣ ପ୍ରୟୋଜନ । ଶୁଣି ଆନନ୍ଦ ହଉ ମନ ॥
ରାଜା ବଚନେ ଅବଧୂତ । କ୍ଷଣେ ହୋଇଲା ମୂରଛିତ ॥
ରାଜା ବଦନ ଚାହିଁ ଧିରେ । ବୋଲଇ ବଚନ ଗଭୀରେ ॥

## ଶ୍ରୀ ଅବଧୂତ ଉବାଚ

ଶୁଣ ହୋ ଯଦୁ ନୃପବର । ଅନେକ ଗୁରୁ ଅଛି ମୋର ॥
ଶୁଣିତେ ଯେବେ ତୋର ଇଚ୍ଛା । ଯାହାର ଠହୁଁ ଯେବା ଦୀକ୍ଷା ॥
ଘେନି ମୁଁ ବୁଲଇ ସଂସାରେ । ଶୁଣ କହିବା ମନ ଥିରେ ॥
ପୃଥିବୀ ପବନ ଅନଳ । ବାଳକ ଆକାଶ ମଣ୍ଡଳ ॥
ରବି ଶଶାଙ୍କ ଆମ ସିନ୍ଧୁ । କୁଞ୍ଜର ସବପୁଷ୍ପ ବଧୂ ॥
କପୋତ ପକ୍ଷୀ ଗୁରୁ ମୋର । ପତଙ୍ଗ ସର୍ବେ ଅଜଗର ॥
ମୀନା ପିଙ୍ଗଳା ବୈଶ୍ୟା ନାରୀ । କୁରର ମୁନିର କୁମାରୀ ॥
ହରିଣ ଉର୍ଣ୍ଣନାଭ ଭରି । ଶର କାରକ ମଧୁହାରୀ ॥
ଏ ଆଦି କୀଟ ପସସ୍ମରି । ମୁଁ ଏତେ ଗୁରୁ ଅଛି କରି ॥
ଚବିଶ ଗୁରୁ ମୋର ଏତେ । ଶୁଣ ହୋ ରାଜା ଏକ ଚିତ୍ତେ ॥
ଯାହାର ଠହୁଁ ଯେବା ଦୀକ୍ଷା । ମୁହିଁ ପାଇଲି ଗୁରୁଶିକ୍ଷା ॥
ଏବେ ମୁଁ ତୋହର ସମୀପେ । ଭବ କହିବା ଏକେ ଏକେ ॥
ଏ ଜୀବ ଆତ୍ମା ପର ବଶ । ଅଦୃଷ୍ଟ କାରଣ ବିଶେଷ ॥
ଦୁଃଖ ପୀଡ଼ିତା କର୍ମ ଫଳେ । ସଂସାରଜନ ଅବହେଳେ ॥
କର୍ମ ଆଦରି ସହେ ଦୁଃଖ । କେବେହେଁ ନୁହଇ ବିମୁଖ ॥
ଦୁଃଖେ ନ ଛାଡ଼ି ନିଜ ପଥ । ଚଞ୍ଚଳ ନ କରିବ ଚିତ୍ତ ॥
ଏଣୁ ମୁଁ ଦୁଃଖ ସୁଖ ବହୁ । ଏହା ଶିଖିଲି ଭୂମି ଠହୁଁ ॥
କର୍ମ କର୍ଷଣ ସହି ଧୀରେ । ଭ୍ରମଇ ସଂସାର ସାଗରେ ॥
ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣୀ ଧରେ ପରହିତେ ॥
ଧନ୍ୟ ଜୀବନ ଧନ୍ୟ ତାର । ଦୁର୍ଲଭ କର୍ମ ଏ ବେଭାର ॥
ମୁଁ ଏହା ବୃକ୍ଷଙ୍କର ଧାନେ । ଶିଖିଲି ପର୍ବତ ଗହନେ ॥
କେବଳ ଦେହ ମାତ୍ର ଧରି । ଇନ୍ଦ୍ରିୟ ତର୍ପଣ ନକରି ॥
ଜ୍ଞାନ ଉଦିସ ଶୁଦ୍ଧ ମନ । ନକର ମାୟା ଜଡ଼େ ଛନ୍ନ ॥
ନ ଘେନି ତାର ଗୁଣ ଦୋଷ । ଇନ୍ଦ୍ରିୟ ଭୋଗ ସୁଖଲେଶ ॥
ଅସତ୍ୟ ଭୋଗ ଯେବେ ଥିବ । ସର୍ବଥା ତାହା ନ କରିବ ॥
ଦେଖ ପବନ ଏ ଶରୀରେ । ବହଇ ଅନ୍ତରେ ବାହାରେ ॥
ସର୍ବତ୍ର ବସଇ ଶରୀରେ । ଅଦେହ ଶବ ଗନ୍ଧ ଧରେ ॥
ଏଣୁ ସକଳ ଦେହେ ଥାଇ । ଉଦାସି ଜନ ପ୍ରାୟେ ହୋଇ ॥
କାହାରି ସଙ୍ଗେ ବଶ୍ୟ ନୋହେ । ସମି ବସଇ ସର୍ବ ଦେହେ ॥
ମୁଁ ଏହା ପବନେ ବିଚାରି । ଶିଖିଲି ଗୁରୁଶିକ୍ଷା କରି ॥
ଏଣୁ ପବନ ପ୍ରାୟେ ହୋଇ । ସଙ୍ଗତେ ଥାଇ ନ ମିଶଇ ॥
ମେଘ ଯେ ଶୂନ୍ୟେ ଜାତହୋଇ । ଶରୀରେ ଆକାଶ ଢ଼ାଙ୍କଇ ॥
ଭୂମି ଲୋକଙ୍କୁ ଛାୟା ଦିଶେ । ସେ ଯେହ୍ନେ ଆକାଶେ ନ ମିଶେ ॥
ଏଣୁ ଆକାଶ ଗୁରୁ କରି । ଅବନୀ ମଧ୍ୟେ ଦେହ ଧରି ॥
ଆନନ୍ଦେ ଭ୍ରମିଇ ସଂସାରେ । ସ୍ପରଶ ନକରି କାହାରେ ॥
ଏଣୁ ଆକାଶ ଗୁରୁମୋର । ଏବେ ହୋ ଶୁଣ ନୃପବର ॥

ମଧୁର ସୁରୁଚି ବଚନ । ଶୁଣି ହରଷ ସର୍ବଜନ ॥
ତୀର୍ଥ ଶରୀରେ ଲୋକ ବୃନ୍ଦ । କେସନେ ଲଭନ୍ତି ଆନନ୍ଦ ॥
ସ୍ୱାହାନ ତର୍ପଣ କ୍ରୀଡନେ । ପବିତ୍ର ହୋନ୍ତି ପ୍ରାଣୀ ଯେହ୍ନେ ॥
ଏ ଅନୁଭବେ ମୋର ଦିକ୍ଷା । ଜଳୁ ଶିଖିଲି ଗୁରୁଶିକ୍ଷା ॥
ତୀର୍ଥର ପ୍ରାୟେ ଭବବଣେ । ବୁଲଇ ଜନ ପରିତ୍ରାଣେ ॥
ଦେଖ ତୁ ମୋର କଳେବର । ସୁଦୀପ୍ତ ତେଜ ବଳୀୟାର ॥
କେବଳ ପାତ୍ର ମୋ ଉଦର । ଏଣୁ ମୁଁ ଲୋକେ ଭୟଙ୍କର ॥
କେବଳ ଯୋଗ ଜ୍ଞାନବଳେ । ଭୋଜନ କରେ ସର୍ବଘରେ ॥
ଏଣୁ ମୁଁ ଅଗ୍ନି ଗୁରୁ କରି । ଲୋକେ ଭ୍ରମଇ ଦେହଧରି ॥
ଅଗ୍ନି ଯେସନେ ସର୍ବ ଖାଇ । ବିଚାରେ ଗୁଣଦୋଷ ନାହିଁ ॥
ଜନ୍ମ ମରଣ ଜରା ମୃତ୍ୟୁ । ଶୁଭ ଅଶୁଭ ଦୁଃଖ ହେତୁ ॥
ଏସର୍ବ ଗୁଣ ବହେ ଦେହ । ଜୀବର ନୋହେ ପରିଗ୍ରହ ॥
ଚନ୍ଦ୍ରର କ୍ଷୟ ବୃଦ୍ଧି ଯେହ୍ନେ । କୃଷ୍ଣ ଶୁକଳ ପକ୍ଷ ମାନେ ॥
ଲୋକ ଲୋଚନେ ଭ୍ରାନ୍ତି ଦିଶେ । ଅକ୍ଷୟ ଏକ କଳାଶେଷେ ॥
ଜୀବର ଏମନ୍ତ ବେଭାର । ସଭାବେ ଅଜର ଅମର ॥
ଏ ଅନୁଭବେ ଚନ୍ଦ୍ର ଚାହିଁ । ଭ୍ରମଇ ଗୁରୁଶିକ୍ଷା ପାଇ ॥
ଇନ୍ଦ୍ରିୟ ଗଣ ଏ ଶରୀରେ । ଭ୍ରମଇ ବିଷୟା ଗୋଚରେ ॥
ଯେ ଯା ବିଷୟ ଅନୁମାନେ । ଭେଟ କରନ୍ତି ନିଜ ଥାନେ ॥
ଆତ୍ମା ସଙ୍ଗ ନାହିଁ ଏଣେ । ଆଦିତ୍ୟ ଯେସନେ କିରଣେ ॥
ସକଳ ଥାନୁ ଦୋଷହରେ । ନିର୍ଦ୍ଦୋଷ ନିର୍ଲେପ ବିଚାରେ ॥
ଏ ଜୀବ ଆତ୍ମା ସର୍ବଦେହେ । ଇନ୍ଦ୍ରିୟ ରସେ ବଶ୍ୟ ନୋହେ ॥
ଏ ଅନୁମାନେ ମୋ ବିଚାର । ଏଣୁ ମୋ ଗୁରୁ ଦିବାକର ॥
ଏ ଭାବେ ଯେତେ ଜନ ଥାନ୍ତି । ତାହାକୁ ବୋଲି ମହାମତି ॥
ଏଣୁ ଏ ସଂସାର ସଙ୍ଗତେ । ପୀରତି ନ କରିବ ଚିତ୍ତେ ॥
ଯେବେ କଛିବ ମୋହ ଫାଶ । କପୋତ ପ୍ରାୟେ ଯିବ ନାଶ ॥
ଶୁଣ ରାଜନ ସାବଧାନେ । କପୋତ ପକ୍ଷୀ ଘୋର ବନେ ॥
କପୋତୀ ସଙ୍ଗେ ସ୍ନେହ ଭରେ । ଅରଣ୍ୟେ ଗୃହବାସ କରେ ॥
କପୋତୀ ସଙ୍ଗେ ଭୋଗ ଆଶେ । ଦୃଢ଼େ ଯନ୍ତିତ ମୋହପାଶେ ॥
ନିତ୍ୟେ କରନ୍ତି କ୍ରିଡ଼ାରଙ୍ଗ । ତିଳେହେଁ ନଛାଡ଼ନ୍ତି ସଙ୍ଗ ॥
ସ୍ନେହ ବନ୍ଧନ ସଙ୍ଗ ମେଳେ । କାଳ ବଞ୍ଚନ୍ତି କୋତୋହଳେ ॥
ସଙ୍ଗ ବିଚ୍ଛେଦ ତିଳ ମାତ୍ରେ । କେବେହେଁ ନ ଦେଖନ୍ତି ନେତ୍ରେ ॥
ଏକତ୍ର ଶୟନ ଭୋଜନେ । ଏମନ୍ତେ ବିହରନ୍ତି ବନେ ॥
କପତୀ ଚିତ୍ତେ ଯାହା କରେ । କପୋତ ଆଣେ ତତପରେ ॥
ସେବକ ପ୍ରାଏ ଦିଏ ଆଣି । ଯାହା ମାଗଇ ତା ଘରଣୀ ॥
ଏମନ୍ତେ କେତେ ଦିନ ଗଲା । କପୋତୀ ଗର୍ଭ ଉପୁଜିଲା ॥

କେତେ ହେଁ ଦିନ ଗର୍ଭଥାଇ । ଜାତ ହୋଇଲେ ଡିମ୍ବ ଦୁଇ ॥
ପକ୍ଷୀ ପକ୍ଷିଣୀ ପୁତ୍ର ଆଶେ । ଡିମ୍ବ ଚାପନ୍ତି ସ୍ନେହ ବଶେ ॥
ପୁଣି ହିଁ କେତେ ଦିନ ଗଲା । ଫୁଟି ବାଳକ ଉପୁଜିଲା ॥
ଅତି କୋମଳ ବେନି କାଏ । ଦେଖି ସାନନ୍ଦ ବାପ ମାଏ ॥
ସଧର୍ମେ କପୋତ କପୁତୀ । ନିରନ୍ତେ ବାଳକ ପୋଷନ୍ତି ॥
ପୁତ୍ରଙ୍କ କୋମଳ ବଚନ । ଶୁଣନ୍ତି ମୁଦ୍ରିତ ଲୋଚନ ॥
ଦେଇଣ ଉଚିତ ଆହାର । ପାଳନ୍ତି ଅତି ସ୍ନେହଭର ॥
ଏମନ୍ତେ ବେନି ଶିଶୁ ପାଳି । ପକ୍ଷୀ ସ୍ୱଭାବେ ରୋମାବଳୀ ॥
ଉଠଇ ବେନି ପୁତ୍ର ଦେହେ । ଦେଖି ସାନନ୍ଦ ବାପ ମାଏ ॥
ପାଳନ୍ତି ଅତି ସ୍ନେହ ଭରେ । ବାଳକ କୋମଳ ଆହାରେ ॥
ବିଷ୍ଣୁର ମାୟା ମୋହେ ଥାନ୍ତି । ପାଳନ୍ତି କପୋତ କପୋତୀ ॥
ଆହାର ଅର୍ଥେ ଏକ ଦିନେ । ବନେ ପଶିଲେ ବେନି ଜନେ ॥
ଖୋଜନ୍ତି କୋମଳ ଆହାର । ଏମନ୍ତେ ଶୁଣ ନୃପବର ॥
ପକ୍ଷୀ ବାଳକ ନିଜ ଥାନେ । ବ୍ୟାଧ ମିଳିଲା ଘୋରବନେ ॥
ବୃକ୍ଷୁ ଉଡ଼ିଣ ବେନି ବାଳ । ବନେ ଚଳନ୍ତି ବୃକ୍ଷମୂଳ ॥
ଲୁବ୍ଧକ ଦେଖି ତାହାବେଗେ । ଜାଲ ପତିଲା ଚଉଦିଗେ ॥
ଉପରେ ବାନ୍ଧିଲା ଦଉଡ଼ି । ପକ୍ଷୀକି ଆଣିଲା ଘଉଡ଼ି ॥
ଆହାର ଦେଇ ଜାଲ ତଳେ । ଅନ୍ତରେ ବସିଲା ନିଶ୍ଚଳେ ॥
ପକ୍ଷୀ ବାଳକ ଭୟ ପାଇ । ଜାଲେ ପଶିଲେ ବେଗେ ଡେଇଁ ॥
ଆହାର ଦେଖନ୍ତେ ନୟନେ । ପଡ଼ିଲେ ଲୁବ୍ଧକ ବନ୍ଧନେ ॥
ତକ୍ଷଣେ କପୋତ କପୋତୀ । ଆସି ମିଳିଲେ ବୃକ୍ଷ କତି ॥
ତୁଣ୍ଡେ ଆହାର ଦୃଢ଼େ ଧରି । ବୃକ୍ଷେ ଲୋଡ଼ନ୍ତି ଅନୁସରି ॥
ନଦେଖି ଚାହେ ଦଶଦିଗେ । ପୁଣି ଦେଖନ୍ତି ଭୂମିଭାଗେ ॥
ବନ୍ଧନ ଜାଲ ମଧ୍ୟେ ଦୃଢ଼େ । ବେନି ବାଳକ ଧଡ଼ପଡ଼େ ॥
ଉଡନ୍ତି ପ୍ରାଣର ବିକଳେ । ନାଦ ସେ କରନ୍ତି ଆକୁଳେ ॥
ଦେଖି କପୋତୀ ଦୁଃଖ ଚିତ୍ତ । ଭୂମିରେ ପଡ଼ି ମୋହ ଗତ ॥
ବାଳକ ଦେଖି ଜାଲ ତଳେ । କାନ୍ଦନ୍ତି ଜୀବନ ବିକଳେ
ବାଳକ ସ୍ନେହଭର ଆଶେ । ଡେଇଁ ପଡ଼ିଲା ଜାଲଫାଶେ ॥
ପୁତ୍ରଙ୍କ ମୁଖେ ମୁଖ ଦେଇ । ଦେଖି କପୋତ ବିଚାରଇ ॥
ମୁଁ ଏବେ ଏକା ବୃକ୍ଷେ ଥାଇ । କେମନ୍ତେ ସଂଭାଳିବି ଦେହୀ ॥
ଏମନ୍ତେ କରଇ ରୋଦନ । କ୍ଷଣ କ୍ଷଣକେ ଅଚେତନ ॥
ପଡ଼ଇ ପୁଣ ପୁଣ ତଳେ । ପୁଣି ବସଇ ବୃକ୍ଷଡ଼ାଳେ ॥
ପ୍ରାଣୁ ଅଧିକ ମୋର ସୁତେ । ପଡ଼ିଲେ ଶବର ଆୟତେ ॥
ପତ୍ନୀ ପଡ଼ିଲା ଜାଲ ମଧ୍ୟେ । ମୋ ପ୍ରାଣ ଥିବ କେଉଁସାଧେ ॥
ପତ୍ନୀ ମୋହର ପ୍ରାଣ ସଖା । ସେ ମୋତେ କରିଗଲା ଏକା ॥

ତାହାର ଗୁଣ ଅଛି ଯେତେ । ଚିତ୍ତେ ଧରିବି ମୁଇଁ କେତେ ॥
ସେ ମୋର ଜୀବନ ଯୁବତୀ । ତା ବିନୁ ମୋର କିବା ଗତି ॥
ବିଧି ହୋଇଲା ବାମ ମୋର । ଆପାଦ ବୁଡ଼ିଲା ମୋ ଘର ॥
ଏତେ କଷନେ ବନେ ରହି । ପ୍ରାଣ ଥିବାର ନ ଯୋଗାଇ ॥
ଏ ଘୋର ବନେ ଗୃହୀ ପଣେ । ମୋ ଜନ୍ମଗଲା ଅକାରଣେ ॥
ଗୃହ ଆଶ୍ରମେ ମୋ ପୀରତି । କାମେ ନ ପୂରିଲା ମୋ ମତି ॥
ବିଧାତା ମୋରେ ବାମ ହୋଏ । ବନ୍ଧନେ ପଡ଼ିଲେ ମୋ ପୋଏ
ଏ ପତିବ୍ରତା ଶିରୋମଣି । ମୋହର ପ୍ରାଣର ମିତଣୀ ॥
ଆହାର ପାଣି ଯେତେବେଳେ । ମୁହିଁ ଭୁଞ୍ଜଇ ବୃକ୍ଷଡ଼ାଳେ ॥
ତେବେ ସେ ଭୁଞ୍ଜେ ମୋ ଘରଣୀ । ମୋ ବିନୁ ନ ଭକ୍ଷଇ ପାଣି
ସେ ମୋତେ ଥୋଇ ଶୂନ୍ୟ ଗୃହେ । ସର୍ଗେ ଚଳିଲା ନିଜ ଦେହେ
ସକଳ ସୁଖ ମୋର ଗଲା । ସୁତ ସହିତେ ପତ୍ନୀ ମଲା ॥
ଏମନ୍ତେ ବୋଲିଣ ବିଳାପେ । କାନ୍ଦଇ ପାଇ ମନତାପେ ॥
ଜୀବନ ନପାରିଲା ଧରି । ଜାଲେ ପଡ଼ିଲା ହାହା କରି ॥
ଦେଖି ଶବର ତୋଷମନେ । ମଞ୍ଜୁ ସେ ଥୋଇଲା ବନ୍ଧନେ ॥
କପୋତ କପୋତୀ ବାଳକ । ଘେନି ଚଳିଲା ଲୁବ୍ଧକ ॥
ବେଗେ ମିଳିଲା ନିଜପୁରେ । ଶୁଣ ରାଜନ ମନଥିରେ ॥
ଏ ରୂପେ ସ୍ନେହ ଅବଲମ୍ବି । ସଂସାରେ ବନ୍ଧନ କୁଟୁମ୍ବୀ ॥
ଦୁଃଖ ସହଇ ଏ ଶରୀରେ । ନିତ୍ୟେ କୁଟୁମ୍ବ ପୋଷିବାରେ ॥
ନିରନ୍ତେ ଆକୁଳ ହୃଦୟେ । ଏଣୁ ବୋଲାଇ ଦୁରାମୟେ ॥
ଧନ ବଞ୍ଚିତ କଳେବର । ମଜ୍ଜଇ ଘୋର ଅନ୍ଧକାର ॥
ତୁ ଏବେ ବୁଝ ମୋ ବଚନ । ହେ ରାଜା ଥିର କର ମନ ॥
ଦେଖ ମାନୁଷ କଳେବର । କେବଳ ମୁକତିର ଦ୍ୱାର ॥
ଏ ଦେହ ପାଇ ମହୀତଳେ । ହେଳେ ତରନ୍ତି ଭବଜଳେ ॥
ଦୁଲଭେ ପାଇ ଏ ଶରୀର । କୁଟୁମ୍ବେ ଦୃଢ଼ ମତି ଯାର ॥
ଦିନ ବଞ୍ଚଇ ଦୁଃଖ ସୁଖେ । ଅନ୍ତେ ପଡ଼ଇ କୁମ୍ଭୀ ପାକେ ॥
ଏଭାବେ ବୁଝିଲି ସଂସାର । ଯେଣୁ କୋପାତ ଗୁରୁମୋର ॥
ଏବେ ତୁ ଶୁଣ ଏକ ଚିତ୍ତେ । ଭାବେ କହିଲି ମୁହିଁ ଯେତେ ॥
ଏ ଭାବେ ତୁଟଇ ସଂସାର । ବୋଲଇ ନିଗମ ଗୋଚର ॥
ଏଣୁ ସଂସାର ଜନହିତେ । କହଇ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ*
*କପୋତୋପାଖ୍ୟାନଂ ବର୍ଣ୍ଣନେ ନାମ ଅଷ୍ଟମୋଽଧ୍ୟାୟଃ ॥*

## ନବମ ଅଧ୍ୟାୟ

### ଶ୍ରୀ ଅବଧୂତ ଉବାଚ

ଆନନ୍ଦେ କହେ ଅବଧୂତ । ଶୁଣ ହେ ଯଦୁ ନୃପନାଥ ॥
ସକଳ ଥାନେ ମହୀଭ୍ରମେ । ମୁଁ ଥାଇ ଅଜଗର ଧର୍ମେ ॥
ସର୍ଗ ନରକ ବେନି ବାଣୀ । ଏହା ମୁଁ ଏକ ଧର୍ମେଜାଣି ॥
ଏଣୁ ମୋ ଦୁଃଖ ସୁଖ ଏକ । ସମ ମଣଇ ସର୍ବଲୋକ ॥
ଆହାରେ ଭଲମନ୍ଦ ନାହିଁ । ଯେ କ୍ଷଣେ ଯେମନ୍ତ ମିଳଇ ॥
ସନ୍ତୋଷେ କରଇ ଆହାର । ତେଣୁ ବିଚାର ନାହିଁ ମୋର ॥
ଅଳପ ବସ୍ତୁତେ ସନ୍ତୋଷ । ନ ମିଳେ କରେ ଉପବାସ ॥
କର୍ମ କଷନ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥
ସମେ ମଣଇ ଦୁଃଖ ସୁଖ । ଅନ୍ତରେ ନୋହଇ ବିମୁଖ ॥
ଏ ଧର୍ମ ଅଜଗର ଠାହିଁ । ଶିଖିଲି ଗୁରୁଶିକ୍ଷା ପାଇ ॥
ଏଣୁ ପ୍ରସନ୍ନ ଚିତ୍ତ ମୋର । ସଭାବେ ନିର୍ମଳ ଶରୀର ॥
କେ ଜାଣିପାରେ ମୋ ଉଦର । ଯେସନେ ଗଭୀର ସାଗର ॥
ବରଷା ସମୟରେ ନଦୀ । ସମୟେ ବହନ୍ତି ଆହ୍ଲାଦି ॥
ଯେସନେ ମିଳନ୍ତି ଜଳଧି । ତେଣୁ ନୋହଇ ଯଶେ ବୃଦ୍ଧି ॥
ଗ୍ରୀଷମେ ନୋହେ ହାନିତାର । ସର୍ବଦା ସମ ସେହୁ ନୀର ॥
ଏଣୁ ସମୋଦ୍ର ଦୀକ୍ଷା ପାଇ । ସାଧଇ ଶିକ୍ଷ ଭାବ ବହି ॥
ବିଷ୍ଣୁର ମାୟାମୟ କଳ୍ପେ । କପଟେ ହୋଇ ସ୍ତିରୀ ରୂପେ ॥
ସୃଷ୍ଟି ମୋହନୀ ଦେବମାୟା । ଘନେ ଯେସନ ବିଦ୍ୟୁ ଛାୟା ॥
ସେ ରୂପେ ନ କରିବ ସଙ୍ଗ । ଅନଳେ ଯେସନେ ପତଙ୍ଗ ॥
ସଂଯୋଗେ କରେ ପ୍ରାଣ ନାଶ । ଏଣୁ ନୋହିବ ତା ବିଶ୍ୱାସ ॥
ପତଙ୍ଗ ଠହୁ ଏହା ଜାଣି । ଗୁରୁ ବଚନ ପରିମାଣି ॥
କାଷ୍ଠ ପିତୁଳି ସ୍ତିରୀ ରୂପେ । ଥୋଇବ ଯତିଙ୍କ ସମୀପେ ॥
ଯତିଏ ତାର ବେଶ ଚାହିଁ । ଚରଣ ଅଗ୍ରେ ଯେବେ ଛାଇ ॥
ମନ ମନ୍ଥଇ ତାହାଙ୍କର । ଏଣୁ ମନ୍ମଥ ସୁଖ ଘର ॥
ଜଳେ ପାଷାଣ ପ୍ରାୟେ ମଂଜେ । ଗଜ ବନ୍ଧନ ଯେହ୍ନେ ଗଜେ ॥
ଏଣୁ କୁଞ୍ଜର ଭାବମଣି । ଗୁରୁ ବଚନ ପରିମାଣି ॥
ସଙ୍ଗ ନ କରି ସ୍ତିରୀ ମେଳେ । ଏକା ଭ୍ରମଇ ଭୂମିତଳେ ॥
ଧନେ ମୋ ନାହିଁ ପ୍ରୟୋଜନ । ଏଣୁ ଦାରିଦ୍ର ମୋ ଜୀବନ ॥
ଧନେ ଅର୍ଜନେ ଯାର ଆଶ । ନିରନ୍ତେ ଦୁଃଖ ସୁଖେ ପ୍ରାସ ॥
ଧନ ସଞ୍ଚଇ ରାତ୍ର ଦିନେ । ନକରେ ଆତ୍ମା ଭୋଗମାନେ ॥
ନିରନ୍ତେ କରଇ ସଞ୍ଚଏ । ପାପୀ କୃର୍ପଣ ଦୁରାଶଏ ॥

ତାହାର ଧନ ହରେ ଆନେ । ମଧୁ ସଞ୍ଚଇ ମାଛିଯେହ୍ନେ ॥
ନଦେଇ ନଖାଇ ସଞ୍ଚଇ । ତାହାର ମୁଖେ ଅଗ୍ନି ଦେଇ ॥
ମଧୁ ଉଭୟ ନେଇ ଆନ । ଏଣୁ ସେ ଗୁରୁ ମୋ ରାଜନ ॥
ଯେ ଥିବ ବଚନର ମତେ । ଚିତ୍ତ ନ ଦେବ ଗ୍ରାମ ଗୀତେ ॥
ନିରନ୍ତେ ଜ୍ଞାନେ ଥିବ ମନ । ଯୋଗ ସଂଯୋଗ ଅବଧାନ ॥
ଲୁବ୍ଧକ ଗୀତ ଶୁଣି କର୍ଣ୍ଣେ । ଯେସନେ ମୃଗ ମରେ ବନେ ॥
ଏଣୁ ନଶୁଣି ଗ୍ରାମ ଗୀତ । ବୁଲଇ ଗ୍ରାମେ ଦେଇ ଚିତ୍ତ ॥
ସଙ୍ଗୀତ ବାଦ୍ୟ ନୃତ୍ୟରଙ୍ଗେ । ଅରଣ୍ୟେ ବୈଶ୍ୟାଗଣ ସଙ୍ଗେ ॥
ଚିତ୍ତେ ତାହାଙ୍କ ଭାବଘେନି । ଅରଣ୍ୟେ ଋଷ୍ୟ ଶୃଙ୍ଗମୁନି ॥
ବନ୍ଦୀ ହୋଇଲା କାମ ଫାଶେ । ଶର୍ବଣ ଇନ୍ଦ୍ରିୟ ଲାଳସେ ॥
ଏଣୁ ମୁଁ ମୃଗ ଗୁରୁ କରି । ଭ୍ରମେ ଭୃକୁଟି ରୂପ ଧରି ॥
ଜିହ୍ୱା ମଧୁର ରସ ପାଇ । ଲାଳସେ ଛାଡ଼ି ନପାରଇ ॥
ନିରନ୍ତେ ଲୋଡ଼େ ଲୋଭମନେ । ମୀନ ବଡ଼ଶୀ ଥୋପ ଯେହ୍ନେ ॥
ଜିହ୍ୱାକୁ ବର୍ଦ୍ଦି ଇନ୍ଦ୍ରିଗଣ । ହେଲେ ଜିଣି ତ ପାରେ ମନ ॥
ହେଲେ ଜିଣଇ ଇନ୍ଦ୍ରିଗଣ । ସେ ପ୍ରାଣୀ ନିଶ୍ଚେ ନାରାଏଣ ॥
ଏଣୁ ସେ ମୀନ ଗୁରୁ ମୋର । ଏବେ ହୋ ଶୁଣ ନୃପବର ॥
ପୂର୍ବେ ହୋ ବିଦେହ ନଗରେ । ପିଙ୍ଗଳା ବୈଶ୍ୟା ଥାଇ ଘରେ
ତାହାର ଧର୍ମ ମୁଁ ଆଚରି । ବୁଲଇ ଗୁରୁଶିକ୍ଷା କରି ॥
ଶୁଣ ନୃପତି ସାବଧାନେ । ପିଙ୍ଗଳା ବେଶ୍ୟା ଏକଦିନେ ॥
ଧନୀ ପୁରୁଷ ସୁତ ମେଳେ । ସଙ୍କେତ କଲା କାମ ଭୋଳେ ॥
ସଲଜ୍ଜେ ବସି ତାର ପାଶ । ବୋଲଇ ମୋର ଘରେ ଆସ ॥
ଆନ ପୁରୁଷେ କାର୍ଯ୍ୟ ନାହି । ତୋ ସଙ୍ଗେ ବିହରିବି ମୁହିଁ ॥
ବହୁତ ଧନ ଦେବୁ ମୋତେ । ଏମନ୍ତେ ଲୋଭ କରି ଚିତ୍ତେ ॥
ଧନେ ବ୍ୟାକୁଳ ତାର ଚିତ୍ତ । ଏମନ୍ତେ ରହି ହେଲା ଅସ୍ତ ॥
ସୁବେଶ କଲା ନିଜ ଦେହୀ । ବସ୍ତ୍ର ଭୂଷଣ ଗନ୍ଧ ନେଇ ॥
ଅତି ସୁନ୍ଦର ତନୁ ବେଶେ । ଦ୍ୱାରେ ବସିଲା ତାର ଆଶେ ॥
ତିମିର ପ୍ରକାଶିଲା ନିଶି । ତାହାର ଘରେ ଲୋକଆସି ॥
ଅଳପ ଧନ ତାକୁ ଜାଣି । ସମ୍ମତ ନକରେ ତରୁଣୀ ॥
ସୁବେଶ ତାକୁ ଅଛି ସାଜି । ନିରାଶେ ସର୍ବେ ଗଲେ ଭାଜି ॥
ରଜନୀ ଦଶ ଦଣ୍ଡ ଗଲା । ଏମନ୍ତେ ପିଙ୍ଗଳା ଅବଳା ॥
ଘରୁ ବାହାରି ଦ୍ୱାରେ ମିଳି । ପଥକୁ ଚାହିଁଇ ନିରୋଳି ॥
ପଥେ ଥାଉ ଜାଉ ଯେ ଜନେ । ତାହାଙ୍କୁ ନିବାରେ ଲୋଚନେ ॥
ପୁଣି ଶୁଣଇ ବାକ୍ୟ ଯେଣ୍ଣେ । ଧନୀ ଅଇଲା ପ୍ରାୟ ମଣେ ॥

ପୁଣି ମିଳଇ ନିଜ ଦ୍ୱାରେ । କ୍ଷଣ କ୍ଷଣକେ ପଶେ ଘରେ ॥
ଏମନ୍ତେ ଧନର ଉଚାଟେ । ରାତ୍ରେ ବୁଲଇ ଛଟ ପଟେ ॥
ପୁଣି ଭାଳଇ ଦୁଃଖ ମନେ । ଧନୀକ ନଇଲା କେସନେ ॥
ସକେତ କଲା ମୋର ସଙ୍ଗେ । ଧନ ସୁରତ ସୁଖ ରଙ୍ଗେ ॥
ଏବେ ନଇଲା ସେ କିପାଁଇ । କିବା କାରଣ ତାର ହୋଇ ॥
ଏମନ୍ତେ ମନ ତାକୁ ଦେଇ । ଭାଳଇ ନିଜ ଦ୍ୱାରେ ରହି ॥
ପୁଣି ପଟାଇ ନିଜ ଘରେ । ବେଗେ ମିଳଇ ଆସି ଦ୍ୱାରେ ॥
ଘରେ ବାହାର ପୁଣ ପୁଣ । ଏମନ୍ତେ କରଇ ଭ୍ରର୍ମଣ ॥
ରଜନୀ ଅର୍ଦ୍ଧ ଭୋଗ କଲା । ଧନୀ କି ନ ଦେଖି ପିଙ୍ଗଳା ॥
ଦେଖ ତାହାର ପୁଣ୍ୟ ଭାଗ୍ୟ । ଚିତ୍ତେ ଉପୁଜିଲା ବୈରାଗ ॥
ନିଶ୍ୱାସ ଛାଡ଼ି ଉଚ୍ଚ ସ୍ୱରେ । ଦୁଃଖେ ବସିଲା ଆସି ଦ୍ୱାରେ ॥
କେବେ ହେଁ ନୋହେ ମନ ଥିର । ଅନ୍ତରେ କରଇ ବିଚାର ॥
ଦେଖ ମୋହର ମୋହ ଜାଲ । ଅଜ୍ଞାନେ ବଞ୍ଚାଇଲି କାଳ ॥
ସର୍ବ ନାଶିଲି ଧନ ଲୋଭେ । ତିରି ସଭାବ କାମ ଭୋଗେ ॥
ଅସାଧୁ ପୁରୁଷର ମେଳେ । କାନ୍ତ ସଭାବେ କାମ ଭୋଳେ ॥
ରମିଲି ଧନେ ଦେଇ ମନ । ଧିକ ଏ ମୋହର ଜୀବନ ॥
ନିକଟେ ଅଛି ମୋର ଭ୍ରଥା । ସର୍ବ ସମ୍ପଦ ସୁଖେ ଦାତା ॥
ଅନାଥ ନାଥ ଜନ ହିତା । ଗତିର ସୁଗତି ବିଧାତା ॥
ଏକାନ୍ତ ପୁରୁଷ ରତନ । ଏହାକୁ ଦୂରେ ଥୋଇମନ ॥
ରମିଲି କୁ ପୁରୁଷ ସଙ୍ଗେ । ଅଜ୍ଞାନ ମୋହ ରତି ରଙ୍ଗେ ॥
ଯେଣୁ ମୋହର ଦୁଷ୍ଟମତି । ବିପାକ ଫଳହୀନ ଗତି ॥
ବଞ୍ଚିଲି କୁ ପୁରୁଷ ମେଳେ । ପୂର୍ବ ପାତକ କର୍ମଫଳେ ॥
ଏକାୟା ଘରେ ବସା ମୋର । ନିରନ୍ତେ ବହେ ନବଦ୍ୱାର ॥
ଏହାର ମଧ୍ୟେ ମଳ ମୂତ୍ର । ସମ୍ପୂର୍ଣ୍ଣ କଫ ବାତ ପିତ୍ତ ॥
ଦୁର୍ଗନ୍ଧ କ୍ରିମି ନାଳ ନାଡୀ । ଅଶେଷ ରୋଗ ଛନ୍ତି ବେଢ଼ି ॥
ଅସ୍ଥି ପଞ୍ଜରା ଚାରିପାଶେ । ଛାଇଣି ଲେଖ ରୋମ କେଶେ ॥
ଶିରା ସାଙ୍କୁଳି ଗଣ୍ଠି କ୍ଷେପି । ଚର୍ମ ରୋଧିର ମାଂସ ଲେପି ॥
ଏମନ୍ତ ଘରେ ମୋତେ ଥୋଇ । ଯେ ଗୁରୁ ଗଲା ଦୀକ୍ଷା ଦେଇ
ସେ ଗୁରୁ ବାକ୍ୟ ପରିମାଣି । ଏ ଘରେ ମୁହିଁ ଦୋଚାରୁଣୀ ॥
ମୋ ପ୍ରାଣନାଥ ଅଛି କକ୍ଷେ । ମୁହିଁ ନ ଦେଖଇ ପ୍ରତକ୍ଷେ ॥
ସେ ନାଥ ସର୍ବ ଜୀବଆତ୍ମା । ନିର୍ଗୁଣ ନିର୍ଲେପ ମହାତ୍ମା ॥
ପ୍ରିୟ ଆନନ୍ଦ ସୁଖ ଦାତା । ଘରେ ମୁଁ ଛାଡ଼ି ନିଜ ଭ୍ରଥା ॥
ତୁଚ୍ଛ ପୁରୁଷ ସଙ୍ଗେ ରମି । ମୁହିଁ ହୋଇଲି ପଥଶର୍ମି ॥

ନିଷ୍ଫଳ ମୋହର ଜୀବନ । ଅଜ୍ଞାନେ ଗଲା ଏତେଦିନ ॥
ଏ ଦେହେ ବସି ନାରାଏଣ । ସେ ହରି ଛାଡ଼ି ମୂଢ଼ପଣ ॥
ଯେ ଦେହେ ଅଛି ନାନା ରୋଗ । ତା ସଙ୍ଗେ କଲି ରତି ଭୋଗ ।
ମର୍ତ୍ତ୍ୟ ମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ॥
ଯାବତ ଅଛି ମୋହ ଫାଶ । ତାବତ ହୋଏ ପିଣ୍ଡନାଶ ॥
ଯାବତ ଗୋବିନ୍ଦ ଚରଣେ । ଏ ଜୀବ ନ ପଶେ ଶରଣେ ॥
ତାବତ ନୋହେ ଆତ୍ମା ସୁଖୀ । ନିରନ୍ତେ ତାପ ତ୍ରୟେ ଦୁଃଖୀ ॥
ଏମନ୍ତ ମନେ ବିଚାରିଲା । ଆନନ୍ଦେ ଶିରେ କରଦେଲା ॥
ବୋଲଇ ଧନ୍ୟ ଆଜ ଦିନ । ମୋତେ ସନ୍ତୋଷ ଭଗବାନ ॥
ଧନ୍ୟ ମୋହର ତାତ ମାତ । ଯେଣୁ ବୈରାଗ୍ୟ ଜ୍ଞାନ ଜାତ ॥
କୃଷ୍ଣର ଅଭୟ ଚରଣ । ଆଜ ମୁଁ ପଶିବି ଶରଣ ॥
ସକଳ ଆଶା ଦୂର କରି । ଭାବେ ସେବିବି ନରହରି ॥
ଏକାନ୍ତେ ଭ୍ରମି ବନେ ବନେ । ରମିବି ଅଭୟ ଚରଣେ ॥
କଷ୍ଟେ ରଖିବି ଏ ଶରୀର । ଜଳ ପବନ ମୋ ଆହାର ॥
ଜନ୍ତୁ ଏ ଭବ କୂପେ ପଡ଼ି । ବିଷ୍ଣୁ ଭଗତ ଦୃଢ଼େ ଏଡ଼ି ॥
ଜନ୍ମ ବଞ୍ଚଣି ଏ ସଂସାରେ । ପଡ଼ନ୍ତି ଘୋର ଅନ୍ଧକାରେ ॥
ବିଷୟା ଯାହାର ଲୋଚନ । ହରଇ ଆତ୍ମା ବୁଦ୍ଧିମନ ॥
ଏକାଳ କାଳ ସର୍ପ ରୂପେ । ଜନ୍ତୁଙ୍କୁ ଗ୍ରାସେ ଭବ କୂପେ ॥
ଏହାକୁ ପରିତ୍ରାଣ ଜନେ । ଗୋବିନ୍ଦ ବିନୁ ନାହିଁ ଆନେ ॥
ଆତ୍ମାକୁ ଆପଣେ ଉଦ୍ଧରେ । ନିଷ୍କାମ ଜନ୍ମେ ଯା ଶରୀରେ ॥
ଏମନ୍ତେ ମନେ ମନେ ଚିନ୍ତି । ରଜନୀ ହୋଇଲା ପାହାନ୍ତି ॥
ନିଚଳ ଚିତ୍ତ ଅବଧାନେ । ପିଙ୍ଗଳା ଗଲା ଘୋର ବନେ ॥
ପରମ ସୁଖ ବଇରାଗ । ଆତ୍ମା ପରମ ଦୁଃଖଯୋଗ ॥
ତେଣେ ସକଳ ଆଶା ତେଜି । ହରି ଚରଣ ଦୃଢ଼େ ଭଜି ॥
ପିଙ୍ଗଳା ଭ୍ରମି ଘୋର ବନେ । ପଶିଲା ଶ୍ରୀହରି ଚରଣେ ॥
ଏଣୁ ପିଙ୍ଗଳା ଗୁରୁ ମୋର । ଶୁଣ ହୋ ଯଦୁ ନୃପବର ॥
ବୋଲଇ ବିପ୍ର ଜଗନ୍ନାଥ । ଯେତେ କହିଲେ ଅବଧୂତ ॥
ଶ୍ରୀ ଏକାଦଶ ଭାଗବତେ । ଗୀତେ କହିଲେ ଜନହିତେ ॥
ଅଳପ ହୀନ ବୁଦ୍ଧି ମୋର । ଯେଣୁ ମୁଁ ଅଜ୍ଞାନ ପାମର ॥
ନ ଜାଣି ସମୋଦ୍ରର ଗତି । ହସ୍ତେ ମୁଁ ଧରି ଦୃଢ଼ମତି ॥
ସେବଇ ସୁଜନ ପୟରେ । ଏ ଦୋଷ କ୍ଷମାକର ମୋରେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ପିଙ୍ଗଳା ବେଶ୍ୟା ଚରିତ ବର୍ଣ୍ଣନେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

### ଅବଧୂତ ଉବାଚ

ଶୁଣ ହେ ଯଦୁ ନୃପବର । ଯେ ଅବା ଅନୁଭବ ମୋର ॥
ଗୁରୁ ବଚନ ମୋର ଯେତେ । ସବୁ କହିଲି ତୋ ଅଗ୍ରତେ ॥
ଏ ଯେତେ ଦିବ୍ୟ ପରିଗ୍ରହ । ଜାଣ ତୁ ସର୍ବ ଦୁଃଖମୟ ॥
ଏ ଘେନି ଜ୍ଞାନ ଅକିଞ୍ଚନେ । ନିରନ୍ତେ ରହେ ସୁଖମନେ ॥
ପକ୍ଷୀଙ୍କ ମଧ୍ୟେ ବଳୀୟାର । ପ୍ରଚଣ୍ଡ ସଭାବ କୁରର ॥
ନିତ୍ୟ ମାରନ୍ତି ନାନା ପକ୍ଷୀ । ଜୀବନ ପୋଷେ ମାଂସ ଭକ୍ଷି ॥
ତାର ମହିମା ଜନେ ଶୁଣି । ବନ୍ଦୀ କରନ୍ତି ଘରେ ଆଣି ॥
ସେ ପୁଣି ନିତ୍ୟ ପକ୍ଷୀମାରେ । ମାଂସ ଭକ୍ଷଇ ନେଇ ପରେ ॥
କେବଳ ସର୍ମ ମାତ୍ର ତାର । ନ ଭକ୍ଷେ ଉଚିତ ଆହାର ॥
ମୁଇଁ ତାହାର ଦୁଃଖ ଦେଖି । ତା ଠହୁଁ ଗୁରୁଶିକ୍ଷା ରଖି ॥
ନକରି ବସ୍ତୁ ପରିଗ୍ରହ । ଏକା ଭ୍ରମଇ ଶୂନ୍ୟଦେହ ॥
ନାହିଁ ମୋ ମାନ ଅଭିମାନ । ପୁତ୍ର କଳତ୍ର ବନ୍ଧୁଜନ ॥
ଆତ୍ମାକୁ ରମଇ ମୁଁ ନିତ୍ୟେ । ଭ୍ରମଇ ଉଦାର ଚରିତେ ॥
ଏବେ ହୋ ଶୁଣ ମନ ଥିରେ । ପୂର୍ବେ ଯେ ଅବନ୍ତୀ ନଗରେ ॥
ସୁ ସାଧୁ ସୁନ୍ଦର ଶରୀରେ । କନ୍ୟାଏ ଥିଲେ ବିପ୍ର ଘରେ ॥
ସେ କନ୍ୟା ବିଭା ଅର୍ଥେ ବରି । ବିପ୍ର ମିଳିଲେ ପାଞ୍ଚ ଚାରି ॥
କନ୍ୟାର ପିତା ସଙ୍ଗମେଳେ । ବିବାହ ପ୍ରସ୍ତାବ ନିରୋଳେ ॥
ବିଚାର କରି କନ୍ୟାମାତା । ନିକଟେ ବସାଇ ଦୋହିତା ॥
ବୋଲଇ କନ୍ୟାମୁଖ ଚାହିଁ । ତଣ୍ଡୁଳ ଅର୍ଥେ ଧାନ୍ୟଦେଇ ॥
ବେଗେ ତୁ କୁଟ ରୋଳେଭରି । ତା ଶୁଣି ବ୍ରାହ୍ମଣ କୁମାରୀ ॥
ରୋଳ ମୂଷଳ ଏକ କରି । କୁଟଇ ବେନି କରେ ଧରି ॥
ଭୁଜେ ତା ବଳୟ କଙ୍କଣ । ଶବଦ କରେ ରୁଣ୍‌ଝୁଣ୍ ॥
ଶୁଣି କୁମାରୀ ଲଜ୍ୟା ପାଇ । ଅଧେ କଙ୍କଣ ହସ୍ତୁଫେଇ ॥
ପୁଣି କୁଟନ୍ତେ ଧୀରେ ଧୀରେ । ହସ୍ତ କଙ୍କଣ ବାଦ୍ୟକରେ ॥
କୁମାରୀ ମନେ ବିଚାରଇ । ସଙ୍ଗ ଗହଳେ ଗୋଳ ହୋଇ ॥
ଏମନ୍ତେ ବିଚାରଣ କୋପେ । ପୁଣି ଫେଇଲା ଏକୁ ଏକେ ॥
ବେନି କଙ୍କଣ ବେନି କରେ । କୁଟନ୍ତେ ଶବଦ ନ କରେ ॥
ବହୁତ ସଙ୍ଗ ଯହିଁ ମେଳି । ଅବଶ୍ୟ ଉପୁଜଇ କଳି ॥
ଏଣୁ କୁମାରୀ ଅନୁରାଗେ । ଗୁରୁ ବଚନ ଶିକ୍ଷାଭାଗେ ॥
ଏକାନ୍ତେ ଭ୍ରମୁଥାଇ ମୁଇଁ । କେବେ ହେଁ ସଙ୍ଗ ନ କରଇ ॥
ଏଣୁ ମୁଁ ଅଭ୍ୟାସେ ପବନ । ନିରୋଧି ଏ ଚଞ୍ଚଳ ମନ ॥
ବୈରାଗ ଯୋଗ ଅଭ୍ୟାସଣେ । ବୁଲଇ ଆତ୍ମା ସଂଜୀବନେ ॥

ହରିର ପାଦେ ନିବେଦନ । ତେଣୁ ମୋ ନିଚଳ ଧିଆନ ॥
ସ୍ୱଭାବେ ରଜୋଗୁଣ ଛାଡ଼ି । ସତ୍ତ୍ୱ ସଂଯୋଗେ ତମ ଛାଡ଼ି ॥
ଇନ୍ଦ୍ରିକୁ ଜିଣି ସତ୍ୟ ଗୁଣେ । ନିର୍ଗୁଣ ପରମ କାରଣେ ॥
ନିଚଳେ ପାଇ ଶୁଦ୍ଧମଣେ । ବାହ୍ୟେ ଅନ୍ତରେ ସୁମରଣେ ॥
ଯେସନେ ଶରକୃତ ପଥେ । ଶର ବିନ୍ଧଇ ହେଏମାଥେ ॥
ତାର ନିକଟେ ରାଜା ଗଲା । ସେ ତାହା ଜାଣି ନ ପାରିଲା ॥
ଏଣୁ ତାହାର ଠହୁଁ ଦେଖି । ମୁଁ ଏବେ ଗୁରୁଶିକ୍ଷା ଶିଖି ॥
ଏକାନ୍ତେ ମୁନି ପାଯେ ଧୀରେ । ମୋ ଚିତ୍ତେ ନ ରହଇ ଘରେ ॥
ଏଣୁ ମୁଁ ସାବଧାନ ଚିତ୍ତେ । ନିରନ୍ତେ ଭ୍ରମଇ ଜଗତେ ॥
ଯଦି ମଉନ ବ୍ରତ ନର । ନ ଛାଡ଼େ ଉଚିତ ବେଭାର ॥
ଏ ଘେନି ଗୃହାରମ୍ଭ ଛାଡ଼ି । ଅଳପ ଧନେ ମନ ବଢ଼ି ॥
ଗତ ଅତିଥି ସେବା ଅର୍ଥେ । ବିଚାରେ ଥିବ ଲୋକମତେ ॥
ଆତ୍ମା କାରଣେ ବ୍ୟର୍ଥଘର । କେବେହେ ନ କରି ତତ୍ପର ॥
ଶରୀର ରଖଇ ନିରୋଳେ । ସର୍ପ ଯେସନେ ନାନାବିଳେ ॥
ଏଣୁ ମୁଁ ସର୍ପଦୀକ୍ଷା ଧରି । ଗୃହସ୍ଥ ଆଶ୍ରମ ନ କରି ॥
ଥୟ ନକରି ଏକ ସ୍ଥାନ । ବଞ୍ଚଇ ନାନାତୀର୍ଥେ ଦିନ ॥
ଦେଖ ଏ ବିଷ୍ଣୁ ମାୟା କରି । ଜଗତେ ସର୍ଜ୍ଜଇ ମୁରାରି ॥
ପୁଣି ସଂହାରେ କାଳ ରୂପେ । ନିରୋଳେ ରହେ ଆତ୍ମା ସୁଖେ ॥
ସ୍ୱଭାବେ ବୋଲଇ ଈଶ୍ୱର । ସେ ହରି ସର୍ବ ଶକ୍ତି ଧର ॥
ପ୍ରକୃତି ପୁରୁଷ ଅନ୍ତର । ସ୍ୱଭାବେ ନାହିଁ ପରାପର ॥
ଉପାଧି ବର୍ଜ୍ଜିତ ଈଶ୍ୱର । ଫେନ ନିବାସେ ଯେହ୍ନେ ନୀର ॥
ସୃଷ୍ଟି କରଇ ଯେତେବେଳେ । ସ୍ରିଜଇ ମାୟା ଯୋଗବଳେ ॥
ତ୍ରି ଗୁଣମୟୀ ବିଷ୍ଣୁମାୟା । ବେଦ ବେଦାନ୍ତେ କହେ ଯାହା ॥
ସେ ମାୟା ନାନା ମୂର୍ତ୍ତି ଧରି । ବ୍ରହ୍ମାଣ୍ଡ ମଧ୍ୟେ ଅଛି ପୂରି ॥
ସେ ମାୟା ବଳେ ନାରାୟଣ । ଜଗତେ କରେ ପୁଣ ପୁଣ ॥
ଯେସନେ କୀଟ ଊର୍ଣ୍ଣନାଭି । ନିଜ ବଦନୁ ସୂତ୍ର ଭାବି ॥
ଜାଲ ନିର୍ମାଇ ଛତ୍ର ମୁଖେ । ମଧ୍ୟେ ବିହରେ ନାନା ସୁଖେ ॥
ଏକାନ୍ତେ ରାତ୍ରେ କ୍ରୀଡ଼ାକରେ । ସୂର୍ଯ୍ୟ ଉଦୟେ ତା ସଂହାରେ ॥
ଏ ରୂପେ ସୃଷ୍ଟି ନୀଳା କରି । ସଂସାରେ ଖେଳେ ନରହରି ॥
ଏବେ ଏହା ଶୁଣ ନରପତି । ସଂସାରେ ଜୀବ ଆତ୍ମାଗତି ॥
ଦେହ ବିଯୁଗେ କାଳହେତୁ । ମନେ ଚିନ୍ତଇ ଯେଣେ ହେତୁ ॥
ଏକାନ୍ତ ସ୍ନେହ ଦ୍ୱେଷ ଭୟେ । ନିଚଳ ମନେ ଧ୍ୟାନ ରହେ ॥
ଜନ୍ମଇ ସେହି ରୂପ ଧରି । ଯେସନେ କୀଟପ ସଂସ୍କାରି ॥
କୀଟ ଆଣଇ ନାନା ରୂପେ । ନିଜ ଭୁବନେ ନେଇ ଥାପେ ॥
ସେ କୀଟ ପ୍ରାଣ ଯିବାବେଳେ । ଯାହାକୁ ଦେଖିଥାଇ ଡୋଳେ ॥

ଭୟେ ଚିନ୍ତଇ ତାର ରୂପ । ଜନ୍ମଇ ଘେନି ସେ ସରୂପ ॥
ମୋହର ମନ ସେହି ମତେ । କୃଷ୍ଣ ଚରଣ ଅନୁବ୍ରତେ ॥
ନିଚଳ ଚିତ୍ତ ସାବଧାନେ । ବୁଲଇ ମହୀ ପ୍ରକଟଣେ ॥
ଏମନ୍ତେ ଗୁରୁ ମୋର ଯେତେ । ତାହାଙ୍କ ଉପଦେଶ ମତେ ॥
କାୟ ବଚନେ ମନେ ଧରି । ଭ୍ରମଇ ଅବନୀ ବିହରି ॥
ଆତ୍ମାର ଆପଣେ ମୁଁ ଗୁରୁ । ତେଣୁ ତାହାଙ୍କ ମତିଧରୁ ॥
ଦେହର ଜନ୍ମ ମୃତ୍ୟୁ ଦୁଇ । ବିଷ୍ଣୁର ମାୟା ପ୍ରବର୍ତ୍ତଇ ॥
ଏ ବୋଲ ବୁଝି ମୋର ମତି । ଏ ଦେହେ ନକରେ ପୀରତି ॥
ଅନେକ ଜନ୍ମକର୍ମ ଭାଗ୍ୟେ । ମୋହର ଜ୍ଞାନ ବଇରାଗେ ॥
ଉଦାସ ମତେ ଦେହେ ଥାଇ । ଗୁରୁଙ୍କ ଉପଦେଶ ଧ୍ୟାଇ ॥
ପୁତ୍ର କଳତ୍ର ଦାସ ଦାସେ । ଏହାଙ୍କୁ ପୋଷି ଦେହ ଆଶେ ॥
ଦେହର ସଙ୍ଗେ ଏ ରହନ୍ତି । ମରଣେ କେହି ନ ଗଛନ୍ତି ॥
ନିୟତ କର୍ମ ସଙ୍ଗ କରି । ଅନ୍ଧ ଯେସନେ ଯଷ୍ଟି ଧରି ॥
ବୃକ୍ଷର ଧର୍ମ ପ୍ରାୟେ ଦେହୀ । ଜନ୍ମିଲେ ଅବଶ୍ୟ ମରଇ ॥
ଏଣୁ ଏ ନିଜ ଦେହେ ମୁହିଁ । କେବେ ହେଁ ବିଶ୍ୱାସ ନପାଇ ॥
ଯେ ଦେହ ଇନ୍ଦ୍ରିୟ ଆବୋରି । ଭୁଞ୍ଜଇ ଜଣେ ଜଣେ କରି ॥
ଶ୍ମଶାନେ ମୃତ ପିଣ୍ଡ ଯେହ୍ନେ । ଶ୍ୱାଣ ଶୃଗାଳଙ୍କ ବଦନେ ॥
ରସ ଲାଳସେ ଜିହ୍ୱା ଧରେ । ଆହାର ଅର୍ଥେ ଭୋଗ୍ୟ କରେ ॥
ନିଜ ସଭାବେ ଷଡ଼ ରସେ । ଏଣୁ ଭ୍ରମଇ ନାନା ଦେଶେ ॥
ତୃଷ୍ଣାର ଇଚ୍ଛା ବଳେ ପୁଣି । ମାଗଇ ସୁଶୀତଳ ପାଣି ॥
ନପାଇ କରେ ବହୁ ଗ୍ରାସ । ଏମନ୍ତେ ପ୍ରାଣୀ ଯାଇ ନାଶ ॥
ଇନ୍ଦ୍ରିୟ ଧରେ ପୁଣ ବଳେ । ଭ୍ରମଇ ମଇଥୁନ ଫଳେ ॥
ଅମୃତ ପ୍ରାୟେ ଯୋନି ଦିଶେ । ଏଣୁ ଭ୍ରମଇ କାମ ବଶ୍ୟେ ॥
ଶୀତ ତପତ ଚମ ଧରେ । ଅଗ୍ନି ପବନ ଆଶ୍ରେ କରେ ॥
କ୍ଷୁଧା ଅନଳେ ଧରେ ପେଟ । ଆତ୍ମାକୁ କରେ ଛଟପଟ ॥
ଯାବତ ନପୁରେ ଉଦର । ତାବତ ଜ୍ଞାନ ନାହିଁ ଆର ॥
ଶର୍ବଣ ଧରେ ପୁଣ ପୁଣି । ତୁଷ୍ଟି ନିଜଇ ବାକ୍ୟଶୁଣି ॥
ନାସିକା ଧରେ ଗନ୍ଧବାସେ । ଯେଣୁ ଭ୍ରମିଁ ଶୁଚି ଆଶେ ॥
ଚକ୍ଷୁ ଭ୍ରମଇ ରୂପ ଅର୍ଥେ । ଏଣୁ ଭ୍ରମଇ ନାନା ପଥେ ॥
ଅନ୍ତେ ଧରଇ କର୍ମ ରାଶି । ବେଷ୍ଟିତ ହୋଏ କାଳ ଫାଶି ॥
ଏଣୁ ଏ ସାଧାରଣ ଦେହେ । ଜ୍ଞାନୀକି ବର୍ଣ୍ଣ ଜ୍ଞାନନୋହେ ॥
ବହୁତ ସପତଣୀ ଯେହ୍ନେ । ସ୍ୱାମୀ ମାରନ୍ତି ଅପମାନେ ॥
ଜୀବର ଅଳପ ଶକତି । ଶତେ ଯୁବତୀ ଏକପତି ॥
କାମେନୀ ଗଣେବଳୀ ହୋଇ । ସେ ଯେହ୍ନେ ଅଳପେ ମରଇ ॥
ଏଣୁ ଏ ଦେହ ମାୟା ଜଡ଼େ । ନିଜ ନିସ୍ତାର ପଥ ହୁଡ଼େ ॥

ଏଣୁ ଏ ବିଷ୍ଣୁରେ ରଞ୍ଜନା । କୀଟ ହୁଁ ବ୍ରହ୍ମାଦି କଳ୍ପଣା ॥
ଆତ୍ମା କ୍ରୀଡ଼ନେ ନରହରି । ପୂର୍ବେ ଅନେକ ସୃଷ୍ଟି କରି ॥
ସଂସାର କରି ନାନାମତେ । ସନ୍ତୋଷ ନ ପାଇଲା ଚିତ୍ତେ ॥
ଏଣୁ ମାନବ ସୃଷ୍ଟି କଲା । ଯହିଁ ବିଶ୍ରାମ ସର୍ବ ଲୀଳା ॥
ବ୍ରହ୍ମାଦି ସକଳ ଶରୀରେ । ବିଜ୍ଞାନ ବିଷୟ ଗୋଚରେ ॥
ମନିଷ ଦେହେ ଦିବ୍ୟ ଜ୍ଞାନ । ଦେଖି ସନ୍ତୋଷ ଭଗବାନ ॥
ଅଶେଷ କୋଟି ଯୋନି ଭ୍ରମେ । ବିପାକ ଆବିସେକ କର୍ମେ ॥
କେବଳ ଶୁଭକର୍ମ ଭୋଗେ । ନିଷ୍ଠେ ଗୋବିନ୍ଦ ଅନୁରାଗେ ॥
ଦୁଲଭ ମାନୁଷ୍ୟ ଶରୀରେ । ସଭାବେ ଅନିତ୍ୟ ସଂସାରେ ॥
ଏ ଦେହ ଲଭି ମହୀସ୍ଥଳେ । ଅନେକ ଶୁଭ କର୍ମବଳେ ॥
ଭାଗ୍ୟେ ଦୁର୍ଲଭ ଦେହ ପାଇ । ଯାହାର ଜ୍ଞାନ ପ୍ରସରଇ ॥
ଜଗତେ ଦେଖ ବିଷ୍ଣୁମୟେ । ସେ ନ ପଡ଼ଇ ଘୋର ଭୟେ ॥
ମନିଷ ମୁଣ୍ଡେ ମୃତ୍ୟୁ ବସେ । ଆତ୍ମାକୁ ଅନୁକ୍ଷଣେ ଗ୍ରାସେ ॥
ଯାବତ ମୃତ୍ୟୁ ଅଛି ଦୂରେ । ସୁନ୍ଦର ଯୁବା କଳେବରେ ॥
ସାଧିବ ସକଳ ଶକତି । ଯେଣେ ଜନ୍ମିବ ବିଷ୍ଣୁଭକ୍ତି ॥
ଏ ଜୀବ ବନ୍ଦୀ କର୍ମପାଶେ । ସାଧିବ ବନ୍ଧନ ଉଶ୍ବାସେ ॥
ଏ ରୂପେ ହୃଦୟ ନିବେଦେ । ଆତ୍ମାକୁ ଈଶ୍ୱର ଅଭେଦେ ॥
ଦେଖିବ ଜ୍ଞାନ ତତ୍ତ୍ୱ ଦ୍ୱାରେ । ଦୁର୍ଲଭ ମାନୁଷ ଶରୀରେ ॥
ସକଳ ସଙ୍ଗ ପରିହରି । ଏଣୁ ମୁଁ ଏହି ରୂପ ଧରି ॥
ସୁହୃଦେ ତେଜ ଅହଂକାର । ଆନନ୍ଦେ ଭ୍ରମଇ ସଂସାର ॥

## ଶ୍ରୀ ଭାଗବାନ ଉବାଚ

ଏମନ୍ତ କହି ଅବଧୂତ । ମତି ଗମ୍ଭୀରେ ଗୁଣଯୁତ ॥
ଶୁଣି ଆନନ୍ଦେ ଯଦୁରାଜା । ମୁନି ଚରଣେ କଲେ ପୂଜା ॥
ତୁଷ୍ଟି କରନ୍ତେ ସାବଧାନେ । ବ୍ରାହ୍ମଣ ଗଲା ଅନ୍ତର୍ଦ୍ଧାନେ ॥
ବିଚାରି ତାହାର ବଚନେ । ରାଜା ପଶିଲେ ଘୋର ବନେ ॥
ସକଳ ସଙ୍ଗ ଦୂରେ ତେଜି । ଧ୍ୟାନେ ଗୋବିନ୍ଦ ପାଦେଭଜି ॥
ଯୋଗେ ବିନାଶି କଳେବର । ଲଭିଲା ବିଷ୍ଣୁରେ ଶରୀର ॥
ଉଦ୍ଧବ କୃଷ୍ଣର ସମ୍ବାଦ । ଶୁଣନ୍ତେ ହରଇ ପ୍ରମାଦ ॥
ପରୀକ୍ଷେ ଶୁକମୁନି କହେ । ସୁଜନେ କର ଏଣେଇଯେ ॥
ଏ ଚଉବିଂଶ ଗୁରୁବାଣୀ । ଉଦ୍ଧବେ କହେ ଚକ୍ରପାଣି ॥
ଏ କଥା ପରମେ ଆନନ୍ଦେ । ସଂକ୍ଷେପେ ଏକାଦଶ ସ୍କନ୍ଧେ ॥
ପ୍ରାକୃତ ବନ୍ଧେ ଭାଗବତ । କହିଲି ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଅବଧୂତ ଯଦୁରାଜା ସମ୍ବାଦେ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟଃ

ବୋଲନ୍ତି ପ୍ରଭୁ ଚକ୍ରପାଣି । ଶୁଣ ଉଦ୍ଧବ ପରିମାଣି ॥
ତୁ ଅଟୁ ଭଗତ ପ୍ରଧାନ । ତୋତେ ପ୍ରସନ୍ନ ମୋର ମନ ॥
ଏବେ କହିବା କର୍ମ ଯେତେ । ଆଗମ ନିଗମ ଉକତେ ॥
ସେ ଧର୍ମ ଦୃଢ଼ କରି ମନେ । ସାଧନ କର ଅବଧାନେ ॥
ଯେ ବର୍ଣ୍ଣ ଧର୍ମ କୁଳଧର୍ମ । ଯେ ବିଧି ଆଚାର ଆଶ୍ରମ ॥
କର୍ମ କରିବ କର୍ମ ତେଜି । ସାତ୍ତ୍ୱିକ ନାନା ରୂପେ ଭଜି ॥
ଜୀବଙ୍କୁ ଦୟା ଶୁଦ୍ଧ ଚିତ୍ତେ । ମହା ଗହନ ଏ ଜଗତେ ॥
ଆରମ୍ଭ ମାନ ବିପର୍ଯ୍ୟୟ । ସର୍ବ ବିକାର ମାୟାମୟ ॥
ସ୍ୱପ୍ନରେ ଯେହ୍ନେ ଉପଭୋଗ । ନିଦ୍ରାର ଅନ୍ତେ ମାୟା ସର୍ଗ ॥
ମଣଇ ସତ୍ୟ ପ୍ରାୟେ ତାହା । ଦୃଷ୍ଟି ଶ୍ରବଣେ ବିଷ୍ଣୁ ମାୟା ॥
ଯେତେ ଦେଖଇ ନାନାରଙ୍ଗେ । ନିଷ୍ଫଳ ହୋଇ ନିଦ୍ରା ଭଙ୍ଗେ ॥
ଏ ମାୟା ତ୍ରିଗୁଣେ ଜଡ଼ିତ । ବ୍ରହ୍ମାଦି ପ୍ରପଞ୍ଚ ଜଗତ ॥
ଏଣୁ ପ୍ରବୃତ୍ତି ଧର୍ମ ଏଡ଼ି । ନିବୃତ୍ତି ଚିତ୍ତେ ଧର୍ମ ବଢ଼ି ॥
ସାଧୁ ସଙ୍ଗତେ ସେବା କରି । ଧର୍ମ ସାଧିବ ଶିକ୍ଷା ଧରି ॥
ସୁତ କଳତ୍ର ଧନ ପ୍ରାଣ । ଯେମନ୍ତେ କରେ ସମର୍ପଣ ॥
ଏମନ୍ତେ ଗୁରୁ ସେବା କରି । ଚିତ୍ତେ ମୋହର ରୂପ ଧରି ॥
ତେଜିବ ମାନ ଅହଙ୍କାର । ମଦ ମତ୍ସର ଯେ ବିକାର ॥
ସୁହୃଦ ଭାବ ସର୍ବଭୂତେ । ନିର୍ମଳ ଦୟା ଶୁଦ୍ଧ ଚିତ୍ତେ ॥
ଜ୍ଞାନ ଅଭ୍ୟାସ ଅନୁକ୍ଷଣେ । ଚଞ୍ଚଳ ନ କରିବ ମନେ ॥
ସମତା ଦୃଷ୍ଟି ସତ୍ୟ ଭାଷା । ଏଣେ କରିବ ଚିତ୍ତେ ଆଶା ॥
ଗଗନ ଯେହ୍ନେ ସର୍ବ ଶୂନ୍ୟ । ଏ ରୂପେ ହୋଇ ଉଦାସୀନ ॥
ବିମୁକ୍ତ ବନ୍ଧ ମହାଶୟ । ସର୍ବ ଦେଖିବ ମାୟାମୟ ॥
ସମ୍ପଦ ବିପଦ ସଂଶୟ । ସର୍ବ ଦେଖିବ ମାୟାମୟ ॥
ବଶେ ନୋହିବ ଅଭିମାନୀ । ଆତ୍ମା ପରତେ ସୁଖ ଦାନୀ ॥
ଦେହକୁ ଦେଖୁଥିବ ଭିନ୍ନ । କାଷ୍ଠେ ଯେସନ ହୁତାଶନ ॥
ଏମନ୍ତେ ଗୁରୁ ବାକ୍ୟ ଜାଣି । ଅବସ୍ତୁ ପ୍ରାୟ ସର୍ବମଣି ॥
ଛାଡ଼ିବ ସକଳ ସଂଶୟ । ଜଗତ ଦେଖି ଦୁଃଖମୟ ॥
କର୍ମ କାରଣେ ଫଳ ପାଇ । ପ୍ରାଣୀ ତା ଅବଶ୍ୟ ଭୁଞ୍ଜଇ ॥
ସ୍ୱତନ୍ତ୍ର ନୋହେ ସର୍ବକାଳେ । ଦୁଃଖ ଭ୍ରମଇ ଏ ଶୟଳେ ॥
ଜୀବର ବନ୍ଦୀ ଦେହ ବାସ । କେବେହେଁ ନାହିଁ ସୁଖଲେଶ ॥
ନିଗୂଢ଼ ବନ୍ଧନ ପୟରେ । ବନ୍ଦୀ ଯେସନେ ବନ୍ଦୀ ଘରେ ॥
କାଳ ବଞ୍ଚଇ ଦୁଃଖ ସହି । ମୂର୍ଖ ପଣ୍ଡିତ ଭେଦ ନୋହି ॥
ଦାରୁଣ ଦୁଃଖ ସୁଖ ମଣେ । ସୁଖକୁ ଦୁଃଖ ପରିମାଣେ ॥

ଏମନ୍ତେ ବୃଥା ଅହଙ୍କାରେ । ଜୀବ ଭ୍ରମଇ ନିରନ୍ତରେ ॥
ଏ ଯେବେ ଦୁଃଖ ସୁଖ ବୁଝେ । ସମୂଳେ ମୃତ୍ୟୁ ସଙ୍ଗେ ଯୁଝେ ॥
ବୁଦ୍ଧି ବିବେକ ଜ୍ଞାନ ବଳେ । ମରଣ ଜିଣିପାରେ ହେଳେ ॥
ଏଣେ ନପଶି ଥୋକେ ଜନ । ତପ କରିଣ ବାନ୍ଧ ମନ ॥
ଏହାର ପୂର୍ବ କର୍ମ ଫଳେ । ଯଦ୍ୟପି ଅର୍ଥ କାମ ମିଳେ ॥
କେବେ ହେଁ ନୁହେଁ ସୁଖ ଲେଶ। ଭୁଞ୍ଜନ୍ତେ ଭୁଞ୍ଜେ ବହୁ କ୍ଳେଶ ॥
ଯାହାର ଶିରଚ୍ଛେଦ ଅର୍ଥେ । ବାନ୍ଧି ତା ନେଇ ମୃତ୍ୟୁ ପଥେ ॥
ତାହାର ଯେତେ କାମ ଅର୍ଥ । ରକ୍ଷଣେ ନୁହନ୍ତି ସାମର୍ଥ ॥
ସଂସାରେ ଦେଖି ଶୁଣି ଯେତେ । ବିଚାରେ ଦୁଃଖ ଏ ସମସ୍ତେ ॥
ମାନ ମଦନ ଗର୍ବ ଲୋଭ । ବିନାଶ ଅପଚୟ ଭୋଗ ॥
ଏ ସର୍ବେ ଦୁଃଖର କାରଣ । ଏ ଯେଣୁ ନୁହନ୍ତି ବାରଣ ॥
କର୍ମର ଫଳ ନାନା ଗତି । ଏହା ତୁ ବୁଝି ତୋଷ ମତି ॥
ବିବିଧ ବିଧି ନାନା ଦାନ । ଯଜ୍ଞେ ଦେବତା ଆରାଧନ ॥
ସେ ପୁଣ୍ୟ ବଳେ ସ୍ୱର୍ଗ ଯାଇ । ଭୁଞ୍ଜଇ ଦିବ୍ୟ ଦେହ ବହି ॥
ନାନା ବୈଭୋବ ଉପଗତେ । ଭୋଗ କରଇ ବେଦ ମତେ ॥
କର୍ମ ନିର୍ମିତ ରତ୍ନ ପଥେ । ଫଳ ଭୁଞ୍ଜଇ ମନୋରଥେ ॥
ଗାନ୍ଧର୍ବ କିନ୍ନର ଯୁବତୀ । ରଥ ପାରୁଶେ ପନ୍ତି ପନ୍ତି ॥
ବିବିଧ ନୃତ୍ୟ ଗୀତ ତାନେ । ମନ ତୋଷନ୍ତି ଅଙ୍ଗଦାନେ ॥
ଦିବ୍ୟ ଯୁବତୀଗଣ ସଙ୍ଗେ । ବିମାନେ ରମେ ନାନାରଙ୍ଗେ ॥
କ୍ଷୁଦ୍ର କିଙ୍କିଣି ରସ ନାଦ । ଲଳିତ ମଙ୍ଗଳ ଶବଦ ॥
ଯାବତ କର୍ମ ଫଳ ପୂରେ । ତାବତ ସ୍ୱର୍ଗ ଭୋଗ କରେ ॥
ପୁଣି ପଡ଼ଇ କର୍ମ କ୍ଷୟେ । ସଂସାରେ ପଡ଼େ ମାୟାମୋହେ ॥
ଏଣୁ ଅର୍ଜିତ କର୍ମ ପାକେ । ଜୀବ ଭ୍ରମଇ ଦୁଃଖ ସୁଖେ ॥
ଅସାଧୁ ସଙ୍ଗେ ଯେତେ ଭାବ । ଉଦ୍ଧବେ କହନ୍ତି ମାଧବ ॥
ସୁକର୍ମେ ସାଧୁ ସଙ୍ଗ ପାଇ । କୁକର୍ମେ ଅସାଧୁ ମିଳଇ ॥
ପୂର୍ବ ବିପାକ କର୍ମ ଦୋଷେ । ଅସାଧୁ ସଙ୍ଗ ମିଳେ ପାଶେ ॥
ଅଧର୍ମ ବଢ଼େ ଦିନେ ଦିନେ । ନିରତେ କୁସଙ୍ଗ ମିଳନେ ॥
ଯେ କାମ ରଜ ସ୍ତିରୀ ଯୁତା । ପାଷଣ୍ଡ କୃପଣ କୁଚ୍ଛିତା ॥
ପର ପୀଡ଼ନେ ଭୃତ୍ୟ ହିଂସା । ଦୁଃଖ ଗହନେ ଯେ ପ୍ରତ୍ୟାଶା ॥
ଯଜ୍ଞ ଆରମ୍ଭ ବିଧି ହୀନ । ପଶୁ ମାରଣେ ଅବଧାନ ॥
କଳିତ ପିତୃଯଜ୍ଞ ଛଳେ । ପଶୁକୁ ବଦ୍ଧ କରେ ବଳେ ॥
ଇତ୍ୟାଦି ନାନା ପ୍ରେତ ଗଣେ । ଆତ୍ମାର ହିଂସ ସେ ନ ମଣେ ॥
ଜୀବ ମାରଣ କର୍ମ ଫଳେ । ନରକେ ପଡ଼େ ଅନ୍ତ କାଳେ ॥
ମାୟା ନିର୍ମିତ ନାନାଯୋନି । ଭ୍ରମଇ ଜୀବ ଆତ୍ମା ଘେନି ॥
ସ୍ଥାବିର ଆଦି ନାନା ଦେହେ । ପଶୁ ପତଙ୍ଗ କୀଟ ହୁଏ ॥
ଶ୍ୱାନ ଶୃଗାଳ ବାଜୀ ଗଜେ । ଏମନ୍ତେ ନାନା ରୂପ ଭଜେ ॥
ଅଶେଷ ଯୋନି କୋଟିଭ୍ରମେ। ଅର୍ଜିତ କର୍ମେ ପଥ ଶ୍ରମେ ॥
ଏ ଦୁଃଖ କର୍ମ ଅବଶେଷେ । କିଞ୍ଚିତ ଧର୍ମ ବିଶ୍ୱାସେ ॥
ଦୁର୍ଲ୍ଲଭ ମନୁଷ୍ୟ ଶରୀର । ଦେହ ଲଭଇ ମର୍ତ୍ତପୁର ॥
ଭାଗ୍ୟେ ଦୁର୍ଲ୍ଲଭ ଦେହ ଧରି । ପୁଣି ଭ୍ରମଇ କର୍ମ କରି ॥
କର୍ମଟି ନାନା ଦୁଃଖ ଦେଇ । କିଞ୍ଚିତ ସୁଖ ନାହିଁ ଯହିଁ ॥
କର୍ମ କରନ୍ତେ ଠାୟେ ଦେହ । ଏଣୁଟି କର୍ମ ଦୁଃଖ ମୟ ॥
କୁବେର ବରୁଣ ଅନଳ । ଇତ୍ୟାଦି ଦଶ ଦିଗ ପାଳ ॥
ମୋହର ତହୁଁ ଜନ୍ମ ହୋନ୍ତି । ଭୟେ ନିକଟେ ନ ରହନ୍ତି ॥
ଦେଖ ଏ କଳ୍ପ ଅଧିକାରୀ । ସ୍ୱଭାବେ ମୋର ଅଂଶ ଧରି ॥
ବ୍ରହ୍ମା ଯେ ମୋର ଅଂଶ ବହି। ସକଳ ସୃଷ୍ଟି ସେ ସର୍ଜଇ ॥
ଗୁଣ ସକାଶୁ ସୃଷ୍ଟି ସୃଜେ । ଯେଣୁ ବିଷୟ ଜୀବ ଭୁଞ୍ଜେ ॥
ଏଣୁ ଏ ଜୀବ କର୍ମେ ମୟେ । ଅକର୍ମେ ଦଣ୍ଡେ ହେଁ ନରହେ ॥
ଯାବତ ବିଷୟର ଗତି । ପୁଣ୍ୟ କଳ୍ପିତ ଭାବେ ଚିନ୍ତି ॥
ତାବତ ନାନା ବିଧି ରୂପେ । ଜୀବ ଭ୍ରମଇ ମୋହ କଳ୍ପେ ॥
ଯାବତ ନାନା ଭାବେ ଛନ୍ନ । ତାବତ ଜୀବ ପରାଧୀନ ॥
ଈଶ୍ୱର ତହୁଁ ଭୟ ପାଇ । ଭ୍ରମଇ ମାୟାମତ ହୋଇ ॥
ଭ୍ରମି ଅନେକ ଶ୍ରମେ ପୁଟେ । କେବେ ହେଁ ମାୟାତାନ ତୁଟେ ॥
ଏମନ୍ତେ ଗୋବିନ୍ଦର ବାଣୀ । ଉଦ୍ଧବ ବୋଲେ ତାହା ଶୁଣି ॥
ପ୍ରଣାମ କରି କୃଷ୍ଣ ପାଦେ । ବୋଲେ ଆନନ୍ଦ ଗଦ ଗଦେ ॥
ଶୁଣ ହେ ପ୍ରଭୁ ଦାମୋଦର । ତ୍ରିଗୁଣେ ଜନ୍ମ ଏ ଶରୀର ॥
ଜୀବନ ଅଛି ଦେହ ମଧ୍ୟେ । ନିର୍ଲେପ ପରମ ଆନନ୍ଦେ ॥
ଗୁଣେ ବନ୍ଧନ ନାହିଁ ତାର । ସ୍ୱଭାବେ ନିତ୍ୟ ନିରାକାର ॥
ତାର ବନ୍ଧନେ ତିନି ଗୁଣେ । ତୁ ନାଥ ବୋଲୁ କି କାରଣେ ॥
କେମନ୍ତେ ନୋହେ ତା ବନ୍ଧନ । କହ ହେ ଦେବକୀ ନନ୍ଦନ ॥
କି ରୂପେ ଥାଇ ଅନ୍ତର୍ଗତେ । କି ରୂପେ ବିହରେ ଜଗତେ ॥
କେତେ ଲକ୍ଷଣ ତାହା ଜାଣି । କି ରୂପେ ଭୁଞ୍ଜେ ଅନ୍ନ ପାଣି ॥
କି ରୂପେ ପ୍ରଚରଇ ଜନେ । ଆସନ ଶୟନ ଗମନେ ॥
ନିଷ୍ଫଳେ କେଉଁସ୍ଥାନେ ବସେ। କହ କେଶବ ମନ ତୋଷେ ॥
ତୁ ନାଥ ମୋର ପ୍ରାଣ ପତି । ଦାସ ମକ୍ଷଳ ଦାଶରଥି ॥
ଅନନ୍ତ ଅଚ୍ୟୁତ ମୁରାରି । ବଳେ କେ ପାରେ ଜୀବଧରି ॥
ସଂସାରେ ବନ୍ଧ ମୋକ୍ଷ ଦୁଇ । କେମନ୍ତେ କଳ୍ପିତାର ଦେହୀ ॥
ଏକ ଅନେକ ଅବା କେତେ । କହ ଗୋବିନ୍ଦ ତୋଷ ଚିତ୍ତେ ॥

ମୋହର ଚିତ୍ତେ ଭ୍ରମ ନୋତେ । କହିଲି ତୋହର ଅଗ୍ରତେ ॥
ମୋ ଘରେ ଜ୍ଞାନ ଦୀପ ଜାଳି । ଅଜ୍ଞାନ ଖଣ୍ଡ ବନମାଳୀ ॥
ବୋଲଇ ବିପ୍ର ଜଗନ୍ନାଥ । କୃଷ୍ଣ ଚରଣେ ଦେଇ ଚିତ୍ତ ॥
ଉଦ୍ଧବ ପଚାରିଲେ ଯେତେ । ଶ୍ରୀ ଏକାଦଶ ଭାଗବତେ ॥
ସୁଜନେ ଏଣେ କର ଚିତ୍ତ । ମୁଁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥
ଜନମେ ଜନମେ ମୋ ମତି । ନ ଛାଡୁ ତୁମର ଭକତି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଭକ୍ତିଯୋଗ କଥନଂ ସମ୍ବାଦେ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ
## ଶ୍ରୀ ଭଗବାନ ଉବାଚ

ଶୁଣିଣ ଉଦ୍ଧବ ବଚନ । ବୋଲନ୍ତି ଶ୍ରୀ ମଧୁସୂଦନ ॥
ତୁ ଯାହା କରୁହୋ ପ୍ରଶନ । ଜୀବ ଆତ୍ମାର ତତ୍ତ୍ୱଜ୍ଞାନ ॥
ଜୀବର ବନ୍ଧ ମୋକ୍ଷ ବେନି । ବିଚାର ଯେତେ ଶାସ୍ତ୍ରଘେନି ॥
କେବେହେଁ ନ ପାଇ ତା ଅନ୍ତ । ଏଣୁ ସେ ବୋଲାଇ ଅନନ୍ତ ॥
ବସ୍ତୁ ବିଚାରେ ବନ୍ଧ ମୋକ୍ଷ । ଜୀବକୁ ନ ଲାଗେ ପ୍ରତକ୍ଷ ॥
ଜନ୍ମ ମରଣ ଶୋକମୋହ । ସୁଖ ଦୁଖ ଆଦି ସଂଶୟ ॥
କେବଳ ମାୟା ଭ୍ରମ ଏହି । ଏଣେ ଜୀବର ଭେଦ ନାହିଁ ॥
ସ୍ୱପ୍ନେ ଦେଖଇ ପ୍ରାଣୀ ଯାହା । ନିଦ୍ରା ବୋଧନେ ହୋଇ ମାୟା ॥
ବିଦ୍ୟା ଅବିଦ୍ୟା ମୋର ଦେହ । ବନ୍ଧ ମୋକ୍ଷହି ମାୟାମୟ ॥
ଏ ଚାରି ମଧ୍ୟେ ମୋର ଅଂଶେ । ଜୀବନ ସ୍ୱରୂପ ପ୍ରକାଶେ ॥
ଅବିଦ୍ୟା ବଳେ ବନ୍ଦୀ ହୋଇ । ହୀନ କୁମତି ଭାବ ବହି ॥
ଏଣୁ ଭ୍ରମଇ ମାୟାଭ୍ରମେ । କର୍ମ ଅର୍ଜିତ ପଥଶ୍ରମେ ॥
ମଜ୍ଜଇ ମାୟା ଅହଙ୍କାରେ । ନିଜ ମହିମା ନ ସୁମରେ ॥
ସ୍ୱଭାବେ ନିତ୍ୟ କର୍ମ ସ୍ଫୁରେ । ଯଦ୍ୟପି ଜୀବ ବିଦ୍ୟାକରେ ॥
ଆତ୍ମାକୁ ଆତ୍ମା ଯେବେ ସ୍ମରେ । ପରମ ଆନନ୍ଦେ ବିହରେ ॥
ଏଣୁ ଏ ବେନି ଅଂଶ ହୋଇ । ବନ୍ଧ ବିମୁକ୍ତ ଭାବ ବହି ॥
ଏକଇ ବୃକ୍ଷେ ଅଂଶ ଦୁଇ । ବସନ୍ତି ପ୍ରିୟଭାବ ବହି ॥
ସ୍ୱଭାବେ ବେନି ସଖା ହୋନ୍ତି । ଏକ ଆରକେ ନ ଦେଖନ୍ତି ॥
ସମାନ ଶକ୍ତି ସେ ବହନ୍ତି । ବନ୍ଧ ବିମୁକ୍ତ ବେନିଗତି ॥
ସେ ବୃକ୍ଷେ ଯେତେ ଫଳ ଫଳେ । ଏକ ଭୁଞ୍ଜଇ ତାହା ବଳେ ॥
ଏକ ବଞ୍ଚଇ ଉପବାସେ । ନିର୍ଗୁଣ ନିରଂଜନ ଆଶେ ॥
ନିତ୍ୟ ଆନନ୍ଦ ପରିପୂର୍ଣ୍ଣେ । ସମସ୍ତ ଦେଖଇ ସମାନେ ॥
ସେହୁ ନ ଜାଣେ ନିଜ ପର । ଏଣୁ ନିର୍ମଳ ଜ୍ଞାନ ତାର ॥
ଯେ ହଂସ ବୃକ୍ଷେ ଫଳ ଖାଇ । ଲୋଭେ ବନ୍ଧନ ତାର ଦେହୀ ॥
ଅଜ୍ଞାନେ ନ ଜାଣଇ କିଛି । ଏମନ୍ତେ ବେନି ଆତ୍ମା ଲକ୍ଷି ॥
ପରମ ଆତ୍ମନେ ଆନନ୍ଦି । ଅବିଦ୍ୟା ସଙ୍ଗେ ଜୀବ ବନ୍ଦୀ ॥
ଦେହେ ସେ ବସଇ ପ୍ରତ୍ୟକ୍ଷେ । ନିତ୍ୟେ ନ ଥିଲା ପ୍ରାୟ ଇଚ୍ଛେ
ସେ ଭାବେ ଯେତେ ପ୍ରାଣୀ ଥାନ୍ତି । ପଣ୍ଡିତ ତାହାକୁ ବୋଲନ୍ତି ॥
ଦେହେ ନ ଥାଇ ଥିଲା ପ୍ରାୟେ । ସେ ମଣେ ସେ ବଞ୍ଚିତ ନୋହେ
ସ୍ୱପ୍ନ ଜାଗିଲେ ଯେହ୍ନେ ମିଛ । କୁମତି ମଣେ ତା ପ୍ରତ୍ୟକ୍ଷ ॥
ଏଣୁ ବିଷୟ ଇନ୍ଦ୍ରିଗଣେ । ଭୁଞ୍ଜନ୍ତି ବିଧି ଆଚରଣେ ॥
ଜୀବ ଯେ ଉଦାସୀନ ରୂପେ । ବସଇ ଏହାଙ୍କ ସମୀପେ ॥
ଏଣୁ ଏ ଗୁଣ କର୍ମ ମୟେ । ପ୍ରକାଶେ ଦାତା ଭୋକ୍ତା ପ୍ରାୟ ॥
ଏଣୁ ପରମ ନାମ ତାର । ନିର୍ଲେପ ଗୁଣେ ନିରାକାର ॥
ଯେ ଭାବେ ଅହଙ୍କାର ମିଶେ । ଇନ୍ଦ୍ରି ବିଷୟ ରସେ ରସେ ॥
କୁମତି ଅଦୃଷ୍ଟ ଅଧୀନ । କର୍ମର ବସେ ସେ ବନ୍ଧନ ॥
କେବେହେଁ ନ କରିବ ସଙ୍ଗ । ଯେସନେ ସମୁଦ୍ର ତରଙ୍ଗ ॥
ସର୍ବ ସମ୍ପତେ ଯେ ପ୍ରବେଶ । କେବେ ହେଁ ନୋହିବ ବିଶ୍ୱାସ ॥
ଆସନ ଶୟନ ଭୋଜନେ । ମାର୍ଜନ ପାଦ ଅବଧାନେ ॥
ଶ୍ରବଣ ଗମନ ସ୍ପର୍ଶନ । ପ୍ରପଞ୍ଚ ରୂପ ଦରଶନ ॥
ଏ ସର୍ବଭାବେ ଉଦାସୀନ । ଯେ କରେ ସେହି ମହାଜନ ॥
ନିରଭିମାନୀ ଗୃହ ଦେହେ । କରି ଭ୍ରମିବ ସର୍ବଠାଏ ॥
ସଂକଳ୍ପ ନ ଭାବିବ ମନେ । ଗୃହ ଶରୀର ଅଭିମାନେ ॥
କେ କରେ ହିଂସା ଅହଙ୍କାର । କେ ପୂଜି କରେ ନମସ୍କାର ॥
କେ ଅବା କରେ ନିନ୍ଦାସ୍ତୁତି । ଏଣେ ନୋହିବ ଭେଦମତି ॥
ଅଦୃଷ୍ଟମାନି ଅବଧାନେ । ଚିତ୍ତେ ଧରିଣ ଦିବ୍ୟଜ୍ଞାନେ ॥
ସମେ ଦେଖିବ ସର୍ବ ଅଂଶେ । ଭେଦ ନ କରି ଗୁଣ ଦୋଷେ ॥
ଚିତ୍ତ ନିରୋଧିବ ଶରୀରେ । ଯେ କିଛି ନ ବୋଲେ ନ କରେ
ତାହାକୁ ବୋଲିବ ପଣ୍ଡିତ । ସେ ଆତ୍ମା ରାମେ ଜଡ଼ମତ ॥
ସେ ଯେବେ ଏତେ ଗୁଣଘେନି । ପରମାନନ୍ଦକୁ ନ ଚିହ୍ନି ॥
ସକଳ ଶାସ୍ତ୍ର ବ୍ୟର୍ଥ ତାର । କେବଳ ଶ୍ରମମାତ୍ର ସାର ॥
କୁଧେନୁ ବାନ୍ଧି ଗୃହେ ଯେହ୍ନେ । ନିରାଶ ହୋନ୍ତି କ୍ଷୀରପାନେ ॥
ଦୁଷ୍ଟା ଭାରିଯା ଦୋଷ ଦେଖି । ଯେ ଗୃହେ କାମଲୋଭେ ରଖି ॥
ସକଳ ଶାସ୍ତ୍ର ତାର ନାଶେ । ନରକ ତାର ଗୃହବାସେ ॥

ମୋ ନାମ ନ ଶୁଣି ଯା ମୁଖୋ । ଯେ ଗୃହୀ ଲୋଭେ ଧନଗଖୋ ॥
ପାତ୍ରେ ନ କରେ ସମର୍ପଣ । ସଂସାରେ ମୂଢ଼ ବୋଲି ଜାଣ ॥
ଦୁଃଖୀ ହୁଁ ଦୁଃଖୀ ସେ ବୋଲାଇ । ଉଭୟେ ଲୋକେ ସୁଖନାହିଁ
ମୋର ନିର୍ମଳ ଯଶ ନାମ । ଯେ ଅବା ଅଛି ଗୁଣଗ୍ରାମ ॥
ଯେବା ପଣ୍ଡିତ ଉତ୍ତମଲୋକେ । ମୋ ନାମ ନିତ୍ୟେ ଧରେ ମୁଖେ
ତତ୍ତ୍ୱ ବିଚାରି ତୁଟେ ଭ୍ରାନ୍ତି । ଭବ ସାଗରୁ ତରିଯାନ୍ତି ॥
ବୋଲନ୍ତି ଜଗତ ଜୀବନ । ଏ ଯୋଗ ଗତି ତତ୍ତ୍ୱଜ୍ଞାନ ॥
ଯେ ଏହା ନ ଧରନ୍ତି ଚିତ୍ତେ । ସଂସାରୁ ତରିବେ କେମନ୍ତେ ॥
ତୁ ଯେବେ ଚିତ୍ତ ମୋର ଦେହେ । ଧରି ନ ପାରି ମାୟାମୋହେ ॥
ତେବେ ସକଳ କର୍ମ ମୋତେ । ସମର୍ପି ରହ ଦୃଢ଼ ଚିତ୍ତେ ॥
ସମସ୍ତ କର୍ମ ଏ ଜଗତେ । ଭାବେ କହିଲି ମୁଇଁ ତୋତେ ॥
ମୋହର ଜନ୍ମ କର୍ମନାମ । ସତ୍ୟ ପବିତ୍ର ପୂର୍ଣ୍ଣକାମ ॥
ଆବର ଗୁଣ ଅଛି ଯେତେ । ଉଦ୍ଧବ ଶୁଣ ଏକ ଚିତ୍ତେ ॥
କୀର୍ତ୍ତନ ଶ୍ରବଣ ସ୍ମରଣ । ଯେ ମୋର ଧର୍ମ ଆଚରଣ ॥
ଚିତ୍ତ ସମର୍ପି ମୋର ପାଦେ । ସଂସାରୁ ତର ଅପ୍ରମାଦେ ॥
ଏ ରୂପେ ଉପାସନା କର । ନିଶ୍ଚେ ପାଇବ ମୋ ଶରୀର ॥
ସାଧୁଙ୍କ ସଙ୍ଗ କର ନିତି । ଲଭିବୁ ନିର୍ମଳ ଭକତି ॥
ଭଗତି ଶୁଦ୍ଧମନେ କଲେ । ଜ୍ଞାନ ସଂପ୍ରାପ୍ୟ ହୋଇ ଭଲେ ॥
ଜ୍ଞାନୁ ସଂସାରୁ ହୋଇପାର । ଶୁଣି ଉଦ୍ଧବ ଯୋଡ଼େ କର ॥

## ଉଦ୍ଧବ ଉବାଚ

ବୋଲଇ କୃଷ୍ଣମୁଖ ଚାହିଁ । ଭୋ ନାଥ କର ମୋତେ ତ୍ରାହି ॥
ମୁଁ ତୋର ଚରଣେ ଶରଣ । କହ ତୋ ଭଗତ ଲକ୍ଷଣ ॥
କି ରୂପେ ଭଗତଙ୍କୁ ଜାଣି । ଭକ୍ତି କି ରୂପେ ପରିମାଣି ॥
ତୁ ପରିପୂର୍ଣ୍ଣ ବ୍ରହ୍ମସାର । ସ୍ୱଭାବେ ପ୍ରକୃତିରୁ ପର ॥
ଭକ୍ତ କରଇ ତୋତେ ବଶ । ତାର ରକ୍ଷଣେ ତୋ ପ୍ରକାଶ ॥
ଭକ୍ତ ରକ୍ଷଣେ ତୋର ତନୁ । ତେଣୁ ଭଗତି ବାକ୍ୟମାନୁ ॥
ଅନାଦି ପ୍ରଭୁ ଭଗବାନ । କରୁଣା ସିନ୍ଧୁ ଦିବ୍ୟଜ୍ଞାନ ॥
ଅରୂପ ରୂପ ବ୍ରହ୍ମରାଶି । ତୁ ଏ ସଂସାର ମଧ୍ୟେ ପଶି ॥
ସକଳ ତୋହର ଭିଆଣ । ଏଣୁ ତୁ ପୁରୁଷ ପୁରାଣ ॥
ଭକ୍ତି ଲକ୍ଷଣ ଧର୍ମ ଯେତେ । ମଣାଇ କହ ଦୟାଚିତ୍ତେ ॥
ଭକ୍ତ ଲକ୍ଷଣ ମୋତେ କହ । ଯେଣେ ଖଣ୍ଡିବ ମାୟାମୋହ ॥
ଶୁଣି ଏମନ୍ତେ ତା ବଚନ । କହନ୍ତି ଶ୍ରୀ ମଧୁସୂଦନ ॥

## ଶ୍ରୀ ଭଗବାନ ଉବାଚ

ଏମନ୍ତେ ଉଦ୍ଧବର ବାଣୀ । ଶୁଣି କହନ୍ତି ଚକ୍ରପାଣି ॥
ସମଦରଶୀ ସତ୍ୟସାର । ତ୍ୟାଗ ସ୍ୱଭାବ ମହାଧୀର ॥
କୃପାଳୁ ସର୍ବଲୋକ ହିତ । ସାଧୁ ପବିତ୍ର ଶୁଚିବନ୍ତ ॥
ଅଳ୍ପ ଭୋଜନେ ମନସ୍ଥିର । ମୃଦୁ ପ୍ରସନ୍ନ ଗତିସ୍ୱର ॥
ସଂକଳ୍ପ ଅମାନି ମାନଦ । କବି ପଣ୍ଡିତ ଶୁଦ୍ଧ ବୁଦ୍ଧ ॥
ଚିତ୍ତ ସଂକଳ୍ପ ଅପ୍ରମାଦି । ଗଭୀର ଚିତ୍ତ ମନବୁଦ୍ଧି ॥
ସତ୍ୟାଦି ଏକବିଂଶ ଗୁଣ । ଏ ବଇଷ୍ଣବଙ୍କ ଲକ୍ଷଣ ॥
ଏତେ ଲକ୍ଷଣ ଲକ୍ଷି ଯହିଁ । ନିଶ୍ଚୟେ ବୈଷ୍ଣବଟି ସେହି ॥
ଏ ରୂପେ ଦୋଷ ଗୁଣ ଯେତେ । ନିର୍ଣ୍ଣୟ କରି ଶାସ୍ତ୍ର ମତେ ॥
ସକଳ ଧର୍ମ ତେଜି ଚିତ୍ତେ । ଯେ ମତେ ଭଜେ ଦୃଢ଼ ଚିତ୍ତେ ॥
ସେ ପ୍ରାଣୀ ଭଗତ ଉତ୍ତମ । କହିଲେ ଶ୍ରୀପୁରୁଷୋତ୍ତମ ॥
ବିଚାରି ସର୍ବ କର୍ମ ତେଜ । ମତେ ଏକାନ୍ତ ଭାବେ ଭଜ ॥
ମୋର ମଧୁର ରୂପ ଦେଖି । ସକଳ ସୁନ୍ଦର ଉପେକ୍ଷି ॥
ବେଗେ କରିବ ଦରଶନ । ବନ୍ଦନ, ସ୍ତବନ ଅର୍ଚ୍ଚନ ॥
ନାନା ପ୍ରକାରେ ସେବା ଯେତେ । ଭାବନା କରି ଶୁଦ୍ଧ ଚିତ୍ତେ ॥
ମୋର ଅମୃତ କଥା ସାର । ଶୁଣି ପୀରତି ନିତ୍ୟେଯାର ॥
ମୋ ରୂପେ ଧ୍ୟାନ ଦୃଢ଼ ମତି । ସକଳ ମତେ ସମର୍ପନ୍ତି ॥
ସେବକ ମତେ ଆତ୍ମା ମନ । ମୋ ଦେହେ କରେ ନିବେଦନ ॥
ମୋ ଜନ୍ମ କର୍ମର କଥନ । ମୋର ଉତ୍ସବେ ହୃଷ୍ଟ ମନ ॥
ନାନା ସୁବାଦ୍ୟ ଗୀତ ଯେତେ । କୀର୍ତ୍ତନ କର ମୋ ଅଗ୍ରତେ ॥
ଗୋଷ୍ଠୀ କରିବ ବନ୍ଧୁ ମିଳି । ମୋ ଘରେ ଦେଇ ଦୀପାବଳି ॥
ଆନନ୍ଦେ କରି ମୋ ଉତ୍ସବ । ଦିବସ ରଜନୀ ବଞ୍ଚିବ ॥
ମୋହର ଯାତ୍ର ପର୍ବା ପର୍ବେ । ବିଧି ବିଧାନ କଥା ପୂର୍ବେ ॥
ଯେତେ ବୈଷ୍ଣବ ଦୀକ୍ଷାମାନ । କରିବ ମନ୍ତ୍ର ସନ୍ନିଧାନ ॥
ବୈଷ୍ଣବ ଲକ୍ଷଣ ମୋ ବ୍ରତ । ଯେ ଭାବେ ଯାର ଦୃଢ଼ ଚିତ୍ତ ॥
ଅତି ସୁନ୍ଦର ମନୋହର । ଗୃହେ ସ୍ଥାପିବ ରୂପ ମୋର ॥
ଆପଣା ହସ୍ତେ ନିର୍ମାଇବ । ନୋହିଲେ ପରେ କରାଇବ ॥
ନାନା କୁସୁମ ବନରୂପୀ । ସୁସ୍ୱାଦୁ ଫଳ ବୃକ୍ଷ ସ୍ଥାପି ॥
ମାର୍ଜ୍ଜନା କରି ନିଜ କରେ । ଗୋମୟ ଲେପିବ ମୋ ଘରେ ॥
ଚିତ୍ର ବିଚିତ୍ର ଚିତ୍ରକାରେ । ନାନା ମଣ୍ଡଳୀ ମନୋହରେ ॥
ବାଳକ ଗୃହ ଯେହ୍ନେ ଦାଣ୍ଡେ । ଲେପିବ ନାନା ଚୂର୍ଣ୍ଣ ପିଣ୍ଡେ ॥
ନାନା କୈତବ କୂଟଦମ୍ଭ । ଚିତ୍ତେ ନ କରିବ ଆରମ୍ଭ ॥
ଇତ୍ୟାଦି ପୁଣ୍ୟ କର୍ମଯେତେ । ସାଧିବ ଗୃହାରମ୍ଭ ମତେ ॥
ମୋ ପ୍ରୀତି ଅର୍ଥେ କର୍ମ କର । ମୋର ଚରଣେ ଚିତ୍ତ ଧର ॥
ଯେ କର୍ମ ଆପଣେ କରିବ । କେବେହେଁ ପରେ ନ କହିବ ॥

ଯେ ଦ୍ରବ୍ୟ ମୋତେ ସମର୍ପିବ । ପୁଣି ଗ୍ରହଣ ନ କରିବ ॥
ମୋ ଦ୍ରବ୍ୟେ ଅଧିକାର ଯେତେ । କେବେ ହେଁ ନ ଧରିବ ଚିତ୍ତେ ॥
ଆତ୍ମାର ପ୍ରିୟ ବସ୍ତୁ ଯେତେ । ଯେ ଅବା ମିଳି ଅକସ୍ମାତେ ॥
ଆନନ୍ଦ ମନେ ତାହା ଆଣି । ମୋତେ କରିବ ସମର୍ପଣି ॥
ମୋର ପ୍ରସନ୍ନେ ତାର ଫଳ । ହୋଇବ ଅତ୍ୟନ୍ତ ନିର୍ମଳ ॥
ମୋର ମନ୍ଦିରେ ମନୋହର । କରିବ ବିଚିତ୍ର ସଂସ୍କାର ॥
ମୋତେ ପୂଜିବ ଯେତେ ସ୍ଥାନେ । ଉଦ୍ଧବ ଶୁଣ ସାବଧାନେ ॥
ଗୋରୁ ବ୍ରାହ୍ମଣ ମୁନି ରବି । ଗଗନ ପବନ ପୃଥିବୀ ॥
ଜଳ ବୈଷ୍ଣବ ହୁତାଶନ । ବିଷ୍ଣୁ ପୂଜିବ ଏତେ ସ୍ଥାନ ॥
ଯାହାକୁ ଯେମନ୍ତେ ପୂଜିବ । କହିବା ଶୁଣ ହେ ଉଦ୍ଧବ ॥
ଶୀତଳ ଜଳ ତୃଣ ଦାନେ । ଗୋରୁକୁ ପୂଜିବ ଗୋ ସ୍ଥାନେ ॥
ଅତିଥି ଯାହା ଦ୍ରବ୍ୟ ଦେଇ । ବିପ୍ର ପୂଜିବ ବିଷ୍ଣୁ ଧ୍ୟାୟି ॥
ମୁନି ପୂଜିବ ମନ୍ତ୍ର ତନ୍ତ୍ରେ । ସଂସ୍କାର ଦ୍ରବ୍ୟ ବେଦ ମତେ ॥
ପବିତ୍ର ଦୂର୍ବା ପୁଷ୍ପ ଅର୍ଘ୍ୟେ । ରବି ପୂଜିବ ବିଷ୍ଣୁ ଗର୍ଭେ ॥
ଆକାଶ ବର୍ଣ୍ଣ ହୃଦେ ଧରି । ଧ୍ୟାନେ ପୂଜିବ ନରହରି ॥
ପବନ ଗନ୍ଧ ଆମୋଦନେ । ପୂଜିବ ଚିତ୍ତ ସାବଧାନେ ॥
ଅଭିଗମନ ଅନୁଯାନେ । ଅନ୍ନ ଭୋଜନ ଜଳ ପାନେ ॥
ବିବିଧ ରସମୟ ଦ୍ରବ୍ୟେ । ମୋତେ ପୂଜିବ ଜଳ ଭାବେ ॥
ନିର୍ମଳ ସଂସ୍କାର ଅନଳେ । ଘୃତ ଇନ୍ଧନ ଚରୁତିଳେ ॥
ଅଗ୍ନି ପୂଜିବ ମୋର ଧ୍ୟାନେ । ନିର୍ମଳ ନିରସ୍ତ ଭୁବନେ ॥
ସକଳ ଭୂତେ ମୁଁ ବସଇ । ଅନ୍ତରେ ଅନ୍ତର୍ଯ୍ୟାମୀ ହୋଇ ॥
ଏଣୁ ଅନନ୍ତ ରୂପେ ମୋତେ । ଧ୍ୟାନେ ପୂଜିବ ସର୍ବଭୂତେ ॥
ଆତ୍ମାକୁ ଆତ୍ମା ଧ୍ୟାନେ ଧ୍ୟାୟି । ପୂଜିବ ନାନା ଭୋଗ ଦେଇ ॥
ଏ ବିଧି ମତେ ନାନା ଠାବେ । ମୋତେ ପୂଜିବ ପ୍ରିୟଭାବେ ॥
ଯେତେ କହିବି ପୂଜା ସ୍ଥାନେ । ମୋତେ ପୂଜିବ ଏତେ ସ୍ଥାନେ ॥
ନୀଳ ଜୀମୂତ କଳେବର । ରାଜୀବ ଲୋଚନ ସୁନ୍ଦର ॥
ଶଙ୍ଖ ନଳିନ ଚକ୍ରଗଦା । ଚତୁରଭୁଜେ ଶୋହେ ସଦା ॥
ସୁଗନ୍ଧ ବନମାଳା କଣ୍ଠେ । ରତ୍ନ ମେଖଳା କଟୀ ତଟେ ॥
ଶ୍ରବଣେ ମକର କୁଣ୍ଡଳ । ଯେସନେ ଗଗନ ମଣ୍ଡଳ ॥
ରବି ଶଶାଙ୍କ ବିରାଜଇ । ଏମନ୍ତେ ଧ୍ୟାନେ ମନ ଦେଇ ॥
ଏ ବିଧି ମତେ ସେବା କରି । ମୋ ରୂପ ମନେ ଅବଧାରି ॥
ମୋ ଭାବେ ଥିବ ନିରନ୍ତରେ । ଶୁଣ ଉଦ୍ଧବ କହୁଁ ତୋରେ ॥
ତୀର୍ଥ ଗମନ ଯଜ୍ଞ ଦାନେ । କୂପ ତଡ଼ାଗ ଦେବ ସ୍ଥାନେ ॥
ଇତ୍ୟାଦି କରିବାକ ଯେତେ । ମୋ ପାଦେ ସମର୍ପିବ ନିତ୍ୟେ ॥

ଏ ରୂପେ ପୂଜି ମୋ ଚରଣେ । ହୃଦେ ଭଗତି ଦୃଢ଼ ପଣେ ॥
ନିରତେ ଥିବ ସାଧୁ ସଙ୍ଗେ । ନିର୍ମଳ ଯୋଗ ଭକ୍ତି ଭାବେ ॥
ଭକ୍ତି ଲକ୍ଷଣ ବାଟ ଏହି । ଏ ବିନୁ ଅନ୍ୟ ଗତି ନାହିଁ ॥
ଯେଣୁ ତୁ ମୋ ନିଜ ଦାସ । ତୋତେ କହିଲୁ ଉପଦେଶ ॥
ଆବର କହିବି ମୁଁ ଯେତେ । ଶୁଣ ଉଦ୍ଧବ ଏକ ଚିତ୍ତେ ॥
ବୋଲଇ ଦାସ ଜଗନ୍ନାଥ । ସଂସାର ହିତେ ଭାଗବତ ॥
କୃଷ୍ଣ ବଚନେ ଏକାଦଶ । ଯେ ଅବା ଉଦ୍ଧବ ଉଦ୍ଦେଶ୍ୟ ॥
ସୁଜନେ ଶୁଣ କର୍ଣ୍ଣପୁଟେ । ତରିବ ସଂସାର ସଂକଟେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ କୃଷ୍ଣଉଦ୍ଧବ ଭକ୍ତିଯୋଗ କଥନଂ ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ
## ଶ୍ରୀ ଭଗବାନ ଉବାଚ

କୃଷ୍ଣ କହନ୍ତି ତୋଷଚିତ୍ତେ । ଶୁଣ ଉଦ୍ଧବ କହୁ ତୋତେ ॥
ଯେ ଧର୍ମ ସାଂଖ୍ୟକର୍ମ ଯୋଗେ । ମୁହିଁ କହିବି ବ୍ରହ୍ମଭାଗେ ॥
ବେଦ ପଠନ ତପ ତ୍ୟାଗ । ପୁଣ୍ୟ ସମୂହ ବଇରାଗ୍ୟ ॥
ଇତ୍ୟାଦି ନାନା ପୁଣ୍ୟକାମ । ବିପୁଳ ଘର ଜଳଦାନ ॥
ବିବିଧ ବ୍ରତ ମହାଦାନେ । ନିରତ ଭ୍ରମ ଅନୁମାନେ ॥
ଧନ ବିତରେ ଯଜ୍ଞକରେ । ତୀର୍ଥ ଗମନ ନିରନ୍ତରେ ॥
ନାନା ଉପାୟେ ପଥ ହେରି । ମୋତେ ନପାରେ ବଶକରି ॥
ଏ ଜୀବ ସାଧୁସଙ୍ଗ ବିନୁ । ଲଭି ନ ପାରେ ମୋର ତନୁ ॥
ସର୍ବ କୁସଙ୍ଗ ଦୋଷ ହରେ । ଯେ ନିତ୍ୟ ସାଧୁ ସଙ୍ଗକରେ ॥
ଯେ ଅବା ପତିତ ପାମର । ସତ୍ସଙ୍ଗେ ତରେ ଭବଘୋର ॥
ଦୈତ୍ୟ ଦାନବ ଖଗ ମୃଗ । ସାଧୁ ସଙ୍ଗତେ ମୋକ୍ଷ ଯୋଗ ॥
ସ୍ତ୍ରୀ ଶୂଦ୍ର ପତିତ ଚଣ୍ଡାଳେ । ତରିଲେ ସାଧୁସଙ୍ଗ ମେଳେ ॥
ଉଦ୍ଧବ କହ ତୋ ଅଗ୍ରତେ । ସତ୍ସଙ୍ଗେ ତରିଗଲେ ଯେତେ ॥
ଯଜ୍ଞକାମିନୀ ବ୍ରଜନାରୀ । ଏ ସାଧୁ ସଙ୍ଗେ ଗଲେ ତରି ॥
ସ୍ୱଭାବେ ସ୍ତିରୀ ଜନ୍ମ ହୋନ୍ତି । ବେଦ ପୁରାଣ ନ ଜାଣନ୍ତି ॥
ମହାନ୍ତ ନ କରନ୍ତି ସେବା । ସେ ନ ପୂଜନ୍ତି ଯଜ୍ଞ ଦେବା ॥
କେବଳ ସାଧୁ ସଙ୍ଗ ମେଳେ । ମୋତେ ପାଇଲେ ଅନ୍ତକାଳେ ॥
ଜାର ପୁରୁଷ ଭାବେ ମୋତେ । ନିତ୍ୟେ ଭାବିଲେ ଅନ୍ତର୍ଗତେ ॥

ଏଣୁ ତରିଲେ ବ୍ରଜନାରୀ । ଆନନ୍ଦେ କହନ୍ତି ମୁରାରି ॥
କୀଟ ପତଙ୍ଗ ପଶୁ ମୃଗ । ସାଧୁ ସଙ୍ଗତେ ମୋକ୍ଷଯୋଗ ॥
ଭଗତି ଯୋଗେ ସାଧୁମେଳେ । ମୋତେ ପାଇଲେ ଅନ୍ତକାଳେ ॥
ଯୋଗୀନ୍ଦ୍ର ବିପ୍ର ମୁନିଗଣେ । ଧାନେ ଚିନ୍ତିଲେ ମୋ ଚରଣେ ॥
ନ ପାଇ ସାଂଖ୍ୟ ଯୋଗେ ଫୁଟି । ବିବିଧ ଦାନ ବ୍ରତ କୋଟି ॥
ଇତ୍ୟାଦି ଚିତ୍ତ ବଇରାଗ୍ୟେ । ସନ୍ନ୍ୟାସ ଭାବେ ସର୍ବତ୍ୟାଗେ ॥
ଉପାୟ କରି ନାନା ମତେ । ସେ ମୋତେ ଲଭିବ କେମନ୍ତେ ॥
ଏଣୁ ସାଧୁଙ୍କ ସଙ୍ଗ କରି । ମାୟା ତରିଲେ ନରନାରୀ ॥
ଅକ୍ରୂର ଯେତେବେଳେ ମୋତେ । ମଥୁରା ଧରିନେଲା ରଥେ ॥
ରାମ ସଙ୍ଗତେ ମୋତେ ଦେଖି । ସକଳ ସଂସାର ଉପେକ୍ଷି ॥
ମୋର ବିଚ୍ଛେଦେ ବ୍ରଜନାରୀ । ଶୋକ ସାଗରେ ଜ୍ଞାନହାରି ॥
ମୋର ଚରଣେ ଅନୁରାଗେ । ଚିତ୍ତ ବୁଡ଼ାଇ ପ୍ରେମଭାଗେ ॥
ଧରି ନ ପାରି ହୃଦେ ମନ । ଶୂନ୍ୟ ଦେଖିଲେ ତ୍ରିଭୁବନ ॥
ରାସ ଉତ୍ସବ ମୋର ସଙ୍ଗେ । ଯେତେ ରଜନୀ ବନଭାଗେ ॥
ବଞ୍ଚିଲେ ଗୋପର ତରୁଣୀ । ତିଳାର୍ଦ୍ଧ ପ୍ରାୟେ ତାହା ମଣି ॥
ଏକ ରଜନୀ ମୋ ବିଚ୍ଛେଦେ । ମଣିଲେ କୋଟି କଳ୍ପ ଯୁଗେ ॥
ମୋ ବିନୁ ନ ଜାଣନ୍ତି ଆନ । ମୋ ପାଦେ ତନୁ ମନ ପ୍ରାଣ ॥
ନିବେଦି ଆତ୍ମା ପାସୋରିଲେ । ରାତ୍ର ଦିବସ ନ ଜାଣିଲେ ॥
କି ନାମ ଜାତି କଉଁ ସ୍ଥାନ । ଦେଖନ୍ତି ତ୍ରିଭୁବନ ଶୂନ୍ୟ ॥
ଗିରି ଗହନ ଘୋର ବନ । ସମାଧି ବସି ମୁନିଜନ ॥
ଦେହ ବିଷୟ ପାସୋରନ୍ତି । ନିର୍ମଳ ଜ୍ଞାନେ ଦେଇମତି ॥
ସେ ଯେହ୍ନେ ଲଭନ୍ତି ମୋସେବା । ତହିଁକି ଉପଲକ୍ଷ୍ୟ ଦେବା ॥
ଦେଖ ଏ ଯେତେ ନଦନଦୀ । ପ୍ରବାହେ ମିଳନ୍ତି ଜଳଧି ॥
ଲବଣ ଜଳେ ସେ ମିଶନ୍ତି । ସ୍ୱନାମ ରୂପ ପାସୋରନ୍ତି ॥
ଗୋପ କାମିନୀ ଏହି ମତେ । ମନ ବଚନ ଦେଇ ମୋତେ ॥
ଦେହ ସଂସାର ପାସୋରିଲେ । ଜନ୍ମ ମରଣୁ ନିସ୍ତରିଲେ ॥
ଜାର ପୁରୁଷ ଭାବେ ମୋହେ । ମୋତେ ନ ଜାଣନ୍ତି ନିଶ୍ଚୟେ ॥
ପରମ ବ୍ରହ୍ମ ମୁଁ ସ୍ୱଭାବେ । ଅନ୍ତେ ପଶିଲେ ମୋର ଠାବେ ॥
ଯେଣୁ ଏ ସାଧୁଙ୍କ ସଙ୍ଗମ । ତାରଇ ସ୍ଥାବର ଜଙ୍ଗମ ॥
ଏ ବୋଲ ବୁଝି ତୁ ଉଦ୍ଧବ । ମୋର ଚରଣେ କର ଭାବ ॥
ବିଧି ନିଷେଧ ମୋର କର୍ମ । ଛାଡ଼ି ସକଳ ଲୋକଧର୍ମ ॥
ପ୍ରବୃତ୍ତି ନିବୃତ୍ତି ଏ ବେନି । ଦୃଷ୍ଟି ଶ୍ରବଣ ଅନୁମାନି ॥
ସମସ୍ତ ଛାଡ଼ି ଜ୍ଞାନବଳେ । ଭଜ ତୁ ମୋ ପାଦ କମଳେ ॥
ମୁହିଁ ସେ ମହା ମହେଶ୍ୱର । ସମସ୍ତ ଆତ୍ମା ମୋ ଗୋଚର ॥
ତୁ ଏକ ଭାବେ ଯେବେ ଭାବୁ । ଏ ଘୋର ସଂସାରୁ ତରିବୁ ॥
ଶରଣ ପଶ ମୋର ପାଦେ । ନ ବୁଡ଼ ବିଷୟ ଅଗାଧେ ॥
ଯେ ମୋର ଚରଣେ ଚିନ୍ତଇ । ସଂସାରେ ତାର ଭୟ ନାହିଁ ॥
ଏମନ୍ତ ଗୋବିନ୍ଦର ବାଣୀ । ଉଦ୍ଧବ ଭୟ କଲା ଶୁଣି ॥
କୃଷ୍ଣ ଚରଣ ତଳେ ପଡ଼ି । ବୋଲଇ ବେନି କର ଯୋଡ଼ି ॥

## ଉଦ୍ଧବ ଉବାଚ

ଭୋ ନାଥ ତୋହର ବଚନେ । ଶୁଣି ସଂଶୟ ମୋର ମନେ ॥
ତୁ ଏବେ କଥା ଅନୁସାରେ । ବୋଇଲୁ କର୍ମ ତେଜିବାରେ ॥
ପୁଣି ବୋଇଲୁ ଭଜ ମୋତେ । ଏଣୁ ମୁଁ ଭ୍ରାନ୍ତି କଲି ଚିତ୍ତେ ॥
କି କର୍ମ ତେଜି ଭବୁଁ ପାର । କହ ହେ କମଳାର ବର ॥
ଏ ବେନି ସଂଶୟ ମୋ ଖେଦ । ଜ୍ଞାନ ଖଡ଼ଗେ ନାଥ ଛେଦ
ଉଦ୍ଧବ ବାକ୍ୟେ ଯଦୁପତି । କହନ୍ତି ଜୀବ ଆତ୍ମାଗତି ॥

## ଶ୍ରୀ ଭଗବାନ ଉବାଚ

ଶୁଣ ହେ ଭଗତ ପ୍ରଧାନ । ଏ ଜୀବ ସ୍ୱଭାବେ ନିର୍ଗୁଣ ॥
ଈଶ୍ୱର ନିରଞ୍ଜନ ଏହି । ମାୟା ଶୟନେ ଦେହ ବହି ॥
ଯେଣୁ ଅବିଦ୍ୟା ବନ୍ଧ ତାର । ଏ ଘେନି କର୍ମେ ଅଧିକାର ॥
ବିଧି ନିଷେଧ ଏଣୁ କରି । କୁକର୍ମ ସୁକର୍ମ ବିଚାରି ॥
ଏଣୁ କେବଳ ମୋକ୍ଷ ଲାଭେ । କର୍ମ କରିବ ଶୁଦ୍ଧ ଭାବେ ॥
ଏମନ୍ତ ସାଧି ଶୁଦ୍ଧ କର୍ମ । ଲଭେ ଭଗତି ଖଣ୍ଡେ ଭ୍ରମ ॥
ଭଗତି ଉପଜିବ ଯେବେ । ଛାଡ଼ିବ ସର୍ବ କର୍ମତେବେ ॥
ଏ ଭାବ ଥିଲେ ହେଁ ଉଦ୍ଧବ । କର୍ମ ଲକ୍ଷିତ ଶୁଭାଶୁଭ ॥
ଜୀବର ନୁହଇ ବନ୍ଧନ । କହିଲେ ଯଶୋଦା ନନ୍ଦନ ॥
ଏବେ ତୁ ଶୁଣ ମୋ ବିଚାର । ଜୀବ ମାୟାର ମୋକ୍ଷ ଦ୍ୱାର ॥
ଏ ଜୀବ ଆତ୍ମା ମହେଶ୍ୱର । ସୂକ୍ଷ୍ମ ନିର୍ମଳ ନିରାଧାର ॥
ପୁରାଣ ପୁରୁଷ ଏ ଆଦି । ଦେହେ ପ୍ରକାଶେ ଚକ୍ରଭେଦି ॥
ପ୍ରଥମେ ଚକ୍ରେ ସୂକ୍ଷ୍ମରୂପ । ଦ୍ୱିତୀୟେ ପ୍ରକାଶେ ଅଳପ ॥
ତହୁଁ ଅଧିକେ ମଣିପୁରେ । ପ୍ରକାଶେ ଅନହତ ଦ୍ୱାରେ ॥
ମୃଣାଳ ସୂତ୍ରପଥେ ଜ୍ୟୋତି । ଧାନ ଅଭ୍ୟାସେ ତାହା ଚିନ୍ତି ॥
ଚକ୍ର ପବନ ମହାବଳି । ମନ ପବନ ସଙ୍ଗେ ତୋଳି ॥
ବିଶୁଦ୍ଧ ଚକ୍ର ରନ୍ଧ୍ର ଦେଶେ । ଆସନ ଦୃଢ଼ ବନ୍ଧ ଫାଶେ ॥
ପ୍ରାଣକୁ ବ୍ରହ୍ମରନ୍ଧ୍ରେ ଥୋଇ । ନିଶ୍ଚଳ ଧାନେ ମନ ଦେଇ ॥
ତେବେ ତୁ ଦେଖିବୁ ସାକ୍ଷାତେ । ଆତ୍ମାର ରୂପ ଦୃଷ୍ଟିମାତ୍ରେ ॥
କେବଳ ଅଗ୍ନି ଯେହ୍ନେ ଶୂନ୍ୟେ । ଲକ୍ଷ୍ୟ ସମାଧି ଅନୁମାନେ ॥
ଲୌହ ପାଷାଣ ଘରଷଣ । ସଂଯୋଗେ ଉଠେ ଅଗ୍ନିକଣ ॥

ଯତ୍ନେ ସମିଧ ଦେଲେ ତହିଁ । ସ୍ୱଭାବେ ଶିଖା ପ୍ରକାଶଇ ॥
ପୁଣି ପାଇଲେ ଘୃତଧାର । ଜଳେ ଅତ୍ୟନ୍ତ ବଳିଆର ॥
ଏ ରୂପେ ଆତ୍ମା ସୂକ୍ଷ୍ମବାଣୀ । ବେଦ ବଚନ ଏହାଜାଣି ॥
ଏ ଷଡ଼ଚକ୍ର ଭେଦି ଶିରେ । ଶବଦ ଦ୍ୱାଦଶ ପ୍ରକାରେ ॥
ଏ ଅନାହତ ପୁର ସ୍ଥିତି । ଜୀବ ଆତ୍ମାର ତତ୍ତ୍ୱଗତି ॥
ଉଦ୍ଧବେ ବୋଲନ୍ତି ଶ୍ରୀପତି । ଜାଣ ତୁ ଏହିରୂପ ଚିହ୍ନି ॥
ସେ ନିତ୍ୟ ସନାତନ ହରି । ଅନନ୍ତ ଶକ୍ତି ରୂପ ଧରି ॥
ପ୍ରଥମେ ଏକରୂପ ତାର । ଅନାଦି ଅବ୍ୟକ୍ତ ଈଶ୍ୱର ॥
ଯେ ନିଜ ଶକ୍ତି ଭାବ ବଳେ । ଅଶେଷ ରୂପ ଏ ଶୟଳେ ॥
ପ୍ରକାଶ କରି ନିଜ ଶକ୍ତି । ମାୟା ସଂଯୋଗେ ନାନା ମୂର୍ତ୍ତି ॥
ସେ ଯେବେ ରଜୋଗୁଣେ ମିଶେ । ତା ତହୁଁ ସଂସାର ପ୍ରକାଶେ ॥
ସୃଷ୍ଟି ପାଳଇ ସତ୍ତ୍ୱେ ମିଶି । ତାମସ ଯୋଗେ ତାହା ନାଶି ॥
ଈଶ୍ୱର ମାୟା ଲୀଳା କରି । ଖେଳଇ ଜଗତ ଆବୋରି ॥
ସେ ଏକ ପ୍ରଭୁ ଭଗବାନ । ତା ଦେହୁଁ ସ୍ରିଷ୍ଟି ନୋହେ ଆନ ॥
ସୂତ୍ରେ ପାଷାଣ ଗୁନ୍ଥି ଯେହ୍ନେ । ସୂତ୍ରେ ବସନ ଅନୁମାନେ ॥
ଏ ରୂପେ ଜଗତ ବନ୍ଧନ । ଅନ୍ତର ବାହ୍ୟେ ଭଗବାନ ॥
ଅନାଦି ବ୍ରହ୍ମ ଏ ପ୍ରତ୍ୟକ୍ଷେ । ସଂସାରେ ରୂପ କଳ୍ପବୃକ୍ଷେ ॥
କର୍ମ ଏହାର ମୂଳବୀଜ । ରହସ୍ୟ ଭାବେ ମହାତେଜ ॥
ଧରଇ ଫଳ ପୁଷ୍ପ ପତ୍ର । ବିଭୋଗ ଅପବର୍ଗ ମାତ୍ର ॥
ପୁଣ୍ୟ ପାତକ ରଜ ବୀର୍ଯ୍ୟେ । ବୃକ୍ଷ ଅଙ୍କୁରି ଉଠେ ତେଜେ ॥
ଅନନ୍ତ ବାସନାର ମୂଳେ । ଯେ ରୂପେ ସ୍ଥାପନା ନିରୋଳେ ॥
ଯେ ତିନିନାଳ ତିନି ଗୁଣ । ବୃକ୍ଷର ନିର୍ମାଣ କାରଣ ॥
ଯେ ପଞ୍ଚଡ଼ାଳ ପଞ୍ଚଭୂତ । ପଞ୍ଚ ବିଷୟ ରସଯୁତ ॥
ଶାଖା ସମୂହ ଇନ୍ଦ୍ରିଗଣେ । ଏ ନିତ୍ୟେ ଥାନ୍ତି ମାୟାବଣେ ॥
ଉପରେ ବେନି ପକ୍ଷୀ ନିତ୍ୟେ । ବସନ୍ତି ରକ୍ଷା ଭୋଗଅର୍ଥେ ॥
ବୃକ୍ଷର ମଧ୍ୟେ ତିନି ଧାତୁ । ଶ୍ଲେଷ୍ମଣ କଫ ବାତ ପିତୁ ॥
କୃଷ୍ଣ ଶୁକଳ ବେନି ଫଳେ । ଏକ ଭୁଞ୍ଜଇ ତାହାବଳେ ॥
ଲତା ପୀଡ଼ନ୍ତେ ତନୁ କ୍ଷୀଣ । କଳ୍ପେ ପର୍ଯ୍ୟନ୍ତେ ତା ଜୀବନ ॥
ଯାବତ ଚନ୍ଦ୍ର ସୂର୍ଯ୍ୟ ଦିଶେ । ତାବତ ଏ ଦେହ ପ୍ରକାଶେ ॥
ଏ ପକ୍ଷୀଏ ତାର ଫଳ । ଭୁଞ୍ଜଇ ନିତ୍ୟେ ମହାବଳ ॥
ଯେ ଫଳ ଖାଇ ମତ୍ତଭୋଳେ । ନିରତେ ପଶେ ନାନାଘରେ ॥
ଯେ ଆରପକ୍ଷୀ ଥାଇ ଭୋକେ । ସର୍ବ ଦେଖଇ ସାକ୍ଷୀରୂପେ ॥
ବୃକ୍ଷର ଫଳ ଯେ ଭୁଞ୍ଜଇ । କିରାତ ଜାଳେ ସେ ପଡ଼ଇ ॥
ଏକଇ ବ୍ରହ୍ମ ନାନା ରୂପେ । ଏଣୁ ଭ୍ରମଇ ମୋହକଳ୍ପେ ॥

ସେ ଯେବେ ଜାଣେ ବେଦସାର । ସଂସାରେ ଭ୍ରମ କାହିଁ ତାର ॥
ଏହା ତୁ ବୁଝ ହେ ଉଦ୍ଧବ । ଉତ୍ତମ ଗୁରୁପାଦେ ସେବ ॥
ଛେଦ ତୁ ଗୁରୁବାକ୍ୟେ ସେନା । ଭକ୍ତି କୁଠାରେ ଦୁର୍ବାସନା ॥
ଆତ୍ମାକୁ ଜାଣ ସାବଧାନେ । ଗୁରୁ ବଚନ ଅନୁମାନେ ॥
କହିଲା ଦାସ ଜଗନ୍ନାଥ । ଶ୍ରୀ ଏକାଦଶେ ଭାଗବତ ॥
ଜୀବ ଜଗତ ଅନୁଭବ । ଉଦ୍ଧବ କହିଲେ ମାଧବ ॥
ଏ ବ୍ରହ୍ମ ପ୍ରେମ ତରଙ୍ଗିଣୀ । ସୁଜନେ ତର ଏହା ଶୁଣି ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ କୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ତ୍ରୟୋଦଶୋଽଧ୍ୟାୟଃ ।*

## ଚତୁର୍ଦ୍ଦଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ଦାମୋଦର । ଶୁଣ ଉଦ୍ଧବ ଜ୍ଞାନସାର ॥
ନାହିଁ ସଂସାରେ ଅନ୍ୟୋଅନ୍ୟ । ନିସ୍ତାର ଭକ୍ତି ଯୋଗ ବିନୁ ॥
ମୁଁ ଯେ ବୋଇଲି ମୋତେ ଭଜ । ସଂସାରେ ସର୍ବ କର୍ମ ତେଜ ॥
ତାର ପ୍ରସ୍ତାବ ଏବେ ଶୁଣ । ଯେବେ ଜିଣିବୁ ତିନି ଗୁଣ ॥
ପ୍ରକୃତି ପୁରୁଷ ପ୍ରମାଣ । ତମ ସାତ୍ତ୍ୱିକ ରଜ ଗୁଣ ॥
ଈଶ୍ୱର ନିତ୍ୟ ନିରଞ୍ଜନ । ନିର୍ଗୁଣ ସତ୍ୟ ସନାତନ ॥
ଏଣେ ତାହାର ନାହିଁ ଭେଦ । ଶୁଣ କହିବା ତହିଁ ବୋଧ ॥
ଭକ୍ତି ଲକ୍ଷଣ ଏ ଶୟଳେ । ସାଧିବ ଯେବା ଗୁଣବଳେ ॥
ସାତ୍ତ୍ୱିକ କରି ତୀକ୍ଷ୍ଣବାଣ । ଜିଣିବ ରଜ ତମ ଗୁଣ ॥
ନିର୍ମଳ ଚିତ୍ତେ ହୃଦେ ଧରି । ଯେବେ ସୁଜନ ସେବା କରି ॥
ସ୍ୱଭାବେ ସାତ୍ତ୍ୱିକ ନିର୍ଗୁଣେ । କର୍ମେ ନାଶନ୍ତି ବେନି ଗୁଣେ ॥
ଏଣେ ଅଧର୍ମ କ୍ଷୟ ଯାଇ । ସାତ୍ତ୍ୱିକ ଜ୍ଞାନ ପ୍ରକାଶଇ ॥
ଜନ୍ମ ମରଣ କାମ୍ୟ କର୍ମ । ଆଗମ ପୂଜା ବେଦଧର୍ମ ॥
ନିର୍ମଳ ଧ୍ୟାନେ ମନ୍ତ୍ରଦେଶ । ଇତ୍ୟାଦି ସଂସ୍କାର ବିଶ୍ୱାସ ॥
ଏଣୁ ଏ ଯେବେ ବସ୍ତୁ ଜାତ । ଜାଣ ତୁ ତ୍ରିଗୁଣେ ଜଡ଼ିତ ॥
ସାତ୍ତ୍ୱିକ ଭାବେ ଏହା ସାଧି । ସାଧୁ ପଣ୍ଡିତ ଶୁଦ୍ଧ ବୁଦ୍ଧି ॥
ରଜ ତାମସ ଗୁଣ ଦୁଇ । ଗୁରୁ ବଚନେ ଦୂରେ ଥାଇ ॥
ତେବେ ସାତ୍ତ୍ୱିକ ମୟ ଜ୍ଞାନ । ନିକଟେ ହୁଏ ଉତପନ୍ନ ॥
କେବଳ ଶାସ୍ତ୍ରେ ପରମାର୍ଥେ । ଅଭ୍ୟାସ କରିବ ନିରନ୍ତେ ॥

ତର୍କ ପାଷାଣ୍ଡ ଶାସ୍ତ୍ରଯେତେ । କେବେହେଁ ନ କରିବ ଚିତ୍ତେ ॥
ସୁଗନ୍ଧ ସୁଶୀତଳ ବାରି । ସୁଦୂରେ ସ୍ନାନ ପରିହରି ॥
ସାତ୍ତ୍ୱିକମୟ ତୀର୍ଥଜଳେ । ସ୍ନାନ ମାର୍ଜନା ସାଧୁମେଳେ ॥
ନିରତେ କରି ଶୁଦ୍ଧଚିତ୍ତେ । ତମ ରାଜସ ପ୍ରାଣୀ ଯେତେ ॥
ତାହାଙ୍କୁ ନ କରିବ ସଙ୍ଗ । ଜଳଧେ ଯେସନେ ତରଙ୍ଗ ॥
ପବନ ବଳେ ଜନ୍ମ ହୋଇ । ନିର୍ମଳ ରୂପ ନ ଦିଶଇ ॥
ଏଣୁ ଅସାଧୁ ସଙ୍ଗ ତେଜି । ନିତ୍ୟେ ସାତ୍ତ୍ୱିକ ସଙ୍ଗଭଜି ॥
ସାତ୍ତ୍ୱିକମୟ ପୁଣ୍ୟ ଦେଶେ । ନିବାସ କରିବ ବିଶ୍ୱାସେ ॥
ଯେ ପ୍ରାଣୀ ଦ୍ୟୁତ କ୍ରୀଡ଼ାରତ । ଅସାଧୁ ସଙ୍ଗେ ଅବିରତ ॥
କେବେ ହେଁ ନ କରିବ ମେଳେ । ନିଷ୍ଠେନେ ରହିବ ନିରୋଳେ ॥
ପୁଣ୍ୟ କରିବା ପୁଣ୍ୟକାଳେ । ନିଷେଧ ନ କରିବ ବଳେ ॥
ସାତ୍ତ୍ୱିକ ବିନା କର୍ମଯେତେ । କେବେହେଁ ନ କରିବ ଚିତ୍ତେ ॥
ସାତ୍ତ୍ୱିକ କର୍ମ ମାତ୍ର କରି । ରଜ ତାମସ ପରିହରି ॥
ଅପର ଯେତେ କାମ୍ୟ କର୍ମ । ତେଣେ ନୋହିବ ମତିଭ୍ରମ ॥
ଶିବ ଶାକ୍ତିକ କ୍ଷୁଦ୍ର ଦୀକ୍ଷା । କେବେହେଁ ନକରିବ ଶିକ୍ଷା ॥
ବିଷ୍ଣୁର ମନ୍ତ୍ର ଉପଦେଶ । ସାତ୍ତ୍ୱିକ ଜନ ଯେ ବିଶ୍ୱାସ ॥
ସାତ୍ତ୍ୱିକେ ବିଷ୍ଣୁଧ୍ୟାନ କରି । ଗୃହ ସଂସାର ନ ସୁମରି ॥
କେବଳ ସାତ୍ତ୍ୱିକ ସଂସ୍କାରେ । ଚିତ୍ତ ସାଧିବ ନିରନ୍ତରେ ॥
ଶରୀର କର୍ମମାତ୍ର ଯେତେ । ବାହ୍ୟେ କରିବ ଲୋକମତେ ॥
ଏ ଦଶବିଧି ବସ୍ତୁ ଜାତ । ଜାଣ ତୁ ତ୍ରିଗୁଣେ ଜଡ଼ିତ ॥
ଏଣୁ ପଣ୍ଡିତ ଜନ ଯେତେ । କର୍ମ ସାଧିବ ସତ୍ତ୍ୱମତେ ॥
ସାତ୍ତ୍ୱିକ ସେବା ଯେ ତତ୍ପରେ । ସତ୍ତ୍ୱ ବଢ଼ଇ ନିରନ୍ତରେ ॥
ତେଣୁ ବିଶୁଦ୍ଧ ହୁଏ ମନ । ନିର୍ମଳ ପ୍ରକାଶଇ ଜ୍ଞାନ ॥
ଯେସନେ ବନେ ବାଂଶେ ବାଂଶେ । ଅନଳ ଉପୁଜେ ଘରଷେ ॥
ସେ ବନ ଦହେ ତେଜ ବେଳେ । ପୁଣି ସେ ଲିଭଇ ନିଷ୍ଫଳେ ॥
ଏ ରୂପେ ଗୁଣମୟ ଦେହ । ଥାଉଁ ସାତ୍ତ୍ୱିକ ଭୋଗେ ରହ ॥
ବିଷ୍ଣୁ ସ୍ମରଣେ ଚିତ୍ତ ଜଡ଼ି । ଭଜ ତୁ ସର୍ବଧର୍ମ ଏଡ଼ି ॥
ଏମନ୍ତ କୃଷ୍ଣ ବାକ୍ୟ ଶୁଣି । ଉଦ୍ଧବ ଯୋଡ଼େ ବେନିପାଣି ॥

## ଉଦ୍ଧବ ଉବାଚ

ବୋଲଇ ପାଇ ମନେ ଖେଦ । ଭୋ ନାଥ ଶୁଣିବା ଗୋବିନ୍ଦ ॥
ବିଷୟ ଆପଦର ସ୍ଥାନ । ଭଲେ ଜାଣନ୍ତି ସର୍ବଜନ ॥
ସକଳ ଶାସ୍ତ୍ର ମୁଖୁଁ ଶୁଣି । ଗୁରୁ ବଚନ ପରିମାଣି ॥
ଦୁର୍ଜୟ ଲାଳସା ବିଷୟ । ପୁଣ ଭୁଞ୍ଜଇ କିମ୍ପା କହ ॥
ଏଣେ ସଂଶୟ ମନ ମୋର । ଶୁଣି ବୋଲନ୍ତି ଦାମୋଦର ॥

ରଜ ଗୁଣରୁ ଏ ପ୍ରକାଶ । ହୁଅନ୍ତେ ବୁଦ୍ଧିକରେ ଭ୍ରଂଶ ॥
ସଂକଳ୍ପ ବିକଳ୍ପ ଏ ବେନି । ନାନା ବିକାର ମନେ ଘେନି ॥
ବେନି ସଂଯୋଗେ ମନ ଜଡ଼େ । ନାନା ପ୍ରକାରେ କାମ ବଢେ ॥
କୁମତି ଜନଙ୍କର ମନେ । ପ୍ରକାଶେ ନାନା କୁ ସାଧନେ ॥
ନିରତେ କାମବଶ ହୋଇ । କର୍ମ କରଇ ମୋହ ବନ୍ଧି ॥
କେବଳ କର୍ମେ ବୁଦ୍ଧିଭ୍ରମ । ନ ମଣେ ହାନି ଲାଭ କର୍ମ ॥
କେବଳ ଦୁଃଖ ମାତ୍ର ସାର । ଏ କଥା ନ ବୁଝେ ପାମର ॥
ମିଥ୍ୟା ବିଳାସେ ମୋହଗ୍ରସ୍ତ । ରାଜସ ଗୁଣେ ବିମୋହିତ ॥
ମୁଖେ ଉପମା କେତେ ଦେବା । ଏଣେ ଭ୍ରମନ୍ତି ସୁରଦେବା ॥
ସାତ୍ତ୍ୱିକେ ମୋର ପାଦେ ସେବା । ଏକଥା ବୁଝନ୍ତି ସାଧବା ॥
ଏ କଥା ବୁଝି ବୁଦ୍ଧଜନ । ଚିତ୍ତ ନିବେଶି ସଂଯମନ ॥
ବିଷୟ ସଙ୍ଗ ଦୁଃଖରାଶି । ଏଣେ ନୁହନ୍ତି ଚିତ୍ତଗ୍ରାସୀ ॥
ସାତ୍ତ୍ୱିକ ଗୁଣେ ମନେଧରି । ସାଧିବ ଅଳ୍ପ ଅଳ୍ପ କରି ॥
ଅଭ୍ୟାସେ ନବଦ୍ୱାର ରୁନ୍ଧି । ମନ ପବନ ହୃଦେ ଛନ୍ଦି ॥
ଆହାର ଜିଣିବ ଆସନେ । ମନ ନିବେଶି ମୋର ଧ୍ୟାନେ ॥
ସର୍ବ ବିଷୟ ରସୁ ମନ । ଅଭ୍ୟାସ କରିବ ବନ୍ଧନ ॥
ଆନନ୍ଦ ରଜ୍ଜୁ ଦେଇ ଗଳେ । ବାନ୍ଧିବ ମୋ ପାଦ କମଳେ ॥
ପୂର୍ବେ ଏ ଯୋଗ ଅଭ୍ୟାସନେ । ମୁହିଁ କହିଲି ଶିଷ୍ୟଗଣେ ॥
ସନକ ଆଦି ଚାରିଜନ । ବିଶେଷ ବ୍ରହ୍ମାର ନନ୍ଦନ ॥
ସେ ମୋର ତହୁଁ ଶୁଣି ଏହା । ପରମ ଯୋଗେଣ ସେନେହା ॥
ଏମନ୍ତ କୃଷ୍ଣବାକ୍ୟ ଶୁଣି । ଉଦ୍ଧବ ବୋଲେ ମନେ ଗୁଣି ॥

## ଉଦ୍ଧବ ଉବାଚ

ଭୋ ନାଥ ପ୍ରଭୁ ଭଗବାନ । ଏଣେ ସଂଶୟ ମୋର ମନ ॥
କାହିଁ ତୁ ବସି କେଉଠାବେ । ବ୍ରହ୍ମାପୁତ୍ରଙ୍କର ପ୍ରସ୍ତାବେ ॥
କି ରୂପେ ଧରି ତୁ ଶରୀର । ଯୋଗ କହିଲୁ ଦାମୋଦର ॥
ତୋହର ଦୟା ଯେବେମୋତେ । ଯେ ଯୋଗ କହ ମୋ ଅଗ୍ରତେ ॥
ଏମନ୍ତ ଶୁଣି ତା ବଚନ । କହନ୍ତି ଦେବକୀ ନନ୍ଦନ ॥

## ଶ୍ରୀ ଭଗବାନ ଉବାଚ

ଶୁଣ ଉଦ୍ଧବ ସାଧୁ ଧୀର । ସେ ଚାରି ବ୍ରହ୍ମାଙ୍କ କୁମାର ॥
ବ୍ରହ୍ମାଙ୍କ ପାଦେ ହସ୍ତଦେଇ । ଯୋଗ ପୁଚ୍ଛିଲେ ଚାରିଭାଇ ॥
ଭୋ ତାତ ଶୁଣ ବେଦବର । ଦୁସ୍ତର ଏ ଭବ ସାଗର ॥
ପ୍ରାଣୀ ଅଛନ୍ତି ଏଥେ ମଜ୍ଜି । ବିଷ୍ଣୁ ମାୟାକୁ ସତ୍ୟବୁଝି ॥
ସ୍ଥାବର ଆଦି ଜନ୍ତୁଯେତେ । ଏ ମାୟା ତରିବେ କେମନ୍ତେ ॥
ପ୍ରାଣୀଙ୍କ ମନ ମାୟାସଙ୍ଗେ । ନାନା ପ୍ରପଞ୍ଚ ସଙ୍ଗେ ରଙ୍ଗେ ॥

ଲାଳସା ବିଷୟ ଗୋଚରେ । ନିବେଶି ଚିତ୍ତ ନିରନ୍ତରେ ॥
ଏଣୁ ବିଷୟ ଚିତ୍ତ ମଧେ । ପ୍ରବେଶ କରେ ଅନୁବାଦେ ॥
ଅନ୍ୟାନ୍ୟ ସଙ୍ଗେ ଚିତ୍ତ ଜଡ଼େ । କେବେହେଁ ସଙ୍ଗ ତା ନ ଛାଡ଼େ
ସେ ସଙ୍ଗ ତୁଟଇ କେମନ୍ତେ । ପ୍ରସନ୍ନେ କହ ତାତ ମୋତେ ॥
କେମନ୍ତେ ତହିଁର ଉପାୟେ । ଭୋ ତାତ ପୁଛୁ ତୋର ପାୟେ॥
ପୁତ୍ରଙ୍କ ବାକ୍ୟ ଶୁଣି କର୍ଣ୍ଣେ । ବିଧାତା ବେଦ ଅନୁମାନେ ॥
ଚିନ୍ତି ନ ପାରି ଦୃଢ଼ମନେ । ବସିଲେ ନିଷ୍ଠଳେ ଆସନେ ॥
ସମାଧି କରି ଚିନ୍ତେ ମୋତେ । ସଂଶୟ ଜାଣିବା ନିମନ୍ତେ ॥
ବ୍ରହ୍ମାର ଯୋଗବଳେ ମୁହିଁ । ମିଳିଲି ହଂସ ରୂପ ହୋଇ ॥
ବେଗେ ବ୍ରହ୍ମାର ପୁତ୍ର ଗଣେ । ମିଳିଲେ ମୋହର ଚରଣେ ॥
ତକ୍ଷଣେ ବ୍ରହ୍ମା ଅବଧାନେ । ମୋତେ ପୁଛିଲେ ବିଦ୍ୟମାନେ॥
ଭୋ ହଂସ କାହିଁ ତୋର ଗ୍ରାମ। କାହିଁ ଅଇଲୁ କି ତୋ ନାମ ॥
କିସ କାରଣେ କିସ ଅର୍ଥେ । ଏଥେ ମିଳିଲୁ ଶୂନ୍ୟପଥେ ॥
ନିଷ୍ଠେ ଜାଣିବା ଅର୍ଥେ ମୋତେ । ପୁଛିଲେ ବ୍ରହ୍ମା ଚାରିପୁତ୍ରେ ॥
ତାହାଙ୍କ ପ୍ରଶ୍ନ ମୁଇଁ ଶୁଣି । ଯାହା କହିଲି ପରିମାଣି ॥
ଶୁଣ କହିବୁ ତୋର ଆଗେ । ଆତ୍ମା ପ୍ରସନ୍ନ ଅନୁରାଗେ ॥
ବସ୍ତୁ ବିଚାରେ ଆତ୍ମା ଏକ । କେବେହେଁ ନୁହଇ ଅନେକ ॥
ତୁମ୍ଭର ପ୍ରଶ୍ନର ପ୍ରସ୍ତାବ । ଏ ଭାବ କେମନ୍ତେ ଜାଣିବ ॥
ସର୍ବ ଶରୀର ପଞ୍ଚଭୂତେ । ରଚିତ ଏ ମାୟା ଜଗତେ ॥
ସକଳ ହୃଦେ ଏକ ବ୍ରହ୍ମ । ତୁମ୍ଭେ ପୁଛିଲେ ବ୍ରତ କର୍ମ ॥
କି ବୋଲି ପଚାରିଲ ମୋତେ। ଏ ପ୍ରଶ୍ନ ଫିଟିବ କେମନ୍ତେ ॥
ହୃଦରେ ଯାହା ପରିମାଣି । ଯେ ମୁଖୁ ଶୁଣି ମୁଖେ ଭଣି ॥
ଇନ୍ଦ୍ରି ଗୋଚରେ ମନବୁଦ୍ଧି । ଯେ ଭୋଗ ବିଷୟ ପ୍ରସିଦ୍ଧି ॥
ଏ ସର୍ବ ମୋହର ଆୟତ୍ତ । ମୋ ବିନୁ କିଛି ନୁହେଁ ସତ୍ୟ ॥
ମୁଁ ସର୍ବ ବିଷୟ ଈଶ୍ୱର । ମୋ ତହୁଁ ଆତ୍ମା ନୁହେଁ ପର ॥
ମନ ସ୍ୱରୂପ ସର୍ବଦେହେ । ମୁଁ ଥାଇ ସକଳ ବିଷୟେ ॥
ବିଷୟ ମୋର ଦେହେ ପଶେ। ଏଣୁ ବିଷୟ-ରସେ ରସେ ॥
ଏ ଦେହ ମାତ୍ର ଚିତ୍ରି ଗତ । ବିଷୟ ବାସନା ସମ୍ଭୂତ ॥
ଦୁର୍ଜ୍ଜୟ ବିଷୟ ବାସନା । କେ କରିପାରେ ତା ଖଣ୍ଡନା ॥
ବିଷୟ ସେବନେ ନିରତେ । ଚିତ୍ତ ମଜ୍ଜଇ ଦୃଢ଼ବ୍ରତେ ॥
ଧ୍ୟାନେ ବିଷୟ ଚିତ୍ତ ଜଡ଼େ । ତ୍ରିଗୁଣ ମାୟା ନିତ୍ୟେ ବଢ଼େ ॥
ଏଣୁ ଯେ ମୋହର ଚରଣେ । ଆଶ୍ରେ କରନ୍ତି ଦାସପଣେ ॥
ସର୍ବ ବିଷୟ ମନୁ ତେଜ । କେବଳ ମନେ ମୋତେ ଭଜ॥
ମନ ବିଳାପ ଏ ଜଗତ । ଗଗନେ ବିଦୁର ସଂଜାତ ॥

ଅତି ଚଞ୍ଚଳ ଅତି ଲୋଳ । ଯେସନେ ପ୍ରକାଶେ ଅନଳ ॥
ଏ ବାହ୍ୟ ବନ୍ଧ ଜ୍ଞାନମୟେ । ପ୍ରକାଶେ ବହୁ ରୂପ ପ୍ରାଏ ॥
ଅନିତ୍ୟ ସଂସାର ଗହନ । ଏହା ତୁ ଚିତ୍ତେ ଅନୁମାନ ॥
ଏହୁ ସ୍ୱରୂପେ ସର୍ବଠାଏ । ଏବେ ମୁଁ ବୁଲେ ନାନା ଦେହେ
ଅନନ୍ତ ବାସନା ଜୀବର । ସୁ ସାଧୁ ପୁଣ୍ୟ ସୁଖକର ॥
ସକଳ ଚେଷ୍ଟା ପରିହରି । ଆନନ୍ଦେ ସଂସାରେ ବିହରି ॥
ଭଗତ ରସେ ମଦେ ଲୀନ । ଜଗତେ ସିଦ୍ଧ ଯୋଗୀଗଣ ॥
କେବଳ ନିଜ ଦେହ ଚିନ୍ତି । ଅଛି କି ନାହିଁ ନ ଜାଣନ୍ତି ॥
ଅଦୃଷ୍ଟ ବଶ ଏ ଶରୀର । ଆଗମ ନିଗମ ବେଭାର ॥
ଏଣୁ ଏହାର ଆଦି ଅନ୍ତ । ନ ପଶେ ଜ୍ଞାନୀ ଯୋଗୀ ଚିତ୍ତ॥
ମଦ୍ୟପ ଯେହ୍ନେ ମଦ ଖାଇ । ସତ୍ୟ ଅସତ୍ୟ ନ ଜାଣଇ ॥
କେବଳ ସୁଖ ମଦପାନେ । ଅଜ୍ଞାନ ଘୂମିତ ଲୋଚନେ ॥
ଅଛି କି ନାହିଁ ନିଜ ଦେହୀ । ଉଭୟ ମତ ନ ଜାଣଇ ॥
ଜ୍ଞାନୀ ଏମନ୍ତ ରସେ ରସେ । ସୁଖ ସମୁଦ୍ରେ ନିତ୍ୟେ ଭାସେ ॥
ଶୁଣ ହେ ସନକାଦି ଜନ । ତୁମ୍ଭେ ଯେ ବ୍ରହ୍ମାର ନନ୍ଦନ ॥
ଯେ ପ୍ରାଣୀ ବେନି ପରିହରେ । ବିଷୟ ବାସନା ନ କରେ ॥
ଭୂତ ଭବିଷ୍ୟ ବର୍ତ୍ତମାନେ । ଏ ଜୀବ ଥାଇ ସର୍ବସ୍ଥାନେ ॥
ବସଇ ସକଳ ଶରୀରେ । ଏ ସତ୍ୟ ଅନ୍ତର ବାହାରେ ॥
ସର୍ବ ଶରୀର ନିରପେକ୍ଷ । ମୋ ରୂପ ଦେଖିବ ପ୍ରତ୍ୟକ୍ଷ ॥
ଅନାଦି ଅବିଦ୍ୟାରେ ବନ୍ଦୀ । କର୍ମ ବାସନା ରଜ୍ଜୁ ଛନ୍ଦି ॥
ସତ୍ତ୍ୱାଦି ହେତୁ ତିନିଗୁଣ । ଏ ମାୟା ଦେହର କାରଣ ॥
ମୋର ଚରଣେ ଚିତ୍ତବଳେ । ନିବେଶି ସମାଧି ନିଷ୍ଠଳେ ॥
ସହଜେ ଚିତ୍ତ ଦୃଢ଼ କରି । ବିଷୟ ରସ ନ ସୁମରି ॥
ବି ଅର୍ଥେ ଅହଙ୍କାରେ ମନ । ଏ ଜୀବ ସଂସାରେ ବନ୍ଧନ ॥
ମାୟା ସଂସାର ଘୋରବନେ । ଜୀବ ଭ୍ରମଇ ଅକାରଣେ ॥
ଏଣୁ ପଣ୍ଡିତ ସାଧୁଜନ । ମୋ ଦେହେ ଦେବୁ ବୁଦ୍ଧିମନ॥
ସଂସାର ଚିନ୍ତା ଦୂରକରି । ଚିତ୍ତେ ମୋ ଚରଣ ସୁମରି ॥
ତାବତ ଘୋରଦୁଃଖେ ମନ । ଜାଣି ନ ଜାଣି ମୂର୍ଖଜନ ॥
ଏମନ୍ତ ଅନୁମାନ ଚିତ୍ତେ । ସହଜ ଦୁଃଖ ସୁଖ ପଥେ ॥
ତେଜିଣ ହରଷ ବିଷାଦ । ସଂସାର ବାସନା ପ୍ରମାଦ ॥
ଧର୍ମ ଅଧର୍ମ କୂଟବୁଦ୍ଧି । ଏଣେ କାଟଇ ଚିତ୍ତ ଶୋଧି ॥
ସାଧୁଙ୍କ ମୁଖରିତ ଧ୍ୱନି । ଜ୍ଞାନ ଖଡ଼ଗ କରେ ଘେନି ॥
ଗୁରୁ ବଚନ ଅନୁରାଗେ । ଚିତ୍ତୁ ବଢ଼ିମା କାଟ ବେଗେ ॥
ସଂଶୟ ପ୍ରାଣ ଚିତ୍ତୁ ତେଜ । କେବଳ ଭାବେ ମୋତେ ଭଜ ॥

ପରମ ବ୍ରହ୍ମ ଯୋଗମାର୍ଗ । ଭାବେ କହିଲୁ ତୁମ୍ଭ ଆଗ ॥
ସର୍ବ ଆଶ୍ରୟ ଯେଣୁ ମୁହିଁ । ଯଜ୍ଞେ ସକଳ ହୋମ ଥାଇ ॥
ଯେଣୁ ମୁ ସର୍ବ ଯଜ୍ଞପତି । ମହାପୁରୁଷ ସତ୍ୟବ୍ରତୀ ॥
ଏ ରୂପ ପ୍ରକାଶ କଥନେ । ମିଳିଲି ତୁମ୍ଭର ଆଶ୍ରମେ ॥
ଯେଣୁ ମୁ ପରମ ଆଶ୍ରୟ । ସର୍ବ ଜଗତ ମୋର ଦେହ ॥
ସକଳ ଗତି ପତି ସାର । ମୁଁ ଜୀବ ଆତ୍ମାର ଈଶ୍ୱର ॥
ସାତ୍ତ୍ୱିକ ରଜ ତମ ଗୁଣ । ମୋର କିଙ୍କର ଏ ପ୍ରମାଣ ॥
ସକଳ ଶରୀରେ ମୁଁ ପୂରି । ମୁଁ ବନ୍ଧୁ ପ୍ରିୟ ଅଧିକାରୀ ॥
ଅନନ୍ତ ଶକ୍ତି ମୁଁ ଧାରଣ । ମୁହିଁ ନିରପେକ୍ଷ ନିର୍ଗୁଣ ॥
ଅଣିମା ଅଷ୍ଟ ସିଦ୍ଧି ମୋର । ଏଣୁ ମୁଁ ବୋଲାଇ ଈଶ୍ୱର ॥
ସମସ୍ତ ମୋହର କିଙ୍କର । ଏଣୁ ମୋ ନାହିଁ ପରାପର ॥
ତୁମ୍ଭେ ବ୍ରହ୍ମାର ଚାରିପୁତ୍ର । ଏଣୁ ମୁଁ ଜାଣି ତୁମ୍ଭ ଚିତ୍ତ ॥
ବ୍ରହ୍ମାର ଧ୍ୟାନେ ମନ କରି । ମିଳିଲି ହଂସ ରୂପ ଧରି ॥
ପରମ ଯୋଗ ତୁମ୍ଭ ଆଗେ । ମୁଁ ଯେ କହିଲି ବ୍ରହ୍ମ ଭାଗେ ॥
ଏ ଯୋଗ ସୁଖେ ଚିତ୍ତେ ଧର । ସଂସାର ପର୍ଯ୍ୟଟନ କର ॥
ଏମନ୍ତେ ପ୍ରଭୁ ପଦ୍ମନାଭ । ବୋଲନ୍ତି ଶୁଣ ହେ ଉଦ୍ଧବ ॥
ବ୍ରହ୍ମାର ପୁତ୍ର ଚାରିଜଣ । ଆନନ୍ଦେ ଶୁଣି ମୋ ବଚନ ॥
ସର୍ବ ସଂଶୟ କରି ଦୂର । ଆନନ୍ଦେ ଧରି ମୋ ପୟର ॥
ସ୍ତୁତି ବଚନ ଅନୁବାଦେ । ଭାବେ ପୂଜିଲେ ମୋର ପାଦେ ॥
ବ୍ରହ୍ମାଙ୍କୁ କରି ଅବଧାନେ । ତେବେ ମୁଁ ଗଲି ଅନ୍ତର୍ଦ୍ଧାନେ ॥
ଏମନ୍ତେ କହିଲେ ଅନନ୍ତ । ଶୁଣି ଉଦ୍ଧବ କୃତ କୃତ ॥
ଆନନ୍ଦେ କୃଷ୍ଣପାଦ ଧରି । ରୋମ ପୁଲକ ତନୁ କରି ॥
କୃଷ୍ଣ ସନ୍ଦେଶେ କୃଷ୍ଣରସ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ କୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।*

## ପଞ୍ଚଦଶ ଅଧ୍ୟାୟ

### ଉଦ୍ଧବ ଉବାଚ

କୃଷ୍ଣଚରଣ ଧରି କରେ । ଉଦ୍ଧବ ବୋଲେ ଉଚ୍ଚସ୍ୱରେ ॥
ଭୋ ନାଥ ଆରତ ଭଞ୍ଜନ । ଶୁଣି ମୁଁ ତୁମ୍ଭର ବଚନ ॥
ସଂଶୟ କଲି ହୃଦଗତେ । ଯେଣୁ ମୁଁ ପଚାରିଲି ତୋତେ ॥
ଭକ୍ତି ଲକ୍ଷଣ ଧର୍ମ ଯେତେ । ତୁମ୍ଭେ କହିଲ ସବିମତେ ॥
କେତେ ପ୍ରକାରେ ତାହା ସାଧି । ଭକ୍ତି ଲକ୍ଷଣେ ନାନା ବିଧି ॥
ଜଗତେ ବିପ୍ର ଛନ୍ତି ଯେତେ । ମୋକ୍ଷ ଲକ୍ଷଣ ବେଦମତେ ॥
ଅନେକ ପ୍ରକାରେ କହନ୍ତି । ଯେଣୁ ଲାଗଇ ମୋତେ ଭ୍ରାନ୍ତି ॥
ମୋକ୍ଷ ଲକ୍ଷଣ ଧର୍ମ ଯେକ । କି ଅବା ଅଛଇ ଅନେକ ।
କି ଅବା ସକଳ ପ୍ରମାଣ । ସଂଶୟ ଛେଦ ନାରାୟଣ ॥
ଯେ ସର୍ବ ତୁମ୍ଭର ଗୋଚର । ଭକତି ବିନୁ ନାହିଁ ସାର ॥
ତୁମ୍ଭେ କହିଲ ସର୍ବ ମତେ । ଚିତ୍ତେ ଧରିବି ମୁଁ କେମନ୍ତେ ॥
ବୋଲ ଯେ ସର୍ବ ଧର୍ମ ତେଜ । ନିରତେ ମୋର ପାଦେ ଭଜ ॥
ଯେହିଟି ସର୍ବ ମୁଖ୍ୟ ଧର୍ମ । ଯେଣେ ଖଣ୍ଡଇ ଭବ ଭ୍ରମ ॥
ତୁମ୍ଭର ବଚନେ ଅଧିକେ । ଲୋକ କହନ୍ତି ଯେକ ଯେକେ ॥
ବେଦ ପୁରାଣ ଭାବ ଚିନ୍ତି । ନାନା ପ୍ରକାରେ ସେ କହନ୍ତି ॥
ଯେକାନ୍ତ ଭଗତି ଲକ୍ଷଣ । କି ଅବା ସକଳ ପ୍ରମାଣ ॥
ଯେଣୁ ସଂଶୟ ମୋର ଚିତ୍ତେ । ନିଶ୍ଚୟ କହ ପ୍ରଭୁ ମୋତେ ॥
ଯେମନ୍ତେ ଭକ୍ତ ବୋଲ ଶୁଣି । ହସି ବୋଲନ୍ତି ଚକ୍ରପାଣି ॥
ଉଦ୍ଧବ ଯେକ ମନେ ଶୁଣ । ଯେ ଆଦି ପରମ କାରଣ ॥
ବେଦ ବଚନେ ସୃଷ୍ଟି ଅନ୍ତେ । ପ୍ରଳୟ ନାଶିଲା ଜଗତେ ॥
ପୁଣି ସଂସାର ଆଦି କାଳେ । ମୁହିଁ ବ୍ରହ୍ମାଙ୍କୁ ଯୋଗବଳେ ॥
କହିଲି ସର୍ବ ବେଦ ବାଣୀ । ସେ ବ୍ରହ୍ମା ନିଜ ପୁତ୍ର ଆଣି ॥
ନାମ ତା ସ୍ୱୟମ୍ଭୁବ ମନୁ । ଦ୍ୱିତୀୟେ ପଦ୍ମଯୋନି ତନୁ ॥
ତାହାକୁ ସର୍ବ ବେଦ ଦେଲା । ପୁଣି ସେ ଧରି ନ ପାରିଲା ॥
ଥିଲେ ଯେ ସପ୍ତଋଷି ଗଣେ । ତାହାଙ୍କୁ ଦିଲା ଜଣେ ଜଣେ ॥
ଭୃଗୁ ଅଙ୍ଗିରା ଅଦି କରି । ଅଭ୍ୟାସେ ବେଦ ସେ ବିସ୍ତାରି ॥
ସେ ପୁଣି ପିତୃଗଣ ମଧ୍ୟେ । ବେଦ ପ୍ରକାଶିଲେ ଆନନ୍ଦେ ॥
ସେ ପିତୃଗଣେ ତାହାଧରି । ଅଭ୍ୟାସେ ଅଭ୍ୟାସେ ବିସ୍ତାରି ॥
ସେ ପୁଣି ଗୁହ୍ୟକ ଚରଣେ । ଆନନ୍ଦେ ଦେଲେ ସାଧୁପଣେ ॥
ମନୁଷ୍ୟ ସିଦ୍ଧ ବିଦ୍ୟାଧରେ । ରାକ୍ଷସ ଗନ୍ଧର୍ବ କିନ୍ନରେ ॥
କି ଦେବ ଯକ୍ଷ ନାଗ କପି । କ୍ରମେ ଯେହାଙ୍କ ମଧ୍ୟେ ବ୍ୟାପୀ ॥
ଯେ ଭାବେ ସର୍ବ ମୁଖେ ଭଣି । ମୁଁ ତାହା ଦୂରେ ଥାଇ ଶୁଣି ॥
ବେଦ ହୋଇଲା ନାନା ଗତି । ତା ତତ୍ତ୍ୱ କେହି ନ ଜାଣନ୍ତି ॥
ସ୍ୱଭାବେ ତ୍ରିଗୁଣ ଜଡ଼ିତ । ଯେଣୁ ପ୍ରକୃତି ଭିନ୍ନ ମତ ॥
ଯାହାକୁ ଯେମନ୍ତ ଦିଶଇ । ସେ ଭାବେ ବେଦ ଅଭ୍ୟାସଇ ॥
ଯେଣୁ ପ୍ରକୃତି ବେଦ ମତେ । ଅର୍ଥ ନ ଜାଣନ୍ତି ସମସ୍ତେ ॥
କେହୁ ପାଷାଣ୍ଡ ମୋତେ ଜାଣି । କୁତର୍କ ଖଣ୍ଡେ କେ ବଖାଣି ॥
ଯେମନ୍ତେ କହି ନାନାମତେ । ବେଦ ବିଚାରନ୍ତି ସମସ୍ତେ ॥

ଯେମନ୍ତେ ଶ୍ରଦ୍ଧା ଅନୁମତେ । କର୍ମ କରନ୍ତି ବହୁମତେ ॥
ଫଳଇ କର୍ମ ଅନୁସାରେ । ବିପାକେ ଲଭନ୍ତି ସଂସାରେ ॥
କେ ଧର୍ମ ମାର୍ଗ ଆଚରନ୍ତି । କେ ଅବା କାମେ କର୍ମ ଚିନ୍ତି ॥
କେ ସତ୍ୟ ଶମ ଦମ ଦାନେ । କେ ଯଜ୍ଞ ତୀର୍ଥ ଅନୁମାନେ ॥
କାହାର ଚିତ୍ତେ ତ୍ୟାଗ ଭୋଗ । କେ ଅଷ୍ଟ ଐଶ୍ୱର୍ଯ୍ୟ ସଂଯୋଗ ॥
କେ ବ୍ରତ ନିୟମ ଆଚରେ । ଯେମନ୍ତେ ଅନେକ ପ୍ରକାରେ ॥
କର୍ମ ସାଧନ୍ତି ଫଳ ଲୋଭେ । ପୁଣ୍ୟ ବୈରାଗ୍ୟ କ୍ରିୟାଦମ୍ଭେ ॥
ଯେମନ୍ତେ ଯେତେ ଫଳ ସିଦ୍ଧି । ସୁଖ ସମ୍ପଦ ନାନା ବିଧି ॥
ଅନ୍ତେ ସକଳ ହୋନ୍ତି ନାଶ । କେବଳ ନାହିଁ ସୁଖ ଲେଶ ॥
କର୍ମ ସରିଲେ ଫଳ କ୍ଷୟେ । କେବଳ କ୍ଲେଶ ମାତ୍ର ରହେ ॥
ଯେଣୁ ସଂସାର ଘୋରବନେ । ପତଙ୍ଗ ଅନଳେ ଯେସନେ ॥
ପ୍ରାଣୀ ହୁଅନ୍ତି ଆତଯାତ । ନ ଜାଣି ବେଦର ବୃତ୍ତାନ୍ତ ॥
ଯେ ବୋଲ ବୁଝି ତୁ ନିରତେ । କେବଳ ଆଶ୍ର କର ମୋତେ
ମୁଁ ଆତ୍ମା ପ୍ରିୟ ସଖା ହୋଇ । ସକଳ କର୍ମ ଫଳ ଦେଇ ॥
ମୁଁ ଗତି ପତି ହର୍ତ୍ତା କର୍ତ୍ତା । ମୁହିଁ ସେ ସର୍ବଲୋକ ପିତା ॥
ମୋତେ ଭଜନ୍ତି ପ୍ରାଣୀ ଯେତେ । ସୁଖେ ତରନ୍ତି ସେ ନିରତେ
ଜନ୍ମ ମରଣେ ନାହିଁ ଭ୍ରାନ୍ତି । ହେଳେ ସେ ସଂସାରୁ ତରନ୍ତି ॥
ବିଷୟ ସୁଖେ ଯାର ଚିତ୍ତ । କର୍ମ ଭୁଞ୍ଜତେ ସେ ବଞ୍ଚିତ ॥
ଯେ ପ୍ରାଣୀ ଅକିଞ୍ଚନ ମତ । ସମ ସୁସିଦ୍ଧ ଶାନ୍ତ ଦାନ୍ତ ॥
ଯେ ମୋ ଆନନ୍ଦ ରସ ରସେ । ସୁଖ ସାଗରେ ନିତ୍ୟେ ଭାସେ ॥
ମୁଁ ଯାକୁ କରଇ ସଦୟେ । ଜ୍ଞାନ ତା ହୃଦୟେ ଉଦୟେ ॥
ଦେଖଇ ଅନ୍ତର ବାହାରେ । ସକଳ ସୁଖ ଦେଶାନ୍ତରେ ॥
ମୋହର ଭାବ ଯେ ଭଜଇ । ତାର ସମ୍ପଦେ କାର୍ଯ୍ୟନାହିଁ ॥
କର୍ମ କରଇ ନାନା ମତେ । ଫଳଇ କର୍ମର ଆୟତେ ॥
ବ୍ରହ୍ମାପଦକୁ ନାହିଁ ଇଚ୍ଛା । ନ କରେ ଇନ୍ଦ୍ରପଦ ବାଞ୍ଛା ॥
ସପତ ଦ୍ୱୀପେ ରାଜପଦ । ଅଷ୍ଟମ ବିଧି ଯୋଗସିଦ୍ଧ ॥
ପାତାଳ ଭୋଗେ ସଧ ନାହିଁ । ନିର୍ବାଣ ପଦ ନ ବାଞ୍ଛଇ ॥
ମୋତେ ସମର୍ପେ ଚିତ୍ତ ବିତ୍ତ । ନୋହଇ ମାୟାରେ ମୋହିତ ॥
ସେ ମୋର ଯେତେ ପ୍ରିୟହୋଇ । କହଇ ଶୁଣ ମନ ଦେଇ ॥
ବ୍ରହ୍ମା ଯେ ମୋହର ନନ୍ଦନ । ତାହାକୁ ନରମେ ମୋ ମନ ॥
ମୋହର ଆତ୍ମା ପଶୁପତି । ତେଣେ ମୋହର ନାହିଁ ପ୍ରୀତି ॥
ମୋର ଭାଇ ହଳପାଣି । ଲକ୍ଷ୍ମୀ ଯେ ମୋହର ଘରଣୀ ॥
ନିତ୍ୟେ ବସଇ ବକ୍ଷ ସ୍ଥଳେ । ମୋ ରୂପ ଯେତେ ଭୂମଣ୍ଡଳେ ॥
ତୁ ଯେ ମୋହର ପ୍ରିୟତମ । କେହି ନୁହନ୍ତି ତୋର ସମ ॥

ସ୍ୱଭାବେ ନିରପେକ୍ଷ ଶାନ୍ତ । ତାମସ ଗୁଣ ବିବର୍ଜିତ ॥
ଦ୍ରୋହ ବର୍ଜିତ ପ୍ରେମପ୍ଲୁତ । ଦୟା ସାଗର ପରହିତ ॥
ଯେମନ୍ତ ପ୍ରାଣୀଙ୍କର ପଛେ । ନିତ୍ୟେ ମୁଁ ବୁଲଇ ପ୍ରତ୍ୟକ୍ଷେ ॥
ଆବୋରି ଥାଇ ଚାରିପାଶେ । ତାର ଚରଣ ରେଣୁ ଆଶେ ॥
ସେ ପ୍ରାଣୀ ବହେ ଯେତେଗୁଣ । ଉଦ୍ଧବ ସାବଧାନେ ଶୁଣ ॥
ସ୍ୱଭାବେ ଅକିଞ୍ଚନ ଦେହେ । ସକଳ ଭୂତେ ଦୟାବହେ ॥
କାମକୁ ଜିଣି ପ୍ରେମ ପ୍ଲୁତେ । କେବଳ ସୁଶାନ୍ତି ସହିତେ ॥
ସେ ମୋର ସୁଖ ଅନୁମାନେ । କେ ତାର ମହିମା ବଖାଣେ ॥
ତା ଅନୁଭବ ସେ ଜାଣଇ । କେ ତାହା ମୁଖେ ପାରେ କହି ॥
ଯେମନ୍ତେ ଯେ ମୋର ଭଗତ । ସେ ଯେବେ ବିଷୟା ବନ୍ଦିତ ॥
ଅଜିତ ଇନ୍ଦ୍ରିୟଙ୍କ ଦୋଷେ । ଯେବେ ବିଷୟା ରସେ ରସେ ॥
ମୋର ଭଗତି ଭାବ ବଳେ । ବିଷୟ ନ ଲାଗେ ନିଷ୍ଫଳେ ॥
ଆନନ୍ଦେ ବିହରଇ ସୁଖେ । ମୋ ନାମ ଉଚ୍ଚାରନ୍ତି ମୁଖେ ॥
ଜଳନ୍ତା ଅନଳେ ଯେସନ । ସମିଧେ ହୁଅନ୍ତି ଦହନ ॥
ତାର ଶରୀରେ ପାପ ଯେତେ । ଦହନ ହୁନ୍ତି ସେହିମତେ ॥
ଉଦ୍ଧବ ଶୁଣ ଯେକ ଚିତ୍ତେ । ଗୁପତ କଥା କହୁଁ ତୋତେ ॥
ଯେତେ ଯେ ଦାନ ବ୍ରତ ତ୍ୟାଗ । ଧର୍ମ ଆଚାର ସାଙ୍ଖ୍ୟଯୋଗ ॥
ଯେ ମୋତେ ନ ପାରନ୍ତି ଧରି । ନାନା ପ୍ରକାରେ ବଶକରି ॥
ଭଗତ ଜନ ବଶ ମୁହିଁ । ଭକ୍ତ ରକ୍ଷଣେ ମୋର ଦେହୀ ॥
ମୁହିଁ ସଂସାରେ ଅଛି ଛନ୍ଦି । ଭଗତ ପାରେ ମୋତେ ବାନ୍ଧି ॥
ଦୁର୍ଜୟ ଦେହ ମୋର ଶୂନ୍ୟ । ଭଗତ ଭାବେ ମୁଁ ବନ୍ଧନ ॥
ଭଗତ ଜନଙ୍କର ପାଶେ । ନିତ୍ୟେ ମୁଁ ଥାଇ ଭାବ ବଶେ ॥
ଯେଣୁ ଭଗତ ଯେ ସଂସାରେ । ଅଶେଷ ଜନ୍ମ ଦୋଷ ହରେ ॥
ଚଣ୍ଡାଳ ପତିତ ପାମର । ମ୍ଳେଚ୍ଛ ଅଧମ ଦୁରାଚାର ॥
ଯେ ଆଦି ପ୍ରାଣୀ ଜନ ଯେତେ । ଯେବେ ମୋ ଭଗତ ଅଗ୍ରତେ ॥
ଦଇବ ଯୋଗେ ସଙ୍ଗମେଳେ । ମିଳନ୍ତି ପୂର୍ବ ପୁଣ୍ୟ ଫଳେ ॥
ଦର୍ଶନ ସ୍ପର୍ଶନ ଶ୍ରବଣେ । ନିର୍ମଳ ହୁନ୍ତି ତତକ୍ଷଣେ ॥
ପାପ ନରହେ ତାଙ୍କ ମନେ । ରବି ସମ୍ମୁଖେ ତମ ଯେହ୍ନେ ॥
ଯେ ପ୍ରାଣୀ ଦୟା ସତ୍ୟେ ଯୁତ । ତପୀ ଧାର୍ମିକ ବିଦ୍ୟାବନ୍ତ ॥
ମୋର ଭଗତି ଯେବେ ନାହିଁ । ପବିତ୍ର ନୋହେ ତାର ଦେହୀ ॥
ସେ କାହୁଁ ସଂସାରୁ ତରିବ । ଯେବେ ନ କରେ ମୋର ଭାବ ॥
ବୋଲନ୍ତି ପ୍ରଭୁ ଭଗବାନ । ଶୁଣ ହେ ଭଗତ ଲକ୍ଷଣ ॥
ନିରତେ ଅଙ୍ଗ ପୁଲକିତ । ନୟନେ ଅଶ୍ରୁଜଳ ଯୁତ ॥
ଅନ୍ତର ଦ୍ରବଇ ନିରତ । ମନ ଚଞ୍ଚଳ ବିପରୀତ ॥

ଜଗତ ମୋର ରୂପ ଜାଣେ । ନିଜ ଶରୀର ନ ପ୍ରମାଣେ ॥
ବୋଲନ୍ତି ପ୍ରଭୁ ଚକ୍ରପାଣି । ଯେତେ ଲକ୍ଷଣେ ଭକ୍ତ ଜାଣି ॥
ଭଗତି ବିନା ଅନ୍ତର୍ଗତ । କେବେହେଁ ନୋହଇ ପବିତ୍ର ॥
ବୋଲଇ ଗଦଗଦ ବାଣୀ । କ୍ଷଣକେ ହସ ପୁଣ ପୁଣି ॥
କ୍ଷଣକେ ରସେ କ୍ଷଣେ ହସେ । କ୍ଷଣକେ ଅନୁଥାନ ପଶେ ॥
କ୍ଷଣକେ କରଇ ରୋଦନ । ଉଚ୍ଚେ ଡାକଇ ମୋର ନାମ ॥
ନାଚଇ ଉନମତ୍ତ ହୋଇ । ଲଜ୍ଜା ସଙ୍କୋଚ ଦୂରେ ଥୋଇ ॥
ମୋର ଭଗତ ମୋର ମିତ୍ର । ସେ କରେ ଜଗତ ପବିତ୍ର ॥
ମୋର ସେବକ ଯେ ଲକ୍ଷଣ । ଉଦ୍ଧବ ଭଲେ ଯେହା ଜାଣ ॥
ନିର୍ମଳ ଗତି ତାର ନିତ୍ୟେ । ଭ୍ରମଇ ଉଦାସ ଚରିତେ ॥
ଅନଳେ ଦହନ୍ତେ ସୁବର୍ଣ୍ଣ । ଉଜ୍ଜ୍ୱଳ ହୁଅଇ ଯେସନ ॥
ଭଗତ ଜନ ଯେହି ମତେ । ନିର୍ଗୁଣେ ଭଜୁଥାନ୍ତି ମୋତେ ॥
ଯେ ରୂପେ ଭକ୍ତିଯୋଗ ବଳେ । ଯେ ପ୍ରାଣୀଛନ୍ତି ଯେ ଶୟଳେ ।
ଅଶେଷ ବାସନା ତାଙ୍କର । ମନରୁ ଛାଡି ଦ୍ୱନ୍ଦି ଦୂର ॥
ମୋର ମଙ୍ଗଳ କଥାମାନ । ଯେ କରେ ଶ୍ରବଣ କୀର୍ତ୍ତନ ॥
ଶ୍ରବଣେ ପଶି ମୋର କଥା । ମନରୁ ହରେ ସର୍ବ ବ୍ୟଥା ॥
ଯେ ନିତ୍ୟେ ଶୁଣେ ମନ ସୁଖେ । ସେ ପୁଣ୍ୟେ ପରମାର୍ଥ ଦେଖେ ॥
ଅଞ୍ଜନ ରଞ୍ଜୁଥିଲେ ନିତ୍ୟେ । ମଳି ନ ରହେ ଯେହ୍ନେ ନେତ୍ରେ
ବିଷୟା ସ୍ମରଣେ ନିରତେ । ଯେହ୍ନେ ବିଷୟେ ଜଡ଼େ ଚିତ୍ତେ
ମୋର ସ୍ମରଣେ ଯାର ଚିତ୍ତେ । ତା ଦେହେ ଥାଇ ମୁଁ ନିରତେ ॥
ଯେ ବୋଲ ବୁଝି ମୋତେ ଭଜ । ଅଶାନ୍ତି ଧ୍ୟାନ ବେଗେ ତେଜ
ମୋ ରୂପ ଦେଖି ସର୍ବ ଠାବେ । ମୋର ଚରଣ ଭଜ ଭାବେ ॥
ସ୍ତ୍ରୀସଙ୍ଗୀ ସ୍ତ୍ରୀସଙ୍ଗ କୁସଙ୍ଗ । ଚିତ୍ତ ବଢ଼ଇ ନାନା ରଙ୍ଗ ॥
ସକଳ ଚିନ୍ତା ଦୂର କରି । ମୋତେ ଚିନ୍ତିବ ଚିତ୍ତେ ଧରି ॥
ନିରୋଳେ ବସି ଯେକ ସ୍ଥାନେ । ନିଶ୍ଚିନ୍ତେ କଳ୍ପିତ ଆସନେ ॥
ମୋର ମଧୁର ରୂପ ଧ୍ୟାନେ । ବସି ଚିନ୍ତିବ ଥିର ମନେ ॥
ସ୍ତ୍ରୀସଙ୍ଗ ସ୍ତ୍ରୀସଙ୍ଗୀଙ୍କ ସଙ୍ଗେ । କାମ ବଢ଼ଇ ନାନା ରଙ୍ଗେ ॥
ଯେଣୁ କୁସଙ୍ଗ ଦୂର କରି । ମୋତେ ଭାବିବ ହୃଦେ ଧରି ॥
ଆଶା ଯେମନ୍ତ ଭାବେ କର । ହସି ବୋଲନ୍ତି ଚକ୍ରଧର ॥

### ଉଦ୍ଧବ ଉବାଚ

ଉଦ୍ଧବ ଶୁଣି କୃଷ୍ଣ ବାଣୀ । କପୋଳେ ଦେଇ ବେନି ପାଣି ॥
ବୋଲଇ ଶୁଣ ଭଗବାନ । ତୁମ୍ଭେ କହିଲ ତୁମ୍ଭ ଧ୍ୟାନ ॥
କି ରୂପେ ଜଗତ ବିଖ୍ୟାତ । କହ ହେ ତ୍ରିଭୁବନ ନାଥ ॥
ଭକ୍ତ ବତ୍ସଳ ଭଗବାନ । ବିକଚ ପଙ୍କଜ ଲୋଚନ ॥
ଯେ ଜ୍ଞାନ ଯୋଗୀଜନେ ଚିନ୍ତି । ଘୋର ସଂସାରୁ ତରିଯାନ୍ତି ॥
କି ରୂପେ କରି ତୋତେ ଧ୍ୟାନ । କହ ହେ ଦେବକୀ ନନ୍ଦନ ॥

### ଶ୍ରୀ ଭଗବାନ ଉବାଚ

ଶୁଣ ଉଦ୍ଧବ ବାକ୍ୟ କର୍ଣ୍ଣେ । କୋମଳ ଗଭୀର ବଚନେ ॥
ବୋଲନ୍ତି ପ୍ରଭୁ ଜଗନ୍ନାଥ । ଶୁଣ ଉଦ୍ଧବ ଧ୍ୟାନ ମତ ॥
ସମ ଆସନେ ବସି ଧୀରେ । ସମୀର ସମ କଳେବରେ ॥
ଜାନୁ ଯୁଗଳେ ବେନି ପାଣି । ଦୃଢ଼େ ସ୍ଥାପିବ ବେଳ ଜାଣି ॥
ବେନି ନୟନ ନାସା ଅଗ୍ରେ । ନିଷ୍ଠଳେ ସ୍ଥାପିବ ସମଗ୍ରେ ॥
ପବନ ତୋଳି ନାସା ଦ୍ୱାରେ । କୁରକ କୁମ୍ଭକ ପ୍ରକାରେ ॥
ଅଳପ ଅଳପ ସାଧନେ । ଚିତ୍ତ ସ୍ଥାପିବ ସଂଯମନେ ॥
ଓଁକାର ପବନ ନିଷ୍ଠଳୁ । ତୋଳିବ ହୃଦୟ କମଳୁ ॥
ଉତ୍ତମ ଘଣ୍ଟା ନାଦ ସ୍ୱନେ । ମନ ପବନ ଯେକ ଧ୍ୟାନେ ॥
ମୃଣାଳ ସୂତ୍ର ମାର୍ଗେ ଧରି । ନିଷ୍ଠଳେ ଅନାହତ ପୂରି ॥
ଲବ ନିମିଷ ଦଣ୍ଡ ଘଡ଼ି । ନିତ୍ୟେ ସାଧିବ ଦୁଃଖେ ପଡ଼ି ॥
ଯେ ରୂପେ ଅନ୍ତର ବାହାରେ । ନିତ୍ୟ ସାଧିବ ନିରନ୍ତରେ ॥
ଯେ ରୂପେ ସାଧି ଯେକ ମାସେ । ପ୍ରାଣ ସ୍ଥାପିବ ମନୋବଶେ ॥
ହୃଦୟ ପଦ୍ମ ମଧ ଭାଗେ । ଯେ ଅଷ୍ଟଦଳ ଅଷ୍ଟଦିଗେ ॥
ମଧେ ପାଖୁଡ଼ା ଚାରି ଶିଖେ । ନିତ୍ୟେ ଲମ୍ବଇ ଅଧୋମୁଖେ ॥
ଧ୍ୟାନେ ଚିନ୍ତିବ ଦୃଢ଼ ବନ୍ଧେ । ଯେ ଅଷ୍ଟଦଳ ତାର ଊର୍ଦ୍ଧ୍ୱେ ॥
ସୂର୍ଯ୍ୟମଣ୍ଡଳ ଚିନ୍ତା କରି । ସୋମ ମଣ୍ଡଳ ମଧେ ଭରି ॥
ତାହାର ମଧେ ହୁତାଶନ । ତା ମଧେ ସୁବର୍ଣ୍ଣ ଆସନ ॥
ତାର ଉପରେ ଦିବ୍ୟ ରୂପ । ଚିନ୍ତିବ ମୋହର ସ୍ୱରୂପ ॥
ଆଜାନୁ ଲମ୍ବେ ଭୁଜ ଚାରି । ଶଙ୍ଖ କମଳ ଚକ୍ରଧାରୀ ॥
ସୁମୁଖ ସୁନ୍ଦର କପୋଳ । ବିକଚ ପଦ୍ମପ୍ରାୟ ଡୋଳ ॥
ଶ୍ରବଣେ ମକର କୁଣ୍ଡଳ । ହୃଦେ ଲମ୍ବଇ ବନମାଳ ॥
ଶ୍ୟାମ ଜଳଦ କଳେବର । କଣ୍ଠେ କୌସ୍ତୁଭ ମଣିହାର ॥
ହୃଦରେ ଶ୍ରୀବତ୍ସ ଉଦାର । କଟୀରେ ଶୋଭେ ପୀତାମ୍ବର ॥
ମଞ୍ଜୁ ମଞ୍ଜୀର ପାଦ ଯୁଗେ । ରତ୍ନ ମେଖଳା କଟୀ ଭାଗେ ॥
ଯଜ୍ଞୋପବୀତ କନ୍ଧେ ଶୋହେ । ସୁନ୍ଦର ତନୁ ମନ ମୋହେ ॥
ଯେ ରୂପେ ଧ୍ୟାନ ମୋତେ କରି । ଚଞ୍ଚଳ ଇନ୍ଦ୍ରିୟ ନିବାରି ॥
ବିବେକ କରି ଆଗୁସାର । ପଣ୍ଡିତ ଜନଙ୍କ ବେଭାର ॥
ସର୍ବ ସଙ୍ଗକୁ ମନୋହାରି । ନିଷ୍ଠଳେ ମୋର ରୂପ ଧରି ॥
ମୋ ନାମ ଚିନ୍ତିବ ନିରନ୍ତେ । ଅନ୍ୟ ନ ସୁମରିବ ଚିତ୍ତେ ॥

ପୁଣି ସେ ରୂପ ଥୋଇ ପାଶେ । ଚିତ୍ତ ନିବେଶିବ ଆକାଶେ ॥
ଯେ ରୂପେ ହୃଦୟ କମଳେ । ବ୍ରହ୍ମ ପ୍ରକାଶିବ ନିଶ୍ଚଳେ ॥
ସେ ବ୍ରହ୍ମଚିତ୍ତ ସ୍ଥିର ଯେବେ । ମୋ ରୂପ ନ ଚିନ୍ତିବ ତେବେ ॥
ସେ ବ୍ରହ୍ମରୂପ ସର୍ବଭୂତେ । ଆତ୍ମାକୁ ପ୍ରକାଶିବ ନିତ୍ୟେ ॥
ମନ ସଂଯମ ଯେହି ମତେ । ମୋ ରୂପ ଦେଖିବୁ ଜଗତେ ॥
ଯେମନ୍ତେ ଭ୍ରମ ଯିବ ତୋର । କହିଲେ ବ୍ରହ୍ମାଣ୍ଡ ଠାକୁର ॥
ବୋଲଇ ଦାସ ଜଗନ୍ନାଥ । ଶ୍ରୀଯେକାଦଶେ ଭାଗବତ ॥
ଶୁକ ପରୀକ୍ଷିତ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
କଳି କଲୁଷ ଭୟ ନାହିଁ । ସୁଜନେ ତର ଯେହା ଗାଇ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ପଞ୍ଚଦଶୋଽଧ୍ୟାୟଃ ।*

## ଷୋଡ଼ଶ ଅଧ୍ୟାୟ
## ଶ୍ରୀ ଭଗବାନ ଉବାଚ

ବୋଲନ୍ତି କମଳ ଲୋଚନ । ଉଦ୍ଧବ ସାବଧାନେ ଶୁଣ ॥
ଯେ ଧ୍ୟାନଯୋଗ ଯେ ଜଗତେ । ଜ୍ଞାନୀ ସାଧନ୍ତି ହୃଦଗତେ ॥
ଯେ ପୁଣ ବହୁଦିନେ ସାଧି । ଯୋଗ ପ୍ରକାଶେ ନାନାବିଧି ॥
ଯେଣୁ ଭଗତ ଯୋଗୀଜନେ । ସାଧ କରନ୍ତି ଅଳ୍ପ ଦିନେ ॥
ନିକଟେ ଖଟେ ସର୍ବସିଦ୍ଧି । ଅଷ୍ଟାଙ୍ଗ ଯୋଗ ଯେ ପ୍ରସିଦ୍ଧି ॥
ଯେମନ୍ତ କୃଷ୍ଣ ମୁଖୁଁ ଶୁଣି । ଉଦ୍ଧବ ବୋଲେ ମଞ୍ଜୁ ବାଣୀ ॥
ଶୁଣ ହେ କମଳା ରମଣ । ଅଶେଷ ବ୍ରହ୍ମାଣ୍ଡ କାରଣ ॥
କେଉଁ ଧାରଣା କେଉଁମତେ । ଜ୍ଞାନୀ ସାଧନ୍ତି ଯେ ଜଗତେ ॥
ଭକ୍ତି ଲକ୍ଷଣ ଅବା କେତେ । ସର୍ବ ନିର୍ଣ୍ଣୟ କହ ମୋତେ ॥
କୃଷ୍ଣ କହନ୍ତି ଅନୁମାନେ । ଉଦ୍ଧବ ଶୁଣ ସାବଧାନେ ॥
ସଂସାରେ ଅଷ୍ଟାଦଶ ସିଦ୍ଧି । ଜ୍ଞାନୀ ସାଧନ୍ତି ନାନା ବିଧି ॥
ସିଦ୍ଧିଙ୍କ ମଧ୍ୟେ ଅଷ୍ଟସାର । ଯେଣୁ ମୁଁ ବୋଲାଇ ଈଶ୍ୱର ॥
ଅଣିମା ଆଦି ଅଷ୍ଟନିଧି । ମୁକ୍ତି ଲକ୍ଷଣ ଯେ ପ୍ରସିଦ୍ଧି ॥
ଯେବଣ ସିଦ୍ଧି ରହେ ଶେଷେ । ସ୍ୱଭାବେ ତିନିଗୁଣ ମିଶେ ॥
ଅଣିମି ଲଘିମା ଯେ ବେନି । ମହିମା ଆଦି ସିଦ୍ଧି ତିନି ॥
ଇସିତା ବସିତା ପ୍ରସିଦ୍ଧି । ଅବସିତାଦି ଅଷ୍ଟ ବିଧି ॥
ଉଦ୍ଦେଶେ ଯୋଗସିଦ୍ଧି ଯେତେ । କହିଲି ତୋହର ଅଗ୍ରତେ ॥

ଯେଉଁ ଧାରଣା ଯେତେ ହୋଇ । ତାହାକୁ ଶୁଣ ମନ ଦେଇ ॥
ସ୍ୱଭୂତ ସୂକ୍ଷ୍ମ ଆତ୍ମାମନ । ତନ୍ମାତ୍ରେ ଧରେ ଯେ ଜୀବନ ॥
ଅସତ୍ୟ ସୁସିଦ୍ଧି ଲଭଇ । ଅଣିମା ଉପାସକ ହୋଇ ॥
ମହତ୍ତ୍ୱ ଆତ୍ମାରେ ମୋ ଠାରେ । ମହତ୍ତ୍ୱ ରୂପେ ମନ ଧରେ ॥
ଭୂତ୍ୟଙ୍କ ଭିନ୍ନ ଭିନ୍ନ ଥାଇ । ସେ ଜନ ମହିମା ଲଭଇ ॥
ଭୂତ୍ୟଙ୍କ ପରମାଣୁ ନିତ୍ୟେ । ମୋ ଠାରେ ନିତ୍ୟେ ଯେ ନିରୋପେ ॥
ସେ ଯୋଗୀ ଲଘିମା ଲଭଇ । ଜ୍ଞାନରେ ସୂକ୍ଷ୍ମ ରୂପେ ଥାଇ ॥
ମୋହ ତତ୍ତ୍ୱରେ ମୋହଠାରେ । ଅଖିଳେ ମନ ଯେହୁ ଧରେ ॥
ସର୍ବ ଇନ୍ଦ୍ରିୟ ଆତ୍ମା ଦେଇ । ତନ୍ମନେ ପ୍ରାପ୍ତି ସେ ଲଭଇ ॥
ମହତ ଆତ୍ମା ସୂତ୍ରେ ଧରେ । ଯେ ଯୋଗୀ ମାନସିକେ ମରେ ॥
ଅବ୍ୟକ୍ତ ଜନ୍ମରେ ମୋହର । ପ୍ରକାଶ ଲଭଇ ସେ ନର ॥
ତ୍ରିଗୁଣ କାଳ ରୂପେ ମୋରେ । ବିଶୁଦ୍ଧ ମନ୍ଦକୁ ଯେ ଧରେ ॥
ପରମାନନ୍ଦ ସେ ଲଭଇ । ଯହିଁରେ କଲୁଷ ନାଶଇ ॥
ଯେବେ ହୋ ଉଦ୍ଧବ ତୁ ଶୁଣ । ଯେ ଦଶ ବିଧିର ଲକ୍ଷଣ ॥
ସେ ତହିଁ ପରେ ଅଧିପତି । ସୁଧର୍ମ ମୟ ସୁଧାମତି ॥
ମୋହରେ ଧରଇ ଯେ ମନ । ସନ୍ତତି ଲଭଇ ତେସନ ॥
ମିତ୍ର ଅଇରି ନାହିଁ ତାର । ସୁଖେ ବିହରେ ଯେ ସଂସାର ॥
ତାହାର ଆତ୍ମା ପ୍ରାଣ ମୋରେ । ମନରେ ନାମ ଯେହୁ ସ୍ମରେ ॥
ତହିଁରେ ଉପଲବ୍ଧ ହୋଇ । ଭୂତ୍ୟଙ୍କ ବଚନ ଶୁଣଇ ॥
ସୂର୍ଯ୍ୟରେ ଚକ୍ଷୁ ଯୁକ୍ତ କରି । ଚକ୍ଷୁରେ ସୂର୍ଯ୍ୟଙ୍କୁ ଆଦରି ॥
ଧ୍ୟାନ କରନ୍ତେ ମନ ମତେ । ବିଶ୍ୱ ଦେଖଇ ସୂକ୍ଷ୍ମମତେ ॥
ମୋଠାରେ ମନ ଯୁକ୍ତ କରି । ପବନ ତୁଲେ ମନ ଧରି ॥
ମୋର ଧାରଣା ଅନୁଭବେ । ଆତ୍ମ ସହିତ ମନ ସେବେ ॥
ମନକୁ ଘେନି ଯିବା କାଳେ । ଯେ ରୂପ ଇଚ୍ଛେ ଯୋଗବଳେ ॥
ସେ ରୂପ ସେ ଯୋଗୀ ଲଭଇ । ସେ ଯୋଗବଳେ ଆଶ୍ରେପାଇ ॥
ପଶନ୍ତେ ତାର କଳେବରେ । ଆତ୍ମାକୁ ଭାବଇ ସଧୀରେ ॥
ସେ ସାଧ ସ୍ୱଶରୀର ତେଜି । ତା ପ୍ରାଣ ପବନ ନିଯୋଜି ॥
କମଳ ପୁଷ୍ପ ଛାଡ଼ି ଭୃଙ୍ଗ । ଅନ୍ୟ ପୁଷ୍ପରେ କରେ ରଙ୍ଗ ॥
ପୁଷ୍ପରେ ଗୁହ୍ୟଦ୍ୱାର ପୀଡ଼ି । ପ୍ରାଣକୁ ଭୁଜ ଦ୍ୱାରେ ଛାଡ଼ି ॥
ସେ ବ୍ରହ୍ମ ରନ୍ଧ୍ରେ ରନ୍ଧ୍ରେ ନେଇ । ତନୁକୁ ଉତ୍ସର୍ଗିବ ଦେହୀ ॥
ନନ୍ଦନ ବନ ବିହରନ୍ତେ । ମୋ ମୂର୍ତ୍ତି ସତ୍ୟକୁ ସେ ଚିନ୍ତେ ॥
ସତ୍ୟ ପ୍ରଧାନେ ସୁର ନାରୀ । ବିମାନେ ମିଳନ୍ତେ ସୁନ୍ଦରୀ ॥
ବିଧିରେ ସଙ୍କଳ୍ପଇ ଯେବେ । ଯେଉଁ ପ୍ରକାରେ ଯୋଗୀ ତେବେ

ମୋହର ମନକୁ ଧରଇ । ସେ ଫଳ ସେ ରୂପେ ଲଭଇ ॥
ଇସିତା ବସିତା ଯେ ମୁହିଁ । ମୋ ଭାବ ଯେଉଁ ଯୋଗୀ ପାଇ
କେବେହେଁ ନାଶ ନାହିଁ ତାରେ । ଉଦାସୀ ଉତ୍କଟ ମୋହରେ ॥
ଉନ୍ମତ୍ତ ଚିତ୍ତେ ଯେ ଧରଇ । ଆଦ୍ୟନ୍ତ ପରାଭବ ନାହିଁ ॥
ମୋହର ସକଳ ବିଭୂତି । ସକଳ ଶାସ୍ତ୍ର ଅନୁମତି ॥
ଧ୍ୟାନ ଯେ ମନରେ କରଇ । ସେ ଲୋକ ନରପତି ହୋଇ ॥
ଯେମନ୍ତେ ଧାରଣା ଧିଆନେ । ସାଧ କରନ୍ତି ଯୋଗୀଜନେ ॥
ଯେ ଅଷ୍ଟଗୁଣେ ସାଧୁ ଯେତେ । କିଛିତେ ସାଧନ୍ତି ମୋ ଭକ୍ତେ ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ସିଦ୍ଧେ ସାଧନ୍ତି ଅଳ୍ପଦିନେ ॥
ସଂସାରେ ଯେତେ ବସ୍ତୁଭାବ । ତାହାଙ୍କୁ ନୋହନ୍ତି ଦୁର୍ଲ୍ଲଭ ॥
ଯେ ଯେତେ ସିଦ୍ଧି ଅଷ୍ଟାଦଶ । ଯୋଗୀଙ୍କ ବିଘ୍ନ ଉପଦେଶ ॥
ଯେ ଯୋଗ ସିଦ୍ଧ ଜ୍ଞାନ ଯୋଗେ । ବିଘ୍ନ ସେ ଆଚରନ୍ତି ବେଗେ ॥
ସେ ଯୋଗୀ ସିଦ୍ଧ ପଥେ ଯାନ୍ତି । ବିଅର୍ଥେ ଦିନ ସେ ବଞ୍ଚନ୍ତି ॥
ଭଗତ ଭାବେ ଜ୍ଞାନ ଯୋଗେ । ଜ୍ଞାନ ଲଭନ୍ତି ସିଦ୍ଧି ବେଗେ ॥
ମୁଁ ସେ ସକଳ ସିଦ୍ଧି ଦାତା । ଆତ୍ମାର ଗତି ପିତାମାତା ॥
ମୋ ତହୁଁ ସର୍ବସିଦ୍ଧି ସ୍ଫୁରେ । ଯେ ଜ୍ଞାନ ଯୋଗ ଯେ ସଂସାରେ ॥
ଯେଣୁ ଯେ ଭଜେ ମୋର ପାଦ । ତାର ସମୀପେ ସର୍ବସିଦ୍ଧ ॥
ଭଗତି ବିନୁ ଯେତେ ଭାବ । ସେ କାହୁଁ ସଂସାରୁ ତରିବ ॥
ମୁଁ ସର୍ବଗତି ହେ ଉଦ୍ଧବ । ଯେ ସାଖ୍ୟଂଯୋଗ ଧର୍ମଭାବ ॥
ସକଳ ପ୍ରାଣୀଙ୍କ ଗୋଚରେ । ମୁଁ ଅଛି ଅନ୍ତର ବାହାରେ ॥
ମୁହିଁ ସେ ସର୍ବଭୂତ ରାଶି । ଅନ୍ତର ବାହାରେ ପ୍ରକାଶି ॥
ଧରଇ ଆତ୍ମାରୂପେ ସର୍ବ । କେ ଜାଣିପାରେ ମୋର ଭାବ ॥
ସକଳ ଜନ୍ତୁଙ୍କ ଗୋଚରେ । ମୋ ତହୁଁ ଅନ୍ୟ ନାହିଁ ପରେ ॥
ସମସ୍ତ ସିଦ୍ଧଗୁଣ ମୁହିଁ । ମୋ ତହୁଁ ଅନ୍ୟ ନାହିଁ କେହି ॥
ଯେମନ୍ତ କହି ଭାବଗ୍ରାହୀ । ସଦୟେ ଉଦ୍ଧବଙ୍କୁ ଚାହିଁ ॥
ସେ ହରିଭାବ ଧରି ଚିତ୍ତେ । ଶ୍ରୀ ଯେକାଦଶେ ଭାଗବତେ ॥
ବ୍ରାହ୍ମଣ ଜଗନ୍ନାଥ ଗୁଣି । ଭଗତ ପ୍ରେମ ତରଙ୍ଗିଣୀ ॥
ସାଧବେ ପୂଜେ କରଯୋଡ଼ । ଭଜନ୍ତେ ଭକ୍ତିର ପ୍ରବନ୍ଧ ॥

*ଶ୍ରୀ ମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସହିଂତାୟାଂ ବୈୟସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ଷୋଡ଼ଶୋଽଧ୍ୟାୟଃ ।*

## ସପ୍ତଦଶ ଅଧ୍ୟାୟ

### ଉଦ୍ଧବ ଉବାଚ

ଉଦ୍ଧବ ବିନୟ ବଚନେ । ବୋଲଇ କୃଷ୍ଣ ବିଦ୍ୟମାନେ ॥
ଭୋନାଥ ପ୍ରଭୁ ଭଗବାନ । ତୁମ୍ଭେ ଅନାଦି ନିରଞ୍ଜନ ॥
ପରମବ୍ରହ୍ମ ତୋ ମହିମା । କେ ଜାଣିପାରେ ଗୁଣସୀମା ॥
ବିଶ୍ୱ ଉତ୍ପତ୍ତି ସ୍ଥିତି ନାଶ । ତୋହୋର ଚରଣୁ ପ୍ରକାଶ ॥
ସକଳ ଭୂତେ ତୋର ସ୍ଥିତି । ତୁ ନାଥ ତ୍ରିଭୁବନ ପତି ॥
ଭଗତି କରି ତୋ ଚରଣେ । ସଂସାରେ ମହାଋଷି ଗଣେ ॥
ତୋ ପାଦପଦ୍ମ ଯେତେ ସ୍ଥାନେ । ଭଜନ୍ତି ଭକ୍ତି ଅନୁମାନେ ॥
ତୁ ଆତ୍ମା ସର୍ବଭୂତେ ପୂରି । ବସୁ ଗୁପତ ରୂପ ଧରି ॥
ସକଳ ଦେଖୁ ତୁ ନୟନେ । ତୋତେ ନ ଦେଖେ ସର୍ବଜନେ ॥
ତୋହୋର ମାୟାରେ ଜଗତ । ଅଜ୍ଞାନ ନିଦ୍ରାରେ ମୋହିତ ॥
ଯେ ତିନିପୁରେ ତୋ ବିଭୂତି । ଯଉଁ ବା ଯଉଁରୂପେ ସ୍ଥିତି ॥
ସକଳ କହ ନାଥ ମୋତେ । ପୁଚ୍ଛଇ ତୋ ଚରଣାଗ୍ରତେ ॥
ତୋ ପାଦ ସର୍ବ ତୀର୍ଥସ୍ଥାନ । ନମସ୍ତେ ପ୍ରଭୁ ଭଗବାନ ॥
ଯେମନ୍ତ ଶୁଣି ବ୍ରହ୍ମରାଶି । ଉଦ୍ଧବ ମୁଖ ଚାହିଁ ହସି ॥

### ଶ୍ରୀକୃଷ୍ଣ ଉବାଚ

ବୋଲନ୍ତି କମଳାର ବର । ଶୁଣ ହେ ଭଗତ ଶେଖର ॥
କୁରୁ ପାଣ୍ଡବ ମହାଘୋର । ଯେ କାଳେ ହୋଇଲା ସମର ॥
ଉଭୟ ବଳ ମଧ୍ୟେ ମୁହିଁ । ସ୍ଥାପିଲି ନନ୍ଦିଘୋଷ ନେଇ ॥
ଅର୍ଜୁନ ବନ୍ଧୁ ଜନ ଦେଖି । ବସିଲା ସମର ଉପେକ୍ଷି ॥
ମୁଁ ତେବେ ଅର୍ଜୁନେ ବୁଝାଇ । ଅନେକ ଉପଦେଶ କହି ॥
ଜ୍ଞାନେ ମୋହିଲି ତାର ମନ । ମୋତେ ପଚାରିଲା ଅର୍ଜୁନ ॥
ତିନି ଭୁବନେ ମୋ ବିଭୂତି । ଯହିଁ ଯେମନ୍ତ ରୂପେ ଥିତି ॥
ମୁହିଁ ତାହାକୁ ରଣ ମଧ୍ୟେ । ପ୍ରସନ୍ନେ କହିଲି ଆନନ୍ଦେ ॥
ଯେବେ କହିବି ତୋତେ ମୁହିଁ । ଯହିଁ ଯେମନ୍ତ ରୂପେ ଥାଇ ॥
ଯେ ସର୍ବ ପ୍ରାଣୀମାନଙ୍କର । ମୁଁ ଆତ୍ମା ସୁହୃଦ ଈଶ୍ୱର ॥
ସକଳ ଭୂତେ ମୋର ବାସ । ମୁଁ ସ୍ଥିତି ଉଭୟ ବିନାଶ ॥
ମୋହର ତହୁଁ ସୃଷ୍ଟି ଜାତ । ମୁହିଁ ପାଳଇ ଯେ ଜଗତ ॥
ମୁଁ ଯେ ସଂସାରେ ଗତିପତି । କାଳ ସଂହାରଣ ଶକତି ॥
ମୁହିଁ ସେ ସତ୍ତ୍ୱ ରଜ ତମ । ପ୍ରକୃତି ପୁରୁଷ ପରମ ॥
ମୁହିଁ ମହତ ଅହଙ୍କାର । ସକଳ ଜୀବ ସୂକ୍ଷ୍ମସାର ॥
ହୃଦୟ ମଧ୍ୟେ ମନ ମୁହିଁ । ବେଦରେ ବ୍ରହ୍ମରୂପେ ଥାଇ ॥

ସକଳ ମନ୍ତ୍ର ମଧ୍ୟେ ସାର । ତ୍ରିଧାମ ମଧ୍ୟେ ମୁଁ ଓଁକାର ॥
ଅକାର ଅକ୍ଷରଙ୍କ ମଧ୍ୟେ । ଗାୟତ୍ରୀ ଛନ୍ଦ ବେଦବାଦେ ॥
ଦେବଙ୍କ ମଧ୍ୟେ ଇନ୍ଦ୍ର ମୁହିଁ । ଋଷିଙ୍କ ମଧ୍ୟେ ଭୃଗୁ ହୋଇ ॥
ରାଜାଙ୍କ ମଧ୍ୟେ ମନୁ ମୁହିଁ । ଶୁଣ ଉଦ୍ଧବ ମନ ଦେଇ ॥
ଅମର ଋଷିଙ୍କର ମଧ୍ୟେ । ମୁହିଁ ନାରଦ ବେଦ ବାଦେ ॥
ମୁହିଁ ସେ କାମଧେନୁ ରୂପ । କପିଳ ସିଦ୍ଧଙ୍କ ସ୍ୱରୂପ ॥
ପକ୍ଷୀଙ୍କ ମଧ୍ୟେ ଖଗେଶ୍ୱର । ମୁଁ ଦକ୍ଷ ପ୍ରଜାପତିଙ୍କର ॥
ପିତୃଗଣଙ୍କ ମଧ୍ୟେ ବର । ଅର୍ଯ୍ୟମା ନାମଟି ମୋହର ॥
ପ୍ରହ୍ଲାଦ ଦୈତ୍ୟମଧ୍ୟେ ମୁହିଁ । ଗ୍ରହଙ୍କ ମଧ୍ୟେ ସୋମ ହୋଇ ॥
ଯକ୍ଷଙ୍କ ମଧ୍ୟେ ମୁଁ କୁବେର । ମୁଁ ଐରାବତ ଗଜଙ୍କର ॥
ଜଳଚରଙ୍କ ମଧ୍ୟେ ଶୁଣ । ଉଦ୍ଧବ ମୁଇଁଟି ବରୁଣ ॥
ତେଜଙ୍କ ମଧ୍ୟେ ଅଗ୍ନି ମୁହିଁ । ମନୁଷ୍ୟେ ନୃପତି ବୋଲାଇ ॥
ଅଶ୍ୱଙ୍କ ମଧ୍ୟେ ମୁଁ ପ୍ରଧାନ । ଉଚ୍ଚଇଶ୍ରବା ମୋର ନାମ ॥
ଧାତୁଙ୍କ ମଧ୍ୟେ ମୁଁ ସୁବର୍ଣ୍ଣ । ସର୍ବ ସଂହାରଣେ ମୁଁ ଯମ ॥
ସର୍ପଙ୍କ ମଧ୍ୟେ ମୁଁ ବାସୁକୀ । ଅନନ୍ତ ନାଗ ମଧ୍ୟେ ଲକ୍ଷି ॥
ମୃଗଙ୍କ ମଧ୍ୟେ ସିଂହ ମୁହିଁ । ଆଶ୍ରମେ ସନ୍ନ୍ୟାସ ବୋଲାଇ ॥
ମୁଁ ବିପ୍ର ଚାରିବର୍ଣ୍ଣ ପତି । ତୀର୍ଥଙ୍କ ମଧ୍ୟେ ଭାଗୀରଥି ॥
ଚଡ଼ାଗ ମଧ୍ୟେ ସିନ୍ଧୁ ମୁହିଁ । ଶସ୍ତ୍ରଙ୍କ ମଧ୍ୟେ ବଜ୍ର ହୋଇ ॥
ଧନୁକୀ ମଧ୍ୟେ ମୁହିଁ ହର । ପର୍ବତେ ମେରୁ ମହୀଧର ॥
ଗହନ ମଧ୍ୟେ ହିମଗିରି । ବୃକ୍ଷେ ପିପ୍ପଳ ରୂପ ଧରି ॥
ଫଳଙ୍କ ମଧ୍ୟେ ଧାନ୍ୟ ମୁହିଁ । ଆଚାର୍ଯ୍ୟେ ବଶିଷ୍ଠ ବୋଲାଇ ॥
ମୁଁ ବୃହସ୍ପତି ବେଦବାଦେ । କୁମାର ଦେବସେନା ମଧ୍ୟେ ॥
ଯଜ୍ଞମାନଙ୍କ ମଧ୍ୟେ ପୁଣ । ମୁଁ ବ୍ରହ୍ମଯଜ୍ଞ ବୋଲି ଜାଣ ॥
ବ୍ରତମାନଙ୍କ ମଧ୍ୟେ ମୁହିଁ । ଅହିଂସା ବୋଲି ଜାଣ ତୁହି ॥
ମୁଁ ଶତରୂପା ନାରୀ କରେ । ସ୍ୱୟମ୍ଭୁ ମନୁ ପୁରୁଷରେ ॥
ସନକ ସନାତନ ଗଣେ । ମୁଁ ଧର୍ମ ସନ୍ନ୍ୟାସ ପ୍ରମାଣେ ॥
ମୁନିଙ୍କ ମଧ୍ୟେ ସାଧୁଗଣ । ମୁହିଁଟି ନର ନାରାୟଣ ॥
ମୁଁ ସତ୍ୟ ଗୃହୀଗଣ ମାଝେ । ବଳର କଳିଯୁଗ କାର୍ଯ୍ୟେ ॥
ଋତୁଙ୍କ ମଧ୍ୟେ ମୁଁ ବସନ୍ତ । ମୁହିଁ ଅଘନ ମାସ ନାଥ ॥
ଯୁଗଙ୍କ ମଧ୍ୟେ ଯୁଗ ସତ୍ୟ । ନକ୍ଷତ୍ର ମଧ୍ୟେ ମୁଁ ଅଜିତ ॥
ଧୀରଙ୍କ ମଧ୍ୟେ ମୁଁ ଦେବଳ । ବ୍ୟାସ ମୁଁ ସତ୍ୟବତୀ ବାଳ ॥
କବିଙ୍କ ମଧ୍ୟେ ଶୁକ୍ର ଭଣି । ଭଗତ ମଧ୍ୟେ ମୁଁ ଅଗ୍ରଣୀ ॥
ବାନର ମଧ୍ୟେ ହନୁମାନ । ମୁଁ ବିଦ୍ୟାଧର ସୁଦର୍ଶନ ॥
ମୁଁ ପଦ୍ମରାଗ ରତ୍ନମାଝେ । ଦୂର୍ବା ବୋଲାଇ ତୃଣରାଜେ ॥
କପଟ ମଧ୍ୟେ ଯୁଅ ମୁହିଁ । ତ୍ରିଗୁଣେ ସତ୍ତ୍ୱ ମୁଁ ବୋଲାଇ ॥
ମୁଁ ବଳ ସୂକ୍ଷ୍ମବନ୍ତେ ଶିଶୁ । ଗନ୍ଧର୍ବ ମଧ୍ୟେ ବିଶ୍ୱାବସୁ ॥
ଉର୍ବଶୀ ଅପସରା ଚିହ୍ନି । ମାତାଙ୍କ ମଧ୍ୟେ ମୁଁ ଅଦିତି ॥
ରସଙ୍କ ମଧ୍ୟେ ଭୂମି ରସ । ସର୍ବ ସଂହରଣେ ଆକାଶ ॥
ପ୍ରଭାଙ୍କ ମଧ୍ୟେ ରବି ଶଶୀ । ତେଜଙ୍କ ମଧ୍ୟେ ଅଗ୍ନିରାଶି ॥
ମୁଁ ଦାତା ବଳି ନୃପମଣି । ଅର୍ଜ୍ଜୁନ ବୀର ମଧ୍ୟେ ଗଣି ॥
ପ୍ରାଣୀଙ୍କ ମଧ୍ୟେ ମୁହିଁ ଜୀବ । ନିର୍ଗୁଣ ମୁହିଁ ସଦାଶିବ ॥
ମୁଁ ଆତ୍ମା ସର୍ବଜୀବ ଦେହୀ । ମୋ ବିନୁ ସ୍ଥୂଳ ଶୂନ୍ୟ କାହିଁ ॥
କେ ମୋତେ ତ୍ରିଭୁବନେ ଜାଣେ । କେ ଅବା ସୂକ୍ଷ୍ମରେଣୁ ଗଣେ
ତୁ ଯେଣୁ ସାଧୁ ଶୁଦ୍ଧମତି । ତୋତେ ମୁଁ କହିଲି ବିଭୂତି ॥
ସଂସାରେ ଦେଖୁ ଯେତେ ଅଂଶ । ଯେସର୍ବ ମନର ବିଳାସ ॥
ବିଜୁଳି ଗଗନେ ଯେସନ । ଯେସନେ ଶୟନେ ସ୍ୱପନ ॥
ଯେବେ ତୁ ବୁଝି ମୋ ବଚନ । ନ ସାଧ ଯେ ମନ ପବନ ॥
ସର୍ବ ସଙ୍କଳ୍ପ ଛାଡ଼ି ତୁହି । ସକଳ କର୍ମ ମୋତେ ଦେଇ ॥
ଯେକାଳେ ଭକ୍ତ ବୀର ମୋତେ । ସଂସାର ଚିନ୍ତା ଛାଡ଼ି ଚିତ୍ତେ ॥
ମୋର ବଚନ ଅନୁସର । ଯେ ଭବ ଜଳୁ ହୁଅ ପାର ॥
ବୋଲଇ ବିପ୍ର ଜଗନ୍ନାଥ । କୃଷ୍ଣ ବିଷୟେ ଭାଗବତ ॥
ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥
ଯେଣେ ଯେ ଭଜେ କୃଷ୍ଣପାଦେ । ନ ବୁଡ଼େ ସଂସାର ସମୁଦ୍ରେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ବିଭୂତିଯୋଗ କଥନଂ ନାମ ସପ୍ତଦଶୋଽଧ୍ୟାୟଃ ।*

## ଅଷ୍ଟାଦଶ ଅଧ୍ୟାୟ

### ଉଦ୍ଧବ ଉବାଚ

ଭକ୍ତି ଲକ୍ଷଣ ଶୁଣି କର୍ଣ୍ଣେ । ଉଦ୍ଧବ ଆନନ୍ଦ ବଦନେ ॥
ଦେହ ପୁଲକ ରୋମରାଜି । ଭାବ ଗଦ୍‌ଗଦେ ଚକ୍ଷୁବୁଜି ॥
ଯେ ଧର୍ମ ଜଗତି ଲକ୍ଷଣେ । ପୁଚ୍ଛଇ ଅଭୟ ଚରଣେ ॥
ଭୋ ନାଥ ରାଜୀବ ଲୋଚନ । ଭକ୍ତ ସଂଶୟ ବିମୋଚନ ॥
ଯେ ଧର୍ମ ଭକତି ଲକ୍ଷଣେ । ଶ୍ରୀମୁଖେ କହିଲ ଆପଣେ ॥
ସେ ଧର୍ମ ସାଧି କେଉଁମତେ । ବୈଷ୍ଣବ ଲକ୍ଷଣ ଜଗତେ ॥
ବ୍ରହ୍ମା ପୁତ୍ରଙ୍କୁ ଦୟାକରି । ପୂର୍ବେ ଯେ ହଂସ ରୂପଧରି ॥
ପରମ ଧର୍ମ କଥା ଯେତେ । କହିଲ ତାହାଙ୍କ ଅଗ୍ରତେ ॥

ସେ ଧର୍ମ କାଳେ ନଷ୍ଟ ଗଲା । ସଂସାରେ କେହି ନ ପାଳିଲା ॥
ଏବେ ଏ କ୍ଷିତି ତଳେ ପୁଣି । କେ ତାହା ତୁମ୍ଭ ବିନୁ ଭଣି ॥
ସେ ଧର୍ମ କହି ପାରୁ ତୁହି । ତୋ ବିନୁ କର୍ତ୍ତା ବକ୍ତା ନାହିଁ ॥
ବ୍ରହ୍ମାଦି ସର୍ବସୁର ଲୋକେ । ତୋ ବିନୁ କେ କହିବ ଏକେ ॥
ସଙ୍ଗତେ ସର୍ବଧର୍ମ ଘେନି । ତୁ ନାଥ ତେଜିବୁ ମେଦିନୀ ॥
ସେ ଧର୍ମ ଲୋକ ତତ୍ତ୍ୱ ଜାଣି । କେ ତାହା କହୁ ପରିମାଣି ॥
ତୁ ସର୍ବଧର୍ମ ଜ୍ଞାନ ଦାତା । ତୁ ସର୍ବ ଲୋକ ପିତାମାତା ॥
ଭକ୍ତି ଲକ୍ଷଣ ଧର୍ମ ଯେତେ । ଭୋ ନାଥ କହ ମୋ ଅଗ୍ରତେ ॥
ଏମନ୍ତ ଉଦ୍ଧବ ବଚନ । ଶୁଣି କହନ୍ତି ଭଗବାନ ॥
ବୋଇଲନ୍ତି ଶୁଣ ଯଦୁବୀର । ଯେ ଧର୍ମ ଯେ ବର୍ଣ୍ଣେ ଆଚାର ॥
ସତ୍ୟ ଯୁଗରେ ହଂସ ରୂପେ । ବ୍ରହ୍ମାଙ୍କ ପୁତ୍ରଙ୍କ ସମୀପେ ॥
ପ୍ରଥମ ଯୁଗେ ଶୁକ୍ଳ ବର୍ଣ୍ଣେ । ମୁହିଁ ପ୍ରବର୍ତ୍ତାଇଲି ଜନେ ॥
ଓଁକାର ରୂପେ ଥିଲା ବେଦ । କେହି ନ ଜାଣେ ତାର ଭେଦ ॥
ମୁଁ ଧର୍ମ ବୃଷ ରୂପ ଧରି । ସେ ବେଦ ଲୋକରେ ବିସ୍ତାରି ॥
ଏଣୁ ସେ ଯୁଗେ ଯେତେ ନର । ସମସ୍ତେ ସତ୍ୟ ସର୍ମାଚାର ॥
ମନ ବଚନ ହୃଦେ ଧରି । ମୋତେ ଭଜନ୍ତି ଦୃଢ଼ କରି ॥
ଚିତ୍ତେ ଚିନ୍ତନ୍ତି ଧର୍ମ ଯେତେ । ସମୀପେ ମିଳନ୍ତି ସମସ୍ତେ ॥
ଏମନ୍ତେ ସତ୍ୟଯୁଗ ଗଲା । ଶୁଣ ଉଦ୍ଧବ ମୋର ଲୀଳା ॥
ତ୍ରେତୟା ଯୁଗେ ମୋର ଦେହେ । ଯଜ୍ଞ ପୁରୁଷ ଜାତ ହୋଏ ॥
ବେଦ ଉଚିତ ଯଜ୍ଞ ମାର୍ଗେ । ଧର୍ମ ପ୍ରଚାର ଭୂମିଭାଗେ ॥
ମୋ ଯାନୁ ଉରୁ ଭୁଜାନନେ । ଜନ୍ମ ହୋଇଲେ ଚାରିବର୍ଣ୍ଣେ ॥
ମୋ ଭୁଜୁଁ ଜନ୍ମ କ୍ଷତ୍ର ଜାତି । ଉରୁରୁ ବଶ୍ୟ ଉତପତି ॥
ମୁଖରୁ ବ୍ରାହ୍ମଣ ମୋ ଜାତ । ଶୂଦ୍ର ମୋ ଚରଣୁ ସମ୍ଭୂତ ॥
ଏଣୁ ମୁଁ ପୁରୁଷ ପୁରାଣ । ଈଶ୍ୱର ବ୍ରହ୍ମାଣ୍ଡ କାରଣ ॥
ବିରାଟ ପୁରୁଷ ମୋ ଗତି । ମୋ ତହୁଁ ସୃଷ୍ଟି ଉତପତି ॥
ମୋର ଜଘନୁ ଗୃହକାରୀ । ହୃଦ ପଦ୍ମରୁ ବ୍ରହ୍ମଚାରୀ ॥
ମୋ ବକ୍ଷସ୍ଥଳୁ ବନବାସୀ । ମସ୍ତକୁ ଜନ୍ମିଲେ ସନ୍ନ୍ୟାସୀ ॥
ଏ ସର୍ବ ବସ୍ତୁ ଭାବେ ସମ । ସ୍ୱଭାବ ମତ ମତି ଭିନ୍ନ ॥
ପ୍ରକୃତି ଜନ୍ମ ଅନୁସାରେ । ସ୍ୱଭାବେ ଆଚାର ବେଭାରେ ॥
ଉତ୍ତମ ସଙ୍ଗେ ସଙ୍ଗ ଯାର । ସେ କରେ ଉତ୍ତମ ଆଚାର ॥
ହୀନ ସଙ୍ଗତେ ହୀନ ଗତି । ହସି କହନ୍ତି ଯଦୁପତି ॥
ଉଦ୍ଧବ ଏକ ମନେ ଶୁଣ । ବ୍ରାହ୍ମଣ ଆଦି ଯେ ଲକ୍ଷଣ ॥
ତପ ଶଉଚ ଶମଦମ । ମୋର ଭଗତି ଅନୁପମ ॥
ସତ୍ୟ ସନ୍ତୋଷ କ୍ଷମାଦୟା । ଅପବର୍ଗ ମନ ନିର୍ମାୟା ॥
ଏ ସର୍ବ ବ୍ରାହ୍ମଣ ଲକ୍ଷଣ । କ୍ଷତ୍ରିୟ ଧର୍ମ ଏବେ ଶୁଣ ॥
ତେଜ ଶଉଚ ବଳ ଧୀର । ତିତିକ୍ଷା ଉଦ୍ଧମ ସୁସ୍ଥିର ॥
ଆବର ବଳ ଯେ ଶଉର୍ଯ୍ୟ । ବ୍ରାହ୍ମଣ ଭାବ ଅଇଶ୍ୱର୍ଯ୍ୟ ॥
କ୍ଷତ୍ରିୟ କୁଳେ ଏ ଲକ୍ଷଣ । ଅପରେ ଶୁଣ ବୈଶ୍ୟଗୁଣ ॥
ବିପ୍ର ପୋଷଣେ ଦାନ ଦୀକ୍ଷା । ଧର୍ମ ସଂଯିତ କୃଷି ରକ୍ଷା ॥
କୟ ବିକ୍ରୟ ସାଧୁ କୃତ । ଧନ ସଂଚୟ ଧର୍ମଯୁକ୍ତ ॥
ବୈଶ୍ୟ କୁଳର ଏ ଲକ୍ଷଣ । ତା ପରେ ଶୂଦ୍ର ଗୁଣ ଶୁଣ ॥
ବ୍ରହ୍ମ କ୍ଷତ୍ରିୟ ବୈଶ୍ୟଗଣେ । ସେବା କରିବ ଅନୁକ୍ଷଣେ ॥
ସକଳେ ଜୀବେ ଥିବ ଦୟା । କେବେହେଁ ନ ଚିନ୍ତିବ ମାୟା ॥
ଶୂଦ୍ରଜନର ଏ ବେଭାର । ଶୁଣ ହୀନ ଜନର ଆଚାର ॥
ଅସତ୍ୟ ବାକ୍ୟ ଦମ୍ଭମାନ । ନାସ୍ତିକ କ୍ରୋଧ ହତଜ୍ଞାନ ॥
ବିରୋଧ ବାକ୍ୟ କୁ ବଚନ । କନ୍ଦଳ ଆଚାର ଲଙ୍ଘନ ॥
ପରହିଂସନ ପରବାଦ । ପର ରମଣୀ ଧନେ ସଧ ॥
ନୀଚ ଜନଙ୍କ ଏ ସ୍ୱଭାବ । ଶୁଣ ସୁଚିତ୍ତେ ହେ ଉଦ୍ଧବ ॥
ମଦନ କ୍ରୋଧ ଦମ୍ଭ ଲୋଭ । ହିଂସା ବର୍ଜିତ ମାନଗର୍ବ ॥
ସତ୍ୟ ବଚନ ପ୍ରିୟବାଣୀ । ଭୃତ୍ୟ ସୁହୃଦ ଯେତେ ପ୍ରାଣୀ ॥
ଏ ସର୍ବଲୋକେ ସାଧାରଣ । ସ୍ୱଭାବ ଧର୍ମ ଏ କାରଣ ॥
ବ୍ରାହ୍ମଣ ଆଦି ଯଥାକ୍ରମେ । ଯେ ଥିବ ଯେମନ୍ତ ଆଶ୍ରମେ ॥
ବ୍ରାହ୍ମଣ ଆଶ୍ରମ ବ୍ୟବସ୍ଥା । ଉଦ୍ଧବ ଶୁଣ ସାଧୁ କଥା ॥
ବ୍ରାହ୍ମଣ କୁଳେ ଜନ୍ମ ହୋଇ । ବେଦ ପଠନେ ଦୀକ୍ଷାବହି ॥
ଗାୟତ୍ରୀ ମନ୍ତ୍ର ଗୁରୁ ମୁଖେ । ଜାଣି ସେବିବ ଗୁରୁ ପାଦେ ॥
ବେଦ ପଠନେ ଦିନେ ଦିନେ । ଉଚ୍ଚାରି ଗୁରୁ ସନ୍ନିଧାନେ ॥
ତ୍ରିସନ୍ଧ୍ୟା ସ୍ନାନ ହୋମ କରି । ତ୍ରିଦଣ୍ଡ କମଣ୍ଡଳୁ ଧରି ॥
ପିନ୍ଧେ କୃଷ୍ଣାଜିନ ମେଖଳା । ଅରୁଣ ବସ୍ତ୍ର ଅକ୍ଷମାଳା ॥
ମନ୍ତ୍ର ପଠନ ପୂଜା ହୋମ । ମାର୍ଜନ ଭୋଜନ ନିୟମ ॥
ଏ ଆଦି କର୍ମ ବ୍ରହ୍ମଚାରୀ । କରିବ ନିୟମ ଆଚରି ॥
କର ଚରଣ ନଖ ଯେତେ । ଯେ ଲୋମ କକ୍ଷ ଲିଙ୍ଗଗାତ୍ରେ ॥
ନିରତେ ଥିବ ଯେ ସଂଯତେ । ବୀର୍ଯ୍ୟ ନ ଦେବ ଯୋନିଗାତ୍ରେ ॥
ବେଗେ ପ୍ରଭାତେ ସ୍ନାନ କରି । ହୃଦରେ ଗାୟତ୍ରୀ ସୁମରି ॥
ଜପ କରିଣ ହସ୍ତ ରେଖେ । ଉଭାରି ରବି ଅଭିମୁଖେ ॥
ଗୁରୁ ଚରଣେ ନମସ୍କାର । ଯତ୍ନେ କରିବ ସପ୍ତବାର ॥
ଗୁରୁ ବ୍ରାହ୍ମଣ ଗୁରୁପାଦେ । ବନ୍ଦନ କରି ଅପ୍ରମାଦେ ॥
ତ୍ରିସନ୍ଧ୍ୟା ସେବିବ ସ୍ନାହାନେ । ଗାୟତ୍ରୀ ଜପିବ ମଉନେ ॥
ସାକ୍ଷାତେ ଗୁରୁ ମୁଁ ଈଶ୍ୱର । ଗୁରୁଙ୍କୁ ନ ମଣିବ ନର ॥

ଗୁରୁଟି ସର୍ବ ଦେବମୟେ । ମୁହିଁ ବସଇ ଗୁରୁ ଦେହେ ।
ଏ ଘେନି ଗୁରୁ ଭଗବାନ । ସେ ନୋହେ ମନୁଷ୍ୟ ସମାନ ।
ସ୍ୱଧର୍ମେ ବସାଇ ନିରତେ । ଭିକ୍ଷା ମାଗିବ ନିତ୍ୟେ ନିତ୍ୟେ ।
ଗୁରୁ ସମୀପେ ତାହାନେଇ । ଥୋଇବ ଶିରେ କରଦେଇ ।
ପ୍ରସନ୍ନେ ଗୁରୁ ଦେବେ ଯେତେ । ତାହା ଭୁଞ୍ଜିବ ଶୁଦ୍ଧଚିତ୍ତେ ।
ଏମନ୍ତେ ଗୁରୁ ସେବା କରି । ଦିନ ବଞ୍ଚିବ ବ୍ରହ୍ମଚାରୀ ।
ଏ ଦେହ ସୁଖ ଦିନେ ଦିନେ । କେବେହେଁ ନ ଚିନ୍ତିବ ମନେ ।
ଯାବତ ବେଦ ପୂର୍ଣ୍ଣ ନୁହେଁ । ତାବତ ଗୁରୁଶିକ୍ଷା ବହେ ।
ମନ ବଚନ ନିଜ ଦେହେ । ନିତ୍ୟ ସେବିବ ଗୁରୁପ୍ରାୟେ ।
ସେ ଗୁରୁସେବା ଅବଧାନେ । ରଜନୀ ବଞ୍ଚିବ ମଉନେ ।
ଗୁରୁ ସମୀପେ ଭୃତ୍ୟପ୍ରାୟେ । ପ୍ରଥମ ଥିବ ଉଭାପ୍ରାୟେ ।
ଗୁରୁ ପ୍ରସନ୍ନେ ଆଜ୍ଞାପାଇ । ବସିବ ଗୁରୁମୁଖ ଚାହିଁ ।
ସଭୟେ ସମୀପେ ବସିବ । ଚରଣ ଅଗ୍ର ନ ଦିଶିବ ।
ପୁଣ ଉଠିଣ ଉଭା ହୋଇ । କର ଯୁଗଳ ଶିରେଦେଇ ।
ନିତ୍ୟେ ନମିବ ଗୁରୁପାଦେ । ବେଦ ବଚନ ଅନୁବାଦେ ।
ମନ ବଚନ ନିଜ ଦେହେ । ମୋ ଠହୁଁ ଗୁରୁ ଭିନ୍ନନୋହେ ।
ପ୍ରାଣ ପଞ୍ଚମେ ବ୍ରହ୍ମଚାରୀ । ନୟନେ ନ ଦେଖିବ ନାରୀ ।
ସ୍ତିରୀ ସଙ୍ଗତେ ସମ୍ଭାଷଣ । କେବେହେଁ ନୋହିବ ନିପୁଣ ।
ରଜ ତାମସ ଗୁଣ ଯେତେ । ସଙ୍ଗ ନୋହିବ କଦାଚିତେ ।
ଯେଣୁ ଏ ଦୁଷ୍ଟଜନ ସଙ୍ଗ । କରଇ ନିଜ ଧର୍ମ ଭଙ୍ଗ ।
ଶଉଚ ସ୍ନାନ ଆଚମନ । ତ୍ରିସନ୍ଧ୍ୟା ସନ୍ଧ୍ୟା ଉପାସନ ।
ତୀର୍ଥ ଗମନ ଯଜ୍ଞ ହୋମ । ଶ୍ରବଣ କୀର୍ତ୍ତନ ମୋ ନାମ ।
ମୋର ଚରଣ ସେବା ଯେତେ । ସଂଚିତ କରିବ ନିରତେ ।
ଅସାଧୁ ସଙ୍ଗେ ସମ୍ଭାଷଣ । ଯେ ଅବା ଅଭକ୍ଷ ଭକ୍ଷଣ ।
ଇତ୍ୟାଦି ଧର୍ମ ବିଲଂଘନେ । କେବେ ହେଁ ନ କରିବ ମନେ ।
ସମାନ ଧର୍ମ ସାଧାରଣ । ଏ ସର୍ବ ଆଶ୍ରମ ଲକ୍ଷଣ ।
ସଂଯମେ ମନ ବାକ୍ୟ ଧରି । ଏ ତ ଲକ୍ଷଣେ ବ୍ରହ୍ମଚାରୀ ।
ମୋର ଚରଣେ ସେବା କରି । ସକଳେ ବର୍ଣ୍ଣେ ଅଧିକାରୀ ।
ଯେ ରୂପେ ବ୍ରାହ୍ମଣ ମୁକୁତେ । ସାଧିବ ବ୍ରହ୍ମଚର୍ଯ୍ୟ ମତେ ।
ଏମନ୍ତ ମତେ ବ୍ରହ୍ମଚାରୀ । ବିରାଜେ ଅଗ୍ନିତେଜ ଧରି ।
ମୋର ଭକତ ଏ ସକଳେ । ମୋତେ ବୋଲନ୍ତି ଚିତ୍ତ ଭୋଳେ ।
ତାର ଦୁରିତ ଯେତେ ଦେହେ । ମୋ ଭାବ ଅଗ୍ନି କୁଣ୍ଡେ ଦହେ ।
ଏମନ୍ତେ ବିପ୍ର ବ୍ରହ୍ମଚାରୀ । କରି ସକଳ ବେଦ ଧରି ।
ତାତ ଜନନୀ କି ଜଣାଇ । ଦକ୍ଷିଣା ଗୁରୁ ପାଦେ ଦେଇ ।

ଗୁରୁ ବଚନ ଶିରେ ଧରି । ବେଦ ଉତ୍ସର୍ଗେ ସ୍ନାନ କରି ।
ଛାଡ଼ିବ ବ୍ରହ୍ମଚାରୀ ବେଶ । ବନେ ବା ଭୁବନେ ପ୍ରବେଶ ।
ଏମନ୍ତେ ନିଜ ବର୍ଣ୍ଣେ ଥିବ । ଯେ ପୂର୍ବ ଆଶ୍ରମ ସ୍ୱଭାବ ।
ଅନ୍ୟ ଆଶ୍ରମ ଭାବେ ଭାବି । ପୂର୍ବ ଆଶ୍ରମ ଧର୍ମ ତେଜି ।
ଯଦି ବ୍ରାହ୍ମଣ ବ୍ରହ୍ମଚାରୀ । ଗୃହ ଆଶ୍ରମେ ଚିତ୍ତ ଧରି ।
ବିଚାରି କନ୍ୟା କୁଳବତୀ । ରୂପ ଲକ୍ଷଣ ତାର ଚିହ୍ନି ।
ବୟଃ ଆକୃତି ଭାବେ ଗଣି । କନ୍ୟା ସ୍ୱରୂପେ ସୁଲକ୍ଷଣୀ ।
ବିବାହ କରି ଶୁଭକ୍ଷଣେ । ଯେ ବେଦବିଧାନ ପ୍ରମାଣେ ।
ସୁଖେ ସାଧିବ ଗୃହବାସେ । କାମ କାଞ୍ଚନ ପୁତ୍ର ଆଶେ ।
ଯେ ଧର୍ମ ଗୃହସ୍ଥ କାରଣ । ଉଦ୍ଧବ ସାବଧାନେ ଶୁଣ ।
ବ୍ରାହ୍ମଣ କୁଳଧର୍ମ ଯେତେ । ଶୁଣ କହିବା ତୋ ଅଗ୍ରତେ ।
ବେଦାଧ୍ୟୟନ ଅଧ୍ୟାପନ । ଗ୍ରହଣ ଯଜନ ଯାଜନ ।
ଦାନହିଁ ଦେଉଥିବ ନିତ୍ୟେ । ଲୋଭ ନ କରି ସୁଖ ଚିତ୍ତେ ।
ଗୃହେ ହୋଇବ ସର୍ବସହ । ଯେ ନୀଚକର୍ମ ପ୍ରତି ଗ୍ରହ ।
କେବେ ହେଁ ନ କରିବ ବାରେ । ନିସ୍ତରି ଇହ ପରତରେ ।
ଯେ ଅବା ନିଜ ପ୍ରତି ଗ୍ରହ । ଉଭୟ ଲୋକେ ଦୁଃଖମୟ ।
ଯେ ପ୍ରତିଗ୍ରହ ଭୟଙ୍କର । ଯଶ ତପସ୍ୟା ତେଜ ହର ।
ସେ ପ୍ରତିଗ୍ରହ ନ କରିବ । ଦୁଃଖେ ବା କୁଟୁମ୍ବ ପୋଷିବ ।
ନିତ୍ୟେ ଯଜନ ଅଧ୍ୟାପନେ । ବଞ୍ଚିବ କିଞ୍ଚିତ ଭୋଜନେ ।
ଯେ ଧର୍ମକର୍ମ ବିପରୀତେ । କେବେହେଁ ନ କରିବ ଚିତ୍ତେ ।
ଚିତ୍ତ ସନ୍ତୋଷ ଯଥା ଲାଭେ । ନିତ୍ୟେ ବଞ୍ଚିବ ମୋର ଭାବେ ।
ଯେ ବିପ୍ର ହରି ପରାୟଣେ । ଗୃହେ ବସଇ ସାଧୁପଣେ ।
ଚିତ୍ତେ କରଇ ମୋତେ ଧ୍ୟାନ । ସେ ନୋହେ ନରକେ ପତନ ।
ସେ ଗୃହ ଅନ୍ଧକୂପୁଁ ତରେ । ଆତ୍ମାକୁ ଆପଣେ ଉଦ୍ଧରେ ।
ଯେ ଅବା ପୂର୍ବ କର୍ମ ଦୋଷେ । ଦୁଃଖ ଦରିଦ୍ର ସହବାସେ ।
ଏମନ୍ତେ ବିପ୍ରମୁଖ ଚାହିଁ । ଯେ ଅବା ଚିତ୍ତେ ଦୟାବହି ।
ବିପ୍ର ପୋଷଣ କରେ ନିତ୍ୟେ । ମୁଁ ଥାଇ ତାହାଙ୍କ ଅଗ୍ରତେ ।
ବ୍ରାହ୍ମଣ ମୁଖେ ମୋ ଆହାର । ବିପଦ ଖଣ୍ଡଇ ତାହାର ।
ଏମନ୍ତେ ବ୍ରାହ୍ମଣ ବଞ୍ଚିବ । ଯଦ୍ୟପି ବିପଦେ ପଡ଼ିବ ।
ତେବେ ବଞ୍ଚିବ ବୈଶ୍ୟମତେ । କୃଷି ବାଣିଜ୍ୟ ବେନିପଥେ ।
ଅଥବା ଖଡ୍ଗ ଧରି କରେ । ବଞ୍ଚିବ ପାଦାତି ପ୍ରକାରେ ।
ହିଂସା ନ କରିବ ହୃଦରେ । ବିଅର୍ଥେ ନ ନାଶିବ ପରେ ।
କ୍ଷତ୍ରିୟ ବୃତ୍ତି କରି ଅବା । କେବେହେଁ ନ କରିବ ସେବା ।
ଏମନ୍ତେ ବିପଦୁ ବଞ୍ଚିବ । ଆନନ୍ଦେ ନିତ୍ୟ କର୍ମେ ଥିବ ।

କ୍ଷତ୍ରିୟ ବୈଶ୍ୟ ବୃତ୍ତି କରି । ବଞ୍ଚିବ କୁଟୁମ୍ବ ଆବୋରି ॥
ଆପଦ ତରି ଯଥାକ୍ରମେ । କ୍ଷତ୍ରିୟ ଥିବ ନିଜ ଧର୍ମେ ॥
ଏମନ୍ତେ ବିପଦୁ ବଞ୍ଚିବ । ନୀଚଙ୍କୁ ସେବା ନ କରିବ ॥
ବିପଦେ ବୈଶ୍ୟ ଶୂଦ୍ରପ୍ରାୟେ । କୁଟୁମ୍ବ ପୋଷିବା ଉପାୟେ ॥
ବିପଦେ ଶୂଦ୍ରକାରୀ କର୍ମେ । ବଞ୍ଚଇ ପୁଣି ନିଜଧର୍ମେ ॥
ଏମନ୍ତେ ବର୍ଣ୍ଣଧର୍ମ ରକ୍ଷେ । ତୋ ଆଗେ କହିଲି ପ୍ରତ୍ୟକ୍ଷେ ॥
ଏଭାବେ ଗୃହ ଧର୍ମ ମତେ । ଚିତ୍ତ ନ କରି ମୋହଗତେ ॥
ଗୃହରେ ବିପଦେ ସମ୍ପଦେ । କୁଳ କାଞ୍ଚନ ବନ୍ଧୁ ମଧେ ॥
ମୋହେ ନୋହିବ ମନଛନ୍ନ । ଏ ସର୍ବ ଈଶ୍ୱର ସମାନ ॥
ମୋ ଭାବ ଜାଣି ହୋଏ ସୁଖୀ । ଇଚ୍ଛାରେ ସକଳ ନିରେଖି ॥
ଏ ପୁତ୍ରଦାରା ବନ୍ଧୁ ସଙ୍ଗ । ଯେସନେ ସମୁଦ୍ର ତରଙ୍ଗ ॥
ପଥିକ ଯେହ୍ନେ ବୃକ୍ଷତଳେ । ଶ୍ରମେ ମିଳନ୍ତି ଏକମେଳେ ॥
ଶ୍ରମ ସରିଲେ ଯେଝାମତେ । ଚଳନ୍ତି ବୃକ୍ଷ ଥାଇ ପଥେ ॥
ଯେସନେ ପ୍ରାଣୀ ନିଦ୍ରାଗତେ । ସ୍ୱପ୍ନ ଦେଖନ୍ତି ସ୍ୱପ୍ନମତେ ॥
ଏହି ପ୍ରକାରେ ଗୃହବାସ । ଏଣେ ନ କରିବ ବିଶ୍ୱାସ ॥
ଏମନ୍ତ ବୁଝି ଯଦୁବୀର । ଚଞ୍ଚଳ ମନ କର ସ୍ଥିର ॥
ଅନିତ୍ୟ ଅସତ୍ୟ ଶରୀର । ଅନ୍ତେ ଚଳଇ ତମଘୋର ॥
ଏଣୁ ଅତିଥି ପ୍ରାୟେ ହୋଇ । ମୋର ଭଗତ ଗୃହେ ଥାଇ ॥
ପୁତ୍ର କଳତ୍ର ବନ୍ଧୁ ଶିରୀ । ନ ବୋଲ ମୋହରି ମୋହରି ॥
ଦଇବ ମାୟା ଏ ସଂସାର । ଏଣେ ନକର ଅହଙ୍କାର ॥
ଏମେନ୍ତ ଗୃହ ଅବଧାନେ । ଧର୍ମ ସାଧିବ ଯଜ୍ଞଦାନେ ॥
ମୋର ଭଗତି ଦିନେ ଦିନେ । ସାଧିବ ହୃଦରେ ଯତନେ ॥
ଗୃହସ୍ଥ ଭାବ ଏହିମତେ । ଭାବେ ବଞ୍ଚିବ ଦିନାକେତେ ॥
ବୟସ ତୃତୀୟ ପ୍ରାପତେ । ବନେ ଚଳିବ ତପଅର୍ଥେ ॥
ପୁତ୍ର ରଖିବ ଗୃହବାସେ । ଅଥବା ଚଳିବ ସନ୍ୟାସେ ॥
ପୁତ୍ର ନ ଥିଲେ ଘେନି ସଂଗେ । ନିଜ ଆୟୁଷ ବେନି ଭାଗେ ॥
ଧର୍ମ କଷଣ କର୍ମଯେତେ । ବନେ ସାଧିବ ଯେଝାମତେ ॥
ଗୃହ ନିର୍ବନ୍ଧ ଯାର ମନେ । ଆକୁଳ ପୁତ୍ର ଦାରାଧନେ ॥
ମୂଢ଼ କୃପଣ ସ୍ତିରୀ ଯୁତ । ମୁହିଁ ମୋହର ଏ ସମସ୍ତ ॥
ଏଣୁ ବଞ୍ଚଇ ଗୃହ ବାସେ । ଅଶାନ୍ତି ଇନ୍ଦ୍ରିୟ ଲାଳସେ ॥
କୁଟୁମ୍ବ ନିସ୍ତାରଣ ଆଶେ । ଭାଳଇ ରଜନୀ ଦିବସେ ॥
ବୃଦ୍ଧ ଜନନୀ ତାତ ମୋର । ବନିତା ବାଳକେ କୁମର ॥
କି ରୂପେ ନିସ୍ତରିବି ମୁହିଁ । ଏଣେ ଆକୁଳ ମନ ହୋଇ ॥
କ୍ଷଣେ ନପାରେ ଗୃହ ଛାଡ଼ି । ନିରତେ ଚିନ୍ତାଜଳେ ବୁଡ଼ି ॥
ଦାରା ତନୟ ନିତ୍ୟେ ଚିନ୍ତି । ଗୃହେ ମଜ୍ଜଇ ମୂଢ଼ମତି ॥
ଅନ୍ତେ ପଡ଼ଇ ତମ ଘୋରେ । ଭ୍ରମଇ ଏ ଘୋର ସଂସାରେ ॥
ଗୃହ କରଣ ବର୍ଣ୍ଣ ଭାବ । ଉଦ୍ଧବେ କହିଲେ ମାଧବ ॥
ସେ ଗୁରୁଶିଷ୍ୟ ପାଦଗତେ । ଶରଣ ଦାସ ଜଗନ୍ନାଥେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ଅଷ୍ଟାଦଶୋଽଧ୍ୟାୟଃ ।*

## ଊନବିଂଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

ବୋଲନ୍ତି ପ୍ରଭୁ ନାରଏଣ । ଶୁଣହେ ଭଗତ ନିଗୁଣ ॥
ସେ ବନ ପନ୍ତର ଲକ୍ଷଣ । କହିବା ତହିଁ ଆଚରଣ ॥
ଯଦି ଚଳିବ ବନବାସେ । ପତ୍ନୀ ନିବେଶି ପୁତ୍ରପାଶେ ॥
ପୁତ୍ର ନଥିଲେ ଘେନି ସଂଗେ । ନିଜ ଆୟୋଷ ତିନିଭାଗେ ॥
ବନେ ଭକ୍ଷିବ କନ୍ଦମୂଳ । ପିନ୍ଧିବ ବୃକ୍ଷର ବକ୍କଳ ॥
ଶୟନ ଅର୍ଦ୍ଧ ଶୁଷ୍କ ପତ୍ରେ । ଅଜିନ ଲୋମ କକ୍ଷ ଗାତ୍ରେ ॥
ଅଙ୍ଗ ଦଶନ ନ ମାଜିବ । ମନ ଚଞ୍ଚଳେ ନ ଧାଇଁବ ॥
ଉତ୍ତମ ପୁଣ୍ୟ ତୀର୍ଥ ଜଳେ । ସ୍ନାନ କରିବ ତିନିକାଳେ ॥
ପଞ୍ଚ ଅନଳ ଗ୍ରୀଷ୍ମକାଳେ । ତାପ ସହିବ ତପୋଆଳେ ॥
ବରଷା କାଳେ ବରଷଣ । ସହିବ ତହିଁର କଷଣ ॥
ଆକାଶୁ ମଗ୍ନ ଶୀତ ଜଳେ । ରାତ୍ରେ ବଞ୍ଚିବ ଶୀତକାଳେ ॥
ଏମନ୍ତେ ନାନା ଦୁଃଖ ସହି । ତପ କରିବ ବନେ ଥାଇ ॥
ଯେ ଅବା ଶାକ କନ୍ଦମୂଳ । ବନେ ମିଳିବ ଯେବା ଫଳ ॥
ଅଗ୍ନି ତପନେ କରି ପାକେ । ଭକ୍ଷିବ ଫଳମୂଳ ଶାକେ ॥
ପାଷାଣେ କୁଟି କିବା ଦାନ୍ତେ । ଭକ୍ଷଣ କରିବ ବନସ୍ତେ ॥
ଈଶ୍ୱର ମତେ ଦାସ ପଣେ । କର୍ମ ସମ୍ପାଦିବ ଆପଣେ ॥
ଏମନ୍ତେ ଥାଇ ତପୋବନେ । ଦ୍ରବ୍ୟ ଯାଚିବ ଯେବା ଅନ୍ୟେ ॥
କେବେହେଁ ନ ଘେନିବ କରେ । ଯେବା ମିଳିବ ମନ ଘୋରେ ॥
ଜୀବନ ପ୍ରାଣ ମାତ୍ର ପୋଷି । ବନେ ସାଧିବ ତପରାଶି ॥
ବେଦ ବଚନେ ଯେ ପ୍ରକାଶ । ଇଷ୍ଟ ଦର୍ଶନେ ପୌର୍ଣ୍ଣମାସ ॥
ଅନଳ ହୋତ୍ରେ ଚତୁର୍ମାସେ । ମୋତେ ପୂଜିବ ବନବାସେ ॥
ଏ ରୂପେ ତପ କରି ବନେ । ଏ ରୂପ ଭଜିବ ଆସନେ ॥

ଦେହ ଅନ୍ତରେ ଦିବ୍ୟ ରୂପେ । ସେ ବସେ ଋଷିଙ୍କ ସମୀପେ ॥
ତପ ସାଧିବ ଘୋରବନେ । ବଞ୍ଚିବ ସହି ଦୁଃଖମନେ ॥
ସ୍ୱଭାବେ ବୃଦ୍ଧ ଦେହ ଆସି । ଯେବେ ଜନ୍ମିବ ଦୁଃଖରାଶି ॥
ଯୋଗ ଧାରଣା ପରିଜଳି । ନିଜ ଶରୀରେ ଅଗ୍ନି ଜାଳି ॥
ପଞ୍ଚ ଯେ ପ୍ରାଣ ନିଜ ପିଣ୍ଡେ । ହୋମ କରିବ ଅଗ୍ନିକୁଣ୍ଡେ ॥
ଏମନ୍ତେ ଯୋଗ ଅବଧାରୀ । ଅନ୍ତେ ପଶିବ ମୋର ପୁରୀ ॥
ଯାହାର ପୂର୍ବ ଭାଗ୍ୟ ବଶେ । ବୈରାଗ୍ୟ ଉପୁଜେ ହରଷେ ॥
ତାହାକୁ ଇହ ପରଲୋକେ । ଦିଶଇ ନାନା ଦୁଃଖ ସୁଖେ ॥
ତେବେ ସେ କର୍ମ ତ୍ୟାଗ କରି । ସନ୍ନ୍ୟାସ ରୂପେ ଦଣ୍ଡଧାରୀ ॥
ଗୁରୁ ବଚନ ଦୃଢ଼େ ଧରି । ଆଚାର୍ଯ୍ୟ ଭାବେ ପୂଜା କରି ॥
ଦକ୍ଷିଣା କରି ସର୍ବଧନ । ତୋଷିବ ଆଚାର୍ଯ୍ୟ ମନ ॥
ହୋଇବ ନିରପେକ୍ଷ ମନା । ଛାଡ଼ିବ ସଂସାର ବାସନା ॥
ବନେ ପଶିବ ତପୋ ଅର୍ଥେ । ଉଦ୍ଧବ ଶୁଣ ଏକ ଚିତ୍ତେ ॥
ତାହାକୁ ଦେବ ଗଣେ ଆସି । ଅଶେଷ ବିଘ୍ନ ଯେ ପ୍ରକାଶି ॥
ମୋହିନୀ ବେଶେ ସ୍ତିରୀ ରୂପେ । କଷଣ କରନ୍ତି ସମୀପେ ॥
ମାୟାରେ କରି ଅଙ୍ଗ ସଙ୍ଗ । ତପୋ କରନ୍ତି ତା'ର ଭଙ୍ଗ ॥
ଆମ୍ଭରେ ସଙ୍ଗୀ ଛାଡ଼ି ଏବେ । ଏ କିମ୍ପା ଯିବ ବ୍ରହ୍ମ ଲୋକେ ॥
ଏତେ ବିଚାରି ଦେବଗଣେ । ବିଘ୍ନ କରନ୍ତି ଅନୁକ୍ଷଣେ ॥
ଯେବେ ସନ୍ନ୍ୟାସୀ ତତ୍ତ୍ୱଜ୍ଞାନେ । ଚିତ୍ତ ନିବେଶି ବ୍ରହ୍ମଜ୍ଞାନେ ॥
ମୋର ଚରଣ ଦୃଢ଼େ ଧରି । ଯୋଗ ସାଧିବ ତପୋକରି ॥
ଯଦ୍ୟପି ସଂସାର ବେଭାର । ଲାଜେ ନୋହିବ ଦିଗାମ୍ବର ॥
ତେବେ କପିଳ ବସ୍ତ୍ର ଧରେ । ତ୍ରିଦଣ୍ଡ କମଣ୍ଡଳୁ କରେ ॥
ଦୃଢ଼େ ସନ୍ନ୍ୟାସ ରୂପ ବହେ । ହେଲେ ସମସ୍ତ ପାପ ଦହେ ॥
ଦୃଷ୍ଟି ପବିତ୍ରେ ପାଦନ୍ୟାସେ । ବସ୍ତ୍ର ପବିତ୍ରେ ଜଳଗ୍ରାସେ ॥
ବାକ୍ୟ ପବିତ୍ରେ କହେ ସତ୍ୟ । ମଉନ ବ୍ରତେ ଥିବ ନିତ୍ୟ ॥
ମନ ପବନ ନିତ୍ୟାଚାରେ । ଯେ ଧର୍ମ ସନ୍ନ୍ୟାସ ବେଭାରେ ॥
ଜିଣିବ ବଚନ ପବନ । ଯୋଗ ଅଭ୍ୟାସେ ଦୃଢ଼ମନ ॥
ଯୋଗ ଧାରଣା ଯୋଗବଳେ । ବସିବ ଆସନ ନିଚଳେ ॥
ମନ ପବନ ଇନ୍ଦ୍ରିଗଣେ । ଯେବେ ସନ୍ନ୍ୟାସୀ ନାହିଁ ଜିଣେ ॥
କେବଳ ଦଣ୍ଡ ଧରି କରେ । ବ୍ୟର୍ଥେଁ ଯେ ଭ୍ରମଇଁ ଏ ସଂସାରେ
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ । ଭିକ୍ଷା ମାଗିବ ଅବଧାନେ ॥
ବର୍ଣ୍ଣ ନିନ୍ଦିତ ଦୁରାଚାର । ବର୍ଜ୍ଜିବ ପାପିଷ୍ଠ ପାପର ॥
ଏମନ୍ତେ ଭିକ୍ଷା ସପ୍ତଘରେ । ମାଗିବ ସତ୍ୟ ଅନୁସାରେ ॥
ଆନନ୍ଦେ ଘେନି ଶୁଦ୍ଧ ଚିତ୍ତେ । କର୍ମେ ମିଳିବ ଭିକ୍ଷା ଯେତେ ॥

ନିର୍ଜ୍ଜନେ ନଗର ଉପାନ୍ତେ । ଆନନ୍ଦେ ବସିବ ଏକାନ୍ତେ ॥
ଦେବ ଅତିଥି ପିତୃ ଜନେ । ଭିକ୍ଷା ବିଭୂତି ଶୁଦ୍ଧ ମନେ ॥
ଶେଷ ଭୋଜନେ ପ୍ରାଣ ପୋଷି । ଏ ରୂପେ ଭ୍ରମିବ ସନ୍ନ୍ୟାସୀ ॥
ନିରତେ ପରିହିତେ ରତ । ସଙ୍ଗ ବର୍ଜ୍ଜିତ ସମଗତ ॥
ଆତ୍ମ ବିଷୟେ ଦୃଢ଼ ଚିତ୍ତେ । ଉତ୍ତମ ଉଦାର ଚରିତେ ॥
ବିରଳ କୁଶଳ ଆସନେ । ନିର୍ମଳ ଅନ୍ତର୍ଗତ ଧ୍ୟାନେ ॥
ଅଭେଦ ଭାବେ ଚିତ୍ତ ଧାୟେ । ସର୍ବେ ଦେଖିବ ବିଷ୍ଣୁମୟେ ॥
ମନ ନିବେଶି ସମଧାନେ । ବୁଝିବ ବନ୍ଧ ମୋକ୍ଷଜ୍ଞାନେ ॥
ଭଗତି ଭାବେ ଷଡ଼ ଅଛି । ଜିଣିବ କର୍ମ ଆଦି କରି ॥
ବିଷୟ ସଙ୍ଗ ଉପଲକ୍ଷି । ହୋଇବ ପର ଦୁଃଖେ ଦୁଃଖୀ ॥
ଭିକ୍ଷା କାରଣେ ଗ୍ରାମ ପୁରେ । ପଶି ମାଗିବ ସପ୍ତ ଘରେ ॥
ତୀର୍ଥ ଯେ ସ୍ନାନ ପୁଣ୍ୟ ଦେଶେ । ଗମନ କରିବ ବିଶ୍ୱାସେ ॥
ସୁପୁଣ୍ୟ ନଦ ନଦୀ ତୀରେ । କୂପ ଦିର୍ଘିକା ସରୋବରେ ॥
ପୀରତି ସର୍ବଭୂତେ କରି । ଭ୍ରମିବ କରେ ଦଣ୍ଡ ଧରି ॥
ବିଷୟ ରସ ଭାବ ଯୁକ୍ତେ । କେବେ ହେଁ ନକରିବ ଚିତ୍ତେ ॥
ଏ ମାୟା ମୟ ତ୍ରିଭୁବନ । ମନେ ନ କରିବ ବସ୍ତୁ ଜ୍ଞାନ ॥
ସଂଶୟ ଚିତ୍ତ ଅଭିମାନ । ତେଜି କରିବ ମୋତେ ଧ୍ୟାନ ॥
ଜ୍ଞାନ ଭକତି ନିଷ୍ଠା ପର । ନିତ୍ୟେ ଯେ ବିଶ୍ୱାସ ମୋହର ॥
ସକଳ ଭୂତେ ଅନପେକ୍ଷ । ଜ୍ଞାନ ବୈରାଗ୍ୟ ପଣେ ଦକ୍ଷ ॥
ସର୍ବ ଆଶ୍ରମ ଧର୍ମ ତେଜି । ମୋର ଚରଣେ ଦୃଢ଼େ ଭଜି ॥
ପୃଥିବୀ କରି ପର୍ଯ୍ୟଟନ । ଛାଡ଼ିଣ ଆଶ୍ରମ ଲକ୍ଷଣ ॥
ନାହିଁ ତାହାର ଅବଶେଷ । କର୍ମାଦି କରଣେ ପ୍ରବେଶ ॥
ପ୍ରାଣୀଙ୍କି ନକରିବ ହିଂସା । ତେଜିବ ବାଦ ତର୍କ ଭାଷା ॥
ନଥିବ ପ୍ରିୟ ପକ୍ଷପାତେ । ପ୍ରାଣୀର ଭଲ ମନ୍ଦ ଜାତେ ॥
କେବେହେଁ ପ୍ରାଣୀଙ୍କ ସଙ୍ଗତେ । ସଙ୍ଗତି ନ ଚିନ୍ତିବ ଚିତ୍ତେ ॥
ସଂଗତ ନ କରିବ ଚିତ୍ତେ । ବଞ୍ଚିବ ସର୍ବଲୋକ ହିତେ ॥
କନ୍ଦଳେ ପର ଅପମାନେ । ବିବାଦ ନକରିବ ଅନ୍ୟେ ॥
ଜନ୍ତୁଙ୍କ ତୁଲେ ରିପୁଭାବ । କେବେହେଁ ମନେ ନ କରିବ ॥
ଏକଇ ଆତ୍ମା ସର୍ବଭୂତେ । ଚନ୍ଦ୍ର ଯେସନେ ଶୂନ୍ୟପଥେ ॥
ଅନେକ ଜଳ ଘଟ ମଧ୍ୟେ । ଯେସନେ ଦେଖି ନାନାବିଧେ ॥
ଲାଭ ଅଲାଭ ସମଭାବ । ଦୁଃଖ ହରଷ ନ କରିବ ॥
ଅଦୃଷ୍ଟ ବଂଶ ଭାବ ସେତୁ । ଅବଶ୍ୟ ଦୁଃଖ ସୁଖ ହେତୁ ॥
ଉପାୟ ଆହାର କାରଣେ । ଚିନ୍ତିବ ଶରୀର ଧାରଣେ ॥
ଏ ଦେହ ଥିଲେ ଶ୍ୱାନ ପାଇଁ । ଜଳ ଯେସନେ ଚନ୍ଦ୍ର ଛାଇଁ ॥

ଜ୍ଞାନେ ସକଳେ ପାପ ନାଶେ । ନିର୍ମଳ ମୁକତି ପ୍ରକାଶେ ॥
ଯେ ଅବା ଅନ୍ନ କ୍ଷୁଧା କାଳେ । ମିଳିବ ପୂର୍ବ କର୍ମଫଳେ ॥
ତାହା ସନ୍ତୋଷେ ଭୋଗ କରି । କର୍ମ ସାଧିବ ଦେହ ଧରି ॥
ସ୍ନାନ ଶଉଚ ଆଚମନ । ସେ ନିଜ ବିଧିର ବିଧାନ ॥
ଭାବ ଅଭାବ ଏକ କରି । ସାଧିବ ମୁନି ଦଣ୍ଡ ଧରି ॥
ଯେ 'ନିତ୍ୟକର୍ମ' ଦଣ୍ଡଧରେ । ସେ ଭଲ ମନ୍ଦ ନ ବିଚାରେ ॥
କର୍ମ କରଇ ଇଚ୍ଛାମନେ । ଭଜିଚେ ଈଶ୍ୱର ଯେସନେ ॥
ସେ ସ୍ୱର୍ଗବାସ ସୁଖ ଭୋଗ । ଅନ୍ତେ ଦୁରିତ ଦୁଃଖ ଯୋଗ ॥
ଏହି ବିଚାରେ ଚିତ୍ତ ସ୍ଥିରେ । ବୈରାଗ୍ୟ ଜନ୍ମେ ଯା ଅନ୍ତରେ ॥
ଗୁରୁ ଚରଣେ ସେବା କରି । ତାଙ୍କ ବଚନ ମନେ ଧରି ॥
ଗୁରୁଙ୍କୁ ବିଷ୍ଣୁ ଭାବେ ମଣି । ସେବା କରିବ ମନ ଜାଣି, ॥
ଗୁରୁ ବଚନ ଘେନି ଚିତ୍ତେ । ମୋର ଭଗତି ଦୃଢ଼ ମତେ ॥
ନିଷ୍ଠଳେ ମୋତେ ସେବା କରି । ସୁଖେ ସେ ତରେ ଭାବ ବାରି
ଯଦି ସନ୍ନ୍ୟାସୀ ଯୋଗ ବଳେ । ଷଡ଼ ଅଇରି ଇନ୍ଦ୍ରିମେଳେ ॥
ସଂସାର ନ ପାରଇ ଜିଣି । ଗୁଣ ବଚନ ନ ପ୍ରମାଣି ॥
ବିଷୟେ ନୋହିବ ବୈରାଗ୍ୟ । ପ୍ରଚଣ୍ଡ ଇନ୍ଦ୍ରିଗଣେ ବେଗ ॥
ଅଶାନ୍ତି ଧ୍ୟାନ ଚିତ୍ତେ ନିତ୍ୟେ । ମିଥ୍ୟା ଆରମ୍ଭ ଦଣ୍ଡ ହସ୍ତେ ॥
କେବଳ ସନ୍ନ୍ୟାସ ଲକ୍ଷଣ । ତାରେ ହସନ୍ତି ଦେବଗଣ ॥
ସେ ନୁହେଁ ଭବଜଳୁ ପାର । ଆତ୍ମା ନିନ୍ଦିତ ଦୁରାଚାର ॥
ଉଭୟଲୋକେ ତାର ନାଶ । ଜନେ କରନ୍ତି ଉପହାସ ॥
କେହି ନକରେ ତାକୁ ରକ୍ଷା । ବିନାଶ ହେତୁ ତା'ର ଦୀକ୍ଷା ॥
ଅହିଂସା ସନ୍ନ୍ୟାସ ଲକ୍ଷଣ । କୃଷ୍ଣ କହନ୍ତି ପୁଣ ପୁଣ ॥
ତିତିକ୍ଷା ସମ ଦମ ଶାନ୍ତି । ବାନପ୍ରସ୍ଥ ଏହିଗତି ॥
ଗୃହସ୍ଥ ସର୍ବ ଜୀବ ରକ୍ଷା । ବ୍ରାହ୍ମଣ ସେବା ଗୁରୁ ଦୀକ୍ଷା ॥
ତପ ଶଉଚ ମୋ ଭଜନ । ଏ ଆଦି ବ୍ରହ୍ମଚର୍ଯ୍ୟ ଗୁଣ ॥
ପତ୍ନୀ ସଙ୍ଗମ ଋତୁ କାଳେ । ଗୃହସ୍ଥ ଧର୍ମ ଏ ଶୟଳେ ॥
ଏ ଚାରିଭାବେ ବର୍ଣ୍ଣଗୁଣ । କହିଲି ଆଶ୍ରମ ଲକ୍ଷଣ ॥
ଏଣୁ ମୁଁ ଧର୍ମ ମୋର ପାଦେ । ଯେ ନର ଭଜେ ଅପ୍ରମାଦେ ॥
ସେ ମୋତେ ଦେଖେ ସର୍ବଭୂତେ । ଏ ରୂପେ ଅଛି ମୁଁ ଜଗତେ ॥
ମୋର ଭଜନ ବିନୁ ଆନେ । ଯେ ନର କେବେହେଁ ନଜାଣେ
ଦୃଢ଼ ଭଗତି ଯୋଗବଳେ । ପଶେ ମୋ ଚରଣ କମଳେ ॥
ମୁଁ ବ୍ରହ୍ମ ଉପଜି କାରଣ । ସଂସାର ପ୍ରଳୟ ତାରଣ ॥
ସର୍ବଭୂତଙ୍କ ଆତ୍ମା ମୁହିଁ । ମୋର ଭଜନ ମୋତେ ପାଇ ॥
ମୋର ଭଜନ ବିନୁ ତାର । ନୋହଇଁ ଭବଜଳୁଁ ପାର ॥

ଉଦ୍ଧବ ପଚାରିଲା ଯେତେ । ଆଶ୍ରମ ଧର୍ମ ଶାସ୍ତ୍ର ମତେ ॥
ତୁ ଏହା ଦୃଢ଼ ଚିତ୍ତେ ଧର । ହସି ବୋଲନ୍ତି ଦାମୋଦର ॥
ସେ ହରି ଅଭୟ ଚରଣେ । ବ୍ରାହ୍ମଣ ଜଗନ୍ନାଥ ଭଣେ ॥
କେବଳ ଦାସ ଭାବେ ମତି । ଚରଣେ ଶରଣ ମୋ ନିତି ॥
ପରମ ଗତି ମୁକ୍ତି ଯେହୁ । ତା ବିନୁ ଅନ୍ୟ ଆଶ୍ରେ ନୋହୁ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ କୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ଊନବିଂଶୋଽଧ୍ୟାୟଃ ।*

## ବିଂଶ ଅଧ୍ୟାୟ

## ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ଭଗବାନ । ଶୁଣ ହେ ଭଗତ ପ୍ରଧାନ ॥
ବିମଳ ସୃଷ୍ଟି ତତ୍ତ୍ୱଜ୍ଞାନ । ଯେ ଅନୁମାନ ବିଚକ୍ଷଣ ॥
ବିମଳ ମତି ଧୀରବାଣୀ । ଜଗତ ମାୟା ମାତ୍ର ଜାଣି ॥
ସେ ଜ୍ଞାନ ଦେଇ ମୋ ଚରଣେ । ଭାବେ ଖଟିବ ଭୃତ୍ୟ ପଣେ ॥
ମୋତେ ବାଞ୍ଛନ୍ତି ଜ୍ଞାନୀ ଜନ । ମୁଁ ତାଙ୍କ ଇଷ୍ଟ ପ୍ରିୟଜନ ॥
ଯେ ମୋତେ ଜ୍ଞାନ ବଳେ ଧରେ । ସେ ସର୍ବ କାମ ପରିହରେ
ତୀର୍ଥ ଗମନ ତପ ଦାନେ । ଯଜ୍ଞ ଦେବତା ଆରାଧନେ ॥
କୋଟିଏ କୋଟି ବ୍ରତଧର୍ମ । ଏ ଆଦି ଯେତେ ପୁଣ୍ୟକର୍ମ ॥
ନାନା ପ୍ରକାରେ ତପ କରି । ଜ୍ଞାନ କଳାକୁ ନୋହେ ସରି ॥
ଉଦ୍ଧବ ଏହା ବୁଝି ମନେ । ତୁ ମୋତେ ଭଜ ତତ୍ତ୍ୱଜ୍ଞାନେ ॥
ମୋତେ ଭଜିଣ ଖଣ୍ଡ ଭ୍ରମ । ତେବେ ଛାଡ଼ିବ ମତି ଭ୍ରମ ॥
ପୂର୍ବେ ଅଶେଷ ମୁନିଗଣେ । ଜ୍ଞାନେ ଭଜିଲେ ମୋ ଚରଣେ ॥
ସଂଶୟ ଛାଡ଼ି ଶୁଦ୍ଧମନେ । ଗମିଲେ ବୈକୁଣ୍ଠ ଭୁବନେ ॥
ଏ ସର୍ବ ମାୟା ନାନା ମତେ । ଯେ ଆଶ୍ରେ କରେ ତୋଷ ଚିତ୍ତେ
ଏ ମାୟା ପ୍ରଳୟେ ନଥାଇ । ପୂର୍ବେ ତା କେହି ନ ଜାଣଇ ॥
ମଧ୍ୟେ ବିକାଶେ ନାନା ରୂପେ । ଯୋଗ ମୋହିନୀ ମାୟାକଳ୍ପେ ॥
ଏଣୁ ଏ ଆଦି ମଧ୍ୟ ଅନ୍ତ । କେବଳ ମାୟାମାତ୍ର ସତ୍ୟ ॥
ଉଦ୍ଧବ କୃଷ୍ଣ ମୁଖୁ ଶୁଣି । ଜ୍ଞାନ ମହିମା ପରିମାଣି ॥
ଜ୍ଞାନ ବୈରାଗ୍ୟ କର୍ମ ଯେତେ । ପୁଛିଲା କୃଷ୍ଣ ପାଦ ଗତେ ॥
ହେ ବିଶ୍ୱେଶ୍ୱର ନାରାୟଣ । ଅନାଦି ପୁରୁଷ ପୁରାଣ ॥
ତୁ ବିଶ୍ୱରୂପୀ ବିଶ୍ୱ ଦେହ । ଭକ୍ତି ଲକ୍ଷଣ ମୋତେ କହ ॥

ବିଶୁଦ୍ଧ ବିଜ୍ଞାନ କାରଣ । ଯାହା ବାଞ୍ଛନ୍ତି ମୁନିଗଣ ॥
ଘୋର ସଂସାର ମାୟାଭ୍ରମେ । ମୁହିଁ ତୃଷିତ ପଥ ଶର୍ମେ ॥
ତୋହର କଥାମୃତ ମୋତେ । ପାନ କରାଇ ଶ୍ରୁତି ପଥେ ॥
ତୋ ପାଦ ପଦ୍ମେ ଛତ୍ର ପ୍ରାୟେ । ଶୀତଳ ମଧୁ ଧାରା ବହେ ॥
ସେ ପାଦ ପଦ୍ମେ ମୋର ଆଶା । ଭାବାବ୍ଧି ଚରଣେ ଭରସା ॥
ଏ କାଳ ସର୍ପ ଏ ଶରୀରେ । କୋପେ ଦଂଶଇ ନିରନ୍ତରେ ॥
ମୁଁ ମୂଢ଼ ନିଜ ପଥେ ହୁଡ଼ି । ଭ୍ରମଇ ଅନ୍ଧ କୂପେ ପଡ଼ି ॥
ତୁ ନାଥ ଶରଣ ସୋଦର । ଏ କୂପୁଁ କୃପାୟେ ଉଦ୍ଧର ॥
ତୋର ବଚନ ସୁଧା ଧାରେ । ବରଷା କର ମୋର ଶିରେ ॥
ଏମନ୍ତ ଭକ୍ତ ବାକ୍ୟ ଶୁଣି । ହସି ବୋଲନ୍ତି ଚକ୍ରପାଣି ॥

## ଶ୍ରୀ ଭଗବାନ ଉବାଚ

ଶୁଣ ଉଦ୍ଧବ ସାମରଥା । ଯେ ପୂର୍ବେ ଇତିହାସ କଥା ॥
କୁରୁ ପାଣ୍ଡବ ଯୁଦ୍ଧ ଅନ୍ତେ । ଏ କଥା ଭୀଷ୍ମଙ୍କ ଅଗ୍ରତେ ॥
ପଣ୍ଡୁ କୁମର ଯୁଧିଷ୍ଠିର । ଧର୍ମେ ସେ ଜିଣିଲା ସମର ॥
ଜ୍ଞାତି ବାନ୍ଧବ କୁଳ କ୍ଷୟେ । ବ୍ୟାକୁଳ ହୃଦୟ ସଂଶୟେ ॥
ପୁଚ୍ଛିଲେ ମୋର ବିଦ୍ୟାମାନେ । ଯେ ପ୍ରଶ୍ନ ଭୀଷ୍ମଙ୍କ ବଚନେ ॥
ସେ ମୋକ୍ଷ ଧର୍ମେ ଯାହା କହି । ଶ୍ରବଣେ ଶୁଣି ଅଛି ମୁହିଁ ॥
ଏବେ ତୁ ସାବଧାନେ ଶୁଣ । ବୈରାଗ୍ୟ ମୁକତି ଲକ୍ଷଣ ॥
ଭୀଷ୍ମ ବଦନୁ ଅଛି ଶୁଣି । ଶୁଣ କହିବା ପରିମାଣି ॥
ଜଗତ କାରଣ ସମସ୍ତେ । ଶାସ୍ତ୍ର କହନ୍ତି ନାନା ମତେ ॥
ବିଚାରି ଜାଣିମା ସାକ୍ଷାତେ । ବିବେକ ବୁଦ୍ଧି ଅନୁମତେ ॥
ଯେ ଜ୍ଞାନ ତତ୍ତ୍ୱ ମୋର ମତ । ତା ବିନୁ କେହି ନୋହେ ସତ୍ୟ
ଯେ ତତ୍ତ୍ୱ ଜ୍ଞାନ ପୁରାତନ । ଜଗତ ଉତ୍ପତ୍ତି କାରଣ ॥
ଜନ୍ମ ମରଣ ଏକ ମତେ । ଦୁଃଖ ସନ୍ତାପ ଆଦି ଯେତେ ॥
ଆଦ୍ୟନ୍ତ ମଧ ଏ ପ୍ରମାଣ । ଏ ସବୁ ମିଥ୍ୟା ବୋଲି ଜାଣ ॥
ଯାହାକୁ ଆଦି ଅନ୍ତ ମଧେ । ବିନାଶ ନଦେଖି ପ୍ରମାଦେ ॥
ସେ ଜ୍ଞାନ ସତ୍ୟ ବୋଲି ଜାଣି । ଅଧିକ ମିଥ୍ୟା ପରିମାଣି ॥
ନୟନେ ଦେଖି ଶୁଣି କର୍ଣ୍ଣେ । ଯେ ଅବା କରି ଅନୁମାନେ ॥
ବିକଳ୍ପ ସଂକଳ୍ପ କାରଣେ । ବିଚାର ନୋହେ ସେ ପ୍ରମାଣେ ॥
କର୍ମର ଫଳ ଏ ଜଗତ । କର୍ମ ସରିଲେ ହୋଏ ହତ ॥
ସ୍ଥାବର ବ୍ରହ୍ମଲୋକ ଯାଏ । କର୍ମ ସରିଲେ ହୋଏ କ୍ଷୟେ ॥
ପ୍ରସନ୍ନେ କହିଲି ମୁଁ ତୋତେ । ଭକ୍ତି ମହିମା ଜ୍ଞାନ ଯେତେ ॥
ଯେ ଭକ୍ତି ମୁକ୍ତିର ଲକ୍ଷଣ । ତହିଁର ଶୁଣ ଯେତେ ଗୁଣ ॥
ମୋହର କଥା ମୃତ ବାଣୀ । ଯେ ପ୍ରାଣୀ ନିତ୍ୟେ ଚିତ୍ତେ ଶୁଣି ॥
ବଦନେ କରନ୍ତି କୀର୍ତ୍ତନ । ସୁସ୍ୱରେ ଗାଏ ଅନୁକ୍ଷଣ ॥
ମୋର ପୂଜାରେ ଏକମତି । ଆଦରେ କରେ ନାନା ସ୍ତୁତି ॥
ମୋର ବ୍ୟାପାରେ ତତପର । ସାଷ୍ଟାଙ୍ଗେ କରେ ନମସ୍କାର ॥
ଉଦ୍ଧବ ଯେ ମୋର ଭଗତ । ଅଧିକେ ପୂଜା କର୍ମେ ରତ ॥
ମୋତେ ଦେଖିବ ସର୍ବ ଭୂତେ । ନିରତେ ପ୍ରାଣୀଙ୍କର ହିତେ ॥
ମୋର କାରଣେ କର୍ମ ଯେତେ । ଆଦର କରୁଥିବ ନିତ୍ୟେ ॥
ମୋର ମହିମା ଯେତେ ଗୁଣ । ଆନନ୍ଦେ କହୁଥିବ ଶୁଣ ॥
ଅଧିକେ କର୍ମ କର ଯେତେ । ଅନ୍ତରେ ସମର୍ପିବ ମୋତେ ॥
ଆଶ ନକରି କର୍ମ ଫଳେ । ଶରଣ ମୋ ପାଦ କମଳେ ॥
କର୍ମେ ମିଳିବ ଯେତେ ଭୋଗ । ମୋହର ପ୍ରୀତି ଅର୍ଥେ ଯୋଗ
ମୋ କାର୍ଯ୍ୟ ଅର୍ଥେ ସମର୍ପଣ । ଯେ ଅବା ତପ ଯଜ୍ଞ ଦାନ ॥
ଅର୍ପଣ କରି ସର୍ବ ମୋତେ । ବ୍ରହ୍ମ ଆନନ୍ଦ ସତ୍ୟ ଚିତ୍ତେ ॥
ଦେହ ଜୀବନ ଦେଇ ମୋତେ । ବନ୍ଦିବ ମୋହର ଅଗ୍ରତେ ॥
ଏ ସର୍ବ ଭଗତି ଉପାୟେ । ଯେ ଅବା ସାଧେ ନିଜ ଦେହେ
ତାର ଭଗତି ମୋର ପାଦେ । ନିଶ୍ଚଳ ହୋଇ ଅପ୍ରମାଦେ ॥
ତାର ସାଧନା ସିଦ୍ଧି ଯେତେ । ମୋ ତହୁଁ ଅନ୍ୟ ଅଛି କେତେ ॥
ଦଣ୍ଡ ନିମିଷେ କିବା କ୍ଷଣେ । ଯେ ପ୍ରାଣୀ ମୋହର ଚରଣେ ॥
ମନ ନିଶ୍ଚଳ କରେ ଯେବେ । ଜ୍ଞାନ ବୈରାଗ୍ୟ ଲଭେ ତେବେ
ସ୍ୱଭାବେ ଭକ୍ତି ଉପାଦାନ । ଦେଖଇ ଆତ୍ମା ତତ୍ତ୍ୱଜ୍ଞାନ ॥
ହୃଦୟେ ଭକ୍ତି ତା ଉଦୟେ । ବୈରାଗ୍ୟ ଦେଖଇ ନିଶ୍ଚୟେ ॥
ଅଣିମା ଆଦି ଅଷ୍ଟ ବିଧି । ନିକଟେ ଥାନ୍ତି ନିରବଧି ॥
ଏମନ୍ତେ କୃଷ୍ଣ ବାକ୍ୟ ଶୁଣି । ଉଦ୍ଧବ ଯୋଡ଼ି ବେନିପାଣି ॥
ବୋଲଇ କୃଷ୍ଣ ମୁଖ ଚାହିଁ । ଭୋ ନାଥ ଶୁଣ ଭାବଗ୍ରାହୀ ॥
ତୋହର ଅଭୟ ଚରଣେ । ମୁହିଁ ପଚାରଇ ଦାସ ପଣେ ॥
ଯମ ନିୟମ ଶମ ଦମ । କେତେ ପ୍ରକାର ଯଥାକ୍ରମ ॥
ତିତିକ୍ଷା ଧୃତି ତପଦାନ । କହ ହେ ପ୍ରଭୁ ଭଗବାନ ॥
ଶଉଚ ତମ ସତ୍ୟ ତ୍ୟାଗ । ଧନ ଦକ୍ଷିଣା ଯଜ୍ଞ ଭାଗ ॥
କିରୂପେ ବିଦ୍ୟା ଲଜ୍ଜା ସରି । କି ସୁଖ ଦୁଃଖ ଲାଭ କରି ॥
କେ ସାଧୁ ମାର୍ଗ କେ କୁପଥ । କେ ମୂର୍ଖ କେ ଅବା ପଣ୍ଡିତ ॥
କାହାକୁ ବୋଲି ସ୍ୱର୍ଗ ଲୋକ । କେ ଅବା ଅଟଇ ନରକ ॥
ଧନାଢ୍ୟ ଜାଣିବା କେମନ୍ତେ । ଦୁଃଖୀ ଦରିଦ୍ର ଅବା କେତେ ॥
କାହାକୁ ବୋଲି ବନ୍ଧୁ ଘର । କେ ଅବା କୃପଣ ଈଶ୍ୱର ॥
ଏ ଆଦି ପଚାରିଲି ତୋତେ । ଭୋ ନାଥ କହ ଦୟାଚିତ୍ତେ ॥
ମୋ ଚିତ୍ତ ସଂଶୟ ପ୍ରମାଣୁ । ଏ ପ୍ରଶ୍ନ ପଚାରିଲି ତେଣୁ ॥

ଯେ ଅବା ଘଟେ ଯେଉଁ ମତେ । ଭୋ ନାଥ କହହେ ଯଥାର୍ଥେ
ପୁରୁଷ ସିଂହ ଚକ୍ରପାଣି । ଏମନ୍ତେ ଭୃତ୍ୟ ବାକ୍ୟ ଶୁଣି ॥
ଚିତ୍ତେ ସକଳ ଅବଧାରି । କହନ୍ତି ପ୍ରଭୁ ଦଇତ୍ୟାରି ॥

### ଶ୍ରୀ ଭଗବାନ ଉବାଚ

ଯେ ପ୍ରଶ୍ନ ପଚାରିଲୁ ମୋତେ । ଉଦ୍ଧବ ଶୁଣ ଏକ ଚିତ୍ତେ ॥
ବଚନ ମଧ୍ୟେ ସତ୍ୟ ବାଣୀ । ନିର୍ଲୋଭ ପରଧନେ ଜାଣି ॥
ଲଜ୍ଜ୍ୟା ସକଳ ସଂଗ ତ୍ୟାଗ । ଧନ ସଞ୍ଚୟେ ଯେ ବୈରାଗ୍ୟ ॥
ମଉନ ବ୍ରହ୍ମଚର୍ଯ୍ୟ ଗୁଣ । ଧଇର୍ଯ୍ୟ ଆସ୍ତିକ କାରଣ ॥
ଲୋକ ସକାଶୁ ଭୟ କ୍ଷମା । ଦ୍ୱାଦଶ ଏ ଯମ ମହିମା ॥
ଶଉଚ ତମ ଯଜ୍ଞ ହୋମ । ଆନନ୍ଦେ ମୋର ପୂଜାର୍ଚ୍ଚନ ॥
ଆଚାର୍ଯ୍ୟ ସେବା ତୀର୍ଥ ଗତି । ଶ୍ରଦ୍ଧାରେ ପୂଜିବ ଅତିଥି ॥
ସମସ୍ତ ଚେଷ୍ଟା ପରହିତେ । ସନ୍ତୋଷ ଅବଲମ୍ବ ଚିତ୍ତେ ॥
ନିୟମ ଦ୍ୱାଦଶ ଏ ଜାଣ । ଏତ ଜୀବର ପରିତ୍ରାଣ ॥
ମୋତେ ଚିନ୍ତିଲେ ବୁଦ୍ଧିସମ । ଇନ୍ଦ୍ରିୟ ସଂଯମି ମନେ ଦମ ॥
ଜିହ୍ୱା ଉପସ୍ଥ ଜୟ ଧୃତି । ତିତିକ୍ଷା ସର୍ବ ଦୁଃଖ ଶାନ୍ତି ॥
ତାର କୁଶଳ ତ୍ୟାଗ ଦାନ । ତପ ସର୍ବ କାମ ବର୍ଜନ ॥
ନିଜ ସ୍ୱଭାବ ଯେତେ ଜିଣି । ସଉର୍ଯ୍ୟ ଭାବ ତାକୁ ଭଣି ॥
ସମାନ ଦୃଷ୍ଟି ସର୍ବ ଭୂତେ । ଯେ ସତ୍ୟ ପଦ ମୋର ମତେ ॥
ସକଳ କର୍ମ ଫଳ ତ୍ୟାଗ । ଶଉଚ ଲକ୍ଷଣ ସ୍ୱଭାବ ॥
ସଂସାରେ ସନ୍ନ୍ୟାସ ଲକ୍ଷଣ । ଉତ୍ତମ ତ୍ୟାଗ ଏହା ଜାଣ ॥
ଧନାଢ୍ୟ ବୋଲି ଯେ ସଂସାରେ । ଯେ ନିତ୍ୟ ଇଷ୍ଟ ଧର୍ମ ପାଳେ ॥
ଦକ୍ଷିଣା ଜ୍ଞାନ ଉପଦେଶ । ମୁଁ ଯଜ୍ଞ ରୂପେ ହୃଷୀକେଶ ॥
ସୁଦୃଢ଼େ ପବନ ଧାରଣ । ପରମ ବଳ ଏ ଲକ୍ଷଣ ॥
ଈଶ୍ୱର ସେବା ମହା ଭୋଗ । ମୋର ଭକତି ବଡ଼ ଲାଭ ॥
ପ୍ରାଣୀ ବିଷୟ ଭେଦ ବୁଦ୍ଧି । ନ କରେ ସେ ବିଦ୍ୟା ପ୍ରସିଦ୍ଧି ॥
ମିଳିତ କର୍ମେ ଯେ ଡରଇ । ଉଦ୍ଧବ ଜାଣ ଲଜ୍ଜ୍ୟା ସେହି ॥
ସକଳ ଭାବେ ଅନୁପେକ୍ଷ । ଈଶ୍ୱର ଭାବଟି ପ୍ରତ୍ୟକ୍ଷ ॥
ସମେ ଯେ ସୁଖ ଦୁଃଖ ମଣି । ସେ ମହା ସୁଖ ନିତ୍ୟେ ଭଣି ॥
ନିରତେ କାମ ଭୋଗେ ସୁଖ । ତାହାକୁ ବୋଲି ମହାଦୁଃଖ ॥
ଯେ ଆତ୍ମା ବନ୍ଧ ମୋକ୍ଷ ଜାଣେ । ସେ ପ୍ରାଣୀ ପଣ୍ଡିତ ବଖାଣେ ॥
ଦେହକୁ ବୋଲି ନିଜ ଘର । ଏଣେ ଯେ କରେ ଅହଂକାର ॥
ତାହାକୁ ମୂର୍ଖ ବୋଲି ଜାଣି । ହସି କହନ୍ତି ଚକ୍ରପାଣି ॥
ମୋତେ ଭଜନ୍ତି ଯେ ଯେମନ୍ତେ । ଉତ୍ତମ ପଥ ଏ ଜଗତେ ॥
ତେଣେ ଚଞ୍ଚଳ ହୋଇ ଚିତ୍ତ । ଉଦ୍ଧବ ସେହି ସେ କୁପଥ ॥
ଯାର ଉଦୟେ ସତ୍ତ୍ୱଗୁଣ । ତାହାକୁ ସ୍ୱର୍ଗ ବୋଲି ଜାଣ ॥
ପ୍ରାଣୀ ପରମ ବନ୍ଧୁ ମୁହିଁ । ଗୁରୁଙ୍କ ପ୍ରାୟେ ହିତ କହି ॥
ଉଦ୍ଧବ ଉତ୍ତମ ଏ ଘର । ଅଟେ ମନୁଷ୍ୟ କଳେବର ॥
ମୋ ସର୍ବ ଗୁଣେ ଯାର ମନ । ତାର ସମୀପେ ସର୍ବ ଧର୍ମ ॥
ମୋ ଭାବ ଚିତ୍ତେ ଯାର ନାହିଁ । ସଂସାରେ ଦରିଦ୍ରଟି ସେହି ॥
ଅର୍ଜିତ ଇନ୍ଦ୍ରିୟ ଯାହାର । ସଂସାରେ କୃପଣ ସେ ନର ॥
ତ୍ରିଗୁଣ ସଂଗ ଯାର ନାହିଁ । ଉଦ୍ଧବ ଈଶ୍ୱରଟି ସେହି ॥
ଯେତେ ଏ ପ୍ରଶ୍ନ କଲୁ ତୁହି । କହିଲୁ ବୁଝ ମନ ଦେଇ ॥
ଅଧିକ ବିଶେଷ ବର୍ଣ୍ଣନେ । ପ୍ରସ୍ତାବେ ନାହିଁ ପ୍ରୟୋଜନେ ॥
ସକଳ ଭାବେ ଗୁଣ ଦୋଷ । ଏଣୁ ଏ ଜଗତ ଅଶେଷ ॥
ବୋଲଇ ବିପ୍ର ଜଗନ୍ନାଥ । ଶ୍ରୀ ଏକାଦଶ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ କୃଷ୍ଣ ଉଦ୍ଧବ ସମ୍ବାଦେ ଭକ୍ତିଯୋଗ କଥନଂ ନାମ ବିଂଶୋଽଧ୍ୟାୟଃ ।*

## ଏକବିଂଶ ଅଧ୍ୟାୟ

ଉଦ୍ଧବ କୃଷ୍ଣମୁଖ ଚାହିଁ । ବୋଲଇ ଶିରେ କର ଦେଇ ॥
ଭୋ ନାଥ ବେଦ ତୋର ବାଣୀ । ବିଧି ନିଷେଧ ମାର୍ଗେ ଭଣି ॥
ସର୍ବ ବିଷୟ ନାନା ଭେଦ । କହଇ ଶୁଣ ଦୋଷ ବାଦ ॥
ସ୍ୱର୍ଗ ନରକ ବେନି ଭାଗେ । ଉପନିଷଦ ବ୍ରହ୍ମଭାଗେ ॥
କର୍ମ ସାଧନ୍ତି ନାନା ମତେ । ଅନ୍ତେ ଗମନ୍ତି ବେନି ପଥେ ॥
ସେ ବେଦ ଜଗତେ ଈଶ୍ୱର । ସଂସାର ଚକ୍ର ମୂଳାଧାର ॥
ଏ ବେଦ ସର୍ବଭୂତେ ଆଖି । ବାହ୍ୟ ଅନ୍ତରେ କର୍ମସାକ୍ଷୀ ॥
ଏ ମାର୍ଗେ ଗୁଣ ଦୋଷ ସାର । ଏଣେ ନ ତୁଟଇ ସଂସାର ॥
ତୋ ମୁଖୁଁ ମୁହିଁ ପୂର୍ବେ ଶୁଣି । ଏକଥା ମନେ ପରିମାଣି ॥
ସଂଶୟ କଲି ଭ୍ରମ ଚିତ୍ତେ । ଭୋ ନାଥ କହ ମୋ ଅଗ୍ରତେ ॥
ଶୁଣି କହନ୍ତି ଭଗବାନ । ଉଦ୍ଧବ ହୁଅ ସାବଧାନ ॥
ଉଦ୍ଧବ ଏକଚିତ୍ତେ ଶୁଣ । ଏ ଜୀବଲୋକ ପରିତ୍ରାଣ ॥
ଭଗତି କର୍ମଜ୍ଞାନ ଘେନି । ଏମନ୍ତ ଯୋଗ ମାର୍ଗ ଚିହ୍ନି ॥
ଏ ତିନି ପଥ ଅନ୍ୟମତେ । ଉପାୟେ ନ ଦେଖି ଜଗତେ ॥
ଏ କଥା ଶୁଣ ମନ ଦେଇ । ଉତ୍ତମ ଶିଷ୍ୟେ ଏହା କହି ॥
ଏ ତିନିଯୋଗ ତୋର ଆଗେ । ଶୁଣ କହିବା ବେଦଭାଗେ ॥
କର୍ମର ଫଳ ତ୍ୟାଗ କରି । ନିର୍ଦ୍ଦୋଷ ଭାବେ ଚିତ୍ତ ଧରି ॥
ଦିନ ବଞ୍ଚଇ ଦୃଢ଼ଭାବେ । ସେ ଅଧିକାରୀ ଜ୍ଞାନ ଯୋଗେ ॥

ଯାହାର କାମ ଭୋଗ ଚିତ୍ତେ । ନିର୍ଦ୍ଦୋଷ ନୋହେ କଦାଚିତେ ॥
ତାହାର କର୍ମ ଯୋଗ ସାର । ବେଦ ନିର୍ମିତ ଏ ସଂସାର ॥
ବିଷୟ ରସ ଯାର ଚିତ୍ତେ । ବୈରାଗ୍ୟ ସମ୍ଭବି କିଞ୍ଚିତେ ॥
ତାହାକୁ ବୋଲି ଜ୍ଞାନ ଯୋଗୀ । ନିର୍ଲେପ ଜ୍ଞାନେ ସୁଖ ଭୋଗୀ ॥
ମୁଁ ଯାକୁ କରଇ ସଦୟେ । ତାହାର ମହାଭାଗ୍ୟ ହୋଏ ॥
ମୋ ନାମ ଶ୍ରବଣ କୀର୍ତ୍ତନେ । ଶ୍ରଦ୍ଧା ଉପୁଜେ ଯାର ମନେ ॥
ସେ ଭକ୍ତି ଯୋଗେ ଅଧିକାରୀ । କେବେ ହେଁ ନୋହଇ ସଂସାରୀ ॥
ସକଳ ସିଦ୍ଧି ସେ ସାଧଇ । ତାହାର କର୍ମ ବନ୍ଧ ନାହିଁ ॥
ଯାବତ ଜ୍ଞାନ ନୋହେ ଚିତ୍ତେ । କର୍ମ ସାଧିବ ଲୋକମତେ ॥
ମୋହର ଅମୃତ କଥା ପାନେ । ଶ୍ରଦ୍ଧା ହୁଅଇ ଯାର ମନେ ॥
ତାବତ ବେଦ ଅଧିକାରେ । କର୍ମ କରିବ ଏ ସଂସାରେ ॥
ସେ ତିନିଯୋଗ ବୀର ତୋତେ । କହିଲି ସ୍ୱକର୍ମ ଉଚିତେ ॥
ସ୍ୱଧର୍ମେ ସ୍ୱଭାବେ ଜଗତେ । ଯଜ୍ଞାଦି କର୍ମ କରେ ଯେତେ ॥
ସକଳ ଫଳ ଆଶା ତେଜ । କେବଳ ମୋ ଚରଣେ ଭଜ ॥
ଉଦ୍ଧବ ରହ ତୁ ନିଶ୍ଚିନ୍ତେ । ନିଗମ ଦୁଃଖ ସୁଖ ପଥେ ॥
ସ୍ୱର୍ଗ ସମ୍ପଦେ ଇଚ୍ଛା ନାହିଁ । ନରକେ ପଡ଼ିବ ସେ କାହିଁ ॥
ମୋ ଭାବେ ରହେ ସେ ନିରତେ । କୁକର୍ମ ନ ଭଜେ ତା ଚିତ୍ତେ ॥
ଉଦ୍ଧବ ଚିତ୍ତେ ଅନୁମାନ । ଏ ମୋ ବିଶୁଦ୍ଧ ତତ୍ତ୍ୱଜ୍ଞାନ ॥
ଏଣୁ ଏ ସ୍ୱର୍ଗବାସୀ ଜନେ । ନିତ୍ୟେ ବଞ୍ଚନ୍ତି ସୁଖମନେ ॥
ଭାରତ ଭୂମି ମଧ୍ୟେ ଯାଇ । ମନୁଷ୍ୟ ଦେହ ଆମ୍ଭେ ପାଇ ॥
ଭଗତି ଯୋଗ ଅନୁକ୍ଷଣେ । ଭଜିବୁ ଶ୍ରୀକୃଷ୍ଣ ଚରଣେ ॥
ନରକବାସୀ ଏହିମତେ । ନିତ୍ୟେ ବାଞ୍ଛନ୍ତି ହୃଦଗତେ ॥
ଦୁର୍ଲଭ ମନୁଷ୍ୟ ଶରୀର । ନରକ ନିସ୍ତାରଣ ଦ୍ୱାର ॥
ଆମ୍ଭେ ପାଇବୁ ତାହା କାହିଁ । ପୂର୍ବେ ଅର୍ଜିଲା ପୁଣ୍ୟ କାହିଁ ॥
ଏମନ୍ତେ ସ୍ୱର୍ଗ ନର୍କେ ଥାଇ । ନିତ୍ୟେ ବାଞ୍ଛନ୍ତି ଚିତ୍ତେ ଧ୍ୟାୟି ॥
କର୍ମ ସାଧନା ନାହିଁ ତହିଁ । ଏଣୁ ବାଞ୍ଛନ୍ତି ନରଦେହୀ ॥
ମନୁଷ୍ୟେ ସାଧି ଭକ୍ତିଯୋଗ । ସ୍ୱର୍ଗ ନରକ କାହିଁ ଭୋଗ ॥
ଏ ବୋଲ ବୁଝି ବୁଧଜନେ । ଏ ବେନି ଦେଖନ୍ତି ସମାନେ ॥
ସଂସାରେ ଈଶ୍ୱରର ମାୟା । ନିତ୍ୟେ ଚିନ୍ତିବ ନିତ୍ୟେ ଏହା ॥
ସ୍ୱର୍ଗ ନରକ ବେନିପଥେ । କେବେ ହେଁ ନ ଚିନ୍ତିବ ଚିତ୍ତେ ॥
ଏଣୁ ଏ ନର ଦେହ ବହି । ଯାବତ ମୃତ୍ୟୁ ନ ଘଟଇ ॥
ତାବତ ଜ୍ଞାନ ବଢ଼ାଇବାଗେ । ମୋହର ଭଗତି ଯୋଗ ମାର୍ଗେ ॥
ବେଗେ ମରଣ ମୁଖୁଁ ତର । ମନୁଷ୍ୟ ଦେହ ନୋହେ ଚିର ॥
ଏ ଦେହ ସର୍ବସିଦ୍ଧି ହେତୁ । ସଂସାର ପାର ସିନ୍ଧୁ ସେତୁ ॥
ଏ ଦେହ ବୃକ୍ଷେ ହଂସ ବସେ । ଅଜ୍ଞାନ ଫଳ ଲୋଭ ଆଶେ ॥

ବୃକ୍ଷ ଆବୋରି ଯମଦୂତେ । ଅମୋଘ ଖଡ୍ଗ ଘେନି ହସ୍ତେ ॥
ରାତ୍ର ଦିବସେ କାଟି ବଳେ । ବୃକ୍ଷକୁ ପାଡ଼ନ୍ତି ସମୂଳେ ॥
ଏଣୁ ଏ ବୃକ୍ଷେ ହଂସ ପକ୍ଷୀ । ଯମ କିଙ୍କର ଘାତ ଲେଖି ॥
ଯେ ଫଳ ଲୋଭ ଛାଡ଼ିମନେ । ସୁଜ୍ଞାନୀ ନିଜ ସୁଖ ପୂର୍ଣ୍ଣେ ॥
ରାତ୍ର ଦିବସ କାଳଦୂତେ । ଆୟୁଷ ହରନ୍ତି ନିରତେ ॥
ଏ ବୋଲ ବୁଝି ବୁଧ ନରେ । ଆକୁଳ କଳ୍ପିତ ଅନ୍ତରେ ॥
ଏ ଦେହ ଧର୍ମ ଦୂର କରି । ଅଜ୍ଞାନ ଚେଷ୍ଟା ପରିହରି ॥
ଶାନ୍ତି ସମାଧି ପୁଣ୍ୟ ଜ୍ଞାନେ । ନିତ୍ୟେ ନିର୍ଗୁଣ ଆତ୍ମାଧ୍ୟାନେ ॥
ସର୍ବ ଶରୀର ମଧ୍ୟ ସାର । ଦୁର୍ଲଭ ନର କଳେବର ॥
ସୁଲଭ ନାବ ରୂପେ ଘଟେ । ବନ୍ଧନ ଭବସିନ୍ଧୁ ତଟେ ॥
ଏ ଭାବେ ଗୁରୁ କର୍ଣ୍ଣଧାର । ମୁହିଁ ଅନୁକୂଳ ସମୀର ॥
ଏମନ୍ତ ନାବ ଥାଉଁ କୂଳେ । ଯେବା ନ ତରେ ଭବଜଳେ ॥
ଏ ଜୀବ ହୀନ ମୂଢ଼ମତି । ଏହାକୁ ବୋଲି ଆତ୍ମାଘାତୀ ॥
ସଂସାର କୂପେ ସେ ପତିତ । ଦୁର୍ଲ୍ଲଭ ଦେହେ ସେ ବଞ୍ଚିତ ॥
ଏଣୁ ନିର୍ମଳ ଚିତ୍ତେ ଜାଗି । ସର୍ବ ଆରମ୍ଭ ପରିତ୍ୟାଗୀ ॥
ଅଭ୍ୟାସ ବଳେ ଅନ୍ତର୍ଗତେ । ମନ ରୁନ୍ଧିବ ଦୃଢ଼ ଚିତ୍ତେ ॥
ଏ ମନ ସ୍ୱଭାବେ ଚଞ୍ଚଳ । କେବେହେଁ ନୋହଇ ନିଶ୍ଚଳ ॥
ପବନ ଗତି ଅନୁରୋଧେ । ସମସାଧନ ଦୃଢ଼ ବନ୍ଧେ ॥
ପବନ ଦ୍ୱାରେ ମନ ଥୋଇ । ଆସନ ଦୃଢ଼ ବନ୍ଧେ ଦେଇ ॥
ଅଭ୍ୟାସେ ବଶ ହୋନ୍ତି ତାର । ପ୍ରାଣ ଇନ୍ଦ୍ରିୟ ଅହଙ୍କାର ॥
ଚଞ୍ଚଳମନ ଏଣେ ଧରି । ସାଧିବ ସର୍ବଗୁଣ ଭରି ॥
ପରମଯୋଗ ଏ ସାଧନ । ଅଭ୍ୟାସେ ମନ ନିରୋଧନ ॥
ଚଞ୍ଚଳ ତୁରଙ୍ଗ ଯେସନେ । କ୍ରମେ ସୁମାଧ ଦିନେ ଦିନେ ॥
ଅଳପ ଅଳପ ଅଭ୍ୟାସେ । ମନ ପବନ ସ୍ଥାପି ବସେ ॥
ନିଶ୍ଚିନ୍ତେ ରହେ ଦେହ ବହି । ସଂସାର ସାକ୍ଷୀ ପ୍ରାୟ ହୋଇ ॥
ଦେଖଇ ଜନ୍ତୁଙ୍କ ମରଣ । ଭବସାଗରେ ସଞ୍ଚରଣ ॥
ପ୍ରସନ୍ନ ହୋଇ ଯେବେ ମନ । ଅସତ୍ୟ ଦେଖେ ତ୍ରିଭୁବନ ॥
ଗୁରୁବଚନେ ମନ ସ୍ଥିର । ବିଷୟେ ବୈରାଗ୍ୟ ଯାହାର ॥
ନିରତେ ଚିତ୍ତ ସ୍ଥିର ମନା । କର୍ମେ ସେ ଖଣ୍ଡେ ଦୁର୍ବାସନା ॥
ସଙ୍କଳ୍ପେ ତୁଟେ ନିରବଧି । ସମାଦି ଯୋଗପଥ ସିଦ୍ଧି ॥
ମନକୁ ତତ୍ତ୍ୱଜ୍ଞାନେ ଜାଣି । ଭଗତି ଯୋଗ ପରିମାଣି ॥
ମୋ ରୂପ କରି ଉପାସନା । କୀର୍ତ୍ତନ ଅର୍ଚ୍ଚନା ବନ୍ଦନା ॥
ମନ ସଞ୍ଜମ କରି ହୃଦେ । ନିଷ୍ଫଳେ ଦେଇ ମୋର ପାଦେ ॥
ଆନନ୍ଦେ ଭ୍ରମଇ ଶୟନେ । ସେ ଯେବେ ଦୁଷ୍ଟି ସଙ୍ଗ ବଳେ ॥
ଯେବେ ନିନ୍ଦିତ କର୍ମକରେ । ସେ ପାପେ ମୋର ଧ୍ୟାନ ହରେ ॥

ମୋ ନାମ ଶ୍ରବଣ କୀର୍ତ୍ତନେ । ଶ୍ରଦ୍ଧା ଉପୁଜେ ଯାର ମନେ ॥
ନିମିଷେ କର୍ମ ମାର୍ଗ ତେଜେ । କେବଳ ଦୃଢ଼େ ମୋତେ ଭଜେ ॥
ସଙ୍କଟେ ଭୋଗ ଦୁଃଖମୟେ । ଯଦି ଛାଡ଼ନ୍ତି ଦୁଃଖ ନୋହେ ॥
ଯେବେ ମିଳିବ ଅକସ୍ମାତେ । ଆନନ୍ଦେ ସମର୍ପିବ ମୋତେ ॥
ପୀରତି କରି ମୋ ଚରଣେ । ଭାବେ ଭଜିବ ଅନୁକ୍ଷଣେ ॥
ସୁଦୃଢ଼ ଭଗତି ସମାଜେ । ମୁଁ ତାଙ୍କ ହୃଦୟ ପଙ୍କଜେ ॥
ବସଇ କାମ ଦୂର କରି । ନିର୍ମଳ ଜ୍ୟୋତି ରୂପ ଧରି ॥
ପାପ ନ ରହେ ତାର ଦେହେ । ସଂସାରୁ ତର ଏ ଉପାୟେ ॥
ଯେବେ ସକଳ ଭୂତେ ଏକେ । ମୁଁ ବସିଥିଲା ପ୍ରାୟେ ଦେଖେ
ସଂଶୟ ଗ୍ରନ୍ଥି ତାର ହୃଦେ । ମୁହିଁ ଖଣ୍ଡଇ ଅପ୍ରମାଦେ ॥
ସକଳ କର୍ମ ତତକ୍ଷଣେ । ପହଇ ମୋହର ସ୍ମରଣେ ॥
ଏ ଭାବ ବୁଝ ନିରବଧି । ଯତ୍ନେ ଭଗତି ଯୋଗ ସାଧି ॥
ଏ ଭଗତି ଯୋଗ ଯେତେ । ଯେ ଯୋଗୀ ଭଜେ ଦୃଢ଼ଚିତ୍ତେ
ସେ ମହାଶୟ ଏ ଯୁଗତେ । ଜ୍ଞାନ ବୈରାଗ୍ୟ ଯୋଗମତେ ॥
ଏଣୁ ସଂସାର ଯୋଗୀଜନେ । ନିର୍ବାଣ ପଦ ଉଚ୍ଚାରଣେ ॥
ଜ୍ଞାନ ବୈରାଗ୍ୟ ଦୂର କରି । ମୋର ଭଗତି ଅନୁସରି ॥
ସର୍ବ ସଂଶୟ ଦୂର କରି । ମାୟା ସଂସାରୁ ଯାନ୍ତି ତରି ॥
ଏଣୁ ଭଗତି ମୋର ଏବେ । କଳ୍ପଇ ସ୍ୱର୍ଗ ଅପବର୍ଗେ ॥
ଆଉ ଅଧିକ ବାଞ୍ଛ ଯେତେ । ତା ପାଦେ ଖଟନ୍ତି ସମସ୍ତେ ॥
ଏଣୁ ମୋ ଭାବ ଯେ ଜାଣଇ । ତା'ର କଳ୍ପନା ଆଉ କାହିଁ ॥
ମୁହିଁ ସମ୍ପଦ ଦେଲେ ତାରେ । ତକ୍ଷଣେ ଦୂରେ ପରିହରେ ॥
ସକଳ ଭାବେ ସେ ଉଦାର । ସୁନିରପେକ୍ଷ ଜ୍ଞାନ ତାର ॥
ଏଣୁ ନିଷ୍କାମ ଯାର ମତି । ସେ ଲଭେ ଏକାନ୍ତ ଭଗତି ॥
ମୋର ଭଗତ ଯେତେ ନର । ଶୁଭ ଅଶୁଭ ନାହିଁ ତାର ॥
ସଂସାରେ ନାହିଁ ଗୁଣ ଦୋଷ । ସେ ପ୍ରାଣୀ ମୋହର ବିଶ୍ୱାସ ॥
ଏଣୁ ଭଗତି ଯୋଗ ପଥେ । ଯେ ପ୍ରାଣୀ ଆଶ୍ରେ କରେ ମୋତେ
ସର୍ବ କଳ୍ପଣା ତାରେ ମିଳେ । ଯେ ମୋତେ ଭଜଇ ନିତଳେ ॥
ଏଣୁ ମୁଁ ତୋହର ବଚନେ । ଜ୍ଞାନ ବୈରାଗ୍ୟ ଅନୁକ୍ଷଣେ ॥
କହିଲି ଭଗତି ଲକ୍ଷଣ । ଏବେ ହେ ସାବଧାନେ ଶୁଣ ॥
ପାମର ହୀନ ଜଗନ୍ନାଥ । ଗୀତ ପ୍ରବନ୍ଧେ ଭାଗବତ ॥
ଉଦ୍ଧବ ମାଧବ ସମ୍ବାଦ । ଶୁଣନ୍ତେ ନ ଲାଗେ ପ୍ରମାଦ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଭକ୍ତିଯୋଗ ତତ୍ତ୍ୱଜ୍ଞାନ କଥନେ ନାମ ଏକ ବିଂଶୋଽଧ୍ୟାୟଃ ।*

# ଦ୍ୱାବିଂଶ ଅଧ୍ୟାୟ

## ଶ୍ରୀ ଭଗବାନ ଉବାଚ

କୃଷ୍ଣ କହନ୍ତି ବୀର ଶୁଣ । ଏ ମୋର ଭଗତି ଲକ୍ଷଣ ॥
ଜ୍ଞାନ ବୈରାଗ୍ୟ ଏଥୁଁ ଜାତ । ଏଣୁ ତତ୍ତ୍ୱଜ୍ଞାନ ପ୍ରାପତ ॥
ଏ ମାର୍ଗ ତେଜି କ୍ଷୁଦ୍ର ପଥେ । ଯେ ପ୍ରାଣୀ ଭଜନ୍ତି ଜଗତେ ॥
କାମ ଚଞ୍ଚଳ ମନେ ରାଗ । ତେଣୁ ସେ କରେ ନାନା ଭୋଗ ।
ସେ ଗତାଗତ ପଥେ ଭ୍ରମେ । ଜନ୍ମ ମରଣ ଦୁଃଖ ଶ୍ରମେ ॥
ତାହାର ଦୁଃଖ ମାତ୍ର ସାର । କେବେ ହେଁ ନ ତୁଟେ ସଂସାର ॥
ଭଗତି ଯୋଗ ଯେ ବିଚାରେ । ସେ ପୁଣ ଦୋଷ ନ ବିଚାରେ ॥
ଯେ ଦୋଷ ଗୁଣ କର୍ମ ଯୋଗେ । ବିଚାର କରି ବେଦ ମାର୍ଗେ ॥
ଯେ ବର୍ଣ୍ଣ ଧର୍ମ ସୁବିଚାର । ଯେ ବିଧି ଯାର ଅଧିକାର ॥
ନିୟତ ଧର୍ମ ବିଲଙ୍ଘନେ । ବିଚାରି ଯୋଗ ବେଦ ଜ୍ଞାନେ ॥
ଦ୍ରବ୍ୟେ ବସ ଦୋଷ ଗୁଣ । ଶୁଦ୍ଧ ଅସୁଦ୍ଧ ବିଚାରଣ ॥
ଆଚାର ମୂଳେ ଧର୍ମ ଜାତ । ଧର୍ମେ ଧାରଣ ଏ ଜଗତ ॥
ଯେ ଧର୍ମ ବ୍ୟବହାର ହେତୁ । ଧାରଣ କାରଣ ପ୍ରଶସ୍ତୁ ॥
ଯେଣୁ ଧାର୍ମିକ ପ୍ରାଣୀଙ୍କର । ନିଗମ ଦେଖାଇ ଆଚାର ॥
ଉଦ୍ଧବ ଭକ୍ତି ଯୋଗେ ମୋର । ନାହିଁ ନିଗମ ଅଧିକାର ॥
ଯେ ନାନା ରୂପେ ଗୁଣ ଦୋଷ । ନିଗମ ବଚନ ପ୍ରକାଶ ॥
ସାମାନ୍ୟ ଦ୍ରବ୍ୟେ ନାନା ଭେଦ । ବ୍ରାହ୍ମଣେ ବିଚାରନ୍ତି ବେଦ ॥
ଯେଣୁ ଯେ ପଞ୍ଚଭୂତ ଦେହେ । ବିବିଧ ମତେ ଭାବକହେ ॥
ଯେତେ ଯେ ଲୋକଙ୍କେ ବାହାର । ବିବିଧ କଳ୍ପନା ବିଚାର ॥
ଯେ ଦେଶ କାଳ ପୁଣ କର୍ମେ । ମୁହିଁ ବିଚାରଇ ପ୍ରଭାବେ ॥
କର୍ମ ବିଚାରେ ଯେ ପସିଦ୍ଧି । ଯେ ଅବା ଦୋଷ ଗୁଣ ବିଧି ॥
ଯେ ଦେଶେ କୃଷ୍ଣମୃଗ ସାର । ନ ଦେଖି ବିପ୍ର ଭକ୍ତ ନର ॥
ସେ ଦେଶେ ପୁଣ୍ୟ ଲେଶ ନାହିଁ । ତହିଁ ନଥିବା ଦେହ ବହି ॥
ଯେ ଦେଶେ କୃଷ୍ଣଭକ୍ତ ସାର । ବସନ୍ତି ସୁପୁରୁଷ ନର ॥
ସେ ଦେଶ ଦେଶଙ୍କର ସାର । ତହିଁ ସୁକର୍ମ ଅଧିକାର ॥
ଅଙ୍ଗ ବଙ୍ଗ କଳିଙ୍ଗ ଦେଶ । ଯେ ନୋହେ ସଂସ୍କାର ବିଶେଷ ॥
ଊଷର ଭୂମି ଦେଖି ଯହିଁ । ସେ ଭୂମି ପବିତ୍ର ବୋଲାଇ ॥
ଏଣୁ ଶୁଦ୍ଧାଶୁଦ୍ଧ ବିଚାରି । ବିଶୁଦ୍ଧ ଦେଶେ କର୍ମକରି ॥
ବିଶୁଦ୍ଧ କାଳେ କର୍ମ କଲେ । ସେ କର୍ମ ଫଳ ଧରେ ଭଲେ ॥
ଏଣୁ ଅଶୁଦ୍ଧ ଦେଶ କାଳେ । କର୍ମ କରନ୍ତି ଯେବା ବଳେ ॥
ତାହାଙ୍କ କର୍ମ ଫଳ ନାହିଁ । ଅଶୁଦ୍ଧ ଦୋଷ ନାଶ ଯାଇ ॥

ଏଣୁ ପଣ୍ଡିତ ଜ୍ଞାନ ଗୁଣେ । ବିଶୁଦ୍ଧ ଦେଶେ ଶୁଭକ୍ଷଣେ ॥
ବିଚାରି କର୍ମ ସେ କରନ୍ତି । ଅଶୁଦ୍ଧ କାଳ ବିବର୍ଜନ୍ତି ॥
ଏଣୁ ସକଳ ଦ୍ରବ୍ୟଗତେ । ବିଚାରି ଶୁଦ୍ଧାଶୁଦ୍ଧ ମତେ ॥
ବିଶୁଦ୍ଧ ଦ୍ରବ୍ୟ ଘେନି କାଳେ । କର୍ମ ସାଧନ୍ତି ଏ ଶୟଳେ ॥
ଯେ ଦ୍ରବ୍ୟ ଯେଣେ ଶୁଦ୍ଧ ହୋଇ। ଶୁଣ ଉଦ୍ଧବ ମନ ଦେଇ ॥
କେତେହେଁ ଦ୍ରବ୍ୟ ଏ ଶୟଳେ । ପବିତ୍ର ହୋନ୍ତି ଶୁଦ୍ଧ ଜଳେ ॥
କେତେହେଁ ବ୍ରାହ୍ମଣ ବଚନେ । ପବିତ୍ର ହୋନ୍ତି ବିଦ୍ୟମାନେ ॥
କେତେହେଁ ସଂସ୍କାର ବିଶେଷେ । ପବିତ୍ର ହୋନ୍ତି ଶୁଦ୍ଧ ଦେଶେ
କେତେହେଁ ଅଶୁଦ୍ଧ ସଙ୍ଗତେ । ଅଶୁଦ୍ଧ ହୋନ୍ତି ଶାସ୍ତ୍ରମତେ ॥
ପତିତ ଜନ ତାହା ଛୁଇଁ । ସେ ଦ୍ରବ୍ୟ ଅଶୁଦ୍ଧ ବୋଲାଇ ॥
କେତେହେଁ ଦ୍ରବ୍ୟ ଭିନ୍ନେ ଭିନ୍ନେ । ଅଶୁଦ୍ଧ ଅଶୁଦ୍ଧ ବଚନେ ॥
କେତେହେଁ ଦ୍ରବ୍ୟ ଦୃଷ୍ଟି କାଳେ । ଦୂଷିତ ହୋନ୍ତି ଯେ ଶୟଳେ
ସେ ପୁଣି ପବିତ୍ର ସମୟେ । ସ୍ୱଭାବ ଗୁଣେ ଶୁଦ୍ଧ ହୋୟେ ॥
ଅଶୁଦ୍ଧ ଶୁଦ୍ଧ ଏହି ରୂପେ । ବିଚାର କରି ବେଦ କହେ ॥
ଅଶୌଚକାଳେ ଦ୍ରବ୍ୟ ଯେତେ । ଅଶୁଦ୍ଧ ହୋନ୍ତି ଶାସ୍ତ୍ରମତେ ॥
ଗ୍ରହଣେ ରବି ଚନ୍ଦ୍ର ଯେବେ । ସର୍ବ ପବିତ୍ର ହୋନ୍ତି ତେବେ ॥
ବୃକ୍ଷ କାମିନୀ ଧାନ୍ୟ ଫଳେ । ପବିତ୍ର ହୋନ୍ତି ଯଥାକାଳେ ॥
ରବି କିରଣେ ଦ୍ରବ୍ୟ ତିନି । ପବିତ୍ର ଅସ୍ଥି ଚର୍ମ ଭୂମି ॥
ଧାତୁ ବିକାରେ ରସ ଦ୍ରବ୍ୟ । ଅନଳେ ପବିତ୍ର ଯେ ସର୍ବ ॥
ଜଳ ସିଞ୍ଚନେ ଭୂମି ପଥେ । ତକ୍ଷଣେ ହୁଅନ୍ତି ପବିତ୍ରେ ॥
ଗୋମୟ ଜଳ ସମାର୍ଜନେ । ପବିତ୍ର ଚତ୍ୱର ଅଙ୍ଗନେ ॥
ମନୁଷ୍ୟ ଦେହେ ପଶି ଜଳେ । ପବିତ୍ର ହୋନ୍ତି ସ୍ନାନ କାଳେ ॥
ଶୌଚ ଯେ ତପ ସ୍ନାନ ଦାନ । ଏ ସର୍ବ ପବିତ୍ର ବିଧାନ ॥
ଯେତେ ଏ ବିବିଧ ପ୍ରକାର । ପବିତ୍ର ବାହ୍ୟ କଳେବର ॥
ମୋର ସ୍ମରଣ ଯେବେ କରେ। ସେ ଶୁଦ୍ଧ ଅନ୍ତର ବାହାରେ ॥
ସେ ସର୍ବ କର୍ମେ ଅଧିକାରୀ । ଯେ ନିତ୍ୟ ମୋ ନାମ ସୁମରି ॥
ଗୁରୁ ବଚନେ ମନ୍ତ୍ରେ ତନ୍ତ୍ରେ । ନ୍ୟାସେ ଶୋଧନ ସର୍ବ ଗାତ୍ରେ ॥
ମୋହର ନାମ ଉଚ୍ଚାରିଲେ । ସକଳ ଶୁଦ୍ଧ ହୋନ୍ତି ଭଲେ ॥
ଏମନ୍ତେ ଶୁଦ୍ଧ ତନୁ ଧରି । ବିଶୁଦ୍ଧ ଦ୍ରବ୍ୟେ କର୍ମ କରି ॥
ପରମ ଧର୍ମ ଯେବେ ସାଧେ । ମୋର ବଚନ ଅପ୍ରମାଦେ ॥
ଏଣୁ ବିଶୁଦ୍ଧ କଳେବର । ପବିତ୍ର ଦ୍ରବ୍ୟ ଘେନି କର ॥
ଯଥାର୍ଥ ଫଳ ସେ ଲଭନ୍ତି । ଯେବେ ଏମନ୍ତ ନ କରନ୍ତି ॥
ସ୍ୱଧର୍ମେ ଅଧର୍ମ ସଂଯୁତ । ତାହାକୁ ବୋଲି ବିପରୀତ ॥
ସେ ଫଳ ବିପରୀତ ପାଇ । ଏଣୁଟି ଗୁଣ ଦୋଷ ନାହିଁ ॥

ବିଧି ନିଷେଧ ବିଚାରଣେ । ଏଣୁ ସମ୍ପାଦି ଦୋଷ ଗୁଣେ ॥
ଯାହାର ଗୁଣ ଦୋଷ ଯେତେ । ସହଜ ଆଚାର ସମେତେ ॥
ଯେ ଯାହା କୁଳ ବ୍ୟବହାର । ନ ଘଟେ ଦୋଷ ଗୁଣ ତାର ॥
ଏଣୁ ଅଶୁଦ୍ଧ କର୍ମ ଦୋଷେ । ତାହାର ଚିତ୍ତେ ପାପ ମିଶେ ॥
ସହଜେ ପାପ କର୍ମ କରେ । ଯେ କର୍ମେ ପୂର୍ବ ପୁଣ୍ୟ ହରେ॥
ଦେହ ଅନ୍ତରେ ପାପ ଫଳେ । ସେ ଜନ୍ମେ ପତିତ ଚାଣ୍ଡାଳେ ॥
ନିନ୍ଦିତ ବୃତ୍ତିରେ ଜୀବନ । ପୋଷଇ କରି ସୁରା ପାନ ॥
ସ୍ୱଭାବେ ପ୍ରାଣୀ ପ୍ରାଣୀଙ୍କର । ନିନ୍ଦିତ ଲୋକେ ଦୁରାଚାର ॥
ପଙ୍କେ ପଡ଼ିଲେ ଯେସନ୍ତେ ପ୍ରାଣୀ । ପଙ୍କିଳ ବୋଲି ତାହା ଜାଣି ॥
ଏଣୁ ଏ ସକର୍ମ ସକାଶେ । ବନ୍ଧନ ହୋଇ ସେ ବିଶ୍ୱାସେ ॥
ଏଣୁ ନିର୍ମଳ କର୍ମଗୁଣ । ଅଶେଷ ଦୋଷ ନିବାରଣ ॥
ଶୁଣ ଉଦ୍ଧବ କହୁଁ ତୋତେ । ବିଷୟା ଧ୍ୟାନ ଯାର ଚିତ୍ତେ ॥
ବିଷୟ ଭୋଗେ ସେ ବନ୍ଧନ । ବଢ଼ଇ କାମ କର୍ମେ ମନ ॥
କାମ ଜନ୍ମିଲେ ତାର ଫଳ । ବଢ଼ଇ ବିରୋଧ କନ୍ଦଳ ॥
କନ୍ଦଳୁ କ୍ରୋଧ ହୋଏ ଗାତ । ଏଣେ ହୋଅଇ ଜ୍ଞାତ ହତ ॥
ହୃଦରେ ତମ ଗୁଣ ବସେ । ତାର ଚେତନା ବଳେ ଧ୍ୱଂସେ॥
ଚେତନା ହତେ ହତଜ୍ଞାନ । ତେବେ ଶରୀର ହୋଏ ଶୂନ୍ୟ॥
ବୁଡ଼ଇ ମୃତ୍ୟୁତୁଲ୍ୟ ପ୍ରାୟେ । ନିଜ ପ୍ରମାଣ ଜ୍ଞାନ ମୋହେ ॥
ବୃକ୍ଷର ପ୍ରାୟେ ସେ ଜୀଅଇ । ପାପ କଲ୍ମଷ ସଙ୍ଗେ ଥାଇ ॥
ବିଷୟ ସଙ୍ଗେ ଏତେ ଗୁଣ । ଉଦ୍ଧବ ସାବଧାନେ ଶୁଣ ॥
ଏଣୁ ଏ ନିଗମ ବଚନେ । ଯେ ଫଳ ଶ୍ରୁତି ଶୁଣି କର୍ଣ୍ଣେ ॥
କର୍ଣ୍ଣ କେବଳ ମାତ୍ର ସାର । କେବେ ହେଁ ନୋହି ଭବୁଁ ପାର ॥
ନ ଲଭେ ପରିତ୍ରାଣ ଗତି । ବେଦ ବଚନେ ଫଳ ଚିନ୍ତି ॥
ବେଦର ତତ୍ତ୍ୱ ଯେ ନ ଜାଣେ। ସେ ଫଳଶ୍ରୁତି ପରିମାଣେ ॥
ରୋଗ ବିନାଶ ହେତୁ ଯେସନ୍ତେ । ଔଷଧ ବୈଦ୍ୟର ବଚନେ ॥
ଖଣ୍ଡ ଶାକର ହସ୍ତେ ଘେନି । ପୁତ୍ରକୁ ଯେସନେ ଜନନୀ ॥
ବୋଲଇ ମଧୁର ବଚନ । ତୁ ଯେବେ କରୁ ଏହା ପାନ ॥
ଏ ଖଣ୍ଡ ଦେବି ତୋତେ ମୁହିଁ। ଭକ୍ଷଣ ନ କଲେ ନ ଦେଇ ॥
ନାନା ପ୍ରକାରେ ପ୍ରବର୍ତ୍ତାଇ । ପୁତ୍ରକୁ ମାତା ପ୍ରାୟେ ହୋଇ ॥
ବେଦ ବଚନ ଏହି ମତେ । ମୂର୍ଖକୁ ଭଣ୍ଡାଇ ଜଗତେ ॥
ଏଣୁ ସେ କଳ୍ପଇ ଯୁଗତେ । ବେଦ ବଚନ କର୍ମପଥେ ॥
ଭ୍ରମଇ ଧନ ଦାରା ସୁତେ । ଆକୁଳ ହୃଦୟ ନିରତେ ॥
ଯେ ଧନ ସୁତ ପରିବାର । ଅନର୍ଥ କାରଣ ବେଭାର ॥
ଏଣୁ ସକଳ ପ୍ରାଣୀ ଚିତ୍ତେ । ଆକୁଳ ହୃଦୟ ନିରତେ ॥

ଭ୍ରମଇ ମାୟା ଜଡ଼ ଘୋରେ । ଆତ୍ମାର ଗତି ନ ସୁମରେ ॥
ଆକୁଳ ଚିତ୍ତେ ଭୋଗ ଚିନ୍ତି । ନିଗମ ମାର୍ଗେ ସେ ଭ୍ରମନ୍ତି ॥
ଏ ବେଦ ଅର୍ଥ ଯେବେ ଜାଣେ । ଚିତ୍ତେ ପଣ୍ଡିତ ପରିମାଣେ ॥
ତେବେ ସେ ଭ୍ରମଇ ସଂସାରେ । ଜନ୍ମ ମରଣ ଦୁଃଖ ଘୋରେ ॥
ଏଣୁ ଏ ପ୍ରାଣୀ କୁପଣ୍ଡିତେ । ତତ୍ତ୍ୱ ନ ଜାଣି ବେଦ ପଥେ ॥
ପୁଷ୍ପକୁ ଫଳ ପ୍ରାୟେ ମଣି । ଶ୍ରୁତି ବଚନ ପରିମାଣି ॥
ନିରତେ ଭ୍ରମେ ପୁଷ୍ପ ବାସେ । ଫଳ ଭକ୍ଷଣ ଲୋଭ ଆଶେ ॥
ଏଣୁ ଏ ଅଜ୍ଞାନ ବିବେକ । ଭ୍ରମଇ ଇହ ପରଲୋକ ॥
ତାହାର ଇଷ୍ଟ ଫଳଶ୍ରୁତି । ସେ ପ୍ରାଣୀ ମୋତେ ନ ଜାଣନ୍ତି ॥
ଜୀବନ ରୂପେ ମୁଁ ସାକ୍ଷାତେ । ବସଇ ପ୍ରାଣୀ ହୃଦଗତେ ॥
ମୋତେ ନ ଚିହ୍ନି ମୂଢ଼ ମତି । ଅମୃତ ମଣେ ଫଳ ଶ୍ରୁତି ॥
ଏଣୁ ଭ୍ରମଇ ମାୟା ମୋହେ । କେବଳ ଆକୁଳ ହୃଦୟେ ॥
ଉଦ୍ଧବ ଶୁଣ ତତ୍ତ୍ୱ କହି । ମୋର ସମ୍ମତ ମାର୍ଗ ଏହି ॥
ତତ୍ତ୍ୱ ନ ବୁଝି ବେଦ ପଥେ । ଫଳ ଭୁଞ୍ଜନ୍ତି କୁ ପଣ୍ଡିତେ ॥
ହିଂସା ନ ଛାଡ଼େ ଯେବେ ହୃଦେ। ଶ୍ରୁତିବଚନ ପରିବାଦେ ॥
ଯଜ୍ଞେ ହିଂସନ୍ତି ପଶୁଗଣ । ଅନାସ୍ଥା କରି ତତକ୍ଷଣ ॥
କେବଳ ପିତୃଯଜ୍ଞ କରି । ଆନନ୍ଦେ ଭ୍ରମେ ଜନ୍ତୁମାରି ॥
ଭ୍ରମଇ ଇହ ପରଲୋକେ । ଦୃଷ୍ଟି ଶ୍ରବଣ ମାତ୍ର ଦେଖେ ॥
ଏହି କାରଣେ ଜୀବ ମାରି । ଯେସନେ ଦ୍ୟୁତେ ଧନ ହାରି ॥
ନିଜ ଧନର ଲୋଭେ ଚିତ୍ତେ । ଦ୍ୟୁତରେ ହାରଇ ଯେମନ୍ତେ ॥
ସଂକଳ୍ପେ କରେ ଧନ ନାଶ । ଯେସନେ ବଣିଜାର ଆଶ ॥
କିଣଇ ନିଜ ଧନ ଦେଇ । ଅଧିକ ଆଶେ ଲୋଭ ବହି ॥
ରଜ ତାମସ ଗୁଣ ବହି । ଅଜ୍ଞାନେ ଚେତନା ହରାଇ ॥
ବାସବ ଆଦି ଦେବଗଣେ । ଭୁଞ୍ଜନ୍ତି ଯଜ୍ଞ ଅନୁକ୍ଷଣେ ॥
ସ୍ୱର୍ଗ ପଦକୁ ଇଚ୍ଛା କରି । ଆତ୍ମାର ଗତି ନ ସୁମରି ॥
ନାନା ପ୍ରକାରେ ଲୋଭ ଚିତ୍ତେ । ପିତୃ ଦେବତା ପୂଜେ ନିତ୍ୟେ ॥
ସ୍ୱର୍ଗେ ବସଇ ଦିନା କେତେ । ପୁଣିହିଁ ସ୍ୱର୍ଗ ଭୋଗ ଅନ୍ତେ ॥
ପୁଣି ଜନ୍ମଇ ମହୀତଳେ । ଧନ ସମ୍ପଦ ମହାକୁଳେ ॥
ଉତ୍ତମ ପୁର ସ୍ୱର୍ଗ ପ୍ରାୟେ । ଭୁଞ୍ଜଇ ପୁଣ ନର ଦେହେ ॥
ଏହି ପ୍ରକାରେ ମନ ଧରି । ପଶୁକୁ ହିଂସେ ଯଜ୍ଞ କରି ॥
ସମ୍ମତ ବାକ୍ୟେ ଫଳ ବୁଦ୍ଧି । ଏ ଘେନି ଭ୍ରମେ ନିରବଧି ॥
କର୍ମ ଆକୁଳେ ଲୋଭେ ଜାତେ । ଏଣୁ କରଇ ଚିତ୍ତ ଦୃଢ଼େ ॥
ଚିତ୍ତେ ସଂକଳ୍ପ ଭୋଗ ଭରେ । ଗୁରୁ ବ୍ରାହ୍ମଣ ନିନ୍ଦା କରେ ॥
ମୋର ଭଗତି ଆର କାହିଁ । ମୋ କଥା କର୍ଣ୍ଣେ ନ ଶୁଣଇ ॥
ଶ୍ରୁତି ଯେ କହେ ତିନି ଖଣ୍ଡେ । ଜ୍ଞାନ ଦେବତା ପିତୃ କାଣ୍ଡେ ॥
ସେ ବ୍ରହ୍ମ ବ୍ରହ୍ମେ ଉତପତି । ପରମ ବ୍ରହ୍ମ ତାର ଗତି ॥
ବ୍ରହ୍ମ ପରୀକ୍ଷା ତାର ମୁଖେ । ସେ ବେଦ କହୁଥାନ୍ତି ସୁଖେ ॥
ଜ୍ଞାନ ନ କହେ ସେ ସାକ୍ଷାତେ । ଦେଖାଇ ଘର ଦ୍ୱାର ପଥେ ॥
ସେ ବେଦ ବ୍ରହ୍ମ ସର୍ବମୟେ । ସ୍ୱଭାବେ ସମୁଦ୍ରର ପ୍ରାୟେ ॥
ଦୁର୍ବୋଧ ଗତି ଅଟେ ତାର । ବେଦର ନାହିଁ ଅନ୍ତ ପାର ॥
ଦେଖ ମୁଁ ସର୍ବେ ଅଛି ପୂରି । ଅନନ୍ତ ଶକ୍ତି ରୂପ ଧରି ॥
ଜଗତ ମୋ ତହୁଁ ପ୍ରକାଶେ । ଅନ୍ତେ ମୋହର ଦେହେ ମିଶେ॥
ଏଣୁ ଅନନ୍ତ ବେଦଗତି । ନାନା ପ୍ରକାରେ ଫଳଶ୍ରୁତି ॥
ତାହାର ସ୍ଥୂଳ ସୂକ୍ଷ୍ମ ଗତି । କେ ବୁଝିପାରେ ବସୁମତୀ ॥
ଷଡ଼ଚକ୍ର ଭେଦି ଉଦୟେ । ଏଣୁ ବୋଲାଇ ବ୍ରହ୍ମମୟେ ॥
ବ୍ୟାପେ ପଞ୍ଚାଶ ବର୍ଣ୍ଣଭେଦେ । ନାନା ପ୍ରକାର ସ୍ୱର ନାଦେ ॥
ଗାୟତ୍ରୀ ପଂକ୍ତି ଅନୁଷ୍ଟପ । ଉଷ୍ଣିକ ବୃହତୀ ତ୍ରିଷ୍ଟୁପ ॥
ନାନା ପ୍ରକାରେ ଛନ୍ଦ ଭାଷେ । ବହଇ ବିବିଧ ଉଦ୍ଦେଶ୍ୟେ ॥
କି ଅବା କହେ ବ୍ରହ୍ମମୁଖେ । କି ଅବା କହ୍ଲେ ବିପାକେ ॥
ସପ୍ତମ ପଦ ଛନ୍ଦ ମୟେ । ବିବିଧ ପ୍ରକାଶ ନିର୍ଣ୍ଣୟେ ॥
ଏମନ୍ତେ ବିବିଧ କଳ୍ପନା । ସେ ବେଦ ବ୍ରହ୍ମର ରଞ୍ଚନା ॥
କେ ବେଦ ବ୍ରହ୍ମ ବୁଝିବାରେ । ଶରୀର ବହି ଏ ସଂସାରେ ॥
ମୁହିଁ ସେ ବେଦ ତତ୍ତ୍ୱଜ୍ଞାତା । ମୋ ତହୁଁ କେ ଅଛି ସମର୍ଥା ॥
ନାନା ପ୍ରକାରେ ନାନା ଭେଦେ । ମୁହିଁ ଯେ ଅଛି ବେଦ ମଧେ
ସେ ମୋତେ ନ କହେ ଜଗତେ। ମାୟା ଦେଖାଉଥାଇ ନିତ୍ୟେ ॥
ଏଣୁ ନ ବୁଝେ ବେଦଗତି । ଅଜ୍ଞାନ ମୋହେ ଜଡ଼ ମତି ॥
ବୁଦ୍ଧି ବିବେକ ତର୍କ ବଳେ । ନାନା କଳ୍ପିତ ଅନ୍ତରାଳେ ॥
କହିଲେ ଯଶୋଦାର ସୁତ । ନାନା ପ୍ରକାରେ ବେଦତତ୍ତ୍ୱ ॥
ସେ ହରି ଚରଣ ବିଶ୍ୱାସ । କହିଲା ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ବେଦତତ୍ତ୍ୱ କଥନେ ନାମ ଦ୍ୱାବିଂଶୋଽଧ୍ୟାୟଃ ।*

## ତ୍ରୟୋବିଂଶ ଅଧ୍ୟାୟ

### ଉଦ୍ଧବ ଉବାଚ

ଉଦ୍ଧବ ଶିରେ ଦେଇ କର । ବୋଲଇ ଶୁଣ ଦାମୋଦର ॥
ବେଦ ବିଚାରି ତତ୍ତ୍ୱ ଜାଣି । ଯେବେ ସଂସାରୁ ତରେ ପ୍ରାଣୀ॥

ସେ ତତ୍ତ୍ୱ ଏକ ଅବା କେତେ । କେଶବ କହ ଶୁଦ୍ଧ ଚିତ୍ତେ ॥
ନାନା ପ୍ରକାରେ ମୁନିଗଣେ । କହନ୍ତି ତତ୍ତ୍ୱ ବିଚାରଣେ ॥
କେ ଷଟ ସପ୍ତ ଚାରି ଭଣେ । କେ ଏକାଦଶ ପରିମାଣେ ॥
କେ ପଞ୍ଚବିଂଶ ଷଡ଼ବିଂଶେ । କେହୁ କହନ୍ତି ସପ୍ତଦଶେ ॥
କେ ଏକାଦଶ ନବ ଦଶ । ସାଖ୍ୟ ପୁରାଣେ ତ୍ରୟୋଦଶ ॥
କେ ବୋଲେ ଷଟଦଶ ମତେ । ଏଣୁ ସଂଶୟ ମୋର ଚିତ୍ତେ ॥
ମୁଁ ପୁଣି ତୋହର ସମ୍ମତେ । ପ୍ରସ୍ତାବେ ପୁଛିଲଇଁ ତୋତେ ॥
ନବ ତୃତୀୟ ଏକାଦଶ । ଶାସ୍ତ୍ର ପୁରାଣ ଅଷ୍ଟାଦଶ ॥
ତ୍ରି ନବ ଏକାଦଶ ଦିନେ । ନ ଶୁଣି ତୁମ୍ଭର ବଚନେ ॥
ନାନା ପ୍ରକାରେ ମୁନିଗଣେ । କହନ୍ତି ତତ୍ତ୍ୱ ବିଚାରଣେ ॥
ଏ ସର୍ବ ସତ୍ୟ ଅବା କେତେ । କି ନୋହେ ନାନାଭେଦ ମତେ॥
ଏମନ୍ତେ ଉଦ୍ଧବ ବଚନ । ଯେ ତାର ଚିତ୍ତ ଶ୍ରମ ଭ୍ରମ ॥

## ଶ୍ରୀଭଗବାନ ଉବାଚ

ଶୁଣ ହୋ ମୁନିଗଣ ବାଣୀ । ଯେ ଇତିହାସେ ପରିମାଣି ॥
ମୁକ୍ତି କହନ୍ତି ସର୍ବସ୍ଥାନେ । ଯେ ଅବା ଯେତେ ଅନୁମାନେ॥
କେବେ ହେଁ ନୋହେ ଦୁର୍ଘଟନ । ସେ ସତ୍ୟ ଏ ତିନି ଭୁବନ
ସଂସାରେ ମୁନିଗଣ ଚିତ୍ତ । ମୋର ମାୟାରେ ବିମୋହିତ ॥
ନାନା ପ୍ରକାରେ ତର୍କବଳେ । ତତ୍ତ୍ୱ ବଖାଣନ୍ତି ଶୟଳେ ॥
କୁତର୍କ ବିବାଦ ପ୍ରକାରେ । ବଚନେ ନାନା ଶକ୍ତିଧରେ ॥
ଏଣୁ ବଚନ ଏହାଙ୍କର । ବୁଝ ତୁ ଅନେକ ପ୍ରକାର ॥
ମୁଁ ଯାହା କହୁଅଛି ତୋତେ । ସଂସାରେ ସତ୍ୟ ମାତ୍ର ଏତେ ॥
ବିବାଦେ ତର୍କ ବଢ଼େ ନିତ୍ୟେ । ଏଣୁ କହନ୍ତି ନାନାମତେ ॥
ମୁନି ବଚନ ସୁଗଠନ । ତେଣୁ ସେ ନୋହଇ ଖଣ୍ଡନ ॥
ସ୍ୱଭାବେ ମୋର ମାୟାଘେନି । ମୁକ୍ତି କହନ୍ତି ଯେତେ ମୁନି ॥
ତାଙ୍କ ବଚନ ମହୀସ୍ଥଳେ । ମୁହିଁ ଥାପଇ ଭକ୍ତିବଳେ ॥
ଈଶ୍ୱର ପୁରୁଷଙ୍କ ଗାତ୍ରେ । ବିଚ୍ଛେଦ ନାହିଁ ତିଳେ ମାତ୍ରେ ॥
ବିକଳ୍ପ କଳ୍ପନା ଗୋଚରେ । ଅସତ୍ୟ ଜ୍ଞାନ ହିଁ ନକରେ ॥
ତଥାପି ତାହାଙ୍କ ବଚନ । ମୁହିଁ ଯେ କରଇ ସ୍ଥାପନ ॥
ଯୁକ୍ତି କରନ୍ତି ଶ୍ରୁତି ଭେଦେ । ପଣ୍ଡିତ ସ୍ୱଭାବେ ବିବାଦେ ॥
ଏମନ୍ତେ ମୁନିଙ୍କ ବଚନେ । ଯେତେ ଘଟଇ ଅନୁମାନେ ॥
ଶାସ୍ତ୍ର ବିଚାରନ୍ତି ସଂସାରେ । ଏମନ୍ତେ ଅନେକ ପ୍ରକାରେ ॥
ନ୍ୟାୟ ବଚନ ଯୁକ୍ତିବଳେ । କର୍ଣ୍ଣେ ଶୁଣନ୍ତେ କୁତୁହଳେ ॥
ପଣ୍ଡିତ ଜନଙ୍କ ବଚନ । କେବେହେଁ ନୋହେ ଅଘଟନ॥
ଏମନ୍ତେ ଗୁଣମୟ ବାଣୀ । ଉଦ୍ଧବ କୃଷ୍ଣ ମୁଖୁଁ ଶୁଣି ॥
ପୁଣି ସଂଶୟ କରି ମଣେ । ପୁଚ୍ଛଇ କୃଷ୍ଣ ସନ୍ନିଧାନେ ॥

## ଉଦ୍ଧବ ଉବାଚ

ପ୍ରକୃତି ପୁରୁଷ ସ୍ୱଭାବେ । ଈଶ୍ୱର ତହୁଁ ଭିନ୍ନ ଯେବେ ॥
ଆଶ୍ରେ କରନ୍ତି ଅନ୍ୟୋଅନ୍ୟେ । ନିତ୍ୟେ ବସନ୍ତି ଯଥାସ୍ଥାନେ ॥
ପ୍ରକୃତି ପୁରୁଷର ଦେହେ । ବସଇ ଜୀବନର ପ୍ରାୟେ ॥
ପୁରୁଷ ପ୍ରକୃତି ନ ଛାଡ଼େ । ଏଣୁ ନଥାନ୍ତି ଏକଜଡ଼େ ॥
ଏ ଚିତ୍ତେ ସଂଶୟ ମୋହର । ଛେଦ ହେ କମଳାର ବର ॥
ଗୋବିନ୍ଦ କମଳଲୋଚନ । ପରମପୁରୁଷ ଉତ୍ତମ ॥
ତୋର ମାୟାରେ ଜୀବ ଯେତେ । ବିମୋହେ ଜଡ଼ିତ ଜଗତେ ॥
ଯାହାକୁ ହେଉ ତୁ ସଦୟେ । ଜ୍ଞାନ ତା ହୃଦୟେ ଉଦୟେ ॥
ତୁ ଆତ୍ମା ସର୍ବ ଜୀବଗତି । ସୁଗୁରୁ ଜ୍ଞାନକ୍ଷମ୍ୟ ମତି ॥
ଏମନ୍ତ ଶୁଣି ତା ବଚନ । କହନ୍ତି ଦେବକୀ ନନ୍ଦନ ॥

## ଶ୍ରୀଭଗବାନ ଉବାଚ

ପ୍ରକୃତି ପୁରୁଷର ଗୁଣ । ସଂଯୋଗ ବିଯୋଗ କାରଣ ॥
ସକଳ ଗୁଣଭେଦ ଯେତେ । ବିସ୍ତାରି କହୁଅଛି ତୋତେ ॥
ତୁ ତାହା ଭଲେ ଚିତ୍ତେ ସ୍ମର । ଶୁଣି ଉଦ୍ଧବ ଯୋଡ଼େ କର ॥

## ଉଦ୍ଧବ ଉବାଚ

ବୋଲଇ ବିନୟ ବଚନ । ଭୋ ନାଥ କର ଅବଧାନ ॥
ତୋର ବିମୁଖ ଯେତେ ପ୍ରାଣୀ । ତାହାଙ୍କୁ ନିଜ କର୍ମେ ଆଣି ॥
ନାନା ଯୋନିରେ ଜାତ କଲେ । ତେଣୁ ଶରୀର ପ୍ରାଣୀ ଧରେ ॥
ଭ୍ରମନ୍ତି ନିଜ କର୍ମ ପଥେ । ଦୁଃଖ ଦୁରିତ ଭୋଗ ଅର୍ଥେ ॥
ଶରୀର ଧରନ୍ତି କେମନ୍ତେ । ଛାଡ଼ନ୍ତି ନିଜ କର୍ମ ଅନ୍ତେ ॥
ନାନା ପ୍ରକାରେ ଭୁଞ୍ଜେ କର୍ମ । ଗତ ଆଗତ ପଥ ଶ୍ରମ ॥
ଭୋ ନାଥ ଭକତ ବତ୍ସଳ । କରୁଣା ସିନ୍ଧୁ ଆଦିମୂଳ ॥
ନମୋ ଗୋବିନ୍ଦ ଦାମୋଦର । କହ ସଂଶୟ ଯାଉ ଦୂର ॥
ଉଦ୍ଧବ ବାକ୍ୟେ ଜଗନ୍ନାଥ । ଜୀବନ ଗତି ପରମାର୍ଥ ॥
କହନ୍ତି ଉଦ୍ଧବକୁ ଚାହିଁ । ଶୁଣ ହୋ ଏକ ଚିତ୍ତ ହୋଇ ॥

## ଶ୍ରୀଭଗବାନ ଉବାଚ

ମନଟି ହୋଇ କର୍ମମୟ । ନାନା ପ୍ରକାରେ ସୃଜେ ଦେହ ॥
ପ୍ରାଣୀ ଜୀବନ ଅନ୍ତଃକାଳେ । ମନ ଭ୍ରମଇ ଅନ୍ତରାଳେ ॥
ପ୍ରାଣ ସଙ୍ଗତେ ଯାହା ଭାବେ । ସେ ଅନୁସାରେ ଜନ୍ମଲଭେ ॥
ସେ ଆତ୍ମା ମନ ପଛେ ପଛେ । ନିରତେ ରମଇ ପ୍ରତ୍ୟକ୍ଷେ ॥
ଏଣୁ ସେ ମନ ଥାଇ ଯହିଁ । ଏ ଜୀବ ଆତ୍ମା ମିଳେ ତହିଁ ॥
ଏ ଆତ୍ମା ଅହଙ୍କାରେ ବନ୍ଦୀ । ଅଦୃଷ୍ଟ ଆତ୍ମା ନିରବଧି ॥

ଏଣୁ ଏ ନାନା ମନୋରଥେ । ବିଷୟ ଜ୍ଞାନ ଅବିରତେ ॥
ଧ୍ୟାନେ ଚିନ୍ତଇ ସ୍ୱର୍ଗବାସ । କେବେ ହେଁ ଇନ୍ଦ୍ରପଦେ ଆଶ ॥
ଭୂମିରେ ଚିନ୍ତେ ରାଜପଦ । ନାନା ପ୍ରକାରେ ଭୋଗେ ସଧ ॥
ଏମନ୍ତ ଚିନ୍ତଇ ନିରତେ । ମନ ଭ୍ରମଇ ନାନା ପଥେ ॥
ଏମନ୍ତ ଚିତ୍ତ ଯହିଁ ରହେ । ଜ୍ଞାନ ରହଇ ପୂର୍ବ ଦେହେ ॥
ମନ ନିଶ୍ଚଳ ଜୀବ ସଙ୍ଗେ । କର୍ମ ମିଳଇ ତାର ଆଗେ ॥
ସେ ପରଦେହେ ଯେବେ ପଶେ । ଏକାନ୍ତେ ମନ ତହିଁ ମିଶେ ॥
ଆତ୍ମା ସଙ୍ଗତେ ରହେ ଧୀରେ । ପୂର୍ବ ଶରୀର ସେ ବିସ୍ମରେ ॥
ଲଭଇ ପର ଦେହ ସଙ୍ଗ । ତେବେ ପାସୋରେ ପୂର୍ବ ଅଙ୍ଗ ॥
ମନ ସଙ୍ଗତେ ଚଳେ ପ୍ରାଣ । ଏମନ୍ତେ ଲଭଇ ମରଣ ॥
ପୂର୍ବ ଶରୀର ପରିତ୍ୟାଗୀ । ନୂତନ ଦେହେ ଅନୁରାଗୀ ॥
ସେ ଦେହେ ରହେ ଆତ୍ମଭାବେ । ପ୍ରାଚୀନ ପ୍ରକୃତି ସ୍ୱଭାବେ ॥
ଜୀବର ଜନ୍ମ ଏ ପ୍ରକାର । ଶରୀରୁ ଶରୀର ବାହାର ॥
ଏ ଜୀବ ସ୍ୱପ୍ନ ମନୋରଥେ । ଯେ ରୂପେ ଭ୍ରମୁଥାଇ ନିତ୍ୟେ ॥
ନିଦ୍ରା ଅବସାନ ସଚେତେ । ଯେମନ୍ତେ ପାସୋରଇ ଚିତ୍ତେ ॥
ସେହି ପ୍ରକାରେ ପୂର୍ବ ଦେହେ । ପାସୋରେ ପର ତନୁ ପାଏ ॥
ଜରା ମରଣ ଦୁଇମତ । ବିଚାରେ ନୋହନ୍ତି ଏ ସତ୍ୟ ॥
ଜନ୍ମାହୁଁ ମରଣ ପର୍ଯ୍ୟନ୍ତେ । ଜୀବର ଧର୍ମ ବୋଲି ଏତେ ॥
ଏ ଦୁଇମାର୍ଗ ଅନୁସରି । ଉଦ୍ଧବେ କହିଲେ ମୁରାରି ॥
ବୃକ୍ଷ ପର୍ବତ ଛାୟା ଯେହ୍ନେ । ନିଶ୍ଚଳ ଜଳ ଅକମ୍ପନେ ॥
ଜଳ ଚଳିଲେ ଯେହ୍ନେ ଚଳେ । ଭ୍ରମେ ଅବନୀ ଭୂମଣ୍ଡଳେ ॥
ସ୍ୱପ୍ନେ ଅନର୍ଥ ଦେଖି ଯେତେ । ଜନ୍ମ ମରଣ ସେହି ମତେ ॥
ଯେମନ୍ତେ ନୋହଇ ଏ ସତ୍ୟ । ଏ ମୋହ ମାୟା ବିକଳ୍ପିତ ॥
ଏଣୁ ତୁ ଭ୍ରମ ପରିହର । ଚଞ୍ଚଳମନ ସ୍ଥିର କର ॥
ଏଣୁ ଏ ଲୋକଧର୍ମ ଯେତେ । ମିଥ୍ୟା ବିଚାର ଘେନ ଚିତ୍ତେ ॥
ଯେ ଅବା ସ୍ତୁତି ଅପମାନ । ଏ ଦୁଇ ଚିତ୍ତେ ତୁ ନ ଘେନ ॥
କେ ଅବା କରେ ଅଧୋକ୍ଷେପ । କେ ଅବା ମାନ ଅବଲେପ ॥
କେ ଅବା କରେ ଅଭିମାନ । ଭର୍ତ୍ସନା ତର୍ଜ୍ଜନା ତାଡ଼ନ ॥
କେ ଅବା କରେ ନିନ୍ଦା ସ୍ତୁତି । କେ ଉପହାସେ ବା ହସନ୍ତି ॥
କେ ଅବା ବଳେ ଧନ ନାଶେ । କେ ମାରେ କେବା ବାନ୍ଧେ ରୋଷେ
ଭୋଜନ ପାତ୍ରେ ଧୂଳି ଦ୍ୟନ୍ତି । କେ ବଳେ ତୋଳି କଚଡ଼ାନ୍ତି ॥
ତଥାପି ଧୀର ମହାଶୟ । ନିଷ୍କାମ ଗଭୀର ହୃଦୟ ॥
ଯେ ପ୍ରାଣୀ ସ୍ତୁତି ନିନ୍ଦା ସହେ । ଅଦୃଷ୍ଟ ମାନୀ ଥିରେ ରହେ ॥

### ଉଦ୍ଧବ ଉବାଚ

ଉଦ୍ଧବ କର୍ଣ୍ଣେ ଏହା ଶୁଣି । ବୋଲଇ ଶୁଣ ଚକ୍ରପାଣି ॥
ଏ ବଡ଼ ସଂଶୟ ମୋ ଚିତ୍ତେ । ଏମନ୍ତେ କେ ଅଛି ଜଗତେ ॥
କେ ପାରେ ଏତେ ଦୁଃଖ ସହି । ମଞ୍ଚେ ମନୁଷ୍ୟ ଦେହ ବହି ॥
ଯାହାର ମର୍ମ ଅଭ୍ୟାନ୍ତରେ । ଭେଦଇ କୁ ବଚନ ଶରେ ॥
ସେ ଚିତ୍ତ ନିବାରିବ କାହିଁ । ଏମନ୍ତ ପ୍ରାଣୀ ନ ଦେଖଇ ॥
ସେହି ଭ୍ରମଇ ଏ ଜଗତେ । ନିନ୍ଦେ ସ୍ତବନ ବେନି ପଥେ ॥
କେ ଅବା ଅଛି ସାଧୁଜନେ । ତୋ ପାଦସୁଧା ରସପାନେ ॥
ଚିତ୍ତ ଆନନ୍ଦେ ଭୋଳମତି । ଏ କର୍ମ ସେ ଅବା ସହନ୍ତି ॥
ତୁଷ୍ଟି ନିନ୍ଦନ ଯେ ପ୍ରକାରେ । ଯେ ଦୁଷ୍ଟ ବଚନ ପ୍ରହାରେ ॥
ଏ ବଡ଼ ଭ୍ରମ ମୋର ଚିତ୍ତେ । ଭୋ ନାଥ ସହିବି କେମନ୍ତେ ॥
ବୋଲଇ ହୀନ ଜଗନ୍ନାଥ । ପ୍ରାକୃତବନ୍ଧେ ଭାଗବତ ॥
ଉଦ୍ଧବ କହେ କୃଷ୍ଣ ପାଶେ । ସୁଜନେ ମଜ୍ଜ ଏହି ରସେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ସର୍ବଂ ସହ ପ୍ରଶ୍ନୋ ନାମ ତ୍ରୟୋବିଂଶୋଽଧ୍ୟାୟଃ ।*

## ଚତୁର୍ବିଂଶ ଅଧ୍ୟାୟ

### ଶ୍ରୀଭଗବାନ ଉବାଚ

ଦୟା ସାଗର ଚକ୍ରପାଣି । ଉଦ୍ଧବ ମୁଖୁଁ ପ୍ରଶ୍ନ ଶୁଣି ॥
ବୋଲନ୍ତି ସତ୍ୟ ତୋ ବଚନ । ଏମନ୍ତ କେବା ଅଛି ଜନ ॥
କେ ଚିତ୍ତ ଧରି ପାରେ ସ୍ଥିରେ । ଦୁର୍ଜ୍ଜନ ବଚନ ପ୍ରହାରେ ॥
କେ ପାରେ ଏତେ ଦୁଃଖ ସହି । ସେ ପ୍ରାଣୀ ତ୍ରିଭୁବନେ ନାହିଁ
ସମରେ ରିପୁ ବାଣା ଘାଏ । ଯେବେ ରୁଧିର ବହେ ପାଏ ॥
ସେ ଦୁଃଖ ମନେ ନ ଧରନ୍ତି । ଯେ କ୍ଷତ୍ରିବୃତ୍ତ ଆଚରନ୍ତି ॥
ଦୁର୍ଜ୍ଜନ କୁବଚନ ବାଣ । ମର୍ମ ବିଦାରେ ତତକ୍ଷଣ ॥
ଏବେ ହୋ ଶୁଣ ତୁ ବିଶ୍ୱାସେ । ଯେ ପୁରାତନ ଇତିହାସେ ॥
ତୁ ଯେଣୁ ମୋହର ବିଶ୍ୱାସ । ଯେଣୁ କହଇ ଉପଦେଶ ॥
ପୂର୍ବେ ହୋ ଅବନ୍ତୀ ନଗରେ । ଥିଲା ଦୁର୍ଜ୍ଜନ ବିପ୍ରବରେ ॥
ଦମ୍ଭ ଆରମ୍ଭ କାମ ଲୋଭୀ । ନିରତେ କ୍ରୋଧ ପରାଭବି ॥
କୁତ୍ସିତ ବୁଦ୍ଧି ତାର ମନେ । ନାନା ପ୍ରକାରେ କୁସାଧନେ ॥
କୃଷି ବାଣିଜ୍ୟ କର୍ମ କରେ । ବନ୍ଧକ ଧାର ଉପହାରେ ॥
ଜ୍ଞାତି ଅତିଥି ବନ୍ଧୁ ଯେତେ । ତାଙ୍କୁ ନ ସେବେ କଦାଚିତେ ॥
ମଧୁର ବାକ୍ୟ ଶୁଦ୍ଧ ଚିତ୍ତେ । କ୍ଷଣେ ନ ରହେ ପରହିତେ ॥
ନିର୍ଦ୍ଦୟ ଦୁଷ୍ଟ ବ୍ୟବହାର । କୁଶୀଳ ମତି ଦୁରାଚାର ॥
ସୁତ ବନିତା ଦାସ ଦାସୀ । ଏହାଙ୍କୁ ନ ପୋଷେ ଆଶ୍ୱାସି ॥

ଆପଣେ ନ ଭକ୍ଷଇ ଭଲେ । ପ୍ରାଣୀଙ୍କି ନ ଦିଏ ମାଗିଲେ ॥
ଯକ୍ଷର ପ୍ରାୟେ ରଖେ ଧନ । ଧନେ ବ୍ୟାକୁଳ ତାର ମନ ॥
ସେ ବିପ୍ର ବାଞ୍ଛିତ ଜୀବନ । ଏମନ୍ତେ ଗଲା କେତେ ଦିନ ॥
ଅନ୍ନ ନ ପାଇ ଦାରା ସୁତ । କ୍ରୋଧ ବହିଲେ ବନ୍ଧୁ ମିତ୍ର ॥
ସକଳେ ଭାଳି ଏକଚିତ୍ତେ । ତା ଧନ ହରିଲେ ଗୁପତେ ॥
ପୁତ୍ର କାମିନୀ ପରିବାର । ଯେ ଅବା ଦାସ ଦାସୀ ଚୋର ॥
ଅନଳେ ଗଲା କିଛି ପୋଡ଼ି । ବାଣିଜ୍ୟ ନାବ ଗଲା ବୁଡ଼ି ॥
ସଞ୍ଚିତେ ଯେତେ ଧନ ଥିଲା । ଏମନ୍ତେ ନାନା ପାପେ ଗଲା ॥
ନିର୍ଦ୍ଧନ ଦେଖି ଦାରା ସୁତେ । ବନ୍ଧୁବାନ୍ଧବ ତାର ଯେତେ ॥
ଦାସୀ ସେବକ ପରିଜନ । ଛାଡ଼ି ଚଳିଲେ ଅନ୍ୟସ୍ଥାନ ॥
ଏମନ୍ତେ ବିପ୍ର ଦୁଃଖ ଚିତ୍ତେ । ରାତ୍ର ଦିବସ ବୁଲେ ନିତ୍ୟେ ॥
ବିକଳ ଚିତ୍ତେ ନିତ୍ୟେ କାନ୍ଦେ । ନିର୍ଦ୍ଧନ ବାନ୍ଧବ ବିଚ୍ଛେଦେ ॥
ଏମନ୍ତେ ଚିନ୍ତା ଶୋକ ଭରେ । ପଡ଼ିଲା ଭବତାପ ଜ୍ୱରେ ॥
ଭାଳଇ ଅତି ଭ୍ରମ ଚିତ୍ତେ । ମୁଁ ଏବେ ବଞ୍ଚିବି କେମନ୍ତେ ॥
ଏମନ୍ତ ଭାଳୁ ଭାଳୁ ଦିନେ । ବୈରାଗ୍ୟ ଉପୁଜିଲା ମନେ ॥
ବୋଲଇ ଆତ୍ମା ଅନୁସରି । ବିଫଳେ ଅଛି ଦେହ ଧରି ॥
ଧିକ ଏ ଜୀବନ ମୋହର । ବିଅର୍ଥେ ବିପ୍ର କଳେବର ॥
ଆପଣା ଦୋଷେ ମୁଁ ବିଶ୍ୱାସ । ହେଲେ ସକଳ କଲି ନାଶ ॥
ଆପଣା ହସ୍ତେ ମନ ସୁଖେ । ଅନଳ ଦେଲି ନିଜ ମୁଖେ ॥
ମୋହର ନିଜ କର୍ମ ପାକେ । ବଞ୍ଚିତ ହୋଇ ନରଲୋକେ ॥
ପୁତ୍ର କଳତ୍ର ପରିବାର । ବନ୍ଧୁ ବାନ୍ଧବ ଯେତେ ମୋର ॥
ଏହାଙ୍କୁ ଦୁଃଖ ଦେଇ ଚିତ୍ତେ । ଧନ ସଞ୍ଚିଲି ଅବିରତେ ॥
ତେଜିଲି ଧର୍ମ କାମ ଭୋଗ । ସକଳ ସୁଖେ ମୁଁ ବିଯୋଗ ॥
ଧନେ ମୁଁ ହୋଇଲି ନିରାଶ । ଉଭୟ ଲୋକ କଲି ନାଶ ॥
ବଞ୍ଚିତ ହୋଇ ଇହଲୋକେ । ଅନ୍ତେ ମୁଁ ପଡ଼ିବି ନରକେ ॥
ଅର୍ଜନ ସାଧନ ସଞ୍ଚୟେ । ଧନ ସେ ସର୍ବ ଦୁଃଖମୟେ ॥
ଚଉର୍ଯ୍ୟ ହିଂସା ମିଥ୍ୟା ଦମ୍ଭ । ବଇର ମନ୍ଦ ବୁଦ୍ଧି ଭାବ ॥
କ୍ରୋଧ କୁଟିଳ ଅବିଶ୍ୱାସ । ସେ ପଥ ଶ୍ରମର ପ୍ରକାଶ ॥
ଏ ପଞ୍ଚଦଶ ଦୋଷ ଧନେ । ଏଣୁ ପଣ୍ଡିତ ସାଧୁ ଜନେ ॥
ଧନ ସଞ୍ଚୟ ଦୂର କରି । ନିୟତ କର୍ମକୁ ଆଦରି ॥
ଧୀରେ ରହନ୍ତି ଶୁଦ୍ଧ ଚିତ୍ତେ । ଧନ୍ୟ ଜୀବନ ଏ ଜଗତେ ॥
ତାତ ଜନନୀ ଭ୍ରାଥ ସୁତ । ସୁହୃଦ ବାନ୍ଧବ କଳତ୍ର ॥
ଏହାଙ୍କୁ ଦେଖି ରିପୁ ପ୍ରାୟେ । ଧନ ସଞ୍ଚୟେ ନିତ୍ୟେ ଧାୟେ ॥
ଭେଦ ଉପୁଜେ ବନ୍ଧୁ କୁଳେ । ଧନ ସଞ୍ଚୟନ ଆକୁଳେ ॥
ବିଚ୍ଛେଦ କରେ ଦାରା ସୁତେ । କଦର୍ଯ୍ୟ ବୋଲନ୍ତି ଜଗତେ ॥

ସକଳ ସେ ମହିମା ଧନେ । କୃପଣେ ମର୍ଯ୍ୟାଦା ଲଂଘନେ ॥
ଅଳପ ଧନର କାରଣେ । ବଇରୀ ଭେଦ ଅନୁକ୍ଷଣେ ॥
ସୁଜନେ ବନ୍ଧୁକୁଳ ଭେଦ । କନ୍ଦଳ ବାକ୍ୟ ଅନୁବାଦ ॥
ମନୁଷ୍ୟ ଦେହେ ଜନ୍ମ ହୋଇ । ବ୍ରାହ୍ମଣ ତନୁ ମୁହିଁ ପାଇ ॥
ସ୍ୱର୍ଗେ ବାଞ୍ଛନ୍ତି ଦେବଗଣେ । ମନୁଷ୍ୟ ଜନ୍ମ ଅନୁକ୍ଷଣେ ॥
ମୁଁ ଏ ଦୁର୍ଲ୍ଲଭ ଦେହ ଲଭି । ନିୟତ କର୍ମେ ପରାଭବି ॥
ଏ ଜନ୍ମ କଲି ଅନାଦର । ଧନ ସଞ୍ଚୟ ଧିକ ମୋର ॥
ସ୍ୱଭାବେ ବୟସ ସରିଲା । ଏ ଜନ୍ମ ବିଅର୍ଥେ ଗମିଲା ॥
ଜାଣଇ ଅନିତ୍ୟ ଜଗତ । ଈଶ୍ୱର ମାୟାରେ ମୋହିତ ॥
ଏ ଧନ ଅର୍ଥେ କୁପଣ୍ଡିତ । ବ୍ୟର୍ଥେ ବ୍ୟାକୁଳ ଲୋଭଗ୍ରସ୍ତ ॥
ଏଣୁ ମୋହର ବିତ୍ତ ଧନେ । ଭାଳଇ ବ୍ୟର୍ଥ ପ୍ରୟୋଜନେ ॥
ମରଣ ମୁଖେ ଏବେ ପଡ଼ି । ଭାଳଇ ନିଜ ପଥ ହୁଡ଼ି ॥
ଏବେ ଜାଣିଲି ମୋର ଭାଗ୍ୟ । ଗୋବିନ୍ଦ କଲେ ଅନୁରାଗ ॥
ଏ ମୋର ପୁଣ୍ୟ ଫଳ ଯଶ । ତେଜିଲି ଧନ ଜନ ଆଶ ॥
ଚଞ୍ଚଳ ମନ ହୃଦେ ରୁନ୍ଧି । ତେବେ ସାଧିବି ସର୍ବ ସିଦ୍ଧି ॥
ହରି ଚରଣେ ଦେଇ ମତି । ଖଣ୍ଡିବି ଅଶେଷ ଦୁର୍ଗତି ॥
ପୂର୍ବେ ଖଟ୍ୱାଙ୍ଗ ନୃପବର । ଦେବଙ୍କୁ କରି ଉପକାର ॥
ପୁଣି ସେ ଆସି ମହୀସ୍ଥଳେ । ନିମିଷ ମାତ୍ର ପୁଣ୍ୟ ଫଳେ ॥
ଭାବେ ଆରାଧି ଚକ୍ରଧର । ଭବସାଗରୁ ହେଲେ ପାର ॥
ମୁଁ ଏବେ ସର୍ବକର୍ମ ତେଜି । ମନକୁ ତପରେ ନିୟୋଜି ॥
ସଂସାରୁ ତରିବି ଯେମନ୍ତେ । ଏମନ୍ତ ଭାବି ହୃଦଗତେ ॥
ନିଷ୍କଳ ଶାନ୍ତି ଧୈର୍ଯ୍ୟ ଚିତ୍ତେ । ତପସୀ ଜନଙ୍କର ମତେ ॥
ପୃଥିବୀ କରି ପର୍ଯ୍ୟଟନ । ଗିରି ଦୁର୍ଗମ ଘୋରବନ ॥
ଗୁପତ ଅବଧୂତ ବେଶେ । ବୁଲିବି ପୁର ଗ୍ରାମ ଦେଶେ ॥
ସ୍ୱଭାବେ ଦିଶେ କୁଘଟନ । ବୃଦ୍ଧ ଭିକ୍ଷୁକ ସେ ବ୍ରାହ୍ମଣ ॥
ଗ୍ରାମେ ବୁଲଇ ଭିକ୍ଷା ଆଶେ । ମଳିନ ଅବଧୂତ ବେଶେ ॥
ଅତି ମଳିନ ଅତି କ୍ଷୀଣ । ଦିଶଇ ଅତି ବର୍ଣ୍ଣ ହୀନ ॥
ଗୁପତ ଦେଖି ତାର ଚିହ୍ନ । ଲୋକେ କରନ୍ତି ଅପମାନ ॥
ତାହାକୁ ମୂଢ଼ପଣେ ବେଢ଼ି । କେ ଧାମେ ମୁଣ୍ଡେ କର ତାଡ଼ି ॥
କେ ଦଣ୍ଡ କମଣ୍ଡଳୁ ବଳେ । ଘେନି ପଳାନ୍ତି କୁତୂହଳେ ॥
କେ ଯଜ୍ଞ ସୂତ୍ର କାନ୍ଧୁ ଫେଡ଼େ । କେ ଦୁଷ୍ଟ ମାରନ୍ତି ଚାପୋଡ଼େ ॥
କେ କନ୍ଥା ଚିରି କରି ବଳେ । ଭୟେ ପଳାନ୍ତି ଏକମେଳେ ॥
ପୁଣି ରହନ୍ତି ଦୂରେ ଯାଇ । ନାନା ଭର୍ତ୍ସନେ ଗାଳି ଦେଇ ॥
କେ ହସି କରତାଳି ଦେଇ । ଗୁପତେ ତାର ପଛେ ଥାଇ ॥
ଭିକ୍ଷା ମାଗନ୍ତେ ଅନ୍ନପାଣି । ତାକୁ ଯେ ଲୋକେ ଦ୍ୟନ୍ତି ଆଣି

ଯେବେ ପୁଞ୍ଜଇ ଜଳଚୀରେ । କେ ମୂତେ ଭିକ୍ଷାର ଉପରେ ॥
କେ ମୁଖେ ଅଧୋବାୟୁ ଛାଡ଼େ । କେ ହସି କରି କର ତାଡ଼େ
କେ ମାରି ଆନକୁ ଦେଖାଇ । ହସନ୍ତି ତାର ମୁଖ ଚାହିଁ ॥
ତର୍ଜନ ଗର୍ଜନ କେ କରେ । କେ ରଜ୍ଜୁ ବାନ୍ଧନ୍ତି ପୟରେ ॥
କେ ଅବା ପୂର୍ବେ ତାକୁ ଚିହ୍ନି । କହନ୍ତି ସାତ ପାଞ୍ଚ ଘେନି ॥
ଏହାର ନାଶ ଗଲା ଧନ । କୋପେ ଛାଡ଼ିଲେ ବନ୍ଧୁଜନ ॥
ଦେଖ କପଟେ ହୀନ ବେଶ । ଜଗତେ ବୋଲାଇ ସନ୍ନ୍ୟାସ ॥
ଦେଖ ବୁଲଇ ଅଧୋମୁଖେ । ଚକ୍ଷୁ ମେଲିଣ ସର୍ବଦେଖେ ॥
ରାତ୍ରେ ପଶିବ ଘରେ ଘରେ । ଚୋରି କରିବ ଅଭ୍ୟନ୍ତରେ ॥
ଏହାକୁ ମାରି କର ଦୂର । ଦଣ୍ଡେ ନ ଥାଉ ଆମ୍ଭ ପୁର ॥
ଦେଖ ମଉନ ମୁଖେ ରହେ । ଜଳେ ଯେସନେ ବକ ପ୍ରାୟେ ॥
ଆଜ କରିବ ଜାଣ ଚୋରି । ଦୂରେ ପ୍ରବେଶ ଏହା ମାରି ॥
ଏମନ୍ତେ ଦୁଷ୍ଟଗଣ ମିଳି । ହସନ୍ତି ଦେଇ କର ତାଳି ॥
କେବେ ହେଁ ନୋହେ ମନଦୁଃଖୀ । ପୂର୍ବ ଅର୍ଜିଲା କର୍ମ ଲେଖି ॥
ଯେ ଅବା ଯେତେବେଳେ ହୁଏ । ଗୋରୁଙ୍କ ପ୍ରାୟ ସବୁ ସହେ
ଅଦୃଷ୍ଟ ମାନି କହେ କଥା । କେ ଅଛି ଦୁଃଖ ସୁଖ ଦାତା ॥
ଯେ ପ୍ରାଣୀ ଆତ୍ମାକୁ ନ ଜାଣେ । ସେ ରିପୁ ମିତ୍ର ପରିମାଣେ ॥
ଆପଣା ହସ୍ତେ ଜିହ୍ୱା ଛେଦି । କେ ଅଛି ତାର ପ୍ରତିବାଦୀ ॥
ମାୟା ସଂସାରେ ଜ୍ଞାନ ହାରି । ଜୀବକୁ ଜୀବ ହିଂସା କରି ॥
ସ୍ୱଭାବେ ଜୀବ ନିର୍ବିକାର । ଦୋଷ ଅଦୋଷ ନାହିଁ ତାର ॥
କୋପଇ ଏକ ଅଙ୍ଗେ ଥାଇ । ଅନ୍ୟର ଅଙ୍ଗେ ପ୍ରହାରଇ ॥
ଏ ଦୁଃଖ ସୁଖ ବିଚାରିଲେ । ଲାଗଇ ନିଜ ଆତ୍ମା ତୁଲେ ॥
ଯେବେ ବୋଲିବା ଗ୍ରହ ଦୋଷେ । ପ୍ରାଣୀ ବନ୍ଧନ ଗୁଣ ଦୋଷେ
ଏ ସତ୍ୟ ଅନୁମାନ ନୁହେଁ । ଗ୍ରହ କି ମାରେ ଗ୍ରହ ଦେହେ ॥
ଏ ଦୁଃଖ ସୁଖ ହେତୁ କର୍ମ । ବିଚାରି କଲେ ସେହୁ ଭ୍ରମ ॥
ଏ ଆତ୍ମା ବ୍ରହ୍ମ ସୁଖସାର । ନିର୍ମଳ ନିତ୍ୟ ନିର୍ବିକାର ॥
ଯଦି ବୋଲିବ ନ୍ୟାୟେ ଇଛି । କାଳେ ସେ ଦୁଃଖ ସୁଖ ଲେଛି ॥
ଫଳଇ ଲେଖି ଯେଝାକାଳେ । ବୃଦ୍ଧ ତରୁଣ କିବା ବାଳେ ॥
ତେବେ ଆତ୍ମାର କିବା ଦୋଷ । ସ୍ୱଭାବେ ଆତ୍ମା ବିଷ୍ଣୁ ଅଂଶ ॥
ଏ ଦୁଃଖ ସୁଖ ଦେହ ବହି । ଏ ଅନୁମାନେ ନ ଘଟଇ ॥
ସ୍ୱଭାବେ ଦେହ ଜଡ଼ମୟେ । ସ୍ଥକିତ ମୃତ୍ତିକାର ପ୍ରାୟେ ॥
ଆତ୍ମା ପରମହଂସ ପକ୍ଷେ । ଯେହ୍ନେ ବସଇ ନାନା ବୃକ୍ଷେ ॥
ଏଣୁ ଦୁଃଖସୁଖ ବିଚାର । ନ ଘଟେ କିବା ନିଜ ପର ॥
ଏଣୁ ଅନିତ୍ୟ ଏ ସଂସାରେ । ପ୍ରାଣୀ ବନ୍ଧନ ଅହଙ୍କାରେ ॥
ଶତ୍ରୁ ବାନ୍ଧବ ନିଜ ପର । ଏ ଦୁଃଖ ସୁଖ ହିଁ ମୋହର ॥
ବୁଲଇ ମାୟା ଭ୍ରମ ଜଡ଼େ । ଏଣୁ ସଂସାରେ ପ୍ରାଣୀ ପଡ଼େ ॥
ଏତେ ବିଚାରି ବିପ୍ରମନେ । ଚିତ୍ତ ନିରୋଧି ଯୋଗଧାନେ ॥
ହରି ଚରଣ କଲା ସାର । ତେଜିଲା ମନୁ ଅହଙ୍କାର ॥
ନିର୍ମଳ ଚିତ୍ତେ ମୋ ଚରଣେ । ବୁଲେ ଅବନୀ ପର୍ଯ୍ୟଟନେ ॥
କୃଷ୍ଣ ପଦାରବିନ୍ଦ ଧାନେ । କିଛି ନ ଜାଣେ ରାତ୍ର ଦିନେ ॥
ଫିଟିଲା ଅଶେଷ ବନ୍ଧନ । ଗୋବିନ୍ଦ ପାଦେ ହେଲା ଲୀନ ॥
ଉଦ୍ଧବ ଏହା ମନେ କର । ସର୍ବ ସଂଶୟ ପରିହର ॥
ନିର୍ମଳ ଚିତ୍ତେ ମୋର ପାଦେ । ସମର୍ପି ରହ ତୁ ଆନନ୍ଦେ ॥
ଏ ଭିକ୍ଷୁଗୀତା ଇତିହାସେ । ତୋ ଆଗେ କହିଲୁ ବିଶ୍ୱାସେ ॥
ଏ ପୁଣ୍ୟମୟ ଦିନେ ଦିନେ । ସେ କରେ ଶ୍ରବଣ ପଠନେ ॥
ଅଶେଷ ଦୋଷ ପରିହରେ । ନ ଆସେ ଭବ ପଙ୍କ ଘୋରେ ॥
ହରଇ କାମ କ୍ରୋଧ ଆଶ । ଖଣ୍ଡେ ସକଳ କଳମଷ ॥
କହଇ ଦାସ ଜଗନ୍ନାଥ । ଶ୍ରୀ ଏକାଦଶେ ଭାଗବତ ॥
ଉଦ୍ଧବ କହେ ନାରାୟଣ । ସୁଜନେ ସାବଧାନେ ଶୁଣ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ*
*ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଭିକ୍ଷୁଗୀତା କଥନେ*
*ନାମ ଚତୁର୍ବିଂଶୋଽଧ୍ୟାୟଃ ।*

## ପଞ୍ଚବିଂଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ନାରାୟଣ । ଉଦ୍ଧବ ସାବଧାନେ ଶୁଣ ॥
ତୁ ଅଟୁ ଭକତ ପ୍ରଧାନ । କହିବା ସାଂଖ୍ୟଯୋଗ ପୁଣ ॥
ଯେ ଜ୍ଞାନ ବିକଳ୍ପେ କଳ୍ପିତ । ପ୍ରଥମେ ସୃଷ୍ଟିର ଅଗ୍ରତ ॥
ସେ କାଳେ ବିବେକ ପ୍ରଧାନେ । ସୃଷ୍ଟିରେ ପ୍ରବର୍ତ୍ତିଲେ ଜନେ ॥
ବିଜ୍ଞାନମୟ ବ୍ରହ୍ମଭାଗେ । ଲୋକେ ଜାଣନ୍ତି ଯୋଗମାର୍ଗେ ॥
ଆଦ୍ୟଗଣନା ସତ୍ୟଯୁଗେ । ସେ ବ୍ରହ୍ମ ହୋଇ ବେନି ଭାଗେ
ପ୍ରକୃତି ହଏ ଏକ ଅଂଶେ । ଦ୍ୱିତୀୟ ପୁରୁଷ ପ୍ରକାଶେ ॥
ଯେ ଭାବ ପ୍ରକୃତି ରୂପିଣୀ । ଉତ୍ପତ୍ତି ସ୍ଥିତି ସଂହାରିଣୀ ॥
ସ୍ୱଭାବେ ଜଡ଼ ରୂପେ ଥାଇ । ଈଶ୍ୱର ଅଂଶେ କ୍ଷୋଭ ପାଇ ॥
ଯେଣୁ ଏ ବ୍ରହ୍ମ ବେନିଖଣ୍ଡ । ସଂଯୋଗେ ଜନ୍ମିଲା ବ୍ରହ୍ମାଣ୍ଡ ॥
ବ୍ରହ୍ମାଣ୍ଡ ମଧ୍ୟେ ତିନିଗୁଣ । ଜନ୍ମିଲା ପ୍ରକୃତି କାରଣ ॥
ତ୍ରିଗୁଣ ସତ୍ତ୍ୱ ରଜ ତମ । ଏକାନ୍ତ ସୂତ୍ରେ ଉପାଦାନ ॥
ସେ ସୂତ୍ର ତ୍ରିଗୁଣେ ଜଡ଼ିତ । ତା ତହୁଁ ଜନ୍ମିଲା ମହତ୍ତ୍ୱ ॥
ମହତ୍ତ୍ୱ ତ୍ରିଗୁଣେ ବିହାର । ତହୁଁ ଜନ୍ମିଲା ଅହଂକାର ॥

ସେ ପୁଣ ହୋଇ ତିନିଅଂଶ । ସାତ୍ତ୍ୱିକ ରାଜସ ତାମସ ॥
ପଞ୍ଚ ବିଷୟେ ସତ୍ତ୍ୱଗୁଣେ । ଜନ୍ମିଲା ଜ୍ଞାନ ପ୍ରଚାରଣେ ॥
ମଧ୍ୟେ ଅହଙ୍କାର ତାମସେ । ଜନ୍ମିଲା ଇନ୍ଦ୍ରି ଏକାଦଶେ ॥
ଅନ୍ତେ ସେ ହେଲା ତମୋଗୁଣ। ତହୁଁ ଜନ୍ମିଲେ ଦେବଗଣ ॥
ଯେ ସର୍ବେ ଜନ୍ମେ ଏକ ମେଳେ । କ୍ଷଣେ ସେ ନ ରହେ ନିଶ୍ଚଳେ ॥
ମୁହିଁ ତାହାଙ୍କ ଦେହେ ଯାଇ । ପଶିଲି ଗୁରୁପ୍ରାୟ ହୋଇ ॥
ତେବେ ସମସ୍ତେ ହେଇ ଗୁଣ। ଏକତ୍ୱେ ସାଜିଲେ ବ୍ରହ୍ମାଣ୍ଡ ॥
ଦିଶଇ ହେମ ମୟ ଅଣ୍ଡ । ମୋର ବିହାର କ୍ରୀଡ଼ା ଭାଣ୍ଡ ॥
ଅଶେଷ ଜଳେ ସେ ଭାସଇ । ସଲିଳ ବିମ୍ବ ପ୍ରାୟ ହୋଇ ॥
ମୁଁ ପୁଣି ବସି ତାର ମଧ୍ୟେ । ନିଦ୍ରା ପାସୋରିଲି ଆନନ୍ଦେ ॥
ମୋ ନାଭି କମଳୁ କମଳ । ଜନ୍ମିଲା ଅତ୍ୟନ୍ତ ନିର୍ମଳ ॥
ତହୁଁ ସେ ବ୍ରହ୍ମା ଅବତାରେ । ଯୋଗ ପ୍ରଳୟ ସୃଷ୍ଟି କରେ ॥
ସେ ରଜୋଗୁଣେ ଜାତ ହୋଇ । ବିଶେଷେ ମୋର ଆଜ୍ଞା ପାଇ ॥
ଶତବରଷ ବେଦମତେ । ତପ ସାଧିଲେ ସେ ନିରତେ ॥
ସେ ତପେ ମୋର ମନ ତୋଷି । ମୁଁ ପୁଣି ତାର ଦେହେ ପଶି ॥
ସେ ମୋର ନିଗମ ବଚନେ । ସୃଷ୍ଟି କରଇ ଅନୁମାନେ ॥
ସେ ଭାବେ ବ୍ରହ୍ମା ପ୍ରଜାପତି । ବେଦ ବଚନେ ତାର ଗତି ॥
ବ୍ରହ୍ମାଣ୍ଡ ମଧ୍ୟେ ତପୋବଳେ । ଜନ୍ମିଲା ଭୁବନ ମଣ୍ଡଳେ ॥
ଦ୍ୱିସପ୍ତ ଲୋକ ଅଧ ଊର୍ଦ୍ଧ୍ୱେ । ସୃଜିଲା ବେଦବାକ୍ୟ ଛନ୍ଦେ ॥
ସ୍ୱର୍ଲୋକ ସ୍ରିଜି ପ୍ରଜାପତି । ଯେ ଲୋକେ ଦେବଗଣେ ସ୍ଥିତି ॥
ପୁଣି ଚାହିଁଲା ଅଧୋମୁଖେ । ମନୁଷ୍ୟ ଥାଇ ସେ ଭୂଲୋକେ॥
ଏ ତିନିଲୋକ ସ୍ରିଜେ ମନେ । ପୁଣି କଳ୍ପିଲା ମଧ ଶୂନ୍ୟେ ॥
ଏହାକୁ ଭବଲୋକ ଭଣେ । ଯହିଁ ରହନ୍ତି ଭୂତଗଣେ ॥
ଏ ତିନି ଲୋକର ଉପରେ । ପୁଣି ବିଧାତା ସୃଷ୍ଟି କରେ ॥
ସିଦ୍ଧ ପୁରୁଷେ ଯହିଁ ଥାନ୍ତି । ଯୋଗୀନ୍ଦ୍ରେ ଯହିଁ ସଞ୍ଚରନ୍ତି ॥
ପୁଣି ହିଁ ତିନିଲୋକ ତଳେ । ବ୍ରହ୍ମା ସ୍ରିଜିଲା ଯୋଗବଳେ ॥
ପାତାଳ ନାମେ ଭୂମିତଳେ । ଯହିଁ ଅସୁର ନାଗବଳେ ॥
ଏ ତିନିଲୋକ ମଧ୍ୟେ କ୍ରମେ । କର୍ମ ସଙ୍ଗତେ ଜୀବ ଭ୍ରମେ ॥
ଏ ତିନିଲୋକ ଊର୍ଦ୍ଧ୍ୱ ଗତି । ପୁଣି କଳ୍ପିଲା ପ୍ରଜାପତି ॥
ମହତେ ଯହିଁ ଥାନ୍ତି ସୁଖେ । ତାହା କଳ୍ପିଲା ମହର୍ଲୋକେ ॥
ତାହା ଉପରେ ଜନଲୋକ । ଯହିଁ ନ ପଶେ ଦୁଃଖ ଶୋକ ॥
ସେ ଜନ ଲୋକର ଉପରେ । ଯହିଁ ବସନ୍ତି ତପୀବରେ ॥
ସତ୍ୟେ ସାତ୍ତ୍ୱିକେ ଯହିଁ ଥାନ୍ତି । ସେ ସତ୍ୟ ବ୍ରହ୍ମଲୋକ ସ୍ଥିତି ॥
ସେ ବ୍ରହ୍ମଲୋକ ଊର୍ଦ୍ଧ୍ୱ ଦେଶେ । ସହସ୍ରସୂର୍ଯ୍ୟ ପ୍ରାୟ ଦିଶେ ॥

କିବା କହିବା ତାର ଗତି । ମୋର ଭକତେ ଯହିଁ ଥାନ୍ତି ॥
ଭକତି ଯୋଗବଳ ମୋତେ । ନିରତେ ଚିନ୍ତି ଏକମତେ ॥
ଯେଣୁ ମୁଁ ବୈକୁଣ୍ଠ ଠାକୁର । ତେଣୁ ବୈକୁଣ୍ଠ ନାମ ମୋର ॥
ଏଣୁ ମୁଁ ବ୍ରହ୍ମା ପ୍ରଜାପତି । ଲୋକେ ଆଧାର ଲୋକସ୍ଥିତି ॥
ସମସ୍ତ ପାଳି ଯୋଗ ବଳେ । ପୁଣି ସଂହାର ଅନ୍ତଃକାଳେ ॥
ଏଣୁ ଏ ଅନିତ୍ୟ ସଂସାର । ତ୍ରିଗୁଣ କର୍ମର ସଞ୍ଚାର ॥
ଏ ଭବକୂପେ ଜନ୍ତୁ ପଡ଼ି । ଅଶେଷ କର୍ମ ପଙ୍କେ ଜଡ଼ି ॥
ଭ୍ରମନ୍ତି ଏ ଭବ ସଂସାରେ । ରଜ ତାମସ ଅହଙ୍କାରେ ॥
ଏ ସୂକ୍ଷ୍ମସ୍ଥୂଳ ତୃଣ ଅଣୁ । ସ୍ଥାବର ଜଙ୍ଗମ ଯେ ତନୁ ॥
ମାୟା ଯନ୍ତ୍ରିତ ସର୍ବଜନ । ବ୍ରହ୍ମାଦି ଚଉଦ ଭୁବନ ॥
ଏଣୁ ଈଶ୍ୱର ଏ ଭୁବନେ । ସର୍ବତ୍ର ବସଇ ସମାନେ ॥
ସୃଷ୍ଟି ପ୍ରଳୟ ନିତ୍ୟେ କରେ । ମାୟା ସଂସାରେ ସେ ବିହରେ॥
ଏଣୁ ଏ ଅନିତ୍ୟ ସଂସାର । ସତ୍ୟ ସ୍ୱରୂପ ମୁଁ ଈଶ୍ୱର ॥
ଏ ଭବପଙ୍କେ ଜନ୍ତୁ ପଡ଼ି । ଅଶେଷ କର୍ମପଙ୍କେ ଜଡ଼ି ॥
ଏ ମାୟା ପ୍ରକୃତି ବିକାର । ଜଗତ ହେତୁ ଏ ବେଭାର ॥
ଏକଇ ବ୍ରହ୍ମା ମୁଁ ବୃତ୍ତାନ୍ତ । ବିଚାରି ଆଦି ମଧ ଅନ୍ତ ॥
ପ୍ରକୃତି ପୁରୁଷ ଏ ବେନି । ଯୁଗତେ ପିଅର ଜନନୀ ॥
ବିଶ୍ୱ ପ୍ରକାଶ ହେତୁ ମୁହିଁ । ମୁଁ କାଳରୂପେ ସଂହାରଇ ॥
ମୋର କଟାକ୍ଷ ମାତ୍ରେ ଜାଣ । ଅଶେଷ ବ୍ରହ୍ମାଣ୍ଡ ନିର୍ମାଣ ॥
ଭ୍ରୁଭଙ୍ଗୀ ମାତ୍ରେ ମୁହିଁ ଯେତେ। ମୋତେ ଚିନ୍ତଇ ଆତ୍ମାଭାବେ ॥
କୋଟି ବ୍ରହ୍ମାଣ୍ଡ ମାୟାମୟେ । ତିଳ ମାତ୍ରକେ ଯାନ୍ତି କ୍ଷୟେ ॥
ଯେ ଯା ତହୁଁ ଥାନ୍ତି ଆସି । ଅନ୍ତେ ଲୁଚନ୍ତି ତାହା ଗ୍ରାସି ॥
ପ୍ରକୃତ ସଂଯୋଗେ ଜାଗ୍ରତ । ଅନ୍ତେ ପ୍ରକୃତି କରେ ଗ୍ରସ୍ତ ॥
ସେ ଦୈବୀମାୟା କାଳରୂପୀ । ପ୍ରକୃତି ରୂପେ ଥାଇ ବ୍ୟାପୀ ॥
ଏଣୁ ସକଳ ସୃଷ୍ଟି କରେ । ଅନ୍ତରେ ବ୍ରହ୍ମାଣ୍ଡ ସଞ୍ଚରେ ॥
କାଳପୁରୁଷ ତାର ସଙ୍ଗେ । ପ୍ରବେଶ କରେ ଜୀବ ଅଙ୍ଗେ ॥
ଏ ଜୀବ ପାଶେ ମୋର ତହିଁ । ମୁହିଁ କେବଳ ମାତ୍ର ଥାଇ ॥
ମୁହିଁ ସକଳ ଭାବେ ସାକ୍ଷୀ । ମୋ ବିନୁ ଆନ ନାହିଁ କିଛି ॥
ମୁହିଁ ମୋହରେ ଆଶ୍ରେ ଥାଇ । ଏଣୁ ନିରାଧାର ବୋଲାଇ ॥
ମୁହିଁ ସକଳ ଅବଶେଷେ । କେବଳ ଥାଇ ନିଜ ଅଂଶେ ॥
ଏ ସାଂଖ୍ୟଯୋଗ ମାତ୍ର କହି । ଏ ଜ୍ଞାନେ ସଂଶୟ ନ ଥାଇ ॥
ଚିତ୍ତୁ ସକଳ ହରେ ଦୋଷ । କେବଳ କୈବଲ୍ୟ ପ୍ରକାଶ ॥
ଏ ଭାବେ ନିରତେ ଯେ ମିଶେ ।ଅଜ୍ଞାନେ ହରେ ଜ୍ଞାନ ଦିଶେ ॥
ଉଦ୍ଧବେ କହେ ହୃଷୀକେଶ । ଶ୍ରୀଭାଗବତ ଏକାଦଶ ॥

ସୁଜନେ ଚିନ୍ତ ଏକ ମନେ । ଦୁସ୍ତର ଚିତ୍ତ ତତ୍ତ୍ୱଜ୍ଞାନେ ॥
ନିଶ୍ଚୟ ହୋଇବ ପ୍ରବେଶ । କହଇ ଜଗନ୍ନାଥ ଦାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ବ୍ରହ୍ମା ସୃଷ୍ଟି ସର୍ଜନେ ନାମ ପଞ୍ଚବିଂଶୋଽଧ୍ୟାୟଃ ।*

## ଷଡ଼ବିଂଶ ଅଧ୍ୟାୟ

କୃଷ୍ଣ କହନ୍ତି ବୀର ଶୁଣ । କହିବା ତ୍ରିଗୁଣ ଲକ୍ଷଣ ॥
ଗୁପତ ତ୍ୟାଗ ଶମ ଦମ । ସତ୍ୟ ସନ୍ତୋଷ ଦୟା କ୍ଷମ ॥
ଯେ ଲଜ୍ଜାତୃଷ୍ଣା ଶ୍ରଦ୍ଧା ଧୃତି । ସୁସ୍ଥିର ମତି ତତ୍ତ୍ୱେ ସ୍ଥିତି ॥
ଏ ସର୍ବ ଭାବେ ତତ୍ତ୍ୱ ପୁଣ । ସୁସାଂଖ୍ୟ ଯୋଗ ପାରିମାଣ ॥
ଏବେ ହୋ ସ୍ଥିର ମନେ ଶୁଣ । ରାଜସ ଗୁଣର ଲକ୍ଷଣ ॥
କାମ ସୁଚେଷ୍ଟା ତୃଷ୍ଣା ମଦ । ଗର୍ବ ବିଳାସ ମତି ଖେଦ ॥
ଯଶ ପ୍ରଭାବ ସୁଖ ଇଚ୍ଛା । ଲୋଭ ସଙ୍କଳ୍ପ ମନ୍ତ୍ର ଦୀକ୍ଷା ॥
ସୁବଳ ବଳ ହାସ୍ୟ ପର । ଯେ ପରାପର ଅହଙ୍କାର ॥
ଏତେ ଲକ୍ଷଣ ରଜୋଗୁଣ । ଶୁଣ ହୋ ତାମସ ଲକ୍ଷଣ ॥
ବିଷାଦ କ୍ରୋଧ ଲୋଭ ହିଂସା । ଅସତ୍ୟ ଦମ୍ଭ ମିଥ୍ୟା ଭାଷା ॥
କନ୍ଦଳ ଶୋକ ଅଭିମାନ । ବିଳାସ ଅଳସ ଶୟନ ॥
ଏତେ ଗୁଣେ ତାମସ ପୁଣ । ଏବେ ହୋ ଶୁଣ ପରିମାଣ ॥
ଯାହାର ଚିତ୍ତ ଧର୍ମ କର୍ମେ । ଦୃଢ଼େ ଭ୍ରମଇ ଗୃହାଶ୍ରମେ ॥
ତ୍ରିଗୁଣେ ଜନ୍ମ ତାର ଜାଣ । ଏବେ କହିବା ବୀର ଶୁଣ ॥
ଯାହାର ଶମ ଦମ ଦୟା । ସୁଶାନ୍ତି ଅନ୍ତରେ ନିର୍ମାୟା ॥
ସେ ସତ୍ତ୍ୱ ଯୁତ ବୋଲି ଜନେ । ବୁଝିବ ଏତେ ଅନୁମାନେ ॥
ଦମ୍ଭ ମତ୍ସର କ୍ରୋଧ ଯାର । ସେ ପ୍ରାଣୀ ତମେ ଦୁରାଚାର ॥
ଯେ ସର୍ବଧର୍ମ ପରିହରେ । ମୋ ଭାବେ ଶ୍ରଦ୍ଧା ଭକ୍ତିଭରେ ॥
ସେ ସର୍ବଭାବେ ନିରପେକ୍ଷ । ଏ ତତ୍ତ୍ୱ ଜାଣିବ ପ୍ରତ୍ୟକ୍ଷ ॥
ଏଣୁ ତ୍ରିଗୁଣ ଚିହ୍ନ ଜାଣି । କହିବା ଶୁଣ ପରିମାଣି ॥
ଏଣୁ ସାତ୍ତ୍ୱିକେ ଯେତେ ପ୍ରାଣୀ । ସ୍ୱଭାବେ ରଜ ତମ ଜିଣି ॥
ନିର୍ମାୟା ସତ୍ତ୍ୱଗୁଣ ଯେବେ । ସକଳ ସିଦ୍ଧି ଲଭେ ତେବେ ॥
ଏ ତିନିପୁର ଊର୍ଦ୍ଧ୍ୱ ଦେଶେ । ସୁଖେ ସାତ୍ତ୍ୱିକେ ପ୍ରାଣୀ ବସେ ॥
ତାମସ ଗୁଣୀ ଅଧୋଗତି । ସେ ପ୍ରାଣୀ ନରକେ ପଡ଼ନ୍ତି ॥
ଯେ ପ୍ରାଣୀ ରଜ ଗୁଣେ ଯୁତ । ସେ ମଧ ଲୋକେ ଗତାଗତ ॥
ଭୁଞ୍ଜଇ ଦୁଃଖସୁଖ କରି । ସମ୍ପଦ ବିପଦେ ବିହରି ॥
ସାତ୍ତ୍ୱିକ ପ୍ରାଣୀ ଯେବେ ମରେ । ସ୍ୱର୍ଗ ସମ୍ପଦ ଭୋଗ କରେ ॥
ଯେବେ ମରଇ ରଜୋଗୁଣୀ । ଏ ନରଲୋକେ ତା ଭ୍ରମଣି ॥
ଯେ ପ୍ରାଣୀ ତମ ଗୁଣେ ମରେ । ମହା ନରକେ ସେ ସଞ୍ଚରେ ॥
ମୁହିଁ ନିର୍ଗୁଣ ନିରାକାର । ଆତ୍ମାରେ ଆପଣେ ସଞ୍ଚାର ॥
ଜଗତେ ଯେ କର୍ମ କରନ୍ତି । ସେ ଫଳ ମୋତେ ସମର୍ପନ୍ତି ॥
କିବା ନିଷ୍କାମେ ତାହା ତେଜି । ସାତ୍ତ୍ୱିକ ମତେ ମୋତେ ଭଜି ॥
ଯେ ରଜଗୁଣ ଏ ଜଗତେ । କର୍ମ କରନ୍ତି ସଙ୍କଳ୍ପିତେ ॥
ଦମ୍ଭ ମତ୍ସର ହିଂସାମାନ । ତାମସେ ଏ କର୍ମ ସାଧନ ॥
ଯେ କର୍ମ କରେ ସତ୍ତ୍ୱଗୁଣେ । ତା ଜାଣି ମୁକ୍ତିର ଲକ୍ଷଣେ ॥
ବିକଳ୍ପ କଳ୍ପିତ କାରଣେ । ଧର୍ମ ସାଧନ ରଜୋଗୁଣେ ॥
ପ୍ରକୃତି ଭାବେ ତମ ଗୁଣ । ଅଜ୍ଞାନ ସଂସାର କାରଣ ॥
ମୋତେ ସମର୍ପେ କର୍ମ ଜ୍ଞାନ । ନିର୍ଗୁଣ ଭଜନ ଲକ୍ଷଣ ॥
ସାତ୍ତ୍ୱିକ ଫଳ ବନବାସ । ଗ୍ରାମେ କର୍ମ ସାଧେ ରାଜସ ॥
ମଦିରା ପାନେ ଗୋଷ୍ଠୀ ମିଳି । ଦ୍ୟୁତ ଶକଟା ପଶା ଖେଳି ॥
ତାମସ ଗୁଣି ଫଳ ଏତେ । ଗ୍ରାମ୍ୟ ବନସ୍ତ ମଧଗତେ ॥
ମୋର ମନ୍ଦିର ପୁର କର୍ମ । ସାତ୍ତ୍ୱିକ ଧନେ କରେ ଧର୍ମ ॥
ମୋ କଥା ଶ୍ରବଣ କୀର୍ତ୍ତନ । ତାକୁ ନ ବାଧେ ତିନିଗୁଣ ॥
ସାତ୍ତ୍ୱିକ କର୍ତ୍ତା କର୍ମଭାଗ । ସେ ମୋତେ କରେ ଫଳ ତ୍ୟାଗ ॥
ରାଜସ କର୍ତ୍ତା କର୍ମଭାଗୀ । ସେ କାମଭୋଗେ ଅନୁରାଗୀ ॥
ସ୍ୱଭାବେ କର୍ମଗୁଣ ତମ । ଅତି ଅଜ୍ଞାନ ମତିଭ୍ରମ ॥
ମୋର ଆଶ୍ରିତ ପ୍ରାଣୀ ଯେତେ । ନିର୍ଗୁଣେ ସଞ୍ଚରନ୍ତି ନିତ୍ୟେ ॥
ସାତ୍ତ୍ୱିକ ଶ୍ରଦ୍ଧା ଜ୍ଞାନ ରସେ । ରାଜସ ଶ୍ରଦ୍ଧା କର୍ମେ ବସେ ॥
ତାମସ ଶ୍ରଦ୍ଧା ପାପ କର୍ମେ । ନିରତେ ପଡ଼ଇ ଅଧର୍ମେ ॥
ମୋର ସେବାରେ ଶ୍ରଦ୍ଧା ପୁଣ । ନିଷ୍କାମ ସ୍ୱଭାବେ ନିର୍ଗୁଣ ॥
ନିଷ୍କଳ ପୂର୍ଣ୍ଣ ବ୍ରହ୍ମ ମିଶେ । କିଞ୍ଚିତେ ଭବଭୟ ନାଶେ ॥
ବୋଲଇ ଦାସ ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ଉଦ୍ଧବ ବୋଧ ଏକାଦଶ । ନିତ୍ୟେ ସୁଜନେ ଏଥେ ରସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକଦଶସ୍କନ୍ଧେ ତ୍ରିଗୁଣ ଲକ୍ଷଣ କଥନଂ ନାମ ଷଡ଼ବିଂଶୋଽଧ୍ୟାୟଃ ।*

## ସପ୍ତବିଂଶ ଅଧ୍ୟାୟ

### ଶ୍ରୀଭଗବାନ ଉବାଚ

ଉଦ୍ଧବେ ଚାହିଁ ହୃଷୀକେଶ । କହନ୍ତି ନାନା ଉପଦେଶ ॥
ଅନେକ ଜନ୍ମେ ତପ ଫଳେ । ମନୁଷ୍ୟ ଜନ୍ମ ମହୀତଳେ ॥

ଯାହାର ଦିବ୍ୟଜ୍ଞାନ ସ୍ଫୁରେ । ମୋର ମହିମା ସେ ସୁମରେ ॥
ମନ ନିବେଶି ମୋ ପୟରେ । ବିଷୟ ଦୁଃଖ ନ ସୁମରେ ॥
ପରମାନନ୍ଦ ସୁଖ ପାଇ । ସେ ପ୍ରାଣୀ ରହେ ପୂର୍ଣ୍ଣ ହୋଇ॥
ଏଣୁ ସୁଫଳ ନର ଅଙ୍ଗ । କେବେ ହେଁ ନାହିଁ ତାର ସଙ୍ଗ॥
ଯେ ପ୍ରାଣୀ ଶରଣ ମୋହର । ମୁହିଁ ତାହାର ସୁଖଘର ॥
ଅବିଦ୍ୟା ବାଧା ନ ଲାଗଇ । ତାହାର ଶ୍ରୁତିଭଙ୍ଗ କାହିଁ ॥
ସାଧୁଙ୍କ ସଙ୍ଗେ ସେ ରମନ୍ତି । ଏଣୁ ଏ ସଂସାରୁ ତରନ୍ତି ॥
ଯେ ଶିଶ୍ନୋଦର ପରାୟଣ । ଅସାଧୁ ମତି ଯେ ଦୁର୍ଜନ ॥
ଏଣୁ ଦୁର୍ଜନ ସଙ୍ଗ ଦୋଷ । କରେ ସକଳ ଧର୍ମ ନାଶ ॥
ଥିଲା ଯେ ବୁଧଗ୍ରହ ସୁତ । ସେ ପୁରରବା ନରନାଥ ॥
ଉର୍ବଶୀ ବିଚ୍ଛେଦ ସେ ବୀର । ସକାମେ ତେଜିଲା ସଂସାର ॥
ଉନ୍ମତ୍ତ ଉଲଗ୍ନ ଶରୀରେ । ଭ୍ରମିଲା ଦେଶ ବନଘୋରେ ॥
କାନ୍ଦଇ ଉର୍ବଶୀ ନ ପାଇ । କ୍ଷଣ କ୍ଷଣକେ ଛନ୍ନ ହୋଇ ॥
ଏମନ୍ତେ ରାତ୍ର ଦିନ ଭଳେ । ନୟନୁ ଅଶ୍ରୁଜଳ ଗଳେ ॥
ରାତ୍ରେ ଏମନ୍ତ ଏକଦିନେ । ରାଜା ବିଚାରୁଅଛି ମନେ ॥
ଦେଖ ମୋହର କର୍ମଫଳ । ଉର୍ବଶୀ ସଙ୍ଗେ ଏତେ କାଳ ॥
ବିବିଧ ରଙ୍ଗେ କରି ଖେଳା । ବିଅର୍ଥେ ଆୟୁଷ ମୋ ଗଲା ॥
ବଞ୍ଚିତ ହୋଇଲି ଜଗତେ । ଧର୍ମାର୍ଥ କାମ ଅପ୍ରାପତେ ॥
ନ ଦେଖେ ଆଦିତ୍ୟର ଗତି । ଅଜ୍ଞାନେ ଗଲା ଦିବା ରାତି ॥
ନାରୀ ସଙ୍ଗମେ ଗଲା କାଳ । ଧିକ ମୋ ଜୀବନ ନିଷ୍ଫଳ ॥
ଦେଖି ମୁଁ ନୃପ ଶିଖାମଣି । ମୋ ପ୍ରାଣ ଜିଣିଲା ତରୁଣୀ ॥
ଏ ନର କଳେବର ପାଇ । ମୁଁ ପାପୀ ତୃଣ ପ୍ରାୟ ହୋଇ ॥
ଉର୍ବଶୀ ବିୟୋଗେ ବିକଳ । ଅଜ୍ଞାନେ ନାଶିଲା ସକଳ ॥
ଧନ ସମ୍ପଦ ମୋର କେଣେ । ଗଲା ନ ଦେଖେ ଅନ୍ଧପଣେ ॥
ଏକାନ୍ତେ ଭ୍ରମଇ ଜଗତ । ଉଲଗ୍ନ ବେଶେ ଉନମତ ॥
ଉର୍ବଶୀ ପଥେ ଯାଉ ଚଳି । ମୋ ମୁଣ୍ଡେ ତାର ପାଦଧୂଳି ॥
ଲମ୍ପଟ ଉନ୍ମତ୍ତ ମୋ ବେଶ । ମୋ ମୁଣ୍ଡେ ମୁକୁଳିତ କେଶ ॥
ଦେଖି ନିର୍ଦ୍ଦୟା ତା ହୃଦୟେ । କେବେ ହେଁ ଲେଉଟି ନ ଚାହେଁ ॥
ଏ ପାଖ ଚିତ୍ତ ନିରୋଧନେ । ଉପାୟ ନ ଦିଶେ ମୋ ମନେ॥
ମୋ ଅଙ୍ଗେ ଚରଣ ତାଡ଼ଇ । ନିର୍ଲ୍ଲଜ ମୁଁ ତା ନ ଜାଣଇ ॥
କି ତପ ବିଦ୍ୟା ସେ ସାଧିଣ । କଟାକ୍ଷେ ହରିଲା ମୋ ମନ ॥
ଏଣୁ ଜୀବନ ମୋର ଧିକ । ନିଷ୍ଫଳ ଜ୍ଞାନ ଅବିବେକ ॥
ସର୍ବ ନିଷ୍ଫଳ ନାରୀ ସଙ୍ଗେ । ବଞ୍ଚିତ ହେଲି ନରଅଙ୍ଗେ ॥
ଉର୍ବଶୀ ସଙ୍ଗେ ଏତେ ଦିନ । ବଞ୍ଚିଲି ଧିକ ମୋ ଜୀବନ ॥

ମୋତେ ନ ଛାଡ଼େ କାମଜ୍ୱର । ମୁଁ ରୋଗୀ ପାପିଷ୍ଠ ପାମର ॥
ନାରୀ ସଙ୍ଗମେ ଯାର ମନ । ମୋହେ ସେ ହୁଏ ହତଜ୍ଞାନ ॥
ତାର ଜୀବନ ଉଦ୍ଧାରଣେ । କେ ପାରେ ବିନା ନାରାୟଣେ ॥
ଜ୍ଞାନ ପ୍ରଧାନ ଭଗବାନ । ଗୁଣ ରଞ୍ଜନ ପୂର୍ଣ୍ଣକାମ ॥
ମୋର ଜୀବନ ପରିତ୍ରାଣେ । କୃଷ୍ଣ ହୁଁ ନାହିଁ ଅନ୍ୟ ଜଣେ ॥
ରୁଧିର ମାଂସ ମଳ ମୂତ୍ରେ । ଅନ୍ତ ଜଡ଼ିତ ଶିବ ସୂତ୍ରେ ॥
ପୁଣି ନିର୍ମିତ ଅସ୍ଥି ଚର୍ମେ । ଏ ନର ଦେହ ପାଇ କର୍ମେ ॥
ଏ ସର୍ବେ ଅଭେଦ ମନ୍ଦିର । ଅନିତ୍ୟ ନର କଳେବର ॥
ଏହାକୁ ନିତ୍ୟ ପ୍ରାୟ ମଣି । ଯେ ନର ରମନ୍ତି ତରୁଣୀ ॥
ସେ କୀଟ କୃମି ସଙ୍ଗେ ସଙ୍ଗ । ଯେ ନିତ୍ୟ ମଣେ ନର ଅଙ୍ଗ ॥
ଏ ବୋଲ ବୁଝି ନାରୀ ସଙ୍ଗେ । ପଣ୍ଡିତ ଚିତ୍ତ ନୁହେଁ ରଙ୍ଗେ ॥
ବିଷୟ ସଙ୍ଗ ଇନ୍ଦ୍ରିମେଳେ । ମନ ବିୟୋଗ ରସ ଭୋଳେ ॥
ନିତ୍ୟେ ସେ କଳେ ଅନୁରାଗ । ନିଦ୍ରା ବୋଧନେ ହୋଏ ଭଙ୍ଗ॥
ଶ୍ରବଣେ ଶୁଣି ନାରୀରୂପ । ଚିତ୍ତେ ଜଡ଼ଇ କାମକଳ୍ପ ॥
ଏଣୁ କାମେନୀ ଗୁଣ ଦୋଷେ । ପଣ୍ଡିତ ଜନ ମନ ତ୍ରାସେ ॥
ଏତେ ବିଚାରି ନୃପବର । ଚଞ୍ଚଳ ଚିତ୍ତ କଲା ସ୍ଥିର ॥
ଉର୍ବଶୀ ସଙ୍ଗ ଦୂର କରି । ମୋର ଚରଣ ଦୃଢ଼େ ଧରି ॥
ଭଗତି ଯୋଗେ ଧରି ମନ । ମୋ ପାଦେ କଲା ଆରାଧନ ॥
ଚିତ୍ତେ ଯେ ଥିଲା ମୋହ ଫାଶ । ମୋ ଧ୍ୟାନେ କଲା ସର୍ବନାଶ ॥
ମୋ ନାମେ ଜପି ଶୁଦ୍ଧମନେ । ଅନ୍ତେ ପଶିଲା ମୋ ଭବନେ ॥
ତୁ ଏବେ ଦୃଢ଼ ଚିତ୍ତେ ବୁଝି । ନାରୀ ସଙ୍ଗମ ଦୂରେ ତେଜି ॥
ସାଧୁ ସଙ୍ଗମ ଦୃଢ଼ କର । ମୋ ନାମେ ଆନନ୍ଦେ ବିହର ॥
ସାଧୁ ସଙ୍ଗମ ଜ୍ଞାନ ବଢ଼ି । କର୍ମବାସନା ବନ୍ଧ ଛିଡ଼ି ॥
ସାଧୁଙ୍କ ମୁଖରସ ବାଣୀ । କୁମତି ଖଣ୍ଡେ ତାହା ଶୁଣି ॥
ସ୍ୱଭାବେ ସାଧୁସଙ୍ଗେ ଯେତେ । ସାମାନ୍ୟ ଦେଖନ୍ତି ଜଗତେ ॥
ନାହିଁ ତାହାଙ୍କ ନିରପେକ୍ଷ । ମିତ୍ର ବଇରୀ ସମକକ୍ଷ ॥
ମନ ନିବେଶି ମୋ ପୟରେ । ସ୍ୱଭାବେ ଶାନ୍ତି ପରାପରେ ॥
ନିନ୍ଦଇ ନିଷ୍କାମ ନିର୍ମୋହ । ସ୍ୱଭାବେ ନାହିଁ ପରିଗ୍ରହ ॥
ଏ ସାଧୁ ସଙ୍ଗେ ସଙ୍ଗକର । ମୋର ଭଗତି ହୃଦେ ଧର ॥
ମୋର ପବିତ୍ର ନାମ ଗୁଣ । ନିତ୍ୟେ ତାହାଙ୍କ ମୁଖୁଁ ଶୁଣ ॥
ମୋ ନାମ ଜପି କର୍ଣ୍ଣଦ୍ୱାରେ । ହୃଦୁଁ ଅଶେଷ ପାପହରେ ॥
ସାଧୁଜନଙ୍କ ସଭା ମଧ୍ୟେ । ମୋ ନାମ ଶୁଣି ଅନୁବାଦେ ॥
ନିତ୍ୟେ କହନ୍ତି ମୋର କଥା । ମୋ ପୁଣ୍ୟ ଯଶ ଗୁଣ ଗାଥା ॥
ଆନନ୍ଦେ ଶୁଣ କର୍ଣ୍ଣପୁରେ । ବଦନେ ଗାଆନ୍ତି ସୁ ସ୍ୱରେ ॥
ନୟନୁ ଅଶ୍ରୁଜଳ ଝରେ । ରୋମ ହରଷ କଳେବରେ ॥

ଚିତ୍ତେ ମୋହର ପାଦଗତ । ଅର୍ପିତ କରେ ଶୁଦ୍ଧ ଚିତ୍ତ ॥
ନାନା କର୍ଷଣେ ନିର୍ବିବାଦେ । ଭଗତି ଲଭେ ମୋର ପାଦେ ॥
କି ଅବଶେଷ ତାର ମନେ । କର୍ମ କଷଣ ତ୍ରିଭୁବନେ ॥
ଦେଖ ମୁଁ କହେ ଅନୁଭବ । ଭଗତି ଗତି ତାର ଲାଭ ॥
ନିର୍ଗୁଣ ସ୍ୱରୂପୀ ଅରୂପ । ନିର୍ମଳ ଅନନ୍ତ ସ୍ୱରୂପ ॥
ମୋର ଭଗତି ଦୃଢ଼ମନେ । ଯାହାର ଚିତ୍ତ ଅକିଞ୍ଚନେ ॥
ସଂସାରେ ବନ୍ଧ ତାର ନାହିଁ । ଜନ୍ମ ମରଣୁଁ ନିସ୍ତରଇ ॥
ଦେଖ ଏ ସଂସାର ସାଗର । ଅତି ଉତ୍କଟ ଭୟଙ୍କର ॥
କର୍ମ ବାସନା ରଜ୍ଜୁ ବନ୍ଦୀ । ଜୀବ ମଝିରେ ନିରବଧି ॥
ପୁଣି ଉଠଇ ପୁଣି ବୁଡ଼େ । ନିଗମ ପଥ ନିତ୍ୟ ହୁଡ଼େ ॥
ଏ ଘୋର ସଂସାର ତରଙ୍ଗ । ନିସ୍ତାର ହେତୁ ସାଧୁସଙ୍ଗ ॥
ସନ୍ଥ ସଙ୍ଗତେ ନାବେ ବସି । ନିସ୍ତରେ ଘୋର ଜଳରାଶି ॥
ସକଳ ଜୀବର ଜୀବନ । ଯେହ୍ନେ ସଂସାରେ ଲକ୍ଷ୍ମୀଅନ୍ନ ॥
ଆରତ ଜନ ପ୍ରାଣୀଙ୍କର । ମୁହିଁ ଜୀବନର ଠାକୁର ॥
ଧାର୍ମିକ ପ୍ରାଣୀଙ୍କର ମନ । ଯେହ୍ନେ ଭରସା କରେ ଧର୍ମ ॥
ସନ୍ଥ ଚରଣେ ଏହିମତେ । ନିସ୍ତାର ହେତୁ ଏ ଜଗତେ ॥
ଘୋର ରଜନୀ ଅନ୍ଧକାରେ । ଯେହ୍ନେ ହରଇ ଦିନକରେ ॥
ସୁଜନ ସଙ୍ଗର ଏଭାବ । ଉଦ୍ଧବେ କହିଲେ ମାଧବ ॥
ଏଣୁ ଯେ ସୁଜନ ସଙ୍ଗତେ । କ୍ଷଣେ ନିମିଷେ ଏ ଜଗତେ ॥
ବସେ ସକଳ ପରିହରି । ସେ ପ୍ରାଣୀ ଭବୁ ଯାଏ ତରି ॥
ବୋଲଇ ବିପ୍ର ଜଗନ୍ନାଥ । କୃଷ୍ଣ ଉଦ୍ଧବ ସାଧୁମତ ॥
ହର ଭଗତଙ୍କ ମହିମା । କେ କହିପାରେ ଗୁଣସୀମା ॥
ଭଗତ ଯୋଗ ଅନୁମାନେ । ସଂସାରୁ ତର ବୁଧ ଜନେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ପୁରରବା ନିବେଦନ ଜ୍ଞାନକଥନଂ ନାମ ସପ୍ତବିଂଶୋଽଧ୍ୟାୟଃ ॥*

## ଅଷ୍ଟବିଂଶ ଅଧ୍ୟାୟ

### ଉଦ୍ଧବ ଉବାଚ

ଉଦ୍ଧବ କୃଷ୍ଣର ବଚନେ । କହେ ଭଗତି ଅନୁମାନେ ॥
ଶରୀର ବହି ଏ ସଂସାରେ । ଜୀବ ସର୍ବଥା କର୍ମ କରେ ॥
ତୁମ୍ଭ ଭଗତି ଭାବ ଯେତେ । ମୋତେ କହିଲ ଜଗନ୍ନାଥେ ॥
ଏ ମାୟା ପ୍ରପଞ୍ଚ ଜଗତ । ତୋର ଚରଣ ମାତ୍ର ସତ୍ୟ ॥
ଭଗତ ଜନେ ତୋ ପୟରେ । ପୂଜନ୍ତି କେମନ୍ତ ପ୍ରକାରେ ॥

ବେଦ ଆଗମ ଶାସ୍ତ୍ରମତେ । ପରମ ଧର୍ମ ଏ ଜଗତେ ॥
ବ୍ୟାସ ଅଙ୍ଗିରା ବ୍ରହ୍ମସୁତେ । ଯେ ଧର୍ମ ତାହାଙ୍କର ମତେ ॥
ସକଳ ଗ୍ରନ୍ଥି ଅବଧାରୀ । ସେ କର୍ମଯୋଗ ସାଧ କରି ॥
ଧର୍ମ କରନ୍ତି ନାନାମତେ । ଏବେ ମୁଁ ପଚାରଇଁ ତୋତେ ॥
ତୋ ମୁଖ କମଳୁଁ ଗଳିତ । ଶ୍ରୁତି ସୁରୁଚି ସୁଲଳିତ ॥
ମୋ ମନ ବିନା କର୍ମଯୋଗେ । ସ୍ଥିର ନ ରହେ ହୃଦଭାଗେ ॥
ଯେ କର୍ମ ଯୋଗ ତୁମ୍ଭ ମୁଖେ । କହିଲ ମୁନିଙ୍କ ସମୀପେ ॥
ଏ କଥା ପାର୍ବତୀ ସମ୍ମୁଖେ । ଈଶ୍ୱର କହିଛନ୍ତି ମୁଖେ ॥
ଯେ କର୍ମ ଯୋଗ ଧର୍ମସାର । ସକଳ ବର୍ଣ୍ଣେ ଅଧିକାର ॥
ସ୍ତ୍ରୀ ଶୂଦ୍ର ଆଦି ଯେତେ ପ୍ରାଣୀ । କରନ୍ତି କର୍ମଯୋଗ ଜାଣି ॥
କେମନ୍ତେ ଜୀବର ଉଦ୍ଧାର । କହ ହେ କମଳାର ବର ॥
ଅମଳ କମଳ ଲୋଚନ । ଯେ କର୍ମବନ୍ଧ ବିମୋଚନ ॥

### ଶ୍ରୀ ଭଗବାନ ଉବାଚ

ଶୁଣ ଉଦ୍ଧବ ବାକ୍ୟ ସାର । ବୋଲନ୍ତି ପ୍ରଭୁ ଦାମୋଦର ॥
ଉଦ୍ଧବ କର୍ମଯୋଗ କଥା । କେବା କହିତେ ସାମରଥା ॥
ଅନନ୍ତ ମହିମା ଯାହାର । କେ ଅବା କରିବ ଗୋଚର ॥
ସଂକ୍ଷେପ କରି କିଛୁ କହି । ଶୁଣ ଉଦ୍ଧବ ମନଦେଇ ॥
ଯେ କର୍ମଯୋଗ ପ୍ରକାରଣ । ଅଶେଷ ଜନ ପରିତ୍ରାଣ ॥
ଆଗମ ନିଗମ ପୁରାଣେ । ସକଳ ଶାସ୍ତ୍ର ଯେ ବଖାଣେ ॥
ତ୍ରିବିଧ ମତେ ଯେ କହନ୍ତି । ମୋ ଯଜ୍ଞ ପୂଜା ଅର୍ଥେ ଚିନ୍ତି ॥
ଏଣୁ ଯାହର ଯେଣେ ଇଚ୍ଛା । କହନ୍ତି ଜଗନ୍ନାଥେ ଦୀକ୍ଷା ॥
ଅଶେଷ ଜନ୍ମ ପୁଣ୍ୟ ଭାଗେ । ମୋତେ ପୂଜନ୍ତି କର୍ମ ଯୋଗେ ॥
ବ୍ରାହ୍ମଣ କୁଳେ ଜନ୍ମ ହୋଇ । ଯଜ୍ଞୋପବୀତ କନ୍ଧେ ବହି ॥
ଗୁରୁବଚନ ମନେ ଧରି । ଗାୟତ୍ରୀ ଉପଦେଶ କରି ॥
ଶ୍ରଦ୍ଧା ଭଗତି କରି ଚିତ୍ତେ । ଯେ ଅବା ପୂଜିବ ଯେମନ୍ତେ ॥
ଶୁଣ ମୋ ପୂଜାବିଧି ଯେତେ । ଭାବେ କହିବି ତୋ ଅଗ୍ରତେ ॥
ପ୍ରତିମା ସ୍ଥାପି ଭୂମିତଳେ । ଅଥବା ସ୍ଥଣ୍ଡିଳ ଅନଳେ ॥
ସୂର୍ଯ୍ୟେ ପୂଜିବ କିବା ଜଳେ । ଅଥବା ହୃଦୟ କମଳେ ॥
ଶ୍ରଦ୍ଧା ଭଗତି ଚିତ୍ତ ଯୁତେ । ଦ୍ରବ୍ୟ ସମର୍ପି ନାନାମତେ ॥
ପବିତ୍ର ନିଜ ଗୁରୁ ବାକ୍ୟେ । ମୋତେ ପୂଜିବ ଯଥା ଶକ୍ୟେ ॥
ଦନ୍ତ ବଦନ ଜଳେ ଧୋଇ । ସ୍ୱଭାବେ ଶୁଚିମନ୍ତ ହୋଇ ॥
ବେଦ ଆଗମ ମନ୍ତ୍ର ଯନ୍ତ୍ରେ । ପୂଜା କରିବ ଶୁଦ୍ଧ ଚିତ୍ତେ ॥
ପ୍ରଭାତେ ପୁଣ୍ୟନଦୀ ଜଳେ । ସ୍ନାନ କରିବ ଯଥାକାଳେ ॥
ଯେ ମୋତେ ଶ୍ରଦ୍ଧାରେ ପୂଜିବ । ସେ ନିତ୍ୟ କର୍ମେ ନିତ୍ୟେଥିବ ॥

କେବଳ ଈଶ୍ୱର ଭାବନେ । ସଙ୍କଳ୍ପ କରି ଶୁଦ୍ଧମନେ ॥
ଦାରୁ ପାଷାଣ ଧାତୁମୟୀ । ଲିପି ଲେଖନ ଯେତେ ହୋଇ॥
ବାଲୁକା ଅଭିମାନ ଲଇ । ଏମନ୍ତ ପ୍ରତିମା ଭିଆଇ ॥
ଯେ ଅଟେ ପ୍ରକାର ପ୍ରତିମା । ସୁନ୍ଦର ସ୍ୱରୂପ ଉପମା ॥
ଏମନ୍ତ ମୂର୍ତ୍ତି ଚରାଚର । ବିଷ୍ଣୁର ପୂଜାର ମନ୍ଦିର ॥
ନିର୍ମାଣ କରି ବିଷ୍ଣୁରୂପେ । ନିଶ୍ଚଳେ ପୂଜିବ ସମୀପେ ॥
ସେ ଆବାହନ ବିସର୍ଜନ । ଅଚଳ ପ୍ରତିମା ଅର୍ଚ୍ଚନ ॥
ଅଚଳେ ନ କରି ଏମନ୍ତ । ଏ ବୁଧଜନଙ୍କର ମତ ॥
ଲେପ ଲେଖନେ ଯେତେ ହୋଇ । ସ୍ନାନ ମାର୍ଜ୍ଜନା ନ କରଇ
ସ୍ନାନ ମାର୍ଜନେ ଇଚ୍ଛା ଯେବେ। ତର୍ପଣେ କରାଇବ ତେବେ ॥
ଯତ୍ନେ ଉତ୍ତମ ଦ୍ରବ୍ୟ ଆଣି । ପବିତ୍ର ଗନ୍ଧ ପୁଷ୍ପ ଆଣି ॥
ମାୟା ନ ଥିବ ଦେହ ମଧ୍ୟେ । ବିଧାନ ପୂଜିବ ଆନନ୍ଦେ ॥
ଯଦ୍ୟପି ଭଗତ ଆଗତେ । ଯେ କିଛି ଲଭେ ଅକସ୍ମାତେ ॥
ତେଣେ ପୂଜିବ ନରହରି । ହୃଦେ ଭଗତି ଭାବ ଧରି ॥
ଦିବ୍ୟ ପ୍ରତିମା ପୂଜେ ଯେବେ। ନାନା ଉପହାର ସ୍ୱଭାବେ ॥
ଚନ୍ଦନ ବସ୍ତ୍ର ଅଳଙ୍କାର । ଭକ୍ଷ ଭୋଜନ ମନୋହର ॥
ମଣ୍ଡଳେ ପୂଜା ଯେବା କରି । ମନ୍ତ୍ର ବେଭାରେ ନ୍ୟାସ ଠାରି ॥
ଅନଳେ ଯେ ପୂଜିବ ମୋତେ । ହୋମ କରିବ ମୂଳମନ୍ତ୍ରେ ॥
ରବି ପୂଜିବ ଅର୍ଘ୍ୟଜଳେ । ମୁଁ ଥାଇ ଆଦିତ୍ୟ ମଣ୍ଡଳେ ॥
ଏଣୁ ରସାଳ ବସ୍ତୁ ଯେତେ । ଦେବ ଆଦିତ୍ୟ ମୁଖେ ମୋତେ॥
ଦରିଦ୍ର ପ୍ରାଣୀ ଯେବେ ମୋତେ । ଦୃଢ଼େ ପୂଜିବ ଭାବଚିତ୍ତେ ॥
ତାହାର ଫଳ ପୁଷ୍ପ ମୁହିଁ । ଅଣୁ ପ୍ରମାଣେ ଯେବେ ପାଇ ॥
ସନ୍ତୋଷ କରଇ ଆହାର । ଯେଣୁ ଭକତ ବନ୍ଧୁ ମୋର ॥
ସେ ଯେବେ ଅଣୁମାତ୍ର ଦେଇ। ମୁଁ ତାହା ବହୁତେ ଘେନଇ ॥
ଯେ ମେରୁ ତୁଲ୍ୟ ନାନା ଦ୍ରବ୍ୟେ। ମୋତେ ସମର୍ପଇ ଅଭାବେ ॥
ଶ୍ରଦ୍ଧା ନ ଥାଇ ଅନ୍ତର୍ଗତେ । ମୁଁ ତାହା ଛୁଇଁବି କେମନ୍ତେ ॥
ସୁଗନ୍ଧ ପୁଷ୍ପ ଧୂପ ଦୀପେ । ବସ୍ତ୍ର ଭୂଷଣ ରତ୍ନ କଳ୍ପେ ॥
ତେଣେ ମୋ ନାହିଁ ମନ ବୁଦ୍ଧି । ଏବେ ହୋ ଶୁଣ ପୂଜାବିଧି ॥
ଯେ ମୋତେ ଯେମନ୍ତେ ପୂଜିଲେ । ଜୀବ ନିସ୍ତାର ହୁଏ ଭଲେ॥
ପବିତ୍ର ଜଳେ ସ୍ନାନ କରି । ତିଳ କୁସୁମ କୁଶ ଧରି ॥
ସକଳ ଦ୍ରବ୍ୟ ଅବଧାନେ । ଘେନି ମିଳିବ ପୂଜାସ୍ଥାନେ ॥
ବ୍ରାହ୍ମଣେ ପୂଜେ ଯେବେ ମୋତେ । ଅଖଣ୍ଡ କୁଶ ଘେନି ହସ୍ତେ ॥
ମନ୍ତ୍ର ଉଚ୍ଚାରି ପୂର୍ବ ଦିଗେ । କୁଶ ସ୍ଥାପିତ ଭୂମିଭାଗେ ॥
ପୂର୍ବ ଦିଗକୁ ମୁଖ କରି । ବସିବ ଆସନ ସୁମରି ॥
ଅଙ୍ଗ ଶୋଧିବ ଅଙ୍ଗନ୍ୟାସେ । ମନ୍ତ୍ର ଉଚ୍ଚାରି ବେନିପାଶେ ॥
ଯେ ଅବା ଅର୍ଘ୍ୟ ଆଚମନ । ମନ୍ତ୍ରେ କରିବ ନିବେଦନ ॥
ପ୍ରଣାମ କରି ଜଣେ ଜଣେ । ପୂଜା ନୈବେଦ୍ୟ ନାରାୟଣେ ॥
ମନ୍ତ୍ର ଉଚ୍ଚାରି କୁଶ ନୀରେ । ମାର୍ଜନା କରି ଆତ୍ମ ଶିରେ ॥
ପୂଜାର ଦ୍ରବ୍ୟ ପୂଜା ଭୂମି । ମାର୍ଜିବ ଆପଣା ମୃଦ୍ଧନୀ ॥
ବାକ୍ୟେ ପବିତ୍ର କରି ଗାତ୍ର । ସମ୍ମୁଖେ ସ୍ଥାପି ତିନିପାତ୍ର ॥
କ୍ରମେ ସ୍ଥାପିବ ତିନିସ୍ଥାନ । ଯେ ପାଦ ଅର୍ଘ୍ୟ ଆଚମନ ॥
ଓଁ କାର ପୂର୍ବନାମ ମନ୍ତ୍ରେ । ଶୋଧନ କରି ପାଦ୍ୟ ପାତ୍ରେ ॥
ସ୍ୱାହା ସୁମରି ଅର୍ଘ୍ୟ ପାତ୍ରେ । ଜଳ କ୍ଷେପିବ ଶାଖା ମନ୍ତ୍ରେ ॥
ଗାୟତ୍ରୀ ମନ୍ତ୍ରେ ସର୍ବ ଦ୍ରବ୍ୟେ । ଜଳ ସିଞ୍ଚିବ ଶୁଦ୍ଧ ଭାବେ ॥
ସଂପୁଟେ ଯୋଡ଼ି କରତଳ । ଚିନ୍ତିବ ହୃଦୟ କମଳ ॥
ମନ ପବନ କରି ସ୍ଥିର । ଆସନ କଳ୍ପିତ ଆଧାର ॥
ପରମ ଆତ୍ମା ଦିବ୍ୟ ମୂର୍ତ୍ତି । ହୃଦୟ ପଦ୍ମ ମଧ୍ୟେ ଚିନ୍ତି ॥
ଲବ ନିମିଷ ଦଣ୍ଡ ମାତ୍ରେ । ମନ ଚଞ୍ଚଳ କରି ଗାତ୍ରେ ॥
ଏମନ୍ତ ଧ୍ୟାନେ ପୂଜା ସାରି । ପଛେ ମଣ୍ଡଳ ପୂଜା କରି ॥
ସ୍ୱମନ୍ତ୍ରେ ଆବାହନ କରି । ଦେହ ସ୍ଥାପିବ ମୁଦ୍ରା ଧରି ॥
ହୃଦୟ ଆଦି ଚାରିଦିଶେ । ମୂର୍ତ୍ତି କରିବ ମନ୍ତ୍ରନ୍ୟାସେ ॥
ବିବିଧ ଦ୍ରବ୍ୟ ଉପହାରେ । ପୂଜା ପ୍ରକାଶି ବ୍ୟବହାରେ ॥
ଯେ ପାଦ୍ୟ ଅର୍ଘ୍ୟ ଆଚମନ । ମନ୍ତ୍ରେ କରିବ ନିବେଦନ ॥
ଧର୍ମାଦି ଅଷ୍ଟମୂର୍ତ୍ତିଆନେ । ମନ୍ତ୍ରେ ପୂଜିତ ନିଜ ସ୍ଥାନେ ॥
ବିମଳା ଆଦି ନବ ଶକ୍ତି । ନ୍ୟାସେ ପୂଜିବ ଯଥାସ୍ଥିତି ॥
ମଧ୍ୟେ କରିବ ଅଷ୍ଟଦଳ । କୋମଳ ଅତ୍ୟନ୍ତ ଉଜ୍ଜ୍ୱଳ ॥
ବେଦ ଆଗମ ମନ୍ତ୍ରତନ୍ତ୍ରେ । କର୍ଣ୍ଣିକା କେଶର ସହିତେ ॥
ଏମନ୍ତେ ପୂଜିବ ବିଧାନେ । ଯେପରି ବେଦ ଅନୁମାନେ ॥
ଶଙ୍ଖ ଚକ୍ର ଗଦା କମଳ । ପୂଜିବ ଲଙ୍ଗଳ ମୂଷଳ ॥
ସମ୍ମୁଖେ ଜାଣ ଶରାସନ । ଯେ ବିଧି ପୂଜା ଅଗ୍ରସ୍ଥାନ ॥
ଶ୍ରୀବତ୍ସ ବନମାଳା ମଣି । ଧ୍ୟାନେ ପୂଜିବ ସ୍ଥାନ ଜାଣି ॥
ସୁବଳ ପରିଷଦ ବୃନ୍ଦ । ସୁନନ୍ଦନନ୍ଦ ମହାନନ୍ଦ ॥
ସୁଚଣ୍ଡ ଚଣ୍ଡ ଏ ପ୍ରଚଣ୍ଡ । ସୁବୀର ସୁମୁଖ ଉଦଣ୍ଡ ॥
ମୁକୁନ୍ଦ କୁମୁଦ ଲୋଚନ । ପାର୍ବତୀ ପାର୍ବତୀ ନନ୍ଦନ ॥
ପୂଜିବ ନ୍ୟାସେ ବିଶ୍ୱକେସନ । ନିଜ ଗୁରୁ ପାଦ ଶାସନ ॥
ସର୍ବ ପାରିଷଦ ବିଧାନେ । ପୂଜିବ କମଳ ସୁମନେ ॥
ଲେପନ ସୁଗନ୍ଧ ଚନ୍ଦନ । ଶୀତଳ ଜଳ ସମାର୍ଜନ ॥
ଦ୍ରବ୍ୟ ଉପହାର ଘଟନେ । ନିଗମ ପୁରାଣ ବଚନେ ॥

ସୁଗନ୍ଧ ବସ୍ତ୍ର ଅଳଙ୍କାର । ଶୁଚି ପବିତ୍ର ଉପହାର ॥
ସୁଗନ୍ଧ ବାଦ୍ୟ ଅର୍ଘ୍ୟଦାନ । ପବିତ୍ର ଜଳେ ଆଚମନ ॥
ସୁମନୋହର ଧୂପ ଦୀପେ । ଖଣ୍ଡ ମୋଦକ ଘୃତପାକେ ॥
ଅନ୍ନ ବ୍ୟଞ୍ଜନ ନାନାପାକେ । ପୂଜା ପ୍ରପାନ ସୁପ୍ରଶାକେ ॥
କ୍ଷୀର ବିକାର ଯେତେ ମିଳେ । ସୁଗନ୍ଧ ସୁଶୀତଳ ଜଳେ ॥
ବିଭବ କ୍ରମେ ମିଳେ ଯେତେ । ଥୋଇବ ମୋହର ଅଗ୍ରତେ ॥
ପ୍ରେମାନୁବନ୍ଧ ଅଙ୍ଗ ସଙ୍ଗେ । ଲୋଚନ ଦେଇ ମୋର ଅଙ୍ଗେ ॥
ମୋର ମଙ୍ଗଳ ଅଭିଷେକ । ବିଧି ପ୍ରକାରେ ଏକ ଏକ ॥
ଆନନ୍ଦେ ମହୋତ୍ସବ କରି । ପ୍ରମୋଦେ ବାଦ୍ୟ ନାଦ ଭରି ॥
ଏମନ୍ତେ ପୂଜା ବାରେ ବାରେ । ଯଥା ବିଭବ ଅନୁସାରେ ॥
ପୂଜାର ଅନ୍ତେ ଅଗ୍ନିକୁଣ୍ଡେ । ହୋମ କରିବ ଘୃତଖଣ୍ଡେ ॥
ଅନଳ ମଧ୍ୟେ ରୂପ ମୋର । ତପ୍ତ କାଞ୍ଚନ ମନୋହର ॥
ନିଜ ଆୟୁଧ ଚାରିଭୁଜେ । ପୀତବସନ କଟିମାଝେ ॥
କିରୀଟ କୁଣ୍ଡଳ ବିରାଜେ । ମେଖଳା କଟିଦେଶେ ସାଜେ ॥
ମର୍କତ କେୟୂର କଙ୍କଣ । ହୃଦରେ ଶ୍ରୀବତ୍ସର ଚିହ୍ନ ॥
କୌସ୍ତୁଭ ମଣି ଶୋହେ ଗଳେ । ସୁନ୍ଦର ଦିଶେ ବନମାଳେ ॥
ଏବେ ଏ ଦିବ୍ୟରୂପ ମଧ୍ୟେ । ଧ୍ୟାନେ ଚିନ୍ତିବ ହୃଦପଦ୍ମେ ॥
ଘୃତ ଆହୁତି ମୂଳ ମନ୍ତ୍ରେ । ହୋମ କରିବ ବେଦତନ୍ତ୍ରେ ॥
ଯେ ନାମ ଗୋତ୍ର ଉଚ୍ଚାରଣେ । ପୂଜିବ ପାରିଷଦ ଗଣେ ॥
ପ୍ରଣାମ କରି ଜଣେ ଜଣେ । ପୂଜିବ ବେଦ ଉଚ୍ଚାରଣେ ॥
ଏମନ୍ତେ ପାରିଷଦ ଗଣେ । ବଳି କରିବ ସମର୍ପଣେ ॥
ନିଷ୍କଳେ ମୂଳମନ୍ତ୍ର ଜପି । ବ୍ରହ୍ମା ସ୍ମରଣେ ଚିତ୍ତ ସ୍ଥାପି ॥
ଧ୍ୟାନେ ଭୋଜନ ଶେଷ ଜାଣି । ସମର୍ପି ଆଚମନ ପାଣି ॥
ମୋର ନିର୍ମାଲ୍ୟ ଶେଷଭାଗ । ବିଶ୍ୱକେସନେ ତାହା ଦେବ ॥
କର୍ପୂର ଦେହେ ଜଳ ମିଶେ । ତାମ୍ବୋଳ ଦେବ ମୁଖ ବାସେ ॥
ସୁଗନ୍ଧ ପୁଷ୍ପ ଘେନି କରେ । ତ୍ରିବାର ଦେବ ମୋର ଶିରେ ॥
ମୋର ପବିତ୍ର ଯଶଗୁଣ । ମଙ୍ଗଳ ନାମ ଉଚ୍ଚାରଣ ॥
ନୃତ୍ୟ କରିବ ଉଚ୍ଚେ ଭଣି । କର୍ଣ୍ଣେ ମୋହର କଥା ଶୁଣି ॥
ବିଷୟ ଦ୍ୱନ୍ଦ୍ୱ ଅବଧାନେ । ଯେବେ ନ ପାରେ ମୋ ପୂଜନେ ॥
ଶ୍ରୁତି ପଠନେ ମୋର ମନ । ସ୍ତବନେ କରାଇ ପ୍ରସନ୍ନ ॥
ବେଦ ପୁରାଣ ସ୍ତୁତି ଯେତେ । ଆନନ୍ଦେ ପଢ଼ି ମୋ ଅଗ୍ରତେ ॥
ନମସ୍ତେ ଲକ୍ଷ୍ମୀଦେବୀ କାନ୍ତ । ଉଚ୍ଚାରି ଯୋଡ଼ି ବେନିହସ୍ତ ॥
ତ୍ରିବାର କରି ପ୍ରଦକ୍ଷିଣ । ଦଣ୍ଡ ପ୍ରଣାମ ପୁଣ ପୁଣ ॥
ମୋର ଚରଣେ ଶିର ଦେଇ । ବୋଲିବ କୃଷ୍ଣ ତ୍ରାହି ତ୍ରାହି ॥

ଅନାଦି ଧର୍ମ ନିରାକାର । ଭବ ସାଗରୁ କର ପାର ॥
ଏ ରୂପେ ନମସ୍କାର କରି । ଶେଷେ ନିର୍ମାଲ୍ୟ ଶିରେ ଧରି ॥
ପଛେ କରିବ ବିସର୍ଜନ । ଦେଖାଇ ସର୍ବଭୂତେ ପୁଣ ॥
ଏମନ୍ତ ରୂପ ମୋର ଯେତେ । ମୂର୍ତ୍ତି କରାଇ ଶୁଦ୍ଧ ଚିତ୍ତେ ॥
ନିତ୍ୟେ ପୂଜିବ ପ୍ରିୟ ଭାବେ । ଯେ ବିଧି ପୂଜାର ପ୍ରସ୍ତାବେ ॥
ଏମନ୍ତ ଭାବେ ନିତ୍ୟେ ନିତ୍ୟେ । ଯେ ପ୍ରାଣୀ ଭଜୁଥାଇ ମୋତେ ॥
ସର୍ବ ସମ୍ପଦ ଅନୁକୂଳ । ଲଭନ୍ତି ପରମ ମଙ୍ଗଳ ॥
ମୋର ମଧୁର ରୂପବେଶ । ଚିତ୍ତ ମନ୍ଦିରେ ଦେଇ ବାସ ॥
ସୁଗନ୍ଧ ପୁଷ୍ପ ଆଦି ବର୍ଣ୍ଣେ । ନାନା ପ୍ରକାରେ କ୍ରୀଡ଼ା ସ୍ଥାନ ॥
ମୋର ଉତ୍ସବ ବହୁମତେ । କରିବ ଶକ୍ତି ଅନୁମତେ ॥
ମୋର ଉତ୍ସବ ପର୍ବାପର୍ବେ । ଭାବେ ପୂଜିବ ନାନା ଦ୍ରବ୍ୟେ ॥
ଏମନ୍ତେ ପୂଜି ବହୁବିଧେ । ବଞ୍ଚିବ ଉତ୍ସବ ଆନନ୍ଦେ ॥
କୃଷି ବାଣିଜ୍ୟ ବ୍ୟବହାରେ । ଜୀବନ ଉପାୟେ ପ୍ରକାରେ ॥
ନିବାସ ପୁର ଗ୍ରାମ ଆଦି । ଯେ ଅବା ସମ୍ପଦ ପ୍ରସିଦ୍ଧି ॥
ସମର୍ପି ମୋହର ଚରଣେ । ମୋ ନାମ ଉଚ୍ଚାରି ମରଣେ ॥
ସାତ୍ତ୍ୱିକ ମୁକ୍ତି ପଦ ତାର । ନିବାସ ଲଭେ ମୋର ପୁର ॥
ଏ ମୋର ପୂଜାର ଲକ୍ଷଣ । ଉଦ୍ଧବ ମନେ ଏହା ଶୁଣ ॥
ଯେ ମୋତେ ଦ୍ୟନ୍ତି ଗୃହଦାନ । ହେଲେ ଲଭନ୍ତି ତ୍ରିଭୁବନ ॥
ମୋତେ ମଣ୍ଡପେ ସ୍ଥାପେ ଯେବେ । ପ୍ରତିଷ୍ଠା କରି ପ୍ରିୟଭାବେ ॥
ସପତ ଦୀପେ ହୁଏ ରାଜା । ମୋହର ପ୍ରାୟ ଲଭେ ପୂଜା ॥
ଯେ ମୋତେ ପୂଜେ ଏ ସଂସାରେ । ଲଭନ୍ତି ଏ ତିନି ପ୍ରକାରେ ॥
ଯେ ନିରପେକ୍ଷ ଭକ୍ତି ଯୋଗେ । ଆତ୍ମା ନିସ୍ତାର ଭକ୍ତିମାର୍ଗେ ॥
ମୋର ଚରଣେ ଦୃଢ଼େ ଭଜି । ମାୟା ସଂସାର ଭ୍ରମ ତେଜି ॥
କେବଳ ଭାବେ ମୋର ଧର୍ମ । ଯେ ପ୍ରାଣୀ ଲଭେ ପୂର୍ଣ୍ଣ କାମ ॥
ବିବିଧ ସନ୍ତାପୁଁ ସେ ତରେ । ନ ବୁଡ଼େ ଘୋର ଅନ୍ଧକାରେ ॥
ଏ ରୂପେ ଯେ ମୋତେ ଭଜନ୍ତି । ହୃଦେ ଭଗତି ଯୋଗ ଚିନ୍ତି ॥
ମୋର ସେବକ ନିରବଧି । ସେ ପ୍ରାଣୀ ଲଭେ ସର୍ବସିଦ୍ଧି ॥
ଶୁଣ ଉଦ୍ଧବ କହୁଁ ତୋତେ । ଯେ ପ୍ରାଣୀ ଜନ୍ମ ଏ ଜଗତେ ॥
ସୁଦତ୍ତ ପରଦତ୍ତ ବୃତ୍ତି । ଯତନେ ଅଜ୍ଞାନେ ହରନ୍ତି ॥
ଦେବ ବ୍ରାହ୍ମଣ ତାତ ଶୋକେ । ସେ କାହୁଁ ଥିବ ନର ଲୋକେ ॥
ଜୀବନ ଅନ୍ତେ କୁମ୍ଭୀପାକେ । ପଡ଼ଇ ବିଷ୍ଠା କୃମି ରୂପେ ॥
କେବଳ ନରକ ଆହାର । କରଇ ଲକ୍ଷ ସମ୍ବତ୍ସର ॥
ଯେ ପ୍ରାଣୀ କୃଷ୍ଣକର୍ମ କରେ । ଯେ ଅବା ସାହା ହୋନ୍ତି ପରେ ॥
ଯେବା ଆପଣେ ନ ପାରଇ । ପୂଜା କରଇ ହେତୁ ହୋଇ ॥

ଯେ ମୋର ପୂଜା କର୍ମ ଦେଖି। ସୁଖେ ଆନନ୍ଦେ ବୁଜେ ଆଖି ॥
ଏ ଚାରିଜନେ ସମଫଳ । ଲଭନ୍ତି କହିଲେ ଗୋପାଳ ॥
ଉଦ୍ଧବ ଶୁଣି କୃତକୃତ୍ୟ । ନମଇଁ ଦାସ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ପ୍ରତିମା ପୂଜା ଲକ୍ଷଣ ନାମ ଅଷ୍ଟାବିଂଶୋଽଧ୍ୟାୟଃ ।*

## ଊନତ୍ରିଂଶ ଅଧ୍ୟାୟ

### ଶ୍ରୀ ଭଗବାନ ଉବାଚ

କହନ୍ତି ପ୍ରଭୁ ଭଗବାନ । ଉଦ୍ଧବ କର ଅବଧାନ ॥
ଏ ମାୟା ନିର୍ମିତ ସଂସାରେ । ପ୍ରାଣୀ ସକଳ କର୍ମ କରେ ॥
ଏ ଘେନି ଯେ ହୋଏ ପଣ୍ଡିତ। ନିଜ ସ୍ୱଭାବ ଅନ୍ତର୍ଗତ ॥
ନିନ୍ଦା ପ୍ରଶଂସା ନ କରନ୍ତି । ସାକ୍ଷୀଙ୍କ ପ୍ରାୟ ସେ ଦେଖନ୍ତି ॥
ଏଣୁ ସାଧବ ପ୍ରାଣୀଙ୍କର । ସଂସାରେ ନାହିଁ ନିଜ ପର ॥
ସକଳ ଜନ୍ତୁ ଏକ ଭାବେ । ପ୍ରକୃତି ପୁରୁଷ ସଂଯୋଗେ ॥
ଯେ ଧର୍ମ ସ୍ୱଭାବ ଆଚାର । ନିନ୍ଦା ବା ପ୍ରଶଂସା ତାହାର ॥
ଯେ କରେ ଜ୍ଞାନଭ୍ରଷ୍ଟ ପଣେ । ନିଷ୍ଠୁର ଅସତ୍ୟ ଭାଷଣେ ॥
ଅଜ୍ଞାନେ କମ୍ପେ ସର୍ବ ଅଙ୍ଗ । ଜୀବର ହୁଏ ନିଦ୍ରାଭଙ୍ଗ ॥
ଏଣୁ ହୋ ପରଗୁଣ ଦୋଷେ । ବିଚାର କରିବ ବିଶ୍ୱାସେ ॥
ଯେତେ ଉଦ୍ଧବ ଶୁଣୁ କର୍ଣ୍ଣେ । ଯେ ଅବା ଦେଖୁ ତୁ ନୟନେ॥
ଏ ସର୍ବ ସତ୍ୟ ନୁହେଁ କିଛି । କେବଳ ମାୟା ମାତ୍ର ଲକ୍ଷି ॥
ଯେ କିଛି ଉଚ୍ଚାରି ବଦନେ । ଯେ ଅବା ଶୁଣି ବେନି କର୍ଣ୍ଣେ॥
ଯା ଅବା ଚିନ୍ତି ମନ ଜ୍ଞାନେ । ନ୍ୟାୟେ ବିଚାରି ଅନୁମାନେ ॥
ଏ ସବୁ ସତ୍ୟ ନୁହେଁ କିଛି । କେବଳ ମାୟା ମାତ୍ର ଲଛି ॥
ଏଣୁ ହୋ ମିଥ୍ୟା ଜ୍ଞାନ ଭାବେ । ପୂଜ ତୁ ମମ ଧ୍ୟାନ ଭାବେ ॥
ଯେବେ ତୁ ପଚାରିଲୁ ମୋତେ । ଏ ସର୍ବ ସତ୍ୟ ଶ୍ରୁତି ପଥେ ॥
ବେଦ ବଚନ ଅନୁମାନେ । ସତ୍ୟ ନ କହୁ ଆତ୍ମାବିନେ ॥
ଏ ଆତ୍ମା ହର୍ତ୍ତା କର୍ତ୍ତା ଦାତା । ଆତ୍ମା ଈଶ୍ୱର ପିତାମାତା ॥
ସୃଷ୍ଟି ପାଳଣ ସଂହାରଣ । ଏ ସର୍ବ ଆତ୍ମାର ଭିଆଣ ॥
ଏଣୁ ଅଶେଷ ଚରାଚରେ । ଆତ୍ମାହୁଁ ସତ୍ୟ ନାହିଁ ପରେ ॥
ପ୍ରକୃତି ନିର୍ମିତ ସଂସାର । ଏଣୁ ଏ ତ୍ରିବିଧ ପ୍ରକାର ॥
ସକଳ ବୁଝି ଦୃଢ଼ ଚିତ୍ତେ । ଏ ଭ୍ରମ ଛାଡ଼ନ୍ତି ପଣ୍ଡିତେ ॥
ଏଣୁ ଏ ଜୀବ ପରଜ୍ଞାନ । ନ କରି ସ୍ତବନ ନିନ୍ଦନ ॥
କେବଳ ଜ୍ଞାନ ଅନୁମାନେ । ଥିବ ଭାସ୍କର ଯେହ୍ନେ ଶୂନ୍ୟେ ॥
ସୁମରି ମୋହର ବଚନ । ଆପଣେ କରି ଅନୁମାନ ॥
ଯେ ଆଦି ମଧ୍ୟ ଅବସ୍ଥାନେ । ଅସତ୍ୟ ଦେଖି ତ୍ରିଭୁବନେ ॥
ଏଣୁ ଅଶେଷ ଶଙ୍କା ତେଜି । ପଣ୍ଡିତ ରହେ ଜ୍ଞାନ ବୁଝି ॥
ଏମନ୍ତ କୃଷ୍ଣ ମୁଖୁ ଶୁଣି । ଉଦ୍ଧବ କହେ ମଞ୍ଜୁବାଣୀ ॥

### ଉଦ୍ଧବ ଉବାଚ

ମନ ସଂଶୟେ କରଯୋଡ଼ି । କହେ ଗୋବିନ୍ଦ ପାଦେ ପଡ଼ି ॥
ଶୁଣ ହେ ପ୍ରଭୁ ମାୟାଧର । ଏ ଯେବେ ଅନିତ୍ୟ ସଂସାର ॥
ନିର୍ଗୁଣ ନିର୍ବିକାର ଜୀବ । ସର୍ବ ବ୍ୟାପକ ସଦାଶିବ ॥
ଏ ପଞ୍ଚଭୂତ କଳେବର । ନିର୍ମିତ କ୍ଷଣିକ ଭଙ୍ଗୁର ॥
ଜନ୍ମ ମରଣ ଅନୁସରି । କେ ପୁଣି ସଂସାରେ ସଂସାରୀ ॥
କହ ହେ ପ୍ରଭୁ ବିଶ୍ୱେଶ୍ୱର । ଏ ମୋର ଭ୍ରମ ହେଉ ଦୂର ॥
ଆତ୍ମା ନିର୍ଗୁଣ ନିରଞ୍ଜନ । ନିତ୍ୟ ସାତ୍ତ୍ୱିକ ମୟେ ବ୍ରହ୍ମ ॥
ଯେ ଆତ୍ମା ସର୍ବଭୂତେ ବସେ । ଆଦିତ୍ୟ ଯେସନେ ଆକାଶେ ॥
ଇନ୍ଧନ ଭେଦେ ଅଗ୍ନି ଯେହ୍ନେ। ଜଳନ୍ତି ଦେଖି ତା ସମାନେ ॥
ଆତ୍ମା ପ୍ରକାଶ ଏ ଜଗତେ । ପ୍ରତ୍ୟକ୍ଷ ଦେଖି ଏହି ମତେ ॥
ସ୍ୱଭାବେ ଆତ୍ମା ଜ୍ଞାନ ପୂର୍ଣ୍ଣ । ସାକ୍ଷୀ ପୁରୁଷ ନିରଞ୍ଜନ ॥
ସେ ଯେବେ ରହେ ନିଜ ପୁରେ। ଜନ୍ମ ମରଣ କେ ସଂସାରେ ॥
ଆତ୍ମ ଅଖଣ୍ଡ ନିରଞ୍ଜନ । ସଭାବେ ଦେହ ଅଚେତନ ॥

### ଶ୍ରୀଭାଗବାନ ଉବାଚ

ଉଦ୍ଧବ ବାକ୍ୟ ଶୁଣି ହସି । କହନ୍ତି ପ୍ରଭୁ ବ୍ରହ୍ମରାଶି ॥
ଏ ଦେହ ମନ ଅହଙ୍କାର । ଯାବତ ଇନ୍ଦ୍ରିୟ ସଞ୍ଚର ॥
ତାବତ ଜୀବ ସଞ୍ଚରଇ । ଯେଣୁ ଏହାଙ୍କ ସଙ୍ଗେ ଥାଇ ॥
ଆତ୍ମା ସ୍ୱରୂପେ ନିରଞ୍ଜନ । ନ ଦେଖି ସଂସାର ଘଟନ ॥
ଏହାକୁ ରସେ ମୂଢ଼ପଣେ । ସଂସାରେ ଭ୍ରମେ ଅକାରଣେ ॥
ଜାଗ୍ରତ ପୁରୁଷ ଯେସନେ । ବିଷୟ କରେ ନିତ୍ୟେ ଧ୍ୟାନେ॥
ଶୟନେ ପୁରୁଷ ସ୍ୱପନେ । ଦେଖେ ବିବିଧ ଅର୍ଥ ଯେହ୍ନେ॥
ପୁଣି ସେ ନିଦ୍ରା ଅବସାନେ । ସକଳ ମିଥ୍ୟା କରି ମଣେ ॥
ଏ ଘେନି ଲୋଭୁଁ କାମ କ୍ରୋଧ । ହରଷ ବିଷାଦ ପ୍ରମାଦ ॥
ଏ ଆଳି ବିବିଧ ପ୍ରକାରେ । ସର୍ବସମ୍ଭବ ଅହଙ୍କାରେ ॥
ଏ ରୂପେ ଜ୍ଞାନ ଯୋଗ ହରି । ଉଦ୍ଧବେ କହିଲେ ବିସ୍ତାରି ॥
ଚିତ୍ତେ ତା ଯେତେ ଅହଙ୍କାର । ଗୋବିନ୍ଦ କଲେ ତାହା ଦୂର ॥
ପରମ ଜ୍ଞାନ ଉପଦେଶେ । ଗୋବିନ୍ଦ ଖଣ୍ଡିଲେ ବିଶ୍ୱାସେ ॥
ସଂସାର ଭାବ ଭାବଗ୍ରାହୀ । ଅଜ୍ଞାନ କଳିତେ ବୁଝାଇ ॥

ଉଦ୍ଧବ ଯେତେ ମୋହପାଶି । ଅଜ୍ଞାନ ଛାଳେ ଜ୍ଞାନ ନାଶି ॥
ଜ୍ଞାନ ବୁଝାଇ ଭାବବଶେ । ଭକତି ଯୋଗ ବହି ଶେଷେ ॥
କୃଷ୍ଣ ଚରିତ ଭାଗବତ । ଗୀତେ କହଇ ଜଗନ୍ନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଜ୍ଞାନଯୋଗ କଥନଂ ନାମ ଊନତ୍ରିଂଶୋଽଧ୍ୟାୟ ।*

## ତ୍ରିଂଶ ଅଧ୍ୟାୟ

ଯୋଗ ସାଧନ ତତ୍ତ୍ୱବାଣୀ । ଉଦ୍ଧବ କୃଷ୍ଣ ମୁଖୁଁ ଶୁଣି ॥
ସଂଶୟ ମନେ ଭୟ କରି । ବୋଲେ ଗୋବିନ୍ଦ ପାଦ ଧରି ॥

### ଉଦ୍ଧବ ଉବାଚ

ଭୋ ନାଥ ପ୍ରଭୁ ଦାମୋଦର । ଶୁଣିଲି ଯୋଗର ବିସ୍ତାର ॥
କ୍ଷଣଭଙ୍ଗୁର ଦେହ ଧରି । କେ ଅବା ପାରେ ସାଧ କରି ॥
ଅନେକ ଜନ୍ମେ ଯୋଗେଶ୍ୱରେ ।ଯୋଗ ସାଧନ୍ତି ଏ ସଂସାରେ ॥
ଧ୍ୟାନ ଧାରଣା ଦୃଢ଼ାସନେ । ସଂଯମ ଚିତ୍ତ ସମାଧାନେ ॥
ସେ ଯୋଗ ସାଧି ଏ ସଂସାରେ ।କେ ଅବା ପାରେ କେ ନପାରେ
ସୁଖେ ଅଳପେ ସାଧ କରି । ତୋ ମାୟା ଘୋରୁ ଯିବି ତରି ॥
ଉପାୟ କହ ନାଥ ମୋତେ । ଏ ଜୀବ ନିସ୍ତରେ କେମନ୍ତେ ॥
ପଦ୍ମନୟନ ଗଦାଧର । ତୁ ନାଥ ଯଦୁ ବୀରବର ॥
ତୋହର ଅଭୟ ପୟର । ବ୍ରହ୍ମଆନନ୍ଦ ସୁଖ ଘର ॥
ସେ ପାଦପଦ୍ମେ ଆଶ୍ରେ କଲେ ।ଜୀବ ସଂସାରୁ ତରେ ଭଲେ ॥
ସାର ଅସାର ବିଚାରଣେ । ଭୟେ ଭାଜିଲେ ବୁଧଗଣେ ॥
ଭଗତି ଯୋଗେ ସାଧ କରି । ଭବୁ ଭଗତେ ଯାନ୍ତି ତରି ॥
ଯୋଗୀଏ ଯୋଗମାର୍ଗେ ଭ୍ରମି । କେବଳ ହୋନ୍ତି ପଥଶ୍ରମୀ ॥
ଏ ତୋର ଚିତ୍ରଗତି ମାୟା । କେ ଜାଣିପାରେ ପ୍ରଭୁ ତାହା ॥
ଭୋ ନାଥ କୃପା ମୋତେ କର । ଏ ଘୋର ସଙ୍କଟୁ ଉଦ୍ଧର ॥
ତୋ ପାଦ ବିନା ଏ ସଂସାର । ଅନ୍ୟ ଶରଣ ନାହିଁ ଯାର ॥
ତୁ ନାଥ ହେଉ ତାର ବଶ । ଦଣ୍ଡେ ତୁ ନଛାଡୁ ତା ପାଶ ॥
ଏ କଥା ଅଦ୍‌ଭୁତ କି ତୋତେ ।ତୁ ଯେ ଭକତ ଜନ ହିତେ ॥
ବାନର ଭାଲୁଙ୍କର ମେଳେ । ତୋ ଅବତାର ମହୀତଳେ ॥
ରାମ ଶରୀରେ ନିଜ ଅଂଶେ । ତୋହର ଜନ୍ମ ରଘୁବଂଶେ ॥
ସୁରେନ୍ଦ୍ର କରୀଟ ଅଗ୍ରତ । ତୋ ପାଦରେଣୁରେ ଭୂଷିତ ॥
ଏଣୁ ତୋ ମହିମା ଅଦ୍‌ଭୁତ । କେ ମୁଖେ କହୁ ଗୋପୀନାଥ ॥

ତୁ ନାଥ ଜଗତ ଜୀବନ । ଦରିଦ୍ର ପ୍ରାଣୀଙ୍କର ଧନ ॥
ତୁ ନାଥ ଜଗତ ଧାରଣ । ଅଶେଷ ଭୁବନ କାରଣ ॥
ତୁ ନାଥ ଭୂତ ତତ୍ତ୍ୱଜ୍ଞାତା । ଅଶେଷ କର୍ମଫଳ ଦାତା ॥
ତୁ ପିତାମାତା ଦାଶରଥି । ଅଶେଷ ଜନଙ୍କର ଗତି ॥
ତୋ ପାଦ ସେବା ପରିହରି । କେ ପାରେ ଭବସିନ୍ଧୁ ତରି ॥
ଯେ ତୋର ମହିମା ନ ଜାଣି । ଅନ୍ୟ ଦେବତା ପୂଜେ ଆଣି ॥
ତପ ସମାଧି ଯୋଗ ମଧ୍ୟେ । କେ ଅବା ମୋକ୍ଷ ଧର୍ମ ସାଧେ॥
କେବଳ ଅଚେତନ ସେହି । ତାହାର କର୍ମ ସିଦ୍ଧି କାହିଁ ॥
ମାୟା ମୋହିତ ରଜ ତମେ । ବିଧାତା ରହେ ତୋର ବାମେ ॥
ଯେ ଯେତେ ଭାବେ ଭଜେ ତୋତେ । ତୁ ଥାଉ ତାହାଙ୍କ ଅଗ୍ରତେ ॥
କରୁ ତାହାଙ୍କ ଉପକାର । ଏଣୁ ତୁ ଭକତ କିଙ୍କର ॥
ଏ ଭାବେ ବ୍ରହ୍ମଜ୍ଞାନୀ ଜନେ । ତୋ ନାମ ଉଚ୍ଚାରି ବଦନେ ॥
ଲୋମ ହରଷେ ତୋତେ ଚିନ୍ତି । ଆନନ୍ଦ ସାଗରେ ଭାସନ୍ତି ॥
ତୋ ଗୁଣ ଖୋଜି କେ ପାରଇ । ବ୍ରହ୍ମା ଆୟୁଷ ଦେହ ବହି ॥
ତୋ ପାଦ ପଦ୍ମ ସୁଧା ଆଶେ । ଭଗତ ବନ୍ଧା ପ୍ରେମ ଫାଶେ ॥
ଭୋ ନାଥ ତୋର ଅବତାର । ଅଶେଷ ପ୍ରାଣୀଙ୍କ ନିସ୍ତାର ॥
ଏ ଘୋର ମାୟା ମୟ କକ୍ଷେ । ଜୀବ ଉଦ୍ଧାରୁ ଗୁରୁ ରୂପେ ॥
ତୁ ଅନ୍ତର୍ଯ୍ୟାମୀ ରୂପ ଧରି । ଦୁରିତ ଖଣ୍ଡୁ ନରହରି ॥
ଏଣୁ ତୁ ଜଗତକାରଣ । ଅଶେଷ ଜନଙ୍କ ଶରଣ ॥
ଏମନ୍ତ ଉଦ୍ଧବର ବାଣୀ । ଶୁଣି କହନ୍ତି ଚକ୍ରପାଣି ॥
ଯେ ଧର୍ମ ପରମ ମଙ୍ଗଳ । ଶୁଣନ୍ତେ ଖଣ୍ଡେ ମୃତ୍ୟୁକାଳ ॥
ଶୁଣ ଉଦ୍ଧବ ସାଧୁ ଧୀର । ମୋହର ଅର୍ଥେ କର୍ମ କର ॥
ନିର୍ମଳ କରି ବୁଦ୍ଧିମନ । ମୋର ଚରଣେ କରି ଧ୍ୟାନ ॥
ପୀରତି କରି ଶୁଦ୍ଧ ଚିତ୍ତେ । ଧର୍ମ ତୁ କର ମୋର ଅର୍ଥେ ॥
ପବିତ୍ର ଭୂମି ପୁଣ୍ୟ ଦେଶେ । ମୋର ଭକତ ଜନ ପାଶେ ॥
ସକଳ ତୀର୍ଥେ ଥାନ୍ତି ତହିଁ । ମୋର ଭକତ ବସେ ଯହିଁ ॥
ଯେ ଧର୍ମ କରେ ମୋ ଭଗତ । ଉଦ୍ଧବ କର ସେହି ମତ ॥
ମୋର ଭଗତ ସେବା କର । ତାର ସନ୍ତୋଷେ ଭଲ ତୋର ॥
ମୋ ପର୍ବ ସର୍ବ ମହୋତ୍ସବ । ଆନନ୍ଦେ କର ହେ ଉଦ୍ଧବ ॥
ନାମ କୀର୍ତ୍ତନ ନୃତ୍ୟ ଗୀତେ । ମଙ୍ଗଳ କରି ଅନୁବ୍ରତେ ॥
ମୋର ମଙ୍ଗଳ ସର୍ବସିଦ୍ଧି । ସେ ମହା ମହୋତ୍ସବ ବିଧି ॥
ସକଳ କର୍ମଫଳ ତେଜ । ସର୍ବ ସମ୍ପୂର୍ଣ୍ଣେ ମୋତେ ଭଜ ॥
ସକଳ ଭୂତେ ବାସ ମୋର । ମୁଁ ସର୍ବ ଅନ୍ତର ବାହାର ॥
ଉଦ୍ଧବ ଦେଖ ମୋତେ ଧ୍ୟାନେ । ମୋ ଠାରୁଁ କିଛି ନୋହେ ଆନେ

ମୁହିଁ ନିର୍ମଳ ନିରାଧାରେ । ବସଇ ସକଳ ଶରୀରେ ॥
ସ୍ୱଭାବେ ମୁହିଁ ବିଶ୍ୱରୂପୀ । ଦେଖ ଗଗନ ଯେହ୍ନେ ବ୍ୟାପୀ ॥
ଏଣୁ ମୁଁ ସର୍ବଭୂତେ ଥାଇ । ପର ଅପର ମୋର ନାହିଁ ॥
ଏ ଘେନି ସକଳ ସମାନେ । ଦେଖ ତୁ ପ୍ରେମ ତତ୍ତ୍ୱ ଜ୍ଞାନେ ॥
ବନ୍ଧୁ କ୍ଷତ୍ରିୟ ଶୂଦ୍ର ବୈଶ୍ୟ । ଚଣ୍ଡାଳ ପତିତ ବା କଂସ ॥
ସର୍ବସମାନ ଦେଖ ଚିତ୍ତେ । ଶୁଣ କହଇ କିଛି ତୋତେ ॥
ଅନଳ କଣା ବଡ଼ ସାନ । ଅନଳୁ ନୁହଇ ସେ ଭିନ୍ନ ॥
ରବି ଶଶାଙ୍କ ରଶ୍ମି ଯେହ୍ନେ । ପ୍ରକାଶ ହୋନ୍ତି ରାତ୍ର ଦିନେ ॥
ବିଚାରେ ଚନ୍ଦ୍ର ସୂର୍ଯ୍ୟ ସେହି । ଏ ଘେନି ସର୍ବଭୂତେ ମୁହିଁ ॥
କ୍ରୂର ଅକ୍ରୂର ଯେତେ ଜନ । ତାହାଙ୍କୁ ଦେଖିବା ସମାନ ॥
ଯେମନ୍ତ ହୋଇ ଯାର ଚିତ୍ତ । ତାହାଙ୍କୁ ବୋଲି ସୁପଣ୍ଡିତ ॥
ମୁହିଁ ବସଇ ସର୍ବଭୂତେ । ଏମନ୍ତେ ଦେଖୁ ଦେଖୁ ନିତ୍ୟେ ॥
ମଦ ମତ୍ସର ଅହଙ୍କାର । କ୍ରମେ ସକଳ କରି ଦୂର ॥
ଶ୍ୱାନ ଚଣ୍ଡାଳ କୃମି ଖର । ଶୃଗାଳ ବାନର ଶୂକର ॥
ଏ ଆଦି ପ୍ରାଣୀ ସାନ ବଡ଼େ । ଯେ ଆସି ମିଳିବ ନିଗଡ଼େ ॥
ଦେଖି କପାଳେ କର ଦେଇ । ଭୂମିରେ ଦଣ୍ଡପ୍ରାୟ ଶୋଇ ॥
ଦୂରେ ନିବେଶି ଲଜ୍ଜାମାନ । ଚରଣେ କରିବ ପ୍ରଣାମ ॥
ତାହାଙ୍କ ଗୁଣ ଦୋଷ ଯେତେ । ମନେ ନ ଧରି କଦାଚିତେ ॥
ଈଶ୍ୱର ବସେ ସର୍ବଦେହେ । ଏ ଘେନି ନମିବ ନିର୍ଭୟେ ॥
ଏ ବାକ୍ୟ ସମ୍ମତ ମୋହର । ଏହି ସେ ସର୍ବଧର୍ମ ସାର ॥
ଉତ୍ତମ ଗତି ଏ ବୋଲାଇ । ଏ ମାର୍ଗେ ଗମି ମୋତେ ପାଇ ॥
ଏ ସଙ୍ଗ ଅନୁଭବ ମାତ୍ରେ । ତିଳେ ବିଚ୍ଛେଦ ନୋହେ ଗାତ୍ରେ ॥
ମୁଁ ଏହି ଧର୍ମ ଆଶ୍ରେ କରି । ସଂସାର ମଧ୍ୟେ ଅବତରି ॥
କେବଳ ଧର୍ମ ଫଳ ତ୍ୟାଗେ । ରମିବ ମୋର ଅନୁରାଗେ ॥
ଏ ଧର୍ମ ପରମ ମଙ୍ଗଳ । ହସି କହନ୍ତି ଆଦିମୂଳ ॥
ଶୁଣ ଉଦ୍ଧବ ସାଧୁ ଧୀର । ଏ ଧର୍ମ ଆଚର ମୋହର ॥
ଏ ଧର୍ମ ନଜାଣି ଯେ ନର । କରଇ ଲୋକ ବ୍ୟବହାର ॥
ସେ ବ୍ୟର୍ଥ ଶ୍ରମେ କ୍ଳେଶ ପାଇ । ତା ଯେବେ ମୋତେ ସମର୍ପଇ ॥
ଏ ନର ଭବ ସିନ୍ଧୁ ତରେ । ନ ପଡ଼େ ମୋହ ଅନ୍ଧକାରେ ॥
ଏ ଧର୍ମ ମାର୍ଗେ ବୁଧଜନେ । ତରିଲେ ସଂସାର ଗହନେ ॥
ଏଣୁ ଅସତ୍ୟମୟ ଦେହେ । ଯେ ସତ୍ୟ ସାଧନ୍ତି ଉପାୟେ ॥
କେବଳ ଲଭନ୍ତି ସେ ମୋତେ । ଶୁଣ ଉଦ୍ଧବ କହୁଁ ତୋତେ ॥
ଏ ଧର୍ମ ସର୍ବ ବେଦସାର । ମୁନିଜନଙ୍କୁ ଅଗୋଚର ॥
ଉଦ୍ଧବ କହିଲି ମୁଁ ସତ୍ୟ । ଏ ଯେ ପରମ ଜ୍ଞାନ ତତ୍ତ୍ୱ ॥

ଏଣୁ ହେ ଭବସିନ୍ଧୁ ତରି । ଯେବେ ତୁ ପାରୁ ଦୃଢ଼େ ଧରି ॥
ଏହା ଯେ ଶ୍ରବଣେ ଶୁଣନ୍ତି । ସେ ମୋହ ଜାଲେ ନ ପଡ଼ନ୍ତି ॥
ଅଶେଷ ପାପ କରିଥିଲେ । ତରନ୍ତି ଶ୍ରବଣେ ଶୁଣିଲେ ॥
ଦୁଷ୍ଟ ପତିତ ଦୁରାଚାର । ସେ ପୁଣି ଭବୁ ହୋନ୍ତି ପାର ॥
ଏ ଧର୍ମ ବ୍ରହ୍ମ ନିରୂପଣେ । ଶୁଦ୍ଧ ପ୍ରାପତେ ଦିନେ ଦିନେ ॥
ଏ ସାଧ ଧର୍ମ ଥାଉଁ ଦୂରେ । ଯେ ପ୍ରାଣୀ ଶୁଣି ଶ୍ରଦ୍ଧା କରେ ॥
ସକଳ ପାପୁଁ ସେ ତରଇ । ଅନ୍ତେ ପରମଗତି ପାଇ ॥
ଏ ଧର୍ମ ପରମ ଆଖ୍ୟାନ । ଯେ ମୋର ଭକ୍ତେ କରେ ଧ୍ୟାନ ॥
ଯେବା ଦିଅନ୍ତି ଉପଦେଶ । ଲଭନ୍ତି ଧନ ପୁଣ୍ୟ ଯଶ ॥
ମୁଁ ତାଙ୍କୁ ଦେଇ ଆତ୍ମପଦ । ଯେଣେ ଖଣ୍ଡଇ ସେ ପ୍ରମାଦ ॥
ଭକତେ କହେ ଯେ ବିସ୍ତାରି । ସେ ବ୍ରହ୍ମପଦେ ଅଧିକାରୀ ॥
ପରମ ପବିତ୍ର ଏ ବାଣୀ । ସଂସାରୁ ତର ଏହା ଶୁଣି ॥
ଏହା ଯେ ପଢ଼ନ୍ତି ଶୁଣନ୍ତି । ପଣ୍ଡିତ ପଣେ ବଖାଣନ୍ତି ॥
ସେ ମୋର ଭକତ ବିଶ୍ୱାସ । ଛିଡ଼ଇ ଦୃଢ଼ କର୍ମ ପାଶ ॥
ଏ ଧର୍ମ ପରମ ଗୁପତ । ଅଶେଷ ଜନ୍ମ କର୍ମ ହିତ ॥
ବୋଲନ୍ତି ଶ୍ରୀ ମଧୁସୂଦନ । ଉଦ୍ଧବ ଧନ୍ୟ ତୋ ଜୀବନ ॥
ଏଣେ ତୁ କର ଦୃଢ଼ମନ । ହେଲେ ଖଣ୍ଡିବୁ ଭବ ଭ୍ରମ ॥
ଏ କାମ କ୍ରୋଧ ଶୋକମୋହ । ହେଲେ ଖଣ୍ଡିବୁ ଭବଦ୍ରୋହ ॥
ସଂଶୟ ମୋହ ଜାଲ ସଙ୍ଗେ । ଦଣ୍ଡେ ନ ଥିବ ତୋର ଅଙ୍ଗେ ॥
ଶୁଣ ତୁ ସାବଧାନ ହୋଇ । ଉତ୍ତମ ଜନେ ଧର୍ମ କହି ॥
ସାଧୁ ଚରିତ ଲୋକପ୍ରିୟ । ଶୁଚି ପବିତ୍ର ପୁଣ୍ୟ ଦେହ ॥
ବ୍ରାହ୍ମଣ ଚରଣ ଯେ ସେବେ । ଦୋଷ ନ ଧରେ ପରାଭବେ ॥
ଏମନ୍ତ ପ୍ରାଣୀଙ୍କର ମଧ୍ୟେ । ଏ ଧର୍ମ କହିବ ଆନନ୍ଦେ ॥
ଯେ ଶୂଦ୍ର ଭଜେ ମୋର ପଥେ । ମୋ ନାମ ଭଣେ ଦୃଢ଼ ଚିତ୍ତେ ॥
ଯେ ନାରୀ ମୋର ଭାବେ ଥାଇ । ସ୍ୱାମୀ ସଙ୍ଗତେ ମୋତେ ଧ୍ୟାୟି ॥
ମୋ ନାମ ମୁଖେ ଅବା ଜପେ । ରୋମ ହରଷେ ମୋ ବିଳାପେ ॥
ସେ ପ୍ରାଣୀ ମୋହର ବିଶ୍ୱାସ । ତାହାଙ୍କୁ ଦେଇ ଉପଦେଶ ॥
ଦାମ୍ଭିକ ନାସ୍ତିକ କପଟୀ । କୁଟିଳ ବିଷୟ ଲମ୍ପଟୀ ॥
ଭକତି ଶୂନ୍ୟ ମତି ହୀନ । ରଜ ତାମସ ଯୁକ୍ତ ଜନ ॥
ତାହାଙ୍କୁ ଏ ଧର୍ମ ନ କହି । ଶୁଣ ଉଦ୍ଧବ ମନ ଦେଇ ॥
ଏ ଧର୍ମେ ଶ୍ରଦ୍ଧାଳୁ ଯେ ନର । କି ଧର୍ମ ଅବଶେଷ ତାର ॥
ଯେବା ଅମୃତ ପାନ କରେ । ଆନ ରସେ କି ମନ ସ୍ଫୁରେ ॥
ଏ ଜ୍ଞାନ କର୍ମ ଭକତି ଯୋଗ । ଶୁଣନ୍ତେ ଖଣ୍ଡେ ଭବରୋଗ ॥
ଏ ଧର୍ମ ବୃକ୍ଷରୂପ ହୋଇ । ଭକତ ଜନ ହୃଦେ ଥାଇ ॥

ଭକତି ଫଳଭ ପ୍ରତ୍ୟକ୍ଷେ । ଯେ ଧର୍ମ ଅର୍ଥ କାମମୋକ୍ଷେ ॥
ଏ ଧର୍ମ ଜୀବ ଯେବେ ଭଜେ । ମୋର ଚରଣେ ସର୍ବ ତେଜେ ॥
ନିର୍ବାଣ ପଦ ତତକ୍ଷଣେ । ଲଭଇ ମୋହର ସ୍ମରଣେ ॥
ତାର ସଂସାର ବେଗେ ତୁଟେ । ସେ ଥାଇ ମୋହର ନିକଟେ ॥
ଏମନ୍ତ କୃଷ୍ଣ ମୁଖୁଁ ଶୁଣି । ଉଦ୍ଧବ ଯୋଡ଼େ ବେନି ପାଣି ॥

### ଶୁକ ଉବାଚ

ପ୍ରେମେ କୁଣ୍ଠିତ କଣ୍ଠହାର । କାତରେ କମ୍ପଇ ଶରୀର ॥
ପୁଲକ ଅଙ୍ଗେ ତାର ପୂରେ । ବଦନେ ବଚନ ନ ସ୍ଫୁରେ ॥
କ୍ଷଣେ ହୁଅଇ ହତଜ୍ଞାନ । କ୍ଷଣକେ ହୋଏ ସମାଧାନ ॥
ଆନନ୍ଦେ ଶିରେ କର ଦେଇ । ପ୍ରେମେ ବୋଲଇ ତ୍ରାହି ତ୍ରାହି ॥
ବିକଳେ କୁଣ୍ଠିତ ବଚନ । ବୋଲଇ ଶୁଣ ଭଗବାନ ॥

### ଉଦ୍ଧବ ଉବାଚ

ମୋର ସଂଶୟ ଅନ୍ଧକାର । ତୋର ପ୍ରସନ୍ନେ ହେଲା ଦୂର ॥
ତୋର ଅଭୟ ପାଦ ତଳେ । ମୁଁ ଯେ ବୁଡ଼ିଲି ସୁଖ ଭୋଳେ ॥
ଅଗ୍ନି ସମୀପେ ଭାବଗ୍ରାହୀ । ଯେହ୍ନେ ନ ପାରେ ଶୀତ ରହି ॥
ମୋର ଅଜ୍ଞାନ ସେହିମତେ । ତୋ ଆଗେ ରହିବି କେମନ୍ତେ ॥
ତୁ ମୋତେ ଭୃତ୍ୟ ଦେଖି ହରି । ଏ ଭାବେ ଅନୁଗ୍ରହ କରି ॥
ଅଜ୍ଞାନ ଅନ୍ଧକାର ମୋର । ଜ୍ଞାନେ ଗୋବିନ୍ଦ କଲ ଦୂର ॥
ଅଶେଷ ଜନ୍ମ ପୁଣ୍ୟ ଫଳେ । ପ୍ରାଣୀ ତୋ ଚରଣ କମଳେ ॥
ତୋ ଅନୁଗ୍ରହେ କରି ସେବା । ସେ ନ ଜାଣଇ ଅନ୍ୟ ଦେବା ॥
ଏ ଦୃଢ଼ ମୋହ ଫାଶ ମୋର । ଜ୍ଞାନେ ଛେଦିଲ ଚକ୍ରଧର ॥
ପୁତ୍ର କଳତ୍ର ନିଜ ଧନ । ଏ ବନ୍ଧୁ ଫିଟିଲା ମୋ ମନ ॥
ନମୋ ଗୋବିନ୍ଦ ତୋ ଚରଣେ । ତୋ ପାଦ ପ୍ରପନ୍ନ ରକ୍ଷଣେ ॥
ଯୋଗୀନ୍ଦ୍ର ଗଣେ ଯାହା ଚିନ୍ତି । ଏ ଘୋର ସଂସାରୁ ତରନ୍ତି ॥
ମୋତେ ବୁଝାଇ ଉପଦେଶ । ବୋଲୁ ଯେ ନ ଆ ମୋର ପାଶ ॥
ନ ଦେଖି ଅଭୟ ଚରଣ । କେମନ୍ତେ ଧରିବି ମୁଁ ପ୍ରାଣ ॥
ଏଣୁ ଚଞ୍ଚଳ ମୋର ଚିତ୍ତ । ତୋର ଚରଣେ ଗୋପୀନାଥ ॥
ନିଶ୍ଚଳେ ରହିବି କେମନ୍ତେ । ଯେମନ୍ତ ଆଜ୍ଞା ହଉମୋତେ ॥

### ଶ୍ରୀଭଗବାନ ଉବାଚ

ଶୁଣି ବୋଲନ୍ତି ଭାବଗ୍ରାହୀ । ଉଦ୍ଧବ ବେଗେ ଚଳ ତୁହି ॥
ବଦରି ନାରାୟଣ ଶ୍ରମେ । କହିଲି ଯାଅ ଯଥାକ୍ରମେ ॥
ମୋର ଚରଣ ଜଳେ ଯାଇ । ଶୀଘ୍ର ପୋକ୍ଷଣ କର ଦେହୀ ॥
ଆନନ୍ଦେ ସ୍ନାନ ପାନ କର । ସକଳ ପାପରୁ ନିସ୍ତର ॥
ଯେ ପାପ ଅଛି ତୋର ମନେ । ଖଣ୍ଡିବୁ ଗଙ୍ଗା ଦରଶନେ ॥
ସ୍ନାନେ ନିର୍ମଳ ଚିତ୍ତ କରି । ମୋ ନାମ ହୃଦରେ ସୁମରି ॥
ଭକ୍ଷିଣ ଶାକ କନ୍ଦମୂଳ । ପିନ୍ଧିବୁ ବୃକ୍ଷର ବଳ୍କଳ ॥
ଶୀତ ବରଷା ଗ୍ରୀଷ୍ମକାଳେ । ବସିବୁ ସମାଧି ନିଶ୍ଚଳେ ॥
ସତ୍ୟ ସଂଯୁତ ସାଧୁ ହୋଇ । ମୋର ଚରଣେ ଚିତ୍ତ ଦେଇ ॥
ଜ୍ଞାନ ବିଜ୍ଞାନ ସମ ମତି । ମୋ ପାଦେ ମନବୁଦ୍ଧି ଚିନ୍ତି ॥
ସମାଜି ଭାବେ ଚିତ୍ତ ସମ । ନିରତେ ସାଧି ମୋର ଧର୍ମ ॥
ତ୍ରିଗୁଣ ତେଜି ଅନ୍ତଃ କାଳେ । ପଶିବୁ ମୋର ପାଦ ତଳେ ॥
ଏବେ ତୁ ଶୀଘ୍ର ଚଳ ଏକା । ଆଶ୍ରମ ନାମେ ବଦରିକା ॥

### ଶ୍ରୀ ଶୁକ ଉବାଚ

ତକ୍ଷଣେ ଆଜ୍ଞା ଶିରେ ଧରି । କୃଷ୍ଣଙ୍କୁ ପ୍ରଦକ୍ଷିଣ କରି ॥
କୃଷ୍ଣଙ୍କୁ କରି ନମସ୍କାର । କାନ୍ଦେ ଚରଣେ ଦେଇ ଶିର ॥
ପଡ଼ି କାନ୍ଦଇ ଭୂମିଗତେ । ଅଜ୍ଞାନାଚ୍ଛନ୍ନ ମୋହଚିତ୍ତେ ॥
ଦେହେ ଜୀବନ ଜ୍ଞାନ ନାହିଁ । କାତରେ କମ୍ପେ ତାର ଦେହୀ ॥
ଉଠି କୃଷ୍ଣଙ୍କୁ ବୋଲେ ବାଣୀ । ମୋତେ କି ଭଣୁ ଚକ୍ରପାଣି ॥
ସକଳ ତୀର୍ଥ ତୋ ଚରଣେ । ବଦ୍ରିକା ଯିବି କି କାରଣେ ॥
ଆଶ୍ରମ ନାମ ବଦରିକା । ସେ କି ତୋ ଚରଣୁ ଅଧିକା ॥
ତୋତେ ନ ଦେଖି ନରହରି । ଜୀବନ ନ ପାରିବି ଧରି ॥
କ୍ଷଣକେ ବିରହ କାତରେ । ରୋଦନ କରେ ଉଚ୍ଚସ୍ୱରେ ॥
କୃଷ୍ଣଙ୍କୁ ଚାହିଁ କମ୍ପେ ଦେହୀ । ବଦନୁ ବାକ୍ୟ ନ ସ୍ଫୁରଇ ॥
କୃଷ୍ଣ ବୋଲନ୍ତି ପୁଣି ପୁଣି । ଉଦ୍ଧବ କାନ୍ଦେ ତା ନଶୁଣି ॥
ଦେଖି ଉଦ୍ଧବର କାତର । ଦୟାସାଗର ଦାମୋଦର ॥
ରତ୍ନପାଦୁକା ପାଦୁଁ ଫେଇ । ଉଦ୍ଧବ କରେ ଦେଲେ ନେଇ ॥
ବୋଇଲେ ପ୍ରଭୁ ବନମାଳୀ । ଉତ୍ତର ପଥେ ଯାଅ ଚଳି ॥
ଏ ପାଦତଳେ ତପ ଦାହୀ । ଅନ୍ତେ ପଶିବୁ ମୋର ତହିଁ ॥
ଏମନ୍ତ କହୁଁ ନାରାୟଣ । ଉଦ୍ଧବ କଲା ପ୍ରଦକ୍ଷିଣ ॥
କୃଷ୍ଣ ପାଦୁକା ମୁଣ୍ଡେ କରି । ଉଦ୍ଧବ ଜ୍ଞାନ ହୃଦେ ଧରି ॥
ତକ୍ଷଣେ ଛାଡ଼ି ମୋହ ଫାଶ । ଧନ କୁଟୁମ୍ବେ ଦାରା ଆଶ ॥
ପ୍ରାଣ ଆକୁଳ ଶୋକ ଭରେ । ଉଦ୍ଧବ ଗଲା ଧୀରେ ଧୀରେ ॥
ହରିଙ୍କ ହୃଦୟ କମଳେ । ଆରାଧି ଧ୍ୟାନ ଯୋଗ ବଳେ ॥
ଉତ୍ତରପଥେ ଚଳିଯାନ୍ତେ । ନୟନୁ ଅଶ୍ରୁଗଳେ ପଥେ ॥
କୃଷ୍ଣର ବିରହେ କାତର । କର ଯୁଗଳେ ତାଡ଼େ ଶିର ॥
ବିକଳ ଚିତ୍ତ ପଥଶ୍ରମେ । ମିଳିଲା ବଦ୍ରିକା ଆଶ୍ରମେ ॥
କୃଷ୍ଣ ଆରାଧି ବନଦେଶେ । ଯେମନ୍ତେ କୃଷ୍ଣ ଉପଦେଶେ ॥
ତପ ସମାଧି ଯୋଗବଳେ । ଭକତି ବିସ୍ତାର ଶୟଳେ ॥

ଦୟାସାଗର ନରହରି । ସୁଯଶ ଜଗତେ ବିସ୍ତାରି ॥
ସ୍ୱଭାବେ କୃଷ୍ଣ ଧର୍ମସେତୁ । ସଂସାର ଉଦ୍ଧାରଣ ହେତୁ ॥
ତୋର ଚରିତ କେବା ଜାଣେ । ମହିମା ନିଗମ ବଖାଣେ ॥

### ଶ୍ରୀ ଶୁକ ଉବାଚ

କହଇ ବ୍ୟାସଙ୍କର ସୁତ । ଶୁଣ ହେ ରାଜା ପରୀକ୍ଷିତ ॥
ଗୋବିନ୍ଦ ନିଜ ଭୃତ୍ୟ ଅର୍ଥେ । ଯାହା କହିଲେ ଜ୍ଞାନପଥେ ॥
ଅମୃତ ରସ ମୟ ବାଣୀ । ଉଦ୍ଧବ ନିସ୍ତରିଲା ଶୁଣି ॥
ଯେ ପ୍ରାଣୀ ଶୁଣି ଏହା କର୍ଣ୍ଣେ । ହୃଦେ ଭକତି ଅନୁମାନେ ॥
ଆନନ୍ଦ ରସ ସୁଧାନିଧି । ଏଣେ ଯେ ବୁଡ଼େ ନିରବଧି ॥
ଶ୍ରଦ୍ଧା ଭକତି ଭାବ ଚିନ୍ତି । ଶୁଣନ୍ତେ ନ ଲାଗେ ଦୁର୍ଗତି ॥
ଆଶ୍ରମେ ଭବସିନ୍ଧୁ ନୀରେ । ତା ଦେଖି ସଂସାରୁ ନିସ୍ତରେ ॥
ନିଜ ଭଗତ ଜନ ଅର୍ଥେ । ଭୃଙ୍ଗର ପ୍ରାୟ ବେଦପଥେ ॥
ସାର ଉଦ୍ଧରି ଦାମୋଦର । ଉଦ୍ଧବ ଦେଲେ ସୁଧା ଧାର ॥
ଜ୍ଞାନ ବିଜ୍ଞାନ ସାର ଯେତେ । ଉଦ୍ଧବେ ସଞ୍ଚିଲା ଜଗତେ ॥
ଏଣୁ ଶ୍ରୀକୃଷ୍ଣ ମୁଖ ସୁଧା । ଶୁଣନ୍ତେ ତୁଟେ ଭବବାଧା ॥
ସେ ଆଦି ଅନାଦି ନିଧାନ । ସ୍ୱଭାବେ ପୁରୁଷ ଉତ୍ତମ ॥
ସେ ନନ୍ଦ ନନ୍ଦନର ପାଦେ । ଭକତି ଲଭେ ଅପ୍ରମାଦେ ॥
ବୋଲଇ ବିପ୍ର ଜଗନ୍ନାଥ । ଶ୍ରୀଏକାଦଶେ ଭାଗବତ ॥
ଉଦ୍ଧବ ଗଲେ ଯେଉଁ ଦାଣ୍ଡେ । ସେ ରେଣୁ ପଡୁ ମୋର ମୁଣ୍ଡେ ॥
ଭଗତଜନ ପାଦେ ପଡ଼ି । ଏ ବର ମାଗେ କରଯୋଡ଼ି ॥
ହୀନ ପାମର ଜ୍ଞାନ ମୋର । ପଣ୍ଡିତେ ଦୋଷ ମୋ ନ ଧର ॥
କୃଷ୍ଣ ଚରଣେ ନାନାମତେ । ଭଗତି କର ଦୃଢ଼ ଚିତ୍ତେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶସ୍କନ୍ଧେ ଶ୍ରୀକୃଷ୍ଣ ଉଦ୍ଧବ ସମ୍ବାଦେ ଉଦ୍ଧବ ବଦରିକା ଗମନେ ଭକ୍ତିଯୋଗ ନିରୂପଣେ ନାମ ତ୍ରିଂଶୋଽଧ୍ୟାୟ ।*

## ଏକତ୍ରିଂଶ ଅଧ୍ୟାୟ

### ପରୀକ୍ଷିତ ଉବାଚ

ଉଦ୍ଧବ କୃଷ୍ଣର ବଚନେ । ଗଲା ଯେ ବଦରିକା ଶ୍ରମେ ॥
ତେବେ କି କଲେ ଚକ୍ରପାଣି । ବିଚାରି କହ ଦ୍ୱିଜମଣି ॥
ଯେ କାଳରୂପେ ଅବତରେ । କୋଟି ବ୍ରହ୍ମାଣ୍ଡ ଲୋମେ ଧରେ ॥
ବ୍ରାହ୍ମଣ ଶାପେ ଯଦୁବଂଶ । ଶ୍ରୀକୃଷ୍ଣ ସଙ୍ଗେ କଲେ ନାଶ ॥
ଅଶେଷ ଜଗତ ମଙ୍ଗଳ । ଯେ ରୂପ ଦେଖି କାମ ଭୋଳ ॥
ଜନ ଲୋଚନ ମନୋହର । ଅଶେଷ ଭୁବନ ସୁନ୍ଦର ॥
ଯେ ଅଙ୍ଗେ ନରଦୃଷ୍ଟି ପଡ଼େ । ମନ ମୋହନ ଚିତ୍ତ ଜଡ଼େ ॥
ଆସି ନ ପାରେ ମନ ଛନ୍ଦି । ପ୍ରେମ ଲାଳସେ ସୁଖେ ବନ୍ଦୀ ॥
ଯା ଯଶ ଗୁଣ ସାଧୁଜନେ । କେବଳ ଶୁଣିଲେ ଶ୍ରବଣେ ॥
ସର୍ବ ବିଷୟ ପସୋରନ୍ତି । ଗୃହ ଦେହକୁ ନ ସ୍ମରନ୍ତି ॥
ଆଜାନୁ ଲମ୍ବେ ଚାରି କର । ବଚନ ଅମୃତ ମଧୁର ॥
ଯେ ରୂପେ ଅଶ୍ୱ ରତ୍ନରଥେ । ଦେବତାମାନେ ଦେଖି ଚିତ୍ତେ ॥
କୃଷ୍ଣର ରୂପ ଗୁଣ ଚିନ୍ତି । କାତରେ ନୟନ ବୁଜନ୍ତି ॥
ଏ ରୂପ ତେଜିଲେ କି ଅର୍ଥେ । ଯଶ ବିସ୍ତାରି ଏ ଜଗତେ ॥

### ଶ୍ରୀ ଶୁକ ଉବାଚ

ବୋଲନ୍ତି ଶୁକ ମୁନିବର । ଶୁଣ ହୋ ମହିମା କୃଷ୍ଣର ॥
କୃଷ୍ଣର କାଳଚକ୍ର ଘାତେ । ଦ୍ୱାରକା କମ୍ପିଲା ଅଦ୍ଭୁତେ ॥
ତ୍ରିବିଧ ଉତ୍ପାତ ପ୍ରତ୍ୟେକ୍ଷେ । ଭୂମି ଗଗନ ଅନ୍ତରୀକ୍ଷେ ॥
ତା ଦେଖି ଦେବକୀ ନନ୍ଦନ । ନିକଟେ ରାଇ ବନ୍ଧୁଜନ ॥
ଉଗ୍ରସେନର ତୁଲେ ହରି । ସୁଧର୍ମା ମଧ୍ୟେ ବିଜେ କରି ॥
ବୋଲନ୍ତି ପ୍ରଭୁ ଦାମୋଦର । ଶୁଣ ସକଳ ଯଦୁବୀର ॥
ଦେଖ ଉତ୍ପାତ ଏ ପ୍ରତ୍ୟକ୍ଷେ । ଭୂମି ଗଗନ ଅନ୍ତରୀକ୍ଷେ ॥
ଏ ଧୂମକେତୁ ଭୟଙ୍କର । ଦେଖ ଦିବସେ ଅନ୍ଧକାର ॥
ଅବନୀ କମ୍ପେ ଘନଘନ । ଅଦ୍ଭୁତେ ଶୁଭେ ଘୋର ସ୍ୱନ ॥
ଏ ଘୋର ପ୍ରଚଣ୍ଡ ଅଦ୍ଭୁତେ । ଏ ପୁରେ ରହିବା କେମନ୍ତେ ॥
ନିଶ୍ଚୟେ ସର୍ବେ ଯିବା ନାଶ । ଏ ପୁରେ ନ କରିବା ବାସ ॥
ଦଣ୍ଡେ ନ ଥିବା ଦ୍ୱାରକାଏ । ମୋତେ ଦିଶଇ ମହାଭୟେ ॥
ପ୍ରଭାସ ତୀର୍ଥେ ଚାଲଯିବା । ଦ୍ୱାରକା କ୍ଷେତ୍ରେ ନ ରହିବା ॥
ଯେ ତୀର୍ଥେ ପ୍ରାଚୀ ସରସ୍ୱତୀ । ସ୍ନାନେ ସକଳ ରିଷ୍ଟ ଶାନ୍ତି ॥
ସେ ଜଳେ ସ୍ନାନ କରି ତୋଷେ । ଦିନ ବଞ୍ଚିବା ଉପବାସେ ॥
ବୃଦ୍ଧ ବାଳକ ନାରୀଗଣେ । ରାତ୍ରହୁଁ କରନ୍ତୁ ପ୍ରୟାଣ ॥
ଦ୍ୱାରକା ଆଶା ତେଜି ଦୂରେ । କେହି ନ ରହ ଏ ନଗରେ ॥
ଘେନି ସକଳ ଉପହାର । ସେ ତୀର୍ଥେ ସ୍ନାନ ଦାନ କର ॥
ପୂଜି ଦେବତା ପିତୃଗଣେ । ବେଦଜ୍ଞ ଉତ୍ତମ ବ୍ରାହ୍ମଣେ ॥
ଆନନ୍ଦେ କରି ନାନା ଦାନ । ସୁବର୍ଣ୍ଣ ବସ୍ତ୍ର ତିଳ ଅନ୍ନ ॥
ଅଶ୍ୱ କୁଞ୍ଜର ଭୂମି ରଥ । ଗୋରୁ ମହିଷ ଯୂଥ ଯୂଥ ॥
ଏଣେ ଉତ୍ତମ ବିଧି ସାର । ସକଳ ମଙ୍ଗଳ ଆଚାର ॥
ପିତୃଦେବତା ଗୋ ବ୍ରାହ୍ମଣ । ଏ ପୂଜା ପରମ କାରଣ ॥
ରିଷ୍ଟ ଖଣ୍ଡନ ଏହି ବିଧି । ନିଗମ ବଚନ ପ୍ରସିଦ୍ଧି ॥

ଏଣେ ସକଳ ପ୍ରଜାଜନ । ରିଷ୍ଟ ଖଣ୍ଡନେ ହୋନ୍ତି ଧନ୍ୟ ।।
ଏମନ୍ତେ କୃଷ୍ଣର ବଚନେ । ଯାଦବେ ଭାଳି ଏକମନେ ।।
ବୋଲନ୍ତି ଧନ୍ୟ କୃଷ୍ଣ କଥା । ଏଣେ ଖଣ୍ଡିବୁ ରିଷ୍ଟ ବ୍ୟଥା ।।
ଏମନ୍ତ ଭାବି ଏକଚିତ୍ତେ । ଯାନ ଆରୋହୀ ନାନାମତେ ।।
ରାତ୍ରହିଁ ଗଲେ ଯୂଥେ ଯୂଥେ । ମିଳିଲେ ସରସ୍ୱତୀ ତୀର୍ଥେ ।।
ଆନନ୍ଦେ ପଶି ପୁଣ୍ୟଜଳେ । କରନ୍ତି ସ୍ନାନ କୁତୂହଳେ ।।
ଯେ ବିଧି କୃଷ୍ଣ ଉପଦେଶେ । ଦିନ ବଞ୍ଚିଲେ ଉପବାସେ ।।
ନାନା ପ୍ରକାରେ ଦେଇ ଦାନ । ତୋଷିଲେ ବିପ୍ରଙ୍କର ମନ ।।
ଦିବସ ଅବଶେଷ କାଳେ । ସକଳେ ବସି ଏକ ମେଳେ ।।
ଦଇବ ଯୋଗେ ହତଜ୍ଞାନ । ଯାଦବେ କଲେ ମଦ୍ୟପାନ ।।
କୃଷ୍ଣ ମାୟାରେ ବିମୋହିତ । ହୋଇଲେ ସର୍ବେ ମହାମତ୍ତ ।।
ଫଳିଲା ବ୍ରହ୍ମଶାପ ଫଳ । ଅଦ୍ଭୁତେ ଉଠିଲା କନ୍ଦଳ ।।
ବେଣୁ ଘର୍ଷଣେ ଅଗ୍ନିଯେହ୍ନେ । ତକ୍ଷଣେ ଉଠେ ଘୋର ସ୍ୱନେ ।।
ଶୂନ୍ୟେ ପଡ଼ିଲା ଥାଟେ ହୁରି । ଯାଦବେ କରେ ଶସ୍ତ୍ରଧରି ।।
ଗଦାମୁଦ୍‌ଗର ଅସିବର । ଧନୁକ ଭୂଷଣ୍ଡି ତୋମର ।।
ଏମନ୍ତେ ନାନା ଶସ୍ତ୍ର ଧରି । ଧାଇଁଲେ ଘୋର ନାଦ କରି ।।
ଧାମନ୍ତି ଅତି ଭୟଙ୍କରେ । ଘୋର ସମରେ ନଦୀତୀରେ ।।
ରଥେ କେ ଯୁଝେ ରଣ ମଧ୍ୟେ । କେ ଗୋରୁ ମହିଷର ସ୍କନ୍ଧେ ।।
ଖର ଉଷ୍ଟ୍ରରେ କାନ୍ଧେ ବସି । କେ ଯୁଝେ ଘୋର ରଣେ ପଶି ।।
ଗଜର ସ୍କନ୍ଧେ କେ ଯୁଝନ୍ତି । ଅଶ୍ୱର ପୃଷ୍ଠେ ଆରୋହନ୍ତି ।।
ମୂଷଳ ମୁଦ୍‌ଗର ପ୍ରହାରେ । ରଜନୀ ଘୋର ଅନ୍ଧକାରେ ।।
ଅଦ୍ଭୁତ ମୂଷଳ ସମରେ । ମୁଖ ନ ଦିଶେ ଅନ୍ଧକାରେ ।।
ସ୍ୱଭାବେ ମହା ବୀରଗଣେ । ରୋଷେ କରନ୍ତି ମହାରଣେ ।।
ରୁକ୍ମିଣୀ ସୁତ ଶାମ୍ବ ସଙ୍ଗେ । ଘୋର ଗର୍ଜନ ରଣ ରଙ୍ଗେ ।।
ସାତ୍ୟକି ଅନିରୁଦ୍ଧ ବେନି । ଭୋଜ ଅକ୍ରୂର ଅନ୍ୟେ ଅନ୍ୟି ।।
ସଂଗ୍ରାମଜିତ ଭଦ୍ରସେନ । ରୋଷେ କରନ୍ତି ଘୋର ରଣ ।।
ଦୁର୍ମଦ ଅନ୍ଧ ଯଦୁଗଣ । ଅନ୍ୟୋନ୍ୟେ ମହାଘୋର ରଣ ।।
ମାଥୁର ଶୂରସେନ ମଧୁ । ଭୋଜ ସାତ୍ୟକି ବୃଷ୍ଣି ଯଦୁ ।।
ଦୃମୁର୍ଦ୍ଦ ମହାଘୋର ରଣେ । ଯୁଦ୍ଧ କରନ୍ତି ଜଣେ ଜଣେ ।।
ରୋଷେ ଯୁଝନ୍ତି ପିତା ପୁତ୍ରେ । ଦୁର୍ମଦ ଯୁଦ୍ଧେ ମିତ୍ରେ ମିତ୍ରେ ।।
ସୁହୃଦେ ସୁହୃଦେ ନ ଚାହିଁ । କୋପେ ଯୁଝନ୍ତି ବେନିଭାଇ ।।
ମାତୁଳ ଭଗ୍ନୀର କୁମରେ । ଏମନ୍ତେ ଛାଡି ସହୋଦରେ ।।
ଲଜ୍ଜା ପୀରତି ତେଜି ଦୂରେ । ଯୁଝନ୍ତି ଘୋର ଅନ୍ଧକାରେ ।।
ଦୁର୍ଗମ ପ୍ରହାର ପ୍ରଚଣ୍ଡ । ଶସ୍ତ୍ର ଭାଜିଲେ ବେନି ଖଣ୍ଡ ।।

କନ୍ଧୁ ତୁଟିଲେ ଧନୁଶର । ଗଦା ଖଡ଼ଗେ ହେଲେ ଚୂର ।।
ଅରୁଣ ପ୍ରକାଶ ଗଗନେ । ମିଳିଲେ ଏରକାର ବନେ ।।
ବ୍ରାହ୍ମଣ ଶାପେ ଲୌହ ଜାତ । ତୀକ୍ଷ୍ଣ ତ୍ରିଶିର ବଜ୍ରାଘାତ ।।
କରେ ଧରନ୍ତି ମୁଷ୍ଟି ମୁଷ୍ଟି । ପ୍ରହାର ଛିଡ଼େ କୋଟି କୋଟି ।।
ଏରକା ବନେ ଘୋର ରଣ । ସଂଗ୍ରାମ କଲେ ବୀରଗଣ ।।
ଯେ ଅବା ଥିଲେ ଯେଉଁ ବେଶେ । ଗଗନେ ଆଦିତ୍ୟ ପ୍ରକାଶେ ।।
ଦେଖି ଧାଇଁଲେ ଗଦାଧର । ବୋଲନ୍ତି ସମର ନ କର ।।
ଯାଦବେ ମଦେ ଅଚେତନ । ନ ଶୁଣି ଗୋବିନ୍ଦ ବଚନ ।।
ନାନା ଆୟୁଧ ଧରି କରେ । କୃଷ୍ଣଙ୍କୁ ବେଢ଼ିଲେ ସମରେ ।।
ବିନ୍ଧନ୍ତି ନାନା ଶସ୍ତ୍ର ଧରି । ଦେଖି ଧାଇଁଲେ ହଳଧାରୀ ।।
ରାମ ଗୋବିନ୍ଦ କୋପ ଭରେ । ଯୁଝନ୍ତି ଭୀଷଣ ସମରେ ।।
ଗଦା ମୂଷଳେ ଯୁଦ୍ଧ କଲେ । କେ ନିଜ ପର ନ ଜାଣିଲେ ।।
ଏରକା ମୁଷ୍ଟି ବଜ୍ରାଘାତେ । ବୀରେ ପଡ଼ିଲେ ଯୂଥେଯୂଥେ ।।
ମାୟାଭିଆଣ ଭଗବାନ । ଯାଦବେ ହେଲେ ସମାଧାନ ।।
ବ୍ରାହ୍ମଣ ଶାପ କୋପାନଳ । ହେଳେ ଦହିଲେ ଯଦୁକୁଳ ।।
ପୁଣି ପ୍ରଦ୍ୟୁମ୍ନ କୃଷ୍ଣ ଦେଖି । ଚକ୍ର ପେଷିଲେ ବିଶ୍ୱରୂପୀ ।।
ପ୍ରଦ୍ୟୁମ୍ନ ନାଶି ଚକ୍ର ଗଲା । କୃଷ୍ଣ କରକୁ ନ ଅଇଲା ।।
ସେ କାଳ ରୂପୀ ଭଗବାନ । ଦେଖି ସାନନ୍ଦ କଲେ ମନ ।।
ଭଣନ୍ତି ପ୍ରଭୁ ଦାମୋଦର । ଏବେ ସେ ଗଲା ପୃଥ୍ୱୀଭାର ।।
ଯାଦବ ବଳ ନାଶ ଦେଖି । ରାମ ବୁଜିଲେ ବେନି ଆଖି ।।
ତକ୍ଷଣେ ନିଜ ଯୋଗବଳେ । ଅନନ୍ତ ପଶିଲେ ପାତାଳେ ।।
ଅନନ୍ତ ମହିମା ଯାହାର । ଛାଡ଼ିଲେ ନିଜ କଳେବର ।।
ରାମର ଦେଖି ଅବସାନ । ତକ୍ଷଣେ ପ୍ରଭୁ ଭଗବାନ ।।
ଅଶ୍ୱତ୍ଥ ତରୁ ମୂଳେ ବସି । ନିଜ ମହିମା ପରକାଶି ।।
ସୁନ୍ଦର ଦିଶେ ଚତୁର୍ଭୁଜ । କୋଟିଏ ରବି ଜିଣି ତେଜ ।।
ଅନ୍ଧାର ଦଶଦିଗ ଗଞ୍ଜେ । ଶ୍ୟାମସୁନ୍ଦର ତନୁ ପୁଞ୍ଜେ ।।
ଶ୍ରୀବତ୍ସ ଚିହ୍ନ ହୃଦେ ଶୋହେ । ମଣି କଙ୍କଣ ଜନ ମୋହେ ।।
ପୀତ ବସନ ପରିଧାନ । ସକଳ ମଙ୍ଗଳ ନିଧାନ ।।
ସୁନ୍ଦର ସ୍ମିତଜିତ ମୁଖ । କୁଟିଳ କୁନ୍ତଳ ସୁରେଖ ।।
ବିକଚ ପୁଣ୍ଡରୀକ ପ୍ରାୟେ । କୃଷ୍ଣନୟନ ଯୁଗ ଶୋହେ ।।
ଶ୍ରବଣେ ମକର କୁଣ୍ଡଳ । ସୁନ୍ଦର ଅଳକା କପୋଳ ।।
ଯଜ୍ଞୋପବୀତ କନ୍ଧେ ସାଜେ । ରତ୍ନମେଖଳା କଟି ମାଝେ ।।
ଲଲାଟେ କିରୀଟ ଉତ୍ତରୀ । ଚରଣେ ସୁବର୍ଣ୍ଣ ମଞ୍ଜରୀ ।।
ହୃଦରେ ହାର ବନମାଳ । ମୋହନ ରୂପ ନନ୍ଦବାଳ ।।

ନିଜ ଆୟୁଧ ମୂର୍ତ୍ତିମନ୍ତେ । ଦିଶନ୍ତି କୃଷ୍ଣର ଅଗ୍ରତେ ॥
ଶରୀରୁ ଶ୍ରମଝାଳ ଗଳେ । କୃଷ୍ଣ ବସିଲେ ତରୁତଳେ ॥
ବାମ ଚରଣ ତୋଳି ଧୀରେ । ଦକ୍ଷିଣ ଜାନୁର ଉପରେ ॥
ଏମନ୍ତ ଶୁଣ ନରନାଥ । ଜାରାଶବର ଉପଗତ ॥
ମୂଷଳ ଅବଶେଷ ଖଣ୍ଡେ । ଫଳା ନିର୍ମିତ କରି କାଣ୍ଡେ ॥
ବନେ ବୁଲଇ ମୃଗ ମାରି । ମଳିଲା କରେ ଧନୁର୍ଧରି ॥
ଲତା ଗହଳେ ବୃକ୍ଷମୂଳେ । ଚରଣ ଦେଖିଲା ବିରଳେ ॥
ମୃଗର କର୍ଣ୍ଣ ପ୍ରାୟ ମଣି । ବାଣ ବିନ୍ଧିଲା ଗୁଣ ଟାଣି ॥
ବିନ୍ଧି ଧାଇଁଲା ଅତି ଖରେ । ଦେଖିଲା ଲତାର ଭିତରେ ॥
କୋଟି ଆଦିତ୍ୟ ଜିଣି ତେଜ । ସୁନ୍ଦର ଶୋହେ ଚାରିଭୁଜ ॥
ଦେଖି ଚକିତ ବ୍ୟାଧ ମନେ । ଧନୁ ପକାଇ ତତକ୍ଷଣେ ॥
କାତରେ ବେନି କର ଯୋଡ଼ି । କୃଷ୍ଣ ଚରଣ ତଳେ ପଡ଼ି ॥
ଉଠି କପୋଳେ ମାରି କର । ବୋଲଇ ମୁହିଁ ଦୁରାଚାର ॥
ନ ଜାଣି କଲି ଏଡ଼େ କର୍ମ । କେ ମୋତେ କଲା ମତିଭ୍ରମ ॥
ବୋଲଇ ମୁହିଁ ଦୁରାଚାର । ନରକେ ନିବାସ ମୋହର ॥
ତୁ ନାଥ ଜଗତ ସୋଦର । ମୋ ଅପରାଧ କ୍ଷମା କର ॥
ତୋ ନାମ ନିତ୍ୟେ ଯେ ସୁମରେ । ଘର ସଂସାର ଦୁଃଖୁଁ ତରେ ॥
ତୋତେ ଯେ ନୟନେ ଦେଖଇ । ଅଜ୍ଞାନ ତିମିର ଧ୍ୱଂସଇ ॥
ଶବର ଜାତି ହୀନ ମୁହିଁ । ବିଶେଷ ତୋର ମାୟା ବହି ॥
ସ୍ୱଭାବେ ପତିତ କୁତ୍ସିତ । ହୀନ ପାମର ମୋର ଚିତ୍ତ ॥
ତୋର ସମ୍ମୁଖେ ଦାମୋଦର । ଖଡ଼୍‌ଗେ ଛେଦ ମୋର ଶିର ॥
ସର୍ବପାତକ ମୋର ଯାଉ । ଏ ଜାତି ମଧ୍ୟେ ଜନ୍ମ ନୋହୁ ॥
ଦୁରିତ ନ କରେ ଯେମନ୍ତେ । ଏମନ୍ତ ଆଜ୍ଞା ହେଉ ମୋତେ ॥
ତୋ ମାୟାଗତି ଦାମୋଦର । ନ ଜାଣେ ବିରଞ୍ଚି ଶଙ୍କର ॥
ବେଦ ବଚନେ ମୁନିଜନେ । ଭ୍ରମନ୍ତି ତୋର ଅନୁମାନେ ॥
ତୋ ମାୟାବଳେ ଗୋପୀନାଥ । ଅଶେଷ ଜନ ବିମୋହିତ ॥
ମୁଁ ପାପୀ ଜାଣିବି କେମନ୍ତେ । ଅଜ୍ଞାନେ ଭ୍ରମଇ ଜଗତେ ॥
ବ୍ୟାଧ ବିକଳ କର୍ଣ୍ଣେ ଶୁଣି । ବୋଲନ୍ତି ପ୍ରଭୁ ଚକ୍ରପାଣି ॥

## ଶ୍ରୀ ଭଗବାନ ଉବାଚ

ଉଠ ଶବର ଛାଡ଼ ପାୟେ । ମନେ ନ କରି କିଛି ଭୟେ ॥
ମୋର ବାଞ୍ଛିତ ଏହୁ କର୍ମ । ଜାରା ନ କର ମତିଭ୍ରମ ॥
ମୋର ବଚନେ ତୁ ନିର୍ମଳ । ଏହି ଶରୀରେ ସ୍ୱର୍ଗେ ଚଳ ॥
କୃଷ୍ଣର ଆଜ୍ଞା ପାଇ ବେଗେ । ବ୍ୟାଧ ଚଳିଲା ସ୍ୱର୍ଗ ମାର୍ଗେ ॥
ଜରା ଶବର ସ୍ୱର୍ଗ ଯାନ୍ତେ । ପଥେ ମିଳିଲା ଶୂନ୍ୟ ରଥେ ॥
କି ଅବା ଦେବା ପଟାନ୍ତର । ଗଞ୍ଜଇ ଚନ୍ଦ୍ର ଦିବାକର ॥
ଦେଖି ଶବର ତୋଷମନେ । ତକ୍ଷଣେ ବସିଲା ବିମାନେ ॥
କୃଷ୍ଣ ବଚନେ ସ୍ୱର୍ଗେ ଗଲା । ତକ୍ଷଣେ ଦାରୁକ ମିଳିଲା ॥
ଲତା ଗହନେ କୃଷ୍ଣ ପାଶେ । ମିଳିଲା ଦିବ୍ୟଗନ୍ଧ ବାସେ ॥
କୋଟି ଆଦିତ୍ୟ ପ୍ରାୟ ଜ୍ୟୋତି । ଦାରୁକ ଦେଖେ ନିଜ ପତି ॥
ଜଗନ୍ମୋହନ ରୂପ ରାଶି । ଅଶ୍ୱତ୍ଥ ତରୁମୂଳେ ବସି ॥
ଦାରୁକ ରୋମାଞ୍ଚ ଶରୀର । ପ୍ରେମେ ନୟନୁ ବହେ ନୀର ॥
କୃଷ୍ଣ ଚରଣ କରେ ଭିଡ଼ି । ଦାରୁକ ମହୀତଳେ ପଡ଼ି ॥
ହା କୃଷ୍ଣ ଜୀବନ ମୋହର । ଭୋ ନାଥ ମୁହିଁ ତୋ କିଙ୍କର ॥
ବିକଳେ କାନ୍ଦେ ଉଚ୍ଚ ତୁଣ୍ଡେ । କର ଯୁଗଳ ତାଡ଼ି ମୁଣ୍ଡେ ॥
ଭୋ ନାଥ ଛାଡ଼ି ମୋତେ ଦୟା । କିମ୍ପା ଦେଖାଉ ଏଡ଼େ ମାୟା ॥
ଜୀବନ ନାହିଁ ମୋ ଶରୀରେ । ଆଜ ପଡ଼ିଲି ତମ ଘୋରେ ॥
ନ ଦିଶେ ଦଶ ଦିଗ ମୋତେ । ତୋର ଚରଣ ଶସ୍ତ୍ରାଘାତେ ॥
ତୋତେ ନ ଦେଖି ଦାମୋଦର । ଜୀବନ ଥିବ କି ମୋହର ॥
ଏମନ୍ତେ ଦାରୁକ କାନ୍ଦନ୍ତେ । ରଥ ଉଠିଲା ଶୂନ୍ୟପଥେ ॥
ଭୂଷଣ ବାହନ ସହିତେ । ଗରୁଡ଼ ଲାଞ୍ଛନ ଅଦ୍ଭୁତେ ॥
କୋଟିଏ ଚନ୍ଦ୍ର ପ୍ରାୟ ଦିଶି । ଗଗନ ମାର୍ଗେ ଗଲା ପଶି ॥
ତାହାର ପଛେ ଅଶ୍ୱଗଣ । ଚଳିଲେ ଗଗନ ମାର୍ଗେଣ ॥
ଦାରୁକେ କହିଲେ ମୁରାରି । ଦ୍ୱାରକା ଯାଅ ବେଗ କରି ॥
ତାତ ଜନନୀଙ୍କର ଆଗେ । ବାରତା କହ ଯାଇ ବେଗେ ॥
ଜ୍ଞାତି ବାନ୍ଧବ ଜନ ରାଇ । ମୋ ତାତ ଜନନୀ ବସାଇ ॥
ଘୋର ସମରେ ଯଦୁବଂଶ । ସେ ନଦୀକୂଳେ ଗଲେ ନାଶ ॥
ତା ଦେଖି ପ୍ରଭୁ ବଳରାମ । ବେଗେ ଚଳିଲେ ନିଜ ଧାମ ॥
ମୋର ଜୀବନେ ନାହିଁ ଆଶା । ଦାରୁକ ଦେଖ ମୋର ଦଶା ॥
ଆଜ ରଜନୀ ମଧ୍ୟ ଗତେ । ମୁଁ ପୁଣି ଯିବି ନିଜ ପଥେ ॥
ମୋର ଶରୀର ଅବସ୍ଥାନେ । ସମୁଦ୍ର ଘୋର ନାଦ ସ୍ୱନେ ॥
ଗ୍ରାସିବ ଦ୍ୱାରକା ଭୁବନ । ଜଳେ ବୁଡ଼ିବେ ସର୍ବ ଜନ ॥
ଆଜ ନ ଥାନ୍ତୁ କେହି ପୁରେ । ରଜନୀ ମୁଖେ ଯାନ୍ତୁ ତୀରେ ॥
ତୁ ମୋର ନାରୀଗଣ ସଙ୍ଗେ । ଇନ୍ଦ୍ରପ୍ରସ୍ଥକୁ ଯାଅ ବେଗେ ॥
ଅର୍ଜୁନ ଅଛି ସେ ଭୁବନେ । ଆବୋରି ନିଅ ବେନିଜନେ ॥
ତୁ ଏବେ ହୁଅ ଜ୍ଞାନ ପର । ସକଳ ଭ୍ରମ କର ଦୂର ॥
ସଂସାର ମୋହ ଛାଡ଼ି ଚିରେ । ରହ ତୁ ମୋର ଧର୍ମ ପଥେ ॥
ଯେତେ ତୁ ଦେଖୁ ଜୀବଲୋକ । ଏ ସର୍ବ ଦୁଃଖ ମହାଶୋକ ॥
ମୋର ମାୟାରେ ଏ ଚଳନ୍ତି । ଯମେ ତୁ ଭଜ ଏହା ଚିନ୍ତି ॥

କୃଷ୍ଣର ଶୁଣି ଏ ବଚନ । ଦାରୁକ ହୋଇ ହତଜ୍ଞାନ ॥
କୃଷ୍ଣ ଚରଣେ ଶିର ଦେଇ । ନମିଲା ଦଣ୍ଡ ପ୍ରାୟ ହୋଇ ॥
ପ୍ରଣାମ କରି ପୁଣ ପୁଣ । ନମିଲା ଅଭୟ ଚରଣ ॥
ଚରଣ ରେଣୁ ଶିରେ ଧରି । କାନ୍ଦଇ ଉଚ୍ଚନାଦ କରି ॥
ପଥ ନ ଦିଶେ ଦୁଃଖ ଶୋକ । ଦ୍ୱାରକା ଚଳିଲା ଦାରୁକ ॥
ବୋଲଇ ଦାସ ଜଗନ୍ନାଥ । ଏବେ ମୁଁ ହୋଇଲି ଅନାଥ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ସମସ୍ତ ଯାଦବ ନଶନେ ଶ୍ରୀକୃଷ୍ଣ ଚରଣେ ଶରଘାତନେ ଜରାଶବର ସ୍ୱର୍ଗ ଗମନେ ଦାରୁକ ଦ୍ୱାରକା ପ୍ରବେଶଂ ନାମ ଏକତ୍ରିଂଶୋଽଧ୍ୟାୟଃ ।*

## ଦ୍ୱାତ୍ରିଂଶ ଅଧ୍ୟାୟ

ଏବେ ହୋ ପରୀକ୍ଷିତ ଶୁଣ । ବିଧାତା ଆଦି ଦେବଗଣ ॥
ରଜନୀ ମୁଖେ ଦିବା ଅନ୍ତେ । ମିଳିଲେ କୃଷ୍ଣର ଅଗ୍ରତେ ॥
ସିଦ୍ଧ ଗନ୍ଧର୍ବ ପିତୃଗଣ । ପିଶାଚ କିନ୍ନର ଚାରଣ ॥
ଯକ୍ଷ ଗୁହ୍ୟକ ବିଦ୍ୟାଧର । ଘେନଇଁ ନାନା ଉପହାର ॥
କୃଷ୍ଣ ଗମନ ଖେଳା ଦେଖି । ମିଳିଲେ ଭୁବନ ଉପେକ୍ଷି ॥
ଦିବ୍ୟ କୁସୁମ ବରଷନ୍ତି । ଜୟ ଶବଦେ କଲେ ସ୍ତୁତି ॥
ନିକଟେ ଦେଖି ଦେବଗଣ । ମନେ ଚିନ୍ତିଲେ ନାରାୟଣ ॥
ଦେବଙ୍କ ମନ୍ଦିରେ ମୋ ବାସ । ଯେଣୁ ଏ ମୋହର ବିଶ୍ୱାସ ॥
ଏହାଙ୍କ ଅର୍ଥେ ଦେବହରି । ମୁଁ ଯେ ଧରଣୀ ଭାରା ହରି ॥
ମୁହିଁ ଯେ ମୋର ମହୀସ୍ଥଳେ । ବିହରେ ନାନା ଯୋଗବଳେ ॥
ମୋତେ ନ ପାରେ କେହୁ ଲକ୍ଷି । ଯେଣୁ ମୁଁ ସର୍ବଭୂତେ ସାକ୍ଷୀ ॥
ମୁଁ ଆଜ ସମାଦି ପ୍ରବେଶେ । ଶରୀର ଛାଡ଼ି ନିଜ ଅଂଶେ ॥
ପଶିବି ଦେଖନ୍ତୁ ଏକ୍ଷଣ । ଏତେ ବିଚାରି ନାରାୟଣ ॥
ଦୟାସାଗର ଭଗବାନ । ତକ୍ଷଣେ ବୁଜିଲେ ନୟନ ॥
ସମାଦି ବସି ଦୃଢ଼ାସନେ । ପ୍ରାଣ ସଂଯମନ ପବନେ ॥
ଧାରଣା ଅଗ୍ନି ସନ୍ଦୀପନେ । ଦେବ ସମୂହ ଅବଧାନେ ॥
ନିଜ ଭୁବନେ ଗଲେ ହରି । ଜୟ ଶବଦେ ଦିଗ ପୂରି ॥
ଶ୍ୟାମ ସୁନ୍ଦର କଳେବର । ଅଶେଷ ଜନ୍ତୁ ସୁଖଘର ॥
ଧ୍ୟାନ ଧାରଣା ସ୍ତୁତି ସ୍ଥାନ । ମହୀ ମଙ୍ଗଳ ଅଭିରାମ ॥
ସଂସାରୁ ତରେ ଯାହା ଦେଖି । ହରି ଚଳିଲେ ତା ଉପେକ୍ଷି ॥
ଦୁନ୍ଦୁଭି ଶୁଭେ ସୁରପୁରୀ । ନୃତ୍ୟ କରନ୍ତି ଅପସରୀ ॥
ଆନନ୍ଦେ ପାରିଜାତ ମାଳା । ଦେବେ ବରଷି କଲେ ଖେଳା ॥
ଶୂନ୍ୟେ ଶବଦ ଶୁଣି କର୍ଣ୍ଣେ । ଦେବେ ବୋଲନ୍ତି ଅନ୍ୟୋଅନ୍ୟେ
ଚାଲ ହୋ ଏହି ପଥେ ଯିବା । ଶ୍ରୀକୃଷ୍ଣ ଚରଣେ ପୂଜିବା ॥
ଏମନ୍ତେ କରି ସେ ବିଚାର । ଘେନାଇ ନାନା ଉପହାର ॥
କୃଷ୍ଣର ପଛେ ଯାନ୍ତି ବେଗେ । ପୂରିତ ଆନନ୍ଦେ ଉତ୍ସବ ॥
ଯେଉଣ ପଥେ କୃଷ୍ଣ ଗଲେ । କେବେହେଁ ଦେଖି ନ ପାରିଲେ ॥
ପରମ ଜ୍ୟୋତି ଶୂନ୍ୟେ ମିଶେ । ମେଘେ ବିଜୁଳି ଯେହ୍ନେ ଦିଶେ ॥
ଭବ ବିଧାତା ଆଦି ସୁରେ । ଶୂନ୍ୟେ ଚଳିଲେ ଯେଝାପୁରେ ॥
ନ ଦେଖି କୃଷ୍ଣର ଗୋଚର । ହୃଦେ ହୋଇଲେ ଚମତ୍କାର ॥
ଜୀବ ସେ ସର୍ବଦେହେ ଥାଇ । ତାହାକୁ କେହି ନ ଦେଖଇ ॥
ହରିଙ୍କି ଦେଖିବେ ସେ କାହିଁ । ଯାହାର ଆଦି ଅନ୍ତ ନାହିଁ ॥
ଆତ୍ମାକୁ ଆପଣେ ସୃଜଇ । ଆତ୍ମାରେ ଆତ୍ମା ପ୍ରସରଇ ॥
ଆତ୍ମାରେ ଆତ୍ମାଭାବ ରହେ । ଜନ୍ତୁ ଗୋଚର ଆତ୍ମା ନୁହେଁ ॥
ଆତ୍ମାକୁ ଆତ୍ମା ବଳେ ବହେ । ଏଣୁ ସକଳ ଆତ୍ମା ମୟେ ॥
ଶୁଣ ହେ ପରୀକ୍ଷିତ ତୁହି । ଯମର ଘର ଭାବଗ୍ରାହୀ ॥
ଗୁରୁ କୁମର ଆଣି ଦେଲେ । ତୋତେ ହେଁ ଗର୍ଭେ ସେ ରକ୍ଷିଲେ ॥
ଏମନ୍ତ ମହିମା ଯାହାର । ସେ ହୁଏ ନର ଅବତାର ॥
ସେ ହର ଅନ୍ତେ ଅନ୍ତ କରେ । ପ୍ରଳୟ ଭୟ ସେ ସଂହାରେ ॥
ସମରେ ହେଲେ ତାକୁ ଜିଣି । ମହାମହିମା ଚକ୍ରପାଣି ॥
ଚରଣେ ବିନ୍ଧିଲା ସେ ବ୍ୟାଧ । ଖଣ୍ଡିଲେ ତାର ଅପରାଧ ॥
ଦେଖାଇ ଦରଶନ ଗତି । ତାହାକୁ ସ୍ୱର୍ଗେ ଦେଲେ ସ୍ଥିତି ॥
ଆପଣା ତନୁ ସେ ନରଖେ । ଏ କଥା ମୂର୍ଖ ଜନ ଲେଖେ ॥
ସୃଷ୍ଟି ପାଳନ ସଂହାରଣ । ଅନାଦି ପ୍ରଭୁ ନାରାୟଣ ॥
ଯଦ୍ୟପି ପ୍ରକୃତି ସଞ୍ଚରେ । ଏ ଲୀଳା ମାତ୍ର ଖେଡ଼ଘରେ ॥
ଏ ନିଜ ଖେଳା ମାତ୍ର କରେ । ଥାଇ ଅଶେଷ ଶକ୍ତି ଧରେ ॥
ସେ ବିଷ୍ଣୁ ପରମ କାରଣ । ଅନାଦି ପ୍ରଭୁ ନାରାୟଣ ॥
ତଥାପି ନିଜ ବଂଶ ମାରି । ଧରଣୀ ଭାରା ହେଲେ ହରି ॥
ବିଚାରେ ନାହିଁ ପ୍ରୟୋଜନ । ତେଣୁ ସେ ଗଲେ ନିଜ ଧାମ ॥
ସେ ଦେବଦେବଙ୍କର ପତି । ଦେଖାଇ ତାଙ୍କୁ ଦିବ୍ୟଗତି ॥
ଯେସନେ ନଟ ଲୀଳା କରେ । ସେ ନିଜ ମାୟାରେ ବିହରେ ॥
ଏମନ୍ତେ ଗୋବିନ୍ଦର ଗତି । ଏବେ ହେ ଶୁଣ ନରପତି ॥
ତାର ଚରିତ ଏ ଶୟନେ । ଯେ ପ୍ରାଣୀ ଉଠେ ପ୍ରାତଃକାଳେ ॥

କରଇ ଶ୍ରବଣ କୀର୍ତ୍ତନ । ଭାବେ ଭଗତ ହୋଇ ଜନ ॥
ସ୍ମରନ୍ତି ଗୋବିନ୍ଦ ଚରିତ । ନିର୍ମଳ ହୋଇ ଶୁଦ୍ଧଚିତ୍ତ ॥
ସଂସାର ତାପ ନ ଲାଗଇ । ଅନ୍ତେ ପରମ ଗତି ପାଇ ॥
ଏବେ ହୋ ଶୁଣ କୃଷ୍ଣଲୀଳା । ଦାରୁକ ଦ୍ୱାରକା ଯେ ଗଲା ॥
ରୋଦନ କରି ଉଚ୍ଚସ୍ୱରେ । ପଶିଲା ଦ୍ୱାରକା ନଵରେ ॥
ଦେବକୀ ବସୁଦେବ ପାଦେ । ପଡ଼ିଲା ଶୋକ ଗଦଗଦେ ॥
ଶୁଣ ମିଳିଲା ଉଗ୍ରସେନ । ଦେଖି ଦାରୁକ ଆଗମନ ॥
ଦାରୁକ କହେ ଶୋକ ନାଦେ । ପଡ଼ିଲା ଉଗ୍ରସେନ ପାଦେ ॥
ଯାଦବ ବଳ ନାଶ କଥା । ରାମ ଗୋବିନ୍ଦଙ୍କ ବ୍ୟବସ୍ଥା ॥
ଶୋକେ ହୋଇଲେ ମୂର୍ଚ୍ଛିତ । ଧରଣୀ ପଡ଼ି ମୋହଗତ ॥
ସକଳେ ମିଳି ଏକସ୍ଥାନେ । ରୋଦନ କରି ଉଚ୍ଚସ୍ୱନେ ॥
ରାମଗୋବିନ୍ଦ ତନୁତ୍ୟାଗେ । ପ୍ରାଣ କେ ଧରୁ ହୃଦଭାଗେ ॥
ଶିରେ ବଦନ କର ତାଡ଼ି । କାନ୍ଦନ୍ତି ମହୀତଳେ ପଡ଼ି ॥
ଆହା ଗୋବିନ୍ଦ ବୋଲି ଭୋଳେ । ଦେବକୀ ବସୁଦେବ କୋଳେ ॥
ପଡ଼ି ଛାଡ଼ିଲେ ନିଜ ପ୍ରାଣ । ଦେଖି ବସୁଦେବ ତକ୍ଷଣ ॥
ବିକଳେ ଦଶଦିଗେ ଚାହିଁ । କାତରେ କମ୍ପେ ତାର ଦେହୀ ॥
ପଡ଼ିଲା ତୋଳି ବେନିକର । ଆହା ଗୋବିନ୍ଦ ହଳଧର ॥
ଦେଖାଅ ସୁନ୍ଦର ଚରଣ । ବୋଲି ଛାଡ଼ିଲା ନିଜ ପ୍ରାଣ ॥
ବସୁଦେବର ଯେତେ ନାରୀ । ସ୍ୱାମୀ ଚରଣ ଦୃଢ଼େ ଧରି ॥
ଅନଳେ ହୋଇଲେ ଦହନ । ଗମିଲେ ବୈକୁଣ୍ଠ ଭୁବନ ॥
କୃଷ୍ଣର ଶ୍ରେଷ୍ଠ ଅଷ୍ଟନାରୀ । ରୁକ୍ମିଣୀ ଦେବୀ ଆଦିକରି ॥
ତୁଣ୍ଡେ ଉଚ୍ଚାରି ଭଗବାନ । ଅନଳେ ହୋଇଲେ ଦହନ ॥
ଅର୍ଜ୍ଜୁନ ଦେଖି ତା ନୟନେ । ସୁମରି କୃଷ୍ଣକଥା ମନେ ॥
ଅନିତ୍ୟ ଦେଖି ଏ ସଂସାର । ହୃଦୟ ଚିତ୍ତ କଲା ସ୍ଥିର ॥
କୃଷ୍ଣ ନ ଦେଖି ବନ୍ଧୁଗଣେ । ପ୍ରାଣ ଛାଡ଼ିଲେ ଜଣେ ଜଣେ ॥
ଅର୍ଜ୍ଜୁନ ନେଇ ତା ଅନଳେ । ଦହନ କଲା ସିନ୍ଧୁକୂଳେ ॥
ଯେ ଅବା ଅଛନ୍ତି ଜୀବନେ । କୃଷ୍ଣର ଯେତେ ନାରୀଗଣେ ॥
ତାହାଙ୍କୁ ଘେନାଇ ଅର୍ଜ୍ଜୁନ । ପୁରେ ଯେ ଥିଲେ ପ୍ରଜାଜନ ॥
ସକଳ ଘେନି ଏକ ମେଳେ । ତୀରେ ମିଳିଲା ରାତ୍ର କାଳେ
ଦେଖନ୍ତି ସର୍ବ ଲୋକ କୂଳେ । ତକ୍ଷଣେ ସମୁଦ୍ର ଉଲ୍ଲୋଳେ ॥
ବୁଡ଼ିଲା ଦ୍ୱାରକା ନଗର । ଛାଡ଼ି କୃଷ୍ଣର ନିଜ ପୁର ॥
ଯେଣୁ ସେ କୃଷ୍ଣ ସନ୍ନିଧାନେ । ରହେ ପ୍ରଳୟ ଅବସାନେ ॥
ଯେଣୁ ସେ ଦ୍ୱାରକା ନଗର । ସୁପୂର୍ଣ୍ଣ ଧନ ଯଶ କର ॥
ପରମ ପବିତ୍ର ମଙ୍ଗଳ । ଯହିଁ ବିଜୟ ଆଦିମୂଳ ॥
ଶୁଣ ସୁମନେ ପରୀକ୍ଷିତ । ଥିଲା ଯେ ଅନିରୁଦ୍ଧ ସୁତ ॥
ବାଳକ ବ୍ରତ ତାର ନାମ । ତନୁ ସୁନ୍ଦର ଗୁଣ ଧାମ ॥
ତାହାକୁ କଲେ ତହିଁ ରାଜା । ସୁଖେ ପାଳିଲା ଜନ ପ୍ରଜା ॥
ଅର୍ଜ୍ଜୁନ ଛତ୍ର ଧରି ଶିରେ । ସେ ରାଜା ଦ୍ୱାରକା ନଵରେ ॥
ମଙ୍ଗଳ ଅଭିଷେକ କରି । କୃଷ୍ଣ ବିଧବା ଯେତେ ନାରୀ ॥
ସକଳ ପାରିଷଦ ଯେତେ । ଅର୍ଜ୍ଜୁନ ଗଲା ଇନ୍ଦ୍ର ପ୍ରସ୍ଥେ ॥
ପଥେ ସେ ଗଲା ଦୁଃଖ ଶୋକେ । କୃଷ୍ଣ ବିଚ୍ଛେଦେ ଅଶ୍ରୁ ମୁଖେ ॥
ଶୁଣି ତା ପିତାମହ ଗଣେ । ରାଜ୍ୟ ଛାଡ଼ିଲେ ତତକ୍ଷଣେ ॥
ତୋ ଶିରେ ଅଭିଷେକ କରି । ତୁ ଯେ ପାଣ୍ଡବ ବଂଶଧାରୀ ॥
ଉତ୍ତରେ ହେମ ପଥେ ଗଲେ । ଅନ୍ତେ ସେ ବୈକୁଣ୍ଠେ ମିଳିଲେ ॥
ଶୁଣ ହେ ଅଭିମନ୍ୟୁ ବଳା । ଯେତେ କହିଲି କୃଷ୍ଣ ଲୀଳା ॥
ଯେହା ଯେ ଶ୍ରବଣେ ଶୁଣନ୍ତି । ଶ୍ରଦ୍ଧା ଯେ ବଦନେ ଗୁଣନ୍ତି ॥
ସେ ନର ତ୍ରିଭୁବନେ ଧନ୍ୟ । ଦେବେ କରନ୍ତି ତାଙ୍କୁ ମାନ୍ୟ ॥
କୃଷ୍ଣର ଯଶ ଗୁଣ ଗାଥା । ନିରତେ କରନ୍ତି ଯେ ଚିନ୍ତା ॥
ହେଳେ ତରନ୍ତି ଭବ ବାରି । ଜଗତ ମଧ୍ୟେ ଯଶ ପୂରି ॥
ଅତି ପତିତ ଦୁରାଚାର । ଯେ ଅବା ପାପିଷ୍ଠ ପାମର ॥
ସେ ହରି କଥା କର୍ଣ୍ଣେ ଶୁଣି । ତରନ୍ତି ଭବ ତରଙ୍ଗିଣୀ ॥
ପ୍ରାଣ ବିଯୋଗେ ବ୍ରହ୍ମ ମୟେ । ପଶନ୍ତି ନାରାୟଣ ଦେହେ ॥
ଶ୍ରଦ୍ଧା ବିହୁନେ ଅବହେଳେ । ଯେ ପ୍ରାଣୀ ଶୁଣେ ସୁଖ ଭୋଳେ ॥
ଭଗତି ଲଭେ କୃଷ୍ଣ ପାଦେ । ନ ପଡ଼େ ଭବ ପରମାଦେ ॥
ପରୀକ୍ଷେ କହେ ବ୍ୟାସ ସୁତ । ଶ୍ରୀ ଏକାଦଶେ ଭାଗବତ ॥
ଯେଣେ ଜୀବର ପରିତ୍ରାଣ । ସୁଜନେ ନିତ୍ୟେ ଏହା ଶୁଣ ॥
ଭଗତି କୃଷ୍ଣ ପାଦେ ଲଭ । ମନୁଷ୍ୟ ଜନ୍ମର ଏ ଲାଭ ॥
ବୋଲଇ ବିପ୍ର ଜଗନ୍ନାଥ । ମୁ ତୁମ୍ଭ ଭୃତ୍ୟଙ୍କର ଭୃତ୍ୟ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟା ସଂହିତାୟାଂ ବୈୟାସିକ୍ୟାଂ ଏକାଦଶ ସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ ଶ୍ରୀକୃଷ୍ଣ ବୈକୁଣ୍ଠଂ ଗମନଂ ନାମ ଦ୍ୱାତ୍ରିଂଶୋଽଧ୍ୟାୟ ।*

# ଦ୍ୱାଦଶ ସ୍କନ୍ଧ

ଓଁ ନମୋ ଭଗବତେ ବାସୁଦେବାୟ ନମଃ
ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରି ।
ଯତ୍କୃପା ତମହଂ ବନ୍ଦେ ପରମାନନ୍ଦମାଧବଂ ॥
ନିଗମକଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତା ଦ୍ରବସଂଯୁତଂ ।
ପିବତ ଭାଗବତଂ ରସମାଳୟଂ ମୁହୁରହୋରସିକା ଭୁବି ଭାବୁକାଃ ॥

## ପ୍ରଥମ ଅଧ୍ୟାୟ

ନମଇଁ ପ୍ରଭୁ ନାରାୟଣ । ବୈକୁଣ୍ଠ ପରମ କାରଣ ॥
ବୈକୁଣ୍ଠ ପୁରୁଷ ପୁରାଣ । ଅଖିଳ ପତିତ ପାବନ ॥
ଯାହାର ଆଦି ଅନ୍ତ ନାହିଁ । ବ୍ରହ୍ମା ମହିମା ନ ଜାଣଇ ॥
ନମଇଁ ପ୍ରଭୁ ଭାବଗ୍ରାହୀ । ଭକତ ହିତେ ବହୁ ଦେହୀ ॥
ମତ୍ସ୍ୟ କଚ୍ଛପ ଯେ ବରାହ । ନୃସିଂହ ରୂପୀ ବିଶ୍ୱବାହ ॥
ବାମନ ପର୍ଶୁଧର ରାମ । ହଳଧର ରୂପ ଉତ୍ତମ ॥
ବୁଦ୍ଧ କଳଙ୍କ ଅବତାର । ଖଣ୍ଡିଲେ ଅବନୀର ଭାର ॥
ଜଗତ ମଙ୍ଗଳ ଈଶ୍ୱର । ମହିମା ନ ଜାଣେ ଶଙ୍କର ॥
ବ୍ରହ୍ମା ଯା ନ ପାଇଲା ଅନ୍ତ । ନମସ୍ତେ ପୁରୁଷ ଅନନ୍ତ ॥
ଅବ୍ୟକ୍ତ ନିର୍ମଳ ପୁରୁଷ । ପରମ ଜ୍ୟୋତି ରବି ତ୍ରାସ ॥
ନମସ୍ତେ ଭଗତ ବତ୍ସଳ । ଅନାଦି ଆଦି ବିଶ୍ୱମୂଳ ॥
ହେ ଜଗନ୍ନାଥ ଜଗଦ୍ଭୂତ । ସୃଷ୍ଟି ପାଳକ ହେ ଅବ୍ୟକ୍ତ ॥
ନମଇଁ ଜୟ ବିଶ୍ୱତେଜ । ନାମେ ତୋ ସର୍ବ ପାପ ଦଗ୍ଧ ॥
ନିର୍ଗୁଣ ନିରଞ୍ଜନ ରୂପ । ପଞ୍ଚଭୂତ ଆତ୍ମା ସ୍ୱରୂପ ॥
ନମଇଁ ଜୟ କୃଷ୍ଣ ଶ୍ୟାମ । ସର୍ବ ଭୂତରେ ଆତ୍ମାରାମ ॥
ନମଇଁ ଜଗତ ପାବନ । ହେ କୃପାସିନ୍ଧୁ ଜନାର୍ଦ୍ଦନ ॥
ନମଇଁ ଗୋପୀ ପ୍ରାଣପତି । ଶ୍ରୀ ବାସୁଦେବ ଜଗଜ୍ୟୋତି ॥
ଜୟ ଗୋପୀଜନ ବଲ୍ଲଭ । ସକଳ ପ୍ରାଣୀଙ୍କର ଶୁଭ ॥
ନମଇଁ ଦେବ ନାରାୟଣ । ବ୍ରହ୍ମ ସ୍ୱରୂପୀ ଯେ ନିର୍ଗୁଣ ॥
ନିର୍ମଳ ଜ୍ୟୋତି ରୂପ ଶୋଭା । ବଦ୍ରିକା ଥାନେ ତୋର ଶୋଭା ॥
ହେ ନାରାୟଣ ନରରୂପୀ । ମହିମା କେ ଜାଣେ ସଂଖ୍ୟପି ॥
ଅନନ୍ତ ରୂପ ତୋ ମହିମା । ନ ଜାଣେ ଶେଷ ଶିବ ବ୍ରହ୍ମା ॥
ଶିରରେ ଶୋହେ ଜଟାଭାର । ତେଜ କି ଶଶୀ ଦିନକର ॥
ସୃଷ୍ଟିରେ ସର୍ବ ଦେବମାଏ । ସୂର୍ଯ୍ୟଙ୍କ ବୀର୍ଯ୍ୟେ ଜନ୍ମ ହୋଏ ॥
ଭାରତ ବରଷରେ ପୁଣ । ଇଷ୍ଟ ଦେବତା ଯେ କାରଣ ॥
ଅଖଣ୍ଡ ଲୋକ ପୂଜ୍ୟ ତୁହି । ତୋ ନାମ ଅନ୍ତେ ଯେ ଧରଇ ॥
ବଇକୁଣ୍ଠ ପଦ ଲଭଇ । ସକଳ ପାପ କ୍ଷୟ ଯାଇ ॥
ଚତୁଃ ଅକ୍ଷର କ୍ଷୟ ତୋର । ଅଜାମିଳ ମୁଖେ ଉଚ୍ଚାର ॥
ସକଳ ପାପୁଁ ସେ ତରିଲେ । ତୋ ଦୂତ ବୈକୁଣ୍ଠକୁ ନେଲେ ॥
ସେ ନାରାୟଣ ପାଦେ ମୁହିଁ । ଶରଣ ପାଇଁ ଯେ ଇଚ୍ଛଇ ॥
ଦ୍ୱାଦଶ ସ୍କନ୍ଧ ଭାଗବତ । ତ୍ରୟୋଦଶ ଅଧ୍ୟା ନିର୍ମିତ ॥
ଜଗନ୍ନାଥ ଦାସ ପ୍ରକାଶ । କରି ତ ଲୋଡୁଅଛି ଆଶ ॥
ନାମ ମୋହର ମହାଦେବ । ବିପ୍ରର କୁଳେ ମୁଁ ସମ୍ଭବ ॥
କୃଷ୍ଣ ସ୍ୱରୂପୀ ଜଗନ୍ନାଥ । ଚଳିଲେ ଗୋଲକ ଯେ ପଥ ॥
ମୁଁ ଏହା କରଇ ବିସ୍ତାର । ଅଷ୍ଟାଦଶ ପୁରାଣ ସାର ॥
ପୁରାଣ ମାନଙ୍କୁ ଉଦ୍ଧାରି । ସୁଜନେ କହିଲେ ବିସ୍ତାରି ॥
ଭବିଷ୍ୟେ ରାଜାମାନେ ଯେତେ । ଭୋଗ କରିବେ ଏ ଜଗତେ ॥

### ଶୌନିକ ଉବାଚ

ଶୌନିକ କହେ ତୋଷମନେ । ସୂତଙ୍କୁ ବିନୟ ବଚନେ ॥
କହିଲେ କଳିଯୁଗ ଗତି । ଭୂତ ଭବିଷ୍ୟ ଯେତେ ରୀତି ॥
କେବା କେମନ୍ତେ ଭୋଗକଲା । କି ରୂପେ କଳି ବିସ୍ତାରିଲା ॥
ଏ ଆଦି ଯେବଣ ଚରିତ । କହ ସେ ସୂତ ତପୋବନ୍ତ ॥

### ଶ୍ରୀ ସୂତ ଉବାଚ

ସୂତ କହନ୍ତି ଯେ ଆନନ୍ଦେ । ଚିତ୍ତ ଦେଇ ଗୋବିନ୍ଦ ପାଦେ ॥
ନୈମିଷ୍ୟାରଣ୍ୟ ରମ୍ୟ ସ୍ଥାନେ । ଶୌନିକ ଆଦି ମୁନିଜନେ ॥
ମୋ ପିତା ରୋମ ହରଷଣ । ସୂତ ପୌରାଣିକ ତା ନାମ ॥
ଶୁକଦେବ ଯେ ମହାମୁନି । ପରୀକ୍ଷିତ ଭଗତି ଘେନି ॥
କହିଲେ ଭାଗବତ ରସ । ପିତା ମୋ ଶୁଣି ଉପଦେଶ ॥
ତାହାଙ୍କ ଠହୁଁ ଶୁଣି ମୁହିଁ । ତୁମ୍ଭ ଆଗରେ କହିବଇଁ ॥
ବିଭୁ ନାମେ ନନ୍ଦ ରାଜନ । ଭବିଷ୍ୟେ ପୁରଞ୍ଜୟ ନାମ ॥
କଳିଯୁଗ ଆଦ୍ୟ ପ୍ରବେଶ । ଯୁଧିଷ୍ଠି ଛତିଶ ବରଷ ॥
ପାଳିଲେ ପଞ୍ଚଦେଶ ସୀମା । ଶୁଣି ତ ଅଛ ସେ ମହିମା ॥
ପରୀକ୍ଷିତଙ୍କୁ ରାଜ୍ୟ ଦେଇ । ହିମାଳେ ଗଲେ ପାଞ୍ଚଭାଇ ॥
ଏକଷଠି ବରଷ ପୁଣ । ପରୀକ୍ଷିତ ହେଲେ ରାଜନ ॥
ସେ ପୁଣି ବ୍ରହ୍ମଶାପ୍ୟ ଫଳେ । ଭସ୍ମ ତକ୍ଷକ ବିଷଜାଳେ ॥
ତା ସୁତ ଜନ୍ମେଜୟ ପୁଣ । ସର୍ପ ଯଜ୍ଞେ ପିତା ଛଳେଣ ॥
ଶତେ ବରଷ ରାଜା ପଣ । ତା ସୁତ ସତାନିକ ପୁଣ ॥
ନବ ବରଷ ରାଜସୁତ । ତା ସୁତ ଅଶ୍ୱମେଧ ଜାତ ॥
ଅଶୀ ବରଷ ରାଜା ଏକ । ତା ସୁତ ହୋଇଲା ଅଜେକ ॥

ପଞ୍ଚସ୍ତରୀ ବରଷ ରାଜା । ହୋଇ ପାଳିଲା ଜନପ୍ରଜା ॥
ଦେବଳ ତାହାର ତନଏ । ସତୁରୀ ବର୍ଷ ରାଜା ହୋଏ ॥
ତାର ତନୟ ସୁପାରୁଶ । ପଞ୍ଚାବନ ବର୍ଷ ଆୟୁଷ ॥
ତା ସୁତ ଅଜି ଯେ ପୁରୁଷ । ପଞ୍ଚ ଚାଳିଶ ପାଳେ ଦେଶ ॥
ସସିକ ତାହାର ତନୟେ । ପଞ୍ଚାଶ ଅବ୍ଦ ରାଜା ହୋଏ ॥
ସୁବଳ ତାହାର ତନୟେ । ସତୁରୀ ବର୍ଷ ରାଜା ହୋଏ ॥
ତାର ତନୟ ଦେବଭାଗ । ଚାଳିଶ ବରଷ ତା ଭୋଗ ॥
ଦେବକ ତାହାର ସନ୍ତତି । ପଞ୍ଚଚାଳିଶ ଭୋଗ କ୍ଷିତି ॥
ତା ସୁତ ଅଜକର୍ଣ୍ଣ ନାମ । ପଞ୍ଚ ତିରିଶ ସେ ରାଜନ ॥
ସୋମ ଯେ ତାହାର ସନ୍ତତି । ତ୍ରିଂଶ ବରଷ ପୃଥ୍ୱି ଗତି ॥
ତା ସୁତ ମେଘାଖାନକ ଏ । ଅଠତିରିଶ ଭୋଗ କରେ ॥
ତା ସୁତ ବିଶାଖା ଯେ ନାମ । ପଞ୍ଚ ତିରିଶ ସେ ରାଜନ ॥
ସେହେତ୍ର ତାହାର ସନ୍ତତି । ତିରିଶ ବରଷ ନୃପତି ॥
ତା ସୁତ ମହାବଳ ରାଜା । ସୁଖେ ପାଳିଲା ଜନପ୍ରଜା ॥
ଚାଳିଶ ବରଷ ସେ ହୋଇ । ଏଠାରୁ ସୋମ ବଂଶ ରହି ॥
ଯୁଧିଷ୍ଠି ଆଦି ଉନବିଂଶ । ସହସ୍ରେ ଏ ଦଶ ବରଷ ॥
ପରୀକ୍ଷିତାଦି ଅଷ୍ଟଦଶ । ରାଜା ହୋଇ ପାଳିଲେ ଦେଶ ॥
ପୂର୍ବେ ସୋମ ବଂଶରେ ଜାତ । ଇନ୍ଦ୍ର ଶେଖର ନରନାଥ ॥
ଗଙ୍ଗାତୀରରେ ବିଦ୍ୟମାନ । ପାଟଳୀ ନଗ୍ର ତାର ନାମ ॥
ଦଶ ବରଷ ରାଜା ହୋଇ । ଆନନ୍ଦେ ରାଜ୍ୟ ସେ ପାଳଇ ॥
ତା ସୁତ ସୁର ଯେ ଅଟଇ । ଅଷ୍ଟାଦଶ ବରଷ ହୋଇ ॥
ସୌରଭ ତାହାର ତନଏ । ସପ୍ତଦଶ ବରଷ ହୋଏ ॥
ପଦ୍ମ ଯେ ତାହାର ସନ୍ତତି । ଅଷ୍ଟାଦଶ ରାଜା ଏ ସ୍ଥିତି ॥
ମହାପଦ୍ମ ତାର ତନଏ । ଷୋଳ ବରଷ ରାଜା ହୋଏ ॥
ନନ୍ଦ ଯେ ତାହାର କୁମର । ପଞ୍ଚଦଶ ଏ ନୃପବର ॥
ଏ ଷଟପୁରୁଷେ ରାଜନ । ଶତେ ପାଞ୍ଚ ବରଷ ପୁଣ ॥
ଏମନ୍ତ ଚଉବିଂଶ ରାଜା । ପାଳିଲେ ଏ ଜନ ପରଜା ॥
ଏଗାରଶତ ପଞ୍ଚଦଶ । ଯେଠାରୁ ଶୁଣ ହେ ଭବିଷ୍ୟ ॥

## ଶ୍ରୀ ଶୁକ ଉବାଚ

ମଗଧ ଦେଶରେ ପ୍ରକାଶେ । ବୃହଦ ରଥ ରାଜା ବଂଶେ ॥
ପୁରଞ୍ଜୟ ନାମେ ରାଜନ । ହୋଇବ କିଛି ଦିନେ ପୁଣ ॥
ତା ମନ୍ତ୍ରୀ ସୁନକା ବ୍ରାହ୍ମଣ । ସେ ପୁରଞ୍ଜୟକୁ ମାରିଣ ॥
ଆପଣା ପୁତ୍ରକୁ ଥାପିବ ।ବଳେ ସେ ପୃଥ୍ୱୀ ଆକ୍ରୋଷିବ ॥
ତାହାର ନାମ ଯେ ପ୍ରଦ୍ୟୋତ । ପାଳକ ତାହାର ଯେ ପୁତ୍ର ॥
ବିଶାଦ ସୁତ ତା କୁମର । ରାଜନ ଜନ୍ମ ତା ବୀର୍ଯ୍ୟର ॥

ନନ୍ଦବର୍ଦ୍ଧନ ତା ତନୟେ । ପଞ୍ଚ ବରଷ ରାଜା ହୋଏ ॥
ଶତେ ଅଷ୍ଟତ୍ରିଂଶ ବରଷ । ରାଜା ପଣେ ଭୋଗ ବିଳାସ ॥
ନନ୍ଦ ବର୍ଦ୍ଧନ ନରେଶ୍ୱର । ଶିଶୁନାଗ ନାମ ମନ୍ତ୍ରୀବର ॥
ନନ୍ଦ ବର୍ଦ୍ଧନକୁ ସେ ମାରି । ମନ୍ତ୍ରୀ ହୋଇବ ଦଣ୍ଡଧାରୀ ॥
ତା ସୁତ କାଳକର୍ଣ୍ଣ ନାମ । ତା ସୁତ କ୍ଷେତ୍ରବର୍ଦ୍ଧ ନାମ ॥
କ୍ଷେତ୍ର ବର୍ଦ୍ଧନେ ଉସେ ସୁତ । ବିମ୍ବିସାର ତାହାର ପୁତ୍ର ॥
ଅଜାତଶତ୍ରୁ ତା କୁମର । ଦର୍ଭକ ତାହାର ବୀର୍ଯ୍ୟର ॥
ଭୋଜ ବର୍ଦ୍ଧନ ତା ତନୟେ । ଅଜୟ ପୁତ୍ର ତାର ହୋଏ ॥
ନନ୍ଦବର୍ଦ୍ଧନ ତାର ସୁତ । ମହାନନ୍ଦ ତା ବୀର୍ଯ୍ୟ ଯାତ ॥
ଶିଶୁନାଗ ମନ୍ତ୍ରୀ ବଂଶରେ । ଦଶ ପୁରୁଷ ରାଜ୍ୟ କରେ ॥
ତିନିଶ ଷାଠିଏ ବରଷ । ପାଳିବେ ଆର୍ଯ୍ୟାବର୍ତ୍ତ ଦେଶ ॥
ସେହି ମହାନନ୍ଦ ରାଜାର । ଶୂଦ୍ରା ଯେ ଭାରିଯା ତାହାର ॥
ତା ଗର୍ଭୁ ହୋଇବ କୁମର । ନନ୍ଦ ନାମ ହୋଇବ ତାର ॥
ମହାପଦ୍ମ ନାମ ନଗରେ । ରାଜା ହେବ ବାହୁ ବଳରେ ॥
ତାପେ ହୋଇବେ ମହାମଲ୍ଲ । ଯୁଦ୍ଧେ ନୋହିବେ କେହି ତୁଲ୍ୟ ॥
ସକଳ କ୍ଷତ୍ରିୟ ବିନାଶ । ସେ ରାଜା କରିବ ଅବଶ୍ୟ ॥
ଏହାର ସମୟରେ ପୁଣ । ଧରି ଦଣ୍ଡ ଯେତେ ରାଜନ ॥
ଶୂଦ୍ରେ ହୋଇବେ ସର୍ବେରଜା । ଅଧର୍ମେ ପାଳିବେ ପରଜା ॥
ଅଧାର୍ମିକ ପଣେ ରାଜନ । କରିବେ ପରଜା ପାଳନ ॥
ଅଳପ ଦିନେ ନାଶ ଯିବେ । ଯମ ଯାତନାରେ ପଡ଼ିବେ ॥
ଏକଛତ୍ର ନନ୍ଦ ରାଜନ । ସୂର୍ଯ୍ୟର ପ୍ରାଏ ବିଦ୍ୟମାନ ॥
ସର୍ବାଧିକାରେ ରାଜା ହୋଇ । ପାଳଣା କରିବେ ସେ ମହୀ ॥
ନନ୍ଦର ଅଂଶୁ ସୁତ ହୋଇ । ସୁମାଲ୍ୟ ଆଦି ଅଷ୍ଟ ଭାଇ ॥
ନନ୍ଦର ତା ସୁତ ହୋଇବ । ସୁମାଲ୍ୟ ରାଜ୍ୟେ ରାଜା ହେବ ॥
ନନ୍ଦ ଯେ ମୃଗୟା ଗମନେ । ପଶିବେ ଗହନ ବିପିନେ ॥
ତାହାର ବିଶ୍ୱାବସୁ ମନ୍ତ୍ରୀ । ରାଜାଙ୍କୁ ବନସ୍ତେ ମାରନ୍ତି ॥
ମାରିଣ ଚଉଦିଗ ଚାହିଁ । ପାଟଳୀ ସାଖା ଯେ ଚଳଇ ॥
ମନ୍ତ୍ରୀର ମନେ ସେ ରହଇ । ସୁମାଲ୍ୟ ରାଜ୍ୟେ ରାଜା ହୋଇ॥
ମିଳି ପତି ପତ୍ନୀ ସମ୍ପାଦେ । ଶୁଣି ରାଜନ ମନ ଖେଦେ ॥
ପିତା ବନ୍ଧ ଥାଇ ମନରେ । ଦିନେ ଅନ୍ଧାର ବିଜେ ଧୀରେ ॥
ମନ୍ତ୍ରୀ ସକୁଟୁମ୍ବ ସହିତେ । ସୁମାଳୀ ରାଜା କଲେ ହତେ ॥
ନନ୍ଦ ସୁମାଲ୍ୟ ବେନି ରାଜା । ଶତବ୍ଦୀ ପାଳିବେ ସେ ପ୍ରଜା ॥
ସେ ବିଶ୍ୱାବସୁ ମନ୍ତ୍ରୀ ସୁତ । ପଳାଇ ଗଲା ପ୍ରାଣ ଭୀତ ॥
ପର୍ବତେ ଶୂରମୌର୍ଯ୍ୟ ରାଜ । ଶରଣ ମନ୍ତ୍ରୀର ତନୁଜ ॥
ସୌର୍ଯ୍ୟ ରଜାକୁ ସେ ଆଣି । ସୁମାଲ୍ୟ ରାଜା ଯୁଦ୍ଧେ ଜିଣି ॥

ରାଜା ହୋଇବ ସଉର୍ଯ୍ୟକ । ବସୁମନ୍ତ ସୁତ ଚଣକ ॥
ମନ୍ତ୍ରୀ ହେବ ଚଣକ ଯେଣୁ । ଚାଣକ୍ୟ ନାମ ଶ୍ରେଷ୍ଠ ତେଣୁ ॥
ସଉର୍ଯ୍ୟ ରାଜା ପଣେ ଯୋଗ । ପଞ୍ଚାଶ ବରଷ ତା ଭୋଗ ॥
ଏମନ୍ତେ ଶୁଣ ଆନ ରୀତି । ଶୂଦ୍ର ରାକ୍ଷସ ନାମେ ମନ୍ତ୍ରୀ ॥
ନନ୍ଦ ରାଜାର ଶୂଦ୍ର ସୁତ । ନାମ ତା ଚନ୍ଦ୍ର ଯେ ଗୁପତ ॥
ତାହାକୁ ଅଭିଷେକ କରି । ବାରିସାର ପୁତ୍ର ଏହାରି ॥
ତା ପୁତ୍ର ଅଶୋକ ବର୍ଦ୍ଧନ । ସ୍ୱଯଶ ତାହାର ନନ୍ଦନ ॥
ତାହା ପୁତ୍ର ନାମ ସଙ୍ଗତ । ଶାଳିସୁକ ନାମ ତା ପୁତ୍ର ॥
ତା ସୁତ ନାମ ସୋମଶର୍ମା । ତା ପୁତ୍ର ନାମ ଶତଧନ୍ୱା ॥
ବୃହଦଥ ଯେ ତା ତନୟେ । ତା ପୁତ୍ର ହେବ ମୃତ୍ୟୁ ଜୟେ ॥
ଏ ଦଶ ପୁରୁଷେଣ ଭୋଗ । ଶଏ ସପତିତ୍ରିଂଶ ଯୋଗ ॥
ଏ ବେଦ ମିତ୍ର ରାଜା ମନ୍ତ୍ରୀ । ଶୃଙ୍ଗ ନାମେଣ ସେ ବିଖ୍ୟାତି ॥
ଯେ ରାଜା ମାରି ରାଜା ହୋଏ । ଏହାର ଦୁଇ ଯେ ତନଏ ॥
ଶୃଙ୍ଗର ପୁତ୍ର ଅଗ୍ନିମିତ୍ର । ଯୁଜ୍ୟେଷ୍ଠ ନାମେ ତାର ସୁତ ॥
ବସୁମିତ୍ର ଯେ ସୁତ ତାର । ଉଦ୍ରକ ପୁଳିନ୍ଦ ଆବର ॥
ପୁଳିନ୍ଦ ତା ସୁତ ହୋଇବ । ଘୋଷ ତା ତହୁଁ ସମ୍ଭବିବ ॥
ବଜ୍ରମିତ୍ର ତାହାର ସୁତ । ତା ସୁତ ନାମ ଭାଗବତ ॥
ଦେବହୂତି ତାର ସନ୍ତତି । ଶୃଙ୍ଗ ବଂଶେ ଦଶା ଉତ୍ପତ୍ତି ॥
ଶହେ ଅଷ୍ଟତର ବସର । ରାଜାପଣେ ଭୋଗ ତାହାର ॥
ଦେବହୂତି ରାଜା ସଚିବ । କଣ୍ୱ ନାମ ତା ଖ୍ୟାତ ହେବ ॥
ରାଜାକୁ ମାରି କଣ୍ୱରାଜା । ସମୟେ ପାଳିବ ପରଜା ॥
ତା ସୁତ ବସୁଦେବ ନାମ । ଭୋମିତ୍ର ତାହାର ନନ୍ଦନ ॥
ଏ ବଂଶେ ପାଞ୍ଚ ରାଜା ଭୋଗ । ତିରିଶ ପଞ୍ଚାଳିଶ ଭୋଗ ॥
ସୁଧର୍ମା ନାମେ ରାଜା ଏକ । ବୃଷଭ ତାହାର ସେବକ ॥
ସେ ଅନ୍ତଘାତ ଜନ୍ମ ପୁଣ । ରାଜା ମାରି ହେବ ରାଜନ ॥
ତା ଅନ୍ତେ ଭାଇ କୃଷ୍ଣ ନାମ । ରାଜା ହୋଇବେ ବିଦ୍ୟମାନ ॥
ସାତ୍ୟକି ନାମେ ପୁତ୍ର ତାର । ପୌର୍ଣ୍ଣସ ନାମ ତା କୁମର ॥
ତା ପୁତ୍ର ନାମ ଲମ୍ୱୋଦର । ସୁବଳ ତାହାର କୁମର ॥
ତା ପୁତ୍ର ନାମ ମେଘସ୍ୱାତି । ବର୍ଦ୍ଧମାନ ତାର ସନ୍ତତି ॥
ଅନିଷ୍ଟକର୍ମା ତା ତନୟ । ତା ପୁତ୍ର ନାମ ମହାଶୟ ॥
ସୁକଳ ତାହାର ଯେ ସୁତ । ତା ବୀର୍ଯ୍ୟେ ଜନ୍ମିବ ମରୁତ ॥
ସୁନନ୍ଦ ତାହାର କୁମର । ତା ପୁତ୍ର ନାମ ଯେ ଚକୋର ॥
କଟକ ତାହାର ସନ୍ତତି । ତା ସୁତ ଶିବ ନରପତି ॥
ଶାନ୍ତି ଯେ ତାହାର ତନଏ । ଅରିନ୍ଦମ ତା ବୀର୍ଯ୍ୟ ହୋଏ ॥
ତା ସୁତ ନାମ ଯେ ଗୋମତି । ପୁରସ୍ୱାର ତାର ସନ୍ତତି ॥

ତା ସୁତ ନାମ ଦେବଶିରା । ତା ସୁତ ସିସୋଦକ ବୀରା ॥
ତା ସୁତ ନାମ ଯଜ୍ଞସାର । ବିଜୟ ହେବ ତା କୁମର ॥
ଚନ୍ଦ୍ରବୀର୍ଯ୍ୟ ତାର ସନ୍ତତି । ତା ପୁତ୍ର ନାମ ଯେ ଗୋମତି ॥
ତାହାର ପୁତ୍ର ଯେ ଲୋମଶ । ସୁବଳ ତାହାର ଯେ ଶିଷ୍ୟ ॥
ତାହାର ପୁତ୍ର ଯେ ସୁବୀର । ତାହା କୁମର ଯେ ସୁବଳ ॥
ଚାଳିଶି ପୁରୁଷ ଆନନ୍ଦେ । ଚାରିଶ ଛପନ ଅବେଦେ ॥
ଏଥୁ ଅନ୍ତରେ କଥାଶୁଣ । ଗୁଆଳି ନାମ ଦେଶରେଣ ॥
ମଥୁରା ନଗରରେ ପୁଣ । ଗୋପ ବଂଶରେ ଉତପନ ॥
ରାଜା ହୋଇ ସାତ ପୁରୁଷ । ଶତେ ସତୁରୀ ଯେ ବରଷ ॥
ଅବନ୍ତ ନାମେଣ ନବର । ଅବନ୍ତି ନାମେ ନୃପବର ॥
ତହିଁ ସେ ହୋଇବେ ନରେଶ । ଶତେକ ଅଶୀ ଏ ବରଷ ॥
ଯେଉଁ ବଂଶେ ସପତ ପୁରୁଷ । ରାଜାପଣେ ପାଳିବେ ଦେଶ ॥
ଗନ୍ଧର୍ବ ଦେଶରେଣ ପୁଣ । ଛାୟା ଯେ ତହିଁ ସନ୍ନିଧାନ ॥
ଯଏ ନାମ ରାଜା ବଂଶରେ । ଦଶ ବରଷ ନୃପବରେ ॥
ଶତକେ ନଭ ଯେ ବଚ୍ଛର । ଏ ଯେ ହୋଇବ ନୃପବର ॥
ତହୁଁ ଯେ କଳିଙ୍ଗ ଦେଶରେ । କଳିଙ୍ଗ ସେନର ବଂଶରେ ॥
ଷୋଳ ବରଷ ରାଜାପଣ । ଦିଶତ ଅଶୀ ବରଷେଣ ॥
ଯେ ବଂଶେ ଯେତେକ ନୃପତି । ଅଧାର୍ମିକ ପଣେ ସେବନ୍ତି ॥
ଅତ୍ୟନ୍ତ ଲୋଭେ ପ୍ରବର୍ତ୍ତିବେ । ପ୍ରଜାଙ୍କୁ ଅତି ଦୁଃଖ ଦେବେ ॥
ମ୍ଳେଚ୍ଛ ଆଚାର ତାଙ୍କ କର୍ମ । ସଂସାରେ ନ ଥାପିବେ ଧର୍ମ ॥
ଏଣୁ ଏ ମ୍ଳେଚ୍ଛ ଯେ ହୋଇବେ । ମ୍ଳେଚ୍ଛ ଏ ଭୂମି ଆକର୍ଷିବେ ॥
କଳିଙ୍ଗସେନ ଅନ୍ତେ ପୁଣ । ହିନ୍ଦୁ ଯବନ ଉତପନ୍ନ ॥
ଦଶ ପୁରୁଷ ରାଜା ପଣ । ତିନିଶତ ବରଷ ଜାଣ ॥
ଏ ଅନ୍ତେ ଖୁରିଷାଣୀ ଜନ୍ମ । ଆଠପୁରୁଷ ସେ ରାଜନ ॥
ଚଉଦ ପୁରୁଷ ହୁଡୁକ । ରାଜ ପଣେ ସେ ଅବିବେକ ॥
ପୁଣି ଯେ ଫିରିଙ୍ଗିଙ୍କ ବଂଶ । ହୋଇବେ ତେର ଯେ ପୁରୁଷ
ଏଣୁ ସକଳ ଧର୍ମ ଯିବ । ବର୍ଣ୍ଣ ଆଚାର ନ ରହିବ ॥
ଏ ଅନ୍ତେ ମଉନା ମୁଗଲ । କ୍ଷତିକି ହେବେ ମହାଶଲ ॥
ଏଗାର ପୁରୁଷ ରାଜନ । ହୋଇବ ମୁଗଲ ବଂଶେଣ ॥
ରାଜା ହୋଇବେ ସର୍ବ ଦେଶ । ଇନ୍ଦ୍ର ପ୍ରସ୍ଥରେ ସେ ପ୍ରକାଶ ॥
ଖୁରାଷାଣୀ ଜନମ ଆଦି । ଚାରି ଜାତିରେ ଏ ପ୍ରସିଦ୍ଧି ॥
ଛୟାଳିଶ ପୁରୁଷେ ପୁଣ । ଏଗାର ଶତ ଏକଉନ ॥
ହିନ୍ଦୁ ଯମନ ଆଦି କରି । ଭୋଗ ଚଉଦ ସମ୍ବସରି ॥
ବସର ନାମ ସନ ସାଲେ । ଏଠାରୁ ଏ ପୁଣ ନୋହିଲେ ॥
ଏ ଅନନ୍ତରେ ନୃପବର । କିଳିକିଳା ନାମ ଯେ ଦେଶର ॥

ଏହାର ପୂର୍ବ ବଂଶେ ପୁଣ । ସୁନନ୍ଦ ନାମେଣ ରାଜନ ॥
ତାହାର ଭାଇର ବଂଶର । ଯଶୋନନ୍ଦ ନାମେ ତାହାର ॥
ରାଜା ହୋଇବ ଯଶୋନନ୍ଦ । ତା ପୁତ୍ର ନାମ ମହାନନ୍ଦ ॥
ପ୍ରବୀରକ ପୁତ୍ର ତାହାର । ମହାପଦ୍ମ ତାର କୁମର ॥
ତାହର ସୁତ ପଦ୍ମ ନାମ । ପଞ୍ଚ ପୁରୁଷ ବିଦ୍ୟମାନ ॥
ଏ ଅଷ୍ଟ ବରଷ ରାଜନ । ଏ ଅନନ୍ତରେ ଏବେ ଶୁଣ ॥
ବାହଲିକ ଦେଶେ ରାଜନ । ବାହନ ନୃପତି ଜନମ ॥
ପୁଷ୍ପମିତ୍ର ସୁତ ଯେହାର । ଯେ ପୁଣ ହୋଏ ନୃପବର ॥
ଦମିତ ତାହାର ସନ୍ତତି । ସୁମିତ୍ର ତହୁଁ ଜତପତ୍ତି ॥
ସୁବଳ ତାହାର ତନଏ । ସୁବାହୁ ତାର ପୁତ୍ର ହୋଏ ॥
ସୁଦିର୍ଯ୍ୟ ତାର ତହୁଁ ଜାତ । ସୁଷମା ତହୁଁଣ ସମ୍ଭୂତ ॥
ସୁଘୋଷ ତାହାର କୁମର । ସୁତେଜା ସୁତ ଯେ ଯେହାର ॥
ସୁହୋତ୍ର ତାହାର କୁମର । ଦମନକ ସୁତ ତାହାର ॥
ଦମ ଯେ ତାହାର ସନ୍ତତି । ଏ ତେର ପୁରୁଷ ନୃପତି ॥
ସାତଶ ଛଷଠି ବରଷ । ଏହୁ ପାଳିବେ ରାଜାଦେଶ ॥
ଏ ଅନ୍ତେ ଅନ୍ଧ୍ର ଦେଶ ପୁଣ । ସପ୍ତ ପୁରୁଷ ସେ ରାଜନ ॥
ଯେ ଅନ୍ତେ କୋଶଳ ଦେଶରେ । ସାତ ବରଷ ନୃପବରେ ॥
ଏଥୁ ଅନ୍ତରେ ସେ ରାଜନ । ହୋଇବେ ନୈଷଧ ଦେଶେଣ ॥
ଯେ ଅନ୍ତେ ବୈଦୂର୍ଯ୍ୟ ନଗରେ । ସପ୍ତ ପୁରୁଷ ନୃପବରେ ॥
ସାତ ପୁରୁଷ ହୋଇ ରାଜା । ଏମାନେ ପାଳିବେ ପରଜା ॥
ଏ ଯେ ରାଜନ ଅଠାଇଶ । ଚଉଦ ସତୁରୀ ବରଷ ॥
ଏ ଅନ୍ତେ ମଗଧ ଦେଶେଣ । ବିଖ୍ୟାତ ପୁରର୍ଜୟ ନାମ ॥
ରାଜା ହୋଇବ ମହାବଳୀ । ଅତି ଗ୍ରାସିବ ଯୁଗ କଳି ॥
ସେ ଅତି ଅଧାର୍ମିକ ପୁଣ । କରିବ ପରଜା କଷଣ ॥
ଏକ ଆଚାର ସେ କରିବ । ବର୍ଣ୍ଣଧର୍ମ ସେ ନ ରଖିବ ॥
ମ୍ଳେଚ୍ଛ ନବର ଶେଷବର । ଚାଣ୍ଡାଳୁ ନାନା ବର୍ଣ୍ଣାଚାର ॥
ସବୁ ଗଢ଼ିକି ଏକ କରି । ଅଧାର୍ମିକ ପଣ ଆଚରି ॥
କର୍ମ ଧର୍ମ ସର୍ବ ଛଡ଼ାଇ । ଦୁଷ୍ଟ ଆଚରଣେ ବଢ଼ାଇ ॥
ବଳବନ୍ତେଣ ଜିଣେ ମହୀ । ସବୁ କ୍ଷତ୍ରି ମାରିବ ସେହି ॥
ପଦ୍ମାବତୀ ନାମ ନବରେ । ରାଜା ହୋଇବ ତେଜଭରେ ॥
ହସ୍ତିନା ଦ୍ୱାରିକା ମଥୁରା । ଗଙ୍ଗା ପ୍ରୟାଗ ସୌରାଷ୍ଟରା ॥
କୁରୁକ୍ଷେତ୍ର ଏ ଯେ ଅଯୋଧ୍ୟା । ଗୁଆଳି ଅବନ୍ତି ଶ୍ରୀବୃନ୍ଦା ॥
ଶୁଣିଣ ମାଲ୍ୟ ଅରବିନ୍ଦ । ଏହାଦେ ହୋଇବ ନରେନ୍ଦ୍ର ॥
ତାହାର ସମୟରେ ପୁଣ । ନାଶିବ ସର୍ବଗୁଣ ମାନ ॥
ବ୍ରାହ୍ମଣ ସଂସାର ଯେ ହୀନ । ଶୂଦ୍ର ପ୍ରାଏକ ଆଚରଣ ॥
କରିବେ ଶୂଦ୍ର ଧର୍ମ କର୍ମ । ବେଦ ବିଦ୍ୟାରେ ହେବେ ଭ୍ରମ ॥
ଏ ପୁରଞ୍ଜୟ ବଂଶେ ପୁଣ । ଚଉଦ ପୁରୁଷ ରାଜନ ॥
ସାତଶ ଅଶୀ ଯେ ବରଷ । ରାଜପଣେ ପାଳିବେ ଦେଶ ॥
ଏ ଅନ୍ତେ ପୁଣ ଯେ ରାଜନ । ହୋଇବେ ଯେମନ୍ତ ଭାବେଣ ॥
ଚନ୍ଦ୍ରଭାଗା ଯେ ସିନ୍ଧୁ ତଟେ । କୋନ୍ତା ଯେ କାଶୀର ନିକଟେ ॥
କାଞ୍ଚି କାବେରୀ ଆଦି କରି । ଶୂଦ୍ରେ ହୋଇବେ ଅଧିକାରୀ ॥
ମ୍ଳେଚ୍ଛ ଶରୀରେ ରାଜା ହୋଇ । ଅଧାର୍ମିକ ଗଣେ ବ୍ରତଇ ॥
ଗୋ ବ୍ରାହ୍ମଣ ଆଦି ମାରିବେ । ମିଥ୍ୟା ବାଦରେ ଦିନ ନେବେ ॥
ହିଂସା ଗ୍ରାମଧର୍ମ ଆଚରି । ସତ୍ତ୍ୱଗୁଣ ଧର୍ମ ପାସୋରି ॥
ଅଳପ ଦାନ ସେହୁ ଦେବେ । ଅଳପେ କ୍ରୋଧ ସେ ବହିବେ ॥
ଅଦୋଷେ ଦଣ୍ଡିବେ ପ୍ରାଣୀଙ୍କି । ବିଚାର ନୋହିବ କାହିଁକି ॥
ସ୍ତିରୀ ବାଳକ ଗୋ ବ୍ରାହ୍ମଣ । ମାରି କରିବେ ରଣଭଣ ॥
ପରଦ୍ରବ୍ୟ ବଳେଣ ନେବେ । ପ୍ରଜାଙ୍କୁ ଦୋଷୀ ସେ ହୋଇବେ ॥
ଅଳାପ ସମ୍ପଦ ହୋଇବ । ଉଦୟାସ୍ତ ପ୍ରାଏକ ଭାବ ॥
ଅଳପ ଦିନେ ଯିବେ ନାଶ । କଥା ରଖିବେ ଅପଯଶ ॥
ଅନ୍ତେ ଯେ ଅଗତି କି ଯିବେ । ଯମ ଭୁବନେ ତା ଦେଖିବେ ॥
ଅସଂସ୍କାରରେ କ୍ରିୟା ହୀନ । ରଜ ତମରେ ଯୁକ୍ତମନ ॥
ସେ ମ୍ଳେଚ୍ଛ ଭାବେ ରାଜାମାନେ । ପ୍ରଜାଙ୍କୁ କରିବେ ଉଛନେ ॥
ସେ ଦିନେ ରାଜାମାନେ ପୁଣ । କରିବେ ହୀନ ଆଚରଣ ॥
ଅବିଦ୍ୟା ଅକର୍ମେ ବଞ୍ଚିବେ । ସେ ରାଜାଙ୍କୁ ଭାଷା କହିବେ ॥
ପରଜା ଅନ୍ୟେ ଅନ୍ୟ ହୋଇ । ଆପଣା ଇଚ୍ଛାରେ ନାଶଇ ॥
ଏକ ଆରକେ ଗର୍ବକରି । ମରିବେ ହିଂସା ଭାବ ଧରି ॥
ରାଜାଏ ପ୍ରଜାଙ୍କୁ ନାଶିବେ । ଗୁହାରି କଲେ ନ ଶୁଣିବେ ॥
ସୂତ କହନ୍ତି ତୋଷ ଚିତ୍ତେ । ଶୌନକ ମୁନିଙ୍କ ଅଗ୍ରତେ ॥
କହଇ ଜଗନ୍ନାଥ ଦାସ । କଳିର ଆଗମ ଭବିଷ ॥

*ଇତି ଶ୍ରୀ ମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ ଭବିଷ୍ୟତ୍‌ଚ*
*ବଂଶାନୁବର୍ଣ୍ଣନଂନାମ ପ୍ରଥମୋଽଧ୍ୟାୟ ।*

## ଦ୍ୱିତୀୟ ଅଧ୍ୟାୟ
## ଶ୍ରୀ ଶୁକ ଉବାଚ

ସୂତ କହନ୍ତି ତୋଷ ମନେ । ଶୌନିକ ଆଦି ମୁନି ଜନେ ॥
କଳିଯୁଗ ବିଧି ବିଧାନ । ଏ ଯୁଗେ ହୋଇବେ ଯେସନ
ଧର୍ମ ଶଉଚ ସତ୍ୟ କ୍ଷମା । ତୁଟିବ ଧର୍ମ ମାର୍ଗ ସୀମା ॥
କାଳ ଏ ବଳବନ୍ତ ହୋଇ । ପ୍ରାଣୀଙ୍କି ଗ୍ରାସିବ ଯେ ସେହି ॥

ଏଣୁ ଧର୍ମହୀନ ଯେ ହୋଇ । ବଳ ଆୟୁଷ କ୍ଷୟ ଯାଇ ॥
ସୁଜ୍ଞାନ ଧର୍ମ ନ ରହଇ । ଧର୍ମ ନ ଥିଲେ ପୁଣ୍ୟ କାହିଁ ॥
ଯେଣୁ ଧର୍ମାଦି ପୁଣ୍ୟହୀନ । ଧନୀ ହୋଇବେ ମ୍ଳେଚ୍ଛ ଜନ ॥
ଯେଉଁ ଜନର ଧନ ଥିବ । ସଂସାରେ ବଡ଼ ସେ ହୋଇବ ।
ସର୍ବଗୁଣ ତାଙ୍କର ପୁଣ । ଜାତି ଆସ୍ପର କୁଳ ଧର୍ମ ॥
ନିଜ ବୃତ୍ତି ଆଦି ଯେ ଗୁଣ । ଧର୍ମ ନ୍ୟାୟରେ ବିଚାରିଣ ॥
ବଳବନ୍ତ ହୋଇବେ ସେହି । ତା ବିନୁ ଅନ୍ୟ କେହି ନାହିଁ ॥
ବିବାହ ସମ୍ବନ୍ଧରେ ପ୍ରାଣୀ । କୁଳ ନ ବିଚାରିବେ ପୁଣି ॥
ଯେ କନ୍ୟା ଯେ ବର ବରିବ । ସେ ଇଚ୍ଛା ସୁଖେ ବିଭା ହେବ
ଯା ମନ ଯାହାକୁ ଭଜିବ । ସେ କନ୍ୟା ତାକୁ ବିଭା ହେବ
ଆରମ୍ଭ ଦମ୍ଭ ଲୋଭ ପ୍ରାଣୀ । ମୂଳ ଏ ସଂସାରରେ ପୁଣି ॥
ଯାହାର ପୁଣ୍ୟ ସତ୍ୟ ଥିବ । ତାହାକୁ କେହି ନ ମାନିବ ॥
ବେଭାର ଧର୍ମ ଜାତି ନାମ । ଲୋକାଚାର ଆଗମ କର୍ମ ॥
ଛନ୍ଦ କପଟ ମାୟା ସର୍ବ । ମିଥ୍ୟା ପାଷାଣ୍ଡ ଭାବ ଗର୍ବ ॥
ସ୍ତିରୀଏ ସ୍ତରୀଙ୍କୁ ରମିବେ । ପୁରୁଷେ ପୁରୁଷେ ଭଜିବେ ॥
ମୁଖ ମୁଖ କାକୁସ୍ଥ ରତି । ଏମନ୍ତ ହୋଇଣ ପ୍ରକୃତି ॥
କ୍ରୀଡ଼ା ବେହାର ଜାତିହୀନେ । କରିବେ ବ୍ୟଭିଚାରୀ ମାନେ ॥
ବେଶ୍ୟାକୁ ପାଇ ନିଜ ନାରୀ । ଛାଡ଼ିଣ ଘେନି ଘର କରି ॥
ଜାତି କୁଳକୁ ଭଏ ନାହିଁ । ଦୀପେ ପତଙ୍ଗ ପ୍ରାଏ ହୋଇ ॥
ବ୍ରହ୍ମତ୍ୱ ପବିତ୍ର ଯଜ୍ଞରେ । ରହିବ କିଞ୍ଚିତ ପ୍ରକାରେ ॥
ନାମ ବୋଲାଇବେ ବ୍ରାହ୍ମଣ । ଦଶ କର୍ମେ ହୋଇବେ ହୀନ ॥
ବ୍ରହ୍ମ ଚଉର୍ଯ୍ୟ ଚାରିବର୍ଣ୍ଣ । ନାମରେ ରହିବ ସେ ଚିହ୍ନ ॥
ଏମାନ ଛାଡ଼ି ଆରବର୍ଣ୍ଣ । ନାନା ବିକାରେ ହୋଇ ଭ୍ରମ ॥
ଆଶ୍ରମ ଧର୍ମ ନ ରହିବେ । ସଂସାର ଆଶ୍ରମେ ଚଳିବେ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣ । ବର୍ଣ୍ଣ ଧର୍ମ ଛାଡ଼ି ଅଜ୍ଞାନ ॥
ଅନ୍ୟ ଅନ୍ୟ ଧର୍ମେ ପଶିବେ । ଅମାର୍ଗ ପଥରେ ରହିବେ ॥
ଅଷ୍ଟାଦଶ ପାଟଳ ଜନ । ବର୍ଣ୍ଣ ଶଙ୍କର ଜାତିମାନ ॥
ଏମାନେ ଦମ୍ଭେ ପ୍ରବର୍ତ୍ତିବେ । ଆରମ୍ଭେ ବଡ଼ ବୋଲାଇବେ ॥
ବ୍ରାହ୍ମଣ ମାନଙ୍କର କର୍ମ । ଧର୍ମ ଆଚାର ବେଦମାନ୍ୟ ॥
କରିବେ ଏହାଙ୍କ ବିଧାନ । ନ ମାନି ବେଦର ବଚନ ॥
ଶୂଦ୍ରାଦିମାନେ ବ୍ରହ୍ମଚାରୀ । ସନ୍ନ୍ୟାସୀ ବଇଷ୍ଣବେ କରି ॥
ନିନ୍ଦା କରିବେ ବେଦମାର୍ଗ । କିଞ୍ଚିତ ଜ୍ଞାନ କରି ଗର୍ବ ॥
ବ୍ରାହ୍ମଣମାନେ ଆଦି ଶିଷ୍ୟ । କରିବେ ମନ୍ତ୍ର ଉପଦେଶ ॥
ସେ ଗୁରୁ ବୋଲାଇବେ ଶ୍ରେଷ୍ଠ । ଉଚ୍ଚ ସ୍ଥାନେ ଥାଇ ବଶିଷ୍ଟ ॥
ବ୍ରାହ୍ମଣ ଆଦି ବର୍ଣ୍ଣମାନେ । ନମସ୍କାର କରି ଅଜ୍ଞାନେ ॥

ଏ ରୂପେ କଳିଯୁଗ ଗତି । ଅଜ୍ଞାନେ ହୋଇ ଦୁଷ୍ଟମତି ॥
ନ୍ୟାୟ ଅନ୍ୟାୟ ବିଚାରିଣ । ନୋହିବ ଶାସ୍ତ୍ର ଯେ ମାର୍ଗେଣ ॥
ଯେ ଜନ ନିର୍ଦ୍ଧନ ହୋଇବ । ସାହା ତାକୁ କେହି ନୋହିବ ॥
ନ୍ୟାୟରେ ସେ ଲୋକ ହାରିବ । ସତ୍ୟ ଧର୍ମ ନ ପ୍ରବର୍ତ୍ତିବ ॥
ଗର୍ବେ ପଣ୍ଡିତ ବୋଲାଇବେ । କୁତ୍ସିତ ବଚନ କହିବେ ॥
ଦରିଦ୍ର ହୋଇ ଯେଉଁ ଜନ । ନଷ୍ଟ ହୋଇବ ସବୁଗୁଣ ॥
ଅସାଧୁ ବୋଲାଇବ ସେହି । ସତ୍ୟ ବଚନ ମିଥ୍ୟା ହୋଇ ॥
ସାଧୁ ଦାମ୍ଭିକ ବୋଲାଇବେ । ପ୍ରାଣୀଙ୍କି ଅନ୍ତେ ହିଂସୁଥିବେ ॥
ଜାତି ଧର୍ମକୁ ନ ବିଚାରି । ବଚନ ଉପ୍ରୋଧରୁ କରି ॥
ବିଭା ହୋଇବେ ଅବେଭାରେ । ଜାତି କର୍ମ ଦୋଷ ନ ଧରେ ॥
କେଶ ପାନିଆ ଘେନି ଯିବେ । କୁଣ୍ଡିଆଇ କେ ସୁଖ ଭାବେ ॥
ସ୍ନାନ କଲା ବୋଲି ଜାଣିବେ । ପଡ଼ିଆ ଗୃହ ଆଶେ ଥିବେ ॥
ତାହାକୁ ତୀର୍ଥ ବୋଲି ଜାଣି । ସ୍ନାନ କରିବେ ତହିଁ ପ୍ରାଣୀ ॥
ଆପଣା ପେଟ ଯେ ପୋଷିବେ । ବଡ଼ ପ୍ରୟୋଜନ ହୋଇବେ ॥
କାର୍ଯ୍ୟ କରିବା ବୋଲି ଜାଣି । ସେ ଲୋକେ ହୋଇବେ ଅଗ୍ରଣୀ ॥
ଅଷ୍ଟପଣରେ ସତ୍ୟଗୁଣ । କୁଟୁମ୍ବ ପୋଷି ବଡ଼ପଣ ॥
ଚତୁର ବୋଲାଇବେ ସେହି । ଏ ରୂପେ ଯୁଗଧର୍ମ ବହି ॥
ଧର୍ମ କରିବେ ଯଶ ଅର୍ଥେ । ଶାସ୍ତ୍ରକୁ ଜାଣିବେ ଅନର୍ଥେ ॥
ଏମନ୍ତ ହୋଇ ଯେତେବେଳେ । ତମ ଅଚ୍ଛାଦିବ ଶୟଳେ ॥
ପରଜାମାନେ କଷ୍ଟପଣେ । ପୃଥ୍ୱୀ ପୂରିବେ ଦୁଷ୍ଟଜନେ ॥
ବ୍ରାହ୍ମଣ ଆଦି ଚାରିବର୍ଣ୍ଣେ । ବଳ ବୀର୍ଯ୍ୟର ପରାକ୍ରମେ ॥
ବଳିଷ୍ଠ ହୋଇବାକୁ ଯହୁଁ । ନୃପତି ବୋଲାଇବେ ସେହୁ ॥
ଏମାନେ ଦୁର୍ବୁଦ୍ଧି ହୋଇବେ । ନିର୍ଦ୍ଦୟ ସ୍ୱଭାବ ବହିବେ ॥
ପ୍ରଜାମାନଙ୍କୁ କଷ୍ଟ ଦେବେ । ଅଧର୍ମ ପୁଣ କଳି ଭାବେ ॥
ସର୍ବସ୍ୱ ପ୍ରଜାଙ୍କର ନେବେ । ବିକଳ କେହି ନ ଶୁଣିବେ ॥
ପର ଦାରା ଧନ ହରିବେ । ଶୋକ ବିପତ୍ତିରେ ଦଣ୍ଡିବେ ॥
ଏମନ୍ତ ହୋଇ ଯେତେବେଳେ । ରାଜାଏ ପୀଡ଼ିବେ ଶୟଳେ ॥
ବନ ପର୍ବତରେ ଲୁଚିବେ । ସ୍ୱଦେଶ ସଭିଏଁ ତେଜିବେ ॥
ଭକ୍ଷିବେ ଶାକ କନ୍ଦମୂଳ । ପୃଥ୍ୱୀ ହୋଇବ କ୍ଷୀଣ ଫଳ ॥
ଇନ୍ଦ୍ର ବରଷା ନ କରିବ । ଏଣୁ ଯେ ଦୁର୍ଭିକ୍ଷ ହୋଇବ ॥
କର ପୀଡ଼ାରେ ପ୍ରାଣୀମାନେ । ନିରାଶ ହୋଇବେ ନିର୍ଦ୍ଧନେ ॥
ରାଜାଏ ଅନ୍ୟାୟେ କରିବେ । ଯମଦୂତ ପ୍ରାଏ ହୋଇବେ ॥
ଶୀତ ବାତ ଖରା ବରଷା । ପୀଡ଼ିତ ବ୍ୟାଧି କ୍ଷୁଧା ତୃଷା ॥
ଚିନ୍ତା ସନ୍ତାପ ଜ୍ୱରେ ଦୁଃଖୀ । ପ୍ରଜାଏ ହୋଇବେ ନିର୍ମାଖୀ ॥
ଏ କଳିଯୁଗେ ପ୍ରାଣୀଙ୍କର । ପାପେ ହୋଇବେ ଅପହାର ॥

ତିରିଶ ବରଷ ଆୟୁଷ । ହେବ ସୋଳ୍ୟ ବାର ବରଷ ॥
ପ୍ରାଣୀ ଆୟୁଷ ଦିନୁ ଦିନ । କ୍ଷୀଣ ହୋଇବ ଅଧର୍ମେଣ ॥
ଚାରିବର୍ଣ୍ଣ ଚାରି ଆଶ୍ରମ । କ୍ଷୀଣ ହୋଇବ ଦେବଧର୍ମ ॥
ସକଳ ଗୁଣେ ନାଶ ଯିବେ । ପାଷାଣ୍ଡୀ ବହୁତ ହୋଇବେ ॥
ରାଜାମାନେ ରାକ୍ଷସ ପ୍ରାଏ । ପ୍ରାଣୀଙ୍କି ହେବେ ଦୁଃଖମୟେ ॥
ଚୋରି ହିଂସା ମିଥ୍ୟାପବାଦ । ବିଶ୍ୱାସ ଘାତ ବୃତ୍ତିଚ୍ଛେଦ ॥
ଏମନ୍ତେ ପ୍ରବର୍ତ୍ତିବେ ପ୍ରାଣୀ । ଜୀବିକା କରିଣ ଅଗ୍ରଣୀ ॥
ସକଳ ଗୁଣେ ତା ବିସ୍ତାର । ଶୂଦ୍ରେ ଯେ ବଢ଼ିବେ ଅପାର ॥
ସବୁ ଯେ ବର୍ଣ୍ଣମାନଙ୍କର । ଶୂଦ୍ରେ ଧର୍ମେଣ ପରିଚାର ॥
ଗାଈ ଯେ ଛେଳି ପ୍ରାଏ ହୋଇ । ଅଭକ୍ଷ ଭକ୍ଷି କ୍ଷୀର ଦେଇ ॥
ସର୍ବ ଆଶ୍ରମ ବର୍ଣ୍ଣ ଗୁଣ । କରିବେ ଗୃହ ଆଚରଣ ॥
ଗୃହସ୍ଥ ଧର୍ମ ଆଚରିବେ । ବେଦ ବଚନ ନ ମାନିବେ ॥
ସର୍ବ ଯେ ବନ୍ଧୁମାନଙ୍କରେ । ଶାଳକ ଗୋତ୍ର ବଡ଼ କରେ ॥
ଧାନ୍ୟାଦି ଅନ୍ୟ କୃଷିମାନେ । କାଙ୍ଗୁ ମାଣ୍ଡିଆ ଗୁଆ ସ୍ଥାନେ ॥
ମେଘେ ବରଷା ନ କରିବେ । ବିଜୁଳି ମାତ୍ର ପ୍ରକାଶିବେ ॥
ବରଷା କିଞ୍ଚିତ କରିବେ । ପବନେ ମେଘ ଉଡିଯିବେ ॥
ଫିରି ଫିରି ବରଷା କରି । ପ୍ରଜା ଚାଷ କରି ନ ପାରି ॥
ଘରମାନ ଶୂନ୍ୟ ହୋଇବେ । ପ୍ରାଣୀ ନିଦ୍ରବ୍ୟରେ ବଞ୍ଚିବେ ॥
ଏମନ୍ତେ ଘୋର କଳିଯୁଗ । ତମରେ ଧର୍ମ ନାଶ ଯିବ ॥
ସର୍ବେ ହୋଇବେ ଦୁଷ୍ଟମତି । ତାହା ଜାଣିବେ ଶିରୀପତି ॥
ଦଶ ସହସ୍ର ଯେ ବରଷ । କଳିର ହୋଇବ ଯେ ଶେଷ ॥
ଉତ୍କଳ ଦେଶେ ସିନ୍ଧୁ ତଟେ । ନୀଳଗିରି କଳପବଟେ ॥
ନୀଳାଞ୍ଚଳରୁ ଜଗନ୍ନାଥେ । ଗମିବେ ଅନ୍ତର୍ଦ୍ଧାନ ପଥେ ॥
ଗଙ୍ଗାରେ ସ୍ରୋତ ନ ବହିବ । ପୋଡିଣ ଉସର୍ଗ ହୋଇବ ॥
ଦେବ ଯେ ଦେବୀମାନ ପୁଣ । ସର୍ବେ ଯିବେ ଅନ୍ତର୍ଦ୍ଧାନେଣ ॥
ସକଳ ପୁଣ୍ୟ ଥାନ ମାନ । ତମରେ ହୋଇବେ ଗୋପନ ॥
ପ୍ରାଣୀ ତା ଦେଖି କହୁଥିବେ । ଏଠାରେ ଥିଲେ ପୂର୍ବେ ଦେବେ ॥
ଏମନ୍ତ ଦେଖିକରି ହରି । କିଙ୍କଟ ନାମେ ଯେ ନଗରୀ ॥
ସେ ଥାନେ ଆଶ୍ରମ ତାହାର । ଅର୍ଜୁନ ନାମେ ଦ୍ୱିଜବର ॥
ସୁଚି ନାମ ଯେ ବ୍ରାହ୍ମଣୀ । ତାର ଗର୍ଭରେ ଚକ୍ରପାଣି ॥
କର୍ମ ରକ୍ଷା ନିମନ୍ତେ କରି । ବଉଦ ରୂପେ ଅବତରି ॥
ସେ ବାସୁଦେବ ଚକ୍ରଧାରୀ । ଜନ୍ମିଲେ ଯୋଗାରଢ଼ ଧରି ॥
ସ୍ଥାବର ଜଙ୍ଗମ କୀଟରେ । ପୂରିଛନ୍ତି ଆତ୍ମା ଭାବରେ ॥
ପୁରୁଷେ ଈଶ୍ୱର ଭାବେଣ । ଅଧର୍ମ ସମୂହ ନାଶିଣ ॥
ଧର୍ମ ପ୍ରବର୍ତ୍ତାଇବେ ପୁଣ । ଏକାକ୍ଷର ମନ୍ତ୍ର ଜପିଣ ॥

ଯଜ୍ଞା ବିହିତ ଧର୍ମଗତି । କରିବେ ପ୍ରଭୁ ଶିରୀପତି ॥
ପ୍ରାଣୀଙ୍କି ଜ୍ଞାନେ ମାର୍ଗେ ସ୍ଥାପି । ଏକତ୍ୱ ଭାବେଣ ନିରୋପି ॥
ବେଦ ଧର୍ମ ଯେ ଛଡ଼ାଇବେ । ସର୍ବେ ଯେକାଚାର କରିବେ ॥
ଜ୍ଞାନରେ ବିଷ୍ଣୁଙ୍କୁ ଭଜିବେ । ନିର୍ଗୁଣ ମାର୍ଗରେ ରହିବେ ॥
କରୁଣା ନ କରିବେ ପୁଣ । ଏ ଯେଣୁ ମାୟାର ଭିଆଣ ॥
ଏକତ୍ୱ ସର୍ବ ମାନଙ୍କରେ । ନଷ୍ଟ ହୋଇବ ଧର୍ମଚାରେ ॥
ସମସ୍ତ ବର୍ଣ୍ଣ ଏକାକାରେ । ବସି ଭଜିବେ ସୁଖଭରେ ॥
ବ୍ରାହ୍ମଣେ ବେଦକୁ ବିକିବେ । କର୍ମ ଯେ ଧର୍ମ ଲୋପଯିବେ ॥
କୁଳସ୍ତ୍ରୀ ଅନ୍ୟ ଆଚରିବେ । ଯୋନି ବିକ୍ରୟ ସେ କରିବେ ॥
କୁଳ ଧର୍ମକୁ ନ ପାଳିବେ । ବର୍ଣ୍ଣ ଭେଦକୁ ସେ ଛାଡ଼ିବେ ॥
ବେଢ଼ାରେ ଜାତିଭେଦ ନାହିଁ । ସମସ୍ତେ ଏକାକାର ହୋଇ ॥
ଏ ଭାବେ କଳି ଯୁଗ ଶେଷ । ଥିବ ଦଶସସ୍ର ବରଷ ॥
ଯୁଗ ସନ୍ଧ୍ୟାରେ ଗଙ୍ଗାତୀରେ । ସମ୍ବଳ ନାମ ଯେ ନଗରେ ॥
ବିଷ୍ଣୁଦାଶ ନାମେ ବ୍ରାହ୍ମଣ । ତାହାର ଘରେ ହେବେ ଜନ୍ମ ॥
ଯଶୋବନ୍ତୀ ନାମେ ବ୍ରାହ୍ମଣୀ । ତା ଗର୍ଭେ ଜାତ ଚକ୍ରପାଣି ॥
କଲ୍‌କୀ ନାମେ ଅବତାର । ହୋଇବେ ବ୍ରହ୍ମାଣ୍ଡ ଠାକୁର ॥
ସେ ପୁଣ ସହସ୍ରେ ବରଷ । ତପ ସ୍ଥାନେ ଯୋଗେ ପ୍ରବେଶ ॥
ସେ ଅନ୍ତେ ଈଶ୍ୱର ପ୍ରସନ୍ନ । ଅଗ୍ନି ରୂପେ ଅଶ୍ୱ ରୂପେଣ ॥
ନନ୍ଦକ ନାମେ ଖଡ୍ଗ ଦେବେ । ଯୋଜନେ ବିସ୍ତାର ହୋଇବେ ॥
ସେ ଅଶ୍ୱ ଚଢ଼ି ଖଡ୍ଗ ଘେନି । ଅଷ୍ଟ ଅଇଶ୍ୱର୍ଯ୍ୟ ସେ ଦାନୀ ॥
ପୃଥ୍ୱୀରେ ବୁଲିବେ ପ୍ରକୋପେ । ମ୍ଲେଚ୍ଛ ନାଶନେ ମହାଦର୍ପେ ॥
ରାଜବଂଶରେ ଯେତେ ଦୁଷ୍ଟ । ଖଣ୍ଡ ରାକ୍ଷସ ଯେ ପାପିଷ୍ଟ ॥
ମାରିବେ କୋଟି କୋଟି କରି । ପୃଥ୍ୱୀ ନିକ୍ଷେତ୍ରି ସେ କରି ॥
ଏ ଅନ୍ତେ ସାଧୁଙ୍କୁ ପାଳିବେ । ଯେବା ତାହାଙ୍କୁ ଭଜୁଥିବେ ॥
ସତ୍ୟ ଗୁଣରେ ଯେହୁ ଥିବେ । ସେ ବାସୁଦେବଙ୍କୁ ଦେଖିବେ ॥
ଯେ ସାଧୁପ୍ରଜାମାନେ ପୁଣ । ବାସୁଦେବ ସଙ୍ଗେ ତରିଣ ॥
ତାଙ୍କ ସଙ୍ଗ ବାସନା ଲାଗି । ସର୍ବେ ହୋଇବେ ସୁଖଭାଗୀ ॥
ମନ ଯେ ନିର୍ମଳ ହୋଇବେ । ସର୍ବେ ସତ୍ୟ ଗୁଣେ ଚଳିବେ ॥
ପୁର ନଗର ଗ୍ରାମ ଦେଶ । ଦୁଷ୍ଟମାନେ ହୋଇବେ ନାଶ ॥
ସାଧୁ ଉତ୍ତମ ପ୍ରବର୍ତ୍ତିବେ । ଉତ୍ତମ ଧର୍ମେ ମନ ଦେବେ ॥
ଭଗବାନ ବାସୁଦେବଙ୍କୁ । ହୃଦରେ ଧରିଣ ତାହାଙ୍କୁ ॥
ଜାଣିବେ ପରମ ପୁରୁଷ । ସର୍ବ କଲ୍ମଷ ଯିବ ନାଶ ॥
କଲ୍‌କୀ ଅବତାର ଯେବେ । ସକଳ ଧର୍ମ ରକ୍ଷା ତେବେ ॥
ସତ୍ତ୍ୱ ଗୁଣରେ ଭକ୍ତ ଭାବେ । ପ୍ରଜାଯେ ଜନମ ଲଭିବେ ॥
ସତ୍ୟ ଯୁଗ ଧର୍ମ ହୋଇବ । କଳିଯୁଗ ଭୋଗ ରହିବ ॥

ସେ କାଳେ ଚନ୍ଦ୍ର ସୂର୍ଯ୍ୟବେନି । ପୁଷ୍ୟା ନକ୍ଷତ୍ରେ ଗୁରୁ ଘେନି ॥
ଏକ ରାଶିରେ ଏକ ଋକ୍ଷ । ଏ କଥା ଦେଖିଲେ ପ୍ରତ୍ୟକ୍ଷ ॥
ଜାଣିବେ ସତ୍ୟଯୁଗ ଆଦି । ଏ ଭାବେ ପୁରାଣ ପ୍ରସିଦ୍ଧି ॥
ସୋମ ସୂର୍ଯ୍ୟାଦି ବଂଶ ଯେତେ । ନୃପତି ପୂର୍ବେ ଥିଲେ ଯେତେ ॥
ବର୍ତ୍ତମାନରେ ଯେତେ ଛନ୍ତି । ଭବିଷ୍ୟେ ଯେତେକ ନୃପତି ॥
ତାହାତ ସଂକ୍ଷେପି କହିଲୁ । ଶ୍ରୋତାରେ ସନ୍ତୋଷ ତ କଲୁ ॥
ପରୀକ୍ଷିତ ଜନ୍ମାଦି କରି । ନନ୍ଦ ରାଜାଭିଷେକ କରି ॥
କଳିଯୁଗର ଭୋଗ ଶେଷ । ଏଗାର ଶତ ପଞ୍ଚଦଶ ॥
ସପତଋଷି ପୂର୍ବେ ପୁଣ । ଉଦୟେ ପୂର୍ବ ଫାଲଗୁନ ॥
ତାଙ୍କ ଦକ୍ଷିଣ ଯେ ମଧ୍ୟରେ । ମଘା ନକ୍ଷତ୍ର ଉଦେକରେ ॥
ତହିଁରେ ସପ୍ତଋଷି ଛନ୍ତି । ଶତ ବରଷ ସେ ବସନ୍ତି ॥
ଯେ ଦିନେ କୃଷ୍ଣ ଅବତାର । ତେଜିଲେ ନର କଳେବର ॥
ମାଘ ଅମାବାସ୍ୟା ଦିନରେ । କୃଷ୍ଣ ବୈକୁଣ୍ଠ ବିଜୟରେ ॥
ମଘା ନକ୍ଷତ୍ରେ ସପ୍ତଋଷି । ସେ ଦିନ ଉଦଏ ବିଶେଷି ॥
କଳି ପ୍ରବେଶ ସେ ଦିନରେ । ପାପେ ପ୍ରବେଶ ପ୍ରାଣୀକରେ ॥
କୃଷ୍ଣର ପାଦ ପଦ୍ମ ଚିହ୍ନ । ଥିଲା ପୃଥ୍ୱୀରେ ଯେତେ ଦିନ ॥
ସେ ଦିନ ଯାଏ କଳିଯୁଗ । ଗ୍ରସ୍ତି ନ ପାରି ଥିଲା ଭୋଗ ॥
କୃଷ୍ଣ ବୈକୁଣ୍ଠ ବିଜେ ଯେଣୁ । ସଂସାରେ ପ୍ରବର୍ତ୍ତିଲା ତେଣୁ ॥
ମଘା ନକ୍ଷତ୍ରେ ସପ୍ତଋଷି । କଳି ଆଦ୍ୟରେ ପରବେଶି ॥
ଦେବତାମାନଙ୍କ ବରଷ । ବାରଣ ବରଷେଣ ଶେଷ ॥
ମନୁଷ୍ୟ ବରଷେଣ ଶେଷ । ଚାରିଲକ୍ଷ ବତିଶ ସସ୍ର ॥
ସପତ ଋଷି ଯେତେବେଳ । ମଘାରୁ ପୂର୍ବାଷାଢ଼ା ଗଲେ ॥
ନନ୍ଦ ନାମେ ସେ ଦିନେ ରାଜା । ସେ ଦିନୁ କଳି ବଢ଼େ ତେଜା ॥
ମାଘ ଅମାବାସ୍ୟା ଦିନରେ । କଳି ଯୁଗ ଜନ୍ମ ସଂସାରେ ॥
ଦେବ ବରଷେଣ ବରଷ । ଅନ୍ତେ ସତ୍ୟ ଯୁଗ ପ୍ରକାଶ ॥
ପ୍ରାଣୀମାନେ ସତ କହିବେ । ଆତ୍ମଜ୍ଞାନେ ଧ୍ୟାନ କରିବେ ॥
ଏ ମନ୍ୟନ୍ତର ନାମ ଶୁଣ । ବୈବସ୍ୱତ ନାମେ ରାଜନ ॥
ଏହାଙ୍କ ବଂଶେ ଯଥାର୍ଥେଣ । ସଂଖ୍ୟା କରି କହିବୁ ଶୁଣ ॥
ଶୁଣ ସନକ ମୁନିଜନ । ଏହାଙ୍କ ବଂଶରେ ବ୍ରାହ୍ମଣ ॥
କ୍ଷତ୍ରି ବଂଶ ଯେ ଶୂଦ୍ରଜନ । ଏ ସର୍ବେ ଏଥୁ ଉତପନ୍ନ ॥
ଏ ଯୁଗେ ଯୁଗେ ହଉଛନ୍ତି । ଚାରି ଯୁଗେଣ ଲେଉଟନ୍ତି ॥
ଦୁଇଶ ଚଉରାଶୀ ଯୁଗ । ମନ୍ୟନ୍ତର ଗୋଟିକେ ଭୋଗ ॥
ବୈବସ୍ୱତ ଯେ ମନ୍ୱନ୍ତର । ଅଷ୍ଟବିଂଶ ଗଣ୍ଡା ଯୁଗର ॥
ସତୁରି ଗଣ୍ଡା ଯୁଗ ଭୋଗ । ଏ ମନ୍ୱନ୍ତକୁ ଯେ ସଂଯୋଗ ॥
ଏ ଯୁଗେ ଯେତେ ପ୍ରଜାଜନ । ବୈବସ୍ୱତ ମନୁ ବଂଶେଣ ॥

ଏ ଯେ ପୁରୁଷଙ୍କର ଚିହ୍ନ । ନାମ କୀର୍ତ୍ତି ରହେ କର୍ମେଣ ॥
ଅବଶେଷ ରହେ ଧରଣୀ । ପାପ ପୁଣ୍ୟ ଗମନ୍ତି ପୁଣି ॥
ସତ୍ୟଯୁଗ ହୋଇବ ଯେବେ । ସୋମ ସୂର୍ଯ୍ୟ ବଂଶ ହୋଇବେ ॥
ସୋମ ବଂଶରେ ରାଜାପୁଣ । ହୋଇବେ ଯେମନ୍ତ ଭାବେଣ ॥
ଦେବପି ଶାୟେନ୍ତନୁ ଭାଇ । ସୋମ ବଂଶେଣ ରାଜା ହୋଇ ॥
ସୂର୍ଯ୍ୟ ବଂଶରେ ଉତପନ୍ନ । ଇକ୍ଷ୍ୱାକୁ ବଂଶେଣ ଜନମ ॥
ମରୁତ ନାମେଣ ରାଜନ । ଆଦ୍ୟ ସେ ସୂର୍ଯ୍ୟ ଯେ ବଂଶେଣ ॥
ଏ ଦୁଇବୀରେ ତପବଳେ । ଚିରଞ୍ଜୀବୀ ହୋଇ ଶୟଳେ ॥
ହେମବନ୍ତ ଉତ୍ତର ଭାଗେ । କଳାପ ଗ୍ରାମ ନାମ ଲାଗେ ॥
ମହାଯୋଗ ତପସ୍ୟା କରି । ଥିବେ କଳିଶେଷ ଆଦରି ॥
କଳିର ଅନ୍ତେ କଳ୍କ ରୂପୀ । ଏ ଦୁଇ ରାଜାକୁ ନିରୋପି ॥
ମରୁତ ଅଯୋଧ୍ୟାରେ ଆଣି । ସ୍ଥାପିବେ ପ୍ରଭୁ ଚକ୍ରପାଣି ॥
ଦେବାପି ହସ୍ତିନା ନଗରେ । ସ୍ଥାପିବେ ଯୁଗ ଅନୁସାରେ ॥
ସେ ବାସୁଦେବ ଆଜ୍ଞା ପାଳି । ସତ୍ୟ ଯୁଗରେ ପ୍ରଜାପାଳି ॥
ସତ୍ତ୍ୱ ଗୁଣାତ୍ମକ ବିସ୍ତାରି । ବର୍ଣ୍ଣ ଧର୍ମମାନେ ପ୍ରଚାରି ॥
ସତ୍ୟ ତ୍ରେତା ଦ୍ୱାପର କଳି । ଏକର୍ମେ ଚାରିଯୁଗେ ଚଳି ॥
ପୃଥ୍ୱୀରେ ପ୍ରାଣୀଙ୍କ ବେଭାର । ପ୍ରବର୍ତ୍ତି କରେ ବ୍ୟବହାର ॥
ଏ ଭାବେ ଆତଯାତ ହୋଇ । ପ୍ରାଣୀଏ ସଂସାରେ ଭ୍ରମଇ ॥
ବ୍ରହ୍ମାଙ୍କୁ ଏକ ଘଡ଼ି ଜାଣ । ଏ ଭାବେ ଚଉଦ ମନ୍ୱେଣ ॥
ଚତୁର୍ଦ୍ଦଶ ଘଡ଼ିରେ ଦିନ । ବ୍ରହ୍ମାଙ୍କୁ ହୁଅଇ ମଧ୍ୟାହ୍ନ ॥
ସନ୍ଧ୍ୟାରେ ଏକ ଘଡ଼ି ଯାଇ । ଏହି ପ୍ରମାଣେ ରାତ୍ର ହୋଇ ॥
ଏହା ପୁରାଣରେ ବର୍ଣ୍ଣନା । ଦେବତା ମନୁଷ୍ୟେ ଗଣନା ॥
ଏମନ୍ତ ଭାବେଣ ପୃଥିବୀ । ମୋହର ଭାବେ ଲୋଭେ ସେବି ॥
ଏମାନେ କାଳେ ନାଶ ଗଲେ । କଥା ମାତ୍ରକ ରୁହାଇଲେ ॥
କର୍ମରେ ଭସ୍ମକୀଟ କୃମି । ମାୟାରେ ଥାଇ ବ୍ୟର୍ଥେ ଭ୍ରମି ॥
କେ ସଙ୍ଗେ ଭୂମି କି ନ ନେଲେ । ପୃଥ୍ୱୀରେ ବଡ଼ ବଡ଼ ଥିଲେ ॥
ଅନିତ୍ୟ ଶରୀରକୁ ବହି । ପ୍ରାଣୀର ଦ୍ରୋହ ଯେ ଚିନ୍ତଇ ॥
ମାୟା ଶରୀରେ ଗର୍ବ ବହି । ଅଜ୍ଞାନେ ଯାତନା ସଞ୍ଚଇ ॥
ନରକ ଭୋଗ ସେ କରଇ । କୃମି ଚାଣ୍ଡାଳ କ୍ରମେ ହୋଇ ॥
ସେ ବିଷ୍ଣୁ ମାୟାରେ ମୋହିତ । ହୋଇଣ ପ୍ରାଣୀ ଉନମତ୍ତ ॥
ଏ ପୃଥ୍ୱୀ ଅଖଣ୍ଡିତ ହୋଇ । କେମନ୍ତ ଭୋଗ ସେ କରଇ ॥
ମୋ ପୂର୍ବ ପୁରୁଷ ଯେମାନେ । ଏ ଭୂମି ଭୋଗ ସୁଖ ମନେ ॥
ମୋର ପୁତ୍ର ପୌତ୍ରାଦି ମାନ । ଭୋଗ କରିବେ ବିଘ୍ନହୀନ ॥
ଅଖଣ୍ଡିତେ କରିବେ ଭୋଗ । ଏମନ୍ତ ବିଚାରି ସଂଯୋଗ ॥
ମମତା ମାୟା ବନ୍ଧ ହୋଇ । ଆତ୍ମା ଉଦ୍ଧରି ନ ପାରଇ ॥

ସ୍ତ୍ରୀ ପୁତ୍ର କୁଟୁମ୍ବାଦି କରି । ମୋହର ବୋଲିଣ ବିଚାରି ॥
ମୋହ ତ୍ରିଗୁଣ ରଜ୍ଜୁ ଫାଶେ । ବନ୍ଧନ ହୋଇଅଛି ଆଶେ ॥
ଅନ୍ତେଣ କାଳ ବଶ ହୋଇ । ସବୁ ଛାଡ଼ିଣ ଚଳିଯାଇ ॥
ଏ କଥା ମିଥ୍ୟା କରି ଜାଣେ । ପାପ ପୁଣ୍ୟକୁ ଅବଧାନେ ॥
ଯେ ରାଜାମାନେ ପୂର୍ବେ ଥିଲେ । ପ୍ରାକର୍ମେ ମହୀଭୋଗ କଲେ ॥
ସେ ପୁଣ କାଳେ ଗଲେ ନାଶ । କଥା ରହିଲା ଅବଶେଷ ॥
ପୁଣି କଳ୍ପକେ କ୍ଷୟ ଯାଇ । ଏମନ୍ତେ ବିଷ୍ଣୁ ମାୟା ମୋହି ॥
କହଇ ଦାସ ଜଗନ୍ନାଥ । କୃଷ୍ଣ ଚରଣେ ଦେଇ ଚିତ୍ତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ କଳିଯୁଗ ଧର୍ମ ବର୍ଣ୍ଣନଂ ନାମ ଦ୍ୱିତୀୟୋଽଧ୍ୟାୟଃ ।*

## ତୃତୀୟ ଅଧ୍ୟାୟ
## ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ତୋଷମନେ । ମୋର ପୁତ୍ର ପୌତ୍ରାଦିମାନେ ॥
ଯେ କଳିଯୁଗର ପୃଥ୍ୱୀରେ । ଅଛନ୍ତି ଯେତେ ରାଜା ବୀରେ ॥
ଯେକ ଆରକେ ରିସା ବହି । ଜିଣିମା ଅର୍ଥେ ଦଣ୍ଡବାହି ॥
ସୈନ୍ୟ ସେନାଯାକ ସାଜିଣ । ପର ରାଜା ରାଜ୍ୟ ଜିଣିଣ ॥
ମୁହିଁ ପାରଇ ବଳେ ଜିଣି । ଯେମନ୍ତ ଭାବ ଗର୍ବେ ଭଣି ॥
ଯେ ଭୂମି ମୋତେ ଭୋଗ ହେବ । ପୁତ୍ର ପୌତ୍ରାଦି କାଳେ ଥିବ ॥
ଯେମନ୍ତ ବୋଲି ସୈନ୍ୟ ଘେନି । ତା ଶୁଣି ହସଇ ମେଦିନୀ ॥
ଦେଖ ବିଧାତା କାଳ ଗତି । କଳିଯୁଗ ସ୍ୱଭାବ ଗତି ॥
ଆଶ୍ଚର୍ଯ୍ୟ କଥାମାନ ଦେଖ । ଯେ ରାଜାମାନେ ଯେ ମୂରୁଖ ॥
ମୃତ୍ୟୁଦେବତା ଖେଳଘର । ମଝେ ଜନମ ଯେହାଙ୍କର ॥
ମୋତେ ଜିଣିବେ ଲୋଡୁଛନ୍ତି । କେତେକ ଗଲେଣି ଏମିତି ॥
ରାଜାମାନଙ୍କର ଯେ ମତି । ସୁଜ୍ଞାନ ମତି ନ କରନ୍ତି ॥
ପଣ୍ଡିତ ମାନେ କେ ଅଛନ୍ତି । ଅର୍ଥବାଦରେ ସେ ଭ୍ରମନ୍ତି ॥
ଏହି ବିଚାର ବ୍ୟର୍ଥ ହୋଏ । ଯେଣୁ ଶରୀର ମିଥ୍ୟାମୟେ ॥
ଏଣୁ ଏ ଫେନ ପରି ଦେହ । କ୍ଷଣକେ ଛାଡ଼ି ସର୍ବମୋହ ॥
ଏ ଦେହେ ବିଶ୍ୱାସ କରନ୍ତି । ଷଡ ଅରି ଦେହେ ଛନ୍ତି ॥
କାମାଦି ଏକାଦଶେନ୍ଦ୍ରିୟେ । ଅବିଘ୍ନେ କୁହୁକେ ବନ୍ଦିୟେ ॥
ଏହା କେହି ଜିଣି ନାହାନ୍ତି । ମନରେ ବିଚାରି ଅଛନ୍ତି ॥
ପ୍ରଥମେ ଯାଇ ଶତ୍ରୁ ଘରେ । ରାଜ୍ୟ କରଗତ ବିଚାରେ ॥
ଜିଣିମା ସେ ପୁରଜନଙ୍କୁ । ବଶ କରିବା ପ୍ରୋହିତଙ୍କୁ ॥
ମନ୍ତ୍ରୀ ଅମାତ୍ୟ ପାତ୍ରଙ୍କୁ । ପୁର ଯେ ନଗର ଲୋକଙ୍କୁ ॥
ଅର୍ଥ ବଚନେ ବଶ ତାଙ୍କୁ । ଏମନ୍ତେ ଜିଣିବା ଶତ୍ରୁଙ୍କୁ ॥
ଶତ୍ରୁଙ୍କୁ ମାରିଣ ସେ ରାଜ୍ୟ । ଆମ୍ଭେ ହୋଇବା ତହିଁ ରାଜ ॥
ଉତ୍ତମ ରାଜ୍ୟ ଏହୁ ସୀମା । ଭୋଗ କରି ରହୁ ମହିମା ॥
କ୍ରମେ ପୃଥ୍ୱୀଯାକ ଜିଣିମା । ଆସମୁଦ୍ରାନ୍ତେଣ ମହିମା ॥
ଯେ ଆଶା ହୃଦୟରେ ବାନ୍ଧି । ହିଂସା ସ୍ୱଭାବ କରେ ସିଦ୍ଧି ॥
ନିକଟେ ଶିରପରେ ମୃତ୍ୟୁ । ତାକୁ ନ ଜାଣେ ମତ୍ତ ହେତୁ ॥
ଲୋଭେଣ ଗ୍ରସ୍ତିତ ମନକୁ । ଭୟ ନାହିଁ ପାପ ପୁଣ୍ୟକୁ ॥
ଆସମୁଦ୍ର ପୃଥ୍ୱୀକି ଜିଣି । ଲୋଭ ହୋଇ ତାମସ ପୁଣି ॥
ବୋଇତ ଚଢ଼ି ବଣିଜରେ । ପଶନ୍ତି ସମୁଦ୍ର ଭିତରେ ॥
ଏ ପ୍ରକାରେଣ ମୋତେ ଜିଣି । କିସ ଭୋଗ ଭୁଞ୍ଜେ ଧରଣୀ ॥
ମୋତେ ତ ନେଇ ନ ପାରନ୍ତି । ବ୍ୟର୍ଥ କର୍ମରେ ସେ ଭ୍ରମନ୍ତି ॥
ଯେବେ ଆପଣା ଆତ୍ମା ଜିଣେ । ଭଜେ ବାସୁଦେବ ଚରଣେ ॥
ତେବେ ସେ ମୁକ୍ତିଫଳ ପାଇ । ସକଳ ପାପୁଁ ମୁକ୍ତ ହୋଇ ॥
ଏ ରାଜାମାନେ ପୂର୍ବେ ଥିଲେ । ମୁଁ ଭୋଗ କରିବି ବୋଇଲେ ॥
ଭୋଗ କରିବେ ପୁତ୍ର ନାତି । ଏମନ୍ତେ ମନେ ବିଚାରନ୍ତି ॥
ସେମାନେ ମୋତେ ଛାଡ଼ିଗଲେ । ଏ ଲୋକେ ପ୍ରତ୍ୟକ୍ଷେ ଦେଖିଲେ ॥
ଏବେ ଯେ କଳିଯୁଗ ପ୍ରାଣୀ । ଅଳ୍ପ ଆୟୁଷ ପରିମାଣି ॥
ଅଳପ ବୁଦ୍ଧି ଦୁଷ୍ଟମତି । ମୋତେ ଜିଣିମେ ଲୋଡୁଛନ୍ତି ॥
ମୋହ ନିମନ୍ତେ ପିତାପୁତ୍ର । ଭ୍ରାଥ ଆଦି ଜ୍ଞାତି ମାନନ୍ତ ॥
ଇଷ୍ଟବନ୍ଧୁ ମିତ୍ର ସ୍ୱଜନେ । ବାଦ ବିଗ୍ରହ ଚିନ୍ତି ମନେ ॥
ତାମସେ ପ୍ରାଣୀ ଦୁଃଖ ଦେଇ । ତ୍ରିଗୁଣ ଜ୍ଞାନେ ବୁଧି ଧାଇ ॥
ଏ ରାଜାମନେ ଯମ ଡରେ । ଛନ୍ଦିଣ ତ୍ରିଗୁଣ ବନ୍ଧରେ ॥
ଏ ସର୍ବ ଭୂମି ଯେ ମୋହର । ଏମନ୍ତ ବୋଲିଣ ବିଚାର ॥
ମୂର୍ଖ ପଣେ ଏମନ୍ତ ଭାଷି । ଅନ୍ୟୋଽନ୍ୟେ ହୁଅନ୍ତି ବିନାଶି ॥
ମୋହ ନିମନ୍ତେ କରି ବାଦ । ଅର୍ଜନ୍ତି ହରାନ୍ତି ସମ୍ପଦ ॥
ସତ୍ୟ ଯୁଗାଦି ପୂର୍ବେ ରାଜା । ଯେ ହୋଇ ପାଳୁଥିଲେ ପ୍ରଜା ॥
ପୃଥୁ ପୁରୁରବା ଯେ ଗାଧି । ସହସ୍ରାର୍ଜ୍ଜୁନ ନଘୋଷାଦି ॥
ମାନ୍ଧାତା ଶ୍ରୀରାମ ସଗର । ଖଟ୍ୱାଙ୍ଗ ରଘୁ ଧୁନ୍ଧୁମାର ॥
ତୃଣ ବିନ୍ଦୁ ଯଯା ସର୍ଜାତି । ସ୍ୟାନ୍ତନୁ ଗୟ ଭଗୀରଥୀ ॥
କୁବଳୟା ଯେ କକୁସ୍ଥଳ । ହରିଣ୍ୟ କସି ନୃଗନଳ ॥
ବୃତ୍ତାନୁମୁଖ ଯେ ରାବଣ । ସମ୍ବର ନାରକା ହରଣ ॥
ତାରକା ଆଦି ଯେତେ ଥିଲେ । ହିରଣାକ୍ଷ ଦାନବ ତୁଲେ ॥
ସମସ୍ତେ ସର୍ବେ ବେଦେପାର । ମହିମା ଶୁଣିଛ ତାଙ୍କର ॥
ସମର୍ଥ ସର୍ବଜ୍ଞ ଅଟନ୍ତି । ବଳେଣ ସମସ୍ତ ଅର୍ଜନ୍ତି ॥
ଏମାନେ ଆତ୍ମା ମମତାରେ । ମୃତ୍ୟୁର ବଶ ସେ ହୋଇଲେ ॥

ଏ ମୋତେ ନେଇ ନ ପାରିଲେ । କଥାମାତ୍ରକ ରୁହାଇଲେ ॥
ଯେ ଯାହା ଅର୍ଜିତ କର୍ମେଣ । ଭୋଗ ଦୁଃଖ ସୁଖ ମାର୍ଗେଣ ॥
କାଳବଶରେ ଅକୃତାର୍ଥ । ଲୋଭେ ନ ସଞ୍ଚି ପରମାର୍ଥ ॥
ବିଷ୍ଣୁ ଚରଣାବିନ୍ଦ ଛାଡ଼ି । ପତିତ ମାର୍ଗେ ଚିତ୍ତ ବଢ଼ି ॥
କୃଷ୍ଣଙ୍କୁ ନ ଜାଣିଲେ ଯେଣୁ । ଯାତ ମୃତ୍ୟୁ ଯାତନା ତେଣୁ ॥
ଏମନ୍ତ ଭାଷି ମହାଋଷି । ବିଷ୍ଣୁ ଲୀଳାକୁ ପରଶଂସି ॥

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ପରୀକ୍ଷିତ । ଯେମନ୍ତ କୃଷ୍ଣର ଚରିତ ॥
ସୂତ କହନ୍ତି ଭାବ ବହି । ସନକ ଶୁଣ ମନ ଦେଇ ॥
ଏ ଯେଉଁ କଳିଯୁଗ ଗତି । କହିଲୁ ନୃପ ଜ୍ଞାନ ରୀତି ॥
ଏ ଯେ ଉଦୟ ଅସ୍ତ ପ୍ରାଏ । ସଂସାର ଯାର ମାୟା ମୋହେ ॥
ଅନୁଭବ ବୈରାଗ୍ୟ ଜ୍ଞାନ । ବିଭୂତି ପ୍ରମାର୍ଥ ସଞ୍ଚନ ॥
ଏମାନ ନାହିଁ ତାହାଙ୍କର । ଏଣୁ ଅଧର୍ମେ ପରିଚାର ॥
ଏ କଳିଯୁଗ ଗତି ଗୁଣେ । ପ୍ରସଙ୍ଗେ କହିଲ ପୁରାଣେ ॥
ଉତ୍ତମ ଶ୍ଳୋକ ବାସୁଦେବ । ତାହାଙ୍କୁ ଯେ ପ୍ରାଣୀ ଭଜିବ ॥
ନାମ ଗାୟନ ଗୁଣବାନ । ନାଶଇ ଅଶେଷ ବିପଦ ॥
ଅମଙ୍ଗଳକୁ ନାଶ କରେ । ଯେ ନିତ୍ୟେ ତା ନାମ ସୁମରେ ॥
ଶୁଣି ଶୁଣାଇ ମନେ ମନେ । କୃଷ୍ଣ ଚରଣାବିନ୍ଦ ଭଜେ ॥
ନିର୍ମଳ ଭକ୍ତି ବାଞ୍ଛା କରି । ଅନ୍ତେ ସେ ଲଭେ ବିଷ୍ଣୁପୁରୀ ॥

### ପରୀକ୍ଷିତ ଉବାଚ

ପୁଣି ପରୀକ୍ଷିତ ପଚାରି । ଶୁକ ଚରଣ ଶିରେ ଧରି ॥
ହେ ଭଗବାନ ଆତ୍ମରୂପୀ । କଳି ଘୋଟିବ ତମବ୍ୟାପୀ ॥
ଏ ଯୁଗେ ପ୍ରାଣୀଙ୍କ ନିସ୍ତାର । ହୋଇବ କେମନ୍ତ ପ୍ରକାର ॥
ମୃତ୍ୟୁକୁ କେମନ୍ତେ ଜିଣିମେ । ତାହା ସଞ୍ଚପି କହ ଏବେ ॥
ଯୁଗ ଧର୍ମ ଯୁଗ ନିର୍ଣ୍ଣୟ । କହାନ୍ତ ପ୍ରଳୟ ବିଷୟ ॥
ଈଶ୍ୱର ରୂପେ ଯେଉଁ କାଳ । ତାହାର ଗତି ଅନ୍ତରାଳ ॥

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ତୋଷ ମନେ । ଯୁଗର ଧର୍ମ ଯୁଗମାନେ ॥
ସତ୍ୟ ଯୁଗରେ ଧର୍ମ ଗୁଣ । ଥିଲା ଯେ ଚାରିପାଦ ପୁଣ ॥
ସେ ଯୁଗେ ପ୍ରାଣୀମାନେ ପୁଣି । ଚାରିପାଦେ ଧର୍ମ ଧରଣୀ ॥
ସତ୍ୟ ତପ ଯେ ଦୟାଦାନ । ଧର୍ମ ସେହୁ ଚାରିପାଦେଣ ॥
ସେ ଯୁଗେ ପ୍ରାଣୀ ଦୟାଶୀଳ । ସତ୍ୟ ସନ୍ତୋଷ କ୍ଷେମାବର ॥
ଶାନ୍ତ ତପସ୍ୱୀ ଆତ୍ମାରାମ । ସମଦୃଷ୍ଟି ସାଧୁ ନିଷ୍କାମ ॥
ତ୍ରେତାରେ ଧର୍ମ ତିନିପାଦ । ସତ୍ୟେ ପାଦେକ ହୋଏ ଛେଦ ॥
ଅଧର୍ମ ଏହାକୁ ନାଶଇ । ଚାରିପାଦେ ଅଧର୍ମ ପାଇ ॥
ମିଥ୍ୟା ହିଂସା ଯେ ଅସନ୍ତୋଷ । ବିଗ୍ରହ ଏ ଚାରି ପ୍ରକାଶ ॥
ତେବେ ଯେ ପ୍ରାଣୀମାନେ ପୁଣ । କ୍ରିୟା ତପ ନିଷ୍ଠା କର୍ମେଣ ॥
ଅହିଂସା ଅଲମ୍ପଟ ହୋନ୍ତି । ଧର୍ମାର୍ଥ କାମ ସେ ସାଧନ୍ତି ॥
ଋକ ଯଜୁ ସାମ ଏ ତିନି । ବେଦ ଉକ୍ତେ ଯଜ୍ଞ ଅଗ୍ରଣୀ ॥
ବ୍ରାହ୍ମଣ ଆଦି ବର୍ଣ୍ଣମାନ । ଉତ୍ତମ ମଧ୍ୟ କନିଷ୍ଠେଣ ॥
ଏ ଭାବେ ଏ ଯୁଗ ଚଳଇ । ତିନି ପାଦେ ଧର୍ମ ରହଇ ॥
ଦ୍ୱାପରେ ଧର୍ମ ଦୁଇପାଦ । କର୍ମେ ଦିପାଦ ହୋଏ ଛେଦ ॥
ତପ ସତ୍ୟ ଦୟା ଦାନରୁ । ଏ ତୁଟେ ଯୁଗାନୁସାରରୁ ॥
ହିଂସା ଅସନ୍ତୋଷ ଦ୍ୱୟରୁ । ମିଥ୍ୟା ଲକ୍ଷଣ ଅଧର୍ମରୁ ॥
ଏହାଙ୍କ ସକାସରୁ ପୁଣ । ଧର୍ମ ତୁଟଇ ଯଥାର୍ଥେଣ ॥
ଏ ଯୁଗେ ପ୍ରାଣୀମାନେ ପୁଣ । ଯଶସ୍ୱୀ ହୁଅନ୍ତି ନିର୍ଗୁଣ ॥
ସ୍ନାନ ହୋଇ ବେଦ ପଢ଼ନ୍ତି । ବିପ୍ରେ ବିଷ୍ଣୁ ସେବା କରନ୍ତି ॥
ଧନ କୁଟୁମ୍ବ ହରଷିତ । ବେଦ ଦାନରେ ଶୁଚିବନ୍ତ ॥
କ୍ଷତ୍ରିୟାଦି ବର୍ଣ୍ଣେ ବଢ଼ନ୍ତି । ବସେ ବହୁ ସମ୍ପତ୍ତି ହୋନ୍ତି ॥
କୃଷି ବାଣିଜ୍ୟ ଯେ ବିସ୍ତାର । ଏମନ୍ତ ଦ୍ୱାପର ଯୁଗର ॥
କଳିଯୁଗରେ ଧର୍ମ ପୁଣ । ରହଇ ଯେ ଏକ ପାଦେଣ ॥
ଅଧର୍ମ ହେତୁ କରି ପୁଣ । ତିନି ପାଦ ହୁଅଇ କ୍ଷୀଣ ॥
ସତ୍ୟ ତପ ଦୟା ଯେ ଯାଇ । କେବଳ ଦାନ ମାତ୍ର ରହି ॥
ଯୁଗାନ୍ତେ ସେହି ନାଶ ଯିବ । ଏମନ୍ତେ ତମ ପ୍ରବର୍ତ୍ତିବ ॥
ଏ ଯୁଗେ ଏତେ ଲୋକମାନେ । ଦୁରାଚାର ନିର୍ଦ୍ଦୟ ଜନେ ॥
ଅକାରଣେ କରି ବଇର । ଅସୁନ୍ଦର ହୋଇ ଶରୀର ॥
ବଡ଼ଲୋଭୀ ଜନେ ହୋଇବେ । ବହୁତ ଶୂଦ୍ର ଯେ ବେଢ଼ିବେ ॥
ସତ୍ତ୍ୱ ରଜ ତମ ତ୍ରିଗୁଣେ । ଯୁକ୍ତ ହୋଇବେ ଅନୁକ୍ଷଣେ ॥
କଳି ପୀଡ଼ିତ ଗୁଣ ଦୋଷ । ଅଳପ ଦିନେ ଯିବେ ନାଶ ॥
ଯେବେ ସତ୍ତ୍ୱଗୁଣ ଉଦଏ । ମନ ବୁଦ୍ଧି ଇନ୍ଦ୍ରିୟ ଲଏ ॥
ଜ୍ଞାନ ସେ ତପରେ ନାଶନ୍ତି । ଶ୍ରୀ ବାସୁଦେବଙ୍କୁ ଭଜନ୍ତି ॥
ତାଙ୍କ ପାଦପଦ୍ମରେ ଭକ୍ତି । ଉଦଏ ହୋଇଲେ ଭଗତି ॥
ଯେବେ କାମ କର୍ମ ଯଶରେ । ବୁଦ୍ଧି ବଢ଼େ ରଜ ଗୁଣରେ ॥
ତ୍ରେତା ଯୁଗର ଧର୍ମ ହୋଇ । ପଶୁବନ୍ଧ ଯଜ୍ଞ କରଇ ॥
ତହୁଁ ସ୍ୱର୍ଗାଦି ଭୋଗ ପାନ୍ତି । ସେ ସୁଖେ ଗତାଗତି ହୋନ୍ତି ॥
ବୁଦ୍ଧିମନ୍ତ ପ୍ରାଣୀ ତା ଜାଣି । ନିଷ୍କାମେ ଭଜେ ଚକ୍ରପାଣି ॥
ଯେବେ ଦ୍ୱାପର ଯୁଗ ହୋଇ । ରଜ ତମ ଗୁଣ ବଢ଼ଇ ॥
ଲୋଭେ ଅସନ୍ତୋଷଭୀମାନ । ଦମ୍ଭ ମାତ୍ସର୍ଯ୍ୟ କାମ୍ୟକର୍ମ ॥
ଏମାନେ ଯେବେ ସେ ହୁଅନ୍ତି । ଦୟାଦାନେ ଦୂରେଇ ରହନ୍ତି ॥
ଅଧର୍ମ ତିନି ଯେ ଚରଣ । ବଢ଼ନ୍ତି ଏମନ୍ତ ଭାବେଣ ॥

ହିଂସା ଯେ ମିଥ୍ୟା ଅସନ୍ତୋଷ । ଏ ଭାବେ ଦ୍ୱାପରେ ପ୍ରବେଶ ॥
ଯେବେ ଯେ କଳିଯୁଗ ହୋଇ । ଏକା ତମ ଗୁଣ ବଢ଼ଇ ॥
ପ୍ରାଣୀଏ ଅଦାନି ଯେ ପୁଣ । ମାୟା ମିଥ୍ୟା ଆଳସ ଗୁଣ ॥
ନିଦ୍ରା ହିଂସା ବିଷାଦ ଶୋକ । ମୋହ ଦୁଃଖ ଯେ ଅବିବେକ ॥
ଏତେ ଯେ ଗୁଣେ କଳିହୋଇ । ସେ କଳି ତାମସ ବୋଲାଇ ॥
ଯହିଁ ପ୍ରାଣୀ ଦ୍ରପିଷ୍ଟ ହୋନ୍ତି । ଅଳପ ଭାଗେ ଯେ ଜୀଅନ୍ତି ।
ବହୁତ ଆହାର ଭକ୍ଷନ୍ତି । କାମୀ ହୋଇଣ ମୂଢ଼ ମତି ॥
କୁଟୁମ୍ବ ଜୀବିକା ହୀନେଣ । ଦରିଦ୍ର ହୋଇ ବଞ୍ଚେ ଦିନ ॥
କୁଳ ସ୍ତ୍ରୀ ଯେ ବ୍ୟଭିଚାରିଣୀ । ଅସତୀ ପଣେ ସାହାସିନୀ ॥
ଦେବ ବ୍ରାହ୍ମଣ ଗୁରୁସ୍ୱାମୀ । ଶାଶୂ ଶ୍ୱଶୁରଙ୍କୁ ନ ମାନି ॥
ରାଜ୍ୟରେ ଖଣ୍ଡ ପ୍ରବର୍ତ୍ତିବେ । ବେଦକୁ ପାଷାଣ୍ଡେ ଦୂଷିବେ ॥
ପ୍ରଜା ସର୍ବସ୍ୱ ରାଜା ନେଇ । ତାକୁ ଭୁଞ୍ଜିବେ କଷ୍ଟ ଦେଇ ॥
ବ୍ରାହ୍ମଣେ ଜିହ୍ୱା ଇନ୍ଦ୍ରିବଶ । ହୋଇଣ କର୍ମେ ଯିବେ ନାଶ ॥
ବେଦ କ୍ରୟ ବିକ୍ର କରିବେ । ବ୍ରହ୍ମଚାରୀ ଅବ୍ରତୀ ହେବେ ॥
ସନ୍ନ୍ୟାସୀମାନେ ଅନାଚାରୀ । କୁଟୁମ୍ବ ଘେନି ଘର କରି ॥
ଲୋଭେ ବଶ ବୃତ୍ତି କରିବେ । ଭେଖ ଧାରି ନାମ ବହିବେ ॥
ବାନପ୍ରସ୍ଥ ତପସ୍ୱୀମାନେ । ହୋଇ ଗ୍ରାମବାସୀ ଅଜ୍ଞାନେ ॥
ସ୍ତିରୀ ପୁରୁଷେ ଅସୁନ୍ଦର । ଅରୂପ ବିରୂପ ଶରୀର ॥
ସହଜେ ସ୍ତିରୀମାନଙ୍କର । ବହୁତ ଭଖିବେ ଆହାର ॥
ମନୁଷ୍ୟମାନେ ହେବେ ସାନ । କେହୁ ବା ହୋଇବେ ବାମନ ॥
ବହୁତ ହୋଇବେ ନିର୍ଲ୍ଲଜ । ବିସ୍ତାର ହୋଇବେ ତନୁଜ ॥
ନିରତେ କହି କଟୁବାଣୀ । ଶାଶୂଶଶୁରଙ୍କୁ ନ ଗଣି ॥
ସ୍ୱାମୀ ଗୁରୁଜନ ନ ମାନି । ଚୋରି ମାୟା ସାହାସ ଘେନି ॥
ପାପିଷ୍ଠ ବୁଦ୍ଧି ମତ୍ତ ଗର୍ବେ । ଅନ୍ୟାଚାର ହୋଇ ସ୍ୱଭାବେ ॥
ମନୁଷ୍ୟେ ଶୁଦ୍ଧ ମତି ନୋଇ । କ୍ଷୁଦ୍ର ବ୍ୟାଧି ଗ୍ରହ ପୀଡ଼ଇ ॥
ବ୍ୟାଧି ଆଚରଣ କରନ୍ତି । ମୃଗ ମଲ୍ଲ ବଧ କରନ୍ତି ॥
ଫାନ୍ଦ କରି ଜୀବ ମାରନ୍ତି । ପ୍ରାଣୀଙ୍କି ହିଂସିଣ ନାସନ୍ତି ॥
ବିପତ୍ତି ପାଇ ସାଧୁଜନେ । ଆପଣା ବୃତ୍ତି ଛାଡ଼ି ଆନେ ॥
ନିନ୍ଦିତ ଜୀବିକା କରିବେ । ପଣ୍ଡିତେ କୃଷି ଆରମ୍ଭିବେ ॥
ସ୍ୱାମୀକି ନିଧନ ଦେଖିଣ । ସେବକେ ଛାଡ଼ିବେ ତକ୍ଷଣ ॥
ସେବକ ଅସାମର୍ଥ୍ୟ ଦେଖି । ସ୍ୱାମୀମାନେ ତାଙ୍କୁ ଉପେଖି ॥
ଉତ୍ତମ ବଳଦ ଯେ ଗାବ । ବୃଦ୍ଧା ହୋଇ ଦୁଗ୍ଧ ନ ଦେବ ॥
ସେବା ନ କରି ବନେ ଛାଡ଼ି । ସେ ଗୋରୁ ନାନା କଷ୍ଟେ ପଡ଼ି
ପିତା ମାତା ଭ୍ରାତା ବାନ୍ଧବ । ମିତ୍ର ସୁହୃଦ ପୁଣ୍ୟଭାବ ॥
ସକଳ ସଙ୍ଗ ତ୍ୟାଗ କରି । ଶ୍ୱଶୁର ଶାଳକେ ପଚାରି ॥

ଶୀଳ ଆଚାର ନ କରନ୍ତି । ସ୍ତିରୀଙ୍କ ବଶେ ଦିନ ନ୍ୟନ୍ତି ॥
କେ କାହା ପିତା କେହୁ ମାତ । ଆପଣା କର୍ମେ ଆତଯାତ ॥
ଏମନ୍ତ ବିଚାରିଣ ମନେ । ରହି ଶ୍ୱଶୁର ସନ୍ନିଧାନେ ॥
ଶୂଦ୍ରମାନେ ତପସ୍ୱୀ ହୋଇ । ଦାନ ପ୍ରତିଗ୍ରହ ସେ ପାଇ ॥
ସେମାନେ ଉଚ୍ଚ ସ୍ଥାନେ ଥିବେ । ଧର୍ମାଦି ନ୍ୟାୟ ପଚାରିବେ ॥
ସଂସାରେ ଗୁରୁ ବୋଲାଇବେ । ସମସ୍ତେ ସେ ବୋଲ ପାଳିବେ ॥
ପ୍ରଜାଏ କରେଣ ପୀଡ଼ିତ । ଦୁର୍ଭିକ୍ଷେ ହୋଇବେ କଷ୍ଟିତ ॥
ମନ ଉଦ୍‌ବେଗ କରିବେ । ଅନ୍ନ ବସ୍ତ୍ରାଦି ନ ମିଳିବେ ॥
ଦେବେ ବରଷା ନ ବରଷି । ଅସତ୍ୟେ ନ ଉପୁଜେ କୃଷି ॥
ପ୍ରାଣୀ ଯେ ସ୍ଥାନ ଭ୍ରଷ୍ଟ ହୋଇ । ଦେଶ ଭାଙ୍ଗିଣ ଶୂନ୍ୟ ହୋଇ ॥
ଅନ୍ନ ପାଣି ବସ୍ତ୍ର ଭୋଜନ । ସ୍ନାନ ଭୂଷଣ ଆଦିମାନ ॥
ନ ମିଳି ହୋଇବେ ଦାରୁଣ । ପିଶାଚ ସ୍ୱରୂପ ଭାବେଣ ॥
ବୋଡ଼ିକ ନିମନ୍ତେ ମରିବେ । ଅତି ତମରେ ଯେ ଗ୍ରସ୍ତିବେ ॥
ଆପଣା ପିତା ଭ୍ରାଥ ମାରି । ଅଧିକ ମଣେ ସୁଖ ଶିରୀ ॥
ପିତାମାତା ବୃଦ୍ଧ ହୋଇଲେ । ତାଙ୍କୁ ନ ପୋଷେ ଖାନ ଭୋଳେ ॥
ଉତ୍ତମ ନାରୀ ପତିବ୍ରତା । ଛାଡ଼ି ଆନେ ହୋଇବେ ରତା ॥
କୁ ସ୍ତିରୀ ବେଶ୍ୟାଦି ଭଜିବେ । ଲମ୍ପଟେ ପ୍ରାଣକୁ ଛାଡ଼ିବେ ॥
ଇନ୍ଦ୍ରିଲାଳସେ ପେଟ ପୋଷି । ରହିବେ ହୋଇ ଦାସଦାସୀ ॥
କଳିର ତମ ଆହ୍ଲାଦନେ । କୃଷ୍ଣଙ୍କୁ ନ ଭଜିବେ ଜନେ ॥
କୃଷ୍ଣର ପାଦପଦ୍ମ ସରସ । କେହି ଯେ ନ କରିବେ ଆଶ ॥
ପାଷାଣ୍ଡ ବୁଦ୍ଧି ଚିତ୍ତ ଭେଦେ । ନ ଭଜେ ଚରଣାବିନ୍ଦେ ॥
ଯେ ନାମ ପତିତ ପାବନ । ମହା ବିପତ୍ତି ବିନାଶନ ॥
ମରଣ କାଳେ ଯେଉଁ ନାମ । ଧରନ୍ତେ ନ ଦଣ୍ଡଇ ଯମ ॥
ଅତି ଆରତ ବିପତ୍ତିରେ । ନାନା ରୋଗଗ୍ରସ୍ତ ବନ୍ଧରେ ॥
ନାମ ଗ୍ରହଣ ଯେ ମାତ୍ରେଣ । କର୍ମ ବନ୍ଧୁ ମୋକ୍ଷ ହୋଇଣ ॥
ବୈକୁଣ୍ଠ ପଦ ସେ ଲଭଇ । ସେ ସୁଖ ତିନି ଲୋକେ ନାହିଁ ॥
ତାକୁ ନ ଭଜି ମୂଢ଼ ପ୍ରାଣୀ । ମାୟାକୁ ସତ୍ୟ ପ୍ରାୟ ମଣି ॥
ଏ କଳିଯୁଗେ ପାପ ଯେତେ । ପ୍ରାଣୀ ସଞ୍ଚଇ ମାୟାଗ୍ରସ୍ତେ ॥
ନାମ ମାତ୍ରକେ ପାପ ନାଶେ । ପରମେ ମଙ୍ଗଳ ପୁରୁଷେ ॥
ଯେ ନାମ ଶ୍ରବଣ କୀର୍ତ୍ତନେ । ପୂଜା ଆଦରି ଅଧ୍ୟୟନେ ॥
ହୃଦ କମଳ ମଧ୍ୟେ ଧ୍ୟାଇ । ଅଶେଷ ପାପକୁ ଦହଇ ॥
ଦଶ ସହସ୍ର ଜନ୍ମ କ୍ଳେଶ । ସ୍ମରଣେ କରେ ପାପ ଧ୍ୱଂସ ॥
ଏ କଳିଯୁଗ ଏକା ସାର । ଭଜନ୍ତି ଶ୍ରୀକୃଷ୍ଣ ପୟର ॥
ଏ ବିନୁ ଅନ୍ୟ ଗତି ନାହିଁ । ଭଜ ସୁଜନେ ମନ ଦେଇ ॥
ସୁବର୍ଣ୍ଣ ଅଗ୍ନିରେ ଦହିଲେ । ତାର କଳୁଷ ନାଶେ ଭଲେ ॥

ଏରୂପେ ପଶି ନାମ ହୃଦେ । ପାପ ନାଶନ୍ତି ଅପ୍ରମାଦେ ॥
ବିଦ୍ୟା ତପ ପ୍ରାଣ ସଂଯମ । ଦେବତା ପୂଜାଦି ନିଅମ ॥
ଅଶେଷ ତୀର୍ଥ ଧର୍ମ ସ୍ନାନ । ବ୍ରତ ଆରମ୍ଭ ଯଜ୍ଞ ଦାନ ॥
ଏଥିରେ ଅନ୍ତ ଶୁଦ୍ଧ ନୋହି । ପ୍ରାଣୀ ଉଦ୍ଧାରି ନ ପାରଇ ॥
ଏ ସର୍ବେ ଫଳେ ଅଧିକାରୀ । ପାପ ପୁଣ୍ୟରେ ଭୋଗକରି ॥
ବାସୁଦେବ ଭଜନ ବିନୁ । ଉଦ୍ଧରି ନ ପାରଇ ତନୁ ॥
ଭୂତ ଭବିଷ୍ୟ ବର୍ତ୍ତମାନ । ନିଦାନେ ହୋଏ ସାବଧାନ ॥
ମାନସ ବାଞ୍ଛା ଯେ କର୍ମରେ । ଭଜନ କରେ ଯେ ଅନ୍ତରେ ॥
ତାର ମରଣ ନିକଟରେ । କୃଷ୍ଣ ନାମ ମନେ ଉଚ୍ଚାରେ ॥
ତେବେ ପରମ ଗତି ପାଇ । ନିଦାନେ ନାମ ଉଚ୍ଚାରଇ ॥
ଯେବେ ସେ ଭଜେ ବସ୍ତୁପାଦେ । ଲଭେ ସାଯୁଜ୍ୟ ମୁକ୍ତି ପଦେ ॥
ତାଙ୍କ ଅଙ୍ଗେ ଲୀନ କରନ୍ତି । ସେ ବିନୁ ନାହିଁ ଅନ୍ୟ ଗତି ॥
ସେ ବାସୁଦେବ ସର୍ବମୟ । ସର୍ବ ଆତ୍ମା ସର୍ବ ସମ୍ଭବ ॥
ତୁମ୍ଭେ ସର୍ବ ରକ୍ଷିଏ ଯେଣୁ । ତାଙ୍କ ଚରଣ ଭଜ ଯେଣୁ ॥
ଅନେକ ଜନ୍ମେ ଭାଗ୍ୟ ପାଇ । ଲୟ ଲଗାଅ ତାଙ୍କ ତହି ॥
ସେ କୃଷ୍ଣର ଚରଣାବିନ୍ଦେ । ମନକୁ ନିବେଶ ଆନନ୍ଦେ ॥
ସାଯୁଜ୍ୟ ମୁକ୍ତି ସେ ପାଇବ । କଳି କଳୁଷ କ୍ଷୟ ଯିବ ॥
ସେ ବାସୁଦେବର ମହିମା । ସକଳ ଗୁଣ ପୁଣ୍ୟ ସୀମା ॥
ସେ ବାସୁଦେବ ନାମ ଗୁଣି । ବୈକୁଣ୍ଠ ହେଳେ ଲଭେ ପ୍ରାଣୀ ॥
ସତ୍ୟ ଯୁଗରେ ଧ୍ୟାନ ଫଳ । ତ୍ରେତାରେ ଯଜ୍ଞାଦି ସକଳ ॥
ଦ୍ୱାପରେ ହରିପୂଜା ଜ୍ଞାନ । କଳିରେ ନାମ ସଂକୀର୍ତ୍ତନ ॥
ଏମନ୍ତ ମହିମା ଯାହାର । ସୁଜନେ ଭଜ ସେ ପୟର ॥
ମୁହିଁ ଯେ ପାପୀଙ୍କ ଅଧମ । ମୋହର ଦୋଷ ନ ଘେନିମ ॥
କହଇ ଜଗନ୍ନାଥ ଦାସ । ତ୍ରାହି କରିବେ ପୀତବାସ ॥

*ଇତି ଶ୍ରୀ ମଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ*
*ଯୁଗଧର୍ମ ବର୍ଣ୍ଣନ ନାମ ତୃତୀୟୋଽଧ୍ୟାୟଃ ।*

## ଚତୁର୍ଥ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ପରୀକ୍ଷିତ । ଶୁଣ ଏ କାଳର ଚରିତ ॥
କାଳ ଯେ ନିର୍ଣ୍ଣୟର ଗତି । ସୂକ୍ଷ୍ମ ତା କେହି ନ ଜାଣନ୍ତି ॥
ପ୍ରମାଣୁ ଆଦି କରି ମୁହିଁ । କାଳ ଗଣନା କରିଛଇଁ ॥
ଦୁଇ ପରାର୍ଦ୍ଧ ପରିଯନ୍ତେ । ବ୍ରହ୍ମାର ପରମାୟୁ ଯେତେ ॥
ତୃତୀୟ ସ୍କନ୍ଧେ କହିଛଇଁ । ଯୁଗ ନିର୍ଣ୍ଣୟ ଆଦି ହୋଇ ॥
ଯେବେ ଶୁଣ ପ୍ରଳୟ ଚାରି । କହିବା ତାହା ଯେ ବିସ୍ତାରି ॥
କଳ୍ପ ପ୍ରଳଏ ବ୍ରହ୍ମ ପ୍ରଳେ । ପ୍ରକୃତି ଆକୃତିଙ୍କ ପ୍ରଳେ ॥
ଯେ ଚାରି ପ୍ରଳୟର ଗୁଣ । ରାଜନ ସାବଧାନେ ଶୁଣ ॥
ଚାରି ସସ୍ର ଯୁଗ ବରଷ । ଯେହି ପ୍ରମାଣେ ରାତ୍ର ଶେଷ ॥
ଚାରି ସହସ୍ର ଯୁଗ ପୁଣ । ପ୍ରଳୟ ହୁଅଇ ପ୍ରମାଣ ॥
ଆଠ ସହସ୍ର ଯୁଗ ଶେଷ । କାଳ ପ୍ରଳୟ ଏ ବିଶେଷ ॥
ନୈମିତ୍ତିକ ପ୍ରଳୟ ଏହି । ବିଷ୍ଣୁ ଅନନ୍ତ ଶେଯେ ଶୋଇ ॥
ତିନି ଭୁବନ ଆଦି କରି । ବ୍ରହ୍ମା ନାଭି କମଳେ ଭରି ॥
ଏ ଭାବେ ଶତେକ ବରଷ । ବ୍ରହ୍ମାର ପରମାୟୁ ଶେଷ ॥
ଦୁଇ ପରାର୍ଦ୍ଧ ପୂର୍ଣ୍ଣ ହୋଇ । ତେବେ ବ୍ରହ୍ମା ପ୍ରଳୟ ହୋଇ ॥
ପଞ୍ଚ ମହାଭୂତ ସମେତେ । ବ୍ରହ୍ମାଣ୍ଡ ଆଦି ଥାନ୍ତି ଯେତେ ॥
ଯୋଗ ମାୟାରେ ସେ ମିଶନ୍ତି । ପ୍ରାକୃତିକ ପ୍ରଳୟ ହୋନ୍ତି ॥
ଯେ କାଳେ ବାର ଯେ ଆଦିତ୍ୟେ । ଉଦୟେ ହୋନ୍ତି ତେଜମତେ ॥
ବ୍ରହ୍ମାଣ୍ଡ ଡିମ୍ବ ତହି ଯାଣ । ଦଗ୍ଧ ହୋଏ ତତକ୍ଷଣ ॥
ପ୍ରଥମେ ଦେବ ଯେ ବରଷେ । ଶତେ ବରଷ ନ ବରଷେ ॥
ତେଣୁ ଅନାବୃଷ୍ଟି କରଇ । ତହୁଁ ସକଳ କ୍ଷୟ ଯାଇ ॥
ଅନ୍ନ ବିନୁ କ୍ଷୁଧା ପୀଡ଼ନ୍ତି । ଏକକୁ ଆରେକ ଭକ୍ଷନ୍ତି ॥
ସର୍ବ ରଚନା କ୍ଷୟ ଯାଇ । କାଳ ଯେ ସର୍ବ ସଂହାରଇ ॥
ତହୁଁ ସଙ୍କର୍ଷଣ ମୁଖରୁ । ସମ୍ବର୍ତ୍ତକ ନାମ ରବିରୁ ॥
ତେଜ ପ୍ରଳୟାଗ୍ନି ଲାଗିଣ । ସମୁଦ୍ର ପୃଥ୍ୱୀ ଜଳମାନ ॥
ପ୍ରାଣୀଙ୍କ ଦେହ ରସଜଳ । ସର୍ବ ସୁଖାଇ ମହାନଳ ॥
ବଳଦେବଙ୍କ ମୁଖୁଁ ତହିଁ । ସମ୍ବର୍ତ୍ତ ଅଗ୍ନିଜାତ ହୋଇ ॥
ଯାତ ହୋଇ ତାହାର ତେଜ । ଚଉଦ ଭୁବନ ଦହିଜ ॥
ସର୍ବ ଭୁବନମାନଙ୍କର । ଶୂନ୍ୟ ବିବର ଆଦି ଶୂର ॥
ପ୍ରବେଶ ହୋଇ ମହାନଳ । ଅଧ ଉର୍ଦ୍ଧ୍ୱରେ ଯେତେ ସ୍ଥଳ ॥
ଏହୁ ବ୍ରହ୍ମାଣ୍ଡ ଅଗ୍ନି ଦହି । ସୂର୍ଯ୍ୟର ଶିଖା ଯେ ଲାଗଇ ॥
ଶୁଖିଲା ଗୋମୟ ଯେସନ । ଦଗ୍ଧ ହୁଅଇ ଭସ୍ମ ଚିହ୍ନ ॥
ସଞ୍ଚା ମାତ୍ରକ ଦିଶୁଥାଇ । କାଳେ ସେହୁ ଲୀନ ନ ହୋଇ ॥
ତହୁଁ ପ୍ରଚଣ୍ଡ ବାତ ବହି । ସମ୍ବର୍ତ୍ତକ ନାମ ବୋଲାଇ ॥
ସଙ୍କରଷଣ ମୁଖୁଁ ଜାତ । ଅଷ୍ଟୋତ୍ତର ବରଷ ଶତ ॥
ଦେବଙ୍କ ବରଷରେ ପୁଣି । ବର୍ଷଇ ଅବିଶ୍ରାମ ପୁଣି ॥
ଆକାଶ ମଧ୍ୟ ଧୂମ୍ରବର୍ଣ୍ଣ । ଭସ୍ମରେ କରେ ଆଚ୍ଛାଦନ ॥
ତହୁଁ ସଙ୍କର୍ଷଣ ମୁଖୁଁଣ । ଜାତ ସମ୍ବର୍ତ୍ତ ମେଘମାନ ॥
ଦେବଙ୍କ ବରଷେଣ ପୁଣ । ଶତେ ବରଷ ପରମାଣ ॥
ମୂଷଳ ଧାରା ପରମାଣେ । ବୃଷ୍ଟି ସେ କରନ୍ତି ଗର୍ଜ୍ଜନେ ॥

ସେ ଦିନେ ବ୍ରହ୍ମାଣ୍ଡ ପ୍ରଳଏ । ପୃଥ୍ୱୀରେ ଯେତେକ ସଞ୍ଚଏ ॥
ଗନ୍ଧ ଗୁଣାଦି ଲୀନ ହୋଏ । ହୋଇଲା ସର୍ବ ଜଳ ମଏ ॥
ଅଗ୍ନିରେ ଜଳରସ କ୍ଷଏ । ମହାତେଜ ଅଗ୍ନିରେ ହୋଏ ॥
ଅଗ୍ନି ପବନ ଲୀନ କରେ । ପବନ ଆକାଶେ ସଞ୍ଚରେ ॥
ସ୍ପରଶ ସମେତ କରିଣ । ପବନ ଆକାଶେ ମିଶିଣ ॥
ଅହଙ୍କାରକୁ ଏକାଦଶେ । ଇନ୍ଦ୍ର ଦେବତା ଅବଶେଷେ ॥
ମହତତ୍ତ୍ୱାଦି ପ୍ରକାଶଇ । ସେ ତା ଅଂଶରେ ଲୀନ ହୋଇ ॥
ଆକାଶ ଶବଦ୍ଦୁ କରିଣ । ଅହଂକାର ପ୍ରସରେ ପୁଣ ॥
ମହତ୍ତ୍ୱ ତହୁଁ ତିନିଗୁଣ । କାଳରେ ପ୍ରସରଇ ପୁଣ ॥
ତ୍ରିଗୁଣ କାଳ ଆଦି ହୋଇ । ପରିଣାମରେ ପ୍ରକାଶଇ ॥
ମାୟାରେ ସର୍ବ ଲୀନ ଯାଇ । ମହା ପ୍ରକୃତି ରୂପ ସେହି ॥
ମାୟା ଅବ୍ୟକ୍ତ ପୁରୁଷେଣ । ଲୀନ ସର୍ବାଦି ଗୁଣମାନ ॥
ଅନାଦି ପୁରୁଷ ଅବ୍ୟକ୍ତ । ତାହାର ନାହିଁ ଆଦି ଅନ୍ତ ॥
ନିତ୍ୟ ସ୍ୱରୂପୀ ନିରଞ୍ଜନ । ଅବ୍ୟୟ ଜଗତ କାରଣ ॥
ମନ ବଚନ ଯେ ତ୍ରିଗୁଣ । ପ୍ରାଣ ବୁଧି ଇନ୍ଦ୍ରିୟମାନ ॥
ଏମାନେ ତାଙ୍କୁ ନ ଜାଣନ୍ତି । ସେ ରୂପେ ପ୍ରବେଶ ନୁହଁନ୍ତି ॥
ଏ ଲୋକ ସମୋହ କାରଣ । ଯା ମାୟା କଳ୍ପନା ଭିଆଣ ॥
ଜାଗ୍ରତ ସ୍ୱପ୍ନ ଯାର ନାହିଁ । ସୁଷୁପ୍ତି ଭେଦେ ହେ ନପାଇ ॥
ପୃଥ୍ୱୀ ଜଳ ଅଗ୍ନି ପବନେ । ଆକାଶ ଚନ୍ଦ୍ର ସୂର୍ଯ୍ୟମାନେ ॥
ଏମାନ ଯହିଁ ଭେଦ ନାହିଁ । ଅଲେଖ ବର୍ଣ୍ଣ ଚିହ୍ନ କାହିଁ ॥
ଅନୁଭବେ ତର୍କୀ ନୁହଇ । ଠୁଳ ବ୍ରହ୍ମ ସ୍ୱରୂପ ସେହି ॥
ତା'ଠାରେ ଯୋଗମାୟା ଲୀନ । ବ୍ରହ୍ମାଣ୍ଡ ସମେତ ହୋଇଣ ॥
ଏହି ପ୍ରକାରେ ତହିଁ ହୋଏ । ତିନି କୋଟି ଅର୍ଦ୍ଧ କୋଟିଏ ॥
ବ୍ରହ୍ମାଣ୍ଡ ସଂଯୁତ ହୋଇଣ । ତା ରୋମେ ହୁଅନ୍ତି ସେ ଲୀନ
ଯୋଗମାୟା ଲୀନ ନ ଗଣି । ଅତିଅନ୍ତ ପ୍ରଳୟ ଭଣି ॥
ସେ ଯେ ପୁରୁଷ ନିରଞ୍ଜନ । ଯୋଗମାୟାରେ ବସ୍ତ୍ର ପୁଣ ॥
ବୁଦ୍ଧି ଇନ୍ଦ୍ରିୟ ଜ୍ଞାନ ମନ । ଦୃଶ୍ୟ ଅଦୃଶ୍ୟ ରୂପ ହୀନ ॥
ଆପଣା ସ୍ୱଗୁଣରେ କରି । ପ୍ରଭାକୁ ପ୍ରକାଶେ ବିସ୍ତାରି ॥
ଲୀନ କରଇ ଇଚ୍ଛାବଳେ । ତାହାକୁ ବୋଲେ ମହାପ୍ରଳେ ॥
ନିରାକାର ଯେ ନିରଞ୍ଜନ । ତାହାର ନାହିଁ ଦରଶନ ॥
ଆକାଶ ପ୍ରାୟେ ଶୂନ୍ୟରୂପୀ । ସ୍ୱଇଚ୍ଛା ଗୁଣେ ସର୍ବବ୍ୟାପୀ ॥
ଦିବ୍ୟ ଚକ୍ଷୁ ଜ୍ୟୋତି ଯେସନ । ସେ ରୂପେ ନିରାକାର ଚିହ୍ନ ॥
ତହିଁର ଭେଦ ବୁଦ୍ଧି ନାହିଁ । ଇଚ୍ଛାରେ ଏମାନ ହୁଅଇ ॥
ବୁଦ୍ଧି ଇନ୍ଦ୍ରିୟ ପଞ୍ଚଭୂତା । ସବଦାଦି ଯେ ପଞ୍ଚମାତ୍ରା ॥
ନିରାକାର ନିର୍ଲେପ ହୋଇ । ପ୍ରକୃତି ପୁରୁଷର ତହିଁ ॥

ଉତ୍ପତ୍ତି ପ୍ରଳୟ ହୁଅନ୍ତି । ବୁଦ୍ଧି ଜାଗ୍ର ସ୍ୱପ୍ନ ସୁସୁପ୍ତି ॥
ଏମନ୍ତେ ମାୟାରେ ସ୍ୱରୂପୀ । ନାନା ରୂପେ ଆବୋରି ବ୍ୟାପୀ
ଏମନ୍ତ ହୋଇ ମେଘମାନେ । ପବନ ସ୍ୱକାଶେ ଗଗନେ ॥
ଘୋଟନ୍ତି ଛାଡ଼ନ୍ତି ଯେ ଯାନ୍ତି । ଏମନ୍ତ ହୋଇ ମାୟାମତି ॥
ମାୟାସ୍ୱକାଶୁ ଏ ବ୍ରହ୍ମାଣ୍ଡ । ଉତ୍ପତ୍ତି କ୍ଷୟ ପୁଣି ଗୁଣ୍ଡ ॥
ସୂତାଖିଅ ଯେସନ ହୋଇ । ଉଲ୍ଲଟ ପୁଟେ ବସ୍ତ୍ର ହୋଇ ॥
ସେ ବସ୍ତ୍ର ଫିଟିଲେ ଯେମନ୍ତ । ତେମନ୍ତ ଈଶ୍ୱରର ଯନ୍ତ ॥
ତେମନ୍ତ ମାୟା ବିକାରରେ । ବ୍ରହ୍ମାଣ୍ଡ ବୋଲନ୍ତି ସଂସାରେ ॥
ପୁଣି ବ୍ରହ୍ମରୂପ ବୋଲାନ୍ତି । ଯେ ରୂପେ ଉତ୍ପତ୍ତି ଯେ ଥିତି ॥
ଯୋଗମାୟା ପୁରୁଷ ଅଙ୍ଗେ । ବିକାର ସଂଯୋଗ ବିଯୋଗେ ॥
ଏଣୁ ସେ ଭ୍ରମ ହେଉଛନ୍ତି । ସଂସାର ଜଡ଼ ଆବୋରନ୍ତି ॥
ଅନ୍ୟ ଅନ୍ୟ ଆଶ୍ରୟ କରି । ଏ ଜୀବ ବିକାର ଆବୋରି ॥
ସେ ଆତଯାତ ହେଉଛନ୍ତି । ମାୟାକୁ ଧରି ସେ ଜନ୍ମନ୍ତି ॥
ଏ ରୂପ ବିକାରୁ ଧାରଣ । ବ୍ରହ୍ମାଣ୍ଡ ପରମ କାରଣ ॥
ବ୍ରହ୍ମାଣ୍ଡ ବିଷ୍ଣୁ ଦେହେ ଲୀନ । ବ୍ରହ୍ମ ସ୍ୱରୂପ ତେଣୁ ନାମ ॥
ସେ ଅବନାଶୀ ଯେ ପୁରୁଷ । ବିକାର ଭେଦେ ଅବିନାଶ ॥
ଯାହାର ରୂପରେଖ ନାହିଁ । ତାହାର ବର୍ଣ୍ଣ ଭେଦ କାହିଁ ॥
ଯେ ନାନା ରୂପ ଏ ସର୍ଜନା । ଯାହାର ମାୟାର ରଚନା ॥
ଈଶ୍ୱର ମାୟାରେ ପ୍ରବେଶ । ଆପଣା ଜ୍ୟୋତି ପ୍ରଭାଅଂଶ ॥
ଯେମନ୍ତେ ଠୁଳ ସୁବର୍ଣ୍ଣାଦି । କୁଣ୍ଡଳ ମୁଦ୍ରିକା ସମ୍ପାଦି ॥
ପ୍ରକାଶ କରି ଅନୁଭବେ । କେବଳ ଦେହ ମାୟା ଭୋଗେ
ନାନା ଅଳଙ୍କାର ଗଢ଼ାଇ । ବହୁ ବିଚିତ୍ର ନାମ ଦେଇ ॥
ସେ ପୁଣି ଭାଜି ଦଗଧିଲେ । ଠୁଳ ହୁଅଇ ଏକ ତୁଲେ ॥
ପିଣ୍ଡରେ ଜୀବ ଏ ଭାବରେ । ପରମ ଆତ୍ମା ଜୀବାତ୍ମାରେ ॥
ଦେହ ସେ ବିନାଶ ହୁଅଇ । ନାମ ଯଶ ରହେ ବିଶେଷି ॥
ଏ ଭାବେ ବାସୁଦେବ ଲୀଳା । ଜ୍ୟୋତି ପ୍ରଭାବ ଅଂଶକଳା ॥
ବାସନା ପ୍ରବେଶ କରିଣ । ନାମ ରୂପ ବର୍ଣ୍ଣ ଭେଦେଣ ॥
ବେଦ ପୁରାଣେ ତାଙ୍କୁ ଚିହ୍ନି । ମହିମା ବଖାଣ କରନ୍ତି ॥
ବ୍ରହ୍ମାଦି ଋଷିଗଣ ମାନେ । ଯାକୁ ଚିନ୍ତନ୍ତି ଯୋଗଧ୍ୟାନେ ॥
ମେଘ ସୂର୍ଯ୍ୟ ତେଜୁଁ ଜନ୍ମଇ । ଆକାଶେ ସୂର୍ଯ୍ୟଙ୍କୁ ଘୋଡ଼ାଇ ॥
ସୂର୍ଯ୍ୟ ତେଜୁଁ ଚକ୍ଷୁ ଜନ୍ମଇ । ତମଘରେ ସୂର୍ଯ୍ୟ ନ ଦିଶଇ ॥
ଏହି ପ୍ରକାରେ ବ୍ରହ୍ମ ଜନ୍ମ । ତ୍ରିଗୁଣ ରୂପୀ ଯେଉଁ କର୍ମ ॥
ଆତ୍ମା ଦର୍ଶନ ବିରୋଧନ୍ତି । ମାୟାରେ ଉହାଡ଼ କରନ୍ତି ॥
ଯେହ୍ନେ ସୂର୍ଯ୍ୟ ଉଦୟ ମାତ୍ରେ । ମେଘ ତମ ନାଶେ ଯେମନ୍ତେ
ସେ ଗଲେ ଚକ୍ଷୁ ସୂର୍ଯ୍ୟ ଦେଖେ । ଅଜ୍ଞାନେ ଯେବେ ସେ ଉପେକ୍ଷେ ॥

ଅହଂକାରେ ଆତ୍ମା ଅଜ୍ଞାନ । ଯେବେ ଦୂର କରେ ଏ ମାନ ॥
ଜୀବ ପରମକୁ ସେ ପାଇ । ଅଜ୍ଞାନ ତମ ନାଶ ଯାଇ ॥
ଆତ୍ମା ବିବେକ ଜ୍ଞାନମୟ । ମାୟା ଅହଂକାର ନିର୍ଣ୍ଣୟ ॥
ପାଶ ବନ୍ଧନ ଜ୍ଞାନ ଖଡ୍ଗେ । ଯେବେ ନ ଛେଦେ ମୂଢ଼ ଗର୍ବେ ॥
ଆତ୍ମାକୁ ଦର୍ଶନ ନ ପାଇ । ଯେବେ ସେ ମାୟାକୁ ଛେଦଇ ॥
ବ୍ରହ୍ମ ସ୍ୱରୂପେ ଲୀନ ହୋଇ । ସାଯୁଜ୍ୟ ମୁକ୍ତି ସେ ଲଭଇ ॥
ତେବେ ସେ ଅତ୍ୟନ୍ତ ପ୍ରଳୟ । ଏ ଚାରି ପ୍ରଳୟ ନିର୍ଣ୍ଣୟ ॥
ନିତ୍ୟେ ବ୍ରହ୍ମାଦି ମାନଙ୍କର । ଉତ୍ପତ୍ତି ପ୍ରଳୟ ସଞ୍ଚାର ॥
ଏହା ସୂକ୍ଷ୍ମ ଜ୍ଞାନୀ କହନ୍ତି । ତୀକ୍ଷ୍ଣ ଛିଦ୍ର ରନ୍ଧ୍ରେ ଭେଦନ୍ତି ॥
କାଳ ସ୍ରୋତ ସିନ୍ଧୁ ବେଗରେ । ବ୍ରହ୍ମାଦି ପ୍ରାଣୀ ଏ ସଂସାରେ ॥
ଭାସିଯାଇ ପୁଣି ଉଠିଣ । ପଡନ୍ତି ସେ ସ୍ରୋତ ଧାରେଣ ॥
ନାନାବସ୍ଥାରେ ପରିମାଣେ । ଭୋଗ କରନ୍ତି ଜନ୍ତମାନେ ॥
ଏ ଅନୁଭବ କରିଛନ୍ତି । କେହି ନ ଜାଣେ କାଳ ଗତି ॥
ଯେ କାଳ ଈଶ୍ୱରର ମୂର୍ତ୍ତି । ନାହିଁ ତା ଆଦି ଅନ୍ତ ସ୍ଥିତି ॥
ଅବସ୍ଥାମାନ ଅନ୍ତ ନାହିଁ । ନକ୍ଷତ୍ର ଆକାଶେ ଦିଶଇ ॥
ତେମନ୍ତ କାଳର ମହିମା । ଯା ଅନ୍ତ ନ ଜାଣନ୍ତି ବ୍ରହ୍ମା ॥
କୋଟି କୋଟି ବ୍ରହ୍ମାଣ୍ଡ ମାନେ । ଉତ୍ପତ୍ତି ପ୍ରଳୟର ଜ୍ଞାନେ ॥
କାଳର ଅନ୍ତ ନାହିଁ ରୂପ । ଯେଣୁ ବାସୁଦେବ ସ୍ୱରୂପ ॥
ମାୟାରେ ଅଂଶ ମିଶେ ଯେଣୁ । ଉତ୍ପତ୍ତି ପ୍ରଳେ ହୋଏ ତେଣୁ ॥
ଏ ନିତ୍ୟ ନୈମିତ୍ତିକ ଦୁଇ । ପ୍ରକୃତି ଅତ୍ୟନ୍ତକ ହୋଇ ॥
କାଳେ ଏ ପ୍ରଳୟ କରଇ । ଈଶ୍ୱର ଦେହେ ଲୀନ ହୋଇ ॥
ତେଣୁ ଏ ନୈମିତ୍ତିକ ହୋଇ । ପ୍ରଳୟ ନାମ ସେ ବୋଲାଇ ॥

### ଶ୍ରୀ ଶୁକ ଉବାଚ

ହେ କୁରୁଶ୍ରେଷ୍ଠ ପରୀକ୍ଷିତ । ଯେ ନାରାୟଣ ଜଗତାତ ॥
ବିଧାତା ସ୍ୱରୂପ ସେ ପୁଣି । ରହିବା ସ୍ଥାନ ତାଙ୍କ ପ୍ରାଣୀ ॥
ଏ ପୁଣ ଯୋଗମାୟା ରୂପେ । ନାନା ଲୀଳାବତାର କଳ୍ପେ ॥
ଅଶେଷ ଅବତାର ସୀମା । ସଂକ୍ଷେପେ କହିଲୁ ମହିମା ॥
ବିସ୍ତାରି କହିବ କେ ଅର୍ଥ । ବ୍ରହ୍ମା ହିଁ ନୋହିବେ ସମର୍ଥ ॥
ସଂସାର ସମୁଦ୍ର ଦୁସ୍ତର । ତାରଣେ ବିଷ୍ଣୁ କର୍ଣ୍ଣଧାର ॥
ବାସୁଦେବ ପଦାରବିନ୍ଦେ । ଯେବେ ନ ଚିନ୍ତେ ହୃଦପଦ୍ମେ ॥
ବୋଇତ ଆଶ୍ରେ ବିନା ପ୍ରାଣୀ । ବାଣିଜ୍ୟେ ସମୁଦ୍ର ନ ଜିଣି ॥
ତାଙ୍କ ଲୀଳାବତାର କଥା । ଶୁଣନ୍ତେ ଖଣ୍ଡେ ଭବ ବ୍ୟଥା ॥
ପଢ଼ି ଗାୟନ କଲେ ପ୍ରାଣୀ । ତରନ୍ତି ଭବ ତରଙ୍ଗିଣୀ ॥
ଶ୍ରୀ ଭାଗବତ ପୁରାଣରେ । ଅମୃତ ପୂରିଛି ବିସ୍ତାରେ ॥
ଜଗତି ଉପୁଜଇ ଯେଣୁ । ଭାଗବତ ବୋଲାଇ ତେଣୁ ॥
ଏ ଯେ ପୁରାଣର ସଙ୍ଗୀତ । ପ୍ରଥମେ ଏକାକ୍ଷର ତତ୍ତ୍ୱ ॥
ବୈକୁଣ୍ଠ ନାଥ ମୁଖୁଁ ଜାତ । ପ୍ରଣବ ସ୍ୱରୂପେ ସମ୍ଭୂତ ॥
ତାଙ୍କୁ ଯେ ତିନି ଅକ୍ଷରେଣ । ଅନନ୍ତ ଉପଦେଶ ପୁଣ ॥
ପୁଣ ଚଉବିଂଶ ଅକ୍ଷରେ । ଅନନ୍ତ ଦେଲେ ସେ ବ୍ରହ୍ମାରେ ॥
ବ୍ରହ୍ମାଠାରୁ ଚାରି ଶ୍ଳୋକଣେ । ପାଇଲେ ନର ନାରାୟଣ ॥
ନାରଦେ ନର ନାରାୟଣ । ଦଶମ ଶ୍ଳୋକ ଦେଲେ ପୁଣ ॥
ନାରଦ ବ୍ୟାସେ ଉପଦେଶ । ଶତ ଶ୍ଳୋକରେ ପରକାଶ ॥
ସେ ବ୍ୟାସ ମୁନି ତୋଷ ମନେ । ଅଠର ସହସ୍ର ଗ୍ରନ୍ଥନେ ॥
ଆମ୍ଭେ ଶୁକ ତାହାଙ୍କ ଶିଷ୍ୟ । ଆମ୍ଭଙ୍କୁ ଦେଲେ ଉପଦେଶ ॥
ଏବେ ଯେ ଗଙ୍ଗାଙ୍କ ତୀରରେ । ବ୍ରହ୍ମ ଋଷି ସଭା ମଧରେ ॥
ତୁମ୍ଭଙ୍କୁ କହି ଏ ପୁରାଣ । ଆମ୍ଭେ ଯେ ହୋଇଲୁ କାରଣ ॥
ଏହୁ ପୁରାଣ ତୁମ୍ଭେ ଶୁଣି । ଲଭିବ ବିଷ୍ଣୁ ଅଙ୍ଗ ପୁଣି ॥
ଏ ଭାଗବତ ଧର୍ମସାର । ଚାରିବେଦୁଁ ଅର୍ଥ ବାହାର ॥
ଏବେ ଏ ଗଙ୍ଗା ପାଶେ ପୁଣ । ତୁମ୍ଭ ଆମ୍ଭ ସମ୍ବାଦ ଶୁଣ ॥
ସୂତ ପୁରାଣିକ ଶୁଣିଲେ । ନୈମିଷା ଅରଣ୍ୟେ କହିଲେ ॥
ଶୌନକ ଆଦି ମୁନିମାନେ । ଯଜ୍ଞ ଆରମ୍ଭି ତୋଷମନେ ॥
ସେ ପୁଣି ସେ ସଭା ମଧରେ । କହିଲେ ଋଷିଙ୍କ ଆଗରେ ॥
ଏବେ ମୋ ପିତା ତୁମ୍ଭ ଆଗେ । କହିଲେ ଯଜ୍ଞ ହବି ଭାଗେ ॥
କହଇ ଦାସ ଜଗନ୍ନାଥ । ଚିନ୍ତି କୃଷ୍ଣ ପାଦ ସାରସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ ଚତୁର୍ବଧ ପ୍ରଳୟବର୍ଣ୍ଣନଂ ନାମ ଚତୁର୍ଥୋଽଧ୍ୟାୟ ।*

## ପଞ୍ଚମ ଅଧ୍ୟାୟ

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ଶୁଣ ରାଏ । ଶ୍ରୀ ଭାଗବତର ନିର୍ଣ୍ଣଏ ॥
ଯେ ଭାଗବତ ଆଦ୍ୟନ୍ତରେ । ବିଶ୍ୱ ଆତ୍ମା ହରି ପ୍ରଚରେ ॥
ସେ ପ୍ରଭୁ ପରମ ପୁରୁଷ । ଅବ୍ୟୟ ରୂପେ ପରକାଶ ॥
ଯାହାର ଅନୁଗ୍ରହେ କରି । ବ୍ରହ୍ମା ଜନ୍ମିଣ ସୃଷ୍ଟି କରି ॥
ଯାହାର ସ୍ୱରୂପ ସେ ପୁଣ । ସତ୍ତ୍ୱ ଗୁଣରୁ ବିଷ୍ଣୁ ଜନ୍ମ ॥
ଜନ୍ମି ସଂସାରେ ପ୍ରବର୍ତ୍ତନ୍ତି । ପାଳିଣ ରଚନା କରନ୍ତି ॥
ତମ ଗୁଣେ ଈଶ୍ୱର ରୂପେ । ସଂହାର କରେ ମହାକୋପେ ॥
ଶୁଣ ରାଜନ ମହୀପତି । ମରିବି ବୋଲି ଯେଉଁ ଭୀତି ॥
ପ୍ରାଣୀ ତା ଅଜ୍ଞାନେ କହନ୍ତି । ତୁ ଏବେ ଛାଡ଼ ମହୀପତି ॥
ଜନ୍ମ କେଉଣସି ଦିନେଣ । ଜନମେ ନୁହଁନ୍ତି ରାଜନ ॥

ଆଗେଣ ଜନମ ନୋହିବ । ବର୍ତ୍ତମାନେଣ ନ ମରିବ ॥
ଯେହି ଯେ ଜନମ ହୋଇଛି । ଜନ୍ମ ହୋଇଣ ଘୁଞ୍ଚିଅଛି ॥
ଉତ୍ପତ୍ତି ଥିତି ଯାର ନାହିଁ । ବିନାଶ ହୋଇବ କିମ୍ପାଇ ॥
ପୁତ୍ର ପୌତ୍ରାଦି ଏ ମୋହର । କେହି ଯେ ନୁହନ୍ତି କାହାର ॥
ସମ୍ପତ୍ତି ଅଇଶ୍ୱର୍ଯ୍ୟ ମତେ । ବାସୁଦେବ ମାୟା ସଂଯୁତେ ॥
ଯେମନ୍ତେ ବୀଜରୁ ଅଙ୍କୁର । ତହୁଁ ବୃକ୍ଷାଦି ଅବତାର ॥
ସେ ଫଳ ଫଳଇ ପ୍ରତ୍ୟେକ୍ଷେ । ବୀଜ ଅଙ୍କୁର ପୁଣି ବୃକ୍ଷେ ॥
ତେମନ୍ତ ହୋଇ ଦେହାଦିରେ । ମାୟାରେ ସନ୍ତତ ପ୍ରଚରେ ॥
ଉତ୍ପତ୍ତି ବିନାଶ ଯେ ହୋଇ । ଯେହ୍ନେ କାଷ୍ଟରେ ଅଗ୍ନିଥାଇ ॥
ଅରଣି କରି ତା ମନ୍ଥିଲେ । ଅଗ୍ନି ପ୍ରକାଶ ହୋଇ ଭଲେ ॥
ପ୍ରତ୍ୟକ୍ଷେ ଦ୍ରଶନ ଦିଅଇ । ସେ ଅରଣି ଭସ୍ମ କରଇ ॥
ଆତ୍ମାଦି ଅନ୍ତଲୀନ ହୋଇ । ଏ ଭାବେ ଦେହେ ଆତ୍ମା ଥାଇ ॥
ଯୋଗ ଅଭ୍ୟାସେ ତା ମନ୍ଥିଲେ । ଦ୍ରଶନ ପାଇ ତାକୁ ଭଲେ ॥
ସେ କର୍ମ ବନ୍ଧନ ଶରୀର । ଦଗ୍ଧ କରି ହୋଏ ଅନ୍ତର ॥
ସ୍ୱପ୍ନେ ଯେ ମୁଣ୍ଡ କାଟ ଯାଇ । ପ୍ରାଣ ତ୍ୟାଗ ହୋଇଣ ଥାଇ ॥
ନିଦ୍ରା ଭଙ୍ଗେଣ ମିଥ୍ୟା ହୋଏ । ଜନମ ମୃତ୍ୟୁ ତେହ୍ନେ ପ୍ରାଏ ॥
ଏ ଆତ୍ମା ଦେହରୁ ବିଲଗ । ଜନ୍ମ ମରଣେ କାହିଁ ସାଙ୍ଗ ॥
ପୂର୍ଣ୍ଣ ଘଟ ମଧରେ ଯେହ୍ନେ । ଚନ୍ଦ୍ର ସୂର୍ଯ୍ୟ ଦିଶେ ଗଗନେ ॥
ଆକାଶ ପୂର୍ଣ୍ଣମୟ ଦିଶେ । ଘଟ ବିଯୋଗେ ରହେ ଶେଷେ ॥
ଏ ଭାବେ ଦେହ ନାଶ ଯାଇ । ଜନ୍ମ ମରଣ ନାମ ବହି ॥
ସେ ଘଟ ବିନାଶ ହୁଅଇ । ଜନ୍ମ ମରଣ ତାର ତହିଁ ॥
ଦେହ କର୍ମେ ପୁଣି ସୃଜଇ । ଆଗେ ଯାହା ସେ ବିଚାରଇ ॥
ଜୀବ ଅବିନାଶୀ ରହଇ । ପୁଣି ସେ ପ୍ରକାଶ ହୁଅଇ ॥
ସେ ସବୁ ମାୟା ଅନୁଭବ । ଯେଣୁ ଦେହମାନ ସେ ଭୋଗ ॥
ମାୟା ଦେହର ଅଧିଷ୍ଠାନ । ଦେହ ସଂଯୋଗ ବିଯୋଗେଣ ॥
ଦୀପରେ ବଳିତା ଯେମନ୍ତ । ତୈଳ ଯୋଗେ ଅଗ୍ନି ଜ୍ୱଳିତ ॥
ତାହାକୁ ଭସ୍ମ ଯୋଗ କଲେ । ଅଗ୍ନି ସଦୃଶ୍ୟ ହୋଏ ଭଲେ ॥
ଏମନ୍ତ ମାୟା କର୍ମ ଯୋଗେ । ଜୀବ ଯେ ସଂଯୋଗେ ବିଯୋଗେ ॥
ଦେହ ବାସନ କର୍ମ ଭୋଗେ । ଏ ସର୍ବ ମାୟାର ସଂଯୋଗେ ॥
ତମ ଗୁଣେ ନାସକୁ ଯାଇ । ସତ୍ତ୍ୱ ଗୁଣରେ ସେ ବଢ଼ଇ ॥
ଦେହ ଆତ୍ମା ଲାଗି ନ ଥାଇ । ସେ ଜ୍ୟୋତି ସ୍ୱରୂପ ଅଟଇ ॥
ଅବ୍ୟକ୍ତ ବ୍ୟକ୍ତ ପରାପର । ଆକାଶ ଯାଏ ତା ସଞ୍ଚାର ॥
ଜଗତ ଆଶ୍ରୟ ଯେ ଭୂତ । ସର୍ବ ଠାବେ ନିଶ୍ଚଳ ମତ ॥
ଅନାଦି ବୃତ ଦିସ ଲିପ୍ତ । ଯୋଗ ଅଭ୍ୟାସେଣ ଉଦ୍ଦିତ ॥
ଏମନ୍ତ ଭାବେ ଆତ୍ମା ଜାଣି । ଆତ୍ମାକୁ ଆତ୍ମା ଭାବେ ମଣି ॥

ଅନୁଭବ ବୁଦ୍ଧି ଭାବରେ । ବାସୁଦେବଙ୍କୁ ଚିନ୍ତାକରେ ॥
ଚିତ୍ତ ତନ୍ମୟ ହୋଇ ଧରି । ଆତ୍ମାକୁ ଭୂରୁ ମଧ୍ୟେ ଧରି ॥
ବାସୁଦେବରେ ଆତ୍ମା ଲୀନ । ଧ୍ୟାନେ ତୁ ଦେଖ ନିରଞ୍ଜନ ॥
ମୁକତି ନିର୍ବାଣ ପାଇବ । ତକ୍ଷକ ବାଧା ନ ଲାଗିବ ॥
ତକ୍ଷକ ବ୍ରାହ୍ମଣ ଶାପରେ । ଦଂଶିବ ତୁମ୍ଭର ଶରୀରେ ॥
ମାୟା ଦେହକୁ ସେ ଦଂଶିବ । ବିଷ ଜ୍ୱଳେ ଭସ୍ମ ହୋଇବ ॥
ଜୀବନ ଥିବା ଯାଏ ତୋର । ଦଗ୍ଧ ନୋହିବ ଶରୀର ॥
ମୃତ୍ୟୁ କାଳେ ଏମାନେ ପୁଣ । ଭୋଗ ନୁହେଁ ତୁମ୍ଭ ଦେହେଣ ॥
ତୁମ୍ଭେ ଯେ ମୃତ୍ୟୁର ଈଶ୍ୱର । ଅବିନାଶୀ ଚିତ୍ତ ତୁମ୍ଭର ॥
ଜନ୍ମିଲେ ମରଣ ନିକର । ତେଣୁ ମୃତ୍ୟୁ ଭୟ ନ କର ॥
ପରମ ବ୍ରହ୍ମ ନିରାକାର । ଜ୍ୟୋତି ସ୍ୱରୂପେ ଲୀନକର ॥
ଯେବେ ଆପଣାକୁ ଚିନ୍ତଇ । ମୁହିଁ ପରଂ ବ୍ରହ୍ମ ଅଟଇ ॥
ନିରାକାର ବ୍ରହ୍ମ ସ୍ୱରୂପୀ । ପରମ ପଦେ ଅଛି ବ୍ୟାପୀ ॥
ଏ ଭାବେ ଚିନ୍ତ ଆତ୍ମା ଧ୍ୟାନେ । ଲଏ ଲଗାଇ ନିରଞ୍ଜନେ ॥
ଆତ୍ମାରେ ଆତ୍ମା ଭାବ ଲଇ । ସୂକ୍ଷ୍ମରେ ସୂକ୍ଷ୍ମ ଭାବ ପାଇ ॥
ସେ ନିରାକାରେ ଲୀନ ହୋଇ । ଚାରି ପ୍ରଳୟେ ସଙ୍ଗ ତହିଁ ॥
ତକ୍ଷକ ବ୍ରହ୍ମ ଶାପ୍ୟେ ଆସି । ତୋହର ଚରଣରେ ଦଂଶି ॥
ସେ ବିଷାଗ୍ନିରେ ତୁମ୍ଭ ଦେହ । ହୋଇବ ଦଗ୍ଧ ଭସ୍ମମୟ ॥
ତୁମ୍ଭେ ଯେ ତାକୁ ନ ଦେଖିବ । ତୁମ୍ଭ ଦେହେ ଜୀବ ନ ଥିବ ॥
ଯୋଗାଗ୍ନିରେ ତୁମ୍ଭ ଶରୀର । ପ୍ରକୃତି ଜିଣି ତତପର ॥
ପରମ ପଦେ ଯାଇଥିବ । ଏ ମାୟା ଦେହ ନ ଦେଖିବ ॥
ଲୋକାଚାରେ ଜଗତ ଭାବେ । ଋଷି ବାକ୍ୟ ପ୍ରତିପାଳିବେ ॥
ଯେଣୁ ତୁମ୍ଭର ପାଦେ ଘାତ । ତକ୍ଷକ ଦଂଶିବ ନିଅତ ॥
ମାୟା ଶରୀର ନାଶ ଯିବ । ଜଗତ ପ୍ରତ୍ୟେକ୍ଷେ ଦେଖିବ ॥
ଜଗତ ମାୟା ଆତ୍ମା ଦେହୀ । ତୋ ଆତ୍ମା ଲୀନ ହେବ ତହିଁ ॥
ଯାହା ତୁମ୍ଭେଣ ପୁଚ୍ଛା କଲ । କହିବୁ ତୁମ୍ଭରେ ସକଳ ॥
ସେ ସର୍ବ ଆତ୍ମା ବାସୁଦେବ । ଯୋଗ ଧ୍ୟାନେଣ ତାକୁ ଭାବ ॥
ମଉନ ବ୍ରତ ହୋଇ ବସ । ପଦାରବିନ୍ଦେ ମନ ରସ ॥
ଲୟ ଲଗାଅ ଶ୍ରୀ ପୟରେ । ନିର୍ବାଣ ମୁକ୍ତି ସେହୁ ଦ୍ୱାରେ ॥
ଏମନ୍ତ ଶୁଣି ଶୁକ ବାଣୀ । ଆନନ୍ଦେ ପରୀକ୍ଷିତ ଶୁଣି ॥
ଆନନ୍ଦେ ପୁଲକିତ ଚିତ୍ତ । କୃଷ୍ଣେ ନିବେଶି ଶିରେ ହସ୍ତ ॥

## ପରୀକ୍ଷିତ ଉବାଚ

ସେ ହରି ପରମ ପୁରୁଷ । ମହିମା ନ ଜାଣନ୍ତି ଶେଷ ॥
ତୁମ୍ଭର ଭାବ ତୁମ୍ଭେ ଜାଣ । ତୋ ବିନୁ ନାହିଁ ପରିତ୍ରାଣ ॥
ତୁମ୍ଭ ଚରଣେ ଚିତ୍ତ ମୋର । କାଳେ ରଖିବା ଚକ୍ରଧର ॥

ଆଶା ବିଶ୍ରାମ ବାନା ତୋର । ମୋ ଆତ୍ମା ରଖ ତୋ ପୟର ॥
ନମସ୍ତେ ପ୍ରଭୁ ନାରାୟଣ । ଉଧର ଭବ ଯନ୍ତ୍ରୁଁ ପ୍ରାଣ ॥
କହଇ ଦାସ ଜଗନ୍ନାଥ । ତ୍ରାହି କରିବା ପଦ୍ମନେତ୍ର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ ବ୍ରହ୍ମୋପଦେଶୋ ନାମ ପଞ୍ଚମୋଽଧ୍ୟାୟଃ ।*

## ଷଷ୍ଠ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ ପୁରାଣିକ କହନ୍ତି । ଶୌନକ ଆଦି ମୁନି ଛନ୍ତି ॥
ନୈମିଷ୍ୟା ରଣ୍ୟେ ସର୍ବେ ମିଳି । ଆନନ୍ଦେ ବାସୁଦେବ କେଳି ॥
ଶୁକଙ୍କ ଟହୁଁ ଏହୁବାଣୀ । ବିଷ୍ଣୁ ଭକ୍ତ ପରୀକ୍ଷ ଶୁଣି ॥
ନମିଲା ଶୁକଦେବ ପାଦେ । ରୋମ ପୁଲକ ଗଦଗଦେ ॥

### ପରୀକ୍ଷିତ ଉବାଚ

ହେ ବ୍ୟାସ ସୁତ ଜ୍ଞାନ ଧୀର । ଜଗତ ଆତ୍ମା ରୂପେ ତୋର ॥
ସମଦରଶୀ ଭାବ ବହୁ । ଯେଣୁ ସଂସାରେ ଭେଦ ନୋହୁଁ ॥
ଯେମନ୍ତ କହିଣ ଚରଣେ । ପ୍ରମାଣ କଲା ତତକ୍ଷଣେ ॥
ଅଦ୍ଭୁତ କଥା ତୁମ୍ଭବାଣୀ । ଯେଣୁ ସଂସାର ମିଥ୍ୟା ଜାଣି ॥
ମରଣଭୟ କିଛି ନାହିଁ । ଅଜ୍ଞାନ ଜନ ସେ ମରଇ ॥
ତୁମ୍ଭ କୃପା ହୋଇଲା ଯେଣୁ । ମୋ ଜନ୍ମ ମୃତ୍ୟୁ ନାହିଁ ତେଣୁ ॥
ତୁମ୍ଭେ ଯେ ବ୍ୟାସଦେବ ରୂପ । ସେ ବିଷ୍ଣୁ ସକଳ ସ୍ୱରୂପ ॥
ପ୍ରାଣୀ ସଂସାର ତାପେ ଥାଇ । ଆତ୍ମାରେ ବାସୁଦେବ ଧ୍ୟାୟି ॥
ଅନୁଭାବନା ଯେବେ କରେ । ସେ ପ୍ରାଣୀ ସଂସାରୁ ନିସ୍ତରେ ॥
କହି କୃତାର୍ଥ ମୋତେ କଲ । ବିଷ୍ଣୁ ମାୟାରୁ ଉଦ୍ଧରିଲ ॥
ତୁମ୍ଭଙ୍କୁ ମୋର ନମସ୍କାର । ପରମ ଦୟାଳୁ ଈଶ୍ୱର ॥
ସାକ୍ଷାତ ଯେ ମଧୁସୂଦନ । ତାଙ୍କୁ କରାଇଲ ଦର୍ଶନ ॥
ଯେଣୁ ମୁଁ ଯେ ଶୁଦ୍ଧ ହୋଇଲି । ଭଗବାନ ଗୁଣ ଶୁଣିଲି ॥
ଯେ ଭାଗବତ ପୁରାଣରେ । ଶ୍ରୀ ବାସୁଦେବ ବର୍ଣ୍ଣନାରେ ॥
ହେ ଶୁକଦେବ ଭଗବାନ । ତକ୍ଷକ ଆସି ମୃତ୍ୟୁମାନ ॥
ତହିଁକି ମୋର ଭୟ ନାହିଁ । ବ୍ରହ୍ମ ନିର୍ମାଣ ଭେଦ ମୁହିଁ ॥
ଅବ୍ୟୟ ଅବିନାଶୀ ବ୍ରହ୍ମ । ଦର୍ଶନେ ଛଡ଼ାଇଲ ଭ୍ରମ ॥
ଯେବେ ଯେ ମୋତେ ଆଜ୍ଞାଦିଅ । ବ୍ରହ୍ମରେ ଲଗିବ ମୋ ଲୟ ॥
ମୁଁ ବସୁଅଛି ଯୋଗାସନେ । ମଣ୍ଡନ ବ୍ରତ ଆତ୍ମା ଜ୍ଞାନେ ॥
ଅଧୋକ୍ଷ ବିଷ୍ଣୁର ପୟରେ । କାମନା କରଇ ନିର୍ଭରେ ॥
ଅଷ୍ଟାଙ୍ଗ ଯୋଗ ଧାରଣାରେ । ଷଡଚକ୍ର ଭେଦି ଆତ୍ମାରେ ॥
ପରମ ଆତ୍ମାରେ ମିଶଇ । ସହସ୍ର ଦଳ ମଧ୍ୟେ ନେଇ ॥
ପ୍ରାଣକୁ ତହିଁ ନିବେଦିବି । ମାୟାର ବ୍ରହ୍ମ ଜିଣି ଯିବି ॥
ତକ୍ଷକ ବ୍ରାହ୍ମଣ ଶାପ୍ୟରେ । ଭସ୍ମ କରି ମୋର ଶରୀରେ ॥
ଅନୁଭବ ଜ୍ଞାନରୁ ମୋର । ଅଜ୍ଞାନ ତୁମ୍ଭେ ନାଶ କର ॥
ବାସୁଦେବ ପରମପଦ । ମୁକ୍ତି ପାଇ ସଦା ଆନନ୍ଦ ॥
ସେ ମାର୍ଗ ମୋତେ ଦେଖାଇଲ । ବିଷ୍ଣୁ ଅଙ୍ଗେ ଲୀନ କହିଲ ॥
ଏବେ ମୁଁ ସେ ମାର୍ଗେ ପଶିବି । ଧ୍ୟାନେଣ ମୁକତି ଲଭିବି ॥
ଏ ଭାବେ ଅନେକ ପ୍ରକାରେ । ବିନଇ ଶୁକ ଚରଣରେ ॥

### ଶ୍ରୀ ଶୁକ ଉବାଚ

ଶୁକ କହନ୍ତି ମୁନି ଶୁଣ । ନୃପେ କହେ ବାଦରାୟଣ ॥
ବିଷ୍ଣୁ ଭକ୍ତିରେ ତୁ ନିମଜ୍ଜ । ମୁକତ ହୁଅ ନୃପରାଜ ॥
ଆମ୍ଭର ଆଶୀର୍ବାଦୁ କରି । ଅନ୍ତେ ଲଭିବୁ ବିଷ୍ଣୁପୁରୀ ॥
ଏମନ୍ତ କହି ଶୁକ ମୁନି । ଆନନ୍ଦେ କଲେ ହରିଧ୍ୱନି ॥
ସକଳ ମହାଋଷିମାନେ । ସନ୍ନ୍ୟାସୀ ଆଦି ତପି ଜନେ ॥
ରାଜାର ପୂଜାବିଧି ପାଇ । ଶୁକ ହରଷ ମନ ହୋଇ ॥
ସଙ୍ଗେ ଘେନି ବଦ୍ରିକା ସ୍ଥଳେ । ବସିଲେ ଆସନେ ନିଶ୍ଚଳେ ॥
ପରୀକ୍ଷିତ ଯେ ଯୋଗଧ୍ୟାନେ । ବସିଲା ନିଶ୍ଚଳ ମଉନେ ॥
ଆତ୍ମାରେ ଆତ୍ମା ନିଯୋଜନା । ଅଷ୍ଟାଙ୍ଗ ଯୋଗ ଯେ ଧାରଣା ॥
ପରମବ୍ରହ୍ମ ସ୍ୱରୂପରେ । ପବନ ସଂଯମି ଧ୍ୟାନରେ ॥
ବୃକ୍ଷର ପ୍ରାଏ ଅଚେଷ୍ଟିତ । ନିଶ୍ଚଳ ଭାବେ ରହେ ଚିତ୍ତ ॥
ହସ୍ତିନା ନଗର ବାହାରେ । ଗଙ୍ଗାର ପୂର୍ବ ଭାଗ ତୀରେ ॥
ବାଲୁକା ବେଦିରେ ଉପରେ । କୁଶ ଆସନ କରି ଧୀରେ ॥
ଉତ୍ତରା ଅଭିମୁଖେ ବସି । ବ୍ରହ୍ମ ଭାବନା ଉପଲକ୍ଷି ॥
ଆତ୍ମାକୁ ବ୍ରହ୍ମ ରନ୍ଧ୍ରେ ଥୋଇ । ସୁଷୁମ୍ନା ନାଡୀ ଯେ ବୋଲାଇ ॥
ଷଡଚକ୍ର ଭେଦି ଭ୍ରୂ ମଧ୍ୟେ । ପରମ ଆତ୍ମା ଭାବ ଭେଦେ ॥
ବିଷୟ ସଂଗକୁ ସେ ଦୂର । ନାହିଁ ବାହ୍ୟାନ୍ତର ମନର ॥
ଯେକାକ୍ଷର ବ୍ରହ୍ମେ ପ୍ରବେଶି । ଯାତନା ଶରୀର ବିକାଶି ॥
ପରମ ପଦକୁ ଲଭିଲେ । ବିଷ୍ଣୁ ଅଙ୍ଗରେ ଲୀନ ହେଲେ ॥
ଯେମନ୍ତ ସମୟରେ ପୁଣ । କଶ୍ୟପ ଋଷିଙ୍କ ନନ୍ଦନ ॥
ସମିକ ଋଷି ବିଦ୍ୟମାନ । ଶୃଙ୍ଗି ଋଷି ତାଙ୍କ ନନ୍ଦନ ॥
ପୂର୍ବେ ସପତ ଦିନ ଠାରେ । ଶାପ୍ୟ ସେ ଦେଲାକ ରାଜାରେ ॥
ରାଜା ହୋଇ ଅନୀତି କଲା । ଋଷି ଗଳାର ସର୍ପ ଦେଲା ॥
ଆଜୁ ସପତ ଦିନ ଅନ୍ତେ । ତକ୍ଷକ ଦଂଶୁ ଭସ୍ମଭୂତେ ॥
ବ୍ରାହ୍ମଣ ରୂପ ଧରି ଆସି । ଯେମନ୍ତ ବାରତା ଉଦ୍ଦେଶି ॥
ସ୍ୱର୍ଗରୁ ଧନ୍ୱନ୍ତରୀ ନାମ । ଦେବଙ୍କ ବୈଦ୍ୟ ସେ ଉତ୍ତମ ॥

ରାଜାର ମୃତ୍ୟୁ କଥା ଶୁଣି । ବ୍ରାହ୍ମଣ ରୂପଧରି ପୁଣି ॥
ଆସନ୍ତେ ବାଟେ ଭେଟ ହୋଇ । ତକ୍ଷକ ଧନ୍ୱନ୍ତରୀ ଦୁଇ ॥
ତକ୍ଷକ ପଚାରିଲେ ପୁଣ । କି, ଅର୍ଥେ କରୁଛ ଗମନ ॥

### ଧନ୍ୱନ୍ତରୀ ଉବାଚ

କହିଲେ ଆମ୍ଭେ ଧନ୍ୱନ୍ତରୀ । ଯିବୁ ପରୀକ୍ଷିତ ନିସ୍ତାରି ॥
ବ୍ରହ୍ମଶାପେ ତକ୍ଷକ ଦଂଶି । ରାଜା ହୋଇବ ଭସ୍ମରାଶି ॥
ତାହାକୁ ଆମ୍ଭେ ଜୀଆଇଁବୁ । ଯଶ ଧର୍ମ ଧନ ପାଇବୁ ॥
ଏମନ୍ତ ଶୁଣି ତାଙ୍କ ବାଣୀ । ତକ୍ଷକ ବୋଲେ ତତକ୍ଷଣି ॥

### ତକ୍ଷକ ଉବାଚ

ଦଂଶିଲେ କେ ଭସ୍ମ ନୋହିବ । ଦେହେ ଜୀବନ କେ ଧରିବ ॥
ଜୀଆଇଁ ଯେବେ ତୁମ୍ଭେ ପାର । ପରୀକ୍ଷା ଏହିଠାରେ କର ॥

### ଶ୍ରୀ ସୂତ ଉବାଚ

ଏମନ୍ତ କହି ସେ ତକ୍ଷକ । ଆଗରେ ଥିଲା ଯେ ବୃକ୍ଷେକ ॥
ତହିଁ ଉପରେ ଏକଜଣ । କାଷ୍ଠ ସେ ଭାଙ୍ଗୁଥିଲା ପୁଣ ॥
ଏ ଦୁଇ ବିପ୍ରେ ନ ଦେଖିଲେ । ଏହାଙ୍କୁ ଦେଖି ସେ ଲୁଚିଲେ ॥
ଯେମନ୍ତେ ତକ୍ଷକ ଯେ ଅହି । ସେ ବଟ ବୃକ୍ଷକୁ ଦଂଶଇ ॥
ସେ ବୃକ୍ଷ ଭସ୍ମ ହୋଇଗଲା । ମନୁଷ ଆଦି ଭସ୍ମ ଥିଲା ॥
ସେ ଭସ୍ମ ଧନ୍ୱନ୍ତରୀ ପୁଣ । ଠୁଳ କଲେ ଏକ ଠାବେଣ ॥
ଆଣି ସେ ମନ୍ତ୍ରିଲେ ତକ୍ଷଣ । ମୃତ୍ୟୁ ସଞ୍ଜୀବନୀ ମନ୍ତ୍ରେଣ ॥
ବୃକ୍ଷ ଅଙ୍କୁର ହୁଏ ପୁଣି । କ୍ରମେ ସେ ଦ୍ରୁମଭାବ ଘେନି ॥
ହୋଇଲା ସେହି ଭାବେ ବୃକ୍ଷ । ମନୁଷ ଆଦି ଯେ ପ୍ରତ୍ୟକ୍ଷ ॥

### ତକ୍ଷକ ଉବାଚ

ତା ଦେଖି ତକ୍ଷକ କହିଲେ । ନିଷ୍ଫେ ଜିଣି ତୁମ୍ଭେ ଗଲେ ॥
ତୁମ୍ଭେ ଯେ ମହତ ପୁରୁଷ । ଯଶ ମୋ ନ କରିବ ନାଶ ॥
ମହତ ଲୋକଙ୍କର ଭାବ । ପର ଯଶରେ ନିତ୍ୟେ ଥିବ ॥
ଆପଣା ଯଶ ନ କରଇ । ପରର ହିତେ କ୍ଳେଶ ପାଇ ॥
ରାଜାଠାରୁ ପ୍ରାପତ ଧନ । ମୋ ଠାରୁ ନିଅ ତା ଦ୍ୱିଗୁଣ ॥

### ଶ୍ରୀ ସୂତ ଉବାଚ

ଯେମନ୍ତ ଶୁଣି ଧନ୍ୱନ୍ତରୀ । ମନେଣ ବିଚାର ସେ କରି ॥
ରାଜାର ଆୟୁଷ ତ ନାହିଁ । ମୁଁ ଯୋଗବଳେ ଯାଣିଲଇ ॥
ତାର ଜୀବନେ ଇଛା ନାହିଁ । ଶୁକ ପ୍ରସନ୍ନ ଭାବ ବହି ॥
ବିରକ୍ତି ହୋଇ ଗଙ୍ଗାତୀରେ । ଯୋଗାରୂଢ଼ ଜ୍ଞାନ ତତ୍ତ୍ୱରେ ॥
ଆତ୍ମାକୁ ପରମ ଆତ୍ମାରେ । ପ୍ରବେଶ କରି ବ୍ରହ୍ମ ଦ୍ୱାରେ ॥
ଯୋଗ ଅଗ୍ନିରେ ଦଗ୍ଧ ହୋଇବ । ସେ ତ ବ୍ରହ୍ମରେ ଲୀନ ଯିବ ॥
ପିଣ୍ଡରେ ତକ୍ଷକ ଦଂଶିବ । ଆମ୍ଭର ଯଶ ନ ହୋଇବ ॥
ଆମ୍ଭେ ଯେ ଏହାଠାରୁ ପୁଣ । ଛାଡ଼ିଣ କିମ୍ପା ଯିବା ଧନ ॥
ଏମନ୍ତ ବିଚାରି ଭେଷକ । ବୋଇଲେ ଶୁଣ ହେ ତକ୍ଷକ ॥

### ଧନ୍ୱନ୍ତରୀ ଉବାଚ

ତୋ ଯଶ କି ପାଇଁ ନାଶିବୁ । ଧନ ଦେଲେ ବାହୁଡ଼ି ଯିବୁ ॥
ତକ୍ଷକ ଧନ ତାଙ୍କୁ ଦେଲେ । ଧନ୍ୟନ୍ତୀ ବାହୁଡ଼ିଣ ଗଲେ ॥

### ଶ୍ରୀ ସୂତ ଉବାଚ

ତକ୍ଷକ ବ୍ରାହ୍ମଣ ରୂପେଣ । ଗଲେ ସେ ରାଜା ସନ୍ନିଧାନ ॥
ଯେମନ୍ତ ବିଚାରିଲେ ମନ । ତୋଷିଣ ଧନ୍ୱନ୍ତରୀ ମନ ॥
ପ୍ରୋହିତେ କିଛି ଧନ ଦେଲେ । ତହିଁ ସେ ମେଲାଣି ହୋଇଲେ
ଫଳପୁଷ୍ପ ତୋଳି ଭେଟିଲେ । ଫଳେ ତକ୍ଷକ କୃମି ହେଲେ ॥
ଏମନ୍ତେ କୃମିରୂପେ ପୁଣ । ଦଂଶିଲା ରାଜାର ଚରଣ ॥
ସେ କାଳରୂପୀ ନାଗବିଷ । ରାଜା ଶରୀର କଲା ନାଶ ॥
ତକ୍ଷଣେ ଭସ୍ମ ହୋଇଗଲେ । ସମସ୍ତ ପ୍ରାଣୀ ତା ଦେଖିଲେ ॥
ହା ହାକାର ଶବ୍ଦ ଶୁଭିଲା । ଅବନୀ ମଣ୍ଡଳ ପୂରିଲା ॥
ଆକାଶେ ଦେବତା ଅସୁର । ମନୁଷ୍ୟ ଆଦି ନାନାଚର ॥
ସମସ୍ତେ ବିସ୍ମୟ ହୋଇଲେ । ତକ୍ଷକ କେହି ନ ଦେଖିଲେ ॥
ରାଜା ମୁକତି ଦେଖି ଦେବେ । କଲେ ଦୁନ୍ଦୁଭି ଶବ୍ଦୋଭବେ ॥
ଗନ୍ଧର୍ବ ଅପସରା ନୃତ୍ୟ । ସାଧୁ ଶବଦେ କଲେ ଗୀତ ॥
ଦେବେ ଯେ ପୁଷ୍ପବୃଷ୍ଟି କଲେ । ଆନନ୍ଦେ ସ୍ୱର୍ଗପୁରେ ଗଲେ ॥
ପରୀକ୍ଷ ସୁତ ଜନ୍ମଜଏ । ସେ ପୁଣି ରାଜ୍ୟେ ରାଜା ହୋଏ
ପିତାର କ୍ରିୟାକର୍ମ ସାରି । ରାଜତ୍ୱ ପଣେ ରାଜ୍ୟ କରି ॥
ସେ କିଛି ଦିନର ଅନ୍ତରେ । ରାଜନ ଶୁଣିଲେ ସଭାରେ ॥
ଉତ୍ତଙ୍କ ଋଷି ଯେ କହିଲେ । ତକ୍ଷକ ରାଜାଙ୍କୁ ଦଂଶିଲେ ॥
ବ୍ରାହ୍ମଣ ଶାପ୍ୟେ ସେ ତକ୍ଷକ । ରାଜାଙ୍କୁ କଲା ଭସ୍ମାତକ ॥
ଧନ୍ୱନ୍ତ୍ରୀ ଜୀଆଇବା ପାଇଁ । ଆସୁ ଯେ ଥିଲେ ବିପ୍ରେ ହୋଇ
ତକ୍ଷଣ ତାକୁ ଧନ ଦେଲା । ବାହୁଡ଼ି ଧନ୍ୱନ୍ତରୀ ଗଲା ॥
ଏମନ୍ତେ ବାରତା ପ୍ରମାଣ । କହିଲେ ପାତ୍ର ମନ୍ତ୍ରୀଗଣ ॥
ଶୁଣିଛୁ ଏମନ୍ତ ପ୍ରକାର । ନଜାଣୁ ଧନ୍ୱନ୍ତ୍ରୀ ଯିବାର ॥
ଏମନ୍ତେ ରାଜଲୋକେ ରାଇ । ପଚାରି ସେ ସନ୍ଦେଶ ପାଇ ॥
ବୃକ୍ଷେ ଯେ କାଷ୍ଠ ଭାଙ୍ଗୁଥିଲା । ବୃକ୍ଷ ସଙ୍ଗତେ ଭସ୍ମଗଲା ॥
ଧନ୍ୱନ୍ତ୍ରୀ ମନ୍ତ୍ରବଳେ ବୃକ୍ଷ । ଯେମନ୍ତ ହୋଇଲା ପ୍ରତ୍ୟକ୍ଷ ॥
ତକ୍ଷକ ତାକୁ ଧନ ଦେଲା । ଯେମନ୍ତ ବଚନ କହିଲା ॥
ଏ ସର୍ବ ବୃତାନ୍ତ ସଂକ୍ଷେପେ । କହିଲେ ରାଜାର ସମୀପେ ॥
ଶୁଣି ଜନ୍ମଜଏ ରାଜନ । ତକ୍ଷକେ କଲା କ୍ରୋଧମନ ॥
ରାଜା ପୁଛଇ ମୁନିବର । ତକ୍ଷକ କି ତୁମ୍ଭ ବଇର ॥

ଉତଙ୍କ ଋଷି ହେତ ହୋଇ । ତକ୍ଷକ ମର୍ମ କଥା କହି ॥
ଉତଙ୍କ ଋଷିଙ୍କି କହିଲେ । ତକ୍ଷକ ତୁମ୍ଭଙ୍କୁ କି କଲେ ॥
ତୁମ୍ଭେ ତାଙ୍କୁ ବଇରୀ ଭାବେ । କହିଲ କିସ ଅର୍ଥ ଭାବେ ॥
ତା ଶୁଣି ଉତଙ୍କ କହନ୍ତି । କୁଣ୍ଡଳୀ ହରଣର ଗତି ॥
ଯେମନ୍ତ ସର୍ପଯଜ୍ଞ କଲେ । ଅନେକ ସର୍ପ ଦଗଧିଲେ ॥
ଯାଗ ଅନଳେ ସର୍ପ ନାଶ । ତକ୍ଷକ ରହେ ଅବଶେଷ ॥
ସର୍ପକୁଳର ଦଗ୍ଧ ଦେଖି । ନାଗ ଲୋକ ତକ୍ଷ ଉପେକ୍ଷି ॥
ଦେବଲୋକ ଇନ୍ଦ୍ର ଶରଣ । ପଶିଲା ଭୟେ ନାରାୟଣ ॥
ତକ୍ଷକ ଯଜ୍ଞକୁ ନଇଲା । ଯେମନ୍ତେ ଆଚାର୍ଯ୍ୟ କହିଲା ॥
ତାହା ଶୁଣି ରାଜା ବୋଲଇ । ସର୍ପ ଅଧମ ନ ଆସଇ ॥
ଯେ କୁଣ୍ଡେ ଭସ୍ମତ ନୋହିଲା । କିମର୍ଥେ ଏମନ୍ତ ହୋଇଲା ॥
ତା ଶୁଣି ବ୍ରାହ୍ମଣେ କହନ୍ତି । ନାଗ ଲୋକରେ ସେ ନାହାଁନ୍ତି
ଇନ୍ଦ୍ରରେ ଶରଣ ପଶିଲେ । ଶରଣ ଇନ୍ଦ୍ର ଯେ ରଖିଲେ ॥
ତେଣୁ ଅଗ୍ନିରେ ନ ପଡଇ । ଶୁଣି ନୃପତି କୋପ ବହି ॥

## ରାଜା ଉବାଚ

ବ୍ରାହ୍ମଣେ ଶୁଣ ମନ ଦେଇ । ଯେ ଅର୍ଥେ ଯାଗ ମୁଁ କରଇ ॥
ତକ୍ଷକ ମୋ ପିତା ବଇରୀ । ତାହାର ଅର୍ଥେ ଯଜ୍ଞ କରି ॥
ଇନ୍ଦ୍ର ଯେବେ ତାକୁ ରଖିଲେ । ମୋ ପିତା ଶତ୍ରୁ ସେ ହୋଇଲେ
ଇନ୍ଦ୍ର ତକ୍ଷକ ଆଦି ଦୁଇ । ମନ୍ତ୍ରବଳେ ଅଗ୍ନିରେ ଦେଇ ॥
ଯେମନ୍ତେ ଶୁଣି ବିପ୍ରଜନେ । ମନ୍ତ୍ରଯୁକ୍ତ କରି ସନ୍ଧାନେ ॥
ଘୃତ ଶ୍ରୁବ କରେ ଘେନିଲେ । ମନ୍ତ୍ରରେ ଆହୁତି ତୋଳିଲେ ॥
ଇନ୍ଦ୍ର ତକ୍ଷକ ବେଗେ ଆସି । କୁଣ୍ଡେଣ ହୁଅନ୍ତି ବିନାଶି ॥
ଯେମନ୍ତ ଘୃତ ଶ୍ରୁବେ ଘେନି । ଜାଣି ତକ୍ଷକ ସସ୍ତ୍ରଯୋନି ॥
ବିମାନ ସମେତେ ଖସିଲେ । ଥିରେ ଭୂମିକି ଦୃଷ୍ଟିଦେଲେ ॥
ନିଶ୍ଚଏ ଅଗ୍ନିରେ ପଡ଼ିବେ । ଯେବେ ଅଗ୍ନିରେ ଘୃତ ଦେବେ
ଶୁଣି ତା ଆସ୍ତିକ ଯେ ମୁନି । ମିଳିଲେ ଯଜ୍ଞ ସ୍ଥାନେ ପୁଣି ॥
ଜରତ୍କାରୁ ଋଷିଙ୍କ ସୁତ । ବୃହସ୍ପତି ସମାନେ ଖ୍ୟାତ ॥
ଆସ୍ତିକ ରାଜାର ଛାମୁରେ । ମିଳିଲେ ତକ୍ଷକ ରକ୍ଷାରେ ॥
ନାଗ ମାନଙ୍କର ଭଗ୍ନୀଜା । ସେ କହେ ଶୁଣ ମହାରାଜା ॥

## ଆସ୍ତିକ ଉବାଚ

ସର୍ପ ଯେ ମୋର ମାତୃକୁଳ । ଯେହାକୁ ବିନାଶ ନ କର ॥
ଯେମନ୍ତେ ବୃହସ୍ପତି ଥିଲେ । ରାଜାଙ୍କୁ ବଚନ କହିଲେ ॥

## ଶ୍ରୀ ବୃହସ୍ପତି ଉବାଚ

ତକ୍ଷକ ଏଥେ ନ ମରିବ । ଅମୃତ ଭକ୍ଷଣେ ଜିଇଁବ ॥
ତେଣୁ ସେ ଅଜ୍ରାମର କାଏ । କୋପ ସଂହାର କର ରାଏ ॥

ତୁ ବୋଲୁ ପିତାକୁ ମାଇଲା । ଯେହାକୁ ମାଇଲେ ସେ ଭଲା ॥
କେହି କାହାକୁ ନ ମାରଇ । କାହାରେ କେହି ନ ଜୀଆଇଁ ॥
ଜୀବ ମରଣ କର୍ମ ଏହି । ଯେ ଯାହା ଅର୍ଜନ ଭୁଞ୍ଜଇ ॥
କେହି କାହାର ସୁଖଦାତା । ଯେମନ୍ତ ନ ଦେଖେ ବିଧାତା ॥
ସର୍ପାଗ୍ନି ଚୌଭଜନ କ୍ଷୁଧା । ବ୍ୟାଧି ତୃଷାରେ ଯେତେ ବାଧା॥
ପ୍ରାଣୀ ଏମାନ ଭୋଗ କରେ । ଆପଣା ଅର୍ଜିତ କର୍ମରେ ॥
ଜନ୍ମ ମରଣ ଏହି ଭାବେ । ଈଶ୍ୱର ସଂଯୋଗେ ବିଯୋଗେ॥
ତୋ ପିତା ରାଜା ପରୀକ୍ଷିତ । ସେ ବ୍ରହ୍ମଶାପରେ ଦୂଷିତ ॥
ଅଦୋଷେ ଋଷି ଗଳେ ନେଇ । ମୃତ ସର୍ପକୁ ଗୁଡ଼ିଆଇ ॥
ସେ ଦୋଷେ ଋଷି ଶାପ୍ୟ ଦେଲେ । ତକ୍ଷକ ବିଷେ ନାଶ ଗଲେ ॥
ସେ ଶୁକ ଦେବଠାରେ ପୁଣି । ପୁରାଣ ଭାଗବତ ଶୁଣି ॥
ଶରୀର ଯୋଗାଗ୍ନିରେ ଦହି । ପ୍ରାଣକୁ ଲୟରେ ମିଶାଇ ॥
ତକ୍ଷକ ଭକ୍ଷେ ଯେତେବେଳେ । ଦେହେ ଜୀବ ନାହିଁ ସେ କାଳେ
ତକ୍ଷକ କିଛି ଦୋଷ ନାହିଁ । ସର୍ପ ହତ୍ୟା କରୁ କିମ୍ପାଇ ॥
ସର୍ପ ଯଜ୍ଞ ନିବର୍ତ୍ତ କର । ନିର୍ଦୋଷୀ ସର୍ପେ କିମ୍ପାମାର ॥

## ଶ୍ରୀ ସୂତ ଉବାଚ

କଶ୍ୟପ ଋଷିଙ୍କ ବନିତା । କଦ୍ରୁ ଯେ ନାଗଙ୍କର ମାତା ॥
ଅଦିତି ସଙ୍ଗେ କଥା ଛଳେ । ଯେ ପୁତ୍ର ତା ବୋଲ ନ କଲେ ॥
କହିଲେ ଦୁହେଁ ଆମ୍ଭ ମାତ । କେହ୍ନେ ଝିଙ୍ଗାସିବୁ ତାହାନ୍ତ ॥
ଯେ ଘେନି କଦ୍ରୁ ଶାପ୍ୟ ଦେଲେ ।ଯେଣୁ ଏ ନାଗେ ଦଗ୍ଧ ହେଲେ॥
ଯେମନ୍ତେ ବୃହସ୍ପତି ବାଣୀ । ଶୁଣି ସନ୍ତୋଷ ନୃପମଣି ॥
ସର୍ପ ଯଜ୍ଞ ନିବର୍ତ୍ତ କଲେ । ଗୁରୁଙ୍କୁ ପୂଜାରେ ତୋଷିଲେ ॥
ଆସ୍ତିକ ଋଷିଙ୍କୁ ସେ ଆଣି । ନାଗଙ୍କୁ ସମର୍ପିଲେ ପୁଣି ॥
ଆସ୍ତିକ ବୋଲେ ମୋତେ ଚିତ୍ତେ । ମୋ ନାମ ଧରିବ ଯେ ନିତ୍ୟେ ॥
ତାହାକୁ ସର୍ପ ବାଧା ନାହିଁ । ଯେମନ୍ତେ କହେ ତୋଷ ହୋଇ
ଇନ୍ଦ୍ରଙ୍କୁ ରଖି ଗୁରୁ ଗଲେ । ଆସ୍ତିକ ଋଷି ତୋଷ ହେଲେ ॥
ସର୍ପନାଶ ଦୋଷ ନିମିତ୍ତ । ଶୁଣିଲେ ଶ୍ରୀ ମହାଭାରତ ॥
ଯେ ଯେ ବିଷ୍ଣୁମାୟା ଜଗତ । ତମ ମାୟାରେ ବିମୋହିତ ॥
ପ୍ରାଣୀଙ୍କ ଉତ୍ପତ୍ତି ପ୍ରଳୟ । ଯେ ମାୟା ଭିଆଣ ଆଶ୍ରୟ ॥
ସେ ବିଷ୍ଣୁ ସର୍ବ ଆତ୍ମାମୟୀ । ଦମ୍ଭ କପଟ ମାୟା ନାହିଁ ॥
ତ୍ରିଗୁଣ ବାସ ନାହିଁ ନାହିଁ । ମନ ବଚନେ ଭେଦ ନୋହି ॥
ଅହଂକାର ବୁଦ୍ଧି ବିଚାରେ । ଯା ନାମ ନ ଯାଇ ଗୋଚରେ
ଶବ୍ଦ ସ୍ପରଶ ରସ ଗନ୍ଧ । ରୂପ ଏ ପଞ୍ଚ ନାହିଁ ଭେଦ ॥
ନିର୍ମଳେ ବିଷ୍ଣୁଙ୍କୁ ସେବିଲେ । ପ୍ରାଣୀ କୃତାର୍ଥ ହୋଏ ଭଲେ ॥
ଯେ ମାୟା ବନ୍ଧନୁ ତରଇ । ପରମ ପଦକୁ ଲଭଇ ॥

ବଇକୁଣ୍ଠ ପରମ ଧାମ । ଯାହାର ପରେ ନାହିଁ ସ୍ଥାନ ॥
ଯେ ଜନ ସଂସାରୁ ତରିବେ । ଜନ୍ମ ମୃତ୍ୟୁରୁ ନିସ୍ତରିବେ ॥
ସଂସାର ବନ୍ଧନ ଛାଡ଼ନ୍ତି । ନିରତେ ବିଷ୍ଣୁଙ୍କୁ ଚିନ୍ତନ୍ତି ॥
ଦୁରାତ୍ମାପଣ ଦୂର କରି । ଜଗତ ମଣେ ନରହରି ॥
ଆତ୍ମାରେ ସମବୁଦ୍ଧି କରେ । ଯେକାଗ୍ର ଭାବେ ନାମ ଧରେ
ସେ ବିଷ୍ଣୁ ଦେହେ ଲୀନ ହୋନ୍ତି । ପରମ ପଦକୁ ଲଭନ୍ତି ॥
ଯେ ପ୍ରାଣୀ ବିଚାରେ ଏମନ୍ତ । ଯେ ସର୍ବ ମୋହର ଜଗତ ॥
ଅର୍ଜିଲା ନାନା କଷ୍ଟ ପାଇ । ସୁଚ୍ଛନ୍ଦେ ବିଳସିବି ମୁହିଁ ॥
ସେମାନେ ଦୁର୍ଜନ ବୋଲାନ୍ତି । ଆପଣା ଆତ୍ମା ନ ଚିହ୍ନନ୍ତି ॥
ମାୟା ଯୋନିରେ ଭ୍ରମୁଥାନ୍ତି । ଈଶ୍ୱର ଭାବ ନ ଜାଣନ୍ତି ॥
ଯେ ଦେହ ଘର ଧନ ସୁତ । ଦାରା ବୃତ୍ତି ନାନାଦି ମତ ॥
ଏହାକୁ ବିରକ୍ତ ହୁଅନ୍ତି । ଅପବାଦରେ ଶାନ୍ତି ହୋନ୍ତି ॥
ଅମାନ୍ୟ କାହିଁ ନ କରନ୍ତି । ଦେହକୁ ମିଥ୍ୟା ସେ ମଣନ୍ତି ॥
କାହାର ସଙ୍ଗତେ ବଇର । ନୁହଁନ୍ତି ସାଧୁଗୁଣ ଯାର ॥
ଭଗବାନ ଯେ ବାସୁଦେବ । ସେ ପାଦ ହୃଦରେ ଧରିବ ॥
ଅଗାଧ ଜ୍ଞାନ ଯେ ଈଶ୍ୱର । ସୂକ୍ଷ୍ମ ସ୍ୱରୂପି ନିର୍ବିକାର ॥
ତାହାକୁ କରି ନମସ୍କାର । ନିରତେ ଥିବ ଯେ ମନର ॥
ତାଙ୍କ ଚରଣାବିନ୍ଦେ ଧ୍ୟାନେ । ପୁରାଣ ସଂହିତା ବଚନେ ॥
ନିତି ଶୁଣିଲେ ମୁକ୍ତି ହୋଇ । ଏଥିରେ ସଂଶୟ ନ ଥାଇ ॥
ସେ ବ୍ୟାସ ମୁନି ଶୁକଦେବ । ବିଷ୍ଣୁ ସ୍ୱରୂପି ତାଙ୍କ ଭାବ ॥
ତାହାକୁ ମୋର ନମସ୍କାର । ମହିମା ନ ଜାଣେ ଶଙ୍କର ॥
କହଇ ଜଗନ୍ନାଥ ଦାସ । ସୁଜନେ ହରି ପଦେ ରସ ॥
ତୁମ୍ଭ ଚରଣ ଆଶ କରି । ମୁଁ ଥାଇ ଚିତ୍ତେ ଅନୁସରି ॥
ତୁମ୍ଭେ ଯେ ମହତ ପୁରୁଷ । ମୋହର କ୍ଷମା କର ଦୋଷ ॥

### ଶୌନକ ଉବାଚ

ଶୌନକ ପଚାରେ ହରଷେ । ସୂତ ପୌରାଣିକର ପାଶେ
ଭୋ ମୁନି ହୋଇବା ପ୍ରସନ୍ନ । କହିବା ବେଦ ଉତପନ୍ନ ॥
ଶବଦ ବ୍ରହ୍ମ ବେଦ ବୋଲ । ବିଷ୍ଣୁ କର୍ମ ଯଶ କହିଲ ॥
ବିଷ୍ଣୁ ମୁଖରୁ ପ୍ରକାଶିଲେ । ପ୍ରଚଣ୍ଡ ଶବଦ ଶୁଭିଲେ ॥
ଯେହାଙ୍କ ଚାରିନାମ ହୋଇ । ଚତୁର ମୁଖେ ପ୍ରକାଶଇ ॥
ଋକ ବେଦ ପୂର୍ବ ମୁଖରୁ । ଯଜୁ ବେଦ ଦକ୍ଷିଣ ମୁଖୁଁ ॥
ପଶ୍ଚିମ ମୁଖୁଁ ସାମ ହୋଏ । ଉତ୍ତରୁ ଅଥର୍ବ ଜନ୍ମଏ ॥
ରଜ ଗୁଣରୁ ଋକ ବେଦ । ତମ ଗୁଣରୁ ଯଜୁର୍ବେଦ ॥
ସତ୍ତ୍ୱଗୁଣରୁ ସାମବେଦ । ନିର୍ଗୁଣ ଯେ ଅଥର୍ବ ବେଦ ॥
ଚାରିବେଦ ଉତ୍ପନ୍ନ କରି । ବ୍ରହ୍ମା ଅନୁଭବେ ବିଚାରି ॥
ଜାଣିଲେ ପୂର୍ବେ ସୃଷ୍ଟି ଥିଲା । ବିଷ୍ଣୁର ଅବତାର ଲୀଳା ॥
ଯେମନ୍ତେ ସୃଷ୍ଟି ଅନୁଭବ । ସ୍ଥାବର ଜଙ୍ଗମାଦି ଜୀବ ॥
ଚାରିବେଦ ଆଚାର୍ଯ୍ୟେ ଦେଲେ । ପ୍ରଜାପତି ମାରୁତି ଥିଲେ ॥
ତେଣୁ ବେଦ ବିସ୍ତାର ହୋଇ । ସତ୍ୟ ତ୍ରେତା ଦ୍ୱାପର ରହି ॥
ଦ୍ୱାପର ଅନ୍ତେ ଅନ୍ତର୍ଦ୍ଧାନ । ରହେ ସ୍ୱର୍ଗାଦି ଉର୍ଦ୍ଧ୍ୱେ ପୁଣ ॥
ଯେମନ୍ତ ଜାଣି ନାରାୟଣ । ବିଷ୍ଣୁ ଅଂଶେ ଜନ୍ମ ହୋଇଣ ॥
ଧର୍ମମାନ ସ୍ଥାପିବାର୍ଥେଣ । ସମ୍ଭବିଲେ ଯୁଗେ ଯୁଗେଣ ॥
ପରାସର ଋଷିଙ୍କ ସୁତ । ସତ୍ୟବତୀ ଗର୍ଭ ସମ୍ଭୂତ ॥
ବିଷ୍ଣୁ ଯେ ବେଦବ୍ୟାସ ରୂପେ । ଜନ୍ମ ସେ କଲେ କଳ୍ପେ କଳ୍ପେ
ବୈବସ୍ୱତ ନାମେ ବିଦିତେ । ଅଷ୍ଟବିଂଶ ଗଣ୍ଡା ଯୁଗାନ୍ତେ ॥
ଚାରିବେଦ ବିସ୍ତାର କଲେ । ବେଦବ୍ୟାସ ନାମ ବହିଲେ ॥
ସେ ପୁଣି ଏ ବେଦ ମାନଙ୍କୁ । ଶାଖା ଭେଦେ ଦେଲେ ଶିଷ୍ୟଙ୍କୁ ॥
ପ୍ରଥମେ ଋକ ବେଦ ଦୃଢ଼େ । ମଉନ ନାମେ ଋଷି ପଢ଼େ ॥
ବୈସମ୍ପାୟନ ଯଜୁର୍ବେଦ । ଜୟ ମୁନି ଯେ ସାମ ବେଦ ॥
ଅଥର୍ବ ଦେଲେ ଅଞ୍ଜନ ସେ । ଯେହ୍ନେ ବେଦ ପଢ଼ାଇ ଶିଷ୍ୟେ
ସେମାନେ ଶିଷ୍ୟ ପୁଣି କଲେ । ଶାଖା କରିଣ ବାଣ୍ଟି ଦେଲେ ॥
ଯେ ବେଦ ଯେତେ ଶାଖା ହୋଇ । ଯେ ଶିଷ୍ୟେ ଯେ ଶାଖା ବୋଲାଇ
ଯେ ବେଦ ପ୍ରଥମେ କେମନ୍ତେ । ବିଷ୍ଣୁର ଠାରୁ ଉତପତ୍ୟେ ॥
ଯେମନ୍ତ ବ୍ରହ୍ମା ଉପଦେଶ । କହ ବିସ୍ତାରି ଅବଶେଷ ॥
ଶୁଣି ଶୌନକ ମୁଖୁଁ ବାଣୀ । ସୂତ କହନ୍ତି ତୋଷେ ପୁଣି ॥

### ଶ୍ରୀ ସୂତ ଉବାଚ

ପ୍ରଥମେ ବିଷ୍ଣୁ ଯେତେବେଳେ । ଶୟନେ ଯୋଗନିଦ୍ରା ଜଳେ ॥
ନିରାକାର ବ୍ରହ୍ମେ ଲଗାଇ । ଇଏ ସମାଦି ଯୁକ୍ତ ହୋଇ ॥
ତାଙ୍କ ହୃଦୟରୁ ପ୍ରଥମେ । ଆକାଶ ଶୂନ୍ୟ ରୂପୀ ନାମେ ॥
କାଦ ଯେ ଜନମ ହୋଇଲା । ପ୍ରଭାରୁ ବିନ୍ଦୁ ତା ଜନ୍ମିଲା ॥
ସେ ବିନ୍ଦୁ ନିରାକାର ବ୍ରହ୍ମ । ପରମ ବ୍ରହ୍ମ ପରଧାମ ॥
ତାହାକୁ କଲେ ଉପାସନା । ଆତ୍ମା ନିର୍ମଳ ମହାତମା ॥
ସଂସାର ଜନ୍ମ ମରଣାଦି । ତତ୍ତେ ନିର୍ବାଣ ମୁକ୍ତିଭେଦି ॥
ବିନ୍ଦୁ ତ୍ରିଗୁଣାତ୍ମକ ହୋଇ । ବ୍ରହ୍ମା ବିଷ୍ଣୁ ରୁଦ୍ର ବୋଲାଇ ॥
ତ୍ରିଗୁଣ ଏକାକ୍ଷର ବ୍ରହ୍ମ । ଅବ୍ୟକ୍ତ ନିରଞ୍ଜନ ନାମ ॥
ସେ ଏକାକ୍ଷର ବ୍ରହ୍ମ ପର । ବିନ୍ଦୁ ମଧ୍ୟେ ଅର୍ଦ୍ଧ ମାତ୍ରାର ॥
ଯୋଗମାୟା ସ୍ୱରୂପୀ ସେହି । ସେ ମାୟା ତ୍ରିଗୁଣ ସର୍ଜ୍ଜଇ ॥
ପଞ୍ଚମାତ୍ରା ଯେ ଏକାକ୍ଷର । 'ଅ'କାର 'ଉ'କାର 'ମ'କାର ॥
'ସ'କାର 'କ' କାର ଏ ପଞ୍ଚ । ଯେ ପଞ୍ଚ ମାତ୍ରା ଯେକା ସଞ୍ଚ ॥
ଅର୍ଦ୍ଧ ମାତ୍ରା ବିନ୍ଦୁ ସ୍ୱରୂପ । ଯେ ବାସୁଦେବ ରସକୂପ ॥

ଏକାକ୍ଷରେ ନିର୍ଗୁଣ ହୋଇ । ପଞ୍ଚତ୍ମା କେ ପ୍ରଳେ ସଞ୍ଚଇ ॥
ଯେ ଜାଣି ନିଷ୍ଠେ ଭଜନ୍ତି । ବ୍ରହ୍ମରେ ଲୀନ ସେ ହୁଅନ୍ତି ॥
ଯେ ବ୍ରହ୍ମ ଶବଦର ନାଦ । ଯେ ଜନ କରେ ଆତ୍ମାଭେଦ ॥
ଅର୍ଦ୍ଧ ରାତ୍ରେ ଏକାନ୍ତେ ବସି । ଯୋଗ ଧାରଣା ମାର୍ଗେ ପଶି ॥
ଆତ୍ମା ସୁଷୁପ୍ତ ଅବସ୍ଥାରେ । ଲୟ ଶବଦ ନିରୁଦ୍ଧରେ ॥
ତେବେ ସେ ଶବଦ ଶୁଣଇ । ଶୁଣିଲେ ସଂସାରୁ ତରଇ ॥
ଶୂନ୍ୟ ଦୃଷ୍ଟିରେ ମନ ରହି । ସଂସାର ଚେଷ୍ଟା ନ ଦେଖାଇ ॥
ତେବେ ବ୍ରହ୍ମ ଦର୍ଶନ ପାଇ । ଶାନ୍ତି ସମ ଦୃଷ୍ଟି ଭଜଇ ॥
ମନ ବଚନେ ଅଗୋଚର । ସେ ବ୍ରହ୍ମ ଥାଇ ଅତିଦୂର ॥
ଅବ୍ୟକ୍ତ ଆକାଶ ସ୍ୱରୂପୀ । ସେ ଥାଇ ସର୍ବ ଭୂତେ ବ୍ୟାପୀ ॥
ଆକାଶ ହୃଦୟ ମଧ୍ୟରେ । ଜୀବ ସ୍ୱରୂପ ସେ ପ୍ରଚରେ ॥
ସେ ପୁଣ ଭୂରୁ ମଧ୍ୟେ ସ୍ଥାନ । ଶୁଦ୍ଧ ସ୍ଫଟିକ ସ୍ୱରୂପେଣ ॥
ପରମାତ୍ମା ରୂପେ ପ୍ରକାଶ । ଗଗନେ ବିଦ୍ୟୁ ଜ୍ୟୋସ୍ନାତ୍ରାସ ॥
ସେ ପୁଣି ଭୂରୁ ମଧ୍ୟେ ଉର୍ଦ୍ଧ୍ୱେ । ଦ୍ୱାଦଶାଙ୍ଗୁଳ ପରେ ଶୁଦ୍ଧେ ॥
ସହସ୍ରଦଳ କମଳରେ । ନାନା ରସାଦି ଲୀଳାକରେ ॥
ସେ ମଧ୍ୟେ ନିରାକାର ବ୍ରହ୍ମ । ବାଲୁକା ସମାନେ ଯେ ଧାମ ॥
ଜ୍ୟୋତିର୍ମୟ ସୂକ୍ଷ୍ମ ପ୍ରକାଶ । ତୀକ୍ଷ୍ଣ ବାଳ ଅଗ୍ରେ ଦୃଶ ॥
ପରମ ଆତ୍ମା ସେ ବୋଲାନ୍ତି । ସେ ଅଂଶେ ଅବତାର ହୋନ୍ତି ॥
ଜୀବାତ୍ମା ହୃଦ ପଦ୍ମେ ବ୍ୟାପୀ । ଅଙ୍ଗୁଷ୍ଠ ମାତ୍ର ସୂକ୍ଷ୍ମ ରୂପୀ ॥
ଦ୍ୱିଭୁଜ ଶଙ୍ଖ ଚକ୍ରଧାରୀ । ଅଶେଷ ଜୀବରେ ପ୍ରଚରି ॥
ପ୍ରଫୁଲ୍ଲ ପଦ୍ମ ପ୍ରାଏ ମୁଖ । ପୀତାମ୍ବରଧାରୀ ସୁରେଖ ॥
ଅଷ୍ଟଦଳ କମଳ ପରେ । ଅଷ୍ଟଶକ୍ତି ଚଉପାଶରେ ॥
ଶୁଦ୍ଧ ସୁବର୍ଣ୍ଣ ପ୍ରାଏ ଆଭା । ହ୍ରସିତ ଭାବ ମୁଖ ଶୋଭା ॥
ସପ୍ତଶିଖା ମୁକୁଟ ମଣି । ରତ୍ନ ଜଡ଼ିତ ଶୋଭା ଜିଣି ॥
ସେ ଜୀବ ଆତ୍ମା ଯେ ପୁରୁଷ । ସର୍ବ ଜୀବେ ପୂର୍ଣ୍ଣେ ପ୍ରକାଶ ॥
ମାୟାରେ ରଜତମ ଗୁଣେ । ଆବୋରିଛନ୍ତି ଅନୁକ୍ଷଣେ ॥
ସେ ଜୀବ ଆତ୍ମା ଜ୍ୟୋତିରୂପ । ପରମାତ୍ମା ସତ୍ତ୍ୱ ସ୍ୱରୂପ ॥
ସତ୍ତ୍ୱ ଗୁଣରେ ଯୁକ୍ତ ସେହି । ଶୁଦ୍ଧ ସିତ ସ୍ୱରୂପ ବହି ॥
ଯେ ଭୂରୁ ମଧ୍ୟେ ତା ବିଳାସ । ଶିବ କଣ୍ଠ ବୈକୁଣ୍ଠେ ବାସ ॥
ଅର୍ଦ୍ଧମାତ୍ରା ତଳେ ଅଛନ୍ତି । ଏଠାରେ ନିରାକାର ସ୍ଥିତି ॥
ବ୍ରହ୍ମ ପ୍ରକାଶ ହୋଇଛନ୍ତି । ପଞ୍ଚ ସ୍ୱରୂପୀ ବ୍ରହ୍ମଜ୍ୟୋତି ॥
ଯେକାକ୍ଷର ବ୍ରହ୍ମ ପ୍ରଣବ । ଶବଦ ରୂପୀ ସର୍ବଜୀବ ॥
ତାଙ୍କର ତହୁଁ ଉତପନ୍ନ । 'ଅ'କାରାଦି ଚଉଦ ବର୍ଣ୍ଣ ॥
ଯେ ଭାବେ ଏ ଅକ୍ଷର ପଂକ୍ତି । ଚଉଦ ସ୍ୱର ଏ ବୋଲନ୍ତି ॥
'କ' କାରାଦି ଯେ ଚଉତ୍ରିଂଶ । ବ୍ୟଞ୍ଜନ ସ୍ୱର ଯେ ବିଶେଷ ॥
ଏ ସ୍ୱରମାନେ ବିଷ୍ଣୁ ରୂପ । ବ୍ୟଞ୍ଜନ ମାୟାର ପ୍ରତାପ ॥
ଯେ ପଞ୍ଚକ୍ଷରରେ ମାତୃକା । ପ୍ରକୃତି ଦଶ ସର୍ବ ଏକା ॥
ସ୍ୱରମାନେ ଦୀର୍ଘ ହରସ୍ୱ । ପ୍ଳୁତମ ନାମେ ସର୍ବ ଲିସ ॥
ସନ୍ଧି ଅକ୍ଷର ଯେ ବୋଲାଇ । 'ଈ' କାରାଦି 'ମ' କାର ହୋଇ
ପଞ୍ଚାକ୍ଷରେ ପଞ୍ଚ ପଞ୍ଚ । ପାଞ୍ଚ ବର୍ଣ୍ଣରେ ବର୍ଗ ସଞ୍ଚ ॥
ଅନ୍ତସ୍ଥ ଯେଥୁ ଅନନ୍ତରେ । 'ଯ''ର''ଳ''ବ'ଘେନ ମନରେ ॥
ଶ,ଷ,ସ,ହ,ଯେ ଚାରି ପୁଣ । ଉସ୍ମ ବର୍ଣ୍ଣେଣ ବିଦ୍ୟମାନ ॥
ବିନ୍ଦୁ ଅନୁସ୍ୱାର ବୋଲାଇ । ସେ ବିନ୍ଦୁ ଦୁଇ ଯେବେ ହୋଇ
ବିସର୍ଗ ନାମ ସେ ବୋଲାଇ । ବିସର୍ଗ ତିନି ରୂପ ହୋଇ ॥
ଓଷ୍ଠ୍ୟ ଯେ ଭାବେଣ ନିର୍ଣ୍ଣୟେ । ଓଁ ବିଷ୍ଣୁ ତାହାକୁ ସେ କହେ ॥
ଦ୍ୱିବିନ୍ଦୁ ବକ୍ରାକୃତି କହି । ଗଜ କୁମ୍ଭାକୃତି ଯେ ହୋଇ ॥
ଯେମନ୍ତ ହୋଇ ଶବ୍ଦ ବ୍ରହ୍ମ । ପଞ୍ଚାଶ ବର୍ଣ୍ଣ ଭେଦ ନାମ ॥
ଅକ୍ଷର ଆକୃତି ହୋଇଲେ । ଦେହ ବାହ୍ୟରେ ପ୍ରକାଶିଲେ ॥
ତହିଁ ଭିତରେ ବ୍ରହ୍ମ ଛନ୍ତି । ଚବିଶ ଅକ୍ଷର ଗାୟତ୍ରୀ ॥
ଏ ମାୟା ରୂପେ ପ୍ରକାଶିଲେ । ସପ୍ତ ବ୍ୟାହୃତି ଜାତ କଲେ ॥
ଦଶ ପ୍ରଣବ ମଧ୍ୟ ହୋଇ । ଗାୟତ୍ରୀ ଶିର ଶାରଦାଇ ॥
ଷାଠିଏ ଅକ୍ଷର ସଂପୂର୍ଣ୍ଣ । ବ୍ରହ୍ମ ପ୍ରକାଶ ଅକ୍ଷରେଣ ॥
ସେ ବ୍ରହ୍ମ ଗାୟତ୍ରୀ ସାବିତ୍ରୀ । ସରସ୍ୱତୀ କି କାଳରାତ୍ରି ॥
ତ୍ରିକାଳ ସନ୍ଧ୍ୟା ସେ ବୋଲାନ୍ତି । ଋକ ଯଜୁ ଶାମ ଭେଦନ୍ତି ॥
ତ୍ରିଗୁଣ ରୂପରେ ପ୍ରକାଶ । ଯଶ କର୍ମ ଗୁଣେ ବିଶେଷ ॥
ଯେ ଗାୟତ୍ରୀ ବ୍ରହ୍ମ ଅଭ୍ୟାସ । ଯଜ୍ଞମାନ ସିଦ୍ଧ ଉଦ୍ଦେଶ୍ୟ ॥
ଚାରିବେଦକୁ ଜନ୍ମ କଲେ । ଚାରି ବ୍ରାହ୍ମଣେ ଚାରି ଦେଲେ ॥
ହୋମରେ ଆହୁତିର ଅର୍ଥେ । ଋକ୍ ବେଦ ହୋଏ ଯେ ଅର୍ଥେ
ଯଜୁର୍ବେଦୀମାନଙ୍କୁ ପୁଣ । କର୍ମ ପ୍ରଚାରେ ଆଚାର୍ଯ୍ୟେଣ ॥
ସାମବେଦୀ ସାମ ଗାୟନେ । ବିଖ୍ୟାତ କଲେ ବିଦ୍ୟମାନେ ॥
ଅଥର୍ବ ବ୍ରାହ୍ମଣ ବରଣ । ଯେମନ୍ତ କରି ବେଦମାନ ॥
ଭିଆଇ ନାନା ମୟ ଗତି । ମରୀଚି ଆଦି ପ୍ରଜାପତି ॥
ଯେହାଙ୍କୁ ବେଦ ପଢ଼ାଇଲେ । ଯେ ପୁଣ ପୁତ୍ରେ ଶିକ୍ଷ୍ୟେ ଦେଲେ ॥
ଧର୍ମ ଉପଦେଶ ବିଧାନ । ସେ ପୁତ୍ରେ ଦେଲେ ଶ୍ରୁତିମାନ ॥
ଷଟତ୍ରିଂଶ ଶ୍ରୁତି ସ୍ୱଭାବେ । ସଂସାରେ ଧର୍ମ ପ୍ରବର୍ତ୍ତିବେ ॥
ସେମାନେ ପରସ୍ପରେ ପୁଣ । ପୁତ୍ରଙ୍କୁ ଦେଲେ ବେଦମାନ ॥
ଶାଖା ପ୍ରଶାଖା କରିଦେଲେ । ଉପନିଷଦ ପଢ଼ାଇଲେ ॥
ଯେହି ପ୍ରକାରେ ଚାରିବେଦ । ସତ୍ୟାଦି ତିନି ଯୁଗଭେଦ ॥
ବିସ୍ତାର ହୋଇ ତିନି ଲୋକେ । କଳିକୀ ରହିଲା ଅଙ୍କକେ ॥
ଦ୍ୱାପର ଶେଷେ ହୋଏ କଳି । ପ୍ରାଣୀଙ୍କି ଦେଖି ଅଙ୍କ ବଳି ॥

ଅଳ୍ପ ଆୟୁଷ ଅଳ୍ପ ବୁଦ୍ଧି । ଦେଖି ବ୍ରହ୍ମ ଋଷ ସୁବୁଦ୍ଧି ॥
ଏ ବେଦ ଶାଖା ପ୍ରଶାଖାରେ । କଲେ ବାସୁଦେବ ଆଜ୍ଞାରେ ॥
ଯେ ମନ୍ୱନ୍ତର ଗୋଟିକରେ । ବେଦ ଏକସ୍ତରି ବିସ୍ତାରେ ॥
ସେ ଯୁଗେ ଯେଉଁ ଋଷି ଗଣ । ବେଦ ବିସ୍ତାର କଲେ ପୁଣ ॥
ସେହି ବେଦ ବ୍ୟାସ ବୋଲାନ୍ତି । ତା ଦେହେ ବିଷ୍ଣୁ ପ୍ରବେଶନ୍ତି ॥
ଯେ ବୈବସ୍ୱତ ମନ୍ୱନ୍ତରେ । ସପ୍ତବିଂଶ ଗଣ୍ଡା ଯୁଗରେ ॥
ସପ୍ତବିଂଶ ବେଦ ବିସ୍ତାର । ବେଦ ଶାଖାରେ ପରିଚାର ॥
ସପ୍ତବିଂଶ ଋଷି ବୃନ୍ଦରେ । ବିଷ୍ଣୁ ପଶି ବେଦ ବିସ୍ତାରେ ॥
ଅଷ୍ଟବିଂଶ ଗଣ୍ଡା ଯୁଗାନ୍ତେ । ଦ୍ୱାପର ଶେଷ ମଧ ଅନ୍ତେ ॥
ବ୍ରହ୍ମା ମହେଶ ଲୋକପାଳ । ପ୍ରାର୍ଥନା କଲେ ଆଦି ମୂଳ ॥
ସେ ଘେନି ଧର୍ମ ରକ୍ଷା ଅର୍ଥେ । ବେଦ ବ୍ୟାସ ନାମ ବିଦିତେ ॥
ପରାଶରଙ୍କ ବୀର୍ଯ୍ୟେ ଜାତ । ସତ୍ୟବତୀ ଗର୍ଭେ ସମ୍ଭୂତ ॥
ବିଷ୍ଣୁ କଳା ଅଂଶାବତାର । ଅଗାଧ ଗୁଣରେ ବିସ୍ତାର ॥
ଚାରିବେଦ ମିଶ୍ରିତ ହୋଇ । ଯେକା ବେଦେ ସେ ଥିଲା ହୋଇ ॥
ତାହାକୁ ଭିନ୍ନ ଭିନ୍ନ କରି । ଶାଖାରେ ଭେଦ ଭାବ ଧରି ॥
ଋକ ଯଜୁ ସାମ ଅଥର୍ବ । ଯେ ଚାରି ବେଦ ଭିନ୍ନ ଭାବ ॥
ତିନି ବେଦ ତ୍ରିଗୁଣାତ୍ମକ । ତହିଁ ମିଶାଇ କଲେ ଏକ ॥
ଯେମାନେ ଅନ୍ୟୋଅନ୍ୟେ ମିଳି । ସମ୍ବନ୍ଧ ଜାତି ଭାବେ ଚଳି ॥
ଅଥର୍ବ ସଙ୍ଗୀତାରେ ଏ ପୁଣ । ସୂତ୍ରରେ ଗୁନ୍ଥି ମଣିଗଣ ॥
ଯେ ଭାବେ ମନ୍ତ୍ରକୁ ବାହାର । ବେଦ ବୀଜୁଁ ଭକ୍ତି ବିସ୍ତାର ॥
ଚାରିବେଦ ଚାରି ଶିଷ୍ୟେଣ । ପଢ଼ାଇଲେ ବଦାରାୟଣ ॥
ପୌଲକ ନାମେ ଶିଷ୍ୟେ ପୁଣ । ଋକ ବେଦକୁ ଅଭ୍ୟାସେଣ ॥
ବହୃଚ ଦ୍ୱିତ ସେ ବୋଲାଇ । ଋଇଲେ ଏ ବେଦ ପଢ଼ାଇ ॥
ବୈସମ୍ପାୟନକୁ ନିଗମ । ପଢ଼ାଇଲେ ଯଜୁ ଯା ନାମ ॥
ଜୟ ମୁନି ଋଷିଙ୍କି ପୁଣ । ଯେ ବେଦ ବୋଲାଇଲେ ସାମ ॥
ଯେ ବେଦ ଏ ପୁଣ ପଢ଼ିଲେ । ଅଥର୍ବ ସୁମନ୍ତଙ୍କୁ ଦେଲେ ॥
ସେ ଅର୍ଥବାଙ୍ଗୀ ରସ ସୁତ । ପଢ଼ିଲେ ନିର୍ଗୁଣ ବେଦାନ୍ତ ॥
ଇନ୍ଦ୍ର ପ୍ରମତା ଯେ ପ୍ରମାଣ । ଯେ ପଢ଼େ ଦିଭାଗ କରିଣ ॥
ଯେମନ୍ତେ ଚାରିଶିଷ୍ୟ ମୁଖେ । ଶାଖା ପ୍ରଶାଖା ଭେଦ ଶିଖେ ॥
ସଂହିତା ଆପଣା ନାମେଣ । ଯେ ପୁଣ ଦେଲେ ଯେ ଶିଷ୍ୟେଣ ॥
ଇନ୍ଦ୍ର ପ୍ରମତା ଚାରିଭାଗେ । ଚାରି ଶିଷ୍ୟେ ପଢ଼ି ସରାଗେ ॥
ଯାଜ୍ଞ ବଲ୍‌କ୍ୟ ଯେ ଭାର୍ଗବ । ପରାଶର ଅଗ୍ନି ମିତ୍ରକ ॥
ଯେ ଚାରି ଶିଷ୍ୟକୁ ସେ ଦେଲେ । ଭିନ୍ନେଣ ଶାଖାମାନ କଲେ ॥
ବ୍ୟାସକୁ ଆପଣା ସଂହିତା । ପାଞ୍ଚ ଭାଗେ ପାଞ୍ଚ ଶିଷ୍ୟତା ॥
ପାଞ୍ଚଭାଗରେ ମାର୍କଣ୍ଡେୟ । ବାଞ୍ଛା ମୋଦ ଲକ୍ଷେ ମାଳୟ ॥
ଶିଷ୍ୟର ପଞ୍ଚ ସେସାବର୍ଣ୍ଣ । ବିଯକ ଶିଷ୍ୟ ଯାତୁକର୍ଣ୍ଣ ॥
ସେ ପୁଣ ଆପଣା ସତେଜ । କୁରାଳ କପୋତ ପଙ୍କଜ ॥
ପଙ୍କମଳା ବିରା ଯା ଶିଖେ । ଯେ ଆଦି ଶିଷ୍ୟଙ୍କୁ ବିଶେଷେ ॥
ଶିଷ୍ୟକୁ ପୁଣି ପ୍ରତି ଶାଖା । କରିଣ ଆପଣା ସଂହିତା ॥
ବହ୍ନୁ ବୃଭ ସଂହିତା ମାନ । ପଢ଼ାଇ ବାଲଖିଲା ନାମ ॥
ସେ ବାଲଖିଲା ଭାଗ ଆଞ୍ଜୁ । ଧାତା ଏ ଭଗ୍ନ କର୍ଣ୍ଣ ଗୁଚି ॥
ଯେ ଚାରି ଶିଷ୍ୟେ ପଢ଼ାଇଲେ । ଯେମାନ ଗୁଣୀ ଶିଷ୍ୟେ ଦେଲେ ॥
ୟେ ଭାବେ ଋକବେଦ ପୁଣ । ବହୁ ସଂଖ୍ୟାରେ ବିସ୍ତାରିଣ ॥
ସତାଇଶ ଶାଖା ଯୁକ୍ତତ । ଯେ ବ୍ରହ୍ମା ଋଷିରେ ପୂଜିତ ॥
ମାରକଣ୍ଡୟ କବି ଦୁଇ । ବେଦ ମିତ୍ର ସୌରଭ ହୋଇ ॥
ସାତୁକ୍ୟ ଆଦି ପାଞ୍ଚ ଶିଷ୍ୟ । ପାଞ୍ଚ ଶାଖାର ସେ ବିଶେଷ ॥
ସଂହିତା ମାନଙ୍କୁ ବିସ୍ତାର । ଶୁଣିଲେ ପ୍ରାଣୀ ଯେ ନିସ୍ତାର ॥
ବୈସମ୍ପାୟନ ଯେଉଁ ଋଷି । ଯଜୁର୍ବେଦକୁ ସେ ଅଭ୍ୟାସି ॥
ସତାଇଶ ଶିଷ୍ୟ ତାଙ୍କର । କର୍ଣ୍ଣ ମାଧ୍ୟାଦିନ ଆବର ॥
ତ୍ରିୟ ତ୍ରିୟ ଆଦି ଏ ହୋଇ । ସତାଇଶ ଶାଖା ପଢ଼ାଇ ॥
ସେ ବେଦ ପଢ଼ ଶିଷ୍ୟମାନ । ଏକ ଅକ୍ଷର ଅଶୁଦ୍ଧେଣ ॥
ସାଗ୍ର ଋଷି ଶିଷ୍ୟ ଅଦ୍ୟୁଯ । ବୈସମ୍ପାୟନଙ୍କ ଭଗ୍ନୀଜ ॥
ବାଗ୍ର ଶିରେ ହସ୍ତ ପ୍ରହାରେ । ଶିର ତା ଚୂର୍ଣ୍ଣ ହୋଏ ଖରେ ॥
ବ୍ରହ୍ମହତ୍ୟା ବୈସମ୍ପାୟନେ । ଲାଗିଲା ବେଦର ବିଧାନେ ॥
ସେ ଶିଷ୍ୟମାନଙ୍କୁ କହିଲେ । ବ୍ରହ୍ମ ହତ୍ୟା ଲାଗେ ଆମ୍ଭରେ ॥
ପ୍ରାୟଶ୍ଚିତେ ବ୍ରତ ଯେ କରି । ତା' ଶୁଣି ଶିଷ୍ୟେ ବ୍ରତାଚାରୀ ॥
ସେ ଶିଷ୍ୟମାନେ ବ୍ରତ କଲେ । ଚରକା ଧର୍ମ ବୋଲାଇଲେ ॥
ଚରକା ଶିଷ୍ୟ ନାମ ତାର । ଚରକା ଶାଖା ଦ୍ୱିଜଙ୍କର ॥
ତା' ଘେନି ବିଶ୍ୱାମିତ୍ର ପୁତ୍ର । ଦେବପୁତ୍ର ତାଙ୍କର ପୁତ୍ର ॥
ତା ସୁତ ଯାଜ୍ଞବଲ୍‌କ୍ୟ ନାମେ । ବୈସମ୍ପାୟନ ଶିଷ୍ୟ ଯେଣେ ॥
ଗୁରୁଙ୍କୁ ଯାଜ୍ଞବଲ୍‌କ୍ୟ କହେ । ବ୍ରତୀ ହୋଇଣ କେହି ରହେ ॥
ପ୍ରାୟଶ୍ଚିତ କରି ନ ପାରି । ଅଳପ ବଳ ଏହାଙ୍କରି ॥
ଯେ ବ୍ରତ ବଢ଼ାଇ କଠିନ । ବାର ବରଷେ ହୋଏ ପୂର୍ଣ୍ଣ ॥
ଆଜ୍ଞା ହୋଇଲେ ମୁଁ କରିବି । ଗୁରୁ ଶୁଣି କ୍ରୋଧ ସମ୍ଭବି ॥
ମୋ ଶିଷ୍ୟେ ଅମାନ୍ୟ ତୁ କଲୁ । ଆତ୍ମାରେ ଗର୍ବ ତୁ ବହିଲୁ ॥
ଯେବେ ତୁ ମୋ ଠାରୁ ଯେତେ । ବେଦ ପଢ଼ିଲୁ ଅନୁମତେ ॥
ଯେବେ ଏ ବେଦ ତୁହି ଛାଡ଼ । ଆନ ଠାରେଣ ଯାଇ ପଢ଼ ॥
ଶୁଣିଣ ଯାଜ୍ଞବଲ୍‌କ୍ୟ ଡରେ । ପଢ଼ିଲା ବେଦ ବାନ୍ତି କରେ ॥
ସେ ବେଦ କାଣ୍ଡିମାନେ ପୁଣ । ତିତ୍ତିର ଚଢ଼ାଇ ରୂପେଣ ॥
ତାହାକୁ ଯେଉଁ ଋଷିମାନେ । ଗ୍ରହଣ କଲେ ସାବଧାନେ ॥

ତ୍ରଇ ପ୍ରଶାଖା ବୋଲାଇଲେ । ତହୁଁ ସେ ଯାଜ୍ଞବଲ୍କ୍ୟ ଗଲେ ॥
ବେଦ ସେ ପଢ଼ିବା ନିମିତ୍ତ । ସୂର୍ଯ୍ୟଙ୍କୁ ହେଲେ ଉପଗତ ॥
ମେରୁ ପୃଷ୍ଠେ କରି ଆସନ । ସୂର୍ଯ୍ୟଙ୍କୁ କଲେ ଉପାସନ ॥
ଗୁରୁ ବଚନୁ ନିବର୍ତ୍ତିଲି । ବେଦ ପଠନେ ପ୍ରବର୍ତ୍ତିଲି ॥
ହେ ଭଗବନ୍ତ ଦୟାକର । ତୁମ୍ଭଙ୍କୁ ମୋର ନମସ୍କାର ॥
ଜଗତେ ଯେତେ ଛନ୍ତି ପ୍ରାଣୀ । ଆତ୍ମା ସ୍ୱରୂପେ ଅଛୁ ପୁଣି ॥
କାଳ ସ୍ୱରୂପେ ଗ୍ରହ ରୂପୀ । ସ୍ଥାବର ଜଙ୍ଗମାଦି ବ୍ୟାପୀ ॥
ବ୍ରହ୍ମରୁ ତୃଣ ପରିଯନ୍ତେ । ପ୍ରାଣୀମାନଙ୍କ ହୃଦ ଗତେ ॥
ଆତ୍ମା ସ୍ୱରୂପ ପୂରି ଅଛ । ଯେଣୁ ଆକାଶେ ପ୍ରକାଶିଛ ॥
ଅନ୍ତର୍ଗତ ବାହାରେ ପୁଣି । ଏକାଦଶ ଇନ୍ଦ୍ରିୟ ଜିଣି ॥
ଯେ ତୁମ୍ଭ ଅନୁଭବ ହୋଇ । ବାହାରେ କାଳ ରୂପେ ମହୀ ॥
ଲବ ନିମେଷାଦି ବସର । ଯେତେ ରୂପ ଏ ପ୍ରାଣୀଙ୍କର ॥
ଉପତ୍ତି ପ୍ରଳୟ କରୁଛ । ଯେଣୁ ଆକାଶରେ ଉଇଁଛ ॥
ଯେ ତୁମ୍ଭ ମଣ୍ଡଳର ଗତି । ନିର୍ମଳ ବିରାଜଇ ଜ୍ୟୋତି ॥
ପରମ ବ୍ରହ୍ମ ନିରାକାର । ଜ୍ୟୋତି ଭିତରେଣ ବାହାର ॥
ଶଙ୍ଖ ଚକ୍ରଧାରୀ ହୋଇଣ । ନାରାୟଣ ସ୍ୱରୂପେ ପୂର୍ଣ୍ଣ ॥
ବ୍ରାହ୍ମଣେ ତ୍ରିସନ୍ଧ୍ୟାରେ ନିତ୍ୟେ । ଗାୟତ୍ରୀ ପଢ଼ି ବେଦ ମନ୍ତ୍ରେ ॥
ଅଞ୍ଜଳି ଦେଇ ଉପାସନ । ସକଳ ପାପକ୍ଷୟ ମନ ॥
ଯେ ଦିବାରାତ୍ର କରିଶେଷ । ସଂସାର ଲୋକ ତମ ଧ୍ୱଂସ ॥
ଆପଣା କିରଣରୁ ବୃଷ୍ଟି । ଶସ୍ୟ ଉପୁଜି ପ୍ରାଣୀ ତୁଷ୍ଟି ॥
ପ୍ରାଣୀଙ୍କ ଜୀବ ଦାତା ହୋଇ । ପୋଷୁଛ ତୁମ୍ଭେ ଦୟାମୟୀ ॥
ହିମ ଶିଶିର ଯେ ବସନ୍ତ । ଗ୍ରୀଷ୍ମ ବରଷା ସରଦନ୍ତ ॥
ଯେ ଷଡ଼ ଋତୁ ବାରମାସ । ତୁମ୍ଭରେ ହୋଇଛି ପ୍ରକାଶ ॥
ଯେ ତୁମ୍ଭ ଜ୍ୟୋତିର ମଣ୍ଡଳ । ସକଳ ସୁଖଙ୍କର ଆଳ ॥
ବିପ୍ରେ ଯେ ଚାରିବେଦ ମତେ । ଉପସ୍ଥାନ କରି ସନ୍ତତେ ॥
ସେ ଦ୍ୱିଜମାନଙ୍କର ପାପ । ତୁମ୍ଭେ ସେ ହର ସର୍ବ ତାପ ॥
ତୁମ୍ଭ ମଣ୍ଡଳ ଜ୍ୟୋତିଚ୍ଛନ୍ନ । ଅନ୍ଧ ପଟଳ ବିନାଶନ ॥
ସେ ଜ୍ୟୋତି ସ୍ୱରୂପ ଯେ ତୁହି । ଉପାସନା କରୁଛି ମୁହିଁ ॥
ସ୍ଥାବର ଜଙ୍ଗମ ଯେ କୀଟ । ପତଙ୍ଗ ଚାରିଖାନି ଭେଟ ॥
ଇନ୍ଦ୍ରିୟଗଣ ମାନଙ୍କର । ପ୍ରବେଶ ଅନୁଗ୍ରହ କର ॥
ସ୍ୱୟଂ ଅନ୍ତର୍ଯ୍ୟାମୀ ସ୍ୱରୂପ । ଆତ୍ମଜ୍ଞାନ ପ୍ରକାଶି ବ୍ୟାପ ॥
ଯେ ଲୋକ ତୁମ୍ଭରି ମାୟାରେ । ବିକଟ ରାତ୍ର ଅନ୍ଧକାରେ ॥
ପ୍ରାଣୀଙ୍କ ଅଜଗର ରୂପ । ସର୍ପ ଗିଳିଲେ ଯେହ୍ନେ ଧାପ ॥
ଅଚେତ ମୃତ ହୋଇଥାଇ । ନିଦ୍ରାରେ ପ୍ରାଣୀ ଯେହ୍ନେ ଶୋଇ ॥
ମାୟାରେ ଅଚେଷ୍ଟ ଯେ ପ୍ରାଣୀ । ପରମ କୃପା ତୁମ୍ଭେ ପୁଣି ॥
ଅନୁଗ୍ରହ ଉଦୟ କରି । ଉଦ୍ଧତ କିରଣେ ଉଦ୍ଧାରି ॥
ଦିନେ ଦିନେ ଯେ ପ୍ରାଣୀମାନେ । ଶ୍ରେୟ ନିମିତ୍ୟେ ତୋ ଚରଣେ ॥
ତୋ ଅନୁଗ୍ରହୁ ଯଜ୍ଞ କରି । ସ୍ୱର୍ଗାଦି ଅପବର୍ଗ ଧାରୀ ॥
ରାଜା ଯେହ୍ନେ ଦୁଷ୍ଟଙ୍କୁ ନାଶି । ସାଧୁମାନଙ୍କ ସେ ଆଶ୍ୱାସି ॥
ଅସାଧୁ ମାନବ ଦଇତ । ଧର୍ମ ନିନ୍ଦା ଖଳ ଦୁର୍ବୃତ୍ତ ॥
ଯେ ଅଂଶେ ଯାତ ଯେତେ ତନୁ । ନିଶି ବିନାଶେ ଯେହ୍ନେ ଭାନୁ ॥
ତୁମ୍ଭ ମହିମା ଯେ ରଖିଛି । ତୁମ୍ଭେ ତାହାଙ୍କୁ ହୁଅ ସାକ୍ଷୀ ॥
ହେ ଭାଗବନ୍ତ ବାସୁଦେବ । କିଛିତେ ଭକ୍ତି ମୋ ଘେନିବ ॥
ଯେଣୁ ଉଦୟ ଅସ୍ତ ହୋଇ । ସର୍ବ ଜୀବରେ ପୂଜା ପାଇ ॥
ଦିଗପାଳ ଯେଝା ଦିଗରେ । କୃତାଞ୍ଜଳିରେ ପୂଜା କରେ ॥
ଶରଣ ତୁମ୍ଭ ପଦ୍ମପାଦେ । ମୁହିଁ ଯେ ପଶିଲି ଆନନ୍ଦେ ॥
ତୁମ୍ଭ ପଦ୍ମପାଦେ କେମନ୍ତ । ତିନି ଭୁବନରେ ପୂଜିତ ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱରାଦି । ବାସବ ଆଦି ଦେବେ ବନ୍ଦି ॥
ଯେବଂଭୂତ ପଦ୍ମପାଦରେ । ମୋ ନମସ୍କୃତ୍ୟ ନିରନ୍ତରେ ॥
ନବୀନ ଯଜୁର୍ବେଦ ମତେ । ଆଜ୍ଞା ହୋଇବ ଛାୟାକାନ୍ତେ ॥
ଯେ ବେଦ ଗୁରୁଠାରେ ନାହିଁ । ତାହା ମୁଁ ପଢ଼ି ବଇଁ କାହିଁ ॥
ତୁମ୍ଭଙ୍କୁ ଆଶ୍ରେ ମୋର ଯହୁଁ । ଯେ ବେଦ ଆଜ୍ଞା ମତେ ହଉ ॥
ସୂତ ପୌରାଣିକ କହନ୍ତି । ଶୁଣ ଶୌନକ ଆଦି ଯତି ॥
ଯାଜ୍ଞବଲ୍କ୍ୟ ସ୍ତୁତି ଶୁଣି । ସନ୍ତୋଷ ହୋଇ ଦିନମଣି ॥
ଅଶ୍ୱ ଯେ ରୂପକୁ ଧରିଣ । ଉପଦେଶ କର୍ଣ୍ଣ ବାଟେଣ ॥
ନବୀନ ଯଜୁର୍ବେଦ ଭାବେ । ମୁନିକି କହିଲେ ସରାଗେ ॥
ସେ ଯାଜ୍ଞ ବଲ୍କ୍ୟ ଯେଉଁ ମୁନି । ସେ ବେଦ ଉପଦେଶ ଘେନି ॥
ତା ନାମ କର୍ଣ୍ଣଶିଖା ଦେଲେ । ପୁଣି ପନ୍ଦର ଶାଖା କଲେ ॥
ସେ ପଞ୍ଚଦଶ ଶାଖା ଭଣି । ପଢ଼ିଲେ ଶାଖା ଭାବ ଘେନି ॥
କର୍ଣ୍ଣ ମଧ୍ୟେ ରହି ପଢ଼ିଲେ । ତାଙ୍କ ନାମେଣ ଶାଖା କଲେ ॥
ସଂହିତା ପୁଣି ଶିଷ୍ୟେ ଦେଇ । ସେ ଚଉରାଶି ଶାଖା ହୋଇ ॥
ସାମବେଦର ଅଧିକାରୀ । ଜୟ ମୁନିରେ ସେ ବିସ୍ତାରି ॥
ସୁମନ୍ତୁ ସୁତଙ୍କ ଯେ ଦୁଇ । ଜୟ ମୁନିଙ୍କ ପୁତ୍ର ଏହି ॥
ଦୁଇ ସଂହିତା କରିଦେଲେ । ଯେ ପୁଣି ଶିଷ୍ୟେ ପଢ଼ାଇଲେ ॥
ଯେହାଙ୍କ ଶିଷ୍ୟ ଯେ ସୁକର୍ମା । ସହସ୍ର ଶିଷ୍ୟେ ସେ ଉତ୍ତମା ॥
ସହସ୍ରେ ଭାଗ ଯେ ସଂହିତା । ସହସ୍ର ଶାଖାରେ ବିଦିତା ॥
ଯେଥେ ମୁଖ୍ୟ ଶାଖା ଯେ ଥିଲେ । ସେ ରଷିମାନେ ଯେ ହୋଇଲେ ॥
ତାହାଙ୍କ ନାମ ଯେବେ ଶୁଣ । କହିବା ବିଶେଷେ କରିଣ ॥
ହିରଣ୍ୟଗର୍ଭ କୌଶଲେଣ । ପୌଷଗଞ୍ଜି ଦୁଇ ଶିଷ୍ୟେଣ ॥
ସୁକର୍ମାଙ୍କ ଶିଷ୍ୟ ଏ ଦୁଇ । ଯେହାଙ୍କ ପାଞ୍ଚ ଶିଷ୍ୟ ହୋଇ ॥

ଅବ୍ୟୟ ବ୍ରହ୍ମ ଏ ବିକ୍ରମ । ଯେ ଆଦି ପାଞ୍ଚ ଶିଷ୍ୟନାମ ॥
ଉଦସ ସର୍ବସ୍ୱ ବୋଲାନ୍ତି । ଯେ ପାଞ୍ଚ ଶିଷ୍ୟେଣ ବିଖ୍ୟାତି ॥
ବ୍ରହ୍ମ ବୈବର୍ତ୍ତ ଯେ ଆଦ୍ୟନ୍ତ । ଯେ ଦୁଇ ଶିଷ୍ୟଙ୍କ ଶିଷ୍ୟନ୍ତ ॥
ବ୍ରହ୍ମ ବିଉମ ଆଦି ହୋଇ । ପଞ୍ଚ ଶତ ଯେ ସେ ବୋଲାଇ ॥
ଉଦୀତ ସମାଞ୍ଚ ବୋଲାନ୍ତି । କୌଶଲ୍ୟା ଆଦି ଉତ୍ପତି ॥
ଏକାମ୍ବ ଲାଙ୍ଗଳିକୁ ତାପି । କୁଶୀଦ କୁଲ୍ୟା କୁକ୍ଷି ବ୍ୟାପୀ ॥
ଯେ ଆଦି ଯେତେ ଶିଷ୍ୟମାନେ । ପୌଷଗଞ୍ଜଙ୍କ ବିଦ୍ୟମାନେ ॥
ଆପଣା ସଂହିତାକୁ ପୁଣ । ସତାଇଶ ଭାଗ କରିଣ ॥
କୃତ ହିରଣ୍ୟ ନାଭ ଦୁଇ । ଆପଣା ସଂହିତାକୁ ନେଇ ॥
ଚଉବିଂଶ ସଂହିତା କଲେ । ପୁଣି ତା' ପ୍ରତି ଶିଷ୍ୟେ ଦେଲେ ॥
ଆଉ ସଂହିତା ମାନେ ପୁଣ । ଅବ୍ୟକ୍ତ ନାମେଣ ବ୍ୟାଖ୍ୟାନ ॥
ଯେ ସାକ୍ଷୀ ସଂହିତା କୁହନ୍ତି । ପ୍ରାଚ୍ୟ ସାମ ଗା ସେ ବୋଲାନ୍ତି॥
ଯେ ସାମ ବେଦ ମନ୍ତ୍ରମାନେ । ପ୍ରଜ୍ଞାକେ ବୋଲିଟି ଅଧାନେ ॥
ଯେହାଙ୍କର ସଂହିତାମାନ । ପାଞ୍ଚ ପାଞ୍ଚ ଛଛଅ ଗାନ ॥
ନବ ଭେଦ ବ୍ୟଞ୍ଜାନ ବୋଲାନ୍ତି । ଯେକର ବାହେଣ ଚଳନ୍ତି ॥
ଅଙ୍ଗୁଳି ରେଖାରେ ଚଳଣ । ପଦକର୍ମ ଯଥା ଭାବେଣ ॥
ଭୋ ପାଳ ସ୍ୱରେଣ ଗାୟନ । ଯେ ସାମବେଦର ବର୍ଣ୍ଣନ ॥
ବୋଲଇ ଦ୍ୱିଜ ଜଗନ୍ନାଥ । ଭଜ ସୁଜନେ ହରି ପାଦ ॥
ତୁମ୍ଭ ପାଦ ପଦ୍ମ ଆଶ୍ରରେ । ସତ୍ୟେ ମୁଁ ଥାଏ ନିରନ୍ତରେ ॥
ତୁମ୍ଭେ ଯେ ମହତ ପୁରୁଷ । ନ ଧରିବ ମୋହରି ଦୋଷ ॥
ଦ୍ୱାଦଶ ସ୍କନ୍ଧେ ଭାଗବତ । ପୁରାଣମାନଙ୍କର ଅର୍ଥ ॥
କହଇ ଜଗନ୍ନାଥ ଦାସ । ତ୍ରାହି କରିବେ ପୀତବାସ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ*
*ଦେବଶାଖା ପ୍ରଣୟନଂ ନାମ ଷଷ୍ଠୋଽଧ୍ୟାୟଃ ।*

## ସପ୍ତମ ଅଧ୍ୟାୟ
### ଶ୍ରୀ ସୂତ ଉବାଚ

ଯେବେ ଅଥର୍ବ ବେଦ ଶୁଣ । ଯେ ବେଦକର୍ତ୍ତା ଅଥର୍ବଣ ॥
ଅଥର୍ବ ଅଙ୍ଗୀରସ ଋଷ୍ୟ । ସୁମନ୍ତ ତାଙ୍କର ଯେ ଶିଷ୍ୟ ॥
ସେ ପିତାଠାରୁ ଉପଦେଶ । ସଂହିତା ବିଭାଗ ବିଶେଷ ॥
ପଥ ବେଦ ଦର୍ଶନ ଦୁଇ । ସଂହିତା ଶିଷ୍ୟକୁ ପଢ଼ାଇ ॥
ଶ୍ଳୋକାୟନ ଯେ ବ୍ରହ୍ମମୁନି । ମୋକ୍ଷାଦି ଯେ ପିପ୍ପଳାୟନି ॥
ଯେ ଚାରି ଶିଷ୍ୟରୁ ଅନେକ । ପଥ୍ୟକ ଋଷିଙ୍କ ସନେକ ॥
କୁମୁଦ ଯବାଳି ବିଭୟେ । ସନ୍ଧ୍ୟବାୟନ ସାର୍ବର୍ଣ୍ଣୟେ ॥

ଯେମାନେ ସଂହିତା ଗଢ଼ିଲେ । ସଂହିତା ଦି ଦି ଭାଗ କଲେ ॥
କଶ୍ୟପ ଅଙ୍ଗୀରସ ଦୁଇ । ତପରୁ ସୀମାବର୍ଣ୍ଣ ହୋଇ ॥
ଯେ ଗୀତ ବର୍ଣ୍ଣୟେ ପଞ୍ଚମ । ଶିଷ୍ୟ ଗାୟନ ଯେ ଅଷ୍ଟମ ॥
ମନ୍ତ୍ର କଳ୍ପ ଯେ କଳ୍ପ ବ୍ରହ୍ମ । ଯେ ପାଞ୍ଚ କଳ୍ପ ଯେ ଉତ୍ତମ ॥
ଯେମନ୍ତ ହୋଇ ଅଥର୍ବଣ । ସତର ବିଭାଗ ହୋଇଣ ॥
ଯେବେ ସେ ବ୍ୟାସ ଶିଷ୍ୟଗଣ । ମୋ ପିତା ରୋମ ହରଷଣ ॥
ତାଙ୍କର ଷଟ ଦଶ ଶିଷ୍ୟ । କଶ୍ୟପ ମୋ ନାମ ପ୍ରକାଶ ॥
ଆଗେ ଉପଶ୍ରବା ନାମେଣ । ସୂତ ପୌରାଣିକଙ୍କ ସୁତେଣ ॥
ଯେବେ ଯେ ବ୍ୟାସ ଶିଷ୍ୟଗଣ । ମୋ ପିତା ଲୋମହରଷଣ ॥
ତାହାଙ୍କର ତ ଦଶ ଶିଷ୍ୟ । ମୋ ନାମ କାଶ୍ୟପ ବିଶେଷ ॥
ସ୍ମୃତି ଅଧିକାରୀ ହୋଇଲେ । ମୂଳ ସଂହିତାମାନ କଲେ ॥
ସାବର୍ଣ୍ଣ ପର୍ଶୁରାମ ଶିଷ୍ୟ । ଅକୃତ ବ୍ରଣାଦି ଛତିଶ ॥
ଦେବମାନଙ୍କ ଅର୍ଥ ଶୁଣ । ବ୍ୟାସ ଅଷ୍ଟାଦଶ ପୁରାଣ ॥
ତା ମୋ ପିତାଙ୍କୁ ଉପଦେଶେ । ହରଷେ ଦେଲେ ବେଦବ୍ୟାସେ ॥
ମୁହିଁ ମୋ ପିତାଠାରୁ ପୁଣ । ପାଇ ଅଷ୍ଟାଦଶ ପୁରାଣ ।
ପୁରାଣ ଦଶ ଯେ ଲକ୍ଷଣ । ପଞ୍ଚ ଲକ୍ଷଣ ଥୋକେ ପୁଣ ॥
ସର୍ଗ ବିସର୍ଗ ବୃତ୍ତ ପୁଣ । ଲକ୍ଷଣ ନାମ ମାନ ଶୁଣ ॥
ହେତୁ ଯେ ମନ୍ୱନ୍ତର ରକ୍ଷା । ବଂଶାନୁଚରିତ ଯେ ଶିକ୍ଷା ॥
ତା ପାଶେ ଅବତାର କଥା । ଏ ଦଶ ଲକ୍ଷଣରେ ଯୁକ୍ତା ॥
ବଡ଼ ଯେ ପୁରାଣ ଯେଥେଣ । ଦଶ ଲକ୍ଷଣେ ବିଦ୍ୟମାନ ॥
ସାନ ଉପ ପୁରାଣ ମାନେ । ପଞ୍ଚ ଲକ୍ଷଣରେ ବ୍ୟାଖ୍ୟାନେ ॥
ବିଷ୍ଣୁ ନିର୍ଗୁଣ ନିରାକାର । ତ୍ରିଗୁଣ ଯୁକ୍ତେ ସେ ମାୟାର ॥
ତହୁଁ ମହତ ଅହଙ୍କାର । ପଞ୍ଚ ମହାଭୂତେ ଶରୀର ॥
ଶବ୍ଦାଦିକ ମାତ୍ରା ପାଞ୍ଚ । ଏକାଦଶ ଇନ୍ଦ୍ରିୟ ସଞ୍ଚ ॥
ଉପୁରି ମଧ ଏ ହୁଅନ୍ତି । ଏ ସର୍ବେ ସର୍ଗ ସେ ବୋଲାନ୍ତି ॥
ଯେହାଙ୍କ ସଙ୍ଗତରେ ପୁଣ । ପୁରୁଷ ସଂଯୋଗ ଭାବେଣ ॥
ତାହାଙ୍କ ବାସନାର ଅଙ୍ଗ । ସ୍ଥାବର ଜଙ୍ଗମ ପତଙ୍ଗ ॥
କୀଟ ଆଦିରୁ ଉତ୍ପତି । ଏମାନେ ବିସର୍ଗ ଅଟନ୍ତି ॥
ପ୍ରାଣୀମାନଙ୍କ ଯେ ପ୍ରକୃତି । ଜୀବିକା ଆହାର ଯେ ଗତି ॥
ଯେ ସର୍ବ ବୃତ୍ତି ଯେ ବୋଲାଇ । ପୁରାଣ ଲକ୍ଷଣ ଯେ କହି ॥
ଯେମାନ ରକ୍ଷାର ନିମନ୍ତେ । କାମାଦି ପ୍ରକୃତି ପ୍ରବର୍ତ୍ତେ ॥
ସ୍ଥିତି ପ୍ରଳୟର କାରଣ । ବିଷ୍ଣୁର ଯେତେ ଅଂଶଗଣ ॥
ଯେହାଙ୍କୁ ରକ୍ଷା ସେ ବୋଲାନ୍ତି । ଯେଣୁ ବିଷ୍ଣୁ ସବୁ ରଖନ୍ତି ॥
ଯେ ସମୟରେ ମନୁମାନେ । ବ୍ରହ୍ମ ମୁହୂର୍ତ୍ତେ ଉତ୍ପନ୍ନେ ॥
ସେ ବ୍ରହ୍ମମୁହୂର୍ତ୍ତକେ ପୁଣ । ମନ୍ୱନ୍ତର ହୋଏ ପ୍ରମାଣ ॥
ଇନ୍ଦ୍ର ସପତ ଋଷି ଦେବ । ମନୁପୁତ୍ର ଆଦି ଏସର୍ବ ॥

ଯେ ମନ୍ୱନ୍ତର ସେ ବୋଲାଇ । ଆନ ମନୁବଂଶ ବଢ଼ଇ ॥
ସୃଷ୍ଟି କରନ୍ତି ଆତଯାତ । ଏମନ୍ତ ମନୁବଂଶାନୁଚରିତ ॥
ଯେମନ୍ତ ଭାବେ ବାସୁଦେବ । ସଂସାରେ ଉତ୍ପତ୍ତି ସମ୍ଭବ ॥
ମନୁ ଦେବତା ମନୁହୋତ୍ର । ଏ ସର୍ବେ ବ୍ରହ୍ମାର ଯେ ଗୋତ୍ର ॥
ଇନ୍ଦ୍ର ସପ୍ତଋଷି ପଞ୍ଚମ । ଅବତାର ଲୀଳା ସପ୍ତମ ॥
ସଂସାର ଉତ୍ପତ୍ତି ସମ୍ଭବ । ଏମନ୍ତ ଭାଳି ବାସୁଦେବ ॥
ମନ୍ୱନ୍ତରାଧିକାର ବୋଲି । ପୁରାଣ ଲକ୍ଷଣ କହିଲି ॥
ସେ ରାଜାମାନଙ୍କ ବଂଶରେ । ବ୍ରହ୍ମଋଷି ଦେବ ଅସୁରେ ॥
ଗନ୍ଧର୍ବ ଚାରଣ କିନ୍ନରେ । ଯେତେ ଉତ୍ପତ୍ତି ଏ ସଂସାରେ ॥
ତାହାଙ୍କ ବଂଶ ଭୋଗ କହି । ଶୁଣ ଶୌନକ ମନଦେଇ ॥
ନିତ୍ୟ ନୈମିତ୍ତ୍ୟ ପ୍ରାକୃତିକ । ଏ ଚାରି ଲୟ ଆତ୍ୟନ୍ତିକ ॥
ଯେ ଚାରି ସଂସ୍ଥା ବୋଲି ଜାଣ । ସ୍ଥିତି ଉତ୍ପତ୍ତି ସଂହାରଣ ॥
ଅବିଦ୍ୟା ଯୋଗମାୟା ନାମ । କର୍ମେ ତା ଯେତେ ଉତପନ୍ନ ॥
ତାହାକୁ ହେତୁ ବୋଲି କହି । ଯୋଗମାୟା ଗୁଣରେ ମୋହି ॥
ପଞ୍ଚ ମହାଭୂତରେ ଯୁକ୍ତ । ତ୍ରିଗୁଣେ ବ୍ରହ୍ମାଣ୍ଡ ଜଡ଼ିତ ॥
ବ୍ରହ୍ମରୁ ତୃଣ ପର୍ଯ୍ୟନ୍ତେ । ପ୍ରାଣୀ ସମେତେ ହୋଇ ଯେତେ ॥
ଉତ୍ପତ୍ତି ସ୍ଥିତି ବିନାଶନ । ଏ ଭାବେ ଦର୍ଶନା ଦର୍ଶନ ॥
ଜାଗ୍ର ସ୍ୱପ୍ନ ସୁଷୁପ୍ତିମୟ । ବ୍ରହ୍ମାର ମାୟାମୟ କାୟ ॥
ଜୀବ ବ୍ରହ୍ମାଣ୍ଡ ମଧ ହୋଇ । ପ୍ରକୃତି ଭାବେ ସଞ୍ଚରଇ ॥
ବ୍ରହ୍ମରେ ଲୀନ ହୋଏ ପୁଣ । ଆଶ୍ରୟ ବୋଲି ତାକୁ ଜାଣ ॥
ଯେ ପଦ ଅର୍ଥମାନଙ୍କର । ପଞ୍ଚ ମହାଭୂତ ଶରୀର ॥
ପଞ୍ଚତଳ ମାତ୍ରା ସ୍ୱରୂପ । ଜୀବାଦି ପଞ୍ଚବର୍ଣ୍ଣ ଧିପ ॥
ଆକାରାଦି ଯେ ଅବସ୍ଥାରେ । ସଂଯୋଗ ବିଯୋଗ ପ୍ରକାରେ ॥
ଯେ ସର୍ବ ମାୟାର ବାସନା । ସବୁ ବାସୁଦେବ ରଚନା ॥
ଚିତ୍ତ ତ୍ରିଗୁଣରୁ ବାହାର । ଉତ୍ପତ୍ତି ସ୍ଥିତି ପ୍ରଳୟର ॥
ଯେବେ ବିରକ୍ତ ଭାବ ହୋଇ । ଯୋଗ ବଳେ ଆତ୍ମା ମିଶାଇ ॥
ଜୀବ ପରମରେ ମିଶଇ । ତେବେ ଦେହ ବଂଧୁ ତରଇ ॥
ଯେମନ୍ତେ ଦଶ ଲକ୍ଷଣରେ । ଯୁକ୍ତ ପୁରାଣ ମାନଙ୍କରେ ॥
ପୂର୍ବେ ଋଷିମାନେ ବୋଲନ୍ତି । ପୁରାଣ ଅଷ୍ଟାଦଶ ଗ୍ରନ୍ଥି ॥
ଯେଥେ ବଡ଼ସାନ ଅଛନ୍ତି । ଶୁଣ ଅଷ୍ଟାଦଶ ସଂଖ୍ୟାଦି ॥
ପଦ୍ମ ବୈଷ୍ଣବ ଶିବଲିଙ୍ଗ । ଗରୁଡ଼ ନାରଦ ଏଭାବ ॥
ଅଗ୍ନେୟ ସ୍କନ୍ଧ ଭାଗବତ । ଭବିଷ୍ୟ ବ୍ରହ୍ମ ବଇବର୍ତ୍ତ ॥
ମାରକଣ୍ଡେୟ ଯେ ବାମନ । ବରାହ, ମତ୍ସ୍ୟ ଯେ କୂରୁମ ॥
ବ୍ରହ୍ମାଣ୍ଡ ବ୍ରହ୍ମ ଯେ ପୁରାଣ । ବ୍ରହ୍ମାଦି ଯେ ଅଷ୍ଟାଦଶେଣ ॥
ଅଷ୍ଟାଦଶ ପୁରାଣ ସାର । ଶ୍ରୀଭାଗବତ ନାମ ଯାର ॥
ଯେ ଅଷ୍ଟାଦଶ ଯେ ପୁରାଣ । ଚାରିଲକ୍ଷ ଗ୍ରନ୍ଥ ପ୍ରମାଣ ॥
ଅଷ୍ଟାଦଶ ଉପପୁରାଣ । ବ୍ରହ୍ମାଣ୍ଡ ଯେ ବଷ୍ଣୁ ପୁରାଣ ॥
ବିଷ୍ଣୁ ପୁରାଣ ଆଦ୍ୟ ହୋଇ । ବୃହଦ୍ବିଷ୍ଣୁ ନୃସିଂହ ଦୁଇ ॥
ଅଗ୍ନିର ସଙ୍ଗେ ବିଷ୍ଣୁନନ୍ଦୀ । ଇତିହାସ ଅଷ୍ଟଯେ ଛନ୍ଦି ॥
ଲଘୁ ଭାଗବତ ପ୍ରଭାସ । ଏ ଭାଗବତ ଏକାଦଶ ॥
ଯମ ପୁରାଣ ତ୍ରୟୋଦଶ । କହିବା ଯେ ପୁଣି ବିଶେଷ ॥
ସୂର୍ଯ୍ୟ ପୁରାଣ ଅଷ୍ଟାଦଶେ । ପୁରାଣ ନାମ ଏ ସଂଭାଷେ ॥
ବେଦ ପୁରାଣ ଯମକଏଁ । ଗୋମତ ହରି ଯେ ବଂଶଏ ॥
କାଳିକା ନାରଦ ଯେ ପୁଣ । ସମ୍ୟ ପୁଷ୍କର ଯେ ସଂକ୍ଷେଣ ॥
ସେ ଦିଇ ଲକ୍ଷେ ଗ୍ରନ୍ଥ ଜାଣି । ଷଡ ସାହାଶ୍ର ଯେହୁ ପୁଣି ॥
ନ୍ୟାଯେ ମୀମାଂସା ତନ୍ତ ଯେହି । ବୈଶେସିକ ଯେ ଷଟ ହୋଇ ॥
ଉପପୁରାଣ ଅଷ୍ଟାଦଶ । ଦି ଲକ୍ଷ ଗ୍ରନ୍ଥେଣ ପ୍ରକାଶ ॥
ମହାଭାରତ ଲକ୍ଷେ ଗ୍ରନ୍ଥ । ଅଷ୍ଟାଦଶ ପର୍ବେ ଯନ୍ତ୍ରିତ ॥
ପଞ୍ଚବିଂଶ ସସ୍ର ଶ୍ଳୋକେଣ । ସାତକାଣ୍ଡ ଯେ ରାମୟଣ ॥
ଚାରିବେଦ ହିଁ ଲକ୍ଷେ ହୋଇ । ଛତିଶ ଶ୍ରୁତି ଲକ୍ଷେ ହୋଇ ॥
ଷଟ ଶାସ୍ତ୍ର ଯେ ଶତଲକ୍ଷ । ନ୍ୟାୟ ମୀମାଂସା ସସ୍ର ସଂଖ୍ୟ ॥
ପାତଞ୍ଜଳି ତର୍କ ଶାସ୍ତ୍ରେଣ । ଶିକ୍ଷା କଳ୍ପ ନିରୁକ୍ତ ଛନ୍ଦେଣ ॥
ଷଡ ଅଙ୍ଗ ଷଡ ଲକ୍ଷଣ । ଶିକ୍ଷା କଳ୍ପ ଗ୍ରୁକ୍ତି ଛନ୍ଦେଣ ॥
ଜ୍ୟୋତିଷ ବ୍ୟାକରଣ ଆଦି । ଷଡଙ୍ଗ ଏ ଭାବେପ୍ରସିଦ୍ଧି ॥
ଚାରି ଯେ ଉପବେଦ ପୁଣ । ଚାରିଲକ୍ଷରେ ସେ ସଂପୂର୍ଣ୍ଣ ॥
ଆୟୁର୍ବେଦ ଯେ ଧନୁର୍ବେଦ । ଗାନ୍ଧାର ଶିଳ୍ପ ଚାରିଭେଦ ॥
ଆଗମ ତନ୍ତ୍ର ଆଦି ପୁଣ । ଦଶଲକ୍ଷ ଗ୍ରନ୍ଥେ ପ୍ରମାଣ ॥
ଯେମନ୍ତ ହୋଇ ଜଗତରେ । ଶବଦ ବ୍ରହ୍ମ ସୃଷ୍ଟି କରେ ॥
ଅଷ୍ଟାଦଶ ବିଦ୍ୟା ରୂପରେ । ପ୍ରକାଶ କରେ ଜଗତରେ ॥
ଷଡ ଅଙ୍ଗରେ ଷଡ ହୋଇ । ଚାରିବେଦ ମିଶି ନସଇ ॥
ମୀମାଂସା ନ୍ୟାୟ ଯେ ପୁରାଣ । ଧର୍ମଶାସ୍ତ୍ର ମନୁ ବଚନ ॥
ଯେ ଭାବେ ଚତୁର୍ଦ୍ଦଶ ବିଦ୍ୟା । ମିଶିଣ ଚାରି ଉପବେଦା ॥
ଯେମନ୍ତେ ଅଷ୍ଟାଦଶ ହୋଇ । ବ୍ରହ୍ମାଣ୍ଡ ମଧେ ବିହରଇ ॥
ସୂତ କହନ୍ତି ତୋଷମନେ । ଶୁଣ ହେ ବ୍ରହ୍ମ ଋଷିମାନେ ॥
ବେଦ ଯେ ଶାଖ ପ୍ରଣୟନ । ବିସ୍ତାରି ତୁମ୍ଭର ଆଗେଣ ॥
କହିଲୁ ପ୍ରସନ୍ନ କରଣେ । ଶିଷ୍ୟ ପ୍ରଶିଷ୍ୟ ବିଚାରଣେ ॥
ଯେହା ଯେ କର୍ଣ୍ଣରେ ଶୁଣଇ । ବ୍ରହ୍ମତେଜ ତାର ବଢ଼ଇ ॥
ସକଳ କଲ୍ମଷ ନାଶନ୍ତି । ବୈକୁଣ୍ଠ ଭୁବନେ ପଶନ୍ତି ॥
କହଇ ଦାସ ଜଗନ୍ନାଥ । ଦ୍ୱାଦଶ ସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶ ସ୍କନ୍ଧେ ପୁରାଣ ଲକ୍ଷଣାଦି ପ୍ରଳୟ ବର୍ଣ୍ଣନଂ ନାମ ସପ୍ତମୋଽଧ୍ୟାୟଃ ।*

## ଅଷ୍ଟମ ଅଧ୍ୟାୟ
## ଶୌନକ ଉବାଚ

ଶୌନକ ପୁଛେ ତୋଷମନେ । ସୂତ ପୁରାଣି ସନ୍ନିଧାନେ ॥
ହେ ସୂତ ହୁଅ ଚିରଞ୍ଜୀବୀ । ପରମ ସାଧୁଗଣ ସେବି ॥
ପୁରାଣ ବକ୍ତାମାନେ ଶ୍ରେଷ୍ଠ । ଆମ୍ଭେ ମାୟାରେ ପଡ଼ିକଷ୍ଟ ॥
ଆପାଦ ସମୁଦ୍ରରେ ଭ୍ରମି । ଅଷ୍ଟକାରେଣ ପଥଶ୍ରମି ॥
ଯେଥୁ ଆମ୍ଭଙ୍କୁ ଉଦ୍ଧରିବ । ସଂସାର ପାର ଦେଖାଇବ ॥
ଚିରାୟୁ ମାରକଣ୍ଡ ମୁନି । ଜଗତ ଜନ ମୁଖୁଁ ଶୁଣି ॥
କଳ୍ପାନ୍ତେ ପ୍ରଳୟ ଜଳରେ । କେମନ୍ତେ ରକ୍ଷା ସେ ପାଇଲେ
ଜଗତ ଯେଉଁ ବିଷ୍ଣୁଠାରେ । ପ୍ରଳୟ ଉତପତ୍ତି କରେ ॥
ସେ ବିଷ୍ଣୁ ଦର୍ଶନ କେମନ୍ତେ । ପାଇଲେ ମାରକଣ୍ଡ ଅନ୍ତେ ॥
ଜନ୍ମେ ଯେ ମୃକୁଣ୍ଡଙ୍କ ଅଂଶେ । ସେ ଆମ୍ଭ ଭୃଗୁଋଷି ବଂଶେ ॥
ତାଙ୍କ ଜନମ ଦିନୁ ପୁଣ । ପ୍ରଳୟ ନାହିଁ ସଂସାରେଣ ॥
କେଉଁ ପ୍ରଳୟ ଅନୁଭବ । କଲେ ସେ ମୃକୁଣ୍ଡ ସମ୍ଭବ ॥
ସେ ଏକାର୍ଣ୍ଣବ ଜଳେ ଭ୍ରମି । ହେଠ ବୁଡେଣ ହେଲେ ଶ୍ରମି ॥
ପୁରୁଷେ ବଟପତ୍ର ପୁଟେ । ଦେଖିଲେ ଆପଣା ନିକଟେ ॥
ଅଙ୍ଗୁଷ୍ଠି ପ୍ରମାଣେ ପୁରୁଷ । ସେ ବଟ ପୁଟ ପତ୍ରେ ବାସ ॥
ତାହାଙ୍କ ନାମ ଧରି ରାଇ । ଲାଗିଲେ ତାଙ୍କ ପାଶେ ଯାଇ ॥
ବାଳକ ଗର୍ଭର ଭିତରେ । ଋଷି ପଶିଲେ ପ୍ରଳୟରେ ॥
ପ୍ରଳୟ କାଳେ ରକ୍ଷାପାଇ । ଗର୍ଭେ ଅନେକ ଦିନ ଥାଇ ॥
ବାଳକ ରୂପୀ ଯେ ପୁରୁଷ । ତାହାଙ୍କ ନାମ ଗୁଣ କିସ ॥
ଆମ୍ଭର ମନରେ ସଂଶୟ । ସେ କଥା ଆମ୍ଭ ଆଗେ କହ ॥
ଯେ ମହାକୁତୂହଳ କଥା । ଛେଦ ସଂଶୟ ମନ ବ୍ୟଥା ॥
ତୁମ୍ଭେ ପରମ ଯୋଗୀ ଯେଣୁ । କୁଶଳ ପୁରାଣରେ ତେଣୁ ॥
ଯେମନ୍ତେ ଶଉନକ ବାଣୀ । ସୂତ କହନ୍ତି ତାହା ଶୁଣି ॥

## ଶ୍ରୀ ସୂତ ଉବାଚ

ହେ ମହାଋଷି ତୁମ୍ଭେ ଶୁଣ । ପୁଛିଲେ ଯେ ଅବା ପ୍ରସନ୍ନ ॥
ପ୍ରାଣୀଙ୍କି ସୁଧା ଯେଉଁ ବାଣୀ । ଶ୍ରମ ଦୂର କରନ୍ତି ଶୁଣି ॥
ନାରାୟଣ କଥା ଗାୟନ । ଯହିଁରେ ହୁଅଇ ବ୍ୟାଖ୍ୟାନ ॥
କଳିଯୁଗ କଳୁଷ ନାଶେ । ତାହା କହିବା ଶୁଣ ତୋଷେ ॥
ବ୍ରହ୍ମାଙ୍କ ସୁତ ଭୃଗୁ ମୁନି । ଧାତା ବିଧାତା ପୁତ୍ର ବେନି ॥
ବିଧାତା ସୁତ ଯେ ମୃକୁଣ୍ଡ । ଏହାଙ୍କ ସୁତ ମାରକଣ୍ଡ ॥
ଜନ୍ମ ଲଭିଲେ ଏ ସଂସାର । ଆୟୁଷ ବେଦ ବରଷରେ ॥
ବ୍ରାହ୍ମଣ କର୍ମରେ ସଂସ୍କାର । ପିତା ତା କଲେ ତତପର ॥
ଦେବମାନଙ୍କୁ ପଢ଼ାଇଲେ । ବ୍ରହ୍ମଚର୍ଯ୍ୟେ ପିତୃ ତୋଷିଲେ ॥
ପିତୃସେବା ସକାଶୁଁ ପୁଣ । ଆୟୁ ସପ୍ତକଳ୍ପ ବର୍ଦ୍ଧନ ॥
ବ୍ରହ୍ମଚର୍ଯ୍ୟ ବ୍ରତ କଲେ । ଶାନ୍ତି ରୂପେ ହରି ଭଜିଲେ ॥
ଜଟାଧର ପିନ୍ଧି ବଲ୍‌କଳ । ହସ୍ତେ ତ୍ରିଦଣ୍ଡ କମଣ୍ଡଳ ॥
ଯଜ୍ଞ ପବିତ୍ର କନ୍ଧେ ଶୋହେ । କୁଶ ମେଖଳା କଟି ଶୋହେ ॥
କନ୍ଧେ କୃଷ୍ଣାଜିନ ଉତ୍ତରୀ । ରୁଦ୍ରାକ୍ଷ କଣ୍ଠେ ହସ୍ତେ ଧରି ॥
ହସ୍ତେରେ କୁଶ ବିରାଜିତ । ଏମନ୍ତ ବ୍ରହ୍ମଚର୍ଯ୍ୟ ବ୍ରତ ॥
ଅଗ୍ନି ସୂର୍ଯ୍ୟ ଗୋରୁ ବ୍ରାହ୍ମଣ । ଗୁରୁ ବିଷ୍ଣୁପାଦେ ସେବିଣ ॥
ଦୁଇ ସନ୍ଧ୍ୟାରେ ସେବା କଲେ । ସ୍ନାନ ପ୍ରାତଃ ଦୁଇ ସନ୍ଧ୍ୟାରେ ॥
ଭିକ୍ଷାଅନ୍ନ ଗୁରୁଙ୍କ ପାଶେ । ଆଣି ତା ଦିଅନ୍ତି ସନ୍ତୋଷେ ॥
ସେ ଅନ୍ନ ଗୁରୁ ଆଜ୍ଞା ପାଇ । ଭୋଜନ କରେ ତୋଷହୋଇ
ଯେ ପ୍ରକାରେ ବେଦ ଅଭ୍ୟାସୀ । ରହିଲେ ଧୀରେ ତପବାସୀ ॥
ବେଦ ଅଧ୍ୟାନ ଏହି ମତେ । ଦଶକୋଟି ବତ୍ସର ଗତେ ॥
ସେ ବାସୁଦେବ ଆଖିଧନ । ଧ୍ୟାନରୁ ଲୟେ ହେଲେ ମଗ୍ନ ॥
ଯେମନ୍ତେ ମୃତ୍ୟୁକୁ ଜିଣିଲେ । ଯେଣୁ ନାରାୟଣ ଜାଣିଲେ ॥
ବ୍ରହ୍ମା ମହେଶ ଭୃଗୁ ଦକ୍ଷ । ପିତୃ ଭୂତାବିଗଣ ରକ୍ଷ ॥
ବ୍ରହ୍ମା ପୁତ୍ରଦେବ ମନୁଷ୍ୟ । ତପୀ ବ୍ରତଚାରୀ ଯେ ତୋଷ ॥
ଦେଖିଣ ବିସ୍ମୟେ ହୋଇଲେ । ମନରେ ଭୟ ଜାତ କଲେ ॥
ବ୍ରହ୍ମଚର୍ଯ୍ୟ ବ୍ରତ ଧାରଣ । ତପସ୍ୟା ବେଦ ଅଧ୍ୟୟନ ॥
ମନ ପବନ ଯୋଗବଳେ । ଆସନେ ରହିଲେ ନିଷ୍ଠଳେ ॥
ସଂଯମେ ରହି ବିଷ୍ଣୁପାଦେ । ଯୋଗାଭ୍ୟାସରେ ଧ୍ୟାନ ପଦେ ॥
ଆତ୍ମାରେ ଆତ୍ମା ଧ୍ୟାନ କଲେ । ସକଳ କ୍ଳେଶ ଦୂର ହେଲେ ॥
ଯେବଂ ଭୂତ ପ୍ରକାରେ ପୁଣ । ବାସୁଦେବ ଧ୍ୟାନେ ନିପୁଣ ॥
ଯେମନ୍ତେ ଷଟ ମନ୍ୱନ୍ତରେ । ବୈବସ୍ୱତ ମନୁ ସପ୍ତରେ ॥
ତାଙ୍କ ସମୟେ ପୁରନ୍ଦର । ନାମ ଯେ ଅଟେ ଇନ୍ଦ୍ର ତାର ॥
ମାରକଣ୍ଡେୟ ତପ ଦେଖି । ଶଙ୍କା ମନରେ ହୋଯେ ଦୁଃଖୀ
ମନେ ବିଚାରି ପୁରନ୍ଦର । ରାଇ ଗନ୍ଧର୍ବ ପଞ୍ଚଶର ॥
ଅପସରାଗଣଙ୍କୁ ରାଇ । କହେ ତା ମୁଖକୁ ଅନାଇ ॥
ବସନ୍ତ ମଳୟ ପବନ । ଷଡ ଋତୁଙ୍କର ସଙ୍ଗେଣ ॥
ଲୋଭ ମୋହ ମଦ ମତ୍ସରେ । ସଙ୍ଗେ ଘେନି ଚଳ ଶୀଘ୍ରରେ ॥
ମାର୍କଣ୍ଡ ତପ ଭଙ୍ଗ କର । ଆଜ୍ଞା ପ୍ରମାଣେ ଯାଅ ମୋର ॥
ମାର୍କଣ୍ଡ ଆଶ୍ରମେ ପ୍ରବେଶ । ହିମବନ୍ତ ଗିରିର ପାର୍ଶ୍ୱ ॥
ପୁଷ୍ପଭଦ୍ରା ନଦୀର ନାମ । ଚିତ୍ରସିଂହ ନାମେ ଯେ ସ୍ଥାନ ॥
ମାର୍କଣ୍ଡେୟ ଆଶ୍ରମ ତହିଁ । ଯେ ସ୍ଥାନେ କିଛି ଭୟ ନାହିଁ ॥
ସେ ଋଷି ଆଶ୍ରମ ମହିମା । ଅଶେଷ ସୁଖାନୟ ସୀମା ॥
ଦିବ୍ୟ ପୁଷ୍ପଲତା ବୃକ୍ଷରେ । ବେଷ୍ଟିତ ସୁଗନ୍ଧ ପୁଷ୍ପରେ ॥

ପୂର୍ଣ୍ଣ ପକ୍ଷୀଗଣ ସୁଧ୍ୱନି । ସରସୀ ସ୍ୱଚ୍ଛ ଜଳ ଘେନି ॥
ମତ୍ତଭ୍ରମର ପୁଷ୍ପ କୂଳେ । ମଧୁପାନ କରନ୍ତି ଭୋଳେ ॥
ମତ୍ତ କୋକିଳ ଧ୍ୱନି ସ୍ୱରେ । ନୃତ୍ୟେ ମାତି ମତ୍ତ ମୟୂରେ ॥
ଉନ୍ମତ୍ତ ନାନା ପକ୍ଷୀଗଣେ । ସର୍ବ ଆନନ୍ଦ ସେହୁ ବନେ ॥
ଯେମନ୍ତେ ଇନ୍ଦ୍ର ଦୂତ ମାନେ । ମିଳିଲେ ଋଷି ତପସ୍ଥାନେ ॥
ପବନ ମନ୍ଦ ଗନ୍ଧ ଘେନି । ଶୀତଳ ହେମ ଜଳଭୂମି ॥
ପୁଷ୍ପ ବାସରେ ଯୁକ୍ତ ହୋଇ । ବହେ ମଳୟଜ ପୂରାଇ ॥
କାମ ଉଦ୍ଦୀପନ ନିମନ୍ତେ । ଆଗ୍ରହ କଲେ ସକ୍ରଦୂତେ ॥
ପୂର୍ଣ୍ଣ ଚନ୍ଦ୍ରମା ଉଦେ ହୋଇ । ନବ ପଲ୍ଲବ ଶୋଭା ପାଇ ॥
ବସନ୍ତ ଆଦି ଷଡଋତୁ । ଏ ସର୍ବେ ତପ ଭଗ୍ନ ହେତୁ ॥
ଗନ୍ଧର୍ବ ଅପସରା ଗଣ । ଘେନି କନ୍ଦର୍ପ ବିନ୍ଧେ ବାଣ ॥
ଲୋଭ ମୋହ ଅଙ୍ଗେ ଭେଦିଲେ। ରତିର ସହିତେ ଦେଖାଦେଲେ॥
ମାରକଣ୍ଡେୟ ସନ୍ଧ୍ୟା ସାରି । ଅଗ୍ନି ହୋତ୍ର ସେ ସେବାକରି ॥
ଯୋଗଧ୍ୟାନରେ ବସିଛନ୍ତି । ଏମନ୍ତେ କନ୍ଦର୍ପ ଭେଦନ୍ତି ॥
ସେ ମାରକଣ୍ଡ ଯୋଗଧ୍ୟାନେ । ଚିନ୍ତେ ବାସୁଦେବ ଚରଣେ ॥
ଅତି ତେଜ ଜାଜ୍ୱଲ୍ୟ ମାନ । ଅଗ୍ନି ମୂର୍ତ୍ତିରେ ଶୋଭାବନ ॥
ସେ ଋଷି ଆଗେ ଇନ୍ଦ୍ର ଦୂତେ । ଆହ୍ଲାଦି କରେ ଯେଝାମତେ ॥
ଅପସରା ଗନ୍ଧର୍ବ ନୃତ୍ୟ । ମୃଦଙ୍ଗ ବୀଣା ନାନାଯନ୍ତ୍ର ॥
ପୁଷ୍ପଧନୁରେ ପଞ୍ଚଶର । ମଦନ ଭେଦେ ହୃଦୟର ॥
ମଧୁ ମଦରେ ଯେତେ ଲୋକ । ତପ ଭଙ୍ଗେ ଇନ୍ଦ୍ର ସେବକ ॥
ଚୂର୍ଣ୍ଣ କୁନ୍ତଳା ଅପସରା । ସାରେଣୀ ଖେଳାରେ ପ୍ରଚୁରା ॥
କବରୀ ଫିଟିଲା କାହାର । ସାରେଣୀ ଖସିଗଲା ଦୂର ॥
ବାମ ଡାହାଣେ ଚକ୍ଷୁ ଢାଳି । କବରୀ ବାନ୍ଧେ ଭୁଜ ତୋଳି ॥
ପଡ଼ିଲା ବସ୍ତ୍ର ଖସି ତଳେ । ପବନ ଉଡ଼ାଇଣ ନେଲେ ॥
ଯେମନ୍ତ ସମୟ ମଦନ । ପୁଷ୍ପଶର କଲା ସନ୍ଧାନ ॥
ଯେ ସର୍ବେ ବ୍ୟର୍ଥ ହୋଇଗଲେ । ଋଷି ଅଙ୍ଗଦେ ନ ଭେଦିଲେ ॥
ଯେଣୁ ସେ ବିଷ୍ଣୁ ପାଦେ ଧ୍ୟାୟି । ଏକାଗ୍ର ଚିତ୍ତେ ଲୟ ଥୋଇ ॥
ଋଷିଙ୍କ ଅଗ୍ରସରୁ ଭାବେ । ଭ୍ରମ ହୁଅନ୍ତି ସେ ସ୍ୱଭାବେ ॥
ଶୀଘ୍ରେ ଲେଉଟିଲେ ଏମାନେ । ସର୍ପ ଚାଳି ଭୟ ଯେସନେ ॥
ଯେ ଭାବେ ଇନ୍ଦ୍ରଦୂତ ମୋହି । ସେ ଗୁଣେ ମୁନି ଖେଦ ନାହିଁ ॥
ଗୋବିନ୍ଦ ପାଦ ଧ୍ୟାନେ ଥିଲେ । ଲେଶ ମାତ୍ର ତା ନ ଜାଣିଲେ ॥
ଯା ନାମ ହୃଦୟରେ ଭାବି । ଜନ୍ମ ମୃତ୍ୟୁକୁ ସେ ନ ଲଭି ॥
ସଂସାର ଦୁସ୍ତରୁ ତରଇ । ସେ ତାଙ୍କୁ ନିମଗ୍ନେ ଭଜଇ ॥
ତା ପାଦ ହୃଦେ ଧ୍ୟାଇ ଥିଲେ । ଯେଣୁ ଏ ବିଘ୍ନ ନ ବାଧିଲେ ॥
ଯେ ବଡ଼ ବିଚିତ୍ର ନୁହଇ । ଯା ଚିତ୍ତ ବିଷ୍ଣୁ ପାଦେ ଥାଇ ॥

କାମାଦି ଦେବଗଣ ଯେତେ । କହିଲେ ଇନ୍ଦ୍ରଙ୍କ ଅଗ୍ରତେ ॥
ସକ୍ର ତାହା ଶୁଣି ଜାଣିଲା । ବଡ଼ ବିସ୍ମୟ ମନ କଲା ॥
ଯେମନ୍ତ ପ୍ରକାରେଣ ଋଷି । ବାସୁଦେବେ ଚିତ୍ତ ନିବେଶି ॥
ତପ ସାଧନ ସର୍ଜନାରେ । ସମଭାବ ବହି ମନରେ ॥
ଯେମନ୍ତେ ଭକ୍ତି ତାଙ୍କ ଜାଣି । ସେ ବାସୁଦେବ ଚକ୍ରପାଣି ॥
ଅନୁଗ୍ରହ ତାହାଙ୍କୁ କରେ । ନର ନାରାୟଣ ରୂପରେ ॥
ମାର୍କେଣ୍ଡୟରେ ଦରଶନ । ଦେଲେ ଶୁକ୍ଳ କୃଷ୍ଣ ବିବର୍ଣ୍ଣ ॥
ନବୀନ ପଦ୍ମପାଦ ଅକ୍ଷ । ଚତୁର୍ଭୁଜ ହୃଦେ ଶ୍ରୀବତ୍ସ ॥
ବଳ୍କଳ କୃଷ୍ଣାଜିନ ପିନ୍ଧି । ତପଚାରୀ ବେଶେ ଆନନ୍ଦି ॥
ଅଙ୍ଗେ ବିଭୂତି ବିଲେପନ । କନ୍ଧେ ଉତ୍ତରୀ ଶୋଭାବନ ॥
ତ୍ରିଗୁଣ ସୁ ପବିତ୍ର ଅଂଶେ । କରେ କମଣ୍ଡଳ ଶୋଭା ସେ॥
ବେଣୁ ତ୍ରିଦଣ୍ଡ କନ୍ଧେ ବହେ । ପଦ୍ମ ରୁଦ୍ରାକ୍ଷ ମାଳା ଶୋହେ ॥
ଯେ ଭାବେ ତପସ୍ୱୀ ବେଶରେ । ବିଜୁଳି ପ୍ରାଏ ଜଟାଧରେ ॥
ଆଜାନୁଲମ୍ବ ବେନି ଭୁଜ । ଯେମନ୍ତ ରୂପେ ଦେବରାଜ ॥
ଦେବତା ମାନବେ ପୂଜିତ । ମିଳି ମାର୍କଣ୍ଡେୟ ଅଗ୍ରତ ॥
ସେ ନର ନାରାୟଣ ଦେଖି । ମାର୍କଣ୍ଡ ଆସନ ଉପେକ୍ଷି ॥
ସାଷ୍ଟାଙ୍ଗ ପ୍ରଣାମ ଚରଣେ । ଦଣ୍ଡବତ ସ୍ତୁତି ବଚନେ ॥
ତାଙ୍କ ଦର୍ଶନ ଆନନ୍ଦରେ । ରୋମ ଉଦ୍ଗମ ପ୍ରେମ ଭରେ ॥
ଆତ୍ମା ଇନ୍ଦ୍ରିୟ ଗୁଣମାନ । ଚକ୍ଷୁ ଲୋତକେ ହୋଏ ପୂର୍ଣ୍ଣ॥
ତାହାଙ୍କ ଜ୍ୟୋତି ତେଜଦେଖି । ସାମର୍ଥ ନୋହେ ଚକ୍ଷୁରଖି ॥
ମନ ଉଚ୍ଛଳେ କୃତାଞ୍ଜଳି । ଆଲିଙ୍ଗନ ପ୍ରାୟ ପ୍ରସରି ॥
ଉତ୍ତମ ଆସନେ ବସାଇ । ଚରଣ ଧୋଇଣ ପିଅଇ ॥
ନମୋ ନମୋ ବଚନ ସ୍ତୁତି । ଗଦଗଦ ବାଣୀ ଭଣନ୍ତି ॥
ଶିର ପାତ୍ରେ ସେଚନ କରି । ଷଡ ଅଙ୍ଗେ ପୂଜା ଆଚରି ॥
ଚନ୍ଦନ ଧୂପ ଦୀପ ପୁଷ୍ପ । ପୂଜିଲେ ଆନନ୍ଦ ସ୍ୱରୂପ ॥
ସନ୍ତୋଷେ ପ୍ରସନ୍ନ ବଦନ । ହୋଇଲେ ନରନାରାୟଣ ॥
କଲେ ସେ ଦଣ୍ଡବତ ପୁଣି । ବିଷ୍ଣୁର ତୋଷେ ସ୍ତୁତି ପୁଣି ॥
ହେ ପ୍ରଭୁ ତୁମ୍ଭର ମହିମା । ମୁଁ କିସ ବର୍ଣ୍ଣିବି ସେ ସୀମା ॥
ଯାହାର ଅଂଶୁ ପ୍ରାଣୀମାନେ । ପ୍ରବେଶ ସୃଷ୍ଟି ସରଜନେ ॥
ସ୍ୱଦେହେ ପ୍ରବେଶ ହୋଇଣ । ଘେନି ମାନ ଇନ୍ଦ୍ରିୟଗଣ ॥
ସଂସାର ଚେଷ୍ଟା କରୁଛନ୍ତି । ସର୍ବ ଅନୁଭବ କରନ୍ତି ॥
ଥାଇ ତହିଁ ଜୀବ ଉପରେ । ଅନୁଭବେ ତୁମ୍ଭ ଭାବରେ ॥
ଯେ ଦୁଇ ରୂପ ଯେ ତୁମ୍ଭର । ତ୍ରୈଲୋକ୍ୟ ଜ୍ଞାନର ଈଶ୍ୱର ॥
ପ୍ରାଣୀଜନ୍ମ ମୃତ୍ୟୁ ନାଶନେ । ବସିଛ ବଦରିକା ଶ୍ରମେ ॥
ନାନାରୂପେ ପ୍ରାଣୀ ସର୍ଜନ । କରି ସମସ୍ତଙ୍କଠୁ ଭିନ୍ନ ॥

ଉର୍ଣ୍ଣନାଭି ସୂତ୍ର ଯେସନେ । କରି ଗୃହ ବେଭାର ମାନେ ॥
ଯେ ଭାବେ ଜଗତ ପ୍ରସରି । ମାୟାରେ ନିତ୍ୟେ ହେଁ ବିହରି ॥
ସଂସାରେ ଥାଇ ଯଉଁମାନେ । ଭଜନ୍ତି ତୋ ପଦ ନଳିନେ ॥
ଯେକାଗ୍ରେ ତୋ ପାଦ ସେବନ୍ତି । ଜନ୍ମ ମୃତ୍ୟୁରୁ ତରିଯାନ୍ତି ॥
ତୁମ୍ଭ ମାୟାରୁ ପାର ହୋଇ । ଯେ ତୁମ୍ଭ ଚରଣେ ଭଜଇ ॥
ତୋର ଚରଣେ ଆଶ୍ରେ ବିନୁ । ନ ତରେ ଏ ଭବ ବନ୍ଧନୁ ॥
ଅଜ୍ଞାନ ସଂସାରରେ ଛନ୍ତି । ଜାଣି ନ ଭଜିଲେ ତୋ ପ୍ରାପ୍ତି ॥
ତୁମ୍ଭ ଦେଲା ବ୍ରହ୍ମ ସମ୍ପତ୍ତି । ଭୋଗ ସେ କରିଣ ଅଛନ୍ତି ॥
ଦୁଇ ପରାର୍ଦ୍ଧ ଆୟୁ ଦେଇ । ତା ଶିରେ କାଳକୁ ବସାଇ ॥
ସମୟେ ତାକୁ ସଂହାରଇ । ଏମନ୍ତ ବନ୍ଧ ମାୟାମୟୀ ॥
ଯେଥେ ପ୍ରାଣୀ ଜଡ଼ି ଅଛନ୍ତି । ତୋତେ ଅଜ୍ଞାନେ ନ ଭଜନ୍ତି ॥
ତୋ ପାଦେ ଶରଣ ଯେ ପଶେ । ଏ ମାୟା ବନ୍ଧନେ ନ ମିଶେ ॥
ଯେବଂ ଭୂତ ଚରଣେ ମୁହିଁ । ନିରତେ ଆଶା ଅଛି ବିହି ॥
ତୋ ମାୟା ମୋର ମନେ ରହି । ଦେହାଦି ଅଭିମାନ ବହି ॥
ମୋ ଦେହୁ ଜନ୍ମ ସେ କରୁଛି । ଯେ ମାୟା ମନୁ ନ ଛାଡୁଛି ॥
ଚରଣାର ବିନ୍ଦେ ଲଗାଅ । ଯେ ମାୟା ବନ୍ଧ ଫେଡ଼ିଦିଅ ॥
ସତ୍ତ୍ୱରଜ ତମ ତ୍ରିଗୁଣେ । ବ୍ରହ୍ମା ବିଷ୍ଣୁ ମହେଶ ଜନ୍ମେ ॥
ସେ ରୂପ ବହିଛ ସଂସାରେ । ଉତ୍ପତ୍ତି ସ୍ଥିତି ପ୍ରଳୟରେ ॥
ଯେ ମାୟା ଲୀଳାର ବେଭାର । ଯେଣୁ ଶରଣାଗତ ମୋର ॥
ତୁମ୍ଭେ ଯେ ଶୁଦ୍ଧ ଶୁକ୍ଳ ବର୍ଣ୍ଣ । ନିର୍ଗୁଣ ରୂପୀ ନରୋତ୍ତମ ॥
ଯେ ପ୍ରାଣୀ ତୁମ୍ଭଙ୍କୁ ଭଜନ୍ତି । ତ୍ରିଗୁଣ ବନ୍ଧନୁ ତରନ୍ତି ॥
ମୁକ୍ତ ହୋଇ ଚରଣେ ଲୀନ । ସୁଖେ ଲଭେ ବୈକୁଣ୍ଠ ଥାନ ॥
ବ୍ରହ୍ମ ସମ୍ପତ୍ତି ନ ଇଚ୍ଛନ୍ତି । ତୋ ପାଦପଦ୍ମ ମଧୁ ପିଇ ॥
ଭଗବନ୍ତୋ ପୁରୁଷୋତ୍ତମ । ପରମ ଗୁରୁ ବିଶ୍ୱଧାମ ॥
ପରମ ଦେବତା ବିଶେଷ । ହ, କ୍ଷ, ହଂସ, ପରମହଂସ ॥
ହେ ନାରାୟଣ ନିରୂପମ । ନିଗମେ ସ୍ୱର ପୂର୍ଣ୍ଣ ବ୍ରହ୍ମ ॥
ତୁମ୍ଭଙ୍କୁ ମୋର ନମସ୍କର । ହେ ପ୍ରଭୁ ଯୋଗାରୂଢ଼ ବର ॥
ଉପନିଷଦ ବ୍ରହ୍ମଭାଗ । ବେଦ ବଚନେ ହବିର୍ଭାଗ ॥
ଦେବେ ଯା ନାମ ଭଜୁଛନ୍ତି । ଯଶ କର୍ମରେ କରି ସ୍ତୁତି ॥
ସାକ୍ଷାତେ ଜଗତରେ ପୂରି । ଯେ ନାରାୟଣ ଅବତରି ॥
ଯାହାର ଦରଶନ ଭାବେ । ଦେବ ତତ୍ତ୍ୱ ଭାବେଣ ଭାବେ ॥
ଦେଖିବା ଅର୍ଥେଣ ମୋହିଲେ । ଅର୍ଥ ଭାବେ ସୂକ୍ଷ୍ମ ବିଭୋଳେ ॥
କବିମାନେ ପଦ ବିସର୍ଜି । ଅଗମ୍ୟେ ଅଦ୍ଭୁତ ଭଜି ॥
ଅଷ୍ଟାଙ୍ଗ ଯୋଗ ସାଧନାରେ । ଦର୍ଶନ ଅର୍ଥେ ଯତ୍ନ କରେ ॥
ମୋହିତ ହୁଅନ୍ତି ତମରେ । ଦର୍ଶନ ନ ପାନ୍ତି ସୂକ୍ଷ୍ମରେ ॥
ସକଳ ବେଦ ବାକ୍ୟ ଶୀଳ । ତୁମ୍ଭେ ନିର୍ଗୁଣ ମହାବଳ ॥
ସେ ମହା ପରମ ପୁରୁଷ । ସର୍ବ ଆତ୍ମା ରୂପେ ପ୍ରକାଶ ॥
ଦର୍ଶନ ଦେଉଛ ସାକ୍ଷାତେ । ନମସ୍କାର ଯେ ତୁମ୍ଭ ପାଦେ ॥
ଅନେକ ସ୍ତୁତି ବାକ୍ୟଭଣି । ସେ ମାରକଣ୍ଡ ମହାମୁନି ॥
ନମଇଁ ବିପ୍ର ଜଗନ୍ନାଥ । ଉଦ୍ଧର ଶଙ୍ଖ ଚକ୍ର ହସ୍ତ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ*
*ମାର୍କଣ୍ଡେୟ ଚରିତଂ ନାମ ଅଷ୍ଟମୋଽଧ୍ୟାୟଃ ।*

## ନବମ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ ପୁରାଣିକ କହନ୍ତି । ଶୁଣ ଶୌନକ ଆଦି ଯତି ॥
ଯେହି ପ୍ରକାରେ ମାର୍କଣ୍ଡେୟ । ଅନେକ ସ୍ତୁତି ଯେ ବିନୟ ॥
ନରନାରାୟଣ ତାହା ଶୁଣି । ସନ୍ତୋଷ ଅର୍ଥେ କହେ ବାଣୀ ॥

### ନରନାରାୟଣ ଉବାଚ

ହେ ବ୍ରହ୍ମ ଋଷି ତପଶ୍ରେଷ୍ଠ । ସାମାଧି ଯୋଗେ ଜ୍ଞାନୀ ଅଟ ॥
ତେଣୁ ତୁମ୍ଭେ ସିଦ୍ଧ ହୋଇଲ । ନିଷ୍କଳ ଭକ୍ତିରେ ରହିଲ ॥
ତପଜ୍ଞାନ ବଳେ ମୋ ଠାରେ । ବେଦାଧ୍ୟୟନ ସଂଯମରେ ॥
ତୁମ୍ଭ ବ୍ରତାଚାର ତପରୁ । ଆମ୍ଭେ ଯେ ସନ୍ତୋଷ ହୋଇଲୁ ॥
ଯେବେ ଯେ ବର ମାଗ ତୁମ୍ଭେ । ଯାହା ମାଗିବ ଦେବୁ ଆମ୍ଭେ ॥
ହେବାକୁ ମନୋରଥ ପୂର୍ଣ୍ଣ । କୁଶଳେ ବର ମାଗି ଘେନ ॥
ବିଷ୍ଣୁ ଶ୍ରୀମୁଖେ ଏତେ ଭାଷି । ଶୁଣି ସେ ମାର୍କଣ୍ଡେୟ ଋଷି ॥

### ମାର୍କଣ୍ଡେୟ ଉବାଚ

କହେ ହେ ଦେବ ନାରାୟଣ । ସକଳ ଜଗତ କାରଣ ॥
ଶରଣା ପନ୍ନ ତାପ ହର । ବିପତ୍ତି ତାପ ଛେଦ କର ॥
ଯେ ବର ମାଗୁଅଛି ମୁହିଁ । ତୁମ୍ଭ ଦର୍ଶନ ପାଇଲଇଁ ॥
ତୁମ୍ଭ ଶ୍ରୀ ଚରଣକୁ ଧ୍ୟାୟି । ପରମ ଆତ୍ମାକୁ ମିଶାଇ ॥
ଅଷ୍ଟାଙ୍ଗ ଯୋଗ ଧାରଣାରେ । ଦେଖନ୍ତି ଦେହର ଭିତରେ ॥
ସେ ତୁମ୍ଭେ ମୋ ଚକ୍ଷୁ ଗୋଚରେ । ଦର୍ଶନ ଦେଲ ଯେ ଦୃଷ୍ଟିରେ ॥
ପଦ୍ମ ପତ୍ରାକ୍ଷ ପଦ୍ମପାଣି । ହେ ପଦ୍ମଶ୍ଳୋକ ଶିଖାମଣି ॥
ତୁମ୍ଭ ଅନୁଗ୍ରହ ପ୍ରଭାବ । ମହା ମହିମା ଦେଖାଇବ ॥
ଯେ ମାୟା ସକଳ ଲୋକରେ । ଲୋକପାଳାଦି ବଶ କରେ ॥

### ଶ୍ରୀ ସୂତ ଉବାଚ

ସୂତ କହନ୍ତି ମୁନି ଶୁଣ । ଯେମନ୍ତ ଶୁଣି ନାରାୟଣ ॥
ହସି ପ୍ରସନ୍ନେ କହେ ତତ୍ତ୍ୱ । ଯେ ତୋର ବର ହେଉ ଅସ୍ତୁ ॥

ମହା ମହିମା ମୋର ଦେଖ । ଯେ ଅନ୍ତେ ଲଭ ସର୍ବ ସୁଖ ॥
ଯେମନ୍ତ କହି ବଦ୍ରିସ୍ଥାନେ । ବିଜୟେ ନର ନାରାୟେଣେ ॥
ତହୁଁ ମାରକଣ୍ଡ ଆଶ୍ରମେ । ରହିଲେ ବାସୁଦେବ ଧ୍ୟାନେ ॥
ପୃଥିବୀ ପବନ ଆକାଶ । ଜଳଗ୍ନି ପଞ୍ଚଭୂତ ବାସ ॥
ସ୍ଥାବର ଜଙ୍ଗମ ପତଙ୍ଗ । କୀଟାଦି ଚାରିଖାନି ଜୀବ ॥
ସବୁ ବାସୁଦେବ ସ୍ୱରୂପେ । ଲୟେ କରିଣ ଧ୍ୟାନ କଲ୍ପେ ॥
ଭାବଯୁକ୍ତ ହୋଇ ମନରେ । ଭାବ ଦ୍ରବ୍ୟେ ପୂଜେ ବିଷ୍ଣୁରେ ॥
ବାସୁଦେବ ଚରଣେ ଲୟେ । ଧ୍ୟାନେଣ ନିମଗ୍ନ ଯେ ହୁଏ ॥
ଆପଣା ଆଶ୍ରମରେ ଥାଇ । କିଛି ଦିବସ ଶେଷ ହୋଇ ॥
ପୁଷ୍ପଭଦ୍ରା ନଦୀ ତଟରେ । ସ୍ନାନ ସନ୍ଧ୍ୟା ତ୍ରିକାଳ ସାରେ ॥
ଯୋଗ ଧ୍ୟାନରେ ବସିଛନ୍ତି । ବାସୁଦେବଙ୍କୁ ହୃଦେ ଚିନ୍ତି ॥
ଯେମନ୍ତେ ପ୍ରଚଣ୍ଡ ପବନ । ବହିଲା ଘୋର ଶବଦେଣ ॥
ଆକାଶେ ମହାଭୟଙ୍କର । ମେଘ ଉଡ଼ିଲେ ଶୀଘ୍ରତର ॥
ସେ ରଥ ଅଖଣ୍ଡ ପ୍ରମାଣ । ଧାରାବୃଷ୍ଟି କଲେ ଶୂନ୍ୟେଣ ॥
ବିଜୁଳି ଝଟକ ଶବଦ । ବଜ୍ର ନିର୍ଘାତ ଇନ୍ଦ୍ରଯୁଧ ॥
ସେ ଜଳେ ପୃଥ୍ୱୀ ପୂର୍ଣ୍ଣ ହୋଇ । ସମୁଦ୍ର ଆଦି ଉଚ୍ଛୁଳଇ ॥
ସର୍ବେ ଏକାର୍ଣ୍ଣବ ହୋଇଲେ । ତରଙ୍ଗ ଲହରୀ ଉଠିଲେ ॥
ପବନ ବେଗେ ଜଳମାନେ । ତକ୍ଷଣେ ଲାଗିଲେ ଗଗନେ ॥
ମତ୍ସ୍ୟ କଚ୍ଛପ ଯେ କୁମ୍ଭୀର । ମଗର ଆଦି ଜଳଚର ॥
ଯେମାନେ ଭାସିଣ ଗର୍ଜିଲେ । ସର୍ବେ ଜଳରେ ଲୀନ ଗଲେ ॥
ସପ୍ତ ସମୁଦ୍ର ସପ୍ତଦ୍ୱୀପ । ଏକ ଖଣ୍ଡ ହୋଇ ଉଦକ ॥
ବ୍ରହ୍ମାଣ୍ଡ ପାଠ ପୂର୍ଣ୍ଣ ହୋଇ । ନିର୍ଘାତ ଶବଦେ କମ୍ପଇ ॥
ଯେ ଭାବେ ସମସ୍ତ ବୁଡ଼ିଲା । ଯେଣୁ ଏ ବିଷ୍ଣୁମାୟା କଲା ॥
ଜଳ ଏକାର୍ଣ୍ଣବ ହୋଇଣ । ଆକାଶ ପର୍ଯ୍ୟନ୍ତ ଲାଗିଣ ॥
ଜଗତ ଅନ୍ତର୍ଦ୍ଧାନ ହେଲା । ପୃଥ୍ୱୀ ଆକାଶ ଲୀନ ହେଲା ॥
ସ୍ୱର୍ଗ ନକ୍ଷତ୍ର ଗ୍ରହଗଣ । ଜ୍ୟୋତିଷଚକ୍ର ସମେତେଣ ॥
ଜଳରେ ସବୁ ଏକ ହେଲା । ସମସ୍ତ ଜଳରେ ବୁଡ଼ିଲା ॥
ସେ ମୁନି ଯୋଗମାୟା ବଳେ । ଭାସିଲେ ପ୍ରଳୟର ଜଳେ ॥
ଜଟା ମଣ୍ଡଳ ଫିଟି ଭାସେ । ଜଗତ ଏକାର୍ଣ୍ଣବ ଦିଶେ ॥
କ୍ଷୁଧା ତୃଷ୍ଣା ପୀଡ଼ିତ ହୋଇ । ପବନ ତରଙ୍ଗେ ଭାସଇ ॥
ମଗର ତିମି ଗିଳ ମାନେ । ପୀଡ଼ିତ ହୋଇ ଋଷି ଭ୍ରମେ ॥
ଘୋର ଅନ୍ଧକାରେ ନ ଦିଶେ । ବୁଡ଼ି ଜୀବନ ଅଛି କ୍ଳେଶେ ॥
ମହାପବନ ମାନେ ଲାଗି । ସେ ମୁନି ଚିତ୍ତେ ଦୁଃଖ ଭାଗି ॥
ତରଙ୍ଗମାନେ ବୁଡ଼ି ଯାନ୍ତି । ଲହରୀ ମାନଙ୍କେ ଉଠନ୍ତି ॥
କୁମ୍ଭୀର ମଗର ଭାସନ୍ତି । ବଡ଼ ଜନ୍ତୁ ତାଙ୍କୁ ଗିଳନ୍ତି ॥

ତାଙ୍କୁ ଗିଳନ୍ତି ବଡ଼ ମାନେ । ଯେ ଯାହା ଭାସେ ସେ ଅଜ୍ଞାନେ ॥
ବ୍ୟାଧି ଦୁଃଖ ପାଇ ମରନ୍ତି । ଆତ୍ମା ପୀଡ଼ିତେ ମୋହ ଯାନ୍ତି ॥
ଯେମନ୍ତେ ଅୟୁତେ ଲକ୍ଷେଣ । ଗଲେ ବତ୍ସର ଦିନମାନ ॥
ଅତି ଆରତେ ମାରକଣ୍ଡ । ଜାଣିଲେ ନିଶ୍ଚେ ଯିବ ପିଣ୍ଡ ॥
ବିଷ୍ଣୁର ମାୟା ମୋହେ ପୁଣ । ଭାସି ଲାଗିଲା ଏକସ୍ଥାନ ॥
ବ୍ରହ୍ମାଣ୍ଡ ମଧ୍ୟେ ଜମ୍ବୁଦ୍ୱୀପ । ନବ ଖଣ୍ଡେଣ ଏ ସଂଯୁତ ॥
ଭାରତ ବରଷ ମଧରେ । ଆର୍ଯ୍ୟାବର୍ତ୍ତ ନାମ ବିସ୍ତାରେ ॥
ଉତ୍କଳ ଦେଶ ନାମ ପୁଣ । ଆର୍ଯ୍ୟାବର୍ତ୍ତ ଅଗ୍ନି କୋଣେଣ ॥
ଦକ୍ଷିଣ ମହୋଦଧି ତଟେ । ସମୁଦ୍ର ଭିତରେ ପ୍ରକଟେ ॥
ନାମ ଯା ଶ୍ରୀପୁରୁଷୋତ୍ତମ । ସକଳ କ୍ଷେତ୍ର ତହୁଁ ଜନ୍ମ ॥
ନୀଳାଞ୍ଚଳ ଗିରି ଶିଖରେ । ଅକ୍ଷୟ କଳ୍ପବଟ ପରେ ॥
କ୍ଷେତ୍ରବଟ ସମେତ ହୋଇ । ପ୍ରଳୟ ଜଳରେ ଭାସଇ ॥
ଜଳେ ପବନେ ସେ ନଚଳେ । ନିକଟେ ମୁନିବର ମିଳେ ॥
ବିସ୍ତାର ପଞ୍ଚ କୋଶ ହୋଇ । ବେଢ଼ିଣ ଜ୍ୟୋତିର୍ମୟେ ଦେହୀ ॥
ଜଳ ଉପରେ ତା ପଲ୍ଲବ । ଫଳ ପଲ୍ଲବେ ଶୋଭା ଦିବ୍ୟ ॥
ଯେ ଯେଉଁ ବୃକ୍ଷ ତିନିଡାଳ । ପୂର୍ବ ଐଶାନ୍ୟ ଯେ ଉତ୍ତର ॥
ପୂର୍ବ ଉତ୍ତର ମୁଖେ ଶାଖା । ଐଶାନ୍ୟ ଡାଳ ମଧ୍ୟେ ଦେଖା ॥
ନବ ପଲ୍ଲବ ବଟ ପୁଟେ । ଏକ ପୁରୁଷ ଯବାଙ୍ଗୁଷ୍ଠେ ॥
ସେ ବଟପୁଟରେ ଶୟନ । ତାଙ୍କୁ ମାର୍କଣ୍ଡୟ ଦର୍ଶନ ॥
ଅଙ୍ଗୁଷ୍ଠି ପ୍ରମାଣେ ପୁରୁଷ । ଆପଣା ପ୍ରଭାରେ ସେ ଦୃଶ୍ୟ ॥
ପ୍ରଳୟାନ୍ଧକାର ଛେଦନ । ମହାମର୍କତ ମଣି ଶ୍ୟାମ ॥
ମୁଖ ଲୋଚନ ପାଣି କର୍ଣ୍ଣ । ପ୍ରକାଶ କମଳ ଲୋଚନ ॥
ଶଙ୍ଖର ରେଖା କଣ୍ଠେ ଅଛି । ଶ୍ରୀବତ୍ସ ଚିହ୍ନ ହୃଦେ ଗଛି ॥
ହୃଦୟ ବିସ୍ତାର ସୁନ୍ଦର । ବ୍ରହ୍ମାଣ୍ଡ ସର୍ଜନା ସଂହାର ॥
ନାସିକା ଅତି ହିଁ ସୁନ୍ଦର । ଭ୍ରୂଲତା ଧନୁ କନ୍ଦର୍ପର ॥
ନିଶ୍ୱାସ ପବନୁ ଚଞ୍ଚଳ । ଜଳନ୍ତି କର୍ଣ୍ଣର କୁଣ୍ଡଳ ॥
ଡାଳିମ୍ବ ବୀଜ ରସ ପ୍ରାଏ । ଦନ୍ତପନ୍ତି ଯେ ଶୋଭାପାଏ ॥
ପ୍ରବାଳ ପ୍ରାଏକ ଅଧର । ଦ୍ରହାସ ଭାବ ଅରୁଣର ॥
ଦୃଷ୍ଟି ପାଦ ପଦ୍ମେ ଦେଇଣ । କଟାକ୍ଷେ କୋଣେ ବିଲୋକନ ॥
ନିଶ୍ୱାସ ପବନ ବାଜିଣ । ନାଭି ଉପର ରୋମମାନ ॥
ପବନେ କମ୍ପମାନ ହୋଇ । ଅଙ୍ଗରେ ଆଭରଣ ଶୋହି ॥
ଦୁଇ ହସ୍ତରେ ପାଦାଙ୍ଗୁଳି । ଧରି ଚୁମ୍ବନ ମୁଖେ କରି ॥
ଚରଣାମ୍ବୁଜ ଅରବିନ୍ଦ । ମୁଖେ ପ୍ରବେଶିଣ ଆନନ୍ଦ ॥
ମକରନ୍ଦ ପାନ କରନ୍ତି । ସେ ରସ ରୂପ ତୃପ୍ତି ଶାନ୍ତି ॥
ବାଳକ ରୂପେଣ ଶୟନ । ଦେଖି ବିସ୍ମୟେ ମୁନିମନ ॥

ପ୍ରସନ୍ନେ ଶ୍ରମ ଦୂର କଲେ । ଆନନ୍ଦେ ଦେହ ପୁଲକିଲେ ॥
ପଦ୍ମପ୍ରାଏ ଚକ୍ଷୁ ବିକାଶି । ପୁଲକ ରୋମାବଳି ଦିଶି ॥
ତାଙ୍କ ନାମ ପୁଛିବା ଅର୍ଥେ । ମାର୍କଣ୍ଡ ଇଚ୍ଛା କରି ଚିତ୍ତେ ॥
ବାଳକ ନିଶ୍ୱାସ ପବନ । ବାଜି ମାରକଣ୍ଡ ଦେହେଣ ॥
ବାଳକ ନିକଟେ ପ୍ରବେଶ । ଆଗେ ଉଭା ମାର୍କଣ୍ଡ ଶିଷ୍ୟ ॥
ତୁଣ୍ଡ ବିସ୍ତାର କରି ହରି । ଗିଳିଲେ ମଶାପ୍ରାଏ କରି ॥
ହୃଦୟ ଭିତରେ ପଶିଲେ । ତହିଁ ଯେ ବୁଲିଣ ଦେଖିଲେ ॥
ଯେତେକ ପ୍ରଳୟ ହୋଇଛି । ଦେଖିଲେ ମୃକୁଣ୍ଡଙ୍କ ବସି ॥
ପୃଥ୍ୱୀ ମଣ୍ଡଳ ସ୍ୱର୍ଗ ଆଦି । ଆକାଶ ନକ୍ଷତ୍ର ପ୍ରସିଦ୍ଧି ॥
ଗ୍ରହ ନକ୍ଷତ୍ର ତାରାଗଣ । ସପ୍ତଦ୍ୱୀପ ସମୁଦ୍ରମାନ ॥
ପର୍ବତ ଦିଗ ରାଜ୍ୟଭୂମି । ନଗର କ୍ଷେତ୍ର ବନାଶ୍ରମୀ ॥
ଦେବ ଅସୁର ଜନ୍ତୁ ଆଦି । ଯେ ସରୋବର ନଦାନଦୀ ॥
ଆଶ୍ରମ ବିଦ୍ୟାବାଦୀଗଣ । ଯେତେକ ଜୀବଜନ୍ତୁ ମାନ ॥
ପଞ୍ଚ ମହାଭୂତ ଶବଦ । ଯେ ତ୍ରୟ ମାତ୍ରା ସମଭେଦ ॥
ଚତୁର୍ଦ୍ଦଶ ଭୁବନ ପତି । ଜଗତ ବିଷ୍ଣୁ ପ୍ରତି ପତି ॥
ବ୍ରହ୍ମାଦି କୀଟ ପରିଯନ୍ତେ । ସର୍ବ ଦେଖିଲେ ଆଚମ୍ବିତେ ॥
ହେମାଳୟ ଯେ ପରବତ । ପୁଷ୍ପଭଦ୍ରା ନଦୀ ସହିତ ॥
ଆପଣା ଆଶ୍ରମ ଦେଖିଲେ । ସମସ୍ତ ଋଷିଙ୍କର ମେଳେ ॥
ଯେ ଭାବେ ବୁଲି ମୁନିବର । ଅନେକ ଗଲା ସମ୍ବତ୍ସର ॥
ସଂସାର ଦେଖିଣ ବିସ୍ମୟେ । ମିଥ୍ୟା ମଣିଲା ଏ ପ୍ରଳୟେ ॥
ଯେମନ୍ତ ପୁଣି ବିଷ୍ଣୁମାୟା । ପ୍ରକାଶ କଲେ ବିଷ୍ଣୁକାୟା ॥
ଆପଣା ନିଶ୍ୱାସରେ ପୁଣି । ବାହାର କଲେ ତତକ୍ଷଣି ॥
ପ୍ରଳୟ ଜଳେ ପକାଇଲେ । ପୁଣି ସେ ଜଳରେ ଭାସିଲେ ॥
ପୂର୍ବ ଜଳରେ ଅନୁଭବ । ପାଇଲେ ସେହି ପରାଭବ ॥
ପୁଣି ସେ ବଟତଳେ ଲାଗି । ତା ଆହ୍ଲାଦେ ସୁଖଭାଗି ॥
ସେ ବଟପତ୍ର ପୁଟେ ଶୋଇ । ବାଳେକ ଚରଣ ଚୂମ୍ବଇ ॥
ଦ୍ରହସିତ ମୁଖାରବିନ୍ଦ । କଟାକ୍ଷ କଣୟର ବିନ୍ଦ ॥
ଲାଗିଣ ଆଶ୍ୱାସନା ହୋଇ । ଋଷି ସେ ବାଳେକକୁ ଚାହିଁ ॥
ତାଙ୍କୁ ହୃଦରେ ଧ୍ୟାନ କଲେ । ମନେ ଆଲିଙ୍ଗନ ବାଞ୍ଛିଲେ ॥
ଯେମନ୍ତ ଜାଣିଣ ମୁକୁନ୍ଦ । ସ୍ଥିତ ଏ ହୃଦୟର ମଧ ॥
ଯେମନ୍ତେ ପାରୁଶେ ଲାଗିଲେ । ଦେଖି ଅନେକ ସ୍ତୁତି କଲେ ॥
ସେ କୃଷ୍ଣ ଅନ୍ତର୍ଦ୍ଧାନେ ଗଲେ । ଆପଣା ମାୟା ଦେଖାଇଲେ ॥
ବିଷ୍ଣୁ ଅନ୍ତର୍ଦ୍ଧାନ ଅନ୍ତେଣ । ପ୍ରଳୟ ହୋଏ ଅନୁମାନ ॥
କ୍ଷଣ ମାତ୍ରକେ ସର୍ବଗଲା । ସେ ମାରକଣ୍ଡ ତା ଦେଖିଲା ॥
ପୂର୍ବେ ଆପଣା ଆଶ୍ରମରେ । ବସିଥିଲେ ଯେଉଁ ପ୍ରକାରେ ॥

ଆତ୍ମାରେ ଯୋଗଧ୍ୟାନ କରି । ଚିତ୍ତରେ ଚିନ୍ତି ନରହରି ॥
ଆସନେ ବସିଛନ୍ତି ପୁଣ । ଏମନ୍ତ ମାୟାର ଭିଆଣ ॥
ଦେଖିଣ ମାରକଣ୍ଡ ଋଷି । ଆଶ୍ଚର୍ଯ୍ୟ ମଣି ମନ ତୋଷି ॥
କହଇ ଜଗନ୍ନାଥ ଦାସ । କୃଷ୍ଣ ଚରଣେ ଲାଗୁ ଆଶ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ*
*ମାର୍କଣ୍ଡେୟ ମାୟାଦର୍ଶନେ ନାମ ନବମୋଽଧ୍ୟାୟଃ ।*

## ଦଶମ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ ପୁରାଣିକ କହନ୍ତି । ସମସ୍ତ ମୁନି ଯେ ଶୁଣନ୍ତି ॥
ମାରକଣ୍ଡ ଋଷି ଯେ ପୁଣ । ବିଷ୍ଣୁ ନିର୍ମିତ ମାୟାରେଣ ॥
ବିଷ୍ଣୁର ମାୟା ଅନୁଭବି । ସେ ବିଷ୍ଣୁ ଚରଣରେ ସେବି ॥
କୃଷ୍ଣ ମହିମା କରି ସ୍ତୁତି । ନିରତେ ଧ୍ୟାନ କରୁଛନ୍ତି ॥
ହେ ବାସୁଦେବ ନମୋଽସ୍ତୁତେ । ଶରଣାଗତ ହେଲି ତୋତେ ॥
ତୁମ୍ଭର ଚରଣାରବିନ୍ଦ । ଅଭୟ ଯେଉଁ ପଦ୍ମପାଦ ॥
ବ୍ରହ୍ମାଦି ଦେବତା ଯେମାନେ । ସେବନ୍ତି ଜ୍ଞାନ ପରାୟଣେ ॥
ତୁମ୍ଭ ଚରଣେ ଭଜୁଛନ୍ତି । ତୁମ୍ଭର ମାୟାରେ ମୋହିହୋନ୍ତି
ଯେ ଭବ ସଂସାର ସାଗରେ । ତୋ ବିନୁ କେ ଉଦ୍ଧରି ପାରେ
ଯେମନ୍ତ ସ୍ତୁତି ବାସୁଦେବେ । କହନ୍ତି ମନର ସ୍ୱଭାବେ ॥
ଆତ୍ମା ବାସୁଦେବେ ନିବେଶି । ସର୍ବ ଜୀବେ ଏକ ପ୍ରକାଶି ॥
ଜଗତ ବାସୁଦେବ ଜାଣି । ସର୍ବ ଏ ବିଷ୍ଣୁମଏ ମଣି ॥
ଏମନ୍ତ ସମୟେ ମହେଶ । ପାର୍ବତୀ ଶିବଗଣ ପାଶ ॥
ଏମନ୍ତେ ବେଷ୍ଟିତ ହୋଇଣ । କରି ବୃଷଭ ଆରୋହଣ ॥
କୈଳାସ ପର୍ବତରୁ ଖସି । ହେମବନ୍ତ ଉପରେ ଆସି ॥
ପୁଷ୍ପଭଦ୍ରା ନଦୀ ତଟରେ । ମାର୍କଣ୍ଡ ଆଶ୍ରମେ ମିଳିଲେ ॥
ମାର୍କଣ୍ଡ ତାଙ୍କୁ ଦେଖି ପୁଣ । ପାର୍ବତୀ ମହେଶ ଭାଷିଣ ॥

### ପାର୍ବତୀ ଉବାଚ

ହେ ଦେବ ଦେଖ ଋଷିଧ୍ୟାନ । ଯେ ବ୍ରହ୍ମଜ୍ଞାନର ସାଧନ ॥
ମନ ଆତ୍ମା ପ୍ରକାଶ କରି । ସକଳ ଇନ୍ଦ୍ରିୟ ନିବାରି ॥
ସଂଯମ କରି ମନପ୍ରାଣ । ପରମ ଆତ୍ମା ନିବେଦନ ॥
ଜନ୍ମ ହୋଇ ରହି ଅଛନ୍ତି । ଅମାସ୍ୟା ଚନ୍ଦ୍ରକ୍ଷୟ ଯାନ୍ତି ॥
ପବନ ନିରୋଧ କାଳରେ । ସମୁଦ୍ର ସ୍ତମ୍ଭୀଭୂତ କରେ ॥
ସେ ଅନିର୍ବାତ ଦୀପଯେହ୍ନେ । ଏ ଋଷି ତପସ୍ୟା ସାଧନେ ॥
ବିଷ୍ଣୁର ମାୟା ଅନୁଭବ । ସଂସାରେ ଦେହ ମିଥ୍ୟାଭାବ ॥

ମାୟାରୁ ପାର ନ ପାଇଲେ । ବିଷ୍ଣୁ ଦର୍ଶନେ ସର୍ବେଗଲେ ॥
ହରି ଦର୍ଶନେ ସିଦ୍ଧ ହୋଇ । ବସିଲେ ଯୋଗାରୂଢ଼ ଧ୍ୟାୟି ॥
ଏହାଙ୍କ ତପ ସିଦ୍ଧି ଫଳେ । ତୁମ୍ଭେ ପ୍ରବେଶ ଋଷିଆଳେ ॥
ଯେ ଯୋଗସିଦ୍ଧି ଫଳଦିଅ । ବିଷ୍ଣୁ ବୈଷ୍ଣବେ ଯଶପାଅ ॥
ପାର୍ବତୀ ଚହୁଁ ଏହା ଶୁଣି । ମହେଶ କହେ ମଞ୍ଜୁବାଣୀ ॥

## ଈଶ୍ୱର ଉବାଚ

ଯେ ଋଷିବରେ ବାଞ୍ଛା ନାହିଁ । ଚତୁର୍ଥ ମୁକ୍ତି ନ ବାଞ୍ଛଇ ॥
ଚାରିବିଧି କାମନା ମନେ । ଋଷିର ନାହିଁ ସାବଧାନେ ॥
କେବଳ ବାସୁଦେବ ଭକ୍ତି । ଚରଣାରବିନ୍ଦେ ପ୍ରୀତି ॥
ମାୟା ସମସ୍ତ ଭାବେ ଜାଣି । ସକଳ ମିଥ୍ୟା ପରିମାଣି ॥
ବାସୁଦେବରେ ଲୟ ରଖି । ବଚନେ ଆଶ୍ୱାସନା ଦେଇ ॥
ଏହାକୁ ସମ୍ଭାବନା କରି । ତେବେ ସେ ଭଗତି ଆଚରି ॥

## ଶ୍ରୀ ସୂତ ଉବାଚ

ପରମ ସାଧୁ ଏହା ଭାବ । ସାଧୁ ସଙ୍ଗ ପରମ ଭାବ ॥
ଯେମନ୍ତ କହିଣ ଶଙ୍କର । ସକଳ ଭୂତେ ଯେ ଈଶ୍ୱର ॥
ହର ପାର୍ବତୀ ଦୁଇ ଯାଇ । ଋଷିଙ୍କ ଆଗେ ଉଭା ହୋଇ ॥
ଈଶ୍ୱରେ ଋଷି ଦୃଷ୍ଟି ନାହିଁ । ଶିବଗଣରେ ଆଦି ହୋଇ ॥
ଆପଣା ଦେହକୁ ନ ଜାଣି । ଯେମନ୍ତ ଜାଣି ଶୂଳପାଣି ॥
ଯୋଗମାୟା ବଳେ ମହେଶ । ମାରକଣ୍ଡ ହୃଦେ ପ୍ରବେଶ ॥
ପବନ ପ୍ରାଏ ହୋଇପଶି । ନ ଜାଣି ମାରକଣ୍ଡ ଋଷି ॥
ଯେମନ୍ତ ରୂପ ମହେଶ୍ୱର । ଜଟା ଝଳକ ବିଜୁଳିର ॥
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ଲୋଚନ । ଶିରରେ ଚନ୍ଦ୍ର ଶୋଭାବନ ॥
ଦଶଭୁଜ ପାଉଛି ଶୋଭା । ଆଜାନୁ ବାହୁ ବଳିପ୍ରଭା ॥
ଅତି ଅଦ୍ଭୁତ ରୂପ ହୋଇ । ସୂର୍ଯ୍ୟର ପ୍ରାଏ ତେଜମୟୀ ॥
ପରିଧାପନ ବ୍ୟାଘ୍ର ଚର୍ମ । ହସ୍ତେ ପନ୍ନଗ ଆଭରଣ ॥
ଧରିଣ ଡମ୍ବରୁ ତ୍ରିଶୂଳ । କାଣ୍ଡ ଖଡ଼ଗ ଯେ କପାଳ ॥
ପରଶୁ ରୁଦ୍ରାକ୍ଷ ଯେ ମାଳି । ଅଭୟ ବର ହସ୍ତେ ଧରି ॥
ଯେମନ୍ତ ରୂପ ମୁନି ଚାହିଁ । ବିସ୍ମୟେ ମାରକଣ୍ଡ ହୋଇ ॥
ମହେଶ ରୂପ ମୋ ହୃଦରେ । କିଏ କାହୁଁ ଦର୍ଶନ କରେ ॥
ଚିତ୍ତ ମୋ ଅଛି ବିଷ୍ଣୁ ତହିଁ । ମହେଶ ରୂପ ତ ଦେଖଇ ॥
ବିଚାରି ଚକ୍ଷୁ ଫେଡ଼ି ବେଗେ । ହର ପାର୍ବତୀ ଦେଖି ଆଗେ ॥
ରୁଦ୍ରଗଣ ସମେତ ହୋଇ । ମାର୍କଣ୍ଡ ସଂଭ୍ରମେ ଅନାଇ ॥
ସାଷ୍ଟାଙ୍ଗେ ପ୍ରଣାମ ସେ କଲେ । ସେ ମହାଦେବ ପାଦତଳେ ॥
ପାର୍ବତୀ ରୁଦ୍ରଗଣ ମେଳେ । ମାନସ ଭାବେ ପୂଜା କଲେ ॥
ସ୍ୱାଗତ ଆସନେ ଯେ ପାଦ । ଅର୍ଘ୍ୟ ଧୂପ ଦୀପ ଯେ ଗନ୍ଧ ॥
ପୁଷ୍ପ ନୈବେଦ୍ୟ ପୂଜାକରି । ସ୍ତୁତି ବଚନରେ ଆଦରି ॥
ତୁମ୍ଭେ ଯେ ଅଟ ପୂର୍ଣ୍ଣକାମ । ଜଗତେ ବରଦାତା ନାମ ॥
ଜଗତ ନିର୍ମାଣ ତୋ ରୂପ । ହେ ଦେବ ଦେବ ବିଶ୍ୱରୂପ ॥
ତୁ ସତ୍ତ୍ୱ ରଜ ତମ ଗୁଣ । ଆତ୍ମା ସ୍ୱରୂପୀ ତୁ ନିର୍ଗୁଣ ॥
ତୁମ୍ଭଙ୍କୁ ମୋର ନମସ୍କାର । ତୁମ୍ଭେ ଯେ ଅବ୍ୟକ୍ତ ଈଶ୍ୱର ॥

## ଶ୍ରୀ ସୂତ ଉବାଚ

କହନ୍ତି ସୂତ ପୁରାଣିକ । ଶୁଣ ହେ ତୁମ୍ଭେ ଶଉନକ ॥
ଯେ ଯେ ମହେଶ ଦେବଦେବ । ସାଧୁଙ୍କ ଗତି ଅନୁଭବ ॥
ଯେ ସ୍ତୁତି ଶୁଣିର ହରଷ । କୋମଳେ କହନ୍ତି ମହେଶ ॥

## ଈଶ୍ୱର ଉବାଚ

ହେ ମୁନି ବର ମାଗ ମୋତେ । ପ୍ରସନ୍ନ ହୋଇଲି ମୁଁ ତୋତେ ॥
ବ୍ରହ୍ମା ବିଷ୍ଣୁ ମହେଶ ତିନି । ଅଭେଦ ଏକମୂର୍ତ୍ତି ଘେନି ॥
ତିନି ହେଁ ବରେ ଅଧିକାରୀ । ଯେ ଯାହା ମାଗେ ଦେଇପାରି ॥
ଚଉବର୍ଗ ଆମ୍ଭ ଦର୍ଶନେ । ଯେ ଜଳ ମରୁତୀର୍ଥ ମାନେ ॥
ସାଧୁ ସନ୍ଥଙ୍କ ସଙ୍ଗ ଯହିଁ । ଭକତ ବତ୍ସଳ ତା ହୋଇ ॥
ଯେକାନ୍ତେ ଭକ୍ତି ଆମ୍ଭଠାରେ । ସମଦରଶୀ ବିନୟରେ ॥
ସକଳ ଲୋକପାଳ ମାନେ । ଆମ୍ଭଙ୍କୁ କରି ଉପାସନେ ॥
ଯେ ଗୁଣେ ବ୍ରାହ୍ମଣ ଭଜିଲେ । ବ୍ରହ୍ମା ପ୍ରବେଶ ହୋଇ ଭଲେ ॥
ଯେ ବ୍ରହ୍ମା ବିଷ୍ଣୁ ମୁଁ ଏକତ୍ୱ । ତିନିହେ ଏକ ପଦାର୍ଥକ ॥
ଆମ୍ଭର ତୁଲେ ଭିନ୍ନ ନାହିଁ । ତୁମ୍ଭର ଭାବ ମୁଁ ଜାଣଇ ॥
ତୁମ୍ଭେ ପରମ ଭାଗବତ । ବିଷ୍ଣୁର ଧ୍ୟାନ ଅବିରତ ॥
ଯେଣୁ ତୁମ୍ଭଙ୍କୁ ଦରଶନ । ଯେ ଜଳମୟ ତୀର୍ଥସ୍ଥାନ ॥
ପାଷାଣ ଆଦି ଦେବଗଣେ । ମନ୍ତ୍ର ସାଧିବାର କାରଣେ ॥
ବ୍ରାହ୍ମଣ ଜନେ ନମସ୍କାର । ସମଦରଶୀ ଭାବ ଯାର ॥
ଆତ୍ମାରୂପି ତ୍ରିଗୁଣ ଭେଦ । ଋକ୍ ଯଜୁ ସାମ ଅଥର୍ବ ॥
ନାନା ଭାବକୁ ବହିଛନ୍ତି । ଜଗତ ପବିତ୍ର କରନ୍ତି ॥
ଯା ନାମ ଶ୍ରବଣ କଲାରୁ । ଦର୍ଶନ ସେବା କିବା କରୁ ॥
ମହାପାତାଳ ଅନ୍ୟ ଜାତି । ଏମାନେ ପବିତ୍ର ହୁଅନ୍ତି ॥
ଯେ ସାଧୁ ବ୍ରାହ୍ମଣ ସଙ୍ଗତେ । ସଙ୍ଗ ହୋଇଣ ବିଷ୍ଣୁ ଭକ୍ତେ ॥
କିପାଇଁ ପବିତ୍ର ନୋହିବେ । ସେ କିପାଁ ସଂସାରେ ପଡ଼ିବେ ॥

## ଶ୍ରୀ ସୂତ ଉବାଚ

ସୂତ କହେ ଶୌନକ ଶୁଣ । ସେ ଚନ୍ଦ୍ରଶେଖର ବଚନ ॥
ଧର୍ମ ଯୁକ୍ତ ଗୁପତ ବାଣୀ । ଅମୃତ ପିଇଲେ ତା ପ୍ରାଣୀ ॥
ଯେମନ୍ତେ ତୃପତ ହୁଅଇ । ସେ ଭାବେ ସଦାଶିବ କହି ॥
ସୁଧାବଚନ କର୍ଣ୍ଣେ ପିଇ । ଅଜ୍ଞାନ କ୍ଲେଶ ଦୂର ଯାଇ ॥

## ମାର୍କଣ୍ଡେୟ ଉବାଚ

ମାର୍କଣ୍ଡ କହନ୍ତି ମହେଶ । ଶୁଣି ତୁମ୍ଭ ବାଣୀ ପୀୟୂଷ ॥
ହେ ପ୍ରଭୁ ଈଶ୍ୱର ମହିମା । ଦେହଧାରୀକି ସେ ଅଗମ୍ୟ ॥
ଯାର ମାୟାରେ ମୋହିହୋଇ । ବ୍ରହ୍ମା ବିଷ୍ଣୁ ଶିବ ଅଛଇ ॥
ସେମାନେ ଜଗତ ଈଶ୍ୱର । ଯେଝା ମାର୍ଗେ ଦିଅନ୍ତି ବର ॥
ତ୍ରିଗୁଣ ପାଶେ ଯେ ବନ୍ଧନ । ସେ ମାୟା ମୋହେ ହୋନ୍ତି ଛନ୍ନ ॥
ଯେଉଁ ପ୍ରକାରେ ତାକୁ ମାୟା । ପ୍ରବର୍ତ୍ତି କରେ ବିଷ୍ଣୁ ଏହା ॥
ସେ ମାର୍ଗେ ପ୍ରବର୍ତ୍ତି ଅଛନ୍ତି । ଧର୍ମ ଅଧର୍ମ ମାର୍ଗେ ଯାନ୍ତି ॥
ପ୍ରାଣୀଏ ସଂସାର କାରଣେ । ମନ୍ୱାଦି ଧର୍ମ ଶାସ୍ତ୍ର ମାନେ ॥
ଯେ ଭାବେ ସଂସାର ରଚନା । ଯେ ସର୍ବ ବିଷ୍ଣୁର ଭାବନା ॥
ଧର୍ମରେ ଯେ ଲୋକ ଅଛନ୍ତି । ଆତ୍ମାରେ ବିଷ୍ଣୁଙ୍କୁ ଜାଣନ୍ତି ॥
ତାଙ୍କୁ ଦେଖିଣ ଜନମାନେ । ସ୍ତୁତି କରନ୍ତି ଯଶ ଗୁଣେ ॥
ହେ ପ୍ରଭୁ ମୋର ବାଞ୍ଛା ଏତେ । ତୁମ୍ଭ ମାୟାରେ ଏ ଜଗତେ ॥
ମାୟା ଚେଷ୍ଟାରେ ପ୍ରାଣୀ ଭ୍ରମି । ଯେତେ ହୁଅନ୍ତି ପଥଶ୍ରମୀ ॥
ଯେ କଥା ଯେମନ୍ତେ ନୁହଇ । ତେମନ୍ତ କର ଉମାସାଇଁ ॥
ଯେ ଚକ୍ଷୁ ହରଣ କୁହୁକ । ପ୍ରତ୍ୟେକ୍ଷେ ଦେଖାଇ ଅନେକ ॥
ହରନ୍ତି ଯେମନ୍ତ ପ୍ରକାରେ । ତେମନ୍ତ ଭାବ ଜଗତରେ ॥
କର୍ମ ବନ୍ଧନୁ ତୁମ୍ଭେ ହର । ଚରଣେ ନିମଗ୍ନ ତୁମ୍ଭର ॥
ଆପଣା ମନ ମାୟା କରି । ମାୟାରେ ସଂସାରେ ବିହରି ॥
ତ୍ରିଗୁଣ ସକାଶୁ ପ୍ରବେଶ । କର୍ମ ଅନୁଭାବେ ପ୍ରକାଶ ॥
ସ୍ୱପ୍ନେ ଦେଖିଲା କଥା ଯେହ୍ନେ । ମିଥ୍ୟା ହୋଏ ନିଦ୍ରାଭଙ୍ଗେ ॥
ତେମନ୍ତ ସଂସାର ବନ୍ଧନ । ମାୟା କର୍ମରେ ସର୍ବଜନ ॥
ସେ ଯେ ଭଗବାନ ପୁରୁଷ । ବାସୁଦେବ ନିର୍ଗୁଣ ଅଂଶ ॥
ତ୍ରିଗୁଣ ସଂଯୁକ୍ତ କେବଳ । ଆଦିତ୍ୟ ଅଂଶେ ଆଦିମୂଳ ॥
ସକଳ ଜଗତର ଗୁରୁ । ସେ ଯେ ଅଟନ୍ତି ମହାମେରୁ ॥
ତୁମ୍ଭେ ଯେ ବ୍ରହ୍ମ ମତି ହର । ତୁମ୍ଭଙ୍କୁ ମୋର ନମସ୍କାର ॥
ଅଜ୍ଞା ହୋଇଲା ମାଗ ବର ସେ ସର୍ବ ଦର୍ଶନେ ତୁମ୍ଭର ॥
ଯାହାର ଦର୍ଶନର ଗୁଣ । ଯେ ପୂର୍ଣ୍ଣ କାମ ତତକ୍ଷଣ ॥
ତୁମ୍ଭ ଦର୍ଶନେ ମୋ ସକଳ । ପୂର୍ଣ୍ଣ କାମ ହୋଏ ସଫଳ ॥
ତଥାପି ତୁମ୍ଭର ବଚନ । ମାଗଇ ଏକ ବର ପୁଣ ॥
ତୁମ୍ଭେ ଯେ ପୂର୍ଣ୍ଣକାମ ଦାତା । ଈଶ୍ୱର ସର୍ବଭୂତେ କର୍ତ୍ତା ॥
ତୁମ୍ଭର ଚରଣାରବିନ୍ଦେ । ଭଗତି ହୋଇବ ଆନନ୍ଦେ ॥
ସେ ବାସୁଦେବ ନାରାଏଣ । ସକଳ ପ୍ରାଣୀଙ୍କ ଜୀବନ ॥
ତାଙ୍କ ଚରଣରେ ଭଗତି । ଅବିଘ୍ନ ରହୁ ମୋର ମତି ॥
ବୈଷ୍ଣବ ଜନମାନଙ୍କରେ । ବିଶ୍ୱାସ ଭକ୍ତି ହେଉ ମୋରେ ॥

## ଶ୍ରୀ ସୂତ ଉବାଚ

ସୂତ କହେ ଶୌନକ ମୁନି । ଏମନ୍ତ ଭାବ ଶିବ ଶୁଣି ॥
ମୁନି ସତ୍ୟ କୋମଳ ବାଣୀ । ସନ୍ତୋଷ ମନେ ଶୂଳପାଣି ॥
ପାର୍ବତୀ ସହିତେ ଆନନ୍ଦେ । ଋଷିଙ୍କୁ କହେ ଆଶୀର୍ବାଦେ ॥

## ଶ୍ରୀ ଈଶ୍ୱର ଉବାଚ

ହେ ମହାଋଷି ବାଞ୍ଛା ତୋର । ସିଦ୍ଧି ହୋଇଲା ସେ ନିକର ॥
ବାସୁଦେବ ଚରଣେ ଭକ୍ତି । ଅବିଘ୍ନେ ହେଉ ତୋରମତି ॥
ତୁ ସାତକଳ୍ପ ପରିଯନ୍ତେ । ଥାଅ ଅଜାମର ନିଶ୍ଚିତେ ॥
ପୁଣ୍ୟ ଯଶ ପ୍ରାପତ ଘେନ । ଭୂତ ଭବିଷ୍ୟ ବର୍ତ୍ତମାନ ॥
ବ୍ରହ୍ମଜ୍ଞାନ ବୈରାଗ୍ୟ ପ୍ରାପ୍ତି । ବ୍ରହ୍ମତେଜେ ସଦା ପ୍ରବର୍ତ୍ତି ॥
ପୁରାଣକର୍ତ୍ତା ତୁମ୍ଭେ ହୁଅ । ପୁରାଣ ନାମ ମାର୍କଣ୍ଡେୟ ॥
ସୂତ କହେ ନୈମିଷାରଣ୍ୟେ । ଶୌନକ ମୁନି ସନ୍ନିଧାନେ ॥

## ଶ୍ରୀ ସୂତ ଉବାଚ

ଯେମନ୍ତେ ହର ବର ଦେଇ । ଗଲେ ସେ ଅନ୍ତର୍ଦ୍ଧାନ ହୋଇ ॥
ସେ ମାୟା ଅନୁଭବ ପୁଣ । କହିଲେ ପାର୍ବତୀ ଆଗେଣ ॥
ଯୋଗ ମହିମା ଋଷି ପାଇ । ଆପଣା ଆଶ୍ରମରେ ରହି ॥
ସିଦ୍ଧ ସ୍ୱରୂପେ ରହିଧ୍ୟାନେ । ଶ୍ରୀ ବାସୁଦେବ ଚିନ୍ତି ମନେ ॥
ସାତ କଳପ ଚିରଞ୍ଜୀବୀ । ଧ୍ୟାନେ ରହିଲେ ବିଷ୍ଣୁସେବି ॥
ସେ ଏବେ ଅନ୍ତର୍ଦ୍ଧାନ ହୋଇ । ତପ କରନ୍ତି ଯହିଁ ତହିଁ ॥
ଯେ ଯେଉଁ ମାରକଣ୍ଡ ଋଷି । ଯେହାଙ୍କ ମହିମା ବିଶେଷି ॥
ବର୍ଣ୍ଣନା କରି ତୁମ୍ଭ ଆଗେ । ଅଦ୍ଭୁତ ହୋଇ ଯେଉଁ ଭାଗେ ॥
ପଣ୍ଡିତ ମାନେ ଏ ସଂସାରେ । ପଡିଣ ମାୟା ବନ୍ଧନରେ ॥
ସେ ମାୟା କେହୁଣ ପରକାରେ । ସାତ୍ତ୍ୱିକ ବିକାରେ ନ ତରେ ॥
ବାସୁଦେବଙ୍କୁ ନ ଜାଣନ୍ତି । ନାନା ରୂପେଣ ମୋହ ହୋନ୍ତି ॥
ସେ କୃଷ୍ଣଚରଣାରବିନ୍ଦେ । ଯେ ନିତ୍ୟେ ଭଜନ୍ତି ଆନନ୍ଦେ ॥
ସେହୁ ସେ ପଣ୍ଡିତ ବୋଲାନ୍ତି । ଯେ ମାୟା ବନ୍ଧନୁ ତରନ୍ତି ॥
ସୂତ କହନ୍ତି ଶଉନକ । ସେ ଭୃଗୁସୁତ ପୁଣ୍ୟତ୍ମକ ॥
ଶ୍ରୀବାସୁଦେବ କଥା ଯାହା । କହିଲୁ ତୁମ୍ଭ ଆଗେ ତାହା ॥
ସେ ବାସୁଦେବ ଚକ୍ରଧର । ଚକ୍ରେ ଛେଦନ୍ତ ମାୟାଘୋର ॥
ତାଙ୍କ ମହିମା ଯେଉଁଜନେ । ଶୁଣନ୍ତି ଶୁଣାନ୍ତେ ଗାୟନେ ॥
ତାଙ୍କର କର୍ମବନ୍ଧ ନାହିଁ । ସଂସାର ମାୟା ନ ଲାଗଇ ॥
ଅନ୍ତେ ସେ ବୈକୁଣ୍ଠ ପାଇ । ସକଳ ପାପରୁ ତରଇ ॥
କହଇ ବିପ୍ର ଜଗନ୍ନାଥ । ଦ୍ୱାଦଶ ସ୍କନ୍ଧେ ଭାଗବତ ॥

*ଇତି ଶ୍ରୀମଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ*
*ମାର୍କଣ୍ଡେୟ ଚରିତଂ ନାମ ଦଶମୋଽଧ୍ୟାୟଃ ।*

## ଏକାଦଶ ଅଧ୍ୟାୟ

### ଶୌନକ ଉବାଚ

ସନକ ଆଦି ମୁନିଗଣ । ପୁଚ୍ଛନ୍ତି ସୂତ ସନ୍ନିଧାନେ ॥
ଯେଥୁ ଉତ୍ତାରେ ଯେ ପ୍ରସନ୍ନ । ତାହା ଶୁଣିତେ ଆମ୍ଭ ମନ ॥
ସକଳ ଶାସ୍ତ୍ରେ ତୁମ୍ଭେ ଜ୍ଞାତା । ମନ୍ତ୍ର ତନ୍ତ୍ର ଗାନ କେ ବକ୍ତା ॥
ବହୁତ ପ୍ରକାରେ ଅଭ୍ୟାସ । ସ୍ୱଭାବେ ବ୍ୟାସଙ୍କର ଶିଷ୍ୟ ॥
ଯେ ପ୍ରାଣୀ ବିଷ୍ଣୁଙ୍କୁ ଭଜନ୍ତି । ସେବନ୍ତି ମନ୍ତ୍ର ଯନ୍ତ୍ରେ ଚିନ୍ତି ॥
ବାସୁଦେବଙ୍କୁ କି ପ୍ରକାରେ । ସେବା କରନ୍ତି ପୂଜାନ୍ତରେ ॥
ସେ ଜଗନ୍ନାଥ ଲକ୍ଷ୍ମୀ ପତି । ମହିମା ଦେବେ ନ ଜାଣନ୍ତି ॥
ଯେ ନିରଞ୍ଜନ ନିରାକାର । ଅରୂପ ରୂପ ବର୍ଣ୍ଣ ତାର ॥
ତାଙ୍କ କେଉଁ ରୂପକୁ ଧ୍ୟାନ । କଳ୍ପନା କରି ପ୍ରକାମାନ ॥
ତାହାଙ୍କ ଅଙ୍ଗ ଆଭରଣ । ପ୍ରତ୍ୟକ୍ଷ ଆୟୁଧ ଯେ ମାନ ॥
ତାହାଙ୍କୁ କି ଭାବେ କଳ୍ପନ୍ତି । କେମନ୍ତ ବିଧିରେ ପୂଜନ୍ତି ॥
କେବଣ ମନ୍ତ୍ରେ କରି ଜପ । ଆମ୍ଭ ଆଗେ କହ ସ୍ୱରୂପ ॥
ମନ ସଂଶୟ ଆମ୍ଭ ଯାଉ । ସର୍ବ କୁଶଳ ତୁମ୍ଭ ହେଉ ॥
ଯେ କ୍ରିୟା ବିଧି ପୂଜା କରି । ମନୁଷ୍ୟ ବିଷ୍ଣୁ ରୂପ ଧରି ॥
ଜନ୍ମ ମରଣ ବିବର୍ଜିତ । ଯେ କଥା କହିବା ନିଅତ ॥
ଯେ କଥା ଶୁଣି ସୂତ ମୁନି । ଶୌନକ ଆଗେ କହେ ବାଣୀ

### ଶ୍ରୀ ସୂତ ଉବାଚ

ସେ ବିଷ୍ଣୁ ପୂଜାର ବିଶେଷ । ଯେ ହରିଜ୍ଞାନ ଉପଦେଶ ॥
ବ୍ୟାସାଦି ଗୁରୁ ନମସ୍କରି । ବିଭୂତି କହିବି ବିସ୍ତାରି ॥
ବ୍ରହ୍ମା ଆଦି ଆଚାର୍ଯ୍ୟମାନ । ବେଦ ମନ୍ତ୍ର ଭକ୍ତି ବିଧାନେ ॥
କର୍ମ ତତ୍ତ୍ୱ ବେଦ ବେଭାରେ । ସେ ବିଧି ଶୁଣ ଏକଚିତ୍ତରେ ॥
ଋଷି ବୈଷ୍ଣବ ସାଧୁଜନେ । କେ ପୂଜା କେବା ଆତ୍ମାଧାନେ
ପ୍ରାତଃ ସୂର୍ଯ୍ୟ ଅଣ ଉଦଏ । ସ୍ନାନ ଶଉଚବନ୍ତ ହୋଏ ॥
ବିଧିରେ ଯଥାକର୍ମ ସାରି । ଭୂମିରେ କୁଶାସନ କରି ॥
ଆସନ ଶୁଦ୍ଧି ଭୂତ ଶୁଦ୍ଧି । ଜଳ ଭେଦରେ ଦେହ ଭେଦି
ବ୍ରହ୍ମାଦି ଆଚାର୍ଯ୍ୟ ସପ୍ତମେ । ପବନ ତୋଳିବ ସଂଯମେ ॥
ଯେ ଆଦି ଯେତେ କର୍ମମାନ । କର ଅଙ୍ଗ ନ୍ୟାସ ଶୋଧନ ॥
ସେ ଯେ ଈଶ୍ୱର ନିରାକାର । ନିର୍ଗୁଣ ରୂପୀ ନିରାକାର ॥
ମନ କଳ୍ପନାରୁ ତାଙ୍କର । ମାୟା ହୋଇଲା ଅବତାର ॥
ମାୟାରୁ ମନ ତହିଁ ଜନ୍ମ । ମନ ତହୁଁ ତ୍ରିଗୁଣ ବ୍ରହ୍ମ ॥
ପଞ୍ଚଭୂତାତ୍ମକ ସ୍ୱରୂପ । ବିକାର ମାୟା ସର୍ବାଧିକ ॥
ପୁରୁଷ ରୂପେ ସେ ଧରିଲା । ସହସ୍ର ଶିରା ବୋଲାଇଲା ॥
ଅସଂଖ୍ୟ ମାୟାରେ ସେ ଯୁକ୍ତ । ମହାପୁରୁଷ ବିଶ୍ୱରୂପ ॥
ତା ନାଭିକମଳୁ ପ୍ରକାଶ । ଉପୁଜି ବିରାଟ ପୁରୁଷ ॥
ଯା ରୂପ ଚଉଦ ଭୁବନ । ପୂରିଛି ଜ୍ୟୋତି ପ୍ରଭାଗୁଣ ॥
ସେ ପୁରୁଷର ଅଙ୍ଗମାନ । ପାତାଳ ପୁର ଯେ ଚରଣ ॥
ଏହାଙ୍କ ଅଗ୍ରଭାଗ ସୀମା । ଏକ ବର୍ଣ୍ଣ ଏକ ମହିମା ॥
ଦୁଇ ପାପୁଲି ରସାତଳ । ଦୁଇ ଗୁଲୁମେ ମହୀତଳ ॥
ଅତଳାଦି ଫୁଟି ଯେ ଜଙ୍ଘ । ସୁତଳ ଜାନୁ ଦୁଇ ଭାଗ ॥
ଅତଳ ବିତଳ ପାତାଳ । ଦୁପି ଅନ ହିଁ ତଳାତଳ ॥
ଲଲାଟେ ତପ ଲୋକ ବସେ । ଶିରେ ସପ୍ତଲୋକ ପ୍ରକାଶେ ॥
ସୂର୍ଯ୍ୟ ଜ୍ୟୋତିଷ ଚକ୍ରହୋଇ । ହୃଦରେ ଏ ମାନ ଅଛଇ ॥
କଣ୍ଠ ଯେ ମହାଲୋକ ଶୁଣ । ମହଲୋକ ଜନକ ସ୍ଥାନ ॥
ନାଭି ମଣ୍ଡଳ ସେ ଆକାଶ । ନଭ ନାମ ତାର ବିଶେଷ ॥
ମୁଖ ଅଗ୍ନି ନାସା ପବନ । ଦିଗମାନେ ଯାହାର କର୍ଣ୍ଣ ॥
ପ୍ରଜାପତି ବ୍ରହ୍ମ ଇନ୍ଦ୍ରିୟ । ଲିଙ୍ଗ ରୂପେଣ ତା ବିଷୟ ॥
ମୃତ୍ୟୁ ଦେବତା ମଳଦ୍ୱାର । ଇନ୍ଦ୍ର ଯେ ବେନି ଭୁଜ ତାର ॥
ଭ୍ରୂଲତା ଯମକାଳ ହୋଇ । ସେ ପାପ ପୁଣ୍ୟ ବିଚାରଇ ॥
ନିମିଷ ଉନମିଷ ଆଦି । ସମ୍ବତ୍ସର କାଳ ପ୍ରସିଦ୍ଧି ॥
ଦନ୍ତର ଝଟକ ଦର୍ପଣ । ତଡିତ ଲତାର ବର୍ଣ୍ଣନ ॥
ଚନ୍ଦ୍ର ସୂର୍ଯ୍ୟାଦି ଗ୍ରହମାନ । ପର୍ବତ ତାହାଙ୍କର ଭ୍ରମ ॥
ଅତଳ ଓଷ୍ଠ ଜିହ୍ୱା ହୋଏ । ଉପର ଓଷ୍ଠ ଲୋଭ ମୋହେ ॥
ବୃକ୍ଷମାନେ ଯେ ଲୋମଦେଶ । ମେଘମାନ ଯାହାର କେଶ ॥
ଏ ଯେଉଁ ବିରାଟ ପୁରୁଷ । ଯେତେ ବିସ୍ତାର ସେ ପ୍ରକାଶ ॥
ବ୍ରହ୍ମାଣ୍ଡ ଯେତେକ ବିସ୍ତାର । ଏମନ୍ତ ମହିମା ଯାହାର ॥
ଏ ରୂପେ ମହାବିଷ୍ଣୁ ଦେହେ । ତିନି କୋଟି ଅର୍ଦ୍ଧ କୋଟିଏ ॥
ବିରାଟ ପରେ ସେ ଅଛନ୍ତି । ତହୁଁ ଟି ସର୍ବ ଉତପରି ॥
ତାଙ୍କ କଣ୍ଠ କୌସ୍ତୁଭ ମଣି । ନିରାକାର ଜ୍ୟୋତି ସେ ପୁଣି ॥
ସେ ଜ୍ୟୋତି କଣ୍ଠେ ବହିଛନ୍ତି । ଯୋଗୀଏ ଯେ ରୂପେ ଭାବନ୍ତି
ଜ୍ୟୋର୍ତିମୟ ଯେ ସେ ଈଶ୍ୱର । ଶ୍ରୀବତ୍ସ ଚିହ୍ନ ହୃଦେ ଧର ॥
ଆପଣା ମାୟା ଯେ ତ୍ରିଗୁଣ । ବହେ ବନମାଳା ରୂପେଣ ॥
ଋକ ଯଜୁ ସାମ ଏ ତିନି । ପିନ୍ଧେ କରି ପୀତ ପଟନୀ ॥
ତାଙ୍କ କନ୍ଧେ ଯଜ୍ଞ ପବିତ୍ର । ପବିତ୍ର ତ୍ରିଗୁଣେ ସେ ସୂତ୍ର ॥
କର୍ଣ୍ଣରେ ମକର କୁଣ୍ଡଳ । ସାଂଖ୍ୟ ଯୋଗେ ଦୁହେଁ ନିର୍ମଳ
ତାଙ୍କ ଶିରରେ ଯେ ମୁକୁଟ । ଚତୁର୍ବିଧ ମୁକ୍ତି ପ୍ରକଟ ॥
ପରମ ପଦ ଯାହା ଭଣି । ଶିଖା ମୁକୁଟରେ ସେ ମଣି ॥
ସେ ସର୍ବଲୋକେ ନମସ୍କୃତ୍ୟ । ଅବ୍ୟକ୍ତ ରୂପ ଯେ ଅନନ୍ତ ॥
ତାହାଙ୍କ ଶୟନ ଆସନ । ଯେ ଧର୍ମ ବଇରାଗ୍ୟ ଜ୍ଞାନ ॥

ଏ ଅଷ୍ଟଦଳ ଯେ କମଳ । ବସିବା ଆସନ ନିଶ୍ଚଳ ॥
ବ୍ରହ୍ମ ଜ୍ଞାନ ତତ୍ତ୍ୱ ବର୍ଣ୍ଣନା । ପଦ୍ମକେଶର ସ୍ଥାନ ଶିଖା ॥
ଯମ ନିଅମାଦି ଅଷ୍ଟାଙ୍ଗ । ଏ ଚୌଷଠି ଆସନ ଯୋଗ ॥
ପଦ୍ମକେଶରେ ତାଙ୍କ ସ୍ଥାନ । ଯେ ଭାବେ ଯେତେ ଆଚରଣ
ବଳବୀର୍ଯ୍ୟ ତେଜ ପ୍ରାକର୍ମ । ମୋକ୍ଷତତ୍ତ୍ୱ ମାୟା ରୂପେଣ ।
ପୃଥିବୀ ଅଷ୍ଟତତ୍ତ୍ୱ ମିଶା । କୌମୁଦୀ ଚନ୍ଦ୍ର ଅଷ୍ଟଅଂଶା ॥
ତା ବାମହସ୍ତେ ରହିଛନ୍ତି । ଯଜ୍ଞେ ଯେ ନାରାୟଣ ମୂର୍ତ୍ତି ॥
ଶୁଦ୍ଧ ଶୁକଳ ସତ୍ତ୍ୱଗୁଣ । ପଞ୍ଚଜନ ଶଙ୍ଖ କରେଣ ॥
ତା ବାମ ହସ୍ତେ ବହିଛନ୍ତି । ଦକ୍ଷିଣ ହସ୍ତେ ଚକ୍ର ସ୍ଥିତି ॥
ଜ୍ୟୋତି ସ୍ୱରୂପ ତାର ତେଜ । ମହାତୀକ୍ଷ୍ଣ ଧାରେ ବିରାଜ ॥
ସହସ୍ର ଧାର ରୂପ ତାର । ସୁଦରଶନ ଚକ୍ରଧର ॥
ଜ୍ୟୋତି ସ୍ୱରୂପ ସେ ନିର୍ଗୁଣ । ନିର୍ମଳ ପ୍ରଭା କାମ ଜ୍ଞାନ ॥
ନନ୍ଦକ ଖଡଗ କରେଣ । ଦକ୍ଷିଣ ହସ୍ତେ ଶୋଭାବନ ॥
କାଳ ରୂପ ଯେ ନିମିଷାଦି । ବତ୍ସର ଆଦି ଗଣନାଦି ॥
ଶାରଙ୍ଗ ଧନୁ ରୂପେ ପୁଣ । ଶୋଭା ସେ ବାମ ଯେ ହସ୍ତେଣ
ଯେ ପାପ ପୁଣ୍ୟ କର୍ମ ଦୁଇ । ଯେ ଆଦି ସମୁଦ୍ର ଯେ ହୋଇ
କାଣ୍ଡ ଭାରତୀ କରିଛନ୍ତି । କଟି ପୃଷ୍ଠରେ ବାନ୍ଧିଛନ୍ତି ॥
କର୍ମ ତ୍ରିଗୁଣ ଦଉଡ଼ିରେ । କଟିରେ ବେଷ୍ଟିତ ଆକାରେ ॥
ଏକାଦଶ ଇନ୍ଦ୍ରିୟମାନ । କାଣ୍ଡ ସଂଗ୍ରହ ତା କରିଣ ॥
ଦକ୍ଷିଣ ହସ୍ତରେ ତା ଘେନି । ପ୍ରଚରାଉ ଅଛନ୍ତି ପୁଣି ॥
ସେ ଇନ୍ଦ୍ରିମାନେ ଯେ ବେଷ୍ଟିତ । ସେମାନେ ହୋଇଛନ୍ତି ରଥ ॥
ମନକୁ କରିଣ ସାରଥି । ଅଶ୍ୱ ସର୍ବଦା ଗୁଣେ ସ୍ଥିତି ॥
ଇନ୍ଦ୍ରିୟମାନଙ୍କ ଲକ୍ଷଣ । ଆକୃତି ରୂପ ନାନା ବର୍ଣ୍ଣ ॥
ଅର୍ଥ କ୍ରିୟା ଇନ୍ଦ୍ରି ବିକାର । ମଣ୍ଡଳ ନାମ ସେ ପ୍ରଚାର ॥
ଦେବତା ସ୍ୱରୂପ ଗ୍ରହଣ । ଯଜ୍ଞାଦି ଦୀକ୍ଷାମାନ ପୁଣ ॥
ଏହୁ ରଥରେ ସେ ସଂସ୍କାର । ଧର୍ମାଧର୍ମ ରଥ ଚକ୍ରର ॥
ଏମନ୍ତେ ଚକ୍ର ଷଟଦଶ । ଚତୁର୍ଦ୍ଦଶ ଭାବନା ରସ ॥
ସେ ରଥ ଘୋଷ ତିନିବେଦ । ଷୋଡଶ ପଦେ ହୋଇ ଭେଦ
ରଥର ନାମ ନନ୍ଦିଘୋଷ । ଏ ରଥେ ବେଣୁ ଧ୍ୱନି ବାସ ॥
ତାହାର ଧ୍ୱଜ ଯେ ଗରୁଡ଼ । ଶରଦ ବ୍ରହ୍ମ ବେଦ ବଡ଼ ॥
ଏହି ପ୍ରକାରେ ବାସୁଦେବ । ସର୍ବ ପ୍ରାଣୀ ଦେହେ ପ୍ରବେଶ ॥
ଜୀବ ସ୍ୱରୂପେ ପୂରିଛନ୍ତି । ପିଣ୍ଡ ବ୍ରହ୍ମାଣ୍ଡ ଏକ ମତି ॥
ସଂସାର ଭିଆଣ ସର୍ଜନା । ବ୍ରହ୍ମ ଏ ଅଂଶ ମିଶି ସିନା ॥
ଯେ ପ୍ରାଣୀ ତାଙ୍କ ସେବାକରେ । ତା ପାପ ଯାଇ ଦୂରନ୍ତରେ ॥
ସେ ଭଗବାନ ଯେ ପୁରୁଷ । ଆପଣା ସମ୍ପତ୍ତିର ଅଂଶ ॥

ଅଷ୍ଟ ଯେ ଅଇଶର୍ଯ୍ୟମାନେ । ଯୋଗ ମାୟା ରୂପ ଏ ସ୍ଥାନେ ॥
ବିମଳା ଉତ୍ତର ସାରେଣି । ମାୟା ଭକ୍ତି ବାସନା ଏଣି ॥
ନାରାୟଣୀ କଳା ରୂପିଣୀ । ଜ୍ଞାନ କ୍ରିୟା ଇଚ୍ଛା ଏ ତିନି ॥
ବିମଳା ଆଦି ନବଶକ୍ତି । ଯେ ମଧ୍ୟେ ରାସଲୀଳା ସ୍ଥିତି ॥
ଲୀଳା କମଳ କରିଛନ୍ତି । ଦକ୍ଷିଣ ଭୁଜରେ ରହନ୍ତି ॥
ଲୀଳା କମଳ ଭାବେ ମାୟା । ଭ୍ରମାଇ ଉତ୍ପତ୍ତି ନିର୍ଣ୍ଣୟା ॥
ଆଲଟ ଚାମର ରୂପେଣ । ଭ୍ରମନ୍ତି ଯଶକୁ ଘେନିଣ ॥
ବୈକୁଣ୍ଠ ପଦକୁ ସେ ପୁଣି । ଧବଳ ଛତ୍ର କରେ ଘେନି ॥
ଶିର ଉପରେ ସେ ଧାରଣ । ନିର୍ଭୟ ପଦଦାତା ପୁଣ ॥
ଏ ଋକ ଯଜୁ ସାମ ବେଦ । ଯଜ୍ଞ ପୁରୁଷ ମତେ ଭେଦ ॥
ଗରୁଡ଼ ରୂପେ ବହିଛନ୍ତି । ବିଷ୍ଣୁ ରଥ ନାମ ବହନ୍ତି ॥
ନିରାକାର ଯେ ସ୍ୱରୂପିଣୀ । ଈଶ୍ୱର ସାକ୍ଷାତ ସେ ଲକ୍ଷ୍ମୀ ॥
ସେ ରୂପେ ହୃଦୟରେ ଛନ୍ତି । ସକଳ ତନ୍ତ୍ର ମନ୍ତ୍ରେ ମୂର୍ତ୍ତି ॥
ପାରିଷଦର ଆଦି ପତି । ପ୍ରସିଦ୍ଧ ହୋଇ ଏ ଅଛନ୍ତି ॥
ନିର୍ଗୁଣାଦି ଭାବନା ମାନେ । ସନକ ଆଦି ଋଷିଗଣେ ॥
ଷୋଡଶ ପାରିଷଦ ହୋଇ । ନନ୍ଦାଦି ଦ୍ୱାରପାଳ ହୋଇ ॥
ଅଣିମାଦି ସମ୍ପତ୍ତିମାନେ । ମନ୍ତ୍ର ଉପନିଷଦ ଜ୍ଞାନେ ॥
ଚାରିବେଦ ଚାରି ଦୁଆରେ । ଗାୟତ୍ରୀ ଚବିଶ ଅକ୍ଷରେ ॥
ପାବନ୍ଧମାନେ ସେ ରଥକୁ । ଅଗମ୍ୟ ବ୍ରହ୍ମା ଶଙ୍କରଙ୍କୁ ॥
ସେ ବାସୁଦେବ ସଙ୍କର୍ଷଣ । ପ୍ରଦ୍ୟୁମ୍ନ ଅନିରୁଦ୍ଧ ପୁଣ ॥
ଏ ରଥ ଚାରିଭାଗ କୋଷ୍ଠି । ଚାରିପୀଠରେ ପରମେଷ୍ଠୀ ॥
ତାଙ୍କ ମଧ୍ୟେ ନିର୍ଗୁଣ ରୂପ । ବିଶ୍ୱରୂପ ତେଜ ସ୍ୱରୂପ ॥
ତୁରୀୟ ପୁରୁଷ ତ୍ରିଧାମ । ସେ ରଥ ମଧ୍ୟେ ତା ବିଶ୍ରାମ ॥
ଅର୍ଥ ଇନ୍ଦ୍ରିୟ ସତ୍ତ୍ୱଜ୍ଞାନ । ଭକ୍ତି ବାସନା ଯେତେ ମାନ ॥
ଚାରି ମୁକ୍ତି ସେବକମାନେ । ସେବନ୍ତି ଯେ ଯାହା ବିଧାନେ ।
ଉପନିଷେଦ ବ୍ରହ୍ମଭାଗ । ଜ୍ୟୋତିର ପ୍ରଭା ଏ ସଂଯୋଗ ।
ଅଙ୍ଗ ଉପାଙ୍ଗ ଯେ ଆୟୁଧ । ଆବର ପାଦ ଶାଖା ଭେଦ ॥
ଯେହି ପ୍ରକାରେ ସେ ପୁରୁଷ । ବିରାଜମାନ ହୋଇ ଦୃଶ ॥
ମହାବିରାଟ ସେ ବୋଲାନ୍ତି । ବିଷ୍ଣୁଙ୍କ ଗୋଚର ନୁହଁନ୍ତି ॥
ହେ ବିପ୍ରଶ୍ରେଷ୍ଠ ଶଉନକ । ବିଷ୍ଣୁରେ ମହିମା ଅନେକ ॥
ଏ ବିଷ୍ଣୁ ସ୍ୱୟଂ ବ୍ରହ୍ମଯୋନି । ସ୍ୱରୂପେ ଆତ୍ମା ଦରଶନି ॥
ଆପଣା ସ୍ୱ ଇଚ୍ଛାରେ ପୁଣ । ମାୟାରେ ସଂସାର ଭିଆଣ ॥
ତ୍ରିଗୁଣ ଉତ୍ପତ୍ତି ପ୍ରଳୟ । କରୁଅଛନ୍ତି ମହାଶୟ ॥
ତାହାଙ୍କୁ ଇନ୍ଦ୍ର ଆଦି ମାନେ । ବଶକୁ ନୁହଁନ୍ତି ଭାଜନେ ॥
ତେଣୁ ହୃଷୀକେଶ ବୋଲାନ୍ତି । ଯେଣୁ ମାୟା ଆବୋରିଛନ୍ତି ॥

ମାୟା ବନ୍ଧନ ପ୍ରାଏ ଦିଶେ । କାହାରି ସଙ୍ଗତେ ନ ମିଶେ ॥
ତାଙ୍କ ସେବକ ଯେଉଁମାନେ । କରଣି କରନ୍ତି ଯତନେ ॥
ସେ ଆତ୍ମାଜ୍ଞାନ ଯେବେ ଜିଣି । ଆତ୍ମା ଦର୍ଶନ ଦ୍ୟନ୍ତି ପୁଣି ॥
ତାଙ୍କ ଭଗତ ଯେଉଁ ଜନ । ନାରଦ ଆଦି ମୁନିମାନ ॥
ଏ ଭାବେ କୀର୍ତ୍ତନ କରନ୍ତି । ମୁକତି ଭକ୍ତି ସେ ଇଚ୍ଛନ୍ତି ॥
ଯେ ଯେଉଁ ଭାବରେ ଭାବନ୍ତି । ସେ ସ୍ଥାନେ ପ୍ରବେଶ ହୁଅନ୍ତି ॥
ଏମନ୍ତ ସ୍ତୁତି ସେ କରନ୍ତି । ନମସ୍ତେ ପ୍ରଭୁ ଜଗଜ୍ୟୋତି ॥
ହେ କୃଷ୍ଣ ସର୍ବମୟ ସୁଖ । ଏ ମାୟାମୟ ଯେ ଉପେଖ ॥
ଅର୍ଜୁନ କୃଷ୍ଣ ସଖା ଯେଣୁ । ତୋ ନାମ କୃଷ୍ଣ ସଖା ତେଣୁ ॥
ହେ କୃଷ୍ଣ ଶ୍ରେଷ୍ଠ ହେ ଉଦ୍ଧର । ହେ କୃଷ୍ଣ ନାଶନ ଶଙ୍କର ॥
ପାପାଗ୍ନି ବଡ଼ ବା ଅନଳ । ଗୋବିନ୍ଦ ମଦନ ଗୋପାଳ ॥
ହେ ଗୋପୀପତେ ହେ ଗୋକୁଳ । ଅନାଦି ପ୍ରଭୁ ଆଦି ମୂଳ ॥
ହେ ପ୍ରଭୁ ବିପଦ ନାଶନ । ହେ ସବିତାର୍ଥ ନାରାୟଣ ॥
ହେ କୃଷ୍ଣ ଶ୍ରବଣ ମଙ୍ଗଳ । ଅଖିଳ ସର୍ବ ସିଦ୍ଧି ଫଳ ॥
ଏ ଯେ ତୁମ୍ଭ ବିଭୂତି ମାନ । ବ୍ରହ୍ମାଦି ଚଉଦ ଭୁବନ ॥
ଏହାକୁ ତୁମ୍ଭେ ରକ୍ଷାକର । ଅଶେଷ ମହିମା ତୁମ୍ଭର ॥
ଏ ପ୍ରକାରେ ଯେ ଭକ୍ତମାନେ । ନିରତେ ସ୍ତୁତି କରି ଧ୍ୟାନେ ॥
ପୂଜା ବିଶେଷ ଯେ କରନ୍ତି । ଧର୍ମ ଶାସ୍ତ୍ରମାର୍ଗେ ପ୍ରବର୍ତ୍ତି ॥
ଏ ମହାପୁରୁଷ ଲକ୍ଷଣ । କହିଲୁ ଯେତେ ବର୍ଣ୍ଣ ଧର୍ମ ॥
ପ୍ରେମ ଭକ୍ତି ଭାବରେ ଲୀନ । ଏପରି ନିତ୍ୟ ସେ ନିର୍ଗୁଣ ॥
ଏ ମହାପୁରୁଷ ଅନନ୍ତ । ନିତ୍ୟେ ଯେ କରେ ଦଣ୍ଡବତ ॥
ପଢ଼ଇ ଶୁଣଇ ଶୁଣାଇ । ଏକାଗ୍ର ଚିତ୍ତ ମନ ହୋଇ ॥
ଏହାଙ୍କ ମନ୍ତ୍ର ସେ ଜପଇ । ଆତ୍ମା ସର୍ବ ଭୂତେ ଦେଖଇ ॥
ସେ ଯେ ନିରାକାର ପୁରୁଷ । ସକଳ ହୃଦେ ବ୍ୟାପୀ ବାସ ॥
ବ୍ରହ୍ମ ଋଷି ସୂକ୍ଷ୍ମ ଜାଣଇ । ସଂସାର ଭେଦ ତାର ନାହିଁ ॥
ଅନ୍ତେ ସେ ସେହି ସ୍ଥାନ ପାଇ । ବ୍ରହ୍ମ ସ୍ୱରୂପେ ଲୀନ ହୋଇ ॥
ଏମନ୍ତ ସୂତ ମୁଖୁଁ ଶୁଣି । ଶୌନକ ପଚାରନ୍ତି ପୁଣି ॥

**ଶୌନକ ଉବାଚ**

ଭୋ ସୂତ ଧନ୍ୟ ତୋ ମହିମା । କହିଲ ଯେଉଁ ସୁଖ ସୀମା ॥
ଯେ ମହା ପୁରୁଷ ଲକ୍ଷଣ । ଶୁଣି କୃତାର୍ଥ କର୍ଣ୍ଣମନ ॥
ଯେ ମହାପୁରୁଷ ସ୍ୱରୂପୀ । ସୂର୍ଯ୍ୟ ଜ୍ୟୋତି ଜଗତ ବ୍ୟାପୀ ॥
ଆକାଶ ମଣ୍ଡଳେ ଉଦଏ । କାଳ ଉତ୍ପତ୍ତି ସ୍ଥିତି ହୋଏ ॥
ପର୍ବତ ସଂସାର ଉତ୍ପତ୍ତି । ପ୍ରଳୟମାନ ପୁଣି ହୋନ୍ତି ॥
ବାର ମାସେ ବାର ଆଦିତ୍ୟ । ଦେହ ବହିଣ ତେଜବନ୍ତ ॥
କାଳ ପ୍ରବର୍ତ୍ତାଉଣ ଛନ୍ତି । ଉଦଏ ଅସ୍ତ ସେ ହୁଅନ୍ତି ॥
ତାଙ୍କ ଦେହ ଜ୍ୟୋତି ମଣ୍ଡଳେ । ସାତ ଗୁଣେ ପ୍ରବର୍ତ୍ତି ଚଳେ ॥
ତାଙ୍କର ନାମ କର୍ମ ଗୁଣ । କହି ଛଡ଼ାଇ ମନ ଭ୍ରମ ॥
ସେମାନେ ବାସୁଦେବ ଭକ୍ତି । ସୂର୍ଯ୍ୟ ମଣ୍ଡଳେ ପ୍ରବର୍ତ୍ତନ୍ତି ॥
ସେ ସୂର୍ଯ୍ୟ ସ୍ୱରୂପୀ ଯେ ହରି । ମହିମା କହିବା ବିସ୍ତାରି ॥
ଯେମନ୍ତ ଶୁଣି ସୂତ ତୋଷେ । ଶୌନକେ କହନ୍ତି ହରଷେ ॥

**ଶ୍ରୀ ସୂତ ଉବାଚ**

ବିଷ୍ଣୁର ଅନାଦି ଅବିଦ୍ୟା । ମାୟାରେ ସର୍ବ ସେ ଉଦୟା ॥
ସକଳ ଜନ୍ତୁ ଆତ୍ମାରୂପେ । ନିର୍ବାଣ କରିଣ ସଂକ୍ଷେପେ ॥
ଲୋକରେ କାଳ ବର୍ତ୍ତମାନ । ନାନାଦି ଜୀବେ ପ୍ରବର୍ତ୍ତନ ॥
ସକଳ ଆତ୍ମାରୂପୀ ସୂର୍ଯ୍ୟ । ତା' ତେଜେ ସର୍ବ ଆତଯାତ ॥
ସବୁରି ଦେହେ ଆତ୍ମା ଦୃଷ୍ଟି । ଯେ ହରି ରୂପେ ପରମେଷ୍ଠି ॥
ସକଳ ଦେବ କ୍ରିୟା ମୂଳ । ନିରାକାର ଜ୍ୟୋତି ମଣ୍ଡଳ ॥
ବହୁ ପ୍ରକାରେ ଋଷିଜନ । କହନ୍ତି ସୂର୍ଯ୍ୟର ଭାବେନ ॥
ନିମିଷ ଆଦି ଯେ ବତ୍ସର । କାଳ ଗଣନା ପ୍ରାଣୀଙ୍କର ॥
ସଂସାରେ ଯେତେ ଦେଶମାନେ । ଯେ ସର୍ବ ତାହାରି ପ୍ରମାଣେ ॥
ସକଳ କର୍ମମାନଙ୍କର । କ୍ରିୟା କର୍ମର ସେ ଈଶ୍ୱର ॥
କାର୍ଯ୍ୟ କାରଣ ଗୁଣ ସେହି । ସର୍ବ ଆହାଲ୍ଲାଦରୁ ହୋଇ ॥
ଯେ ଦ୍ରବ୍ୟ ଫଳ ଯେ ପ୍ରକାରେ । ନବଧା ରୂପେଣ ପ୍ରଚରେ ॥
ଚଇତ୍ର ଆଦି ବାରମାସେ । କାଳ ରୂପ ଧରି ବିଳସେ ॥
ପ୍ରାଣୀଙ୍କ କୁଶଳ ନିମନ୍ତେ । ଉଦିତ ତେଜୋମୟ ମତେ ॥
ବାର ଆଦିତ୍ୟ ତେଜ ବହି । ମଧ୍ୟରେ ସାକ୍ଷୀ ରୂପ ଥାଇ ॥
ଭିନ୍ନାଭିନ୍ନ ଗୁଣ ଆଚରେ । ଯେମନ୍ତେ ସଂସାରୁ ନିସ୍ତରେ ॥
ଚଇତ୍ର ମାସେ ଯେ ବିହାର । କହିବା ତହିଁର ବିଚାର ॥
ଧାତା ନାମେ ଆଦିତ୍ୟ ସୁରା । କୃତସ୍ଥଳୀ ନାମେ ଅପ୍ସରା ॥
ହେତି ନାମେଣ ସେ ରାକ୍ଷସ । ବାସୁକୀ ନାଗ ନାମେ ଶେଷ ॥
ରଥକୃତ ନାମେଣ ଦକ୍ଷ । ପୌଲସ୍ତି ଋଷି ବ୍ରହ୍ମାବକ୍ଷ ॥
ଗନ୍ଧର୍ବ ନାମେ ଯେ ତାମ୍ବୁର । ଯେମାନେ ରଥରେ ବେଭାର ॥
ଯେମାନଙ୍କ ବେଭାର ପୁଣ । ଆଦିତ୍ୟ ତେଜେ ପ୍ରକାଶିଣ ॥
ରାକ୍ଷସ ରଥ ପୃଷ୍ଠେ ଥାନ୍ତି । ଗନ୍ଧର୍ବେ ଗାୟନ କରନ୍ତି ॥
ନୃତ୍ୟନ୍ତି ଅପସରା ମାନେ । ଯାହାର ସେବା ସେ ବିଧାନେ ॥
ନାଗେ ରଥ ଦଉଡ଼ି ହୋଇ । ଦ୍ରବ୍ୟେ ଖଟନ୍ତି ଦକ୍ଷେ ନେଇ ॥
ପ୍ରାଣୀକି ଅର୍ଥ ସେ ଦିଅନ୍ତି । ଋଷିମାନେ ମନ୍ତ୍ର ଜପନ୍ତି ॥
ଜଗତକୁ ଶାନ୍ତ କରନ୍ତି । ଧର୍ମ ମାର୍ଗ ପଥ କହନ୍ତି ॥
ଯେମନ୍ତେ ସପତ ନିଯୋଗୀ । ସୂର୍ଯ୍ୟର ରଥେ ଥାନ୍ତି ଜଗି ॥
ବଇଶାଖ ମାସରେ ପୁଣ । ଅର୍ଯମା ନାମେ ଅଦିତ୍ୟେଣ ॥

ପୁଲହ ନାମେ ମହାଋଷି । ଯେଉଁ ନାମେଣ ସେ ରାକ୍ଷସୀ ॥
ପ୍ରଚେତ ନାମେ ଯକ୍ଷବୀରା । ପୁଞ୍ଜକ ସ୍ଥଳୀ ଅପସରା ॥
ନାରଦ ନାମେଣ ଗନ୍ଧର୍ବ । ତକ୍ଷକ ନାଭ ନାମେ ନାଗ ॥
ଯେବେ ଯେ ଜ୍ୟେଷ୍ଠ ମାସେ ପୁଣ । ଆଦିତ ନାମେ ଚିତ୍ରଜାଣ ॥
ଅତ୍ରୀ ନାମେଣ ମହାଋଷି । ପରୋସ ନାମେଣ ରାକ୍ଷସୀ ॥
ତକ୍ଷକ ନାଗ ଯେ ବିଦିତ । ମେନକା ଅପସରା ନୃତ୍ୟ ॥
ହାହା ନାମେଣ ସେ ଗନ୍ଧର୍ବ । ରଥ ସ୍ୱନ ଯେ ଦକ୍ଷ ଦେବ ॥
ଯେବେ ଯେ ଆଷାଢ଼ ମାସେଣ । ଆଦିତ୍ୟ ନାମେ ଯେ ବରୁଣ ॥
ବଶିଷ୍ଠ ନାମେ ମହାଋଷି । ଅପ୍ସରା ରମ୍ଭା ଦକ୍ଷନାଶି ॥
ବ୍ରହ୍ମ ନାମେଣ ଯେ ଗନ୍ଧର୍ବ । ରାକ୍ଷସ ନାମେ ଶୁକ୍ର ଏବ ॥
ଚିତ୍ରସେନ ନାମେଣ ଦକ୍ଷ । କର୍କୋଟ ନାମେ ନାଗ ଦକ୍ଷ ॥
ଯେବେ ଯେ ମାସ ଯେ ଶ୍ରାବଣ । ଆଦିତ୍ୟ ନାମେ ବିବସ୍ୱାନ ॥
ଉଗ୍ରସେନ ନାମେଣ ଯକ୍ଷ । ଅନାମ ନାମେଣ ରାକ୍ଷସ ॥
ଗନ୍ଧର୍ବ ନାମେ ଆ ସାରଣ । ଭୃଗୁ ଯେ ମହଋଷି ପୁଣ ॥
ଅନୁମୋଳୟ ଅପସରା । ଶଙ୍ଖପାଳ ନାଗ କିନ୍ନରା ॥
ଯେବେ ଶୁଣ ଭାଦ୍ରବ ମାସ । ଆଦିତ୍ୟର ନାମ ଯେ ପୁଷ ॥
ଧନୁଞ୍ଜୟ ନାମେ ରାକ୍ଷସ । ସୁସେଣ ନାମେ ଯେ ଦକ୍ଷସ ॥
ନାଗର ନାମ ଶୁଣ ବାତ । ଗନ୍ଧର୍ବ ସୁରୁଚି ବିଖ୍ୟାତ ॥
ସୃତୀର ନାମେ ଅପସରା । ଗୌତମ ନାମେ ଋଷିଧୀରା ॥
ଯେବେ ଆଶ୍ୱିନ ମାସେ ପୁଣ । ଇନ୍ଦ୍ର ନାମେ ଆଦିତ୍ୟ ଜାଣ ॥
ବିଶ୍ୱାବସୁ ନାମେ ଗନ୍ଧର୍ବ । ଯନାବତୀ ନାମେଣ ନାଗ ॥
ଋଷିଙ୍କ ନାମ ଯେ ଅଙ୍ଗିରା । ପରମଲୋପ ଅପସରା ॥
ସୂର୍ଯ୍ୟ ନାମେଣ ଯେ ରାକ୍ଷସ । ସତ୍ୟଜିତ ନାମେ ଦକ୍ଷସ ॥
ଯେବେ ଯେ କାର୍ତ୍ତିକ ମାସେଣ । ଆଦିତ୍ୟ ନାମ ଯେ ଗର୍ଜନ ॥
ସର୍ବଜିତ ନାମେଣ ଯକ୍ଷ । ଯେ ଭରଦ୍ୱାଜ ମହଋଷି ॥
ସେନଜିତ ନାମେ ରାକ୍ଷସ । ଐରାବତ ନାଗ ଈଶ ॥
ବିସ୍ମ ନାମେଣ ଅପସରା । ବୃଭାବସୁ ଗନ୍ଧ ବିବରା ॥
ଯେବେ ଯେ ମାର୍ଗଶୀର ମାସ । ଅଗ୍ନି ନାମେ ଆଦିତ୍ୟ ଅଂଶ ॥
କଶ୍ୟପ ନାମେ ମହଋଷି । ତାରେକ ନାମେଣ ରାକ୍ଷସୀ ॥
ଚିତ୍ରସେନ ଗନ୍ଧର୍ବ ବୀରା । ଉର୍ବଶୀ ନାମେ ଅପସରା ॥
ବିଦ୍ୟୁ କ୍ଷତୋ ନାମେ ରାକ୍ଷସ । ମହାଶଙ୍ଖ ନାମେ ନାଗେଶ ॥
ଯେବେ ହୋ ପୁଷମାସେ ପୁଣ । ଭଗ ନାମେ ଆଦିତ୍ୟ ଜାଣ ॥
ପୁରଞ୍ଜନ ନାମେଣ ଯକ୍ଷ । ପୂର୍ଣ୍ଣେୟ ନାମେ ଗନ୍ଧର୍ବକ୍ଷ ॥
ଯମଦ ଅଗ୍ନି ନାମେ ଋଷି । କଳଳାସନା ଗନ୍ଧର୍ବସି ॥
ତିଳୋତ୍ତମା ଯେ ଅପସରା । ବ୍ରହ୍ମପେତ ନାମେ ଅସୁରା ॥

ରିତୁଜିତ ନାମେଣ ଦକ୍ଷ । ଧୃତରାଷ୍ଟ୍ର ସେ ନାଗଦକ୍ଷ ॥
ଯେବେ ଯେ ଫାଲଗୁନ ମାସେ । ବିଷ୍ଣୁ ନାମେ ଆଦିତ୍ୟ ଅଂଶେ ॥
ନାଗ ନାମେ ଯେ ନାଗବୀରା । ରମ୍ଭା ନାମେ ଯେ ଅପସରା ॥
ସୂର୍ଯ୍ୟ ଦକ୍ଷ ନାମେଣ ଯକ୍ଷ । ଶଙ୍ଖପତି ନାମେ ରାକ୍ଷସ ॥
ବିଶ୍ୱାମିତ୍ର ନାମେଣ ଋଷି । ଚିତ୍ରସେନ ଗନ୍ଧର୍ବ ବସି ॥
ଯେ ରୂପେ ବାରମାସେ ପୁଣ । ସାତ ସାତ ରୂପେ ଭ୍ରମଣ ॥
ଯେ ସର୍ବେ ସୂର୍ଯ୍ୟଙ୍କ ବିଭୂତି । ଜ୍ୟୋତିଷ ଚକ୍ରେ ଏ ଭ୍ରମନ୍ତି ॥
ଯେହାକୁ ଦୁଇ ଯେ ସନ୍ଧ୍ୟାରେ । ସ୍ମରଣ କରନ୍ତି ନିତ୍ୟରେ ॥
ତାଙ୍କର ପାପ ଦିନେ ଦିନେ । ହରନ୍ତି ସୂର୍ଯ୍ୟ ଉପାସନେ ॥
ଯେ ବାର ମାସେ ସୂର୍ଯ୍ୟ ଏକ । ନାରାୟଣ ପରମାତ୍ମକ ॥
ସେ ସୂର୍ଯ୍ୟ ଜ୍ୟୋତି ମଣ୍ଡଳରେ । ଘେନି ଏ ବାର ଆଦିତ୍ୟରେ ॥
ଦ୍ୱାଦଶାଦିତ୍ୟ ତେଜ ବହି । ଷଡ ଋତୁ ଜାତ ହୁଅଇ ॥
ଇହଲୋକ ପରଲୋକରେ । ଯା ତେଜ ପରକାଶ କରେ ॥
ପାତାଳ ସପତ ଲୋକରେ । ଆପଣେ ଉଦେ ଅସ୍ତକରେ ॥
ପରଲୋକ ଇହ ପାତାଳେ । ପ୍ରାଣୀଙ୍କୁ ସଦଗତି କରେ ॥
ସାମ ଯଜୁ ଋକ ଏ ତିନି । ବେଦ ମନ୍ତ୍ରମାନଙ୍କେ ମାନି ॥
ଅପସରା କରନ୍ତି ନୃତ୍ୟ । ରଥ ଓଟାରନ୍ତି ଜଗତ ॥
ଯକ୍ଷମାନେ ରଥ ଯୋଚନ୍ତି । ପ୍ରାଣୀକି ଦ୍ରବ୍ୟ ସେ ଦିଅନ୍ତି ॥
ରଥ ପୃଷ୍ଠେ ରାକ୍ଷସେ ଥାଇ । ରଥ ରକ୍ଷା କରି ଚଳାଇ ॥
ଅରୁଣ ସାରଥିର ନାମ । ସାତ ଅଶ୍ୱତାଳି ବେଗେଣ ॥
ଗାୟତ୍ରୀ ଆଦି ଛନ୍ଦ ସାତ । ବହନ୍ତି ବିଶ୍ୱରୂପୀ ରଥ ॥
ସେ ରଥ ଆଗରେଣ ବସି । ଷାଠି ସହସ୍ର ବାଳ ଋଷି ॥
ଆନନ୍ଦେ ସ୍ତୁତି କରୁଛନ୍ତି । ପ୍ରାଣୀଙ୍କି ଆଶୀର୍ବାଦ ଦ୍ୟନ୍ତି ॥
ଯେ ଭାବେ ଅନାଦି ନିଧନ । ସେ ଯେ ଈଶ୍ୱର ଭଗବାନ ॥
ଦିନେ ଦିନେ ଆତ୍ମା ବିସ୍ତାରି । ତେଜ ମଣ୍ଡଳେ ପରଚରି ॥
ପ୍ରକାଶି ଦିବା ରାତ୍ରି କରି । ନିତ୍ୟେ ଭ୍ରମଣ ସର୍ବପୁରୀ ॥
ଅକ୍ଷୟ ଅବ୍ୟୟ ବିନାଶି । ଅସ୍ତ ନାହିଁ ଉଦେ ଅହ୍ନସି ॥
ଯେ ଠାବରେ ଦୃଶ ହୁଅଇ । ସେ ଠାବେ ଉଦୟେ ହୁଅଇ ॥
ନ ଦିଶିଲା ଠାବରେ ଅସ୍ତ । ଯେଣୁ ରାତ୍ର ଦିବସ ମତ ॥
ନିତ୍ୟେ ମେରୁ ଭ୍ରମଣ କାଳେ । ପୂର୍ବ ପଶ୍ଚିମ ଭ୍ରମ ବେଳେ ॥
ଉଦୟାସ୍ତ ଦୁଇ ପର୍ବତ । ଆରୋହଣ ବେଳେ ନିମତ ॥
ତିନି କୋଟି ଅର୍ଦ୍ଧ କୋଟିଏ । ବ୍ରହ୍ମ ରୋମରୁ ଜାତ ହୋଏ ॥
ବ୍ରହ୍ମ ରାକ୍ଷସ ସେ ପ୍ରମାଣ । ନିତ୍ୟେ ବ୍ରହ୍ମଶାପ ପାଇଣ ॥
ନିତ୍ୟେ ଦୁଇବେଳ ଲେଖାଏ । ମରନ୍ତି ଜୀଅନ୍ତି ନିଶ୍ଚଏ ॥
ଯେ ସୂର୍ଯ୍ୟ ଉଦୟର କାଳେ । ସୂର୍ଯ୍ୟଙ୍କୁ ଗ୍ରାସନ୍ତି ସେ ହେଳେ ॥

ଯେଣୁ ବ୍ରହ୍ମ ଶାପରେ ପୁଣ । ବ୍ରହ୍ମ ଋଷି ଆଦି ବ୍ରାହ୍ମଣ ॥
ସୂର୍ଯ୍ୟଙ୍କୁ ଶୂନ୍ୟ ମୁଖ ହୋଇ । ଗାୟତ୍ରୀ ମନ୍ତ୍ର ଉଚ୍ଚାରଇ ॥
ତିନି ଆଞ୍ଜୁଳି ଜଳ ଦେଇ । ଦୁଇ ସନ୍ଧ୍ୟା ଆକାଶ ଚାହିଁ ॥
ଜଳକୁ ଟେକିଣ ପକାନ୍ତି । ମନ୍ତ୍ରେ ସେ ଜଳ ବଜ୍ର ହୋନ୍ତି ॥
ରାକ୍ଷସ ଉପରେ ପଡନ୍ତି । ରାକ୍ଷସେ ଭସ୍ମ ହୋଇଯାନ୍ତି ॥
ସୂର୍ଯ୍ୟ ଯେ ବଳବନ୍ତ ହୋଇ । ତେଜେ ଜଗତ ପ୍ରକାଶଇ ॥
ସେ ସୂର୍ଯ୍ୟଙ୍କର ରଥଚକ୍ର । ମାନସୋତ୍ତର ଗିରିଶିଖ ॥
ପୁଷ୍କର ଦ୍ୱୀପ ମଧ୍ୟେ ସେହି । ରଥ ଏକ ଚକ୍ରେ ଭ୍ରମଇ ॥
ସମ୍ବତ୍ସରକେ ସେହୁ ପୁଣ । ମକର ଆଦି ଛ ମାସେଣ ॥
ଉତ୍ତରାୟଣ ତାକୁ କହି । ଦେବଙ୍କୁ ଦିବସ ଅଟଇ ॥
କକଡା ବିଛା ମାସେ ଯେବେ । ଦକ୍ଷିଣାୟନ କହି ତେବେ ॥
ଯେମନ୍ତ ଦୁଇ ଯେ ଅୟନ । ରାତ୍ର ଦିବସ ବିଦ୍ୟମାନ ॥
ଯେ ଭାବେ ରଥେ ଭ୍ରମୁଛନ୍ତି । ଯୋଜନେ ଅୟୁତ ସେ ପ୍ରତି ॥
ଅଠର ସହସ୍ର ଯୋଜନ । ଉଚ୍ଚ ଅଟଇ ବିଦ୍ୟମାନ ॥
ଅଷ୍ଟାଦଶ ସସ୍ର ଯୋଜନ । ଲମ୍ବ ତା ଅଟଇ ପ୍ରମାଣ ॥
ଲକ୍ଷେ ସତୁରୀ ସସ୍ର ଯୁଣ । ଅଖର ଲମ୍ବ ତାର ଜାଣ ॥
ପଡ଼ି ଅଖ ଲମ୍ବ ତଳର । ଦି କୋଟି ତେପନ ଲକ୍ଷର ॥
ସତୁରୀ ସହସ୍ର ଯୋଜନ । ଅଖ ମୁଣ୍ଡି ଲୋକାଲୋକେଣ ॥
ଉପରେ ପଡ଼ି ଅଖପୁଣ । ଚଉଦ ଲକ୍ଷ ସେ ଯୋଜନ ॥
ଷୋଳ ସହସ୍ର ଯେ ଆବର । ଯେ ମୁଣ୍ଡ ଲାଗିଛି ମେରୁର ॥
ଧ୍ରୁବ ମଣ୍ଡଳ ବ୍ୟାପୀ ଅଛି । ବିମାନମାନ ତହିଁ ଗଛି ॥
ସବୁ ଗ୍ରହମାନଙ୍କ ରଥ । ଦଉଡ଼ି ମାନ ସେ ନିର୍ମିତ ॥
ଧ୍ରୁବ ମଣ୍ଡଳ ସିସୁମାରେ । ବନ୍ଧନ ଯେ ଯାହା ଭେଦରେ ॥
ଦଉଡ଼ିମାନଙ୍କର ପୁଣ । ତିନିଶ ଷାଠିଏ ପ୍ରମାଣ ॥
ପ୍ରତି ଦଉଡ଼ି ଲାଗିଛନ୍ତି । ସେ ମେରୁ ରନ୍ଧ୍ରେ ଲାଗିଛନ୍ତି ॥
ତହିଁ ନିତ୍ୟେ ନିତ୍ୟେ ଭ୍ରମଣ । ଦିବାରାତ୍ର ହୋଏ ଯେସନ ॥
ମନୁଷ୍ୟମାନଙ୍କୁ ଯେ ହୋଇ । ଦେବମାନଙ୍କୁ ଦିନେ କହି ॥
ଯେବଂଭୂତ ସେ ଯେଉଁ ରଥ । ଯେ ଯହିଁ ମାୟାତ୍ମକ ପଥ ॥
ସମ୍ବତ୍ସର କରତା ବୋଲି । କାଳ ଗଣନା ଯେ କହିଲି ॥
ଯେ ସମ୍ବତ୍ସର ସେ ଚକ୍ରର । ତିନି କୋଟି ନାଭି ତାହାର ॥
ବରଷା ଶୀତ ଗ୍ରୀଷ୍ମ ଘେନି । ତ୍ରିକାଳ ବୋଲାନ୍ତି ଏ ତିନି ॥
ଚକ୍ରରେ ବାରକୋଟି ଅର । ବାରମାସ ନାମ ତାହାର ॥
ଛଗୋଟି ପହିଛନ୍ତି ତହିଁ । ଷଡ ଋତୁଙ୍କ ସ୍ଥାନ ସେହି ॥
ସାତଶ କୋଟିଏ ଯେ ପହି । ଯେକ ଚକରେ ସେହୁ ଥାଇ ॥
ରାତ୍ର ଯେ ଦିବସ ହୋଇଣ । ସାତଶ କୋଟିଯେକ ଜାଣ ॥
ଯେମନ୍ତ ହୋଇ ସମ୍ବତ୍ସର । ଭ୍ରମୁଅଛି ସେ ଚକ୍ରଧର ॥
ଯେ କାଳେ ଚକ୍ର ବୋଲି କହେ । କାଳ ସ୍ୱରୂପୀ ସୂର୍ଯ୍ୟ ହୋଏ ॥
ସେ ସୂର୍ଯ୍ୟ ନିରାକାର ଜ୍ୟୋତି । ଉତ୍ପତ୍ତି ପ୍ରଳୟ କରନ୍ତି ॥
ଯେ ସଦା ଥାଇ ଯେ ଅନାଦି । ଅଜ୍ରାମର ବ୍ରହ୍ମ ସମାଦି ॥
ଭୂତ ଭବିଷ୍ୟ ବର୍ତ୍ତମାନ । ସର୍ବମୟ ହିତ କାରଣ ॥
ପରମ ବ୍ରହ୍ମ ସେ ସ୍ୱରୂପୀ । ସଂସାର କର୍ତ୍ତା ସର୍ବବ୍ୟାପୀ ॥
ସଂସାରେ ଏ ଆଦି କାରଣ । ସକଳ ଏହାଙ୍କ ଭିଆଣ ॥
ଯେ ଯେହା ପଢନ୍ତି ଶୁଣନ୍ତି । ବିଷ୍ଣୁ ସ୍ୱରୂପୀ ତାଙ୍କୁ ଚିନ୍ତି ॥
ସେ ସର୍ବ ପାପରୁ ତରଇ । ଅଗ୍ନି ଯେସନେ ସର୍ବ ଦହି ॥
ସୂତ କହନ୍ତି ବିଷ୍ଣୁ ଭାବେ । ଶୁଣ ଶୌନକ ଆଦି ସର୍ବେ ॥
ସୁଜନେ ଶୁଣସି ଆନନ୍ଦେ । ଭଗତି ହେଉ କୃଷ୍ଣ ପାଦେ ॥
ଯେ ମହା ବିଷ୍ଣୁଙ୍କ ମହିମା । ସୂର୍ଯ୍ୟ ଭ୍ରମଣ ସୁଖ ସୀମା ॥
ଶୁଣିଲେ ସଂସାରୁ ତରିବ । ଅନ୍ତେ ସେ ବୈକୁଣ୍ଠ ପାଇବ ॥
ଶ୍ରୀବିଷ୍ଣୁ ପୁରାଣ ଭକତି । ଚନ୍ଦ୍ରମଣ୍ଡଳର ଯେ ଗତି ॥
ଅମୃତମୟ ରୂପ ତାର । କ୍ଷୀରାର୍ଣ୍ଣବରୁ ଜାତ ଯାର ॥
ଶୁକଳ ପକ୍ଷେ ବୃଦ୍ଧି ହୋଇ । କୃଷ୍ଣ ପକ୍ଷରେ କ୍ଷଏ ଯାଇ ॥
କୃଷ୍ଣ ପକ୍ଷ ପ୍ରତିପ ଦିନ । ଯେ ଆଦି ପନ୍ଦର ଦିନେଣ ॥
ଦିନକୁ ଦିନ ବିଦ୍ୟମାନ । ଅମୃତ କରନ୍ତି ସେ ପାନ ॥
ଅମାସ୍ୟା ଦିନ କଳାହୀନେ । ଚନ୍ଦ୍ର ପଳାଇ ସୂର୍ଯ୍ୟ ଲୀନେ ॥
ଆବର ତୃଣ ଜଳ ମଧ୍ୟେ । ଲୁଚଇ ଭଏମାନ ସାଧ୍ୟେ ॥
ଯେଣୁ ସର୍ବ ନିଷେଦ୍ଧ ଦିନ । ଗାବ ଯେ ତୃଣ ଜଳ ପାନ ॥
କ୍ଷୀର ଘୃତ ତାର ସଂଯୋଗେ । ଋଷି ବିପ୍ର ଆହୁତି ଭାଗେ ॥
କଳା ହୁଅଇ ବର୍ଦ୍ଧମାନ । ପଞ୍ଚଦଶ ଦିନେ ସଂପୂର୍ଣ୍ଣ ॥
କହଇ ଦାସ ଜଗନ୍ନାଥ । ମହାବିଷ୍ଣୁ ସୂର୍ଯ୍ୟେନ୍ଦୁ ମତ ॥
ଶୁଣିଲେ ସର୍ବ ପାପୁତରେ । ବିଷ୍ଣୁ ଭଗତି ହୋଇ ତରେ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ ଆଦିତ୍ୟ ହୃଦୟ ବ୍ୟୁହବିବରଣଂ ନାମ ଏକାଦଶୋଽଧ୍ୟାୟଃ ।*

## ଦ୍ୱାଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ସୂତ କହନ୍ତି ସୁଚିତ୍ତରେ । ଶୌନକ ମୁନିଙ୍କ ଆଗରେ ॥
ଧର୍ମ ଦେବତା ଦିବାକର । ତାଙ୍କୁ ମୋହର ନମସ୍କାର ॥
ସେ ଧର୍ମ ସର୍ବ ଦେବ ଶ୍ରେଷ୍ଠ । ସାଧୁ ପାଳି ନାଶନ୍ତି ଦୁଷ୍ଟ ॥
ବିଷ୍ଣୁ ସ୍ୱରୂପୀ ତନୁ ବ୍ରହ୍ମ । ତା ପାଦେ ସର୍ବଦା ପ୍ରଣମ ॥

ଯେ ବ୍ରହ୍ମଋଷି ବିପ୍ରବର । ତାଙ୍କୁ ଯେ କରୁ ନମସ୍କାର ॥
ଶ୍ରୀ ଭାଗବତ ପୁରାଣରେ । ଯେ ଧର୍ମ ହୋଇଛି ସଂସାରେ ॥
ତା' ତୁମ୍ଭେ ସାବଧାନେ ଶୁଣ । ଶ୍ରୀକୃଷ୍ଣ ଲୀଳାର ପୁରାଣ ॥
ମହାପୁରୁଷର ସ୍ୱରୂପୀ । ନିର୍ଣ୍ଣୟ ଯେହୁ ଜଗଦ୍‌ବ୍ୟାପୀ ॥
ନାରାୟଣ ରୂପୀ ଯେ ସୂର୍ଯ୍ୟ । କହି ତା ମହିମା ଆଶ୍ଚର୍ଯ୍ୟ ॥
ଶ୍ରୀ ଭାଗବତ ଏ ପୁରାଣ । ସାକ୍ଷାତ ବିଷ୍ଣୁର ନିର୍ମାଣ ॥
ଯେ ହରି ସର୍ବ ପାପ ହରେ । ତାଙ୍କ ମହିମା ନିରନ୍ତରେ ॥
ଆଦି ଅନ୍ତ କୀର୍ତ୍ତନ ହୋଇ । ନାରାୟଣ ମହିମା କହି ॥
କରି ଯେ ଜନ ତହିଁ ସ୍ନାନ । ତନ୍ମୟେ ତହିଁରେ ଶୟନ ॥
ତେଣୁ ନାରାୟଣ ବୋଲାନ୍ତି । ପାପ ହରଣେ ହରିଗତି ॥
ଇନ୍ଦ୍ରିୟ ଗଣ ମାନଙ୍କର । ତାଙ୍କ ଉପରେ ସର୍ବେଶ୍ୱର ॥
ତେଣୁ ହୃଷୀକେଶ ବୋଲାନ୍ତି । ମହିମା କେହି ନ ଜାଣନ୍ତି ॥
ଭୋଗ ଯେ ଅଷ୍ଟ ଅଇଶ୍ୱର୍ଯ୍ୟ । ଅଣିମାଦି ଧର୍ମ ଜ୍ଞାନଦ ॥
ଯଶ ବୈରାଗ୍ୟ ଶିରୀମାନ । ଏ ସମୋହ ଆଦି ହୋଇଣ ॥
ଏଣୁ ଭଗବାନ ବୋଲାନ୍ତି । ପ୍ରାଣୀକି ସଂସାରେ ଭ୍ରମାନ୍ତି ॥
ତଦ୍ଭୂତ ଯେ ବୈଷ୍ଣବେ ଜନ । ସାତ୍ୱତ୍ୟେ ଯଦୁବଂଶ ପୁଣ ॥
ଯାଦବ ପତି ସେହି ଯେଣୁ । ସାତ୍ୱତ୍ୟ ନାମ ତାଙ୍କ ତେଣୁ ॥
ତାଙ୍କର ମହିମା ବଖାଣ । ହୋଇଛି ଶ୍ରୀଭାଗବତେଣ ॥

## ଶ୍ରୀ ସୂତ ଉବାଚ

ପରମ ବ୍ରହ୍ମ ଯେ ଈଶ୍ୱର । ପରମ ଗୁପ୍ତ ଏ ସଂସାର ॥
ଉତ୍ପତି ସ୍ଥିତି ଯେ ପ୍ରଳୟ । ଏହୁ ଅନାଦି ବିଷ୍ଣୁମୟ ॥
ଭାଗବତ ପ୍ରଥମ ସ୍କନ୍ଧେ । ବନ୍ଦେ ଶ୍ରୀକୃଷ୍ଣ ପଦ୍ମପାଦେ ॥
ତାହାଙ୍କ ଜାଣିମା ଯେ ଜ୍ଞାନ । ତହିଁର ଚରିତ ବୟାନ ॥
ଅନୁଭବ ଜ୍ଞାନ ସମେତେ । ବର୍ଣ୍ଣନା ହୁଅନ୍ତି ଯେମନ୍ତେ ॥
ଭକ୍ତିଯୋଗ ବର୍ଣ୍ଣନାମାନ । ସାଂଖ୍ୟ ଯୋଗ ବୈରାଗ୍ୟ ଜ୍ଞାନ ॥
ଜ୍ଞାନ ଆଶ୍ରୟ ଯେଉଁ ବ୍ରହ୍ମ । ତାର ମହିମା ସେ ଉତ୍ତମ ॥
ନାରଦ ଦେବବ୍ୟାସଙ୍କର । ବଦ୍ରିକା ଆଶ୍ରମ ବିଚାର ॥
ସେ ନାରଦଙ୍କ ସୁଖତହିଁ । ବ୍ୟାସ ଯେ ଭାଗବତ ପାଇ ॥
ପୂର୍ବର ତିନି ଜନ୍ମ କଥା । ନାରଦ କହିଲେ ବ୍ୟବସ୍ଥା ॥
ପଞ୍ଚ କଟକରେ ରାଜନ । ନାମ ତାହାର ଦୁର୍ଯ୍ୟୋଧନ ॥
ସମର ଶେଷେ ଜାନୁଭଗ୍ନ । ପଡ଼ିଲା ଠାରେ ଆଚରଣ ॥
କୃପ ଆଚାର୍ଯ୍ୟ କୃତବର୍ମା । ତା ପୁତ୍ର ନାମ ଅଶ୍ୱତ୍ଥମା ॥
ଦୁର୍ଯ୍ୟୋଧନ ପ୍ରୀତି ନିମନ୍ତେ । ଅବନୀ ଅପାଣ୍ଡବ ଅର୍ଥେ ॥
ପାଣ୍ଡବେ ପାଞ୍ଚାଳ କୁମର । ପେଶିଲା ଅଶ୍ୱତ୍ଥମା ଶର ॥
ମାରିଣ ଦୁର୍ଯ୍ୟୋଧନ ଆଗେ । ସେ ପାଞ୍ଚମୁଣ୍ଡ ଦେଲା ବେଗେ ॥
ତା ଦେଖି ରାଜା କ୍ରୋଧ କଲା । ଆପଣେ ପ୍ରାଣ ବିସର୍ଜ୍ଜିଲା ॥
ପଞ୍ଚ କୁମର ବଧ ଶୁଣି । କୃଷ୍ଣ ଅର୍ଜ୍ଜୁନ କୋପେ ପୁଣି ॥
ଯୁଦ୍ଧେ ଜିଣିଣ ମଥାମଣି । ଦ୍ରୌପଦୀ ଆଗେ ଦେଲେ ଆଣି ॥
ଯୁଧିଷ୍ଠି ଆଗେ ସମର୍ପିଲେ । ତାହାକୁ ସାତ ବେଣ୍ଢି କଲେ ॥
ସେ ଅଭିମାନେ ଅଶ୍ୱତ୍ଥମା । ପାଣ୍ଡବେ ପେଶେ ଶର ବ୍ରହ୍ମା ॥
ଉତ୍ତରା ଗର୍ଭେ ଯେ ବାଳକ । ପେଶିଲା ଯେ ବ୍ରହ୍ମ ଶରେକ ॥
ଅଙ୍ଗୁଳି ପ୍ରମାଣେ ପୁରୁଷ । ଉତ୍ତରା ଗର୍ଭରେ ପ୍ରବେଶ ॥
ଶ୍ରୀକୃଷ୍ଣ ଚକ୍ର ଘେନି ତହିଁ । ବ୍ରହ୍ମ ସହସ୍ରକୁ ଛେଦଇ ॥
ଗର୍ଭେ ବାଳକ ରକ୍ଷା କଲେ । ପରୀକ୍ଷ ଜନମ ହୋଇଲେ ॥
ଯୁଧିଷ୍ଠି ଅଶ୍ୱମେଧ ଯାଗ । ଯେତେକ ଭାଗ୍ୟ କଲେ ଭୋଗ ॥
କଳିରୁ ଛତିଶ ବରଷ । ସେ ରାଜ ପଣେ କଲେ ଦେଶ ॥
ପରୀକ୍ଷ କଲେ ରାଜପଣ । ପାଣ୍ଡବେ ସ୍ୱର୍ଗ ଆରୋହଣ ॥
ଶ୍ରୀକୃଷ୍ଣ ବୈକୁଣ୍ଠ ବିଜେ । ଯାଦବେ ସର୍ବେ ଗଲେ କ୍ଷୟେ ॥
ପରୀକ୍ଷିତ ଦିଗ ବିଜୟେ । କଳିଯୁଗକୁ ଦଣ୍ଡ ଦିଏ ॥
ପରୀକ୍ଷିତର ରାଜ୍ୟଭୋଗ । ଏକଷଠି ବରଷ ଭୋଗ ॥
ଯେମନ୍ତେ ପରୀକ୍ଷ ରାଜନ । ମୃଗୟା ବେହାରେ ଗମନ ॥
ଶର୍ମିକ ଋଷି ଆଶ୍ରମରେ । ତୃଷାରେ ଜଳ ମାଗି ତାରେ ॥
ଋଷି ଗଳାରେ ମୃତସର୍ପ । ରାଜା ଲମ୍ୱାଇ ଅତି କୋପ ॥
ଋଷି ବାଳକ ଶୃଙ୍ଗୀ ନାମେ । ରାଜାକୁ ଶାପ ଦେଲା ତମେ ॥
ସେ ଶାପ ପରୀକ୍ଷିତ ଜାଣି । ପୁତ୍ରକୁ କରି ନୃପମଣି ॥
ରାଜ୍ୟ ସେ ଛାଡ଼ି ଗଙ୍ଗାକୂଳେ । ଶୋଇଲା ସେ କୁଶ ଶେଯରେ
ସକଳ ବ୍ରହ୍ମଋଷିମାନେ । ଶୁକ ଦେବଙ୍କ ଆଗମନେ ॥
ସେ ରାଜା ସର୍ବଋଷି ଗଣେ । ପୁଚ୍ଛିଲେ ନିସ୍ତାର କାରଣେ ॥
ପ୍ରସନ୍ନ ଶୁକଦେବ ହୋଇ । ଶ୍ରୀ ଭାଗବତ ଗ୍ରନ୍ଥ କହି ॥
ଉନବିଂଶ ଅଧ୍ୟାରେ ଶୁଣ । ପ୍ରଥମ ସ୍କନ୍ଧ ଯେ ସମ୍ପୂର୍ଣ୍ଣ ॥
ଦ୍ୱିତୀୟ ସ୍କନ୍ଧ ଆଦ୍ୟରେଣ । ଶୁକ ପରୀକ୍ଷିତେ କହିଣ ॥
ପରମ ଆତ୍ମା ଯେ ପୁରୁଷ । ବିରାଟ ରୂପେଣ ପ୍ରକାଶ ॥
ପରମ ଆତ୍ମା ଭେଟିବାରେ । ଅଷ୍ଟାଙ୍ଗ ଯୋଗ ଧାରଣାରେ ॥
ଆତ୍ମା ପରମାତ୍ମା ଏକତ୍ୱ । ନିର୍ଣ୍ଣୟ ହୋଇ ଯେଉଁ ମତ ॥
ତ୍ରିକୂଟେ ପଶି ସତ୍ତ୍ୱଦଳ । ପ୍ରାଣ ପଶିବା ଯେ ପ୍ରକାର ॥
ବ୍ରହ୍ମା ନାରଦଙ୍କ ସମ୍ବାଦ । ଉପଦେଶ ଶ୍ରୀ ଭାଗବତ ॥
ବ୍ରହ୍ମା ଠାରୁ ନାରଦ ପାଇ । ଚାରି ଶୋଳକେ ବୋଧ ହୋଇ
ନାରଦ ଦଶ ଶ୍ଳୋକ ପୁଣ । ବ୍ୟାଖ୍ୟାନ କଲେ ସେ ପୁରାଣ
ସେ ମହାବିରାଟ ପୁରୁଷ । ତାଙ୍କ ଉତ୍ପତି ସ୍ଥିତି ନାଶ ॥
ଚୌବିଂଶ ଅବତାର ଲୀଳା । ବ୍ରହ୍ମାଣ୍ଡ ଉତ୍ପତି ଯେ କଲା ॥

ଦ୍ୱିତୀୟ ସ୍କନ୍ଧେ ଏ ଚରିତ । ବିଂଶ ଅଧ୍ୟାରେ ସମାପତ ॥
ଏବେ ତୃତୀୟର ଏ ବାଣୀ । ବିଦୁର ଉଦ୍ଧବ ଭାଳେଣି ॥
ବିଦୁର ମୈତ୍ରେୟ ସମ୍ବାଦ । ପୁରାଣ ସଂହିତାର ଭେଦ ॥
ବିଦୁର ପ୍ରସନ୍ନ ଆନନ୍ଦେ । ଚିତ୍ତ ନିବେଶି କୃଷ୍ଣପାଦେ ॥
ମହାପୁରୁଷଙ୍କ ନିର୍ଣ୍ଣୟ । ପାଞ୍ଚ ପ୍ରକୃତିଙ୍କ ସଂଶୟ ॥
ସତେ ବୈକୁଣ୍ଠ ଏକସଙ୍ଗ । ବ୍ରହ୍ମାଣ୍ଡ ଉପ୍ରରି ଯେ ମାର୍ଗ ॥
ବିରାଟ ପୁରୁଷ ସ୍ୱରୂପ । କାଳ ସ୍ଥୁଳ ସୂକ୍ଷ୍ମ ସ୍ୱରୂପ ॥
ନାଭି କମଳୁ ଉତପତି । ମହାପଦ୍ମ ନାମ ବିଖ୍ୟାତି ॥
ଦିନ ପ୍ରଳୟର କାରଣ । ଏକାର୍ଣ୍ଣବ ଜଳ ରୂପେଣ ॥
ବରାହ ଅବତାର ହୋଇ । ଦନ୍ତାଗ୍ରେ ପୃଥିବୀ ଧରଇ ॥
ଆଦି ଅସୁର ଅବତାର । ହିରଣାକ୍ଷ ବଧ ବିଚାର ॥
ଦେବତା ଗନ୍ଧର୍ବ କିନ୍ନର । ସିଦ୍ଧ ଚାରଣ ବିଦ୍ୟାଧର ॥
କିଂ ପୁରୁଷ ଆଦି ଏମାନ । ଏ ସର୍ବ ଉତ୍ପତି କାରଣ ॥
ବ୍ରହ୍ମା ଦେହରୁ ଉତପନ୍ନ । ସ୍ଥାବର ଜଙ୍ଗମାଦି ମାନ ॥
କୀଟ ପତଙ୍ଗ ଚାରିଖାନି । ସ୍ୱେଦନ ଅଣ୍ଡଜ ଯେ ବେନି ॥
ଉଦ୍ଭିଦ ଆଦି ଚାରିଖାନି । ଏମନ୍ତ ସୃଷ୍ଟି ଲାଭହାନି ॥
ଏ ରୂପେ ବ୍ରହ୍ମାର ସର୍ଜନ । ପାତାଳ ବାସୀଙ୍କ ଉତ୍ପନ୍ନ ॥
ଦିବା ରାତ୍ର ତ୍ରିସଂଧ୍ୟା ମାନ । କାଳରୁ ଉତ୍ପତି ଯେ ଜ୍ଞାନ ॥
ଉର୍ଦ୍ଧ୍ୱ ନରନାରୀ ଉତ୍ପତି । ସ୍ୱୟଂଭୁବ ମନୁର ସ୍ଥିତି ॥
ଶତରୂପା କନ୍ୟାର ଜନ୍ମ । ଏକାଦଶ ରୁଦ୍ର ଉତ୍ପନ୍ନ ॥
ସନକାଦି ଯେ ଋଷିମାନେ । ସ୍ୱୟଂଭୁ ଦୁଇପୁତ୍ର ଜନ୍ମେ ॥
ଆବର ତିନି କନ୍ୟା ହୋଇ । ଏଥୁଁ ଯେମନ୍ତେ ସମ୍ଭବଇ ॥
ଧର୍ମ ଯେ ପତ୍ନୀ ମାନେ ଶ୍ରୁତା । ଏହାଙ୍କ ଯେବା ଆଚରେଣ ॥
ଚଉଦ ଦକ୍ଷ ପ୍ରଜାପତି । ତାଙ୍କ କନ୍ୟାଙ୍କର ସନ୍ତତି ॥
ବ୍ରହ୍ମାଙ୍କ ପୁତ୍ର ସେହୁ ପୁଣ । କର୍ଦ୍ଦମ ପ୍ରଜାପତି ନାମ ॥
ତାଙ୍କ ଭାରିଜା ଦେବହୂତି । ସ୍ୱୟଂମ୍ଭୁ ମନୁଙ୍କ ଦୋହିତୀ ॥
ତାଙ୍କ ଗର୍ଭରୁ ଜାତ ପୁଣ । ନବକନ୍ୟା ଏକ ନନ୍ଦନ ॥
ଏ କନ୍ୟା ନବ ପ୍ରଜାପତି । ବିବାହେ ତାହାଙ୍କ ସନ୍ତତି ॥
କର୍ଦ୍ଦମ ପୁତ୍ର ଯେ କପିଳ । ସେ ବିଷ୍ଣୁ ଅଂଶ ଜ୍ଞାନବଳ ॥
ମାତାଙ୍କୁ ଧର୍ମ ଜ୍ଞାନ କହି । ବିଷ୍ଣୁର ମହିମା ବୁଝାଇ ॥
ତୃତୀୟ ସ୍କନ୍ଧେ ଏ ଚରିତ । ତେତିଶି ଅଧ୍ୟା ସମାପତ ॥
ଚତୁର୍ଥ ସ୍କନ୍ଧେ ଏ ବର୍ଣ୍ଣନ । ନବ ପ୍ରଜାପତିଙ୍କ ଜନ୍ମ ॥
ତାହାଙ୍କ ବଂଶାନୁଚରିତ । ସଂସାରେ ଯହୁଁ ଯେ ଉଦିତ ॥
ଦକ୍ଷ ପ୍ରଜାପତି ଏ ପୁଣ । ଯାଗ ଯେ କଲେକ ଉଦ୍ୟମ ॥
ଶିବ ଯେ ଯଜ୍ଞ ଭଗ୍ନ କଲେ । ପାର୍ବତୀ ନିଧନେ କୋପିଲେ ॥
ତହୁଁ ଯେ ଧ୍ରୁବର ଚରିତ । ତପେଣ ତୋଷିଲେ ଅନନ୍ତ ॥
ତହୁଁ ଯେ ପୃଥୁର କାହାଣୀ । ଯେମନ୍ତେ ଦୁହିଁଲେ ଧରଣୀ ॥
ପ୍ରାଚୀନ ବରହି ପ୍ରମୋଦ । ଏ ରାଜା ନାରଦ ସମ୍ବାଦ ॥
ପୁରଞ୍ଜନ ର ଉପାଖ୍ୟାନ । ଦଶ ପ୍ରଚେତାଙ୍କ ବର୍ଣ୍ଣନ ॥
ଯେ ରାଜା ପ୍ରାଚୀନ ବରହି । ଏହାର ଦଶପୁତ୍ର ହୋଇ ॥
ଦଶ ପ୍ରଚେତାଙ୍କର ପୁଣ । ହୋଇଲା ଏକଇ ନନ୍ଦନ ॥
ନାମ ତା ଦକ୍ଷ ପ୍ରଜାପତି । ଏକା ମାତା ଗର୍ଭୁ ଉତ୍ପତି ॥
ସେ ନାରୀ ପୂର୍ବ ଜନ୍ମଗତି । ଯେମନ୍ତେ ହୋଇଲେ ଉତ୍ପତି ॥
ପରମ ଲୋପା ଅପସରି । କୁଣ୍ଡୁ ଋଷିଙ୍କ ବୀର୍ଯ୍ୟ କରି ॥
ଯେମନ୍ତେ ହୋଇଲେ ସେ ଜାତ । ଚତୁର୍ଥ ସ୍କନ୍ଧେ ଏ ଚରିତ ॥
ପଞ୍ଚମ ସ୍କନ୍ଧ ଆଦ୍ୟେ ପୁଣି । ପ୍ରିୟବ୍ରତ ରାଜା କାହାଣୀ ॥
ନାଭି ରାଜାର ଯେ ଚରିତ । ଋଷଭ ଦେବ ଜନ୍ମମୃତ ॥
ଭରତ ରାଜାର ବର୍ଣ୍ଣନ । ବିଷ୍ଣୁ ସେବାରେ ତିନି ଜନ୍ମ ॥
ଏକତ୍ରିଂଶ ଅଧ୍ୟାରେ ପୁଣ । ଏହୁ ସେ ହୋଇଲା ସମ୍ପୂର୍ଣ୍ଣ ॥
ବ୍ରହ୍ମାଣ୍ଡ ଭୂଗୋଳ ବର୍ଣ୍ଣନ । ସପତ ଦ୍ୱୀପେ ବିଦ୍ୟମାନ ॥
ସପତ ସମୁଦ୍ର ନୋସନ । ଦ୍ୱିଗୁଣ କାଞ୍ଚନ ଭୁବନ ॥
ଲୋକଲୋକ ସମେତେ ହୋଇ । ବ୍ରହ୍ମାଣ୍ଡ ଯେମନ୍ତ ଅଟଇ ॥
ଖଣ୍ଡ ପର୍ବତ ନଦୀମାନ । ଯେତେକ ଏହାଙ୍କ ବର୍ଣ୍ଣନ ॥
ଯୋତୀଶ ଚକ୍ର ଧ୍ରୁବଚକ୍ର । ଶିଶୁମାର ଚକ୍ର ଯେ ବକ୍ର ॥
ପାତାଳ ନରକ ବର୍ଣ୍ଣନ । ପାପେ ନରକ ଭୋଗମାନ ॥
ପଞ୍ଚମ ସ୍କନ୍ଧେ ଏ ଚରିତ । ଛବିଶ ଅଧ୍ୟା ସମାପତ ॥
ଏବେ ଯେ ଷଷ୍ଠସ୍କନ୍ଧ ବାଣୀ । ତାହା କହିଲୁ ପରିମାଣି ॥
ଅଜାମିଳର ଉପାଖ୍ୟାନ । ନାମର ମହିମା ଯେସନ ॥
ଯେ ବିଷ୍ଣୁଦୂତ ଯମଦୂତ । ଏହାଙ୍କ ସମ୍ବାଦ ଚରିତ ॥
ଯମ ଯେ ଆପଣାର ଦୂତେ । ବିଷ୍ଣୁ ମହିମା ଗୁଣକ୍ଷାତେ ॥
ବିଷ୍ଣୁ ଭଗତ ଯେତେ ଜନ । ନ ଯିବ ତାହାଙ୍କ ପାଶେଣ ॥
ଅଜାମିଳର ଯେ ଚରିତ । ବୈକୁଣ୍ଠ ଯେମନ୍ତ ପ୍ରାପତ ॥
ଦକ୍ଷ ପ୍ରଜାପତି ଚରିତ । ଯେମନ୍ତେ ପୁତ୍ର କଲେ ଜାତ ॥
ସେ ପୁତ୍ର ନାରଦଙ୍କ ହେତୁ । ଯେମନ୍ତେ ଲଭିଲେ ସେ ମୃତ୍ୟୁ ॥
ନାରଦ ଦକ୍ଷ ପ୍ରଜାପତି । ଅନ୍ୟୋଃନ୍ୟେ ଶାପ ସେ ଦିଅନ୍ତି ॥
ଦକ୍ଷ ଯେ ପ୍ରଜାପତିଙ୍କର । ଷାଠିଏ ଝିଅଙ୍କୁ ଯେ ବର ॥
ଏହାଙ୍କ ସନ୍ତତି ନିର୍ବାଣ । ତହୁଁ ମନୁଷ୍ୟ ଦେବଗଣ ॥
ଅସୁର ପଶୁପକ୍ଷୀ ଜନ୍ତୁ । ଏ ଆଦି ଜନ୍ମମାନ ହେତୁ ॥
ସଶ୍ରାକ୍ଷ କଶ୍ୟପ ନନ୍ଦନ । ବିଷ୍ଣୁ ରୂପରୁ ଉତପନ୍ନ ॥
ଏ ଆଦି ଜନ୍ମର ସମ୍ବାଦ । ବୃତ୍ରାସୁର ଯେମନ୍ତେ ବଧ ॥

ଦିତିର ପୁତ୍ର ଯେ ହିରଣ୍ୟ । ଆବର ହିରଣାକ୍ଷ ପୁଣ ॥
ଏହାଙ୍କ ଜନ୍ମର ଚରିତ । ବରାହ ବଧିଲେ ଯେମନ୍ତ ॥
ଏହାଙ୍କ ପତ୍ନୀଙ୍କ ରୋଦନେ । ସୁଯଜ୍ଞ ରାଜାର ବିଧାନେ ॥
ଯମରେ ବୋଧ କରିବାରେ । ତ୍ରିପୁତ ହେଲେ ସେ ମନରେ ॥
ପବନ ଯେମନ୍ତ ଜନ୍ମିଲା । ସେ ଅଣଚାଶ ମତୀ ହେଲା ॥
ଦିତି ପୁଷ୍ପବତୀରୁ ଜନ୍ମ । ଇନ୍ଦ୍ର ତା କଲେ ଭିନ୍ନ ଭିନ୍ନ ॥
ସପ୍ତମ ସ୍କନ୍ଧେ ଏ ଚରିତ । ଊନବିଂଶ ଅଧ୍ୟା ଉକତ ॥
ଏବେ ଏ ସପ୍ତମ ସ୍କନ୍ଧରେ । ହରିଣ୍ୟ କଶ୍ୟପର ଘରେ ॥
ତାହାର ପୁତ୍ର ପ୍ରହଲ୍ଲାଦ । ଦଇତ ସୁର ସେ ଯେ ଇନ୍ଦ୍ର ॥
ତାହାଙ୍କ ଯେତେକ ଚରିତ । ପ୍ରହଲ୍ଲାଦକୁ କଷ୍ଟ ସତ ॥
ହିରଣ୍ୟ କଶ୍ୟପୁ ନିଧନ । ନୃସିଂହ ରୂପେ ବିଦାରଣ ॥
ବ୍ରାହ୍ମଣ କ୍ଷତ୍ରୀ ବୈଶ୍ୟ ଶୂଦ୍ର । ଚାରିଜାତିରେ ବର୍ଣ୍ଣ ଭେଦ ॥
ବ୍ରହ୍ମଚାରୀ ଯେ ବାନପ୍ରସ୍ଥ । ଗୃହୀ ସନ୍ନ୍ୟାସୀ ଚାରିମତ ॥
ବେଦଶାସ୍ତ୍ର ପୁରାଣ ସର୍ବ । ସୃଷ୍ଟି ସର୍ଜନା ଯେତେ ଭାବ ॥
ଏଣୁ ଏ କରି ବିଦ୍ୟାଭାବ । ଗୁପ୍ତେ କୁଳବଧୂ କରିବ ॥
ଏ ଧର୍ମ ବର୍ଣ୍ଣର ବିଚାର । ସର୍ବ କର୍ମଧର୍ମ ବଳର ॥
ଶ୍ରାଦ୍ଧ ବିଧିରେ ଯେତେ ହୋଇ । ସପ୍ତମ ସ୍କନ୍ଧେ ଏହା କହି ॥
ପନ୍ଦର ଅଧ୍ୟାରେ ସଂପୂର୍ଣ୍ଣ । କହିଲେ ଶୁକ ମହାପୁଣ୍ୟ ॥
ଏବେ ଅଷ୍ଟମ ସ୍କନ୍ଧେ ପୁଣ । କହିବା ମନୁ ଗୁଣ ପୁଣ ॥
ଚତୁର୍ଦ୍ଦଶ ମନୁଚରିତ । ଭୂତ ବର୍ତ୍ତମାନ ଯେମନ୍ତ ॥
ଯେ ଗଣ ଇନ୍ଦ୍ରର ମୋକ୍ଷଣ । ଗ୍ରାହକୁ ନିବାରି ଚକ୍ରେଣ ॥
ଶାପରୁ କରି ପରିତ୍ରାଣ । ଦେଲେ ସେ ବଇକୁଣ୍ଠେ ସ୍ଥାନ ॥
ବସ୍ତୁ ମନ୍ୱନ୍ତର ଅନ୍ତରେ । ହୟଗ୍ରୀବ ଅବତାରରେ ॥
ବରାହ କୂର୍ମ ଯେ କଚ୍ଛପ । ନରସିଂହ ବାମନ ରୂପ ॥
ନାନା ଅବତାର ମହିମା . । କ୍ଷୀରୋଦ୍ରଧି ମନ୍ଥନ ଉପମା ॥
ଚତୁର୍ଦ୍ଦଶ ରତ୍ନ ଉତ୍ପତ୍ୟ । ଲକ୍ଷ୍ମୀ ଅମୃତ ଯେ ସମ୍ଭୂତ ॥
ଐରାବତ ଉଚ୍ଚୈଃଶ୍ରବା । ବାରୁଣୀ ସମ୍ଭୂତ ହୋଇବା ॥
ଧନ୍ୱନ୍ତରୀ ଜନମ କାରଣ । ମୋହିନୀ ରୂପ ଯେ ଧାରଣ ॥
ଈଶ୍ୱରେ ପାର୍ବତୀ ଶରଧା । ଈଶ୍ୱର ମୋହ ଯେଉଁ ବାଧା ॥
ଅମୃତ ଭକ୍ଷି ରାହୁ ଛେଦ । ଚନ୍ଦ୍ର ସୂର୍ଯ୍ୟ ଗ୍ରସ୍ତିକା ଭେଦ ॥
ଅମୃତ ନ ପାଇ ଅସୁରେ । ଦେବେ ଅସୁରେ ଯୁଦ୍ଧ କଲେ ॥
ସ୍ୱର୍ଗ ଛାଡ଼ି ଇନ୍ଦ୍ର ସମେତ । ପଶିଲେ ଗହନ ବନସ୍ତେ ॥
ବଳି ଯେ ସ୍ୱର୍ଗ ଭୋଗ କରି । ଦାନରେ ନାହିଁ ସମସରି ॥
ପୁତ୍ରଙ୍କ କଷ୍ଟେ ଦେବମାତା । ଅଦିତି କଲେ ପ୍ରୟୋବତ ॥
ବାମନ ଜନମ ହୋଇଲେ । ଯଜ୍ଞରେ ପ୍ରବେଶ ହୋଇଲେ ॥

ବଳିଠାରୁ ଦାନ ଗ୍ରହଣ । ନିଷେଧ ଶୁକ୍ର ମନ୍ତ୍ରୀ ପୁଣ ॥
ବଳିକି କରିଣ ବନ୍ଧନ । ତିନିପାଦ ଯେ ଭୂମିଦାନ ॥
ପାଦେକ ଆକାଶକୁ ଗଲା । ବ୍ରହ୍ମାଣ୍ଡ ଭାଣ୍ଡ ହିଁ ଫାଟିଲା ॥
ବାମନ ବିଷ୍ଣୁ ରୂପ ହୋଇ । ପାଦକେ ପୃଥିବୀ ଘୋଟଇ ॥
ଆକାଶୁ ଗଙ୍ଗା ଯେ ବହିଲା । ଜଗତ ପବିତ୍ର ସେ କଲା ॥
ନାହିଁ କମଲୁଁ ପାଦେ ହୋଇ । ବଳିକି ପାତାଳେ ଚାପଇ ॥
ସତ୍ୟବ୍ରତ ରାଜା ଚରିତ । ପ୍ରଳୟ ଜଳରେ ଯେମନ୍ତ ॥
ମତ୍ସ୍ୟ ଅବତାର ସେ ହୋଇ । ନାଦ ମଙ୍ଗ ଶୃଙ୍ଗରେ ରହି ॥
ସେ ରାଜା ଦିବାକର ଅଂଶେ । ଜନ୍ମ ହୋଇଲେ ମନୁ ବଂଶେ
ଅଷ୍ଟମ ସ୍କନ୍ଧେ ଏ ଚରିତ । ତେଇଶ ଅଧ୍ୟା ସମାପତ ॥
ନବମ ସ୍କନ୍ଧରେ ବାଖ୍ୟାନ । ବଂଶାନୁଚରିତ ଯେ ମାନ ॥
ସୂର୍ଯ୍ୟ ବଂଶ ଚରିତ ମାନ । ସୂର୍ଯ୍ୟଙ୍କ ଅଟଇ ନନ୍ଦନ ॥
ବଇବସ୍ୱତ ମନୁ ନାମ । ସେ ବଂଶେ ଇକ୍ଷ୍ୱାକୁ ଯେ ଜନ୍ମ ॥
ତାହାଙ୍କ ବଂଶେ ଯେତେ ପୁଣ । ଯେ ରାଜା ନାମ ସୁଦର୍ଶନ ॥
ଶୂଦ୍ର ରାଜା ମନୁ ବଂଶେଣ । କହିବା ତହିଁର ଯେ ଗୁଣ ॥
ଇଳା କନ୍ୟାର ଯେ ଚରିତ । ସୋମ ଲଭିଲା ଯେଉଁମତ ॥
ଇଳାର ଗର୍ଭୁ ବୁଧ ଯାତ । ସେ ପୁରରବା ବୁଧ ସୁତ ॥
ତାହାର ଯେତେ ଉପାଖ୍ୟାନ । କହିବୁ ବିସ୍ତାର କରିଣ ॥
ଏ ଦୁଇବଂଶ ଆଦି ଏହି । ଏଥୁ ସୋମ ସୂର୍ଯ୍ୟ ବୋଲାଇ ॥
ଯେ ସୂର୍ଯ୍ୟ ବଂଶର କଥନ । ସୋମାଦି ରାଜା ଉପାଖ୍ୟାନ ॥
ଜଥାଦି ରାଜାଙ୍କ ଚରିତ । ସୁନନ୍ଦା କନ୍ୟା ବିଧିମତ ॥
ଚେବନ ଋଷିର ଆକ୍ଷାନ । କାକୁସ୍ଥ ରାଜା ବଂଶମାନ ॥
ଖଟ୍ୱାଙ୍ଗ ରାଜାର ମହିମା । ଯେ ମାନଧାତାର ଗାରିମା ॥
ସୌଭରି ଋଷିଙ୍କ ଚରିତ । ସଗର ରାଜା କଲା କୃତ୍ୟ ॥
କଲା ଯେ ଅଶ୍ୱମେଧ ଯାଗ । ଷାଠି ସହସ୍ର ପୁତ୍ର ତ୍ୟାଗ ॥
କପିଳ କୋପରେ ଦହିଯ୍ୟ । ପୂର୍ବ କଲାର କଥା ହେଜ ॥
ଦିଲୀପ ରାଜାର ଯେ ପୁଣ । ସଗର ପୁତ୍ରଙ୍କ କାରଣ ॥
ଗଙ୍ଗାଙ୍କର ଅବତରଣ । ଭାଗୀରଥିଙ୍କ ଉତପନ୍ନ ॥
ଶ୍ରୀ ରଘୁନାଥଙ୍କ ଚରିତ । ହୋଇଲେ ଦଶରଥ ସୁତ ॥
ବାଳକ କାଳରେ ମୃଗୟା । ଵନୁ ଆଣନ୍ତି ଗଜ ଛୁଆ ॥
ବିଶ୍ୱାମିତ୍ର ଯେ ମାଗି ନେଲେ । ବାଟରେ ତାଡ଼କୀ ବଧିଲେ ॥
ଖର ଦୂଷଣ ନାଶ କରି । ଯାଗ ରଖିଲେ ଚାପଧାରୀ ॥
ଗୌତମ ପତ୍ନୀ ଯେ ଅହଲ୍ୟା । ପାଷାଣୁ ମୁକତି ହୋଇଲା ॥
ମିଥିଳା ନୃପତି ଜନକ । ନୃପତି ଅଟଇ ଧାର୍ମିକ ॥
ସେ ଧନୁ ସଏମ୍ୱର କାଳେ । ମିଳିଣ ସର୍ବ ଯେ ଭୂପାଳେ ॥

ଶିବଧନୁ ରାମ ଭାଙ୍ଗିଲା । ମଇଥିଳୀ ବିଭା ହୋଇଲା ।।
ଅଯୋଧ୍ୟା ନଗରେ ପ୍ରବେଶ । ନୃପତି ପଣକୁ ଆଦେଶ ।।
କଇକେଇର ସତ୍ୟ ଶୁଣି । ସେ ଦଶରଥ ନୃପମଣି ।।
ରାମ ଯେ ବନବାସ ଗଲେ । ସୀତା ଲକ୍ଷ୍ମଣ ବେନି ତୁଲେ ।।
ପଶିଲେ ଅଗମ୍ୟ ବିପିନେ । ରହିଲେ ପଞ୍ଚବଟୀ ବନେ ।।
ରାବଣ ସୀତା ହରିନେଲା । ତା ଜାଣି ରାମ ତହୁଁ ଗଲା ।।
ସୁଗ୍ରୀବ ମିତ୍ର ଛଳେ ପୁଣ । ବାଳିକି କଲେ ସେ ନିଧନ ।।
ହନୁ ଯେ ଲଙ୍କାକଇ ଗଲା । ସୀତାଙ୍କୁ ଠାବ ସେହି କଲା ।।
ରାବଣ ଭାଇ ବିଭୀଷେଣ । ରାମରେ ପଶିଲା ଶରଣ ।।
ବରୁଣ ବୋଲେ ବାନ୍ଧସେତୁ । ବାନ୍ଧିଲେ ବାନରଙ୍କ ହେତୁ ।।
ରାବଣ ସଗୋତ୍ର ସହିତେ । ସବୁ ନାଶିଲେ ରଘୁନାଥେ ।।
ଲଙ୍କାରେ ରାଜା ବିଭୀଷଣ । ଅମର ପ୍ରଦେଶ ସ୍ଥାପିଣ ।।
ସୀତା ଅଗ୍ନି ପରୀକ୍ଷା କରି । ଅଯୋଧ୍ୟା ବିଜେ ରାବଣାରି ।।
ତହୁଁତା ଭୋଗ କିଛି ଦିନ । ପୁତ୍ରକୁ ପେଷିଲେକ ବନ ।।
ଅଶ୍ୱମେଧ ଯାଗ ସେ କଲେ । ପୁତ୍ର ବାଲମୀକେ ଆଣିଲେ ।।
ଚାରି ଭାଇଙ୍କ ତହୁଁ ସୁତ । ଚାରି ଦେଶରେ ସେ ନୃପତ୍ୟ ।।
ରକ୍ଷ କପି ସମେତ ହୋଇ । ବେଦ ଅଂଶରେ ଜନମ ସେହି ।।
ତାଙ୍କୁ ଘେନି ସ୍ୱର୍ଗକୁ ଗଲେ । ବୈକୁଣ୍ଠେ ନିଦ୍ରାରେ ଶୋଇଲେ ।।
ଜନ୍ମାଦି ବୈକୁଣ୍ଠେ ପ୍ରାପତି । କହିତ ଅଛୁ ସେହି ରୀତି ।।
ସେ ରାମନାମ ଯେହୁ ଧରେ । ସଂସାର ତାପରୁ ସେ ତରେ ।।
ନିମି ରାଜାର ଯେ ଚରିତ । ଜନକ ରାଜାର ଅପତ୍ୟ ।।
ଜନକ ରାଜାର ସନ୍ତତି । ସୂର୍ଯ୍ୟବଂଶରେ ଉତପତି ।।
ଯମଦଅଗ୍ନି ଭୃଗୁ ଋଷି । ତା ସୁତ ପରଶୁରାମ ଋଷି ।।
ତପ କରଣେ ଅତି ଶ୍ରେଷ୍ଠ । କ୍ଷତ୍ରୀ କୃତ ପଣେ ବେଷ୍ଟିତ ।।
ମାତା ଦୋହିତା ରୂପ ଗୁଣେ । ଋଷି ଜନ୍ମ ତରୁ ଲକ୍ଷଣେ ।।
କ୍ଷତ୍ରୀ ଆଚାର ଋଷି ହୋଇ । ଏଣୁ ପର୍ଶୁରାମ ବୋଲାଇ ।।
ସହସ୍ର ଅର୍ଜୁନ ରାଜନ । ବଳେ ସେ ନେଲାକ ଗୋଧନ
ଯମଦ ଅଗ୍ନି ଶିର ଛେଦ । ଶୁଣିଣ ପରଶୁରାମ କ୍ରୋଧ ।।
ବିଷ୍ଣୁଙ୍କୁ ଧ୍ୟାନ ସେହି କଲା । ସେ ବିଷ୍ଣୁ ପ୍ରସନ୍ନ ହୋଇଲା ।।
ସେ ନାରାୟଣ ଯୋତି ଭାବେ । ପଶିଲେ ପରଶୁରାମ ଗର୍ଭେ ।।
ସହସ୍ରା ଅର୍ଜୁନର ବଂଶ । ସମୂଳେ କଲେକ ବିନାଶ ।।
ପୃଥିବୀ ଏକୋଇଶ ବାର । ଛେଦିଲେ କ୍ଷତ୍ରିଙ୍କର ଶିର ।।
ପୃଥିବୀ ନିକ୍ଷେତ୍ରି ସେ କଲେ । ଦୁଷ୍ଟ ଅଂଶକୁ ନ ରଖିଲେ ।।
ଯେ ସୋମବଂଶରେ ଜନମ । ପୁରୁରବା ରାଜନ ନାମ ।।
ସେ ପୁଣି ଉର୍ବଶୀ ସଙ୍ଗତେ । ବିହ୍ୱଳ ହୋଇଲା ଯେମନ୍ତେ ।।
ଯେ ଆଦି ଯେତେ ଗୁଣ ତାର । ପୃଥ୍ୱୀରେ ଏକ ନୃପବର ।।
ଆଉ ରାଜାଙ୍କ ଯେତେ ଗୁଣ । ନଘୋଷ ଯଯାତି ରାଜନ ।।
ଦୁଷ୍ମନ୍ତ ରାଜାର ବିଧାନ । ଶକୁନ୍ତଳାର ଉପାଖ୍ୟାନ ।।
ଭରତ ରାଜାର ଚରିତ । ଶାନ୍ତନୁ ଯେମନ୍ତେ ବିଦିତ ।।
ଭୀଷ୍ମର ଯେମନ୍ତ ମହିମା । ବଂଶ ତା ଉପୁତି ନୋହିବା ।।
ଚିତ୍ରାଙ୍ଗ ଯେ ବୀଚିତ୍ରବୀର୍ଯ୍ୟ । ଜନ୍ମ ସେ ଶାନ୍ତନୁ ତେଜ ।।
ଏମାନେ ଅପୁତ୍ରିକ ନାଶ । ତହୁଁ ଅଇଲେ ବେଦବ୍ୟାସ ।।
ଧୃତରାଷ୍ଟ୍ର ପଣ୍ଡୁ ବିଦୁର । ଜନ୍ମ ସେ ବ୍ୟାସଙ୍କ ବୀର୍ଯ୍ୟର ।।
କୌରବ ପାଣ୍ଡବ ଯେ ହୋଇ । ଶଏ ପାଞ୍ଚପୁତ୍ର ଜନ୍ମାଇ ।।
ଏହାଙ୍କ ସନ୍ତତି ଯେମାନ । ନାମ ଯେ ପରୀକ୍ଷ ରାଜନ ।।
କଳିଯୁଗରେ ଏ ବଂଶର । ଯେତେ ହୋଇଲେ ନୃପବର ।।
ଭୂତ ଭବିଷ ବର୍ତ୍ତମାନ । ଯେତେକ ହୋଇଲେ ରାଜନ
ସହସ୍ର ବରଷ ଭିତରେ । ଯେ ସର୍ବେ ହୋଇ ନୃପବରେ
ଯଯାତି ଜ୍ୟେଷ୍ଠ ପୁତ୍ର ଯଦୁ । ଅଷ୍ଟାଦଶ ଯାଦବେ ପ୍ରଭୁ ।।
ତାହାର ଯେତେକ ବର୍ଣ୍ଣନା । ଏ ଆଦି ଶୁଣିଅଛି ସିନା ।।
ଯଯାତି ଦ୍ୱିତୀୟ ଯେ ପୁତ୍ର । କୁରୁ ବଂଶରେ ଯେ ଚରିତ୍ର ।।
ଯେହାଙ୍କ ବଂଶରେ ଜନମ । ପଶ୍ଚିମେ ହୋଏ ଉତପନ୍ନ ।।
ତୃତୀୟ ସୁତ ଯେ ଦହିଜ । ତାହାର ବଂଶେ ଜନ୍ମ ଭୋଜ ।।
ଚତୁର୍ଥ ପୁତ୍ର ସେ ଯେ ଅନୁ । ତା ବଂଶେ ହେଲେ ଯେତେ ତନୁ ।
ଗାନ୍ଧାରାଦି ଦେଶରେ ପୁଣ । ମ୍ଳେଚ୍ଛମୟର ରାଜା ବର୍ଣ୍ଣନ ।।
ସେ ଯଦୁ ପଞ୍ଚପୁତ୍ରେ ଶ୍ରେଷ୍ଠ । ସହସ୍ରାର୍ଜୁନ ନାମ ଶ୍ରେଷ୍ଠ ।।
ତା ବଂଶେ ସହସ୍ରା ଅର୍ଜୁନ । ତାକୁ ମାଇଲେ ପର୍ଶୁରାମ ।।
ଦୂତୀଅ ପୁତ୍ର ଯେ ପ୍ରୟୋଦ । ତା ବଂଶେ ରାଜା ଜରାସନ୍ଧ ।।
ତୃତୀୟ ପୁତ୍ର କେଶୁ ନାମ । ସେ ବିଷ୍ଣୁ ବଂଶେ ବିଦ୍ୟମାନ ।।
ସୁରସେନ ବାସୁଦେବାଦି । ଯେମାନେ ତହିଁ ସେ ସମ୍ପାଦି ।।
ଚତୁର୍ଥ ପୁତ୍ରନାମ ନୀଳ । ତା ବଂଶ ଖଣ୍ଡ ଦିବିବଳ ।।
ଦବିଡ଼ କେରଳ ଆବନ୍ତ । ଏ ଆଦି ରାଜା ଏ ବିଖ୍ୟାତ ।।
ପଞ୍ଚମ ପୁତ୍ର ଯେ ଅନ୍ଧେକ । ଭୋଜ ସେ ଉଗ୍ରସେନାଦିକ ।।
ତହୁଁ ଯେ କୁରୁବଂଶେ ପୁଣ । ସୁରସେନାଦି ରାଜନ ।।
ତା ସାତ କନ୍ୟା ପୁତ୍ର ଦଶ । ତହିଁରେ ଜ୍ୟେଷ୍ଠ ବସୁଦେବ ।।
ତାହାର ଅଷ୍ଟାଦଶ ନାରୀ । ରୋହିଣୀ ମଦିରା ବୈଶାଳୀ ।।
ଭଦ୍ରା ସୁନାମୀ ସହଦେବା । ଶ୍ୟାନ୍ତି ଦେବା ସେ ବସୁଦେବା ।।
ଦେବୀର ଖିତି ବୃକ ଦେବୀ । ଦେବକୀ ଦେବୀ ଭାଗ୍ୟଦେବି ।।
ଏ ବାର କନ୍ୟା କ୍ଷତ୍ରିଙ୍କର । ବିଭା ସେ ବସୁଦେବ ବର ।।
ସୂତନୁ ନାମ ଯେ ବିଡ଼ୋଜା । ଏ ବେନି କନ୍ୟା ବସୁବିଭା ।।

ଏମନ୍ତେ ରୋହିଣୀ ଗର୍ଭରେ । ଅଷ୍ଟପୁତ୍ର ଦୋହିତା ତାରେ ॥
ଜ୍ୟେଷ୍ଠ ଯେ ବଳଦେବ ହୋଇ । ଦୁହିତା ସୁଭଦ୍ରା ବୋଲାଇ ॥
ଆଉ ସେ ଯେତେ ସ୍ତିରୀମାନ । ତାଙ୍କର ଦୁଇଦୁଇ ନନ୍ଦନ ॥
ଦେବକୀ ଷଷ୍ଠ ଗର୍ଭ ପୁଣ । କଂସ କଚାଡିଲା ଶିଳେଣ ॥
ସପ୍ତମ ଗର୍ଭେ ବଳଦେବ । ଯେ ମାୟା ଯୋଗେ ଗର୍ଭସ୍ରାବ ॥
ରୋହିଣୀ ଗର୍ଭରେ ପଶିଲେ । ଗୋପରେ ଜନମ ହୋଇଲେ ॥
ଅଷ୍ଟମ ଗର୍ଭେ ବିଷ୍ଣୁ ଜାତ । ଯେ କୃଷ୍ଣ ବୈକୁଣ୍ଠ ନାଥ ॥
କୃଷ୍ଣ ଅବତାର ହୋଇଲେ । ନବମେ ଏମନ୍ତ କହିଲେ ॥
ଚବିଶ ଅଧାରେ ସମ୍ପୂର୍ଣ୍ଣ । ବଂଶାନୁଚରିତ ବାଖ୍ୟାନ ॥
ଦଶମ ସ୍କନ୍ଧେ କୃଷ୍ଣ ରସ । ଶୁଣିଲେ ନଥାଇ କଲ୍ମସ ॥
ଆଦ୍ୟେ ବସୁଦେବ ବିବାହ । କଂସ ଯେ ଦେବକୀ ନିଗ୍ରହ ॥
ଆକାଶ ବାଣୀ ଶୁଣି ରୋଷେ । ମାରନ୍ତେ ବସୁଦେବେ ତ୍ରାସେ ॥
ସତ୍ୟ ଯେ ବସୁଦେବ କଲା । ବାଳକ ଦେବଇଁ ବୋଇଲା ॥
ପୃଥିବୀ ଦେବଗଣ ଆଦି । ବ୍ରହ୍ମା ଶଙ୍କର ଯେ ସୁରଭି ॥
ବିଷ୍ଣୁଙ୍କୁ କ୍ଷୀରାର୍ଣ୍ଣବ ତାରେ । ଗୁହାରି କଲେ ସର୍ବସୁରେ ॥
ସେ ବିଷ୍ଣୁ ସର୍ବ ଅନ୍ତର୍ଯ୍ୟାମୀ । କଲେ ଆକାଶୁଁ ଶୂନ୍ୟବାଣୀ ॥
କୃଷ୍ଣ ଅବତାର ହୋଇବୁ । ନିଶ୍ଚଏ ଅସୁର ନାଶିବୁ ॥
ଗୋପରେ ଗୋପାଳଙ୍କ ମେଳେ । ଜାତ ହୋଇବୁ ଅବନୀରେ ॥
ଏମନ୍ତେ ଦେବକୀ ଛପୁତ୍ର । କଂସ ଯେ ମାଇଲା ନିଯତ ॥
ଯୋଗମାୟାଙ୍କୁ ବିଷ୍ଣୁ ରାଇ । ମଞ୍ଚରେ ଜନ୍ମ ହୁଅ ଯାଇ ॥
ଦେବକୀ ସପ୍ତମ ଗର୍ଭରେ । ବଳଦେବଙ୍କୁ ତହୁଁ ହରେ ॥
ରୋହିଣୀ ଗର୍ଭେ ଥୁଅ ନେଇ । ଅଷ୍ଟମ ଗର୍ଭେ ଜନ୍ମିବଇଁ ॥
ତୁ ଜାତ ଯଶୋଦା ଗର୍ଭରେ । ଏମନ୍ତେ ଯୋଗମାୟା ହରେ ॥
ଏ ଭାବେ ପ୍ରବେଶ ହୋଇଲେ । ଜାଣି ବ୍ରହ୍ମା ଦେବେ ପୂଜିଲେ ॥
ଗର୍ଭକୁ କଲେ ବହୁସ୍ତୁତି । ଏମନ୍ତେ କୃଷ୍ଣ ଜନ୍ମ ହୋନ୍ତି ॥
ବସୁଦେବ ଯେ ସ୍ତୁତି କଲେ । ତାଙ୍କୁ ଶ୍ରୀକୃଷ୍ଣ ଆଜ୍ଞାଦେଲେ ॥
ତା ତିନି ଜନ୍ମର ବାରତା । କହିଲେ ଜଗତ କରତା ॥
ଶୁଣି ଦେବକୀ କଲେ ସ୍ତୁତି । ଶ୍ରୀକୃଷ୍ଣ ସନ୍ତୋଷ ହୁଅନ୍ତି ॥
କୃଷ୍ଣଙ୍କୁ ବସୁଦେବ ନେଇ । ଗୋପରେ ଛାଡ଼ିଣ ଆସଇ ॥
ନନ୍ଦର ଘରୁ କନ୍ୟା ଆଣି । କଂସ ଛାମୁରେ ଦେଲା ପୁଣି ॥
ସେ କନ୍ୟା କଂସ କଚାଡ଼ନ୍ତେ । ହସ୍ତରୁ ଗଲା ଶୂନ୍ୟପଥେ ॥
କଂସକୁ କହିଣ ଉଚ୍ଚାଟ । ତା ଶୁଣି କଂସ ଯେ ଉଚ୍ଚାଟ ॥
କୃଷ୍ଣ ଜନମ ନନ୍ଦଘରେ । ଉତ୍ସବ କଲେ ଗୋପପୁରେ ॥
ସେ କୃଷ୍ଣ ଥାଇ ଗୋପପୁରେ । ଯେତେ ଚରିତ ନନ୍ଦଘରେ ॥
ସପତ ଦିନ ରାତ୍ରେ ପୁଣ । ଶୋଷିଲେ ପୂତନାର ପ୍ରାଣ ॥

ମାସକେ ଶକଟ ଭଞ୍ଜନ । ଦିମାସେ ତୃଣାର ନିଧନ ॥
ନାମ କରଣ ସଯେରାତ୍ରେ । ଗାର୍ଗେବ ବିଦ୍ୟା କ୍ଷତ୍ରୀ ବୃତ୍ତେ ॥
ତଦନ୍ତେ ମୃତ୍ତିକା ଭକ୍ଷଣ । ଯଶୋଦା ଦଧି ଯେ ମନ୍ଥନ ॥
କୃଷ୍ଣ ଦଧି ଭାଣ୍ଡ ଭାଙ୍ଗିଲେ । ତଦନ୍ତେ ଲବଣି ଭକ୍ଷିଲେ ॥
କଟୀ ବଂଧନେ ସେ ଶ୍ରୀକୃଷ୍ଣ । ଭାଙ୍ଗିଲେ ଯାମଳା ଅର୍ଜ୍ଜୁନ ॥
ନଳକୁବେର ମଣିମୁକ୍ତି । ପୂର୍ବେ ସେ ଶାପ ପାଇଛନ୍ତି ॥
ତହୁଁ ସେ କଲେ ବାଳଲୀଳା । କେ କରି ପାରିବ ସେ ଖେଳା
ତଦନ୍ତେ କୋଳି ଯେ ଭକ୍ଷଣ । ଏ ଅନ୍ତେ ଗୋପୀ ବିଚାରଣ ॥
ବକା ବତ୍ସାସୁର ନିଧନ । ମୁରଲୀ ଗୀତେ ଯେ କଥନ ॥
ବନରେ ବନଭୋଜୀ କଲେ । ଅଘାସୁରକୁ ସେ ବଧିଲେ ॥
ବ୍ରହ୍ମା ଯେ ବତ୍ସା ହରିନେଲେ । କୃଷ୍ଣ ବିଷ୍ଣୁ ମୂର୍ତ୍ତି ଧଇଲେ ॥
ବତ୍ସା ବାଳକ ଜାତ କଲେ । ପୂର୍ବେ ଯେମନ୍ତ ହୋଇଥିଲେ ॥
ବ୍ରହ୍ମା ଯେ ବାହୁଡ଼ାଇ ଦେଲେ । ଚାରି ବେଦରେ ସ୍ତୁତି କଲେ ॥
ଧେନୁକାସୁର କୁ ନାଶନ । କାଳିନ୍ଦୀରେ କାଳି ଦଳନ ॥
ପ୍ରଲମ୍ବାସୁରକୁ ନାଶନ । ଦାବାଗ୍ନିରେ ଗୋପ ଭକ୍ଷଣ ॥
ଗୋପେ ବାଳକଙ୍କୁ ତାରଣ । ଅଜଗରୁ ନନ୍ଦ ରକ୍ଷଣ ॥
ବୃନ୍ଦାବନରେ ଯେ ବେହାର । ମୁରଲୀ ଧ୍ୱନିର ସୁସ୍ୱର ॥
ଗୋପିକା ବୃନ୍ଦ ଅନୁଗତି । ଯେତେକ ଗୁଣ ବାଉନ୍ତି ॥
ବରଷା ଶରଦ ଋତୁର । ତହିଁ ବର୍ଣ୍ଣନା ଯେ ପ୍ରକାର ॥
ଗୋପୀମାନଙ୍କ ପ୍ରାତସ୍ନାନ । ନୃତ୍ୟ ବ୍ରଜ ମାର୍ଗେ ଯେସନ ॥
ତଦନ୍ତେ ବସ୍ତ୍ର ଯେ ହରଣ । କଦମ୍ବ ବୃକ୍ଷ ଆରୋହଣ ॥
ଯଜ୍ଞ ନାରୀରେ ଅନୁଗ୍ରହ । ତାହାଙ୍କ ସ୍ନେହର ବିଷୟ ॥
ଯଜ୍ଞର ଅନ୍ନ ସେ ଭୋଜନ । ବ୍ରହ୍ମାରେ ଅନୁତାପମାନ ॥
ଇନ୍ଦ୍ରର ଉତ୍ସବ ଭଂଜନ । କରେ ଗୋବର୍ଦ୍ଧନ ଧାରଣ ॥
ଇନ୍ଦ୍ର ମହାଭୟ କରିଣ । କଲେ ଅନେକ ତୁଷ୍ଟିମାନ ॥
ଗୋବିନ୍ଦ ନାମେ ଅଭିଷେକ । କଲେ ସେ ସ୍ୱର୍ଗର ନାୟକ ॥
ତହୁଁଣ ନନ୍ଦ ଏକାଦଶୀ । ବରୁଣ ହରିନେଲା ଆସି ॥
ସେ ପୁଣି କୃଷ୍ଣ ଦରଶନ । ପାଇ ସନ୍ତୋଷ ହୋଏ ମନ ॥
ଗୋପାଳ ପୁଅଙ୍କୁ ଯେ ନେଇ । ବରୁଣ ଭୁବନ ଦେଖାଇ ॥
ବିଦ୍ୟାଧରର ଯେ ମୋକ୍ଷଣ । ଦର୍ଶନେ ସ୍ୱର୍ଗକୁ ଗମନ ॥
ତହୁଁ ବୃନ୍ଦାବନେ ରାହାସ । କୃଷ୍ଣ ବୃନ୍ଦାବନେ ପ୍ରବେଶ ॥
ଯେଣୁ ସେ ଶରଦର କାଳ । ଦିଗମାନେ ଅତି ନିର୍ମଳ ॥
ଗୋପୀଙ୍କ ମୋକ୍ଷର କାରଣ । ଶ୍ରୀକୃଷ୍ଣ ବିଚାରିଲେ ମନ ॥
ମୁରଲୀ ଧ୍ୱନି ଯେ ସୁସ୍ୱର । ଶବଦ ଶୁଣି ଗୋପପୁର ॥
ଗୋପୀ ଯେ ବୃନ୍ଦାବନ ଗଲେ । ଗୋବିନ୍ଦ ଦର୍ଶନ ପାଇଲେ ॥

କୃଷ୍ଣର ନିଷ୍ଠୁର ଯେ ବାଣୀ । ଆରତ ହୋଇ ଗୋପାଳୁଣୀ ॥
ଅନେକ ସ୍ତୁତି ସେହୁ କଲେ । କୃଷ୍ଣ ତାହାଙ୍କୁ ବଶ ହେଲେ ॥
ତହୁଁ ଯେ ରାସକ୍ରୀଡ଼ା ହୋଇ । ଉଲ୍ଲେ ମୁଖସିନ୍ଧୁ ଯହିଁ ॥
ଗୋପୀ ମଦନେ ଭୋଳ ହୋଇ । ବୃନ୍ଦାଗୋପୀ ଗର୍ବ କରଇ ॥
ତା ଜାଣି କୃଷ୍ଣ ଅନ୍ତର୍ଦ୍ଧାନ । ଗୋପୀ ଯେ ବିକଳେ ରୋଦନ
ନାନା ପ୍ରକାରେଣ ବିଭୋଳ । ରକ୍ଷା କରହେ ଆଦିମୂଳ ॥
ଗୋପୀଙ୍କି ସେ ଦେଲେ ଦର୍ଶନ । ଭାସେ ମୋହିଲେ ତାଙ୍କ ମନ
ଅନେକ ରୂପ ଭଗବାନ । ଯେକ ଗୋପୀକେ ଯେକ କାହ୍ନୁ
ଅକ୍ରୂର ଗୋପକୁ ପେଷଣ । ତଦନ୍ତେ ସତ୍ୟ ଭୂତ ବନ୍ଧ ॥
ତଦନ୍ତେ ଶଙ୍ଖଚୂଡ଼ ବଧ । ବ୍ୟୋମାସୁର ନାଶନ ଯୁଦ୍ଧ ॥
ଷଣ୍ଢାସୁର କୁ ନାଶ କରି । କେଶୀ କି ପେଶି ସ୍ୱର୍ଗପୁରୀ ॥
କଂସ ଯେ ରଙ୍ଗ ସଭା କରି । ମରିବ ବୋଲି ରାମ ହରି ॥
ଅକ୍ରୂର ଗୋପକୁ ପେଷିଣ । ପ୍ରବେଶ ନନ୍ଦର ଭୁବନ ॥
ରାମ କୃଷ୍ଣ ମଥୁରା ଯିବେ । ଶୁଣି ଆକୁଳ ଗୋପୀ ସର୍ବେ ॥
ଶ୍ରୀକୃଷ୍ଣ ଗୋପୀଙ୍କୁ ବୋଧିଣ । ଅକ୍ରୂର ସଙ୍ଗତେ ଗମନ ॥
ଅକ୍ରୂର କାଳନ୍ଦୀ ସ୍ନାହାନ । ଜଳେ ଦେଖଇ କୃଷ୍ଣ ଚିହ୍ନ ॥
ମଥୁରା ପୁରର ପ୍ରବେଶ । ଦେଖିଲେ ଯାଇ ମଧୁଦେଶ ॥
ବସ୍ତ୍ର ସେ ନ ଦେଲାକ ଯହୁଁ । ରଜକ ଶିର ଛେଦ ତହୁଁ ॥
ଧନୁର ଭଗ୍ନ ତଦନ୍ତରେ । ମାଳାକାରକୁ ମୋକ୍ଷ କଲେ ॥
କୁବୁଜା ଗନ୍ଧ ଯେ ଲେପନ । ଅଷ୍ଟ କୁବୁଜା କଲେ ସମ ॥
କୁବଳୟା ଗଜ ନାଶନ । ଉଠିଲେ ମଞ୍ଚ ଉପରେଣ ॥
କଂସକୁ କଲେ ସେ ନିଧନ । ମଧୁ କଟକରେ ରାଜନ ॥
ମାଲଯୁଦ୍ଧର ଯେ ବ୍ୟବସ୍ଥା । ମୁଷ୍ଟିକ ଚାଣୁର ସେ ହତା ॥
ଶତେ ଅଷ୍ଟମଲ୍ଲ ନାଶନ । ରଙ୍ଗ ସଭାରେ ପ୍ରବେଶନ ॥
ଉଗ୍ରସେନଙ୍କୁ ରାଜାକରି । ସର୍ବ ଯାଦବ ବୋଧି ହରି ॥
ବସୁଦେବ ଦେବକୀ ଆଣି । ବନ୍ଦିରୁ ମୋକ୍ଷ ତତକ୍ଷଣି ॥
ମାତା ପିତାଙ୍କୁ କଲେ ସ୍ତୁତି । ମୋହନ ବଚନେ ଶ୍ରୀପତି ॥
କଂସ ସ୍ତିରୀ ବିଳାପମାନ । ସଂସ୍କାର କଂସ ଯେ ରାଜନ ॥
ବିଦ୍ୟା ପଠନେ ବେନିଭାଇ । ଅବନ୍ତୀ ନଗରେ ସେ ଯାଇ ॥
ସଂଜୀବନି ଭୁବନୁ ଆଣି । ଗୁରୁପୁତ୍ରଙ୍କୁ ଦେଲେ ଆଣି ॥
ମଥୁରାରେ ପ୍ରବେଶ ହୋନ୍ତି । ଉଦ୍ଧବ ଗୋପକୁ ପେଷନ୍ତି ॥
ଗୋପେ ଉଦ୍ଧବ ପ୍ରବେଶନ । ଗୋପୀ ଗୋପାଳଙ୍କ ରୋଦନ ॥
ଉଦ୍ଧବ ଗୋପୀଙ୍କ ବିଚାର । ବୃନ୍ଦାବତୀ ନାମ ଯାହାର ॥
ଭ୍ରମର ଘୂରି ତା ପାଦେଣ । ତାଦେଖି ଗୋପୀ ମୋହମାନ ॥
କୃଷ୍ଣର ଦୂତ ତାକୁ ମଣି । ପ୍ରେମେ କେ ଅଟେ କହେ ବାଣୀ ॥
ଉଦ୍ଧବ କୃଷ୍ଣ ଦରଶନ । କରେ ଗୋପୀଙ୍କି ପ୍ରବୋଧନ ॥
କୁବୁଜା ଗୃହକୁ ଗମନ । କାମେ ତୋଷିଲେ ତାର ମନ ॥
ଅକ୍ରୂର ପୁରେ ପରବେଶ । ଯେ ପ୍ରଭୁ ଅନାଦି ପୁରୁଷ ॥
ହସ୍ତିନା ଅକ୍ରୂର ଗମନ । ଜାଣି ଆସି ପାଣ୍ଡବମାନ ॥
ମଥୁରା ପୁରେ ନରହରି । ପ୍ରିତୀମାନ ଯାଦବେ କରି ॥
ଜରାସନ୍ଧ ଯେ ଧାଡ଼ି ଦେଲା । ମଥୁରା ନଗର ବେଢ଼ିଲା ॥
ଅଠର ଥର ତାକୁ ଜିଣି । ମଲେ ତା ସୈନ୍ୟ ଅକ୍ଷୋଇଣୀ ॥
କାଳଦମନ କୂଟେ ନେଇ । ମୁଚକୁନ୍ଦ ଚକ୍ଷୁରେ ଦେଇ ॥
ଦ୍ୱାରକା ପୁର ଯେ ନିର୍ମାଣ । ବିଶ୍ୱକର୍ମାରେ ସେ ଘଟଣ ॥
ସର୍ବ ଯାଦେବ ଘେନି ସେହି । ବେହାର କଲେ ଭାବଗ୍ରାହୀ ॥
ତହୁଁ ଯେ ରୁକ୍ମିଣୀ ହରଣ । ଆଣିଲେ ଯେମନ୍ତ ଭାବେଣ ॥
ଜରାସନ୍ଧାଦି ରାଜା ଜିଣି । ବିଭା ଯେମନ୍ତ ହୋଇପୁଣି ॥
ସ୍ୟମନ୍ତକ ମଣି ହରଣ । ପ୍ରସନ୍ନାଜିତର ମରଣ ॥
ଜମ୍ବୋବଠାରୁ ମଣିଆଣି । ବିବାହ ଜାମ୍ବବତୀ ପୁଣି ॥
ସତ୍ୟଭାମାଙ୍କୁ ବିଭା ହୋଇ । କାଳିନ୍ଦୀ ମିତ୍ର ବିଦ୍ୟା ଦୁଇ ॥
ସତ୍ୟ ଲକ୍ଷଣ ବୃନ୍ଦାପୁଣି । ଏହାଙ୍କୁ ବିଭା ଚକ୍ରପାଣି ॥
ଷୋଳସହସ୍ର ଏକ ପୁଣି । ନାରକାପୁର ନାଶି ଆଣି ॥
ରୁକ୍ମିଣୀ ଗର୍ଭେଣ ଜନମ । ନାମଟି ତାହାର ପ୍ରଦ୍ୟୁମ୍ନ ॥
ଶମ୍ବରାସୁର ବଧ କରି । ରତି ଘେନି ଦ୍ୱାରକାପୁରୀ ॥
ଯେମନ୍ତେ ନାରକା ବଧିଲେ । ମଣି ହରଣ ଯୁଦ୍ଧ କଲେ ॥
ରୁକ୍ମିଣୀ ମାନ ଭଙ୍ଗ କଥା । ପାରିଜାତ ହରଣ ଯଥା ॥
ଇନ୍ଦ୍ର ଗୋବିନ୍ଦ ଯୁଦ୍ଧ ଯେହ୍ନେ । ସୁଧର୍ମା ସଭାର ହରଣେ ॥
ତହୁଣ ଉଷାର ହରଣ । ଯେମନ୍ତେ ଯୁଦ୍ଧ କଲା ବାଣ ॥
ଅନିରୁଦ୍ଧ ବିବାହେ ପୁଣ । ବାଣାକୁ ବାଧା ଯେ କରିଣ ॥
ଯଦୁ ମାନଙ୍କ ଯୁଦ୍ଧ ପୁଣ । ହରିହର ବେନିଙ୍କ ରଣ ॥
ଯେମନ୍ତେ କୃଷ୍ଣ ବିଜେ କଲେ । ବାଣା ଭୁଜମାନ ଛେଦିଲେ ॥
ନୃପ ରାଜାର ଉପାଖ୍ୟାନ । ହସ୍ତିନା ପୁରକୁ ଗମନ ॥
ରାଜୁସୀ ଯାଗର ଆରମ୍ଭ । ଭୀମେ ନାଶିଲେ ଜରାସନ୍ଧ ॥
ରାଜୁସୀ ଯାଗ ପୂଜା ଭାବେ । ଦୁଷିଲା ଶିଶୁପାଳ ଯେତେ ॥
ତାହାର ଶିର ଯେ ଛେଦିଲେ । ବ୍ରହ୍ମ ଅଙ୍ଗରେ ଲୀନ ହେଲେ ॥
ବାସୁଦେବର ଚିହ୍ନ ବହି । ପୁଣ୍ଡରିକ ବାସୁଦେବାହି ॥
ତାହାକୁ ରଣେ ନାଶ କଲେ । ଶାଲ୍ୱ ଦନ୍ତବକ୍ର ବଧିଲେ ॥
ଜୟ ବିଜୟ ବେନି ଭାଇ । ସପ୍ତ ମୁନିଙ୍କ ଶାପ୍ୟ ପାଇ ॥
ହିରଣ୍ୟ ହିରଣାକ୍ଷ ଦୁଇ । ରାବଣ କୁମ୍ଭକର୍ଣ୍ଣ ହୋଇ ॥
ଶାଲ୍ୱ ଶିଶୁପାଳ ଏ ବେନି । ଶାପ୍ୟରୁ ପାର ଜନ୍ମ ତିନି ॥
ଦ୍ୱିବିଦ ବାନର ନାଶିଲେ । ପିଷ୍ଟସୁର ଦୈତ୍ୟ ମାଇଲେ ॥
ପଞ୍ଚଜନ କାଶୀ ରାଜନ । ସୁଦର୍ଶନ କାଶୀ ଦହନ ॥

କୁରୁ ପାଣ୍ଡବଙ୍କ ବିରୋଧ । ମହାଭାରତ ଯୁଦ୍ଧ ସିଦ୍ଧ ॥
କୁରୁକୁଳ ସଂହାର ଅର୍ଥେ । ଏ ସଙ୍ଗେ ଦୁଷ୍ଟ ରାଜା ଯେତେ ॥
ଯୁଧିଷ୍ଠି ଅଭିଷେକ କରି । ଦ୍ୱାରକା ପୁରେ ବିଜେ ହରି ॥
ବଳଦେବ ଗୋପେ ଗମନ । କାଦମ୍ବରୀ କଲେ ସେ ପାନ ॥
ଯମୁନା କର୍ଷଣ ସେ କଲେ । ଅଦ୍ୟାପି ଦେଖ ତାହା ଭଲେ ॥
ଦୁର୍ଯ୍ୟୋଧନର କନ୍ୟାପୁଣ । ଶାମ୍ବ କୁମର ଯେ ହରଣ ॥
ହସ୍ତିନା ପୁର ଯେ ତାଡ଼ଣ । କଲେ ସେ ବଳଦେବ ପୁଣ ॥
ତୀର୍ଥଯାତ୍ରାରେ ବଳରାମ । ମୁନିଙ୍କ ଯଜ୍ଞରେ ଆଗମ ॥
ସକଳ ମୁନି ମଧ୍ୟେ ବସି । ସୂତ ପୁରାଣିକ ଯେ ହସି ॥
ବ୍ୟାସ ଆସନ ନ ଛାଡ଼ିଲା । ତା ଦେଖି ରାମ କୋପ କଲା ॥
କୁଶରେ କାଟିଲେ ତା ଶିର । ତା ସୁତେ ଦେଲେ ଅଧିକାର ॥
ବ୍ରହ୍ମହତ୍ୟା ଦୋଷେଣ ରାମ । ଗମେ ସକଳ ତୀର୍ଥମାନ ॥
ସୁଦାମା ଦାରିଦ୍ର ବ୍ରାହ୍ମଣ । ବିଦ୍ୟାପଠନେ ମିତ୍ରପଣ ॥
ତାହାକୁ ଅଇଶ୍ୱର୍ଯ୍ୟେ ଦେଇ । ଦୟାସାଗର ଭାବଗ୍ରାହୀ ॥
କୁରୁକ୍ଷେତ୍ରରେ ଉପରାଗ । ଜ୍ୟୋତିଷ ଗ୍ରହର ସଂଯୋଗ ॥
ତହୁଁ ସକଳେ ରୁଣ୍ଡ ହୋଇ । ଗୋପୀ ଗୋପାଳଙ୍କୁ ଯେ ସେହି ॥
ଦ୍ୱାରକା ଯଦୁବଂଶ ଆଦି । କୁରୁ ପାଣ୍ଡବ ଯେ ପ୍ରସିଦ୍ଧି ॥
ସମସ୍ତ ବନ୍ଧୁର କୁଶଳ । ଘେନାଘେନି ଭାବେ ନିଷ୍କଳ ॥
ବସୁଦେବ ଯେ ଯଜ୍ଞ କଲେ । ଦେବକୀ ଷଡପୁତ୍ର ଦେଲେ ॥
ସେ ପୁଣି ଅର୍ନ୍ତର୍ଦ୍ଧାନ ଗଲେ । ସୁଭଦ୍ରା ବିଭା ପାର୍ଥେ କଲେ ॥
ଦୁର୍ଯ୍ୟୋଧନ ମାନ ପାଇଲେ । ବଳଦେବ ହିଁ କୋପ କଲେ ॥
ସୁତଦେବ ମିଥିଳା ରାଜା । ଜନେକ ବଂଶେଣ ତନୁଜା ॥
ତହୁଁ ଯେ ରାମକୃଷ୍ଣ ପୁଣ । ରହିଣ ତୋଷିଲେ ତା ମନ ॥
ବ୍ରହ୍ମଲୋକରେ ପୂର୍ଣ୍ଣ ଯାଜ୍ଞ । ଭୃଗୁଙ୍କୁ ଦେଖିଲେ ସେ ଭାଗ ॥
ତିନିଦେବ ପରୀକ୍ଷା ଅର୍ଥେ । ଭୃଗୁ ଯେ ଗଲେ ଯେଝା ପଥେ ॥
ବିଷ୍ଣୁର ମହିମା କହିଲେ । ପ୍ରାନ୍ତେ ମୋ ଚରଣ ପଶିଲେ ॥
ତ୍ରୟୋଦେବର ସ୍ତୁତିବାଣୀ । ଯେମନ୍ତେ ନାରାୟଣ ବାଣୀ ॥
ବ୍ରାହ୍ମଣ ପୁତ୍ର ଆଣିମାର । ବକାସୁର ବଧ କଲାର ॥
ଏ ଅନ୍ତେ ଦ୍ୱାରାକା ବେହାର । ଯେ କୃଷ୍ଣ କ୍ରୀଡ଼ାର ସମ୍ଭାର ॥
ନାରଦ ମାୟାର ଦ୍ରଶନ । ଏକେ ଏକେଣ ଭଗବାନ ॥
କୃଷ୍ଣର ଯେତେ ବଂଶମାନ । ପୁତ୍ର ଦୋହିତା ଉତପନ ॥
ସମୁଦ୍ର ଜଳ କ୍ରୀଡ଼ା ବାଣୀ । ଏଥିରେ ଯେତେକ କାହାଣୀ ॥
ମେଘ ହଂସ ଦୂତାଦି ମାନ । ଶ୍ରୀକୃଷ୍ଣ ସ୍ତିରୀଙ୍କ ବର୍ଣ୍ଣନ ॥
ଏ ଭାବେ ଦଶମ ସମ୍ପୂର୍ଣ୍ଣ । କଉଁ ଅଧାରେ ବିଦ୍ୟମାନ ॥
ଏବେହେ ଶୁଣ ଏକାଦଶ । ଶ୍ରୀକୃଷ୍ଣ ବିଭୂତି ପ୍ରକାଶ ॥
ବ୍ରହ୍ମା ସହିତେ ଦେବେ ଆସି । ଶ୍ରୀକୃଷ୍ଣ ଚରଣେ ନିବେଶି ॥
ପୃଥ୍ୱୀର ଭାର ନିବାରିଲ । ସଂସାର ଥିବା ନୋହେ ଭଲ ॥
ଶତେ ପଞ୍ଚବିଂଶ ବରଷ । ଏ ଅବତାର କଲେ ଶେଷ ॥
ଏବେ ନିଜ ଧାମକୁ ଚଳ । ଆମ୍ଭର ହୋଇବ କୁଶଳ ॥
ଏମନ୍ତେ କୃଷ୍ଣ ଚିତ୍ତ ଜାଣି । ଯାଦେବ ସଂହାର ଭାଳେଣି ॥
ପୃଥ୍ୱୀରେ ଯଦୁବଂଶ ଥିଲେ । ମହୀ ଉଶ୍ୱାସ ନାହିଁ ଭଲେ ॥
ବିପ୍ରେ ଯେ ଜନ ଲୋକେ ଥିଲେ । ଶ୍ରୀକୃଷ୍ଣ ଦ୍ରଶନେ ଅଇଲେ ॥
କୃଷ୍ଣ ବାଳକଙ୍କ ବିହାର । ନାରୀ ବେଶ ଶାମ୍ବ କୁମର ॥
ତା'ପେଟ ଲୋହର କୋପରା । ଦିଶଇ ଗର୍ଭସ୍ତିରୀ ପରା ॥
ଋଷି ଯେ ପଥଶ୍ରମ ପାଇ । ଫୁଟିଣ ଆସୁଥିଲେ ସେହି ॥
ଗର୍ଭ ପ୍ରସବ ତାଙ୍କୁ ପୁଚ୍ଛି । ଶୁଣି କୋପିଲେ ବ୍ରହ୍ମ ଋଷି ॥
କହିଲେ ଲୌହର ମୁଷଳ । ଜନ୍ମି ନାଶିବ ଯଦୁକୁଳ ॥
ତହୁଁ ମୁଷଳ ଉତପତି । ତାନେଇ ପର୍ବତେ ଘଷନ୍ତି ॥
ସେ ଜନ୍ମ ଏକକାର ବନେ । ଶେଷ ଲୋହ ଜାରାର ବାଣେ ॥
ବସୁଦେବପୁରେ ନାରଦ । ଆଗମେ ଜ୍ଞାନର ସମ୍ବାଦ ॥
ଜନକ ମିଥିଳା ନଗରେ । ନିମିରାଜା ଯଜ୍ଞଶାଳରେ ॥
ନବ ଗୁରୁଙ୍କର ସମ୍ବାଦ । କହିଲେ ନିର୍ଗୁଣର ଭେଦ ॥
କବି ହବି ଯେ ଅନ୍ତରୀକ୍ଷ । ପିପ୍ଳାୟନ ପ୍ରବୃଦ୍ଧାଖ୍ୟ ॥
ଦ୍ରବିଡ ଅବିର ହୋତ୍ରକ । ଚର୍ମସ କରଯେ ଭାର୍ଯନ ॥
ଏ ନବଭାଇ ଅନ୍ୟୋ ଅନ୍ୟେ । ଜ୍ଞାନ କହି ନିମି ରାଜନେ ॥
ଆରବ ସୁତ ଯେ ଭରଥ । ଋଷଭ ଦେବଙ୍କର ସୁତ ॥
ଏ ଭାଇ କାଶୀ ଯେ ବ୍ରାହ୍ମଣ । ଗଲେ ସେ ବ୍ରହ୍ମ ଲୋକେ ପୁଣ
ଭରତ ସପ୍ତଦୀପେ ରାଜା । ସେ ପୁଣି ସର୍ବ କଳାତେଜ୍ୟା ॥
ନବଖଣ୍ଡ କରିଣ ମହୀ । ନବ ଭାଇକି ସେ ଦିଅଇ ॥
ଯଦୁରାଜା ସଙ୍ଗତେ ପୁଣ । ଅବଧୂତର ସମ୍ବାଦନ ॥
ଚବିଶ ଗୁରୁଙ୍କ ପ୍ରସଙ୍ଗ । ବିରକ୍ତ ଅନୁଭବ ଅଙ୍ଗ ॥
କୃଷ୍ଣ ଉଦ୍ଧବର ସମ୍ବାଦ । ଉଦ୍ଧବ ମୋହ ମାୟା ଛେଦ ॥
ଆତ୍ମବିଦ୍ୟା ଯେ ଜ୍ଞାନଧାନ । କର୍ମ ସଂଖ୍ୟାଦି ପୂଜାମାନ ॥
ବନାଶ୍ରମୀ ଗୃହୀ ସନ୍ନ୍ୟାସ । ନାନା ଭାବେଣ ଉପଦେଶ ॥
ଉଦ୍ଧବ ବଦ୍ରିକାଶ୍ରମରେ । ଗଲା ତପୋଧନ ବେଶରେ ॥
ଦ୍ୱାରିକା ଉତ୍ପାତ ଦର୍ଶନ । ପ୍ରଭାତ ତୀର୍ଥରେ ଗମନ ॥
ହୋମ ଯଜ୍ଞାଦି ନାନାଗତି । କୃଷ୍ଣ ଯେ ମାୟାରେ କରନ୍ତି ॥
ବାରୁଣୀ ମଦ୍ୟ କଲେ ପାନ । ଯାଦବେ ହୋଇଲେ ଅଜ୍ଞାନ ॥
ଏରକା ବନେ ଯୁଦ୍ଧ କଲେ । ସର୍ବେ ସଂହାର ତହିଁ ଗଲେ ॥
ପ୍ରଦ୍ୟୁମ୍ନ ଶିର ଚକ୍ର ଛେଦ । ଦେଖି ବଳରାମ ବିଷାଦ ॥
ତକ୍ଷଣେ ସର୍ପରୂପ ଧରି । ବୈକୁଣ୍ଠ ସ୍ଥାନେ ବିଜେ କରି ॥
ମାଘ ଯେ ଅମାବାସ୍ୟା ଦିନ । ଅଶ୍ୱତ୍ଥ ତଳେ ଭଗବାନ ॥

ଜାରାଶବର ଉପଗତ । ପାଦପଦ୍ମରେ ଶରାଘାତ ॥
ଜାରା ଯେ ବୈକୁଣ୍ଠକୁ ଗଲା । ଦେବଙ୍କ ଦ୍ରଶନ ପାଇଲା ॥
କୃଷ୍ଣ ଯେ ଯୋଗଧ୍ୟାନେ ରହି । ଦାରୁକ ଦ୍ରଶନ କରଇ ॥
ଦ୍ୱାରକା ଦାରୁକକୁ ପେଷି । ଶ୍ରୀ କୃଷ୍ଣ ଯେ ବୈକୁଣ୍ଠ ବାସୀ ।
ବସୁଦେବ ସ୍ୱର୍ଗ ପ୍ରାପତି । ଯାଦବେ ସଂହାର ହୁଅନ୍ତି ॥
ଅଷ୍ଟ ଯେ ପାଟ ବଂଶୀମାନ । ଅଗ୍ନିରେ ହୁଅନ୍ତି ଦହନ ॥
ଶେଷେ ଯେ କୃଷ୍ଣ ନାରୀଥିଲେ । ଅର୍ଜୁନ ଘେନି ତାଙ୍କୁ ଗଲେ ॥
ଦ୍ୱାରକା ସମୁଦ୍ର ଗ୍ରହଣେ । ରହେ ନିବାସ ଏକାଶୂନ୍ୟେ ॥
ଯୁଦ୍ଧ ଗୋପାଳ ଅର୍ଜୁନେଣ । ଗାଣ୍ଡିବ ଧନୁ ତା ଶିରେଣ ॥
କୃଷ୍ଣ ପତ୍ନୀଙ୍କ ଅନ୍ତର୍ଦ୍ଧାନ । ପାଷାଣ ରୂପ ସେ ଧାରଣ ॥
ମଥୁରା ପୁରେ ସେ ରାଜନ । ବଜ୍ର ଅନିରୁଦ୍ଧ ନନ୍ଦନ ॥
ହସ୍ତିନା ନଗରେ ନୃପତ୍ୟ । ପରୀକ୍ଷ ଅଭିମନ୍ୟୁ ସୁତ ॥
ପାଣ୍ଡବେଙ୍କ ମହାପ୍ରସ୍ଥାନ । ହେମାଳ ଗିରି ଆରୋହଣ ॥
ଏକାଦଶ ସ୍କନ୍ଧେ ରଚିତ । ଏକତ୍ରିଂଶ ଅଧ୍ୟା ନିର୍ମିତ ॥
ଦ୍ୱାଦଶ ସ୍କନ୍ଧର ଚରିତ । ବ୍ରତମାନ ଭବିଷ୍ୟ ଭୂତ ॥
ସୂତ କହନ୍ତି ତୋଷମନେ । ଶୌନକ ଶୁଣ ସାବଧାନେ ॥
ଏ କଳିଯୁଗରେ ପ୍ରବେଶ । ଯେ ବର୍ତ୍ତମାନ ରାଜବଂଶ ॥
ଭବିଷ୍ୟ ରାଜବଂଶ ଭୋଗ । ଏତେ ନିଷ୍ଣୟ ଯେତେ ଯୋଗ ॥
ଯୁଗ ଲକ୍ଷଣରୁ ଯେ ଗତି । କଳିଯୁଗ ତା ଧର୍ମଗତି ॥
ଚାରି ଯେ ବର୍ଣ୍ଣାଶ୍ରମ ମାନ । ଧର୍ମ ଅଧର୍ମ ଯେତେ ଜ୍ଞାନ ॥
ପ୍ରାଣୀମାନଙ୍କର ବିନାଶ । ସୃଷ୍ଟି ସର୍ଜନାର ଯେ ଶେଷ ॥
ନିତ୍ୟ ନୈମିତ୍ତିକ ଯେ ଦୁଇ । ମହା ଯେ ଅତ୍ୟନ୍ତକ ହୋଇ ॥
ଏ ଚାରି ପ୍ରଳୟ ବର୍ଣ୍ଣନ । କହିଲୁଁ ତୁମ୍ଭର ଆଗେଣ ॥
ଭୂସ୍ୱର୍ଗ ପ୍ରାକୃତିକ ସ୍ୱର୍ଗ । ବୈକୃତିକ ସ୍ୱର୍ଗ ତ୍ରୀବର୍ଗ ॥
ଏ ତିନି ଉତ୍ପତ୍ତି ବର୍ଣ୍ଣନା । ତହୁଁ ଯେ ସୃଷ୍ଟିର ସର୍ଜନା ॥
ପରୀକ୍ଷିତ ଯୋଗ ଅଭ୍ୟାସ । ଶୁକ ଦେବଙ୍କ ପରବେଶ ॥
ପରୀକ୍ଷ ଶୁକଦେବ ପାଦେ । ନିମଗ୍ନ ହୋଇ ଯେଉଁ ଭାବେ ॥
ରାଜାକୁ ବ୍ରହ୍ମଶାପ ଦେଲା । ତକ୍ଷକ ଦଂଶିବ ବୋଇଲା ॥
ଧନ୍ୱନ୍ତ୍ରୀ ତକ୍ଷକ ଦର୍ଶନ । ମୃତ୍ୟୁ ସଂଜୀବନି ଗ୍ରହିନ ॥
ଧନ୍ୱନ୍ତ୍ରୀ ପଥୁ ବାହୁଡ଼ିବା । ତକ୍ଷକ କପଟେ ଆସିବା ॥
କୃମିରୂପେ ରାଜା ଦଂଶନ । ବିନାଗ୍ନି ଶରୀର ଦହନ ॥
ଯେ ବିଷ୍ଣୁଦୂତ ପରୀକ୍ଷିତ । ଯୋଗାଗ୍ନି ଦେହ ଉପବାତ ॥
ତାଙ୍କ ବୈକୁଣ୍ଠ ଆରୋହଣ । ବେଦଶାଖା ଯେ ପ୍ରଣୟନ ॥
ମାରକଣ୍ଡ ଋଷି ଚରିତ । ମହାପ୍ରଳୟ ପ୍ରଭାବିତ ॥
ମାରକଣ୍ଡେୟ ଅନୁଗ୍ରହ । ସପ୍ତକଳ୍ପ ରକ୍ଷିତ ଦେହ ॥
ମାୟା ପ୍ରଳୟ ଅନ୍ତର୍ଦ୍ଧାନ । ହରପାର୍ବତୀଙ୍କ ଦ୍ରଶନ ॥

ମାୟା ପୁରୁଷର ନିର୍ଣ୍ଣୟ । ତେଣୁ ସେ ସର୍ବ ତେଜମୟ ॥
ଶଙ୍ଖ ଗ୍ରହ୍ଲାଦି ଯେ ଆୟୁଧ । ଅଙ୍ଗ ଆଭରଣ ପ୍ରସ୍ତାବ ॥
ଏହାଙ୍କ ଯେତେ ତତ୍ୱମାନ । ତାଙ୍କ ଦ୍ରହ୍ମନା ଯେ ପୁଣ ॥
ଏ ସର୍ବ କହିଲି ତୁମ୍ଭରେ । ଭାବେ ଯେ ପୁଚ୍ଛିଲ ଆମ୍ଭରେ ॥
ଜଗତ ଆତ୍ମା ସୂର୍ଯ୍ୟମୟ । ଦ୍ୱାଦଶ ଆଦିତ୍ୟ ନିର୍ଣ୍ଣୟ ॥
ରଥମଣ୍ଡଳର ବେହାର । ଯକ୍ଷ ଗନ୍ଧର୍ବ ବିଦ୍ୟାଧର ॥
ଅପସରାଦି ଯେ ରାକ୍ଷସ । ଏ ଆଦି ଯେତେ ସପ୍ତରଷ ॥
ବାରମାସରେ ଯେ ନିର୍ଣ୍ଣୟ । ସର୍ବ ଶୁଣିଲ ମହାଶୟ ॥
ଚନ୍ଦ୍ରର କ୍ଷୟ ବୃଦ୍ଧି ଜାଣ । ଦେବତା କରନ୍ତି ଭକ୍ଷଣ ॥
ପ୍ରଥମଠାରୁ ଦ୍ୱାଦଶ ଏ । ଠିକ୍ ତା କହିଲୁ ନିର୍ଣ୍ଣୟେ ॥
ଦ୍ୱାଦଶ ଖଣ୍ଡ ଭାଗବତ । ଅଷ୍ଟାଦଶ ସହସ୍ର ଗ୍ରନ୍ଥ ॥
ଚୌବିଂଶ ସସ୍ତଗ୍ରନ୍ଥ ଟୀକା । ଭବିଷ୍ୟେ କହିବ ତା ବିପ୍ରା ॥
ତିନିଶତ ପଞ୍ଚତିରିଶ । ଅଧ୍ୟାରେ ପୂର୍ଣ୍ଣହୋ ବିଶେଷ ॥
ସୂତ କହେ ଶୌନିକ ମୁନି । ପୁଚ୍ଛିଲୁ ଭାଗବତ ବାଣୀ ॥
ପୂର୍ବେ ମୁଁ ଯାହା ଶୁଣିଥିଲି । ବିସ୍ତାରି ତୁମ୍ଭଙ୍କୁ କହିଲି ॥
ବାସୁଦେବର ଯେତେ ଲୀଳା । ସେ ଅବତାରେ ଯେତେ କଳା
ବର୍ଣ୍ଣନେ ତାହାଙ୍କ ମହିମା । ଯେତେ କହିଲୁ ଗୁଣ ସୀମା ॥
ସେ ପ୍ରଭୁ ପରମ ପୁରୁଷ । ତାହାଙ୍କ ମହିମା ଅଶେଷ ॥
ଶ୍ରୀରାମ ହଳ ଯେ ବରାହ । ମୀନ କର୍ମଠ ନରସିଂହ ॥
ଧର୍ମ ପରି ବାମନ ନାମ । ହୟଗ୍ରୀବା ଯେ ଏ ଦଶମ ॥
ଯେ ବିଶ୍ୱରୂପୀ କପିଳେସ । ନାରଦ ଯଜ୍ଞ ଦେବବ୍ୟାସ ॥
ବୁଦ୍ଧ କଳକୀ ଧନ୍ୱନ୍ତରୀ । ହଂସ ଦୈବ ଯେ ପରିଚାରୀ ॥
ମୋହିନୀ ନରନରାଏଣ । ଅନନ୍ତ ଋଷଭ ରାଜନ ॥
କୌଶିକ ଧାତା ଯେ ଭାର୍ଗବ । ଯମ ସ୍ୱୟମ୍ଭୁ ପୃଥୁଧ୍ରୁବ ॥
ବତିଶ ଅବତାର ହୋଇ । ଦୁଷ୍ଟ ନାଶି ଉଶ୍ୱାସ ମହୀ ॥
ତାହାର ନାମ ଉଚ୍ଚାରିଲେ । ମନରେ ତା ରୂପ ଦେଖିଲେ ॥
ଶୁଣି ଶୁଣାଇ ଯେ ଗାୟନ । ନ ଯାଇ ଯମର ଭୁବନ ॥
ପ୍ରାଣୀ କ୍ଷୁଧା ତୃଷାର୍ତ୍ତ ହୋଇ । ନାନା ତାପରେ ବ୍ୟଥାପାଇ ॥
ଚାଲନ୍ତେ ପଥ ହୁଡ଼ି ପଡ଼େ । କଣ୍ଟକ ପାଷାଣ ବା ଗୋଡ଼େ ॥
ହେଲେ ବା ଶ୍ରଦ୍ଧା ପଣେ କହି । ସକଳ ପାପରୁ ତରଇ ॥
ତା ନାମ ହୃଦେ ଯେ ଭଜନ୍ତି । ସେ ବାସୁଦେବ ତହିଁ ସ୍ଥିତି ॥
ଅଜ୍ଞାନ ଅନ୍ଧକାର ଦୂର । ନିର୍ମଳ ହୋଇବ ଶରୀର ॥
ଅନ୍ଧକାର କୁ ସୂର୍ଯ୍ୟ ନାଶେ । ମେଘ ଚଣ୍ଡ ପବନ ନାଶେ ॥
ଯେ ବାସୁଦେବ କଥା ଛାଡ଼ି । ଅନ୍ୟ କଥାରେ ମନ ବଢ଼ି ॥
ସେ ସବୁ ବିଅର୍ଥ ଅଟଇ । କୁହୁକ ବିଦ୍ୟା ଯେ ଖେଳଇ ॥
ସେ କୃଷ୍ଣ କଥାରସ ବିନା । ଯେତେକ ବିଅର୍ଥ ବର୍ଣ୍ଣନା ॥

ରସ କଳାରେ ରସେ ମନ । ସେ ସବୁ ବିଅର୍ଥ କାରଣ ॥
ମଙ୍ଗଳ ଦାଏକ ସେ ପୂର୍ଣ୍ଣ । ସୁନ୍ଦର ନାମ ରସ ଜ୍ଞାନ ॥
ଶ୍ରୀକୃଷ୍ଣ କଥା ମାତ୍ର ସତ୍ୟ । ତାହାର ନାମ ଯେ ଚରିତ ॥
ନବୀନ ମନ ମହୋତ୍ସବ । ସକଳ ଜନରେ ସୁଲଭ ॥
ପ୍ରାଣୀ ଶୋକ ସନ୍ତାପମାନ । ଦହିଜ କରେ ତତ୍କ୍ଷଣ ॥
ଯେ ପଢ଼େ ବାସୁଦେବ ନାମ । କରଇ ସ୍ମରଣ କୀର୍ତ୍ତନ ॥
ଆତ୍ମାକୁ ପବିତ୍ର ମଣଇ । ଜଗତ ଶୁଣି ନିସ୍ତରଇ ॥
ଯେ ପଦେ ବାସୁଦେବ ବାଣୀ । ଗାୟନ ନ କରନ୍ତି ପୁଣି ॥
ସେ ମୁଖ କାକ ଶ୍ୱାନ ବୋଲି । ତହୁଁ ନ କରେ ହଂସକେଳି ॥
ତା ନାମ ଧରି ସାଧୁଜନ । ଯହିଁ ସେ କରନ୍ତି ଗାୟନ ॥
ଜଗତ ପାପ ବିନାଶଇ । ଶ୍ଳୋକ ପଦକେ ପାପଦହି ॥
ଯେ ବା ଏ ପୁରାଣ ପଢ଼ନ୍ତି । ଶ୍ରବଣ କୀର୍ତ୍ତନ କରନ୍ତି ॥
ଯେବେ ସକଳ କର୍ମ ଛାଡ଼ି । ସନ୍ନ୍ୟାସ କର୍ମେ ଚିତ୍ତ ବଢ଼ି ॥
ବାସୁଦେବ ଭଜନ ନାହିଁ । ସେ ନିରଞ୍ଜନ ଜ୍ଞାନ ନୋହି ॥
ସଂସାରେ ଥାଇ ସର୍ବ ଧର୍ମ । ଯେତେ କରିବେ ଶୁଭକର୍ମ ॥
ଯେବେ ସେ ବାସୁଦେବ ଦେଇ । ସାଧୁ ବୈଷ୍ଣବ ତାକୁ କହି ॥
ଯେତେକ ବର୍ଣ୍ଣ ଧର୍ମ ଯଶ । କର୍ମ ଆଚାର ସେ ବିଶେଷ ॥
ବାସୁଦେବ ବୋଲି ନ ଜାଣି । ବିଅର୍ଥେ ମରନ୍ତି ସେ ପ୍ରାଣୀ ॥
ସେ କୃଷ୍ଣ ଚରଣାରବିନ୍ଦ । ଯେ ପ୍ରାଣୀ କରନ୍ତି ଆସ୍ୱାଦ ॥
ନାମ ଗୁଣ କୀର୍ତ୍ତନମାନ । ଆବର ସ୍ମରଣ ସୁମନ ॥
ଚିତ୍ତୁ ଗୋବିନ୍ଦ ନ ପାସୋରେ । ସକଳ ଅମଙ୍ଗଳୁ ତରେ ॥
ଆପଣା ମଙ୍ଗଳ ବଢ଼ଇ । ଦେହକୁ ଶୁଦ୍ଧ ସେ କରଇ ॥
ପରମ ଭକ୍ତି ଉପୁଜଇ । ଜ୍ଞାନ ବୈରାଗ୍ୟ ଜାତ ହୋଇ ॥
ବ୍ରାହ୍ମଣ ଶ୍ରେଷ୍ଠ ଭାଗ୍ୟବନ୍ତ । ସାଧୁ ସୁଗୁଣ ତୁମ୍ଭ ଚିତ୍ତ ॥
ଜଗତ ଆତ୍ମା ବାସୁଦେବ । ଏକାଗ୍ର ଚିତ୍ତେ ତାକୁ ଭାବ ॥
ଆତ୍ମା ଜ୍ଞାନରେ ସୁମରଣ । ତହିଁ ତାରିବେ ମତେ ପୁଣ ॥
ପରୀକ୍ଷ ରାଜା ଗଙ୍ଗାତୀରେ । ପ୍ରିୟ ଉପଦେଶ ସେ ବରେ ॥
ଯୋଗ ଆସନେ ବସି ଶୁଣି । ଶ୍ରୀ ଭାଗବତ ଶୁକ ବାଣୀ ॥
ମୁଁ ତାହା ଶୁଣି ଥିଲି ପୂର୍ବେ । କହିଲି ତୁମ୍ଭ ଭକ୍ତି ଭାବେ ॥
ଏବେ ତା ସୁମରଣ କଲି । ସଂସାର ବନ୍ଧନୁ ତରିଲି ॥
ହେ ବ୍ରହ୍ମଋଷି ମାନେ ଶୁଣ । ଶ୍ରୀ ଭାଗବତ ଯେ ପୁରାଣ ॥
ଶ୍ରୀ ବାସୁଦେବର ଚରିତ । ଅତି ପବିତ୍ର ଏ ଅମୃତ ॥
ସେ ବାସୁଦେବ କର୍ମଗୁଣ । ଦେବ ପୁରାଣରେ ବଖାଣ ॥
କେହି ତା ନଜାଣଇ ଅନ୍ତ । ଆକାଶ ଯେହ୍ନେ ଅପ୍ରମିତ ॥
ଶୁଣିଲେ ସର୍ବ ପାପ ହରେ । ପଠନେ କି କହିବା ତାରେ ॥
ଯେ ନାମ ହୃଦରେ ଧରଇ । ବ୍ରହ୍ମାକୁ ଗୋଚର ନୁହଇ ॥
ଶରଧା ଭାବେ ଯେ ପଢ଼ନ୍ତି । ସାତ ପୁରୁଷ ସ୍ୱର୍ଗେ ଯାନ୍ତି ॥
ଜୀବନ ମୁକ୍ତି ଯେ ବୋଲାଇ । ବ୍ରହ୍ମାକୁ ଗୋଚର ନୋହଇ ॥
ସାତକୁଳରୁ ସାତଗୋଟି । ଉଧରି ନେଇ ସେ ପ୍ରକଟୀ ॥
ମାତୃକୁଳ ଯେ ପିତୃକୁଳ । ଭଗ୍ନୀର ପୁତ୍ର ପତ୍ନୀକୁଳ ॥
ପିଉସୀ ମାଉସୀ ଜୁଆଇଁ । କୁଳରେ ଗୋଟିଏ ତାରଇ ॥
ଦ୍ୱାଦଶୀ ଯେକାଦଶୀ ତିଥି । ଅଷ୍ଟମୀ ପୂର୍ଣ୍ଣମୀ ସଂକ୍ରାନ୍ତି ॥
ଚତୁର୍ଦ୍ଦଶୀ ଅମାସ୍ୟା ପର୍ବ । ପୁଣ୍ୟତିଥିମାନ ଯେ ସର୍ବ ॥
ପଢ଼ି ଶୁଣିଲେ ଆୟବୃଦ୍ଧି । ପୁଣ୍ୟ ସଂପଦ ଜ୍ଞାନସିଦ୍ଧି ॥
ଅନ୍ନ ଭୋଜନ ଦାନ ଯେବେ । ଶ୍ରବଣ ପଠନ କରିବେ ॥
ମହାପାପରୁ ମୁକ୍ତ ହୋଇ । ବିଷ୍ଣୁର ଭଗତି ଲଭଇ ॥
ପୁଷ୍କର ତୀର୍ଥ ଯେ ଦ୍ୱାରକା । ମଥୁରା ପ୍ରୟାଗ ବଦ୍ରିକା ॥
କୁରୁକ୍ଷେତ୍ର ପୁରୁଷୋତ୍ତମ । କାଶୀକ୍ଷେତ୍ର ସ୍ଥାନ ଉତ୍ତମ ॥
ସଂଯମ ବୋଲି ଯେଉଁ ଜନ । ଦଶମୀ ଏକାଦଶୀ ଦିନ ॥
ଦ୍ୱାଦଶୀ ତିନିରେ ବିଶ୍ୱାସ । ସଂକଳ୍ପ ଚିତ୍ତଣ ଅଭ୍ୟାସ ॥
ଏ ଯେ ପୁରାଣ ଭାଗବତ । ଦ୍ୱାଦଶ ସ୍କନ୍ଧେଣ ବିଦିତ ॥
ତିନି ଶତ ଏକଚାଳିଶ । ଅଧ୍ୟାରେ ଏ ଗ୍ରନ୍ଥ ଯେ ଶେଷ ॥
ଏଥକୁ ସଂଗୀତା କରିଣ । ପଢ଼ିବ ଏ ନିତି ଦିନେଣ ॥
ଏକାଗ୍ର ଚିତ୍ତ ହୋଇ ଶୁଣି । ତରିବ ଭବ ତରଙ୍ଗିଣୀ ॥
ସର୍ବପାପରୁ ମୁକ୍ତ ହୋଇ । ଅଗ୍ନି ଯେସନେ ସର୍ବ ଦହି ॥
ଦେବତା ମୁନି ସିଦ୍ଧଗଣ । ପିତୃ ମନ ମନୁ ବଂଶେଣ ॥
ଯେ ପୁଣ୍ୟ ଶ୍ଳୋକ ରାଜାଗ୍ରନ୍ଥି । ଏ ଗ୍ରନ୍ଥେ ଯେତେ ରାଜାଛନ୍ତି ॥
ଯେ ପ୍ରାଣୀ ପଢ଼ନ୍ତି ଶୁଣନ୍ତି । ଅବିଘ୍ନେ ସର୍ବ କାମଦ୍ୟନ୍ତି ॥
ସଂହିତା ଭାବେଣ ବ୍ରାହ୍ମଣ । ଖାଇ ତିନିବେଦ କାରଣ ॥
କ୍ଷତ୍ରୀ ଯେବେ ପଢ଼ି ଶୁଣଇ । ସାତ ଦୀପ ଦାନ ଫଳଇ ॥
ବଶ ହୋଇ ପଢ଼େ ଯେ ପୁଣି । ନ ଲାଗେ ଭବ ତରଙ୍ଗିଣୀ ॥
ବିଷ୍ଣୁ ପ୍ରାପ୍ତି ତାକୁ ହୁଅଇ । ସୁଖେ ବାଣିଜ୍ୟ କୃଷିହୋଇ ॥
ସର୍ବ ପାପରୁ ମୁକ୍ତ ହୋଇ । ବାସୁଦେବ ଚରଣ ପାଇ ॥
ମଧୁ କଳ୍ପା ଦଗ୍ଧ କଳ୍ପାଏ । ଘୃତ କଳ୍ପା ଦୁଗ୍ଧ କଳ୍ପାଏ ॥
ଏ ଚାରିଦାନ ଫଳ ପାଇ । ଅନ୍ତେ ମୁକତି ଗତି ପାଇ ॥
ବ୍ରାହ୍ମଣ ସଂହିତାରେ ପଢ଼ି । ଅର୍ଥ ବେଦରେ ଚିତ୍ତ ବଢ଼ି ॥
ଯେ ଫଳ ହୁଅଇ ତାହାର । ଆବର ତିନି ବର୍ଣ୍ଣଙ୍କର ॥
ଶୁଣିଲେ ସଫଳ ହୁଅଇ । ସକଳ ପାପ ନ ଲାଗଇ ॥
ଏ ଭାଗବତ ପୁରାଣରେ । କଳି ର ପାପ ନାଶ କରେ ॥
ସେ ବାସୁଦେବର ମହିମା । ଗାୟନ ତାଙ୍କ ଗୁଣସୀମା ॥
ଆନ ପୁରାଣ ମାନଙ୍କରେ । ଏ ଭାବ ନୁହଇ ପ୍ରଚରେ ॥
ଅଶେଷ ଯଜ୍ଞର ଏ ମୂର୍ତ୍ତି । ବାସୁଦେବର ଏଥେ ସ୍ଥିତି ॥

ତାଙ୍କ ମହିମା ପଦେ ପଦେ । କଥା ପ୍ରସଙ୍ଗରେ ଆନନ୍ଦେ ॥
ସେ ଭଗବାନ ବାସୁଦେବ । ଅଜନ୍ମ ଅମୂର୍ତ୍ତି ଅଭେଦ ॥
ଅନନ୍ତ ତତ୍ତ୍ୱ ଆତ୍ମା ରୂପୀ । ଉତ୍ପତ୍ତି ସ୍ଥିତି ପ୍ରଳୟପି ॥
ସକଳ ମାୟାର କାରଣ । ଅଶେଷ ଜୀବର ଧାରଣ ॥
ବ୍ରହ୍ମା ଯେ ସର୍ବ ବେଦପିତା । ମହେଶ ଆଦି ବ୍ରହ୍ମବେତ୍ତା ॥
ଏମାନେ ନିଗମରେ ସ୍ଥିତି । ଯା ଆଦି ଅନ୍ତ ନ ଜାଣନ୍ତି ॥
ସେ ଯେ ଅଚ୍ୟୁତର ଚରଣ । ତାଙ୍କୁ ମୋ ନମସ୍କାର ପୁଣ ॥
ସେ ପ୍ରଭୁ ଯେମନ୍ତ ଅଟନ୍ତି । ନବ ଶକ୍ତିରେ ଯୁକ୍ତ ମତି ॥
ସ୍ୱକ୍ରିୟା ଆତ୍ମାରେ ନିଷ୍କଳା । ସ୍ଥାବର ଜଙ୍ଗମରେ ଲୀଳା ॥
ସର୍ବ ଭୂତରେ ପୂରିଛନ୍ତି । କେବଳ ପ୍ରଭା ପ୍ରକାଶନ୍ତି ॥
ସେ ଦେବ ଦେବ ସଦାଥାଇ । ତା ପାଦେ ନମସ୍କାର ହୋଇ ॥
ସେ ପ୍ରଭୁ ସାକ୍ଷାତ ଈଶ୍ୱର । ସୁଖ ଅନୁଭବ ମାତର ॥
ଜଗତ ଲୋକ ଉପଦେଶ । ଉଧରି ବୈକୁଣ୍ଠରେ ବାସ ॥
ବିଷ୍ଣୁ ସ୍ୱରୂପୀ ବେଦବ୍ୟାସ । ସର୍ବ ଗ୍ରନ୍ଥମୟ ପ୍ରକାଶ ॥
ସେ ପୁଣି ଅନ୍ୟତ୍ର ଜନ୍ମଇ । ପୁତ୍ର ସ୍ୱରୂପେ ପ୍ରକାଶଇ ॥
ସାକ୍ଷାତେ ବାସୁଦେବ ଅଂଶ । ଅରଣି କାଷ୍ଠର ସଦୃଶ ॥
ଆତ୍ମ ଜ୍ଞାନରେ ପରକାଶ । ସ୍ୱରୂପେ ଜନ୍ମ ପରକାଶ ॥
ଅବଧୂତ ରୂପରେ ବେଶ । ବ୍ୟାସଙ୍କ ତହୁଁ ଉପଦେଶ ॥
ଶ୍ରୀ ଭାଗବତ ପୁଣ୍ୟରସ । ତତ୍ତ୍ୱଜ୍ଞାନ ଦିଗ ସଦୃଶ ॥
ବ୍ରହ୍ମ ଦର୍ଶନେ ହୃଦେ ବାସ । ବ୍ୟାସଙ୍କୁ ଛାଡ଼ି ବନବାସ ॥
ତାଙ୍କ ପଛେ ବ୍ୟାସ ଗୋଡ଼ାଇ । ବଦ୍ରିକା ଆଶ୍ରମେ ଚଳଇ ॥
ଗିରୀ ଶିଖର ପରିଯନ୍ତେ । ଏମନ୍ତ ପଥରେ ସେ ଯାନ୍ତେ ॥
ଆକାଶ ଗଙ୍ଗା ଦେବସ୍ତିରୀ । ବସ୍ତ୍ର ପାଳଟି ସ୍ନାନ କରି ॥
ଶୁକଙ୍କୁ ଦେଖି ଶୁଭ୍ରବେଶୀ । ପ୍ରଣାମ କଲେ ସ୍ୱର୍ଗବାସୀ ॥
ଶୁକ ତା ଦେଖି ନ ଦେଖିଲେ । ବ୍ୟାସଙ୍କୁ ଦେଖି କନ୍ୟା ଗଲେ
ବ୍ୟାସେ ଯେ ତାହାଙ୍କୁ ପୁଛିଲେ । ଆମ୍ଭଙ୍କୁ ଦେଖି ପଶ ଜଳେ ॥
ସୁତ ମୋ ଯୁବା ଏ ବୟସ । ତାଙ୍କୁ ତ ହୋଇଲି ଆଦେଶ ॥
ଦେବକନ୍ୟା ମାନେ କହନ୍ତି । ସେ ଯେ ପରମ ଜ୍ଞାନୀ ହୋଇ ॥
ସ୍ତିରୀ ପୁରୁଷର ଯେ ଭାବ । ନ ଜାଣେ କେମନ୍ତ ସ୍ୱଭାବ ॥
ତୁମ୍ଭର ଦେହ ବୁଧି ଅଛି । ଏଣୁ ତୁମ୍ଭଙ୍କୁ ଆମ୍ଭେ ଲୁଚି ॥
ଶୁକ ଯେ ବନସ୍ତେ ପ୍ରବେଶ । ଜ୍ଞାନରେ ହୋଇଲେ ଅଦୃଶ ॥
ବ୍ୟାସ ଯେ ତାହାଙ୍କୁ ନଦେଖି । ମନେ ହୋଇଲେ ମନଦୁଃଖୀ ॥
ବ୍ୟାସ ସପତ ଦିନ ରହି । ତାହାଙ୍କୁ ଅନୁଗ୍ରହ ବହି ॥
ବୃକ୍ଷମାନଙ୍କର ଶବଦ । ଶୁକଦେବ ବଚନ ଭେଦ ॥
ମହାପିତୃ ଯେ ସସ୍ତ୍ରପାଣି । ପୁତ୍ର ଦାରା ସସ୍ତ୍ର ଜନ୍ମନୀ ॥
ଏ ଭାବେ ଚତୁର ଶୋଳକେ । ଶୁଣିଲେ ବୃକ୍ଷଙ୍କର ବାକ୍ୟେ ॥
ତା ଶୁଣି ବ୍ୟାସେ ତୋଷହୋଇ । ଦେହରୁ ଜ୍ଞାନ ଯେ ଜନ୍ମଇ ॥
ସନ୍ତତି ବୃଦ୍ଧିର ନିମନ୍ତେ । ପ୍ରାର୍ଥନା କରେ କର୍ମମତେ ॥
ସେ ଶୁକଦେବ ପ୍ରତିଛାୟା । ଶୁକ ନାମେଣ ପ୍ରତିକ୍ରିୟା ॥
ଶୁକ ନାମେ ନିର୍ବାଣ ହୋଇ । ଆପଣା ଅଂଶ ତହିଁ ହୋଇ ॥
ବ୍ୟାସଙ୍କୁ ପ୍ରତି ବାକ୍ୟ ଦେଇ । ପ୍ରବୋଧ କରିଣ ସେ କହି ॥
ପ୍ରତି ଶୁକ କୁ ଘେନି ବ୍ୟାସ । ଆପଣା ଆଶ୍ରମେ ପ୍ରବେଶ ॥
ତାହାଙ୍କ ବ୍ରତ ଉପାୟନ । କରାଇ ବେଦ ଅଭ୍ୟାସନ ॥
ପିତୃଲୋକ ମନୁ ଦୋହିତୀ । ସେ ତାଙ୍କ ମନୁ ଉତପତ୍ତି ॥
ପିବରି ନାମ ଯେ ତାହାରି । ସେ କନ୍ୟା ଶୁକେ ବିଭାକରି ॥
ତହୁଁଣ ଚାରି ଯେ ତନଏ । ଜନମ ଏକଇ କନ୍ୟାଏ ॥
କୃଷ୍ଣ ଗଉର ପ୍ରଭୁ ଶୁମ୍ଭୁ । ଚାରି ପୁତ୍ରେ ତାର ସମ୍ଭବୁ ॥
କନ୍ୟାର ନାମ କୃଷ୍ଣା ହୋଇ । ପଞ୍ଚାଳ ଦେଶେ ବିଭା ହୋଇ॥
ଅମୁହ ନାମେଣ ରାଜନ । ତାହାଙ୍କୁ କରି କନ୍ୟାଦାନ ॥
ସେ କନ୍ୟାପୁତ୍ର ବ୍ରହ୍ମଦତ୍ତ । ସେ ବ୍ରହ୍ମଜ୍ଞାନରେ ସଂଯୁତ ॥
ଏ ଚାରି ପୁତ୍ରଙ୍କ ବଂଶେଣ । ପରାଶର ଗୋତ୍ର ବ୍ରାହ୍ମଣ ॥
ଚାରିବେଦରେ ସେ ହୋଇଲେ । ତହୁଁଣ ଶୁକ ପୁଣି ଗଲେ ॥
ବ୍ୟାସଙ୍କୁ ଜ୍ଞାନ ସେ ପୁଛିଲେ । ତହିଁଣ ବୋଧ ସେ ନୋହିଲେ
ମିଥିଳା ଜନକ ରାଜନ । ସେ ରାଜରଷି ବିଦ୍ୟମାନ ॥
ସେ ନବ ମହାମୁନି ଶିଷ । ତହୁଁଣ ଜ୍ଞାନ ତା ବିଶେଷ ॥
ଶୁକ ଯେ ଉପଦେଶ ହୋଇ । ଆତ୍ମାରେ ବ୍ରହ୍ମାଙ୍କୁ ଚିହ୍ନଇ ॥
ପିତା ପୁତ୍ରାଦି ଛାଡ଼ିଗଲେ । ଶୁକଙ୍କ ଦେହରେ ମିଶିଲେ ॥
ଯେବଂ ଭୂତ ଯେ ଶୁକଦେବ । ତାହାଙ୍କ ଚରଣେ ଯେ ଭାବ ॥
ଜଗତ ହିତେ ବ୍ରହ୍ମଦେଶ । ଭାଗବତ ପୁରାଣ କହି ॥
ଏ ଭାଗବତର ମହିମା । କେ କହିପାରେ ଗୁଣସୀମା ॥
ପରୀକ୍ଷ ରାଜା ପୁଣ୍ୟବଳେ । ଅକସ୍ମାତେ ଶୁକ ମିଳିଲେ ॥
ପରୀକ୍ଷ ଭାଗବତ ଶୁଣି । ଲଭିଲେ ବୈକୁଣ୍ଠ ସେ ପୁଣି ॥
ଜଗତ ହିତର ନିମନ୍ତେ । କହିଲି ତୁମ୍ଭର ଅଗ୍ରତେ ॥
ସକଳ ପ୍ରାଣୀ ପାପନାଶ । ଏଣୁ ଏ ପୁରାଣ ପ୍ରକାଶ ॥
ସେ ଶୁକଦେବ ମହିମାରେ । ପୁରାଣ କହିଲି ତୁମ୍ଭରେ ॥
ସେ ଶୁକଦେବେ ନମସ୍କାର । ପ୍ରମାଣ ଶତସସ୍ର ମୋର ॥
କହଇ ବିପ୍ର ଜଗନ୍ନାଥ । ଭାଷା ପ୍ରବନ୍ଧେ ଭାଗବତ ॥
ସୁଜନେ ଦୋଷ ମୋ ନ ଧର । ସେବଇ ଚରଣେ ତୁମ୍ଭର ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ଦ୍ୱାଦଶସ୍କନ୍ଧେ*
*ନାମ ଦ୍ୱାଦଶୋଽଧ୍ୟାୟଃ ।*

## ତ୍ରୟୋଦଶ ଅଧ୍ୟାୟ

### ଶ୍ରୀ ସୂତ ଉବାଚ

ଶୁକ କହନ୍ତି ତୋଷମନେ । ଶୁଣ ଶୌନକ ମୁନିଜନେ ॥
ପୁରାଣ ମାନଙ୍କ ନିର୍ଣ୍ଣୟ । ଯେ ସାକ୍ଷ ତହିଁର ବିଷୟ ॥
ଏହା ଶୁଣିଲା ଫଳହୋଇ । ପୁରାଣ ଦାନ ଫଳ ପାଇ ॥
ପୁରାଣ ଅଷ୍ଟାଦଶ ସାର । ଚାରିଲକ୍ଷ ଗ୍ରନ୍ଥ ବିସ୍ତାର ॥
ସହସ୍ର ସନ୍ଧ୍ୟାରେ ପ୍ରମାଣ । ଅଧିକ ଥାଇ ସତେ ପୁଣ ॥
ବ୍ରହ୍ମ ପୁରାଣ ସପ୍ତଦଶ । ପଦ୍ମ ପଞ୍ଚାନ ସସ୍ର ଶେଷ ॥
ଯେ ବିଷ୍ଣୁ ବୈଷ୍ଣବ ପୁରାଣ । ତେଇଶ ସସ୍ର ଗ୍ରନ୍ଥ ଜାଣ ॥
ଶିବ ପୁରାଣ ଯେଉଁ ଗ୍ରନ୍ଥ । ଚୈବିଂଶ ସହସ୍ର ବିଦିତ ॥
ନାରଦ ପୁରାଣ ବ୍ୟାଖ୍ୟାନ । ପଚିଶ ସହସ୍ର ଗ୍ରନ୍ଥେଣ ॥
ମାରକଣ୍ଡେୟ ଯେ ପୁରାଣ । ନବ ସହସ୍ର ଗ୍ରନ୍ଥ ଜାଣ ॥
ଅଗ୍ନି ପୁରାଣ ପୁଣି ଜାଣ । ଊନବିଂଶ ଯେ ସହସ୍ରେଣ ॥
ଭବିଷ ପୁରାଣର ବାଣୀ । ଚତୁର୍ଦ୍ଦଶ ସହସ୍ର ଗଣି ॥
ପଞ୍ଚଶତ ଅଧିକ ପୁଣି । ଏ ଭାବେ ଏ ପୁରାଣ ଭଣି ॥
ବ୍ରହ୍ମ ବୈବର୍ତ୍ତ ଯେ ପୁରାଣ । ଏଠର ସହସ୍ର ଗ୍ରନ୍ଥେଣ ॥
ଲିଙ୍ଗ ପୁରାଣର ବିସ୍ତାର । ଏଗାର ସହସ୍ର ଯେ ତାହାର ॥
ବରାହ ପୁରାଣ ଯେ କହି । ଚଉବିଂଶ ସହସ୍ରେ ହୋଇ ॥
ସ୍କନ୍ଧ ପୁରାଣର ବିସ୍ତାର । ଚୌରାଶିସସ୍ର ଗ୍ରନ୍ଥ ତାର ॥
ଶତେକ ଏଥିର ଉପର । ସର୍ବେ ପୁରାଣ ଏ ବିସ୍ତାର ॥
ବାମନ ପୁରାଣ ଯେ ଶେଷ । ଦଶ ସହସ୍ର ସେ ପ୍ରକାଶ ॥
କୂରୁମ ପୁରାଣ ବଖାଣ । ସପତ ଦଶ ସହସ୍ରେଣ ॥
ମତ୍ସ୍ୟ ପୁରାଣ ଯେ ବିଧାନ । ଚଉଦ ସହସ୍ର ଗ୍ରନ୍ଥେଣ ॥
ଗରୁଡ଼ ପୁରାଣ ଯେ ପୁଣି । ଊନବିଂଶ ସହସ୍ର ଜାଣି ॥
ବ୍ରହ୍ମାଣ୍ଡ ପୁରାଣର ଶେଷ । ଦ୍ୱାଦଶ ସହସ୍ର ପ୍ରକାଶ ॥
ବ୍ରହ୍ମ ପୁରାଣର ବିସ୍ତାର । ଏକ ବିଂଶ ସହସ୍ର ତାର ॥
ଏ ଭାବେ ଅଷ୍ଟାଦଶ ସାର । ଶ୍ରୀ ଭାଗବତ ନାମ ଯାର ॥
ସର୍ବପୁରେ ବିରାଜମାନ । ଶୁକ ପରୀକ୍ଷ ସଂପାଦନ ॥
ଅଠର ସହସ୍ର ଯେ ଗ୍ରନ୍ଥ । ଶ୍ରୀ ବାସୁଦେବଙ୍କ ଚରିତ ॥
ଏହୁ ପୁରାଣରେ ବଖାଣ । ବିଷ୍ଣୁର ମହିମା ବର୍ଣ୍ଣନ ॥
ବିଷ୍ଣୁ ନାଭିକମଳେ ସ୍ଥିତି । ସେ ବ୍ରହ୍ମା ସୃଷ୍ଟି ଉତପତି ॥
ବିଷ୍ଣୁର ଠାରୁ ଉପଦେଶ । ସେ ପୁଣି ନାରଦେ ବିଶେଷ ॥
ନାରଦ ତହୁଁ ବ୍ୟାସପାଇ । ବ୍ୟାସ ଯେ ଶୁକଦେବେ ଯାଇ ॥
ଶୁକ ଦେବଙ୍କ ତହୁଁ ପୁଣ । ମୋ ପିତା ଲୋମ ହରଷେଣ ॥
ସୂତ ପୌରାଣିକ ତା ନାମ । ଜାଣେ ପୁରାଣ ତତ୍ତ୍ୱମାନ ॥
ତୁମ୍ଭ ଆଗରେ ସେ ବ୍ୟାଖ୍ୟାନ । ଥୋକାଏ କହିଥିଲି ପୁଣ ॥
ବଳଦେବ ତାଙ୍କୁ ନାଶିଲେ । ମୋତେ ସେ ଅଧିକାର ଦେଲେ
ପୂର୍ବେ ଯେ ତାଙ୍କ ଠାରୁ ମୁହିଁ । ଉପଦେଶ କରିଅଛଇ ॥
କହିଲି ତୁମ୍ଭର ଛାମୁରେ । ଯା ମୋତେ ଅନୁଭବେ ସ୍ମରେ
ଶ୍ରୀ ଭାଗବତ ଯେ ପୁରାଣ । ବାସୁଦେବର ଲୀଳାମାନ ॥
କଥା ସମୂହେ ପରିପୂର୍ଣ୍ଣ । ବେଦ ବେଦାନ୍ତେ ସାରବ୍ରହ୍ମ ॥
ସକଳ ସସ୍ରେ ଯେ ପୁରାଣେ । ଯେ ଅର୍ଥମାନ ପରିପୂର୍ଣ୍ଣେ ॥
କେବଳ ସେହି ମୋକ୍ଷଦାତା । ବ୍ରହ୍ମ ତକ୍ଷକ ରୂପେ ଧାତା ॥
ଏ ଯେ ପୁରାଣ ଭାଗବତ । ବିଷ୍ଣୁର ମହିମା ବର୍ଣ୍ଣିତ ॥
ଭାଦ୍ରବ ପୂର୍ଣ୍ଣମୀ ଦିନରେ । ସୁବର୍ଣ୍ଣ ସିଂହାସନ ପରେ ॥
ପୁସ୍ତକ ମାନ ବସାଇଣ । ପୂଜିବ ବିଷ୍ଣୁର ଭାବେଣ ॥
ବ୍ରାହ୍ମଣେ ବୈଷ୍ଣବେ ଦାନ । ଦିଆଇ ଯେବଣ ରାଜନ ॥
ଯଥାଭାବେ ଦକ୍ଷିଣା ଦେଇ । ବେଦ ବଚନେ ଉଚ୍ଚର୍ଗଇ ॥
ପରମ ଗତିକି ସେ ପାଇ । ବୈକୁଣ୍ଠ ଭୁବନରେ ଥାଇ ॥
ସାଯୁଜ୍ୟ ମୁକ୍ତି ସେ ଲଭନ୍ତି । ବିଷ୍ଣୁ ଦେହରେ ଲୀନ ହୋନ୍ତି ॥
ସାଧୁ ଯେ ସଭା ମାନଙ୍କରେ । ଅନ୍ୟ ପୁରାଣ ଯେ ପ୍ରଚାରେ ॥
ସେ ଶୋଭା ପାଉଥାଇ ତହିଁ । ଯେତେ ଭାଗବତ ନଥାଇ ॥
ସକଳ ବେଦାନ୍ତର ସାର । ଶ୍ରୀ ଭାଗବତର ବିସ୍ତାର ॥
ସେ ରସକଥା ଅମୃତରେ । ତ୍ରିପୁତ ହୁଅଇ ସଂସାରେ ॥
ଯେ ଆନ ପୁରାଣ ପ୍ରକାଶ । ସେ ନ କରନ୍ତି ମନତୋଷ ॥
ନଦୀମାନଙ୍କର ଯେମନ୍ତ । ଗଙ୍ଗା ସେ କରଇ ତୃପ୍ତ ॥
ଦେବଙ୍କ ମଧ୍ୟେ ବାସୁଦେବ । ଭଗତେ ସନ୍ତୋଷ କେଶବ ॥
ବୈଷ୍ଣବ ମାନଙ୍କ ମହେଶ । ବ୍ରହ୍ମା ଯେମନ୍ତେ ବିପ୍ରହିଣ ॥
ଶ୍ରୀ ଭାଗବତ ଯେ ପୁରାଣ । ଭାଗବତ ନାମ ବଖାଣ ॥
ସମସ୍ତ ବୈଷ୍ଣବଙ୍କ ପ୍ରିୟ । ପରମହଂସର ନିର୍ଣ୍ଣୟ ॥
ପୁରାଣ ମାନଙ୍କରେ ଶ୍ରେଷ୍ଠ । ଶ୍ରୀ ଭାଗବତ ସର୍ବଇଷ୍ଟ ॥
ଧର୍ମ ନିର୍ମଳ ଜ୍ଞାନ ଭାବ । ଜ୍ଞାନ ବୈରାଗ୍ୟ ମୁକ୍ତିମାର୍ଗ ॥
ଏ ଆଦି ଯହିଁରେ ପ୍ରକାଶ । ନିର୍ଗୁଣ ଗାୟନ ଅଭ୍ୟାସ ॥
ଯେ ପ୍ରାଣୀ ପଢ଼ନ୍ତି ଶୁଣନ୍ତି । କର୍ମ ବନ୍ଧନୁ ନିସ୍ତରନ୍ତି ॥
ଜନ୍ମ ମରଣାଦି ସେ ନୋହି । ନିରାକାରେଣ ଲୀନ ହୋଇ ॥
ଜ୍ଞାନ ପ୍ରଦୀପ ଏ ପୁରାଣ । ବ୍ରହ୍ମା ଉପଦେଶ ନିର୍ଗୁଣ ॥
ବ୍ରହ୍ମା ଯେ ନାରଦଙ୍କୁ କହି । ନାରଦେ ପୁଣ ବ୍ୟାସେ ଦେଇ।
ଶୁକଙ୍କୁ ବ୍ୟାସେ ଯେ କହିଲେ । ଶୁକ ପରୀକ୍ଷେ ବୁଝାଇଲେ ॥
ସେଠାରୁ ଜଗତେ ବିଖ୍ୟାତ । ନାମ ଯେ ଶିରୀ ଭାଗବତ ॥
ଏବଂ ଭୂତେ ଯେ ବାସୁଦେବ । ତା ପାଦେ ଧ୍ୟାନ ମୋ ରହିବ ॥
ବ୍ରହ୍ମା ବରୁଣ ଇନ୍ଦ୍ର ଦେବ । ଏବଂ ସ୍ତୁତିରେ ସ୍ତୁତିଭାବ ॥
ଅଙ୍ଗ ଉପାଙ୍ଗ ପଦକର୍ମ । ଜହିଁ ଉପନିଷଦ ବ୍ରହ୍ମ ॥

ସମେତ କରି ସାମବେଦ । ଗାୟନ କରି ବ୍ରହ୍ମପଦ ॥
ସାମ ଗାୟନେ ବିପ୍ରଜନେ । ମହିଁମା ବଖାଣି ବଦନେ ॥
ଧ୍ୟାନରେ ତଦଗତ ହୋଇ । ପରମ ଜ୍ୟୋତି ଯାହାଧ୍ୟାଇ ॥
ଆତ୍ମା ସ୍ୱରୂପେ ଦେଖୁଛନ୍ତି । ଯା ଅନ୍ତ କେହି ନ ଜାଣନ୍ତି ॥
ସେ ବ୍ରହ୍ମ ଇସି ଯେ ଈଶ୍ୱର । ତାହାକୁ ମୋର ନମସ୍କାର ॥
କ୍ଷୀର ସମିଦ୍ର ମନ୍ଥନରେ । ପୃଷ୍ଠୋ ମନ୍ଦର ଗିରିଧରେ ॥
ଭ୍ରମିଲା ଖୁଆଦଣ୍ଡ ପ୍ରାଏ । ସମୁଦ୍ର ମନ୍ଥନ ସମଏ ॥
ଦେବ ବରଷରେ ଗଣନା । ସହସ୍ରେ ବରଷ ବର୍ଣ୍ଣନା ॥
କଣ୍ଡୁ ଯେ କୂର୍ମ ପୃଷ୍ଟେ ଥିଲା । ଘର୍ଷଣେ ସୁଖ ସେ ପାଇଲା ॥
ନିଦ୍ରା ଉପଜିଲା ତାଙ୍କର । ସେ ନିଜେ ପବନ ବାହାର ॥
ନିଶ୍ୱାସ ଆତଯାତ ହୋଇ । ସେ ପବନେ ଯେ ସର୍ବଥାଇ ॥
ସେ ସର୍ବ ନିଜରକ୍ଷା ପୁଣି । ଯହିଁ ବଞ୍ଚିତ ସର୍ବ ପ୍ରାଣୀ ॥
ଯାହାର ନିଶ୍ୱାସ ପବନ । ବାଜି ସମୁଦ୍ର ଜଳମାନ ॥
ତରଙ୍ଗ ଲହରୀର ଘାତ । ଏ ଦେହେ ନୋହିଛି ନିବର୍ତ୍ତ ॥
ଅନ୍ୟୋନ୍ୟେ ତଟକୁ ଆସଇ । ଯେ କୂର୍ମରୂପୀ ବିଷ୍ଣୁ ଦେହୀ ॥
ତାହାକୁ ମୋର ନମସ୍କାର । ହେ ଦେବଦେବ ହେ ଈଶ୍ୱର ॥
ଭଗବନ୍ତ ଯେ ବାସୁଦେବ । ସେ ଆତ୍ମାରୂପୀ ସର୍ବଜୀବ ॥
ପାପପୁଣ୍ୟକୁ ଯେ ସାଖିଣ । ନମଇ ତାହାଙ୍କ ଚରଣ ॥
ମୋକ୍ଷ ସ୍ୱରୂପ ବ୍ରହ୍ମ ଦେହୀ । ଶ୍ରୀ ଭାଗବତ ଅନୁଗ୍ରହୀ ॥
ଯୋଗୀନ୍ଦ୍ର ଯେଉଁ ଶୁକଦେବ । ତାହାକୁ ନମସ୍କାର ହେବ ॥
ସେ ବ୍ରହ୍ମରୂପୀ ଯେ ଅଟନ୍ତି । ଦଗଧ ସଂସାରେ ରମନ୍ତି ॥
ଯେ ବିଷ୍ଣୁ ଉତ୍ତମ ରକ୍ଷିତ । ତାହାକୁ କଲେ ଯେ ମୁକତ ॥
ତାହାକୁ ପୁନଃ ପୁନଃ ହୋଇ । କରଇ ପ୍ରଣମିତ ମୁହିଁ ॥
ଶ୍ରୀ ଭାଗବତ ଯେ ପୁରାଣ । ଦ୍ୱାଦଶ ସ୍କନ୍ଧେ ଯେ ସମ୍ପୂର୍ଣ୍ଣ ॥
ଦ୍ୱାଦଶ ସ୍କନ୍ଧ ତ୍ରୟୋଦଶ । ଅଧ୍ୟାରେ କହିଲୁଁ ବିଶେଷ ॥
ସୂତ କହନ୍ତି ତୋଷମନେ । ଶୁଣ ଶୌନକ ମୁନିଜନେ ॥
କହିଲୁ ଭାଗବତ ସାର । ଶୁଣି ସଂସାର ହୁଅ ପାର ॥
କହଇ ବିପ୍ର ଜଗନ୍ନାଥ । ଦ୍ୱାଦଶ ସ୍କନ୍ଧେ ଭାଗବତ ॥
ଶୁଣ ସୁଜନେ ତୋଷମନେ । ଶ୍ରୀ ଭାଗବତ ଯେ ପୁରାଣେ ॥
ଏ ବିଷ୍ଣୁ ବଚନେ ନିର୍ମିତ । ଧର୍ମ ପରିପାଳନ ଅର୍ଥ ॥
ଯୁଗେ ଯୁଗେ ଏ ସମ୍ଭବଇ । ଧର୍ମ ପ୍ରବର୍ତ୍ତାଇବା ପାଇଁ ॥
ଯେ ବିଷ୍ଣୁ ଅଂଶ ବିପ୍ରଦେହୀ । ସାଧୁ ବୈଷ୍ଣବ ସେ ଅଟଇ ॥
ଶ୍ରୀଧର ସ୍ୱାମୀ ବିପ୍ରବର । କଳିଯୁଗରେ ଜନ୍ମ ତାର ॥
ଶ୍ରୀଭାଗବତ ଯେ ପୁରାଣ । ଅଠର ସହସ୍ର ଶ୍ଳୋକେଣ ॥
ଚୌବିଂଶ ସସ୍ରଟୀକା କଲେ । ଶ୍ରୀଧର ସ୍ୱାମୀ ପ୍ରକାଶିଲେ ॥
ବ୍ରାହ୍ମଣ କୁଳେ ଜନ୍ମ ହୋଇ । ଜଗନ୍ନାଥ ଦାସ ବୋଲାଇ ॥
ପ୍ରାକୃତ ବନ୍ଧେ ଭାଗବତ । କହିଲେ ସଜ୍ଜନ ହିତ ॥
ସୁଜନେ ଦୋଷ ମୋ ନଧରେ । ଅଶେଷ ମହିମା କୃଷ୍ଣର ॥
ତାହାଙ୍କ ଗୁଣ କର୍ମଯଶ । ପୁରାଣ କଲି ଗୀତରସ ॥
ସାଧୁଚରଣ ରେଣୁ ଆଶେ । ମୁଁ ହୀନ ମହାଦେବ ଦାସେ ॥
ଜଗନ୍ନାଥ ଦାସଙ୍କ ଗୀତ । ଶୁଣିଲି ଶିରୀ ଭାଗବତ ॥
ଏକାଦଶମ ଯାଏ ସେହି । ଅଛନ୍ତି ଭାଗବତ କହି ॥
ଦ୍ୱାଦଶ ନ ପାଇଲି ଯେଣୁ । ମନରେ ବିଚାରିଲି ତେଣୁ ॥
ଏଣୁ ଚିତ୍ତ ବୋଧିବା ଅର୍ଥେ । ଦ୍ୱାଦଶ ସ୍କନ୍ଧ ଶ୍ରୁତିପଥେ ॥
ବିପ୍ରଙ୍କ ଠାରୁ ଶୁଣିଲଇଁ । ଦେଖିଲି ମନରେ ଚିତୋଇ ॥
ଜଗନ୍ନାଥ ଦାସଙ୍କ ବାଣୀ । ସେ ଯେ ଅମୃତ ତରଙ୍ଗିଣୀ ॥
ତେଣୁ ତାହାଙ୍କ ନାମେ ମୁହିଁ । ଶ୍ରୀ ଭାଗବତ ବଖାଣଇ ॥
ସେ ବିପ୍ରମଣି କୃଷ୍ଣରସ । ପୁରାଣ ଗୀତରେ ପ୍ରକାଶ ॥
ଜଗତ ଉଧାରଣ ଅର୍ଥେ । ରଚିଲି ଭାଗବତ ଅର୍ଥେ
ତେଣୁ ତାଙ୍କ ଚରଣେ ମନ । ସୁଜନେ ଦୋଷ ମୋର ଘେନ
ମୁଁ ହୀନ ମହାଦେବ ଦାସ । ସାଧୁଙ୍କ ଚରଣେ ମୋ ଆଶ ॥
ଶ୍ରୀକୃଷ୍ଣ ମହିମା ଅମୃତ । ତହିଁ ସଂସ୍କୃତ ପରାକୃତ ॥
ଭଗତ ଭାବେ ହୋଇ ତୋଷ । ତାହାଙ୍କ ମହିମା ଅଶେଷ ॥
ଆଗମ ନିଗମ ପୁରାଣେ । ଧ୍ୟାନ ସମାଦି ଯେ ଜ୍ଞାନେ ॥
ଖୋଜି ନ ପାରି ଯାର ଲେଶ । କେବଳ ଭକ୍ତ ଭାବେ ବଶ ॥
ବ୍ୟାଧ ଗଣିକା ଅଜାମିଳେ । ତାହାଙ୍କ ଭାବୁ ତରିଗଲେ ॥
ଗୋପୀଙ୍କ ସଙ୍ଗ ଲମ୍ପଟେଣ । ତରିଲେ ତାହାଙ୍କ ଭାବେଣ ॥
ସେ କେଳି ବୃନ୍ଦାବନେ କରି । ସେ ପୁଣ ଘୋଷି ପ୍ରାଣୀତରି ॥
ଶିଶୁପାଳ ଯେ ଦୁର୍ଯ୍ୟୋଧନ । କଂସାଦି ଅଷ୍ଟମଲ୍ଲମାନ ॥
ଯେ ଆଦି ଶତ୍ରୁପଣେ ଯେହି । ଯେ ବିଷ୍ଣୁଠାରେ ହିଂସା ବହି ॥
ସାଯୁଜ୍ୟ ମୁକ୍ତି ଯେ ପାଇଲେ । ବିଷ୍ଣୁର ଅଙ୍ଗେ ଲୀନ ହେଲେ ॥
ଭାବ ଅଭାବ ତାର ନାହିଁ । ମହିମା ଗୋଚର ନୁହଇ ॥
ବ୍ରହ୍ମା ଶଙ୍କର ଯେ ଅନନ୍ତ । ସେ ସର୍ବ ଆତ୍ମାର ପୂରିତ ॥
ଏଣୁ ମହିମା ଅନ୍ତ କରି । ସେ ଜାଣେ ତା ଗତି ବିଚାରି ॥
ତାହାର ନାମ ମାତ୍ର ସାର । କେ ତାହା କହିବ ବିସ୍ତାର ॥
ସୂତ ଶୌନକର ସମ୍ବାଦ । ଶୁକଦେବ ପରୀକ୍ଷେ ଭେଦ ॥
ଦ୍ୱାଦଶ ସ୍କନ୍ଧ ସମାପତ । ସମ୍ପୂର୍ଣ୍ଣ ଶିରୀ ଭାଗବତ ॥
ତ୍ରୟୋଦଶ ଯେ ଅଧ୍ୟାଏହି । ଏତେକେ ଗ୍ରନ୍ଥ ପୂର୍ଣ୍ଣହୋଇ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାଂ ବୈୟାସିକ୍ୟାଂ ଦ୍ୱାଦଶସ୍କନ୍ଧେ ସୂତ ଶୌନକ ସମ୍ବାଦେ ପୁରାଣ ସଂଖ୍ୟା ବର୍ଣ୍ଣନଂ ନାମ ଦ୍ୱାଦଶୋଽଧ୍ୟାୟ ।*

"ଯାହାର ଚରିତ ଗହନ । ଧ୍ୟାନେ ଭାବନ୍ତି ମୁନିଜନ ॥

ମୁକ୍ତ ମୁମୁକ୍ଷୁ ଯେ ବିଷୟୀ । ସର୍ବେ ତରନ୍ତି ପଦଧ୍ୟାୟୀ ॥

ଉତ୍ତମ ଶ୍ଳୋକ ଭଗବାନ । ଗୁଣ କୀର୍ତ୍ତନେ ମୁକ୍ତ ଜନ ॥

ଭବ ସାଗର ପରମାଦ । ବିଷୟା ବିଷକୁ ଏ ଗଦ ॥

ମୁମୁକ୍ଷୁ ଜୀବ ଏହା ପାଇ । ଆନନ୍ଦେ ଦିନକୁ ବଞ୍ଚଇ ॥

ବିଷୟୀ ଶୁଣି ସେ ବାରତା । ପାଶୋରେ ବିଷୟର କଥା ॥

ଚଣ୍ଡାଳୁ ବ୍ରହ୍ମଯାଏ ଲୋକ । କେ ଶୁଣି ହୋଇବ ବିମୁଖ ॥"

